# ଭାଷାଭିତ୍ତିକ
# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ



ଓଡ଼ିଶା ରାଜ୍ୟ ଅଭିଲେଖାଗାର

# ଭାଷାଭିତ୍ତିକ
# ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

(ତଥ୍ୟସମ୍ବଳିତ ଉପାଦାନ )

(ପ୍ରଥମ ଭାଗ,ପ୍ରଥମ ଖଣ୍ଡ)

୧୮୦୩-୧୯୦୨

*ସଂପାଦନା:-*

ଡକ୍ଟର ମହେଶ ପ୍ରସାଦ ଦାଶ

ଡକ୍ଟର ଅତୁଲ ଚନ୍ଦ୍ର ପ୍ରଧାନ

ଡକ୍ଟର ଚିତ୍ତରଂଜନ ମିଶ୍ର

ଶ୍ରୀ ରାଜକିଶୋର ମିଶ୍ର

ଡକ୍ଟର ଅମିୟ କୁମାର ପଟ୍ଟନାୟକ

ଡକ୍ଟର ଶକୁନ୍ତଳା ବଳିଆରସିଂହ

ଡକ୍ଟର ବିଜୟାନନ୍ଦ ସିଂହ

ଓଡ଼ିଶା ରାଜ୍ୟ ଅଭିଲେଖାଗାର

ସଂସ୍କୃତି ବିଭାଗ,ଓଡିଶା ସରକାର

ଭୁବନେଶ୍ୱର

# ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

(ତଥ୍ୟସମ୍ବଳିତ ଉପାଦାନ) ୧୮୦୩-୧୯୦୨

(ପ୍ରଥମ ଭାଗ,ପ୍ରଥମ ଖଣ୍ଡ)

ପ୍ରକାଶକ : ଓଡ଼ିଶା ରାଜ୍ୟ ଅଭିଲେଖାଗାର
ସଂସ୍କୃତି ବିଭାଗ,ଓଡ଼ିଶା ସରକାର
ଭୁବନେଶ୍ୱର

ପ୍ରଥମ ପ୍ରକାଶ : ୨୦୧୦

ଡି.ଟି.ପି : ୱେଲକିନ୍ ଟେକ୍ନୋଲୋଜି,ଭୁବନେଶ୍ୱର

ମୁଦ୍ରଣ : ଓଡ଼ିଶା ପ୍ରିଣ୍ଟିଂ ୱାର୍କ୍ସ, କଟକ-୨

ମୂଲ୍ୟ : Rs. 1,042.00
Less 20% Rs. 208.00
Rs. 834.00

# FORMATION OF SEPARATE ORISSA PROVINCE ON LANGUAGE BASIS

(ARCHIVAL SOURCES) 1803-1902

(Volume-I , Part-I)

Edited by : Dr. Mahesh Prasad Dash
Dr. Atul Chandra Pradhan
Dr. Chittaranjan Mishra
Sri Rajkishore Mishra
Dr. Amiya Kumar Pattanaik
Dr. Sankuntala Baliarsingh
Dr. Bijayananda Singh

Published by: Orissa State Archives,
Dept. of Culture
Govt. of Orissa
Bhubnaeswar-751001

First Edition :2010

D.T.P :Welkin Technologies,
Bhubaneswar.

Printed at :Orissa Printing Works,
Cuttack-2

Price : Rs. 1,042.00
Less 20% Rs. 208.00
Rs. 834.00

## ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ ପ୍ରକାଶନ ସମିତି

| | |
|---|---|
| ଡକ୍ଟର ମୋନା ଶର୍ମା<br>(କମିଶନର ତଥା ଶାସନ ସଚିବ<br>ସଂସ୍କୃତି ବିଭାଗ,ଓଡ଼ିଶା ସରକାର) | ଅଧ୍ୟକ୍ଷା |
| ଡକ୍ଟର ମହେଶ ପ୍ରସାଦ ଦାଶ | ସଦସ୍ୟ |
| ଡକ୍ଟର ଅତୁଲ ଚନ୍ଦ୍ର ପ୍ରଧାନ | ସଦସ୍ୟ |
| ଡକ୍ଟର ଚିତ୍ତରଂଜନ ମିଶ୍ର | ସଦସ୍ୟ |
| ଶ୍ରୀ ରାଜକିଶୋର ମିଶ୍ର | ସଦସ୍ୟ |
| ଡକ୍ଟର ଅମିୟ କୁମାର ପଟ୍ଟନାୟକ | ସଦସ୍ୟ |
| ଡକ୍ଟର ଶକୁନ୍ତଳା ବଳିଆରସିଂହ | ସଦସ୍ୟା |
| ଡକ୍ଟର ବିଜୟାନନ୍ଦ ସିଂହ | ସଦସ୍ୟ |
| ଶ୍ରୀମତୀ ସବିତା ମିଶ୍ର<br>(ଅଧୀକ୍ଷକ, ଓଡ଼ିଶା ରାଜ୍ୟ ଅଭିଲେଖାଗାର<br>ଭୁବନେଶ୍ୱର) | ସଦସ୍ୟା ଓ ଆବାହିକା |

# ସମ୍ପାଦକମାନଙ୍କ ପରିଚିତି

| | |
|---|---|
| ଡକ୍ଟର ମହେଶ ପ୍ରସାଦ ଦାଶ | : ପ୍ରାକ୍ତନ ଯୁଗ୍ମ ନିର୍ଦ୍ଦେଶକ, ସଂସ୍କୃତି ବିଭାଗ ଓଡିଶା ସରକାର, ଭୁବନେଶ୍ୱର । |
| ଡକ୍ଟର ଅତୁଲ ଚନ୍ଦ୍ର ପ୍ରଧାନ | : ପ୍ରାକ୍ତନ ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଇତିହାସ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ ବାଣୀବିହାର, ଭୁବନେଶ୍ୱର । |
| ଡକ୍ଟର ଚିତ୍ତରଂଜନ ମିଶ୍ର | : ପ୍ରାକ୍ତନ ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଇତିହାସ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଜ୍ୟୋତିବିହାର, ସମ୍ବଲପୁର । |
| ଶ୍ରୀ ରାଜକିଶୋର ମିଶ୍ର | : ପ୍ରାକ୍ତନ ସଚିବ, ଓଡିଶା ସାହିତ୍ୟ ଏକାଡେମୀ ଓ ସମ୍ପାଦକ, ଓଡିଶା ରିଭ୍ୟୁ |
| ଡକ୍ଟର ଅମିୟ କୁମାର ପଟ୍ଟନାୟକ | : କୁଳପତି, ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ ଭୁବନେଶ୍ୱର । |
| ଡକ୍ଟର ଶକୁନ୍ତଳା ବଳିଆରସିଂହ | : ପ୍ରାକ୍ତନ ଅଧକ୍ଷା, ରାଜଧାନୀ ମହାବିଦ୍ୟାଳୟ, ଭୁବେନେଶ୍ୱର ଓ ସମ୍ପାଦିକା 'ଶତଭିଷା' |
| ଡକ୍ଟର ବିଜୟାନନ୍ଦ ସିଂହ | : ପ୍ରାଧାପକ, ଓଡିଆ ଭାଷା ଓ ସାହିତ୍ୟ ବିଭାଗ ଏବଂ ବିଶେଷ କର୍ତ୍ତବ୍ୟରତ ଅଧିକାରୀ ତଥା ଉପ ନିର୍ଦ୍ଦେଶକ(ପ୍ରକାଶନ) ଓଡିଶା ରାଜ୍ୟ ଅଭିଲେଖାଗାର, ଭୁବନେଶ୍ୱର । |

ଶ୍ରୀ ଦେବୀ ପ୍ରସାଦ ମିଶ୍ର
ମନ୍ତ୍ରୀ
ଉଚ୍ଚଶିକ୍ଷା, ପର୍ଯ୍ୟଟନ ଓ ସଂସ୍କୃତି, ଓଡ଼ିଶା





# ବାର୍ତ୍ତା

ଓଡ଼ିଶାର ଐତିହ୍ୟ ଓ ସଂସ୍କୃତି ବିଶ୍ୱବିଦିତ । ଅତୀତରେ ଏହାର ବାଣିଜ୍ୟିକ ଓ ସାଂସ୍କୃତିକ ସାମ୍ରାଜ୍ୟ ଓଡ଼ିଶାର ଭୌଗୋଳିକ ସୀମାକୁ ଅତିକ୍ରମ କରି ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟିକରିଥିଲା । ଜାତୀୟ ଓ ଆନ୍ତର୍ଜାତିକ କ୍ଷେତ୍ରରେ ଓଡ଼ିଶାର ସ୍ଥିତି ସେଥିପାଇଁ ମର୍ଯ୍ୟାଦାପୂର୍ଣ୍ଣ । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ଜାତୀୟ ଜୀବନରେ ବିରାଟ ପରିବର୍ତ୍ତନ ଦେଖାଦେଲା । ଓଡ଼ିଶାର ସାମାଜିକ ଜୀବନ, ଶିକ୍ଷା, ସଂସ୍କୃତି ପରଂପରାରେ ମଧ୍ୟ ଏହା ଉପଲବ୍ଧ ହେଲା । ଗୋଟିଏ ଜାତିର ଇତିହାସ ରଚନା କଲାବେଳେ ସେଇ ଜାତିର ଭିତ୍ତିଭୂମିକୁ ଅନୁଶୀଳନ କରିବାକୁ ପଡିଥାଏ ।

୧୯୦୩ ମସିହାରେ ଆନୁଷ୍ଠାନିକଭାବେ ଓଡ଼ିଆ ସ୍ୱାଭିମାନର ସୁରକ୍ଷା ଓ ଆତ୍ମପରିଚିତି ପାଇଁ ଜନ୍ମନେଲା 'ଉତ୍କଳ ସମ୍ମିଳନୀ' । ଉତ୍କଳ ସମ୍ମିଳନୀର ପରିକଳ୍ପନା ଥିଲା ଓଡ଼ିଆ ଭାଷାଭିତ୍ତିକ ପ୍ରଦେଶ ଗଠନ । ସେ ସମୟରେ ଓଡ଼ିଆମାନେ ଭାରତର ବିଭିନ୍ନ ସ୍ଥାନରେ ବସବାସ କରୁଥିଲେ । ସେହି ଖଣ୍ଡବିଖଣ୍ଡିତ ଅଞ୍ଚଳକୁ ନେଇ ଗୋଟିଏ ରାଜ୍ୟ ଗଢ଼ିବାର ଆବଶ୍ୟକତା ଥିଲା । ଓଡ଼ିଶାର ବରପୁତ୍ରମାନଙ୍କର ଯଥାର୍ଥ ନେତୃତ୍ୱ ଓଡ଼ିଆ ଜାତୀୟଆନ୍ଦୋଳନକୁ ତ୍ୱରାନ୍ୱିତ କରିଥିଲା । ନିରନ୍ତର ଉଦ୍ୟମ, ନିଷ୍ପାପର ସଂଗ୍ରାମ ଫଳରେ ଓଡ଼ିଆମାନଙ୍କ ଲକ୍ଷ୍ୟ ପୂରଣ ହେବା ସହିତ ଏପ୍ରିଲ ପହିଲା ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ପାଇଲା । ସ୍ୱାଧୀନୋତ୍ତର ଭାରତବର୍ଷରେ ଓଡ଼ିଶାର ବିକାଶ ଓ ଅଗ୍ରଗତି ଉଲ୍ଲେଖଯୋଗ୍ୟ । ଭାଷାଭିତ୍ତିକ ପ୍ରଦେଶ ଗଠନ ପାଇଁ ହୋଇଥିବା ଆନ୍ଦୋଳନ ସଂପର୍କରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଓ ଘଟଣା ଇତିହାସର ବିଷୟବସ୍ତୁ ।

ଏ ସମ୍ପର୍କରେ ଅନେକ ମୌଳିକ ଉପାଦାନ ଓଡ଼ିଶା ଏବଂ ଦେଶର ବିଭିନ୍ନ ଅଭିଲେଖାଗାରରେ ଯଥା- ପଶ୍ଚିମବଙ୍ଗ,ମାଡ୍ରାସ ଏବଂ ବିହାର ପ୍ରଭୃତି ସ୍ଥାନରେ ସରକାରୀ ନଥିପତ୍ର ଓ ସମ୍ବାଦପତ୍ର ଆଦି ରହିଛି। ସେ ସବୁକୁ ସଂଗ୍ରହ କରି ଏକ ପୁସ୍ତକ ପ୍ରଣୟନ ପାଇଁ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗର ଉଦ୍ୟମ ସ୍ୱାଗତଯୋଗ୍ୟ । ଓଡ଼ିଶା ରାଜ୍ୟ ଅଭିଲେଖାଗାର ଏଥିପାଇଁ ଯୋଜନା ପ୍ରସ୍ତୁତକରି ପୁସ୍ତକ ପ୍ରକାଶ କରୁଛନ୍ତି । 'ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ' (୧୮୦୩-୧୯୦୨) ପୁସ୍ତକର ସମ୍ପାଦକମଣ୍ଡଳୀ ବହୁ ଶ୍ରମ ସ୍ୱୀକାରକରି ପ୍ରଥମ ଭାଗକୁ ସଂପାଦନା କରିଥିବାରୁ ମୁଁ ରାଜ୍ୟ ସରକାରଙ୍କ ପକ୍ଷରୁ ଅଭିନନ୍ଦନ ଜଣାଉଛି ଓ ସଂସ୍କୃତି ବିଭାଗର ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଧନ୍ୟବାଦ ଜଣାଉଛି । ଏହି ପୁସ୍ତକଟି ଓଡ଼ିଶାର ଇତିହାସକୁ ସମୃଦ୍ଧ କରିବ ବୋଲି ମୋର ବିଶ୍ୱାସ ।

ଦେବୀ ପ୍ରସାଦ ମିଶ୍ର ୨୦.୪.୧୦
(ଶ୍ରୀ ଦେବୀ ପ୍ରସାଦ ମିଶ୍ର)

**ଶ୍ରୀ ତରୁଣକାନ୍ତି ମିଶ୍ର**
ମୁଖ୍ୟ ଶାସନ ସଚିବ
ଓଡ଼ିଶା ସରକାର






## ଶୁଭେଚ୍ଛା

ଆନନ୍ଦର କଥା, ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଆନୁକୂଲ୍ୟରେ ଓଡ଼ିଶା ରାଜ୍ୟ ଅଭିଲେଖାଗାରର 'ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ' ପ୍ରକାଶ ପାଉଛି । ଉକ୍ତ ଗ୍ରନ୍ଥରେ ନୂତନ ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ବହୁ ତଥ୍ୟ ଓ ସମ୍ବାଦ ସ୍ଥାନପାଇବା ସହିତ ଅନେକ ଦୁଷ୍ପ୍ରାପ୍ୟ ମୌଳିକ ଉପାଦାନଗୁଡ଼ିକ ସ୍ଥାନିତ କରାଯାଇଅଛି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଇତିହାସ ସମ୍ପର୍କରେ ଗ୍ରନ୍ଥଟି ନୂତନ ଆଲୋକ ପ୍ରଦାନ କରିବ । ସଂସ୍କୃତି ବିଭାଗ ଏହି ପରିକଳ୍ପନାଟିକୁ ଯଥାର୍ଥ ଭାବରେ କାର୍ଯ୍ୟକାରୀ କରାଇ ଥିବାରୁ ବିଭାଗର କର୍ମକର୍ତ୍ତା,ସମ୍ପାଦକମଣ୍ଡଳୀଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଦେଉଛି ।

ତରୁଣକାନ୍ତି ମିଶ୍ର
(ତରୁଣକାନ୍ତି ମିଶ୍ର)

**ଡା. ମୋନା ଶର୍ମା,** ଆଇ.ଏ.ଏସ
କମିଶନର ତଥା ଶାସନ ସଚିବ,
ପର୍ଯ୍ୟଟନ ଓ ସଂସ୍କୃତି (ସଂସ୍କୃତି )ବିଭାଗ,
ଓଡ଼ିଶା ସରକାର





# ସ୍ୱୀକାରୋକ୍ତି

ଓଡ଼ିଆ ଭାଷା ଏକ ପ୍ରାଚୀନ ଭାଷା । ଏହି ଭାଷାର ଐତିହ୍ୟ ଓ ପରଂପରା ମହାନ । ଓଡ଼ିଆ ଭାଷାକୁ ଭିତ୍ତିକରି ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଜନ୍ମ । ଏହି ପ୍ରଦେଶ ଗଠନର ଇତିହାସ ଘଟଣାବହୁଳ । ଗୋଟିଏ ଜାତିର ଇତିହାସ ପ୍ରେରଣା ଯୋଗାଏ ଭବିଷ୍ୟତ ବଂଶଧରମାନଙ୍କୁ । ଓଡ଼ିଶା ପ୍ରଦେଶ ଗଠନ ଇତିହାସ ସଂପର୍କରେ ଅନେକ ମୌଳିକ ଉପାଦାନ ଓଡ଼ିଶାର ବିଭିନ୍ନ ସରକାରୀ ନଥିପତ୍ରରେ, ଓଡ଼ିଶା ରାଜ୍ୟ ଅଭିଲେଖାଗାରରେ ସଂଗୃହୀତ ତଥା ସଂରକ୍ଷିତ ହୋଇ ରହିଛି । ଏହି ମୌଳିକ ଉପାଦାନଗୁଡିକୁ ଏକତ୍ର କରି ଏକ ପୁସ୍ତକ ପ୍ରକାଶନର ଆବଶ୍ୟକତା ଥିଲା । ସେଥିପାଇଁ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ପୁସ୍ତକ ପ୍ରଣୟନ ପାଇଁ ପରିକଳ୍ପନା କରିଥିଲେ । ସଂପ୍ରତି ଏହି ପରିକଳ୍ପନା ସାକାର ହୋଇଛି । ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପୁସ୍ତକ ପ୍ରକାଶ ଲାଭ କରୁଛି ।

ଓଡ଼ିଆ ଜାତିର ସଂସ୍କୃତି, ଇତିହାସ ଓ ଭାଷା ସଂପର୍କୀୟ ସପ୍ରମାଣ ସୂଚୀପତ୍ର ପ୍ରସ୍ତୁତ କରିବାର ପ୍ରଚେଷ୍ଟା ଏହି ପୁସ୍ତକରେ କରାଯାଇଛି । ଏହି ପରିପ୍ରେକ୍ଷୀରେ ଓଡ଼ିଶା ରାଜ୍ୟ ଅଭିଲେଖାଗାରର ଭୂମିକା ପ୍ରଶଂସନୀୟ । ସଂପାଦକମ୍ଣ୍ଡଳୀ, ଓଡ଼ିଶା ରାଜ୍ୟ ଅଭିଲେଖାଗାରର କର୍ମକର୍ତ୍ତାମାନଙ୍କୁ ଏଥିପାଇଁ ସାଧୁବାଦ ଜଣାଉଛି। ଉକ୍ତ ଗ୍ରନ୍ଥଟି ଗବେଷକମାନଙ୍କୁ ସେମାନଙ୍କ ଗବେଷଣା କାର୍ଯ୍ୟରେ ସାହାଯ୍ୟ କରିବା ସହିତ ନୂତନ ଓଡ଼ିଶା ଗଠନ ଇତିହାସ ରଚନାରେ ମଧ୍ୟ ସହାୟକ ହେବ ବୋଲି ମୋର ବିଶ୍ୱାସ ।

ମୋନା ଶର୍ମା
(ଡା. ମୋନା ଶର୍ମା)

ଶ୍ରୀ ରବୀନ୍ଦ୍ର ନାଥ କର
ନିର୍ଦ୍ଦେଶକ ତଥା ଅତିରିକ୍ତ ସଚିବ,
ସଂସ୍କୃତି ବିଭାଗ,
ଓଡ଼ିଶା ସରକାର





## କୃତଜ୍ଞତା

୧୯୩୬ ମସିହା ଏପ୍ରିଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଭାବରେ ଗଠିତ ହେଲା। ଭାଷାଭିତ୍ତିରେ ପ୍ରଦେଶ ଗଠନ କରିବାପାଇଁ ଯେଉଁ ପ୍ରଚେଷ୍ଟା ଉନ୍ନବିଂଶ ଶତାବ୍ଦୀରେ ଆରମ୍ଭ ହୋଇଥିଲା ତାହା ସଫଳ ରୂପ ଲାଭକଲା । କିନ୍ତୁ ଏ ଆନ୍ଦୋଳନର ପୃଷ୍ଠଭୂମି ଗୌରବପୂର୍ଣ୍ଣ । ଭାଷାଭିତ୍ତିକ ରାଜ୍ୟ ଗଠନ କରିବାପାଇଁ ହୋଇଥିବା ଉଦ୍ୟମ,ଆନ୍ଦୋଳନ ସମ୍ପର୍କୀୟ ଅନେକ ନଥିପତ୍ର,ଦଲିଲ,ସଂବାଦପତ୍ର ଓ ପତ୍ରପତ୍ରିକା ଓଡ଼ିଶା ରାଜ୍ୟ ଅଭିଲେଖାଗାରରେ ସୁରକ୍ଷିତ ରହିଛି ।

ଆନନ୍ଦର କଥା, ଏହି ତଥ୍ୟକୁ ଭିତ୍ତିକରି "ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ" ଗ୍ରନ୍ଥ ଆତ୍ମପ୍ରକାଶ କରୁଛି । ଏହି ପୁସ୍ତକ ଓଡ଼ିଶାର ସୁଧୀ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିପାରିବ ବୋଲି ମୋର ବିଶ୍ୱାସ । ସଂପାଦକମଣ୍ଡଳୀଙ୍କୁ ଏହି ଅବସରରେ ସେମାନଙ୍କର ନିଷ୍ଠାପର ଉଦ୍ୟମପାଇଁ କୃତଜ୍ଞତା ଜ୍ଞାପନକରୁଛି।

ରବୀନ୍ଦ୍ର ନାଥ କର

(ଶ୍ରୀ ରବୀନ୍ଦ୍ର ନାଥ କର)

# ମୁଖବନ୍ଧ

"ଓଡ଼ିଆଙ୍କ ପାଇଁ ଓଡ଼ିଶା" ଏହି ଚିନ୍ତାଧାରାରୁ ରୂପ ନେଇଛି ଆଜିର ଓଡ଼ିଶା ପ୍ରଦେଶ । ୧୯୩୬ ମସିହା ଏପ୍ରିଲ ୧ ତାରିଖ ଦିନ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ରୂପେ ମାନ୍ୟତା ମିଳିଲା । ଏଥି ପୂର୍ବରୁ ଓଡ଼ିଶା ତଥା ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ ଖଣ୍ଡବିଖଣ୍ଡିତ ହୋଇ ବିଭିନ୍ନ ପ୍ରଦେଶାନ୍ତର୍ଗତ, ଯଥା- କିଛି ଅଂଶ ବିହାର, ମାନ୍ଦ୍ରାଜ ଏବଂ ବଙ୍ଗ ପ୍ରଦେଶର ଅନ୍ତର୍ଭୁକ୍ତ ଥିଲା । ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଓଡ଼ିଆ ଭାଷାର ଉନ୍ନତି, ଶିକ୍ଷାର ପ୍ରସାର, ଭାଷା ଆନ୍ଦୋଳନ, ସଭାସମିତି ଗଠନ, ଛାପାଖାନାମାନ ସ୍ଥାପନ ଏବଂ ପତ୍ରପତ୍ରିକା ପ୍ରକାଶନ କରାଯାଇ ନବଜାଗରଣ ସୃଷ୍ଟି କରାଯାଇଥିଲା । ଓଡ଼ିଶାର ସେ ସମୟର କେତେଜଣ ବରପୁତ୍ର ଯଥା- କର୍ମବୀର ଗୌରୀଶଙ୍କର ରାୟ, ବାମଣ୍ଡାର ରାଜାବାହାଦୁର ବାସୁଦେବ ସୁଢ଼ଳଦେବ, ବାଲେଶ୍ୱରର ରାଜାବାହାଦୁର ବୈକୁଣ୍ଠନାଥ ଦେ, ଉତ୍କଳ ଗୌରବ ମଧୁସୂଦନ ଦାସ, କବିବର ରାଧାନାଥ ରାୟ, ଭକ୍ତକବି ମଧୁସୂଦନ ରାଓ, ବ୍ୟାସକବି ଫକୀରମୋହନ ସେନାପତି, ସ୍ୱଭାବକବି ଗଙ୍ଗାଧର ମେହେର, ମନସ୍ୱୀ ପ୍ୟାରୀମୋହନ ଆଚାର୍ଯ୍ୟ ଓ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଅଦମ୍ୟ ଚେଷ୍ଟା ଏହି ଆନ୍ଦୋଳନକୁ ସକ୍ରିୟ କରାଇଥିଲା । ଟି.ରେଭେନ୍ସା, ହେନେରି ରିକେଟ୍ସ ଏବଂ ଜନ୍ ବିମ୍ସଙ୍କ ପରି ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କର ଓଡ଼ିଆଙ୍କ ପ୍ରତି ଅନୁରକ୍ତି ଆନ୍ଦୋଳନକୁ ଯଥେଷ୍ଟ ଉତ୍ସାହିତ କରିଥିଲା । ଏହି ଆନ୍ଦୋଳନରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଜନ୍ମ ।

ଉକ୍ତ ଘଟଣାବଳୀର ବହୁଳ ସୂଚନା ମିଳେ ରାଜ୍ୟ ଅଭିଲେଖାଗାରରେ ସଂରକ୍ଷିତ ବହୁମୂଲ୍ୟ ଦୁଷ୍ପ୍ରାପ୍ୟ ପତ୍ରପତ୍ରିକା, ରିପୋର୍ଟ ଏବଂ ନଥିପତ୍ରରୁ । ଗବେଷକ ତଥା ଐତିହାସିକଗଣ ଏଥିରେ କିୟତ୍‌ମାତ୍ର ଅଧ୍ୟୟନ କରି ନିଜ ନିଜର ସନ୍ଦର୍ଭ ତଥା ପୁସ୍ତକମାନ ରଚନା କରିଅଛନ୍ତି । ତଥାପି ଆହୁରି ଅନେକ ନଥି, ପତ୍ରପତ୍ରିକା ଏବଂ ରିପୋର୍ଟ ଅଭିଲେଖାଗାରରେ ଗଚ୍ଛିତ ଅଛି ଯାହାକି ଏପର୍ଯ୍ୟନ୍ତ ବହୁ ଗବେଷକଙ୍କ ଦୃଷ୍ଟିକୁ ଆସିପାରି ନାହିଁ । ସେଗୁଡ଼ିକ ଲୋକଲୋଚନକୁ ଆଣିବାର ଆବଶ୍ୟକତା ଉପଲବ୍ଧି କରାଗଲା ।

ଏହି ଉଦ୍ଦେଶ୍ୟରେ ତା ୧୨.୧୨.୨୦୦୭ରିଖ ଦିନ ଓଡ଼ିଶାର ତତ୍‌କାଳୀନ ମୁଖ୍ୟ ଶାସନ ସଚିବ ଶ୍ରୀ ଅଜିତକୁମାର ତ୍ରିପାଠୀ, ଆଇ.ଏ.ଏସ୍. ମହୋଦୟଙ୍କ ଅଧ୍ୟକ୍ଷତାରେ ଏକ ଉଚ୍ଚସ୍ତରୀୟ ବୈଠକରେ ରାଜ୍ୟ ଅଭିଲେଖାଗାରରେ ଗଚ୍ଛିତ ଥିବା ନଥିପତ୍ର, ପତ୍ରପତ୍ରିକା ଓ ଆନୁଷଙ୍ଗିକ ତଥ୍ୟକୁ ଭିତ୍ତିକରି "ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ" ଶୀର୍ଷକ ପୁସ୍ତକ ପ୍ରସ୍ତୁତ କରିବାକୁ ସ୍ଥିର କରାଗଲା । ଏହାକୁ ଚାରିଗୋଟି ଭାଗରେ ପ୍ରକାଶ କରିବା ପାଇଁ ଆକଳନ କରାଗଲା । ସେହି ସମୟରେ ସଂସ୍କୃତି ବିଭାଗର ଶାସନ ସଚିବ ଶ୍ରୀ ଗୋପୀନାଥ ମହାନ୍ତି, ଆଇ.ଏ.ଏସ୍.ଙ୍କ ଅଧ୍ୟକ୍ଷତାରେ ଏବଂ ଡଃ ମହେଶ ପ୍ରସାଦ ଦାଶ, ଅବସରପ୍ରାପ୍ତ ଯୁଗ୍ମ ନିର୍ଦ୍ଦେଶକ, ସଂସ୍କୃତି ବିଭାଗ ତଥା ପୂର୍ବତନ ଅଧୀକ୍ଷକ, ରାଜ୍ୟ ଅଭିଲେଖାଗାର, ଡଃ ଅତୁଲ ଚନ୍ଦ୍ର ପ୍ରଧାନ, ଅବସରପ୍ରାପ୍ତ ଇତିହାସ ପ୍ରଫେସର, ଉତ୍କଳ ବିଶ୍ୱବିଦ୍ୟାଳୟ, ଡଃ ଚିତ୍ତରଞ୍ଜନ ମିଶ୍ର,ଅବସରପ୍ରାପ୍ତ ଇତିହାସ ପ୍ରଫେସର, ସମ୍ବଲପୁର ବିଶ୍ୱବିଦ୍ୟାଳୟ,ଶ୍ରୀ ରାଜକିଶୋର ମିଶ୍ର, ପ୍ରାକ୍ତନ ସଚିବ,ଓଡିଶା ସାହିତ୍ୟ ଏକାଡେମୀ ଓ ସମ୍ପାଦକ,ଓଡ଼ିଶା ରିଭ୍ୟୁ, ଡକ୍ଟର ଅମିୟ କୁମାର ପଟ୍ଟନାୟକ,କୁଳପତି,ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ, ଡଃ ଶକୁନ୍ତଳା ବଳିୟାରସିଂହ, ପ୍ରାକ୍ତନ ଅଧ୍ୟକ୍ଷା, ରାଜଧାନୀ କଲେଜ ଏବଂ ଡଃ ବିଜୟାନନ୍ଦ ସିଂହ, ପ୍ରାଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ, ସାଲେପୁର କଲେଜଙ୍କୁ ନେଇ ଏକ ସଂପାଦନାମଣ୍ଡଳୀ ଗଠନ କରାଗଲା । ବିଭିନ୍ନ ସମୟରେ ବୈଠକମାନ ଡକାଯାଇ ସେମାନଙ୍କଠାରୁ ପୁସ୍ତକ ସଂକଳନ ସଂପର୍କରେ ମୂଲ୍ୟବାନ୍ ଉପଦେଶମାନ ଗ୍ରହଣ

କରାଗଲା । ସମୁଦ୍ର ଗର୍ଭରୁ ରତ୍ନ ଆହରଣ କରିବା ପରି ବହୁ ନଥିପତ୍ର ମଧ୍ୟରୁ ବିଷୟବସ୍ତୁ ସଂପର୍କିତ ତଥ୍ୟ, ମାନଚିତ୍ର ଏବଂ ବିଭିନ୍ନ ସ୍ଥାନରୁ ଓଡ଼ିଶାର ବରପୁତ୍ରମାନଙ୍କର ଫଟୋଚିତ୍ର ସଂଗ୍ରହ କରିବା ଆଦି କଷ୍ଟସାଧ୍ୟ ହେଲେ ମଧ୍ୟ ଏ ପୁସ୍ତକଟିର ପ୍ରଥମ ଭାଗ, ପ୍ରଥମ ଖଣ୍ଡର ପ୍ରସ୍ତୁତି କାର୍ଯ୍ୟ ଶେଷ ହୋଇଛି । ଏହା "ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ : (ତଥ୍ୟ ସମ୍ବଳିତ ଉପାଦାନ, ୧୮୦୩-୧୯୦୨)" ନାମରେ ପ୍ରକାଶିତ ହୋଇଛି ।

ଏହି ପୁସ୍ତକ ସଂକଳନ କାର୍ଯ୍ୟରେ ସଂପାଦକମଣ୍ଡଳୀ ଯେଉଁମାନେକି ମୋର ଚିରନମସ୍ୟ ପ୍ରତ୍ୟେକ ସମୟରେ ସେମାନେ ମୋତେ ଉପଦେଶ ଏବଂ ନିର୍ଦ୍ଦେଶନା ଦେଇ ଆସିଛନ୍ତି । ପୁସ୍ତକଟିକୁ ସର୍ବାଙ୍ଗ ସୁନ୍ଦର ଏବଂ ସର୍ବଜନାଦୃତ ପାଇଁ ବିଭିନ୍ନ ସମୟରେ ମତାମତ ମଧ୍ୟ ଦେଇଛନ୍ତି । ତେଣୁ ସେମାନଙ୍କୁ ମୁଁ ହାର୍ଦ୍ଦିକ ଧନ୍ୟବାଦ ସହିତ ପ୍ରଣାମ ଜଣାଉଛି । ଓଡ଼ିଶା ସରକାର ଉଚ୍ଚ ଶିକ୍ଷା ବିଭାଗରେ ଥିବା ପ୍ରାଧ୍ୟାପକ ଡଃ. ବିଜୟାନନ୍ଦ ସିଂହଙ୍କୁ ରାଜ୍ୟ ଅଭିଲେଖାଗାରକୁ ପ୍ରେରଣ କରି ପୁସ୍ତକ ସଂକଳନ କାର୍ଯ୍ୟ ନିମନ୍ତେ ଦାୟିତ୍ୱ ପ୍ରଦାନ କରିଥିବାରୁ ଉଚ୍ଚଶିକ୍ଷା ବିଭାଗର ବରିଷ୍ଠ କର୍ମକର୍ତ୍ତା ତଥା ମାନ୍ୟବର ଉଚ୍ଚଶିକ୍ଷା, ସଂସ୍କୃତି ଓ ପର୍ଯ୍ୟଟନ ବିଭାଗ ମନ୍ତ୍ରୀ ଶ୍ରୀ ଦେବୀ ପ୍ରସାଦ ମିଶ୍ର ମହୋଦୟଙ୍କୁ କୃତଜ୍ଞତା ଅର୍ପଣ କରୁଛି ।

ପୁସ୍ତକ ସଂକଳନ କାର୍ଯ୍ୟକୁ ତ୍ୱରାନ୍ୱିତ କରିବାପାଇଁ ସଂସ୍କୃତି ବିଭାଗ ଶାସନ ସଚିବ ଡଃ ମୋନା ଶର୍ମା, ଆଇ.ଏ.ଏସ୍. ଏବଂ ନିର୍ଦ୍ଦେଶକ ତଥା ଅତିରିକ୍ତ ଶାସନ ସଚିବ ଶ୍ରୀ ରବୀନ୍ଦ୍ର ନାଥ କରଙ୍କ ଉତ୍ସାହ ଏବଂ ପ୍ରେରଣା ସ୍ୱୀକାରଯୋଗ୍ୟ । ଏ ଦିଗରେ ଯେତେବେଳେ ଯାହା ଆବଶ୍ୟକ ମନେକରି ନିବେଦନ କରିଛି ସେମାନେ ମୋର ନିବେଦନ ରକ୍ଷା କରିଛନ୍ତି । ତେଣୁ ସେମାନଙ୍କ ନିକଟରେ ମୁଁ ଚିର ଋଣୀ ।

ଡଃ ବିବେକାନନ୍ଦ ଦାସ, ସଂଗ୍ରହାଧ୍ୟକ୍ଷ, ଶ୍ରୀମତୀ ଜୟନ୍ତୀ ରଥ, ସଂଗ୍ରହାଧ୍ୟକ୍ଷା, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଗବେଷିକା ସୁଶ୍ରୀ ଶେଫାଳିକା ପତି, ଶ୍ରୀମତୀ ଆଶା ପ୍ରଧାନ, ଗବେଷକ ଡଃ ସୁରେନ୍ଦ୍ର ବେହେରା ଓ ଅଭିଲେଖାଗାରର ସମସ୍ତ ସହକର୍ମୀଙ୍କର ଆନ୍ତରିକ ସାହାଯ୍ୟ ଓ ସହଯୋଗରେ ଉକ୍ତ ପୁସ୍ତକଟି ଆତ୍ମପ୍ରକାଶ କରୁଥିବାରୁ ସେମାନଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି ।

ଝଙ୍କେଶ ମିଶ୍ର

ଭୁବନେଶ୍ୱର

ଅଧୀକ୍ଷକ,
ଓଡ଼ିଶା ରାଜ୍ୟ ଅଭିଲେଖାଗାର

# ଉପକ୍ରମଣିକା

ମାତୃଭାଷା ହିଁ ଗୋଟିଏ ଜାତିର ପ୍ରାଣ ଓ ଅସ୍ମିତା । ପ୍ରାଗୈତିହାସିକ ଯୁଗରେ ଆଜିର ଓଡ଼ିଶା ଓ ଏହାର ବିଭିନ୍ନ ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ଆଦିବାସୀ ଅଧୁଷିତ ଥିଲା, କିନ୍ତୁ କାଳକ୍ରମେ ଏହି ଅଞ୍ଚଳ ଉପରେ ବିଭିନ୍ନ ରାଜବଂଶମାନଙ୍କର ଆଗମନ ଏବଂ ସାଂସ୍କୃତିକ ପ୍ରବାହଫଳରେ ଏକ ବିରାଟ ସାମ୍ରାଜ୍ୟ ଏବଂ ସମୃଦ୍ଧ ଭାଷା ( ଓଡ଼ିଆ) ତଥା ଜଗନ୍ନାଥ ଧର୍ମଭଳି ଏକ ସମନ୍ୱୟବାଦୀ ଧର୍ମ ଗଢ଼ିଉଠିଥିଲା । ଖ୍ରୀ.ପୂ. ତୃତୀୟ ଶତକରେ ଅଶୋକ କଳିଙ୍ଗ ଅକ୍ରମଣ କରିଥିଲେ । ଖ୍ରୀ.ପୂ. ପ୍ରଥମ ଶତକରେ ଖାରବେଳ ଭୁବନେଶ୍ୱର ନିକଟରେ ( କଳିଙ୍ଗନଗରୀ) ରାଜଧାନୀ ପ୍ରତିଷ୍ଠା କରି ଏକ ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ବ୍ରାହ୍ମୀଲିପିରେ ପାଲି ଭାଷାରେ ଅଶୋକଙ୍କ ଶିଳାଲେଖ ଧଉଳି ( ଭୁବନେଶ୍ୱର ନିକଟସ୍ଥ) ଓ ଜଉଗଡ଼ (ଗଞ୍ଜାମ) ଠାରେ ଏବଂ ଖାରବେଳଙ୍କ ଶିଳାଲେଖ ଖଣ୍ଡଗିରି (ଭୁବନେଶ୍ୱର)ରେ ବିଦ୍ୟମାନ । ଖାରବେଳଙ୍କ ପରେ ପ୍ରାୟ ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ କୌଣସି ଶକ୍ତିଶାଳୀ ସାମ୍ରାଜ୍ୟ ଗଢ଼ି ଉଠିବାର ପ୍ରମାଣ ମିଳିନାହିଁ । ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂଙ୍କ ଓଡ଼ିଶା ଭ୍ରମଣ ସମୟରେ ଓଡ଼ିଶା ମୁଖ୍ୟତଃ ତିନିଟି ଅଞ୍ଚଳରେ ବିଭକ୍ତ ହୋଇଥିଲା:ଦକ୍ଷିଣରେ କଳିଙ୍ଗ ଏବଂ କଙ୍ଗୋଦ, ଉତ୍ତରରେ ଓଡ୍ର, ପଶ୍ଚିମରେ କୋଶଳ । ଷଷ୍ଠ ଶତାବ୍ଦୀର ମଧ୍ୟଭାଗରୁ ଅଷ୍ଟମ ଶତାବ୍ଦୀ ପ୍ରାରମ୍ଭିକ ଭାଗ ପର୍ଯ୍ୟନ୍ତ କଙ୍ଗୋଦରେ ଶୈଳୋଦ୍ଭବ ରାଜବଂଶ ଶାସନ କରିଥିଲେ । ଅଷ୍ଟମ ଓ ନବମ ଶତାବ୍ଦୀରେ ଭୌମମାନେ ଉପକୂଳବର୍ତ୍ତୀ ଓଡ଼ିଶା ଓ ଆଭ୍ୟନ୍ତରୀଣ ଓଡ଼ିଶାର ବିସ୍ତୃତ ଅଞ୍ଚଳରେ ରାଜତ୍ୱ ସ୍ଥାପନ କରିଥିଲେ । ଏମାନଙ୍କ ରାଜତ୍ୱ କାଳରେ ପୁଷ୍ପଗିରି, ରତ୍ନଗିରି, ଲଳିତଗିରି ଓ ଉଦୟଗିରି ଭଳି ବିରାଟ ବୌଦ୍ଧବିହାରମାନ କାର୍ଯ୍ୟ କରୁଥିଲା । ନବମ ଶତାବ୍ଦୀର ଶେଷଆଡ଼କୁ ସୋମବଂଶୀମାନେ ଦକ୍ଷିଣକୋଶଳରୁ ଆସି ଉପକୂଳବର୍ତ୍ତୀ ଓଡ଼ିଶାରେ ରାଜତ୍ୱ ସ୍ଥାପନ କରିଥିଲେ । ସାମ୍ପ୍ରତିକ ଓଡ଼ିଶା ଓ ପଶ୍ଚିମବଙ୍ଗର ଅବିଭକ୍ତ ମେଦିନୀପୁର ଜିଲ୍ଲା ଉପରେ ସୋମବଂଶୀମାନେ ଆଧିପତ୍ୟ ପ୍ରତିଷ୍ଠା କରିଥିଲେ । ସୋମବଂଶୀ ରାଜାମାନେ ଶୈବଧର୍ମାବଲମ୍ବୀ ଥିଲେ । ଏମାନେ କୋଶଳ ଅଞ୍ଚଳରେ ପ୍ରଚଳିତ ଚାନ୍ଦେଲା ସ୍ଥାପତ୍ୟ କଳାର ଅନୁସରଣରେ ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିର ପ୍ରଭୃତି ଶୈବ ମନ୍ଦିରମାନ ନିର୍ମାଣ କରିଥିଲେ । ଏମାନଙ୍କ ରାଜତ୍ୱ କାଳରେ ବ୍ରାହ୍ମଣ୍ୟ ଧର୍ମ ଓ ସଂସ୍କୃତ ସାହିତ୍ୟର ବିକାଶ ବିଶେଷ ଭାବରେ ସଂଘଠିତ ହୋଇଥିଲା । କିମ୍ବଦନ୍ତୀ ଅନୁସାରେ ସୋମବଂଶୀ ସମ୍ରାଟ୍ ପ୍ରଥମ ଯଯାତି କନୌଜରୁ ଦଶହଜାର ବ୍ରାହ୍ମଣ ଅଣାଇ ବୈତରଣୀ ନଦୀକୂଳରେ ଅଶ୍ୱମେଧ ଯଜ୍ଞ କରାଇଥିଲେ । ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ଗଙ୍ଗବଂଶୀ ରାଜା ଅନନ୍ତ ବର୍ମନ୍ ଚୋଡ଼ଗଙ୍ଗ ଦେବ ସୋମବଂଶୀ ରାଜା କର୍ଣ୍ଣଦେବଙ୍କୁ ପରାସ୍ତ କରି ଓଡ଼ିଶା ଉପରେ ଆଧିପତ୍ୟ ପ୍ରତିଷ୍ଠା କରିଥିଲେ । ଗଙ୍ଗବଂଶୀ ରାଜାମାନେ ଓଡ଼ିଶାକୁ ୩୫୦ ବର୍ଷ ଶାସନ କରିଥିଲେ ।ଏମାନଙ୍କ ସାମ୍ରାଜ୍ୟ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତି ଲାଭ କରିଥିଲା । ଏହି ବଂଶର ରାଜା ତୃତୀୟ ଅନଙ୍ଗଭୀମ ଦେବ ପଶ୍ଚିମ ଓଡ଼ିଶା ( ସମ୍ବଲପୁର, ସୋନପୁର ଓ ବଲାଙ୍ଗୀର)କୁ ଗଙ୍ଗ ସାମ୍ରାଜ୍ୟରେ ସାମିଲ କରିଥିଲେ । ତୃତୀୟ ଅନଙ୍ଗଭୀମ ଦେବ ବରଗଡ଼ ତହସିଲର ଦେଶକୁମ୍ଭାରୀ ଓ ଟାମ୍ପରସରାଠାରେ ଦଧିବାମନ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କଦ୍ୱାରା ପ୍ରଦତ୍ତ ମାଫିସନନ୍ଦରୁ ଏହାମଧ୍ୟ ଜଣାଯାଏ ଯେ ସେ ଉଭୟ ମନ୍ଦିର ପାଇଁ ଦେବୋତ୍ତର ଭୂମି ଖଞ୍ଜା କରିଥିଲେ ।

ଗଙ୍ଗ ରାଜତ୍ୱରେ ପୁରୀର ଜଗନ୍ନାଥ ମନ୍ଦିର ଓ କୋଣାର୍କର ସୂର୍ଯ୍ୟମନ୍ଦିର ନିର୍ମିତ ହୋଇଥିଲା । ଏହି ସମୟରେ ଜଗନ୍ନାଥ ଧର୍ମ ପ୍ରାଧାନ୍ୟଲାଭ କରିଥିଲା । ଓଡ଼ିଶା ଜଗନ୍ନାଥଙ୍କ ସାମ୍ରାଜ୍ୟ ଭାବରେ ପରିଚିତ ହେଲା । ଚୋଡ଼ଗଙ୍ଗଦେବ ଓ ତୃତୀୟ ଅନଙ୍ଗଭୀମ ଦେବଙ୍କ ଭଳି କ୍ଷମତାଶାଳୀ ସମ୍ରାଟ୍‌ମାନେ ନିଜକୁ ଜଗନ୍ନାଥଙ୍କ ରାଉତ ବା ପ୍ରତିନିଧି ବୋଲି ଘୋଷଣା କଲେ । ଗଙ୍ଗ ରାଜତ୍ୱରେ ଓଡ଼ିଆ ଭାଷା ଓ ଲିପିର ଉତ୍ପତ୍ତି ଘଟିଥିବାର ପ୍ରମାଣ ଶିଳା ଓ ତାମ୍ରଲିପିମାନଙ୍କରୁ ମିଳେ । ଏହି ସମୟରେ ଓଡ଼ିଶାରେ ନୃତ୍ୟକଳାର ବିକାଶ ଘଟିଥିବାର ପ୍ରମାଣ ମନ୍ଦିରମାନଙ୍କରେ, ବିଶେଷକରି କୋଣାର୍କର ମୂର୍ତ୍ତିମାନଙ୍କରୁ ମିଳେ । ପରବର୍ତ୍ତୀକାଳରେ ଗଙ୍ଗ ନରପତିମାନେ ଦୁର୍ବଳ ହୋଇପଡ଼ିଥିଲେ । ଗଙ୍ଗ ନରପତି ଚତୁର୍ଥ ଭାନୁଦେବ ( ୧୪୧୪-୧୪୩୫ ) ଙ୍କୁ ଗାଦିଚ୍ୟୁତ କରି ତାଙ୍କର ମନ୍ତ୍ରୀ କପିଳେଶ୍ୱର ରାଉତରାୟ ( କପିଳେନ୍ଦ୍ର ଦେବ) ସୂର୍ଯ୍ୟବଂଶ ରାଜତ୍ୱ ସ୍ଥାପନ କରିଥିଲେ । ଏହି ବଂଶର ଗଜପତିମାନେ ( କପିଳେନ୍ଦ୍ର, ପୁରୁଷୋତ୍ତମ ଓ ପ୍ରତାପରୁଦ୍ର) ଶହେ ବର୍ଷ ଧରି ବିଶାଳ ସାମ୍ରାଜ୍ୟ ଉପରେ ଶାସନ କରିଥିଲେ । କପିଳେନ୍ଦ୍ରଦେବଙ୍କ ସାମ୍ରାଜ୍ୟ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ କାବେରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ଏବଂ ସେ ନିଜକୁ 'ଗଜପତି ଗୌଡ଼େଶ୍ୱର ନବକୋଟୀ କର୍ଣ୍ଣାଟ କଳବର୍ଗେଶ୍ୱର' ବୋଲି ଘୋଷଣା କରିଥିଲେ । ୧୫୩୮ ଖ୍ରୀଷ୍ଟାବ୍ଦରେ ପ୍ରତାପରୁଦ୍ର ପ୍ରାଣତ୍ୟାଗ କରିଥିଲେ । ସେତେବେଳକୁ ଗୋଦାବରୀ ନଦୀର ଦକ୍ଷିଣପଟ ଅଞ୍ଚଳକୁ ଗୋଲକୋଣ୍ଡା ସୁଲ୍‌ତାନ ଦଖଲ କରିନେଇଥିଲେ । ସୂର୍ଯ୍ୟବଂଶୀ ରାଜତ୍ୱକାଳରେ ଓଡ଼ିଶାର ଅସ୍ମିତା ପୂରାପୂରି ପ୍ରତିଷ୍ଠିତ ହେଲା । 'ଓଡ଼ିଶା' ନାମ ବାରଂବାର ବ୍ୟବହୃତ ହେଲା । ୧୪୩୬ ଖ୍ରୀଷ୍ଟାବ୍ଦରେ କପିଳେନ୍ଦ୍ର ଦେବ ନିଜକୁ ଓଡ଼ିଶା ରାଜ୍ୟର ସମ୍ରାଟ୍ ବୋଲି ଘୋଷଣା କଲେ । ଏହି ସମୟରେ ଓଡ଼ିଆ ଭାଷାରେ ସାରଳାଦାସଙ୍କ ମହାକାବ୍ୟ 'ମହାଭାରତ', ଜଗନ୍ନାଥଦାସଙ୍କ 'ଭାଗବତ' ଓ ବଳରାମଦାସଙ୍କ 'ଦାଣ୍ଡି ରାମାୟଣ' ଭଳି ବୃହତ୍ ଗ୍ରନ୍ଥମାନ ରଚିତ ହୋଇଥିଲା । ସାରଳାଦାସ ତାଙ୍କ ମହାଭାରତରେ ଓଡ଼ିଶାକୁ ଓଡିଶା ରାଷ୍ଟ୍ର ବୋଲି ବର୍ଣ୍ଣନା କରିଛନ୍ତି । ଅଭିଷେକ ପରେ କପିଳେନ୍ଦ୍ରଦେବ ଓଡ଼ିଆ ଭାଷାରେ ଘୋଷଣା ଜାରି କରିଥିଲେ । ଗଙ୍ଗମାନଙ୍କପରି ସୂର୍ଯ୍ୟବଂଶୀମାନେ ମଧ୍ୟ ନିଜକୁ ଜଗନ୍ନାଥଙ୍କ ସେବକ ବୋଲାଉଥିଲେ ।

ସୂର୍ଯ୍ୟବଂଶୀ ସାମ୍ରାଜ୍ୟର ଅବସାନ ପରେ ଓଡ଼ିଶାରେ ଆଭ୍ୟନ୍ତରୀଣ ବିଶୃଙ୍ଖଳା ଓ ଗୃହଯୁଦ୍ଧ ଦେଖାଦେଲା । ଏହା ଫଳରେ ୧୫୬୮ ମସିହାରେ ସ୍ୱାଧୀନ ଓଡ଼ିଶା ରାଜ୍ୟର ଶେଷ ନରପତି ମୁକୁନ୍ଦଦେବ ସାରଙ୍ଗଗଡ଼ର ବିଦ୍ରୋହୀ ସେନାଧ୍ୟକ୍ଷ ରାମଚନ୍ଦ୍ରଦେବଙ୍କ ହାତରେ ପ୍ରାଣ ହରାଇଥିଲେ । ଏହାପରେ ଓଡ଼ିଶା ବଙ୍ଗର ଆଫ୍‌ଗାନ ଶାସକମାନଙ୍କର ଅଧୀନସ୍ଥ ହେଲା । କିଛିକାଳ ଆଫ୍‌ଗାନ-ମୋଗଲ ସଂଘର୍ଷ ପରେ ଶେଷରେ ୧୫୯୨ରେ ଓଡ଼ିଶା ମୋଗଲ ଶାସନାଧୀନ ହେଲା । ମୋଗଲମାନେ କିଛି ସମୟ ପାଇଁ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ସୁବାର ମର୍ଯ୍ୟାଦା ଦେଇଥିଲେ । ଆକବରଙ୍କ ରାଜତ୍ୱକାଳରେ ଓଡିଶାକୁ ୫ଟି ସରକାରରେ ବିଭକ୍ତ କରାଯାଇଥିଲା, ଯଥା: ଜଳେଶ୍ୱର, ଭଦ୍ରକ, କଟକ, କଳିଙ୍ଗ ଦଣ୍ଡପାଟ ଓ ରାଜମହେନ୍ଦ୍ରୀ । କିନ୍ତୁ ଶେଷରେ ଓଡ଼ିଶା ବଙ୍ଗ ସୁବାର ଅଧୀନସ୍ଥ ହେଲା । ଆଉରଙ୍ଗଜେବ୍‌ଙ୍କ ପରେ ମୋଗଲ ସାମ୍ରାଜ୍ୟ ଦୁର୍ବଳ ହୋଇପଡ଼ିଥିଲା ଏବଂ ବଙ୍ଗର ନବାବମାନେ ଓଡ଼ିଶାର ଶାସକ ହେଲେ । ବଙ୍ଗର ନବାବମାନଙ୍କ ଶାସନ କାଳରେ ଓଡ଼ିଶାର ପରିସୀମା ସଙ୍କୁଚିତ ହେଲା । ସୁବର୍ଣ୍ଣରେଖା ନଦୀର ପୂର୍ବରେ ଅବସ୍ଥିତ ଜଳେଶ୍ୱର ସରକାରର ଅଂଶଗୁଡ଼ିକ ବଙ୍ଗରେ ସାମିଲ ହେଲା । ହାଇଦରାବାଦ୍‌ର ନିଜାମ ଗଞ୍ଜାମ ସମେତ ଦକ୍ଷିଣ ଓଡ଼ିଶାକୁ ଦଖଲ କରିନେଲେ ।

୧୭୫୧ ମସିହାରେ ବଙ୍ଗର ନବାବ ଆଲିବର୍ଦ୍ଦି ଖାଁଙ୍କ ସହିତ ଚୁକ୍ତି ଅନୁସାରେ ସୁବର୍ଣ୍ଣରେଖା ନଦୀର ପଶ୍ଚିମରେ ଅବସ୍ଥିତ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳ ଅର୍ଥାତ୍ ଅବିଭକ୍ତ ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲା

ନାଗପୁରର ଭୋଁସଲା ରାଜାଙ୍କ ଶାସନାଧୀନ ହେଲା । ୧୭୫୭ରେ ପଲାଶୀ ଯୁଦ୍ଧରେ ବଙ୍ଗର ନବାବ ସିରାଜଉଦ୍ଦୌଲାଙ୍କୁ ପରାସ୍ତ କରି ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନୀ ବଙ୍ଗ ଉପରେ ଆଧିପତ୍ୟ ପ୍ରତିଷ୍ଠା କଲେ । ଏହାପରେ ସେମାନେ ଓଡ଼ିଶାକୁ ଅକ୍ତିଆରରେ ଆଣିବାପାଇଁ କ୍ରମାଗତ ଭାବରେ ଉଦ୍ୟମ ଚଳାଇଥିଲେ । ୧୭୫୯ ମସିହାରେ ଇଂରେଜମାନେ ହାଇଦ୍ରାବାଦ୍‌ର ନିଜାମଙ୍କଠାରୁ ଉତ୍ତର ସରକାର ପୁଞ୍ଜ (Northern Circars ) ପାଇଥିଲେ । ଅବିଭକ୍ତ ଗଞ୍ଜାମ ଜିଲ୍ଲା ଓ କୋରାପୁଟ ଜିଲ୍ଲା ଏହାର ଅନ୍ତର୍ଭୁକ୍ତ ଥିଲା ଏବଂ ଏହି ଅଞ୍ଚଳ ୧୯୩୬ ମସିହା ପର୍ଯ୍ୟନ୍ତ ମାଡ୍ରାଜ ପ୍ରେସିଡେନ୍ସି ବା ପ୍ରଦେଶର ଅଂଶ ହୋଇ ରହିଥିଲା । ୧୭୬୫ ମସିହା ଅଗଷ୍ଟ ୧୨ ତାରିଖରେ ମୋଗଲ ସମ୍ରାଟ୍ ଶାହ ଆଲାମ୍ ଇଷ୍ଟଇଣ୍ଡିଆ କମ୍ପାନୀକୁ ବଙ୍ଗ, ବିହାର ଓ ଓଡ଼ିଶାର ଦେବାନୀ ତଥା ନିଜାମଙ୍କ ଦ୍ୱାରା ଉତ୍ତର ସରକାର ହସ୍ତାନ୍ତରକୁ ସ୍ୱୀକୃତି ପ୍ରଦାନ କରିଥିଲେ । ଓଡ଼ିଶା ଉପରେ ଦେବାନୀ ପାଇବା ଫଳରେ ଇଷ୍ଟଇଣ୍ଡିଆ କମ୍ପାନୀ କେବଳ ମେଦିନୀପୁର ଜିଲ୍ଲା ଉପରେ ଅଧିକାର ଲାଭ କରିଥିଲେ । ୧୮୦୩ ରେ ମରହଟ୍ଟା ( ଭୋଁସଲା) ମାନଙ୍କୁ ପରାସ୍ତ କରି ଦେଓଗାଓଁ ଚୁକ୍ତି ( ୧୭ ଡିସେମ୍ବର, ୧୮୦୩) ଅନୁସାରେ ଇଂରେଜମାନେ ବାଲେଶ୍ୱର, କଟକ, ପୁରୀ ଜିଲ୍ଲା ଉପରେ କର୍ତ୍ତୃତ୍ୱ ପ୍ରତିଷ୍ଠା କରିଥିଲେ ।୧୮୨୯ ମସିହାରେ ସାମ୍ପ୍ରତିକ ପଶ୍ଚିମବଙ୍ଗର ମେଦିନିପୁର,ନୂଆଗାଁ ଓ ହିଜଲି ଅଞ୍ଚଳ ଏବଂ ଓଡ଼ିଶାର ବାଲେଶ୍ୱର,କଟକ ଓ ପୁରୀ ଜିଲ୍ଲାକୁ ମିଶାଇ ବଙ୍ଗପ୍ରେସିଡେନ୍ସିର ଉନବିଂଶ ଡିଭିଜନ ଗଠନ କରାଯାଇଥିଲା ।

୧୮୧୭ ମସିହାରେ ତୃତୀୟ ଇଂରେଜ-ମରହଟ୍ଟା ଯୁଦ୍ଧରେ ଜୟଲାଭ କରି ଇଂରେଜମାନେ ସମ୍ବଲପୁର ଉପରେ ନିଜର ପ୍ରଭୁତ୍ୱ ସ୍ଥାପନ କଲେ । କିନ୍ତୁ ୧୮୪୯ ମସିହା ପର୍ଯ୍ୟନ୍ତ ସମ୍ବଲପୁର ଏକ କରଦ ରାଜ୍ୟ ହୋଇ ରହିଥିଲା ଏବଂ ସେହି ବର୍ଷ ରାଜସ୍ୱତ୍ୱ ଲୋପ ନୀତି ଅନୁସାରେ ଏହା ଇଂରେଜ ସାମ୍ରାଜ୍ୟରେ ସାମିଲ ହୋଇଥିଲା । କିନ୍ତୁ ୧୯୦୫ ମସିହା ପର୍ଯ୍ୟନ୍ତ ଏହା ଓଡ଼ିଶାରେ ସାମିଲ ହୋଇ ନ ଥିଲା । ସେହି ବର୍ଷ ସମ୍ବଲପୁର ସହିତ ପାଞ୍ଚଟି ଗଡ଼ଜାତ - ପାଟଣା, କଳାହାଣ୍ଡି, ସୋନପୁର, ବାମଣ୍ଡା ଓ ରେଢ଼ାଖୋଲ ମଧ୍ୟପ୍ରଦେଶରୁ ଓଡ଼ିଶାକୁ ସ୍ଥାନାନ୍ତରିତ ହେଲା । ଇଂରେଜ ଶାସନ କାଳରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନ ବଙ୍ଗ, ମାଡ୍ରାଜ, ଛୋଟନାଗପୁର ଡିଭିଜନ ଏବଂ ମଧ୍ୟପ୍ରଦେଶରେ ବିଚ୍ଛିନ୍ନ ହୋଇ ରହିଥିଲା । ଏହି ଅଞ୍ଚଳଗୁଡ଼ିକ ଉପରେ ଦୁଇପ୍ରକାର ଶାସନ ବ୍ୟବସ୍ଥା ପ୍ରଚଳିତ ଥିଲା । ମୋଗଲବନ୍ଦୀ ଅର୍ଥାତ୍ ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲା ବଙ୍ଗ ପ୍ରଦେଶ (Bengal Presidency ) ଅନ୍ତର୍ଗତ ଓଡ଼ିଶା ଡିଭିଜନର ଅଂଶ ଭାବରେ ପ୍ରତ୍ୟକ୍ଷ ଭାବରେ ଇଂରେଜ ଶାସନାଧୀନ ଥିଲେ । ଏହା ବ୍ୟତୀତ ଇଂରେଜ ସରକାରଙ୍କ କର୍ତ୍ତୃତ୍ୱାଧୀନ କେତେଗୁଡ଼ିଏ କରଦ ରାଜ୍ୟ ଥିଲେ । ଏମାନଙ୍କୁ ଗଡ଼ଜାତ ବୋଲାଯାଉଥିଲା । ପ୍ରଥମେ ଏହି ଗଡ଼ଜାତମାନଙ୍କୁ ବିଭିନ୍ନ ଡିଭିଜନ ( ଓଡ଼ିଶା, ଛୋଟନାଗପୁର, ମଧ୍ୟପ୍ରଦେଶ) ର କମିଶନରମାନଙ୍କ ତତ୍ତ୍ୱାବଧାନରେ ରଖାଯାଇଥିଲା । ୧୯୨୨ ରେ ଓଡ଼ିଶା ଡିଭିଜନର ଗଡ଼ଜାତଗୁଡ଼ିକ ପାଇଁ କମିଶନରଙ୍କ ନିୟନ୍ତ୍ରଣ ବାହାରେ ଏକ ସ୍ୱତନ୍ତ୍ର ପଦ (Political Agent and Commissioner of Orissa Feudatory States) ସୃଷ୍ଟି କରାଯାଇଥିଲା । ୧୯୩୩ ରେ ଭାରତ ସରକାରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଜଣେ Resident ଙ୍କ ଅଧୀନରେ ୨୬ଟି ଓଡ଼ିଆ ଭାଷାଭାଷୀ ଗଡ଼ଜାତ ଓ ୧୪ଟି କେନ୍ଦ୍ରୀୟ ପ୍ରଦେଶର ଗଡ଼ଜାତମାନଙ୍କୁ ନେଇ Eastern States Agency ଗଢ଼ାଯାଇଥିଲା । ୧୯୧୨ରେ ବିହାର ଓ ଓଡ଼ିଶା ପ୍ରଦେଶ ସୃଷ୍ଟି ହେଲା ଏବଂ ୧୯୩୬ ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ।

ସ୍ୱାଧୀନତା ପରେ ୨୬ଟି ଗଡ଼ଜାତ ମଧ୍ୟରୁ ଷଢ଼େଇକଳା ଓ ଖରସୁଆଁକୁ ଛାଡ଼ି ୨୪ଟି ଗଡ଼ଜାତକୁ ଓଡ଼ିଶା ପ୍ରଦେଶରେ ସାମିଲ କରାଯାଇଥିଲା । ପ୍ରଶାସନିକ ଏକତା ନ ଥିଲେ ମଧ୍ୟ ବିଭିନ୍ନ ପ୍ରଶାସନ ଅଧୀନରେ ବହୁ ଅଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତି ବଞ୍ଚି ରହିଥିଲା । ରାଜନୀତିକ ଅସ୍ଥିରତା ଭିତରେ ଓଡ଼ିଆ କବିମାନଙ୍କର

ସାରସ୍ୱତ ସାଧନା ଅବ୍ୟାହତ ରହିଥିଲା । କିନ୍ତୁ ଓଡ଼ିଆମାନେ ବିଭିନ୍ନ ପ୍ରଦେଶରେ ସଂଖ୍ୟାଲଘୁ ହୋଇ ରହିବା ଫଳରେ ସଂଖ୍ୟାଗରିଷ୍ଠ ସମ୍ପ୍ରଦାୟର ଲୋକେ ସେମାନଙ୍କ ଭାଷା ଓ ସଂସ୍କୃତିକୁ ଓଡ଼ିଆମାନଙ୍କ ଉପରେ ଲଦି ଦେବାପାଇଁ ସବୁବେଳେ ଚେଷ୍ଟା କରୁଥିଲେ । ଦକ୍ଷିଣଓଡ଼ିଶାରେ ତେଲଗୁମାନେ, ଓଡ଼ିଶା ଡିଭିଜନ (ବାଲେଶ୍ୱର, କଟକ, ପୁରୀ ଜିଲ୍ଲା)ରେ ବଙ୍ଗାଳୀମାନେ ଏବଂ ପଶ୍ଚିମ ଓଡ଼ିଶାରେ ହିନ୍ଦୀଭାଷୀମାନେ ସେମାନଙ୍କ ଭାଷାକୁ ଓଡ଼ିଆମାନଙ୍କ ଉପରେ ଲଦି ଦେବାକୁ ଚେଷ୍ଟା କରୁଥିଲେ । ଇଂରେଜମାନଙ୍କ ଓଡ଼ିଶା ଦଖଲ ପରେ ୧୩ଟି ଗଡ଼ଜାତକୁ ବ୍ରିଟିଶ ରେଗୁଲେସନ ଅନୁସାରେ ମୋଗଲବନ୍ଦୀ ଅଞ୍ଚଳରେ ସାମିଲ କରାଯାଇଥିଲା ଏବଂ ଷୋହଳଟି ଗଡ଼ଜାତ ଯଥା-ମୟୂରଭଞ୍ଜ, କେଉଁଝର, ନୀଳଗିରି, ବାଙ୍କୀ, ଦଶପଲ୍ଲା, ନରସିଂହପୁର, ଅନୁଗୁଳ, ତାଳଚେର, ଆଠଗଡ଼, ଖଣ୍ଡପଡ଼ା, ନୟାଗଡ଼, ରଣପୁର, ହିନ୍ଦୋଳ, ତିଗିରିଆ, ବଡ଼ମ୍ବା ଓ ଢେଙ୍କାନାଳକୁ ଓଡ଼ିଶା ଡିଭିଜନର କମିଶନର(ଗଡ଼ଜାତ ପାଇଁ ତାଙ୍କୁ ସୁପରିନ୍‌ଟେଣ୍ଡେଣ୍ଟ କୁହାଯାଉଥିଲା)ଙ୍କ ତତ୍ତ୍ୱାବଧାନରେ ଆଭ୍ୟନ୍ତରୀଣ ସ୍ୱାଧୀନତା ପ୍ରଦାନ କରାଯାଇଥିଲା । ୧୮୩୩ ମସିହାରେ ଦକ୍ଷିଣପଶ୍ଚିମ ସୀମାନ୍ତ ଏଜେନ୍ସି ନାମକ ଏକ ସଂସ୍ଥା ସ୍ଥାପନା କରାଯାଇଥିଲା । ସମ୍ବଲପୁର, ପାଟଣା ଓ ସିଂହଭୂମ ପ୍ରଭୃତି ଅଞ୍ଚଳକୁ ଏହି ସଂସ୍ଥା ନିୟନ୍ତ୍ରଣରେ ରଖାଯାଇଥିଲା । ୧୮୫୪ରେ ଛୋଟନାଗପୁର ଦକ୍ଷିଣ ପଶ୍ଚିମ ସୀମାନ୍ତ ଏଜେନ୍ସି ଛୋଟନାଗପୁର ଡିଭିଜନ୍‌ରେ ପରିଚିତ ହେଲା । ଗଭର୍ଣ୍ଣର ଜେନେରାଲ ଏହାର କମିଶନର ହେଲେ । ସମ୍ବଲପୁର-ପାଟଣା ଗୋଷ୍ଠୀର ଗଡ଼ଜାତମାନେ ଏହାର ନିୟନ୍ତ୍ରଣରେ ରହିଲେ । ୧୮୬୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ସହ ଖଡ଼ିଆଳ, ବିନ୍ଦ୍ରା ନୂଆଗଡ଼, ଫୁଲଝର, ରେଢ଼ାଖୋଲ ଓଡ଼ିଶାରେ ମିଶିଯାଇଥିଲା । କିନ୍ତୁ ଗାଙ୍ଗପୁର ଓ ବଣାଇ ଷ୍ଟେଟ ଛୋଟନାଗପୁର ଶାସନର ଅନ୍ତର୍ଭୁକ୍ତ ହୋଇ ରହିଥିଲା । ୧୮୬୨ ମସିହାରେ ପାଟଣା, ବିନ୍ଦ୍ରା ନୂଆଗଡ଼, ଖଡ଼ିଆଳ, ବୁଢ଼ାସମ୍ବର, ଫୁଲଝର, ସରେନ୍‌ଗଡ଼, ଶକ୍ତି, ରାୟଗଡ଼, ବାମଣ୍ଡା, ରେଢ଼ାଖୋଲ ଓ ସୋନପୁର ପ୍ରଭୃତି ଅଞ୍ଚଳ ମଧ୍ୟପ୍ରଦେଶର ଚିଫ୍ କମିଶନରଙ୍କ ଅଧୀନରେ ରଖାଗଲା । ୧୮୩୦ ଖ୍ରୀଷ୍ଟାବ୍ଦରେ କୋହ୍ଲମାନଙ୍କ ଆନ୍ଦୋଳନ ହେତୁ ଏକ ସ୍ୱତନ୍ତ୍ର ରାଜ୍ୟ କୋଲ୍‌ହାଟ୍ ଷ୍ଟେଟ୍ ପ୍ରତିଷ୍ଠା କରାଯାଇଥିଲା । ଏଥିରେ ଷଢ଼େଇକଳା, ଖରସୁଆଁ, ପୋଡ଼ାହାଟ ପ୍ରଭୃତି ଅଞ୍ଚଳକୁ ରଖାଯାଇଥିଲା । ମୟୂରଭଞ୍ଜ ଷ୍ଟେଟ୍ ମଧ୍ୟ କେତେ ବର୍ଷ ଧରି ଦକ୍ଷିଣ ପଶ୍ଚିମ ସୀମାନ୍ତ ଏଜେନ୍ସି ନିୟନ୍ତ୍ରଣରେ ଥିଲା । ଏହିଭଳି ଭାବରେ ଓଡ଼ିଶାର ବିଭିନ୍ନ ଅଞ୍ଚଳ ଭିନ୍ନ ଭିନ୍ନ ଭାବେ ପ୍ରଶାସନର ଅଧୀନରେ ରହିଥିଲା । ଓଡ଼ିଶାର ଭୌଗୋଳିକ ସ୍ଥିତି ଖଣ୍ଡବିଖଣ୍ଡିତ ହେବା ଫଳରେ ଓଡ଼ିଆଭାଷା ଚରମ ବିପର୍ଯ୍ୟୟର ସମ୍ମୁଖୀନ ହେଲା । ଫଳତଃ ଭାଷାର ଅଗ୍ରଗତିରେ ପ୍ରତିବନ୍ଧକ ସୃଷ୍ଟି ହେବା ସହିତ ଏକ ମହାନ୍ ସାଂସ୍କୃତିକ ଐତିହ୍ୟର ଅବକ୍ଷୟ ଆରମ୍ଭ ହେଲା ।

ଓଡ଼ିଶାରେ ବ୍ରିଟିଶ ଶାସନ ଆରମ୍ଭରୁ ବଙ୍ଗାଳୀ ସରକାରୀ କର୍ମଚାରୀମାନେ ନିରୀହ ସରଳ ଓଡ଼ିଶାବାସୀଙ୍କୁ ଅତ୍ୟାଚାରିତ କରୁଥିଲେ ଓ ରାଜ୍ୟର ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ସେମାନେ ବଙ୍ଗଳା ଭାଷାକୁ ପ୍ରାଧାନ୍ୟ ଦେଉଥିଲେ । ଫଳତଃ କ୍ରମାଗତ ଅସନ୍ତୋଷ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଏକ ବିସ୍ଫୋରକ ପରିସ୍ଥିତି ସୃଷ୍ଟି କରିଥିଲା । ସେତେବେଳର ଅନ୍ଧାରୀମୂଳକ ଓଡ଼ିଶାରେ ପ୍ରଥମ ଛାପାଖାନା ଥିଲା ପାଦ୍ରୀମାନଙ୍କର ମିଶନ୍ ପ୍ରେସ । ଏହା ସ୍ଥାପିତ ହୋଇଥିଲା ୧୮୩୭ ମସିହାରେ । ଓଡ଼ିଆ ଭାଷା ଓ ସଂସ୍କୃତିର ବିକାଶରେ ଏହାର ଭୂମିକା ସେମିତି ଗୁରତ୍ୱପୂର୍ଣ୍ଣ ନ ଥିଲା । 'ଉତ୍କଳ ଦୀପିକା' ପ୍ରଥମେ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନର ଭିତ୍ତି ସ୍ଥାପନ କଲା । ଉତ୍କଳ ଦୀପିକା ସହିତ ସମ୍ବଲପୁର ହିତୈଷିଣୀ, ଉତ୍କଳପୁତ୍ର, ସମ୍ବାଦ ବାହିକା, ଉତ୍କଳ ସାହିତ୍ୟ ପ୍ରମୁଖ ପତ୍ରପତ୍ରିକା ସାଧାରଣ ଓଡ଼ିଆଙ୍କର ସ୍ୱାର୍ଥରକ୍ଷା ପାଇଁ ଉଦ୍ୟମ କଲେ । ଭାଷାଭିତ୍ତିକ ଓଡ଼ିଶା ଗଠନରେ ଉତ୍କଳ ଦୀପିକାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଓଡ଼ିଆଙ୍କ ଭାବଧାରା ଓ ଚିନ୍ତା-ଚେତନାରେ ସମନ୍ୱୟ ଆଣିବା ପାଇଁ ଏହା ଉଦ୍ୟମ କଲା । ଏହା କେବଳ ଗୋଟିଏ

ପତ୍ରିକା ନ ଥିଲା ; ଏହା ଏକ ଜାତୀୟ ଆନ୍ଦୋଳନର ବାର୍ତ୍ତାବହ ଥିଲା । ଜନସାଧାରଣଙ୍କ ଭିତରେ ସଚେତନତା ଓ ଭାଷାପ୍ରୀତି ସୃଷ୍ଟି କରିବାରେ 'ଉତ୍କଳ ଦୀପିକା' କ୍ଷମ ହୋଇଥିଲା । ମିଶନାରୀମାନଙ୍କ ଦ୍ୱାରା ଜ୍ଞାନାରୁଣ(୧୮୪୯) ପ୍ରକାଶ ହେବାର ୧୭ ବର୍ଷ ପରେ ଅର୍ଥାତ୍ ୧୮୬୬ ମସିହାରେ ଓଡ଼ିଶାର ପ୍ରଥମ ସମ୍ବାଦପତ୍ର ' ଉତ୍କଳ ଦୀପିକା' ପ୍ରକାଶ ପାଇଲା । ଏହାର ସମ୍ପାଦକ ଥିଲେ କର୍ମବୀର ଗୌରୀଶଙ୍କର ରାୟ । ୧୮୬୬ ମସିହା ଓଡ଼ିଶାବାସୀଙ୍କ ପାଇଁ ବିଭିନ୍ନ ଦୃଷ୍ଟିକୋଣରୁ ଉଲ୍ଲେଖଯୋଗ୍ୟ ଥିଲା । ନ'ଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ଆର୍ଥିକ ଓ ସାମାଜିକ ସ୍ଥିତିକୁ ଦୋହଲାଇ ଦେଇଥିଲା । ୧୮୬୬ ରୁ ୧୮୬୯ ପର୍ଯ୍ୟନ୍ତ 'ଉତ୍କଳ ଦୀପିକା'ରେ ପ୍ରକାଶିତ ସେହି କରାଳ ଦୁର୍ଭିକ୍ଷର ଚିତ୍ର ଖୁବ୍ ମର୍ମସ୍ପର୍ଶୀ ଥିଲା । ଲକ୍ଷଲକ୍ଷ ଲୋକଙ୍କର ମୃତ୍ୟୁ ସମ୍ବାଦ ଏଥିରେ ପ୍ରକାଶିତ ହୋଇ ଓଡ଼ିଆ ଜନଜୀବନକୁ ପ୍ରଭାବିତ କରିଥିଲା । ଓଡ଼ିଶାରେ ବ୍ରିଟିଶ ଶାସନ ଆରମ୍ଭରୁ ବଙ୍ଗାଳୀମାନେ ବହୁଳ ଭାବରେ ସରକାରୀ ସଂସ୍ଥାମାନଙ୍କରେ ନିଯୁକ୍ତି ପାଇଥିଲେ । ସେମାନେ ଓଡ଼ିଶାର ଶିକ୍ଷା,ସଂସ୍କୃତି ଓ ପ୍ରଶାସନରେ ବଙ୍ଗଳା ଭାଷାକୁ ଗୁରୁତ୍ୱ ଦେଉଥିଲେ । କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନଏ' ପୁସ୍ତକ ରଚନା (୧୮୭୦) ଓ ରାଜେନ୍ଦ୍ରଲାଲ ମିତ୍ରଙ୍କ ଓଡ଼ିଆଭାଷାବିରୋଧୀ ବକ୍ତୃତା ଓଡ଼ିଆମାନଙ୍କୁ ଆଘାତ ଦେଇଥିଲା । ଏହିସବୁ ମତ ବିରୋଧରେ ଓଡ଼ିଆମାନଙ୍କୁ ଏକତ୍ରିତ ଓ ଉଦ୍‌ବୁଦ୍ଧ କରିବାରେ 'ଉତ୍କଳ ଦୀପିକା' ଏକ ଆଲୋକବର୍ତ୍ତିକା ହୋଇଗଲା । ଉତ୍କଳ ଦୀପିକା କେବଳ ସମ୍ବାଦପତ୍ର ନୁହେଁ ବରଂ ଭାଷା-ସାହିତ୍ୟ ସୁରକ୍ଷାର ଏକ ଯଥାର୍ଥ ମୁଖପତ୍ର ଥିଲା । ତେଣୁ ଏହା ଭାଷାଭିତ୍ତିରେ ପ୍ରଦେଶ ଗଠନର ସ୍ୱପ୍ନ ଓ ସମ୍ଭାବନା ସୃଷ୍ଟି କରିଥିଲା । ଜୁଲାଇ ୧୮୬୮ରେ ବ୍ୟାସକବି ଫକୀରମୋହନ ସେନାପତିଙ୍କ ଦ୍ୱାରା ବାଲେଶ୍ୱରରେ ଉତ୍କଳ ପ୍ରେସ୍ ସ୍ଥାପିତ ହେଲା । ଏହି ପ୍ରେସ୍‌ରୁ ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦ ବାହିକା ପ୍ରକାଶିତ ହେଉଥିଲା ।

୧୮୬୮ ଖ୍ରୀଷ୍ଟାବ୍ଦରେ ଭାରତସଚିବ ଷ୍ଟାଫୋର୍ଡ ନର୍ଥକୋଟ (Stafford Northcote) ଓଡ଼ିଶା ଓ ଆସାମକୁ ସ୍ୱତନ୍ତ୍ର ପ୍ରଶାସନ ଦେବାପାଇଁ ତତ୍‌କାଳୀନ ସରକାରଙ୍କୁ ପ୍ରସ୍ତାବ ଦେଇଥିଲେ । ଏହା ଫଳରେ ୧୮୭୬ ଖ୍ରୀଷ୍ଟାବ୍ଦରେ ଆସାମ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେଲା । କିନ୍ତୁ ଦୁର୍ଭାଗ୍ୟବଶତଃ ସେ ସମୟରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହୋଇପାରିଲା ନାହିଁ । ଜର୍ଜ କେମ୍ବେଲ ଆଉ ଏକ ଉତ୍ତମ ପ୍ରସ୍ତାବ ଦେଇଥିଲେ ଯାହା ଓଡ଼ିଆମାନଙ୍କ ଏକତାର ସୂତ୍ର ଥିଲା । ବିଭିନ୍ନ ପ୍ରଦେଶରେ ଅନ୍ତର୍ଭୁକ୍ତ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳକୁ ଏକ ଶାସନାଧୀନ କରିବାପାଇଁ ସେ ଯୁକ୍ତି ଉପସ୍ଥାପନ କରିଥିଲେ । Indian polity ନାମରେ ରଚିତ ତାଙ୍କ ପୁସ୍ତକରେ ସେ ବିଭିନ୍ନ ଯୁକ୍ତି ଦର୍ଶାଇ ଚର୍ଚ୍ଚାର ପରିସରଭୁକ୍ତ ହୋଇଥିଲେ । ଭାଷାଭିତ୍ତିକ ପ୍ରଦେଶ ଗଠନ ହେବାପାଇଁ କ୍ରମେକ୍ରମେ ପରୋକ୍ଷ ବା ପ୍ରତ୍ୟକ୍ଷରେ ହେଉ ପ୍ରସ୍ତାବମାନ ଆସୁଥିଲା । ତତ୍‌କାଳୀନ ଭାରତବର୍ଷରେ ଅନ୍ୟାନ୍ୟ ଭାରତୀୟ ଭାଷା ତୁଳନାରେ କୌଣସି ଗୁଣରେ ଓଡ଼ିଆ ଭାଷା କମ୍ ନ ଥିଲା । ଏହାର ପ୍ରାଚୀନ ଗୁଣାତ୍ମକ ରୂପ ଥିଲା ବହୁ ଉର୍ଦ୍ଧ୍ୱରେ । ଏଚ.ଟି.କୁଲ୍‌ବକ୍ ଓ ୱାଲଟର ହାମିଲଟନ୍ (H.T. Kulbock and W. Hamilton) ଆଦି ପାଶ୍ଚାତ୍ୟ ପଣ୍ଡିତମାନେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟକୁ ସ୍ୱୀକାର କରୁଥିଲେ । ଓଡ଼ିଶା ଡିଭିଜନ୍‌ରେ ସରକାରୀ ଭାଷା ରୂପେ ଓଡ଼ିଆ ଓ ପର୍ସିଆନ୍ ଭାଷା ସ୍ୱୀକୃତି ପାଇଥିଲା । ୧୮୭୩ ମସିହାରେ ଟି.ଜେ.ମଲ୍‌ଟବି (T.J. Maltby) ତାଙ୍କର "A Practical Hand Book of the Uriya or Odia Language" ପୁସ୍ତକରେ ଓଡ଼ିଆ ଭାଷାର ମହତ୍ତ୍ୱ ଓ ପ୍ରାଚୀନତା ପ୍ରମାଣିତ କରିଥିଲେ । ତତ୍‌କାଳୀନ ଇଂରେଜ କର୍ମଚାରୀମାନଙ୍କ ପାଇଁ ଓଡ଼ିଆ ବର୍ଣ୍ଣମାଳା, ବ୍ୟାକରଣ ସମ୍ବନ୍ଧୀୟ ଜ୍ଞାନ ତଥା ଓଡ଼ିଆ କହିବା, ଲେଖିବା ଓ ବୁଝିବା ନିମନ୍ତେ ତିନୋଟି ଭାଷାକୁ ମାଧ୍ୟମ କରି ସେ ଏହି ପୁସ୍ତକଟି ରଚନା କରିଥିଲେ । ରୋମାନ୍ , ଇଂରେଜୀ ଏବଂ

ଓଡ଼ିଆ ଭାଷାକୁ ଏକତ୍ର ଭାବେ ବ୍ୟବହାର କରି ସୁନ୍ଦରଭାବେ ଓଡ଼ିଆ ବାକ୍ୟର ଗଠନକୌଶଳ ସମ୍ବନ୍ଧରେ ସେ ବୁଝାଇଛନ୍ତି । ( ବହିଟିର ଦ୍ୱିତୀୟ ସଂସ୍କରଣ ନୂଆଦିଲ୍ଲୀସ୍ଥିତ ଏସିଆନ ଏଜୁକେଶନାଲ ସର୍ଭିସ ସଂସ୍ଥା ଦ୍ୱାରା ୧୯୮୬ ରେ ପ୍ରକାଶିତ ହୋଇଛି ) ସେ ଅନେକ ପ୍ରାଚୀନ କ୍ଷୁଦ୍ର କ୍ଷୁଦ୍ର ନୀତିକଥାକୁ ରୋମାନ୍ - ଇଂରେଜୀ ଭାଷାରେ ଉପସ୍ଥାପନ କରିଛନ୍ତି, ଯାହାକି ତତ୍‌କାଳୀନ ଇଂରେଜ ସାହେବ ତଥା ଅନ୍ୟ ଅଣଓଡ଼ିଆ ବୁଦ୍ଧିଜୀବୀଙ୍କ ପାଇଁ ବେଶ୍ ସୁଖପାଠ୍ୟ ହୋଇଥିଲା । ଓଡ଼ିଶା ଡିଭିଜନର ଜନ୍ ବିମ୍‌ସ(John Beames)ଙ୍କ ପରି ମାନ୍ଦ୍ରାଜ ସରକାରଙ୍କ ଅଧୀନରେ କାର୍ଯ୍ୟ କରୁଥିବା ମଲ୍‌ଟବି ଜଣେ ଭାଷାତତ୍ତ୍ୱବିତ୍ ଥିଲେ । ସେ ମାନ୍ଦ୍ରାଜ, ବଙ୍ଗଳା, ମଧ୍ୟପ୍ରଦେଶ ଓ ଦେଶୀୟ ରାଜ୍ୟମାନଙ୍କରେ ବାସ କରୁଥିବା ୯୦ ଲକ୍ଷ ଓଡ଼ିଆଙ୍କୁ ଏକ ଶାସନାଧୀନ କରିବାପାଇଁ ଦୃଢ଼ ଯୁକ୍ତି ଉପସ୍ଥାପନ କରିଥିଲେ । ଦକ୍ଷିଣ ଓଡ଼ିଶାରେ କେତେକ କବି,ପଣ୍ଡିତ ଓ ଜମିଦାରଗଣ ଓଡ଼ିଆ ଭାଷାର ସୁରକ୍ଷା ଓ ସାହିତ୍ୟର ସମୃଦ୍ଧି ପାଇଁ ପ୍ରବଳ ଆନ୍ଦୋଳନ ଚଳାଇଥିଲେ । ଏହି ପ୍ରସଙ୍ଗରେ ସଂସ୍କାରକ ଶ୍ରୀବତ୍ସ ପଣ୍ଡା, ସମ୍ବାଦପତ୍ର ସଂପାଦକ ନୀଳମଣି ବିଦ୍ୟାରତ୍ନ, ଖଲ୍ଲିକୋଟ କଲେଜ ପ୍ରତିଷ୍ଠାତା ରାଜା ହରିହର ମର୍ଦ୍ଦରାଜ, ପାରଳାଖେମୁଣ୍ଡିର ରାଜା ପଦ୍ମନାଭ ନାରାୟଣଦେବ, ଗଞ୍ଜାମର ପ୍ରଥମ ଓଡ଼ିଆ ଗ୍ରାଜୁଏଟ ସୁଲେଖକ ଶ୍ୟାମସୁନ୍ଦର ରାଜଗୁରୁ, ଚିକିଟିର ରାଜା ରାଧାମୋହନ ରାଜେନ୍ଦ୍ରଦେବ, ଜୟପୁର ରାଜା ବିକ୍ରମଦେବ ବର୍ମା, ଜୟପୁରର ବିପ୍ଳବୀ ନେତା ହରିହର ମିଶ୍ର, ବିଦ୍ୟାଭୂଷଣ ରାମନାଥ ନନ୍ଦ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନଙ୍କ ଆନ୍ଦୋଳନ ଫଳରେ ଦୀର୍ଘ ତିନି ଶତାବ୍ଦୀ ବ୍ୟାପୀ ରାଜନୀତିକ ଭାବରେ ଓଡ଼ିଶାରୁ ବିଚ୍ଛିନ୍ନ ଦକ୍ଷିଣ ଓଡ଼ିଶାର ଓଡ଼ିଆମାନେ ପୁନର୍ବାର ଏକତ୍ର ଅବସ୍ଥାନ କରିପାରିଥିଲେ ।

ଓଡ଼ିଶା ଡିଭିଜନରେ ଓଡ଼ିଆ ଭାଷାର ସୁରକ୍ଷା ଓ ଅଭିବୃଦ୍ଧିରେ ଅନୁପ୍ରାଣିତ ହୋଇ ସମ୍ବଲପୁର ଅଞ୍ଚଳର ଓଡ଼ିଆ କବି, ସାହିତ୍ୟିକ ପଣ୍ଡିତ ଓ ରାଜପୁରୁଷବର୍ଗ ସରକାରୀ କଚେରି ଓ ସ୍କୁଲମାନଙ୍କରୁ ହିନ୍ଦୀଭାଷା ଉଠାଇ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ପାଇଁ ଆନ୍ଦୋଳନ ଚଳାଇଥିଲେ । ଏ କ୍ଷେତ୍ରରେ ବାମଣ୍ଡାର ରାଜା ସାର୍ ବାସୁଦେବ ସୁଢଳ ଦେବ, ତାଙ୍କର ଯୋଗ୍ୟ ପୁତ୍ର ସଦାନନ୍ଦ ତ୍ରିଭୁବନ ଦେବ, ରାଜବଂଶୀୟ ଜଳନ୍ଧର ଦେବ ଓ ବଡ଼କୁମାର ବଳଭଦ୍ର ଦେବଙ୍କ ଅବଦାନ ସ୍ମରଣୀୟ । ଏମାନେ ସ୍ୱ ସ୍ୱ ଉଚ୍ଚକୋଟୀର ରଚନାବଳୀ ଦ୍ୱାରା ଓଡ଼ିଆ ଭାଷା ସାହିତ୍ୟର ପ୍ରଭୂତ ଉନ୍ନତି ସାଧନ କରିଥିଲେ । ଏମାନଙ୍କ ବ୍ୟତୀତ କବି ଗଙ୍ଗାଧର ମେହେର, ସ୍ୱପ୍ନେଶ୍ବର ଦାସ, କବିଭୂଷଣ ବୈକୁଣ୍ଠ ନାଥ ପୂଜାରୀ, ବ୍ରଜମୋହନ ପଣ୍ଡା ଓ ସୋନପୁରର ରାଜା ସାର୍ ବୀରମିତ୍ରୋଦୟ ସିଂହଦେଓଙ୍କ ଉଦ୍ୟମ ଓ ରଚନାବଳୀ ସର୍ବଥା ପ୍ରଶଂସନୀୟ ।

୧୮୯୬ ମସିହାରେ ଜି.ଏ.ଗ୍ରୀୟରସନ୍ (G.A. Grierson) ଭାରତରେ କଥିତ ମୁଖ୍ୟ ଓ ଗୌଣ ଭାଷାମାନଙ୍କର ଏକ ସର୍ବେକ୍ଷଣ କରିଥିଲେ । ତାଙ୍କ ରିପୋର୍ଟ ୧୯୦୩ ରେ ପ୍ରକାଶିତ ହୋଇଥିଲା । ସେଥିରେ ଉଲ୍ଲେଖ ଥିଲା " ଓଡ଼ିଆ ଭାଷାଭାଷୀ ଅଞ୍ଚଳ ବର୍ତ୍ତମାନର ଓଡ଼ିଶା ଡିଭିଜନ ମଧ୍ୟରେ ସୀମିତ ନୁହେଁ । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ସରକାରୀ ରେକର୍ଡରେ ଉଲ୍ଲେଖ ଥିବା 'ବଙ୍ଗଳା, ବିହାର ଓ ଓଡ଼ିଶା' ଭିତରେ ମେଦିନୀପୁର ଏବଂ ବାଲେଶ୍ୱରର ଉତ୍ତରଭାଗ ଅନ୍ତର୍ଭୁକ୍ତ ଥିଲା । ଛୋଟନାଗପୁର ଡିଭିଜନ୍‌ରେ ଥିବା ସିଂହଭୂମ ଜିଲ୍ଲାର ଅନେକାଂଶ ଓ ତତ୍‌ସଂଲଗ୍ନ ଦେଶୀୟ ରାଜ୍ୟମାନଙ୍କରେ ଓଡ଼ିଆଭାଷୀ ଲୋକ ବାସ କରନ୍ତି । ପଶ୍ଚିମ ଦିଗରେ ସମ୍ବଲପୁରର ଅଧିକାଂଶ ଓ ରାୟପୁର ଜିଲ୍ଲାର କିୟଦଂଶ ସହିତ ଆଖପାଖର ଦେଶୀୟ ରାଜ୍ୟର ଅଧିବାସୀମାନଙ୍କ ମାତୃଭାଷା ଓଡ଼ିଆ । ଦକ୍ଷିଣରେ ମାନ୍ଦ୍ରାଜ ପ୍ରଦେଶ ଅଧୀନସ୍ଥ ଗଞ୍ଜାମ ଜିଲ୍ଲା ଏବଂ ତତ୍‌ସଂଲଗ୍ନ ଦେଶୀୟ ରାଜ୍ୟ ଓ ଭାଇଜାଗପଟନମ୍ ଏଜେନ୍ସିର ଜୟପୁର ଜମିଦାରୀରେ ସ୍ଥାନୀୟ ଭାଷା ଓଡ଼ିଆ । ତେଣୁ ୩ଟି ପ୍ରଦେଶ ଅଧୀନରେ ଓଡ଼ିଆଭାଷୀ ଲୋକମାନେ ବିଭକ୍ତ ହୋଇ ଶାସିତ ହେଉଛନ୍ତି । ଏହି ତିନୋଟି ଓଡ଼ିଆଭାଷୀ ଅଞ୍ଚଳ ହେଲା- ବଙ୍ଗ ପ୍ରଦେଶର ଦକ୍ଷିଣାଂଶ, ମଧ୍ୟପ୍ରଦେଶର

ପୂର୍ବଭାଗ ଏବଂ ମାନ୍ଦ୍ରାଜ ପ୍ରଦେଶର ଉତ୍ତରାଞ୍ଚଳ" ।(G. A. Grierson, The Linguistic Survey of India, Vol. V, Pt. II, p-367)

ଉପରୋକ୍ତ ରିପୋର୍ଟକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସିଂହଭୂମ ସଂଲଗ୍ନ ଷଢ଼େଇକଳା ଓ ଖ୍ରସୁଆଁ, ମଧ୍ୟପ୍ରଦେଶ ଅନ୍ତର୍ଗତ ଖଡ଼ିଆଳ, ପଦମପୁର ଓ ଫୁଲଝର ଜମିଦାରୀ, ଓଡ଼ିଶା ଡିଭିଜନ ସଂଲଗ୍ନ ଆଠଗଡ଼, ଆଠମଲ୍ଲିକ, ବାମଣ୍ଡା, ବଡ଼ମ୍ବା, ବଉଦ, ଦଶପଲ୍ଲା, ଢେଙ୍କାନାଳ, ଗାଙ୍ଗପୁର, ହିନ୍ଦୋଳ, କଳାହାଣ୍ଡି, କେନ୍ଦୁଝର, ଖଣ୍ଡପଡ଼ା, ମୟୂରଭଞ୍ଜ, ନରସିଂହପୁର, ନୟାଗଡ଼, ନୀଳଗିରି, ପାଲଲହଡ଼ା, ପାଟନା, ରେଢ଼ାଖୋଲ, ରଣପୁର, ସୋନପୁର, ତାଳଚେର ଏବଂ ତିଗିରିଆ ଆଦିରେ ଓଡ଼ିଆ ଭାଷୀମାନେ ବାସ କରୁଥିଲେ । ସେହିପରି ମାନ୍ଦ୍ରାଜ ପ୍ରଦେଶର ଖଲ୍ଲିକୋଟ, ଆଠଗଡ଼ , ପାଲୁର , ବିରିଡ଼ି, ହୁମ୍ମା, ଧରାକୋଟ, ବୁଗୁଡ଼ା, କଟିଙ୍ଗିଆ, ଶେରଗଡ଼, ଚେନ୍ନାଖିମିଡ଼ି, ଚିକିଟି, ସୁରଙ୍ଗୀ, ଜରଦା, ଜଳନ୍ତରା, ବୁଢ଼ାରସିଙ୍ଗି, ମଣ୍ଡାସା, ତରଳା ଓ ପାରଳାଖେମିଡ଼ି ଆଦି ଜମିଦାରୀ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ ଥିଲା । ସାମ୍ପ୍ରତିକ ପଶ୍ଚିମବଙ୍ଗର ମେଦିନିପୁର ଜିଲ୍ଲାରେ ଉନ୍ନବିଂଶ ଶତାବ୍ଦୀର ସପ୍ତମ ଦଶକ ପର୍ଯ୍ୟନ୍ତ ଓଡ଼ିଶା ଭାଷାଶିକ୍ଷା ଚାହାଳିଆ ଅବଧାନମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା ବୋଲି ଫକୀରମୋହନ ସେନାପତି ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।(ଫକୀରମୋହନ ଆତ୍ମଜୀବନୀ ଚରିତ, ପୃଷ୍ଠା-୮) ସଂଖ୍ୟାଧିକ ବଙ୍ଗଳୀମାନଙ୍କ ଚାପରେ କିପରି କ୍ରମାଗତଭାବରେ ଓଡ଼ିଆମାନଙ୍କ ସଂଖ୍ୟା ହ୍ରାସପାଇଲା ତାହା ଜନଗଣନା ପରିସଂଖ୍ୟାନରୁ ସୂଚିତ ହୁଏ ।

୧୮୯୧ .............୪,୭୨,୭୯୮
୧୯୦୧ ...............୨,୭୦,୪୯୫
୧୯୧୧ ..............୧,୮୧,୮୦୧

ସାମ୍ପ୍ରତିକ ଝାଡ଼ଖଣ୍ଡର ସିଂହଭୂମି ଜିଲ୍ଲା ଏବଂ ଛତିଶଗଡ଼ର ରାଇପୁର ଜିଲ୍ଲା ବିଶେଷଭାବରେ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ ଥିଲା । ଗଞ୍ଜାମ ଜିଲ୍ଲା ଓ ବିଶାଖାପାଟଣା ଏଜେନ୍ସି ଅଞ୍ଚଳରେ ଓଡ଼ିଆ ଭାଷାଶିକ୍ଷା ଅବହେଳିତ ହେବା ଓ ତେଲଗୁ ସରକାରୀ ଭାଷା ହେବା ଫଳରେ ଓଡ଼ିଆ ଭାଷାଭାଷୀମାନଙ୍କର ସଂଖ୍ୟା ହ୍ରାସପାଇଲା । ୧୮୯୦ ମସିହା ପର୍ଯ୍ୟନ୍ତ ଦକ୍ଷିଣ ଓଡ଼ିଶାରେ ସରକାରୀ ସ୍ତରରେ କେବଳ ତେଲଗୁ ଭାଷା ବ୍ୟବହୃତ ହେଉଥିଲା । ୧୮୯୦ରେ ସରକାରୀ ସ୍ତରରେ ଓଡ଼ିଆଭାଷାର ବ୍ୟବହାର ସ୍ୱୀକୃତ ହେଲେ ମଧ୍ୟ ତେଲଗୁମାନଙ୍କର ପ୍ରାଧାନ୍ୟ ହେତୁ ଓଡ଼ିଆଭାଷା ଅବହେଳିତ ଅବସ୍ଥାରେ ଥିଲା । ଏବେ ମଧ୍ୟ ଓଡ଼ିଶା ବାହାରେ ବହୁ ଓଡ଼ିଆ ଭାଷାଭାଷୀ ଲୋକେ ବାସରୁଛନ୍ତି । ୧୯୭୧ ମସିହାର ଜନଗଣନା ଅନୁସାରେ ଓଡ଼ିଶା ବାହାରେ ଓଡ଼ିଆମାନଙ୍କ ସଂଖ୍ୟା ନିମ୍ନରେ ସୂଚିତ ହେଲା ।

ଆନ୍ଧ୍ରପ୍ରଦେଶ ............. ୨,୨୫,୮୭୮
ଆସାମ ................... ୧,୫୦,୨୨୬
ବିହାର .................. ୩,୪୪,୬୩୮
ମଧ୍ୟପ୍ରଦେଶ ............... ୪,୮୩,୫୫୮
ପଶ୍ଚିମବଙ୍ଗ ................ ୧,୫୨,୦୧୦

ମିଶନାରୀମାନଙ୍କ ପ୍ରଚେଷ୍ଟାରେ ପ୍ରଥମେ କଟକରେ ଆଧୁନିକ ବିଦ୍ୟାଳୟ ପ୍ରତିଷ୍ଠା କରାଗଲା । ମାତ୍ର ଏହା ପୂର୍ବରୁ ଓଡ଼ିଶାରେ ବହୁ ଅଣଆନୁଷ୍ଠାନିକ ପାଠଶାଳାମାନ ଥିଲା । ସେହି ଅନୁଷ୍ଠାନଗୁଡ଼ିରେ ଅବଧାନମାନେ ଶିକ୍ଷକତା କାର୍ଯ୍ୟ କରୁଥିଲେ ଓ ପିଲାମାନଙ୍କୁ ବିଦ୍ୟାଶିକ୍ଷା ଦେଉଥିଲେ । କଟକ ଜିଲ୍ଲାରେ ପ୍ରାୟ ୨ ହଜାର ୭୪ ପାଠଶାଳା ଓ ବାଲେଶ୍ୱରରେ ୮୩୯ ପାଠଶାଳା ଥିଲା ବୋଲି ସରକାରୀ ହିସାବରୁ

ଜଣାଯାଏ । ୧୮୪୨ ସାଲ ପୂର୍ବରୁ ମୁଦ୍ରିତ ଓଡ଼ିଆ ପାଠ୍ୟପୁସ୍ତକର ଗୋଟିଏ ତାଲିକା ୧୮୫୭-୫୮ ଖ୍ରୀ.ର ଶିକ୍ଷାବିଭାଗ ରିପୋର୍ଟରେ ଦେଖିବାକୁ ମିଳେ। ସଟନ୍ ସାହେବଙ୍କର ଇଂରାଜୀ ଓଡ଼ିଆ ବ୍ୟାକରଣ (୧୮୩୧), ପଦାର୍ଥ ବିଦ୍ୟାସାର (୧୮୩୨), ଇତିହାସ ପୁସ୍ତକ (୧୮୩୯), ଓଡ଼ିଆ ଅଭିଧାନ (୧୮୪୧), ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣଙ୍କର ଓଡ଼ିଆ ବ୍ୟାକରଣ (୧୮୪୧) ଓ ଲେଖକଙ୍କର ନାମ ନ ଥିବା ଭୂଗୋଳର ବିବରଣ ଓ ନୀତିକଥା ଇତ୍ୟାଦି ମୁଷ୍ଟିମେୟ ପାଠ୍ୟପୁସ୍ତକ ରଚିତ ହୋଇଥିଲେ ହେଁ ଛାତ୍ରମାନଙ୍କର ବୟସ ଓ ଜ୍ଞାନକୁ ସମ୍ମୁଖରେ ରଖି ଏହା ରଚିତ ହୋଇ ନ ଥିବାରୁ ସେସବୁକୁ ସରକାରୀ ବିଦ୍ୟାଳୟପାଇଁ ଅନୁପଯୁକ୍ତ ବୋଲି ବିବେଚିତ ହେଉଥିଲା ।

ଅନ୍ୟପକ୍ଷରେ ଗଳ୍ପସ୍ରଷ୍ଟା ଫକୀରମୋହନ, କବିବର ରାଧାନାଥ ରାୟ, ବ୍ରହ୍ମଜ୍ଞ ମଧୁସୂଦନ ରାଓ, ଉତ୍କଳ ଦୀପିକାର ସଂପାଦକ ଗୌରୀଶଙ୍କର ରାୟ, ନାଟ୍ୟକାର ରାମଶଙ୍କର ରାୟ, ପ୍ରକାଶକ ପଣ୍ଡିତ କପିଳେଶ୍ୱରନନ୍ଦ ବିଦ୍ୟାଭୂଷଣ ଓ ବିପ୍ଳବୀ ପଣ୍ଡିତ ଗୋବିନ୍ଦ ରଥ, ସମ୍ବାଦ ବାହିକାର ସଂପାଦକ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ପ୍ୟାରୀମୋହନ ଆଚାର୍ଯ୍ୟ, ବିଶ୍ୱନାଥ କର, ଚନ୍ଦ୍ରମୋହନ ମହାରଣା, ଗୋବିନ୍ଦ ଚନ୍ଦ୍ର ମହାପାତ୍ର, ଓଡ଼ିଶାରେ ନୂତନ ଶିକ୍ଷା ପ୍ରବର୍ତ୍ତକ ଦ୍ୱାରିକାନାଥ ଚକ୍ରବର୍ତ୍ତୀ, କବିଶେଖର ଚିନ୍ତାମଣି ମହାନ୍ତି, ଗୋପାଳଚନ୍ଦ୍ର ପ୍ରହରାଜ, ମହାମହୋପାଧ୍ୟାୟ ସଦାଶିବ ମିଶ୍ର, ମହାରାଜା ବୈକୁଣ୍ଠ ନାଥ ଦେ, ଦାମୋଦର ପଟ୍ଟନାୟକ, ନାଟ୍ୟକାର କାମପାଳ ମିଶ୍ର, ଭିକାରିଚରଣ ପଟ୍ଟନାୟକ ଓ କବି କୃଷ୍ଣମୋହନ ପଟ୍ଟନାୟକ ପ୍ରଭୃତି ସମସାମୟିକ ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ କରିଥିଲେ ।

ଉତ୍କଳର ପୁରାତନ ସ୍ମରଣୀୟ କବିମାନଙ୍କର ନାମ ବଙ୍ଗାଳୀମାନଙ୍କ ପ୍ରାଧାନ୍ୟ ଯୋଗୁଁ ଦେଶରେ ପ୍ରଚାରିତ ହୋଇପାରୁ ନ ଥିଲା । ଗୋଟିଏ ଦୁର୍ଦ୍ଦଶାଗ୍ରସ୍ତ ଜାତି ଧୀରେ ଧୀରେ ବହୁ ବାଧାବିଘ୍ନ, ଘଟଣା ଦୁର୍ଘଟଣା ଦେଇ ଗତି କରିଆସିଛି । ତହିଁରେ ପୁଣି ଓଡ଼ିଆ ଭାଷା ଉଠାଇ ଦେଇ ସ୍କୁଲମାନଙ୍କରେ ବଙ୍ଗଳାଭାଷା ପ୍ରବର୍ତ୍ତନ କରାଇ ଶେଷରେ ଓଡ଼ିଶାକୁ ବଙ୍ଗଳାରେ ସାମିଲ କରାଇନେବାର ଅପଚେଷ୍ଟାକୁ 'ଉତ୍କଳ ଦୀପିକା' ଜନମତ ଜାଗ୍ରତ କରାଇ ପ୍ରତିରୋଧ କରିଥିଲା । ସେ ସବୁର କାହାଣୀ ସନ୍ନିହିତ ଏହି ପୁସ୍ତକର ବିଭିନ୍ନ ପୃଷ୍ଠାରେ ଐତିହାସିକ ଘଟଣା ଭାବରେ ସ୍ଥାନ ପାଇଛି । 'ଓଡ଼ିଆ ଭାଷା ଉଠାଇ ଦେବାର ଚକ୍ରାନ୍ତ' ଶୀର୍ଷକରେ ଏକ ସମ୍ବାଦ ଉତ୍କଳ ଦୀପିକା ( ୨୩/୬/୧୮୯୪) ର ଏକ ସଂଖ୍ୟାରେ ପ୍ରକାଶିତ ହୋଇଛି । ସେହିପରି ଅନୁରୂପ ଭାବେ 'ଭାଷା ରକ୍ଷା ଚେଷ୍ଟା' ଶୀର୍ଷକରେ (୮/୨/୧୮୯୬) ଅନ୍ୟ ଏକ ସମ୍ବାଦ ମଧ ଦୀପିକାରେ ପ୍ରକାଶିତ । ଦୀନକୃଷ୍ଣ ଦାସଙ୍କ 'ରସକଲ୍ଲୋଳ' କାବ୍ୟକୁ ପାଠକଲେ ଏହି କାବ୍ୟଟି ତତ୍କାଳୀନ ସମସ୍ତ ପ୍ରାନ୍ତୀୟ ସାହିତ୍ୟର ଊର୍ଦ୍ଧ୍ୱରେ ବୋଲି ବିବେଚନା କରାଯାଏ । ରଚନାଚାତୁର୍ଯ୍ୟ , ବର୍ଣ୍ଣନାଶୈଳୀ, ଶ୍ଳେଷ ଓ ଯମକର ବ୍ୟବହାର ଦୀନକୃଷ୍ଣଙ୍କୁ ଓଡ଼ିଆ ଭାଷାରେ ଶ୍ରେଷ୍ଠ କବି ଆଖ୍ୟା ଦେଇଥାଏ । ଦୀନକୃଷ୍ଣଙ୍କୁ ଛାଡ଼ି ଆହୁରି ଅନେକ କବି ଅନେକ ବିଷୟରେ ଗ୍ରନ୍ଥ ରଚନା କରିଅଛନ୍ତି । ମୁଦ୍ରାଯନ୍ତ୍ର ଅଭାବରେ ଅନେକ ଉଚ୍ଚଶ୍ରେଣୀର ଓ ଉଚ୍ଚମାନର ଲେଖା ପ୍ରାୟ ଲୋପ ହୋଇ ଯାଇଅଛି । କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ବିପୁଳ ଗ୍ରନ୍ଥ ରଚନା କରିଛନ୍ତି ମାତ୍ର ତାଙ୍କର ସବୁ ରଚନା ଏବେବି ପାଠକ ପାଖରେ ଦୁଷ୍ପ୍ରାପ୍ୟ । ସେହିପରି ବହୁ ମୂଲ୍ୟବାନ୍ ପୋଥି ଓ ସେଥିରେ ଥିବା ଆମ ଉତ୍କଳୀୟ ସଂସ୍କୃତିର ଚିହ୍ନ ସବୁ ସମୟର କରାଳ ଗର୍ଭରେ ଲୀନ ହୋଇଯାଇଛି ।

ଓଡ଼ିଶା ଡିଭିଜନ୍‌ର କମିଶନର ହେନେରୀ ରିକେଟ୍ସଙ୍କ ପ୍ରଚେଷ୍ଟାରେ ପ୍ରଥମକରି ପୁରୀରେ ୧୮୩୫ ଖ୍ରୀ.ରେ ଆଙ୍ଗ୍ଲୋଭର୍ଣ୍ଣାକୁଲାର ସ୍କୁଲ ପ୍ରତିଷ୍ଠା କରାଯାଇଥିଲା । ମାତ୍ର ଛାତ୍ରାଭାବରୁ ୧୮୪୦ ରେ ଏହାକୁ ବନ୍ଦ କରିଦିଆଗଲା । ୧୮୪୧ ରେ ଖ୍ରୀଷ୍ଟିୟାନ୍ ମିଶନାରୀମାନେ କଟକରେ English Charity School

ପ୍ରତିଷ୍ଠା କରିଥିଲେ । ପରେ ସରକାର ଏହାର ପରିଚାଳନା ଦାୟିତ୍ୱ ହାତକୁ ନେଇ ୧୮୫୧ରେ ଏହାକୁ କଟକ ଜିଲାସ୍କୁଲ ଭାବରେ ନାମିତ କରିଥିଲେ । ୧୮୫୩ରେ ପୁରୀ ଓ ବାଲେଶ୍ୱରରେ ଦୁଇଟି ଜିଲ୍ଲା ସ୍କୁଲ ସ୍ଥାପିତ ହୋଇଥିଲା । ହେନେରୀ ରିକେଟ୍ସ ଓଡ଼ିଶା ପାଇଁ ଅନେକ କିଛି କରିବାପାଇଁ ଉଦ୍ୟମ କରିଥିଲେ । ଉତ୍କଳ ଦୀପିକା ୨୯/୬/୧୮୬୭ ସଂଖ୍ୟାରେ 'ସାର୍ ହେନରୀ ରିକେଟ୍ସ ସାହେବ' ଶୀର୍ଷକରେ ଏକ ସମ୍ବାଦ ପ୍ରକାଶ ପାଇଥିଲା । ତାହାର କିଞ୍ଚିତାଂଶ ଏହିପରି : " ଦୁର୍ଭିକ୍ଷ ଆରମ୍ଭରେ ମହାତ୍ମା ରିକେଟ୍ସ ସାହେବଙ୍କ ଗୁଣ କୀର୍ତ୍ତନ କରି ଆମ୍ଭେମାନେ ଯତ୍କିଞ୍ଚିତ୍‌ରେ ଆପଣାକୁ କୃତାର୍ଥ କରିଥିଲୁଁ । ଉକ୍ତ ସାହେବଙ୍କର ଆମ୍ଭ ପ୍ରଦେଶପ୍ରତି ଯେପରି ଅକୃତ୍ରିମ ସ୍ନେହ ଓ ଦୟା ଅଛି ପୁନର୍ବାର ସେଥିରେ ଏକ ଆନନ୍ଦକର ଚିହ୍ନ ଦେଖି ତାହା ପାଠକ ମହାଶୟଙ୍କୁ ଜଣାଇ ଦେବାରେ କ୍ଷଣମାତ୍ର ବିଳମ୍ବ କରିବା କର୍ତ୍ତବ୍ୟର ଗୁରୁତର ତ୍ରୁଟି ବୋଧକରି ଏଠାରେ ପ୍ରକାଶ କରୁଅଛୁଁ... ଇତ୍ୟାଦି" । ଏଥିରୁ ରିକେଟ୍ସ ସାହେବଙ୍କ ଓଡ଼ିଶା ଜନସାଧାରଣଙ୍କ ପ୍ରତି ଅହେତୁକ ସ୍ନେହ ଓ ଶ୍ରଦ୍ଧାଭାବ ସହଜରେ ଅନୁମେୟ । ୧୮୫୫ ରେ ସେ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକର ଏକତ୍ରୀକରଣ ପାଇଁ ସରକାରୀ ସ୍ତରରେ ପ୍ରସ୍ତାବ ଦେଇଥିଲେ ।

ଓଡ଼ିଶା ଡିଭିଜନ୍‌ର କମିଶନର ଏ.ଜି.କୁକ୍ ସମ୍ବଲପୁର ଜିଲ୍ଲା ସହ ସୋନପୁର, ରେଢ଼ାଖୋଲ, ବାମଣ୍ଡା ଓ କଳାହାଣ୍ଡି ଗଡ଼ଜାତସମୂହ ଓ ଗଞ୍ଜାମ ଜିଲ୍ଲାକୁ ଓଡ଼ିଶା ଡିଭିଜନ ସହିତ ମିଶ୍ରଣ ପାଇଁ ମତ ଦେଇଥିଲେ । ଏହା ଫଳରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଏକତ୍ରିତ ହେବାପାଇଁ ଏକ ପରିବେଶ ସୃଷ୍ଟି ହୋଇଥିଲା । ୧୮୯୫ ମସିହାରେ ସମ୍ବଲପୁରରେ ଓଡ଼ିଆ ବଦଳରେ ହିନ୍ଦୀକୁ ସରକାରୀ ଭାଷାଭାବେ ପ୍ରଚଳନ କରିବା ପାଇଁ ଏକ ସରକାରୀ ଘୋଷଣାନାମା ପ୍ରକାଶ ପାଇଲା । ଫଳତଃ ତତ୍କାଳୀନ ଓଡ଼ିଶାରେ ଲୋକଙ୍କ ମଧ୍ୟରେ ଏଭଳି ଭୁଲ୍ ନିଷ୍ପତ୍ତି ବିରୋଧରେ ପ୍ରତିକ୍ରିୟା ସୃଷ୍ଟି ହେବା ସହିତ ପ୍ରତିବାଦ ମଧ୍ୟ କରାଯାଇଥିଲା । ଧରଣୀଧର ମିଶ୍ରଙ୍କ ନେତୃତ୍ୱରେ ସମ୍ବଲପୁରରେ ଏକ ବିରାଟ ସାଧାରଣ ସଭା ହୋଇ ତତ୍କାଳୀନ ବଡଲାଟ୍ ଲର୍ଡ ଏଲ୍‌ଗନ୍‌ଙ୍କ ନିକଟକୁ ୨,୩୬୦ ବ୍ୟକ୍ତିଙ୍କ ସ୍ୱାକ୍ଷର ସହ ଏକ ଦୀର୍ଘ ସ୍ମାରକପତ୍ର ପ୍ରେରଣ କରାଯାଇଥିଲା । କେବଳ ସେତିକି ନୁହେଁ ୧୮୯୬ ରେ ମଧ୍ୟପ୍ରଦେଶର ଚିଫ୍ କମିଶନରଙ୍କ ସମ୍ବଲପୁର ଗସ୍ତ ସମୟରେ ହଜାର ହଜାର ଜନସାଧାରଣ ଉପସ୍ଥିତ ହୋଇ ହିନ୍ଦୀ ଭାଷା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ ।

୧୯୦୦ ମସିହାରେ ସମ୍ବଲପୁର ଅଞ୍ଚଳର ୮୨ ଗୋଟି ଓଡ଼ିଆ ପ୍ରାଇମେରୀ ସ୍କୁଲ ବନ୍ଦ କରିଦିଆଗଲା ଓ ହିନ୍ଦୀ ଭାଷାକୁ ବାଧ୍ୟତାମୂଳକ କରାଗଲା । ୧୯୦୧ ମସିହାରେ ଲର୍ଡ କର୍ଜନ (Lord Curzon)ଙ୍କ ନେତୃତ୍ୱରେ ସିମ୍‌ଲାଠାରେ ସର୍ବଭାରତୀୟ ଶିକ୍ଷା ସଂସ୍କାର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ ସମ୍ବଲପୁରର ଓଡ଼ିଆମାନଙ୍କ ଦାବି ଉପସ୍ଥାପନ କରିବାପାଇଁ ସର୍ବଶ୍ରୀ ମଦନ ମୋହନ ମିଶ୍ର, ବ୍ରଜ ମୋହନ ପଟ୍ଟନାୟକ, ମହନ୍ତ ବିହାରୀ ଦାସ, ଶ୍ରୀପତି ମିଶ୍ର ଓ ବଳଭଦ୍ର ସୂପକାର ସିମ୍‌ଲା ଯାଇଥିଲେ । ମାତ୍ର ସେମାନେ ଲର୍ଡ କର୍ଜନଙ୍କୁ ବ୍ୟକ୍ତିଗତଭାବରେ ସାକ୍ଷାତ୍ କରିପାରି ନ ଥିଲେ । ମଧ୍ୟପ୍ରଦେଶର ଚିଫ୍ କମିଶନର ସାର ଆଣ୍ଡ୍ରୁ ଫ୍ରେଜର (Sir Andrew Fraser) ସମ୍ବଲପୁର ଗସ୍ତ ସମୟରେ ହୃଦୟଙ୍ଗମ କରିଥିଲେ ଯେ ସମ୍ବଲପୁରବାସୀଙ୍କ ଭାଷା ହେଉଛି ଓଡ଼ିଆ ଏବଂ ସେମାନଙ୍କୁ ହିନ୍ଦୀଭାଷା ଶିକ୍ଷା କରିବାକୁ ଏକପ୍ରକାର ବାଧ୍ୟ କରାଯାଉଛି । ତାଙ୍କରି ପ୍ରଚେଷ୍ଟାରେ ୧୯୦୩ ମସିହାରେ ପୁଣି ସମ୍ବଲପୁରରେ ଓଡ଼ିଆଭାଷା ପ୍ରଚଳିତ ହେଲା ।୧୮୭୫ ରେ ବାଲେଶ୍ୱରର ଜମିଦାର ରାଜା ଶ୍ୟାମାନନ୍ଦ ଦେ ଏବଂ ବିଚିତ୍ରାନନ୍ଦ ପଟ୍ଟନାୟକ ତତ୍କାଳୀନ ସରକାରଙ୍କ ପାଖରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଆବେଦନ କରିଥିଲେ । ୧୯୦୨ ରେ ବାଲେଶ୍ୱରର ଆଉ ଜଣେ ଜମିଦାର ତଥା ଓଡ଼ିଆ ଭାଷାସାହିତ୍ୟର ପରମ ହିତୈଷୀ ରାଜା ବୈକୁଣ୍ଠ ନାଥ ଦେ ମଧ୍ୟ ଲର୍ଡ କର୍ଜନଙ୍କୁ ଓଡ଼ିଆଭାଷୀ ଅଞ୍ଚଳଗୁଡିକ ଏକତ୍ରିତ କରିବାପାଇଁ

ସ୍ମାରକପତ୍ର ଦେଇଥିଲେ ।

୧୮୮୨ ମସିହାରେ କଟକରେ ଉତ୍କଳସଭା ଗଠନ କରାଯାଇଥିଲା । ୧୮୮୫ ରେ ଏହି ଅନୁଷ୍ଠାନ ପକ୍ଷରୁ ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ରିଚାର୍ଡ ଟମ୍‌ସନ୍‌ଙ୍କ ଜରିଆରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକର ଏକତ୍ରୀକରଣ ପାଇଁ ଇଂରେଜ ସରକାରଙ୍କୁ ପ୍ରସ୍ତାବ ଦିଆଯାଇଥିଲା । ସେହି ବର୍ଷ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠିତ ହେବାଫଳରେ ଜାତୀୟ ରାଜନୀତିରେ ଏକ ଆଲୋଡ଼ନ ସୃଷ୍ଟି ହେଲା । ଏହା ଥିଲା ଏକ ଜାତୀୟ ଅନୁଷ୍ଠାନ । ଉତ୍କଳଗୌରବ ମଧୁସୂଦନଙ୍କ ଦୃଷ୍ଟି ଥିଲା ସୁଦୂରପ୍ରସାରୀ । ଏହି ଜାତୀୟ ଅନୁଷ୍ଠାନରେ ଓଡ଼ିଶାର ପ୍ରତିନିଧିତ୍ୱର ଆବଶ୍ୟକତା ସେ ଉପଲବ୍ଧି କରିଥିଲେ ଓ 'ଉତ୍କଳ ସଭା' ପକ୍ଷରୁ ସେ ପ୍ରତିନିଧି ମନୋନୀତ ହୋଇ ୧୮୮୬ରେ ଜାତୀୟ କଂଗ୍ରେସ ସମ୍ମିଳନୀରେ ଯୋଗ ଦେଇଥିଲେ ।

୧୯୦୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ୧୬ତାରିଖ ଦିନ ତଦାନୀନ୍ତନ ବଡଲାଟ୍ ଲର୍ଡ କର୍ଜନ ପୁରୀ, ଭୁବନେଶ୍ୱର ଓ କଟକ ପରିଦର୍ଶନରେ ଆସିଥିଲେ । ଭୁବନେଶ୍ୱରର ପ୍ରାଚୀନ କୀର୍ତ୍ତିଗୁଡ଼ିକର ଅତୁଳନୀୟ ଭାସ୍କର୍ଯ୍ୟ ଓ ସେଗୁଡ଼ିକର ଦୁର୍ଦ୍ଦଶା ଦେଖି ସେ ଆଶ୍ଚର୍ଯ୍ୟ ଓ ଦୁଃଖିତ ହୋଇଥିଲେ । ପ୍ରଶାସନିକ ଦୁଃସ୍ଥିତି ଫଳରେ ଓଡ଼ିଶାର ଏଭଳି ଦୁର୍ଗତି ହୋଇଥିବାରୁ ସେ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳର ମିଶ୍ରଣକୁ ଦୃଢ଼ଭାବରେ ସମର୍ଥନ କରିଥିଲେ । ଏହାଫଳରେ ମଧ୍ୟପ୍ରଦେଶରୁ ସମ୍ବଲପୁର ଜିଲ୍ଲା ଏବଂ କଳାହାଣ୍ଡି, ପାଟଣା, ସୋନପୁର, ରେଢ଼ାଖୋଲ ଓ ବାମଣ୍ଡା ଦେଶୀୟ ରାଜ୍ୟଗୁଡ଼ିକ ଏବଂ SWFA ରେ ଥିବା ଗାଙ୍ଗପୁର ଓ ବଣାଇ ରାଜ୍ୟ ଦ୍ୱୟ ଓଡ଼ିଶା ଡିଭିଜନ୍ ସହିତ ସଂଯୁକ୍ତ କରାଗଲା । ଫଳରେ ସମ୍ବଲପୁର ଅଞ୍ଚଳର ଓଡ଼ିଆମାନେ ଉପକୂଳବର୍ତ୍ତୀ ଓଡ଼ିଆମାନଙ୍କ ସହିତ ଏକତ୍ର ହେଲେ । ଲର୍ଡ କର୍ଜନ ଗଞ୍ଜାମ ଓ ଜୟପୁର ଅଞ୍ଚଳର ମିଶ୍ରଣ ପ୍ରସ୍ତାବ ମାନ୍ଦ୍ରାଜ ସରକାରଙ୍କ ପ୍ରବଳ ପ୍ରତିରୋଧ ଯୋଗୁଁ କାର୍ଯ୍ୟକାରୀ କରିପାରି ନ ଥିଲେ । ୧୮୮୭ ମସିହାରେ ବଙ୍ଗଳାର ସୁରେନ୍ଦ୍ର ନାଥ ବାନାର୍ଜୀ ବେଙ୍ଗଲ ନେସ୍‌ନାଲ କନ୍‌ଫରେନ୍ସ ନାମରେ ଗୋଟିଏ ରାଜନୀତିକ ଅନୁଷ୍ଠାନ ଗଠନ କରିଥିଲେ । ମଧୁସୂଦନ ଓଡ଼ିଶାରେ ଏହିପରି ଗୋଟିଏ ଅନୁଷ୍ଠାନ ଗଠନ କରିବାକୁ ମନେମନେ ସ୍ଥିର କଲେ । ୧୯୦୩ ମସିହା ଏପ୍ରିଲ ମାସରେ ବ୍ରହ୍ମପୁରଠାରେ ଖଲ୍ଲିକୋଟର ରାଜା ହରିହର ମର୍ଦ୍ଦରାଜ ଓ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ପ୍ରଚେଷ୍ଟାରେ ଗଞ୍ଜାମ ଜାତୀୟ ସମିତି ତରଫରୁ ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ ଓଡ଼ିଆ ମାନଙ୍କର ଜାତୀୟ ସମ୍ମିଳନୀ ପ୍ରତିବର୍ଷ ବିଧିବଦ୍ଧଭାବରେ ଅନୁଷ୍ଠିତ ହେବ ବୋଲି ସ୍ଥିର ହେଲା । ଶେଷରେ ମଧୁସୂଦନ ଦାସ, ଗୌରୀଶଙ୍କର ରାୟ,କନିକାରାଜା(ରାଜେନ୍ଦ୍ରନାରାୟଣ ଭଞ୍ଜ) ଓ ଗୋପାଳଚନ୍ଦ୍ର ପ୍ରହରାଜ ଆଦିଙ୍କ ଉଦ୍ୟୋଗରେ ୧୯୦୩ ମସିହା ଡିସେମ୍ବର ମାସ ୩୦ ଓ୩୧ ତାରିଖରେ କଟକର ଇଦିଗା ପଡିଆରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ଅଧ୍ୟକ୍ଷତାରେ ଉତ୍କଳସମ୍ମିଳନୀର ପ୍ରଥମ ଅଧିବେଶନ ଅନିଷ୍ଠିତ ହେଲା । ଓଡ଼ିଆ ଭାଷାଭାଷୀ ଜନସାଧାରଣ ବିଭିନ୍ନ ସ୍ତରରେ ଭିନ୍ନଭିନ୍ନ ମାର୍ଗରେ ଆନ୍ଦୋଳନ ଅବ୍ୟାହତ ରଖି କେବଳ ଭାଷା ସୁରକ୍ଷା ନୁହେଁ, ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକର ଏକତ୍ରୀକରଣ ପାଇଁ ଦୃଢ଼ ଦାବି ଉପସ୍ଥାପନ କରିଥିଲେ । ରାଜା, ମହାରାଜା, ଜମିଦାର ଓ ବୁଦ୍ଧିଜୀବୀଙ୍କ ସହିତ ଦରିଦ୍ର ସାଧାରଣ ଜନତା ମଧ୍ୟ ଏହି ସାମୂହିକ ଆନ୍ଦୋଳନରେ ସାମିଲ ହୋଇଥିଲେ । ବହୁ ଘାତ ପ୍ରତିଘାତ ମଧ୍ୟରେ ଗତିକରି ଆନ୍ଦୋଳନକାରୀ ନେତାଗଣ ସଫଳକାମୀ ହୋଇଥିଲେ ଏବଂ ଭାଷା ସୂତ୍ରରେ ହିଁ ୧୯୩୬ ଏପ୍ରିଲ୍ ପହିଲାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେଲା । ଓଡ଼ିଶାର ଏକ ପୂର୍ଣ୍ଣାଙ୍ଗ ଓ ସ୍ୱତନ୍ତ୍ର ପରିଚୟ ଖୋଜିଲାବେଳେ ପ୍ରଥମେ ମଧୁସୂଦନ ଦାସ ହିଁ ମନେପଡ଼ନ୍ତି । ନିଜ ପାଇଁ କିଛି ନ କରି ସାରାଜୀବନ ସେ ଓଡ଼ିଶାର ସ୍ୱାର୍ଥପାଇଁ କାମ କରିଥିଲେ । ମାତ୍ର ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବାର ୨ବର୍ଷ ପୂର୍ବରୁ ସେ 'ଆଖିବୁଜି ଦେଇଥିଲେ । ମଧୁସୂଦନଙ୍କ ସ୍ୱପ୍ନକୁ ସାକାରକରିବାରେ' ଅନ୍ୟମାନଙ୍କ ମଧ୍ୟରେ

ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଭୂମିକା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସେ ପ୍ରଥମ ଗୋଲଟେବୁଲ ବୈଠକରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ପ୍ରଶ୍ନ ଉତ୍‌ଥାପନ କରିଥିଲେ ଏବଂ ପ୍ରସ୍ତାବିତ ଓଡ଼ିଶାପ୍ରଦେଶରେ ଜୟପୁର ଓ ପାରଳାଖେମୁଣ୍ଡି ଜମିଦାରୀକୁ ସାମିଲ କରିବାପାଇଁ ଏକ ପ୍ରତିନିଧିଦଳ ନେଇ ଭାରତସଚିବ ସାର୍ ସାମୁଏଲ୍ ହୋର୍ ( Sir Samuel Hoare)ଙ୍କୁ ୧୯୩୩ ମସିହା ଜୁଲାଇରେ ସାକ୍ଷାତ୍ କରିଥିଲେ ।

ସୁବିସ୍ତୃତ ଓଡ଼ିଶା ଯେଭଳି ଭାବେ ସମୟକ୍ରମେ ଖଣ୍ଡବିଖଣ୍ଡିତ ଅବସ୍ଥାରେ ପହଞ୍ଚିଥିଲା ସେହି ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ପ୍ରଦେଶ ଗଠନର ପରିକଳ୍ପନାକୁ ରୂପାୟନ କରିବାପାଇଁ ବିଭିନ୍ନ ଉଦ୍ୟମ ହୋଇଥିଲା । ଏହି ଉଦ୍ୟମ ଓଡ଼ିଶା ଇତିହାସର ଏକ ଘଟଣାବହୁଳ ଅଧ୍ୟାୟ । ଏ ସମ୍ପର୍କରେ ଅନେକ ମୌଳିକ ଉପାଦାନ ବିଭିନ୍ନ ସ୍ଥାନରେ, ସରକାରୀ ନଥିପତ୍ରରେ, ଅଭିଲେଖାଗାରରେ ରହିଛି । ଏହି ମୌଳିକ ଉପାଦାନଗୁଡ଼ିକର ଅନୁଶୀଳନ ସହ ପଞ୍ଜୀକରଣର ଆବଶ୍ୟକତା ମଧ୍ୟ ରହିଛି । ଭାରତବର୍ଷରେ ଓଡ଼ିଶା ପ୍ରଥମ ଭାଷାଭିତ୍ତିକ ପ୍ରଦେଶ ଭାବେ ଗଠିତ ହୋଇଛି । ଏହା ଏବେ ଏକ ସମୃଦ୍ଧ ରାଜ୍ୟରେ ମଧ୍ୟ ପରିଣତ ହୋଇଛି । ଏହି ଭାଷାଭିତ୍ତିକ ପ୍ରଦେଶ ଗଠନ ପାଇଁ ଯେଉଁ ସଂଗ୍ରାମ ହୋଇଥିଲା, ଯେଉଁ ଶ୍ରମରେ ଭାଷାଭିତ୍ତିକ ପ୍ରଦେଶ ଗଠିତ ହୋଇଛି ତାହାର ତଥ୍ୟଭିତ୍ତିକ ଉପାଦାନ, ନଥିପତ୍ର, ସରକାରୀ କାଗଜପତ୍ର, ସମ୍ବାଦପତ୍ରର ବିବରଣୀ ଯଥାର୍ଥ ଭାବେ ସଂକଳିତ ହୋଇପାରି ନ ଥିଲା । ଏଣୁ ସଂପାଦକମଣ୍ଡଳୀ ଏହି ଉପାଦାନସମୂହର ପଞ୍ଜୀକରଣ କରିବା ନିମନ୍ତେ ନିଷ୍ପତ୍ତି ନେଇ ପ୍ରଥମ ଭାଗରେ ପ୍ରକାଶ କରିବାପାଇଁ ସ୍ଥିର କରିଅଛନ୍ତି । ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ମୌଳିକ ଉପାଦାନ ଓଡ଼ିଶା ରାଜ୍ୟ ଅଭିଲେଖାଗାର ବ୍ୟତୀତ ରାଷ୍ଟ୍ରୀୟ ଅଭିଲେଖାଗାର (ଦିଲ୍ଲୀ), ପଶ୍ଚିମବଙ୍ଗ ଅଭିଲେଖାଗାର (କୋଲକତା), ବିହାର ଅଭିଲେଖାଗାର (ପାଟନା), ଭୋପାଲ ଏବଂ ତାମିଲନାଡୁ ଅଭିଲେଖାଗାର ଓ India Office Library ରେ ମଧ୍ୟ ସଂରକ୍ଷିତ ଅଛି । ଓଡ଼ିଶାରେ ଥିବା ବିଭିନ୍ନ ତଥ୍ୟ ଓ ଉପାଦାନକୁ ଆଧାର କରି ଏହି ପ୍ରଥମଭାଗ ପୁସ୍ତକ ପ୍ରକାଶ କରାଯାଉଛି । ରାଜ୍ୟ ବାହାରେ ଥିବା ବିଭିନ୍ନ ତଥ୍ୟ ଓ ଉପାଦାନକୁ ପରବର୍ତ୍ତୀ ଭାଗଗୁଡ଼ିକରେ ସାମିଲ କରାଯିବାର ଯୋଜନା ରହିଛି । ଏହି ତଥ୍ୟଭିତ୍ତିକ ସଂକଳନକୁ ୪ଟି ଭାଗରେ ବିଭକ୍ତ କରାଯାଇଛି - ୧ମ ଭାଗ (୧୮୦୩-୧୯୦୨), ୨ୟ ଭାଗ (୧୯୦୩-୧୯୨୦) , ୩ୟ ଭାଗ ( ୧୯୨୧-୧୯୩୬) ଓ ଚତୁର୍ଥ ଭାଗ (୧୯୩୭-୧୯୪୭) । ପ୍ରଥମ ଭାଗରେ ଓଡ଼ିଶା ରାଜ୍ୟ ଅଭିଲେଖାଗାର ଓ ସମ୍ବାଦପତ୍ରରୁ ସଂଗୃହୀତ ଉପାଦାନକୁ ଠିକ୍ ଭାବରେ ଉପସ୍ଥାପନା କରିବାପାଇଁ ଚେଷ୍ଟା କରାଯାଇଛି । ଏଥିରେ ଓଡ଼ିଶାର କେତେଜଣ ବରପୁତ୍ରଙ୍କ ଫଟୋଚିତ୍ର ସ୍ଥାନପାଇଛି । ଅନ୍ୟ ବରପୁତ୍ରମାନଙ୍କ ଫଟୋଚିତ୍ର ପରବର୍ତ୍ତୀ ସଂକଳନ ଗୁଡିକରେ ସଂଯୋଜିତ କରିବାର ପରିକଳ୍ପନା କରାଯାଇଛି ।

ଓଡ଼ିଆ ଭାରତର ଏକ ପ୍ରମୁଖ ଆଞ୍ଚଳିକ ଭାଷା ଅଟେ । ଏହା ଓଡ୍ର ମାଗଧୀରୁ ଉଦ୍ଭୂତ । ଓଡ଼ିଆ ଭାଷା ଓ ଲିପିର ଉତ୍ପତ୍ତି ସମ୍ବନ୍ଧରେ ସୁନୀତି କୁମାର ଚଟାର୍ଜୀ ଓ କୁଞ୍ଜବିହାରୀ ତ୍ରିପାଠୀଙ୍କ ଭଳି ଗବେଷକମାନେ ଗବେଷଣା କରିଛନ୍ତି । ୧୯୬୨ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ କୁଞ୍ଜବିହାରୀ ତ୍ରିପାଠୀଙ୍କ ଦ୍ୱାରା ଲିଖିତ ଏବଂ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ପିଏଚ୍.ଡି ପାଇଁ ଗୃହୀତ ପୁସ୍ତକ The Evolution of Oriya Language and Script ପ୍ରକାଶିତ ହୋଇଥିଲା । ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ଆନ୍ଦୋଳନ ସମ୍ବନ୍ଧରେ ପ୍ରଥମେ ଦୁଇଜଣ ସ୍ନାତକ(ନିରଞ୍ଜନ ପଟ୍ଟନାୟକ ଓ ଚକ୍ରପାଣି ପ୍ରଧାନ) ନିଜର ନାମ ଉଲ୍ଲେଖ ନ କରି ୧୯୧୯ରେ The Oriya Movement :Being Demand for a United Orissa ପୁସ୍ତକ ଆସ୍କାଠାରେ ପ୍ରକାଶ କରିଥିଲେ । ସ୍ୱାଧୀନତା ପରେ ଶରତଚନ୍ଦ୍ର ପାତ୍ର, ପ୍ରବୋଧ କୁମାର ମିଶ୍ର, ନିବେଦିତା

ମହାନ୍ତି, ବାଇକୋଳି ମହାପାତ୍ର ପ୍ରଭୃତି ଗବେଷକମାନେ ସ୍ୱତନ୍ତ୍ର ଓଡ଼ିଶା ଗଠନ ଆନ୍ଦୋଳନ ଉପରେ ଗବେଷଣା କରି ପୁସ୍ତକମାନ ରଚନା କରିଛନ୍ତି ।

ଗୋଟିଏ ଜାତିର ସଠିକ୍ ଇତିହାସରୁ ଶକ୍ତି ସଂଗ୍ରହ କରି ସେହି ଜାତି ଆଗେଇଯିବାକୁ ସମର୍ଥ ହୁଏ । ଏହା ପୁଣି ସପ୍ରମାଣ ହେବା ଦରକାର । ଉକ୍ତ ପୁସ୍ତକରେ ଅଭିଲେଖାଗାର ଓ ଉତ୍କଳ ଦୀପିକା, ସମ୍ବଲପୁର ହିତୈଷିଣୀ, ଉତ୍କଳ ପୁତ୍ର, ଉତ୍କଳ ସାହିତ୍ୟ, ସମ୍ବାଦ ବାହିକା, ଓଡ଼ିଆ ଓ ନବ ସମ୍ବାଦ ଭଳି ପତ୍ରପତ୍ରିକାରୁ ସଂଗୃହୀତ ତଥ୍ୟମାନ ସ୍ଥାନିତ କଲା ସମୟରେ ଅନେକ କଷ୍ଟସ୍ୱୀକାର କରିବାକୁ ପଡ଼ିଛି । ଭାଷା ଆନ୍ଦୋଳନ ସମ୍ପର୍କୀୟ ସମ୍ବଲପୁର ନଥି ଓ ଗଞ୍ଜାମ ନଥିଗୁଡ଼ିକ ପୁସ୍ତକରେ ସ୍ଥାନିତ କରାଯାଇଛି । କେତେକ ଓଡ଼ିଆ ଶବ୍ଦ, ଅକ୍ଷର, ବନାନଶୁଦ୍ଧିକୁ ନେଇ ବାରମ୍ବାର ଝୁଣ୍ଟିବାକୁ ପଡ଼ିଛି, କୌଣସି ପରିବର୍ତ୍ତନ କରା ନ ଯାଇ ଯଥାସମ୍ଭବ ମୂଳ ଲେଖାପ୍ରତି ଧ୍ୟାନ ଦିଆଯାଇଛି । ଅଣା ଚିହ୍ନ, ଚନ୍ଦ୍ରବିନ୍ଦୁ ,'ଇ'କାର, 'ଈ'କାର, ଋ, ୠ, ର, ପ୍ରୟୋଗରେ ଅନେକ ବୈଷମ୍ୟ ପରିଲକ୍ଷିତ ହେବା ସହ କ୍ରମଶଃ,କ୍ରମେକ୍ରମେ ( କ୍ରମେ ୨)ଏକ ଅଣା ( ୯ ) , ଦୁଇଅଣା ( ୰ ) ତିନିଅଣା (୰୰), ଚାରିଅଣା ( । ), ଆଠଅଣା (ԿԱ) ବାରଅଣା (ԿԱ) ଇତ୍ୟାଦି ଚିହ୍ନଗୁଡ଼ିକୁ କମ୍ପ୍ୟୁଟରରୁ ( ଡିଟିପି) ନ ମିଳିବାରୁ ସେଗୁଡ଼ିକୁ ହାତରେ ହିଁ ଲେଖାଯାଇଛି । ମୂଳ ପତ୍ରିକାର ଅବସ୍ଥା ଏପରି ଦୟନୀୟ ଥିଲା ଯେ ସେଥିରୁ ଅନେକ ସ୍ଥାନରେ ପଢ଼ି ନ ହେବାରୁ ସ୍ଥାନେ ସ୍ଥାନେ ଛକି ଚିହ୍ନ ଦିଆଯାଇଛି । ଏହି ସଂକଳନରେ ଆମ୍ଭମାନଙ୍କ ଜ୍ଞାତରେ ଥିବା ସମସ୍ତତଥ୍ୟ,ବିବରଣୀ ପ୍ରଦାନ କରିଛୁ । ଯଦି ଆଉ ଏ ସମ୍ପର୍କିତ ନଥିପତ୍ର ବା ବିବରଣୀ କେଉଁଠି ଉପଲବ୍ଧ ହେବ ବା ଯାହା ଏଥିରେ ସଂଯୋଜିତ ହୋଇପାରିନାହିଁ ସେ ସବୁକୁ ପରବର୍ତ୍ତୀ ଖଣ୍ଡରେ ଆମ୍ଭେମାନେ ଦେବାପାଇଁ ଚେଷ୍ଟା କରିବୁ ।

ଆମ୍ଭେମାନେ ଆନନ୍ଦିତ ଯେ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଗଠନର ତଥ୍ୟଭିତ୍ତିକ ଇତିହାସର ପ୍ରଥମଖଣ୍ଡ ଆତ୍ମପ୍ରକାଶ କରୁଛି । ଏଥିପାଇଁ ଓଡ଼ିଶା ସରକାରଙ୍କ ଉଚ୍ଚ କର୍ତ୍ତୃପକ୍ଷ ଯଥା: ଉଚ୍ଚଶିକ୍ଷା, ପର୍ଯ୍ୟଟନ ଓ ସଂସ୍କୃତି ବିଭାଗର ମନ୍ତ୍ରୀ ଶ୍ରୀ ଦେବୀପ୍ରସାଦ ମିଶ୍ର, ମୁଖ୍ୟ ଶାସନ ସଚିବ ଶ୍ରୀ ତରୁଣକାନ୍ତି ମିଶ୍ର,ବିଭାଗୀୟ ଶାସନ ସଚିବ ଡା.ମୋନା ଶର୍ମା, ସଂସ୍କୃତି ନିର୍ଦ୍ଦେଶକ ଶ୍ରୀ ରବୀନ୍ଦ୍ର ନାଥ କରଙ୍କ ସମୟୋଚିତ ପରାମର୍ଶ ଏଠାରେ ଶ୍ରଦ୍ଧାର ସହିତ ସ୍ୱୀକାର କରୁଛୁ । ଓଡ଼ିଶା ରାଜ୍ୟ ଅଭିଲେଖାଗାରର ଅଧୀକ୍ଷକ ଶ୍ରୀମତୀ ସବିତା ମିଶ୍ରଙ୍କ ଆନ୍ତରିକତା ଓ କାର୍ଯ୍ୟଦକ୍ଷତା ପ୍ରକାଶନ କାର୍ଯ୍ୟକୁ ସହଜ କରାଇଛି ।

ଏହି ଅବସରରେ ସମସ୍ତଙ୍କ ସହଯୋଗ ଓ ଶୁଭେଚ୍ଛା ପାଇଁ କୃତଜ୍ଞତା ଜ୍ଞାପନ କରୁଛୁ । ଏହି ଗ୍ରନ୍ଥଟି ଓଡ଼ିଶାର ପ୍ରାମାଣିକ ଇତିହାସ ପ୍ରଣୟନରେ ସହାୟକ ହେବା ସହ ପାଠକୀୟ ଆଦୃତି ଲାଭ କରିବ ବୋଲି ଆମେ ବିଶ୍ୱାସ ରଖୁଛୁ ।

**ସଂପାଦକମଣ୍ଡଳୀ**

# ସୂଚୀପତ୍ର


ଓଡ଼ିଶା ମାନଚିତ୍ର :- କରଦ ରାଜ୍ୟ (୧୮୦୩)
FEUDATORY STATES OF
ORISSA IN 1803 A.D
1.Angul
2.Athgarh
3.Athamallick
4.Bamra
5.Banki
6.Baramba
7.Baud
8.Bonai
9.Daspalla
10.Dhenkanal
11.Gangpur
12.Hindol
13.Kalahandi
14.Kanika
15.Keonjhar
16.Khandapada
17.Khurda
18.Kujag
19.Mayurbhanj
20.Narasinghpur
21.Nayagarh
22.Nilgiri
23.Pallahara
24.Patna
25.Rairakhol
26.Ranpur
27.Sambalpur
28.Sonepur
29.Talcher
30. Tigiria
CHOTANAGPUR
GANGPUR
BONAI
BAMRA
KEONJHAR
DHENKANAL
BAUD
KHURDA
POINT PALMYRAS
CHHATTISGARH
NORTHERN SARKARS
BAY OF BENGAL
REFERNCES:



ଓଡ଼ିଆ ଭାଷାଭାଷୀ ଅଞ୍ଚଳ
BIHAR
CHOTA NAGPUR
CENTRAL PROVINCES
ORISSA
MADRAS
BENGAL
BAY OF BENGAL
JASHPUR
UDAIPUR
SAMBALPUR
MAYURBHANJ
KEONJHAR
BALASORE
ANGUL
CUTTACK
BAUD
KANDHMALS
PATNA
KALAHANDI
GUMSUR
GANJAM
BASTAR
VIZAGAPATAM AGENCY
FALSE PT.
NATURAL ORISSA
OR
THE ORIYA-SPEAKING COUNTRY
EXTENDING OVER DIFFERENT PROVINCES.
BOUNDARY OF THE ORIYA COUNTRY.
PROVINCIAL DEMARCATION.




ସୌଜନ୍ୟ: ସତ୍ୟନାରାୟଣ କଲେକ୍ସନ, ଓଡ଼ିଶା ରାଜ୍ୟ ଅଭିଲେଖାଗାର




ORISSA IN 1936 ସୌଜନ୍ୟ:-ଇଣ୍ଡିଆନ୍ ନେସ୍‌ନାଲ କଂଗ୍ରେସ ଆଣ୍ଡ ଓଡ଼ିଶା(୧୮୮୫-୧୯୩୬)
ଲେଖକ:ପୁରୁଷୋତ୍ତମ କର

# ମୌଳିକ ଉପାଦାନ

ସମ୍ବଲପୁର ଜିଲ୍ଲା ନଥି
ଗଂଜାମ ଜିଲ୍ଲା ନଥି
ପ୍ରଶାସନିକ ନଥି
ବେସରକାରୀ ନଥି

# SUMMARY OF DOCUMENTS
# SAMBALPUR DISTRICT RECORDS

| | NAME & NUMBER | DATE | MAIN SUBJECT OR SUBJECTS | PAGE NO |
|---|---|---|---|---|
| 1. | Colonel H.Hughes Hallett to the Secretary to the Chief Commissioner, C. P. | 31.3.1894 | Language agitation in Sambalpur District | PP-1-2 |
| 2. | Colonel Bryce Thomas to the Secretary to the Chief Commissioner,C. P. | 21.4.1894 | Language agitation in Sambalpur District | PP-2-3 |
| 3. | To the Commissioner, Chattisgarh Division. | 18.5.1894 | Language agitation in Sambalpur District | PP.3-4 |
| 4. | To the I.G. of Police .C. P. Nagpur | 18.5.1894 | Language agitation in Sambalpur District | P.4 |
| 5. | Procedings of a meeting at the Missionary book room. | 13.7.1894 | Language agitation in Sambalpur District | PP.4-5 |
| 6. | Petition from Dharanidhar Mishra & others | 24.7.1894 | Language agitation in Sambalpur District | PP5-8 |
| 7. | To the Chief Commissioner | 6.8.1894 | Language agitation in Sambalpur District | P 8 |
| 8. | Memorandum against the introduction of Hindi as the court language in Sambalpur District. | 7.8.1894 | Language agitation in Sambalpur District | PP8-9 |
| 9. | R.A.B. Chapman to the Secretary to the Chief Commissioner,C.P. | 4.9.1894 | Language agitation in Sambalpur District | P 9 |
| 10. | ସମ୍ବଲପୁର ଅଧିବାସୀ ଚନ୍ଦ୍ରଶେଖର ଗୁରୁ ଓ ଅନ୍ୟମାନଙ୍କର ଆବେଦନ | ୧୬.୨.୧୮୯୬ | ସମ୍ବଲପୁର ଜିଲ୍ଲାରେ ଭାଷା ଆନ୍ଦୋଳନ | ପୃ ୯-୧୦ |
| 11. | ପାପାଙ୍ଗା ଅଧିବାସୀ ଯୁଧିଷ୍ଠିର ହୋତା ଓ ଅନ୍ୟମାନଙ୍କର ଆବେଦନ | ୧୬.୨.୧୮୯୬ | ସମ୍ବଲପୁର ଜିଲ୍ଲାରେ ଭାଷା ଆନ୍ଦୋଳନ | ପୃ ୧୦-୧୧ |
| 12. | Residents of the Sambalpur District to the Chief Commissioner, C.P. | 16.2.1896 | Language agitation in Sambalpur District | PP11-12 |
| 13. | ସମ୍ବଲପୁର ଅଧିବାସୀ ପଦ୍ମନାଭ ବାବୁ ଓ ଅନ୍ୟମାନଙ୍କର ଆବେଦନ | ୧୬.୨.୧୮୯୬ | ସମ୍ବଲପୁର ଜିଲ୍ଲାରେ ଭାଷା ଆନ୍ଦୋଳନ | ପୃ ୧୨ |
| 14. | ସମ୍ବଲପୁର ଅଧିବାସୀ ଦାମୋଦର ଗୌନ୍ତିଆ ଓ ଅନ୍ୟମାନଙ୍କର ଆବେଦନ | ୧୬.୨.୧୮୯୬ | ସମ୍ବଲପୁର ଜିଲ୍ଲାରେ ଭାଷା ଆନ୍ଦୋଳନ | ପୃ ୧୩ . |

## SUMMARY OF DOCUMENTS

| NAME & NUMBER | DATE | MAIN SUBJECT OR SUBJECTS | PAGE |
|---|---|---|---|
| 15. ସମ୍ବଲପୁର ଅଧିବାସୀ ନାରାୟଣ ଗୌନ୍ତିୟା ଓ ଅନ୍ୟମାନଙ୍କର ଆବେଦନ | ୧୬.୨.୧୮୯୬ | ସମ୍ବଲପୁର ଜିଲ୍ଲାରେ ଭାଷା ଆନ୍ଦୋଳନ | ପୃ ୧୩-୧୪ |
| 16. ବରପାଲି ଅଧିବାସୀ ଶ୍ରୀ ଗଙ୍ଗାଧର ମେହେରଙ୍କ ଆବେଦନ | ୧୬.୨.୧୮୯୬ | ସମ୍ବଲପୁର ଜିଲ୍ଲାରେ ଭାଷା ଆନ୍ଦୋଳନ | ପୃ ୧୪-୧୫ |
| 17. Petition from Sadanand Gountia & others | 17-2-1896 | Language agitation in Sambalpur District | P15 |
| 18. ସମ୍ବଲପୁରର ଜିଲ୍ଲା ଅଧିବାସୀ ଦାମୋଦର ଦାସ ଏବଂ ଅନ୍ୟମାନଙ୍କର ଆବେଦନ | ୧୭.୨.୧୮୯୬ | ସମ୍ବଲପୁର ଜିଲ୍ଲାରେ ଭାଷା ଆନ୍ଦୋଳନ | ପୃ ୧୫-୧୬ |
| 19. ସମ୍ବଲପୁର ଜିଲ୍ଲାର ରାମଚନ୍ଦ୍ର ପାଣ୍ଡେ ଓ ଅନ୍ୟମାନଙ୍କର ଆବେଦନ | ୧୭.୨.୧୮୯୬ | ସମ୍ବଲପୁର ଜିଲ୍ଲାରେ ଭାଷା ଆନ୍ଦୋଳନ | ପୃ ୧୬-୧୭ |
| 20. ସମ୍ବଲପୁର ଜିଲ୍ଲାର ଅଧିବାସୀ ଟିମାକୁଅଁର ଓ ଅନ୍ୟମାନଙ୍କର ଆବେଦନ | ୧୭.୨.୧୮୯୬ | ସମ୍ବଲପୁର ଜିଲ୍ଲାରେ ଭାଷା ଆନ୍ଦୋଳନ | ପୃ ୧୭ |
| 21. ସମ୍ବଲପୁର ଜିଲ୍ଲାର ଲପଘଂା ଅଧିବାସୀ ସଦାନନ୍ଦ ଗୌନ୍ତିଆ ଓ ଅନ୍ୟମାନଙ୍କର ଆବେଦନ . | ୧୭.୨.୧୮୯୬ | ସମ୍ବଲପୁର ଜିଲ୍ଲାରେ ଭାଷା ଆନ୍ଦୋଳନ | ପୃ ୧୭-୧୮ |
| 22. Petitions to the Chief Commissioner,C.P. | 18.2.1896 | Language agitation in Sambalpur District | PP18-19 |
| 23. Gangadhar Meher *to* the Chief Commissioner,C.P. . | 18.2.1896 | Language agitation in Sambalpur District | PP19-20 |
| 24. ସମ୍ବଲପୁର ଅଧିବାସୀ କୃଷ୍ଣ ପଣ୍ଡା ଓ ଅନ୍ୟମାନଙ୍କର ଆବେଦନ | ୧୮.୨.୧୮୯୬ | ସମ୍ବଲପୁର ଜିଲ୍ଲାରେ ଭାଷା . ଆନ୍ଦୋଳନ | ପୃ ୨୦ |
| 25. Krishna Panda & others *to* C.J. Lyall,Chief Commr.,C.P. | 18.2.1896 | Language agitation in Sambalpur District | PP21-22 |
| 26. Speech of the Chief Commissioner delivered at Sambalpur. | 19.2.1896 | Language agitation in Sambalpur District | PP22-24 |
| 27. To the Chief Commissioner, Central Provinces. | 3.3.1896 | Language agitation in Sambalpur District | P-24 |
| 28. To the Commissioner, Chattisgarh Division,Nagpur. | 10.3.1896 | Language agitation in Sambalpur District | P-24 |
| 29. From the Commissioner, Chattisgarh Division | 2.4.1896 | Language agitation in Sambalpur District | P-25 |
| 30. C.E.B. Critchley,Asst. Secy. to the Chief Commr., C.P. to the Commr., Chattisgarh Division | 18.5.1896 | Language agitation in Sambalpur District | P-25 |
| 31. Colonel J.A. Temple, to the Secretary to the Chief Commissioner,C.P. | 26.6.1896 | Language agitation in Sambalpur District | P-26 |

## SUMMARY OF DOCUMENTS

| | NAME & NUMBER | DATE | MAIN SUBJECT OR SUBJECTS | PAGE |
|---|---|---|---|---|
| 32. | C.E.B,Critchley to the Commr., Chhattisgarh,Dvn.,Nagpur. | 29.6.1896 | Language agitation in Sambalpur District | PP26-27 |
| 33. | Deputy Commr,Sambalpur *to* the Commr.,Chhattisgarh Dvn. | 3.7.1896 | Language agitation in Sambalpur District | P-27 |
| 34. | Colonel J.A.Temple to the Chief Secy. to the Chief Commr.,C.P. | 11.7.1896 | Language agitation in Sambalpur District | PP27-28 |
| 35. | Colonel J.A. Temple, to the Chief Commissioner.C.P. | 30.7.1896 | Language agitation in Sambalpur District | P-28 |
| 36. | C.E.B. Critchley to the Commr., Chhattisgarh Dvn. Nagpur. | 30.7. 1896 | Language agitation in Sambalpur District | P.29 |

## GANJAM DISTRICT RECORDS

| | | | | |
|---|---|---|---|---|
| 37. | From Registrar A.A.Gordon | 13.2.1872 | Proceeding of the Senate of the University of Madras on Oriya language problem in South Orissa | P.30 |
| 38. | E.B. Powell, Director of Public Instruction to Mr. Kershaw and the Dy. Insp.of school,Ganjam. | 5.3.1872 | Oriya language problem in South Orissa | PP.30-31 |
| 39. | From W.R. Kershaw, Acting Inspector of Schools to the Director of Public Instruction. | 27.3.1872 | Oriya language problem in South Orissa | PP.31-32 |
| 40. | From R.Macdonald, Acting Director of Public Instruction to the Chief Secretary *to* Government,Madras | 7.6.1872 | Oriya language problem in South Orissa | PP.33-38 |
| 41. | From Proceedings of the Government of India in the Home Department, (Public), Fort William | 15.1.1873 | Oriya language problem in South Orissa | PP.39-41 |
| 42. | From the Acting Secretary to Government *to* Education Department to the Commissioner of Orissa . | 13.3.1873 | Oriya language problem in South Orissa | PP.41-42 |
| 43. | Proposal of Colonel Macdonald, Acting Director of Public Instruction | 14.3.1873 | Oriya language problem in South Orissa | PP.42-43 |

## କଟକ ସ୍କୁଲର ଶିକ୍ଷା ପ୍ରଣାଳୀ -

ପ୍ରବେଶିକା ପରୀକ୍ଷା ସକାଶେ ନିର୍ଦ୍ଧାରିତ କିୟା ଏକଖଣ୍ଡ ସାହିତ୍ୟ ପୁସ୍ତକ ଦୁଇବରଷ ପଢ଼ିବାର କଟକ ସ୍କୁଲରେ ପ୍ରଚଳିତ ଥିବା ରୀତି ଯେ ଅତି ହାନିଜନକ ସେ ବିଷୟ ଆମ୍ଭେ ଏଥିପୂର୍ବେ ଲେଖିଅଛୁଁ ଓ ଉକ୍ତ ଅନିଷ୍ଟ ଦୂରୀକରଣ ସକାଶେ ଦ୍ୱିତୀୟ ଶ୍ରେଣୀରେ ଅନ୍ୟ କୌଣସି ପୁସ୍ତକ ପାଠ ସକାଶେ ଅନୁରୋଧ କରୁଅଛୁଁ। ମାତ୍ର ଦ୍ୱିତୀୟ ଶ୍ରେଣୀରେ ପ୍ରବେଶିକା ପରୀକ୍ଷାର ସାହିତ୍ୟ ପୁସ୍ତକ ପାଠ କରାଇବାର ଯଦି ଅତ୍ୟନ୍ତ ଅଭିଳାସ ଥାଏ। ସ୍କୁଲ କର୍ମଚାରୀମାନଙ୍କର ଏପରି କୌଣସି ନିୟମ କରା ଉଚିତ ଯହିଁରେ ବାଳକମାନଙ୍କ ଏକଖଣ୍ଡି ପୁସ୍ତକ ବାରମ୍ବାର ଦୁଇବରଷ ପଢ଼ିବାକୁ ନହୁଏ। ଚଳିତ ବର୍ଷ ଦ୍ୱିତୀୟ ଶ୍ରେଣୀରେ ସନ ୧୮୬୭ ସାଲର ଓ ପ୍ରଥମ ଶ୍ରେଣୀରେ ସନ ୧୮୬୬ ସାଲର ପ୍ରବେଶିକା ପରୀକ୍ଷା ନିମନ୍ତେ ନିର୍ଦ୍ଧାରିତ କିୟା ସାହିତ୍ୟ ପୁସ୍ତକ ପାଠ କରୁଥିଲେ ଓ ଚଳିତ ରୀତି ଅନୁସାରେ ଆଗତ ବର୍ଷରେ ଦ୍ୱିତୀୟ ଶ୍ରେଣୀରେ ସନ ୧୮୬୬ ଓ ପ୍ରଥମ ଶ୍ରେଣୀରେ ୧୮୬୭ ସାଲ ନିମନ୍ତେ ନିର୍ଦ୍ଧାରିତ ପୁସ୍ତକ ପାଠ କରିବେ। ଅତଏବ ବର୍ତ୍ତମାନ ଯେଉଁ ବାଳକମାନେ ଦ୍ୱିତୀୟରୁ ପ୍ରଥମ ଶ୍ରେଣୀକୁ ଉଠିବେ ସେମାନେ ସନ ୧୮୬୭ ସାଲର ଅର୍ଥାତ ଏବର୍ଷ ଆରମ୍ଭରୁ ଯେଉଁ ପୁସ୍ତକ ପଢୁଅଛନ୍ତି ସମୁଦାୟ ଆଗତ ବର୍ଷ ସୁଦ୍ଧା ସେହି ପୁସ୍ତକ ପାଠ କରିବେ। ମାତ୍ର ଏହା ନହୋଇ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ଉଭୟରେ ଯଦି ଏକ ପୁସ୍ତକ ପାଠ କରୁଥାଆନ୍ତେ ତେବେ ଏପରି ହୁଅନ୍ତା ନାହିଁ। ଦ୍ୱିତୀୟ ଶ୍ରେଣୀରେ ଏକବର୍ଷ ପୂର୍ବରୁ ପରବର୍ଷ ପରୀକ୍ଷା ନିର୍ଦ୍ଧାରିତ କିୟା ପୁସ୍ତକ ପଢୁଥିବାରୁ ଏ ଅନିଷ୍ଟ ଘଟୁଅଛି।

କଟକ ସ୍କୁଲରେ ଆଉ ଏକ ପ୍ରଥା ଅଛି ଯେ ଯେଉଁବର୍ଷ ଯେ ଶ୍ରେଣୀରେ ଯେ ପୁସ୍ତକର ଯେତେ ପୃଷ୍ଠା ପର୍ଯ୍ୟନ୍ତ ପାଠ କରାଯାଏ ତାହା ସେବର୍ଷ ଆରମ୍ଭରେ ନିର୍ଦ୍ଧାରିତ କରାହୁଏ। ତତ୍‌ପରେ ଶିକ୍ଷକମାନେ ବାଳକମାନଙ୍କ ସହିତ ବଳଦ ପରି ତାଡ଼ିତ ହୋଇ ବର୍ଷ ଶେଷ ପର୍ଯ୍ୟନ୍ତ ଆପଣା ନିର୍ଦ୍ଦିଷ୍ଟ ସ୍ଥାନରେ ପହୁଁଚିଯାନ୍ତି। ଯେ ଶିକ୍ଷକ ନିର୍ଦ୍ଦିଷ୍ଟିତ ପାଠ ବାଳକମାନଙ୍କୁ ପାଠ ନ କରାଇଥାଏ ସେ ପ୍ରଧାନ ଶିକ୍ଷକ ଓ ସେକ୍ରେଟରୀଙ୍କ କୋପର ଭାଜନ ହୁଏ। ଉକ୍ତ ସ୍କୁଲରେ ଏ ନିୟମ ଥିବାରୁ ଉଲ୍ଲେଖିତ ପ୍ରଧାନ କର୍ମଚାରୀମାନଙ୍କ କୋପାନଳରେ ଭସ୍ମିଭୂତ ହେବା ଭୟରେ ଶିକ୍ଷକମାନେ କିପରି ନିର୍ଦ୍ଦିଷ୍ଟିତ ପାଠ ଶେଷ କରିବେ କେବଳ ଏହି ଚିନ୍ତାରେ ଥାନ୍ତି। ଯେ ସମୟରେ ଏକ ପୃଷ୍ଠା ଶିକ୍ଷା ଦେବାର ଦୁରୁହ ସେହି ସମୟ ମଧ୍ୟରେ ଚାରି ପୃଷ୍ଠାରେ ଲମ୍ଫ ଦେଇଉଠନ୍ତି। ସୁତରାଂ ଯଥୋଚିତ ସମୟାଭାବେ ଓ ଶିକ୍ଷକମାନଙ୍କ ମନ ବିଚଳିତ ଥିବାରୁ ଶିକ୍ଷା କାର୍ଯ୍ୟ ଉତ୍ତମ ରୂପେ ନିଷ୍ପନ୍ନ ହୋଇ ପାରେନାହିଁ। ଅଧସ୍ଥ ଶିକ୍ଷକମାନେ ବୃଥା କାଳକ୍ଷେପଣ କରିବାକୁ ପାରିବେ ନାହିଁ। ଯଦି ଏଥିର ଏହି ଉଦ୍ଦେଶ୍ୟ ହୁଏ ତେବେ ଏପରି ହାନିଜନକ ଉପାୟ ଅବଲମ୍ବନ ନ କରିଲେ ମଧ ଇଷ୍ଟ ସାଧନ ହୁଅନ୍ତା। ତଦ୍ୱାବଧାରଣ କରା ପ୍ରଧାନ ଶିକ୍ଷକଙ୍କ କର୍ମ ଓ ଆମ୍ଭେମାନେ ଯେପରି ଶୁଣିଅଛୁଁ ବର୍ତ୍ତମାନର ପ୍ରଧାନ ଶିକ୍ଷକ ଆପଣାର ଏ କର୍ମ ଉତ୍ତମରୂପେ ନିର୍ବାହ କରୁଅଛନ୍ତି ଓ ଏଥିଯୋଗୁଁ କୌଣସି ଶିକ୍ଷକର ବୃଥା କାଳ ନଷ୍ଟ କରିବାର ସାଧ୍ୟ ନାହିଁ। କେହି ଯଦି ପଢ଼ାଇବାର ଧାରା ନଜାଣିବାରୁ ବାଳକମାନଙ୍କର ପାଠର ପରିମାଣ ଊଣାହୁଏ ତେବେ ହେଡ଼ମାଷ୍ଟର ତାହାଙ୍କ ନିକଟରେ ଦିନେ ଦୁଇଦିନ ବାଳକମାନଙ୍କୁ ପଢ଼ାଇ ଶିକ୍ଷା ଦେବାର ଧାରା ତାହାଙ୍କୁ ଶିଖାଇ ପାରନ୍ତି। ସୁଶିକ୍ଷିତ ଏକ ପୃଷ୍ଠା ଧାବିତ ଶିକ୍ଷକ ଶତ ପୃଷ୍ଠାରେ ସମାନ ନୁହେ। ଅତଏବ ଆମ୍ଭେମାନେ ଭରଷା କରୁଁ ଯେ ଉପର ଲେଖିତ ଦୋଷ ଯେପରି ଆସନ୍ତା ବର୍ଷ କଟକ ସ୍କୁଲ ଶିକ୍ଷା ପ୍ରଣାଳୀରେ ଦେଖା ନ ଯାଏ। ଯଦିକି ପାଠ ନିର୍ଦ୍ଧାରିତ କରିବାର ନିତାନ୍ତ ଆବଶ୍ୟକ ହୁଏ ତେବେ ଯେପରି ଶିକ୍ଷକମାନେ ଗୋରୁପରି ତାଡ଼ିତ ନୁହନ୍ତି ଓ ନିର୍ଦ୍ଦିଷ୍ଟ ପାଠ ଶେଷ ନ କରିଲେ କାହାରି କୋପର ପାତ୍ର ହେବେ ତାଙ୍କର ଏପରି ଆଶଙ୍କା ନଥାଏ ସେଥିର ଉପାୟ କିୟାଯିବ।

ଯଦି କି ଆମ୍ଭ ଉପରେ କେବଳ କଟକ ସ୍କୁଲର ନାମ ଉଲ୍ଲେଖ କରିଅଛୁଁ। ମାତ୍ର ଭରଷା କରୁଁ ଯେ ଅନ୍ୟ ଅନ୍ୟ ସ୍କୁଲର କର୍ମଚାରୀମାନେ ମଧ ଏ ବିଷୟ ବିବେଚନା କରିବେ।

*ଭା/୧ଗ, ସଂ୨୦ଖ୍ୟା,୨୨/୧୨/୧୮୬୬*

# ୧୮୬୭

## କଟକ ସ୍କୁଲ ମେୟର ।

ଶ୍ରୀଯୁକ୍ତ ଡବଲିଉ.ସି. ଲେସି ସାହେବ କଟକ ସ୍କୁଲର ଜଣେ ମେୟର ନିଯୁକ୍ତ ହୋଇଅଛନ୍ତି ।

*ଭା୨ଗ, ସଂ୧ଖ୍ୟା ,୫।୧।୧୮୬୭*

## ପ୍ରବେଶିକା ପରୀକ୍ଷା ଫଳ ।

ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାର ଫଳାଫଳ ପ୍ରକାଶ ହୋଇଅଛି । କଟକରେ ଜ୬ଣ,ବାଲେଶ୍ୱରରେ ଦୁଇଜଣ ଓ ପୁରିରେ ଜ୧ଣ ପରୀକ୍ଷାର୍ଥୀ ଥିଲେ । ଏଥି ମଧ୍ୟର କେବଳ କଟକର ୩ଜଣ ପରୀକ୍ଷୋତ୍ତୀର୍ଣ୍ଣ ହୋଇଅଛନ୍ତି । ଏ ତିନିଜଣଙ୍କ ମଧ୍ୟର ସୁଦ୍ଧା କେହି ପ୍ରଥମ ବିଭାଗରେ ନାହାନ୍ତି । ପରୀକ୍ଷାର ଫଳ ଅତିଶୟ ଅସନ୍ତୋଷ ଜନକ ଓ ଶିକ୍ଷକମାନଙ୍କର ପ୍ରଶଂସାର ବିଷୟ ନୁହେ ।

| | | |
|---|---|---|
| କଟକର ୩ଜଣଙ୍କ ମଧ୍ୟର - | ଦୁର୍ଗାପ୍ରସାଦ ସିଂହ | - ଦ୍ୱିତୀୟ ବିଭାଗ |
| | ଅନ୍ତର୍ଯ୍ୟାମୀ ପଟ୍ଟନାୟକ | - ତୃତୀୟ ବିଭାଗ |
| | ବଳଭଦ୍ର ରାୟ | – ତୃତୀୟ ବିଭାଗ |

*ଭା୨ଗ, ସଂ୨ଖ୍ୟା,୧୨।୧।୧୮୬୭*

## ସାପ୍ତାହିକ ସଂବାଦ ।

## [ଓଡ଼ିଆ ପୁସ୍ତକ ପ୍ରସ୍ତୁତି ଓ ମୁଦ୍ରଣ]

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ଜଣାଉଅଛୁଁ ଯେ ଓଡ଼ିଶା ପ୍ରଦେଶର ସ୍କୁଲ ସମୂହ ନିମିତ୍ତ ଓଡ଼ିଆ ପୁସ୍ତକ ପ୍ରସ୍ତୁତ ଓ ମୁଦ୍ରିତ କରଣ ଏକ ସମାଜ ହୋଇଅଛି । କଲିକତା ସ୍କୁଲ ବୁକ୍ ସୋସାଇଟିର ଆଦର୍ଶରେ ଏ ସଭା ସ୍ଥାପନ ହୋଇଅଛି ଓ ଏଥିର ନାମ କଟକ ସ୍କୁଲବୁକ କମ୍ପାନି ହୋଇଅଛି । ଗତ ଗୁରବାର ସନ୍ଧ୍ୟା ସମୟରେ ଶ୍ରୀଯୁକ୍ତ ବାବୁ କାଳିପଦ ବନ୍ଦୋପାଧ୍ୟାୟଙ୍କ ବଇଠକ ଖାନାରେ ଉକ୍ତ ବାବୁଙ୍କ ନିମନ୍ତ୍ରଣାନୁସାରେ ଏ ନଗରର କେତେକ ସଂଭ୍ରାନ୍ତ ବ୍ୟକ୍ତିମାନେ ଏଥିର ଅନୁଷ୍ଠାନ କରିଅଛନ୍ତି । ଏ କମ୍ପାନିର ମୂଳଧନ ଆପାତତଃ ଟ୧୩୦୦ଙ୍କା ସ୍ଥିର ହୋଇ ପ୍ରତିଅଂଶ ଟ୧୦ଙ୍କା ଲେଖାଏଁ ଅଂ୧୩୦ଶରେ ବିଭକ୍ତ ହୋଇଅଛି । ଏଥିମଧ୍ୟର ପ୍ରାୟ ଅଂ୭୦ଶ ତତ୍କ୍ଷଣାତ୍ ଉପସ୍ଥିତ ସଭ୍ୟମାନେ ଗ୍ରହଣ କଲେ ଅବଶିଷ୍ଟ ଅଂଶମାନଙ୍କର ଗ୍ରାହକ ନିମନ୍ତ୍ରଣ ହୋଇଅଛି । ଆମ୍ଭେମାନେ ଭରସା କରୁଁ ଯେ ଉତ୍କଳବାସି ଦେଶହିତୈଷୀ ମହାଜନମାନେ ଏ ବିଷୟରେ ଯଥୋଚିତ ଅନୁରାଗ ପ୍ରକାଶପୂର୍ବକ ଏ କମ୍ପାନିର ଅଭିପ୍ରାୟ ସିଦ୍ଧି କରିବେ ଓ ତଦ୍ଦ୍ୱାରା ଉତ୍କଳଭାଷାର ଉନ୍ନତି ପକ୍ଷରେ ଯତ୍ନବାନ୍ ହେବେ । କଟକ ପ୍ରିଣ୍ଟିଂ କମ୍ପାନିକୁ ଉଚିତ ଯେ ଏ ଅନୁଷ୍ଠାନରେ ସେମାନେ ସର୍ବାପେକ୍ଷା ଅଧିକ ଯତ୍ନବାନ ହେବେ କାରଣ ଏଥିରେ ସେମାନଙ୍କ କଳ୍ପନା ସିଦ୍ଧି ଓ ଲାଭ ହେବାର ସମ୍ପୂର୍ଣ୍ଣ ଭରସା ଅଛି ।

ଶିକ୍ଷା ସଂକ୍ରାନ୍ତ ୧୮୬୫ ଓ ୧୮୬୬ ସାଲର ବାର୍ଷିକ ରିପୋର୍ଟରେ ତଳଲିଖିତ ମହାଶୟମାନେ ଓଡ଼ିଶାର ବିଦ୍ୟାଳୟମାନଙ୍କ ଉନ୍ନତି ବିଷୟରେ ବିଶେଷ ମନୋଯୋଗ କରିଥିବାର ଦକ୍ଷିଣ ପଶ୍ଚିମ ବିଭାଗର ଇନସ୍ପେକ୍ଟର ସାହେବ ଲେଖିଅଛନ୍ତି ।

ବାବୁ ଜଗମୋହନ ରାୟ –ଡିପୋଟି କିଲଟର ଓ ମେଜେଷ୍ଟର – ଭଦରଖ
ବାବୁ ହରଚନ୍ଦ୍ର ଘୋଷ - ଡିପୋଟି କିଲଟର ଓ ମେଜେଷ୍ଟର- କଟକ
ବାବୁ ଦୁର୍ଯ୍ୟୋଧନ ଦାସ - ଡିପୋଟି କିଲଟର ଓ ମେଜେଷ୍ଟର-କେନ୍ଦରାପଡ଼ା
ବାବୁ ପ୍ରସନ୍ନ କୁମାର ଗାଙ୍ଗୁଲି –ମୁନସଫ - ଏଜନ
ବାବୁ ଗୋଲୋକ ଚନ୍ଦ୍ର ବୋଷ ଜମିଦାର – କୁଆଁପାଳ
ବାବୁ ଈଶାନ ଚନ୍ଦ୍ର ବନ୍ଦୋପାଧ୍ୟାୟ- ଉକୀଲ-ଜଜ ଅଦାଲତ
ବାବୁ ଶିବ ପ୍ରସାଦ ସିଂହ- ମୁନସଫ- ପୁରୀ

ଦେଖାଯାଏ ଯେ ବିଦ୍ୟାଶିକ୍ଷା ବିଷୟରେ ଅଧିକାଂଶ କେବଳ ସରକାରୀ କାର୍ଯ୍ୟକାରକ ମନୋଯୋଗୀ ହୋଇଅଛନ୍ତି । ସରକାରୀ ଚାକରମାନଙ୍କର ଆଜିକାଲି ଏତେ କର୍ମ କରିବାକୁ ହୁଏ ଯେ ସେମାନଙ୍କର କଚେରୀର କର୍ମ ଛଡ଼ା ଅନ୍ୟ କର୍ମରେ ମନୋନିବେଶ କରିବାକୁ ବିଶେଷ ଅବସର ନଥାଏ । ଅତଏବ ଜମିଦାର ମହାଜନ ଓ ଅନ୍ୟାନ୍ୟ ଧନୀ ସଂଭ୍ରାନ୍ତ ସ୍ୱାଧୀନ ବ୍ୟକ୍ତିମାନେ ଯତ୍ନ ନକଲେ ପ୍ରଦେଶର ବିଦ୍ୟା ଶିକ୍ଷାର ଉନ୍ନତି ହୋଇନପାରେ ।

*ଭା୨ଗ, ସଂ୪ଖ୍ୟା,୨୬।୧।୧୮୬୭*

## ସାପ୍ତାହିକ ସଂବାଦ ।

## [ହାଇସ୍କୁଲ ସଂସ୍ଥାପନ]

ଓଡ଼ିଶାରେ ଗୋଟିଏ କଲେଜ କିମ୍ବା ହାଇସ୍କୁଲ ସଂସ୍ଥାପନ ବିଷୟରେ ବାଲେଶ୍ୱରରୁ ଖଣ୍ଡିଏ ପତ୍ର ଆମ୍ଭେମାନେ ପାଇଅଛୁଁ । ଯେହେତୁ ଉକ୍ତ ବିଷୟରେ ଗବର୍ଣ୍ଣମେଣ୍ଟ ବିଦ୍ୟାଳୟସମୂହର ଡାଇରେକ୍‌ଟର ବଙ୍ଗଳା ଗବର୍ଣ୍ଣମେଣ୍ଟକୁ ପ୍ରସ୍ତାବ ପଠାଇଅଛନ୍ତି ଓ ତାହାର ବିଚାର ହେଉଅଛି ଏଥିରେ ଭରସା ହୁଅଇ ଯେ ଶୀଘ୍ର ଏ ଦେଶରେ ଗୋଟିଏ କଲେଜ ଅଥବା ହାଇସ୍କୁଲ ସ୍ଥାପନ ହେବ ।

*ଭା୨ଗ,ସଂ୯ଖ୍ୟା, ୨।୩।୧୮୬୭*

## ଉତ୍କଳ ଭାଷୋଦ୍ଦିପନୀ ସଭା ।

ଗତ ରବିବାର ଉତ୍କଳ ଦେଶ ପକ୍ଷରେ ଏକ ଉତ୍କୃଷ୍ଟ ଦିନ ଥିଲା । ଏ ଦିବସ ଅତ୍ରସ୍ଥ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଏକତ୍ର ହୋଇ ଏକ ମହତ୍ କର୍ମର ଅନୁଷ୍ଠାନ କରିଅଛନ୍ତି । କିରପେ ଉତ୍କଳଭାଷା ଉନ୍ନତ ହେବ ଓ ସର୍ବସାଧାରଣର ଉତ୍କର୍ଷ ସାଧନରେ ଯତ୍ନବାନ୍ ହେବେ ଏବଂ ସରକାରୀ ମହକୁମାମାନଙ୍କରେ ବର୍ତ୍ତମାନ ଚଳିତ ଥିବା ମିଶ୍ରିତ ଭାଷା ପରିବର୍ତ୍ତରେ ବିଶୁଦ୍ଧ ଉତ୍କଳଭାଷା ଚଳନ ହେବ ଓ କେବଳ ଉପଯୁକ୍ତ ବ୍ୟକ୍ତିମାନେ ଅମଲାଗିରି କର୍ମ କରିପାରିବେ; ଏହି ସମସ୍ତ ଏ ସଭାର ଉଦ୍ଦେଶ୍ୟ । ସଭାର ସଂପୂର୍ଣ୍ଣ ବିବରଣ ଅତିରିକ୍ତ ପତ୍ରିକାରେ ପ୍ରକାଶ ହେଲା । ପାଠକମାନେ ସେଥିର ସମସ୍ତ ଅବଗତ ହେବେ ।

ଏ ସଭା ଯେଉଁ ଭାର ଗ୍ରହଣ କରିଅଛନ୍ତି ତାହା ସାମାନ୍ୟ ନୁହଇ । ଯେଉଁମାନେ ଦେଶର ବର୍ତ୍ତମାନ ଅବସ୍ଥାର ସମ୍ୟକ୍‌ରପେ ଅବଗତ ଅଛନ୍ତି ସେମାନେ ବୁଝି ପାରିବେ ଯେ ଏ ଭାର ନିର୍ବାହ ନିମିତ୍ତ କେତେ କୌଶଳ କେତେ ଅନୁସନ୍ଧାନ ଓ କେତେ ଯତ୍ନ ଆବଶ୍ୟକ । ଏ ଦେଶରେ ବର୍ତ୍ତମାନ ଧନବାନ୍ ବିଦ୍ୱାନ୍ ଅବା ଦେଶାନୁରାଗୀ ସଂଖ୍ୟା ଅତି ଅଳ୍ପ । ଏଣୁ କରି ଏ କର୍ମ ସମ୍ପନ୍ନ କରିବାରେ ସମଧିକ କ୍ଲେଶ ହେବ । ମାତ୍ର ସୁଖର ବିଷୟ ଏହି ଯେ ଏ ସଭାର ସଭ୍ୟମାନେ ଜଣେ ଉପଯୁକ୍ତ ବ୍ୟକ୍ତିଙ୍କୁ ସଭାପତି ପଦରେ ବରଣ କରିଅଛନ୍ତି ଓ ଏଥିର ସମ୍ପୂର୍ଣ୍ଣ ଭରସା ହୁଅଇ ଯେ ସଭାର କାର୍ଯ୍ୟମାନ ସୁନ୍ଦର ରପେ ଚଳିବ ।

ସଭାପତି ଶ୍ରୀଯୁକ୍ତ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ବଙ୍ଗଦେଶର ଜଣେ ହିତୈଷୀ ବ୍ୟକ୍ତି । ବଙ୍ଗଭାଷା ଏହାଙ୍କ ଦ୍ୱାରା ସାମାନ୍ୟ ଉନ୍ନତି କରିନାହିଁ ଓ ଏ ବିଷୟ ଆମ୍ଭେମାନେ ବାରମ୍ବାର ହିନ୍ଦୁ ପେଟ୍ରିୟଟ ଇତ୍ୟାଦି ସଂବାଦପତ୍ରରେ

ପାଠ କରିଅଛୁଁ । ବଙ୍ଗଭାଷାରେ ଯେଉଁ ପୁସ୍ତକମାନ ଏହାଙ୍କ ଦ୍ୱାରା ରଚନା ହୋଇଅଛି ସେଥିର ସୁଖ୍ୟାତି ମଧ୍ୟ ଆମ୍ଭେମାନେ ପୁନଃ ପୁନଃ ଶ୍ରବଣ କରିଅଛୁଁ । ଏ ପ୍ରକାର ଜଣେ ମନୁଷ୍ୟ ଏ ସଭାର ଆରମ୍ଭ ସମୟରେ ଯେ ଏଥିର କର୍ଣ୍ଣଧାର ସ୍ୱରପ ପ୍ରାପ୍ତ ହେଲେ ଏହା ସାମାନ୍ୟ ଭାଗ୍ୟର କଥା ନୁହଇ । ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ସଭାପତି ହେବାର କେଡ଼େ ଉପଯୁକ୍ତ ତାହା ତାହାଙ୍କ ବକ୍ତୃତା ପାଠକଲେ ଉତ୍ତମରପେ ପ୍ରକାଶ ହେବ । ଏକା ଧର୍ମ ପ୍ରଚାରର ଅଭିପ୍ରାୟରେ ସକଳ ଦେଶୀୟ ଭାଷା ଉନ୍ନତ ହୋଇଅଛି ଓ ସେହି ଉପାୟ ଅବଲମ୍ବନ କଲେ ଅସ୍ମଦ୍ଦେଶର ଭାଷା ମଧ୍ୟ ପୁନରୁଦ୍ଦୀପନ ହେବ ଏ କଥାମାନ ଯେ କେତେଦୂର ଯୁକ୍ତିସିଦ୍ଧ ତାହା କୁହାଯାଇ ନ ପାରେ । ପୁରାତନ ଭାଷା ରଚିତ ଧର୍ମ ପୁସ୍ତକମାନ ମୁଦ୍ରାଙ୍କନ କଲେ ସାଧାରଣ ପାଠକରିବେ କାରଣ ଦେଖାଯାଉଅଛି ଯେ ଗଙ୍ଗୋଦ୍ଧାରଣ ଜଣାଣ ଚଉତିଶା ଇତ୍ୟାଦି ଯେତେ ଅଧିକରପେ ଲୋକମାନେ ପାଠକରନ୍ତି ତେତେ ଆଉ କିଛି ପାଠ କରିବାର ଦେଖାଯାଏ ନାହିଁ ପ୍ରତି ଗ୍ରାମରେ ପ୍ରାୟ ଗୋଟିଏ ଭାଗବତାଦି ପୁରାଣପାଠ ହେବାର ସ୍ଥାନ ଅଛି ଓ ସେଠାରେ ଗ୍ରାମସ୍ଥ ସମସ୍ତ ବ୍ୟକ୍ତି ଅତି ଆଗ୍ରହପୂର୍ବକ ଶ୍ରବଣ କରିବାକୁ ଆସନ୍ତି । ଯେବେ ଏ ପୁସ୍ତକମାନ ବିଶୁଦ୍ଧରପେ ଉତ୍ତମ ଅକ୍ଷରରେ ମୁଦ୍ରାଙ୍କନ ଓ ଅଳ୍ପ ମୂଲ୍ୟରେ ସର୍ବସାଧାରଣର ପ୍ରାପ୍ୟ ହୁଅଇ ତାହାହେଲେ କ୍ରମଶଃ ସମସ୍ତେ ବିଦ୍ୟାଭ୍ୟାସରେ ମନୋଯୋଗୀ ହେବେ ସନ୍ଦେହ ନାହିଁ ।

ଏ ସଭା ସମ୍ବନ୍ଧୀୟ ଯେ ସମସ୍ତ କାର୍ଯ୍ୟମାନ ହେଉଅଛି ତାହା ଆମ୍ଭେମାନେ ଆନନ୍ଦ ସହିତ ସମୟ ସମୟରେ ପ୍ରକାଶ କରିବୁଁ ଓ ଆମ୍ଭେମାନେ ସାମାନ୍ୟ ବୁଦ୍ଧିରେ ଯେ ପର୍ଯ୍ୟନ୍ତ ଆସିବ ସଭାର ଉଦ୍ଦେଶ୍ୟ ସଫଳ ପକ୍ଷରେ ସାହାଯ୍ୟ କରିବୁଁ । ଆମ୍ଭେମାନେ ଏହି ଆଶା କରୁଁ ଯେମନ୍ତ ଏ ମଙ୍ଗଳ ଅନୁଷ୍ଠାନରେ ଏ ଦେଶସ୍ଥ ସମସ୍ତ ଧନୀ ଓ ଜ୍ଞାନୀମାନେ ଏକତ୍ର ହୋଇ ଆପଣା କର୍ତ୍ତବ୍ୟ ସାଧନ କରନ୍ତୁ ଓ ଉତ୍କଳ ଦେଶରେ ମଧ୍ୟ ହିତୈଷୀ ବ୍ୟକ୍ତିର ଅଭାବ ନାହିଁ ଏକଥା ଜଗତରେ ଘୋଷଣା କରନ୍ତୁ । ଯେତେ ପରିମାଣ ଭୂମିରେ ଉତ୍କଳଭାଷା ବ୍ୟବହାର ହୁଅଇ ସେ ସମୁଦାୟ ରାଜ୍ୟଖଣ୍ଡର ଲୋକମାନେ ଏ ସଭାର ଅନ୍ତର୍ଗତ ହୋଇ ଏକଚିତ୍ତରେ କର୍ମ କରିବାର ଉଚିତ । ପୁରୁଷୋତ୍ତମ, ବାଲେଶ୍ୱର,ସମ୍ବଲପୁର, ଗଞ୍ଜାମ ପ୍ରଭୃତି ଜିଲାସମୂହର ଲୋକମାନଙ୍କୁ ଏ ସଭାର ସଭ୍ୟ କରିବାର ଉଚିତ ଓ ଆମ୍ଭେମାନେ ବିଶ୍ୱାସ କରଅଛୁଁ ଯେ ଏଥିରେ କିଛିମାତ୍ର ତ୍ରୁଟି ହେବନାହିଁ ।

ପରିଶେଷରେ ଆମ୍ଭେମାନେ ଏହି ପ୍ରାର୍ଥନା କରଅଛୁଁ ଯେ ଏ ସଭାଟିର ଚିରସ୍ଥାୟିନୀ ହେଉ ଓ ଏହାର ଯତ୍ନ ଓ ପରିଶ୍ରମ ଦ୍ୱାରା ଉତ୍କଳଦେଶର ଉତ୍ତରୋତ୍ତର ଗୌରବ ବୃଦ୍ଧି ହେଉ ।

*ଭା୨ଗ,ସଂ୨୧ଖ୍ୟା, ୨୬।୫।୧୮୬୭*

## [ଉତ୍କଳଭାଷାର ପୁନରଦ୍ଦୀପନ]

### ଉତ୍କଳଭାଷାର ପୁନରଦ୍ଦୀପନ କରିବା କାରଣ ଚଳିତ ମଇମାସ ତା୧୯ରିଖରେ ସହର କଟକରେ ଯେ ସଭା ହୋଇଥିଲା ତହିଁର ବିବରଣ ।

ଉପସ୍ଥିତ–ବାବୁ ରଙ୍ଗଲାଲ ବନ୍ଦୋପାଧ୍ୟାୟ, ବାବୁ ଜଗମୋହନ ରାୟ, ବାବୁ ଚନ୍ଦ୍ରଶେଖର ବାନୁର୍ଯ୍ୟା ବେବର୍ତ୍ତା ଚନ୍ଦ୍ରଶେଖର ମହାପାତ୍ର, ବାବୁ ଜଗମୋହନ ସେନ, ବାବୁ ହରେକୃଷ୍ଣ ଦାସ, ବାବୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ର, ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ, ବାବୁ ବଳରାମ ବୋଷ, ବାବୁ ଜଗମୋହନ ଲାଲ, ବାବୁ ରାଜକୃଷ୍ଣ ବାନୁର୍ଯ୍ୟା, ବାବୁ କୈଳାସ ଚନ୍ଦ୍ର ପାଲିତ, ବାବୁ ହାରାଧନ ଘୋଷ, ବାବୁ ଗୌରୀଶଙ୍କର ରାୟ ।

ସଭା ହେବାର ବିଜ୍ଞାପନ ପାଠ ହେବାର ଶ୍ରୀଯୁକ୍ତ ବାବୁ ଜଗମୋହନ ରାୟଙ୍କ ପ୍ରସ୍ତାବ ଅନୁସାରେ ଉପସ୍ଥିତ ସଭ୍ୟଙ୍କ ସମ୍ମତିରେ ଶ୍ରୀଯୁକ୍ତ ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ଏ ସଭାର କାର୍ଯ୍ୟ ନିର୍ବାହ ନିମିତ୍ତ ସଭାପତି ପଦରେ ବରଣ ହେଲେ ।

ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ସଭାପତି ଆସନ ଗ୍ରହଣକରି କହିଲେ ଯେ ଆମ୍ଭଙ୍କୁ ଏ ସଭାର ପ୍ରଧାନ ଆସନରେ ଆହୂତ କରିବା ଶୋଭନୀୟ ହୋଇନାହିଁ ଯେହେତୁ ଆମ୍ଭେ ଏ ଦେଶୀୟ ମନୁଷ୍ୟ ନୋହୁଁ । ବିଶେଷରେ ଉତ୍କଳଭାଷାର ଉଦ୍ଦୀପନ କେବଳ ଏ ସଭାର ଉଦ୍ଦେଶ୍ୟ , ସୁତରାଂ ସେହି ଭାଷାରେ ଏହାର କାର୍ଯ୍ୟାଦି ନିର୍ବାହ ହେବା ବିଧେୟ । ଆମ୍ଭେ ବିଦେଶୀୟ ଲୋକ, ଉତ୍କଳଭାଷା କହିବାକୁ ଆମର ତାଦୃଶ ପଟୁତା ନାହିଁ, ଅତଏବ ଏରପ ସ୍ଥଳରେ ଅଯୋଗ୍ୟ ପାତ୍ରକୁ ଅନୁପଯୁକ୍ତ ସମ୍ମାନ ପ୍ରଦତ୍ତ ହେଉଅଛି । ଅଧିକନ୍ତୁ ଯଦ୍ୟପି ଆପଣମାନେ ଆମ୍ଭଙ୍କୁ ଅନୁମତି ଦିଅନ୍ତି ଆମ୍ଭେ ଆମ୍ଭର ମାତୃଭାଷାରେ କିଞ୍ଚିତ୍ ବକ୍ତୃତା କରିବାକୁ ଅନୁମତି ଦିଅନ୍ତି ତେବେ ଆମ୍ଭେ ଏ ଗୌରବାସ୍ପଦ ଆସନ ଗ୍ରହଣ କରିବାକୁ ସାହସ କରିପାରିବୁଁ । (ଉପସ୍ଥିତ ସଭ୍ୟମାନେ ବଙ୍ଗଭାଷାରେ ବକ୍ତୃତା କରିବାକୁ ଅନୁମତି ଦେଲେ । )

*ଅତିରିକ୍ତ, ୨୬ । ୫ । ୧୮୬୭*

## କଟକର ଶିଳ୍ପ କର୍ମ ।

ଫ୍ରାନ୍ସ ଦେଶର ରାଜଧାନୀ ପାରିଶ ନବରୀରେ ସଂପ୍ରତି ଯେଉଁ ସାଧାରଣ ଦ୍ରବ୍ୟାଦିର ପ୍ରଦର୍ଶନ ହୋଇଅଛି ତନ୍ମଧ୍ୟରେ ଯେତେ ଯେତେ ଦେଶର ପଦାର୍ଥମାନ ଆସିଅଛି କଟକର ରୌପ୍ୟ ଓ ସୁବର୍ଣ୍ଣ ତାରରେ ନିର୍ମାଣ ହୋଇଥିବା ଅଳଂକାରାଦିର ବିଶେଷ ପ୍ରଶଂସା ହୋଇଅଛି । ଏ ସଂବାଦ ଅତି ଆନନ୍ଦକର ଅଟଇ । ଓଡ଼ିଶା ଦେଶକୁ ଦେଶ ବୋଲି ଗଣନା କରନ୍ତି ନାହିଁ କିଂବା ଓଡ଼ିଶାବାସୀଙ୍କୁ ଅନେକଲୋକ କିଷ୍କିନ୍ଦାନିବାସୀ ବୋଲି ଜ୍ଞାନକରନ୍ତି ମାତ୍ର ଏଠା ଲୋକମାନେ ଯେ ଶିଳ୍ପ କର୍ମର ଏକପ୍ରଧାନ ଶାଖାରେ ବିଶେଷ ନିପୁଣତା ଲାଭ କରି ବିଖ୍ୟାତ ପାରିସ ନଗର ପର୍ଯ୍ୟନ୍ତ ଆପଣା ଯଶଃ ବିସ୍ତାର କରିଅଛନ୍ତି ଏହା ସାମାନ୍ୟ ପ୍ରଶଂସାର ବିଷୟ ନୁହେ ।

*ଭା୨ଗ, ସଂ୨୩ଖ୍ୟା, ୮ । ୬ । ୧୮୬୭*

## ସାର୍ ହେନେରି ରିକେଟ୍ସ ସାହେବ ।

ଦୁର୍ଭିକ୍ଷ ଆରମ୍ଭରେ ମହାତ୍ମା ରିକେଟ୍ସ ସାହେବଙ୍କ ଗୁଣ କୀର୍ତ୍ତନ କରି ଆମ୍ଭେମାନେ ଯତ୍ କିଞ୍ଚିତ୍ରେ ଆପଣାକୁ କୃତାର୍ଥ କରିଥିଲୁଁ । ଉକ୍ତ ସାହେବଙ୍କର ଆମ୍ଭ ପ୍ରଦେଶପ୍ରତି ଯେପରି ଅକୃତ୍ରିମ ସ୍ନେହ ଓ ଦୟା ଅଛି ପୁନର୍ବାର ସେଥିର ଏକ ଆନନ୍ଦକର ଚିହ୍ନ ଦେଖି ତାହା ପାଠକ ମହାଶୟଙ୍କୁ ଜଣାଇଦେବାରେ କ୍ଷଣମାତ୍ର ବିଳମ୍ବ କରିବା କର୍ତ୍ତବ୍ୟର ଗୁରୁତର ତ୍ରୁଟି ବୋଧକରି ଏଠାରେ ପ୍ରକାଶ କରଅଛୁଁ ।

ଦୁର୍ଭିକ୍ଷ ପଡ଼ିଲା ଦିନୁ ଓଡ଼ିଶା ଲୋକମାନେ ଦୈବି ଦଣ୍ଡ ଛଡ଼ା ଯେତେ ପ୍ରକାରରେ ସ୍ଥାନୀୟ ହାକିମ ଏବଂ ଗବର୍ଣ୍ଣମେଣ୍ଟଙ୍କ ଦ୍ୱାରା ନିନ୍ଦନୀୟ ଓ ଅପମାନିତ ହୋଇଅଛନ୍ତି ତାହା କାହାରିକୁ ଅବିଦିତ ନାହିଁ । ଯେବେ ଆମ୍ଭମାନଙ୍କ ଅବସ୍ଥା ଭଲ ଥିଲା ଅର୍ଥାତ୍ ଏପରି କୌଣସି ଦୁର୍ବିପାକ ପଡ଼ି ନଥିଲା ତେତେବେଳେ ଆମ୍ଭେମାନେ ସମସ୍ତଙ୍କର ପ୍ରିୟାସ୍ପଦ ହୋଇଥିଲୁଁ ଓ ରାଜପୁରଷମାନେ ଆପଣା ଇଚ୍ଛାନୁସାରେ ଆମ୍ଭମାନଙ୍କଠାରେ କର ଗ୍ରହଣ କରି ସ୍ୱଚ୍ଛନ୍ଦରେ ରହିଥିଲେ ଓ କେହି ଭ୍ରମରେ ସୁଦ୍ଧା ଆମ୍ଭମାନଙ୍କର କଥା ସ୍ମରଣ କରନଥିଲେ । ବର୍ତ୍ତମାନ ଦୁର୍ଭିକ୍ଷ ହେବାର ଯହୁଁ ଆମ୍ଭମାନଙ୍କ ଅବସ୍ଥା ଅତ୍ୟନ୍ତ ମନ୍ଦ ହେଲା ଓ ସରକାର ଆମ୍ଭଠାର କର ନପାଇ ଆହୁରି ଆମ୍ଭ ପ୍ରତିପୋଷଣ ନିମିତ୍ତ ଅଧିକତର ଖର୍ଚ୍ଚାନ୍ତ ହେଲେ ତେତେବେଳେ ଆମ୍ଭମାନଙ୍କର ଚର୍ଚ୍ଚା ଅନୁକ୍ଷଣ କରିବାକୁ ହେଲା ଓ ବ୍ୟୟ ହେତୁର ସମସ୍ତେ ଆମ୍ଭ ଉପରେ ବିରକ୍ତ ହେଲେ । ସର୍ବତ୍ରରେ ଓଡ଼ିଆଙ୍କର ନିନ୍ଦା ହେଲା ଓ ଓଡ଼ିଆମାନଙ୍କ ସ୍ୱଭାବ ଦୁର୍ଭିକ୍ଷର କାରଣ ସ୍ୱରପ ମଧ୍ୟ ବ୍ୟକ୍ତ ହେଲା ।

କଲିକତା ରିଭିଉ ପତ୍ରିକାରେ ଜଣେ ଲେଖକ ଓଡ଼ିଆଙ୍କ କେତେକ ନିନ୍ଦାବାକ୍ୟ ଆରୋପ କରିଥିଲା । ସାର ହେନେରି ରିକେଟ୍ ସାହେବ ଉକ୍ତ ବିଷୟ ପାଠ ମାତ୍ର ସହ୍ୟକରି ନପାରି ସ୍ୱଭାବତଃ ତାହା ଖଣ୍ଡନ ନିମିତ୍ତ ଉକ୍ତ ପତ୍ରିକାରେ ଏକ ପତ୍ର ପ୍ରକାଶ କରିଅଛନ୍ତି । ସମୁଦାୟ ପତ୍ର ଆମ୍ଭେମାନେ ଦେଖିନାହୁଁ ମାତ୍ର ତହିଁର କିୟଦଂଶ ହିନ୍ଦୁ ପେଟ୍ରିୟଟରେ ପାଠ କରିଅଛୁଁ । ତାହା ଏହି :-

"ସତ୍ୟ ଅଟେ ଯେ ଯେତେବେଳେ ଷ୍ଟାରଲିଂ ସାହେବ ଓଡ଼ିଶାର ବିବରଣ ଲେଖିଥିଲେ ସେ ସମୟରେ ଓ ତହିଁର କେତେଦିନ ଅନ୍ତ ପର୍ଯ୍ୟନ୍ତ ସୁଦ୍ଧା ଓଡ଼ିଶାରେ ସରକାରୀ କର୍ମମାନ ବିଦେଶୀୟ ଲୋକଙ୍କୁ ଦିଆ ଯାଉଥିଲା । ପୁରୀ ଓ ଖୋରଧାର କଲେକ୍ଟର ଶ୍ରୀଯୁକ୍ତ ଉଇଲିଅମ୍ ଉଇଲ୍‌କିନ୍‌ସନ୍ ସାହେବ ଏକା ଓଡ଼ିଆମାନଙ୍କୁ ସରକାରୀ ଚାକରୀରେ ଆପଣାର ଉପଯୁକ୍ତତା ଦେଖାଇବାର ସୁଯୋଗ ପ୍ରଥମେ ଦେଇଥିଲେ । ଏ ମହତାନୁଷ୍ଠାନର ପ୍ରଶଂସା ତାଙ୍କର ଅଟଇ । ଶ୍ରୀଯୁକ୍ତ ମିଲସ ସାହେବ ଓ ଆମ୍ଭେ ତାହାଙ୍କ ପଶ୍ଚାଦ୍‌ଗାମୀ ହେଲୁଁ ଓ ଅଳ୍ପ ବର୍ଷ ମଧ୍ୟରେ ଏ ପ୍ରଦେଶର ସରକାରୀ କର୍ମ ଚଳାଇବାର ପ୍ରାୟ ସମସ୍ତ ପଦମାନ ଓଡ଼ିୟାଙ୍କ ଦ୍ୱାରା ପୂର୍ଣ୍ଣ ହେଲା । ଏ ପ୍ରଦେଶର ବନ୍ଦୋବସ୍ତର ସମସ୍ତ ବିସ୍ତାରିତ କାର୍ଯ୍ୟମାନ ଓଡ଼ିୟା ଡେପୁଟି କଲେକ୍ଟରଙ୍କଦ୍ୱାରା ନିର୍ବାହ ହେଲା ଏବଂ ଆମ୍ଭେ ବଢ଼ାଇକରି କହୁନାହୁଁ ମାତ୍ର ତାହାଙ୍କର ସଚ୍ଚରିତ୍ରତା, ଉପଯୁକ୍ତତା ଏବଂ ସତତା କି ଯାହା ବିଶ୍ୱସ୍ତ ଭାରାର୍ପଣ ଓ ଚିର ସଂସର୍ଗରୁ ଜ୍ଞାତହେଲେ ସେ ସମସ୍ତ ଉତ୍କଳସ୍ଥ ଲୋକମାନଙ୍କର ଭାଗ୍ୟ ପ୍ରତି ଯଥାର୍ଥ ଫଳଦାୟକ ହେଲା । ଆମ୍ଭେ ଓଡ଼ିଆଙ୍କ ସହବାସରେ ବ ୧ ୨ର୍ଷ କାଳ ଯାପନକଲୁଁ ଓ ସେମାନେ ଆମ୍ଭ ପ୍ରତି ଯେରପ ବ୍ୟବହାର କରିଥିଲେ ତାହା ବର୍ତ୍ତମାନ ଆମ୍ଭର ଏକ ଅତ୍ୟନ୍ତ ଆନନ୍ଦଜନକ ସ୍ମରଣର ପ୍ରସଙ୍ଗ ହୋଇଅଛି । ଅତଏବ ଆମ୍ଭେ ଏପ୍ରକାର ନିନ୍ଦାବାକ୍ୟ କି ଯାହା ପତ୍ରିକାରେ ଲେଖାଅଛି ତାହା ବିରପ କିଞ୍ଚିତ୍ ମାତ୍ର ନକହି କଦାଚ ରହି ନପାରେଁ ।"

*ଭା୨ଗ, ସଂ୨୬ଖ୍ୟା, ୨୯।୬।୧୮୬୭*

## [ପୁସ୍ତକପ୍ରାପ୍ତି ସ୍ୱୀକାର]

ପୁସ୍ତକ ପ୍ରାପ୍ତି ସ୍ୱୀକାର । ଆମ୍ଭେମାନେ କୃତଜ୍ଞତା ପୂର୍ବକ ସ୍ୱୀକାର କରଅଛୁଁ ଯେ ନିମ୍ନଲିଖିତ ପୁସ୍ତକମାନ ଗ୍ରନ୍ଥକର୍ତ୍ତାଙ୍କଠାର ପ୍ରାପ୍ତ ହୋଇଅଛୁଁ ।

| ପୁସ୍ତକ | ଗ୍ରନ୍ଥକର୍ତ୍ତା |
|---|---|
| ସରଳ ବ୍ୟାକରଣ | ଶ୍ରୀଯୁକ୍ତ ଫକିରମୋହନ ସେନାପତି |
| ଜୀବନ ଚରିତ | ଏଜନ |
| ବର୍ଣ୍ଣ ବିଜ୍ଞାନ | ଟାରାଭୂଷଣ ଶର୍ମା |

*ଭା୨ଗ, ସଂ୩୨ଖ୍ୟା, ୧୦।୮।୧୮୬୭*

## [ଉତ୍କଳ ଭାଷୋଦ୍ଦିପିନୀ ସଭା]

ଉତ୍କଳ ଭାଷୋଦ୍ଦିପିନୀ ସଭା । ସନ ୧୮୬୭ ମସିହା ଜୁଲାଇ ମାସ ତା୨୮ରିଖରେ ଉତ୍କଳ ଭାଷୋଦ୍ଦିପିନୀ ସଭାର ଉଦ୍ଦେଶ୍ୟ ସାଧନ ନିମିତ୍ତ ନିଯୁକ୍ତ ହୋଇଥିବା ସଭ୍ୟମାନଙ୍କ ସଭାର ବିବରଣ ।

ଉପସ୍ଥିତ – ଶ୍ରୀଯୁକ୍ତ ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ
ଶ୍ରୀଯୁକ୍ତ ବାବୁ ଜଗନ୍‌ମୋହନ ଲାଲ
ଶ୍ରୀଯୁକ୍ତ ବାବୁ ପ୍ୟାରୀମୋହନ ବନ୍ଦ୍ୟୋପାଧ୍ୟାୟ
ପଣ୍ଡିତ ଆର୍ତ୍ତତ୍ରାଣ ତର୍କପଞ୍ଚାନନ
ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ
ଶ୍ରୀଯୁକ୍ତ ବାବୁ ବନମାଳୀ ସିଂହ
ଶ୍ରୀଯୁକ୍ତ ବାବୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ର
ଶ୍ରୀଯୁକ୍ତ ବାବୁ ଗୌରୀଶଙ୍କର ରାୟ

ଏ ସଭାରେ ତଳଲିଖିତ କଥାମାନ ନିଶ୍ଚୟ ହେଲା, ଯଥା:-

୧। ଉତ୍କଳ ଭାଷାରେ ଯେତେ ପୁସ୍ତକ ପ୍ରସ୍ତୁତ ହୋଇ ଏ ପ୍ରଦେଶରେ ବର୍ତ୍ତମାନ ଅଛି ସେ ସମସ୍ତର ଏକ ଫର୍ଦ୍ଦ ପ୍ରସ୍ତୁତ କରିବାକୁ ହେବ । ଉକ୍ତ ଫର୍ଦ୍ଦରେ ପ୍ରତ୍ୟେକ ପୁସ୍ତକର ନାମ, ଗ୍ରନ୍ଥକର୍ତ୍ତାଙ୍କ ନାମ, ଯେଉଁ ବିଷୟ କି ଚରିତ୍ର ତହିଁରେ ଲେଖାଅଛି ଏବଂ ଗ୍ରନ୍ଥକର୍ତ୍ତାଙ୍କ ଜୀବନବୃତ୍ତାନ୍ତ ବିଷୟ ଯାହା ଜଣା ଯାଇଅଛି – ଏହି ସକଳ ଲେଖା ହେବ । ଏ ଫର୍ଦ୍ଦ ପ୍ରସ୍ତୁତ ନିମିତ୍ତ ଏକ ଅଧୀନ ସଭା ହେଲା । ସେଥିରେ ତଳଲିଖିତ ସଭ୍ୟମାନେ ନିଯୁକ୍ତ ହେଲେ, ଯଥା :-

ପଣ୍ଡିତ ଆରତତ୍ରାଣ ତର୍କ ପଞ୍ଚାନନ
ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ
ଶ୍ରୀଯୁକ୍ତ ବାବୁ ବନମାଳୀ ସିଂହ
ଶ୍ରୀଯୁକ୍ତ ବାବୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ର
ଶ୍ରୀଯୁକ୍ତ ବାବୁ ଗୌରୀଶଙ୍କର ରାୟ ।

୨। ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷା ନିମିତ୍ତ ଏକଖଣ୍ଡ ପୁସ୍ତକ ସଂକଳନ କରା ଆବଶ୍ୟକ । ଅତଏବ ଏ କର୍ମ ସମ୍ପନ୍ନ କରିବା କାରଣ ତଳଲିଖିତ ସଭ୍ୟଙ୍କୁ ଅନୁରୋଧ କରାଗଲା ଯେ ସେମାନେ ତାହାଙ୍କ ନାମ ସମ୍ମୁଖରେ ଲେଖାଥିବା ପୁସ୍ତକରୁ ବିଦ୍ୟାଳୟରେ ପଠନ ଯୋଗ୍ୟ ଉତ୍କୃଷ୍ଟ କବିତାମାନ ଉଦ୍ଧୃତକରି ଉଚିତ କାଳମଧ୍ୟରେ ସଭାକୁ ଅର୍ପଣ କରିପାରିବେ । ସେ ସମସ୍ତ ସଭାର ମନୋନୀତ ହେଲାର ଏକ ଖଣ୍ଡ ପୁସ୍ତକାକାରରେ ମୁଦ୍ରିତ ହେବ ।

| | |
|---|---|
| ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ<br>ପଣ୍ଡିତ ପ୍ରଭାକର ବିଦ୍ୟାରତ୍ନ | ବୈଦେହୀଶ ବିଳାସ |
| ବାବୁ ପ୍ୟାରୀମୋହନ ବନ୍ଦ୍ୟୋପାଧ୍ୟାୟ<br>ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ | ସୁଭଦ୍ରା ପରିଣୟ |
| ବାବୁ ବନମାଳୀ ସିଂହ<br>ବାବୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ର | ଭାଷା ଭାଗବତ |

୩ । ସଭାର ନିୟମିତ ବ୍ୟୟ ନିର୍ବାହ ନିମିତ୍ତ ଚାନ୍ଦା ସଂଗ୍ରହ କରିବାର ଆବଶ୍ୟକ ଥିବାର ଧାର୍ଯ୍ୟହେଲା ଯେ ଏଥିପାଇଁ ଏକ ଚାନ୍ଦାବହି ପ୍ରସ୍ତୁତ ହେବ ଓ ବିଶେଷ ବ୍ୟକ୍ତିଙ୍କ ନିକଟକୁ ସ୍ୱତନ୍ତ୍ର ପତ୍ର ପଠାଯିବ । ପୁସ୍ତକାଦି ମୁଦ୍ରାଙ୍କନର ବ୍ୟୟ ପକ୍ଷରେ ପ୍ରଥମେ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ସହିତ ବନ୍ଦୋବସ୍ତ ହେବ ଓ ତଦ୍ଦ୍ୱାରେ ଆବଶ୍ୟକ ହେଲେ ଉକ୍ତ କର୍ମ ନିମିତ୍ତ ପୃଥକ୍ ଚାନ୍ଦା ହେବ ଅବା ଅନ୍ୟ ଉପାୟ କରାଯିବ ।

୪ । ଉତ୍କଳ ଭାଷୋଦ୍ଦିପିନୀ ସଭାର ଉଦ୍ଦେଶ୍ୟ ଇତ୍ୟାଦି ବିବରଣରେ ଏକପତ୍ର ଗବର୍ଣ୍ଣମେଣ୍ଟ ବଙ୍ଗାଳକୁ ପଠାଯିବ ଓ ଓଡ଼ିଶା ପ୍ରଦେଶର ସ୍କୁଲ୍ ସମୂହରେ ପ୍ରଚଳିତ ହେବାପାଇଁ କୌଣସି ପୁସ୍ତକ ପ୍ରସ୍ତୁତ ହେଲେ ତାହା ବିଦ୍ୟାଳୟର ଉପଯୁକ୍ତ କିନା ଏ ବିଷୟରେ ଏ ସଭାର ମତାନୁସାରେ କର୍ମ ହେବ ।

୫ । ପଣ୍ଡିତ ପ୍ରଭାକର ବିଦ୍ୟାରତ୍ନଙ୍କୁ ଏ ସଭାର ଜଣେ ସଭ୍ୟ ସ୍ୱରୂପ ନିଯୁକ୍ତ କରାଗଲା ।

ଶ୍ରୀ ଗୌରୀଶଙ୍କର ରାୟ
ସେକ୍ରେଟରୀ

*ଅତିରିକ୍ତ, ସଂ୩୨ଖ୍ୟା, ୧୮୬୭*

# ଓଡ଼ିଶାର ହାଇସ୍କୁଲ ।

ଯାହାହେଉ କ୍ରମେ କ୍ରମେ ରାଜପୁରୁଷମାନେ ଓଡ଼ିଶାର ଉନ୍ନତିସାଧନ ପକ୍ଷରେ ଯତ୍ନ କରଅଛନ୍ତି । ଏତେ କାଳରେ ଆମ୍ଭେମାନେ ସାଧାରଣ ସାକ୍ଷାତରେ ବ୍ୟକ୍ତ କରି ପାରିଲୁଁ ଯେ ଓଡ଼ିଶା ପ୍ରଦେଶରେ ଗବର୍ଣ୍ଣମେଣ୍ଟ ଗୋଟିଏ ଉଚ୍ଚ ବିଦ୍ୟାଳୟ ସ୍ଥାପନ କରିବାର ଅନୁମତି ଦେଇଅଛନ୍ତି । ଏ ସଂବାଦ ଅତି ଆନନ୍ଦଜନକ ସନ୍ଦେହ ନାହିଁ । ଏ ଉଚ୍ଚ ବିଦ୍ୟାଳୟ କଟକ ହାଇସ୍କୁଲ ନାମରେ ଖ୍ୟାତ ହେବ ଓ କଟକ ନଗରରେ ଏହା ସ୍ଥାପନ ହେବ ଓ ଆସନ୍ତା ଜାନୁଆରୀ ମାସର କାର୍ଯ୍ୟାରମ୍ଭ ହେବ । କର୍ମ ଚଳିବା ନିମିତ୍ତ ଗବର୍ଣ୍ଣମେଣ୍ଟ ତଳଲିଖିତ ମତେ ଶିକ୍ଷକଙ୍କର ବେତନ ଓ ଅନ୍ୟ ଖର୍ଚ୍ଚାପାଇଁ ଟଙ୍କା ମଞ୍ଜୁର କରିଅଛନ୍ତି । ଯଥା :-

| | | | | |
|---|---|---|---|---|
| ପ୍ରଧାନ ଶିକ୍ଷକ | ମାସିକ | ଟ୩୦୦ ଙ୍କା | ଷଷ୍ଠ ଶିକ୍ଷକ | ମାସିକ ଟ୫୦ ଙ୍କା |
| ଦ୍ୱିତୀୟ ଶିକ୍ଷକ | ମାସିକ | ଟ୨୦୦ ଙ୍କା | ସପ୍ତମ ଶିକ୍ଷକ | ମାସିକ ଟ୩୦ ଙ୍କା |
| ତୃତୀୟ ଶିକ୍ଷକ | ମାସିକ | ଟ୧୫୦ ଙ୍କା | ଅଷ୍ଟମ ଶିକ୍ଷକ | ମାସିକ ଟ୨୫ ଙ୍କା |
| ଚତୁର୍ଥ ଶିକ୍ଷକ | ମାସିକ | ଟ୧୦୦ ଙ୍କା | ପ୍ରଧାନ ପଣ୍ଡିତ | ମାସିକ ଟ୫୦ ଙ୍କା |
| ପଞ୍ଚମ ଶିକ୍ଷକ | ମାସିକ | ଟ୭୫ ଙ୍କା | ଦ୍ୱିତୀୟ ପଣ୍ଡିତ | ମାସିକ ଟ୩୦ ଙ୍କା |

ବାଜେ ଖର୍ଚ୍ଚମାସିକ ଟ୧୫୦ ଙ୍କା

X X X X X X X

ସମ୍ପ୍ରତି ଆମ୍ଭେମାନେ ଓଡ଼ିଶା ପ୍ରଦେଶର ଛାତ୍ରମାନଙ୍କୁ କହୁଅଛୁଁ ଯେ କଲିକତାକୁ ନଯାଇ ଉଚ୍ଚଶିକ୍ଷା ପାଇ ପାରିବେ ଏହି ଆଶାରେ ଉତ୍ସାହିତ ହୋଇ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ଯତ୍ନ କରନ୍ତୁ । ତାହାହେଲେ ଶୀଘ୍ର ହାଇସ୍କୁଲ ସ୍ଥାପନର ଫଳ ଲାଭହେବ ।

*ଭା୨ଗ,ସଂ୩୩ଖ୍ୟା ,୧୭|୮|୧୮୬୭*

## ୧୮୬୮

## ଓଡ଼ିଶାରେ ବଙ୍ଗଭାଷାର ଶିକ୍ଷା ।

ଓଡ଼ିଶା ପ୍ରଦେଶର ବିଦ୍ୟାଳୟ ସମୂହ ସଂକ୍ରାନ୍ତର ଏକ ଗୁରୁତର ପ୍ରସ୍ତାବ ସଂପ୍ରତି ବଙ୍ଗଳା ଗବର୍ଣ୍ଣମେଣ୍ଟର ବିଚାରାଧୀନ ଅଛି । ଶିକ୍ଷା ବିଭାଗର ଡାଇରେକଟର ଏବଂ ଏ ପ୍ରଦେଶର ଇନସ୍ପେକ୍‌ଟର ଗବର୍ଣ୍ଣମେଣ୍ଟରେ ପ୍ରସ୍ତାବ କରିଅଛନ୍ତି ଯେ ଓଡ଼ିଶାର ସ୍କୁଲ ସମସ୍ତରେ ବଙ୍ଗଭାଷାର ଅଧ୍ୟୟନ ବଳାତ୍କାର ରୂପେ ଚଳନ ହେଉ ଏବଂ ବଙ୍ଗ ପୁସ୍ତକମାନ ଏ ସମସ୍ତ ବିଦ୍ୟାଳୟର ପାଠ୍ୟପୁସ୍ତକ ବୋଲି ଧାର୍ଯ୍ୟ ହେଉ । ଗବର୍ଣ୍ଣମେଣ୍ଟ ସହସା ଏ ପ୍ରସ୍ତାବରେ ସମ୍ମତି ନଦେଇ ଶ୍ରୀଯୁକ୍ତ କମିଶନରଙ୍କ ଅଭିପ୍ରାୟ ଜାଣିବା ସକାଶେ ଏ ବିଷୟର କାଗଜପତ୍ରମାନ ତାହାଙ୍କ ପାଖକୁ ପଠାଇ ଅଛନ୍ତି ।

ଏରୂପ ପ୍ରସ୍ତାବର ପ୍ରକୃତ ହେତୁ ଆମ୍ଭେମାନେ କହି ନପାରଁ କାରଣ ଡାଇରେକ୍‌ଟର ଓ ଇନସ୍ପେକ୍‌ଟର ଗବର୍ଣ୍ଣମେଣ୍ଟରେ କି କି କାରଣ ଦର୍ଶାଇ ଅଛନ୍ତି ତାହା ଆମ୍ଭେମାନେ ଜାଣି ପାରିନାହୁଁ । ଆମ୍ଭମାନଙ୍କୁ ବୋଧହୁଅଇ ଉତ୍କଳରେ ସ୍କୁଲର ଶିକ୍ଷୋପଯୋଗୀ ଅଧିକ ପୁସ୍ତକ ନଥିବାର ପ୍ରାୟ ଏରପ ହୋଇଅଛି ଅଥବା ଭୂତପୂର୍ବ ଜଣେ ଇନସ୍ପେକ୍‌ଟର ଯାହା ବ୍ୟକ୍ତକରି ଥିଲେ ଯେ ଉତ୍କଳଭାଷା ଭାଷା ନୁହଇ ସେହି କଥାକୁ ବର୍ତ୍ତମାନ ଉକ୍ତ ପଦରେ ଥିବା କର୍ମଚାରୀ ଗ୍ରହଣ କରିଅଛନ୍ତି । ଯାହାହେଉ ଏ ପ୍ରସ୍ତାବ ଓଡ଼ିଶାର ଭାବୀମଙ୍ଗଳ ଆଶାର ମୂଳୋତ୍ପାଟନ କରିବାର ଉପକ୍ରମ କରିଅଛି ଏବଂ ଶୀଘ୍ର ଏଥିର ଅନ୍ୟଥା ନହେଲେ ରକ୍ଷାନାହିଁ ।

ଆମ୍ଭେମାନେ ଯେଉଁ ଦୁଇ କାରଣ ଉପରେ କଳ୍ପନା କରିଅଛୁଁ ସେଥି ମଧ୍ୟର କେହି ଯୁକ୍ତିସିଦ୍ଧ ନୁହଇ ତାହା ପାଠକମାନେ ଅବଶ୍ୟ ବୁଝିପାରିବେ । ବ୍ରିଟିଶ ଅଧିକାର ଏଠାରେ ସ୍ଥାପନ ହେଲାଦିନୁ ସେମାନଙ୍କର ସୁଶାସନ ପ୍ରଣାଳୀର ଲୋକମାନେ ନାନାପ୍ରକାର ବିଦ୍ୟା ଓ ଜ୍ଞାନ ଶିକ୍ଷାକଲେ ଓ ଯେ ଯେ ସ୍ଥାନରେ ଏକମାତ୍ର ଲୋକ ଲେଖାପଢ଼ା ଜାଣୁ ନଥିଲେ ସେ ସମସ୍ତ ସ୍ଥାନରେ ସୁଦ୍ଧା ବିଦ୍ୟାଳୟ ସ୍ଥାପନ ଓ ସ୍ଥାନୀୟ ଭାଷାର ପୁସ୍ତକାଦି ରଚନା ଓ ଲିଖନ ପଠନ ହେଉଅଛି । ସେହି ଗବର୍ଣ୍ଣମେଣ୍ଟ ଓଡ଼ିଶା ଦେଶର ଉପକାରାର୍ଥେ ବିଦ୍ୟାଳୟ ସ୍ଥାପନ କରି ଆପଣା ପ୍ରଜାଙ୍କୁ ଶିକ୍ଷିତ କରିବା କାରଣ ବିସ୍ତର ଅର୍ଥବ୍ୟୟ କରଅଛନ୍ତି କିନ୍ତୁ ଯାହାଙ୍କର ଉପରେ ଶିକ୍ଷାର ଭାର ଅଛି ସେମାନେ ଦେଶର ଭାଷା ଉଠାଇ ଦେବାକୁ ଯତ୍ନ କରଅଛନ୍ତି, ଏହା କି ସାମାନ୍ୟ ଦୁଃଖର ବିଷୟ । ଶିକ୍ଷା ଦେବା ନିମିତ୍ତ ନିଯୁକ୍ତ ଥିବା ବ୍ୟକ୍ତିମାନେ ବିପରୀତ ଆଚରଣ କରି କିରପେ ବେତନ ଜୀର୍ଣ୍ଣ କରଅଛନ୍ତି ଆମ୍ଭମାନଙ୍କୁ ଏହିମାତ୍ର ଚମତ୍କାର ବୋଧ ହେଉଅଛି । ବଙ୍ଗଦେଶରେ ଯେତେବେଳେ ପ୍ରଥମ ବିଦ୍ୟାଶିକ୍ଷାର ଆରମ୍ଭ ହେଲା ଓ ଗବର୍ଣ୍ଣମେଣ୍ଟ ବିଦ୍ୟାଳୟମାନ ସ୍ଥାପନ କଲେ ତେତେବେଳେ କି ପାଠୋପଯୋଗୀ ପୁସ୍ତକମାନ ସେ ଦେଶରେ ଥିଲା ? ସେଠାରେ ତ ଅନ୍ୟଭାଷା ଶିକ୍ଷାଦେବାର କେହି ପ୍ରସ୍ତାବ କଲେନାହିଁ । ତେବେ ଏଠାରେ ଏରପ ହେବାର କାରଣ କି ? ଗବର୍ଣ୍ଣମେଣ୍ଟଙ୍କ ଇଚ୍ଛା ଯେ ଆପଣା ଅଧୀନ ସକଳ ଦେଶର ଲୋକଙ୍କୁ ସୁଶିକ୍ଷିତ କରିବେ ଏବଂ ତହିଁରେ ଯେ ସମସ୍ତ ବାଧା ବ୍ୟତିକ୍ରମ ଘଟିବ ତାହା ଖଣ୍ଡନ କରିବେ ମାତ୍ର ଯାହାଙ୍କୁ ଏ କର୍ମର ଭାର ଦେଇ ଅଛନ୍ତି ସେମାନେ ଖଣ୍ଡନ ବିଷୟରେ ଅକ୍ଷମ ଥିବାର କୌଣସି ରପେ ଆପଣା ଅନ୍ନ ରକ୍ଷାନିମିତ୍ତ ସୁବିଧା କରଅଛନ୍ତି । ଏତେ ଦିନ ଏଠାରେ ବିଦ୍ୟାଳୟ ସ୍ଥାପନ ହେଲା ଓ ଉତ୍କଳ ପୁସ୍ତକର ଅଭାବ ବିଷୟ ପୁନଃ ପୁନଃ ଡେପୁଟି ଇନ୍‌ସ୍ପେକ୍‌ଟରମାନେ ଇନ୍‌ସ୍ପେକଟର ଓ ଡାଇରେକ୍‌ଟରଙ୍କୁ ଜଣାଇଲେ କିନ୍ତୁ ଅବଧି ସେମାନେ ଭାଷା ପୁସ୍ତକ ରଚନା ବିଷୟରେ କିଛିମାତ୍ର ଉପାୟ କରିନାହାନ୍ତି ଏବଂ ଯଦ୍ୟପି ମିଶିନରୀମାନେ ଏ ନଗରକୁ ଆସି ନଥାନ୍ତେ ତେବେ ପ୍ରାୟ ଏକଖଣ୍ଡ ପୁସ୍ତକ ଉତ୍କଳ ଭାଷାରେ ଥା'ନ୍ତା ନାହିଁ, କୌଣସି ବିଷୟ ସାଧନ

ପକ୍ଷରେ ଉପାୟ ନକରି ପରିତ୍ୟାଗ କରିବା କାପୁରଷର କର୍ମ ଅଟଇ ମାତ୍ର ଦୁଃଖର ବିଷୟ ଯେ ଜ୍ଞାନବାନ୍ କର୍ମଚାରୀମାନେ ପାଠଘରେର ପିଲାର ଆଚରଣ ଧରିଅଛନ୍ତି ଅର୍ଥାତ୍ ସେମାନେ ଯେରପେ ଖଡ଼ି ନ ଥିବା ବାହାନାରେ ଚାଟଶାଳୀକୁ ଯିବାପାଇଁ ଅସ୍ୱୀକାର କରନ୍ତି ଏ କର୍ମଚାରୀମାନେ ମଧ୍ୟ ସେହିରପ ଉପଯୁକ୍ତ ପୁସ୍ତକ ନଥିବା ବାହାନା କରଅଛନ୍ତି ।

*ଭା୩ଗ, ସଂ୧ଖ୍ୟା ,୪।୧।୧୮୬୮*

## ପ୍ରବେଶିକା ପରୀକ୍ଷା ।

ଏ ପରୀକ୍ଷାର ଫଳ ଚଳିତ ମାସ ତା୧ରିଖ କଲିକତା ଗଜେଟରେ ପ୍ରକାଶ ହୋଇଅଛି । ସେଥିରେ ଦେଖାଗଲା ଯେ ଏବର୍ଷ ସର୍ବସୁଦ୍ଧା ୮୧୩ଜଣ ଛାତ୍ର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ପରୀକ୍ଷାର୍ଥୀମାନଙ୍କର ସଂଖ୍ୟା ପ୍ରାୟ ୧୫୦୦ ଥିଲା । ଅତଏବ ଅଧିକର କିଞ୍ଚିତ୍ ଅଧିକ ଛାତ୍ର ଫଳ ଲାଭ କରିଅଛନ୍ତି । ଓଡ଼ିଶାରେ ୯ଜଣ ଛାତ୍ର ପରୀକ୍ଷା ଦେଇଥିଲେ, ତହିଁ ମଧ୍ୟର ୬ ଜଣ କୃତାର୍ଥ ହୋଇଅଛନ୍ତି, ଅର୍ଥାତ୍ ବାଲେଶ୍ୱର ସ୍କୁଲର ୨ଜଣ ଏବଂ କଟକ ସ୍କୁଲର ୪ଜଣ । ଏଥିରେ ବାଲେଶ୍ୱରର ୨ଜଣ ପରୀକ୍ଷାର୍ଥୀ ମଧରେ ଏକଜଣ ପ୍ରଥମ ଶ୍ରେଣୀ ଓ ଅନ୍ୟ ଜଣ ଦ୍ୱିତୀୟ ଶ୍ରେଣୀରେ ସ୍ଥାନ ପାଇଅଛି ଏବଂ କଟକ ୪ଜଣ ମଧ୍ୟର ତିନିଜଣ ଦ୍ୱିତୀୟ ଶ୍ରେଣୀ ଓ ଏକ ଜଣ ତୃତୀୟ ଶ୍ରେଣୀରେ ପରୀକ୍ଷା ଦେଇଅଛି ।

*ଭା୩ଗ, ସଂ୨ଖ୍ୟା ,୧୧।୧।୧୮୬୮*

## [କଟକ ହାଇସ୍କୁଲ ]

ଆମ୍ଭେମାନେ ଆନନ୍ଦର ସହିତ ଜଣାଉଅଛୁଁ ଯେ କଟକ ହାଇସ୍କୁଲରେ ଅବିଳମ୍ବେ ଶିକ୍ଷା ପ୍ରଦାନ ହେବ । ପ୍ରଧାନ ଶିକ୍ଷକ ପଦରେ ଶ୍ରୀଯୁକ୍ତ ବାବୁ ଚଣ୍ଡୀଚରଣ ବାନୁର୍ଯ୍ୟା ନିଯୁକ୍ତ ହୋଇ ଆସୁଅଛନ୍ତି । ଏ ମହାଶୟ କଲିକତା ସହର ସ୍କୁଲର ତୃତୀୟ ଶିକ୍ଷକ ଥିବାର ଶୁଣାଯାଏ । ସଂସ୍କୃତ ପଢ଼ାଇବା ନିମିତ୍ତ ପ୍ରଧାନ ପଣ୍ଡିତର ମଧ କଲିକତାର ଶୀଘ୍ର ଆସିବାର ସମ୍ଭାବନା ଅଛି । ହାଇସ୍କୁଲରେ ଯେ ବେତନରେ ଯେତେ କର୍ମଚାରୀମାନ ରହିବାର ଗବର୍ଣ୍ଣମେଣ୍ଟ ମଞ୍ଜୁର ହୋଇଅଛି ସେ ସମସ୍ତ ଏକାବେଳକେ କାର୍ଯ୍ୟରେ ପରିଣତ ହେବାର ଦେଖାଯାଉ ନାହିଁ କାରଣ ଡାଇରେକ୍ଟର ସାହେବ ଅବସର ମତେ କ୍ରମଶଃ କର୍ମଚାରୀ ନିଯୁକ୍ତ କରିବାର ଦେଖାଯାଏ ଏବଂ ପ୍ରଧାନ ଶିକ୍ଷକଙ୍କୁ ମାସିକ ଟ୩୦୦ ଙ୍କା ସ୍ଥଳେ ଟ୨୫୦ ଙ୍କାରେ ନିଯୁକ୍ତ କରିଥିବାର ଏ ବିଶ୍ୱାସ ଆହୁରି ଦୃଢ଼ତର ହେଉଅଛି ।

ପ୍ରବେଶିକା ପରୀକ୍ଷାରେ ଯେଉଁ ୬ଜଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି ବୋଧ ହୁଅଇ ସମସ୍ତେ ଅଧ୍ୟୟନ କରିବେ । ଏମାନଙ୍କ ମଧର କେବଳ ଏକଜଣ ଛଡ଼ା ସମସ୍ତେ ତୃତୀୟ ଶ୍ରେଣୀର ଛାତ୍ରବୃତ୍ତି ପାଇଅଛନ୍ତି । ମାସକୁ ଟ୧୦ଙ୍କା ଲେଖାଏଁ ପାଇବେ ଅତଏବ ଅଧ୍ୟୟନ ନକରିବାର କୌଣସି କାରଣ ନାହିଁ । ଆମ୍ଭେମାନେ ଭରସା କର ଏମାନେ ଯେମନ୍ତ ହାଇସ୍କୁଲ ଆରମ୍ଭ କରଅଛନ୍ତି ତେମନ୍ତ ଯତ୍ନ ଓ ପରିଶ୍ରମ ସହକାରରେ ଏଥିର ମର୍ଯ୍ୟାଦା ରକ୍ଷା କରିବେ ।

*ଭା୩ଗ, ସଂ୩ଖ୍ୟା ,୧୮।୧।୧୮୬୮*

## କଟକ ହାଇସ୍କୁଲ।

ଏ ବିଦ୍ୟାଳୟରେ ଶିକ୍ଷା ପ୍ରଦାନ କାର୍ଯ୍ୟ ଗତ ସୋମବାର ଠାର ଆରମ୍ଭ ହେଲା । ସମ୍ପ୍ରତି କଟକରେ ଥିବା ପରୀକ୍ଷୋତ୍ତୀର୍ଣ୍ଣ ୪ଜଣ ବାଳକ ଏଠାରେ ପାଠ କରଅଛନ୍ତି ଏବଂ ଅବିଳମ୍ବରେ ବାଲେଶ୍ୱରର ଦୁଇଜଣ ଛାତ୍ର ଆସିବାର କଥାଅଛି ।

X X X X X X X

ଏସ୍ଥଳେ ଆମ୍ଭେମାନେ ଆନନ୍ଦର ସହିତ ଅବଗତ ହୋଇଅଛୁଁ ଯେ ବାଲେଶ୍ୱର ସ୍କୁଲର ଜଣେ ଛାତ୍ର ଯେ କି ଏଥିପୂର୍ବ ଏକବର୍ଷରେ ପ୍ରବେଶିକା ପରୀକ୍ଷା ଦେଇଥିଲେ ସମ୍ପ୍ରତି ହାଇସ୍କୁଲରେ ଅଧ୍ୟୟନ କରିବା କାରଣ

ଆସୁଅଛନ୍ତି । ଏହାଙ୍କ ନାମ ରାଧାନାଥ ରାୟ । ଅନ୍ୟାନ୍ୟ ବାଳକମାନେ ଏହାଙ୍କ ପ୍ରଦର୍ଶିତ ପ୍ରଶଂସନୀୟ ମାର୍ଗର ଅନୁବର୍ତ୍ତୀ ହେଲେ କେଡ଼େ ସୁଖର ବିଷୟ ହେବ କହିନପାରେଁ ।

*ଭା୩ଗ, ସଂ୪ଖ୍ୟା, ୨୫।୧।୧୮୬୮*

## ପ୍ରେରିତ ପତ୍ର

## [ଉତ୍କଳଭାଷା ପରିବର୍ତ୍ତେ ବଙ୍ଗଭାଷା ]

ମହାଶୟ, ଆପଣଙ୍କ ଚଳିତ ମାସ ପ୍ରଥମ ସପ୍ତାହରେ "ଉତ୍କଳିଭାଷା ଏ ଦେଶସ୍ଥ ବିଦ୍ୟାଳୟମାନଙ୍କର ଉଠାଇ ଦେଇ ତତ୍ ପରିବର୍ତ୍ତରେ ବଙ୍ଗଭାଷା ପ୍ରଚଳିତ କରିବା"· ଏହି ପ୍ରସ୍ତାବ ପାଠକରି ଆମ୍ଭେମାନେ ଯତ୍‌ପରୋନାସ୍ତି ଦୁଃଖିତ ହେଲୁ । ଏମନ୍ତ କି ଆମ୍ଭର ମାତୃଭଷା ପ୍ରତି ଏରପ ଦୌରାତ୍ମ ଦେଖି ଘୃଣା ଓ କ୍ରୋଧର ସହିତ ରକ୍ତ ଉଷ୍ଣ ହୋଇଉଠିଲା; ନହେବ ବା କିପାଇଁ ? ମାତାର ବନ୍ଧନାବସ୍ଥା ଦେଖି ପ୍ରତିକାରର କ୍ଷମତା ନଥିଲେ ସୁଦ୍ଧା ପୁତ୍ର କି ନୀରବ ହୋଇପାରେ ? ଏହି ଦୁରପନେୟ ଭାବି ଦୁର୍ଘଟନା ନିବାରଣ କରିବା ପକ୍ଷରେ ଆମ୍ଭେମାନେ ଦୁର୍ବଳ ହୋଇ ସୁଦ୍ଧା ଲେଖନୀ ଧରିବାକୁ ବାଧ ହେଲୁ ।

ଆମ୍ଭମାନଙ୍କର ଗୁଣଜ୍ଞ ଡାଇରେକ୍‌ଟର ଓ ଇନସ୍ପେକ୍‌ଟର ମହାତ୍ମାମାନେ କହନ୍ତି ଯେ ଓଡ଼ିୟା ଏକ ସ୍ୱତନ୍ତ୍ର ଭାଷା ନୁହେ । ଯେ ଦେଶ ବଙ୍ଗଦେଶଠାର ବେରାର ଓ ସରକାର ରାଜ୍ୟ ପର୍ଯ୍ୟନ୍ତ ବଙ୍ଗସାଗର ଉପକୂଳରେ ବହୁଦୂର ବିସ୍ତାରିତ ହୋଇଅଛି, ଯହିଁରେ କୋଟି କୋଟି ଲୋକ ବାସ କରନ୍ତି ଓ ଯେ ଦେଶର ଉନ୍ନତି ପୁରାତନ କାଳର ଇତିହାସାଦି ଗ୍ରନ୍ଥମାନଙ୍କରେ ଉଲ୍ଲିଖିତ ହୋଇଅଛି ସେହି ଦେଶରେ ଯେ ଭାଷା ପ୍ରଚଳିତ ଅର୍ଥାତ୍ ଓଡ଼ିୟା ଭାଷା ସେ କି ଭାଷା ନୁହେ ? ତେବେ ଏହି ଭାଷାରେ ସାହିତ୍ୟ, ଅଙ୍କ, ଜ୍ୟୋତିଷାଦି ବିଦ୍ୟାର ଭୂରି ଭୂରି ପୁସ୍ତକ କେଉଁଆଡୁ ଅଇଲା ? ଯେ ଭାଷା କାବ୍ୟକାନନର ବନଦେବୀ ସ୍ୱରପ ସଂସ୍କୃତ ଭାଷାର କନ୍ୟା, ସେ କି ଭାଷା ନୁହେ ? ଯେ ଭାଷାର କସୁମସୁକୁମାର ବପୁ ଦୀନକୃଷ୍ଣ, ଉପେନ୍ଦ୍ରଭଞ୍ଜ ପ୍ରଭୃତି କବିମାନେ ବିବିଧ ଅଳଙ୍କାରରେ ଭୂଷିତ କରିଅଛନ୍ତି, ଯାହାର କମନୀୟ ଋପମାଧୁରୀ ଦେଖି କାବ୍ୟରସାମୋଦୀ ବ୍ୟକ୍ତିମାନଙ୍କର ଚିତ୍ତକ୍ଷେତ୍ର ଆନନ୍ଦ ରସରେ ପ୍ଲାବିତ ହୋଇଯାଏ, ସେକି ଏକ ସ୍ୱତନ୍ତ୍ର ଭାଷା ନୁହେ ? ତେବେ ସାୟନ୍ତାଳୀ ଭାଷା ଭାଷା, ତାହାର ଉନ୍ନତି କରାଯିବ, ତହିଁରେ ଟେଲିଗ୍ରାଫର ଅକ୍ଷର ପରି ନୂଆ ଅକ୍ଷର ଆବିଷ୍କାର କରିବାକୁ ହେବ, ମାତ୍ର ଉତ୍କଳ ଭାଷାର ଅବନତି ଚେଷ୍ଟା କରାଯିବ କାରଣ ତହିଁରେ ନାନା ପ୍ରକାର ପୋଥି ଅଛି; ଶାସ୍ତ୍ର ଅଛି ଏବଂ ତାହା ପ୍ରଶସ୍ତ ଋପେ ପ୍ରଚଳିତ ହେଉଅଛି । ଅନ୍ଧ ଆଗରେ ଆଲୁଅ ଅନ୍ଧାର ସମାନ ।

*ଅତିରିକ୍ତ, ୨୫।୧।୧୮୬୮*

## ଓଡ଼ିଶାରେ ବଙ୍ଗଭାଷାର ଶିକ୍ଷା ।

ଏ ପ୍ରସ୍ତାବରେ ଅସ୍ମଦ୍ଦେଶୀୟ ଲୋକମାନେ କି ପର୍ଯ୍ୟନ୍ତ ବ୍ୟସ୍ତ ଓ ଶଙ୍କାଯୁକ୍ତ ହୋଇଅଛନ୍ତି ତାହା ସହଜରେ ଜଣା ଯାଉଅଛି । ଗତ ସପ୍ତାହର ଅତିରିକ୍ତ ପତ୍ରିକାରେ ବାଲେଶ୍ୱରର ଜଣେ ପତ୍ର ପ୍ରେରକର ପତ୍ରର ତତ୍ରତ୍ୟ ଲୋକଙ୍କର ଅଭିପ୍ରାୟ ଉତ୍ତମରପେ ପ୍ରକାଶ ପାଉଅଛି । ବାଲେଶ୍ୱର ବଙ୍ଗଦେଶର ନିକଟବର୍ତ୍ତୀ ଓ ସେଠାରେ ବଙ୍ଗଭାଷାର ଲିଖନ ପଠନ ଯଥେଷ୍ଟ ପରିମାଣରେ ହୁଅଇ କିନ୍ତୁ ସେମାନେ ଉତ୍କଳ ଭାଷାକୁ ସ୍ୱତନ୍ତ୍ର ଭାଷା ଜ୍ଞାନ କରଅଛନ୍ତି ଏବଂ ଏହା ସେମାନଙ୍କର ମାତୃଭାଷା ଥିବାର ତହିଁପ୍ରତି ଅତ୍ୟାଚରର ଉପକ୍ରମ ଦେଖି କାତର ହୋଇଅଛନ୍ତି । ଏହି ନଗରରେ ମଧ୍ୟ ଗତ ରବିବାର ଏ ସ୍ଥାନର ପ୍ରଧାନ ପ୍ରଧାନ ବ୍ୟକ୍ତିମାନେ ଏକ ସଭାକରି ଶିକ୍ଷା ବିଭାଗର କର୍ମଚାରୀଙ୍କ ପ୍ରସ୍ତାବ ବିରୁଦ୍ଧରେ କମିଶ୍ନରଙ୍କ ନିକଟରେ ଆବେଦନ କରିବାର ସ୍ଥିର କରିଅଛନ୍ତି । ଏ ସମସ୍ତ ଲୋକଙ୍କ ବିବେଚନା କି ଗ୍ରାହ୍ୟର ଉପଯୁକ୍ତ ନୁହଇ ? ଶିକ୍ଷା ବିଭାଗର କର୍ମଚାରୀମାନେ ଯାହା କହିବେ ସେହି କଥା କି ସତ୍ୟ ହେବ ? ଏମାନେ ଉଚ୍ଚପଦ ପାଇଲେ ବୋଲି କି ଏମାନଙ୍କ ବୁଦ୍ଧି ସର୍ବାପେକ୍ଷା ଶ୍ରେଷ୍ଠ ହେଲା ? ଦେଶୀୟ ଲୋକଙ୍କର ଏ

ବିଷୟରେ ଯେରପ ମନର ଗତି ଦେଖା ଯାଉଅଛି ତଦ୍ୱାରା ସ୍ପଷ୍ଟ ପ୍ରକାଶ ଯେ ଏମାନେ ମାତୃଭାଷାର ସ୍ନେହ କଦାଚ ତ୍ୟାଗକରି ପାରିବେ ନାହିଁ ସୁତରାଂ ଏ ଦେଶରେ ବଙ୍ଗ ଭାଷାରେ ଶିକ୍ଷା ଦେଲେ ଅର୍ଥବ୍ୟୟ ମାତ୍ର ସାର ହେବ, ଅତ୍ରତ୍ୟ ଲୋକଙ୍କର ଉପକାର ହେବନାହିଁ । ଯେବେ କୌଣସି ଉପକାରର ସମ୍ଭାବନା ଥାଆନ୍ତା ତାହାହେଲେ ଏମାନେ କିପାଁ ଆପତ୍ତି କରନ୍ତେ । ଇଂରାଜୀ କି ପାରସି ଶିକ୍ଷା କରିବାକୁ ତ କାହାରି ଆପତ୍ତି ନାହିଁ ।

ଉତ୍କଳ ଭାଷାରେ ବିଦ୍ୟାଳୟର ପାଠୋପଯୁକ୍ତ ପୁସ୍ତକ ନଥିବା ବଙ୍ଗଭାଷା ଚଳାଇବାର କାରଣ ହୋଇଅଛି ମାତ୍ର ଯେଉଁମାନେ ଏରପ ଯୁକ୍ତି କରନ୍ତି ସେମାନେ ଦେଶ କାଳ ବିବେଚନା କରୁନାହାନ୍ତି ଦୁଃଖର ବିଷୟ ଅଟଇ । ବଙ୍ଗ ଦେଶରେ ଏତେକାଳର ଗବର୍ଣ୍ଣମେଣ୍ଟ ବିଦ୍ୟାଳୟ ସ୍ଥାପନ କରିଅଛନ୍ତି ଏବଂ ଉପଯୁକ୍ତ ପୁସ୍ତକ ରଚନା ନିମିତ୍ତ କେତେଟଙ୍କା ବ୍ୟୟ କରିଅଛନ୍ତି ତାହା କି ବିଚାରର ଯୋଗ୍ୟ ନୁହଇ ? ଏକା ସ୍କୁଲବୁକ ସୋସାଇଟୀ କେବଳ ପୁସ୍ତକ ଯୋଗାଇବା ନିମିତ୍ତ ଟ୫୦୦ଙ୍କା ଲେଖାଏଁ ଗତ ବ୫୦ର୍ଷର ପାଇ ଆସୁଅଛନ୍ତି । ଓଡ଼ିଶାରେ କିଞ୍ଚିନ୍‌ମାତ୍ର ସାହାଯ୍ୟ କରିଥିଲେ କି ପୁସ୍ତକର ଅଭାବ ଅଦ୍ୟାପି ରହନ୍ତା ? ତଥାଚ ଓଡ଼ିଶାବାସିମାନେ ଆପଣା ଭାଷା ଉନ୍ନତି ପକ୍ଷରେ ଅଳସ କରିନାହାନ୍ତି । କଟକରେ ଏକ ମୁଦ୍ରାଯନ୍ତ୍ର ବସି ଏତେବେଳେ ସେଥିରେ ସୁନ୍ଦର ପାଠୋପଯୋଗୀ ପୁସ୍ତକ ମୁଦ୍ରିତ ହେଉଅଛି ଏବଂ ବାଲେଶ୍ୱରକୁ ମଧ ଏକ ମୁଦ୍ରାଯନ୍ତ୍ର ଆସିଲାଣି । ଅବିଳମ୍ବରେ କାର୍ଯ୍ୟ ଆରମ୍ଭ ହେବ ଏବଂ ଅଳ୍ପକାଳରେ ଆବଶ୍ୟକୀୟ ପୁସ୍ତକମାନ ପ୍ରାପ୍ତ ହୋଇ ପାରିବ । ଏଥିରେ ଯେବେ ଗବର୍ଣ୍ଣମେଣ୍ଟ ସାହାଯ୍ୟ କରନ୍ତି ତେବେ ଆହୁରି ଶୀଘ୍ର ହେବାର ସମ୍ଭାବନା । ଆମ୍ଭେମାନେ ଏତେକାଳ ଶିକ୍ଷାର ଅଭାବ ସହ୍ୟ କଲୁଁ ଆଉ ଦୁଇ ତିନିବର୍ଷରେ ଆମ୍ଭମାନଙ୍କର କିଛି କ୍ଷତି ହେବନାହିଁ । ତେବେ କି ହେତୁର ଗବର୍ଣ୍ଣମେଣ୍ଟ ଦେଶୀୟ ଲୋକଙ୍କ ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରି ବିଦ୍ୟାଳୟ ପ୍ରତି ମନ୍ଦ ସଂସ୍କାର ଜନ୍ମାଇବେ ।

ଗବର୍ଣ୍ଣମେଣ୍ଟ ଶିକ୍ଷା ବିଭାଗର କର୍ମଚାରୀଙ୍କ ମତାନୁଗାମୀ ହୋଇ ନିତାନ୍ତରେ ଯଦି ବଙ୍ଗଭାଷାରେ ଶିକ୍ଷା ଦିଅନ୍ତି ତେବେ ଆମ୍ଭମାନଙ୍କର ଭାଷା ଲୋପ ହୋଇଯିବ ବୋଲି ଆମ୍ଭେମାନେ ଚିନ୍ତିତ ନୋହୁଁ । ମୁସଲମାନମାନଙ୍କ ଶାସନ ବିସ୍ତାର ହେବା ସମୟରେ ଇଂରାଜମାନେ ଏ ଦେଶକୁ ଗ୍ରହଣ କରିବାର ବ୪୦ର୍ଷ ପର୍ଯ୍ୟନ୍ତ ପାରସ୍ୟ ଭାଷାରେ ସରକାରୀ ସମସ୍ତ କାର୍ଯ୍ୟ ହେଉଥିଲା ଏବଂ ଧନ ଉପାର୍ଜନ ଆଶାରେ ବିସ୍ତର ଲୋକ ଆପଣା ପୁତ୍ରାଦିଙ୍କୁ ଉକ୍ତ ଭାଷାରେ ଶିକ୍ଷା ଦେବାର ଯତ୍ନ କରିବାର ଉତ୍କଳଭାଷାର ହତାଦର ହୋଇଥିଲା । ତଥାପି ତାହା ଲୋପ ହେଲାନାହିଁ । କିପରି ଅବା ଲୋପ ହେବ ? ମାଣିକ୍ୟକୁ ଅନ୍ଧାର ଘରରେ ଲୁଚାଇ ରଖିବାର ଚେଷ୍ଟା କଲେ ତାହା କି ଲୁଚି ରହି ପାରିବାର ପଦାର୍ଥ ?

X X X X X X X X X X

ଉପସଂହାର ସ୍ଥଳେ ଆମ୍ଭେମାନେ ମଧ୍ୟପ୍ରଦେଶର ଶାସନକର୍ତ୍ତାଙ୍କୁ ପ୍ରଶଂସା ନକରି କ୍ଷାନ୍ତ ହୋଇ ପାରନାହୁଁ । ଉକ୍ତ ପ୍ରଦେଶାନ୍ତର୍ଗତ ସମ୍ବଲପୁର ବିଭାଗରେ ଉତ୍କଳ ଭାଷାର ଶିକ୍ଷା ଦିଆ ଯାଉଅଛି ଏବଂ ସେ ସ୍ଥାନର କମିଶନ ଅତି ସୁବିଚାର ପୂର୍ବକ ଉତ୍କଳ ଦେଶୀୟ ଜଣେ ସୁଶିକ୍ଷିତ ବ୍ୟକ୍ତି ଶ୍ରୀ ବାବୁ ବିନ୍ଦ ପଟ୍ଟନାୟକଙ୍କୁ ଶିକ୍ଷା ସଂକ୍ରାନ୍ତ ଇନସ୍ପେକଟର ନିଯୁକ୍ତ କରିଅଛନ୍ତି । ପଟ୍ଟନାୟକ ମହାଶୟଙ୍କ ଉଦ୍ୟମରେ ଏହିବର୍ଷ ମଧ୍ୟରେ ତିନି ଚାରିଖଣ୍ଡ ବିଦ୍ୟାଳୟ ପାଠୋପଯୋଗୀ ପୁସ୍ତକ ପ୍ରସ୍ତୁତ ହେଲାଣି ଏବଂ ଆହୁରି କେତେ ପୁସ୍ତକ ହେବାର ସମ୍ଭାବନା ଅଛି । ବଙ୍ଗ ଦେଶର ଡାଇରେକ୍‌ଟର ଯେବେ ମଧ୍ୟପ୍ରଦେଶର ପ୍ରଦର୍ଶିତ ଦୃଷ୍ଟାନ୍ତର ଅନୁଗାମୀ ହୁଅନ୍ତେ ତେବେ ଅବଧି କେତେ ସୁବିଧା ହୋଇଯାନ୍ତା ।

*ଭା୩ଗ, ସଂ୫ଖ୍ୟା, ୧ । ୨ । ୧୮୬୮*

## କଟକରେ ନରମାଲ ସ୍କୁଲ ସ୍ଥାପନ ।

ଓଡ଼ିଶା ପ୍ରଦେଶର ସ୍କୁଲସମୂହ ନିମିତ୍ତ ଉପଯୁକ୍ତ ଶିକ୍ଷକ ଯୋଗାଇବା ଅଭିପ୍ରାୟରେ କଟକ ନଗରରେ ଏକ ବୃହତ୍ ନରମାଲ ସ୍କୁଲ ସ୍ଥାପନ କରିବାର ପ୍ରସ୍ତାବ ହେବାର ଗବର୍ଣ୍ଣମେଣ୍ଟ ଅନୁମୋଦନ କରଅଛନ୍ତି ଏବଂ ସେଥିର ବ୍ୟୟ ନିମିତ୍ତ ମାସିକ ଟ୧୦୦୦ଙ୍କା ଖର୍ଚ୍ଚ ଦେବାକୁ ସ୍ୱୀକୃତ ହୋଇଅଛନ୍ତି । ଏ ବିଦ୍ୟାଳୟରେ ଓଡ଼ିଶାର ପ୍ରତ୍ୟେକ ଜିଲା କାରଣ ଜ୨୦ଣ ଲେଖାଏଁ ଜ୬୦ଣ ଶିକ୍ଷକ କାର୍ଯ୍ୟରେ ଉପଯୁକ୍ତ ହେବାପାଇଁ ଅଧ୍ୟୟନ କରିବେ ।

*ଭା୩ଗ,ସଂ୬ଖ୍ୟା, ୮।୨।୧୮୬୮*

## ବିଜ୍ଞାପନ

## କୃଷ୍ଣସିଂହ ମହାଭାରତ ଓ ହରିବଂଶ ।

X X X X X X X X X X

ଏହି ପୁସ୍ତକ ପାଠକଲେ କୁଳଧର୍ମ ଓ ଦେଶ ଜାତିଧର୍ମ ଓ ନୀତି ବିଦ୍ୟା ଏବଂ ସଭାରେ ବାକ୍‌ପଟୁତା ଏହା ସକଳ ଜଣାଯାଏ ଆହୁରି ମଧ୍ୟ ପଣ୍ଡିତମାନଙ୍କର ମହୋପକାରରେ ଆସେ କେମନ୍ତ କି ସଂସ୍କୃତ ମହାଭାରତରେ ଯେଉଁ ଯେଉଁ କଷ୍ଟ ସ୍ଥଳସବୁ ଅଛି ତାହା ମଧ୍ୟ ଏଥିରେ ସାର୍ଥ ହୋଇଅଛି ଏବଂ ଶାରଳା ଦାସଙ୍କ କୃତ ଭାଷା ଭାରତ ଯାହାକି ସମ୍ପ୍ରତି ଚଳୁଅଛି ତାକୁ ସଂସ୍କୃତ ଭାରତ ସଙ୍ଗେ ତୁଳନା କଲେ କୌଣସି ଅଂଶରେ ଐକ୍ୟ ନହୋଇ ବରଂ ଅନେକ ସ୍ଥଳରେ ଅଶୁଦ୍ଧତା ଥିବା ହେତୁର ବିଜ୍ଞଜନମାନଙ୍କର ଆନନ୍ଦକାରକ ହେଉନାହିଁ । ଏହି ପୁସ୍ତକକୁ ଧରାକୋଟ ଦେଶ ରାଜା କୃଷ୍ଣସିଂହ ନାମଧେୟ ଜଣେ ସମ୍ୱତ ୧୮୫୩ ଅର୍ଥାତ୍ ଇଂରାଜୀ ୧୭୯୭ ସାଲରେ କବିସୂର୍ଯ୍ୟ ଓ ଭାରତୀଭୂଷଣ ପ୍ରଭୃତି ପ୍ରଧାନ ପ୍ରଧାନ ପଣ୍ଡିତଙ୍କ ସାହାଯ୍ୟରେ ସଂସ୍କୃତର ଅନୁବାଦ କରିଥିଲେ ।

X X X X X X X X X X

ପ୍ରକାଶ ଥାଉକି ଅଗ୍ରିମ ମୂଲ୍ୟ ପ୍ରଦାନ କର୍ତ୍ତାମାନେ ପୁସ୍ତକ ମୁଦ୍ରିତ ହେଲାର ଉପରୋକ୍ତ ପ୍ରକାର ନିର୍ଧାର୍ଯ୍ୟ ମୂଲ୍ୟର ଟ୨ଙ୍କା ନ୍ୟୂନରେ ଅର୍ଥାତ୍ ଟ୧୮ଙ୍କା ରେ ସେହି ପୁସ୍ତକ ପାଇବେ । କଟକ, ପୁରୀ,ବାଲେଶ୍ୱର ଜିଲାନ୍ତର୍ଗତ ଗ୍ରାହକମାନେ କଟକ ପ୍ରିଣ୍ଟିଂକମ୍ପାନିଙ୍କ ସେକ୍ରେଟରୀ ଶ୍ରୀବାବୁ ଗୌରୀଶଙ୍କର ରାୟଙ୍କ ନିକଟକୁ ଏବଂ ସମ୍ୱଲପୁରସ୍ଥ କ୍ରୟେଚ୍ଛୁମାନେ ସେହି ଜିଲା ଅନ୍ତର୍ଗତ ବିଦ୍ୟାଳୟ ସମୂହର ତତ୍ତ୍ୱାବଧାରକ ଶ୍ରୀଯୁକ୍ତ ବାବୁ ବିଚ୍ଛନ୍ଦ ପଟ୍ଟନାୟକ ମହାଶୟଙ୍କ ସମୀପକୁ ଅଥବା ଉକ୍ତ ଜିଲାନ୍ତର୍ଗତ ବରଗଡ଼ ତହସିଲଦାର ବାବୁ ବାଳମୁକୁନ୍ଦ ପଟ୍ଟନାୟକ ମହାଶୟଙ୍କ ନିକଟକୁ ଉକ୍ତ ପୁସ୍ତକ ନେବାର ସମ୍ମତି କିଂବା ଅଗ୍ରିମ ମୂଲ୍ୟ ପ୍ରଦାନ କଲେ ପୁସ୍ତକ ପାଇପାରିବେ ।

X X X X X X X X X X

ତା୨୩ରିଖ ମାହେ ଅକ୍ଟୁବର
ସନ୧୮୬୭ ସାଲ

ବିଚ୍ଛନ୍ଦ ପଟ୍ଟନାୟକ

*ଭା୩ଗ, ସଂ୭ଖ୍ୟା ,୧୫।୨।୧୮୬୮*

## ଉତ୍କଳ ଭାଷାର ଉନ୍ନତି କିରପେ ସମ୍ଭବ ।

ଆମ୍ଭେମାନେ ଏଥିପୂର୍ବ ପତ୍ରିକାରେ ଉତ୍କଳଭାଷା ଶିକ୍ଷା ବିଷୟରେ ହେତୁମାନ ଦର୍ଶାଇ ଅଛୁଁ । ସେଥିର ବୋଧ ହୋଇଥିବ ଯେ ଏ ପ୍ରଦେଶର ଭାଷା ଅବଧି ଉନ୍ନତାବସ୍ଥାକୁ ପ୍ରାପ୍ତ ହୋଇନାହିଁ ବୋଲି ତାହା ପରିତ୍ୟାଗର ପଦାର୍ଥ ନୁହଇ । ସମ୍ପ୍ରତି ସରକାରୀ କର୍ମଚାରୀମାନେ ଏ ବିଷୟରେ ତର୍କବିତର୍କ କରି ନାନା ପ୍ରକାର ଅଭିପ୍ରାୟ ବ୍ୟକ୍ତ କରଅଛନ୍ତି କିନ୍ତୁ ସମସ୍ତଙ୍କର ଇଚ୍ଛା ଏରପ ଜଣାଯାଏ ଯେ କୌଣସି ରପେ ଉତ୍କଳ ଭାଷା ଶୀଘ୍ର ବଙ୍ଗଭାଷା ପରି ଉଜ୍ଜ୍ୱଳ ହୋଇ ପ୍ରକାଶ ପାଉ । କିରପେ ଏ ଆଶାପୂର୍ଣ୍ଣ ହେବ ବର୍ତ୍ତମାନ ତହିଁର ବିଚାର କରିବାର ଆବଶ୍ୟକ । ଏହିନିମିତ୍ତ ଅଦ୍ୟ ଆମ୍ଭେମାନେ ଆପଣା ଅଭିପ୍ରାୟ ପ୍ରକାଶ କରଅଛୁଁ ।

ଆମ୍ଭମାନଙ୍କର ଜାଣିବାରେ ତଳଲିଖିତ ଉପାୟମାନଙ୍କ ଦ୍ୱାରା ଉତ୍କଳ ଭାଷାର ଉନ୍ନତି ହୋଇପାରେ ।

୧ । କି ସରକାରୀ କି ଚାନ୍ଦାଦାର ସମସ୍ତ ବିଦ୍ୟାଳୟର ବଙ୍ଗଭାଷା ଏକା ବେଳେକେ ଉଠାଇ ଦେବା ।

୨ । ଉତ୍କଳ ଭାଷାରେ ପୁସ୍ତକାଦି ରଚନା କରିବାକୁ ସମୁତ୍ସୁକ ଥିବା ବ୍ୟକ୍ତିମାନଙ୍କୁ ଗବର୍ଣ୍ଣମେଣ୍ଟର ଯଥୋପଯୁକ୍ତ ସାହାଯ୍ୟ କରିବା ।

୩ । କେଉଁ ପୁସ୍ତକ ବିଦ୍ୟାଳୟରେ ଚଳିବାର ଉପଯୁକ୍ତ ସେଥିର ବିଚାର ସ୍କୁଲ ଇନସ୍ପେକ୍‌ଟରଙ୍କ ଦ୍ୱାରା ନହୋଇ ଏ ପ୍ରଦେଶର ଦୁଇତିନି ସମ୍ଭ୍ରାନ୍ତ ବ୍ୟକ୍ତିଙ୍କୁ ଉକ୍ତ ବିଷୟର ଭାର ଦେବା ।

୪ । ଶିକ୍ଷା ବିଭାଗର ସମସ୍ତ ବିଜ୍ଞାପନ ଓ ଆଜ୍ଞାମାନ ସାଧାରଣ ଗୋଚରାର୍ଥେ ଭାଷା ସଂବାଦପତ୍ରରେ ପ୍ରକାଶ କରିବା ।

ପ୍ରଥମ ପ୍ରସ୍ତାବରେ ଆମ୍ଭମାନଙ୍କର ଉପକାର ଏହି ଅଛି ଯେ ବଙ୍ଗ ଭାଷା ଉଠିଗଲେ ଶିକ୍ଷା ବିଭାଗର କର୍ମଚାରୀମାନେ ଉତ୍କଳ ଭାଷାର ଉନ୍ନତି ଚେଷ୍ଟା କରିବାକୁ ବାଧ୍ୟ ହେବେ । ବର୍ତ୍ତମାନ ଏ କର୍ମଚାରୀମାନେ ବଙ୍ଗଦେଶର ଆସୁଥିବାର ଏ ଦେଶୀୟଭାଷା ଜାଣନ୍ତି ନାହିଁ ଏବଂ ବିଦ୍ୟାଳୟରେ ବଙ୍ଗଳା ପଠନ ହେଉଥିବାର ଉତ୍କଳ ପକ୍ଷରେ ଆସ୍ଥା ଦିଅନ୍ତି ନାହିଁ । କେବଳ ଉତ୍କଳ ଭାଷା ପଠନ ହେଲେ ସେମାନେ ଅବଶ୍ୟ ଉତ୍କଳ ବିଦ୍ୟା ଶିକ୍ଷା କରିବେ ନତୁବା କର୍ମ ତ୍ୟାଗ କରିବେ । ସୁତରାଂ ଓଡ଼ିୟା ଭାଷାର ଆଦର ବଢ଼ିବ । କେହି କେହି କହନ୍ତି ଯେ ଉତ୍କଳ ଭାଷାରେ ଯଥେଷ୍ଟ ପୁସ୍ତକ ନାହିଁ ଅତଏବ ଏ ସମୟରେ ବଙ୍ଗଳା ଭାଷା ଉଠାଇ ଦେଲେ ବିଦ୍ୟାଳୟ ସବୁ ବନ୍ଦ କରିବାକୁ ପଡ଼ିବ ମାତ୍ର ବିବେଚନା କରି ଦେଖିଲେ ଏ ପ୍ରଦେଶର ଭାଷାବିଦ୍ୟାଳୟ ନିମିତ୍ତ ଯଥେଷ୍ଟ ପୁସ୍ତକ ଅଛି ଅର୍ଥାତ୍ ବଙ୍ଗଳାରେ ଯେପ୍ରକାର ପୁସ୍ତକମାନ ପଠିତ ହୁଅଇ ଓଡ଼ିଶା ଭାଷାରେ ସେପ୍ରକାର ପୁସ୍ତକ ପ୍ରାପ୍ତ ହୁଅଇ ଏବଂ କ୍ରମଶଃ ଉତ୍କଳ ପୁସ୍ତକର ଏ ପ୍ରକାର ବୃଦ୍ଧି ହେଉଅଛି ଯେ ଅଳ୍ପକାଳରେ ପ୍ରାୟ ଶିକ୍ଷାର ଉପଯୋଗୀ ସମସ୍ତ ପୁସ୍ତକ ପ୍ରାପ୍ତ ହେବ । ଯେଉଁମାନେ ଓଡ଼ିଶାର ଏ ଅବସ୍ଥା ଜାଣିପାର ନାହାନ୍ତି ଓ ନୟନ ମୁଦ୍ରିତ କରି କହନ୍ତି ଯେ ଉତ୍କଳ ଲୋକମାନେ ଆପଣା ଭାଷାର ଉନ୍ନତି ନିମିତ୍ତ କିଛି କରନାହାନ୍ତି ସେମାନଙ୍କୁ ଆମ୍ଭେମାନେ ଏତିକି କହୁଅଛୁଁ ଯେ ଥରେ କଟକ ପ୍ରିଣ୍ଟିଂ କମ୍ପାନୀର କାର୍ଯ୍ୟ ଏବଂ ବାଲେଶ୍ୱରର ଛାପାଖାନା ସ୍ଥାପନର ଉଦ୍‌ଯୋଗକୁ ଆଲୋଚନା କରନ୍ତୁ । ତାହାହେଲେ ସେମାନଙ୍କର ଭ୍ରମ ଦୂରହେବ । ବଙ୍ଗଭାଷାର ଉନ୍ନତି ନିମିତ୍ତ ଗବର୍ଣ୍ଣମେଣ୍ଟ ଓ ବିଦେଶୀୟ ହିତୈଷୀମାନେ ଯେ ପରିମାଣରେ ସାହାଯ୍ୟ କରିଅଛନ୍ତି ତାହାର କୌଣସି ଅଂଶ ଏଠାରେ ପ୍ରାପ୍ତ ହୋଇନଥିଲେ ସୁଦ୍ଧା ଏଦେଶର ଲୋକମାନେ ଆପଣା କର୍ତ୍ତବ୍ୟ କରଅଛନ୍ତି, ଏହା ସାମାନ୍ୟ ସୁଖ୍ୟାତିର ବିଷୟ ନୁହଇ ।

ଦ୍ୱିତୀୟ ପ୍ରସ୍ତାବରେ କିଛି ବାକ୍ୟ ବ୍ୟୟ କରିବାର ପ୍ରାୟ ଆବଶ୍ୟକ ନାହିଁ । ଗବର୍ଣ୍ଣମେଣ୍ଟ ସାହାଯ୍ୟ ଦେଲେ ଯେ ବିସ୍ତର ପୁସ୍ତକର ସୃଜନ ହେବ ଏହା ସମସ୍ତେ ଅନୁଭବ କରିପାରିବେ । ସମ୍ପ୍ରତି ଅନେକ ଲୋକ ପୁସ୍ତକ ରଚନାରେ ପ୍ରବୃତ୍ତ ହୋଇଅଛନ୍ତି କିନ୍ତୁ ମୁଦ୍ରାଙ୍କନର ବ୍ୟୟ ଦେଇ ପାରନାହାନ୍ତି ବୋଲି ସେମାନଙ୍କର ପରିଶ୍ରମ ବିଫଳ ଓ ଉତ୍ସାହ ଭଙ୍ଗ ହେଉଅଛି । ଯଦ୍ୟପି ସେମାନେ ଆପଣା ପରିଶ୍ରମର କିୟଦଂଶ ପ୍ରାପ୍ତ ହୋଇପାରନ୍ତି କିମ୍ବା ନିତାନ୍ତ ପକ୍ଷରେ ପୁସ୍ତକ ମୁଦ୍ରାଙ୍କନର ବ୍ୟୟ ନିର୍ବାହ କରିପାରନ୍ତି ତାହାହେଲେ ବିସ୍ତର ପୁସ୍ତକ ପ୍ରଚାର ହେବ । ଧନାର୍ଜନାପେକ୍ଷା ନାମ ବିଖ୍ୟାତ ନିମିତ୍ତ ବିସ୍ତର ଲୋକ ପୁସ୍ତକ ପ୍ରଚାରର କଳ୍ପନା କରନ୍ତି । କେବଳ ଅତି ଅକର୍ତ୍ତବ୍ୟ ସ୍ଥଳରେ ତାହା ସିଦ୍ଧ ହୁଅଇ ନାହିଁ । ଗବର୍ଣ୍ଣମେଣ୍ଟ ପୁରସ୍କାର ଦେବାକୁ ପ୍ରସ୍ତୁତ ହେଲେ ବିସ୍ତର ପୁସ୍ତକ ପ୍ରଚାର ହେବ ସନ୍ଦେହ ନାହିଁ ।

ତୃତୀୟ ପ୍ରସ୍ତାବରେ ଆମ୍ଭମାନଙ୍କର ଉଦ୍ଦେଶ୍ୟ ଏହି ଯେ ଉତ୍କଳ ପୁସ୍ତକର ଦୋଷଗୁଣ ବିଚାର ବିଦେଶୀୟ ଲୋକଙ୍କଦ୍ୱାରା ଉତ୍ତମ ହେବନାହିଁ । ଅନେକ ମନ୍ଦପୁସ୍ତକ ନାନା କାରଣର ଭଲବୋଲି ପରିଗଣିତ ହେବ । ଦେଶଭାଷାକୁ ସମ୍ୟକ୍‌ରୂପେ ଜ୍ଞାତଥିବା ବ୍ୟକ୍ତିଙ୍କୁ କେହି ସହଜରେ ପ୍ରତାରିତ କରିପାରିବ ନାହିଁ । ସୁତରାଂ ପକ୍ଷପାତିତା ଚଳିବ କୌଣସି ଭରସା ନରହିବ ।

ଚତୁର୍ଥତଃ ପ୍ରସ୍ତାବ ଗ୍ରହଣ କଲେ ଆମ୍ଭେମାନେ ଆଶାକର୍ଯେ ଏ ଦେଶୀୟ ଲୋକମାନେ ଶିକ୍ଷାବିଭାଗର ଅନେକ ବିଷୟ ଜାଣି ପାରିବେ । ବର୍ତ୍ତମାନ ଅସ୍ମଦ୍ଦେଶୀୟ ଲୋକମାନେ ସାଧାରଣ ଶିକ୍ଷା କାର୍ଯ୍ୟ କିରୂପେ ଚଳୁଅଛି

ଜାଣି ନ ପାରିବାର ଏ ବିଷୟରେ ମନୋଯୋଗୀ ହେଉନାହାନ୍ତି । ଯେବେ କୌଣସି ଉପାୟ ଦ୍ୱାରା ଏ ବିଭାଗର ନାନା ସଂବାଦ ସମୟ ସମୟରେ ତାହାଙ୍କୁ ଜ୍ଞାତ କରାଯାଏ ତେବେ ସ୍ୱଭାବତଃ ସେମାନେ ଶିକ୍ଷାକାର୍ଯ୍ୟ ସଂକ୍ରାନ୍ତ ବିଷୟମାନ ଭାବନା କରିବେ ସୁତରାଂ ଏ କଥାମାନଙ୍କରେ ଅବହେଳା ଜନ୍ମିବ ନାହିଁ ।

ଆମ୍ଭେମାନେ ଭରସାକରଁ ଯେ ଏ ପ୍ରଦେଶର କମିଶ୍ନର ଉପର୍ଯ୍ୟୁକ୍ତ ପ୍ରସ୍ତାବମାନ ଆପଣାମନରେ ବିଚାର କରନ୍ତୁ ଏବଂ କୌଣସି ପ୍ରସ୍ତାବ ତାହାଙ୍କ ବିବେଚନାରେ ଗ୍ରାହ୍ୟର ଯୋଗ୍ୟ ହେଲେ ତାହା ପ୍ରତିପାଳନ ହେବା ପକ୍ଷରେ ଯତ୍ନବାନ୍ ହେଉନ୍ତୁ । ଉତ୍କଳ ଭାଷାର ଉନ୍ନତି ଚେଷ୍ଟା ସେ ଯେରପ କରଅଛନ୍ତି ଏବଂ ଏ ଦେଶର ବାଳକମାନଙ୍କୁ ସୁଶିକ୍ଷିତ ହେବାପାଇଁ ଯେରପ ଉତ୍ସାହ ଦେଉଅଛନ୍ତି ଏଥିରେ ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଭରସା ହେଉଅଛି ଯେ ଏ ସମୟରେ ତାହାଙ୍କ ଦ୍ୱାରା ଏକ ବୃହତ୍ କାର୍ଯ୍ୟ ସାଧନ ହେଲେ ତାହାଙ୍କ ନାମ ଚିରସ୍ମରଣୀୟ ହେବ ।

ଓଡ଼ିଶାର ତଳଲିଖିତ ଭଦ୍ରଲୋକମାନେ ସାଧାରଣ ଶିକ୍ଷା କାର୍ଯ୍ୟରେ ସାହାଯ୍ୟ ଓ ଉତ୍ସାହ ପ୍ରଦାନ କରିଥିବାର ଦକ୍ଷିଣ ପଶ୍ଚିମାଞ୍ଚଳର ଇନସ୍ପେକ୍ଟର ରିପୋର୍ଟ କରିଅଛନ୍ତି ।

କଟକ ଓ ବାଲେଶ୍ୱର- ଜାଜପୁରର ଆଶିଷ୍ଟାଣ୍ଟ କଲେକ୍ଟର ଆର୍ମଷ୍ଟ୍ରଂ ସାହେବ । କେନ୍ଦ୍ରାପଡ଼ାର ଆଶିଷ୍ଟାଣ୍ଟ କଲେକ୍ଟର ଜି.କେ. ବେବଷ୍ଟର ସାହେବ । ବାବୁ ଗୋଲକ ଚନ୍ଦ୍ର ବୋଷ, ବାବୁ ଶିବ ପ୍ରସାଦ ସିଂହ ଏବଂ ବାବୁ ବୃନ୍ଦାବନ ମଣ୍ଡଳ ।

ପୁରୀ ଅନଗୁଳରେ – ବାବୁ ରାମାକ୍ଷୟ ଚଟ୍ଟୋପାଧ୍ୟାୟ, ବାବୁ ଉଦୟଚାନ୍ଦ ଦତ୍ତ, ବାବୁ ପ୍ରସନ୍ନ ଚନ୍ଦ୍ର ଗାଙ୍ଗୁଲି, ବାବୁ ସରସିଂହ ଚରଣ ଦାସ ଓ ବାବୁ କୃଷ୍ଣ ମୋହନ ରାୟ ।

*ଭା୩ଗ, ସଂ୧୪ଖ୍ୟା, ୪।୪।୧୮୬୮*

## କଟକ ହାଇସ୍କୁଲର ବାର୍ଷିକ ପାରିତୋଷିକ ଦାନ ।

ଗତ ସୋମବାର ବେଳ ଘ୧ ୧ଣ୍ଟା ସମୟରେ କଟକ ହାଇସ୍କୁଲ ଗୃହରେ ଏ ସଭା ହୋଇଥିଲା । ଅନ୍ୟାନ୍ୟ ଲୋକ ମଧ୍ୟରେ ନଗରବାସୀ ଦିଯୋଟି ବିଲାତି ମେମ ଓ ପ୍ରଧାନ ପ୍ରଧାନ ଇଂରାଜମାନେ ଆଗମନ କରିଥିଲେ ଏବଂ ଏ ଦେଶୀୟ ଗବର୍ଣ୍ଣମେଣ୍ଟ କର୍ମଚାରୀ ଓ ଜମିଦାର ମଧ ଅନେକ ଉପସ୍ଥିତ ଥିଲେ । ଶ୍ରୀଯୁକ୍ତ କମିଶ୍ନର ସାହେବ ସଭାପତି ସ୍ୱରପେ ସଭାର କାର୍ଯ୍ୟାରମ୍ଭ କରି ପ୍ରଥମେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ବାଳକମାନଙ୍କୁ ପ୍ରଶଂସାପତ୍ର ପ୍ରଦାନ କଲେ ଏବଂ ତଦୁତ୍ତାର ଇଂରାଜ ଓ ବଙ୍ଗଳା ଏ ଉଭୟ ବିଦ୍ୟାଳୟର ଯେ ସମସ୍ତ ବାଳକମାନେ ଉତ୍ତମରପେ ପରୀକ୍ଷା ଦେଇଥିଲେ ସେ ସମସ୍ତଙ୍କର ପ୍ରାପ୍ୟ ପାରିତୋଷିକ ବିତରଣ କଲେ । ଏଥିରେ ପ୍ରାୟ ଅଧଘଣ୍ଟାର ଅଧିକ ସମୟ ଗତ ହେଲା । ଗବର୍ଣ୍ଣମେଣ୍ଟଙ୍କ ଦତ୍ତ ପୁରସ୍କାର ବାଣ୍ଟିସାରି ସଭାପତି ମହାଶୟ ଆପଣା ହାତର ଟ୧୦୦ଙ୍କା ବାହାର କରି ଇଂରାଜୀ ସ୍କୁଲର ପ୍ରତ୍ୟେକ ଶ୍ରେଣୀର ଛାତ୍ର ସର୍ବୋତ୍କୃଷ୍ଟ ଉତ୍କଳ ବାଳକଙ୍କୁ ପ୍ରଦାନ କଲେ । ଉପସ୍ଥିତ ଦେଶୀୟ ସଭ୍ୟମାନଙ୍କ ମଧ୍ୟର କେତେକ ଲୋକ ପ୍ରାୟ ଟ୬୫ଙ୍କା କି ଟ୭୦ଙ୍କା ସରିକି ଉପଯୁକ୍ତ ବାଳକମାନଙ୍କୁ ପ୍ରଦାନ କରି ସଭାକୁ ସନ୍ତୁଷ୍ଟ କଲେ । ସଭାପତି ଏବଂ ଅନ୍ୟାନ୍ୟ ସଭ୍ୟମାନଙ୍କର ଏରପ ବଦାନ୍ୟତା ସଦନୁଷ୍ଠାନ ଦେଖି ଛାତ୍ରମାନେ ବୋଧହୁଅଇ ମୌନାବଲମ୍ବନରେ ଅକୃତଜ୍ଞତାର ଆଶଙ୍କା କରି ଇଂରାଜ ବିଦ୍ୟାଳୟର ଏକଜଣ ଛାତ୍ର ଇଂରାଜୀ ଭାଷାରେ ଏବଂ ଅନ୍ୟ ଏତଦେଶୀୟ ଏକଜଣ ଛାତ୍ର ଉତ୍କଳ ଭାଷାରେ ଏକଏକ ଖଣ୍ଡ ପତ୍ର ପାଠକରି ଯତ୍‌କିଞ୍ଚିତ୍‌ରେ ସଭାପତିଙ୍କର ଶିକ୍ଷା ବିଷୟରେ ଯତ୍ନ ଓ ଉତ୍ସାହର ପ୍ରସଙ୍ଗ ବ୍ୟକ୍ତକରି ତାହାଙ୍କୁ ଧନ୍ୟବାଦ ଦେଲେ ଓ ସଭାପତି ଅତି ଆନନ୍ଦ ସହକାରେ ଉକ୍ତ ଦୁଇପତ୍ର ଗ୍ରହଣ କରି ସେମାନଙ୍କର ସମ୍ମାନ କଲେ ଏବଂ ସେମାନଙ୍କୁ କେତେକ ହିତବାକ୍ୟ କହି ଆପଣା ସ୍ନେହର ପରିଚୟ ଦେଲେ ।

ଏ ସକଳ ବ୍ୟାପାର ଶେଷ ହେଲାର ସେକ୍ରେଟରୀ ଶ୍ରୀ ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ଗତବର୍ଷର ବିଜ୍ଞାପନ ପାଠହେଲା । ସେଥିର ଜଣାଗଲା ଯେ ଗତବର୍ଷେ ସ୍କୁଲର କାର୍ଯ୍ୟ ସର୍ବାଂଶରେ ଉତ୍ତମ ଚଳିଅଛି । ଛାତ୍ରଙ୍କ ସଂଖ୍ୟା ଓ ସ୍କୁଲର ଆୟ ଅଧିକ ହୋଇଅଛି, ଶିକ୍ଷକମାନେ କାର୍ଯ୍ୟ ସାଧନଦ୍ୱାରା ପ୍ରଶଂସା ପାଇଅଛନ୍ତି ଏବଂ ହାଇସ୍କୁଲ ସ୍ଥାପନ ହେବାରେ ଏମାନଙ୍କର ବେତନବୃଦ୍ଧି ହୋଇଅଛି ।

ଅନନ୍ତର ସଭାପତି ମହାଶୟ ଗୋଟିଏ ସୁଦୀର୍ଘ ଓ ସଦ୍‌ବକ୍ତୃତା ପ୍ରଦାନ କଲେ । X X X X ଏକ ଏକ ବିଷୟରେ ତାଙ୍କର ମନୋଭାବ ଯେମନ୍ତ ବ୍ୟକ୍ତ କଲେ ସେଥିର ତାଙ୍କର ଗମ୍ଭୀର ବୁଦ୍ଧି ଓ ଆମ୍ଭମାନଙ୍କର ହିତଚେଷ୍ଟାର ପରିଚୟ ପ୍ରାପ୍ତ ହୁଅଇ । ପାଠକମାନଙ୍କର ଜାଣିବା କାରଣ ବକ୍ତୃତାର ସାରାଂଶ ଏଠାରେ ବର୍ଣ୍ଣନା କରଅଛୁଁ ।

ପ୍ରଥମରେ ଗତବର୍ଷର ପରୀକ୍ଷାର ଫଳ ଉତ୍ତମ ବିବେଚନାରେ ଏବଂ ଏଠାରେ ହାଇସ୍କୁଲ ସ୍ଥାପନ ହେବାରେ ସନ୍ତୁଷ୍ଟ ପ୍ରକାଶ କଲେ ଏବଂ ପ୍ରବେଶିକା ପରୀକ୍ଷାରେ ଚାରିଜଣ ଉତ୍ତୀର୍ଣ୍ଣ ହୋଇଥିବାର ତନ୍ନିମିତ୍ତ ପୂର୍ବର ପ୍ରଧାନ ଶିକ୍ଷକ ବାବୁ ପ୍ୟାରୀମୋହନ ବନ୍ଦ୍ୟୋପାଧ୍ୟାୟଙ୍କର ଯତ୍‌ପରୋନାସ୍ତି ପ୍ରଶଂସା କଲେ ଏବଂ ଉତ୍ତରୋତ୍ତର ବିଦ୍ୟାଳୟର ଉନ୍ନତି ଦେଖିବାଲାଗି ନିତାନ୍ତ ବ୍ୟଗ୍ରତା ପ୍ରକାଶ କଲେ ଏବଂ ଏପକ୍ଷରେ ସଂପ୍ରତି ଯେଉଁ ଉପାୟମାନ କରିବାର ପ୍ରସ୍ତାବ ହୋଇଅଛି କି ଶୀଘ୍ର ହେବ ସେ ସମସ୍ତର ବିବରଣ ଓ ହିତାହିତ ଅତି ସୁନ୍ଦର ରୂପେ ବ୍ୟକ୍ତ କଲେ ଯଥା :-

୧। ବର୍ତ୍ତମାନ ଛାତ୍ର ଓ ଶିକ୍ଷକଙ୍କ ସଂଖ୍ୟା ଦୃଷ୍ଟିରେ ସ୍କୁଲ ଗୃହକୁ ବଢ଼ାଇବାର ପ୍ରସ୍ତାବ ।

୨। ଏ ପ୍ରଦେଶରେ ବିଦ୍ୟାଳୟ ସମୂହରେ ବଙ୍ଗଭାଷା ଶିକ୍ଷାଦେବା ପ୍ରସଙ୍ଗରେ ସଭାପତି କହିଲେ ଯେ ତାହାଙ୍କ ବିବେଚନାରେ ବଙ୍ଗଭାଷାର କୌଣସି ପ୍ରୟୋଜନ ନାହିଁ । ଏହାକୁ ଏକାବେଳକେ ଉଠାଇ ଦେବାର କର୍ତ୍ତବ୍ୟ । ସମସ୍ତ ଲୋକଙ୍କୁ ସ୍ୱଦେଶୀୟ ଭାଷା ଶିଖିବାର ଉଚିତ ଏବଂ ଯାହାର କୌଣସି ବିଦେଶୀୟ ବିଦ୍ୟା ଅଭ୍ୟାସ କରିବାର ଆବଶ୍ୟକ ହେବ ସେ ଇଙ୍ଗରେଜୀ ସ୍କୁଲକୁ ଆସିବ । ବଙ୍ଗଳା ଭାଷା ଶିଖି ଏ ଦେଶୀୟ ଲୋକଙ୍କର କିଛି ଉପକାର ନାହିଁ । ଏତେଦିନ ବଙ୍ଗଳା ଭାଷା ଉଠାଇ ନଦେବାର ଏହି କାରଣ ବ୍ୟକ୍ତ ହୋଇଅଛି ଯେ ଉତ୍କଳ ଭାଷାରେ ଶିକ୍ଷୋପଯୋଗୀ ଅନେକ ଓ ଉତ୍ତମ ପୁସ୍ତକ ନାହିଁ କିନ୍ତୁ ବର୍ତ୍ତମାନ ଯେତେ ପୁସ୍ତକ ଉତ୍କଳ ଭାଷାରେ ପ୍ରାପ୍ତ ହୁଅଇ ଏବଂ କଟକ ପ୍ରିଣ୍ଟିଂ କମ୍ପାନୀ ଯେତେ ପୁସ୍ତକ ମୁଦ୍ରିତ କରିଅଛନ୍ତି କିମ୍ବା ମୁଦ୍ରିତ କରିବେ ବୋଲି ପ୍ରସ୍ତୁତ କରଅଛନ୍ତି ଏଥିରୁ ବୋଧହୁଅଇ ଯେ ଏ ଅଭାବ ଅଧିକ କାଳ ରହିବ ନାହିଁ । ବିଶେଷରେ ବର୍ତ୍ତମାନ ଏ ଦେଶର କେତେକ ଲୋକ ଇଂରାଜୀ ଓ ବଙ୍ଗଳା ଭାଷାରେ ଶିକ୍ଷା ଲାଭ କରିଥିବାର ଅତ୍ୟଳ୍ପ କାଳରେ ପ୍ରଚୁର ପୁସ୍ତକ ପ୍ରଚାର କରିବାର ଆଶା ଦେଖା ଯାଉଅଛି । ଏ ଅବସ୍ଥାରେ ବଙ୍ଗଭାଷା ରଖିବାର କୌଣସି କାରଣ ନାହିଁ ।

୩ । କଟକ ହାଇସ୍କୁଲରେ ଭୂମିମାପ ଓ ଜରିବ ଶିକ୍ଷା ଦେବାପାଇଁ ପ୍ରସ୍ତାବ ଗବର୍ଣ୍ଣମେଣ୍ଟକୁ ଯାଇଅଛି ।

୪ । ଆଇନ୍ ଶିକ୍ଷାଦେବା ନିମିତ୍ତ ହାଇସ୍କୁଲରେ କୌଣସି ସୁଯୋଗ କରି ଦେବାପାଇଁ ଏକଖଣ୍ଡ ଆବେଦନପତ୍ର ସଭାପତିଙ୍କ ନିକଟକୁ ଆସିଥିବାରୁ ତାହା ଗ୍ରାହ୍ୟ କରି ସେ କହିଲେ ଯେ ଗବର୍ଣ୍ଣମେଣ୍ଟକୁ ଉକ୍ତ ପ୍ରସ୍ତାବ ପଠାଯିବା ପାଇଁ ଏ ଦେଶର ସ୍କୁଲ କମିଟି ସ୍ଥିର କରିଅଛନ୍ତି ।

X X X X

ପ୍ରଜାମାନଙ୍କ ଅଜ୍ଞାନତା ନାଶ କରିବା ନିମିତ୍ତ ସେମାନଙ୍କୁ ବିଦ୍ୟାଶିକ୍ଷା ଦେବାର ଏକ ସହଜ ଉପାୟର ପ୍ରସ୍ତାବ ହୋଇଅଛି ।

ଏ ଉପାୟର ନାମ ଗୁରୁଶିକ୍ଷା ପ୍ରଣାଳୀ ଅଟଇ । କଟକ ନଗରରେ ଏକ ବୃହତ୍ ବିଦ୍ୟାଳୟ ସ୍ଥାପନକରି ସେଠାରେ ଅବଧାନ ଏବଂ ବିଦ୍ୟାଳୟର ଶିକ୍ଷକ କାର୍ଯ୍ୟାକାଂକ୍ଷୀମାନଙ୍କୁ ଶିକ୍ଷା ଦିଆଯିବ ।

X X X X

ଏହିରୂପେ ଶିକ୍ଷା ସଂକ୍ରାନ୍ତ ପ୍ରଧାନ ପ୍ରଧାନ ବିଷୟର ଆଲୋଚନା କରି ସଭାପତି ବକ୍ତୃତା ଶେଷକଲେ ଏବଂ ତଦୁତ୍ତର ଶ୍ରୀଯୁକ୍ତ ପାଦ୍ରୀ ବକ୍‌ଲି ସାହେବ ସ୍ୱଭାବିକ ସଦ୍ ବକ୍ତୃତାଦ୍ୱାରା ପାଦ୍ରୀମାନଙ୍କଦ୍ୱାରା ଏ ଦେଶର ଶିକ୍ଷାକାର୍ଯ୍ୟ ଯେ ପର୍ଯ୍ୟନ୍ତ ଅଗ୍ରସର ହୋଇଅଛି ସେଥିର ପରିଚୟ ଦେଲେ ।

X X X X

ପାଦ୍ରୀ ବକ୍‌ଲି ସାହେବଙ୍କ ଉତ୍ତାର ପାଦ୍ରୀ କେମ୍‌ଲ ସାହେବ ଆପଣା ଅଧୀନରେଥିବା ବାଳିକାବିଦ୍ୟାଳୟର ଯତ୍ ସାମାନ୍ୟ ପରିଚୟ ଦେଇ ବିଦ୍ୟା ଶିକ୍ଷାଦାନ ବିଷୟରେ ଆପଣାର ଅନୁରାଗ ପ୍ରକାଶ କଲେ ।

X X X X

*ଭା୩ଗ, ସଂ୧୬ଖ୍ୟା, ୧୮।୪।୧୮୬୮*

## ଏଦେଶୀୟ ଲୋକଙ୍କର ଉଚ୍ଚପଦରେ ନିଯୁକ୍ତ ହେବା ।

X X X X X X X X X X

ଉତ୍କଳଦେଶକୁ ବଙ୍ଗଳାର ଏକ ଅଂଶ କରିବାରେ ଗବର୍ଣ୍ଣମେଣ୍ଟର ଯେ କିଛି ଶାସନର ସୁବିଧା ହେଉ, ପ୍ରତ୍ୟୁତ ଉତ୍କଳବାସୀମାନଙ୍କର ଉନ୍ନତି ପକ୍ଷରେ ଏ ବନ୍ଦୋବସ୍ତ ଅନେକ ପ୍ରକାରରେ ଅପକାରଜନକ ହୋଇଅଛି । ବଙ୍ଗଳାରେ କଲେଜ ଅର୍ଥାତ୍ ଉଚ୍ଚବିଦ୍ୟାଳୟ ସ୍ଥାପନ ଥିବାର ଏତାବତ୍‌କାଳ ଓଡ଼ିଶାରେ ଉଚ୍ଚଶ୍ରେଣୀର ସ୍କୁଲ ମଧ୍ୟ ସ୍ଥାପନ ହୋଇନଥିଲା । ବଙ୍ଗଳାରେ ବଙ୍ଗଭାଷାର ଉନ୍ନତି ହୋଇଥିବାର ଏତେଦିନ ଗବର୍ଣ୍ଣମେଣ୍ଟ ବଳାତ୍କାରରେ ଉତ୍କଳ ବାଳକମାନଙ୍କୁ ବଙ୍ଗଭାଷାରେ ଶିକ୍ଷା ଦେଉଅଛନ୍ତି ଏବଂ ବଙ୍ଗଳାରେ ସୁଶିକ୍ଷିତ ଦେଶୀୟ ଲୋକଙ୍କ ସଂଖ୍ୟା ଅଧିକ ହେବାର ଟିକିଏ ଉଚ୍ଚପଦର କର୍ମଚାରୀ ଆବଶ୍ୟକହେଲେ ବଙ୍ଗଳାର ଆସୁଅଛନ୍ତି । ସଂକ୍ଷେପରେ ଆମ୍ଭମାନଙ୍କ ଶାସନକର୍ତ୍ତାଙ୍କ କାର୍ଯ୍ୟପ୍ରତି ଲକ୍ଷ୍ୟ କଲେ ସ୍ପଷ୍ଟ ପ୍ରତୀତ ହୁଅଇ ଯେ ଯାହା ବଙ୍ଗଳାରୁ ଆସିପାରେ ତାହା ଏ ଦେଶରେ ଥାଉ ଅଥବା ନଥାଉ ବଙ୍ଗଳାର ଆନୟନ କରନ୍ତି । କେବଳ ମାସିକ ଦଶ ଓ କୋଡ଼ିଏ ଟଙ୍କା ବେତନର ମୋହରୀର କି କିରାନୀ କଲିକତାର ଆସିବେନାହିଁ ବୋଲି ଏ ପ୍ରଦେଶର ଲୋକଙ୍କୁ ନିଯୁକ୍ତ କରିବାକୁ ବାଧହୁଅନ୍ତି । ଯେତେକାଳ ଏ ନିୟମର ପରିବର୍ତ୍ତନ ନ ହେବ ଏବଂ ଯେତେକାଳ ଜିଲା-ପ୍ରଦେଶର ହାକିମମାନେ ଆପଣା ଅଧିକାରସ୍ଥ ଲୋକଙ୍କୁ କ୍ରମଶଃ ଉଚ୍ଚପଦରେ ଆରୂଢ଼ ନକରିବେ ତେତେକାଳ ଉତ୍କଳବାସିଙ୍କର ମଙ୍ଗଳ ହେବନାହିଁ ବରଂ ନିତ୍ୟ ନିତ୍ୟ ନୈରାଶ୍ୟର ନୂତନ ପ୍ରମାଣ ଦେଖି ଉତ୍ସାହଭଙ୍ଗ ହେବାର ସମ୍ପୂର୍ଣ୍ଣରପେ ଅକର୍ମଣ୍ୟ ହେବେ ।

*ଭା୩ଗ, ସଂ୨୦ଖ୍ୟା, ୧୬।୫।୧୮୬୮*

## ସାପ୍ତାହିକ ସଂବାଦ ।

## 'ବୋଧ ଦାୟିନୀ'

ଆମ୍ଭେମାନେ ବାଲେଶ୍ୱର ନଗରଠାରୁ 'ବୋଧ ଦାୟିନୀ' ନାମ୍ନୀ ଖଣ୍ଡିଏ ମାସିକ ପତ୍ରିକାର ପ୍ରଥମଖଣ୍ଡ ପ୍ରାପ୍ତ ହେବାର କୃତଜ୍ଞତାପୂର୍ବକ ସ୍ୱୀକାର କରୁଅଛୁଁ । ଅସମୟରେ ପତ୍ରିକା ପାଇବାରୁ ଏ ସପ୍ତାହରେ ସେଥିର ସମ୍ୟକ୍ ପରିଚୟ ପାଠକମାନଙ୍କୁ ଦେଇ ନ ପାରିଲୁଁ । ପତ୍ରିକା ଖଣ୍ଡି ସମସ୍ତଙ୍କର ପ୍ରୀତିଭାଜନ ହେଉ ଏହି ଆମ୍ଭମାନଙ୍କର ପ୍ରାର୍ଥନା ।

*ଭା୩ଗ, ସଂ୩୬ଖ୍ୟା, ୫।୯।୧୮୬୮*

## ବିଜ୍ଞାପନ

## [ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା]

ଭାଦ୍ରମାସ ପ୍ରଥମ ତାରିଖଠାରୁ ବାଲେଶ୍ୱର ଉତ୍କଳ ପ୍ରେସରେ 'ବୋଧ ଦାୟିନୀ ଓ ବାଲେଶ୍ୱର ସମ୍ବାଦ ବାହିକା'ନାମ୍ନୀ ଖଣ୍ଡେ ମାସିକ ପତ୍ରିକା ପ୍ରକାଶିତ ହେବାକୁ ଆରମ୍ଭ ହୋଇଅଛି । ତାହାର ବାର୍ଷିକ ମୂଲ୍ୟ (ମାସୁଲ

ସହିତ) ଟ୨ଙ୍କା ଚରିଅଣା ଷାଣ୍ମାଷିକ ଟ୧ ଚରିଅଣା ଓ ତ୍ରୈମାସିକ ଟ୦ଙ୍କା ଆଠଅଣା ମାତ୍ର । ଯେଉଁମାନେ ଗ୍ରାହକ ହେବାକୁ ଇଚ୍ଛା କରନ୍ତି ନିମ୍ନଲିଖିତ ସ୍ୱାକ୍ଷରକାରୀ ନିକଟକୁ ପତ୍ର ପଠାଇଲେ ପ୍ରାପ୍ତ ହୋଇ ପାରିବେ । ଇତି ।

ବାଲେଶ୍ୱର ଶ୍ରୀ ଫକିର ମୋହନ ସେନାପତି

ଉତ୍କଳଯନ୍ତ୍ର

*ଭା୩ଗ, ସଂ୩୮ଖ୍ୟା, ୧୯।୯।୧୮୬୮*

## କଟକ ନର୍ମାଲ ସ୍କୁଲ

ଆମ୍ଭେମାନେ ଅତି ଆନନ୍ଦର ସହିତ ପାଠକମାନଙ୍କୁ ଜଣାଉ ଅଛୁଁ ଯେ ଆମ୍ଭମାନଙ୍କର ଗବର୍ଣ୍ଣମେଣ୍ଟ ଓଡ଼ିଶାରେ ଶିକ୍ଷୋନ୍ନତି ସାଧନ ପକ୍ଷରେ ଅତିଶୟ ଯତ୍ନବାନ୍ ହୋଇଅଛନ୍ତି । ଏହା ଗତ ଦୁର୍ଭିକ୍ଷର ମହାଫଳ ସ୍ୱରପ ଅଟଇ କାରଣ ସେ ଦୁର୍ଘଟନା ହୋଇ ନଥିଲେ ଓଡ଼ିଶାପ୍ରତି ଗବର୍ଣ୍ଣମେଣ୍ଟଙ୍କର ଏରପ ଶୁଭଦୃଷ୍ଟି ହୋଇ ନଥାନ୍ତା । ଚଳିତ ବର୍ଷାରମ୍ଭରେ କଟକ ହାଇସ୍କୁଲ ସ୍ଥାପନ ହୋଇ ଏ ଦେଶରେ ଇଂରାଜୀ ଭାଷା ଶିକ୍ଷାର ଯେମନ୍ତ ସୁଗମ ହୋଇଅଛି ତାହା କାହାରିକୁ ଅଗୋଚର ନାହିଁ କିନ୍ତୁ ବର୍ଷ ଶେଷ ନହେଉଣୁ ଆମ୍ଭେମାନେ ଆହୁରି ଗୋଟିଏ ହିତକର କଥା ଶ୍ରବଣ କଲୁଁ, ଏହା ସାମାନ୍ୟ ଭାଗ୍ୟର ବିଷୟ ନୁହଇ । ଆଗାମୀ ଜନୁଏରୀ ମାସର କଟକରେ ଗୋଟିଏ ନର୍ମାଲ ସ୍କୁଲ ସ୍ଥାପନ ହେବ ଓ ଆପାତତଃ ଏଥିରେ ପାଞ୍ଚଜଣ ଅଧ୍ୟାପକ ନିଯୁକ୍ତ ହେବାର ବିଜ୍ଞାପନ ଦିଯା ହୋଇଅଛି । ଯେଉଁମାନେ ଭବିଷ୍ୟତକୁ ଓଡ଼ିଶାରେ ଶିକ୍ଷକ ନିଯୁକ୍ତ ହେବାର ଅଭିଳାଷୀ ହେବେ ସେମାନଙ୍କୁ ଏଠାରେ ଶିକ୍ଷା କରିବାକୁ ହେବ ଓ ଗୁରୁ ପାଠଶାଳା ନିୟମ ଏଠାରେ ପ୍ରଚଳ ହେବ ବୋଲି ମଫସଲରେ ଯେଉଁ ଗୁରୁ କି ଅବଧାନ ହେବେ ସେମାନେ ମଧ୍ୟ ଏଠାରେ ଶିକ୍ଷା ପାଇବେ । ସାଧାରଣ ବିଦ୍ୟାଶିକ୍ଷା ବୃଦ୍ଧି ପକ୍ଷରେ ଏ ବିଦ୍ୟାଳୟ ଅତ୍ୟାବଶ୍ୟକ ଥିଲା ଓ ତାହା ସ୍ଥାପନ ହେବାରେ ଅତ୍ରତ୍ୟ ସମସ୍ତେ ଆନନ୍ଦିତ ଅଛନ୍ତି ସନ୍ଦେହ ନାହିଁ ।

ଇନସ୍ପେକ୍ଟର ସାହେବ ଏ ବିଦ୍ୟାଳୟ ସ୍ଥାପନ ନିମିତ୍ତ ସ୍ୱୟଂ କଟକକୁ ଆସି କିଛିକାଳ ଅବସ୍ଥିତି କରିବେ । ବୋଧ ହୁଅଇ ଶିକ୍ଷକ ନିଯୁକ୍ତି କାର୍ଯ୍ୟ ଏହିଠାରେ ସମାଧାନ ହେବ । ଆମ୍ଭେମାନେ ତାହାଙ୍କୁ ଏହି ଅନୁରୋଧ କରଅଛୁଁ ଯେ ଓଡ଼ିଶାର ହତଭାଗ୍ୟ ପଣ୍ଡିତଙ୍କର କଥା ଯେମନ୍ତ ସେ ବିସ୍ମୃତ ନହେବେ । ନର୍ମାଲ ସ୍କୁଲ ଭାଷା ଶିକ୍ଷା ନିମିତ୍ତ ସ୍ଥାପନ ହେଉଅଛି ଓ ଏଥିରେ ଅତ୍ରତ୍ୟ ଲୋକଙ୍କୁ ଶିକ୍ଷକ ପଦରେ ନିଯୁକ୍ତ କରିବା ସର୍ବମତରେ ବିଧେୟ । ଏଠାରେ ଅନେକ ଲୋକ ଏପରି ଅଛନ୍ତି ଯେ ସେମାନେ ସଂସ୍କୃତ ଭାଷା ଉତ୍ତମରପେ ଜାଣନ୍ତି ଓ ଓଡ଼ିଆ ତାହାଙ୍କର ମାତୃଭାଷା ଥିବାର ବଙ୍ଗ ଅଥବା ଅନ୍ୟ ବିଦେଶୀୟ ଲୋକଙ୍କଠାର ସର୍ବପ୍ରକାରରେ ଉତ୍କୃଷ୍ଟ ମାତ୍ର ସେମାନଙ୍କୁ ଏତାବତ୍ କାଳ କେହି ପଚାରି ନାହାନ୍ତି ଓ ଆମ୍ଭମାନଙ୍କର ହିତ ସାଧକମାନେ ବଙ୍ଗ ଦେଶର ପଣ୍ଡିତ ଅଣାଇ ଏମାନଙ୍କୁ ସମ୍ପୂର୍ଣ୍ଣ ରପେ ନୈରାଶ୍ୟ କରିଅଛନ୍ତି । ଇନସ୍ପେକ୍ଟର ସାହେବ ଯେବେ ଏହିଥର ଏ ଦୁର୍ଭାଗ୍ୟ ପଣ୍ଡିତଙ୍କ ପକ୍ଷରେ ବିଚାର କରିବେ ତେବେ କେବଳ ଏମାନଙ୍କର ବହୁ ଆୟାସସାଧ୍ୟ ବିଦ୍ୟୋପାର୍ଜନ ସାର୍ଥକ ହେବ ଏମନ୍ତ ନୁହଇ, ଓଡ଼ିଶାର ଲୋକମାନେ ସାହେବ ମହୋଦୟଙ୍କ ନ୍ୟାୟର ଯଥେଷ୍ଟ ପ୍ରଶଂସା କରିବେ ।

*ଭା୩ଗ, ସଂ୪୯ଖ୍ୟା, ୧୨।୧୨।୧୮୬୮*

## ସମ୍ବଲପୁରରେ ଓଡ଼ିୟାଶିକ୍ଷା ବିସ୍ତାର

ମଧ୍ୟପ୍ରଦେଶର ଜିଲାସମୂହ ପ୍ରତି ଗବର୍ଣ୍ଣମେଣ୍ଟର ଯେରପ ଦୃଷ୍ଟି ଅଛି ସେପରି ଆମ୍ଭମାନଙ୍କ ପ୍ରତି ସୁଦ୍ଧା ନାହିଁ । ସେ ପ୍ରଦେଶରେ ଅବଧି ଆଇନ୍‌ଜାରୀ ହୋଇନାହିଁ ଓ ଲୋକମାନେ ଅପେକ୍ଷାକୃତ ଅନେକ ଅସଭ୍ୟାବସ୍ଥାରେ ଅଛନ୍ତି ମାତ୍ର ଆମ୍ଭେମାନେ ବହୁକାଳର ପ୍ରଜା ହେଲେହେଁ ଆମ୍ଭମାନଙ୍କ ଉନ୍ନତି ସାଧନ ପକ୍ଷରେ ତେତେଦୂର ହେଉନାହୁଁ । ମଧ୍ୟପ୍ରଦେଶର ଗୋଟିଏ ଜିଲା ସମ୍ବଲପୁର ଆମ୍ଭମାନଙ୍କର ନିକଟବର୍ତ୍ତୀ ଅଟଇ । ସେଠାସଙ୍ଗେ ଆମ୍ଭମାନଙ୍କର ବ୍ୟବସାୟଦ୍ୱାରା ସଂଯୋଗ ଥିବାର ସେଠାର ଅବସ୍ଥାର ଅନେକ ପରିଚୟ ପାଉଅଛୁଁ ଓ କେତେବର୍ଷ ହେଲା ବିଦ୍ୟା

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଶିକ୍ଷାର ଯେଉଁପ ସଦୁପାୟମାନ ସେଠାରେ ହୋଇଅଛି ତାହା ପ୍ରତିବର୍ଷ ବିସ୍ତର ଶିକ୍ଷକ ଏଠାରୁ ନିଯୁକ୍ତ ହୋଇ ଯିବାରୁ ଆମ୍ଭେମାନେ ଏକ ପ୍ରକାର ଜ୍ଞାତ ହେଉଅଛୁଁ । କିନ୍ତୁ ସମ୍ପ୍ରତି ସମ୍ବଲପୁରର ବିଦ୍ୟାଳୟ ସମୂହର ବାର୍ଷିକ ରିପୋର୍ଟର ସାରାଂଶ ପତ୍ରାନ୍ତରେ ପାଠକରି ଅବଗତ ହେଲୁଁ ଯେ ଏଠାରେ ବିଦ୍ୟା ଶିକ୍ଷା କାର୍ଯ୍ୟ ଅସାଧାରଣ ରୂପେ ଚଳୁଅଛି । ଗତ ଛଅ ବର୍ଷରେ ୨୪୯ ବିଦ୍ୟାଳୟ ସ୍ଥାପନ ହେଲା ଏବଂ ୧୩,୨୭୬ ଛାତ୍ର ଅଧ୍ୟୟନ ନିମିତ୍ତ ନାମ ଲେଖାଇଲେ । ଲୋକମାନେ ଶିକ୍ଷା ନିମିତ୍ତ ଆଗ୍ରହ ଥିବାର ଜଣାଯାଏ କାରଣ ସମସ୍ତ ବାର୍ଷିକ ବ୍ୟୟ ଟ୧୯୬୦୦ଙ୍କା ମଧ୍ୟରୁ ଟ୭୬୦୦ଙ୍କା ସେମାନେ ଭେଦାକରି ଦେଉ ଅଛନ୍ତି । ବିଦ୍ୟାଳୟ ଗୃହମାନ ଉତ୍ତମ ରୂପେ ନିର୍ମାଣ ହୋଇଅଛି ଓ ସେସବୁ ପ୍ରାୟ ବାଳକ ବାଳିକାରେ ପରିପୂର୍ଣ୍ଣ । ସନ ୧୮୬୫ ମସିହାରେ ସ୍କୁଲର ସଂଖ୍ୟା ୧୪୧ ଓ ଛାତ୍ରସଂଖ୍ୟା ୬୯୦୦ ଥିଲା । ଅତଏବ ଶେଷ ତିନିବର୍ଷରେ ବିଦ୍ୟାଦାନ କାର୍ଯ୍ୟ ବିସ୍ତର ବଢ଼ିବାର ପ୍ରକାଶ ହୁଅଇ । ଉକ୍ତ ଜିଲାର ଲୋକସଂଖ୍ୟା ଉପରେ ଛାତ୍ରର ହାରାହାରି କଲେ ପ୍ରତି ୬୧ ଲୋକରେ ଏକଜଣ ବିଦ୍ୟାଭ୍ୟାସ କରୁଥିବାର ଉପଲବ୍ଧି ହୁଅଇ । ଭାରତର ଅନ୍ୟ କୌଣସି ସ୍ଥାନରେ ପ୍ରାୟ ଏରୂପ ଫଳ ଦେଖା ନଯାଏ । ଇନସ୍ପେକ୍ଟର ଜେନେରାଲ ଲେଖନ୍ତି ଯେ ସେ ଜିଲାର ଅନ୍ତର୍ଗତ ଗଡ଼ଜାତ ରାଜାମାନେ ଆପଣା ରାଜ୍ୟରେ ବିଦ୍ୟାଶିକ୍ଷା ଦେବା ନିମିତ୍ତ ଶିକ୍ଷକ ପ୍ରାର୍ଥନା କରଅଛନ୍ତି ଓ ଏ ଜଙ୍ଗଲି ଲୋକମାନେ ବିଦ୍ୟାପ୍ରତି ଏରୂପ ଭକ୍ତି ପ୍ରକାଶ କରିବାରୁ ସମ୍ବଲପୁରର ଲୋକମାନେ ଅତ୍ୟନ୍ତ ବୁଦ୍ଧିଜୀବି ଥିବାର ପ୍ରମାଣ ହୁଅଇ । ଅସ୍ମଦ୍ଦେଶୀୟ ଗଡ଼ଜାତ ରାଜାମାନେ ଏଥିରୁ ଶିକ୍ଷାଗ୍ରହଣ କରନ୍ତୁ । ଏଠାରେ ଢେଙ୍କାନାଳ ବ୍ୟତିରେକେ ଆଉ କୌଣସି ରାଜା ଗୋଟିଏ ବିଦ୍ୟାଳୟ ଆପଣା ରାଜ୍ୟରେ ସ୍ଥାପନ କରିବାର ଶୁଣାଯାଏ ନାହିଁ । ବୋଧହୁଅଇ ପ୍ରଜାଙ୍କୁ ବିଦ୍ୟାଲାଭର ଉପଯୁକ୍ତ ପାତ୍ର ଏମାନେ ଜ୍ଞାନ କରନ୍ତି ନାହିଁ ।

ମାତ୍ର ସମ୍ବଲପୁରରେ ଯେମନ୍ତ ବିଦ୍ୟାଦାନର ଉପାୟମାନ ହୋଇଅଛି ତଦନୁସାରେ ଫଳ ହେଉଅଛି କି ନାହିଁ ଆମ୍ଭମାନଙ୍କର ସନ୍ଦେହ ହୁଅଇ । ବାଳକମାନେ ଶିକ୍ଷା ଲାଭ କରି କି ପର୍ଯ୍ୟନ୍ତ ବ୍ୟୁତ୍ପତ୍ତି ଅର୍ଜି ଅଛନ୍ତି ତାହା ରିପୋର୍ଟରେ ପ୍ରକାଶ ନାହିଁ । ୨୦ ସହସ୍ର ଟଙ୍କାରେ ଯେସ୍ଥଳେ ୨୪୯ ବିଦ୍ୟାଳୟ ନିର୍ବାହ ହେଉଅଛି ସେସ୍ଥଳେ ସେ ବିଦ୍ୟାଳୟମାନ ଉତ୍କୃଷ୍ଟ ହୋଇଥିବ ସମ୍ଭବ ହେଉନାହିଁ । ସ୍କୁଲ ପ୍ରତି ହାରାହାରି ବାର୍ଷିକ ଟ୮୦ଙ୍କା ମାତ୍ର ପଡ଼ୁଅଛି । ଏସ୍ଥାନରେ ଗୋଟିଏ ଗୋଟିଏ ଚାଟଶାଳୀରେ ପ୍ରାୟ ଏତେ ମୁଦ୍ରା ବର୍ଷରେ ବ୍ୟୟ ହୁଅଇ । ଏରୂପ ବିଦ୍ୟାଳୟରେ ଯେ ଶିକ୍ଷାକାର୍ଯ୍ୟ ଉତ୍ତମରୂପେ ଚଳୁଥିବ ଆଶାତିରିକ୍ତ ଅଟଇ । ଆମ୍ଭେମାନେ କେବେହେଁ ସମ୍ବଲପୁରରୁ ଖଣ୍ଡିଏ ପ୍ରେରିତପତ୍ର ପାଇନାହୁଁ । ଯେବେ ସେ ଅଞ୍ଚଳରେ ଉପଯୁକ୍ତ ଶିକ୍ଷକମାନେ ଥାନ୍ତେ ବୋଧହୁଅଇ କାହାରିଠାରୁ କିଛି ରଚନା ଆସୁଥାନ୍ତା ଓ ଉତ୍କଳ ଭାଷାରେ କେହି କେହି କୌଣସି ପୁସ୍ତକ ପ୍ରକାଶ କରିଥାନ୍ତେ ମାତ୍ର ଏମାନ କିଛି ଦେଖାଯାଏ ନାହିଁ । ଏକା ବିଛନ୍ଦ ବାବୁ ଇନସ୍ପେକ୍ଟରଙ୍କର ପୁସ୍ତକ ଅନୁବାଦ କରିବାର କ୍ଷମତା ଥିବାର ଦେଖାଯାଏ ଅଥବା ସେ କାର୍ଯ୍ୟ ଦ୍ୱାରା ବାଧ ଅଛନ୍ତି ନତୁବା ଶିକ୍ଷା ଉନ୍ନତିର ପରିଚୟ ଆମ୍ଭେମାନେ ଅନ୍ୟ କୌଣସି ରୂପେ ପାଉ ନାହିଁ । ଭରସା କରୁଁ ବିଦ୍ୟାଳୟର ଭାରପ୍ରାପ୍ତ କର୍ମଚାରୀମାନେ ଏ ବିଷୟରେ ଆମ୍ଭମାନଙ୍କର ଯେଉଁ ସନ୍ଦେହ ଅଛି ତାହା ଖଣ୍ଡନ କରାଇବେ ନତୁବା ଯେରୂପେ ପ୍ରକୃତ ତଥ୍ୟ ପ୍ରକାଶ ହୁଅଇ ସେଥିର ଚେଷ୍ଟା କରିବେ ।

*ଭା୩ଗ, ସଂ୪୯ଖ୍ୟା, ୧୨।୧୨।୧୮୬୮*

## କଟକ ନର୍ମାଲ ସ୍କୁଲ

ଆମ୍ଭେମାନେ ଗତ ସପ୍ତାହରେ ନୂତନ ନର୍ମାଲ ସ୍କୁଲ ସ୍ଥାପନର ସମ୍ବାଦ ଦେଇଅଛୁଁ । ମାତ୍ର ସେ ସମୟରେ ଆମ୍ଭେମାନେ ଏ ସ୍କୁଲ ସମ୍ପର୍କୀୟ ସକଳ କଥା ଜ୍ଞାତ ହୋଇ ନଥିଲୁଁ । ଅତଏବ ଶିକ୍ଷକ ନିଯୁକ୍ତ ପକ୍ଷରେ ଯାହା ଲେଖିଥିଲୁଁ ତାହା କେତେକ ପରିବର୍ତ୍ତନ କରିବାର କର୍ତ୍ତବ୍ୟ ବିବେଚନା ହେଉଅଛି ।

ନର୍ମାଲସ୍କୁଲ ଯେବେ କେବଳ ସଂସ୍କୃତ ଭାଷା ଶିକ୍ଷା ନିମିତ୍ତ ସ୍ଥାପନ ହୋଇଥାନ୍ତା ତେବେ ସେଥିରେ ଶିକ୍ଷକ ହେବାପାଇଁ ଏ ପ୍ରଦେଶରେ ବହୁତ ସୁଯୋଗ୍ୟ ପଣ୍ଡିତ ପ୍ରାପ୍ତ ହୁଅନ୍ତା । ମାତ୍ର କେବଳ ସଂସ୍କୃତ କି ଓଡ଼ିଶା ଭାଷା ଶିକ୍ଷା ଦେବାପାଇଁ ଏ ବିଦ୍ୟାଳୟ ହେଉନାହିଁ । ଉତ୍କଳ ଦେଶରେ ବିଦ୍ୟାପ୍ରଚାର ନିମିତ୍ତ ଉପଯୁକ୍ତ ଶିକ୍ଷକ ପ୍ରସ୍ତୁତ କରିବା ଏ

ବିଦ୍ୟାଳୟର ଉଦ୍ଦେଶ୍ୟ ଅଟଇ । ଅତଏବ ଭାବି ଶିକ୍ଷକଙ୍କ ଶିକ୍ଷକତା କାର୍ଯ୍ୟ ପାଇଁ ବର୍ତ୍ତମାନ ସ୍ଥଳରେ ଲୋକର ପ୍ରୟୋଜନ ଅଛି ଓ ସେ ପ୍ରକାର ଲୋକ ଏଠାରେ ପ୍ରାପ୍ତ ହେବ ଏହା ଅନୁମାନ ହୁଅଇ ନାହିଁ । ଏ ସ୍ଥାନର ପଣ୍ଡିତମାନେ ସାହିତ୍ୟ ମାତ୍ରରେ ପରିଶ୍ରମ କରନ୍ତି ଅଥବା ନ୍ୟାୟ ଶାସ୍ତ୍ରରେ ସମଧିକ ବ୍ୟୁତ୍ପତ୍ତି ଲାଭ କରନ୍ତି ଓ ଲୋକଙ୍କ ସଙ୍ଗେ ଅନର୍ଥକ କଳହ କରନ୍ତି । ସାଂସାରିକ ବ୍ୟାପାରରେ ଏହାଙ୍କର ବିଦ୍ୟା କାର୍ଯ୍ୟରେ ଲାଗଇ ନାହିଁ । କେବଳ ଧର୍ମ କର୍ମ କିମ୍ବା ପୂଜାହୋମ ଯଜ୍ଞାଦି କରିବା କାରଣ ଯେତିକି ବିଦ୍ୟାର ପ୍ରୟୋଜନ ତେତିକି କାର୍ଯ୍ୟରେ ଲାଗଇ । ଅଙ୍କ ଜ୍ୟୋତିଷ, ପଦାର୍ଥବିଦ୍ୟା କିମ୍ବା ବିଜ୍ଞାନ ଶାସ୍ତ୍ରରେ କାହାରି ପରିଶ୍ରମ ନାହିଁ ଏବଂ ଇଂରାଜମାନଙ୍କ ପ୍ରସାଦର ସମ୍ପ୍ରତି ଭାରତବର୍ଷରେ ଅଙ୍କ ବିଜ୍ଞାନ ଶାସ୍ତ୍ରର ଯେତେଦୂର ଉନ୍ନତି କରଅଛି ତହିଁର ପରିଚୟସୁଦ୍ଧା ଏ ଦେଶୀୟ ପଣ୍ଡିତମାନେ ପାଇନାହାନ୍ତି । ଅତଏବ ଏହାଙ୍କ ଦ୍ୱାରା ନର୍ମାଲ ସ୍କୁଲର ଶିକ୍ଷକତା କାର୍ଯ୍ୟ ଚଳିବା ବର୍ତ୍ତମାନ କଠିନ ଅଟଇ । ଏହି ସମସ୍ତ କାରଣର ଆମ୍ଭମାନଙ୍କୁ ବୋଧହେଉଅଛି ଯେ ପ୍ରଧାନ ଶିକ୍ଷକମାନଙ୍କୁ ବଙ୍ଗଦେଶର ଅଣାଇବା ଆବଶ୍ୟକ ହୋଇଅଛି । ଏହାଙ୍କଠାରେ ଅଧ୍ୟୟନ କଲେ ଏ ଦେଶୀୟ ପଣ୍ଡିତମାନେ ଯେ ଶୀଘ୍ର ଶିକ୍ଷାଦେବା ରୀତି ଏବଂ ଅଙ୍କ ଓ ପଦାର୍ଥବିଦ୍ୟା ଶିକ୍ଷାକରି ଭବିଷ୍ୟତରେ କର୍ମ ଖାଲିହେଲେ ସେଥିରେ ନିଯୁକ୍ତ ହୋଇ ଉତ୍ତମ ରୂପେ କାର୍ଯ୍ୟ ଚଳାଇବେ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଆମ୍ଭେମାନେ ଯେ ପୂର୍ବ ସପ୍ତାହରେ ସେମାନଙ୍କର ଆଶା ବର୍ଦ୍ଧନକରି ଏ ସପ୍ତାହରେ ତାହାର ମୂଳ ଛେଦନ କଲୁଁ ଏଥିରେ ବଡ଼ ଦୁଃଖିତ ଅଛୁଁ । କିନ୍ତୁ ଦେଶର ପ୍ରକୃତ ହିତବାଞ୍ଛା ଆମ୍ଭମାନଙ୍କର କର୍ତ୍ତବ୍ୟ ଅଟଇ, ଲୋକ ବିଶେଷରେ ହାନୀ ଲାଭର ବିଚାର କରିବା ଆମ୍ଭମାନଙ୍କର କାର୍ଯ୍ୟ ନୁହଇ । ସୁତରାଂ ଦେଶପକ୍ଷରେ ଯାହା ମଙ୍ଗଳ ହେବ ତାହା ଅବଶ୍ୟ କରିବୁଁ । ବାସ୍ତବରେ ଯେବେ ବର୍ତ୍ତମାନର ଉତ୍କଳ ପଣ୍ଡିତଙ୍କ ଦ୍ୱାରା ନର୍ମାଲ ସ୍କୁଲ ଚଳିପାରେ ତେବେ ନର୍ମାଲ ସ୍କୁଲ ସ୍ଥାପନର ପ୍ରୟୋଜନ କି ଅଛି ? ପଣ୍ଡିତମାନେ ଯେବେ ଶିକ୍ଷା ଦେବାକୁ ଉପଯୁକ୍ତ ଅଛନ୍ତି ତେବେ ଆଉ କି ଶିକ୍ଷା କରିବେ ? ଅତଏବ ଏହାଙ୍କଠାର ଉପଯୁକ୍ତ ଲୋକ ଆସିବା କର୍ତ୍ତବ୍ୟ । କେବଳ ଆମ୍ଭେମାନେ ଏହି ପ୍ରାର୍ଥନା କରୁଁ ଯେ କର୍ତ୍ତୃପକ୍ଷମାନେ ଜଳଦେବାକୁ ଅଙ୍ଗୀକାର କରି ମୃଗତୃଷ୍ଣା ଦ୍ୱାରା ଅସ୍ମଦ୍ଦେଶୀୟଙ୍କୁ ପ୍ରତାରିତ ନକରନ୍ତୁ ।

*ଭା୩ଗ, ସଂ୫୦ଖ୍ୟା , ୧୯।୧୨।୧୮୬୮*

# ୧୮୬୯

## ସମ୍ବଲପୁର ବିଦ୍ୟାଳୟମାନଙ୍କର ଅବସ୍ଥା

ଏ ବିଷୟରେ ଆମ୍ଭେମାନେ ଦୁଇମାସ ତଳେ ଯାହା ଲେଖିଥିଲୁଁ ସେଥିରେ ତତ୍ରତ୍ୟ ବିଦ୍ୟାଳୟ ସମୂହର ଇନସ୍ପେକ୍‌ଟର ପ୍ରତିବାଦ କରି ଖଣ୍ଡିଏ ପତ୍ର ପଠାଇଅଛନ୍ତି। ଅଦ୍ୟ ତାହା ପ୍ରକାଶ କରି ପାଠକମାନଙ୍କୁ ଅନୁରୋଧ କରୁଅଛୁଁ ଯେ ତାହା ମନୋଯୋଗ ପୂର୍ବକ ପାଠ କରିବେ ଓ ଆମ୍ଭମାନଙ୍କୁ ଲେଖାରେ ଯଦ୍ୟପି କିଛି ଭ୍ରାନ୍ତି ଜାତ ହୋଇଥିବ ତାହା ବୋଧକରୁଁ ଖଣ୍ଡନ ହେବ। ଉତ୍କଳ ଭାଷାର ଉନ୍ନତିକାରଣ ସେଠାରେ ଅନେକ ଯତ୍ନ ହେଉଅଛି ସନ୍ଦେହ ନାହିଁ ଓ ତାହା ଆମ୍ଭେ ପୁନଃ ପୁନ ଲେଖୁଅଛୁ କିନ୍ତୁ ଆମ୍ଭେମାନେ ସେଠାରେ ବିଦ୍ୟାଶିକ୍ଷାର ଫଳ କିଛି ନ ଦେଖିବାର ସନ୍ଦିହାନ ହୋଇଥିଲୁଁ। ସମ୍ପ୍ରତି ପାଠ୍ୟପୁସ୍ତକର ଫର୍ଦ୍ଦ ଦେଖି ବୋଧହୁଅଇ ଯେ ଏ ପ୍ରଦେଶଠାର ସେଠାରେ ବାଳକଙ୍କୁ ଅଳ୍ପ ଶିକ୍ଷା କରିବାକୁ ହେଉ ନାହିଁ । ପତ୍ରପ୍ରେରକଙ୍କ ଲେଖିବା ଭଙ୍ଗୀର ଜଣାଯାଏ ଯେ ସମ୍ବଲପୁରର ପ୍ରେରିତପତ୍ର ନ ଆସିବାର କାରଣ ସ୍ୱତନ୍ତ୍ର ଅଟଇ। ଆମ୍ଭମାନଙ୍କର ଶଙ୍କା ହେଉଅଛି ଯେ ଆଇନ ବହିର୍ଭୂତ ଦେଶ ଥିବାର ସେଠାର ରାଜପୁରଷମାନେ କିଛି ସ୍ୱେଚ୍ଛାଚାରି ବ୍ୟବହାର କରନ୍ତି ଓ ସେସବୁ ଜନସମାଜରେ ପ୍ରକାଶ ହେଲେ ପତ୍ରପ୍ରେରକ ତାହାଙ୍କ କୋପଦୃଷ୍ଟିରେ ପଡ଼ିବେ ଏହି ଭୟରେ କେହି କିଛି ଲେଖନ୍ତି ନାହିଁ।

*ଭା୪ଗ,ସଂ୬ଖ୍ୟା,୬।୨।୧୮୬୯*

## ନୂତନ ପୁସ୍ତକର ସମାଲୋଚନା
## [ଭ୍ରମଭଞ୍ଜନ]

ଏହିନାମର ଏକଖଣ୍ଡି ଉତ୍କଳପୁସ୍ତକ ଆମ୍ଭେମାନେ ପ୍ରାପ୍ତ ହୋଇଅଛୁଁ ଗ୍ରନ୍ଥରଚକର ନାମ ବାବୁ ଜଗନ୍ମୋହନ ଲାଲ୍ କଟକ ପ୍ରିଣ୍ଟିଂ କମ୍ପାନିର ଯନ୍ତ୍ରାଳୟରେ ମୁଦ୍ରିତ ଏବଂ ସୁବିଖ୍ୟାତ ଇଂରାଜକବି ପାର୍ଣ୍ଣଇସାହେବଙ୍କ ସନ୍ୟାସିନାମକ କବିତାର ଏଥିର ବିଷୟ ଗ୍ରହଣ ହୋଇ ଉତ୍କଳଦେଶପ୍ରଚଳିତ ନାନାପ୍ରକାର ଛାନ୍ଦ ଗୀତରେ ରଚନା ହୋଇଅଛି ।

ଆମ୍ଭେମାନେ ଏଗ୍ରନ୍ଥକୁ ଅତିସମାଦର ସହିତ ଗ୍ରହଣ କରିଅଛୁଁ। ସଂପ୍ରତି ଉତ୍କଳଦେଶର ହିତାକାଂକ୍ଷିମାନେ ସାଧାରଣ ବିଦ୍ୟାଲାଭ ଓ ବାଳକଙ୍କ ଶିକ୍ଷାନିମିତ୍ତ ଅନେକ ପୁସ୍ତକ ରଚନା କରଅଛନ୍ତି ମାତ୍ର ଦୁଃଖର ବିଷୟ ଯେ ଦୁଇ ଏକଖଣ୍ଡ ପୁସ୍ତକ ଭିନ୍ନ ଆଉସମସ୍ତ ବଙ୍ଗପୁସ୍ତକର ଅବିକଳ ଅନୁବାଦ ଅଟଇ । ବଙ୍ଗଳାସଂଗେ ଉତ୍କଳର ପ୍ରକାଶ୍ୟ ବିଭିନ୍ନତା ଅଳ୍ପ ଜଣାଯିବାର ଅନୁବାଦ କର୍ତ୍ତାମାନେ ଏହିରପ ପୁସ୍ତକ ରଚନାର ଉପାୟ ସହଜ ଜ୍ଞାନ କରି ସେଥିରେ ପ୍ରବୃତ୍ତ ହେଉଅଛନ୍ତି ଏବଂ ବସ୍ତୁତଃ ଅବିକଳ ଅନୁବାଦ ଯେ କେଡ଼େକଠିନ ତାହା ସେମାନେ ଜ୍ଞାନ କରନ୍ତି ନାହିଁ। ଏଥିର ଏହିଫଳ ହୋଇଅଛି ଯେ ପ୍ରତିଦିନ ଉତ୍କଳଭାଷା ବଙ୍ଗଳାର ଭାବଭଙ୍ଗିକୁ ପ୍ରାପ୍ତ ହୋଇ ଏକପ୍ରକାର ନୂତନ ଭାଷା ସୃଜନା ହେଉଅଛି । ଗ୍ରନ୍ଥକର୍ତ୍ତାମାନେ ବଙ୍ଗଳାଭାଷାରେ ଶିକ୍ଷା ପ୍ରାପ୍ତହୋଇ ବଙ୍ଗଳା ଭାଷାଗ୍ରନ୍ଥ ଅନୁବାଦ କରିବା ସମୟରେ ଅନେକ ବଙ୍ଗଳାଶବ୍ଦ ଓ ଭାବପ୍ରକାଶର ନିୟମକୁ ଉତ୍କଳ ମନେ କରି ସେ ସମସ୍ତର ପ୍ରତି ଶବ୍ଦ ଲୋଡ଼ନ୍ତି ନାହିଁ ସୁତରାଂ ତଦ୍ୱାରା ଉତ୍କଳଭାଷାର ଅନେକକ୍ଷତି ହେଉଅଛି। ଯେବେ ଅନୁବାଦ ନ କରି କେବଳ ବିଷୟ ଗ୍ରହଣପୂର୍ବକ ଅନୁବାଦକର୍ତ୍ତାମାନେ ପୁସ୍ତକ ରଚନାର ପ୍ରବୃତ୍ତିକୁ ତୃପ୍ତି କରନ୍ତେ ତେବେ ବହୁତ ବଙ୍ଗଳାମିଶ୍ରିତ ଉତ୍କଳପୁସ୍ତକ ଦେଖାଯାନ୍ତା । ଯାହା ହେଉ " ଭ୍ରମଭଞ୍ଜନ" ଏଦୋଷର ମୁକ୍ତ ପାଇଅଛି। କେବଳ

ବଙ୍ଗପୁସ୍ତକର ଅନୁବାଦ ନୁହଇବୋଲି ଯେ ଏହା ଭଲ ହେଲା ଏମନ୍ତ ନୁହେ ମାତ୍ର ଗ୍ରନ୍ଥକର୍ତ୍ତା ଅବିକଳ ଅନୁବାଦକୁ ଉତ୍ତମଜ୍ଞାନ ନ କରି ଜାଣିଶୁଣି ତ୍ୟାଗ କରିବାର ଏରପ ଗ୍ରନ୍ଥ ହୋଇଅଛି । ଏପୁସ୍ତକର ଅନ୍ୟାନ୍ୟ ଯେକିଛି ଦୋଷ ଥାଉ ଓ ଦୋଷଶୂନ୍ୟ ଅଟଇ ବୋଲି ଆମ୍ଭେମାନେ କହୁ ନାହୁଁ ,ଏହାର ଗୋଟିଏ ଗୁଣ ଏହି ଯେ ଉତ୍କଳର ପୂର୍ବାପର କବିତା ରୀତିକୁ ଅନୁସରଣ କରିଅଛି । ଯଦ୍ୟପି କି ଆମ୍ଭମାନଙ୍କ ମତରେ ଉତ୍କଳର ପୂର୍ବରଚିତ କବିତା ସମସ୍ତ ରକ୍ଷା କରିବା ନୂତନ କବିତା କରିବାଠାର ମହତ ଅଟଇ ଏବଂ ନୂତନକବିତା ଅପେକ୍ଷା ପୁରାତନ କବିତାମାନ ଉଦ୍ଧୃତ କରି ବାଳକଙ୍କୁ ଶିକ୍ଷା ଦେବା ଉତ୍ତମଉପାୟ ଅଟଇ ତଥାଚ ଆମ୍ଭେମାନେ ଏ ପୁସ୍ତକକୁ ବିଦ୍ୟାଳୟ ପାଠ୍ୟପୁସ୍ତକ କରିବାର ଅନୁରୋଧ କରଅଛୁଁ କାରଣ ଏପରି କବିତାମାନ ପାଠକଲେ ବାଳକମାନେ କ୍ରମେ ଉପେନ୍ଦ୍ର ଭଞ୍ଜାଦିଙ୍କର କବିତାର ମର୍ମ ଗ୍ରହଣ କରିବାକୁ ସକ୍ଷମ ହେବେ ।

*ଭା୪ଗ,ସଂ୭ଖ୍ୟା,୧୩।୨।୧୮୬୯*

## ଉତ୍କଳ ହିତୈଷିଣୀ ।

ଏହି ନାମର ଖଣ୍ଡିଏ ନୂତନ ପତ୍ରିକା ଗତ ମଙ୍ଗଳବାର ଜନ୍ମଗ୍ରହଣ କରିଅଛି । କଟକ ସୋସାଇଟୀ ଏଥିର ପ୍ରଚାରକ ଅଟନ୍ତି ଓ ପତ୍ରିକା ବିନାମୂଲ୍ୟରେ ଏକମାସ ବଣ୍ଟନ ହେବାର ନିୟମ ଥିବାର ବୋଧ ହୁଅଇ ସମସ୍ତେ ଏହାର ଦର୍ଶନଲାଭ କରିପାରିବେ ଅତଏବ ବିଶେଷ ପରିଚୟ ଦେବାର ଆମ୍ଭେମାନେ କ୍ଷାନ୍ତ ହେଲୁଁ । ଏ ପତ୍ରିକା ପ୍ରଚାରର ଉଦ୍ଦେଶ୍ୟର ଆମ୍ଭେମାନେ ଜ୍ଞାତ ନାହୁଁ ଓ ମଧ ଦୋହରା ପାଇଟି ବଢ଼ାଇ ହରିହର ମୂର୍ତ୍ତି ସଜାଇବା ହେତୁ ନିଶ୍ଚୟ କରି ନପାରୁଁ । ପ୍ରଚାରକମାନେ ପ୍ରଥମ ସଂଖ୍ୟାରେ ଆତ୍ମପରିଚୟ ଓ ପତ୍ରିକା ପ୍ରଚାରର ଉଦ୍ଦେଶ୍ୟ ବ୍ୟକ୍ତ କରିଥିଲେ ମନର ସଂଶୟ ଭାଜିଯାନ୍ତା । ଭରସା କରୁଁ ଆଗାମୀ ସଂଖ୍ୟାରେ ଏ ସମସ୍ତ ଜାଣିପାରିବୁଁ ।

ଯାହା ହେଉ ଆମ୍ଭେମାନେ ଏଠାର ସମ୍ବାଦପତ୍ରର ବୃଦ୍ଧି ଦେଖି ଆନନ୍ଦିତ ହେଲୁଁ । ତିନିବର୍ଷ ପୂର୍ବରେ ଏଠାରେ ଏକଖଣ୍ଡ ପତ୍ରିକା ଚଳିବାପକ୍ଷରେ ଶଙ୍କା ଜାତ ହେଉଥିଲା ମାତ୍ର ବର୍ତ୍ତମାନ ଉତ୍କଳରେ ତିନିଖଣ୍ଡ ପତ୍ରିକା ହେଲା ଓ ଆଗାମୀ ସୋମବାରରେ ଆଉ ଖଣ୍ଡିଏ ଇଂରାଜୀ ପତ୍ରିକା ବାହାରିବାର ଉଦ୍ୟମ ଅଛି । ଆମ୍ଭମାନଙ୍କର ଏକାନ୍ତ ପ୍ରାର୍ଥନା ଏହି ଯେ ସମସ୍ତେ ଦୀର୍ଘାୟୁ ହେଉନ୍ତୁ ।

*ଭା୪ଗ,ସଂ୮ଖ୍ୟା,୨୦।୨।୧୮୬୯*

## ଉତ୍କଳଭାଷାର ଉନ୍ନତି ପ୍ରତି ବ୍ୟାଘାତ ।

ଉତ୍କଳଭାଷାର ଉନ୍ନତି ପକ୍ଷରେ ବର୍ତ୍ତମାନ ଗବର୍ଣ୍ଣମେଣ୍ଟ ଓ ଦେଶୀୟ ଲୋକମାନେ ଯେରପ ଯତ୍ନ କରୁଅଛନ୍ତି ତହିଁର ସୀମା ନାହିଁ । ଅଳ୍ପକାଳ ମଧ୍ୟରେ ଉତ୍କଳରେ ଯେମନ୍ତ ବିଦ୍ୟାଳୟ ସ୍ଥାପନ ଓ ଉତ୍କଳଭାଷାରେ ପୁସ୍ତକ ମୁଦ୍ରିତ କାର୍ଯ୍ୟ ହେଉଅଛି ଏହା ଦେଖି ସମସ୍ତଙ୍କର ବିଶ୍ୱାସ ହୁଅଇ ଯେ ଅଚିରେ ଉତ୍କଳଭାଷାର ଉନ୍ନତି ହେବ ତଥାଚ ଆମ୍ଭେମାନେ ବୋଧ କରୁଁ ଯେ, ଅବଧି ପ୍ରକୃତ ଉପାୟର ଅନୁସରଣ ହୋଇ ନାହିଁ ଓ ଭାଷାର ଉନ୍ନତି ବିପକ୍ଷରେ ଏକ ଗୁରତର ପ୍ରତିବନ୍ଧକ ରହିଅଛି ।

ଏଥିର ପରିଚୟ ଦେବା ପୂର୍ବରୁ ଆମ୍ଭେମାନେ କେତେକ ଲୋକର ଭ୍ରମ ସଂଶୋଧନ କରିବାର ଉଚିତ ବିବେଚନା କରୁଅଛୁଁ । ପାଠକମାନଙ୍କ ସ୍ମରଣ ଥିବ ଯେ ଗତ ଦିସମ୍ବର ମାସରେ କଲିକତାବାସୀ ସୁବିଖ୍ୟାତ ବାବୁ ରାଜେନ୍ଦ୍ରଲାଲ୍ ମିତ୍ର ଏ ପ୍ରଦେଶକୁ ଆସି କଟକ ଡିବେଟିଂକ୍ଲବରେ ଗୋଟିଏ ବକ୍ତୃତା କରିଥିଲେ । ଆମ୍ଭେମାନେ ତାହାଙ୍କ ଇଂରାଜି ବକ୍ତୃତା କରିବାର କ୍ଷମତାକୁ ପ୍ରଶଂସା କରିଥିଲୁଁ ମାତ୍ର ସେ ବିଦେଶୀୟ ହଠାତ୍ ଗୋଟିଏ ବକ୍ତୃତା କରିଥିଲେ ବୋଲି ତାହାଙ୍କ ମତାମତର ଆଲୋଚନା କରି ନ ଥିଲୁଁ । ଅଳ୍ପକାଳ ହେଲା ଜାଣି ପାରିଲୁଁ ଯେ ତାହାଙ୍କ ମତକୁ ଅନେକ ଲୋକ ଉତ୍କୃଷ୍ଟ ଜ୍ଞାନ କରି ସେଥିର ଅନୁଗାମୀ ହୋଇଅଛନ୍ତି । ସୁତରାଂ ଏତେବେଳେ ତାହାଙ୍କ ମତର ଭ୍ରମ ଦର୍ଶାଇବା ଆବଶ୍ୟକ ହେଲା ।

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ବାବୁ ରାଜେନ୍ଦ୍ରଲାଲ୍ ମିତ୍ର ସେ ଦିନ ସଭାରେ ବ୍ୟକ୍ତ କଲେ ଯେ ଉତ୍କଳର ଯଥାର୍ଥ ହିତାକାଙ୍କ୍ଷୀ ଯେ ହେବେ ସେ ସର୍ବାଗ୍ରେ ଉତ୍କଳଭାଷା ଉଠାଇ ଦେଇ ବଙ୍ଗଭାଷା ପ୍ରଚଳ କରିବାର ଚେଷ୍ଟା କରିବେ କାରଣ ତାହାଙ୍କ ମତରେ ଯେତେ କାଳ ଉତ୍କଳଭାଷା ଉଠି ଯାଇ ନାହିଁ ତେତେକାଳ ଏଦେଶର ଉନ୍ନତି ହେବା ଅସମ୍ଭବ ସେ ଆପଣା ମତର ପୋଷକତାରେ ଏହି ହେତୁ ଦର୍ଶାଇଲେ ଯେ ଦୁର୍ଭିକ୍ଷ କମିଶ୍ନରଙ୍କ ଗଣନାନୁସାରେ ଉତ୍କଳର ଲୋକ ସଂଖ୍ୟା ବର୍ତ୍ତମାନ କୋଡ଼ିଏ ଲକ୍ଷ ଅଟଇ ଓ ଏଥିର ସ୍ତ୍ରୀ ବାଳକ ଇତ୍ୟାଦି ମିହ୍ନା ଦେଲେ କେବଳ ଦଶ ବାରଲକ୍ଷ ଲୋକ ଲେଖାପଢ଼ା ଜାଣିବାର ସମ୍ଭବ କିନ୍ତୁ ଏତିକି ଲୋକକି ଗୋଟିଏ ସ୍ୱତନ୍ତ୍ର ଭାଷା ରଖିପାରନ୍ତି ? ଅଳ୍ପ ଗ୍ରାହକ ଥିବାର ଏଠାରେ କେହି ନୂତନ ପୁସ୍ତକାଦି କରି କୃତକାର୍ଯ୍ୟ ହେବାର ଅସମ୍ଭବ ବଙ୍ଗଦେଶ ବହୁ ବିସ୍ତୃତ ଓ ସେଠାର ଲୋକସଂଖ୍ୟା ଅଧିକ ବୋଲି ସେଠାରେ ଭାଷାର ଏତାଦୃଶ ଉନ୍ନତି ହୋଇଅଛି । ଯେବେ ଉତ୍କଳରେ ବଙ୍ଗଭାଷା ପ୍ରଚଳ ହୁଅଇ ତେବେ ବଙ୍ଗଦେଶର ପୁସ୍ତକମାନ ଏଠାରେ ଚଳିବ ଓ ଏଠାଲୋକେ ଅନାୟାସରେ ଉତ୍ତମ ପୁସ୍ତକ ପାଇପାରିବେ । ଏହାର ଉଦାହରଣ ସ୍ୱରୂପ ଉକ୍ତ ବାବୁ କହିଲେ ଯେ ବଙ୍ଗଦେଶରେ ଗତ ତିନିମାସରେ ପ୍ରାୟ ୫୩୦୦ଖଣ୍ଡ ବଙ୍ଗପୁସ୍ତକ ମୁଦ୍ରିତ ହେଲା କିନ୍ତୁ ଉତ୍କଳରେ ୫୩/୪ ଖଣ୍ଡର ଅଧିକ ନ ହେଲା ଏଥିର ସ୍ପଷ୍ଟ ପ୍ରମାଣ ଯେ ଉତ୍କଳଭାଷା କଦାଚ ଉନ୍ନତ ହୋଇ ନ ପାରେ ।

ଆମ୍ଭେମାନେ ଜ୍ଞାନ କରିଥିଲୁଁ ଯେ ରାଜେନ୍ଦ୍ରବାବୁ ଉତ୍କଳକୁ ଆସି ଏଠାର ଅନେକ ବିଷୟ ଅବଗତ ହୋଇଅଛନ୍ତି କିନ୍ତୁ ଉପର୍ଯ୍ୟୁକ୍ତ କଥାମାନ ଶୁଣି ବିସ୍ମୟ ହେଲୁଁ । ବାସ୍ତବରେ ସେ ଆପଣା ଅନ୍ତର୍ଗତ ଭାବ ବ୍ୟକ୍ତ କଲେ କିମ୍ବା ସ୍ୱଦେଶାନୁରାଗୀ ହୋଇ ମିଥ୍ୟା କାରଣ ପ୍ରଦର୍ଶନ ପୂର୍ବକ ଆପଣା ମତ ସ୍ଥାପନ କରିବାକୁ ଚେଷ୍ଟା କଲେ ତାହା ସ୍ଥିର କରିବା କଠିନ ବୋଧ ହେଉଅଛି । ଯେତେବେଳେ ସେ ଉତ୍କଳର ଲୋକସଂଖ୍ୟାର କଥା କହିଲେ ସେ କି ଜାଣୁ ନ ଥିଲେ ଯେ ଉକ୍ତ ଲୋକସଂଖ୍ୟା କେବଳ ମୃଗଲବନ୍ଦିର ଅଟଇ ଓ ଉତ୍କଳଭାଷା ପ୍ରଚଳିତ ଥିବା ଦେଶର ଉତ୍ତର ସୀମା ମେଦିନିପୁର ଦକ୍ଷିଣ ସୀମା ଗଞ୍ଜାମ ଓ ପୂର୍ବ ପଶ୍ଚିମରେ ବଙ୍ଗଅଖାତଠାର ସମ୍ବଲପୁର ପର୍ଯ୍ୟନ୍ତ ବିସ୍ତୃତ ? ଯେବେ ଏକଥା ତାହାଙ୍କୁ ଜଣା ନ ଥିଲା ତେବେ ସେ ଅକାରଣ ଶ୍ରୋତାମାନଙ୍କୁ ଆପଣା ଅଜ୍ଞାନର ଭାଗୀ କରି ଭାରି ଅନିଷ୍ଟ କରିଅଛନ୍ତି । ଯାହାର ଯେଉଁ ବିଷୟର ଜ୍ଞାନ ନାହିଁ ତାହାର ସେ ବିଷୟରେ କୌଣସି କଥା କହିବାର ଅନୁଚିତ ଅଟଇ । ପ୍ରକୃତରେ ଦେଖାଯାଏ ଯେ, ଉତ୍କଳଭାଷା ପ୍ରଚଳିତ ଥିବା ଭୂମିଖଣ୍ଡର ଆୟତନ ବଙ୍ଗ ପ୍ରଚଳିତ ଦେଶର ଊଣା ନୁହଇ ଅତଏବ ଉତ୍କଳଭାଷା ଉନ୍ନତି ହେବାର ସଂପୂର୍ଣ୍ଣ ସମ୍ଭାବନା ଅଛି । ଆଉ ପୁସ୍ତକ ମୁଦ୍ରାଙ୍କନର ବିଷୟ ଯାହା ଉଲ୍ଲେଖ କଲେ ତାହା ଆହୁରି ଭ୍ରମାତ୍ମକ ଅଟଇ । ଆମ୍ଭେମାନେ ପୁନଃପୁନ କହିଅଛୁଁ ଯେ ବଙ୍ଗଦେଶପ୍ରତି ଗବର୍ଣ୍ଣମେଣ୍ଟଙ୍କର ଯେତେଦିନ ହେଲା ସୁଦୃଷ୍ଟି ପଡ଼ିଅଛି ଉତ୍କଳପ୍ରତି ତାହା ହୋଇ ନାହିଁ ସୁତରାଂ ଉତ୍କଳ ପଛକୁ ପଡ଼ିରହିଅଛି ଯେବେ ପ୍ରଥମର ଦୁଇ ପ୍ରଦେଶପ୍ରତି ସମାନଦୃଷ୍ଟି ଥାନ୍ତା ଓ ସେଥିରେ ଉତ୍କଳ ଅବସ୍ଥା ବଙ୍ଗ ପ୍ରତି ନ୍ୟୁନ ହୁଅନ୍ତା ତେବେ ରାଜେନ୍ଦ୍ରବାବୁଙ୍କ କଥା x x x x କିନ୍ତୁ ସେ କାଳ ଓ ଅବସ୍ଥା ପ୍ରତି ବିବେଚନା କରି ସମାନ ଫଳ ପାଇବାର ଆଶା କଲେ ତାହା କିରପେ ପୂର୍ଣ୍ଣ ହେବ ? ଦୁର୍ଭିକ୍ଷ ପଡ଼ିଲାଦିନୁ ଗବର୍ଣ୍ଣମେଣ୍ଟଙ୍କର ଏ ଦେଶପ୍ରତି କଟାକ୍ଷପାତ ହେଲାର ଯେରପ ଏହାର ଉନ୍ନତି ଦେଖାଯାଏ ଯେବେ ଦଶବର୍ଷ ପୂର୍ବରେ ଏହି କାର୍ଯ୍ୟମାନଙ୍କର ଅନୁଷ୍ଠାନ ହୋଇଥାନ୍ତା ତେବେ ରାଜେନ୍ଦ୍ରବାବୁ ସ୍ୱମତ ସ୍ଥାପନାର୍ଥ ଯୁକ୍ତିର ଅଭାବ ଦେଖି ବ୍ୟସ୍ତ ହୁଅନ୍ତେ । ଅତଏବ ଆମ୍ଭେମାନେ କହୁଅଛୁଁ ଯେ ରାଜେନ୍ଦ୍ରବାବୁଙ୍କ ମତ ଅତ୍ୟନ୍ତ ଭ୍ରମମୂଳକ ଓ ଯେଉଁମାନେ ସେଥିର ଅନୁଗାମୀ ହୋଇ ଅଛନ୍ତି ସେମାନେ ନିରର୍ଥକ କୁହୁଡ଼ୀରେ ପହୁଁରି କେବଳ ଆପଣା ହସ୍ତ ପଦକୁ କ୍ଲେଶ ଦେଉଅଛନ୍ତି ।

ତେବେ ଉତ୍କଳଭାଷା ଉନ୍ନତି ପ୍ରତି କି ବ୍ୟାଘାତ ଅଛି ? ଆମ୍ଭମାନଙ୍କର ବିଶ୍ୱାସ ଏହି ଯେ ବର୍ତ୍ତମାନ ଉତ୍କଳଭାଷା "ତିନି ଥେଁଟିଆ କାକୁଡ଼ି ବାଡ଼ି" ପ୍ରାୟ ତୁଚ୍ଛାକୁ କ୍ଷତିଗ୍ରସ୍ତ ହେଉଅଛି । ଏହାର ରକ୍ଷକ ତିନି ଗବର୍ଣ୍ଣମେଣ୍ଟ ହୋଇଅଛନ୍ତି । ଏକଭାଗ ବଙ୍ଗଳା ଗବର୍ଣ୍ଣମେଣ୍ଟ ହସ୍ତେ ଏକଭାଗ ମଧ୍ୟପ୍ରଦେଶର ଗବର୍ଣ୍ଣମେଣ୍ଟ ହସ୍ତେ ଏବଂ ଅନ୍ୟ ଏକଭାଗ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ହସ୍ତେ ପଡ଼ିବାର ଏହାର ସର୍ବାଙ୍ଗ ସମାନ ରପେ ଗଠନ ହେଉ ନାହିଁ । ଏକ୍ ଏକ ସ୍ଥାନରେ ଏକ ଏକ ପ୍ରଥା ପ୍ରଚଳିତ ଏବଂ ଏକ ଏକ ପ୍ରକାର ପୁସ୍ତକ ପଠିତ ହୁଅଇ କେଉଁ ନିୟମ ଭଲ ଅବା

ମନ୍ଦ ଜାଣିବାର ଉପାୟ ନାହିଁ ସୁତରାଂ ଉତ୍କଳଭାଷା ଦୁଇ ଘର କୁଣିୟା ହୋଇ ଉପବାସ ଶୋଉଅଛି କେହି ଏହାର ଚର୍ଚ୍ଚା କରିବାକୁ ନାହିଁ ଏରପ ଅବସ୍ଥା ଅତି ଶୋଚନୀୟ ଓ ଆମ୍ଭମାନଙ୍କ ମତରେ ଶୀଘ୍ର ଏହାର ପ୍ରତିକାର କରିବାର ଉଚିତ ।

ଏ ପ୍ରସ୍ତାବ ଦୀର୍ଘ ହୋଇଯିବା ଭୟରେ ଆମ୍ଭେମାନେ ଅଦ୍ୟ ଏହିଠାରେ କ୍ଷାନ୍ତ ହେଲୁଁ ଆଉ ଯାହା ବକ୍ତବ୍ୟ ଅଛି ଆଗାମୀ ସପ୍ତାହରେ ପ୍ରକାଶ କରିବୁଁ ।

*ଭା୪ଗ,ସଂ୧୧ଖ୍ୟା,୧୩।୩।୧୮୬୯*

## ନୂତନପୁସ୍ତକର ସମାଲୋଚନା ।

## ଭାରତବର୍ଷର ଇତିହାସ ଶ୍ରୀ ଫକୀରମୋହନ ସେନାପତି କୃତ ।

ଉତ୍କଳବିଦ୍ୟୋନ୍ନତି ବିଷୟରେ ବର୍ତ୍ତମାନ ଲୋକଙ୍କର ଚେଷ୍ଟା ଦେଖି ଏ ଦେଶର ପ୍ରକୃତ ହିତୈଷିର ଆନନ୍ଦିତ ହେବାର କର୍ତ୍ତବ୍ୟ କି କ୍ଷୋଭିତ ହେବାର କର୍ତ୍ତବ୍ୟ ଅନୁମାନରେ ସ୍ଥିର ହେଉ ନାହିଁ । ଏକ ପକ୍ଷରେ ଗବର୍ଣ୍ଣମେଣ୍ଟ ଓ ସର୍ବସାଧାରଣ ବ୍ୟକ୍ତି ଅନେକ ବ୍ୟୟ ସ୍ୱୀକାର ପୂର୍ବକ ବିଦ୍ୟାଳୟମାନ ସ୍ଥାପନ କରିଅଛନ୍ତି ମାତ୍ର ଉପଯୁକ୍ତ ପୁସ୍ତକାଭାବର ଶିକ୍ଷାଦାନ କାର୍ଯ୍ୟ ଉତ୍ତମ ରପେ ନ ହୋଇ ଉକ୍ତ ବ୍ୟୟମାନ ବୃଥା ହେଉଅଛି ଅତଏବ ଏମନ୍ତ କାଳରେ ନୂତନ ପୁସ୍ତକମାନ ମୁଦ୍ରିତ ଓ ପ୍ରଚାର ହେବାର ଦେଖି ବଡ଼ ଆନନ୍ଦ ବୋଧ ହୁଅଇ କିନ୍ତୁ ପକ୍ଷାନ୍ତରେ ଏସମସ୍ତ ପୁସ୍ତକ ରଚନା ପାଠ କରି ଅତ୍ରତ୍ୟ ଲୋକମାନେ କ୍ରମେ ଉତ୍କଳଭାଷାକୁ ପାଶୋରି ଏକ ବିଜାତୀୟ ବଙ୍ଗୋତ୍କଳ ମିଶ୍ରିତ ଭାଷା ଶିକ୍ଷା କରିବେ ଏହା ମନେ ପଡ଼ିବାର ଅପାର ଦୁଃଖ ଜାତ ହୁଅଇ । ଫଳତଃ ବାବୁ ଫକୀରମୋହନ ସେନାପତିଙ୍କ ପୁସ୍ତକ ପଠନଦ୍ୱାରା ଏଦୁଇ ପରସ୍ପର ବିରୋଧି ଭାବ ଆମ୍ଭମାନଙ୍କ ଚିତ୍ତରେ ଜନ୍ମିବାର କାତର ହୋଇଅଛୁଁ । ଗ୍ରନ୍ଥପକ୍ଷରେ କି ମତ ବ୍ୟକ୍ତ କରିବା ସ୍ଥିର କରି ନ ପାରୁଁ । ଗ୍ରନ୍ଥକର୍ତ୍ତା ବହୁ ଯତ୍ନ ଓ ପରିଶ୍ରମ ସହକାରେ ଏ ଗ୍ରନ୍ଥର ବିଷୟମାନ ସଙ୍କଳନ କରିଅଛନ୍ତି ପୁସ୍ତକଖଣ୍ଡିର ମୁଦ୍ରାଙ୍କନ କାର୍ଯ୍ୟ ଉତ୍ତମ ରପେ ନିର୍ବାହ ହୋଇଥିବାର ବାଲେଶ୍ୱର ଯନ୍ତ୍ରାଳୟର ମଧ ପ୍ରଶଂସା ହେଉଅଛି । ଗ୍ରନ୍ଥର ଶୃଙ୍ଖଳା ମନ୍ଦ ହୋଇ ନାହିଁ ବିଶେଷରେ ଉତ୍କଳଭାଷା ରଚିତ ଇତିହାସର ଏହିଖଣ୍ଡି ଆଦ୍ୟ ପୁସ୍ତକ ଓ ଏଥିପାଇଁ ଗ୍ରନ୍ଥକର୍ତ୍ତା ଆମ୍ଭମାନଙ୍କର କୃତଜ୍ଞତାର ଭାଜନ ହୋଇଅଛନ୍ତି କିନ୍ତୁ ଗ୍ରନ୍ଥର ରଚନା ପ୍ରତି ଦୃଷ୍ଟି କଲେ ସ୍ପଷ୍ଟ ପ୍ରତୀତି ହେଉଅଛି ଯେ ଗ୍ରନ୍ଥକର୍ତ୍ତା ବିଷମୟ ମିଷ୍ଟାନ୍ନ ପ୍ରସ୍ତୁତ କରି ଉତ୍କଳଭାଷାର ବିନାଶ ସାଧନ ପକ୍ଷରେ ଯେରପ ଦୃଢପ୍ରତିଜ୍ଞ ହୋଇଅଛନ୍ତି ତହିଁରେ ତାହାଙ୍କୁ କପଟବନ୍ଧୁ ଭିନ୍ନ ଆଉ କି ଜ୍ଞାନ କରିବୁଁ ? ବାସ୍ତବରେ ଉତ୍କଳଭାଷାର ଶିକ୍ଷା ନିମିତ୍ତ ଏହି ଭାଷାର ପୁସ୍ତକମାନ ପ୍ରୟୋଜନ ହୋଇଅଛି ଯେବେ ସେ ପୁସ୍ତକମାନଙ୍କରେ ଭାଷାର ନିୟମ ନ ରହିଲା ଓ ଗ୍ରନ୍ଥକର୍ତ୍ତାମାନେ x x x x ପ୍ରତି ମନୋଯୋଗୀ ନ ହୋଇ ସ୍ୱେଚ୍ଛାପୂର୍ବକ ଅନ୍ୟାନ୍ୟ ଭାଷାର ଭାବ ଭଙ୍ଗୀ ଏଥିରେ ନିୟୋଜିତ କଲେ ତେବେ ଉତ୍କଳପୁସ୍ତକ ରଚନାର ଫଳ କି ହେଲା । ଅନ୍ୟାନ୍ୟ ଭାଷାରେ ତ ଉତ୍କୃଷ୍ଟ ପୁସ୍ତକମାନ ସୁଲଭ ଓ ତାହା ପଢାଇଲେ ଏଦେଶୀୟମାନେ ତତ୍ତାବତ୍ ବିଷୟର ଅବଗତ ହୋଇପାରିବେ । ଅତଏବ ଆମ୍ଭେମାନେ ବୋଧ କରୁଁ କୌଣସି ବିଷୟର ପୁସ୍ତକ ରଚନା କଲା ବେଳେ ଭାଷା ପ୍ରତି ଯଥୋଚିତ ଦୃଷ୍ଟି ରଖିବା ଅଗ୍ରେ କର୍ତ୍ତବ୍ୟ କିନ୍ତୁ ଗ୍ରନ୍ଥକର୍ତ୍ତା ଏପକ୍ଷରେ କିଛି ମାତ୍ର ବିଚାର କରି ନାହାନ୍ତି । ପୁସ୍ତକ ମଧରେ ଅନେକ ଶବ୍ଦ ଏରପ ଅଛି କି ଯାହା ଉତ୍କଳରେ ଶୁଣା ନାହିଁ ଏବଂ ଅନେକ ଇତର ଭାଷା ମଧ ଲକ୍ଷିତ ହୁଅଇ ଏପରି କ୍ରିୟା ସ୍ଥଳରେ କାଳ ପ୍ରତି କିଛି ମାତ୍ର ଦୃଷ୍ଟି ରହି ନାହିଁ । ପ୍ରାୟ ପ୍ରତ୍ୟେକ ପୃଷ୍ଠାର ଏକ ଧାଡ଼ୀରେ ବର୍ତ୍ତମାନକାଳ ଓ ଅପରଧାଡ଼ୀରେ ଭୂତକାଳ ପ୍ରୟୋଗ ହୋଇ ଏକସମୟର କଥା ବର୍ଣ୍ଣିତ ହୋଇଅଛି । ବୋଧହୁଅଇ ଗ୍ରନ୍ଥକର୍ତ୍ତା ଥରେ ମାତ୍ର ଉତ୍କଳର ନୂତନ ପଞ୍ଜିକା ମଧ ଦୈବଜ୍ଞମୁଖର ଶ୍ରବଣ କରି ନାହାନ୍ତି ତାହା ହେଲେ ଇତିହାସ ରଚନାରେ କ୍ରିୟାର ଉପଯୁକ୍ତ କାଳ ନିଶ୍ଚୟ କରିବାକୁ କଠିନ ନ ମଣନ୍ତେ । ଆମ୍ଭମାନଙ୍କ ମନ୍ତବ୍ୟର ପୋଷକତାରେ ପୁସ୍ତକର କିୟଦଂଶ ଏଠାରେ ଉଦ୍ଧୃତ କଲୁଁ ପାଠକମାନେ ସେଥିର ଦୋଷ ଗୁଣ ବିଚାର ପୂର୍ବକ ଆମ୍ଭମାନଙ୍କର ମତର ନ୍ୟାୟାନ୍ୟାୟ ସ୍ଥିର କରିବେ ।

ବିଜ୍ଞାପନ ପୃଷ୍ଠା ୱ

"ଅବଶେଷେ ବିଦ୍ୟାଳୟ ଶିକ୍ଷକମାନଙ୍କଠାରେ ସବିନୟେ ପ୍ରାର୍ଥନା କରଅଛି ଯେ, ମାଦୃଶ ସାମାନ୍ୟ ଲୋକମାନଙ୍କର ପଦେ ପଦେ ଭ୍ରମ ହେବାର ସମ୍ଭାବନା ଅତଏବ ସେମାନେ ବିଶେଷ ଅନୁଗ୍ରହ ପ୍ରକାଶ କରି ପୁସ୍ତକଗତ ଭୁଲ୍ ସକଳ ମତେ ଜଣାଇଲେ ମୁଁ ଅତ୍ୟନ୍ତ ଉପକୃତ ହେମି ଓ ପୁସ୍ତକ ୨ୟ ସଂସ୍କରଣ ସମୟରେ ସଂଶୋଧନ କରି ଦେମି"

୪୨ ପୃଷ୍ଠା ୧୭ ଧାଡ଼ୀଠାର

"ଆମ୍ଭେ ସମରକନ୍ଦର ପଳାଇ ଆସିଲା ବାଦ୍ ଯେଉଁଦିନ ପେଟ ପୁରାଇ ଆହାର କରି ନିରଦ୍‌ବେଗରେ ନିଦ୍ରା ଯାଉଁ, ସେଦିନ ଯେପରି ସୁଖାନୁଭବ କରିଥିଲୁଁ ସେପରି ସୁଖ ଆଉ ଆମ୍ଭ ଅଦୃଷ୍ଟରେ ଘଟିଲା ନାହିଁ" । ବାବର ବିଳାସୀ ଥିଲେ ନାହିଁ । ନଦୀ ପାର x x x x ନ ପାଇଲେ, ସନ୍ତ x x x x ହୁଅନ୍ତି । ଦୋଷ ମଧ୍ୟରେ ସେ x x x x ଈଷତ୍ କାମୁକ ଥିଲେ । ତାହାଙ୍କର x x x x କରିବା ଗିନାରେ ଗୋଟିଏ କବିତା x x x x ଥିଲା ତାହାର ମର୍ମ ଏହି"

୬୨ ପୃଷ୍ଠାର ୧ଧାଡ଼ୀଠାର

"ଏହି ଦାରଣ ବିପଦ ସମୟରେ ମଧ୍ୟ ନୁରଜାହାନୀୟାଙ୍କ ସାହସ ତିରୋହିତ ହୋଇ ଥିଲା ନାହିଁ ସେ ଏକ କରି ପୃଷ୍ଠରେ ଆରୋହଣ କରି ସସୈନ୍ୟ ମହବତଙ୍କ ସୈନ୍ୟ ଆକ୍ରମଣ କଲେ । ବିପକ୍ଷ ସୈନ୍ୟମାନେ ଅପର ସୈନ୍ୟମାନଙ୍କୁ ଉପେକ୍ଷା କରି ନୁରଜାହାନୀୟାଙ୍କ ହସ୍ତୀ ଉପରେ ଅସ୍ତ୍ରବର୍ଷଣ କରନ୍ତି । ପ୍ରଥମେ ଗୋଟାଏ ଶର ଆସି ତାହାଙ୍କ ପାର୍ଶ୍ୱବର୍ତ୍ତିନୀ ଦୌହିତ୍ରୀ ଉପରେ ପତିତ ହେଲା ପରେ ମାହୁତ ବଧ ହୁଏ, ଅବଶେଷେ ହସ୍ତୀକରରେ ଗୋଟାଏ ବାଣ ପଡ଼ିବାର ସେ ଅଗତ୍ୟା ଭଙ୍ଗଦେଇ ପଳାୟନ କଲେ । ପରେ ନୁରଜାହାନୀୟା ସମ୍ରାଟଙ୍କୁ ଉଦ୍ଧାର କରିବାର ଅନ୍ୟ କୌଣସି ଉପାୟ ନ ଦେଖି ଇଚ୍ଛାପୂର୍ବକ ତାହାଙ୍କର କାରାସହବାସିନୀ ହୁଅନ୍ତି"

୬୯ ପୃଷ୍ଠା ୪ଧାଡ଼ୀଠାର

"ଧର୍ମାଧିକରଣରେ ତାହାଙ୍କର ସର୍ବଦା ଦୃଷ୍ଟି ଥିବାର କୌଣସି ବିଚାରକ ଅନ୍ୟାୟ ବିଚାର କରିବାକୁ ସାହସୀ ହୋଇ ପାରଥିଲେ ନାହିଁ ରାଜସ୍ୱ ଆଦାୟିମାନେ ମଧ୍ୟ ପ୍ରଜାମାନଙ୍କ ପ୍ରତି ଅତ୍ୟାଚାର କରି ପାରଥିଲେ ନାହିଁ । ଫଳେ ପିତା ଯେମନ୍ତ ପୁତ୍ରମାନଙ୍କୁ ଶାସନ କରନ୍ତି ସେ ପ୍ରଜାମାନଙ୍କୁ ତଦ୍ରୂପ ଶାସନ କରଥିଲେ, ସାଜାହାନ ତୁଲ୍ୟ ସମୃଦ୍ଧିମାନ ସମ୍ରାଟ ଭାରତବର୍ଷରେ ଆଉ ଦେଖାଯାଏ ନାହିଁ"

ପରିଶେଷରେ ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ ଗ୍ରନ୍ଥକର୍ତ୍ତା ଉତ୍କଳର ଜଣେ ପ୍ରକୃତ ହିତସାଧକ ଅଟନ୍ତି ବିଶେଷରେ ଉତ୍କଳଭାଷାର ଉନ୍ନତି କାରଣ ସେ ଯଥା ସାଧ୍ୟ ଧନବ୍ୟୟ ଓ ପରିଶ୍ରମ କରିବାକୁ ତୃଟି କର ନାହାନ୍ତି ତାହାଙ୍କ ପ୍ରତି ଆମ୍ଭେମାନେ ଏତେ କଠିନ ବ୍ୟବହାର କଲୁଁ ବୋଲି ପାଠକମାନେ ବିରକ୍ତ ହୋଇପାରନ୍ତି । କିନ୍ତୁ ଆମ୍ଭମାନଙ୍କର ବିବେଚନା ହୁଅଇ ଯେ ସତ୍‌ପାତ୍ର ସିନା ଗୁଣ ଦୋଷର ମର୍ମ ଗ୍ରହଣ କରିବ ଅପାତ୍ରରେ କହିଁ ଲାଭ କି ଅଛି ଅତଏବ ଆମ୍ଭେମାନେ ଭରସା କରଁ ଯେ ଗ୍ରନ୍ଥକର୍ତ୍ତା ଏଥିରେ ଭଗ୍ନୋତ୍ସାହ ନ ହୋଇ ଆପଣାର ଭ୍ରମ ସଂଶୋଧନ କରନ୍ତୁ ନୋହିଲେ ତାହାଙ୍କର ଏତାଦୃଶ ଶ୍ରମ ବିଫଳ ହୋଇଯିବ ।

*ଭା୪ଗ, ସଂ୧୫ଖ୍ୟା, ୧୦।୪।୧୮୬୯*

## ଉତ୍କଳ ପୁସ୍ତକ ପରୀକ୍ଷାର ସଭା

ପାଠକମାନଙ୍କୁ ଜଣାଅଛି ଯେ ଢେଙ୍କାନାଳର ମହାରାଜ ଉତ୍କଳ ପୁସ୍ତକ ମୁଦ୍ରିତ ସକାଶେ ପ୍ରାୟ ଏକସହସ୍ର ଟଙ୍କା କଟକ ଶିକ୍ଷା ସକ୍ରାନ୍ତ କମିଟୀ ହସ୍ତରେ ଗଚ୍ଛିତ କରିଥିଲେ । ଉକ୍ତ ଟଙ୍କା କିରପେ ବ୍ୟୟ ହେବ କମିଟୀ ସେଥିର ବିଚାର ଅନେକ କାଳର କରଥିଲେ ଏବଂ ଏହି ବିଷୟ ଘେନି ଉତ୍କଳ ହିତୈଷିଣୀ ସଙ୍ଗେ ଆମ୍ଭମାନଙ୍କର ଅନେକ ତର୍କ ବିତର୍କ ହୋଇଥିଲା ଯାହା ହେଉ ଗତ ସୋମବାର କମିଟୀଦ୍ୱାରା ଏ ବିଷୟ ନିଷ୍ପତ୍ତି ହୋଇଅଛି । ଆମ୍ଭେମାନେ ଏ ସମ୍ବାଦ ଶ୍ରବଣରେ ଯତ୍‌ପରୋନାସ୍ତି ଆନନ୍ଦିତ ହେଲୁଁ ଉତ୍କଳ ପୁସ୍ତକ ମୁଦ୍ରାଙ୍କନ କାର୍ଯ୍ୟ ଶୀଘ୍ର ଆରମ୍ଭ ହେବ ଓ ଯେଉଁମାନେ ପୁସ୍ତକ ରଚନା କରିବା ପାଇଁ ମାନସ ରଖନ୍ତି ମାତ୍ର ବ୍ୟୟ ନିର୍ବାହର ଉପାୟ ନ ଥିବାର ସେଥର ନିବୃତ୍ତ

ଥିଲେ ସେମାନେ ଆଳସ୍ୟ ପରିତ୍ୟାଗ କରି କାର୍ଯ୍ୟରେ ନିଯୁକ୍ତ ହେବେ ।

କମିଟୀ ଯେଉଁ ନିୟମମାନ କରିଅଛନ୍ତି ତାହା ଯେ ସର୍ବମତରେ ଆମ୍ଭମାନଙ୍କର ପ୍ରସ୍ତାବାନୁଯାୟୀ ହୋଇଅଛି ବୋଲିବା ଅଧିକ ଅଟଇ ଓ ଏହି କାରଣର ପୁନର୍ବାର ତହିଁର ବ୍ୟାଖ୍ୟା କରିବା ଅନାବଶ୍ୟକ । ସଂକ୍ଷେପ ଏହି ଯେ ଓଡ଼ିୟା ପୁସ୍ତକମାନଙ୍କର ଦୋଷାଦୋଷ ବିଚାର କାରଣ ଗୋଟିଏ ସଭାର ସୃଷ୍ଟି ହେଲା ଓ ତଳଲିଖିତ ମହାଶୟମାନେ ସେଥିର ସଭ୍ୟ ସ୍ୱରପ ନିଯୁକ୍ତ ହୋଇଅଛନ୍ତି । ଯଥା-

ଶ୍ରୀ ଡବଲିଉ ସି, ଲେସି ସାହେବ
ଶ୍ରୀ ବାବୁ ଜଗନ୍ମୋହନ ରାୟ
ଶ୍ରୀ ବାବୁ ବିବିତ୍ରାନନ୍ଦ ଦାସ
ଶ୍ରୀ ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀ
ଶ୍ରୀ ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟ
ଶ୍ରୀ ବାବୁ ନବିନଚନ୍ଦ୍ର ସଡ଼ଙ୍ଗୀ
ଶ୍ରୀ ବାବୁ ବନମାଳି ସିଂହ
ଶ୍ରୀ ବାବୁ ଗୌରୀଶଙ୍କର ରାୟ

ବିଶେଷ ସଭ୍ୟର ନିୟୋଗ ବିଷୟରେ ଆମ୍ଭେମାନେ ନାନା କାରଣର କୌଣସି ମତ ବ୍ୟକ୍ତ କରି ନ ପାରୁଁ ମାତ୍ର ଆମ୍ଭମାନଙ୍କର ବିଶ୍ୱାସ ଓ ଭରସା ହୁଅଇ ସର୍ବସାଧାରଣରେ ଏ ସଭା ଆଦରଣୀୟ ହେବ ଓ ଗ୍ରନ୍ଥ ରଚକମାନେ ଯଥାର୍ଥ ବିଚାରଲାଭ କରିବାର ଭରସାରେ ଉତ୍ସାହିତ ହୋଇ ସଭାରେ ଅର୍ପଣ କରିବେ ।

ଗ୍ରନ୍ଥ ରଚକଙ୍କଠାର କେଉଁ ବିଷୟର ପୁସ୍ତକ କିରପେ ପ୍ରାପ୍ତି ହେବ ଓ କି ନିୟମାନୁସାରେ ସେମାନେ ଆପଣା ପରିଶ୍ରମର ଫଳ ପାଇବେ ସଭା ବସିଲାଠାର ସେ ସମସ୍ତ ନିସ୍ପତ୍ତି ହେବ ଓ ସାଧାରଣ ବିଜ୍ଞାପନଦ୍ୱାରା ସେ ସମସ୍ତ ଜଣାଇ ଦିଆଯିବ । ସଂପ୍ରତି ଆମ୍ଭେମାନେ ଏତିକି କହିପାରୁଁ ଯେ ବିଶେଷ ବ୍ୟକ୍ତି ବା ବ୍ୟକ୍ତିମାନଙ୍କ ପ୍ରତି ପକ୍ଷପାତୀ ନ ହୋଇ ସର୍ବୋତ୍କୃଷ୍ଟ ପୁସ୍ତକ ପାଇବା କମିଟୀର ମାନସ ଅଛି ଓ ଏହା ଜାଣି ଉପଯୁକ୍ତ ବ୍ୟକ୍ତି ମାତ୍ରକେ ପୁସ୍ତକ ରଚନା କାର୍ଯ୍ୟରେ ପ୍ରବୃତ୍ତ ହୋଇ ପାରନ୍ତି ।

*ଭା୪ଗ,ସଂ୨୮ଖ୍ୟା,୧୦।୭।୧୮୬୯*

## ବଙ୍ଗ ଅକ୍ଷରରେ ଉତ୍କଳ ଭାଷା ଲେଖିବା ।

ଗତ ସପ୍ତାହର କଟକ ଷ୍ଟାରରେ ବାବୁ ଉମାଚରଣ ହଲଦାର ଖଣ୍ଡିଏ ସୁଦୀର୍ଘ ପତ୍ରିକା ପ୍ରକାଶ କରାଇ ଅଛନ୍ତି । ବଙ୍ଗଳା ଅକ୍ଷରରେ ଉତ୍କଳଭାଷା ପୁସ୍ତକ ଓ ସମ୍ବାଦପତ୍ରାଦି ମୁଦ୍ରିତ ହେବା ସେଥିର ତାତ୍ପର୍ଯ୍ୟ ଅଟଇ । ଓ ତଦ୍ୱାରା ବଙ୍ଗଳା ଓ ଉତ୍କଳ ଉଭୟ ପ୍ରଦେଶର ଲୋକ ଏବଂ ସାହେବମାନେ ଉତ୍କଳ ଭାଷା ଉତ୍ତମ ରପେ ସହଜରେ ଶିକ୍ଷା କରିବେ ଏହି ଆଶା କରନ୍ତି ବାବୁଙ୍କୁ ଜଣେ ଉତ୍କଳର ହିତୈଷୀ ବୋଲିବାକୁ ହେବ କାରଣ ଭିନ୍ନ ସ୍ଥାନର ଲୋକ ମଧ୍ୟରେ ଉତ୍କଳ ଭାଷା ପ୍ରଚଳ କରାଇବା ପାଇଁ ସଦୁପାୟ ନିଷ୍ପୟ କରିବାରେ ସେ ଯେତେ ପରିଶ୍ରମ ଓ କାଳ ବ୍ୟୟ କରିଅଛନ୍ତି ତାହା ଉକ୍ତ ପତ୍ର ଦୃଷ୍ଟିକଲେ ପ୍ରତୀତି ହେବ । ଯୁକ୍ତିମାନ ମଧ୍ୟ ଅଲୌକିକ ଅଟଇ ତନ୍ମଧ୍ୟରେ ପ୍ରଧାନ ଯୁକ୍ତି ଏହି କି ଯେବେ ବଙ୍ଗଳା କାଗଜ ବଙ୍ଗଳା କଲମ ଓ ସିହାଇରେ ଉତ୍କଳ ଅକ୍ଷର ଲେଖାଗଲା ତେବେ ବଙ୍ଗଳା ଅକ୍ଷରରେ କିପାଁଇ ଲେଖା ନ ହେବ ? ଅସ୍ମଦ୍ଦେଶୀୟ ପାଠକମାନେ ଯେବେ କାଗଜ, କଲମ ଓ ସିହାଇର ସୃଷ୍ଟି ବିଷୟ ନ ଜାଣନ୍ତି ତେବେ ସ୍ମରଣ ରଖନ୍ତୁ ଯେ ଏ ସମସ୍ତ ବଙ୍ଗଳାରେ ଜାତ ହୋଇଅଛି ଓ ଏଥିର ପ୍ରମାଣ ଖୋଜିବାକୁ ବିଶେଷ ବୁଦ୍ଧିର ଆବଶ୍ୟକ ନ ରଖେ କାଗଜ, କଲମ, ଇତ୍ୟାଦି ଶବ୍ଦ ବାବୁଙ୍କ କଥା ସପ୍ରମାଣ କରିଅଛି । ଏ ଗୋଟିଏ ଯୁକ୍ତି ଦ୍ୱାରା ବାବୁ ଏଡ଼େକଥା ସ୍ଥାପନ କରିବାକୁ ଚେଷ୍ଟା କରି ନାହାନ୍ତି । ତେବେ ଆହୁରି ଗୋଟିଏ ଯୁକ୍ତିର କଥା ଶୁଣନ୍ତୁ । ଓଡ଼ିୟା ଓ ବଙ୍ଗଳା ଅକ୍ଷର ସବୁକୁ ବାବୁ ବଡ଼ ମନୋଯୋଗ ପୂର୍ବକ ପରୀକ୍ଷା ଓ ତୁଳନା କରି ଦେଖିଲେ ଯେ ବଙ୍ଗଳା ଅକ୍ଷରର ବଡ଼ ଶୋଭା ହୋଇ ଅଛି । ଅବା ଏଥିରେ ବିଚିତ୍ର କି ଯାହା ପୁଅ ତାହାକୁ ସୁନ୍ଦର । ଓଡ଼ିୟା

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଅକ୍ଷର ଗୋଲାକାର ବଙ୍ଗଳା ତ୍ରିକୋଣ ବା ଅର୍ଦ୍ଧଗୋଲ ଏ ତାହାଙ୍କୁ ଗଜମୁକ୍ତା ହାରରେ ହୀରକ ଖଚିତ ପଦକ ପ୍ରାୟ ବଡ଼ ଢାଲ୍ୟମାନ ଦିଶିଲା ଅଥବା ବାବୁଙ୍କର ବୈଷ୍ଣବୀ ଭାବ ଉଦୟ ହୋଇଥିବ ଯେ ତ୍ରିଭଙ୍ଗୀ ରପ ଦେଖି ଗୋପ କହ୍ନାଇର କଥା ଅକସ୍ମାତ୍ ମନରେ ଚେତିଲାର ପ୍ରେମରେ ପୂର୍ଣ୍ଣ ହେଲେ। ଯେବେ ଏରପ କିଛି ନ ହୋଇଥିବ ତେବେ ବାବୁ କାହିଁକି ଏ ଦୁଇ ଅକ୍ଷରକୁ ଦେଖୁ ଦେଖୁ ବଙ୍ଗଳାକୁ ସୁନ୍ଦର ମନରେ କରି ହଠାତ୍ ଚମକିପଡ଼ି କହିଲେ କି ଯେବେ ବଙ୍ଗଳା ଅକ୍ଷର ଏଡ଼େ ସୁନ୍ଦର ତେବେ ଓଡ଼ିଆ ଭାଷା ଏଥିରେ କାହିଁକି ଲେଖା ନ ହେବ। ବାବୁ ଯେ ଚମକି ଥିବେ ଏଥିରେ ସନ୍ଦେହ ନାହିଁ କାରଣ ଆମ୍ଭେମାନେ ତ ଶୁଣିଲାକ୍ଷଣି ଚମତ୍କାର ହେଲୁଁ।

ବର୍ତ୍ତମାନ ଆମ୍ଭମାନଙ୍କର ଅବକାଶ ନ ଥିବାର ଆଉ କଥାମାନ ଲେଖି ନ ପାରିଲୁଁ । କିନ୍ତୁ ବାବୁଙ୍କୁ ଏତିକି କହିବାର ଆବଶ୍ୟକ ଯେ ଏ କଥା ପାଁଇ ଏଡ଼େପତ୍ର ଲେଖି ମୁଣ୍ଡ ହାତକୁ କ୍ଳେଶ ଦେବାର ପ୍ରୟୋଜନ କି ଥିଲା। ଦୁଇ ଚାରିଖଣ୍ଡ ଓଡ଼ିଆ ପୁସ୍ତକ ବଙ୍ଗଳା ଅକ୍ଷରରେ ଛପାଇ ଦେଲେ ତ ସବୁ ବୁଦ୍ଧି କାର୍ଯ୍ୟରେ ପ୍ରକାଶ ପାନ୍ତା।

*ଭା୪ଗ, ସଂ୨୮ଖ୍ୟା, ୧୦।୭।୧୮୬୯*

## ପ୍ରେରିତପତ୍ର।

## ସଂକର ଭାଷା

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ

ମହାଶୟ ସମୀପେଷୁ

ଗତ ଜୁନମାସ ତା ୧୬ ରିଖର ଉତ୍କଳ ହିତୈଷିଣୀରେ ଯେ ଦୁଇଗୋଟି ପ୍ରବନ୍ଧ ରଚନା ପ୍ରକାଶ ହୋଇଥିଲା ତାହା ସଂକରଭାଷା ଥିବା ବିଷୟରେ ଖଣ୍ଡିଏ ପତ୍ର ଆପଣଙ୍କର ସେହି ମାସ ତା ୨୬ ରିଖର ପତ୍ରିକାରେ ସ୍ଥାନ ପ୍ରାପ୍ତ ହୋଇ ଥିଲା ମାତ୍ର ପତ୍ରପ୍ରେରକ ମହାଶୟ ଆପଣା ମତର ପ୍ରମାଣ ଭ୍ରମଯୁକ୍ତ ରପେ ଦର୍ଶାଇ ଥିବାର ତହିଁର ଫଳ ଗ୍ରହଣ ପୂର୍ବକ ଉକ୍ତ ପ୍ରବନ୍ଧର ରଚକ ଆପଣା କବିତାର ପୋଷକତାରେ ଏକ ପ୍ରସ୍ତାବ ଚଳିତମାସ ତା ୧ ରିଖର ଉତ୍କଳହିତୈଷିଣୀରେ ପ୍ରକାଶ କରାଇଅଛନ୍ତି । ସେ ଯାହା ହେଉ ପକ୍ଷପାତ ଶୂନ୍ୟ ହୋଇ ଉତ୍ତମରପେ ବିବେଚନା କଲେ ବିବାଦୀୟ ପଦ୍ୟଦ୍ୱୟ ବଙ୍ଗୋତ୍କଳ ମିଶ୍ରିତ ସଙ୍କରଭାଷା ଥିବାର ଜଣା ଯାଏ । ଯଥା ।

୧ "ପିକଗଣ ପଞ୍ଚସ୍ୱରେ ଗାଏ ରାଜା ଗୁଣ"
"ପିକଗଣ ଗାଏ" ବଙ୍ଗଭାଷା ଅଟେ, ଉତ୍କଳରେ "ଗାନ୍ତି" ହେବ ।

୨ "ନବୀନ ପଲ୍ଲବ ଶାଖା କରେ ଶୋଭାକର"-"କରେ ଶୋଭାକର" ବଙ୍ଗଳା ଅଟେ ଓଡ଼ିଆରେ "ହୋଏ କିମ୍ବା ଦିଶେ ଶୋଭାକର"ହେବ । ଯଦ୍ୟପି "କରେ"ର ଅର୍ଥ କିରଣ କୁହାଯାଏ ତେବେ କି କିରଣ ତହିଁର କିଛି ପ୍ରସଙ୍ଗ ଉଲ୍ଲେଖ ନାହିଁ ।

୩ "ସ୍ୱଭାବ ତୋଷଇ ଧରି ନୂଆ କଳେବର" ସ୍ୱଭାବର ଅର୍ଥ Nature ଇଙ୍ଗରାଜୀ ଅବା ନବ୍ୟ ବଙ୍ଗଳା ପଢୁଆମାନଙ୍କ ବ୍ୟତୀତ ଅନ୍ୟ କେହି ବୁଝି ନ ପାରିବେ । ତହିଁ ବଦଳି ପ୍ରକୃତି ଶବ୍ଦ ପ୍ରୟୋଗ ହୋଇଥିଲେ ଏକ ପ୍ରକାର ବୁଝାଯାନ୍ତା ଏସ୍ଥଳେ "ଜଗତ" ଶବ୍ଦ ସର୍ବାପେକ୍ଷା ଉତ୍ତମ।

୪ "ବସନ୍ତ ଋତୁ ରାଜ ବସିଲେ କରିବାର । ଜଗତର ସମାଜ କରିଣ ମନୋହର"ଏ ପଦର ଅର୍ଥ ବୁଝି ନ ପାରଁ କିମ୍ବା"ବସିଲେ କରିବାର " କେଉଁ ଭାଷା କିଛି ଜଣା ନ ଯାଏ ଯଦିଚ "ମନୋହର କରିବାର" ବୋଲାଯାଏ ତେବେ "କରିଣ" କି ହେତୁର ପ୍ରୟୋଗ ହୋଇଅଛି ।

୫ "ଏହିପରି ଭୂପତିର ହେରିଣ ସମ୍ପଦ" "ହେରିଣ" ପାଠ ମାତ୍ରକେ ହାସ୍ୟାର୍ଣ୍ଣବରେ ମଗ୍ନ ହେଲୁଁ। ବଙ୍ଗଶବ୍ଦ "ହେରିରେ" ଉତ୍କଳ ଅସମାପିକା କ୍ରିୟାସୂଚକ "ଣ" ପ୍ରତ୍ୟୟ ହୋଇ ଅଛି ।

୬ "ନିରନ୍ତର ଭ୍ରମର ମଧୁପାନ କରଇ" ଏ ପଦ ବଙ୍ଗ ବୃତ୍ତିରେ ଚଳିପାରେ କି ନା କହି ନ ପାରଁ ଉତ୍କଳର କୌଣସି ବୃତ୍ତିରେ ଚଳୁ ନାହିଁ ।

୭ "ବସନ୍ତରେ ବୃଦ୍ଧି ପାଏ ସମସ୍ତର ରଙ୍ଗ" "ରଙ୍ଗ ବୃଦ୍ଧି ପାଏ" ଏପରି ବାକ୍ୟ ଉତ୍କଳରେ ଶୁଣା ନାହିଁ

୮ "କୃପା କରି ଆହେ ନାଥ ହେର ଏକଥର" "ହେର" ଉତ୍କଳ ଶବ୍ଦ ନୁହେ ।

୯ "ତୁମ୍ଭ ନିକଟରେ ପ୍ରଭୁ ଏହି ନିବେଦନ । ତୁମ୍ଭ ଗୁଣ ସଦା ଗାଉଥାଏ ମମ ମନ" "ଗାଉଥାଏ" ପରିବର୍ତ୍ତେ "ଗାଉଁଥାଉ" ହେବାର ଉଚିତ ଥିଲା ।

ଏତଦ୍ଭିନ୍ନ ପଦମାନଙ୍କର ରଚନା କାବ୍ୟୋପଯୁକ୍ତ ନ ହୋଇ କେବଳ ଶେଷ ଅକ୍ଷର ମେଳର ପଦ୍ୟ ହୋଇଅଛି ।

ମୁଖୋପାଧ୍ୟାୟ ମହାଶୟ କହନ୍ତି ଯେ ଉତ୍କଳ ସ୍ୱୟଂ ସଙ୍କରଭାଷା ଅଟେ ଏଥିର କେବଳ ତାଙ୍କରି ଅଜ୍ଞତା ପ୍ରକାଶ ହେଉଅଛି । ପୁଣି ଉତ୍କଳକୁ ତାଚ୍ଛଲ୍ୟ କରି କହନ୍ତି ଯେ "ବଙ୍ଗଭାଷାର ବିକୃତି ହେଲେ ଉତ୍କଳଭାଷା ହୋଏ" ଓ ଏଥିର ପ୍ରମାଣ ସ୍ୱରପ ଯେ ଗୋଟିଏ ଗଳ୍ପ ବର୍ଣ୍ଣନ କରିଅଛନ୍ତି ତହିଁରେ ମଧ୍ୟ ତାଙ୍କର ଭ୍ରମ ଦେଖାଯାଏ କାରଣ ପ୍ରଶଂସିତ ବାବୁ ମହାଶୟ "ଛୁଚନ୍ଦରା" କହି ନ ପାରି "ଛୁଛନ୍ଦ" କହିଲେ ଆମ୍ଭେ କହୁଁ ଉତ୍କଳଭାଷା ବିକୃତ ହୋଇ ବଙ୍ଗଭାଷା ହୋଇଅଛି କାରଣ ବଙ୍ଗାପେକ୍ଷା ଉତ୍କଳ ଅଧିକ ପ୍ରାଚୀନ ଅଟେ ଓ ଉତ୍କଳରେ ପ୍ରାଚୀନ ଗ୍ରନ୍ଥ ଅନେକ ଓ ଶ୍ରେଷ୍ଠତର, ଏ ଉଭୟଭାଷାର ପ୍ରାଚୀନ ଗ୍ରନ୍ଥମାନ ତୁଳନା କଲେ ଉପର୍ଯ୍ୟୁକ୍ତ ବିଷୟ ସ୍ପଷ୍ଟ ପ୍ରମାଣ ହେବ । ବାସ୍ତବରେ କେହି କାହାର ବିକୃତ ଭାଷା ନୁହେ ଏକ ମୂଳଭାଷାର ଏ ଉଭୟ ଜନ୍ମଗ୍ରହଣ କରି ଲାଳନପାଳନ ଅନୁସାରେ ଅଧୁନା ଯଥୋପଯୁକ୍ତ ଅବସ୍ଥାକୁ ପ୍ରାପ୍ତ ହୋଇଅଛନ୍ତି ଏଥି ପାଇଁ କେହି ଗାରିମା କରିବା ଅବିଧେୟ ଅଟେ ।

ପରିଶେଷରେ ଲେଖିବାର ଏହି ଯେ ବିବାଦୀୟ ପଦ୍ୟମାନ ପାଠ କରିବା ସମୟରେ ଆମ୍ଭର ଗୋଟିଏ ଗଳ୍ପ ସ୍ମରଣ ହେଲା ଓ ତାହା ମୁଖୋପାଧ୍ୟାୟ ମହୋଦୟଙ୍କ ପରି ବ୍ୟକ୍ତ ନ କରି କ୍ଷାନ୍ତ ରହି ନ ପାରିଲୁଁ । ତାହା ଏହି ଅଟେ । ଗଙ୍ଗାମନ୍ଦିର ପୁଷ୍କରିଣୀର ପଙ୍କୋଦ୍ଧାରଣ ସମୟରେ ଗାଙ୍ଗୁଲୀଦାରୋଗା ମହାଶୟ ଗୋର ସାହେବଙ୍କୁ କହିଲେ "ଯଦି ଓ ପଙ୍କ ପୋଛ ହୋଯାଗା ତବୁଓ ଉପରକା କାମ ନହିଁ ଫୁରାଏଗା" ଏପରି ସ୍ଥଳେ "ନରକ" କି ପରି "ଗୁଲଜାର" ହୋଇପାରେ । ଆପଣ ଅନୁଗ୍ରହପୂର୍ବକ ଏପତ୍ର ଆପଣଙ୍କ ପତ୍ରିକାରେ ଶୀଘ୍ର ପ୍ରକାଶ କଲେ ବାଧିତ ହେବୁଁ ।

। ମୁ । କଟକ — ବସମ୍ଭଦସ୍ୟ

ତା୬ରିଖ ଜୁଲାଇ ସନ ୧୮୬୯ ସାଲ — କସ୍ୟଚିଦ୍‌ଯଥାର୍ଥ ବିଚାରଶୀଳ ପ୍ରବନ୍ଧରଚକସ୍ୟ

*ଭା୪ଗ,ସଂ୨୮ଖ୍ୟା,୧୦।୭।୧୮୬୯*

## ବଙ୍ଗାକ୍ଷରେ ଉତ୍କଳଭାଷା ଲେଖିବା

ପ୍ରସ୍ତାବ ବିରଦ୍ଧରେ ସର୍ବସାଧାରଣର ମତ ଜଣାଇବା ଅଭିଳାସରେ ଆମ୍ଭେମାନେ ଗତ ସପ୍ତାହଠାର କେତେ ଗୁଡ଼ିଏ ପ୍ରେରିତ ପତ୍ର ପ୍ରକାଶ କରି ଆସୁଅଛୁଁ । ବୋଧକରଁ ଏ ବିଷୟରେ ଆଉ କିଛି ବ୍ୟକ୍ତ କରା ଆବଶ୍ୟକ ନାହିଁ ଶ ଅତଏବ ପତ୍ରପ୍ରେରକଙ୍କୁ ଅନୁରୋଧ ଯେ ସେମାନେ ଏ କଥାକୁ ପରିତ୍ୟାଗ କରି ଅନ୍ୟାନ୍ୟ ବିଷୟ ରଚନା କରିବାରେ ପ୍ରବୃତ୍ତ ହେଉନ୍ତୁ ସଂପ୍ରତି ପାଠକମାନଙ୍କୁ ଜଣାଇଁବାର ଆବଶ୍ୟକ ଯେ ଉତ୍କଳୋଲ୍ଲାଷିନୀ ସଭାରେ ଏ ପ୍ରସଙ୍ଗ ଉପସ୍ଥିତ ହୋଇଥିଲା ସେଠାର ଏହି ସିଦ୍ଧାନ୍ତ ହେଲା ଯେ, ଉକ୍ତ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲେ ବର୍ତ୍ତମାନ ବଙ୍ଗଭାଷାର ସତ୍ୟନାରାୟଣଙ୍କ ପାଲା ଚୈତନ୍ୟ ଚରିତାମୃତ ଓ ପଦ୍ୟାବଳୀ ଇତ୍ୟାଦି ଏ ଦେଶୀୟ ଲୋକମାନେ ଉତ୍କଳ ଅକ୍ଷରରେ ଲେଖି ପଢିବାର ସେଥିରେ ଯେଉଁ ଦୁର୍ଗତି ହୋଇଅଛି ବଙ୍ଗାକ୍ଷରରେ ଲେଖା ହେଲେ ଉତ୍କଳ ଭାଷା ମଧ୍ୟ ସେହି ଅବସ୍ଥା ହେବ ଅତଏବ ଏଥିରେ ଉତ୍କଳ ଭାଷାର ଅନିଷ୍ଟ ଭିନ୍ନ ଉନ୍ନତିର କୌଣସି ଆଶା ନାହିଁ । ପାଠକମାନେ ଅବଶ୍ୟ ଜ୍ଞାତ ଥିବେ ଯେ ଏ ସଭାର ସଭ୍ୟମଣ୍ଡଳୀରେ ଏ ନଗରର ସକଳ ଶ୍ରେଣୀର ପଣ୍ଡିତ ଧନୀ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଅଛନ୍ତି ଓ ଏଠାର ମତକୁ ଦେଶର ମତ ବୋଲି ଅନାୟାସରେ ବିସ୍ୱସ୍ଥ ହୋଇପାରେ ।

*ଭା୪ଗ,ସଂ୩୦ଖ୍ୟା,୨୪।୭।୧୮୬୯*

## ପ୍ରେରିତପତ୍ର ।

ପରମଗୁଣାଳଂକୃତ ଶ୍ରୀଯୁତ ଉତ୍କଳଦୀପିକା-
ସଂପାଦକ ମହୋଦୟ ସମୀପେଷୁ ।

ଉତ୍କଳହିତୈଷିଣୀରେ ପ୍ରକାଶିତ ଜଣେ ନବ୍ୟକବି ରଚିତ ବସନ୍ତ ବର୍ଣ୍ଣନା ଇତ୍ୟାଦି ବିଷୟର ପ୍ରବନ୍ଧଦ୍ୱୟ ସଙ୍କରଭାଷା ଥିବାର ଯେ ପ୍ରମାଣ ଆମ୍ଭେ ଆପଣଙ୍କ ପତ୍ରିକାଦ୍ୱାରା ଦର୍ଶାଇଥିଲୁଁ ତହିଁର ପ୍ରତିବାଦରେ ଓ ସଙ୍କରଭାଷା ପୋଷକତାରେ "କେନ୍ଦରାପଡ଼ାର ଉତ୍କଳୀୟ ଯଥାର୍ଥବାଦୀ" ଖଣ୍ଡିଏ ପତ୍ର ଗତ ଜୁଲାଇ ମାସ ତା ୧୬ ରିଖର ହିତୈଷିଣୀରେ ପ୍ରକାଶ କରାଇଅଛନ୍ତି । ତାହା ପାଠ ମାତ୍ରକେ ହାସ୍ୟାର୍ଣ୍ଣବରେ ମଗ୍ନ ହେଲୁଁ ଓ ହେୟ ଜ୍ଞାନ କରି ଏପର୍ଯ୍ୟନ୍ତ ମୌନ ଥିଲୁଁ କିନ୍ତୁ ଏଥିର ବିପରୀତ ଭାବ କେହି ବୁଝିବାର ସମ୍ଭାବନା ଜାଣି ନିମ୍ନଲିଖିତ କେତେକ ପଙ୍କ୍ତି ଲିପିବଦ୍ଧ କଲୁଁ ଆପଣ ଅନୁଗ୍ରହ ପୂର୍ବକ ଏହାକୁ ଆପଣଙ୍କ ପତ୍ରିକାରେ ସ୍ଥାନ ଦାନ କଲେ ଅତି ବାଧିତ ହେବୁଁ ।

ଶ୍ରୀ ଅବଧାନ, ଉତ୍କଳଭାଷା ପ୍ରମାଣାର୍ଥେ "ଯଥାର୍ଥବାଦୀ" ସଂସ୍କୃତ ବ୍ୟାକରଣ ଓ ସଟନ ସାହେବଙ୍କ ଆଶ୍ରା ନେଇଅଛନ୍ତି । ଆମ୍ଭେ ତାଙ୍କୁ ପ୍ରଶ୍ନ କରୁଁ ଭାଷା ଆଗେ କି ବ୍ୟାକରଣ ଆଗେ ? ଭାଷାକୁ ଅନୁସରି ଯେ ବ୍ୟାକରଣ ସର୍ଜନା ହୋଇଅଛି ଏହା କିଏ ସ୍ୱୀକାର ନ କରିବ ? ପୁଣି ଉତ୍କଳଭାଷାରେ ସଂସ୍କୃତ ବ୍ୟାକରଣ ଖଟାଇବା କେଡ଼େ ଯୁକ୍ତିଯୁକ୍ତ ପାଠକମାନେ ବିଚାର କରନ୍ତୁ ଓ ଯେପ୍ରକାର ଖଟାଇଅଛନ୍ତି ତାହା ମଧ ଅତ୍ୟନ୍ତ ଅସଙ୍ଗତ ଅଟେ । ଉତ୍କଳରେ ଏଡ଼େ ମୂଢ଼ କିଏ ଅଛି ଯେ ସେ "ପିକଗଣ"କୁ ଏକବଚନ ଜ୍ଞାନ କରିବ ।

ସଟନ ସାହେବ ଉତ୍କଳଭାଷାରେ ଯେପ୍ରକାର ନିପୁଣ ତାହା ତାଙ୍କ ରଚିତ ଓଡ଼ିଶା ଇତିହାସର ଜଣା ଯାଏ ଅତଏବ ତାଙ୍କ ଆଶ୍ରିତ ବ୍ୟକ୍ତି ଯେ ଓଡ଼ିଆରେ ଅଧିକ ଅପଟୁ ଥିବେ ଏଥିରେ ରେଣୁମାତ୍ର ସନ୍ଦେହ ନାହିଁ । ଯେବେ ଉତ୍କଳ ଶବ୍ଦର ପରିଚୟସକାଶେ ସଟନସାହେବଙ୍କ ଡିକସ୍ନରିକୁ ପ୍ରମାଣସ୍ୱରପ ଗ୍ରହଣ କରାଯିବ । ତେବେ ପ୍ରାଚୀନ ବିଖ୍ୟାତ ଅଭିଧାନମାନ କି ନିମିତ୍ତ ଅଛନ୍ତି ଆମ୍ଭେ ପୁନର୍ବାର ଦୃଢ଼କରି କହୁଅଛୁଁ ଯେ "ହେର" "ହେରିଣ" ଇତ୍ୟାଦି ଉତ୍କଳ ଶବ୍ଦ ନୁହେଁ । "ଯଥାର୍ଥବାଦୀ" ମିଥ୍ୟାଚରଣ କରି ଆପଣା ନାମରେ ଉତ୍କଳୀୟ ଶବ୍ଦ ଯୋଗ କରିଅଛନ୍ତି ଯେବେ ସେ ବାସ୍ତବରେ ଓଡ଼ିୟା ତେବେ କୌଣସି କାରଣବଶତଃ ସଙ୍କର ଭାଷାର ଉକୀଲ ହୋଇଅଛି । ପତ୍ର ବାହୁଲ୍ୟ ହେବା ଭୟରେ ତାଙ୍କର ସମସ୍ତ ଯୁକ୍ତିର ଦୋଷ ପ୍ରକାଶର କ୍ଷାନ୍ତ ହେଲୁଁ ।

ବଶମ୍ବଦ
ସେହିବ୍ୟକ୍ତି

*ଭା୪ଗ, ସଂ୩୨ଖ୍ୟା, ୭।୮।୧୮୬୯*

## ବଙ୍ଗାକ୍ଷରରେ ଉତ୍କଳଭାଷା ଲେଖିବା ।

ଆମ୍ଭେମାନେ ପୂର୍ବର ସ୍ଥିର କରିଥିଲୁଁ ଯେ ଏ ଦୁଃଖଦାୟକ ପ୍ରସ୍ତାବ ସମ୍ବନ୍ଧରେ ଆଉ କିଛି ମତାମତ ପ୍ରକାଶ ନ କରିବୁଁ । ଆମ୍ଭେମାନେ ଏହାକୁ ଦୁଃଖଦାୟକ ବିଷୟ ବୋଲିବାର କାରଣ ଏହି ଯେ ଏ ପ୍ରସ୍ତାବ ଉତ୍‌ଖାତ ହେଲା ଦିନୁ ଅନର୍ଥକ ବଙ୍ଗଳାବାସୀ ଓ ଉତ୍କଳୀୟଙ୍କ ମଧରେ ମନାନ୍ତର ହୋଇଅଛି ଓ ଏବମ୍ପ୍ରକାର ମନାନ୍ତରଭାବ ରହିବା ନିତାନ୍ତ ଅନୁଚିତ ଅଟଇ ଓ ଯେହେତୁ ତାହା ଏହି ପ୍ରସ୍ତାବର ଜାତ ହୋଇଅଛି ଅତଏବ ଆମ୍ଭେମାନେ ବିଚାର କରଅଛୁଁ ଯେ ଏ ପ୍ରସ୍ତାବର ଆଉ ଉଲ୍ଲେଖ ନ କରି ଏହାକୁ ଯେତେ ଶୀଘ୍ର ପାସୋରିଯିବା ତେତେ ଶୀଘ୍ର ବୋଧ ହୁଅଇ ଉଲ୍ଲିଖିତ ବିଦ୍ୱେଷ ନିବାରଣ ହେବାର ସମ୍ଭବ ତଥାପି ଆମ୍ଭେମାନେ ଏ ବିଷୟରେ ଅଦ୍ୟ ଖଣ୍ଡିଏ ପତ୍ର ପ୍ରକାଶ କରିବାକୁ ବାଧ ହେଲୁଁ ଓ ତାହା ପ୍ରକାଶ କରିବାରେ ଆମ୍ଭମାନଙ୍କର ଏହି ଉଦ୍ଦେଶ୍ୟ ଯେ ଯଥାର୍ଥ ବିବେଚକ ବଙ୍ଗାଳିମାନେ ସୁଦ୍ଧା ଉମାଚରଣବାବୁଙ୍କ ମତକୁ ଆଦର କର ନାହାନ୍ତି । ପତ୍ରପ୍ରେରକଙ୍କର ପରିଚୟ ଦେବା ଆମ୍ଭମାନଙ୍କ ପକ୍ଷରେ ଅନାବଶ୍ୟକ ଅଟଇ ଉତ୍କଳରେ କାହାରିଠାରେ ସେ ଅପରିଚିତ ନୁହନ୍ତି ଓ ବଙ୍ଗଦେଶରେ ଜଣେ ଉତ୍କୃଷ୍ଟ କବିବୋଲି ଖ୍ୟାତି ଲାଭ କରିଅଛନ୍ତି ଅତଏବ ଏହାଙ୍କର ମତକୁ ଅବଶ୍ୟ ବଡ଼ବୋଲି ଘେନିବାକୁ ହେବ ବାସ୍ତବରେ ପତ୍ରପ୍ରେରକ ବାବୁ ଯାହା ଲେଖିଅଛନ୍ତି ଯେ ସଂସ୍କୃତ ଭିନ୍ନ ଅନ୍ୟ କୌଣସି ଭାଷାରେ ସକଳ ପ୍ରଦେଶର ଲୋକ

ଐକ୍ୟ ହେବାର ସମ୍ଭାବନା ନାହିଁ ଏହା ସଂପୂର୍ଣ୍ଣରପେ ଆମ୍ଭମାନଙ୍କର ମନୋନୀତ ଅଟଇ । ସଂସ୍କୃତଭାଷାକୁ ଭାରତବର୍ଷର ସକଳ ସ୍ଥାନର ଲୋକ ଦେବଭାଷା ବୋଲି ମାନ୍ୟ କରନ୍ତି ଓ ଆଗ୍ରହପୂର୍ବକ ଶିକ୍ଷା କରନ୍ତି ସୁତରାଂ ଏ ଭାଷାର ଯେତେ ଉନ୍ନତି ହେବ ଭିନ୍ନ ଭିନ୍ନ ସ୍ଥାନ ନିବାସିଙ୍କ ମଧରେ ତେତେ ଐକ୍ୟତା ବଢ଼ିବ ସନ୍ଦେହ ନାହିଁ ଅତଏବ କୃତଦିବ୍ୟ ଲୋକମାତ୍ରକେ ସଂସ୍କୃତ ପ୍ରଚାର ବିଷୟରେ ଯତ୍ନବାନ୍ ହେଉନ୍ତୁ ।

*ଭା/୪ଗ, ସଂ୩୩ଖ୍ୟା, ୧୪/୮/୧୮୬୯*

## ପ୍ରେରିତପତ୍ର ।

ଶ୍ରୀଯୁତ ଉତ୍କଳ ଦୀପିକା ସଂପାଦକ

ମହାଶୟେଷୁ

ଆପଣଙ୍କ ପତ୍ରିକାରେ ବଙ୍ଗାକ୍ଷରେ ଉତ୍କଳ ଭାଷା ଲେଖିବା ବିଷୟରେ କତିପୟ ପ୍ରସ୍ତାବ ପାଠକରି ମହା କୌତୁହଳାକ୍ରାନ୍ତ ହେଲୁଁ । ଯଦି କି ଏ ବିଷୟରେ ଆଉ ଅଧିକ ବାଦାନୁବାଦ ଆପଣଙ୍କର ଅଭିପ୍ରାୟ ଆବଶ୍ୟକ ନାହିଁ । ତଥାପି ଉକ୍ତ ବିଷୟ ସମ୍ବନ୍ଧରେ କେତେ ଗୁଡିଯେ କଥା ଉତ୍ଥାପିତ କି ଅବା ବିତର୍କିତ ନ ହେବାର ଆମ୍ଭେ ତାହା ସ୍ୱଳ୍ପ କଥାରେ ବ୍ୟକ୍ତକଲୁଁ ପତ୍ରିକାରେ ସ୍ଥାନ ଦାନ ଦେବା ହେବେ ।

୧ମ । ଆମ୍ଭମାନଙ୍କ ସାଧାରଣ ଜନ୍ମଭୂମି ଏହି ଆର୍ଯ୍ୟାବର୍ତ୍ତରେ ଅର୍ଥାତ୍ ହିମାଳୟଠାର ବିନ୍ଧ୍ୟାଚଳ ପର୍ଯ୍ୟନ୍ତ ଯେତେ ପ୍ରକାର ଭାଷା ଓ ଅକ୍ଷର ପ୍ରଚଳିତ ଅଛି ତତ୍ତାବତ୍ ଏକ ମୂଳଭାଷା ଓ ବର୍ଣ୍ଣମାଳାର ଅନ୍ତର୍ଗତ ପରନ୍ତୁ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନରେ ଏହି ସ୍ଥିର ସିଦ୍ଧାନ୍ତ ହୋଇଅଛି କି ଆର୍ଯ୍ୟଭୂମିର ଭିନ୍ନ ଭିନ୍ନ ପ୍ରଦେଶବାସୀ ଜନସମାଜ ଏକ ମୂଳ ଆର୍ଯ୍ୟଜାତିର ଉତ୍ପନ୍ନ । ଅଧୁନା ଇୟୁରୋପୀୟ ବିଦ୍ୟା ଓ ବିଜ୍ଞାନ ପ୍ରାଦୁର୍ଭୂତ ହେବାର ସ୍ୱଦେଶ ହିତୈଷୀ ହୃଦୟରେ ଏହି ଇଚ୍ଛା ବଳବତୀ ହୋଇଅଛି କି ଭାରତବର୍ଷୀୟ ଭିନ୍ନ ଭିନ୍ନ ଦେଶ ଲୋକମାନଙ୍କ ଭାଷା ଅକ୍ଷର ଧର୍ମ ପ୍ରଭୃତି ବିଷୟରେ ଐକ୍ୟ ସଂସ୍ଥାପିତ ହେଲେ ଅତିଶୟ ସୁଖର ବିଷୟ ହେବ । ବାସ୍ତବିକ ଏ ସମୁଦାୟ ବିଷୟରେ ଐକ୍ୟ ସଂସ୍ଥାପିତ ନ ହେଲେ ଆମ୍ଭମାନଙ୍କ ଏହି ସାଧାରଣ ଜନ୍ମଭୂମିର ପୁନର୍ବାର ସ୍ୱାଧୀନତା ପ୍ରାପ୍ତିର କୌଣସି ସମ୍ଭାବନା ନାହିଁ ଅବଧି ଯେ କିଛି ଐକ୍ୟ ସ୍ଥାପନ ହୋଇଅଛି ତାହା କେବଳ ଇଉରୋପୀୟ ବିଦ୍ୟାର ଫଳମାତ୍ର ଅର୍ଥାତ୍ କି ଉତ୍ତରପଶ୍ଚିମ ପ୍ରଦେଶର କି ବୋମ୍ବାଇରେ କି ବଙ୍ଗଳାରେ କି ଓଡ଼ିଶାରେ ଯେ ସବୁ ଯୁବାପୁରଷ ଇଂରାଜୀବିଦ୍ୟାରେ କୃତବିଦ୍ୟ ହୋଇଅଛନ୍ତି ସେମାନଙ୍କର ଭାଷା ଅକ୍ଷର ଏବଂ ଧର୍ମ ପ୍ରଭୃତି ଏକପ୍ରକାର ହେବାର ସେମାନଙ୍କ ମଧରେ ଐକ୍ୟ ବାକ୍ୟ ସଂସ୍ଥାପିତ ହୋଇଅଛି କିନ୍ତୁ ଇଂରାଜୀଭାଷା ଓ ଅକ୍ଷର ଆମ୍ଭମାନଙ୍କର ସ୍ୱଦେଶଜାତ ନୁହେଁ ସୁତରାଂ ସ୍ୱଦେଶହିତୈଷୀ ବ୍ୟକ୍ତିମାନଙ୍କର ଅନ୍ତଃକରଣରେ ଏହି ଆକୁଞ୍ଚନ ଉଦୟ ହୋଇପାରେ କି ସ୍ୱଦେଶ ଜାତ କୌଣସି ଭାଷା ଏବଂ ଅକ୍ଷର ସର୍ବତ୍ର ପ୍ରଚଳିତ ହେଲେ ସବିଶେଷ ଉପକାର ହୋଇପାରେ ।

୨ୟ । ସୂକ୍ଷ୍ମରପେ ବିବେଚନା କଲେ ଏ ଆକୁଞ୍ଚନ ଅତି ପ୍ରଶଂସାସ୍ପଦ କିନ୍ତୁ ଏହା ଚରିତାର୍ଥ ହେବା ପକ୍ଷରେ ବହୁତର ବ୍ୟାଘାତ ଅଛି ଏମନ୍ତ କି ସମ୍ଭାବନାର ଅତୀତ କାର୍ଯ୍ୟ ବୋଲି ବୋଧ ହୁଏ ଆଦୌ ଭିନ୍ନ ଭିନ୍ନ ପ୍ରଦେଶସ୍ଥ ମନୁଷ୍ୟ ମଣ୍ଡଳୀ ମଧରେ ବୈବାହିକ ସମ୍ବନ୍ଧ ପ୍ରଚଳିତ ନ ହେଲେ ଉକ୍ତ ମାନସ ସିଦ୍ଧ ହୋଇ ନ ପାରେ ଯେ ସ୍ଥଳରେ ଏକ ପ୍ରଦେଶର ଯାଇ ଅନ୍ୟ ପ୍ରଦେଶରେ ବାସକଲେ ଜାତିଭ୍ରଂଶ ହୋଏ ସେ ସ୍ଥଳରେ ଏ ଆଶା ଫଳବତୀ ହେବା ବକାଣ୍ଡପ୍ରତ୍ୟାଶା ମାତ୍ର କାନ୍ୟକୁବ୍ଜଠାର ବଙ୍ଗଳା ଦେଶରେ ବ୍ରାହ୍ମଣ ଏବଂ କାୟସ୍ଥ ଆସି ବାସ କରିବାର ସେମାନଙ୍କ ଜାତିପାତ ହୋଇଅଛି ସୁତରାଂ ସେମାନେ ପୂର୍ବଭାଷା ପରିତ୍ୟାଗ କରିଅଛନ୍ତି ଓଡ଼ିଶା ପ୍ରଦେଶରେ ଯେ ବଙ୍ଗାଳିମାନେ ଦଶ ପନ୍ଦର ପୁରୁଷ ବାସ କରିଅଛନ୍ତି ସେମାନଙ୍କ "କଟକୀ" ଅପବାଦ ହୋଇଅଛି ସେମାନଙ୍କ ସଙ୍ଗରେ ବଙ୍ଗଳାଦେଶସ୍ଥ ପ୍ରାଚୀନ ମତାବଲମ୍ବୀ ମନୁଷ୍ୟମାନେ ଆହାର ବ୍ୟବହାର ବିହାରାଦି ପ୍ରଚଳନ କରିବାକୁ ସମ୍ମତ ନୁହନ୍ତି । ଏହିସବୁ ପରିବର୍ତ୍ତନ କାଳ ସାପେକ୍ଷ ଆର୍ଯ୍ୟାବର୍ତ୍ତରେ ସର୍ବତ୍ର ଜ୍ଞାନବୃଦ୍ଧି ହେଲେ ବିଦ୍ୱେଷବୁଦ୍ଧି ଅପସାରିତ ହେବ ଏବଂ ଏକଜାତିତ୍ୱ ସ୍ୱୀକାର ପକ୍ଷରେ ବ୍ୟାଘାତ ରହିବ ନାହିଁ କୌଣସି ଇଉରୋପୀୟ ବହୁଦର୍ଶୀ କର୍ତ୍ତୃକ ଉକ୍ତ ହୋଇଅଛି କି ବ୍ୟବହାର ପରିବର୍ତ୍ତନ ଆଂଶିକରପେ ହେବାର ଉଚିତ ନୁହେ ତାହା ସଂପୂର୍ଣ୍ଣ ବା ସର୍ବାଙ୍ଗ ଶୁଦ୍ଧ ହେବା

ବିଧେୟ ସୁତରାଂ ବଙ୍ଗାକ୍ଷରରେ ଉତ୍କଳଭାଷା ଲେଖିଲେ କି ଉପକାର ହେବ ବୁଦ୍ଧିର ଅଗମ୍ୟ ।

ତୃୟ । ଅନେକେ କହି ପାରନ୍ତି କି ବଙ୍ଗଳା ଭାଷା ସବିଶେଷ ଉତ୍କର୍ଷ ଲାଭ କରିଅଛି ମଧ୍ୟ ବଙ୍ଗଳା ଓ ଉତ୍କଳ ଭାଷାରେ କତିପୟ ପ୍ରତ୍ୟୟ ଓ ବିଭକ୍ତିର ପ୍ରଭେଦ ମାତ୍ର ସୁତରାଂ ଉତ୍କଳଭାଷା ଉଚ୍ଛେଦ କରି ବଙ୍ଗଳାଭାଷା ଓ ଅକ୍ଷର ପ୍ରଚଳନ କରିବାର କର୍ତ୍ତବ୍ୟ ଅର୍ଥାତ୍ ଯେପରି ସ୍କଟଲାଣ୍ଡ ଦେଶରେ ଇଂରାଜୀ ଭାଷା ପ୍ରଚଳିତ ହୋଇଅଛି ସେହିପରି ଉତ୍କଳ ଦେଶରେ ହେବାର ବାଧା କି ସେ ମହୋଦୟମାନେ ବିବେଚନା କରନ୍ତି ନାହିଁ ଯେ ସ୍କଟଲାଣ୍ଡଦେଶର ସହିତ ଇଂଲଣ୍ଡର ଆହାର ବ୍ୟବହାର ବିବାହାଦି ସଂପର୍କ କେବେହେଁ ରହିତ ନ ଥିଲା ବିଶେଷତଃ ସ୍କଟଲାଣ୍ଡ ଦେଶ ଇଙ୍ଗଲଣ୍ଡୀୟ ଭୂପତିର ଅଧିକୃତ ହେବା ପର୍ଯ୍ୟନ୍ତ ସେଦେଶରେ ଇଂଲଣ୍ଡୀୟ ଭାଷା ପ୍ରାଦୁର୍ଭାବ ହୁଏ ତଦ୍ରୂପ ଉତ୍କଳ ଦେଶ ବଙ୍ଗଳାଦେଶ ଭୂପତିଙ୍କ ଅଧିକାରସ୍ଥ ନ ହେଲେ ଓ ବଙ୍ଗାଳି ଆଉ ଉତ୍କଳୀୟମାନଙ୍କ ସଙ୍ଗରେ ପରିଣୟାଦି ସଂସ୍କାର ପ୍ରଚଳିତ ନ ହେଲେ ଉତ୍କଳ ଦେଶରେ ବଙ୍ଗଳା ଭାଷା କି ଅକ୍ଷର ପ୍ରଚଳ ହେବାର କୌଣସି ସମ୍ଭାବନା ନାହିଁ । କିନ୍ତୁ ଏ ଜଳ୍ପନା ଆକାଶ କୁସୁମବତ୍ କଳ୍ପନାମାତ୍ର ।

୪ର୍ଥ । ଉପସଂହାରରେ ଏହି ବକ୍ତବ୍ୟ ଯେ ଭିନ୍ନ ଭିନ୍ନ ଦେଶୀୟ କୃତବିଦ୍ୟ ଯୁବକମାନଙ୍କ ଅନ୍ତଃକରଣରେ ପୁନର୍ବାର ଏକଜାତି ହେବାର ଯେ ଆଶା ବଦ୍ଧମୂଳ ହୋଇଅଛି ତାହା କାଳକ୍ରମେ ସୁସିଦ୍ଧ ହେବାର ବିଲକ୍ଷଣ ସଦୁପାୟ ଦେଖାଯାଉଅଛି ଅତଏବ ସେମାନଙ୍କର ହତାଶ ହେବାର କୌଣସି କାରଣ ନାହିଁ ଯଦି କି ଏକ ଭାଷା ଓ ଏକ ବର୍ଣ୍ଣମାଳା ପ୍ରଚଳିତ କରା କର୍ତ୍ତବ୍ୟ ବୋଧ ହୁଏ ତେବେ ଆମ୍ଭମାନଙ୍କ ଆଦି ଭାଷା ସଂସ୍କୃତ ଓ ଆଦି ବର୍ଣ୍ଣମାଳା ଦେବନାଗର ସର୍ବ ଦେଶରେ ପ୍ରଚଳିତ କରା ବିଧେୟ । ଅନୁମାନ ହୋଏ ଏହି ଉଦ୍ଦେଶରେ ପ୍ରଚଳିତ ଭାଷା ସମୂହ ପରିବର୍ତ୍ତରେ କଲିକତା ମାନ୍ଦ୍ରାଜ ବୋମ୍ବାଇ ରାଜଧାନିମାନଙ୍କର ବିଶ୍ୱବିଦ୍ୟାଳୟ ନିରୟରେ ସଂସ୍କୃତ ଭାଷାରେ ପରୀକ୍ଷା ଦେବାର ବିଧାନ ହୋଇଅଛି । ଏହି ଉତ୍କୃଷ୍ଟ ବିଧାନର ଯେତେ ଉନ୍ନତି ହେବ ସେହି ପରିମାଣରେ ଏକ ଭାଷା ଓ ଏକ ଅକ୍ଷରରେ ସର୍ବତ୍ର ଲିଖନ ପଠନ କଥନାଦି ପ୍ରଚଳିତ ହେବାର ଆଶା ଫଳବତୀ ହୋଇପାରିବ । ଯଦି ଆପଣଙ୍କର ପାଠକ ମହାଶୟ ମାନଙ୍କ ବିରକ୍ତି ବୋଧ ନ ହୁଏ ତେବେ ପୁନର୍ବାର ଏ ବିଷୟରେ ଆଉ କିଛି ଲେଖିବାକୁ ଅଭିପ୍ରାୟ ରହିଲା ।

ହୁଗଳି ଶ୍ରୀ ରଙ୍ଗଲାଲ୍ ବନ୍ଦ୍ୟୋପାଧ୍ୟାୟ

୫।୮।୧୮୬୯

*ଭା୪ଗ, ସଂ୩୩ଖ୍ୟା, ୧୪।୮।୧୮୬୯*

## ନୂତନ ପୁସ୍ତକର ସମାଲୋଚନା ।

## ଶିଶୁଶିକ୍ଷା

ଆମ୍ଭେମାନେ ଏହି ନାମର ଖଣ୍ଡିଏ ପୁସ୍ତକ ପାଇବାର କୃତଜ୍ଞତା ସହିତ ସ୍ୱୀକାର କରଅଛୁଁ ଏହା ବାଲେଶ୍ୱର ନିବାସି ବାବୁ ଜୟକୃଷ୍ଣ ଚୌଧୁରୀଙ୍କ ଦ୍ୱାରା ବଙ୍ଗଳା ପୁସ୍ତକର ଅନୁବାଦିତ ଓ ବାଲେଶ୍ୱର ଉତ୍କଳ ଯନ୍ତ୍ରାଳୟରେ ମୁଦ୍ରିତ ହୋଇଅଛି । ମୂଲ୍ୟ ଟ୦.୧ ଅଣା୧୫ ମାତ୍ର ।

ଉତ୍କଳର ବିଦ୍ୟାଳୟସମୂହରେ ଭାଷାପୁସ୍ତକର ଅଭାବ ମୋଚନ ପକ୍ଷରେ ଅସ୍ମଦ୍ଦେଶୀୟ କୃତବିଦ୍ୟମାନେ ଯେରପ ଯତ୍ନବାନ୍ ହୋଇ ନାନାଦି ପୁସ୍ତକ ରଚନା ଓ ପ୍ରଚର କରଅଛନ୍ତି ତାହା ଅବଶ୍ୟ ପ୍ରଶଂସନୀୟ ଅଟଇ ଓ ବାବୁ ଜୟକୃଷ୍ଣ ଚୌଧୁରୀ ଏ ପୁସ୍ତକର ଯେରପ ସ୍ୱଳ୍ପ ମୂଲ୍ୟ ଧାର୍ଯ୍ୟ କରିଅଛନ୍ତି ଏଥିରେ ବୋଧ ହୁଅଇ ଯେ ପୁସ୍ତକ ପ୍ରଚର ଦ୍ୱାରା ଲାଭ କରିବା ଏହାଙ୍କର ଉଦ୍ଦେଶ୍ୟ ନୁହଇ କେବଳ ସାଧାରଣ ହିତାର୍ଥେ ଏଥିରେ ପ୍ରବୃତ୍ତ ହୋଇଅଛନ୍ତି । ପୁସ୍ତକ ମଧରେ କେତେ ଗୁଡ଼ିଏ ଶିକ୍ଷୋପଯୋଗୀ ବିଷୟ ଅଛି ଯାହା ପାଠଦ୍ୱାରା ବାଳକଙ୍କର ହିତ ହୋଇପାରେ ମାତ୍ର ଆମ୍ଭମାନଙ୍କର କେମନ୍ତ ଏକ କୁସଂସ୍କାର ଜନ୍ମିଅଛି ଯେ ବାଲେଶ୍ୱରୀ ଉତ୍କଳଭାଷା ଆମ୍ଭମାନଙ୍କୁ ଭଲ ଲାଗଇ ନାହିଁ ଓ ଆମ୍ଭେମାନେ ବାଧେ ହୋଇ ସ୍ୱୀକାର କରଅଛୁଁ ଯେ ଏ ପୁସ୍ତକ ପଠନଦ୍ୱାରା ଉକ୍ତ ସଂସ୍କାର କୌଣସି ରପେ

ଖଣ୍ଡନ ନ ହୋଇ ବରଂ ବଦ୍ଧମୂଳ ହେଉଅଛି। ତଥାପି ଆମ୍ଭମାନଙ୍କର ଏକାନ୍ତ ବିଶ୍ୱାସ ଯେ କ୍ରମେ ଏ ଦୋଷମାନ ଲୋପ ପାଇବ ଏବଂ ଯେଉଁମାନେ ପୁସ୍ତକ ରଚନା କରଅଛନ୍ତି ସେମାନଙ୍କୁ ଉତ୍ସାହ ପ୍ରଦାନ ହେଲେ ବହୁତ ଉପଯୁକ୍ତଲୋକ ଏଥିରେ ପ୍ରବୃତ୍ତ ହୋଇ ଭାଷାପୁସ୍ତକର ଅଭାବ ମୋଚନ କରିବେ।

*ଭା୪ଗ, ସଂ୩୫ଖ୍ୟା, ୨୮।୮।୧୮୬୯*

## ଉତ୍କଳ ଇତିହାସ

ଉତ୍କଳଦେଶରେ ସଂସ୍ଥାପିତ ବିଦ୍ୟାଳୟମାନଙ୍କ ନିମିତ୍ତ ପାଠ୍ୟପୁସ୍ତକ ମୁଦ୍ରାଙ୍କନକାରଣ ଢେଙ୍କାନାଳର ମହାରାଜ ଯେଉଁ ଟଙ୍କା ପ୍ରଦାନ କରିଥିଲେ କଟକସ୍ଥ ସ୍ଥାନୀୟ ଶିକ୍ଷାବିଭାଗର କମିଟୀ ଗତମାସ ସଭାରେ ଉକ୍ତ ଟଙ୍କା ମଧ୍ୟର କୌଣସି ଏକଖଣ୍ଡ ଉତ୍କଳପୁସ୍ତକ ରଚନା ସକାଶେ ଟ ୩୦୦ ଙ୍କା ପର୍ଯ୍ୟନ୍ତ ପୁରସ୍କାର ଦେବାର ବିଧାନ କରି ସେଥିର ସବିଶେଷ ନିୟମ ନିର୍ଦ୍ଧାରଣ କରିବାର ଭାର ଏହି କାର୍ଯ୍ୟନିମିତ୍ତ ନିଯୁକ୍ତ ହୋଇଥିବା ଶାଖା କମିଟୀକୁ ଅର୍ପଣ କରିଥିଲେ ଶାଖାକମିଟୀ ତଦନୁସାରେ ସ୍ଥିର କରିଅଛନ୍ତି ଯେ ଉତ୍କଳର ଏକଖଣ୍ଡି ଇତିହାସ ରଚନା ସକାଶେ ଉକ୍ତ ପୁରସ୍କାର ଦିଆଯିବ। ସେ ଇତିହାସ କୌଣସି ପୁସ୍ତକବିଶେଷର ଅନୁବାଦ ନ ହୋଇ ଉତ୍କଳଦେଶରେ ଥିବା ପୁରାତନ ଗ୍ରନ୍ଥମାନଙ୍କର ଯଥାର୍ଥ ବିବରଣମାନ ସଂକଳନ ହୋଇ ନୂତନ ଗ୍ରନ୍ଥ ହେବ। ଏ ପୁସ୍ତକବିଷୟକ ବିସ୍ତାରିତ ନିୟମମାନ ବିଜ୍ଞାପନରପେ ଶୀଘ୍ର ପ୍ରକାଶ ହେବ ଓ ତହିଁର ପାଠକମାନେ ସବିଶେଷ ଜାଣିପାରିବେ ବର୍ତ୍ତମାନ ଆମ୍ଭେମାନେ ଏତିକିମାତ୍ର ସମ୍ବାଦ ଦେଇ ଅତ୍ରତ୍ୟ କୃତବିଦ୍ୟ ମହାଶୟମାନଙ୍କୁ ଅନୁରୋଧ କରଅଛୁଁ ଯେ ଉକ୍ତ ପୁରଷ୍କାର ପାଇବା ଆଶାରେ ଏ କାର୍ଯ୍ୟରେ ପ୍ରବୃତ୍ତ ହେଉନ୍ତୁ। ଯଦ୍ୟପି କି କେହି କେହି ସ୍ୱୀକୃତ ପୁରଷ୍କାରକୁ ଊଣା ବୋଧ କରିବେ ତାହାଙ୍କୁ ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ ଉତ୍କଳର ଇତିହାସ ରଚନାରେ ଯେଉଁ ବ୍ୟକ୍ତି କୃତକାର୍ଯ୍ୟ ହେବେ ତାହାଙ୍କର ଏ ପୁସ୍ତକ ବିକ୍ରୟରେ ଏତେ ଲାଭ ହେବ ଯେ ପୁରଷ୍କାରଭିନ୍ନ ଏଥିରେ ପରିଶ୍ରମ କଲେ ତାହା ବ୍ୟର୍ଥ ହେବ ନାହିଁ।

*ଭା୪ଗ, ସଂ୩୭ଖ୍ୟା, ୧୧।୯।୧୮୬୯*

## ଓଡ଼ିଶାରେ ବଙ୍ଗଳାଭାଷା ଶିକ୍ଷା।

ଚଳିତ ମାସ ତା ୧୭ରିଖର ଇଣ୍ଡିୟାନ ମିରର ନାମକ ଇଂରାଜୀ ସମ୍ବାଦପତ୍ରରେ ଉତ୍କଳର ଶିକ୍ଷା ପ୍ରଣାଳୀ ବିଷୟକ ଗୋଟିଏ ପ୍ରବନ୍ଧ ପ୍ରକାଶ ହୋଇଅଛି। ସମ୍ପାଦକ ବୋଲନ୍ତି ଯେ ଯଦ୍ୟପି କି ଅବଧି ବଙ୍ଗାଳୀ ଓ ଓଡ଼ିୟା ମଧ୍ୟରେ ପରସ୍ପର ବିବାହ କରିବାର ରୀତି ପ୍ରଚଳ ହୋଇ ନାହିଁ ତଥାଚ ଉତ୍କଳ ଓ ବଙ୍ଗଦେଶ ଲୋକ ମଧ୍ୟରେ ଏମନ୍ତ ନୈକଟ୍ୟ ସମ୍ବନ୍ଧ ଅଛି ଯେ ଅନ୍ୟ କୌଣସି ଦୁଇଦେଶ କି ପ୍ରଦେଶର ଲୋକ ମଧ୍ୟରେ ସେରପ ସୁହୃଦତା ନାହିଁ। ଅତଏବ ଓଡ଼ିଶାବାସିମାନେ ଯେ ବଙ୍ଗଭାଷା ଶିକ୍ଷା କରିବାକୁ ଚେଷ୍ଟିତ ହେବେ ଏଥିରେ ବିଚିତ୍ର କି ଅଛି। ଓଡ଼ିଆମାନେ କାହିଁକି ବଙ୍ଗଳା ଶିକ୍ଷିବାକୁ ଆଗ୍ରହ ହୁଅନ୍ତି ସମ୍ପାଦକ ସେଥିର ଏହି କାରଣମାନ ଦେଇଅଛନ୍ତି ଯଥା - ବଙ୍ଗଳାଭାଷାରେ ଉତ୍କୃଷ୍ଟ ପୁସ୍ତକମାନ ଅଛି ଓ ଏ ଭାଷା ସହଜରେ ଶିକ୍ଷା ହୋଇପାରେ। ଉତ୍କଳୀୟମାନେ ଜାଣନ୍ତି ଯେ ଏ ଭାଷା ଯାହାଙ୍କର ଅଟଇ ସେମାନେ ବିଦ୍ୟା ଓ ସଭ୍ୟତାରେ ଅଧିକ ଉନ୍ନତି ଲାଭ କରିଅଛନ୍ତି ସେମାନେ ଆହୁରି ଜାଣନ୍ତି ଯେ ବଙ୍ଗଭାଷା ବହୁ ବିସ୍ତୃତ ରାଜ୍ୟଖଣ୍ଡ ଓ ଅନେକଜାତି ଲୋକ ମଧ୍ୟରେ ବ୍ୟବହୃତ ହୁଅଇ ଏବଂ ତାହାର ଗଠନ ସୁନ୍ଦର ସ୍ୱର ସୁଶ୍ରାବ୍ୟ ଉଚ୍ଚାରଣ କରିବା ସହଜ ଓ ତାଙ୍କ ମାତୃଭାଷାଠାର ଉତ୍କୃଷ୍ଟ ଅଟଇ। ଏହି ସମସ୍ତ ଜାଣି ଓ ବଙ୍ଗାଳୀଙ୍କଠାର ଅନେକପ୍ରକାର ସାହାଯ୍ୟର ପ୍ରତ୍ୟାଶା କରି ଉତ୍କଳୀୟମାନେ ଆପଣା ପୁତ୍ରଙ୍କୁ ବଙ୍ଗଭାଷାରେ ଶିକ୍ଷା ଦେଉଅଛନ୍ତି । ସମ୍ପ୍ରତି ଗବର୍ଣ୍ଣମେଣ୍ଟ ବଙ୍ଗଳା ଉଠାଇଦେଇ ଓଡ଼ିଆଭାଷା ବିଦ୍ୟାଳୟରେ ଚଳାଇବାର ଚେଷ୍ଟା କାହିଁକି କରଅଛନ୍ତି ସମ୍ପାଦକ ବୁଝିପାର ନାହାନ୍ତି କିନ୍ତୁ ସେ ଏତିକି ଜାଣନ୍ତି ଯେ ଓଡ଼ିୟାମାନେ ଏଥିରେ ଭାରି ଅସନ୍ତୁଷ୍ଟ ଅଛନ୍ତି ଏବଂ ତାହା ନିବାରଣ ନିମିତ୍ତ ଗବର୍ଣ୍ଣମେଣ୍ଟଙ୍କୁ ପ୍ରଦାନ କରିବା କାରଣ ଏକଖଣ୍ଡ ଦରଖାସ୍ତ କଲିକତାସ୍ଥ କୌଣସି ବନ୍ଧୁ ନିକଟକୁ ପଠାଇଅଛନ୍ତି।

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ଆମ୍ଭେମାନେ ଉପର୍ଯୁକ୍ତ କଥାମାନ ପାଠ କରି ଅତ୍ୟନ୍ତ ଦୁଃଖିତ ଓ ଚମତ୍କୃତ ହେଲୁଁ। ଇଣ୍ଡିୟାନ ମିରାରର୍ ସମ୍ପାଦକୀୟ କାର୍ଯ୍ୟ ଉତ୍ତମରପେ ନିର୍ବାହ ହେଉଥିବାର ଆମ୍ଭମାନଙ୍କର ବିଶ୍ୱାସ ଥିଲା ବିଶେଷତଃ ଏ ପତ୍ରିକା ବ୍ରହ୍ମସମାଜର ମୁଖ ଥିବାର ଆମ୍ଭେମାନେ ମନେ କରିଥିଲୁଁ ଯେ ସମ୍ପାଦକ ସତ୍ୟାନୁସନ୍ଧାନ ପକ୍ଷରେ ସମଧିକ ପରିଶ୍ରମ କରନ୍ତି କିନ୍ତୁ ଏବେ ଜଣାଯାଉଅଛି ଯେ ତାହାଙ୍କ ଅଜ୍ଞାତ ବିଷୟରେ ଯେ ଯାହା ଶୁଣନ୍ତି ଅତି ଅସାବଧାନ୍ ପୂର୍ବକ ସରଳ ହୃଦୟରେ ତାହାକୁ ସତ୍ୟଜ୍ଞାନ କରି ସର୍ବସାଧାରଣଙ୍କୁ ଜଣାଇବାକୁ କିଛିମାତ୍ର ସଂଶୟ କରନ୍ତି ନାହିଁ। ତାହା ନ ହେଲେ କି ସେ ଉପର୍ଯୁକ୍ତ କଥାମାନ ଲେଖିଥାନ୍ତେ। ଆମ୍ଭେମାନେ ନିଶ୍ଚୟ ବୋଧକରଅଛୁଁ ଯେ ଉମାଚରଣବାବୁଙ୍କ ସମ୍ପ୍ରଦାୟର କୌଣସି ବଂଗୀୟ ଲୋକଙ୍କ ପ୍ରବର୍ତ୍ତନାରେ ସମ୍ପାଦକ ଏବମ୍ପ୍ରକାର ମିଥ୍ୟା ଓ ଅଯୌକ୍ତିକ କଥା ଲେଖିବାକୁ ସାହସ କରିଅଛନ୍ତି ସେ ବୋଲନ୍ତି ଯେ ଓଡ଼ିଶା ସଙ୍ଗରେ ବଙ୍ଗଳାର ଅତି ନୈକଟ୍ୟ ସମ୍ବନ୍ଧ ସ୍ଥାପିତ ହୋଇଅଛି କିନ୍ତୁ ଦୁଃଖର ବିଷୟ ତଥାପି ସେ ଉତ୍କଳର କୌଣସି କଥା ଜାଣନ୍ତି ନାହିଁ ଅଥଚ ତାହାଙ୍କ ପରି ସମ୍ପାଦକୀୟତାରପ ଗୁର ଭାରାକ୍ରାନ୍ତ ଲୋକ ଯେବେ ନ ଜାଣିଲା ତେବେ ଆଉ କାହାର ଜାଣିବାର ସମ୍ଭବ ହେବ। ସମ୍ପାଦକ ଯେବେ କିଛିମାତ୍ର ଉତ୍କଳର ବିଷୟ ଜାଣିବାକୁ ଯତ୍ନ କରିଥାନ୍ତେ ତେବେ ଓଡ଼ିଶାରେ ଏହି ବଙ୍ଗଳା ଭାଷା ଓ ଅକ୍ଷର ଚଳାଇବା ବିଷୟ ଘେନି ଯେତେ ଯେତେ ବିରୋଧ ଉପସ୍ଥିତ ହୋଇଅଛି ସେ ସମସ୍ତ ଅବଗତ ହୋଇଥାନ୍ତେ ବଙ୍ଗାଳିମାନେ ନିତ୍ୟ କହି ବୁଲୁଅଛନ୍ତି ଯେ ଓଡ଼ିଆମାନେ ତାହାଙ୍କୁ ସୁଖ ପାନ୍ତି ନାହିଁ ଅଥଚ ବୁଝିବସିଲେ ଓଡ଼ିଆ ବଙ୍ଗାଳିଙ୍କର ଯେ କିଛି ମନାନ୍ତର କେବଳ ଏହି ଭାଷା ପରିବର୍ତ୍ତନ ବିଷୟରେ ଅଟଇ। ବଙ୍ଗାଳିମାନେ ଏ ପ୍ରଦେଶକୁ ଆଜି କାଲି ଆସି ନାହାନ୍ତି ମାତ୍ର ପୂର୍ବର ବଙ୍ଗାଳିମାନେ ଏ ଦେଶର ଭାଷା କିମ୍ବା ଲୋକପ୍ରତି ଘୃଣା ନ କରିବାର ଅତି ଗୌରବାନ୍ୱିତ ହୋଇଥିଲେ ବର୍ତ୍ତମାନ ବଙ୍ଗାଳିମାନେ ଓଡ଼ିଆଭାଷା କି ଅକ୍ଷରକୁ ଦେଖିପାର ନାହାନ୍ତି ବୋଲି ଏତେ ବିରୋଧ। ତଥାପି ଉକ୍ତ ସମ୍ପାଦକ ବୋଲନ୍ତି ଯେ ଉତ୍କଳୀୟମାନେ ଆପଣା ଭାଷାଠାର ବଙ୍ଗଳା ପଢ଼ିବାକୁ ଅଧିକ ଆଗ୍ରହୀ ଅଛନ୍ତି ଓ ବଙ୍ଗାଳିଙ୍କର ଅଧୀନ ରହିବାକୁ ଲାଭଜନକ ଜ୍ଞାନ କରନ୍ତି। କେଡ଼େ ଭ୍ରମ ! ଅଥବା ଲୋକେ ସ୍ୱଭାବତଃ ଏତେ ପକ୍ଷପାତୀ ଯେ ସ୍ୱଜାତିବର୍ଗର କଥା ବିଶ୍ୱାସ କରିବାକୁ କେତେବେଳେ କୁଣ୍ଠିତ ନ ହୁଅନ୍ତି। ବଙ୍ଗାଳିମାନେ ଏଠାରେ ଅନେକ ପ୍ରକାର ଉଦ୍‌ଯୋଗ କରି ଯହୁଁ ଓଡ଼ିୟା ଉଠାଇବାକୁ ଅକ୍ଷମ ହେଲେ ଏବେ ଏଠାରେ ଆଉ କିଛି ଚେଷ୍ଟା ନ କରି ଦେଶଲୋକଙ୍କ ଆଶ୍ରୟ ନେଇଅଛନ୍ତି ପୁଣି ସାହସ ଏଡ଼େ ଯେ ଖଣ୍ଡେ ଦରଖାସ୍ତ ମଧ ଏଠାର ପ୍ରାପ୍ତ କରାଇଁ ଅଛନ୍ତି। ଏ ଦରଖାସ୍ତ କେଉଁଠାର କିଏ ପଠାଇଲା ଆମ୍ଭମାନଙ୍କୁ ଜଣା ନାହିଁ ଓ ଜାଣିବାର ଅବା ସମ୍ଭାବନା କାହିଁ କାରଣ ଏ ସମସ୍ତ ଲୁଚାଛପା ବ୍ୟାପାର ଠକି କର୍ମ ସାଧନ କରିବାର କଥା। ଓଡ଼ିଆଙ୍କର ତେତେ ବୁଦ୍ଧି ବଳ କାହିଁ ଏମନ୍ତ ସୁନ୍ଦର କୌଶଳରେ କାର୍ଯ୍ୟ ସାଧନ କରିବେ ଏ କେବଳ ବଡ଼ ବୁଧିୟାଙ୍କର କାର୍ଯ୍ୟ ଅଟଇ। ସେ ଯାହା ହେଉ ଆମ୍ଭେମାନେ ଇଣ୍ଡିୟାନମିର୍‌ର ସମ୍ପାଦକ ଓ ତାହାଙ୍କର ସମ୍ବାଦଦାତାଙ୍କୁ ଅନୁରୋଧ କରଅଛୁଁ ଯେ ଓଡ଼ିଆମାନେ ବଙ୍ଗଳା ଶିକ୍ଷାପ୍ରତି କେଡ଼େ ଅସମ୍ମତ ଓ ବଙ୍ଗଳାଭାଷା ଅତ୍ରତ୍ୟ ବିଦ୍ୟାଳୟରେ ପ୍ରଚଳ ଥିବାର ଶିକ୍ଷା କାର୍ଯ୍ୟର କେତେ ବ୍ୟାଘାତ ହେଉଅଛି ଯେବେ ଏସମସ୍ତ ସେମାନଙ୍କର ଜାଣିବାର ଇଚ୍ଛା ଥାଏ ଓ ଯେବେ ଉତ୍କଳପ୍ରତି ସେମାନେ ଯଥାର୍ଥରେ ମନୋଯୋଗୀ ଅଛନ୍ତି ତେବେ ଏ ବିଷୟରେ ଅତ୍ରତ୍ୟ ସାଧାରଣ ପକ୍ଷର ଗବର୍ଣ୍ଣମେଣ୍ଟକୁ ଯେଉଁ ଆବେଦନପତ୍ର ଯାଇଅଛି ଓ ଜିଲ୍ଲାର କଲେକ୍ଟର ଓ କମିଶ୍ନରସାହେବ ଯେ ସମସ୍ତ କଥା ଲେଖିଅଛନ୍ତି ଥରେ ସେ ସମସ୍ତ ପାଠ କରନ୍ତୁ ବର୍ତ୍ତମାନ ଉକ୍ତ କାଗଜମାନ ଶିକ୍ଷାବିଭାଗର ଡାଇରେକ୍ଟରଙ୍କ କଚେରୀରେ ଅଛି ସେଠାକୁ ଗଲେ ଅବଶ୍ୟ ଦେଖିପାରିବେ। ସେ ସମସ୍ତର ମର୍ମର ଅବଗତ ହୋଇ ଆପଣା ଆପଣା ମନ୍ତବ୍ୟ ଲେଖିଲେ ଉତ୍ତମ ହେବ। ତୁଚ୍ଛାକୁ ଲୋକଙ୍କୁ ଭ୍ରମରେ ପକାଇବା ଉଚିତ କର୍ମ ନୁହଇ।

*ଭା୪ଗ, ସଂ୩୯ଖ୍ୟା, ୨୫।୯।୧୮୬୯*

**ଉତ୍କଳଭାଷା ଗ୍ରନ୍ଥ ପରୀକ୍ଷା ସଭା।**

ପାଠକମାନେ ଶ୍ରବଣରେ ଆନନ୍ଦିତ ହେବେ ଯେ ବିଦେଶୀୟଲୋକେ ଉତ୍କଳଭାଷା ଉଠାଇ ଦେବାପାଇଁ ଯେତେ ଚେଷ୍ଟା କରନ୍ତୁ ଆମ୍ଭମାନଙ୍କର ଦୟାବାନ ଗବର୍ଣ୍ଣମେଣ୍ଟ ସେଥିର ଆସ୍ଥା ନ କରି ଏ ଦେଶର ଭାଷା ଉନ୍ନତି ପକ୍ଷରେ ଯଥେଷ୍ଟ ଉପାୟ କରିବାକୁ ଅନୁକମ୍ପା ପ୍ରକାଶ କରିଅଛନ୍ତି। ପ୍ରାୟ ବର୍ଷକର ଉର୍ଦ୍ଧ୍ୱ ହେବ ବିଦ୍ୟାଳୟରେ ପାଠୋପଯୋଗି ପୁସ୍ତକ ପରୀକ୍ଷାକାରଣ ଗୋଟିଏ ସ୍ୱତନ୍ତ୍ର ସଭା ହେବାର ପ୍ରସ୍ତାବ ହୋଇଥିଲା ସମ୍ପ୍ରତି ଅବଗତ ହେଲୁଁ

ଯେ ଶ୍ରୀଯୁକ୍ତ ଲେପ୍ଟନେଣ୍ଟ ଗବର୍ଣ୍ଣରସାହେବ ତଳଲିଖିତ ବ୍ୟକ୍ତିଙ୍କୁ ଉକ୍ତ ସଭାର ସଭ୍ୟପଦରେ ନିଯୁକ୍ତ କରି ଅଛନ୍ତି ଯଥା-

ଶ୍ରୀଯୁକ୍ତ ଡବଲିଉ ସି, ଲେସିସାହେବ - ସଭାପତି

ଶ୍ରୀଯୁକ୍ତ ରାଜା ଭାଗୀରଥୀ ମହିନ୍ଦ୍ରବାହାଦୁର

ଶ୍ରୀଯୁକ୍ତ ବାବୁ ବିଚିତ୍ରାନନ୍ଦ ଦାସ - ସଭ୍ୟ

ଶ୍ରୀଯୁକ୍ତ ବାବୁ ବନମାଳୀ ସିଂହ

ଶ୍ରୀଯୁକ୍ତ ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀ

ଆଉ କି ନିୟମମାନ ସ୍ଥିର ହୋଇଅଛି ଗବର୍ଣ୍ଣମେଣ୍ଟଙ୍କ ଚିଟୀ ଦେଖିଲେ ଜଣାଇବୁଁ।

*ଭା/୪ଗ,ସଂ୪୫ଖ୍ୟା,୨୦/୧୧/୧୮୬୯*

## ଉତ୍କଳଭାଷାରେ ଶିକ୍ଷା ଦେବାର ବିଧାନ ।

ଆମ୍ଭେମାନେ ଗତ ସପ୍ତାହରେ ଉତ୍କଳ ପୁସ୍ତକର ପରୀକ୍ଷାକାରଣ ସଭା ନିଯୁକ୍ତ ହେବାର କଥା ଉଲ୍ଲେଖ କରିଥିଲୁଁ । ସମ୍ପ୍ରତି ଏ ବିଷୟରେ ଗବର୍ଣ୍ଣମେଣ୍ଟ ଯେ ଅଭିପ୍ରାୟମାନ ପ୍ରକାଶ କରିଅଛନ୍ତି ତାହା ଅବଗତ ହୋଇ ସେଥିର ସାରାଂଶ ପାଠକଙ୍କ ଜ୍ଞାତବ୍ୟ କାରଣ ପ୍ରକାଶ କରଅଛୁଁ । ପାଠକମାନେ ସେଥିର ଜାଣିବେ ଯେ ଏତେକାଳ ଓଡ଼ିଆ ଓ ବଙ୍ଗଳାଭାଷା ଘେନି ଯେତେ ବିରୋଧ ଜାତ ହୋଇଥିଲା ତାହା ସମସ୍ତ ରହିତ ହେଲା ଓ ଯେଉଁମାନେ ବଳେ ପଶି ଓଡିଶାର ହିତ କରିବାକୁ ସଦର ମୋଫସଲରେ ଚେଷ୍ଟା କରି କୌଣସି ଉପାୟ ପରିତ୍ୟାଗ କରି ନ ଥିଲେ ସେମାନଙ୍କର ଶ୍ରମ ସାର୍ଥକ ହେଲା ନାହିଁ ।

ଗବର୍ଣ୍ଣମେଣ୍ଟ ବଙ୍ଗାଳ ଏ ବିଷୟରେ ଡାଇରେକ୍ଟରଙ୍କ ନିକଟକୁ ଯେଉଁ ପତ୍ର ପଠାଇଅଛନ୍ତି ସେଥିରେ ଉତ୍କଳଭାଷା ଶିକ୍ଷାପ୍ରସ୍ତାବ ଆରମ୍ଭଠାରୁ ଅଦ୍ୟାବଧି ଯେଉଁ କର୍ମଚାରୀ ଯେପ୍ରକାର ମତ ପ୍ରକାଶ କରିଅଛନ୍ତି ତାହା ସମସ୍ତ ବର୍ଣ୍ଣିତ ହୋଇଅଛି । ଏ ଜିଲାର କମିଶନର ଶ୍ରୀଯୁକ୍ତ ରାବନଶା ସାହେବ ସନ ୧୮୬୫ ମସିହାରେ ଏ ପ୍ରସ୍ତାବର ଅବତାରଣା କରିଅଛନ୍ତି ତଦୁତ୍ତାର ଏ ବିଷୟରେ ଯେଉଁ କର୍ମଚାରୀ ଯେମତ ପ୍ରକାଶ କରିଅଛନ୍ତି ତାହା ସମୁଦାୟ ସମୟ ସମୟରେ ଏ ପତ୍ରିକାରେ ପ୍ରକାଶ ହୋଇଥିବାର ବର୍ତ୍ତମାନ ଲେଖିବାର ଆବଶ୍ୟକ ନାହିଁ କେବଳ ଏତିକି ମାତ୍ର ଜଣାଇବାର ଉଚିତ ଯେ ଏ ଅଞ୍ଚଳର ବିଦ୍ୟାଳୟସମୂହର ଇନ୍‌ସ୍ପେକ୍ଟର ଓ କମିଶନର ଏବଂ ଅତ୍ରତ୍ୟ ସମ୍ଭ୍ରାନ୍ତବ୍ୟକ୍ତିମାନେ ଏକମତ ହୋଇ ଅତ୍ରତ୍ୟ ବିଦ୍ୟାଳୟସମସ୍ତରେ ଉତ୍କଳଭାଷାରେ ଶିକ୍ଷା ଦେବାର ବିଧାନ କରିବାକୁ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କଲେ ଓ ଏକା ଶିକ୍ଷା ବିଭାଗର ଡାଇରେକ୍ଟର ସାହେବ ଏଥିର ବିପରୀତ ମତାନୁଗାମୀ ହୋଇ ବଙ୍ଗଭାଷାରେ ଶିକ୍ଷା ଦେବାର ଅନୁରୋଧ କରିଥିଲେ । ଏ ମତ ପୋଷକତାରେ ଉକ୍ତ କର୍ମଚାରୀ ଯେଉଁ ଯୁକ୍ତିମାନ ଦର୍ଶାଇ ଅଛନ୍ତି ତାହା ନୂତନ ନୁହଇ ବୋଲି ଲେଖିବାର ପ୍ରୟୋଜନ ନାହିଁ । ଯେଉଁମାନେ ବାବୁ ରାଜେନ୍ଦ୍ରଲାଲ ମିତ୍ର ଓ ବାବୁ ଉମାଚରଣ ହଲଦାର ଓ ତାହାଙ୍କ ସମ୍ପ୍ରଦାୟର ଲୋକଙ୍କ ଯୁକ୍ତି ସମସ୍ତକୁ ସ୍ମରଣ କରିବେ ସେମାନେ ଅନାୟାସରେ ତାହା ଜାଣିପାରିବେ । ଏମାନେ ଯେତେ କଥା କହିଥିଲେ ସେସମସ୍ତ ଡାଇରେକ୍ଟରଙ୍କ ପତ୍ରରେ ସନ୍ନିବେଶିତ ହୋଇଅଛି । ଆମ୍ଭମାନଙ୍କୁ ଏତିକି ବ୍ୟସ୍ତ ଜଣାଯାଉଅଛି ଯେ କିଏ କାହାଠାରେ ଏ ଯୁକ୍ତିମାନ ଶିକ୍ଷାକଲା । ସେ ଯାହା ହେଉ ଶ୍ରୀଯୁକ୍ତ ଲେପ୍ଟନଣ୍ଟ ଗବର୍ଣ୍ଣର ଉକ୍ତ ଯୁକ୍ତିମାନଙ୍କୁ ନିତାନ୍ତ ଦୁର୍ବଳ ଜ୍ଞାନ କରି ସ୍କୁଲ ଇନ୍‌ସ୍ପେକ୍ଟର ଶ୍ରୀଯୁକ୍ତ ମାର୍ଟିନ ସାହେବଙ୍କ ତଳଲିଖିତ ମତକୁ ଯୁକ୍ତିସିଦ୍ଧ ଜ୍ଞାନ କରି ଏହିରପ ବ୍ୟାଖ୍ୟା କରିଅଛନ୍ତି । ଯଥା,

"ପ୍ରଥମ, କଟକ ହାଇସ୍କୁଲ ଓ ଓଡ଼ିଶାର ଅନ୍ୟ ଦୁଇଜିଲା ସ୍କୁଲରେ ବଙ୍ଗଳା ଅଥବା ଓଡ଼ିଆ ଭାଷା ପାଠ

କରିବା ଛାତ୍ରଙ୍କ ସ୍ୱେଚ୍ଛାଧୀନ ରହିବ ଅଥବା ଲେଫ୍ଟନଣ୍ଟ ଗବର୍ଣ୍ଣରଙ୍କ ମତରେ ଦୁଇ ଭାଷା ଶିଖିବାକୁ ହେବ । ଦ୍ୱିତୀୟ ମଧ୍ୟ ଶ୍ରେଣୀର ଇଙ୍ଗରାଜୀ ଓ ଭାଷାସ୍କୁଲରେ ସକଳବିଷୟର ଶିକ୍ଷା ଉତ୍କଳଭାଷାରେ ଦିଆଯିବ ଇଙ୍ଗରାଜୀ ଅବଶ୍ୟ ପଢ଼ିବାକୁ ହେବ ଏବଂ ବଙ୍ଗଳା ସ୍ୱେଚ୍ଛାଧୀନ ରହିବ । ତୃତୀୟ ମଧ୍ୟମ ଶ୍ରେଣୀର ଉତ୍କଳବିଦ୍ୟାଳୟରେ ଯେ ପର୍ଯ୍ୟନ୍ତ ଉତ୍କଳଭାଷାରେ ଉତ୍ତମ ସାହିତ୍ୟ ପୁସ୍ତକ ହୋଇ ନାହିଁ କେବଳ ଭାଷା ଶିଖିବା ପାଁଇ ବଙ୍ଗଳା ପଢ଼ାଯିବ ଏବଂ ଚତୁର୍ଥ ନିମ୍ନ ଶ୍ରେଣୀର ଉତ୍କଳ ବିଦ୍ୟାଳୟରେ କେବଳ ଉତ୍କଳଭାଷାରେ ଶିକ୍ଷା ଦିଆଯିବ ।

ସମସ୍ତେ ବୋଲନ୍ତି ଯେ ଉତ୍କଳଭାଷାରେ ପାଠ୍ୟପୁସ୍ତକର ଅଭାବ ଥିବାର ଏରପ ଶିକ୍ଷାପ୍ରଣାଳୀ ଚଳାଇବା କଷ୍ଟକର ଅଟଇ ଓ ଉତ୍କଳଭାଷାରେ ବର୍ତ୍ତମାନ କେଉଁ ପୁସ୍ତକମାନ ପ୍ରାପ୍ୟ ଯଥେଷ୍ଟରପେ ଜଣା ହେବା ପର୍ଯ୍ୟନ୍ତ ଲେଫ୍ଟନଣ୍ଟ ଗବର୍ଣ୍ଣର କୌଣସି ନିଶ୍ଚୟ ନିୟମ କରିବାକୁ ଅସମର୍ଥ ହେଲେ । ସାଧରଣ ରପେ ତାହାଙ୍କର ମତ ଏହି ଯେ ଜିଲାସ୍କୁଲର ତଳ ସମସ୍ତ ବିଦ୍ୟାଳୟରେ ଉତ୍କଳଭାଷାରେ ଶିକ୍ଷା ପ୍ରଦାନ ହେବ ଏବଂ ଜିଲାସ୍କୁଲ ଓ ହାଇସ୍କୁଲ ଛାତ୍ରମାନେ ଇଚ୍ଛା କଲେ ବଙ୍ଗଳା ଶିକ୍ଷା କରିପାରିବେ ।" ବର୍ତ୍ତମାନ ଅବସ୍ଥା ଦୃଷ୍ଟିରେ ଗବର୍ଣ୍ଣମେଣ୍ଟଙ୍କର ଏହି ଅଭିପ୍ରାୟ ଶୀଘ୍ର କାର୍ଯ୍ୟରେ ପରିଣତ କରିବାପାଁଇ ଡାଇରେକ୍ଟର ସାହେବ ଆଦେଶ ପାଇଅଛନ୍ତି ।

ଉତ୍କଳପୁସ୍ତକର ଅଭାବ କି ଯହିଁ ନିମିତ୍ତ ଉପରଲିଖିତ ପ୍ରଣାଳୀ ଶୀଘ୍ର ପ୍ରଚଳିତ ହୋଇପାର ନାହିଁ ତହିଁ ବିଷୟରେ ଗବର୍ଣ୍ଣମେଣ୍ଟ ଡାଇରେକ୍ଟର ସାହେବଙ୍କୁ ସ୍ମରଣ କରାଇଦେଇଅଛନ୍ତି ଯେ ଉତ୍କଳଭାଷାରେ ଅନୁବାଦିତ ଅଥବା ନୂତନ ଗ୍ରନ୍ଥର ଦୋଷ ଗୁଣ ବିଚାରକାରଣ ସ୍କୁଲ ବୁକ ସୋସାଇଟୀକୁ ସାହାଯ୍ୟ କରିବା କାରଣ ଗୋଟିଏ ସଭା ନିଯୁକ୍ତ ହୋଇଅଛି ଗତ ସପ୍ତାହରେ ଉକ୍ତ ସଭାର ସଭ୍ୟଙ୍କ ନାମ ମୁଦ୍ରାଙ୍କନ ହୋଇଥିଲା କଲିକତା ସ୍କୁଲବୁକ ସୋସାଇଟୀଙ୍କ ନିକଟକୁ ଯେ ସମସ୍ତ ଉତ୍କଳପୁସ୍ତକ ମୁଦ୍ରାଙ୍କନ ନିମିତ୍ତ ପ୍ରେରିତ ହେବ ଏ ସଭା ସେଥିର ଦୋଷ ଗୁଣ ବିଚାର କରି ଯେପ୍ରକାର ମତ ଦେବେ ତଦନୁସାର କାର୍ଯ୍ୟ ହେବ । କିନ୍ତୁ ଆପାତତଃ ଲେଫନେଣ୍ଟ ଗବର୍ଣ୍ଣରଙ୍କ ଇଚ୍ଛା ଯେ ନୂତନ ଶିକ୍ଷାପ୍ରଣାଳୀ ଅର୍ଥାତ୍ ଜିଲା ଓ ହାଇସ୍କୁଲ ଭିନ୍ନ ଓଡିଶାର ସମସ୍ତ ସ୍କୁଲରେ ଉତ୍କଳଭାଷାକୁ ଶିକ୍ଷାଦାନର ଚିହ୍ନିତ ଭାଷାବୋଲି ଚଳାଇବା ଓ ଅନ୍ୟତ୍ରରେ ତାହା ସ୍ୱେଚ୍ଛାଧୀନ ରଖିବା ନିୟମ ସମ୍ପର୍କରେ ସକଳ କଥାର ବିଚାର କରି ମତ ପ୍ରଦାନ କରିବେ । ଏମାନଙ୍କ ମତ ଜାଣିଲାର ଗବର୍ଣ୍ଣମେଣ୍ଟର ଏବିଷୟରେ ନିଶ୍ଚୟ ନିୟମମାନ ପ୍ରଚାରିତ ହେବ ଅତଏବ ଦେଖାଯାଏ ଯେ ଏପ୍ରଣାଳୀ ଚଳିବାପକ୍ଷରେ ଯେକିଛି ବିଳମ୍ବ ତାହା ଏହି ସଭାହାତରେ ରହିଅଛି ସୁତରାଂ ଆମ୍ଭେମାନେ ସଭ୍ୟମାନଙ୍କୁ ଅନୁରୋଧ କରଅଛୁଁ ଯେ ଏମନ୍ତ ଶୁଭକାର୍ଯ୍ୟରେ ତିଳମାତ୍ର ସେମାନେ ବିଳମ୍ବ ନ କରି ଗବର୍ଣ୍ଣମେଣ୍ଟ ଅଭିପ୍ରାୟାନୁଯାୟୀ ସୁପ୍ରଣାଳୀ ସ୍ଥିର କରନ୍ତୁ ।

ଆମ୍ଭେମାନେ ଏ ସମସ୍ତ କଥା ଅବଗତ ହୋଇ କେତେ ଆନନ୍ଦିତ ହୋଇଅଛୁଁ ବର୍ଣ୍ଣନା କରିବାକୁ ଅସମର୍ଥ । ଏହି ଉତ୍କଳ ଓ ବଙ୍ଗଭାଷା ବିଷୟରେ ଆମ୍ଭମାନଙ୍କୁ କିପର୍ଯ୍ୟନ୍ତ କ୍ଳେଶ ସହିବାକୁ ହୋଇଅଛି ତାହା କାହାରିକୁ ଅବିଦିତ ନାହିଁ । ନିନ୍ଦା ଓ ବ୍ୟଙ୍ଗୋକ୍ତି ଛଡା ଦରବାରପର୍ଯ୍ୟନ୍ତ ଟଣା ହୋଇଥିଲୁଁ । କିନ୍ତୁ ପରିଶେଷରେ ଆମ୍ଭମାନଙ୍କର ଆଶା ପୂର୍ଣ୍ଣ ହେଲା ଏମନ୍ତ ନୁହଇ ଆମ୍ଭେମାନେ ପୁନଃ ପୁନଃ ଯେ ପ୍ରସ୍ତାବମାନ କରିଥିଲୁଁ ତାହା ଗବର୍ଣ୍ଣମେଣ୍ଟର ପ୍ରକାଶ ହେଲା ଆମ୍ଭମାନଙ୍କର ହିତାକାଂକ୍ଷୀ କମିଶ୍ନର ଶ୍ରୀଯୁକ୍ତ ରେବନଶାସାହେବ ଏ ବିଷୟରେ ଯେପର୍ଯ୍ୟନ୍ତ ଉତ୍କଳର ହିତସାଧନରେ କୃତକାର୍ଯ୍ୟ ହେଲେ ତହିଁର ଉପଯୁକ୍ତ ଧନ୍ୟବାଦ କିରପେ ବ୍ୟକ୍ତ କରିବୁଁ ସ୍ଥିରକରିବାକୁ ଅସମର୍ଥ ହେଉଅଛୁଁ ଏ ତାହାଙ୍କର କୀର୍ତ୍ତିସ୍ତମ୍ଭପ୍ରାୟ ରହିଲା ସନ୍ଦେହ ନାହିଁ । ପରିଶେଷରେ ବକ୍ତବ୍ୟ ଏହି ଯେ ଅତ୍ରତ୍ୟ ସମ୍ଭ୍ରାନ୍ତବ୍ୟକ୍ତିମାନେ ଗବର୍ଣ୍ଣମେଣ୍ଟକୁ ଉତ୍କଳଭାଷାରେ ଶିକ୍ଷାଦାନ ବିଷୟରେ ଯେଉଁ ଦରଖାସ୍ତ କରିଥିଲେ ଶ୍ରୀଯୁକ୍ତ ଲେଫ୍ଟନେଣ୍ଟ ଗବର୍ଣ୍ଣରସାହେବ ତାହାକୁ ଯୁକ୍ତିଯୁକ୍ତ ଜ୍ଞାନକରି ସେଥିର ପ୍ରଶଂସା କରିଅଛନ୍ତି । ଏଥିର ଉତ୍କଳୀୟମାନେ ବୁଝନ୍ତୁ ଯେ ଆମ୍ଭମାନଙ୍କର ଗବର୍ଣ୍ଣମେଣ୍ଟ ସତ୍‌ପରାମର୍ଶ ଗ୍ରହଣ କରିବାକୁ କଦାକାଳରେ କୁଣ୍ଠିତ ନୁହନ୍ତି ଓ ଏହା ଜାଣି ସେମାନେ ଅନ୍ୟାନ୍ୟ ବିଷୟରେ ସତ୍‌ପରାମର୍ଶ ଦେବାକୁ ଉତ୍ସାହିତ ହେଉନ୍ତୁ ।

*ଭା୪ଗ,ସଂ୪୬ଖ୍ୟା, ୨୭।୧୧।୧୮୬୯*

# ୧୮୭୦

## ସମାଲୋଚନା ।

## ଉଡିୟା ସ୍ୱତନ୍ତ୍ର ଭାଷା ନୟ ।

ଏହି ନାମର ଖଣ୍ଡିଏ ପୁସ୍ତକ ଗ୍ରନ୍ଥକର୍ତ୍ତାଙ୍କ ଠାର ପାଇଥିବାର କୃତଜ୍ଞତା ପୂର୍ବକ ସ୍ୱୀକାର କରଅଛୁଁ । ଗ୍ରନ୍ଥକର୍ତ୍ତାଙ୍କ ନାମ ବାବୁ କାନ୍ତିଚନ୍ଦ୍ର ଭଟାଚାର୍ଯ୍ୟ ବାଲେଶ୍ୱର ଗବର୍ଣ୍ଣମେଣ୍ଟ ବିଦ୍ୟାଳୟର ପଣ୍ଡିତ । ଏହା ବଙ୍ଗଭାଷାରେ ରଚିତ ଉତ୍କଳ ଓ ବଙ୍ଗଳାଭାଷାର ଏକତ୍ୱ ପ୍ରମାଣ କରିବା ଏହାର ଉଦ୍ଦେଶ୍ୟ ଅଟଇ ଓ ସେ ଉଦ୍ଦେଶ୍ୟ କିପର୍ଯ୍ୟନ୍ତ ସଫଳ ହୋଇଅଛି । ତାହା କ୍ରମେ ପ୍ରକାଶ ହେବ । ଉତ୍କଳ ଓ ବଙ୍ଗଭାଷା ଘେନି କେତେ କାଳର ଯେ ବିବାଦ ହୋଇଥିଲା ଏ ପୁସ୍ତକ ତହିଁର ଫଳ ଅଟଇ । ଓ ଗ୍ରନ୍ଥକର୍ତ୍ତା କାୟୀକ ଶ୍ରମ ଓ ଅର୍ଥବ୍ୟୟ ସ୍ୱୀକାର ପୂର୍ବକ ସ୍ୱଦେଶାନୁରାଗ ଯେମନ୍ତ ପରିଚୟ ଦେଇଅଛନ୍ତି ତାହା ପ୍ରଶଂସାଯୋଗ୍ୟ ସନ୍ଦେହ ନାହିଁ । କେହି କେହି ବୋଲନ୍ତି ଯେ ଓଡିଆ ବଙ୍ଗଳାର ଦ୍ୱନ୍ଦ୍ୱ ଗବର୍ଣ୍ଣମେଣ୍ଟର ନିଷ୍ପତ୍ତି ହେବାର ଜାଣି ଗ୍ରନ୍ଥକର୍ତ୍ତା କାହିଁକି ଅନର୍ଥକ କ୍ଳେଶ ଓ ଧନ ବ୍ୟୟରେ ମତ୍ତ ହେଲେ ଏଥିରେ ଗ୍ରନ୍ଥକର୍ତ୍ତା ସ୍ୱଜାତିର ଗୋଟିଏ ଲକ୍ଷଣ ଅର୍ଥାତ୍ ହୁଜତେ ବଙ୍ଗାଳ ଯେଉଁ ପ୍ରବାଦ ଅଛି ତାହା ସାର୍ଥକ କରିଅଛନ୍ତି ।

ଗ୍ରନ୍ଥକର୍ତ୍ତା ପୁସ୍ତକର ଆରମ୍ଭରେ ଲେଖନ୍ତି ଯେ ଭାଷାତତ୍ତ୍ୱବିତ୍ ପଣ୍ଡିତଙ୍କ ମତାନୁସାରେ ଓଡିୟା ବଙ୍ଗଳା ହିନ୍ଦୀ ପ୍ରଭୃତି ଦଶଭାଷା ଏକ ମୂଳର ଉତ୍ପନ୍ନ ଅର୍ଥାତ୍ ଓଡିୟା ବଙ୍ଗଳା ଇତ୍ୟାଦି କେହି ସ୍ୱତନ୍ତ୍ର ଭାଷା ନୁହଇ କିନ୍ତୁ ତଦୁତ୍ତାର ଓଡିୟାକୁ ବଙ୍ଗଳାବୋଲି ସିଦ୍ଧାନ୍ତ କରିଅଛନ୍ତି । ଏଥକୁ ତାହାଙ୍କର କେଉଁକଥା ସତ୍ୟ ବୁଝିବା କଠିନ । ବୋଧହୁଅଇ ଭାଷାବିତ୍ ପଣ୍ଡିତଙ୍କ କଥା ମିଥ୍ୟା ହୋଇ ନ ଥିବ ନଚେତ୍ ଯେଉଁ ଉତ୍କଳଭାଷାର କଥା ଗ୍ରନ୍ଥକର୍ତ୍ତା ଲେଖନ୍ତି ତାହାଛଡା ଆଉ କିଛି ସ୍ୱତନ୍ତ୍ର ଓଡିୟାଭାଷା ଥିବ । ସେ ଯାହା ହେଉ ଆମ୍ଭେମାନେ ଓଡିୟାଭାଷାକୁ କେବେହେଁ ସ୍ୱତନ୍ତ୍ର ଭାଷା ବୋଲୁ ନାହୁଁ । ଏହାକୁ ସଂସ୍କୃତର ଅଧୀନ ବୋଲି ଜାଣୁଁ ଗ୍ରନ୍ଥକର୍ତ୍ତାଙ୍କ ମତରେ କି ବଙ୍ଗଳା ସ୍ୱତନ୍ତ୍ର ଭାଷା ଯେ ଓଡିୟା ତାହା ସଙ୍ଗେ କିୟଦଂଶରେ ମିଶିବାର ସେ ସ୍ୱତନ୍ତ୍ର ଭାଷା ହେଲା ନାହିଁ ? ମାତ୍ର ଦୁଃଖର ବିଷୟ ଯେ ବଙ୍ଗଳାଭାଷା ସ୍ୱତନ୍ତ୍ର ଥିବା ପକ୍ଷରେ କିଛି ପ୍ରମାଣ ଦେଇ ନାହାନ୍ତି ଓ ଯେବେ ଏକ ଆର୍ଯ୍ୟଜାତିଙ୍କ ସମାଗମରେ ଏକସ୍ଥାନରେ ହିନ୍ଦୀ ଓ ଅନ୍ୟସ୍ଥାନରେ ବଙ୍ଗଳାଭାଷାର ସୃଜନ ହେଲା ତେବେ ଏକସ୍ଥାନରେ ଓଡିୟାଭାଷା ହେବାରେ କି ଅସୁବିଧା ହେଲା ଜଣାପଡୁ ନାହିଁ । ହିନ୍ଦୋସ୍ଥାନର ଓଡିଶାକୁ ଲୋକ ଆସିବାର କି ବଙ୍ଗଳା ଭିନ୍ନ ବାଟ ନ ଥିଲା । ଯେଉଁଖଣ୍ଡରେ ଗ୍ରନ୍ଥକର୍ତ୍ତାଙ୍କ ମତରେ ଏକଭାଷା ଅର୍ଥାତ୍ ବଙ୍ଗଳାଭାଷା ହେବାର ଉଚିତ ସେଖଣ୍ଡର ଆଦିମନିବାସୀ ଯଥା, ଗାରେ ସାନ୍ତାଳି କନ୍ଧ ଜୁଆଙ୍ଗ ଶବର ଇତ୍ୟାଦିଙ୍କ ଭାଷା ଭିନ୍ନ କାହିଁକି ହେଲା ? ବୋଧ ହୁଅଇ ଏଥିର ଉତ୍ତର ପାଇଁ ଗ୍ରନ୍ଥକର୍ତ୍ତା ହଣ୍ଟରଙ୍କ ସାହାଯ୍ୟ ନେଇ କହିବେ ଯେ ଏସମସ୍ତ ଭାଷାର ମୂଳ ଏକ ଅଟଇ ମାତ୍ର ଭାଷା ପୃଥକ୍ ଥିବାର ଅସ୍ୱୀକାର କରି ପାରିବେ ନାହିଁ ।

କେବଳ କେତେକ ସୁସାଦୃଶ୍ୟ ହେତୁର ଯେବେ ଦୁଇ ବା ଅଧିକ ଭାଷାକୁ ଏକ ବୋଲାଯାଇପାରେ ତେବେ କେହି ଓଡିଆର ହିନ୍ଦି ଓ ବଙ୍ଗଳା ବାହାରି ଥିବାର କହିଲେ ଦୋଷ ହେବ ନାହିଁ । ମାତ୍ର ଓଡିଆମାନେ ତୁଚ୍ଛାକୁ ଏତେ ଅହଙ୍କାର କରନ୍ତି ନାହିଁ ଅଥଚ ବିଚାର କଲେ ଏହାଙ୍କର ଅହଙ୍କାର କରିବାର ଅନେକ କାରଣ ଅଛି ।

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ଓଡିଶାର କୀର୍ତ୍ତିକଳାପ ବଙ୍ଗଳାରେ ନାହିଁ । ଓଡିଶାର ରାଜା ଏକ ସମୟରେ ବଙ୍ଗଳାର ତ୍ରିବେଣୀ ପର୍ଯ୍ୟନ୍ତ ଅଧିକାର କରିଥିଲେ । ବଙ୍ଗଳାର କୌଣସି ରାଜା କେବେ ଓଡିଶାକୁ ଜୟ କରିବାର ଶୁଣା ନାହିଁ ଅତଏବ ବଳବୀର୍ଯ୍ୟ ଓ ଶିଳ୍ପ କୌଶଳରେ ଓଡିଶାର ପୂର୍ବକାଳୀୟ ଲୋକ ବଙ୍ଗଳାର ଶ୍ରେଷ୍ଠ ଥିବା ପ୍ରତ୍ୟକ୍ଷେ ଭାଷା ନିମିତ୍ତ ଅନ୍ୟଠାରେ ଋଣୀ ହୋଇଥିଲେ କଦାଚ ସମ୍ଭବ ନୁହଇ ବରଂ ଓଡିଶାର ଭାଷା କେତେକ ବଙ୍ଗଳାରେ ଚଳିବାର ଅନୁମାନ ସିଦ୍ଧ ଅଟଇ ଓ ଗ୍ରନ୍ଥକର୍ତ୍ତା ମେଦିନୀପୁର ଓଳବାଡିୟା ପ୍ରଭୃତି ସ୍ଥାନର କେତେକଥା ସଙ୍ଗେ ଓଡିଆଭାଷା ତୁଲ୍ୟ ଥିବାର ଯାହା ଲେଖନ୍ତି ସେଥିର ଉକ୍ତପ୍ରକାର ଅନୁମାନ ବାସ୍ତବ ଥିବାର ଜଣାଯାଏ । ବିଶେଷରେ ଓଡିୟାରେ ଯେତେ ପ୍ରାଚୀନ ଭାଷା ଗ୍ରନ୍ଥ ଅଛି ବଙ୍ଗଳାରେ ତେତେ ନାହିଁ । ମାଗିଆଣିଲା ତିଉଣରେ କି କୁଟୁମ୍ବ ପୋଷାଯାନ୍ତା । ସେ ଯାହାହେଉ ଆମ୍ଭେମାନେ ଗ୍ରନ୍ଥକର୍ତ୍ତାଙ୍କ ଭାଷାତତ୍ତ୍ୱ ଜ୍ଞାନରେ ସନ୍ତୁଷ୍ଟ ହେବାର କୌଣସି କାରଣ ଦେଖୁ ନାହୁଁ । ଆମ୍ଭମାନଙ୍କୁ ବୋଧହୁଅଇ ସେ କେବଳ ଓଡିୟା ବଙ୍ଗଳାର ସମତା ଉପରେ ନିର୍ଭର କରି ତହିଁର ସମର୍ଥନ ନିମିତ୍ତ ଭାଷାତତ୍ତ୍ୱଜ୍ଞଙ୍କର ଦୁହାଇ ଦେଇଅଛନ୍ତି । ଏଥର ସେ ସମତା ବିଷୟରେ ତାଙ୍କର ମତର ବିଚାର କରିବା ଆବଶ୍ୟକ ।

ଗ୍ରନ୍ଥକର୍ତ୍ତା ଓଡିଆ ବଙ୍ଗଳାର ସମତା ଦେଖାଇବା ବିଷୟରେ ପ୍ରକାଶ୍ୟରେ କୌଣସି ଯତ୍ନର ତ୍ରୁଟି କରି ନାହାନ୍ତି । ଉତ୍କଳସାହିତ୍ୟ ବ୍ୟାକରଣ ଅଭିଧାନ ସମ୍ବାଦପତ୍ର ଗୀତ ଇତ୍ୟାଦି ନାନା ପ୍ରକାରର ଓଡିଆ ରଚନାର କିଛି କିଛି ଉଦ୍ଧୃତ କରି ଆପଣା ସପ୍ରମାଣ କରିଅଛନ୍ତି । ଏ ଯୁକ୍ତି ସବୁ ବଙ୍ଗାଳିଙ୍କ ମନରେ ଏମନ୍ତ ଘେନି ଅଛି ଯେ ସେମାନେ କୃତାର୍ଥ ହୋଇଅଛନ୍ତି ମାତ୍ର ବାସ୍ତବରେ କଣ ଉତ୍କଳୀୟଙ୍କୁ ପଚାରିଥିଲେ ଜାଣି ପାରିଥାନ୍ତେ । ଗ୍ରନ୍ଥକର୍ତ୍ତା ତେତେ ଶ୍ରମ କରିବାକୁ ସମର୍ଥ ହୋଇ ନାହାନ୍ତି । ସେ ଦୁଇଚାରିଟା ବାଲେଶ୍ୱରୀ କଥା ଶୁଣି ଆପଣା ବୁଦ୍ଧିକୁ ଧନ୍ୟବାଦ ଦେଇ ଗ୍ରନ୍ଥ ରଚନାରେ ପ୍ରବୃତ୍ତ ହୋଇଥିବାର ଜଣାଯାଏ । କେତେ ମୂର୍ଖ ପଣିଆ ପୁଣି ତାହା ସଂଗେ ସାହସ ମଧ୍ୟ କେତେ । ସଂସ୍କୃତ ପାରସୀ ଓ ହିନ୍ଦୀ ଶବ୍ଦ ମାନଙ୍କୁ ବଙ୍ଗଳା ବୋଲି ଅନାୟାସରେ ପରିଚୟ ଦେଇଅଛନ୍ତି ଯେବେ କିଞ୍ଚିତ୍ ପାରସୀ ହିନ୍ଦୀ ଜାଣିଥାନ୍ତେ ତେବେ କେଉଁ ଶବ୍ଦ କେଉଁ ଭାଷାର ଜାତ ବାରି ନେଇ ପାରନ୍ତେ ଓ ଯେବେ କିଛି ଓଡିୟା ଶିକ୍ଷିଥାନ୍ତେ ତେବେ କେତେଗୁଡାଏ ଭ୍ରମର ଉଦ୍ଧାର ହୋଇଥାନ୍ତେ । ଥରେ ମଫସଲର ଓଡିଆ ସଙ୍ଗେ କଥା କହିଥିଲେ ଜାଣନ୍ତେ ଯେ ଘଟି ବାଟି ଋକରାନୀ ସୁପାରି ସମ୍ଭୁରା ତରକାରୀ ଆନଳା ଘୁନସି ତକିଆ ଇତ୍ୟାଦି କେହି ଓଡିୟା ବୁଝି ପାରଇ ନାହିଁ ଏବଂ ପିଲସୋଜ ଗିଲାସ ଅବଖୋରା ସତରଞ୍ଚି ଗାଲିଚା ତକ୍ତପୋଷ(ଏହାକୁ ଗ୍ରନ୍ଥକାର ତପ୍ତକୋଷ ବୋଲି ଲେଖିଅଛନ୍ତି) ଓଡିଆ ଓ ବଙ୍ଗାଳିଙ୍କର ସମାନ ରପ ଅଧିକାର ଅଛି କାରଣ ସେ ସମସ୍ତ ପାରସୀ ଅବା ହିନ୍ଦୀ ଗୋଟିଏ ସୁଦ୍ଧା ବଙ୍ଗଳା ନୁହଇ । ତାଳ ସାମସେଇ ମଥାଦହି ଜହ୍ନି ପରିବା ତୁଣ ଜାଇ ନିଶୁଣୀ ଆଙ୍କୁଡି ତେଲୌଣି ପିଞ୍ଚା ପରଷୁଣିଆ ପାଣ୍ଡୋଇ ପ୍ରଭୃତି ବିଶୁଦ୍ଧ ଓଡିଆ ଶବ୍ଦମାନ ଯେବେ ଥରେ ତାହାଙ୍କ କର୍ଣ୍ଣପ୍ରବେଶ ହୋଇଥାଆନ୍ତା ତେବେ ଏତେ ବଣା ହୁଅନ୍ତେ ନାହିଁ କିମ୍ବା ଗୁଡିଏ ତୁଚ୍ଛା ବଙ୍ଗଳା କଥା ଲେଖି ଯେ ଓଡିଆ ସଙ୍ଗେ ସେ ସବୁର ସମତା ଦେଖାଇ ଥାଆନ୍ତେ ତେବେ ହେଲେ ତାହାଙ୍କ କଥା କିଛି ଗ୍ରାହ୍ୟ ହୁଅନ୍ତା । ତାହା ନ କରି କେବଳ ସଂସ୍କୃତ ଓ ଅନ୍ୟାନ୍ୟ ଭାଷାର ଉତ୍ପନ୍ନ କେତେ ଗୁଡିଏ ଶବ୍ଦ ଲେଖି ପାଠକଙ୍କୁ ଏକ ପ୍ରକାର ପ୍ରତାରଣା କରି ଅଛନ୍ତି ବୋଲିବାକୁ ହେବ । ନୋହିଲେ ସେ ଆପେ ପ୍ରତାରିତ ହୋଇ ଅଛନ୍ତି ଯେହେତୁ ଓଡିଆ ନ ଜାଣି ସବୁ ଜାଣିଥିବାର ପ୍ରକାଶ କରିଅଛନ୍ତି । ଓଡିଆ ଭାଷା ଯେବେ ସେ କିଛି ଜାଣିଥାନ୍ତେ ତେବେ ତଳ ଲିଖିତ ଗୀତଟିରେ ହୁନ୍ଦର ଅର୍ଥ କି ସୁନ୍ଦର କରନ୍ତେ ?

ନଟବର ଶ୍ୟାମସୁନ୍ଦର
ଦେଖିଲେ ଲାଗଇ ହୁନ୍ଦର ।

ଦୁଇଆଡେ ସୁନ୍ଦର ଲାଗିବାର କି ସୁନ୍ଦର ଭାବ ହେଲା ହୁନ୍ଦର ଶବ୍ଦ ଯେ ପାରସୀ ହୁନରର ଅପଭ୍ରଂଶ ଓ ଏଠାରେ ତାହାର ଅର୍ଥ କୌତୁକ ଏତକ ସୁଦ୍ଧା ଜାଣି ନାହାନ୍ତି ଅଥଚ ଜାଣିବାଯାଏ ସମ୍ଭାଳି ନହୋଇ ହୁପରି ଗ୍ରନ୍ଥକାର ବୋଲି ଦାଣ୍ଡକୁ ବାହାରିଅଛନ୍ତି । ଏଥିର ବଳିକରି ଗାଲୁଆପଣ ଆଉ ଦେଖା ନାହିଁ । ଗ୍ରନ୍ଥକାର ଯେବେ ପକ୍ଷପାତଶୂନ୍ୟ

ହୋଇ ବିଚାର କରିବାକୁ ଚେଷ୍ଟା କରିଥାନ୍ତେ ତେବେ ଜାଣିପାରନ୍ତେ ଯେ ବର୍ତ୍ତମାନ ବଙ୍ଗଳା ଓ ଓଡିଆରେ ଯେ ପୁସ୍ତକାଦି ହେଉଅଛି ତହିଁରେ ଅଧିକ ସଂସ୍କୃତ ଶବ୍ଦ ମିଶ୍ରିତ ହେଉଥିବାର ଏ ଦୁହିଁଙ୍କର ବିସ୍ତର ସମତା ଦେଖାଯାଏ । ମାତ୍ର ଅବୋଧ ଓଡିଆ ଓ ବଙ୍ଗାଳି ଦୁହେଁ ଏ ଭାଷା ବୁଝିବାକୁ ଅକ୍ଷମ । ଶିକ୍ଷାଲାଭ ନ କଲେ ଏଥିରେ ପ୍ରବେଶ ହୋଇପାର ନାହୁଁ । କିନ୍ତୁ କେହି କାହାରି ବୈଶ୍ୟଭାଷାକୁ ସହଜରେ ବୁଝିପାରନ୍ତି ନାହିଁ । ସୁତରାଂ ଏ ଦୁଇ ଭାଷାକୁ ପୃଥକ୍ ବୋଲିବାକୁ ହେବ ଓ କାନ୍ତିବାବୁ କେତେ ପୁସ୍ତକ ରଚନା କରନ୍ତୁ ଦୁଇଭାଷା କଦାଚ ଏକ ହୋଇ ନ ପାରିବ ।

*ଭା୪ଗ, ସଂ୯ଖ୍ୟା, ୨୭।୨।୧୮୭୦*

## ଉତ୍କଳଭାଷା ଉଠାଇବାର ଉଦ୍ୟମ ।

ଆମ୍ଭେମାନେ ଗତ ସପ୍ତାହରେ ସଂକ୍ଷେପରେ ଏଥିର ସଂବାଦ ଦେଇଥିଲୁଁ ଅବକାଶାଭାବର ଏଥିର ସବିଶେଷ ଲେଖିବାକୁ ଅସମର୍ଥ ହେବାର ବର୍ତ୍ତମାନ ତାହା ଲେଖୁଅଛୁଁ । ଦରଖାସ୍ତ ଖଣ୍ଡି ବଙ୍ଗଭାଷାରେ ରଚିତ ଓ କଲିକତାର କୌଣସି ଯନ୍ତ୍ରାଳୟରେ ମୁଦ୍ରିତ ହୋଇଥିବାର ଜଣାଯାଏ । ଅକ୍ଷର ଦେଖି ଆମ୍ଭେମାନେ ଅନୁମାନ କରଅଛୁଁ ଯେ ଯେଉଁ ଯନ୍ତ୍ରାଳୟରେ କାନ୍ତିବାବୁଙ୍କ ପୁସ୍ତକ ମୁଦ୍ରିତ ହୋଇଥିଲା ସେହି ଯନ୍ତ୍ରାଳୟରେ ଏହା ମୁଦ୍ରିତ ହୋଇଅଛି । କିଏ ଏହାର ରଚଇତା ଓ କାହାଦ୍ୱାରା ଏହା ଛାପା ହୋଇ ସ୍ୱାକ୍ଷର କାରଣ ବୁଲୁଅଛି ଜାଣିବାର କଠିନ କାରଣ ସବୁ କାର୍ଯ୍ୟ ଯତ୍ପରୋନାସ୍ତି ଗୋପନରେ ହେଉଅଛି । ଦରଖାସ୍ତକୁ ଏକପ୍ରକାର କାନ୍ତିବାବୁଙ୍କ ପୁସ୍ତକର ନିର୍ଘଣ୍ଟ ବୋଲା ଯାଇପାରେ ଓ ଏହି ହେତୁର ବୋଧ ହୁଅଇ ଯେ କାନ୍ତିବାବୁ କିମ୍ବା ତାହାଙ୍କ ସଙ୍ଗୀଲୋକ କେହି ଏ ଦରଖାସ୍ତ ରଚନା କରିଅଛନ୍ତି । ଦରଖାସ୍ତରେ ଏମନ୍ତ ଗୋଟିଏ କଥା ନାହିଁ କି ଯାହା କୌଣସି ଓଡିଆଙ୍କର ମନରେ ସ୍ୱଭାବତଃ ଉଦୟ ହୋଇପାରେ ଆପଣା ଭାଷାକୁ କଦର୍ଯ୍ୟ ଜ୍ଞାନ କରିବାର କାହାରିଠାର କେବେ ଶୁଣା ନାହିଁ ଓ ଅଧିକାଂଶ ଉତ୍କଳୀୟ ବଙ୍ଗଭାଷାର ଅଜ୍ଞ ଥିବାର କଦାଚ ସମ୍ଭବ ନୁହଇ ସେମାନେ ଆପଣା ଭାଷାକୁ ବଙ୍ଗଳା ସଙ୍ଗେ ତୁଳନା କରି ଏହାର ଉତ୍କୃଷ୍ଟତା ସ୍ୱୀକାର କରିବେ । ବଙ୍ଗାଳିମାନେ ଆପଣା ଇଷ୍ଟସାଧନ ନିମିତ୍ତ ଅତ୍ୟନ୍ତ ଚେଷ୍ଟା କରି ଦରଖାସ୍ତର ମର୍ମ ପ୍ରତି ଦୃଷ୍ଟି ରଖିବାକୁ ସମର୍ଥ ହୋଇ ନାହାନ୍ତି ଆମ୍ଭେମାନେ ଦରଖାସ୍ତର ଅନୁବାଦ ପତ୍ରିକାରେ ଦେବାକୁ ମନସ୍ଥ କରିଥିଲୁଁ ମାତ୍ର ଯେସ୍ଥଳେ ଅନେକ ଖଣ୍ଡ ଦରଖାସ୍ତ ଛାପା ହୋଇ ଦେଶ ମଧ୍ୟରେ ବୁଲୁଅଛି ସେସ୍ଥଳେ ବୋଧ ହୁଅଇ ପାଠକମାନେ ଅଳ୍ପାୟାସରେ ତାହା ଦେଖି ପାରିବେ ଯଦ୍ୟପି ଅମ୍ଭେମାନେ ଦୁଃଖିତ ହୋଇ ସ୍ୱୀକାର କରଅଛୁଁ ଯେ ବହୁ କଷ୍ଟରେ ଆମ୍ଭେମାନେ ଥରେ ମାତ୍ର ଉକ୍ତ ଦରଖାସ୍ତକୁ ଦେଖିଅଛୁଁ ।

ଆମ୍ଭେମାନେ ଶୁଣିଲୁଁ ଯେ ଦୁଇ ତିନିମାସ ହେବ ଦରଖାସ୍ତମାନ ଓଡିଶାକୁ ଆସି ଅତି ସାବଧାନ ପୂର୍ବକ ଗୋପନରେ ବଙ୍ଗାଳିଙ୍କଠାରେ ରହିଅଛି ଓ ସେମାନେ ଆପଣା ଅଧୀନସ୍ଥ ଲୋକଙ୍କସ୍ୱାକ୍ଷର ସଂଗ୍ରହ କରଅଛନ୍ତି । ବଙ୍ଗାଳି ଜମିଦାରଙ୍କ ପ୍ରଜା ଓ ମୋଫସଲରେ କାର୍ଯ୍ୟ କରଥିବା ବଙ୍ଗାଳିଙ୍କ ଅଧୀନସ୍ଥ କୁଲି କଣ୍ଟ୍ରାକ୍ଟର ଇତ୍ୟାଦି ଲୋକଙ୍କ ସ୍ୱାକ୍ଷର ଗୃହୀତ ହେଉଅଛି । ଯେବେ ଏହି ପରି ସ୍ୱାକ୍ଷରର ପ୍ରୟୋଜନ ଥିଲା ତେବେ ବଙ୍ଗାଳିମାନେ କାହିଁକି ଏତେ ପରିଶ୍ରମ କରଅଛନ୍ତି ବୁଝା ଯାଉ ନାହିଁ ବଇଠା ପଛରେ ଅନ୍ଧାର ଥିଲାପରି ତାହାଙ୍କ ଚତୁରତା ସଙ୍ଗେ ସଙ୍ଗେ ମୂର୍ଖପଣିଆଁ ଥିବାର ପ୍ରକାଶ ପାଉଅଛି । କଲିକତାରେତ ଗୌଡ଼, ଚସା, ବାଉରି ଇତ୍ୟାଦି ଅନେକ ଲୋକ ଅଛନ୍ତି ସେମାନଙ୍କର ସ୍ୱାକ୍ଷର ନେଇଥିଲେତ ସହଜରେ କାର୍ଯ୍ୟ ଚଳି ଥାନ୍ତା ଅଥଚ ଆମ୍ଭେମାନେ କିଛି ଜାଣିପାରନ୍ତୁ ନାହିଁ । କିନ୍ତୁ କେବଳ ଆମ୍ଭମାନଙ୍କୁ ପ୍ରତାରିତ କରିବା ଦରଖାସ୍ତରଚୟିତାଙ୍କ ଅଭିପ୍ରାୟ ନୁହଇ ଗବର୍ଣ୍ଣମେଣ୍ଟଙ୍କୁ ସୁଦ୍ଧା ପ୍ରତାରିତ କରିବା ଏଥିର ଅଭିପ୍ରାୟ ଥିବାର ଅନୁମାନ ହୁଅଇ ଓ ସେଥିପାଁଇ ବୋଧ ହୁଅଇ ସେମାନେ ଦରଖାସ୍ତ ଓଡିଶାକୁ ପଠାଇବାର ସ୍ଥିର କଲେ । ଦୁଃଖର ବିଷୟ ଯେ ତାହାଙ୍କ ଗୋପନ ରଖିବାର ଚେଷ୍ଟା ସଫଳ ହେଲା ନାହିଁ । ଗୋପନ ହୁଅନ୍ତା ଅବା କିପରି ସାଧାରଣ ପ୍ରବାଦ ଏହି ଯେ ପାପ ଲୁଚି ରହଇ ନାହିଁ ।

ଆମ୍ଭେମାନେ ଗୋପନରେ ସ୍ୱାକ୍ଷର କରାଇବା କଥାକୁ ପାପ ବୋଲି ବୋଲୁଅଛୁଁ ବାସ୍ତବରେ ଏହା ନୀତିବିରୁଦ୍ଧ

କାର୍ଯ୍ୟ ଅଟଇ । କୌଣସି ବଙ୍ଗାଳିସଙ୍ଗେ ଏଥିର ତର୍କ ହେବାର ସେ କହିଲେକି ଯେଉଁ ବ୍ୟକ୍ତି ଦରଖାସ୍ତ ଲେଖି ଓଡିଆଙ୍କର ସ୍ୱାକ୍ଷର ଗୋଟାଉଅଛନ୍ତି ତାହାଙ୍କ କାର୍ଯ୍ୟ ଦୂଷଣୀୟ ନୁହଇ କାରଣ ତାହାଙ୍କ ଦୃଢବିଶ୍ୱାସ ଯେ ଓଡିଶାରେ ବଙ୍ଗଳା ଚଳିଲେ ଏଦେଶର ପରମୋପକାର ହେବ ଓ ପ୍ରାକାଶ୍ୟରେ ତାହା କରିବାକୁ ଗଲେ ଅନେକଲୋକ ଏଥିର ପ୍ରତିବାଦୀ ହୋଇ ସବୁ ଉଦ୍ୟମ ବ୍ୟର୍ଥ କରିବେ ଏହିହେତୁ ସେ ଗୋପନରେ ଏ କାର୍ଯ୍ୟ କରଅଛନ୍ତି ଆହା ଏଯୁକ୍ତିକୁ ପଟାନ୍ତର ଦେବାକୁ ଆଉ କଣ ଅଛି ଆମ୍ଭେମାନେ ନିଷ୍ଚୟ କରି ପାର ନାହୁଁ । କେହି ସତ୍କାର୍ଯ୍ୟ କରିବା ମାନସରେ କୃପଣଘରେ ଚୋରୀ କରି ଧନଲାଭ କଲେ ଏମାନେ ତାହାଙ୍କୁ ଚୋର ବୋଲିବେ କି ନା ସନ୍ଦେହ । ବୋଧ ହୁଅଇ ତାହାକୁ ଏମାନେ ସଭ୍ୟ ଓ ବଦାନ୍ୟ ବୋଲି ପୂଜା କରିବେ । କିନ୍ତୁ କେହି ଦୁଃଖୀ ଯେବେ ଅନାହାର ମୃତ୍ୟୁର ରକ୍ଷା ପାଇବ କାରଣ ଏହାଙ୍କ ଘର ପଇସାଟିଏ ଚୋରୀ କରିବ ତାହାକୁ ପୁଲିସକୁ ପଠାଇବାକୁ ତିଳମାତ୍ର ବିଳମ୍ବ କରିବେ ନାହିଁ । ଯେଉଁମାନେ ଆପଣାକୁ ସଭ୍ୟ ଓ ଜ୍ଞାନୀ ବୋଲି ଅତିଶୟ ଅହଙ୍କାର କରନ୍ତି ସେମାନଙ୍କଠାରେ ଏରପ ଚରିତ୍ର କେମନ୍ତ ସୁନ୍ଦର ଦିଶୁଅଛି ତାହା ପାଠକମାନେ ବିଚାର କରନ୍ତୁ । ଓଡିଶା ଲୋକଙ୍କୁ ଯେତେପ୍ରକାରେ ବଙ୍ଗାଳିମାନେ ନିନ୍ଦାକରନ୍ତୁ ସେମାନଙ୍କଠାରେ କଦାକାଳରେ ଏରପ ଚରିତ୍ର ପ୍ରକାଶ ହେବ ନାହିଁ । ଏ ସବୁ ଅତି ଚତୁରଲୋକର କାର୍ଯ୍ୟ ଏ ଦରଖାସ୍ତ ଗବର୍ଣ୍ଣମେଣ୍ଟ ପ୍ରାପ୍ତ ହେଲା ଉତ୍ତାର କିରପ ବିଚାର କରିବେ ଆମ୍ଭେମାନେ ଚିନ୍ତା କରି ସ୍ଥିର କରି ପାର ନାହୁଁ ପାଠକଙ୍କର ସ୍ମରଣ ଥିବ ଯେ ପ୍ରାୟ ଦେଢବର୍ଷ ହେବ ଅତ୍ରତ୍ୟ ପ୍ରଧାନ ପ୍ରଧାନ ଲୋକମାନେ ସ୍ୱାକ୍ଷର କରି ଗବର୍ଣ୍ଣମେଣ୍ଟକୁ ଦରଖାସ୍ତ ପଠାଇବାର ଏଠାର ବଙ୍ଗଳା ଉଠି ଯାଇଅଛି । ଗବର୍ଣ୍ଣମେଣ୍ଟଙ୍କ ପତ୍ରରେ ସ୍ପଷ୍ଟରପେ ଲେଖାଅଛି ଯେ ସେହି ଦରଖାସ୍ତ ଲିଖିତ ବିଷୟମାନ ଯୁକ୍ତି ଯୁକ୍ତ ଥିବାର ଗବର୍ଣ୍ଣମେଣ୍ଟ ତାହା ଗ୍ରହଣ କଲେ । ସମ୍ପ୍ରତି ତହିଁର ବିପରୀତ ଭାବର ଦରଖାସ୍ତ ପ୍ରବେଶ ହେଲା ଉତ୍ତାର କୌଁଉ ଦରଖାସ୍ତ ବିଶ୍ୱାସ ଯୋଗ୍ୟ ସେଥିର ଅନୁସନ୍ଧାନ କରିବେ ତହୁଁ ସକଳକଥା ପ୍ରକାଶ ପାଇବ । କିନ୍ତୁ ତେତେବେଳ ଯାଏ ଅପେକ୍ଷା ନ କରି ପ୍ରଥମର ଏକଥା ଗବର୍ଣ୍ଣମେଣ୍ଟଙ୍କୁ ଜଣାଇଲେ ଭଲ ହେବ । ଗବର୍ଣ୍ଣମେଣ୍ଟଙ୍କର ଏହା ଜାଣିବାର ଆବଶ୍ୟକ କାରଣ ଆଜି ଏକ କଥାରେ ଯେବେ ଆପଣା ମତାନୁସାରେ ଦରଖାସ୍ତ ଲେଖି ଓଡିଆଙ୍କର ସ୍ୱାକ୍ଷର କରାଇଁ ଓଡିଶାର ମତ ବୋଲି ଗବର୍ଣ୍ଣମେଣ୍ଟଙ୍କୁ ପ୍ରତାରିତ କରିପାରନ୍ତି ତେବେ ଦିନେ ଗବର୍ଣ୍ଣମେଣ୍ଟ କିମ୍ୱା ଅତ୍ରତ୍ୟ କୌଣସି ହାକିମ ବିରଦ୍ଧରେ କିଛି ଲେଖି ଏହିପରି ଓଡିଆଙ୍କର ସ୍ୱାକ୍ଷର ସଂଗ୍ରହ କରି ଦରଖାସ୍ତ ପଠାଇପାରନ୍ତି । ରାଜବିଦ୍ରୋହତ ଏରପ ହୋଇପାରେ ଅତଏବ ଯେଉଁମାନେ ଏ ଦରଖାସ୍ତରେ ସ୍ୱାକ୍ଷର ଗୋଟାଇ ବୁଲୁଅଛନ୍ତି ତାହାଙ୍କ ଚରିତ୍ର ଅନୁସନ୍ଧାନ କରିବା ଗବର୍ଣ୍ଣମେଣ୍ଟଙ୍କର କର୍ତ୍ତବ୍ୟ ଅଟଇ । ସାଧାରଣ ହିତାହିତ ବିଷୟରେ ଯେ କାର୍ଯ୍ୟମାନ ହୁଅଇ ତାହା ପ୍ରାକାଶ୍ୟରପେ ହେବାର ଆବଶ୍ୟକ ଓ ଅଧିକ ଲୋକଙ୍କଠାର ଏକ ଦରଖାସ୍ତରେ ଦସ୍ତଖତ କରାଇବା ପ୍ରତ୍ୟକ୍ଷେ ତହିଁର ବୃତ୍ତାନ୍ତ ଲୁଚାଇ ରଖିବାର ଉଦ୍ୟମର ଏତିକିମାତ୍ର ପ୍ରମାଣ ହେଉଅଛି ଯେ ଯାହାଙ୍କର ସ୍ୱାକ୍ଷର ଗ୍ରହଣ ହୋଇଅଛି ସେମାନେ ତହିଁର କିଛି ଜାଣନ୍ତି ନାହିଁ ସେମାନେ ଯେବେ ଦରଖାସ୍ତର ମର୍ମର ଅବଗତ ହୋଇଥାନ୍ତେ ତେବେ ଅବଶ୍ୟ ଆପଣାମଧ୍ୟରେ କୁହାକୁହି ହେଉଁ ହେଉଁ ଚାରିଆଡେ ସେକଥା ପ୍ରକାଶ ପାଇଯାନ୍ତା ।

ଏଠାରେ ଆମ୍ଭେମାନେ ଆଉ ଗୋଟିଏ କଥା କହି ତୁନିହେବୁଁ । ଗତ ପ୍ରକାଶିତ ଉତ୍କଳହିତୈଷିଣୀରେ କାନ୍ତିବାବୁଙ୍କ ପୁସ୍ତକ ସମ୍ପର୍କରେ ଯାହା ଲେଖାଥିଲା ଆମ୍ଭେମାନେ ତହିଁର ପ୍ରକୃତ ଅଭିପ୍ରାୟ ବୁଝି ନ ପାରି ଲେଖିଥିଲୁଁ କି ଉତ୍କଳୀୟଙ୍କର ମତ ପ୍ରକାଶ କରିବା ଏକା ତାହାଙ୍କର ଅଧିକାର ଥିବାର ଅନ୍ୟଦ୍ୱାରା ତାହା ହୋଇଅଛି ବୋଲି ସେ ବିରକ୍ତ ହୋଇଅଛନ୍ତି ମାତ୍ର ଏ ଦରଖାସ୍ତର କଥା ଜଣାପଡିଲାଦିନୁ ଆମ୍ଭମାନଙ୍କର ବିଶ୍ୱାସ ହେଉଅଛି ଯେ ଏହି ଦରଖାସ୍ତକୁ ଲକ୍ଷକରି ସେ ଉକ୍ତ କଥା କହିଥିଲେ ଓ ଏଠାକୁ ଦରଖାସ୍ତ ଆସିବା ଓ ଗୋପନରେ ସ୍ୱାକ୍ଷରିତ ହେଉଥିବା ବିଷୟ ବହୁକାଳର ତାହାଙ୍କୁ ଜଣାଥିଲା ମାତ୍ର ଏ କଥା ପ୍ରକାଶ କରିବା ହିତୈଷିଣୀର କାର୍ଯ୍ୟ ଜ୍ଞାନ ନ କରି ସମ୍ପାଦକ ଏକପ୍ରକାର ଭଙ୍ଗୀ କ୍ରମେ ଏହି ଅଭିପ୍ରାୟ ବ୍ୟକ୍ତ କରିଅଛନ୍ତି ଯେ ଏ ଦରଖାସ୍ତରେ ଯେଉଁ କଥାମାନ ଲେଖା ଅଛି ଓଡିଶାବାସିଙ୍କର ଏକା ସେହି ମତ ଅଟେ । ଏମନ୍ତ ହେଲେ କଟକସୋସାଇଟୀକି କଣବୋଲିବା ସ୍ଥିରକରି ନ ପାରୁଁ ।

ଉତ୍କଳଭାଷାର ଉନ୍ନତି ସାଧନ ସୋସାଇଟୀର ଗୋଟିଏ ଉଦ୍ଦେଶ୍ୟ ଅଥଚ ସେହି ସୋସାଇଟୀର ପତ୍ରିକା ଭିନ୍ନମତ ବ୍ୟକ୍ତ କରିବାର ଜଣାଯାଏ ।

*ଭା୫ ଗ, ସଂ୧୪ଖ୍ୟା, ୨ ।୪।୧୮୭୦*

## ସାପ୍ତାହିକ ସଂବାଦ ।

ଇନସ୍ପେକ୍ଟର ମାର୍ଟିନ ସାହେବ ଓଡିଶାସ୍କୁଲ ସମୂହରେ ଗବର୍ଣ୍ଣମେଣ୍ଟ ଆଜ୍ଞା ପ୍ରବଳ କରିବା ପାଁଇ ସମୁଚିତ ଚେଷ୍ଟା କରଥିବାର ଶୁଣି ଆମ୍ଭେମାନେ ବଡ ଆନନ୍ଦିତ ହେଲୁଁ । ସମ୍ପ୍ରତି ସେ ଏକ ସରକୁଲିଅରଦ୍ୱାରା ଜଣାଇଅଛନ୍ତି କି ଯେ ସମସ୍ତ ବିଦ୍ୟାଳୟରେ ବଙ୍ଗଳାଭାଷା ପଢିବା ଛାତ୍ରଙ୍କ ସ୍ୱେଚ୍ଛାଧୀନ ଅଟଇ ତାହା କେବଳ ବିଦେଶୀୟ ଛାତ୍ରଙ୍କ ପ୍ରତି ହୋଇଅଛି ନତୁବା ଓଡିୟା କିମ୍ବା ଏଠାରେ ପୂର୍ବର ବାସ କରଥିବା ବଙ୍ଗାଳିଙ୍କ ପକ୍ଷରେ ନୁହଇ ଏମାନଙ୍କୁ କେବଳ ଓଡିୟା ପଢ଼ିବାକୁ ହେବ ।

ଉତ୍କଳଭାଷା ଉଠାଇବାପାଁଇ ଯେଉଁ ବଙ୍ଗଳା ଅକ୍ଷରର ଛାପାଦରଖାସ୍ତରେ ଉତ୍କଳୀୟଙ୍କର ସ୍ୱାକ୍ଷର ଗୃହୀତ ହେଉଅଛି ତାହା ବାସ୍ତବରେ ଉତ୍କଳୀୟଙ୍କର ମତ ନ ଥିବା ବିଷୟ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବା କାରଣ ଗତ ରାତ୍ରିରେ ଏହି ଯନ୍ତ୍ରାଳୟର ଦୋମହଲା କୋଠାରେ ଉତ୍କଳୋଲ୍ଲାସିନୀସଭାର ବିଶେଷ ଅଧିବେଶନ ହୋଇଥିଲା । ସଭାର ବିବରଣ ଆଗାମୀ ସପ୍ତାହରେ ପ୍ରକାଶ କରିବା ।

*ଭା୫ଗ, ସଂ୧୪ଖ୍ୟା, ୨।୪।୧୮୭୦*

## ପ୍ରେରିତପତ୍ର ।

ଶ୍ରୀଯୁତ ଉତ୍କଳଦୀପିକା ସମ୍ପାଦକମହାଶୟ ସମୀପେଷୁ ।

ଏହା ସାଧାରଣରେ ଏବଂ ରାଜଦରବାରରେ ପ୍ରକାଶ ଅଛି କି ମହମ୍ମଦୀୟ ଧର୍ମାବଲମ୍ବିମାନେ ଆପଣା ସନ୍ତାନମାନଙ୍କୁ ଇଂରାଜୀ ଓ ଦେଶୀୟଭାଷାରେ ବ୍ୟୁତ୍ପନ୍ନ କରାଇବାକୁ ଉତ୍ସାହ ହୀନ ଅଟନ୍ତି ଓ ସେହି କାରଣରୁଁ ସେମାନେ କ୍ରମାଗତ ଦୁରବସ୍ଥାକୁ ପ୍ରବେଶ ହେଉଅଛନ୍ତି ବିଶେଷରେ ଉତ୍କଳୀୟ ମୁଶଲମାନମାନେ ଉକ୍ତ ବିଦ୍ୟାମାନ ଶିକ୍ଷା କରାଇବା ପକ୍ଷରେ ନିତାନ୍ତ ଦୁର୍ବଳ ଅଟନ୍ତି ଓ ଯଦ୍ୟପି ଉକ୍ତ ଧର୍ମାବଲମ୍ବୀ କୌଣସି ବୁଦ୍ଧିମାନ ବ୍ୟକ୍ତି ଆପଣା ସନ୍ତାନଙ୍କୁ ଉକ୍ତ ବିଦ୍ୟାଶିକ୍ଷା କରାଇବାର ଚେଷ୍ଟିତ ହେଉଅଛନ୍ତି ତେବେ ଅନ୍ୟ ମୁଶଲମାନମାନେ ତାଙ୍କୁ କୁମାର୍ଗଗାମୀ ଅର୍ଥାତ୍ ଆପଣା ଧର୍ମର ବିଦ୍ୟା ଯେଉଁ ବିଦ୍ୟାଳୟରେ ନାହିଁ ଏମନ୍ତ ବିଦ୍ୟାଳୟକୁ ଅନ୍ୟଧର୍ମର ବିଦ୍ୟାଶିକ୍ଷା କରାଇବା ସକାଶେ ପଠାଇବାର କେବଳ ଅନ୍ୟଧର୍ମର ସାହାଯ୍ୟ କରଥିବାର ବୋଲି କହନ୍ତି ଓ ଯେବେ ଆମ୍ଭେ ମହମ୍ମଦୀୟ ଧର୍ମାବଲମ୍ବିଙ୍କୁ ତାଙ୍କ ସନ୍ତାନମାନଙ୍କୁ ସ୍କୁଲରେ ଅଧ୍ୟୟନ କରାଇବାର ଉପଦେଶ ଦେଇଅଛୁଁ ତେବେ ଏହି ଉତ୍ତର ପ୍ରାପ୍ତ ହୋଇଅଛୁଁ ଯେ ଯଦି ସ୍କୁଲରେ ଅରବି କିମ୍ବା ଫାରସୀ ଭାଷା ଥାନ୍ତା ତେବେ ଆମ୍ଭେ ଅବଶ୍ୟ ଆପଣାସନ୍ତାନମାନଙ୍କୁ ସ୍କୁଲକୁ ପଠାନ୍ତୁ ଓ ଉକ୍ତପ୍ରକାର ସେମାନଙ୍କର ଚେଷ୍ଟା ଯେ କେବଳ ମୌଖିକ ଏମନ୍ତ ନୁହେ ସେମାନଙ୍କର ସେହି ଚେଷ୍ଟା ଆନ୍ତରୀକ ଅଛି କାରଣ ଆମ୍ଭେ ଦେଖୁଅଛୁଁ ଯେ ଏ ଦେଶର ସମ୍ଭ୍ରାନ୍ତ ମୁଶଲମାନମାନେ ଅର୍ଥାତ୍ ଯେଉଁମାନଙ୍କ ବଂଶରେ ବିଦ୍ୟା ପଢିବାର ପ୍ରଥା ପୂର୍ବର ପ୍ରଚଳିତ ଅଛି(ଯେମନ୍ତ କି (ସୁଘଂଡାସକରପର ବାଲୁବିଶି ପହରାଜପୁର ଝଙ୍କଡ କେନ୍ଦରାପଡା ସୟଦବଂଶୀୟ ଓ ମାସୁମପୁର ମଉଲବି ବଂଶୀୟ ଓ ଧାମନଗର ଓ ଭଦରଖ ଓ କେନ୍ଦରାପଡା ଓ ଜୟପୁର କାଜି ଏବଂ ମିଆଁବଂଶୀୟ ଓ ବାଲେଶ୍ୱର ମୋଲନୀବଂଶୀୟ ଓ ଅଲତିଖାଦିମବଂଶୀୟ ଓ ହରିହରପୁର ଓ ଯାଜପୁରର ଆଖୁନ ବଂଶୀୟମାନେ ରାଜବିଦ୍ୟା ଓ ଦେଶବିଦ୍ୟା ଉପାର୍ଜନ ଅଭାବରେ ଦୁଃଖ ଓ ମାନ୍ଦାବସ୍ଥାକୁ ପ୍ରବେଶ ହେଲେହେଁ ମଧ୍ୟ ବୁଦ୍ଧି ସୈଥିଲ୍ୟ ହେତୁ ପାରମ୍ପରୀକ ପ୍ରଥାକୁ ପରିତ୍ୟାଗ ନ କରି ଆପଣାର ବାଳକମାନଙ୍କୁ ଅରବୀ ଓ ଫାରସୀ ବିଦ୍ୟାଶିକ୍ଷା କରାଇ କାଳକ୍ଷେପଣ କରାଉଅଛନ୍ତି ଓ ଆତ୍ମବୋଧରେ କେବଳ ଏହି ବିଦ୍ୟାଶିକ୍ଷା କରାଇବା ପ୍ରତି କୃଷିକର୍ମର ଉପାୟ ଶିକ୍ଷା କରିବା ଶତଗୁଣରେ ଉତ୍ତମ ଅଛି ଓ ଏହିପ୍ରକାର ଭ୍ରମ ଯେ କେବଳ ଉତ୍କଳୀୟ ମୂଶଲମାନମାନଙ୍କର ଅଛି ଏହା ନୁହେ ସମସ୍ତଦେଶର ମୂଶଲମାନମାନେ ଏହିପ୍ରକାର ଭ୍ରମ ସମୁଦ୍ରରେ

ମଗ୍ନ ଅଛନ୍ତି ଓ ତାହା ଏହି ହେତୁରେ ପ୍ରକାଶ ହେଉଅଛି ଯେ ଯେତେବେଳେ କଲିକତାରେ କେବଳ (ଅରବୀ) ମଦରସା ଥିଲା ତେତେବେଳେ ବଙ୍ଗ ଏବଂ ଉତ୍କଳୀୟ ଅନେକ ମୁଶଲମାନ ପ୍ରବିଣ ହୋଇ ମୁନସଫ ଓକିଲ ଫିତୁଆଦାୟକ ପଦ ପ୍ରାପ୍ତ ହେଉଥିଲେ ଓ ଅନୁମାନ କରେଁ ଯେ ପ୍ରାୟ ସେ ସମୟରେ ମୁଶଲମାନମାନେ ଅନ୍ୟଧର୍ମାବଲମ୍ବିମାନଙ୍କଠାରେଁ ଅଧିକ ଅଂଶରେ ପ୍ରଧାନ ପଦପ୍ରାପ୍ତ ହେଉଥିଲେ ଯେଉଁ ସମୟର ଉକ୍ତ ବିଦ୍ୟାଳୟ ଉଠିଯାଇ କଲେଜମାନ ସ୍ଥାପନ ହେଲା ସେହି ସମୟର ମୁଶଲମାନମାନଙ୍କ ନିର୍ବୋଧ ହେତୁରେଁ ସେମାନଙ୍କ ରାଶିରେ ଶନିସପ୍ତା ପଡିଲା ଓ ବର୍ତ୍ତମାନ ଯେ କେତେଜଣ ସବର୍ଡିନେଟଜଜ୍ ଓ ମୁନସଫମୁଶଲମାନ ଅଛନ୍ତି ସେ କେବଳ ସେହି ସମୟର ପଦଧାରୀ ଅଟନ୍ତି ଓ ନୂତନ କ୍ଲାଶର ଜଣେ ସୁଦ୍ଧା ମୁନସଫ ହେବାର କେବେ ଗଜେଟରେ ଦେଖି ନାହୁଁ ଓ ଯଦ୍ୟପି ଏଥିରେ ସେମାନଙ୍କର ସମ୍ପୂର୍ଣ୍ଣ ଦୋଷ ଓ ଭ୍ରମ ଓ ନିର୍ବୁଦ୍ଧିତା ଅଛି କିନ୍ତୁ ଯେଉଁ ପ୍ରଜାମାନେ ଅସଭ୍ୟ କିମ୍ୱା ନିର୍ବୁଦ୍ଧି ଥାନ୍ତି ସେମାନଙ୍କୁ କୌଣସି ଉପାୟ ଦ୍ୱାରା ସୁମାର୍ଗ ଦର୍ଶାଇବାର ରାଜାଙ୍କର କର୍ତ୍ତବ୍ୟ ଅଛି ଓ ବର୍ତ୍ତମାନ ଏ ଉତ୍କଳଦେଶରେ ଅତି ଅଳ୍ପବ୍ୟୟଦ୍ୱାରା ମୁଶଲମାନମାନଙ୍କୁ ବିଦ୍ୟାଶିକ୍ଷାର ଉତ୍ସାହ ଦେବାର ଏକ ପ୍ରଧାନ ଉପାୟ ଏହି ଅଛି ଯେ କଟକ ହାଇସ୍କୁଲରେ ପରୀକ୍ଷା ସ୍ୱରପ ଦୁଇବର୍ଷ ନିମିତ୍ତ ଏକଜଣ ଅରବୀ ଓ ଇଙ୍ଗରେଜୀ ସୁଶିକ୍ଷିତ ମହମ୍ମଦୀୟ ଧର୍ମାବଲମ୍ବୀ ଶିକ୍ଷକ ଟ୫୦ଙ୍କା ବେତନରେ ନିଯୁକ୍ତ ହେଉ ତାହା ହେଲେ ବୋଧ ହୁଏ ଯେ ଅନେକ ମୁଶଲମାନ ଇଙ୍ଗରେଜୀ ବିଦ୍ୟା ଶିକ୍ଷା କରିବାକୁ ଚେଷ୍ଟା କରିବେ ଅତଏବ ସ୍ଥାନୀୟ ଗବର୍ଣ୍ଣମେଣ୍ଟ ଓ ରାଜକର୍ମଚାରିମାନଙ୍କ ସନ୍ନିଧିରେ ବିନୟପୂର୍ବକ ଏହି ପ୍ରାର୍ଥନା ଯେ ପ୍ରଶଂସିତ ମହୋଦୟମାନେ ଉକ୍ତ ଉପାୟ ପ୍ରଚଳନ ପୂର୍ବକ ଓଡିଶାର ଦୁଃଖୀ ଓ ଉପାୟହୀନ ମୁଶଲମାନଙ୍କର ଶ୍ରୀବୃଦ୍ଧି କରନ୍ତୁ ।

ନିବେଦନ

ତା୧୭ରିଖ ମାର୍ଚ୍ଚ ସନ ୧୮୭୦ ମସିହା

ଶ୍ରୀ ସୟଦଏକରାମ ଅଲି

କେନ୍ଦରାପଡା ମୁନସଫି କାର୍ଯ୍ୟାଳୟର କର୍ମଚାରୀ

*ଭା୫ଗ, ସଂ୧୫ଖ୍ୟା, ୧୦।୪।୧୮୭୦*

## ବିଜ୍ଞାପନ ।

ଅନଗୁଳ ସ୍କୁଲ ସକାଶେ ଏକଜଣ ହେଉ ପଣ୍ଡିତ ଆବଶ୍ୟକ, ବେତନ ଟ୩୦ଙ୍କା । ଏକର୍ମ ସକାଶେ ଓଡିୟା ଉତ୍ତମରପେ ଓ ଇଙ୍ଗରେଜୀ କିଞ୍ଚିତ୍ ଜାଣିବାର ପ୍ରୟୋଜନ । ଦରଖାସ୍ତକାରିମାନେ ଚଳିତମାସ ତା ୨୦ରିଖ ପୂର୍ବରେ ଆମ୍ଭ ନିକଟକୁ ଦରଖାସ୍ତ ପଠାଇବେ । ତା୭ ରିଖ ଅପ୍ରେଲ ସନ ୧୮୭୦ ମସିହା ।

ଶ୍ରୀ ପ୍ୟାରୀମୋହନ ସେନ
କଟକ ଜେଲାସ୍କୁଲ ସମୂହର
ଡେପୁଟୀ ଇନ୍‌ସ୍ପେକ୍ଟର

*ଭା୫ଗ, ସଂ୧୫ଖ୍ୟା, ୧୦।୪।୧୮୭୦*

## ଉତ୍କଳୋଲ୍ଲାସିନୀ ସଭା ।

ଓଡିୟାଭାଷା ଉଠାଇ ଦେବା ନିମିତ୍ତ ଯେଉଁ ବଙ୍ଗଳା ଦରଖାସ୍ତ ଏଠାରେ ଗୋପନ ରପେ ସ୍ୱାକ୍ଷରିତ ହେଉଅଛି ତହିଁ ବିଷୟରେ ଉତ୍କଳୀୟଙ୍କର କି କର୍ତ୍ତବ୍ୟ ଏହା ସିଦ୍ଧାନ୍ତ କରିବା କାରଣ ଅଳ୍ପଦିନ ହେଲା ଉତ୍କଳୋଲ୍ଲାସିନୀର ସଭା ହୋଇଥିଲା ତହିଁର ବୃତ୍ତାନ୍ତ ଆମ୍ଭେମାନେ ଭ୍ରମବଶତଃ ଗତ ସପ୍ତାହରେ ପ୍ରକାଶ କରି ନ ଥିଲୁଁ । ରୀତିମତ୍ ସଭାର କାର୍ଯ୍ୟ ଆରମ୍ଭ ହେଲାର ବଙ୍ଗଳା ଦରଖାସ୍ତ ପାଠ ହେଲା ତହିଁରେ ସଭ୍ୟମାନେ ଏକମତ ହୋଇ କହିଲେ ଯେ ଏଥିରେ ଯେ ସମସ୍ତ କଥା ଲେଖାଅଛି ତହିଁର ଗୋଟିଏ ସୁଦ୍ଧା କୌଣସି ଉତ୍କଳୀୟ ମନରେ ଉଦୟ ହୋଇଥିବ

ଅନୁମାନକୁ ଆସୁ ନାହିଁ ତେବେ ଯେଉଁମାନେ ଏଥିରେ ସ୍ୱାକ୍ଷର କରଅଛନ୍ତି ସେମାନେ ନ ବୁଝି ବା ପ୍ରତାରିତ ହୋଇ ତେମନ୍ତ କରଥିବେ ସନ୍ଦେହ ନାହିଁ ଅତଏବ ସଭାରେ ସ୍ଥିର ହେଲା ଯେ ଦରଖାସ୍ତ ଲିଖିତ ବିବରଣମାନ ଏକ ବିଜ୍ଞାପନଦ୍ୱାରା ସର୍ବସାଧାରଣଙ୍କୁ ଜଣାଇ ଦିଆଯାଇ ସେମାନଙ୍କୁ ସଭାର ସମ୍ପାଦକ ଅନୁରୋଧ କରନ୍ତୁ ଯେ ଭ୍ରମରେ ପଡି କେହି ଯେମନ୍ତ ସେଥିରେ ସ୍ୱାକ୍ଷର ନ କରନ୍ତୁ ଓ କାହାଦ୍ୱାରା ଏ ଦରଖାସ୍ତମାନ ପ୍ରସ୍ତୁତ ହୋଇ କେଉଁ ଲୋକଙ୍କ ସହାୟତା ଓ ଉଦ୍ୟମରେ କିରପ ଲୋକଙ୍କର ସ୍ୱାକ୍ଷର ଗୃହୀତ ହେଉଅଛି ଏ ବିଷୟମାନଙ୍କର ଅନୁସନ୍ଧାନ କରିବାର ସ୍ଥିର ହୋଇଅଛି ସେ ସମସ୍ତ ଜଣାଗଲାଠାର ଆଉ ଯାହା କର୍ତ୍ତବ୍ୟ ତାହା ସ୍ଥିର ହେବ । ଆମ୍ଭେମାନେ ପୂର୍ବେ ଅନୁମାନ କରିଥିଲୁଁ ଯେ ବର୍ତ୍ତମାନ ଏ ବିଷୟରେ କୌଣସି ଆବେଦନପତ୍ର ଗବର୍ଣ୍ଣମେଣ୍ଟକୁ ପ୍ରେରିତ ହେବ ମାତ୍ର ଏରପ କିଛି କଥା ଧାର୍ଯ୍ୟ ହୋଇ ନାହିଁ । ଏ ବିଷୟର ପ୍ରସ୍ତାବ ହେବାରେ ସଭ୍ୟମାନେ କହିଲେ ଯେ ଗବର୍ଣ୍ଣମେଣ୍ଟ ଏତାଦୃଶ ଦରଖାସ୍ତ ପାଇବା ମାତ୍ରକେ କଦାଚ ନିଷ୍ପତ୍ତି କରିବେ ନାହିଁ ଅଗ୍ରେ ଏ ସବୁର ଅନୁସନ୍ଧାନ କରିବେ । ପୁଣି ଗବର୍ଣ୍ଣମେଣ୍ଟଙ୍କ ପରିଶେଷରେ ଦରଖାସ୍ତ ଯିବ କି ନାହିଁ ସନ୍ଦେହ । ଅତଏବ ଆଗଠାର ଗବର୍ଣ୍ଣମେଣ୍ଟଙ୍କୁ କ୍ଲେଶ ଦେବା ଉଚିତ ନୁହଇ ।

*ଭା୪ଗ, ସଂ୧୬ଖ୍ୟା, ୧୬।୪।୧୮୭୦*

## ବଙ୍ଗାଳି ଓ ଓଡିୟା

ଗତ ପ୍ରକାଶିତ ଉତ୍କଳହିତୈଷିଣୀରେ ଗୋଟିଏ ଚମତ୍କାର ପ୍ରସ୍ତାବ ବାହାରିଅଛି ଓଡିୟା ଓ ବଙ୍ଗାଳିଙ୍କ ମଧ୍ୟରେ ଭାଷା ବିଷୟରେ କଳି ହେବାର ଦେଖି ଏ ଦୁଇଜାତିର ଲୋକ ମଧ୍ୟରେ କିପ୍ରକାର ସଂସ୍ରବ ଅଛି ଲେଖକ ସେଥିର ବିଚାର କରି ସ୍ଥିର କରିଅଛନ୍ତି ଯେ ଗତ ସାତଶବର୍ଷଠାର ଓଡିଶା ଉପରେ ବଙ୍ଗଳାର ଆଧିପତ୍ୟ ଅତି ସ୍ପଷ୍ଟରପେ ଦେଦୀପ୍ୟମାନ ଅଛି । କି ଶାସନପ୍ରଣାଳୀ କି ଧର୍ମ କି ଭାଷା ସବୁ ବିଷୟର ଉନ୍ନତି ପାଇଁ ଓଡିଶା ବଙ୍ଗଳାଠାରେ ଋଣୀ ଅଟଇ । ସେ ବୋଲନ୍ତି ଯେ ଗଙ୍ଗବଂଶୀୟ ରାଜାଙ୍କର ଆଦିପୁରୁଷ ବଙ୍ଗଳାର ଆସି ଏଠାରେ ରାଜତ୍ୱ ସ୍ଥାପନ କରିଥିଲେ ଓ ସେହିକାଳ ଉତ୍କଳ ଇତିହାସର ପ୍ରଧାନ ସମୟ ଅଟଇ । ଯଦ୍ୟପିକି ଷ୍ଟରଲିଂ ସାହେବଙ୍କ ମତରେ ସେ କର୍ଣ୍ଣାଟ ଦେଶର ଆସିଥିଲେ ମାତ୍ର ଉଇଲସନ ସାହେବ ବୋଲନ୍ତି ଯେ ସେମାନେ ଗଙ୍ଗାନଦୀ ତୀରସ୍ଥ ଦେଶର ରାଜା ଥିଲେ ଓ ସେଦେଶ ବର୍ତ୍ତମାନ ମେଦିନୀପୁର ଓ ତମଲୁକ ନାମରେ ଖ୍ୟାତ । ତଦୁତ୍ତାର କଳାପାହାଡ଼ ନାମରେ ବଙ୍ଗାଳି ବ୍ରାହ୍ମଣ ବଙ୍ଗଳା ସେନା ସହିତ ଉତ୍କଳକୁ ଆସି ଏଠାର ସ୍ୱାଧୀନ ରାଜତ୍ୱ ଧ୍ୱଂସ କଲା । ପରିଶେଷରେ ବଙ୍ଗଳାର ସୁବେଦାରଙ୍କ ଅଧୀନରେ ଓଡିଶା ବରାବର ରହିଅଛି ।

ଧର୍ମର ମତ ବିଷୟରେ ଦେଖାଯାଏ ଯେ ଚୈତନ୍ୟ ମହାପ୍ରଭୁ ବଙ୍ଗଳାରେ ଅବତୀର୍ଣ୍ଣ ହୋଇ ଓଡିଶା ଲୋକଙ୍କୁ ବୈଷ୍ଣବଧର୍ମର ଶିକ୍ଷା ଦେଲେ ଏହିଠାର ବୌଦ୍ଧଧର୍ମ ଲୋପ ହେଲା ଓ କେବଳ ବ୍ରାହ୍ମଣ ଛଡା ଆଉ ସମସ୍ତେ ଏତେବେଳ ଯାଏ ଚୈତନ୍ୟ ମହାପ୍ରଭୁଙ୍କର ମତାବଲମ୍ବୀ ହୋଇଅଛନ୍ତି ।

ଭାଷା ଉନ୍ନତି ପକ୍ଷରେ ମଧ୍ୟ ଏହିରପ ଲେଖକ ବୋଲନ୍ତି ଯେ ଚୈତନ୍ୟ ଦେବଙ୍କ ଅବତାର ପୂର୍ବରଚିତ କୌଣସି ଉତ୍କଳ ଭାଷାଗ୍ରନ୍ଥ ନାହିଁ । ମହାଭାରତ ରଚଇତା ଶାରଳାଦାସ ଏଥିର ଅନେକଦିନ ଉତ୍ତାର ଜନ୍ମଗ୍ରହଣ କଲେ ଓ ସେ ଜଣେ ବୈଷ୍ଣବ ଓ ଚୈତନ୍ୟ ମହାପ୍ରଭୁଙ୍କର ବଡ ଭକ୍ତ ଥିଲେ । କେବଳ ଚୈତନ୍ୟଙ୍କ ମତ ପ୍ରଚାର କରିବାପାଁଇ ଭାଷାଗ୍ରନ୍ଥ ରଚନା କରିବାର ଆବଶ୍ୟକ ହେଲା ଉପେନ୍ଦ୍ର ଭଞ୍ଜ ଦୀନକୃଷ୍ଣ ଦାସ ଓ ଅଭିମନ୍ୟୁ ସାମନ୍ତସିଂହାର ଏମାନେ ସମସ୍ତେ ପୂରା ବୈଷ୍ଣବ ଓ ଏଠାର ଭାଷାଗ୍ରନ୍ଥ ସବୁ ବୈଷ୍ଣବଧର୍ମ ଆଡକୁ ଢଳିଅଛି ।

ପରିଶେଷରେ ଲେଖକ କହିଅଛନ୍ତି ଯେ ବର୍ତ୍ତମାନ କାଳରେ ଯାହା କିଛି ବିଦ୍ୟାଶିକ୍ଷା ଓ ସାହସ ଏସ୍ଥାନରେ ଦେଖାଯାଏ ତାହା କେବଳ ବଙ୍ଗାଳିଜମିଦାର ଓ ଅନ୍ୟ ବଙ୍ଗଳା ନିବାସିଙ୍କ ସାହାଯ୍ୟର ସମ୍ପନ୍ନ ହୋଇଅଛି ।

ହେ ଉତ୍କଳୀୟମାନେ ଯେବେ ପୂର୍ବର ଏ କଥାମାନ ଶୁଣି ନ ଥିଲ ତେବେ ଥରେ ଚିତ୍ତଦେଇ ଶୁଣ

ଆପଣମାନଙ୍କର ହିତକାରୀ ହିତୈଷିଣୀ କେତେ ପରିଶ୍ରମ ଓ ଅନୁସନ୍ଧାନ କରି ଏକଥାମାନ ବାହାର କରିଅଛନ୍ତି ?

*ଭା୪ଗ, ସଂ୧୬ଖ୍ୟା, ୧୬।୪।୧୮୭୦*

## ସାପ୍ତାହିକ ସମ୍ବାଦ

ଗତସପ୍ତାହର ଏଡୁକେଶନ ଗଜେଟ ଲେଖନ୍ତି ଓଡିଶାଦେଶର ଓଡିଆଭାଷା ଉଠାଇଦେଇ ବଙ୍ଗଳାଭାଷା ପ୍ରଚଳିତ କରିବା ବିଷୟରେ ଯେ ଦରଖାସ୍ତ କେତେକ ବଙ୍ଗାଳିମାନେ ପ୍ରତାରଣା କରି କେତେକ ଅଜ୍ଞଲୋକଙ୍କଠାର ଦସ୍ତଖତ କରାଇ ନେଇଅଛନ୍ତି ତାହା ଗବର୍ଣ୍ଣମେଣ୍ଟରେ ପ୍ରଦତ୍ତ ହେବା ନିମିତ୍ତ କଲିକତାକୁ ଯାଇଅଛି । ସେଥିରେ ଏକଶତ ଲୋକଙ୍କର ଦସ୍ତଖତ ହୋଇଥିବାର ସମ୍ପାଦକ ଲେଖନ୍ତି ।

ଏ ଦରଖାସ୍ତ ଗବର୍ଣ୍ଣମେଣ୍ଟ ପାଠ କରିବାମାତ୍ରେ ସେଥିର ଅସାରତା ଓ ଅଯୌକ୍ତିକତା ଜାଣିପାରିବେ ଏବଂ ଉତ୍କଳୀୟମାନେ ଆପଣା ମାତୃଭାଷାକୁ କଦର୍ଯ୍ୟ ବୋଲି ତତ୍ପରିବର୍ତ୍ତନରେ ଏକ ବିଦେଶୀୟ ଭାଷାକୁ ଆପଣାର ଦେଶଭାଷା କରିବା ନିମିତ୍ତ ଏପରି ଉତ୍କଣ୍ଠିତ ହୋଇ ଗବର୍ଣ୍ଣମେଣ୍ଟରେ ଆବେଦନ କରିବାର କିପର୍ଯ୍ୟନ୍ତ ସମ୍ଭବ ତାହା ଜାଣିପାରିବେ । ପୂର୍ବେ କମିଶ୍ନରଙ୍କ ଦ୍ୱାରା ଏ ଦେଶୀୟ ଲୋକମାନେ ଗବର୍ଣ୍ଣମେଣ୍ଟକୁ ପଠାଇଥିବା ଦରଖାସ୍ତ ସଙ୍ଗେ ଏ ଦରଖାସ୍ତକୁ ଆଲୋଚନା କଲାର ଏବଂ ଦରଖାସ୍ତ ବଙ୍ଗଅକ୍ଷରରେ ଛାପା ହୋଇ ସ୍ଥାନୀୟ ହାକିମଙ୍କଠାରେ ଦିଆ ନ ଯାଇ କୌଣସି ପ୍ରଧାନ ବଙ୍ଗାଳିଙ୍କ ହସ୍ତର ପ୍ରାପ୍ତହୋଇ ଲେଫ୍‌ଟେନେଣ୍ଟ ଗବର୍ଣ୍ଣରଙ୍କ ମନରେ କି ଭାବ ଉଦୟ ହେବ ତାହା ଆମ୍ଭମାନଙ୍କର ଲେଖିବାର ଅନାବଶ୍ୟକ ।

*ଭା୪ଗ, ସଂ୧୭ଖ୍ୟା, ୨୩।୪।୧୮୭୦*

## ଓଡିଆ ଓ ବଙ୍ଗଳାଭାଷା

ଏ ବିଷୟରେ ଅନେକ ବାଦାନୁବାଦ ହୋଇଯାଇଅଛି ଓ ଆମ୍ଭେମାନେ ଆପଣା ମତ ଏଥିପୂର୍ବ ପ୍ରକାଶ କରିଅଛୁଁ । କାନ୍ତିଚନ୍ଦ୍ରଭଟ୍ଟାଚାର୍ଯ୍ୟ ରଚିତ "ଓଡିଆ ସ୍ୱତନ୍ତ୍ରଭାଷା ନୁହେଁ" ପୁସ୍ତକ ବିଷୟରେ ଏଡୁକେଶନ ଗେଜେଟ ଯେ ମତ ପ୍ରକାଶ କରିଅଛନ୍ତି ତହିଁର କିଛି ଅଂଶ ବର୍ତ୍ତମାନ ପାଠକମାନଙ୍କ ଗୋଚରାର୍ଥେ ଉଦ୍ଧୃତ କରାଗଲା । ପାଠକମାନେ ଦେଖିବେ ଯେ ଏଡୁକେଶନ ଗେଜେଟ ଆମ୍ଭମାନଙ୍କ ମତର ପୋଷକତା କରିଅଛନ୍ତି । ସମ୍ପାଦକ ବଙ୍ଗଦେଶନିବାସୀ ଶିକ୍ଷାବିଭାଗର ଏକଜଣ ପ୍ରଧାନ କର୍ମଚାରୀ ଏବଂ ପଣ୍ଡିତ ଅଟନ୍ତି ଏବଂ ସ୍କୁଲର ଇନ୍‌ସ୍ପେକ୍ଟର ଥିବାର ନାନା ସ୍ଥାନର ଭାଷା ତାହାଙ୍କୁ ଜଣାଅଛି ଓ ସେ ଓଡିଆର ପକ୍ଷପାତୀ ହେବାର କିଛିମାତ୍ର କାରଣ ନାହିଁ ଏପରି ଅବସ୍ଥାରେ ତାହାଙ୍କ ମତ ଯେ ସର୍ବସାଧାରଣର ଗ୍ରହଣୀୟ ହେବ ଏଥିରେ କିଛିମାତ୍ର ସନ୍ଦେହ ନାହିଁ ସମ୍ପାଦକଙ୍କ ନିଷ୍ପକ୍ଷପାତ ବିବେଚନାରେ ଆମ୍ଭେମାନେ ବିଶେଷ ସନ୍ତୁଷ୍ଟ ହୋଇଅଛୁଁ । ଓଡିଶାରେ ସମ୍ପ୍ରତି ଯେଉଁ ବଙ୍ଗାଳିମାନେ ଅଛନ୍ତି ସେମାନଙ୍କ ବ୍ୟବହାରର ଏପରି ମତ ବଙ୍ଗଦେଶୀୟ ଏକ ପ୍ରଧାନ ସମ୍ବାଦପତ୍ରରେ ପ୍ରକାଶ ହେବ ଏହା ଆମ୍ଭମାନଙ୍କର ଆଶା ନ ଥିଲା ଏଡୁକେଶନଗେଜେଟ ସମ୍ପାଦକ ଏହି ନିଷ୍ପକ୍ଷପାତ କାର୍ଯ୍ୟ ଦ୍ୱାରା ଓଡିଶାବାସିମାନଙ୍କର ପ୍ରଶଂସା ଓ ଧନ୍ୟବାଦର ଭାଜନ ହୋଇଅଛନ୍ତି ସନ୍ଦେହ ନାହିଁ ।

ଉଦ୍ଧୃତ

ଫଳତଃ ଆମ୍ଭମାନଙ୍କ ବିବେଚନାରେ ସେ ଯେଉଁ ପ୍ରଣାଳୀରେ "ଓଡିଆ ସ୍ୱତନ୍ତ୍ରଭାଷା ନୁହେ" ପ୍ରମାଣ କରିଅଛନ୍ତି ସେ ପ୍ରଣାଳୀ ଅବଲମ୍ବନ କଲେ କେବଳ ଓଡିଆ କାହିଁକି ହିନ୍ଦୀ ମଧ୍ୟ ସ୍ୱତନ୍ତ୍ରଭାଷା ନୋହେ ଏ କଥାର ସପ୍ରମାଣ ହୋଇପାରେ । ବଙ୍ଗଳା ଏବଂ ଓଡିଆ ଭାଷାରେ ଯେପରି ଅନେକ ମେଳ ଅଛି ହିନ୍ଦୀ ଏବଂ ବଙ୍ଗଳାରେ ମଧ୍ୟ ସେହିପରି ମେଳ ଦେଖାଯାଏ । ହିନ୍ଦୀଭାଷାରେ ଅତି ପ୍ରସିଦ୍ଧ ପ୍ରେମସାଗର ଓ ତୁଳସୀଦାସକୃତ ରାମାୟଣର କିଛି କିଛି ଉଦ୍ଧୃତ କରିଦେଲୁଁ ପାଠକବର୍ଗ ବିଚାରକରି ଦେଖିବେ ।

"ଯାମଲାର୍ଜ୍ଜୁନ ବୋଲେ ଦୀନନାଥ ଇହ ନାରଦଜୀକୀ କୃପାହେ ଯୋଆପକେ ଚରଣ ପରଶେ ଅଓର

ଦରଶନ କିୟା” । ଏକାଦଶ ଅଧ୍ୟାୟ ।

"ଭଯେପ୍ରଗଟ କୃପାଲା ଦୀନଦୟାଲା କୌଶଲା ହିତକାରୀ । ହରଷିତ ମହତାରୀ ମନିମନୋହାରୀ ଅଦ୍ଭୁତରପ ନିହାରୀ । ଅଭିରାମା ତନୁ ଘନଶ୍ୟାମା ନିଜଆୟୁଚାରୀ । ଭୁଷଣବନମାଲା ନୟନ ବିଶାଲା ସିନ୍ଧୁ ଖରାରୀ ।

ଭାରତଚନ୍ଦ୍ରଙ୍କର ଏକ ଏକ ସ୍ଥଳରେ ମଧ୍ୟ ଯେପରି ହିନ୍ଦୀ ରଚନା ଅଛି ସମସ୍ତେ ସେ ହିନ୍ଦୀରଚନା ବୁଝିପାରନ୍ତି । ବସ୍ତୁତଃ ଶ୍ରୀଯୁକ୍ତ କାନ୍ତିଭଟ୍ଟାଚାର୍ଯ୍ୟଙ୍କ ଅବଲମ୍ବିତ ବିଚାରପଦ୍ଧତି କି ଯେବେ ସତ୍ପଦ୍ଧତି ବୋଲି ବିବେଚନା କରାଯାଏ ତେବେ ଯେପରି ଓଡିଶାଦେଶରେ ବଙ୍ଗଳା ପ୍ରଚଳିତ ହେବା ଉଚିତ ବୋଲି ପ୍ରତିପନ୍ନ ହୋଇଅଛି ସେହିପରି ବଙ୍ଗଳା ଓ ଓଡିଶା ଉଭୟ ଦେଶରେ ହିନ୍ଦୀ ପ୍ରଚଳିତ ହେବା ଉଚିତ ବୋଲି ପ୍ରତିପନ୍ନ ହୋଇପାରେ । ଅଥବା ସମୁଦାୟ ଆର୍ଯ୍ୟାବର୍ତ୍ତରେ ଏକ ବଙ୍ଗଭାଷା, ବା ଏକ ଓଡିୟାଭାଷା, ବା ଏକ ଆସାମୀଭାଷା, କିମ୍ବା ଏକ ହିନ୍ଦୀଭାଷା ପ୍ରଚଳିତ ହେବା ଉଚିତ ବୋଲି ମଧ୍ୟ ପ୍ରତିପନ୍ନ ଶ୍ରୀଯୁକ୍ତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ନିମିତ୍ତ **xxxx** ଯବେ ଅବଲମ୍ବନ କରି ବିଚାର କଲେ ନାନାବିଧ ପରସ୍ପର ବିରୋଧଧର୍ମଶୀଳ ସିଦ୍ଧାନ୍ତ ଆସି ଉପସ୍ଥିତ ହୁଅଇ ଏହି ମାତ୍ର ।

ସେ ଯେଉଁସ୍ଥଳେ ଓଡିୟା ଓ ବଙ୍ଗଳା ମେଳ ଦେଖିଅଛନ୍ତି ସେସ୍ଥଳେ ଦୁହିଁଙ୍କି ବଙ୍ଗଳା ବୋଲିଅଛନ୍ତି । ଯେଉଁସ୍ଥଳେ ଭିନ୍ନରପ ଦେଖିଅଛନ୍ତି ସେସ୍ଥଳରେ ଓଡିୟାକୁ ବିଶୁଦ୍ଧ ବଙ୍ଗଳାର ଅପଭ୍ରଂଶ ବୋଲିଅଛନ୍ତି । ଏହି କି ବିଚାରର ରୀତି ? ଯେଉଁସ୍ଥଳରେ ଦୁହିଙ୍କର ମେଳ ସେସ୍ଥଳରେ ବଙ୍ଗଳା କାହିଁକି ଓଡିୟା ହେଲା ନାହିଁ ଯେଉଁସ୍ଥଳେ ମେଳ ନ ହେଲା ସେସ୍ଥଳେ ବଙ୍ଗଳା କାହିଁକି ବିଶୁଦ୍ଧ ଓଡିୟାର ଅପଭ୍ରଂଶ ନ ହେଲା ? ଏହି ଅପଭ୍ରଂଶ ଶବ୍ଦମାତ୍ର ମହାଅନର୍ଥକର । କିଏ କାହାର ଅପଭ୍ରଂଶ କି ନା ଏହା ବିଚାର କରା ଆବଶ୍ୟକ ଥିଲା । ଆଗେ ଯେବେ ଏକଭାଷାର ଶବ୍ଦ ଅପରର ଅପଭ୍ରଂଶ ବୋଲି ନିର୍ଦ୍ଦେଶିତ ହେଲା ତେବେ ଏତେ ବିଚାରର କି ଆବଶ୍ୟକ ଥିଲା ? ଏପରି ଯାଚିତ ପୂର୍ବପକ୍ଷ ହୋଇ ବିଚାର କଲେ ସକଳ ବିଷୟରେ ମଧ୍ୟ ମନୋମତ ରପ ସିଦ୍ଧାନ୍ତ ଲାଭ କରା ଯାଇପାରେ ।

ବସ୍ତୁତଃ ଓଡିୟା ଓ ବଙ୍ଗଳାର ଅପଭ୍ରଂଶ ନୋହେ ଏବଂ ବଙ୍ଗଳା ମଧ୍ୟ ଓଡିୟାର ଅପଭ୍ରଂଶ ନୋହେ । ବଙ୍ଗଳା, ଓଡିୟା ଓ ଆସାମୀ· ମୂଳର ସମୁତ୍ପନ୍ନ ଏକ ବୃକ୍ଷର ଭିନ୍ନ ଭିନ୍ନ ଶାଖାସ୍ୱରପ ଏକ ପ୍ରସୂତିର ଭିନ୍ନ ଭିନ୍ନ ସନ୍ତତି ମାତ୍ର । ମୂଳବୃକ୍ଷ କାଳସହକାରରେ ଲୋପ ପାଇଅଛି ଶାଖାଗଣ ଆପଣା ଆପଣା ଅନ୍ତର୍ନିହିତ ଶକ୍ତିପ୍ରଭାବରେ ପରସ୍ପରର ନିରପେକ୍ଷ ହୋଇ ପ୍ରାଣ ଧାରଣ କରଅଛନ୍ତି । ଏମାନଙ୍କୁ ବଳପୂର୍ବକ ଏକଶରୀରରେ ପରିଣତ କରିବାକୁ ଚେଷ୍ଟା କଲେ ବୃଥା ପ୍ରଯତ୍ନ ହେବେ । ଜୀବସ୍ରୋତଃ ଯେ ସିଧା ହୋଇ ପ୍ରବାହିତ ହେଉଅଛି ତାହା ଆଉ ମିଳିବାର ନୋହେ । ସେ ମିଳିବାର ସମୟ ଯାଇଅଛି । ଯେବେ ବଙ୍ଗଳା ଏବଂ ଓଡିୟା ମିଳିଯିବାର ହୋଇଥାନ୍ତା ଏମାନଙ୍କର ଶୈଶବାବସ୍ଥାରେ ସେ ମେଳ ଘଟିଥାନ୍ତା । ବର୍ତ୍ତମାନ ଏ ଦୁହେଁ ସମଧିକ ପରିପୁଷ୍ଟ ଓ ସ୍ୱାଧୀନଭାବରେ ପ୍ରାଣଧାରଣର ଉପଯୋଗୀ ଅଙ୍ଗ ପ୍ରତ୍ୟଙ୍ଗ ଭୂଷିତ ହୋଇଅଛନ୍ତି । ଏତେବେଳେ ଏମାନଙ୍କର ତାହାକୁ ବଳପୂର୍ବକ ଅଦାଲତ ଓ ବିଦ୍ୟାଳୟମାନଙ୍କର ଦୂରୀଭୂତ କଲେ ଲୋପ ପାଇବ ନାହିଁ ପ୍ରଭୃତ ଅଦାଲତ ଓ ବିଦ୍ୟାଳୟରେ ଚଳପ୍ରଚଳିତ ଭାଷାର କ୍ରମେ ଅବନତି ହେବ । ଆମ୍ଭେମାନେ ଆସାମର ଅଦାଲତରେ ପ୍ରଚଳିତ ବଙ୍ଗଭାଷା ଦେଖିଅଛୁଁ ଉଡିଶ୍ୟାର ଅଦାଲତରେ ପ୍ରଚଳିତ ବଙ୍ଗଭାଷା ମଧ୍ୟ ଦେଖିଅଛୁଁ ।

କି କାରଣର ଭାଷା ପୃଥକ୍ ପୃଥକ୍ ହୋଇପଡେ ଶ୍ରୀଯୁକ୍ତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ସଂକ୍ଷେପରେ ତାହା ଉଲ୍ଲେଖ କରିଅଛନ୍ତି । ସେ ସମସ୍ତ କାରଣର ମୂଳକାରଣ ଏହି, ଭିନ୍ନ ଭିନ୍ନ ପ୍ରଦେଶୀୟ ଲୋକଙ୍କର ପରସ୍ପର ମିଳନର ଅସଦ୍ଭାବ । ଯେଉଁ କାରଣର ପରସ୍ପର ମିଳନର ଅସଦ୍ଭାବ ହୁଅଇ ଭିନ୍ନ ରାଜାଧିକାର ଓ ଭିନ୍ନ ପ୍ରାକୃତିକ ଅବସ୍ଥାର ସେହି କାରଣ । ଭିନ୍ନ ରାଜାଧିକାର ଓ ପ୍ରାକୃତିକ ଅବସ୍ଥା ହେଲେ ଜନସାଧାରଣ ମଧ୍ୟରେ ମନୋବୃତ୍ତି ଚାଳନାର ପ୍ରଣାଳୀ ମଧ୍ୟ ଭିନ୍ନ ହୋଇ ପଡେ, ଉଭୟ ଦେଶ ଭଦ୍ରସମାଜର ଭାବ ପୃଥକ୍ ହୋଇଯାଏ ନୂତନ ନୂତନ କାବ୍ୟ ଗ୍ରନ୍ଥାଦିର ପ୍ରଚାର ହେଉଥାଏ, ପ୍ରଥମ ବିଚ୍ଛେଦ ସମୟରେ ଯେ ଯତ୍‌କିଞ୍ଚିତ୍ ପ୍ରଭେଦ ଲକ୍ଷିତ

ହୁଅନ୍ତା କାଳରେ ତାହା ବହୁମୁଖ ହେବାର ଉଭୟ ପ୍ରଦେଶୀୟ ଭାଷା ସମ୍ୟକ୍ ମୂର୍ତ୍ତି ଧାରଣ କରେ । ଯେଉଁ ପରିମାଣରେ ଏହି ସମସ୍ତ କାରଣ ପ୍ରବଳ ଥାଏ ସେହିପରିମାଣରେ ଭାଷା ବିଚ୍ଛେଦ ଘଟିଉଠେ ଏହିରପ ଭାଷାଭେଦ କିୟଦ୍ଦୂର ବର୍ଦ୍ଧିତ ହେଲେ ତାହାର ଆଉ ପୁନର୍ମିଳନର ସମ୍ଭାବନା ରହି ନ ପାରେ । ତେବେ ଏକର ଉଚ୍ଛେଦରେ ଅପର ସଂସ୍ଥାପନର ସମ୍ଭାବନା ଥାଏ ସତ୍ୟ କିନ୍ତୁ ଯେ ସମସ୍ତ କାରଣରେ ଏତାଦୃଶ ଭାଷାବୈଚିତ୍ର୍ୟ ଘଟିଥିଲା କେବଳ ତାହାର ଅସଦ୍ଭାବ ଘଟାଇଲେ ଯେ କାହାରି ଉଚ୍ଛେଦ ଘଟିପାରେ ଏମନ୍ତ ନୋହେ ତାହାର ବିପରୀତ କାରଣର ସଦ୍ଭାବ ଘଟିଲେ ତାଦୃଶ ଉଚ୍ଛେଦ ସଂସ୍ଥାପନର ସମ୍ଭାବନା ଅର୍ଥାତ୍ ଏକର କର୍ତ୍ତୃକ ଅପରର ଉପରେ ରାଜାଧିକାର ସଂସ୍ଥାପନା ଉଭୟ ପ୍ରଦେଶ ଭଦ୍ରସମାଜର ସମ୍ୟକ୍ ସମ୍ମିଳନ । ଏକପ୍ରଦେଶରେ ଅସାଧାରଣ ଗୁଣସମ୍ପନ୍ନ କାବ୍ୟ ରଚନାଦିର ପ୍ରଚାର ଅପର ପ୍ରଦେଶରେ ତାହାର ସମ୍ୟକ୍ ଅସଦ୍ଭାବ ଇତ୍ୟାଦି କାରଣରେ କ୍ରମଶଃ ଏକର ଉଚ୍ଛେଦ ହୋଇ ଅପରର ସଂସ୍ଥାପନାର ସମ୍ଭାବନା । କିନ୍ତୁ ଏରପ କାରଣର ସଦ୍ଭାବ ବଙ୍ଗଳା ଓ ଓଡିଶା ମଧ୍ୟରେ କେଉଁଠାରେ ? ଯେବେ ଆମ୍ଭେମାନେ କଟକରେ ଯାଇଁ ରାଜା ହୋଇପାରନ୍ତୁ ତାହା ହେଲେ କାଳରେ ଉଡିଶ୍ୟାରେ ବଙ୍ଗଭାଷା ଚଳିପାରିବାର ସମ୍ଭାବନା ଥିଲା ଏବଂ ସେଥି ନିମିତ୍ତ ଆମ୍ଭମାନଙ୍କର ଉଡିଶ୍ୟାଦେଶୀୟ ଅଦାଲତ ଓ ବିଦ୍ୟାଳୟର ଭାଷା ବଳପୂର୍ବକ ପରିବର୍ତ୍ତିତ କରିବାର ଆବଶ୍ୟକ ହୁଅନ୍ତା ନାହିଁ ।

*ଉ.ଦୀ, ସଂ୧୮ଖ୍ୟା, ୩୦।୪।୧୮୭୦*

## କଟକ ହାଇସ୍କୁଲର ପାରିତୋଷିକ ଦାନ ସଭା ।

ଗତ ଶନିବାର ବେଳ ୫ ଘଣ୍ଟା ସମୟରେ କଟକ ହାଇସ୍କୁଲରେ ଏ ସଭା ହୋଇଥିଲା କେତେ ବର୍ଷ ହେଲା ପାରିତୋଷିକ ଦାନ ଉପଲକ୍ଷରେ ବୃହତ୍ ସଭା ଅନେକାଂଶରେ ପୂର୍ବ ସଭାମାନଙ୍କର ନିକୃଷ୍ଟ ହୋଇଥିଲା । ଏହାର କାରଣ କି ବୋଲାଯାଇ ନପାରେ । ପ୍ରକାଶ୍ୟରେ ଦେଖାଯାଏ ଯେ ପୂର୍ବପ୍ରାୟ ଛାପା ନିମନ୍ତ୍ରଣ ପତ୍ର ପ୍ରେରିତ ନ ହେବାର ବହୁତ ଲୋକ ଆସିଲେ ନାହିଁ । ଇଂରାଜଙ୍କ ମଧ୍ୟରେ ସଭାପତି ରାବନସା ସାହେବ ଓ ସଭାପତି ଟଏନବୀ ସାହେବ ଓ କେବଳ ଟେଷ୍ଟ୍ରେ ସାହେବ ଆଶିଷ୍ଟାଣ୍ଟ ଆସିଥିଲେ ଓ ଦେଶୀୟ ଲୋକଙ୍କ ମଧ୍ୟରେ ଢେଙ୍କାନାଳ ମହାରାଜ ଓ ଆଠଗଡ ଓ ବଳରାମପୁରର ରାଜା ଓ ନଗରବାସୀ କେତେକ ସମ୍ଭ୍ରାନ୍ତ ଜମିଦାର ଓ ସରକାର କର୍ମକାରକମାନେ ଉପସ୍ଥିତ ଥିଲେ ।

ସଭାପତି ରାବନସା ସାହେବ କାର୍ଯ୍ୟାରମ୍ଭ କରି ସ୍କୁଲର ବର୍ଷିକ ବିଜ୍ଞାପନୀ ପାଠକଲେ ।

x x x x x x x x x x x x x

x x x x x x x x x x x x x

ବଙ୍ଗାଳି ଓ ଓଡିଆ ମଧ୍ୟରେ ଭାଷା ବିଷୟରେ ଯେଉଁ ବିବାଦ ବା ଦଳାଦଳୀ ଉପସ୍ଥିତ ହୋଇଅଛି ତହିଁର ଉଲ୍ଲେଖ କରି ଅନେକ ଖେଦ ପ୍ରକାଶ କରି କହିଲେ ଯେ ଏକଥା ବଡ ମନ୍ଦ ହୋଇଅଛି । ସେ ଏମନ୍ତ ଚାହାନ୍ତି ନାହିଁ ଯେ ଏଠାରେ ବଙ୍ଗାଳିଙ୍କୁ ନତ କରି ଉତ୍କଳୀୟଙ୍କର ଟେକ ବଢାଇବେ ମାତ୍ର ତାହାଙ୍କର ଏହି ଇଚ୍ଛା ଯେ ବଙ୍ଗାଳୀ ଓ ଉତ୍କଳୀୟମାନେ ପରସ୍ପରକୁ ସାହାଯ୍ୟ ହୋଇ ଏ ଦେଶର ଉନ୍ନତିର ଚେଷ୍ଟା କରନ୍ତୁ । ଐକ୍ୟତା ଯେ କେତେ ଭଲ ତାହା କହିବାର ଅଧିକ । କୁଟା ଖଣ୍ଡିଏ ଅନାୟାସରେ ନଖରେ ଛିଡିଯାଏ ମାତ୍ର କେତେଖଣ୍ଡ କୁଟା ଏକାଠି ବଳି ଦେଲେ ତହିଁରେ ପଥର ଝୁଲାଇଲେ ଛିଡଇନାହିଁ ଏହିପରି ଏକଦୃଷ୍ଟାନ୍ତ ଦ୍ୱାରା ଐକ୍ୟତାର ଗୁଣ ସର୍ବସାଧାରଣଙ୍କୁ ଜଣାଇଲେ ।

ବକ୍ତୃତା ଶେଷ ହେଲାର ସାହେବଙ୍କ ଅନୁରୋଧ କ୍ରମେ ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀ ତହିଁର ମର୍ମ ଅତି ସଂକ୍ଷେପରେ ଉତ୍କଳଭାଷାରେ ବ୍ୟାଖ୍ୟା କଲେ ।

ପରିଶେଷରେ ପିଲାମାନେ ଇଂରାଜୀ, ସଂସ୍କୃତ, ବଙ୍ଗଳା ଓ ଓଡିଆରେ ଏକ ଏକ ପୁସ୍ତକର ଉତ୍କୃଷ୍ଟାଂଶମାନ ମୁଖସ୍ତ କରିଥିଲେ ପାଠ କରି ସଭ୍ୟମାନଙ୍କର ହର୍ଷ ବର୍ଦ୍ଧନ କଲେ ମାତ୍ର ଯେଉଁ ଯୋଡିଏ ଉତ୍କଳଛାନ୍ଦ ପଠିତ ହେଲା

ତାହା ଉତ୍ତମ ନ ଥିଲା ଭଲପୁସ୍ତକର ବାଛି ଦେଇଥିଲେ ଦର୍ଶକଙ୍କର ଆମୋଦ ବଢିଥାନ୍ତା ମାତ୍ର ଉତ୍କଳଭାଷାର ସପକ୍ଷ କିଏ ଥିଲା ଯେ ଏ ଭାଷାପ୍ରତି କେତେ ସୁବିଚାର କରନ୍ତା ।

ଏହିରପେ ସଭାରକାର୍ଯ୍ୟ ନିର୍ବାହ ହେଲା ମାତ୍ର ସଭ୍ୟମାନଙ୍କର ଉତ୍ସାହ କିଛିମାତ୍ର ଜଣାଗଲା ନାହିଁ ଅନ୍ୟାନ୍ୟବର୍ଷରେ ଏଦିନ ଗବର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ପୁରସ୍କାର ଛଡା ସଭ୍ୟମାନେ ଜଣକେ ଦଶ କୋଡିଏ ଟଙ୍କାର ପୁସ୍ତକ କ୍ରୟ କରି ପାରିତୋଷିକ ଦେଉଥିଲେ ଏଥିରେ ଛାତ୍ରମାନଙ୍କର ବିସ୍ତର ଉତ୍ସାହ ବଢୁଥିଲା ଓ ପୁସ୍ତକ ବିକ୍ରେତା ମଧ୍ୟ ସେଦିନ ସହଜରେ ଦଶଟଙ୍କା ଲାଭ କରଥିଲେ ଓ ଦର୍ଶକମାନେ ଦେଖି ବିଦ୍ୟାଶିକ୍ଷା ପ୍ରତି ଉତ୍ସାହ ଦେବାର କର୍ତ୍ତବ୍ୟତା ବୁଝୁଥିଲେ । ସେ ସବୁ କିଛି ହେଲା ନାହିଁ । ଯାହା ହେଉ ଭବିଷ୍ୟତକୁ ଏଭାବ ସଭ୍ୟମାନେ ନ ରଖିଲେ ଭଲ ହେବ । ଏକା ଢେଙ୍କାନାଳ ମହାରାଜ ଆଇନଶିକ୍ଷା ସାହାଯ୍ୟ ନିମିତ୍ତ ଟ୫୦ଙ୍କା ଦେବାପାଇଁ ସ୍ୱୀକାର କରିଅଛନ୍ତି ।

*ଭା୫ଗ, ସଂ୨୩ ଖ୍ୟା, ୪।୬।୧୮୭୦*

## କଟକ ନର୍ମ୍ୟାଲ ସ୍କୁଲ ।

ଗତସପ୍ତାହ ଶୁକ୍ରବାର ଏହି ସ୍କୁଲର ବାର୍ଷିକ ପାରିତୋଷିକ ଦାନ ଉପଲକ୍ଷରେ ଉକ୍ତସ୍କୁଲଗୃହରେ ସଭା ହୋଇଥିଲା ସେଥିରେ ଶ୍ରୀଯୁକ୍ତ ରାବନସା ସାହେବ ଓ ପାଦ୍ରୀ ବକଲିସାହେବ ଏ ଦୁଇଜଣ ଇଂରାଜ ଏବଂ କେତେକ ଜଣ ଦେଶୀୟ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଉପସ୍ଥିତ ଥିଲେ । ଶ୍ରୀଯୁକ୍ତ ରାବନସା ସାହେବ ସଭାପତି ସ୍ୱରପ କାର୍ଯ୍ୟ ଆରମ୍ଭକରି ପରୀକ୍ଷୋତ୍ତୀର୍ଣ୍ଣ ବାଳକଙ୍କୁ ପାରିତୋଷିକ ପୁସ୍ତକମାନ ଦେଲାଉତ୍ତାର ଅବଧାନଶ୍ରେଣୀରେ ଅଧ୍ୟୟନ କରଥିବା ଛାତ୍ରମାନଙ୍କୁ ସମ୍ମୁଖରେ ବସାଇ ସଂକ୍ଷେପରେ ସେମାନଙ୍କୁ କହିଲେ ଯେ ସ୍କୁଲର ବାର୍ଷିକ ବିଜ୍ଞାପନୀ ପଢି ସେ ଅତିଶୟ ସନ୍ତୁଷ୍ଟ ହେଲେ ଓ ସେମାନେ ମାତୃଭାଷା ଶିକ୍ଷା କରିବାକୁ ଯତ୍ନବାନ୍ ହୋଇଅଛନ୍ତି ଆନନ୍ଦର ବିଷୟ । ମାତୃଭାଷା ସକଳଶିକ୍ଷାର ମୂଳ ଅଟଇ ଏହାକୁ ଆଗେ ଶିଖିଲାଠାର ପଛେ ଯାହା ଇଚ୍ଛା ଶିକ୍ଷା କରନ୍ତୁ । ସମ୍ପ୍ରତି ଯେଉଁ ଉନ୍ନତ ପ୍ରଣାଳୀରେ ଶିକ୍ଷା ଦିଆଯାଉଅଛି ସେହିସବୁ ଶିକ୍ଷା କରି ମୋଫସଲରେ ତଦନୁସାର ଶିକ୍ଷା ଦେବାପାଁଇ ଗବର୍ଣ୍ଣମେଣ୍ଟ ଏତେ ବ୍ୟୟ ସ୍ୱୀକାରକରି ନର୍ମ୍ୟାଲସ୍କୁଲ ସ୍ଥାପନ କରିଅଛନ୍ତି । ତାହା ଯେରପେ ବ୍ୟର୍ଥ ନ ହୁଅଇ ସେରପ କରିବାକୁ ହେବ । ଅବଧାନମାନେ ଯେମନ୍ତ ଶିକ୍ଷା ଲାଭକରିବେ ତେମନ୍ତ ସୁନୀତି ବିଷୟରେ ମଫସଲ ବାସିଙ୍କ ଆଦର୍ଶ ସ୍ୱରପ ହେବେ । ସଚ୍ଚରିତ୍ର ବ୍ୟକ୍ତିଠାରେ ସ୍ୱଭାବତଃ ଭକ୍ତି ହୁଅଇ ଓ ତାହାଠାର ଉପଦେଶ ଗ୍ରହଣକରିବାକୁ ଲୋକେ ବ୍ୟଗ୍ର ହୁଅନ୍ତି ଇତ୍ୟାଦି କେତେ କଥା ଇଙ୍ଗ୍ରାଜୀରେ କହିଲେ ଓ ବାବୁ ପ୍ୟାରୀମୋହନ ସେନ ତାହା ଓଡିଆରେ ଅନୁବାଦକରି ବ୍ୟକ୍ତକଲେ ତଦୁତ୍ତାର ବାଳକମାନଙ୍କ ମଧ୍ୟର କେହି ସଂସ୍କୃତ କେହି ଓଡିୟା ଓ କେହି ବଙ୍ଗଳା ଯେ ଯାହା ଶିକ୍ଷା କରିଥିଲେ ପାଠକଲେ । ଏଥିରେ ଦର୍ଶକମାନେ କେତେ ସନ୍ତୁଷ୍ଟ ହୋଇଅଛନ୍ତି ବୋଲାଯାଇ ନ ପାରେ । ସଂସ୍କୃତ ସମସ୍ତଙ୍କର ବୋଧଗମ୍ୟ ନ ହେବାର ସେଥିରେ ବଡ ହର୍ଷ ଜାତ ହେଲା ନାହିଁ ମାତ୍ର ଓଡିୟା ଓ ବଙ୍ଗଳାରେ ବିଶେଷତଃ ଓଡିଆଛାନ୍ଦ ଗାୟନରେ ବଡ ଆନନ୍ଦ ଜାତହେଲା ଓ ବାବୁ ଜଗନ୍ମୋହନ ରାୟ ଟ୫ ଓ ବାବୁ ରାଧାଶ୍ୟାମନରେନ୍ଦ୍ର ଟ୧୦ଙ୍କା ପାରିତୋଷିକ ଦେବାର ତାହା ପାଠକରିବା ବ୍ୟକ୍ତିଙ୍କୁ ବଣ୍ଟନ କରିଦିଆଗଲା । ଏଭିନ୍ନ ବାବୁ ସୁଦର୍ଶନ ଦାସ ଟ୫ଙ୍କା ପାରିତୋଷିକ ପଠାଇଥିଲେ ତାହାଙ୍କ ଅଭିପ୍ରାୟାନୁସାରେ ଅଙ୍କବିଦ୍ୟାରେ ସର୍ବାପେକ୍ଷା ଶ୍ରେଷ୍ଠ ବାଳକକୁ ସେ ଟଙ୍କା ଦିଆଗଲା । ପରିଶେଷରେ ଶ୍ରୀ ବକଲିସାହେବ ଦେଶୀୟଭାଷା ଶିକ୍ଷା ଆବଶ୍ୟକତା ବିଷୟରେ ଗୋଟିଏ ସୁନ୍ଦର ବକ୍ତୃତା କଲାଉତ୍ତାର ସଭା ଭଙ୍ଗ ହେଲା ।

ଆମ୍ଭେମାନେ ସଭାର କାର୍ଯ୍ୟ ଦେଖି ଅତିଶୟ ଆନନ୍ଦିତ ହେଲୁଁ । ନର୍ମ୍ୟାଲସ୍କୁଲର ଏହି ପ୍ରଥମ ବାର୍ଷିକ ସଭା ଓ ଏଥିରେ ସଭ୍ୟମାନେ ଯେରପ ଉତ୍ସାହ ପ୍ରଦର୍ଶନ କଲେ ସେଥିର ବୋଧ ହୁଅଇ ଯେ ଏ ବିଦ୍ୟାଳୟର ଉପଯୋଗିତା ତାହାଙ୍କର ହୃଦୟଙ୍ଗମ ହୋଇଅଛି । ବିଶେଷରେ ଛାତ୍ରମାନଙ୍କ ମୁଖସ୍ଥ ପାଠ କାରଣ ଯେଉଁ କବିତାମାନ ବଛା ହୋଇଥିଲା ଓ ସେସବୁ ସେମାନେ ଯେମନ୍ତ ପାଠ କଲେ ତାହା ସର୍ବାଂଶରେ ଉତ୍ତମ ହୋଇଥିବାର ଦର୍ଶକମାନଙ୍କର

ମନ ଦୃଢରପେ ଆକୃଷ୍ଟ ହେଲା ଓ ସଭା ଉତ୍ତମ ହୋଇଥିଲା ବୋଲି ସମସ୍ତେ ପ୍ରଶଂସା କଲେ । ଓଡିଆଭାଷାକୁ ଉଠାଇବାସକାଶେ ଯେତେ ଉପାୟ ହେଉଅଛି ଏ ଭାଷାର ସେଥିରେ କ୍ଷତି ନ ହୋଇ ଦିନ ଦିନ ବୃଦ୍ଧି ହେଉଅଛି । ଓଡିଆ ଛାନ୍ଦଗୀତ ସ୍କୁଲରେ ପାଠ ହେବ ଏହା କେବେ କାହାରି ମନରେ ପ୍ରବେଶ କରି ନ ଥିଲା ଓ ବାସ୍ତବରେ ସେଦିନ ଯେତେବେଳେ ଜଣେ ତାହା ପାଠ ଆରମ୍ଭ କଲା କେତେଲୋକ ହାସ୍ୟ କରିବାକୁ ଉଦ୍ୟତ ହେଲେ ମାତ୍ର ଶୀଘ୍ର ସମସ୍ତଙ୍କର ମନ ଫେରିଗଲା ଓ କେବଳ ଆନନ୍ଦିତ ହୋଇ ଶୁଣିଲେ ଏମନ୍ତ ନୁହେ ପାଠକଙ୍କୁ ପ୍ରଶଂସା କଲେ ।

*ଭାଦୀ, ସଂ୨୫ ଖ୍ୟା, ୧୮।୬।୧୮୭୦*

## ଶିକ୍ଷାକର ଓ ଉଚ୍ଚଶିକ୍ଷା ।

ଚଳିତମାସ ତା୧ ୭ରିଖର ଡେଲିନିୟସର ଅବଗତ ହେଲୁଁ ଯେ ଶିକ୍ଷାଦାନ ନିମିତ୍ତ ଯେଉଁ କର ବସାଇବାକୁ ଗବର୍ଣ୍ଣମେଣ୍ଟ ପ୍ରସ୍ତାବ କରିଥିଲେ ସେଥିରେ ବିଲାତର ଗବର୍ଣ୍ଣମେଣ୍ଟ ସମ୍ମତି ପ୍ରଦାନ କରିଅଛନ୍ତି । ଏ କର ବସାଇବାହେତୁ ପାଠକମାନେ ପୂର୍ବର ଜାଣନ୍ତି । କେବଳ ପୂର୍ବ ପ୍ରସ୍ତାବ ପରି ଜମିଦାରଙ୍କଠାର ଆଦାୟ ହେବ କି ସକଳ ଶ୍ରେଣୀର ଲୋକଙ୍କଠାର ଗୃହୀତ ହେବ ଜାଣିବାର ପ୍ରୟୋଜନ ମାତ୍ର ସେସବୁ ବୃତ୍ତାନ୍ତ ଅବଧି ପ୍ରକାଶ ହୋଇ ନାହିଁ କରଦ୍ୱାରା ଯେତେ ଟଙ୍କା ଆଦାୟ ହେବ ସେଥିରେ ଇତରଶ୍ରେଣୀର ଲୋକମାନଙ୍କୁ  ଦେଶୀୟଭାଷାରେ ଶିକ୍ଷା ପ୍ରଦାନ ହେବ । ବର୍ତ୍ତମାନ ଏ ବିଷୟରେ ଯାହା ରାଜକୋଷର ବ୍ୟୟ  ହେଉଅଛି ସେଥିର ପ୍ରୟୋଜନ ପ୍ରାୟ କାର୍ଯ୍ୟ ହେଉ ନାହିଁ ଓ ଗବର୍ଣ୍ଣମେଣ୍ଟର ଅବସ୍ଥା ମନ୍ଦ ଥିବାର ଆଉ ଧନ ଦେଇ ନ ପାରନ୍ତି । ଏଣେ ଉଚ୍ଚଶିକ୍ଷା ଦେବାରେ ଗବର୍ଣ୍ଣମେଣ୍ଟ ଯେତେ ବ୍ୟୟ କରଅଛନ୍ତି ତାହା ଲାଭ କରିବାର ଚେଷ୍ଟା ହେଉଅଛି । ଗବର୍ଣ୍ଣମେଣ୍ଟ ଇଣ୍ଡିୟାର ବିଶ୍ୱାସ ଏହି ଯେ ସରକାରୀ କଲେଜ ଓ ସ୍କୁଲମାନଙ୍କରେ କେବଳ ଧନବାନ୍ ଲୋକଙ୍କ ପୁତ୍ରମାନେ ପାଠକରନ୍ତି ଓ ସେମାନଙ୍କ ସକାଶେ ଗବର୍ଣ୍ଣମେଣ୍ଟର ଏତେ ବ୍ୟୟ କରିବାର ପ୍ରୟୋଜନ କି ? ଅତଏବ ସ୍ଥିର କରିଅଛନ୍ତି ଯେ ଗବର୍ଣ୍ଣମେଣ୍ଟ ଇଙ୍ଗରାଜ ସ୍କୁଲ ଓ କଲେଜମାନଙ୍କରେ ଛାତ୍ରମାନଙ୍କଠାର ଏମନ୍ତ ବେତନ ଗୃହୀତ ହେବ ଯେ ସେଥିର ଉକ୍ତ ପ୍ରକାର ବିଦ୍ୟାଳୟମାନଙ୍କର ସମସ୍ତ ବ୍ୟୟ ନିର୍ବାହ ହେବ ଆଉ ଗବର୍ଣ୍ଣମେଣ୍ଟଙ୍କୁ କିଛି ଦେଣ ପଡିବ ନାହିଁ । ଏଥିର ଗବର୍ଣ୍ଣମେଣ୍ଟର ଏହି ଅଭିପ୍ରାୟ ଜଣାଯାଏ ଯେ ଇଙ୍ଗରାଜୀ ଶିକ୍ଷାଦାନର ବ୍ୟୟ ବନ୍ଦ କରି ସେ ଟଙ୍କା ଲାଭକରିବେ ଓ ଦେଶୀୟଭାଷା ଶିକ୍ଷାଦାନରେ ଯାହା ଦେଉଅଛନ୍ତି ସେଥିର ଅଧିକ ଦେବେ ନାହିଁ  ଓ କର ସ୍ୱରପ ଯଥେଷ୍ଟ ଧନପ୍ରାପ୍ତ ହେଲେ ସେଟଙ୍କା ମଧ୍ୟ ଲାଭ ହେବ ।

ଆମ୍ଭେମାନେ ଗବର୍ଣ୍ଣମେଣ୍ଟଙ୍କ ଏରପ ବିଚାରରେ କାତର ହୋଇଅଛୁଁ ଉଚ୍ଚଇଙ୍ଗରାଜୀ ଶିକ୍ଷା ରହିତ ହେଲେ ଭାଷାଶିକ୍ଷାଦ୍ୱାରା କି ଲାଭ ହେବ ଆମ୍ଭେମାନେ ବୁଝିପାର ନାହୁଁ । ଭାରତବର୍ଷର ସର୍ବକ୍ଷେତ୍ର ଚାଟଶାଳି ଓ ଟୋଲମାନ ଥିଲା ଅବଧି ରହିଅଛି ଏହାଦ୍ୱାରା କି ଏ ଦେଶର କିଛିମାତ୍ର ଉନ୍ନତି ହୋଇଅଛି ? ଉଚ୍ଚଇଙ୍ଗରାଜୀ ଶିକ୍ଷାଦାନ ହୋଇ ନ ଥିଲେ ଏ ଦେଶର ଦୁର୍ଦ୍ଦଶା କଣ ହୋଇଥାନ୍ତା ଓ ଗବର୍ଣ୍ଣମେଣ୍ଟ ମଧ୍ୟ ଶାସନ କରିବାକୁ କେତେ କ୍ଳେଶକର ଜାଣନ୍ତେ ତାହା କି ରାଜସଭାସ୍ଥ କେହି ଅନୁଭବ କରିପାର ନାହାନ୍ତି ? ରାଜମନ୍ତ୍ରିମାନେ ଯେ ଯେତେ କୌଣସି ନୂତନ ହିତକର ନିୟମ ଚଳାଇବାକୁ ଚାହାନ୍ତି କିଏ ତାଙ୍କର ପକ୍ଷ ହୁଏ ଓ ରାଜା ଓ ପ୍ରଜାମଧ୍ୟରେ ସଦ୍ଭାବ ରଖିବାର ଉପାୟ କାହାଦ୍ୱାରା ହୁଅଇ ତାହା କି ଗବର୍ଣ୍ଣମେଣ୍ଟ ଅବଧି  ଜାଣିପାର ନାହାନ୍ତି । ଆଉକଥା ଛାଡ ଯେଉଁ ଦେଶୀୟ ଭାଷା ଶିକ୍ଷାପାଁଇ ଗବର୍ଣ୍ଣମେଣ୍ଟ ଏତେ ବ୍ୟସ୍ତ ତହିଁର ଉନ୍ନତି ସାଧନ କାହାଦ୍ୱାରା ହେଉଅଛି ଏହାକି ଅବଧି ନିଷ୍ପ୍ପୟ ହୋଇ ନାହିଁ । ଆଜିକାଲି ନାନାଦେଶୀୟ ଭାଷାରେ ଭିନ୍ନ ଭନ୍ନ ଶାସ୍ତ୍ର ବିଷୟରେ ଯେ ଉତ୍କୃଷ୍ଟ ପୁସ୍ତକମାନ ହେଉଅଛି ତାହାକି ସୁଶିକ୍ଷିତ ଲୋକଙ୍କ ବିନା ସଂଘଟନ ହେବାର ସମ୍ଭବ ଥିଲା ? ଏତେକଥା ହେଲାଠାର  ଯେଉଁ ଗବର୍ଣ୍ଣମେଣ୍ଟ ଉଚ୍ଚ ଇଂରାଜୀ ଶିକ୍ଷା ରହିତ କରିବାର ଚେଷ୍ଟା କରଅଛନ୍ତି ସେ କେବଳ ଆପଣାର ହାନି ଲୋଡୁଅଛନ୍ତି ଅନ୍ୟ କିଛି ନୁହଇ । ଶିକ୍ଷାଦାନରେ ଯତ୍‌କିଞ୍ଚିତ୍ ବ୍ୟୟ ହେଉଥିଲା ତାହା ବଞ୍ଚାଇ ରଖିବେ ମାତ୍ର ତହିଁ ପରିବର୍ତ୍ତରେ କେତେପ୍ରକାର ବ୍ୟୟ କରିବାକୁ ହେବ ଅନୁମାନ କର ନାହାନ୍ତି । ମୂର୍ଖପ୍ରଜା ସର୍ବଦା ଦୁର୍ବୃତ୍ତ ଏମାନଙ୍କୁ ଆୟତ୍ତରେ ରଖିବାପାଁଇ

ଅଧିକ ପୁଲିସ ଓ ସେନା ରଖିବାକୁ ହେବ ତଥାଚ ଥରକୁ ଥର କ୍ଲେଶ ହେଉଥିବ କାରଣ ଭୟ ଦେଖାଇ ଶାସନ କରିବା ଚିରକାଳ ଚଳି ନ ପାରେ ପ୍ରଜାଙ୍କ ମନରେ ସ୍ନେହ ଓ ଭକ୍ତି ଜନ୍ମାଇବା ବିବେକ ରାଜାର କର୍ତ୍ତବ୍ୟ ଓ ସେଥିରେ ସୁଶାସନ ହୋଇପାରେ । ଅତଏବ ଉଚ୍ଚଶିକ୍ଷା ରହିତକରି ଟଙ୍କା ବଞ୍ଚାଇବା ବିଡମ୍ବନ ମାତ୍ର ।

ଆମ୍ଭେମାନେ ଆନନ୍ଦିତ ହେଲୁଁ ଯେ ଅତ୍ରତ୍ୟ ସର୍ବସାଧାରଣ ଗବର୍ଣ୍ଣମେଣ୍ଟଙ୍କ ପ୍ରସ୍ତାବ ବିରଦ୍ଧରେ ମତ ପ୍ରକାଶ କରିବାପାଁଇ ଗତକାଲି ସକାଳବେଳେ କଟକପ୍ରିଣ୍ଟିଂ କମ୍ପାନୀ ଗୃହରେ ସଭା କରିଥିଲେ ସଭାରେ ଗବର୍ଣ୍ଣମେଣ୍ଟଙ୍କର ପ୍ରସ୍ତାବ ଅନ୍ୟାୟ ବୋଲି ଧାର୍ଯ୍ୟ ହୋଇଅଛି ସଭାର ମନ୍ତବ୍ୟ କଲିକତାର ଭାରତବର୍ଷୀୟ ସଭା ନିକଟକୁ ପ୍ରେରିତ ହେବ ଯେ ସେଠାରେ ଆଗାମୀ ମାସ ତା ୨ ରିଖରେ ଯେଉଁ ସଭା ହେବ ସେ ସଭାକୁ ଏସବୁ ଜ୍ଞାତ କରାଯିବ ।

ଉକ୍ତ ସଭାର ସଂକ୍ଷେପ ବିବରଣ ଅଦ୍ୟ ଅତିରିକ୍ତ ପତ୍ରିକାରେ ପ୍ରକାଶକଲୁଁ ସମୟାଭାବରେ ବାହୁଲ୍ୟ ବିବରଣ ଲେଖା ହୋଇପାରିଲା ନାହିଁ ।

*ଭା୪ଗ, ସଂ୨୬ଖ୍ୟା, ୨୫।୬।୧୮୭୦*

## ସାପ୍ତାହିକ ସମ୍ବାଦ ।

ଓଡିଶାପେଟ୍ରିଅଟ୍ ବୋଲନ୍ତି ଯେ ପ୍ରିଣ୍ଟିଂକମ୍ପାନୀର ଛାପାଖାନା ତାହାଙ୍କର ଶତ୍ରୁ ଓ ତାହାଙ୍କ ଲେଖାର ଭାବର ପ୍ରକାଶ ଯେ ଏହି ଶତ୍ରୁତା ହେତୁର ଚଳିତ ମାସ ତା ୪ରିଖର ପତ୍ରିକା ବାହାରି ନାହିଁ । ଆପଣା ସୁଖ୍ୟାତି ନିମିତ୍ତ ପରର ନିନ୍ଦା କରିବା କିପ୍ରକାର ଲୋକର ସ୍ୱଭାବ ଥିଲା ଓ ଏଣିକି ତାହା କେଉଁସରିକି ଉର୍ଦ୍ଧ୍ୱଗାମୀ ହେଲାଣି ଯେ ଆଲୋଚନା କରିବ ସେ ଜାଣିପାରିବ ।

ତା୪ରିଖ ପତ୍ରିକା କିନିମିତ୍ତ ବାହାରି ନାହିଁ ତହିଁର କାରଣମାନ ସମ୍ପାଦକ ଯଥାର୍ଥରପେ ନିର୍ଦ୍ଦେଶ କରିଥିଲେ ପାଠକମାନେ ଜାଣିପାରନ୍ତେ ଯେ ଛାପାଖାନାର ଦୋଷର ତାହା ଘଟି ନାହିଁ । ଯାହା ହେଉ କମ୍ପାନୀ ଏରପ ଦୁର୍ନାମ ଶୁଣି ଯେବେ କ୍ଷାନ୍ତ ରହନ୍ତି ତେବେ ସେମାନଙ୍କ ସହିଷ୍ଣୁତା ଗୁଣକୁ ପ୍ରଶଂସାଯୋଗ୍ୟ ବୋଲିବାକୁ ହେବ ।

ରଙ୍ଗୁନର ସମ୍ବାଦପତ୍ରରେ ଏହି ମର୍ମରେ ଖଣ୍ଡିଏ ବିଜ୍ଞାପନ ପ୍ରକାଶ ହୋଇଅଛି ଯେ ଦୁଇସହସ୍ର ଟଙ୍କାର ବିଲ ଅତି ଶସ୍ତାମୂଲ୍ୟରେ ବିକ୍ରୟ ହେବାର ଅଛି । ଅଧିକାଂଶ ବିଲର ଟଙ୍କା ସରକାରୀ କାର୍ଯ୍ୟାଳୟର ଅମଲାଙ୍କ ଦେଣ ଅଟେ । ସରକାରୀଅମଲାଙ୍କର ଦଶା କି ସକଳଦେଶରେ ବରାବର ଏମାନଙ୍କଠାର ଟଙ୍କା ଆଦାୟ କରିବାକୁ ସମସ୍ତେ କ୍ଲେଶକର ଜ୍ଞାନ କରନ୍ତି ଅଥଚ ଏହି ଅମଲାମାନେ ଦରବାରରେ ଥାଇ ନିତ୍ୟ ନିତ୍ୟ କେତେ ପାଉଣାଦାରଙ୍କ ଟଙ୍କା ଉସୁଲ କରି ଦେଇଅଛନ୍ତି ।

ହାଇକୋର୍ଟରେ ଜଜ୍ ମାନ୍ୟବର ଶ୍ଲୋବର ସାହେବ ଆଗାମୀ ଅଗଷ୍ଟ ପ୍ରଥମଦିନଠାର ଦୁଇମାସର ଅବକାଶ ଗ୍ରହଣ କରିଅଛନ୍ତି ।

ବଙ୍ଗଳାପ୍ରଦେଶର ବାରିକମାଷ୍ଟରୀ କାର୍ଯ୍ୟ ସୁଚାରରପେ ଚଳିବା ବିବେଚନାରେ ଏକଜଣ ଅଧିକା ସୁପ୍ରଣ୍ଟେଣ୍ଡିଂ ଇଞ୍ଜିନିୟର, ଛଜଣ ଏକଯିକିଉଟିବ ଇଞ୍ଜିନିୟର୍ ଓ ଜ୧୯ଣ ଉଚ୍ଚଶ୍ରେଣୀର ସହକାରୀ ନିଯୁକ୍ତ କରିଅଛନ୍ତି । ବାରୀକମାଷ୍ଟରିର ବ୍ୟୟ ଊଣା ହେବାକୁ ଯେମନ୍ତ ତର ନାହିଁ ବ୍ୟୟ ବୃଦ୍ଧି ପକ୍ଷରେ ମଧ୍ୟ ସେହିରପ ଦେଖାଯାଏ । ତେବେ କଟକର ସୁପ୍ରଣ୍ଟେଣ୍ଡିଂ ଇଞ୍ଜିନିୟର ଉଠିଗଲା କାହିଁକି ?

ଗତ ବୁଧବାର କଟକ ସୋସାଇଟିର ଗୋଟିଏ ବୃହତ୍ ସଭା ହୋଇଥିଲା । ଶ୍ରୀଯୁକ୍ତ ରାବନସା ସାହେବ ଓ ଅନ୍ୟାନ୍ୟ କେତେଜଣ ଇଙ୍ଗରାଜ ଏବଂ ସମ୍ଭ୍ରାନ୍ତ ଦେଶୀୟ ବ୍ୟକ୍ତିମାନେ ଉପସ୍ଥିତ ଥିଲେ । ସଭାରେ ଅନ୍ୟାନ୍ୟ ବିଷୟମଧ୍ୟରେ ଧାର୍ଯ୍ୟ ହେଲା ଯେ ଓଡିଶାପେଟ୍ରିଅଟର ଭାର ଷ୍ଟୋନିସାହେବ ଗ୍ରହଣ କରିବେ ଏବଂ ଏଠାରେ ଯେ ଭିନ୍ନ ଭିନ୍ନ ସଭାମାନ ଅଛି ସେସବୁ ମିଶି ଏକ ହୋଇଯିବ ଅର୍ଥାତ୍ ସମସ୍ତେ କଟକ ସୋସାଇଟିର ଅଧୀନରେ ରହିବେ ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଏଡୁକେଶନ ଗଜେଟ ଶୁଣିଅଛନ୍ତି ଯେ ପୁରୀର ଗବର୍ଣ୍ଣମେଣ୍ଟ ସ୍କୁଲଗୃହରେ କେତେମାସ ହେଲା ସାହେବମାନେ ଗତ ରବିବାର ଗିର୍ଜା କରଅଛନ୍ତି । ଏହା ପୁରୀସ୍କୁଲର ଦୁର୍ଗତିର କାରଣ ହୋଇଥିବାର ଉକ୍ତସ୍କୁଲର ହେଡମାଷ୍ଟର ଅଂଯତ୍ତିକଲେ ଏଥିପାଁଇ ସାହେବମାନେ ବଡ ବିରକ୍ତ ଅଛନ୍ତି ? ଏ କଥା ଅତି ଶୋଚନୀୟ ଅଟଇ ସାହେବମାନେ କି ଆପଣା କୋଠିରେ ସପ୍ତାହରେ ଦିନେ ଗିର୍ଜା କରିପାର ନାହାନ୍ତି ଯେ ସ୍କୁଲଗୃହରେ ତାହା କରି ଲୋକଙ୍କର ଇଙ୍ଗରାଜୀ ଶିକ୍ଷାପ୍ରତି ଭ୍ରମ ଜନ୍ମାଉଅଛନ୍ତି । ଏକେତ ଇଙ୍ଗରାଜୀ ଶିକ୍ଷାଦାନକୁ ଖ୍ରୀଷ୍ଟୀୟାନ କରିବାର ଉପାୟ ବୋଲି ସାମାନ୍ୟ ଲୋକେ ଜ୍ଞାନ କରନ୍ତି ତହିଁରେ ପୁଣି ସେସ୍ଥାନରେ ଗିର୍ଜା ହେଲେ ସେ କଥାପ୍ରତି କାହାର ଦୃଢବିଶ୍ୱାସ ନ ହେବ ।

*ଭା୪ଗ, ସଂ୨୬ଖ୍ୟା, ୨୫।୬।୧୮୭୦*

## ଗବର୍ଣ୍ଣମେଣ୍ଟ ଉଚ୍ଚଶିକ୍ଷା ରହିତ ବିଷୟର ପ୍ରଥମ ସଭାର ବିବରଣ ।

ଗତକାଲି ସାଢେ ଆଠଘଣ୍ଟା ସମୟରେ ସକଳସଭ୍ୟମାନେ ସମବେତ ହେଲେ । ଇଂରାଜ ଓ ଦେଶୀୟ ଲୋକ ହୋଇ ପ୍ରାୟ୬୦ ଜଣ ସଭ୍ୟ ଉପସ୍ଥିତ ଥିଲେ ତହିଁ ମଧ୍ୟରେ ପାଞ୍ଚଜଣ ଇଂରାଜ ଓ ଆଉ ସମସ୍ତେ ଦେଶୀୟ । ସଭାର କାର୍ଯ୍ୟ ଆରମ୍ଭ ହେଲାର ଶ୍ରୀଯୁକ୍ତ ରାବନଶା ସାହେବ ଗାତ୍ରୋତ୍ଥାନପୂର୍ବକ ଗବର୍ଣ୍ଣମେଣ୍ଟଙ୍କ ଅଭିପ୍ରାୟ ବ୍ୟକ୍ତ କଲେ ସେ କହିଲେ ଯେ ଗବର୍ଣ୍ଣମେଣ୍ଟ ଇଂରାଜୀଶିକ୍ଷା ଉଠାଇ ଦେବାକୁ ବାଞ୍ଛା କର ନାହାନ୍ତି ମାତ୍ର ସେଥିପାଁଇ ରାଜଭଣ୍ଡାରର କିଛି ବ୍ୟୟ କରିବେ ନାହିଁ ଯେଉଁମାନେ ଉପକାର ପାଇବେ ସେମାନେ ବ୍ୟୟ କରନ୍ତୁ । ତହିଁଉତ୍ତାର ବାବୁ କାଳୀପଦବନ୍ଦ୍ୟୋପାଧ୍ୟାୟ ଓ ବାବୁ ରାଜକୃଷ୍ଣ ମୁଖୁର୍ଯ୍ୟା ଓ ବାବୁ ଉମାଚରଣ ହଲ୍‌ଦାର ଏ ତିନିହେଁ କ୍ରମେ ବକ୍ତୃତା କରି ଉପସ୍ଥିତ ସଭ୍ୟମାନଙ୍କୁ ଜଣାଇଲେ ଯେ ଉଚ୍ଚଶିକ୍ଷାଦାନ ରାଜାର କର୍ତ୍ତବ୍ୟ ଓ ସେଥିରେ ରାଜାର ଅନେକ ଉପକାର ହେଉଅଛି ଓ ପୂର୍ବକାଳର ଭାରତବର୍ଷର ରାଜାମାନେ ଓ ଏତେବେଳେ ସୁଦ୍ଧା ଅନ୍ୟାନ୍ୟ ଦେଶର ରାଜାମାନେ ଶିକ୍ଷାଦାନରେ ବ୍ୟୟ କରଅଛନ୍ତି । ଗବର୍ଣ୍ଣମେଣ୍ଟ ଆମ୍ଭମାନଙ୍କଠାର ଯେଉଁ ରାଜସ୍ୱ ନେଉଅଛନ୍ତି ସେଥିର ଏ ବ୍ୟୟ ହେଉଅଛି କେହି ତାହାଙ୍କୁ ଦାତବ୍ୟ କରିବାକୁ କହୁ ନାହିଁ ଉଚ୍ଚଶିକ୍ଷାଦାନ ରହିତ ହେଲେ ଦେଶର ସବୁ ଉନ୍ନତିର ଦ୍ୱାର ରଦ୍ଧ ହେବ ଓ ରାଜା ଓ ପ୍ରଜା ଉଭୟଙ୍କର କ୍ଳେଶର ସୀମା ରହିବ ନାହିଁ । ବାବୁ କାଳୀପଦ ଓ ରାଜକୃଷ୍ଣଙ୍କର ବକ୍ତୃତା ଉତ୍ତମ ହୋଇଥିଲା ଓ ସେଥିରେ ସଭ୍ୟମାନେ ଆନନ୍ଦିତ ହେଲେ । ଏ ଉତ୍ତାର କେତେ ତର୍କ ବିତର୍କ ହୋଇ ସଭାର ତଳଲିଖିତ ମନ୍ତବ୍ୟ ପାଠ ହେଲା ତହିଁରେ ସମସ୍ତ ସଭ୍ୟଙ୍କର ଏକମତ ହେବାର ସେ ସବୁ ଧାର୍ଯ୍ୟ ହେଲା । ଯଥା –

୧. ଇଙ୍ଗରେଜୀ ଭାଷା ଶିକ୍ଷାଦ୍ୱାରା ଏ ଦେଶୀୟ ଲୋକମାନଙ୍କର ବିଶେଷରେ ଓଡିଶାବାସିଙ୍କର ଅନେକ ଉପକାର ହୋଇଥିବାର ଏ ସଭାର ଜ୍ଞାନ ହୋଇଅଛି ଏହାଦ୍ୱାରା ଏ ଦେଶୀୟ ଲୋକମାନେ ନୂତନରପ ଜୀବନ ଧାରଣ କରିଅଛନ୍ତି ଏବଂ ଏମାନଙ୍କ ମାନସିକ ସାମାଜିକ ଓ ରାଜନୀତି ଓ ଧର୍ମନୀତି ଏସମସ୍ତ ଅବସ୍ଥାରେ ସୁବ୍ୟକ୍ତ ଫଳମାନ ଉତ୍ପନ୍ନ ହୋଇଅଛି ।

୨. ଦେଶୀୟ ଭାଷା ଶିକ୍ଷାର ଆବଶ୍ୟକତା ଓ ପ୍ରାଧାନ୍ୟ ଏସଭା ସ୍ୱୀକାର କଲେହେଁ ତଦ୍ଦ୍ୱାରା ଲୋକମାନଙ୍କର ଉତ୍କୃଷ୍ଟ ମାନସିକ କର୍ଷଣ ହେବାର କଦାଚ ସ୍ୱୀକାର କରି ନ ପାରନ୍ତି । ବଙ୍ଗଦେଶରେ ଗତ ୪୦ ବର୍ଷ ମଧ୍ୟରେ ଦେଶୀୟ ଭାଷାର ଅଧ୍ୟୟନ ଓ ଉନ୍ନତିସାଧନ ଅନେକ ଦୂର ଅଗ୍ରସର ହେବା ପ୍ରତ୍ୟକ୍ଷେ ସେଠାରେ ଏପରି ଫଳଲାଭ ହୋଇ ନାହିଁ ।

୩. ଏ ସଭା ବିବେଚନା କରନ୍ତି ଯେ ଇଂରାଜୀଭାଷା ଶିକ୍ଷା କରିଥିବା ଦେଶୀୟ ଲୋକମାନଙ୍କ ଦ୍ୱାରା ଦେଶୀୟଭାଷାର ବିଶେଷ ଉନ୍ନତି ହୋଇଅଛି ଏଣୁକରି ପ୍ରକାଶ ଯେ ଯଦି ଇଂରୋଜୀଭାଷା ଅଧ୍ୟୟନରେ ତୃଟିକରାଯାଏ ତେବେ ତହିଁରେ ପ୍ରଥମେ ଦେଶୀୟଭାଷାର କ୍ଷତିହେବ ।

୪. ଏ ସଭା ବିବେଚନାରେ ଇଙ୍ଗରେଜୀଭାଷା ଶିକ୍ଷାଦ୍ୱାରା ଏ ଦେଶୀୟ କର୍ମକାରକ ଅଳ୍ପ ବ୍ୟୟରେ ପ୍ରାପ୍ତ

ହେଉଅଛନ୍ତି । ସେମାନଙ୍କ ଅଭାବରେ ବିଚାରାଳୟର କାର୍ଯ୍ୟ ଯଦି ଅନୁବାଦିତ ପ୍ରମାଣାଦି କାଗଜପତ୍ରଦ୍ୱାରା ଚଳେ ତେବେ ଦେଶ ଶାସନର ବ୍ୟୟ ଅନେକାଂଶରେ ବଢ଼ିବ ଲୋକମାନଙ୍କ ଉପରେ ବ୍ୟୟର ଭାର ଅଧିକ ପଡ଼ିବ ଏବଂ ବିଚାରାଳୟକୁ ଯେଉଁମାନେ ମକଦ୍ଦମା କରିବାକୁ ଯିବେ ସେମାନଙ୍କର କଷ୍ଟ ବୃଦ୍ଧି ହେବ ।

୫. ଏ ସଭା ବିବେଚନା କରନ୍ତି ଯେ ବର୍ତ୍ତମାନ ଇଂରାଜୀଶିକ୍ଷା ଦାନରେ ଯେ ବ୍ୟୟ ହେଉଅଛି ତାହା ଅନ୍ୟକର୍ମରେ ବ୍ୟୟକରି ଇଂରାଜୀଶିକ୍ଷା ସଂକ୍ରାନ୍ତ ସମୁଦାୟ ବ୍ୟୟ ଛାତ୍ରମାନଙ୍କ ଉପରେ ପକାଇବାକୁ ଗବର୍ଣ୍ଣମେଣ୍ଟ ଯେ କୌଣସି ପ୍ରସ୍ତାବ କରିବେ ସେଥିର ଏହିଫଳ ହେବ ଯେ ଅନେକ ବିଦ୍ୟାଳୟ ଏକାବେଳକେ ରହିତ ହୋଇଯିବ । କାରଣ ଏସମସ୍ତରେ ଯେଉଁମାନେ ଅଧ୍ୟୟନ କରନ୍ତି ସେମାନଙ୍କ ମଧ୍ୟର ଅଧିକାଂଶ କୌଣସି ପ୍ରକାରେ ଧନୀ ନୁହନ୍ତି ।

୬. ଇଂରାଜୀ ଶିକ୍ଷାଦାନରେ ଗବର୍ଣ୍ଣମେଣ୍ଟଙ୍କୁ ସାହାଯ୍ୟ ରହିତ କିମ୍ବା ଊଣା କରିବା ବିଷୟକୁ ଏ ସଭା ନିନ୍ଦା କରଥିଲେହେଁ ସର୍ବସାଧାରଣ ଲୋକଙ୍କୁ ଭାଷା ଶିକ୍ଷା ଦେବାର ମହତ୍ୱ ଊଣା କର ନାହାନ୍ତି ତେବେ ଦେଶୀୟଭାଷା ଶିକ୍ଷାର ଉନ୍ନତି ହେତୁର ଇଂରାଜୀ ଭାଷାଶିକ୍ଷାର ବୃଦ୍ଧିପ୍ରତି ହନ୍ତକାରକ ହେଲେ ଏ ସଭା ଅତିଶୟ ଦୁଃଖିତ ହେବେ ।

୭. ଉପରଲିଖିତ ମନ୍ତବ୍ୟମାନଙ୍କରେ ଯେଉଁ ମାନଙ୍କର XXXXXX ଯେ ସେ ଆଗାମି ଜୁଲାଇମାସ ଦୁଇ ତାରିଖରେ କଲିକତା ଟାଉନହଲରେ ବଙ୍ଗଦେଶୀୟମାନଙ୍କର ଯେ ସଭା ହେବ ସେ ସଭାରେ ତାହା ଆଗତ କରିବେ ।

ସଭାର ମନ୍ତବ୍ୟ ସ୍ଥିର ହେଲା ଉତ୍ତାର ଶ୍ରୀଯୁକ୍ତ ରାବନଶାସାହେବଙ୍କ ପ୍ରସ୍ତାବାନୁସାରେ ଧାର୍ଯ୍ୟ ହେଲା ଯେ ଉପରଲିଖିତ ମନ୍ତବ୍ୟ ଛଡ଼ା ଓଡ଼ିଶା କାରଣ ଖଣ୍ଡିଏ ସ୍ୱତନ୍ତ୍ର ଦରଖାସ୍ତ ପ୍ରସ୍ତୁତ ହୋଇ ତାହା କଟକ ପୁରୀ ଓ ବାଲେଶ୍ୱର ଓ ଉପଭାଗମାନଙ୍କରେ ସମସ୍ତ ଲୋକଙ୍କର ସ୍ୱାକ୍ଷର ନିମିତ୍ତ ପ୍ରଚାରିତ ହେବ ଓ ଯଥେଷ୍ଟରପ ସ୍ୱାକ୍ଷର ପ୍ରାପ୍ତ ହେଲାଠାର କମିଶ୍ନରସାହେବଙ୍କ କଚେରୀ ଦେଇ ଗବର୍ଣ୍ଣମେଣ୍ଟଙ୍କୁ ପ୍ରେରିତ ହେବ ।

*ଅତିରିକ୍ତ, ୨୫।୬।୧୮୭୦*

## ଉଚ୍ଚଶିକ୍ଷା ବିଷୟକ ସଭା

ଉଚ୍ଚଶିକ୍ଷା ଅଥବା ଇଂରାଜୀ ଶିକ୍ଷାଦାନ ରହିତ କରିବାକୁ ଗବର୍ଣ୍ଣମେଣ୍ଟ ପ୍ରସ୍ତାବ କରିବାର ତହିଁ ବିରଦ୍ଧରେ ଯେଉଁ ସଭା କରିବା କାରଣ ଭାରତବର୍ଷୀୟ ସଭା ଉଦ୍ୟମ କରିଥିଲେ ତାହା ସର୍ବାଂଶରେ ସଫଳ ହୋଇଅଛି । ଚଳିତମାସ ତା୨ରିଖ ଶନିବାର ଘ୩.୫ ଣ୍ଟା ସମୟରେ ଏ ସଭା ଆରମ୍ଭ ହୋଇଥିଲା । କଲିକତାର ଭଦ୍ରଲୋକ ମାତ୍ରକେ ସଭାରେ ଉପସ୍ଥିତ ଥିଲେ ଓ ମୋଫସଲ ଜି୧୯ଲାର ଏକ ଏକ ବ୍ୟକ୍ତି ଭାରପ୍ରାପ୍ତ ହୋଇ ଆପଣା ଜିଲାବାସିଙ୍କ ପ୍ରତିନିଧିସ୍ୱରପ ସଭାରେ ଉପସ୍ଥିତ ଥିଲେ ସର୍ବସୁଦ୍ଧା ସଭ୍ୟସଂଖ୍ୟା ପ୍ରାୟ ଦୁଇ ସହସ୍ର ହେବ ଏ ସମସ୍ତେ ଦେଶୀୟଲୋକ କେବଳ ୩/୪ ଜଣ ଇଂରାଜ ଆସିଥିଲେ ଏଥିର ବୋଧ ହୁଅଇ ଯେ ଇଂରାଜମାନେ ପ୍ରାୟ ଗବର୍ଣ୍ଣମେଣ୍ଟଙ୍କ ପକ୍ଷ ହୋଇଅଛନ୍ତି ।

ରୀତିମତ ସଭାର କାର୍ଯ୍ୟାରମ୍ଭ ହେଲାର ସମ୍ପାଦକ ମହାଶୟ ଭିନ୍ନ ଭିନ୍ନ ଜିଲ୍ଲାରେ ଏହି ବିଷୟରେ ଯେ ସମସ୍ତ ସଭା ହୋଇଥିଲା ତହିଁର ବୃତ୍ତାନ୍ତ ପାଠକଲେ । ଏରପ ଓଡ଼ିଶା ବଙ୍ଗଳା ବେହାର ଓ ଆଶାମର କେତେଜିଲ୍ଲାର ୪୩ ସଭାର କାର୍ଯ୍ୟାବଳୀ ପାଠ ହେଲା । ଏଥିରେ ଅନେକ ସମୟ ଅତିବାହିତ ହେଲା ତଦୁତ୍ତାର କେତେଜଣ ସଭ୍ୟ ଏକ ଅନ୍ୟ ପଛେ ବକ୍ତୃତା କରି ସଭାର ମତ ବ୍ୟକ୍ତ କଲେ । ଏଦିନର ବକ୍ତୃତାମାନ ଉତ୍ତମ ହୋଇଥିଲା । ଇଂରାଜଙ୍କ ମଧ୍ୟର କେବଳ ବ୍ରାଡଲିସାହେବ ସଭାର ଉଦ୍ଦେଶ୍ୟର ଅନୁମୋଦନ ସୂଚକ ଗୋଟିଏ ବକ୍ତୃତା କରିଥିଲେ । ଏରପ ବକ୍ତୃତା ଶେଷ ହେଲାର ବିଲାତର ସେକ୍ରେଟରୀଙ୍କ ନିକଟକୁ ଖଣ୍ଡିଏ ଆବେଦନ ପତ୍ର ପ୍ରେରିତ ହେବାର ସ୍ଥିର

ହୋଇ ତାହା ସଭାରେ ପାଠ ହେଲା ଓ ସଭ୍ୟମାନେ ସେଥିରେ ସମ୍ମତି ଦେଲେ । ଦରଖାସ୍ତ ଖଣ୍ଡିକ ଅତି ଦୀର୍ଘ ଥିବାର ତହିଁର ଅନୁବାଦ କରି ପ୍ରକାଶ କରିବାର କ୍ଷାନ୍ତ ହେଲୁଁ । ତହିଁର ସାର ମର୍ମ ଏହି ଯେ ଉଚ୍ଚଶିକ୍ଷାଦାନ ଗବର୍ଣ୍ଣମେଣ୍ଟର କର୍ତ୍ତବ୍ୟ ଓ ତାହା ସାବକ ଗବର୍ଣ୍ଣର ଜେନେରଲମାନେ ସମସ୍ତେ ମାନି ଆସଅଛନ୍ତି ଓ ତଦ୍ଦ୍ୱାରା ଲାଭ ଭିନ୍ନ କ୍ଷତି ନାହିଁ ଇଂରାଜୀ ଶିକ୍ଷାଦ୍ୱାରା ଗବର୍ଣ୍ଣମେଣ୍ଟଙ୍କର ଶାସନବ୍ୟୟ ଊଣା ପଡିଅଛି ଓ ଏହି ଶିକ୍ଷା ହେତୁର ଦେଶୀୟଭାଷା ଶିକ୍ଷାର ଉନ୍ନତି ହୋଇଅଛି । ଇଂରାଜୀ ଶିକ୍ଷିତ ଲୋକମାନଙ୍କ ପରି ବିଦ୍ୟାଦାନ ବିସ୍ତାର ବିଷୟରେ କେହି ମନୋଯୋଗୀ ନୁହନ୍ତି ଏମାନଙ୍କ ଉଦ୍ୟମରେ ମୋଫସଲରେ ଭାଷାବିଦ୍ୟାଳୟ ସଂଖ୍ୟା ବଢୁଅଛି । ସମ୍ପ୍ରତି ଗବର୍ଣ୍ଣମେଣ୍ଟ ଯେତେ ଦେଉଅଛନ୍ତି ଲୋକେ ମଧ୍ୟ ସେତିକି ବ୍ୟୟ କରଅଛନ୍ତି ଓ ରାଜକୋଷର ଯେ ଟଙ୍କା ଦିଆଯାଏ ତାହା ବଙ୍ଗଳା ପ୍ରତି ଅନ୍ୟାୟ ଅଟଇ କାରଣ ବଙ୍ଗଳାର ଅଧିକ ରାଜସ୍ୱ ଉଠିବା ପ୍ରତ୍ୟକ୍ଷେ ଅଳ୍ପଟଙ୍କା ଶିକ୍ଷାକାର୍ଯ୍ୟରେ ବ୍ୟୟ ହୁଅଇ ଏଥିର ଊଣା କରିବା ଅନୁଚିତ ଏହିପରି କେତେ ଯୁକ୍ତି ଦର୍ଶାଇ ପ୍ରାର୍ଥନା ହୋଇଅଛି ଯେ ଉଚ୍ଚଶିକ୍ଷା ବନ୍ଦ କଲେ ଦେଶର ଦୁର୍ଗତିର ସୀମା ରହିବ ନାହିଁ ଅତଏବ ଗବର୍ଣ୍ଣମେଣ୍ଟଙ୍କୁ ସେ କାର୍ଯ୍ୟର କ୍ଷାନ୍ତ ରହିବାର ଆଜ୍ଞା ହେଉ ।

ସେକ୍ରେଟରୀମହୋଦୟ ଏଥିରେ କି ବିଚାର କରିବେ ଦେଖିବାରେ ଆସିବ ମାତ୍ର ସେ ଅବଶ୍ୟ ଜାଣିପାରିବେ ଯେ ଦେଶସୁଦ୍ଧା ଲୋକଙ୍କ ମତର ବିରଦ୍ଧ ଏ ପ୍ରସ୍ତାବ ହୋଇଅଛି ଅନ୍ୟ କୌଣସି ସମୟରେ ସଦର ମଫସଲର ସମସ୍ତ ଲୋକ ଏକବାକ୍ୟ ହୋଇ ଯୋଗ ଦେଇ ନ ଥିଲେ । ଏତେ ଲୋକର ମନଃପୀଡା ଦେବାକୁ ସେକ୍ରେଟରୀ ମହୋଦୟ ସହସା ପ୍ରବୃତ୍ତ ହେବେ କଦାଚ ଅନୁଭବ ହେଉ ନାହିଁ ।

*ଭା/୫ଗ, ସଂ୨୯ଖ୍ୟା, ୧୬/୭/୧୮୭୦*

## ଉତ୍କଳପୁସ୍ତକ ପରୀକ୍ଷା କମିଟୀ।

ଉତ୍କଳବିଦ୍ୟାଳୟସମୂହ ନିମିତ୍ତ ପାଠ୍ୟପୁସ୍ତକର ବିଚାର କରିବାଲାଗି ଯେଉଁ ସଭା ସ୍ଥାପିତ ହୋଇଅଛି ଗତସପ୍ତାହରେ ସେଥିର ପ୍ରଥମ ଅଧିବେଶନ ହୋଇଥିଲା । କଲିକତା ସ୍କୁଲବୁକ ସୋସାଇଟୀର ପ୍ରେରିତ ଖଣ୍ଡିଏ ପଦ୍ୟପୁସ୍ତକ ପାଠୋପଯୋଗୀ କି ନୁହଇ ବିଚାର କରିବା ସଭାର ଉଦ୍ଦେଶ୍ୟ ଥିଲା । ସଭ୍ୟମାନେ ଯେରପେ କାର୍ଯ୍ୟ କରିବାର ଶୁଣାଯାଏ ସେଥିରେ ଆମ୍ଭେମାନେ ବଡ଼ ଦୁଃଖିତ ହେଲୁଁ। ପୁସ୍ତକକୁ କେହି ପାଠ ନ କରି କେବଳ ଦର୍ଶନମାତ୍ରକେ ମୁଦ୍ରାଙ୍କନର ଉପଯୁକ୍ତ ଥିବାର ମତ ଦେଲେ । ତରତରରେ ପାଇଟି ସାରିବାର ବିଧାନ ଏପ୍ରକାର ଗୁରତର ବିଷୟରେ ଅନୁସରଣ କରିବାର ଭଲ ହୋଇ ନାହିଁ। ପ୍ରତ୍ୟେକ ସଭ୍ୟ ପୁସ୍ତକକୁ ଘରେ ଦେଖି ସଭାରେ ଆସି ମତ ଦେଇଥିଲେ ଉତ୍ତମ ହୋଇଥାନ୍ତା । ଏତିକି ପରିଶ୍ରମକୁ ଯେବେ ସଭ୍ୟମାନେ କାତର ହେବେ ତାହାଙ୍କୁ ବରଣକରିବାର ଫଳ କଣ ହେଲା ।

ପାଠକମାନେ ଏମନ୍ତ ମନେ କରିବେ ନାହିଁ ଯେ ଯେଉଁ ପୁସ୍ତକସମ୍ପର୍କରେ କମିଟୀର କାର୍ଯ୍ୟର କଥା କହୁଅଛୁଁ ସେ ପୁସ୍ତକକୁ ନିନ୍ଦାକରିବା ଆମ୍ଭମାନଙ୍କ ଅଭିମତ ଅଟଇ । ଆମ୍ଭେମାନେ ସେ ପୁସ୍ତକ ଦେଖି ନାହୁଁ କିମ୍ବା ଦେଖିଥିଲେ ମୁଦ୍ରିତ ହେବା ପୂର୍ବର ମତ ପ୍ରକାଶ କରିବାର କ୍ଷମତା ନାହିଁ । କେବଳ କମିଟୀ କାର୍ଯ୍ୟର କଥା ଆମ୍ଭେମାନେ କହୁଅଛୁଁ ଓ ଯେବେ ଏହିପରି ସକଳ ସମୟରେ କାର୍ଯ୍ୟ ହୁଅଇ ତେବେ ଗ୍ରନ୍ଥକର୍ତ୍ତାମାନେ ଭଗ୍ନୋତ୍ସାହୀ ହେବେ ସୁତରାଂ ଉତ୍ତମ ପୁସ୍ତକ ପ୍ରାପ୍ତି କଠିନ ହେବ । ଲୋକେ ମଧ୍ୟ ଅକାରଣ କମିଟୀପ୍ରତି ପକ୍ଷପାତ ଦୋଷ ଆରୋପ କରିବେ ।

*ଭା/୫ଗ, ସଂ ୩୦ଖ୍ୟା, ୨୩/୭/୧୮୭୦*

## କଟକ ସୋସାଇଟୀ।

ଗତମାସ ତା୨୨ରିଖରେ ଏ ସମାଜର ଗୋଟିଏ ବିଶେଷ ସଭା ହୋଇଥିଲା । ସେ ସଭାରେ ଯେଉଁ ପ୍ରସଙ୍ଗମାନ ପଡିଥିଲା ଓ ସେସବୁ ଯେରପେ ନିଷ୍ପତ୍ତି ହେଲା ତହିଁର ବିବରଣ ଗତପ୍ରକାଶିତ ଉତ୍କଳହିତୈଷିଣୀରେ

ମୁଦ୍ରିତ ହୋଇଅଛି । ଆମ୍ଭେମାନେ ତାହା ପାଠକରି ଦିଯୋଟି ବିଷୟରେ ବଡ କୌତୁକାବହ ଜଣାଗଲା । ସେ ଦୁଇବିଷୟର ପ୍ରସ୍ତାବ ଶ୍ରୀଯୁତ ରେବନସା ସାହେବ କରିଥିଲେ । ପ୍ରଥମ ଏହି ଯେ ଏ ନଗର ମଧ୍ୟରେ ସଂସ୍ଥାପିତ ଥିବା ଭିନ୍ନ ଭିନ୍ନ ସମାଜମାନଙ୍କୁ ଏକତ୍ର କରିବା ଏବଂ ଦ୍ୱିତୀୟ ଏହି ଯେ କଟକ ପ୍ରିଣ୍ଟିଂକମ୍ପାନିର ଯନ୍ତ୍ରାଳୟକୁ ସୋସାଇଟୀର ତତ୍ତ୍ୱାବଧାରଣରେ ଆଣିବା । ଏ ଦୁଇ ପ୍ରସ୍ତାବ ସଫଳ ହେଲେ ତାହାଙ୍କ ଜାଣିବାରେ ଉତ୍କଳର ମହତ୍ ଉପକାର ସାଧନ ହେବ ।

ପ୍ରଥମପ୍ରସ୍ତାବ ବିଷୟ ରାବନସା ସାହେବଙ୍କ ମତ ଏହି ଯେ ଗୋଟିଏ ସମାଜ ବଳବତ୍ତର ହୋଇ ରହିଲେ କୌଣସି କାର୍ଯ୍ୟ କରିବାକୁ ହେଲେ ସମସ୍ତେ ଏକମତ ହୋଇ କାର୍ଯ୍ୟ କରିବେ ଓ ଗବର୍ଣ୍ଣମେଣ୍ଟ ମଧ୍ୟ ସେମାନଙ୍କର ପରାମର୍ଶ ଗ୍ରହଣ କରିପାରିବେ । ଏ କଥା ସିଦ୍ଧ କରିବା ନିମିତ୍ତ ଡିବେଟିଂକ୍ଲବର ଯେଉଁ ଅଧିବେଶନ ହୋଇଥିଲା ତହିଁର ବୃତ୍ତାନ୍ତ ଏଥିପୂର୍ବ ଲେଖିଅଛୁଁ ଓ ସେଠାରେ ପ୍ରକାଶ ପାଇଲା ଯେ ଏକତ୍ରିତ ହେବା କାହାରି ମତ ନୁହଇ । ଏଥିର ହେତୁ ଏହି ଯେ ଭିନ୍ନ ଭିନ୍ନ ସମାଜ ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ସ୍ଥାପିତ ହୋଇଅଛି ଭିନ୍ନ ଭିନ୍ନ ରୀତିରେ ଏସବୁର କାର୍ଯ୍ୟ ଚଳଇ ଓ ଭିନ୍ନ ଭିନ୍ନ ପ୍ରସଙ୍ଗର ତର୍କ ବିତର୍କ ହୋଉଁଥାଏ । ଯେଉଁ ସମୟରେ ସାଧାରଣ ହିତକର କଥାର ଅନୁଷ୍ଠାନ ହୁଅଇ ସେ ସମୟରେ ସମସ୍ତେ ଏକମେଳ ହୋଇ କାର୍ଯ୍ୟ କରନ୍ତି ଯେରପ କି ଉଚ୍ଚଶିକ୍ଷା ସମ୍ବନ୍ଧର ସଭାସମୟରେ ହୋଇଥିଲା । ଅତଏବ ରେବନସା ସାହେବ ଯାହା ଅଭିଳାଷ କରନ୍ତି ତାହା ସିଦ୍ଧ ହୋଇଅଛି ବୋଲିବାକୁ ହେବ । ସାଧାରଣ ବିଷୟରେ ସମସ୍ତେ ଯୋଗ ଦେଇ ଅପର ବିଷୟରେ ଆପଣା ନିୟମାନୁସାରେ କାର୍ଯ୍ୟ କଲେ କି ଅସୁସାର ହେଲା ଆମ୍ଭେମାନେ ବୁଝିପାର ନାହୁଁ । ଯେବେ ସାଧାରଣ ହିତକର କଥାରେ ଭିନ୍ନ ଭିନ୍ନ ସମାଜର ଲୋକମାନେ ଆପଣାମଧ୍ୟରେ ବିବାଦ ରଖି ସାହାଯ୍ୟ ନ କରନ୍ତେ ତେବେ ଅନିଷ୍ଟ ହୁଅନ୍ତା ବର୍ତ୍ତମାନରେ ଭିନ୍ନ ଭିନ୍ନ ସଭା ଥିବାର ଏହି ଏକ ଲାଭ ହୋଇଅଛି ଯେ କୌଣସି ତର୍କରେ ଏକ ଏକ ସମାଜବାଦୀ ପ୍ରତିବାଦୀ ହେବାର ଉତ୍ତମ ସିଦ୍ଧାନ୍ତ ହେଉଅଛି । ଏଣୁକରି ଆମ୍ଭେମାନେ ବିବେଚନା କରୁଁ ଯେ ଭିନ୍ନ ଭିନ୍ନ ସଭା ଥିବାରେ କ୍ଷତି ନ ଥାଇ ବରଂ ଲାଭ ଅଛି ଓ ଏହାଙ୍କୁ ଏକତ୍ରିତ କରିବା ଅବିଧେୟ ।

ଦ୍ୱିତୀୟ ପ୍ରସ୍ତାବଟି ଅତି ଚମତ୍କାର ଓ କିପ୍ରକାର ଯୁକ୍ତିର ଅନୁସରଣ କରି ରାବନସାସାହେବ ତାହା ବ୍ୟକ୍ତକରିବାକୁ ସାହସ କଲେ ବୁଝା ଯାଉ ନାହିଁ । ସୋସାଇଟୀ ପ୍ରସ୍ତାବଟିକୁ ଆଦରସହିତ ଗ୍ରହଣକରି ଧାର୍ଯ୍ୟକଲେ ଯେ କି ସର୍ତ୍ତରେ ଡାଇରେକ୍ଟରମାନେ ଯନ୍ତ୍ରାଳୟକୁ କଟକ ସୋସାଇଟୀହସ୍ତରେ ନ୍ୟସ୍ତ କରିବାକୁ ସମ୍ମତ ହେବେ ତାହା ଜାଣିବା କାରଣ ସେମାନଙ୍କୁ ପ୍ରାର୍ଥନା ହେବ । ପ୍ରିଣ୍ଟିଂକମ୍ପାନିର ଯନ୍ତ୍ରାଳୟ ସୋସାଇଟୀହସ୍ତକୁ ଗଲେ ସାହେବ ବୋଲନ୍ତି ଅନେକ ଉପକାର ହେବ ମାତ୍ର ସେ ଉପକାର କଣ ଓ କାହାର ହେବ ପ୍ରକାଶ ପାଉ ନାହିଁ । ଅନୁମାନ ହୁଅଇ ସୋସାଇଟୀ ଗୋଟିଏ ମୁଦ୍ରାଯନ୍ତ୍ର ସ୍ଥାପନ କରିବା ବିଷୟକୁ ଉଲ୍ଲେଖକରି ଏହା କହିଅଛନ୍ତି ଯେ ବର୍ତ୍ତମାନ ସମୟରେ ଅଧିକ ମୁଦ୍ରାଯନ୍ତ୍ର ହେଲେ ଭଲ ହେବ ନାହିଁ । ସେ ଯାହାହେଉ ସୋସାଇଟୀ କେମନ୍ତ ବଳେ ପଶି କାର୍ଯ୍ୟ ନେବାକୁ ଜାଣନ୍ତି ଅଥବା ତାଙ୍କ କର୍ମକୁ ଏହିପ୍ରକାର ଘଟନା ହୁଅଇ । ବଙ୍ଗଳାସ୍କୁଲ ଉଠିଗଲା ତାହାର ସଞ୍ଚିତ ଟଙ୍କାଗୁଡିକ ପାଇଲେ ବଙ୍ଗଳା ଲାଇବ୍ରେରିକୁ ସହଜରେ ହସ୍ତଗତ କଲେ । ଢେଙ୍କାନାଳ ରାଜାଙ୍କ ପୁସ୍ତକ ମୁଦ୍ରାଙ୍କନ ଦାନଟଙ୍କା ପ୍ରତି ଅବଧି ଆଶା ଛାଡି ନାହାନ୍ତି । ଏଥର କମ୍ପାନି ଉପରେ ଦୃଷ୍ଟି ପଡିଛି । ଡାଇରେକ୍ଟରମାନେ କି ବିଚାର କରିବେ ପଶ୍ଚାତ୍ ଜଣାପଡିବ । ମାତ୍ର ସେମାନଙ୍କର ତ ନାହିଁ କରିବାର କ୍ଷମତା ନାହିଁ । ଓ ତାହା କେହି ତାହାଙ୍କୁ ପଚାରିବ ନାହିଁ । ସୋସାଇଟୀ ଜାଣିଅଛନ୍ତି ଯେ ଅଂଶିମାନେ ଯନ୍ତ୍ରାଳୟକୁ ଛାଡିଦେବେ କେବଳ ନିୟମ ସ୍ଥିର କରିବାର ବାକି ଅଛି । ଗବର୍ଣ୍ଣମେଣ୍ଟ ଯେରପେ ଇରିଗେସନକାର୍ଯ୍ୟର ଭାର ନେଲେ ବୋଧ ହୁଅଇ ସୋସାଇଟୀ ସେହିପରି ଆଶା କରିଅଛନ୍ତି । ସେଥିର ଅଂଶିମାନଙ୍କୁ ଗବର୍ଣ୍ଣମେଣ୍ଟ ଯେରପେ ବୋଧ କଲେ ଯେବେ ସେହିରପେ ସୋସାଇଟୀ କମ୍ପାନିର ଅଂଶିମାନଙ୍କୁ ବୋଧ କରନ୍ତି ତେବେ ଆଶା ପୂର୍ଣ୍ଣ ହୋଇପାରେ ।

*ଭା୫ଗ, ସଂ୩୦ଖ୍ୟା, ୨୩।୭।୧୮୭୦*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## ଉତ୍କଳପୁସ୍ତକ ପରିକ୍ଷକ କମିଟୀ ଇଂରାଜୀସ୍କୁଲ ଗୃହରେ ।

ଅଦ୍ୟ ସକାଳ ଘ୭ଣ୍ଟା ସମୟରେ ଏ କମିଟୀର ସଭା ହେବାର ଅଛି । ଶ୍ରୀଯୁକ୍ତ କମିଶ୍ନର ସାହେବ ଏ ସଭାକୁ ଆଗମନ କରି କମିଟୀର କାର୍ଯ୍ୟ କିରପ ଚଳିବ ସେ ବିଷୟରେ କେତେଗୁଡିଏ ନିୟମ ଧାର୍ଯ୍ୟ କରିବେ । କମିଟୀର କୌଣସି ନିୟମ ନ ଥିବାର ବାସ୍ତବରେ କାର୍ଯ୍ୟ ସୁଚାରରପେ ଚଲୁ ନାହିଁ ଏ କମିଟୀର ପ୍ରଥମକାର୍ଯ୍ୟ ଦେଖି ଆମ୍ଭେମାନେ ଦୁଃଖ ପ୍ରକାଶ କରିଥିଲୁଁ ଓ ସେଥିରେ ଅତ୍ରତ୍ୟ ବହୁତଲୋକ କ୍ଷୋଭିତ ଅଛନ୍ତି । ଏ ପ୍ରକାର ଘଟନା ଯେରପେ ନ ହୁଅଇ ସେଥିପକ୍ଷରେ ନିୟମ କଲେ ବଡ ଭଲ ହେବ । ପୁସ୍ତକ ଖଣ୍ଡି ଏ ସଭାପତିଙ୍କ ହସ୍ତକୁ ଆସିଲାକ୍ଷଣି ସେ ସଭ୍ୟମାନଙ୍କ ନିକଟକୁ ପଠାଇଦେବେ । ସଭ୍ୟମାନେ ପ୍ରତ୍ୟେକବ୍ୟକ୍ତି ତାହାକୁ ପାଠକରି ଆପଣାମତ ଲେଖିଦେବେ ଓ ସମସ୍ତ ସଭ୍ୟ ପୃଥକ୍‌ରପେ ଦେଖିଲାଉତ୍ତାର ଦିନେ ସଭାରେ ସମସ୍ତେ ବସି ପୁସ୍ତକର ଉପଯୋଗିତା ବିଷୟରେ ତର୍କ କରି ମତ ପ୍ରଦାନ କରିବେ ଏରପ ହେଲେ ବୋଧ ହୁଅଇ ଆଉ କାହାରି ଆପତ୍ତି ରହିବ ନାହିଁ । ଯେଉଁମାନେ ଏକମିଟୀର ସଭ୍ୟ ଅଛନ୍ତି ତାହାଙ୍କ ଯୋଗ୍ୟତା ବିଷୟରେ କେହି ଦ୍ୱନ୍ଦ୍ୱ କରି ନାହାନ୍ତି କେବଳ ତର ତର କାର୍ଯ୍ୟ ଶେଷ କରିବାର ତାହାଙ୍କର ପ୍ରଥମକାର୍ଯ୍ୟ ସନ୍ତୁଷ୍ଟଜନକ ହୋଇ ନ ଥିଲା ।

*ଭା୪ଗ, ସଂ୩୩ଖ୍ୟା, ୧୩।୮।୧୮୭୦*

## ଶିକ୍ଷାସମ୍ପର୍କୀୟ ବିଜ୍ଞାପନ ।

ଦକ୍ଷିଣ ପଶ୍ଚିମବିଭାଗର ଇନସ୍ପେକ୍‌ଟର ଓ କଟକର ଦିପୋଟିଇନସ୍ପେକ୍‌ଟଙ୍କଠାର ଛାତ୍ରବୃତ୍ତି ପରୀକ୍ଷା ଓ ପଣ୍ଡିତଙ୍କପରୀକ୍ଷା ବିଷୟରେ ଦୁଇଖଣ୍ଡି ବିଜ୍ଞାପନ ଆମ୍ଭେମାନେ ପ୍ରାପ୍ତ ହୋଇ ଅଦ୍ୟ ପଣ୍ଡିତଙ୍କ ପରୀକ୍ଷାର ବିଜ୍ଞାପନ ପ୍ରକାଶ କଲୁଁ ଆଗାମୀ ସପ୍ତାହରେ ଛାତ୍ରବୃତ୍ତି ପରୀକ୍ଷାର ବିଜ୍ଞାପନ ପ୍ରକାଶ ହେବ ।

*ଭା୪ଗ, ସଂ୩୬ଖ୍ୟା, ୩।୯।୧୮୭୦*

## "ଓଡିଆ ସ୍ୱତନ୍ତ୍ର ଭାଷା ନୁହଇ"

ଗତ ଜୁଲାଇମାସର "କଲିକତା ରିବିଉ" ନାମକ ତ୍ରୈମାସିକ ପତ୍ରିକାରେ ଏ ପୁସ୍ତକର ସମାଲୋଚନା ପ୍ରକାଶ ହୋଇଅଛି । ଇଂରାଜମାନେ କାନ୍ତିବାବୁଙ୍କ ମତକୁ କିରପ ଜ୍ଞାନ କରନ୍ତି ତାହା ସେଥିର ପ୍ରକାଶ ହେବ ବୋଲି ଉକ୍ତ ସମାଲୋଚନାର ସାରାଂଶ ଏଠାରେ ପ୍ରକାଶିତ ହେଲା ପାଠକମାନେ ତାହା ପାଠ କରି ବୁଝିବେ ଯେ ଏକା ଉତ୍କଳୀୟମାନେ କାନ୍ତିବାବୁଙ୍କର ମତର ବିରୋଧୀ ନୁହନ୍ତି । ଅପକ୍ଷପାତ ବ୍ୟକ୍ତିମାନେ ସୁଦ୍ଧା ତାହାଙ୍କ ମତକୁ ହେୟଜ୍ଞାନ କରଅଛନ୍ତି "ରିବିଉର"ସମ୍ପାଦକ ଲେଖନ୍ତି ଯେ

"ପୁସ୍ତକର ଭୂମିକାର ପ୍ରକାଶ ଯେ ଓଡିଶା କଚେରୀସମୂହରେ ବଙ୍ଗଳା ପରିବର୍ତ୍ତରେ ଓଡିଆଭାଷା ପ୍ରଚାରିତ କରିବାରେ କମିଶ୍ନର ଓ ମିସନରିମାନେ ଭ୍ରମରେ ପଡିଅଛନ୍ତି କାରଣ ଏଦୁଇ ଭାଷାକୁ ସେମାନେ ପୃଥକ୍ ଜ୍ଞାନ କରନ୍ତି । ତଦନୁସାରେ ଲେଖକ ଓଡିଆ ସ୍ୱତନ୍ତଭାଷା ନ ଥିବା ଓ ତାହା ବଙ୍ଗଳାର ଅପଭ୍ରଂଶ ମାତ୍ର ଥିବାର ପ୍ରମାଣ କରିବାକୁ ଚେଷ୍ଟା ପାଇଅଛନ୍ତି ମାତ୍ର ଆମ୍ଭମାନଙ୍କ ବିବେଚନାରେ ସେ କୃତକାର୍ଯ୍ୟ ହୋଇ ନାହାନ୍ତି । ତାହାଙ୍କର ମତ ସମର୍ଥନପାଇଁ ସେ ଗୋଟିଏମାତ୍ର ହେତୁ ଦର୍ଶାଇ ଅଛନ୍ତି ତାହା ଏହିଯେ ଅନେକ ବଙ୍ଗଳା ଓ ଓଡିଆ ଶବ୍ଦ ଏକାପ୍ରାଏ ଅଟଇ । କିନ୍ତୁ ଏକଥା ବଙ୍ଗଳା ଓ ଗୁଜରାତିପକ୍ଷରେ ମଧ୍ୟ କୁହାଯାଇପାରେ ଓ ଆମ୍ଭେମାନେ ଆପେ ଅନୁଭବ କରି କହୁଅଛୁଁ ଯେ ଜଣେ ସୁଶିକ୍ଷିତ ବଙ୍ଗାଳୀ ଗୁଜରାତି ଗୋଟିଏଅକ୍ଷର ସୁଦ୍ଧା ନ ଜାଣି ଉକ୍ତ ଭାଷାର ଦଶାଂଶର ନଅଂଶ ବୁଝିପାରିବ ମାତ୍ର ଏଥିପାଁଇ କି କେହି ଗୁଜରାତି ଓ ବଙ୍ଗଳାକୁ ଏକ ବୋଲି ଅନୁମାନ କରନ୍ତି । ପ୍ରକୃତକଥା ଏହିଯେ ଓଡିଆ ବଙ୍ଗଳା ଗୁଜରାତି ଓ ଅନ୍ୟଭାଷାମାନ ସଂସ୍କୃତର ଉଦ୍ଭବ ହୋଇଥିବାର ସେହି ହେତୁର ତାହାଙ୍କର ସୌସାଦୃଶ୍ୟ ଅଛି । ଆମ୍ଭେମାନେ ବୋଧ କରଁ କି ଯେମନ୍ତ ତଳଉଚ୍ଚଭାଷା ଉପରଉଚ୍ଚ ଭାଷାର ଅପଭ୍ରଂଶ ନୁହଇ ସେହିରପ ଓଡିଆ ବଙ୍ଗଳାର ଅପଭ୍ରଂଶ ନୁହଇ । ଯେବେକି ଓଡିଆ ମନ୍ଦ ବଙ୍ଗଳା ହୁଅଇ (ଆମ୍ଭେମାନେ ଏକଥା ସ୍ୱୀକାର କର

ନାହୁଁ) ତେବେହେଁ ଗବର୍ଣ୍ଣମେଣ୍ଟ ଏହାକୁ ଓଡିଶା ଅଦାଲତସମୂହର ଭାଷା କରିବାରେ ଯଥାର୍ଥ ବିଚାର କରିଅଛନ୍ତି । କାରଣ ଏହା ମନ୍ଦ ବଙ୍ଗଳା ହେଲେ ମଧ୍ୟ ଓଡିଶାପ୍ରତି ଭଲ ଭାଷା ଅଟଇ ଏବଂ ଓଡିଶାର ତିନିକୋଟି ଲୋକ କେବଳ ଏଭାଷାରେ କଥାବାର୍ତ୍ତା କରନ୍ତି ଏମନ୍ତ ନୁହେ ଏଭାଷାରେ ପୂର୍ବର ଅନେକ ସାହିତ୍ୟଗ୍ରନ୍ଥ ରଚନା ହୋଇଅଛି ଓ ଦିନ ଦିନ ରଚନା ବୃଦ୍ଧି ହେଉଅଛି । ଅତଏବ ଓଡିଶାର ଲୋକଙ୍କୁ ବଳପୂର୍ବକ ବଙ୍ଗଳା ଶିକ୍ଷା ଦେଲେ ଗବର୍ଣ୍ଣମେଣ୍ଟ ସେହିପ୍ରାୟ ଅନ୍ୟାୟ କରନ୍ତେ କି ଯେମନ୍ତ ପ୍ରସିଆଗବର୍ଣ୍ଣମେଣ୍ଟ ଉପରଉଚ୍ଚଭାଷା ହୋଲଷ୍ଟିନରେ ପ୍ରଚାର ବିଷୟରେ ଅନ୍ୟାୟାଚରଣ କରିଥିଲେ" ।

*ଭା୫ଗ, ସଂ୩୬ଖ୍ୟା, ୩।୯।୧୮୭୦*

## ଗବର୍ଣ୍ଣମେଣ୍ଟ ବଙ୍ଗଳା ଅନୁବାଦକ ।

ଏମହାଶୟଙ୍କ ପ୍ରଚାରିତ ଗତମାସ ତା୧୩ରିଖରେ ଶେଷ ହୋଇଥିବା ସପ୍ତାହ ବାବତ୍ ଦେଶୀୟଭାଷା ରଚିତ ସମ୍ବାଦପତ୍ରର ରିପୋର୍ଟରେ ଉତ୍କଳ ହିତୈଷିଣୀ ସମ୍ପର୍କରେ ବିଜ୍ଞାପନ ପାଠକରି ଆମ୍ଭେମାନେ ଆଶ୍ଚର୍ଯ୍ୟ ହେଲୁଁ । ଆମ୍ଭମାନଙ୍କୁ ଜଣାଥିଲା ଯେ ଅନୁବାଦକ ମହାଶୟ ଓଡିଆଭାଷା ଜାଣନ୍ତି ନାହିଁ ଓ ଦୀପିକା ପ୍ରଥମ ଛପାହେବା ସମୟରେ ସେ ତାହା ସ୍ୱୀକାର କରିଥିଲେ ତଦୁତ୍ତାର ଉତ୍କଳଦୀପିକାର ଦୁଇ ତିନିଥର କିଛି କିଛି ଉଦ୍ଧୃତ କରିବାର ଆମ୍ଭେମାନେ ସିଦ୍ଧାନ୍ତ କଲୁଁ ଯେ ଅନୁବାଦକ ଏଣିକି ଓଡିଆ ଶିଖିଲେଣି ଅଥବା ତାହାଙ୍କ ଅଫିସରେ କେହି ଜାଣିବା ଲୋକ ଅଛି ମାତ୍ର କିଛିଦିନ ଉତ୍ତାର ଦୀପିକାର ଆଉ ଉଲ୍ଲେଖ ନ ଦେଖି ଶେଷଲିଖିତ କଳ୍ପନାକୁ ସ୍ଥିର କରି ମନେ କଲୁଁ ଯେ ଉକ୍ତ ଓଡିଆ ଜାଣିବାବ୍ୟକ୍ତି ସ୍ଥାନାନ୍ତରିତ ହୋଇଥିବ ସୁତରାଂ ଆଉ ଦୀପିକା ପାଠକରିବାକୁ କେହି ନାହିଁ । ଏରପ ଦୁଇବର୍ଷ ଗତ ହେଲାଉତ୍ତାର ହିତୈଷିଣୀ ବିଷୟକ ଉକ୍ତ ବିଜ୍ଞାପନ ପାଠକରି ପୁନର୍ବାର ଆମ୍ଭେମାନେ ଭ୍ରମପ୍ରମାଦରେ ପଡିଅଛୁଁ । ବିଜ୍ଞାପନଟି ଯଥା ।

"ଆମ୍ଭେମାନେ ବର୍ତ୍ତମାନ ଓଡିଶାପେଟ୍ରିଅଟ ନାମକ ସମ୍ବାଦପତ୍ର ପାଇଅଛୁଁ ଏହା ଇଂରାଜୀ ଓ ଓଡିଆଭାଷାରେ ମାସରେ ଦୁଇଥର ପ୍ରଚାରିତ ହୁଅଇ ଓ ଆଜସରିକି ଏହାର ଦ୍ୱିତୀୟଭାଗର ଦ୍ୱାଦଶଖଣ୍ଡ ପର୍ଯ୍ୟନ୍ତ ପ୍ରକାଶ ହେଲାଣି । ପତ୍ରିକାର ଓଡିଆ ସ୍ତମ୍ଭରେ ଏମନ୍ତ କିଛି ନାହିଁ କି ଯାହା ବିଶେଷରପେ ଜଣାଇବାର ଆବଶ୍ୟକ ଇଂରାଜୀ ସ୍ତମ୍ଭରେ କେନାଲ ବିଷୟରେ ଗୋଟିଏ ଉତ୍ତମ ପ୍ରସ୍ତାବ ଅଛି ମାତ୍ର ତହିଁର ପ୍ରତିଲିପିରେ କିଛି ପ୍ରୟୋଜନ ନାହିଁ" ।

"ଓଡିଆ ସ୍ତମ୍ଭରେ ବିଶେଷରପେ ଜଣାଇବାର କଥା ନାହିଁ " ଏଥିର ଅନୁମାନ ହୁଅଇ ଯେ ଅନୁବାଦକ ଓଡିଆଲେଖା ସବୁ ପଢିଅଛନ୍ତି ଓ ବାସ୍ତବରେ ଯେଉଁପତ୍ରିକା ସେ ଦେଖିଅଛନ୍ତି ସେଥିରେ ପଦ୍ୟମାଳାର ସମାଲୋଚନା ଭିନ୍ନ ଅନ୍ୟ କିଛି ସମ୍ପାଦକୀୟ ନ ଥିବା ଓ ସାପ୍ତାହିକ ବିଜ୍ଞାପନୀରେ ତାହା ଲେଖିବାର ଯୋଗ୍ୟ ନ ଥିବାର ଏ ବିଶ୍ୱାସ ଦୃଢ ହେଉଅଛି ଅନୁବାଦକ ପତ୍ରିକା ପଢି ନ ଥିଲେ ଏକଥା ଲେଖିବାକୁ ସମର୍ଥ ହୁଅନ୍ତେ ନାହିଁ । ଅତଏବ ଯେବେ ସେ ଓଡିଆ ଜାଣନ୍ତି ତେବେ ପ୍ରାୟ ଦୁଇବର୍ଷହେଲା କାହିଁକି ଉତ୍କଳର କୌଣସି ସମ୍ବାଦପତ୍ରର କିଛି ଉଦ୍ଧାର କରି ଆପଣା ରିପୋର୍ଟରେ ପ୍ରକାଶକରି ନାହାନ୍ତି ଏଥିର ବୋଧ ହୁଅଇ ଯେ ସେ ଆପଣାକର୍ମ ଯଥାର୍ଥରପେ ନିର୍ବାହ କରନ୍ତି ନାହିଁ ନୋହିଲେ ଭାଷା ନ ଜାଣିବାର ତ ପ୍ରକାଶ ହେଉ ନାହିଁ ଓ ଯେବେ ନିତାନ୍ତରେ ଏହିକଥା ସତ୍ୟ ହୁଅଇ ତେବେ ଅନୁବାଦକ ନୂତନପତ୍ରିକା ଖଣ୍ଡେ ପାଇ ସେଥିରେ କି ଅଛି ବୋଲି ଜାଣିବାକୁ କୌତୁକୀ ହୋଇ କାହାରିଠାର ପଢାଇ ନେଇଥିବେ । ପ୍ରତିସପ୍ତାହରେ ସେରପ ପଢାଇନେବାର ସୁଯୋଗ ନ ଘଟିବାର ସବୁ ପତ୍ରିକାର ମର୍ମ ଜାଣିପାରନ୍ତି ନାହିଁ ।

ଯାହା ହେଉ ଆମ୍ଭେମାନେ ଗତ ପ୍ରକାଶିତ ୧୩ ସଂଖ୍ୟକ ଓଡିଶାପେଟ୍ରିଅଟର ରିପୋର୍ଟକୁ ଅପେକ୍ଷା କରି ରହିଲୁଁ ସେଥିପକ୍ଷରେ ଅନୁବାଦକ କିଛି ଲେଖିବେ କି ନାହିଁ ଜଣାଯିବ । ଆମ୍ଭମାନଙ୍କ ବିବେଚନାରେ ଉକ୍ତ ସଂଖ୍ୟକ ଓଡିଶା ପେଟ୍ରିଅଟ ପୂର୍ବ ସଂଖ୍ୟାମାନଙ୍କ ପ୍ରତି ଅନେକାଂଶରେ ଉତ୍କୃଷ୍ଟ ହୋଇଅଛି ଓ ସେଥିରେ ଓଡିଶା ସମ୍ପର୍କୀୟ ଦିଯୋଟି ଉତ୍ତମକଥା ଲେଖାଅଛି ଯଥା ଓଡିଆଭାଷା ପରୀକ୍ଷା ବଙ୍ଗାଳିଙ୍କ ଦ୍ୱାରା ନ ହେବା ପାଇଁ ସମ୍ପାଦକ ଅନୁରୋଧ

କରିଅଛନ୍ତି ଓ ଅନାବୃଷ୍ଟି ହେତୁଁ କୃଷିର ଅବସ୍ଥା ମନ୍ଦ ଥିବାର ଲେଖାଯାଇଅଛି । ଯେବେ ଏବିଷୟମାନ ଇଂରାଜୀ ରିପୋର୍ଟରେ ସନ୍ନିବେଶିତ ନ ହେବ ତେବେ ଅନୁବାଦକ ଦେଶୀୟ ସମ୍ବାଦପତ୍ରର ଆଉ କଣ ଉଦ୍ଧୃତକରି ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବେ ଓ ତାହାଙ୍କ ରିପୋର୍ଟରେ ଅବା କି ଉପକାର ଦର୍ଶିବ ।

*ଭା୫ଗ, ସଂ୩୬ଖ୍ୟା, ୩।୯।୧୮୭୦*

## ବିଜ୍ଞାପନ ।

ଓଡିଶାର ବଙ୍ଗୋତ୍କଳ ବିଦ୍ୟାଳୟସମୂହର ଯେଉଁ ଶିକ୍ଷକମାନେ ଟ ୧ ୨ଙ୍କା ବା ତଦୂର୍ଦ୍ଧ୍ୱ ବେତନ ପାନ୍ତି, ଅଥଚ ସଂସ୍କୃତକଲେଜରେ କିମ୍ବା କୌଣସି ନର୍ମାଲ ବିଦ୍ୟାଳୟରେ ରୀତିମତ ଶିକ୍ଷା ପ୍ରାପ୍ତ ହୋଇ ନାହାନ୍ତି ସେମାନଙ୍କୁ ବର୍ତ୍ତମାନ ସମୟଠାର ଆଗାମୀ ଦୁଇବର୍ଷ ମଧ୍ୟରେ ନିମ୍ନଲିଖିତ ରୀତ୍ୟନୁସାରେ ଚାରିଥର ପରୀକ୍ଷା ଦେବାକୁ ହେବ । ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ ସେମାନଙ୍କ ପଦରେ ଉପଯୁକ୍ତ ଶିକ୍ଷକ ନିଯୁକ୍ତ କରାଯିବ ।

ପ୍ରତି ପରୀକ୍ଷାର ପାଠ୍ୟପୁସ୍ତକର ତାଲିକା ।

ନିମ୍ନେ ଲିଖିତ ହେଲା ।

ପରୀକ୍ଷାର ଦିନ ନିରପଣ ।

୧ ମ । ସାହିତ୍ୟ - ୧୮୭୧ ସାଲ ଫିବୃଏରୀମାସର ପ୍ରଥମ ସୋମବାର ।
୨ ୟ । ଗଣିତ - ୧୮୭୧ ସାଲ ଅଗଷ୍ଟମାସ ପ୍ରଥମ ସୋମବାର ।
୩ ୟ । ଭୂଗୋଳ ଓ ଇତିହାସ - ୧୮୭୨ ସାଲ ଫିବୃଏରୀମାସର ପ୍ରଥମ ସୋମବାର ।
୪ ର୍ଥ । ଶିକ୍ଷାପ୍ରଣାଳୀ - ୧୮୭୨ ସାଲ ଅଗଷ୍ଟମାସ ପ୍ରଥମ ସୋମବାର ।

ନିମ୍ନଲିଖିତ ନିୟମସମୂହାନୁସାରେ କାର୍ଯ୍ୟ ନିଷ୍ପନ୍ନ ହେବ ।

### ନିୟମ ।

୧ ମ । ଯେଉଁ ସକଳ ଶିକ୍ଷକ ଟ ୧ ୨ଙ୍କାର କମ୍ ବେତନ ପାନ୍ତି । ସେମାନେ ଯଦି ଭାବି ଉନ୍ନତି ନିମିତ୍ତ ପରୀକ୍ଷା ଦେବାକୁ ଇଚ୍ଛୁକ ହେଲେ ଦେଇପାରନ୍ତି ଏବଂ ଉତ୍ତୀର୍ଣ୍ଣ ହୋଇ ନ ପାରିଲେ ମଧ୍ୟ ସେମାନଙ୍କ କର୍ମପକ୍ଷରେ କୌଣସି ହାନି ହେବ ନାହିଁ ।

୨ ୟ । ଯେଉଁ ସକଳ ପ୍ରଧାନଶିକ୍ଷକ ଟ ୧ ୨ଙ୍କା ବା ତଦଧିକ ବେତନରେ ୮ ବର୍ଷ କିମ୍ବା ତଦଧିକ କାଳର କାର୍ଯ୍ୟ କରିଆସୁଅଛନ୍ତି ଯଦି ସ୍ଥାନୀୟ ଡେପୁଟୀ ଇନ୍ସପେକ୍ଟର ସେମାନଙ୍କୁ ଏହି ପରୀକ୍ଷାର ମୁକ୍ତି ଦେବାକୁ ଇଚ୍ଛା କରନ୍ତି ତାହା ହେଲେ ଇନ୍ସପେକ୍ଟରସାହେବ କୌଣସି ଆପତ୍ତି କରିବେ ନାହିଁ ।

୩ ୟ । ଇଙ୍ଗରାଜୀ ବିଦ୍ୟାଳୟର ଯେଉଁ ସମସ୍ତ ପଣ୍ଡିତଙ୍କର କୌଣସି ନର୍ମାଲ ବା ସଂସ୍କୃତବିଦ୍ୟାଳୟର ଶେଷପରୀକ୍ଷାର ସାର୍ଟିଫିକଟ ନାହିଁ ଏବଂ ସେମାନେ ଟ ୧ ୦ଙ୍କା କିମ୍ବା ତଦଧିକ ବେତନ ପାନ୍ତି ସେମାନଙ୍କୁ ପ୍ରଥମଥରର (ଅର୍ଥାତ୍ ସାହିତ୍ୟ ବିଷୟର) ପରୀକ୍ଷା ଦେବାକୁ ହେବ । କିନ୍ତୁ ଯଦି ଡେପୁଟୀ ଇନ୍ସପେକ୍ଟର ଅନେକ ଦିନର କର୍ମ କରଅଛନ୍ତି ବୋଲି ଉପଯୁକ୍ତ ଜ୍ଞାନକରି ମୁକ୍ତ କରନ୍ତି ତାହା ହେଲେ ପରୀକ୍ଷା ଦେବାକୁ ହେବ ନାହିଁ ।

**ଶିକ୍ଷକମାନଙ୍କ ପରୀକ୍ଷା ନିମିତ୍ତ**

ପ୍ରସ୍ତାବିତ ପରୀକ୍ଷାର ପାଠ୍ୟପୁସ୍ତକର ତାଲିକା ।

**ପ୍ରଥମ ଷାଣ୍ମାସିକ ପରୀକ୍ଷା ।**

**ବଙ୍ଗଳା ସାହିତ୍ୟ ଓ ବ୍ୟାକରଣ ।**

ଗଦ୍ୟ - ରଘୁବଂଶ (ବିଦ୍ଯାନନ୍ଦକୃତ)

ପଦ୍ୟ- ବୀରାଙ୍ଗନା କାବ୍ୟ (ମାଇକେଲକୃତ)

ବ୍ୟାକରଣ (ଲୋହାରାମକୃତ)

ଅଳଙ୍କାର- ସାହିତ୍ୟ, ମୁକ୍ତାବଳୀ(ଜୟଗୋପାଳକୃତ)

ଓଡିୟା-ଓଡିୟା ରଚନା ।

ପଦ୍ୟସଂଗ୍ରହ(ଓଡିୟା ବିଦ୍ୟାରତ୍ନ କୃତ)

**ଦ୍ୱିତୀୟ ଷାଣ୍ମାସିକ ପରୀକ୍ଷା ।**

**ଗଣିତ ।**

ଗଣିତବିଜ୍ଞାନ ସମାପ୍ତ

ଜ୍ୟାମିତି - ଦ୍ୱିତୀୟ ଅଧ୍ୟାୟ ସହଜ ସହଜ ଅତିରିକ୍ତ

ବୀଜଗଣିତ- ପ୍ରସନ୍ନକୁମାରକୃତ ପ୍ରଥମଠାର ଭଗ୍ନାଂଶ ଶେଷ ପର୍ଯ୍ୟନ୍ତ ।

**ତୃତୀୟ ଷାଣ୍ମାସିକ ପରୀକ୍ଷା ।**

**ଭୂଗୋଳ ଓ ଇତିହାସ ।**

ଇତିହାସ-ଭାରତବର୍ଷର (ତାରିଣୀଚରଣକୃତ ୨ୟ ଭାଗ, ରୋମର ଭୂଦେବକୃତ)

ଭୂଗୋଳ-ଭୂବୃତ୍ତାନ୍ତ (ହରିମୋହନକୃତ)

ଭୂଗୋଳତତ୍ତ୍ୱ-(ଗୌରୀଶଙ୍କର କୃତ ଓଡିୟା)

**ଚତୁର୍ଥ ଷାଣ୍ମାସିକ ପରୀକ୍ଷା ।**

**ଶିକ୍ଷାପ୍ରଣାଳୀ ।**

ଶିକ୍ଷାବିଧାନ- ଦ୍ୱାରିକାନାଥକୃତ (ଓଡିୟା)

ଶିକ୍ଷାପ୍ରଣାଳୀ-ଗୋପାଳ ବନ୍ଦ୍ୟୋପାଧ୍ୟାୟ କୃତ

ତଳଲିଖିତ ନୂତନପୁସ୍ତକମାନ କଟକ ପ୍ରିଣ୍ଟିଂ କୁମ୍ପାନିଙ୍କ ଯନ୍ତ୍ରାଳୟରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ମହାଭାରତ ସଭାପର୍ବ କୃଷ୍ଣସିଂହ କୃତ ଟ ୧, ଭୂଗୋଳତତ୍ତ୍ୱ ଏଥିରେ ପୃଥିବୀର ଗତି ଓ ଦିନ ରାତ୍ରି ଋତୁଭେଦ ଗ୍ରହ ଗଣନାଦିର କାରଣ ଓ ଅନ୍ୟାନ୍ୟ ଜ୍ୟୋତିଷ ସମ୍ପର୍କୀୟ ବିଷୟମାନ ବର୍ଣ୍ଣିତ ହୋଇଅଛି । ଟ ୦ |୵ ସୁବର୍ଣ୍ଣରେଖା ଉପେନ୍ଦ୍ରଭଞ୍ଜକୃତ ଟ ୦ ।୷୵

*ଭାଗ ୫, ସଂ ୩୬ଖ୍ୟା, ୩।୯।୧୮୭୦*

## ଉତ୍କଳପୁସ୍ତକ ରଚନାନିମିତ୍ତ ପୁରସ୍କାର ।

ଆମ୍ଭେମାନେ ଅବଗତ ହୋଇ ଅଛୁଁ ଯେ ଶ୍ରୀଯୁକ୍ତ ମାର୍ଟିନସାହେବ ଇନ୍ସପେକ୍ଟରଙ୍କ ଅନୁରୋଧକ୍ରମେ କଟକର ଶିକ୍ଷାବିଭାଗର କମିଟୀ କେତେଖଣ୍ଡି ପୁସ୍ତକ ରଚନାସକାଶେ ପୁରସ୍କାର ଦେବାପାଇଁ ସ୍ୱୀକାର କରିଅଛନ୍ତି ଏ ପୁରସ୍କାର ଢେଙ୍କାନାଳ ମହାରାଜଙ୍କ ପ୍ରଦତ୍ତ ଟଙ୍କା କି ଯାହା ଉତ୍କଳପୁସ୍ତକ ବୃଦ୍ଧି କାରଣ କମିଟୀହସ୍ତରେ ଅଛି ସେଥିର ଦିଆଯିବ । କେଉଁ କେଉଁ ବିଷୟରେ ପୁସ୍ତକ ରଚନାକରିବାରେ କେତେଲେଖାଏଁ ଟଙ୍କା ଧାର୍ଯ୍ୟ ହୋଇଅଛି ତହିଁର କୌଣସି ବିଜ୍ଞାପନ ପ୍ରକାଶ ହୋଇ ନାହିଁ କିମ୍ବା ପ୍ରତ୍ୟେକ ପୁସ୍ତକ ରଚନାପାଇଁ କେତେକାଳ ସମୟ ଦିଆଯିବ ଜଣା ନାହିଁ ଆମ୍ଭେମାନେ ଶୁଣୁଅଛୁଁ ଯେ ତଳଲିଖିତ ପୁସ୍ତକମାନ ପ୍ରୟୋଜନ ଓ ତନ୍ନିମିତ୍ତ ପୁସ୍ତକର ପାର୍ଶ୍ୱଲିଖିତ ଟଙ୍କା ପୁରସ୍କାର ଦିଆଯିବ ଓ ଆଗାମି ନବମ୍ବର ଶେଷ ପର୍ଯ୍ୟନ୍ତ ପୁସ୍ତକମାନ କମିଟୀକୁ ଅର୍ପଣ କରିବାକୁ ହେବ । ଆମ୍ଭମାନଙ୍କ ଅନୁମାନରେ ଏ ସମୟ ଅତ୍ୟଳ୍ପ ଅଟଇ । କୃତବିଦ୍ୟମାନେ କେହି ତୂନିହୋଇ ବସି ନାହାନ୍ତି ଯେ ହୁପରି ଖଣ୍ଡେ

ପୁସ୍ତକ ଲେଖିଦେବେ । ଅବଧି ପୁରୀ ବାଲେଶ୍ୱର ଲୋକେ ଏକଥାର ସଂବାଦ ପାଇନାହାନ୍ତି ପୁସ୍ତକ ରଚନାର ସମୟ କାହିଁ ଓ ତିନିଜିଲ୍ଲାରେ ଘୋଷଣା ଦିଆ ନ ଗଲେ ଭଲପୁସ୍ତକ କିପରି ବାହାରିବ ? ଆମ୍ଭେମାନେ ଶିକ୍ଷାବିଭାଗର କମିଟୀକୁ ପ୍ରାର୍ଥନା କରଅଛୁଁ ଯେ ଏ ବିଷୟରେ ଯେ କଥାମାନ କମିଟୀରେ ସ୍ଥିର ହୋଇଅଛି ତାହା ଘୋଷଣା ଦ୍ୱାରା ସର୍ବସାଧାରଣଙ୍କୁ ଜଣାଇ ଦେଉନ୍ତୁ ଓ ଉପଯୁକ୍ତ ସମୟ ଦେଉନ୍ତୁ ଯେମନ୍ତ କି ଯାହା ଇଚ୍ଛା ସେ ପୁସ୍ତକ ରଚନାରେ ପ୍ରବୃତ୍ତ ହେବେ । ଏରପ ନ କରି ଶୀଘ୍ର କାର୍ଯ୍ୟ ଶେଷ କରିବାକୁ ବସିଲେ ଲୋକେ ତାହାଙ୍କ ଉପରେ ଅନ୍ୟାୟ ବିଚାରର ଦୋଷାରୋପ କରିବେ ।

| ଯେଉଁ ବିଷୟର ପୁସ୍ତକ ପ୍ରୟୋଜନ | ପୁସ୍ତକ। ନ୍ୟୂନ କଲ୍ପରେ ଯେତେ ପୃଷ୍ଠା ହେବ | ପାରିତୋଷିକର ପ୍ରମାଣ |
|---|---|---|
| ପ୍ରାକୃତିକବିଜ୍ଞାନ | ୧୦୦ | ଟ୮୦ |
| ଅଙ୍କ | ୬୦ | ଟ୪୦ |
| ଜରୀପ | ୮୫ | ଟ୮୦ |
| ଉତ୍କଳ ଭୂଗୋଳ | ୪୫ | ଟ୩୦ |
| ଭାରତବର୍ଷର ଭୂଗୋଳ | ୧୨୦ | ଟ୯୦ |
| ଇଂଲଣ୍ଡର ଇତିହାସ | ୧୨୦ | ଟ୯୦ |
| ବୀଜଗଣିତ | ୧୫୦ | ଟ୧୫୦ |
| ସ୍ୱାସ୍ଥ୍ୟରକ୍ଷା | ୬୦ | ଟ୪୦ |
| ପ୍ରାକୃତିକ ଭୂଗୋଳ | ୧୦୦ | ଟ୮୦ |
| ଜୀବତତ୍ତ୍ୱ | ୧୩୦ | ଟ୧୨୦ |

*ଭା୫ଗ, ସଂ୩୬ଖ୍ୟା, ୧୦।୯।୧୮୭୦*

## ସମାଲୋଚନା ।

## ଭାରତବର୍ଷ ଇତିହାସ ଦ୍ୱିତୀୟଭାଗ ।

ଶ୍ରୀ ଫକୀରମୋହନ ସେନାପତିଙ୍କ ଦ୍ୱାରା ସଂକ୍ଷେପରେ ସଂଗୃହୀତ ଓ ବାଲେଶ୍ୱର ଉତ୍କଳପ୍ରେସରେ ମୁଦ୍ରିତ ।

ଆମ୍ଭେମାନେ ଏ ପୁସ୍ତକ ଖଣ୍ଡିକ ଉପହାର ସ୍ୱରପ ପ୍ରାପ୍ତ ହୋଇ ତହିଁର ଅନେକାନେକ ସ୍ଥଳ ପାଠ କରି ଅତିଶୟ ଆନନ୍ଦ ହୋଇଅଛୁଁ ଏହାଦ୍ୱାରା କେବଳ ବିଦ୍ୟାଳୟର ପାଠ୍ୟପୁସ୍ତକ ସଂଖ୍ୟା ବୃଦ୍ଧି ହେଲା ବୋଲି ଯେ ଆମ୍ଭେମାନେ ସୁଖୀ ହେଲୁଁ ଏମନ୍ତ ନୁହେ । ଏ କଥା ସର୍ବସାଧାରଣର ଆନନ୍ଦ ହେବାର ହେତୁ ମାତ୍ର ଆମ୍ଭମାନଙ୍କର ସୁଖ ଲାଭର ଗୋଟିଏ ବିଶେଷ କାରଣ ଅଛି । ତାହା ଏହି ଯେ ଗତବର୍ଷ ଏ ପୁସ୍ତକର ପ୍ରଥମଭାଗ ଯେତେବେଳେ ବାହାରିଥିଲା ତେତେବେଳେ ଆମ୍ଭେମାନେ ତହିଁର ସଙ୍କଳନରୀତିକୁ ପ୍ରଶଂସା କରିଥିଲେ ମଧ୍ୟ ଭାଷାରଚନା ପ୍ରତି ଅସନ୍ତୁଷ୍ଟ ପ୍ରକାଶ କରିବାକୁ ବାଧ୍ୟ ହୋଇଥିଲୁଁ ମାତ୍ର ସେହିକାଳରେ ଗ୍ରନ୍ଥକର୍ତ୍ତାଙ୍କର ଅନ୍ୟ ଗୁଣମାନ ସ୍ମରଣ କରି ଆଶା କରିଥିଲୁଁ ଯେ ଭବିଷ୍ୟତରେ ଏ ଦୋଷ ପରିହାର ପକ୍ଷରେ ଯତ୍ନ କରିବେ । ବର୍ଷକ ମଧ୍ୟରେ ଆମ୍ଭମାନଙ୍କର ସେ ଆଶା ପୂର୍ଣ୍ଣ ହେଲା ଏହା କି ସାମାନ୍ୟ ସୁଖର ବିଷୟ । ଖଣ୍ଡେ ପ୍ରଥମଭାଗ ଓ ଖଣ୍ଡେ ଦ୍ୱିତୀୟଭାଗର ଏକ ଏକ ଅଂଶ ପାଠକରି କେହି କୌତୁକେଛୁ ପାଠକ ତୁଳନା କରନ୍ତୁ ସେ ଅବଶ୍ୟ ଦ୍ୱିତୀୟଭାଗର ଭାଷା ରଚନା ଉତ୍କୃଷ୍ଟ ବୋଲି ସ୍ୱୀକାର କରିବେ ସ୍ଥାନ ସ୍ଥାନରେ କ୍ରିୟାର କାଳର ନିୟମ ରଖିବାରେ ଭ୍ରମ ଥିବାର ଦେଖାଯାଏ ଓ କଦାଚ ଦୁଇ ଏକ ସ୍ଥଳରେ ଯଥାର୍ଥ ଉତ୍କଳଶବ୍ଦର ରପାନ୍ତର ହୋଇଅଛି ମାତ୍ର ପ୍ରସ୍ତାବଗୁଡ଼ିକ ସୁପାଠ୍ୟ ହୋଇଥିବାର ସେ

ସବୁ ତହିଁ ମଧ୍ୟରେ ଲୁଚିଯାଇଅଛି ଅତଏବ ତାହା ଧର୍ତ୍ତବ୍ୟ ନୁହଇ । ଏମନ୍ତ କିଏ ରଚନା କରିବ କି ଯହିଁରେ ଗୋଟିଏ ହୋଇ ଭ୍ରମ ନ ଥିବ ? ମାତ୍ର ସେହି ବ୍ୟକ୍ତି ପ୍ରଶଂସନୀୟ ଯେ କି ଭ୍ରମରକଥା ଶୁଣିଲାର ତହିଁରେ ବିରକ୍ତ ନ ହୋଇ ଭବିଷ୍ୟତକୁ ତାହା ସଂଶୋଧନ ପକ୍ଷରେ ଯତ୍ନକରଇ । ବିଶେଷରେ ଉତ୍କଳଭାଷାରେ ଗଦ୍ୟରଚନା ପୂର୍ବର ନ ଥିଲା ଏଣୁକରି ରଚନାର ନିୟମ ସ୍ଥିର ହୋଇ ନାହିଁ ବୋଲାଯାଇ ପାରେ ଏ ଅବସ୍ଥାରେ କିଛି ଅଧିକଭ୍ରମ ବାହାରିବାର ସମ୍ଭାବନା ଓ ଯେଉଁମାନେ ସେ ସବୁ କ୍ରମେ ତ୍ୟାଗ କରିବାକୁ ଚେଷ୍ଟା କରଅଛନ୍ତି ତାହାଙ୍କ ପ୍ରତି ସର୍ବସାଧାରଣର ଅନେକ ଆଶା ଅଛି ନୋହିଲେ ଏମନ୍ତ ଲୋକ ନାହାନ୍ତି କି ତାହାଙ୍କର ଭ୍ରମ କେହି ଦେଖାଇ ଦେଲେ ଗୌରବର କ୍ଷତି ଜ୍ଞାନକରି ରାଗାନ୍ୱିତ ହୁଅନ୍ତି ଓ ଆପଣାର ଭ୍ରମ ସଂଶୋଧନ କରିବାର ତେଣିକି ଥାଉ ଅପର ବ୍ୟକ୍ତିର କାର୍ଯ୍ୟରେ ଛିଦ୍ରାନୁସନ୍ଧାନ କରି ବୁଲୁଥାନ୍ତି । ଯେମନ୍ତ କି ଆଉଜଣେ ମନ୍ଦ ଅଛି ବୋଲି ତାହାଙ୍କୁ କେହି ମନ୍ଦ ନ କହିବ ଅଥବା ପରର ଦୋଷ ଦେଖାଇଦେଲେ ସେ ଆପଣାଦୋଷର ମୁକ୍ତି ପାଇବେ ।

ପୁସ୍ତକର ପ୍ରକୃତ ଉଦ୍ଦେଶ୍ୟ ବିଷୟରେ ବକ୍ତବ୍ୟ ଏହି ଯେ ଏଥିରେ ଇଉରୋପୀୟମାନଙ୍କର ସମୁଦ୍ରବାଟେ ଭାରତବର୍ଷକୁ ବାଣିଜ୍ୟ ପାଇଁ ଆସିବାସମୟର ସନ ୧୮୫୭ ମସିହାର ବିଦ୍ରୋହ ପର୍ଯ୍ୟନ୍ତ ଭାରତବର୍ଷର ଇତିହାସ ବର୍ଣ୍ଣିତ ହୋଇଅଛି । ଘଟନାସବୁ ସୁନ୍ଦରରପେ ସଜାଡ ହୋଇ ଲେଖା ଯାଇଅଛି ଓ ପୁସ୍ତକର କଳେବର ଦୃଷ୍ଟିରେ ଯେତେ ସାର ବିଷୟ ସେଥିରେ ରହିପାରେ ତାହା ସନ୍ନିବେଶିତ କରିବା ପକ୍ଷରେ ବିଶେଷ ଯତ୍ନ ହୋଇଅଛି । ଆମ୍ଭେମାନେ ଇଂରାଜଙ୍କ ଉତ୍କଳ ଲାଭ ପ୍ରସଂଗରେ କିଛି ଅଧିକ ବୃତ୍ତାନ୍ତ ଶୁଣିବାକୁ ଅପେକ୍ଷା କରିଥିଲୁଁ । ବୋଧ ହୁଅଇ ତାହା ଉତ୍କଳ ଇତିହାସର ଯୋଗ୍ୟ ବୋଲି ଗ୍ରନ୍ଥକର୍ତ୍ତା ବାହୁଲ୍ୟ ବର୍ଣ୍ଣନା କରି ନାହାନ୍ତି । କେବଳ ବିଦ୍ରୋହର ବର୍ଣ୍ଣନା ପୂର୍ବକ ପୁସ୍ତକ ସମାପ୍ତ ନ କରି ବିଦ୍ରୋହ ଶେଷରେ କିପରି ଭାରତବର୍ଷ କମ୍ପାନୀଙ୍କ ଶାସନର ବାହାରିଯାଇ ଶ୍ରୀ ଶ୍ରୀମତୀ ମହାରାଣୀଙ୍କ ସାକ୍ଷାତ୍ ଶାସନାଧୀନ ହେଲା ସେ କଥା ଲେଖା ହୋଇଥିଲେ ଭଲ ହୋଇଥାନ୍ତା ଏବଂ ସନ ୧୮୫୨/୫୩ ରେ କମ୍ପାନୀର ପୂର୍ବଚାର୍ଟର(ପଟା)ର ମିଯାଦ ଶେଷ ହେଲାର ଯେଉଁ ନୂତନ ଚାର୍ଟର ଦିଆଯାଇଥିଲା ସେ ପ୍ରସଙ୍ଗ କିଛି ଲେଖାଥିବାର ଦେଖା ଯାଉ ନାହିଁ ।

*ଭା୫ଗ, ସଂ୩୭ଖ୍ୟା, ୧୦/୯/୧୮୭୦*

## ପ୍ରେରିତ ପତ୍ର ।

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକାସମ୍ପାଦକ ... ମହାଶୟ ସମୀପେଷୁ ।

ମହାଶୟ ବିଗତ ତା ୧ ରିଖ ହିତୈଷିଣୀ ପାଠ କରି ପରମାହ୍ଲାଦିତ ହୋଇ ନିମ୍ନଲିଖିତ କତିପୟ ପଂକ୍ତି ପାଠକମାନଙ୍କର ଗୋଚରାର୍ଥ ପ୍ରକାଶ କରଅଛୁଁ ।

ଭୂଗୋଳତତ୍ତ୍ୱ ଓ ସୁବର୍ଣ୍ଣରେଖା ନାମକ ଦୁଇଖଣ୍ଡି ପୁସ୍ତକର ସମାଲୋଚନା ଦେଖି ଆଲୋଚକଙ୍କର ବହୁଦୂରଦର୍ଶିତାକୁ ଅସଂଖ୍ୟ ଧନ୍ୟବାଦ ପ୍ରଦାନ କରଅଛୁଁ ।

ଆଲୋଚକ ମହାଶୟ ଶେଷ ପୁସ୍ତକ ବିଷୟରେ ଗ୍ରନ୍ଥପ୍ରକାଶକଙ୍କ ପ୍ରତି ଯେ କେତେଗୋଟି ନୀରସ କଠୋରଶବ୍ଦ ପ୍ରୟୋଗ କରିଅଛନ୍ତି ତହିଁରେ ଆତ୍ମପରିଚୟ ଯଥେଷ୍ଟ ପ୍ରାପ୍ତ ହୋଇଅଛି । ସୁବର୍ଣ୍ଣରେଖା ଯେ "ଉପେନ୍ଦ୍ରଭଞ୍ଜଙ୍କ ପ୍ରଣୀତ" ଏହି ଶବ୍ଦ ଶ୍ରବଣମାତ୍ରେ ଗ୍ରନ୍ଥ ଯେ କେତେଦୂର ଆଦରଣୀୟ ତାହା ସାଧାରଣରେ ଅପ୍ରକାଶ ନାହିଁ , ତହିଁ ପକ୍ଷରେ ଅଧିକ ବାକ୍ୟ ପ୍ରୟୋଗ କରିବା ଆମ୍ଭମାନଙ୍କର ଅନାବଶ୍ୟକ । ତେବେ ଏତିକି କହିପାରୁଁ ଯେ, ଶ୍ରୀ ଉପେନ୍ଦ୍ରଭଞ୍ଜ ଓ ଦୀନକୃଷ୍ଣ ଦାସ ପ୍ରଭୃତି ବିଖ୍ୟାତ କବିମାନେ ଯେଉଁକାଳରେ କାବ୍ୟଗ୍ରନ୍ଥମାନ ପ୍ରକାଶ କରିଥିଲେ, ସେହି ସମୟରେ ମଧ୍ୟ ଏପ୍ରକାର ଲୋକ ଥିଲେ କିମ୍ବା ଏପରି ଲୋକ ଜନ୍ମଗ୍ରହଣ କରିବେ କି ସେମାନେ ତାହାଙ୍କ କବିତା ଗ୍ରହଣ କରି ପାରିବେ ନାହିଁ ଏହା ବିବେଚନା କରି ସେମାନେ ଆପଣା ଆପଣା ଗ୍ରନ୍ଥମାନଙ୍କରେ ଯାହା ଲେଖି ଯାଇଅଛନ୍ତି ତାହାକୁ କେବଳ, ପାଠକମାନଙ୍କର ଗୋଚରାର୍ଥ ଉଦ୍ଧୃତ କରି ନିମ୍ନେ ଲେଖୁଅଛୁଁ,ଯଥା ।

ଲାବଣ୍ୟବତୀ ।

ଖଳବର୍ଗ ତୃଣ ଦବ ଦହନ;
ପଥିକ ମୂର୍ଖ ଅଗମ୍ୟବନ ।
ଧନିକ ବଣିକ ପସରାମାନ ;
ବିବିଧ ରସଦ୍ରବ୍ୟରେ ପୂର୍ଣ୍ଣ ।
ଦୃଷ୍ଟି ସୃଷ୍ଟିରେ ହୋଇଛି ବିଚିତ୍ର;
ରସିକ ଚିତ୍ତ ମୋହନମନ୍ତ୍ର ।
କିଂପୁରଷର ଅନୁସ୍ୱାର ଦୂର;
କରି ସେ ଦେଲେ ପ୍ରାନ୍ତେ ଏକାର ।

ରସପଞ୍ଚକ ।

କୃତକେ ଯଶ ଲୋକରେ ପ୍ରକାଶ;
କବି ଗର୍ବ ପର୍ବତକୁ କୁଳିଶ ।
କବି ସୁହୃଦ ହୃଦୟ କୁମୁଦ;
କରିବାକୁ ମୁଦ ପୂର୍ଣ୍ଣମୀ ଚାନ୍ଦ ।
କହ ଏପରି ବିଚାରି ବିଚାରି;
କୁମତି ମତି ମଶକ ମଶାରି ।

ପ୍ରେମସୁଧାନିଧି

**XXXXX**

ଅଙ୍କ ରାହୁ ଦୂଷଣକୁ ଅବକାଶ ନାହିଁ ।
ପ୍ରତିଦିଶେ ପ୍ରତିଦିଶ ତହିଁ ପ୍ରକାଶିବ,
ରସିକହୃଦୟ ରତ୍ନାକର ଉଲ୍ଲାସିବ ।
ପଣ୍ଡିତ କୁମୁଦ ମୁଦ ବର୍ଦ୍ଧନ କରିବ ;
ଖଳକୁଳ ଅନ୍ଧକାର ବେଗେ ବିଦାରିବ ।

ରସକଲ୍ଲୋଳ ।

କେବେହେଁ ନିମ୍ବ ନୋହେ ମଧୁର ସଂଯୋଗ କଲେ ତହିଁ ସାକର କଳାକୁ ନ ଛାଡଇ ଅଙ୍ଗାର ଦୁଧେ ଧୋଇଲେ ଯେ । କର୍ପୂର ଗନ୍ଧଚନ୍ଦନ ଦେଇ ଲସୁନ ଗନ୍ଧ ନୋହେ ଛଡାଇ କୁବୁଦ୍ଧିଜନ ନୋହେ ସୁବୁଦ୍ଧି ଯେତେ କହିଲେ ଯେ । କେବଳ ଧାତା ଏହା କରନ୍ତା ଯେ । କସ୍ତୁରୀକି ଖଳଙ୍କ ଜିଭେ ରଖନ୍ତା ଯେ । କଟା ଯାଆନ୍ତା ସମୂଳ ହୋଇ କାହାକୁ କିଛି କହନ୍ତେ ନାହିଁ **XXXXX** ଉତ୍ତମ କଥା ସକଳ ନିନ୍ଦା ହୁଅନ୍ତା ଯେ । ଅଳ୍ପମତି ବିସ୍ତରେଣ ।

୫।୯।୭୦ — କସ୍ୟଚିତ୍
କଟକ

*ଭା୫ଗ, ସଂ୩୭ଖ୍ୟା, ୧୦।୯।୧୮୭୦*

## ବିଜ୍ଞାପନ ।

ସନ ୧୮୭୧ ସାଲ ନିମିତ୍ତ ଉତ୍କଳ ଭାଷାରେ ପରୀକ୍ଷା ଦାନାର୍ଥେ ଦେଶୀୟ ଭାଷାର ଛାତ୍ରବୃତ୍ତି ଓ କ୍ଷୁଦ୍ରତର ଛାତ୍ରବୃତ୍ତି ପ୍ରାପ୍ତ ହେବା ନିମିତ୍ତ ପଶ୍ଚାତ୍‌ଲିଖିତ ବିଷୟମାନଙ୍କରେ ପରୀକ୍ଷା ଦେବାକୁ ହେବ ।

ଦେଶୀୟଭାଷାର ଛାତ୍ରବୃତ୍ତି ।

୧୮୭୧ ସାଲ ନିମିତ୍ତ ତଳଲିଖିତ ବିଷୟରେ ପରୀକ୍ଷା ଦେବାକୁ ହେବ ଯଥା ,

ବଙ୍ଗଭାଷାର ସାହିତ୍ୟ ଓ ବ୍ୟାକରଣ ।

| | ଅଙ୍କ |
|---|---|
| ଚାରପାଠ ଦ୍ୱିତୀୟଭାଗ ଓ ଭାରତ ଭ୍ରମଣ | ୧୦୦ |
| ଉତ୍କଳଭାଷାର ସାହିତ୍ୟ ଓ ବ୍ୟାକରଣ । | |
| ଶ୍ରୀ ବନମାଳି କର୍ତ୍ତୃକ ଶକୁନ୍ତଳା ଓ ରାମପ୍ରସନ୍ନ କର୍ତ୍ତୃକ ପଦ୍ୟ ପାଠର ପ୍ରଥମ ଭାଗ ୧୦୦ | |
| ବଙ୍ଗଳା ଓ ଉତ୍କଳ ଭାଷାର ରଚନା | ୫୦ |
| କ୍ଷେତ୍ରତତ୍ତ୍ୱ ପ୍ରଥମ କାଣ୍ଡ ସମୁଦାୟ, ଓ ସେଥିର ସହଜ ସହଜ ଉପପ୍ରଶ୍ନ | ୫୦ |

ହିସାବ ।

| | |
|---|---|
| ପାଟୀଗଣିତରେ ଏହି ଏହି ବିଷୟର ପରୀକ୍ଷା ଦେବାକୁ ହେବ ଯଥା- | |
| ଭଗ୍ନାଂଶ ତ୍ରୈରାଶିକ ଓ ପଞ୍ଚରାଶିକ ଓ ସରଳ କଳନ୍ତର | ୭୫ |
| ଜମିଦାରୀ ଓ ମହାଜନୀ ହିସାବ | ୨୫ |

ଇତିହାସ ।

| | |
|---|---|
| ଫକିରମୋହନ କର୍ତ୍ତୃକ ପ୍ରଥମ ଓ ଦ୍ୱିତୀୟଭାଗ ଭାରତବର୍ଷର ଇତିହାସ | ୫୦ |

ଭୂଗୋଳ ।

| | |
|---|---|
| ପୃଥିବୀର ସାଧାରଣ ଭୂଗୋଳ ବିବରଣ ଓ ଭାରତବର୍ଷର ଭୂଗୋଳ ବିବରଣ (ବିଶେଷରପେ ବଙ୍ଗ ଓ ଉତ୍କଳ ଦେଶର ଭୂଗୋଳ ବିବରଣ ଆବଶ୍ୟକ) | ୧୦୦ |
| ରେଖା ଓ ପଦାର୍ଥର ଉପରି ଭାଗ ପରିମାଣ ବିଦ୍ୟା । | ୨୫ |
| ସ୍ୱାସ୍ଥ୍ୟରକ୍ଷା ବିଷୟ | ୨୫ |
| | ୬୦୦ |

*ଭାଃ୫ଗ, ସଂ୩୭ଖ୍ୟା, ୧୦।୯।୧୮୭୦*

## ଓଡିଶାପେଟ୍ରିଅଟ ।

ଆମ୍ଭେମାନେ ଆଶା କରିଥିଲୁଁ ଯେ ଅତ୍ରତ୍ୟ ବିଦ୍ୟାଳୟମାନଙ୍କରେ ବଙ୍ଗାଳିଙ୍କଦ୍ୱାରା ଉତ୍କଳଭାଷାର ପରୀକ୍ଷା ହେବା ବିରଦ୍ଧରେ ଏ ପତ୍ରିକାରେ ଯାହା ଲେଖାହୋଇଥିଲା ଗବର୍ଣ୍ଣମେଣ୍ଟ ଅନୁବାଦକ ତାହା ଆପଣା ସାପ୍ତାହିକ ରିପୋର୍ଟରେ ଲେଖି ଗବର୍ଣ୍ଣମେଣ୍ଟଙ୍କ ଜ୍ଞାତସାରରେ ଆଣନ୍ତେ ମାତ୍ର ଯଦ୍ୟପି ଆମ୍ଭମାନଙ୍କର ସେ ଆଶା ବିଫଳ ହେଲା ତଥାଚ ଆନନ୍ଦରବିଷୟ ଯେ ଉକ୍ତ ପତ୍ରିକାର ସମ୍ପାଦକ ପୁନର୍ବାର ଉକ୍ତ ବିଷୟକୁ ପତ୍ରିକାର ଇଂରାଜୀସ୍ତମ୍ଭରେ ସନ୍ନିବେଶିତ କରିବାର ଡେଲିନିଉସ ତହିଁର ମର୍ମ୍ମ ଆପଣା ପତ୍ରିକାରେ ଉଦ୍ଧୃତ କରିଅଛନ୍ତି । ଏଥିର ଏହି ଫଳ ହେଲା

ଯେ ଗବର୍ଣ୍ଣମେଣ୍ଟ ଜାଣନ୍ତୁ ଅବା ନ ଜାଣନ୍ତୁ କଥାଟି ସର୍ବସାଧାରଣଙ୍କର ଜାଣିବାରେ ଆସିଲା ଓ ଯେବେ କୌଣସିରୂପେ ଶିକ୍ଷାବିଭାଗର କର୍ମଚାରିଙ୍କୁ ଗୋଚର ହୁଅଇ ତେବେ ଲେଖକଙ୍କର ଶ୍ରମ ସଫଳ ହେବ ।

ଡେଲିନିଉୟସ ଏ ପ୍ରସଙ୍ଗରେ କୌଣସି ମତାମତ ପ୍ରକାଶ କରି ନାହାନ୍ତି ମାତ୍ର କିଛି ନ କହି ଆପଣା ପତ୍ରିକାରେ ଏହାକୁ ଉଦ୍ଧୃତ କରିଥିବାର ଜଣାଯାଏ ଯେ ସେ ଏ ପ୍ରସ୍ତାବର ଅନୁମୋଦନକାରୀ ଅଟନ୍ତି । ବିଶେଷରେ ଯେସ୍ଥଳେ ଲେଖାଯାଇଅଛି ଯେ ଉତ୍କଳଭାଷା ପରୀକ୍ଷା କରିବାକୁ ନିଯୁକ୍ତ ହୋଇଥିବା ଅନେକ ବଙ୍ଗାଳୀ ପରୀକ୍ଷକ ଉକ୍ତ ଭାଷାର ସମ୍ପୂର୍ଣ୍ଣରୂପେ ଅନଭିଜ୍ଞ ସେସ୍ଥଳେ ତାହାଙ୍କଦ୍ୱାରା ପରୀକ୍ଷା ହେବା କଥାକୁ କିଏ ଦୂଷଣୀୟ ବୋଲି ନ ବୋଲିବ ? ଆମ୍ଭେମାନେ ଦେଖୁଅଛୁଁ ଯେ ଗତ ଦୁଇବର୍ଷର ବିଦ୍ୟାଳୟର ଅଧ୍ୟକ୍ଷମାନେ ଉତ୍କଳଭାଷା ପରୀକ୍ଷା ନିମିତ୍ତ ଏ ଦେଶୀୟବ୍ୟକ୍ତିଙ୍କୁ ନିଯୁକ୍ତ କରଅଛନ୍ତି ମାତ୍ର ପ୍ରଧାନ ଛାତ୍ରବୃତ୍ତି ପରୀକ୍ଷାରେ ଏ ନିୟମ ନ ଥିବାର ଅସନ୍ତୁଷ୍ଟର କାରଣ ହୋଇଅଛି ଓ ଯେହେତୁ ଏହା ସହଜରେ ନିବାରଣ ହୋଇପାରେ ଅତଏବ ଶିକ୍ଷାବିଭାଗର କର୍ମଚାରିଙ୍କୁ ଏଥିଉପରେ ଦୃଷ୍ଟି ରଖିବାର କର୍ତ୍ତବ୍ୟ ।

*ଭା୫ଗ, ସଂ୪୧ଖ୍ୟା, ୨୨।୧୦।୧୮୭୦*

## ଘୁମସରରେ ତେଲେଙ୍ଗାଙ୍କର ଆଧିପତ୍ୟ ।

ଅଦ୍ୟଦିବସର ଅତିରିକ୍ତ ପତ୍ରିକାରେ ଘୁମସରର ଆସିଥିବା ଖଣ୍ଡିଏ ପତ୍ର ମୁଦ୍ରିତ କରି ପାଠକମାନଙ୍କୁ ଅନୁରୋଧ କରଅଛୁଁ ଯେ ସେମାନେ ମନୋଯୋଗ ପୂର୍ବକ ତାହା ପାଠ କରିବେ । ଉତ୍କଳଦେଶର ହିତ ଚେଷ୍ଟାରେ ଯେଉଁମାନେ ଅଛନ୍ତି ସେମାନଙ୍କୁ ଏ ବିଷୟରେ ବିଶେଷ ଉଦ୍‌ଯୋଗୀ ହେବାର ଆବଶ୍ୟକ । ଘୁମୁସରବାସିମାନେ ଯାହା ପ୍ରାର୍ଥନା କରନ୍ତି ତାହା ଯେ ସର୍ବତୋଭାବେ ଯୁକ୍ତିଯୁକ୍ତ ଓ ବହୁ ଉପକାରର ମୂଳ ଅଟଇ ଏ କଥାରେ ଅଣୁମାତ୍ର ସନ୍ଦେହ ନାହିଁ । ଓଡିଶାର ଦୁରବସ୍ଥା ଯେଉଁମାନେ ଜାଣନ୍ତି ଓ ତହିଁର କାରଣ ଅନୁସନ୍ଧାନ କରନ୍ତି ସେମାନେ ଅବଶ୍ୟ ଅବଗତ ହୋଇଥିବେ ଯେ ଏ ଦେଶ ତିନିଖଣ୍ଡ ହୋଇ ତିନି ଶାସନକର୍ତ୍ତାଙ୍କ ଅଧୀନରେ ରହିବାର ଏହାର ଉନ୍ନତି ହେଉନାହିଁ । ଏକଖଣ୍ଡ ବଙ୍ଗଳାଗବର୍ଣ୍ଣମେଣ୍ଟ ଏକଖଣ୍ଡ ମାନ୍ଦ୍ରାଜଗବର୍ଣ୍ଣମେଣ୍ଟ ଓ ଅପର ଏକଖଣ୍ଡ ମଧ୍ୟପ୍ରଦେଶର ଚିଫ କମିଶନରଙ୍କ ଶାସନରେ ରହିବାର ଏ ଦେଶ ସମୁଦାୟ ଏକ ହୋଇ ଚଳିପାର ନାହିଁ । ମାତ୍ର ଏପ୍ରକାର ଅବସ୍ଥାରେ ଥିଲେ ମଧ୍ୟ ଗବର୍ଣ୍ଣମେଣ୍ଟ ଗୋଟିଏ କଥାରେ ଦୃଷ୍ଟି ରଖିଥିବାର ଅନେକ ମଙ୍ଗଳ ହେଉଅଛି । ବଙ୍ଗଳା ଓ ମଧ୍ୟପ୍ରଦେଶର ଅଧୀନ ଓଡିଶାରେ ଥିବା ସମସ୍ତ ସରକାରୀ କାର୍ଯ୍ୟାଳୟରେ ଓଡିଆଭାଷା ପ୍ରଚାର ଅଛି ଓ ସ୍ୱାର୍ଥପର ଲୋକେ କେତେ ଉପାୟ କଲେହେଁ ଗବର୍ଣ୍ଣମେଣ୍ଟ ଏ ଯୁକ୍ତିଯୁକ୍ତ ନ୍ୟାୟର ବିରଦ୍ଧ କାର୍ଯ୍ୟ କରିବାକୁ ସମ୍ମତ ହୋଇ ନାହାନ୍ତି ଯେବେ ବଙ୍ଗଳା ଓ ମଧ୍ୟପ୍ରଦେଶରେ ଏପରି ହେଲା ତେବେ ମାନ୍ଦ୍ରାଜଗବର୍ଣ୍ଣମେଣ୍ଟ ଅନ୍ତର୍ଗତ ଓଡିଶାରେ କାହିଁକି ଓଡିଆଭାଷାରେ ସରକାରୀ କାର୍ଯ୍ୟାଳୟମାନଙ୍କର କାର୍ଯ୍ୟ ନ ଚଳିବ ? ଓ ଯେସ୍ଥଳେ ପୂର୍ବରେ ସେଭାଗର ରାଜକାର୍ଯ୍ୟ ଓଡିଆଭାଷାରେ ହୋଇ ଆସୁଥିଲା ତେବେ ଇଂରାଜ ଗବର୍ଣ୍ଣମେଣ୍ଟ କାହିଁକି ଭିନ୍ନରୂପ ଆଚରଣ କରିବେ ? ଆମ୍ଭମାନଙ୍କୁ ନିଶ୍ଚୟ ବୋଧ ହେଉଅଛି ଯେ ଉତ୍କଳବାସିମାନେ ଏ ବିଷୟରେ ଏକମତ ହୋଇ ଗବର୍ଣ୍ଣମେଣ୍ଟକୁ ଆବେଦନ କଲେ ତାହାଙ୍କର ପ୍ରାର୍ଥନା ସଫଳ ହେବ । ବିଦେଶୀୟ ଭାଷାରେ କାର୍ଯ୍ୟାଳୟ ଯାବତୀୟ କାର୍ଯ୍ୟ ଚଳିବା କଦାଚ ଗବର୍ଣ୍ଣମେଣ୍ଟଙ୍କୁ ଅନୁମୋଦିତ ନୁହଇ କେବଳ ଘୁମୁସରବାସିମାନେ ଏତେଦିନ ଯତ୍ନ କରି ନାହାନ୍ତି ବୋଲି ତାହାଙ୍କର ଦୁଃଖ ଶୁଣାଯାଇ ନାହିଁ । ଏବେ ସେମାନେ ସମସ୍ତ ଉତ୍କଳବାସିଙ୍କଠାରେ ଏକଥା ଜଣାଇଲେ ଏଥକୁ ଆବଶ୍ୟକ ଯେ ପୁରୀ କଟକ ଓ ବାଲେଶ୍ୱରରେ ଥିବା ସମସ୍ତ ଉତ୍କଳୀୟ ତାହାଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ହେଉନ୍ତୁ ଓ ଆମ୍ଭେମାନେ ଭରସା କରୁଁ ଯେ ଉତ୍କଳୋଲ୍ଲାସିନୀ ସଭା ବିଶେଷ ଆଗ୍ରହପୂର୍ବକ ଏବିଷୟରେ ହସ୍ତକ୍ଷେପ କରନ୍ତୁ ।

*ଭା୫ଗ, ସଂ୪୧ଖ୍ୟା, ୨୨।୧୦।୧୮୭୦*

## ଉତ୍କଳଭାଷାପୁସ୍ତକ ।

ଏ ପ୍ରଦେଶର ବିଦ୍ୟାଳୟମାନଙ୍କ ନିମିତ୍ତ ପାଠ୍ୟପୁସ୍ତକର ଅଭାବ ଥିବା ବିଷୟ ଶ୍ରୀଯୁକ୍ତ କମିଶ୍ନରସାହେବ ପୁନଃପୁନଃ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବାର ସେଥିରେ ଏହି ଫଳ ହୋଇଅଛି ଯେ ଶିକ୍ଷାବିଭାଗର ଡାଇରେକ୍ଟରସାହେବ ଉତ୍କଳଭାଷା ପାଠ୍ୟପୁସ୍ତକ ଗବର୍ଣ୍ଣମେଣ୍ଟଙ୍କ ବ୍ୟୟରେ ମୁଦ୍ରାଙ୍କନ ପକ୍ଷରେ ଯତ୍ନବାନ୍ ହୋଇଅଛନ୍ତି । ଇନ୍ସପେକ୍ଟରସାହେବ ଡେପୁଟୀଇନ୍ସପେକ୍ଟରଙ୍କ ନିକଟକୁ ଲେଖିଅଛନ୍ତି ଯେ କେଉଁ କେଉଁ ପୁସ୍ତକର ଅଭାବ ଅଛି ଓ ସେସବୁ ମୁଦ୍ରିତ କରାଇବାରେ କେତେ ବ୍ୟୟ ହେବ ତହିଁର ଏକଖଣ୍ଡ ତାଲିକା ପ୍ରସ୍ତୁତ କରି ପଠାଇବେ । ବୋଧ ହୁଅଇ ବ୍ୟୟର ପରିମାଣ ଜାଣିଲାଠାରୁ ଗବର୍ଣ୍ଣମେଣ୍ଟର ଟଙ୍କା ନେଇ ପୁସ୍ତକ ମୁଦ୍ରାଙ୍କନର ଉଦ୍ୟମ ହେବ । ଗ୍ରନ୍ଥକାରଙ୍କ ପକ୍ଷରେ ଏ ଅତି ଶୁଭସମ୍ବାଦ ଅଟଇ । ଯେଉଁମାନେ ମୁଦ୍ରାଙ୍କନର ବ୍ୟୟ ଦେବାକୁ ସମର୍ଥ ନ ଥିବା ହେତୁରୁ କୌଣସି ପୁସ୍ତକ ରଚନା କରିବାରେ ପ୍ରବୃତ୍ତ ହେଉ ନ ଥିଲେ ଭରସା କରୁଁ ସେମାନେ ଏଥର ଉତ୍ସାହିତ ହୋଇ ନାନା ବିଷୟରେ ପୁସ୍ତକ ରଚନା କରିବେ । ଏଠାରେ ପ୍ରାୟ ସର୍ବପ୍ରକାର ପାଠ୍ୟପୁସ୍ତକର ଲୋଡ଼ା ଅଛି ଯେ ଯେଉଁ ବିଷୟରେ ଉତ୍ତମ ପୁସ୍ତକ ପ୍ରସ୍ତୁତ କରିବ ତାହା ଗୃହୀତ ହେବାର ସମ୍ଭାବନା । ପୁସ୍ତକ ଲେଖା ଶେଷ ହେଲେ ଅଗ୍ରେ କମିଟୀ ତହିଁର ଦୋଷ ଗୁଣ ବିଚାର କରିବେ ଓ ଯାହା କମିଟୀର ମନୋନୀତ ହେବ ତାହାପାଇଁ ଏକା ଗବର୍ଣ୍ଣମେଣ୍ଟ ମୁଦ୍ରାଙ୍କନର ବ୍ୟୟ ଦେବେ ଓ ତାହା ସବୁ ବିଦ୍ୟାଳୟରେ ଚଳିବ ଓ ବିଶେଷ ବିକ୍ରୟ ହେବ । ସୁତରାଂ ଗ୍ରନ୍ଥକର୍ତ୍ତାଙ୍କୁ ପୁସ୍ତକ ଲେଖିବାର ଶାରୀରିକ ଓ ମାନସିକ ଶ୍ରମଭିନ୍ନ ଆଉ କୌଣସି ବ୍ୟୟ ଦେବା କି ବିକ୍ରୟର ଯତ୍ନ କରିବାକୁ ପଡ଼ିବ ନାହିଁ । ଘରେ ବସି ଆପଣା ପରିଶ୍ରମର ଫଳ ଭୋଗ କରିବେ ।

ସମ୍ପ୍ରତି ଗ୍ରନ୍ଥକର୍ତ୍ତାଙ୍କ ଲାଭ ବିଷୟରେ ଗୋଟିଏ ଗୁରତର ପ୍ରତିବନ୍ଧକ ଅଛି । ଯେବ୍ୟକ୍ତି ପରିଶ୍ରମ କରି କୌଣସି ଉପଯୁକ୍ତ ପୁସ୍ତକ ରଚନା କରେ ତାହାର ତାଦୃଶ ଲାଭ ଏଠାରେ ହେଉ ନାହିଁ କାରଣ କି ବହୁତ ବିକ୍ରୟ ହୁଅଇ ନାହିଁ । ବିକ୍ରୟର ଊଣା କେବଳ ବିଦ୍ୟାଳୟ ବା ଛାତ୍ର ସଂଖ୍ୟା ଊଣା ହେତୁରୁ ହେଉଅଛି ଏମନ୍ତ ନୁହେ ସମସ୍ତ ଉତ୍କଳବିଦ୍ୟାଳୟରେ ଏକପ୍ରକାର ପୁସ୍ତକ ନ ଚଳୁଥିବାରୁ ତାହା ଘଟିଅଛି । ଏହି ବ୍ୟାଘାତର ପ୍ରତିକାର କରିବା ସର୍ବାଗ୍ରେ ପ୍ରୟୋଜନ ଓ ତାହା ଯେ ସାମାନ୍ୟ ଉପାୟରେ ହୋଇପାରିବ ସନ୍ଦେହ ନାହିଁ । ଉତ୍କଳଭାଷା ବିଦ୍ୟାଳୟସମୂହ ବର୍ତ୍ତମାନ ତିନି ଜଣ ଡାଇରେକ୍ଟରଙ୍କର ଅଧୀନ ଓ ପ୍ରତ୍ୟେକ ଡାଇରେକ୍ଟରଙ୍କ ଅଧୀନ ବିଦ୍ୟାଳୟରେ ଏକ ଏକ ପ୍ରକାର ପୁସ୍ତକମାନ ଚଳଇ ଯେବେ ପ୍ରଚଳିତ ଥିବା ପୁସ୍ତକମାନଙ୍କ ମଧ୍ୟରୁ ଯେଉଁସବୁ ଭଲ ସେହିମାନ ସବୁବିଦ୍ୟାଳୟରେ ଚଳିବ ତାହା ହେଲେ ଉତ୍ତମ ଗ୍ରନ୍ଥ ରଚୟିତାଙ୍କର ଶ୍ରମ ସଫଳ ହେବ ଓ ମଧ୍ୟ ଶିକ୍ଷାଦାନର ସଂଯୋଗ ହେବ । ଏକ ଏକ ବିଭାଗର ଶିକ୍ଷା କର୍ମଚାରିମାନେ ସ୍ୱେଚ୍ଛାମତେ କାହାରି ପୁସ୍ତକକୁ ଆଦର ଓ କାହାରି ପୁସ୍ତକକୁ ଅନାଦର କରି ପାରୁଥିବାରୁ ଅନେକ ପକ୍ଷପାତ ଚଳୁଅଛି ଏଥିରେ ଭଲ ଲେଖକର ଉତ୍ସାହ ନ ହୋଇ ଯାହାର ମୁରବିବଳ ଅଛି ସେହି କୃତକାର୍ଯ୍ୟ ହେଉଅଛି ଓଡ଼ିଆପ୍ରଚଳିତ ସମସ୍ତ ବିଦ୍ୟାଳୟ ସକାଶେ ଜଣେ ଇନ୍ସପେକ୍ଟର ହେଲେ ଅବଶ୍ୟ ଭଲ ହୁଅନ୍ତା ମାତ୍ର ଯେବେ କୌଣସି କାରଣରୁ ତାହା ଶୀଘ୍ର ହୋଇ ନ ପାରେ ତେବେ ବଙ୍ଗଳା ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶର ଶିକ୍ଷାବିଭାଗର ଡାଇରେକ୍ଟରଙ୍କ ମଧ୍ୟରେ ପତ୍ରଦ୍ୱାରା କୌଣସି ବନ୍ଦୋବସ୍ତ ହେଲେ ଆପାତତଃ ସବୁଠାରେ ଏକପ୍ରକାର ପୁସ୍ତକ ଚଳିବାର ନିୟମ ହୋଇପାରେ ଓ ଆମ୍ଭମାନଙ୍କ ବିବେଚନାରେ ଏପରି ନିୟମ ଯେତେଶୀଘ୍ର ହୁଅଇ ତେତେ ଭଲ ହେବ ।

*ଭା୫ଗ, ସଂ୪୨ଖ୍ୟା, ୨୯।୧୦।୧୮୭୦*

## ନୂତନପୁସ୍ତକର ସମାଲୋଚନା ।

### ପଦ୍ୟସଂଗ୍ରହ ।

କଟକ ନର୍ମ୍ମାଲସ୍କୁଲର ଜଣେ ଶିକ୍ଷକ ପଣ୍ଡିତ ପ୍ରଭାକର ବିଦ୍ୟାରତ୍ନ ଏହାର ରଚୟିତା ଓ ଏଥିର ବିଷୟମାନ ଏ ଦେଶ ପ୍ରଚଳିତ ଉତ୍ତମୋତ୍ତମ ଛାନ୍ଦଗ୍ରନ୍ଥରୁ ସଂଗୃହୀତ ହୋଇଅଛି । ପୁସ୍ତକର ଆଦ୍ୟରେ ପଦ୍ୟର ଲକ୍ଷଣ ଓ ଭିନ୍ନ ଭିନ୍ନ ଛାନ୍ଦର ନାମ ଓ ରୀତି ଏବଂ ଯତିପାତର କ୍ରମ ପ୍ରଭୃତି କେତେଗୁଡିଏ ଆବଶ୍ୟକୀୟ କଥା ଲେଖିଅଛନ୍ତି ଏବଂ

ଅନ୍ୟ ଏକ ପ୍ରକରଣରେ ଅଳଙ୍କାରର ଲକ୍ଷଣ ଉଦାହରଣ ସହିତ ସନ୍ନିବେଶିତ ହୋଇଅଛି । ଏଗପେ ଦୃଷ୍ଟିମାତ୍ରକେ ପ୍ରତୀତ ହୁଅଇ ଯେ ପୁସ୍ତକଖଣ୍ଡିକ କୌଣସି ଅଂଶରେ ଅସମ୍ପୂର୍ଣ୍ଣ ହୋଇନାହିଁ ଅର୍ଥାତ୍ ପଦ୍ୟସମ୍ପର୍କରେ ଯେ ସମସ୍ତ କଥା ଜାଣିବାର ନିତାନ୍ତ ପ୍ରୟୋଜନ ସେମାନ ଏଥିରେ ଅଛି ।

ଯେଉଁମାନେ ପୂର୍ବରେ ଆମ୍ଭମାନଙ୍କ ମତର ଜ୍ଞାତଅଛନ୍ତି ସେମାନେ ଏ ସମାଲୋଚନା ପାଠକରିବା ପୂର୍ବରେ ମନରେ ସ୍ଥିର କରିଥିବେ ଯେ ଆମ୍ଭେମାନେ ପଦ୍ୟସଂଗ୍ରହର ପକ୍ଷପାତୀ ହେବୁଁ କାରଣ ଆମ୍ଭେମାନେ ପୁନଃପୁନଃ କହିଅଛୁଁ ଯେ ନୂତନ କବିତା କରିବାଠାରୁ ପୁରାତନ ଉତ୍କୃଷ୍ଟ କବିତାମାନଙ୍କୁ ପ୍ରଚାରକରିବାର ଭଲ । ବାସ୍ତବରେ ଆମ୍ଭେମାନେ ଗ୍ରନ୍ଥଖଣ୍ଡି ଦେଖିଲା ମାତ୍ରକେ ଆନନ୍ଦିତ ହେଲୁଁ ପୁଣି ଯେତେବେଳେ ତହିଁର ପଦ୍ୟ ଏବଂ ଅଳଙ୍କାରର ଲକ୍ଷଣମାନ ଦେଖିଲୁଁ ତେତେବେଳେ ଅଧିକତର ଆନନ୍ଦିତ ହେଲୁଁ । ମାତ୍ର ମନୋଯୋଗ ପୂର୍ବକ ପାଠକରିବାରେ କେତେ ବିଷୟରେ ଆମ୍ଭମାନଙ୍କର ଆଶା ତୃପ୍ତ ହେଲା ନାହିଁ । ତହିଁର ବିବରଣ ତଳେ ଲେଖୁଅଛୁଁ ଯଥା-

ପ୍ରଥମେ ପଦ୍ୟର ଯେଉଁ ଲକ୍ଷଣ ନିର୍ଣ୍ଣୟ ହୋଇଅଛି ତଦ୍ଦ୍ୱାରା ପଦ୍ୟ କାହାକୁ ବୋଲାଯାଏ ବୁଝାଯାଉ ନାହିଁ । ପଦ୍ୟର ପରିଚୟ ଦେବାକାରଣ ଛନ୍ଦ ଓ ଛନ୍ଦ ବୁଝାଇବାପାଇଁ ଯତିର ଲକ୍ଷଣ ଦିଆଯାଇଅଛି ମାତ୍ର ଯେବ୍ୟକ୍ତି ଏ ତିନିର ଗୋଟିଏମଧ୍ୟ ଚିହ୍ନଇ ନାହିଁ ସେ ପଦ୍ୟ କଣ ତାହା କଦାଚ ଏ ପୁସ୍ତକର ଜାଣିପାରିବ ନାହିଁ । ଏଣୁକରି ଏ ଲକ୍ଷଣମାନ ଅସମ୍ପୂର୍ଣ୍ଣ ହୋଇଅଛି ପଦ୍ୟ ରଚନାର ତତ୍ତ୍ୱ ଜାଣିବାବ୍ୟକ୍ତି ଯେତେ ଥାଉନ୍ତୁ ଅଥବା ନ ଥାଉନ୍ତୁ ସାମାନ୍ୟତଃ ଗଦ୍ୟ ପଦ୍ୟର ପ୍ରଭେଦ ପ୍ରାୟ ଲେଖିବା ପଢ଼ିବାବ୍ୟକ୍ତିଙ୍କୁ ଜଣାଅଛି ଓ ପିଲାଗୋଟିକୁ କୌଣସି ପୁସ୍ତକ ଦେଖାଇଲେ ତାହା ଗଦ୍ୟ କି ପଦ୍ୟରେ ରଚନା ହୋଇଅଛି ସେ କହିଦେବ ଓ ଏମନ୍ତ ଚିହ୍ନିବା କଷ୍ଟ ନୁହଇ । ଯେଉଁ ରଚନାରେ ଅକ୍ଷର ଓ ସ୍ୱରର ପ୍ରମାଣ ଥାଏ ତାହାକୁ ଲୋକେ ପଦ୍ୟ ବୋଲନ୍ତି ଅପର ରଚନାମାନ ଗଦ୍ୟନାମରେ ଖ୍ୟାତ । ଏତିକିରେ ପଦ୍ୟର ଲକ୍ଷଣସବୁ ବ୍ୟକ୍ତ ହେଲାବୋଲି ଆମ୍ଭେମାନେ ବୋଲୁ ନାହୁଁ ଏହା ପଦ୍ୟ ଚିହ୍ନିବାର ଗୋଟିଏ ଉପାୟମାତ୍ର । ପୁନଶ୍ଚ ଛନ୍ଦବିଶିଷ୍ଟ ରଚନାକୁ ଗ୍ରନ୍ଥକର୍ତ୍ତା ପଦ୍ୟବୋଲି କହି କେଦାର କଳଶା ଇତ୍ୟାଦିକୁ ଛନ୍ଦବୋଲି ପରିଚୟ ଦେବାର ବୋଧ ହୁଅଇ ଏହାଙ୍କ ମତରେ ବାଣୀ,ଗୀତ, ଢଗ ପ୍ରଭୃତି ରଚନାମାନ ପଦ୍ୟ ନୁହଇ । ଏକଥା ଅସଙ୍ଗତ ଜଣାଯାଉଅଛି ଆଉ କେଦାର କାମୋଦୀ ଇତ୍ୟାଦି ଗୋଟିଏ ଗୋଟିଏ ରାଗର ନାମ ଗ୍ରନ୍ଥକର୍ତ୍ତା କେବଳ ଅକ୍ଷର ଓ ଯତିପାତର ପ୍ରମାଣ ଲେଖି ସେସବୁର ପରିଚୟ ଦେଇଅଛନ୍ତି । ଏହା ଆମ୍ଭମାନଙ୍କର ମନୋନୀତ ହୋଇନାହିଁ । ଫଳତଃ ଉତ୍କଳ ପଦ୍ୟମାନ କେଉଁ ନିୟମରେ ରଚନା ହୋଇଅଛି ତାହା ଏ ପୁସ୍ତକର କିଛି ଜଣାଯାଉ ନାହିଁ ଓ ଯତିପାତର ସ୍ଥାନ ଯାହା ନିର୍ଦ୍ଦେଶ କରିଅଛନ୍ତି ତାହା ସକଳ ସ୍ଥଳରେ ଠିକ ଆସୁନାହିଁ ତଥାଚ ଗ୍ରନ୍ଥକର୍ତ୍ତା ପଦ୍ୟ ରଚନାର ରୀତି ବୁଝାଇବାକୁ ଚେଷ୍ଟା କରିବାର ଆମ୍ଭେମାନେ ତାହାଙ୍କର ପ୍ରଶଂସା କରଅଛୁଁ । ଉତ୍କଳଭାଷାରେ ଏହା ଜାଣିବାର କୌଣସି ଗ୍ରନ୍ଥ ନାହିଁ ଓ ଯେକେହି ଏଥିରେ ପାଣ୍ଡିତ୍ୟ ଖରଚ କରି ଯଥାର୍ଥ ଲକ୍ଷଣ ଓ ନିୟମମାନ ସ୍ଥିର କରିବେ ସେ ଧନ୍ୟବାଦର ପାତ୍ର ହେବେ ସନ୍ଦେହ ନାହିଁ ।

ଅଳଙ୍କାର ଲକ୍ଷଣ ଓ ଉଦାହରଣମାନ ଉତ୍ତମ ହୋଇଅଛି ଏଥିରେ ଏତିକି ତ୍ରୁଟି ଦେଖାଯାଏ ଯେ ଉଦାହରଣର କେଉଁ ସ୍ଥାନରେ ଅଳଙ୍କାର ଅଛି ସର୍ବତ୍ରରେ ଚିହ୍ନା ଯାଉ ନାହିଁ । କିଞ୍ଚିତ୍ କିଞ୍ଚିତ୍ ବ୍ୟାଖ୍ୟା କରିଥିଲେ ପାଠକଙ୍କର ବଡ ସୁଯୋଗ ହୋଇଥାନ୍ତା ।

ମୂଳଗ୍ରନ୍ଥରେ ଯେଉଁ ଛାନ୍ଦମାନ ଲେଖାଯାଇଅଛି ସେସବୁ ଉତ୍ତମ ହୋଇଅଛି ଓ ବିଦ୍ୟାଳୟର ପାଠୋପଯୋଗୀ ଛାନ୍ଦମାନ ନାନା ପୁସ୍ତକର ବାଛିବାରେ ଗ୍ରନ୍ଥକର୍ତ୍ତାଙ୍କ ବିବେଚନା ଓ ପରିଶ୍ରମର ଉତ୍ତମ ପରିଚୟ ପ୍ରାପ୍ତ ହୁଅଇ କେହି କେହି ବୋଲନ୍ତି ଯେ ଛାନ୍ଦମାନ ବୁଝିବାକୁ କଠିନ ହେବାର ବିଦ୍ୟାଳୟରେ ଚଳି ନ ପାରେ ଏ ମତରେ ଆମ୍ଭେମାନେ ସମ୍ମତ ନୋହୁଁ ଯେବେ ଏପ୍ରକାର ଛାନ୍ଦ ବୁଝିବାକୁ ବିଦ୍ୟାଳୟରେ ଅଭ୍ୟାସ ନ କରିବେ ତେବେ ଉତ୍କଳଭାଷା ଆଉ କଣ ପଢ଼ିବେ ? ତେବେ ଏତିକି ବୋଲାଯାଇପାରେ ଯେ ଏହାକୁ ପ୍ରଥମେ ପଢ଼ିବାର ନୁହଇ ଏହାଠାରୁ ସରଳ ଛାନ୍ଦମାନ ଆଗେ ପଢ଼ିଲେ ପଛେ ଏହା ପଢ଼ିବାକୁ ହେବ ଓ ବାସ୍ତବରେ ଏହା ଉଚ୍ଚଶ୍ରେଣୀର ଛାତ୍ରଙ୍କ କାରଣ ହୋଇଅଛି ।

***ଭା୫ଗ, ସଂ୪୪ଖ୍ୟା, ୧୨।୧୧।୧୮୭୦***

## ୧୮୭୧

## ବିଶ୍ୱବିଦ୍ୟାଳୟର ପରୀକ୍ଷା ଫଳ

ଗତ ପ୍ରକାଶିତ କଲିକତା ଗଜେଟରେ ବିଶ୍ୱବିଦ୍ୟାଳୟର ପରୀକ୍ଷା ଫଳ ପ୍ରଚାରିତ ହୋଇଅଛି । ଆମ୍ଭେମାନେ ତହିଁର ଉତ୍କଳଦେଶର ବିଦ୍ୟାଳୟମାନଙ୍କରେ ଅଧ୍ୟୟନ କରଥିବା ଯେଉଁ ଛାତ୍ରମାନେ କୃତକାର୍ଯ୍ୟ ହୋଇଅଛନ୍ତି ସେମାନଙ୍କ ନାମ ବାଛି ତଳେ ପ୍ରକାଶକଲୁଁ । ପାଠକମାନେ ସେଥର ଦେଖିବେ ଯେ ଏବର୍ଷ କେବଳ ପୁରଷୋତ୍ତମର ଜଣେ ଛାତ୍ର ପ୍ରବେଶିକା ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ସ୍ଥାନ ପାଇଅଛି ଆଉ ସମସ୍ତେ ଦ୍ୱିତୀୟ ଓ ତୃତୀୟ ଶ୍ରେଣୀରେ ରହିଅଛନ୍ତି । କଟକରେ ଜ ୯ ଣ ବାଲେଶ୍ୱରରେ ଜ ୫ ଣ ଓ ପୁରୀରେ ଜ୪ଣ ପରୀକ୍ଷାର୍ଥୀ ଥିଲେ ତହିଁ ମଧ୍ୟର କଟକର ଜ ୮ ଣ ବାଲେଶ୍ୱରର ଜ ୪ ଣ ଓ ପୁରୀର ଜ ୩ ଣ ଫଳ ପାଇଅଛନ୍ତି । ବଙ୍ଗଦେଶରେ ସମୁଦାୟ ପରୀକ୍ଷାର୍ଥୀ ଛାତ୍ରଙ୍କ ସଂଖ୍ୟା ଜ ୧୯୦୬ ଣ ଥିଲା ଏଥି ମଧ୍ୟର ଜ ୧୦୯୮ ଣ ଅର୍ଥାତ୍ ଅଧେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ଏଫଳସଂଗେ ଓଡ଼ିଶାର ଫଳ ତୁଳନା କଲେ ଓଡ଼ିଶାଛାତ୍ରଙ୍କୁ ପ୍ରଶଂସା କରିବାକୁ ହେବ କାରଣ ଜ ୧୮ ଣ ମଧ୍ୟର ଜ ୧୫ ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ମାତ୍ର ଗତବର୍ଷର ଫଳ ସଂଗେ ଏବର୍ଷର ଫଳକୁ ତୁଳନା କଲେ ଓଡ଼ିଶ୍ୟାର ସୁଖ୍ୟାତି ହେଉ ନାହିଁ । ଗତବର୍ଷ ଜ ୧୪ ଣ ଉତ୍ତୀର୍ଣ୍ଣ ହୋଇଥିଲେ ସତ୍ୟ ମାତ୍ର ସେମାନଙ୍କ ମଧ୍ୟର ତିନିଜଣ ପ୍ରଥମ ଶ୍ରେଣୀରେ ଥିଲେ ଏ ବର୍ଷ ଉକ୍ତ ଶ୍ରେଣୀରେ ଜଣକର ଅଧିକ ନାହିଁ ।

ପ୍ରତ୍ୟେକ ବିଦ୍ୟାଳୟର ଫଳପ୍ରତି ଦୃଷ୍ଟିକଲେ ପ୍ରକାଶ ହୁଅଇ ଯେ ଏବର୍ଷ ପୁରୀସ୍କୁଲ ଓଡ଼ିଶାରେ ଅଗ୍ରବର୍ତ୍ତୀ ହୋଇଅଛି ବାଲେଶ୍ୱର ଦ୍ୱିତୀୟ ଓ କଟକ ହାଇସ୍କୁଲ ତୃତୀୟ ଅଟଇ । ପୁରୀସ୍କୁଲର ଫଳ ଗତବର୍ଷ ତୁଳନାରେ ମଧ ବହୁତ ଭଲ ହୋଇଅଛି । ବାଲେଶ୍ୱରର ଫଳ କିଞ୍ଚିତ୍ ଭଲ ଓ କଟକର ଫଳ ସବୁଠାର ଉଣା । ପୁରୀସ୍କୁଲ ଅନେକ କାଳର ପଛକୁ ପଡ଼ିରହିଥିଲା ଏବର୍ଷ ସମସ୍ତଙ୍କ ଆଗ ହେବାର ତତ୍ରତ୍ୟ ବାଳକମାନେ ଉତ୍ସାହୀ ହୋଇ ଆଗାମି ବର୍ଷକୁ ଆହୁରି ଉତ୍ତମ ଫଳ ଦେଖାଇବାକୁ ପରିଶ୍ରମ କରିବେ ।

କଟକ ହାଇସ୍କୁଲର ଫଳ ପୂର୍ବାପେକ୍ଷା ଭଲ ହେବାର ଉଚିତ ଥିଲା ତାହା ନ ହୋଇ ବିପରୀତ ଫଳ କାହିଁକି ଘଟିଲା ଅନୁସନ୍ଧାନର ଯୋଗ୍ୟ ଅଟଇ । ହାଇସ୍କୁଲର ଫାଷ୍ଟଆର୍ଟସ ପରୀକ୍ଷାରେ ଗତବର୍ଷ ଜଣେ ଉତ୍ତୀର୍ଣ୍ଣ ହୋଇଥିବାର ଆମ୍ଭେମାନେ ଆନନ୍ଦିତ ହୋଇଥିଲୁଁ କାରଣ ସେ ବର୍ଷ ଏ ପରୀକ୍ଷାର ପ୍ରଥମବର୍ଷ ଥିଲା ମାତ୍ର ଦ୍ୱିତୀୟବର୍ଷକୁ କିଛି ଅଧିକ କି ହୁଅନ୍ତା ନା ଉକ୍ତ ପରୀକ୍ଷାରେ ଜଣେ ମାତ୍ର ଉତ୍ତୀର୍ଣ୍ଣ ହେଲା । ଏଫଳର ବୋଧ ହୁଅଇ ଏଠାରେ ଯେ କଲେଜ ସଂସ୍ଥାପନର ଯେଉଁ କଳ୍ପନା ଥିଲା ତାହା ଶୀଘ୍ର ଘଟିବାର ନୁହଇ । ଏହା ବଡ଼ ଦୁଃଖର ବିଷୟ ଅଟଇ ଯାହା ହେଉ ଆମ୍ଭେମାନେ ସ୍ଥାନୀୟ ଶିକ୍ଷା ସଭାକୁ ଅନୁରୋଧ କରଅଛୁଁ ଯେ ଛାତ୍ରମାନେ କେଉଁ କେଉଁ ବିଷୟରେ ଅପଟୁତା ପ୍ରଦର୍ଶନ କରିବାର ଫଳ ଲଭିଲେ ନାହିଁ ତହିଁର ଅନୁସନ୍ଧାନ କରି ଭବିଷ୍ୟତରେ ଯେଉଁ ଉପାୟଦ୍ୱାରା ଉକ୍ତ ପ୍ରତିବନ୍ଧକମାନ ଘୁଞ୍ଚିଯାଏ ତହିଁର ବ୍ୟବସ୍ଥା କରନ୍ତୁ ।

ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନଙ୍କ ନାମ

**ଫାଷ୍ଟଆର୍ଟସ ପରୀକ୍ଷା**

ତୃତୀୟଶ୍ରେଣୀ

ଗୋପୀମୋହନସେନ : କଟକ ହାଇସ୍କୁଲ

ପ୍ରବେଶିକା ପରୀକ୍ଷା

ପ୍ରଥମଶ୍ରେଣୀ

| | |
|---|---|
| ଜୟକୃଷ୍ଣ ଦାସ : | ପୁରୀ ସ୍କୁଲ |

ଦ୍ୱିତୀୟଶ୍ରେଣୀ

| | |
|---|---|
| ଅବଦୁଲ ସୋଭାନ | କଟକ ସ୍କୁଲ |
| ପରିକ୍ଷିତ ମହାନ୍ତି | କଟକ ସ୍କୁଲ |
| ବ୍ରଜେନ୍ଦ୍ରନାଥ ଘୋଷ | କଟକ ସ୍କୁଲ |
| ଦର୍ପନାରାୟଣ ଦାସ | କଟକ ସ୍କୁଲ |
| ତାରକନାଥ ବୋଷ | କଟକ ସ୍କୁଲ |
| ପ୍ୟାରୀମୋହନ ଆଚାର୍ଯ୍ୟ | କଟକ ସ୍କୁଲ |
| ଦ୍ୱାରିକାନାଥ ଘୋଷ | ବାଲେଶ୍ୱର ସ୍କୁଲ |
| ସୁଦର୍ଶନ ଦାସ | ବାଲେଶ୍ୱର ସ୍କୁଲ |
| ହରପ୍ରସାଦ ଦାସ | ବାଲେଶ୍ୱର ସ୍କୁଲ |
| କୈଳାଶ୍ଚନ୍ଦ୍ର ଦାସ | ପୁରୀ ସ୍କୁଲ |

ତୃତୀୟଶ୍ରେଣୀ

| | |
|---|---|
| ହୃଦୟନାଥ ପାଲିତ | କଟକ ସ୍କୁଲ |
| ଗଜନଫର ହୋସେନ | କଟକ ସ୍କୁଲ |
| ରଘୁନାଥ ଘୋଷ | ବାଲେଶ୍ୱର ସ୍କୁଲ |
| ମଧୁସୂଦନ ମୁଖୁର୍ଯ୍ୟା | ପୁରୀ ସ୍କୁଲ |

*ଭା୬ଗ, ସଂ୨ଖ୍ୟା, ୧୪।୧।୧୮୭୧*

## ଓଡିଶ୍ୟା ଡେପୁଟୀକଲେକ୍‌ଟର

ପାୟୋନୀୟର ଲେଖନ୍ତି ଯେ ଓଡ଼ିଶ୍ୟାବାସିମାନେ ଉଚ୍ଚକର୍ମ ନ ପାଇବାର ସେମାନଙ୍କର ଯେଉଁ ବହୁକାଳର ଦୁଃଖ ଥିଲା ତାହା ଏଥର ଘୁଞ୍ଚିଯିବାର ଉପକ୍ରମ ହୋଇଅଛି । ଗବର୍ଣ୍ଣମେଣ୍ଟବଙ୍ଗାଳ ମନସ୍ଥ କରିଅଛନ୍ତି ଯେ ଉଡିଶ୍ୟାବାସିଙ୍କ ପରୀକ୍ଷା ନେଇ ଦୁଇଟା ଡେପୁଟୀକଲେକ୍‌ଟରୀ କର୍ମ ତାହାଙ୍କୁ ଦିଆଯିବ ଓ ବର୍ଷକୁ ବର୍ଷ ଏହିପରି ପରୀକ୍ଷା ଗୃହୀତ ହୋଇ ଜଣେଲେଖାଏଁ ଡେପୁଟୀ ନିଯୁକ୍ତ ହେବେ । ସମ୍ପାଦକ ବୋଲନ୍ତି ଯେ ଓଡିଶ୍ୟାରେ ଯେପ୍ରକାର ବିଦ୍ୟୋନ୍ନତି ହେଉଅଛି ତହିଁରେ ଏପରି ଉତ୍ସାହ ଦେବାର ଉଚିତ ଅଟଇ ଏଥିରେ ଓଡିଶ୍ୟାବାସିମାନେ ସନ୍ତୁଷ୍ଟ ହେବେ ଏବଂ ସମୟରେ ଗବର୍ଣ୍ଣମେଣ୍ଟ ଉପଯୁକ୍ତ ସ୍ଥାନୀୟକର୍ମଚାରୀ ପ୍ରାପ୍ତ ହେବେ ।

ଏଥିର ଦେଖାଯାଏ ଯେ ଓଡିୟାଙ୍କୁ ଡେପୁଟୀକଲେକ୍‌ଟରୀ ପଦ ଦେବାପାଁଇ ଆମ୍ଭମାନଙ୍କ କମିଶନର ରାବନସା ସାହେବ ଯେଉଁ ପ୍ରସ୍ତାବକରିଅଛନ୍ତି ତାହା ସର୍ବସାଧାରଣର ମନୋନୀତ ଅଟଇ ମାତ୍ର ଦୁଃଖର ବିଷୟ ଯେ ଏପର୍ଯ୍ୟନ୍ତ କୌଣସି କାର୍ଯ୍ୟ ହେବାର ଦେଖାଯାଉ ନାହିଁ । ଶୁଣାଯାଏ ଯେ କମିଶନର ସାହେବ କେତେଗୁଡ଼ିଏ ନିୟମ ପ୍ରସ୍ତୁତ କରି ଗବର୍ଣ୍ଣମେଣ୍ଟଙ୍କର ମଞ୍ଜୁରିକାରଣ ପଠାଇଅଛନ୍ତି ଓ ତାହା କେତେଦିନେ ଫେରିଆସିବ ବୋଲାଯାଇ ନ ପାରେ । ଆମ୍ଭମାନଙ୍କ ଲେଫଟନଣ୍ଟ ଗବର୍ଣ୍ଣର ଆଉ ଏକମାସ କର୍ମରେ ରହିବେ ଓ ତଦୁତ୍ତାର ଶ୍ରୀଯୁକ୍ତ ଜର୍ଜ କାମ୍ବଲସାହେବ ଉକ୍ତ ପଦରେ ଅଭିଷିକ୍ତ ହେବେ । ଯେବେ ସମ୍ପ୍ରତି ନିଷ୍ପତ୍ତି ହୁଅଇ ତେବେ ଭଲ ନୋହିଲେ ତିନିଚାରିମାସ ବୃଥାରେ ବାହାରିଯିବ । ଆମ୍ଭେମାନେ କମିଶନର ସାହେବଙ୍କ ପ୍ରସ୍ତାବିତ ନିୟମମାନ ଦେଖି ନାହୁଁ

ସୁତରାଂ ସେ ବିଷୟରେ କିଛି କହି ନ ପାରୁଁ ମାତ୍ର ଭରସା କରୁଁ କି ଯେରୂପ ଏ ପ୍ରଦେଶୀୟମାନଙ୍କୁ ଉଚ୍ଚ ପଦାରଢ଼ କରିବାକୁ ଇଚ୍ଛୁକ ହୋଇଅଛନ୍ତି ସେହିପରି ଉପଯୁକ୍ତ ନିୟମମାନ କରିଥିବେ ।

*ଭା/୬ଗ, ସଂ୪ଖ୍ୟା, ୨୮/୧/୧୮୭୧*

## ଦେଶୀୟଭାଷା ଛାତ୍ରବୃତ୍ତି ପରୀକ୍ଷାର ଫଳ

ଆମ୍ଭେମାନେ ଗତ ସପ୍ତାହର ଅତିରିକ୍ତ ପତ୍ରିକାରେ ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଙ୍କ ନାମ ପ୍ରକାଶ କରିଥିଲୁଁ ତହିଁର ପାଠକମାନେ ଅବଗତ ହୋଇଥିବେ ଯେ ଏ ବର୍ଷ ଓଡିଶ୍ୟାର ସମସ୍ତ ବିଦ୍ୟାଳୟରେ ସର୍ବସୁଦ୍ଧା ଜ୮୨ ଣ ଛାତ୍ର ଉତ୍ତୀର୍ଣ୍ଣ ହୋଇଅଛନ୍ତି ଯଥା ।

| | |
|---|---|
| ପ୍ରଥମଶ୍ରେଣୀରେ | ଜ ୭ ଣ |
| ଦ୍ୱିତୀୟଶ୍ରେଣୀରେ | ଜ ୧୫ ଣ |
| ତୃତୀୟଶ୍ରେଣୀରେ | ଜ ୬୦ ଣ |

ଏଥିମଧ୍ୟର ନିମ୍ନଲିଖିତ ପ୍ରକାରରେ ଜ ୧୫ ଣ ଚାରିବର୍ଷର ଛାତ୍ରବୃତ୍ତି ଓ ଜ ୧୫ ଣ ଏକବର୍ଷର ଛାତ୍ରବୃତ୍ତି ପାଇଅଛନ୍ତି ଯଥା ।

| | |
|---|---|
| ପ୍ରଥମଶ୍ରେଣୀର ଛାତ୍ର : | ଜ ୭ ଣ |
| ଦ୍ୱିତୀୟଶ୍ରେଣୀର | ଜ ୮ ଣ |
| ତୃତୀୟଶ୍ରେଣୀର | ଜ ୧୫ ଣ |

ବାଁସତିହା ବାରବାଟୀ ଦୋଳସାହି ବଗୁରାଇ ସୋରୋ ତାରାକୋଟ କୋରାଇ କଟକ ଢେଙ୍କାନାଳ ମାହାଗ୍ରାମ ମାହାସିଂହପୁର ଚର୍ଚ୍ଚିକା ରାମବାଗ ସୁବାନପୁର ପୁରୀ ଖୋରୋଧା ଭଦଲୋ ନିମାପଡ଼ା ପିପିଲି ଏହି ବିଦ୍ୟାଳୟମାନଙ୍କ ଭାଗରେ ଛାତ୍ରବୃତ୍ତିମାନ ପଡ଼ିଅଛି ।

ଗତବର୍ଷ ପରୀକ୍ଷାର ଫଳାନୁସାରେ କଟକବଙ୍ଗଳା ବିଦ୍ୟାଳୟ ଓଡିଶାରେ ଶ୍ରେଷ୍ଠ ହୋଇଥିଲା ମାତ୍ର ଏବର୍ଷ ବାଲେଶ୍ୱରର ବାଁସତିହା ବିଦ୍ୟାଳୟ ଅଗ୍ରଗଣ୍ୟ ହୋଇଅଛି ଏ ବିଦ୍ୟାଳୟର ଚାରିଜଣ ଛାତ୍ର ପ୍ରଥମଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଚାରିବର୍ଷ ପାଁଇ ବୃତ୍ତି ପାଇବାର ଯୋଗ୍ୟ ହୋଇଅଛନ୍ତି । ଶିକ୍ଷା ବିଷୟରେ ବାଲେଶ୍ୱରଜିଲା ଏବର୍ଷ ସର୍ବପ୍ରକାରରେ ସୁଖ୍ୟାତି ଲାଭକଲା ଇଂରାଜୀ ପ୍ରବେଶିକା ପରୀକ୍ଷାରେ ଯେମନ୍ତ ଭାଷାଛାତ୍ରବୃତ୍ତି ପରୀକ୍ଷାରେ ମଧ ସେହିରପ ଶ୍ରେଷ୍ଠ ହୋଇଅଛି ମାତ୍ର ଦୁଃଖର ବିଷୟରେ ଯେ ଇଂରାଜରେ କେହି ଛାତ୍ରବୃତ୍ତି ଲାଭ କରିବାକୁ ସକ୍ଷମ ହୋଇ ନାହିଁ ଏଥିର ଅନୁମାନ ହେଉଅଛି ଯେ ସେମାନେ କଟକଠାର ଅଧିକ ଅଙ୍କ ପାଇ ନ ଥିବେ । ଯାହା ହେଉ ଭାଷା ପରୀକ୍ଷାରେ ଏକା ବାଲେଶ୍ୱରରେ ଜ୩୦ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି ଅବଶିଷ୍ଟ ଜ ୫୨ ଣ ପୁରୀ ଓ କଟକଜିଲାର ଅଟନ୍ତି । ଆହୁରି ସୁଖର ବିଷୟ ଯେ ବାଲେଶ୍ୱର ମିଶ୍ନରି ବିଦ୍ୟାଳୟ ଦ୍ୱୟର ଜ ୬ ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । କଟକ ମିଶ୍ନରୀ ବିଦ୍ୟାଳୟର କି କେହି ପରୀକ୍ଷା ଦିଅନ୍ତି ନାହିଁ ।

କଟକରେ ଢେଙ୍କାନାଳ ଓ ମାହାଗ୍ରାମ ବିଦ୍ୟାଳୟମାନ ଏବର୍ଷ ଅତିଶୟ ସୁଖ୍ୟାତିର ଭାଜନ ହୋଇ ଅଛନ୍ତି । ଏ ଦୁଇସ୍କୁଲ ଅଳ୍ପ ଦିନ ହେଲା ସ୍ଥାପିତ ହୋଇଅଛି ଓ ଏହିବର୍ଷ ପ୍ରଥମଥର ଏଥିର ଛାତ୍ରବୃତ୍ତି ପରୀକ୍ଷା ଦେବାର ଆରମ୍ଭ ହେଲା ପ୍ରଥମ ବର୍ଷରେ ଏମନ୍ତ ଫଳ ଘଟିବା ଅତି ଆନନ୍ଦଜନକ ଅଟଇ ବିଶେଷରେ ଢେଙ୍କାନାଳ ବିଦ୍ୟାଳୟର ଜ୪ଣ ଛାତ୍ର ପରୀକ୍ଷା ଦେବାକୁ ଆସିଥିଲେ ସମସ୍ତେ ଫଳଲାଭ କରିଅଛନ୍ତି ଏ ବିଦ୍ୟାଳୟଟି ମହାରାଜଙ୍କ ନିଜଧନର ଚଳଇ ଏବଂ ଏହା ଗଡ଼ଜାତ ଅନ୍ତର୍ଗତ କି ଯେଉଁଠା ଲୋକମାନେ ବିଦ୍ୟାଧ୍ୟୟନର ଆବଶ୍ୟକତା ଆଦୌ ବୁଝନ୍ତି ନାହିଁ । ଏମନ୍ତ ବିଦ୍ୟାଳୟର ଏରପ ଫଳ ଦର୍ଶନ କରିବା ବଡ଼ ସୁଖଦାୟକ ଅଟଇ ଓ ଏଥିର ପ୍ରମାଣ ହେଉଅଛି ଯେ ମହାରାଜ

ସ୍ୱୟଂ ଯେମନ୍ତ ବିଦ୍ୱାନ୍ ଆପଣାପ୍ରଜାମାନଙ୍କ ବିଦ୍ୟା ଶିକ୍ଷା ବିଷୟରେ ସେହିରୂପ ଯତ୍ନବାନ୍ ଅଟନ୍ତି । ଆମ୍ଭେମାନେ ଏ ବିଦ୍ୟାଳୟର ଫଳ ଆଉ ସବୁ ଗଡ଼ଜାତ ରାଜାଙ୍କ ଜ୍ଞାତସାରରେ ଆଣିବା ପାଇଁ ବିଶେଷରୂପେ ଲେଖିଲୁଁ ଯେ ସେମାନେ ଆପଣା ଆପଣା ରାଜ୍ୟରେ ବିଦ୍ୟାଳୟ ସ୍ଥାପନ କରି ପ୍ରଜାଙ୍କୁ ବିଦ୍ୟାଦାନ କରିବା ପକ୍ଷରେ ଯତ୍ନବାନ୍ ହେଉନ୍ତୁ ।

*ଭା.୬ଗ, ସଂ୪ଖ୍ୟା, ୨୮।୧।୧୮୭୧*

## ଉଚ୍ଚଶିକ୍ଷା

ଆମ୍ଭେମାନେ ହିନ୍ଦୁପେଟ୍ରିଅଟ ପତ୍ରିକା ପାଠକରି ଅବଗତ ହେଲୁଁ ଯେ ଉଚ୍ଚ ଶିକ୍ଷା ରହିତ ବା ତହିଁର ବ୍ୟୟ ଲାଘବ କରିବା ବିଷୟର ଚିଟିମାନ ଏକ ପୁସ୍ତକାକାରରେ ମୁଦ୍ରିତ ହୋଇଅଛି  ଉକ୍ତ ସଂମ୍ବାଦପତ୍ରରେ ତହିଁର ସାରାଂଶ ପ୍ରକାଶ ହୋଇଅଛି । ଶ୍ରୀଯୁକ୍ତ ଗବର୍ଣ୍ଣର ଯେନରଲ ସାହେବ ଯେ ସମସ୍ତ କୌଶଳରେ ଆପଣା ମତ ସେକ୍ରେଟରୀ ଅବଷ୍ଟେଟଙ୍କ ଦ୍ୱାରା ମଞ୍ଜୁର କରି ଆଣିବାର ଚେଷ୍ଟା କରିଥିଲେ ସେ ସବୁ କୌଣସି କାର୍ଯ୍ୟରେ ଆସିଲା ନାହିଁ । ଷ୍ଟେଟ ସେକ୍ରେଟରୀଙ୍କ ଇଚ୍ଛା ନୁହଇ ଯେ ଉଚ୍ଚ ଶିକ୍ଷାଦାନ କୌଣସିମତେ ରହିତ କରନ୍ତି ଓ ଏରୂପ କାର୍ଯ୍ୟ ରାଜନୀତିର ବିରୁଦ୍ଧ ଥିବାର ସେ ଆପେ ଯତ୍ନପୂର୍ବକ ଏ ବିଷୟର ଯେ କିଛି କାଗଜପତ୍ର ତାହାଙ୍କ ନିକଟରେ ଥିଲା ପାଠ କରି ଜାଣିପାରିଲେ ଯେ ସ୍ଥାନୀୟ ଗବର୍ଣ୍ଣମେଣ୍ଟ ମଧ ଗବର୍ଣ୍ଣର ଜେନରଲଙ୍କ ମତରେ ଐକ୍ୟ ନ ହୋଇ ତାହାଙ୍କ ଆପତ୍ତିମାନଙ୍କୁ ଯଥାର୍ଥରୂପେ ଖଣ୍ଡନ କରିଅଛନ୍ତି । ଗବର୍ଣ୍ଣର ଯେନରଲ ସାହେବ କହିଥିଲେ ଯେ ଉଚ୍ଚଶିକ୍ଷାର ଫଳ କେବଳ ଧନିମାନେ ଭୋଗ କରନ୍ତି ଓ ଏଥିରେ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାୟ ସବୁ ବ୍ୟୟ ଦେବାକୁ ହୁଅଇ । ସ୍ଥାନୀୟ ଶାସନକର୍ତ୍ତା ଓ ଶିକ୍ଷା ବିଭାଗର ଡାଇରେକ୍ଟର ବୋଲନ୍ତି ଯେ ସାମାନ୍ୟ ଉପାୟବନ୍ତ ଲୋକଙ୍କ ବାଳକମାନେ ଅଧିକ ପରିମାଣରେ ପାଠ କରନ୍ତି ଓ ଗବର୍ଣ୍ଣମେଣ୍ଟ ଯେତେ ବ୍ୟୟ ଦିଅନ୍ତି ଲୋକଙ୍କଠାର ଭେଦାଦାନ ଓ ବେତନ ଦ୍ୱାରା ପ୍ରାୟ ତେତିକି ଟଙ୍କା ଉସୁଲ ହୁଅଇ । ଏକଥାମାନ ଷ୍ଟେଟ ସେକ୍ରେଟରୀ ବଙ୍ଗାଳ ଗବର୍ଣ୍ଣମେଣ୍ଟଙ୍କ ଆଜ୍ଞାକ୍ରମେ କଲିକତା ଗଜେଟରେ ପ୍ରକାଶ ହୋଇଥିବା କାଗଜମାନଙ୍କର ଜାଣିପାରିଲେ କି ଯେ ସମସ୍ତ କାଗଜ ଛାପା ହେବାରେ ଗବର୍ଣ୍ଣର ଯେନରଲ ସାହେବ ଲେଫ୍‌ଟନଣ୍ଟ ଗବର୍ଣ୍ଣରଙ୍କ ପ୍ରତି ଅତିଶୟ ବିରକ୍ତ ହୋଇଥିଲେ ।  ଲାର୍ଡମେଓ ସାହେବ ବୋଧ ହୁଅଇ କେବଳ ଆପଣା ମତ ସମର୍ଥନ ଉପଯୋଗି କାଗଜମାନ ପଠାଇ ଏସବୁ ଗୋପନରେ ରଖିବାକୁ ଇଚ୍ଛା କରଥିଲେ । ମାତ୍ର ଭାରତବର୍ଷର ସୌଭାଗ୍ୟକ୍ରମେ ତାହା ହୋଇ ପାରିଲା ନାହିଁ । ଯାହା ହେଉ ଷ୍ଟେଟ ସେକ୍ରେଟରୀ ଗବର୍ଣ୍ଣର ଜେନରଲଙ୍କ ପ୍ରସ୍ତାବରେ ସମ୍ମତ ନ ହୋଇ ଏହି ଆଦେଶ ଦେଲେ ଯେ ସ୍ଥାନୀୟ ଗବର୍ଣ୍ଣମେଣ୍ଟଙ୍କ ପରାମର୍ଶ ବିରୁଦ୍ଧରେ ଶିକ୍ଷା ପ୍ରଣାଳୀ ଯେରୂପେ ଚଳିଆସୁଅଛି ତହିରେ କିଛି ପରିବର୍ତ୍ତନ ହେବ ନାହିଁ ଓ ଯେ ଯେ ଆପତ୍ତିମାନ ଗବର୍ଣ୍ଣର ଯେନରଲ କରିଥିଲେ ସେସବୁ ଉତ୍ତମରୂପେ ଖଣ୍ଡନ କଲେ । ଏ ଆଜ୍ଞା ଅନେକ ଦିନ ହେଲା ଇଣ୍ଡିଯା ଗବର୍ଣ୍ଣମେଣ୍ଟ ପାଇଅଛନ୍ତି ଓ ଯେବେ ତାହା ଯଥା ସମୟରେ ପ୍ରକାଶ ହୋଇଥାନ୍ତା ତେବେ ଉଚ୍ଚଶିକ୍ଷା ରଖିବା ପାଇଁ ଯେ ସଭାମାନ ହୋଇଥିଲା ତହିଁର ଆବଶ୍ୟକ ହୋଇ ନ ଥାନ୍ତା । ଆମ୍ଭେମାନେ ଭରସା କରୁଁ ଯେ ଏସଂବାଦ ଶୁଣିଲାର ଏତଦ୍ଦେଶୀୟମାନଙ୍କର ଉଚ୍ଚଶିକ୍ଷା ବିଷୟରେ ଯେଉଁ ଉଦ୍ୱେଗ ଥିଲା ତାହା ନିବାରଣ ହେବ ଓ ଭାରତବର୍ଷର ଯେ ଆବେଦନ ପତ୍ରମାନ ଯାଇଅଛି ତାହା ସଫଳ ହେବ । ଏସ୍ଥଳେ ଆମ୍ଭମାନଙ୍କୁ ଅନୁମାନ ହେଉଅଛି କି ସୋମପ୍ରକାଶ ଯେ ବାରଂବାର ଅନୁରୋଧ କରନ୍ତି ଯେ ଗବର୍ଣ୍ଣର ଜେନରଲ ପଦ ଉଠାଇଦେଇ ବିଲାତର ସେକ୍ରଟରୀଙ୍କଦ୍ୱାରା ଭାରତବର୍ଷର ଶାସନକାର୍ଯ୍ୟ ନିର୍ବାହ ହେଉ ତାହା ଯୁକ୍ତିଯୁକ୍ତ ଅଟଇ । କାରଣ ଯେବେ ଏପ୍ରକାର ଗୁରତର ବିଷୟରେ ଗବର୍ଣ୍ଣର ଜେନରଲଙ୍କ ମତ ଅପେକ୍ଷା ଷ୍ଟେଟ ସେକ୍ରଟରୀଙ୍କ ମତ ଶ୍ରେଷ୍ଠ ହେଲା ଓ ପ୍ରଥମବ୍ୟକ୍ତି ଏ ଦେଶରେ ଥାଇଁ ଯାହା ସ୍ଥିର କରି ନ ପାରିଲେ ତାହା ଶେଷବ୍ୟକ୍ତି ବିଲାତରେ ଥାଇଁ ସ୍ଥିର କଲେ ତେବେ ଏତେ ବେତନ ଦେଇ ଏଠାରେ ଜଣେ ଶାସନକର୍ତ୍ତା ରଖିବାର କି ଫଳ ଅଛି  ?

*ଭା.୬ଗ, ସଂ୮ଖ୍ୟା, ୨୫।୨।୧୮୭୧*

## ସମାଲୋଚନା ।

## ଜ୍ଞାନଦୀପିକା ପ୍ରଥମଭାଗ ।

ଶ୍ରୀଯୁକ୍ତ କେ.ଡବଲିଉ, ଲେସିସାହେବଙ୍କଦ୍ୱାରା ଇଂରାଜୀଭାଷାର ଉତ୍କଳଭାଷାରେ ଅନୁବାଦିତ ହୋଇଅଛି ।

ଶ୍ରୀଯୁକ୍ତ ଲେସିସାହେବ ଗବର୍ଣ୍ଣମେଣ୍ଟ ଉତ୍କଳଅନୁବାଦକ କର୍ମ କରନ୍ତି ଏବଂ ପୁସ୍ତକ ରଚନାରେ ଏହି ତାଙ୍କର ପ୍ରଥମ ଚେଷ୍ଟା । ପୁସ୍ତକଖଣ୍ଡିକ ପ୍ରଶ୍ନ ଉତ୍ତର ଶୃଙ୍ଖଳାରେ ରଚନା ହୋଇଅଛି ଓ ପଦାର୍ଥବିଦ୍ୟା ଏହାର ବିଷୟ ଅଟଇ ଉକ୍ତ ବିଦ୍ୟା ବିଷୟକ ସହଜ ସହଜ କଥାମାନ ବିଦ୍ୟାଳୟର ବାଳକଙ୍କୁ ଶିକ୍ଷ୍ୟା ଦେବାର ଉତ୍ତମ ଉପାୟ ଏହାଦ୍ୱାରା ହେବାର ଜଣାଯାଏ ବିଜ୍ଞାନଶାସ୍ତ୍ର ଅଧ୍ୟୟନ କେତେ ହିତକର ତାହା ଯଥାରପ ବର୍ଣ୍ଣନା କରାଯାଇ ନ ପାରେ । ବିଦ୍ୟାଳୟରେ ଏହି ଶାସ୍ତ୍ର ପଢ଼ାଇବା ଅତ୍ୟନ୍ତ ଆବଶ୍ୟକ ତାହା ନ ହେଲେ ବିଦ୍ୟାର ଫଳ କିଛିମାତ୍ର ପ୍ରାପ୍ତ ହୁଅଇ ନାହିଁ । ଲେଖା ପଢ଼ା ଜାଣି ସୁଦ୍ଧା ଲୋକେ ମୂର୍ଖ ବୋଲାଯାଇ ପାରନ୍ତି ମାତ୍ର ଯେ ବ୍ୟକ୍ତି ପଦାର୍ଥଜ୍ଞାନରେ ଯେତେ ପାରଦର୍ଶିତା ଲାଭ କରଇ ତାହାଙ୍କୁ ସେପରିମାଣରେ ଜ୍ଞାନୀ ବୋଲାଯାଏ । ରୀତିମତ ପଦାର୍ଥ ବିଦ୍ୟା ଶିକ୍ଷ୍ୟା କରିବା ପୂର୍ବେ ବାଳକମାନେ ଏପୁସ୍ତକ ଖଣ୍ଡିକ ପାଠ କରିଥିଲେ ଅନେକ ସହଜ ବିଷୟରେ ତାଙ୍କର ଜ୍ଞାନ ହୋଇଥିବ ଓ ସେ ପୁସ୍ତକମାନ ଅଳ୍ପପରିଶ୍ରମରେ ବୁଝିପାରିବେ । ବିଶେଷରେ ପିଲାଦିନେ ଲୋକଙ୍କର ଜିଜ୍ଞାସୁସ୍ପୃହା ଅଧିକ ପରିମାଣରେ ଲକ୍ଷିତ ହୁଅଇ ସେହି କାଳରେ ଯେବେ ପ୍ରଶ୍ନ ଉତ୍ତର ଛଳରେ ଗ୍ରଥିତ ହୋଇଥିବା ଏହି ସାମାନ୍ୟ ପୁସ୍ତକଖଣ୍ଡିକ ସେମାନଙ୍କୁ ପଢ଼ାଇ ଦିଆଯିବ ତେବେ ସେମାନଙ୍କର କୌତୁକ ଅଧିକତର ବୃଦ୍ଧି ହେବ ଓ ଆଉ ଆଉ କଥାମାନ ଜାଣିବାକୁ ମନ ବ୍ୟଗ୍ର ହେବ ସନ୍ଦେହ ନାହିଁ । ଅତଏବ ଆମ୍ଭେମାନେ ଏପୁସ୍ତକଖଣ୍ଡିକ ଆନନ୍ଦର ସହିତ ଅନୁମୋଦନ କରଅଛୁଁ ଓ ଏହା ପ୍ରକାଶ କରି ଗ୍ରନ୍ଥକର୍ତ୍ତା ଓଡ଼ିଆପୁସ୍ତକର ଗୋଟିଏ ପ୍ରଧାନ ଅଭାବମୋଚନପକ୍ଷରେ ଅଗ୍ରସର ହୋଇଅଛନ୍ତି । ଆମ୍ଭେମାନେ ଭରସାକରଁ ଯେ ଗ୍ରନ୍ଥକର୍ତ୍ତା ଏହାର ଅନ୍ୟ ଭାଗମାନ ଶୀଘ୍ର ପ୍ରକାଶ କରନ୍ତୁ ଓ ବିଦ୍ୟାଳୟର କର୍ତ୍ତୃପକ୍ଷମାନେ ଏପୁସ୍ତକକୁ ଅବିଳମ୍ବରେ ବିଦ୍ୟାଳୟମାନଙ୍କରେ ପଢ଼ାଇବାର ଉଦ୍ୟମ କରନ୍ତୁ ।

ଏପୁସ୍ତକ ଖଣ୍ଡିକରେ ଆମ୍ଭେମାନେ ଗୋଟିଏ କଥାର ଅଭାବ ଦେଖୁଅଛୁଁ ତାହା ଏହି ଯେ ଏହାର ଶୃଙ୍ଖଳା ଉତ୍ତମ ହୋଇ ନାହିଁ । ଏକ ଏକ ବିଷୟର ପ୍ରଶ୍ନ ଉତ୍ତର ପୃଥକ ପୃଥକ ଅଧ୍ୟାୟରେ ଲେଖା ନ ହୋଇ ଏକ ଏକ ଅଧ୍ୟାୟ ମଧ୍ୟରେ ଦୁଇ ଚାରି ବିଷୟର ବିଚାର ଲେଖା ଯାଇଅଛି । ଗ୍ରନ୍ଥକର୍ତ୍ତା ଏଦୋଷଟି ପରିହାର କଲେ ବଡ଼ ଭଲ ହେବ ଏବଂ କେତେ ସ୍ଥଳରେ ନ୍ୟୂନାଧିକ ଭାଷା ପରିବର୍ତ୍ତନର ମଧ୍ୟ ଆବଶ୍ୟକ ।

*ଭା୬ଗ, ସଂ୨୦ଖ୍ୟା, ୨୭।୫।୧୮୭୧*

## କଚେରୀର ଭାଷା ।

ଗବର୍ଣ୍ଣମେଣ୍ଟ ଯେତେ ଟଙ୍କା ବ୍ୟୟକରି ବିଦ୍ୟାଳୟମାନ ସ୍ଥାପନ କରିଅଛନ୍ତି ତାହା କାହାରିକୁ ଅବିଦିତ ନାହିଁ ଓ ଦିନକୁଦିନ ଦେଶୀୟଭାଷା ଉନ୍ନତିକାରଣ ଶିକ୍ଷାବିଭାଗର ଯେତେ ଉପାୟ ହେଉଅଛି ତାହା ମଧ୍ୟ ଅକଥନୀୟ ମାତ୍ର ଦୁଃଖରବିଷୟ ଯେ ଶିକ୍ଷାର ଫଳ ବିଦ୍ୟାଳୟର ବାହାରକୁ ବାହାର ନାହିଁ ଏଥିରେ କାହାର ଦୋଷ ଅଛି ଅନୁସନ୍ଧାନ କରିବାକୁ ଗଲେ ସ୍ପଷ୍ଟ ପ୍ରକାଶ ହେଉଅଛି କି ଯେଉଁ ଗବର୍ଣ୍ଣମେଣ୍ଟ ଗୁଡ଼ିଏ କର୍ମଚାରିଙ୍କ ଦ୍ୱାରା ବିସ୍ତର ଟଙ୍କା ବ୍ୟୟକରି ଲୋକଙ୍କୁ ଶିକ୍ଷା ଦେଉଅଛନ୍ତି ସେହି ଗବର୍ଣ୍ଣମେଣ୍ଟ ପୁଣି ଆଉ ଗୁଡ଼ିଏ କର୍ମଚାରିଙ୍କ ଦ୍ୱାରା ଶିକ୍ଷା ଦାନର ଉଦ୍ଦେଶ୍ୟକୁ ବିଫଳ କରଅଛନ୍ତି ଜିଲ୍ଲା କଲେକ୍‌ଟର କମିଶ୍ନର ପ୍ରଭୃତିଙ୍କଠାରେ ଗବର୍ଣ୍ଣମେଣ୍ଟ ଆଶା କରନ୍ତି ଯେ ଏମାନେ ବିଦ୍ୟାଲାଭ ବିଷୟରେ ଲୋକଙ୍କୁ ଉତ୍ସାହ ଦେବେ ମାତ୍ର କାର୍ଯ୍ୟତଃ କିପରି ହେଉଅଛି । ଉତ୍ସାହ ଦେବାପକ୍ଷରେ ଏତିକି ବୋଲାଯାଇପାରେ ଯେ ଏମାନେ ଅନୁଗ୍ରହ କରି ବହୁକାଳାନନ୍ତର ଥରେ ଅଧେ ବିଦ୍ୟାଳୟ ଦେଖିବାକୁ ଯାଇଥାନ୍ତି ଓ କେହି ଅବା ବାଳକମାନଙ୍କୁ ଦୁଇଚାରିଟା ପଢ଼ା ପଚାରି କେମନ୍ତ ଶିକ୍ଷା ପାଉଅଛନ୍ତି ତାହା କଳନା କରନ୍ତି କଚେରୀରେ ଆସି ବସିଲେ ସେ ସମସ୍ତ ମନର ପାସୋର ଯାଏ । କୌଣସି ପଦରେ କର୍ମଚାରୀ ନିଯୁକ୍ତ କରିବାକୁ ହେଲେ ପ୍ରାର୍ଥନାକାରିମାନେ କିଏ କିପରି ଶିକ୍ଷାପାଇଅଛନ୍ତି ତହିଁର କିଛିମାତ୍ର ଅନୁସନ୍ଧାନ କରନ୍ତି

ନାହିଁ । ଯାହାର ଅକ୍ଷର ଭଲ ଦିଶେ ଅବା ସ୍ୱୟଂ ଦେଖିବାକୁ କଦାକାର ନ ଥାଏ ଓ ଦୁଇ ଏକଖଣ୍ଡ ଏକଟିଂ ପରଓ୍ୱାନା ଦେଖାଇପାରେ ଅଥବା ସିରସ୍ତାଦାର ପ୍ରଭୃତି ଉଚ୍ଚକର୍ମଚାରୀ ପ୍ରକାରାନ୍ତରରେ ଯାହାର ପ୍ରସଙ୍ଗ ପକାଇ ସାହେବଙ୍କ ମନ ଆକର୍ଷଣ କରନ୍ତି ସେହି ବ୍ୟକ୍ତିକୁ ଅନାୟାସରେ କର୍ମ ପ୍ରାପ୍ତ ହୁଅଇ କର୍ମପ୍ରାର୍ଥୀ ଲେଖାପଢ଼ି କେତେଦୂର ଜାଣେ ତହିଁର ବିଚାର ହୁଅଇ ନାହିଁ ଏରପ ଅବସ୍ଥାରେ ବିଦ୍ୟାଳୟରେ ଶିକ୍ଷା କରିବାର ଫଳ କି ଅଛି । କର୍ତ୍ତାବ୍ୟକ୍ତି ଆପଣା ସନ୍ତାନକୁ ଶିକ୍ଷାଲାଭ କାରଣ ଯେତେବେଳେ ବିଦ୍ୟାଳୟକୁ ପଠାଏ ତାହା ମନରେ ଏହି ଆଶା ବଳବତ୍ତର ଥାଏ ଯେ ବାଳକ ସୁଶିକ୍ଷା ପାଇଲେ ଭଲ ଚାକରି ପାଇବ । ଯହୁଁ ଦେଖେ ଯେ କଚେରୀର କାର୍ଯ୍ୟ ଭିନ୍ନ ପ୍ରକାରରେ ଚଳଇ ସେଠାରେ ବ୍ୟାକରଣ ସାହିତ୍ୟର କୌଣସି ପ୍ରୟୋଜନ ନାହିଁ ଶୁଦ୍ଧ ଭାଷାର ଆଦର ନାହିଁ କ ବ ଚ କରି ଅକ୍ଷର ଭଲ ଲେଖି ପାରିଲେ ଓ ପାରସୀ ବା ହିନ୍ଦୀ ଶବ୍ଦ ଅଧିକ ବ୍ୟବହାର କରି ପାରିଲେ ଚାକରି ମିଳିବାର କଷ୍ଟ ନାହିଁ ତହୁଁ ସେ ଆପଣା ବାଳକକୁ ବିଦ୍ୟାଳୟରେ ନ ରଖି କଚେରୀରେ ନିଯୁକ୍ତ ଥିବା କୌଣସି ଅମଲାକୁ ସମର୍ପଣ କରେ ଓ ସମୟାନୁସାରେ ତାହାକୁ ଖଣ୍ଡିଏ ଚାକରି ମଧ ପ୍ରାପ୍ତ ହୁଅଇ । ଚାକରି ହେବାର ଏମନ୍ତ ସହଜ ଉପାୟ ଥାଉଁ ଥାଉଁ କିଏ କାହିଁକି ଅଧିକ କାଳ ବିଦ୍ୟାଳୟରେ ପଢ଼ି ରହି ଶୁଦ୍ଧ ଭାଷାରେ ଲେଖା ପଢ଼ା ଶିକ୍ଷା କରିବ ? ଅଧିକାଂଶ ଲୋକେ ସିନା ଚାକରି ଲୋଭରେ ଆପଣା ପୁତ୍ରମାନଙ୍କୁ ବିଦ୍ୟାଳୟକୁ ପଠାନ୍ତି ମାତ୍ର ବିଦ୍ୟାଳୟର ଭାଷା କଚେରୀରେ ଚଳନ ନାହିଁ ଓ ଯେଉଁ ଭାଷା ସେଠାରେ ଚଳଇ ତାହା ଜାଣିବାକୁ ଶିକ୍ଷାର ପ୍ରୟୋଜନ ନାହିଁ । ଏରପ ଅବସ୍ଥା ଦେଶୀୟ ଭାଷା ଶିକ୍ଷାପ୍ରତି ଅତ୍ୟନ୍ତ ହାନିଜନକ ଅଟଇ ଓ ଆମ୍ଭେମାନେ ଆଶ୍ଚର୍ଯ୍ୟ ହେଉଅଛୁଁ କି ଯେଉଁମାନେ ଦେଶୀୟ ଭାଷାର ଉନ୍ନତି କରିବାକୁ ଯତ୍ନ କରନ୍ତି ସେମାନେ କେମନ୍ତେ ଆପଣା ଆପଣା ଅଧୀନସ୍ଥ କାର୍ଯ୍ୟାଳୟମାନଙ୍କରେ ଅନାୟାସରେ ଅପକୃଷ୍ଟ ଭାଷା ଲେଖା ପଢ଼ା ହେବାର ଦେଖି ବିରକ୍ତ ହୁଅନ୍ତି ନାହିଁ ଯେବେ ଜିଲାର ହାକିମମାନେ ଆପଣା ଆପଣା ମହକୁମାର କାଗଜ ପତ୍ରମାନ ଉତ୍ତମ ଭାଷାରେ ଲେଖାଇବାକୁ ଚେଷ୍ଟା କରନ୍ତେ ତେବେ ଦିନ ଦିନ ଭାଷାର ଉନ୍ନତି ହେଉଥାନ୍ତା ଓ ନଜାଣିବା ଲୋକେ କର୍ମ ପାଇ ପାରନ୍ତେ ନାହିଁ । କିନ୍ତୁ ତାହା କିରପେ ହେବ ହାକିମମାନେ କର୍ମଚାରୀ ନିଯୁକ୍ତ କଲା ବେଳେ ବିଦ୍ୟାର ପରୀକ୍ଷା ନେବେ ନାହିଁ କିମ୍ବା କିଏ କେତେ ସରିକି ଶିକ୍ଷା ପାଇଅଛି ତହିଁର ପ୍ରଶଂସାପତ୍ର ଖୋଜିବେ ନାହିଁ । ସିରସ୍ତାଦାର ମହାଫିଜ ପ୍ରଭୃତି ସରଦାର ଅମଲାମାନେ ଚିରକାଳର ଅପଭାଷା ବ୍ୟବହାର କରଥିବାର ଅଭ୍ୟାସର ଦାସ ହୋଇ ଶୁଦ୍ଧଭାଷାକୁ ଘୃଣା କରିବେ ଓ ବିଦ୍ୟାଳୟର ପ୍ରଶଂସାପତ୍ର ପାଇଥିବା ବ୍ୟକ୍ତି କର୍ମର ପ୍ରାର୍ଥୀ ହେଲେ ତାହାକୁ କଚେରୀର ଭାଷାରେ ଅଜ୍ଞ ଥିବାର ଉପହାସ କରି ଫେରାଇଁ ଦେବେ ତେବେ ଆଉ କିପରିରେ ବିଦ୍ୱାନ୍ ଲୋକ କର୍ମ ପାଇବ ଓ ତାହା ଯୋଗେ କଚେରୀର ଭାଷା ଶୁଦ୍ଧ ହେବ । ଆମ୍ଭେମାନେ ଜିଲ୍ଲାର ହାକିମଙ୍କୁ ଅନୁରୋଧ କରଅଛୁଁ ଯେ ବିଦ୍ୟାଳୟର ଛାତ୍ରଙ୍କ ପ୍ରତି ସୁଦୃଷ୍ଟି ରଖନ୍ତୁ ତାହା ହେଲେ କେବଳ କଚେରୀର ଭାଷା ଶୁଦ୍ଧ ହେବ ଏମନ୍ତ ନୁହେ ସଦାଚାର ମଧ ବୃଦ୍ଧି ହେବ ସନ୍ଦେହ ନାହିଁ ।

*ଭା୬ଗ,ସଂ୨୪ଖ୍ୟା, ୨୪।୬।୧୮୭୧*

## ଓଡ଼ିୟାପୁସ୍ତକର ପାରିତୋଷିକ ଦାନ ।

ଗତ ବୁଧବାର କଟକର ଶିକ୍ଷା ବିଭାଗର ଲୋକଲ କମିଟୀ ଭାରତବର୍ଷର ଭୂଗୋଳ ନିମିତ୍ତ ଢେଙ୍କାନାଳ ମହାରାଜଙ୍କ ପ୍ରଦତ୍ତ ଧନର ବାବୁ ତାରିଣୀଚରଣ ଚଟ୍ଟୋର୍ଯ୍ୟାଙ୍କୁ ପାରିତୋଷିକ ପ୍ରଦାନ କଲେ । ଏ ପାରିତୋଷିକ କାରଣ ଦୁଇଖଣ୍ଡି ପୁସ୍ତକ ଆଗତ ହୋଇଥିଲା । ଏକଖଣ୍ଡର ରଚଇତା ଉପରଲିଖିତ ଚଟ୍ଟୋର୍ଯ୍ୟା ଏବଂ ଅନ୍ୟଖଣ୍ଡର ରଚଇତା ପଣ୍ଡିତ ହରିହର ଦାସ । ପୁସ୍ତକପରୀକ୍ଷକ ସଭା ଦୁଇ ପୁସ୍ତକକୁ ଏହିରପେ ସମାନ ବୋଲି ମତ ଦେଇଥିଲେ ଯେ ହରିହର ଦାସଙ୍କ ପୁସ୍ତକରେ ବହୁତ ବିଷୟ ଅଛି ଓ ତାରିଣୀବାବୁଙ୍କର ଶୃଙ୍ଖଳା ଭଲ ଲୋକଲ କମିଟୀ ଶେଷ ଲିଖିତ ପୁସ୍ତକକୁ ମନୋନୀତ କଲେ । ଏଥିରେ ଅତ୍ରତ୍ୟ ଉତ୍କଳୀୟମାନେ ବଡ଼ ଦୁଃଖିତ ହୋଇଅଛନ୍ତି । ରଚଇତାଙ୍କ ମଧରେ ଜଣେ ବଙ୍ଗାଳୀ ଓ ଜଣେ ଓଡ଼ିୟା ଥିବା ସ୍ଥଳେ ବଙ୍ଗାଳୀ ଜଣକ କୃତକାର୍ଯ୍ୟ ହେବାରେ ଓଡ଼ିୟାମାନଙ୍କର

ଦୁଃଖ ହୋଇପାରେ ମାତ୍ର ଏହି ଗୋଟିଏ କଥା ଯେବେ ଓଡ଼ିୟାଙ୍କର ମନସ୍ତାପର କାରଣ ହୋଇଥାନ୍ତା ତେବେ ଆମ୍ଭେମାନେ ସେପ୍ରକାର ମନସ୍ତାପକୁ ଆସ୍ଥା କରନ୍ତୁ ନାହିଁ କାରଣ କମିଟୀର ଭଲ ପୁସ୍ତକ ପ୍ରୟୋଜନ ଯେ କେହି ତାହା କରିପାରିଲା ସେ କେଉଁ ଜାତି ବା ଦେଶର ଲୋକ ହେଉ ତାହାକୁ ପାରିତୋଷିକ ଦେବାର ଉଚିତ ତଥାଚ ଏମନ୍ତ ବୋଲାଯାଇ ପାରେ କି ଯେସ୍ଥଳେ ପୁସ୍ତକ ପରୀକ୍ଷକ କମିଟୀ ଦୁଇ ପୁସ୍ତକକୁ ସମାନ ବୋଲି ବୋଇଲେ ସେସ୍ଥଳେ ଓଡ଼ିଶ୍ୟାବାସିଙ୍କ ଉସାହ କାରଣ ଉକ୍ତ ଦେଶୀୟ ରଚଇତାଙ୍କୁ ଅଗ୍ରଗଣ୍ୟ କଲେ ଭଲ ହୁଅନ୍ତା। କିନ୍ତୁ ସେମାନଙ୍କର ମନସ୍ତାପର କାରଣ ଭିନ୍ନ ଅଟଇ ଓ ତାହା ଆମ୍ଭମାନଙ୍କ ବିବେଚନାରେ ଅନର୍ଥକ ନୁହଇ। ସେମାନେ ବୋଲନ୍ତି କି ଲୋକଲ କମିଟୀଙ୍କ ହସ୍ତକୁ ଦୁଇମାସ ହେବ ଏ ପୁସ୍ତକମାନ ପଠାଯାଇଥିଲା କମିଟୀର ସେକ୍ରେଟରୀ ଏତେକାଳ ତହିଁରେ କିଛି ନ କରି ଯେଉଁ କାଳରେ କମିଟୀର ସଭାପତି କମିଶ୍ନରସାହେବ ଓ ଅନ୍ୟ ଦୁଇଜଣ ସଭ୍ୟ ବାବୁ ଜଗନ୍ମୋହନ ରାୟ ଓ ବାବୁ ବିଚିତ୍ରାନନ୍ଦଦାସ କି ଏମାନେ ଉତ୍କଳଭାଷାର ଉତ୍ତମ ବିଚାରକ ଅଟନ୍ତି ଏ ନଗରରେ ଅନୁପସ୍ଥିତ ଥିଲେ ସେହି ସମୟରେ ଉକ୍ତ ପୁସ୍ତକ ନିମିତ୍ତ ପାରିତୋଷିକ ଦେବାର ସଭା କରିବାରେ ସୁବିଚାର ହେଲା ନାହିଁ ଓ ଯେଉଁ ସଭାରେ ବିଚାର ହେଲା ସେଠାରେ କେବଳ ଶ୍ରୀଯୁକ୍ତ କରିସାହେବ ଓ ଟଏନବି ସାହେବ ଦୁଇଜଣ ଇଂରାଜ ଏବଂ ବାବୁ ଚଣ୍ଡୀଚରଣ ବାନୁର୍ଯ୍ୟା ଓ ଦ୍ୱାରିକାନାଥ ଚକ୍ରବର୍ତ୍ତୀ ଦୁଇଜଣ ବଙ୍ଗାଳୀ ମାତ୍ର ଥିଲେ ଓଡ଼ିୟା ସଭ୍ୟ କେହି ନ ଥିଲେ। ଏମନ୍ତ ସଭାରେ ଉତ୍କଳପୁସ୍ତକର ବିଚାର କରିବା କଦାଚ ନ୍ୟାୟ ହୋଇ ନାହିଁ। ଆଉ ଆଠଦିନ ବିଳମ୍ବ କରିଥିଲେ ସବୁ ସଭ୍ୟମାନେ ଉପସ୍ଥିତ ହୋଇ ପାରନ୍ତେ ସେମାନଙ୍କ ସାକ୍ଷାତରେ ବିଚାର ହେଲେ କାହାରି ଦୁଃଖ ହୁଅନ୍ତା ନାହିଁ। ଯେବେ ପୁସ୍ତକପରୀକ୍ଷକ କମିଟୀ ଖଣ୍ଡିଏ ପୁସ୍ତକକୁ ଉତ୍କୃଷ୍ଟ ବୋଲି ଲେଖି ଦେଇଥାନ୍ତେ ତେବେ କମିଟୀରେ ଯେ କୌଣସି ସଭ୍ୟ ଥାଉ ବିଚାର କରନ୍ତୁ ଆପତ୍ତି ନ ଥିଲା ଆମ୍ଭେମାନେ ବୋଧ କରୁଁ ଯେ ସମାନ ଦୁଇପୁସ୍ତକ ମଧ୍ୟରେ ଏପରି ଅବସ୍ଥାରେ ଲୋକଲକମିଟୀ ଏକଖଣ୍ଡକୁ ଉତ୍କୃଷ୍ଟ କରି ଘେନିବାର ଉଚିତ ହୋଇ ନାହିଁ। ଉକ୍ତ କମିଟୀ ପୁସ୍ତକ ପରୀକ୍ଷକ କମିଟୀକୁ ଏ ପୁସ୍ତକମାନ ଫେରି ପଠାଇ ଦୁଇ ମଧ୍ୟର କିଏ ପାରିତୋଷିକର ଯୋଗ୍ୟ ମତ ପ୍ରାର୍ଥନା କରିଥାନ୍ତେ ନୋହିଲେ ଅନ୍ୟ ସଭ୍ୟଙ୍କ ଅପେକ୍ଷାରେ ଭିନ୍ନଦିନ ସଭାରେ ନିଷ୍ପତ୍ତି କରନ୍ତେ ସେପରି କିଛି ନ କରି କେବଳ କାର୍ଯ୍ୟ ସମାଧାନନିମିତ୍ତ କମିଟୀ କରିବାର ଅତ୍ରତ୍ୟ ଲୋକଙ୍କ ମନରେ କମିଟୀର କାର୍ଯ୍ୟପ୍ରତି ସନ୍ଦେହ ହୋଇଅଛି ଏବଂ ଅନ୍ୟାନ୍ୟ ଗ୍ରନ୍ଥକାରମାନେ ପୁସ୍ତକ ମଞ୍ଜୁରୀର ବହୁ ବିଳମ୍ବରେ ପାରିତୋଷିକ ପାଇଥିବା ପ୍ରତ୍ୟକ୍ଷେ ଏପୁସ୍ତକ ରଚୟିତାଙ୍କୁ ଅବିଳମ୍ବରେ ଟଙ୍କା ଦିଆଯିବାର ଉକ୍ତ ସନ୍ଦେହ ଦୃଢ଼ତର ହୋଇଅଛି। ମାତ୍ର ଯାହା ହେଲାଣି ଫେରିବାର ନୁହେ ଓ ଆମ୍ଭେମାନେ ଏସବୁ ଲେଖି କେବଳ ଏତିକି ଭରସା କରୁଁ ଯେ ଲୋକଲକମିଟୀ ଏପ୍ରକାର ସ୍ଥଳରେ ଭବିଷ୍ୟତରେ ସୁବିଚାର ପୂର୍ବକ କାର୍ଯ୍ୟ କରିବେ।

*ଭା୬ଗ, ସଂ୨୯ଖ୍ୟା, ୨୯।୭।୧୮୭୧*

## ଓଡ଼ିଆ ଡେପୁଟୀକଲେକ୍‌ଟର।

ଓଡ଼ିଶା ଲୋକଙ୍କର କପାଳ ଏତେଦିନରେ ଫିଟିଲା ପରି ଜଣାଯାଉଅଛି। ପୂର୍ବକାଳରେ କେତେ ଗୁଡ଼ିଏ ଓଡ଼ିଆ ଡେପୁଟୀ କଲେକ୍‌ଟର ହୋଇ ଉତ୍ତମରୂପେ ସରକାରୀ କର୍ମ ଚଳାଇ ପ୍ରଶଂସା ଭାଜନ ହୋଇଥିଲେ ମାତ୍ର ଏଣିକି ପ୍ରାୟ ଦଶବର୍ଷ କି ଅଧିକ ହେବ ଓଡ଼ିଆଙ୍କୁ କେହି ପଚାର ନ ଥିଲେ। ଆମ୍ଭମାନଙ୍କର ପରମବନ୍ଧୁ ଶ୍ରୀଯୁକ୍ତ ସୋରସାହେବ, କଲେକ୍‌ଟର ଓ ଶ୍ରୀଯୁକ୍ତ କୋବର୍ଣ୍ଣସାହେବ କମିଶ୍ନର ଥିଲାବେଳେ ତିନିଜଣ ନିଯୁକ୍ତ ହୋଇଥିଲେ ତହିଁମଧ୍ୟର ଜଣେ ମାତ୍ର ବର୍ତ୍ତମାନ କର୍ମରେ ଅଛନ୍ତି। ସମ୍ପ୍ରତି ଶ୍ରୀଯୁକ୍ତ ରେବନସାସାହେବ କମିଶ୍ନରଙ୍କ ଅନୁଗ୍ରହ ଓ ଉଦ୍‌ଯୋଗର ଓଡ଼ିଆମାନେ ପୁନର୍ବାର ଉଚ୍ଚପଦ ପାଇବାର ଆରମ୍ଭ ହୋଇଅଛି। ଆମ୍ଭେମାନେ ଏଥିପୂର୍ବେ ବାବୁ ବନମାଳୀ ସିଂହଙ୍କ ବିୟୋଗ ଓ ତାହାସଙ୍ଗେ ସଙ୍ଗେ ପଦତ୍ୟାଗ କରିବାର ସଂବାଦ ଦେଇଥିଲୁଁ ଏବଂ ବାବୁ ନନ୍ଦକିଶୋର ଦାସ ଏପଦ ପାଇଁ ମନୋନୀତ ହୋଇଅଛନ୍ତିବୋଲି ମଧ୍ୟ ଲେଖିଥିଲୁଁ। ଭରସା କରୁ ଶୀଘ୍ର ଗବର୍ଣ୍ଣମେଣ୍ଟ ଏହାଙ୍କୁ ନିୟୋଗ କରିବେ। ଶ୍ରୀଯୁକ୍ତ କମିଶ୍ନରସାହେବଙ୍କ ଅତ୍ରତ୍ୟଲୋକେ କିପର୍ଯ୍ୟନ୍ତ କୃତଜ୍ଞ ଅଛନ୍ତି ତାହା ଆମ୍ଭେମାନେ

ବ୍ୟକ୍ତ କରି ନ ପାରଁ। କେବଳ ଓଡ଼ିଆଙ୍କୁ କର୍ମ ଦେବାରେ ଆମ୍ଭେମାନେ ଯେତେ ସନ୍ତୁଷ୍ଟ ଅଛୁଁ ଓଡ଼ିଆଙ୍କ ମଧ୍ୟର ଉପଯୁକ୍ତ ବ୍ୟକ୍ତିଙ୍କୁ ବାଛି କର୍ମ ଦେବାରେ ତଦପେକ୍ଷା ଅଧିକ ଆନନ୍ଦିତ ଅଛୁଁ। ଶୁଣାଯାଏ ଯେ ସୁଯୋଗ ପାଇଲେ ସାହେବ ପ୍ରଶଂସିତ ଆହୁରି ଓଡ଼ିଆଙ୍କୁ ଉଚ୍ଚପଦ ଦେବେ। ଓଡ଼ିଆମାନଙ୍କୁ ଏରପ ଉତ୍ସାହ ଦେବା ଯେ ଗବର୍ଣ୍ଣମେଣ୍ଟଙ୍କର ନିତାନ୍ତ କର୍ତ୍ତବ୍ୟକର୍ମ ତହିଁରେ କିଛି ସନ୍ଦେହ ନାହିଁ ଓ ଶ୍ରୀଯୁକ୍ତ ରେବନସା ସାହେବଙ୍କ ପରି ପରାମର୍ଶଦାତାଙ୍କ ଉପରେ ନିର୍ଭର ଦରି କର୍ମକଲେ ଭରସା ହୁଅଇ ଗବର୍ଣ୍ଣମେଣ୍ଟ ଉପଯୁକ୍ତ ଓଡ଼ିୟାକର୍ମଗ୍ରରି ପାଇବାରେ କ୍ଳେଶ ବୋଧ କରିବେ ନାହିଁ। କେହି କେହି ବୋଲନ୍ତି ଯେ ରେବନ୍‌ସାସାହେବ ନିତାନ୍ତ ଓଡ଼ିଆଙ୍କ ଭକ୍ତ ହୋଇ କେବଳ ଓଡ଼ିଆଜାତୀୟଲୋକଙ୍କୁ କର୍ମ ଦେବାର ମାନସ ରଖନ୍ତି ଓଡ଼ିଶାରେ ପୁରଷାନୁକ୍ରମେ ବାସ କରଥିବା ବଙ୍ଗାଳୀ କାୟସ୍ଥ ମୁଶଲମାନପ୍ରଭୃତିଙ୍କୁ ନେଉ ନାହାନ୍ତି ଆମ୍ଭମାନଙ୍କ ବିବେଚନାରେ କମିଶ୍ନରସାହେବଙ୍କର ଏଦୋଷ ଧର୍ତ୍ତବ୍ୟ ନୁହେ କାରଣ ଏଥିରେ ଓଡ଼ିଶାପ୍ରତି ତାହାଙ୍କର ସ୍ନେହ ଜଣାଯାଉଅଛି ଓଡ଼ିଆଙ୍କୁ ଛାଡ଼ି ଅନ୍ୟ ଲୋକଙ୍କୁ କର୍ମ ଦେଲେ ପ୍ରଶଂସନୀୟ କାର୍ଯ୍ୟ ହୁଅନ୍ତା ନାହିଁ।

*ଭା୬ଗ,ସଂ୩୯ଖ୍ୟା, ୭।୧୦।୧୮୭୧*

## ଡେପୁଟୀ କଲେକ୍‌ଟରୀ ପଦରେ ନିଯୁକ୍ତ ହେବା ପାଁଇ ପ୍ରବେଶିକା ପରୀକ୍ଷାର ନିୟମ।

ଆମ୍ଭେମାନେ ଓଡ଼ିଶାର ଲୋକଙ୍କୁ ଡେପୁଟୀ କଲେକ୍‌ଟରୀ ପଦରେ ନିଯୁକ୍ତ ହେବାର ଦେଖି ଯେତେ ଆନନ୍ଦିତ ହେଉଅଛୁଁ ଓ ଶ୍ରୀଯୁକ୍ତ ରାବନ୍‌ଶା ସାହେବ କମିଶ୍ନରଙ୍କୁ ଯେତେ ଧନ୍ୟବାଦ ଦେଉଅଛୁଁ ଗବର୍ଣ୍ଣମେଣ୍ଟଙ୍କର ଏ ବିଷୟରେ ପ୍ରଚରିତ ନିୟମମାନ ପାଠକରି ତତୋଧିକ ଚିନ୍ତାଯୁକ୍ତ ହେଉଅଛୁଁ। ନିୟମମାନ ନିତାନ୍ତ କଠିନ କିମ୍ବା ଓଡ଼ିଶା ଲୋକେ ତାହା ପାରିବେ ନାହିଁ ବୋଲି ଆମ୍ଭମାନଙ୍କର ଦୁଃଖ ହେଉଅଛି ଏମନ୍ତ ନୁହେ। ଡେପୁଟୀ କଲେକ୍‌ଟରୀ ପଦପାଇ ଏତେପ୍ରକାର ପରୀକ୍ଷା ଦେବାକୁ ହେବ ଏହା ପୂର୍ବର କାହାରିକୁ ଜଣା ନ ଥିଲା ଓ ଠିକ ଯେ ସମୟରେ ଓଡ଼ିଶାବାସିଙ୍କର କର୍ମ ପାଇବାର କଥା ହେଲା ସେହି ସମୟରେ ଏସବୁ ନିୟମମାନ ପ୍ରଚରିତ ହେଲା ପୁଣି ପରୀକ୍ଷା ଦେବାପାଁଇ ପ୍ରସ୍ତୁତ ହେବାଲାଗି ଅଧିକ ସମୟ ମଧ ଦିଆଗଲା ନାହିଁ କାରଣ କି ପ୍ରଥମ ପରୀକ୍ଷା ଆଗାମୀ ଜାନୁଏରୀମାସ ମଧରେ ହେବ। ଏ ଦୁଇମାସ ମଧରେ ଯେଲୋକେ ଏ ପରୀକ୍ଷା ଦେବାପାଁଇ ପ୍ରସ୍ତୁତ ହେବେ ଏମନ୍ତ ସମ୍ଭବକୁ ଆସୁ ନାହିଁ। କଲିକତାବାସିଙ୍କ ପକ୍ଷରେ ଏ ସବୁ କଠିନ ହୋଇ ନ ପାରେ କାରଣ ସେଠାରେ ସର୍ବପ୍ରକାର ଗୁଣ ଶିଖିବାର ସୁଯୋଗ ଅଛି ଓ ଅନେକ ଲୋକ ସେହିସବୁ ସୁଯୋଗ ହେତୁର ଉପଯୁକ୍ତ ଶିକ୍ଷା ଲାଭକରି ପରୀକ୍ଷା ଦେଇ ବସିଅଛନ୍ତି ସେହିମାନଙ୍କ ସକାଶେ ପରୀକ୍ଷା ସହଜ ହୋଇପାରେ ଓ ସେମାନେ ଅନାୟାସରେ କର୍ମ ପାଇବେ। ପୂର୍ବ ନିୟମାନୁସାରେ କଲିକତାରେ ପରୀକ୍ଷା ହେବାର କେବଳ ଆବଶ୍ୟକ ଥିବାର ଉତ୍କଳୀୟମାନେ କୃତକାର୍ଯ୍ୟ ନ ହେବାର କମିଶ୍ନରସାହେବ ଭିନ୍ନ ନିୟମାନୁସାରେ ଏମାନଙ୍କ କର୍ମ ଦେବାପାଁଇ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଥିଲେ ମାତ୍ର ଗବର୍ଣ୍ଣମେଣ୍ଟ ଏମନ୍ତ ନିୟମ କଲେ ଯେ ପୂର୍ବାପେକ୍ଷା ଓଡ଼ିଆଙ୍କୁ ସୁଯୋଗ ଦେବାର ଦୂରେଥାଉ କଲିକତା ନ ଗଲେ କେହି କର୍ମ ପାଇବେ ନାହିଁ ବୋଲି କାର୍ଯ୍ୟତଃ ପ୍ରକାଶ କଲେ।

ଆମ୍ଭେମାନେ ନିୟମାବଳୀ ପାଠ କରିଅଛୁଁ ଓ ତହିଁର ବିବେଚନା କରୁଅଛୁଁ ଯେ ଉକ୍ତ ନିୟମରେ କଲିକତା ନଗର କି ନିକଟରେ ଥିବା ଲୋକଙ୍କୁ ସମ୍ପୂର୍ଣ୍ଣ ସୁଯୋଗ ଦିଆଯାଇ ଅଛି ଓ ଉତ୍କଳୀୟଙ୍କୁ ସର୍ବାପେକ୍ଷା ଅସହାୟ ଅବସ୍ଥାରେ ରଖାଯାଇ ଅଛି ତହିଁର ଉଦାହରଣ ସ୍ୱରପ ଦୁଇ ଏକ ନିୟମର ଉଲ୍ଲେଖ କରଅଛୁଁ ଯଥା ଗୋଟିଏ ନିୟମ ଏହି ଯେ କର୍ମପ୍ରାର୍ଥୀମାନେ ଡାକ୍ତରସାହେବଙ୍କଠାର ଖଣ୍ଡିଏ ସାର୍ଟିଫିକଟ ଆଣି ଦେଖାଇବେ ତହିଁରେ ଲେଖାଥିବ ଯେ ଉକ୍ତ ଲୋକ ଶାରୀରିକ ସବଳ ଅଛି ଓ କୌଣସି ଜିଲ୍ଲାରେ ରହି ନିରୋଗରେ କର୍ମ କରିପାରେ। ଏ ସାର୍ଟିଫିକଟ କଲିକତାରେ ଥିବା ଜଣେ ଡାକ୍ତର କି ଯାହାଙ୍କୁ ଗବର୍ଣ୍ଣମେଣ୍ଟ ନିଯୁକ୍ତ କରିବେ ତାହାଙ୍କଠାର ପ୍ରାପ୍ତି କରିବାକୁ ହେବ। ଏଥିର ସ୍ପଷ୍ଟ ଜଣାଯାଏ ଯେ କଲିକତା ଗମନ ବ୍ୟତିରେକେ କାହାରି କର୍ମ ପାଇବା ଆଶା ନାହିଁ ଓ କଲିକତା ଯାଇଁ

ସାର୍ଟିଫିକଟ ଆଣିଲେ ଯେ କାର୍ଯ୍ୟ ହେବ ଏମନ୍ତ କିଛି ନୁହଇ କାରଣ ସେ ସବୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସୁଦ୍ଧା କେହି କର୍ମ ପାଇବାକୁ ଦାବୀକରି ନ ପାରେ ତାହା ସମ୍ପୂର୍ଣ୍ଣରୂପେ ଗବର୍ଣ୍ଣମେଣ୍ଟଙ୍କ ଇଚ୍ଛାଧୀନ। ଅତଏବ ଏମନ୍ତ ସ୍ଥଳରେ କଲିକତା ଯାଇଁ ସାର୍ଟିଫିକଟ ଆଣିବାକୁ କାହାର ଚିତ୍ତ ବଳିବ ଓ ଇଚ୍ଛା ହେଲେ ମଧ୍ୟ ଏରୂପ କେତେ ବିଷୟାପନ୍ନ ଲୋକ ଓଡ଼ିଶାରେ ଅଛନ୍ତି ଯେ ହାତର ଟଙ୍କା ବ୍ୟୟକରି କଲିକତା ଯିବାଆସିବା କରିବେ। ସୁତରାଂ ଏ ନିୟମଦ୍ୱାରା ମୋଫସଲବାସିଙ୍କୁ ବିଶେଷରେ ଉତ୍କଳୀୟଙ୍କୁ କର୍ମଦେବାର ନିଷେଧ କରାଗଲା।

ଆଉ ଗୋଟିଏ ନିୟମ ଏହି ଯେ ବଙ୍ଗଳା ଅଥବା ହିନ୍ଦୋସ୍ଥାନୀରେ ଭାଷା ପରୀକ୍ଷା ଦେବାକୁ ହେବ। ମାତ୍ର ଯେଉଁମାନେ ହିନ୍ଦୋସ୍ଥାନୀରେ କେବଳ ପରୀକ୍ଷା ଦେବେ ସେ ବିହାର ବିଭାଗରେ କର୍ମ ପାଇବେ। ଏ ଦୁଇଭାଷାର ଏକ ଭାଷା ସହିତ ଓଡ଼ିଆ ଭାଷାରେ ପରୀକ୍ଷା ଗୃହୀତ ହୋଇ ପାରିବ ଓ ଓଡ଼ିଆ ଜାଣିବା ଲୋକ କେବଳ ଓଡ଼ିଶାରେ କର୍ମ ପାଇବ। ଏଥିର ଜଣାଯାଏ ଓଡ଼ିଆମାନେ ଆପଣା ମାତୃଭାଷା ଛାଡ଼ି ହିନ୍ଦୋସ୍ଥାନୀ କିମ୍ବା ବଙ୍ଗଳା ଭାଷାରେ ପରୀକ୍ଷା ଦେବେ। ଏ ନିୟମଟି ମଧ୍ୟ ଓଡ଼ିଶା ପକ୍ଷରେ ବଡ଼ କଠିନ ହୋଇଅଛି କାରଣ ଅନ୍ୟ ସ୍ଥାନର ଲୋକମାନେ ବଙ୍ଗଳା କି ହିନ୍ଦୋସ୍ଥାନୀ ଗୋଟିଏ ବିଦ୍ୟା ଶିଖିବେ ମାତ୍ର ଓଡ଼ିଆମାନେ ଗୋଟିଏ ଅଧିକା ନ ଶିଖିଲେ କର୍ମ ପାଇବେ ନାହିଁ। ଅତଏବ ଆମ୍ଭେମାନେ ଦେଖୁଅଛୁ ଯେ ନିୟମମାନ ଓଡ଼ିଶାବାସିଙ୍କ ସଂପୂର୍ଣ୍ଣ ବିପକ୍ଷ ଅଟଇ ଓ ଗବର୍ଣ୍ଣମେଣ୍ଟ ଯେମନ୍ତ କେବଳ କଲିକତା ନଗରବାସିଙ୍କୁ କର୍ମ ଦେବାକୁ ମନସ୍ଥ କରି ଏରୂପ ନିୟମମାନ ପ୍ରଚାର କରିଅଛନ୍ତି।

ଭୂମି ଜରିବ ଓ ଗୃହାଦି ନିର୍ମାଣ କାର୍ଯ୍ୟର ପରୀକ୍ଷା ଦେବାର ଯେଉଁ ନିୟମ ହୋଇଅଛି ତାହା ସବୁ ମନ୍ଦ ନୁହଇ। ନ୍ୟୂନାଧିକରେ ଏ ସବୁ କାର୍ଯ୍ୟ ଡେପୁଟୀକଲେକ୍‌ଟରମାନଙ୍କୁ କରିବାକୁ ହୁଅଇ ମାତ୍ର ଏ ସବୁ ଶିକ୍ଷା ଦେବା ପାଁଇ ସୁବିଧା ନ ହେବା ପର୍ଯ୍ୟନ୍ତ ନିତାନ୍ତ ପ୍ରୟୋଜନୀୟ ବୋଲି କୁହାଯାଇ ନ ଥିଲେ ଭଲ ହୁଅନ୍ତା। ଯେ ସ୍ଥଳେ ଜଣାଅଛି ଯେ ଓଡ଼ିଶାରେ କୌଣସି ସ୍ଥାନରେ ଏ ସବୁ ଶିକ୍ଷା ଲାଭ କରିବାର ଉପାୟ ନାହିଁ ସେ ସ୍ଥଳେ ନିୟମ କରି କେବଳ ଓଡ଼ିଶା ଲୋକଙ୍କୁ ଉଚ୍ଚପଦର କର୍ମର ବଞ୍ଚିତ କରାଯାଇଅଛି ମାତ୍ର ଅନ୍ୟ କିଛି ଦେଖାଯାଉ ନାହିଁ। ଯାହା ଅବା ଓଡ଼ିଆମାନେ ବାରିକମାଷ୍ଟରୀ ଇଲାକା କର୍ମଘରିଠାର ପରିଶ୍ରମ କରି ଶିକ୍ଷା କରନ୍ତେ ତହିଁକି ସମୟ ଦିଆଯାଉ ନାହିଁ ଦୁଇମାସ ମଧ୍ୟରେ କିପରି ଏ ସବୁ ଗୁଣ ଶିଖି କେହି ପରୀକ୍ଷା ଦେବ ଅତଏବ ଆମ୍ଭେମାନେ ସବିନୟରେ ଗବର୍ଣ୍ଣମେଣ୍ଟଙ୍କୁ ଜଣାଉଅଛୁଁ କି ଯେବେ ଓଡ଼ିଆମାନଙ୍କୁ ନିତାନ୍ତ ଉଚ୍ଚପଦାରୂଢ଼ କରିବାର ମାନସ ଥାଏ ତେବେ ନ୍ୟୂନକଳ୍ପରେ ଏକ ବର୍ଷପାଁଇ ଏ ସବୁ ନିୟମ ରହିତ କରି କେବଳ ଆଇନ୍‌ର ପରୀକ୍ଷା ଗୃହୀତ ହେଉ ଏବଂ ଶାରୀରିକ ଯୋଗ୍ୟତାର ସାର୍ଟିଫିକଟ୍ କଟକ ସିବିଲ ସର୍ଜନଙ୍କୁ ଦେବାର ଆଜ୍ଞା ହେଉ ତାହା ହେଲେ ଏ ବର୍ଷ ପରୀକ୍ଷାରେ କେହି କେହି ଉତ୍ତୀର୍ଣ୍ଣ ହୋଇ କର୍ମ ପାଇ ପାରନ୍ତି ନୋହିଲେ ଓଡ଼ିଆମାନଙ୍କ କପାଳ ଯେମନ୍ତ ପଡ଼ି ରହିଅଛି ସେହିପରି ରହିଥିବ ଓ କମିଶ୍ନର ସାହେବ ଅଥବା ଗବର୍ଣ୍ଣମେଣ୍ଟ କଦାଚ ଏମାନଙ୍କର ଅବସ୍ଥା ଉନ୍ନତ କରିବାକୁ ସକ୍ଷମ ହେବେ ନାହିଁ ଶ୍ରୀଯୁକ୍ତ କମିଶ୍ନର ସାହେବଙ୍କୁ ଅନୁରୋଧ କରଅଛୁଁ ଯେ ଏ ବିଷୟରେ ଓଡ଼ିଆଙ୍କ ସପକ୍ଷ ହୋଇ ଲିଖନୀ ଧାରଣ କରନ୍ତୁ।

*ଭାଗ୬,ସଂ୩୯ଖ୍ୟା,୭।୧୦।୧୮୭୧*

## ବିଦ୍ୟାଳୟର ତତ୍ତ୍ୱାବଧାରଣ।

ଆମ୍ଭେମାନେ ଗତ ସପ୍ତାହରେ ଲେଖିଥିଲୁଁ ଯେ ବିଦ୍ୟାଳୟମାନଙ୍କର ତତ୍ତ୍ୱାବଧାରଣ ଜିଲ୍ଲା ହାକିମଙ୍କ ହାତକୁ ଆସିବାର ପ୍ରସ୍ତାବ ହୋଇଅଛି। ଅବକାଶାଭାବର ତହିଁର ସବିଶେଷ ବ୍ୟକ୍ତ କରିପାରି ନ ଥିଲୁଁ। ଅବା ତହିଁର ବୃତ୍ତାନ୍ତ ସଂକ୍ଷେପରେ ପ୍ରକାଶ କରିଅଛୁଁ। ଗତମାସ ତା ୨୮ ରିଖରେ ଶ୍ରୀଯୁକ୍ତ କାମ୍ବଲସାହେବ ଲେଫ୍‌ଟନଣ୍ଟ ଗବର୍ଣ୍ଣର ଏକ ସେବକାରୀ ଏ ବିଷୟରେ ଲେଖି ଜିଲ୍ଲା ହାକିମଙ୍କ ଠାର ମତ ପ୍ରାର୍ଥନା କରି ଅଛନ୍ତି। ହାକିମମାନେ କି ମତ ଦେବେ ଜଣାଯାଇ ନାହିଁ ଆପାତତଃ ଏହା ଜଣାଯାଏ ଯେ ଶ୍ରୀଯୁକ୍ତ କାମ୍ବଲସାହେବ ନିତାନ୍ତ ଅସ୍ଥିର ହୋଇ ଅଛନ୍ତି ତାହାଙ୍କୁ ବଙ୍ଗଦେଶର ଶାସନ ପ୍ରଣାଳୀ କିଛିମାତ୍ର ସୁଖ ଲାଗୁ ନାହିଁ। ପୂର୍ବେ ଯେତେ ଗବର୍ଣ୍ଣରମାନେ ନିୟମ ସବୁ କରିଯାଇଅଛନ୍ତି ତହିଁରେ ବାସ୍ତବରେ ଭଲ କି ମନ୍ଦ ଫଳ ହେଉଅଛି ତାହା ଦେଖିବାର ଅବକାଶ ନ ଦେଇ ନୂତନ ନୂତନ ନିୟମ

କରିବାକୁ ଏ ମହାଶୟ ବ୍ୟସ୍ତ ହୋଇ ଅଛନ୍ତି। ସର୍ବଦା ଯେ ନୂତନ ନିୟମ କରଥାଏ ତାହାର ନିୟମ ମଧ୍ୟରେ କେତେ ଭଲ ଓ କେତେ ମନ୍ଦ ହେବାର ସମ୍ଭାବନା ଏହି ହେତୁର ଶ୍ରୀଯୁକ୍ତ କାମ୍ବଲସାହେବଙ୍କ ନିୟମ ବିଷୟରେ ସମ୍ବାଦପତ୍ରମାନଙ୍କରେ ନାନା ପ୍ରକାର ମତ ପ୍ରକାଶ ହେଉଅଛି। ଆମ୍ଭେମାନେ ଶ୍ରୀଯୁକ୍ତ କାମ୍ବଲସାହେବଙ୍କର ଏତିକି ପ୍ରଶଂସା କରିପାରଁ ଯେ ତାହାଙ୍କର ଚାରିଆଡ଼େ ଦୃଷ୍ଟି ରହିଅଛି ଓ ସମସ୍ତ ମହକୁମାର କାର୍ଯ୍ୟାବଳୀ ମନୋଯୋଗ ପୂର୍ବକ ଆଲୋଚନା କରଅଛନ୍ତି ଯେବେ ଏହା ସଂଗେ ସଂଗେ ସେ ଯେଉଁ ମହକୁମାର କାର୍ଯ୍ୟ ଯେଉଁ ନିୟମରେ ଚଳୁଅଛି ତାହାକୁ ରକ୍ଷା କରିବାର ଚେଷ୍ଟା କରି ତହିଁରେ ଯେ ଅଶୁଦ୍ଧ ଅଛି ସେ ସବୁ ସଂଶୋଧନ କରିବାକୁ ଚିତ୍ତ ବଳାନ୍ତେ ଓ ନୂତନ ନିୟମ କରିବାର ଇଚ୍ଛାରେ କିଞ୍ଚିତ୍ ବିଳମ୍ବ କରନ୍ତେ ତାହା ହେଲେ ଏହାଙ୍କପରି ଶାସନକର୍ତ୍ତା ପ୍ରାୟ ଆଉ ମିଳନ୍ତା ନାହିଁ କେବଳ ତରତର ହେବାର ଅନେକ ନଷ୍ଟ ହେଉଅଛି।

ବର୍ତ୍ତମାନସ୍ଥଳରେ ଲେଫ୍‌ଟନଣ୍ଟ ଗବର୍ଣ୍ଣରସାହେବ ବୋଲନ୍ତି ଯେ ସ୍ଥାନୀୟ କର୍ମଚାରିଙ୍କର ଶିକ୍ଷାବିଭାଗରେ କୌଣସି କର୍ତ୍ତୃତ୍ୱ ନାହିଁ ଅଥଚ ଗବର୍ଣ୍ଣମେଣ୍ଟ ଏହି କର୍ମଚାରିଙ୍କଠାର ପ୍ରତ୍ୟେକ ଜିଲ୍ଲାରେ ଶିକ୍ଷା କାର୍ଯ୍ୟ କିରପ ଚଳୁଅଛି ତାହା ଜାଣିବାକୁ ଅପେକ୍ଷା କରନ୍ତି କେତେ ଇନ୍‌ସ୍ପେକ୍‌ଟର ଓ ଡେପୁଟୀ ଇନ୍‌ସ୍ପେକ୍‌ଟର ଜିଲ୍ଲା ହାକିମଙ୍କ ସଙ୍ଗେ ସାକ୍ଷାତ୍ କରନ୍ତି ଓ କେତେ କର୍ମଚାରୀ କରନ୍ତି ନାହିଁ । ଏକସ୍ଥାନର କମିଶ୍ନରଙ୍କ ଠାର ସେ ଶୁଣିଅଛନ୍ତି ଯେ ଶିକ୍ଷାବିଭାଗର କର୍ମଚାରିମାନେ ତାହାଙ୍କ ନିକଟକୁ ନ ଆସିବାର ସେ ଶିକ୍ଷାସଂକ୍ରାନ୍ତ କୌଣସି ବିଷୟ ଜାଣିବାକୁ ସମର୍ଥ ହୋଇ ନାହାନ୍ତି। ଇନ୍‌ସ୍ପେକ୍‌ଟର ଓ ଡେପୁଟୀ ଇନ୍‌ସ୍ପେକ୍‌ଟରଙ୍କ ଇଲାକାର ସରହଦ ବନ୍ଦୀ ଜିଲ୍ଲା ସରହଦବନ୍ଦୀ ସହିତ ନ ମିଶିବାର ତାହାଙ୍କ ରିପୋର୍ଟ ଜିଲ୍ଲା ହାକିମଙ୍କ ରିପୋର୍ଟ ସହିତ ମିଳାଇବାର ସୁଯୋଗ ହେଉ ନାହିଁ ଜିଲ୍ଲା ହାକିମଙ୍କଠାରେ ଲୋକେ ସର୍ବଦା ଶିକ୍ଷା ବିଷୟରେ ନାନାପ୍ରକାର ସାହାଯ୍ୟ ଚାହାନ୍ତି ଏବଂ ଏମାନଙ୍କର ଲୋକଙ୍କସଙ୍ଗେ ଅଧିକ ଆଳାପ ହେବାର କଥା ଥିବାର ଶିକ୍ଷା ବିଷୟର ଊଣା ଅଧିକ କଥା ଜାଣି ପାରନ୍ତି ଅତଏବ ଶିକ୍ଷାକର୍ମଚାରିଙ୍କ ଏଲାକା ସିବିଲ କର୍ମଚାରିଙ୍କ ଏଲାକା ସହିତ ମେଳକରି ଏକ ଏକ ଜଣ ଇନସ୍ପେକ୍‌ଟର ଅଧୀନରେ ଏକ କିମ୍ବା ଦୁଇ କମିଶ୍ନରଙ୍କ ଇଲାକା ରଖାଯିବ ଏବଂ ଡେପୁଟୀ ଇନସ୍ପେକ୍‌ଟରଙ୍କ ଇଲାକା ଜିଲ୍ଲା କିମ୍ବା ସବ୍‌ଡ଼ିଭିଜନ ଏଲାକା ସହିତ ଐକ୍ୟ ହେବ ଓ ଯେରପେ ଏମାନେ ସ୍ଥାନୀୟ କର୍ମଚାରିଙ୍କ ଅଧୀନରେ ରହି ତାହାଙ୍କ ପରାମର୍ଶ ଓ ତତ୍ତ୍ୱାବଧାରଣର ଅଧୀନ ହେବେ ତହିଁ ପକ୍ଷରେ ଶିକ୍ଷାବିଭାଗର ଡାଇରେକ୍‌ଟର ଓ କମିଶ୍ନରମାନେ ବିଚାରପୂର୍ବକ ବନ୍ଦୋବସ୍ତ କରିବେ।

ଗବର୍ଣ୍ଣମେଣ୍ଟ ବଙ୍ଗାଳଙ୍କ ପ୍ରସ୍ତାବମାନ ସଂକ୍ଷେପରେ ଏହି ଅଟଇ ଏଥକୁ ଆମ୍ଭେମାନେ ଦେଖୁଁ ଯେ ଇନସ୍ପେକ୍‌ଟରଙ୍କ ସୃଷ୍ଟି ହେବା ପୂର୍ବରେ ସ୍ଥାନୀୟ ଶିକ୍ଷାସଂକ୍ରାନ୍ତ କାର୍ଯ୍ୟମାନ ଜିଲ୍ଲାହାକିମଙ୍କ ଅଧୀନରେ ଥିଲା ଏବଂ ଅବଧି ସ୍ଥାନୀୟ କମିଟୀ ଗୋଟିଏ ଲେଖାଏଁ ଜିଲ୍ଲାରେ ସ୍ଥାପନ ହୋଇ ତାହାଙ୍କଦ୍ୱାରା ଅନେକକାର୍ଯ୍ୟ ହେଉ ଅଛି କ୍ରମେ ଶିକ୍ଷାଦାନ ଅଧିକ ପରିମାଣରେ ପ୍ରଚାର ହେବାର ପ୍ରସ୍ତାବ ହେବାର ଓ ବହୁତ ବିଦ୍ୟାଳୟମାନ ସ୍ଥାପନ ହେବାର ସ୍ଥାନୀୟ କର୍ମଚାରିମାନେ ତାହା ନିର୍ବାହ କରିପାରିବେ ନାହିଁବୋଲି ବିଶେଷ କର୍ମଚାରୀ ଅର୍ଥାତ୍ ଇନସ୍ପେକ୍‌ଟର ଡେପୁଟୀ ଇନ୍‌ସ୍ପେକ୍‌ଟର ଇତ୍ୟାଦି ନିଯୁକ୍ତ ହେଲେ ଓ ବିଦ୍ୟାଳୟମାନ ତାହାଙ୍କ ଅଧୀନରେ ଆସିଲା। ପୂର୍ବେ ଜିଲ୍ଲାହାକିମଙ୍କ ହସ୍ତରେ ବର୍ତ୍ତମାନପରି କାର୍ଯ୍ୟ ନ ଥିଲା ଯେବେ ଅଳ୍ପ କାର୍ଯ୍ୟ ସମୟରେ ଶିକ୍ଷାକାର୍ଯ୍ୟର ଭାର ତାହାଙ୍କୁ ଦେବା ଅଯୌକ୍ତିକ ହୋଇଥିଲା ତେବେ ବର୍ତ୍ତମାନ ନାନାଦି କର୍ମ ଜିଲ୍ଲା ହାକିମମାନେ କରଥିବା ପ୍ରତ୍ୟକ୍ଷେ ଯେ ଶିକ୍ଷା ବିଷୟରେ ଆସାନୁରପ ମନୋଯୋଗୀ ହେବେ ଏମନ୍ତ କଦାଚ ଅନୁମାନ ହେଉ ନାହିଁ। ବିଶେଷରେ ଆମ୍ଭେମାନେ ବିବେଚନା କରଁ ଯେ ଶିକ୍ଷା ସଂକ୍ରାନ୍ତ କର୍ମଚାରୀ ଓ ଜିଲ୍ଲା ହାକିମଙ୍କର ଶିକ୍ଷା ବିଷୟରେ ଭିନ୍ନ ପ୍ରକାର କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ପ୍ରଚଳିତ ନିୟମମାନ ହୋଇଅଛି ଓ ତାହା ଭଲ ଅଟଇ। ଜିଲ୍ଲା ହାକିମମାନେ କେବଳ ଏତିକି ଦେଖିବେ ଯେ ଶିକ୍ଷାର କିରପ ଫଳ ହେଉଅଛି ଓ ଯେବେ ତାହାଙ୍କ ମନୋନୀତ ଫଳ ନ ହୁଅଇ ତେବେ ଯେରପ ଶିକ୍ଷା ଦାନ ହେଲେ ତାହାଙ୍କର ଉଦ୍ଦେଶ୍ୟ ସଫଳ ହେବ ସେରପ ଉପଦେଶ ଦେବେ ଓ ଶିକ୍ଷା ସଂକ୍ରାନ୍ତ କର୍ମଚାରିମାନେ ଉକ୍ତ ବିଭାଗର ସମସ୍ତ କାର୍ଯ୍ୟ ବୁଝିବେ ଓ ଗବର୍ଣ୍ଣମେଣ୍ଟର ଯେତେବେଳେ ଯେ ଆଜ୍ଞାମାନ ହେଉଥିବ ତାହା

ପ୍ରତିପାଳନ କରିବେ। ଜିଲ୍ଲା ହାକିମଙ୍କଠାରେ ଶିକ୍ଷା କର୍ମଚାରିମାନେ ସ୍ୱାଧୀନ ରହିଲେ ଯେମନ୍ତ କାର୍ଯ୍ୟ ଚଳିବାର ସମ୍ଭାବନା ଅଧୀନାବସ୍ଥାରେ ସେରପ ହେବ ନାହିଁ। ଜିଲ୍ଲା ହାକିମଙ୍କୁ ଏତେ ଅବସର କାହିଁ ଯେ ସେମାନେ ଶିକ୍ଷାବିଭାଗର ଆନ୍ତରିକ କାର୍ଯ୍ୟ ନିର୍ବାହର କଥା ବୁଝିବେ ଓ ସେମାନେ ଶିକ୍ଷା ସଂକ୍ରାନ୍ତ ସବୁ ଭାର ପାଇଲେ ଡେପୁଟୀ ଇନ୍‌ସ୍ପେକ୍‌ଟରମାନେ ଆହୁରି କାର୍ଯ୍ୟରେ ହେଳା କରିବେ କାରଣ ସେ ନିଜେ ବୁଝିବାକୁ ସମୟ ପାଇବେ ନାହିଁ ସୁତରାଂ ଅଧୀନସ୍ଥ କର୍ମଚାରିଙ୍କୁ କ୍ଷମା କରିବେ। ବିଶେଷରେ ପ୍ରବାଦ ଅଛି ଯେ ଏକ ବ୍ୟକ୍ତି ହସ୍ତରେ ଅନେକ କାର୍ଯ୍ୟ ପଡ଼ିଲେ କୌଣସିକାର୍ଯ୍ୟ ଭଲ ହୁଅଇ ନାହିଁ। ଏକ ଏକ ଇଲାକାର କାର୍ଯ୍ୟ ଏକ ଏକ ପ୍ରକାର କର୍ମଚାରିଙ୍କ ଅଧୀନରେ ଥିବାର ସେମାନେ ଯେମନ୍ତ ମନୋଯୋଗ ପୂର୍ବକ ଦାର୍ଯ୍ୟ କରଅଛନ୍ତି ସେରପ କଦାଚ ପ୍ରସ୍ତାବିତ ଉପାୟ ଦ୍ୱାରା ହେବ ନାହିଁ। ଆମ୍ଭେମାନେ କୌଣସି ପରିବର୍ତ୍ତନ ଚାହୁଁ ନାହୁଁ କେବଳ ଲେଫ୍‌ଟନଣ୍ଟ ଗବର୍ଣ୍ଣର ଜିଲ୍ଲା ହାକିମଙ୍କୁ ଏତିକି ଅନୁରୋଧ କରନ୍ତୁ କି ସେମାନେ ବର୍ଷକୁ ବର୍ଷ ଶିକ୍ଷାର କିପର୍ଯ୍ୟନ୍ତ ଉନ୍ନତି ଓ ଉଦ୍ଦ୍ୱାରା ଲୋକଙ୍କର କି ପରିମାଣରେ ଅଜ୍ଞାନତା ନାଶ ଓ ସୁନୀତିର ଉନ୍ନତି ହେଉଅଛି ତାହା ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବେ ଓ ବିଦ୍ୱାନ ଲୋକଙ୍କୁ ଉପଯୁକ୍ତ ରାଜକାର୍ଯ୍ୟମାନ ଦେଇ ଶିକ୍ଷା ପ୍ରତି ଉତ୍ସାହ ଦେବେ ତାହା ହେଲେ ଯଥେଷ୍ଟ ହେବ। ଲେଫ୍‌ଟନଣ୍ଟ ଗବର୍ଣ୍ଣର ଯେବେ ଇନ୍‌ସ୍ପେକ୍‌ଟରମାନଙ୍କୁ ଉଠାଇ ଦେଇ ଶିକ୍ଷାବିଭାଗର ଭାର ସ୍ଥାନୀୟ କର୍ମଚାରିଙ୍କ ହସ୍ତରେ ରଖନ୍ତେ ତାହା ହେଲେ ବ୍ୟୟ ଲାଘବ ହେତୁର ଆମ୍ଭେମାନେ ତାହାଙ୍କ ମତକୁ ଅନୁମୋଦନ କରନ୍ତୁ ମାତ୍ର ବର୍ତ୍ତମାନ ପ୍ରସ୍ତାବରେ କେବଳ ସ୍ଥାନୀୟ କର୍ମଚାରିଙ୍କ କାର୍ଯ୍ୟ ବଢ଼ିବ ଆଉ କିଛି ଫଳ ନାହିଁ।

*ଭା୬ଗ, ସଂ୪୦ଖ୍ୟା, ୧୪।୧୦।୧୮୭୧*

## ବିଶ୍ୱବିଦ୍ୟାଳୟସମ୍ବନ୍ଧୀୟ ଦେଶୀୟଭାଷା ପରୀକ୍ଷା।

ଯେପରି ଇଙ୍ଗରେଜୀ ଭାଷାରେ ବିଶ୍ୱବିଦ୍ୟାଳୟ ଅଧୀନରେ ପରୀକ୍ଷା ହୁଏ ସେହିରପ ଦେଶୀୟ ଭାଷାମାନଙ୍କରେ ପରୀକ୍ଷା ହେବା ଗବର୍ଣ୍ଣମେଣ୍ଟଙ୍କ ଇଚ୍ଛା ଥିବାର ଏଥିପୂର୍ବ ସମ୍ବାଦପତ୍ରମାନଙ୍କରେ ପ୍ରଚରିତ ହୋଇଥିଲା। ଚଳିତ ଅକ୍ଟୁବରମାସ ତା ୧୨ରିଖ ଗୁରବାରଦିନ ଉକ୍ତ ବିଷୟସମ୍ବନ୍ଧରେ ବିଶ୍ୱବିଦ୍ୟାଳୟର କାର୍ଯ୍ୟ ନିର୍ବାହକ କମିଟୀର ଅଧିବେଶନରେ ନିମ୍ନଲିଖିତ ନିୟମମାନ ସ୍ଥିର ହୋଇଅଛି।

୧। ପରୀକ୍ଷାର୍ଥିମାନେ ତଳଲିଖିତ ଭାଷାମାନଙ୍କ ମଧ୍ୟର କୌଣସି ଏକ ଭାଷାରେ ଆପଣା ଇଚ୍ଛାନୁସାରେ ପରୀକ୍ଷା ଦେଇପାରିବେ।

| | |
|---|---|
| ବଙ୍ଗଳା | ହିନ୍ଦୀ |
| ଆସାମୀ | ଓଡିଆ |
| ଉର୍ଦ୍ଦୁ | |

ଭାଷାବିଷୟକ ବ୍ୟୁତ୍ପତ୍ତି ପରୀକ୍ଷା ନିମନ୍ତେ ଦୁଇଟୀ ପ୍ରଶ୍ନକାଗଜ ଦିଆଯିବ। ସେଥିମଧ୍ୟର ଗୋଟିକରେ ପୁସ୍ତକାଦିର ଗଦ୍ୟ ଓ ପଦ୍ୟ ପ୍ରବନ୍ଧ ଉଦ୍ଧୃତହୋଇ ସେମାନଙ୍କର ଅନ୍ୱୟ ଓ ଅର୍ଥ ଜିଜ୍ଞାସା କରାଯିବ ଓ ଅନ୍ୟଟୀରେ ବ୍ୟାକରଣଘଟିତ ଓ ପରୀକ୍ଷାର୍ଥିର ରଚନା କ୍ଷମତା ପରିଚାୟକ ପ୍ରଶ୍ନ ଥିବ। ଶୁଦ୍ଧ ଲିଖନଶକ୍ତି ପରୀକ୍ଷା ନିମନ୍ତେ ଏ ପ୍ରଶ୍ନକାଗଜ ସଙ୍ଗେ ଗଦ୍ୟର ଗୋଟିଏ ପ୍ରବନ୍ଧ ଥିବ (ପ୍ରତିକାଗଜର ପୂର୍ଣ୍ଣସଂଖ୍ୟା ୭୦)

୨। ଇତିହାସ ଓ ଭୂଗୋଳ

ଭାରତବର୍ଷୀୟ ଇତିହାସର ହିନ୍ଦୁ ଏବଂ ମୁଶଲମାନ ରାଜତ୍ୱ ଘଟିତ ସ୍ଥୁଳ ସ୍ଥୁଳ ବିଷୟ ଓ ଇଙ୍ଗରାଜ ରାଜତ୍ୱର ବିଶେଷ ବିବରଣ (ଏକବିଷୟରେ ଖଣ୍ଡିଏ ପ୍ରଶ୍ନକାଗଜ ହେବ ସେଥିର ପୂର୍ଣ୍ଣ ସଂଖ୍ୟା ୫୦)

ଭୂଗୋଳର ସ୍ଥୁଳ ସ୍ଥୁଳ ବିବରଣ ଏବଂ ଭାରତବର୍ଷର ବିଶେଷ ବୃତ୍ତାନ୍ତ (ଗୋଟିଏ କାଗଜ ପୂର୍ଣ୍ଣ ସଂଖ୍ୟା ୫୦)

ଗଣିତ

ପାଟୀଗଣିତ-ସମସ୍ତ [ଏକଖଣ୍ଡ ପ୍ରଶ୍ନକାଗଜ ପୂର୍ଣ୍ଣସଂଖ୍ୟା ୫୦]

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ବୀଜଗଣିତ -ସିମ୍ପଲଇକୋଏଶନ(ଏକଖଣ୍ଡ କାଗଜ ପୂର୍ଣ୍ଣସଂଖ୍ୟା ୫୦)

କ୍ଷେତ୍ରତତ୍ତ୍ୱ -ଇଉକ୍ଲିଡ୍‌ର ୧ମ ଓ ୨ୟ ଅଧ୍ୟାୟ ସହଜ ସହଜ ଅତିରିକ୍ତ ପ୍ରତିଜ୍ଞା ସହିତ [ଏକଖଣ୍ଡ କାଗଜ ପୂର୍ଣ୍ଣସଂଖ୍ୟା ୫୦]

ଉପରଲିଖିତ ପ୍ରତ୍ୟେକ ବିଷୟରେ ଶତକରା ୨୫ ସଂଖ୍ୟାର କମ ପାଇଲେ ପରୀକ୍ଷାର୍ଥିମାନେ ଉତ୍ତୀର୍ଣ୍ଣ ହେବେ ନାହିଁ।

ପରୀକ୍ଷାର୍ଥିମାନେ ତଳଲିଖିତ ବିଷୟମାନଙ୍କ ମଧ୍ୟର କୌଣସି ଦୁଇବିଷୟର ଅନଧିକ ବିଷୟରେ ପରୀକ୍ଷା ଦେଇପାରିବେ।

୧ ସଂସ୍କୃତ ପ୍ରବେଶିକା ପରୀକ୍ଷା ନିମିତ୍ତ

୨ ଆରବୀ ନିର୍ଦ୍ଧାରିତ ପୁସ୍ତକମାନ ପ୍ରତ୍ୟେକ ଭାଷାରେ ପୂର୍ଣ୍ଣସଂଖ୍ୟା ୫୦ ।

୩. ପାରସୀ

୪. ସାମାନ୍ୟ କ୍ଷେତ୍ରପରିମାଣ ଓ ସହଜ ଘନପରିମାଣ ଏବଂ ଜରିବ।

୫. ସ୍ଥିତିବିଜ୍ଞାନ, ଜଳସ୍ଥିତିବିଜ୍ଞାନ ଓ ବାୟୁବିଜ୍ଞାନ

୬. ପ୍ରାକୃତିକ ଭୂଗୋଳ

୭. ଜ୍ୟୋତିଷଶାସ୍ତ୍ର

ଉପର୍ଯୁକ୍ତ ପଶ୍ଚାଲ୍ଲିଖିତ ବିଷୟମାନଙ୍କର ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ ଛାତ୍ରମାନଙ୍କର ଉତ୍ତୀର୍ଣ୍ଣ ହେବା ପକ୍ଷରେ କୌଣସି ବ୍ୟାଘାତ ହେବ ନାହିଁ ଶତକରା ୨୫ ସଂଖ୍ୟାର କମ ପାଇଲେ ଏ ବିଷୟମାନଙ୍କରେ ଉତ୍ତୀର୍ଣ୍ଣ ହୋଇଥିବାର ଜ୍ଞାନ କରାଯିବ ନାହିଁ।

ଏଥିରେ ବୟସର କୌଣସି ନିୟମ ନାହିଁ। ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନେ ଖଣ୍ଡିଏଲେଖାଏ ପ୍ରଶଂସାପତ୍ର ପାଇବେ।

ଉପରଲିଖିତ ନିୟମାବଳୀ ପଢ଼ି ଆମ୍ଭର ମନରେ ଏହା ପ୍ରଥମେ ଉଦ୍ଭାବିତ ହେଲା ଯେ ଏତେଦିନେ ଓଡ଼ିଶାଦେଶ ସ୍କୁଲମାନଙ୍କରେ ବଙ୍ଗଭାଷା ଚଳାଇବାର ବିବାଦ ନିଷ୍ପତ୍ତି ପାଇଲା ବୋଧହୁଏ ଏହି ନୂତନ ପରୀକ୍ଷାର ଫଳ ଅନୁସାରେ ଦେଶୀୟ ଭାଷାରେ ଛାତ୍ରବୃତ୍ତି ଦିଆଯିବ ତାହା ହେଲେ ବଙ୍ଗଳା କିମ୍ୱା ଓଡ଼ିୟା କେଉଣସି ଏକ ଭାଷା ପଢ଼ିଲେ ଚଳିବ। କିନ୍ତୁ ଏଆଡ଼େ ବୋଝ ଲାଘବ ହେଲେ କି ହେବ ଅନ୍ୟଆଡ଼େ ଦ୍ୱିଗୁଣ ବଢ଼ିଲା। ବର୍ତ୍ତମାନ ଓଡ଼ିୟା ସ୍କୁଲମାନଙ୍କରେ ବୀଜଗଣିତ ପଢ଼ା ହେଉ ନାହିଁ ମାତ୍ର ଉପରୋକ୍ତ ନିୟମାନୁସାରେ ଭାବୀ ପରୀକ୍ଷାରେ ବୀଜଗଣିତ ସମୀକରଣ ପର୍ଯ୍ୟନ୍ତ ପରୀକ୍ଷା ଦେବାକୁ ହେବ। ମଫସଲ ଓଡ଼ିୟାସ୍କୁଲମାନଙ୍କରେ କେବଳ ଦୁଇଜଣ ଶିକ୍ଷକ ଶିକ୍ଷାକାର୍ଯ୍ୟ ନିର୍ବାହ କରନ୍ତି। ସେମାନଙ୍କ ମଧ୍ୟରେ ଜଣେ ଅବଧାନ ମାସିକ ପାଞ୍ଚଟଙ୍କା ବୃତ୍ତିଭୋଗୀ। ଏହାଙ୍କ ହସ୍ତରେ କାର୍ଯ୍ୟ ଯେପରି ଚଳୁଥିବ ସର୍ବସାଧାରଣ ବୁଝିପାରିବେ। ବାସ୍ତବରେ ମଫସଲ ଓଡ଼ିଆ ସ୍କୁଲମାନଙ୍କରେ ଉତ୍ତମ ଶିକ୍ଷାଦେବାର ଉପଯୁକ୍ତ କେବଳ ଏକଜଣ ଲେଖାଁଏ ଶିକ୍ଷକ ଅଛନ୍ତି। ଏଥିରେ ଯେ ପରୀକ୍ଷାର ଫଳ ନୂତନ ନିୟମାନୁସାରେ ଭଲ ହେବ ଏହା ଆମ୍ଭର ବଡ଼ ଭରସା ନାହିଁ । ବର୍ତ୍ତମାନ ଚଳୁଥିବା ଦେଶୀୟ ଛାତ୍ରବୃତ୍ତି ପରୀକ୍ଷାର ନିୟମ ଅନୁସାରେ ବାଳକମାନେ ଭିନ୍ନ ଭିନ୍ନ ବିଷୟରେ ଯେତେ ନମ୍ବର ପାଆନ୍ତି ସେଥିର ମୋଟକରି ଯେଉଁମାନଙ୍କ ସର୍ବ ଉଚ୍ଚ ନିର୍ଦ୍ଦିଷ୍ଟ ମୋଟ ନମ୍ବରର ଏକ ଚତୁର୍ଥାଂଶ ପାଇବାର ଦେଖାଯାଏ ସେମାନଙ୍କୁ ପରୀକ୍ଷୋତ୍ତୀର୍ଣ୍ଣ ବୋଲି ଜ୍ଞାନକରା ଯାଏ ମାତ୍ର ନୂତନ ନିୟମାନୁସାରେ ପ୍ରତ୍ୟେକ ବିଷୟରେ ଏକ ଚତୁର୍ଥାଂଶ ନମ୍ବର ପାଇବାକୁ ହେବ। ଏ ନିୟମ ମଧ୍ୟ ମଫସଲର ଅନେକ ପରୀକ୍ଷାର୍ଥୀଙ୍କ ପକ୍ଷରେ କାଳସ୍ୱରପ ହେବ। ମଫସଲ ସ୍କୁଲର ଅବସ୍ଥା ଉପର ଉକ୍ତ ବିଷୟମାନ ବିବେଚନାରେ ଆମ୍ଭର ବୋଧ ହେଉ ନାହିଁ ଯେ ଅଧିକାଂଶ ସ୍କୁଲମାନଙ୍କରେ ବାଳକମାନେ ଇଚ୍ଛାଧୀନ ବିଷୟମାନଙ୍କ ମଧ୍ୟର କୋଉଣସି ବିଷୟରେ ପରୀକ୍ଷା ଦେବାକୁ ସଚେଷ୍ଟ ହେବେ।

*ଭା.ଦୀ., ସଂ୪୧ଖ୍ୟା, ୨୮/୧୦/୧୮୭୧*

# ୧୮୭୨

## ବିଶ୍ୱବିଦ୍ୟାଳୟ ପରୀକ୍ଷାର ଫଳ

ଗତ ସପ୍ତାହରେ ଆମ୍ଭେମାନେ ଏ ଫଳ ବିଷୟରେ ଯାହା ବକ୍ତବ୍ୟ ପ୍ରକାଶ କରିଅଛୁଁ ସମ୍ପ୍ରତି ଯେଉଁ ଛାତ୍ରମାନେ କୃତକାର୍ଯ୍ୟତା ଲାଭ କରିଅଛନ୍ତି ସେମାନଙ୍କ ନାମ ସହିତ ଅନ୍ୟ କେତେକ କଥାର ଉଲ୍ଲେଖ କରଅଛୁଁ ଯଥା ।

ଫାଷ୍ଟ ଆର୍ଟସ୍ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରଗଣ

**କଟକ ହାଇସ୍କୁଲ- ଦ୍ୱିତୀୟଶ୍ରେଣୀ**

ଭଗବତୀଚରଣ ଚାଟୁର୍ଯ୍ୟା
ବିପ୍ରଚରଣ ଚାଟୁର୍ଯ୍ୟା
ବଳରାମ ଦାସ
ଚତୁର୍ଭୁଜ ପଟ୍ଟନାୟକ
ମଧୁସୂଦନ ରାୟ
ଯେ. ଏସ. ରାଉତ

**ପ୍ରବେଶିକା ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରଗଣ**

**କଟକ ହାଇସ୍କୁଲ- ଦ୍ୱିତୀୟଶ୍ରେଣୀ**

ଶିବପ୍ରସାଦ ବ୍ରହ୍ମ
ଭୁବନେଶ୍ୱର ଦତ୍ତ
ରାମକୃଷ୍ଣ ମହାପାତ୍ର
କୃଷ୍ଣଚନ୍ଦ୍ର ମହାନ୍ତି
ନାରାୟଣ ପ୍ରସାଦ ମିତ୍ର

**ତୃତୀୟଶ୍ରେଣୀ**

ସାରଦାପ୍ରସାଦ ଚାଟୁର୍ଯ୍ୟା
ହେମଚନ୍ଦ୍ର ଘୋଷ
ଯଦୁନାଥ ରାୟ ପୁରୀ
ମଥୁରାଲାଲ ସେନ ବାଲେଶ୍ୱର

କଟକର ପରୀକ୍ଷା ଭଲ ହୋଇଥିଲେ ହେଁ ଯେବେ ପ୍ରବେଶିକା ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଦୁଇ ଏକ ଜଣ ସ୍ଥାନ ପାଇଥାନ୍ତେ ତେବେ ଅତି ଆନନ୍ଦ ଜନକ ହୋଇଥାନ୍ତା ଯାହା ହୋଇଅଛି ତହିଁରେ ପୁଣି ବଙ୍ଗାଳୀ ଓ ଓଡିୟା ଛାତ୍ରମାନେ ସମାନ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବାର ଯେଉଁମାନେ ବୋଲୁଥିଲେ ଯେ ଓଡିୟାଙ୍କ ବୁଦ୍ଧିବୃତ୍ତି ସ୍ୱଭାବିକ ମନ୍ଦ ସେମାନେ ଲଜ୍ଜିତ ହେବେ ଓ ଜାଣିପାରିବେ ଯେ ସ୍ୱଭାବରେ କିଛି ଅନ୍ତର ନାହିଁ ଶିକ୍ଷା ପାଇଲେ ସମାନରୂପ ଫଳ ଦେଖାଇବେ ।

ପୁରୀ ଓ ବାଲେଶ୍ୱର ପକ୍ଷରେ ଫଳ ଉତ୍ତମ ହୋଇ ନାହିଁ । ପ୍ରଥମ ସ୍ଥାନର ଦୁଇ ଓ ଶେଷ ସ୍ଥାନର ତିନି

ବାଳକ ଆସିଥିଲେ ତହିଁର ଗୋଟିଏ ଲେଖାଏଁ ନିମ୍ନ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଆଉ କେତେକାଳରେ ଏ ନଗରବାସିମାନେ ବିଦ୍ୟାର ମର୍ଯ୍ୟାଦା ବୁଝିପାରି ପିଲାମାନଙ୍କୁ ଶିକ୍ଷା ଦେବାର ଯତ୍ନ କରିବେ । ଅଧିକ ଛାତ୍ର ପଢୁଥିଲେ ଅଧିକ ଆସୁଥାନ୍ତେ କିନ୍ତୁ ଆମ୍ଭେମାନେ ଶୁଣିଅଛୁଁ ଯେ ଏସବୁ ସ୍ଥାନରେ ବାଳକମାନେ ଶୀଘ୍ର କର୍ମପାଇ ବିଦ୍ୟାଳୟ ତ୍ୟାଗକରନ୍ତି ଓ ହାକିମମାନେ ମଧ ଅନ୍ୟଲୋକ ଅଭାବରେ ବିଦ୍ୟାଳୟର ଛାତ୍ର ନ ନେଇ ନିର୍ବାହ ହୋଇ ପାରନ୍ତି ନାହିଁ । ଏଥିରେ ପରୀକ୍ଷାପ୍ରତି ଛାତ୍ରଙ୍କର ଆଦର ରହଇ ନାହିଁ । ପକ୍ଷାନ୍ତରେ ଛାତ୍ରମାନେ ଶୀଘ୍ର ସରକାରୀ କର୍ମ ପାଇବାର ଦେଖି ବହୁତ ଲୋକ କାହିଁକି ଆପଣା ଆପଣା ସନ୍ତାନଙ୍କୁ ଶିକ୍ଷାଲାଭ ନିମିତ୍ତ ବିଦ୍ୟାଳୟକୁ ପଠାନ୍ତି ନାହିଁ ସହଜରେ ବୁଝା ଯାଉ ନାହିଁ । ଯାହା ହେଉ ହାକିମମାନେ ଯେବେ ନିତାନ୍ତ ଦୁଃଖି ଓ ଅପେକ୍ଷାକୃତ ମୋଟ ବୁଦ୍ଧିର ଛାତ୍ରଙ୍କୁ କର୍ମ ଦେବାକୁ ଘେନିଯାଇ ଭଲ ଭଲ ଛାତ୍ରଙ୍କୁ ଏ ଜିଲାରେ ସମ୍ଭବ ସର୍ବୋଚ୍ଚ ପରୀକ୍ଷା ପର୍ଯ୍ୟନ୍ତ ପାଠ କରିବା କାରଣ ଛାଡ଼ିଦିଅନ୍ତେ ତାହା ହେଲେ ପୁରୀ ବାଲେଶ୍ୱରର ଅଧିକ ପରୀକ୍ଷାର୍ଥୀ ଆସନ୍ତେ ସନ୍ଦେହ ନାହିଁ ଓ ଏ ନିୟମରେ ପରିଶେଷରେ ଉତ୍ତମ ଫଳ ହୁଅନ୍ତା ।

*ଭା୭ଗ, ସଂ୨ଖ୍ୟା, ୧୩।୧।୧୮୭୨*

## ଓଡ଼ିଶାରେ ଗୋଟିଏ କଲେଜର ପ୍ରୟୋଜନ ।

କଟକ ହାଇସ୍କୁଲ ଗତ ପରୀକ୍ଷାରେ ଯେ ଫଳ ପ୍ରାପ୍ତ ହୋଇଅଛି ତାହା ଦେଖି ମନ ଯେମନ୍ତ ଆନନ୍ଦିତ ହେଉଅଛି ସେହିପ୍ରାୟ ପୁଣି ବିଷାଦରେ ନିସ୍ତେଜ ହେଉଅଛି । ବାସ୍ତବରେ ତୂଳ କରି ଦେଖିଲେ ଏ ଫଳ ଅଧିକ ଶୋକର କାରଣ ହୋଇଅଛି । ଫାଷ୍ଟଆର୍ଟସ ପରୀକ୍ଷାରେ ଜ ୮ ଣ ଛାତ୍ର ଉପସ୍ଥିତ ହୋଇଥିଲେ ତହିଁ ମଧ୍ୟର ଜ ୬ ଣ ଦ୍ୱିତୀୟଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ ଏଥିର ଛାତ୍ରଙ୍କ ତୀକ୍ଷ୍ଣବୁଦ୍ଧିର ପରିଚୟ ପ୍ରାପ୍ତ ହେଉଅଛି କିନ୍ତୁ ଏହାର ପରିଣାମ କି ? ଆମ୍ଭେମାନେ ଏ ତୀକ୍ଷ୍ଣବୁଦ୍ଧିର କୌଣସି ଫଳ ପାଇବାକୁ ସମର୍ଥ ହେବୁଁ ନାହିଁ କାରଣ ଯେସମୟରେ ତଦ୍ଦ୍ୱାରା ବିଶେଷ ଲାଭର ପ୍ରତ୍ୟାଶା ଦେଖାଗଲା ଠିକ ସେହି ସମୟରେ ଯତ୍ନର ତ୍ରୁଟି ଓ ଅସୁବିଧା ପ୍ରଯୁକ୍ତ ତାହା ନଷ୍ଟ ହେବାକୁ ବସିଲା । ବି, ଏ, ପରୀକ୍ଷା ପର୍ଯ୍ୟନ୍ତ ବିଦ୍ୟାଳୟରେ ଶିକ୍ଷା ପ୍ରାପ୍ତିର ଆବଶ୍ୟକ ଓ ସେ ପରୀକ୍ଷା ନ ହେଲେ ଅସ୍ମଦେଶୀୟମାନେ ଅନ୍ୟ ଦେଶୀୟ ଲୋକଙ୍କ ସଙ୍ଗେ ସମକକ୍ଷ ହୋଇ ପାରିବେ ନାହିଁ । ଆମ୍ଭେମାନେ ନାନାଦି ଅସୁବିଧା ହେତୁ ପୂର୍ବେ ଏତେଦୂର ଯାଏ ପ୍ରବେଶ ହେବାକୁ ଆଶା କରି ନ ଥିଲୁଁ ଓ ବହୁତ ପ୍ରତିବନ୍ଧକ ଥିବା ହେତୁର ମନକୁ ଏକପ୍ରକାର ପ୍ରବୋଧ ଦେଇଥିଲୁଁ । ଏଥର ସେ ସବୁ ଅତିକ୍ରମ କରି ଦ୍ୱାରବନ୍ଧଠାର ଫେରି ଯିବାକୁ ପଡ଼ିଲା ଏହି ବଡ଼ ଦୁଃଖ ଯେବେ ବିଦ୍ୟାମନ୍ଦିରରେ ପ୍ରବେଶ ହେବାର ଆମ୍ଭମାନଙ୍କ ଭାଗ୍ୟରେ ନାହିଁ ତାହା ପୂର୍ବେ ଭଲରପେ ଜାଣୁଥିବାର ଘରେ ନିଶ୍ଚିନ୍ତ ହୋଇ ଶୋଇ ରହୁଥିଲୁଁ କିନ୍ତୁ ସମ୍ପ୍ରତି ଗବର୍ଣ୍ଣମେଣ୍ଟ ଆମ୍ଭମାନଙ୍କ ହସ୍ତଧରି ଦ୍ୱାରବନ୍ଧ ପର୍ଯ୍ୟନ୍ତ ଟାଣିଆଣି ଫେରିଯିବାକୁ କହୁଅଛନ୍ତି ଏଥିରେ କେବଳ ନିଦ୍ରାସୁଖର ବଞ୍ଚିତ ହେଲୁଁ ଏମନ୍ତ ନୁହଇ ଦୋହରାବାଟଚାଲି ସମୟ ଓ ଶାରୀରିକ କୁଶଳତାର ମଧ ବୃଥା ହାନିକଲୁଁ । ଜଣେ ଦୁଇଜଣ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ଏପରି ବୋଲିବାର ହେତୁ ନ ଥିଲା କିନ୍ତୁ ଏତେଗୁଡ଼ିଏ ଲୋକ ଏତେଦୂର ଯାଏ ପରିଶ୍ରମକରି ଯେ ଉଚ୍ଚଶିକ୍ଷାର ବଞ୍ଚିତ ହେବେ ବଡ଼ ସନ୍ତାପରବିଷୟ । କଟକରେ କଲେଜସ୍ଥାପନ ଏ ସନ୍ତାପର ଉଦ୍ଧାର ହେବାର ଏକମାତ୍ର ଉପାୟ କିନ୍ତୁ ବର୍ତ୍ତମାନ ଉଚ୍ଚଶିକ୍ଷାପ୍ରତି ଗବର୍ଣ୍ଣମେଣ୍ଟଙ୍କ କଠିନ ବ୍ୟବହାର ଦେଖି ମନରେ ପ୍ରତ୍ୟୟ ହେଉ ନାହିଁ ଯେ ଓଡ଼ିଶାରେ ଆଉ ଶିକ୍ଷାର ଉନ୍ନତି ହେବ । ତେବେ ଆମ୍ଭମାନଙ୍କର ଗୋଟିଏ ଆଶା ଏହି ଅଛି ଯେ ଓଡିଶା ବଙ୍ଗଦେଶର ଗୋଟିଏ ସୁବା ଅଟଇ ବଙ୍ଗଳା ଓ ବେହାର ଅନ୍ୟ ଦୁଇ ସୁବା ଏଥିରେ ବଙ୍ଗଳାରେ ବହୁତ କଲେଜ ଅଛି ଓ ବେହାରରେ ମଧ ପାଟନାକଲେଜ ଅଛି କିନ୍ତୁ ଓଡିଶା କି ଦୋଷକରିଅଛି ଯେ ଗୋଟିଏସୁଦ୍ଧା କଲେଜ ପାଇବ ନାହିଁ ବାସ୍ତବରେ ଏହାର ଗୋଟିଏ କଲେଜପ୍ରତି ଦାବୀ ହୋଇଅଛି । ଏଥକୁ ଗବର୍ଣ୍ଣମେଣ୍ଟ ବ୍ରହ୍ମପୁରକଲେଜ ଉଠାଇଦେଇ ଯେଉଁ ଲାଭ କରିଅଛନ୍ତି ତାହାର କୌଣସିଅଂଶ ଓଡିଶାକୁ ଦେଲେ କାର୍ଯ୍ୟ ଚଳିପାରେ । ଏ ସବୁ ସୁଲକ୍ଷଣ ଛଡ଼ା ଆହୁରି ଦେଖାଯାଏ ଯେ ଏହିବର୍ଷ ଯେମନ୍ତ ବହୁତଛାତ୍ର ପରିକ୍ଷୋତୀର୍ଣ୍ଣ ହେବାର କଲେଜସ୍ଥାପନର

ନିତାନ୍ତ ପ୍ରୟୋଜନ ହୋଇଅଛି ତେମନ୍ତ ମହାମାନ୍ୟ ଗବର୍ଣ୍ଣରଜେନେରଲସାହେବ ଚିରଦୁଃଖିନୀ ଓଡିଶାର ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦର୍ଶନକରିବାକୁ ସୁଭାଗମନ କରଅଛନ୍ତି । ଏରପ ସଂଯୋଗକୁ ରାଜଯୋଟକ ବୋଲାଯାଇ ପାରେ । ଯେବେ ଗୋଟିଏ କଲେଜ ସ୍ଥାପନର ଆଜ୍ଞା ନ ହେବ ତେବେ ଏଡ଼େ ଯୋଗଟା କି ବ୍ୟର୍ଥ ଯିବ ? ଅଥବା ଆଉ ଉତ୍କୃଷ୍ଟ କାର୍ଯ୍ୟଦ୍ୱାରା ଲାର୍ଡ ମହୋଦୟ ଏଠାରେ ଚିରସ୍ମରଣୀୟ ହୋଇ ରହିବେ ? ଓଡିଶାକୁ କେବେ କୌଣସି ଗବର୍ଣ୍ଣର ଜେନରଲ ସାହେବ ଆସି ନାହାନ୍ତି ଓ କୌଣସି କାଳରେ ଯେ ଆସିବାକୁ ମନେ କରିବେ ଏମନ୍ତ ଆମ୍ଭେମାନେ ସ୍ୱପ୍ନରେ ସୁଦ୍ଧା ଆଶା କରି ନ ଥିଲୁଁ । ଯେବେ ଲାର୍ଡମେଓ ସାହେବଙ୍କ ମନରେ ଆମ୍ଭମାନଙ୍କ ସାମାନ୍ୟ ପ୍ରଦେଶ ପଡ଼ିଲା ତେବେ କି ସେ ଏଠାରେ କୌଣସି ଚିହ୍ନ ନ ରଖି ତୁଛା ଫେରିଯିବେ ଏମନ୍ତ ପ୍ରତ୍ୟୟ ହେଉ ନାହିଁ ଅତଏବ ଆମ୍ଭେମାନେ ଦୃଢରପେ ବିଶ୍ୱାସ କରିଅଛୁଁ ଯେ ଆମ୍ଭମାନଙ୍କର ଏ ଦୁଃଖ ତାହାଙ୍କୁ ବିଶେଷ କରି ଜଣାଇଲେ ସେ ଅବଶ୍ୟ ପ୍ରତିକାର କରିବେ । ଶରୀର ପୋଷଣ ନିମିତ୍ତ ଆମ୍ଭେମାନେ ବଡ଼ କାତର ନାହୁଁ । ଯଥେଷ୍ଟ ଧାନ ଫଳିବାର ପ୍ରାଣ ଧାରଣ କରିବାକୁ ସମର୍ଥ ହେଉଅଛୁଁ ଓ ଯାହା ଅବା କଦା କଦା ଦୁର୍ଭିକ୍ଷର ଭୟ ଥିଲା ତାହା ନିବାରଣ ପକ୍ଷରେ ଗବର୍ଣ୍ଣମେଣ୍ଟ ନାଳ ଖୋଳି ଆପଣା କର୍ତ୍ତବ୍ୟ ସାଧନ କରିଅଛନ୍ତି ଏଥର ମାନସିକ ଦୁର୍ଭିକ୍ଷ ବଳବତ୍ତରରପେ ପଡ଼ିଲା ଏଥିର ଉଦ୍ଧାର କାରଣ କିଛି ଉପାୟ ହୋଇ ନାହିଁ ଅତଏବ ସର୍ବାଗ୍ରେ ଗବର୍ଣ୍ଣର ଜେନରଲଙ୍କ ଆସିବା ଉପେକ୍ଷାରେ ଏହି କାର୍ଯ୍ୟଟି ରହିଅଛି ।

*ଭାଗ୬, ସଂ୨ଖ୍ୟା , ୧୩/୧/୧୮୭୨*

## ସାଧାରଣ ଶିକ୍ଷାଦାନର ବାର୍ଷିକ ବିଜ୍ଞାପନୀ ।

ସନ ୧୮୭୦/୭୧ ମସିହାର ବାର୍ଷିକ ବିଜ୍ଞାପନୀ ପାଠକରି ଗବର୍ଣ୍ଣମେଣ୍ଟବଙ୍ଗାଳ ଯେଉଁ ମନ୍ତବ୍ୟ ବ୍ୟକ୍ତ କରିଅଛନ୍ତି ତହିଁ ମଧ୍ୟର ଓଡିଶାବିଷୟରେ ଯାହା ଲେଖାଅଛି ପାଠକମାନଙ୍କ ଗୋଚରାର୍ଥେ ନିମ୍ନେ ଉଦ୍ଧୃତକଲୁଁ ।

"ଓଡିଶାବିଭାଗ- କମିଶ୍ନରସାହେବଙ୍କ ତାଲିକା ଇନ୍‌ସ୍ପେକ୍‌ଟରଙ୍କ ତାଲିକା ସହିତ ମେଳ ହୋଇଅଛି ଏଥିର ବୋଧ ହୁଅଇ ସିବିଲ ଓ ଶିକ୍ଷାମହକୁମାର କର୍ମଚାରିମାନେ ମେଳ ହୋଇ କର୍ମ କରନ୍ତି ଏବଂ ଯଦ୍ୟପି କି ଲୋକମାନେ କେତେକ ଅଂଶରେ ପଛରେ ପଡ଼ିରହିଅଛନ୍ତି ତଥାପି ଶିକ୍ଷାନିମିତ୍ତ ଆଗ୍ରହ ଦେଖାଯାଉଅଛି ସମାଲୋଚିତ ବର୍ଷରେ ବିଦ୍ୟାଳୟ ସଂଖ୍ୟା ୯୦ ଠାର ୧୩୦ ପର୍ଯ୍ୟନ୍ତ ଏବଂ ଛାତ୍ରସଂଖ୍ୟା ୫୦୯୫ ଠାର ୫୭୯୦ ପର୍ଯ୍ୟନ୍ତ ବୃଦ୍ଧି ହୋଇଅଛି । କଟକ ହାଇସ୍କୁଲରେ ୧୬୪ ଛାତ୍ର ମଧ୍ୟର କେବଳ ୪୦ଟି ବାଳକ ଓଡ଼ିଆ ଅବଶିଷ୍ଟ ବାଳକମାନେ ବଙ୍ଗବାସୀ ଅଥବା ବହୁକାଳର ଏଠାରେ ବାସ କରିଥିବା ବଙ୍ଗାଳୀଙ୍କ ସନ୍ତାନ ଅଟନ୍ତି ବାଲେଶ୍ୱର ଓ ପୁରୀଜିଲା ସ୍କୁଲମାନଙ୍କ ଦ୍ୱାରା ଏ ବର୍ଷ ଉତ୍ତମ କାର୍ଯ୍ୟ ହୋଇଅଛି ପୁରୀସ୍କୁଲରେ ୧୦୫ ଛାତ୍ରମଧ୍ୟର ୧୦୨ ହାରାହାରି ନିତ୍ୟ ଉପସ୍ଥିତ ଥିବାର ଲେଖାଯାଏ ଏହା ସତ୍ୟ ହୋଇଥିଲେ ଅତି ଉତ୍ତମ ଅଟଇ ।

**କଟକ**- କଟକ ନର୍ମ୍ୟାଲସ୍କୁଲର ଏବର୍ଷ ୪୭ ଜଣ ଶିକ୍ଷକପଦର ଉପଯୁକ୍ତତାର ପତ୍ର ପାଇ ବାହାରିଅଛନ୍ତି । ଏମାନେ ସମସ୍ତେ ଓଡ଼ିଆ କେବଳ ଏକଜଣ ମୁଶଲମାନ ଅଟଇ । ଏଜିଲାରେ ୮ ସାହାଯ୍ୟପ୍ରାପ୍ତ ଏବଂ ସ୍ୱାଧୀନ ଇଂରାଜୀ ଏବଂ ଇଂରାଜୀ ଉତ୍କଳ ବିଦ୍ୟାଳୟ ଅଛି ଏସବୁ ଉତ୍ତମରପେ ଚଳୁଅଛି । ପାଠଶାଳାପ୍ରଣାଳୀ ଏଠାରେ ଅବଧି ବିଧିମତ ପ୍ରଚଳିତ ହୋଇ ନାହିଁ ମାତ୍ର ଲୋକମାନେ ଏଥିକି ଆଗ୍ରହ ପ୍ରକାଶ କରଅଛନ୍ତି ଏ ଜିଲାରେ ୧୯ ସରକାରୀ ଏବଂ ୩୪ ସାହାଯ୍ୟକୃତ ବା ସ୍ୱାଧୀନ ଭାଷାବିଦ୍ୟାଳୟ ଅଛି ।

**ପୁରୀ**- ଏଜିଲାରେ ୨ ସାହାଯ୍ୟକୃତ ଇଙ୍ଗରାଜୀସ୍କୁଲ ଏବଂ ୩ ସ୍ୱାଧୀନ ଇଙ୍ଗରାଜୀ ଉତ୍କଳ ବିଦ୍ୟାଳୟ ଅଛି । କେବଳ ଦେଶୀୟଭାଷା ଶିକ୍ଷାନିମିତ୍ତ ୧୩ ସରକାରୀ ଏବଂ ୨୨ ସାହାଯ୍ୟକୃତ ଓ ସ୍ୱାଧୀନ ବିଦ୍ୟାଳୟ ଅଛି । ଗବର୍ଣ୍ଣମେଣ୍ଟ ଖୋରଧାନାମକ ବଡ଼ ମାହାଲର ଜମିଦାରସ୍ୱରପ ସଦରମୁକାମରେ ଗୋଟିଏ ବିଦ୍ୟାଳୟ ସ୍ଥାପନ କରିଅଛନ୍ତି । କଲେକ୍‌ଟର ସାହେବଙ୍କ ବିବେଚନାରେ ପୁରୀସ୍କୁଲର ପ୍ରଧାନ ଅଭାବ ଉପଯୁକ୍ତ ଓଡ଼ିଆ ଶିକ୍ଷକ ଅଟଇ । ବଙ୍ଗାଳୀଶିକ୍ଷକମାନେ ସେସ୍ଥାନର ଜଳବାୟୁକୁ ସୁଖ ପାଆନ୍ତି ନାହିଁ ।

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

**ବାଲେଶ୍ୱର**- ଏ ଜିଲାରେ ୪ଟା ଇଂରାଜୀ ଉତ୍କଳ ସାହାଯ୍ୟପ୍ରାପ୍ତ ଏବଂ ସ୍ୱାଧୀନ ବିଦ୍ୟାଳୟ ଅଛି ଏପର ଗବର୍ଣ୍ଣମେଣ୍ଟ ଭାଷା ବିଦ୍ୟାଳୟ ୩ ମାତ୍ର ଓ ସାହାଯ୍ୟ ଏବଂ ସ୍ୱାଧୀନ ଭାଷା ବିଦ୍ୟାଳୟ ୧୮ ଅଛି । ଏ ବର୍ଷ ମଧରେ ଗଡ଼ଜାତ ରାଜାମାନେ ଗୋଟିଏ ଇଂରାଜୀ ଉତ୍କଳ ଏବଂ ଚାରିଟା ଭାଷା ବିଦ୍ୟାଳୟ ସ୍ଥାପନ କରିଅଛନ୍ତି ଏବଂ କେଉଁଝଡି ନାମକ ଅତି ଦୂରବର୍ତ୍ତୀ ଛୋଟମହାଲରେ ବର୍ତ୍ତମାନ ୨୦ ବିଦ୍ୟାଳୟ ଓ ସେଠାରେ ୯୦୦ ବାଳକ ପଢ଼ୁଅଛନ୍ତି ଏମାନଙ୍କ ମଧର ୬୬୦ ଜଣ ବଣୁଆ ଲୋକ ଅଟନ୍ତି ।

କଟକର କମିଶ୍ନର ସାହେବ ଅନୁରୋଧ କରନ୍ତି ଯେ ଗବର୍ଣ୍ଣମେଣ୍ଟ ବିଦ୍ୟାଳୟମାନଙ୍କରେ ଅଳ୍ପ ପରିମାଣରେ ଇତିହାସ ଓ ବିଦେଶୀୟ ସାହିତ୍ୟ ପଠିତ ହେବ କିନ୍ତୁ ଶିଳ୍ପବିଦ୍ୟା ହେସାବ ଲେଖିବା ଜମିଦାରୀ କାର୍ଯ୍ୟ ଓ ହେସାବ ଭୂମିପରିମାଣ ଓ ନକ୍‌ଶା ପ୍ରଭୃତି ଶିକ୍ଷା ପ୍ରତି ଅଧିକ ମନୋଯୋଗୀ ହେବାକୁ ହେବ । ଶ୍ରୀଯୁକ୍ତ ଲେଫ୍‌ଟନଣ୍ଟ ଗବର୍ଣ୍ଣର ସାହେବ ଏଥିରେ ସମ୍ପୂର୍ଣ୍ଣରପେ ଐକ୍ୟ ଅଛନ୍ତି । ଓଡିଶାରେ ଓଡିୟାଭାଷାର ଉତ୍ତମ ପାଠ୍ୟପୁସ୍ତକର ଅଭାବ ଅତିଶୟ ଅଛି ।

ଆମ୍ଭମାନଙ୍କର ଏ ବିଷୟରେ କିଞ୍ଚିତ୍ ବକ୍ତବ୍ୟ ଅଛି ମାତ୍ର ବର୍ତ୍ତମାନ ପ୍ରସ୍ତାବଟୀ ଦୀର୍ଘ ହେବା ଭୟରେ ତାହା କରି ନ ପାରିଲୁଁ ଆଗାମୀ ସପ୍ତାହରେ ସେ ପ୍ରସଙ୍ଗ ହେବ । ଶ୍ରୀଯୁକ୍ତ ଡାଇରେକ୍‌ଟର ସାହେବଙ୍କ ବିଜ୍ଞାପନୀ ପାଠ କରି ଶ୍ରୀଯୁକ୍ତ ଲେଫ୍‌ଟନଣ୍ଟ ଗବର୍ଣ୍ଣର ସାହେବ ଅନେକ କଥା ଲେଖିଅଛନ୍ତି ଓ ଉକ୍ତ କର୍ମଚାରିଙ୍କ କାର୍ଯ୍ୟରେ ସୁଖୀ ନାହାନ୍ତି ଭଙ୍ଗିରେ ଜଣାଯାଏ । ଡାଇରେକ୍‌ଟର ଓ ଇନ୍‌ସ୍ପେକ୍‌ଟରମାନେ ଯଥୋଚିତରପେ ବିଦ୍ୟାଳୟ ସବୁ ଦୃଷ୍ଟି କରି ନାହାନ୍ତି ବୋଲି ଗବର୍ଣ୍ଣମେଣ୍ଟର ତହିଁ ପ୍ରତି ଭିନ୍ନ ଆଜ୍ଞା ହେବ ସଂପ୍ରତି ଡାଇରେକ୍‌ଟର ସାହେବଙ୍କୁ ଆଦେଶ ହୋଇଅଛି ଯେ ନିତାନ୍ତରେ ଦୁଇ ବର୍ଷରେ ଥରେ ପ୍ରତ୍ୟେକ ଜିଲା ସନ୍ଦର୍ଶନ କରିବେ ଏରପ ହେଲେ ଡାଇରେକ୍‌ଟର ସାହେବଙ୍କୁ ଲୋକେ ଦେଖି ପାରିବେ ଏ ଗୋଟିଏ ଲାଭ ଅଟଇ ଓ ଦାର୍ଜିଲିଙ୍ଗର କିଛି ବିଶେଷ କ୍ଷତି ହେବ କାରଣ ଅନ୍ୟ କୌଣସି ଉଚ୍ଚକର୍ମଚାରୀ ଏହାଙ୍କ ପରି ସେଠାରେ ଦୀର୍ଘକାଳ ଅବସ୍ଥିତି କରନ୍ତି ନାହିଁ ।

*ଭା ୭ଗ, ସଂ୧୪ଖ୍ୟା ,୬।୩।୧୮୭୨*

## ଉତ୍କଳପୁସ୍ତକର ଅଭାବ ।

ଗତବର୍ଷର ଶିକ୍ଷାବିଭାଗର ବିଜ୍ଞାପନୀ ସମାଲୋଚନା ସମ୍ପର୍କରେ ଶ୍ରୀଯୁକ୍ତ ଲେଫ୍‌ଟନଣ୍ଟ ଗବର୍ଣ୍ଣରସାହେବ ଓଡ଼ିଶାର ବିଦ୍ୟାଳୟ ଓ ଶିକ୍ଷା ସମ୍ବନ୍ଧରେ ଯାହା କହିଥିଲେ ଏଥିପୂର୍ବ ସପ୍ତାହରେ ତାହା ପାଠକମାନଙ୍କୁ ଜଣାଇଅଛୁଁ । ସେହି ବାକ୍ୟମାନଙ୍କର ଶେଷରେ ଲେଖାଥିଲା ଯେ ଓଡ଼ିଶାରେ ଅବଧି ଭାଷା ପାଠ୍ୟପୁସ୍ତକର ଅଭାବ ଅଛି କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ମାନ୍ୟବର କାମ୍ବଲସାହେବ ଏତେବଡ଼ ବିଷୟଟାର ଉଲ୍ଲେଖ କରି ତହିଁରେ କିଛିମାତ୍ର ମତ ପ୍ରକାଶ କଲେ ନାହିଁ । ଏତାଦୃଶ ଗୁରତର ବିଷୟରେ ଆମ୍ଭେମାନେ ଶ୍ରୀଯୁକ୍ତ କାମ୍ବଲସାହେବଙ୍କୁ କେବେହେଁ ନୀରବ ରହିବାର ଦେଖି ନାହୁ । ତାହାଙ୍କର ସ୍ୱଭାବ ଆମ୍ଭମାନଙ୍କୁ ଏରପ ସତେଜ ଜଣାଯାଏ ଯେ ଅତି ତୁଚ୍ଛକଥାରେ ସୁଦ୍ଧା ତାହାଙ୍କ ଦୃଷ୍ଟିପଡ଼ିଲେ କଥାଏ ନ କହି କ୍ଷାନ୍ତ ହୁଅନ୍ତି ନାହିଁ ଓ ହୁଅଇତ ଭଦ୍ଦଣ୍ଡେ ଦ୍ୱିଚାରିଖଣ୍ଡ ମନ୍ତବ୍ୟ ଲିପି ପ୍ରଚାର କରନ୍ତି । ଆମ୍ଭେମାନେ ଦେବରାଜଙ୍କ ପ୍ରାୟ କାମ୍ଭେଲସାହେବଙ୍କୁ ସହସ୍ରଲୋଚନରେ ଭୂଷିତ ଥିବାର ଜ୍ଞାନ କରଁ କାରଣ ଏହାଙ୍କ ଦୃଷ୍ଟି ଅନୁକ୍ଷଣେ ଚାରିଆଡ଼େ ପଡ଼ିଥାଏ ତେବେ ଲୋଚନଗୁଡ଼ିକ ସବୁ ଏକାପ୍ରକାର ଏମନ୍ତ ଆମ୍ଭେମାନେ ବୋଲୁଁ ନାହୁଁ କୌଣସି ଲୋଚନର ବିମଳ ଅମୃତମୟ କିରଣ ଅନୁକ୍ଷଣେ ନିର୍ଗତ ହୋଇ ଯେଉଁଠାରେ ପଡୁଅଛି ସେସ୍ଥାନରେ ମୃତ ସଂଜୀବନୀମନ୍ତର କାର୍ଯ୍ୟ କରଅଛି ଓ କୌଣସି ଲୋଚନର କଠୋର ଅଗ୍ନିମୟ କିରଣ ପ୍ରଖର ବେଗରେ ବିସ୍ତାରିତ ହୋଇ ଯେଉଁ ସ୍ଥାନରେ ପଡୁଅଛି ତାହାକୁ ସଦ୍ୟ ଦଗ୍ଧ କରଅଛି । ହେଲେ ହେଁ ଭଲ ହେଉ ଅବା ମନ୍ଦ ହେଉ କୌଣସି ଫଳ ଭୋଗ କର ନାହିଁ ଏମନ୍ତ ବିଷୟ ନାହିଁ କିନ୍ତୁ ଉତ୍କଳ ଭାଷାପୁସ୍ତକ ଅଭାବ ବିଷୟଟି କାହିଁକି ଏମନ୍ତ ଲୋକରଚିତ୍ତକୁ ଆକର୍ଷଣ କରିପାରି ନାହିଁ ଆମ୍ଭେମାନେ ବୁଝିବାକୁ ଅସମର୍ଥ ହେଲୁଁ ବିଶେଷରେ ଆଜିକାଲି ଶ୍ରୀଯୁକ୍ତ କାମ୍ବଲସାହେବ ସବୁପ୍ରକାର ଶିକ୍ଷା ଉଠାଇଦେଇ କେବଳ ପ୍ରଦେଶୀୟ ପ୍ରଚଳିତ ଭାଷା ଶିଖାଇବାରେ ମାତିଅଛନ୍ତି ଏମନ୍ତ ସମୟରେ ତାହାଙ୍କ ଦୃଷ୍ଟି ଏଥିରେ ପଡୁ ନାହିଁ ଆଶ୍ଚର୍ଯ୍ୟ ଅଟଇ ।

ଓଡ଼ିଆଭାଷା ପୁସ୍ତକର ଅଭାବ ଥିବା କିଛି ଗବର୍ଣ୍ଣମେଣ୍ଟଠାରେ ନୂଆକଥା ନୁହଇ ପ୍ରାୟ ଚାରି ପାଞ୍ଚ ବର୍ଷ ହେବ ତହିଁର ଆନ୍ଦୋଳନ ହେଉଅଛି ଓ ନ୍ୟୂନାଧିକରେ ଗବର୍ଣ୍ଣମେଣ୍ଟ ତହିଁରେ ଉପାୟ କରିବାର ଚିହ୍ନମଧ ଦେଖାଇ ଅଛନ୍ତି । କିନ୍ତୁ ସେ ଉପାୟମାନ କେତେଦୂର ଫଳପ୍ରଦ ହୋଇଅଛି ଓ କାହିଁକି ଅବା ଆଶାନୁରପ ହେଉ ନାହିଁ ତହିଁର ପ୍ରକୃତ ଅନୁସନ୍ଧାନ ଗବର୍ଣ୍ଣମେଣ୍ଟ କିମ୍ୱା ଶିକ୍ଷା ବିଭାଗର କର୍ମଚାରିମାନେ କର ନାହାନ୍ତି ସୁତରାଂ ଯେସମସ୍ତ ପ୍ରତିବନ୍ଧକମାନ ଅବଧି ରହିଅଛି ତହିଁର ପ୍ରତିକାର ହୋଇପାର ନାହିଁ ଅବଧି ଗବର୍ଣ୍ଣମେଣ୍ଟଙ୍କ ଉପାୟ ମଧରେ କେବଳ ଗୋଟିଏ ଉକ୍ଳପୁସ୍ତକ ପରୀକ୍ଷା କରିବାର ସମାଜ ସ୍ଥାପନ ଅଟଇ । ଏ ସଭାର ଏହି କାର୍ଯ୍ୟ ଯେ ବିଦ୍ୟାଳୟର ପାଠ୍ୟପୁସ୍ତକ କେହି ରଚନା କରି କଲିକତା ସ୍କୁଲବୁକ୍ ସୋସାଇଟୀଙ୍କୁ ଦେଲେ ଉକ୍ତ ପୁସ୍ତକ ପାଠ ଯୋଗ୍ୟ ହୋଇଅଛି କି ନା ତାହା ଜାଣିବା କାରଣ ଏ ସମାଜକୁ ପଠାଇବେ ଓ ସମାଜର ମନୋନୀତ ହେଲେ ସୋସାଇଟୀ ପୁସ୍ତକ କ୍ରୟ କରି ନେଇ ମୁଦ୍ରିତ ଓ ବିକ୍ରୟ କରିବେ କିନ୍ତୁ କାର୍ଯ୍ୟତଃ ତାହା ଦେଖା ନାହିଁ । କେଉଁ କେଉଁ ବିଷୟରେ ପୁସ୍ତକ ଲୋଡ଼ା ଓ ସୋସାଇଟୀ କି ନିୟମରେ ଓ କି ମୂଲ୍ୟ ଦେଇ ପୁସ୍ତକ ଗ୍ରହଣ କରିବେ ଏବଂ ଲୋକେ ବା କାହାଦ୍ୱାରା କିପରି ରଚିତ ପୁସ୍ତକମାନ ପଠାଇବେ ତହିଁର କିଛି ଘୋଷଣା ଦିଆ ଯାଇ ନାହିଁ ଓ ଏଠା ସମାଜକୁ ଯେ ଯେଉଁ ପୁସ୍ତକ ଦେଉଅଛି ତାହା ତାହାଠାର ନେଇ ତହିଁରେ ମତ ଦେଉଅଛନ୍ତି ତାହା କିରପେ ଛାପା ହେବ ଓ ସେ ବିଷୟରେ ଆଉ କିଛି ପୁସ୍ତକ କେହି ଲେଖି ଅଛି କିମ୍ୱା ପାରେ କି ନାହିଁ ତହିଁର କିଛି ସମ୍ବାଦ ସାଧାରଣଙ୍କୁ ଦିଆ ଯାଉ ନାହିଁ । ଢେଙ୍କାନାଳ ମହାରାଜ କେତେଗୁଡ଼ିଏ ଟଙ୍କା ଦେଇଥିଲେ ତହିଁ ଦ୍ୱାରା କେତେ ଗୁଡ଼ିଏ ପୁସ୍ତକ ହୋଇଗଲା ମାତ୍ର ସେ ସବୁ ଯେ ନିୟମ ମତ ହେଲା ଏମନ୍ତ ବୋଲାଯାଇ ନ ପାରେ । ସୋସାଇଟୀ ଯେ ଏ କେତେ ବର୍ଷ ମଧରେ ଖଣ୍ଡିଏ ସୁଦ୍ଧା ଭଲ ପୁସ୍ତକ ମୁଦ୍ରିତ କରିଅଛନ୍ତି ଏମନ୍ତ ଦେଖା ଯାଉ ନାହିଁ ଫଳତଃ ସବୁ କାର୍ଯ୍ୟ ହେଲା ଶ୍ରଦ୍ଧାରେ ଚଳୁଅଛି ସୋସାଇଟୀ ଓ ଅତ୍ରତ୍ୟ ସମାଜ ମଧରେ ପରସ୍ପର ଐକ୍ୟତା ଅଛି କି ନାହିଁ ସନ୍ଦେହ ଏବଂ ଶିକ୍ଷା ବିଭାଗର କର୍ମଚାରିମାନେ କେତେ ଦୂର ଏ ବିଷୟରେ ଯତ୍ନବାନ୍ ବୋଲାଯାଇ ନ ପାରେ । ଗବର୍ଣ୍ଣମେଣ୍ଟଙ୍କୁ ଯେ କେହି ଜଣାଇବ ଏମନ୍ତ ସାହସ କାହାର ଅଛି । ଶିକ୍ଷା ବିଭାଗର ବ୍ୟୟ ଲାଘବ କରିବାର ଚେଷ୍ଟା ଦେଖି ସମସ୍ତେ ହତାଶ ହୋଇ ଅଛନ୍ତି ଓ କୌଣସି ପ୍ରସ୍ତାବ କରିବାର ସମୟ ପରିବର୍ତ୍ତନ ନୁହଇ ବୋଲି ମନରେ କରି କେହି କିଛି କହୁ ନାହାନ୍ତି ଏଥିରେ ଉକ୍ଳ ପୁସ୍ତକର ଅଭାବ କିରପେ ମୋଚନ ହେବ ?

*ଭା ୭ଗ, ସଂ ୧୬ ଖ୍ୟା, ୨୦।୪।୧୮୭୨*

## ନୂତନପୁସ୍ତକର ସମାଲୋଚନା ।

୧। ଉକ୍ଳ ଭାଷା ବ୍ୟାକରଣ- ବାବୁ ନିମାଇ ବଲ୍ଲଭ ଭଟ୍ଟାଚାର୍ଯ୍ୟଙ୍କ ଦ୍ୱାରା ସଂକଳିତ ଏବଂ କଟକ ପ୍ରିଣ୍ଟିଂକମ୍ପାନିଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ।

୨। ଓଡିୟା ବ୍ୟାକରଣମଞ୍ଜରୀ- ଶ୍ରୀଯୁକ୍ତ କୈଳାଶ୍ଚନ୍ଦ୍ରଶର୍ମାଙ୍କ ଦ୍ୱାରା ରଚିତ ଏବଂ ଶ୍ରୀ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକଙ୍କ ଦ୍ୱାରା ଶୋଧିତ ଓ ବର୍ଦ୍ଧିତ, କଲିକତା ବାପ୍‌ଟିଷ୍ଟ ମିଶନଯନ୍ତ୍ରାଳୟରେ ମୁଦ୍ରିତ ।

ଆମ୍ଭେମାନେ ଏ ଦୁଇଖଣ୍ଡ ପୁସ୍ତକ ପ୍ରାୟ ଏକାସମୟରେ ଅନେକ ଦିନ ହେଲା ପ୍ରାପ୍ତ ହୋଇ ଅବକାଶାଭାବର ଅବଧି ଏ ଦୁଇ ବିଷୟରେ କିଛିମାତ୍ର ମତ ପ୍ରକାଶ କରି ପାରି ନ ଥିଲୁଁ । ଦୁଇ ପୁସ୍ତକଯାକ ଅଳ୍ପବୟସ୍କ ବାଳକ ଅର୍ଥାତ୍ ଯେଉଁମାନେ ପ୍ରଥମେ ଶିକ୍ଷା ଆରମ୍ଭ କରନ୍ତି ତାହାଙ୍କ ପଠନନିମିତ୍ତ ପ୍ରସ୍ତୁତ ହୋଇଅଛି ଓ ଦୁଇପୁସ୍ତକ ଏଜିଲାର ଦୁଇ ଡେପୁଟୀ ଇନସ୍ପେକ୍‌ଟରଙ୍କଦ୍ୱାରା ରଚିତ ବା ପ୍ରକାଶିତ ହୋଇଅଛି ମୃତ କୈଳାଶ୍ଚନ୍ଦ୍ର ତର୍କାଳଙ୍କାର ଯେତେବେଳେ ଓଡିୟା ବ୍ୟାକରଣମଞ୍ଜରୀ ରଚନା କଲେ ତେତେବେଳେ ଓଡିୟା ଭାଷାରେ ପ୍ରଥମ ପାଠ୍ୟ ବ୍ୟାକରଣ ନ ଥିଲା ଓ ସେକାଳରେ ଓଡିୟା ଭାଷାର ଶିକ୍ଷା ମଧ ଉଚିତମତେ ହେଉ ନ ଥିବାର କେମନ୍ତ ପ୍ରକାରେ ଗୋଟିଏ ଅଭାବ ମୋଚନ ଉଦ୍ଦେଶରେ ତର୍କାଳଙ୍କାର ମହାଶୟ ଉକ୍ତ ପୁସ୍ତକ ପ୍ରକାଶ କରି ଆପଣା କାର୍ଯ୍ୟ ଚଳାଇ ଥିଲେ । ସ୍କୁଲବୁକ୍ ସୋସାଇଟୀ ଏଣିକି ସେହି ପୁସ୍ତକ ମୁଦ୍ରିତ କରି ବିକ୍ରୟ କରି ଆସୁଅଛନ୍ତି ମାତ୍ର ବର୍ତ୍ତମାନ ସମୟର ଶିକ୍ଷାଦାନ ଦୃଷ୍ଟିରେ ତଦ୍ୱାରା କଳ୍ପିତ ପ୍ରୟୋଜନ ନିର୍ବାହ ହେବାର କଦାଚ ବୋଲାଯାଇ ନ ପାରେ ଓ ଯଦ୍ୟପି କି

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ଏଥିରେ ସନ୍ଧି ପ୍ରକରଣଟି ଯୋଗେ ଅନେକାଂଶରେ ପୁସ୍ତକର ମର୍ଯ୍ୟାଦା ବଢାଇ ଅଛନ୍ତି ଏମନ୍ତ କି ତେତକ ନ ଥିଲେ ପୁସ୍ତକ ଏକକାଳରେ ବ୍ୟର୍ଥ ହୋଇଥାନ୍ତା ତଥାଚ ଆମ୍ଭେମାନେ ବିବେଚନା କରଁ ଯେ ବାବୁ ନିମାଇ ବଲ୍ଲଭଙ୍କ ଭାଷାବ୍ୟାକରଣଦ୍ୱାରା ସମ୍ୟକ୍‌ରପେ ଉକ୍ତ ପୁସ୍ତକ ସ୍ଥାନାନ୍ତରିତ ହୋଇଅଛି । ବ୍ୟାକରଣମଞ୍ଜରୀ ସପକ୍ଷକର ଏମନ୍ତ କୌଣସି ଗୁଣ ବୋଲାଯାଇ ନ ପାରେ କି ଯାହା ଭାଷା ବ୍ୟାକରଣରେ ଲକ୍ଷିତ ହେଉ ନାହିଁ । ଅଧିକନ୍ତୁ ଭାଷାବ୍ୟାକରଣରେ ଦେଖାଯାଏ ଯେ ନବପାଠକଙ୍କୁ ଶିକ୍ଷା ଦେବାପାଁଇ ଯେତକ ପ୍ରୟୋଜନ ତେତକ ସରଳ ଭାଷାରେ ଏବଂ ସୁଶୃଙ୍ଖଳାରେ ଲିପିବଦ୍ଧ ହୋଇଅଛି । ଆମ୍ଭେମାନେ ଆଶା କରଁ ଯେ ଏଣିକି ବ୍ୟାକରଣମଞ୍ଜରୀକୁ ସମସ୍ତ ପାଠଶାଳାର ଅବସର ଦିଆଯାଇ ଉତ୍କଳଭାଷା ବ୍ୟାକରଣକୁ ସର୍ବତ୍ରରେ ସ୍ଥାନ ଦିଆଯାଉ କାରଣ ପ୍ରତିବର୍ଷ ବାଳକମାନଙ୍କୁ ଏକ ଏକ ପ୍ରକାର ଅନର୍ଥକ ପୁସ୍ତକ କ୍ରୟ କରାଇବାରେ କୌଣସି ଫଳ ନାହିଁ ବରଂ ତହିଁରେ ବାଳକମାନଙ୍କର କର୍ତ୍ତାମାନେ ବିରକ୍ତ ହୁଅନ୍ତି ।

*ଭା୭ଗ, ସଂ୧୭ଖ୍ୟା, ୨୭।୪।୧୮୭୨*

## ଦେଶଭାଷାର ଉନ୍ନତି ।

ଓଡ଼ିଶାର ମାତୃଭାଷା ଓଡ଼ିଆ ଅଟଇ ଯାବତୀୟ ସରକାରୀ କାର୍ଯ୍ୟାଳୟର ସମସ୍ତକାର୍ଯ୍ୟ ଏହି ଭାଷାରେ ଚଳଇ ଏବଂ ଗବର୍ଣ୍ଣମେଣ୍ଟ ଦେଶୀୟ ଭାଷାରେ ଲୋକଙ୍କୁ ଶିକ୍ଷିତକରାଇବା ପାଇଁ ବିଶେଷ ବ୍ୟୟ କରଅଛନ୍ତି ଓ କାର୍ଯ୍ୟାଳୟମାନଙ୍କରେ ଶୁଦ୍ଧଭାଷାରେ ଲିଖନ ପଠନ ହେବା ପାଁଇ ଯତ୍ନବାନ୍ ଅଛନ୍ତି । ମାତ୍ର ଦୁଃଖର ବିଷୟ ଯେ କାର୍ଯ୍ୟାଳୟର ଭାରପ୍ରାପ୍ତ ହାକିମମାନେ କିଛିମାତ୍ର ଏ ବିଷୟରେ ମନୋଯୋଗ କର ନାହାନ୍ତି ଶୁଦ୍ଧାଶୁଦ୍ଧ ଏବଂ ସହଜରେ ପଢି ଅର୍ଥ ବୁଝିବା ପ୍ରତି କୌଣସି ପ୍ରକାର ଦୃଷ୍ଟି ନ ରଖି ସରକାରୀ କାର୍ଯ୍ୟାଳୟର ଲେଖକମାନେ ଯେ ଯାହା ଇଚ୍ଛାନୁସାରେ ଲେଖାପଢି କରନ୍ତି । ଏଥିରେ ଯେ ଦିନ ଦିନ ଦେଶୀୟଭାଷା କେଡ଼େ ନିକୃଷ୍ଟ ଅବସ୍ଥାକୁ ଇଭୁଅଛି ବୋଲିବାର ବାହୁଲ୍ୟ । ମାତ୍ର ଆମ୍ଭମାନଙ୍କର ବର୍ତ୍ତମାନ ଜଜ୍ ସାହେବ ଶ୍ରୀଯୁକ୍ତ ବ୍ରାଉନ ସାହେବ ଏ ଅନିଷ୍ଟ ନିବାରଣ ପକ୍ଷରେ ଯତ୍ନବାନ୍ ହେବାର ଦେଖି ଅତିଶୟ ଆନନ୍ଦିତ ହେଲୁଁ । ସେ ସମ୍ପ୍ରତି କେତେଗୁଡ଼ିଏ ଓଡିଆ ଲେଖିବାର ଧାରା ନିଶ୍ଚୟକରି ବିଜ୍ଞାପନ ଦେଇଅଛନ୍ତି ଯେ ଉକ୍ତ ନିୟମାନୁସାରେ ଯେ କେହି ଦରଖାସ୍ତ ଲେଖକ ଦରଖାସ୍ତଆଦି ନ ଲେଖିବ ତାହାକୁ କଚେରୀରେ ଲେଖାପଢ଼ି କରିବାକୁ ଅନୁମତି ଦେବେ ନାହିଁ । ତାହାଙ୍କର ଏମନ୍ତ ଇଚ୍ଛା ଯେ ଏ ନିୟମମାନ ପ୍ରତିପାଳିତ ହେଲା ଉତ୍ତାର ସେ ଆଉ କେତେକ ନିୟମ ପ୍ରଚାରିତ କରି ଶୁଦ୍ଧ ଲେଖିବାର ରୀତି ପ୍ରଚଳ କରିବେ । ଆମ୍ଭେମାନେ ଭରସାକରଁ ଯେ ଅନ୍ୟ ହାକିମମାନେ ଆପଣା ଆପଣା ମହକୁମାରେ ଶୁଦ୍ଧ ଭାଷାରେ ଲେଖାପଢିର ନିୟମ ପ୍ରଚଳ ପକ୍ଷରେ ଏହିପରି ଉଦ୍ୟମ କରନ୍ତୁ ତାହା ହେଲେ ଗବର୍ଣ୍ଣମେଣ୍ଟ ଯେତେ ବ୍ୟୟକରି ଲୋକଙ୍କୁ ଶିକ୍ଷାଦାନ ଦେଉ ଅଛନ୍ତି ତାହା ସାର୍ଥକ ହେବ । ଓଡ଼ିଶାବାସିମାନେ ଯେ ଆପାଣା ମାତୃଭାଷା ପ୍ରତି କିଛି ମାତ୍ର ମନୋଯୋଗୀ ହେଉ ନାହାନ୍ତି ବଡ଼ ଶୋଚନୀୟ ବିଷୟ ଅଟଇ । ଏଥିରେ ଏମାନେ ସଭ୍ୟଦେଶର ଲୋକଙ୍କ ଠାରେ କେବଳ ନିନ୍ଦାର ଭାଜନ ହେଉଅଛନ୍ତି ।

*ଭା୭ଗ, ସଂ୨୫ଖ୍ୟା, ୨୨।୬।୧୮୭୨*

## ଓଡ଼ିୟାମାନଙ୍କ ହିତସାଧନ ।

ବଙ୍ଗଳାର ଲେଫ୍‌ଟନେଣ୍ଟ ଗବର୍ଣ୍ଣର ମାନ୍ୟବର କାମ୍ବଲ ସାହେବ ଓଡ଼ିୟାଭାଷାପ୍ରତି କିଞ୍ଚିତ୍ ସୁଦୃଷ୍ଟି ନିକ୍ଷେପ କରି ଓଡ଼ିଶାବାସିମାନଙ୍କୁ ସରକାରୀ ଉଚ୍ଚକର୍ମ ଦେବାର ମନସ୍ଥ କରିବାର ହିନ୍ଦୁପେଟ୍ରିଅଟର ସମ୍ପାଦକ ବଡ଼ ବିରକ୍ତ ହୋଇଅଛନ୍ତି । ସେ ବୋଲନ୍ତି ଯେ ବଙ୍ଗାଳିମାନେ ବିଦ୍ୟା ବୁଦ୍ଧିରେ ଅତିଶୟ ନିପୁଣ ହେବାର ସେମାନେ କେବଳ ନିଜ ବଙ୍ଗଳାରେ ସରକାରୀ କର୍ମ ପାଇବା ଛଡା ବେହାର ଓଡ଼ିଶା ଓ ଆସାମରେ କର୍ମ ପାଉଅଛନ୍ତି । ମାତ୍ର ବର୍ତ୍ତମାନର ଗବର୍ଣ୍ଣମେଣ୍ଟ ତାହାଙ୍କୁ ଆପଣା ହତା ମଧରେ ବନ୍ଦ ରଖି ବେହାରୀ, ଓଡ଼ିୟା ଓ ଆସାମୀମାନଙ୍କୁ ଆପଣା ଆପଣା ସୀମା ମଧରେ କର୍ମ ଦେବାକୁ ମନସ୍ଥ କରିଅଛନ୍ତି ସେମାନଙ୍କଠାରେ ତାଦୃଶ ଗୁଣ ଥାଉ କି ନ ଥାଉ ତହିଁର

କିଛି ବିଚାର ନାହିଁ । ସମ୍ପାଦକଙ୍କ ମତରେ ଏରପ ନିୟମଦ୍ୱାରା କେବଳ ଜାତି ବୈରତା କି ଯାହା ଅବଧି ଜଣା ନ ଥିଲା ସଂଜାତ ହେବ । ପ୍ରକୃତରେ ବଙ୍ଗଳା ଓ ବେହାରର ଭାଷା ଏକ ମୂଳର ଜନ୍ମ ହୋଇଥିଲେ ଅନେକ ରପାନ୍ତର ଦେଖାଯାଏ ମାତ୍ର ବଙ୍ଗଳା ଓଡ଼ିୟାରେ ସେପରି ନାହିଁ ଅତଏବ ଜ୍ଞାନବାନ୍ ରାଜନୀତିଜ୍ଞର କର୍ତ୍ତବ୍ୟ ଯେ ଏ ଦୁହିଙ୍କି ଏକ କରି ଦେବେ । ଅର୍ଥାତ୍ ଓଡ଼ିଶାର ସବୁ ବ୍ୟବହାର ବଙ୍ଗଳା ଭାଷାରେ ଚଳିବାର ଆଜ୍ଞା ଦେବେ ।

ଓଡ଼ିୟା ବଙ୍ଗଳା ଭାଷା ଘେନି ଗତ ତିନିବର୍ଷର ଯେତେ ତର୍କ ବିତର୍କ ହେଲାଣି ତଦୁତ୍ତାର ଏ ବିଷୟରେ ଆଉ କିଛି କହିବା ଅନାବଶ୍ୟକ ଅଟଇ ବାସ୍ତବରେ ଏ ଦୁଇ ଭାଷା ଏକ କି ଭିନ୍ନ ସମ୍ପାଦକ ଥରେ ଥରେ ପକ୍ଷପାତ ଶୂନ୍ୟ ହୋଇ ଭାଳନ୍ତୁ ନୋହିଲେ ଏଡୁକେଶନଗଜେଟପରି ନିଃସ୍ୱାର୍ଥ ବ୍ୟକ୍ତିଙ୍କଠାର ଉପଦେଶ ଗ୍ରହଣ କରନ୍ତୁ ଅବଶ୍ୟ ତାହାଙ୍କର କୁସଂସ୍କାର ଛାଡିଯିବ ମାତ୍ର ଯେତେବେଳେ ହିନ୍ଦୁ ପେଟ୍ରିଅଟ ଆପଣା ନାମର ପ୍ରକୃତ ଅର୍ଥକୁ ବିସ୍ମରଣ କରି ସ୍ୱଜାତୀୟ ବର୍ଗଙ୍କୁ ଦାନାପାଣି ଯୋଗାଇବା ଉଦ୍ଦେଶରେ ଅପର ଦେଶବାସିମାନଙ୍କ ଉଚ୍ଛନ୍ନ ଚିନ୍ତା କରନ୍ତି ତେତେବେଳେ ଆମ୍ଭେମାନେ ତାହାଙ୍କୁ ହିନ୍ଦୁପେଟ୍ରିଅଟ ବୋଲିବା କି ବଙ୍ଗାଳୀ ପେଟ୍ରିଅଟ ବୋଲିବା ପାଠକମାନେ ବିଚାର କରନ୍ତୁ । ଗବର୍ଣ୍ଣମେଣ୍ଟ ଯେବେ ଓଡ଼ିୟାଙ୍କ ଉନ୍ନତି ଭାବିଲେ ପେଟ୍ରିଅଟ ସେ ଭାବନାକୁ ଜାତି ବୈରତା ଜ୍ଞାନ କଲେ କିନ୍ତୁ ପେଟ୍ରିଅଟ ସ୍ୱୟଂ ଯାହା ବାଞ୍ଛା କରନ୍ତି ତାହା ଜାତି ବୈରତା ନୁହଇ । ତାହା କେବଳ ସ୍ୱାର୍ଥସାଧନ । ଓଡିୟା ଓ ବଙ୍ଗାଳିମାନେ ଯେବେ ଆପଣା ଆପଣା ସୀମା ମଧରେ ରହି କର୍ମାନୁସାରେ ଅନ୍ନଜଳ ଲାଭ କରି ନିଶ୍ଚିନ୍ତ ରହନ୍ତି ତେବେତ ନିଃସନ୍ଦେହ ଦୁହିଙ୍କ ମଧରେ ଜାତି ବୈରତା ଜାତ ହେଲା ଗବର୍ଣ୍ଣମେଣ୍ଟ ଯେବେ ଏମନ୍ତ ନ କରି ବଙ୍ଗାଳିମାନଙ୍କୁ ଓଡ଼ିୟାଙ୍କ ଘରେ ପଶି ତାହାଙ୍କ ଉପାର୍ଜିତ ଧନ ଖାଇବା ପକ୍ଷରେ ସାହାଯ୍ୟ କରନ୍ତି ଓ ଓଡ଼ିୟାମାନେ ବକ ବକ ହୋଇ ଚାହିଁ ରହିଥାନ୍ତି ତାହା ହେଲେ ସୁନ୍ଦର ସଦ୍ଭାବ ହେଲା । ବଡ଼ ଦୁଃଖର ବିଷୟ ଯେ ମାନ୍ୟବର କାମ୍ବଲ ସାହେବ ଏମନ୍ତ ନିଃସ୍ୱାର୍ଥ ଉପଦେଶ ଗ୍ରହଣ କର ନାହାନ୍ତି ଏବଂ ଅଧିକତର ଦୁଃଖର ବିଷୟ ଯେ ଓଡ଼ିୟାମାନେ ପ୍ରକୃତ ଦେଶାନୁରାଗ ବୃତ୍ତି ଅବଲମ୍ବନ ପୂର୍ବକ ଗବର୍ଣ୍ଣମେଣ୍ଟଙ୍କୁ ଏମନ୍ତ ଦୁଶ୍ଚିନ୍ତାର କ୍ଷାନ୍ତ ରହିବାକୁ ଅନୁରୋଧ କର ନାହାନ୍ତି ।

ଉପସଂହାରସ୍ଥଳେ ବକ୍ତବ୍ୟ ଏହିକି ଯେସ୍ଥଳେ ବାବୁ ରାଜେନ୍ଦ୍ରଲାଲ ମିତ୍ର ଏ କଥାର ସୂତ୍ରପାତ କରନ୍ତି ସେସ୍ଥଳେ ହିନ୍ଦୁପେଟ୍ରିଅଟ ଯେ ଏତେକାଳ ନୀରବ ଥିଲେ ବଡ଼ ଆଶ୍ଚର୍ଯ୍ୟର ବିଷୟ ଅଟଇ । ବୋଧ ହୁଅଇ ଆଉ ଏଣିକି ସମ୍ଭାଳିପାରିଲେ ନାହିଁ । ଓଡ଼ିୟାଙ୍କ ପ୍ରତି ଏହାଙ୍କର ଯେତେ ସ୍ନେହ ତାହା ଆମ୍ଭେମାନେ ପୂର୍ବର ଜାଣିଅଛୁଁ । ଏହି ସମ୍ପାଦକ ପରା ବାଲେଶ୍ୱର ଜମିଦାରଙ୍କର ଅନ୍ୟାୟ ରସୁମଗ୍ରହଣ ସମ୍ପର୍କରେ କହିଥିଲେ ଯେ ବଙ୍ଗାଳୀ ଜମିଦାର କେହି ଏପରି ରସୁମ ନିଅନ୍ତି ନାହିଁ । ପଛକୁ ସିନା ଦିବ୍ୟଜ୍ଞାନ ବାହାରିଲା ଓ ତାହାକି ବିନା ହେତୁରେ ହୋଇଥିବ ?

*ଭା୭ଗ, ସଂ୨୯ଖ୍ୟା, ୨୦।୭।୧୮୭୨*

## ଗଞ୍ଜାମଜିଲାର ଓଡ଼ିୟା ସ୍କୁଲ ସମୂହ ।

ଗଞ୍ଜାମଜିଲାର ବହୁତର ସ୍ଥଳରେ ଓଡ଼ିୟା ଭାଷା ପ୍ରଚଳ, ଏମନ୍ତ କି ସେ ଜିଲାକୁ ଓଡ଼ିଶାର ଅନ୍ତର୍ଗତ ବୋଲାଯାଇ ପାରେ । ବାସ୍ତବରେ ପୂର୍ବକାଳରେ ଓଡ଼ିଶାର ସୀମା ଗଞ୍ଜାମର ଦକ୍ଷିଣରେ ଥିଲା । ଇଂରାଜଙ୍କ ଶାସନ ସମୟରେ ଗଞ୍ଜାମ ମାନ୍ଦ୍ରାଜ ପ୍ରଦେଶରେ ଭୁକ୍ତ ହେବାର ସେଠାର କଚେରୀର କର୍ମମାନ ତୈଲଙ୍ଗ ଭାଷାରେ ନିର୍ବାହ ହେଲା ଓ ଯଦ୍ୟପି ଅବଧି କିଛି କିଛି ଓଡ଼ିୟା ଗବର୍ଣ୍ଣମେଣ୍ଟ ମହକୁମାମାନଙ୍କରେ ଅଛି ତାହା ଅତି ସାମାନ୍ୟ ଓ ତହିଁପ୍ରତି ଉତ୍ତମ ମନୋଯୋଗ ଦିଆଯାଏ ନାହିଁ ସମ୍ପ୍ରତି ସେସ୍ଥାନର ଗବର୍ଣ୍ଣମେଣ୍ଟ ଏ ଜିଲାରେ ଓଡ଼ିୟା ଭାଷାର ଶିକ୍ଷା ଅଧିକତର ଦେବା ଏବଂ ଓଡ଼ିୟାଙ୍କ ଉନ୍ନତି ପକ୍ଷରେ ଯତ୍ନବାନ୍ ହୋଇଅଛନ୍ତି । ଆଶା ହୁଅଇ ଯେ ଏଥିର ସୁଫଳ ଜାତ ହେବ ଓ ବହୁକାଳର ଅପଦସ୍ଥ ହୋଇଥିବା ଓଡ଼ିୟାମାନେ ଅଳ୍ପକାଳ ମଧରେ ଆପଣା ଅବସ୍ଥା ବୃଦ୍ଧି କରିପାରିବା ଆବଶ୍ୟକ ।

ଛତ୍ରପୁର ଲୋକଲଫଣ୍ଡ ବୋର୍ଡଙ୍କ ଗତ ଜୁନମାସ ତା୨୦ରିଖ ସନ ୧୮୭୨ ମସିହା ଅଧିବେଶନର

## ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ବିଜ୍ଞାପନୀର ପ୍ରକାଶ ଯେ ସନ ୧୮୭୧-୭୨ ମସିହାରେ ଛତ୍ରପୁର ସରକଲ ମଧ୍ୟରେ ତେଲିଙ୍ଗ ସ୍କୁଲ ୨୦ କୁ ୩୩୨ ପିଲା ଥିଲେ ତହିଁ ମଧ୍ୟର ଜ୨୭୨ଣର ପରୀକ୍ଷା ହେବାରେ ଜ୨୦୦ଣ ଉତ୍ତୀର୍ଣ୍ଣ ହେଲେ । ୨୯ ଗୋଟା ଓଡ଼ିଆ ବିଦ୍ୟାଳୟକୁ ଜ୩୫୦ଣ ବାଳକ ଏଥି ମଧ୍ୟର ଜ୨୮୪ଣ ପରୀକ୍ଷା ଦେବାକୁ ଉପସ୍ଥିତ ହେବାରେ ଜ୨୨୩ଣ ଉତ୍ତୀର୍ଣ୍ଣ ହେଲେ ୨ଟା ହିନ୍ଦୁସ୍ଥାନୀ ସ୍କୁଲରେ ଜ୨୫ଣ ଛାତ୍ର ତହିଁ ମଧ୍ୟରୁ ଜ୨୦ଣର ପରୀକ୍ଷା ହୋଇଥିଲା ଯେ ତହିଁରେ ଜ୧୨ଣ କୃତକାର୍ଯ୍ୟ ହେଲେ । ଏମନ୍ତ ଗୋ୫୦ଟି ବିଦ୍ୟାଳୟ ଟ୯୦୯୪ଙ୍କା ଅର୍ଥଦାନ ପାଉଅଛନ୍ତି ।

ଏହି ବିଜ୍ଞାପନୀର ଆଉ ଏକସ୍ଥଳରେ ଦେଖାଯାଏ ଯେ ସୋମପେଟା ଓ ଇଚ୍ଛାପୁର ତାଲୁକ ସହିତ ବରହମପୁର ତାଲୁକ ମିଶି ତେଲିଙ୍ଗ ବିଭାଗ ଏବଂ ଗଞ୍ଜାମ ଆସକା ସୋରବା ଓ ରସୁଲକଣ୍ଡା ମିଶି ଓଡ଼ିଆ ବିଭାଗ ହୋଇଅଛି । ପୁନଶ୍ଚ ଓଡ଼ିଆ ସ୍କୁଲ ସବୁ ଓଡ଼ିଆ ଏବଂ ତେଲିଙ୍ଗ ସ୍କୁଲସବୁ ତେଲିଙ୍ଗୀ ଇନ୍‌ସ୍ପେକ୍ଟିଂ ସ୍କୁଲ ମାଷ୍ଟର ଅଧୀନ ରହିବାର ଆଜ୍ଞା ହୋଇଅଛି ।

ଏସବୁ ଜମିଦାରୀ ସ୍କୁଲର ବ୍ୟୟ କେଉଁ ନିୟମରେ ଦିଆଯାଏ ଆମ୍ଭମାନଙ୍କୁ ଜଣା ନାହିଁ ତଥାଚ ଗୋଟିଏ ଜିଲା ମଧ୍ୟରେ ତିନିପ୍ରକାର ଭାଷାସ୍କୁଲ ରହିବାର ଉଚିତ ବୋଧ ହେଉ ନାହିଁ । ଜିଲାର ସରକାରୀ କଚେରୀରେ ଯେଉଁ ଭାଷା ଚଳିବ ସେହି ଭାଷାର ବିଦ୍ୟାଳୟ ସାଧାରଣ ଧନର ହେବାର ଉଚିତ ଯେବେ ଯାହାର ଅପର ଭାଷା ଶିକ୍ଷା କରିବାକୁ ଇଚ୍ଛା ହେବ ତେବେ ସେ ସ୍ୱୟଂ ଉପାୟ କରିପାରେ । ଛତ୍ରପୁର ସରକଲର ଅବସ୍ଥାର ଜଣାଯାଏ ଯେ ଓଡ଼ିଆ ସେଠାର ଦେଶଭାଷା ଅଟଇ ଅର୍ଥାତ୍ ଅଧିକାଂଶ ଲୋକ ଏହି ଭାଷାରେ କାରବାର କରନ୍ତି ତେବେ ସେଠାରେ ଏତେ ତେଲିଙ୍ଗ ସ୍କୁଲ ରଖିବାର ପ୍ରୟୋଜନ କି ?

*ଭା୭ଗ, ସଂ୩୦ଖ୍ୟା, ୨୭/୭/୧୮୭୨*

### ଗତ ପ୍ରକାଶିତ ଗଞ୍ଜାମ ଗଜେଟରେ ତଳଲିଖିତ ବିଜ୍ଞାପନଟି ପ୍ରକାଶିତ ହୋଇଅଛି । ଯଥା "ରେବନିୟୁ ସରକୁଲର ।

ତେଲଙ୍ଗୀ ଭାଷାରେ ଲେଖାଇ ଓଡ୍ରଲୋକେ ଦାଖଲ କରିବା ଅର୍ଜିମାନଙ୍କରେ ଅର୍ଜିଦାରର ତାତ୍ପର୍ଯ୍ୟ ଜଣା କରିବାରେ ହୁଡ଼ିଲା ପରିରେ କେତେକଥୋର ଦୃଶ୍ୟ ହେଲା ଅର୍ଜିରେ ଜଣା କରିବାକୁ ଉଦ୍ଦେଶ୍ୟ କରିବା ଭାବ ଫିଟିଯାଇ ତହିଁକି ପ୍ରତ୍ୟକ୍ଷ ବିରଦ୍ଧ ହୋଇଥିବା ଭାବ କେତେକ ସଙ୍ଗତିରେ ସମ୍ଭବିଲା ଓଢ ଭାଷାରେ ଥିବା ଯାବନ୍ତ ଅର୍ଜି କଚେରୀମାନଙ୍କରେ ଦାଖଲ କରି ଘେନିବାର ହେଉଅଛି ବୋଲି ଓ ତେଲଙ୍ଗୀରେ ଲେଖା ହୋଇଥିଲେ କୌପ୍ରକାରେ ଶ୍ରଦ୍ଧା କରାଯାଉଅଛି କି ଓଢ୍ରରେ ଲେଖା ହୋଇଥିଲେ ମଧ ତେମନ୍ତ ଏକା ଶ୍ରଦ୍ଧା କରାଯିବ ବୋଲି ସର୍ବସାଧାରଣରେ ଜଣା ହୋଇ ନାହିଁ ।"

ଏଥିର ଜଣାଯାଏ ଯେ ତେଲିଙ୍ଗ ଭାଷା ଗଞ୍ଜାମର ମହକୁମାସବୁର ଉଠି ଯାଇ ନାହିଁ ମାତ୍ର ପୂର୍ବେ ଓଡ଼ିଆ ପ୍ରତି ଯେପରି ଅଶ୍ରଦ୍ଧା ଥିଲା ତାହା ଏଣକି ରହିବ ନାହିଁ । ସେ ଯାହା ହେଉ ଗଞ୍ଜାମଜିଲାର ଓଡ଼ିଆ ଭାଷାଟି ଅତି ଚମତ୍କାର ଅଟଇ ଓ ଯେବେ ଓଡ଼ିଆ ଭାଷାପ୍ରତି ସେ ଜିଲାରେ ବର୍ତ୍ତମାନ ଅଧିକ ମନୋଯୋଗ ହେଲା ତେବେ ଆମ୍ଭେମାନେ ବିଚାର କରୁଁ ଯେ ଗଞ୍ଜାମର କଲେକ୍ଟର ଜଣେ ଉପଯୁକ୍ତ ଅନୁବାଦକ ନିଯୁକ୍ତ କରି ତାହାଦ୍ୱାରା ଗଜେଟ ଲିଖିତ ବିଷୟମାନ ଶୁଦ୍ଧ ଓଡ଼ିଆରେ ପ୍ରଚାର କରନ୍ତୁ ତେମନ୍ତ ହେଲେ ଅବିଳମ୍ବରେ ସେଠା ଲୋକମାନେ ଉତ୍ତମ ଭାଷା ଶିକ୍ଷା କରିବାକୁ ସମର୍ଥ ହେବେ ।

*ଭା୭ଗ, ସଂ୩୨ଖ୍ୟା, ୧୦/୮/୧୮୭୨*

# ୧୮୭୩

## [ଉତ୍କଳଦର୍ପଣ]

ବାଲେଶ୍ୱରର ଉତ୍କଳଦର୍ପଣ କି ଯହିଁର ବିଜ୍ଞାପନ ଏଥିପୂର୍ବେ ଏ ପତ୍ରିକାରେ ପ୍ରକାଶିତ ହୋଇଥିଲା ଏହି ମାସରେ ବାହାରିଅଛି ଓ ଆମ୍ଭେମାନେ ତହିଁରେ ସାତିଶୟ ଆନନ୍ଦିତ ହୋଇଅଛୁଁ ଓ କୃତଜ୍ଞତାପୂର୍ବକ ଖଣ୍ଡିଏ ପତ୍ରିକା ପାଇବାର ସ୍ୱୀକାର କରଅଛୁଁ। ଉତ୍କଳଦର୍ପଣର ଉଦ୍ଦେଶ୍ୟ ମହତ୍ ଅଟେ ଓ ତାହା ସଫଳ ହେଲେ ଦେଶର ଅନେକ ଉପକାର ହେବ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ। ସୁତରାଂ ସେଥିର ସମ୍ପାଦକମାନେ ସହସା ଏ କାର୍ଯ୍ୟରେ ପ୍ରବୃତ୍ତ ହେବା ହେତୁଁ ସେମାନଙ୍କୁ ପ୍ରଶଂସା କରିବାକୁ ହେବ। ଆମ୍ଭମାନଙ୍କର ଏକାନ୍ତ ଇଚ୍ଛା ଯେ ସେମାନଙ୍କର କାର୍ଯ୍ୟ ସଫଳ ହେଉ।

ଆମ୍ଭେମାନେ ଉତ୍କଳଦର୍ପଣ ପାଠ କରିଅଛୁଁ ଓ ତହିଁରେ ଯେ ଦୋଷାଦୋଷ ଦେଖିଲୁଁ ତଦ୍ୱିଷୟରେ ଆମ୍ଭମାନଙ୍କର ମନ୍ତବ୍ୟ ଲେଖିବାର କ୍ଷାନ୍ତ ହେଲୁଁ କାରଣ ଏହା ଆଦ୍ୟପତ୍ରିକା ଅଟଇ। ଅନେକ କାର୍ଯ୍ୟ ପ୍ରଥମେ ମନ୍ଦ ହେଲେହେଁ ପଛକୁ କ୍ରମେ ଭଲ ହୋଇଯାଏ । ଓ ସେହି ଅନୁକ୍ରମେ ପ୍ରଥମ ସଂଖ୍ୟା ଦର୍ପଣର ଯେ ଦୋଷ ଥିବ ପ୍ରାୟ ଦ୍ୱିତୀୟ ତୃତୀୟ ସଂଖ୍ୟାକୁ ତାହା ଅନେକ ସୁଧୁରିଯିବ ଓ ଦର୍ପଣ ଦର୍ପଣ ତୁଲ୍ୟ, ନିଷ୍କଳଙ୍କିତ ଓ ସମୁଜ୍ଜ୍ୱଳ ହେବ। ଆମ୍ଭେମାନେ ଦର୍ପଣ ଲେଖକମାନଙ୍କୁ ଅନୁରୋଧ କରଅଛୁଁ ଯେ କର୍କଶ, କଠିନ, ବଙ୍ଗମିଶ୍ରିତ ଉତ୍କଳଭାଷା ଲେଖିବା ପରିତ୍ୟାଗ କରି ସରଳ, ସୁମିଷ୍ଟ, ଶୁଦ୍ଧ ଓଡ଼ିଆ ଲେଖିବାର ଚେଷ୍ଟା କରନ୍ତୁ ଓ କ୍ରିୟାର କାଳ ନିୟମ ପ୍ରତି ବିଶେଷ ଦୃଷ୍ଟି ରଖନ୍ତୁ । ଏ ଦୋଷ ଆମ୍ଭେମାନେ ଗତ ସେପ୍‌ଟମ୍ବର ମାସ ତା ୨୮ ରିଖର ପତ୍ରିକାରେ "ନବ୍ୟଲେଖକଙ୍କ ରଚନା ଦୋଷ" ଶିରୋନାମାର ପ୍ରସ୍ତାବରେ ବିଶେଷରପେ ଚିହ୍ନାଇ ଦେଇଅଛୁଁ ପୁନର୍ବାର ଲେଖିବାର ଆବଶ୍ୟକ ନାହିଁ।

*ଭା୮ଗ, ସଂ୩ଖ୍ୟା ,୧୮।୧।୧୮୭୩*

## [ପରୀକ୍ଷାଫଳ]

ବାବୁ ନନ୍ଦକିଶୋର ଦାସ ଡେପୁଟୀ କଲେକ୍‌ଟର ଉଚ୍ଚଶ୍ରେଣୀର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବାର ଗତ ସପ୍ତାହର ଗଜେଟରେ ଅବଗତ ହୋଇ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ କେବଳ ବଙ୍ଗଳା ଅଥବା ହିନ୍ଦୁସ୍ଥାନିରେ ଏହାଙ୍କର ପରୀକ୍ଷା ବାକୀ ରହିଲା କିନ୍ତୁ ଆମ୍ଭେମାନେ ବୋଧ କରଁ ଯେ ଉକ୍ତବାବୁ ବଙ୍ଗଳାରେ ପରୀକ୍ଷା ଦେଇଥିଲେ ଅନାୟାସରେ ଉତୀର୍ଣ୍ଣ ହୋଇ ଥାନ୍ତେ ବୋଧ ହୁଅଇ ଓଡ଼ିଆ ଉତ୍ତାର ବଙ୍ଗଳାରେ ପରୀକ୍ଷା ଦେବାର ଅନାବଶ୍ୟକ ଦେଖି ତହିଁରେ ପରୀକ୍ଷା ଦେଲେ ନାହିଁ। ଯାହା ହେଉ ଏତେ ଅଳ୍ପକାଳ ଓ ଏକାଥରକେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର କେବଳ ତାହାଙ୍କର ପ୍ରଶଂସା ହେଉଅଛି ଏମନ୍ତ ନୁହେ ଉତ୍କଳବାସିମାନେ ଯେ କର୍ମ ପାଇଲେ ଏହି ପ୍ରକାର ପରୀକ୍ଷାରେ କୃତକାର୍ଯ୍ୟ ହେବେ ଏଥିର ସୁନ୍ଦର ପରିଚୟ ପାୟା ଯାଉଅଛି ଆମ୍ଭେମାନେ ଶ୍ରୀଯୁକ୍ତ କମିଶ୍ନର ସାହେବଙ୍କଠାରେ ଅନୁରୋଧ କରଅଛୁଁ ଯେ ଏରପ ଫଳ ଦେଖି ସେ ଉତ୍ସାହିତ ହୋଇ ଅଧିକ ପରିମାଣରେ ଉତ୍କଳବାସିଙ୍କୁ ଉଚ୍ଚପଦରେ ପ୍ରବେଶ କରାଇବାକୁ ଚେଷ୍ଟା କରନ୍ତୁ। ସାହେବ ପ୍ରଶଂସିତ ଏ ଜିଲାରେ ପ୍ରାୟ ଆଠବର୍ଷକାଳ ରହି ଜଣେମାତ୍ର ଡେପୁଟୀ ନିୟୋଗ କଲେ କିଛି ପ୍ରଶଂସାର ବିଷୟ ନୁହଇ। ଓଡ଼ିଶାର ଅନ୍ୟାନ୍ୟ ଡେପୁଟିଙ୍କ ମଧରେ ମୌଲବି ଏକରାମ ରସୁଲ ବଙ୍ଗଳା ଓ ହିନ୍ଦୋସ୍ତାନି ଏବଂ ବାବୁ କୈଳାଶଚନ୍ଦ୍ର ଘୋଷ

ଓଡ଼ିଆରେ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି ଏ ଦୁହିଙ୍କର ଆଇନ ପରୀକ୍ଷା ବାକି ରହିଅଛି । ଅଶିଷ୍ଟାଣ୍ଟ ଗନ ସାହେବ କେବଳ ହିନ୍ଦୋସ୍ଥାନୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ନିମ୍ନଶ୍ରେଣୀର ପରୀକ୍ଷାରେ ମୌଲବୀ ଅବଦୁଲ କାଦର ଏଥର ହିନ୍ଦୋସ୍ଥାନୀ ଭାଷାରେ କୃତକାର୍ଯ୍ୟ ହୋଇଅଛନ୍ତି ।

*ଭା୮ଗ,ସଂ୪ଖ୍ୟା,୨୫।୧।୧୮୭୩*

## ଶିକ୍ଷାବିଭାଗର ତତ୍ତ୍ୱାବଧାରଣର ନୂତନ ନିୟମ ।

ଆମ୍ଭମାନଙ୍କର ଲେଫ୍‌ଟନଣ୍ଟ ଗବର୍ଣ୍ଣର ଶିକ୍ଷା ବିଭାଗ ସମ୍ପର୍କରେ ପୁରୁଣାବିଧି କିଛି ରଖିବେ ନାହିଁ । କ୍ରମେ କ୍ରମେ ସବୁ ବିଷୟରେ ନୂତନ ବନ୍ଦୋବସ୍ତ କଲେ । ଉଚ୍ଚ ଓ ଇତର ଶିକ୍ଷାର ନିୟମ କରି ସମ୍ପ୍ରତି ଡେପୁଟୀ ଇନ୍‌ସ୍ପେକ୍‌ଟରଙ୍କ ନିୟୋଗ ଓ କାର୍ଯ୍ୟସମ୍ବନ୍ଧରେ ନୂତନବ୍ୟବସ୍ଥା କରିଅଛନ୍ତି ଓ ଏ ବିଷୟରେ ଏକ ଦୀର୍ଘ ନିର୍ଦ୍ଧାରଣ ଗତସପ୍ତାହର ଗଜେଟରେ ପ୍ରକାଶିତ ହୋଇଅଛି । ଆମ୍ଭେମାନେ ନୂତନବ୍ୟବସ୍ଥାର ସାରାଂଶ ଏଠାରେ ଲେଖୁଅଛୁଁ । ଓଡ଼ିଶା ପକ୍ଷରେ ଏଥିରେ ବିଶେଷ ଏହି ହୋଇଅଛି ଯେ ଜଣେ ଅତିରିକ୍ତ ଇନ୍‌ସ୍ପେକ୍‌ଟର ନିୟୋଗ ହେବାର ଅନୁମତି ହୋଇଅଛି ଏହାଙ୍କ ନାମ ଓଡ଼ିଶାର ଜଏଣ୍ଟ ଇନ୍‌ସ୍ପେକ୍‌ଟରେ ହେବ ଓ ଏହାଙ୍କର ବେତନ ମାସିକ ଟ୨୫୦ ଙ୍କା ନିରପିତ ହୋଇଅଛି । ଓଡ଼ିଶାର କମିଶ୍ନର ଜଣେ ସ୍ୱତନ୍ତ୍ର ଇନ୍‌ସ୍ପେକ୍‌ଟରଙ୍କ ପାଇଁ ବହୁକାଳରୁ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଥିଲେ ଏହାଦ୍ୱାରା ତାହା ସଫଳ ହେଲା ଓ ଯେଉଁ ବ୍ୟକ୍ତିକୁ ଏ କର୍ମରେ ନିଯୁକ୍ତ କରିବାକୁ ହେବ ତାହା ମଧ୍ୟ କମିଶ୍ନରଙ୍କ ସହିତ ପରାମର୍ଶ କରି ସ୍ଥିର ହେବ । ଏରପ ଜନରବ ଶୁଣା ଯାଏ ଯେ ଅତ୍ରତ୍ୟ ନର୍ମାଲସ୍କୁଲର ସୁପ୍ରଣ୍ଟ ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀ ଏ ପଦ ପାଇବେ । ତାହାଙ୍କୁ ଉକ୍ତ କର୍ମ ଦେବା ପାଇଁ ପୂର୍ବେ କମିଶ୍ନର ସାହେବ ଅନୁରୋଧ କରିଥିଲେ ଓ ବର୍ତ୍ତମାନ ମଧ୍ୟ ତାହା କରିବାର ସମ୍ଭବ । ତାହା ହେଲେ ନର୍ମାଲ ସ୍କୁଲ ପାଇଁ ଜଣେ ଲୋକର ପ୍ରୟୋଜନ ହେବ ମାତ୍ର ଏମନ୍ତ ଅନୁମାନ ହୁଅଇ ଅଳ୍ପକାଳ ମଧ୍ୟରେ ନର୍ମାଲ ସ୍କୁଲ ପକ୍ଷରେ ନୂତନ ବ୍ୟବସ୍ଥା ହେବ ଓ ସେଥିରେ ଅଧିକ ବେତନର ଜଣେ ସୁପ୍ରଣ୍ଟ ରହିବ ଏମନ୍ତ ସମ୍ଭବ ହେଉ ନାହିଁ ।

କଟକ ଓ ବାଲେଶ୍ୱର ଜିଲାରେ ଯେମନ୍ତ ଜଣେ ଲେଖାଁଏ ଇନ୍‌ସ୍ପେକ୍‌ଟର ଅଛନ୍ତି ସେହିପରି ରହିଅଛି କେବଳ ପୁରୀର ଇନ୍‌ସ୍ପେକ୍‌ଟରକୁ ସବ୍‌ଇନ୍‌ସ୍ପେକ୍‌ଟର ଶ୍ରେଣୀରେ ଅଣାଯାଇଅଛି ସୁଖରବିଷୟ ଯେ ବର୍ତ୍ତମାନ କର୍ମଚରିଙ୍କ ବେତନ ପୂର୍ବପ୍ରାୟ ରହିଅଛି ତେବେ ତାହାଙ୍କର ଗସ୍ତ ଖର୍ଚ୍ଚାର ପରିମାଣ କିଛି ଊଣା ହୋଇଅଛି । ଗଡ଼ଜାତ ସକାଶେ ଜଣେ ପୃଥକ୍ ଡେପୁଟୀ ଇନ୍‌ସ୍ପେକ୍‌ଟର ନିୟୋଗ ହେବାର କଥା ଶୁଣା ଯାଉଥିଲା ବର୍ତ୍ତମାନ ବନ୍ଦୋବସ୍ତରେ ସେ କଥା କିଛି ସ୍ଥିର ହୋଇ ନାହିଁ ବୋଧ ହୁଅଇ ଜଏଣ୍ଟ ଇନ୍‌ସ୍ପେକ୍‌ଟର ସ୍ୱୟଂ ଗଡ଼ଜାତ ସ୍କୁଲ ସମୂହର ତତ୍ତ୍ୱାବଧାରଣ କରିବେ ଜିଲା ଡେପୁଟୀ ଇନ୍‌ସ୍ପେକ୍‌ଟରମାନେ ବର୍ତ୍ତମାନ କଲେକ୍‌ଟରଙ୍କ ଅଧୀନରେ ଅଛନ୍ତି ଓ ଚଟଶାଳୀ ବସାଇବା ହେତୁର ସେମାନଙ୍କର କର୍ମ ବିସ୍ତର ବଢ଼ିଅଛି ସେମାନେ ଯେ ଜିଲା ଛାଡ଼ି ଗଡ଼ଜାତ ସ୍କୁଲର ଅବସ୍ଥା ଦୃଷ୍ଟି କରିବେ ଏମନ୍ତ ଅବକାଶ ହେବାର ଦୁସ୍ତର । ଆମ୍ଭେମାନେ ବିବେଚନା କରୁଁ ଯେ ଜଏଣ୍ଟ ଇନ୍‌ସ୍ପେକ୍‌ଟର ନିଯୁକ୍ତ କରିବାପୂର୍ବ ଗଡ଼ଜାତପାଇଁ ଜଣେ ଡେପୁଟୀ ଇନ୍‌ସ୍ପେକ୍‌ଟର ନିଯୁକ୍ତ କରିବାର ଥିଲା କାରଣ ଶେଷଲିଖିତ କର୍ମଚରିର ଅପେକ୍ଷାକୃତ ବିସ୍ତର ପ୍ରୟୋଜନ ଦେଖାଯାଏ । ଗଡ଼ଜାତରେ ସ୍କୁଲ ବସିବାର ଆରମ୍ଭ ହୋଇଅଛି ଓ ସେଠାରେ ଶିକ୍ଷାଗ୍ରହଣ ପ୍ରତି ଲୋକଙ୍କ ଆଗ୍ରହ ଜନ୍ମାଇବା ଅତି ଆବଶ୍ୟକ ଏହେତୁ ଜଣେ ସ୍ୱତନ୍ତ୍ର କର୍ମଚରିର ବିସ୍ତର ଲୋଡ଼ା ଅଛି ।

ସାଧାରଣରପେ ଏହି ନିୟମ ହୋଇଅଛି ଯେ ପ୍ରତି ଜିଲାରେ ଜଣେ ଲେଖାଁଏ ଡେପୁଟୀ ଇନ୍‌ସ୍ପେକ୍‌ଟର ଟ ୧୦୦ ଙ୍କାଠାର ଟ ୨୦୦ ଙ୍କା ପର୍ଯ୍ୟନ୍ତ ବେତନରେ ରହିବେ । ଯେଉଁ ଜିଲା ଅତି ବଡ଼ ତହିଁରେ ଟ୧୫୦ଙ୍କାର ଟ ୨୦୦ ଙ୍କା ବେତନର ଡେପୁଟୀ ରହିବେ ଆଉ ସବୁ କ୍ଷୁଦ୍ର ଜିଲାରେ ଏବଂ ସବ୍‌ଡିଭିଜନ୍ ମାନଙ୍କରେ ଜଣେ ଲେଖାଁଏ ସବ୍‌ଇନ୍‌ସ୍ପେକ୍‌ଟର ନିଯୁକ୍ତ ହେବେ । ଏହି ନିୟମରେ ପୁରୀରେ ସବ୍‌ଇନ୍‌ସ୍ପେକ୍‌ଟର ହୋଇଅଛି । ସବ୍‌ଇନ୍‌ସ୍ପେକ୍‌ଟରଙ୍କ ଊର୍ଦ୍ଧ୍ୱ ବେତନ ମାସିକ ଟ ୫୦ଙ୍କା କିନ୍ତୁ ପ୍ରଥମେ ଟ ୩୦/ ୪୦ ଙ୍କାରେ ନିଯୁକ୍ତ ହେବେ । ଜିଲାର ମାଜିଷ୍ଟ୍ରେଟ୍ କମିଶ୍ନର ସାହେବଙ୍କ ଅନୁମତିକ୍ରମେ ଏହିସବୁ କର୍ମଚରୀ ନିଯୁକ୍ତ କରିବେ । ବର୍ତ୍ତମାନ

କର୍ମଚାରିମାନେ ଯେ ଯେଉଁ ସ୍ଥାନରେ ଯେତେ ବେତନରେ ଅଛନ୍ତି ସେହିପରି ରହିଲେ କେବଳ ଉପାଧିର ତାରତମ୍ୟ ହୋଇଅଛି କର୍ମ ଖାଲି ହେବା ସମୟରେ ନୂତନ ନିୟମାନୁସାରେ କର୍ମଚାରୀ ନିଯୋଗ ହେଉଥିବେ ଓ ଯେଉଁ ଜିଲାରେ ବର୍ତ୍ତମାନ ପାଠଶାଳା ସଂଖ୍ୟା ଊଣା ଅଛି ସେ ଜିଲାମାନଙ୍କରେ ଯେମନ୍ତ ସଂଖ୍ୟା ବୃଦ୍ଧି ହେଉଥିବ ତେମନ୍ତ ଉଚ୍ଚପଦର କର୍ମଚାରୀ ରହୁଥିବେ।ଏଥିପାଁଇ  ଲେଫଟନେଣ୍ଟ ଗବର୍ଣ୍ଣର ସାହେବ ପୁନଃ ପୁନଃ କହିଅଛନ୍ତି ଯେ ଏ ବନ୍ଦୋବସ୍ତ ପକ୍କା ନୁହଇ ଓ ସମୟ ସମୟରେ ଏହାର ପରିବର୍ତ୍ତନ ହୋଇପାରିବ। ଆଜିକାଲି ଗବର୍ଣ୍ଣମେଣ୍ଟଙ୍କର କେଉଁ ନିୟମଟା ପକ୍କା ଯେ ଏଥିରେ ଏତେ ସତର୍କତା ପ୍ରଦର୍ଶିତ ହୋଇଅଛି ନୂଆ ନୂଆ ଦସ୍ତୁରରେ ଲୋକେ ବିରକ୍ତ ହୋଇଗଲେଣି ତଥାଚ ନୂଆ ଦସ୍ତୁର ହେଉଅଛି ଏ ଉତ୍ତାର କଚାପକ୍କା କହିବାରେ କିଛି ବିଶେଷ ପ୍ରଭେଦ ଜଣାଯାଉ ନାହିଁ।

*ଭା୮ଗ,ସଂ୪ଖ୍ୟା,୨୫।୧।୧୮୭୩*

## ନୂତନପୁସ୍ତକର ସମାଲୋଚନା।

ଆଖ୍ୟାନମଞ୍ଜରୀ ନାମକ ଖଣ୍ଡିଏ ପୁସ୍ତକ ପ୍ରାପ୍ତ ହୋଇଥିବାର ଆମ୍ଭେମାନେ କୃତଜ୍ଞତା ସହିତ ସ୍ୱୀକାର କରଅଛୁଁ । ଏ ପୁସ୍ତକ ଖଣ୍ଡିକ ପ୍ରକାଶ୍ୟରେ ପୁସ୍ତକପ୍ରଚାରକ ପଠାଇ ଅଛନ୍ତି କିନ୍ତୁ ସେ କାହିଁକି ବେରିଂ ପ୍ରକାର ପୁସ୍ତକକୁ ପଠାଇ ଆମ୍ଭମାନଙ୍କୁ ମାସୁଲ ଡଣ୍ଡାଇଲେ ବୁଝିପାର ନାହୁଁ ଆମ୍ଭମାନଙ୍କ ରଚି ବିଡିବା ସକାଶେ ସେ ଯେବେ ସେପରି କରି ଥାନ୍ତି ତେବେ ସେ ଶୁଣି ସନ୍ତୁଷ୍ଟ ହେବେ ଯେ ଆମ୍ଭେମାନେ ମାସୁଲ ଦେଇ ସୁଦ୍ଧା ପୁସ୍ତକକୁ ଗ୍ରହଣ କରିଅଛୁଁ।

ପୁସ୍ତକ ଖଣ୍ଡିକ ଏହି ନାମର ଶ୍ରୀଯୁକ୍ତ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ବଙ୍ଗଳା ପୁସ୍ତକର ବାବୁ ଚନ୍ଦ୍ରନାଥ ରାୟ ଅନୁବାଦ କରିଅଛନ୍ତି । ପଣ୍ଡିତ ଈଶ୍ୱରଚନ୍ଦ୍ରଙ୍କ ପୁସ୍ତକର ଗୁଣ ଦୋଷ ବାଛି ବା ଆମ୍ଭମାନଙ୍କର ସାଧ୍ୟାୟତ୍ତ ନୁହଇ ବାସ୍ତବରେ ତାହାଙ୍କ ପୁସ୍ତକମାନ ସର୍ବଗୁଣରେ ଭୂଷିତ ଓ ସର୍ବତ୍ରରେ ଆଦୃତ ସୁତରାଂ ଏ ପୁସ୍ତକ ତହିଁର ଅନୁବାଦିତ ହୋଇଥିବାର ପୁସ୍ତକଗତ ବିଷୟମାନ ଓ ରଚନାପ୍ରଣାଳୀ ସମ୍ପର୍କରେ କିଛି ବକ୍ତବ୍ୟ ନାହିଁ। କେବଳ କେମନ୍ତ ଭାଷାରେ ଅନୁବାଦିତ ହୋଇଅଛି ତାହାହିଁ କିଞ୍ଚିତରେ କହିଲେ ପୁସ୍ତକର ଯଥେଷ୍ଟ ସମାଲୋଚନା ହେଲା। ଆମ୍ଭେମାନେ ଦୁଇ ଏକସ୍ଥାନ ପାଠକରି ଦେଖିଲୁଁ ଯେରପ ଉତ୍କଳଭାଷାରେ ଅନୁବାଦିତ ହୋଇଅଛି ତାହା ମନ୍ଦ ନୁହଇ ବରଂ ବାଲେଶ୍ୱର ପ୍ରେସ୍‌ରେ ଛାପା ହୋଇଥିବା ଅନେକ ପୁସ୍ତକର ଭଲ ଅଟଇ। ପୁସ୍ତକଟି ଶ୍ରୀଯୁକ୍ତ ଜାନ୍ ବିମ୍‌ସ୍ ସାହେବଙ୍କୁ ଉପହାରସ୍ୱରପ ପ୍ରଦତ୍ତ ହୋଇଅଛି ସୁତରାଂ ବିକ୍ରୟ ପକ୍ଷରେ ବ୍ୟାଘାତ ନାହିଁ ଓ ଆମ୍ଭେମାନେ ଅନୁମାନ କରଅଛୁଁ ଏହା ବିଦ୍ୟାଳୟର ଉପଯୋଗୀ   ଅଟଇ । ସ୍ଥାନ ସ୍ଥାନରେ ସାମାନ୍ୟ ଦୋଷ ଲକ୍ଷିତ ହୁଅଇ ମାତ୍ର ସେ ସବୁ ବାହୁଲ୍ୟ କରି ଲେଖିବାର ପ୍ରୟୋଜନ ନାହିଁ ।

*ଭା୮ଗ, ସଂ୮ଖ୍ୟା, ୨୨।୨।୧୮୭୩*

## ଓଡ଼ିୟା ଭାଷା ଓ ବାବୁ ରାଜେନ୍ଦ୍ରଲାଲ ମିତ୍ର।

ଓଡ଼ିୟାଭାଷା ଉପର ବାବୁ ରାଜେନ୍ଦ୍ରଲାଲ ମିତ୍ରଙ୍କ କୋପ ଅବଧି ଶାନ୍ତ ହୋଇ ନାହିଁ। ଗତ ଜାନୁଏରୀ ମାସ ତା ୨୩ ରିଖରେ କଲିକତା ବେଥୁନ ସୋସାଇଟୀ ସଭାରେ ଡାକ୍ତର ମରେମିଚଲ ସାହେବ ଭାଷା ସମୂହର ସମ୍ବନ୍ଧ ତତ୍ତ୍ୱବିଷୟରେ ଗୋଟିଏ ସୁନ୍ଦର ଓ ବିଜ୍ଞ ବକ୍ତୁତା କରିଥିଲେ  ଉକ୍ତ ବକ୍ତୁତା ଶେଷ ହେଲାର ବାବୁ ରାଜେନ୍ଦ୍ରଲାଲ ମିତ୍ର ଡାକ୍ତର ମହୋଦୟଙ୍କୁ ସଭାର ଧନ୍ୟବାଦ ଦେବା ପ୍ରସ୍ତାବ ଛଳରେ ଯେଉଁ ବକ୍ତୁତା କଲେ ତହିଁରେ ବ୍ୟକ୍ତ ଥିଲା ଯେ ଭାରତବର୍ଷର ଭାଷା ସମସ୍ତର ବିଭିନ୍ନତା ବିଷୟରେ ଅନେକ ମତ ଭେଦ ଦେଖାଯାଏ ଓ ଭ୍ରମବଶତଃ ଶିକ୍ଷାବିଭାଗର କର୍ମଚାରୀ ଓ ଅନ୍ୟ ଲୋକମାନେ ଯାହାକୁ ବିଭିନ୍ନତା ଜ୍ଞାନ କରନ୍ତି ତାହା ପ୍ରକୃତ ନୁହଇ ଯଥା ଓଡ଼ିୟା ବଙ୍ଗଳା ଓ ଆସାମୀ ଭାଷାମାନ ବାସ୍ତବରେ ଏକ କିନ୍ତୁ ଭ୍ରମ ହେତୁର ତାହାକୁ ତିନିଭାଷା ଜ୍ଞାନ କରାଯାଏ ବଙ୍ଗାଳିମାନଙ୍କୁ ଏ କଥା ବାଧୁ ନାହିଁ କାରଣ ସେମାନେ ଆପଣା ଅବସ୍ଥା ରକ୍ଷା କରିବାକୁ ସକ୍ଷମ ଅଛନ୍ତି କିନ୍ତୁ ଆସାମୀ ଓ ଓଡ଼ିୟା ଅଳ୍ପସଂଖ୍ୟକ ଲୋକ ହେତୁର ଆପଣା ଭାଷା ରକ୍ଷା କରିବାକୁ ସକ୍ଷମ ନୁହନ୍ତି। ଯେବେ ସେମାନେ

ବଙ୍ଗଳା ପଢ଼ିବାକୁ ଆରମ୍ଭ କରିବେ ତେବେ ଅଳ୍ପକାଳରେ ବଙ୍ଗାଳିଙ୍କ ସହିତ ଭ୍ରାତୃ ଭାବରେ ଲିପ୍ତ ହୋଇ ଏକ ହୋଇଯିବେ ଓ ବଙ୍ଗଳାରେ ଯେ ସମସ୍ତ ଉନ୍ନତି ହୋଇଅଛି ସେ ସବୁର ଫଳ ଭୋଗକରିବେ। ଏମାନଙ୍କ ଭାଷା ଭିନ୍ନ ଭିନ୍ନ ରଖିଲେଁ ଏମାନେ କ୍ଷୁଦ୍ର କ୍ଷୁଦ୍ର ପୃଥକ୍ ସମାଜବଦ୍ଧ ହୋଇ ଆପଣାକୁ ଅତିଶୟ ଅସହାୟ ମଣିବେ କାରଣ ଭାଷାରେ ଯେମନ୍ତ ସମାଜର ପ୍ରଭେଦ ହୁଅଇ ଏମନ୍ତ ଆଉ ପ୍ରାୟ କାହିଁରେ ହୁଅଇ ନାହିଁ। ତାହାଙ୍କର ଏମନ୍ତ ମାନସ ନୁହଇ ଯେ ଭାରତବର୍ଷର ୧୦୮ ଭାଷାକୁ ସେ ବଳପୂର୍ବକ ଗୋଟାଏ କରିଦେବେ କାରଣ ସେଥିର ସିଦ୍ଧାନ୍ତ ଅବଧି କିଛି ହୋଇ ନାହିଁ। ଏ ଦେଶର ଉନ୍ନତିଶୀଳ ଲୋକଙ୍କ ଉପରେ ଏଥିର ଭାର ରହିଅଛି ଭବିଷ୍ୟତରେ ତାହା ସିଦ୍ଧାନ୍ତ ହୋଇପାରେ।

ଏହିରପେ ବାବୁ ରାଜେନ୍ଦ୍ରଲାଲ କଥା ଶେଷ କଲାର ରେବରଣ୍ଡ କେ. ଏମ. ବାନୁର୍ଯ୍ୟା ଗତ୍ରୋଥାନ ପୂର୍ବକ କହିଲେ ଯେ ଧନ୍ୟବାଦ ପ୍ରସ୍ତାବକର୍ତ୍ତା ଯାହା କହିଲେ ତହିଁର ଅଧିକାଂଶରେ ସେ ସମ୍ମତ ଅଛନ୍ତି କିନ୍ତୁ ସେ ଅନୁମାନ କରନ୍ତି ଯେ ବାବୁ ରାଜେନ୍ଦ୍ରଲାଲ ମିତ୍ର ସଂସ୍କୃତ ଜାଣୁଥିବାର ସହଜରେ ଆସାମୀଭାଷା ବୁଝିପାରନ୍ତି କାରଣ ସଂସ୍କୃତ ଓଡିୟା ବଙ୍ଗଳା ଓ ଆସାମୀ ତିନିଭାଷାର ମୂଳ ହେଉଅଛି। ଯଦ୍ୟପି କି ସେ ସ୍ୱୟଂ ଆପଣା ମାତୃଭାଷା ବଙ୍ଗଳା ପ୍ରତି ସ୍ୱଦେଶାନୁରାଗପୂର୍ଣ୍ଣସ୍ନେହରେ କାହାରିଠାର ଉଣା ନୁହନ୍ତି ତଥାପି ସେ ଓଡ଼ିଶା ଏବଂ ଆସାମର ଭାଇମାନଙ୍କୁ ବଙ୍ଗଳା ଭାଷା ଗ୍ରହଣ କରିବା ପାଁଇ ସାହସକରି କହି ନ ପାରନ୍ତି।

ଏଥିର ପାଠକମାନେ ଜାଣିବେ ଯେ ରାଜେନ୍ଦ୍ରବାବୁଙ୍କ କଥା କେବଳ ତାହାଙ୍କୁ ସାଜଇ କେହି ତାହାଙ୍କ ସଙ୍ଗେ ମିଶୁ ନାହାନ୍ତି ତଥାପି ସେ ଆପଣା ଖୟାଲ ଛାଡୁ ନାହାନ୍ତି।

*ଭା୮ଗ, ସଂ୯ଖ୍ୟା, ୧।୩।୧୮୭୩*

## କମିଶ୍ନର ସାହେବଙ୍କ ବକ୍ତୃତା।

କଟକ ହାଇସ୍କୁଲର ପାରିତୋଷିକ ଦାନର ବିବରଣ ଗତ ସପ୍ତାହରେ ପ୍ରକାଶ କରି ସେଠାରେ ଶ୍ରୀଯୁକ୍ତ କମିଶ୍ନର ସାହେବ ଯେଉଁ ବକ୍ତୃତା କରିଥିଲେ ଅଦ୍ୟ ତହିଁର ସଂକ୍ଷେପ ବିବରଣ ଅର୍ଥାତ୍ ଯେପର୍ଯ୍ୟନ୍ତ ଆମ୍ଭମାନଙ୍କର **XXXX** ଅଛି ଲେଖୁଅଛୁଁ। ବକ୍ତୃତାର ଆରମ୍ଭରେ କମିଶ୍ନରସାହେବ ବିଦ୍ୟାଳୟର ପରୀକ୍ଷାର ସୁଫଳ ଦେଖି ସନ୍ତୋଷ ପ୍ରକାଶ କଲେ ଏବଂ ଶିକ୍ଷକମାନଙ୍କୁ ତହିଁ ପାଁଇ ଧନ୍ୟବାଦ ଦେଲେ। ତହିଁ ଉତ୍ତାର ସେ କହିଲେ ଯେ କେହି କେହି ମନେ କରନ୍ତି ଯେ ସେ ଓଡ଼ିୟାଙ୍କପ୍ରତି ବିଶେଷ ଅନୁରକ୍ତ ହୋଇ ବଙ୍ଗାଳିମାନଙ୍କ ଉନ୍ନତି ଦେଖିପାରନ୍ତି ନାହିଁ ମାତ୍ର ଏ କଥା ଭ୍ରମ ଅଟଇ। ତାହାଙ୍କର ଏମନ୍ତ ଇଚ୍ଛା ନୁହଇ ଯେ ବଙ୍ଗାଳିମାନଙ୍କର ଉନ୍ନତି ନ ହେଉ ବରଂ ସେ ବଙ୍ଗାଳିମାନଙ୍କ ଉନ୍ନତି ଦେଖି ଅତିଶୟ ଆନନ୍ଦିତ ହେଉ ଅଛନ୍ତି ମାତ୍ର ତାହାଙ୍କର ମୁଖ୍ୟ ବାସନା ଏହି ଯେ ଓଡ଼ିୟାମାନେ ଉଚ୍ଚଶିକ୍ଷା ଲାଭ କରି ଉନ୍ନତିକୁ ପ୍ରାପ୍ତ ହେଉନ୍ତୁ। ଓଡ଼ିଶାର ଉନ୍ନତି ନିମିତ୍ତ ଗବର୍ଣ୍ଣମେଣ୍ଟ ଏତେ ବ୍ୟୟ ସ୍ୱୀକାର ପୂର୍ବକ ବିଦ୍ୟାଳୟମାନ ସ୍ଥାପନ କରିଅଛନ୍ତି ଯେବେ ଦେଶର ଲୋକମାନେ ତହିଁର ଉପକାର ପ୍ରାପ୍ତ ନ ହେଲେ ତେବେ ତାହା ସବୁ ବ୍ୟର୍ଥ ହେଲା। ବଙ୍ଗାଳିଙ୍କ ଶିକ୍ଷା ନିମିତ୍ତ ବଙ୍ଗଳାରେ ଯଥେଷ୍ଟ ସୁଯୋଗ ଅଛି। ଏଠା ବିଦ୍ୟାଳୟ କେବଳ ଏ ଦେଶୀୟଙ୍କ ସକାଶେ, ଅତଏବ ଏଦେଶୀୟ ଲୋକମାନେ ଯେତେ ଉଚ୍ଚଶିକ୍ଷା ଲାଭ କରଥିବେ ତେତେ ତାହାଙ୍କର ଆନନ୍ଦ ବୃଦ୍ଧି ହେଉଥିବ। ଅବଧି କେହି ଓଡ଼ିୟା ଉଚ୍ଚଶିକ୍ଷାର ଉପାଧି ପାଇ ନାହିଁ ଏହା ଶୋଚନୀୟ ଅଟଇ ତାହାଙ୍କ ବିବେଚନାରେ ଅନେକ ଛାତ୍ର ଅଧ୍ୟୟନ ଶେଷ ନ କରି ସରକାରୀ ଅଫିସକୁ କର୍ମ କରିବାକୁ ଯିବାରେ ଉଚ୍ଚଶିକ୍ଷାପ୍ରତି କେତେକ ବ୍ୟାଘାତ ହେଉଅଛି ଏଥିପାଁଇ ସେ ମନସ୍ଥ କରନ୍ତି ଯେ ଦରପାଠୁଆ ଛାତ୍ରମାନେ ଯେରପେ ସରକାରୀ କଚେରୀରେ ପ୍ରବେଶ ନ ହୁଅନ୍ତି ତହିଁର ଚେଷ୍ଟା କରିବେ ଓ ଜିଲା ହାକିମମାନଙ୍କୁ ଏ ବିଷୟରେ ସତର୍କ କଲେ ଛାତ୍ରମାନେ ବାଧ ହୋଇ ଶେଷ ପର୍ଯ୍ୟନ୍ତ ଅଧ୍ୟୟନ କରିବେ। ଏ ଉତ୍ତାର ସେ ଛାତ୍ରମାନଙ୍କୁ ଉପଦେଶ ଦେଲେ କି ଯେମନ୍ତ ସେମାନେ ସ୍କୁଲରେ କେତେଗୁଡ଼ିଏ ବିଦ୍ୟାଶିକ୍ଷା କରି ତୁନି ହୋଇ

ନ ବସନ୍ତୁ ମାତ୍ର ଯେରପେ ଶିକ୍ଷିତ ବିଦ୍ୟାଦ୍ୱାରା ସାଂସାରିକ କାର୍ଯ୍ୟରେ ପଟୁତା ଲାଭ କରିବେ ତହିଁର ଚେଷ୍ଟା କରନ୍ତୁ ତୁଚ୍ଛା ବିଦ୍ୟାଶିଖିକରି କି ଲାଭ ? ଯେବେ ତାହା କାର୍ଯ୍ୟରେ ପରିଣତ ନ ହେଲା ତେବେ ବୃଥା ଶ୍ରମମାତ୍ର । ବିଦ୍ୟାର ସାହାଯ୍ୟରେ ଯେବେ ଛାତ୍ର ସଂସାରରେ ପ୍ରବେଶକଲା ମାତ୍ରକେ ଯେ କୌଣସି ବ୍ୟବସାୟ ଅବଲମ୍ବନ କରିବ ତହିଁରେ ବୁଦ୍ଧି କୌଶଳ ପ୍ରୟୋଗ କରି ଉତ୍କୃଷ୍ଟତା ଲାଭ କରିବ ତେବେ ସିନା ବିଦ୍ୟା ସ୍ୱାର୍ଥ ହେବ ? ସେ ଆଶାକରନ୍ତି ଯେ ଛାତ୍ରମାନେ ସ୍କୁଲର ବାହାରିଲେ ଯେମନ୍ତ ଭଲ ଡାକ୍ତର କି ଉକୀଲ କି ଜମିଦାର କି କୃଷକ କି ବଣିକ ହେବେ ତହିଁର ଉପାୟ ଚେଷ୍ଟା କରିବାର ସେମାନଙ୍କର କର୍ତ୍ତବ୍ୟ । ଶ୍ରୀଯୁକ୍ତ ପାଦ୍ରି ବକଲିସାହେବ ଏ ପ୍ରସଙ୍ଗରେ ଆପଣା ବକ୍ତୃତାରେ ଦୁଇ ଗୋଟି ଉତ୍ତମ କଥା କହିଥିଲେ ବକଲିସାହେବ ଯେ ଅତ୍ୟନ୍ତ ସୁବକ୍ତା ତହିଁର ପରିଚୟ ପାଠକଙ୍କୁ ଦେବାର ନୁହଇ  ସମସ୍ତେ ତାହାଙ୍କ ଗୁଣର ଉତ୍ତମ ରପ ଜ୍ଞାତ ଅଛନ୍ତି । ସେ କହିଲେ କି ସ୍କୁଲ ଛାଡିଲେ ବିଦ୍ୟା ଉପାର୍ଜ୍ଜନ ଶେଷ ହେଲା ନାହିଁ  ବିଦ୍ୟାର ସୀମା ନାହିଁ ଯାହାଙ୍କୁ ଆମ୍ଭେମାନେ ଅତିଶୟ ବିଦ୍ୱାନ୍ ବୋଲି କହିଅଛୁଁ ସେ କହିଅଛନ୍ତି ଯେ ସେ ବିଦ୍ୟାର ସମୁଦ୍ର ଭଣ୍ଡାରେ ବାଲି ସାଉଟି ଅଛନ୍ତି ମାତ୍ର ସମୁଦ୍ରରେ ପ୍ରବେଶ କରି ନାହାନ୍ତି ସୁତରାଂ ବିଦ୍ୟାଳୟର ସୁଶିକ୍ଷିତ ହୋଇ ବାହାରିଲେ କେବଳ ବିଦ୍ୟାଉପାର୍ଜ୍ଜନର ଆରମ୍ଭ ହେଲା ବୋଲିବାକୁ ହେବ ତେଣିକି ଯାବଜ୍ଜୀବନ ନୂତନ ବିଷୟମାନ ଶିକ୍ଷା କରିବାକୁ ହେବ ଓ ସେ ସବୁ ସାହାଯ୍ୟରେ ଆପଣାର ଓ ସମାଜର ଉପକାର ଚିନ୍ତିବାକୁ ହେବ ।

ଶ୍ରୀଯୁକ୍ତ କମିଶ୍ନରସାହେବଙ୍କ ବକ୍ତୃତାରେ ଆମ୍ଭେମାନେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛୁଁ ଏବଂ ଓଡ଼ିଶାର ଉନ୍ନତି ଦେଖିବା ପାଇଁ ସେ ଯେମନ୍ତ ଆଗ୍ରହ ପ୍ରକାଶ କରିଅଛନ୍ତି ସେଥିପାଇଁ ତାହାଙ୍କୁ ଧନ୍ୟବାଦ ଦେବାର କର୍ତ୍ତବ୍ୟ ବାସ୍ତବରେ ଓଡ଼ିଶାର ସମସ୍ତ ମଙ୍ଗଳ ତାହାଙ୍କ ହାତରେ ଓ ସେ କଥା ତାହାଙ୍କ ମନରେ ସର୍ବଦା ବିଦ୍ୟମାନ୍ ଅଛି ସୁଖରବିଷୟ ଅଟଇ କିନ୍ତୁ ଆମ୍ଭେମାନେ ଦୁଃଖିତ ହୋଇ କହୁଅଛୁଁ ଯେ ତାହାଙ୍କ ମନ ଯେଡ଼େ, କାର୍ଯ୍ୟ ତେଡ଼େ ନୁହଇ । ଏଥିର ଏମନ୍ତ ଅନୁମାନ ହୋଇପାରେ ଯେ କଥାପଡ଼ିଲେ ସେ ସରଳଭାବରେ ଆପଣା ମନକଥା କହି ଦିଅନ୍ତି କିନ୍ତୁ ଅନ୍ୟ ସମୟରେ ତାହା ମନର ପାସୋର ଯାଏ ସୁତରାଂ ଓଡ଼ିଆମାନଙ୍କର ଯେରପ ଉନ୍ନତି ତାହାଙ୍କଦ୍ୱାରା ହେବାର ଉଚିତ ଓ ଯେରପ ସେ ସ୍ୱୟଂ ଇଚ୍ଛାକରନ୍ତି ତାହା ଘଟିପାର ନାହିଁ ।

*ଭା୮ଗ, ସଂ୧୨ଖ୍ୟା, ୨୨।୩।୧୮୭୩*

## ପ୍ରେରିତପତ୍ର ।

## [ଓଡ଼ିଶାରେ ଓଡ଼ିଆମାନଙ୍କୁ ହତାଦର]

ସମ୍ପାଦକ ମହାଶୟ !

ଆଜିକାଲି ପୁରଷୋତ୍ତମରେ କେତେକଜଣ ବିଦେଶୀ ବଙ୍ଗାଳୀ ଆସି ପଡ଼ି ଅଛନ୍ତି । ତାଙ୍କ ଦାଉ ଆଉ ସହି ହେଉ ନାହିଁ । ସେମାନେ  ଉତ୍କଳୀୟଙ୍କୁ ଦୁଇ ଆଖିରେ  ଦେଖି ପାରନାହାନ୍ତି । ପର୍ବରେ ଯେଉଁ ଉତ୍କଳୀୟ ଓ ବିଦେଶୀ ବଙ୍ଗାଳିଙ୍କ ମଧରେ (ଫକୀର ମୋହନ କଥାରେ କହିଲେ ) ଦଳାଦଳୀ ଉପସ୍ଥିତ ହୋଇଥିଲା । ତାହା ଏକପ୍ରକାର ଉତ୍ତମରପେ କର୍କୁଡ ସାହେବଙ୍କଦ୍ୱାରା ନିର୍ବାପିତ ହୋଇଥିଲା କିନ୍ତୁ ଭସ୍ମଗୁଣ୍ଡେ ଅଗ୍ନିକଣାପ୍ରାୟ ବଙ୍ଗାଳିଙ୍କ ମନର ସେ ଜିଘାଂସା ନିଃଶେଷିତ ହୋଇ ନ ଥିଲା । ବର୍ତ୍ତମାନ ଶ୍ରୀଯୁକ୍ତ  କମିଶ୍ନର ସାହେବ ଏକ କୈଫିୟତ୍ ତଲବ କରି ଅଛନ୍ତି ଯେ ଉତ୍କଳଦେଶରେ ଯେତେ ଶିକ୍ଷାକର୍ମଚାରୀ ଅଛନ୍ତି ତନ୍ମଧରେ କେତେଜଣ ଓଡ଼ିଆ ଓ କେତେଜଣ ବଙ୍ଗାଳୀ । ସମସ୍ତେ ଉତ୍କଳଭାଷା ଉତ୍ତମ ରପେ ଜାଣନ୍ତି କି ନାହିଁ । ଇତ୍ୟାଦି । ଏଥିରେ  ଏଠାରେ ଯେତେ ବଙ୍ଗାଳୀ ଓଡ଼ିଆ ଉତ୍ତମରପେ ନ ଜାଣନ୍ତି ସମସ୍ତେ କ୍ରୋଧୋକ୍ଷିପ୍ତ ହୋଇ ଅଛନ୍ତି । "କମିଶ୍ନର ଟା ନିତାନ୍ତ ଉଡେ ହୟେଛେ । " ଇତ୍ୟାକାର ମନୋଭାବ ବ୍ୟକ୍ତ କରଅଛନ୍ତି ଓ ପଥରେ କି କୌଣସି ଗୃହସ୍ଥିତ ସମାଜରେ ଉତ୍କଳିୟଙ୍କୁ  ନିନ୍ଦା କରିବାରେ ତ୍ରୁଟି କର ନାହାନ୍ତି । କଟକରେ ମଧ କେତେକ ପରଶ୍ରୀକାତର ବଙ୍ଗାଳୀ ନିନ୍ଦାପରତନ୍ତ ହୋଇ ଏଡୁକେଶନ ଗେଜେଟରେ

ଆପଣାର ମନ କଥା ଅଚିତ୍ ଉଦ୍‌ଗାର କରିପକାଇ ଅଛନ୍ତି । କେତେକ ଉଚ୍ଚପଦରେ ବଙ୍ଗାଳିଙ୍କ ପରିବର୍ତ୍ତରେ ଓଡିଆମାନେ ନିଯୁକ୍ତ ନୋହିଲେ ସେମାନଙ୍କର ଉନ୍ନତି ହେବା ଅସମ୍ଭବ । ବଙ୍ଗଳା ପ୍ରାନ୍ତରେ ଓଡ଼ିଶା, ଓଡ଼ିଶା ପ୍ରାନ୍ତରେ ପୁରୀ, ତହିଁ ପ୍ରାନ୍ତରେ ଜଣେ ପନ୍ଦରଟଙ୍କା କର୍ମରେ ଡାକ ଇଲାକାରେ ରହିବ । ତାହାର କାର୍ଯ୍ୟ ଏହି ଯେ ସେ ହରକରାଙ୍କୁ ବେତନ ବାଣ୍ଟିବ ଓ ତାଙ୍କ ଦଉଡ଼ ଦେଖିବ । ଏପରି ବ୍ୟକ୍ତି ଓଡ଼ିଶାରେ ମିଳିଲେ ନାହିଁ ଅତଏବ କଲିକତା ନିକଟବର୍ତ୍ତି ହୁଗଳି ଜିଲାର ଜଣେ ବୃଦ୍ଧ ଓ ଦେଶର ଅଜ୍ଞାତ ବିବରଣ ପୁରଷର ଆମଦାନି ହେବ । ଏ ଘଟନାଟି କଣ ଓଡ଼ିଆଙ୍କ ପକ୍ଷରେ ସାମାନ୍ୟ ଅନିଷ୍ଟଜନକ ? ଯେଉଁମାନେ ଡାକଇଲାକାରେ ପାଞ୍ଚ ସାତବର୍ଷ ହେଲା କାର୍ଯ୍ୟ କରଅଛନ୍ତି ଓ ନ ଦଶଟଙ୍କା ପାଉଅଛନ୍ତି । ଓଡ଼ିଆ ବଙ୍ଗଳା ଉତ୍ତମରୂପେ ଜାଣନ୍ତି ଓ ଇଂରାଜୀ ଡାକଘରର ପ୍ରୟୋଜନାନୁରୂପ ଜାଣନ୍ତି ସେମାନେ ପନ୍ଦରଟଙ୍କା ପାଇବାକୁ ଉପଯୁକ୍ତ ହେଲେ ନାହିଁ । ଆମ୍ଭେ ଭରସାକରୁଁ ଯେ ଶ୍ରୀଯୁକ୍ତ କମିଶ୍ନର ସାହେବ ଏ ବିଷୟରେ କର୍ଣ୍ଣପାତ କରିବେ ।

ଏପରେ ପୁରୀଜିଲାରେ ଜଣେ ଓଡ଼ିଆ ଡିପୋଟୀ କଲେକ୍ଟର ଓ ଜଣେ ଡିପୋଟୀ ଇନ୍‌ସ୍ପେକଟର ଅଛନ୍ତି ବୋଲି ତାଙ୍କପ୍ରତି କେତେ ଦ୍ୱେଷ । ଯୁକ୍ତି ଶୁଣ । "ନନ୍ଦକିଶୋର ଏଖାନକାର ଛାତ୍ର ଯେ ଆବାର୍ ନୋକେଲ କମିଟୀର ସେକ୍ରେଟରୀ ହଇୟାଛେ । ବିଚାର ଦେଖ" ।

ଓଡ଼ିଆଙ୍କର କି ଦୁରଦୃଷ୍ଟି ନନ୍ଦକିଶୋର ବାବୁଙ୍କଠାର ପରୀକ୍ଷାରେ ଊଣା ହୋଇ କିମ୍ବା ତାହାଙ୍କର ସମାନ ହୋଇ କେତେକ ବଙ୍ଗାଳୀ ଡେପୁଟୀ କଲେକ୍‌ଟର ପଦରେ ପର୍ମେନେଣ୍ଟ ହେଲେଣି । କିନ୍ତୁ ନନ୍ଦବାବୁଙ୍କର ଅଦ୍ୟାବଧି ସେ ସୁଦଶା ଘଟିଲା ନାହିଁ ।

ଡେଃ ଇନ୍‌ସ୍ପେକ୍‌ଟରଙ୍କ ଦଶା ତତୋଽଧିକ । ଚରିବର୍ଷ କର୍ମ କଲାପରେ ସେ ସବ୍‌ଇନ୍‌ସ୍ପେକ୍‌ଟର ଶ୍ରେଣୀଭୁକ୍ତ ହେଲେ । ଭାରତବର୍ଷରେ ଓଡିଆ ଡେପୁଟୀ ଇନ୍‌ସ୍ପେକ୍‌ଟର ଜଣେ । ତାହାର ଏ ଦୁର୍ଦ୍ଦଶା ଗୋଟାଏ କଣରେ ସେ ପଡ଼ିଅଛନ୍ତି ।

କଟକ ହାଇସ୍କୁଲରେ ଯେତେ ଏଲ.ଏ. ପାସ୍ କରିଅଛନ୍ତି ତନ୍ମଧ୍ୟରେ ପ୍ରକୃତ ଓଡ଼ିଆ ଜଣେ 'ବଳରାମ' । ବୁଦ୍ଧି ଓ ଗୁଣରେ ଧଇଲେ ସେ ସମସ୍ତଙ୍କ ମଧ୍ୟରେ କୌଣସି ଅଂଶରେ ଊଣା ନ ହୋଇ ଅଧିକ ହେବ । ତାଙ୍କୁ ଦୁଇ ବର୍ଷ ହେଲା ଖଣ୍ଡେ କର୍ମ ମିଳିଲା ନାହିଁ ।

ବଙ୍ଗାଳିଙ୍କୁ କଣ ପ୍ରଥମରେ ଏପରି କଷ୍ଟ ଭୋଗ କରିବାକୁ ହୋଇଥିଲା ? ଜଣେ ପଢି ବାହାରିବା ବେଳକୁ ତାହାଙ୍କ ଲାଗି ପୂର୍ବର କର୍ମ ଯୋଗା ହୋଇଥାଏ । ତତ୍‌କ୍ଷଣାତ୍ ପଢ଼ିବାର ସତ୍କାର ମିଳୁଥିଲା । କିମଧିକମିତି

ପୁରୀ ୧୭।୩।୭୩ — ଆପଣଙ୍କର ଅନୁଗତ ଜଣେ ଓଡ଼ିଆ

*ଭା୮ଗ, ସଂ୧୨ଖ୍ୟା, ୨୨।୩।୧୮୭୩*

## ·[ଓଡ଼ିଆମାନଙ୍କ ଚରିତ୍ର]

ଲୋକସଂଖ୍ୟା ରିପୋର୍ଟରେ ଶ୍ରୀଯୁକ୍ତ ବେଦରଲିସାହେବ ଓଡ଼ିୟାଙ୍କୁ ଏହିରୂପେ ବର୍ଣ୍ଣନ କରିଅଛନ୍ତି ଯଥା ।

"ଭାଷା ଓ ଜନ୍ମବିଷୟରେ ବଙ୍ଗାଳିଙ୍କ ସହିତ ଯୋଗଥିଲେ ହେଁ ଓଡ଼ିଆମାନେ ଅଲଗା ରହିବାର ବିଶେଷ ପ୍ରକାରର ରୀତି ଓ ଗଠନ ଲାଭ କରିଅଛନ୍ତି । ଓଡ଼ିଆମାନେ ବଙ୍ଗାଳିଙ୍କଠାର ଅଧିକ ଭୟାଳୁ । ପୂର୍ବ ନିୟମର ପକ୍ଷପାତୀ ହେବାର ଏମାନଙ୍କ ଠାରେ ଉତ୍ସାହର ଅଭାବ ଦେଖାଯାଏ ପୂର୍ବପୁରଷଙ୍କ ରୀତିକୁ ଆଚରି ସୁଖରେ ରହନ୍ତି ଏବଂ ବର୍ତ୍ତମାନକାଳର ଉନ୍ନତିକି ଅଶ୍ରଦ୍ଧା କରନ୍ତି" । ଏଥକୁ ଡେଲିନିୟୁସ ବୋଲନ୍ତି ଯେ ଏସବୁ ନିଃସନ୍ଦେହରୂପେ ସତ୍ୟ ତଥାଚ ପୃଥିବୀ ମଧ୍ୟରେ ଓଡ଼ିଆମାନେ ଅଧିକ ପରିଶ୍ରମୀ ପରମିତାଚରୀ ଅଟନ୍ତି ଓ ଯେ ସ୍ଥଳେ ଏସବୁ କଣ

ତାହାଙ୍କୁ ଭାରତବର୍ଷର ଲୋକ ଅତିଶୟ କୁସଂସ୍କାର ବଶ କରିଅଛି । ସେ ସ୍ଥଳରେ ତାହାଙ୍କର ସେମିତି ହେବାତ **xxxxx** ଅନ୍ୟ କିଛି ହୋଇ **xxxxx** ଉତ୍ତରାଂଶର ଓଡ଼ିଆମାନେ ଏହିପ୍ରକାରର ଲୋକ ହୋଇଥିଲେହେଁ କୌଣସିରୂପେ ସେମାନଙ୍କୁ ସମୁଦ୍ରଭଣ୍ଡାର ତୁଚ୍ଛ ଜାତି ବୋଲାଯାଇ ନ ପାରେ ମାନ୍ଦ୍ରାଜର ପୁଲିସ ଏକଥା ସପ୍ରମାଣ କରିଅଛି ଏବଂ ଏକଥା ଜାଣିବାର ଆବଶ୍ୟକ ଯେ ଶୁଦ୍ଧ ଓଡ଼ିଆଭାଷା ଓଡ଼ିଶାର ଗଡ଼ଜାତରେ କଥିତ ହୁଅଇ ଓ ସେଠାଲୋକଙ୍କ ପରି ଭାରତବର୍ଷର କୌଣସି ଲୋକ ଅଧିକ ସାହସୀ ନୁହନ୍ତି ଓ କଦାଚିତ୍ କେହି ଅଧିକ ବଳବାନ୍ ଥିବେ ।

ବେବରଲି ସାହେବଙ୍କ ବର୍ଣ୍ଣନା କେତେଦୂର ସତ୍ୟ ତାହା ପାଠକମାନେ ବିଚାରକରନ୍ତୁ ।

*ଭାଗ, ସଂ୧୩ଖ୍ୟା, ୨୯/୩/୧୮୭୩*

## ଓଡ଼ିଶାର ଶିକ୍ଷାବିଭାଗରେ ବଙ୍ଗଦେଶୀୟଙ୍କ କର୍ତ୍ତୃତ୍ୱ ।

ଆମ୍ଭେମାନେ ଏ ବିଷୟରେ ଦୁଇଖଣ୍ଡି ପ୍ରେରିତପତ୍ର ପାଇ ପାଠକଙ୍କ ଗୋଚରାର୍ଥେ ପ୍ରକାଶ କରଅଛୁଁ ତହିଁରୁ ଦେଖାଯିବ ଯେ ଗବର୍ଣ୍ଣମେଣ୍ଟ ଓ ସ୍ଥାନୀୟ କର୍ମଚାରିମାନେ ବିଶେଷରେ କମିଶ୍ନର ସାହେବ ଓଡ଼ିଆଙ୍କ ଉନ୍ନତି ସକାଶେ ସର୍ବଦା ଚେଷ୍ଟା କରଥିଲେ ହେଁ ସେମାନଙ୍କ ସମସ୍ତ ଚେଷ୍ଟା ବଙ୍ଗଦେଶୀୟ କର୍ମଚାରିଙ୍କଦ୍ୱାରା ବିଫଳ ହେଉଅଛି । ଏମାନେ ସାଧାନୁସାରେ ବଙ୍ଗଳାଭାଷା ଅଥବା ସ୍ୱଜାତିଙ୍କର ଉନ୍ନତି ପକ୍ଷରେ ଯତ୍ନବାନ୍ ହେଉଅଛନ୍ତି ଏବଂ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ତାହାଙ୍କ ଯତ୍ନ ଫଳପ୍ରଦ ହେଉଅଛି । କମିଶ୍ନରସାହେବ ଅଥବା ସ୍ଥାନୀୟ କର୍ମଚାରିମାନେ ତାହା ନିବାରଣ କରିବାକୁ ସକ୍ଷମ ହୋଇପାର ନାହାନ୍ତି । ବଙ୍ଗୋତ୍କଳ ବର୍ଣ୍ଣପରିଚୟ ବିଦ୍ୟାଳୟରେ ବ୍ୟବହାର ହେବାର କୌଣସି କାରଣ ନାହିଁ ଅଥଚ ତାହା ଚଳୁଅଛି ବୋଧ ହୁଅଇ ପୁସ୍ତକ ବିକ୍ରେତା ବଙ୍ଗଦେଶୀୟ ଥିବାର ସେପରି ହୋଇଥିବ । ପ୍ରାକୃତ ଭୂଗୋଳ ପକ୍ଷରେ ଯେଉଁ ଆପତ୍ତି ହୋଇଅଛି ତାହା ଅନ୍ୟାୟ ନୁହଇ । ବିଦ୍ୟାଳୟ ସକାଶେ ପୁସ୍ତକ ପ୍ରୟୋଜନ ହେବାର ଉକ୍ତ ପୁସ୍ତକପାଇଁ ପାରିତୋଷିକ ଦିଆଗଲା ଯେଉଁ ପୁସ୍ତକ ପାରିତୋଷିକ ପାଇଲା ତାହା ବିଦ୍ୟାଳୟରେ ବ୍ୟବହାର ନ ହୋଇ ତହିଁ ସଙ୍ଗେ ଯେଉଁ ପୁସ୍ତକ ପରୀକ୍ଷାରେ ନିକୃଷ୍ଟ ହେବାର ପାରିତୋଷିକ ପାଇଲା ନାହିଁ ତାହା ବ୍ୟବହାର ହେଲା । ଏଥିର ନିଗୂଢ଼ ମର୍ମ ବୁଝିବା କାହାର ସାମର୍ଥ୍ୟ ବିଶେଷତଃ ରାମପ୍ରସନ୍ନ ବାବୁଙ୍କ ପୁସ୍ତକ ଅବଧି ଛାପା ହୋଇ ଆସି ନାହିଁ ଓ ଏ ବର୍ଷ ଅଧ୍ୟୟନର ସମୟ ତିନିମାସ ଅତୀତ ହେଲାଣି ତଥାଚ ସେ ପୁସ୍ତକ ନ ହେଲେ କର୍ମ ଚଳିବ ନାହିଁ ଯଥାର୍ଥ ଏ ବିଷୟରେ ବଙ୍ଗଦେଶୀୟମାନେ ଅର୍ଥାତ୍ ଯାହାଙ୍କ ପରାମର୍ଶରେ ଏ କାର୍ଯ୍ୟ ହେଲା ବିଧାତା ତୁଲ୍ୟ ହୋଇ ଜନ୍ମ ପୂର୍ବର ଭାଗ୍ୟାଭାଗ୍ୟ ଲେଖି ଦେଉଅଛନ୍ତି । ଗଡ଼ଜାତ ସମ୍ପର୍କରେ ଏହି ପ୍ରାକୃତଭୂଗୋଳ କଥା କମିଶ୍ନର ସାହେବଙ୍କ ବିଚାରାଧୀନରେ ଆସିବାର ସେ ଆଜ୍ଞା ଦେଇଅଛନ୍ତି ଯେ ରାମପ୍ରସନ୍ନ ବାବୁଙ୍କ ପ୍ରାକୃତଭୂଗୋଳ ପରିବର୍ତ୍ତରେ ଗୌରୀଶଙ୍କରର ଭୂଗୋଳ ପଠିତ ହେବ । ମୁଗଲବନ୍ଦୀ ବିଷୟରେ କିଛି ନିଷ୍ପତ୍ତି ହୋଇ ନାହିଁ । ସେ ଯାହା ହେଉ ବଙ୍ଗଦେଶୀୟଙ୍କ କର୍ତ୍ତୃତ୍ୱ ସକଳ ସ୍ଥଳରେ ଦେଖାଯାଏ ଛାତ୍ରବୃତ୍ତି ପରୀକ୍ଷା ପାଇଁ ପରୀକ୍ଷକଙ୍କୁ କିଛି ଟଙ୍କା ମିଳଇ ବୋଲି ସେଥିରେ ସବୁବର୍ଷ ବଙ୍ଗଦେଶୀୟମାନେ ପରୀକ୍ଷକ ହୁଅନ୍ତି ଓଡ଼ିଆ ଭାଷା ପାଇଁ ସୁଦ୍ଧା ଜଣେ ଉତ୍କଳୀୟ ପରୀକ୍ଷକ କୌଣସି ବର୍ଷ ନିଯୁକ୍ତ ହେବାର ଦେଖା ନାହିଁ ଏ ପର ଯେତେ ଯେତେ ପୁସ୍ତକ ପାଇଁ ପାରିତୋଷିକ ମିଳିଲା ଅଧିକାଂଶ ବଙ୍ଗଦେଶୀୟମାନେ ପ୍ରାପ୍ତ ହେଲେ କେଉଁ ପୁସ୍ତକର ପ୍ରୟୋଜନ ଓ କେତେ ପାରିତୋଷିକ ମିଳିବ ତାହା ଉତ୍କଳୀୟଙ୍କୁ କେହି କହିଲେ ନାହି । ଏ ସମସ୍ତ ବିବେଚନା କଲେ ପତ୍ରପ୍ରେରକ ଯାହା ଲେଖିଅଛନ୍ତି ଯେ ବଙ୍ଗଦେଶୀୟ କେହି ଜଏଣ୍ଟ ଇନ୍ସପେକ୍ଟର ହେଲେ ଉତ୍କଳୀୟଙ୍କର ଭଲ ନ ହୋଇ ମନ୍ଦ ହେବ ତାହା ଅଯଥାର୍ଥ ଜଣା ଯାଉ ନାହିଁ । ଆମ୍ଭେମାନେ ବିବେଚନା କରୁଁ ଉକ୍ତ ପଦରେ ଜଣେ ଓଡ଼ିଆ ନୋହିଲେ ଜଣେ ଇଂରାଜ ନିଯୁକ୍ତ କରିବାର ଉଚିତ ।

*ଭାଗ, ସଂ୧୫ଖ୍ୟା, ୧୨/୪/୧୮୭୩*

## ପ୍ରେରିତପତ୍ର
## [ପୁରସ୍କାର ବିତରଣ ସଭା]

ପ୍ରିୟ ସମ୍ପାଦକ !

ଅଦ୍ୟ ଶ୍ରୀ ପୁରଷୋତ୍ତମ କ୍ଷେତ୍ରସ୍ଥିତ ଇଙ୍ଗରାଜୀ ସଂସ୍କୃତ ଓ ଉତ୍କଳ ବିଦ୍ୟାଳୟର ବାଳକମାନଙ୍କର ପୁରସ୍କାର ବିତରଣ ହେଲା। ଶ୍ରୀଯୁକ୍ତ କମିଶ୍ନର ଓ ପଶ୍ଚିମ ବିଭାଗର ସ୍କୁଲମାନଙ୍କର ଇନ୍‌ସ୍ପେକ୍‌ଟର ଏପରେ ଅପରାପର ସ୍ଥାନୀୟ କର୍ମଚାରୀ ଓ ସ୍ୱାଧୀନ ଜମିଦାର ମହନ୍ତ ପ୍ରଭୃତି ସମସ୍ତେ ସଭାବେଷ୍ଟ ସୁଶୋଭିତ କରିଥିଲେ। ଗବର୍ଣ୍ଣମେଣ୍ଟ ଦତ୍ତଟଙ୍କା ବ୍ୟତିରେକେ ସ୍ଥାନୀୟ ଦାନ ପ୍ରାୟ ଶତାବଧି ଟଙ୍କା ହୋଇଥିଲା।

ପୁରୀର ମହାରାଜା ସଭାକୁ ଆମନ୍ତ୍ରିତ ହୋଇଥିଲେ। କିନ୍ତୁ ସେ ସ୍ୱୟଂ ନ ଆସି ନିଜ ମୁକ୍ତାରଦ୍ୱାରା ଚାଳିଶ ଟଙ୍କା ଦେଇ ପଠାଇଥିଲେ। ମହନ୍ତ ନାରାୟଣଦାସ ଶ୍ରୀ ବାବୁ ରାମଗୋପାଳ ଚଟ୍ଟୋପାଧ୍ୟାୟ ବାବୁ ନନ୍ଦକିଶୋର ଦାସ ବାବୁ ନିତ୍ୟାନନ୍ଦ ଦାସ ପଣ୍ଡିତ ଗୋପୀନାଥ ମିଶ୍ରେ ଏମାନେ ଯଥାସାଧ୍ୟ ପୁରସ୍କାର ଦେଲେ ।

ଆଦ୍ୟରେ ନିୟମିତ ପୁରସ୍କାରମାନ ଦିଆଗଲା ତତ୍ପରେ ବାଳକମାନେ ଅଭିନୟ ଓ ପାଠ ପ୍ରଭୃତି ଯେ ଯାହା ଶିକ୍ଷା କରିଥିଲେ ତାହାସବୁ ସମାଧାନ କଲେ। ଇଙ୍ଗରାଜୀ ସ୍କୁଲର ବାଳକମାନେ ଇଙ୍ଗରାଜୀରେ ସେକ୍ଷପିୟରର ନାଟ୍ୟୋକ୍ତି କଲେ ସଂସ୍କୃତବିଦ୍ୟାଳୟର ଛାତ୍ରମାନେ ଅଜବିଳାପ ପଢ଼ିଲେ, କେବା ସାମଗାୟନ କଲେ। ଉତ୍କଳ ସ୍କୁଲର ଛାତ୍ରମାନେ ଛାନ୍ଦ ବୋଲଇଲେ। ଚାରିଦିନ ମଧ୍ୟରେ ବାଳକମାନେ ଏସବୁ ଶିକ୍ଷା କରିଥିବାର ଅଭିନୟ ପ୍ରଭୃତି ଉତ୍କୃଷ୍ଟତର ହୋଇ ନ ଥିଲା। ପରନ୍ତୁ ସଂସ୍କୃତର ଅଜବିଳାପ ପାଠ ଓ ସାମଗାୟନ ମନୋହର ହୋଇଥିଲା। ସେକ୍ଷପିୟରରେ ସିଯରଙ୍କର ହତ୍ୟାକାଣ୍ଡ ମଧ୍ୟ ଉତ୍ତମ ଅଭିନୀତ ହୋଇଥିଲା।

ଏସବୁ ପାଠ ପରେ ବାଳକମାନଙ୍କୁ ପୁନରପି ଟଙ୍କା ଓ ପୁସ୍ତକମାନ ବଣ୍ଟନ ହେଲା। ତଦନନ୍ତର କମିଶ୍ନରସାହେବ ଦଣ୍ଡାୟମାନ ହୋଇ ଅନେକ ବିଷୟରେ ଉପଦେଶ ଦେଲେ ଓ ସମସ୍ତ ସାଧାରଣଙ୍କୁ ଶିକ୍ଷାବିଷୟରେ ଉତ୍ତେଜିତ କରି କହିଲେ ଯେ ବାଳକମାନେ ଏଣ୍ଟ୍ରେନ୍‌ସ ପାଶ କରି ଅଥବା ଫସଟ ଆର୍ଟସ ପରୀକ୍ଷା ଦେଇ ଆପଣାକୁ କୃତକୃତ୍ୟ ମଣି ଶିକ୍ଷାଲାଭର ନିବୃତ୍ତ ନୋହୁନ୍ତ ସେମାନେ ଉତ୍ତମରପେ ପଢ଼ିଲେ ଡେପୁଟୀ କିଲ୍‌ଟର ହାଇକୋର୍ଟର ଜଜ ମାଜିଷ୍ଟ୍ରେଟ୍ କିମ୍ବା ଅନ୍ୟାନ୍ୟ ଉଚ୍ଚପଦ ଲାଭ କରିପାରନ୍ତି। ମହାରାଣୀଙ୍କ ଜନ୍ମ ଦିବସ ଥିବାର କମିଶ୍ନରଙ୍କ ଅନୁଗାମୀ ହୋଇ ସମସ୍ତେ ଯଥାଶକ୍ତି ହିପ୍ ହିପ୍ ହୁରେ ହୁରେ ଧ୍ୱନି କଲେ। ମହନ୍ତମାନେ ବିଚାରିଲେ ହରି ଧ୍ୱନି ହେଲା। ବେହେରା ଓ ଅପରାପର ବଡ଼ଲୋକଙ୍କର ଚାକରମାନେ ଶବ୍ଦ ଶୁଣି ସ୍କୁଲଗୃହର ଚତୁଃପାର୍ଶ୍ୱରେ ଏପରି ମୁହୁର୍ମୁହୁଃ ଧ୍ୱନି ଶ୍ରବଣାକାଂକ୍ଷାରେ ବେଢ଼ିଗଲେ କିନ୍ତୁ ପୁନରପି ସବୁ ସ୍ଥିର ହୋଇଯିବାର ଯେ ଯାହା ନିଦ୍ରାସ୍ଥାନକୁ ଅପସରି ଗଲେ।

କମିଶ୍ନର ସାହେବ ନନ୍ଦକିଶୋର ବାବୁଙ୍କୁ ଓ ହେଡ୍‌ମାଷ୍ଟରଙ୍କୁ ଉଡ଼ିୟାରେ କିଛି କହିବାକୁ ବୋଇଲେ। ତଦନୁସାରେ ସେମାନେ ସମୁଚିତ କେତେକ ବିଷୟରେ ସୁନ୍ଦରରପେ ବକ୍ତୃତା କଲେ। ଏଥିରେ ହେଡ୍‌ମାଷ୍ଟରଙ୍କର ଅବ୍ୟକ୍ତ ମଧୁର ଧ୍ୱନି ପରମ ମନୋହର ହୋଇଥିଲା। ତତ୍ପରେ ଡେପୁଟୀ ଇନ୍‌ସ୍ପେକ୍‌ଟର କିଛି କହିବାକୁ ଆରମ୍ଭ କଲେ। ସେ ଯାହା କହିଲେ ତାହା ମନ୍ଦ ନୁହେ କିନ୍ତୁ ଗୋଟିଏ କଥା ସେ କହିଲେ ଯାହାକି ସମସ୍ତଙ୍କ ମନକୁ ଆକର୍ଷଣ କଲା ତାହା ଏହି – ଆମ୍ଭେ ପୁରୀସ୍ଥିତ ମହାରାଜାଙ୍କୁ ଅପରାପର ସମସ୍ତ ସଭ୍ୟମାନଙ୍କ ସଙ୍ଗରେ ଶତ ଶତ ବାର ଧନ୍ୟବାଦ କରଅଛୁଁ ଯେ ସେ ଏ ବର୍ଷ ବାଳକମାନଙ୍କ ପୁରସ୍କାର ନିମିତ୍ତ ଚାଳିଶ ଟଙ୍କା ପଠାଇଲେ। ଏ ଅତ୍ୟନ୍ତ ଆନନ୍ଦଦାୟକ ଅଟଇ। ପରନ୍ତୁ ସେ ଯାହା ସ୍ୱୟଂ ଏପରି ମହତ୍ କାର୍ଯ୍ୟରେ ଆପଣାର ଏକ ସାମାନ୍ୟ ମୁକ୍ତାରକୁ ପଠାଇଲେ ଏଥିରେ ଆମ୍ଭେ ଅତ୍ୟନ୍ତ ଦୁଃଖିତ ଅଛୁଁ ମଧ୍ୟ ଆଉ ମେମ୍ବରମାନଙ୍କର ଏ ବିଷୟ ସ୍ମରଣ ହେବାର ସେମାନେ ଯେ ଦୁଃଖିତ ହେବେ ଏଥିରେ କିଛିମାତ୍ର ସନ୍ଦେହ ନାହିଁ। ମହାରାଜା ଏ ବର୍ଷ ସ୍ୱୟଂ ଆସି ଚାଳିଶ ଟଙ୍କାର ଅଧେ ଟ୨୦ଙ୍କା ବିତରଣ କରିଥିଲେ କିମ୍ବା କିଛି ନ ଦେଇଥିଲେ ସଭ୍ୟମାନେ ଓ ସାଧାରଣ ଲୋକେ ଅପରିସୀମ ହର୍ଷ ଲାଭ କରିଥାନ୍ତେ ଏବଂ ସ୍କୁଲମାନଙ୍କର ଛାତ୍ରସଂଖ୍ୟା ଯେ ଆଗାମୀ ବର୍ଷକୁ ଦ୍ୱିଗୁଣିତ ହୁଅନ୍ତା ଏଥିରେ ଲେଶମାତ୍ର ସନ୍ଦେହ ନ ଥିଲା ମାତ୍ର ଆମ୍ଭର ଏହାକୁ ଦୁର୍ଭାଗ୍ୟ ବୋଲିବାକୁ ହେବ ଯେ ଏପରି

ହିତକର କାର୍ଯ୍ୟରେ ମହାରାଜା ସ୍ୱୟଂମୁଦ୍ୟମଶୀତ ହେଉ ନାହାନ୍ତି ।

ମାନ୍ୟବର କମିଶ୍ନର ସାହେବ ତତ୍ପରେ ଗାତ୍ରୋଥାନ କରି ବୋଇଲେ ଯେ - ଆମ୍ଭେ ଅତ୍ୟନ୍ତ ଦୁଃଖିତ ହେଲୁଁ ପୁରୀର ମହାରାଜା, ସଦ୍‌ବଂଶଜାତ,  ସତ୍‌ବିଦ୍ୟାଧାୟୀ, ନ୍ୟାୟପରାୟଣ ବ୍ୟକ୍ତିମାନଙ୍କୁ ନିକଟରେ ନ ରଖି ନୀଚବଂଶଜ, ନୀଚଶୟ, ଖୁସାମତିଆମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ରହିଅଛନ୍ତି । ଆମ୍ଭେ ନିରତିଶୟ ଦୁଃଖିତ ହେଲୁଁ ଯେ ସେ ସ୍ୱୟଂ ଏପରି ହିତକର କାର୍ଯ୍ୟରେ ନ ଆସିଲେ । ଘର ମଧ୍ୟରେ ଦ୍ୱାର କିଳି ମହାରାଜା ବୋଲାଇଲେ କିଛି ମହାରାଜା ହୁଅନ୍ତି ନାହିଁ । ଆମ୍ଭେ ପ୍ରତ୍ୟାଶା କରୁଁ ଯେ ଆଗାମୀ ବର୍ଷରେ ମହାରାଜା ସ୍ୱୟଂ ଅବଶ୍ୟ ଆସିବେ । ପୂର୍ବେ ରାଜା ବାଳକ ଥିଲେ ଏବେ ପ୍ରାପ୍ତବୟସ୍କ ହେଲେଣି । ତଥାପି ଖୁସାମତିଆଙ୍କ ବାକ୍ୟରେ ଭୁଲୁଅଛନ୍ତି ଏ ଅତି ନିନ୍ଦାକଥା । ଇତି ।

ଯୁଧିଷ୍ଠିରାଦିଙ୍କଠାରୁ କି ପୁରୀ ମହାରାଜା ବଡ଼ ? ସେମାନେ ସର୍ବସାଧାରଣଙ୍କ ସମୀପରେ ବସୁଥିଲେ । ପୁରୀ ରାଜାଙ୍କର କି ଆପତ୍ତି ? ପ୍ରତ୍ୟାଶା କରୁଁ ଯେ ମହାରାଜା ଭବିଷ୍ୟତରେ ସବୁ ପ୍ରଧାନ କାର୍ଯ୍ୟରେ ସ୍ୱୟଂମୁପସ୍ଥିତ ହୋଇ ସାଧାରଣର ପ୍ରିୟଭାଜନ ହେବେ । ଇତି ।

ଅନୁଗତଃ କୋଽପିଦର୍ଶକଃ

୨୪/୫/୭୩

*ଭା୮ଗ, ସଂ୨୨ଖ୍ୟା, ୩୧/୫/୧୮୭୩*

## ଶିକ୍ଷାଦାନର ଉଦ୍ଦେଶ୍ୟ ।

ଏ ନଗରସ୍ଥ ନରମାଲ ସ୍କୁଲର ଗତ ବାର୍ଷିକ ସଭାରେ ଶ୍ରୀଯୁକ୍ତ ରେଭ୍‌ନସା ସାହେବ ସଭାପତି , ଛାତ୍ରମାନଙ୍କୁ ଯେ ଉପଦେଶମାନ ଦେଇଥିଲେ ତହିଁ ମଧ୍ୟରେ ଏ ଦେଶରେ କୃଷିକାର୍ଯ୍ୟର ଉନ୍ନତି ସାଧନ ବିଦ୍ୱାନ୍ ଲୋକଙ୍କର ବିଶେଷ କର୍ତ୍ତବ୍ୟ ବୋଲି ବ୍ୟକ୍ତ କରିଥିଲେ । ସାହେବ ପ୍ରଶଂସିତ ବୋଇଲେ ଯେ ଗତ ଲୋକସଂଖ୍ୟାର ଜଣାଯାଏ ଯେ ଓଡ଼ିଶାର ଲୋକସଂଖ୍ୟା ପୂର୍ବ ପ୍ରତି ଦୁଇଗୁଣ ବଢ଼ିଅଛି ଓ ଏହାଙ୍କୁ ଖାଦ୍ୟ ଯୋଗାଇବା ପାଇଁ ଚାଷର ଏମନ୍ତ ପ୍ରୟୋଜନ ହୋଇଅଛି ଯେ ଚାଷିମାନେ ଜମି ସକାଶେ ବ୍ୟସ୍ତ ହୋଇ ବୁଲୁଁଅଛନ୍ତି ଜମି ମିଳୁ ନାହିଁ । ସରକାରୀ ନାଳର ଜଳ ପ୍ରାପ୍ତିର ସୁବିଧା ହେବାର ଯେଉଁ ଜମିରେ ଚାଷ ହେବାର ଆଶା ନ ଥିଲା ତାହା ମଧ୍ୟ କର୍ଷଣ ହେଲାଣି ପୂର୍ବେ ସମୟ ସମୟରେ ଦୁର୍ଭିକ୍ଷ ପଡ଼ି ଲୋକସଂଖ୍ୟା ଊଣା କରଥିଲା ଏଣିକି ନାଳଯୋଗେ ଆଉ ଦୁର୍ଭିକ୍ଷର ଭୟ ନାହିଁ ମାତ୍ର ଲୋକଙ୍କ ପ୍ରୟୋଜନାନୁସାରେ ଫସଲ ଉତ୍ପନ୍ନ ନ ହେଲେ ନିର୍ବାହ ହେବାର କଠିନ ଫସଲ ବୃଦ୍ଧିର ଉପାୟ ଅଧିକ ଜମି ଚାଷକରିବାଦ୍ୱାରା  ହୋଇ ନ ପାରେ କାରଣ ଜମି ମିଳିବାକୁ ନାହିଁ ତେବେ ଏହି ଜମିରେ ଯେପ୍ରକାରେ ଅଧିକ ଶସ୍ୟ ହୋଇ ପାରେ ତହିଁର ଚେଷ୍ଟା କରିବା ଆବଶ୍ୟକ ବର୍ତ୍ତମାନ ବିଜ୍ଞାନଶାସ୍ତ୍ରର ସାହାଯ୍ୟରେ ଉତ୍କୃଷ୍ଟପ୍ରକାର ଚାଷ କରିବା ଓ ଜଳ ଓ ଖତଦ୍ୱାରା ଭୂମିର ଉତ୍ପନ୍ନ ଶକ୍ତି ବୃଦ୍ଧି କରିବାର ଯେ ସମସ୍ତ ଉପାୟ ହୋଇଅଛି ସେ ସବୁ ଅବଲମ୍ବନ କଲେ ବର୍ତ୍ତମାନ ଯେଉଁ ଜମିରେ ଯେତେ ଫସଲ ହେଉଅଛି ତହିଁର ଦ୍ୱିଗୁଣ କି ତିନିଗୁଣ ହୋଇପାରେ ଛାତ୍ରମାନଙ୍କୁ ଏ ସବୁ ଉପାୟ ବିଶେଷରୂପେ ଶିଖିବାର ଆବଶ୍ୟକ ତାହା ହେଲେ ସେମାନେ ପ୍ରକୃତରୂପେ ଆପଣାର ଓ ସମାଜର ହିତକାରୀ ହେବେ ।

ଶ୍ରୀଯୁକ୍ତ ସଭାପତି ମହାଶୟଙ୍କ ଉପରଲିଖିତ ଉପଦେଶ ଯେ ଅତି ସୁନ୍ଦର ତହିଁରେ କିଛି ସନ୍ଦେହ ନାହିଁ କିନ୍ତୁ ନର୍ମାଲ ସ୍କୁଲର ଗୁରମାନଙ୍କୁ ଯେ ରୂପ ଶିକ୍ଷା ଦିଆଯାଉଅଛି ତହିଁରେ ଉକ୍ତ ଉପଦେଶ କାର୍ଯ୍ୟରେ ଆସିବ, ଏମନ୍ତ ଆମ୍ଭମାନଙ୍କୁ ବୋଧ ହେଉ ନାହିଁ ।  କୌଣସି ପ୍ରକାର ଉନ୍ନତି ସାଧନ ସକାଶେ ଅନେକ ପ୍ରକାର ବିଜ୍ଞାନଶାସ୍ତ୍ର ଅଧ୍ୟୟନର ଆବଶ୍ୟକ କିନ୍ତୁ ଗୁରମାନେ ତାହା ପାଖଦେଇ ଯାଉ ନାହାନ୍ତି କିମ୍ବା ବିଦ୍ୟାଳୟର ଶିକ୍ଷା ପ୍ରଣାଳୀ ସେରୂପ ନୁହଇ । ଗବର୍ଣ୍ଣମେଣ୍ଟ ଏହାଙ୍କୁ ଅଧିକ ଶିଖାଇବାକୁ ମନାକରି ଅଛନ୍ତି କାରଣ ଅଧିକ  ଶିଖିଲେ ବଡ଼ ଚାକରି ଖୋଜି ବୁଲିବେ ଅବଧାନୀ କରିବାରେ ତୃପ୍ତ ହେବେ ନାହିଁ କିନ୍ତୁ ଅଧିକ ନ ଶିଖିଲେ ଯେ କଦାଚ ଶ୍ରୀଯୁକ୍ତ କମିଶ୍ନର ସାହେବଙ୍କ ଆଶା ପୂର୍ଣ୍ଣ ହେବ ନାହିଁ ଓ ବିଦ୍ୟାଦାନର କିଛିମାତ୍ର ଫଳ ହେବ ନାହିଁ  ଏହା ନିଶ୍ଚୟରୂପେ

ବୋଲାଯାଇପାରେ। ବର୍ତ୍ତମାନ ଦେଶଯାକ ଅଜ୍ଞାନ ତିମିରରେ ଆଚ୍ଛନ୍ନ ରହିଅଛି। ଗବର୍ଣ୍ଣମେଣ୍ଟ କି ଉଦ୍ଦେଶ୍ୟରେ ବିଦ୍ୟାଦାନ ଦେବାକୁ ଏତେ ବ୍ୟସ୍ତ ଓ ବ୍ୟୟଶାଳୀ ହୋଇଅଛନ୍ତି ତାହା ବୁଝିବାର ଲୋକ ମୋଫସଲରେ ବିରଳ ଓ ବିଦ୍ୟାଲାଭ ଦ୍ୱାରା ମନୁଷ୍ୟର ଉନ୍ନତି ହୋଇପାରେ ଏହା ଯେ କେହି ବିଶ୍ୱାସ କରନ୍ତି ଅତି ସନ୍ଦେହର ସ୍ଥଳ। ଏଠା ଲୋକେ ଏତିକି ଜାଣନ୍ତି ଯେ ବହୁତ ପଢ଼ିଲେ ବୈଦେହୀଶ ବିଳାସ ପ୍ରଭୃତି ଅର୍ଥ କରିବାର ଓ ଅଙ୍କ ପଢ଼ିଲେ କିଣାବିକା କାର୍ଯ୍ୟ ଭଲରୂପେ ଚଳିବା ଓ ସନ୍ଧ୍ୟାବେଳେ ଦୁଇ ଏକ ଅଧ୍ୟାୟ ଭାଗବତ ମଧ ପଢ଼ିବାର କ୍ଷମତା ହୁଅଇ ବିଦ୍ୟାଦ୍ୱାରା ଭୂମିରେ ଅଧିକ ଶସ୍ୟ ଫଳେ ବ୍ୟବସାୟରେ ଅଧିକ ଲାଭ ହୁଏ କିମ୍ବା ଅଳ୍ପ ଶ୍ରମରେ ଅଧିକ କାର୍ଯ୍ୟ ହୁଏ ଏ ଦେଶୀୟ କେତେଲୋକ ଏହା ବିଶ୍ୱାସ କରନ୍ତି ? ବରଂ ବିଦ୍ୟାକୁ ବ୍ୟବସାୟର ବିରୋଧୀ ବୋଲି କାର୍ଯ୍ୟତଃ ଏଠାଲୋକେ ସ୍ଥିର କରିବାର ପ୍ରକାଶ ହୁଅଇ। ଯାହାକୁ ଲେଖିପଢ଼ି ଆସଇ ନାହିଁ ସେଟା ହଳୁଆ ଓ ଯେ ଟିକିଏ ଚଟଶାଳିରେ ଲେଖି ପଢ଼ି ଶିଖିଅଛି ସେ ହଳ ପାଖକୁ ଯିବ ନାହିଁ କାରଣ ତହିଁରେ ତାହାର ପାଣ୍ଡିତ୍ୟ ପ୍ରତି ଦୋଷ ପଡ଼ିବ। ତେଲି ଯେବେ ଲେଖି ପଢ଼ିପାରିଲା ତେବେ ଆଉ ଘଣା ବୁଲାଇବ ନାହିଁ ଓ ବଢ଼େଇ ଯେବେ ଲେଖା ପଢ଼ି ଶିଖିଲା ତେବେ ବାରସି ଧରିବ ନାହିଁ ଏହିପରି ସବୁ ବ୍ୟବସାୟରେ ଦେଖାଯାଏ। ଯେଉଁଠାରେ ଏତାଦୃଶ କୁସଂସ୍କାର ରହିଅଛି ସେଠାରେ କିରୂପେ କିଞ୍ଚିତ୍ ଲେଖାପଢ଼ି ଶିକ୍ଷାଦ୍ୱାରା ବାଞ୍ଛିତ ପ୍ରକାରର ଉନ୍ନତି ହୋଇପାରେ ଅବଧାନମାନେ ସେହି କୁସଂସ୍କାରାପନ୍ନ ଲୋକ ସେମାନେ ମୋଫସଲକୁ ଯାଇ ସେହି ପ୍ରକାର ଚଷାଙ୍କୁ ଘୃଣା କରିବେ ତେବେ କି ପ୍ରକାରରେ କ୍ଷେତ ଦ୍ୱିଗୁଣ ବଢ଼ିବ ? ଅତଏବ ଆମ୍ଭେମାନେ ବୋଲୁଅଛୁଁ କି ଯେବେ ଏ ଦେଶର ଲୋକଙ୍କ ଅବସ୍ଥା ଉନ୍ନତି କରିବାକୁ ଗବର୍ଣ୍ଣମେଣ୍ଟ ପ୍ରକୃତରେ ଯତ୍ନବାନ୍ ଅଛନ୍ତି ଅର୍ଥାତ୍ ଯେବେ ନର୍ମାଲ ବିଦ୍ୟାଳୟ ଓ ମୋଫସଲ ଚଟଶାଳିଦ୍ୱାରା କମିଶ୍ନର ସାହେବଙ୍କ ବାଞ୍ଛିତ ହିତଲାଭର ଚେଷ୍ଟା ଥାଏ ତେବେ ନିତାନ୍ତ ପକ୍ଷରେ ଅବଧାନମାନଙ୍କୁ ନାନାପ୍ରକାର ବିଜ୍ଞାନଶାସ୍ତ୍ରରେ ଶିକ୍ଷା ଦିଆଯାଉ ଯେମନ୍ତେ କି ତାହାଙ୍କର କୁସଂସ୍କାର ବିଦୂରିତ ହେବ ଓ ମୋଫସଲ ଲୋକେ ତାହାଙ୍କଠାରୁ ବିଦ୍ୟାର ମହିମା ଓ ସାଂସାରିକ କାର୍ଯ୍ୟ ସହିତ ତାହାରି ସମ୍ବନ୍ଧର ଅବଗତ ହୋଇ ତଦନୁସାରେ କାର୍ଯ୍ୟ କରିବାକୁ ମତି ବଳାଇବେ।

*ଭା୮ଗ, ସଂ୨୭ଖ୍ୟା, ୫।୭।୧୮୭୩*

## ପ୍ରେରିତପତ୍ର।

## [କଟକରେ ପ୍ରଚଳିତ ପୁସ୍ତକ ପ୍ରତି ଗଞ୍ଜାମ ନିବାସୀଙ୍କ ଅନୁରାଗ]

ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ
ମହୋଦୟେଷୁ ।
ବିନୟପୂର୍ବକ ନିବେଦନଂ
ମହାଶୟ ।

ଆମ୍ଭେମାନେ କେତେକ ଭାଷାନଭିଜ୍ଞମାନଙ୍କଠାରୁ ଶ୍ରୁତ ହେଲୁଁ କଟକପ୍ରଦେଶର ଉତ୍କଳ ଭାଷାରୁ ଗଞ୍ଜାମ ଜିଲ୍ଲାର ଭାଷା ଭିନ୍ନ ଅଛି ପୁନଶ୍ଚ କଟକର ହସ୍ତାକ୍ଷର ପଢ଼ା ଯିବାର କଠିନ। ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ପୂର୍ବେ ଯେଉଁମାନେ ବ୍ୟକ୍ତ କରିଥିଲେ ଓଡ଼ିଆଭାଷାରେ ପୁସ୍ତକ ନାହିଁ ମଧ ତାହା ଅରଣ୍ୟ ପ୍ରଦେଶର ଭାଷା ବର୍ତ୍ତମାନ ସେମାନଙ୍କ ଯଥାର୍ଥ ପୋଷକତା ପରିଦୃଶ୍ୟମାନ ହେଲେହେଁ ଆମ୍ଭମାନଙ୍କର ମାନ୍ୟବର କଲେକ୍ଟରଙ୍କ ଚତୁର୍ଯ୍ୟତାରେ ତାହା କାର୍ଯ୍ୟୋପଯୁକ୍ତ ହେଉ ନାହିଁ । ଯାହା ହେଉ ଆମ୍ଭେମାନେ ବୋଲୁଁ ଯଦି ଗଞ୍ଜାମଜିଲାର କେତେକ ପଦ୍ୟ ପୁସ୍ତକ କଟକ ପ୍ରଦେଶରେ ଆଉ କଟକ ପ୍ରଦେଶର କେତେକ ପଦ୍ୟପୁସ୍ତକ ଗଞ୍ଜାମ ଜିଲାରେ ବହୁକାଳରୁ ପ୍ରଚଳିତ ହୋଇ ଆସୁଅଛି ଏବଂ ଗଞ୍ଜାମ ଜିଲାର ଗ୍ରାମ୍ୟ ବିଦ୍ୟାଳୟର ଅଧ୍ୟୟନ କାର୍ଯ୍ୟ କଟକ ଓ ପୁରୀ ଜିଲାର ଓଡ଼ିଆମାନଙ୍କଦ୍ୱାରା ଉକ୍ତ ଦୁଇଜିଲାର ରିତ୍ୟନୁସାରେ ଅନେକ ଦିବସାବଧି ଚଳି ଆସୁଅଛି ତେବେ (କଟକର ଭାଷା ଓ ପ୍ରଚଳିତ ପୁସ୍ତକଗୁଡ଼ିକ ପ୍ରତି ଗଞ୍ଜାମନିବାସିଙ୍କ ବିଶେଷ ଅନୁରାଗ) ଭାଷାର ବିଭେଦ ଅଛି ବୋଲି କେତେବେଳେ

ବୋଲାଯାଇ ନ ପାରେ କେବଳ ପରୀକ୍ଷା ଦେବା ଯେଉଁମାନଙ୍କୁ କଷ୍ଟ ହେଉଅଛି ସେମାନେ ଦୁଇ ଚାରିଟା କଥା (ବଙ୍କା କହିବାକୁ ଶଙ୍କା ନାହିଁ) ମୂର୍ଖମାନଙ୍କଠାର ଶିଖି ଓଡ଼ିଆରେ ବିଜ୍ଞତା ଦର୍ଶାଇବା ଅଭିପ୍ରାୟ କରିଅଛନ୍ତି ନଚେତ୍ ଅନ୍ୟ କିଛି ନୁହେଁ ଗଞ୍ଜାମ ଜିଲ୍ଲା ବ୍ରିଟନାଧିକୃତ ପୂର୍ବେ ରାଜଦରବାରମାନଙ୍କରେ ଯଦ୍ରୂପେ ରିକାର୍ଡ଼ ଥିଲା ସମ୍ପ୍ରତି ସେପରି ନ ଥିବାର ଓଡ଼ିଆ ଲେଖା ପଢ଼ାର ବିଶେଷ ଅଭ୍ୟାସ ନାହିଁ ସେ ହେତୁର କଟକର ଚିଠିଇତ୍ୟାଦି ପ୍ରାୟ କେତେକ ବ୍ୟକ୍ତିଙ୍କୁ ପଢ଼ିବା କଠିନ ବୋଧ ହେଉଅଛି ।

(କେତେକ ଜଣ ଓଡ଼ିଆ ।)

*ଅତିରିକ୍ତ, ୫ । ୭ । ୧୮୭୩*

## ଉତ୍କଳଭାଷୋଦ୍ଦୀପିନୀ ସଭା ।

ଏହି ନାମରେ ଗୋଟିଏ ସଭା ଏ ନଗରରେ ସ୍ଥାପିତ ହୋଇଅଛି ବୋଲି ଏକମାସ ହେବ 'ଉତ୍କଳପୁତ୍ର'ର ପାଠକମାନେ ଅବଗତ ହୋଇଥିବେ। ମାତ୍ର ଆମ୍ଭେମାନେ ତହିଁର ବିଶେଷ ପରିଚୟ କିଛି ପାଇ ନ ଥିବାର ଏ ପର୍ଯ୍ୟନ୍ତ ପାଠକମାନଙ୍କୁ ଜଣାଇ ନ ଥିଲୁଁ ଗତ ସପ୍ତାହରେ ଉକ୍ତ ସଭାର ସଭାପତି ଶ୍ରୀ ପଣ୍ଡିତ ପ୍ରଭାକର ବିଦ୍ୟାରତ୍ନଙ୍କଠାର ସଭା ସଂକ୍ରାନ୍ତ ସମସ୍ତ ବିବରଣ ଓ ନିୟମାବଳୀ ଓ କାର୍ଯ୍ୟ ବର୍ଣ୍ଣନାର ଅବଗତ ହେଲୁଁ ଯେ ଏ ସଭା ଗତ ଜୁଲାଇ ମାସ ଆଦ୍ୟର ଆରମ୍ଭ ହୋଇ ପ୍ରତି ରବିବାର କଟକ ନର୍ମ୍ୟାଲ ସ୍କୁଲ ଗୃହରେ ଏହାର ଅଧିବେଶନ ହେଉଅଛି ସଭାର ଉଦ୍ଦେଶ୍ୟ ଏହିରୂପେ ବର୍ଣ୍ଣିତ ହୋଇଅଛି ଯଥା "ଯଦ୍ଦ୍ୱାରା ଉତ୍କଳଭାଷାର ଉନ୍ନତି ଓ ଉତ୍କଳ ପାଠ୍ୟପୁସ୍ତକାଦିର ସମାଲୋଚନା ଏବଂ ଆଧୁନିକ ଶିକ୍ଷିତ ବ୍ୟକ୍ତିମାନଙ୍କର ବକ୍ତୃତା ଓ ରଚନାଶକ୍ତିର ବୃଦ୍ଧି ଆଉ ତର୍କବିତର୍କ ପ୍ରଭୃତି" ଉଦ୍ଦେଶ୍ୟ ଅବଶ୍ୟ ଭଲ ତହିଁରେ ସନ୍ଦେହ ନାହିଁ ଓ ସଭ୍ୟଗଣ ପ୍ରାୟ ସମସ୍ତେ ନର୍ମ୍ୟାଲ ଓ ହାଇସ୍କୁଲର ଶିକ୍ଷକ ଓ ଛାତ୍ର ଅଟନ୍ତି । ଅତଏବ ଦେଖାଯାଏ ଯେ ସଭ୍ୟଶ୍ରେଣୀଭୁକ୍ତ ହୋଇଥିବା ଶିକ୍ଷକ ଓ ଛାତ୍ରମାନେ କି ଯାହାଙ୍କଦ୍ୱାରା ଦେଶର ବିଦ୍ୟୋନ୍ନତି ହେବାର ଆଶା କରାଯାଇପାରେ ସେମାନେ ଆପଣା ଗୁରଭାରର ମହତ୍ୱ ସୁନ୍ଦରରୂପେ ବୁଝିଅଛନ୍ତି ଏହା ସୁଖର ବିଷୟ ଅଟଇ । ସଭାର ପ୍ରଥମ ଅଧିବେଶନଠାର ଅବଧି ଯେଉଁ ବିଷୟ ସବୁର ଚର୍ଚ୍ଚା ହୋଇଅଛି ତହିଁର ପ୍ରତ୍ୟକ୍ଷ ହୁଅଇ ଯେ ପ୍ରକୃତ ବିଷୟ ସବୁର ସମାଲୋଚନା ହେଉଅଛି ପାଠକଙ୍କ ଜାଣିବା କାରଣ ଲେଖୁଅଛୁଁ ଯେ ଭାଷୋନ୍ନତିର ଫଳ, ଉତ୍କଳଭାଷାର ପୂର୍ବାପର ଅବସ୍ଥା, ଉତ୍କଳୀୟମାନଙ୍କର ପୂର୍ବାପର ସଭ୍ୟତାର ଉନ୍ନତି ଇତ୍ୟାଦି ବିଷୟରେ ରଚନାପାଠ ଓ ତର୍କବିତର୍କ ହୋଇଥିଲା । ସଭ୍ୟଙ୍କ ସଂଖ୍ୟା ପଞ୍ଚାଶ ଜଣର ନ୍ୟୂନ ହେବ ନାହିଁ ଓ ପ୍ରତି ଅଧିବେଶନରେ ଢ଼୪୦ଜଣର ଊଣା ଉପସ୍ଥିତ ହୁଅନ୍ତି ନାହିଁ । ସଭ୍ୟମାନେ ଯେରପ ଉତ୍ସାହପୂର୍ବକ ଏ ସଭାର ଉଦ୍ଦେଶ୍ୟ ସଫଳ କରିବାକୁ ଯତ୍ନବାନ୍ ଅଛନ୍ତି ଏଥିର ବଳି କରି ତହିଁର କି ପରିଚୟ ଦିଆଯାଇପାରେ । ଆମ୍ଭେମାନେ ଭରସା କରୁଁ ଯେ ଏ ସଭାଟି ଦୀର୍ଘଜୀବୀ ହେଉ ଓ ପ୍ରଥମ ମାସ ଏହାର କାର୍ଯ୍ୟ ଯେରପେ ଚାଲିଅଛି ତହିଁର ଅନୁମାନ ହୁଅଇ ଯେ ଆମ୍ଭମାନଙ୍କର ଆଶା ପୂର୍ଣ୍ଣ ହେବ ତେବେ ଦୁଃଖସହିତ ବୋଲିବାକୁ ହେଉଅଛି ଯେ ଏ ନଗରରେ ସମୟ ସମୟରେ ସ୍ଥାପିତ ହୋଇଥିବା ଅନେକ ସଭାର ଅବସ୍ଥା ଦେଖି ଆମ୍ଭମାନଙ୍କର କୁସଂସ୍କାର ଜନ୍ମିଅଛି ଯେ ଓଡ଼ିଶାକୁ ସଭା ସହଇ ନାହିଁ । ଉତ୍କଳ ଭାଷୋଦ୍ଦୀପିନୀ ସଭାକୁ ଏତିକି ପ୍ରାର୍ଥନା ଯେ ପ୍ରତ୍ୟକ୍ଷ ପ୍ରମାଣ ଦର୍ଶାଇ ଆମ୍ଭମାନଙ୍କୁ ଉକ୍ତ କୁସଂସ୍କାରର ମୁକ୍ତ କରନ୍ତୁ ।

ସଭାରେ ପାଠ ହୋଇଥିବା ଗୋଟିଏ ରଚନା ପ୍ରେରିତପତ୍ର ବୋଲି ପ୍ରକାଶିତ ହେଲା ।

*ଭାଗ ୮, ସଂ ୩୨ଖ୍ୟା, ୯ । ୮ । ୧୮୭୩*

## ଓଡ଼ିୟାମାନଙ୍କ ସ୍ୱଭାବ ।

ଶ୍ରୀଯୁକ୍ତ ରାବନସା ସାହେବ କମିଶ୍ନର ଓଡ଼ିଶାରେ ପ୍ରାୟ ବ୯ର୍ଷ କାଳ ରହି ଏଠାଲୋକଙ୍କ ସ୍ୱଭାବ ବିଶେଷରୂପେ ଆଲୋଚନା କରିଅଛନ୍ତି ଓ ସେ ଯେତେବେଳେ କୌଣସି ପ୍ରସଙ୍ଗ ସମ୍ପର୍କରେ ଓଡ଼ିୟାଙ୍କ ସ୍ୱଭାବର କଥା ଲେଖନ୍ତି ତେତେବେଳେ ଓଡ଼ିୟାମାନଙ୍କୁ ଅତ୍ୟନ୍ତ ସୁସ୍ତି ବୋଲି ବର୍ଣ୍ଣନ କରନ୍ତି । ଓଡ଼ିଆମାନେ ନିତାନ୍ତ ଅଳସ ସ୍ୱଭାବର

ଲୋକ ଏକଥା ତାହାଙ୍କ ମନରେ ଏତାଦୃଶ ବଳବତ୍ର ହୋଇଅଛି ଯେ କୌଣସି କର୍ମ ଶିଥିଳରପେ ନିର୍ବାହ ହେବାର ଦେଖିଲେ ସେ ବୋଲନ୍ତି ଯେ ତାହା ଓଡ଼ିୟାପ୍ରକାରରେ ହୋଇ ଅଛି। ଆପଣା ନିନ୍ଦା କରିବା କାହାରିକୁ ସୁଖକର ବୋଧ ହୁଅଇ ନାହିଁ ସୁତରାଂ କମିଶ୍ନର ଆମ୍ଭମାନଙ୍କୁ ସୁସ୍ତି କହିଲେ ମଧ ଆମ୍ଭେମାନେ ଆପଣା ମୁଁହରେ ତାହା ସ୍ୱୀକାର କରିବାକୁ କଷ୍ଟ ବୋଧ ହେଉଅଛି। ମାତ୍ର କଥାଟି ଏଡ଼େ ସତ୍ୟ ଓ ଆମ୍ଭମାନଙ୍କ ପ୍ରତି ଏଡ଼େ ଅନିଷ୍ଟକର ଯେ ଆମ୍ଭେମାନେ ତାହା ମୁକ୍ତକଣ୍ଠରେ ସ୍ୱୀକାର କରିବାକୁ ଲଜ୍ଜିତ ହେଉ ନାହୁଁ ବରଂ ଏମନ୍ତ ଭରସା ହେଉଅଛି ଯେ ଅସ୍ମଦ୍ଦେଶୀୟମାନେ ଆପଣା ଦୋଷ ଜାଣିପାରିଲେ ତହୁଁର ମୁକ୍ତ ପାଇବାକୁ ଚେଷ୍ଟା କରିବେ ଓ ତାହା ହେଲେ ଆମ୍ଭମାନଙ୍କର ସମ୍ୟକ୍ ପ୍ରକାର ଉପକାର ହେବ।

ଓଡ଼ିୟାମାନେ ଯେ ବାସ୍ତବରେ ସୁସ୍ତି ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ। ଏ ଦୋଷ କିଛି ଜାତି କିମ୍ୱା ସମ୍ପ୍ରଦାୟ ବିଶେଷରେ ଲକ୍ଷିତ ହୁଅଇ ଏମନ୍ତ ନୁହଁଇ ଛୋଟଠାର ବଡ଼ ପର୍ଯ୍ୟନ୍ତ ଯେତେ ପ୍ରକାର ଲୋକ ଅଛନ୍ତି ସମସ୍ତଙ୍କର ଏହି ଦୋଷ ଓ ସେଥିପାଁଇ କୌଣସି ଶ୍ରେଣୀର ଲୋକର ଉନ୍ନତି ହେଉ ନାହିଁ। ଧନ ଉପାର୍ଜନ ନିମନ୍ତେ ସମସ୍ତପ୍ରକାର ଲୋକଙ୍କୁ ପରିଶ୍ରମ କରିବାକୁ ହୁଅଇ ଓ ସଭ୍ୟଦେଶ ସବୁରେ ଦେଖାଯାଏ ଯେ ପରିଶ୍ରମଦ୍ୱାରା ଯେତେ ଅଧିକ ଧନ ଉପାର୍ଜନ ହେବାର ସମ୍ଭବ ତାହା କରିବାକୁ କେହି ହେଳା କରଇ ନାହିଁ କିନ୍ତୁ ଏଠାରେ ସେରପ ନୁହଇ। ଏଠାରେ କେବଳ ପେଟ ପାଳିବା ସକାଶେ ଲୋକେ ପରିଶ୍ରମ କରନ୍ତି ଓ ଯେବେ କିଞ୍ଚିତ୍ ପରିଶ୍ରମ ଦ୍ୱାରା ମୋଟଭାତ କି ମୋଟ ଲୁଗାର ଉପାୟ ହେଲା ତେବେ ଆଉ ଅଧିକ ପରିଶ୍ରମ କରିବେ ନାହିଁ। ବଢ଼େଇ, କର୍ଣ୍ଣୀ, କମାର, ବଣିୟା ପ୍ରଭୃତି ଶିଳ୍ପକାରଙ୍କର ଏହି ଲକ୍ଷଣ ଦେଖାଯାଏ ଓ ବରଂ ଏମାନେ ଠକିକରି ଏହା ତାହାଠାର ଦାଦନ ଆଣି ଖାଇ ବସିବେ ତଥାଚ ନିତି ନିୟମିତରପେ କର୍ମ କରିବାକୁ ବାହାରିବେ ନାହିଁ। କୌଣସି କାରିଗରକୁ ଠିକା ନିଯୁକ୍ତିକର ସେ ପ୍ରଥମେ କେତେଦିନ ପରିଶ୍ରମ କରିବ ଓ ଯହୁଁ ଦୁଇ ଏକଟଙ୍କା ହାତରେ ହେଲା ତାହା ଘରେବସି ଖାଇବ ତେତେଦିନ ଆଉ କର୍ମ କରିବାକୁ ଆସିବ ନାହିଁ ଚଷାମାନଙ୍କୁ ଅଧିକ ପରିଶ୍ରମୀ ବୋଲାଯାଏ ବାସ୍ତବରେ ଏମାନେ କ୍ଷେତ ସମୟରେ ସାରାଦିନ ବିଲରେ ପଡ଼ି କର୍ମ କରନ୍ତି କିନ୍ତୁ ଯେବେ ତାହାଙ୍କୁ ଖଜଣା ଦେବାକୁ ନ ପଡ଼ନ୍ତା ତେବେ ସେରପ କରନ୍ତେ କି ନାହିଁ ସନ୍ଦେହ। ଫଳତଃ ଏମାନେ କ୍ଷେତଦିନରେ ପରିଶ୍ରମ କରନ୍ତି ସତ୍ୟ କିନ୍ତୁ କୌଣସି ଚଷା କି କେବେ ଅଦିନରେ କୌଣସି ଫସଲ ପ୍ରସ୍ତୁତ କରି ବିକ୍ରୟ କରିବାର ଦେଖା ଯାଇଅଛି ? ଯେବେ ଚଷାମାନେ ଯଥୋଚିତ୍ର ପରିଶ୍ରମୀ ହୁଅନ୍ତେ ତେବେ ବର୍ଷଯାକ କ୍ଷେତ କିମ୍ୱା ବାଡ଼ିରେ ନାନାଦି ଫସଲ ପ୍ରସ୍ତୁତ କରି ବିକ୍ରୟ କରନ୍ତେ ଓ ତଦ୍ୱାରା ତାହାଙ୍କର ଅବସ୍ଥାର ଅଧିକତର ଉନ୍ନତି ହୁଅନ୍ତା। ବାଣିଜ୍ୟ ବ୍ୟବସାୟୀ ଲୋକଙ୍କର ଅବସ୍ଥା ପର୍ଯ୍ୟାଲୋଚନା କଲେ ତହିଁରେ ମଧ ଏହି ସୁସ୍ତିଗିରି ଦେଖାଯାଏ। ଦେଖ ଏହି ଓଡ଼ିଶାକୁ କେତେ କେତେ ଦେଶର ଲୋକ ବାଣିଜ୍ୟ କରିବାକୁ ଆସିଅଛନ୍ତି ଓ ଏଠାରେ ଦୋକାନ କରି ତଦ୍ୱାରା ଏମନ୍ତ ଅର୍ଥ ଲାଭ କରୁଅଛନ୍ତି ଯେ ତହିଁରେ କେବଳ ଏଠାରେ ଆପଣା ଉଦର ପ୍ରତିପୋଷଣ କରଅଛନ୍ତି ଏମନ୍ତ ନୁହେ ଘରକୁ ଯିବାବେଳେ ମଧ ଗୁଡ଼ିଏ ଧନ ବାନ୍ଧି ନେଇ ଯାଉଅଛନ୍ତି। ବଙ୍ଗାଳୀ ତେଲଙ୍ଗା ମାରୱାଡ଼ି ଭୁଜପୁରୀ ପ୍ରଭୃତି ନାନା ଦେଶର ଲୋକ ଏଠାରେ ବ୍ୟବସାୟ କରଅଛନ୍ତି ଓ ଏମାନେ ଯେ ଏଠାକୁ ଆସିବାବେଳେ ଘର ହୁଣ୍ଡି ବାନ୍ଧି ଆସିଥିଲେ ତାହା ନୁହଇ ଅତି ସାମାନ୍ୟରପେ କାର୍ଯ୍ୟାରମ୍ଭ କରି ବର୍ତ୍ତମାନକୁ କେତେ ବଡ଼ଲୋକ ହୋଇ ଗଲେଣି କିନ୍ତୁ ଅବଧି କୌଣସି ଓଡ଼ିୟା ସେରପ ହୋଇ ନାହିଁ। ଏମାନେ ଆଦୌ ଦେଶ ଛାଡ଼ିଯିବାକୁ ଇଚ୍ଛାନ୍ତି ନାହିଁ ତଥାପି ଯେତେଲୋକ କଲିକତାରେ ଯାଇ ରହି ଅଛନ୍ତି ସେମାନେ କୁଲିଗିରି ଭିନ୍ନ ଆଉ କିଛି କରନ୍ତି ନାହିଁ ସେହି କଲିକତାରେ ସବୁ ପ୍ରଦେଶ ଓ ଜାତିର ବଣିକ ଅଛନ୍ତି କିନ୍ତୁ ଜଣେ ସୁଦ୍ଧା ଓଡ଼ିୟା ମହାଜନ ଅଛି କି ନାହିଁ ସନ୍ଦେହ ଯେ ପର୍ଯ୍ୟନ୍ତ ଆମ୍ଭମାନଙ୍କୁ ଜଣାଅଛି ପ୍ରାୟ ଜଣେ ସୁଦ୍ଧା ସେପରି ନାହିଁ। ଯେବେ ଓଡ଼ିୟାମାନେ ଏତାଦୃଶ ଆଳସ୍ୟର ବଶ ନ ହୁଅନ୍ତେ ତେବେ ଅବଶ୍ୟ କେହି ସେଠାରେ ବାଣିଜ୍ୟ କରିବାକୁ ଚେଷ୍ଟା କରିଥାନ୍ତେ। ଯେବେ କେହି ବୋଲନ୍ତି ଯେ ଓଡ଼ିଆମାନଙ୍କର ବୁଦ୍ଧି ନାହିଁ ବୋଲି ସେମାନେ ଏ ସବୁ କାର୍ଯ୍ୟରେ ପ୍ରବୃତ୍ତ ହୋଇ ନ ପାରନ୍ତି ତେବେ

ତହିଁର ଉତ୍ତର ଏହି ଯେ ଏ ଯୁକ୍ତି କିଛି ବଳବତ୍ର ନୁହଇ କାରଣ ଓଡ଼ିୟାମାନଙ୍କର ବୁଦ୍ଧି ଊଣା ହେଲେହେଁ ମାରଓ୍ୱାଡ଼ୀ କି ତେଲଙ୍ଗାଙ୍କଠାର ନିକୃଷ୍ଟ ନୁହଇ ତେବେ ସୁଦ୍ଧଆଳସ୍ୟ ହେତୁର ଏହାଙ୍କର ଦୁର୍ଦ୍ଦଶା ଫେଡୁ ନାହିଁ।

ଉପରେ ଯାହାଙ୍କ କଥା ବର୍ଣ୍ଣିତ ହେଲା ସେମାନେ ପ୍ରାୟ ସମସ୍ତେ ମୂର୍ଖ ଓ ନିମ୍ନଶ୍ରେଣୀର ଲୋକ ତାହାଙ୍କ ପକ୍ଷରେ ଆଳସ୍ୟ ଏକପ୍ରକାର ସମ୍ଭବ ହୋଇ ପାରେ କିନ୍ତୁ ବିଦ୍ୱାନ୍ ଓ ଭଦ୍ରଶ୍ରେଣୀର ଲୋକଙ୍କ ଅବସ୍ଥାରେ କିଛିମାତ୍ର ବିଶେଷ ନାହିଁ। ସେମାନେ ମଧ୍ୟ ଅତ୍ୟନ୍ତ ଅଳସୁଆ ଅଟନ୍ତି। ଏଠାରେ ବିଦ୍ୱାନ୍ ଲୋକମାନେ ପ୍ରାୟ ସମସ୍ତେ ଋକରିୟା। ଯେତେଦିନ ଖଣ୍ଡିଏ ଋକରି ମିଳି ନ ଥାଏ ତେତେଦିନ ଏହା ତାହା ଅନୁଶରଣ କରଥାନ୍ତି କିନ୍ତୁ ଯେବେ ଖଣ୍ଡିଏ ସାମାନ୍ୟ ଋକରୀ ହାତରେ ପଡ଼ିଲା ତେବେ ଏହାଙ୍କୁ କିଏ ପାଏ ? ବିଦ୍ୟାଚର୍ଚ୍ଚାତ ଏକାବେଳକେ ବନ୍ଦ ହୁଅଇ ଓ ଦିନ କାଟିବା ପାଇଁ କେବଳ ପଶାଖେଳ ଓ ଅନର୍ଥକ ଗଳ୍ପ ଓ ନିଦ୍ରା ସାର। ସରକାରୀ ସାମାନ୍ୟ ଚାକରି ହେଲେ ବିଦ୍ୱାନ୍‌ଲୋକମାନେ ବାବୁ ହେଲେ ତହୁଁ ସେ ଆଉ ପରିଶ୍ରମ କରିବେ ନାହିଁ କଚେରିଉ ଫେରି ଆସି କିଛି ଆହାର କରି ବିଛଣା ଧରି ପଡ଼ିବେ ଓ ଯେବେ କାହାରି ସହିତ ସାକ୍ଷାତ ହେଲା ତେବେ ଅନର୍ଥକ ଗଳ୍ପ ଓ ଥଟାରେ ଦିନ ନେବେ। ବିଦେଶର ଲୋକମାନେ ସରକାରୀ ଉଚ୍ଚପଦ ପାଇ ଆସୁଅଛନ୍ତି ଅଥବା ସରକାରୀ କଚେରୀରେ ଉକୀଲ ସ୍ୱରପ କର୍ମ କରି ବିଲକ୍ଷଣ ଦଶଟଙ୍କା ଲାଭ କରଅଛନ୍ତି ଏହା ଦେଖି ସୁଦ୍ଧା ଏଠାର ବିଦ୍ୱାନ୍ ଲୋକମାନେ ଉତ୍ତେଜିତ ହେଉ ନାହାନ୍ତି ବିଦ୍ୱାନ୍ ଲୋକଙ୍କର ଅବସ୍ଥା ଯେମନ୍ତ ଜମିଦାରଙ୍କର ଅବସ୍ଥା ମଧ୍ୟ ସେହିରପ। ଏମାନେ ମଧ୍ୟ ପଶାଖେଳ ଓ ବୃଥା ଗଳ୍ପରେ ଦିନ ହରନ୍ତି ଟଙ୍କା ପାଇଁ ତହସିଲଦାର ଉପରେ ତମ୍ବି କରଥାନ୍ତି କିନ୍ତୁ ଏଣେ ନିକାସ କରିବାକୁ ସମୟ ହୁଅଇ ନାହିଁ ବୋଲି ପାଞ୍ଚପାଞ୍ଚବର୍ଷର ହେସାବ ପଡ଼ି ରହିଅଛି। ଆପେ ପରିଶ୍ରମ କରିବାକୁ ଡରିକରି ତହସିଲଦାରର କଥାରେ ଚାଲନ୍ତି ଓ ତହସିଲଦାର ଅବସ୍ଥାନୁସାରେ ବ୍ୟବସ୍ଥା କରଇ। ଅନେକ ଜମିଦାର ଏହିପରି ଆଳସ୍ୟର ଦାସ ହୋଇ ସର୍ବସ୍ୱ ହରାଇଲେଣି ତଥାଚ ଦୁଇଏକ ଜଣ ଛଡ଼ା ପ୍ରାୟ ସମସ୍ତଙ୍କର ଏହି ଅବସ୍ଥା। ଯେବେ ଏମାନେ ନିୟମିତରପେ ଆପଣା ଆୟବ୍ୟୟର ହେସାବ ବୁଝୁଥାନ୍ତେ ଓ କାହିଁରେ ଆୟ ବଢ଼ିବ କିମ୍ୱା ବ୍ୟୟ ଊଣା ହେବ ତହିଁର ଚିନ୍ତା କରଥାନ୍ତେ ତାହା ହେଲେ ଏମାନଙ୍କର ଦଶା ଏଡ଼େ ମନ୍ଦ ହୋଇ ନ ଥାନ୍ତା ? ଆଳସ୍ୟବଶର ଆୟବ୍ୟୟ ବୁଝିବେ ନାହିଁ ଅଥଚ ହିଂସା ଓ ଅହଙ୍କାରର ପରବଶ ହୋଇ ନାନାଦି ଶୃଖଳା ମକଦ୍ଦମା ମାମଲା କରି ସର୍ବସ୍ୱ ହରାଇବେ। ସତ୍କାର୍ଯ୍ୟରେ ପଇସାଟିଏ ବାହାରିବାର କଠିନ କିନ୍ତୁ ମକଦ୍ଦମା ପାଇଁ ଯେତେ ଇଚ୍ଛା ଟଙ୍କା ଅମଲା ଉକୀଲଙ୍କୁ ଦୁନି ହୋଇ ଦେଇଆସିବେ।

ଅତଏବ ଦେଖାଯାଏ ଯେ ଓଡ଼ିଶା କେବଳ ଅଳସୁଆଙ୍କର ଆବାସଭୂମି ଅଟଇ ଓ ବୋଧ ହୁଅଇ ଯେବେ ନବାବୀ ଅମଳ ଥାନ୍ତା ତେବେ ଓଡ଼ିଶାବାସିଙ୍କୁ କର ଦେବାକୁ ସୁଦ୍ଧା ପଡ଼ନ୍ତା ନାହିଁ କାରଣ ଓଡ଼ିଶାକୁ ନିଶ୍ଚୟ ନବାବ ଅଳସୁଆ ଜାଗିର ତଳେ ଖଞ୍ଜିଥାନ୍ତେ। କିନ୍ତୁ ଇଂରାଜଙ୍କ ଅଧିକାରରେ ସେରପ ହେବାର ନୁହଇ ସୁତରାଂ ଓଡ଼ିଶାବାସିମାନେ ଆଳସ୍ୟ ତ୍ୟାଗ ନ କଲେ ଏମାନଙ୍କର ଅନ୍ୟ ଗତି ନାହିଁ। କାହିଁକି ଉତ୍କଳୀୟମାନେ ଏଡ଼େ ଅଳସୁଆ ଏଥିର କାରଣ ଆମ୍ଭେମାନେ ନିଶ୍ଚୟ କରି କହି ନ ପାରୁଁ ତଥାପି କେତେ କଥା ଆମ୍ଭେମାନେ ଅନୁମାନ କରିଅଛୁଁ ଯେ ଏ ପ୍ରସ୍ତାବ ଦୀର୍ଘ ହୋଇଯିବାର ଆଉ ଏଠାରେ ଉଲ୍ଲେଖ ନ କରି ଆଗାମୀ ଏକ ସପ୍ତାକୁ ସଞ୍ଚିତ ରଖିଲୁଁ। ସମ୍ପ୍ରତି ପାଠକଙ୍କଠାରେ ଏହି ପ୍ରାର୍ଥନା ଯେ ସମସ୍ତେ ଥରେ ଥରେ ଆପଣା ମନରେ ଏହାକୁ ଚିନ୍ତା କରନ୍ତୁ ଓ ବାସ୍ତବରେ ଓଡ଼ିୟାମାନେ ଅଳସୁଆ କି ନୁହନ୍ତି ନିରପେକ୍ଷରପେ ବିଋର କରନ୍ତୁ। ଯେବେ ଏଥିର ସତ୍ୟତା ସେମାନେ ପ୍ରତ୍ୟକ୍ଷ କରିପାରିବେ ତେବେ ତହିଁର କାରଣ ଅବଶ୍ୟ ତାହାଙ୍କ ଦୃଷ୍ଟିରେ ଆସିବ ଓ ତହୁଁ ପ୍ରତିକାରର ଚେଷ୍ଟା କରିବେ। ସରଳଭାବରେ ଦୋଷ ସ୍ୱୀକାର କରିବା ଉକ୍ତ ଦୋଷର ମୁକ୍ତ ପାଇବାର ପ୍ରଧାନ ଉପାୟ ଅଟଇ ଅତଏବ ଆମ୍ଭେମାନେ ଆପଣା ଦୋଷ ଆପେ ସ୍ୱୀକାର କଲୁଁ ଏଥର କେମନ୍ତେ ଏ ଲଜ୍ଜାର ପାର ପାଇବା ଏହି ଭାବନା ମନରେ ସର୍ବଦା ଜାଗରକ ହେଲେ ଉଦ୍ଧାରର ବାଟ ହେବ।

*ଭାଗ, ସଂଖ୍ୟା, ୨୭।୯।୧୮୭୩*

## ବିଦେଶୀ

ଏହି ନାମରେ ଖଣ୍ଡିଏ ନୂତନ ପତ୍ରିକା ଏ ନଗରରେ ବାହାରିଅଛି । ମାର୍ଗଶିର ମାସ ତା ୧ ରିଖରେ ଏହାଙ୍କର ପ୍ରଥମ ପ୍ରବେଶ ହେଲା । ଏଖଣ୍ଡିକ ମଧ ପାକ୍ଷିକପତ୍ର ଓ ମୂଲ୍ୟ ଏକଟଙ୍କା । ଏହାକୁ ନେଇ ବର୍ତ୍ତମାନ କଟକରେ ଚରିଖଣ୍ଡି ପାକ୍ଷିକପତ୍ର ହେଲା ଓ ସମସ୍ତଙ୍କର ଏହି ବର୍ଷ ମଧ୍ୟରେ ପ୍ରାଦୁର୍ଭାବ ଦେଖି ଆମ୍ଭେମାନେ ମନେକରଅଛୁଁ ଯେ ପାକ୍ଷିକ ସମ୍ବାଦପତ୍ର ବାହାର କରିବା ଗୋଟିଏ ରୋଗ ହୋଇଅଛି । ଓଡ଼ିଶା ପରି କ୍ଷୁଦ୍ରସ୍ଥାନରେ ଏତେ ପତ୍ରିକା ବାହାରିବାର ଆନନ୍ଦର ବିଷୟ ନୁହଇ କାରଣ ସମସ୍ତେ ଯୋଗୀ ହେଲେ ଭିକ କିଏ ଦେବ ? ବୋଧ ହୁଅଇ ବିଦେଶୀ ପକ୍ଷରେ ଉକ୍ତ କଥା ପ୍ରବର୍ତ୍ତେ ନାହିଁ ଯେହେତୁ ବିବେକ ଲୋକ ବିଦେଶକୁ ବାହାରିଲେ ଆପଣା ପାଥେୟ ବ୍ୟୟ ସଙ୍ଗରେ ଆଣି ଥାନ୍ତି ତେବେ ବିଦେଶୀ କି ଅଭିପ୍ରାୟରେ ଆଗମନ କରିଅଛନ୍ତି ବିଚାର କରିବାର ଆବଶ୍ୟକ । ଆତ୍ମ ପରିଚୟର ଜଣାଯାଏ ଯେ ଓଡିଶାର ମଙ୍ଗଳ କରିବା ଓ ଭିନ୍ନ ଭିନ୍ନ ସମ୍ପ୍ରଦାୟ ମଧ୍ୟରେ ପ୍ରେମ ଓ ବନ୍ଧୁଭାବ ସ୍ଥାପନ କରିବା ଏହାଙ୍କର ଉଦ୍ଦେଶ୍ୟ ଅଟଇ ଅଥଚ ବଙ୍ଗାଳୀ ଓ ଉତ୍କଳୀୟଙ୍କ ମଧ୍ୟରେ ଯେ ମନାନ୍ତର ଚଳିଆସୁଅଛି ତାହାକୁ ଲକ୍ଷ୍ୟକରି କହିଅଛନ୍ତି ଯେ ଏକଜାତୀୟ ଲୋକ ଅନ୍ୟ ଜାତୀୟ ଲୋକଙ୍କୁ ଘୃଣା କରିବାରେ କିଛି ବିଚିତ୍ର ନାହିଁ ଓ ଏ ପାପମୟୀ ରୀତି ନିର୍ମଳ ହେବାର ଅନେକ କାଳ ବିଳମ୍ବ ଅଛି । ତେବେ ବିଦେଶୀ ଏଡ଼େ ତର ତର ହୋଇ କାହିଁକି ପଥଶ୍ରମ କରି ଆସିଲେ ? ବିଦେଶୀଙ୍କ ଭାଷାର ଜଣାଯାଏ ଯେ ସେ ଅଳ୍ପକାଳ ହେଲା ଓଡ଼ିଶାକୁ ଆସିଅଛନ୍ତି କିନ୍ତୁ ସମ୍ବାଦପତ୍ର ପ୍ରଚାରଦ୍ୱାରା ଓଡ଼ିଶାର ମଙ୍ଗଳଚେଷ୍ଟା କରିବା ପୂର୍ବେ ଉତ୍କଳଭାଷା ଭଲ କରି ଶିଖିଲେ ଭଲ ହେବ ବର୍ତ୍ତମାନ ଯେରପ ଭାଷାରେ ସେ ଆପଣା ଅଭିପ୍ରାୟମାନ ବ୍ୟକ୍ତ କରିଅଛନ୍ତି ତାହା ଦେଖି ଆମ୍ଭମାନଙ୍କର ଏହି ଶଙ୍କା ହେଉଅଛି ଯେ ତାହାଙ୍କୁ ବଙ୍ଗବାସୀ ମନେ କରି କେହି ନ ପୁଣି ଅଶ୍ରଦ୍ଧା କରନ୍ତି ।

*ଭା୮ଗ, ସଂ୪୬ଖ୍ୟା, ୨୨/୧୧/୧୮୭୩*

# ୧୮୭୪

## [ଓଡିୟା କିରାନୀର ପ୍ରୟୋଜନ]

ମଧ୍ୟପ୍ରଦେଶର ଶିକ୍ଷାବିଭାଗର ଇନସ୍ପେକ୍‌ଟର ଜେନେରଲ ବିଜ୍ଞାପନ ଦେଇ ଅଛନ୍ତି ଯେ ନାଗପୁରରେ ଥିବା ତାହାଙ୍କ କଚେରି ନିମିତ୍ତ ଜଣେ ଇଂରାଜୀ ଓଡ଼ିୟା କିରାନୀର ପ୍ରୟୋଜନ ଅଛି । ଆବେଦନକାରିମାନେ ଓଡ଼ିୟା ଅକ୍ଷର ସୁନ୍ଦରରପେ ଲେଖି ପାରଥିବେ ଓ ଓଡ଼ିୟା ଭାଷାରେ ତାହାଙ୍କର ଏପରି ଜ୍ଞାନଥିବ ଯେ ଇଂରାଜୀର ଓଡ଼ିୟାରେ ଶୁଦ୍ଧରପେ ଅନୁବାଦ କରି ପାରିବେ ଓ କୌଣସି ପୁସ୍ତକ ମୁଦ୍ରାଙ୍କନ ସକାଶେ ପ୍ରସ୍ତାବ ହେଲେ ତହିଁର ରଚନା ଓ ବୃତ୍ତାନ୍ତ ସମ୍ପର୍କରେ ବିଚକ୍ଷଣ ଅଭିପ୍ରାୟ ବ୍ୟକ୍ତ କରି ପାରିବେ । ବେତନ ମାସିକ ଟ୩୦ଙ୍କାର ଆରମ୍ଭ ହେବ ।

ମାସକୁ ଟ୩୦ଙ୍କା ବେତନରେ ଜଣେ ଅନୁବାଦକ ଓ ସମାଲୋଚକ; ହାୟ ! ଏତେଶୀଘ୍ର ବିଦ୍ୟାର ଭାଉ ଏଡ଼େ ଶସ୍ତା ହେଲାଣି ! ପୁଣି ଆଶ୍ଚର୍ଯ୍ୟର ବିଷୟ ଏହିଯେ ଶିକ୍ଷାବିଭାଗର ପ୍ରଧାନ କର୍ମଚାରୀ ଏ ଭାଉ ସ୍ଥିର କରିଅଛନ୍ତି । ମଧ୍ୟପ୍ରଦେଶ ମଧ୍ୟରେ ଏକା ସମ୍ବଲପୁରଠାରେ ଓଡିୟାଭାଷାରେ ଶିକ୍ଷା ଦିଆଯାଏ ସୁତରାଂ ସମ୍ବଲପୁରଠାର ନାଗପୁରକୁ ଏହି ବେତନରେ ଯିବାକୁ ହେବ । ଶିକ୍ଷାବିଭାଗର ଏହି ପ୍ରକାର ଉତ୍ସାହ ପାଇବାର ବୋଧହୁଅଇ ସମ୍ବଲପୁରରେ ବିଦ୍ୟାଶିକ୍ଷାର ଉନ୍ନତି ହେଉ ନାହିଁ ।

*ଭା୯ଗ, ସଂ୭ଖ୍ୟା, ୧୪।୨।୧୮୭୪*

## [ଗବର୍ଣ୍ଣମେଣ୍ଟ ଧନର ଉପଯୋଗ]

ଗବର୍ଣ୍ଣମେଣ୍ଟଙ୍କ ଧନ କିରପେ ବ୍ୟୟ ହୁଅଇ ତହିଁର ଗୋଟିଏ ଉଦାହରଣ ସମ୍ପ୍ରତି ଦେଖିବାରେ ଆସିଅଛି । ଓଡିୟାଭାଷାରେ ପାଠ୍ୟ ପୁସ୍ତକର ଅଭାବ ଥିବାର ସ୍ଥାନୀୟ କର୍ମଚାରିଙ୍କ ଅନୁରୋଧରେ ଗବର୍ଣ୍ଣମେଣ୍ଟ ଟ୩୦୦ଙ୍କା ଦାନକରି ଥିବାର ପାଠକମାନେ ଜାଣନ୍ତି ଓ ସମସ୍ତଙ୍କର ଆଶାଥିଲା ଯେ ଏହି ଟଙ୍କାଦ୍ୱାରା ଅନେକ ଗୁଡ଼ିଏ ନୂତନ ପୁସ୍ତକ ପ୍ରସ୍ତୁତ ହୋଇ ପାରିବ । ଆମ୍ଭେମାନେ ମଧ୍ୟ ଏଥିପୂର୍ବେ ଏ ସମ୍ପର୍କରେ କେତେଗୁଡ଼ିଏ ପ୍ରସ୍ତାବ କରିଥିଲୁ ମାତ୍ର ବର୍ତ୍ତମାନ ଶୁଣିଲୁଁ ଯେ ସେ ଟଙ୍କାର ଅଧିକାଂଶ ଯେଉଁମାନେ ପୁସ୍ତକ ରଚନା କରି ଗବର୍ଣ୍ଣମେଣ୍ଟଙ୍କଠାର ସାହାଯ୍ୟ ପ୍ରାପ୍ତ ହୋଇଥିଲେ ସେହିମାନଙ୍କୁ ଅଧିକା ପାରିତୋଷିକ ସ୍ୱରପ ଦିଆଯାଇ ଅବଶିଷ୍ଟ ଅଳ୍ପ ଟଙ୍କା କେତେଖଣ୍ଡ ଛୋଟ ପୁସ୍ତକ ନିମିତ୍ତ ରହିଅଛି । ତହିଁର ମଧ୍ୟ ସନ୍ଧାନ କାହାକୁ ମିଳିବ ନାହିଁ । ତାହା କୌଣସି କାଳରେ କେହି ଭାଗ୍ୟବାନ ପୁରଷକୁ ଦିଆଯିବ । ସ୍ଥାନୀୟ କର୍ମଚାରିମାନେ ଏରପ ବିଚାର କଲେ ଗବର୍ଣ୍ଣମେଣ୍ଟଙ୍କର ଦୋଷ କଣ ? ଯେଉଁମାନେ ଥରେ ଲେଖାଏଁ ସାହାଯ୍ୟ ପାଇ ପୁସ୍ତକ ବିକ୍ରୟକରି ଖର୍ଚ୍ଚା ଉପରେ ଲାଭ ଉଠାଇ ନେଇ ଅଛନ୍ତି ତାହାଙ୍କୁ ପୁନର୍ବାର ପାରିତୋଷିକ ଦିଆଗଲା ଓ ଯେଉଁମାନେ ଆପଣା ବ୍ୟୟରେ ପୁସ୍ତକ ମୁଦ୍ରିତ କରି ବିକ୍ରୟ ଅଭାବର ହାତର ଖର୍ଚ୍ଚା ଦେଇ ବସି ଅଛନ୍ତି ଅଥଚ ତାହଙ୍କ ପୁସ୍ତକ ମନୋନୀତ ହୋଇଅଛି ସେମାନଙ୍କୁ ଥରେସୁଦ୍ଧା କେହି ପଚାର୍‌ଲେ ନାହିଁ । ପୁସ୍ତକ ରଚିୟତାମାନେ ଏ ପ୍ରକାର ଉତ୍ସାହ ପାଇଲେ ଯେତେ ଉତ୍ତମ ପୁସ୍ତକ ବାହାରିବ ତାହା ସର୍ବ ଇରେ ଅନୁଭବ ହେଉଅଛି କିନ୍ତୁ ଏଥିକି ଆୟତ୍ତ କାହାର ? ଆଜିକାଲିକା ଦରବାର ଏହିପରି ହୋଇଅଛି । ଏସବୁ ଦେଖି ଆମ୍ଭେମାନେ ଥରେ ଥରେ ମନେକରୁଁ ଯେ ଏଣିକି ତୁନିହୋଇ ରହିବାର ଭଲ କିନ୍ତୁ କି କରିବା ବ୍ୟବସାୟଟାତ ଆଦରିଅଛୁଁ ନ କହିଲେ କାହିଁରେ କାଗଜ ଖଣ୍ଡ ଭରତି କରିବୁଁ ?

*ଭା୯ଗ,ସଂ୧୩ଖ୍ୟା,୨୮।୩।୧୮୭୪*

## ବିଜ୍ଞାପନ ।

ଏତଦ୍ଦ୍ୱାରା ସର୍ବସାଧାରଣରେ ଜଣାଉଅଛୁଁ ଯେ ବୋଧାଙ୍କୁର ପୁସ୍ତକ ଦ୍ୱିତୀୟବାର ମୁଦ୍ରାଙ୍କିତ ହୋଇ ବିକ୍ରୟ ନିମିତ୍ତ ପ୍ରସ୍ତୁତ ଅଛି । ଯେଉଁମାନେ ପୁସ୍ତକ ନେବାର ଗ୍ରାହକ ହେବେ ସେମାନେ ନର୍ମାଲ ସ୍କୁଲର ପ୍ରଧାନ ଶିକ୍ଷକ ପଣ୍ଡିତ ଶ୍ରୀତାରିଣୀ ଚରଣ ମୁଖୋପାଧ୍ୟାୟ ମହାଶୟଙ୍କ ନିକଟରେ ତତ୍ତ୍ୱ କଲେ ପାଇ ପାରିବେ ।

ଇତି

୧୩-୩-୭୪ ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣ ।

*ଭା୯ଗ, ସଂ୧୩ଖ୍ୟା, ୨୮।୩।୧୮୭୪*

## ଗଞ୍ଜାମରେ ଓଡିୟା ଭାଷା ।

ଗଞ୍ଜାମ ଜିଲାର ଅଧିକାଂଶର ଭାଷା ଓଡିୟା ଥିବାର ସେଠା ବିଦ୍ୟାଳୟ ଓ କଚେରୀ ମାନଙ୍କରେ ଓଡିୟା ଭାଷା ପ୍ରଚଳିତ କରିବାର ଆଜ୍ଞା ଗବର୍ଣ୍ଣମେଣ୍ଟର ହୋଇଥିବାର ଆମ୍ଭେମାନେ ଏଥିପୂର୍ବେ ଲେଖିଥିଲୁଁ ଓ ତଦ୍ଦ୍ୱାରା ସେଠା ନିବାସି ମାନଙ୍କର ପରମୋପକାର ହେବାର ଆଶା କରିଥିଲୁଁ ମାତ୍ର ବର୍ତ୍ତମାନ ଜଣାଯାଏ ଯେ ଅବଧି ତାହା ହୋଇନାହିଁ । ବିଶାଖାପାଟଣାଜିଲା ସମ୍ବନ୍ଧ ଜୟପୁର ନିବାସୀ ଓଡିୟା ଦୀନବନ୍ଧୁ ନାମରେ ଜଣେ ପତ୍ର ପ୍ରେରକ ଲେଖିଅଛନ୍ତି ଯେ "ଗତ ଜାନୁଏରୀ ମାସ ୨୪ ତାରିଖ ଗଞ୍ଜାମ ଗଜେଟ ୨୪ ପୃଷ୍ଠା ଲିଖିତ ଆଦେଶ ମୂଳର ଆମ୍ଭେ ଅତି ଆଶ୍ଚର୍ଯ୍ୟ ମନେକରି ଦୁଃଖର ସଙ୍ଗି ହେଲୁଁ । ଲେଖାଅଛି ଯେ ଓଡିୟାମାନେ ଓଡିୟାରେ କଚେରୀ କାଗଜପତ୍ରାଦି ଦାଖଲ କରିବାକୁ କୌଣସି ପ୍ରତିବନ୍ଧକ ନାହିଁ । ମାତ୍ର ଓଡିୟା ଲିପିରେ ଯେବେ ଦାଖଲ ହୁଅଇ ତେବେ ଜବାବ ମିଳିବାର ବିଳମ୍ବ ଦେଖାଯିବ । ଯଦି ଓଡିୟାଭାଷା ତେଲେଙ୍ଗା ଲିପି କିଂବା ଇଂରାଜୀ ଲିପିରେ ଲେଖାଯାଇ ତେବେ ବେଗରେ ଜବାବ ମିଳିପାରିବ" । ପତ୍ର ପ୍ରେରକ ଏ ଆଜ୍ଞାରେ ଅତ୍ୟନ୍ତ ଦୁଃଖିତହୋଇ ଲେଖିଅଛନ୍ତି କି ଏଥିରେ ଓଡିୟା ମାନଙ୍କର କିଛି ମଙ୍ଗଳ ହେବନାହିଁ ଏବଂ ଗବର୍ଣ୍ଣମେଣ୍ଟଙ୍କ ନିକଟରେ ଏଥିର ପ୍ରତିବାଦ କରି ଏ ଆଜ୍ଞାକୁ ରହିତ କରାଇବା ପାଇଁ ଚେଷ୍ଟା କରିବା ଅତ୍ୟନ୍ତ ଆବଶ୍ୟକ ଅଟଇ । ଏରପ ଆଜ୍ଞା ହେବାର ସେ ଏହି କାରଣ ଅନୁମାନ କରନ୍ତି ଯେ ଏ ପ୍ରଦେଶକୁ ଯେଉଁମାନେ ରାଜକର୍ମର ଭାର ଗ୍ରହଣକରି ଆସନ୍ତି ସେମାନେ ଓଡିୟା ନଜାଣି ଜାଣିବାର ଦମ୍ଭ କରନ୍ତି ।

ଏଥକୁ ଆମ୍ଭେମାନେ ବିବେଚନା କରୁଁ ଯେ ପତ୍ର ପ୍ରେରକ ଯେଉଁ କାରଣ କଳ୍ପନା କରିଅଛନ୍ତି ତାହା ନିତାନ୍ତ ଅମୂଳକ ନୁହଇ ଏବଂ ଓଡିୟା ବଙ୍ଗଳା ଘେନି ଯେ ସମସ୍ତ କଥା ଓଡିଶାରେ ହୋଇଥିଲା ଗଞ୍ଜାମ ଜିଲାରେ ସେ ସମସ୍ତ ଅବିକଳ ଘଟିବାର ଦେଖାଯାଏ । ଏଠାରେ ବଙ୍ଗଳା ଅକ୍ଷରରେ ଓଡିୟାଭାଷା ଲେଖିବାର ପ୍ରସ୍ତାବ ହୋଇଥିଲା, ସେଠାରେ ତେଲଙ୍ଗା ଅକ୍ଷରରେ ଲେଖିବାର କଥା ହୋଇଅଛି, ପ୍ରଭେଦ ଏତିକି ଯେ ଓଡିଶାରେ କେତେକ ସ୍ୱାର୍ଥପର ବ୍ୟକ୍ତି ଏରପ ପ୍ରସ୍ତାବ କରିଥିଲେ ମାତ୍ର ଗଞ୍ଜାମରେ ତାହା ଘୋଷଣା ପ୍ରଚାର ଦ୍ୱାରା ବିଧିବଦ୍ଧ ହୋଇଅଛି । ଉକ୍ତ ଘୋଷଣାର ପ୍ରକୃତ ଉଦ୍ଦେଶ୍ୟ ଯେ ପ୍ରକାରାନ୍ତରେ ଓଡିୟା ଭାଷା ଉଠାଇଦେବା ତହିଁରେ କିଛି ସନ୍ଦେହ ନାହିଁ । ଗବର୍ଣ୍ଣମେଣ୍ଟ ଯେସ୍ଥଳେ ଓଡିୟା ଭାଷା କଚେରୀରେ ପ୍ରଚଳିତ କରିଅଛନ୍ତି ସେସ୍ଥଳେ କୌଣସି କର୍ମଚାରୀ ପକ୍ଷରେ ଏରପ ବିରୋଧଜନକ ଚେଷ୍ଟା ଅତି ଦୂଷଣୀୟ ଅଟଇ । ତେଲଙ୍ଗାମାନେ ବିସ୍ତର ଗଞ୍ଜାମଜିଲାର କଚେରୀ ସବୁରେ କର୍ମ କରନ୍ତି । ସେମାନେ ଓଡିୟା ଜାଣନ୍ତିନାହିଁ କିମ୍ବା ଶିଖିବାକୁ ଚେଷ୍ଟା କରନ୍ତି ନାହିଁ ବୋଲି ଅବା ଏରପ ପରାମର୍ଶ ଉଚ୍ଚ କର୍ମଚାରୀଙ୍କୁ ଦେଇଥିବେ କିନ୍ତୁ ଉକ୍ତ କର୍ମଚାରୀମାନଙ୍କୁ ବିଚାର କରିବାର ଉଚିତ ଯେ ପ୍ରଜାଙ୍କ ହିତ ସକାଶେ ଏ ଆଜ୍ଞା ହୋଇଅଛି, ଅମଲାଙ୍କ ସକାଶେ ନୁହଇ । ଯେବେ ଲୋକେ ତେଲଙ୍ଗୀ କି ଇଂରାଜୀ ଭାଷା ଶିଖିଅଛନ୍ତି ତେବେ ସେ ଉକ୍ତ ଭାଷା ମାନଙ୍କରେ ଦରଖାସ୍ତ ଇତ୍ୟାଦି ନଲେଖି କାହିଁକି ଏକପ୍ରକାର ଅକ୍ଷର ଓ ଏକପ୍ରକାର ଭାଷା ବ୍ୟବହାର କରିବାକୁ ବାଧ ହେବେ ଓ ସେରପ କରିବା ମଧ ସୁବିଧା ନୁହଇ । ଗଞ୍ଜାମ ଜିଲାର କଚେରୀ ମାନଙ୍କରେ ଓଡିୟା ଭାଷାରେ ଲେଖାପଢି କରିବା ବ୍ୟକ୍ତିଙ୍କୁ ନିଯୁକ୍ତ କରିବା ଉଚିତ ଓ ଯେବେ ସ୍ଥାନୀୟ

କର୍ମଚାରୀମାନେ ତାହା କରିବାକୁ ଇଚ୍ଛା କରନ୍ତି ନାହିଁ ତେବେ ସେଠା ଲୋକମାନଙ୍କୁ ଉଚିତ ଯେ ଏକାମେଳ ହୋଇ ସଦ୍‌ଯୁକ୍ତି ପ୍ରଦର୍ଶନ ପୂର୍ବକ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଓ ଇଣ୍ଡିୟା ଗବର୍ଣ୍ଣମେଣ୍ଟଙ୍କୁ ଆବେଦନ ପଠାନ୍ତୁ । ତାହାହେଲେ ଅବଶ୍ୟ ଏ ଆଜ୍ଞା ରହିତ ହୋଇଯିବ ।

*ଭା/୯ଗ, ସଂ୧୬ଖ୍ୟା, ୧୮/୪/୧୮୭୪*

## ପ୍ରେରିତ ପତ୍ର

## [ଓଡିୟା ଭାଷାର ବିପକ୍ଷ]

ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହାଶୟ ସମୀପେଷୁ,ସବିନୟ ନିବେଦନମିଦଂ

ଏହିଯେ ପୂର୍ବେ ଓଡିୟାଭାଷା ଉଠିଯାଇ ବଙ୍ଗଭାଷା ଏ ଦେଶରେ ଚଳାଇବା ନିମିତ୍ତ ବଙ୍ଗୀୟମାନେ ଯେପରି ଯତ୍ନଶୀଳ ଥିଲେ ତାହା ଆପଣଙ୍କୁ ଅବିଦିତ ନାହିଁ ଯେହେତୁ ଆପଣ ଏହି ଓଡିୟାମାନଙ୍କ ମାତୃଭାଷାକୁ ରକ୍ଷା କରିବା କାରଣ ପ୍ରତିବାଦ ସ୍ୱରପେ କଚେରୀରେ ଦଣ୍ଡାୟମାନ ହୋଇଥିଲେ । କେବଳ ସ୍ଥାନୀୟ କର୍ମଚାରୀ ଏବଂ ଭୂତପୂର୍ବ ଲେଫ୍‌ଟନାଣ୍ଟ ଗବର୍ଣ୍ଣର ଶ୍ରୀଯୁକ୍ତ କାମ୍ପେଲ ସାହେବ ମହୋଦୟଙ୍କ ଅନୁଗ୍ରହର ବଙ୍ଗୀୟମାନେ ତହିଁର ନିରସ୍ତ ହୋଇ ବିଷନ୍ନ ବଦନରେ ମୂକତାବଲମ୍ବନ କରିଥିଲେ । ଏବେ କେତେଦିନ ହେଲା ଉକ୍ତ ସାହେବ ମହୋଦୟ ଭାରତବର୍ଷ ପରିତ୍ୟାଗ କରିବାର ବଙ୍ଗୀୟମାନେ ଉକ୍ତ ବିଷୟରେ ପୁନରତ୍ତେଜିତହୋଇ ବର୍ତ୍ତମାନରେ ଏକ ରଟନା କରି ଅଛନ୍ତି ଯେ ଶ୍ରୀଯୁକ୍ତ ଡାଇରେକ୍ଟର ସାହେବ ଏ ଓଡିଶାରେ ବଙ୍ଗଭାଷା ଚଳାଇବା ନିମିତ୍ତ ଏ ପ୍ରଦେଶକୁ ଶୁଭାଗମନ କରଅଛନ୍ତି । ଆଉମଧ ଏକ ବିଷୟ ଏହି ଯେ ବଙ୍ଗୀୟସହଚର ପତ୍ରିକାରେ ଓଡିଶାରେ ବଙ୍ଗଭଷା ଚଳାଇବା ନିମିତ୍ତ କଣ ପ୍ରସ୍ତାବ ପ୍ରକାଶିତ ଥିବାର ପ୍ରକାଶ କରି ଅତ୍ରତ୍ୟ କର୍ମକାରକ ବଙ୍ଗୀୟମାନଙ୍କ ମଧର କେତେକ ବ୍ୟକ୍ତି ତତ୍‌ପରୋନାସ୍ତି ଆନନ୍ଦିତ ଅଛନ୍ତି । ଯେଉଁମାନେ ଏ ଦେଶର ମାତୃଭାଷା ଉଠିଯିବାର ସମ୍ବାଦ ଶୁଣିବାମାତ୍ରେ ପରମାହ୍ଲାଦିତ ହେଉଅଛନ୍ତି ସେମାନେ ଅବା ଏଦେଶୀୟ ବ୍ୟକ୍ତିମାନଙ୍କର କି ଉପକାର କରିବେ ଏହା ଅବଶ୍ୟ ସର୍ବସାଧାରଣରେ ପ୍ରକାଶ ପାଉଅଛି । ଏପରି ବୋଧହୁଅଇ ଯେ ଯେବେ ବର୍ତ୍ତମାନର ଅତ୍ରତ୍ୟ କମିଶ୍ନର ରେବନଶା ସାହେବ ଓ କଲେକ୍ଟର ବିମସ୍ ସାହେବ ଏ ଦୁହିଙ୍କପରି କେହି ଓଡିୟା ଭାଷାର ସପକ୍ଷ ନଥାନ୍ତେ ତେବେ ଏମାନେ କଦାଚ ଓଡିୟା ଭାଷାର ନାମ ମାତ୍ର ରଖିବାରେ ସନ୍ଦେହ ହୋଇଥାନ୍ତା । ଇତ୍ୟାଦି କାରଣମାନଙ୍କରେ ଦୃଷ୍ଟିରଖି ଅତ୍ରତ୍ୟ କର୍ତ୍ତୃପକ୍ଷମାନେ ଯେପରି ଓଡ଼ିଆ ଭାଷାର ବିପକ୍ଷମାନେ ଦୂରୀଭୂତ ହୋଇ ଏଦେଶର ଏବଂ ଏ ଦେଶୀୟମାନଙ୍କର ଉନ୍ନତି ହୁଅଇ ତହିଁପ୍ରତି ଦୃଷ୍ଟି ରଖି ଅତ୍ରତ୍ୟ ସର୍ବସାଧାରଣଙ୍କର ଚିର ସ୍ମରଣୀୟ ହେଉନ୍ତୁ । ଇତି

୧୩-୫-୭୪ — କେହିଜଣେ ଓଡିଆ ।

ଡାଇରେକ୍‌ଟର ସାହେବ ପୂର୍ବେ ଉତ୍କଳ ଭାଷାର ବିରୋଧୀ ହୋଇ ଥିଲେ ସତ୍ୟ କିନ୍ତୁ ବର୍ତ୍ତମାନ ଏହି କାର୍ଯ୍ୟ ସାଧନ ନିମିତ୍ତ ଏଠାକୁ ଆସି ଅଛନ୍ତି ଏମନ୍ତ ବିଶ୍ୱାସ କରିବାର କୌଣସି କାରଣ ନାହିଁ ଓ ଯେତେକାଳ ସ୍ଥାନୀୟ କର୍ମଚାରୀମାନେ ଉତ୍କଳ ଭାଷାର ଅନୁକୂଳରେ ଅଛନ୍ତି ତେତେକାଳ ପତ୍ର ପ୍ରେରକଙ୍କର ଚିନ୍ତିତ ହେବାର ପ୍ରୟୋଜନ ନାହିଁ ।

ଉ:ଦୀ:,ସଂ ।

*ଭା/୯ଗ, ସଂ୨୦ଖ୍ୟା, ୧୬/୫/୧୮୭୪*

## ଉତ୍କଳ ଭାଷୋଦ୍ଦିପିନୀ ସଭା ।

ଗତ ସୋମବାର ରାତ୍ରରେ କଟକ ପ୍ରିଣ୍ଟିଂକମ୍ପାନିଙ୍କ ଯନ୍ତ୍ରାଳୟରେ ଉତ୍କଳ ଭାଷୋଦ୍ଦିପିନୀ ସଭାର ପ୍ରଥମାଧିବେଶନ ହୋଇଥିଲା । ନଗରର ଦେଶୀୟ ବିଦେଶୀୟ ଅନେକ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ ହୋଇଥିବା ପ୍ରତ୍ୟକ୍ଷେ କେବଳ ଜ୬୮ଣ ଉପସ୍ଥିତ ହୋଇଥିଲେ । ଆଳସ୍ୟ ହେତୁର ଅବା ତୁଚ୍ଛଜ୍ଞାନ କରି ଏମାନେ ଆସିଲେ

ନାହିଁ ବୋଲାଯାଇ ନପାରେ କିନ୍ତୁ ଯେ କୌଣସି କାରଣରେ ହେଉ ଏହାକୁ ଅବଶ୍ୟ ନିନ୍ଦନୀୟ ବୋଲିବାକୁ ହେବ ଏବଂ ଏକା ଏହି ସଭାରେ ନୁହଇ ଅନେକ ସଭାରେ ଏହିପରି ଦେଖାଯାଇ ଅଛି ଓ ପୁନଃ ପୁନଃ ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଏ ରୀତି ବିରୁଦ୍ଧରେ ଲେଖିଅଛୁଁ । ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ମଧ୍ୟରୁ କେବଳ ବାବୁ କାଳିପଦ ବନ୍ଦୋପାଧ୍ୟାୟ ପତ୍ର ଦ୍ୱାରା ଏବଂ ବାବୁ ବିଚିତ୍ରାନନ୍ଦ ଦାସ ଓ ବାବୁ ସୁଦର୍ଶନ ଦାସ ମୌଖିକ ସମ୍ବାଦ ପଠାଇଥିଲେ; ଅନ୍ୟ ଲୋକଙ୍କର କଥା କିଛି ଶୁଣାନାହିଁ । ଯାହା ହେଉ ବାବୁ ହରେକୃଷ୍ଣ ଦାସ ଆଶିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ମହାଶୟ ସଭାକୁ ଆଗମନ କରିବାର ତାହାଙ୍କୁ ସଭାପତି ପଦରେ ବରଣ କରାଯାଇ ସଭାର କାର୍ଯ୍ୟାରମ୍ଭ ହେଲା ଓ ସମ୍ପାଦକ ମହାଶୟ ବାର୍ଷିକ ବିଜ୍ଞାପନୀ ପାଠକଲେ । ତହିଁର ପ୍ରକାଶ ହେଲା ଯେ ବିଦ୍ୟାଳୟର ପଣ୍ଡିତ ଓ ଛାତ୍ରମାନେ ଏଥିର ସଭ୍ୟ ଅଟନ୍ତି ଓ ସଭ୍ୟ ସଂଖ୍ୟା ପ୍ରାୟ ଛ୭୦ଣ ଓ ତହିଁ ମଧ୍ୟରୁ ପ୍ରାୟ ଛ୩୫ଣ ପ୍ରତି ସଭାରେ ଉପସ୍ଥିତ ହୋଇଥିଲେ । ଏହା ଅତି ଆନନ୍ଦର ବିଷୟ ଅଟଇ କାରଣ ଅନ୍ୟ କୌଣସି ସଭାରେ ଏରୂପ ନିୟମିତ ଉପସ୍ଥିତ ଦେଖାଯାଇ ନାହିଁ । ସପ୍ତାହରେ ଏକଥର ସଭାର ଅଧିବେଶନ ହେବାର ନିୟମ ଓ ଗତ ବର୍ଷରେ ୪ ୨ ଅଧିବେଶନ ହୋଇଥିଲା ଏହା ମଧ୍ୟ ସୁଖକର ଅଟଇ । ଆଉ ଯେ ସବୁ ରଚନା ଓ ବକ୍ତୃତାମାନ ସଭାରେ ଆଗତ ହୋଇଥିଲା ତହିଁର ବିଷୟ ସବୁ ଉତ୍ତମ ଅଟଇ ଓ ତହିଁର ଦେଖାଯାଏ ଯେ ସେ ସବୁର ତର୍କ ବିତର୍କରେ ସଭ୍ୟ ମାନଙ୍କର ଜ୍ଞାନ ଲାଭ ହୋଇଥିବ । ଏ ସଭାଟି ସମ୍ପୂର୍ଣ୍ଣରୂପେ ଆଡ଼ମ୍ବର ଶୂନ୍ୟ ଓ ସଭ୍ୟମାନେ ଆପଣା ଉତ୍‌କର୍ଷ ସାଧନ ନିମିତ୍ତ ଏହା ସ୍ଥାପନ କରିଥିବାର ଦେଖାଯାଏ । ଯେବେ ଏହି ଭାବରେ ସଭା ଚଳଇ ତେବେ ଏହା ଦ୍ୱାରା ଯେ ଅନେକ ମଙ୍ଗଳର ସମ୍ଭାବନା ତହିଁରେ କିଛି ସନ୍ଦେହ ନାହିଁ । ପରକୁ ଶିକ୍ଷା ହେବା ପୂର୍ବରୁ ଆପେ ଉପଯୁକ୍ତ ହେବା ଆବଶ୍ୟକ ଓ ଏହି ସଦୁପଦେଶକୁ ଗ୍ରହଣ କରି ସଭ୍ୟମାନେ କାର୍ଯ୍ୟ କରଅଛନ୍ତି ।

*ଭା/୯ଗ, ସଂ୨୮ଖ୍ୟା, ୧୧/୭/୧୮୭୪*

## ବିଜ୍ଞାପନ

## [ବୈଦେହୀଶ ବିଳାସ]

ବୈଦେହୀଶ ବିଳାସ ନାମକ ପ୍ରସିଦ୍ଧ ଗ୍ରନ୍ଥ ଟୀକା ସହିତ ମୁଦ୍ରାଙ୍କନ ନିମିତ୍ତ ପ୍ରସ୍ତୁତ ଅଛି । ଶୀଘ୍ର ଯନ୍ତ୍ରାରୂଢ଼ ହେବ । ପୁସ୍ତକ ଟୀକା ସହିତ ୪୦୦ ପୃଷ୍ଠାର ଉର୍ଦ୍ଧ୍ୱ ହେବ ଓ ମୁଦ୍ରାଙ୍କନର ବ୍ୟୟ ମଧ୍ୟ ବିସ୍ତର ପଡ଼ିବ । ଏଯୋଗୁଁ ମା୩ସ ଅନ୍ତର ଏ ପୁସ୍ତକର ଏକ ଏକ ଭାଗ ବାହାର କରି ଛରି ଭାଗରେ ଏକବର୍ଷ ମଧ୍ୟରେ ଅଥବା ତହୁଁ ଉତ୍ତାର ଯେତେ ଶୀଘ୍ର ହୋଇପାରେ ସମ୍ପୂର୍ଣ୍ଣ କରିବାକୁ ସ୍ଥିର କରିଅଛୁଁ । ଯେଉଁମାନେ ବର୍ତ୍ତମାନ ଗ୍ରାହକ ହେବେ ସେମାନଙ୍କୁ ପ୍ରତ୍ୟେକ ଖଣ୍ଡ ଟ୦ଙ୍କା ବାରଅଣା ମୂଲ୍ୟରେ ଦିଆଯିବ ଓ ଅନ୍ୟମାନଙ୍କୁ ପ୍ରତିଖଣ୍ଡ ଟ୧ଙ୍କା ଦୁଇଅଣା ଦରରେ ବିକ୍ରୟ ହେବ । ସମ୍ପୂର୍ଣ୍ଣ ପୁସ୍ତକର ମୂଲ୍ୟ ଟ୫ ଙ୍କା ହେବ ।

X X X X X X X X

ଶ୍ରୀ ଗୌରୀଶଙ୍କର ରାୟ
ସେକ୍ରେଟରୀ

*ଭା/୯ଗ, ସଂ୨୮ଖ୍ୟା, ୧୧/୭/୧୮୭୪*

## [ଇଂରାଜୀ ଅକ୍ଷରରେ ଓଡ଼ିଆ ଭାଷା]

ଆମ୍ଭମାନଙ୍କର ଜଜ ସାହେବ ଇଂରାଜୀ ଅକ୍ଷରରେ (ଯାହାକୁ ରୋମୀୟ ଅକ୍ଷର ବୋଲାଯାଏ) ଓଡ଼ିଯାଭାଷା ଲେଖିବାର ନିୟମ ପ୍ରଚଳିତ କରିବାକୁ ଦୃଢ଼କଳ୍ପ ହୋଇ ଖଣ୍ଡେ ପୁସ୍ତକ ମୁଦ୍ରିତ କରାଇ ଅବଧାନ ମାନଙ୍କୁ ବିତରଣ କରିଅଛନ୍ତି ଏବଂ ସ୍ୱୟଂ ସେମାନଙ୍କୁ ଶିକ୍ଷା ଦେଉଅଛନ୍ତି । କେମନ୍ତ ଅଳ୍ପକାଳ ମଧ୍ୟରେ ଇଂରାଜୀ ଅକ୍ଷରରେ ଏଠାଲୋକେ ଓଡ଼ିଯା ଲେଖି ପାରିବେ ଏହା ଶିକ୍ଷା ଦେବା ପାଇଁ ସେ ଏମନ୍ତ ଯତ୍ନଶୀଳ ହୋଇଅଛନ୍ତି ଯେ ଏ ପକ୍ଷରେ କିଛି ମାତ୍ର ପରିଶ୍ରମ କରିବାରେ ତ୍ରୁଟି କରନାହାନ୍ତି । ଏପର ଚାଟଶାଳୀରେ ପଢ଼ିବା ଉପଯୋଗୀ ଏକଖଣ୍ଡ ବ୍ୟାକରଣ ଏବଂ ଏକଖଣ୍ଡ ସାହିତ୍ୟ ପୁସ୍ତକ ସଂକଳନ୍ କରଅଛନ୍ତି, ସାହିତ୍ୟ ପୁସ୍ତକଖଣ୍ଡ ଆରବୀୟ ଉପନ୍ୟାସର ଅନୁବାଦିତ ହୋଇଅଛି ।

ଫଳ ଯାହାହେଉ ମାତ୍ର ସାହେବଙ୍କ ଅଧ୍ୟବସାୟ ଓ ଉତ୍ସାହ ଦେଖି ଆମ୍ଭେମାନେ ଚମତ୍କୃତ ହୋଇଅଛୁଁ । ଦେଶୀୟ ଲୋକଙ୍କ ଠାରେ ଯେବେ କିଞ୍ଚିତରେ ଏସବୁ ଗୁଣ ଥାନ୍ତା ତେବେ ଉତ୍କଳର ଉନ୍ନତି ସକାଶେ କାହାରିକୁ ଚିନ୍ତିତ ହେବାକୁ ପଡ଼ନ୍ତା ନାହିଁ ।

*ଭା/୯ଗ, ସଂ୩୦ଖ୍ୟା ୨୫/୭/୧୮୭୪*

## [ଛାତ୍ରବୃତ୍ତି]

ବ୍ରହ୍ମପୁରଠାର ଏକବ୍ୟକ୍ତି ଲେଖି ଅଛନ୍ତି ଯେ ମାନ୍ଦ୍ରାଜର ଶିକ୍ଷା ବିଭାଗର ଡାଇରେକ୍‌ଟର ସାହେବ ଗଞ୍ଜାମ ଜିଲା ଉତ୍କଳୀୟଙ୍କ ପ୍ରତି ସଦୟ ହୋଇ ତାଲୁକା ବିଦ୍ୟାଳୟମାନଙ୍କରୁ ବିଦ୍ୟାଉଦ୍‌ଯୋଗୀ ଏବଂ ପ୍ରକୃତ ଉତ୍କଳୀୟ ଛାତ୍ରଗଣ ବ୍ରହ୍ମପୁର ଜିଲା ବିଦ୍ୟାଳୟସ୍ଥ ଚତୁର୍ଥ ଶ୍ରେଣୀରେ ନିଯୁକ୍ତ ହେବା ନିମନ୍ତେ ଏବଂ ଉକ୍ତ ଛାତ୍ରଗଣଙ୍କୁ କିଛି କିଛି ବୃତ୍ତି ଦେବା ନିମନ୍ତେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟକୁ ଅନୁରୋଧ କରିଥିଲେ । ଏଥକୁ ମାନ୍ଦ୍ରାଜ ଟାଇମ୍‌ସ୍ ପତ୍ରିକାରେ ଲେଖା ହୋଇଥିଲା ଯେ ଉତ୍କଳୀୟ ଛାତ୍ରଙ୍କ ସଂଖ୍ୟା ଊଣା ହେତୁର ପୃଥକ୍ ଶିକ୍ଷକର ପ୍ରୟୋଜନ ନାହିଁ । ତେଲେଙ୍ଗା ଶିକ୍ଷକଙ୍କ ଦ୍ୱାରା କାର୍ଯ୍ୟ ଚଳିପାରେ ମାତ୍ର ପତ୍ରପ୍ରେରକ ବୋଲନ୍ତି ଯେ ଶିକ୍ଷାର ସୁବିଧା ନହେଲେ ଛାତ୍ର ବୃଦ୍ଧି ହୋଇ ନପାରନ୍ତି । ଆଗେ ଓଡ଼ିଆ ଶିକ୍ଷକ ନିଯୁକ୍ତ କଲେ ଉକ୍ତ ବିଦ୍ୟାକୁ ଯେଉଁମାନେ ଶିଖିବାର ଅଭିଳାଷ ରଖନ୍ତି ସେମାନେ ଆସିବେ । ଏଥିପାଇଁ ବ୍ରହ୍ମପୁରର ଛାତ୍ରମାନଙ୍କୁ ପତ୍ରପ୍ରେରକ ଅନୁରୋଧ କରି ଅଛନ୍ତି ଯେ ସେମାନେ ପ୍ରଧାନ ଶିକ୍ଷକଙ୍କଠାରେ ଆବେଦନ କରନ୍ତୁ ।

*ଭା/୯ଗ, ସଂ୩୦ଖ୍ୟା,୨୫/୭/୧୮୭୪*

## ବିଜ୍ଞାପନ ।

## [ଶ୍ରୀମଭାଗବତ]

ଶ୍ରୀ ଜଗନ୍ନାଥ ଦାସଙ୍କ କୃତ ପ୍ରାକୃତ ଶ୍ରୀମଭାଗବତ ଏକାଦଶ ସ୍କନ୍ଧ ମୁଦ୍ରିତ ହୋଇ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ମୂଲ୍ୟ ଟଂଙ୍କା ପନ୍ଦର ଅଣା ।

ଗ୍ରହଣେଚ୍ଛୁମାନେ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଯନ୍ତ୍ରାଳୟରେ, ଉତ୍କଳପୁତ୍ର ଅଫିସରେ, ନିମ୍ନଲିଖିତ ଠିକଣାରେ ଆମ୍ଭଠାରେ, କଟକ ନର୍ମାଲ ଇସ୍କୁଲର ଭୂତପୂର୍ବ ପଣ୍ଡିତ ଗୋବିନ୍ଦ ରଥଙ୍କ ଠାରେ ଓ ଅନ୍ୟାନ୍ୟ ପୁସ୍ତକ ବିକ୍ରେତାଙ୍କ ନିକଟରେ ତତ୍ତ୍ୱ କଲେ ଅନାୟାସରେ ପାଇ ପାରିବେ ।

କଟକ — ଶ୍ରୀ ହରେକୃଷ୍ଣ ଦାସ
୨୪-୭-୧୮୭୪ — ନୂଆହାଟ, ଚୌଧୁରୀ ବଜାର

*ଭା/୯ଗ, ସଂ୩୦ଖ୍ୟା, ୨୫/୭/୧୮୭୪*

## [ସଂବାଦ ବାହିକାର ପୁନର୍ଜନ୍ମ]

ଆମ୍ଭେମାନେ ପୁନର୍ବାର ଆଜିଠାରୁ ସଂବାଦବାହିକାକୁ ପାଠକମାନଙ୍କ ହସ୍ତରେ ସମର୍ପଣ କଲୁଁ । ସନ ୧୮୭୩ ମସିହା ନବେମ୍ବର ମାସ ଆଦ୍ୟରୁ ୧୮୭୪ ଜୁଲାଇ ଶେଷ ପର୍ଯ୍ୟନ୍ତ ୯ ମାସକାଳ, ସଂବାଦବାହିକା ପକ୍ଷରେ କାଳ ସ୍ୱରୂପ ହୋଇଥିଲା । ଯେପ୍ରକାର ଘଟନା ଘଟିଥିଲା ଏଥିରେ ସଂବାଦବାହିକା ଯେ ପୁନର୍ବାର ପ୍ରକାଶିତ ହେବ ଏହା ଆମ୍ଭେମାନେ ସ୍ଥିରକରି ପାରିନଥିଲୁଁ; କିନ୍ତୁ କରୁଣାମୟ ପରମେଶ୍ୱରଙ୍କ କୃପାରୁ ପୁନର୍ବାର ପ୍ରକାଶ କରିବାକୁ ସାହାସୀ ହେଲୁଁ ।

ଏଥିପୂର୍ବେ ସଂବାଦ ବାହିକା ପି,ଏମ ସେନାପତି ଏବଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ହେଉଥିଲା, କୋଣସି ସାମାନ୍ୟ କାରଣରୁ ଉକ୍ତ କୋମ୍ପାନୀଙ୍କ ମଧ୍ୟରେ ଗୃହବିବାଦ ଉପସ୍ଥିତ ହେଲା, ତହିଁରେ କମ୍ପାନୀର ଅଂଶିଦାରମାନେ କଷ୍ଟ ସହି ରାନ୍ଧି ବାଢିଥିବା ଭାତରୁ ବଞ୍ଚିତ ହେଲେ ।!! ସେମାନଙ୍କ ସଙ୍ଗରେ ସଂବାଦବାହିକା

ମଧ ତଳକୁ ମୁହଁପୋତି ରହିଥିଲା !!! ବର୍ତ୍ତମାନ ବାଲେଶ୍ୱରରେ "ଉତ୍କଳ ପ୍ରିଣ୍ଟିଂ କମ୍ପାନୀ" ନାମରେ ଆଉ ଗୋଟିଏ ଛାପାଖାନା ସ୍ଥାପିତ ହେବାରୁ ସଂବାଦବାହିକା ମୁଖଟେକି ପାଠକମାନଙ୍କ ଅନୁଗ୍ରହ ଦୃଷ୍ଟି ଲଭିବା କାରଣ ପୁନର୍ବାର ପ୍ରକାଶିତ ହେଲା। ପାଠକେ ! ସଂବାଦବାହିକାକୁ କୃପାଦୃଷ୍ଟିରେ ଅନାଉନ୍ତୁ, ଏହି ଆମ୍ଭମାନଙ୍କର ଏକାନ୍ତ ପ୍ରାର୍ଥନା।

ଉପସଂହାର ସ୍ଥଳେ ଆମ୍ଭମାନଙ୍କ କଲେକ୍‌ଟର ଓ ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ନର୍ମାନ ସାହେବଙ୍କଠାରେ ଏତିକି ପ୍ରାର୍ଥନା ଯେ, ଆମ୍ଭମାନଙ୍କ ଭୂତପୂର୍ବ କଲେକ୍‌ଟର ଓ ମାଜିଷ୍ଟ୍ରେଟ ମହାତ୍ମା ଶ୍ରୀଯୁକ୍ତ ବୀମ୍‌ସ ସାହେବ ସଂବାଦବାହିକା ପ୍ରତି ଯେରୂପ କଟାକ୍ଷ ପାତ କରୁଥିଲେ ଓ ଏହାର ପୋଷଣ ବିଷୟରେ ଯେପ୍ରକାର ଯତ୍ନ କରୁଥିଲେ, ପ୍ରଶଂସିତ ମହୋଦୟ ସମ୍ବାଦବାହିକା ପ୍ରତି ସେରୂପ କଟାକ୍ଷପାତ କରି ତାହାର ପୋଷଣ ବିଷୟରେ ସେହି ପ୍ରକାର ଯତ୍ନ କରନ୍ତୁ।

*ଭା୭ଗ,ସଂ୧ଖ୍ୟା, ୧/୮/୧୮୭୪*

## ବିଦେଶୀ

ଆମ୍ଭେମାନେ ବିଦେଶୀ ନାମକ ପାକ୍ଷିକ ପତ୍ରିକାର ପ୍ରଥମ ସଂଖ୍ୟା ଯଥା ସମୟରେ ପ୍ରାପ୍ତ ହୋଇଥିଲୁଁ ; ଆକ୍ଷେପର ବିଷୟ ଯେ ସଂବାଦବାହିକା ସେହି ସମୟରେ ବନ୍ଦ ହୋଇ ଯିବାରୁ ଆମ୍ଭେମାନେ ତାହା ପାଇବାର ଅଙ୍ଗୀକାର କରିପାରି ନଥିଲୁଁ; ଏଣୁ ବିଦେଶୀ ସମ୍ପାଦକ ଆମ୍ଭମାନଙ୍କ ଉପରେ କ୍ରୋଧକରି ପାରିବେ ନାହିଁ।

*ଭା୭ଗ,ସଂ୧ଖ୍ୟା, ୧/୮/୧୮୭୪*

## ଉତ୍କଳ ସଂସ୍କାରକ

ଉତ୍କଳ ସଂସ୍କାରକ ନାମକ ଆଉ ଖଣ୍ଡିଏ ପାକ୍ଷିକ ସଂବାଦ ପତ୍ରିକା ବାଲେଶ୍ୱର ଉତ୍କଳ ପ୍ରିଣ୍ଟିଂ କୁମ୍ପାନୀଙ୍କ ଯନ୍ତ୍ରାଳୟରୁ ପ୍ରକାଶିତ ହେବ। ସେହି ପତ୍ରିକାର ମେନେଜର ବାବୁ ନୀଳକମଳ ଦତ୍ତ ଓକିଲ ଅଟନ୍ତି। ସେହି ପତ୍ରିକା ଏହିମାସ ତା୧୫ ରିଖରେ ପ୍ରକାଶିତ ହେବାର କଥା ଥିଲା ; କିନ୍ତୁ ସଂବାଦ ବାହିକା ପ୍ରକାଶିତ ହେବାର ତାରିଖ ଓ ସଂସ୍କାରକର ବାହାରିବାର ତାରିଖ ପ୍ରାୟ ଏକଦିନରେ ପଡ଼ିବାରୁ କାର୍ଯ୍ୟରେ ବ୍ୟାଘାତ ହେବାର ସମ୍ଭାବନା; ଏଣୁ କାର୍ଯ୍ୟର ସୁବିଧା ନିମନ୍ତେ ସମୟ ବଦଳ କରାଯାଇଅଛି । ଏହା ମାସ ତା୮ରିଖ ଓ ତା୨୪ରିଖରେ ପ୍ରକାଶିତ ହେବ ଓ ବାହିକା ମାସର ୧ମ ଓ ୧୬ଶ ତାରିଖରେ ପ୍ରକାଶିତ ହେବ ; ତାହାହେଲେ କାର୍ଯ୍ୟରେ କୌଣସି ବିଶୃଙ୍ଖଳା ଘଟିବ ନାହିଁ, ମଧ ପାଠକମାନେ ନିୟମିତ ସମୟରେ ପତ୍ରିକାମାନ ପାଇ ପାରିବେ।

*ଭା୭ଗ,ସଂ୧ଖ୍ୟା, ୧/୮/୧୮୭୪*

## ଓଡ଼ିଶାର ଇତିହାସ ।

ଆମ୍ଭମାନଙ୍କର ସୁଯୋଗ୍ୟ କେନାଲ ରେବନ୍ୟୁ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ଜୀ.ଟଏନବୀ ସାହେବ ଓଡ଼ିଶାର ଇତିହାସ ନାମରେ ପୁସ୍ତକ ପ୍ରଚାର କରି ଅଛନ୍ତି ଓ ତହିଁର ଏକଖଣ୍ଡ ଆମ୍ଭମାନଙ୍କ ନିକଟକୁ ପଠାଇ ଥିବାର ଆମ୍ଭେମାନେ କୃତଜ୍ଞତା ସହିତ ତାହା ସ୍ୱୀକାର କରଅଛୁଁ । ଏ ପୁସ୍ତକରେ ସନ ୧୮୦୩ ମସିହାଠାର ସନ ୧୮୨୮ ମସିହା ପର୍ଯ୍ୟନ୍ତ ଓଡିଶାର ଯାବତ ବିବରଣ ପ୍ରକଟିତ ହୋଇଅଛି । ସନ ୧୮୦୩ ମସିହାରେ ଇଂରାଜମାନଙ୍କ ଶାସନାଧୀନରେ ଓଡିଶା ଆସିଲାର ସେହି ଦିନଠାର ଗ୍ରନ୍ଥ ଆରମ୍ଭ ହୋଇଅଛି । ଯେରପ ଓଡିଶା ଇଂରାଜଙ୍କ ହସ୍ତଗତ ହେଲା ଓ ତହିଁଉତ୍ତାର ଯେରପ ଖୋରଧାରାଜା ବିଦ୍ରୋହାଚରଣ କରି ବନ୍ଦୀ ହେଲେ ଏବଂ ଜଗଦବନ୍ଧୁ ବିଦ୍ୟାଧରର ଗୋଳ କାହିଁକି ହେଲା ଓ ତାହା କିରପେ ନିବାରଣ ହେଲା, ପାଏକମାନେ କିରପେ ସାଧ ହେଲେ ଓ ପରିଶେଷରେ କିରପେ ଶାନ୍ତି ବିସ୍ତାର ହେଲା ଇତ୍ୟାଦି ବିଷୟ ଅତି ପାରିପାଟିରପେ ବର୍ଣ୍ଣିତ ହୋଇଅଛି । ଏସବୁ ବୃତ୍ତାନ୍ତ ପୁସ୍ତକର ପ୍ରଥମ ଭାଗରେ ଲେଖା ଯାଇଅଛି । ପୁସ୍ତକର ଦ୍ୱିତୀୟ ଭାଗରେ ରାଜସ୍ୱ

ସମ୍ପର୍କୀୟ କଥା ସବୁ ଅଛି । ଇଂରାଜଙ୍କ ଶାସନ ଗ୍ରହଣ ପୂର୍ବକ ମୁଗଲ ଓ ମରହଟ୍ଟାମାନଙ୍କ ଅମଳରେ କିରପେ ରାଜସ୍ୱ ଆଦାୟ ହେଉଥିଲା ଓ ଇଂରାଜମାନଙ୍କ ଅମଳରେ ତାହା କ୍ରମଶଃ କେମନ୍ତ ପରିବର୍ତ୍ତିତ ହେଲା ଓ କେଉଁ କେଉଁ ସନରେ ରାଜସ୍ୱ ଆଦାୟର କିପ୍ରକାର ବନ୍ଦୋବସ୍ତମାନ ହେଲା ଏକଥାମାନ ଅତି ବାହୁଲ୍ୟରପେ ସନ ୧୮୨୮ ମସିହାର ଶେଷ ପର୍ଯ୍ୟନ୍ତ ଲେଖା ଯାଇଅଛି । ଏହିବର୍ଷ ପର୍ଯ୍ୟନ୍ତ ପୁସ୍ତକ ଲେଖି କ୍ଷାନ୍ତ ହେବାର ହେତୁ ଗ୍ରନ୍ଥକର୍ତ୍ତା ଏହିରପେ ଲେଖିଅଛନ୍ତି ଯେ ସନ ୧୮୨୮ ମସିହା ପର୍ଯ୍ୟନ୍ତ ସମୁଦାୟ ଓଡିଶା ଏକଜଣ କଲେକ୍‌ଟରଙ୍କ ଅଧୀନରେ ଥିଲା । ଏହି ବର୍ଷରେ ଏ ପ୍ରଦେଶ ପୃଥକ ତିନିଜିଲା ଅର୍ଥାତ୍ ପୁରୀ କଟକ ଓ ବାଲେଶ୍ୱରରେ ବିଭାଗ ହୋଇ ତିନିଜଣ କଲେକ୍‌ଟର ନିଯୁକ୍ତ ହେଲେ । ସୁତରାଂ ଏବର୍ଷଠାର ପ୍ରତ୍ୟେକ ଜିଲାର ବିବରଣ ପୃଥକ୍ ରପେ ବର୍ଣ୍ଣିତ ହେଲେ ଭଲ ହେବ । ଫଳତଃ ଏ ପୁସ୍ତକ ଖଣ୍ଡିକ ସେ ସବୁର ପୂର୍ବ ଭାଗ ସ୍ୱରପ ହୋଇଅଛି । ଆମ୍ଭମାନଙ୍କ ବିବେଚନାରେ ଏ ଶୃଙ୍ଖଳାଟି ଉତ୍ତମ ଅଟଇ । ଭୂମିରାଜସ୍ୱ ଛଡ଼ା ଏଥିରେ ଯାତ୍ରୀ ଟାକ୍‌ସ ଚୌକିଦାରୀ ଟାକ୍‌ସ ଅବକାରି ଲବଣ ପ୍ରଭୃତି ଅନ୍ୟ କର ସବୁର ସଂକ୍ଷେପ ବିବରଣ ମଧ ଅଛି । ପୁସ୍ତକର ତୃତୀୟ ଭାଗରେ ଅପରାଧୀଙ୍କର ଶାସନ, ପୁଲିସ, ଜେଲ, ସଡ଼କ, ପୁଲ, ଦୁର୍ଭିକ୍ଷ ଓ ବାଣିଜ୍ୟାଦିର ବିବରଣ ଲେଖାଯାଇ ଅଛି ଓ ଚତୁର୍ଥ ଭାଗରେ ଷ୍ଟାରଲିଙ୍ଗ ଓ ମିଲ ସାହେବଙ୍କ ରିପୋର୍ଟ, କଟକର ବନ୍ଦୋବସ୍ତ, ଓ ଗଡ଼ଜାତର ଅବସ୍ଥା ସମ୍ପର୍କୀୟ କାଗଜପତ୍ର ଏବଂ ବନ୍ଦୋବସ୍ତ ବିଷୟରେ ସନ ୧୮୦୫ ସାଲର ୧୨ ଆଇନ ଓ ସନ ୧୮୨୨ ର ୭ ଆଇନ ପୁନର୍ମୁଦ୍ରିତ ହୋଇଅଛି । ଏରପେ ଦେଖାଯାଏ ଯେ ପୁସ୍ତକ ଖଣ୍ଡିକରେ ଯେମନ୍ତ ସୁଶୃଙ୍ଖଳାରେ ଆବଶ୍ୟକୀୟ ସମସ୍ତ ପ୍ରଧାନ ବିଷୟମାନେ ସନ୍ନିବେଶିତ ହୋଇଅଛି, ଏହା ତେମନ୍ତ ପ୍ରାଞ୍ଜଳଭାଷାରେ ରଚିତ ଓ ଏଥିରେ ପକ୍ଷପାତଶୂନ୍ୟ ମତମାନ ବ୍ୟକ୍ତ ହୋଇଅଛି । ତହିଁରେ ଉଦାହରଣ ସ୍ୱରପ ଇଂରାଜଙ୍କ ପ୍ରଥମାବସ୍ଥାର ଭୂମିକର ବନ୍ଦୋବସ୍ତ ଓ ତତ୍ କାରଣର ସ୍ଥାନୀୟ ପ୍ରାଚୀନ ଜମିଦାରଙ୍କର ଉଚ୍ଛନ୍ନ ହେବା ପ୍ରଭୃତି ବିଷୟରେ ଯାହା ଲେଖା ଅଛି ପାଠକମାନେ ପଢ଼ିଲେ ଜାଣିପାରିବେ । ଆମ୍ଭେମାନେ ବିବେଚନାକରଁ ଯେ ଏ ପୁସ୍ତକ ଓଡ଼ିୟାରେ ଅନୁବାଦିତ ହୋଇ ପ୍ରକାଶ ହେଲେ ଏଠା ସର୍ବସାଧାରଣଙ୍କର ଅନେକ ଉପକାରରେ ଆସିବ ।

*ଭା୯ଗ, ସଂ୩୧ଖ୍ୟା, ୧।୮।୧୮୭୪*

## କେହି ଶୁଣିବେ କି ?

ଆଜିକାଲି ଯେଉଁମାନଙ୍କୁ ଓଡ଼ିଶା ଉନ୍ନତି କି ଓଡ଼ିଶାର ବିଦ୍ୟାଶିକ୍ଷା କି ଓଡ଼ିୟା ଭାଷାର ଶ୍ରୀବୃଦ୍ଧିସାଧନ ପ୍ରଭୃତି କେତେକ ବିଷୟମାନଙ୍କର ଆଲୋଚନା ବା କଥାବାର୍ତ୍ତା କରିବାର ମଧ୍ୟେ ମଧ୍ୟେ ଦେଖାଯାଏ ସେମାନେ ଆଉ କଥା ମଧ୍ୟରେ ଏହି କଥାଟିକି ମୂଳକରି କହନ୍ତି, ଯେ ଓଡ଼ିଶା, ସମ୍ୱଲପୁର ଗଞ୍ଜାମ ଏ ତିନି ଦେଶ ଏକତ୍ରୀଭୂତ ନହେବାଯାଏ ଉତ୍କଳ ଦେଶ ପ୍ରକୃତ ଉନ୍ନତି ସୋପାନକୁ ଉତ୍‌ଥିତ ହୋଇ ପାରିବନାହିଁ । ମଧ୍ୟ ସେମାନଙ୍କର ଏ କଥାଟି ତୁଚ୍ଛ କି ସାମାନ୍ୟ କଥାନୁହେ । ଏଥିର ଓଜନ ଓ ଗୂଢ଼ତ୍ୱ ଅଛି । ଯେତେବେଳେ ତିନି ଦେଶୀୟ ଲୋକ ଏକ ଉତ୍କଳ ଅକ୍ଷରରେ ଯାବତୀୟ କଥାର ଲିଖନ ପଠନ କରୁଅଛନ୍ତି ଓ ଯେଉଁମାନେ କି ଏକ ପ୍ରକାର ରୀତିନୀତି ଦ୍ୱାରା ସମାଜରେ·ଚଳବିଚଳ ହେଉଅଛନ୍ତି ସେମାନଙ୍କୁ ଯେ ତିନି ସ୍ଥାନରେ ତିନି ଗବର୍ଣ୍ଣମେଣ୍ଟର ତିନି ପ୍ରକାର ରଖିବା କେତେଦୂର ଅବିଧେୟ ତାହା ଜନସାଧାରଣ ବିବେଚନା କରନ୍ତୁ **।xxxxx** ଥରକୁ ଥର ସମ୍ୱଲପୁର ଗଞ୍ଜାମ ଓଡ଼ିଶା ସଙ୍ଗେ ମିଳିବାର ପ୍ରସ୍ତାବ ଉଠୁଅଛି ମାତ୍ର ସେ କଥା ନା ଦେଶୀୟ ଲୋକେ ଶୁଣୁଅଛନ୍ତି ନା ଗବର୍ଣ୍ଣମେଣ୍ଟ ଶୁଣୁଅଛନ୍ତି ?ଏଥର କେହି ଶୁଣିବେ କି ?

*ଭା୨ଗ, ସଂ୯ଖ୍ୟା, ୧୯।୮।୧୮୭୪*

## [ବାଲେଶ୍ୱର ସମ୍ୱାଦବାହିକା]

ଆମ୍ଭେମାନେ ଆନନ୍ଦର ସହିତ ପାଠକମାନଙ୍କୁ ଜଣାଉଅଛୁଁ ଯେ ବାଲେଶ୍ୱର ସମ୍ୱାଦ ବାହିକାର ପୁନର୍ଜନ୍ମ ହୋଇଅଛି । ଚଳିତ ମାସର ତା ୧ ରିଖର ପତ୍ରିକା ବାହାରିବାର ଆରମ୍ଭ ହୋଇଅଛି । ଏହାର ଆକାର ମୂଲ୍ୟ ଓ ଅନ୍ୟାନ୍ୟ ଅବସ୍ଥା ଠିକ ପୂର୍ବପ୍ରାୟ ଅଟଇ କେବଳ ରାଜକୀୟ ସଂବାଦ କିଛି ପ୍ରକାଶ ନାହିଁ । ମାତ୍ର ସମ୍ପାଦକ ଭରସା କରନ୍ତି ଯେ ରାଜକୀୟ ବଳ ମଧ ସେ ଶୀଘ୍ର ଲଭିବେ । ସମ୍ୱାଦବାହିକାର ପୁନର୍ଜନ୍ମ ହେଲା ସତ୍ୟ ମାତ୍ର ଏଥିପାଇଁ ଏହାର ପୂର୍ବ ଅସ୍ତିତ୍ୱମାନ ଲୋପ ହୋଇନାହିଁ । ସେସବୁ ମିଶିକରି ଏହାର ବୟସ ବ୭ର୍ଷ ହୋଇଅଛି ସୁତରାଂ ସାଧାରଣ ପୁନର୍ଜନ୍ମରେ ଯେ ପୂର୍ବ ବୃତ୍ତାନ୍ତ ବିସ୍ମୃତ ହେବାର ବୋଲାଯାଏ ତାହା ଏଠାରେ ଘଟିନାହିଁ । ଯାହାହେଉ ଆମ୍ଭେମାନେ ପ୍ରାର୍ଥନା କରୁଁ ଯେ ଯେଉଁମାନେ ବାହିକାକୁ ପ୍ରତିପାଳନ କରିଆସୁଥିଲେ ସେମାନେ ହଜିଲା ଧନ ପାଇଲାପରି ଏହାକୁ ସମଧିକ ଶ୍ରଦ୍ଧା ଓ ଅନୁଗ୍ରହ ସହିତ ପୁନର୍ଗ୍ରହଣ କରନ୍ତୁ ।

ଉପସଂହାର ସ୍ଥଳେ ଗୋଟିଏ କୌତୁକର କଥା ଦେଖାଯାଏ । ବାହିକା ଓ ବିଦେଶୀର ଦୈବାତ୍ ସାପ-ନେଉଳ ସମ୍ପର୍କ ପଡ଼ିଗଲା ବଡ଼ ଚମତ୍କାରର କଥା । ସମ୍ୱାଦବାହିକାର ଜଣାଯାଏ ଯେ ବିଦେଶୀ ବାହାରିବା ସମୟରେ ଉକ୍ତ ପତ୍ରିକା ବନ୍ଦ ହେବାର ପ୍ରାପ୍ତିସ୍ୱୀକାର ମଧ ହୋଇପାରି ନଥିଲା । ବର୍ତ୍ତମାନ ବାହିକା ବାହାରିଲା ବେଳକୁ ବିଦେଶୀଙ୍କର ଆଉ ଦେଖାନାହିଁ !! ସୁତରାଂ ଏ ଦୁଇ ପତ୍ରିକାର ଭେଟହେବା ବଡ଼ କଠିନ ଦେଖାଯାଏ । ଉତ୍କଳ ପୁତ୍ର ବୋଲନ୍ତି ଯେ କିଛିଦିନ ଉତ୍ତାର ବିଦେଶୀ ଅନ୍ୟ ଛାପାଖାନାରେ ମୁଦ୍ରିତ ହୋଇ ବାହାରିବ ।

*ଭା ୯ ଗ, ସଂ ୩୪ ଖ୍ୟା, ୨୨ । ୮ । ୧୮୭୪*

## [ବଙ୍ଗଳା ଭାଷା ଚଳାଇବାର ଚେଷ୍ଟା]

ପଟାମୁଣ୍ଡାଇ ନାଏବ ସେଠା ସ୍କୁଲରେ ବଙ୍ଗଳା ଚଳାଇବାକୁ ଚେଷ୍ଟା କରଥିବାର ଜଣେ ପତ୍ର ପ୍ରେରକ ଲେଖି ଅଛନ୍ତି ଓ ଏହି ଉଦ୍ଦେଶ୍ୟରେ ସେ ସ୍କୁଲର ବିଲ ବଙ୍ଗଳାରେ ଲେଖି ପଠାଇଥିଲେ ମାତ୍ର ଜଏଣ୍ଟ ଇନସ୍ପେକ୍‌ଟର ତାହା ଫେରାଇ ଦେଲେ ।

*ଭା ୯ ଗ, ସଂ ୩୭ ଖ୍ୟା, ୧୨ । ୯ । ୧୮୭୪*

## [ପୁରୁଷୋତ୍ତମ ଚନ୍ଦ୍ରିକା]

ପୁରୁଷୋତ୍ତମ ଚନ୍ଦ୍ରିକା ନାମରେ ଖଣ୍ଡିଏ ପାକ୍ଷିକ ସଂବାଦପତ୍ର ପୁରୀରେ ବାହରି ଅଛି ଓ ଆମ୍ଭେମାନେ ଏହାର ପ୍ରଥମ ଖଣ୍ଡ ପାଇଥିବାର କୃତଜ୍ଞତା ପୂର୍ବକ ସ୍ୱୀକାର କରଅଛୁଁ । ଏହାର ପ୍ରଚାରକ ବାବୁ କ୍ଷିରୋଦ ନାଥ ମିତ୍ର ଓ ଏହା ପୁରୀ ନିବାସୀ ବାବୁ ରାମ ଗୋପାଳ ଚାଟୁର୍ଯ୍ୟାଙ୍କ ସ୍ଥାପିତ ଭକ୍ତି ପ୍ରଦାୟିନି ଯନ୍ତ୍ରାଳୟରେ ମୁଦ୍ରିତ । ଏହାର କଳେବର ୮ ପେଜି ଏକ ଫର୍ମା ଅର୍ଥାତ ସାଧାରଣ ପୁସ୍ତକ ଆକାରରେ ଆଠପୃଷ୍ଠା ଓ ବାର୍ଷିକ ମୂଲ୍ୟ ୮୩ ଙ୍କା । ପତ୍ରିକାର ଉଦ୍ଦେଶ୍ୟ ପ୍ରକାଶ ନାହିଁ କିନ୍ତୁ ଏଥିରେ କେବଳ ଜଗନ୍ନାଥଙ୍କ ଯାତ୍ରାର ବିବରଣ ଲେଖା ଥିବାର ଏହାକୁ ମାଦଳା ପାଞ୍ଜିର ଏକ ଅଂଶ ବୋଲାଯାଇ ପାରେ ଓ ଛାପା ଏମନ୍ତ ମନ୍ଦ ହୋଇଅଛି ଯେ ପଢ଼ିବାର କଠିନ । ଆମ୍ଭେମାନେ ଜାଣୁ ଯେ ଯନ୍ତ୍ରାଳୟ ନୂତନ ସ୍ଥାପିତ ହୋଇଅଛି ଓ ବୋଧ ହୁଅଇ ନୂତନ କର୍ମଚାରୀସବୁ ରହି ଶିକ୍ଷା କରଅଛନ୍ତି ବୋଲି ଛାପା ଏଡ଼େ ମନ୍ଦ ହୋଇଅଛି ମାତ୍ର ଏଡ଼େ ତର ତର ହୋଇ ପତ୍ରିକା ବାହାର କରିବାର ପ୍ରୟୋଜନ କି ? ମାସେ ଅଧେ କର୍ମଚାରୀଙ୍କୁ ଶିକ୍ଷା ଦେଇ ଅଥବା ଉପଯୁକ୍ତ ଲୋକ ରଖି ଭଲ ଛାପା ହେଲା ଉତ୍ତାର କାଗଜ ବାହାର କରିଥିଲେ ଭଲ ହୋଇଥାନ୍ତା ଓ ତହିଁରେ ଲୋକଙ୍କର ଆଗ୍ରହ ବଢ଼ନ୍ତା । ଏଥିପାଇଁ ଆମ୍ଭେମାନେ ଭରସା କରଁ କି ପତ୍ରିକାର ଅଧିକାରୀମାନେ ଏମନ୍ତ ଯତ୍ନ କରନ୍ତୁ କି ଯହିଁରେ ତାହା ସର୍ବସାଧାରଣଙ୍କ ମନ ଓ ଆଖିକୁ ରଚିବ ଓ ତଦ୍ୱାରା ପତ୍ରିକା ଚିରସ୍ଥାୟୀ ହେବ ।

*ଭା ୯ ଗ, ସଂ ୩୮ ଖ୍ୟା, ୧୯ । ୯ । ୧୮୭୪*

## ଏ ଦେଶୀୟ ସିବିଲ ସରବିସ ।

ଏ ଦେଶୀୟ ସିବିଲ ସରବିସ ପରୀକ୍ଷାର ଚଳିତ ବର୍ଷର ଫଳ ସମ୍ପର୍କରେ ବଙ୍ଗାଳ ଗବର୍ଣ୍ଣମେଣ୍ଟଙ୍କ ନିର୍ଦ୍ଧାରଣ ବାହାରିଅଛି । ତହିଁର ଦେଖାଯାଏ ଯେ ଏବର୍ଷ ଜ ୩୮୫ ଣ ପରୀକ୍ଷା ଦେବାକୁ ଉପସ୍ଥିତ ହୋଇଥିଲେ ତହିଁ ମଧ୍ୟର ଜ ୨୦୦ଣ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି । ଉତ୍ତୀର୍ଣ୍ଣ ହେବା ବ୍ୟକ୍ତିଙ୍କ ମଧ୍ୟରେ ଜ୩୮ଣ ପ୍ରଥମ, ଜ୩୮ଣ ଦ୍ୱିତୀୟ, ଓ ଅବଶିଷ୍ଟ ଜ ୧୨୪ଣ ତୃତୀୟ ଶ୍ରେଣୀରେ ଭୁକ୍ତ ହୋଇଅଛନ୍ତି । ଏମାନଙ୍କ ମଧ୍ୟରେ ଦୁଇଜଣ ଆସାମ ବାସୀ ଥିବାର ସେମାନେ ସ୍ୱପ୍ରଦେଶରେ କର୍ମ କରିବେ । ବାକି ଜ ୧୯୮ଣଙ୍କୁ ଗବର୍ଣ୍ଣମେଣ୍ଟ ବଙ୍ଗଳାର କମିଶ୍ନର ମାନଙ୍କ ମଧ୍ୟରେ ବାଣ୍ଟିଦେଇ ଅଛନ୍ତି । ଏଉପେ ଓଡିଶା ବିଭାଗରେ ତଳଲିଖିତ ବ୍ୟକ୍ତିମାନେ ପଡିଅଛନ୍ତି । ଯଥା

ପ୍ରଥମ ଶ୍ରେଣୀ

୧-ଭୂୟାଁ ଅବଦୁର ରହମାନ
୨-ନନ୍ଦ କିଶୋର ଦାସ

ଦ୍ୱିତୀୟ ଶ୍ରେଣୀ

୦-ଉମାଚରଣ ଚକ୍ରବର୍ତ୍ତୀ
୨-କୁମୁଦ ନାଥ ମୁଖୁର୍ଯ୍ୟା

ତୃତୀୟ ଶ୍ରେଣୀ

୧-ମହିମ ଚନ୍ଦ୍ର ଦାସ
୨-ଉପେନ୍ଦ୍ର ଚନ୍ଦ୍ର ମଜୁମଦାର
୩-ଗୋଲକ ନାଥ ମୁଖୁର୍ଯ୍ୟା
୪-ଦୁର୍ଗାଦାସ ମୁଖୁର୍ଯ୍ୟା
୫-ନାରାୟଣ ଚନ୍ଦ୍ର ନାୟକ
୬-ଶ୍ରୀନାଥ ବାନୁର୍ଯ୍ୟା
୭-ମହେନ୍ଦ୍ର ନାଥ ମଲ୍ଲିକ

*ଭା/୯ଗ, ସଂ୩୮ଖ୍ୟା, ୧୯/୯/୧୮୭୪*

## [ପୁରୁଷୋତ୍ତମ ଚନ୍ଦ୍ରିକା]

ପୁରଷୋତ୍ତମଚନ୍ଦ୍ରିକାର ତୃତୀୟ ସଂଖ୍ୟା ଆମ୍ଭେମାନେ ଦେଖି ଆନନ୍ଦିତ ହୋଇଅଛୁଁ । ଏହାର ଛାପା ପୂର୍ବାପେକ୍ଷା ଅନେକ ଭଲ ହୋଇଅଛି ଏବଂ ଏଥିରେ ଅନେକ ଗୁଡ଼ିଏ ସ୍ଥାନୀୟ ସଂବାଦ ଅଛି । ଆମ୍ଭେମାନେ ପ୍ରଥମ ସଂଖ୍ୟା ଦେଖି ଚନ୍ଦ୍ରିକାକୁ ମାଦଳା ପାଞ୍ଜି ପ୍ରାୟ ମଣିଥିବାର ସମ୍ପାଦକ ରଷ୍ଟ ହୋଇଅଛନ୍ତି ସତ୍ୟ ମାତ୍ର ଯେଉଁ ଅଂଶର ଆମ୍ଭେମାନେ ତୁଳନା କରିଥିଲୁଁ ତାହା ପରିତ୍ୟୋଗ କରିଅଛନ୍ତି ସୁଖର ବିଷୟ ଅଟଇ । ବାଲ୍ୟାବସ୍ଥାରେ ଅନେକ ଦୋଷ ଦେଖାଗଲେ ମଧ୍ୟ ସାଧ ପକ୍ଷରେ ଯେଉଁ ବାଳକ ତ୍ରୁଟି କରଇ ତାହାକୁ ତାଡ଼ନା ସହିବାକୁ ହୁଅଇ ।

*ଭା/୯ଗ,ସଂ୪୧ଖ୍ୟା,୧୦/୧୦/୧୮୭୪*

## ପାଠ୍ୟପୁସ୍ତକର ଦୁର୍ଲ୍ଲଭତା ।

ବାଲେଶ୍ୱର ସଂବାଦବାହିକା ଲେଖିଅଛନ୍ତି ଯେ ଭାଷା ଛାତ୍ରବୃତ୍ତି ପରୀକ୍ଷା ନିମିତ୍ତ ଯେ ସମସ୍ତ ପୁସ୍ତକ ନିର୍ବାଚିତ ହୋଇଅଛି ସେସବୁ ବାଲେଶ୍ୱର ଅଞ୍ଚଳର ଅନେକ ପିଲାମାନେ ଅବଧି ପାଇନାହାନ୍ତି । ଏ ପୁସ୍ତକମାନଙ୍କ ମଧ୍ୟର ଅଧିକାଂଶ କଟକରେ ଥିବାର ତାହା ପ୍ରାପ୍ତି ବିଷୟରେ ବଡ଼ ବ୍ୟାଘାତ ହୋଇଅଛି । ସମ୍ପାଦକ ଆହୁରି ଲେଖନ୍ତି କି ସ୍ୱୟଂ ବିଡି ଅଛନ୍ତି ଯେ ପୁସ୍ତକ ପାଇଁ କଟକକୁ ପତ୍ର ଲେଖିଲେ ପୁସ୍ତକ ମିଳିବାର ତେଣିକି ଥାଉ ପତ୍ରର ଉତ୍ତର ପାଇବା ସୁଦ୍ଧା କାହାରି କପାଳରେ ଘଟଇନାହିଁ ।

ସମ୍ବାଦବାହିକାର ଉପରଲିଖିତ ବାକ୍ୟରେ ଆମ୍ଭେମାନେ ବଡ଼ ଦୁଃଖିତ ଓ ଲଜ୍ଜିତ ହୋଇଅଛୁଁ । ଓଡ଼ିଶା ବିଦ୍ୟାଳୟର ଅଧିକାଂଶ ପାଠ୍ୟ ପୁସ୍ତକ ଆମ୍ଭମାନଙ୍କ ଯନ୍ତ୍ରାଳୟରେ ବିକ୍ରିତ ହୁଅଇ ଓ ଆମ୍ଭେମାନେ ନିଶ୍ଚୟକରି କହୁଅଛୁଁ ଯେ ପାଠ୍ୟ ପୁସ୍ତକ ଯୋଗାଇବା ବିଷୟରେ କଟକ ପ୍ରିଣ୍ଟିଂ କମ୍ପାନୀ କେତେବେଳେହେଁ ତ୍ରୁଟି କରିନାହାନ୍ତି । କମ୍ପାନୀଙ୍କର ନିୟମ ଏହି ଯେ କୌଣସି ବିଷୟରେ କେହି ପତ୍ର ଲେଖିଲେ ଶୀଘ୍ର ହେଉ ବା ବିଳମ୍ବ ହେଉ (କାର୍ଯ୍ୟବଶତଃ କେବେ ବିଳମ୍ବ ହୋଇଥାଏ) ଅବଶ୍ୟ ତହିଁର ଉତ୍ତର ପାଇବ । ଚଳିତ ବର୍ଷରେ ଯେତେ ଲୋକ କମ୍ପାନୀଙ୍କ ନିକଟକୁ ପୁସ୍ତକ ପାଇଁ ପତ୍ର ଲେଖିଅଛନ୍ତି ପ୍ରାୟ କାହାରିକୁ ନୈରାଶ ହେବାକୁ ହୋଇ ନାହିଁ । ଏମନ୍ତ କି ହାତର ଡାକ ମାହାସୁଲ ସୁଦ୍ଧା ଦିଆଯାଇ ପୁସ୍ତକ ଉଧାର ସ୍ୱରପ ପଠାଯାଇ ମା୬।୭ସରେ ତହିଁର ମୂଲ୍ୟ ଆଦାୟ

ହୋଇ ଅଛି ଓ ପୁସ୍ତକାର୍ଥୀଙ୍କ ସୁଯୋଗ ସକାଶେ କେବେ କେବେ ଅପର ସ୍ଥାନର ଉଧାର ଆଣି ବିନା କମିଶନରେ ପରିଚିତ ଗ୍ରାହକଙ୍କୁ ଦିଯା ଯାଇଅଛି । ସମ୍ପାଦକ ବାଲେଶ୍ୱର ନଗରଠାରେ ଏଥିର ଅନୁସନ୍ଧାନ କଲେ ଜାଣି ପାରିବେ, ତେବେ ବ୍ୟବସାୟର ନିୟମାନୁସାରେ କୌଣସି ଅପରିଚିତ ଲୋକ ଯେବେ ବିନା ଅଗ୍ରିମ ମୂଲ୍ୟରେ ପୁସ୍ତକ ପାଇନଥାନ୍ତି ସେକଥା କହିନପାରେଁ । ସମ୍ପାଦକ ମହାଶୟ ଏଥର ଅନୁସନ୍ଧାନ ନକରି ଯେରପ ମୋଟରେ କଟକୀ ପୁସ୍ତକ ବିକ୍ରେତାଙ୍କର ଦୁର୍ନାମ କରିଅଛନ୍ତି ତହିଁରେ କଟକ ପ୍ରିଣ୍ଟିଂ କମ୍ପାନୀଙ୍କର.ମଧ ଦୁର୍ନାମ ହୋଇଅଛି । ଆମ୍ଭେମାନେ ଭରସାକରେଁ ଯେ ସଂବାଦବାହିକା ଏଥିର ଉପଯୁକ୍ତ ପ୍ରତିକାର କରିବେ, ନୋହିଲେ ତାଙ୍କ ଜାଣିବାରେ କେତେଥର ତାହାଙ୍କୁ ଅଥବା ଅନ୍ୟ ବ୍ୟକ୍ତିଙ୍କୁ ପୁସ୍ତକ କିଂବା ପତ୍ରର ଉତ୍ତର ଦେଇନାହୁଁ ତାହା ପ୍ରକାଶ କଲେ ସର୍ବସାଧାରଣ ଜାଣିପାରିବେ ଯେ ତାହାଙ୍କର ଲେଖା ଅସଙ୍ଗତ ନୁହଇ ଓ ପ୍ରିଣ୍ଟିଂ କମ୍ପାନୀ ବାସ୍ତବରେ ନିନ୍ଦାର ପାତ୍ର ଅଟନ୍ତୁ ।

ପୁସ୍ତକ ବିକ୍ରୟ ସୁବିଧା ସମ୍ପର୍କରେ ଆମ୍ଭମାନଙ୍କର କିଛି ବକ୍ତବ୍ୟ ଅଛି ଏ ପଛେ ପ୍ରକାଶ କରିବୁଁ ।

*ଭା/୯ଗ, ସଂ୪୧ଖ୍ୟା, ୧୦/୧୦/୧୮୭୪*

## ସାପ୍ତାହିକ ସଂବାଦ ।

## [ଓଡ଼ିଆ ଛାତ୍ରଙ୍କୁ ସାହାଯ୍ୟ]

ଉତ୍କଳ ପୁତ୍ରର ଅବଗତ ହେଲୁଁ ଯେ ଆମ୍ଭମାନଙ୍କର କମିଶନର ଶ୍ରୀଯୁକ୍ତ ରାବନସା ସାହେବ କଲିକତା ମେଡିକାଲ ସ୍କୁଲ ଓ ମେଡିକାଲ କଲେଜରେ ପଢୁଥିବା ଛ୪ଣ ଓଡ଼ିଶାବାସୀ ଛାତ୍ରଙ୍କୁ ପୁସ୍ତକ ଓ ଯନ୍ତ୍ରାଦି କ୍ରୟ କରିବାର ସାହାଯ୍ୟ ପାଇଁ ଟ ୨ ୫ଙ୍କା ଲେଖାଏଁ ଦାନକରି ଅଛନ୍ତି । ଓଡ଼ିଶାବାସୀଙ୍କ ବିଦ୍ୟୋନ୍ନତି ପକ୍ଷରେ ଆମ୍ଭମାନଙ୍କର କମିଶନରଙ୍କର ଦାନଶୀଳତା ଅତ୍ରତ୍ୟ ସର୍ବସାଧାରଣ ବର୍ଷକୁ ବର୍ଷ ଦେଖି ଆସୁଅଛନ୍ତି ଓ ବର୍ତ୍ତମାନ ଦାନ ତହିଁର ଆଉ ଗୋଟିଏ ପ୍ରଶଂସନୀୟ ଉଦାହରଣ ଅଟଇ । ଓଡ଼ିଶାବାସୀମାନେ କେବେ ଏପ୍ରକାର ମହତ୍ କାର୍ଯ୍ୟର ଅନୁକରଣ କରିବେ ।

*ଭା/୯ଗ, ସଂ୪୧ଖ୍ୟା, ୧୦/୧୦/୧୮୭୪*

## [ସ୍ୱତନ୍ତ୍ର ସ୍କୁଲ ଇନସ୍ପେକ୍ଟର]

ଓଡ଼ିଶା ସକାଶେ ଜଣେ ସ୍ୱତନ୍ତ୍ର ସ୍କୁଲ ଇନସ୍ପେକ୍ଟର ନିଯୁକ୍ତ ହେବାରେ ଆମ୍ଭେମାନେ ଯେତେ ଆନନ୍ଦିତ ହୋଇଅଛୁଁ ବାବୁ ଚଣ୍ଡୀ ଚରଣ ବାନୁର୍ଯ୍ୟାଙ୍କ ବଦଳିରେ ତହୁଁ ଅଧିକ ଦୁଃଖିତ ଅଛୁଁ । ନୂତନ ଇନସ୍ପେକ୍ଟରଙ୍କ କର୍ମରେ ରବର୍ଟ ପାରି ସାହେବ କିଛି ଦିନପାଇଁ ନିଯୁକ୍ତ ହୋଇଅଛନ୍ତି । ଏ ମହାଶୟ ହୁଗୁଳୀ କଲେଜର ଅଧ୍ୟାପକ ଥିଲେ । ଏଠାର ଜଏଣ୍ଟ ଇନସ୍ପେକ୍ଟର ପଦ ଉଠିଗଲା ଓ ଏଜର ସାହେବ କଟକ ହାଇସ୍କୁଲର ପ୍ରଧାନ ଶିକ୍ଷକ ହେଲେ । ଏକାବେଳେକେ ଯେ ପ୍ରକାର ଏ କର୍ମ ସବୁର ବନ୍ଦୋବସ୍ତ ହୋଇଅଛି ତହିଁର ଏପ୍ରକାର ଅନୁମାନ ହେଉଛି କି ଯେମନ୍ତ ଏଜର ସାହେବଙ୍କୁ କର୍ମରେ ରଖିବାପାଇଁ ଚଣ୍ଡୀବାବୁ ସ୍ଥାନାନ୍ତରିତ ହୋଇଅଛନ୍ତି । ଯାହାହେଉ ଚଣ୍ଡୀବାବୁ କଟକ ହାଇସ୍କୁଲର ପ୍ରଧାନ ଶିକ୍ଷକ ସ୍ୱରପ ଅନେକ ମଙ୍ଗଳ କରିଅଛନ୍ତି ଏବଂ ଆମ୍ଭେମାନେ ଆନନ୍ଦର ସହିତ ଶୁଣିଲୁଁ ଯେ ସ୍କୁଲର ବର୍ତ୍ତମାନ ଓ ପୂର୍ବର ଛାତ୍ରମାନେ ତାହାଙ୍କଠାରେ ଆପଣା ଭକ୍ତି ଓ କୃତଜ୍ଞତା ଦେଖାଇବା ସକାଶେ ଏକ ଅଭିନନ୍ଦନ ପତ୍ର ତାହାଙ୍କୁ ଅର୍ପଣ କରିବାକୁ ପ୍ରସ୍ତୁତ ଅଛନ୍ତି ।

*ଭା/୯ଗ, ସଂ୪୩ଖ୍ୟା, ୩୧/୧୦/୧୮୭୪*

## [ଯୋଗ୍ୟ ଓଡ଼ିଆଙ୍କ ଅଭାବ କି ??]

ଶ୍ରୀଯୁକ୍ତ ରବର୍ଟ ପାରି ସାହେବ କିଛିଦିନ ପାଇଁ ଓଡ଼ିଶା ସ୍କୁଲ ସମୂହର ଇନସ୍ପେକ୍ଟର ନିଯୁକ୍ତ ହେବାର କାରଣ ସ୍ୱରପ କେହି କେହି କହନ୍ତି ଯେ ଏ ପଦରେ କୌଣସି ଓଡ଼ିୟାଙ୍କୁ ନିଯୁକ୍ତ କରିବା କମିଶ୍ନର ସାହେବଙ୍କର ଏକାନ୍ତ ଇଚ୍ଛା । ମାତ୍ର ଆପାତତଃ ତାହାଙ୍କ ଜାଣିବାରେ ଏ ପଦର ଉପଯୁକ୍ତ କେହି ଓଡ଼ିୟା ନଥିବାର ଉକ୍ତ ସାହେବଙ୍କୁ ଦିଆଯାଇଅଛି । ଯେବେ ଏକଥା ସତ୍ୟ ହୁଅଇ ତେବେ କମିଶ୍ନର ସାହେବଙ୍କ ବିଚାରକୁ ଧନ୍ୟ

ବୋଲିବାକୁ ହେବ । ଓଡ଼ିୟାଙ୍କ ଭଲ କରିବେ ବୋଲି ୭/୮ ବର୍ଷ ହେଲା ଘୋଷି ହେଉଅଛନ୍ତି ଅଥଚ କାର୍ଯ୍ୟରେ କେବଳ ବନମାଳୀ ବାବୁ ଓ ନନ୍ଦ କିଶୋର ବାବୁ ଭିନ୍ନ କାହାରି ଭଲ କରିବାର ଦେଖା ନଥିଲା । କୌଣସି ଉଚ୍ଚ ପଦପାଇଁ ଏଠାରେ କି ଆଉ କୌଣସି ଓଡ଼ିୟା ଉପଯୁକ୍ତ ନାହାନ୍ତି ? ପୁଣି ଓଡ଼ିୟା ଶବ୍ଦର ଅର୍ଥରେ ଏହାଙ୍କ ବିଚାର ଏମନ୍ତ ଏକ ବାଗିୟା ଯେ ଓଡ଼ିଶାରେ ପୁରୁଷାନୁକ୍ରମେ ବାସ କରୁଥିବା ଅନେକ ଲୋକ ତାହା ମଧ୍ୟରେ ଆସୁ ନାହାନ୍ତି । ସେ ଯାହାହେଉ ଓଡ଼ିଶାରେ ଇନସ୍ପେକ୍ଟର ହେବା ଯୋଗ୍ୟ କେହି ଓଡ଼ିୟା ଅଛି କି ନାହିଁ କମିଶ୍ନର ସାହେବ କି ଏଥିର ଅନୁସନ୍ଧାନ କରିଥିଲେ ? ଆମ୍ଭମାନଙ୍କ ବିବେଚନାରେ ସେ ତାହା କରିନାହାନ୍ତି କାରଣ କରିଥିଲେ ବାବୁ ମଧୁସୂଦନ ଦାସଙ୍କୁ କି ହେତୁର ଅଯୋଗ୍ୟ ବିବେଚନା କଲେ ବୁଝା ଯାଉନାହିଁ । ସେତ ଓଡ଼ିୟାଙ୍କ ମଧ୍ୟରେ ବିଶ୍ୱବିଦ୍ୟାଳୟର ଉଚ୍ଚପଦ ପାଇଅଛନ୍ତି ତେବେ ସେ ଖ୍ରୀଷ୍ଟିୟାନ ହୋଇଅଛନ୍ତି ବୋଲି ଯେବେ ଅଯୋଗ୍ୟ ହୋଇଅଛନ୍ତି ତେବେ ତହିଁକି ବଳ କାହାର । କି ପ୍ରକାର ଗୁଣବିଶିଷ୍ଟ ହେଲେ ଇନସ୍ପେକ୍ଟର ହୋଇ ପାରେ ଯେବେ କମିଶ୍ନର ସାହେବ ତହିଁର ଖଣ୍ଡିଏ ବିଜ୍ଞାପନ ଦେଇ କର୍ମପ୍ରାର୍ଥୀଙ୍କୁ ଲୋଡ଼ିଥାନ୍ତେ ତେବେ ଆମ୍ଭମାନଙ୍କର ବିଶ୍ୱାସ ହୁଅଇ ଯେ ସେ ଅବଶ୍ୟ ଜଣେ ଓଡ଼ିୟା ପାଇଥାନ୍ତେ । ତାହା ନକରି ମନେ ମନେ ଓଡ଼ିୟାଙ୍କୁ ଅଯୋଗ୍ୟ ବୋଲିବାର ଭଲ ହୋଇନାହିଁ । ଏଥିରେ କେବଳ ଦାଣ୍ଡକୁ ଦେଖାଇ ଦେଲେ ଯେ ସେ ଓଡ଼ିୟାଙ୍କର ଭଲ କରିବାକୁ ଚେଷ୍ଟିତ ଅଛନ୍ତି ଅଥଚ ଭିତରେ ଓଡ଼ିୟାଙ୍କ ମନ ମାନିଗଲା ।

*ଭା୯ଗ,ସଂ୪୩ଖ୍ୟା, ୩୧/୧୦/୧୮୭୪*

## ଓଡ଼ିଶାର ସ୍କୁଲ ଇନସ୍ପେକଟର ।

ଓଡ଼ିଶା ବିଦ୍ୟାଳୟ ସମୂହର ଇନସ୍ପେକ୍ଟର ପଦରେ ଜଣେ ଓଡ଼ିୟାଙ୍କୁ ନିଯୁକ୍ତ କରିବାର ଗବର୍ଣ୍ଣମେଣ୍ଟଙ୍କ ଇଚ୍ଛା ଥିବା ବିଷୟ ଯେ ପୂର୍ବେ ଲେଖା ଯାଇଥିଲା ତାହା ନିକଟରେ କୃତକାର୍ଯ୍ୟ ହେବାର ଆଶା ଦେଖାଯାଏ । ଲେଫ୍‌ଟନେଣ୍ଟ ଗବର୍ଣ୍ଣର ସାହେବ ଏ ପ୍ରଦେଶରେ ବିରାଜ ଥିବା ସମୟରେ ସେ ପଦ ବାବୁ ଜଗନ୍ମୋହନ ରାୟଙ୍କୁ ଯାଚିଲେ । ବାବୁ ମହାଶୟ ଅସମ୍ମତ ହେବାର ବାବୁ ନନ୍ଦକିଶୋର ଦାସ ପୁରୀର ଡେପୁଟୀ କଲେକ୍ଟରଙ୍କୁ ମନୋନୀତ କଲେ । ସେ କର୍ମର ମାସିକ ବେତନ ଟ୫୦୦ ର ଟ୧୫୦୦ ପର୍ଯ୍ୟନ୍ତ । ସାହେବ ମହୋଦୟଙ୍କ ଏ ପ୍ରଦେଶକୁ ଆସିବାର ପ୍ରଥମ ଫଳ ଏହି ଅଟେ, ସୁଖର କଥା ।

ଏ ବିଷୟରେ ଅନେକ ତର୍କ ବିତର୍କ ଲାଗି ଅଛି । କେହି କେହି କହନ୍ତି ଶିକ୍ଷା ବିଭାଗର ଇନସ୍ପେକ୍ଟରୀ ପ୍ରଧାନ କର୍ମ ଅଟଇ, ସେଥିପାଇଁ ବିଶେଷ ବିଦ୍ୱାନ ବ୍ୟକ୍ତି ଆବଶ୍ୟକ କାରଣ ସେ ବିଦ୍ୱାନ ନହେଲେ କିପରି ବିଦ୍ୟାଶିକ୍ଷା ବିଶେଷତଃ ଉଚ୍ଚଶିକ୍ଷା ସମ୍ବନ୍ଧରେ ଦୋଷାଦୋଷ ବୁଝି ପାରିବ । ଜଣେ ଓଡ଼ିୟାଙ୍କୁ ସେ କର୍ମ ଦେବାକୁ ହେବ ବୋଲି ତହିଁର ଉପଯୁକ୍ତତା ନ୍ୟୁନ କରିବା ଉଚିତ ନୁହେ ବରଂ ଓଡ଼ିୟାମାନେ ଯେପରି ଅଧିକ ବିଦ୍ୱାନ ଓ ଏପରି ଉଚ୍ଚକର୍ମର ଯଥାର୍ଥ ରପେ ଉପଯୁକ୍ତ ହୁଅନ୍ତି ସେଥିର ଉପାୟ କରିବାର ଉଚିତ । ଆମ୍ଭେମାନେ ମଧ ଏହି ବିବେଚନାରେ ବିଦ୍ୟାସଂକ୍ରାନ୍ତ ଅତି ଉଚ୍ଚ ଉପାଧିଧାରୀ ବାବୁ ମଧୁସୂଦନ ଦାସଙ୍କୁ ମନୋନୀତ କରିଥିଲୁଁ । କିନ୍ତୁ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ସାହେବଙ୍କ ବିବେଚନାରେ ସେ କର୍ମ ପାଇଁ ପାଣ୍ଡିତ୍ୟ ଆବଶ୍ୟକ ନରଖେ, ଇନସ୍ପେକ୍ଟରୀ ଶିକ୍ଷା ବିଭାଗର ଏକପ୍ରକାର ହାକିମୀ କର୍ମ ଅଟେ, ତନ୍ନିମିତ ଅଧିକ ପରିମାଣରେ କାର୍ଯ୍ୟ ଦକ୍ଷତା ଆବଶ୍ୟକ । ଏ ବିବେଚନାରେ ନନ୍ଦ କିଶୋର ବାବୁ ସେ କର୍ମର ସମ୍ପୂର୍ଣ୍ଣ ରପେ ଉପଯୁକ୍ତ ଅଟନ୍ତି । ବର୍ତ୍ତମାନ ତାଙ୍କର ଯୌବନାବସ୍ଥା, ତାଙ୍କଠାରେ ଯେ କିଛି ଅଭାବ ଥିବ ତାହା ସେ ଅନାୟାସେ ପୂରଣ କରିପାରନ୍ତି । ଅତଏବ ତାଙ୍କୁ ନିଯୁକ୍ତ କରିବାରେ କେହି ଅସନ୍ତୁଷ୍ଟ ହେବାର କିଛି କାରଣ ଦେଖା ଯାଉନାହିଁ । କମିଶ୍ନର ସାହେବ ଲୋକ ମନୋନୀତ କରିବାରେ ଯେପରି ହୁଡ଼ନ୍ତି ସେ ଯେ ଏସ୍ଥଳେ ସେପରି ନହୁଡି ନନ୍ଦକିଶୋର ବାବୁଙ୍କ ପାଇଁ ଅନୁରୋଧ କରିଅଛନ୍ତି ଏହା ସୌଭାଗ୍ୟର ବିଷୟ ଅଟଇ । ବର୍ତ୍ତମାନ ପ୍ରଶଂସିତ ବାବୁ ସେ ପଦରେ ଏକଟିଂ ସ୍ୱରପ ରହିବେ ଓ ତହିଁର ପୂର୍ଣ୍ଣ ବେତନ ନପାଇ ତାଙ୍କ ଅସଲ କର୍ମର ବେତନ ଓ ଏକଟିଂ ଭରାଖର୍ଚ୍ଚା ପାଇବେ । ଆମ୍ଭେମାନେ ମନାସୁ ଅଛୁଁ ଯେ ସେ ସେକର୍ମ ସକାଶେ ଆପଣାର ଉପଯୁକ୍ତତାର ପରିଚୟ ଦେଇ ଶୀଘ୍ର ସେଥିରେ ବାହାଲ ହେଉନ୍ତୁ ଓ ଓଡ଼ିଶାର ମାନରକ୍ଷା କରନ୍ତୁ ।

*ଭା୯ଗ,ସଂ୪୮ଖ୍ୟା, ୫/୧୨/୧୮୭୪*

# ୧୮୭୫

## [ତତ୍କାଳୀନ ଓଡିଶାରେ ବଙ୍ଗଳାଭାଷାର ପ୍ରଭାବ]

ଗତ ପ୍ରକାଶିତ ଅମୃତବଜାର ପତ୍ରିକାରେ ଲେଖାଅଛି ଯେ ବିଦେଶୀ ପତ୍ରିକାର ସମ୍ପାଦକ ଜଣେ ପ୍ରଜାବୋଲି ଆପଣାର ପରିଚୟ ଦେଇ ଆମ୍ଭମାନଙ୍କ କଲେକ୍‌ଟର ଶ୍ରୀଯୁକ୍ତ ବିମ୍‌ସସାହେବ ଓ ତାହାଙ୍କ ସିରସ୍ତାଦାର ନାମରେ ବଙ୍ଗଳାଭାଷାରେ ଏକ ଦରଖାସ୍ତ ଲେଖି ଗବର୍ଣ୍ଣମେଣ୍ଟଙ୍କୁ ପଠାଇ ଅଛନ୍ତି । ତହିଁରେ ବିମ୍‌ସ ସାହେବଙ୍କ ଡାଲି ନେବା, ସିରସ୍ତାଦାର କଥା ଶୁଣିବା ଓ ତାହାକୁ ସଙ୍ଗେ ଘେନି ବୁଲିବା ଇତ୍ୟାଦି ଲେଖାଅଛି । ସମ୍ପାଦର୍କ ବୋଲନ୍ତି ଯେ ଗବର୍ଣ୍ଣମେଣ୍ଟ ଏ ଆବେଦନପତ୍ର ପାଇ ଦରଖାସ୍ତକାରୀ ନାମରେ ଫଉଜଦାରୀରେ ଅଭିଯୋଗ କରିବାପାଁଇ ଏଠା ମାଜିଷ୍ଟ୍ରେଟଙ୍କ ନିକଟକୁ ତାହା ଫେରି ପଠାଇଅଛନ୍ତି ଓ ମାଜିଷ୍ଟ୍ରେଟସାହେବ ତଦନୁସାରେ ମକଦ୍ଦମା ଉପସ୍ଥିତକରି ଦରଖାସ୍ତକାରିକୁ ଦୁଇଦିନ ହାଜତରେ ରଖିଥିଲେ । ଏଥକୁ ଆମ୍ଭେମାନେ ବୋଧ କରଁ ଯେ ଅମୃତବଜାର ପତ୍ରିକାର ସମ୍ପାଦକ ଭ୍ରମରେ ପଡି ଏରପ ଲେଖି ଅଛନ୍ତି ଓ ଗବର୍ଣ୍ଣମେଣ୍ଟ ବାସ୍ତବରେ କି ଆଜ୍ଞା ଦେଇ ଅଛନ୍ତି ତାହା ଜାଣିବାର ଚେଷ୍ଟା ନ କରି ବାବୁ ଲକ୍ଷ୍ମୀନାରାୟଣ ରାୟ ଚୌଧୁରୀଙ୍କ ମକଦ୍ଦମାରେ ଦୀନୁବାବୁଙ୍କର ଯେ ଦୁର୍ଦ୍ଦଶା ଉପସ୍ଥିତ ହୋଇଅଛି ତାହାକୁ ଉକ୍ତ ଆବେଦନପତ୍ର ପଠାଇବାର ଫଳସ୍ୱରପ ଜ୍ଞାନ କରି ଅଛନ୍ତି । ବାସ୍ତବରେ ତାହା ନୁହଇ କାରଣ ଦୀନୁବାବୁ ଦଣ୍ଡ ପାଇବାଦିନ କେବଳ ମାଜିଷ୍ଟ୍ରେଟ ସାହେବଙ୍କୁ ତାହାଙ୍କ ନାମରେ ଗବର୍ଣ୍ଣମେଣ୍ଟରେ ଦରଖାସ୍ତ ଦେବାର କଥା ଜଣାଇଲେ ତହିଁ ପୂର୍ବର ମାଜିଷ୍ଟ୍ରେଟ କିମ୍ବା ଏଠାର ସର୍ବସାଧାରଣ ତହିଁର କିଛିମାତ୍ର ଜାଣୁ ନ ଥିଲେ ।

*ଭା୧୦ଗ,ସଂ୨ଖ୍ୟା,୯।୧।୧୮୭୫*

### ସାପ୍ତାହିକ ସମ୍ବାଦ ।

ବାଲେଶ୍ୱରଜିଲ୍ଲାରେ ଗତ ମାଇନର ଛାତ୍ରବୃତ୍ତି ପରୀକ୍ଷାରେ ଋରିଜଣ ଛାତ୍ର ଏବଂ ଓଡ଼ିୟା ଛାତ୍ରବୃତ୍ତି ପରୀକ୍ଷାରେ ଜ୨୨ଣ ଛାତ୍ର ଉତ୍ତୀର୍ଣ୍ଣ ହୋଇଅଛନ୍ତି ଉତ୍କଳଦର୍ପଣରେ ସେମାନଙ୍କର ନାମ ଛାପା ହୋଇଅଛି । ଓଡ଼ିୟା ଛାତ୍ରବୃତ୍ତିର ପ୍ରଥମଶ୍ରେଣୀରେ କାହାରି ନାମ ନାହିଁ କାହିଁକି ?

X X X X X X X X X X

ଧର୍ମତତ୍ତ୍ୱ ପତ୍ରିକାର ଅବଗତ ହେଲୁଁ ଯେ ବ୍ରହ୍ମଜ୍ଞାନୀ ବାବୁ ପ୍ରତାପଚନ୍ଦ୍ର ମଜୁମଦାର ବ୍ରାହ୍ମଧର୍ମ ପ୍ରଋର କରିବାପାଁଇ ବିଲାତକୁ ଯାଇଥିଲେ । ଇଂରାଜମାନେ ତାଙ୍କୁ ବିଶେଷ ସମାଦର କରିଅଛନ୍ତି । ତାଙ୍କ ପ୍ରତ୍ୟାଗମନ ସମୟରେ ଲଣ୍ଡନ ନଗରରେ ଗୋଟିଏ ବିଶେଷ ସଭା ହୋଇଥିଲା । ତହିଁରେ ପ୍ରାୟ ସାତଶତ ସାହେବ ଓ ମେମ ଉପସ୍ଥିତ ହୋଇ ବାବୁ ମହାଶୟଙ୍କୁ ରୀତିମତ ବିଦାୟ ଦେଲେ । ବିଲାତୀୟ ଇଂରାଜଙ୍କର କେଡେ ସଦ୍‌ଭାବ ଓ ଶିଷ୍ଟାଋର ।

*ଭା୧୦ଗ,ସଂ୨ଖ୍ୟା,୯।୧।୧୮୭୫*

### ଓଡ଼ିଶାର ସମ୍ବାଦପତ୍ର ।

ଉତ୍କଳଦର୍ପଣର ଆକାର ପରିବର୍ତ୍ତନରେ ବାଲେଶ୍ୱର ସମ୍ବାଦବାହିକା ଆକ୍ଷେପ ପ୍ରକାଶ କରି କହିଅଛନ୍ତି ଯେ ପରିବର୍ତ୍ତନଟି ଭଲ ହେଉ ନାହିଁ, କାରଣ ଓଡ଼ିଶାରେ ଅନେକ ଗୁଡିଏ ସମ୍ବାଦପତ୍ର ଅଛି, ତଦ୍ୱାରା ସାହିତ୍ୟର

ଉପକାର ହେଉ ନାହିଁ । ସାହିତ୍ୟର ଉତ୍କର୍ଷସାଧନ ନିମିତ୍ତ ଖଣ୍ଡିଏମାତ୍ର ମାସିକ ପତ୍ରିକା ଉତ୍କଳଦର୍ପଣ ଥିଲା ତାହା ସ୍ଥଗିତ ହେବା ଅନୁଚିତ ହୋଇଅଛି । ଲେଖକ ସ୍ୱୀକାର କରନ୍ତି ଯେ ଦର୍ପଣକୁ ମାସିକ ପତ୍ରିକାରୂପେ ବାହାର କରିବାରେ ଅଧିକାରିଙ୍କର କ୍ଷତି ହେଉଥିଲା ମାତ୍ର ତାହାଙ୍କର ମତରେ ସାହିତ୍ୟର ଉନ୍ନତି ଅନୁରୋଧରେ ସେ ପ୍ରକାର କ୍ଷତି ସ୍ୱୀକାର କରିବା ଅଯୁକ୍ତ ନୁହଇ । ମାସିକପତ୍ରିକା ଅନ୍ତତଃ ଖଣ୍ଡେ ଓଡ଼ିଶାରେ ରହିବା ଅବଶ୍ୟ ଉଚିତ ଓ ତାହା ସାହିତ୍ୟର ଉତ୍କର୍ଷ ସାଧନର ମହତ ଉପାୟ ସନ୍ଦେହ ନାହିଁ । କିନ୍ତୁ ଯେଉଁଠାରେ ଗ୍ରାହକ ନାହାନ୍ତି ସେଠାରେ କିରୂପେ ଉପକାର ହେବ ? ପାଠକବର୍ଗଙ୍କ ସଂଖ୍ୟା ଅଧିକ ନ ହେଲେ କୌଣସି ଉପକାର ନାହିଁ । ଯେବେ କେହି ବିନାମୂଲ୍ୟରେ ଅନେକ ସଂଖ୍ୟକ ମାସିକ ପତ୍ରିକା ବିତରଣ କରିପାରେ ତେବେ ଓଡ଼ିୟା ସାହିତ୍ୟର ଉନ୍ନତିର ସମ୍ଭାବନା ମାତ୍ର ସେପ୍ରକାର କରିବାକୁ କାହାର ବଳ ଅଛି । ମାସିକ ପତ୍ରିକାଠାର ସାପ୍ତାହିକ ବା ପାକ୍ଷିକ ପତ୍ରିକା ଏଠାରେ ଅଧିକ ପରିମାଣରେ ପ୍ରଚଳିତ ଅଛି ଓ ସମ୍ବାଦ ଜାଣିବା ପାଁଇ ଏଠା ଲୋକେ ସମଧିକ ଆଗ୍ରହ ପ୍ରକାଶ କରିବାର ଦେଖାଯାଏ । ଯେବେ ଏହି ସବୁ ପତ୍ରିକା ସମସ୍ତେ ଏକାବାଟରେ ନ ଚାଲି ସାହିତ୍ୟର ଉତ୍କର୍ଷ ପ୍ରତି କେହି କେହି ଦୃଷ୍ଟି ରଖନ୍ତି ତେବେ ଅନୁମାନ ହୁଅଇ ମାସିକ ପତ୍ରିକାଠାର ଏସବୁ ପତ୍ରିକାଦ୍ୱାରା ଅଧିକ ଉପକାର ହେବ, କାରଣ ତହିଁରେ ଉଭୟ ପ୍ରକାର ରଚି ଜାତ ଓ କ୍ରମଶଃ ସୁମାର୍ଜିତ ହେବାର ସମ୍ଭାବନା । ଉତ୍କଳଦର୍ପଣ ଯେମନ୍ତ ସାପ୍ତାହିକ ପତ୍ରିକା ହୋଇଅଛି ଯେବେ ତହିଁ ସଙ୍ଗେ ସଙ୍ଗେ ଆପଣାର ମୂଳ ଉଦ୍ଦେଶ୍ୟ ରକ୍ଷା ପ୍ରତି ସମୁଚିତ ଯତ୍ନବାନ୍ ହୁଅଇ ତେବେ ମାସିକ ପତ୍ରିକାର ଅଭାବ ମୋଚନ ହେବ ଏତିକି ନୁହଇ ମାତ୍ର ଏହାଦ୍ୱାରା ଅଧିକତର ଉପକାର ହେବ ଏମନ୍ତ ଆଶା ହେଉଅଛି । ହେଲେହେଁ ଆମ୍ଭମାନଙ୍କ ମନରେ ଆଉ ଗୋଟିଏ ଆପତ୍ତି ଉଦୟ ହେଉଅଛି; ତାହା ଏହି ଯେ ଓଡିଶାକୁ ସମ୍ବାଦପତ୍ର ବଳାଇଅଛି । ଏକେ ତ ଏ ପ୍ରଦେଶ ଅତି କ୍ଷୁଦ୍ର ଦ୍ୱିତୀୟେ ବିଦ୍ୱାନ୍ ଓ ସଭ୍ୟ ଲୋକଙ୍କ ସଂଖ୍ୟା ଅତି ଅଳ୍ପ ତୃତୀୟରେ ଅଧିକାଂଶ ଲୋକ ଧନହୀନ ଚତୁର୍ଥରେ ଗମନାଗମନର ଅସୁଯୋଗର ଆପଣାର ଘର ଛଡା ଅନ୍ୟତ୍ରରେ ଅପରିଚିତ ସୁତରାଂ ଏ ପ୍ରକାର ସ୍ଥାନ ଓ ଲୋକଙ୍କ ମଧରେ ଅନେକ ଗୁଡିଏ ସମ୍ବାଦପତ୍ର ପ୍ରତିପାଳିତ ହେବାର ଅତ୍ୟନ୍ତ କଠିନ ବସ୍ତୁତଃ ଦେଖାଯାଉଅଛି ଯେ ପ୍ରାୟ କୌଣସି ସମ୍ବାଦପତ୍ର ଆପଣା ବ୍ୟୟ ନିର୍ବାହ କରି ପାର ନାହିଁ, ଅଧିକାରିଙ୍କୁ ଲାଭ ଦେବାର କଥା କିଏ ପଚାରେ । ଏ ସବୁ ଦେଖି ଶୁଣି ଯେ ସମ୍ବାଦପତ୍ରର ସଂଖ୍ୟା ଅଧିକ ହେଉଅଛି ଏଥିର କେବଳ ଏହି ଉପଲବ୍ଧ ହୁଅଇ ଯେ ଏଠା ଲୋକଙ୍କ ମଧରେ ଐକତା ନାହିଁ, ଯେବେ ତାହା ଥାନ୍ତା ତେବେ ଏକ ଏକ ସ୍ଥାନର ଅଳ୍ପସଂଖ୍ୟକ କୃତବିଦ୍ୟ ଲୋକ ଏକମତ ହୋଇ ଏକଖଣ୍ଡ ପତ୍ରିକା ଚଳାଇଲେ ତାହାର ଅବସ୍ଥା ଭଲ ହୁଅନ୍ତା । ଓ ଲୋକଙ୍କର ମଧ ଉପକାର ଅଧିକ ହୁଅନ୍ତା । ଆମ୍ଭମାନଙ୍କ ବିବେଚନାରେ ଏକଖଣ୍ଡ ପତ୍ରିକା ଓଡିଶା ପକ୍ଷରେ ଯଥେଷ୍ଟ ତହିଁର ଅଧିକ ହେଲେ ତିନିଜିଲାରେ ତିନିଖଣ୍ଡ ଏକପ୍ରକାରେ ଚଳି ପାରେ । ଏଥକୁ ବର୍ତ୍ତମାନ ତହିଁର ଦିଗୁଣର ଅଧିକ ସମ୍ବାଦପତ୍ର ଅଛି ଓ ସେ ସବୁର ଭାବଭଙ୍ଗି ପ୍ରାୟ ଏକପ୍ରକାର ଥିବାର କେହି ଆଶାନୁରୂପ ଫଳ ପାଉ ନାହାନ୍ତି କି ଗ୍ରାହକମାନଙ୍କର ଆଗ୍ରହ ବଢୁ ନାହିଁ । ଆମ୍ଭେମାନେ ସ୍ୱୟଂ ସମ୍ପାଦକ ଥିବାର ଅତିଶୟ ଭୀତ ହୋଇ ଉପରଲିଖିତ ଭାବ ପ୍ରକାଶ କରଅଛୁଁ । ପ୍ରାର୍ଥନା କରୁଁ ଯେ ଆମ୍ଭମାନଙ୍କ ସହଯୋଗିମାନେ ଆମ୍ଭମାନଙ୍କ କୌଣସି ମନ୍ଦାଭିସନ୍ଧିର ଦୋଷ ନ ଦେଇ ଆମ୍ଭମାନଙ୍କ ବିଚାରର ତ୍ରୁଟି ଥିଲେ ତାହା ଚିହ୍ନାଇଦେଇ ଆମ୍ଭମାନଙ୍କୁ ଚିରବାଧିତ କରିବେ ।

***ଭା ୧୦ଗ, ସଂ ୪୪ୟା, ୨୩।୧।୧୮୭୫***

## [ବିଶ୍ୱବିଦ୍ୟାଳୟ ପରୀକ୍ଷା ଫଳ]

ଗତ ବିଶ୍ୱବିଦ୍ୟାଳୟର ପ୍ରବେଶପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଓଡ଼ିଶାର ଛାତ୍ରଙ୍କ ମଧର ତଳଲିଖିତ ବ୍ୟକ୍ତିମାନେ ଯୁନିୟର ସ୍କଲାର୍ଷିପ ଅର୍ଥାତ୍ ନିମ୍ନଶ୍ରେଣୀର ବୃତ୍ତି ପାଇଅଛନ୍ତି ଯଥା-

**ଦ୍ୱିତୀୟ ବିଭାଗ**

| | |
|---|---|
| ଅତୁଳଚନ୍ଦ୍ର ମୁଖୁର୍ଯ୍ୟା | କଟକ ହାଇସ୍କୁଲ |
| ରଘୁନାଥ ଚୌଧୁରୀ | ବାଲେଶ୍ୱର ସ୍କୁଲ |

### ତୃତୀୟ ବିଭାଗ

| | |
|---|---|
| ଭାଗବତ ନନ୍ଦ | କଟକ ହାଇସ୍କୁଲ |
| ସେଖ ବାବୁଜାନ | ବାଲେଶ୍ୱର ସ୍କୁଲ |

ଓଡ଼ିଶା ସକାଶେ ୧୦ଗୋଟି ଛାତ୍ରବୃତ୍ତି ଗବର୍ଣ୍ଣମେଣ୍ଟ ମଞ୍ଜୁର କରିଅଛନ୍ତି ତହିଁମଧ୍ୟର କେବଳ ୪ ଗୋଟି ଦିଆଗଲା ଆଉ ୬ଗୋଟି କାହିଁକି ଅସ୍ୱୀକୃତ ହେଲା ତହିଁର କାରଣ ଆମ୍ଭେମାନେ ବୁଝିପାର ନାହୁଁ । ବୋଧ ହୁଅଇ ଅପର ଛାତ୍ରମାନେ ଉତ୍ତୀର୍ଣ୍ଣ ହୋଇଥିଲେ ସୁଦ୍ଧା ତାହାଙ୍କର ନମ୍ବର ଏତେ ଊଣା ଯେ ସେମାନଙ୍କୁ ବୃତ୍ତି ଦେବାର ଉପଯୁକ୍ତ ଜ୍ଞାନ ହୋଇ ନାହିଁ । ମାତ୍ର ଆମ୍ଭେମାନେ ବାଲେଶ୍ୱର ଦର୍ପଣଙ୍କ ସହିତ ଐକ୍ୟ ହୋଇ କହୁଅଛୁଁ ଯେ ଓଡ଼ିଶାର ଅବସ୍ଥାଦୃଷ୍ଟିରେ ସେରୂପ କଠିନନିୟମ ଅବଲମ୍ବନ କରିବା ଉଚିତ ହୋଇ ନାହିଁ । ଏଠା ଛାତ୍ରଙ୍କ ଉତ୍ସାହ ନିମିତ୍ତ ପୂର୍ଣ୍ଣସଂଖ୍ୟାର ବୃତ୍ତି ନିତାନ୍ତ ପକ୍ଷରେ ତୃତୀୟ ବିଭାଗର ୬ ଗୋଟି ବୃତ୍ତି ଦିଆଯାଇଥିଲେ ଭଲ ହୋଇଥାନ୍ତା । ଆମ୍ଭେମାନେ ଭରସା କରୁଁ ଯେ ଶିକ୍ଷାବିଭାଗର ସ୍ଥାନୀୟ କର୍ତ୍ତୃପକ୍ଷ ଏଥିପାଇଁ ଥରେ ଚେଷ୍ଟା କରିବେ ।

*ଭା।୧୦ଗ,ସଂ୫ଖ୍ୟା,୩୦।୧।୧୮୭୫*

## ନୂତନ ପୁସ୍ତକର ସମାଲୋଚନା ।

ହିତପାଠ ପ୍ରଥମଭାଗ- ପୁରୀ ଜିଲା ସ୍କୁଲସମୂହର ଭୂତପୂର୍ବ ଡେପୁଟୀ ଇନ୍‌ସ୍ପେକ୍‌ଟର ବାବୁ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କଦ୍ୱାରା ରଚିତ ଓ କଟକ ପ୍ରିଣ୍ଟିଂକମ୍ପାନିଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ହୋଇଅଛି ।

ଗ୍ରନ୍ଥକର୍ତ୍ତା ଭୂମିକାରେ ଯାହା ଲେଖିଅଛନ୍ତି ତହିଁର ପ୍ରକାଶ ଯେ ବିଦ୍ୟାଳୟସମୂହର ପାଠୋପଯୋଗୀ ସାହିତ୍ୟ ପୁସ୍ତକର ଅଭାବ ଥିବାର ତାହା ପୂର୍ଣ୍ଣ କରିବା ଉଦ୍ଦେଶରେ ସେ ଶ୍ରେଣୀକ୍ରମେ ତିନିଖଣ୍ଡି ପୁସ୍ତକ ରଚନା କରିବେ ତହିଁ ମଧ୍ୟର ବର୍ତ୍ତମାନ ପୁସ୍ତକ ଖଣ୍ଡିକ ଆଦ୍ୟଶ୍ରେଣୀ ଅଟଇ । ଏଥିରେ ୩୦ଟି ଗଦ୍ୟ ପଦ୍ୟ ମିଶ୍ରିତ ପାଠ ଅଛି । ପାଠଗୁଡ଼ିକ ନୀତିବିଜ୍ଞାନ ଓ ପ୍ରକୃତି ବର୍ଣ୍ଣନା ଘଟିତ ଥିବାର ବାଳକଙ୍କର ବଡ଼ ଉପଯୋଗୀ ହୋଇଅଛି । ଏଠାର ପୁସ୍ତକନିର୍ବାଚନ କମିଟୀ ଏ ପୁସ୍ତକକୁ ଭଲ ପାଠ୍ୟପୁସ୍ତକ ବୋଲି ମତ ଦେଇଅଛନ୍ତି ଓ ଆମ୍ଭେମାନେ ମଧ୍ୟ ସେ ମତ ବିରୁଦ୍ଧରେ କୌଣସି ହେତୁ ଦେଖୁ ନାହୁଁ । ତେବେ ଆମ୍ଭମାନଙ୍କ ମନରେ ଏତିକି ସନ୍ଦେହ ହେଉଅଛି ଯେ ଏହାକୁ ପ୍ରଥମ ଶ୍ରେଣୀର ପୁସ୍ତକ ଜ୍ଞାନ କଲେ ଏହାର ତୃତୀୟଶ୍ରେଣୀ ରଚନା କରିବା ଅତି ଦୁଷ୍କର ହୋଇ ଉଠିବ ବାସ୍ତବରେ ଯଦ୍ୟପି କି ଗ୍ରନ୍ଥକର୍ତ୍ତା ପ୍ରଥମଭାଗକୁ ସରଳ କରିବା ସକାଶେ ଅନେକ ଯତ୍ନ କରିଥିବାର ନାନାସ୍ଥାନରେ ଉଦାହରଣ ପାଉଯାଏ ତଥାଚ ଆମ୍ଭେମାନେ ବାଧ ହୋଇ ବୋଲୁଅଛୁଁ ଯେ ଅନେକ ରଚନା ଏପରି ଅଛି ଯେ ତାହା ପ୍ରଥମଶ୍ରେଣୀର ପୁସ୍ତକ ଅପେକ୍ଷା ଗୁରୁ ବୋଧ ହେଉଅଛି । ଏଥିର ଅତିସରଳ ଦୁଇ ଚାରୋଟି ପାଠ ବାହାର କରି ନେଇ ଅନ୍ୟ କିଛି ମିଶାଇ ଦ୍ୱିତୀୟଭାଗ କଲେ ଅଧିକ ଉପଯୋଗୀ ହେବାର ସମ୍ଭାବନା ।

ରାମବିଳାସ- ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣଙ୍କ ଦ୍ୱାରା ରଚିତ ଓ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଦ୍ୱାରା ମୁଦ୍ରିତ ହୋଇଅଛି । ବିଦ୍ୟାଳୟର ପାଠ୍ୟପୁସ୍ତକର ଅଭାବ ମୋଚନ କରିବା ଏହାର ଉଦ୍ଦେଶ୍ୟ ଅଟଇ । ଏଖଣ୍ଡିକ ଗଦ୍ୟସାହିତ୍ୟ ଓ ଏଥିରେ ଶ୍ରୀରାମଚନ୍ଦ୍ରଙ୍କର ଜୀବନବୃତ୍ତାନ୍ତ ଓ ରାବଣ ସହିତ ଯୁଦ୍ଧ ସବିଶେଷରେ ବର୍ଣ୍ଣିତ ହୋଇଅଛି । ପୁସ୍ତକବିବେଚକ କମିଟୀ ଏହାକୁ ପାଠୋପଯୋଗୀ ବୋଲି ସ୍ଥିର କରିଅଛନ୍ତି ଓ ଆମ୍ଭମାନଙ୍କ ମତରେ ଏହାର ଭାଷା ଓ ରଚନାପ୍ରଣାଳୀ ଉତ୍ତମ ଅଟଇ । ପୁଣି ରାମଚନ୍ଦ୍ରଙ୍କ ଜୀବନବୃତ୍ତାନ୍ତ ଆଦ୍ୟୋପାନ୍ତ ସୁନୀତିରେ ପୂର୍ଣ୍ଣ ଏହାକୁ ଏଦେଶୀୟ ଛାତ୍ରମାନେ ଯେତେ ଅଧିକ ପଢ଼ିବେ ତେତେ ନୀତିଶିକ୍ଷା ଲଭି ଆପଣା ଆପଣା ଚରିତ୍ର ବିଶୁଦ୍ଧ କରିବାକୁ ଉତ୍ସାହିତ ହେବେ । ଅତଏବ ସର୍ବପ୍ରକାରରେ ବିଦ୍ୟାଳୟର ପାଠ୍ୟପୁସ୍ତକ ହୋଇଅଛି ମାତ୍ର ବଡ଼ଦୁଃଖର ବିଷୟ ଯେ ଏଠାର ଶିକ୍ଷାକମିଟୀ ଉପରଲିଖିତ ଦୁଇପୁସ୍ତକକୁ ବିଦ୍ୟାଳୟମାନଙ୍କରେ ପଢାଇବାକୁ ସମ୍ମତ ହୋଇ ନାହାନ୍ତି ।

*ଭା।୧୦ଗ,ସଂ୫ଖ୍ୟା,୩୦।୧।୧୮୭୫*

## [ଶିକ୍ଷାବିଧି]

ସଂସ୍କୃତଭାଷା ଅଧ୍ୟୟନ ବିଷୟରେ ସର୍ ଜର୍ଜ କାମ୍ପ୍ଲସାହେବ ଯେଉଁ ନିୟମ କରିଥିଲେ ବର୍ତ୍ତମାନ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ତହିଁରେ ସନ୍ତୁଷ୍ଟ ନ ହୋଇ କେତେଗୁଡ଼ିଏ ପରିବର୍ତ୍ତନ କରିଅଛନ୍ତି । ତାହା ଏହିଯେ ପୂର୍ବେ କଲେଜାନ୍ତର୍ଗତ ସ୍କୁଲ ଓ ଜିଲାସ୍କୁଲ ସବୁର ପ୍ରଥମ ତିନିଶ୍ରେଣୀରେ ସଂସ୍କୃତ ପଢାଇବାର ନିୟମ ଥିଲା ବର୍ତ୍ତମାନ ଚତୁର୍ଥ ଶ୍ରେଣୀ ପର୍ଯ୍ୟନ୍ତ ତାହା ବିସ୍ତାର ହୋଇଅଛି ଓ ବିଶ୍ୱବିଦ୍ୟାଳୟର ପ୍ରୟୋଜନ ଦୃଷ୍ଟିରେ ଏରପ ପରିବର୍ତ୍ତନ ହୋଇଅଛି । ଆଉ ଗୋଟିଏ ନିୟମ ଏହି ଥିଲା ଯେ ଏକ ଶ୍ରେଣୀର ଜ୧୦ଣ ଛାତ୍ର ପ୍ରାର୍ଥୀ ହେଲେ ତହିଁରେ ସଂସ୍କୃତ ଶିକ୍ଷା ଦିୟାଯିବ ସମ୍ପ୍ରତି ଆଜ୍ଞା ହୋଇଅଛି ଯେ ଉକ୍ତ ଦଶ ଜଣ ଏକଶ୍ରେଣୀର ଛାତ୍ର ନ ହେଲେ ଏକର ଅଧିକ ଶ୍ରେଣୀର ଛାତ୍ର ମିଶି ପ୍ରୟୋଜନୀୟ ସଂଖ୍ୟା ପୂର୍ଣ୍ଣ କରିପାରନ୍ତି । ପୁନଶ୍ଚ ପଣ୍ଡିତମାନଙ୍କୁ ଶିକ୍ଷା ଦେବା ସକାଶେ ସ୍ଥାପିତ ହୋଇଥିବା ନର୍ମାଲ ସ୍କୁଲମାନ ସନ ୧୮୭୩ ମସିହା ତା ୯ରିଖ ମାର୍ଚ୍ଚ ଲିଖିତ ନ୮୮୩ ୟର ଗବର୍ଣ୍ଣମେଣ୍ଟ ଚିଠୀରେ ଥିବା ନିଷେଧାଜ୍ଞାର ବର୍ଜିତ ହେବ ଓ ଉକ୍ତ ଆଜ୍ଞା କେବଳ ଗୁରୁମାନଙ୍କୁ ଶିକ୍ଷା ଦେବା ନର୍ମାଲ ସ୍କୁଲସମସ୍ତ ପ୍ରତି ଖଟିବ । ଏଥିର ମର୍ମ ଏହି ଯେ ଯଦ୍ୟପିକି ଗୁରୁଙ୍କ ସକାଶେ ସଂସ୍କୃତ ଶିକ୍ଷାର ପ୍ରୟୋଜନ ନ ଥିବାର ନର୍ମାଲ ସ୍କୁଲର ନିମ୍ନ ଶ୍ରେଣୀରେ ତାହା ପଠିତ ହେବ ନାହିଁ । ମାତ୍ର ଉଚ୍ଚ ଶ୍ରେଣୀମାନଙ୍କରେ ପଣ୍ଡିତଙ୍କ ଶିକ୍ଷା ନିମିତ୍ତ ଉକ୍ତ ଭାଷା ପଠିତ ହେବ । ଏଥର ଦେଖାଯାଏ ଯେ ଏଥର ସଂସ୍କୃତ ଅଧ୍ୟୟନ ସମ୍ପର୍କୀୟ ଆଜ୍ଞାଟି ବାଟକୁ ଆସିଲା ଓ ବୋଲିବାର ବାହୁଲ୍ୟ ଯେ ଏ ଆଜ୍ଞାରେ ବଙ୍ଗ ବିଭାଗର ସର୍ବସାଧାରଣ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛନ୍ତି । କ୍ରମେ କ୍ରମେ ସର୍ ଜର୍ଜଙ୍କ ନିୟମ ସବୁର ଏରପ ଦୁର୍ଦ୍ଦଶା ଦେଖି ଆମ୍ଭେମାନେ ଭାଳୁଅଛୁଁ କି ଯେବେ ଏ ମହାଶୟ ଆହୁରି ଦୁଇବର୍ଷ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ହୋଇ ରହିଥାନ୍ତେ ତେବେ ଏହାଙ୍କକୃତ ସ୍ୱେଚ୍ଛାଚାରି ନିୟମମାନଙ୍କୁ ସଜାଡ଼ କରିବା ସକାଶେ ଏହାଙ୍କ ପଶ୍ଚାତ୍‌ବର୍ତ୍ତୀ କର୍ମଚାରିଙ୍କର ଶାସନକାଳର ଅଧିକାଂଶ ଭୋଗ ହୋଇଯାନ୍ତା ।

*ଭା୧୦ଗ,ସଂ୭ଖ୍ୟା,୧୩।୨।୧୮୭୫*

### ବିଜ୍ଞାପନ

## [ପୁସ୍ତକ ବିକ୍ରି]

ବୈଦେହୀଶ ବିଳାସ ମୁଦ୍ରାଙ୍କନ ବିଷୟରେ ପୂର୍ବେ ଯେଉଁ ବିଜ୍ଞାପନ ଦିଆଯାଇଥିଲା ତଦନୁସାରେ ଗ୍ରାହକଶ୍ରେଣୀ ଦୁଇଶତର ଅଧିକ ହେବାର ଚଳିତମାସଠାର ପୁସ୍ତକ ମୁଦ୍ରାଙ୍କନ କାର୍ଯ୍ୟ ଆରମ୍ଭ ହୋଇଅଛି । ପ୍ରତିମାସରେ ପାଞ୍ଚ କିମ୍ବା ଛଫରମା ଛାପା ହୋଇ ତିନିମାସରେ ପ୍ରଥମଭାଗକୁ ଛା୧୩ ଛ ବାହାରିବ । ଗ୍ରାହକମାନଙ୍କୁ ପ୍ରାର୍ଥନା ଯେ ଯେ ଯେତେଖଣ୍ଡ ପୁସ୍ତକ ନେବାକୁ ସ୍ୱୀକାର କରିଅଛନ୍ତି ତହିଁର ଅଗ୍ରିମ ମୂଲ୍ୟ ପ୍ରତ୍ୟେକଖଣ୍ଡକୁ ଟ୦୳ ଲେଖାଏଁ ଏହିମାସ ମଧ୍ୟରେ ପଠାଇ ଦେଇ ବାଧିତ କରିବେ । ଏହିମାସରେ ଅଗ୍ରିମ ମୂଲ୍ୟ ନ ପଠାଇଲେ ଉପରଲିଖିତ ଦରରେ ପୁସ୍ତକ ମିଳିବ ନାହିଁ । ଗ୍ରାହକମାନେ ଇଚ୍ଛାକଲେ ମାସକୁ ମାସ ଯେତେ ଛାପାହେବ ତେତେ ଅଥବା ମା୩ସରେ ଏକତ୍ରରେ ପ୍ରଥମଭାଗ ପାଇପାରିବେ । ଡାକମାସୁଲ ମାସକୁ ଏକଅଣା ଓ ପୂର୍ଣ୍ଣ ଏକଭାଗକୁ ଟ୦୵ ପଡ଼ିବ । ଇତି ।

କଟକ ପ୍ରିଣ୍ଟିଂ କମ୍ପାନୀ<br>ତା ୫ ରିଖ ମାର୍ଚ୍ଚ ସନ ୧୮୭୫

ଶ୍ରୀ ଗୌରୀଶଙ୍କର ରାୟ<br>ସେକ୍ରଟରୀ

*ଭା୧୦ଗ,ସଂ୧୦ଖ୍ୟା,୬।୩।୧୮୭୫*

## [ପୁରୀରେ ଛାପାଖାନା]

ପୁରୁଷୋତ୍ତମରେ ଅନେକକାଳରୁ ଛାପାଖାନା ଗୋଟିଏ ବସିବାର ଉଦ୍ୟମ ଲାଗିଥିଲା ମାତ୍ର କୌଣସି କାରଣରୁ ତାହା ସିଦ୍ଧ ହୋଇ ପାରୁ ନ ଥିଲା । ପରିଶେଷରେ ବାବୁ ରାମଗୋପାଳ ଚଟ୍ଟର୍ଯ୍ୟା ଆପଣା ହାତରୁ ସବୁ

ବ୍ୟୟ ସ୍ୱୀକାର କରି ବଡ଼ ସାହସସହିତ ଗତବର୍ଷ ସେଠାରେ ଛାପାଖାନାଟିଏଁ ବସାଇଲେ ଓ ଅଳ୍ପକାଳ ମଧ୍ୟରେ ତହିଁରୁ ଭଗବତ୍‌ଭକ୍ତି ପ୍ରଦାୟିନୀ ଓ ପୁରୁଷୋତ୍ତମ ଚନ୍ଦ୍ରିକା ନାମରେ ଦୁଇଖଣ୍ଡ ସାମୟିକପତ୍ରିକା ବାହାରିଲା । କିନ୍ତୁ ଦୁଃଖରବିଷୟ ଯେ ଗତ ଦୁଇମାସ ଅଥବା ତହିଁରୁ ଅଧିକକାଳରୁ କୌଣସି ପତ୍ରିକା ସଙ୍ଗେ ଆଉ ଭେଟ ହେଉ ନାହିଁ ଓ ଏମାନଙ୍କର କି ଦୁର୍ଦ୍ଦଶା ଘଟିଲା କିଛି ମଧ ଶୁଣା ଯାଇ ନାହିଁ । ଅବଶ୍ୟ ଆମ୍ଭେମାନେ ସ୍ୱୀକାର କରୁଁ ଯେ ଓଡିଶାରେ ଅନେକଗୁଡିଏ ସମ୍ବାଦପତ୍ର ଚଳିବାର ସମୟ ଅବଧି ହୋଇ ନାହିଁ ଓ ପ୍ରାୟ ହାତରୁ କିଛି ନ କଲେ ଭେଦାଦ୍ୱାରା ପତ୍ରିକା ଛାପିବାର ବ୍ୟୟ ନିର୍ବାହ ହେବାର କଠିନ ମାତ୍ର ଏହା ବୋଲି ରାମଗୋପାଳ ବାବୁ ଆପଣାହାତରୁ ଟଙ୍କା ଖର୍ଚ୍ଚ କରି ଛାପାକଳ ବସାଇବା ପ୍ରତ୍ୟକ୍ଷେ ତଦ୍ୱାରା ଯେଉଁ ଏକମାତ୍ର ଉପକାର ସାଧନ ହେବାର ସମ୍ଭବ ତହିଁରେ ଏତେଶୀଘ୍ର ଅନାସ୍ଥା ପ୍ରକାଶ କରିବେ ଏବନ୍ତ କେହି ଆଶା କରି ନ ଥିଲା । ଯେବେ ତାହାଙ୍କ ଯନ୍ତ୍ରାଳୟରେ ଛାପା କାର୍ଯ୍ୟ ଉତ୍ତମ ହେବା ପର୍ଯ୍ୟନ୍ତ ପତ୍ରିକାମାନ ବାହାର କରିବା ସ୍ଥଗିତ ରଖିଥାନ୍ତି ତେବେ ସେ ପରାମର୍ଶକୁ କେହି ମନ୍ଦ ମଣିବେ ନାହିଁ କାରଣ ଛାପାଦୋଷରୁ ପତ୍ରିକାମାନ ପଢିବା ଅସମ୍ଭବ ହୋଇଥିଲା ନୋହିଲେ ଯେବେ ବାବୁ ମହାଶୟ ଆପଣା ସ୍ୱାର୍ଥ ଦୃଷ୍ଟିରେ ଏଥିରୁ ପରାଂମୁଖ ହୋଇଥିବେ ତେବେ ତହିଁକି କାହାରି କିଛି ବୋଲିବାର ଅଧିକାର ନାହିଁ ।

*ଭା ୧୦ ଗ, ସଂ ୧୪ ଖ୍ୟା, ୩ା୪ା୧୮୭୫*

## ଓଡ଼ିଶାର କି ଉନ୍ନତି ହୋଇ ନାହିଁ ।

ସର୍ ହେନରି ରିକଟସାହେବ ଯେ କି ପୂର୍ବେ ଏ ପ୍ରଦେଶର କମିଶ୍ନର ଥିଲେ ଅବଧି ଏଠା ନିବାସିଙ୍କୁ ବିସ୍ମରଣ କରି ନାହାନ୍ତି । ଅବୁଆବ ବିଷୟ ଘେନି ଏଠାରେ ଅଳ୍ପକାଳ ହେଲା ଯେସବୁ କଥା ଓଡ଼ିଆଙ୍କ ବିରୁଦ୍ଧରେ ବାହାରିଥିଲା ତହିଁକି ଲକ୍ଷ କରି ଉକ୍ତ ମହାତ୍ମା ଦୁଃଖୀ ଓଡ଼ିଆଙ୍କ ବିଷୟରେ କେତେ କଥା ଲେଖି ଖଣ୍ଡିଏ ପୁସ୍ତିକା ଛପାଇଥିବାର ତହିଁର ପ୍ରତ୍ୟୁତ୍ତର ସ୍ୱରପ ଆମ୍ଭମାନଙ୍କ ବର୍ତ୍ତମାନ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ଆପଣା ମନ୍ତବ୍ୟ ଲେଖିଅଛନ୍ତି । ଆମ୍ଭେମାନେ ସେ ମନ୍ତବ୍ୟ ସମୁଦାୟ ପାଠ କରି ନାହୁଁ କିନ୍ତୁ ହିନ୍ଦୁ ପେଟ୍ରିଅଟରେ ତହିଁର ଯେଉଁ ସଂକ୍ଷେପ ବିବରଣ ପ୍ରକାଶ ହୋଇଅଛି ତାହା ପାଠ କରିବାରେ ଜଣାଗଲା ଯେ ଲେଫ୍‌ଟନେଣ୍ଟ ଗବର୍ଣ୍ଣର କେବଳ ରେବନସାସାହେବ କମିଶ୍ନରଙ୍କ ବାର୍ଷିକ ବିଜ୍ଞାପନୀ ଉପରେ ନିର୍ଭର କରି ଲେଖିଅଛନ୍ତି ଯେ ଏଣିକି ଓଡିଶାର ଅବସ୍ଥା ଅନେକାଂଶରେ ଉନ୍ନତି ହୋଇଅଛି ଓ ଜମିଦାର ଓ ପ୍ରଜାଙ୍କ ମଧ୍ୟରେ ଅନେକ ସୁପରିବର୍ତ୍ତନ ଦେଖାଯାଏ ଓ ପରସ୍ପର ଆପଣା ଆପଣା ସହ ଓ କର୍ତ୍ତବ୍ୟ କର୍ମର ଜ୍ଞାନ ଲାଭ କରଅଛନ୍ତି । ଏହି କମିଶ୍ନର ସନ ୧୮୭୧ ମସିହାରେ ଜମିଦାରଙ୍କ ଅତ୍ୟାଚାର ଓ ପ୍ରଜାଙ୍କ ଅସହାୟତାକୁ ଏତେ ପ୍ରବଳ ଜ୍ଞାନ କରିଥିଲେ ଯେ ଗବର୍ଣ୍ଣମେଣ୍ଟଙ୍କୁ ହସ୍ତ କ୍ଷେପଣ କରିବା ପାଁଇ ଅନୁରୋଧ କରିଥିଲେ କିନ୍ତୁ ଦୁଇବର୍ଷ ଉତ୍ତାର ବାର୍ଷିକ ବିଜ୍ଞାପନୀରେ ଉକ୍ତ ପ୍ରକାର ମଙ୍ଗଳ ସଂବାଦ ଲେଖିବାର ସର୍ ରିଚ୍ଚର୍ଡ ଟେମ୍ପଲ ଜ୍ଞାନ କରନ୍ତି ଉକ୍ତ ପ୍ରକାର ହସ୍ତକ୍ଷେପଣ କଲେ ଯେଉଁ ଫଳ ଲାଭ ହୁଅନ୍ତା ତାହା ଆପଣାସୁଖେ ଲାଭ ହୋଇଅଛି । ଏପରି ଶୁଭ ପରିବର୍ତ୍ତନ ସକାଶେ କାହାକୁ ପ୍ରଶଂସା କରିବାକୁ ହେବ ଆମ୍ଭେମାନେ ସ୍ଥିର କରିପାର ନାହୁଁ । ଯେବେ କେବଳ ରିପୋର୍ଟ ଲେଖାଲେଖିର ଏ ଫଳ ଜାତ ହୋଇଅଛି ତେବେ ତହିଁର ଏତେ କି ପରିଚୟ ପାୟାଯାଏ ଯେ ସନ ୧୮୭୧ ମସିହା ପୂର୍ବରେ କମିଶ୍ନର ଓ ଜିଲାର କଲେକ୍‌ଟରମାନେ ଆପଣା କର୍ମରେ ତ୍ରୁଟି କରଥିଲେ ତହିଁ ଉତ୍ତାର ଆଖି ଫିଟାଇ ଦେଖିଲାର ସବୁ ଗୋଲମାଳ ନିବାରଣ ହେଲା ନୋହିଲେ ଏମନ୍ତ ହୋଇପାରେ ଯେ ପ୍ରକୃତରେ ଓଡିଶା ଯେମନ୍ତ ସନ ୧୮୭୧ ମସିହା ପୂର୍ବର ସେହିପରି ବର୍ତ୍ତମାନସୁଦ୍ଧା କ୍ରମଶଃ ଉନ୍ନତି ମାର୍ଗକୁ ଅନୁସରଣ କରଅଛି ହାକିମମାନେ ନିଦ୍ରିତ ଥାଇ ଉକ୍ତ ସନରେ ଭୟଙ୍କର ସ୍ୱପ୍ନ ଦେଖି ଚମକି ଉଠିଥିଲେ ଯହୁଁ ନିଦ୍ରାର ଆକର୍ଷଣ ଭାଜିଯାଇଁ ବିଦ୍ୟାଜ୍ଞାନ ଆୟତ୍ତକୁ ଆସିଲା ତହୁଁ ଅବସ୍ଥା ସନ୍ଦର୍ଶନ କରି ବାର୍ଷିକ ବିଜ୍ଞାପନୀରେ ତାହା ଲିପିବଦ୍ଧ କଲେ । ଫଳତଃ ଏଠା ଲୋକଙ୍କ ସାଧାରଣ ବିଶ୍ୱାସ ଏହି ଯେ ସନ ୧୮୬୫।୬୬ ମସିହାର ଭୟଙ୍କର ଦୁର୍ଭିକ୍ଷ ଉତ୍ତାରୁ ଓଡିଶାର ଅବସ୍ଥା କ୍ରମଶଃ ଉନ୍ନତ ହେଉଅଛି ।

ଯାହା ହେଉ ସର୍ ରିଚ୍ଚର୍ଡ ଟେମ୍ପଲ ଗତବର୍ଷ ଓଡିଶା ସନ୍ଦର୍ଶନ କରି ତାହାଙ୍କ ମନରେ ଯେ ସବୁ ଭାବ ଜନ୍ମିଅଛି ଓ ଯାହା ଜାଣିବା ପାଁଇ ଆମ୍ଭେମାନେ ଅନ୍ୟାନ୍ୟ ଲୋକଙ୍କ ପରି ବଡ ବ୍ୟସ୍ତ ଥିଲୁଁ ତାହା ଏହି ସୁଯୋଗରେ ବାହାରି ପଡିଅଛି ବଡ ସୁଖର ବିଷୟ ଅଟଇ ପାଠକଙ୍କ ଜ୍ଞାତ କାରଣ ତହିଁର ଅବିକଳ ଅନୁବାଦ ଏଠାରେ ପ୍ରକାଶିତ ହେଲା । ଯଥା--

"ଓଡ଼ିଶା ସନ୍ଦର୍ଶନ କରି ସର୍ ରିଚ୍ଚର୍ଡ ଟେମ୍ପଲଙ୍କ ମତ ଏହି ହୋଇଅଛି ଯେ ଏପ୍ରଦେଶ ଦୁର୍ଭିକ୍ଷଜନିତ ଦୁଃଖରୁ ସମ୍ପୂର୍ଣ୍ଣରୂପେ ନିଷ୍କୃତି ପାଇଅଛି ଜମିଦାର ଓ ପ୍ରଜାମାନେ ପୂର୍ବଠାରୁ ଅନେକ ଉତ୍ତମ ଅଛନ୍ତି, ଆୟକର କାର୍ଯ୍ୟ ବିବେଚନାରେ ଶୀଘ୍ର ନ ହେଉ ପରିଣାମରେ ଜଳସେଚନ କାର୍ଯ୍ୟ ସଫଳ ହେବାର ଦେଖା ଯାଉଅଛି, ସମୁଦ୍ରପଥରେ ବାଣିଜ୍ୟ ବର୍ତ୍ତମାନ ବିସ୍ତର ପରିମାଣରେ ହେଉଅଛି ଓ ଆହୁରି ବଢିବ, ଜମିଦାର ଓ ଭୂମ୍ୟଧିକାରିମାନେ ନାଳ ଜଳ ନେବାପାଁଇ ପ୍ରଜାଙ୍କୁ ଉତ୍ସାହିତ କରୁଅଛନ୍ତି, କେତେକ ପୁରାତନ ପ୍ରଜା ସତ୍ୱ ସ୍ଥିର ରହିଅଛି ଓ ଜମିଦାରଙ୍କ ସମ୍ମତିରେ କେତେ ନୂଆପ୍ରଜା ସତ୍ୱ ଜନ୍ମିଅଛି, ଅନ୍ୟାୟକର ବୃଦ୍ଧିରୁ ଆଇନ ପ୍ରଜାଙ୍କୁ ରକ୍ଷା କରୁଅଛି, ପ୍ରଜାମାନେ ପୂର୍ବପରି ବର୍ତ୍ତମାନ ଆଇନର ସାହାଯ୍ୟ ନେବାକୁ ହେଳା କରୁ ନାହାନ୍ତି ଓ ସାଧାରଣତଃ ଜମିଦାରମାନେ ପ୍ରଜାଙ୍କଠାରୁ ଅନ୍ୟାୟ କର ଆଦାୟ କରିବାକୁ ପ୍ରବୃତ୍ତ ନାହାନ୍ତି । କମିଶ୍ନର ସାହେବଙ୍କ ବାର୍ଷିକ ବିଜ୍ଞାପନୀରେ ଯେଉଁ ଅଭିପ୍ରାୟମାନ ପ୍ରକାଶ ହୋଇଅଛି ଉପରଲିଖିତ ମତ ଠିକ ତହିଁସଙ୍ଗେ ଐକ୍ୟ ଥିବାର ଦେଖାଯିବ ।"

ଆମ୍ଭେମାନେ ଅନୁମାନ କରୁଅଛୁଁ ଯେ ସର୍ ରିଚ୍ଚର୍ଡ ଟେମ୍ପଲଙ୍କ ଶୁଭାଗମନ ସମୟରେ ଓଡିଶାବାସିମାନେ ସ୍ଥାନ ସ୍ଥାନରେ ଯେ ଭାରି ରୋଷନୀ କରିଥିଲେ ତାହା ବଡ ବିବେଚନାର କାର୍ଯ୍ୟ ହୋଇଥିଲା କାରଣ ତେଡ଼େ ଆଲୁଅ ହୋଇ ନ ଥିଲେ ଏତେ ବିଷୟ ସେ ଦେଖିବାକୁ ସମର୍ଥ ହୁଅନ୍ତେ କି ନାହିଁ ଆମ୍ଭମାନଙ୍କର ସନ୍ଦେହ ହେଉଅଛି ।

*ଭା।୧୦ଗ,ସଂ୧୪ଖ୍ୟା,୩।୪।୧୮୭୫*

## ଏଠାରେ ଶିକ୍ଷାର ଫଳ କେମନ୍ତ ହୋଇଅଛି ।

ଶିକ୍ଷାଶବ୍ଦରେ ଏଠାରେ ଗବର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ଉଚ୍ଚଶିକ୍ଷା ବୁଝାଏ କାରଣ ଶିକ୍ଷାରୁ ଯାହା କିଛି ଫଳ ହେବାର ସମ୍ଭାବନା ତାହା କେବଳ ଉଚ୍ଚଶିକ୍ଷାରୁ ଆଶା କରାଯାଇ ପାରେ ଅନ୍ୟତ୍ରରେ ଗବର୍ଣ୍ଣମେଣ୍ଟଙ୍କ ଶିକ୍ଷାଦାନ ଏକପ୍ରକାର ବିଡ଼ମ୍ବନା ମାତ୍ର । ଏଥକୁ ଉଚ୍ଚଶିକ୍ଷା ପ୍ରଦାନର ଉପାୟ ଏଠାରେ ଅଳ୍ପକାଳରୁ ହୋଇଅଛି ଓ ଦୁର୍ଭାଗ୍ୟ ବଶତଃ ଅବଧି କେହି ବିଶ୍ୱବିଦ୍ୟାଳୟର ଉପାଧି ପାଇ ନାହାନ୍ତି ଏବଂ ସମ୍ପ୍ରତି ଏଠାରେ ଯେତେଦୂର ବିଦ୍ୟାଲାଭର ଉପାୟ ହୋଇଅଛି ତହିଁରେ ମଧ୍ୟ ସର୍ବସୁଦ୍ଧା ଆଠ ଦଶଜଣ ମାତ୍ର କୃତକାର୍ଯ୍ୟ ହୋଇଅଛନ୍ତି ସୁତରାଂ ଶିକ୍ଷାର ଫଳ ଏଠାରେ ପ୍ରତ୍ୟକ୍ଷ ହେବାର ବଡ଼ ଆଶା ହୋଇ ନ ପାରେ ତେବେ ଯେଉଁମାନେ ସମ୍ପ୍ରତି ଶିକ୍ଷିତ ବୋଲି ଏଠାରେ ପରିଚିତ ଓ ସେହି ହେତୁରୁ ସମାଜର ମୁଖସ୍ୱରୂପ ହୋଇଅଛନ୍ତି ଅଥବା ହେବାକୁ ଦାବୀଦାର ଅଛନ୍ତି ସେମାନଙ୍କର ଅବସ୍ଥାପ୍ରତି ଦୃଷ୍ଟି କଲେ କୁଣ୍ଠିତ ହୋଇ ବୋଲିବାକୁ ହେବ ଯେ ଏଠାରେ ଶିକ୍ଷାର ଫଳ ଅତ୍ୟଚ୍ଚ ଫଳିଅଛି ଓ ପ୍ରାୟ ସରକାରୀ ଉଚ୍ଚଚାକରୀ ଲଭିବା ଭିନ୍ନ ଶିକ୍ଷିତ ଲୋକଙ୍କ ମନରେ ଅନ୍ୟ କୌଣସି ଭାବ ଜନ୍ମି ନାହିଁ । ଶିକ୍ଷିତ ଲୋକଙ୍କ ମଧ୍ୟରେ ସରକାରୀ ଚାକରୀ ଗୋଟିଏ ସଞ୍ଚାରକରୋଗ ପ୍ରାୟ ହୋଇଅଛି । ଯେ ଶିକ୍ଷିତ ହୋଇଅଛି ମନେକରେ ତାହାକୁ ତତ୍କ୍ଷଣାତ୍ ଉକ୍ତ ରୋଗ ଆକ୍ରମଣ କରେ ଓ କର୍ମ ଖଣ୍ଡିଏ ପାଇଲାରୁ ତହିଁରେ ଏମନ୍ତ ଜଡୀଭୂତ ହୋଇଯାଏ ଯେ ଆଉ କୌଣସି ଭଲ କର୍ମରେ ତାହାର ପ୍ରବୃତ୍ତି ଜନ୍ମେ ନାହିଁ । ଏହି ହେତୁରୁ ଆମ୍ଭେମାନେ ସଚରାଚର ଦେଖୁଁ ଯେ ନାନାପ୍ରକାର ବ୍ୟବସାୟିଙ୍କ ପିଲାମାନେ କିଞ୍ଚିତ୍ ଶିକ୍ଷାଲାଭ କଲାରୁ ଆପଣା ବ୍ୟବସାୟ ଛାଡି ଚାକରୀ ସକାଶେ କଚେରିମାନଙ୍କରେ ଉମେଦବାରି କରି ବୁଲନ୍ତି ଓ ପିତା ପିତାମହମାନେ ଜମିଦାରୀ ପ୍ରଭୃତି ବିଷୟ ରଖି ଯାଇଥିବାରୁ ଯେଉଁମାନେ ତହିଁର ଆୟରୁ କେବଳ ନିର୍ବାହ ହେବାକୁ ପାରନ୍ତି ଏମନ୍ତ ନୁହେଁ ଶିକ୍ଷାବଳରେ ତହିଁର ବୃଦ୍ଧି କରିପାରନ୍ତି ସେମାନେ ସୁଦ୍ଧା ତହିଁର ଭାର ଅଶିକ୍ଷିତ ଅଳ୍ପ ବେତନଭୋଗୀ ହସ୍ତରେ ନିହିତ କରି ଚାକରୀ କରି ବୁଲୁଅଛନ୍ତି । ଅକସ୍ମାତ୍ ଯାହା ଭାଗ୍ୟକୁ ଚାକରୀ ଘଟୁ ନାହିଁ ସେ ଅନ୍ୟବିଷୟରେ କାଳକ୍ଷେପଣ କରୁଅଛି ତଥାଚ

ଆପଣା ବିଷୟ ରକ୍ଷା ବା ବିଷୟର ଉନ୍ନତିରଚେଷ୍ଟା କରୁ ନାହିଁ । ଯେଉଁମାନେ ସରକାରୀ ଚାକରୀ ପାଇଅଛନ୍ତି ସେମାନେତ ସଂସାରରୁ ନିଶ୍ଚିନ୍ତ ହୋଇଅଛନ୍ତି ତାହାଙ୍କ ଚେଷ୍ଟା ମଧ୍ୟରେ କେବଳ ଉଚ୍ଚଇଂରାଜ କର୍ମଚାରିଙ୍କୁ ସନ୍ତୁଷ୍ଟ କରି ପଦବୃଦ୍ଧି ପାଇବା ଓ ସେହି ଆଶାରେ ସେମାନଙ୍କର ଅନେକ ସମୟ ବଡ଼ ବଡ଼ ସାହେବଙ୍କ ସଙ୍ଗେ ସାକ୍ଷାତ୍ କରିବାରେ ଗତ ହୁଅଇ ଓ ଯେତେବେଳେ ଘରେ ଥାନ୍ତି କଦାଚ କେତେବେଳେ ଟିକିଏ ଖବରକାଗଜ ପଢ଼ନ୍ତି ନୋହିଲେ ପାଶା ଓ ତାସ ଇତ୍ୟାଦି ଖେଳ ଓ ଅନର୍ଥକ ବାକ୍ୟବ୍ୟୟରେ କାଳ କାଟନ୍ତି । ବର୍ତ୍ତମାନ ଏ ନଗରରେ ପଶାଖେଳ ସରକାରୀ ଚାକରିୟାଙ୍କର ପ୍ରଧାନ ବୃତ୍ତି ହୋଇଅଛି । ପଶାଖେଳ ଓଡ଼ିଶାରେ ଅତି ପ୍ରାଚୀନ କାଳରୁ ଚାଲି ଆସୁଅଛି ସତ୍ୟ ମାତ୍ର ଶିକ୍ଷିତ ଲୋକମାନେ ପୁରାତନ ରୀତିନୀତିର ସମ୍ପୂର୍ଣ୍ଣ ବିରୋଧୀ ଥିବା ପ୍ରତ୍ୟକ୍ଷେ ପଶାଖେଳକୁ ତହିଁ ମଧ୍ୟରୁ ବାଛି ନେଇ ତହିଁରେ ମଗ୍ନ ଅଛନ୍ତି ବଡ଼ କୌତୁକର ବିଷୟ ଅଟଇ । 'ଚସା କି ଜାଣେ ପଶାର କଥା' ପ୍ରବାଦର ପ୍ରକୃତ ଅର୍ଥ ଏତେଦିନ ଆମ୍ଭେମାନେ ବୁଝିପାରି ନ ଥିଲୁଁ ବର୍ତ୍ତମାନ ନିଶ୍ଚିତରୂପେ ଜଣାଗଲା ଯେ ପଶାଖେଳ ଶିକ୍ଷିତଲୋକର ଉପଯୁକ୍ତ କାର୍ଯ୍ୟ ଚସା ଅର୍ଥାତ୍ ମୂର୍ଖ ତହିଁର ବିଷୟ କି ବୁଝିବ ! ଅଥବା ଯେ ବ୍ୟକ୍ତି ପଶାଖେଳକୁ ସାର କରି ନାହିଁ ସେ ବ୍ୟକ୍ତି ଚସା କି ମୂର୍ଖ ଅଟଇ । ସୁତରାଂ ଦେଖାଯାଏ ଯେ ଶିକ୍ଷାର ପ୍ରଧାନ ଫଳ ମଧ୍ୟରେ ଦିଯୋଟି ଫଳ ଓଡ଼ିଶାରେ ଏପର୍ଯ୍ୟନ୍ତ ଲାଭ ହୋଇଅଛି ପ୍ରଥମ ଚାକରୀ ଓ ଦ୍ୱିତୀୟ ପଶାଖେଳ ଏ ସଂସାରରେ ସାର ବୋଲି ନିଶ୍ଚିତ ହୋଇଅଛି । ପ୍ରଥମୋପୋୟଦ୍ୱାରା ଅନାୟାସରେ ଅର୍ଥଲାଭ ହୋଇ ଉଦରପୂର୍ଣ୍ଣ ହୁଅଇ । ଦ୍ୱିତୀୟ ଉପାୟଦ୍ୱାରା ଭକ୍ଷଦ୍ରବ୍ୟ ଜୀର୍ଣ୍ଣ କରିବାକୁ କିଛିମାତ୍ର ଆୟାସ ପାଇବାକୁ ହୁଅଇ ନାହିଁ ।

ଏଥିରୁ ପାଠକମାନେ ଏମନ୍ତ ମନେକରିବେ ନାହିଁ ଯେ ଚାକରି କିମ୍ବା ପଶାଖେଳର ଆମ୍ଭେମାନେ ନିତାନ୍ତ ବିପକ୍ଷ । ବାସ୍ତବରେ ତାହା ନୁହଇ । ଏ ଦୁଇ ବିଷୟ ସମ୍ପ୍ରତି ଯେରୂପ ପ୍ରାଧାନ୍ୟ ଲାଭ କରିଅଛି ଆମ୍ଭେମାନେ ତହିଁରେ ଆପତ୍ତି କରୁଅଛୁଁ ନୋହିଲେ ଯେମନ୍ତ ପେଟ ପାଳିବାର ଉପାୟ ସ୍ୱରୂପ କେତେକ ଲୋକଙ୍କୁ ଚାକରି କରିବାର ଉଚିତ ତେମନ୍ତ ଏକ ଏକ ବେଳେ ପଶା ଅଥବା ଅନ୍ୟ ଖେଳରେ ଶରୀର ଓ ମନକୁ ବିଶ୍ରାମ ଦେବାର ଆବଶ୍ୟକ । ମାତ୍ର ଏ ସବୁ କେବଳ ଶରୀର ପୁଷ୍ଟି ଓ ରକ୍ଷାର ଉପାୟ ଅଟଇ ମନକୁ ପୁଷ୍ଟ କରିବାର କୌଣସି ଉପାୟ ଶିକ୍ଷିତବ୍ୟକ୍ତିମାନେ ଅବଲମ୍ବନ କରିବାର ଦେଖା ନ ଯାଏ ବଡ ଦୁଃଖର ବିଁଷୟ । ଯେଉଁମାନେ ଜ୍ଞାନର ଆସ୍ୱାଦନ ପାଇ ଅଛନ୍ତି ସେମାନେ ଯେ ଉଦରପାଳନର ଚିନ୍ତାରୁ ଅବସର ପାଇଲାମାତ୍ରକେ ଅଜ୍ଞାନ ଶିଶୁଙ୍କପ୍ରାୟ ସାମାନ୍ୟ ଆମୋଦ ପ୍ରମୋଦରେ ପ୍ରବୃତ୍ତ ରହିବେ ଓ ଘ ୨ ୪ଣ୍ଟା ମଧ୍ୟରେ ଏକଘଣ୍ଟା ସୁଦ୍ଧା ଏମନ୍ତ କୌଣସି ସୁଖଭୋଗ କରିବେ ନାହିଁ କି ଯହିଁରୁ ମନୁଷ୍ୟ ଜ୍ଞାନବିଶିଷ୍ଟ ଓ ଉନ୍ନତଶୀଳ ଜୀବବୋଲି ପ୍ରମାଣ ହେବ ତେବେ ତାହାଙ୍କର ଏହି ଲାଭ କେବଳ ବୃଥା ଅଭିମାନ ଅଟଇ **xxxx** ଫଳ ତାହାଙ୍କଠାରେ କିଛିମାତ୍ର ଫରକ ବୋଲିବାକୁ ହେବ । ଆମ୍ଭମାନଙ୍କ **xxxx** ନାରେ କି ଭୋଜନ ଶୟନ କି **xxxx** ପ୍ରମୋଦ ଓ କି ଆଳାପ ସମ୍ଭାଷଣ ଶିକ୍ଷିତ **xxxx** ସବୁଠାରେ ଆପଣା ଉତ୍କୃଷ୍ଟବୁଦ୍ଧି ଉନ୍ନତ ମନର ପରିଚୟ ଦେବ ଓ ତଦ୍ଦ୍ୱାରା ଅଶିକ୍ଷିତ ବ୍ୟକ୍ତିଙ୍କ ମନରେ ଶିକ୍ଷାଲାଭର ଲୋଭ ଜନ୍ମାଇବ ଅଶିକ୍ଷିତ ଲୋକର ମନ ପ୍ରଶସ୍ତ ହେବାର ସମ୍ଭବ ନୁହଇ କାରଣ ନାନାପ୍ରକାର ଶାସ୍ତ୍ର ଅଧ୍ୟୟନଦ୍ୱାରା ବୁଦ୍ଧି ମାର୍ଜିତ ନ ହେଲେ ବିଚାରଶକ୍ତି ବଢ଼ି ନ ପାରେ ଓ ଆପଣାର କିମ୍ବା ଜନସମାଜର ହିତଚିନ୍ତା କରିବାକୁ ଏପରି ବ୍ୟକ୍ତି ସକ୍ଷମ ହୋଇ ନ ପାରେ । କିନ୍ତୁ ଶିକ୍ଷିତବ୍ୟକ୍ତିର ଅବସ୍ଥା ଭିନ୍ନପ୍ରକାର ଓ ତାହାର ଦାୟ ମଧ୍ୟ ଅନେକ ନାନା ବିଷୟର ପୁସ୍ତକାଦି ପାଠ ଓ ମନରେ ଚିନ୍ତାକରିବାଦ୍ୱାରା ଆପଣା ଜ୍ଞାନ ବୃଦ୍ଧିକରି ତହିଁର ସୁଖଭୋଗ କରିବାକୁ ଯତ୍ନ କରିବ ଓ ପାର୍ଶ୍ୱବର୍ତ୍ତୀ ଲୋକଙ୍କ ମନରେ ସେ ସବୁ ଉତ୍କୃଷ୍ଟଭାବ ଉଦୟ କରିବାର ଚେଷ୍ଟା କରିବ । ଗବର୍ଣ୍ଣମେଣ୍ଟ ସାଧାରଣ ଧନର ଶିକ୍ଷା ବିଷୟରେ ଯାହା ବ୍ୟୟ କରୁ ଅଛନ୍ତି ତାହା କେବଳ ଶିକ୍ଷିତ ବ୍ୟକ୍ତିକୁ ଚାକରି ଦେବାକାରଣ ନୁହଇ । ଶିକ୍ଷିତ ବ୍ୟକ୍ତିକୁ ଏତକ ସ୍ମରଣ ରଖିବାର ଉଚିତ ଯେ ସାଧାରଣ ଧନ ଯେତେ ତାହା ପଛରେ ବ୍ୟୟ ହୋଇଅଛି ତାହା ପରିଶୋଧ ନିମିତ୍ତ ସେ ସାଧାରଣଙ୍କଠାରେ ନିତାନ୍ତ ଦାୟଗ୍ରସ୍ତ ଅଟଇ । ତାହାର ଉତ୍କୃଷ୍ଟଜ୍ଞାନ ଓ ବିଦ୍ୟାର ଫଳଭୋଗ କରିବାର ଅଧିକାରୀ ସମସ୍ତେ ଅଟନ୍ତି । ଏପରି ବ୍ୟକ୍ତି ଯେବେ ସର୍ବସାଧାରଣଙ୍କର ସବୁକୁ ଲୋପ କରି କେବଳ ଅସାର ବିଷୟରେ କାଳକ୍ଷେପଣ କରଇ ତେବେ ସେ ନିତାନ୍ତ ଅକୃତଜ୍ଞ ବ୍ୟକ୍ତି ସନ୍ଦେହ ନାହିଁ ।

*ଭା।୧୦ଗ,ସଂ୧୬ଖ୍ୟା, ୧୭।୪।୧୮୭୫*

## ଗ୍ରନ୍ଥକର୍ତ୍ତାମାନଙ୍କ ପ୍ରତି ବିଜ୍ଞାପନ ।

ଏ ପ୍ରଦେଶରେ ଯେତେ ଓଡ଼ିଆପୁସ୍ତକ ଛାପା ହେଉଅଛି ତାହା କିଣିବାରେ ବଡ଼ ଅସୁବିଧା ହେଉଅଛି । ଯେବେ ଗ୍ରନ୍ଥକର୍ତ୍ତାମାନେ ସମ୍ମତ ହୋଇ କଟକ, ପୁରୀ ଓ ବାଲେଶ୍ୱରରେ ଜଣେ ଲେଖାଁଏ ଏଜେଣ୍ଟ ନିଯୁକ୍ତ କରନ୍ତି ତେବେ ସେମାନଙ୍କର (ଗ୍ରନ୍ଥକର୍ତ୍ତାମାନଙ୍କର) ପୁସ୍ତକ ଶୀଘ୍ର ଶୀଘ୍ର ବିକ୍ରୀ ହେବ ଓ ସାଧାରଣ ମଧ୍ୟ ଅକ୍ଳେଶରେ ସବୁ ପୁସ୍ତକ ପାଇପାରିବେ ।

ଆବଶ୍ୟକହେଲେ ଏ ବିଷୟରେ ସାହାଯ୍ୟ କରିବାକୁ ଆମ୍ଭେ ଇଚ୍ଛୁକ ଅଛୁଁ ।

4th May, 1875

N.K.Das
Joint Inspector of Schools.
O.C.

*ଭା୧୦ଗ,ସଂ୧୯ଖ୍ୟା,୮।୫।୧୮୭୫*

## ପ୍ରେରିତପତ୍ର ।

## [ପରୀକ୍ଷାରେ ଉତ୍କଳଭାଷା]

ଶ୍ରୀଯୁତ ଉତ୍କଳଦୀପିକାଧିପତି ମହାଶୟଙ୍କ ଶ୍ରୀମୁକୁ

ଏତ ନିମ୍ନଲିଖିତ ପଂକ୍ତିମାନଙ୍କୁ ସ୍ଥାନ ଦାନ ଦେଇ ଆମ୍ଭମାନଙ୍କୁ ସନ୍ତୁଷ୍ଟ ହୃଦୟ କରାଇବା ହେଉନ୍ତୁ । ଏ ଜିଲାରେ ଉତ୍କଳଭାଷା ବହୁତ ଅନାଦରଣୀୟ ସ୍ଥିତିରେ ଥିବାର, ଗବର୍ଣ୍ଣମେଣ୍ଟ ଘର ଏ ନ୍ୟୂନତା ବୁଝି, ଏ ଉତ୍କଳଭାଷା ମଧ୍ୟ ପରୀକ୍ଷାରେ ନିଯୁକ୍ତ କରାଇଲେ, ତତ୍ର ଲୋକମାନେ ଉନ୍ନତିସ୍ଥିତି ପାଇବେ ବୋଲି ଆଲୋଚନା କରି, ସେ ପ୍ରକାର ପରୀକ୍ଷା ନିର୍ଣ୍ଣୟ କଲେ, ଏ ବିଷୟକୁ ଆମ୍ଭେମାନେ ଗବର୍ଣ୍ଣମେଣ୍ଟ ଘରକୁ ବହୁତ କୃତଜ୍ଞତାରୂପେ ବନ୍ଧନ ହୋଇଅଛୁଁ । ମାତ୍ର ଏ ଉପକାର କିଛି ସଫଳ ହୋଇପାରିଲା ନାହିଁ, ଏ ପରୀକ୍ଷା ଆରମ୍ଭ ହେବା ଦିନଠାର, ପ୍ରଶ୍ନମାନେ ବହୁତ କଷ୍ଟରେ ଅର୍ଥ ନ ହେଲାପରି, ପଣ୍ଡିତମାନେ ମଧ୍ୟ ଅର୍ଥ ନ କରି ପାରିଲା ପରି ରଚନା ହୋଉଅଛି, ଏପରି ହେଲେ ପରୀକ୍ଷାର ଏକାପରି ଆମ୍ଭେମାନେ ଉତ୍ତୀର୍ଣ୍ଣ ହୋଇ ପାରିବୁଁ ଏହାର ସପ୍ରମାଣ ନିମନ୍ତେ ଏ ବରଷ ପ୍ରଶ୍ନକାଗଜ ଏଥି ସହିତରେ ପଠିଆଇବାର ହେଲା, ବିଶେଷରେ ଦୟା ରଖି ଏ କାଗଜମାନଙ୍କୁ ଆପଣା ଅମୂଲ୍ୟ ପତ୍ରିକାରେ ମୁଦ୍ରିତ କରାଇ, ଏ ଘୋର ଅନ୍ୟାୟ ଜଗତ୍ ପ୍ରଖ୍ୟାତ କରାଇବା ହେଉନ୍ତୁ, ତନ୍ମୂଳରେ ଆମ୍ଭଙ୍କୁ ଆସନ୍ତା ବରଷକୁ ହେଲେ ନ୍ୟାୟ ମିଳିବ ବୋଲି ଦୃଢ଼ଚିତ୍ତ ହୋଉଅଛୁଁ ଚିତ୍ତକୁ ଆଣିବା ହେବେ ।

ଛତ୍ରପୁର
୧୮୭୫ ସମ୍ବତ୍ସର
ଏପ୍ରେଲ ତା୧୭

ତୁମ୍ଭର ଚନ୍ଦାଦାର
ରିଡ଼ିଙ୍ଗରମ

*ଭା୧୦ଗ,ସଂ୨୧ଖ୍ୟା,୨୨।୫।୧୮୭୫*

## [ପୁସ୍ତକ ପ୍ରତି ଆଗ୍ରହ]

ମହିମାର୍ଣ୍ଣବ

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ

ମହାଶୟ ....... ସମୀପେଷୁ ।

ବିନୟ ପୂର୍ବକ ନିବେଦନଂ

ମହାଶୟ ! ଆମ୍ଭେମାନେ ଶୁଣି ବଡ଼ ଆନନ୍ଦିତ ହେଲୁଁ ଯେ କନ୍ଦମାଳ ଇଲାକାର ତହସିଲଦାର ଶ୍ରୀଯୁକ୍ତ ବାବୁ ଦୀନବନ୍ଧୁ ପଟ୍ଟନାୟକ ଉତ୍କଳ ପୁସ୍ତକାବଳି ଗଞ୍ଜାମରେ ବିକ୍ରୟ ହେବା ନିମିତ୍ତ ରସୁଲକୁଣ୍ଡାଠାରେ ପୁସ୍ତକାଳୟ

ରକ୍ଷିବାର ସଦୁପାୟ କରିବେ । ବାବୁ ମହାଶୟ ଯଦି ତାହା କରନ୍ତି, ତେବେ ଆମ୍ଭମାନଙ୍କର ଧନ୍ୟବାଦାର୍ହ ହେବେ ସନ୍ଦେହ ନାହିଁ । ଇତି ।

୧୨-୫-୭୫ ଶ୍ରୀ ବି-

*ଭା।୧୦ଗ,ସଂ୨୧ଖ୍ୟା,୨୨।୫।୧୮୭୫*

## ଓଡ଼ିଆ ଯାତ୍ରା ଓ ମଜଲିସ୍ ।

ଗତ ସଂ ୧୬ଖ୍ୟା ବାଲେଶ୍ୱର ସଂବାଦବାହିକାର ଏକ ସ୍ଥାନରେ ଲେଖାଅଛି ଯେ "ଓଡ଼ିଶା ମଧରେ ବାଲେଶ୍ୱରରେ ଯେରପ ମଜଲିସ୍‌ର ଆଡ଼ମ୍ବର ଓ ନାଚରଙ୍ଗର ଆମୋଦ ସେରପ ଅନ୍ୟ ଦୁଇଜିଲାରେ ଶୁଣାଯାଏ ନାହିଁ, ବଡ଼ ଦୁଃଖର ବିଷୟ ଯେ ଓ ଓଡ଼ିୟାଭାଷାର ଯାତ୍ରାବାଲାମାନଙ୍କ ଅବସ୍ଥା କିରପେ ଉତ୍ତମ ହେବ ସେଥି ନିମନ୍ତେ କେହି ମନୋଯୋଗୀ ହେଉ ନାହାନ୍ତି" ।

ଆମ୍ଭେମାନେ ଅନେକଥର ଉପରଲିଖିତ ବିଷୟଟି ଚିନ୍ତା କରିଅଛୁଁ ଓ ବାସ୍ତବରେ ଆମ୍ଭମାନଙ୍କର ହୃଦୟଙ୍ଗମ ହୋଇଅଛି ଯେ ବାହିକା ଯାହା ଲେଖିଅଛନ୍ତି ତାହା ସମ୍ପୂର୍ଣ୍ଣ ସତ୍ୟ ଅଟଇ । ପୁରୀରେ ଜଗନ୍ନାଥ ମହାପ୍ରଭୁଙ୍କର ଯାତ୍ରା ପର୍ବମାନ ବର୍ଷଯାକ ଲାଗିଥାଏ ଓ ସେଠାକୁ ନିବାସିମାନେ ତାହା ଦେଖିବାରେ ମଗ୍ନ ଥାନ୍ତି ବୋଲି ଅନ୍ୟ କୌଣସି ସ୍ଥଳରେ ମଜଲିସ ଇତ୍ୟାଦି କରିବାର ପ୍ରୟୋଜନ ହୁଅଇ ନାହିଁ । ପୁଣି ସେଠାରେ ମଠଧାରିଙ୍କ ଛଡ଼ା ଅନ୍ୟ ଧନୀଲୋକ ପ୍ରାୟ ନାହାନ୍ତି ଓ ମଠଧାରି ଓ ଅନ୍ୟାନ୍ୟ ନିବାସିମାନଙ୍କର ଯାହା ପରମ୍ପରା ଖଞ୍ଜା ଅଛି ସେହିପରି କରି ଆସୁଅଛନ୍ତି ସୁତରାଂ ସେଠାରେ ଦୋଳ ଦୁର୍ଗୋତ୍ସବ ପର୍ବାଦିରେ ମଜଲିସ ଇତ୍ୟାଦି ନ ହେବାର କାରଣ ବୁଝାଯାଉଅଛି - କିନ୍ତୁ କଟକରେ କାହିଁକି ନ ହୁଅଇ ତହିଁର କାରଣ ସହଜରେ ଜଣାଯାଉ ନାହିଁ । ଏଠାରେ ଧନିଲୋକର ଅଭାବ ନାହିଁ ଓ ଯଦ୍ୟପି କି ଓଡ଼ିୟାଙ୍କମଧରେ ଦୁର୍ଗୋତ୍ସବ ପର୍ବର ତାଦୃଶ ଆଦର ନାହିଁ ତଥାଚ ଦୋଳଯାତ୍ରା ଏଠାର ସର୍ବାପେକ୍ଷା ପ୍ରଧାନ ଯାତ୍ରା ଅଟଇ ଏବଂ ଏହି ନଗରରେ କେତେକ ଧନୀ ଭଦ୍ରଲୋକଙ୍କ ଘରଠାରେ ଠାକୁର ସେବା ମଧ ଅଛି । ଏସ୍ଥଳେ ଏଠାରେ କାହାରି ଘରେ ବର୍ଷରେ **xxxx** ଭାରୀ ମଜଲିସ ହୁଅଇ ନାହିଁ ତହିଁ **xxxx** କେବଳ ଏହି ଜଣାଯାଏ ଯେ ଏ ଅଞ୍ଚଳର ଓଡ଼ିୟାମାନେ ସାମାଜିକ ସଦ୍ଭାବ ସ୍ଥାପନ ଓ ଆମୋଦ ପ୍ରମୋଦ କରିବା ବିଷୟରେ ନିତାନ୍ତ ଅଜ୍ଞ ଅଟନ୍ତି । କିନ୍ତୁ ଏକା ଓଡ଼ିୟାଙ୍କୁ କାହିଁକି ଦୋଷଦେବା ପଣ୍ଡିତ ପ୍ରଭୃତି ଅନ୍ୟ ଶ୍ରେଣୀର ସମ୍ଭ୍ରାନ୍ତ ଓ ଧନୀ ବ୍ୟକ୍ତି ଏଠାରେ ଅଛନ୍ତି ସେମାନଙ୍କ ଘରେ ତ କେବେ ସର୍ବସାଧାରଣଙ୍କ ସହିତ ଆମୋଦ ପ୍ରମୋଦ କରିବାର ମଜଲିସ ହେବାର ଦେଖା ନ ଯାଏ । ଧନୀ ମୁସଲମାନ କେହି ବର୍ତ୍ତମାନ ଏ ନଗରରେ ନାହାନ୍ତି ଓ ଏଦେଶୀୟ ବଙ୍ଗାଳି ବଡ଼ଲୋକ ମଧରେ ବାବୁ ଗୋଲକଚନ୍ଦ୍ର ବୋଷ ଅଟନ୍ତି ମାତ୍ର ତାହାଙ୍କ ନିଜ ଘର ମୋଫସଲରେ ଥିବାରୁ ସେଠାରେ ଭାରୀ ମଜଲିସ୍ ଦୁର୍ଗୋତ୍ସବ ସମୟରେ ହେଲେ ସୁଦ୍ଧା ନଗରବାସିଙ୍କୁ ତାହା ଜଣା ପଡଇ ନାହିଁ । ବିଦେଶୀୟ ବଙ୍ଗାଳିଙ୍କରତ କଟକ ଘର ନୁହଇ କେବଳ ତାହାଙ୍କର ଅର୍ଜନଭୂମି ସୁତରାଂ ତାହାଙ୍କ ଘରେ ମଜଲିସ କାହିଁକି ହେବ ? ଏପ୍ରକାର ବିଚାର କଲେ ଅନିର୍ବାର୍ଯ୍ୟରୂପେ ମନରେ ଏହି କଥା ଉଦୟ ହେଉଅଛି ଯେ ସାମାଜିକ ସଦ୍ଭାବ ରକ୍ଷା ଏବଂ ଆମୋଦ ପ୍ରମୋଦ ବିଷୟରେ ବଙ୍ଗାଳୀ ଓ ମୁସଲମାନ ଯେମନ୍ତ, ଏଅଞ୍ଚଳର ଅନ୍ୟ କୌଣସି ଶ୍ରେଣୀର ଲୋକ ସେପରି ନୁହନ୍ତି । ପୂର୍ବେ ଯେତେବେଳେ ଏନଗରରେ ଧନୀ ମୁସଲମାନ ଓ ବଙ୍ଗାଳୀ ଥିଲେ ତେତେବେଳେ ବର୍ଷମଧରେ ପାଞ୍ଚ ସାତ ମଜଲିସ ହେଉଥିଲା ଓ ମୁସଲମାନମାନେ ସଙ୍ଗୀତବିଦ୍ୟାର ଏମନ୍ତ ଗ୍ରାହକ ଥିଲେ ଯେ ପଶ୍ଚିମରୁ ଶିକ୍ଷକ ଅଣାଇ ଏଠା ବେଶ୍ୟାମାନଙ୍କୁ ନୃତ୍ୟ ଗାନରେ ବିଲକ୍ଷଣ ରପ ନିପୁଣ କରିଥିଲେ । ଏଣିକି ସଙ୍ଗୀତର ଚର୍ଚ୍ଚା ଏକାବେଳକେ ଉଠି ଯାଇଅଛି ବୋଲିବାକୁ ହେବ କାରଣ ତହିଁର ଗ୍ରାହକ ଆଉ କେହି ନାହାନ୍ତି । ନବ୍ୟ ସମ୍ପ୍ରଦାୟମଧରେ ହିନ୍ଦୁଧର୍ମର ଆଦର ନାହିଁ ବୋଲି ତଦାନୁସଙ୍ଗିକ ଆମୋଦ ପ୍ରମୋଦରେ ମଧ ଶ୍ରଦ୍ଧା ନାହିଁ । ସଭ୍ୟତାର ଅନୁରୋଧରେ ଏମାନଙ୍କର ଘର ଖର୍ଚ୍ଚ ବିସ୍ତର ବଢ଼ିଥିବାରୁ ଆମୋଦ ପ୍ରମୋଦରେ କିଛି ବ୍ୟୟ କରିବାକୁ କୁଣ୍ଠିତ ହୁଅନ୍ତି ଏବଂ ଏହା ମଧ ଅସମ୍ଭବ ନୁହଇ ଯେ ଆପଣାକୁ ଅଧିକ ଉନ୍ନତ ମଣି ଅପର

ସାଧାରଣଙ୍କ ସଙ୍ଗେ ମଜଲିସ ଇତ୍ୟାଦି ଯେସେ ଐକ୍ୟତା ସ୍ଥାପନ କରିବାକୁ ଆସ୍ଥା କରନ୍ତି ନାହିଁ । ଭିନ୍ନ ଭିନ୍ନ ସମ୍ପ୍ରଦାୟର ଲୋକଙ୍କ ଅବସ୍ଥା ଯେସ୍ଥଳେ ଏପ୍ରକାର ସେ ସ୍ଥଳେ ମଜଲିସ ଇତ୍ୟାଦି ହେବାର କିପରି ସମ୍ଭବ ? ଆହାର ଓ ସଜଲିସ ସମାର୍ଜର ଭିନ୍ନଶ୍ରେଣୀର ଲୋକଙ୍କ ମଧ୍ୟରେ ସଦ୍ଭାବ ଦୃଢ଼ କରିବାର ପ୍ରଧାନ ଉପାୟ ବୋଲି ପୁରାତନ କାଳରୁ ପରିଗଣିତ ହୋଇ ଆସିଅଛି ଓ ଫଳଦ୍ୱାରା ତହିଁର ପ୍ରତ୍ୟକ୍ଷ ପରିଚୟ ମଧ ପାୟାଯାଇ ଅଛି ତେବେ ଆହାର ଅପେକ୍ଷା ମଜଲିସ ଗୁରତର ଉପାୟ ଅଟଇ । କାରଣ ଜାତିନିୟମ ହେତୁରୁ ସମସ୍ତଙ୍କ ସଙ୍ଗେ ଏକତ୍ରରେ ଆହାର କରିବା ଅସମ୍ଭବ ଅଟଇ । ବର୍ତ୍ତମାନକାଳକୁ ମଜଲିସର ଅସ୍ତିତ୍ୱ ଲୋପ ହେବାରେ କି ସାମାଜିକ ବିଶୃଙ୍ଖଳା ଘଟି ନାହିଁ ? ଆମ୍ଭମାନଙ୍କ ବିବେଚନାରେ ଘଟିଅଛି ଓ ଏଠାର ସମସ୍ତ ଶ୍ରେଣୀର ଧନୀ ଓ ଭଦ୍ରଲୋକଙ୍କ ମଧ୍ୟରେ ଐକ୍ୟତା ଥିବାର ବିଶ୍ୱାସ ହେଉ ନାହିଁ । ବର୍ଷରେ ଥରେସୁଦ୍ଧା ଯେବେ ଏମାନେ ଏକତ୍ରରେ ବସା ଉଠା ନ କଲେ ତେବେ ଏହାଙ୍କ ମଧ୍ୟରେ ପ୍ରକୃତ ସଦାଳାପ ଥିବାର କେମନ୍ତକରି ଜ୍ଞାନ କରିବାକୁ ହେବ ? ଏହିସବୁ ଅବସ୍ଥାରୁ କଟକର ସମାଜ ନିର୍ଜୀବିତ ହୋଇ ରହିଅଛି ଓ ଏହି ହେତୁରୁ ଏଠାର ଉନ୍ନତି ହେବା କଠିନ ହୋଇଅଛି ।

କେହି କେହି ବୋଲିପାରନ୍ତି କି ଯଦ୍ୟପି କଟକରେ ନିୟମିତ ଭାରୀ ମଜଲିସ ହେବାର ଦେଖା ନାହିଁ କିନ୍ତୁ ସମୟବିଶେଷରେ ଅନ୍ୟ ସ୍ଥାନରୁ କୌଣସି ନାଚ ଯାତ୍ରା ପ୍ରଭୃତି ଆସିଲେ ତହିଁପାଇଁ ବୃହତ୍ ମଜଲିସ ହୋଇଥାଏ । ମାତ୍ର ତାହା ଧର୍ତ୍ତବ୍ୟ ନୁହଇ କାରଣ ଅନ୍ୟାନ୍ୟ ଜିଲାରେ ମଧ ସେରୂପ ହୋଇଥାଏ ଓ ତାହା ବହୁକାଳରେ ଥରେ ପ୍ରତ୍ୟକ୍ଷ ହେବାରୁ ତଦ୍ୱାରା କୌଣସି ଫଳଲାଭ ହୁଅଇ ନାହିଁ ।

ଉପରେ ଯାହା ଲେଖାଗଲା ତହିଁଉତ୍ତାରୁ ଓଡିଆ ଯାତ୍ରାବାଲାଙ୍କର କଥା କହିବାର ଆବଶ୍ୟକ ନ ରଖେ ଯେଉଁଠାରେ ଆଦୌ ମଜଲିସ ନାହିଁ ସୁତରାଂ ଯାତ୍ରାଦିର ପ୍ରୟୋଜନ ନାହିଁ ସେଠାରେ ଏମାନଙ୍କର ଅବସ୍ଥା ଉତ୍ତମ କରିବାକୁ କିଏ ଚେଷ୍ଟିତ ହେବ । ଏମାନଙ୍କର ଥିବା ନ ଥିବାରେ ଭଦ୍ରଲୋକଙ୍କର କିଛି ଯାଏ ଆସେ ନାହିଁ । ଏଠାର ସାମାନ୍ୟ ଲୋକଙ୍କ ଆମୋଦ ନିମିତ୍ତ ଯାତ୍ରାବାଲାମାନେ ବ୍ୟବସାୟରେ ଲିପ୍ତ ଅଛନ୍ତି ଓ ଯେ ପର୍ଯ୍ୟନ୍ତ ଆପଣା ଗ୍ରାହକଙ୍କମନ ଯୋଗାଉ ଅଛନ୍ତି ସେ ପର୍ଯ୍ୟନ୍ତ ଏମାନେ ଅଧିକ କିଛି କାହିଁକି ଲୋଡିବେ ଓ ଅଧିକ ଗୁଣ କରିବାକୁ ଗଲେ ଯେ ଅଧିକ ଶ୍ରମ ଓ ବ୍ୟୟ ହେବ ତାହା କେଉଁଠାରୁ ପୁନଃ ପ୍ରାପ୍ତ କରିବେ । ଯେତେବେଳେ ଓଡ଼ିୟାମାନେ ଆମୋଦପ୍ରିୟ ହେବେ ଅଥଚ ବିଦ୍ୟା ଓ ଧନଦ୍ୱାରା ଆପଣାର ଉନ୍ନତିର ଚେଷ୍ଟା କରିବେ ତେତେବେଳେ ଏଠା ଯାତ୍ରାବାଲାଙ୍କର ଅବସ୍ଥା ଆପେ ଭଲ ହେବ । ବର୍ତ୍ତମାନ ତହିଁର ଆଶା ନାହିଁ ।

*ଭା୧୦ଗ,ସଂ୨୨ଖ୍ୟା,୨୯।୫।୧୮୭୫*

## କଟକ କଲେଜ ।

ଆମ୍ଭମାନଙ୍କ ଛୋଟଲାଟ ସର୍ ରିଚାର୍ଡ ଟେମ୍ପଲ ଯେଉଁ ସମୟରେ ଓଡ଼ିଶାକୁ ଆସିଥିଲେ ସେ ସମୟରେ କଟକରେ ହାଇସ୍କୁଲ ପରିବର୍ତ୍ତରେ ଗୋଟିଏ କଲେଜ ସ୍ଥାପନ କରିବାର କଥା ତାହାଙ୍କଠାରେ ପ୍ରକାଶ ହୋଇଥିଲା ଓ ଜିଲାର କମିଶନର ସାହେବଙ୍କ ଇଚ୍ଛା ଯେ ବାର୍ଷିକ ଟ୧୨୦୦୦ଙ୍କା ଅଧିକା ଗବର୍ଣ୍ଣମେଣ୍ଟ ଦେଲେ ସେ ଏ ପ୍ରସ୍ତାବକୁ ପରୀକ୍ଷା କରି ଦେଖିବେ । ଉକ୍ତ ଟଙ୍କା ମାସକୁ ଏକହଜାର ଲେଖାଁଏ ତଳଲିଖିତରୂପେ ଖର୍ଚ୍ଚ ହେବ ଯଥା-

| | |
|---|---|
| ଏକଜଣ ଅଧକ୍ଷ ମାସକୁ | ଟ୪୫୦ |
| ଏକଜଣ ଅଧାପକ ମାସକୁ | ଟ୨୫୦ |
| ଏକଜଣ ରାସାୟନିକ ଶିକ୍ଷକ ମାସକୁ | ଟ୨୦୦ |
| ବାଜେ ଖର୍ଚ୍ଚ ମାସକୁ | ଟ୧୦୦ |

ବର୍ତ୍ତମାନ ହାଇସ୍କୁଲରେ ମାସକୁ ଟ୯୮୪ଙ୍କା ବ୍ୟୟ ହେଉଅଛି ଯେ ତହିଁ ମଧ୍ୟରୁ ଗବର୍ଣ୍ଣମେଣ୍ଟ ଟ୭୫୦ଙ୍କା ଦିଅନ୍ତି । ଯାହା ହେଉ ବାର୍ଷିକ ମୋଟ ଟ୨୪୦୦୦ଙ୍କା ରେ ପ୍ରସ୍ତାବିତ କଲେଜ ନିର୍ବାହ ହୋଇ ପାରିବ ଓ ଯେସ୍ଥଳେ ଢାକା ଓ ପାଟନା କଲେଜମାନଙ୍କରେ ଟ୩୦୦୦ଙ୍କାଠାରୁ ଟ୩୫୦୦ଙ୍କା ପର୍ଯ୍ୟନ୍ତ ବ୍ୟୟ ହେଉଅଛି

ସେ ସ୍ଥଳେ ପ୍ରସ୍ତାବିତ ଖର୍ଚ୍ଚାକୁ ଊଣା ବୋଲିବାକୁ ହେବ । ଅଧିକା ଟ୧୨୦୦୦ଙ୍କା ମଧ୍ୟରୁ କମିଶନର ସାହେବ ଟ୬୦୦୦ଙ୍କା ସ୍ଥାନୀୟ ଭେଦାଦ୍ୱାରା ଉଠାଇବାକୁ ଚେଷ୍ଟା କରିବେ ବୋଲି କହିଅଛନ୍ତି । ଏଥକୁ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ସାହେବ ଏହି ଅଭିପ୍ରାୟ ବ୍ୟକ୍ତ କରିଅଛନ୍ତି କି ଯେବେ ଏରପ ଭେଦା ପାଞ୍ଚବର୍ଷ ପର୍ଯ୍ୟନ୍ତ ଦେବାପାଇଁ କମିଶନର ସାହେବ ଆଶ୍ୱାସ ଦିଅନ୍ତି ତେବେ ଅବଶିଷ୍ଟ ଟ୬୦୦୦ଙ୍କା ଗବର୍ଣ୍ଣମେଣ୍ଟ ଦେଇ ପରୀକ୍ଷାସ୍ୱରୂପ କଲେଜ ବସାଇବେ ।

ଉପର ଲିଖିତ ମର୍ମ୍ମରେ ମାନ୍ୟବର ଲେଫ୍‌ନେଣ୍ଟ ଗବର୍ଣ୍ଣର ସାହେବ ଏକ ମନ୍ତବ୍ୟ ଗତ ଅପ୍ରେଲ ମାସ ତା ୨୭ରିଖରେ ଲେଖି ସ୍ଥାନୀୟ ଭେଦା ଉଠି ପାରେ କି ନା ଜାଣିବା କାରଣ କମିଶନର ସାହେବଙ୍କ ନିକଟକୁ ପତ୍ର ଲେଖି ଅଛନ୍ତି । ଉକ୍ତ ମନ୍ତବ୍ୟରେ ଏହା ମଧ ଲେଖା ଅଛି ଯେ ଓଡ଼ିଶାରେ ବର୍ତ୍ତମାନ କଲେଜରେ ପଢିବା ଭଳି ଛାତ୍ର ଅନେକ ପାୟାଯାଉ ନାହାନ୍ତି ପକ୍ଷାନ୍ତରେ ଓଡ଼ିୟାମାନେ କହନ୍ତି ଯେ ପ୍ରେସିଡେନ୍‌ସିଠାରୁ ସେମାନେ ଅନେକ ଅନ୍ତରରେ ଥିବାରୁ ବିସ୍ତର କ୍ଷତି ସହ୍ୟ କରିବାକୁ ବାଧ୍ୟ ହୁଅନ୍ତି କାରଣ କଲିକତାକୁ ନ ଗଲେ ଉପାଧି ପାଇବା ଯୋଗ୍ୟ ହେବାର ଉପାୟ ନାହିଁ । କୌଣସି ବଙ୍ଗାଳୀ ବା ବିହାରୀ ଏରୂପ ଦୁରବସ୍ଥାରେ ପତିତ ହୋଇ ନାହିଁ ଅତଏବ ଯେବେ ଓଡିୟାମାନେ କଟକରେ କଲେଜ ସ୍ଥାପନ କରି ପାରନ୍ତି ତେବେ ତାହାଙ୍କୁ ତହିଁ ନିମିତ୍ତ ସାହାଯ୍ୟ କରିବାର ଉଚିତ ।

ମାସକୁ ମାସ ଟ ୫୦୦ଙ୍କା ଲେଖାଁଏ ଭେଦା ଏଠାରେ ଉଠିପାରିବ ବୋଲି ଆମ୍ଭେମାନେ ସାହସ କରି କହି ନ ପାରୁଁ, ତେବେ ଶ୍ରୀଯୁକ୍ତ କମିଶନର ସାହେବ ଯେରୂପ ଉତ୍ସାହପୂର୍ଣ୍ଣ ଚିତ୍ତରେ ଏ ପ୍ରସ୍ତାବକୁ ଆରମ୍ଭ କରିଅଛନ୍ତି ଯେବେ ସେହିପରି ଭେଦା ସଂଗ୍ରହରେ ଯତ୍ନ କରନ୍ତି ତେବେ ତହିଁର ଫଳାଫଳ ଦେଖିବାରେ ଆସିବ । ମାତ୍ର ଆମ୍ଭେମାନେ ଉତ୍କଳପୁତ୍ର ସହିତ ଐକ୍ୟ ହୋଇ କହୁଅଛୁଁ ଯେ ସବୁ ଟଙ୍କା ଗବର୍ଣ୍ଣମେଣ୍ଟଙ୍କୁ ଦେବାର ଉଚିତ । ଓଡିଶାର ଦୁରବସ୍ଥା ଆମ୍ଭମାନଙ୍କ ଛୋଟଲାଟ ସାହେବଙ୍କୁ ଅବିଦିତ ନାହିଁ ଓ ଯେଉଁ ବଙ୍ଗଳା ଓ ବେହାରର ଦାୟିକା ଦେଇଅଛନ୍ତି ତହିଁ ପାଁଇ ଗବର୍ଣ୍ଣମେଣ୍ଟ କେତେ ବ୍ୟୟ କରୁ ନାହାନ୍ତି ଦୁଃଖୀ ଓଡିୟାଙ୍କ ବେଳକୁ ସାହାଯ୍ୟର ଆଶା ରଖିବା ଭଲ ହୋଇ ନାହିଁ ।

*ଭା୧୦ଗ,ସଂ୨୨ଖ୍ୟା,୫।୬।୧୮୭୫*

## ଉତ୍କଳ ଭାଷୋଦ୍ଦୀପିନୀ ସଭା ।

ଗତ ସୋମବାର କଟକ ପ୍ରିଣ୍ଟିଂକୁମ୍ପାନିଙ୍କ କୋଠାରେ ଏ ସଭାର ଦ୍ୱିତୀୟ ବାର୍ଷିକ ଅଧିବେଶନ ହୋଇଥିଲା । ଗତବର୍ଷ ପରି ନଗରର ଅନେକ ଭଦ୍ରଲୋକଙ୍କୁ ଆମନ୍ତ୍ରଣ ହୋଇଥିଲା ମାତ୍ର ସଭାର ଅନ୍ତର୍ଗତ ଲୋକ ଭିନ୍ନ ଅପର ଭଦ୍ରଲୋକ ଅତ୍ୟଳ୍ପ ଆଗମନ କରିଥିଲେ । ସେ ଦିନ ଗୁଣ୍ଡିଚା ଥିବାରୁ ଅଥବା ଅନ୍ୟ କାରଣରୁ ଏପରି ଘଟିଲା ଆମ୍ଭେମାନେ କହି ନ ପାରୁଁ । ଯାହା ହେଉ ଶ୍ରୀଯୁକ୍ତ ପାଦ୍ରୀ ମିଲର ସାହେବ ସଭାପତି ପଦରେ ବରଣ ହୋଇ ସଭାର କାର୍ଯ୍ୟ ନିର୍ବାହ କଲେ ଓ କେତେକ ଜଣ ସଭ୍ୟ ବକ୍ତୃତା କରି ସଭାକୁ ପରିତୋଷ କଲା ଉତ୍ତାରୁ ସଭାର କାର୍ଯ୍ୟ ଶେଷ ହେଲା ।

ସମ୍ପାଦକ ମହାଶୟ ସଭାର ବାର୍ଷିକବିଜ୍ଞାପନୀ ଲେଖି ପାଠ କରିଥିଲେ । ତହିଁରୁ ଦେଖାଯାଏ ଯେ ସଭ୍ୟମାନେ ଆଡ଼ମ୍ବର ଶୂନ୍ୟ ଭାବରେ ମାତୃଭାଷାର ଉତ୍କର୍ଷ ସାଧନ ପକ୍ଷରେ ଯଥାସାଧ ଯତ୍ନ କରିଅଛନ୍ତି ଓ ଯେଉଁମାନେ ପୂର୍ବେ ସଭାରେ ଦଣ୍ଡାୟମାନ ହୋଇ ପଦେ କଥା କହିବାକୁ ଶଙ୍କା କରୁଥିଲେ ସେମାନେ ସାହସପୂର୍ବକ ଛିଡା ହୋଇ ଉପସ୍ଥିତ ବିଷୟରେ ଦୁଇ ଚାରି କଥା କହିବାକୁ ସକ୍ଷମ ହୋଇଅଛନ୍ତି । ଓଡିଶା ପକ୍ଷରେ ଏତକ କଥା ସାମାନ୍ୟ ନୁହଇ ଓ ଏଥିରେ ଅନେକ ଭାବି ମଙ୍ଗଳର ଆଶା ଦେଖାଯାଏ । ସମାଲୋଚିତ ବର୍ଷ ମଧ୍ୟରେ ସଭାର ୨୮ଟି ଅଧିବେଶନ ହୋଇଥିଲା ଓ ପ୍ରତି ସଭାରେ ହାରାହାରି ୨୫।୩୦ ଜଣ ସଭ୍ୟ ଉପସ୍ଥିତ ହୋଇଥିଲେ । ସଭାରେ ନାନା ବିଷୟରେ ରଚନା ମାନ ପଠିତ ହୋଇଥିଲା । ଯଥା - ସ୍ତ୍ରୀଶିକ୍ଷା, ଉତ୍କଳଭାଷାର ଅବସ୍ଥା, ବାଲ୍ୟବିବାହ,

ସଭାର ଉପକାରିତା ହିନ୍ଦୁମାନଙ୍କର ସାମାଜିକ ରୀତି ନୀତି ଓ ଅବସ୍ଥା ଇତ୍ୟାଦି । ଏ ସବୁବିଷୟ ଅତ୍ୟୁତ୍କୃଷ୍ଟ ଅଟଇ ଓ ସଭ୍ୟମାନେ ଯେତେ ଏ ସବୁର ଆନ୍ଦୋଳନ କରିଥିବେ ତେତେ ସେମାନଙ୍କର ଜ୍ଞାନ ଓ ବହୁଦର୍ଶିତା ବୃଦ୍ଧି ହୋଇଥିବ । ଏ ଉତ୍ତାରୁ ମୌକ୍ଷିକ ବକ୍ତୃତା ଦାନ ଓ ତର୍କ ବିତର୍କରେ ସଭା ଅଧିକାଂଶ କାଳ ନିଯୁକ୍ତ ଥିବାର ସମ୍ପାଦକ ବୋଲନ୍ତି ଓ ତାହା ଯେ ଅତ୍ୟନ୍ତ ହିତକର ଏ କଥା ଆମ୍ଭେମାନେ ପୂର୍ବରୁ କହିଅଛୁଁ । ସୁତରାଂ ବିଜ୍ଞାପନିରୁ ଯେରୂପ ପ୍ରକାଶ ପାଉଅଛି ତହିଁରୁ ସ୍ପଷ୍ଟ ପ୍ରତୀୟମାନ ହୁଅଇ ଯେ ସଭ୍ୟମାନେ ଗତବର୍ଷ ଉପଯୁକ୍ତ ରୂପେ ସଭାର ଉଦ୍ଦେଶ୍ୟ ସାଧନରେ ତତ୍ପର ହୋଇଥିଲେ ଓ ଯେବେ କୌଣସି ଅଂଶରେ ଏହାଙ୍କର ଅଭାବ ଥାଏ ତେବେ ତାହା ଏହି ଯେ ଉତ୍କଳ ପ୍ରାଚୀନ କବିମାନଙ୍କ ଗ୍ରନ୍ଥ ପାଠ ଓ ସମାଲୋଚନା ପକ୍ଷରେ ସଭାର ଦୃଷ୍ଟି ପଡିବାର ଜଣା ଯାଉ ନାହିଁ । ଆମ୍ଭେମାନେ ବୋଧ କରୁଁ ଯେ ଉତ୍କଳଭାଷାର ପୂର୍ବାପର ଅବସ୍ଥା ସମ୍ୟକ୍ ରୂପେ ଜାଣିବା ସକାଶେ ପ୍ରାଚୀନ କବିଙ୍କ ରଚନାମାନ ପଢ଼ିବା ଜଣକର ରଚନା ଓ ଭାବସହିତ ଅନ୍ୟଜଣର ରଚନା ଓ ଭାବକୁ ତୁଳନା କରିବା ଓ କାଳର ଗତି ଅନୁସାରେ କବିମାନଙ୍କଦ୍ୱାରା ଭାଷାର ଉନ୍ନତି କିପରି ସାଧିତ ହୋଇଅଛି ତହିଁର ନିରାକରଣ କରିବା ଇତ୍ୟାଦି ଅତ୍ୟନ୍ତ ହିତକର ଓ ଭାଷୋଦ୍ଦୀପିନୀ ସଭାର ଉପଯୋଗୀ ବିଷୟ ଅଟଇ । ଏଥିପାଇଁ କବିମାନଙ୍କର ଗ୍ରନ୍ଥ ସବୁ ଉତ୍ତମରୂପେ ପଢ଼ିବାର ଉଚିତ ଓ ସମୟ ସମୟରେ ଏବିଷୟ ଘେନି ସଭାରେ କଥା ଉପସ୍ଥିତ ହେଲେ ଅବଶ୍ୟ କେହି କେହି ସଭ୍ୟ ସେସବୁ ପଢିବାକୁ ଆବଶ୍ୟକ ମଣିବେ । ଯଦ୍ୟପି କି ଅବଧି ସଭା ଏଥିରେ ମନୋନିବେଶ କରିବାର କିଛି ପରିଚୟ ପାୟାଯାଉ ନାହିଁ ମାତ୍ର ଆମ୍ଭେମାନେ ଆନନ୍ଦିତ ହୋଇ ବିଜ୍ଞାପନୀରୁ ଜାଣିଲୁ ଯେ ଏଣିକି ସଭା ତହିଁର ଉଦ୍ୟମ କରିବାକୁ ଦୃଢ଼କକ୍ଷ ହୋଇଅଛନ୍ତି କାରଣ ସମ୍ପାଦକ ଲେଖିଅଛନ୍ତି ଯେ ଉତ୍କଳ ପୋଥିମାନ ଏକତ୍ରିତ କରିବାର ସଭା ସ୍ଥିର କରିଅଛନ୍ତି । ଏଥିପାଁଇ ସାଧାରଣ ସାହାଯ୍ୟର ଆବଶ୍ୟକ ଓ ତାହା ନେବାପାଁଇ ସଭା ଉଦ୍ୟମ କରିବେ । ଆମ୍ଭେମାନେ ଆଶା କରୁଁ ଯେ ଉତ୍କଳଦେଶର ସର୍ବସାଧାରଣ ଏପ୍ରକାର ମହତ୍ ବିଷୟରେ ଯଥାସାଧ ଦାନ କରିବାକୁ କଦାଚ ତ୍ରୁଟି କରିବେ ନାହିଁ । ଉତ୍କଳଭାଷାରେ ଅନେକ ପୁସ୍ତକ ରଚନା ହୋଇଥିବାର ଶୁଣାଯାଏ ମାତ୍ର ଲୋଡିଲେ ସେସବୁ ମିଳଇ ନାହିଁ । ଏ ପୁସ୍ତକସବୁ ଘରିଆତ୍ରୁ ଗୁଣ୍ଡି ଆଣି ଏକତ୍ର କରିବା ଅତି ମହତ୍ କାର୍ଯ୍ୟ ଅଟଇ ଓ ଏଥିରେ ଉତ୍କଳଭାଷା ଓ ଉତ୍କଳବାସିଙ୍କର ଯଥାର୍ଥ ଗୌରବ ପ୍ରକାଶ ହେବ । ସଭାଠାରେ ଆମ୍ଭମାନଙ୍କର ଏତିକି ପ୍ରାର୍ଥନା ଯେ ଶୀଘ୍ର ଏ ପ୍ରସ୍ତାବକୁ କାର୍ଯ୍ୟରେ ପରିଣତ କରନ୍ତୁ କାର୍ଯ୍ୟାରମ୍ଭ ହେଲେ ଏଠାରେ ଗୋଟିଏ ସାଧାରଣ ପୁସ୍ତକାଳୟ ସ୍ଥାପନ କରିବାର ଆବଶ୍ୟକତା ଅଧିକତର ପ୍ରତୀୟମାନ ହେବ । ଆମ୍ଭେମାନେ ଏ ସଭାର କାର୍ଯ୍ୟରେ ଅତ୍ୟନ୍ତ ପ୍ରୀତ ହୋଇଅଛୁଁ ଭରସା କରୁଁ ଯେ ଏହାର ଉପଯୋଗୀତା ଦିନକୁଦିନ ବୃଦ୍ଧି ହେବ ।

*ଭା୧୦ଗ,ସଂ୨୮ଖ୍ୟା,୧୦।୭।୧୮୭୫*

## [ଶିକ୍ଷାର ପ୍ରସାର ପାଇଁ କଲେଜ]

ଓଡ଼ିଶାରେ କଲେଜ ହେବାର ଉଦ୍ୟମ ଶୁଣି ଓ ତାହା ଆମ୍ଭମାନଙ୍କ କମିଶ୍ନରସାହେବଙ୍କ ବିଶେଷ ଯତ୍ନ ଓ ପରିଶ୍ରମର ଫଳ ସ୍ୱରୂପ ଜାଣି ଅନେକ ସଂବାଦପତ୍ରରେ ସାହେବଙ୍କର ସୁଖ୍ୟାତି ବାହାରି ଅଛି । ବାସ୍ତବରେ ଶ୍ରୀଯୁକ୍ତ ରେବନ୍‌ସାସାହେବ ଏ ପ୍ରଦେଶରେ ଶିକ୍ଷାର ଉନ୍ନତି ପକ୍ଷରେ ସର୍ବଦା ମନୋଯୋଗୀ ଅଟନ୍ତି । ଅନ୍ୟାନ୍ୟ ବିଷୟରେ ଯାହା ହେଉ ଶିକ୍ଷା ବିଷୟରେ ତାହାଙ୍କପରି, ଆଉ କାହାରିକି ଦୃଢ଼ରୂପେ ଚେଷ୍ଟିତ ହେବାର ଦେଖାଯାଇ ନାହିଁ । ଓଡ଼ିଆମାନଙ୍କପ୍ରତି ତାହାଙ୍କର ବିଶେଷ ଶ୍ରଦ୍ଧା ଥିବାରୁ ସେମାନଙ୍କ ଉନ୍ନତି ସକାଶେ ସେ ଏରୂପ କାର୍ଯ୍ୟ କରୁଅଛନ୍ତି ଏବଂ ସେମାନଙ୍କ ଉତ୍ସାହ ନିମିତ୍ତ ସେ ନିୟମିତରୂପେ ବିଦ୍ୟାଳୟମାନଙ୍କର ବାର୍ଷିକ ସଭାରେ ଉପସ୍ଥିତ ହୁଅନ୍ତି ଏବଂ ହାତରୁ ଟଙ୍କା ଦେଇ ମଧ ବାଳକଙ୍କୁ ପଢ଼ାଉ ଅଛନ୍ତି । ନର୍ମାଲ ସ୍କୁଲର ବାର୍ଷିକ ସଭାରେ ସେ ଓଡ଼ିଶା କଲେଜ ସମ୍ପର୍କରେ କହିଲେ ଯେ ଲୋକମାନେ ଯେମନ୍ତ ଆଗ୍ରହ ସହକାରେ ଭେଦା ଦେବାକୁ ସ୍ୱୀକୃତ ହେଉ ଅଛନ୍ତି ତହିଁରେ ତାହାଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ହୋଇଅଛି ଯେ ଅଳ୍ପକାଳ ମଧରେ ଆବଶ୍ୟକୀୟ ଟଙ୍କା ହସ୍ତଗତ ହେବ ଓ ବର୍ଷପୂର୍ଣ୍ଣ ନ ହେଉଣୁ ହୁଏତ ଏଠାରେ କଲେଜ ସ୍ଥାପନ ହେବ । ଏସଂବାଦଟି ଅତି ଶୁଭକର ଅଟଇ ଏବଂ

ଶ୍ରୀଯୁକ୍ତ ରାବନ୍‌ସାସାହେବଙ୍କ ଉଦ୍ୟମରୁ ଯେ ତାହା ଘଟିଅଛି ଏଥିରେ ସନ୍ଦେହ ନାହିଁ । କିଛି ହେଉ ଓଡ଼ିଶାଲୋକମାନେ ଯେ ଆପଣାର ବୋଲି ଗୋଟିଏ କଲେଜ କହି ପାରିବେ ଭାଗ୍ୟର ବିଷୟ ଅଟଇ ତେବେ ଶଙ୍କା ଏତିକି ଯେ ବ୍ୟୟ ପରିମାଣରେ ଫଳ ହେବ ନାହିଁ ଓ ଏଠାପରି ନିର୍ଦ୍ଧନ ଲୋକଙ୍କର ବିସ୍ତର ଧନ ଅଳ୍ପଫଳ ଉଦ୍ଦେଶ୍ୟରେ ବ୍ୟୟ ହେବ ବଡ଼ ଦୁଃଖର କଥା ଅଟଇ । କମିଶ୍ନର ଏକଥା ଉପରେ ଦୃଷ୍ଟି ରଖିଥିଲେ ଭଲ ହୋଇଥାନ୍ତା ।

*ଭା୧୦ଗ,ସଂ୨୯ଖ୍ୟା,୧୭।୭।୧୮୭୫*

## କଟକ ନର୍ମ୍ୟାଲ ସ୍କୁଲର ବାର୍ଷିକ ପାରିତୋଷିକ ବିବରଣ ସଭା ।

ଏ ବାର୍ଷିକ ସଭାଟି ଗତ ମଙ୍ଗଳବାର ସକାଳ ବେଳେ ହୋଇଥିଲା । ଇଂରାଜଙ୍କ ମଧ୍ୟରେ କେବଳ ଶ୍ରୀଯୁକ୍ତ ରାବନସା ସାହେବ କମିଶନର ଏବଂ ଦେଶୀୟ ଲୋକ ଜ୧୦।୧୨ ଣ ମଧ୍ୟରେ ଦୁଇଜଣ ଜମିଦାର, ଜଣେ ଉକୀଲ ଓ ବାକୀ ସମସ୍ତ ରାଜକର୍ମଚାରୀ ଉପସ୍ଥିତ ହୋଇଥିଲେ । ବ୍ରାହ୍ମଧର୍ମ ପ୍ରଚାରକ ବାବୁ ପ୍ରତାପ ଚନ୍ଦ୍ର ମଜୁମଦାର ମଧ୍ୟ ସଭାକୁ ଆସିଥିଲେ । ଅନେକ ଇଂରାଜ ଓ ଦେଶୀୟ ଭଦ୍ରଲୋକଙ୍କୁ ଆମନ୍ତ୍ରଣ ହୋଇଥିବା ପ୍ରତ୍ୟକ୍ଷେ ଆଉ କେହି ଆସିବାକୁ ପ୍ରବୃତ୍ତ ହେଲେ ନାହିଁ । ଏଟି କଟକର ସାଧାରଣ ଅବସ୍ଥା ଅଟଇ ସୁତରାଂ ଏଥିପାଁଇ ଆକ୍ଷେପ କରିବା ବୃଥା ନିୟମିତରୂପେ ସଭା କାର୍ଯ୍ୟାରମ୍ଭ ହେଲାରୁ ସ୍କୁଲର ପ୍ରଧାନ କର୍ମଚାରୀ ବାବୁ ଦ୍ୱାରିକା ନାଥ ଚକ୍ରବର୍ତ୍ତୀ ଇଂରାଜୀ ଭାଷାରେ ସ୍କୁଲର ବାର୍ଷିକ ବିଜ୍ଞାପନୀ ପାଠକଲେ ତହିଁଉତାରୁ ପାରିତୋଷିକ ପୁସ୍ତକସବୁ ପିଲାମାନଙ୍କୁ ବାଣ୍ଟିଦିଆଗଲା । ପୁସ୍ତକ ବଣ୍ଟନ ସମୟରେ ଅନେକ ଓଡ଼ିଆପିଲା ମୁଣ୍ଡର ବାଳ କାଟିଥିବାର ଦେଖି କମିଶନର ସାହେବ ସେମାନଙ୍କୁ ବୁଝାଇ କହିଲେ ଯେ ଆପଣା ଦେଶୀୟ ପ୍ରଥା ଛାଡିବାର ଉଚିତ ନୁହଇ । ଏକଜଣ ପିଲାକୁ ବାଳ କାଟିବାର କାରଣ ପଚାରିବାରେ ସେ କହିଲା କି ସେ ବାଳ କଟାଇଥିଲା ପୁନର୍ବାର ବଢାଉଅଛି । ଏ କାର୍ଯ୍ୟ ଶେଷ ହେଲା ଉତାରୁ ଶ୍ରୀଯୁକ୍ତ କମିଶନର ସାହେବ ଛିଡ଼ା ହୋଇ ଶିକ୍ଷକ ଓ ଛାତ୍ରଙ୍କୁ ସମ୍ବୋଧନ କରି କହିଲେ ଯେ ଏଥରକୁ ଘେନି ସାତଥର ସେ ଏହି ସ୍କୁଲର ପାରିତୋଷିକ ବିତରଣ ସଭାରେ ଉପସ୍ଥିତ ହୋଇ ଏ କାର୍ଯ୍ୟ ନିର୍ବାହ କଲେଣି ଓ ତାହାଙ୍କ ମନରେ ଭାରୀ ଆନନ୍ଦ ଜାତ ହେଉଅଛି ଯେ ସେ ଉତ୍ତରୋତ୍ତର ଏଠାର ଶିକ୍ଷାର ଉନ୍ନତି ଦେଖୁଅଛନ୍ତି । ବିଜ୍ଞାପନୀ ବର୍ଷରେ ଜ୧୮ଣ ପଣ୍ଡିତ ଓ ଜ୫୦ଣ ଅବଧାନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ଏ ଫଳ ସନ୍ତୋଷଜନକ ଅଟଇ ଓ ଏଥିରେ ଶିକ୍ଷକ ଓ ଛାତ୍ର ଉଭୟଙ୍କର ପ୍ରଶଂସା ଅଛି । ନର୍ମ୍ୟାଲ ସ୍କୁଲ ସଙ୍ଗେ ଯେଉଁ ଆଦର୍ଶ ବିଦ୍ୟାଳୟ ଓ ପାଠଶାଳା ଅଛି ତହିଁର କାର୍ଯ୍ୟ ମଧ୍ୟ ଉତ୍ତମରୂପେ ଚଳିଅଛି ସୁଖର ବିଷୟ ଅଟଇ ମାତ୍ର ନର୍ମ୍ୟାଲ ସ୍କୁଲରେ ତାହାଙ୍କୁ ବଡ କରି ଘେନିବାକୁ ହେବ ନାହିଁ କାରଣ ଉକ୍ତ ବିଦ୍ୟାଳୟ ଦ୍ୱୟର ପିଲାମାନେ ଉପକରଣମାତ୍ର କି ତାହାଙ୍କୁ ଘେନି ପଣ୍ଡିତ ଓ ଅବଧାନମାନେ ଶିକ୍ଷାକାର୍ଯ୍ୟ ଶିକ୍ଷା କରିବେ । ସାହେବ ମହୋଦୟ ଆହୁରି କହିଲେ କି ସେ ମୋଫସଲର ଅନେକ ସ୍କୁଲ ଓ ଚଟଶାଳୀ ସ୍ୱୟଂ ଦେଖିଅଛନ୍ତି ଓ ନର୍ମ୍ୟାଲ ସ୍କୁଲରୁ ବାହାରି ଥିବା ପଣ୍ଡିତ ଅବଧାନମାନେ ସେସମସ୍ତର କାର୍ଯ୍ୟ ଉତ୍ତମରୂପେ ନିର୍ବାହ କରନ୍ତି ମାତ୍ର ସେ ଦୁଃଖିତ ହୋଇ କହିଅଛନ୍ତି ଯେ ଏଠାରୁ ବାହାରି ଯେଉଁମାନେ ଶିକ୍ଷକ ହୁଅନ୍ତି ତାହାଙ୍କର ଯେରୂପ ବିଦ୍ୟା ସେରୂପ ଚରିତ୍ର ନୁହଇ । ବାସ୍ତବରେ ଅନେକଙ୍କର ମନ୍ଦଚରିତ୍ର ସେ ଶୁଣିଅଛନ୍ତି ଓ ତହିଁ ପାଁଇ ଗ୍ରାମର ଲୋକମାନେ ଏମାନଙ୍କୁ ସୁଖ ପାନ୍ତି ନାହିଁ । ନର୍ମ୍ୟାଲ ସ୍କୁଲର ଅଧ୍ୟକ୍ଷ ଓ ଶିକ୍ଷକମାନଙ୍କୁ ଏଥିରେ ଭାରୀ ଦୃଷ୍ଟି ରଖିବାର ଉଚିତ ଏଥିଉତାରୁ ଛାତ୍ରମାନଙ୍କୁ ବାବୁ ନ ହେବା ଓ ଭଲ ଶିକ୍ଷା ଲାଭ କରି ଉଚ୍ଚକର୍ମ ପାଇବା ପାଁଇ ଆକାଂକ୍ଷା ବଢାଇବା ଇତ୍ୟାଦି ସତ୍ ପରାମର୍ଶ ଦେଇ କହିଲେ ଯେ ନର୍ମ୍ୟାଲ ସ୍କୁଲରୁ ଯେଉଁମାନେ ଉତ୍ତୀର୍ଣ୍ଣ ହୋଇ ମୋଫସଲରେ ପଣ୍ଡିତ ଓ ଅବଧାନ ହୁଅନ୍ତି ସେମାନଙ୍କୁ ବଗିଚା କର୍ମ ଜାଣିବା ଅତ୍ୟନ୍ତ ଆବଶ୍ୟକ ଓ ଏଥିରେ ତାହାଙ୍କର ଓ ତାହାଙ୍କଦ୍ୱାରା ମୋଫସଲ ଲୋକଙ୍କର ବିଶେଷ ଉପକାର ହେବାର ସମ୍ଭାବନା । ଏଥିପାଁଇ ସେ ପ୍ରସ୍ତାବ କଲେ କି ଯେବେ ସ୍କୁଲର ଶିକ୍ଷକମାନେ ଆପେ ଛାତ୍ରଙ୍କ ସହିତ ଯୋଗଦେଇ ନାନାଦି ଶାଗ ପରିବା ଓ ଫଳ ଫୁଲର ଗଛ ଲଗାଇ ବଗିଚା ପ୍ରସ୍ତୁତ କରିବାକୁ ସମ୍ମତ ହେବେ ତେବେ ସେ ତହିଁ ନିମିତ୍ତ ଖଣ୍ଡେ ଜମି ଖଞ୍ଜାଇ ଦେବେ ଓ ତହିଁ ସମ୍ପର୍କୀୟ ଅନ୍ୟାଅନ୍ୟ ଦ୍ରବ୍ୟସବୁର ଆୟୋଜନ କରିଦେବେ । ଆମ୍ଭମାନଙ୍କ ବିବେଚନାରେ ଏ ପ୍ରସ୍ତାବଟି ବଡ

ଉତ୍ତମ ଅଟଇ ଓ ଏଥିରେ କେବଳ ଶିକ୍ଷକ ଓ ଛାତ୍ରଙ୍କର ଶାରୀରିକ ଓ ମାନସିକ ବଳ ବୃଦ୍ଧି ହେବ ଏମନ୍ତ ନୁହଇ ଏଥିରେ ରୁଚିର ବିଶେଷ ତାରତମ୍ୟ ହେବ ଓ ଅନେକ ଲୋକର ଜୀବନଯାତ୍ରା ମଧ ହୋଇ ପାରିବ । ଆମ୍ଭେମାନେ ଭୟ କରୁଁ ଯେ ପ୍ରଥମତଃ ହୁଏତ ବୃଥା ଜାତି ଅହଙ୍କାର ଅବା ମାନହାନି ହେତୁରୁ ଶିକ୍ଷକମାନେ ଏଥିରେ ମନୋଯୋଗୀ ହେବେ ନାହିଁ କିନ୍ତୁ ଯେବେ ସେମାନେ ଅନୁଧାବନ କରି ଦେଖିବେ ତେବେ ଅବଶ୍ୟ ବୁଝିପାରିବେ ଯେ ଏଥିରେ କୌଣସି ପ୍ରକାର ଜାତି ମର୍ଯ୍ୟାଦା ଲାଘବ ହେବାର କଥା ନାହିଁ ବସ୍ତୁତଃ ଏହାଦ୍ୱାରା ଅନେକ କୁସଂସ୍କାର ଓ ଆଳସ୍ୟ କି ଯହିଁର ପ୍ରାଦୁର୍ଭାବରୁ ଏ ପ୍ରଦେଶ ପ୍ରକୃତ ଉନ୍ନତି ବି ଲଭି ପାରୁ ନାହିଁ ତହିଁ ମୂଳରେ କୁଡାରି ପ୍ରୟୋଗ ହେବ । ଓଡିଶା କୃଷି ପ୍ରଧାନ ଦେଶ ଅଟଇ ଏଠାରେ ସମସ୍ତଙ୍କୁ କୃଷିର ନିୟମ ଜାଣିବାର ଉଚିତ । ଏହା ଜାଣିଲାରୁ ଯେ ସମସ୍ତେ ହାତରେ ଲଙ୍ଗଳ ଧରି ଚାସ କରିବେ ଏମନ୍ତ ନୁହେଁ କିନ୍ତୁ ଯାହାଙ୍କର ଜମି ଅଛି ଓ କୋଠିଯାଦ୍ୱାରା ଚାସ କରନ୍ତି ବା ଆପେ ଆପଣା ବାଡିଖଣ୍ଡି କରେ ଶାଗ ପରିବା କରି କେତେକ ସାଂସାରିକ ବ୍ୟୟରୁ ରକ୍ଷାପାଆନ୍ତି ସେମାନେ ତହିଁରୁ ସମଧିକ ଲାଭ ପାଇବାକୁ ସକ୍ଷମ ହେବେ ଓ ଉତ୍କୃଷ୍ଟ ପ୍ରକାର ଦ୍ରବ୍ୟ ଉତ୍ପନ୍ନ କରାଇ ପାରିବେ ।

ଶ୍ରୀଯୁକ୍ତ କମିଶନର ସାହେବ ଆସନ ଗ୍ରହଣ କଲା ଉତ୍ତାରୁ ସଭ୍ୟଙ୍କ ଅନୁରୋଧରେ ବାବୁ ପ୍ରତାପ ଚନ୍ଦ୍ର ମଜୁମଦାର ଛାତ୍ରମାନଙ୍କୁ ସମ୍ବୋଧନ କରି ବଙ୍ଗଳାଭଷାରେ ବିଦ୍ୟାର ଗୌରବ କିଞ୍ଚିତ୍ ବର୍ଣ୍ଣନ କଲେ ଓ ଶାରୀରିକ ବଳଠାରୁ ବୁଦ୍ଧିବଳର ଆଧିକ୍ୟ ବିଷୟ ଗୋଟିଏ କୌତୁକଜନକ ଗଳ୍ପଦ୍ୱାରା ବ୍ୟାଖ୍ୟା କଲେ ଓ ପରିଶେଷରେ କହିଲେ ଯେ ଛାତ୍ରମାନଙ୍କ ଶିକ୍ଷାପ୍ରତି ଗବର୍ଣ୍ଣମେଣ୍ଟ ଯେମନ୍ତ ଯତ୍ନ କରୁଅଛନ୍ତି ଶିକ୍ଷକଙ୍କ ଶିକ୍ଷା ପ୍ରତି ତଦ୍ରୂପ ଯତ୍ନ ହେଉ ନାହିଁ । ଏଠାରେ ଶିକ୍ଷକମାନଙ୍କୁ ଛାତ୍ରଙ୍କ ପରି ଶିକ୍ଷା ଦିଆଯାଏ ମାତ୍ର ତାହା ଯଥାର୍ଥ ନୁହଇ ବାସ୍ତବରେ ଶିକ୍ଷକଙ୍କୁ ଏରୂପ ଶିକ୍ଷା ଦେବାର ଉଚିତ କି ଯହିଁରେ ସେମାନେ ବାଳକଙ୍କର ପ୍ରକୃତି ନିଃସନ୍ଦେହରୂପେ ବୁଝି ପାରିବେ ଓ ତାହାଙ୍କର ମନ ମଧରେ ପଶି ଅନ୍ତର୍ଗତ ଭାବସବୁ ପ୍ରତ୍ୟକ୍ଷ କରି ପାରିବେ । ଶିକ୍ଷକମାନେ ଏହା ନ ଜାଣିଲେ ବାଳକଙ୍କର ମନ ଓ ସ୍ୱଭାବ ବୁଝି ତାହାଙ୍କୁ ଶିକ୍ଷା ଦେଇ ପାରିବେ ନାହିଁ ଓ ସେମାନେ ତାଡନାଦ୍ୱାରା ବାଳକଙ୍କ ପ୍ରତି ଯମଦୂତ ପ୍ରାୟ ଜଣା ଯିବେ । ପ୍ରତାପ ବାବୁଙ୍କ ବକ୍ତୃତାର ଏହି ଭାବକୁ ସଭ୍ୟମାନେ ଅନୁମୋଦନ କଲେ ।

### *ଭା୧୦ଗ, ସଂ୨୯ଖ୍ୟା, ୧୭।୭।୧୮୭୫*

## [ସାହିତ୍ୟ ପ୍ରସାର ପାଇଁ ବିଭିନ୍ନ ପଦକ୍ଷେପ]

ବାଲେଶ୍ୱର ସଂବାଦ ବାହିକାରୁ ଅବଗତ ହେଲୁଁ ଯେ ଉକ୍ତ ନଗରରେ ବାବୁ ଜଗଦୀଶନାଥ ରାୟଙ୍କ ଯତ୍ନରେ ଗୋଟିଏ ସଭା ସ୍ଥାପିତ ହୋଇଅଛି । ଏ ସଭାର ସଭାପତି ବାବୁ ଶ୍ୟାମାନନ୍ଦ ଦେଓ ସମ୍ପାଦକ ବାବୁ ବୈକୁଣ୍ଠନାଥ ଦେ ଅଟନ୍ତି । ଏ ସଭାରେ ସର୍ବାଗ୍ରେ ଗୋଟିଏ ସାଧାରଣ ପୁସ୍ତକାଳୟ ସ୍ଥାପନ କରିବାର ସ୍ଥିର ହୋଇଅଛି । ଏଥିପାଁଇ ଟଙ୍କା ସଂଗୃହୀତ ହେଲେ ଗୋଟିଏ ଉପଯୁକ୍ତ ଘର ନିର୍ମାଣ ହେବ ଓ ତାହା ହେବା ପର୍ଯ୍ୟନ୍ତ ବାବୁ ମଦନମୋହନଦାସଙ୍କ ବଗିଚଘରେ ପୁସ୍ତକମାନ ରହି ପୁସ୍ତକାଳୟର କାର୍ଯ୍ୟ ଚଳିବାର ବନ୍ଦୋବସ୍ତ ହୋଇ ଅଛି । ଗତ ଦଶବର୍ଷ ମଧରେ ଓଡ଼ିଶାର ପ୍ରତ୍ୟେକ ଜିଲାରେ ଅନେକ ସଭାର ଅନୁଷ୍ଠାନ ହେବାର ଆମ୍ଭେମାନେ ଦେଖିଅଛୁଁ ମାତ୍ର ହତଭାଗିନୀ ଓଡ଼ିଶାର କପାଳକୁ ଗୋଟିଏ ସଭା ସୁଦ୍ଧା ସ୍ଥିର ରହି ପାରି ନାହିଁ କିମ୍ବା କୌଣସି କାର୍ଯ୍ୟ ସାଧନ କରି ନାହିଁ । ବର୍ତ୍ତମାନ ଉଲ୍ଲିଖିତ ସଭାଟି ସେପରି ଦୁର୍ଗତିକୁ ନ ଭଜେ ଆମ୍ଭମାନଙ୍କର ଏକାନ୍ତ ମାନସ ତଥାଚ ଆମ୍ଭେମାନେ ସଭ୍ୟମାନଙ୍କୁ ଅନୁରୋଧ କରୁଁ ଯେ ପ୍ରସ୍ତାବିତ ବିଷୟଟିକୁ ଯେତେ ଶୀଘ୍ର ହୋଇ ପାରେ କାର୍ଯ୍ୟରେ ପରିଣତ କରନ୍ତୁ ତାହା ହେଲେ ନିତାନ୍ତରେ ଯେବେ ସଭାପ୍ରତି ଭବିଷ୍ୟତକୁ ଲୋକଙ୍କର ଅନାସ୍ଥା ଜନ୍ମେ ତେବେ ସୁଦ୍ଧା ପୁସ୍ତକାଳୟଟି ରହିଯାଇ ବହୁକାଳ ପର୍ଯ୍ୟନ୍ତ ଲୋକଙ୍କର ଉପକାର ସାଧନ କରୁଥିବ । ଓଡିଶାର କୌଣସି ଜିଲାରେ ଆଜିଯାଏ ପ୍ରକୃତ ସାଧାରଣ ପୁସ୍ତକାଳୟ ସ୍ଥାପନ ହୋଇ ନାହିଁ । କଟକରେ ଯାହା ଅଛି ତାହା ସାଧାରଣ ବୋଲି ବୋଲାଯାଇ ନ ପାରେ ଓ ଭଦ୍ରଖରେ ଗୋଟିଏ ପୁସ୍ତକାଳୟ ବାବୁ ରାସବେହାରି ବୋଷ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ
ଡେପୁଟିକଲେକ୍ଟରଙ୍କ ଅମଳରୁ ସ୍ଥାପିତ ହୋଇଅଛି ମାତ୍ର ତହିଁର ଅବସ୍ଥା ଯେ ଭଲ ଏମନ୍ତ ଆମ୍ଭେମାନେ କେବେ ଶୁଣି ନାହୁଁ ପ୍ରତ୍ୟେକ ଜିଲ୍ଲାର ସଦରମୁକାମରେ ଗୋଟିଏ ଲେଖାଁଏ ଭଲ ପୁସ୍ତକାଳୟ ରହିବାର ଉଚିତ ଓ ସେ ପକ୍ଷରେ ଏଠାଲୋକେ ଶୀଘ୍ର ଯତ୍ନବାନ୍ ହେଲେ ବଡ଼ ସୁଖର ବିଷୟ ହେବ ।

*ଭା ୧୦ ଗ, ସଂ ୩୫ ଖ୍ୟା, ୨୮।୮।୧୮୭୫*

## [ପୁସ୍ତକ ସମୀକ୍ଷା]

## ନୂତନ ପୁସ୍ତକର ସମାଲୋଚନା ।

ବାଲେଶ୍ୱର ଉତ୍କଳ ପ୍ରେସରେ ଅର୍ଥବ୍ୟବହାର ପ୍ରଥମ ଭାଗ ନାମରେ ଖଣ୍ଡିଏ ପୁସ୍ତକ ମୁଦ୍ରିତ ହୋଇଅଛି ବାବୁ ବୈକୁଣ୍ଠନାଥ ଦେ ଏ ପୁସ୍ତକର ପ୍ରଚାରକ ଅଟନ୍ତି ଓ ତାହାଙ୍କଠାରୁ ଆମ୍ଭେମାନେ ଖଣ୍ଡିଏ ପୁସ୍ତକ ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ବାବୁ ରାଜକୃଷ୍ଣଚୌଧୁରୀଙ୍କ ବଙ୍ଗଳା ମୂଳ ଗ୍ରନ୍ଥରୁ ଏପୁସ୍ତକ ଖଣ୍ଡି ଅନୁବାଦିତ ହୋଇଅଛି । ଅନୁବାଦକ ବାବୁ କାଶିନାଥ ଆଚାର୍ଯ୍ୟ । ଓଡ଼ିଶା ସ୍କୁଲରେ ଏ ଶାସ୍ତ୍ରର ଶିକ୍ଷା ଦେବା ସକାଶେ କୌଣସି ପୁସ୍ତକ ନ ଥିବାରୁ ଅନୁବାଦକ ମହାଶୟ ବାବୁ ରାଧାନାଥ ରାୟ ଡେପୁଟୀ ଇନ୍‌ସ୍ପେକ୍‌ଟରଙ୍କ ଅନୁରୋଧରେ ଏଥିରେ ଶ୍ରମ କରି ଅଛନ୍ତି । ଏହାଙ୍କ ଯୋଗେ ବିଦ୍ୟାଳୟର ପାଠୋପଯୋଗୀ ନୂତନ ଗ୍ରନ୍ଥ ଖଣ୍ଡିଏ ବାହାରିଲା ସୁଖର ବିଷୟ ଅଟଇ । ଆମ୍ଭେମାନେ ପୁସ୍ତକର ଅନେକସ୍ଥଳ ପଢ଼ି ଦେଖିଅଛୁଁ ଯେ ଅନୁବାଦ କାର୍ଯ୍ୟଟି ମନ୍ଦ ହୋଇ ନାହିଁ ଓ ଯଦ୍ୟପିକି କେତେକ ସ୍ଥାନରେ ସାମାନ୍ୟ ରଚନାଦୋଷ ପ୍ରତ୍ୟକ୍ଷ ହୁଅଇ ମାତ୍ର ତାହା ବିଶେଷ ଧର୍ତ୍ତବ୍ୟ ନୁହଇ କାରଣ ଉତ୍କଳଭାଷା ରଚନା ଅବଧି ଶୁଦ୍ଧାବସ୍ଥାକୁ ପ୍ରାପ୍ତ ହୋଇ ନାହିଁ । ଆମ୍ଭମାନଙ୍କ ବିବେଚନାରେ ଅନୁବାଦକ ସରଳ ଭାଷାରେ ଗ୍ରନ୍ଥକର୍ତ୍ତାଙ୍କର ଭାବ ପ୍ରକାଶ କରିଅଛନ୍ତି ଓ ବର୍ତ୍ତମାନ ସକାଶେ ଏତିକି ଯଥେଷ୍ଟ ଅଟଇ । ମୂଳଗ୍ରନ୍ଥର ସମାଲୋଚନା କରିବା ଆମ୍ଭେମାନେ କର୍ତ୍ତବ୍ୟ ଜ୍ଞାନ କରୁ ନାହୁଁ ମାତ୍ର ଯେସ୍ଥଳେ ଗବର୍ଣ୍ଣମେଣ୍ଟ ଅନ୍ୟାନ୍ୟ ପୁସ୍ତକ ମଧ୍ୟରେ ଅର୍ଥ ବ୍ୟବହାର ସକାଶେ ସମ୍ପ୍ରତି ପାରିତୋଷିକ ପ୍ରଦାନ ପୂର୍ବକ ଭଲ ପୁସ୍ତକ ପାଇବାର ଆଶା ବଳାଇଅଛନ୍ତି ସେ ସ୍ଥଳେ ଆମ୍ଭେମାନେ ଏତିକି କହିପାରୁଁ ଯେ ସମାଲୋଚିତ ପୁସ୍ତକ ବାହାରିଅଛି ବୋଲି ଅନ୍ୟ ଯେଉଁମାନେ ଏ ବିଷୟର ପୁସ୍ତକ ରଚନା କରିବାକୁ ମାନସ ରଖିଅଛନ୍ତି ତାହାଙ୍କର ହତାଶ ହେବାର କୌଣସି କାରଣ ନାହିଁ ତହିଁର ହେତୁ ଏହି ଯେ ଏଥିରୁ ଭଲ ପୁସ୍ତକ ବାହାରିବା ଓଡିଶାର ବର୍ତ୍ତମାନାବସ୍ଥାରେ ଅସମ୍ଭବ ନୁହଇ । ସମାଲୋଚିତ ଗ୍ରନ୍ଥରେ ଅର୍ଥଶାସ୍ତ୍ରର ପ୍ରଧାନ ବିଷୟମାନ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି ସତ୍ୟ, ମାତ୍ର ସେସବୁର ତତ୍ତ୍ୱ ଭଲ କରି ବୁଝାଇ ଦିଆଯାଇ ନାହିଁ । ଧନ, ଅର୍ଥ ଓ ମୁଦ୍ରା ମଧ୍ୟରେ କି ପ୍ରଭେଦ ଓ ଉକ୍ତ ତିନି ପଦାର୍ଥ ସମ୍ପୂର୍ଣ୍ଣରୂପେ ପୃଥକ କି ଏକ ପଦାର୍ଥର ବିଶେଷ ଅବସ୍ଥା ଏସବୁ ପରିଷ୍କାରରୂପେ ଏ ପୁସ୍ତକରୁ ଜଣା ଯାଉ ନାହିଁ । ସଚରାଚର ଦେଖାଯାଏ ଯେ କୌଣସି ଧନୀ ବ୍ୟକ୍ତିର ବିଷୟ କେତେ ନିଶ୍ଚୟ କରିବାକୁ ହେଲେ ନୋଟକାଗଜ ଓ ତମସୁକ ପ୍ରଭୃତି ସୁଦ୍ଧା ଧନ ମଧ୍ୟରେ ଗଣନା ହୁଅଇ ଏ ସ୍ଥଳେ ଟଙ୍କା କୌଡି ଧନ ନୁହେ ବୋଲି ଯେ ପୁସ୍ତକର ପ୍ରଥମ ପୃଷ୍ଠାରେ ଲେଖାଯାଇଅଛି ତହିଁର କୌଣସି ଯୁକ୍ତି ଉକ୍ତ ପୁସ୍ତକ ମଧ୍ୟରେ ନାହିଁ । ଆମ୍ଭେମାନେ ପୂର୍ବରୁ କହିଅଛୁଁ ଯେ ଆମ୍ଭେମାନେ ମୂଳ ଗ୍ରନ୍ଥର ସମାଲୋଚନା କରିବାକୁ ମାନସ ନ ରଖୁଁ କେବଳ ଭବିଷ୍ୟତ ଗ୍ରନ୍ଥକର୍ତ୍ତାମାନଙ୍କର ଯେମନ୍ତ ଉତ୍ସାହ ଭଗ୍ନ ନ ହୁଏ ଏହି ଉଦ୍ଦେଶ୍ୟରେ ବାଧ ହୋଇ ଗ୍ରନ୍ଥର ଦୁଇ ଏକ ବିଷୟ ଲେଖିଲୁଁ ।

*ଭା ୧୦ ଗ, ସଂ ୩୫ ଖ୍ୟା, ୨୮।୮।୧୮୭୫*

## ଶ୍ରୀଯୁକ୍ତ ରେବନସା ସାହେବ ଓ ଓଡ଼ିୟାମାନେ ।

ବାବୁ ହରେକୃଷ୍ଣ ଦାସ କମିଶନରୀ ସିରସ୍ତାଦାର ହେବାକୁ ସ୍ୱୀକୃତ ହୋଇ ପଶ୍ଚାତ୍ ତାହା ତ୍ୟାଗ କରିବାର ସଂକ୍ଷେପ ସମ୍ବାଦ ଆମ୍ଭେମାନେ ଗତ ସପ୍ତାହରେ ଲେଖିଥିଲୁଁ ସେ ବିଷୟ ଏ ନଗରର ଭଦ୍ରମଣ୍ଡଳୀରେ ବିଶେଷ ଆନ୍ଦୋଳିତ ହେଉଥିବାରୁ ଆମ୍ଭେମାନେ ତହିଁରେ କିଛି କହିବାର ପ୍ରୟୋଜନ ବିବେଚନା କରି ଏ ପ୍ରସ୍ତାବର

ଅବତାରଣା କରିଅଛୁଁ । ବାବୁ ହରେକୃଷ୍ଣ ଦାସଙ୍କୁ ଏଥିପାଁଇ ପ୍ରାୟ ସମସ୍ତେ ନିନ୍ଦା କରୁଅଛନ୍ତି ଓ ତାହା ଯେ ନିତାନ୍ତ ଅଯଥାର୍ଥ ଆମ୍ଭେମାନେ ସେରୂପ କହିବାକୁ ସାହସୀ ହେଉ ନାହୁଁ ମାତ୍ର ଆମ୍ଭେମାନେ ବିବେଚନା କରୁଁ ଯେ ହରେକୃଷ୍ଣ ବାବୁଙ୍କର ନିନ୍ଦାର ମୂଳକାରଣ କମିଶନର ସାହେବ ଅଟନ୍ତି । ହରେକୃଷ୍ଣ ବାବୁ ସ୍ୱୟଂ ଏ କର୍ମର ପ୍ରାର୍ଥୀ ହୋଇ ନ ଥିଲେ ସାହେବ ତାହାଙ୍କୁ କର୍ମ ଦେବାପାଁଇ ମନ ବଳାଇବାରୁ ସେ ପ୍ରଥମେ ସାହେବଙ୍କ ସହିତ ସାକ୍ଷାତ କରି ଦୁଇ କର୍ମର ବେତନ ଏକା ଥିବା ଓ ଜଜ ଅଦାଲତରେ ତାହାଙ୍କୁ ନକଲ ଫିସସ୍ୱରୂପ କିଛି ଅଧିକା ଲାଭ ହେଉଥିବା ଏବଂ ଅନ୍ୟାନ୍ୟ କେତେକ ସୁଯୋଗ ଥିବାର କହି ଅଦାଲତ ଛାଡି କମିଶନରୀକୁ ଯିବାକୁ ଅସ୍ୱୀକାର କଲେ ମାତ୍ର ସାହେବ ତହିଁରେ କ୍ଷାନ୍ତ ନ ହୋଇ ବାବୁଙ୍କୁ ଭବିଷ୍ୟତରେ ଉଚ୍ଚକର୍ମ ଦେବାର ଆଶା ଦେଖାଇ ପୁନର୍ବାର ମତ ସ୍ଥିର କରି ଏକସପ୍ତାହ ମଧ୍ୟରେ ନିଶ୍ଚୟ ଉତ୍ତର ଦେବା କାରଣ ସମୟ ଦେଲେ ସପ୍ତାହ ଗତ ହେଲା ଉତ୍ତାରୁ ବାବୁ ପୁନର୍ବାର କମିଶନର ସାହେବଙ୍କ ନିକଟରେ ସାକ୍ଷାତ କରି କମିଶନରୀକୁ ଯିବାର ନିଶ୍ଚୟ ଉତ୍ତର ଦେଲେ ମାତ୍ର ଏକଦିଗରେ ଉପସ୍ଥିତ ଲାଭ ଓ ସୁଯୋଗ ପରିତ୍ୟାଗ ଓ ଅନ୍ୟଦିଗରେ ଭାବୀ ମଙ୍ଗଳର ଆଶା ଏହି ଦୁଇଭାବର ସଙ୍କଟ ମଧ୍ୟରେ ପଡି ବାବୁଙ୍କ ଚିତ୍ତ ଏମନ୍ତ ଘାବରା ହୋଇଗଲା ଯେ ସେ ସମ୍ଭାଳି ହୋଇ ନ ପାରି 'ସେରକ ଆଶାରେ ପାଆକ ଛାଡିବା' ପ୍ରବାଦକୁ ଅବଲମ୍ବନ କରି ଅତିଚଞ୍ଚଳରେ ପତ୍ରଦ୍ୱାରା କମିଶନର ସାହେବଙ୍କୁ ନାସ୍ତି କରି ପଠାଇଲେ । ଲୋକେ ବୋଲନ୍ତି ଯେ କମିଶନର ସାହେବ ଏଥିରେ ଭାରୀ ବିରକ୍ତ ହେଲେ ଏବଂ ଓଡିୟାମାନଙ୍କ ପ୍ରତି ତାହାଙ୍କର ଯେ ପ୍ରଗାଢଶ୍ରଦ୍ଧା ଥିଲା ତାହା ଅନେକ ଲାଘବ ହୋଇଗଲା । ହରେକୃଷ୍ଣ ବାବୁ ଏଥିରେ ଯେରୂପ ଚପଳତା ଦେଖାଇଅଛନ୍ତି ତାହା କଦାଚ ଭଦ୍ର ସମାଜର ଅନୁମୋଦନୀୟ ନୁହଇ ଏବଂ ତାହାଙ୍କ ଯୋଗେ ଯେବେ ଓଡିୟାଙ୍କ ପ୍ରତି କମିଶନର ସାହେବଙ୍କ ସ୍ନେହ ବାସ୍ତବରେ ତୁଟିଥାଏ ତେବେ ତାହାଙ୍କ ଦୋଷ ଅତ୍ୟନ୍ତ ଗରିଷ୍ଠ ହୋଇଅଛି ସନ୍ଦେହ ନାହିଁ । ଚିତ୍ତସ୍ଥିର ରଖିବା ମନୁଷ୍ୟର ପ୍ରଧାନଗୁଣ ହେଉଅଛି ପୁଣି ଉପଯୁକ୍ତ ସମୟ ପାଇ ସୁଦ୍ଧା ଯେ ବ୍ୟକ୍ତି ଆପଣା କର୍ତ୍ତବ୍ୟ ସ୍ଥିର କରି ନ ପାରେ ତାହା ଉପରେ କିଏ ନିର୍ଭର କରିପାରେ ? ପୁନଶ୍ଚ ବାକ୍ୟଦାନ ଦେଇ ପଶ୍ଚାତ୍ ତହିଁରୁ ବିମୁଖ ହେବାରେ ଯେରୂପ ଚିତ୍ତର ଅସ୍ଥିରତା ପ୍ରକାଶ ପାଏ ତାହା ଗୁରୁତର ଅଟଇ ସନ୍ଦେହ ନାହିଁ । ଏଥିପାଁଇ ହରେକୃଷ୍ଣ ବାବୁଙ୍କ ବିରୁଦ୍ଧରେ ଲୋକେ ଏତେ କଥା କହୁଅଛନ୍ତି ।

ଆମ୍ଭେମାନେ ପୂର୍ବେ କହିଅଛୁଁ ଯେ ହରେକୃଷ୍ଣ ବାବୁଙ୍କ ନିନ୍ଦାର କାରଣ କମିଶନର ସାହେବ ଅଟନ୍ତି ତହିଁର ହେତୁ ଏହି ଯେ ପ୍ରଥମେ ତାହାଙ୍କ ସିରସ୍ତାଦାରୀ କର୍ମସକାଶେ ବାବୁ ହରେକୃଷ୍ଣ ଦାସଙ୍କୁ ମନୋନୀତ କରିବାର ଉଚିତ ନ ଥିଲା ଓ ଦ୍ୱିତୀୟରେ ସେ ଯେବେ ପ୍ରଥମ ସାକ୍ଷାତ ହେବାବେଳେ ସମାନ ବେତନ ଓ ମର୍ଯ୍ୟାଦାର ହେତୁ ଦେଖାଇ ଅସ୍ୱୀକାର କଲେ ତେବେ ତାହାଙ୍କୁ ଆଉ ବଳାଇବାର କୌଣସି ପ୍ରୟୋଜନ ନ ଥିଲା । କମିଶନର ସାହେବଙ୍କର ଭାବ ଏହି ଜଣାଯାଏ ଯେ ସେ ଓଡ଼ିୟାମାନଙ୍କୁ ଉଚ୍ଚକର୍ମ ଦେବାପାଁଇ ହରେକୃଷ୍ଣ ବାବୁଙ୍କୁ ଆପଣା କଚେରୀକୁ ଟାଣୁଥିଲେ ମାତ୍ର ସମାନ ବେତନରେ ଘେନିଯିବାଦ୍ୱାରା ତାହା କିରୂପେ ଫଳଲ ହୁଅନ୍ତା ଆମ୍ଭେମାନେ ବୁଝି ପାରୁ ନାହୁଁ । ଯେବେ ସେ ଜାଣନ୍ତି ଯେ ହରେକୃଷ୍ଣ ବାବୁ ଯେଉଁ ପଦରେ ଅଛନ୍ତି ତହିଁରୁ ଅଧିକ ପଦର ଭାଜନ ତେବେ ଯେତେବେଳେ ସେପରି କର୍ମ ଉପସ୍ଥିତ ହୁଅନ୍ତା ତେତେବେଳେ ତାହାଙ୍କୁ ଯାଚିଲେ ଶୋଭାପାଆନ୍ତା । ତାହାଙ୍କ କଚେରୀରେ ଏବଂ ଅନ୍ୟ ମହକୁମାରେ ଅନେକ ଓଡ଼ିୟା ଅଳ୍ପ ବେତନରେ କର୍ମ କରୁଅଛନ୍ତି ସେମାନଙ୍କ ମଧ୍ୟରୁ ଜଣକୁ ସିରସ୍ତାଦାରୀ ଦେଲେ ଅଧିକା ଜଣେ ଓଡ଼ିୟା ଉଚ୍ଚପଦାରୂଢ଼ ହୁଅନ୍ତା । ମାତ୍ର ଆମ୍ଭେମାନେ ଦୁଃଖର ସହିତ କହୁଅଛୁଁ ଯେ କମିଶ୍ନର ସାହେବ ଓଡ଼ିୟାଙ୍କୁ ବଢ଼ାଇବେ ବୋଲି କହନ୍ତି କିନ୍ତୁ କାର୍ଯ୍ୟରେ ସେପରି କରୁ ନାହାନ୍ତି । ଆମ୍ଭମାନଙ୍କ ଦେଖିବାରେ ସେ କେବଳ ନନ୍ଦକିଶୋର ବାବୁ ଓ ବିଚ୍ଛନ୍ଦ ବାବୁଙ୍କୁ ବଢାଇ ଅଛନ୍ତି ମାତ୍ର ନନ୍ଦକିଶୋର ବାବୁ ଯେଉଁ କର୍ମରେ ଥିଲେ ତହିଁରେ ଅଧିକଦୂର ସହଜରେ ବଢ଼ିଥାନ୍ତେ ତହିଁରୁ ତାହାଙ୍କୁ ଘେନି ଆସି ଇନ୍‌ସ୍ପେକ୍‌ଟରୀ ପଦ ଦେବାରେ ତାହାଙ୍କର ଉନ୍ନତି ହେବାର ବିଳମ୍ବ ଦେଖାଯାଏ । ବର୍ତ୍ତମାନକୁ ନନ୍ଦକିଶୋର ବାବୁ ଏକମାତ୍ର ଓଡ଼ିୟା ଡେପୁଟୀ କଲେକ୍‌ଟର ଥିଲେ ତାହାଙ୍କୁ ସେ କର୍ମରେ ରଖି ଆଉ ଜଣେ ଓଡିୟାକୁ ଇନ୍‌ସ୍ପେକ୍‌ଟରୀ ଦେଇଥିଲେ ଅଧିକା ଓଡ଼ିୟା ଜଣେ ଉଚ୍ଚକର୍ମ ପାଇଥାନ୍ତା ସେରୂପ ନ କରିବାରୁ ଜଣେ ଓଡିୟାର ଉନ୍ନତି ଅବରୋଧ କଲେ, ଭଲତ କିଛି ହେଲା ନାହିଁ । ଓଡ଼ିୟାଙ୍କୁ ଉଚ୍ଚ କର୍ମ ଦେବା ବେଳେ କମିଶନର

ସାହେବ ଯେରୂପ କାର୍ଯ୍ୟ କରନ୍ତି ତହିଁରୁ ଏତିକି ବୋଧ ହୁଅଇ ଯେ ବହୁତ ଓଡ଼ିୟା ଅବଧି ଉଚ୍ଚକର୍ମ ପାଇବାର ଉପଯୁକ୍ତ ନାହାନ୍ତି ବୋଲି ସେ ଜାଣୁଥିବାରୁ ଯେଉଁ ଦୁଇ ଏକ ଜଣ ଭଲ କାର୍ଯ୍ୟ କରି ତାହାଙ୍କଠାରେ ପରିଚିତ ହୋଇଅଛନ୍ତି କର୍ମ ଖାଲି ବେଳେ କେବଳ ତାହାଙ୍କୁ ଲୋଡନ୍ତି ଯେବେ ସେରୂପ ବିଶ୍ୱାସ ହୋଇଥାଏ ଓ ତାହା ନିତାନ୍ତ ଅସଙ୍ଗତ ନୁହଇ ତେବେ ତାହାଙ୍କର ଉଚିତ ଆର୍ତ୍ତବଲ୍ଲଭ ବାବୁଙ୍କୁ ଆପଣା ସିରସ୍ତାଦାରୀ ପଦରେ ରଖି ଜଣେ ଓଡିୟାଙ୍କୁ ମୁନ୍‌ସିଗିରିରେ ରଖନ୍ତୁ ଯେ ସେ ଭବିଷ୍ୟତକୁ ସିରସ୍ତାଦାର ହୋଇ ପାରିବ । ମାତ୍ର ଆର୍ତ୍ତବାବୁ ବଙ୍ଗାଳିବୋଲି ସାହେବ ତାହାଙ୍କୁ ଉଚ୍ଚକର୍ମ ଦେବେ ନାହିଁ ତାହା ହେଲେ ଉପଯୁକ୍ତ ଓଡ଼ିୟା ମିଳିବା ପର୍ଯ୍ୟନ୍ତ ସିରସ୍ତାଦାରୀ ପଦ ଉଠାଇ ଦେଉନ୍ତୁ । ସାହେବଙ୍କର ମତ ଏହି ଯେ ଓଡିଶାରେ କେବଳ ଓଡିୟାମାନେ କର୍ମ କରିବେ ବଙ୍ଗାଳୀ ମୁସଲମାନ ଖୋରଟ୍‌ଟା କ୍ଷେତ୍ରି ତେଲଙ୍ଗା ମରହଟ୍‌ଟା ପ୍ରଭୃତି ଯେଉଁମାନେ ଆପଣା ଆଦିମ ସ୍ଥାନକୁ ବିସ୍ମୃତ ହୋଇ ପୁରୁଷାନୁକ୍ରମେ ଏ ପ୍ରଦେଶରେ ବାସ କରି ଆତଯାତ ହେଉଅଛନ୍ତି ସେମାନେ ଉଚ୍ଚ ସରକାରୀ କର୍ମ ପାଇବେ ନାହିଁ । ସେରୂପ ନ ହେଲେ ତାହାଙ୍କୁ ଅମଲାକଷ୍ଟ ଏଡେ ବାଧନ୍ତା ନାହିଁ କାରଣ ତିନିଜିଲାର କଲେକ୍‌ଟରୀ ଓ ଆପଣା ମହକୁମାରେ ଅନେକ ଉପଯୁକ୍ତ ଲୋକ **XXXX** ଅଟେ ଓ ଏ ଲୋକମାନେ ଆପଣା ଆପଣା ଦେଶ ତ୍ୟାଗ କରି ବହୁକାଳରୁ ଓଡ଼ିଶାରେ ରହିଥିବାରୁ ସର୍ବତୋଭାବେ ଓଡ଼ିୟା ଅଟନ୍ତି । ଯେ ସ୍ଥଳେ କମିଶନର ସାହେବ ସେପରି ବୁଝି ନାହାନ୍ତି ଆମ୍ଭମାନଙ୍କର କଥାରେ କି ହେବ ? ଆମ୍ଭେମାନେ ଏ ସବୁ ଲେଖିବାର ହେତୁ ଏହି ଯେ କମିଶନର ସାହେବ ଯାହା କହି ହୁଅନ୍ତି କି ସେ ଓଡ଼ିୟାଙ୍କୁ ଉଚ୍ଚକର୍ମ ଦେବାପାଁଇ ବଡ ଯତ୍ନଶୀଳ ତାହା ଅତ୍ୟନ୍ତ ଅସାର ଅଟଇ ଏରୂପ ବୁଝିବାରେ ସେ ଆପେ ଭ୍ରମରେ ପଡି ଅଛନ୍ତି ପୁଣି ସଂସାରକୁ ସେହି ଭ୍ରମରେ ପକାଇବାକୁ ଚେଷ୍ଟା କରୁଅଛନ୍ତି ।

*ଭା୧୦ଗ,ସଂ୩୭ଖ୍ୟା,୧୧।୯।୧୮୭୫*

## [ନୂତନ ଅଭିଧାନ]

ଆମ୍ଭେମାନେ କୃତଜ୍ଞତାସହିତ ସ୍ୱୀକାର କରୁଅଛୁଁ ଯେ ଶ୍ରୀଯୁକ୍ତ ଉଲିୟମ୍ ବୃକ୍‌ସ ସାହେବଙ୍କ ଠାରୁ ଖଣ୍ଡିଏ ନୂତନ ଅଭିଧାନ ଉପହାର ପାଇଅଛୁଁ ଏଥିରେ ଓଡ଼ିୟାଶବ୍ଦକୁ ଇଂରାଜୀ ପ୍ରତିଶବ୍ଦମାନ ସଂଯୋଜିତ ହୋଇ ଦେଶୀୟ ଓ ବିଦେଶୀୟ ଛାତ୍ର ଏବଂ ସ୍କୁଲର ବ୍ୟବହାର ନିମିତ୍ତ ଏହା ପ୍ରସ୍ତୁତ ହୋଇଅଛି । ପୁସ୍ତକର ଆକାର ପୃ ୨୫୭ଷ୍ଠା ଓ ପ୍ରତି ପୃଷ୍ଠାରେ ଦୁଇ ସ୍ତମ୍ଭ ଅଛି ଓ ଯେମନ୍ତ କ୍ଷୁଦ୍ରାକ୍ଷରରେ ମୁଦ୍ରିତ ହୋଇଅଛି ବୋଧ ହୁଅଇ ଏଥିରେ ପ୍ରାୟ କୋଡିଏହଜାର ଓଡିଆଶବ୍ଦର ଇଂରାଜୀ ଅର୍ଥ ଲେଖା ଯାଇଅଛି । ଆମ୍ଭେମାନେ ଏଥିର ମୁଦ୍ରାଙ୍କନ କାର୍ଯ୍ୟ ଓ ଉପଯୋଗୀତା ଦେଖି ଆନନ୍ଦିତ ହୋଇଅଛୁଁ । ପୁସ୍ତକର ଶେଷରେ ରୋଗର ନାମ ଓ ଉଦ୍ଭିଦ ସବୁର ବୈଜ୍ଞାନିକ ନାମ ଦିୟା ଯାଇଥିବାରୁ ଏ ପୁସ୍ତକଟି ଏକା ଛାତ୍ରଙ୍କ ପକ୍ଷରେ କାହିଁକି ଅପରାପର ଲୋକଙ୍କର ମଧ୍ୟବହୁତ ପ୍ରୟୋଜନରେ ଆସିବ ।

*ଭା୧୦ଗ,ସଂ୩୭ଖ୍ୟା,୧୧।୯।୧୮୭୫*

## କଟକ ମେଡିକେଲ ସ୍କୁଲ ।

ଏ ବିଦ୍ୟାଳୟଟି ଫିଟିବାର ଆଉ ବିଳମ୍ବ ନାହିଁ । ଗତସପ୍ତାହର କଲିକତା ଗଜେଟରେ ଏ ବିଦ୍ୟାଳୟ ସ୍ଥାପନ ବିଷୟରେ ଲେଫ୍‌ଟନଣ୍ଟ ଗବର୍ଣ୍ଣରଙ୍କ ଅଭିମତ ପ୍ରକାଶିତ ହୋଇଅଛି ଓ ଯେଉଁ ନିୟମରେ ବିଦ୍ୟାଳୟର କାର୍ଯ୍ୟ ଚଳିବ ତାହାମଧ୍ୟ ସ୍ଥିର ହୋଇଅଛି । ଆମ୍ଭେମାନେ ଏ ସମସ୍ତ ପାଠକରି ଅବଗତ ହେଲୁଁ ଯେ ଢାକା ଓ ପାଟନାରେ ଯେମନ୍ତ ଦେଶୀୟ ଭାଷାରେ ଏପ୍ରକାର ସ୍କୁଲରେ ଶିକ୍ଷାଦାନ ହେଉଅଛି ଏଠାରେ ମଧ୍ୟ ସେହିପରି ହେବ ଏବଂ ସେସବୁ ବିଦ୍ୟାଳୟରେ ଯେତେଦୂର ଶିକ୍ଷା ଲାଭ କରିବାର ନିୟମ ହୋଇଅଛି ଏଠାରେ ମଧ୍ୟ ତେତେଦୂର ଶିକ୍ଷା ଛାତ୍ରମାନେ ଲାଭ କରିବେ ଓ ସମାନରୂପ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେବେ ପ୍ରଭେଦ ଏତିକି ଯେ ଢାକା ଓ ପାଟନା ବିଦ୍ୟାଳୟର ବ୍ୟୟ ବାର୍ଷିକ ଟ୧୪୦୦୦ ଙ୍କା ମାତ୍ର କଟକ ବିଦ୍ୟାଳୟର କାର୍ଯ୍ୟ ବାର୍ଷିକ

ତିନିହଜାର ଟଙ୍କାରେ ନିର୍ବାହ ହେବାର ସ୍ଥିର ହୋଇ ଅଛି । ଏତେ ଉଣା ବ୍ୟୟରେ ଏଠାର କାର୍ଯ୍ୟ ଚଳିବାର ହେତୁ ଏହି ଯେ ଡାକ୍ତର ଷ୍ଟିଓ୍ୟାର୍ଟସାହେବ ବିନାବେତନରେ ଶିକ୍ଷା ଦେବା ଓ ବିଦ୍ୟାଳୟର ତତ୍ତ୍ୱାବଧାରଣର ଭାର ଗ୍ରହଣ କରି ଅଛନ୍ତି । ଷ୍ଟିଓ୍ୟାର୍ଟସାହେବଙ୍କର ଏ କାର୍ଯ୍ୟଟି ଅତି ପ୍ରଶଂସନୀୟ ଅଟଇ ଓ ଏହାଙ୍କଯୋଗେ ଏ ପରମୋପକାରକ ବିଦ୍ୟାଳୟଟି ସ୍ଥାପିତ ହେଲା ବୋଲିବାକୁ ହେବ ସେ ଯେବେ ଏତେ ଉଦାରପଣିଆ ଦେଖାଇ ନ ଥାନ୍ତେ ତେବେ ଏମନ୍ତ ହୁଅନ୍ତା ଯେ ଗବର୍ଣ୍ଣମେଣ୍ଟ ଅଧିକ ବ୍ୟୟହେତୁ ଏ ବିଦ୍ୟାଳୟ ସ୍ଥାପନ ପକ୍ଷରେ ମନୋଯୋଗୀ ହୁଅନ୍ତେ ନାହିଁ । ଶ୍ରୀଯୁକ୍ତ ରାବନସାସାହେବଙ୍କର ଉଦ୍‌ଯୋଗ ମଧ ଉଣା ନୁହଇ ସେ ଗବର୍ଣ୍ଣମେଣ୍ଟଙ୍କୁ ପୁନଃ ପୁନଃ ଲେଖି ଏଥିର ମଞ୍ଜୁରୀ ଅଣାଇ ଅଛନ୍ତି । ଡାକ୍ତର ଷ୍ଟିଓ୍ୟାର୍ଟ ଏ ବିଦ୍ୟାଳୟଟି ଆଗାମୀ ଜୁନମାସରେ ଆରମ୍ଭ କରିବାକୁ କଳ୍ପନା କରିଥିଲେ ମାତ୍ର ଗବର୍ଣ୍ଣମେଣ୍ଟ ଏତେ ବିଳମ୍ବ କରିବାର ପ୍ରୟୋଜନ ନ ଦେଖି ବରଂ ଶବପରୀକ୍ଷା ନିମିତ୍ତ ଶୀତକାଳକୁ ବିଶେଷ ଅନୁକୂଳ ଜ୍ଞାନ କରି ଆଗାମୀ ଅକ୍ଟୁବରମାସ ତା ୧୫ରିଖଠାରୁ ବିଦ୍ୟାଳୟ ଫିଟାଇବାର ଆଜ୍ଞା ଦେଇଅଛନ୍ତି ।

ଏ ବିଦ୍ୟାଳୟରେ ପ୍ରବେଶ ଓ ଶିକ୍ଷା ସମ୍ପର୍କରେ ଏହିପରି ନିୟମ ହୋଇଅଛି କି ଯେଉଁମାନେ ପ୍ରବେଶିକା ମାଇନର ଓ ଓଡିଯା ଛାତ୍ରବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ସେହିମାନେ ଏ ବିଦ୍ୟାଳୟରେ ଶିକ୍ଷା କରିପାରିବେ ଏବଂ ପ୍ରଥମ ଦୁଇ ଏକବର୍ଷପାଁଇ ସ୍ୱତନ୍ତ ପରୀକ୍ଷାଦ୍ୱାରା ଉପଯୁକ୍ତ ଛାତ୍ର ଗୃହୀତ ହୋଇପାରିବ । ଗବର୍ଣ୍ଣମେଣ୍ଟ କେବଳ ୨୦ଜଣ ଛାତ୍ରଙ୍କୁ ବୃତ୍ତି ଦେବେ ଏମାନେ ପ୍ରଥମବର୍ଷ ଟ୫ଙ୍କା ଦ୍ୱିତୀୟ ବର୍ଷ ଟ୬ଙ୍କା ଓ ତୃତୀୟବର୍ଷ ଟ୭ଙ୍କା ଲେଖାଁଏ ବୃତ୍ତି ପାଇବେ ମାତ୍ର ଭଲଶିକ୍ଷା ନ କଲେ ବୃତ୍ତି ରହିତ ହେବ । ଏଥି ଉପରେ ଆଉ ଯେତେ ଛାତ୍ର ଆସିବେ ତାହାଙ୍କୁ ବିନା ବେତନରେ ଶିକ୍ଷା ଦିଆଯିବ ଓ ଯେବେ ଛାତ୍ରସଂଖ୍ୟା ବିସ୍ତର ହେବ ତେବେ ତାହାଙ୍କଠାରୁ ବିଦ୍ୟାଳୟର ବ୍ୟୟ ନିର୍ବାହାର୍ଥେ କିଛି କିଛି ବେତନ ଗୃହୀତ ହେବ । ଛାତ୍ରମାନେ ତିନିବର୍ଷ ଏ ବିଦ୍ୟାଳୟରେ ଅଧ୍ୟୟନ କଲା ଉତ୍ତାରୁ ଏହାଙ୍କର ଶେଷପରୀକ୍ଷା ହେବ ଯେ ସେ ପରୀକ୍ଷା ଢାକା ଓ ପାଟନା ବିଦ୍ୟାଳୟର ଶେଷପରୀକ୍ଷାରେ ସମତୁଲ ହେବ କାରଣ ଗବର୍ଣ୍ଣମେଣ୍ଟ ଆଶା କରନ୍ତି ଯେ ଏଠା ସ୍କୁଲର ବ୍ୟୟ ଉଣା ହେଲା ବୋଲି ଯେମନ୍ତ ଯୋଗ୍ୟତା ଉଣା ହେବ ନାହିଁ । ଛାତ୍ରମାନଙ୍କୁ ଶିକ୍ଷା ଦେବାର ଭାର ସିବିଲସର୍ଜନ, ଅଶିଷ୍ଟଣ୍ଟ ସର୍ଜନ, ହାସପାତାଳ ଅଶିଷ୍ଟଣ୍ଟ ଓ ନେଟିବ ଡାକ୍ତରଙ୍କୁ ଅର୍ପିତ ହୋଇଅଛି ଏମାନେ ପ୍ରତିଦିନ କେହି ଘଣ୍ଟାଏ କେହି ଦୁଇଘଣ୍ଟା ଶିକ୍ଷା ଦେବେ ଓ ଯାହାକୁ ଯାହା ପଢ଼ାଇବାର ହେବ ତାହା ମଧ ଧାର୍ଯ୍ୟ ହୋଇଅଛି । ବହୁତଦିନ ହେଲା କଟକପାଁଇ କେହି ଅଶିଷ୍ଟଣ୍ଟ ସର୍ଜନ ନିଯୁକ୍ତ ହୋଇ ନାହିଁ କିନ୍ତୁ ବର୍ତ୍ତମାନ ଏ ବିଦ୍ୟାଳୟ ହେତୁ ଶୀଘ୍ର ଜଣେ ଅଶିଷ୍ଟଣ୍ଟ ସର୍ଜନ ନିଯୁକ୍ତ ହୋଇ ଆସିବା ସକାଶେ ଗବର୍ଣ୍ଣମେଣ୍ଟ ଆଦେଶ କରିଅଛନ୍ତି । ନୂତନ ବିଦ୍ୟାଳୟ ନ ହେଉଣୁ ତହିଁ ସକାଶେ ଗୋଟିଏ ନଗରବାସିଙ୍କର ଆଶୁ ଉପକାର ହେଲା ସୁଖର ବିଷୟ ଅଟଇ ।

ଏହିରୂପେ ବିଦ୍ୟାଳୟର କାର୍ଯ୍ୟ ଶୀଘ୍ର ଆରମ୍ଭ ହେବାର ସବୁ ବନ୍ଦୋବସ୍ତ ଗବର୍ଣ୍ଣମେଣ୍ଟ କରି ଦେଇଅଛନ୍ତି । ନିଶ୍ଚୟ କେଉଁ ତାରିଖରେ କାର୍ଯ୍ୟାରମ୍ଭ ହେବ ସେ କଥା ଷ୍ଟିଓ୍ୟାର୍ଟ ସାହେବଙ୍କ ହାତରେ ଏଥର ରହିଲା । କେବଳ ଘର ବିଷୟରେ କିଛି ବନ୍ଦୋବସ୍ତ ନ ହେବାର ଦେଖାଯାଏ । ପୂର୍ବେ ଶୁଣାଯାଉଥିଲା ଯେ କଦମରସୁଲ ଫାଣ୍ଡି ଉଠିଯିବା ସ୍ଥାନରେ ଯେଉଁ ଚିକିତ୍ସାଳୟ ହେବ ତହିଁରେ ଏ ବିଦ୍ୟାଳୟର କାର୍ଯ୍ୟ ହେବ ମାତ୍ର ସେ ଘର ନିର୍ମାଣ ହେବାର ଅନେକ ବିଳମ୍ବ ଅଛି କାରଣ ଅବଧି ତହିଁର ଆରମ୍ଭ ସୁଦ୍ଧା ହୋଇ ନାହିଁ । ଏପର ଏଠା ଚିକିତ୍ସାଳୟରେ ରୋଗୀ ରହିବେ ନାହିଁ ଯେ ଛାତ୍ରମାନେ ହାସପାତାଳ କାର୍ଯ୍ୟ ଶିକ୍ଷା କରିପାରିବେ । ଅତଏବ ବୋଧ ହୁଅଇ ଯେ ଜେନେରଲ ହାସପାତାଳରେ ଏ ବିଦ୍ୟାଳୟ ସ୍ଥାପିତ ହେବ ଓ ତାହା ହେଲେ ସବୁକଥାର ସୁଯୋଗ ହେବ ଓ ବୃତ୍ତିଭୋଗୀ ଛାତ୍ରମାନେ ସେଠାରେ ବସା କରି ରହି ପାରିବେ ।

*ଭା୧୦ଗ,ସଂ୩୮ଖ୍ୟା,୧୮।୯।୧୮୭୫*

## ଛାତ୍ରଶାଳା ।

ଉଚ୍ଚଶିକ୍ଷାର ବିସ୍ତାର ସକାଶେ ସର୍‌ରିଚ୍ଚର୍ଡ ଟେମ୍ପଲ କେତେଗୁଡ଼ିଏ କାଲେଜ ଓ ହାଇସ୍କୁଲ ସ୍ଥାପନର ପ୍ରସ୍ତାବ କରି କ୍ଷାନ୍ତ ହୋଇ ନାହାନ୍ତି । ସେ ଆଉଗୋଟିଏ ମହତ୍‌କାର୍ଯ୍ୟର ଅନୁଷ୍ଠାନ କରିଅଛନ୍ତି ଯେ ତଦ୍ଦ୍ୱାରା ଉଚ୍ଚଶିକ୍ଷାର ବିସ୍ତର ସୁଯୋଗ ହେବାର ସମ୍ଭାବନା । ପୁଣି ଏରୂପ ଉପାୟ ପୂର୍ବେ ବଙ୍ଗଳାର ଅନ୍ୟ କୌଣସି ଲେଫ୍‌ଟନେଣ୍ଟ ଗବର୍ଣ୍ଣର ଅବଲମ୍ବନ କରିବାକୁ ପ୍ରସ୍ତାବ କରି ନ ଥିବାରୁ ଏଟି ସର୍‌ରିଚ୍ଚର୍ଡ ଟେମ୍ପଲଙ୍କର ନିଜର କଳ୍ପନା ଅଟଇ ଓ ତହିଁପାଇଁ ସେ ଅଧିକ ପ୍ରଶଂସାର ଭାଜନ ହୋଇଅଛନ୍ତି । ସେ ଉପାୟଟି ଏହିଯେ ଗବର୍ଣ୍ଣମେଣ୍ଟ କଲେଜ ଓ ହାଇସ୍କୁଲ ସମ୍ପର୍କରେ ଛାତ୍ରଶାଳାମାନ ସ୍ଥାପନ କରିବା । ଲେଫ୍‌ଟନେଣ୍ଟ ଗବର୍ଣ୍ଣର ଏବିଷୟରେ ଯାହା ନିର୍ଦ୍ଧାରଣ କରିଅଛନ୍ତି ତାହା କଲିକତା ଗଜେଟରେ ଛାପା ହୋଇଅଛି ତହିଁରୁ ଦେଖାଯାଏ ଯେ ଏ ବ୍ୟବସ୍ଥାଟି ଅତି ହିତକର ଅଟଇ । ଲେଫ୍‌ଟନେଣ୍ଟ ଗବର୍ଣ୍ଣର ବୋଲନ୍ତି କି କାଲେଜ ଓ ହାଇସ୍କୁଲମାନଙ୍କ ସମ୍ପର୍କରେ ଛାତ୍ରଶାଳା ସଂସ୍ଥାପିତ ନ ଥିବାରୁ ଭିନ୍ନସ୍ଥାନର ଛାତ୍ରମାନଙ୍କ ଅଧ୍ୟୟନ ପକ୍ଷରେ ଅନେକ ବ୍ୟାଘାତ ହୁଅଇ । ବିଦ୍ୟାଳୟ ଥିବା ସ୍ଥାନରେ ଯାହାର କେହି ଅଛି ସେଠାକୁ ପିଲା ପଠାଇ ଦେଇ ସେ ବ୍ୟକ୍ତି ନିଶ୍ଚିନ୍ତ ହୋଇପାରେ । ମାତ୍ର ଅନେକଲୋକଙ୍କର କେହି ଆତ୍ମୀୟ ବନ୍ଧୁ ନ ଥିବାରୁ ସେମାନେ ଆପଣା ପିଲାକୁ ପଢାଇବାପାଇଁ ପଠାଇପାରନ୍ତି ନାହିଁ ଓ ପୃଥକ୍ ବସା କରି କେହି ଆପଣା ପିଲାକୁ ରଖାଇଲେ ତାହାର ତତ୍ତ୍ୱାବଧାରଣ ଉତ୍ତମରୂପେ ହୁଅଇ ନାହିଁ । ନାନାପ୍ରକାର ଅସୁସାରରେ ତାହାକୁ ପଡ଼ି ରହିବାକୁ ହୁଅଇ ଓ କେତେ ସ୍ଥଳରେ ପ୍ରଲୋଭନରେ ପଡ଼ି ପିଲାର ଚରିତ୍ର ମନ୍ଦ ହୋଇଯାଏ । ଅତଏବ ବୈଦେଶିକ ଛାତ୍ରଙ୍କର ଉତ୍ତମ ତତ୍ତ୍ୱାବଧାରଣ ଓ ସଚ୍ଚରିତ୍ରରେ ଥାଇଁ ବିଦ୍ୟାଭ୍ୟାସର ସୁଯୋଗ କରି ଦେବା ସକାଶେ ଗବର୍ଣ୍ଣମେଣ୍ଟ ଛାତ୍ରଶାଳା ସଂସ୍ଥାପନର ନିୟମ କରିଅଛନ୍ତି ।

ପ୍ରତ୍ୟେକ ବିଦ୍ୟାଳୟ ଓ ହାଇସ୍କୁଲ ଅଧୀନରେ ଏରୂପ ଛାତ୍ରଶାଳାମାନ ରହିବ ଓ ତହିଁର ତତ୍ତ୍ୱାବଧାରଣର ଭାର ଜଣେ ଶିକ୍ଷକପ୍ରତି ଅର୍ପିତ ହେବ । ଏ କର୍ମ ସକାଶେ ନିଯୁକ୍ତ ହେବା ଶିକ୍ଷକ ଆପଣା ବେତନ ଛଡା ଅଧିକା କିଛି ପାଇବେ ଓ ଗବର୍ଣ୍ଣମେଣ୍ଟ ଛାତ୍ରସଂଖ୍ୟା ଦୃଷ୍ଟିରେ ପ୍ରତ୍ୟେକ ଛାତ୍ର ସକାଶେ ମାସିକ ଚାରିଅଣାଠାରୁ ଆଠଅଣା ପର୍ଯ୍ୟନ୍ତ ଦେବାକୁ ମଞ୍ଜୁର କରିଅଛନ୍ତି । ଛାତ୍ରଶାଳାର କାର୍ଯ୍ୟ ନିୟମିତରୂପେ ଚଳୁଅଛି କି ନାହିଁ ତାହା ଦେଖିବାର ଭାର ବିଦ୍ୟାଳୟର ପ୍ରିନ୍ସିପାଲ ବା ହେଡମାଷ୍ଟର ଏବଂ ଜିଲାର ଶିକ୍ଷାକମିଟି ପ୍ରତି ଅର୍ପିତ ହୋଇଅଛି । ଛାତ୍ରଶାଳାର ବ୍ୟୟନିମିତ୍ତ ଗବର୍ଣ୍ଣମେଣ୍ଟ ପରୀକ୍ଷାସ୍ୱରୂପ ୧୫୦୦୦ଟଙ୍କା ଏକବର୍ଷପାଇଁ ମଞ୍ଜୁର କରିଅଛନ୍ତି । ଭବିଷ୍ୟତକୁ କାର୍ଯ୍ୟ ଦେଖିଲା ଉତ୍ତାରୁ ଏଥିର ନ୍ୟୂନାଧିକ ହେବ ।

ଛାତ୍ରଶାଳା ଦୁଇପ୍ରକାର ହେବ । ଏକପ୍ରକାର ଛାତ୍ରଶାଳାରେ ଯେଉଁ ପିଲାମାନେ ରହିବେ ତାହାଙ୍କୁ ବସାଘରର ବିଷୟ କିଛି ବୁଝିବାକୁ ହେବ ନାହିଁ । ତାହାଙ୍କର ଚରିତ୍ର ଓ ଆହାରର ସକଳ ବିଷୟର ତତ୍ତ୍ୱାନୁସନ୍ଧାନ ଛାତ୍ରଶାଳାର ଅଧ୍ୟକ୍ଷମାନେ କରିବେ ଛାତ୍ରମାନେ କେବଳ ପ୍ରୟୋଜନୀୟ ବ୍ୟୟଟଙ୍କା ଦେଇ ନିର୍ବିଘ୍ନରେ ଲେଖା ପଢା କରୁଥିବେ । ଏ ପ୍ରକାର ଛାତ୍ରଶାଳାରେ କିଛି ଅଧିକ ବ୍ୟୟ କରିବାର ସମ୍ଭାବନା । ଅପରପ୍ରକାର ଛାତ୍ରଶାଳାରେ ଯେଉଁମାନେ ଉପରଲିଖିତପ୍ରକାର ବ୍ୟୟ ଦେବାକୁ ଅସମର୍ଥ ସେରୂପ ଛାତ୍ରମାନେ ରହିବେ । ଏମାନଙ୍କୁ ସାମାନ୍ୟପ୍ରକାର ବସାଘର ଦିଆଯିବ ଓ ଯାହାଙ୍କ ହାତରେ ଏପ୍ରକାର ଛାତ୍ରଶାଳାର ଭାର ରହିବ ସେ କେବଳ ବସାଘର ଠିକ୍ କରି ଦେବେ ଓ ବସାଘରର ଭଡ଼ାସ୍ୱରୂପ କିଛି କିଛି ଛାତ୍ରମାନଙ୍କଠାରୁ ପାଇବେ । ଛାତ୍ରମାନଙ୍କ ଆହାରାଦି କଥା ଏମାନଙ୍କୁ ବୁଝିବାକୁ ପଡିବ ନାହିଁ ସେସବୁ ଛାତ୍ରମାନେ ଆପଣା ସୁବିଧାମତେ ନିର୍ବାହ କରିନେବେ । ଅଧ୍ୟକ୍ଷମାନେ କେବଳ ତାହାଙ୍କ ଚରିତ୍ରପ୍ରତି ଦୃଷ୍ଟି ରଖିବେ ଓ କୌଣସି ଛାତ୍ରକୁ ଦୁଷ୍କ୍ରିୟାଶକ୍ତି ଦେଖିଲେ ତାହାକୁ ଛାତ୍ରଶାଳାରୁ ବାହାର କରି ଦେଇପାରିବେ ।

*ଭା୧୦ଗ,ସଂ୪୧ଖ୍ୟା,୧୬।୧୦।୧୮୭୫*

**JUST PUBLISHED**

**A PRACTICAL HAND-BOOK**

**OF THE URIYA OR ODIYA LANGUAGE, BY T.J. MALTBY. ESQ. MADRAS C.S.**

[ଓଡ଼ିଆ ପାଇଁ ଇଂରାଜୀରେ ବହି]

THE Book is intended to illustrate the URIYA language in the order of its importance, viz, in its colloquial, epistolary, and literary styles, and although primarily intend for foreigners learning URIYA, it is hoped that it will at the same time prove of assistance to URIYAS learning ENGLISH. The Book consists of the following parts:-

PART 1 -Containing INTRODUCTION, the URIYA alphabet clearly explained, and a short grammar of the language.

PART II- DIALOGUES in ENGLISH, URIYA, and ROMAN upon the subjects of CULTIVATION, CUTCHERY, READING, and WRITING, RIDING, SHOOTING, TRAVELLING, and MISCELLANEOUS.

PART III- URIYA DEPOSITIONS in ENGLISH and ROMANIZED URIYA.

PART IV- URIYA official letters in ENGLISH and ROMANIZED URIYA.

PART V- Containing the NITI KOTHA, a short collection of MORAL FABLES in ROMANIZED URIYA, together with English translation, also useful official terms, and the URIYA NUMERALS.The whole is made as easy as posssible, and the two first parts of the book (Introduction excepted) are in ENGLISH URIYA, and ROMANIZED URIYA, so as to assist the learner as much as possible in mastering the language, and removing any difficulties that he might otherwise meet with.

*ଭା/୧୦ଗ,ସଂ୪୫ଖ୍ୟା, ୧୩/୧୧/୧୮୭୫*

## ଓଡ଼ିଶାରେ ଯାତ୍ରାର ଅନୁଷ୍ଠାନ ।

ଗତ ପ୍ରକାଶିତ ବାଲେଶ୍ୱର ସମ୍ବାଦ ବାହିକାରେ ଆମ୍ଭେମାନେ ତଳଲିଖିତ ସମ୍ବାଦଟି ପାଠ କରି ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ । ଶାରଦୀୟ ଦୁର୍ଗାପୂଜା ଏ ବର୍ଷ ବାଲେଶ୍ୱରରେ କିରୂପେ ନିର୍ବାହିତ ହେଲା ତହିଁର ବିବରଣ ମଧ୍ୟରେ ସମ୍ପାଦକ ଲେଖିଅଛନ୍ତି ଯେ "ଏ ବର୍ଷ ମେଦିନୀପୁର ଅଞ୍ଚଳରୁ ୪/୫ ଦଳ ଯାତ୍ରାବାଲା ଆସିଥିଲେ ମାତ୍ର ବାଲେଶ୍ୱରୀ ଓଡିଆମାନେ ନୂଆ ଶିଖି ଯେଉଁ ବଙ୍ଗଯାତ୍ରା କରିଥିଲେ ତାହା ସର୍ବୋତ୍କୃଷ୍ଟ ହୋଇ ଥିଲା । ସେମାନେ ଯେରୂପ ଉତ୍ସାହର ସହିତ ଯାତ୍ରା ଶିଖିଥିଲେ ସେହିପରି ଲାଭ ମଧ୍ୟ କରିଅଛନ୍ତି । ଏମାନେ ତିନିଦିନରେ ତିନି ପ୍ରଧାନ· ଜାଗାରୁ ଶତାଧିକ ଟଙ୍କା ଉପାର୍ଜନ କରିଅଛନ୍ତି ଏମାନେ ବଙ୍ଗଯାତ୍ରା ଯେପରି ଉତ୍ସାହର ସହିତ ଶିଖିଅଛନ୍ତି ସେହିପରି ନୂଆଧରଣରେ ଓଡିଆଯାତ୍ରା ଶିଖିଥିଲେ ବଡ଼ ସୁଖ ହୁଅନ୍ତା ।"

ଆମ୍ଭେମାନେ ଏଥି ପୂର୍ବେ ଲେଖିଥିଲୁଁ ଓଡିଶାରେ ବାଲେଶ୍ୱରବାସିମାନେ କିଛି ଆମୋଦପ୍ରିୟ ଓ ସେଠାରେ

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ନୃତ୍ୟ ଗାନ ମଜଲିସ ସବୁଠାରୁ ଭଲ ହୁଅଇ ମାତ୍ର ଉପର ଲିଖିତ ସମ୍ବାଦ ପାଠ କରି ସର୍ବସାଧାରଣ ଜାଣି ପାରିବେ ସଙ୍ଗୀତବିଦ୍ୟାର ଯତକିଞ୍ଚିତ୍ ଉନ୍ନତି ସାଧନ କରି ବାଲେଶ୍ୱର ଲୋକମାନେ ଏ ବିଷୟରେ ଓଡ଼ିଶାରେ ଅଗ୍ରଗଣ୍ୟ ହୋଇଅଛନ୍ତି । ସେଠା ଓଡ଼ିୟାମାନେ ସଂପ୍ରତି ବଙ୍ଗଯାତ୍ରା ଅନୁଷ୍ଠାନ କରିବା ଦ୍ୱାରା ଯଦ୍ୟପି ପ୍ରକୃତ ଉଦ୍ଦେଶ୍ୟ ସାଧନ କରିବାକୁ ସକ୍ଷମ ହୋଇ ନାହାନ୍ତି ତଥାଚ ଉନ୍ନତିପ୍ରଣାଳୀରେ ଯାତ୍ରା କରିବା ବ୍ୟବସାୟ ଆରମ୍ଭ କରି ତହିଁରେ ଫଳ ପ୍ରାପ୍ତ ହେବାର ଆମ୍ଭମାନଙ୍କର ଆଶା ହେଉଅଛି ଯେ ଏଣିକି ତାହାଙ୍କର ଉତ୍ସାହ ବଢିବ ଓ ଏ ବ୍ୟବସାୟକୁ ଲାଭକର ଜାଣି ପାରି ଓଡ଼ିଶାବାସିଙ୍କ ମନୋରଞ୍ଜନ ନିମନ୍ତେ ଓଡ଼ିୟାଭାଷାରେ ଯାତ୍ରା କରିବାକୁ ମଧ ପ୍ରବୃତ୍ତ ହେବେ । ସଂପ୍ରତି ଓଡିଶାରେ ଯାହା ଯାତ୍ରା ନାମରେ ଖ୍ୟାତ ହୋଇଅଛି ଓ ଯାହାକୁ ନିରୁପାୟ ହୋଇ ଭଦ୍ରଲୋକମାନେ ପର୍ବବିଶେଷରେ ଦେଖିବାକୁ ବାଧ ହୁଅନ୍ତି ତାହା ଅତ୍ୟନ୍ତ ଘୃଣିତ ଓ ତହିଁରୁ ଓଡିଶାର ରୁଚିର ନିତାନ୍ତ କୁତ୍ସିତ ପରିଚୟ ପ୍ରାପ୍ତ ହୁଅଇ ବଙ୍ଗଭାଷାରେ ହେଉ ପଛକେ ବାଲେଶ୍ୱରର ଓଡିୟାମାନେ ଯେ ଏ ବ୍ୟବସାୟରେ ପ୍ରବୃତ୍ତ ହୋଇଅଛନ୍ତି ଏହାକୁ ଆମ୍ଭେମାନେ ଗୋଟିଏ ଶୁଭଲକ୍ଷଣ ବୋଲି ଅତ୍ୟନ୍ତ ଆଦର କରୁଅଛୁଁ ଆମ୍ଭେମାନେ ଭରସା କରୁଁ ଯେ ଓଡିଶାବାସିମାନେ ଏହାକୁ ପ୍ରଚୁରପରିମାଣରେ ଉତ୍ସାହିତ କରିବେ ଓ ସ୍ୱଦେଶାନୁରାଗୀ ମହାଶୟମାନେ ଏହାକୁ ସତ୍ପରାମର୍ଶ ଦେଇ ଓଡିଆଯାତ୍ରା କରିବାକୁ ପ୍ରବୃତ୍ତ କରାଇବେ । ଶିକ୍ଷିତ ଓ ହିତୈଷିଲୋକଙ୍କ ସାହାଯ୍ୟ ବିନା ଏସବୁ ବ୍ୟାପାର ସାଧନ ହୋଇ ନ ପାରେ ଯାତ୍ରାକାରିମାନେ ଯେରୂପ ଉପଯୋଗିତା ଦେଖାଇଅଛନ୍ତି ତହିଁରେ ଅବଶ୍ୟ ପ୍ରତୀତ ହେଉଅଛି ଯେ ଏମାନେ ଯେମନ୍ତ ଶିକ୍ଷା ପାଇବେ ତଦନୁସାରେ କାର୍ଯ୍ୟ କରିବାକୁ ତ୍ରୁଟି କରିବେ ନାହିଁ କିନ୍ତୁ ଓଡ଼ିୟାଭାଷାରେ କୌଣସି ଯାତ୍ରା ରଚନା କରିବା ଭଳି ବିଦ୍ୟା ଏମାନଙ୍କ ମଧରେ କାହାରି ଅଛି କି ନାହିଁ ତାହା ଆମ୍ଭେମାନେ କହି ନ ପାରୁଁ ଯେବେ ନ ଥାଏ ତେବେ ସଙ୍ଗୀତପ୍ରିୟ ବିଦ୍ୱାନ୍‌ଲୋକଙ୍କ ସାହାଯ୍ୟ ବିନା କାହୁଁ ଏମାନେ ଓଡ଼ିୟାଯାତ୍ରା କରିପାରିବେ କିମ୍ପାଇ ଆମ୍ଭେମାନେ କହୁଅଛୁଁ ଯେ ଶିକ୍ଷିତ ଲୋକଙ୍କ ଯତ୍ନ ଓ ଶ୍ରମ ଉପରେ ଏକଥା ନିତାନ୍ତ ନିର୍ଭର ରଖଇ ଓ ଯେ କେହି ନୂତନ ଓଡ଼ିୟା ଏଠାରେ ଆରମ୍ଭ କରି ଦେବ ସେ ବ୍ୟକ୍ତି ଧନ୍ୟବାଦର ପାତ୍ର ହେବ ସନ୍ଦେହ ନାହିଁ ।

*ଭା୧୦ଗ,ସଂ୪୬ଖ୍ୟା,୨୦।୧୧।୧୮୭୫*

## ବିଜ୍ଞାପନ

ଏତଦ୍ୱାରା ସର୍ବସାଧାରଣଙ୍କୁ ଅବଗତ କରାଉଅଛୁଁ ଯେ 'ସ୍ୱଦେଶୀ' ନାମକ ଏକ ସାପ୍ତାହିକ ପତ୍ରିକା ସନ ୧୮୭୬ ମସିହା ଜାନୁଆରୀମାସ ତା୫ରିଖରୁ ପ୍ରକାଶିତ ହେବ ଏହାର ସବିଶେଷବୃତ୍ତାନ୍ତ ଜାଣିବାକୁ ଇଚ୍ଛା ହେଲେ ନିମ୍ନ ସ୍ୱାକ୍ଷରିତ ବ୍ୟକ୍ତିଙ୍କଠାରେ ଅନୁସନ୍ଧାନ କଲେ ସବୁ ଜାଣି ପାରିବେ । ଏହାର ଆକୃତି ଉତ୍କଳ ଦୀପିକା ପରି ହେବ ।

| ଅଗ୍ରିମ ଦେୟ । | ବାର୍ଷିକ ଚାନ୍ଦା । |
|---|---|
| ବ୍ରହ୍ମପୁରରେ | ଟ୨୮ |
| ଡାକଦ୍ୱାରା | ଟ୩୫ |
| ଡିଷ୍ଟ୍ରିକ୍ଟ ପ୍ରତିନିଧିଦ୍ୱାରା ଅଗ୍ରିମଦେୟ । | ଟ୨୫ |
| ବ୍ରହ୍ମପୁରରେ | ଟ୨୫ |
| ଡାକଦ୍ୱାରା | ଟ ୪୮ |
| ଡିଷ୍ଟ୍ରିକ୍ଟ ପ୍ରତିନିଧିଦ୍ୱାରା | ଟ ୩ ୮ |

ଉଇଲିୟମ୍ ମହାନ୍ତି ।
ବ୍ରହ୍ମପୁର, ଗଞ୍ଜାମ ।

*ଭା୧୦ଗ,ସଂ୫୦ଖ୍ୟା,୧୮।୧୨।୧୮୭୫*

## ୧୮୭୬

## ବିଶ୍ୱବିଦ୍ୟାଳୟ ପରୀକ୍ଷାର ଫଳ ।

ଚଳିତମାସ ତା ୧ ରିଖର ଇଣ୍ଡିଆଗଜେଟରେ ବିଶ୍ୱବିଦ୍ୟାଳୟ ଏଲ୍ .ଏ. ଓ ପ୍ରବେଶିକା ପରୀକ୍ଷାର ଫଳ ପ୍ରକାଶ ହୋଇ ଅଛି । ବଙ୍ଗଳା ପ୍ରସିଡେନ୍‌ସିର ମୋଟଫଳ ନିମ୍ନଲିଖିତପ୍ରକାର ଅଟଇ ।

**ଫାଷ୍ଟ ଆର୍ଟସ (ଏଲ୍ .ଏ.)**

| | |
|---|---|
| ପ୍ରଥମଶ୍ରେଣୀ | ଜ ୨୩ଣ |
| ଦ୍ୱିତୀୟଶ୍ରେଣୀ | ଜ ୬୫ଣ |
| ତୃତୀୟଶ୍ରେଣୀ | ଜ ୯୩ଣ |
| | ଜ୧୮୧ଣ |

**ପ୍ରବେଶିକା ।**

| | |
|---|---|
| ପ୍ରଥମଶ୍ରେଣୀ | ଜ୧୨୪ଣ |
| ଦ୍ୱିତୀୟଶ୍ରେଣୀ | ଜ୪୪୯ଣ |
| ତୃତୀୟଶ୍ରେଣୀ | ଜ୨୪୩ଣ |
| | ଜ୮୧୬ଣ |

ଓଡ଼ିଶାବିଭାଗର ଫଳ ବିସ୍ତାରିତରୂପେ ନିମ୍ନେ ପ୍ରକାଶ କରୁଅଛୁଁ ।

**ଫାଷ୍ଟ ଆର୍ଟସ**

| | | |
|---|---|---|
| ଗୋପାଳଚନ୍ଦ୍ରମୁଖୁର୍ଯ୍ୟା | କଟକହାଇସ୍କୁଲ | ୩ୟଶ୍ରେଣୀ |
| ଶଶୀଭୂଷଣପାଲିତ | କଟକହାଇସ୍କୁଲ | ୩ୟଶ୍ରେଣୀ |
| ଉମେଶଚନ୍ଦ୍ରସରକାର | କଟକହାଇସ୍କୁଲ | ୩ୟଶ୍ରେଣୀ |
| ଗୌରଚରଣସେନ | କଟକହାଇସ୍କୁଲ | ୩ୟଶ୍ରେଣୀ |

**ପ୍ରବେଶିକା**

| | | |
|---|---|---|
| ଆନନ୍ଦଚନ୍ଦ୍ରବ୍ରହ୍ମ | କଟକହାଇସ୍କୁଲ | ୨ୟଶ୍ରେଣୀ |
| ସୀତାନାଥମହାନ୍ତି | କଟକହାଇସ୍କୁଲ | ୩ୟଶ୍ରେଣୀ |
| ମଧୁସୂଦନମହାନ୍ତି | ପୁରୀସ୍କୁଲ | ୨ୟଶ୍ରେଣୀ |
| ହରିହରମିଶ୍ର | ପୁରୀସ୍କୁଲ | ୨ୟଶ୍ରେଣୀ |
| ଗୋକୁଳାନନ୍ଦନାୟକ | ପୁରୀସ୍କୁଲ | ୨ୟଶ୍ରେଣୀ |
| ସଦାନନ୍ଦରାୟ | ପୁରୀସ୍କୁଲ | ୩ୟଶ୍ରେଣୀ |
| ଦୁର୍ଗାଚରଣସାହୁ | ବାଲେଶ୍ୱର | ୧ମଶ୍ରେଣୀ |
| ରାମରତ୍ନ ମିତ୍ର | ବାଲେଶ୍ୱର | ୩ୟଶ୍ରେଣୀ |

ଫାଷ୍ଟ ଆର୍ଟସ ପରୀକ୍ଷାରେ ଜ ୯ ଣ ପରୀକ୍ଷାର୍ଥିଙ୍କ ମଧ୍ୟରୁ ଜ ୪ଣ କେବଳ ୩ୟଶ୍ରେଣୀରେ ଓ ପ୍ରବେଶିକା ପରୀକ୍ଷାରେ ଜ ୩୭ ଣ ପରୀକ୍ଷାର୍ଥିଙ୍କ ମଧ୍ୟରୁ କେବଳ ଜ ୮ ଣ ଉତ୍ତୀର୍ଣ୍ଣ ହେବା ଅତି ଅସନ୍ତୋଷଜନକ ଓ ନିନ୍ଦନୀୟ

ଅଟେ ଓ ଏତାଦୃଶ ନିନ୍ଦନୀୟ ଫଳ କଟକ ହାଇସ୍କୁଲ ଓ ଉର୍ଦ୍ଧସ୍କୁଲଯୋଗେ ହୋଇ ଅଛି । ଆମ୍ଭେମାନେ ଏବର୍ଷ ଅନେକଗୁଡ଼ିଏ ପରୀକ୍ଷାର୍ଥୀ ହୋଇଥିବାର ଦେଖି ଯେପରି ଆନନ୍ଦିତ ହୋଇଥିଲୁଁ ପରୀକ୍ଷାର ଫଳ ଦେଖି ସେହିପରି ଦୁଃଖିତ ହୋଇ ଅଛୁଁ । ଏଥିରେ ଓଡ଼ିଶାର କି ଉନ୍ନତି ହେବ ଓ ଶିକ୍ଷାବିଷୟରେ ଓଡ଼ିଶାର ଏପରି ଶୋଚନୀୟ ଅବସ୍ଥା କେତେକାଳ ରହିବ ଭାବି ସ୍ଥିର କରି ପାରୁନାହୁଁ ଗତବର୍ଷ ପରୀକ୍ଷାର ଫଳ ସନ୍ତୋଷଜନକ ହୋଇ ନ ଥିବାରୁ ଆମ୍ଭେମାନେ ଶିକ୍ଷାବିଭାଗର କର୍ତ୍ତୃପକ୍ଷଙ୍କୁ ଏ ବିଷୟରେ ଦୃଷ୍ଟିପାତ କରିବାକୁ ଅନୁରୋଧ କରିଥିଲୁଁ ଓ ଏବର୍ଷ ଉତ୍ତମ ଫଳର ଆଶା ରଖିଥିଲୁଁ କିନ୍ତୁ ଆମ୍ଭମାନଙ୍କ ଆଶା ସମ୍ପୂର୍ଣ୍ଣରୂପେ ବିଫଳ ହେଲା ବରଂ ଅଧିକ ହତାଶ ହୋଇଅଛୁଁ କାରଣ ଗତବର୍ଷ ପ୍ରବେଶିକା ପରୀକ୍ଷାରେ ଢ଼୧ ୧ଣ ଉତ୍ତୀର୍ଣ୍ଣ ହୋଇଥିଲେ ଏବର୍ଷ ସନ ୧୮୭୫ ମସିହାର ମାଇନର ଛାତ୍ରବୃତ୍ତି ପରୀକ୍ଷାରେ ଓଡ଼ିଶାରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନଙ୍କର ନାମ ମାର୍କନମ୍ବର ଅନୁସାରେ ଯଥା:-

ପ୍ରଥମଶ୍ରେଣୀ ।

| | ନାମ | ସ୍କୁଲ | ଜିଲା |
|---|---|---|---|
| ୧ | ମଣିଚରଣ ମହାନ୍ତି | ଭଦରଖ ସ୍କୁଲ | ବାଲେଶ୍ୱର |
| ୨. | ସୁଦର୍ଶନଦାସ | ବକ୍ସିବଜାର ସ୍କୁଲ | କଟକ |

ଦ୍ୱିତୀୟ ଶ୍ରେଣୀ ।

| | | | |
|---|---|---|---|
| ୩. | ଗୋବିନ୍ଦ ମୋହନ ଭଟ୍ଟାଚାର୍ଯ୍ୟ | ଭଦରଖ ସ୍କୁଲ | ବାଲେଶ୍ୱର |
| ୪. | ପ୍ରେମାନନ୍ଦ ଯାଚକ | କଟକ ମିଶନ ସ୍କୁଲ | କଟକ |
| ୫. | ମତଲୁବ ହୁସେନ | କେନ୍ଦ୍ରାପଡା ସ୍କୁଲ | କଟକ |
| ୬. | କ୍ଷେତ୍ରମୋହନ ଭଟ୍ଟାଚାର୍ଯ୍ୟ | ଭଦରଖ ସ୍କୁଲ | ବାଲେଶ୍ୱର |
| ୭. | ବିହାରିଲାଲ ଦାସ | ଲକ୍ଷଣନାଥ ସ୍କୁଲ | ବାଲେଶ୍ୱର |
| ୮. | ଭୂପତିନାଥ ବୋଷ | ବକ୍ସିବଜାର ସ୍କୁଲ | କଟକ |
| ୯. | ଲୋକନାଥ ମହାନ୍ତି | ଭଦରଖ ସ୍କୁଲ | ବାଲେଶ୍ୱର |
| ୧୦. | ବ୍ରଜଲାଲ ବୋଷ | ଶ୍ରୀକୃଷ୍ଣପୁର ସ୍କୁଲ | କଟକ |
| ୧୧. | ମଥୁରମୋହନ ଘୋଷ | ଭଦରଖ ସ୍କୁଲ | ବାଲେଶ୍ୱର |

ତୃତୀୟଶ୍ରେଣୀ ।

| | | | |
|---|---|---|---|
| ୧୨. | କପିଳେଶ୍ୱର ଦାସ | ପିପିଲି ମିଶନ ସ୍କୁଲ | ପୁରୀ |
| ୧୩. | ରାମକୃଷ୍ଣ ମହାପାତ୍ର | ସୁନ୍ଦରଗାଁ ସ୍କୁଲ | କଟକ |
| ୧୪. | ରାସବେହାରି ବୋଷ | କେନ୍ଦ୍ରାପଡ଼ା ସ୍କୁଲ | କଟକ |
| ୧୫. | ତୋରାବଖାନ୍ | କଟକ ମିଶନ ସ୍କୁଲ | କଟକ |
| ୧୬. | ବାଞ୍ଛାନିଧି ଦାସ | କଟକ ମିଶନ ସ୍କୁଲ | କଟକ |
| ୧୭. | ଈଶାନଚନ୍ଦ୍ର ମିତ୍ର | ଲକ୍ଷଣନାଥ ସ୍କୁଲ | ବାଲେଶ୍ୱର |
| ୧୮. | ବଳରାମ ବାନୂର୍ଯ୍ୟା | ବକ୍ସିବଜାର ସ୍କୁଲ | କଟକ |

| | | | |
|---|---|---|---|
| ୧୯. | ବାମଦେବ ମହାନ୍ତି | ଯାଜପୁର ସ୍କୁଲ | କଟକ |
| ୨୦. | ମଦନମୋହନ ରାଉତରା | ଖୋରଧା ସ୍କୁଲ | ପୁରୀ |
| ୨୧. | ଓ୍ୟାରସ ଅଲି | କେନ୍ଦ୍ରାପଡ଼ା ସ୍କୁଲ | କଟକ |
| ୨୨. | ଚନ୍ଦ୍ରମୋହନ ଆଚାର୍ଯ୍ୟ | ବଂକ୍‌ସିବଜାର ସ୍କୁଲ | କଟକ |

**NANDA KISORE DAS**
Joint Inspector of Schools
Orissa.

ସନ ୧୮୭୫ ମସିହାର ଭର୍ଣ୍ଣାକ୍ୟୁଲର ଛାତ୍ରବୃତ୍ତି ପରୀକ୍ଷାରେ ଓଡ଼ିଶାରେ ଉତ୍ତୀର୍ଣ୍ଣ ହୋଇଥିବା ବାଳକମାନଙ୍କର ନାମ ମାର୍କନମ୍ୱର ଅନୁସାରେ ଯଥା;-

**ପ୍ରଥମ ଶ୍ରେଣୀ**

| | ନାମ | ସ୍କୁଲ | ଜିଲା |
|---|---|---|---|
| ୧. | ମଦନମୋହନ ବଳିଆରସିଂହ | ମଡେଲ ସ୍କୁଲ | କଟକ |
| ୨. | ଦୀନନାଥ ଦାସ | ରେମଣା ସ୍କୁଲ | ବାଲେଶ୍ୱର |
| ୩. | ରାମପ୍ରସାଦ ସିଂହ | ଅଣ୍ଡରାଇ ପାଠଶାଳାର ଶିକ୍ଷକ | ବାଲେଶ୍ୱର |

**ଦ୍ୱିତୀୟ ଶ୍ରେଣୀ**

| | | | |
|---|---|---|---|
| ୪. | ଜାହ୍ନବୀକୁମାର ମହାନ୍ତି | ଭୋଗରାଇ ସ୍କୁଲ | ବାଲେଶ୍ୱର |
| ୫. | କ୍ଷେତ୍ରମୋହନ ନାୟକ | ଦେହୁଡ଼ଦା ସ୍କୁଲ | ବାଲେଶ୍ୱର |
| ୬. | ନାଶର ମହମ୍ମଦ | ମଡେଲ ସ୍କୁଲ | କଟକ |
| ୭. | ଗୋବିନ୍ଦବଲ୍ଲଭ ଦେ | ମଡେଲ ସ୍କୁଲ | କଟକ |
| ୮. | ବିଦ୍ୟାଧର ପାଢ଼ୀ | ଇରମ ସ୍କୁଲ | ବାଲେଶ୍ୱର |
| ୯. | ଦିବ୍ୟସିଂହ ମିଶ୍ର | ସଂସ୍କୃତ ସ୍କୁଲ | ପୁରୀ |
| ୧୦. | ଦିଗମ୍ବର ଦାସ | ଭୁବନେଶ୍ୱର ସ୍କୁଲ | ପୁରୀ |
| ୧୧. | ଗଦାଧର ଦାସ | ଭୋଗରାଇ ସ୍କୁଲ | ବାଲେଶ୍ୱର |
| ୧୨. | ଗୋପିମୋହନ ପାଳିତ | ରେମଣା ସ୍କୁଲ | ବାଲେଶ୍ୱର |
| ୧୩. | ରାମକୃଷ୍ଣ ସାହୁ | ବାରବାଟି ସ୍କୁଲ | ବାଲେଶ୍ୱର |
| ୧୪. | ରାମନାଥ ମିଶ୍ର | ବାଁଶଡିହା ସ୍କୁଲ | ବାଲେଶ୍ୱର |
| ୧୫. | ଗୋପିନାଥ ଦାସ | ମିଶନ ସ୍କୁଲ | ବାଲେଶ୍ୱର |
| ୧୬. | ରୁଦ୍ରଚରଣ ଦାସ | ବାରବାଟି ସ୍କୁଲ | ବାଲେଶ୍ୱର |
| ୧୭. | ଉଦୟନାରାୟଣ ଦାସ | ବାରବାଟି ସ୍କୁଲ | ବାଲେଶ୍ୱର |
| ୧୮. | ଈଶ୍ୱର ଖୁଣ୍ଟିଆ | ମଡେଲ ସ୍କୁଲ | କଟକ |
| ୧୯. | ଅସମତ୍ ଉଲ୍ଲା | ବାରବାଟି ସ୍କୁଲ | ବାଲେଶ୍ୱର |
| ୨୦. | ଜଗବନ୍ଧୁ ଓଡା | ମାହାସିଂହପୁର ସ୍କୁଲ | କଟକ |

| | | | |
|---|---|---|---|
| ୨୧. | ଭବାନୀଚରଣ ଦାସ | ସୋରୋ ସ୍କୁଲ | ବାଲେଶ୍ୱର |
| ୨୨. | ଯୋଗୀ ଯେନା | ମଡେଲ ସ୍କୁଲ | କଟକ |
| ୨୩. | ସୁଦର୍ଶନ ସିଂହ | ବାରବାଟି ସ୍କୁଲ | ବାଲେଶ୍ୱର |
| ୨୪. | ନନ୍ଦକିଶୋର କର | ଆଠଗଡ଼ ସ୍କୁଲ | କଟକ |
| ୨୫. | ଭଗବାନ ପାଢ଼ୀ | ଦୋଳସାହି ସ୍କୁଲ | ବାଲେଶ୍ୱର |
| ୨୬. | ଦାମୋଦର ମିଶ୍ର | ଦାମୁଡ଼ା ପାଠଶାଳା ଶିକ୍ଷକ | ବାଲେଶ୍ୱର |
| ୨୭. | ମଣି ମହାନ୍ତି | ପଟାମୁଣ୍ଡେଇ ସ୍କୁଲ | କଟକ |
| ୨୮. | ନୀଳକଣ୍ଠ ମୁଖୋପାଧ୍ୟାୟ | ବାଁଶଡିହା ସ୍କୁଲ | ବାଲେଶ୍ୱର |
| ୨୯. | ମାୟାଧର ଦାସ | ଭର୍ଣ୍ଣାକୁଲର ସ୍କୁଲ | ପୁରୀ |
| ୩୦. | ଭଜନାନନ୍ଦ ପାଢ଼ୀ | ଇରମ ସ୍କୁଲ | ବାଲେଶ୍ୱର |
| | | *ତୃତୀୟ ଶ୍ରେଣୀ* | |
| ୩୧. | ହରିହର ପଣ୍ଡା | ସୋରୋ ସ୍କୁଲ | ବାଲେଶ୍ୱର |
| ୩୨. | କୃଷ୍ଣପ୍ରସାଦ ଦାଶ | ବାଗୁରାଇ ସ୍କୁଲ | ବାଲେଶ୍ୱର |
| ୩୩. | ରାଧାଗୋବିନ୍ଦ ରାୟ | ବାଁଶଡିହା ସ୍କୁଲ | ବାଲେଶ୍ୱର |
| ୩୪. | ଭଗବାନ ନାୟକ | ଭୁବନେଶ୍ୱର ସ୍କୁଲ | ପୁରୀ |
| ୩୫. | ଡାନିଏଲ ନାୟକ | ମିଶନ ସ୍କୁଲ | ବାଲେଶ୍ୱର |
| ୩୬. | ଲକ୍ଷ୍ମୀଧର ପଟ୍ଟନାୟକ | ମଡେଲ ସ୍କୁଲ | କଟକ |
| ୩୭. | ନନ୍ଦରାମ ଦାସ | ରେମଣା ସ୍କୁଲ | ବାଲେଶ୍ୱର |
| ୩୮. | ରାମଚନ୍ଦ୍ର ନନ୍ଦ | ଢେଙ୍କାନାଳ ସ୍କୁଲ | କଟକ |
| ୩୯. | ଶ୍ୟାମବନ୍ଧୁ ପଣ୍ଡିମକବାଟ | ଝାଁଳା ସ୍କୁଲ | ପୁରୀ |
| ୪୦. | ଅନନ୍ତମିଶ୍ର | ସଂସ୍କୃତ ସ୍କୁଲ | ପୁରୀ |
| ୪୧. | କୃଷ୍ଣ ରାଉତରା | ନିମାପଡ଼ା ସ୍କୁଲ | ପୁରୀ |
| ୪୨. | ଜଗନ୍ନାଥ ଆଢ୍ୟ | ଭର୍ଣ୍ଣାକୁଲାର ସ୍କୁଲ | ପୁରୀ |
| ୪୩. | ପୀତାମ୍ୱର ତ୍ରିପାଠୀ | ରେମଣା ସ୍କୁଲ | ବାଲେଶ୍ୱର |
| ୪୪. | ନାରାୟଣ ଦାସ | ଝାଁଳା ସ୍କୁଲ | ପୁରୀ |
| ୪୫. | ଗୋପିନାଥ ମିଶ୍ର | ଅସୁରେଶ୍ୱର ସ୍କୁଲ | କଟକ |
| ୪୬. | ଭାଗୀରଥୀ ପଟ୍ଟନାୟକ | ଭୁବନେଶ୍ୱର ସ୍କୁଲ | ପୁରୀ |
| ୪୭. | ଯଦୁନାଥ ଆଚାର୍ଯ୍ୟ | ଆଠଗଡ଼ ସ୍କୁଲ | କଟକ |
| ୪୮. | ଜଗନ୍ନାଥ ଦାସ | ଭର୍ଣ୍ଣାକୁଲର ସ୍କୁଲ | ପୁରୀ |
| ୪୯. | ଗୋପାଳଚନ୍ଦ୍ର ବାନୁର୍ଯ୍ୟା | ଭର୍ଣ୍ଣାକୁଲର ସ୍କୁଲ | ପୁରୀ |
| ୫୦. | ମଦନ ବଳିଆରସିଂହ | ବେଗୁନିୟା ସ୍କୁଲ | ପୁରୀ |
| ୫୧. | ରଘୁନାଥ ଦାସ | ବାରବାଟି ସ୍କୁଲ | ବାଲେଶ୍ୱର |
| ୫୨. | ଭାଗ୍ୟରଥୀ ନାୟକ | ରାମବାଗ ସ୍କୁଲ | କଟକ |
| ୫୩. | ଦୁର୍ଗାଚରଣ ମହାନ୍ତି | ସୋରୋ ସ୍କୁଲ | ବାଲେଶ୍ୱର |

| | | | |
|---|---|---|---|
| ୫୪. | ଅର୍ଜୁନ ମହାନ୍ତି | ଟାରାକୋଟ ସ୍କୁଲ | କଟକ |
| ୫୫. | ଶିବଚନ୍ଦ୍ର ବେଜ | ଦେହୁଡ଼ଦା ସ୍କୁଲ | ବାଲେଶ୍ୱର |
| ୫୬. | ନାରାୟଣ ପଟ୍ଟନାୟକ | ଚର୍ଚିକା ସ୍କୁଲ | କଟକ |
| ୫୭. | ବାଳକୃଷ୍ଣ ପଟ୍ଟନାୟକ | ଢେଙ୍କାନାଳ ସ୍କୁଲ | କଟକ |
| ୫୮. | ତ୍ରିଲୋଚନ ଦାସ | ବାଁଶଡିହା ସ୍କୁଲ | ବାଲେଶ୍ୱର |
| ୫୯. | ମଦନମୋହନ ପଟ୍ଟନାୟକ | ସୁବର୍ଣ୍ଣପୁର ସ୍କୁଲ | କଟକ |
| ୬୦. | ସେଖ ଫେର ମହମ୍ମଦ | କୃଷ୍ଣାନନ୍ଦପୁର ସ୍କୁଲ | କଟକ |
| ୬୧. | ନାରାୟଣ ସ୍ୱାଇଁ | ମଡେଲେ ସ୍କୁଲ | କଟକ |
| ୬୨. | ହେନେରି ମହାପାତ୍ର | ମିଶନ ସ୍କୁଲ | ବାଲେଶ୍ୱର |
| ୬୩. | ପ୍ରଭାକର ଦାସ | କୃଷ୍ଣାନନ୍ଦପୁର ସ୍କୁଲ | କଟକ |
| ୬୪. | ଗୋଲକପ୍ରସାଦ ସିଂହ | ବାଗୁରାଇ ସ୍କୁଲ | ବାଲେଶ୍ୱର |
| ୬୫. | ସଦାନନ୍ଦ ଚନ୍ଦ | ବାଗୁରାଇ ସ୍କୁଲ | ବାଲେଶ୍ୱର |
| ୬୬. | ନାରାୟଣ ପଟ୍‌ଟନାୟକ | ସୋରୋ ସ୍କୁଲ | ବାଲେଶ୍ୱର |
| ୬୭. | ସନାତନ ଦତ୍ତ | ଭର୍ଣ୍ଣାକୁଳର ସ୍କୁଲ | ପୁରୀ |
| ୬୮. | ତାରାପ୍ରସାଦ ମିଶ୍ର | ଭୋଗରାଇ ସ୍କୁଲ | ବାଲେଶ୍ୱର |
| ୬୯. | ଜଗନ୍ନାଥ ଦାସ | ଟାରାକୋଟ ସ୍କୁଲ | କଟକ |
| ୭୦. | ରାଜନାରାୟଣ ଦାସ | ସୋରୋ ସ୍କୁଲ | ବାଲେଶ୍ୱର |
| ୭୧. | ସେଖ ବଦିରୁଦ୍ଦିନ | ଗଡପଦା ସ୍କୁଲ | ବାଲେଶ୍ୱର |
| ୭୨. | ଗୋଲକପ୍ରସାଦ ଚନ୍ଦ | ବାଗୁରାଇ ସ୍କୁଲ | ବାଲେଶ୍ୱର |
| ୭୩. | ଆଦିକନ୍ଦ ନନ୍ଦ | ସୋରୋ ସ୍କୁଲ | ବାଲେଶ୍ୱର |
| ୭୪. | ଅଭିରାମ ମହାନ୍ତି | ନିମାପଡ଼ା ସ୍କୁଲ | ପୁରୀ |
| ୭୫. | ପରମାନନ୍ଦ ରଥ | ସଂସ୍କୃତ ସ୍କୁଲ | ପୁରୀ |
| ୭୬. | ପ୍ରେମାନନ୍ଦ ରାଉତ | ମିଶନ ସ୍କୁଲ | ବାଲେଶ୍ୱର |
| ୭୭. | ରଘୁବଂଶ ଲାଲ | ମଡେଲ ସ୍କୁଲ | କଟକ |
| ୭୮. | ଲମ୍ବୋଦର ଶତପଥୀ | ଢେଙ୍କାନାଳ ସ୍କୁଲ | କଟକ |
| ୭୯. | ଗୁରୁପ୍ରସାଦ ପାଢ଼ୀ | ଇରମ ସ୍କୁଲ | ବାଲେଶ୍ୱର |
| ୮୦. | ଗୋଲକପ୍ରସାଦ ଦାସ | ଟାରାକୋଟ ସ୍କୁଲ | କଟକ |
| ୮୧. | ଈଶ୍ୱର ମହାନ୍ତି | ନିମାପଡ଼ା ସ୍କୁଲ | ପୁରୀ |
| ୮୨. | ମାର୍କଣ୍ଡ ସେନାପତି | ଦୋଳସାହି ସ୍କୁଲ | ବାଲେଶ୍ୱର |
| ୮୩. | ମଧୁସୂଦନ ପଣ୍ଡା | ଭର୍ଣ୍ଣାକୁଳର ସ୍କୁଲ | ପୁରୀ |
| ୮୪. | ଭଗବାନ ଦାସ | ଢେଙ୍କାନାଳ ସ୍କୁଲ | କଟକ |
| ୮୫. | ରଘୁନାଥ ସିଂହ | ବାରବାଟି ସ୍କୁଲ | ବାଲେଶ୍ୱର |
| ୮୬. | ଗଙ୍ଗାଧର ଶତପଥୀ | ମାହାସିଂହପୁର ସ୍କୁଲ | କଟକ |
| ୮୭. | ସୁଦର୍ଶନ ମହାନ୍ତି | ସୋରୋ ସ୍କୁଲ | ବାଲେଶ୍ୱର |

| | | |
|---|---|---|
| ୮୮. ରଙ୍ଗାଧର ମହାନ୍ତି | ପଟାମୁଣ୍ଡେଇ ସ୍କୁଲ | କଟକ |
| ୮୯. ଯାଦବାନନ୍ଦ ସିଂହ | ତାରାକୋଟ ସ୍କୁଲ | କଟକ |
| ୯୦. ହାଫିଜ ମହମ୍ମଦ | କୃଷ୍ଣାନନ୍ଦପୁର ସ୍କୁଲ | କଟକ |
| ୯୧. ଭାଗବତ ପରିଡ଼ା | ପଟାମୁଣ୍ଡେଇ ସ୍କୁଲ | କଟକ |
| ୯୨. ରାଜକିଶୋର ବିଶ୍ୱାଳ | ତାରାକୋଟ ସ୍କୁଲ | କଟକ |
| ୯୩. ହରେକୃଷ୍ଣ ପଟ୍ଟନାୟକ | ଚଣାହଟା ସ୍କୁଲ | ପୁରୀ |
| ୯୪. ବୈଦ୍ୟନାଥ ଚକ୍ରବର୍ତ୍ତୀ | ବାରବାଟୀ ସ୍କୁଲ | ବାଲେଶ୍ୱର |
| ୯୫. ରଘୁନାଥ ରଥ | ଭୁବନେଶ୍ୱର ସ୍କୁଲ | ପୁରୀ |

**NANDA KISORE DAS**
**Joint Inspector of Schools**
**Orissa.**

*ଭା୧୧ଗ,ସଂ୨ଖ୍ୟା,୮।୧।୧୮୭୬*

## [ଉତ୍କଳ ରଚନା]

ଆମ୍ଭେମାନେ ଉତ୍କଳ ରଚନା ଗ୍ରନ୍ଥର ପ୍ରଥମଭାଗ ପ୍ରାପ୍ତ ହୋଇ ଅତ୍ୟନ୍ତ ପ୍ରୀତ ହୋଇଅଛୁଁ । ଏ ଗ୍ରନ୍ଥର ରଚୟିତା ବାବୁ ରାଧାନାଥରାୟ ଓ ପ୍ରକାଶକ ବାବୁ ବୈକୁଣ୍ଠନାଥ ଦେ । ବାଲେଶ୍ୱର ଉତ୍କଳ ପ୍ରେସରେ ଏହା ମୁଦ୍ରିତ ହୋଇଅଛି ଓଡ଼ିଆଭାଷାରେ ଏପରି ପୁସ୍ତକ ଦେଖା ନାହିଁ ଓ ବଙ୍ଗଳା ଭାଷାରେ ମଧ ଥିବାର ଆମ୍ଭେମାନେ ଶୁଣି ନାହୁଁ । ରଚନା ଶିକ୍ଷାସବୁଠାରୁ ଉତ୍କୃଷ୍ଟଅଙ୍ଗ ଅଟଇ କିନ୍ତୁ ଶିକ୍ଷକ କି ଛାତ୍ରମାନଙ୍କ ସାହାଯ୍ୟ ନିମିତ୍ତ ଏ ବିଷୟରେ କୌଣସି ପୁସ୍ତକ ନ ଥିଲା ଓ ଏପରି ପୁସ୍ତକ ହୋଇ ପାରେ କି ନା ଏଥିର ଭାବନା ମଧ କେହି କରି ନ ଥିଲେ । ବାବୁ ରାଧାନାଥରାୟ ଏପୁସ୍ତକ ଖଣ୍ଡିକ ବାହାର କରି କେବଳ ଉକ୍ତ ଅଭାବ ଦୂର କଲେ ଏମନ୍ତ ନୁହେ ଉପଯୁକ୍ତ ଲୋକଙ୍କୁ ଏ ଗୁରୁତର ବିଷୟରେ ପୁସ୍ତକ ରଚନା କରିବାର ବାଟ ଦେଖାଇଲେ । ରଚନା ବିଷୟକ ସବୁ ଶିକ୍ଷା ଏକଖଣ୍ଡ ପୁସ୍ତକରେ ଦେଲେ ପୁସ୍ତକ ବଡ଼ ହୋଇଯିବ ଏଥିପାଁଇ ଗ୍ରନ୍ଥକାରେ ଏହାକୁ ପ୍ରଥମଭାଗ କରି କେବଳ ବାକ୍ୟ ରଚନା ବିଷୟକ ଉପଦେଶଗୁଡ଼ିକ ଦେଇଅଛନ୍ତି । ଅନ୍ୟାନ୍ୟ ବିଷୟମାନ ଆଉ ଏକଭାଗରେ ବାହାର କରିବେ । ପୁସ୍ତକ ଖଣ୍ଡିକ ସର୍ବାଙ୍ଗ ସୁନ୍ଦର ହୋଇଅଛି ଏମନ୍ତ ଆମ୍ଭେମାନେ ବୋଲି ନ ପାରୁଁ ଓ ସ୍ୱୟଂ ଲେଖକ ସେରୂପ ଆଶା କରି ନାହାନ୍ତି । ପ୍ରତି ଶବ୍ଦର ବ୍ୟବହାରରେ ଅନେକ ମତାନ୍ତର ଘଟିପାରେ ଲେଖକ ତାହା ଜାଣି ଆଗହୁଁ କହିଅଛନ୍ତି କି ସେସବୁକୁ ଅଭ୍ରାନ୍ତ ବୋଲିବା ତାହାଙ୍କର ମାନସ ନୁହଇ କେବଳ ଚିନ୍ତାର ଗୋଟିଏ ନୂତନମାର୍ଗ ଦେଖାଇଅଛନ୍ତି ଏଅଂଶରେ ଆମ୍ଭେମାନେ ତାହାଙ୍କ ସଙ୍ଗେ ସମ୍ପୂର୍ଣ୍ଣରୂପେ ଐକ୍ୟଅଛୁଁ । ଅନ୍ୟାନ୍ୟ ଅଧ୍ୟାୟରେ ତାଦୃଶ ମତଭେଦର ଶଙ୍କା ନାହିଁ ମାତ୍ର ଆମ୍ଭେମାନେ ଦେଖୁଁ ଯେ ସ୍ଥାନବିଶେଷରେ ସାଧନିର ପରିମାଣ ଅନାବଶ୍ୟକରୂପେ ଅଧିକ ହୋଇଥିବାରୁ ପୁସ୍ତକର କଳେବର ଓ ମୂଲ୍ୟ ବଢ଼ିଯାଇଅଛି । ବୋଧହୁଅଇ ଗ୍ରନ୍ଥକାର ଶିକ୍ଷକ ଓ ଛାତ୍ରଙ୍କୁ ଏବିଷୟର ତୁଲ୍ୟରୂପ ଅନଭିଜ୍ଞ ଜ୍ଞାନ କରି ବହୁଳ ସାଧନିର ପ୍ରୟୋଜନ ବୁଝିଅଛନ୍ତି । ଯାହା ହେଉ କୌଣସି ନୂତନ ବିଷୟର ପୁସ୍ତକ ରଚନା କରିବା ସହଜ କଥା ନୁହଇ ଓ ପ୍ରଥମ ଉଦ୍ୟମରେ ଅନେକ ତୃଟି ହୋଇଥାଏ ଏ ସମସ୍ତ ବିବେଚନାରେ ରାଧାନାଥ ବାବୁ ଏ ପୁସ୍ତକ ରଚନା କରି ପ୍ରଶଂସାର ଭାଜନ ହୋଇଅଛନ୍ତି ସନ୍ଦେହ ନାହିଁ ଓ ଆମ୍ଭେମାନେ ଭରସା କରୁଁ ଯେ ଏତିକିରେ ନିଶ୍ଚିନ୍ତ ହୋଇ ନ ବସି ସେ ଏହି ମାର୍ଗରେ ଅଧିକକାଳ ଦୃଷ୍ଟି ନିକ୍ଷେପ କରନ୍ତୁ ତାହା ହେଲେ ଭାଷା ଶିକ୍ଷାର ମହତ୍ ଉପକାର ତାହାଙ୍କଦ୍ୱାରା ସାଧିତ ହେବ ।

*ଭା୧୧ଗ, ସଂ୭ଖ୍ୟା, ୧୨ ।୨। ୧୮୭୬*

## [ଜରିବ ଶିକ୍ଷା ପ୍ରଚଳନ ]

ବଙ୍ଗଳାପ୍ରଦେଶରେ ବ୍ୟବହାରିକ ବିଜ୍ଞାନଶିକ୍ଷା ଦେବାର ବିଦ୍ୟାଳୟମାନ ସ୍ଥାପନ କରିବାଲାଗି ଏଥିପୂର୍ବେ ଆମ୍ଭମାନଙ୍କ ଲେଫ୍ଟନେଣ୍ଟ ଗବର୍ଣ୍ଣର ପ୍ରସ୍ତାବ କରି ତହିଁର ଉଦ୍ୟମରେ ଥିଲେ । ସମ୍ପ୍ରତି ତାହାଙ୍କର ପ୍ରକାଶିତ ଅଭିପ୍ରାୟଲିପିରୁ ଦେଖାଗଲା କି ଆଗାମି ମାର୍ଚ୍ଚମାସ ତା୧ ରିଖଠାରୁ ହୁଗୁଳୀ ଢାକା ପାଟନା ଓ କଟକ ଏହି ଚରିସ୍ଥାନରେ ଜରିବ ଶିକ୍ଷାର ବିଦ୍ୟାଳୟମାନ ଫିଟିବ । ଅନ୍ୟାନ୍ୟ ବିଜ୍ଞାନ ଓ ଶିଳ୍ପସମ୍ବନ୍ଧୀୟ ଶିକ୍ଷାଠାରୁ ଜରିବ ଶିକ୍ଷାଦେବାର ବନ୍ଦୋବସ୍ତ ଅତିସହଜ ଓ ଭୂମିପ୍ରତି ଏଠା ଲୋକଙ୍କର ବିଶେଷ ଆସ୍ଥାଥିବା ଓ ଭୂମିକାରବାରରେ ସମସ୍ତେ ଲିପ୍ତ ଥିବାରୁ ଜରିପଶିକ୍ଷା ଏଦେଶରେ ଅତି ପ୍ରୟୋଜନୀୟ ଓ ସର୍ବାଗ୍ରେ ତାହା ଜାଣିବାର ଉଚିତ । ଏପଛେ ଅନ୍ୟ ଶିଳ୍ପବିଦ୍ୟାଳୟମାନ ଫିଟାଇବାକୁ ଲେଫ୍ଟନେଣ୍ଟ ଗବର୍ଣ୍ଣର ଆଶା କରିଅଛନ୍ତି ।

ଯେଉଁ ଚରୋଟି ବିଦ୍ୟାଳୟ ବର୍ତ୍ତମାନ ଫିଟିବ ସେସବୁ ସେହି ସେହି ଜିଲାର କଲେକ୍ଟର ଅଧକ୍ଷମାନଙ୍କ ଅଧୀନରେ ରହିବ । ତହିଁରେ ଦେଶୀୟ ଭାଷାରେ ଶିକ୍ଷା ଦିଆଯିବ ଓ ଦୁଇବର୍ଷରେ ଶିକ୍ଷା ସମାପ୍ତ ହେବ । ପ୍ରଧାନଶିକ୍ଷକ ପବଲିକ ଓର୍କ ବିଭାଗର ଜଣେ ଏଦେଶୀୟ ବହୁଦର୍ଶୀ ଓବରସିଅରଙ୍କୁ ଦିଆଯିବ ଓ ଜିଲାର ପ୍ରଚଳିତଭାଷାରେ ସେ ଶିକ୍ଷା ଦେବେ । ମାର୍ଚ୍ଚମାସ ପ୍ରଥମଦିବସଠାରୁ ଶିକ୍ଷା ଆରମ୍ଭ ହୋଇ ଦୁର୍ଗୋତ୍ସବ ପର୍ଯ୍ୟନ୍ତ ଅବିଚ୍ଛେଦରୂପେ ଶିକ୍ଷା ଦିଆଯିବ ସେହି ସମୟରେ ଏକମାସ ବିଦ୍ୟାଳୟ ବନ୍ଦ ହେବ ଓ ନବମ୍ବରମାସ ତା ୧ ରିଖଠାରୁ ଫିବୃଏରୀ ଶେଷପର୍ଯ୍ୟନ୍ତ ଚରିମାସ ବାହାରେ ବୁଲି ବୁଲି ମାପ କରିବାର ଶିକ୍ଷା ଦିଆଯିବ । ତହିଁଉତ୍ତାରୁ ପରୀକ୍ଷା ଗୃହୀତ ହେବ । ମାଇନର ଓ ଭରର୍ଣ୍ଣାକିଉଲର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନେ ଏବିଦ୍ୟାଳୟରେ ଭର୍ତ୍ତିହେବେ ଓ ସ୍ୱ ସ୍ୱ ବୃତ୍ତି ସେଠାରେ ପାଇବେ । ଏମାନଙ୍କୁ ବେତନ ଦେବାକୁ ହେବ ନାହିଁ । ଅନ୍ୟ ଛାତ୍ରମାନେ ମାସକୁ ଏକଟଙ୍କା ଲେଖାଁଏ ବେତନ ଦେବେ । ପ୍ରତ୍ୟେକ ବିଦ୍ୟାଳୟରେ ମାସକୁ ଟ୫ଙ୍କା ଲେଖାଁଏ ଗୋ୬ଟିବୃତ୍ତି ଏକବର୍ଷପାଁଇ ସ୍ଥାପିତ ହେବ । ପ୍ରଥମବର୍ଷ ଏବୃତ୍ତି କାହାରିକୁ ଦିଆଯିବ ନାହିଁ । ପ୍ରଥମବର୍ଷ ଉତ୍ତାରୁ ପରୀକ୍ଷାର ଫଳ ଦେଖି ଉପଯୁକ୍ତ ଛାତ୍ରଙ୍କୁ ବୃତ୍ତି ମିଳିବ । ପ୍ରତ୍ୟେକସ୍କୁଲରେ ମାସକୁ ସର୍ବସୁଦ୍ଧା ଟ ୨୯୨ଙ୍କା ଖର୍ଚ୍ଚ ହେବ । ଏଥି ମଧରେ ପ୍ରଧାନ ଶିକ୍ଷକଙ୍କ ବେତନ ଟ ୧୫୦ଙ୍କା ଓ ଦ୍ୱିତୀୟ ଶିକ୍ଷକଙ୍କର ଟ ୭୫ଙ୍କା ହେବ । ଦ୍ୱିତୀୟ ଶିକ୍ଷକ ପ୍ରଥମବର୍ଷ ନିଯୁକ୍ତ ହେବ ନାହିଁ । ମଫସଲରେ ରହି ମାପ ଶିଖିବାର ଖର୍ଚ୍ଚ ପ୍ରତ୍ୟେକ ସ୍କୁଲରେ ବାର୍ଷିକ ଟ ୪୦୦ ଙ୍କା ହେବ ।

*ଭା ୧୧ଗ, ସଂ୭ଖ୍ୟା, ୧୨ ।୨।୧୮୭୬*

## [ଓଡ଼ିଶାରେ ମେଡିକଲ ସ୍କୁଲ ଫିଟିଲା]

ଚଳିତମାସ ତା ୧୫ ରିଖଠାରୁ ଓଡ଼ିଶାର ମେଡିକଲସ୍କୁଲ ଫିଟିଲା । ସେଦିନ ସମସ୍ତଶିକ୍ଷକ ଓ ଛାତ୍ରମାନେ ଉପସ୍ଥିତ ହେଲାରୁ ଅଶିଷ୍ଟଣ୍ଟ ସର୍ଜନ ଚୁନିଲାଲ ବାବୁ ପ୍ରଥମେ ଗୋଟିଏ ବକ୍ତୃତାଦ୍ୱାରା ଇଂରାଜୀ ଚିକିତ୍ସାର ଇତିହାସ ସଂକ୍ଷେପରୂପେ ଛାତ୍ରଙ୍କୁ ଜଣାଇଲେ । ତହିଁଉତ୍ତାରୁ ଶ୍ରୀଯୁକ୍ତ ଡାକ୍ତର ଷ୍ଟିୱାର୍ଟ ସାହେବ ଇଂରାଜୀରେ ଗୋଟିଏ ଉପଦେଶ ଗର୍ଭିକବକ୍ତୃତା କଲେ ଓ ନେଟିବ ଡାକ୍ତର ଭୂଷଣବାବୁ ତାହା ଉତ୍କଳଭାଷାରେ ଛାତ୍ରମାନଙ୍କୁ ବୁଝାଇଦେଲେ । ପାଠକଙ୍କ କୌତୁକ ନିମନ୍ତେ ଆମ୍ଭେମାନେ ଉକ୍ତ ବକ୍ତୃତାର ସାରାଂଶ ଏଠାରେ ଉଦ୍ଧୃତ କଲୁଁ ଯଥା;--

"ତୁମ୍ଭେମାନେ ସମସ୍ତେ ବାବୁଙ୍କର ଉତ୍ତମ ଉପଦେଶ ଯାହା ଶୁଣିଅଛ ତାହା ମନରେ ରଖି କର୍ମକାରକ ହେବ, ଅଦ୍ୟ ତୁମ୍ଭେମାନେ ଏକ ନୂତନ ଜୀବିକାରେ ପଦାର୍ପଣ କଲ, ଯେବେ ତୁମ୍ଭେମାନେ ଉତ୍ତୀର୍ଣ୍ଣ ହେବାକୁ ଇଚ୍ଛା ରଖ ତେବେ ଉତ୍ତମରୂପେ ଆରମ୍ଭ କରିବାକୁ ଉଚିତ, ଯେପରି ଘୋଡ଼ା ଦୌଡ଼ରେ ଯେଉଁ ଯେଉଁ ଘୋଡ଼ାର ଆରମ୍ଭ ସମୟରେ ମନ୍ଦଗତି ହୁଏ ସେ କେବେହେଁ ପୁରସ୍କାର ପାଇପାରେ ନାହିଁ ସେହି ପରି ତୁମ୍ଭେମାନେ ଉତ୍ତମରୂପ ପଢ଼ିବାର ଆରମ୍ଭ ନ କଲେ କଦାଚ ବର୍ଷଶେଷ ସମୟରେ ଉତ୍ତମ ଫଳ ଦର୍ଶାଇପାରିବ ନାହିଁ ସେ ନିମନ୍ତେ ଆରମ୍ଭରୁ ଉତ୍ତମରୂପେ ପାଠ କରିବାର ଉଚିତ ପୁଣି ଯେଉଁ ଘୋଡ଼ା ପୁରସ୍କାର ନିମନ୍ତେ ଦୌଡିଅଛି ସେ ଆରମ୍ଭଠାରୁ

ଶେଷପର୍ଯ୍ୟନ୍ତ ପରିଶ୍ରମ ସହିତ ବେଗେ ଦୌଡ଼ିଥାଏ ଓ ମଧ୍ୟସ୍ଥଳେ ବିଳମ୍ବ ଅବା ଆଳସ୍ୟ କରି ନ ଥାଏ ସେହିପରି ତୁମ୍ଭେମାନେ ଉତ୍ତମରୂପେ ଆରମ୍ଭ କରି ବର୍ଷ ଶେଷ ପର୍ଯ୍ୟନ୍ତ ବିଶେଷ ମନୋଯୋଗୀ ହୋଇ ପାଠ କର ।

ପ୍ରତିସପ୍ତାହରେ ପରୀକ୍ଷା ହେବ ଓ ପ୍ରତ୍ୟେକ ଛାତ୍ରଙ୍କର ଉନ୍ନତି ପ୍ରକାଶ ହେବ ଯେଉଁ ଛାତ୍ରମାନେ କଠିନ ପରିଶ୍ରମ ସହିତ ଶିକ୍ଷା କରିବେ ସେମାନେ ପ୍ରଶଂସା ପାଇ ଉନ୍ନତିଲାଭ କରିବେ ମାତ୍ର ଯେଉଁମାନେ ଆଳସ୍ୟ କରିବେ ଓ ବୁଦ୍ଧିହୀନ ଦେଖାଯିବେ ସେମାନଙ୍କୁ ଅବଶ୍ୟ ପରିତ୍ୟାଗ କରିବାକୁ ହେବ ଆମ୍ଭେ ଅଳସୁଆ ଛାତ୍ରମାନଙ୍କ ନିମନ୍ତେ ପରିଶ୍ରମ ଏବଂ ବ୍ୟୟଭୂଷଣ କରିବୁଁ ନାହିଁ ଆମ୍ଭେ ଭରସା କରୁଁ ଯେ ତୁମ୍ଭେମାନେ ସଚ୍ଚରିତ୍ର, ସଦା ଉଦ୍‌ଯୋଗ ଓ ଆଜ୍ଞାକାରୀଦ୍ୱାରା ଗୁଣବାନ୍ ଛାତ୍ର ହୋଇ ଏହି ଓଡ଼ିଶା ମେଡ଼ିକଲ ସ୍କୁଲର ସୁଖ୍ୟାତି ଲାଭ କର ।"

ଆମ୍ଭେମାନେ ଏକାନ୍ତ ଆଶାକରୁଁ ଯେ ଛାତ୍ରମାନେ ଉପରଲିଖିତ ଉପଦେଶ ବାକ୍ୟ ଯଥାସାଧ୍ୟ ପ୍ରତିପାଳନ କରି ଓଡ଼ିଶାରେ ଗୋଟିଏ ନୂତନ ବିଦ୍ୟାର ଗୁଣ ଦେଖାଇବେ ଓ ଡାକ୍ତରସାହେବ ଯେମନ୍ତ ନିଃସ୍ୱାର୍ଥଭାବରେ ଏ ବିଷୟରେ ପରିଶ୍ରମ କରିବାକୁ ଅଙ୍ଗୀକାର କରିଅଛନ୍ତି ତେମନ୍ତ ତାହାଙ୍କର ଆଜ୍ଞାକାରୀ ହୋଇ ଉତ୍ତମଶିକ୍ଷା ଲାଭ କରି ଜନସାଧାରଣରେ ତାହାଙ୍କର ସୁଖ୍ୟାତି ଗାନକରିବେ । ବାସ୍ତବରେ ଏ ବିଦ୍ୟାଳୟଟି ଷ୍ଟିଓ୍ୟାର୍ଟ ସାହେବଙ୍କ କୀର୍ତ୍ତି ଅଟଇ ଓ ତାହା ସ୍ଥାୟୀ ହୋଇ ତଦ୍ୱାରା ଜନସାଧାରଣଙ୍କର ପରମୋପକାର ସାଧିତ ହେଉ ଆମ୍ଭମାନଙ୍କର ଏହିମାତ୍ର ପ୍ରାର୍ଥନା ।

*ଭା୧୧ଗ,ସଂ୮ଖ୍ୟା,୧୯।୨। ୧୮୭୬*

## ଓଡ଼ିଶାର ଦୁର୍ଦ୍ଦଶା କାହିଁକି ?

ଆମ୍ଭେମାନେ ଦେଖୁଁ ଯେ ଓଡ଼ିଶାର କିଛି ଉନ୍ନତି ଗବର୍ଣ୍ଣମେଣ୍ଟଙ୍କଦ୍ୱାରା ହୋଇ ପାରିବାର ସମ୍ଭବ ସେ ସମସ୍ତର ଅନୁଷ୍ଠାନରେ ତ୍ରୁଟି ହେଉ ନାହିଁ ଓ ସେ ପକ୍ଷରେ ଗବର୍ଣ୍ଣମେଣ୍ଟଙ୍କର ଉଦ୍ୟମ ଆଶାନୁରୂପ ହୋଇ ନ ଥିବାର କୁହାଗଲେ ମଧ ସ୍ୱୀକାର କରିବାକୁ ହେବ ଯେ ଗବର୍ଣ୍ଣମେଣ୍ଟ କ୍ରମେ କ୍ରମେ ଓଡ଼ିଶାର ଉନ୍ନତିପ୍ରତି ଯତ୍ନଶୀଳ ହୋଇ ପ୍ରୟୋଜନୀୟ କାର୍ଯ୍ୟସବୁ ଆରମ୍ଭ କରିଅଛନ୍ତି ଓ ସମୟରେ ପ୍ରୟୋଜନ ମତେ ବୃଦ୍ଧି ହୋଇ ପାରିବ । ଅ୯ଙ୍କର ଦୁର୍ଭିକ୍ଷ ପୂର୍ବେ ଓଡ଼ିଶାକୁ ଗବର୍ଣ୍ଣମେଣ୍ଟ ପଚରୁ ନ ଥିଲେ ତହିଁଉତ୍ତାରୁ ଓଡ଼ିଶାର ଭାଗ୍ୟ ଫିଟିଲା ଓ ବର୍ଷକୁ ବର୍ଷ ନୂତନ ନୂତନ କାର୍ଯ୍ୟ ହେବାକୁ ଆରମ୍ଭ ହେଲା । ସନ ୧୮୭୬ ମସିହାରେ ଆମ୍ଭେମାନେ ପଦାର୍ପଣ କରି ଦେଖୁଅଛୁଁ ଯେ କୃଷିର ଉନ୍ନତି ନିମିତ୍ତ ଅନେକ ସ୍ଥାନରେ ନାଳମାନ ପ୍ରସ୍ତୁତ ହୋଇ ଋଷିଙ୍କର ପ୍ରୟୋଜନମତେ ଜଳ ଯୋଗାଉ ଅଛି ଓ ବର୍ଷକୁବର୍ଷ ଏ କାର୍ଯ୍ୟ ବିସ୍ତାର ହେଉଅଛି । ଅବଧି ନାଳଜଳର ସମ୍ୟକ୍ ଉପକାରିତା ଜଣା ଯାଇ ନାହିଁ କିମ୍ବା ଗବର୍ଣ୍ଣମେଣ୍ଟ ଯେପରିମାଣରେ ଟଙ୍କା ବ୍ୟୟ କରିଅଛନ୍ତି ସେପରିମାଣରେ ଫଳ ଲାଭ ହୋଇ ନାହିଁ ସତ୍ୟ ମାତ୍ର ଏ କଥା ଅବଶ୍ୟ ମାନିବାକୁ ହେବ ଯେ ପ୍ରଜାଙ୍କର ଗୋଟିଏ ମହତ୍ କାହିଁକି ସବୁଠାରୁ ଗରିଷ୍ଠ ଅଭାବ ମୋଚନ ପକ୍ଷରେ ଗବର୍ଣ୍ଣମେଣ୍ଟ ତ୍ରୁଟି କରି ନାହାନ୍ତି । ବାଣିଜ୍ୟଦ୍ରବ୍ୟ ଗମନାଗମନର ସୁଯୋଗ ନିମିତ୍ତ ବନ୍ଦରମାନ ଫିଟିଅଛି ଓ ପ୍ରତି ସପ୍ତାହରେ ତିନିଋରି ଖଣ୍ଡ ଧୂଆଁକଳ ଜାହାଜ ଯିବାଆସିବା କରୁଅଛି । ଋରିଆଡ଼େ ସଡ଼କମାନ ନିର୍ମାଣ ହେଉଅଛି ଫଳତଃ ଅତ୍ୟନ୍ତ ବ୍ୟୟକର କାର୍ଯ୍ୟ ରେଲବେ ଛାଡ଼ି ଆଉ ସମସ୍ତ ପ୍ରକାର ଗମନାଗମନର ସୁଯୋଗ ପକ୍ଷରେ ଗବର୍ଣ୍ଣମେଣ୍ଟଙ୍କର ଯତ୍ନ ଲାଗିଅଛି । ଲୋକଙ୍କୁ ବିଦ୍ୱାନ୍ କରିବା ଓ ନାନା ମହକୁମାର ସରକାରୀ କର୍ମ ସକାଶେ ଉପଯୁକ୍ତ ହେବା ଲାଗି ଗୋଟିଏ କଲେଜ ମେଡିକଲ୍ ସ୍କୁଲ ଏବଂ ଜରିବଶିକ୍ଷାର ସ୍କୁଲମାନ ଫିଟିଅଛି ବା ଫିଟୁଅଛି ଏବଂ ଓଡ଼ିଶାର ମହକୁମା ସବୁରେ ଏଦେଶ ବାସିଙ୍କୁ ନିଯୁକ୍ତ କରିବା କାରଣ ହାକିମମାନେ ସର୍ବଦା ଚେଷ୍ଟିତ ଅଛନ୍ତି ।

କୃଷି, ବାଣିଜ୍ୟ ଓ ଶିକ୍ଷା ଇତ୍ୟାଦିର ଉଣା ଅଧିକରେ ଉପାୟ ହେଉଅଛି ଓ ଲୋକଙ୍କ ସ୍ୱାସ୍ଥ୍ୟରକ୍ଷା ଉଦ୍ଦେଶରେ ଇଂରାଜୀ ଟୀକା ପ୍ରଚଳିତ କରିବାର ବନ୍ଦୋବସ୍ତ ହେଉଅଛି । ଏପଛେ ଅନ୍ୟାନ୍ୟ ଉପାୟ ମଧ ହୋଇପାରେ । ସୁତରାଂ ଭାରତବର୍ଷ ମଧରେ ଓଡ଼ିଶାର ଆକୃତି ଓ ଆୟକୁ ତୁଳନା କଲେ ଗବର୍ଣ୍ଣମେଣ୍ଟ ଆପଣା ସାଧ୍ୟାନୁସାରେ ଏହାର ଉନ୍ନତି ସାଧନ ପକ୍ଷରେ ତତ୍ପର ହୋଇ ଅଛନ୍ତି ଅବଶ୍ୟ ସ୍ୱୀକାର କରିବାକୁ ହେବ ଓ ଏସବୁ ମଙ୍ଗଳକାର୍ଯ୍ୟର

ସୁଫଳ ଦେଖାଗଲେ ଏଥିରୁ ଉତ୍କୃଷ୍ଟ ଉପାୟମାନ ଅବଲମ୍ବିତ ହେବ ଏମନ୍ତ ଆଶା ଅନିର୍ବାର୍ଯ୍ୟରୂପେ ମନରେ ଉଦୟ ହେଉଅଛି । କିନ୍ତୁ ଦୁଃଖର ବିଷୟ ଯେ ଓଡ଼ିଶାବାସିମାନେ ଆପଣା କର୍ତ୍ତବ୍ୟ ପ୍ରତି ଥରେ ଲକ୍ଷ କରୁ ନାହାନ୍ତି ଓ ଆପଣାର ବୈଷୟିକ ବା ସାମାଜିକ ଉନ୍ନତିପ୍ରତି ଥରେ ନେତ୍ରପାତ କରୁ ନାହାନ୍ତି । କୃଷିର ଉତ୍କର୍ଷସାଧନ ଉଦ୍ଦେଶରେ ଜଳପ୍ରଣାଳୀମାନ ପ୍ରସ୍ତୁତ ହୋଇଅଛି ସତ୍ୟ କିନ୍ତୁ ଅବଧି କେହି ଓଡ଼ିଆ ଜମିଦାର ବା ଧନିବ୍ୟକ୍ତି ଉକ୍ତ ଜଳଦ୍ୱାରା ଉତ୍କୃଷ୍ଟ ପ୍ରକାର ଫସଲ ଉତ୍ପାଦନ କରିବାକୁ ଚେଷ୍ଟିତ ହୋଇ ନାହିଁ । ବନ୍ଦରମାନ ଫିଟିଅଛି ସତ୍ୟ କିନ୍ତୁ କେହି ଓଡ଼ିଶାବାସୀ ଅବଧି ବାଣିଜ୍ୟ କରିବାରେ ଯଥା ବିହିତରୂପେ ପ୍ରବୃତ୍ତ ହୋଇ ନାହିଁ । ବର୍ତ୍ତମାନ ଓଡ଼ିୟାଙ୍କ ହାତରେ ଯେଉଁ ବାଣିଜ୍ୟ ଅଛି ତାହା ଏସବୁ ସୁଯୋଗ ନ ଥିବା ସମୟରେ ମଧ ଥିଲା । ତହିଁର ପରିମାଣ ଅବା ଯତ୍‌ସାମାନ୍ୟରେ ବୃଦ୍ଧି ହୋଇଥିବ ମାତ୍ର ପ୍ରଣାଳୀଟି ସେହିପରି ଅଛି । ସମୁଦ୍ର ବାଟ ଫିଟିଲାକୁ କାହାରିକୁ ବହୁଳ ପରିମାଣରେ ଦ୍ରବ୍ୟଆମଦାନୀ ରପ୍ତାନୀ କରିବାକୁ ଦେଖା ଯାଉ ନାହିଁ । ପୂର୍ବାପେକ୍ଷା ବର୍ତ୍ତମାନକୁ କେତେ ପାରସୀ, ତେଲଙ୍ଗା, ବଙ୍ଗାଳୀ ଓ ଇଂରାଜ ଓଡ଼ିଶାରେ କୋଠିମାନ ସ୍ଥାପନ କରି ଏଦେଶୀୟ ଉତ୍ପନ୍ନଦ୍ରବ୍ୟ ବିଦେଶକୁ ରପ୍ତାନି ପୂର୍ବକ ବିଲକ୍ଷଣ ଲାଭ କରୁଅଛନ୍ତି ମାତ୍ର ଓଡ଼ିୟାମାନେ ଯେମନ୍ତ ପୂର୍ବେ ଥିଲେ ବର୍ତ୍ତମାନ ସୁଦ୍ଧା ସେହିପରି ଅଛନ୍ତି ଏସବୁ ଉଦାହରଣ ସାକ୍ଷାତରେ ଦେଖିସୁଦ୍ଧା ସେମାନଙ୍କର ଆଳସ୍ୟ ଓ ମାନସିକ ଦୁର୍ବଳତା ଭାଙ୍ଗୁ ନାହିଁ ଓ ଅବଧି କେହି ତାହାଙ୍କ ମଧରେ ଏପରି ସାହସୀ ହୋଇ ବାହାରି ନାହିଁ ଯେ ଅଧିକ ଟଙ୍କା ଲଗାଇ କୌଣସି ବୃହତ୍ ବାଣିଜ୍ୟ ବ୍ୟାପାରରେ ନିଯୁକ୍ତ ହେବ । ଶିକ୍ଷାର ଉନ୍ନତି ନିମିତ୍ତ ନାନାଉପାୟ ହେଉଅଛି ସତ୍ୟ ମାତ୍ର ଅବଧି କେହି ଏମନ୍ତ ସୁଶିକ୍ଷିତ ହୋଇ ବାହାରି ନାହିଁ ଯେ କୌଣସି ସାମାଜିକ ଉନ୍ନତି କାର୍ଯ୍ୟରେ ବିଶେଷ ଶ୍ରମକରିବ ଅଥବା ଆପଣା ପେଟର ଚିନ୍ତା ଭିନ୍ନ ସାଧାରଣ ହିତକର ବିଷୟରେ ବେଳେ ବସି ଭାଳିବ ବା ସେପକ୍ଷରେ ଅପର ଲୋକଙ୍କ ପ୍ରବୃତ୍ତି ଜନ୍ମାଇବ । ସ୍ୱୀକାର କରିବାକୁ ହେବ ଯେ ଏଠାରେ ଶିକ୍ଷାର ସୁଯୋଗ ଅଳ୍ପ ଦିନ ହେଲା ହୋଇଅଛି ଓ ଅବଧି କେତେ ଗୁଡ଼ିଏ ଅର୍ଦ୍ଧଶିକ୍ଷିତ ବ୍ୟକ୍ତି ଭିନ୍ନ ଗବର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ଶିକ୍ଷାର ଶେଷସୀମା ପର୍ଯ୍ୟନ୍ତ କେହି ପ୍ରବେଶ ହୋଇ ପାରି ନାହିଁ ଓ ଶିକ୍ଷିତଲୋକଙ୍କ ସଂଖ୍ୟା ଅଧିକ ନ ହେଲେ ସାମାଜିକ ଉନ୍ନତିର ଆଶା ହୋଇ ନ ପାରେ ତଥାପି ଯେପରିମାଣରେ ଏଠାରେ ଲୋକ ଶିକ୍ଷା ପାଇଅଛନ୍ତି ସେପରିମାଣରେ ମଧ ତାହାଙ୍କଦ୍ୱାରା କୌଣସି କାର୍ଯ୍ୟ ହେବାର ଦେଖା ଯାଇ ନାହିଁ । ବାବୁ ବିଚିତ୍ରାନନ୍ଦ ଦାସ ନବ୍ୟ ଶିକ୍ଷିତ ସମ୍ପ୍ରଦାୟର ଲୋକ ନ ଥିଲେ ତଥାଚ ତାହାଙ୍କଦ୍ୱାରା ଯେତେ ହିତ ସାଧିତ ହୋଇଅଛି ଆଉ କାହାରିଦ୍ୱାରା ସେପରି ହେବାର ତେଣିକି ଥାଉ ସେମାର୍ଗରେ କାହାରିକୁ ଚିନ୍ତା କରିବାର ସୁଦ୍ଧା ଦେଖା ଯାଉ ନାହିଁ । ବର୍ତ୍ତମାନ ଓଡ଼ିଶାରେ ଅନେକ ଗୁଡ଼ିଏ ଓଡ଼ିୟା ଡେପୁଟୀଠାରୁ ସିରସ୍ତାଦାରୀ ପର୍ଯ୍ୟନ୍ତ ଉଚ୍ଚପଦମାନଙ୍କରେ ପ୍ରତିଷ୍ଠିତ ହୋଇଅଛନ୍ତି । ମାତ୍ର ଏହାଙ୍କଦ୍ୱାରା ସମାଜର କି ଲାଭ ହୋଇଅଛି ? ସାମାନ୍ୟ ଚାକରିୟାଙ୍କପରି ବଡ଼ ଚାକରିୟାମାନେ ମଧ ଆପଣା କୁଟୁମ୍ବ ପାଳିବା ଭିନ୍ନ ଆଉ କେଉଁ ମହତ୍ କାର୍ଯ୍ୟ କରୁଅଛନ୍ତି ? ବାବୁ ବିଚିତ୍ରାନନ୍ଦ ଦାସଙ୍କ ମୃତ୍ୟୁ ଉତ୍ତାରୁ ଜଣେ କେହି ଓଡ଼ିୟା ଏପରି ବାହାରି ନାହିଁ ଯେ କି ତାହାଙ୍କର ମାର୍ଗରେ ଗତି କରୁଅଛି । ସେ ଏକକ୍ଷଣଜନ୍ମାଥିଲେ ଯେ ତାହାଙ୍କ ଯୋଗେ କିଛି କାଳ ଓଡ଼ିଶାର ମୁଖ ସୁନ୍ଦର ଦିଶୁଥିଲା । ସେ ଆଖିବୁଜିଲେ ସବୁ ଅନ୍ଧକାର ହୋଇଗଲା । ଶିକ୍ଷାର ଫଳ ଏଠାରେ ଫଳିଥିଲେ ଅବଶ୍ୟ ସେପ୍ରକାର ଲୋକ ଅବଧି କେହି ବାହାରି ଥାନ୍ତା । ଅତଏବ ଆମ୍ଭେମାନେ କହୁଁ ଯେ ଗବର୍ଣ୍ଣମେଣ୍ଟ ଓଡ଼ିଶାର ଉନ୍ନତି ନିମିତ୍ତ ଯେତେ କାର୍ଯ୍ୟ କରୁଅଛନ୍ତି ଓଡ଼ିଶାର ଲୋକମାନେ କୌଣସିଥିରେ ଯୋଗ ଦେଉ ନାହାନ୍ତି ଓ ସେରୂପ ଯୋଗ ଦେବାରୁ ସେସବୁଦ୍ୱାରା ଯେପରିମାଣରେ ଉନ୍ନତିର ଆଶା ଗବର୍ଣ୍ଣମେଣ୍ଟ କରନ୍ତି ତାହା ପୂର୍ଣ୍ଣ ହେଉ ନାହିଁ ସୁତରାଂ ଉତ୍କୃଷ୍ଟ ଉପାୟ କରିବାକୁ ଗବର୍ଣ୍ଣମେଣ୍ଟ ଉତ୍ସାହିତ ହେଉ ନାହାନ୍ତି । ଯେବେ କେହି ପଚାରନ୍ତି କି ଓଡ଼ିୟାମାନେ କାହିଁକି ଏପରି ଉଦାସୀନ ହୋଇ ଅଛନ୍ତି ତେବେ ଆମ୍ଭେମାନେ ଉତ୍ତର କରିବୁଁ କି କେବଳ ଆଳସ୍ୟପଣିଆରୁ । ଦୁଃଖେ ସୁଖେ ମୁଠାଏ ଖାଇବାକୁ ଖଣ୍ଡେ ପିନ୍ଧିବାକୁ ଯେତିକି ପରିଶ୍ରମ ନିତାନ୍ତ ନ କଲେ ନ ହୁଅଇ ତେତିକି.କରିବେ ଓ ତାହା ହେଲାଠାରୁ ବିଛଣା ଖଣ୍ଡେ ପକାଇ ଗଡୁଥିବେ ବା ବୃଥାଗଳ୍ପ ଓ କ୍ରୀଡ଼ାରେ ଅବସର କାଳକୁ ଅତିବାହିତ କରିବେ । ଏପରି ଲୋକ ଯେବେ ଅଲସୁଆ ନୁହନ୍ତି ତେବେ ଅଳସୁଆ କାହାକୁ ବୋଲି ।

*ଭା।୧୧ଗ, ସଂ୮ଖ୍ୟା, ୧୯।୨।୧୮୭୬*

## ସାପ୍ତାହିକ ସମ୍ବାଦ ।

ଓଡ଼ିଶାର ମଧ୍ୟମଶ୍ରେଣୀ ସ୍କୁଲରେ ଚଳିତ ବର୍ଷରେ ଯେଉଁ ପୁସ୍ତକମାନ ପଠିତ ହେବ ତହିଁର ତାଲିକା ଉତ୍କଳଦର୍ପଣ ପତ୍ରିକା ମଧ୍ୟରେ ପ୍ରକାଶ କରି ଲେଖିଅଛନ୍ତି କି ପୂର୍ବ ତାଲିକାମାନଙ୍କରେ ଯେ ସମସ୍ତ ଅଭାବ ଲକ୍ଷିତ ହେଉଥିଲା ବର୍ତ୍ତମାନର ଜଏଣ୍ଟ ଇନସ୍ପେକ୍ଟରଙ୍କ ତାଲିକାରେ ସେସବୁ ଅଭାବ ଦୂରୀଭୂତ ହୋଇଅଛି । ମାତ୍ର ଆମ୍ଭେମାନେ ଦେଖୁଅଛୁଁ ଯେ ଗୋଟିଏ ଅଭାବ ଅବଧି ଘୁଞ୍ଚିଯାଇ ନାହିଁ । ତାହା ଏହି ଯେ ତାଲିକା ଲିଖିତ ସମସ୍ତ ପୁସ୍ତକ ଅବଧି ପ୍ରଚଳିତ ହୋଇ ନାହିଁ । ରାମ ନ ହେଉଣୁ ରାମାୟଣ ହେବାର କଥା ଏହିଠାରେ ଦେଖାଗଲା । ଛାପା ହୋଇ ରହିଥିବା କେତେଗୁଡ଼ିଏ ଭଲ ପୁସ୍ତକ ପରିତ୍ୟକ୍ତ ହୋଇ ଆଦୌ ଛାପା ହୋଇ ନ ଥିବା ପୁସ୍ତକମାନ ତାଲିକାରେ ସ୍ଥାନ ପାଇଲା । ଗତ ଦୁଇମାସରେ କେତେଗୁଡ଼ିଏ ପୁସ୍ତକ ଯନ୍ତ୍ରାଳୟରୁ ବାହାରିଅଛି ମାତ୍ର ସବୁ ବାହାରିବାକୁ ଆହୁରି ଚାରିମାସ ଲାଗିବ । ଅତଏବ ଆମ୍ଭମାନଙ୍କ ମତରେ ଏ ତାଲିକା ପ୍ରସ୍ତୁତ କରିବାରେ ସତର୍କତାର ଅଭାବ ବିସ୍ତର ଦେଖାଯାଏ ଭରଷାକରୁଁ ଭବିଷ୍ୟତକୁ ତାହା ଦୂରୀଭୂତ ହେବ ।

ଉକ୍ତ ପତ୍ର ବାବୁ ମଧୁସୂଦନ ରାଓଙ୍କର କଟକ ବଦଳି ହେବାରେ ଅତ୍ୟନ୍ତ ଦୁଃଖିତ ହୋଇ ତାହାଙ୍କର ସଚ୍ଚରିତ୍ର ଓ ସଦ୍‌ଗୁଣର ଅଶେଷ ପ୍ରଶଂସା କରିଅଛନ୍ତି । ମଧୁସୂଦନ ବାବୁ ଗତ ସପ୍ତାହରେ ଏ ନଗରକୁ ଆସି ହାଇସ୍କୁଲରେ ଆପଣା କର୍ମର ଭାର ଗ୍ରହଣ କରିଅଛନ୍ତି । ଶିକ୍ଷକଙ୍କ ଚରିତ୍ର ବିଶୁଦ୍ଧ ହେବା ସକଳ ଗୁଣଠାରୁ ଅଧିକ ଅଟଇ ।

*ଭା ୧୧ଗ, ସଂ୯ଖ୍ୟା , ୨୬ ।୨। ୧୮୭୬*

## ବିଶେଷ ନାଟକକ୍ରିୟା ନିବାରଣ ।

ପାଠକମାନେ ଜାଣନ୍ତି ଯେ କେତେକ ବର୍ଷ ହେଲା କଲିକତା ନଗରରେ ଦିଯୋଟି ନାଟ୍ୟଶାଳା ସ୍ଥାପନ ହୋଇଅଛି ଯେ ସେଠାରେ ବଙ୍ଗଳା ନାଟକ ପ୍ରହଶନ ଇତ୍ୟାଦିର ଅଭିନୟ ହୁଅଇ । ନୂତନ ନୂତନ ବିଷୟର ଅଭିନୟ ଦେଖାଇ ଦର୍ଶକଙ୍କ ଆନନ୍ଦବର୍ଦ୍ଧନ ସକାଶେ ନାଟ୍ୟଶାଳାର ଅଧକ୍ଷମାନେ ଚେଷ୍ଟିତ ଥିବାରୁ ଅନେକପ୍ରକାର ନୂତନ ବିଷୟର ନାଟକ ବା ପ୍ରହଶନ ପ୍ରକାଶ ହେଉଅଛି ଓ ତହିଁରେ ଅଭିନେତା ଓ ରଚୟିତା ଉଭୟଙ୍କର ଉପକାର ଅଛି । ଯୁବରାଜ କଲିକତାକୁ ଆସି ବାବୁ ଜଗଦାନନ୍ଦ ମୁଖୁର୍ଯ୍ୟାଙ୍କ ଘରେ ବଙ୍ଗମହିଳାଙ୍କ ସହିତ ସାକ୍ଷାତ କରିଥିଲେ ଏହି କଥାଟି ଏଠାର ପ୍ରଚଳିତ ରୀତିର ବିପରୀତ ଥିବାରୁ ଅନେକ ଲୋକ ବ୍ୟଙ୍ଗ କରି ଗଦ୍ୟପଦ୍ୟ ରଚନାମାନ ସମ୍ବାଦପତ୍ର ସବୁରେ ପ୍ରକାଶ କଲେ ଓ କେହି ବ୍ୟକ୍ତି ସେ ବିଷୟରେ ଖଣ୍ଡିଏ ପ୍ରହଶନ ରଚନା କରି ତହିଁର ଅଭିନୟ ଦେଖାଇବାର ଉପାୟ କରି ଦେଲା । ଗ୍ରେଟନାସନଲଥିଏଟର ନାମକ ନାଟ୍ୟଶାଳାର ଅଧକ୍ଷମାନେ ଏ ପ୍ରହଶନର ଅଭିନୟ କରିବାକୁ ଘୋଷଣା ଦେଲେ । ପ୍ରହଶନର ନାମ ଗଜଦାନନ୍ଦ । ଯୁବରାଜଙ୍କ ସମ୍ବନ୍ଧେ ଏପରି ଅଭିନୟ ହେବା ମନ୍ଦକଥା ବୋଲି କେହି କର୍ମଚାରୀ ତାହା ଗବର୍ଣ୍ଣମେଣ୍ଟଙ୍କୁ ଗୋଚର କରାଇଲା ଓ ଇଣ୍ଡିଆ ଗବର୍ଣ୍ଣମେଣ୍ଟ ତହିଁରେ ଐକ୍ୟ ହୋଇ ଏକ ନୂତନ ବିଧି ପ୍ରଚାରଦ୍ୱାରା ବଙ୍ଗଳା ଗବର୍ଣ୍ଣମେଣ୍ଟଙ୍କୁ ଅଧିକାର ଦେଲେ କି କୌଣସି କୁତ୍ସିତ ଅପବାଦଜନକ ଅଥବା ସାଧାରଣ ମଙ୍ଗଳର ବିଘ୍ନକାରକ ନାଟକ ଅଥବା ଯେଉଁ ନାଟକ ଅଭିନୟ ଦ୍ୱାରା ଦର୍ଶକଙ୍କର ମନ ମାଳିନ୍ୟ କିମ୍ବା ଗବର୍ଣ୍ଣମେଣ୍ଟ ପ୍ରତି ଅଶ୍ରଦ୍ଧା ଜନ୍ମିପାରେ ଏପରି କୌଣସି ନାଟକ ଲାସ୍ୟ ଅଥବା ଅନ୍ୟ ଅଭିନୟର କ୍ରିୟା ସେ ନିବାରଣ କରି ପାରିବେ ଓ ନିଷେଧ କଲା ଉତ୍ତାରୁ ଯେ କେହି ବ୍ୟକ୍ତି ଅଭିନୟକ୍ରିୟା କରିବ ଯାହାଘରେ ହେବ ଯେଉଁମାନେ ଦେଖିବେ ଓ ଯେତେ ଲୋକ ତହିଁର ସଂସର୍ଗୀ ଥିବେ ସମସ୍ତେ ପୁଲିସଦ୍ୱାରା ଗିରଫ୍ତାର ହୋଇ ମାଜିଷ୍ଟ୍ରେଟଙ୍କ ବିଚାରାଧୀନରେ ଆସିବେ ଓ ତାହାଙ୍କର ତିନିମାସ କାରାଦଣ୍ଡ ବା ଅର୍ଥଦଣ୍ଡ ଅଥବା ଉଭୟଦଣ୍ଡ ହୋଇପାରିବ । ଏବିଧାନରେ ମାଜିଷ୍ଟ୍ରେଟଙ୍କୁ ଅଧିକାର ଦିଆ ଯାଇଅଛି କି କୌଣସିସ୍ଥାନରେ ନିଷେଧିତ ପ୍ରକାର ନାଟକ କ୍ରିୟା ହୋଇଥିବାର ବା ହେବ ବୋଲି ଜାଣିଲେ ପୁଲିସ ପ୍ରତି ଓ୍ୟାରଣ୍ଟ ଜାରୀ କରିବେ ଯେ ପୁଲିସ ସେ ସ୍ଥାନକୁ ଯାଇ ତହିଁ ସଂକ୍ରାନ୍ତ ସମସ୍ତ ଲୋକ ଓ ଦ୍ରବ୍ୟାଦି ଗିରଫ୍ତାର କରି ଚାଲାନ କରିବ । ଏ ବିଧାନଟି ଗତମାସ

ତା୨ ୯ ରିଖରେ ପ୍ରଚରିତ ହୋଇଅଛି ଓ ଏହା ଆଗାମୀ ମଇ ମାସ ଶେଷ ପର୍ଯ୍ୟନ୍ତ ପ୍ରବଳ ରହିବ ଏଥି ମଧରେ ଏ ବିଷୟରେ ଗୋଟିଏ ଆଇନ ହେବାର ବିଚାର ହେବ ।

ଏଆଜ୍ଞା ଯେତେଶୀଘ୍ର ହୋଇପାରେ ପ୍ରଚରହେଲା ପୁଲିସ କମିଶ୍ନରଙ୍କ ଯୋଗେ ନାଟ୍ୟଶାଳାର ଅଧକ୍ଷଙ୍କୁ ତହିଁର ସମ୍ବାଦ ଦିଆଗଲା ଓ ପୁଲିସ୍ ସସୈନ୍ୟରେ ସାଜି ନାଟ୍ୟଶାଳାଠାରେ ଉପସ୍ଥିତ ହେଲେ ଗଜଦାନନ୍ଦ ଯାତ୍ରା ବହାରିଲେ ସମସ୍ତଙ୍କୁ ଗିରପ୍ତାର କରିବେ । ଏଥକୁ ଅଭିନୟ କାରିମାନେ ସତର୍କ ହୋଇ ଗଜଦାନନ୍ଦକୁ ବାହାର ନ କରି ତହିଁପରିବର୍ତ୍ତରେ ହନୁମାନ ଚରିତ୍ର ଦେଖାଇ ବସିଲେ । ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ଗଜଦାନନ୍ଦ ଯେମନ୍ତ ହନୁମାନ ଚରିତ୍ର ତେମନ୍ତ ଇତର ଓ ଅଶିଷ୍ଟଯାତ୍ରା ଅଟଇ ଓ ତାହା ରହିତ ହେବାରେ କେହି ଅସନ୍ତୋଷ ନାହାନ୍ତି । ଫଳତଃ ସେଦିନ ଏହି ଉପାୟ ଅବଲମ୍ବନ କରି ନାଟ୍ୟଶାଳାର ଅଧକ୍ଷ ମାନେ ବଞ୍ଚିଗଲେ । ମାତ୍ର ତହିଁଉତ୍ତାରୁ ଆଉ ଏକଦିନ ଅନ୍ୟଯାତ୍ରା କରୁଥିଲେ ଯେ ତାହାକୁ ପୁଲିସ ଉକ୍ତ ବିଧାନର ବିରୁଦ୍ଧ ଜାଣି ସେମାନଙ୍କୁ ମାଜିଷ୍ଟ୍ରେଟଙ୍କ ବିଚରାଧୀନରେ ଆଣିଲେ । ମୋକଦ୍ଦମା ବିଧିମତ ଚଳିଲା ଓ ଅନେକ ସାକ୍ଷିର ଜୋବାନବନ୍ଦି ହେଲା ଆମ୍ଭେମାନେ ହିନ୍ଦୁ ପେଟ୍ରିଅଟରୁ ଅବଗତ ହେଲୁଁ ଯେ ମୁଦାଲାଙ୍କ ପକ୍ଷରୁ ଅନେକ ଗ୍ରନ୍ଥକର୍ତ୍ତା ଓ ବଙ୍ଗଭାଷା ଜାଣିବା ଓ ସମାଲୋଚନା କରିବା ବ୍ୟକ୍ତିମାନେ ଜୋବାନବନ୍ଦି ଦେଇ ପ୍ରସ୍ତାବିତ ନାଟକକୁ ଅଶ୍ଳୀଳ ନ ଥିବାର କହିଅଛନ୍ତି ମାତ୍ର ମାଜିଷ୍ଟ୍ରେଟଙ୍କର ତହିଁରେ ହୃଦବୋଧ ହେଲା ନାହିଁ । ନାଟ୍ୟଶାଳାର ଡାଇରେକ୍ଟର ଓ ମାନେଜର ଏହି ଦୁଇବ୍ୟକ୍ତିଙ୍କୁ ମାଜିଷ୍ଟ୍ରେଟ ଅପରାଧି କରି ପ୍ରତ୍ୟେକଙ୍କୁ ଏକମାସଲେଖାଏଁ ବିନାପରିଶ୍ରମରେ କାରାବାସ ଦଣ୍ଡ ଦେଲେ । ଅପରାଧୀମାନେ ହାଇକୋର୍ଟରେ ଦରଖାସ୍ତ କରିବାରୁ ମୋକଦ୍ଦମା ସେଠାକୁ ଉଠି ଯାଇଅଛି । ମାନ୍ୟବର ଫିଅରସାହେବ ଏମୋକଦ୍ଦମାର ବିଚର କରିବେ ଓ ଗତବୁଧବାର ବିଚରର ଦିନ ଧାର୍ଯ୍ୟ ହୋଇଥିଲା ।

ବିଚର ଶେଷ ହେବାର ସମ୍ବାଦ ପାଇଲେ ଆମ୍ଭେମାନେ ପାଠକବର୍ଗଙ୍କୁ ତାହା ଜଣାଇବୁଁ । ମକଦ୍ଦମାଟି ଅଭିନବ ପ୍ରକାରର ଅଟଇ ଓ ନୂତନ ବିଧାନ ସଙ୍ଗେ ସଙ୍ଗେ ମକଦ୍ଦମା ଉପସ୍ଥିତ ହେବାରୁ ଏ ବିଷୟର ଭାରୀ ଆନ୍ଦୋଳନ ଲାଗି ରହିଅଛି ଆମ୍ଭମାନଙ୍କ ବିଶ୍ୱାସ ଥିଲା ଯେ ପିନଲକୋଡ଼ରେ ଏପରି ଅପରାଧର ବିଧାନ ଅଛି ଯେବେ ତାହା ନାହିଁ ତେବେ ସ୍ଥିରଚିତ୍ତରେ ଭାବି ଆଉ ଗୋଟିଏ ଆଇନ କରିଥିଲେ ଭଲ ହୋଇଥାନ୍ତା । ଏଥର ଯେପରି ବିଧାନ ବାହାରିଲା ବଙ୍ଗଳାରେ ଆଉ କେବେ ଏମନ୍ତ ଘଟି ନ ଥିଲା । ଅକସ୍ମାତ୍ ଏପରି ବିଧାନ ପ୍ରଚର ହେବାରୁ ଲୋକଙ୍କ ମନରେ ଭୟ ଜନ୍ମିବାର ସମ୍ଭାବନା । ଗବର୍ଣ୍ଣମେଣ୍ଟ ଯଥା ନିୟମରେ ଆଇନ ପ୍ରଚର କରିଥିଲେ ବଡ଼ ଶୋଭା ହୋଇଥାନ୍ତା ।

*ଭା୧୧ଗ,ସଂ୧୨ଖ୍ୟା ,୧୮।୩।୧୮୭୬*

## ପ୍ରେରିତପତ୍ର ।

ଶ୍ରୀଯୁତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ ।

ଏହିକି ଯେ ଆମ୍ଭେମାନେ ଅମୂଳକ ଜନରବଦ୍ୱାରା ଶୁଣିପାଉଅଛୁଁ କି ଗଡ଼ଜାତମହାଲାକାର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ବାବୁ ହରେକୃଷ୍ଣ ଦାସ ମହାଶୟ ନିକଟରେ ପେନଶନ ନେଇ କର୍ମ ପରିତ୍ୟାଗ କରିବେ ଅତଏବ ସେହି କର୍ମରେ ଶ୍ରୀଯୁକ୍ତ ବାବୁ ନନ୍ଦକିଶୋରଦାସଙ୍କୁ ନିଯୁକ୍ତ କରି ଶ୍ରୀଯୁତ ଏଜରସାହେବଙ୍କୁ ଓଡ଼ିଶା ବିଭାଗର ଜଏଣ୍ଟ ଇନ୍‌ସ୍ପେକ୍‌ଟରୀ କିବା ଇନ୍‌ସ୍ପେକ୍‌ଟରୀ କର୍ମରେ ନିଯୁକ୍ତ କରିବାର ବାଞ୍ଛା ଉପରିସ୍ଥ କର୍ମକାରକମାନଙ୍କର ପ୍ରାୟ ଅଛି । କିନ୍ତୁ ଏଗଳ୍ପ କେତେଦୂର ସତ୍ୟ କୁହାଯାଇ ନ ପାରେ । କିନ୍ତୁ ଯେବେ ଶ୍ରୀ ନନ୍ଦକିଶୋରଦାସଙ୍କୁ ଶିକ୍ଷାବିଭାଗରୁ ଅନ୍ତରିତ କରାଯିବ ତେବେ ଯାହାକିଛି ଓଡ଼ିୟାଭାଷାର ଉନ୍ନତି ହୋଇ ଆସୁ ଅଛି ତହିଁର ଏକାବେଳକେ ମୂଳୋତ୍ପାଟନ ହେବ ଏଥିରେ ସନ୍ଦେହ ନାହିଁ । ମଧ ଶ୍ରୀଯୁତ ଏଜରସାହେବ ଓଡ଼ିୟାଭାଷା ପ୍ରଚଳିତ ବ୍ରହ୍ମପୁର ସ୍କୁଲରେ କେତେକ ସମୟ ଶିକ୍ଷକ ହୋଇ ଥିଲେ, ତହିଁ ଉତ୍ତାରେ କେତେକଦିନ ପର୍ଯ୍ୟନ୍ତ ଏହି ପ୍ରଦେଶର ଜଏଣ୍ଟ ଇନ୍‌ସ୍ପେକ୍‌ଟରୀ କର୍ମ କରି ବର୍ତ୍ତମାନରେ ପ୍ରାୟ ବ୨ର୍ଷ ହେବ ଏହି କଟକ ହାଇସ୍କୁଲର ପ୍ରଧାନଶିକ୍ଷକ କର୍ମ କରୁଅଛନ୍ତି, ଓଡ଼ିଶା ବିଭାଗରେ ଏତେ କର୍ମ କଲେସୁଦ୍ଧା

ଆଜିପର୍ଯ୍ୟନ୍ତ ତାହାଙ୍କଠାରୁ ପଦେ ଓଡ଼ିଆ କଥା ଶୁଣିବାର ଦୁଃସାଧ ଅଟଇ । ଅତଏବ ଏପରି ଦେଶଭାଷାନଭିଜ୍ଞବ୍ୟକ୍ତି ପ୍ରତି ଶିକ୍ଷାବିଭାଗର କର୍ତ୍ତୃତ୍ୱପଦ ପ୍ରଦତ୍ତ ହେଲେ ଦେଶଭାଷାର ଓ ଦେଶୀୟମାନଙ୍କର କିପର୍ଯ୍ୟନ୍ତ ଉନ୍ନତି ହୋଇ ପାରିବ ତାହା ସର୍ବସାଧାରଣରେ ଜାଣିପାରୁଥିବେ । ଆମ୍ଭମାନଙ୍କ ପରମୋପକାରୀ ଶ୍ରୀଯୁତ କମିଶ୍ନରସାହେବଙ୍କ ନିକଟରେ ପ୍ରାର୍ଥନା ଏହିଯେ ଶ୍ରୀଯୁତ ବାବୁ ନନ୍ଦକିଶୋର ଦାସଙ୍କୁ ଏ ଦେଶରେ ସମ୍ପୂର୍ଣ୍ଣ ଇନ୍‌ସ୍ପେକ୍‌ଟରୀ ପଦରେ ନିଯୁକ୍ତ କରାଇ ଉତ୍କଳଭାଷାର ଓ ଉତ୍କଳୀୟମାନଙ୍କର ଉନ୍ନତିସାଧନ ବିଷୟରେ ଚିରକୀର୍ତ୍ତି ସ୍ଥାପନ କରନ୍ତୁ । ଆଉ ବାବୁ ଶ୍ରୀ ନନ୍ଦକିଶୋରଦାସ ମହାଶୟଙ୍କ ନିକଟରେ ଆମ୍ଭମାନଙ୍କର ନିବେଦନ ଏହି ଯେ ଆପଣ ନିଜ ମାତୃଭାଷାର ଏବଂ ସ୍ୱଦେଶୀୟମାନଙ୍କର ଉନ୍ନତି ବିଷୟରେ ଦୃଢ଼ବ୍ରତୀ ହୋଇଁ ଶିକ୍ଷାବିଭାଗକୁ ପରିତ୍ୟାଗ କରିବାର ମାନସରେ ଚିନ୍ତା ନ କରନ୍ତୁ । ଇତି ।

୧୮ ।୩।୭୬

ନି / କେହି ଜଣେ ପ୍ରକୃତ ଓଡିଆ ।

*ଭା୧୧ଗ,ସଂ୧୩ଖ୍ୟା ,୨୫ ।୩। ୧୮୭୬*

## ଢଗମାଳା ।

ଆମ୍ଭେମାନେ ଢଗମାଳା ନାମରେ ଖଣ୍ଡିଏ ନୂତନ ପୁସ୍ତକ କୃତଜ୍ଞତା ସହିତ ପ୍ରାପ୍ତ ହୋଇଥିବାର ସ୍ୱୀକାର କରୁଅଛୁଁ । ଏଥିରେ ଦେଶୀୟ ବ୍ୟବହାର୍ଯ୍ୟ ବିସ୍ତର ଢଗ ଅଛି ଓ ଶ୍ରୀ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ ଏ ସବୁକୁ ଏକତ୍ରିତ କରି ମୁଦ୍ରିତ କରାଇଅଛନ୍ତି । ପୁସ୍ତକର କଳେବର ବାରପେଜି ଫରମାର ପୃ ୧୦୪ ଷା ଓ ଅନୁମାନ ହୁଅଇ ଏଥିରେ ଦୁଇହଜାର ଢଗରୁ ଊଣା ନାହିଁ । କେତେଗୁଡ଼ିଏ ଢଗ ହିନ୍ଦି ବା ବଙ୍ଗଳା ଭାଷାରୁ ଆସି ମିଶି ଯାଇଅଛି ଓ କେତେଗୁଡ଼ିଏ ସାଧାରଣ ପ୍ରଚଳିତ ଢଗ ନ ଥାଇ ଗୀତ ବା ଅନ୍ୟପ୍ରକାର ପଦ୍ୟ ପ୍ରାୟ ବୋଧ ହୁଅଇ ମାତ୍ର ଏ ସବୁର ସଂଖ୍ୟା ଅତି ଅଳ୍ପ ଓ ତଦ୍ୱାରା ବିଶେଷ କ୍ଷତି ହୋଇ ନାହିଁ । କେବଳ ବିଦେଶୀ ଲୋକଙ୍କର ତହିଁରେ କିଞ୍ଚିତ୍ ଭ୍ରମ ଜନ୍ମି ପାରେ । ଏତେଗୁଡ଼ିଏ ଢଗ ସଂଗ୍ରହ କରିବାରେ ଯେ ପଣ୍ଡିତ ମହାଶୟ ଅନେକ ପରିଶ୍ରମ ଓ ଅନୁସନ୍ଧାନ କରିଅଛନ୍ତି ତହିଁରେ ସନ୍ଦେହ ନାହିଁ ଓ ଏ ପ୍ରକାର ପୁସ୍ତକର ଭାରୀ ଅଭାବ ଥିଲା । କାରଣ ପ୍ରଚଳିତ ପ୍ରବାଦ ସବୁରୁ ଦେଶର ରୀତି ନୀତି ଓ ରୁଚିର ଅନେକ ପରିଚୟ ପ୍ରାପ୍ତ ହୁଅଇ । ସବୁ ଢଗ ଯେ ଏଥିରେ ଅଛି ଆମ୍ଭେମାନେ ଏମନ୍ତ କହୁ ନାହୁଁ ମାତ୍ର ପ୍ରଥମ ଉଦ୍ୟମ ସକାଶେ ଆମ୍ଭମାନଙ୍କ ବିବେଚନାରେ ପ୍ରଶଂସନୀୟ ଅଟଇ । ଏ ଉତ୍ତାରୁ ଆଉ ଢଗମାନ ଏଥିରେ ମିଶିବାର ସମ୍ଭାବନା ଅଛି ଓ ଯେବେ ଅକ୍ଷର ନିୟମରେ ମୁଦ୍ରିତ ନ ହୋଇ ଏକ ଏକ ବିଷୟର ଢଗ ସବୁ ଏକତ୍ରିତ ହୋଇ ଭବିଷ୍ୟତରେ ପ୍ରକାଶ ହୁଅଇ ତେବେ ଅର୍ଥ ବୁଝିବା ଅଥବା ବ୍ୟବହାର କରିବାର ଆହୁରି ସୁବିଧା ହେବ ଏମନ୍ତ ସମ୍ଭବ ହେଉଅଛି । ଦୁଃଖର ବିଷୟ ଯେ ପୁସ୍ତକ ଖଣ୍ଡିକ ଯେମନ୍ତ ତହିଁର ମୁଦ୍ରାଙ୍କନ କାର୍ଯ୍ୟ ସେ ରୂପ ନ ହୋଇ ଅତି ମନ୍ଦ ହୋଇଅଛି । ଅନେକ ସ୍ଥଳରେ ଗୋଟାଏ ଗୋଟାଏ ଓ କେତେକ ସ୍ଥଳରେ ୫/୭ ଅକ୍ଷର ଏକାବେଳକେ ଛାପାରେ ଉଠି ନ ଥିବାରୁ ପଢ଼ିବାର କଷ୍ଟ ହୋଇଅଛି । ଏ ଛଡ଼ା ସଙ୍କଳନ ବିଷୟରେ ଗୋଟିଏ ଦୋଷ ଲକ୍ଷିତ ହୋଇଅଛି ଯେ ତାହା ନ କହି କ୍ଷାନ୍ତ ରହି ନ ପାରୁଁ । ତାହା ଏହି ଯେ କେତେଗୁଡ଼ିଏ ଢଗରେ ଅଶ୍ଳୀଳ ଭାବ ବା ଇତର ଲୋକଙ୍କର ବ୍ୟବହାର୍ଯ୍ୟ କଥା ଅଛି । ଏପରି ଢଗ ସଂଖ୍ୟା ବିସ୍ତର ନୁହଇ ଓ ଏ ସବୁ ପରିତ୍ୟକ୍ତ ହୋଇଥିଲେ ପୁସ୍ତକଖଣ୍ଡିକ ସର୍ବାଙ୍ଗସୁନ୍ଦର ହୋଇଥାନ୍ତା ।

*ଭା୧୧ଗ,ସଂ୧୪ଖ୍ୟା , ୧।୪।୧୮୭୬*

## ବିଜ୍ଞାପନ ।

## [ଉତ୍କଳଭାଷା ବ୍ୟାକରଣ ପାଇଁ ପୁରସ୍କାର]

ଖଣ୍ଡେ ଉତ୍କୃଷ୍ଟ ଉତ୍କଳ ଭାଷାବ୍ୟାକରଣ ନିମନ୍ତେ ଟ୧୦୦ଙ୍କା ପୁରସ୍କାର ଦିଆଯିବ । ସନ ୧୮୭୬ ଡିସମ୍ବର ମାସ ତା ୩୧ରିଖେ କିମ୍ବା ତହିଁ ପୂର୍ବେ ପୁସ୍ତକ କମିଶ୍ନରସାହେବଙ୍କ ମଞ୍ଜୁରୀକାରଣ ଦିଆଯିବ ।

ଯାହାର ପୁସ୍ତକ ସାହେବଙ୍କ ମନୋନୀତ ହେବ ତାକୁ ପୁରସ୍କାର ଦିଆଯିବ ।

ପୁସ୍ତକ ମଞ୍ଜୁର ହେଲାରୁ ଗ୍ରନ୍ଥକାର ଯେବେ ପୁସ୍ତକର ସ୍ୱତ୍ୱ ଏକାବେଳକେ ଗଭର୍ଣ୍ଣମେଣ୍ଟକୁ ଦିଅନ୍ତି ଅଥବା କମିଶ୍ନରସାହେବ ଯେଉଁ ସମୟ ନିର୍ଦ୍ଧିଷ୍ଟ କରନ୍ତି ସେହି ସମୟରେ ଛପାଇ ଯେତେ ମୂଲ୍ୟରେ ପୁସ୍ତକ ବିକ୍ରୀ କରିବାକୁ ସାହେବ ମନୋନୀତ କରନ୍ତି ସେ ମୂଲ୍ୟରେ ବିକ୍ରୀ କରିବାକୁ ସମ୍ମତ ହୁଅନ୍ତି ତାହା ହେଲେ ସେ ପୁରଷ୍କାର ପାଇବେ । ପୁସ୍ତକ ସ୍ୱୟଂ ଛାପିଲେ କେତେ ମୂଲ୍ୟରେ ବିକ୍ରୀ କରିବେ ଏକଥା ମଧ ଲେଖି ପଠାଇବେ ।

କଟକ (sd) N.K.Dass

ତା ୬ । ୪। ୭୪ Joint Inspector of Schools,

Orissa.

## [ ଢଗମାଳା ପୁସ୍ତକ]

ଢଗମାଳା ପୁସ୍ତକ କି ଏଥିରେ ଉତ୍କଳଭାଷାରେ ପ୍ରଚଳିତ ଅଢ଼ାଇହଜାର ପର୍ଯ୍ୟନ୍ତ ଢଗ ଅଛି ଛାପା ହୋଇ ବିକ୍ରୟ ହେଉଅଛି । ସେହି ଢଗମାନଙ୍କ ମଧରେ ନୀତି, ବର୍ଷା ଓ ଗଣନା ଇତ୍ୟାଦି ବିଷୟମାନଙ୍କର ଢଗ ସବୁ ଅଛି । ମୂଲ୍ୟ ଟ୦୍ୟ (ଆଠଅଣା) କଟକ ଅଦାଲତ କଚେରୀରେ ଆମ୍ଭ ନିକଟରେ ଏବଂ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଛାପାଖାନାରେ ତତ୍ତ୍ୱକଲେ ମିଳିବ । ଇତି ।

୩୦ ।୩ ।୭୬ ଶ୍ରୀ ପଦ୍ମନାଭ ଦାସ

*ଭା।୧୧ଗ,ସଂ୧୫ଖ୍ୟା, ୮ ।୪।୧୮୭୬*

## କଟକ କଲେଜର ବାର୍ଷିକ ସଭା ।

କଟକ କଲେଜର ବାର୍ଷିକ ପାରିତୋଷିକ ଦାନ କାର୍ଯ୍ୟ ଗତ ଶନିବାର ସକାଳବେଳେ ଉତ୍ତମରୂପେ ନିର୍ବାହିତ ହେଲା । ଏ ବର୍ଷ ସଭାଟି ଅନ୍ୟାନ୍ୟ ବର୍ଷଠାରୁ ବୃହତ୍ ହେବାର ଜଣାଯାଏ । ଦେଶୀୟ ଓ ଇଉରୋପୀୟମାନଙ୍କ ସଂଖ୍ୟା ଭଲ ହୋଇଥିଲା ଓ ଅନେକଗୁଡ଼ିଏ ଇଉରୋପୀୟ ମହିଳା ଶୁଭାଗମନ ପୂର୍ବକ ସଭାର ଶୋଭା ଅଧିକ ବଢ଼ାଇଥିଲେ । ଆମନ୍ତ୍ରିତ ଭଦ୍ରଲୋକ ଆଶାତିରିକ୍ତ ଆସିଥିଲେ କାରଣ ସଭା ଗୃହରେ ଖଣ୍ଡିଏ ଆସନ ଶୂନ୍ୟ ନ ଥିଲା । ନୂତନ କଲେଜ ହେବା ସଙ୍ଗେ ସଙ୍ଗେ ନଗରବାସିଙ୍କର ଶିକ୍ଷା ପ୍ରତି ଏପ୍ରକାର ଆଦର ଗୋଟିଏ ଶୁଭ ଲକ୍ଷଣ ଅଟଇ । ଶ୍ରୀଯୁକ୍ତ କମିଶ୍ନରସାହେବ ସଭାପତିର ଆସନ ଗ୍ରହଣ କରିଥିଲେ । ସଭାର କାର୍ଯ୍ୟାରମ୍ଭ କରିବାକୁ ଅନୁମତି ହେବାରୁ ନୂତନ କଲେଜର ନୂତନ ପ୍ରିନ୍‌ସିପଲ ଏଜରସାହେବ ବାର୍ଷିକ ବିଜ୍ଞାପନୀ ପାଠକଲେ ମାତ୍ର ସାହେବଙ୍କ ପଢ଼ିବା ଓ କହିବା ରୀତି ବଡ଼ ଭଲ ନ ଥିବାରୁ ଆମ୍ଭେମାନେ ତାହାଙ୍କୁ ଗୋଡ଼ାଇ ପାରିଲୁ ନାହିଁ ସୁତରାଂ ବିଦ୍ୟାଳୟର ସମ୍ୟକ୍ ଅବସ୍ଥା ପାଠକମାନଙ୍କୁ ଜଣାଇବାକୁ ଅକ୍ଷମ ହେଲୁଁ । ଯାହାହେଉ ବିଜ୍ଞାପନୀର ସାର କଥା ଏହି ଯେ ଏ ବିଦ୍ୟାଳୟର ସବୁ କାର୍ଯ୍ୟ ଉତ୍ତମ ଓ ସନ୍ତୋଷଜନକ ହୋଇଅଛି ଓ ଏଥିର ଅନେକ ଉନ୍ନତି ସାଧନ ହୋଇଅଛି । ଅଶୁଭ ମଧରେ କେବଳ ପ୍ରବେଶିକା ପରୀକ୍ଷାର ଶୋଚନୀୟ ଫଳ ଅଟଇ ଓ ଜ୧ ୯ଣ ପରୀକ୍ଷାର୍ଥିଙ୍କ ମଧରୁ କେବଳ ଜ ୨ ଣ ଉତ୍ତୀର୍ଣ୍ଣ ହୋଇଥିବାର ଏହି କାରଣ ଏଜରସାହେବ ଅନୁମାନ କଲେ ଯେ ପରୀକ୍ଷକଙ୍କର ମନ ତାହାଙ୍କ ପ୍ରଦତ୍ତ ପ୍ରଶ୍ନରୁ ଛାତ୍ରମାନେ ବୁଝି ନ ପାରିବାରୁ ସେପରି ଉତ୍ତର ଦେଇ ତାହାଙ୍କୁ ସନ୍ତୋଷ କରି ନ ପାରିଲେ ଆର୍ଥାତ୍ ପରୀକ୍ଷକଙ୍କର ଚତୁରିରୁ ଛାତ୍ରମାନେ କୃତକାର୍ଯ୍ୟ ହେବାକୁ ଅକ୍ଷମ ହେଲେ । କିନ୍ତୁ ଏ ମତରେ ସଭାସ୍ଥ ବ୍ୟକ୍ତିମାନେ ଐକ୍ୟ ହେବାର କୌଣସି ନିଦର୍ଶନ ଦେଖାଯାଇ ନାହିଁ ବିଜ୍ଞାପନୀ ପାଠ ଶେଷ ହେଲା ଉତ୍ତାରୁ ଛାତ୍ରମାନଙ୍କୁ ପାରିତୋଷିକ ବଣ୍ଟନ ହେଲା ଓ ଆମନ୍ତ୍ରିତ ବ୍ୟକ୍ତିଙ୍କ ମଧରୁ କେବଳ ବାବୁ ତାରାକାନ୍ତ ବିଦ୍ୟାସାଗର ସଂସ୍କୃତରେ ଉତୀର୍ଣ୍ଣ ହୋଇଥିବା ଛାତ୍ରମାନଙ୍କୁ ଅତିରିକ୍ତ ପାରିତୋଷିକ ଦେଇଥିଲେ ଆଉ କେହି କିଛି ଦେଇ ନାହାନ୍ତି । ତହିଁ ଉତ୍ତାରୁ କେତେଗୁଡ଼ିଏ ଛାତ୍ର ଆପଣାଅଭ୍ୟସ୍ଥ ପାଠ ଶୁଣାଇ ସଭାସ୍ଥବ୍ୟକ୍ତିଙ୍କୁ ପ୍ରମୋଦିତ କରିବାକୁ ଚେଷ୍ଟା କଲେ କିନ୍ତୁ ତହିଁ ମଧରେ ଦୁଇଜଣ

ଛାତ୍ର ବିଶେଷ ରୂପେ ପାରଗ ହୋଇଥିଲେ । ଅଧିକାଂଶ ଛାତ୍ରଙ୍କର ଏ ପକ୍ଷରେ ତ୍ରୁଟି ଦେଖାଯିବାରୁ ଅନୁମାନ ହେଲା ଯେ ଶିକ୍ଷକମାନେ ପୂର୍ବରୁ ସେମାନଙ୍କର ପରୀକ୍ଷା ନ ନେଇ ସଭାରେ ଛିଡ଼ା କରି ଦେଇଥିଲେ । ଏଥିଉତ୍ତାରୁ ଶ୍ରୀଯୁକ୍ତ ସଭାପତି ମହାଶୟ ଗୋଟିଏ କ୍ଷୁଦ୍ର ବକ୍ତୃତା କରି ସଭା ଭଙ୍ଗ କଲେ । ତାହାଙ୍କ ବକ୍ତୃତାରୁ ଜଣାଗଲା ଯେ ବିଦ୍ୟାଳୟର ଛାତ୍ରସଂଖ୍ୟା କ୍ରମଶଃ ବୃଦ୍ଧି ହୋଇ ୩୦୦ରୁ ଅଧିକ ହୋଇଅଛି ଓ ଶିକ୍ଷା ପ୍ରତି ଏ ପ୍ରଦେଶୀୟ ଲୋକଙ୍କ ଆଦର ଦିନ ଦିନ ବଢୁଅଛି କଲେଜ ସ୍ଥାପନ ସକାଶେ ପ୍ରୟୋଜନୀୟ ଟଙ୍କା ଏଠା ଲୋକମାନେ ଯେମନ୍ତ ଆଗ୍ରହ ପୂର୍ବକ ଦେଇ ଅଛନ୍ତି ଓ ଅଳ୍ପକାଳରେ ଯେମନ୍ତ ପ୍ରୟୋଜନୀୟ ଟଙ୍କାରୁ କିଛି ଅଧିକ ସୁଦ୍ଧା ଭେଦା ମିଳିଅଛି ତହିଁରୁ ସହଜରେ ଅନୁଭବ ହୁଅଇ ଯେ ଶିକ୍ଷାର ମହତ୍ୱ ଏଠାଲୋକେ ବୁଝିଅଛନ୍ତି ଓ ଏଥିରେ ସାହେବଙ୍କର ବଡ଼ ଉତ୍ସାହ ହୋଇଅଛି । ଯେବେ ଛାତ୍ରମାନେ ସେହିରୂପ ଉତ୍ସାହ ସହିତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବେ ତେବେ କଲେଜଟି ଚିରସ୍ଥାୟୀ ହୋଇପାରିବ ଫଳତଃ ଶେଷକୁ ଯାହା ହେଉ ପରୀକ୍ଷା ସ୍ୱରୂପେ କଲେଜ ସ୍ଥାପନ ହେଲା ସୁଖର ବିଷୟ ଅଟଇ । ପ୍ରବେଶିକା ପରୀକ୍ଷାର ମନ୍ଦଫଳ ସମ୍ପର୍କରେ ସାହେବଙ୍କର ମତ ଏହି ଯେ ଗବର୍ଣ୍ଣମେଣ୍ଟ କ୍ରମଶଃ ଏ ପରୀକ୍ଷାର ସୀମା ଉଚ୍ଚ କରୁଅଛନ୍ତି ବୋଲି ଏବର୍ଷ ଏପରି ଫଳ ହେଲା  ମାତ୍ର ଆଗାମୀ ବର୍ଷରେ ଫଳ ଭଲ ହେବାର ଆଶା କରନ୍ତି ଓ ଏଥିପାଇଁ ସେ ଛାତ୍ରମାନଙ୍କ ଉତ୍ସାହ ନିମନ୍ତେ କେତେକ ଉପଦେଶ ଦେଲେ ଓ ଆଉ ଦୁଇ ଏକ କଥା କହି ନୂତନ ପ୍ରିନସିପଲ ଏଜର ସାହେବଙ୍କ ପ୍ରଶଂସା କରି ବକ୍ତୃତା ଶେଷକଲେ ।

ଆମ୍ଭେମାନେ ପୂର୍ବେ କହିଅଛୁଁ ଯେ ଏଥର କମିଶ୍ନରସାହେବଙ୍କ ବକ୍ତୃତାଟି ଅତି କ୍ଷୁଦ୍ର ହୋଇ ଥିଲା ତହିଁର କାରଣ ଏହି କି ଗତ ଦଶବର୍ଷରେ ଯେତେ ଉନ୍ନତିର ପ୍ରସ୍ତାବ କରିଥିଲେ ତାହା ସମସ୍ତ ଏବର୍ଷ ପୂର୍ଣ୍ଣ ହେବାର ଦେଖି ଆଉ କିଛି କହିବାକୁ ତାହାଙ୍କର ବାକୀ ନ ଥିଲା । ପରିଣାମ ଫଳ ଯାହା ହେଉ ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ ତାହାଙ୍କ ଯତ୍ନରେ କଟକ-ହାଇସ୍କୁଲଟି କ୍ରମଶଃ ହାଇସ୍କୁଲ ଓ କଲେଜପର୍ଯ୍ୟନ୍ତ ଉନ୍ନତ ହେଲା ଓ ସରବେ କ୍ଲାଶ ପ୍ରଭୃତି ଏଥି ସଙ୍ଗେ ସ୍ଥାପନ ହେଲା । ଅତଏବ ତାହାଙ୍କର ମହତ୍ ବାସନାମାନ ପୂର୍ଣ୍ଣ ହୋଇଅଛି । କେବଳ ସଂକ୍ଷେପରେ ସବୁ ଅନୁଷ୍ଠାନ ହୋଇଥିବାରୁ ଯଦ୍ୟପି କି ଉତ୍ତମ ଫଳ ମିଳିବା ପକ୍ଷରେ ଶଙ୍କା ଅଛି ମାତ୍ର ଓଡ଼ିଶାର ହିତ କରିବା ଯେ ତାହାଙ୍କର ଏକାନ୍ତ ଇଚ୍ଛା ଏଥିର ସେ ସୁନ୍ଦର ପରିଚୟ ଦେଇଅଛନ୍ତି ।

***ଭା/୧୧ଗ,ସଂ୧୯ଖ୍ୟା , ୬ /୫/ ୧୮୭୬***

## [ଗଂଜାମ ଜିଲ୍ଲା ସରକାରୀ କାର୍ଯ୍ୟାଳୟରେ ଓଡ଼ିୟା ଭାଷାର ପ୍ରଚଳନ ]

ଗତ ପ୍ରକାଶିତ 'ସ୍ୱଦେଶୀ'ରେ ଏକ ପ୍ରସ୍ତାବ ପାଠ କରି ଆମ୍ଭେମାନେ ଦୁଃଖିତ ହୋଇଅଛୁଁ, ଯଥା; ଗଞ୍ଜାମ ଜିଲାର ସରକାରୀ କାର୍ଯ୍ୟାଳୟମାନଙ୍କରେ ଓଡ଼ିୟା ଭାଷା ପ୍ରଚଳିତ ହେବାର କଥା କେବଳ ବିଡ଼ମ୍ବନା ଅଟଇ । କାରଣ ଜଣେ ହାକିମ ବିନା ତହିଁର ଉତ୍ସାହଦାତା କେହି ନାହିଁ ଓ ସେ ମଧ୍ୟ ସ୍ଥାନାନ୍ତରକୁ ବଦଳି ହେଉଅଛନ୍ତି । ସେଠା ହାକିମମାନେ ମାନ୍ଦ୍ରାଜରେ ଥାଇ ତେଲିଙ୍ଗୀ ଭାଷା ଶିକ୍ଷା କରନ୍ତି ସୁତରାଂ ଯେଉଁ ଜିଲାକୁ ଯାନ୍ତି ସେଠାରେ ଉକ୍ତ ଭାଷାର ପକ୍ଷପାତୀ ହୁଅନ୍ତି ସୁତରାଂ  ଏପରି ହାକିମ ଗଞ୍ଜାମକୁ ଆସିଲେ ସେଠାରେ ଓଡ଼ିୟାର ଉନ୍ନତି କିପରି ହେବ। ଗବର୍ଣ୍ଣମେଣ୍ଟ ଯେବେ ନିୟମ କରନ୍ତି କି ଗଞ୍ଜାମ ଜିଲାରେ ଯେଉଁ ହାକିମମାନେ କର୍ମ କରିବେ ତାହାଙ୍କୁ ଅବଶ୍ୟ ଓଡ଼ିୟା ଜାଣିବାକୁ ହେବ ଏବଂ ଏଠା କଚେରୀ ସମସ୍ତର କାଗଜପତ୍ର ଓଡ଼ିୟା ଭାଷାରେ ଏକା ଲେଖାଯାଇ ଦାଖଲ ହେବ । ତାହା ହେଲେ ଓଡ଼ିୟାଙ୍କର ପ୍ରକୃତ ଲାଭ ହେବ । ନୋହିଲେ ପୂର୍ବପରି ସେମାନେ ତେଲଙ୍ଗାଙ୍କଦ୍ୱାରା ପ୍ରପୀଡ଼ିତ ହେଉଥିବେ । ଉକ୍ତ ପତ୍ରିକାରେ ଲେଖା ଅଛି ଯେ ସେଠାର ମିଉନିସପଲ ଅଫିସରେ ଏକ ବ୍ୟକ୍ତି ଓଡ଼ିୟାରେ ଦରଖାସ୍ତ ଲେଖିଦେବାରୁ ତାହା ଗୃହୀତ ନ ହୋଇ ତେଲଙ୍ଗୀରେ ଲେଖି ଦେବାକୁ ତାହାକୁ ଆଜ୍ଞା ହେଲା, ଏଥିରେ ସେ ବ୍ୟକ୍ତି ବାଧ୍ୟ ହୋଇ ଦୁଇ ଚାରି ଅଣା ଖର୍ଚ୍ଚାନ୍ତରେ ପଡ଼ିଲା । ଆମ୍ଭେମାନେ ବିବେଚନା କରୁଁ ଯେ ଗଞ୍ଜାମର ଲୋକମାନେ ଏ ବିଷୟରେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କୁ ଆବେଦନ କରନ୍ତୁ ତାହା ହେଲେ ସ୍ଥାନୀୟ ହାକିମମାନେ ଆଉ ଅବହେଳା କରିପାରିବେ ନାହିଁ । ତାହା ନ କଲେ ଓଡ଼ିୟା ଜାରୀ ହେବାର ଯେ ହୁକୁମ ହୋଇଅଛି ତାହା କ୍ରମଶଃ ରହିତକୁ ପାଇବ ଓ ପଶ୍ଚାତ୍ ତାହାକୁ ପ୍ରବଳ କରିବା ବଡ଼ କଠିନ ହୋଇ ଉଠିବ ।

***ଭା/୧୧ଗ,ସଂ୨୩ଖ୍ୟା,୩ /୬/୧୮୭୬***

## ଓଡ଼ିଶାର ଶାସନ ପରିବର୍ତ୍ତନ ।

ଗତମାସ ଶେଷ ତାରିଖର ଡେଲିନିଉସ୍‌ରୁ ଅବଗତ ହେଲୁଁ ଯେ କେତେ ଗୁଡ଼ିଏ ପ୍ରଧାନ କମିଶ୍ନରଙ୍କ ଏଲାକା ପରିବର୍ତ୍ତନ ବିଷୟରେ ଗବର୍ଣ୍ଣମେଣ୍ଟ ବିଚାର କରୁଅଛନ୍ତି। ଉକ୍ତ ପରିବର୍ତ୍ତନମାନ ଏହି ଯେ ମଧ୍ୟପ୍ରଦେଶର କମିଶ୍ନରି ଉଠିଯିବ ଓ ତହିଁର ଏକ ଅଂଶ ବମ୍ବେଇ ଓ ଏକଅଂଶ ଉତ୍ତର ପଶ୍ଚିମ ଗବର୍ଣ୍ଣମେଣ୍ଟରେ ଯୋଗ ହୋଇ ଅବଶିଷ୍ଟ ଅଂଶ ଓଡ଼ିଶାସଙ୍ଗରେ ମିଶି ଗୋଟିଏ ସ୍ୱତନ୍ତ୍ର ପ୍ରଧାନ କମିଶ୍ନରର ଅଧୀନ ହେବ। ସୁତରାଂ ଯେମନ୍ତ ଆଶାମ ବାହାରି ଗଲା ସେହିରୂପ ଓଡ଼ିଶା ବାହାରିଗଲେ ବଙ୍ଗପ୍ରଦେଶର ଶାସନ କାର୍ଯ୍ୟ ନିରୂପିତ ସୀମା ମଧ୍ୟରେ ରହିବ ଓ ବର୍ତ୍ତମାନ ପରି ଅସଙ୍ଗତ ପରିମାଣରେ ରହିବ ନାହିଁ ଅର୍ଥାତ୍ ଏହାର ଶାସନକର୍ତ୍ତାର ଯୋଗ୍ୟତା ସହିତ ଆୟତନର ସମତା ରହିବ।

ଉପରଲିଖିତ ସମ୍ବାଦଟି ପାଠ କରି ଆମ୍ଭମାନଙ୍କର ହର୍ଷ ବିଷାଦ ଜାତ ହୋଇଅଛି । ହର୍ଷର କାରଣ ଏହି ଯେ ସମସ୍ତ ଓଡ଼ିୟାଭାଷା ପ୍ରଚଳିତ ଖଣ୍ଡନ ହେଉ ପଛକେ ତହିଁର ଅଧିକାଂଶ ଏକଜଣ ଶାସନକର୍ତ୍ତା ଅଧୀନରେ ଆସିବା ଓଡ଼ିଶାର ଉନ୍ନତିର ବିଷୟ ଅଟଇ। ଏକାରଣ ଚିନ୍ତାଶୀଳ ଲୋକମାନେ ପୁନଃ ପୁନଃ ଗବର୍ଣ୍ଣମେଣ୍ଟଙ୍କୁ ଏବଂ ସର୍ବସାଧାରଣଙ୍କୁ ଜଣାଇଅଛନ୍ତି ଯେ ସମସ୍ତ ଓଡ଼ିଶା ଏକଜଣ ଶାସନକର୍ତ୍ତାର ଅଧୀନ ନ ହେବାରୁ ଏହାର ଉନ୍ନତି ହୋଇ ପାରୁ ନାହିଁ ଓ ଗଞ୍ଜାମଠାରୁ ସମ୍ବଲପୁର ପର୍ଯ୍ୟନ୍ତ ଭୂମିଖଣ୍ଡ କି ଯହିଁରେ ଓଡ଼ିୟାଭାଷା ପ୍ରଚଳିତ ଅଛି ତାହା ସମସ୍ତ ଏକା ନିୟମ ଏକ ଶାସନକର୍ତ୍ତାର ଅଧୀନରେ ଆସିଲେ ଓଡ଼ିୟାଙ୍କର ପ୍ରକୃତ ମଙ୍ଗଳ ହେବ ଏବଂ ବର୍ତ୍ତମାନ ଯେମନ୍ତ ସେମାନେ ବଙ୍ଗଳା ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶର ଏକ ଏକ ଅଜ୍ଞାତ କୋଣରେ ପଡ଼ି ରହି କୌଣସି ଆଡ଼େ ମୁଣ୍ଡ ଟେକି ପାରୁ ନାହାନ୍ତି ତେମନ୍ତ ଆଉ ହେବ ନାହିଁ। ଓଡ଼ିୟାଙ୍କର ପ୍ରାଧାନ୍ୟ ସ୍ଥାପନ ହେବ ସୁତରାଂ ସେମାନଙ୍କର ପ୍ରକୃତ ଉନ୍ନତି ଦୃଷ୍ଟିଗୋଚର ହେବ। ଅତଏବ ଉପରଲିଖିତ ପରିବର୍ତ୍ତନଟି ଗବର୍ଣ୍ଣମେଣ୍ଟ ପ୍ରତ୍ୟକ୍ଷ କରାଇଲେ ଅବଶ୍ୟ ଓଡ଼ିଶାବାସିଙ୍କର ଆନନ୍ଦର ବିଷୟ ହେବ ସନ୍ଦେହ ନାହିଁ।

କିନ୍ତୁ ଏଥିରେ ବିଷାଦର କାରଣ ମଧ୍ୟ ଯଥେଷ୍ଟ ଅଛି। ବର୍ତ୍ତମାନ ଓଡ଼ିଶା ସବୁ ବିଷୟରେ ହୀନ ହେଲେହେଁ ଯେଉଁ ଖଣ୍ଡ ବଙ୍ଗଳା ଗବର୍ଣ୍ଣମେଣ୍ଟର ଅଧୀନ ଅଛି ସେ ଖଣ୍ଡ ଅପେକ୍ଷାକୃତ ସୁଖରେ କାଳ କଟାଉଅଛି କାରଣ ଉନ୍ନତି ନ ହେଉ ଅତ୍ୟାଚାର ନାହିଁ। ବଙ୍ଗଳାର ସମସ୍ତ ଆଇନ ପ୍ରଚଳିତ ଥିବାରୁ ସମ୍ପତ୍ତି ଓ ପ୍ରାଣରକ୍ଷାର ଯେ କିଛି ଉତ୍କୃଷ୍ଟ ଉପାୟ ଗବର୍ଣ୍ଣମେଣ୍ଟ ଅବଲମ୍ବନ କରିଅଛନ୍ତି ତହିଁର ସମ୍ପୂର୍ଣ୍ଣ ଫଳଭୋଗ ହେଉଅଛି। ପୃଥକ୍ କମିଶ୍ନରର ଅଧୀନ ହେଲେ କିଜାଣି ଯେବେ ଆଇନର ଗୌରବ ଊଣା ପଡ଼ିବ; କମିଶ୍ନରଙ୍କ ଶାସନାଧୀନ ଅନ୍ୟାନ୍ୟ ରାଜ୍ୟଖଣ୍ଡର ଅବସ୍ଥା ଚିନ୍ତା କଲେ ଉକ୍ତ ଭୟ ନିତାନ୍ତ ଅମୂଳକ ନୁହଇ ତେବେ ଆମ୍ଭମାନଙ୍କର କି ଲାଭ ହେବ। ବଙ୍ଗାଳିମାନେ ବର୍ତ୍ତମାନ ଭାରତବର୍ଷରେ ବିଚକ୍ଷଣତା ଓ ସଭ୍ୟତାରେ ପ୍ରଧାନ ଅଟନ୍ତି ଓ ଆମ୍ଭେମାନେ ତାହାଙ୍କର ପ୍ରତିବାସି ଅଟୁଁ, ଯାହାଙ୍କର କିଞ୍ଚିତ୍ ମାତ୍ର ଦୂରଦର୍ଶିତା ଅଛି ସେମାନେ ଉପଯୁକ୍ତ ପ୍ରତିବାସୀ ଲୋଡ଼ି ଘର କରି ରହନ୍ତି ସୁତରାଂ ଏମନ୍ତ ପ୍ରତିବାସିଙ୍କଠାରୁ ବିଚ୍ଛିନ୍ନ ହୋଇ ଓ ଲେଫ୍‌ଟେନେଣ୍ଟ ଗବର୍ଣ୍ଣରଙ୍କ ଶାସନରୁ ବାହାରି ପ୍ରଧାନ କମିଶ୍ନରଙ୍କ ଅଧୀନରେ ରହିଲେ ଆମ୍ଭମାନଙ୍କର ଯେ ଉନ୍ନତି ହେବ ଏମନ୍ତ ଆଶା ହେଉ ନାହିଁ ଓ ବିପଦ ଘଟିବାର ବିସ୍ତର ସମ୍ଭାବନା ଅଛି। ଆମ୍ଭେମାନେ ବୋଧ କରୁଁ ଯେ ଶାସନପ୍ରଣାଳୀର କିଛିମାତ୍ର ପରିବର୍ତ୍ତନ ନ ହୋଇ ଯେବେ କେବଳ ଶାସନକର୍ତ୍ତାର ପରିବର୍ତ୍ତନ ହେବ ଓ ବଙ୍ଗଳାର ବିଧି ସମସ୍ତ ଏଠାରେ ପ୍ରଚଳିତ ରହିବ ତେବେ କିଛି ଅନିଷ୍ଟ ନ ହୋଇ ଭଲ ହୋଇପାରେ ନୋହିଲେ ଅଜ୍ଞାତ ମନ୍ଦଠାରୁ ପରିଚିତ ମନ୍ଦ ଭଲ ଅଟଇ ଓ ଆମ୍ଭେମାନେ ଆଉ କିଛି ଲୋଡ଼ୁ ନାହୁଁ।

*ଭା୧୧ଗ, ସଂ୨୪ଖ୍ୟା, ୧୦ ।୬। ୧୮୭୬*

## [ପୁସ୍ତକ ସମୀକ୍ଷା : ଓଡ଼ିଶା ବିଜୟ]

'ଓଡ଼ିଶା ବିଜୟ' ନାମରେ ଖଣ୍ଡିଏ ପୁସ୍ତକ ଆମ୍ଭେମାନେ ଉପହାର ପ୍ରାପ୍ତ ହେବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ। ବାବୁ ଜଗନ୍ମୋହନ ଲାଲ ଏ ପୁସ୍ତକର ରଚୟିତା ଅଟନ୍ତି ଓ ଏହା ଟଏନବୀ ସାହେବଙ୍କ ଓଡ଼ିଶା ଇତିହାସର ପ୍ରଥମ ଭାଗର ଅନୁବାଦ ଅଟେ। ଇଂରାଜମାନେ ପ୍ରଥମେ ଓଡ଼ିଶାକୁ କିରୂପେ ଜୟ କରି ଆପଣା ଅଧିକାର ସ୍ଥାପନ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

କଲେ କେବଳ ଏତିକି କଥା ଏଥିରେ ବର୍ଣ୍ଣିତ ହୋଇଅଛି ଓ ତାହା ଜାଣିବା ଉତ୍କଳୀୟ ବାଳକଙ୍କ ପକ୍ଷରେ ଅତ୍ୟନ୍ତ ଆବଶ୍ୟକ ଏହା କିଏ ଅସ୍ୱୀକାର କରିବ । ଗ୍ରନ୍ଥକର୍ତ୍ତା ଭ୍ରମଭଞ୍ଜନର ରଚୟିତା ସୁତରାଂ ଏହାଙ୍କ ଗଦ୍ୟ ରଚନା ମଧ୍ୟ ଅତ୍ୟନ୍ତ ସୁନ୍ଦର ହେବ ଏମନ୍ତ ଆଶା କରିବା ସ୍ୱାଭାବିକ ଅଟଇ ମାତ୍ର ଇଂରାଜୀ ଭାଷାର ଅବିକଳ ଅନୁବାଦ କରିବା ପକ୍ଷରେ ଅତ୍ୟନ୍ତ ଯତ୍ନଶୀଳ ହେବାରୁ ଏହା ତେମନ୍ତ ସୁନ୍ଦର ହୋଇ ପାରି ନାହିଁ। ଗ୍ରନ୍ଥକର୍ତ୍ତା ପ୍ରତି ଶବ୍ଦର ଅବିକଳ ଅନୁବାଦ କରିବାକୁ ପ୍ରବୃତ୍ତ ନ ହୋଇ ଭାବ ଘେନି ରଚନା କରିଥିଲେ ଏ ପୁସ୍ତକଟି ଅତି ସୁନ୍ଦର ହୋଇଥାନ୍ତା ଓ ଗୋଟାଏ ଗୋଟାଏ କଠିନ ବା ଅଶୁଦ୍ଧ ଶବ୍ଦ ମିଶି ଯା'ନ୍ତା ନାହିଁ। ଯାହା ହେଉ ଏମନ୍ତ କଠିନ ନିୟମ ଅବଲମ୍ବନ କରି ସୁଦ୍ଧା ଗ୍ରନ୍ଥକର୍ତ୍ତା ଏ ପୁସ୍ତକକୁ ଯଥାସାଧ୍ୟ ଇତିହାସର ଉପଯୁକ୍ତ ପ୍ରାଞ୍ଜଳଭାଷାରେ ଓ ସାଧାରଣଙ୍କ ବୋଧଗମ୍ୟରୂପେ ରଚନା କରିଅଛନ୍ତି ଓ ଏହା ସୁପାଠ୍ୟ ହୋଇଅଛି । ବିଦ୍ୟାଳୟରେ ଏ ପୁସ୍ତକ ବ୍ୟବହାର ହେଲେ ଛାତ୍ରମାନେ ଅନେକ କଥା ଏଥିରୁ ଶିଖିବେ ସନ୍ଦେହ ନାହିଁ।

*ଭା।୧୧ଗ,ସଂ୩୭ଖ୍ୟା, ୯।୯। ୧୮୭୬*

## [ପ୍ରଥମ ଶିକ୍ଷା ନାମରେ ଖଣ୍ଡିଏ ପୁସ୍ତକ]

ଆମ୍ଭେମାନେ କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ଯେ ପ୍ରଥମ ଶିକ୍ଷା ନାମରେ ଖଣ୍ଡିଏ ପୁସ୍ତକ ତହିଁର ଗ୍ରନ୍ଥକର୍ତ୍ତା ବାବୁ ବୈକୁଣ୍ଠନାଥ ଦେଙ୍କଠାରୁ ପ୍ରାପ୍ତ ହୋଇ ଅଛୁଁ। ଏ ପୁସ୍ତକ ଓଡ଼ିଶାର ପାଠଶାଳାମାନଙ୍କର ବ୍ୟବହାର ନିମିତ୍ତ ହୋଇ ଅଛି ଏହା ବାଲେଶ୍ୱର ବି ,ଏନ. ଦେଙ୍କର ଉତ୍କଳପ୍ରେସରେ ମୁଦ୍ରିତ ଓ ଏଥିର ମୂଲ୍ୟ : ଟ୦/ ଅଟଇ। ପାଠଶାଳା ନିମିତ୍ତ ସୁଲଭମୂଲ୍ୟର ପୁସ୍ତକ ଅତ୍ୟନ୍ତ ଉପଯୋଗୀ ସନ୍ଦେହ ନାହିଁ ଓ ସେ ଅଂଶରେ ଏ ପୁସ୍ତକ ଉପଯୁକ୍ତ ହୋଇଅଛି ମାତ୍ର ଗ୍ରନ୍ଥକର୍ତ୍ତା ଅସଂଯୁକ୍ତ ଓ ଯୁକ୍ତାକ୍ଷରମାନ ଏକାବେଳକେ ଶିଖାଇବାର ରୀତିକୁ ଅବଲମ୍ବନ କରିବାରେ ଆମ୍ଭମାନଙ୍କ ବିବେଚନାରେ ଅଳ୍ପବୟସ୍କ ବାଳକଙ୍କ ଶିକ୍ଷାର ସୁଯୋଗ କରି ନାହାନ୍ତି ଓ ଏବିଷୟରେ ଭୂମିକାରେ ଯାହା ଲେଖାଅଛି ତହିଁରେ ଆମ୍ଭେମାନେ ଐକ୍ୟ ନାହୁଁ। ଆମ୍ଭମାନଙ୍କ ବିବେଚନାରେ ଯେଉଁ ପ୍ରଣାଳୀକୁ ସେ ପରିତ୍ୟାଗ କରି ଅଛନ୍ତି ତାହା କାର୍ଯ୍ୟତଃ ଉତ୍ତମ ବୋଲି ବୋଧ ହେଉଅଛି ।

*ଭା।୧୧ଗ,ସଂ୪୦ଖ୍ୟା, ୭।୧୦। ୧୮୭୬*

## ୧୮୭୭

## କଲିକତା ବିଶ୍ୱବିଦ୍ୟାଳୟର ଉପାଧି ଦାନ ସଭାରେ ମହାମାନ୍ୟ ଗବର୍ଣ୍ଣରଜେନରଲ ସାହେବଙ୍କ ବକ୍ତୃତା ।

ଆମ୍ଭେମାନେ ଅତ୍ୟନ୍ତ ପ୍ରୀତି ସହିତ ଏ ବକ୍ତୃତାକୁ ପାଠ କରିଅଛୁଁ ଏଥିରେ ବିସ୍ତର ସାରକଥା ଅଛି ଏବଂ ଲର୍ଡ଼ଲିଟନ ଅତ୍ୟନ୍ତ ସରଳତା ସହିତ ଭାରତବର୍ଷର ଶିକ୍ଷା ବିଷୟରେ ଆପଣା ମନର ଭାବମାନ ପ୍ରକାଶ କରିଅଛନ୍ତି । ବକ୍ତୃତାଟି ଏମନ୍ତ ପ୍ରୀତିକର ଯେ ତହିଁର ଅବିକଳ ଅନୁବାଦ ପ୍ରକାଶ କରି ପାରିଲେ ପାଠକଙ୍କର ବଡ଼ ସୁଖ ହୁଅନ୍ତା ମାତ୍ର ସ୍ଥାନାଭାବରୁ ତହିଁରୁ କ୍ଷାନ୍ତ ରହିବାକୁ ବାଧ ହୋଇ ତହିଁର ସାରମର୍ମ ଏଠାରେ ପ୍ରକାଶ କରୁଅଛୁଁ ।

ବକ୍ତୃତାରେ ତିନୋଟି କଥାର ବିଶେଷ ବର୍ଣ୍ଣନା ହୋଇଅଛି । ଯଥା-ଶିକ୍ଷାପ୍ରଣାଳୀ କିରୂପ ହେବାର ଉଚିତ, ଶିକ୍ଷିତ ଲୋକଙ୍କର କର୍ତ୍ତବ୍ୟ କି ଏବଂ ଗବର୍ଣ୍ଣମେଣ୍ଟ ଦେଶୀୟ ଲୋକଙ୍କୁ ଉଚ୍ଚକର୍ମମାନ କି ନିୟମରେ ଦେଇପାରନ୍ତି ।

ପ୍ରଥମ ବିଷୟରେ ଲାଟ ସାହେବ କହିଅଛନ୍ତି କି ଶିକ୍ଷା ଦେବାର ଅର୍ଥ ଚରିତ୍ର ସଂଗଠନ କରିବା । ଯହିଁରେ ବାଳକମାନେ ଭବିଷ୍ୟତକୁ ମନୁଷ୍ୟ ହୋଇ ପାରିବେ ଓ ମନୁଷ୍ୟ ହେଲେ ଯେ ସମସ୍ତ କର୍ତ୍ତବ୍ୟ କାର୍ଯ୍ୟ ତାହାଙ୍କୁ ସାଧନ କରିବାକୁ ହେବ ସେହି ସମସ୍ତ ତାହାଙ୍କୁ ପିଲାଦିନେ ଶିଖାଇବାର ଉଚିତ । ଦେଶ କାଳ ପାତ୍ର ବିବେଚନାରେ ଶିକ୍ଷାର ନିୟମ ସ୍ଥିର କରିବା ଉଚିତ ନୋହିଲେ ବୃଥାରେ ଅର୍ଥ ଓ ବଳ ନଷ୍ଟ ହୋଇ ଯିବ । ଉଦ୍ଦେଶ୍ୟଶୂନ୍ୟ ହୋଇ କାର୍ଯ୍ୟର ଫଳ ସଂପର୍କରେ ଗୋଟିଏ ସୁନ୍ଦର ଦୃଷ୍ଟାନ୍ତ ସେ ଦେଇଅଛନ୍ତି ତାହା ଏହି ଯେ ଜଣେ ସାଧୁ ଏକଦିନ ସନ୍ଧ୍ୟାସମୟରେ ଏକ ଗୃହସ୍ଥର ଘରେ ଅତିଥି ହେଲେ । ସେ ଘରେ ତିନୋଟି ଭାଇ ଏକାନ୍ନରେ ଥିଲେ ସେମାନେ ଅତି ଦୁଃଖୀ ଏବଂ ପୈତୃକ ଅଳ୍ପଭୂମି ଚଷି ପେଟ ପାଳନ୍ତି । ଆପଣା ଶକ୍ତି ଅନୁସାରେ ସାଧୁଙ୍କ ସେବା ରାତ୍ରରେ କରିବାରୁ ସାଧୁ ତୁଷ୍ଟ ହୋଇ ସକାଳେ ଯିବା ବେଳେ ଏହି ବର ଦେଇ ଗଲେ କି "ତୁମ୍ଭେମାନେ ଯେଉଁ କର୍ମ କରିବ ତହିଁରେ ପୂର୍ଣ୍ଣ ଉନ୍ନତି ଲାଭ କରିବ ।" ବଡ଼ଭାଇର ମନ ଘରେ ଲାଗୁ ନ ଥିଲା ସେ ଦେଶ ଭ୍ରମଣ କରି ବାଣିଜ୍ୟ ବ୍ୟବସାୟ କଲା । ମଧମ ଭାଇ ଆପଣା ଘର ସମ୍ଭାଳି ରହିବା ଇଚ୍ଛା ରଖୁଥିବାରୁ ସେ ଚାଷ ବସ୍ତ କରିବାରେ ମଗ୍ନ ହେଲା ଓ ସାନଭାଇର କୌଣସି ବିଶେଷ କାର୍ଯ୍ୟରେ ମନ ନ ଥିଲା ସେ ଘରେ ବସି କେବଳ ମାଛି ଧରିବାରେ ମତ୍ତ ହେଲା । କିଛିଦିନ ଉତ୍ତାରୁ ତିନିଭାଇ ଏକତ୍ର ହେଲେ । ବଡ଼ଭାଇ ବାଣିଜ୍ୟଦ୍ୱାରା ବଡ଼ ଧନବାନ୍ ହେଲେ ମଧମ ଭାଇ ଜଣେ ବଡ଼ ଜମିଦାର ହେଲେ ଓ ସାନଭାଇ ଜଣେ ଭାରୀ ନିପୁଣ ମାଛିଧରା ହେଲେ କିନ୍ତୁ ତହିଁରେ କି ଲାଭ ? ଏ ଦେଶୀୟ ଲୋକଙ୍କୁ ଅତ୍ୟନ୍ତ ଗୁଣବାନ୍ କରିବାକୁ ଆମ୍ଭେମାନେ ଚେଷ୍ଟା କରୁଅଛୁଁ ମାତ୍ର ସାବଧାନ ହେବାର ଉଚିତ ଯେମନ୍ତ କି ସେମାନେ ସାହିତ୍ୟ ଓ ବିଜ୍ଞାନର ମାଛିଧରା ନ ହେବେ । ଏମାନଙ୍କୁ ପ୍ରତ୍ୟକ୍ଷବିଜ୍ଞାନ ଓ କାର୍ଯ୍ୟଦକ୍ଷତା ଶିଖାଇବା ଉଚିତ ।

ଦ୍ୱିତୀୟ ପ୍ରସଙ୍ଗରେ ସେ କହିଲେ କି ଶିକ୍ଷିତ ଲୋକମାନେ କେବଳ ଚାକରି କରିବା ଶିକ୍ଷାର ଶେଷଫଳ ମନେ କରନ୍ତି । ସେମାନେ ଏକ ହାତରେ ଏମ୍,ଏ, ଉପାଧି ଘେନି ଅନ୍ୟ ହାତରେ ଚାକରୀପାଁଇ ଦାବୀ କରନ୍ତି ଓ ଚାକରୀ ନ ପାଇଲେ ଗବର୍ଣ୍ଣମେଣ୍ଟ ଯେଉଁ ଭାଷା ତାହାଙ୍କୁ ଶିଖାଇଅଛନ୍ତି ସେହି ଭାଷା ଗବର୍ଣ୍ଣମେଣ୍ଟ ବିରୁଦ୍ଧରେ ପ୍ରୟୋଗ କରନ୍ତି । ଦେଶୀୟ ସମ୍ବାଦପତ୍ରମାନଙ୍କରେ ଏଥିର ବିଶେଷ ପରିଚୟ ମିଳଇ ଏ ସକାଶେ ସେ ଉପାଧିପ୍ରାପ୍ତ ବ୍ୟକ୍ତିଙ୍କୁ ସେ ଏହିରୂପ ଉପଦେଶ ଦେଲେ ଯେ ହେ ଯୁବକଗଣ ! ତୁମ୍ଭେମାନେ ଏତେ ଶିଖିଅଛ ଏଥି ପାଁଇ ତୁମ୍ଭଙ୍କୁ

ଭଲ କହୁଁ ମାତ୍ର ତୁମ୍ଭେମାନେ କେବଳ ଚାକରିର ଭରସା ନ କରି ବିଜ୍ଞାନ ସାହିତ୍ୟ ଶିଳ୍ପ ବା ବାଣିଜ୍ୟ କାର୍ଯ୍ୟରେ ବୁଦ୍ଧିଶକ୍ତିକୁ ନିୟୋଗ କର ଆପଣା ଉପରେ ନିର୍ଭର କର । ଯେ ଯାହା ଲୋଡ଼େ ବିଧାତା ତାହା ଦିଅନ୍ତି । ସଂସାର ଅତି ପ୍ରଶସ୍ତ ଓ ଅବଧି ଜୀବିକା ନିର୍ବାହର ଏତେ ଉପାୟ ରହିଅଛି ଯେ କେହି ଚେଷ୍ଟା କଲେ ନିଷ୍ଫଳ ହେବ ନାହିଁ । ସ୍ୱାଧୀନ ବ୍ୟବସାୟ ଅବଲମ୍ବନ କର ତାହା ହେଲେ ସ୍ୱଦେଶୀୟଙ୍କଠାରେ ବିଶ୍ୱାସଭାଜନ ଏବଂ ଗବର୍ଣ୍ଣମେଣ୍ଟଙ୍କଠାରେ ଆଦରର ପାତ୍ର ହେବ ଆମ୍ଭେ ଦୁଃଖିତ ହୋଇ କହୁଅଛୁଁ ଯେ ଆତ୍ମନିର୍ଭରର ଭାବ ଏ ଦେଶରେ ଅତ୍ୟନ୍ତ ବିରଳ କେବଳ ବମ୍ବେଇବାସୀମାନେ ବାଣିଜ୍ୟ ବ୍ୟବସାୟଦ୍ୱାରା ଆପଣା ସୁଖସମ୍ପତ୍ତି ବୃଦ୍ଧି କରିଅଛନ୍ତି । ବିଲାତର ବଡ଼ ବଡ଼ ଶିକ୍ଷିତବ୍ୟକ୍ତିମାନେ ସ୍ୱାଧୀନ ବ୍ୟବସାୟରେ ଅନୁରକ୍ତ ହୁଅନ୍ତି ଏଠା ଶିକ୍ଷିତଙ୍କ ମନରେ ସେ ଭାବ ଉଦୟ ହେଉ ନାହିଁ ।

ଦେଶୀୟଲୋକଙ୍କୁ ଉଚ୍ଚପଦ ଦେବାବିଷୟରେ ଗବର୍ଣ୍ଣମେଣ୍ଟ ଯାହା ଅଙ୍ଗୀକାର କରିଅଛନ୍ତି ତାହା ପୂର୍ଣ୍ଣ ନ ହେବାରେ ସମସ୍ତେ ଦୋଷାରୋପ କରି ପାରନ୍ତି ମାତ୍ର ଗବର୍ଣ୍ଣମେଣ୍ଟ ଦେଶୀୟ ଲୋକଙ୍କୁ ଠକାଇବାର ମାନସ ରଖନ୍ତି ନାହିଁ ତେବେ ଗୋଟିଏ ଅସୁବିଧାହେତୁ ତାହା ଏତେକାଳ ପୂର୍ଣ୍ଣ ହୋଇ ପାରୁନାହିଁ । ଉକ୍ତ ଅସୁବିଧାଟି ଏହି ଯେ ଯେତେବେଳେ ଦେଶୀୟ ଲୋକଙ୍କୁ ଉଚ୍ଚପଦ ଦେବାର ଅଙ୍ଗୀକାର ହେଲା ତେତେବେଳେ ଇଂରାଜ ଚିହ୍ନିତ କର୍ମଚାରୀଙ୍କର କ୍ଷତି କରିବାର ମାନସ ନ ଥିଲା ଉକ୍ତ ଇଂରାଜକର୍ମଚାରିଙ୍କର ସଂଖ୍ୟା ଅନେକ ବଢ଼ିଅଛି ଓ ସେମାନେ ଆଶାନୁରୂପ ଉଚ୍ଚପଦ ପାଉନାହାନ୍ତିବୋଲି ବିରକ୍ତ ଅଛନ୍ତି । ପକ୍ଷାନ୍ତରରେ କେବଳ ତୀକ୍ଷ୍ଣବୁଦ୍ଧି ହେଲେ କେହି ଏ ପଦର ଉପଯୁକ୍ତ ହୋଇ ନ ପାରେ । ଭାରତବର୍ଷର ବର୍ତ୍ତମାନ ଅବସ୍ଥା ଏପରି ଅଛି ଯେ ଅନେକଗୁଡ଼ିଏ କର୍ମ ଅବଶ୍ୟ ଇଂରାଜଙ୍କ ହସ୍ତରେ ରହିବ ସେସମସ୍ତ ଦେଶୀୟ ଲୋକଙ୍କୁ ଦିଆଯାଇ ନ ପାରେ ଏବଂ ଭାରତବର୍ଷର ସବୁପ୍ରଦେଶର ଅବସ୍ଥା ଏକପ୍ରକାର ନୁହେ । କେଉଁଠାର ଲୋକ ଅଧିକ ବଳବାନ୍ ଓ ସାହସୀ ଏବଂ ଅପର କେଉଁ ସ୍ଥାନର ଲୋକ ବୁଦ୍ଧି ବିଦ୍ୟାରେ ଉନ୍ନତ । ବଙ୍ଗାଳିମାନେ ଲେଖାପଢାରେ ଅତ୍ୟନ୍ତ ନିପୁଣ ମାତ୍ର ଏମାନଙ୍କୁ ପଶ୍ଚିମାଙ୍କ ଉପରେ କର୍ତ୍ତୃତ୍ୱ ଦେବା ବଡ଼ ବିପଦର କଥା । ଏପ୍ରକାର ଅବସ୍ଥା ହେବାରୁ ପ୍ରଥମେ ରାଜ୍ୟକୁ ନିରାପଦ ରଖିବାର ଉଚିତ ପଶ୍ଚାତ୍ ଦେଶ କାଳ ପାତ୍ର ଓ ବିଶ୍ୱାସୀଲୋକ୍ ବୁଝି କ୍ରମେ କ୍ରମେ ଉଚ୍ଚପଦ ଦେବାକୁ ହେବ । ଅତଏବ ଏ ବିଷୟର ମୀମାଂସା ନିମିତ୍ତ କାର୍ଯ୍ୟର ଶ୍ରେଣୀ ବିଭାଗ କରିବା ଆବଶ୍ୟକ ହୋଇଅଛି ଅର୍ଥାତ୍ ଯେଉଁ କର୍ମ ସକାଶେ ଦେଶୀୟମାନେ ଉପଯୁକ୍ତ ଅଛନ୍ତି ଏବଂ ଯେଉଁ କର୍ମସବୁ ଇଂରାଜଙ୍କ ହାତରେ ରହିବ ଏସମସ୍ତ ପୃଥକ୍‌କରି କ୍ରମେ ଦେଶୀୟ ଲୋକଙ୍କୁ ପଦ ବୃଦ୍ଧି ଦିଆଯିବ । ଏରୂପ ନିୟମ ଶୀଘ୍ର ସ୍ଥିର କରିବାର ଆବଶ୍ୟକ ହୋଇଅଛି ଏବଂ ଏହାକୁ କାର୍ଯ୍ୟରେ ପରିଣତ କରିବାକାରଣ ଲାଟସାହେବ ଅତ୍ୟନ୍ତ ଉତ୍ସାହୀ ହେବେ । ଯେବେ ଲର୍ଡ଼ ଲିଟିନ୍ ଏ କଥାଟିକୁ କାର୍ଯ୍ୟରେ ପରିଣତ କରନ୍ତି ତାହାହେଲେ ତାହାଙ୍କର କଥାସବୁ ସାର୍ଥକ ହେବ ଓ ଦେଶୀୟଲୋକମାନେ ତାହାଙ୍କୁ ବିଶେଷ ଧନ୍ୟବାଦ ଦେବେ ସନ୍ଦେହ ନାହିଁ ।

*ଭା୧୨ଗ,ସଂ୧୪ଖ୍ୟା, ୭।୪।୧୮୭୭*

## [ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ କମ୍ପାନୀ]

ବାଲେଶ୍ୱର ସମ୍ବାଦବାହିକାରୁ ଜଣାଗଲା ଯେ ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ କମ୍ପାନୀ ନାମରେ ଗୋଟିଏ ନୂତନ କମ୍ପାନୀ ଏ ନଗରରେ ସ୍ଥାପିତ ହେବାର କଳ୍ପନା ହୋଇଅଛି । ଏଥିର ମୂଳଧନ ଟ ୫୦୦୦ଙ୍କା ଓ ପ୍ରତ୍ୟେକ ଅଂଶ ଟ୨୫ଙ୍କା ଲେଖାଁଏ ହେବ । ଶ୍ରୀଯୁକ୍ତ ବୀମ୍‌ସସାହେବ ଏ କମ୍ପାନିର ସହାୟ ବାବୁ କାଳୀପଦ ବାନୂର୍ଯ୍ୟା ମୂଳାଧାର ଏବଂ ବାବୁ ବୈଦ୍ୟନାଥପଣ୍ଡିତ ରାୟବାହାଦୁର ଏ କମ୍ପାନିର ଅଧକ୍ଷ ସମାଜର ସଭାପତି । ଓଡ଼ିଆଭାଷାର ଯେ ସମସ୍ତ ପ୍ରାଚୀନଗ୍ରନ୍ଥ ତାଳପତ୍ରରେ ଲେଖାଅଛି ସେ ସବୁକୁ ଛାପା କରି ବିକ୍ରୟ କରିବା ଏବଂ ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ପୁସ୍ତକ ମଧ ମୁଦ୍ରିତ କରିବା ଏ କମ୍ପାନିର ଉଦ୍ଦେଶ୍ୟ ଅଟଇ । କାରଖାନାଟି ବଡ଼ ଧୁମ୍‌ଧାମର ଦିଶୁଅଛି କାର୍ଯ୍ୟ କିପରି ଚଳିବ ଓ ଅଂଶିମାନଙ୍କର କି ଲାଭ ହେବ କମ୍ପାନିର ନିୟମାବଳୀ ଦେଖି ନ ଥିବାରୁ କହି ନ ପାରୁଁ ଓ ମଧ ଆମ୍ଭମାନଙ୍କର ଏ ସମ୍ପର୍କରେ କିଛି କହିବାର ପ୍ରାୟ ଉଚିତ ନୁହଇ କାରଣ ବିଲକ୍ଷଣ

ସମ୍ଭବ ହୁଅଇ ଯେ ଆମ୍ଭେମାନେ ପ୍ରକୃତ କଥା କହିଲେସୁଦ୍ଧା କେତେ ଲୋକ ତହିଁର ଭିନ୍ନଭାବ ଗ୍ରହଣ କରିବେ । ଏହି ହେତୁରୁ ଏ ପ୍ରସ୍ତାବର ମୂଳାଧାର ସୁବିବେଚନାପୂର୍ବକ ତାହା ଆମ୍ଭମାନଙ୍କ ନିକଟକୁ ପଠାଇ ନାହାନ୍ତି ।

*ଭା୧୨ଗ,ସଂ୨୧ଖ୍ୟା ,୨୬ ।୫।୧୮୭୭*

## ସଭାପତିଙ୍କ ବକ୍ତୃତାର ସମାଲୋଚନା ।

କଟକ କଲେଜରେ ଶ୍ରୀଯୁକ୍ତ ବୀମ୍‌ସ ସାହେବ ସଭାପତି ସ୍ୱରୂପ ଯେଉଁ ବକ୍ତୃତ କରିଥିଲେ ତହିଁର ସଂକ୍ଷେପ ବିବରଣ ଗତ ସପ୍ତାହରେ ଆମ୍ଭେମାନେ ପ୍ରକାଶ କରିଥିଲୁଁ ଓ ସେଥିରେ ତିନୋଟି ଦୋଷର ଉଲ୍ଲେଖ ହୋଇଥିଲା । ଯଥା; ୧ମ ପ୍ରକୃତ ଇଂରାଜ ପରି ଇଂରାଜୀ ଭାଷାର ଶିକ୍ଷା ହୁଅଇ ନାହିଁ, ୨ୟ ଶିକ୍ଷିତମାନଙ୍କ ମଧ୍ୟରେ ଐକ୍ୟତାର ଅତ୍ୟନ୍ତ ଅଭାବ ଦେଖାଯାଏ ଓ ୩ୟ ଶିକ୍ଷିତମାନେ କେବଳ ଚାକରି ଖୋଜି ବୁଲନ୍ତି ଅନ୍ୟ କିଛି କରନ୍ତି ନାହିଁ । ଏକଦେଶୀୟ ଲୋକର ମାତୃଭାଷା ଅପରଦେଶୀୟ ଲୋକ ଯଥାର୍ଥରୂପେ ଶିକ୍ଷା କରିବା ସହଜ ବ୍ୟାପାର ନୁହଇ । ଉଭୟଦେଶୀୟ ଲୋକ ସର୍ବଦା ଏକତ୍ର ହୋଇ କଥାବାର୍ତ୍ତା କଲେ କଥଞ୍ଚିତ୍ ହୋଇପାରେ କେବଳ ପୁସ୍ତକ ପାଠଦ୍ୱାରା ତାହା ଲାଭ ହେବା ବିଷୟରେ ଆମ୍ଭମାନଙ୍କର ସନ୍ଦେହ ବୋଧ ହେଉଅଛି ଓ ଅନୁମାନ ହେଉଅଛି ଯେ ଏପରି ଶିକ୍ଷା ଯେବେ ହେଉ ନାହିଁ ତେବେ ସେ ଦୋଷ ଛାତ୍ରଙ୍କର ନୁହଇ ଶିକ୍ଷାପ୍ରଣାଳୀର ଅଟଇ । ବକ୍ତା ମହାଶୟ ଛାତ୍ରଙ୍କୁ ଏଥିପାଇଁ ନିନ୍ଦା ନ କରି ଶିକ୍ଷାବିଭାଗର କର୍ତ୍ତୃପକ୍ଷଙ୍କୁ ଉପଦେଶ ଦେଇଥିଲେ ଭଲ ହୋଇଥାନ୍ତା । ପରନ୍ତୁ ସେପ୍ରକାର ଭାଷା ଶିକ୍ଷାରେ କୌଣସି ଅଧିକ ଲାଭ ଥିବାର ଆମ୍ଭେମାନେ ବିବେଚନା କରୁ ନାହିଁ । ଇଂରାଜମାନେ ଆମ୍ଭମାନଙ୍କର ରାଜା, ତାହାଙ୍କର ଭାଷା ବୁଝିବା ଆମ୍ଭମାନଙ୍କର ନିତାନ୍ତ କର୍ତ୍ତବ୍ୟ, ନ ଜାଣିଲେ ନାନାକାର୍ଯ୍ୟରେ କ୍ଳେଶ ଓ ବ୍ୟାଘାତ ଘଟିବ । ସେହିପରି ଇଂରାଜ କର୍ମଚାରିମାନେ ଏ ଦେଶୀୟ ପ୍ରଚଳିତ ଭାଷାମାନ ନ ଜାଣିଲେ ଦଣ୍ଡେ ସୁଚାରୁରୂପେ କାର୍ଯ୍ୟ କରିପାରିବେ ନାହିଁ ଅତଏବ ଯେତେ ଦୂର ଇଂରାଜମାନେ ଏଦେଶୀୟ ଭାଷା ଶିକ୍ଷା କରି ନିର୍ବାହ ହେଉଅଛନ୍ତି ଏଠା ଲୋକେ ତେତିକି ଇଂରାଜୀ ଭାଷା ଶିଖିଲେ ଯଥେଷ୍ଟ ହୁଅନ୍ତା ମାତ୍ର କାର୍ଯ୍ୟତଃ ଏଠା ଲୋକମାନେ ତହିଁରୁ ଅଧିକ ଇଂରାଜୀ ଭାଷା ଶିଖୁଅଛନ୍ତି ଓ ତହିଁର ହେତୁ ଏହି ଯେ କେବଳ ଇଂରାଜଙ୍କ ସଙ୍ଗେ କାରବାର କରିବା ଉଦ୍ଦେଶ୍ୟରେ ଆମ୍ଭମାନଙ୍କର ଇଂରାଜୀ ଶିକ୍ଷା ହେଉ ନାହିଁ ଇଂରାଜୀରେ ନାନାପ୍ରକାର ବିଜ୍ଞାନ ଓ ବ୍ୟବହାର ବିଷୟରେ ଉତ୍କୃଷ୍ଟ ପୁସ୍ତକମାନ ହୋଇଅଛି ଓ ମହା ମହା ପଣ୍ଡିତ ଓ ଅଧ୍ୟାପକମାନେ ଉକ୍ତ ଦେଶରେ ଅବତୀର୍ଣ୍ଣ ହୋଇଅଛନ୍ତି ସେ ପ୍ରକାର ଅଧ୍ୟାପକଙ୍କ ଠାରୁ ଉଚ୍ଚ ଅଙ୍ଗର ବିଜ୍ଞାନାଦି ଶିକ୍ଷା ଲାଭ ସକାଶେ ଇଂରାଜୀ ଭାଷା ଶିକ୍ଷା କରିବାକୁ ହେଉଅଛି । ସେ ସମସ୍ତ ପୁସ୍ତକ ଓ ସେ ସବୁର ଉପଦେଷ୍ଟାଙ୍କୁ ବୁଝିପାରିବା ସକାଶେ ଯେପର୍ଯ୍ୟନ୍ତ ଭାଷା ଜାଣିବାର ଆବଶ୍ୟକ ତେତିକି ହେଲେ ଯଥେଷ୍ଟ ହେଲା ତାହା ଯେ ଛାତ୍ରମାନେ ଶିକ୍ଷା କରୁ ନାହାନ୍ତି ଏମନ୍ତ ବୋଲା ଯାଇ ନ ପାରେ । ଯେତେବେଳେ ଦେଶୀୟ ଓ ଇଂରାଜମାନେ ସମସରି ହୋଇ ସାମାଜିକ ବ୍ୟାପାରରେ ମିଶାମିଶି ହେବେ ତେତେବେଳେ ଘରାଉଭାଷା ଶିଖିବାର ପ୍ରୟୋଜନ ହେବ ଓ ତାହା ଅଭ୍ୟାସଦ୍ୱାରା ଆପେ ଶିଖାଯିବ ।

ଶିକ୍ଷିତ ଲୋକଙ୍କ ମଧ୍ୟରେ ଐକ୍ୟତା ସ୍ଥାପନ ହୋଇ ନ ଥିବାର ଯାହା ଶ୍ରୀଯୁକ୍ତ ବୀମ୍‌ସ ସାହେବ କହିଅଛନ୍ତି ତାହା ବାସ୍ତବରେ ସତ୍ୟ ଅଟଇ ଏବଂ ଆମ୍ଭେମାନେ ଦୁଃଖିତ ହୋଇ ସ୍ୱୀକାର କରୁଅଛୁଁ ଯେ ଏଠା ଲୋକମାନେ ଅବଧି ପ୍ରକୃତରୂପେ ଶିକ୍ଷିତ ହୋଇ ନାହାନ୍ତି । ଶିକ୍ଷାଲାଭ କରିବା ପ୍ରକୃତରୂପେ ମନୁଷ୍ୟ ହେବା ସକାଶେ । ଯଥାର୍ଥ ଶିକ୍ଷିତ ବ୍ୟକ୍ତିର ସ୍ୱଭାବ ଭିନ୍ନ ପଡ଼ିବ ନାହିଁ ସୁତରାଂ ସେମାନଙ୍କ ମଧ୍ୟରେ ଐକ୍ୟତା ହେବ । ଭାବର ବିଭିନ୍ନତା ହେତୁ ଐକ୍ୟତା ହୋଇ ପାରୁ ନାହିଁ । ଅନେକସ୍ଥଳେ ଦେଖାଯାଏ ଯେ ଏଠା ଲୋକମାନେ କେତେକ ଶିକ୍ଷାଲାଭ କରି ସେହି ଶିକ୍ଷା ହେତୁରୁ ଆପଣାକୁ ବଡ଼ ମଣନ୍ତି ଓ ନାନାଦି କୌଶଳରେ ଆପଣାକୁ ବଡ଼ ବୋଲାଇବାକୁ ଯତ୍ନ ପାନ୍ତି । ଏଥିପାଇଁ ନାନାପ୍ରକାର ପ୍ରତାରଣା ଓ ନୀତିବିରୁଦ୍ଧ ଆଚରଣକୁ ମଧ କେହି କେହି ଦୂଷଣୀୟ ଜ୍ଞାନ କରନ୍ତି ନାହିଁ । ଆପଣାର ଯଶ ଓ ପ୍ରତିପତ୍ତି ବଢାଇବାକୁ ଇଷ୍ଟଜ୍ଞାନ କରନ୍ତି ଓ ଏଥିରେ ସାଧାରଣର ଯେତେ କ୍ଷତି ହେଉ ତହିଁପ୍ରତି ଦୃଷ୍ଟି କରନ୍ତି ନାହିଁ । ଏପ୍ରକାର ଲୋକମାନେ ଅବଶ୍ୟ ଭିନ୍ନ ଭିନ୍ନ ମାର୍ଗରେ ଯିବେ ସେମାନଙ୍କ ମଧ୍ୟରେ କଦାଚ ଐକ୍ୟତା ହେବାର ସମ୍ଭବ ନୁହଇ ମାତ୍ର ଯଦ୍ୟପି ଶିକ୍ଷିତ ବ୍ୟକ୍ତିମାନେ ପ୍ରକୃତ ଶିକ୍ଷିତ ବ୍ୟକ୍ତିର

ଆଚରଣକୁ ଅନୁକରଣ କରି ଜ୍ଞାନ, ଧର୍ମ୍ମ ଓ ନୀତି ଶିକ୍ଷା କରିବେ ଓ ତାହା ସର୍ବସାଧାରଣରେ ବିସ୍ତାର କରିବା ଓ ତଦ୍ୱାରା ସ୍ୱଦେଶ ଓ ଜନସାଧାରଣର ହିତ କରିବାକୁ ପ୍ରବୃତ୍ତ ହେବେ ତେବେ ସେମାନଙ୍କ ମଧ୍ୟରେ ଐକ୍ୟତା ଅବଶ୍ୟ ଜାତ ହେବ । ଅବଧି ଯେତେ ଶିକ୍ଷିତ ଲୋକଙ୍କୁ ଦେଖୁଅଛୁଁ ସେମାନଙ୍କ ମଧ୍ୟରୁ ଅଧିକାଂଶ ପରକୁ ଛାଡ଼ି ଆପଣାର ପ୍ରତିପତ୍ତି ଲାଭ କରିବାକୁ ବ୍ୟସ୍ତ ଯେତେବେଳେ ପରକୁ ଘେନି ତାହା କରିବେ ତେତେବେଳେ ଏମାନଙ୍କ ମଧ୍ୟରେ ଅନୈକ୍ୟତା ରହିବ ନାହିଁ । ଏହି ଅନୈକ୍ୟତା ହେତୁରୁ ଶିକ୍ଷିତ ଲୋକଙ୍କ ଦ୍ୱାରା ସାଧାରଣ ଉପକାର କିଛି ହେଉ ନାହିଁ ଓ ବର୍ତ୍ତମାନ ଅବସ୍ଥାରେ ହେବାର ମଧ ସମ୍ଭବ ନୁହଇ । ଆମ୍ଭେମାନେ ସମୟ ସମୟରେ କେତେ ସାଧାରଣ ହିତ ସକାଶେ ସଭା ଅନୁଷ୍ଠିତ ହେବାର ଦେଖିଅଛୁଁ ମାତ୍ର ପ୍ରାୟ କେହି ଦୀର୍ଘକାଳ ସ୍ଥାୟୀ ହୋଇ ନାହିଁ । ଆମ୍ଭେମାନେ କେବଳ ଓଡ଼ିଶାର କଥା କହୁ ନାହୁଁ, କଲିକତା କି ଯେଉଁଠାରେ ପ୍ରାୟ ସର୍ବାପେକ୍ଷା ଅଧିକ ଶିକ୍ଷିତ ଲୋକ ଅଛନ୍ତି ସେଠାର ଅବସ୍ଥା ମଧ ବିସ୍ତର ଭିନ୍ନ ନୁହେ । ସେଠାରେ ଦୁଇ ଏକ ସଭା ଭିନ୍ନ ଆଉ ସମସ୍ତ ଯେମନ୍ତ ଅନୁଷ୍ଠିତ ତେମନ୍ତ ତାହା ପଛେ ପଛେ ଲୋପ ହୋଇଅଛି ଓ ଯେଉଁ ଦୁଇଟି ଗୋଟିଏ ସଭା ଅଛି ତହିଁପ୍ରତି ମଧ ସମସ୍ତ ଶିକ୍ଷିତ ବ୍ୟକ୍ତିଙ୍କର ଭାବ ଉତ୍ତମ ନୁହଇ । ଯେବେ ଶିକ୍ଷିତ ବ୍ୟକ୍ତିଙ୍କର ମନ ସରଳ ହୋଇଥାନ୍ତା ତେବେ ସେମାନେ ସେହି ସଭାଭୁକ୍ତ ହୋଇ ଆପଣା ଆପତ୍ତିମାନ ପ୍ରକାଶ କରନ୍ତେ ଓ ତାହା ଭଲ ହେଲେ ସଭାର ଉପକାର ହୁଅନ୍ତା ଓ ମନ୍ଦ ହେଲେ ସଭାଦ୍ୱାରା ତାହାଙ୍କର ଭ୍ରମ ଛାଡ଼ିଯାନ୍ତା । ମାତ୍ର ଦୁଃଖର ବିଷୟ ଯେ ସେପରି ସରଳ ଭାବ ଅତ୍ୟଳ୍ପ ଦେଖାଯାଏ । (କ୍ରମଶଃ)

*ଭା୧୨ଗ, ସଂ୨୧ଖ୍ୟା ,୨୬।୪।୧୮୭୭*

(ଗତ ପ୍ରକାଶିତ ଉତ୍ତାରୁ)

## ସଭାପତିଙ୍କ ବକ୍ତୃତା ।

ତୃତୀୟ ବିଷୟଟି ଏହି ଯେ ଛାତ୍ରମାନେ ବିଦ୍ୟାଳୟରୁ ବାହାରିଲା ମାତ୍ରକେ ଏକହାତରେ ଦରଖାସ୍ତ ଓ ଅନ୍ୟ ହାତରେ ବିଦ୍ୟାଳୟର ସାର୍ଟିଫିକଟ ଘେନି କଚେରିକୁ ଯାଇ ଚାକରୀ ସକାଶେ ହାକିମମାନଙ୍କୁ ବିରକ୍ତ କରନ୍ତି । ଏତେ ଲୋକଙ୍କୁ ଚାକରୀ ଦେବା ଗବର୍ଣ୍ଣମେଣ୍ଟଙ୍କର ସାଧ୍ୟାତୀତ ଓ କେବଳ ସେହି କାମନାରେ ଛାତ୍ରମାନଙ୍କର ବିଦ୍ୟାଶିକ୍ଷା କରିବା ବିଡ଼ମ୍ବନାମାତ୍ର ଅତଏବ ସଭାପତି ମହାଶୟ ସେମାନଙ୍କୁ ଉପଦେଶ ଦେଲେ କି ସେମାନେ ଆପଣା ଆପଣା ପୈତୃକ ଭୂମି ଚାଷ କରନ୍ତୁ ଜଙ୍ଗଲ ଆବାଦ କରନ୍ତୁ ଅଥବା ଜମିଦାରୀ ବୁଝନ୍ତୁ । ସ୍କୁଲର ଛାତ୍ରଙ୍କ ମଧ୍ୟରେ ଚାକରୀ ରୋଗଟି ଅତି ପ୍ରବଳ ଏଥିରେ ସନ୍ଦେହ ନାହିଁ ଓ ସମସ୍ତେ ଚାକରୀକୁ ଚାହିଁ ବସିଲେ କଦାଚ ଚଳିବ ନାହିଁ କାରଣ ଏତେ ଚାକରୀ କେଉଁଠାରୁ ଆସିବ । ମାତ୍ର ଯେମନ୍ତ ଭଙ୍ଗିରେ ସଭାପତି ମହାଶୟ ବକ୍ତୃତା କଲେ ତହିଁରୁ ଜଣାଗଲା ଯେମନ୍ତ ସେ ଛାତ୍ରମାନଙ୍କୁ ଏକାବେଳକେ ଚାକରିରୁ ନୈରାଶ ହେବାକୁ କହିଲେ । ଏଥିରେ ଛାତ୍ରମାନଙ୍କ ଉତ୍ସାହ ଭଙ୍ଗ ଭିନ୍ନ ଅନ୍ୟ କିଛି ଫଳ ନାହିଁ । ଛାତ୍ରମାନେ ଯେବେ ବିଦ୍ୟା ପଢ଼ି ଚାକରୀ ଲୋଡ଼ନ୍ତି ତହିଁ ପାଇଁ ଏକା ସେମାନେ ଦୋଷୀ ନୁହନ୍ତି କାରଣ ପିତାମାତା ବନ୍ଧୁ ପ୍ରତିବାସୀ ସମସ୍ତଙ୍କଠାରୁ ସେମାନେ ଏହି କଥା ଶୁଣି ଆସୁଅଛନ୍ତି ଯେ ଲେଖାପଢ଼ା ଭଲକରି ଶିଖିଲେ ଉଚ୍ଚ ବେତନର ଚାକରୀ ହେବ ଓ ତହିଁରେ ସେମାନେ ସୁଖୀ ହେବେ । ଏହି ଆଶାରେ ସେମାନେ ଦମ୍ଭ ହୋଇ ନାନା କ୍ଲେଶ ଓ ଅସୁବିଧାମାନ ସହ୍ୟ କରି ଦିବାରାତ୍ର ପରିଶ୍ରମଦ୍ୱାରା ଶିକ୍ଷାର ଏକ ଏକ ସୋପାନରେ ଅଗ୍ରସର ହେଲେ ଓ ଯେତେବେଳେ ତହିଁର ପାରିତୋଷିକ ପାଇବାକୁ ହୃଷ୍ଟ ଚିତ୍ତରେ ବାର୍ଷିକ ସଭାରେ ଉପସ୍ଥିତ ହେଲେ ତେତେବେଳେ ସର୍ବୋଚ୍ଚ ପ୍ରଦେଶୀୟ ହାକିମ କି ଯାହାଙ୍କଠାରୁ ଶିକ୍ଷାର ଚରମ ଫଳ ପାଇବାକୁ ଆଶା କରିଅଛନ୍ତି ତାହାଙ୍କଠାରୁ ଶୁଣିଲେ ଯେ ଶିକ୍ଷିତ ହେଲେ ଚାକରୀ ମିଳିବ ନାହିଁ ଚାଷ କରି ପେଟ ପାଳିବାକୁ ହେବ । ଏକଥା ଶୁଣିଲା ଉତ୍ତାରୁ ସେମାନଙ୍କର ମନ ମଧ୍ୟରେ କି ପ୍ରକାର ଚିନ୍ତା ଓ ସଂଶୟ ଉଦିତ ହୋଇଥିବ ତାହା ସହଜରେ ଅନୁଭବ ହୋଇ ପାରେ ବାସ୍ତବରେ ତହିଁରେ ଉତ୍ସାହ ଭଙ୍ଗ ଭିନ୍ନ ଆଉ କିଛି ଫଳ ହେବାର ସମ୍ଭବ ନୁହଇ ଆମ୍ଭେମାନେ ପଚାରୁ ଯେବେ ଶିକ୍ଷିତମାନେ କେବଳ ଚାଷବସ୍ତ କରିବେ ତେବେ

ଚାକରୀ କିଏ କରିବ ? ଚାକରୀ ସକାଶେ କି ଶିକ୍ଷିତ ଲୋକର ଲୋଡ଼ା ହୁଅଇ ନାହିଁ ? ତାହା କି ମୂର୍ଖଲୋକେ କରନ୍ତି ? ଇଙ୍ଗଲାଣ୍ଡରୁ ଯେଉଁ ସୁଶିକ୍ଷିତ ଲୋକମାନେ ସାତସମୁଦ୍ର ପାରି ହୋଇ ଭାରତବର୍ଷକୁ ଆସୁଅଛନ୍ତି ସେମାନେ କି ନିନ୍ଦାର ଯୋଗ୍ୟ ଅଟନ୍ତି । କେବଳ ସେହିମାନେ ଆପଣା ଦେଶ ଛାଡ଼ି ଏ ଦେଶରେ ଚାକରୀ କରି ଏଠା ଧନ ବୋହି ନେଇ ଯିବେ ଓ ଆମ୍ଭେମାନେ ସୁଶିକ୍ଷିତ ହୋଇ ଜଙ୍ଗଲ ତାଡ଼ିବାଦ୍ୱାରା ଜୀବିକା ନିର୍ବାହ କରିବା ! ଆମ୍ଭେମାନେ ନିଶ୍ଚୟ ଜାଣୁ ଏ ପ୍ରକାର ବୋଲିବା ସଭାପତିଙ୍କର ଭାବ ନ ଥିଲା କିନ୍ତୁ ସେ ପୂର୍ବାପର ନ ବିଚାରି ଗୋଟାଏ କଥା କହି ଦେବାରେ ସମସ୍ତଙ୍କ ମନରେ ଅନିବାର୍ଯ୍ୟରୂପେ ଉକ୍ତ ଭାବର ସଞ୍ଚାର ହେଲା । ସଭାପତିଙ୍କ ଭାବ ଏହି ବୋଧ ହୁଅଇ ଯେ ସମସ୍ତେ ଚାକରିକୁ ଚାହିଁ ରହିଲେ ଶିକ୍ଷାର ବିଶେଷ ଫଳ କିଛି ହେବ ନାହିଁ ଅବଶ୍ୟ ଯୋଗ୍ୟ ଲୋକଙ୍କ ମଧ୍ୟରୁ ଏକଅଂଶ ଚାକରୀ କରିବେ ମାତ୍ର ଅଧିକାଂଶ ଲୋକଙ୍କୁ ସ୍ୱାଧୀନ ବ୍ୟବସାୟ ଅବଲମ୍ବନ କରିବାର ଉଚିତ ତାହା ହେଲେ ଦେଶର ଉନ୍ନତି ହେବ ଓ ସେମାନଙ୍କର ଅଧିକ ଅର୍ଥଲାଭ ହେବ । ଏହା ନ କରି ଯେବେ ସମସ୍ତେ ଚାକରୀ ଲୋଡ଼ିବେ ତେବେ ଗବର୍ଣ୍ଣମେଣ୍ଟ ଏତେ ଚାକରି କାହୁଁ ଆଣିବେ । ଗବର୍ଣ୍ଣମେଣ୍ଟ କେବଳ ଏତିକି କରିପାରନ୍ତି କି ଯେତେବେଳେ ଜଣେ କର୍ମଚାରିର ଲୋଡ଼ା ହେବ ଶିକ୍ଷିତ ବ୍ୟକ୍ତିଙ୍କ ମଧ୍ୟରୁ ଯାହାଙ୍କୁ ଉପଯୁକ୍ତ ଜାଣିବେ ତାହାଙ୍କୁ ନିଯୁକ୍ତ କରିବେ । ଏ ପ୍ରକାର ସ୍ପଷ୍ଟ କରି କହିଥିଲେ ଛାତ୍ରମାନେ ଉତ୍ସାହିତ ହୋଇ ବିଦ୍ୱାନ୍ ଓ ସଚ୍ଚରିତ୍ର ହେବାକୁ ସମଧିକ ଚେଷ୍ଟା କରନ୍ତେ ଏବଂ କେହି ତାହାଙ୍କ ବକ୍ତୃତାରେ ଅସନ୍ତୁଷ୍ଟ ହୁଅନ୍ତା ନାହିଁ । ବାସ୍ତବରେ ସେ ଯାହା କହିଅଛନ୍ତି ତହିଁପାଁଇ ତାହାଙ୍କୁ ଦୋଷ ଦେଇ ନ ପାରୁଁ କାରଣ ଆମ୍ଭେମାନେ ନିଶ୍ଚୟ ଜାଣିପାରି ଅଛୁଁ ଯେ ସେ ବିରକ୍ତ ହୋଇ ତାହା କହିଅଛନ୍ତି । ସଭାପତି ମହାଶୟ ଅତ୍ୟନ୍ତ ଦୟାଳୁ, ଯେ ତାହାଙ୍କଠାରେ ଚାକରିର ପ୍ରାର୍ଥନା କରେ ତାହାକୁ ନିଷେଧବାକ୍ୟ କହିବାକୁ କଷ୍ଟବୋଧ କରନ୍ତି, ଜିଲାର କଲେକ୍ଟର ଓ କମିଶ୍ନର ହୋଇ ଅନେକ ଉମେଦବାରଙ୍କୁ ଦେଖି ଅଛନ୍ତି ଓ ସେମାନଙ୍କର ଦୁଃଖର କାହାଣି ଶୁଣି ବ୍ୟସ୍ତ ହୋଇ ଯାହାକୁ ଯେମନ୍ତ ଚାକର ଦେଇ ଅଛନ୍ତି ଓ ସାଧ୍ୟାନୁସାରେ ଚାକରିର ସୃଷ୍ଟି କରିବାକୁ ତ୍ରୁଟି କରି ନାହାନ୍ତି ତଥାଚ ସକାଳ ସନ୍ଧ୍ୟା ତାହାଙ୍କୁ ଉମେଦବାରମାନେ ବେଢ଼ି ରହିଅଛନ୍ତି ଦଣ୍ଡେ ସ୍ଥିର ହୋଇ ବସିବାକୁ ଦେଉ ନାହାନ୍ତି ପ୍ରତିଦିନ ଅପରାହ୍ନ କାଳରେ ଯେତେ ଲୋକ ତାହାଙ୍କ ସହିତ ସାକ୍ଷାତ୍ କରିବାକୁ ଯାନ୍ତି ସେମାନେ ପ୍ରାୟ ସମସ୍ତେ (ଦୁଇ ଏକଜଣର କଥା ଧର୍ତ୍ତବ୍ୟ ନୁହଇ) ଚାକରିର ଉମେଦବାର, କେହି ଆପଣା ସକାଶେ ବା କେହି ଆପଣାର ଲୋକ ସକାଶେ । ଶ୍ରୀଯୁକ୍ତ ବିମ୍ସ ସାହେବ ଅତି ବିଚକ୍ଷଣ ଲୋକ ସେ ସେମାନଙ୍କ କଥା ଜାଣିପାରନ୍ତି କିନ୍ତୁ ଉପରୋଧବଶରୁ କିଛି କହି ପାରନ୍ତି ନାହିଁ । ପୁନଃ ପୁନଃ ସେହି ସମସ୍ତ ଲୋକଙ୍କୁ ଆପଣା ସମ୍ମୁଖରେ ଉପସ୍ଥିତ ହେବାକୁ ଅନୁମତି ଦିଅନ୍ତି ଏବଂ ପୁନଃ ପୁନଃ ମନରେ ବିରକ୍ତ ହେଉଥାନ୍ତି । ଏହି ପ୍ରକାରେ ତାହାଙ୍କର ବିଶ୍ୱାସ ଜନ୍ମିଅଛି ଯେ ଏଠା ଲୋକେ ଚାକରୀ ଭିନ୍ନ ଆଉ କିଛି ଲୋଡ଼ନ୍ତି ନାହିଁ ଏବଂ ଏଥିପାଁଇ ସେ ବିରକ୍ତ ହୋଇ ଛାତ୍ରମାନଙ୍କୁ ଉକ୍ତ ପ୍ରକାର ଉପଦେଶ ଦେଇଥିଲେ । ଫଳତଃ ଯେଉଁମାନେ ଭଦ୍ରଲୋକ ବୋଲି କୋଠିରେ ସାହେବଙ୍କ ସହିତ ସାକ୍ଷାତ୍ କରିବାଛଳରେ କେବଳ ଚାକରି କଥା କହିବେ ସେମାନଙ୍କୁ ବିରକ୍ତ କିଏ ନ ହେବ ? ଶ୍ରୀଯୁକ୍ତ ରେବନ୍‌ସାସାହେବ ଗୋଟିଏ ସୁନ୍ଦର ନିୟମ କରିଥିଲେ ଯେ କୋଠିକୁ ଯେ କେହି ତାହାଙ୍କ ସହିତ ସାକ୍ଷାତ କରିବାକୁ ଯିବ ସେ ଚାକରୀ ଓ ଆପଣା ସଂପର୍କୀୟ କଚେରୀର ମାମଲା କଥା କହିବ ନାହିଁ । ଚାକରୀ କଥା କେହି କହିଲେ ତାହାକୁ ତତ୍କ୍ଷଣାତ୍ କୋଠିରୁ ତଡ଼ି ଦେଉଥିଲେ ସୁତରାଂ ଉମେଦବାରମାନେ ତାହାଙ୍କୁ ବିରକ୍ତ କରି ପାରୁ ନ ଥିଲେ ଓ ତାହାଙ୍କର ସର୍ବଦା ବାସନା ଥିଲା ଯେ ସୁଶିକ୍ଷିତ ବ୍ୟକ୍ତିଙ୍କୁ ଚାକରୀ ଦେବେ । ତେବେ ସେ କାର୍ଯ୍ୟରେ ଅନେକ ଥର ଠକି ଯାଉଥିଲେ । ମାତ୍ର ଏଥି ସକାଶେ ତାହାଙ୍କର ନିୟମଟି ଯେ ପ୍ରଶଂସନୀୟ ନ ଥିଲା ଏମନ୍ତ ବୋଲାଯାଇ ନ ପାରେ ।

ପରିଶେଷରେ ବକ୍ତବ୍ୟ ଏହି ଯେ ସ୍କୁଲର ଛାତ୍ରମାନେ ଚାକରୀ ଲୋଡ଼ନ୍ତି ବୋଲି ଶ୍ରୀଯୁକ୍ତ ବିମ୍ସ ସାହେବ ତାହାଙ୍କୁ ଘୃଣା ନ କରି ତାହାଙ୍କ ଅବସ୍ଥା ପ୍ରତି ଟିକିଏ ଦୃଷ୍ଟି କରନ୍ତୁ । ଉକ୍ତ ଛାତ୍ରମାନେ ଅଧିକାଂଶରେ ମଧ୍ୟମଶ୍ରେଣୀର ଲୋକ ଓ ଅମଲା ଜାତି ଅର୍ଥାତ୍ କରଣ୍ କାୟସ୍ଥ ବ୍ରାହ୍ମଣ ଖଣ୍ଡାଏତ ଅଟନ୍ତି । ଦେଶର ପ୍ରାଚୀନରୀତି ଅନୁସାରେ

ଏମାନେ ଚାକରୀ ଭିନ୍ନ ଅନ୍ୟ ବ୍ୟବସାୟ କରନ୍ତି ନାହିଁ । ଏହାଙ୍କ ମଧ୍ୟରେ ସଙ୍ଗତିପନ୍ନ ବ୍ୟକ୍ତିଙ୍କ ସଂଖ୍ୟା ଅତ୍ୟନ୍ତ ଅଳ୍ପ । ପାଣ୍ଠି ନାହିଁ ଯେ ବାଣିଜ୍ୟ କରିବେ ଓ ବାଲ୍ୟକାଳରୁ ଅଭ୍ୟାସ ହୋଇ ନାହିଁ ଯେ କୃଷି ବା ଅନ୍ୟ ବ୍ୟବସାୟ କରିବେ । ଆଇନ୍ ଡାକ୍ତରୀ ଓ ଇଞ୍ଜିନିୟରୀ ଶିକ୍ଷା କରିବାର ଉପାୟ ଏଠାରେ ନାହିଁ ଯେ ତହିଁରେ କିଛି କରି ପାରିବେ । ଚାକରୀ ଭିନ୍ନ ଏପରି ଲୋକଙ୍କର ଗତି ନାହିଁ ଓ ତହିଁ ସକାଶେ ସେମାନେ ନାନା କଷ୍ଟ ପାଇ ବିଦ୍ୟା ଶିଖୁଅଛନ୍ତି । ଏମାନଙ୍କ ମଧ୍ୟରୁ ସୁଶିକ୍ଷିତ ଲୋକ ଦେଖି ସରକାରୀ କର୍ମରେ ନିଯୁକ୍ତ କରିବାର ନିୟମ କରନ୍ତୁ ଓ ସେ ନିୟମକୁ ଏମନ୍ତ ଦୃଢରୂପେ ପ୍ରତିପାଳନ କରନ୍ତୁ ଯେ ଲୋକେ ବୁଝି ପାରିବେ କି ଯେ ଉତ୍ତମ ଶିକ୍ଷା ଲାଭ କରିବ ଓ ସଚ୍ଚରିତ୍ର ହେବ ସେହି ଏକା ସରକାରୀ କର୍ମ ପାଇବ ତାହା ହେଲେ ବର୍ତ୍ତମାନ ଯେତେ ଅକର୍ମଣ୍ୟ ଲୋକ ତାହାଙ୍କ ନିକଟରେ ଉମେଦବାରୀ କରି ତାହାଙ୍କ ଶାନ୍ତିଭଙ୍ଗ କରୁଅଛନ୍ତି ଏବଂ ସୁଶିକ୍ଷିତବ୍ୟକ୍ତିଙ୍କ ସହିତ ତାହାଙ୍କର ବିଚ୍ଛେଦ ଜନ୍ମାଉଅଛନ୍ତି ସେମାନେ ଆଉ ତାହାଙ୍କୁ ବିରକ୍ତ କରିବାକୁ ସମର୍ଥ ହେବେ ନାହିଁ ।

*ଭା୧୨ଗ,ସଂ୨୨ଖ୍ୟା ,୨।୬।୧୮୭୭*

## [ବୀମ୍‌ସ ସାହେବଙ୍କ ବାଲେଶ୍ୱର ଗସ୍ତ]

ଗତ ପ୍ରକାଶିତ ଉତ୍କଳଦର୍ପଣରେ ପାଠକଙ୍କୁ ଯେ ଶ୍ରୀଯୁକ୍ତ ବିମ୍‌ସ ସାହେବ, କମିଶ୍ନର ସ୍ୱରୂପ ବାଲେଶ୍ୱରକୁ ଗସ୍ତ କରିବାକୁ ଯାଇଥିବାରୁ ତାହାଙ୍କୁ ଉକ୍ତ ନଗରବାସିମାନେ କି ପ୍ରକାର ସମ୍ମାନ ସହିତ ଗ୍ରହଣ କରିବେ ତାହା ସ୍ଥିର କରିବା ସକାଶେ ଗୋଟିଏ ବୃହତ୍ ସଭା ଚଳିତ ମାସ ତା୭ ରିଖରେ ଇଂରାଜୀସ୍କୁଲ ଗୃହରେ ହୋଇଥିଲା ଓ ବାବୁ ଜଗଦୀଶନାଥ ରାୟ ସଭାପତିର ଆସନ ଗ୍ରହଣ କରିଥିଲେ । ଶିକ୍ଷାବିଭାଗର ସବ୍ ଇନସ୍ପେକ୍ଟର ବାବୁ ଭୋଳାନାଥ ଦାସ ଗୋଟିଏ ପ୍ରବନ୍ଧ ପ୍ରସ୍ତୁତ କରି ପାଠ କରିଥିଲେ ତହିଁରେ ସାହେବ ପ୍ରସଂଶିତଙ୍କୁ ସମ୍ମାନ କରିବାର କର୍ତ୍ତବ୍ୟତା ଓ ତାହାଙ୍କର ଗୁଣାବଳୀ ବର୍ଣ୍ଣନା ଉତ୍ତାରୁ ତାହାଙ୍କ ସମ୍ମାନ ନିମିତ୍ତ ଯାହା କରିବାକୁ ହେବ ତାହାଛଡା ତାହାଙ୍କ ନାମ ଚିରସ୍ମରଣ ସକାଶେ ଗୋଟିଏ ସ୍ଥାୟୀ କାର୍ଯ୍ୟ ଅର୍ଥାତ୍ ଗୋଟିଏ ପୁସ୍ତକାଗାର ସ୍ଥାପନ କରିବାର ପ୍ରସ୍ତାବ କଲେ । ସଭାରେ ବି ସ୍ଥିର ହେଲା ଦର୍ପଣରେ ତାହା ଲେଖା ନ ଥିବାରୁ ଆମ୍ଭେମାନେ ମଧ୍ୟ କୌତୂହଳାକ୍ରାନ୍ତ ପାଠକଙ୍କୁ ସନ୍ତୋଷ କରି ପାରିଲୁଁ ନାହିଁ କେବଳ ଏତିକି ଲେଖାଅଛି ଯେ ସେଥିର ଉପାୟମାନ ସ୍ଥିର କରିବା ଓ ଭେଦା ସଂଗ୍ରହ ଇତ୍ୟାଦି କାର୍ଯ୍ୟ ନିର୍ବାହ ସକାଶେ ଗୋଟିଏ ସବ୍‌କମେଟୀ ନିଯୁକ୍ତ ହୋଇଅଛି । ପାଠକମାନେ ପଚାରିପାରନ୍ତି ଯେ ଏଥିପୂର୍ବେ ଅନେକ କମିଶ୍ନର ଅନେକଥର ବାଲେଶ୍ୱରକୁ ଯାଇ ଥିଲେ କାହାରି ସକାଶେ ଏପରି କିଛି ଆୟୋଜନ ହୋଇ ନ ଥିଲା ଆଜି ଏ ଭିଆଣ କାହିଁକି ? ଭୋଳାନାଥବାବୁ ଏପରି ପ୍ରଶ୍ନ ହେବ ବୋଲି ସୂଚନା କରି ତହିଁର ଉତ୍ତର ଏହିପରି ଦେଇ ଅଛନ୍ତି ଯଥା- " ୧ମ ହୁଏତ ଆମ୍ଭେମାନେ ଶାସନକର୍ତ୍ତାମାନଙ୍କୁ କିପରି ସମ୍ମାନ ସହିତ ଗ୍ରହଣ କରିବୁଁ ସେ ରୀତି ଜାଣି ନ ଥିଲୁଁ । ୨ୟ ବଳେ ମାରି ଭକ୍ତି କରା ହୁଅଇ ନାହିଁ । ଭକ୍ତି ମନର କାର୍ଯ୍ୟ ଯାହାଙ୍କ ପ୍ରତି ଆମ୍ଭମାନଙ୍କର ସ୍ୱତଃ ମନରେ ଭକ୍ତି ଉଦୟ ହୁଏ ତାହାଙ୍କୁ ସମ୍ମାନ ଦେବାପାଇଁ ଆମ୍ଭେମାନେ ଅଗ୍ରସର ହେଉଁ" ଏଥି ମଧ୍ୟରେ ପ୍ରଥମ କାରଣଟି ଆମ୍ଭମାନଙ୍କୁ ସଙ୍ଗତ ବୋଧ ହେଉଅଛି ଦ୍ୱିତୀୟ କାରଣଟି ଯେବେ ସତ୍ୟ ହୁଅନ୍ତା ତେବେ ଶ୍ରୀଯୁକ୍ତ ବିମ୍‌ସସାହେବ ସନ ୧୮୭୩ ମସିହାରେ କମିଶ୍ନର ହୋଇ ବାଲେଶ୍ୱରକୁ ଯାଇ ଥିଲେ ସେ ସମୟରେ ଏହି ଲୋକମାନେ ସେଠାରେ ଥିଲେ ଓ ବିମ୍‌ସସାହେବ ମଧ୍ୟ ବର୍ତ୍ତମାନ ପରି ଏକଟିଂ ହୋଇ ଯାଇଥିଲେ ଅବଶ୍ୟ ତାହାଙ୍କର ଯଥାବିହିତ ସମ୍ମାନ ହୋଇଥାନ୍ତା । ମାତ୍ର ସେପରି କିଛି ଆୟୋଜନ ସେ ସମୟରେ ହୋଇ ନ ଥିଲା ଏଥିରୁ ଅବଶ୍ୟ ଅନିବାର୍ଯ୍ୟରୂପେ ତର୍କ ବାହାରୁ ଅଛି ଯେ ସେ ସମୟରେ ବାଲେଶ୍ୱରବାସିଙ୍କର ବର୍ତ୍ତମାନ୍ ପରି ଭକ୍ତି ନ ଥିଲା ମାତ୍ର ଏକଥା ବଡ଼ ଅସଙ୍ଗତ ଅଟଇ । କାରଣ ଶ୍ରୀଯୁକ୍ତ ବିମ୍‌ସସାହେବ ଯେତେବେଳେ ତାହାଙ୍କ ମଧ୍ୟରେ ଥାଇ ତାହାଙ୍କର ଅନେକ ଉପକାର ସାଧନ କରିଥିଲେ ଓ ସେଥିର ପୁରସ୍କାର ସ୍ୱରୂପ ଉଚ୍ଚକର୍ମ ଲଭି ସେମାନଙ୍କୁ ଭେଟିଲେ ଯେବେ ତେତେବେଳେ ତାହାଙ୍କର ଭକ୍ତି ଉଦୟ ହୋଇ ନ ଥିଲା ତେବେ ବର୍ତ୍ତମାନ୍ ଭକ୍ତି କାହୁଁ ଆସିବ ? ସୁତରାଂ ବୋଲିବାକୁ ହେବ ଯେ ତାହାଙ୍କର ଭକ୍ତି ବରାବର ଥିଲା କେବଳ ସମ୍ମାନ କରିବାର ରୀତି

ସେ ସମୟରେ ଶିକ୍ଷା କରି ନ ଥିବାରୁ ତାହା ଦେଖାଇ ପାରି ନ ଥିଲେ । ମାନ୍ୟବର ସର୍‌ରିଚ୍ଛର୍ଡ ଟେମ୍ପଲ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ସନ ୧୮୭୪ ମସିହାରେ ଓଡ଼ିଶା ସନ୍ଦର୍ଶନକୁ ଆସିବାରୁ ଏଠାଲୋକେ ଶାସନକର୍ତ୍ତାଙ୍କୁ ସମ୍ମାନ କରିବାର ରୀତି ଶିଖିଲେ ତହିଁ ପୂର୍ବେ ମାନ୍ୟବର ହାଲିଡେ ଓ ବିଡନସାହେବମାନେ ଆସିଥିଲେ ମାତ୍ର ତାହାଙ୍କର ସମ୍ମାନ ନିମିତ୍ତ ସର୍ବସାଧାରଣ କୌଣସି ଉତ୍ସବ କରି ନ ଥିଲେ । ସନ ୧୮୭୪ସାଲରେ କେବଳ ଲେଫ୍‌ଟନେଣ୍ଟ ଗବର୍ଣ୍ଣରଙ୍କୁ ସମ୍ମାନ କରିବାର ଶିକ୍ଷାଲାଭ ହୋଇ ଥିଲା । କ୍ରମଶଃ କମିଶ୍ନର ପର୍ଯ୍ୟନ୍ତ ସେ ରୀତି ବିସ୍ତାର ହୋଇ ଆସିଲା ଏଣିକି ବୋଧ ହୁଅଇ କଲେକ୍‌ଟର ଓ ସବ୍‌ଡିବିଜନ ଡେପୁଟିକଲେକ୍‌ଟର ପର୍ଯ୍ୟନ୍ତ ଏହି ରୀତି ଚଳି ଆସିବ । ଏତେଗୁଡାଏ ଭଲ ନୁହଇ ଭକ୍ତି ଯେବେ ମନର କାର୍ଯ୍ୟ ତେବେ ତାହାକୁ ମନରେ ରଖିବାର ଉଚିତ ଭଣ୍ଡବୈଷ୍ଣବ ସୁଦ୍ଧା ଗୁଡାଏ ତିଳକଚିତା ଦେହରେ ଚିତ୍ରକରି ଭକ୍ତି ଦେଖାଇ ଥାଏ ଯାହା ହେଉ ଭୋଳାନାଥବାବୁ ଗୋଟିଏ ସାର ପ୍ରସ୍ତାବ କରି ଅଛନ୍ତି ଓ ଯେବେ ତାହାଙ୍କ ପ୍ରସ୍ତାବିତ ପୁସ୍ତକାଳୟଟି ସ୍ଥାପନ ହୋଇ ପାରେ ତେବେ ଅବଶ୍ୟ ବାଲେଶ୍ୱରବାସିଙ୍କର ଶ୍ରୀଯୁକ୍ତ ବିମ୍‌ସସାହେବଙ୍କ ପ୍ରତି ଅଟଳ ଭକ୍ତି ପ୍ରକାଶ ପାଇବ ଓ ତଦ୍ୱାରା ଶ୍ରୀଯୁକ୍ତ ବିମ୍‌ସସାହେବଙ୍କ ନାମ ଯେମନ୍ତ ଦୀର୍ଘକାଳ ଚିରସ୍ମରଣୀୟ ହେବ ତେମନ୍ତ ବାଲେଶ୍ୱରବାସିଙ୍କର ପ୍ରକୃତ ଉପକାର ହେବ ଓ ଅପର ସ୍ଥାନର ଲୋକମାନେ ସେମାନଙ୍କର ଭକ୍ତିର ପ୍ରଶଂସା କରି ଆନନ୍ଦିତ ହେଉଥିବେ ।

*ଭା୧୨ଗ, ସଂ୨୪ଖ୍ୟା, ୧୬।୬।୧୮୭୭*

## [ଖ୍ରୀଷ୍ଟିୟାନ ସ୍କୁଲ ସକାଶେ ଆର୍ଥିକ ସାହାଯ୍ୟ ନ୍ୟାୟସଂଗତ ନୁହେଁ ]

ଚଳିତ ମାସ ତା ୧୭ରିଖରେ ଏ ଜିଲାର ଶିକ୍ଷା କମିଟିର ଅଧିବେଶନ ହୋଇଥିଲା । ଏଥିର କାର୍ଯ୍ୟ ମଧ୍ୟରେ ଗୋଟିଏ କାର୍ଯ୍ୟ ଆମ୍ଭମାନଙ୍କୁ ନ୍ୟାୟସଙ୍ଗତ ବୋଧ ହେଉ ନାହିଁ । ତାହା ଏହି, ଏଠାର ଖ୍ରୀଷ୍ଟିୟାନ ସ୍କୁଲ(Christian School) ନାମକ ବିଦ୍ୟାଳୟ ସକାଶେ ସାହାଯ୍ୟ ପ୍ରାପ୍ତିର ଆବେଦନ ହୋଇଥିବାରୁ ସଭାପତି ଶ୍ରୀଯୁତ ବିମ୍‌ସସାହେବ ଉକ୍ତ ଆବେଦନ କମିଟିରେ ଆଗତ କରି ମେଓ ଫଣ୍ଡରୁ ଓ ଅନ୍ୟାନ୍ୟ ବାବତରୁ ମାସିକ ଟ ୬୪ ଙ୍କା ସାହାଯ୍ୟ ଦେବାର ପ୍ରସ୍ତାବ କଲେ । ଏଥିରେ ଡାକ୍ତର ଷ୍ଟୁଆର୍ଟସାହେବ ପୋଷକତା କଲେ କିନ୍ତୁ ଶ୍ରୀଯୁତ କଲେକ୍‌ଟର ବିଡନସାହେବ ଆପତ୍ତି କରି କହିଲେ ଯେ ଏପରି ଦାନ ମେଓ ଫଣ୍ଡରୁ ହୋଇ ନ ପାରେ କାରଣ ତାହା ଉକ୍ତ ଫଣ୍ଡର ଆଦିକଳ୍ପନାର ବହିର୍ଭୁତ ଅଟଇ । ହାଣ୍ଡଲିସାହେବ ଜଣ୍ଟ ମେଜଷ୍ଟର ଏ ଆପତ୍ତିର ପୋଷକତା କଲେ ତହୁଁ ଭାରୀ ତର୍କବତର୍କ ଲାଗିଲା ଓ ପୁରାତନ ପଣ୍ଡିତଙ୍କ ପରି ତର୍କକାରିମାନେ କିଞ୍ଚିତ୍ ସତେଜ ହୋଇଉଠିଲେ କହିଲେ କୁହାଯାଇପାରେ । ବିଡନ୍‌ସାହେବ ଆପଣା ଆପତ୍ତିର ପୋଷକତାରେ ଅନେକ ହେତୁ ଓ ଯୁକ୍ତି ଦର୍ଶାଇଲେ କିନ୍ତୁ ବିମସ୍‌ସାହେବ ସେସବୁ ଗ୍ରାହ୍ୟ କଲେ ନାହିଁ । ସେ ନୂତନ ଲୋକ ଥିବା ଦୋଷରେ ସବୁ ଖଣ୍ଡନ ହୋଇଗଲା । ତହୁଁ ଏ ବିଷୟରେ ଉପସ୍ଥିତ ସଭ୍ୟମାନଙ୍କର ମତ ପ୍ରାର୍ଥନା ହେଲା । ହାଣ୍ଡଲିସାହେବ ଓ ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀଙ୍କ ଭିନ୍ନ ଅନ୍ୟ ସମସ୍ତେ ବିମସ୍‌ସାହେବଙ୍କ ସପକ୍ଷରେ ମତ ପ୍ରଦାନ କଲେ ସୁତରାଂ ତାଙ୍କ ପ୍ରସ୍ତାବ ଧାର୍ଯ୍ୟ ହେଲା । ଅଧିକାଂଶ ବ୍ୟକ୍ତିଙ୍କର ଯେଉଁ ମତ ତାହା ଠିକ ଏପରି ଯୁକ୍ତିକୁ କାହାରି ଉତ୍ତର ନାହିଁ ତେବେ କମିଶ୍ନର ସାହେବଙ୍କ ଇଚ୍ଛା ବିରୁଦ୍ଧରେ ମତ ଦେବେ ଏପରି ସ୍ୱାଧୀନ ସଭ୍ୟ ମୋଫସଲରେ ଅତି ବିରଳ । ବର୍ତ୍ତମାନର ଶିକ୍ଷିତ ଲୋକମାନେ ଦିବାରାତ୍ର ସ୍ୱାଧୀନତା ପାଁଇ ବ୍ୟସ୍ତ ଓ ଘରେ ବସି କେତେ ସ୍ୱାଧୀନ ଭାବ ଦେଖାଉଥାନ୍ତି ମାତ୍ର ବଡ଼ ବଡ଼ ହାକିମଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ସେହି ମର୍ଯ୍ୟାଦାରେ ଭୋଳ ହୋଇଯାଇଁ ସେସବୁ ଭାବ ଏକାବେଳକେ ପାସୋରି ପକାନ୍ତି । ଏ ସବୁ ଦେଖି ମନରେ ଅହରହ ଏହି କଥା ଜାତ ହୁଅଇ ଯେ ମୋଫସଲର କମିଟିମାନ ବିଡ଼ମ୍ବନାମାତ୍ର । 'ମେଓ ଫଣ୍ଡ' ର ଉଦ୍ଦେଶ୍ୟ ବୋଧ ହୁଅଇ କାହାରିକୁ ଅବିଦିତ ନାହିଁ । ଓଡିଶାର ଛାତ୍ରମାନେ ବିଶ୍ୱବିଦ୍ୟାଳୟର ପ୍ରବେଶିକା ବା ଫାଷ୍ଟ ଆର୍ଟସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ଉତ୍ତାରୁ ଅର୍ଥାଭାବରେ ବଙ୍ଗଳାର ନାନା କଲେଜକୁ ଯାଇଁ ଉଚ୍ଚ ଶିକ୍ଷା ଲାଭ କରି ପାରୁ ନ ଥିଲେ ଏହିପରି ଛାତ୍ରଙ୍କ ସାହାଯ୍ୟ ନିମିତ୍ତ ଉକ୍ତ ଫଣ୍ଡ ସ୍ଥାପିତ ହୋଇଅଛି । କେବଳ ଯେଉଁମାନେ ବଙ୍ଗଳାକୁ କଲେଜରେ ପଢିବାଲାଗି ଯାଉଥିଲେ ସେମାନେ ତାହା ପାଉଥିଲେ ।

ପଛେ ଏଠାରେ କଲେଜ ସ୍ଥାପନ ହେବାରୁ ଏହି କଲେଜରେ ପଢିବା ବ୍ୟକ୍ତିକୁ ତାହା ଦିଆଗଲା । ଏବ୍ୟବସ୍ଥା ମଧ ସମ୍ପୂର୍ଣ୍ଣରୂପେ ଦୋଷଶୂନ୍ୟ ନୁହଇ କାରଣ ପ୍ରକୃତରୂପେ ବୁଝିବାକୁ ହେଲେ ଯେଉଁ ଉଚ୍ଚ ବିଦ୍ୟାଶିକ୍ଷା ଓଡିଶାରେ ହୋଇ ନ ପାରେ ତାହା ବଙ୍ଗଳାରେ ଯାଇଁ ଶିକ୍ଷା କରିବା ସକାଶେ ଉକ୍ତ ଫଣ୍ଡ ସ୍ଥାପନ ହୋଇଅଛି । ତଥାଚ ଏଠା କଲେଜରେ ତହିଁରୁ ବୃତ୍ତି ଦେବା ଏକପ୍ରକାର ଉଚ୍ଚ ଶିକ୍ଷାର ବିସ୍ତାର କରିବା ହେବାରୁ ତାହାକୁ ତେତେ ମନ୍ଦ ବୋଲାଯାଇ ନ ପାରେ । ଏପରି ଫଣ୍ଡରୁ ଖ୍ରୀଷ୍ଟିୟାନ ବିଦ୍ୟାଳୟକୁ ସାହାଯ୍ୟ ଦେବା ସମ୍ପୂର୍ଣ୍ଣ ଅନ୍ୟାୟ ଅଟଇ ସୁତରାଂ କଲେକ୍‌ଟରସାହେବଙ୍କ ଆପତ୍ତି ସର୍ବତୋଭାବେ ଯଥାର୍ଥ ଥିଲା ମାତ୍ର କମିଶ୍ନରସାହେବଙ୍କ ପାଖରେ ତାହାଙ୍କର ମୂଲ୍ୟ କେତେ ।

*ଭା୧୨ଗ,ସଂ୩୦ଖ୍ୟା ,୨୮ ।୭।୧୮୭୭*

## ଉତ୍କଳଭାଷାର ଦୁର୍ଦ୍ଦଶା ।

ଉତ୍କଳଦର୍ପଣ ନାମର ମୋକଦ୍ଦମାର ଗୁହାଙ୍କ ଯୋବାନବନ୍ଦି ପାଠ କରୁ କରୁ ଦେଖିଲୁଁ ଯେ ଏକଜଣ ଗୁହା କହିଲା କି ସେ ଓଡିଆଭାଷା ଉତ୍ତମରୂପେ ଜାଣେ । ସେହି ଗୁହାର ଓଡିୟାଭାଷାରେ କେତେଦୂର ଜ୍ଞାନ ଅଛି ତାହା ଜାଣିବା କାରଣ 'କେକି ପ୍ରିୟପୁଷ୍ପ ଉଦ୍ଭବ ବାନ୍ଧବ ସୁତର ଭୟରୁ ରଖ' ଏହି ପଦର ଅର୍ଥ ତାହାକୁ ପଚରାଗଲା ସେ କହିଲା କି ଏଥିର ଅର୍ଥ ସେ କରିପାରିବ ନାହିଁ  ସେ ସନ୍ଧି ପଢି ନାହିଁ ଓ ବ୍ୟାକରଣ ଜାଣଇ ନାହିଁ ।

ଏ ଜୋବାନବନ୍ଦୀ ପାଠ କରି ଆମ୍ଭମାନଙ୍କର ଏହି କଥା ଉଦୟ ହେଉଅଛି ଯେ ଓଡିଆଭାଷା କି ଦୁର୍ଦ୍ଦଶାକୁ ଲଭିଅଛି ! ଓଡିଆଭାଷା କେବଳ କର୍ମ ଚଳାଇବାର ଭାଷା ନୁହଇ ଏଥିରେ ଉତ୍କୃଷ୍ଟ ସାହିତ୍ୟ ପୁସ୍ତକମାନ ଅଛି କି ଯାହା ପଢ଼ିଲେ ପାଣ୍ଡିତ୍ୟ ଲାଭ ହୁଅଇ । ଉପେନ୍ଦ୍ର ଭଞ୍ଜ ପ୍ରଭୃତି କବିମାନେ ଯେଉଁ କାବ୍ୟମାନ ଲେଖି ଯାଇଅଛନ୍ତି ତାହା ବୁଝିବା ମୂର୍ଖ ଲୋକର କାର୍ଯ୍ୟ ନୁହଇ ବାସ୍ତବରେ ସେସବୁ ବୁଝିବା ସକାଶେ ନାନା ଶାସ୍ତ୍ର ଓ ପୁରାଣର ମର୍ମ ଜାଣିବା ଆବଶ୍ୟକ ହୁଅଇ । କିନ୍ତୁ ଆଜିକାଲି କେତେ ଲୋକ ଅଛନ୍ତି ଯେ ସେସମସ୍ତ ବୁଝିପାରିବେ ଅଥଚ ଯେ ସେ କହିବୁଲୁଅଛି ଯେ 'ମୁଁ ଉତ୍ତମରୂପେ ଓଡିଆଭାଷା ଜାଣେ ।' ଜାଣିବା ଲୋକେ ଏପରି କଥା ଶୁଣିଲେ ଟାହୁଳି କରିବେ ଅଥବା ମୂର୍ଖ ବୋଲି ଦୟା ପ୍ରକାଶ କରିବେ ମାତ୍ର ତହିଁରେତ ଏପରି ଲୋକର ଭ୍ରମ ଭାଙ୍ଗିବ ନାହିଁ ବା ମୂର୍ଖତା ଯିବ ନାହିଁ । ସୁତରାଂ ଓଡିଆଭାଷାର ଦୁର୍ଦ୍ଦଶା ମୋଚନ ହେବାର ଆଉ ଉପାୟ ନାହିଁ । ଆମ୍ଭେମାନେ ଦୁଃଖରସହିତ ଦେଖୁଅଛୁଁ ଯେ ଦିନକୁଦିନ ଯେତେ ଦେଶୀୟ ଭାଷା ଶିକ୍ଷାର ବିସ୍ତାର ହେଉଅଛି ତେତେ ଭାଷାର ପ୍ରକୃତ ଜ୍ଞାନ ଲୋପ ପାଉଅଛି । ପୂର୍ବକାଳର ଚଟଶାଳୀରେ ପଢିଥିବା ଗୋଟିଏ ଗୋଟିଏ ଲୋକ ଅବଧି ବଞ୍ଚି ଅଛନ୍ତି କି ଯେଉଁମାନେ ନାନା ଛାନ୍ଦ ପୁସ୍ତକରୁ କଥା ପ୍ରସଙ୍ଗରେ ଉଦାହରଣ ସ୍ୱରୂପ ଦୁଇ ଚରି ଅଥବା ଆବଶ୍ୟକ ହେଲେ ଦଶ ପଚିଶ ପଦ ପଢ଼ିଯିବେ ଓ ପୋଥି ଧରି ବସିଲେ ଅର୍ଥ କହି ଯିବେ କିନ୍ତୁ ବର୍ତ୍ତମାନ୍ ଯେଉଁମାନେ ଭାଷା ଶିକ୍ଷା କରି ପରୀକ୍ଷା ଦେଇ ବାହାରୁ ଅଛନ୍ତି ସେମାନଙ୍କ ମଧରେ ଜଣେ ସେପରି ଅଛି କି ? ଅନ୍ୟ ଲୋକର କଥା ତେଣିକି ଥାଉ ବିଦ୍ୟାଳୟର ପଣ୍ଡିତମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରାୟ ଛାନ୍ଦ ପୋଥି ବାଟେ ଯାଇ ନାହାନ୍ତି । ପୂର୍ବକାଳର ଗ୍ରନ୍ଥସବୁ କଠିନ ହେଲା ବୋଲି ଶିକ୍ଷା ବିଭାଗରେ ନିଯୁକ୍ତ ଥିବା କର୍ମଚରିମାନେ ଆପଣାକୁ ସହଜ ହେବ ପାଇଁ ଗୋଟିଏ ନୂତନ ଭାଷାର ସୃଷ୍ଟି କରୁ ଅଛନ୍ତି । ଅବଧି ତାହା କୌଣସି ଅଂଶରେ ପୁଷ୍ଟି ଲାଭ କରି ନାହିଁ । ଏବଂ ଉପଯୁକ୍ତ ସାହିତ୍ୟ ପୁସ୍ତକମାନ ବାହାରିବା ପର୍ଯ୍ୟନ୍ତ ଏହାକୁ ପ୍ରକୃତ ଲିଖିତ ଭାଷା ବୋଲି ଜ୍ଞାନ କରିବା ବିଡ଼ମ୍ବନା ମାତ୍ର । ଫଳତଃ ବ୍ୟବହାରିକ ବିଷୟରେ ଏହାକୁ ଭାଷା ବୋଲି ଜ୍ଞାନ କଲେସୁଦ୍ଧା କି ଓଡିୟା ଲିଖିତ ଭାଷା ନ ଜାଣିବା ଉଚିତ ହୁଅଇ ? ଆମ୍ଭମାନଙ୍କ ବିବେଚନାରେ ଭାଷାର ପ୍ରକୃତ ଜ୍ଞାନ ସକାଶେ ପୂର୍ବର ରଚିତ କାବ୍ୟମାନଙ୍କର ଅର୍ଥ ବୁଝିବା ନିତାନ୍ତ କର୍ତ୍ତବ୍ୟ ମାତ୍ର ସେ ଅଂଶରେ କାହାରି ଦୃଷ୍ଟି ଯାଉ ନାହିଁ । ସ୍କୁଲରେ ସେ ସବୁ ପୁସ୍ତକ ପଢାଇବାର  ପ୍ରସଙ୍ଗ ହେଲେ ତତ୍‌କ୍ଷଣାତ୍ ଏହି ଆପତ୍ତି ହୁଅଇ ଯେ ସେ ସମସ୍ତ ଅଶ୍ଳୀଳ ଭାବରେ ପରିପୂର୍ଣ୍ଣ ଓ ପାଠ୍ୟ ପୁସ୍ତକ ହେବାର ଯୋଗ୍ୟ ନୁହେ । ଆମ୍ଭେମାନେ ସ୍ୱୀକାର କରୁଁ କି ଯେସମୟରେ ଉକ୍ତ ପୁସ୍ତକ ମାନ ରଚିତ

ହୋଇଥିଲା ସେକାଳର ରୁଚିଠାରୁ ବର୍ତ୍ତମାନ୍ ରୁଚି ଅନେକ ଉନ୍ନତ ହୋଇଅଛି ଅତଏବ ସେସବୁ ପୁସ୍ତକର ଅନେକାଂଶ ପକ୍ଷରେ ଅଶ୍ଳୀଳତାର ଆପତ୍ତି ଯଥାର୍ଥ ଅଟଇ ପ୍ରକୃତରେ ବୁଝିବାକୁ ଗଲେ ସେ ସବୁ ପୁସ୍ତକ ବାଳକମାନଙ୍କ ପଢ଼ିବା ସକାଶେ ହୋଇ ନ ଥିଲା ମାତ୍ର ସେ ସବୁ ପୁସ୍ତକ ଆଦୌ ପାଠ୍ୟ ଯୋଗ୍ୟ ନୁହଇ ଏହା ଆମ୍ଭେମାନେ ସ୍ୱୀକାର କରି ନ ପାରୁଁ । ଅନ୍ତତଃ ଯେରୂପ ଶିକ୍ଷାକଲେ ବାଳକମାନେ ବିଦ୍ୟାଳୟ ତ୍ୟାଗ କଲା ଉତ୍ତାରୁ ସେ ସମସ୍ତ ପୁସ୍ତକ ବୁଝି ପାରିବେ ସେରୂପ ଶିକ୍ଷା ଦେବା ପକ୍ଷରେ କି ଆପତ୍ତି ଅଛି । ପଣ୍ଡିତ ପ୍ରଭାକର ବିଦ୍ୟାରତ୍ନ ଏହି ଉଦ୍ଦେଶ୍ୟରେ ପଦ୍ୟ ସଂଗ୍ରହ ନାମରେ ପୁସ୍ତକ ପ୍ରକାଶ କରିଥିଲେ ମାତ୍ର ଉତ୍ସାହ ଅଭାବରେ ସେ ପୁସ୍ତକ ଗୁଡିକ ଆଲମାରିରେ ବନ୍ଦ ହୋଇ ସଡ଼ିଗଲା । ଏହିସବୁ ଦେଖି ଆମ୍ଭେମାନେ ପଚାରୁ ଅଛୁଁ ଯେ ଓଡିୟାଭାଷାର ଦୁର୍ଦ୍ଦଶା କେବେ ମୋଚନ ହେବ ?

*ଭା୧୨ଗ, ସଂ୩୯ଖ୍ୟା , ୨୯।୯।୧୮୭୭*

## ପ୍ରେରିତପତ୍ର ।

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ

ମହାଶୟ ସମୀପେଷୁ

ମହାଶୟ !

ଆଜି ଆପଣଙ୍କ ପତ୍ରିକପାର୍ଶ୍ୱର ମୁଁ ଜଣେ ପ୍ରାର୍ଥୀ । ପ୍ରତି ଉତ୍କଳବାସିର ଲାଭାଲାଭଜଡିତ ଗୋଟିଏ ବିଷୟରେ ମୋର କିଛି ବକ୍ତବ୍ୟ ଅଛି । ଆପଣଙ୍କ ପତ୍ରଦ୍ୱାରା ମୁଁ ତାହା ବ୍ୟକ୍ତ କରିବି । ଆମ୍ଭମାନଙ୍କର ପ୍ରଧାନ ହାକିମ କମିଶନର ସାହେବ ତାହା ଶୁଣିବେ, ସେଥିର ପ୍ରତୀକାର କରିବେ ଏହି ଆଶାରେ ମୁଁ ଉକ୍ତ ବିଷୟଟି ଛପାଇବା ପାଁଇ ଆଜି ଏଡ଼େ ବ୍ୟସ୍ତ ହୋଇଅଛି । ସାନଲାଟ ଶୁଣିବେ ବୋଲି ଆଶା ବଳାନ୍ତି , ମାତ୍ର ସାନଲାଟଙ୍କର ଦେଶୀୟ ସମ୍ବାଦପତ୍ର ପ୍ରତି ଯେଉଁ ଭକ୍ତି, ସେଥିରେ ଯେ ସେ ଶୁଣିବେ ଏଥିରେ ମୋହୋର ସନ୍ଦେହ ଜନ୍ମୁଅଛି । ପୁଣି ଏଠାର ଉତ୍କଳ ଅନୁବାଦକ ମହାଶୟ ସପ୍ତାହକୁ ସପ୍ତାହ ଅନୁବାଦ କରି ପଠାନ୍ତି କି ନାହିଁ, ସେଥିରୁ ସୁଦ୍ଧା ଅଜ୍ଞାତ । ସୁତରାଂ ସେ ଆଶା ନାହିଁ । ଶୁଣୁଛି ବୀମ୍ସ ସାହେବ ଟିକିଏ ଟିକିଏ ଏବେ ଆପଣଙ୍କ ପତ୍ର ପଢନ୍ତି, ମଧ ସେ ପ୍ରଧାନ ଉତ୍କଳହିତୈଷୀ ବୋଲି ସପ୍ତାହକୁ ସପ୍ତାହ ପକ୍ଷକୁ ପକ୍ଷ ବାଲେଶ୍ୱରରୁ ରଡି ଆସୁଅଛି; ଓଡିଶାର ପ୍ରତ୍ୟେକଗୃହ, ଶୁଣିବାରେ, ତାଙ୍କର ଯଶଧ୍ୱନିକୁ ପ୍ରତିଧ୍ୱନିତ କରୁଅଛି । ମଧ ତାଙ୍କର ଶୁଣିଛି ବଡ଼ ଦୟାର୍ଦ୍ରଚିତ୍ତ । ଲୋକଙ୍କ 'ମୋହବତ୍' ସେ ଏଡି ପାରନ୍ତି ନାହିଁ । ଏସବୁରୁ ସେ ନିଶ୍ଚେଁ ମୋ ଗୁହାରି ଶୁଣିବେ ବୋଲି ମୋହୋର ବଡ଼ ଆଶା ଜନ୍ମିଅଛି । ମୋ ଗୁହାରି ତାଙ୍କ କର୍ଣ୍ଣରେ ପଡିଲେ, ମୋ କାମନା ସଫଳ ହୋଇ ପାରେ ।

ତେବେ ଅଧିକ ମୁଖବନ୍ଧ ଅନାବଶ୍ୟକ । ମୂଳ ପ୍ରସ୍ତାବର ସୂଚନା ହେଉ । ମୂଳ ପ୍ରସ୍ତାବଟି ସାମାନ୍ୟ । ସେଥି ପ୍ରତି ଅବଧାନ କରନ୍ତୁ ।

ବର୍ତ୍ତମାନ ଓଡିଶା ବିଦ୍ୟାଳୟସମୂହର ବାବୁ ନନ୍ଦକିଶୋର ଦାସ ଜଏଣ୍ଟ ଇନ୍‌ସ୍ପେକ୍ଟର ଅଟନ୍ତି । ଜଣେ ଦେଶୀୟ ଲୋକ ଜଏଣ୍ଟ ଇନ୍‌ସ୍ପେକ୍ଟର ହେଲେ ଓଡିଶା ବିଦ୍ୟାଶିକ୍ଷାର ଓ ଓଡିୟା ଭାଷାର ବହୁ ମଙ୍ଗଳ ହେବ ବୋଲି ରାଭେନ୍‌ଶା ସାହେବ ତାଙ୍କୁ ଡେପୁଟୀ କିଲଟରିରୁ ଆଣି ଏ କାର୍ଯ୍ୟରେ ନିଯୁକ୍ତ କରାଇଥିଲେ । ଉକ୍ତ ବାବୁ ମଧ ଆଶାନୁରୂପ କାର୍ଯ୍ୟ କରିଅଛନ୍ତି । ଓଡିଶାର ଶିକ୍ଷିତ ଲୋକେ ଯଥାସାଧ ଶିକ୍ଷାର ପୁରସ୍କାର ବାବୁଙ୍କଠାରୁ ପାଇଅଛନ୍ତି । ଓଡିଶା ବିଦ୍ୟାଳୟ ଓ ପାଠଶାଳାଚୟର ଶିକ୍ଷାପ୍ରଣାଳୀ ଏହି ବାବୁଙ୍କ ଯତ୍ନରେ କ୍ରମଶଃ ଉନ୍ନତ ହେଉଅଛି । ତାଙ୍କଦ୍ୱାରା ବିଦ୍ୟାଳୟର ବୃତ୍ତି ପରୀକ୍ଷାନିଚୟର ଶୃଙ୍ଖଳା ସମ୍ୟକ୍‌ରୂପେ ସ୍ଥାପିତ ହୋଇଅଛି । ଉତ୍କଳ ପୁସ୍ତକମାନ ନିର୍ବାଚନ କରି ଉତ୍ତମ ଉତ୍ତମ ପୁସ୍ତକମାନଙ୍କୁ ବିଦ୍ୟାଳୟର ପାଠ୍ୟପୁସ୍ତକ ସ୍ୱରୂପ ନିର୍ଦ୍ଧାରିତ କରି ଉତ୍ତମ ଓଡିୟାପୁସ୍ତକ ରଚନା ବିଷୟରେ ଯଥେଷ୍ଟ ଉତ୍ସାହ ଦେଇଅଛନ୍ତି । ଏହିପରି ଗୋଟିଏ ଗୋଟିଏ କରି ତାଙ୍କ କାର୍ଯ୍ୟ କଥା ଲେଖିବା ମୋ ପକ୍ଷରେ ବାହୁଲ୍ୟ ମାତ୍ର । ତାଙ୍କର ନିଯୁକ୍ତି ସ୍ଥୁଳରେ ରାଭେନ୍‌ଶା ସାହେବଙ୍କର ଓଡିଶାରେ ଗୋଟିଏ କୀର୍ତ୍ତିବିଶେଷ । ଆଜିକି ଚାରି ପାଞ୍ଚ ଦିନ ହେଲା ଶୁଣିଲି, ଡେପୁଟୀ କିଲଟରୀ ଧାଡ଼ିରେ ତାଙ୍କର

୧୦୦ଟଙ୍କା ବେତନ ବୃଦ୍ଧି ହେବାରୁ ତାଙ୍କୁ ୧୦୦ ଟଙ୍କା ଜଏଣ୍ଟ ଇନ୍‌ସ୍ପେକ୍ଟରୀ ଏଲାଓଏନ୍ସ ସାନଲାଟ ସାହେବ ଦେବାକୁ ଅସମ୍ମତ । ସୁତରାଂ ଉକ୍ତ ବାବୁ ଆପଣା ଡେପୁଟୀ କିଲଟରୀ କର୍ମକୁ ପ୍ରତିଗମନ କରୁଅଛନ୍ତି । ମୋହୋ ହୀନବିବେଚନାରେ, ନନ୍ଦକିଶୋର ବାବୁ ଯେପରି ଓଡିଶାର ଶୁଭାନୁଧ୍ୟାୟୀ ହୋଇ କାର୍ଯ୍ୟ କରିଅଛନ୍ତି ଓ ବର୍ତ୍ତମାନ ପ୍ରସ୍ତାବ ଅନୁସାରେ ଛୋଟାନାଗପୁର, ଚଟ୍ଟଗ୍ରାମ, ଓଡିଶା ପ୍ରଭୃତିରେ ୪୦୦ ଟଙ୍କା ବେତନରେ ଜଣେ ଜଣେ ଜଏଣ୍ଟ ବା ଅଶିଷ୍ଟନଣ୍ଟ ଇନ୍‌ସ୍ପେକ୍ଟର ରଖିବାର ଯେପରି କଥା ହୋଇଅଛି, ଏହି ଉଭୟ ବିଷୟକୁ ବିଚାର କରି, ନିତାନ୍ତପକ୍ଷେ ନନ୍ଦକିଶୋର ବାବୁଙ୍କର ଡେପୁଟୀ କିଲଟରୀ ଧାଡିରେ ୪୦୦ ଟଙ୍କା ହେବା ପର୍ଯ୍ୟନ୍ତ ତାଙ୍କୁ ୧୦୦ଟଙ୍କା ଏଲାଓଏନ୍ସ ଦେଇ ଓଡିଶା ଜଏଣ୍ଟ ଇନ୍‌ସ୍ପେକ୍ଟରୀ କାର୍ଯ୍ୟରେ ରଖାଯାଉ । ମଧ ଏହିତା ପ୍ରତ୍ୟେକ ଓଡିଶାବାସିର ହୃଦୟର ପ୍ରାର୍ଥନା । ନନ୍ଦକିଶୋର ବାବୁ ଓଡିଶାବାସୀ, ସୁତରାଂ ସେ ଓଡିଶାର ଶିକ୍ଷା ଓ ଓଡିୟା ଭାଷାର ପ୍ରକୃତ ଅଭାବ ବୁଝି, ସେଥିର ପ୍ରତୀକାର କରୁଅଛନ୍ତି ଓ ଏଥିମଧରେ ତାଙ୍କର କୃତକାର୍ଯ୍ୟତାର ବୀଜ ନିହିତ ରହିଅଛି ।

ଯଦି ଏହି ପ୍ରସ୍ତାବରେ ବୀମ୍ସ ସାହେବ କୌଣସି କାରଣରୁ ଅସମ୍ମତ ହୁଅନ୍ତି; ଯଦି ତାଙ୍କୁ ସେ ଜଏଣ୍ଟ ଇନ୍‌ସ୍ପେକ୍ଟରିରେ ଏଲାଓଏନ୍ସ ଦିଆଇ ରଖାଇବାକୁ ନ ଚାହାନ୍ତି ; ତେବେ ଜଣେ ଏ ଦେଶୀୟ ଲୋକ ତାଙ୍କ କର୍ମରେ ନିଯୁକ୍ତ କରିବା ବିଷୟରେ ଯେମନ୍ତ ସେ ଯତ୍ନର ତ୍ରୁଟି ନ କରନ୍ତି, ଏହିତା ତାଙ୍କୁ ସବିନୟ ପ୍ରାର୍ଥନା । ଓଡିଶାବାସିଏ ବଙ୍ଗଦେଶୀୟ କୌଣସି ଶିକ୍ଷାବିଭାଗୀୟ କର୍ମଚାରିଙ୍କୁ ଏ କାର୍ଯ୍ୟରେ ଦେଖିବାକୁ ଚାହାନ୍ତି ନାହିଁ । ବଙ୍ଗୀୟଙ୍କର ଓଡିଶାର ଶିକ୍ଷାରେ ସହାନୁଭୂତି ଜନ୍ମିବା କଥାରେ ଓଡିଶାବାସିଙ୍କର ବିଶେଷ ସନ୍ଦେହ ଅଛି । ମଧ ଏ ସନ୍ଦେହ ଅହେତୁମୂଳକ ନୁହେ ।

ଯାହା ହେଉ ଜଣେ ଦେଶୀୟଙ୍କ ନାମ ଏଠାରେ ଉଲ୍ଲିଖିତ ହୋଇ ପାରେ । ତାଙ୍କୁ ଉକ୍ତ କର୍ମ ଦେଲେ ଓଡିଶାବାସିଏ ଅସନ୍ତୁଷ୍ଟ ହେବେ ନାହିଁ । ସେ ବ୍ୟକ୍ତି ବାଲେଶ୍ୱରର ଡେପୁଟୀ ଇନସ୍ପେକ୍ଟର ରାଧାନାଥ ବାବୁ । ତାଙ୍କୁ ଏ କାର୍ଯ୍ୟରେ ନିଯୁକ୍ତ କଲେ ମଧ ଓଡିଶା ଶିକ୍ଷାବିଭାଗର ମଙ୍ଗଳର ସମ୍ୟକ୍ ସମ୍ଭାବନା । ସେ ପ୍ରକୃତ ବିଏ, ଏମେଙ୍କଠାରୁ ଉପଯୁକ୍ତତର । ଅନେକ ଶିକ୍ଷାବିଭାଗୀୟ ୨/୩ଶତ ଟଙ୍କା ବେତନ ପାଇବା ଲୋକଙ୍କ ଅପେକ୍ଷା ସୁଦକ୍ଷତର କର୍ମଚାରୀ ଓ ଅଧିକ ପାଣ୍ଡିତ୍ୟଧାରୀ ! ରାଭେନ୍‌ଶା ସାହେବ ସେଦିନ ଡେପୁଟୀ ଇନ୍‌ସ୍ପେକ୍ଟରୀ ଧାଡିରେ ତାଙ୍କୁ ପଦୋନ୍ନତି ନ ଦେଇ ତାଙ୍କ ପ୍ରତି ବିଶେଷ ଅନ୍ୟାୟ କରିଅଛନ୍ତି, ଏହା ବୋଧ ହୁଏ ସ୍ୱୟଂ ବୀମ୍ସ ସାହେବଙ୍କୁ ସୁଦ୍ଧା ଅଗୋଚର ନାହିଁ ।

ଶ୍ରୀଯୁତ ବୀମ୍ସ ସାହେବ ଉଲ୍ଲିଖିତ ଗୁହାରିଦ୍ୱୟ କର୍ଣ୍ଣଡେରି ଶୁଣି, ସେଥିମଧରୁ ଗୋଟିକୁ ସଫଳ କଲେ, ପ୍ରକୃତ ତାଙ୍କର ନାମର ଗୌରବ ଓଡିଶା ଶିକ୍ଷାସମ୍ବନ୍ଧରେ ପରିବର୍ଦ୍ଧିତ ହେବ । ଏହିଥିରୁ ମଧ ଜଣାଯିବ ଶ୍ରୀଯୁତ ବୀମ୍ସ ସାହେବଙ୍କର ଓଡ଼ିଶା ପ୍ରତି କେତେଦୂର ପ୍ରକୃତ ମମତା ! ! ! 'କିମଧିକଂ ବିଜ୍ଞବରେଷୁ' ।

ସମ୍ପାଦକ ମହାଶୟ ! ଆଜି ଏତିକି । ଓଡ଼ିଶା ଜଏଣ୍ଟ ଇନ୍‌ସ୍ପେକ୍ଟରୀ କାର୍ଯ୍ୟ ଜଣେ ଓଡ଼ିଶାବାସୀ ନ ପାଇଲେ ଓଡ଼ିଶା ଶିକ୍ଷାବିଭାଗର ବିଶେଷ ମଙ୍ଗଳ ନାହି । ଏଥିରେ ଆପଣଙ୍କ ମତ ଅବଶ୍ୟ ପ୍ରକାଶିତ ହେବ ।

ନିବେଦକ

ଠିକ୍‌ଠାକ୍

***ଅତିରିକ୍ତ ୨୯/୯/୧୮୭୭***

## ବାବାଜୀ ନାଟକ ।

ବାବୁ ଜଗନ୍ମୋହନଲାଲାଙ୍କ କୃତ କଟକପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ।

ଆମ୍ଭେମାନେ ଏ ପୁସ୍ତକ ଖଣ୍ଡିକ ଅତ୍ୟନ୍ତ ସମାଦର ସହିତ ଗ୍ରହଣ କରିଅଛୁଁ ଓଡ଼ିୟାଭାଷାରେ ଏପର୍ଯ୍ୟନ୍ତ ନାଟକ ରଚନା ହୋଇ ନ ଥିଲା । ଏହି ପୁସ୍ତକ ତହିଁର ପ୍ରଥମ ଉଦ୍ୟମ ଅଟଇ । ବାବୁ ଜଗନ୍ମୋହନଲାଲ ଓଡ଼ିୟା

ସାହିତ୍ୟ ସଂସାରରେ ନିତାନ୍ତ ଅପରିଚିତ ନୁହନ୍ତି ସମାଲୋଚିତ ଗ୍ରନ୍ଥ ରଚନାରେ ସେ ଅଧିକ କୃତକାର୍ଯ୍ୟ ହୋଇଅଛନ୍ତି । ଇଂରାଜୀ ଓ ସଂସ୍କୃତ ନାଟକର ଲକ୍ଷଣାନୁସାରେଏହାକୁ ପ୍ରକୃତ ନାଟକ ବୋଲିବାକୁ ମନ ବଳୁ ନାହିଁ ସତ୍ୟ ମାତ୍ର ବଙ୍ଗଳାଭାଷାରେ ନାଟକନାମରେ ଯେତେପ୍ରକାର ରଚନା ବାହାରିଅଛି ତହିଁସଙ୍ଗେ ତୁଳନା କଲେ ଏହାର ନାମ ନାଟକ ହେବା ବଡ ଦୂଷଣୀୟ ନୁହଇ । ନିତାନ୍ତ ପକ୍ଷରେ ନାଟକର ଭାଷା ଓ ରଚନାର ଛଟା କିପ୍ରକାର ହେବ ଏସବୁ ଅତି ଚମତ୍କାରରୂପେ ଗ୍ରନ୍ଥକର୍ତ୍ତା ଦର୍ଶାଇଅଛନ୍ତି ଓ ଅନେକ ଲୋକ ଏହାକୁ ଆଗ୍ରହପୂର୍ବକ ପଢିବାର ଦେଖାଯିବାରୁ ଅନାୟାସରେ ବୋଲାଯାଇ ପାରେ ଯେ ବର୍ତ୍ତମାନର ରୁଚିକୁ ଏହା ବଡ ସୁନ୍ଦର ଘେନିଅଛି । ଭଣ୍ଡ ମଠଧାରିଙ୍କ ଦୋଷ ପ୍ରକାଶ କରିବା ଏବଂ ଭୂତଡାଆଣୀ ଜଡି ମନ୍ତ୍ର ଇତ୍ୟାଦି ବିଷୟରେ ଲୋକଙ୍କର ପ୍ରଚଳିତ ଭ୍ରମ ଓ କୁସଂସ୍କାର ଛେଦନ କରିବା ଏ ଗ୍ରନ୍ଥର ମୋକ୍ଷ ଉଦ୍ଦେଶ୍ୟ ଜଣାଯାଏ ଓ ତହିଁରେ ଗ୍ରନ୍ଥକର୍ତ୍ତା ଆଶାତିରିକ୍ତ କୃତକାର୍ଯ୍ୟ ହୋଇଅଛନ୍ତି । ସଂକ୍ଷେପରେ ଆମ୍ଭମାନଙ୍କର ମନ୍ତବ୍ୟ ଏହି ଯେ ପୁସ୍ତକଖଣ୍ଡିକ ଉତ୍ତମ ହୋଇଅଛି । ଏହାଦ୍ୱାରା ନାଟକର ବାଟ ଫିଟିଲା ଏଥର ଅନ୍ୟାନ୍ୟ କୃତବିଦ୍ୟମାନେ ଏ ପକ୍ଷରେ ମନ ଦେଲେ ଅଚିରେ ପ୍ରକୃତ ନାଟକ ଓଡିୟାଭାଷାରେ ବାହାରି ପାରେ ।

*ଭା ୧୨ଗ,ସଂ୪୩ଖ୍ୟା ,୩ ।୧୧।୧୮୭୭*

## ବିଜ୍ଞାପନ ।

## ବାବାଜୀ ନାଟକ ।

ଏ ପୁସ୍ତକରେ ଜଣେ ଯଥାର୍ଥ ସାଧୁର ସୁଚରିତ୍ର ଓ ଉପଦେଶ, ବାବାଜିର ମହିମା, ମଠଧାରିଙ୍କ ଆଚରଣ, ହିନ୍ଦୁ ବାବୁର ସୁରାପାନ, ନବ୍ୟ ବାବୁ ଓ ଦେଶୀୟ ଖ୍ରୀଷ୍ଟିୟାନର କୁସଂସ୍କାର, ଡାଆଣୀ ଭୂତ, ଗାରଡିବିଦ୍ୟା ଏବଂ ରହସ୍ୟ ଓ ହିତକର କଥାମାନ ଅଛି । କଟକ ପ୍ରିଣ୍ଟିଂକମ୍ପାନିଙ୍କ ଯନ୍ତ୍ରାଳୟରେ ତତ୍ତ୍ୱ କଲେ ପୁସ୍ତକ ମିଳିବ । ମୂଲ୍ୟ ପ୍ରତିଖଣ୍ଡ ଟ୦। (ଚରିଅଣା) ।

ଶ୍ରୀ ଜଗନ୍ମୋହନ୍‌ଲାଲ୍
ଗ୍ରନ୍ଥକର୍ତ୍ତା ।

*ଭା।୧୨ଗ,ସଂ୪୩ଖ୍ୟା,୩ ।୧୧।୧୮୭୭*

## [ଓଡିଶାର ଯଏଣ୍ଟ ଇନ୍‌ସ୍ପେକ୍ଟର]

ଆମ୍ଭେମାନେ ଅନେକଦିନରୁ ଉଡାଖବର ଶୁଣିଥିଲୁଁ ଯେ ଓଡିଶାର ଯଏଣ୍ଟ ଇନ୍‌ସ୍ପେକ୍ଟରୀ ପଦ ସକାଶେ ଶ୍ରୀଯୁକ୍ତ ବୀମ୍‌ସ ସାହେବ ବାବୁ ରାଧାନାଥ ରାୟଙ୍କୁ ମନୋନୀତ କରି ଗବର୍ଣ୍ଣମେଣ୍ଟକୁ ରିପୋର୍ଟ କରିଥିଲେ । ଗତ ସପ୍ତାହର କଲିକତା ଗଜେଟ ଉକ୍ତ ଜନରବକୁ ସ୍ୱାର୍ଥ କଲା ଆମ୍ଭେମାନେ ବାବୁ ରାଧାନାଥଙ୍କ ନିଯୋଗରେ ଆନନ୍ଦିତ ହୋଇ ଅଛୁଁ । ଓଡିଶାର ଡେପୁଟୀ ଇନ୍‌ସ୍ପେକ୍ଟରଙ୍କ ମଧରେ ଏହାଙ୍କ ପ୍ରଶଂସା ଅଧିକ ପ୍ରତିବର୍ଷର ବିଜ୍ଞାପନୀରୁ ତାହା ପ୍ରକାଶ ପାଉଅଛି । ଇଂରାଜୀଭାଷାରେ ଏମ୍,ଏ. ଅଥବା ବି,ଏ, ହୋଇ ନ ଥିଲେ ମଧ ଘରେ ବସି ଅନେକ ଶିକ୍ଷା କରି ଅଛନ୍ତି ଏବଂ ଦେଶୀୟ ଭାଷାରେ ଏହାଙ୍କ ଯୋଗ୍ୟତାର ପରିଚୟ ଏହାଙ୍କ ପ୍ରକାଶିତ ପୁସ୍ତକମାନ ଦେଉଅଛି । କେହି କେହି ବୋଲନ୍ତି କି ଉମାପ୍ରସାଦ ଦେଙ୍କ ପ୍ରତି ଅନ୍ୟାୟ ହୋଇଅଛି କାରଣ ସେ ଏହାଙ୍କଠାରୁ ଉଚ୍ଚଶ୍ରେଣୀରେ ଥିଲେ । ମାତ୍ର ଏ ଆପତ୍ତି ଯଥାର୍ଥ ନୁହଇ କାରଣ ଉମାପ୍ରସାଦଙ୍କ ପଦୋନ୍ନତି ଠିକ୍ ନ୍ୟାୟ ବିଚାରରେ ହୋଇ ଥିବାପକ୍ଷେ ସନ୍ଦେହ ଅଛି ପୁଣି ସେ ଓଡିଶାର ଲୋକ ନୁହନ୍ତି । ଆମ୍ଭମାନଙ୍କ ମତରେ ବାବୁ ନନ୍ଦକିଶୋର ଦାସଙ୍କ ଉପରାରୁ ବାବୁ ରାଧାନାଥ ରାୟଙ୍କୁ ମନୋନୀତ କରିବାରେ ଶ୍ରୀଯୁକ୍ତ ବିମସ୍‌ସାହେବ ଉତ୍ତମ କରି ଅଛନ୍ତି ଏବଂ ଏଥିରେ ଓଡିଶାର ଲୋକମାନେ ସନ୍ତୁଷ୍ଟ ହେବାର ଜଣାଯାଏ ।

*ଭା।୧୨ଗ,ସଂ୪୬ଖ୍ୟା ,୨୪।୧୧।୧୮୭୭*

## ସାପ୍ତାହିକ ସଂବାଦ ।

ଆମ୍ଭେମାନେ ଖଣ୍ଡିଏ ଇଂରାଜୀ ବ୍ୟାକରଣ (Child's first Grammar) ପ୍ରାପ୍ତ ହୋଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏହା ଉମାନାଥ ଦେଙ୍କଦ୍ୱାରା ରଚିତ ଏବଂ ଦ୍ୱାରିକାନାଥ ଦେଙ୍କଦ୍ୱାରା ପ୍ରଚରିତ ହୋଇଅଛି ଏଥିରେ ଇଂରାଜୀ ବ୍ୟାକରଣର ସୂତ୍ରମାନ ଓଡିୟା ଭାଷାରେ ବୁଝାଇ ଦିଆ ଯାଇଅଛି । ଏଥିରେ ବାଳକମାନଙ୍କର ଉପକାର ହୋଇପାରେ ।

x x x x x x x x x x x x x x x x x

x x x x x x x x x x x x x x x x x

ବାବୁ ରାଧାନାଥ ରାୟଙ୍କ ଜଏଣ୍ଟ ଇନ୍‌ସ୍ପେକ୍‌ଟରୀ ପଦରେ ନିୟୋଗ ବିଷୟରେ ହିନ୍ଦୁପେଟ୍ରିଅଟ ବୋଲନ୍ତି କି ଶିକ୍ଷାବିଭାଗର ଲୋକମାନେ ଏହାକୁ ଏକଟିଂ କମିଶନର ବୀମ୍‌ସ ସାହେବଙ୍କ ମୁରବିଗିରୀର ଫଳସ୍ୱରୂପ ଜ୍ଞାନ କରନ୍ତି । ଯେସ୍ଥଳେ ଓଡିଶାର ଲୋକକୁ ନିଯୁକ୍ତ କରିବାର ନିୟମଟି ଗବର୍ଣ୍ଣମେଣ୍ଟ ସୁବିବେଚନାପୂର୍ବକ ସ୍ଥିର କରିଅଛନ୍ତି ସେସ୍ଥଳେ ଉକ୍ତ ଆପତ୍ତି ବଡ଼ ପ୍ରବଳ ବୋଧ ହେଉ ନାହିଁ ।

*ଭା।୧୨ଗ, ସଂ୪୭ଖ୍ୟା , ୧।୧୨। ୧୮୭୭*

## ସାପ୍ତାହିକସଂବାଦ ।

ଆମ୍ଭେମାନେ କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ଯେ ବାଲେଶ୍ୱରରୁ ଖଣ୍ଡିଏ ନୂତନ ପୁସ୍ତକ ପାଇଅଛୁ । ଏହାର ନାମ ବ୍ୟବହାରିକ ଭୂଗୋଳ ପ୍ରଥମଭାଗ । ପ୍ରଣେତା ବାବୁ ରାଧାନାଥ ରାୟ ଓ ବାବୁ ଶିବନାରାୟଣ ନାୟକ । ପ୍ରଚରକ ବାବୁ ଦ୍ୱାରିକାନାଥ ଦେ । ପୁସ୍ତକ ଖଣ୍ଡିକ ବିଚ୍ଛନ୍ଦ ବାବୁଙ୍କ ଭୂଗୋଳ ସୂତ୍ରରୁ ଅନେକ ସାନ ଓ ମୂଲ୍ୟ ଏକଅଣା ମାତ୍ର ଊଣା ଅଟଇ ତେବେ ଭୂଗୋଳସୂତ୍ରର ଅଧିକାଂଶ ଭାରତବର୍ଷ ଓ ମଧ୍ୟପ୍ରଦେଶର ବିବରଣରେ ବାହାରି ଯାଇଅଛି ଏ ପୁସ୍ତକରେ ସେ ଅଂଶର ଊଣା ହୋଇ ଅନ୍ୟାନ୍ୟ ବିବରଣ କିଞ୍ଚିତ୍ ଅଧିକ ଅଛି ।

x x x x x x x x x x x x x x x x x

*ଭା।୧୨ଗ, ସଂ୪୯ଖ୍ୟା, ୧୫।୧୨।୧୮୭୭*

# ୧୮୭୮

## [ଜଗନ୍ମୋହନ ରାୟଙ୍କ ନୂତନ ନିଯୁକ୍ତି]

ବାବୁ ହରେକୃଷ୍ଣ ଦାସଙ୍କ କର୍ମ ସକାଶେ ବାବୁ ଜଗନ୍ମୋହନ ରାୟଙ୍କୁ ଶ୍ରୀଯୁକ୍ତ କମିଶ୍ନର ରେବନ୍‌ସା ସାହେବ ମନୋନୀତ କରିଅଛନ୍ତି ଏହି କଥା ଓଡ଼ିଶାର ଚାରିଦିଗରେ ରାଷ୍ଟ୍ର ହୋଇଅଛି । ବଜାରରେ ଲୋକେ ଯେରୂପ କଥାବାର୍ତ୍ତା କରୁଅଛନ୍ତି ତହିଁରୁ ଜଣାଯାଏ ଯେ ସରକାରୀ କର୍ମଚାରି ଓ ଅନ୍ୟାନ୍ୟ କେତେକ ଜାଣିବା ବ୍ୟକ୍ତି ଛଡ଼ା ସର୍ବସାଧାରଣଙ୍କ ମତରେ ବାବୁ ହରେକୃଷ୍ଣ ଦାସ ବାବୁ ଜଗନ୍ମୋହନ ରାୟଙ୍କଠାରୁ ଉଚ୍ଚ ପଦରେ ଆସି ନ ଥିଲେ । ଲୋକେ କହୁଅଛନ୍ତି କି ହରି ବାବୁ ମାସକୁ ଟ୭୫୦ ଙ୍କା ବେତନ ପାଉଥିଲେ ଜଗନ୍ମୋହନ ବାବୁ ବଡ଼ କପାଳିଆ ଯେ ସେ କର୍ମକୁ ଲଭିବେ ଓ ଏହି କର୍ମ ପାଇବା ପାଁଇ ସେ ଆନନ୍ଦରେ ଆପଣା ଘରେ ବୃହତ୍ ମଜଲିସଟିଏ କରି ସାହେବମାନଙ୍କର ସମ୍ମାନ କଲେ । ଏଥକୁ ପ୍ରକୃତ କଥା ଏହି ଯେ ହରି ବାବୁଙ୍କର ବେତନ ଟ୪୦୦ଙ୍କା ଥିଲା ଓ ଚିରକାଳ ତାହାଇ ଥାନ୍ତା ମାତ୍ର ଜଗନ୍ମୋହନ ବାବୁଙ୍କ ବର୍ତ୍ତମାନ ବେତନ ଟ୫୦୦ ଙ୍କା ଓ କ୍ରମଶଃ ବୃଦ୍ଧିଦ୍ୱାରା ଟ୮୦୦କିମ୍ବା ଟ୧୦୦୦ଙ୍କା ହୋଇ ପାରେ । ସୁତରାଂ ଜାଣିବା ଲୋକେ ବଜାରିଙ୍କ କଥାରେ ହସୁଅଛନ୍ତି ମାତ୍ର ଯେତେବେଳେ କମିଶ୍ନର ସାହେବ ଜଗନ୍ମୋହନ ବାବୁଙ୍କୁ ଏ କର୍ମ ଦେବା ପାଁଇ ଗବର୍ଣ୍ଣମେଣ୍ଟରେ ଅନୁରୋଧ କରିଥିବାର କଥିତ ହୁଅଇ ତେତେବେଳେ ବଜାରିଙ୍କ ବିଚାରଠାରୁ କମିଶନରଙ୍କ ବିଚାର କେତେ ବିଭିନ୍ନ ପଡ଼ିଲା କି ? ଉଚ୍ଚ ପଦର ଲୋକ ଛୋଟ ପଦକୁ ଆସିବା ଅସଙ୍ଗତ ଏ ଘେନି ବଜାରିମାନେ ହରି ବାବୁଙ୍କ ବେତନ ଅଧିକ ଥିବାର ଅନୁମାନ କଲେ କିନ୍ତୁ କମିଶ୍ନର ସାହେବଙ୍କ ପ୍ରସ୍ତାବ ସତ୍ୟ ହୋଇଥିଲେ ତାହାଙ୍କ ବିଚାର ବଜାରିଠାରୁ ନିକୃଷ୍ଟ ହେଲା କାରଣ ସେ ବାସ୍ତବରେ ଅସଙ୍ଗତ ଘଟନା ଘଟାଇବାକୁ ବସିଅଛନ୍ତି । ଯେବେ ହରି ବାବୁଙ୍କ ପଦ ସକାଶେ ଜଣେ ଟ୫୦୦ ଙ୍କାର ଡେପୁଟୀ ପ୍ରୟୋଜନ ତେବେ ପୂର୍ବରୁ ତହିଁର ବେତନ ବଢାଇ ଦେଇଥିଲେ ତାହାଙ୍କର ସୁବିଚାର ଓ ହରି ବାବୁଙ୍କର ଉପକାର ହୋଇଥାନ୍ତା । ଉଚ୍ଚ ବେତନଭୋଗୀ କର୍ମଚାରି ଯେ ଊଣା ବେତନର କର୍ମ ସକାଶେ ଯୋଗ୍ୟ ଏ କଥାରେ ସନ୍ଦେହ ନାହିଁ ଓ କମିଶ୍ନର ସାହେବ ଯେ ଜଣେ କଲେକ୍‌ଟର କିମ୍ବା ଜଏଣ୍ଟ ମାଜିଷ୍ଟ୍ରେଟକୁ ଏ କର୍ମ ଦେବାର ବିଚାର ନ କଲେ ଏତିକି ଆଶ୍ଚର୍ଯ୍ୟ ଅଟଇ । ସ୍ଥୁଳ କଥା ଏହି ଯେ କମିଶନର ସାହେବଙ୍କ ଏ ବନ୍ଦୋବସ୍ତରୁ ଜଣାଯାଏ ଯେ ତାହାଙ୍କ ବିବେଚନାରେ ବାବୁ ଜଗନ୍ମୋହନ ରାୟ ଛଡ଼ା ଏ ପ୍ରଦେଶବାସୀ ଅନ୍ୟ କେହି ଏ କର୍ମ ସକାଶେ ଉପଯୁକ୍ତ ନାହିଁ ଏବଂ ପୂର୍ବ କମିଶନରମାନେ ଯେ କେବଳ ଓଡ଼ିଆଙ୍କ ସକାଶେ ଏ କର୍ମଟି ସୃଷ୍ଟି କରିଥିଲେ ସେମାନେ ଭ୍ରମରେ ପଡ଼ିଥିଲେ । ଯେବେ କେହି ଓଡ଼ିଆ ଏ କର୍ମ ସକାଶେ ଉପଯୁକ୍ତ ନୁହନ୍ତି ତେବେ ଓଡ଼ିଆଙ୍କ ଉନ୍ନତି କରିବେ ବୋଲି ସେ କାହିଁକି ସର୍ବଦା କହି ହେଉଥାନ୍ତି । ଆମ୍ଭମାନଙ୍କ ବିବେଚନାରେ ଏ କର୍ମ ସକାଶେ ଅନେକ ଅଳ୍ପ ବେତନଭୋଗୀ ଓଡ଼ିଶାବାସି ଉପଯୁକ୍ତ ଅଛନ୍ତି ଏବଂ କମିଶ୍ନର ସାହେବ ସେମାନଙ୍କ ମଧ୍ୟରୁ କାହାରିକୁ ଏ ପଦ ନ ଦେଇ ଜଣେ ଉଚ୍ଚ ବେତନଭୋଗୀ କର୍ମଚାରିକୁ ଟଣାଟଣି କରିବା ଦ୍ୱାରା ଓଡ଼ିଶାବାସିଙ୍କ ବିରୁଦ୍ଧରେ ଗବର୍ଣ୍ଣମେଣ୍ଟଙ୍କର ବିଶ୍ୱାସ ଜନ୍ମାଇ ଦେଇ ବିସ୍ତର କ୍ଷତି କରୁଅଛନ୍ତି । ପ୍ରକୃତରେ ଏଥିରେ ଓଡ଼ିଶାବାସିଙ୍କର ଉନ୍ନତି ନ ହୋଇ ଠିକ୍ ତହିଁର ବିପରୀତ ହେଉଅଛି ।

*ଭା୧୩ଗ, ସଂ୨ଖ୍ୟା, ୧୨/୧/୧୮୭୮*

## ଉତ୍କଳଭାଷାର ଅଧିବେଶନ ଓ ଉତ୍କଳଭାଷା ।

ଗତସପ୍ତାହ ଶୁକ୍ରବାର ରାତ୍ରରେ ଛାପାଖାନା ଦୋମହଲାରେ ଉତ୍କଳ ସଭାର ପ୍ରଥମ ଷାଣ୍ମାସିକ ଅଧିବେଶନ ହୋଇଥିଲା । ଏଥିର ସଭ୍ୟମାନେ ପ୍ରାୟ ସମସ୍ତେ ବିଦ୍ୟାଳୟର ଛାତ୍ର ଓ କେତେଜଣ ଶିକ୍ଷକ ଅଟନ୍ତି । ଏ ଦିନ ସଭାରେ ପ୍ରାୟ ସେହିମାନେ ଥିଲେ ଓ ବାହାରର ଭଦ୍ରଲୋକ ଦୁଇ ଚାରିଜଣରୁ ଅଧିକ ହେବେ ନାହିଁ । ବାବୁ ରାଧାନାଥ ରାୟଙ୍କୁ ସଭାପତି କରି ସଭାର କାର୍ଯ୍ୟାରମ୍ଭ ହେଲା ଓ ଷାଣ୍ମାସିକ ବିଜ୍ଞାପନୀ ପାଠ ହେଲା । ଆମ୍ଭେମାନେ ତହିଁରୁ ଅବଗତ ହେଲୁଁ ଯେ ଏଥିପୂର୍ବେ ଏ ନଗରରେ ଉତ୍କଳଭାଷୋଦ୍ଦୀପିନୀ ଓ ଆଉ ଗୋଟିଏ ସଭା ମିଳିତ ହୋଇ ନୂତନ ନାମରେ ଏ ସଭା ସଂଘଟିତ ହୋଇଅଛି । ଏହା ସୁଖରବିଷୟ ଅଟଇ । ଏଥର କ୍ଷୁଦ୍ର ନଗରରେ ଗୋଟିଏ ସଭା ସ୍ଥାୟୀ ହେବାର ଦସ୍ତର ଥିବା ଅବସ୍ଥାରେ ଦୁଇ ଚାରିଟା ସଭା କରିବା କେବଳ ଆତ୍ମବିଚ୍ଛେଦ ବୃଦ୍ଧି ଭିନ୍ନ ଆଉ କିଛି ନୁହଇ । ଏପ୍ରକାର ସଭା ଅଧିକ ଦିନ ରହିପାରେ ପୁଣି ସଭ୍ୟମାନେ ଏମନ୍ତ ଭାବରେ ସଭାକୁ ଚଳାଉଅଛନ୍ତି ଯେ ପ୍ରାୟ ବିନାବ୍ୟୟରେ ଏଥିର କାର୍ଯ୍ୟ ଚଳୁଅଛି ସୁତରାଂ ସଭ୍ୟମାନଙ୍କୁ କିଛି ଭେଦାସୁଦ୍ଧା ଦେବାକୁ ହେଉ ନାହିଁ । ଏହା ମଧ୍ୟ ସଭା ଅଧିକଦିନ ରହିବାର ଶୁଭଲକ୍ଷଣ ଅଟଇ । ବିଜ୍ଞାପନୀ ପାଠ ଶେଷ ହେବାଉତ୍ତାରୁ ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ ଉତ୍କଳଭାଷା ବିଷୟରେ ଗୋଟିଏ ବକ୍ତୃତା କଲେ । ବକ୍ତୃତାଟି ଶେଷ ହେବାକୁ ପ୍ରାୟ ଏକଘଣ୍ଟା ଲାଗିଥିଲା ସୁତରାଂ ଦୀର୍ଘ ଥିଲା । ପ୍ୟାରୀବାବୁଙ୍କ ବକ୍ତୃତା ଏଠାଲୋକେ କେବେ କେବେ ଶୁଣିଅଛନ୍ତି ଅତଏବ ତାହାଙ୍କର ବକ୍ତୃତା କରିବାର କ୍ଷମତା ଅଛି ଏକଥା ବୋଲିବା ବାହୁଲ୍ୟ । ବାସ୍ତବରେ ସେ ଯେମନ୍ତ ପ୍ରକାରେ ବକ୍ତୃତା କଲେ ତହିଁରୁ ଜଣାଗଲା ଯେ ସେ ଅଭ୍ୟାସ କଲେ ଭବିଷ୍ୟତକୁ ଜଣେ ସୁବକ୍ତା ହେବେ ମାତ୍ର ବକ୍ତୃତାର ଭାବ ଆମ୍ଭମାନଙ୍କର ସୁଖକର ହେଲା ନାହିଁ ବାସ୍ତବରେ ତହିଁରେ ସାର କଥା ଅତ୍ୟଳ୍ପ ଥିଲା ଓ ଅଧିକାଂଶ କେବଳ ନିନ୍ଦାରେ ପରିପୂର୍ଣ୍ଣ ହୋଇଥିଲା । ବକ୍ତୃତା ଶୁଣିବାବେଳେ ଆମ୍ଭମାନଙ୍କ ମନରେ ହେଉଥାଏ ଯେମନ୍ତ ବକ୍ତାଙ୍କୁ ବିଷମ ସନ୍ନିପାତ ଘଟିଅଛି ଯେ ଯାହା ଜିଭ ଉପରକୁ ଆସୁଅଛି ଥୁଥୁକରି ପକାଇ ଦେଉଅଛନ୍ତି । ବକ୍ତା ପ୍ରଥମେ କହିଲେ ଯେ ପ୍ରାଚିନ ଶିଳ୍ପକାର୍ଯ୍ୟ ଓ ଭାଷା ସକାଶେ ଓଡ଼ିଶାର ଗୌରବ ରହିଅଛି ଶିଳ୍ପକାର୍ଯ୍ୟର ପରିଚୟ ଭୁବନେଶ୍ୱର ଓ ପୁରୀର ମନ୍ଦିରମାନ ଏବଂ ଭାଷାର ପରିଚୟ ପ୍ରାଚୀନ ଗ୍ରନ୍ଥମାନ । ମନ୍ଦିରମାନଙ୍କ ଅଶ୍ଳୀଳ ମୂର୍ତ୍ତିର କଥା ବିସ୍ମୃତ ହେବାରେ ସେ ସମସ୍ତର ଗୌରବ ରହିଗଲା ନୋହିଲେ ମନ୍ଦିରମାନଙ୍କର କିପର୍ଯ୍ୟନ୍ତ ହଟହଟା ହୋଇଥାନ୍ତା ଆମ୍ଭେମାନେ କହି ନ ପାରୁଁ । କିନ୍ତୁ ସେହି ଅଶ୍ଳୀଳତାର ଅପରାଧରେ ପ୍ରାଚୀନ ରଚନାର ଏତେ ନିନ୍ଦା ହେଲା ଯେ ବୁଝିବାଲୋକେ ନିଶ୍ଚୟ ମନରେ କରିଥିବେ ଯେ ସେସବୁ ଯଥାର୍ଥରେ ଆମ୍ଭମାନଙ୍କର କଳଙ୍କ ଅଟଇ । ସବୁ ଗ୍ରନ୍ଥକାର ଅପେକ୍ଷା ଉପେନ୍ଦ୍ରଭଞ୍ଜ ଓ ସବୁ ଗ୍ରନ୍ଥ ଅପେକ୍ଷା ଲାବଣ୍ୟବତୀ ଅଧିକ ଗାଳି ଖାଇଲେ । କେବଳ ପ୍ରାଚୀନ ଉପରଦେଇ ଗାଳିଟା ବାହାରି ଯାଇ ନାହିଁ । ଆଧୁନିକ ସଂପ୍ରଦାୟ ମଧ୍ୟ ନିନ୍ଦାରୁ ଅନ୍ତର ହୋଇ ନାହାନ୍ତି । କେତେଲୋକ ଗ୍ରନ୍ଥକାର କେତେଲୋକ ଅନୁବାଦକ କେତେ ଦରିଦ୍ର କେହି ବୟୋଧିକ କେତେ ଶିକ୍ଷିତ କେତେ କରଣ ଏହିପରି କେତେ ଲୋକ କେତେ ପ୍ରକାରେ ନିନ୍ଦା ପାଇଲେ ତହିଁର ସୀମା ନାହିଁ । ଫଳେ ବକ୍ତୃତାର ସାର କଥା ଆମ୍ଭେମାନେ ଏହି ବୁଝିଲୁଁ ଯେ ଓଡ଼ିଆ ଭାଷାରେ ପ୍ରାଚୀନ କାଳର ଏମନ୍ତ କିଛି ସଂପତ୍ତି ନାହିଁ ଯାହାକି ଭାଷାର ଉନ୍ନତି ସକାଶେ କାର୍ଯ୍ୟରେ ଆସିବ ଓ ବର୍ତ୍ତମାନ କାଳରେ ଏତେ ପ୍ରତିବନ୍ଧକ ଦେଖାଯାଏ ଯେ ସେ ସମସ୍ତ ଅତିକ୍ରମ କରି ସଭ୍ୟ ରୁଚି ଅନୁସାରେ ଭାଷା ସଂଗଠିତ ହେବା କଠିନ ତେବେ ଓଡ଼ିଶାର ସର୍ବଶ୍ରେଣୀର ଲୋକ ଯୋଗ ହୋଇ ଚେଷ୍ଟା କଲେ କିଛି କରିପାରିବେ ।

ଏଥିଉତ୍ତାରୁ ବାବୁ ଚତୁର୍ଭୁଜ ପଟ୍ଟନାୟକ ସଂକ୍ଷେପରେ ଆପଣା ମନୋଭାବ ବ୍ୟକ୍ତ କରିଥିଲେ । ପ୍ୟାରି ବାବୁ ବଙ୍ଗାଳିବ୍ରାହ୍ମଣ ହୋଇ ଏ ଦେଶରେ ରହିଥିବାରୁ ଓଡ଼ିଆ ଭାଷା ପ୍ରତି ତାହାଙ୍କର ଯତ୍ନ ଓ ଉତ୍ସାହ ସକାଶେ ତାହାଙ୍କୁ ଧନ୍ୟବାଦ ଦେଲେ ଓ ତାହଙ୍କ ନିକଟରେ କୃତଜ୍ଞତା ସ୍ୱୀକାର କଲେ କିନ୍ତୁ ତାହାଙ୍କ ମତରେ ସଂପୂର୍ଣ୍ଣରୂପେ ଐକ୍ୟ ହେଲେ ନାହିଁ । ସେ କହିଲେ କି ପ୍ରାଚୀନ ଓଡ଼ିଆ କାବ୍ୟକୁ ବକ୍ତା ମହାଶୟ ଯେତେ ନିନ୍ଦା କଲେ ତାହା ତେତେ ନିନ୍ଦନୀୟ ନୁହଇ ତହିଁରେ ଅଶ୍ଳୀଳତାର ଦୋଷ ଲକ୍ଷିତ ହୁଅଇ ସତ୍ୟ ଓ ତାହା ସେ ସମୟର ରୁଚି ହେତୁରୁ ହୋଇଅଛି ମାତ୍ର ତହିଁରେ ଉତ୍କୃଷ୍ଟଭାବ ଓ ବିଷୟ ଅନେକ ଅଛି । ସେସବୁ ଯେ କ୍ରମେ ଲୋପ ହେଉଅଛି ତହିଁ ସକାଶେ

ଶିକ୍ଷାବିଭାଗ ଦାୟୀ ଅଟଇ । ଆମ୍ଭମାନଙ୍କ ବିବେଚନାରେ ପଟ୍ଟନାୟକ ମହାଶୟ ନିରପେକ୍ଷରୂପେ ପ୍ରାଚୀନ କବିତାର ବିଚାର କରିଅଛନ୍ତି ଏବଂ ଆମ୍ଭେମାନେ ସଭ୍ୟ ଓ ଶିକ୍ଷିତ ସମ୍ପ୍ରଦାୟଙ୍କୁ ଅନୁରୋଧ କରୁଅଛୁଁ ଯେ ସେମାନେ ଶ୍ରମ ସ୍ୱୀକାରପୂର୍ବକ ପ୍ରାଚୀନ କାବ୍ୟମାନ ପାଠକରି ତହିଁର ଦୋଷ ଭାଗ ପରିତ୍ୟାଗପୂର୍ବକ ଗୁଣଭାଗକୁ ଗ୍ରହଣ କରନ୍ତୁ । ସଭାକୁ ମଧ୍ୟ ଆମ୍ଭମାନଙ୍କର ଏହି ଅନୁରୋଧ ଯେ ନାନା ଆଦିରସଘଟିତ ଓଡ଼ିଆ ଗ୍ରନ୍ଥରୁ ଏକ ଏକ ଛାନ୍ଦ ବାହାର କରି ତହିଁର ପ୍ରକୃତ ସମାଲୋଚନା ପ୍ରଚାର କରିବାର ଚେଷ୍ଟା କରନ୍ତୁ ତାହା ହେଲେ ଯେମନ୍ତ ଗୁଣଭାଗ ଦେଖି ଅନେକ ଲୋକଙ୍କର ସେ ସମସ୍ତ ପୁସ୍ତକ ପଢ଼ିବାକୁ ଉତ୍ସାହ ହେବ ତେମନ୍ତ ବିଶୁଦ୍ଧ ରୁଚି ଶିକ୍ଷା କରି ତହିଁର ଦୋଷ ଭାଗ ପରିତ୍ୟାଗ କରିବାକୁ ସତର୍କତା ଜନ୍ମିବ । ସମ୍ପ୍ରତି ଯାହା ଆମ୍ଭେମାନେ ଦେଖୁଅଛୁଁ ଓ ଶୁଣୁ ଅଛୁଁ ତହିଁରେ ଏମନ୍ତ ଅନୁମାନ ହୁଅଇ ଯେ ଅଶ୍ଳୀଳତାର ପ୍ରକୃତ ଅର୍ଥ ବୁଝିବାରେ ଅନେକ ଗୋଳମାଳ ଅଛି । କାହାରି ମତରେ ଆଦିରସ ଘଟିତ କବିତା ମାତ୍ରକେ ଅଶ୍ଳୀଳ ଓ କାହାରି ମତରେ କେବଳ ସ୍ତ୍ରୀ ପୁରୁଷର ଗୁପ୍ତ ବ୍ୟବହାରର ବର୍ଣ୍ଣନା ଅଶ୍ଳୀଳ ଅଟଇ । ଆଦିରସଘଟିତ କବିତା କେଉଁ ଅବସ୍ଥାରେ ଅଶ୍ଳୀଳତାକୁ ପ୍ରାପ୍ତ ହୁଅଇ ଏଥିର ପ୍ରକୃତ ଜ୍ଞାନ ସର୍ବସାଧାରଣରେ ପ୍ରଚାର କରିବାକୁ ସଭା ଚେଷ୍ଟା କଲେ ଅନେକ ଉପକାର ହୋଇପାରେ ।

*ଭା୧୩ ଗ, ସଂ୪ଖ୍ୟା, ୨୬।୧।୧୮୭୮*

## ପ୍ରେରିତ ପତ୍ର ।

## [ଉପେନ୍ଦ୍ର ଭଞ୍ଜଙ୍କ ମହତ୍ତ୍ୱ]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସଂପାଦକ
ମହାଶୟ ସମୀପେଷୁ ।

ମହାଶୟ,-

ଉତ୍କଳସଭାର ଗତ ପ୍ରଥମ ଷାଣ୍ମାସିକ ଅଧିବେଶନରେ ବକ୍ତାମହାଶୟ ଯେଉଁ ସୁଦୀର୍ଘ ବକ୍ତୃତାଟି କରିଥିଲେ ସେଥିବିଷୟରେ ମୋହର କିଛି ମନୋଭାବ ସାଧାରଣଙ୍କ ନିକଟରେ ବ୍ୟକ୍ତ କରିବାକୁ ଏକାନ୍ତ ଇଚ୍ଛା । ଆପଣ ଯଦି ଦୀପିକାରେ ଟିକିଏ ସ୍ଥାନ ଦିଅନ୍ତି ତେବେ ତାହା ପୂର୍ଣ୍ଣ ହେବ ।

ବକ୍ତାମହାଶୟ ଏ ଦେଶର ଜଣେ ଉପନିବେଶୀ ହୋଇ ସୁଦ୍ଧା ଉତ୍କଳଭାଷା ଓ ଉତ୍କଳ ଦେଶର ଉନ୍ନତିପକ୍ଷରେ କେଡ଼େ ଇଚ୍ଛୁକ, ତାହା ଗମ୍ଭୀରସ୍ୱରରେ କହିବାବେଳେ ସହଜେ ପ୍ରକାଶ ହୋଇ ପଡ଼ିଲା । କେତେ ଉତ୍କଳୀୟଙ୍କ ଶିଥିଳ ରକ୍ତନାଡ଼ୀ ଦେଶୋନ୍ନତୋପଦେଶ ପୂର୍ଣ୍ଣ ଉତ୍ସାହ ବାକ୍ୟରେ ସତେଷ ହୋଇଗଲା । ଆଉ ଯେଉଁ ଉପନିବେଶିମାନେ ଉତ୍କଳୀୟ ନୁହନ୍ତି ବୋଲି ମନେ ମନେ ଅଲଗା ହୋଇ ରହିଥିଲେ ସେମାନେ ସୁଦ୍ଧା ଉତ୍କଳର ଉନ୍ନତି ନିଜର କର୍ତ୍ତବ୍ୟକର୍ମ ବୁଝି ପାରିଲେ । ସାହିତ୍ୟ ଓ ଶିଳ୍ପକାର୍ଯ୍ୟଦ୍ୱାରା ଦେଶର ନତୋନ୍ନତ ଅବସ୍ଥା ଜଣାଯିବା ବିଷୟ ଏବଂ ବର୍ତ୍ତମାନ ଓଡ଼ିଶାର ଯେ ମର୍ଯ୍ୟାଦା କେବଳ ଜଗନ୍ନାଥ ଓ ଲିଙ୍ଗରାଜଙ୍କ ହେତୁ ଅର୍ଥାତ୍ ଶିଳ୍ପ ଚାତୁର୍ଯ୍ୟରୁ ରହିଅଛି ବୋଲି ସମସ୍ତଙ୍କର ଉତ୍ତମରୂପେ ହୃଦୟଙ୍ଗମ ହୋଇଗଲା ଆଃ କି ଆନନ୍ଦର ବିଷୟ ! ବକ୍ତା ଜଣେ ଅଳ୍ପବୟସ୍କ ଯୁବକ ତଥାପି ତାଙ୍କର ଅନ୍ତଃକରଣରେ କିପରି ଉଚ୍ଚଭାବମାନ ବିଚରଣ କରିଅଛି; କହିଲେ ଅତ୍ୟୁକ୍ତି ହେବ ନାହିଁ ବର୍ତ୍ତମାନ ଶିକ୍ଷିତ ଯୁବକଶ୍ରେଣୀରେ ଜଣେ ପ୍ରଧାନବକ୍ତା ।

ବକ୍ତା ଯେତେବେଳେ ସାହିତ୍ୟ କାନନରେ ଅନ୍ତର୍ଦୃଷ୍ଟି ନିକ୍ଷେପ କରି କହୁଥିଲେ ତେତେବେଳେ ମୁରାରିକବି ଓ ଉପେନ୍ଦ୍ର ଭଞ୍ଜ କ'ଣ ସିଂହ ବାଘ ପରି ଦିଶିଲେ ? ନୋହିଲେ କାହିଁକି ବାକ୍ୟ ବନ୍ଧୁକମାନ ଫାଏର କଲେ ? ତାଙ୍କର ଦୋଷତ ଏହି,- ସେ ଶବ୍ଦାଳଙ୍କାର ଓ କାଠିନ୍ୟ ପଦ ପୂର୍ଣ୍ଣ କରି ଆଦିରସ ବିଷୟରେ ଲେଖିଅଛନ୍ତି; ସତ । ପୂର୍ବର ସବୁ କବିତ ଆଦିରସପ୍ରିୟ ! କୁମାରସମ୍ଭବ, ଶକୁନ୍ତଳା, ନୈଷଧ, ମେଘଦୂତ, ହଂସଦୂତ ପ୍ରଭୃତି ଆଦିରସ ପୂର୍ଣ୍ଣକାବ୍ୟ, ତେବେ ଏ କାହିଁକି ଅପମାନିତ ହେଲେ ? କବିତା କିଛି ଆଦିରସ ଅନ୍ତରସରେ ହୁଏ ନାହିଁ, କି ଶବ୍ଦାଳଙ୍କାର ଅର୍ଥାଳଙ୍କାର ଥିଲେ ନ ଥିଲେ ହୁଏ ନାହିଁ । ତାହା କେବଳ କବିର ହୃଦୟସିନ୍ଧୁମନ୍ଥନାମୃତ,ଲୌହ ବା ସୁବର୍ଣ୍ଣପାତ୍ରରେ ରହିଲେ ତାହାର ମାନ୍ୟର ନ୍ୟୂନାଧିକ ହୋଇ ନ ପାରେ ।

ଆମ୍ଭେମାନେ ଅମୃତପାନ ନ କରି ପାତ୍ରକାମୋଡ଼ା ହେବା କାହିଁକି ? ମୁରାରିକର୍ତ୍ତା ଜଣେ ପ୍ରଧାନ କବି, ତାହାଙ୍କ ରଚନାର ସ୍ଥାନେ ସ୍ଥାନେ ଚାତୁରିକଥା ଓ ଉତ୍କୃଷ୍ଟଭାବମାନ ରହିଅଛି ଯେଉଁମାନେ ତାହା ପଢିଅଛନ୍ତି ସେମାନେ କବିଙ୍କର ଉଚ୍ଚହୃଦୟର ପରିଚୟ ପାଇଥିବେ ।

ଆହୁରି ଗୋଟିଏ କଥା ମନେ ପଡ଼ିଲା । ବକ୍ତା ମହାଶୟ ମୁରାରି ପାଠ କରି ମୁରାରି- ଅରି ହେଲେ, ନା କାହାରି ସମାଲୋଚନା ପଢ଼ି ଭୁଲିଗଲେ ? ବକ୍ତା ଯେପରି ସଭାବଗ୍ରାହକ, ପଢିଥିଲେ ଏପରି କହନ୍ତେ ନାହିଁ ପରା ? ନ ପଢିଥିଲେ କହିଲେ ବା କିପରି ? ସେ କି ଅନ୍ୟଜଣର ମତ ନେଇ ନିଜ ମତ ପରି ବ୍ୟକ୍ତ କରିବା ଲୋକ ? ନା । ଏସ୍ଥଳେ ମୁରାରିରୁ ଦିଯୋଟି ଗୋଟିଏ ଉଦାହରଣ ଦେଇ ଦୋଷ ଦେଖାଇଥିଲେ ଭଲ ହୋଇଥାନ୍ତା ।

ଭଞ୍ଜଙ୍କ ପରି ଜଣେ ଭାଷାକବି କିଏ ? କହିବାକୁ କି ଅଛି ନା ଚାହିଁବାକୁ କି ଅଛି । ତାହାଙ୍କର ରଚନାଗୁଡ଼ାକ କ'ଣ ଖାଲି ଆଦିରସରେ ଲଟପଟ ଏମନ୍ତ ନୋହେ । ତହିଁରେ ସ୍ଥାନେ ସ୍ଥାନେ ଭଲ କଥା ଅଛି, ଭଲ ଭାବ ଅଛି, ଦେଶ ରୀତି ଅନୁସାରେ ଦେହଯାକରେ ଅଳଙ୍କାର ଝଣଝଣ ହେଉଥିଲେହେଁ ସୌନ୍ଦର୍ଯ୍ୟର ଉଣା ହୋଇ ନାହିଁ ବରଂ ଅଧିକ ହୋଇଅଛି । ଯେଉଁମାନେ ଏହାଙ୍କ ରଚିତ ବୈଦେହୀଶବିଳାସ ବା କୋଟୀବ୍ରହ୍ମାଣ୍ଡସୁନ୍ଦରୀ ପ୍ରଭୃତି ଖଣ୍ଡିଏ କାବ୍ୟ ଆଦ୍ୟପ୍ରାନ୍ତ ପାଠ କରି ଅଛନ୍ତି ସେମାନେ କଦାପି ଗୁଣ ଅଂଶ ନ ଘେନି ଦୋଷ ଅଂଶ ନେଇ କବିଙ୍କି ବା କାବ୍ୟକୁ କଳଙ୍କ ଦେଇ ପାରିବେ ନାହିଁ ।

୨୫।୧।୭୮ ।କି। ଜଣେ ଓଡ଼ିୟାଦର୍ଶକ
କଟକ

*ଭା୧୩ଗ, ସଂ୪ଖ୍ୟା, ୨୬।୧।୧୮୭୮*

## ବିଜ୍ଞାପନ ।

## [ଛାତ୍ରବୃତ୍ତି]

ଏହାଦ୍ୱାରା ସର୍ବସାଧାରଣଙ୍କୁ ଜଣାଉଅଛୁଁ ଯେ ସମ୍ପ୍ରତି କଟକ ନର୍ମ୍ୟାଲ ସ୍କୁଲରେ ୧୬ ଗୋଟି **ବୃତ୍ତି ଖାଲି** ଅଛି । ଯେଉଁମାନେ ଛାତ୍ରବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବେ ସେମାନେ ଆଗାମୀ ଫେବୃଏରୀ ମାସର **ପ୍ରଥମ** ସପ୍ତାହମଧ୍ୟରେ ଉକ୍ତ ସ୍କୁଲରେ ପହୁଞ୍ଚିଲେ ସେମାନଙ୍କୁ ଗ୍ରହଣ କରାଯିବ ।

୨୨।୧।୭୮ ଶ୍ରୀ ଦ୍ୱାରିକାନାଥ ଚକ୍ରବର୍ତ୍ତୀ
କଟକ ସୁପରିଣ୍ଟେଣ୍ଡେଣ୍ଟ
ନର୍ମ୍ୟାଲସ୍କୁଲ

*ଭା୧୩ଗ, ସଂ୪ଖ୍ୟା, ୨୬।୧।୧୮୭୮*

## ନାଟକ ଅଭିନୟ ।

ଏନଗରରେ ଗତବର୍ଷଠାରୁ ବାରୟାରି ନିୟମରେ ଶ୍ରୀ ସରସ୍ୱତୀ ପୂଜା ହୋଇଆସୁଅଛି । ଗତବର୍ଷ ଏହି ଉପଲକ୍ଷରେ ବସନ୍ତପଞ୍ଚମୀ ଓ ତହିଁ ଉତ୍ତାରୁ ଦୁଇରାତ୍ର ଏ ନଗରବାସି ଭଦ୍ରଲୋକମାନେ ବଡ଼ ଆମୋଦ କରିଥିଲେ କିନ୍ତୁ ସେସବୁ ଆମୋଦ କେବଳ ପୁରୁଣା ରୀତିର ବାଇନାଚକୁ ଅବଲମ୍ବନ କରି ପ୍ରକାଶ ହୋଇଥିଲା ବର୍ତ୍ତମାନର ସଭ୍ୟ ରୁଚିପ୍ରତି ଦୃଷ୍ଟି ରଖି ଏବଂ ବୋଧ ହୁଅଇ ପୂଜାରେ ପ୍ରସନ୍ନା ହୋଇ ଏବର୍ଷ ସରସ୍ୱତୀ ଏଠା ଭଦ୍ରମଣ୍ଡଳୀର କଣ୍ଠରେ ବିରାଜମାନ ହେଲେ । ଏହି ହେତୁ ଗତ ବସନ୍ତପଞ୍ଚମୀ ରାତ୍ରରେ ତାହାଙ୍କ ପୂଜା ଉପଲକ୍ଷରେ ଏକ ନୂତନ ଭିୟାଣ ଦେଖାଗଲା । ଓଡ଼ିଶାରେ ନାଟକର ଅଭିନୟ ଏତେଶୀଘ୍ର ହେବ କେହି ସ୍ୱପ୍ନରେ ସୁଦ୍ଧା ଜାଣି ନ ଥିଲେ । ନାଟକର ଅଭିନୟ କିପରି ହୁଅଇ ଏଠା ଲୋକେ ପ୍ରାୟ ଦେଖି ନାହାନ୍ତି ଓ ଯଦ୍ୟପି କି ଦୁଇମାସ ତଳେ ଏକ ଦଳ ଲୋକ କଲିକତାରୁ ବାଲେଶ୍ୱର ପର୍ଯ୍ୟନ୍ତ ନାଟକର ଅଭିନୟ ଦେଖାଇବା ସକାଶେ ଆସିଥିଲେ ଓ ଏଠାକୁ ଆସିବେ

ବୋଲି ଶୁଣାଯାଇଥିଲା ମାତ୍ର ଘଟନାକ୍ରମେ ତାହା ହେଲା ନାହିଁ । କିନ୍ତୁ ଏ ନଗରବାସୀ ଯୁବକବୃନ୍ଦଙ୍କୁ ଆମ୍ଭେମାନେ ଅସଂଖ୍ୟ ଧନ୍ୟବାଦ ଦେଉଅଛୁଁ ଯେ ସେମାନେ ଅତି ଅଳ୍ପକାଳ ମଧ୍ୟରେ ଏକଦଳ ପ୍ରସ୍ତୁତ କରି ଯଥାବିଧିରେ ନାଟକର ଅଭିନୟ ଆମ୍ଭମାନଙ୍କୁ ଦେଖାଇ ଆଶାତିରିକ୍ତ ସୁଖପ୍ରଦାନ କଲେ । ଏହି ବସନ୍ତପଞ୍ଚମୀରାତ୍ରରେ ଓଡ଼ିଶାରେ ନାଟକର ଅଭିନୟ ପ୍ରଥମଥର ହେଲା ଏସକାଶେ ଏ ଦିନଟି ଚିରସ୍ମରଣୀୟ ହୋଇ ରହିଲା ଏବଂ ସ୍ୱୟଂ ସରସ୍ୱତୀଙ୍କୁ ବିଧିପୂର୍ବକ ପୂଜାଦ୍ୱାରା ଆହ୍ୱାନ କରି ତାହାଙ୍କ ସମ୍ମୁଖରେ ପ୍ରଥମଥର ଅଭିନୟ ହେଲା ଏଥିରୁ ଆଶା ହୁଅଇ ଯେ ଉତ୍ତରୋତ୍ତର ଏହାର ବୃଦ୍ଧି ହେବ ଓ ଏହାଦ୍ୱାରା ସଙ୍ଗୀତ ଓ ସାହିତ୍ୟର ଉନ୍ନତି ହେବ । ଆମ୍ଭେମାନେ କହିଅଛୁଁ ଯେ ଅଳ୍ପକାଳ ମଧ୍ୟରେ ଏହା ସାଧିତ ହୋଇଅଛି । ବାସ୍ତବରେ ଦୁଇମାସ ପୂର୍ବରେ କେହି ଜାଣୁ ନ ଥିଲେ ଯେ ଏଠାରେ ନାଟକର ଅଭିନୟ ହେବ । ବଙ୍ଗଳାରେ ଏକ ଏକ ଜଣ ଧନିଲୋକର ସହାୟରେ ପ୍ରଥମେ ଏପରି କାର୍ଯ୍ୟ ହୋଇଥିଲା ଓ କେହି କେହି ଧନବାନ୍ ଏଥିରେ ସର୍ବସ୍ୱ ବ୍ୟୟ କରି ଫକୀର ହୋଇଅଛନ୍ତି । ଏଠାରେ ସେପରି କେହି ଉତ୍ସାହଦାତା ନ ଥିଲା କିନ୍ତୁ କେତେଜଣ କୃତବିଦ୍ୟ ଯୁବାଙ୍କ ଅସୀମ ପରିଶ୍ରମ ଓ ଯତ୍ନରେ ଏଠାରେ ଅଭିନୟ ପ୍ରତ୍ୟକ୍ଷ ହେଲା । ଏମାନେ ଆପଣା ମଧ୍ୟରେ ଏକଦଳ ବାନ୍ଧି ଅଭିନୟ ଦେଖାଇବେ ବୋଲି ଦୃଢ଼ସଂକଳ୍ପ ହୋଇ ତହିଁର ବ୍ୟୟ ସକାଶେ ଆପଣା ମଧ୍ୟରେ ଭେଦା କଲେ ଓ ଏଠାର ଭଦ୍ରଲୋକମାନେ ମଧ୍ୟ ତାହାଙ୍କ ପ୍ରାର୍ଥନା ମତେ ଭେଦା ଦେଇ ତାହାଙ୍କର ଉତ୍ସାହ ବଢାଇଲେ । ତହିଁର ଫଳ ଗତ ବସନ୍ତପଞ୍ଚମୀ ରାତ୍ରରେ ଦେଖା ଗଲା । ନୂଆତମାସା ହେବ ବୋଲି ନଗରଯାକ ଚହଳ ପଡ଼ିଗଲା ଓ ଟୀକଟ ସଂଗ୍ରହ କରିବା ପାଁଇ ସମସ୍ତେ ବ୍ୟସ୍ତ ହେଲେ । ରାତ୍ର ଘ ୯ଣ୍ଟା ବେଳକୁ ମଜଲିସରେ ଟିକିଏ ଖାଲି ସ୍ଥାନ ନ ଥିଲା । ଓ ଭିଡ଼ରେ ବାଟ ଚାଲିବା କଠିନ ହେଲା । ଲୀଳା ଆରମ୍ଭ ହୁଅନ୍ତେ ଲୋକେ ଏମନ୍ତ ମନୋନିବେଶ ପୂର୍ବକ ଦେଖିବାରେ ମତ୍ତ ହେଲେ ଯେ ଅଭିନୟର ଆରମ୍ଭଠାରୁ ଶେଷପର୍ଯ୍ୟନ୍ତ ଅଧିକାଂଶ ଲୋକ ବସି ରହିଲେ । ମଝି ମଝିରେ କରତାଳି ଓ ଅନ୍ୟାନ୍ୟ ଚିହ୍ନଦ୍ୱାରା ସମସ୍ତେ ଆନନ୍ଦ ପ୍ରକାଶ କଲେ । ବାବୁ ମନମୋହନ ବସୁଙ୍କ କୃତ ରାମାଭିଷେକ ନାଟକରୁ ଅଭିନୟ ହୋଇଥିଲା ଓ ପ୍ରଥମ ଉଦ୍ୟମରେ ଯେ ଅଭିନୟକାରିମାନେ ଏତାଦୃଶ ଆନନ୍ଦ ପ୍ରଦାନ କରିବାକୁ ସକ୍ଷମ ହେଲେ ଏଥିରେ ସମସ୍ତେ ତାହାଙ୍କର ପ୍ରଶଂସା ଓ ଯଶଘୋଷଣା କଲେ । ଆମ୍ଭେମାନେ ଆଶା କରୁଁ କି ଯେଉଁମାନେ ଏତାଦୃଶ କୃତକାର୍ଯ୍ୟତା ଲାଭ କରିଅଛନ୍ତି ସେମାନେ ଏତିକିରେ ସନ୍ତୁଷ୍ଟ ନ ହୋଇ କ୍ରମରେ ଏଥିର ଉନ୍ନତି ସାଧନ କରନ୍ତୁ ଓ ଏହାଙ୍କ ଯୋଗେ ଓଡ଼ିଶାରେ ନାଟକର ରୁଚି ଓ ତହିଁ ସଙ୍ଗେ ସଙ୍ଗେ ନାଟକ ରଚନାର ପ୍ରବୃତ୍ତି ବିସ୍ତାର ହେଉ ।

*ଭା୧୩ଗ, ସଂ୬ଖ୍ୟା, ୯।୨।୧୮୭୮*

## [ଇତିହାସ ପୁସ୍ତକର ଓଡିଆ ଅନୁବାଦ ]

ଆମ୍ଭେମାନେ ଏକଖଣ୍ଡ ଭାରତବର୍ଷର ସଂକ୍ଷିପ୍ତଇତିହାସ ଉପହାର ପାଇବାର କୃତଜ୍ଞତାସହିତ ସ୍ୱୀକାର କରୁଅଛୁଁ । ଏହା କଟକ କଲେଜର ପ୍ରଧାନଶିକ୍ଷକ ବାବୁ କ୍ଷିରୋଦଚନ୍ଦ୍ର ରାୟ ଚୌଧୁରୀ ଏମ୍,ଏ.ଙ୍କ ଦ୍ୱାରା ତାହାଙ୍କ ସ୍ୱରଚିତ ବଙ୍ଗଳା ପୁସ୍ତକରୁ ଓଡ଼ିଆଭାଷାରେ ଅନୁବାଦିତ ହୋଇଅଛି । ଏଥିରେ ଆର୍ଯ୍ୟୋପନିବେଶ ସମୟରୁ ଚଳିତ ବର୍ଷର ଆରମ୍ଭ ପର୍ଯ୍ୟନ୍ତ ଭାରତବର୍ଷର ଇତିହାସ ସଂକ୍ଷେପରେ ଲେଖାଅଛି । କ୍ଷିରୋଦବାବୁ ଅତ୍ୟଳ୍ପ କାଳ ହେଲା ଓଡ଼ିଶାକୁ ଆସି ଏଠା ଭାଷାରେ ଖଣ୍ଡିଏ ପୁସ୍ତକ ବାହାର କରିବା ପ୍ରଶଂସାର ବିଷୟ ଅଟଇ ଓ ଯଦ୍ୟପିକି ଇଂରାଜୀ ବିଦ୍ୟାଳୟର ଦ୍ୱିତୀୟ ପଣ୍ଡିତ ଶ୍ରୀଯୁକ୍ତକୃତ୍ତିବାସ ଶତପଥୀ ଏଥିରେ ବିଶେଷ ସାହାଯ୍ୟ କରିଅଛନ୍ତି ଓ ସେ ହେତୁରୁ ଭାଷା ଭଲ ହେବା ବିଚିତ୍ର ନୁହଇ ତଥାପି କ୍ଷିରୋଦବାବୁ ଓଡ଼ିଆଭାଷା ପ୍ରତି ସମାଦର ଦେଖାଇଅଛନ୍ତି ଏହା ସ୍ୱୀକାର କରିବାକୁ ହେବ ଏବଂ ପୁସ୍ତକର ମୂଲ୍ୟ ଯେପରି ଧାର୍ଯ୍ୟ କରିଅଛନ୍ତି ତହିଁରୁ ସ୍ପଷ୍ଟ ଜଣାଯାଏ ଯେ ସେ ଆଦୌ ଲାଭର ଆଶାରେ ଏ ପୁସ୍ତକ ପ୍ରଣୟନ କରି ନାହାନ୍ତି । ପୁସ୍ତକର କଳେବର ଡିମାଇ ୧୨ପେଜୀ ପୃ୨୨୬ଷ୍ଠା ଓ ମୂଲ୍ୟ ଟ०ଌ ମାତ୍ର-ଏହା ବିଦ୍ୟାଳୟର ଉପଯୋଗୀ ହୋଇଅଛି ।

*ଭା୧୩ଗ, ସଂ୧୬ଖ୍ୟା, ୨୦।୪।୧୮୭୮*

## [ଉତ୍କଳମଧୁପ]

'ଉତ୍କଳମଧୁପ' ନାମରେ ଏକଖଣ୍ଡ ମାସିକପତ୍ର ଏ ସପ୍ତାହରେ ଉପହାର ପାଇ ଅତ୍ୟନ୍ତ ପ୍ରୀତ ହୋଇଅଛୁଁ । ଓଡ଼ିଶାରେ ଏପରି ପତ୍ର ନ ଥିବା ଲଜ୍ଜାର ବିଷୟ ଅଟଇ । ବାଲେଶ୍ୱରରେ ପ୍ରଥମେ ଏଥିର ଚେଷ୍ଟା ହୋଇଥିଲା ମାତ୍ର ତାହା ରହିପାରିଲା ନାହିଁ ଓ ରହନ୍ତା ଅବା କିପରି ସର୍ବସାଧାରଣଙ୍କ ସାହାଯ୍ୟ ଉପରେ ଯାହାର ଅସ୍ତିତ୍ୱ ନିର୍ଭର କରଇ ତାହା ଦୁଇ ଚାରି ଜଣର ଚେଷ୍ଟାରେ କିପରି ରହିବ ? ଓଡ଼ିଶା ବଙ୍ଗଳାଠାରୁ ନିର୍ଦ୍ଧନୀ ଓ ଅଶିକ୍ଷିତ ଦେଶ ହେଲେହେଁ ଏଠାରେ ଯେତେ ଦ୍ରବ୍ୟବନ୍ତ ଓ ଶିକ୍ଷିତ ଲୋକ ଅଛନ୍ତି କେବଳ ସେହି ମାନଙ୍କ ସାହାଯ୍ୟରେ ଖଣ୍ଡିଏ ମାସିକ ପତ୍ର ଜୀବିତ ରହିବା ବିଚିତ୍ର ନୁହଇ ବର୍ଷରେ ଟ ୧୫ ଙ୍କା କି ଟ୨୮ଙ୍କା ଦେବା ଭଳି ଲୋକ ଓଡ଼ିଶାରେ ଊଣା ନାହାନ୍ତି ତେବେ ମନ ହେବା ଆବଶ୍ୟକ । ଆମ୍ଭେମାନେ ଆଶାକରଁ ଯେ ଉତ୍କଳବାସିମାନେ ଏଥିପୂର୍ବେ ମାସିକ ପତ୍ର ପ୍ରତି ଯେପ୍ରକାର ଅନାଦର ଦେଖାଇ ଅଛନ୍ତି ବର୍ତ୍ତମାନ ଯେମନ୍ତ ସେପରି କରିବେ ନାହିଁ ଓ ସେପରି ହେଲେ ଓଡ଼ିଶାରେ ଶିକ୍ଷାର ଉନ୍ନତି ହୋଇଅଛି ଏମନ୍ତ ବୋଲିବା ନିତାନ୍ତ ଅଯୌକ୍ତିକ ହେବ । ଆମ୍ଭେମାନେ ପ୍ରଥମ ସଂଖ୍ୟା ପାଠ କରି ଆନନ୍ଦିତ ହୋଇଅଛୁଁ ବାସ୍ତବରେ ଏହା ସୁପାଠ୍ୟ ହୋଇଅଛି ଏବଂ ସାହାଯ୍ୟ ପାଇଲେ ଏହା କ୍ରମେ ଭଲ ହେବ ଏମନ୍ତ ଲକ୍ଷଣ ଦେଖା ଯାଉଅଛି । ପତ୍ରିକା ଖଣ୍ଡି ଦୀର୍ଘଜୀବୀ ହେଉ ଏହି ଆମ୍ଭମାନଙ୍କର ଆଶା ।

*ଭା୧୩ଗ, ସଂ୧୬ଖ୍ୟା, ୨୦।୪।୧୮୭୮*

## [ଓଡିଆ ଭାଷାଭାଷୀମାନଙ୍କର ଏକତ୍ରୀକରଣ ]

ହିନ୍ଦୁପେଟ୍ରିଅଟରେ ଜଣେ ପତ୍ରପ୍ରେରକ ଲେଖି ଅଛନ୍ତି କି ମେଦିନୀପୁର ଜିଲ୍ଲାର କାନ୍ଥି ସବଡିବିଜନ ବାଲେଶ୍ୱର ସଙ୍ଗରେ ମିଶିବାର ପ୍ରସ୍ତାବ ହେଉଅଛି । ଏକଥା ସତ୍ୟ ହେଲେ ଭଲ ହେବ ନାହିଁ । କାରଣ ଏଥିରେ ସରକାରଙ୍କର କିଛି ଲାଭ ନାହିଁ ଅଥଚ ଲୋକଙ୍କର ଅନର୍ଥକ କ୍ଳେଶ ଓ ବ୍ୟୟ ଅଧିକ ହେବ । କାନ୍ଥି ବାଲେଶ୍ୱର ସଙ୍ଗେ ଯୋଗ ହେଲେ ବାଲେଶ୍ୱରରେ ଜଣେ ସ୍ୱତନ୍ତ୍ର ଜଜ ରହିବାର ପ୍ରୟୋଜନ ହେବ । ଅତଏବ ଉକ୍ତ ପତ୍ର ପ୍ରେରକ ପ୍ରସ୍ତାବ କରନ୍ତି ଯେ କାନ୍ଥିକୁ ବାଲେଶ୍ୱର ସଙ୍ଗେ ଯୋଗ ନ କରି ବାଲେଶ୍ୱର ଜିଲାକୁ ମେଦିନୀପୁର ସଙ୍ଗେ ମିଶାଇ ଦେଲେ ଭଲ ହେବ । କାରଣ ଦୁଇଜିଲ୍ଲା ପରସ୍ପରର ନିକଟବର୍ତ୍ତୀ ଅଟଇ । ଏଥକୁ ହିନ୍ଦୁପେଟ୍ରିଅଟ ବୋଲନ୍ତି କି ବାଲେଶ୍ୱର ଓ ମେଦିନୀପୁରର ରାଜସ୍ୱ ସଂକ୍ରାନ୍ତ ନିୟମମାନ ପୃଥକ ଥିବାରୁ ଏ ଦୁଇ ଜିଲାକୁ ଏକତ୍ର କରିବା ସୁବିଧା ହେବ ନାହିଁ । ଆମ୍ଭେମାନେ ଆଶାକରୁଁ କି ଯେ କୌଣସି ବନ୍ଦୋବସ୍ତରେ ଯେତେ ସ୍ଥାନରେ ଓଡ଼ିୟାଙ୍କ ବସତୀ ଏବଂ ଓଡ଼ିୟାଭାଷା ପ୍ରଚଳିତ ଅଛି ସେ ସମସ୍ତକୁ ଓଡ଼ିଶା ଅନ୍ତର୍ଗତ କଲେ ଓଡ଼ିଶାର ଅନେକ ଉପକାର ହେବ ।

*ଭା୧୩ଗ, ସଂ୨୩ଖ୍ୟା, ୮।୬।୧୮୭୮*

## [ ଶୁଦ୍ଧ ଉତ୍କଳଭାଷା ]

ଶୁଦ୍ଧ ଉତ୍କଳଭାଷା ଲେଖିବା ବିଷୟରେ ବାଲେଶ୍ୱରର ସମ୍ବାଦବାହିକା ଓ ଉତ୍କଳଦର୍ପଣ ମଧ୍ୟରେ ତର୍କବିତର୍କ ଲାଗି ରହିଅଛି ଏକ ଆରକର ଭାଷାଗତଦୋଷମାନ ଦେଖାଇ ଦେବାରେ ତ୍ରୁଟି କରୁ ନାହାନ୍ତି । ଆମ୍ଭମାନଙ୍କ ବିବେଚନାରେ ଏପରି ତର୍କବିତର୍କ ସରଳ ଭାବରେ ଚାଲିଲେ ସାଧାରଣର ଉପକାର ଅଛି । ଅନେକ ଲୋକ କେତେ ଗ୍ରାମ୍ୟଭାଷାକୁ ଭଲ ଓଡ଼ିୟା ଭାଷା ବୋଲି ରଚନାରେ ସନ୍ନିବେଶିତ କରିବାକୁ ସୁଖ ପାନ୍ତି ଏବଂ ଏହି ଦୁଇ ଭାଷାର ପ୍ରକୃତ ପ୍ରଭେଦ ବାରି ପାରନ୍ତି ନାହିଁ । ଆମ୍ଭମାନଙ୍କ ମତରେ ଲିଖିତ ଭାଷାରେ ଇତର ଶବ୍ଦମାନ ତ୍ୟାଗକରିବା ଉଚିତ ।

*ଭା୧୩ଗ, ସଂ୨୮ଖ୍ୟା, ୧୩।୭।୧୮୭୮*

## ସଂସ୍କୃତ ଭାଷାର ଯୋଗ୍ୟତା ।

ବଙ୍ଗଦେଶର ଶିକ୍ଷାବିଭାଗର ଡିରେକ୍‌ଟର ସାହେବ ସଂସ୍କୃତଭାଷା ଶିକ୍ଷାର୍ଥିଙ୍କର ଉତ୍ସାହ ଉଦ୍ଦେଶରେ ଗୋଟିଏ ମହତ୍‌କାର୍ଯ୍ୟ ସାଧନ କରି ଅଛନ୍ତି ଓ ତହିଁ ସକାଶେ ତାହାଙ୍କୁ ଆମ୍ଭେମାନେ ଅନ୍ତଃକରଣ ସହିତ ଧନ୍ୟବାଦ ଦେଉଅଛୁଁ । ବଙ୍ଗପ୍ରଦେଶର ଲେଫ୍‌ଟନଣ୍ଟ ଗବର୍ଣ୍ଣର ମାନ୍ୟବର ସର୍ ଆସଲି ଇଡନସାହେବଙ୍କ ଗତ ଜୁନମାସ ତା ୨୨ ରିଖ ଲିଖିତ ନିର୍ଦ୍ଧାରଣରୁ ଜଣାଯାଏ ଯେ ସଂସ୍କୃତ କଲେଜରେ ଛାତ୍ରମାନେ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେଲେ ବିଦ୍ୟାସାଗର ନ୍ୟାୟରତ୍ନ ପ୍ରଭୃତି ଉପାଧିମାନ ପ୍ରାପ୍ତ ହୁଅନ୍ତି ଓ ତହିଁର ଯୋଗ୍ୟତା ପତ୍ର ଉକ୍ତ କଲେଜର ପ୍ରିନ୍‌ସିପାଲ୍‌ଙ୍କ ସ୍ୱାକ୍ଷର ସଂଯୁକ୍ତରେ ଛାତ୍ରମାନଙ୍କୁ ଦିଆଯାଏ । ଯେଉଁ ପ୍ରକାର ପରୀକ୍ଷା ଦେଲେ କଲେଜର ଛାତ୍ରମାନେ ଯୋଗ୍ୟତା ପତ୍ର ପ୍ରାପ୍ତ ହୁଅନ୍ତି ସେହିପ୍ରକାର ପରୀକ୍ଷା ବାହାରର ଛାତ୍ରମାନଙ୍କଠାରୁ ଗୃହୀତ ହୋଇ ତାହାଙ୍କୁ ତଦ୍ରୂପ ଉପାଧି ଓ ଯୋଗ୍ୟତା ପତ୍ର ଦେଲେ ବଡ଼ ଭଲ ହେବ ଏପରି ପ୍ରସ୍ତାବ ଡିରେକ୍‌ଟରସାହେବ କରିବାରୁ ଲେଫ୍‌ଟନଣ୍ଟ ଗବର୍ଣ୍ଣର ତାହା ମନୋନୀତ କରି କହିଅଛନ୍ତି କି ଉପରଲିଖିତ ପ୍ରକାରରେ ପ୍ରଦତ୍ତ ହୋଇଥିବା ଯୋଗ୍ୟତା ସୂଚକ ଉପାଧିମାନ ଏଦେଶରେ ବଡ଼ ଆଦରଣୀୟ ଅଟଇ ଏବଂ ରାଜାଙ୍କଦ୍ୱାରା ତାହା ସ୍ୱୀକୃତ ହେଲେ ଶିକ୍ଷିତ ସମ୍ପ୍ରଦାୟରେ ତାହା ଅଧିକ ସନ୍ତୋଷକର ହେବ ।ଏବଞ୍ଚ ଏହାଦ୍ୱାରା ଚତୁଷ୍ପାଠିମାନଙ୍କର ଉତ୍ସାହ ଓ ଉନ୍ନତି ହୋଇ ପାରିବାର ସମ୍ଭାବନା । ଅତଏବ ଲେଫ୍‌ଟନଣ୍ଟ ଗବର୍ଣ୍ଣର ଏ ବିଷୟରେ କେତେଗୁଡ଼ିଏ ନିୟମ ସ୍ଥିରକରି ଗବର୍ଣ୍ଣମେଣ୍ଟ ଗଜେଟରେ ତାହା ପ୍ରଚାର କରାଇ ଅଛନ୍ତି । ଆମ୍ଭେମାନେ ଉକ୍ତ ନିୟମ ଓ ପୁସ୍ତକର ତାଲିକା ଅତିରିକ୍ତ ପତ୍ରିକାରେ ପ୍ରକାଶ କଲୁଁ । ପାଠକମାନେ ତହିଁରୁ ସବିଶେଷ ଅବଗତ ହେବେ । ଆମ୍ଭମାନଙ୍କର ଏକାନ୍ତ ବିଶ୍ୱାସ ଯେ ଏହାଦ୍ୱାରା ଅନେକ ଉପକାର ହେବ । ପ୍ରଥମେ ଯେଉଁ ଖଣ୍ଡଅକ୍ଷରୀୟାମାନେ ଆପଣାମନଙ୍କୁ ପଦଘେନି ଆସ୍ଫାଳନ କରୁଥିଲେ ତାହାଙ୍କର ଶ୍ରାଦ୍ଧ ହେବ ଓ କ୍ରିୟାକଳାପାଦି ଉପଲକ୍ଷରେ ଆମନ୍ତ୍ରିତ ପଣ୍ଡିତଙ୍କ ବିଦାୟସମୟରେ କର୍ତ୍ତା ଅନେକଚିନ୍ତା ଓ ବିବାଦରୁ ରକ୍ଷାପାଇବେ । ଯେବେ ଏଥିସଙ୍ଗେ ଦେଶୀୟ ରାଜାମାନେ ଆପଣା ରାଜଧାନୀ ପଣ୍ଡିତମାନଙ୍କୁ ଏହି ପରୀକ୍ଷା ଦେବାକୁ ବାଧକରନ୍ତି ଓ ପରୀକ୍ଷା ନ ଦେଲେ ତାହାଙ୍କର ଯାଗିର ଅଟକ ହୋଇ ଅନ୍ୟ ଯୋଗ୍ୟ ବ୍ୟକ୍ତିକୁ ଦିଆଯିବ ଏପରି ନିୟମ କରନ୍ତି ତାହାହେଲେ ସଂସ୍କୃତ ଭାଷାର ଅବଶ୍ୟ ବିସ୍ତାର ହେବ ସନ୍ଦେହ ନାହିଁ । ମୋଗଲବନ୍ଦି ଲୋକଙ୍କୁ କେବଳ ସ୍କୁଲର ଶିକ୍ଷକ କରିବାଦ୍ୱାରା ଉତ୍ସାହ ଦିଆଯାଇ ପାରେ ଓ ଯେଉଁମାନେ ସଂସ୍କୃତ ଶିକ୍ଷା କରି ପଣ୍ଡିତ ହେବେ ସେମାନଙ୍କୁ ତଦ୍‌ଯୋଗ୍ୟ କାର୍ଯ୍ୟ କିଛି ନ ଦେଲେ କିପରି ସେମାନଙ୍କର ଶିକ୍ଷାକରିବାକୁ ଉତ୍ସାହ ହେବ । ଏବେତ ଆଉ ପୂର୍ବପରି ରାଜାଙ୍କଠାରୁ ବୃତ୍ତିଲାଭ ହେବାର ଆଶା ନାହିଁ ।

*ଭା୧୩ଗ,ସଂ୨୮ଖ୍ୟା, ୧୩।୭।୧୮୭୮*

## ଉତ୍କଳର ଆଶା ଓ ନୈରାଶ୍ୟ

ଗତ ସପ୍ତାହ ଗୁରୁବାର ସନ୍ଧ୍ୟା ସମୟରେ ପ୍ରିଣ୍ଟିଂ କମ୍ପାନିଙ୍କ କୋଠାରେ ଉତ୍କଳ ସଭାର ବାର୍ଷିକ ଅଧିବେଶନ ହୋଇଥିଲା । ବାବୁ ରାଧାନାଥ ରାୟ ସଭାପତି ପଦରେ ବରଣ ହେଲାଉତ୍ତାରୁ ସଭାର ବାର୍ଷିକ ବିଜ୍ଞାପନୀ ସମ୍ପାଦକ ମହାଶୟ ପାଠ କଲେ । ତହିଁ ଉତ୍ତାରୁ ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ ଶିର୍ଷାଙ୍କିତ ବିଷୟରେ ଗୋଟିଏ ବକ୍ତୃତା କଲେ । ପ୍ୟାରୀବାବୁଙ୍କ ବକ୍ତୃତା କରିବା ଶକ୍ତି ବିଷୟରେ ଅନେକ ଥର ଆମ୍ଭେମାନେ ଲେଖି ଅଛୁଁ ସୁତରାଂ ସେପକ୍ଷରେ ଆଉ କିଛି ବୋଲିବା ଅନାବଶ୍ୟକ କେବଳ ସେ ଯେଉଁ କଥାମାନ ଉକ୍ତ ବକ୍ତୃତାରେ କହିଥିଲେ ତାହା କିଞ୍ଚିତ୍ ପାଠକଙ୍କୁ ଜଣାଇବାର ଆବଶ୍ୟକ ବିବେଚନା କରି ଏ ପ୍ରସ୍ତାବର ଅବତାରଣା କରୁ ଅଛୁଁ । ପ୍ରଥମେ ବିଷୟଟି ବିରୋଧାଭାଷପରି ଜଣା ଯିବାରୁ ଆମ୍ଭେମାନେ ବ୍ୟସ୍ତ ହୋଇଥିଲୁଁ କିନ୍ତୁ ସବିଶେଷ ଅବଗତ ହେବାରୁ ସେ ବ୍ୟସ୍ତ ବିଦୂରିତ ହେଲା ବକ୍ତାମହାଶୟ କହିଲେ ଯେ ପୃଥିବୀ ସଙ୍ଗେ ତୁଳନା କଲେ ଉନ୍ନତି ପ୍ରସଙ୍ଗରେ ବର୍ତ୍ତମାନ ଉତ୍କଳର ବାଲ୍ୟାବସ୍ଥା ଏବଂ ଭାରତବର୍ଷ ସଙ୍ଗେ ତୁଳନା କଲେ ଯୌବନାବସ୍ଥା ଅଟଇ । ଏଥିର ମର୍ମ ଏହି ଯେ ଇଉରୋପ ଓ ଆମେରିକାରେ ଯେମନ୍ତ ଉନ୍ନତି ହୋଇଅଛି ଓଡ଼ିଶା ତାହା ଶିକ୍ଷା କରୁଅଛି ଓ ଭାରତବର୍ଷର ଅନ୍ୟାନ୍ୟ ସ୍ଥାନପରି ଓଡ଼ିଶାର କେତେକ ଉନ୍ନତି ହୋଇଥିଲେ ବଙ୍ଗଳା କିମ୍ବା ବମ୍ବେଇ ସଙ୍ଗେ ସମକକ୍ଷ ହୋଇ ନାହିଁ । ଯଥା ଉପେନ୍ଦ୍ରଭଞ୍ଜ ପରି ଜଣେ କବି ଓଡ଼ିଶାରେ ହୋଇଥିଲେହେଁ ସେ କାଳିଦାସ କିମ୍ବା ବ୍ୟାସଙ୍କୁ ସରି ନୁହନ୍ତି । କିନ୍ତୁ ବର୍ତ୍ତମାନ କାଳରେ

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ଓଡ଼ିଶା ଉନ୍ନତି ଦିଗକୁ ପଦ ଚଳନା କରୁଅଛି ନ କରିବ କାହିଁକି ତାହାତ ଏ ଯୁଗର ଧର୍ମ ଅଟଇ ଅର୍ଥାତ୍ ଉନ୍ନତି ଊନବିଂଶ ଶତାବ୍ଦୀର ଧର୍ମ ଅଟଇ ଆଜିକାଲି ଘରିଆଡୁ ଉନ୍ନତିର ପରିଚୟ ପ୍ରାପ୍ତ ହେଉଅଛି । ଯାପାନ ଦ୍ୱୀପ ଉନ୍ନତି କି ଲଭିଲା ଶ୍ୟାମର ରାଜା ଉନ୍ନତିର ବିଶେଷ ଚେଷ୍ଟା କରୁଅଛନ୍ତି ଏବଂ ଏତେ ଅସଭ୍ୟ ଯେ ଓଡ଼ିଶାର କନ୍ଧମାନେ ସେମାନେ ସୁଦ୍ଧା ସ୍ୱେଚ୍ଛା ପୂର୍ବକ କରଦେଇ ଶିକ୍ଷା ଲାଭଦ୍ୱାରା ଆପଣା ଉନ୍ନତିର ଚେଷ୍ଟା କରୁଅଛନ୍ତି । ଏହି କାଳର ମହାତ୍ମ୍ୟରେ ଓଡ଼ିଶା ଉନ୍ନତି ଦିଗକୁ ଦୃଷ୍ଟି କରୁଅଛି ଏହାର ଆଶା ଅନ୍ୟାନ୍ୟ ଦେଶ ପରି ଉନ୍ନତି ହେବା କିନ୍ତୁ ଭାରୀ ନୈରାଶ୍ୟ ଏହା ସଙ୍ଗେ ସଙ୍ଗେ ରହିଅଛି । ଯଥା; ଏଠାରେ ମଧମ ଶ୍ରେଣୀ ଲୋକର ସଂଖ୍ୟା ଅତ୍ୟନ୍ତ ଊଣା ମଧମ ଶ୍ରେଣୀରେ ବ୍ରାହ୍ମଣ କରଣ ଓ ଖଣ୍ଡାଏତ ଏହାଙ୍କ ଦ୍ୱାରା ସର୍ବ ଦେଶରେ ଉନ୍ନତି ସାଧିତ ହୁଅଇ । ଆଉ ଏଠା ଲୋକ ଶ୍ରମଶୀଳ ନୁହନ୍ତି ଏହାଙ୍କର ଅଧ୍ୟବସାୟ । ବାଣିଜ୍ୟାଦିର ଆଡ଼ମ୍ବର ଏଠାରେ ନାହିଁ । ସ୍ତ୍ରୀ ଶିକ୍ଷାର ଉନ୍ନତି ହୋଇନାହିଁ ଇତ୍ୟାଦି କାରଣରୁ ବକ୍ତା ଉତ୍କଳର ଉନ୍ନତି ପ୍ରତି ନୈରାଶ୍ୟ ପ୍ରକାଶ କଲେ । ଏହାଙ୍କ ବକ୍ତୃତା ଶେଷ ହେଲା ଉତାରୁ ସଭାପତି ବାବୁ ରାଧାନାଥ ରାୟ କେତେ ଗୁଡ଼ିଏ ସଦ୍‌ଯୁକ୍ତି ଦେଖାଇ ବକ୍ତାଙ୍କ ପ୍ରଦର୍ଶିତ କେତେକ ହେତୁର ଅସାରତା ଦେଖାଇଲେ ଓ ନୈରାଶ୍ୟର କାରଣ ନଥିବାର ପ୍ରତିପନ୍ନ କଲେ ରାଧାନାଥ ବାବୁ ବକ୍ତା ନୁହନ୍ତି ସୁତରାଂ ଅଳ୍ପ କଥାରେ ଆପଣା ମତ ପ୍ରକାଶ କରି କ୍ଷାନ୍ତ ରହିଲେ କିନ୍ତୁ ତାହାଙ୍କର ମଧୁର ବଚନରେ ସମସ୍ତେ ସନ୍ତୁଷ୍ଟ ହୋଇଥିଲେ ଏବଂ ପ୍ରତି କଥାରେ ତାହାଙ୍କର ନମ୍ର ସ୍ୱଭାବ ଓ ଗମ୍ଭୀର ବୁଦ୍ଧିର ପରିଚୟ ପାଇ ଶ୍ରୋତାମାନେ ମୋହିତ ହେଲେ ।

*ଭା୧୩ଗ, ସଂ୨୮ଖ୍ୟା, ୧୩/୭/୧୮୭୮*

## ପୁରୀର ଗୋଟିଏ ଶୁଭାଶା ।

ପରମ ଶ୍ରଦ୍ଧାସ୍ପଦ ଶ୍ରୀଯୁତ ଉତ୍କଳଦୀପିକା ସଂପାଦକ
ମହାଶୟ ସନ୍ନିଧେଷୁ ।

ମହାଶୟ !

ଆମ୍ଭେମାନେ ପରମାନନ୍ଦର ସହିତ ପ୍ରକାଶ କରୁଅଛୁଁ ଯେ ଏଠାରେ "Pooree Free Academy"ନାମରେ ଗୋଟିଏ ମାଇନର ସ୍କୁଲ ଖୋଲିଅଛି । ଏହି ସ୍କୁଲଟି ଚଳିତ ମାସ ତା ୧୪ରିଖ ବୃହସ୍ପତିବାସରେ ହେରାଗୋହିରୀ ମଧ୍ୟବର୍ତ୍ତୀ ଆହୁଲିଆମଠରେ ସ୍ଥାପିତ ହୋଇଅଛି । ଏଥିରୁ ଛାତ୍ରମାନେ ଅବୈତନିକରୂପେ ଶିକ୍ଷାଲାଭ ପୂର୍ବକ ମାଇନର ଛାତ୍ରବୃତ୍ତି ପରୀକ୍ଷୋତ୍ତୀର୍ଣ୍ଣ ହୋଇ ଜିଲାସ୍କୁଲମାନଙ୍କରେ ପ୍ରବେଶ କରିବେ । ଗବର୍ଣ୍ଣମେଣ୍ଟଙ୍କର ଆଧୁନିକ ନିୟମାନୁସାରେ ମାଇନର ସ୍କୁଲ ଦ୍ୱାରା ସ୍ୱୀୟ ମାତୃଭାଷା ଓ ଇଂରେଜୀଭାଷାରେ ସମକାଳୀନ ବ୍ୟୁତ୍ପତ୍ତି ଲାଭ ଅପେକ୍ଷିତ ହୋଇଅଛି । ଅତଏବ ଉକ୍ତ ବିଦ୍ୟାଳୟ ସ୍ଥାପନଦ୍ୱାରା ଏହି ତିମିରାଚ୍ଛନ୍ନ ପୁରୀରେ ଦରିଦ୍ରସନ୍ତାନମାନଙ୍କର ଯେ ଗୋଟିଏ ଅଭୂତ ପୂର୍ବ ଉପକାର ସାଧିତ ହେବ , ଏହା ବୋଲିବା ବାହୁଲ୍ୟ ମାତ୍ର । ପ୍ରଥମତଃ ଭାରତବର୍ଷ ମଧ୍ୟରେ ଓଡ଼ିଶା ଗୋଟିଏ ଦରିଦ୍ରତମ ପ୍ରଦେଶ । ତାହାର ନିଦର୍ଶନ ଏହି ଯେ ଓଡ଼ିଶାର କଲେଜଟି ବିଦେଶୀୟ ଉଦାରପୁରୁଷମାନଙ୍କର ଦାନବାହୁଲ୍ୟ ଥିଲେ ସୁଦ୍ଧା ବର୍ତ୍ତମାନ ଟଳମଳ ଅବସ୍ଥାରେ ଅଛି । ଏଥିରେ ପୁରୀର କଥା ବା କି କହିବା । ଯାହା ହେଉ ଉଲ୍ଲିଖିତରୂପ କାରଣ ସତ୍ତ୍ୱେ ଯେ ପୁରୀନିବାସିମାନେ ଜ୍ଞାନାଭାବକୁ ବୋଧକରି କେବଳ ଦରିଦ୍ର ବାଳକମାନଙ୍କର ଶିକ୍ଷାଲାଭ ନିମନ୍ତେ ଗୋଟିଏ ଅବୈତନିକ ବିଦ୍ୟାଳୟ ସ୍ଥାପିତ କରିଅଛନ୍ତି, ଏହା ପୁରୀର ମାଜିଷ୍ଟ୍ରେଟ ଓ କଲେକ୍‌ଟର ଶ୍ରୀଯୁକ୍ତ ଆର୍ମଷ୍ଟ୍ରଂ ସାହେବ ମହୋଦୟଙ୍କର ବିଦ୍ୟାପ୍ରତି ଗତାନୁରାଗ ଓ ସୁଶାସନର ଅଭ୍ରାନ୍ତ ଫଳ ବୋଲିବାକୁ ହେବ । ପରିଶେଷେ ଆମ୍ଭମାନଙ୍କର ଏକାନ୍ତ ପ୍ରାର୍ଥନା ଏହି ଯେ ଓଡ଼ିଶାର ଯାବତୀୟ ସମ୍ପନ୍ନ ମହାତ୍ମାମାନେ ଓ ଶିକ୍ଷାବିଭାଗର କର୍ତ୍ତୃପକ୍ଷମାନେ ସ୍ୱସ୍ୱୋଚିତ ସାହାଯ୍ୟଦ୍ୱାରା ଏହି ବିଦ୍ୟାଳୟଟିର ସ୍ଥାୟୀତା ବିଷୟରେ ଯତ୍ନବାନ୍ ହେବେ । କାରଣ ଏହା ପୁରୀର ଗୋଟିଏ ଚିରନ୍ତନ ସୁମହତ୍ ଅଭାବ ଦୂର କରିବ ସନ୍ଦେହ ନାହିଁ ।

ପୁରୀ　　　　　　　　　　କଷ୍ଟିନ୍ ଭବପତ୍ରିକା ପାଠକଃ
୧୭.୧୧.୭୮

*ଅତିରିକ୍ତ, ୨୩/୧୧/୧୮୭୮*

[ପ୍ରାପ୍ତ]

## ବିଦ୍ୟାଳୟର ପାଠ୍ୟପୁସ୍ତକ ନିର୍ବାଚନ ।

ଶିକ୍ଷା ମନୁଷ୍ୟର ପ୍ରଧାନ ଭୂଷଣ, ସୁତରାଂ ସେହି ଶିକ୍ଷାକାର୍ଯ୍ୟ ସୁନ୍ଦରରୂପେ ଚଳାଇବା ନିମିତ୍ତ ଲକ୍ଷ ଲକ୍ଷ ମୁଦ୍ରା ବ୍ୟୟିତ ହେଉ ଅଛି, ତଥାପି ସ୍ଥାନ ବିଶେଷରେ ସୁବିଚାରର ଅଭାବ ହେତୁ ବାଞ୍ଛିତ ଫଳ ଫଳୁ ନାହିଁ । ଉତ୍କଳ ବିଦ୍ୟାଳୟମାନଙ୍କର ଦୁରବସ୍ଥା ଚିରକାଳ ରହିଅଛି, ଏହା କେବେ ପ୍ରକୃତ ପଦ୍ଧତି ଅବଲମ୍ବନ କରିବ ବୋଲାଯାଇ ନ ପାରେ । ପୂର୍ବତନ ଜଏଣ୍ଟ ଇନ୍‌ସ୍ପେକ୍‌ଟରମାନେ ପୁସ୍ତକ ନିର୍ବାଚନ ସମୟରେ ଏକ ଏକ ଶ୍ରେଣୀରେ ଦୁଇ ଚାରିଖଣ୍ଡ ପୁସ୍ତକ ମଧ୍ୟରୁ ଯେ କୌଣସି ପୁସ୍ତକ ପଢାଇବା ପାଁଇ ଲିଷ୍ଟ ମଧ୍ୟରେ ପକାଇ ଦେଉ ଥିଲେ । ଏହାଦ୍ୱାରା ସବୁ ବିଦ୍ୟାଳୟରେ ସମଭାବରେ ଶିକ୍ଷା ହେଉ ନ ଥିଲା । ପୁଣି ପୁସ୍ତକ ଲେଖକମାନଙ୍କର ପ୍ରୟୋଜନ ମତ ପୁସ୍ତକ ବିକ୍ରୟ ନ ହେବାରୁ ସେମାନେ ମଧ ନିରୁତ୍ସାହୀ ହୋଇ ମୁଣ୍ଡରେ ହାତ ଦେଇ ବସୁଥିଲେ । ଆମ୍ଭେମାନେ ଆଶା କରିଥିଲୁଁ ଯେ ବର୍ତ୍ତମାନ ଜଏଣ୍ଟ ଇନ୍‌ସ୍ପେକ୍‌ଟରଙ୍କର ଭାଷା ବିଷୟରେ ଟିକିଏ ଦୃଷ୍ଟି ଅଛି, ଅତଏବ ସେ ଅବଶ୍ୟ ସର୍ବାପେକ୍ଷା ଯେଉଁ ପୁସ୍ତକ ଉତ୍କୃଷ୍ଟ ଜ୍ଞାନ କରିବେ ତାହାକୁ ପାଠ୍ୟ ପୁସ୍ତକ ମଧ୍ୟରେ ସ୍ଥାନ ଦେବେ, ମାତ୍ର ସେ ମହାଶୟ ପ୍ରାୟ ଦୁଇ ବର୍ଷ ହେଲା ଜଏଣ୍ଟ ଇନ୍‌ସ୍ପେକ୍‌ଟରଙ୍କ ଗାଦିକି ଅଧିକାର କରି ସେହି ପୁରୁଣା ରୀତିକି ଅନୁସରଣ କରି କୌଣସି କୌଣସି ଶ୍ରେଣୀରେ ଦୁଇ ତିନିଖଣ୍ଡ ପୁସ୍ତକର ନାମ ଲେଖି ଅଛନ୍ତି, ଏହାଦ୍ୱାରା କି ବିଶେଷ ଉପକାର ହେବ ତାହା ଆମ୍ଭେ ବୁଝି ପାରୁ ନାହୁଁ । ତେବେ ଏତିକି କୁହାଯାଇ ପାରେ ସମସ୍ତ ପୁସ୍ତକାଧିକାରିଙ୍କ ପ୍ରତି ଜଏଣ୍ଟ ଇନ୍‌ସ୍ପେକ୍‌ଟର ସମ ଭାବରେ ବିଚାର କରି ଅଛନ୍ତି, କିନ୍ତୁ ଏ ବିଚାରରେ ଭଲ ଫଳ ନାହିଁ । ଏପରି ବିଚାର ଅପେକ୍ଷା ସମ ଭାବରେ ସମସ୍ତଙ୍କର ଜ୍ଞାନ ଲାଭ ହେବାର କାର୍ଯ୍ୟକୁ ଆମ୍ଭେମାନେ ଅଧିକ କର୍ତ୍ତବ୍ୟ ମନେ କରୁଅଛୁଁ । ଯଦି ବୋଲାଯାଏ ସମାନରୂପରେ ଜ୍ଞାନ ହେବା ନିମିତ୍ତ ସେ ସମଶ୍ରେଣୀସ୍ଥ ଦୁଇ ତିନିଖଣ୍ଡ ପୁସ୍ତକ ନିର୍ବାଚନ କରିଅଛନ୍ତି, ତାହା ମଧ ଦେଖାଯାଉ ନାହିଁ, ୨ୟଶ୍ରେଣୀରେ "କବିତାବଳୀ" ଅଥବା "ଭ୍ରମଭଞ୍ଜନ" ଚଳିଅଛି, ଏ ସ୍ଥଳେ କବିତାବଳୀ ଓ ଭ୍ରମଭଞ୍ଜନ କଦାପି ସମଜ୍ଞାନୋତ୍ପାଦକ ପୁସ୍ତକ ନୁହନ୍ତି ଏହା ପ୍ରତ୍ୟେକ ପାଠକ ସ୍ୱୀକାର କରିବେ । ଯଦି ବୋଲାଯାଏ ସବୁ ପୁସ୍ତକ ସବୁଠାରେ ମିଳଇ ନାହିଁ, ସୁତରାଂ ଜଏଣ୍ଟ ଇନ୍‌ସ୍ପେକ୍‌ଟର ଏହିପରି ଦୁଇ ତିନିଖଣ୍ଡ ପୁସ୍ତକର ନାମ କରି ଅଛନ୍ତି, ଯାହାକୁ ଯେଉଁଠାରେ ଯେଉଁ ପୁସ୍ତକର ସୁବିଧା ଘଟିବ ସେ ତାହା ପଢାଇବ , ଆମ୍ଭେମାନେ ପୁସ୍ତକ ନ ମିଳିବାର ଆପତ୍ତିକି ଅନୁମୋଦନ କରୁ ନାହୁଁ, ଏହା ବୃଥା ଆପତ୍ତି ମାତ୍ର । ଇଂଲଣ୍ଡରୁ ପୁସ୍ତକ ଆସି ବିଦ୍ୟାଳୟମାନଙ୍କରେ ପଠିତ ହେଉଅଛି, ଉତ୍କଳ ଦେଶରେ ଓଡ଼ିଆ ପୁସ୍ତକ ସ୍ଥାନାନ୍ତରରେ ମିଳି ନ ପାରିବ ଏହାର ଅର୍ଥ କ'ଣ ? ବର୍ତ୍ତମାନ ସ୍କୁଲର ହାକିମ ସଂଖ୍ୟା କମ୍ ନୁହନ୍ତି, ଯେଉଁ ସ୍କୁଲ ସକାଳଓଳି ଏକ ହାକିମ ଦେଖୁଅଛି ସେ ଉପରଓଳି ଆଉ ଏକ ହାକିମ ଦେଖୁ ଅଛି । ଏପରି ଅବସ୍ଥାରେ ଯଦି ସବୁ ସ୍କୁଲରେ ପୁସ୍ତକ ନିୟମିତରୂପେ ନ ମିଳିବ ଓ ଶିକ୍ଷକମାନେ ସ୍ଥାନାନ୍ତରରୁ ପୁସ୍ତକ ନ ଆଣିବେ ଓ ସୁ ଶିକ୍ଷାର ବାଧା ହେବ ତେବେ ଏଥିପାଁଇ କିଏ ଦାୟୀ ? ଶିକ୍ଷାବିଭାଗ ଅବଶ୍ୟ ଦାୟୀ ବୋଲି ସ୍ୱୀକାର କରିବାକୁ ହେବ । ଆମ୍ଭମାନଙ୍କ ମତରେ ଦୁଇଜଣ ସବ୍‌ଇନ୍‌ସ୍ପେକ୍‌ଟରଙ୍କୁ କେବଳ ପୁସ୍ତକ ଯୋଗାଇବା କାମରେ ନିଯୁକ୍ତ କଲେ ଉତ୍ତମ ହୁଅନ୍ତା । ପରିଶେଷରେ ଆମ୍ଭେମାନେ ଜଏଣ୍ଟ ଇନ୍‌ସ୍ପେକ୍‌ଟର ମହାଶୟଙ୍କୁ ଅନୁରୋଧ କରୁଅଛୁଁ ଯେ ସେ ବାରାନ୍ତରକୁ ଆପଣା କାର୍ଯ୍ୟ ସଂଶୋଧନ କରି ସମଭାବରେ ବିଦ୍ୟାଳୟମାନଙ୍କର ଶିକ୍ଷାକାର୍ଯ୍ୟ ସମ୍ପାଦନଦ୍ୱାରା ଆମ୍ଭମାନଙ୍କର ଅଶେଷ ପ୍ରୀତିଭାଜନ ହେବେ ।

*ଭା୧୩ଗ,ସଂ୫୦ଖ୍ୟା,୨୧/୧୨/୧୮୭୮*

## ୧୮୭୯

### ପୁଣି ଗୋଟାଏ ମୁଦ୍ରାଯନ୍ତ୍ର ।

ଅନ୍ୟ ସ୍ଥାନରେ ପ୍ରକାଶ ହୋଇଥିବା ବିଜ୍ଞାପନରୁ ପାଠକମାନେ ଜାଣିବେ ଯେ ମୟୂରଭଞ୍ଜର ମହାରାଜା ଗୋଟିଏ ମୁଦ୍ରାଯନ୍ତ୍ର ଆପଣା ରାଜଧାନୀରେ ସ୍ଥାପନ କରି ଖଣ୍ଡିଏ ପାକ୍ଷିକପତ୍ରିକା ବାହାର କରିବାର ସ୍ଥିର କରିଅଛନ୍ତି । ମହାରାଜାଙ୍କର ଏ ବାଞ୍ଛା କାହିଁକି ହେଲା ଆମ୍ଭେମାନେ କହି ନ ପାରୁଁ । ପ୍ରକାଶ୍ୟରେ ବୋଧ ହୁଅଇ ଯେ ଦେଶର ଅନ୍ୟାନ୍ୟ ଉନ୍ନତି ମଧରେ ମୁଦ୍ରାଯନ୍ତ୍ର ସ୍ଥାପନକୁ ଗୋଟିଏ ପ୍ରଧାନ ଜ୍ଞାନ କରି ତଦ୍ଦ୍ୱାରା ଖ୍ୟାତି ବିସ୍ତାର ଆଶାରେ ମହାରାଜା ଏଥିରେ ପ୍ରବୃତ୍ତ ହୋଇଅଛନ୍ତି ନୋହିଲେ ଓଡିଶାରେ କି ମୁଦ୍ରାଯନ୍ତ୍ରର ଅଭାବ ଅଛି ଅଥବା ତଦ୍ଦ୍ୱାରା ମହାରାଜାଙ୍କର ପ୍ରୟୋଜନୀୟ କାର୍ଯ୍ୟ ସବୁ ହୋଇପାରୁ ନାହିଁ ଯେ ତହିଁ ନିମିତ୍ତ ଆପଣା ବ୍ୟୟରେ ମହାରାଜା ଗୋଟିଏ ମୁଦ୍ରାଯନ୍ତ୍ର ଆପଣା ରାଜଧାନୀରେ ସ୍ଥାପନ କଲେ । ଯଦ୍ୟପି ଜନସାଧାରଣଙ୍କୁ ଶିକ୍ଷା ଦେବା ନିମିତ୍ତ ମହାରାଜା ଏ ପାକ୍ଷିକ ପତ୍ରିକାକୁ ବାହାର କରିବାର ସ୍ଥିର କରଥାନ୍ତି ତେବେ ନିଶ୍ଚୟ ବୋଲା ଯାଇପାରେ ଯେ ଏହା ଦ୍ୱାରା ଅଧିକ ଉପକାର ହେବ ନାହିଁ । ଓଡ଼ିଶାରେ ବର୍ତ୍ତମାନ ଚାରିଖଣ୍ଡ ସମ୍ବାଦପତ୍ର ଅଛି । ଗ୍ରାହକ ଅଭାବରୁ କାହାରି ଉନ୍ନତି ହୋଇପାରୁ ନାହିଁ । ଏଥି ଉପରେ ଆଉ ଖଣ୍ଡେ ହେଲେ ଯେ ଅଧିକ ଗ୍ରାହକ ଆକର୍ଷଣ କରିବ ତାହା ସମ୍ଭବ ହେଉ ନାହିଁ ସୁତରାଂ ମୂଲ୍ୟ ଦେଇ ଅଧିକାଂଶ ଲୋକ ଯେବେ ନ ପଢ଼ିବେ ତେବେ ପତ୍ରିକାଦ୍ୱାରା ବିଶେଷ କି ଉପକାର ହେବ । ମହାରାଜା କିଛି ଅନ୍ୟ ଲୋକପରି ଅର୍ଥର ପ୍ରତ୍ୟାଶୀ ନୁହନ୍ତି ଯେ ପତ୍ରିକାଦ୍ୱାରା କିଞ୍ଚିତ୍ ଆୟ ହେଲେ ତାହାଙ୍କର ଉପକାର ହେବ । ଯେବେ ମହାରାଜା କୌଣସି ପତ୍ରିକା ବାହାର କରିବେ ତାହା ବିନାମୂଲ୍ୟରେ ବିତରଣ କରିବାର ଉଚିତ ଯେମନ୍ତ କି ବର୍ଦ୍ଧମାନର ମହାରାଜା ମହାଭାରତ ଏବଂ ଅନ୍ୟ ସମ୍ଭ୍ରାନ୍ତବ୍ୟକ୍ତିମାନେ ଅନ୍ୟାନ୍ୟ ପୁସ୍ତକ ବିନାମୂଲ୍ୟରେ ବିତରଣ କରିଥିଲେ । କିନ୍ତୁ ଏଥିରେ ମଧ ଯେ ଅଧିକ ଉପକାର ହେବ ତାହା ଆମ୍ଭେମାନେ ଦେଖୁ ନାହୁଁ ବରଂ ଅନ୍ୟାନ୍ୟ ସମ୍ବାଦପତ୍ରର ଅନିଷ୍ଟ ଘଟିପାରେ କାରଣ ଏକଖଣ୍ଡ କାଗଜ ବିନାମୂଲ୍ୟରେ ପ୍ରାପ୍ତ ହେଲେ ମୂଲ୍ୟ ଦେଇ କେହି କିଣିବାକୁ ଆଗ୍ରହ କରିବେ ନାହିଁ । ଆମ୍ଭେମାନେ ଅନୁମାନ କରୁ କି ମୁଦ୍ରାଯନ୍ତ୍ର ଆଣିବାଦ୍ୱାରା ମହାରାଜା କୌଣସି ଭ୍ରମରେ ପଡିଅଛନ୍ତି । ଓଡ଼ିଶାରେ ମୁଦ୍ରାଯନ୍ତ୍ରର ଅଭାବ ନାହିଁ କିନ୍ତୁ ମୁଦ୍ରାଯନ୍ତ୍ରର ସହାୟ କେହି ନାହିଁ । ଗବର୍ଣ୍ଣମେଣ୍ଟ ଏତେକାଳ ମୁଦ୍ରାଯନ୍ତ୍ରମାନଙ୍କୁ ପ୍ରତିପାଳନ କରି ଆସୁଥିଲେ ଏବେ ତାହା ରହିତ ହେବାରୁ ମୁଦ୍ରାଯନ୍ତ୍ରମାନଙ୍କର ଅବସ୍ଥା ଅତି ମନ୍ଦ । ଏଥିରେ ମହାରାଜା ଆଉ ଗୋଟିଏ ଯନ୍ତ୍ର ଅଣାଇବାରେ ଏହି ହେଲା କି ମହାରାଜାଙ୍କ ଯୋଗେ ଅନ୍ୟାନ୍ୟ ଯନ୍ତ୍ରାଳୟମାନଙ୍କର ଯଦ୍ୟପି କିଛି ଉପକାର ହୋଇପାରନ୍ତା ତାହା ଆଉ ହେବ ନାହିଁ । ମହାରାଜା ଯେବେ ପ୍ରକୃତ ହିତର ଚେଷ୍ଟା କରନ୍ତେ ତେବେ ସେ ଅନାୟାସରେ ଦେଖିପାରନ୍ତେ ଯେ ତାହାଙ୍କ ଅତି ନିକଟ ବାଲେଶ୍ୱର ନଗରରେ ଦୁଇଟା ପ୍ରେସ ଅଛି ଓ ଯଦ୍ୟପି ଏ ଦୁଇଟା ମଧରୁ ଗୋଟାଏ ପ୍ରେସକୁ ସେ ସାହାଯ୍ୟ କରନ୍ତେ (ଅବଶ୍ୟ ଏକ ପ୍ରେସ ବୈକୁଣ୍ଠ ବାବୁଙ୍କର ଥିବାରୁ ତହିଁକି ସାହାଯ୍ୟର ପ୍ରୟୋଜନ ନାହିଁ ) ତେବେ ତାହାଙ୍କର ଅଧିକ ସୁଖ୍ୟାତି ହୁଅନ୍ତା ଓ ତାହାଙ୍କର ପ୍ରୟୋଜନୀୟ କାର୍ଯ୍ୟମାନ ଅନାୟାସରେ ହୋଇ ପାରନ୍ତା । ଯାହା ସାମାନ୍ୟ ଲୋକର ଅସାଧ ରାଜା ମହାରାଜାଙ୍କୁ ସେ ସମସ୍ତର ଅନୁଷ୍ଠାନ କରିବା ଉଚିତ ତାହାହେଲେ ସେମାନଙ୍କର ମହତ୍ତ୍ୱ ପ୍ରକାଶ ପାଇବ । ତହିଁର ବିପରୀତ କାର୍ଯ୍ୟରେ ସମାଜର କ୍ଷତି ଭିନ୍ନ ମଙ୍ଗଳ ଦେଖୁ ନାହୁଁ । ମହାରାଜା ଖଣ୍ଡିଏ ନୂତନ ପତ୍ରିକା ବାହାର ନ କରି ଖଣ୍ଡିଏ ପ୍ରଚଳିତ ପତ୍ରିକାର ଉନ୍ନତି ସାଧନ କରିବାକୁ ଚେଷ୍ଟା କରନ୍ତୁ ଏବଂ ଗୋଟାଏ ମୁଦ୍ରାଯନ୍ତ୍ର ସ୍ଥାପନ ନ କରି ବର୍ତ୍ତମାନରେ ଯେ ସମସ୍ତ ମୁଦ୍ରାଯନ୍ତ୍ର ଅଛି ତହିଁର କୌଣସି ଏକକୁ ଯଥାବିଧ ସାହାଯ୍ୟ ଦେଇ ତଦ୍ଦ୍ୱାରା କୌଣସି ଅଧିକ

ବ୍ୟୟସାଧ୍ୟ ପୁସ୍ତକ ମୁଦ୍ରିତ କରାଇ ପ୍ରଚାର କରନ୍ତୁ ତାହାହେଲେ ମହାରାଜାଙ୍କ ଯୋଗେ ସର୍ବସାଧାରଣଙ୍କର ଯଥାର୍ଥ ଉପକାର ହେବ । ପ୍ରତ୍ୟେକ ଧନୀଲୋକ ପାଞ୍ଚିଲେ ଗୋଟାଏଲେଖାଏଁ ମୁଦ୍ରାଯନ୍ତ୍ର ଆପଣା ଘରେ ବସାଇ ପାରନ୍ତି । ଏଥିରେ କେବଳ ବୃଥା ବ୍ୟୟ ଓ ସାଧାରଣ ଅନିଷ୍ଟ ହେବ ମଙ୍ଗଳ କିଛି ନାହିଁ ।

*ଭା୧୪ଗ,ସଂ୬୪ଖ୍ୟା,୮।୨।୧୮୭୯*

## କଟକ କଲେଜ ।

ଗତ ବୀ,ଏ, ପରୀକ୍ଷାର ଫଳ ବାହାରିଅଛି । ଶୁଣାଯାଏ ଯେ ଏଥର ପ୍ରାୟ ଚାରିଶ ଲୋକ ପରୀକ୍ଷା ଦେବାକୁ ଆସିଥିଲେ ତହିଁମଧ୍ୟରୁ କେବଳ ଜ ୯ ୧ ଣ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି । ଲକ୍ଷ୍ନୌର କାନୀଂକଲେଜ ସର୍ବପ୍ରଥମ ସ୍ଥାନ ପାଇଅଛି ତହିଁ ଉତ୍ତାରୁ ହୁଗୁଳି ଏବଂ ତହିଁ ଉତ୍ତାରୁ ପ୍ରେସିଡେନ୍‌ସି । ଲକ୍ଷ୍ନୌ କଲେଜ ପ୍ରେସିଡେନ୍‌ସିକୁ ଜିଣିଗଲା ବଡ଼ ପ୍ରଶଂସାର ବିଷୟ ଅଟଇ । କଟକରୁ ଏଥର ସୁଦ୍ଧା କେତେଜଣ ଛାତ୍ର ପରୀକ୍ଷା ଦେବାକୁ ଯାଇଥିବାରୁ ଆମ୍ଭେମାନେ ଏ ପରୀକ୍ଷାର ଫଳକୁ ଅଧିକ ବ୍ୟଗ୍ରତା ସହିତ ଚାହିଁ ବସିଥିଲୁଁ । ମାତ୍ର ଫଳ ଦେଖି ମନ ଅତ୍ୟନ୍ତ ଫିକାପଡ଼ିଗଲା । କଟକ କଲେଜର ନାମ ଆଦୌ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରଙ୍କ ତାଲିକାରେ ନାହିଁ କେହି ଜଣେ ସୁଦ୍ଧା ପାଶ କରି ନାହାନ୍ତି । ଦୁଇଥର ପରୀକ୍ଷା ଦେଲେ ଅଥଚ କିଛି ହେଲା ନାହିଁ ଏ ଦୋଷ କାହାର ବୋଲିବାକୁ ହେବ ? ଉତ୍କଳ ଦର୍ପଣ ଓଡ଼ିଶାର କପାଳର ଦୋଷଦେଇ ଅଛନ୍ତି ଓ ତାହା ନିତାନ୍ତ ଅଯୌକ୍ତିକ ନୁହଇ । ଓଡିଶାବାସିମାନେ ବଙ୍ଗଳାର ଅନ୍ୟ ଖଣ୍ଡର ଲୋକଙ୍କ ତୁଳନାରେ ଧନୀ ନ ହେଲେ ସୁଦ୍ଧା କଲେଜ ସକାଶେ ପ୍ରଚୁର ଅର୍ଥ ଦାନ କଲେ ଏବଂ ଗବର୍ଣ୍ଣମେଣ୍ଟ ମଧ୍ୟ ଅର୍ଥସାହାଯ୍ୟ ଦେଲେ ଭଲ ଭଲ ପିଲାମାନେ ଦୁଇବର୍ଷ ଶ୍ରମ କଲେ ହାତରୁ ଅର୍ଥ ବ୍ୟୟ କରି କଲିକତା ଯାଇ ପରୀକ୍ଷା ଦେଲେ ମାତ୍ର ଫଳ କିଛି ହେଲା ନାହିଁ । ସୁତରାଂ କପାଳର ଦୋଷ ନ କହି ଆଉ କାହାର ଦୋଷ ଦିଆଯିବ । ମାତ୍ର ଆଜିକାଲିର ଲୋକ କପାଳକୁ ବଡ଼ ମାନନ୍ତି ନାହିଁ ଉଦ୍ୟମକୁ ଅଧିକକରି ଘେନନ୍ତି । ଏ ପକ୍ଷରେ ବିଚାର କଲେ ନିଶ୍ଚୟ ବୋଲାଯାଇ ପାରେ ଯେ ଗବର୍ଣ୍ଣମେଣ୍ଟଙ୍କ ଅବିବେଚନାରୁ ଓଡ଼ିଶାର ଏ ଦୁର୍ଦ୍ଦଶା ଘଟିଲା । ଗବର୍ଣ୍ଣମେଣ୍ଟ ସାଧାରଣ ଧନରକ୍ଷକ ହୋଇ ଏ ସ୍ଥଳେ ବ୍ୟକ୍ତି ବିଶେଷର ଉପକାର ନିମିତ୍ତ ସାଧାରଣ ଧନ ଅନାୟାସରେ ଅପବ୍ୟୟ ହେବାକୁ ଦେଲେ ତହିଁପାଇଁ କିଞ୍ଚିନ୍ମାତ୍ର ସାବଧାନ ହେଲେ ନାହିଁ । ଆମ୍ଭେମାନେ ସାଧାରଣ ଭାବର ଅନୁବର୍ତ୍ତୀ ହୋଇ ପୁନଃ ପୁନଃ କହିଅଛୁଁ ଯେ ପ୍ରଥମେ କଟକରେ କଲେଜ ବସାଇବା ଅନ୍ୟାୟ ଓ ଦ୍ୱିତୀୟରେ ଯେବେ କଲେଜ ବସାଇବା ଉଚିତ ହେଲା ତେବେ ତହିଁରେ ଉପଯୁକ୍ତ ଶିକ୍ଷକ ନ ରଖି ଅଳ୍ପ ବ୍ୟୟରେ କାର୍ଯ୍ୟ ସାରିବାକୁ ଚେଷ୍ଟା କରିବା ତତୋଧିକ ଅନ୍ୟାୟ । ସ୍ଥାନୀୟ ହାକିମମାନେ ତହିଁରେ କର୍ଣ୍ଣପାତ କଲେ ନାହିଁ ଗବର୍ଣ୍ଣମେଣ୍ଟ ମଧ୍ୟ ସେଥିରେ ଆପଣା ବିଚାର ଖଟାଇଲେ ନାହିଁ ପରିଶେଷରେ ଫଳ ଯାହା ହେବାର ଥିଲା ତାହା ହେଲା । ଗତବର୍ଷର ଫଳ ମନ୍ଦ ହୋଇଥିଲେହେଁ ପ୍ରଥମବର୍ଷରେ ଭଲ ଫଳର ଆଶାକରା ବୃଥା ବୋଲି ଗବର୍ଣ୍ଣମେଣ୍ଟ ସର୍ବସାଧାରଣଙ୍କୁ ପ୍ରବୋଧ ଦେଲେ । ଏଥର କି ବୋଲିବେ ତାହା ଶୁଣିବାରେ ଆସିବ । ମାନ୍ୟବର ସର୍ ଇଡନସାହେବ ଅତି ଚତୁର ଲୋକ ଏହା ଆମ୍ଭେମାନେ ସ୍ୱୀକାର କରୁଁ କିନ୍ତୁ କଟକ କଲେଜ ବିଷୟରେ ସେ ଯାହା ଗତବର୍ଷର ବିଜ୍ଞାପନୀରେ ଲେଖିଅଛନ୍ତି କି "ଅଳ୍ପବେତନ କର୍ମଚାରିଙ୍କଦ୍ୱାରା କଲେଜର କର୍ମ ନିର୍ବାହ ହୋଇପାରେ କି ନା ଏହା ବିଡିବା ସକାଶେ କଟକ କଲେଜ ସ୍ଥାପିତ ହୋଇ ନାହିଁ କିନ୍ତୁ ଓଡ଼ିଆମାନେ ପଢିବାକୁ ଇଚ୍ଛୁକ କି ନା ଏହା ବିଡିବା ସକାଶେ ହୋଇ ଅଛି" ଏଥକୁ ଗବର୍ଣ୍ଣମେଣ୍ଟ କେଉଁକଥା ବିଡ଼ିଲେ ଆମ୍ଭେମାନେ କହି ନ ପାରୁଁ ଯେମନ୍ତ ଲୋକଙ୍କ ଇଚ୍ଛା ଏକ ଅଙ୍ଗ ତେମନ୍ତ ଉପଯୁକ୍ତ ଶିକ୍ଷକ ଆଉ ଏକ ଅଙ୍ଗ ଏ ଦୁଇ ଏକତ୍ର ନ ହେଲେ ଭଲଫଳ ହେବ ନାହିଁ ଏହା ସମସ୍ତେ ଜାଣନ୍ତି ଓ ମାନ୍ୟବର ଇଡନସାହେବ ଏହା ବୁଝିପାରି ନାହାନ୍ତି ଏ କଥା କିଏ ବୋଲିବ ? ଏଥକୁ ଓଡ଼ିୟାମାନେ କଲେଜପାଁଇ ଚେଦାଦେଲେ ଓଡ଼ିୟାପିଲାମାନେ ଦେହ ଗୁଣ୍ଡାକରି ଦିବାରାତ୍ର ପରିଶ୍ରମ ସହିତ ପଢ଼ିଲେ ଏକାକୀ ବିଦେଶକୁ ଯାଇ ବହୁ ବ୍ୟୟ ଓ କ୍ଲେଶ ସ୍ୱୀକାର କରି ପରୀକ୍ଷା ଦେଲେ ଏ ଉତ୍ତାରୁ ଓଡ଼ିୟାଙ୍କର ପଢ଼ିବାର ଇଚ୍ଛା ନାହିଁ ବୋଲି କେମନ୍ତେ ବୋଲାଯିବ । ଫଳତଃ ଇଚ୍ଛାଥିଲେ କି ହେବ ଇଚ୍ଛା ଚରିତାର୍ଥ କରିବାର ଉପାୟ ନ ଥିଲେ କୌଣସି ବିବେଚକ ଲୋକ ଇଚ୍ଛା

କରିବ ନାହିଁ ଆଉ ଯେବେ ଅଳ୍ପବେତନଭୋଗୀ କର୍ମଚାରୀଦ୍ୱାରା କଲେଜ ଚଳାଇବାର କଥା ଗବର୍ଣ୍ଣମେଣ୍ଟ ବିଡ଼ିବାବୁ ଇଚ୍ଛା ନ କରନ୍ତି ଓ ତାହା ନିଷ୍ଫଳବୋଲି ବୁଝିଅଛନ୍ତି ତେବେ ଏଥର ଯେ ପ୍ରକାରରେ କଲେଜଟି ପ୍ରକୃତ କଲେଜର କାର୍ଯ୍ୟ କରିବାକୁ ସକ୍ଷମ ହେବ ତହିଁର ବିହିତ ବନ୍ଦୋବସ୍ତ କରନ୍ତୁ ଆଉ ବିଳମ୍ବରେ ପ୍ରୟୋଜନ ନାହିଁ ବର୍ଷର ଦୁଇମାସ ବାହାରି ଗଲା ଆଉ ବିଳମ୍ବ ସହିବ ନାହିଁ । ଯେବେ ତାହା ନ କରିବେ ତେବେ କଲେଜକୁ ଉଠାଇ ଦେଉନ୍ତୁ ତାହା ହେଲେ ପୂର୍ବେ ଯେମନ୍ତ ଏକବର୍ଷ ଦୁଇଜଣ ବୀ,ଏ, ପାଶ କଲେ ସେହିପରି ଅବା ଏଣିକି କେହି ପାରିବ । ଗବର୍ଣ୍ଣମେଣ୍ଟଙ୍କୁ ଏତିକି ଅନୁରୋଧ ଯେ ଓଡିଶାକୁ ନିତାନ୍ତ ମୂର୍ଖ ମନେ କରି ଗିଲଟି ଦ୍ରବ୍ୟ ଦେଇ ସୁନା ବୋଲି ନ ଭଣ୍ଡନ୍ତୁ ।

*ଭା/୧୪ଗ,ସଂ୭ଖ୍ୟା,୧୫।୨।୧୮୭୯*

## ଜାତୀୟ ଜୀବନ ।

ଏ ବିଷୟରେ ଶ୍ରୀବାବୁ ପ୍ୟାରିମୋହନ ଆଚାର୍ଯ୍ୟ ଗତମାସ ତା୨୪ରିଖରେ ଛାପାଖାନାର ଦୋମହଲାରେ ବକ୍ତୃତା କରିଥିଲେ ସମୟ ଓ ସ୍ଥାନାଭାବ ହେତୁ ଆମ୍ଭେମାନେ ଗତ ସପ୍ତାହରେ ତାହା ଉଲ୍ଲେଖ କରିବାକୁ ଅପାରଗ ହୋଇଥିଲୁଁ ବର୍ତ୍ତମାନ ପାଠକବୃନ୍ଦଙ୍କ ଗୋଚରାର୍ଥେ ତାହା ଲେଖୁଅଛୁଁ । ବକ୍ତୃତା ଶୁଣିବାପାଁଇ ଅନେକ ଲୋକ ଆସିଥିଲେ ଏମନ୍ତ କି ଘର ଭିତର ଓ ବାରନ୍ଦା ଶ୍ରୋତାଙ୍କ ଶ୍ରେଣୀରେ ପୂର୍ଣ୍ଣ ହୋଇ ଥିଲା । ବକ୍ତୃତା ଘ୭୍ୟ ଣ୍ଟା ସମୟରୁ ଆରମ୍ଭ ହୋଇ ପ୍ରାୟ ଘ୧୦ଟିକା ସମୟରେ ଶେଷ ହେଲା ଓ ବକ୍ତା ଏପରି ତେଜସ୍ୱୀତା ସହିତ କହୁଥିଲେ ଯେ ତାଙ୍କ କଥା ଛାପାଖାନା ହତା ଡେଇଁ ପଥ ପର୍ଯ୍ୟନ୍ତ ଶୁଣା ଯାଉ ଥିଲା ଏବଂ ଶ୍ରୋତାମାନଙ୍କର ଆନନ୍ଦସୂଚକ କରତାଳି ଧ୍ୱନିରେ କର୍ଣ୍ଣ ବଧୀର ହେଉ ଥିଲା। ବକ୍ତୃତାର ସାରାଂଶ ନିମ୍ନେ ଲେଖୁଅଛୁଁ ଯଥା । -

ବକ୍ତା କହିଲେ ବେଦନା ବୋଧ ଓ ଚଳନ ଶକ୍ତି ଜୀବନର ଲକ୍ଷଣ ଅଟଇ ଯେଉଁ ପଦାର୍ଥର ଏ ସବୁ ଲକ୍ଷଣ ଅଛି ତାହାର ଜୀବନ ଅଛି ଓ ଯେଉଁ ପଦାର୍ଥର ଏ ସବୁ କିଛି ନାହିଁ ତାହାର ଜୀବନ ନାହିଁ । ଯେଉଁ ଜାତୀୟ ଲୋକେ ଆପଣାର ଅଭାବ ବୁଝି ତାହା ମୋଚନର ପ୍ରତୀକାର କରୁଅଛନ୍ତି ଓ ଉନ୍ନତି ମାର୍ଗରେ ଅଗ୍ରସର ହେଉ ଅଛନ୍ତି ସେ ଜାତିର ଜୀବନ ଅଛି ଓ ଯେଉଁ ଜାତି ଆପଣାର ଅଭାବ ବୁଝି ନାହାନ୍ତି ଓ ଉନ୍ନତିର ଚେଷ୍ଟା କରୁ ନାହାନ୍ତି ତାହାଙ୍କୁ ନିର୍ଜୀବ ବୋଲିବାକୁ ହେବ । ଏ ଦେଶୀୟ ଲୋକଙ୍କ ସଂକ୍ରାନ୍ତରେ ବକ୍ତା ମହାଶୟ ଉକ୍ତ ଦୁଇ ବିଷୟର ବ୍ୟାଖ୍ୟା କରିଥିଲେ । ସେ ଏ ଦେଶୀୟ ଲୋକଙ୍କର ଅନେକ ଅଭାବ ଦେଖାଇଲେ ଓ କେତେକ ଶୁଭଲକ୍ଷଣମାନର ଉଲ୍ଲେଖ କଲେ ଏଥି ମଧ୍ୟରେ ଶିକ୍ଷା ସର୍ବପ୍ରଧାନ ଅଟଇ । ସେ କହିଲେ ବର୍ତ୍ତମାନ ଶିକ୍ଷାପ୍ରତି ଲୋକଙ୍କର ଶ୍ରଦ୍ଧା ଜନ୍ମିଅଛି ଓ ପୂର୍ବାପେକ୍ଷା ବର୍ତ୍ତମାନ୍ ଅନେକଲୋକ ଆପଣା ଆପଣାର ବାଳକମାନଙ୍କୁ ସ୍କୁଲକୁ ପଠାଉ ଅଛନ୍ତି ଏହା ଶୁଭଲକ୍ଷଣ ଅଟେ ମାତ୍ର ଜାତୀୟ ଶିକ୍ଷା ଏ ପର୍ଯ୍ୟନ୍ତ ହୋଇ ନାହିଁ । ବର୍ତ୍ତମାନ୍ କେବଳ ଗବର୍ଣ୍ଣମେଣ୍ଟଙ୍କ ଶିକ୍ଷାଦାନ ଉପରେ ନିର୍ଭର ଅଛି । ଯେତେବେଳେ ଲୋକେ ଗବର୍ଣ୍ଣମେଣ୍ଟ ଉପରେ ନିର୍ଭର ନ କରି ଆପେ ଆପଣା ଦେଶରେ ଶିକ୍ଷା ବିସ୍ତାର କରିବେ ଓ ଶିକ୍ଷାର ଉନ୍ନତି କରିବେ ତେତେବେଳେ ଯାଇ ଶିକ୍ଷା ପକ୍ଷରେ ସେମାନଙ୍କର ସମ୍ପୂର୍ଣ୍ଣ ଆଦର ସମ୍ପୂର୍ଣ୍ଣ ଯତ୍ନ ଥିବାର ପ୍ରକାଶ ପାଇବ । ବର୍ତ୍ତମାନ୍ ଶିକ୍ଷାରେ ନୀତିଶିକ୍ଷା ନାହିଁ ଏ ହେତୁ ଅନେକ ଶିକ୍ଷିତ ଯୁବକଙ୍କର ଚରିତ୍ର ଭଲ ହେଉ ନାହିଁ । ମାନସିକ ଉନ୍ନତି ଓ ଉତ୍ତମ ଚରିତ୍ର ଶିକ୍ଷାର ପ୍ରଧାନ ଉଦ୍ଦେଶ୍ୟ ଯେଉଁ ଶିକ୍ଷାରେ ଏ ଫଳ ଲାଭ ନ ହେଲା ସେ ଶିକ୍ଷାକୁ ଦୋଷଯୁକ୍ତ ବୋଲିବାକୁ ହେବ ଜାତୀୟ ଶିକ୍ଷାରେ ଏ ଦୋଷ ଖଣ୍ଡନ ହୋଇ ପାରେ । ଆଉ ଗୋଟିଏ ଦୋଷ ଏହି ଯେ ନବଯୁବକମାନେ ଅଳ୍ପ ଟିକିଏ ଇଙ୍ଗରାଜୀ ପଢି ମାତୃଭାଷାକୁ ହତାଦର କରୁଅଛନ୍ତି ବରଂ କେହି କେହି ଘୃଣା କରୁଅଛନ୍ତି । ବିଜାତୀୟ ଭାଷାରେ ବ୍ୟୁତ୍ପତ୍ତି ହେବା ଦୂରେ ଥାଉ ଶୁଦ୍ଧକରି ଦୁଇଧାଡି ଲେଖିବାର କଷ୍ଟ ତଥାଚ ଏଡେ ଅହଂକାର ଯେ ଜାତୀୟ ଭାଷାର ଚର୍ଚ୍ଚାକୁ ଲଜ୍ଜାକର ବୋଧ କରନ୍ତି । ଏଠାରେ ସ୍ୱଜାତୀୟ ଭାଷାର ଖଣ୍ଡିଏ ପତ୍ରିକା ଉତ୍କଳଦୀପିକା ୧୪ ବର୍ଷ ହେଲା ପ୍ରଚଳିତ ହୋଇଅଛି କିନ୍ତୁ ଏ ପର୍ଯ୍ୟନ୍ତ ତହିଁର ଗ୍ରାହକସଂଖ୍ୟା ଜ୧୪୦ଣରୁ ଅଧିକ ହୋଇ ନାହିଁ କାରଣ ଇଂରାଜୀ ଶିକ୍ଷିତ ଯୁବକମାନେ

ଓଡ଼ିଆ କାଗଜ ବୋଲି ତାହାକୁ ତୁଚ୍ଛ କରନ୍ତି ଓ ଅନ୍ୟମାନେ ସମ୍ବାଦପତ୍ରର ଉପକାରିତା ଏ ପର୍ଯ୍ୟନ୍ତ ବୁଝି ନାହାନ୍ତି । ଏହା ବଡ଼ ଶୋଚନୀୟ ଅଟଇ । ଏପରି ଅବସ୍ଥାରେ ଜାତୀୟ ଭାଷାର ଉନ୍ନତି କି ପ୍ରକାରରେ ଶୀଘ୍ର ହେବ ।

ଶିକ୍ଷା ସଂକ୍ରାନ୍ତରେ ଆଉ ଗୋଟିଏ କଥା ବକ୍ତା ମହାଶୟ କହିଲେ ତାହା ଏହି -ବର୍ତ୍ତମାନ୍ ନବ ଯୁବକମାନେ ଇଙ୍ଗରେଜୀ ପଢ଼ି ଆମ୍ଭମାନଙ୍କର ପୂର୍ବ ରୀତି ନୀତି ଇତ୍ୟାଦି ଛାଡୁ ଅଛନ୍ତି ଯେବେ ସେ ସବୁକୁ ଦୋଷଯୁକ୍ତ ମଣି ଛାଡ଼ିଲେ ତେବେ ତହିଁ ପରିବର୍ତ୍ତେ ଦୋଷଶୂନ୍ୟ ଓ ଉତ୍କୃଷ୍ଟ ରୀତିନୀତି ଅବଲମ୍ବନ କଲେ ଶୋଭା ପାଆନ୍ତା । ଧର୍ମ ସର୍ବାପେକ୍ଷା ପ୍ରଧାନ ପ୍ରଥମେ ତହିଁର ଉଲ୍ଲେଖ କରିବୁଁ । ନବଯୁବକମାନେ ପୁରାତନ ଧର୍ମକୁ ଦୂଷଣୀୟ ମଣି ହତାଦର କରୁ ଅଛନ୍ତି ତ୍ୟାଗ କରୁ ଅଛନ୍ତି କିନ୍ତୁ ଆଉ କୌଣସି ଶ୍ରେଷ୍ଠତର ଧର୍ମ ଅବଲମ୍ବନ କରୁ ନାହାନ୍ତି ଫଳତଃ ଅଧଗାମୀ ହେଉ ଅଛନ୍ତି ଏହା ଅତି ଆକ୍ଷେପର ବିଷୟ । ସଂସାରରେ ଧର୍ମ ସାର ଆଉ ସବୁ ଅସାର ଯେଉଁ ଶିକ୍ଷାରେ ଏପରି ସାର ପଦାର୍ଥ ଅସାର ହେଉ ଅଛି ସେ ଶିକ୍ଷା ଶିକ୍ଷା ନୁହେ ।

ଶାରୀରିକ ଅବସ୍ଥା ବିଷୟରେ ବକ୍ତା ମହାଶୟ କହିଲେ ଆମ୍ଭମାନଙ୍କ ପିତାମହ ଓ ପ୍ରପିତାମହଙ୍କର ଯେପରି ଶାରୀରିକ ବଳ ଓ ତେଜ ଥିଲା ତହିଁର ଶତାଂଶ ଆମ୍ଭମାନଙ୍କଠାରେ ନାହିଁ । ଏଥିର ପ୍ରଧାନ କାରଣ ବିଳାସଭୋଗ ଅଟଇ । ମାଦକ ସେବନ କ୍ରମେ ବୃଦ୍ଧି ହେଉଅଛି ସୁରା ଓ କୁତ୍ସିତ ମଦତ ପ୍ରଧାନ ଓ ପ୍ରବଳ ହୋଇ ଆପଣା ଆପଣା ରାଜତ୍ୱ ବିସ୍ତାର କରୁ ଅଛି ଏଥିରେ ଶରୀର କିପରି ସବଳ ହେବ ଏହା ଛାଡ଼ି ଦୁର୍ବଳତାର ଅନ୍ୟ ଗୋଟିଏ କାରଣ ବାଲ୍ୟ ବିବାହ ଅଟଇ ଏଥିର ପ୍ରମାଣ ବକ୍ତା ବଙ୍ଗାଳିଙ୍କ ପିଲାସଙ୍ଗେ କରଣଙ୍କ ପିଲାଙ୍କୁ ତୁଳନା କରି ଦେଖାଇ ଦେଲେ । ବାଲ୍ୟବିବାହ ଯୋଗୁଁ ଶରୀର କ୍ରମେ କ୍ଷୀଣ ହେଉ ଅଛି ଓ କେତେ ସ୍ଥଳେ ପରିଶେଷେ ବଂଶଲୋପ ହେଉଅଛି ଏ ମହାପାପକୁ ଶୀଘ୍ର ଉଠାଇବାର ଆବଶ୍ୟକ ।

ତଦନନ୍ତର ବକ୍ତା ମହାଶୟ ଓକିଲ ମୁକ୍ତାରଙ୍କ ମନ୍ଦ ଚରିତ୍ର ଅମଲାଙ୍କ ଉତ୍କୋଚ ନେବା ରୀତି ବିଷୟରେ ଅନେକ କହିଲେ ଗୋଟିଏ ଅଭିନବ କଥା ଏହି ଯେ ବକ୍ତା ଶ୍ରୋତାମାନଙ୍କୁ ସମ୍ବୋଧନ କରି କହିଲେ ଯଦି ତୁମ୍ଭମାନଙ୍କର ହିତ ଇଚ୍ଛା ଅଛି ତେବେ ଏ ବିଷୟ ସବୁର ଆଲୋଚନା କର ଚିନ୍ତା କର ଓ ବିହିତ ପ୍ରତୀକାରର ଚେଷ୍ଟା କର । ଯଦି କେବଳ ଏହି ଭାବରେ ଆସିଅଛ କି ଆଜି ଜଣେ କେମନ୍ତ କଣ କହିବ ଚାଲ ଯିବା ଶୁଣି ଆସିବା ତେବେ ଏହିକ୍ଷଣି ଏ ସ୍ଥାନ ତ୍ୟାଗ କର ଏଠାରୁ ଚାଲି ଯାଅ ଆମ୍ଭର ଲେଶ ମାତ୍ର ଶୋଚନା ନାହିଁ । ଯେବେ ବାସ୍ତବରେ ହିତ ଚିନ୍ତା ଅଛି ତେବେ ତୁମ୍ଭମାନଙ୍କ ମଧ୍ୟରେ କେହି ସୁରାପାୟୀ ବା ମଦତୀ ଥିଲେ ଏଠାରୁ ଘରକୁ ଯାଇ ବୋତଲ ଓ ମଦତ ହୁକାକୁ ଭାଙ୍ଗି ଫୋପାଡ଼ି ଦେଉନ୍ତୁ କେହି ଉତ୍କୋଚଗ୍ରାହୀ ଥିଲେ କାଲିଠାରୁ ଉତ୍କୋଚ ତ୍ୟାଗ କରନ୍ତୁ କେହି ଦୀପିକାର ଗ୍ରାହକ ନ ଥିଲେ କାଲିଠାରୁ ଗ୍ରାହକ ହେଉନ୍ତୁ ଓ ସ୍ୱଜାତୀୟ ଭାଷାର ଉନ୍ନତି ଚେଷ୍ଟା କରନ୍ତୁ । ସ୍ୱାଧୀନ ବ୍ୟବସାୟ ବିଷୟରେ ମଧ୍ୟ ବକ୍ତା କେତେକ କଥା କହିଥିଲେ । ଟିକିଏ ଇଙ୍ଗରେଜୀ ପଢ଼ି ଚାକରୀ କରିବାରେ କିଛି ଉନ୍ନତି ହେବ ନାହିଁ ଚାକରୀରେ ସ୍ୱାଧୀନତା ଲେଶ ମାତ୍ର ରହେ ନା । ବାଣିଜ୍ୟ ଶିଳ୍ପ ଇତ୍ୟାଦି ସ୍ୱାଧୀନ ବ୍ୟବସାୟ ଅବଲମ୍ବନ କରିବାର ଉଚିତ । ବିଲାତରୁ ବସ୍ତ୍ର ଇତ୍ୟାଦି ଅନେକ ସାମଗ୍ରୀ ଏଠାକୁ ଆସୁଅଛି ଏଠାରେ ସେ ସବୁ ପ୍ରସ୍ତୁତର କିଛି ଯତ୍ନ ହେଉ ନାହିଁ ଯେତେବେଳେ ଏଠାରେ ସେ ସବୁ ପ୍ରସ୍ତୁତ ହେବ ତେତେବେଳେ ଯାଇ ଜାତୀୟ ଶିକ୍ଷା ଠିକ ହେବ । ବକ୍ତା ଆହୁରି କେତେକ କଥା କହିଥିଲେ ସେ ସବୁ ସ୍ମରଣ ହେଉ ନାହିଁ । ଏହା ଆମ୍ଭମାନଙ୍କର ଦୋଷ ନୁହେ ବକ୍ତାଙ୍କ ଦୋଷ ବୋଲିଲେ ଦୋଷ ହେବ ନାହିଁ କାରଣ ସେ ଏକାବେଳକେ ଅନେକ ଗୁଡିଏ କଥା କହିଲେ ସେ ସବୁ ସ୍ମରଣ ରଖିବାର କଷ୍ଟ ଅନ୍ୟ ଶ୍ରୋତାମାନେ ମଧ୍ୟ କେତେକ ଭୁଲି ଯାଇ ଥିବେ । କୌଣସି ଗୋଟିଏ ବିଷୟରେ ବାହୁଲ୍ୟ କରି ବୁଝାଇଲେ ତାହା ଶ୍ରୋତାଙ୍କର ହୃଦୟଙ୍ଗମ ହୁଏ ଓ ଅଧିକ କାଳ ଲାଗେ ନା । ଭରସା କରୁଁ ଯେ ଭବିଷ୍ୟତରେ ବକ୍ତା ଏଥିପ୍ରତି ଦୃଷ୍ଟି ରଖିବେ ଓ ଅତି ଚଞ୍ଚଳ କହିବାର ରୀତିକୁ ତ୍ୟାଗ କରିବେ ଏହା ହେଲେ ତାଙ୍କର ବକ୍ତୃତାମାନ ଅଧିକ ପ୍ରୀତିକର ହେବ ।

ବକ୍ତୃତା ଶେଷ ହେଲାରୁ ସଭାପତି ଶ୍ରୀବାବୁ ମଧୁସୂଦନ ରାଓ ବକ୍ତାଙ୍କୁ ଧନ୍ୟବାଦ ଦେଇ ଓ ପ୍ରଶଂସା କରି କହିଲେ ଯେତେ ବିଷୟ ବକ୍ତା କହିଅଛନ୍ତି ତହିଁର ଆଲୋଚନା ବର୍ଷେ କାଳ କଲେ ଶେଷ ହେବ ନାହିଁ । ତେବେ

ନାରୀଙ୍କ କଥା ବକ୍ତା ଅଧିକ କହି ନାହାନ୍ତି ଗୋଟିଏ ଗୋଡରେ ଯେପରି ଚାଲିବାର ଅସମ୍ଭବ ସେହିପରି ନାରୀଙ୍କ ଅବସ୍ଥା ଉନ୍ନତ ନ ହେଲେ ସମାଜର ଉନ୍ନତି ହୋଇ ନ ପାରେ । ଅତଏବ ନାରୀମାନଙ୍କର ଶିକ୍ଷା ଓ ସମାନ ଆଦର ଓ ମର୍ଯ୍ୟାଦା ଆବଶ୍ୟକ । ଭାଷାର ଉନ୍ନତି ଚେଷ୍ଟାରେ ଉତ୍କଳମଧୁପ ପ୍ରଚାର ହୋଇଅଛି ଏହା ଶୁଭ ଲକ୍ଷଣ ଅଟେ କିନ୍ତୁ ତହିଁରେ ଏପର୍ଯ୍ୟନ୍ତ କେବଳ ଅଶ୍ଳୀଳ ଲାବଣ୍ୟବତୀର ସମାଲୋଚନା ହେଉଅଛି ରସକଲ୍ଲୋଳ ଇତ୍ୟାଦି ଅନ୍ୟ କୌଣସି ପୁସ୍ତକର ଆଲୋଚନା ହେଉ ନାହିଁ ଏହା ଆଶ୍ଚର୍ଯ୍ୟର ବିଷୟ ଅଟେ । ସଭାପତି ଆଉ ଦୁଇ ଏକ କଥା କହି ସଭା ଭଙ୍ଗ କଲେ । ଆମ୍ଭମାନଙ୍କ ବିବେଚନାରେ କେବଳ ବକ୍ତୃତା ସ୍ଥଳେ ସଭାପତିଙ୍କର ସମାଲୋଚନା ଅନାବଶ୍ୟକ ।

*ଭା୧୪ଗ,ସଂ୧୦ଖ୍ୟା,୮।୩।୧୮୭୯*

## ଭୂଦେବ ବାବୁଙ୍କ ଅଭ୍ୟର୍ଥନା ।

ଶ୍ରୀବାବୁ ଭୂଦେବ ମୁଖୋପାଧ୍ୟାୟ ସି,ଆଇ,ଇ. ଓଡିଶା ଓ ଅନ୍ୟ ବିଭାଗ ସ୍କୁଲସମୂହର ଇନ୍‌ସ୍ପେକ୍‌ଟର ଏପ୍ରଦେଶର ସ୍କୁଲମାନ ଦେଖିବା ନିମନ୍ତେ ଚଳିତମାସ ତା୧୫ରିଖରେ ଏ ନଗରରେ ପ୍ରବେଶ ହୋଇ ଏଠାରେ ଦୁଇ ଏକଦିନ ରହିଁ ପୁରୀକୁ ଯାଇଥିଲେ ସେଠାରୁ ଗତ ଶନିବାର ପ୍ରତ୍ୟାଗମନ କଲେ । ଏଠା କଲେଜ ଓ ନର୍ମାଲ ସ୍କୁଲ ଦେଖି ଗତ ମଙ୍ଗଳବାର ଏଠାରୁ ପ୍ରସ୍ଥାନ କଲେ । ଦେଶୀୟ ଲୋକଙ୍କ ମଧ୍ୟରେ ଭୂଦେବ ବାବୁ ଶିକ୍ଷାବିଭାଗରେ ଜଣେ ପ୍ରଧାନ କର୍ମଚାରୀ ଅଟନ୍ତି । ସେ ଆପଣାର ଅସୀମ ଗୁଣଦ୍ୱାରା କେବଳ ଆପେ ଉଚ୍ଚ ପଦାରୂଢ଼ ହୋଇଅଛନ୍ତି ଏମନ୍ତ ନୁହେ ଶିକ୍ଷା, ଭାଷା ଓ ଦେଶର କେତେକ ଉନ୍ନତି ସାଧନ କରିଅଛନ୍ତି । ତାଙ୍କର ନାମ ସର୍ବତ୍ରରେ ବିଖ୍ୟାତ ଓ ଗବର୍ଣ୍ଣମେଣ୍ଟ ମଧ୍ୟ ତାଙ୍କ ପ୍ରତି ସନ୍ତୁଷ୍ଟ ହୋଇ ସି,ଆଇ,ଇ. ଅର୍ଥାତ୍ ଭାରତ ସାମ୍ରାଜ୍ୟର ସଖା ପଦ ଦେଇଅଛନ୍ତି । ଏପରି ଗୁଣବନ୍ତ ମହତ୍ ଓ ହିତକାରୀ ବ୍ୟକ୍ତିଙ୍କ ପ୍ରଥମ ଶୁଭାଗମନରେ ତାଙ୍କର ସମୁଚିତ ସମ୍ମାନ କରିବାର ଉଚିତ ଏହେତୁ ତାଙ୍କ ଅଭ୍ୟର୍ଥନା ନିମନ୍ତେ ଛାପାଖାନାରେ ଦୋମହଲାରେ ଗତ ସୋମବାର ରାତ୍ରରେ ସଭା ହୋଇଥିଲା । ସଭାର ସଂକ୍ଷେପ ବିବରଣ ନିମ୍ନେ ଲେଖୁ ଅଛୁଁ ।

ଶ୍ରୀ ବାବୁ ରାଧାନାଥ ରାୟ ଓ ଶ୍ରୀ ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ ସଭା ଆହ୍ୱାନ କରିଥିଲେ ଓ ଏ ନଗରର ପ୍ରାୟ ସମସ୍ତ ଦେଶୀୟ ଭଦ୍ର ଓ ପ୍ରଧାନ ବ୍ୟକ୍ତିମାନେ ସଭାରେ ଉପସ୍ଥିତ ହୋଇ ଥିଲେ ସଭ୍ୟମଣ୍ଡଳୀରେ ଗୃହଟି ପୂର୍ଣ୍ଣ ହୋଇ ଥିଲା । ପ୍ରାୟ ରାତ୍ର ଆଠଘଟିକା ସମୟରେ ଶ୍ରୀବାବୁ ଭୂଦେବ ମୁଖୋପାଧ୍ୟାୟ ସଭାରେ ପ୍ରବେଶ ହେଲେ ସଭାପତି ଶ୍ରୀ ବାବୁ ନନ୍ଦକିଶୋର ଦାସ ତାଙ୍କୁ ସମ୍ମାନ ପୂର୍ବକ ଆସନରେ ବସାଇଲେ । ତହୁଁ ବାବୁ ବିପିନବିହାରୀ ମିତ୍ର ସଭାକୁ ସମ୍ବୋଧନ କରି କହିଲେ ଭୂଦେବ ବାବୁଙ୍କର ନିବାସ ହୁଗୁଳିରେ ତାଙ୍କର ନାମ ସକଳ ସ୍ଥାନରେ ସୁବିଖ୍ୟାତ ଆମ୍ଭେ ଅଧିକ କଣ ପରିଚୟ ଦେବୁଁ ସେ ଯେପରି ଗୁଣବନ୍ତ ତାଙ୍କର ଗୁଣ କୀର୍ତ୍ତନ ଆମ୍ଭଦ୍ୱାରା ସମୁଚିତ ରୂପେ ହୋଇ ନ ପାରେ । ତାଙ୍କର ଯେତେ କାର୍ଯ୍ୟ ଆମ୍ଭେ ଜାଣୁ ତାହାହିଁ ସଭାରେ ଜଣାଇଲେ ତାଙ୍କର ଗୁଣ ଓ ମହତ୍ତ୍ୱ ସବୁ ପ୍ରକାଶ ହେବ । ଭୂଦେବ ବାବୁ ପ୍ରଥମେ ଏକ ସ୍କୁଲର ହେଡମାଷ୍ଟର ଥିଲେ ତଦୁତ୍ତାରେ ନର୍ମାଲ ସ୍କୁଲର ସୁପରିଣ୍ଟେଣ୍ଡେଣ୍ଟ ହେଲେ ତତ୍ପରେ ଅତିରିକ୍ତ ଇନ୍‌ସ୍ପେକ୍‌ଟର ଓ ଅଶିଷ୍ଟାଣ୍ଟ ଇନ୍‌ସ୍ପେକ୍‌ଟର ହୋଇ ବର୍ତ୍ତମାନ ଇନ୍‌ସ୍ପେକ୍‌ଟର ପଦରେ ଅନେକଦିନ ହେଲା ଅଛନ୍ତି । (ବର୍ତ୍ତମାନ ତାଙ୍କର ମାସିକ ବେତନ ଟ୧୫୦୦ଙ୍କା) ସେ ଆପଣା ଗୁଣର ପରିଚୟ ଦେଇ ଏପରି ଉଚ୍ଚ କର୍ମ ପ୍ରାପ୍ତ ହୋଇଅଛନ୍ତି ଓ ଏହି କର୍ମମାନଙ୍କ ଯୋଗେ ଏବଂ ସମ୍ବାଦପତ୍ର ଓ ନୂତନ ପୁସ୍ତକମାନ ଲେଖିବା ଇତ୍ୟାଦି ପ୍ରକାର ଶାରୀରିକ ଓ ମାନସିକ ପରିଶ୍ରମ ଓ ଯତ୍ନଦ୍ୱାରା ଶିକ୍ଷାର ବଙ୍ଗ ଭାଷାର ଓ ବଙ୍ଗଦେଶର ଅନେକ ଉନ୍ନତି ସାଧନ କରିଅଛନ୍ତି । ଏକ୍ଷଣେ ସେ ଉତ୍କଳ ଦେଶରେ ଉପସ୍ଥିତ, ବଙ୍ଗଦେଶ ତାଙ୍କଦ୍ୱାରା ଯେପରି ଉନ୍ନତି ଲଭିଅଛି ଉତ୍କଳ ମଧ୍ୟ ତଦ୍ରୂପ ଉନ୍ନତିକି ଲଭିବାର ସମ୍ଭବ । ବଙ୍ଗ ଓ ଉତ୍କଳ ଦେଶ ମଧରେ ଅଧିକ ପ୍ରଭେଦ ନାହିଁ ପରସ୍ପରଙ୍କର ଭାଷା ପରସ୍ପର ବୁଝି ପାରନ୍ତି କେବଳ ଏତିକି ପ୍ରଭେଦ ଯେ ବଙ୍ଗାଳିଙ୍କର ବିଦ୍ୟା ଶିକ୍ଷାପ୍ରତି ଅଧିକ ଶ୍ରଦ୍ଧା ଜନ୍ମିଅଛି ଓ ଏଥିରେ ତାଙ୍କର ଅଧିକ ଉନ୍ନତି ହୋଇଅଛି ଉତ୍କଳୀୟମାନଙ୍କର ଶିକ୍ଷା ପ୍ରତି ତେତେ ଶ୍ରଦ୍ଧା ହୋଇ ନାହିଁ ସେମାନେ ଆପଣା ଆପଣା ସନ୍ତାନମାନଙ୍କର ବିଦ୍ୟା ଶିକ୍ଷାରେ ଯତ୍ନ କରନ୍ତି ନାହିଁ । ଏଥିର କାରଣ ଏହି ଯେ ଶିକ୍ଷାର ଫଳ ଯେ କେତେ ମହାନ୍ ତାହା ସେମାନେ ଏପର୍ଯ୍ୟନ୍ତ ଜାଣି ପାରି ନାହାନ୍ତି ଭୂଦେବ ବାବୁଙ୍କ

ପ୍ରତି ଦୃଷ୍ଟି କଲେ ତାହା ସେମାନେ ନିଶ୍ଚୟ ଜାଣିପାରିବେ । ଆମ୍ଭର ଆଉ କିଛି କହିବାର ନାହିଁ ଏକ୍ଷଣେ ଆମ୍ଭେ ଏହି ପ୍ରସ୍ତାବ କରୁଁ ଯେ ଭୂଦେବ ବାବୁଙ୍କର ଉପର୍ଯ୍ୟୁକ୍ତ ଗୁଣ ଓ ହିତକର କାର୍ଯ୍ୟ ଦୃଷ୍ଟିରେ ଏ ସଭା ପ୍ରଗାଢସ୍ନେହ ପୂର୍ବକ ତାଙ୍କଠାରେ କୃତଜ୍ଞତା ପ୍ରକଶ ଓ ତାଙ୍କର ଯଥୋଚିତ ସମ୍ମାନ କରନ୍ତୁ ।

ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ ଏ ପ୍ରସ୍ତାବକୁ ଅନୁମୋଦନ କରି କହିଲେ ଯେ ପୂର୍ବବକ୍ତା ଭୂଦେବ ବାବୁଙ୍କର ଗୁଣାନୁବାଦ କରିଅଛନ୍ତି ସେପକ୍ଷରେ ଆମ୍ଭର କିଛି କହିବାର ନାହିଁ ତଥାଚ ଆମ୍ଭେ କିଛି ନ କହି କ୍ଷାନ୍ତ ହୋଇ ନ ପାରୁଁ । ବାବୁ ମହୋଦୟଙ୍କର ସ୍ୱଭାବ ଅତି ଉଦାର ଓ ମହତ୍ ସେହି ଉଦାରତା ସେହି ମହତ୍ତ୍ୱ ଆମ୍ଭମାନଙ୍କୁ ଏଠାକୁ ଆକର୍ଷିତ କରିଅଛି ସେହି ଆକର୍ଷଣରେ ବଙ୍ଗୀୟ ଓ ଉତ୍କଳୀୟ ସମସ୍ତେ ଆକର୍ଷିତ ହୋଇ ତାଙ୍କର ଯଥୋଚିତ ଅଭ୍ୟର୍ଥନା କରିବା ସକାଶେ ଏଠାରେ ଉପବିଷ୍ଟ ହୋଇଅଛନ୍ତି ସମସ୍ତଙ୍କର ହୃଦୟ ଆହ୍ଲାଦରେ ନୃତ୍ୟ କରୁଅଛି ସମସ୍ତଙ୍କ ଠାରେ ଆନନ୍ଦର ଚିହ୍ନ ପ୍ରତ୍ୟକ୍ଷ ଦେଖୁଅଛୁଁ । ବଙ୍ଗାଳୀ ଓଡିୟାର କିଛି ପ୍ରଭେଦ ଦୃଶ୍ୟ ହେଉ ନାହିଁ ଯେଉଁ ବ୍ୟକ୍ତି ମହତ୍ ଓ ଉଦାର ସେ ଯେ କୌଣସି ଜାତୀୟ ହେଉନ୍ତୁ ତାଙ୍କ ପ୍ରତି ସମସ୍ତଙ୍କର ଆଦର ଓ ସ୍ନେହ ହୁଏ । ଭାରତବର୍ଷ ନାନାଦି ଖଣ୍ଡରେ ଓ ଭାରତବର୍ଷୀୟ ଲୋକେ ଭିନ୍ନ ଭିନ୍ନ ଜାତିରେ ବିଭକ୍ତ ଏମନ୍ତ କି ଭାରତ ଭୂମିରେ ଏକଶତ ଆଠପ୍ରକାର ଭିନ୍ନଭାଷା ଚଳୁଅଛି ତଥାଚ ଯଦ୍ୟପି ପ୍ରତିଖଣ୍ଡରେ ପ୍ରତିଜାତିରେ ଭୂଦେବ ବାବୁଙ୍କ ପରି ମହତ୍ ଓ ଉଦାରବ୍ୟକ୍ତିର ଆବିର୍ଭାବ ହୁଏ ତେବେ ବର୍ତ୍ତମାନର ଏତେ ପ୍ରଭେଦ କିଛି ରହିବ ନାହିଁ । ହିମାଳୟ ପର୍ବତଠାରୁ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତ ସମସ୍ତେ ଏକ ହୋଇ ଯିବେ । ପ୍ୟାରୀବାବୁ ଏ ବିଷୟରେ ବାହୁଲ୍ୟ କରି ସୁଚାରୁରୂପେ କହିଲେ ଓ ତାଙ୍କ ବକ୍ତୃତା ପ୍ରୀତିକର ଓ ଅନ୍ୟ ସମସ୍ତ ବକ୍ତୃତା ଅପେକ୍ଷା ଉତ୍କୃଷ୍ଟ ହୋଇଥିଲା ।

ତଦନନ୍ତର ବାବୁ କୃଷ୍ଣଧନ ଗାଙ୍ଗୁଲୀ ଗୁରୁଶିକ୍ଷା ଓ ସାଧାରଣ ଶିକ୍ଷା ପ୍ରଚାର ଇତ୍ୟାଦି କାର୍ଯ୍ୟରେ ଭୂଦେବ ବାବୁ ଆପଣା ଦେହ ପ୍ରାଣରେ କଷ୍ଟ ସହି ପରିଶ୍ରମ କରିବାର ଯେ ସେ ସ୍ୱଚକ୍ଷୁରେ ଦେଖିଥିଲେ ତହିଁର ବିବରଣ କହିଲେ । ସେ ଆହୁରି ବୋଇଲେ ଯେ ପୂର୍ବେ କୃଷକମାନେ ଜମିଦାରଠାରୁ ଖଜଣା ପାଉତି ଆଣିଲେ ତାହା ବୁଝିବାପାଇଁ ଶିକ୍ଷିତ ଲୋକଙ୍କ ଠାକୁ ଯାଉଥିଲେ ବର୍ତ୍ତମାନ ସେମାନଙ୍କ ସନ୍ତାନମାନେ ନିଜେ ପାଉତି ପଢି ପାରୁଅଛନ୍ତି ଓ ଅନ୍ୟ ଲେଖାପଢା କରୁଅଛନ୍ତି । ଏପରି ଫଳ କେବଳ ଭୂଦେବ ବାବୁଙ୍କ ଯତ୍ନରେ ଘଟିଅଛି । ତହୁଁ ବାବୁ ବିପିନବିହାରୀ ପାଲ ଭୂଦେବ ବାବୁଙ୍କ ସମ୍ମାନରେ ବଙ୍ଗୀୟ ଓ ଉତ୍କଳୀୟଙ୍କ ଏକମେଳରେ ଅତି ଆହ୍ଲାଦ ପ୍ରକାଶ କରି ଆତ୍ମଶିକ୍ଷାର ଟେକ ଦେଖାଇଲେ । ସେ କହିଲେ ଯେ ପ୍ରଶଂସିତ ବାବୁ ବିଶ୍ୱବିଦ୍ୟାଳୟର ଶିକ୍ଷା ବା କୌଣସି ଉପାଧି ପାଇ ନାହାନ୍ତି ସେ କେବଳ ଆତ୍ମଶିକ୍ଷା ଯୋଗେ ବିଦ୍ୟାରେ ଏତେଦୂର ଉନ୍ନତିଲାଭ କରିଅଛନ୍ତି ଯେବେ ଉତ୍କଳୀୟମାନେ ଆତ୍ମଶିକ୍ଷାର ଯଥୋଚିତ ଚେଷ୍ଟା କରିବେ ତେବେ କିଛିଦିନେ ସେମାନଙ୍କ ମଧ୍ୟରେ ଭୂଦେବବାବୁଙ୍କ ପରି ବ୍ୟକ୍ତି ବାହାରି ପାରିବେ । ତଦୁତ୍ତାରେ ପଣ୍ଡିତ ପ୍ରଭାକର ବିଦ୍ୟାରତ୍ନ କହିଲେ ମୂର୍ଖ କବିପଦର ଚେଷ୍ଟା କଲେ ଯେପରି ହାସ୍ୟାସ୍ପଦ ହୁଏ ସେହିପରି ଆମ୍ଭେ ଭୂଦେବବାବୁଙ୍କର ଗୁଣ କୀର୍ତ୍ତନ କରିବାକୁ ଗଲେ ହାସ୍ୟାସ୍ପଦ ହେବାର ସମ୍ଭବ । ତେବେ ଯାହାଙ୍କର ଏତେ ସୁଖ୍ୟାତି ଶୁଣିଅଛୁଁ ଓ ଯାହାଙ୍କର ଗୁରୁଶିକ୍ଷା ପ୍ରଥାର ଫଳଭୋଗୀ ଏ ଉତ୍କଳ ମଧ ହୋଇଅଛି ଆଜି ତାହାଙ୍କର ଦର୍ଶନ ଲାଭରେ ଆପଣାର ଆନ୍ତରିକ ଆନନ୍ଦ ପ୍ରକାଶ ନ କରି କ୍ଷାନ୍ତ ହୋଇ ନ ପାରୁଁ ସେ ଏହିପ୍ରକାର କେତେକ କଥା କହିଲେ ଓ ଦିଯୋଟି ଉପଯୁକ୍ତ ଶ୍ଳୋକ ପାଠ କଲେ । ତଦନନ୍ତର ସଭାପତି ବାବୁ ନନ୍ଦକିଶୋର ଦାସ କହିଲେ ପୂର୍ବ ବକ୍ତାମାନେ ପ୍ରଶଂସିତ ବାବୁଙ୍କର ଗୁଣ କୀର୍ତ୍ତନ ସମୁଚିତରୂପେ କରିଅଛନ୍ତି ଆମ୍ଭେ କେବଳ ବାବୁଙ୍କପ୍ରତି ଆମ୍ଭମାନଙ୍କର ସ୍ନେହ ଓ ଭକ୍ତି ଯେ ଅଛି ତାହାହିଁ ପ୍ରକାଶ ନ କରି କ୍ଷାନ୍ତ ହୋଇ ନ ପାରୁଁ ।

ଭୂଦେବ ବାବୁ ଏସବୁ ବକ୍ତୃତାର ଉତ୍ତରରେ କହିଲେ ଆମ୍ଭର ଏଠାରେ ରହିବାର ସମୟ ଅତ୍ୟଳ୍ପ ଥିବାରୁ ସମସ୍ତଙ୍କ ସଙ୍ଗେ ସାକ୍ଷାତ୍ କରି ପାରନ୍ତୁ ନାହିଁ ବର୍ତ୍ତମାନ ଏସଭାରେ ସମସ୍ତଙ୍କର ସାକ୍ଷାତ୍‌ଲାଭ କରି ଆନନ୍ଦିତ ହୋଇଅଛୁଁ । ଆମ୍ଭପକ୍ଷରେ ବକ୍ତାମାନେ ଯାହା କହିଲେ ଏଥକୁ ଆମ୍ଭମାନଙ୍କ ଦେଶରେ ଲୋକେ କାଷ୍ଠମୃତ୍ତିକାର ପ୍ରତିମା ପ୍ରସ୍ତୁତ କରି ପୂଜା କରନ୍ତି ଓ ତାକୁ ବର ମାଗନ୍ତି ଓ କେବେ କେବେ ବର ମଧ୍ୟ ପାଇଥାନ୍ତି କିନ୍ତୁ ତାହା ପ୍ରତିମା ଯୋଗେ ନୁହେ ସେମାନଙ୍କର ନିଷ୍ଠାଯୋଗେ ଅତଏବ ଏଥିରୁ ସେମାନଙ୍କର ନିଷ୍ଠା ପ୍ରକାଶ ପାଏ । ସେହିପରି ବକ୍ତାମାନେ

ଯେ ଆମ୍ଭର ପ୍ରଶଂସା କଲେ ଏଥିରୁ ସେମାନଙ୍କର ନିଜଗୁଣ ଓ ମହତ୍ତ୍ୱ ପ୍ରକାଶ ହେଉଅଛି ଆମ୍ଭେ ସେତେ ପ୍ରଶଂସାର ଭାଜନ ନୋହୁଁ ଓ ସେସବୁ ଗ୍ରହଣ କରି ନ ପାରୁଁ କିନ୍ତୁ ଆମ୍ଭେ ସେମାନଙ୍କର ସକଳ କଥା ଅଗ୍ରାହ୍ୟ କରିବୁ ନାହିଁ ଅବଶ୍ୟ କିଛି ନେବୁଁ ତାହା ଆମ୍ଭେ ଛାଡି ପାରୁ ନା ତାହା ଏହି । ଆମ୍ଭପ୍ରତି ସମସ୍ତଙ୍କର ସ୍ନେହ ଓ ଭକ୍ତି ଥିବାର ଯେ ସଭାପତି ମହାଶୟ କହିଅଛନ୍ତି ତାହା ଆମ୍ଭେ ଆନନ୍ଦ ଓ କୃତଜ୍ଞତା ପୂର୍ବକ ଗ୍ରହଣ କରୁଅଛୁଁ ।

ତଦନନ୍ତର ଅତର ପାନ ଓ ପୁଷ୍ପମାଳା ବିତରଣ ଓ ଗୁଲାବଜଳ ସିଞ୍ଚନ ହୋଇ ସଭା ଭଙ୍ଗ ହେଲା । ଆମ୍ଭେମାନେ ବକ୍ତୃତା ସବୁର ସାରାଂଶ ସଂକ୍ଷେପରେ ଲେଖିଅଛୁଁ ବକ୍ତାମାନେ ଭୂଦେବ ବାବୁଙ୍କର ଭୂରି ଭୂରି ପ୍ରଶଂସା କରିଥିଲେ ଓ ବାବୁମହୋଦୟ ସେସକଳ ପ୍ରଶଂସାର ସମ୍ୟକରୂପେ ଭାଜନ ଅଟନ୍ତି ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ତେବେ ସାକ୍ଷାତରେ ଏତେ ପ୍ରଶଂସା ଉଚିତ ନୁହେ ଓ ଏହାକୁ ଅଭ୍ୟର୍ଥନା ବୋଲାଯାଇ ନ ପାରେ । ପ୍ରଶଂସିତ ବାବୁ ଯେପରି ସରଳ, ଉଦାର, ନମ୍ର ଓ ମହତ୍ ତାଙ୍କ ସାକ୍ଷାତରେ ତାଙ୍କର ଏତେ ପ୍ରଶଂସା ତାଙ୍କୁ ପ୍ରୀତିକର ହୋଇ ନ ଥିବ ଓ ଏହା ତାଙ୍କ ଉତ୍ତରରୁ ପ୍ରକାଶ ପାଉଅଛି । ଆମ୍ଭମାନଙ୍କ ବିବେଚନାରେ ସଭ୍ୟମାନଙ୍କୁ ବାବୁ ମହୋଦୟଙ୍କର ପରିଚୟ ଦେବାରେ ତାଙ୍କର ଗୁଣ ଓ ହିତକର କାର୍ଯ୍ୟମାନର ଯେତିକି ବିବରଣ ଆବଶ୍ୟକ ତେତିକି କହିଥିଲେ ଯଥେଷ୍ଟ ହୋଇଥାନ୍ତା । ତଦନନ୍ତର ସଭ୍ୟମାନଙ୍କ ସଙ୍ଗରେ ବାବୁଙ୍କର ଆଳାପ ଓ ନାନାଦି କଥୋପକଥନ ଅତର ପାନ ବିତରଣ ଓ ସଙ୍ଗୀତ ଇତ୍ୟାଦି ଆମୋଦଜନକ କିଛି କ୍ରୀଡା ହୋଇଥିଲେ ବାବୁଙ୍କର ଯଥୋଚିତ ଅଭ୍ୟର୍ଥନା ହୋଇଥାନ୍ତା ଓ ଏଥିରେ ତାଙ୍କର ଅଧିକ ଆନନ୍ଦ ଜାତ ହୋଇଥାନ୍ତା ।

*ଭା୧୪ଗ,ସଂ୧୩ଖ୍ୟା,୨୯।୩।୧୮୭୯*

## ସମାଲୋଚନା ।

ବାଲେଶ୍ୱରରେ ଚାଇଲ୍ଡ୍‌ଫ୍ରେଣ୍ଡ (The Child's Friend) ନାମକ ପୁସ୍ତକଟିଏ ବାବୁ ରମାନାଥ ଦାସଙ୍କଦ୍ୱାରା ରଚିତ ଓ କୁମାର ବୈକୁଣ୍ଠନାଥ ଦେଙ୍କଦ୍ୱାରା ପ୍ରକାଶିତ ହୋଇଅଛି । ଆମ୍ଭେମାନେ ପ୍ରକାଶକ ମହାଶୟଙ୍କଠାରୁ ଖଣ୍ଡିଏ ପୁସ୍ତକ ଉପହାର ପାଇ କୃତଜ୍ଞତାପୂର୍ବକ ସ୍ୱୀକାର କରୁଅଛୁଁ । ଏ ପୁସ୍ତକରେ ଇଂରାଜୀ ବ୍ୟାକରଣ ଓ ରଚନାର ସୂତ୍ରମାନ ଉଦାହରଣସହିତ ଇଂରେଜୀ ମିଶ୍ରୀତ ଓଡିଆଭାଷାରେ ରଚିତ ହୋଇଅଛି ଅର୍ଥାତ୍ ବ୍ୟାକରଣର ଶବ୍ଦ ଇତ୍ୟାଦି ଇଙ୍ଗରେଜୀରେ ଓ କଥା ଓଡିଆରେ ଲେଖା ହୋଇଅଛି ଯଥା- "Active verb ଥିଲେ ତାହା ପରେ objective case ଥିବ He loves ଏଠାରେ ସେ କଣ ଭଲ ପାଆନ୍ତି ତାହା ଲେଖିବା ଉଚିତ He loves his teacher"ଆଜିକାଲି ଇଙ୍ଗରେଜୀ ଶିକ୍ଷିତ ବ୍ୟକ୍ତିମାନେ ଯେପରି ଇଂରେଜୀ ଓ ଦେଶୀୟ ଭାଷା ମିଶା କଥା କହୁଅଛନ୍ତି ଏ ପୁସ୍ତକ ସେହିପରି ହୋଇଅଛି ଅତଏବ ସେମାନଙ୍କର ବିଶେଷତଃ ଛାତ୍ରଙ୍କ ରୁଚିକୁ ଏହା ଅଧିକ ଘେନିବ ଓ ଶେଷୋକ୍ତଙ୍କର ବିଶେଷ ଉପକାରରେ ଆସିବ । ଗ୍ରନ୍ଥକର୍ତ୍ତା ବୋଲନ୍ତି ଇଂରେଜୀ ଭାଷା ସୁକଠିନ ଓ ସହଜରେ ଛାତ୍ରଙ୍କର ବୋଧଗମ୍ୟ ହେବାର ନୁହେ , ଏହେତୁ ସେ ପରିଶ୍ରମ ସ୍ୱୀକାର ପୂର୍ବକ ଅନେକ ପୁସ୍ତକରୁ ସାହାଯ୍ୟ ନେଇ ଏପ୍ରକାର ପୁସ୍ତକଟିଏ ରଚନା କରିଅଛନ୍ତି । ଆମ୍ଭମାନଙ୍କ ବିବେଚନାରେ ପୁସ୍ତକଟି ଉତ୍ତମ ହୋଇଅଛି ଓ ଛାତ୍ରମାନେ ତାହା ପଢ଼ିଲେ ଅବଶ୍ୟ ଫଳ ପ୍ରାପ୍ତ ହେବ । ମାତ୍ର ଏଥିର ମୂଲ୍ୟ ଏକଟଙ୍କା କିଛି ଅଧିକ ହୋଇଅଛି ।

*ଭା୧୪ଗ,ସଂ୧୬ଖ୍ୟା,୨୬।୪।୧୮୭୯*

## ସଂସ୍କୃତ ଶିକ୍ଷାପ୍ରତି ଆସ୍ଥା ।

ସଂସ୍କୃତ ଶିକ୍ଷାରେ ଉତ୍ସାହ ଦେବା ନିମିତ୍ତ ଲୋକଙ୍କର କ୍ରମଶଃ ଆଗ୍ରହ ବଢିବାର ଦେଖି ଆମ୍ଭେମାନେ ଆନନ୍ଦିତ ହେଉଅଛୁଁ । ଏତେଦିନ ସଂସ୍କୃତକୁ କେହି ପଚାରୁ ନ ଥିଲେ । ସମୁଦାୟ ଓଡିଶାରେ କେବଳ ଢେଙ୍କାନାଳର ମୃତ ମହାରାଜା ସଂସ୍କୃତ ଭାଷାର ଅନୁରାଗୀ ଥିଲେ ଏବଂ ପଣ୍ଡିତମାନଙ୍କର ଗୁଣ ପରୀକ୍ଷା କରି ଯଥାଯୋଗ୍ୟ ସମ୍ମାନ କରୁଥିଲେ । ତାହାଙ୍କ ଯତ୍ନରୁ ଓଡିଶାରେ ଦୁଇ ଏକ ଜଣ ଉଚ୍ଚଶ୍ରେଣୀର ପଣ୍ଡିତ ମଧ ହୋଇଥିଲେ ।

ମହାରାଜାଙ୍କ ମୃତ୍ୟୁ ଉତ୍ତାରୁ ଆଉ ସେପରି କେହି ହୋଇ ନାହିଁ । ବର୍ତ୍ତମାନ ଗବର୍ଣ୍ଣମେଣ୍ଟଙ୍କର ସଂସ୍କୃତ ଭାଷା ଉପରେ ଦୃଷ୍ଟି ପଡିବାରୁ ଏକ ଏକ ଜଣ ଦେଶୀୟଲୋକ ଯେ ତହିଁର ଉତ୍ସାହ ନିମିତ୍ତ ବାହାରିବାର ଆରମ୍ଭ ହୋଇଅଛି ବଡ ସୁଖର ବିଷୟ ଅଟଇ । ବାଲେଶ୍ୱରର ବିଖ୍ୟାତ କୁମାର ବୈକୁଣ୍ଠ ନାଥ ଦେ ଏ ବିଷୟରେ ପଥପ୍ରଦର୍ଶକ ହେଲେ ଏବଂ କଟକ ଜିଲ୍ଲାରେ ବାବୁ ରାମଗୋବିନ୍ଦ ଜଗଦେବ ଅଗ୍ରଗଣ୍ୟ ହେଲେ । ପୁରୀରେ କ୍ଷେତ୍ରମୋହନ ବାବୁ ମଧ ଆପଣା ଶକ୍ୟାନୁସାରେ ଊଣା କରି ନାହାନ୍ତି । ଫଳତଃ ଆମ୍ଭେମାନେ ଅନୁମାନ କରୁଁ କି ସଂସ୍କୃତ ଶିକ୍ଷାର ଉତ୍ତମ ସୁଯୋଗ ନ ହେଲେ ବୃତ୍ତିସ୍ଥାପନ ଦ୍ୱାରା ବିଶେଷ ଉପକାର ହେବ ନାହିଁ ଏବଂ ବୃତ୍ତିର ପରିମାଣ ମଧ ସେପରି ନୁହଇ କି ଯହିଁରେ ଏକବ୍ୟକ୍ତି ଆପଣା ଘର ଛାଡି ଅନ୍ୟ ସ୍ଥଳରେ ରହି ଶିକ୍ଷା କରିବାକୁ ସକ୍ଷମ ହେବ । ଯେବେ ଗଡଜାତର ରାଜା ଏବଂ ମୁଗଲବନ୍ଦୀର ଧନାଢ୍ୟ ଜମିଦାରଙ୍କ ମଧରୁ କେହି କେହି ଢେଙ୍କାନାଳର ମୃତ ମହରାଜାଙ୍କ ପରି ଦୁଇ ଚାରି ଜଣ ଛାତ୍ରଙ୍କୁ ସଂସ୍କୃତରେ ସୁଶିକ୍ଷିତ କରାଇବାର ଭାର ନେବେ ଓ ସେମାନଙ୍କର ସମସ୍ତ ବ୍ୟୟ ଦେଇ ସ୍ୱଦେଶ ବା ବିଦେଶରେ ଉପଯୁକ୍ତ ଯୋଗ୍ୟତା ଲଭିବା ପର୍ଯ୍ୟନ୍ତ ପଢାଇବେ ତେବେ ଓଡିଶାରେ ଭଲ ପଣ୍ଡିତ ଶୀଘ୍ର ହେବାର ସମ୍ଭବ ନୋହିଲେ ଅନୁମାନ ହୁଅଇ ବୈକୁଣ୍ଠ ବାବୁଙ୍କ ବୃତ୍ତି ପରି ଅନ୍ୟାନ୍ୟ ବୃତ୍ତି ମଧ୍ୟ ବିଦେଶୀୟଙ୍କ ଭାଗ୍ୟରେ ପଡିବ ଏବଂ ଓଡିଶାର କିଛି ଲାଭ ହେବ ନାହିଁ ।

*ଭା୧୪ଗ,ସଂ୩୧ଖ୍ୟା,୨।୮।୧୮୭୯*

## ଉତ୍କଳସଭା ।

ଏ ସଭାର ବାର୍ଷିକ ଅଧିବେଶନ ହୋଇଥିବାର ସମ୍ବାଦ ଦେଇଥିଲୁଁ ବର୍ତ୍ତମାନ ତହିଁର ସଂକ୍ଷେପ ବିବରଣ ଲେଖୁଅଛୁଁ । ପ୍ରଥମେ ସଭାର ବାର୍ଷିକ ବିଜ୍ଞାପନୀ ପାଠ ହେଲା, ତହିଁରୁ ଜଣାଗଲା ଯେ ଉତ୍କଳରଚନା ପାଠ ଓ ପ୍ରାଚୀନ ଉତ୍କଳକାବ୍ୟମାନଙ୍କର ସମାଲୋଚନା କରିବା ଏ ସଭାର ଉଦ୍ଦେଶ୍ୟ । ବର୍ଷ ମଧରେ ୧୯ ଥର ଅଧିବେଶନ ହୋଇଥିଲା । ଏଥିରେ ରଚନା ପାଠ ଏବଂ ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀର ସମାଲୋଚନା ହୋଇଥିଲା । ପ୍ରଥମୋକ୍ତ ପୁସ୍ତକରେ ବିଶେଷ ଅଶ୍ଳୀଳତାର ପରିଚୟ ମିଳିବାରୁ ସଭା ତାକୁ ତ୍ୟାଗ କରି ବର୍ତ୍ତମାନ ଶେଷୋକ୍ତ ଗ୍ରନ୍ଥକୁ ଗ୍ରହଣ କରିଅଛନ୍ତି । ସଭା ଆପଣା ଉଦ୍ଦେଶ୍ୟ ଉପଲକ୍ଷରେ ଉତ୍କଳମଧୁପ ନାମକ ମାସିକପତ୍ରିକାଟିଏ ପ୍ରକାଶ କରିଅଛନ୍ତି ତହିଁର ସଂଖ୍ୟା ଦୁଇଶତ ଖଣ୍ଡ ଅଟଇ ଓ ଅବସ୍ଥା ପାଠକଙ୍କୁ ଜଣା ଅଛି । ଗୋଟିଏ ଉତ୍କଳପୁସ୍ତକାଳୟ ସ୍ଥାପନ କରିବାର କଳ୍ପନାରେ ସଭା ସର୍ବସାଧାରଣଙ୍କର ସାହାଯ୍ୟ ଲୋଡୁଅଛନ୍ତି ।

ବିଜ୍ଞାପନୀ ପାଠ ହେଲା ଉତ୍ତାରେ ବାବୁ ଯଦୁମଣି ଘୋଷ ସୁଶିକ୍ଷା ବିଷୟରେ ବକ୍ତୃତା କଲେ । ପୂର୍ବେ ଚତୁଷ୍ପାଠିମାନଙ୍କରେ ଯେଉଁ ରୀତିରେ ସଂସ୍କୃତର ଶିକ୍ଷା ଦିଆ ଯାଉଥିଲା ଓ ତହିଁର ଯେପରି ଫଳ ହେଉଥିଲା ତଦ୍‌ବିଷୟରେ କେତେକ କଥା କହି ପଣ୍ଡିତମାନଙ୍କର କଳହ ସଙ୍ଗେ ଗୋଟିଏ କଟୁ ତୁଳନା ଦେଇ ବର୍ତ୍ତମାନ ଗବର୍ଣ୍ଣମେଣ୍ଟ ଯେଉଁ ରୀତିରେ ଶିକ୍ଷା ପ୍ରଦାନ କରୁଅଛନ୍ତି ତତ୍‌ସଂକ୍ରାନ୍ତରେ କହିଲେ, ପ୍ରକାଶତଃ ଛାତ୍ରମାନେ ଉପାଧି ପାଇବା ଆଶାରେ କୌଣସି ପ୍ରକାରରେ ପଢି ପରୀକ୍ଷୋତ୍ତୀର୍ଣ୍ଣ ହେଲେ କୃତାର୍ଥ ହେଉଅଛନ୍ତି, ପ୍ରକୃତ ଜ୍ଞାନ ଲାଭ କରି ପାରୁ ନାହାନ୍ତି । ପରୀକ୍ଷୋତ୍ତୀର୍ଣ୍ଣ ହେଲାରୁ ଚାକରୀ ଲୋଡନ୍ତି ଓ ଚାକରୀ ପାଇଲେ ଆଉ ପୁସ୍ତକକୁ ଦେଖନ୍ତି ନାହିଁ । ସୁଶିକ୍ଷା ଆତ୍ମନିର୍ଭରଦ୍ୱାରା ହୁଅଇ ଓ ଆତ୍ମନିର୍ଭର କରି ଶିକ୍ଷା କରିବା ବ୍ୟକ୍ତି ବର୍ତ୍ତମାନ ଅତି ବିରଳ । କାବ୍ୟ ବିଷୟରେ ବକ୍ତା କହିଲେ ଯେ କାବ୍ୟପାଠରେ କିଛି ଉପକାର ନାହିଁ ଓ ତହିଁରୁ କିଛି ନୂତନ କଥା ଜଣା ନ ଯାଏ । ଉତ୍କଳସଭା ସଂକ୍ରାନ୍ତରେ ସେ କହିଲେ ସଭା ଯେପରି ଚଳୁଅଛି ତହିଁରେ କିଛି ଉପକାର ହେଉ ନାହିଁ କିମ୍ବା ହେବାର ଆଶା ନାହିଁ । ସଭାରୁ ଯେଉଁ ମଧୁପ ବାହାରୁଅଛି ତହିଁରେ ମଧ୍ୟ କିଛି ଉଦ୍ଦେଶ୍ୟ ବା ସାରକଥା ନାହିଁ । ଯେଉଁଥିରେ ଈଶ୍ୱରଙ୍କର ନାମ ନାହିଁ ତାହା ଅସାର । ବକ୍ତା ଏହିପରି କେତେକ କଥା କହି ବକ୍ତୃତା ଶେଷ କଲେ ।

ବକ୍ତୃତାରେ କେହି କେହି ଶ୍ରୋତା ଏପରି ବିରକ୍ତ ହୋଇଥିଲେ ଯେ ଜଣେ କଟୁଭାବରେ ତହିଁର ପ୍ରତିବାଦ

କଲେ । ଅନ୍ୟ ଦୁଇଜଣ ସଭ୍ୟ କିଛି କିଛି କହିଲେ । ତଦନନ୍ତର ସଭାପତି ଏହି ମୀମାଂସା କଲେ ଯେ ଯହିଁରେ ପୂର୍ବରୁ ଲୋକଙ୍କର ଅନୁରାଗ ଥାଏ ତହିଁରେ ସହଜରେ ବିରାଗ ଜନ୍ମେ ନାହିଁ । ଉତ୍କଳସଭାରେ ଯେ ପ୍ରାଚୀନ କାବ୍ୟମାନଙ୍କର ଚର୍ଚ୍ଚା ହେଉଅଛି ତହିଁର ଫଂଳ ଅବଶ୍ୟ ଭଲ ହେବ । ମଧୁପର ଉଦ୍ଦେଶ୍ୟ ଅଛି ଓ ତଦ୍ଦ୍ୱାରା ଦେଶର ବିଶେଷ ଉପକାର ହେବାର ସମ୍ଭାବନା ।

ଆମ୍ଭମାନଙ୍କ ବିବେଚନାରେ ଆଧୁନିକ ଶିକ୍ଷା ସଂକ୍ରାନ୍ତରେ ବକ୍ତାଙ୍କର କଥା ଅଯଥାର୍ଥ ନୁହେ ମାତ୍ର କାବ୍ୟ, ଉତ୍କଳସଭା ଓ ମଧୁପ ସଂକ୍ରାନ୍ତରେ ଯାହା କହିଲେ ତାହା ଅଯଥାର୍ଥ ଓ ଅସଙ୍ଗତ ଅଟଇ । କାବ୍ୟପାଠ ଯୋଗେ ହୃଦୟ କୋମଳ ସରଳ ଓ ସ୍ନେହରେ ପୂର୍ଣ୍ଣ ହୁଏ ଏହା କିଏ ସ୍ୱୀକାର ନ କରିବ ? ଈଶ୍ୱରୋପାସନାରେ ମଧ କାବ୍ୟ ପ୍ରୟୋଗ ହୋଇଅଛି ଓ ଭଜନ ଗାୟନରେ ଯେପରି ଆନନ୍ଦ ଓ ପ୍ରେମ ଉପୁଜେ ସେପରି ସ୍ତୋତ୍ରପାଠରେ ହୁଏ ନାହିଁ ତେବେ କାବ୍ୟ ପାଠରେ ଉପକାର ନାହିଁ କିପରି ? ଆମ୍ଭେମାନେ ଥରେ ନିଜେ ବକ୍ତାଙ୍କୁ ମୃଦଙ୍ଗ ବଜାଇ ଗାୟନ କରି ପ୍ରେମରେ ଗଦ୍‌ଗଦ ହେବାର ଦେଖିଥିଲୁଁ ଏଥର ତାଙ୍କୁ କାବ୍ୟର ଏପରି ବିରୋଧୀ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଅଛୁଁ । ଦେଶ କାଳ ପାତ୍ର ଦୃଷ୍ଟିରେ ସଭା ସାଧ୍ୟାନୁସାରେ ଆପଣା ଉଦ୍ଦେଶ୍ୟ ସାଧନ କରୁଥିବାର ବୋଲାଯାଇ ପାରେ । ମଧୁପରେ ଈଶ୍ୱରଙ୍କର ନାମ ନାହିଁ ସତ୍ୟ ମାତ୍ର ତଦ୍ଦ୍ୱାରା ଉପକାରର ଆଶା ଥିବାରୁ ତାଙ୍କ(ଈଶ୍ୱରଙ୍କ)ର ପ୍ରିୟକାର୍ଯ୍ୟ ସାଧନ ହେବାର ମଣିବାକୁ ହେବ ଓ ବ୍ରାହ୍ମଧର୍ମ ମତେ ଈଶ୍ୱରଙ୍କର ପ୍ରିୟକାର୍ଯ୍ୟ ସାଧନ ଉପାସନାର ଏକ ଅଙ୍ଗ ଅତଏବ ଈଶ୍ୱରଙ୍କର ନାମ ଅଭାବେ ମଧୁପ ଅସାର ହୋଇ ନ ପାରେ । ବୋଧ ହୁଏ ବକ୍ତା ନାମାବଳୀ ଭିନ୍ନ ଅନ୍ୟ ବସ୍ତ୍ର ଦେହରେ ଧାରଣ କରିବେ ନାହିଁ ପରା !

*ଭା୧୪ଗ,ସଂ୩୭ଖ୍ୟା,୧୩।୯।୧୮୭୯*

## ଉତ୍କଳମଧୁପ ଓ ପ୍ରକୃତ କାବ୍ୟ ।

ଚଳିତ ବର୍ଷର ଉତ୍କଳମଧୁପର ପ୍ରଥମ ଓ ଦ୍ୱିତୀୟ ସଂଖ୍ୟାରେ କୋଟିବ୍ରହ୍ମାଣ୍ଡସୁନ୍ଦରୀର ସମାଲୋଚନା ପ୍ରସଙ୍ଗରେ ଲାବଣ୍ୟବତୀ ପ୍ରକୃତ କାବ୍ୟ ନୁହଇ ବୋଲି ଲେଖା ଥିବାରୁ ଆମ୍ଭେମାନେ ମଧୁପର ରୁଚି ପରିବର୍ତ୍ତନ ଏବଂ କାବ୍ୟଘଟିତ ଅଶ୍ଳୀଳତାର ସୀମା ବିଷୟରେ ଯାହା ଲେଖିଥିଲୁଁ ତହିଁର ଉତ୍ତର ଉକ୍ତ ପତ୍ରିକାର ଖ ୩ ଓ ୪ଣ୍ଡରେ ପାଇଅଛୁଁ ।

ରୁଚି ପରିବର୍ତ୍ତନ ବିଷୟରେ ସମ୍ପାଦକ ସଂକ୍ଷେପରେ ଏହି କଥା କହିଅଛନ୍ତି କି ସେ ନ୍ୟାୟପଥର ଆଶ୍ରୟ ନେଇ ସାହିତ୍ୟ ବିଷୟିଣୀ ମାସିକ ପତ୍ରିକା ବାହାର କରିଥିଲେ । ସ୍ୱଭାବତଃ ଲାବଣ୍ୟବତୀର ଉତ୍କୃଷ୍ଟତା ଦେଖାଇବାକୁ ଯାଇଥିଲେହେଁ ତାହାର ନିକୃଷ୍ଟତା ନ ଦେଖାଇ ଗୁପ୍ତ ରଖିବାର ଇଚ୍ଛା ନ ଥିଲା ମାତ୍ର ସମାଲୋଚନା କରୁ କରୁ ତାହା ପ୍ରକୃତ କାବ୍ୟ ନ ଥିବାର ଜଣା ପଡିବାରୁ ତହିଁରୁ ମନ ଛାଡିଗଲା ସୁତରାଂ ତାହାକୁ ପରିତ୍ୟାଗ କଲେ । ଏଥିରୁ ବୋଧ ହୁଅଇ ଯେ ମଧୁପର ରୁଚିର ପରିବର୍ତ୍ତନ ହୋଇ ନାହିଁ । ଲାବଣ୍ୟବତୀ ଖଣ୍ଡିଏ ଭଲ କାବ୍ୟ ବୋଲି ଲୋକମୁଖରେ ଶୁଣି ସ୍ୱଭାବତଃ ତହିଁର ଉତ୍କୃଷ୍ଟତା ଦେଖାଇବାକୁ ଯାଇଥିଲେ ଶେଷରେ ମନୋନୀତ ନ ହେବାରୁ ନିନ୍ଦା କରି କ୍ଷାନ୍ତ ରହିଲେ । ଯେବେ ପୂର୍ବରୁ ପଢ଼ିଥାନ୍ତେ ତେବେ ଅନୁମାନ ହୁଅଇ ତହିଁର ସମାଲୋଚନାରେ ମନ ବଳାଇ ନ ଥାନ୍ତେ । କାରଣ ନ୍ୟାୟଖଡ୍ଗ ଧାରଣ କରି ଅଯୋଗ୍ୟ ଓ ଦୀନଜୀବକୁ ଛେଦନ କରିବା ଯେ ଶୂରର କାର୍ଯ୍ୟ ନୁହେ ଏହା ମଧୁପ ପରି ନ୍ୟାୟବାନ୍ ବ୍ୟକ୍ତି ପକ୍ଷରେ ନ ଜାଣିବା ଅତ୍ୟନ୍ତ ଅସମ୍ଭବ ଅଟଇ । ଆମ୍ଭେମାନେ ଏତିକି ଆଶା କରୁଁ କି ଯେମନ୍ତ କୋଟିବ୍ରହ୍ମାଣ୍ଡସୁନ୍ଦରୀ ପ୍ରତି ସେପରି ବ୍ୟବହାର ହେବ ନାହିଁ ।

ଅଶ୍ଳୀଳତା ସମ୍ବନ୍ଧରେ ଆମ୍ଭେ ଯାହା ଲେଖିଥିଲୁଁ ତହିଁକି ମଧୁପ ପ୍ରଥମେ ଆମ୍ଭମାନଙ୍କର ସନ୍ଦେହ କରିବାର ଆଧାର ନାହିଁ ବୋଲି ଲେଖି ତହିଁ ଉତ୍ତାରୁ ଆପେ ଲେଖିଅଛନ୍ତି କି "ଏତେବେଳେ ସନ୍ଦେହପ୍ରଦେଶବାସିନୀ ଆପତ୍ତି ଆସି ଏହିକଥା କହିଲା ଯେ ଆଦିରସର ଅର୍ଥ ଶୃଙ୍ଗାର, ଯେଉଁ କାବ୍ୟରେ ଶୃଙ୍ଗାରର ଜୀଅନ୍ତାମୂର୍ତ୍ତିମାନ ଅଛି, ତାକୁ ଅବଶ୍ୟ ଉତ୍କୃଷ୍ଟତର ଆଦିରସାତ୍ମକ କାବ୍ୟ ବୋଲାଯିବ ଅଶ୍ଳୀଳତାର ମୂର୍ତ୍ତି ବୋଲି ତାହାର ନାମାନ୍ତର ଘଟାଇବା

ଏକପ୍ରକାର ହିଂସାଭାବ ମାତ୍ର । ଏହିକଥାର ଅନନୁମୋଦନରେ ଆମ୍ଭେମାନେ କହୁଅଛୁଁ ଯେଉଁ ଆଦିରସ ବୋଧକ ଭାବ ନିର୍ମଳ, ସୁନ୍ଦର ଓ ହୃଦୟପ୍ରଫୁଲ୍ଲକରରୂପେ କାବ୍ୟର ଆତ୍ମଗତ ହୋଇ ଅଭିନୟ ଭଙ୍ଗୀଦ୍ୱାରା ପରିଣତ ଫଳ ଶୃଙ୍ଗାରର ପରିଚୟକ ହୋଇଥାଏ ଓ ମନକୁ ବିକୃତଭାବରେ ପରିବର୍ତ୍ତିତ କରଇ ନାହିଁ ସେହି କେବଳ କାବ୍ୟୋଚିତ ଆଦିରସ" । ଏଥିର ଉଦାହାରଣ ସ୍ୱରୂପ ଲେଖିଅଛନ୍ତି କି ଯେମନ୍ତ ବ୍ୟଞ୍ଜନରେ ଲବଣ ଅଧିକ ହେଲେ ସ୍ୱାଦୁ ନଷ୍ଟ ହୁଅଇ ସେହିପରି ଆଦିରସର ଆଧିକ୍ୟ ଅଶ୍ଳୀଳତାରେ ପରିଣତ ହୋଇ କାବ୍ୟର ଅନୁପଯୁକ୍ତ ହୁଅଇ । ମଧୁପଙ୍କର ଏହି ନିୟମ ଓ ଉଦାହରଣ ଏକତ୍ରରେ ବିଚାର କରି ଆମ୍ଭେମାନେ ଏତିକି ଉପଲବ୍ଧି କରୁଅଛୁଁ ଯେ ଅଶ୍ଳୀଳତା ହେତୁରୁ କାବ୍ୟ ଅପ୍ରକୃତ ହୁଅଇ ନାହିଁ ମାତ୍ର ତହିଁର ସ୍ୱାଦୁର ତାରତମ୍ୟ ଘଟଇ ଯେମନ୍ତ କି ରୁଚି ଅନୁସାରେ କାହାକୁ ଅଳ୍ପ ଲବଣ ଓ କାହାକୁ ଅଧିକ ଲବଣ ସୁଖକର ଲାଗଇ । ପୁଣି ରୋଗବିଶେଷ ହେତୁରୁ ସ୍ୱାଦୁ ବିକୃତାବସ୍ଥାକୁ ଲଭିଥିଲେ ସମୁଚିତ ଲବଣଯୁକ୍ତ ବ୍ୟଞ୍ଜନ ଅଲଣା ବା ଲୁଣିୟା ବୋଧହୁଅଇ । ଫଳତଃ ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ ଲାବଣ୍ୟବତୀରେ ତାହା ରଚନାକାଳର ରୁଚି ଅନୁସାରେ ଅନେକ ସ୍ଥାନରେ ଆଦିରସ ଅତି ପ୍ରକଟଭାବରେ ବର୍ଣ୍ଣିତ ହୋଇଥିଲେହେଁ ଓ ତାହା "ନବକର୍ମାଣି ଗୋପୟେତ୍" ଶ୍ଳୋକର ଏବଂ ବର୍ତ୍ତମାନ ରୁଚିର ଅନୁମୋଦିତ ସୀମାକୁ ଅତିକ୍ରମ କରିଥିଲେହେଁ ଉକ୍ତ ଗ୍ରନ୍ଥ ଯେ ପ୍ରକୃତ କାବ୍ୟ ନୁହଇ ଏପରି ଆମ୍ଭେମାନେ ସ୍ୱୀକାର କରି ନ ପାରୁଁ । ତାହା ହେଲେ ଭୁବନେଶ୍ୱର ଓ ପୁରୀର ମନ୍ଦିରମାନଙ୍କୁ ଯାହା ଉତ୍କୃଷ୍ଟ ଶୀଳ୍ପକାର୍ଯ୍ୟ ବୋଲି ଦେଶୀୟ ବିଦେଶୀୟ ସମସ୍ତେ ପ୍ରଶଂସା କରୁଅଛନ୍ତି ତହିଁରେ ଗୋଟାକେତେ ଅଶ୍ଳୀଳ ଛବି ଅଛି ବୋଲି ସେ ସମସ୍ତକୁ ପ୍ରକୃତ ଶିଳ୍ପକାର୍ଯ୍ୟ ବୋଲା ଯାଇ ନ ପାରେ ଓ ଏହି ନ୍ୟାୟରେ ଭାଗବତାଦି ଗ୍ରନ୍ଥକୁ ପ୍ରକୃତ ଧର୍ମଗ୍ରନ୍ଥ କିମ୍ବା ଜଣେ କୌପୀନଧାରୀ ପ୍ରାୟ ଉଲଙ୍ଗ ବୈରାଗୀ ଯେତେ ଧାର୍ମିକ ହୋଇଥିଲେହେଁ ତାହାକୁ ପ୍ରକୃତ ଧାର୍ମିକ ବୋଲାଯାଇ ନ ପାରେ । ଏପ୍ରକାର ସ୍ଥଳମାନଙ୍କରେ ସମାଲୋଚକର କାର୍ଯ୍ୟ ବଡ଼ କଠିନ ଅଟଇ ସମସ୍ତଦିଗ ବିବେଚନା ନ କରି ଏକାବେଳକେ ଅପ୍ରକୃତ ବୋଲି ପରିତ୍ୟାଗ କରିବା ଉଚିତ ନୁହଇ ।

ପରିଶେଷରେ ବକ୍ତବ୍ୟ ଏହି ଯେ ଲାବଣ୍ୟବତୀରେ ଦାମ୍ପତ୍ୟ ପ୍ରଣୟର କୌଣସି ବ୍ୟଭିଚାର ନାହିଁ ଏବଂ ଆଦିରସଘଟିତ କାବ୍ୟରୁ ଆଉ ଯାହା ଆଶା କରାଯାଇ ପାରେ ତାହା ଯେ ଏଥିରୁ ଲାଭ କରିବା ଅସମ୍ଭବ ଏପରି ଆମ୍ଭେମାନେ କହି ନ ପାରୁଁ । ତେବେ ପଢାଶୁଣା ଲୋକେ ଯେବେ ଯେଉଁ ଭାବସମୁଦ୍ରରୁ ଅମୃତ ଜାତ ହୋଇପାରେ ତହିଁରୁ ବିଷ ବାହାର କରି ତଦ୍ଦ୍ୱାରା ଆପଣା ଚରିତ୍ରକୁ ନଷ୍ଟ କରିବେ ତାହା ନିବାରଣ କରିବାକୁ ଆୟତ୍ତ କାହାର ?

*ଭା୧୪ଗ,ସଂ୩୭ଖ୍ୟା,୧୩।୯।୧୮୭୯*

## ଓଡିଶାର ଇତିହାସ ।

ଏହି ପୁସ୍ତକ ଅତି ଅଳ୍ପଦିନ ହେଲା କଟକ ପ୍ରିଣ୍ଟିଂକମ୍ପାନିଙ୍କ ଯନ୍ତ୍ରାଳୟରୁ ବାହାରି ଅଛି ଏବଂ ଆମ୍ଭେମାନେ ଏଥିରୁ ଏକଖଣ୍ଡ ଗ୍ରନ୍ଥକର୍ତ୍ତାଙ୍କଠାରୁ ଉପହାର ପ୍ରାପ୍ତ ହୋଇ ଅତ୍ୟନ୍ତ ଆଦର ପୂର୍ବକ ଗ୍ରହଣ କରି ତହିଁପାଇଁ କୃତଜ୍ଞତା ସ୍ୱୀକାର କରୁଅଛୁଁ । ଗ୍ରନ୍ଥକର୍ତ୍ତା ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ । ଦୀପିକାପାଠକଙ୍କଠାରେ ଏ ଓଡିଶାବାସୀ କୃତବିଦ୍ୟ ଯୁବା ଅପରିଚିତ ନାହାନ୍ତି କାରଣ ଅନେକ ସଭା ଓ ବକ୍ତୃତା ପ୍ରସଙ୍ଗରେ ଏହାଙ୍କର ଯେ ଉଲ୍ଲେଖ ଆମ୍ଭେମାନେ କରିଅଛୁଁ ଏବଂ ଏଥି ପୂର୍ବେ ଉତ୍କଳପୁତ୍ରନାମରେ ଯେଉଁ ସମ୍ବାଦପତ୍ର ଏଠାରେ ପ୍ରଚରିତ ହେଉ ଥିଲା ତଦ୍ଦ୍ୱାରା ମଧ୍ୟ ସର୍ବସାଧାରଣ ଏହାଙ୍କର ଯଥେଷ୍ଟ ପରିଚୟ ପାଇଅଛନ୍ତି ।

ଓଡିୟା ଭାଷାରେ ଓଡିଶାର ଇତିହାସ ଆଦୌ ନ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ କାରଣ ସଟନ ସାହେବଙ୍କ ସଂକଳିତ ପୁସ୍ତକ କେବଳ ନାମ ମାତ୍ର ଇତିହାସ ଅଟଇ । ଓଡିଶା ଶିକ୍ଷା ବିଭାଗର କର୍ମଚାରିମାନେ ଏ ଗୁରୁତର ଅଭାବ ମୋଚନ କରିବା ଉଦ୍ଦେଶରେ ସନ ୧୮୭୫ସାଲରେ ଖଣ୍ଡିଏ ଉତ୍ତମ ଓଡିଶାର ଇତିହାସ ସକାଶେ ଟ ୩୦୦ଙ୍କା ପାରିତୋଷିକ ଦେବା ବିଷୟରେ ବିଜ୍ଞାପନ ଦେବାରୁ ତହିଁର ଫଳସ୍ୱରୂପ ଏ ପୁସ୍ତକ ଖଣ୍ଡି ବାହାରିଅଛି ।

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ଆମ୍ଭେମାନେ ଏହାର ଅନେକାଂଶ ପାଠ କରି ଅତ୍ୟନ୍ତ ଆନନ୍ଦଲାଭ କରିଅଛୁଁ ଏବଂ ବିବେଚନା କରୁଁ ଯେ ଗବର୍ଣ୍ଣମେଣ୍ଟଙ୍କର ପ୍ରଦତ୍ତ ଟଙ୍କା ସତ୍ପାତ୍ରରେ ପତିତ ହୋଇ ସୁନ୍ଦରଫଳ ଜାତ ହୋଇଅଛି । ଓଡ଼ିଶାର ଇତିହାସ ଓ ପ୍ରାଚୀନ ଗୌରବ ଏବଂ ଆଧୁନିକ ଅବସ୍ଥା ସମ୍ବନ୍ଧରେ ଷ୍ଟର୍ଲିଂ ହଣ୍ଟର ଟଏନବି ସାହେବମାନେ ଏବଂ ବାବୁ ରାଜେନ୍ଦ୍ରଲାଲ ମିତ୍ର ଯେ ସମସ୍ତ ଗ୍ରନ୍ଥମାନ ଲେଖିଅଛନ୍ତି ଏବଂ ବାବୁ ରଙ୍ଗଲାଲ ବନ୍ଦ୍ୟୋପଧ୍ୟାୟଙ୍କ ପରିଶ୍ରମରେ ତମ୍ବାପଟା ସନନ୍ଦ ଏବଂ ଅନ୍ୟାନ୍ୟ ସୂତ୍ରରୁ ଯେ ସମସ୍ତ ଐତିହାସିକ ଓ ଅନ୍ୟ ବିବରଣମାନ ଜଣା ଯାଇଅଛି ଗ୍ରନ୍ଥକାର ସେ ସମସ୍ତର ସାର ମର୍ମ ସଂକଳନ କରିବାରେ ଯଥାସାଧ୍ୟ ଅଧ୍ୟବସାୟ ଦେଖାଇ ଅଛନ୍ତି ଏବଂ ଅନ୍ୟାନ୍ୟ ସୂତ୍ରରୁ ମଧ୍ୟ ଉପକରଣ ସଂଗ୍ରହ କରିବାରେ ତ୍ରୁଟି କରି ନାହାନ୍ତି । ଆମ୍ଭେମାନେ ଏଥିପାଇଁ ତାହାଙ୍କୁ ଧନ୍ୟବାଦ ଦେଉ ଅଛୁଁ । ଏ ପୁସ୍ତକ ରଚନା ପ୍ରଣାଳୀ ସୁନ୍ଦର ଏବଂ ଏହା ସର୍ବାଂଶରେ ସୁପାଠ୍ୟ ଅଟଇ । ଚିକ୍କଣ ସାଧୁଭାଷା ସଙ୍ଗେ ସଙ୍ଗେ ଗୋଟିଏ ଅତି ଗ୍ରାମ୍ୟଭାଷା ଏବଂ ଦୁଇ ଏକସ୍ଥଳରେ ଅସଙ୍ଗତ ଭାବ ଇତ୍ୟାଦି ଦୋଷ ଆମ୍ଭମାନଙ୍କ ଦୃଷ୍ଟି ପଥରେ ଆସିଥିଲେହେଁ ତହିଁର ଉଲ୍ଲେଖ ଆବଶ୍ୟକ ନ ରଖେ ବିଶେଷତଃ ଭୂମିକାରେ ଗ୍ରନ୍ଥକାର ସ୍ୱୟଂ ସ୍ୱୀକାର କରିଅଛନ୍ତି ଯେ ତାହାଙ୍କର ପୀଡା ଏବଂ ଅନ୍ୟାନ୍ୟ କାରଣରୁ ଭ୍ରମ ସଂଶୋଧନ ପକ୍ଷରେ ସମୁଚିତ ପ୍ରତିବିଧାନ କରି ପାରି ନାହାନ୍ତି । ସୁତରାଂ ଆମ୍ଭେମାନେ ଆଶା କରୁଁ ଯେ ଦ୍ୱିତୀୟ ସଂସ୍କରଣରେ ସେସବୁ ଅନ୍ତର୍ହିତ ହେବ ।

ପରିଶେଷରେ ଆମ୍ଭେମାନେ ଓଡିଶାବାସୀ ସର୍ବସାଧାରଣଙ୍କୁ ବିଶେଷରେ ରାଜା ଜମିଦାର ପ୍ରଭୃତିଙ୍କୁ ଏ ଗ୍ରନ୍ଥ ପାଠକରି ଏଥି ଲିଖିତ ବିଷୟମାନ ଆଲୋଚନା କରିବାକୁ ପ୍ରାର୍ଥନା କରୁଁ । ତାହା ହେଲେ ସେମାନେ ସ୍ୱଦେଶର ପୂର୍ବକାଳର ଗୌରବକୁ ସ୍ମରଣ ରଖି ପୁନର୍ବାର ତାହା ପ୍ରତ୍ୟକ୍ଷ କରିବାକୁ ବ୍ୟଗ୍ର ହେବେ ଏବଂ ଉତ୍ସାହ ପୂର୍ବକ ଉନ୍ନତିର ଚେଷ୍ଟା କରିବେ । ଆଉ ବିଦ୍ୟାଳୟ ସକାଶେ ଯେ ସ୍ଥଳେ ପୁସ୍ତକ ମନୋନୀତ ହୋଇଅଛି ସେ ସ୍ଥଳେ ବିଦ୍ୟାଳୟର ପାଠ୍ୟ ପୁସ୍ତକ କରିବାକୁ ଶିକ୍ଷା କର୍ମଚାରିଙ୍କଠାରେ ଅନୁରୋଧ କରିବା ବାହୁଲ୍ୟ ମାତ୍ର ।

*ଭା୧୪ଗ,ସଂ୩୮ଖ୍ୟା,୨୦।୯।୧୮୭୯*

୧୮୮୦

## ଏଲ୍, ଏ, ଓ ପ୍ରବେଶିକା ପରୀକ୍ଷା ।

ଏ ଦୁଇ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଓଡିଶାର ଛାତ୍ରମାନଙ୍କର ନାମ ଗତସପ୍ତାହ ଅତିରିକ୍ତ ପତ୍ରିକାରେ ପ୍ରକାଶ କରିଅଛୁଁ । ସମୁଦାୟ ବଙ୍ଗବିଭାଗରେ ଏଲ,ଏ, ପରୀକ୍ଷାର୍ଥୀ ଙ୍କ୧୦୪୦ଣଙ୍କ ମଧ୍ୟରୁ ପ୍ରଥମଶ୍ରେଣୀରେ ଙ୍କ୩୩ଣ, ଦ୍ୱିତୀୟଶ୍ରେଣୀରେ ଙ୍କ୧୧୨ଣ ଓ ୩ୟ ଶ୍ରେଣୀରେ ଙ୍କ୧୭୫ଣ ମୋଟ ଙ୍କ୩୨୦ଣ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି । ଏ ଫଳ ଅତି ଅସନ୍ତୋଷଜନକ ଅଟଇ ପ୍ରବେଶିକା ପରୀକ୍ଷାର୍ଥୀ ଙ୍କ୨୬୯୭ଣ ମଧ୍ୟରୁ ୧ମ ଶ୍ରେଣୀରେ ଙ୍କ୧୧୪ଣ , ୨ୟଶ୍ରେଣୀରେ ଙ୍କ୫୩୦ଣ ଓ ୩ୟ ଶ୍ରେଣୀରେ ଙ୍କ୪୨୫ଣ ମୋଟ ଙ୍କ୧୦୬୯ଣ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି । ଏହା ମଧ୍ୟ ସନ୍ତୋଷଜନକ ନୁହେ । ଏଥିରୁ ବୋଧ ହୁଏ ଯେ ଶିକ୍ଷକମାନେ ଛାତ୍ରମାନଙ୍କୁ ଉତ୍ତମରୂପେ ପ୍ରସ୍ତୁତ ନ କରି ପରୀକ୍ଷାର୍ଥୀ କରାଉଅଛନ୍ତି ।

ଓଡ଼ିଶାରେ କଟକ କଲେଜର ଙ୍କ୮ଣ ଏଲ,ଏ, ପରୀକ୍ଷାର୍ଥିଙ୍କ ମଧ୍ୟରୁ ଙ୍କ୪ଣ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି ।

ଉପର୍ଯ୍ୟୁକ୍ତ ମୋଟ ଫଳର ତୁଳନାରେ ଏହା ସନ୍ତୋଷଜନକ ଅଟେ ମାତ୍ର ଗତବର୍ଷ ଏହି କଲେଜର ଙ୍କ୮ଣ ଉତ୍ତୀର୍ଣ୍ଣ ହୋଇଥିଲେ ତହିଁ ତୁଳନାରେ ଏ ବର୍ଷର ଫଳ ଅପ୍ରଶଂସନୀୟ ହେଉଅଛି । କଲେଜ ହେବାପୂର୍ବେ ହାଇସ୍କୁଲର ଫଳ ଏହିପ୍ରକାର ଥିଲା । କଲେଜ ହୋଇ ଆଉ କି ଲାଭ ହେଲା । ଏ ପର୍ଯ୍ୟନ୍ତ କେହି ଛାତ୍ର ବୀ,ଏ, ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିଲେ ନାହିଁ ଓ ଏବର୍ଷ କେବଳ ଦୁଇ ଜଣଛାତ୍ର ପରୀକ୍ଷା ଦେଇଅଛନ୍ତି । ଏ ପରୀକ୍ଷାର ଫଳ ପ୍ରକାଶ ହେଲାରୁ କଲେଜପକ୍ଷରେ ଆମ୍ଭମାନଙ୍କର ମତାମତ ପ୍ରକାଶ କରିବୁଁ । ଯେଉଁ ଜଣକ ଏଲ,ଏ, ପରୀକ୍ଷାର ପ୍ରଥମଶ୍ରେଣୀରେ ପାଶ କରିଅଛି ସେ ବଙ୍ଗଦେଶରେ ଶିକ୍ଷାକରି ଆସି ଏଠା କଲେଜରେ ମା୪ସ ମାତ୍ର ପଢ଼ିଥିଲା ।

ଓଡ଼ିଶାରେ ଙ୍କ୩୪ଣ ପ୍ରବେଶିକା ପରୀକ୍ଷାର୍ଥିଙ୍କ ମଧ୍ୟରୁ ଙ୍କ୧୬ଣ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି କିନ୍ତୁ ଜଣେମାତ୍ର ପ୍ରଥମଶ୍ରେଣୀରେ ପାଶ କରି ନ ଥିବାର ଅପ୍ରଶଂସନୀୟ ଅଟଇ । ଏଠା କଲେଜିଏଟ୍ ସ୍କୁଲର ଙ୍କ୧୪ଣଙ୍କ ମଧ୍ୟରୁ ଙ୍କ୭ଣ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି । ଏ ଫଳ ମନ୍ଦ ନୁହେ । ମାତ୍ର ଗତବର୍ଷ ଙ୍କ୧୧ଣଙ୍କ ମଧ୍ୟରୁ ଙ୍କ୧୦ଣ ପାଶ କରିଥିଲେ । ଏ ତୁଳନାରେ ଓ ପ୍ରଥମଶ୍ରେଣୀର ଛାତ୍ରସଂଖ୍ୟା ଦୃଷ୍ଟିରେ ଏ ଫଳ ମନ୍ଦ ଓ ଅସନ୍ତୋଷଜନକ ହେଉଅଛି । ଗତବର୍ଷ ପ୍ରାୟ ଙ୍କ୪୦ଣ ଛାତ୍ର ଥିଲେ ସେମାନଙ୍କ ମଧ୍ୟରୁ ଙ୍କ୧୦ଣ ମାତ୍ର ପାଶ କଲେ ଏବର୍ଷ ମଧ୍ୟ ସେହିସଂଖ୍ୟକ ଛାତ୍ର ଥିଲେ କିନ୍ତୁ ଙ୍କ୭ଣମାତ୍ର ଉତ୍ତୀର୍ଣ୍ଣ ହେଲେ । ଏଥିରୁ ବୋଧ ହୁଏ ଯେ ସେ ଶ୍ରେଣୀରେ ଅନେକ ଛାତ୍ର ଥିବାରୁ ସେମାନଙ୍କର ଶିକ୍ଷା ଭଲ ହେଉ ନାହିଁ ଓ ହୋଇ ନ ପାରେ । ଆମ୍ଭେମାନେ ବୋଧକରୁଁ ନିମ୍ନଶ୍ରେଣୀରୁ ଉପରଶ୍ରେଣୀକୁ ଛାତ୍ର ଉଠାଇବାରେ ବିହିତ ବିବେଚନା ନ ହେବାରୁ ଅନେକଗୁଡିଏ ଅନୁପଯୁକ୍ତ ଛାତ୍ର ସେ ଶ୍ରେଣୀରେ ରହିଯାଇଅଛନ୍ତି । ଏଥିପକ୍ଷରେ ଶିକ୍ଷକମାନଙ୍କର ସତର୍କ ହେବା ଉଚିତ କିମ୍ୱା ଯେପରି ସେମାନଙ୍କର ଶିକ୍ଷା ଭଲ ହୁଏ ସେପରି କିଛି ବ୍ୟବସ୍ଥା କରିବାର ଆବଶ୍ୟକ । ପ୍ରଥମଶ୍ରେଣୀରେ ଛାତ୍ର ବେତନ ମାସିକ ଟ୩ ଙ୍କା । ଏତେ ବେତନ ଦେଇ ଭଲ ଶିକ୍ଷା ନ ପାଇବା ଓ ଦୁଇ ତିନିବର୍ଷ ସେ ଶ୍ରେଣୀରେ ପଡିରହିବା ବଡ କଷ୍ଟକର ଓ ଅସନ୍ତୋଷଜନକ ଅଟଇ । ବାଲେଶ୍ୱରରେ ଗତବର୍ଷ ଙ୍କ୭ଣ ମଧ୍ୟରୁ ଙ୍କ୪ଣ ପାଶ କରିଥିଲେ ଏବର୍ଷ ଙ୍କ୧୦ଣଙ୍କ ମଧ୍ୟରୁ ଙ୍କ୪ଣ ୨ୟଶ୍ରେଣୀରେ ଓ ଙ୍କ୧ଣ ୩ୟଶ୍ରେଣୀରେ ଏରୂପ ଙ୍କ୫ଣ ପାଶ କରିଅଛନ୍ତି । ଏହା ଏକପ୍ରକାର ସନ୍ତୋଷଜନକ ଅଟଇ । ଗତବର୍ଷ ପୁରୀର ଙ୍କ୬ଣ ମଧ୍ୟରୁ ଙ୍କ୩ଣ ଉତ୍ତୀର୍ଣ୍ଣ ହୋଇଥିଲେ ଏବର୍ଷ ଙ୍କ୩ଣ ମଧ୍ୟରୁ ଦୁଇଜଣ

କେବଳ ୩ୟଶ୍ରେଣୀରେ ପାଶ କରିଅଛନ୍ତି । କଟକ ଆକେଡେମି ଅର୍ଥାତ୍ ପ୍ୟାରୀବାବୁଙ୍କ ସ୍କୁଲର ଜ୬ଣଙ୍କ ମଧ୍ୟରୁ ଜଣେମାତ୍ର ପାଶ କରିଅଛି କିନ୍ତୁ ସେ ସ୍କୁଲର ଅବସ୍ଥା ଦୃଷ୍ଟିରେ ଏ କିଞ୍ଚିତ୍ ଫଳ ଅପ୍ରଶଂସନୀୟ ନୁହେ । ବାଲେଶ୍ୱରଜିଲା ଲକ୍ଷଣନାଥ ସ୍କୁଲର ଜଣେ ୩ୟଶ୍ରେଣୀରେ ପାଶ କରିଅଛି । ସମୁଦାୟ ଓଡ଼ିଶାଦେଶରେ ଗତବର୍ଷ ଜ୧୭ଣ ଓ ଏବର୍ଷ ଜ୧୬ଣ ପରୀକ୍ଷୋତ୍ତୀର୍ଣ୍ଣ ହେବା ପ୍ରଶଂସନୀୟ ନୁହେ ଓ ଏଥିରେ କଲେଜ କିପରି ପୂର୍ଣ୍ଣ ରହିବ । ତୁଳନାକ୍ରମେ ବାଲେଶ୍ୱର ସ୍କୁଲର ଫଳ ଏବର୍ଷ ଭଲ ହୋଇଅଛି ।

*ଭା ୧୫ଗ, ସଂ୩ଖ୍ୟା, ୧୭।୧।୧୮୮୦*

## ସାପ୍ତାହିକ ସଂବାଦ ।

## [ସଂସ୍କୃତ ସହିତ ଓଡିଆ ଭାଷାର ସଂପର୍କ]

ବାଲେଶ୍ୱର ସ୍କୁଲର ହେଡମାଷ୍ଟର ଶ୍ରୀବାବୁ ଦ୍ୱିଜଦାସ ଦତ୍ତ ଏମ,ଏ, ନିକଟରେ ଗୋଟିଏ ବକ୍ତୃତା ପ୍ରଦାନ କରିଥିଲେ । ତହିଁରେ ସେ ପ୍ରମାଣ କଲେ ଯେ ଓଡିଆଭାଷା ବଙ୍ଗଳାଭାଷାର ଅପଭ୍ରଷ୍ଟ ନୁହେଁ ବରଂ ମାତୃଭାଷା ସଂସ୍କୃତ ସହିତ ବଙ୍ଗଳାଅପେକ୍ଷା ଓଡିଆର ନିକଟତର ସମ୍ବନ୍ଧ ଅଛି । ଯଥା

| ସଂସ୍କୃତ | ଓଡିଆ | ବଙ୍ଗଳା |
|---|---|---|
| କର୍ଦଳୀ | କଦଳୀ | କଲା |
| ଅସ୍ତି | ଅଛି | ଆଛେ |
| କୁର୍ବନ୍ତି | କରନ୍ତି | କରେନ |

ଆମ୍ଭମାନଙ୍କ ବିବେଚନାରେ ବାବୁ ଯଥାର୍ଥ କହିଅଛନ୍ତି । ଏଥିପୂର୍ବେ ବାବୁ ମହୋଦୟ ଇଂରେଜୀ ଓ ବଙ୍ଗଳାରେ କେତୋଟି ବକ୍ତୃତା ଦେଇଥିଲେ। ଏହା ପ୍ରଶଂସନୀୟ ଅଟଇ । ଶିକ୍ଷାବିଭାଗର ପ୍ରଧାନ କର୍ମଚାରିଙ୍କର ଏପରି ବକ୍ତୃତାମାନ ଦେବାର ଉଚିତ ।

*ଭା ୧୫ଗ, ସଂ୩ଖ୍ୟା, ୧୭।୧।୧୮୮୦*

## କାଞ୍ଚିକାବେରୀ ।

ଏହି ନାମରେ ଖଣ୍ଡିଏ ବଙ୍ଗଳା ପଦ୍ୟଗ୍ରନ୍ଥ ଆମ୍ଭେମାନେ ଉପହାର ପାଇ ଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏଥିର ରଚୟିତା ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ କଲିକତା ଗଣେଶଯନ୍ତ୍ରରେ ମୁଦ୍ରିତ ହୋଇଅଛି ।

କାଞ୍ଚିକାବେରୀ ଆଖ୍ୟାନଟି ଓଡ଼ିଶାବାସିଙ୍କୁ ଅବିଦିତ ନାହିଁ । ଏ ବିଷୟରେ ଖଣ୍ଡିଏ ଓଡ଼ିଆ ପଦ୍ୟଗ୍ରନ୍ଥ ଅଛି ଓ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ କଳାଧଳା ଅଶ୍ୱାରୋହୀ ଓ ମାଣିକୀ ଗୌଡୁଣୀର ରୂପ ଖୋଦିତ ଓ ଚିତ୍ରିତ ହୋଇରହିଅଛି । ଏପର ପ୍ରତିବର୍ଷ ପର୍ବ ବିଶେଷରେ ଜଗନ୍ନାଥଙ୍କର ମଧ୍ୟ ଏକଦିନ କାଞ୍ଚିକାବେରୀ ବେଶ ହୁଅଇ । ସୁତରାଂ ତହିଁର ବୃତ୍ତାନ୍ତ ପ୍ରାୟ ସମସ୍ତେ ଜାଣନ୍ତି । ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ମଧ୍ୟ ଏ ଜିଲାରେ ବହୁକାଳ ଡେପୁଟୀକଲେକ୍ଟର ଥାଇ ସମସ୍ତଙ୍କଠାରେ ପରିଚିତ ହୋଇ ଅଛନ୍ତି ଓ ଯେଉଁମାନେ ବଙ୍ଗଳାଭାଷା ପାଠ କରି ଅଛନ୍ତି ସେମାନେ ଅବଶ୍ୟ ଜାଣିଥିବେ ଯେ ବାବୁ ଜଣେ ପ୍ରଧାନ କବି ଓ ଗ୍ରନ୍ଥକାର ଅଟନ୍ତି । ଏଥିଉତ୍ତାରୁ ସମାଲୋଚିତ ଗ୍ରନ୍ଥଖଣ୍ଡି ଉତ୍ତମ ହୋଇଅଛି ଏହା ବୋଲିବା ବାହୁଲ୍ୟ ଅଟଇ । ଫଳତଃ ଆମ୍ଭେମାନେ ଏ ଗ୍ରନ୍ଥଖଣ୍ଡି ପାଠକରି ଅତ୍ୟନ୍ତ ପ୍ରୀତ ହୋଇ ଅଛୁଁ ଏବଂ ଓଡିଶାର ଗୋଟିଏ ଐତିହାସିକ ବିବରଣ ବଙ୍ଗଳା ଛନ୍ଦରେ ସୁଲଳିତ ଭାଷାରେ ପ୍ରକାଶ ହୋଇ ଥିବାରୁ ଅଧିକ ଆଦରର ସାମଗ୍ରୀ ହୋଇଅଛି । ଏପରି କୌଣସି ପୁସ୍ତକ ଅବଧି ପ୍ରକାଶିତ ହୋଇ ନ ଥିଲା । ବଙ୍ଗାଳିମାନେ ଏହାକୁ ପାଠକଲେ ଉତ୍କଳର ପ୍ରାଚିନ ଗୌରବର କଥା ଜାଣିପାରି ଅବଶ୍ୟ ତାହାଙ୍କର ଏ ଦେଶ ପ୍ରତି ଅଧିକ ମମତା ହେବ ଓ ତଦ୍ୱାରା ଉଭୟଜାତି ମଧ୍ୟରେ ସମାଜ ବନ୍ଧନ ଦୃଢ଼ତର ହେବ ସନ୍ଦେହ ନାହିଁ ।

*ଭା ୧୫ଗ, ସଂ୭ଖ୍ୟା, ୧୪।୨।୧୮୮୦*

# ନାଟକାଭିନୟ ।

ଏ ବର୍ଷ ଏଠାରେ ଶ୍ରୀପଞ୍ଚମୀକୁ ବାରୱ୍ୟାରୀ ସରସ୍ୱତୀ ପୂଜା ଉପଲକ୍ଷରେ ଦୁଇଦିନ ମଜଲିସ ହୋଇ ଥିବାର ଗତ ସପ୍ତାହରେ ଆମ୍ଭେମାନେ ଲେଖିଥିଲୁଁ । ଏ ଆମୋଦ ଏତିକିରେ ଶେଷ ହୋଇ ନାହିଁ ତହୁଁ ବଳିକରି ଉନ୍ନତପ୍ରକାରରେ ବିଶେଷ ଆମୋଦ ହୋଇଅଛି । ପାଠକମାନେ ଅବଗତ ଅଛନ୍ତି ଯେ ଦୁଇବର୍ଷ ପୂର୍ବେ ଏଠାର ଭଦ୍ର ଯୁବକମାନେ "ଥିଏଟର" ନାଟଶାଳା ସ୍ଥାପନ କରି ଶ୍ରୀପଞ୍ଚମୀକୁ ବାରୱ୍ୟାରୀ ସରସ୍ୱତୀଙ୍କ ସାକ୍ଷାତରେ ରାମାଭିଷେକ ନାଟକର ଅଭିନୟ କରିଥିଲେ । ପ୍ରଥମଥର ତାହା ଉତ୍ତମ ହୋଇଥିବା ଓ ତହିଁରେ ଯୁବକମାନଙ୍କର ଉତ୍ସାହ ଥିବାରୁ ଆମ୍ଭେମାନେ ପୁନଃପୁନ ଅଭିନୟ ଦେଖିବାର ଆଶା କରିଥିଲୁଁ ମାତ୍ର ମାନ୍ୟବର ଇଡନ ସାହେବଙ୍କର ଶୁଭାଗମନ ସମୟରେ ସେମାନେ ଆଉଥରେ ଅଭିନୟ କରି ଶ୍ରାନ୍ତ ହୋଇଗଲେ ଆଉ ସେପକ୍ଷରେ ସେମାନଙ୍କର ଉତ୍ସାହ ଦେଖାଗଲା ନାହିଁ । କେତେକମାସ ଉତ୍ତାରେ ଆଉଦଳେ ଯୁବକ ପୃଥକ୍ ନାଟଶାଳାଟିଏ କଲେ ମାତ୍ର ଥରେ ଅଭିନୟରେ ସେମାନେ ମଧ ବୁଡ଼ା ହୋଇ ଗଲେ । ଗତ ଦୁର୍ଗାପୂଜା ସମୟରେ କେତେକ ଯୁବକ ଅଭିନୟ କରିଥିଲେ ମାତ୍ର ତାହା ତାଦୃଶ ଭଲ ହୋଇ ନ ଥିଲା । ଏ ବର୍ଷ ଶ୍ରୀପଞ୍ଚମୀର କେବଳ ଚାରିପାଞ୍ଚଦିନ ପୂର୍ବେ ସରସ୍ୱତୀ ପ୍ରତିମା ପୂଜାର କଥା ହୋଇ ବାଇନାଚ ଇତ୍ୟାଦି ଆମୋଦର ଉଦ୍‌ଯୋଗ ହେଲା ମାତ୍ର ସରସ୍ୱତୀ ଥରେ ନାଟକାଭିନୟ ଦେଖିଥିବାରୁ ବାଈନାଚରେ ତାଙ୍କର ତୃପ୍ତି ହେଲା ନାହିଁ ଦ୍ୱିତୀୟ ମଜଲିସ ଦିନ ସେ ଯୁବକମାନଙ୍କର ହୃଦୟ କମଳରେ ବିରାଜିତ ହୋଇ ନାଟକାଭିନୟର ବିଚାର ଓ ଉଦ୍ୟମ କରାଇଲେ ଏବଂ ଅନୁକମ୍ପା ପୂର୍ବକ ଆପଣା ବିସର୍ଜନର ନିୟମ ଲଙ୍ଘନ କରି ଜ୍ୟେଷ୍ଠଭ୍ରାତା ଗଣେଶଙ୍କର ଅନୁଗାମୀ ହୋଇ ଦି ୧ ୧ ନ ରହିଲେ ।

ଦୁଇଦଳର ଯୁବକମାନେ ଏକ ମେଳରେ ଆଠଦିନ ମଧରେ ପ୍ରସ୍ତୁତ ହୋଇ ଗତ ସୋମବାର ଅଭିନୟ ଦେଖାଇଲେ । "ଏକେଇ କି କଲେ ସଭ୍ୟତା" ଅଭିନୟର ବିଷୟ ଥିଲା । ଏହା ପ୍ରକୃତ ନାଟକ ନ ଥାଇ ପ୍ରହସନ (ସୁଆଙ୍ଗ) ଥିଲେହେଁ ବିଷୟଟି ମନ୍ଦ ନୁହେ । ବର୍ତ୍ତମାନ ଅଧିକାଂଶ ନବଯୁବକମାନେ ସୁରାପାନ ଇତ୍ୟାଦି ମନ୍ଦ ଲାଳସାରେ ଆସକ୍ତ ଥାଇ ଦୁର୍ଦ୍ଦଶାକୁ ଲଭନ୍ତି ଅଥଚ ସଭ୍ୟତାର ଗାରିମା କରନ୍ତି । ଏହା ପ୍ରକୃତ ସଭ୍ୟତା ନୁହେ ଏହିତା ଦେଖାଇବା ଓ ଅନ୍ୟମାନଙ୍କୁ ସେ ମନ୍ଦ ପ୍ରବୃତ୍ତିରୁ ବିରତ ରଖିବା ସେ ପ୍ରହସନର ଉଦ୍ଦେଶ୍ୟ । ତହିଁର ରଚନା ଏହି ଯେ ହରକୁମାର ବାବୁ ଜଣେ ପରମ ବୈଷ୍ଣବ ଅଟନ୍ତି ତାଙ୍କ ପୁତ୍ର ନବକୁମାର ସୁରାପାନରେ ଆସକ୍ତ । ପିତାଙ୍କ ଭୟରେ ସେ ସ୍ଥାନାନ୍ତରେ ସୁରାପାନ କରନ୍ତି ତହିଁର ନାମ ଜ୍ଞାନତରଙ୍ଗିଣୀ ସଭା । ଏ ସଭାରେ ନବକୁମାର ଆପଣା ସଙ୍ଗୀ ବାବୁମାନଙ୍କ ସହିତ ସୁରାପାନ, ହୋଟଲରେ ପ୍ରସ୍ତୁତ ଖାଦ୍ୟ ସାମଗ୍ରୀର ଭୋଜନ, ବାଇନାଚ ଓ ସଙ୍ଗ ଇତ୍ୟାଦି ଅଲୀକ ଓ ଦୂଷଣୀୟ ଆମୋଦ ପ୍ରମୋଦ କରନ୍ତି । ଦିନେ ନବକୁମାରକୁ ତାହାର ସଙ୍ଗ କାଳୀନାଥ ହରବାବୁଙ୍କ ଅନୁମତିରେ ଉକ୍ତ ଭଣ୍ଡସଭାକୁ ଡାକି ନେଇ ଯିବା ଉତ୍ତାରେ ତାଙ୍କ ମନରେ ସଂଶୟ ଉଦୟ ହେଲା ତାହା ସେ ଜଣେ ବାବାଜୀକୁ ସେ ସଭା ଦେଖି ଆସି କାରଣ ପଠାଇଲେ । ବାବାଜୀ ଜଣେ ମତୁଆ ଦୁଇ ବେଶ୍ୟା ଓ ପୁଲିସର ସର୍ଜଣ୍ଟ ସାହେବଦ୍ୱାରା ବଡ ହରବରରେ ପଡିଲେ ଓ ଶେଷରେ ନବକୁମାର ତାଙ୍କୁ କରଗତ କରିବାର ଚେଷ୍ଟା କଲେ । ନିୟମିତ ମତେ ସୁରାପାନ ବାଈ ନାଚ ଇତ୍ୟାଦି ହେଲା ଉତ୍ତାରେ ନବକୁମାର ମତୁଆଲା ହୋଇ ଘରେ ପ୍ରବେଶ ହେଲା, ତଳେ ଗଡିଲା, ବକାବକି କଲା , ପିତାଙ୍କର ମହତ୍ୱ ନେଲା ଓ ତାଙ୍କର ମୃତ୍ୟୁ ମନାସିଲା । ତାହାର ମାତା କିନ୍ତୁ ରୋଗର ଆଶଙ୍କା କରି ରୋଦନ କଲେ ମାତ୍ର ସେ ମତୁଆଲା ହୋଇଥିବାର ପିତା ବୁଝି ପାରି ଅତି ବିସ୍ମୟାପନ୍ନ ହେଲେ ଓ କହିଲେ ଏପରି କୁଳାଙ୍ଗାର ପୁତ୍ର ମରିଯିବାର ଭଲ ।

ଅନେକ ପାଠକ ଉକ୍ତ ପ୍ରହସନ ପାଠ କରି ନ ଥିବେ ଏହେତୁ ସେମାନଙ୍କ ଗୋଚର ନିମନ୍ତେ ତହିଁର ସଂକ୍ଷେପ ପ୍ରସଙ୍ଗ ଉଲ୍ଲେଖ କଲୁଁ । ବର୍ତ୍ତମାନ ଅଭିନୟ ଓ ଆମୋଦର ଆଲୋଚନା କରୁଅଛୁଁ । ମଜଲିସଟି ପୂର୍ବବତ୍ ଅତି ସୁନ୍ଦର ରୂପେ ସୁସଜ୍ଜିତ ଓ ଆଲୋକିତ ହୋଇ ଥିଲା ଓ ବ୍ୟୟ ନିର୍ବାହ ନିମିତ୍ତ ଚାରିଅଣିଆଁ ଓ ଆଠଅଣିଆଁ ଟିକଟ ହୋଇ ଥିଲେହେଁ ମଜଲିସ ଦର୍ଶକମଣ୍ଡଳୀରେ ପୂର୍ଣ୍ଣ ହୋଇଥିଲା । ପ୍ରଥମେ ପ୍ରହସନ ରଚକ ମୃତ ମାଇକେଲ ମଧୁସୂଦନ ଦତ୍ତଙ୍କ ମାନ୍ୟସୂଚକ ଗୀତଟିଏ ଗାନ ହେଲା ତଦୁତ୍ତାରେ ଅଭିନୟ ଆରମ୍ଭ ହେଲା ଶେଷରେ ସୁରାପାନ

ବିରୁଦ୍ଧରେ ଗୋଟିଏ ବକ୍ତୃତା ହେଲା । ଗାନ ଅତି ଉତ୍ତମ ହୋଇଥିଲା ସର୍ଜଣ୍ଟଙ୍କ ଅଭିନୟ ସର୍ବୋତ୍କୃଷ୍ଟ ହୋଇଥିଲା ଏମନ୍ତ କି କଲିକତାରେ ଅଭିନୟ ଦେଖିଥିବା ଲୋକେ ତାଙ୍କର ପ୍ରଶଂସା କଲେ ଓ ଆନନ୍ଦିତ ହେଲେ । ବାବାଜୀ, ହରକୁମାରବାବୁ, ନବକୁମାର ଏମାନଙ୍କର ଅଭିନୟ ମଧ୍ୟ ଉତ୍କୃଷ୍ଟ ହୋଇ ଥିଲା । ଅନ୍ୟାନ୍ୟ ଅଭିନୟ ମଧ୍ୟ ମନ୍ଦ ହୋଇ ନାହିଁ । ଜ୍ଞାନତରଙ୍ଗିଣୀ ସଭାର ବାଇ ନାଚ ଓ ଗାନ ଭଲ ହୋଇ ଥିଲା । କେବଳ କେହି କେହି ଅଭିନେତା ନୀଚସ୍ୱରରେ କଥୋପକଥନ କରିବାରୁ ଅଧିକାଂଶ ଦର୍ଶକ ଶୁଣି ପାରିଲେ ନାହିଁ । ସାମାନ୍ୟ ଦୋଷ ଧର୍ତ୍ତବ୍ୟ ନୁହେ ମୋଟରେ ଅଭିନୟ ଅତି ଉତ୍ତମ ହୋଇଥିଲା ଓ ଦର୍ଶକମାନେ ପୁନଃ ପୁନଃ କରତାଳି ଓ ଆନନ୍ଦଧ୍ୱନିଦ୍ୱାରା ସନ୍ତୁଷ୍ଟ ଓ ପରିତୃପ୍ତିର ପରିଚୟ ଦେଇଥିଲେ । ଅଳ୍ପ ସମୟ ମଧ୍ୟରେ ଅଭିନେତାମାନେ ଏତାଦୃଶ ଉତ୍ତମ ଅଭିନୟ ଦେଖାଇ ଥିବାରୁ ଦୁଇଗୁଣ ପ୍ରଶଂସାର ଭାଜନ ହୋଇଅଛନ୍ତି । ବାସ୍ତବରେ ପ୍ରାୟ ସମସ୍ତ ଦର୍ଶକଙ୍କଠାରୁ ପ୍ରଶଂସା ଶୁଣା ଯାଇଅଛି । ଆମ୍ଭମାନଙ୍କ ବିବେଚନାରେ ରାମାଭିଷେକ ନାଟକର ଅଭିନୟ ଅପେକ୍ଷା ଏ ଅଭିନୟ ଭଲ ହୋଇ ଥିଲା । ସେଥର ବିନା ବ୍ୟୟରେ ଦର୍ଶକମାନେ ଆସିଥିଲେ । ଏଥର ଟିକଟ କିଣି ଆସିବା ଓ କିଛି କାରଣବଶତଃ ଅଭିନୟ ବିଳମ୍ବରେ ଆରମ୍ଭ ହେବା ପ୍ରତ୍ୟକ୍ଷେ ଅପେକ୍ଷା କରି ରହି ଶେଷ ପର୍ଯ୍ୟନ୍ତ ଦେଖିବାରୁ ସେମାନଙ୍କର ନାଟକାଭିନୟ ପ୍ରତି ରୁଚି ଜନ୍ମିଥିବାର ପରିଚୟ ମିଳୁଅଛି । ସୁତରାଂ ଆଶା ହେଉଅଛି ଯେ ଯୁବକବୃନ୍ଦ ନାଟଶାଳାଟିକୁ ସ୍ଥାୟୀ କଲେ ସେମାନେ ଜନସାଧାରଣଙ୍କଠାରୁ ଉତ୍ସାହ ଓ ସାହାଯ୍ୟ ପାଇ ପାରନ୍ତି । ଆମ୍ଭେମାନେ ଦୁଇବର୍ଷକାଳ ସେମାନଙ୍କର ନିରୁତ୍ସାହ ଦେଖି ଯେପରି ଦୁଃଖିତ ହୋଇଥିଲୁଁ ବର୍ତ୍ତମାନ ସେମାନଙ୍କର ଉତ୍ସାହ ଓ ଯତ୍ନ ଦେଖି ସେହିପରି ଆନନ୍ଦିତ ହୋଇଅଛୁଁ ଓ ସେମାନଙ୍କୁ ଅନୁରୋଧ କରୁଅଛୁଁ ଯେ ସେମାନେ ଏତିକିରେ ପୂର୍ବବତ୍ କ୍ଷାନ୍ତ ନ ରହି ପୁନଃପୁନ ଅଭିନୟ ଦେଖାଇବାର ଚେଷ୍ଟା କରନ୍ତୁ । ଏହାଦ୍ୱାରା ଲୋକଙ୍କର ଆମୋଦ ରୁଚି ମାର୍ଜିତ ହେବ ଆଉ ଭଣ୍ଡସୁଆଙ୍ଗ ବା ଯାତ୍ରା ଦେଖିବା ପକ୍ଷରେ ରୁଚି ନ ରହିବ । ଉତ୍କୃଷ୍ଟ ନାଟକାଭିନୟଦ୍ୱାରା ଜନସମାଜର ଉନ୍ନତି ସାଧନ ହୁଅଇ । ଯୁବକମାନେ ଏ ହିତକର ଓ ଆମୋଦଜନକ କାର୍ଯ୍ୟରେ ଅବିଶ୍ରାନ୍ତମତେ ପ୍ରବୃତ୍ତ ରହିଲେ ଉପକାରୀ ଓ ସମାଜ, ସଂଶୋଧନକାରୀ(Reformer) ସ୍ୱରୂପ ଗଣ୍ୟ ହେବେ । ଏହି ଅଭିପ୍ରାୟ ଓ ଅଭିନୟର ପ୍ରଶଂସାରେ ଆମ୍ଭେମାନେ ଖଣ୍ଡିଏପତ୍ର ପ୍ରାପ୍ତ ହୋଇ ଅଛୁଁ ତାହା ଆଉ ପ୍ରକାଶ କରିବାର ଆବଶ୍ୟକ ନାହିଁ ।

*ଭା/୧୫ଗ, ସଂ୯ଖ୍ୟା, ୨୮/୨/୧୮୮୦*

## ପ୍ରେରିତପତ୍ର ।

## [ଓଡିଶାର ଇତିହାସ]

TO THE EDITOR OF THE UTKAL DIPIKA.

SIR,

The Indian Daily News of the 8th. Instant has I see referred to a passage in the History of Orissa published lately by Babu Pyari Mohan Acharjya which in the opinion of the Editor is likely to create some excitement amongst the orthodox Uriyahs.The passage alluded to relates to the throwing of the idol of Jagannath by Kalapahar into a blazon pile of wood. I do not understand how could this have been taken objection to when a tradition to the same effect has been handed down to us from times immemorial, and when eminent writors such as Mr. Sterling ,Mr. Sutton and Dr. Hunter have given a similar version of the same story.The Babu has done nothing else, but reproduced the same in Uriyah. He has nowhere besides said in his book that the idol was entirely burnt so that the Daily News may be led to suppose that with the extinction of the body the sanctity of Jagannath is gone.We are at the

spot, and in the midst of the Uriyah community ,but up to the present moment we have not heard of any sort of public excitement, or anywhere marked the hostile feelings of the public towards the book or its author.The alarm therefore of excitement tolled abroad in the columns of newspapers is wide of the mark, and cannot but he taken as the effusion of some disordered intellect who cries out *The wolf, The wolf* when in fact there is none to be seen in the neighbourhood.If the passage quoted by the Daily News ,were obnoxious, and any way offended the religious feelings of the Hindoo community here,the *Utkal Dipica* and the other leading journals of the day in Orissa would I am sure have never kept silence in the matter so long, but would on the other hand have been foremost in condemning the book, or recommending for its immediate exclusion from the school course. But I am surprized that the local papers seem to have no knowledge of the agitation cleverly got up for the Calcutta Daily, with the intention perhaps of bringing the author into disrepute or of insinuating the authorities to put a stop to the further circulation of the book in question,which for its real intrinsic value should in my opinion deserve greater encouragement.It is not my wish, nor should it be the wish of others,that real worth should succumb to private animosity.If there exists any anywhere. it should be watched over with caution.It is not desirable that high-handedness which is so universally condemned,should take the lead in matters involving justice and equity.

16-3-80 Yours faithfully,

No Humbug

*ଭା୧୫ଗ, ସଂ୧୨ଖ୍ୟା, ୨୦।୩।୧୮୮୦*

## [ପ୍ୟାରୀମୋହନଙ୍କ ଓଡ଼ିଶା ଇତିହାସ ]

ପ୍ୟାରୀବାବୁଙ୍କ ଇତିହାସ ସମ୍ବନ୍ଧରେ କାଳୀପଦ ବାବୁଙ୍କର ଦ୍ୱିତୀୟ ପତ୍ର ଆମ୍ଭେମାନେ ପାଇଅଛୁଁ । ଏଥର ଏହାର ନାମ "ଜଗନ୍ନାଥୀ ନ୨ମ୍ବର" ବୋଲି ଦିଆଯାଇଅଛି ଏବଂ ଶେଷରେ 'କ୍ରମଶଃ' ଥିବାରୁ ଆହୁରି କେତେ ବାହାରିବାର ସମ୍ଭାବନା ଅଛି । ବାବୁ ଆଗପତ୍ରପରି ଏହାକୁସୁଦ୍ଧା ଆପେ ବିତରଣ କରିବାଦ୍ୱାରା ଆମ୍ଭମାନଙ୍କୁ ଅନେକ ଅନର୍ଥକ କଷ୍ଟରୁ ବଞ୍ଚାଇଥିବାରୁ ଧନ୍ୟବାଦ ଦେଉଅଛୁଁ ଓ ଏଥିରେ ଯେଉଁ କମିଟୀର ବିବରଣ ଲେଖାଅଛି ତାହା ଗତ ପତ୍ରିକାରେ ଆମ୍ଭେମାନେ ପାଠକଙ୍କୁ ଜଣାଇଅଛୁଁ ସୁତରାଂ ଆଉ କିଛି ବକ୍ତବ୍ୟ ନାହିଁ । କେବଳ ତାହାଙ୍କ ପତ୍ରରେ କେତୋଟି ଭ୍ରମ ଅଛି ଯେ ତାହା ଚିହ୍ନାଇଦେବା ଆବଶ୍ୟକ କାରଣ ସେ ଭ୍ରମ ଜ୍ଞାନକୃତ କି ଅନ୍ୟପ୍ରକାର ସ୍ଥିରକରିବା କଠିନ । ପ୍ରଥମତଃ 'ବଞ୍ଚିତ' ଶବ୍ଦ ପରିବର୍ତ୍ତରେ ସେ 'ବଞ୍ଚନା' ଶବ୍ଦ ବ୍ୟବହାର କରିଅଛନ୍ତି ଯେମନ୍ତ କି ଉଭୟ ଶବ୍ଦ ମଧ୍ୟରେ କିଛି ପ୍ରଭେଦ ନାହିଁ ଦ୍ୱିତୀୟ ବକଲିସାହେବ 'ଏ ବିଷୟରେ ଗବର୍ଣ୍ଣମେଣ୍ଟ ଭୟାନକ ହସ୍ତକ୍ଷେପଣ କରିପାରନ୍ତି' ବୋଲି କହିବାର ଲେଖାଅଛି ମାତ୍ର କମିଟୀରେ ଉପସ୍ଥିତ ଥିବା ଲୋକଙ୍କଠାରୁ ଶୁଣିଅଛୁଁ ଯେ ସାହେବ ଏପରି ନ କହି କେବଳ ଖ୍ରୀଷ୍ଟିୟାନ ଥିବା ହେତୁରେ ମତ ଦେବାକୁ ଅସମ୍ମତ ହେଲେ । ଶେଷରେ ଲେଖାଅଛି ଯେ ସଟନସାହେବଙ୍କ ଇତିହାସରେ ଜଗନ୍ନାଥଦେବଙ୍କ ଦୁର୍ଦ୍ଦଶା କଥା ଲେଖାଥିବାରୁ ଓ ତାହା ସ୍କୁଲରେ ପଠିତ ହେବାରୁ ସନ ୧୮୫୭ସାଲରେ ବୈଦ୍ୟେଶ୍ୱର ବିଦ୍ୟାଳୟ ଛାତ୍ର ଅଭାବରେ ଉଠିଯାଉଥିଲା କିନ୍ତୁ ପ୍ରବେଶିକା ପରୀକ୍ଷାରେ ଏ ପୁସ୍ତକ ଥିବାହେତୁ କେତେ ସ୍କୁଲ ଉଠିଗଲା ଏବଂ ମାଦଳାପାଞ୍ଜିର ଲେଖାଦ୍ୱାରା କି ଅନିଷ୍ଟ

ହେଲା ସେ ସମସ୍ତ ଲେଖିବାର ଉଚିତ ଥିଲା । ବାସ୍ତବରେ ଯେବେ ସେକଥା ସତ୍ୟ ହୁଅନ୍ତା ତେବେ କାଳୀବାବୁଙ୍କ ଭୟରେ ନୈଷ୍ଠିକ ହିନ୍ଦୁମାନେ ଯେ ଅବଧି ଏ ନଗର ଛାଡି ପଳାଇ ନାହାନ୍ତି ଏହାହିଁ ବିଚିତ୍ର ମଣିବାକୁ ହେବ କାରଣ ବକ୍ତା, ଲେଖା ଓ ଛାପାଦ୍ୱାରା ଏହାଙ୍କୁ ବଳି କରି କେହି ଜଗନ୍ନାଥଙ୍କର ଦୁର୍ଦ୍ଦଶାର କଥା ପ୍ରଚାର କରି ନାହିଁ । ଆମ୍ଭେମାନେ ଏ ସମ୍ପର୍କରେ ଖଣ୍ଡିଏ ପ୍ରେରିତପତ୍ର ପାଇଥିଲୁଁ ତାହା ପ୍ରକାଶ କରିବାର ଆଉ ପ୍ରୟୋଜନ ନାହିଁ ।

*ଭା୧୫ଗ,ସଂ୧୬ଖ୍ୟା, ୧୭।୪।୧୮୮୦*

## ପ୍ରେରିତ ପତ୍ର ।

## [ପ୍ୟାରୀମୋହନଙ୍କ ଓଡ଼ିଶା ଇତିହାସ]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସଂପାଦକ

ମହାଶୟ ସମୀପେଷୁ ।

ମହାଶୟ !

କାଳୀପଦ ବାବୁଙ୍କର ତୃତୀୟ ନମ୍ବର"ଜଗନ୍ନାଥୀ" ବାହାରି ଅଛି । ପ୍ୟାରୀବାବୁଙ୍କ ଇତିହାସ ସମ୍ବନ୍ଧରେ କର୍ତ୍ତୃପକ୍ଷମାନଙ୍କ ମଧ୍ୟରେ ଯେଉଁ ସବୁ ପତ୍ର ଲେଖାଲେଖି ହୋଇଥିଲା ସେ ସମସ୍ତ ପତ୍ର କାଳୀପଦ ବାବୁଙ୍କ ହସ୍ତରେ ଶ୍ରୀଯୁକ୍ତ ମାଜିଷ୍ଟ୍ରେଟ ସାହେବ ଅର୍ପଣ କରିବାରୁ ତହିଁର ଅନୁବାଦ ଏହି ପୁସ୍ତିକାରେ ପ୍ରକାଶିତ ହୋଇଅଛି । କି ହେତୁ ଶ୍ରୀଯୁକ୍ତ ମାଜିଷ୍ଟ୍ରେଟ ସାହେବ ଏ ପତ୍ରମାନ କାଳୀପଦ ବାବୁଙ୍କ ହସ୍ତରେ ଅର୍ପଣ କଲେ ତାହା ଆମ୍ଭେ ବୁଝିପାରୁ ନାହୁଁ । ତେବେ ଅନ୍ୟାନ୍ୟ ଆନ୍ଦୋଳିତ ବିଷୟରେ ସରକାରୀ ଚିଟୀ ପତ୍ରର ନକଲ ବାହାର ଲୋକେ ପାଇବାରେ କି ଆପତ୍ତି ହୋଇପାରେ ?

ଉକ୍ତ ପୁସ୍ତିକାର ଦ୍ୱିତୀୟ ସଂଖ୍ୟକ ପତ୍ରରେ ଉମାପ୍ରସାଦ ବାବୁ ଲେଖନ୍ତି ଯେ "ଗ୍ରନ୍ଥକାର ଯେରୂପ ଅପରିଣତ ବୟସ୍କ ଯୁବାବୃନ୍ଦର ପ୍ରକାଶ୍ୟ ସଭା ଇତ୍ୟାଦିରେ ହିନ୍ଦୁ ଧର୍ମାବଲମ୍ବିମାନଙ୍କ ସମ୍ବନ୍ଧେ ଉପହାସ କରିଥାନ୍ତି,ଜଗନ୍ନାଥଦେବ ସମ୍ବନ୍ଧେ ଜ୍ଞାନ ପୂର୍ବକ ମିଥ୍ୟା ରଚନାଦ୍ୱାରା ସେମାନଙ୍କର ଧର୍ମ ପ୍ରବୃତ୍ତି ପ୍ରତି ସେହି ରୂପ ନିନ୍ଦାବାଦ କରିଅଛନ୍ତି ।" ଗତ ଚାରିବର୍ଷ ମଧ୍ୟରେ ପ୍ୟାରୀ ବାବୁ ଯେତେ ଥର ବକ୍ତୃତା କରିଅଛନ୍ତି ଆମ୍ଭେ ଉପସ୍ଥିତ ଥାଇ ସେ ସମସ୍ତ ଆଦ୍ୟୋପ୍ରାନ୍ତ ଶୁଣିଅଛୁଁ । ପ୍ୟାରୀ ବାବୁ ହିନ୍ଦୁ ଧର୍ମାବଲମ୍ବିଙ୍କୁ ଉପହାସ କରିବାର ଆମ୍ଭେ ଶୁଣି ନାହୁଁ । ପ୍ୟାରୀ ବାବୁ ସରଳ ଉଦାର ଓ ସତ୍ୟବାଦୀ । ଜଗନ୍ନାଥ ଦେବଙ୍କ ସମ୍ବନ୍ଧରେ ଯାହା ଲେଖି ଅଛନ୍ତି ତାହା ସମସ୍ତ ଇତିହାସ ଓ ମାଦଳାପାଞ୍ଜିରେ ଦେଖାଯାଏ । ଏଥିରେ କି ପ୍ରକାର ଜ୍ଞାନପୂର୍ବକ ମିଥ୍ୟା ରଚନା ଅଛି ତାହା ଉମାପ୍ରସାଦ ବାବୁ ସ୍ପଷ୍ଟ ରୂପେ ଦେଖାଇ ଦେଇଥିଲେ ଉତ୍ତମ ହୋଇଥାନ୍ତା । ପ୍ୟାରୀ ବାବୁଙ୍କ ଚରିତ୍ର ପ୍ରତି ଏପରି ମିଥ୍ୟା ଅଭିଯୋଗ ହେବାର ଦେଖି ଆମ୍ଭେ ଏବଂ ନଗରସ୍ଥ ପ୍ରାୟ ସମସ୍ତ କୃତବିଦ୍ୟ ଭଦ୍ର ବ୍ୟକ୍ତି ଦୁଃଖିତ ଅଛୁଁ । ଉମାପ୍ରସାଦ ବାବୁ ଯେବେ ଶୀଘ୍ର ଆପଣାର ଏପରି ବିଶ୍ୱାସର ହେତୁ ନ ଜଣାନ୍ତି ତେବେ ସମସ୍ତେ ତାଙ୍କୁ ପ୍ୟାରୀ ବାବୁଙ୍କର ଅକାରଣ ବୈରୀ ବୋଲି ଜ୍ଞାନ କରିବେ । ଆମ୍ଭେମାନେ ସାହସ ପୂର୍ବକ କହି ପାରୁଁ ଯେ ବିବେକବନ୍ତ ଲୋକ ଅନ୍ୟର ଅନିଷ୍ଟ ସାଧିବା ପାଇଁ କଦାପି ଏପରି କୁଟିଳମାର୍ଗ ଅବଲମ୍ବନ କରିବ ନାହିଁ । ସମ୍ପାଦକ ମହାଶୟ ! ପ୍ୟାରି ବାବୁଙ୍କ ବକ୍ତୃତା ଓ ଚରିତ୍ର ସମ୍ବନ୍ଧରେ ଆପଣ ଯେତେ ଦୂର ଜାଣନ୍ତି ଏବେ କହନ୍ତୁ ।

ଇତିହାସ ପ୍ରତି ଯେଉଁସବୁ ଆପତ୍ତି ହୋଇଥିଲା ତାହା ଅମୂଳକ ବୋଲି ଶିକ୍ଷା କମିଟିରେ ସ୍ଥିର ହୋଇଅଛି । ତେବେ କର୍ତ୍ତୃପକ୍ଷୀୟମାନେ କାହିଁକି ଏ ପୁସ୍ତକକୁ ସ୍କୁଲରେ ଚଳାଉ ନାହାନ୍ତି । ଯେଉଁ ପୁସ୍ତକ ପ୍ରଣୟନ ନିମନ୍ତେ ଗବର୍ଣ୍ଣମେଣ୍ଟ ଟ୩୦୦ଙ୍କା ପୁରସ୍କାର ଦେଲେ ଓ ଯାହାକୁ ଉତ୍କୃଷ୍ଟ ଗ୍ରନ୍ଥ ବୋଲି ସମସ୍ତେ ମତ ଦେଲେ ଓ ଯାହା ସମ୍ବନ୍ଧରେ କାଳୀପଦ ବାବୁଙ୍କ ଆପତ୍ତି ମାନ ଶିକ୍ଷାକମିଟିରେ ଅମୂଳକ ବୋଲି ଖଣ୍ଡିତ ହେଲା ସେ ପୁସ୍ତକକୁ ପାଠ୍ୟପୁସ୍ତକ କରିବାରେ କାହାର କି ଗୁପ୍ତ ସୃଷ୍ଟିଛଡ଼ା ଆପତ୍ତି ଅଛି ତାହା ଆମ୍ଭେମାନେ ବୁଝି ପାରୁ ନାହୁଁ ।

ଯମ ଓ ଚିତ୍ରଗୁପ୍ତଙ୍କ ଉପରେ ଯେ "ଭୂତାବେଶ" ହୋଇଅଛି ତହିଁନିମନ୍ତେ ଆମ୍ଭେ ଗଦ ଓ ଗୁଣିଆ ଖୋଜୁଅଛୁଁ । ଶୀଘ୍ର ପ୍ରତୀକାର ହେବ- ଏ ମାନେ ସମସ୍ତେ ଇଂରାଜୀ ପଡା ଭୂତ । ଛାଞ୍ଚୁଣି କି ମାଠିଆ କାମୁଡିଲେ ଛାଡିବେ ନାହିଁ ।

କଟକ ଆପଣଙ୍କର

୬।୫।୮୦

ଅସତ୍ୟବୈରୀ ।

***ଭା।୧୫ଗ, ସଂ୧୯ଖ୍ୟା, ୮।୫।୧୮୮୦***

## [ମଞ୍ଜୁଷାରେ ଓଡିଆ ବହି]

ମଞ୍ଜୁଷାର ଦେବାନ୍ ଶ୍ରୀ ଶ୍ରୀ ନାରାୟଣ ବଡ଼ଜେନାଙ୍କଠାରୁ ଖଣ୍ଡିଏ ଜଣାଣ ପୁସ୍ତିକା ଉପହାର ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏହା ମଞ୍ଜୁଷାର ପୂର୍ବ ରାଜା ଶ୍ରୀ ଶ୍ରୀନିବାସ ରାଜମଣି ରାଜଦେବଙ୍କଦ୍ୱାରା ବିରଚିତ ଏବଂ ବର୍ତ୍ତମାନ୍ ରାଜାଙ୍କଦ୍ୱାରା ବ୍ରହ୍ମପୁରର ଛାପାଖାନାରେ ମୁଦ୍ରିତ ହୋଇ ପ୍ରଚରିତ ହୋଇଅଛି । ଦକ୍ଷିଣ ପ୍ରଦେଶର ଓଡ଼ିଆ ଚିଟୀ ପତ୍ର ଦେଖି ସେ ଅଞ୍ଚଳର ଓଡ଼ିଆଭାଷା ଏଠା ଲୋକଙ୍କୁ କଦର୍ଯ୍ୟ ବୋଧ ହୁଅଇ ମାତ୍ର ଏ ଜଣାଣ ଖଣ୍ଡିକ ପାଠ କରି ଆମ୍ଭମାନଙ୍କର ବିଶ୍ୱାସ ହେଉଅଛି ଯେ ସେଠାର ସମ୍ଭ୍ରାନ୍ତ ସମାଜରେ ଓଡ଼ିଆ ଭାଷାର କିଛି ବିକୃତି ଜନ୍ମି ନାହିଁ । କେବଳ ଏ ଅଞ୍ଚଳ ଅପେକ୍ଷା ସେ ଅଞ୍ଚଳରେ ହିନ୍ଦି ଶବ୍ଦର କିଛି ଅଧିକ ବ୍ୟବହାର ଅଛି ଏବଂ ବର୍ଣ୍ଣମାଳାର ବିରର ଅଧିକ ନାହିଁ । ପାଠକଙ୍କ ପ୍ରତ୍ୟୟ ନିମିତ୍ତ ଗୋଟିଏ ପଦ ଏଠାରେ ଉଦ୍ଧୃତ କଲୁଁ ଯଥା,-

"ଜାଣତ ସବୁ ତୁମ୍ଭେ ଯେଉରପେ ଆର୍ତ୍ତଭାବେ
ଜଣାଉଅଛି ଦୁଃଖ ମୁହିଁ ।
ଯେବେ ଜଗତନାଥ ଜାଣି ଜାଣି ସମସ୍ତ
ରହିବ ଜଡ ପରି ହୋଇ । ହେ ମହାପ୍ରଭୁ !
ଜିବ ଏ ଜୀବନ ଆଖର । ଜଗତେ ଅକୀର୍ତ୍ତି ତୁମ୍ଭର ।
ଜିବ ନାହିଁଟି କେବେ ଜଳଜ ନେତ୍ର ଏବେ
ଜଗ ସେ କଥାକୁ ସତ୍ୱର । ହେ ମହାପ୍ରଭୁ ।୮।"

***ଭା।୧୫ଗ, ସଂ୨୨ଖ୍ୟା, ୨୯।୫।୧୮୮୦***

## [ରାମାୟଣର ଓଡ଼ିଆ ଅନୁବାଦ]

ରାମାୟଣ ବାଳକାଣ୍ଡ ମହର୍ଷି ବାଲ୍ମୀକିକୃତ ମୂଳଗ୍ରନ୍ଥର ଅବିକଳ ଅନୁବାଦ । ଶ୍ରୀ ଫକୀରମୋହନ ସେନାପତି ପ୍ରଣୀତ - ଏହି ପୁସ୍ତକ ଖଣ୍ଡିଏ ଆମ୍ଭେମାନେ ଉପହାର ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏହା କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ସୁତରାଂ ତହିଁ ସମ୍ପର୍କରେ ଆମ୍ଭମାନଙ୍କର କିଛି କହିବାର ଅଧିକାର ନାହିଁ । ଓଡ଼ିଆଭାଷା ଏବଂ ଓଡ଼ିଶାର ଲୋକଙ୍କ ଉନ୍ନତି ସକାଶେ ସର୍ବଦା ଯନ୍ତ୍ରବାନ୍ ଥିବା କଥିତରେ ତହିଁର କୃତଜ୍ଞତାସ୍ୱରୂପ ଏ ପୁସ୍ତକ ଶ୍ରୀଯୁକ୍ତ ବିମ୍ସ ସାହେବଙ୍କୁ ଉତ୍ସର୍ଗିତ ହୋଇଅଛି । ଆମ୍ଭେମାନେ ଦେଖୁଁ ଯେ ଓଡିଆଭଷାରେ ରାମାୟଣ ଗ୍ରନ୍ଥର ଅଭାବ ନାହିଁ ବଳରାମଦାସଙ୍କ ରାମାୟଣ ପୁରାଣସ୍ୱରୂପ ପଠିତ ହୁଅଇ ଏବଂ କୃଷ୍ଣସିଂହଙ୍କ ରାମାୟଣ ସେହି ଉଦ୍ଦେଶରେ ପ୍ରଣୀତ ଏବଂ ଉତ୍କୃଷ୍ଟ ହୋଇଥିଲେହେଁ ତହିଁର ଆଦର ତେତେ ବଢି ନାହିଁ । ଏପର ବିଚିତ୍ରରାମାୟଣ ସୁଚିତ୍ରରାମାୟଣ ଅଧ୍ୟାତ୍ମିକ ରାମାୟଣ ଇତ୍ୟାଦି ଅନେକ ଗ୍ରନ୍ଥ ଭାଷାରେ ଅଛି । ଏତେ ରାମାୟଣ ଥିବା ପ୍ରତ୍ୟକ୍ଷେ ଗ୍ରନ୍ଥକାର କି ଭାବି ଆଉ ଖଣ୍ଡେ ରାମାୟଣ ଲେଖିବାକୁ ପ୍ରବୃତ୍ତ ହେଲେ ତାହା ବୁଝାଇ କହିଥିଲେ ଆମ୍ଭମାନଙ୍କର

ସଂଶୟ ଦୂର ହୁଅନ୍ତା ଆମ୍ଭେମାନେ ମନେକରୁଁ କି ଏଥିରେ ଯେତେ ଶ୍ରମ କରି ଅଛନ୍ତି କୌଣସି ନୂତନ ବିଷୟରେ ସେ ଶ୍ରମକୁ ନିୟୋଗ କରିଥିଲେ ଅଧିକ ସାଧାରଣ ଉପକାର ହୁଅନ୍ତା । ଯେଉଁମାନଙ୍କର ପୁସ୍ତକ ପ୍ରକାଶ କରିବାର ସମୟ ଓ ସଙ୍ଗତି ଅଛି ତାହାଙ୍କଠାରେ ଆମ୍ଭେମାନେ କିଛି ଅଧିକ ଆଶାକରୁଁ ଯାହାହେଉ ସମାଲୋଚିତ ପୁସ୍ତକ ମନ୍ଦ ହୋଇ ନାହିଁ । ଆମ୍ଭେମାନେ ତହିଁର କେତେକ ଅଂଶ ପଢି ଦେଖିଲୁଁ ଯେ ଏହା ସରଳଭାଷା ଓ ଛନ୍ଦରେ ରଚିତ ହୋଇଅଛି ଏବଂ ଗ୍ରନ୍ଥକାର ତହିଁର ମୂଲ୍ୟ ଅଳ୍ପପରିମାଣରେ ଧାର୍ଯ୍ୟ କରି ଥିବାରୁ ଅନୁମାନ ହେଉଅଛି ଯେ ସେ ଲାଭର ପ୍ରତ୍ୟାଶା ନ କରି ରାମାୟଣର ଅତି ଚମତ୍କାର ଓ ନିର୍ଦ୍ଦୋଷ ନୀତି ଓ ଚରିତ ସର୍ବସାଧାରଣଙ୍କର ହୃଦୟଙ୍ଗମ କରିବା ଉଦ୍ଦେଶ୍ୟରେ ଏହା ପ୍ରଣୟନ କରି ଅଛନ୍ତି । ଆମ୍ଭମାନଙ୍କର ଏକାନ୍ତ ଆଶା ଯେ ତାହାଙ୍କର ଉଦ୍ଦେଶ୍ୟ ସଫଳ ହେଉ ।

*ଭା୧୫ଗ,ସଂ୨୬ଖ୍ୟା,୨୬।୬।୧୮୮୦*

## ପ୍ରେରିତ ପତ୍ର ।

## [ଓଡ଼ିଆ ପତ୍ରପତ୍ରିକା]

ମାନ୍ୟବର ଉତ୍କଳ ଦୀପିକା ସଂପାଦକ ମହାଶୟ ସମୀପେଷୁ

ମହାଶୟ !

ନିମ୍ନାଙ୍କିତ କେତେକ ଧାଡି ଆପଣଙ୍କ ବିଖ୍ୟାତ ପତ୍ରିକାରେ ପ୍ରକାଶ କରି ସର୍ବସାଧାରଣଙ୍କ ଗୋଚରକୁ ଆଣି ଚିରବାଧିତ କରିବା ହେବେ ।

ଆପଣଙ୍କୁ ଅବିଦିତ ନାହିଁ ଯେ 'ଉତ୍କଳମଧୁପ' ନାମକ ଖଣ୍ଡିଏ ମାସିକପତ୍ରିକା ଆପଣଙ୍କ ଛାପାଖାନାରୁ ମୁଦ୍ରିତ ହୋଇ ଓଡିଶାରେ ବିଚରଣ କରୁଥିଲା । ପ୍ରାୟ ଦେଢବର୍ଷରୁ ଊର୍ଦ୍ଧ୍ୱକାଳ ବାହାରି ଆଜିକି ମା୬ସ ହେବ ତାହାର ଦର୍ଶନ ନାହିଁ । ସୌଭାଗ୍ୟକ୍ରମେ ସମ୍ପାଦକଙ୍କ ସଙ୍ଗରେ ସାକ୍ଷାତ୍ ହେବାରୁ ତାଙ୍କଠାରୁ ବୁଝିଲୁଁ ଯେ ମଫସଲର ଗ୍ରାହକମାନଙ୍କ କୃପାରୁ ତହିଁର କାର୍ଯ୍ୟ ବନ୍ଦ ହୋଇଅଛି । ତହିଁର ମୂଲ୍ୟବାବତକୁ ପ୍ରାୟ ତିନିଶତ ପଞ୍ଚାଶଟଙ୍କା ସରିକି ମଫସଲର ଗ୍ରାହକମାନଙ୍କଠାରୁ ଆଦାୟ ହୋଇ ନାହିଁ । ଶୁଣି ଦୁଃଖିତ ହେଲୁଁ ଯେ ନିୟମିତ ଅତିଅଳ୍ପ ଗ୍ରାହକ ଛଡା ସମସ୍ତେ ଆଦୌ ମୂଲ୍ୟ ପଠାଇ ନାହାନ୍ତି କିମ୍ୱା ତାହା ଗ୍ରହଣ କରିବାରେ ବିରତ ବା କୁଣ୍ଠିତ ହୋଇ ନାହାନ୍ତି । ଅନେକ ବଡ଼ ବଡ଼ ଧନୀ ଭଦ୍ରବ୍ୟକ୍ତିମାନେ ମଧ ଏହା ମାସକୁମାସ ନେଉଥିଲେ ସେମାନେ ମଧ ମୂଲ୍ୟ ଦେଇ ନାହାନ୍ତି । ସେ କହିଲେ ଯେ ଯେବେ ଉପଯୁକ୍ତ ଲୋକମାନଙ୍କଠାରୁ ମୂଲ୍ୟ ଆଦାୟ ହୋଇ ନ ପାରିଲା ତେବେ ନିର୍ଦ୍ଧନୀ ଅଳ୍ପବିଦ୍ୟ ଲୋକଙ୍କଠାରୁ ମୂଲ୍ୟ ଆଦାୟ ହେବାର ପ୍ରତ୍ୟାଶା ବା କାହୁଁ ହୋଇ ପାରେ ? ଅନେକଥର ପ୍ରାର୍ଥନା କରାଗଲା ତହିଁରେ ମଧ ଫଳ ଫଳିଲା ନାହିଁ । ସହକାରୀ ସମ୍ପାଦକ ମହାଶୟ ଆମ୍ଭର ଅନୁପସ୍ଥିତିରେ ପ୍ରାୟ ସମସ୍ତ ମୋଫସଲ ଗ୍ରାହକଙ୍କ ନିକଟକୁ ଖଣ୍ଡିଏ ଖଣ୍ଡିଏ କାର୍ଡ ପତ୍ର ପଠାଇଲେ ଅବଧି କେହି ମୂଲ୍ୟ ପଠାଇ ନାହାନ୍ତି କିମ୍ୱା ଦୁଇଜଣଙ୍କୁ ଛାଡି କେହି ତହିଁର ଉତ୍ତର ସୁଦ୍ଧା ଦେଇ ନାହାନ୍ତି । ମହାଶୟ ! ଆପଣଙ୍କ ବିଚାରକୁ ଆସୁ ଏଭଳି ନୀତିରେ କି ଓଡିଶାର କେବେ ମଙ୍ଗଳ ଅଛି ? ଭଲ ହେଉ ମନ୍ଦ ହେଉ ଖଣ୍ଡିଏତ ଓଡିୟା ମାସିକପତ୍ର ଆମ୍ଭେମାନେ ପଢିବାକୁ ପାଉଥିଲୁଁ ? କେ ଜାଣି ବା ତହିଁରୁ ଭଲ କିଛି ବାହାରି ପାରିଥାନ୍ତା । ଯେବେ ତାକୁ ବଡ଼ ବଡ଼ ଧନୀ ଓ ଉପଯୁକ୍ତ ଲୋକମାନେ ଉଚିତ ମୂଲ୍ୟ ଆଦାୟ ନ ଦେଇ ଅକାଳସମୁଦ୍ରରେ ନିକ୍ଷେପ କରିବେ ତେବେ ଆଉ ତୋଷିବୁଁ କାହାକୁ ? ଏହା ମଧ ଆପଣ ବିଚାର କରନ୍ତୁ ଯେ ଅଦିଆ ଗ୍ରାହକଙ୍କର ନାମ ଗୁଡ଼ାଏ ଛାପାରେ ବାହାର କରି କି ଲାଭ ଅଛି ? କେଇଟା ଉପଯୁକ୍ତ ଲୋକେ ଏଦେଶରେ ଅଛନ୍ତି ଯେ ତୁଛାକୁ ଆପଣା ଭିତରେ କଳିକଜିଆଟାଏ ଭେଇ ଆପେ ସତ୍ୟାନାଶ ହେବାକୁ ବସିବୁଁ ? ଉପଯୁକ୍ତ ଲୋକମାନେ ଏଥିପାଁଇ ଲଢିଲେସିନା

ସାହିତ୍ୟସମାଜର କିଛି ଉନ୍ନତି ହେବ ? ପରିଶେଷରେ ଆମ୍ଭର ଏତିକି ବିନୟ ପ୍ରାର୍ଥନା ଯେ ଆପଣ ଟିକିଏ ତାପାଇଁ ଦିକଥା କହିଲେ ଆମ୍ଭର ଚିର ଆଶା ଫଳବତୀ ହେବ କିମଧିକଂ ବହୁନା ।

ଆପଣଙ୍କର

ଜଣେ ଓଡିୟା ।

*ଭା ୧୫ଗ, ସଂ ୨୬ଖ୍ୟା, ୩୧ /୭ /୧୮୮୦*

## [ପୁସ୍ତକ ପାଇଁ ବିଜ୍ଞାପନ ]

ଓଡିଶାର କମିଶନରଙ୍କ ପ୍ରସ୍ତାବ ଏବଂ ଶିକ୍ଷାବିଭାଗର ଡାଇରେକ୍ଟରଙ୍କ ଅନୁରୋଧ କ୍ରମେ ବଙ୍ଗଳା ଗବର୍ଣ୍ଣମେଣ୍ଟ ତଳଲିଖିତ ପୁସ୍ତକମାନ ଓଡିୟାଭାଷାରେ ପ୍ରଚାରିତ ହେବା ନିମିତ୍ତ ଟ ୩୪୦୦ଙ୍କା ମଞ୍ଜୁର କରିଅଛନ୍ତି ଯଥା; କ୍ଷେତ୍ରତତ୍ତ୍ୱ ଷଷ୍ଠଖଣ୍ଡ ପ୍ରଶ୍ନାବଳୀ ସହିତ, ବୀଜଗଣିତ ତ୍ରିକୋଣମିତି ଏବଂ ଉଦ୍ଭିଜ୍ଜତତ୍ତ୍ୱ । କେଉଁ ପୁସ୍ତକ ନିମିତ୍ତ କେତେ ବ୍ୟୟ ମଞ୍ଜୁର ହୋଇଅଛି ବୋଧହୁଅଇ ଜଏଣ୍ଟଇନସ୍ପେକ୍ଟର ତାହା ଜଣାଇବେ ଏ ସବୁପୁସ୍ତକର ବାସ୍ତବରେ ଭାରୀ ଅଭାବ ଅଛି ଏବଂ ଏସବୁ ପ୍ରକାଶ କରିବା ଭାରୀ ବ୍ୟୟସାଧ ଏବଂ ଓଡିଶାର ବର୍ତ୍ତମାନାବସ୍ଥାରେ ଉଣା ବିକ୍ରୟ ହେତୁ ଅଲାଭକର ଥିବାରୁ ଗବର୍ଣ୍ଣମେଣ୍ଟଙ୍କ ସାହାଯ୍ୟ ବିନା ହୋଇ ପାରନ୍ତା ନାହିଁ ଗବର୍ଣ୍ଣମେଣ୍ଟ ବର୍ତ୍ତମାନ ସେ ପକ୍ଷରେ ମନୋଯୋଗୀ ହେବାର ଦେଖି ଆମ୍ଭେମାନେ ଆନନ୍ଦିତ ହେଲୁଁ ଏବଂ ଆମ୍ଭେମାନେ ଆଶା କରୁଁ କି ଶ୍ରୀଯୁକ୍ତ କମିଶନର ସାହେବ ଏବଂ ଜଏଣ୍ଟ ଇନସ୍ପେକ୍ଟର ଏପରି ବନ୍ଦୋବସ୍ତ କରିବେ ଯହିଁରେ କି ଏ ପୁସ୍ତକମାନଙ୍କ ମୁଦ୍ରାଙ୍କନ ବିଷୟରେ ଗବର୍ଣ୍ଣମେଣ୍ଟଙ୍କର କର୍ତ୍ତୃତ୍ୱ ରହିବ ଓ ଗ୍ରନ୍ଥକାରଙ୍କ ହେଳାରୁ କୌଣସି ସମୟରେ ଅପ୍ରାପ୍ତ ହେବ ନାହିଁ ।

*ଭା ୧୫ଗ, ସଂ ୩୫ଖ୍ୟା, ୨୮ /୮ /୧୮୮୦*

## ପ୍ରେରିତ ପତ୍ର ।

## [ଓଡିଆରେ ଅନୁବାଦ ପାଇଁ ପ୍ରଚେଷ୍ଟା ]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ

ମହାଶୟ ସମୀପେଷୁ ।

ମହାଶୟ !

ଆମ୍ଭେ ଶୁଣିଲୁଁ କି "ଟ୍ରିଗ୍ନୋମେଟରୀ" "କ୍ଷେତ୍ରତତ୍ତ୍ୱ" "ବୀଜଗଣିତ" "ଉଭିଦ୍ତତ୍ତ୍ୱ" ଇତ୍ୟାଦି ପୁସ୍ତକମାନ ଓଡିଆଭାଷାରେ ଅନୁବାଦିତ ହେବା ସକାଶେ ଗବର୍ଣ୍ଣମେଣ୍ଟ ଟ୩୦୦୦ଙ୍କା ପୁରସ୍କାର ଦେବାର ଆଦେଶ ପ୍ରଦାନ କରିଅଛନ୍ତି ଏ ସମ୍ବାଦଟି ଏ ଉତ୍କଳବାସିମାନଙ୍କର ପକ୍ଷରେ ଶୁଭସମ୍ବାଦ ଅଟଇ, ମାତ୍ର ଆମ୍ଭେ ଶୁଣି ଦୁଃଖିତ ହେଲୁଁ କି ଉଲ୍ଲିଖିତ ପୁସ୍ତକମାନ ଅନୁବାଦ କରିବା ସକାଶେ ସାଧାରଣଙ୍କୁ ଆହ୍ୱାନ କରାଯିବ ନାହିଁ, କେବଳମାତ୍ର ଗୋଟିଏ କମିଟି ନିଯୁକ୍ତ ହେବ, ସେହି କମିଟିଙ୍କର ମେମ୍ବରମାନେ ଗୋଟିଏ ଘରଗଠିତ ବିଜ୍ଞାପନ ବାହାର କରିବେ ଏବଂ ସେହି କମିଟିର ମେମ୍ବରମାନଙ୍କଠାରେ ପୁସ୍ତକ ଅନୁବାଦ ପ୍ରାର୍ଥିମାନଙ୍କୁ ଦରଖାସ୍ତ ବା ଆବେଦନପତ୍ର ଦାଖିଲ କରିବାକୁ ହେବ । ତହିଁଉତ୍ତାରୁ ମେମ୍ବରମାନେ ଯାହାଙ୍କପ୍ରତି କୃପାଦୃଷ୍ଟି ନିକ୍ଷେପ କରି ହୁକୁମସାଦର କରିବେ କେବଳମାତ୍ର ସେହି ସେହି ଲୋକମାନେ ପୁସ୍ତକ ଅନୁବାଦ କରି ପାରିବେ, ଅପର କେହି ଅନୁବାଦ କଲେ ତାହା ଗୃହୀତ ହେବ ନାହିଁ , ଇତ୍ୟାଦି ଗୋଡ଼ାବନ୍ଦି ହେଉଅଛି ।

ଯାହା ହେଉ ଏପରି ନିୟମକୁ ଆମ୍ଭେମାନେ ଉଦାରତା ବା ସରଳତାର ବିରୋଧୀ ବୋଲି ବୋଲିବାକୁ ବାଧ ହେଲୁଁ । କିପାଁଇ ? ଏପରି ସାଧାରଣଙ୍କର ଉତ୍ସାହପ୍ରଦାନ କାର୍ଯ୍ୟରେ ସାଧାରଣଙ୍କୁ ଆହ୍ୱାନ ନ କରି କେତେକଗୋଟି

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ବାଲ୍ମୀକିଙ୍କୁ ଅର୍ଥାତ୍ ଯେଉଁମାନେ ରାମ ନ ହେବା ପୂର୍ବରୁ ରାମାୟଣ ରଚନା କରି ରଖୁଅଛନ୍ତି କେବଳମାତ୍ର ସେହିମାନଙ୍କ ଚେଷ୍ଟା ପୂର୍ଣ୍ଣକରାହେଲେ ତାହାକୁ ଉଦାରତା ଅବା ସରଳ ବ୍ୟବହାରର କାର୍ଯ୍ୟ ବୋଲି ବୋଲା ଯାଇ ନ ପାରେ ଏପରି ଅନୁଷ୍ଠାନରେ ଆଉ ଗୋଟିଏ ଦୋଷ ଦେଖିବାକୁ ପାଉଁ କି ଏପରି ନିୟମରେ କୌଣସି ସଂଭ୍ରାନ୍ତ ଭଦ୍ରଲୋକ କମିଟିଙ୍କର ସମୀପରେ ଉପସ୍ଥିତ ହେବେ ନାହିଁ ତହିଁର ଉଦାହରଣ ସ୍ଥଳରେ ଗୋଟିଏ ବିଷୟ କହୁଅଛୁଁ । -ବୁଟାନିକ ପୁସ୍ତକ ଅନୁବାଦ ହେବ ଏହି କଟକରେ ଓଡିଆମାନଙ୍କର ମଧ୍ୟରେ ଏପରି ଲୋକ କେହି ନାହିଁ ଯେ ବୁଟାନିକ ପୁସ୍ତକ ଅନୁବାଦ କରିବାକୁ ସକ୍ଷମ ହେବ । ଆମ୍ଭମାନଙ୍କ ସୁଯୋଗ୍ୟ ଡାକ୍ତର ଡବଲିଉ, ଡି,ଷ୍ଟିଓଆର୍ଟ ସାହେବ ଅବା ପୁରୀର ସିବିଲସର୍ଜନ ବା ଆମ୍ଭମାନଙ୍କ ଲବ୍ଧପ୍ରତିଷ୍ଠିତ ସୁଯୋଗ୍ୟ ଏସିଷ୍ଟାଣ୍ଟସାରଜନ ବାବୁ ପ୍ରଷୁତୋଷ ହାଲଦାର ବା ବାବୁ ଚୁନିଲାଲ ଦାସ ପ୍ରଭୃତି କେତେକଜଣ ଭିନ୍ନ ଆଉ କେହି ଯୋଗ୍ୟଲୋକ ନାହାନ୍ତି ଏକଥା ବୋଲା ଅସଙ୍ଗତ ହେବ ନାହିଁ । ମାତ୍ର ଏହି ଭଦ୍ରଲୋକ ଏବଂ ସଂଭ୍ରାନ୍ତ ଲୋକମାନେ ବାରଶତଟଙ୍କା ପୁରସ୍କାର ନିମନ୍ତେ କମିଟିଙ୍କର ଦରବାରରେ ଉପସ୍ଥିତ ଅବା ଦରଖାସ୍ତକାରୀ ହାଜିର ହଏ ? ୨ବା ଆବେଦନକାରୀ ହାଜିର ହଏ । -ଶୁଣିବାକୁ ଉପସ୍ଥିତ ହେବେ କି ? କିମ୍ବା ସେମାନଙ୍କଠାରୁ ଯେଉଁ ମେମ୍ବରମାନେ ନିତାନ୍ତ ବିଦ୍ୟା ବୁଦ୍ଧି ବିହୀନ ସେମାନଙ୍କ ସମୀପରେ ବୁଟାନିକର ପରୀକ୍ଷା ଦେବା ନିମନ୍ତେ ପ୍ରସ୍ତୁତ ହେବେ କି ? କେବେହେଁ ନାହିଁ କେବଳମାତ୍ର କ୍ଷୁଦ୍ର ବାଲ୍ମୀକିମାନେହିଁ ଉପସ୍ଥିତ ହେବାର ସମ୍ଭାବନା ଏଥିରେ ବ୍ୟକ୍ତିଗତ ଉପକାର ଭିନ୍ନ ସମଗ୍ର ଉତ୍କଳଦେଶୀୟମାନଙ୍କର ଉତ୍ସାହ ପ୍ରଦାନ ହେବ ନାହିଁ ଷ୍ଟିଓ୍ୟାର୍ଟସାହେବପ୍ରଭୃତି ସୁଯୋଗ୍ୟ ଡାକ୍ତରମାନେ ଏପରି ବ୍ୟବହାରରେ ବିରକ୍ତ ନ ହେବାର କାରଣ ଦେଖାଯାଏ ନାହିଁ । ଅଯୋଗ୍ୟପାତ୍ରରେ ଖୟରାତ୍ କରିବା ସକାଶେ ଗବର୍ଣ୍ଣମେଣ୍ଟର ଏତେଟଙ୍କା ଦାନ କରିବା ହୋଇ ନାହିଁ ଅବା ବଙ୍ଗଳାଭାଷାରୁ ରାମାୟଣ ରଚନା ନିମନ୍ତେ ଏ ଟଙ୍କା ସରକାର ପ୍ରଦାନ କରି ନାହାନ୍ତି ଏ ଟଙ୍କା ଉତ୍କଳବାସିମାନଙ୍କୁ ଉତ୍ସାହପ୍ରଦାନ ହେବା ସକାଶେହିଁ ଗବର୍ଣ୍ଣମେଣ୍ଟ ମଞ୍ଜୁର କରିଅଛନ୍ତି ବର୍ତ୍ତମାନ ଗବର୍ଣ୍ଣମେଣ୍ଟଙ୍କର ପ୍ରଦତ୍ତ ଟଙ୍କା ଗୁଡିକର ଶ୍ରାଦ୍ଧ ନ ହୋଇପାରେ ଏହା କି ପ୍ରାର୍ଥନୀୟ ନୁହେ ?

କେହି କେହି ଆପତ୍ତି କରିବାକୁ ପାରନ୍ତି କି ଟଙ୍କାର ଶ୍ରାଦ୍ଧ କିପାଁଇ ହେବ ? ସେମାନଙ୍କପ୍ରତି ଆମ୍ଭର ଏହିମାତ୍ର ନିବେଦନ ଯେ "ପ୍ରବନ୍ଧମାଳା ନାମକ ନୂଆ ପୁସ୍ତକଖଣ୍ଡି ଦେଖିଲେ ଆମ୍ଭର ଆଶଙ୍କା ସଂଘଟିତ ହେବାର ବିଚିତ୍ରତା ନାହିଁ ତାହା ପ୍ରମାଣିତ ହେବ । "ଗୁରୁପାଠ, ସୀତାବନବାସ, କାଦମ୍ବରୀ, ରାମବିଳାସ" ଇତ୍ୟାଦି ସାହିତ୍ୟ ଉତ୍କଳଭାଷାରେ ଥିବା ପ୍ରତ୍ୟକ୍ଷେହେଁ ପ୍ରବନ୍ଧମାଳା ନିମନ୍ତେ ପୁରସ୍କାର ଦେବାର ପ୍ରୟୋଜନ ଥିଲା କି ? ଉଲ୍ଲିଖିତ ପୁସ୍ତକମାନ ଅପେକ୍ଷା ପ୍ରବନ୍ଧମାଳା କୌଣସିପ୍ରକାରରେ ଉତ୍କୃଷ୍ଟପୁସ୍ତକ ନୁହେ ଏବଂ ପ୍ରବନ୍ଧମାଳା ସଦୃଶ ପୁସ୍ତକ ଅନୁବାଦ କରିବାକୁ ହେଲେ ଏକଜଣ ଚାକରିୟାବ୍ୟକ୍ତି ଆପଣା କାର୍ଯ୍ୟ ଅଞ୍ଜାମ କରି ବିଂଶତିଦିନ ୨/୩ ଘଣ୍ଟା ଅନୁବାଦ କଲେହିଁ ପ୍ରବନ୍ଧମାଳା ସଦୃଶ ପୁସ୍ତକ ଅନୁବାଦ ହୋଇ ପାରଇ ଏପରି ପୁସ୍ତକ କି ଯାହାର ଅଭାବ ନ ଥିଲା ତାହାର ପୁରସ୍କାର ଦେବା ଯେପରି ସରକାରଙ୍କ ଟଙ୍କାର ଶ୍ରାଦ୍ଧ ହୋଇଅଛି ବୁଟାନିକ୍ ପୁସ୍ତକାଦିର ନିମନ୍ତେ ସରକାରଙ୍କ ପ୍ରଦତ୍ତ ଟଙ୍କାର ସେହିପରି ଏକୋଦିଷ୍ଟ ନ ହେବ ତହିଁର ପ୍ରମାଣ କଣ ? ଯେବେ କେହି କହିବେ ଯେ କମିଟୀ ବସିବ, ଏଡେ ଏଡେ ପଣ୍ଡିତମାନେ ବସି ବିଚାର କରିବେ ତେବେ ପୁରସ୍କାର ଦେବା ହୁକମସାଦର ହେବ ; ସେମାନଙ୍କୁ ଆମ୍ଭେ ବିନୀତ ଭାବରେ କହୁଁ କି ପ୍ରବନ୍ଧମାଳା ପ୍ରଭୃତି ପୁସ୍ତକମାନତ କମିଟୀଙ୍କର ଏଡେ ଏଡେ ପଣ୍ଡିତମାନେ ଦେଖି ପାସ କରି ଅଛନ୍ତି, ଆମ୍ଭେ ସତ୍ୱର ସେହି ପଣ୍ଡିତ ମେମ୍ବରମାନଙ୍କ ବିଚକ୍ଷଣତା ଏବଂ ପୁସ୍ତକ ନିର୍ବାଚନ କ୍ଷମତା ସାଧାରଣଙ୍କୁ ଉପହାର ପ୍ରଦାନ କରିବୁଁ ତାହାହେଲେ ସାଧାରଣଙ୍କର କମିଟୀପ୍ରତି ଭ୍ରମ ଆଉ ଥିବ ନାହିଁ ଯାହା ହେଉ ଆମ୍ଭେମାନେ ଶିକ୍ଷାବିଭାଗର କର୍ତ୍ତୃପକ୍ଷୀୟମାନଙ୍କୁ ନିବେଦନ କରୁଅଛୁଁକି ଉଲ୍ଲିଖିତ ପୁସ୍ତକମାନଙ୍କ ଅନୁବାଦ ପ୍ରବନ୍ଧମାଳାପରି ନ ହୋଇ ପାରେ ପୂର୍ବାହ୍ନେ ସେ ନିମନ୍ତେ ସାଧାରଣଙ୍କୁ ବିଜ୍ଞାପନ ଦ୍ୱାରା ଆହ୍ୱାନ କରନ୍ତୁ ନ ହେଲେ ସାଧାରଣଙ୍କ ପ୍ରତି ନିତାନ୍ତ ଅନ୍ୟାୟ ବ୍ୟବହାର କରାହେବ ।

୨୯ । ୯ ।୮୦ ବଶମ୍ବଦ

କଟକ ଶ୍ରୀ ଦୀନନାଥ ବନ୍ଦ୍ୟୋପାଧ୍ୟାୟ

*ଭା।୧୫ଗ,ସଂ୪୧ଖ୍ୟା,୯।୧୦।୧୮୮୦*

## [ସମାଲୋଚନାର ସମାଲୋଚନା]

ପ୍ରବନ୍ଧମାଳାର ଏକ ଦୀର୍ଘ ସମାଲୋଚନା ଗତ ବାଲେଶ୍ୱର ସଂବାଦବାହିକାରେ ଅତିରିକ୍ତ ସ୍ୱରୂପ ବାହାରି ଅଛି । ସମାଲୋଚନାଟି ଉକ୍ତ ପତ୍ରିକାର ପୂର୍ଣ୍ଣ ଦୁଇ ପୃଷ୍ଠା । ସମ୍ପାଦକ ଏତେ ଦୀର୍ଘ ସମାଲୋଚନା ଆଉ କେବେ ଲେଖିବାର ଆମ୍ଭେମାନେ ଦେଖି ନାହୁଁ । ବୋଧ ହୁଅଇ ପୁସ୍ତକର ଗୁରୁତ୍ୱ ତୁଳନାରେ ତାହା ହୋଇଅଛି ଏବଂ ଏହିପରି ତୁଲ୍ୟତା ରକ୍ଷା କରିବା ନିମିତ୍ତ ସମ୍ପାଦକ ଆପଣା ସ୍ୱାଭାବିକ ଭାଷାକୁ ଲୁଚାଇ ରଖି ଯଥାସାଧ ଦୀର୍ଘ ଏବଂ ଦୁର୍ବୋଧ ପଦମାନ ପ୍ରୟୋଗ କରିଅଛନ୍ତି । ବାସ୍ତବରେ ଆମ୍ଭେମାନେ ସମାଲୋଚନାର ଶବ୍ଦ ତରଙ୍ଗରେ ପଡି ତ୍ରାହି ତ୍ରାହି ଡାକିଲୁଁ ଏବଂ ଖଣ୍ଡିଏ ଉତ୍କୃଷ୍ଟ ଅଭିଧାନ ବାହାର କରାଇବା ପୂର୍ବେ ସାହିତ୍ୟ ପୁସ୍ତକ ପଛରେ ତିନିଶତ ଟଙ୍କା ବ୍ୟୟ କରିଥିବାରୁ ଶିକ୍ଷା ବିଭାଗକୁ ଅନେକ ନିନ୍ଦା କଲୁଁ । ଫଳତଃ ସମାଲୋଚନାର ସମାଲୋଚନା କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହଇ ମାତ୍ର ତହିଁରେ ଯେ ଗୋଟିଏ ଭାରୀ ଭ୍ରମ ଅଛି ତାହା ସଂଶୋଧନ କରିବା ନିତାନ୍ତ ଆବଶ୍ୟକ ଏହିହେତୁରୁ ଆମ୍ଭେମାନେ ଦୁଇ ଏକ କଥା କହିବାକୁ ବାଧ ହେଲୁଁ । ସମ୍ପାଦକ ବୋଲନ୍ତି କି ଋଜୁପାଠର ସମସ୍ତ ଭାଗ ସମ୍ପ୍ରତି ଦୁଷ୍ପ୍ରାପ୍ୟ ମାତ୍ର ଏ କଥା ପ୍ରକୃତ ନୁହେ । ପ୍ରିଣ୍ଟିଂ କମ୍ପାନିଙ୍କ ପୁସ୍ତକାଗାରରେ ପ୍ରଥମ ଓ ତୃତୀୟ ଭାଗ ଋଜୁପାଠ ବହୁକାଳରୁ ପଡିରହି ନଷ୍ଟ ହେଉଅଛି ଓ ବିକ୍ରୀ ପୁସ୍ତକର ତାଲିକାରେ ତାହା ଲେଖାଅଛି । ଶିକ୍ଷା ବିଭାଗର ଏକ ସମୟରେ ଆଦର ଦେଖି ପ୍ରଥମ ଭାଗ ଋଜୁପାଠର ଏକ ନୂତନ ସଂସ୍କରଣ ବାହାରିଥିଲା ମାତ୍ର ଉକ୍ତ ପୁସ୍ତକ ବିଦ୍ୟାଳୟରୁ ଉଠିଯିବାରୁ ଅବଧି ବିକ୍ରୟ ନ ହେଲା ସୁତରାଂ ଦ୍ୱିତୀୟ ଭାଗ ପୁନର୍ମୁଦ୍ରାଙ୍କନ କରିବା ନିମିତ୍ତ କମ୍ପାନୀଙ୍କର ସାହସ ହେଲା ନାହିଁ ।

*ଭା।୧୫ଗ, ସଂ୪୨ଖ୍ୟା, ୨୩।୧୦।୧୮୮୦*

## ପ୍ରେରିତପତ୍ର ।

## [ପୁସ୍ତକ ନାଁରେ ବ୍ୟବସାୟ ନ ହେଉ ]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସଂପାଦକ..ମହାଶୟ ସମୀପେଷୁ ।

ମହାଶୟ !

ଓଡ଼ିୟାଭାଷାରେ ଖଣ୍ଡିଏ ସାହିତ୍ୟ ଲେଖିବା ପାଁଇ ଟ୩୦୦ଙ୍କା ପୁରସ୍କାର ଦେବା ଓ ଉକ୍ତ ପୁସ୍ତକ ଛମାସ ମଧରେ ଶ୍ରୀଯୁକ୍ତ କମିଶନର ସାହେବଙ୍କ ନିକଟରେ ଦେବା ନିମନ୍ତେ ଗୋଟିଏ ବିଜ୍ଞାପନ ବାହାର ହୋଇଥିଲା, ସେହି ବିଜ୍ଞାପନ ପାଠ କରି ଅନେକଙ୍କ ମନରେ ବୋଧ ହୋଇଥିଲା ଯେ ଉତ୍କଳଭାଷାରେ ଶକୁନ୍ତଳା, ଋଜୁପାଠ, ସୀତାବନବାସ, କାଦମ୍ବରୀ ପ୍ରଭୃତି ଉତ୍କୃଷ୍ଟସାହିତ୍ୟମାନ ପ୍ରଚଳିତ ଥିବା ପ୍ରତ୍ୟକ୍ଷେ ଯଦି ଅନ୍ୟ ପୁସ୍ତକର ପ୍ରୟୋଜନ ହୋଇଅଛି, ତେବେ ଖଣ୍ଡିଏ ନୂଆ ଅର୍ଥାତ୍ ତରଜମା ନୁହେ ଏପରି ଉତ୍କୃଷ୍ଟ ସାହିତ୍ୟ ଆବଶ୍ୟକ, କିନ୍ତୁ ଛମାସ ମଧରେ ଖଣ୍ଡିଏ ଉତ୍କୃଷ୍ଟ ସାହିତ୍ୟ ପ୍ରସ୍ତୁତ ହେବା କୌଣସି ପ୍ରକାରରେ ସମ୍ଭବ ନୁହେ ଏବଂ ଜଏଣ୍ଟଇନ୍‌ସ୍ପେକ୍ଟର ବାବୁ ରାଧାନାଥ ରାୟଙ୍କର ହୃଦୟବନ୍ଧୁ ବାବୁ ମଧୁସୂଦନ ରାଓ ବିଜ୍ଞାପନ ବାହାରିବା ପୂର୍ବରୁ ପୁସ୍ତକ ଲେଖୁଅଛନ୍ତି ଏହି ଅନୁମାନରେ ଓଡିୟାମାନଙ୍କ ମଧରେ ଅନେକେହେଁ (କମ୍ପିଟିସନ) ହୋଇ ସାହିତ୍ୟ ଲେଖିବାକୁ ଅଗ୍ରସର ହୋଇ ନ ଥିଲେ । ସୁତରାଂ ମଧୁସୂଦନ ବାବୁ ଅସପନ୍ନ ପୁରସ୍କାର ପ୍ରାପ୍ତ ହେଲେ; ଯାହା ହେଉ ସେ ଗତ ସୂଚନାରେ ବାଗ୍‌ବିତଣ୍ଡା ନିଷ୍ପ୍ରୟୋଜନ । ବର୍ତ୍ତମାନ ଯେଉଁ ଅଙ୍କପୁସ୍ତକମାନ ଏବଂ ବୃଟାନିକ ପୁସ୍ତକ ଓଡ଼ିୟାଭାଷାରେ ଅନୁବାଦ ହେବା ନିମନ୍ତେ ସରକାରରୁ ପୁରସ୍କାର ଦେବା ଆଦେଶ ହୋଇଅଛି ଯଦ୍ୟପି ସେ ପୁସ୍ତକମାନ ପ୍ରସ୍ତୁତ ହେବା ନିମିତ୍ତ ଉତ୍କଳବାସୀ ସାଧାରଣଙ୍କୁ ଆହ୍ୱାନ କରା ହୁଏ, ତାହା ହେଲେ କେଉଁ କେଉଁ ଅଙ୍କପୁସ୍ତକର କେଉଁ କେଉଁ ଅଂଶ, କେତେଦୂର ପର୍ଯ୍ୟନ୍ତ ଅନୁବାଦର ଆବଶ୍ୟକ ହେବ, ଅବା ଇଂରାଜୀ କେଉଁ କେଉଁ ପୁସ୍ତକର କେତେଦୂର ପର୍ଯ୍ୟନ୍ତ ଅନୁବାଦର ଆବଶ୍ୟକ ହେବ ତାହା ବିଜ୍ଞାପନ ମଧରେ ପ୍ରକାଶ କରିବା ଉଚିତ ଅଟଇ । ଦ୍ୱିତୀୟତଃ ଅନ୍ତତଃ ଏକବର୍ଷ କାଳ ସମୟ ଦେବା ଉଚିତ, ତହିଁର କାରଣ ଏହିକି କେତେକ ଜଣ ବଙ୍ଗାଳୀ ଜଏଣ୍ଟ ଇନ୍‌ସ୍ପେକ୍ଟରଙ୍କ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଅଫିସରୁ ସମ୍ବାଦ ପାଇ ପୁସ୍ତକ ଅନୁବାଦ କରି ଆସୁଅଛନ୍ତି ଅଳ୍ପକାଳ ମଧ୍ୟରେ ପୁସ୍ତକ ଦେବାକୁହେବ ଏପରି ବିଜ୍ଞାପନ ପ୍ରଦାନ କଲେ କେବଳ ମାତ୍ର ସେହିମାନଙ୍କର ହସ୍ତରେ ପୁରସ୍କାର ଟଙ୍କା ପତିତ ହେବ, ଉତ୍କଳବାସିମାନେ ନିତାନ୍ତ ବଞ୍ଚିତ ହେବେ, ପ୍ରକାରାନ୍ତରରେ ଓଡ଼ିୟାମାନଙ୍କୁ ବଞ୍ଚିତ କରା ହେବ, ସାହିତ୍ୟ ଲିଖନ ସମୟରେ ଯେଉଁପରି ଘଟନା ହୋଇଅଛି ଏଥର ପୁଣି ସେହିପରି ଅବିଶୁଦ୍ଧ କାର୍ଯ୍ୟର ଅନୁଷ୍ଠାନ କରା ହେବ । ଆମ୍ଭେମାନେ ଶ୍ରୀଯୁକ୍ତ କମିଶନର ସାହେବ ମହୋଦୟଙ୍କୁ ନିବେଦନ କରୁଅଛୁଁ ଏଥର ବିଜ୍ଞାପନର ବିଶୁଦ୍ଧତା ଏବଂ ସାଧାରଣଭାବରେ (କମ୍ପିଟିସନ) ନିୟମରେ ଅପିଚ ବେଶୀ ସମୟ ଦେବାର ନିୟମ ପ୍ରଚାର କରନ୍ତୁ ।

ବର୍ତ୍ତମାନ ଓଡ଼ିୟାଭାଷାରେ କ୍ଷେତ୍ରତତ୍ତ୍ୱ ଚତୁର୍ଥ ବୁକ୍ ପର୍ଯ୍ୟନ୍ତ ଛାପା ଥିଲା, ପୁଣି ବାବୁ ରାଧାନାଥ ରାୟ ଜଏଣ୍ଟ ଇନ୍‌ସ୍ପେକ୍ଟର ସ୍ୱୟଂ ପ୍ରଥମବୁକ୍ ଛପାଇ ନର୍ମ୍ୟାଲସ୍କୁଲରେ ଚଳାଇଅଛନ୍ତି ବାକୀ ତିନିବୁକ୍ ମାଟି ହୋଇ ଯାଉଅଛି ତଥାଚ କ୍ଷେତ୍ରତତ୍ତ୍ୱର ଆବଶ୍ୟକତା ବର୍ତ୍ତମାନ କି ଥିଲା ? ବୃଟାନିକ ଇଷ୍ଟଓୟାର୍ଡ ସାହେବ ଯେପରିମାଣରେ ପାଠ ଦେଇଅଛନ୍ତି ସେହିପରି ହେଲେ କି ହୋଇ ନ ଥାନ୍ତା ? ଓଡ଼ିଆ ଭାଷାରେ ଯେତେ ଭଲ ଭଲ ପୁସ୍ତକ ଅନୁବାଦ ହୁଏ ତେତେ ଆହ୍ଲାଦର ବିଷୟ ଅଟଇ କିନ୍ତୁ ଯେ ସମସ୍ତ ଓଡ଼ିଆ ପୁସ୍ତକ ରଚୟିତାମାନଙ୍କ ଭଲ ପୁସ୍ତକ ଉପସ୍ଥିତ ଥିବା ସ୍ୱତ୍ୱେ ଜଏଣ୍ଟଇନସ୍ପେକ୍‌ଟର ଆପଣାର ପୁସ୍ତକ ଏବଂ ନିଜ କୃତ ପୁସ୍ତକ କି ଯାହା ତାଙ୍କ ହୃଦୟବନ୍ଧୁ ବାବୁ ବୈକୁଣ୍ଠନାଥ ଦେଙ୍କର ନାମରେ କପିରାଇଟ ପ୍ରଦାନ କରିଅଛନ୍ତି ସେ ସବୁ ପୁସ୍ତକର ଅଧିକାଂଶ ଚଳାଇବାର କାରଣ କଣ ? ପୁସ୍ତକ ଲେଖି ବିକ୍ରୟ କରିବା କି ଏକପ୍ରକାର ବ୍ୟବସାୟ ନୁହେ ? ଗବର୍ଣ୍ଣମେଣ୍ଟ କର୍ମ୍ମଚାରୀଙ୍କ ପ୍ରତି ଆପଣା ଆପଣା ଏଲାକା ମଧ୍ୟରେ ବ୍ୟବସାୟ କରିବା ଭୂୟୋ ଭୂୟୋ ନିଷେଧ ଅଛି, କିନ୍ତୁ ପୁସ୍ତକ ବିକ୍ରୟ କି ସେ ନିୟମର ଅଧୀନ ନୁହେ ? ( ଦୁଇଜଣ ଏକ ସଙ୍ଗରେ ପୁସ୍ତକ ରଚନା କରିବାକୁ ଅବା ତହିଁର ସତ୍ୱରେ ଭୋଗବାନ୍ ହେବାକୁ ଜଏଣ୍ଟଇଷ୍ଟକ କୋମ୍ପାନୀ ବା ଲିମିଟେର୍ଡ କୋମ୍ପାନୀ ବୋଲା ଯିବ ? ) ଶିକ୍ଷାବିଭାଗରୁ ଏପରି ବ୍ୟବସାୟ ଯହିଁରେ ସତ୍ୱର ବିଦୂରିତ ହୁଏ ଆମ୍ଭମାନଙ୍କ ସୁବିଜ୍ଞ ଗବର୍ଣ୍ଣମେଣ୍ଟଙ୍କର ତହିଁ ପକ୍ଷରେ ବିଶେଷ ଦୃଷ୍ଟିପାତ କରିବା ଉଚିତ । ପୁସ୍ତକ ବିକ୍ରୟ ବଡ଼ ସାଧାରଣ ବ୍ୟବସାୟ ନୁହେ, ଶିକ୍ଷାବିଭାଗ ମଧ୍ୟରେ ଏହି ନିନ୍ଦନୀୟ ରୀତି ପ୍ରଚଳିତ ଥିବା ହେତୁ ଅନେକର ସ୍ୱାର୍ଥ ନଷ୍ଟ ହୋଇଥାଏ । ଅନେକ ସମୟରେ ପକ୍ଷପାତରୂପ ମହାପାପ ଆକ୍ରମଣ କରିବାର ବିଚିତ୍ରତା ନାହିଁ । ଆମ୍ଭେମାନେ ଏହି ଉପରିଲାଭର ବ୍ୟାପାରକୁ ଘୃଣା କରୁଁ ଏହାଦ୍ୱାରା ଅନେକ ସମୟରେ ପବିତ୍ର ଶିକ୍ଷାବିଭାଗ କଳଙ୍କିତ ହୋଇଥାଏ । ଏମନ୍ତ କି କୁମ୍ଭକାର ହୋଇ ପ୍ରତିମା ଗଠନ କରିବା, ପୂଜକ ହୋଇ ପୂଜା କରିବା, ଛେଦକ ହୋଇ ବଳି ଛେଦନ କରିବା, ପୁଣି ଗୃହସ୍ଥ ହୋଇ ଯାତ୍ରା ମଧ୍ୟରେ ବକ୍‌ସିସ ପ୍ରଦାନ ଓ ସ୍ୱହସ୍ତରେ ଦେବତାଙ୍କର ଦକ୍ଷିଣାନ୍ତ କରିବା ଏହା କି ସାଧାରଣ ଦୁଃଖର ବିଷୟ ? ଶିକ୍ଷା ବିଭାଗର ଏହି କଳଙ୍କ କେବେ ବିଦୂରିତ ହେବ ? ।

ଏଥି ପକ୍ଷରେ ଆହୁରି କିଛି ବୋଲିବାର ଅଛି ଏହି ନୂଆ ପ୍ରବନ୍ଧମାଳା ବୋଲି ଜଏଣ୍ଟଇନସ୍ପେକ୍‌ଟର ବାବୁ ଯାହାର ଟ୩୦୦ଙ୍କା ପୁରସ୍କାର ପ୍ରଦାନ କରିଅଛନ୍ତି, ହେଉ, ରାଧାନାଥ ବାବୁଙ୍କୁ ଜିଜ୍ଞାସା କରୁଁ ପ୍ରାୟ ୫/୬ ବର୍ଷ ଅତୀତ ହେବ ଯେତେବେଳେ ଉତ୍କଳଦର୍ପଣ ମାସିକ ପତ୍ରିକା ଥିଲା, ତେତେବେଳେ ଖୋଦ ବାବୁ ରାଧାନାଥ ରାୟ ମହାଶୟ ଏବଂ ବାବୁ ମଧୁସୂଦନ ରାଓ ପରସ୍ପର ଯେଉଁ ସବୁ କ୍ଷୁଦ୍ର କ୍ଷୁଦ୍ର ପ୍ରବନ୍ଧ ସେହି ପତ୍ରିକାରେ ବାହାର କରିଥିଲେ ପ୍ରବନ୍ଧମାଳାର ନୂଆ ନାମଧେୟ ଦ୍ୱିତୀୟ ଅଧ୍ୟାୟର ଅଧିକାଂଶ ପ୍ରବନ୍ଧ ସେହି ପତ୍ରିକାରୁ ଉଦ୍ଧୃତ କରା ହୋଇଅଛି କି ନୁହେ ? ଯେତେବେଳେ ଓଡ଼ିଆ ଭାଷାରେ ସାହିତ୍ୟର ଅଭାବ ନ ଥିବା ସ୍ୱତ୍ୱେ ଖଣ୍ଡିଏ ସମ୍ବାଦପତ୍ରର ସଂଗ୍ରହ ସାହିତ୍ୟ ସ୍କୁଲରେ ପ୍ରଚଳିତ କରିବା ନିତାନ୍ତ ଆବଶ୍ୟକ ଥିଲା ତେତେବେଳେ ଗବର୍ଣ୍ଣମେଣ୍ଟଙ୍କର ଟଙ୍କାର ଶ୍ରାଦ୍ଧ ନ କରି କେବଳ ମାତ୍ର ପୁସ୍ତକ ସ୍କୁଲରେ ପ୍ରଚଳିତ ହେବ ବୋଲି ହୋଇଥିଲେ ପ୍ରବନ୍ଧମାଳାର ଉତ୍ପନ୍ନ ହେବାର କି ବାଧା ହୋଇଥାନ୍ତା ? ପାରିତୋଷିକ ପୁସ୍ତକ ସମ୍ବାଦପତ୍ରରୁ ଉଦ୍ଧୃତ କରିବା ଏହା ନୂତନ ରୀତି । ଯାହା ହେଉ ଆମ୍ଭେମାନେ ଯେତେବେଳେ ଏପରି ନ୍ୟାୟବାନ୍ ଏବଂ ନିରପେକ୍ଷ, ତେତେବେଳେ କେଉଁ ବିଚାରରେ ଅନ୍ୟମାନଙ୍କୁ ସ୍ୱ ଜାତୀୟ ପକ୍ଷପାତୀ ବୋଲି ପାରିବା ? ଧିକ୍ ଆମ୍ଭମାନଙ୍କ ସୁଦୀର୍ଘ ବକ୍ତୃତାରେ ! ଧିକ୍ ଆମ୍ଭମାନଙ୍କ ନ୍ୟାୟପରତାରେ !

ଉପସଂହାରରେ ଗବର୍ଣ୍ଣମେଣ୍ଟଙ୍କ ସମୀପରେ ନିବେଦନ ଏହି କି ଯେ ଶିକ୍ଷାବିଭାଗର କର୍ତ୍ତୃପକ୍ଷୀୟମାନେ ସ୍କୁଲର ପୁସ୍ତକସମୂହର ବ୍ୟବସାୟ ନ କରିବା ବିଷୟରେ ବିଶେଷ ଆଦେଶ ପ୍ରଦାନ କରନ୍ତୁ ।

୨୫।୧୦।୮୦ ବଶମ୍ବଦ

କଟକ ଶ୍ରୀ ଦୀନନାଥ ବନ୍ଦ୍ୟୋପାଧ୍ୟାୟ

*ଭା/୧୫ଗ,ସଂ୪୩ଖ୍ୟା,୩୦।୧୦।୧୮୮୦*

## ପ୍ରେରିତପତ୍ର ।

## [ପୁସ୍ତକ ସଂପର୍କିତ ସମାଲୋଚନା ]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସଂପାଦକ... ମହାଶୟ ସମୀପେଷୁ।

ମହାଶୟ !

କେତେକ ଦିନ ହେଲା ଦୀନବାବୁ ଦୀପିକାରେ ଆଛା ନାଟ ଲଗାଇଅଛନ୍ତି । ଓଡିଶାର ଜଏଣ୍ଟ ଇନ୍‌ସ୍ପେକ୍‌ଟର ରାଧାନାଥ ବାବୁ ଓ ଦୀନହୀନ କୃପାଯୋଗ୍ୟ ଓଡିୟା ଗ୍ରନ୍ଥଚୟର ରଚୟିତା ଓ ଭାବୀ ରଚୟିତାମାନେ ତାଙ୍କ ଲେଖନୀର ପିତୁଳା ହୋଇଅଛନ୍ତି । ବିଶେଷତଃ ଓଡିୟାଭାଷାର ନବଜାତ 'ପ୍ରବନ୍ଧମାଳା' ଓ ଗର୍ଭସ୍ଥିତ 'ଟିନ୍‌କୋନ୍‌ମିଟି' ପ୍ରଭୃତି ସାଧାରଣ ବୁଦ୍ଧି ବିଦ୍ୟାର ଅଗମ୍ୟ ଶାସ୍ତ୍ରମାନଙ୍କୁ ଘେନି ବିଶେଷ ଓଟରାଓଟରି ଲଗାଇଅଛନ୍ତି । ତାଙ୍କ ବିବେଚନାରେ ପ୍ରବନ୍ଧମାଳା ପାଁଇ ଆଦୌ ପୁରସ୍କାର ଦେବାର ପ୍ରୟୋଜନ ନ ଥିଲା ଓ ପୁସ୍ତକ ପୁରସ୍କାର ପାଇବାର ମଧ ତାଦୃଶ ଉପଯୁକ୍ତ ନୁହେ ଏବଂ ବୈଜ୍ଞାନିକ ପୁସ୍ତକମାନଙ୍କୁ 'ଅନୁବାଦ' କରିବା ସକାଶେ ସାଧାରଣଙ୍କୁ ସୁବିଧା ଦେବାର ଉଚିତ ଓ ପୁସ୍ତକ ରଚନାର ସମୟ ଏକବର୍ଷରୁ ନ୍ୟୂନ ନ ହେବାର ଆବଶ୍ୟକ । ବର୍ତ୍ତମାନ ଦେଖାଯାଉ ଯେ ଉଲ୍ଲିଖିତ ବିଷୟମାନଙ୍କରେ ଦୀନବାବୁ ଯାହା ଯାହା କହିଅଛନ୍ତି ସେ ସବୁ କେତେଦୂର ଯୁକ୍ତିଯୁକ୍ତ ।

ପ୍ରବନ୍ଧମାଳାପରି ଖଣ୍ଡେ ସାହିତ୍ୟପୁସ୍ତକ ସକାଶେ ଆଦୌ ପୁରସ୍କାର ଯାଚିବାର ଆବଶ୍ୟକତା ଥିଲା କି ନାହିଁ ଏ ବିଷୟର ବିଚାର କିୟତ୍କାଳ ସକାଶେ ସ୍ଥଗିତ ରଖି, ପ୍ରବନ୍ଧମାଳା ପୁସ୍ତକ ଖଣ୍ଡିକ (ଯେପରି ବର୍ତ୍ତମାନ ମୁଦ୍ରିତ ହୋଇ ପ୍ରକାଶିତ ହୋଇଅଛି) ପୁରସ୍କୃତ ହେବାର ଯୋଗ୍ୟ କି ନା ଏହା ବିଚାର କଲେ ଅପକ୍ଷପାତୀ ବିଚାରକ ମାତ୍ରକେ ମୁକ୍ତକଣ୍ଠରେ ସ୍ୱୀକାର କରିବେ ଯେ ସତ୍ପାତ୍ରରେ ପୁରସ୍କାର ପ୍ରଦତ୍ତ ହୋଇଅଛି । ପ୍ରବନ୍ଧମାଳାର ରଚୟିତା ପୁରସ୍କାର ପାଇବାର ଯୋଗ୍ୟତା ବିରୁଦ୍ଧରେ ଦୀନବାବୁ ଯେଉଁ ଯୁକ୍ତିମାନ ଦେଖାଇ ଅଛନ୍ତି ତାହା କାର୍ଯ୍ୟକର ନୁହେ । ଦୀନବାବୁଙ୍କର ଏକ ଯୁକ୍ତି ଏହି ଯେ ଉକ୍ତ ପୁସ୍ତକ ଏକ ଅନୁବାଦିତ ଗ୍ରନ୍ଥ ଅଟେ, ମାତ୍ର ଏହା ବାବୁ ମହାଶୟଙ୍କର ଭ୍ରମ ବୋଲିବାକୁ ହେବ, ଯେହେତୁ ଏଥିର ପ୍ରବନ୍ଧଚୟ କୌଣସି ପୁସ୍ତକବିଶେଷରୁ ଅବା ପୁସ୍ତକ ସମଷ୍ଟିରୁ ଅନୁବାଦିତ ହୋଇ ନାହିଁ । ଅବଶ୍ୟ ଗ୍ରନ୍ଥକାର ଭିନ୍ନ ଭିନ୍ନ ଇଂରାଜୀ ଗ୍ରନ୍ଥମାନଙ୍କରୁ ଭାବ ସଂଗ୍ରହ କରିଅଛନ୍ତି ଓ ସେ ଭାବମାନଙ୍କୁ ନିଜର ଭାବ ସଙ୍ଗେ ମିଶାଇ ନବପରିଚ୍ଛଦ ଦେଇ ଏକଗ୍ରନ୍ଥ ପ୍ରସ୍ତୁତ କରିଅଛନ୍ତି । ସେଥିସକାଶେ ମଧୁବାବୁଙ୍କ ଗ୍ରନ୍ଥକୁ ଅନୁବାଦିତ ଗ୍ରନ୍ଥ ବୋଲାଯାଇ ନ ପାରେ । ଦୀନବାବୁଙ୍କ ଅଭିଧାନରେ ଯଦି ଏପରି ଗ୍ରନ୍ଥକୁ ଅନୁବାଦିତ ଗ୍ରନ୍ଥ ବୋଲାଯିବ ତାହା ହେଲେ ମିଲ୍‌ଟନ ରଚିତ ପାରାଡାଇଜଲଷ୍ଟ, କାଳୀଦାସ ରଚିତ ଶକୁନ୍ତଳା, ଉପେନ୍ଦ୍ର ରଚିତ ବୈଦେହୀଶବିଳାସ, ଅକ୍ଷୟକୁମାର ରଚିତ ଚାରୁପାଠ, ଓ ସ୍ୱୟଂ ଦୀନବାବୁ ରଚିତ ତତ୍ତ୍ୱନିର୍ଣ୍ଣୟକୁ, ଅନୁବାଦିତ ଗ୍ରନ୍ଥ ବୋଲିବାରେ ଦୋଷ କି ଅଛି ? ଦୀନବାବୁଙ୍କର ଅନ୍ୟ ଯୁକ୍ତି ଏହି ଯେ ଚାରୁପାଠ, ଶକୁନ୍ତଳା, ସୀତାବନବାସ, କାଦମ୍ବରୀ, ରାମବିଳାସ ପ୍ରଭୃତି ପୁସ୍ତକମାନ ଅପେକ୍ଷା ପ୍ରବନ୍ଧମାଳା କୌଣସି ପ୍ରକାରରେ ଉତ୍କୃଷ୍ଟ ପୁସ୍ତକ ନୁହେ । ଆମ୍ଭେ ପ୍ରଶ୍ନ କରୁଁ ଦୀନବାବୁ ଉକ୍ତ ସମସ୍ତ ପୁସ୍ତକକୁ ସ୍ୱୟଂ ପଢି ଓ ପରସ୍ପରରେ ତୁଳନା କରି ନା କେବଳ ଅନ୍ୟ ମୁଖରୁ ଶୁଣି ଏହିପରି ଉପସଂହାରରେ ଉପସ୍ଥିତ ହୋଇଅଛନ୍ତି ? ଆମ୍ଭର ସନ୍ଦେହ ହୁଏ ଦୀନବାବୁ ସ୍ୱୟଂ ଉକ୍ତ ସମସ୍ତ ଓଡିୟା ପୁସ୍ତକକୁ ତନ୍ନ ତନ୍ନ କରି ପଢି ନାହାନ୍ତି । ଆମ୍ଭେ ଅସ୍ୱୀକାର କରୁ ନାହୁଁ, ଯେ ପ୍ରବନ୍ଧମାଳା

ଦୋଷଶୂନ୍ୟ ପୁସ୍ତକ ହୋଇ ନାହିଁ ତଥାପି ଏଥିର ଲିଖନରୀତି ଓ ସଂକଳନ ଯେଉଁ ବିଷୟବୈଚିତ୍ର୍ୟ ଓ ସୁରୁଚି ଓ ତେଜସ୍ୱିତା ଓ ଉଚ୍ଚନୀତିପ୍ରବଣତାର ଅନୁଗାମୀ ହୋଇ ସମ୍ପାଦିତ ହୋଇଅଛି, ସେସବୁ ବିବେଚନା କଲେ ଋଗୁପାଠ ଛଡା କାଦମ୍ବରୀ ପ୍ରଭୃତି ଅନ୍ୟାନ୍ୟ ଗ୍ରନ୍ଥ ସଙ୍ଗେ ଏହାକୁ ତୁଳନା କରିବା ଅନ୍ୟାୟ । ପୁନଶ୍ଚ ଅନୁବାଦିତ ଋଗୁପାଠର ଓଡିୟା ଭାଷା, ପ୍ରବନ୍ଧମାଳାର ଭାଷା ଅପେକ୍ଷା ଉତ୍କୃଷ୍ଟତର ନୁହେ । ସୁତରାଂ ବର୍ତ୍ତମାନ ପ୍ରବନ୍ଧମାଳାକୁ ସବୁଆଡୁ ବିଋର କଲେ ଓଡିୟା ସାହିତ୍ୟରେ ସର୍ବୋତ୍କୃଷ୍ଟ ସାହିତ୍ୟ ଗ୍ରନ୍ଥ ବୋଲିବାକୁ ହେବ । ଉକ୍ତ ଦୁଇ ଯୁକ୍ତି ଛଡା ଦୀନବାବୁ ଅନ୍ୟ ଦୁଇ ଅପୂର୍ବ ଯୁକ୍ତି ଦର୍ଶାଇଅଛନ୍ତି । ତନ୍ମଧ୍ୟରୁ ପ୍ରଥମ ଏହି ଯେ ଓଡିଶାର ଉଚ୍ଚଶ୍ରେଣୀର ପାଠୋପଯୋଗୀ ସାହିତ୍ୟ ଗ୍ରନ୍ଥ ସକାଶେ ଯାଚିତ ପୁରସ୍କାର ପାଇବା ପାଁଇ ଅନ୍ୟ କେହି ବ୍ୟକ୍ତି ମଧୁବାବୁଙ୍କର ପ୍ରତିଦ୍ୱନ୍ଦ୍ୱୀ ହୋଇ ନାହିଁ । ମାତ୍ର ଆମ୍ଭେ ପଋରୁଁ ସେହିତା କି ମଧୁବାବୁଙ୍କର ଦୋଷ ? ଦୀନବାବୁ ତର୍କକରନ୍ତି ଯେ ଖଣ୍ଡେ ଉତ୍କୃଷ୍ଟ ସାହିତ୍ୟଗ୍ରନ୍ଥ ଲେଖିବା ସକାଶେ ଛମାସସମୟ ସ୍ୱଳ୍ପସମୟ ଅଟେ ଓ ମଧୁବାବୁ ରାଧାନାଥ ବାବୁଙ୍କର ବନ୍ଧୁ ଥିବା ଯୋଗୁଁ କେହି ପ୍ରତିଯୋଗିତା କରିବାକୁ ଅଗ୍ରସର ହେଲେ ନାହିଁ । ଦୀନବାବୁଙ୍କର ଏପରି ତର୍କଦ୍ୱାରା ମଧୁବାବୁଙ୍କର ରଚିତ ପୁସ୍ତକ କୌଣସି ପ୍ରକାରେ କ୍ଷତିଗ୍ରସ୍ତ ହୋଇ ପାରୁନାହିଁ, ଯେହେତୁ ତଦ୍ୱାରା ଆଲୋଚିତ ଗ୍ରନ୍ଥ ଅକର୍ମଣ୍ୟ ଓ ଅନୁତ୍କୃଷ୍ଟ ହୋଇଅଛି ବୋଲି ପ୍ରକାଶ ପାଉ ନାହି ମଧ ଛମାସ, ଆମ୍ଭ ବିବେଚନାରେ ଖଣ୍ଡେ ଓଡ଼ିୟା ସାହିତ୍ୟ ଗ୍ରନ୍ଥ ସକାଶେ ଯଥେଷ୍ଟ ସମୟ ଅଟେ । ପୁଣି ରାଧାନାଥ ବାବୁଙ୍କ ଡରରେ ମଧୁବାବୁଙ୍କର କେହି ପ୍ରତିଦ୍ୱନ୍ଦ୍ୱୀ ନ ହେଲେ ଏହା, ଆମ୍ଭେ ଯେତେଦୂର ଜାଣୁ ସମ୍ପୂର୍ଣ୍ଣ ଅଳୀକ ଘଟନା । ଅଥବା ଦୀନବାବୁଙ୍କ ଲେଖିବା ଅନୁସାରେ ଏହା ଯଦି ସତ୍ୟ ହୁଏ ତାହା ହେଲେ ଏଦେଶୀୟ ଲୋକଙ୍କୁ ଅତି ଭୀରୁ ଓ କାପୁରୁଷ ବୋଲିବାକୁ ହେବ । ପୁଣି ସେଥି ସକାଶେ ରାଧାନାଥବାବୁ କି ମଧୁବାବୁ କୌଣସି ପ୍ରକାରେ ଦୋଷୀ ହୋଇ ନ ପାରନ୍ତି ମାତ୍ର ବାସ୍ତବିକ କେହି ପ୍ରତିଦ୍ୱନ୍ଦ୍ୱୀ ନ ହେବାର ଆମ୍ଭଙ୍କୁ ଏହିପରି ବିଶ୍ୱାସ ହୁଏ ଯେ ମୂଳରୁ ଓଡିଶାରେ ଲେଖାପଢାର ଖର୍ଚ୍ଚା ଅତି ଅଳ୍ପ, ଗ୍ରନ୍ଥ ଲିଖନ ସ୍ପୃହା ତହୁଁ ଊଣା । ପୁଣି ମଧୁବାବୁ ଲେଖୁଥବାରୁ ତାଙ୍କ ଯୋଗ୍ୟତାରେ ଓଡ଼ିଶା ସାହିତ୍ୟ ସମାଜର ଏପରି ବିଶ୍ୱାସ ଅଛି ଯେ ତାଙ୍କ ସଙ୍ଗେ ପ୍ରତିଯୋଗିତାଚରଣ କରିବା ଓଡ଼ିୟା ଗ୍ରନ୍ଥକାରମାନେ ଅନାବଶ୍ୟକ ବିବେଚନା କଲେ । ଅନ୍ୟତର ଯୁକ୍ତି ଶେଷୋକ୍ତ ଯୁକ୍ତି ଅପେକ୍ଷା ଅପୂର୍ବତର ଅଟେ ତାହା ଏହି ଯେ ମଧୁବାବୁ ରଚିତ ପ୍ରବନ୍ଧମାଳାରେ ତାଙ୍କ ନିଜ ରଚିତ ଓ ଇତିପୂର୍ବ ଦର୍ପଣରେ ପ୍ରକାଶିତ ଗୋଟିକେତେ ପ୍ରବନ୍ଧ ସେ ସନ୍ନିବେଶିତ କରିଅଛନ୍ତି ମଧୁବାବୁଙ୍କର ଏଥୁଁ ବଳି ଗୁରୁତର ପାପ ଆଉ କି ଅଛି କୌଣସି ବିଷୟର ପୁସ୍ତକ ରଚନା ସକାଶେ ପୁରସ୍କାର ଯାଚିତ ହେଲେ କେହି ସେବିଷୟର ଆପଣଦ୍ୱାରା ବିଂଶତି ବର୍ଷ ପୂର୍ବ ରଚିତ ଗ୍ରନ୍ଥକୁ ପୁରସ୍କାର ପାଇବା ଆକାଙ୍କ୍ଷାରେ ଉପସ୍ଥିତ କଲେ ଓ ତାଙ୍କ ଗ୍ରନ୍ଥ ଉତ୍କୃଷ୍ଟ ହେଲେ ତାଙ୍କୁ ଯେ ପୁରସ୍କାର ଦିଆ ଯାଇ ନ ପାରେ ଏହା କେଉଁ ଆଇନର କେଉଁ ଦଫାରେ ବା କେଉଁ ନୀତିଶାସ୍ତ୍ରରେ ମନା ଅଛି ଜାଣିବାକୁ ଔତ୍ସୁକ୍ୟ ରହିଲା ପୁଣି ଦୀନବାବୁ ଯେ ଲେଖି ଅଛନ୍ତି ପ୍ରବନ୍ଧମାଳାର ଦ୍ୱିତୀୟ ଅଧ୍ୟାୟର ଅଧିକାଂଶ ଉତ୍କଳଦର୍ପଣରୁ ଗୃହୀତ, ଏହା ସମ୍ପୂର୍ଣ୍ଣ ଅଯଥାର୍ଥ । ସେ ଅଧ୍ୟାୟରେ ଆଠୋଟି ପ୍ରବନ୍ଧ ମଧ୍ୟରୁ ଗୋଟିଏ ମାତ୍ର ଦର୍ପଣରୁ ନୀତ ହୋଇଅଛି, ପ୍ରଥମ ଅଧ୍ୟାୟରେ ମଧ ଅଧିକାଂଶ ନୂତନ ରଚିତ । ସୁତରାଂ ଦୀନୁବାବୁଙ୍କ ଯୁକ୍ତି ସବୁକୁ ତନ୍ନ ତନ୍ନ ପରୀକ୍ଷା କରି ଦେଖିଲେ ସେମାନେ ଛିଡା ହୋଇ ରହି ପାରୁ ନାହିଁ । ଆଶା କରେଁ ଦୀନବାବୁ ବର୍ତ୍ତମାନ ନିଜର ଭ୍ରମ ବୁଝିପାରିବେ । ଏହି ସ୍ଥଳେ ମଧ ସ୍ୱୀକାର କରିବାର ଆବଶ୍ୟକ ଯେ ଖଣ୍ଡିଏ ଉତ୍କଳ ସାହିତ୍ୟ ଗ୍ରନ୍ଥ ସକାଶେ ପୁରସ୍କାର ଯାଚିବା ବିଷୟରେ ଦୀନବାବୁ ଯାହା ଲେଖି ଅଛନ୍ତି ତାହା ଖଣ୍ଡନର ବିଶେଷ ଯୁକ୍ତି ଦେଖୁ ନାହୁଁ । ପୁରସ୍କାର ନ ଯାଚି କେବଳ ଉଚ୍ଚ ଶ୍ରେଣୀରେ ପୁସ୍ତକ ଚଳାଇବାର ଆଶା ଦେଇଥିଲେ ପ୍ରବନ୍ଧମାଳା ପରି ପୁସ୍ତକ ଯେ ଶୀଘ୍ର ନ ହେଉ ବିଳମ୍ବରେ ବାହାରି ପାରିଥାନ୍ତା । ଏହା ଆମ୍ଭେ ବର୍ତ୍ତମାନ ଅବିଶ୍ୱାସ କରି ନ ପାରୁଁ ।

ବୈଜ୍ଞାନିକଶାସ୍ତ୍ରମାନଙ୍କ ସମ୍ବନ୍ଧରେ ଦୀନବାବୁ ଯେଉଁ ଯୁକ୍ତିମାନ ଦେଖାଇ ଅଛନ୍ତି ତାହା ଅଯଥାର୍ଥ ବୋଲି ବୋଧ ହେଉନାହିଁ ଏବଂ ଆପଣ ମଧ ଉକ୍ତ ଯୁକ୍ତିଚୟର କାର୍ଯ୍ୟକାରିତା ବିଷୟକୁ ଅନୁମୋଦନ କରିଅଛନ୍ତି, ମାତ୍ର ଦୀନବାବୁ ମୂଳଦୋଷ ଉପରେ ବିଶେଷ ଯୁକ୍ତି ଦର୍ଶାଇ ନାହାନ୍ତି । ଆଶା କରେଁ ଦୀନବାବୁ ଓ ଆପଣ ଓ ସର୍ବସାଧାରଣ ଏହିମତରେ ଏକମତ ହେବେ ଯେ ବୈଜ୍ଞାନିକ ଶାସ୍ତ୍ରମାନଙ୍କ ପାଁଇ ବର୍ତ୍ତମାନ ଦେଶର ଗୁଡିଏ ଟଙ୍କା ବ୍ୟୟ

କରାଇବା ରାଧାନାଥ ବାବୁଙ୍କ ପକ୍ଷରେ ଶୋଭନୀୟ ହୋଇ ନାହିଁ ବର୍ତ୍ତମାନ ଓଡିଶାରେ ଏହି ସୁମହତ୍ ଶାସ୍ତ୍ରମାନଙ୍କ ଅଭାବରୁ ଶିକ୍ଷାର ଅଣୁମାତ୍ର କ୍ଷତି ଘଟିବାର ଜଣା ଯାଉ ନାହିଁ । ତ୍ରିକୋଣମିତି ଓ ବୀଜଗଣିତ ଓ ଉଦ୍ଭିଦବିଦ୍ୟା ଓ କ୍ଷେତ୍ରତତ୍ତ୍ୱର ଶେଷ କେଉ ଅଧ୍ୟାୟ (ଯେହେତୁ ପ୍ରଥମ ତିନି କି ଚାରିଅଧ୍ୟାୟ ଓଡିୟାରେ ସଂକଳିତ ହୋଇଅଛି) ଏହି କେତେକଖଣ୍ଡ ପୁସ୍ତକ ଆମ୍ଭେ ପଚାରୁଁ ବର୍ତ୍ତମାନ ପ୍ରସ୍ତୁତ ହେଲେ କି ବିଶେଷ ଲାଭ ହେବ ? ଏ ସବୁ ପାଠକ ଓଡ଼ିଶାରେ ଆଜି କାଲି କେତେ ଜଣ ? ଯେଉଁ ଅଳ୍ପ ସଂଖ୍ୟକ ଲୋକଙ୍କର ସ୍ପୃହା ହୋଇଅଛି ଅବା ହେଉଅଛି ଅବା ହେବ (ମାତ୍ର କାହାରିତ ଦେଖା ନ ଯାଏ) ସେମାନେ ଅନାୟାସରେ ଇଂରାଜୀ ଓ ବଙ୍ଗଳାଗ୍ରନ୍ଥ ସାହାଯ୍ୟରେ ପଢି ଅଛନ୍ତି, ବା ପଢୁ ଅଛନ୍ତି ବା ପଢିବେ ଯଦି ବୋଲ ଯେ ନର୍ମ୍ୟାଲ ସ୍କୁଲରେ ପଣ୍ଡିତମାନେ ପଢ଼ି ପଣ୍ଡିତପଦ ଯୋଗ୍ୟ ହେବେ ତେବେ ପଚାରୁଁ ନର୍ମ୍ୟାଲସ୍କୁଲରେ ବା କେତେଜଣ ପଣ୍ଡିତ ଏହି ଶାସ୍ତ୍ରମାନ ପାଠ କରିବେ ? ବୋଧହୁଏ ୨୦/୨୫ଜଣରୁ ଅଧିକ ନୁହେ । ଏହି କେତେକ ଜଣଙ୍କ ପାଁଇକି ଏତେଟଙ୍କା ବ୍ୟୟ କରାଇବାର ଉଚିତ । ସେଥିରେ ପୁଣି ଆବଶ୍ୟକୀୟ ପଣ୍ଡିତଙ୍କ ଅପେକ୍ଷା ଉତ୍ତୀର୍ଣ୍ଣ ପଣ୍ଡିତଙ୍କ ସଂଖ୍ୟା ଅଧିକ ହୋଇଅଛି । ନର୍ମ୍ୟାଲସ୍କୁଲ ରହେ କି ନ ରହେ ଏ ବିଷୟରେ ମଧ ଗବର୍ଣ୍ଣମେଣ୍ଟଙ୍କର ନାନାସମୟରେ ନାନାମତ ଦେଖାଯାଏ ସୁତରାଂ ଏହି ଗ୍ରନ୍ଥମାନଙ୍କ ପାଁଇ ଅନର୍ଥକ ଟଙ୍କା ନଷ୍ଟ ନ କଲେ ରାଧାନାଥବାବୁ ପ୍ରଶଂସାର ଯୋଗ୍ୟ ହେବେ । ଏଣୁକରି ନିବେଦନ କରୁଁ ରାଧାନାଥ ବାବୁ ଉକ୍ତ ପୁସ୍ତକ ସବୁ ସକାଶେ ବୃଥା ବ୍ୟୟ କରାଇବାରୁ କ୍ଷାନ୍ତ ହେଉନ୍ତୁ ।

ଆପଣଙ୍କର ଅନୁଗତ

ହକ୍‌କଥା

### *ଅତିରିକ୍ତ, ୬/୧୧/୧୮୮୦*

## ଗଞ୍ଜାମ ।

ପୂର୍ବେ ଗଞ୍ଜାମ ଓଡିଶାର ଏକଅଂଶ ଥିଲା ଓ ରଷିକୁଲ୍ୟାନଦୀ କି ଯାହା ଗଞ୍ଜାମର ନିକଟରେ ଅଛି ଓଡିଶାର ଦକ୍ଷିଣସୀମା ଧାର୍ଯ୍ୟ ହୋଇଥିଲା । ବର୍ତ୍ତମାନ ସୁଦ୍ଧା ଗଞ୍ଜାମ କାହିଁକି ତହିଁର ଦଶକ୍ରୋଶ ଦକ୍ଷିଣ ବ୍ରହ୍ମପୁର ପର୍ଯ୍ୟନ୍ତ ବିସ୍ତର ଓଡିଆ ଲୋକେ ବାସ କରୁଅଛନ୍ତି ଏବଂ ଓଡିଆ ଭାଷାରେ କଥାବାର୍ତ୍ତା କରନ୍ତି । ଯେମନ୍ତ ଓଡିଶାର ଉତ୍ତରସୀମା ବାଲେଶ୍ୱରଠାରୁ ବଙ୍ଗଳାର ଭାଗ କ୍ରମଶଃ ବୃଦ୍ଧି ହୋଇଅଛି ତଦ୍ରୂପ ଦକ୍ଷିଣରେ ବ୍ରହ୍ମପୁରଠାରୁ ତୈଲଙ୍ଗର ଭାଗ ବୃଦ୍ଧି ହୋଇଅଛି । ବାସ୍ତବରେ ଓଡିଶାର ମଧ୍ୟସ୍ଥଳ ଖୋରଧାରୁ ଉତ୍ତରକୁ ବାଲେଶ୍ୱର ଯେତେ, ଦକ୍ଷିଣକୁ ବ୍ରହ୍ମପୁର ପ୍ରାୟ ତେତିକି ହେବ । ଗଞ୍ଜାମ ପ୍ରକୃତରେ ଓଡିଶାର ଏକଅଂଶ ହେଲେହେଁ ତାହା ଭିନ୍ନ ଅର୍ଥାତ୍ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କର ଅଧୀନ ହେବାରୁ ଏ ଦୁଇଅଂଶ ମଧରେ କୌଣସି ପ୍ରକାର ସହାନୁଭୂତି ନାହିଁ ଓ ଏକ ଆରେକଠାରେ ସମ୍ପୂର୍ଣ୍ଣରୂପେ ଅପରିଚିତ ।

ବର୍ତ୍ତମାନ ଯାହାକୁ ଗଞ୍ଜାମଜିଲା ବୋଲାଯାଏ ତାହା ଉତ୍ତର ଦକ୍ଷିଣରେ ଖୋରଧାର ଦକ୍ଷିଣସୀମା ଛତ୍ରଗଡଘାଟିଠାରୁ ଆରମ୍ଭ ହୋଇ ବ୍ରହ୍ମପୁରର ଆହୁରି ଦକ୍ଷିଣ ସିକାକୋଲ ପର୍ଯ୍ୟନ୍ତ ବିସ୍ତୃତ ଆନ୍ଧ୍ର ପ୍ରଦେଶର ଗୋଟିଏ କମିଶ୍ନରୀବିଭାଗର ତୁଲ୍ୟ ମାତ୍ର ମାନ୍ଦ୍ରାଜର ଶାସନପ୍ରଣାଳୀ ସ୍ୱତନ୍ତ୍ର ସେଠାରେ କମିଶ୍ନର ବୋଲି କେହି କର୍ମଚାରୀ ନାହିଁ । ଗଞ୍ଜାମର କଲେକ୍ଟରଙ୍କୁ କମିଶ୍ନର ବୋଲାଯାଇ ପାରେ ତାହାଙ୍କ ହାତରେ ଗଡ଼ଜାତର ଭାର ଅଛି ଏବଂ ତାହାଙ୍କ ଅଧୀନରେ ଅଶିଷ୍ଟଣ୍ଟ କଲେକ୍ଟରମାନେ ଅଛନ୍ତି ସେମାନେ ଏଠାର କଲେକ୍ଟରଙ୍କ ତୁଲ୍ୟ ଅଟନ୍ତି । ଏମାନଙ୍କ ବେତନରେ ମଧ ତାରତମ୍ୟ ଅଛି । ସ୍ଥୂଳକଥା ଏହି ଯେ ମାନ୍ଦ୍ରାଜପ୍ରଦେଶ ବଙ୍ଗପ୍ରଦେଶ ପରି ଉନ୍ନତ ଅବସ୍ଥାକୁ ଲଭି ନ ଥିବାରୁ ସେଠାର ସବୁ ବନ୍ଦୋବସ୍ତ ବଙ୍ଗଳାଠାରୁ ନ୍ୟୂନ ଅଟଇ ଏବଂ ଦୁଃଖର ବିଷୟ ଯେ ସେହି ପରିମାଣରେ କାର୍ଯ୍ୟ ମଧ ନିକୃଷ୍ଟ ହେଉଅଛି ତହିଁର ଗୋଟିଏ ଉଦାହରଣ ଏଠାରେ ଦେଖାଇବୁଁ । ମେଦିନୀପୁରଠାରୁ କଟକ ବାଟେ ଯେଉଁ ସଡକ ମାନ୍ଦ୍ରାଜକୁ ଯାଉ ଅଛି ତାହାର ନାମ ମାନ୍ଦ୍ରାଜ ସଡକ ମେଦିନୀ ପୁରଠାରୁ ଉପର ଲିଖିତ ଛତ୍ରଗଡ ଘାଟି ପର୍ଯ୍ୟନ୍ତ ସଡକଟି ବଙ୍ଗଳା ଗବର୍ଣ୍ଣମେଣ୍ଟର ଅଧୀନ ଏଥିରେ ପ୍ରତି ମା ୧୦/୧୨ ଜଲରେ ଗୋଟିଏ ଲେଖାଁଏ ଡାକବଙ୍ଗଳା ଅଛି ଏବଂ ସଡକ ବାରିକମାଷ୍ଟରୀ ମହକୁମାରୁ ଏମନ୍ତ ସୁନ୍ଦର ପ୍ରସ୍ତୁତ ଓ ଯତ୍ନରେ ରକ୍ଷିତ

ହୋଇଅଛି ଯେ ପଥିକଙ୍କର କୌଣସି ପ୍ରକାର କ୍ଲେଶ ନାହିଁ । କିନ୍ତୁ ସେହି ଘାଟିର ଦକ୍ଷିଣପାଖ ମାନ୍ଦ୍ରାଜ ହତାରେ ପଡିଅଛି ଦୁଇପାଖ ତୁଳନା କଲେ ଠିକ ସ୍ୱର୍ଗ ନରକ ପ୍ରଭେଦ ସଡକରେ ଖାଲ ଢିପର ସୀମା ନାହିଁ ଶଗଡ ଚଳିବା ଅତ୍ୟନ୍ତ କଠିନ ଏପରି ପ୍ରଧାନ ସଡକଟି ବାରିକମାଷ୍ଟରୀ ଜିମା ନ ହୋଇ ଲୋକଲଫଣ୍ଡ କର୍ମଚାରିଙ୍କ ହାତରେ ରହିଅଛି ସୁତରାଂ ତାହା ସର୍ବାଙ୍ଗ ସୁନ୍ଦର ହୋଇ ନ ପାରେ । କେବଳ ନଗରମାନଙ୍କ ପାଖରେ ଟିକିଏ ଚିକ୍କଣ ଦେଖା ଯାଏ ଉକ୍ତ ଘାଟିଠାରୁ ବ୍ରହ୍ମପୁର ମା ୩୬ଇଲ ବାଟ ଏଥି ମଧ୍ୟରେ କେବଳ ଗଞ୍ଜାମରେ ଗୋଟିଏ ଡାକବଙ୍ଗଳା ଅଛି ସେଥିରେ ପୁଣି ପେଣ୍ଟଲୁନଧାରୀ ଭିନ୍ନ କଳାଲୋକ କେହି ରହିବାର ବିଧି ନାହିଁ । ଏପରି ବାଟରେ ଭଦ୍ର ଲୋକଙ୍କ ଯିବା ଆସିବା ଯେ ଅତ୍ୟନ୍ତ କଠିନ ଏହା ବୋଲିବା ବାହୁଲ୍ୟ ଅଥଚ ଏହି ସଡକରେ ତିନି ସ୍ଥାନରେ ଟୋଲଗେଟ ଅର୍ଥାତ୍ ମାସୁଲ ଆଦାୟ କରିବାର ଘାଟ ବସିଅଛି ଯେ ପ୍ରତ୍ୟେକ ଗାଡି ଘୋଡା ହାତୀ ପ୍ରଭୃତିଠାରୁ ସଡକ ରକ୍ଷା ସକାଶେ ମାସୁଲ ନିଆ ଯାଏ ଓ ତହିଁରେ ଅନେକ ଟଙ୍କା ଆଦାୟ ହୁଅଇ । ଆମ୍ଭମାନଙ୍କ ବିବେଚନାରେ ଏ ସଡକକୁ ଇମ୍ପିରିୟଲ ରୋଡ କରି ଏଥିର ଭାର ବାରିକମାଷ୍ଟରିଙ୍କ ଉପରେ ଦେବାର ଉଚିତ ଥିଲା ତାହା ହେଲେ ଏ ପ୍ରଧାନ ସଡକଟି ଆଶାନୁରୂପ କାର୍ଯ୍ୟକର ହେବ । କ୍ରମଶଃ ।

*ଭା୧୫ଗ, ସଂ୪୫ଖ୍ୟା, ୧୩/୧୧/୧୮୮୦*

## ପ୍ରେରିତ ପତ୍ର ।

## [ପୁସ୍ତକକୁ ନେଇ ସମାଲୋଚନା]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସଂପାଦକ....ମହାଶୟ ସମୀପେଷୁ ।

ମହାଶୟ !

ଗତ ତା୧୧ ରିଖ ନବେମ୍ବର ମାସର ସମ୍ବାଦବାହିକା ସମ୍ପାଦକ ମହାଶୟ ଆମ୍ଭଙ୍କୁ ବିହିତ ଆକ୍ରମଣ କରିଅଛନ୍ତି ଦେଖି ତାଙ୍କ ସଂଶୟ ବିଦୂରିତ ନିମିତ୍ତ ଆମ୍ଭେ ବୋଲିବାକୁ ବାଧ ହେଲୁଁକି ଆମ୍ଭେ ପୁରସ୍କାର ପ୍ରଦତ୍ତ ଅନୁବାଦିତ ଅଙ୍କପୁସ୍ତକମାନଙ୍କ ପାଇଁ ଯାହା ଲେଖି ଅଛୁଁ ତାହାର ଭାବୀ କାର୍ଯ୍ୟବିବରଣ ଆମ୍ଭେ ସ୍ୱୟଂ ଜଏଣ୍ଟଇନ୍ସ୍ପେକ୍ଟର ବାବୁ ରାଧାନାଥ ରାୟ ମହାଶୟଙ୍କଠାରୁ ଶୁଣି ତଦପକ୍ଷରେ ଆପତ୍ତି ପ୍ରକାଶ କରିଅଛୁଁ ଅର୍ଥାତ୍ ଦିନେ ଆମ୍ଭେ ରାଧାନାଥ ବାବୁଙ୍କୁ ଗଣିତ ଓ ବୁଟାନିକ ପୁସ୍ତକମାନଙ୍କ ଅନୁବାଦ ନିମନ୍ତେ ସାଧାରଣଭାବରେ ବିଜ୍ଞାପନ ଦେବା ନିମନ୍ତେ କହିଥିଲୁଁ ସେ କହିଥିଲେ କି ଆମ୍ଭେ ଗୋଟିଏ କମିଟୀ ଡକାଇ ସେମାନଙ୍କ ହସ୍ତରେ ପୁସ୍ତକ ଅନୁବାଦର ଯୋଗ୍ୟଲୋକ ନିର୍ବାଚନ କରିବାର ଭାର ଦେବୁଁ ସେମାନଙ୍କ ନିକଟରେ ଯେଉଁମାନେ ପୁସ୍ତକ ଲେଖିବାର ଯୋଗ୍ୟ ବୋଲି ଅବଧାରିତ ହେବେ କେବଳ ସେହିମାନେହେଁ ପୁସ୍ତକ ଅନୁବାଦର ଆଦେଶ ପ୍ରାପ୍ତ ହେବେ କମିଟିସନରେ ଗୋଳମାଳ ହେବ, ଇତ୍ୟାଦି କହିବାରେ ଆମ୍ଭେ କହିଲୁଁ ଇତିମଧ୍ୟରେ (ଜଣେ ବଙ୍ଗାଳିଙ୍କର ନାମ ଉଲ୍ଲେଖ କରି) ସେ ବୁଟାନିକ ପୁସ୍ତକ ଲେଖି ରଖି ଅଛନ୍ତି, ଏହା ଶୁଣିକରି ରାଧାନାଥବାବୁ କହିଲେକି ବୁଟାନିକ ପୁସ୍ତକ ତାଙ୍କୁ ( ସେହି ବଙ୍ଗାଳିଙ୍କୁ) ଏବଂ ଟିଗ୍ନୋମେଟରୀ (ଆଉ ଜଣେ କଲେଜର ବଙ୍ଗାଳୀର ନାମ ଉଲ୍ଲେଖ କରି କହିଲେ ଆମ୍ଭେ) ତାହାଙ୍କୁ ଅନୁବାଦ କରିବାକୁ ଦେବା ପାଇଁ ଇଚ୍ଛା ରଖିଅଛୁଁ । ଏକଥା ଶୁଣି ଆମ୍ଭର ଜାଣିବାର ଆହୁରି କି ଅବଶିଷ୍ଟ ରହିଲା ? ସଭା ସଂସ୍ଥାପନର ପୂର୍ବରୁ ଜଏଣ୍ଟ ଇନ୍ସ୍ପେକ୍ଟରଙ୍କ ନିକଟରେ ପୁସ୍ତକ ଅନୁବାଦକଙ୍କର ଏକପ୍ରକାର ଅବଧାରିତ ହୋଇ ରହି ଅଛି, ଏବଂ ସେମାନେ ଇତିମଧ୍ୟରେ ପୁସ୍ତକ ଅନୁବାଦ ଆରମ୍ଭ କରି ଅଛନ୍ତି, ତେତେବେଳେ ବଳିଦାନର ଉତ୍ତାରୁ ବଳିଦାନର କର୍ତ୍ତବ୍ୟତା ଘେନି ଗୋଳମାଳ ନ କରି ପୂର୍ବରେ ସେହି ବିଷୟ ଘେନି ନ୍ୟାୟସଂଗତ ଆନ୍ଦୋଳନ କରିବା କି ଉଚିତ ହେଉ ନାହିଁ ? ପ୍ରବନ୍ଧମାଳା ଉଦାହରଣ ସ୍ଥଳ ମାତ୍ର ସେ ପକ୍ଷରେ ବିଜ୍ଞାପନ ଦେବା ସମୟରେ କେତେ ଗୋଳମାଳ ହୋଇଅଛି, ତାହା ଗତବର୍ଷ ଉତ୍କଳଦୀପିକାରେ ଯଥେଷ୍ଟ ଆପତ୍ତି ସ୍ୱୟଂ ସମ୍ପାଦକ ମହାଶୟ କରିଥିଲେ; ବିଜ୍ଞାପନ କେତେଦୂର ବିଶୁଦ୍ଧ ହୋଇଥିଲା ? ସେପରି ଏଥର ନ ହୁଏ, ଏବଂ କମିଟୀ ଯଦି ସ୍ଥାପିତ ହୁଏ ତାହା ହେଲେ ବାଲେଶ୍ୱରର ଏବଂ ପୁରୀର ଲୋକ ସମାନାଂଶରେ ମେମ୍ବର ହେବେ , ଆମ୍ଭେ ଏ କଥା ଶୁଦ୍ଧା ବୋଲିଥିଲୁଁ ମାତ୍ର ଆମ୍ଭେ ଯେତେବେଳେ ଦେଖିଲୁଁ ଓଡ଼ିୟାମାନେ ନିତାନ୍ତ ବଞ୍ଚିତ ହେବା ବଙ୍ଗାଳିମାନେ ପୁରସ୍କାରର ଟଙ୍କା ଅଧିକାର କରିବାର ସମ୍ଭବ ତେତେବେଳେ ଆପତ୍ତି କରିବା ଆମ୍ଭର କି ଅନୁଚିତ ଅବା କୁସଂସ୍କାରର ପ୍ରବର୍ତ୍ତନା ହୋଇଅଛି ? ସମ୍ଭ୍ରାନ୍ତ ସମ୍ବାଦବାହିକା ସମ୍ପାଦକ ମହାଶୟ ତାହା ବୋଲି ଦେଲେ ବାଧିତ ହେବୁଁ ।

ଯାହା ହେଉ ସମ୍ବାଦବାହିକା ସମ୍ପାଦକ ମହାଶୟ ଶିକ୍ଷାବିଭାଗର କୌଣସି ପ୍ରକାର ସମ୍ବାଦ ରଖନ୍ତି ନାହିଁ, ଏହା ସାଧାରଣ ଦୁଃଖର ବିଷୟ ନୁହେ । ସମ୍ପାଦକ ମହାଶୟ ଲେଖି ଅଛନ୍ତି ଯେ ଗବର୍ଣ୍ଣମେଣ୍ଟ ପୁସ୍ତକ ନିମନ୍ତେ କେତେଗୁଡିଏ ଟଙ୍କା ପୁରସ୍କାର ସ୍ୱରୂପ ପ୍ରଦାନ କରିଥିଲେ ତହିଁ ମଧ୍ୟରୁ ରାଧାନାଥ ବାବୁ ଆବଶ୍ୟକୀୟ ସାହିତ୍ୟ ନିମିତ୍ତ କେତେ ଟଙ୍କା ପ୍ରଦାନ କରି ବାକୀ ଟଙ୍କା ଗଣିତାଦି ପୁସ୍ତକ ନିମନ୍ତେ ରଖି ଅଛନ୍ତି ଏହି ଭାବର ସମାଚାର ବାହିକା ସମ୍ପାଦକ ମହାଶୟ କେଉଁଠାରୁ ପ୍ରାପ୍ତ ହୋଇଥିଲେ ? ସାହିତ୍ୟ ଏବଂ କୃଷିବିଷୟକ ପୁସ୍ତକ ନିମନ୍ତେ ସରକାରରୁ ପୃଥକ୍ ପୃଥକ୍ ପୁରସ୍କାର ପ୍ରଦତ୍ତ ହୋଇ ଆସୁଅଛି, ସମ୍ପାଦକ ମହାଶୟ ଗଣିତ ପ୍ରଭୃତିଙ୍କର ଟଙ୍କା ଅତୀତ ପ୍ରଦତ୍ତ ଟଙ୍କାର ସଙ୍ଗରେ ଯୋଗ କରିଅଛନ୍ତି, ସେ ସମାଚାର ସେ କେଉଁଠାରୁ ପ୍ରାପ୍ତ ହେଲେ ? ଆପଣାର ମନଗଠିତ ହିସାବ ଦେବା ସମ୍ପାଦକ ମହାଶୟଙ୍କ ସଦୃଶ ବିଜ୍ଞ ଲୋକର ଉଚିତ କାର୍ଯ୍ୟ ହୋଇ ନାହିଁ; ଯାହା ହେଉ ଆମ୍ଭର ଅନୁରୋଧ ଏହି କି ସ୍ଥାନୀୟ ସମ୍ବାଦ ସକଳ ଠିକରୂପରେ ନେଇ ତହିଁ ଉତ୍ତାରୁ ପ୍ରକାଶ କଲେ ଭଲ ହୁଏ ।

ଆମ୍ଭେ ଓଡ଼ିଆଭାଷାର ଅନୁବାଦିତ ପୁସ୍ତକମାନ ଅନୁବାଦ ସମ୍ପର୍କରେ ନ୍ୟାୟସଙ୍ଗତ ଆପତ୍ତି କରିଅଛୁଁ କି ନୁହେ, ତାହା ନ୍ୟାୟବାନ୍ ଗବର୍ଣ୍ଣମେଣ୍ଟଙ୍କର ଏବଂ ସ୍ଥାନୀୟ ଶ୍ରୀଯୁକ୍ତ କମିଶନର ସାହେବ ମହୋଦୟଙ୍କ ଦୃଷ୍ଟି କାରଣ ପ୍ରେରଣ କରିବୁଁ, ଯଦ୍ୟପି ପ୍ରବନ୍ଧମାଳା ସାଧାରଣ ଟଙ୍କାରେ ହୋଇ ନ ଥାନ୍ତା ତାହା ହେଲେ କୌଣସି କଥା ଆମ୍ଭର ବୋଲିବାର ଅଧିକାର ନ ଥିଲା ଆଉ ସ୍ଥାନୀୟ ସାହେବମାନଙ୍କର ଯେସମସ୍ତ ତ୍ରୁଟି ଘେନି ଆମ୍ଭେମାନେ ଗଭର୍ଣ୍ଣମେଣ୍ଟଙ୍କର କର୍ଣ୍ଣଗୋଚର କରାଇଥାଉଁ ଇଏଣ୍ଟଇନ୍ସ୍ପେକ୍ଟର ରାଧାନାଥ ବାବୁଙ୍କର ସେହି ପରି ତ୍ରୁଟି ଦେଖି ଆମ୍ଭେମାନେ ତାହାର ପ୍ରକାଶ୍ୟ ପ୍ରତିବାଦ ନ କରିବାର କୌଣସି କାରଣ ଦେଖୁଁ ନାହୁଁ । ଯେଉଁ ବନ୍ଧୁତା ପକ୍ଷପାତରେ ଘେନିଯାଏ, ଆମ୍ଭେ ସେ ବନ୍ଧୁତାକୁ ନୀଚତା କହୁଁ । ସେପରି ବନ୍ଧୁତାକୁ ନରକଗମନର ଏକମାତ୍ର ସୋପାନ ବୋଲି ବିଶ୍ୱାସ କରୁଁ; ସାହେବମାନଙ୍କର ଦୋଷ ଦେଖି ଚିତ୍କାର କରିବୁଁ, କିନ୍ତୁ ସ୍ୱଦେଶୀୟ ଅବା ସ୍ୱଜାତୀୟ ଲୋକଙ୍କ ମଧ୍ୟରେ ସେହି ପରି ଅପରାଧର ସୂତ୍ରପାତ ଦେଖି ତାହା ଗୋପନ ରଖିବା ନିମନ୍ତେ ଯତ୍ନ କରିବୁଁ, ଦୟାମୟ ଈଶ୍ୱର ସେପରି ନରକମୟ ଭାବ କେବେହେଁ ଏହି କ୍ଷୁଦ୍ର ହୃଦୟରେ ସ୍ଥାନ ପ୍ରାପ୍ତିର କାରଣ ନ ରଖନ୍ତୁ ତାଙ୍କଠାରେ ଆମ୍ଭର ଏହି ଆନ୍ତରିକ ପ୍ରାର୍ଥନାରେ ଉପସଂହାର । ବକ୍ତବ୍ୟ ଏହି କି ଯେ ବୁଦ୍ଧି,ବ୍ୟକ୍ତିଗତ ପୃଥିବୀର ବନ୍ଧୁତା ସ୍ଥିରତର ରଖିବାର ଏକମାତ୍ର ନେତା, ଲାଭ ଲୋକସାନର ଦିଗରେ ବୁଦ୍ଧିର ଦୃଷ୍ଟି ଥାଏ , କିନ୍ତୁ କର୍ତ୍ତବ୍ୟଜ୍ଞାନର ନିକଟରେ ବ୍ୟକ୍ତିଗତ ପୃଥିବୀର ବନ୍ଧୁତାର କିଛିମାତ୍ର ସ୍ଥାୟିତ୍ୱ ନାହିଁ, ଲାଭ ଲୋକସାନର ଦିଗରେ କର୍ତ୍ତବ୍ୟଜ୍ଞାନର ଅନେକ ସମୟରେ କିଛିମାତ୍ର ଦୃଷ୍ଟି ରହେ ନାହିଁ । ସମ୍ପାଦକ ମହାଶୟ ଏହା ଜାଣନ୍ତୁ ଏହିଟି ଆମ୍ଭର ନିବେଦନ । ଇତି ।

୨୫।୧୧।୮୦ — ବଶମ୍ବଦ

କଟକ — ଶ୍ରୀ ଦୀନନାଥ ବନ୍ଦ୍ୟୋପାଧ୍ୟାୟ ।

*ଭା।୧୫ଗ,ସଂ୪୮ଖ୍ୟା, ୪।୧୨।୧୮୮୦*

## ପ୍ରବନ୍ଧମାଳା ଏବଂ ଗବର୍ଣ୍ଣମେଣ୍ଟ ପାରିତୋଷିକ ।

ଏ ବିଷୟରେ ଆମ୍ଭେମାନେ ଯେତେଗୁଡିଏ ପତ୍ର ପ୍ରକାଶ କରିଅଛୁଁ ଏବଂ ଓଡ଼ିଶାର ଅନ୍ୟାନ୍ୟ ସଂବାଦପତ୍ରମାନଙ୍କରେ ଯେତେ ବାହାରିଅଛି ତହିଁରୁ ପାଠକମାନେ ଆପଣା ଆପଣା ମତ ସ୍ଥିର କରିଥିବେ । ଖଣ୍ଡିଏ ସାହିତ୍ୟ ପୁସ୍ତକ ନିମିତ୍ତ ଗବର୍ଣ୍ଣମେଣ୍ଟ ପାରିତୋଷିକ ଦେବାକୁ ପ୍ରସ୍ତୁତ ଥିବାର ବିଜ୍ଞାପନ ଦେଖି ଆମ୍ଭେମାନେ ଗତବର୍ଷ ସେପ୍ଟେମ୍ବର ମାସ ତା୨୦ ରିଖର ପତ୍ରିକାରେ କହିଥିଲୁଁ ଯେ ପାରିତୋଷିକ ଯାଚିଲେ ସୁଦ୍ଧା ଏକାବେଳକେ ଭଲ ସାହିତ୍ୟ ପୁସ୍ତକ ବାହାରିବା ସମ୍ଭବ ନୁହଇ ଏବଂ କିପ୍ରକାର ସାହିତ୍ୟ ପୁସ୍ତକ ହେଲେ ପୁରସ୍କାର ଯୋଗ୍ୟ ହେବ ତହିଁର ବିସ୍ତାରିତ ବିବରଣ ବିଜ୍ଞାପନରେ ଲେଖିବାର ଉଚିତ ଥିଲା । ପ୍ରବନ୍ଧମାଳା ଦେଖି ଆମ୍ଭମାନଙ୍କର ଉପରଲିଖିତ ମତ ପରିବର୍ତ୍ତିତ ହୋଇ ନାହିଁ, କାରଣ ଆମ୍ଭେମାନେ ବାଧ ହୋଇ କହୁଅଛୁଁ ଯେ ଏହାର ଭାଷା ସମ୍ପୂର୍ଣ୍ଣ ଓଡ଼ିଆ ନୁହଇ । ଅନ୍ୟାନ୍ୟ ନବଜାତ ଉତ୍କଳପୁସ୍ତକ ପ୍ରାୟ ଏଥିରେ ବଙ୍ଗଭାଷାର ରୀତି ଅନେକ ରହିଅଛି । 'କରିବାକୁ ଲାଗିଲେ'

'ଦ୍ୱାର ଦେଇ' 'ହେବାକୁ ଦେବ ନାହିଁ' ଇତ୍ୟାଦି ବହୁସ୍ଥଳରେ ଲକ୍ଷିତ ହୁଅଇ । କୌଣସି କୌଣସି ସ୍ଥଳରେ କ୍ରିୟାମାନ ଅନ୍ୟପ୍ରକାରରେ ବଙ୍ଗଳା ପରି ନିୟୋଜିତ ହୋଇଅଛି ଯଥା 'ଯେଉଁ ସମୟରେ କୃଷିକାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବା ତାହାଙ୍କର ଉଚିତ ଥିଲା ସେତେବେଳେ ସେ ......... ଅଧ୍ୟୟନରେ ନିଯୁକ୍ତ ଥାନ୍ତି ।' ଏହିପରି ଆଉ କେତେ ବଙ୍ଗଳା ରୀତି ଏଥିରେ ଲକ୍ଷିତ ହୁଅଇ ଏବଂ ଏପରି ଦୋଷମାନ ଥିବାରୁ ଆମ୍ଭେମାନେ ଏହାକୁ ଶୁଦ୍ଧ ଉତ୍କଳ ସାହିତ୍ୟଗ୍ରନ୍ଥ ବୋଲି ଗ୍ରହଣ କରି ନ ପାରୁଁ । ଆମ୍ଭମାନଙ୍କ ବିବେଚନାରେ ଏ ଅଂଶରେ ଶକୁନ୍ତଳା ଏବଂ ରାମବିଳାସ ଉତ୍କୃଷ୍ଟ ଅଟଇ । ପକ୍ଷାନ୍ତରେ ବିବିଧବିଷୟକ ମନୋରଞ୍ଜନ ଏବଂ ଜ୍ଞାନପ୍ରଦ ପ୍ରସ୍ତାବମାନ ଏଥିରେ ଯେପ୍ରକାର ସୁଚାରୁରୂପେ ନିର୍ବାଚିତ ଓ ବର୍ଣ୍ଣିତ ହୋଇଅଛି ସେପ୍ରକାର ଉତ୍କଳ ଭାଷାରେ ଅତିବିରଳ । କେବଳ ଅତ୍ୟନ୍ତ କଠିନ ସଂସ୍କୃତ ଶବ୍ଦମାନଙ୍କ ବହୁଳ ବ୍ୟବହାରଦ୍ୱାରା ଅନେକସ୍ଥଳରେ ରଚନା କର୍କଶ ହୋଇଅଛି ଗ୍ରନ୍ଥକାର ଏ ସମସ୍ତ ଦୁରୂହ ଶବ୍ଦ ପ୍ରୟୋଗ ଛାଡି ଭାଷାପ୍ରତି ଦୃଷ୍ଟି ରଖିଥିଲେ ବହୁ ଅଂଶରେ ରଚନା ସୁନ୍ଦର ହୋଇଥାନ୍ତା । ଓଡିୟା ଋଜୁପାଠ ପ୍ରବନ୍ଧମାଳା ଶ୍ରେଣୀର ପୁସ୍ତକ ଅଟେ ସତ୍ୟ ମାତ୍ର ଋଜୁପାଠ ଅପେକ୍ଷା ଏହାର ଭାଷା ଶ୍ରେଷ୍ଠ ବୋଲି ଅବଶ୍ୟ ସ୍ୱୀକାର କରିବୁଁ । ଗ୍ରନ୍ଥକାର ଏ ପୁସ୍ତକର ଭୂମିକା ନ ଦେଇ ଭଲ କରି ନାହାନ୍ତି ଏବଂ ଯେଉଁଠାରୁ ଯେଉଁ ପ୍ରବନ୍ଧମାନ ସଂକଳନ କରିଅଛନ୍ତି ତାହା ସମସ୍ତ ଚିହ୍ନାଇ ନ ଦେବାରୁ କେତେକାଂଶରେ ନିନ୍ଦାର ଭାଜନ ହୋଇଅଛନ୍ତି । ଗୋଟିଏ ପ୍ରବନ୍ଧ 'ଚନ୍ଦ୍ର ଓ ତାରା' ଖଣ୍ଡିଏ ଇଂରାଜୀ ପୁସ୍ତକରୁ ଗୃହୀତ ବୋଲି ଲେଖା ଅଛି ମାତ୍ର ତାହା ମାସିକ ଉତ୍କଳଦର୍ପଣରେ ପୂର୍ବେ ବାହାରିଥିଲା । ସେହିପରି ଆଉ ଗୋଟିଏ ପ୍ରବନ୍ଧ 'ଶାସନ ପ୍ରଣାଳୀ' ସେହି ଉତ୍କଳ ଦର୍ପଣରୁ ଉଦ୍ଧୃତ ହୋଇଅଛି ଅଥଚ ତାହା ଆଦୌ ଲେଖା ନାହିଁ । ବୋଧ ହୁଅଇ ଗ୍ରନ୍ଥକାର ଉକ୍ତ ପ୍ରବନ୍ଧମାନ ସେ ସମୟରେ ଲେଖିଥିଲେ ମାତ୍ର ତାହା କହି ଦେବାରେ କି କ୍ଷତି ଥିଲା ? ଯେତେବେଳେ ଖଣ୍ଡିଏ ନୂତନ ପୁସ୍ତକ ବାହାରି ଅଛି ଏବଂ କେଉଁଠାରୁ କେଉଁ ପ୍ରବନ୍ଧ ଗୃହୀତ ବା ସଂକଳିତ ହୋଇଅଛି ଏହା କେତେ ସ୍ଥଳରେ ଲେଖାଅଛି ତେତେବେଳେ ସର୍ବତ୍ରରେ ସେପ୍ରକାର ଲେଖିବାର ଉଚିତ ଥିଲା ଆଉ ପ୍ରକାଶକ କହିଅଛନ୍ତି କି ଏହା ଅନୁବାଦିତ ଗ୍ରନ୍ଥ ନୁହେ ମାତ୍ର ଏଥିର କୌଣସି ପ୍ରବନ୍ଧ ଯେ ଅନୁବାଦିତ ନୁହେ ଏ କଥା ଆମ୍ଭେମାନେ ବିଶ୍ୱାସ କରିବାକୁ ଅକ୍ଷମ ହେଲୁଁ କାରଣ ଏକସ୍ଥଳରେ ଲେଖାଅଛି (ପୃ୧୦୪ା) ଯେ 'ଏହି କ୍ଷୁଦ୍ରପତ୍ରିରେ ତାହା ଲେଖିବା ଅସମ୍ଭବ' । କେବଳ ବିଷୟକୁ ଅବଲମ୍ବନ କରି ରଚନା କରିଥିଲେ ଏପରି ଲେଖା ହୁଅନ୍ତା ନାହିଁ ।

ସ୍ଥୂଳକଥା ଏହିଯେ ପ୍ରବନ୍ଧମାଳାଦ୍ୱାରା ଉତ୍କଳସାହିତ୍ୟ ଅଗ୍ରସର ହୋଇଅଛି ମାତ୍ର ତାହା ଅସାଧାରଣନୁହଇ ଏବଂ ତହିଁପାଇଁ ପୁରସ୍କାର ଦେବାର ପ୍ରୟୋଜନ ନ ଥିଲା । ଗବର୍ଣ୍ଣମେଣ୍ଟ ପୁରସ୍କାର ଯାଚିବାସ୍ଥଳେ ଦେବାକୁ ବାଧ୍ୟଥିଲେ ଏବଂ ମଧୁବାବୁ ତାହା ପାଇବାରୁ ଆମ୍ଭେମାନେ ସୁଖୀ ହୋଇଅଛୁଁ କାରଣ ସେ ପୁରସ୍କାର ନିୟମାନୁସାରେ କାର୍ଯ୍ୟ କରିଅଛନ୍ତି । ମାତ୍ର ଆମ୍ଭେମାନେ କହୁଁ ଯେ ଶିକ୍ଷାବିଭାଗର ଏଥିରେ ବିଶେଷ ତ୍ରୁଟି ହୋଇଅଛି । କିପରି ପୁସ୍ତକର ପ୍ରୟୋଜନ ଥିଲା କମିଶନର ସାହେବ ଶିକ୍ଷାବିଭାଗର ମତ ନେଇ ବିଜ୍ଞାପନରେ ପରିଷ୍କାରକରି ଲେଖିଥାନ୍ତେ । ସେପରି ନ ହେବାରୁ କେହି କିଛି ଜାଣି ପାରିଲେ ନାହିଁ ସୁତରାଂ ଅନ୍ୟ କେହି ପୁସ୍ତକ ନ ଲେଖିବାରୁ ପୁରସ୍କାରର ପ୍ରକୃତ ଉଦ୍ଦେଶ୍ୟ ବିଫଳ ହେଲା । ଆମ୍ଭେମାନେ ସେ ସମୟରେ ତାହା କହି ଦେବା ଏବଂ ପୁସ୍ତକ ସକାଶେ ଦୀର୍ଘ ସମୟ ଦେବାକୁ ଅନୁରୋଧ କରିଥିଲୁଁ ମାତ୍ର କେହି ଶୁଣିଲେ ନାହିଁ । ପୁସ୍ତକ ବାହାରିଲା ଉତ୍ତାରୁ ସଂବାଦବାହିକା ଏଥିର ଯେଉଁ ସମାଲୋଚନା କଲେ ତହିଁରୁ କିପ୍ରକାର ପୁସ୍ତକ ଲୋଡ଼ାଥିଲା ତାହା ଜଣାପଡିଲା ଏବଂ ଏ ବିଷୟରେ ଉକ୍ତ ସମାଲୋଚନାରେ ଯାହା ଲେଖା ଅଛି ତାହା ଆମ୍ଭମାନଙ୍କୁ ଶିକ୍ଷାବିଭାଗର ପ୍ରକୃତ ଅଭିପ୍ରାୟ ବୋଲି ପ୍ରତୀତି ହେଉଅଛି ।

ପରିଶେଷରେ ବକ୍ତବ୍ୟ ଏହି କି ଏହି ସାହିତ୍ୟବିଷୟକ ପୁସ୍ତକ ସଙ୍ଗରେ କୃଷି ସମ୍ପର୍କୀୟ ଯେଉଁ ପୁସ୍ତକ ସକାଶେ ବିଜ୍ଞାପନ ଦିଆ ଯାଇଥିଲା ତାହା ନ ବାହାରିଲା କାହିଁକି ? ସାହିତ୍ୟ ସକାଶେ ଅଧିକ ଏବଂ କୃଷି ସକାଶେ ଅଳ୍ପ ପୁରସ୍କାର ଯାଚିବା କି ତହିଁର ହେତୁ ନୁହଇ ?

*ଭା୧୫ଗ,ସଂ୪୯ଖ୍ୟା, ୧୧/୧୨/୧୮୮୦*

# ୧୮୮୧

## [ପ୍ରଦେଶ ଭିତ୍ତିରେ ନିଯୁକ୍ତି]

ବେହାର ପ୍ରଦେଶର ଲୋକମାନେ ଅନେକ ଦିନରୁ ଗୁହାରି କରୁଥିଲେ କି ସେ ପ୍ରଦେଶର ସରକାରୀ କର୍ମମାନ ସେମାନେ ନ ପାଇ ବଙ୍ଗାଳିମାନେ ପାଉଥିଲେ ଓ ଏଥି ସମ୍ପର୍କରେ ବଙ୍ଗାଳି ଓ ବେହାରିଙ୍କ ମଧ୍ୟରେ କେତେଦିନ ଭାରୀ ବାଦ ବିସମ୍ବାଦ ଲାଗିଥିଲା । ସମ୍ପ୍ରତି ଗବର୍ଣ୍ଣମେଣ୍ଟ ବଙ୍ଗାଲଙ୍କର ଆଜ୍ଞାକ୍ରମେ ବେହାରିମାନଙ୍କର ସମସ୍ତ ଦୁଃଖ ବିଗତ ହୋଇଅଛି । ଗବର୍ଣ୍ଣମେଣ୍ଟ ଜେଲ ପୁଲିସ ରେଜେଷ୍ଟରୀ ମିଉନିସିପାଲିଟୀ ପ୍ରଭୃତି ସମସ୍ତ ବିଭାଗର ପ୍ରଧାନ କର୍ମଚାରିଙ୍କ ପ୍ରତି ଆଦେଶ ଦେଇଅଛନ୍ତି କି ପ୍ରତିବର୍ଷ ସେମାନେ କମିଶ୍ନରଙ୍କ ନିକଟକୁ ଏହି ମର୍ମରେ ଏକ ତାଲିକାପଠାଇବେ କି ଉକ୍ତବର୍ଷ ତାହାଙ୍କ ଅଧୀନରେ କେତେ କର୍ମ ଖାଲି ହୋଇଥିଲା ଓ କିଏ ସେଥିରେ ନିଯୁକ୍ତ ହେଲା । ଯଦ୍ୟପି ବେହାରର ଲୋକ ନିଯୁକ୍ତ ନ ହୋଇ ବଙ୍ଗାଳି ନିଯୁକ୍ତ ହୋଇଥାଏ ତେବେ କି କାରଣରୁ ଏପରି ହେଲା ତାହାସୁଦ୍ଧା ଲେଖି ପଠାଇବେ । ହିନ୍ଦୁପେଟ୍ରିଅଟ ମାନ୍ୟବର ଇଡନସାହେବଙ୍କର ଏପରି ଆଜ୍ଞାରେ ଦୁଃଖିତ ହୋଇ ଅଛନ୍ତି ମାତ୍ର ଆମ୍ଭେମାନେ ଓଡ଼ିଶାର କଥା ମନେ କରି ଏ ଆଜ୍ଞାକୁ ଯୁକ୍ତିଯୁକ୍ତ ଜ୍ଞାନ କରୁଁ । ଏକ ସମୟରେ ଓଡ଼ିୟାମାନେ ଏହି ଦୁଃଖ ଗାଉଥିଲେ ଏବଂ ସେ ସମୟରେ ହାକିମମାନେ ଓଡ଼ିଶାର ପକ୍ଷପାତୀ ହୋଇ ନ ଥିଲେ ଅବଧି ଓଡ଼ିୟାଙ୍କର ଯାହା କିଞ୍ଚିତ୍ ଉନ୍ନତି ହୋଇଅଛି ତାହାସୁଦ୍ଧା ହୋଇ ନ ଥାନ୍ତା । ଯେବେ ଉଚ୍ଚଶିକ୍ଷା ଲାଭ କରିବାର ସମାନ ସୁଯୋଗ ଓଡ଼ିଶା ବଙ୍ଗଳା ଓ ବେହାରରେ ଏକ କାଳରେ ଦିଆ ଯାଇଥାନ୍ତା ତେବେ ସେମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ରଖିବାର ଉଚିତ ହୁଅନ୍ତା ନାହିଁ କିନ୍ତୁ ଯେ ସ୍ଥଳେ ତାହା ନ ହେଲା ସେ ସ୍ଥଳେ ଯେଉଁଠାର ଲୋକଙ୍କୁ ଅଧିକ ସୁଯୋଗ ଦିୟାଗଲା ସେମାନଙ୍କ ସଙ୍ଗେ ଅନ୍ୟ ସ୍ଥାନର ଲୋକମାନେ ଯେ ସମକକ୍ଷ ହେବେ ଏହା କି ପ୍ରକାରରେ ଆଶା କରାଯାଇ ପାରେ ସୁତରାଂ ଫଳ ଏହି ହେବ ଯେ ସେମାନେ ସକଳ ସ୍ଥାନର ସରକାରୀ କର୍ମମାନ ଅଧିକାର କରିବେ ଓ ସେଠା ଲୋକମାନେ ଗଡି ମରିବେ । ଅତଏବ ଗବର୍ଣ୍ଣମେଣ୍ଟଙ୍କର ସାହାଯ୍ୟ ବିନା ସ୍ଥାନୀୟ ଲୋକଙ୍କର କର୍ମ ପାଇବାର ଉପାୟ ନାହିଁ । ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଏପରି କିଛି ନିୟମ କରି ନ ଥିବାରୁ ଗଞ୍ଜାମ ଜିଲାର ସମସ୍ତ ସରକାରୀ କର୍ମ ଏକା କମା ବ୍ରାହ୍ମଣମାନେ ଅଧିକାର କରି ଅଛନ୍ତି ଓ ସେଠା ଲୋକମାନେ କୌଣସି ପ୍ରକାରରେ ମୁଣ୍ଡ ଟେକି ପାରୁ ନାହାନ୍ତି । ଯେ ସ୍ଥଳେ ଏ ପ୍ରକାର ପ୍ରତ୍ୟକ୍ଷ ମନ୍ଦଫଳ ଦେଖା ଯାଉଅଛି ସେ ସ୍ଥଳେ ହିନ୍ଦୁପେଟ୍ରିଅଟଙ୍କ ସହିତ ଆମ୍ଭେମାନେ କଦାଚ ଐକ୍ୟ ହୋଇ ନ ପାରୁଁ ।

*ଭା୧୬ଗ, ସଂ୪ଖ୍ୟା, ୨୨।୧।୧୮୮୧*

## କାଞ୍ଚିକାବେରୀ ନାଟକ ।

ଏ ନଗରବାସୀ କେତେକ କୃତବିଦ୍ୟ ଯୁବାଙ୍କ ଅସୀମ ଯତ୍ନ ଓ ପରିଶ୍ରମରେ ଏଥି ପୂର୍ବେ ଦୁଇଥର ଶ୍ରୀ ସରସ୍ୱତୀ ପୂଜା ଉପଲକ୍ଷରେ ନାଟକାଭିନୟ ଅର୍ଥାତ୍ ସନ ୧୮୭୮ ସାଲରେ "ରାମାଭିସେକ ନାଟକ" ଏବଂ ଗତସନରେ "ଏକେଇ କି ବଲେ ସଭ୍ୟତା" ନାମକ ପ୍ରହସନର ଅଭିନୟ ହୋଇଥିଲା ଏବଂ ତହିଁରେ ସର୍ବସାଧାରଣଙ୍କର ଯେ ବିଶେଷ ଆନନ୍ଦ ହୋଇଥିଲା ତାହା ବୋଲିବା ବାହୁଲ୍ୟ । ସେ ସମସ୍ତ ନାଟକର ଭାଷା ବଙ୍ଗଳା ଅଟଇ ଏବଂ ତହିଁ ନିମିତ୍ତ ଓଡ଼ିଆଙ୍କର ଆନନ୍ଦ ଊଣା ହୋଇ ନ ଥିଲେହେଁ ସ୍ୱଦେଶାନୁରାଗର ବଶବର୍ତ୍ତୀ ହୋଇ କେହି କେହି ଓଡ଼ିୟା ଦେଶୀୟଭାଷାରେ ଖଣ୍ଡିଏ ନାଟକର ଅଭିନୟ ଦେଖିବାକୁ ଅତ୍ୟନ୍ତ ବ୍ୟଗ୍ର ହୋଇଥିଲେ । ଓଡ଼ିୟା ଭାଷାରେ ଏତେ ଶୀଘ୍ର ନାଟକ ରଚନା ଏବଂ ତହିଁର ଅଭିନୟ ହେବ ଏ କଥା କାହାରି

ବିଶ୍ୱାସ ନ ଥିଲା ଏବଂ ଆମ୍ଭେମାନେ ମଧ୍ୟ ସାଧାରଣ ଭାବ ଦେଖି ସେ ସୁଖକର ଘଟନା ବହୁଦୂରରେ ନିହିତ ଥିବାର ମନେ କରିଥିଲୁଁ । କିନ୍ତୁ ଚେଷ୍ଟାର ଅସାଧ୍ୟ କିଛି ନାହିଁ । ଏଠାର କେତେ ଜଣ କୃତବିଦ୍ୟ ଯୁବାଙ୍କ ବୁଦ୍ଧି ଯତ୍ନ ଓ ଶ୍ରମରେ ଆମ୍ଭେମାନେ ଓଡିୟା ଭାଷାରେ ଏଥି ମଧ୍ୟରେ ଖଣ୍ଡିଏ ନାଟକର ଅଭିନୟ ଦେଖିବାକୁ ସମର୍ଥ ହେଲୁଁ । ଏ ଶୁଭକାର୍ଯ୍ୟ ଗତ ସୋମବାର ବାବୁ ଗୋପାଳପ୍ରସାଦ ମିତ୍ରଙ୍କ ଗୃହଠାରେ ଶ୍ରୀ ସରସ୍ୱତୀ ପୂଜା ଉପଲକ୍ଷରେ ପ୍ରତ୍ୟକ୍ଷ ହେଲା । ଶ୍ରୀ ସରସ୍ୱତୀ ଦେବୀ ଅନ୍ୟ ସ୍ଥାନରେ ବସନ୍ତପଞ୍ଚମୀ ବାସିଦିନ ବିଦାୟ ହୁଅନ୍ତି କିନ୍ତୁ ଏଠାରେ ନାଟକାଭିନୟ ଦେଖିବା ତାହାଙ୍କର ଉଦ୍ଦେଶ୍ୟ ସୁତରାଂ ତାହା ଶେଷ ନ ହେଲେ ବିସର୍ଜନ ହୋଇ ନ ପାରେ । ବସନ୍ତପଞ୍ଚମୀ ଦିନ ଏ ଅଭିନୟ ହେବାର ପ୍ରସ୍ତାବ ଥିଲା ମାତ୍ର ନାନା ପ୍ରତିବନ୍ଧକ ହେତୁରୁ ତାହା ହୋଇ ପାରିଲା ନାହିଁ । ନାଟକର ରଙ୍ଗଭୂମି ଓ ଦୃଶ୍ୟମାନ ପ୍ରସ୍ତୁତ କରିବା ବ୍ୟୟସାଧ୍ୟବ୍ୟାପାର ଏ ଛଡା ବେଶ ଓ ଅନ୍ୟାନ୍ୟ ଆୟୋଜନ ନିମିତ୍ତ ଧନର ପ୍ରୟୋଜନ । ଏଥକୁ ଏ ନଗରରେ ଯେଉଁମାନେ ଧନୀ ସେମାନଙ୍କର ଏ ସମସ୍ତ କାର୍ଯ୍ୟରେ ଆଦୌ ସହାନୁଭୂତି ନାହିଁ କିମ୍ବା ଆମୋଦ ପ୍ରମୋଦ ଦିଗକୁ ବଡ ମନ ବଳାନ୍ତି ନାହିଁ । ସୁତରାଂ ଅର୍ଥାଭାବରୁ ଅତି କଷ୍ଟରେ ସମସ୍ତ ଆୟୋଜନ ହେଲା ଏବଂ ଟିକଟ ବିକ୍ରୟ କରିବାଦ୍ୱାରା ଅର୍ଥ ସଂଗ୍ରହ କରିବାକୁ ଅଭିନୟର ଉଦ୍ୟମକାରିମାନେ ବାଧ୍ୟ ହେଲେ । ଯାହାହେଉ କୌଣସିରୂପେ ନିର୍ଦ୍ଦିଷ୍ଟ ସମୟର ଘ ୧ କି ୧୫ଣ୍ଡା ବିଳମ୍ବରେ କାର୍ଯ୍ୟ ଆରମ୍ଭ ହେଲା । ପ୍ରଥମରେ ସୂତ୍ରଧାର ଆସି ସୁନ୍ଦରରୂପେ ପ୍ରସ୍ତାବନା କରି ଗଲେ ଏବଂ ତହିଁଉତ୍ତାରୁ ନଟନଟୀର ଗାନ ଏବଂ ଅନ୍ୟ ଦୁଇ ଏକ ଦୃଶ୍ୟ କିଛି ଭଲ ନ ହେବାରୁ କେତେକ ଦର୍ଶକ ହତାଶ ହୋଇ ବାହୁଡିଗଲେ ଏବଂ ଅନ୍ୟାନ୍ୟଙ୍କ ମନ ସାନ ପଡିଗଲା । କିନ୍ତୁ ପଛକୁ ସମସ୍ତଙ୍କର ସେ ଭ୍ରମ ଭାଙ୍ଗିଗଲା ଏବଂ ଦର୍ଶକମାନେ ଘନ ଘନ କରତାଳି ପ୍ରଦାନଦ୍ୱାରା ଆନନ୍ଦିତ ହେବାର ପ୍ରକାଶ କଲେ ଅଭିନୟ ଶେଷ ପର୍ଯ୍ୟନ୍ତ ମଜଲିସ ପୂର୍ଣ୍ଣ ରହିଥିଲା । ଆଦୌ ଓଡ଼ିୟାଭାଷାରେ ଏହି ପ୍ରଥମ ନାଟକ ତହିଁରେ ଅଭିନୟକାରିମାନେ ମଧ୍ୟ ନୂତନ ଏବଂ ପୂର୍ବରୁ ଥରେ ସୁଦ୍ଧା ନାଟ୍ୟଶାଳାରେ ଛିଡା ହୋଇ ଶିକ୍ଷିତ ହୋଇ ନ ଥିଲେ । ଏଥିରେ ଉପରଲିଖିତ ଫଳ ପ୍ରତ୍ୟକ୍ଷ ହେବା ବିଚିତ୍ର ନୁହଇ । ତଥାଚ ପ୍ରଥମ ଉଦ୍ୟମରେ ଯେ ପରିମାଣରେ କୃତକାର୍ଯ୍ୟତା ଲାଭ ହୋଇଅଛି ତାହା ଆଶାତିରିକ୍ତ ଅଟଇ ଏବଂ ତହିପାଁଇ ଆମ୍ଭେମାନେ ମୁକ୍ତ କଣ୍ଠରେ ନାଟକ ରଚୟିତା ଏବଂ ଅଭିନେତୃବର୍ଗ ଏବଂ ଏଥିର ସମସ୍ତ ଉଦ୍ୟମକାରିଙ୍କୁ ଧନ୍ୟବାଦ ଦେଉଅଛୁଁ ଏବଂ ଆମ୍ଭମାନଙ୍କର ଦୃଢଆଶା ହୋଇଅଛି ଯେ ଏମାନେ ଯେବେ ଏ ମାର୍ଗରେ ଆପଣାର ଯତ୍ନ ଓ ଅଧ୍ୟବସାୟକୁ ଜାଗ୍ରତ ରଖିବେ ତେବେ ଅଚିରେ ଆମ୍ଭେମାନେ ଏହି ଉତ୍କଳ ଦେଶରେ ଉତ୍କୃଷ୍ଟ ପ୍ରକାର ନାଟକର ଅଭିନୟ ଦେଖିବାକୁ ସମର୍ଥ ହେବୁଁ ।

ସମ୍ପ୍ରତି ନଗରବାସୀ ବିଦ୍ୱାନ୍‌ମଣ୍ଡଳିରେ ଏହି ନାଟକ ସମ୍ବନ୍ଧରେ ନାନା ତର୍କବିତର୍କ ଲାଗିଅଛି ଏବଂ ନାନାପ୍ରକାର ଅନୁକୂଳ ଓ ପ୍ରତିକୂଳ ସମାଲୋଚନା ଶୁଣିବାରେ ଆସୁଅଛି ଆମ୍ଭେମାନେ ମଧ୍ୟ ଆପଣା ସମାଲୋଚନା ବ୍ୟକ୍ତ କରିବା ଆବଶ୍ୟକ ଜାଣି ସଂକ୍ଷେପରେ ତାହା କହୁଅଛୁଁ । ଆମ୍ଭମାନଙ୍କ ବିବେଚନାରେ ନାଟକଟି ମନ୍ଦ ହୋଇ ନାହିଁ । ଏଥିର ମୂଳ ପତ୍ତନ ଅର୍ଥାତ୍ ଢାଁଚା ଉତ୍ତମ ହୋଇଅଛି ଏବଂ ଦେଶକାଳୋଚିତ ଅନେକ ଆନୁସଙ୍ଗିକ ବ୍ୟାପାର ଏଥିରେ ସନ୍ନିବେଶିତ ହୋଇଅଛି । ଦୋଷ ମଧ୍ୟରେ ଏଥିର କେତେକ ଘଟନା ନାଟକୋଚିତ ନିୟମରୁ ବାହାରି ଯାଇ ଐତିହାସିକ କିମ୍ବା ଯାତ୍ରା ଦିଗକୁ ଢଳି ଯାଇଅଛି ଏବଂ ଦୃଶ୍ୟସମୂହର ସଂଖ୍ୟା ଅତ୍ୟନ୍ତ ଅଧିକ ଏବଂ ଗୋଟିଏ ଗୋଟିଏ ଦୃଶ୍ୟର ସ୍ଥାୟିତ୍ୱ ଅତି ସ୍ୱଳ୍ପକାଳବ୍ୟାପୀ ହୋଇଅଛି । ନାଟକଟି ଆଦିରସାତ୍ମକ ଏବଂ ବିରହାବସ୍ଥା ତହିଁର ଜୀବନ କିନ୍ତୁ ତାହାକୁ ରଚୟିତା ଅତି ସଂକ୍ଷେପରେ ସାରି ଦେବାକୁ ନାଟକର ସୌନ୍ଦର୍ଯ୍ୟ ଅନେକ ହାନି ହୋଇଅଛି । ଅବଶ୍ୟ ଅଳ୍ପବୟସ୍କ ନବଲେଖକଙ୍କଠାରୁ ଏକାବେଳେକେ ସମସ୍ତ ନିପୁଣତା ଆଶା କରି ନ ପାରୁଁ ଏବଂ ଏହିହେତୁରୁ ଆମ୍ଭେମାନେ ପୂର୍ବରୁ କହିଅଛୁଁ କି ଆଶାତିରିକ୍ତ ସୁଖ ଲାଭ କରିଅଛୁଁ । ଭରସା କରୁଁ ଗ୍ରନ୍ଥକାର ବାବୁ ରାମଶଙ୍କର ରାୟ ଏ ସମସ୍ତ ଦୋଷ ପରିହାର ପକ୍ଷରେ ସମର୍ଥ ହେବେ ଏବଂ ତାହା ହେଲେ ନାଟକଖଣ୍ଡି ଓଡିଶାର ଆଦର୍ଶ ନାଟକସ୍ୱରୂପ ଆଦରଣୀୟ ହେବ ।

ଅଭିନୟକାରିଙ୍କ ସମ୍ବନ୍ଧରେ ବକ୍ତବ୍ୟ ଏହି କି ଅଭିନୟକାରିଙ୍କ ସଂଖ୍ୟା ପ୍ରାୟ ୩୦ଣ ହେବ । ଏମାନଙ୍କ ମଧ୍ୟରେ ଦୁଇ ଚାରିଜଣ ଏ ଦେଶୀୟ ବଙ୍ଗାଳୀ ନତୁବା ସମସ୍ତେ ଓଡ଼ିୟା । ଏମାନେ ଏହି ନଗରଛଡା ପ୍ରାୟ କୌଣସିଠାରେ ଅଭିନୟ ଦେଖି ନାହାନ୍ତି ତହିଁରେ ପୁଣି ରଙ୍ଗଭୂମି ପୂର୍ବରୁ ନିର୍ମାଣ ହୋଇ ନ ଥିବାରୁ ଯିବା ଆସିବା ବା ଛିଡା ହେବା ଇତ୍ୟାଦି କ୍ରିୟା ଶିଖିବାକୁ ସୁଯୋଗ ପାଇ ନ ଥିଲେ । ଏ ସମସ୍ତ କାରଣରୁ ପ୍ରଥମ ଅଭିନୟରେ ସେମାନଙ୍କର ଅନେକ ସାମାନ୍ୟ ସାମାନ୍ୟ ଦୋଷ ଲକ୍ଷିତ ହେଲା । ତଥାଚ ସୁଖର ବିଷୟ ଯେ ଅଧିକାଂଶ ଅଭିନୟକାରୀ ଉତ୍ତମରୂପେ ଆପଣା ଆପଣା କାର୍ଯ୍ୟ କରିଥିଲେ ଏବଂ ଏକ ଏକଜଣ ଏପ୍ରକାର ନିପୁଣତା ଦେଖାଇଥିଲେ ଯେ ତହିଁରେ ଦର୍ଶକମାନେ ତଟସ୍ଥ ହୋଇଥିଲେ । ପୁରୁଷବେଶରେ ସୂତ୍ରଧାର, ଦୁଇଜଣ ପଣ୍ଡା, ଓଡ଼ିଶାମନ୍ତ୍ରୀ, ବିଦୂଷକ, ମହାସୁଆର, ପାଟଜ୍ୟୋତିଷ, ଓଡ଼ିଶା ରାଜଦୂତ, କାଞ୍ଚିରାଜା, ପୁରୋହିତ ଆପଣା ଆପଣା କାର୍ଯ୍ୟ ଉତ୍ତମରୂପେ ଦେଖାଇଥିଲେ ଏବଂ ଓଡ଼ିଶା ଦୂତ ତହିଁ ମଧ୍ୟରେ ସର୍ବୋତ୍କୃଷ୍ଟ ହୋଇଥିଲା । ସେନାପତିମାନେ ମଧ୍ୟ ମନ୍ଦ ହୋଇ ନ ଥିଲେ । ସ୍ତ୍ରୀବେଶରେ ଶଶିକଳା, ସୂର୍ଯ୍ୟବାଳା, ଭଦ୍ରା, ବିଦ୍ୟୁଲ୍ଲତା, ମାଣିକୀ ଉତ୍ତମ ହୋଇଥିଲେ ତହିଁ ମଧ୍ୟରେ ଭଦ୍ରା ଓ ଶଶିକଳା ସର୍ବୋତ୍କୃଷ୍ଟ ଥିଲେ । ଅପର ଲୋକଙ୍କ ମଧ୍ୟରେ ଗୌଡ ଓ ଗୌଡୁଣୀମାନେ ମଧ୍ୟ ଭଲ ହୋଇଥିଲେ ଏବଂ ସାମାନ୍ୟ ଅର୍ଥବ୍ୟୟଦ୍ୱାରା ଯେପରି ସୁନ୍ଦରବେଶ ହୋଇ ପାରେ ତହିଁରେ ମଧ୍ୟ ତ୍ରୁଟି ହୋଇ ନ ଥିଲା ବାସ୍ତବରେ ଗୋଟିଏ ଗୋଟିଏ ବେଶ ଅତ୍ୟନ୍ତ ମନୋହର ହୋଇଥିଲା । ନଟୀର ବେଶ ଆମ୍ଭମାନଙ୍କ ଆକ୍ଷିରେ ବଡ ପ୍ରୀତିକର ଲାଗିଥିଲା । କେବଳ ନାଟକର ନାୟକ ଏବଂ ନାୟିକା ଯଥା ଓଡ଼ିଶାର ରାଜା ଏବଂ ପଦ୍ମାବତୀଙ୍କ କ୍ରିୟା କିଛି ଅଧିକ ନିସ୍ତେଜ ହୋଇଥିଲା । ଉପର ଲିଖିତ ତାଲିକାରୁ ପାଠକମାନେ ଦେଖିବେ ଯେ ଅଧିକାଂଶ ଅଭିନୟକାରୀ କୃତକାର୍ଯ୍ୟତା ଲାଭ କରିଥିଲେ ସୁତରାଂ ଅଭିନୟ ଉତ୍ତମ ହୋଇଥିଲା ଏବଂ ଯେଉଁମାନଙ୍କର ନାମୋଲ୍ଲେଖ ନ ହେଲା ସେମାନେ ବିରକ୍ତ ନ ହୋଇ ଭବିଷ୍ୟତକୁ କୃତକାର୍ଯ୍ୟତା ଲଭିବାର ଚେଷ୍ଟା କରିବେ । ପରିଶେଷରେ ନାଟକାଭିନୟ ସମ୍ପ୍ରଦାୟର ସେକ୍ରେଟରୀ ବାବୁ ଗୋପାଳଚନ୍ଦ୍ର ଦତ୍ତ ଏବଂ ମ୍ୟାନେଜର ବାବୁ ଜଗତବଲ୍ଲଭ ଘୋଷଙ୍କୁ ଏ ଅଭିନବ କାର୍ଯ୍ୟ ଉତ୍ତମରୂପେ ସମ୍ପାଦନ କରିଥିବା କାରଣ ଆନ୍ତରିକ ଧନ୍ୟବାଦ ଦେଉଅଛୁଁ । ଯଦ୍ୟପି କି ସମସ୍ତଙ୍କର ଉତ୍ସାହ ଓ ଯତ୍ନ ବିନା ଏ ପ୍ରକାର ଗୁରୁତର ବିଷୟ ସାଧିତ ହେବା ଅସମ୍ଭବ ଏବଂ ସେ ହେତୁ ସମସ୍ତେ ପ୍ରଶଂସାର ପାତ୍ର ତଥାପି ଏହି ଦୁଇ ବ୍ୟକ୍ତିଙ୍କର ସମଧିକ ଦୃଢପ୍ରତିଜ୍ଞା ଓ ପରିଶ୍ରମ ହେତୁ ଆମ୍ଭେମାନେ ବିଶେଷରୂପେ ଋଣୀ ଅଟୁଁ ।

*ଭା୧୬ଗ, ସଂ୬ଖ୍ୟା, ୧୨।୨।୧୮୮୧*

## [ବାଳିକା ବିଦ୍ୟାଳୟ ପାଇଁ ବଦାନ୍ୟତା]

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦ ସହିତ ପ୍ରକାଶ କରୁଅଛୁଁ ଯେ ତାଳଚେରର ମହାରାଜା ଏ ନଗରସ୍ଥ ହିନ୍ଦୁ ବାଳିକାବିଦ୍ୟାଳୟ ଗୃହ ନିର୍ମାଣ ନିମିତ୍ତ ଟ ୨୦ଙ୍କା ଦାନ କରିଅଛନ୍ତି । ଗଡ଼ଜାତ ରାଜାଙ୍କର ଅନ୍ତଃପୁରରେ ଲେଖା ପଢା ଏବଂ ସଙ୍ଗୀତର ଚର୍ଚ୍ଚା ପ୍ରାଚୀନକାଳରୁ ବିଦ୍ୟମାନ ଅଛି ଏବଂ ଏତେବେଳେ ସୁଦ୍ଧା ତାହା ଲୋପ ହୋଇ ନାହିଁ । ଏଣୁକରି ଗଡ଼ଜାତ ରାଜାମାନେ ଯେ ସ୍ତ୍ରୀଶିକ୍ଷାପ୍ରତି ସହାନୁଭୂତି ଦେଖାଇବେ ଏଥିରେ ବିଚିତ୍ର କିଛି ନାହିଁ । ମାତ୍ର ଏକା ଢେଙ୍କାନାଳ ଛଡା ଏ ଅଞ୍ଚଳର ଅନ୍ୟ କୌଣସି ଗଡଜାତ ରାଜା କଟକ ବାଳିକା ବିଦ୍ୟାଳୟପ୍ରତି ସୁଦୃଷ୍ଟି ନିକ୍ଷେପ କରି ନ ଥିଲେ ସମ୍ପ୍ରତି ତାଳଚେର ସେ ପକ୍ଷରେ ମନୋଯୋଗୀ ହେବାର ଦେଖି ଆମ୍ଭେମାନେ ବଡ ସୁଖୀ ହୋଇଅଛୁଁ ଭରସା କରୁଁ ଅନ୍ୟାନ୍ୟ ଗଡ଼ଜାତ ରାଜାମାନେ ଏପ୍ରକାର କାର୍ଯ୍ୟରେ ବଦାନ୍ୟତା ପ୍ରକାଶ କରି ଓଡିଶାର ମୁଖ ଉଜ୍ଜ୍ୱଳ କରିବେ । କଟକ ଓଡ଼ିଶାର ରାଜଧାନୀ ହେଉଅଛି ଏଠାରେ ଗୋଟିଏ ଉତ୍ତମ ବାଳିକାବିଦ୍ୟାଳୟ ଅବଧି ନିର୍ମାଣ ହୋଇ ନ ଥିବା ଊଣା କଥା ଅଟଇ ଏବଂ ତନ୍ନିମିତ୍ତ ଓଡ଼ିଶାର ଧନୀ ମାତ୍ରକେ ଦାୟଗ୍ରସ୍ତ ଅଟନ୍ତି ।

*ଭା୧୬ଗ, ସଂ୯ଖ୍ୟା, ୨୬।୨।୧୮୮୧*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## ଗଞ୍ଜାମର ଓଡ଼ିଆମାନଙ୍କର ଉନ୍ନତି ନ ହେବାର ଦାୟୀ କିଏ ?

ଆମ୍ଭେମାନେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କୁ ଦାୟୀକରି ଥିଲୁଁ । ଏଥକୁ ମଞ୍ଜୁଷାର ହେଡ ଦେବାନ ପ୍ରତିବାଦ କରି ଖଣ୍ଡିଏପତ୍ର ଲେଖିଅଛନ୍ତି ତାହା ଯଥା ସ୍ଥାନରେ ପ୍ରକଟିତ କଲୁଁ । ପାଠକମାନେ ତାହା ବିବେଚନା କରିବେ । ଆମ୍ଭେମାନେ ଅବଶ୍ୟ ବୋଲିବୁଁ ଯେ ସେ ମତରେ ଐକ୍ୟ ହୋଇ ନ ପାରୁଁ । ଓଡ଼ିୟାମାନଙ୍କର ଉନ୍ନତିପ୍ରତି ଆସ୍ଥା ନାହିଁ ବୋଲି ଯାହା ଲେଖାଅଛି ତାହା ନିତାନ୍ତ ଅମୂଳକ ନୁହଇ ମାତ୍ର ସେପରି ଘଟିବାର କାରଣ କି ଲେଖକ ତହିଁର କିଛି ମାତ୍ର ଅନୁସନ୍ଧାନ କରି ନାହାନ୍ତି । ଅତି ଅଳ୍ପକାଳ ପୂର୍ବ ପର୍ଯ୍ୟନ୍ତ ଗଞ୍ଜାମ ଜିଲାର ସମସ୍ତ ସରକାରୀ କାର୍ଯ୍ୟ ତେଲଗୁ ଏବଂ ଇଂରାଜୀ ଭାଷାରେ ଚାଲୁ ଥିଲା ଓଡ଼ିୟା ଯେ ସେଠାକାର ଦେଶ ଭାଷା ତାହା ଗବର୍ଣ୍ଣମେଣ୍ଟ ଆଦୌ ସ୍ୱୀକାର କରି ନ ଥିଲେ । ସମ୍ପ୍ରତି ଯେବେ ବି ସେ ଭାବ କେତେକ ପରିମାଣରେ ବିଦୂରିତ ହୋଇ ଓଡ଼ିୟା ଭାଷା ପ୍ରତି ଗବର୍ଣ୍ଣମେଣ୍ଟଙ୍କର ସୁଦୃଷ୍ଟି ପଡିଅଛି ଏବଂ ବିଦ୍ୟାଳୟମାନଙ୍କରେ ଓଡ଼ିୟା ଶିକ୍ଷା ଦେବାର ବନ୍ଦୋବସ୍ତ ହୋଇଅଛି ମାତ୍ର ଅବଧି ସରକାରୀ କଚେରିମାନଙ୍କରେ ଓଡ଼ିଆ ଭାଷା ନାମ ମାତ୍ର ପ୍ରଚଳିତ ହୋଇଅଛି । ସୁତରାଂ ଓଡ଼ିୟାମାନଙ୍କର ଆଦର ନାହିଁ । ଏହି ଉତ୍କଳ ଦେଶରେ ଯେତେବେଳେ କଚେରୀର ଭାଷା ପାରସୀ ଥିଲା ତେତେବେଳେ ବଙ୍ଗଳାଗୁ ବଙ୍ଗାଳି ଓ ମୁସଲମାନମାନେ ଏଠା କଚେରିମାନଙ୍କରେ ଏକାଧିପତ୍ୟ କରୁଥିଲେ । ଓଡ଼ିୟାଙ୍କର କଚେରିରେ ପ୍ରବେଶ କରିବାର ସାଧ୍ୟ ନ ଥିଲା । ଯେଉଁ ଦିନଠାରୁ ଗବର୍ଣ୍ଣମେଣ୍ଟ ସୁବିଚାର ପୂର୍ବକ ଯାବନ୍ତ କଚେରିର ଭାଷା ଓଡ଼ିୟା କରି ଦେଲେ ଏବଂ ହାକିମମାନେ ଓଡ଼ିୟାଙ୍କ ପକ୍ଷ ସମର୍ଥନ କରି ସେମାନଙ୍କୁ ଏକ ଏକ ଉଚ୍ଚ କର୍ମରେ ନିଯୁକ୍ତ କଲେ ସେଦିନଠାରୁ କ୍ରମଶଃ ଓଡ଼ିୟାଙ୍କର ନିଦ ଭାଙ୍ଗିଲା ଏବଂ ଏତେବେଳେ ଓଡ଼ିଶାର କଚେରିମାନଙ୍କରେ ବହୁ ପରିମାଣରେ ଓଡ଼ିୟାମାନେ ପ୍ରବେଶ ହୋଇଅଛନ୍ତି ଏବଂ ଓଡ଼ିୟାଙ୍କ ମଧ୍ୟରେ ଲେଖାପଢାର ଚର୍ଚ୍ଚା ଦିନ ଦିନ ବୃଦ୍ଧି ହେଉଅଛି । ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଏବଂ ତହିଁର ଅଧୀନ ଗଞ୍ଜାମ ଜିଲାର ଉଚ୍ଚପଦସ୍ଥ ହାକିମମାନେ ଏହି ପରି ଓଡ଼ିୟାଙ୍କ ପକ୍ଷ ଅବଲମ୍ବନ କଲେ ଓଡ଼ିୟାଙ୍କର ବର୍ତ୍ତମାନ ଭାବ ଯେ ଅତି ଶୀଘ୍ର ଅନ୍ତର୍ହିତ ହେବ ଏକଥା ବୋଲିବା ବାହୁଲ୍ୟ । ସମ୍ପ୍ରତି ଗଞ୍ଜାମ ଜିଲାରେ ଓଡିୟାମାନେ ନିତାନ୍ତ ହୀନ ଓ ଘୃଣିତ ଅବସ୍ଥାରେ ରହିଅଛନ୍ତି । ସରକାରୀ କଚେରିମାନ ଦେଖି ସେମାନଙ୍କର ଆଦୌ ଭରସା ନାହିଁ ଯେ କୌଣସି କାଳରେ କମାଙ୍କର ଆଧିପତ୍ୟ ହ୍ରାସ ହେବ ଓ ସେମାନେ ସରକାରୀ କର୍ମରେ ନିଯୁକ୍ତ ହେବେ । ଆମ୍ଭେମାନେ ପ୍ରତ୍ୟକ୍ଷରେ ଦେଖିଲୁଁ ଯେ କମା ଏବଂ ଓଡିୟାଙ୍କ ମଧରେ କୌଣସି ପ୍ରକାର ସହାନୁଭୂତି ନାହିଁ । ଉଭୟଠାରେ ଘୃଣା ଭାବ ସଂପୂର୍ଣ୍ଣ ଜାଗ୍ରତ ରହିଅଛି । ଓଡିୟାମାନେ କମାଙ୍କୁ ପ୍ରପୀଡକ ମନେ କରନ୍ତି ଏବଂ କମାମାନେ ଓଡିୟାଙ୍କୁ ନୀଚାବସ୍ଥାରେ ପକାଇ ରଖିବାକୁ ଚେଷ୍ଟା କରନ୍ତି । ସରକାରୀ କର୍ମମାନ କମାଙ୍କର ଏକାଧିପତ୍ୟରେ ନ ଥିଲେ ଏପରି ଭାବ କଦାଚ ଜାତ ହୁଅନ୍ତା ନାହିଁ । ଏଥି ସକାଶେ ମଧ୍ୟ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଦାୟୀ ଅଟନ୍ତି । ଆମ୍ଭେମାନେ ଅବଗତ ହୋଇ ଅଛୁଁ ଯେ ବ୍ରହ୍ମପୁର କଲେଜରୁ କେହି କେହି ଓଡ଼ିୟା ପାସ କରି ବାହାରି ଅଛନ୍ତି ଯେବେ ସରକାରୀ କାର୍ଯ୍ୟ ବିତରଣ କରିବା ସମୟରେ ହାକିମମାନେ ଏମାନଙ୍କୁ ଅଗ୍ରଗଣ୍ୟ କରିବେ ତେବେ ଓଡ଼ିୟାମାନେ ଶିକ୍ଷା କରିବାକୁ ଆହୁରି ଉତ୍ସାହିତ ହେବେ ଏବଂ କ୍ରମଶଃ ଏମାନଙ୍କର ଉନ୍ନତି ହେବ । ଦୁର୍ବଳ ବୃକ୍ଷକୁ ଛିଡାକରି ରଖିବା ସକାଶେ ପ୍ରଥମେ ଖଣ୍ଡେ ଟାଣ କାଠ କି ବାଉଁଶର ପ୍ରୟୋଜନ ହୁଅଇ ଥରେ ସେ ମୁଣ୍ଡ ଟେକି ପାରିଲେ ଆଉ ସାହାଯ୍ୟ ଲୋଡଇ ନାହିଁ । ଗଞ୍ଜାମ ଜିଲା ଓଡ଼ିୟାଙ୍କର ଠିକ୍ ସେହି ପ୍ରଥମାବସ୍ଥା ଏତେବେଳେ ତାହାଙ୍କୁ ସାହାଯ୍ୟ ନ ଦେଲେ କିପରି ସେମାନେ ଛିଡା ହୋଇ ପାରିବେ । ଅତଏବ ଆମ୍ଭେମାନେ ବଡଜେନା ସାମନ୍ତ ଏବଂ ତାହାଙ୍କ ପରି ଓଡିୟାଙ୍କର ହିତାକାଙ୍କ୍ଷୀ ବ୍ୟକ୍ତିମାନଙ୍କୁ ଅନୁରୋଧ କରୁଁ ଯେ ସେମାନେ ଓଡିୟାଙ୍କୁ ରାଜଦରବାର ଏବଂ ସରକାରୀ କାର୍ଯ୍ୟାଳୟମାନଙ୍କରେ ନିଯୁକ୍ତ କରାଇବାର ଯଥାସାଧ୍ୟ ଚେଷ୍ଟା କରନ୍ତୁ ତାହା ହେଲେ ସେମାନେ ଅବିଳମ୍ବେ ଦେଖିବେ ଯେ ଓଡିୟାମାନଙ୍କୁ ଯେତେ ନିର୍ବୋଧ ମନେ କରିଅଛନ୍ତି ବାସ୍ତବରେ ତେତେ ନୁହନ୍ତି ।

*ଭା/୧୬ଗ ,ସଂ୧୦ଖ୍ୟା,୫ /୩/୧୮୮୧*

# ପ୍ରେରିତପତ୍ର ।

## [ଗଞ୍ଜାମ ଜିଲ୍ଲାରେ ଓଡ଼ିଆ ଭାଷା]

ମାନ୍ୟବର ଶ୍ରୀମଦୁତ୍କଳଦୀପିକା ସମ୍ପାଦକ

ମହାଶୟ ସମୀପେଷୁ

ପ୍ରାର୍ଥନା ଏହି ଯେ ଦୟାପୂର୍ବକ ଆପଣଙ୍କ ପତ୍ରିକା ରତ୍ନରେ ସ୍ଥାନଦାନ ଦେବେ । -

ମହାଶୟ !

ଚଳିତମାସ ତା ୨୨ ରିଖର ଆପଣଙ୍କ ପତ୍ରିକା ରତ୍ନକୁ ଆମ୍ଭେ ପାଠ କରି ଦେଖିଲୁଁ ଯେ ଗଞ୍ଜାମ ଜିଲ୍ଲାର ଦୁଃଖୀ ଓଡ଼ିଆମାନଙ୍କୁ ସର୍ବୋପମାଯୋଗ୍ୟ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ କିଛି ସରକାରୀ କର୍ମ ନ ଦେଇ କମାମାନଙ୍କୁ ସେ କର୍ମରେ ନିଯୁକ୍ତ କରନ୍ତି ଏହେତୁରୁ ଗଞ୍ଜାମ ଜିଲ୍ଲା ଓଡ଼ିୟାମାନେ ମୁଣ୍ଡ ଟେକି ପାରୁ ନାହାନ୍ତି ବୋଲି ଲେଖି ବିଖ୍ୟାତ କରିବା ହେଲେ । ଆମ୍ଭେ ସ୍ୱୟଂ ଓଡ଼ିୟା ଗଞ୍ଜାମ ଜିଲ୍ଲାରେ ଜନ୍ମ ହେଲେହେଁ ନିଷ୍ପକ୍ଷପାତରେ ଲେଖୁଅଛୁଁ ତଦ୍‌ଯଥା । ଏଜିଲ୍ଲାର ରାଜାମାନଙ୍କର ବିଦ୍ୟାଭ୍ୟାସ କରିବା ବିଦ୍ୟାଭ୍ୟାସ କରାଇବା ବିଦ୍ୟାଭ୍ୟାସ କରୁଥିବା ବାଳକମାନଙ୍କୁ ସଶ୍ରଦ୍ଧ ହୋଇ କିଞ୍ଚିତ୍ ଦାନ କରିବା ବିଷୟରେ କିଞ୍ଚିତ୍ ହେଲେ ଶ୍ରଦ୍ଧା ନାହିଁ ଆଙ୍ଗ୍ଲେୟ ବିଦ୍ୟାଶାଳାଟି ଏ ସ୍ୱଦୁର୍ଗମାନଙ୍କରେ ବସାଇବାର ଦୂରେ ଥାଉ ସ୍ୱଦେଶଭାଷା ବିଦ୍ୟାଶାଳା ମଧ କେହି କରି ନାହାନ୍ତି । ରାଜାମାନଙ୍କର ରୀତି ଏପରି ବ୍ରାହ୍ମଣ, କ୍ଷତ୍ରିୟ, କରଣ ଇତ୍ୟାଦି ପୁରଜନମାନେ ମଧ୍ୟ ସ୍ୱ ବାଳକମାନଙ୍କୁ କୌଣସି ବିଦ୍ୟା ପଢାଇବାରେ ନିଯୁକ୍ତ କରନ୍ତି ନାହିଁ । ତଥାଚ ଅଙ୍ଗ୍ରେଜୀ ବିଦ୍ୟାରେ ଏମନ୍ତ ନିସ୍ପୃହା ଯେ କହନ୍ତି କି ଆମ୍ଭ ପିଲାଏ ସେ ପାଠ ପଢିଲେ ଜାତି ତ୍ୟାଗ କରି ଖ୍ରୀଷ୍ଟିୟାନ ହେବେ ଏଥିମଧ୍ୟରେ ମଞ୍ଜୁଷା ଶ୍ରୀ ମହାରାଜା ସି, ଆଇ,ଇ ଏକ ଆଙ୍ଗ୍ଲୋ ବର୍ଣ୍ଣାକ୍ୟୁଲର ସ୍କୁଲ ଅର୍ଥାତ୍ ଅଙ୍ଗ୍ରେଜୀ ତେଲୁଗୁ ଓଡ଼ିୟା ସଂସ୍କୃତ ପଢାଇବା ନିମିତ୍ତେ ଏକ ସ୍କୁଲ ସ୍ୱ ଦ୍ରବ୍ୟରେ ସ୍ଥାପନ କରି ମାସିକ ଟ୧୧୫ ବେତନ ଦେଇ ଜ୫ଣ ମାଷ୍ଟର ରଖି ଅସ୍ମଦ୍ଦେଶୀୟ ନୌକରୀ ବର୍ଗ ଏବଂ ସ୍ୱପଟ୍ଟଣସ୍ଥ ବ୍ୟକ୍ତିମାନଙ୍କୁ ଡକାଇ ସେମାନଙ୍କୁ ଅନେକ ପ୍ରକାରେ ସୁଉପଦେଶ ଦେଇ ତାହାଙ୍କ ବାଳକମାନଙ୍କୁ ପାଠଶାଳାରେ ଭରତି କରାଇ ବ୧୫ର୍ଷ ହେଲାନି ଏଥିରେ ମଧୁସୂଦନ ରାଜେ ଜ୧ଣେ, ରାମଚନ୍ଦ୍ର ତ୍ରିପାଠୀ ଜ୧ଣେ, ଚକ୍ରପାଣି ପଟ୍ଟନାୟକ ଜ୧ଣେ, ଦିନବନ୍ଧୁ ଆଚାର୍ଯ୍ୟ ଜ୧ଣେ, ଫିପ୍ତଗ୍ରେଡ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବାରୁ ଶ୍ରୀ ରାଜା ମହୋଦୟ ସି,ଆଇ,ଇ, ଅତି ସନ୍ତୋଷ ହୋଇ ସେମାନଙ୍କୁ ସୁବର୍ଣ୍ଣ କଙ୍କଣ ଗୋଟିଏ ଲେଖାଏ ପାରିତୋଷିକ ଦେଇଥିଲେ ସେଥିରେ ମଧୁସୂଦନ ରାଜେ ମଞ୍ଜୁଷାରେ ଅସିଷ୍ଟଣ୍ଟ ଦେଓ୍ୟାନ ଛତ୍ରପୁରରେ ରାମଚନ୍ଦ୍ର ତ୍ରିପାଠୀ ସ୍କୁଲମାଷ୍ଟର ଏ ସ୍କୁଲର ଫଳ ଆମ୍ଭେ ଏତିକି ଦେଖିଛୁଁ ବସ୍ତୁତରେ ଆମ୍ଭ ମହାରାଜାଙ୍କ ସ୍କୁଲରେ ପଞ୍ଚାଶଟି ବାଳକ ପାଠ ପଢୁଛନ୍ତି ପ୍ରତିଦିନରେ ୧୫।୨୦ ବାଳକ ଆବ୍‌ସେଣ୍ଟ ମାଷ୍ଟରମାନେ ରାଜା ମହୋଦୟଙ୍କଠାରେ ପ୍ରତ୍ୟହରେ ବାଳକମାନେ ନ ଆସିବାର ବୋବାଳି ପାଡନ୍ତି ମହାରାଜା ମହୋଦୟ ପ୍ରତିନିତ୍ୟରେ ପିଲାମାନଙ୍କ ପିତାକୁ କିମ୍ବା ତାଙ୍କ ଜ୍ୟେଷ୍ଠ ଭ୍ରାତାକୁ ଡକାଇ ଅନେକ ପ୍ରକାର ସୁଉପଦେଶ ଦେଲେ ହେଲେ ମୋର ପିଲା ସ୍କୁଲକୁ ଗଲେ ବାନ୍ତି କରୁଛି, ମୋର ପିଲା ସ୍କୁଲକୁ ଗଲେ ଜ୍ୱର ଆଣୁଛି ଏହିପରି ଅନେକ ପ୍ରକାର ମାୟା ବଚନ କହି ପିଲାକୁ କେତେ ମାତ୍ର ବିଦ୍ୟାଶାଳାକୁ ପଠାନ୍ତି ନାହିଁ । ବାଳକମାନେ କାହିଁକି ଅବା ବିଣ୍ଡା ଖେଳ ଛାଡି ପାଠ ପଢିବେ ? ମହାରାଜା ସି,ଆଇ,ଇ, ମଧ୍ୟ ଅନେକ ବିରକ୍ତ ହୋଇ ସାରିଲେଣି ଆମ୍ଭ ଓଡ଼ିୟାଙ୍କ ଏପରି ଚେଷ୍ଟା ଗଞ୍ଜାମ ଜିଲ୍ଲାରେ କେଉଁ ଓଡ଼ିୟା ବ୍ୟକ୍ତିଟି କେଉଁ ପାସ କରି ବସିଛି ଯେ ମହା ଦୟାବନ୍ତ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କୁ ତୁଚ୍ଛାରେ ନିନ୍ଦା କରିବା ଉସ୍ମାସୁର ପ୍ରାୟ ଗଞ୍ଜାମଜିଲ୍ଲାନ୍ତଃପାତି ଓ ଓଡ଼ିୟାମାନେ ସ୍ୱେଚ୍ଛାରେ ନାଶ ହେଉଛନ୍ତି, ଓଡ଼ିଆ ପରମ ଦୁର୍ବୋଧ ।

ଯଥାର୍ଥବାଦୀ

ଶ୍ରୀ ନାରାୟଣ ବଡଯେନା ସାମନ୍ତ

*ଅତିରିକ୍ତ, ୫।୩।୧୮୮୧*

## ପୁସ୍ତକାଳୟର ଅଭାବ ।

ଏନଗରରେ ପୁସ୍ତକାଳୟ ନ ଥିବାରୁ ସେ ଅଭାବ ମୋଚନ ଉଦ୍ଦେଶ୍ୟରେ ଗୋଟିଏ ସଭା ହୋଇଥିଲା ତହିଁର ବିବରଣ ଏଥିସଙ୍ଗେ ପ୍ରକାଶ ହୋଇଥିବା ପ୍ରେରିତପତ୍ରରୁ ପାଠକମାନେ ଜାଣି ପାରିବେ ଦ୍ୱିରୁକ୍ତିର ପ୍ରୟୋଜନ ନାହିଁ ।

କଟକ ଓଡିଶାର ରାଜଧାନୀ ହେଉଅଛି ଏଠାରେ ଅବଧି ଗୋଟିଏ ପୁସ୍ତକାଳୟ ସ୍ଥାପିତ ହୋଇ ନ ଥିବା ଯେ ଅତ୍ୟନ୍ତ ଦୁଃଖର ବିଷୟ ତହିଁରେ ସନ୍ଦେହ ନାହିଁ । ବଙ୍ଗପ୍ରଦେଶର ନଗରମାନଙ୍କ କଥା ତେଣିକି ଥାଉ କେତେ ଗ୍ରାମରେ ସୁଦ୍ଧା ଗୋଟିଏ ଗୋଟିଏ ପୁସ୍ତକାଳୟ ରହିଅଛି ଏଠାରେ ଅବଧି ତାହା ହୋଇ ନ ଥିବାରୁ କେବଳ ଏତିକି ବୋଲିବାକୁ ହେବ ପ୍ରକୃତ ଶିକ୍ଷାର ଫଳ ଅବଧି ଓଡିଶାରେ ଫଳି ନାହିଁ ଏବଂ ବର୍ତ୍ତମାନ ଯେଉଁମାନେ ଶିକ୍ଷିତ ଏବଂ ଉନ୍ନତ ହୋଇଥିବାର ଗାରିମା କରନ୍ତି ସେମାନଙ୍କର ଗାରିମା ସାର । ପ୍ରକୃତରୂପେ ଶିକ୍ଷିତ ଓ ସଭ୍ୟ ହେବାଠାରୁ ସେମାନେ ବହୁଦୂର ପଛରେ ପଡି ଅଛନ୍ତି । କୋଡିଏବର୍ଷ ପୂର୍ବେ ଏଠାରେ ଚାରି ପାଞ୍ଚଜଣ ମାତ୍ର ଶିକ୍ଷିତ ଲୋକ ଥିଲେ ଅଥଚ ସେସମୟରେ ଏକ ପୁସ୍ତକାଳୟ ଏଠାରେ ରହିଥିଲା । ଘଟଣାକ୍ରମେ ତାହା ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟଙ୍କ ହସ୍ତଗତ ହୋଇ ଅତି ଶୋଚନୀୟ ଅବସ୍ଥାରେ ରହିଅଛି । ଏଥିମଧ୍ୟରେ ଏଠାରେ ଏକ ସାମାନ୍ୟ ସ୍କୁଲ ପରିବର୍ତ୍ତରେ କଲେଜ ହେଲା ଚାରିଆଡେ ବିଦ୍ୟାଳୟର ସଂଖ୍ୟା ବୃଦ୍ଧି ହେଲା ଇଂରାଜୀ ଏବଂ ଦେଶୀୟ ଭାଷାର ନାନା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଛାତ୍ରଙ୍କ ସଂଖ୍ୟା ବର୍ଷକୁବର୍ଷ ବୃଦ୍ଧି ହେଲା । ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷା କଥା କିଏ ପଚାରେ ଏଲ୍ ଏ, ଏବଂ ବି ଏ, ପର୍ଯନ୍ତ କେତେ ଲୋକ ଶିକ୍ଷିତ ହେଲେ ଏବଂ ଏମାନେ ସରକାରୀ କଚେରିମାନଙ୍କରେ ଉଣା ଅଧିକ ବେତନରେ ନିଯୁକ୍ତ ହୋଇ ଏତେବେଳେ ଏକପ୍ରକାର ଉତ୍ତମରେ ଜୀବନଯାତ୍ରା ନିର୍ବାହ କରିବାକୁ ସମର୍ଥ ହେଲେ କିନ୍ତୁ ତହିଁରେ ଓଡ଼ିଶାର ଏ ସାମାନ୍ୟ ଅଭାବଟି ଯେ ମୋଚନ ନ ହେଲା ଏହା କି ଅଳ୍ପ ଦୁଃଖର କଥା । ଗତ କୋଡିଏବର୍ଷ ପୂର୍ବ କାଳ ସଙ୍ଗେ ବର୍ତ୍ତମାନର ଅବସ୍ଥାକୁ ତୁଲ୍ୟ କଲେ ଶିକ୍ଷା ଏବଂ ଶିକ୍ଷିତ ଲୋକଙ୍କ ଅବସ୍ଥା ଅନେକ ଉନ୍ନତି ହୋଇଥିବାର ପ୍ରକାଶ ପାଇବ ଅଥଚ ଶିକ୍ଷିତ ଲୋକଙ୍କର ପ୍ରଧାନ କାର୍ଯ୍ୟ ଯେ ଲେଖାପଡାର ଚର୍ଚ୍ଚା ରଖିବା ତହିଁର ଉପାୟ ଅବଧି ହୋଇ ନାହିଁ । ପୁସ୍ତକାଳୟ ଶିକ୍ଷିତ ଲୋକଙ୍କର ପ୍ରଧାନ ଅଭାବ ଏବଂ ଅବଧି ତାହା ମୋଚନ ହୋଇ ନ ଥିବାରୁ ଅନାୟାସରେ ବୋଲାଯାଇ ପାରେ ଯେ ଏଠାରେ ଶିକ୍ଷାର କୌଣସି ପ୍ରକୃତ ଫଳ ଫଳି ନାହିଁ ଏବଂ ଶିକ୍ଷିତ ଲୋକଙ୍କର ଅବସ୍ଥା ଅତି ମନ୍ଦ ଅଟଇ । ବାସ୍ତବରେ ଦେଖାଯାଉଅଛି ଯେ ଅସ୍ମଦ୍ଦେଶୀୟଙ୍କ ସଂଖ୍ୟା ବିଦ୍ୟାଳୟ ପରିତ୍ୟାଗ ସଙ୍ଗେ ସଙ୍ଗେଶେଷ ହେଉଅଛି ଯେତେଦିନ ବିଦ୍ୟାଳୟରେ ଛାତ୍ରମାନେ ପଢୁଥାନ୍ତି ତେତେଦିନ ଯେ ଯାହା ପରି ପରିଶ୍ରମ କରି ଯଥାସାଧ୍ୟ ପାରଦର୍ଶିତା ଲଭନ୍ତି । ଯହୁଁ ବିଦ୍ୟାଳୟ ଛାଡି ଖଣ୍ଡିଏ ଚାକରୀ ପାଇଲେ ତହୁଁ ଆଉ ବିଦ୍ୟା ସଙ୍ଗେ ଭେଟ ହେବା ବିରଳ ହେଲା । କେବଳ କଚେରୀ କର୍ମ ଚଳାଇବା ସକାଶେ ଯେତିକି ବିଦ୍ୟାର ପ୍ରୟୋଜନ ତେତିକି କାର୍ଯ୍ୟରେ ଲାଗିଲା । କଚେରୀରୁ ଫେରି ଆସି ଖାଇବା ଶୋଇବା ବୁଲିବା ଓ ବୃଥା ଗଳ୍ପ ବା କାର୍ଯ୍ୟ କରିବା ଏତିକି ଧନ୍ଦାରେ ଦିନ ଗଲା ଲେଖା ପଡିରେ ମନ ନ ରହିବା ସ୍ଥଳେ ପୁସ୍ତକାଳୟର ଅଭାବ କାହିଁକି ଜଣାଯିବ ? ଯେବେ ନୂତନ ନୂତନ ପୁସ୍ତକ ଓ ସାମୟିକ ପତ୍ରମାନ ପଢିବାର ଇଚ୍ଛା ବଳବତୀ ହୁଅନ୍ତା ତେବେ ପୁସ୍ତକାଳୟର ଅଭାବ ଅବଶ୍ୟ ସମସ୍ତଙ୍କ ହୃଦୟଙ୍ଗମ ହୁଅନ୍ତା ଏବଂ ତାହା ଦୂର କରିବା ପକ୍ଷରେ ଏତେଦିନ ବିଳମ୍ବ ହୁଅନ୍ତା ନାହିଁ । ଆମ୍ଭେମାନେ ଶିକ୍ଷିତ ଲୋକଙ୍କୁ ପଚାରୁଅଛୁଁ ଯେ ଆଉ କେତେଦିନ ସେମାନେ ଏହିପ୍ରକାରରେ କାଳ କଟାଇବେ ? ଥରେ ଆପଣା ଆପଣା ଅବସ୍ଥା ଏବଂ ଦାୟିତ୍ୱ ପ୍ରତି ସ୍ଥିରଭାବରେ ଦୃଷ୍ଟି କରନ୍ତୁ ତାହା ହେଲେ ସେମାନେ ଜାଣି ପାରିବେ ଯେ ଆଉ ନିଶ୍ଚିନ୍ତ ହୋଇ ବସିଲେ ହେବ ନାହିଁ ସାଧାରଣ ଧନ ବ୍ୟୟରେ ସେମାନେ ଶିକ୍ଷିତ ହୋଇ ଆପଣା ଜୀବିକା ନିର୍ବାହ କରିବାକୁ ସମର୍ଥ ହୋଇଅଛନ୍ତି ସାଧାରଣ ହିତ ଉଦ୍ଦେଶରେ କୌଣସି କାର୍ଯ୍ୟ ନ କଲେ ନିତାନ୍ତ ଅକୃତଜ୍ଞ ଏବଂ ଅମନୁଷ୍ୟ ବୋଲି ପରିଚିତ ହେବେ ।

ସାନ୍ତାଳ ଭାଷାର ପ୍ରଥମ ପୁସ୍ତକ ଖଣ୍ଡିଏ ଉପହାର ପାଇ ଥିବାର ଆମ୍ଭେମାନେ କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏହାର ପ୍ରଣେତା ବାବୁ ଗୋବିନ୍ଦଚନ୍ଦ୍ର ମହାପାତ୍ର ଏବଂ ଏହା ମୟୂରଭଞ୍ଜ ମହାରାଜାଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ହୋଇଅଛି । ମହାରାଜାଙ୍କ ଅଧୀନରେ ଅନେକ ଗୁଡିଏ ସାନ୍ତାଳ ପ୍ରଜା ଅଛନ୍ତି । ସେମାନଙ୍କର ସ୍ୱତନ୍ତ୍ର ଭାଷା ଅଛି ମାତ୍ର ଅକ୍ଷର ନାହିଁ ଅର୍ଥାତ୍ ସେମାନଙ୍କ ଭାଷା ଲିଖିତ ଭାଷା ନୁହଇ ସୁତରାଂ ପୁସ୍ତକାଦି କିଛି ସେ ଭାଷାରେ ହୋଇ ନ ଥିବ ଏ ପୁସ୍ତକ ରଚନାର ଅଭିପ୍ରାୟ ଏହିକି ଏହାଦ୍ୱାରା ସାନ୍ତାଳ ବାଳକମାନେ ଉତ୍କଳ ଅକ୍ଷର ଏବଂ ଭାଷା ଶିକ୍ଷା କରିବାକୁ ଏବଂ ଉତ୍କଳୀୟ ଶିକ୍ଷକମାନେ ସେମାନଙ୍କୁ ଶିକ୍ଷା ଦେବାକୁ ସମର୍ଥ ହେବେ । ଆମ୍ଭେମାନେ ଆଶା କରୁଁ କି ଏହାଦ୍ୱାରା ଛାତ୍ର ଏବଂ ଶିକ୍ଷକମାନଙ୍କର ଅନେକ ଉପକାର ହେବ । ଏପୁସ୍ତକ ଶ୍ରୀଯୁକ୍ତ ସ୍ମିଥ୍ ସାହେବ କମିଶ୍ନରଙ୍କୁ ଉତ୍ସର୍ଗିତ ହୋଇଅଛି ।

*ଭା୧୬ଗ, ସଂ୧୮ଖ୍ୟା, ତା୦।୪।୧୮୮୧*

## ପ୍ରେରିତପତ୍ର ।

## [କଟକରେ ପୁସ୍ତକାଗାର ସ୍ଥାପନ]

ମାନ୍ୟବର ଶ୍ରୀଳଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ

ମହାଶୟ ସମୀପେଷୁ ।

ମହାଶୟ !

ନିମ୍ନଲିଖିତ କେତକ ପଁକ୍ତିକୁ ଆପଣଙ୍କର ଜଗତ୍ ବିଖ୍ୟାତ ପତ୍ରିକାରେ ସ୍ଥାନଦାନ କରି ବାଧିତ କରିବାହେବେ ।

ଏ ନଗରରେ ଶିକ୍ଷାବିଧାୟିକା ନାମରେ ଗୋଟିଏ ସଭା ମା୨/୩ସ ହେଲା ସ୍ଥାପିତ ହୋଇଅଛି ତହିଁର ସଭ୍ୟମାନେ ଗୋଟିଏ ଲାଇବ୍ରେରି ସ୍ଥାପନ କରିବାପାଁଇ ବଦ୍ଧପରିକର ହୋଇ ଗତ ତା୨୪ରିଖ ଏପ୍ରେଲ ରବିବାର ରାତ୍ରିରେ କଟକପ୍ରିଣ୍ଟିଂ କମ୍ପାନିର ଦୋମହଲାରେ ଗୋଟିଏ ସଭା ଆହ୍ୱାନ କରିଥିଲେ । ନଗରସ୍ଥ ସମସ୍ତ ଭଦ୍ରଲୋକମାନେ ନିମନ୍ତ୍ରିତ ହୋଇଥିଲେ କିନ୍ତୁ ଦୁଇଚାରିଜଣ ଭିନ୍ନ ଉଚ୍ଚପଦସ୍ଥ ବ୍ୟକ୍ତି ପ୍ରାୟ କେହି ଉପସ୍ଥିତ ହୋଇ ନ ଥିଲେ । ସ୍ୱଦେଶ ହିତକର କାର୍ଯ୍ୟରେ ସେମାନଙ୍କର ଏପ୍ରକାର ଶିଥିଳଯତ୍ନ ଦେଖି ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ହୋଇଅଛୁଁ । ସଭାସ୍ଥଳ ବିଦ୍ୟାଳୟର ଛାତ୍ର ଓ ମଧ୍ୟବିତଲୋକରେ ପରିପୂର୍ଣ୍ଣ ହୋଇଥିଲା ବସିବାପାଁଇ ଅନେକ ଲୋକଙ୍କୁ ସ୍ଥାନ ନ ମିଳିଲା ।

ଡେଃ ମାଜିଷ୍ଟ୍ରେଟ ବାବୁ ସୀତାକାନ୍ତ ମୁଖୁର୍ଯ୍ୟା ସଭାପତିଙ୍କର ଆସନ ଗ୍ରହଣ କଲେ । ସମ୍ପାଦକ ସଭାର ଉଦ୍ଦେଶ୍ୟ ସମସ୍ତଙ୍କୁ ବୁଝାଇ ଦେଲେ; ତଦନନ୍ତର ନିମ୍ନଲିଖିତ ପ୍ରସ୍ତାବ ଗୁଡିକ ପ୍ରସ୍ତାବିତ ଓ ପୋଷିତ ହେଲା ।

୧। କଟକରେ ଅପାମର ସାଧାରଣଙ୍କର ଜ୍ଞାନୋନ୍ନତି ପାଁଇ ଗୋଟିଏ ପୁସ୍ତକାଗାର ସ୍ଥାପନ କରିବା ଅତ୍ୟନ୍ତ ଆବଶ୍ୟକ ହେଉଅଛି । ଏହି ପୁସ୍ତକାଗାରରେ ଉତ୍ତମୋତ୍ତମ ବଙ୍ଗଳା ଓଡିଆ ପୁସ୍ତକ ସମୂହ ରକ୍ଷିତ ହେବ ।
ପ୍ରସ୍ତାବକ ଶ୍ରୀଯୁକ୍ତ ଜାନକୀନାଥ ବସୁ ।
ଅନୁମୋଦକ ଶ୍ରୀଯୁକ୍ତ ଲଳିତମୋହନ ଚକ୍ରବର୍ତ୍ତୀ

୨। ସେହି କଷ୍ଟସାଧ୍ୟ କାର୍ଯ୍ୟ ସାଧନ କରିବା ପାଇଁ ଗୋଟିଏ ଭିନ୍ନ କମେଟୀ କରିବା ଓ ତହିଁରେ କେତେଗୁଡିଏ ଦୃଢପ୍ରତିଜ୍ଞ ମାନ୍ୟବାନ୍ ଭଦ୍ରଲୋକଙ୍କୁ ସଭ୍ୟ ନିଯୁକ୍ତ କରିବା ଆବଶ୍ୟକ ଯେଉଁମାନଙ୍କର କି ଇଚ୍ଛାନୁସାରେ ସଭ୍ୟସଂଖ୍ୟା ବୃଦ୍ଧି କରିବାର କ୍ଷମତା ଥିବ ।
ପ୍ରସ୍ତାବକ ଶ୍ରୀଯୁକ୍ତ ମନ୍ମୋହନ ଚକ୍ରବର୍ତ୍ତୀ ।
ଅନୁମୋଦକ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ଦତ୍ତ ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

୨ୟ ପ୍ରସ୍ତାବାନୁସାରେ କେତେଗୁଡ଼ିଏ ଭଦ୍ରଲୋକ କମେଟୀର ସଭ୍ୟଶ୍ରେଣୀଭୁକ୍ତ ହେଲେ । ବାବୁ ଜାନକୀନାଥବସୁ ଓ ମନ୍ମୋହନ ଚକ୍ରବର୍ତ୍ତୀ ସମ୍ପାଦକପଦରେ ନିଯୁକ୍ତ ହେଲେ ।

ବାବୁ ସୀତାକାନ୍ତ ମୁଖୁର୍ଯ୍ୟା ଓ ବାବୁ ଗୌରୀଶଙ୍କର ରାୟ ଲାଇବ୍ରେରିର ବର୍ତ୍ତମାନ ଅଭାବ ଦର୍ଶାଇ ଏହାର ସ୍ଥାପନ ବିଷୟରେ ଅନେକ ଉତ୍ସାହ ମଧ୍ୟ ପ୍ରଦାନ କଲେ । ବାବୁ ସୀତାକାନ୍ତ ମୁଖୁର୍ଯ୍ୟା ମହାଶୟଙ୍କର ଉତ୍ସାହସୂଚକ ବାକ୍ୟଗୁଡ଼ିକ ଶ୍ରବଣକରି ଆମ୍ଭେମାନେ ଅତ୍ୟନ୍ତ ଚମତ୍କୃତ ହୋଇଅଛୁଁ ଏବଂ ତାହାଙ୍କୁ ଧନ୍ୟବାଦ ପ୍ରଦାନ ନ କରି କ୍ଷାନ୍ତହୋଇ ରହି ପାରିଲୁଁ ନାହିଁ ।

ପରିଶେଷରେ ଦେଶସ୍ଥ ଶିକ୍ଷିତବ୍ୟକ୍ତିମାନଙ୍କ ନିକଟରେ ଆମ୍ଭମାନଙ୍କର ପ୍ରାର୍ଥନା ଏହି ଯେ ସେମାନଙ୍କର ସୁଦୃଷ୍ଟି ଏଥିରେ ପତିତ ହେଉ ।

କଟକ ଏକାନ୍ତ ବଶମ୍ବଦ

ଶ୍ରୀ ଲଳିତମୋହନ ଚକ୍ରବର୍ତ୍ତୀ

ଶିକ୍ଷାବିଧାୟିକାସଭାର ସମ୍ପାଦକ

***ଅତିରିକ୍ତ, ୩୦/୪/୧୮୮୧***

## ଉତ୍କଳ ପାଠ୍ୟପୁସ୍ତକର ବ୍ୟବସ୍ଥା ।

କଲିକତା ସ୍କୁଲବୁକ୍ ସୋସାଇଟି ଇଂରାଜୀ ଏବଂ ଦେଶୀୟ ଭାଷାର ପାଠ୍ୟପୁସ୍ତକ ଏବଂ ବିଦ୍ୟାଳୟର ଅନ୍ୟାନ୍ୟ ଉପକରଣମାନ ଯୋଗାଇବା ନିମିତ୍ତ ବହୁକାଳରୁ ସ୍ଥାପିତ ହୋଇଅଛି ଏବଂ ଗବର୍ଣ୍ଣମେଣ୍ଟ ଉକ୍ତ ସୋସାଇଟିର ସାହାଯ୍ୟ ନିମିତ୍ତ ମାସକୁ ପାଞ୍ଚଶତ ଟଙ୍କା ଦାନ କରନ୍ତି । ଇଦାନୀଂ ଇଂରାଜୀ ଏବଂ ବଙ୍ଗଳା ଭାଷା ପୁସ୍ତକ ଏବଂ ସ୍କୁଲର ଅନ୍ୟାନ୍ୟ ଉପକରଣ କଲିକତାର ଅନ୍ୟାନ୍ୟ ଦୋକାନରେ ସୁଲଭ ମୂଲ୍ୟରେ ପ୍ରାପ୍ତ ହେବାରୁ ସ୍କୁଲବୁକ୍ ସୋସାଇଟିର ସାହାଯ୍ୟ ପୂର୍ବ ପ୍ରାୟ ପ୍ରୟୋଜନ ହେଉ ନାହିଁ ଏହି ବିବେଚନାରେ ଏକସମୟରେ ବଙ୍ଗଳାର ଲେଫ୍ଟନାଣ୍ଟଗବର୍ଣ୍ଣର ସୋସାଇଟିକୁ ଉଠାଇ ଦେବାର ପ୍ରସ୍ତାବ କରିଥିଲେ ମାତ୍ର ତହିଁରେ କେତେକ ଅସୁବିଧା ଘଟଣା ହେବାରୁ ସେ ପ୍ରସ୍ତାବ ସ୍ଥଗିତ ହୋଇଅଛି । ସମ୍ପ୍ରତି ଗବର୍ଣ୍ଣମେଣ୍ଟ ବଙ୍ଗାଳ ପ୍ରସ୍ତାବ କରିଅଛନ୍ତି କି ସ୍କୁଲବୁକ୍ ସୋସାଇଟିକୁ ଦିଆଯାଉଥିବା ମାସିକ ଟ୫୦୦ଙ୍କା ଭେଦା ମଧ୍ୟରୁ ଅଧେ ଦେଇ ଅବଶିଷ୍ଟାର୍ଦ୍ଧ ଅର୍ଥାତ୍ ଟ୨୫୦ଙ୍କା ଓଡିଆ ହିନ୍ଦି ସାନ୍ତାଳୀ ପ୍ରଭୃତି ଭାଷାର ଉନ୍ନତି ନିମିତ୍ତ ବ୍ୟୟ କରିବେ । ଏ ସମସ୍ତ ଭାଷାରେ ଅବଧି ଉତ୍ତମ ଏବଂ ପ୍ରଚୁର ପାଠ୍ୟପୁସ୍ତକ ହୋଇ ନାହିଁ ଅତଏବ ଏମାନେ ବିଶେଷ ଉତ୍ସାହର ଯୋଗ୍ୟ ଏ ବିଷୟରେ ସନ୍ଦେହ ନାହିଁ । ସ୍କୁଲବୁକ୍ ସୋସାଇଟି ଯେ ଏ ପକ୍ଷରେ ଏକାବେଳକେ ଉଦାସୀନ୍ ଥିଲେ ତାହା ଆମ୍ଭେମାନେ କହି ନ ପାରୁଁ ବରଂ ପ୍ରଥମାବସ୍ଥାରେ ଉତ୍କଳ ପାଠ୍ୟପୁସ୍ତକ ସେହି ସୋସାଇଟି ଯୋଗାଇ ଥିଲେ ଏଣିକି ଓଡିଶାରେ ଯନ୍ତ୍ରାଳୟମାନ ସ୍ଥାପନ ହେବାରୁ ସୋସାଇଟିର କାର୍ଯ୍ୟ ବିସ୍ତର ଊଣା ପଡି ଯାଇଅଛି । ସମ୍ପ୍ରତି କଥା ଏହି କି ଗବର୍ଣ୍ଣମେଣ୍ଟ ଯେଉଁ ଟ୨୫୦ଙ୍କା ଓଡିଆ ପ୍ରଭୃତି ପୁସ୍ତକ ବୃଦ୍ଧି ନିମିତ୍ତ ସୋସାଇଟିଠାରୁ ଅଲଗା କରି ନେଲେ ତହିଁର ବ୍ୟବସ୍ଥା ସୋସାଇଟିଙ୍କ ସାହାଯ୍ୟ ଭିନ୍ନ ଉତ୍ତମରୂପେ ଚାଲି ପାରିବ ଗବର୍ଣ୍ଣମେଣ୍ଟ କି ଏଥିର କୌଣସି ନୂତନ ବ୍ୟବସ୍ଥା କରିଅଛନ୍ତି ? କେବଳ ଶୁଣୁଅଛୁଁ ଯେ ଓଡିଶାରେ ଗୋଟିଏ କମିଟୀ ନିଯୁକ୍ତ କରିଅଛନ୍ତି ଜଏଣ୍ଟ ଇନ୍ସେକ୍ଟର ତହିଁର ସଭାପତି ଏବଂ ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ ଏବଂ ବାବୁ ମଧୁସୂଦନ ରାଓ ମେମ୍ବର ଅଟନ୍ତି । ଏମାନଙ୍କର କାର୍ଯ୍ୟ କି ତହିଁର କୌଣସି ନିୟମ ଆମ୍ଭେମାନେ ପାଇ ନାହୁଁ କିମ୍ବା ଗଜେଟ ଇତ୍ୟାଦିରେ ପ୍ରଚାରିତ ହେବାର ଦେଖି ନାହୁଁ ଏ ବିଷୟକୁ ଏତେ ଗୋପନୀୟ ରଖିବାର ତାତ୍ପର୍ଯ୍ୟ କିଛି ଆମ୍ଭେମାନେ ବୁଝି ପାରୁ ନାହୁଁ । ସେ ଯାହା ହେଉ କମିଟୀ କେବଳ ପାଠ୍ୟପୁସ୍ତକ ନିର୍ବାଚନ କରି ପାରନ୍ତି ମାତ୍ର ପୁସ୍ତକ ଯୋଗାଇବାର ଭାର ଯେ ସେମାନେ ନେବେ ଏମନ୍ତ ଅନୁମାନ ହେଉ ନାହିଁ କାରଣ ତହିଁ ସକାଶେ ଗୋଟିଏ ସ୍ୱତନ୍ତ୍ର ଆଫୀସର ଦରକାର ଓ ତାହା ବ୍ୟୟ ସାପେକ୍ଷ ଅଟଇ । ଆମ୍ଭମାନଙ୍କ ବିବେଚନାରେ ପୁସ୍ତକ ଯୋଗାଇବାର କାର୍ଯ୍ୟଟି ସ୍କୁଲବୁକ୍ ସୋସାଇଟି ହାତରେ ରହିବାର ଉଚିତ କେବଳ କମିଟୀ ଯେଉଁ ପୁସ୍ତକ ବିଦ୍ୟାଳୟର ଉପଯୋଗୀ ବୋଲି ନିର୍ଦ୍ଦେଶ କରିବେ ସୋସାଇଟି ସେହି ପୁସ୍ତକମାନ ଯୋଗାଇବାର ଭାର

ନେବେ ଏବଂ ଲାଭ କରିବା ସୋସାଇଟିର ଉଦ୍ଦେଶ୍ୟ ନ ଥିବାରୁ ସେମାନେ ଯେମନ୍ତ ସୁଲଭ ମୂଲ୍ୟରେ ବିକ୍ରୟ କରିବେ ତେମନ୍ତ ଆଉ କେହି କରି ପାରିବେ ନାହିଁ ।

ଆମ୍ଭେମାନେ ଦେଖୁ ଅଛୁଁ ଯେ ଗତ କେତେକ ବର୍ଷରେ ଗବର୍ଣ୍ଣମେଣ୍ଟ ଓଡିଆ ପୁସ୍ତକ ସକାଶେ ଅନେକ ଟଙ୍କା ପାରିତୋଷିକ ସ୍ୱରୂପ ଦାନ କରିଅଛନ୍ତି ମାତ୍ର ଯେଉଁ ପ୍ରଣାଳୀରେ ତାହା ଦିଆ ଯାଉଅଛି ତହିଁର ଯଥୋଚିତ ଉପକାର ହୋଇ ପାରୁ ନାହିଁ । ପୁସ୍ତକର ମୂଲ୍ୟ, ସଂଖ୍ୟା ଏବଂ ତହିଁର ପୁନଃ ମୁଦ୍ରାଙ୍କନ ବିଷୟରେ ଗ୍ରନ୍ଥକାରଙ୍କର ସମ୍ପୂର୍ଣ୍ଣ ଅଧିକାର ରହୁଅଛି ସୁତରାଂ ଲୋକେ ସୁଲଭ ମୂଲ୍ୟରେ ପୁସ୍ତକ ପାଇ ପାରୁ ନାହାନ୍ତି ଏବଂ ଅନେକ ସମୟରେ ପୁସ୍ତକର ଅଭାବ ବୋଧ କରୁଅଛନ୍ତି । କାରଣ ଅନେକ ସମୟରେ ଅଧିକ ବିକ୍ରୟ ହେବ କି ନାହିଁ ଏହି ଭୟରେ ଅଥବା ଅର୍ଥାଭାବରେ ଅନେକ ଗ୍ରନ୍ଥକାର ଏକ ସଂସ୍କରଣ ପୁସ୍ତକ ଶେଷ ହୋଇଗଲେ ଅନ୍ୟ ସଂସ୍କରଣ ବାହାର କରିବାକୁ ଦ୍ୱିଧା କରନ୍ତି । କିନ୍ତୁ ସୋସାଇଟି ହାତରେ ଯେତେ ପୁସ୍ତକ ଅଛି ତହିଁର ଅଭାବ କଦାଚ ଅନୁଭବ ହୁଅଇ ନାହିଁ ଏବଂ ତାହା ଅତି ଅଳ୍ପ ମୂଲ୍ୟରେ ବିକ୍ରୟ ହୁଅଇ । ଆମ୍ଭମାନଙ୍କ ବିବେଚନାରେ ଗବର୍ଣ୍ଣମେଣ୍ଟ ଯେଉଁ ପୁସ୍ତକ ନିମିତ୍ତ ପାରିତୋଷିକି ଦେବେ ତହିଁର କପି ରାଇଟ କିଣି ନେଇ ସୋସାଇଟିକୁ ଦେଲେ ଆଉ କୌଣସି ଅସୁବିଧା ରହିବ ନାହିଁ ଏବଂ ନିତାନ୍ତ ଯେବେ ଗ୍ରନ୍ଥକାର ସ୍ୱତ୍ୱ ତ୍ୟାଗ କରିବାକୁ ଇଚ୍ଛା ନ କରେ ତେବେ ଗବର୍ଣ୍ଣମେଣ୍ଟ ଏହି ନିୟମ କରିପାରନ୍ତି କି ଗବର୍ଣ୍ଣମେଣ୍ଟଙ୍କର ନିର୍ଦ୍ଦିଷ୍ଟ ମୂଲ୍ୟରେ ପୁସ୍ତକ ବିକ୍ରୟ କରିବାକୁ ସମ୍ମତ ନ ହେଲେ ପାରିତୋଷିକ ଦିଆ ଯିବ ନାହିଁ । ଏପରି କିଛି ନିୟମ ନ ହେଲେ ଗବର୍ଣ୍ଣମେଣ୍ଟଙ୍କର ପାରିତୋଷିକ ଦାନଦ୍ୱାରା ସୁଲଭ ମୂଲ୍ୟରେ ପାଠ୍ୟପୁସ୍ତକ ପ୍ରାପ୍ତିର ଆଶା ଅତ୍ୟନ୍ତ କଠିନ ହେବ ।

*ଭା୧୬ଗ,ସଂ୨୪ଖ୍ୟା,୧୧।୬।୧୮୮୧*

## [ଅନୂଦିତ ମହାଭାରତ ପ୍ରକାଶ]

ହିନ୍ଦୁପେଟ୍ରିଅଟରେ ପାଠକଲୁଁ କି ବାବୁ ପ୍ରତାପଚନ୍ଦ୍ର ରାୟ ଆପଣା ବ୍ୟୟରେ ଏକ ଦଳ ପଣ୍ଡିତ ନିଯୁକ୍ତ କରି ଏବଂ ଏକ ଛାପାଖାନା ବସାଇ ସମ୍ପୂର୍ଣ୍ଣ ମହାଭାରତ ପୁସ୍ତକ କ୍ରମେ କ୍ରମେ ଅନୁବାଦ ଓ ୪୨୫୦୦ଖଣ୍ଡ ଛାପା କରାଇ ବିନା ମୂଲ୍ୟରେ ବିତରଣ କରିଅଛନ୍ତି । ଏ ମହାଶୟ ଭାରୀ ବଡଲୋକ ନୁହନ୍ତି ମାତ୍ର ଏହାଙ୍କର ମନ ବଡ ଏବଂ କେବଳ ଶ୍ରଦ୍ଧା ଓ ସାଧାରଣ ଉପକାର ସକାଶେ ଏପରି ମହତ୍ କାର୍ଯ୍ୟଟି ସାଧନ କରିଅଛନ୍ତି । ଏହିପରି ରାମାୟଣର ବିଶୁଦ୍ଧ ଅନୁବାଦ ବାହାର କରିବା ତାହାଙ୍କର ଇଚ୍ଛା ହୋଇଅଛି । ଅନେକ ଲୋକ ମନେ କରନ୍ତି ଯେ ତାହାଙ୍କର ଟଙ୍କା ନାହିଁ ବୋଲି ସେ ବାଞ୍ଛିତ ସାଧାରଣ ହିତକାର୍ଯ୍ୟର ଅନୁଷ୍ଠାନ କରି ପାରୁ ନାହାନ୍ତି । ସେମାନଙ୍କୁ ଏପରି ଉଦାହରଣମାନ ଉତ୍ତମରୂପେ ଆଲୋଚନା କରିବାର ଉଚିତ । ପ୍ରକୃତ କଥା ଏହି ଯେ ମନମୂଳ । ମନ ହେଲେ ଉଦ୍ୟମ ହେବ ଏବଂ ଉଦ୍ୟମ ବ୍ୟର୍ଥ ହେବାର କ୍ୱଚିତ୍ ଦେଖା ଯାଏ ।

*ଭା୧୬ଗ,ସଂ୨୮ଖ୍ୟା,୯।୭।୧୮୮୧*

## ଉତ୍କଳ ସଂବାଦପତ୍ର ।

ଓଡିଶାର ଗତବର୍ଷର ବାର୍ଷିକ ବିଜ୍ଞାପନୀ ପ୍ରକାଶ ହୋଇଅଛି ତହିଁରେ ଆମ୍ଭମାନଙ୍କ ଓ ଆମ୍ଭମାନଙ୍କ ସହଯୋଗୀ ବାଲେଶ୍ୱର ସଂବାଦପତ୍ରମାନଙ୍କ ସଂକ୍ରାନ୍ତରେ ଯାହା ଲେଖା ହୋଇଅଛି ତାହା ନିମ୍ନେ ପ୍ରକାଶ କରୁଅଛୁଁ ଯଥା;-

ଓଡିଶାର ତିନିଗୋଟି ସାପ୍ତାହିକ ସମ୍ବାଦପତ୍ର ମଧ୍ୟରେ ଉତ୍କଳଦୀପିକା ସର୍ବପ୍ରଧାନ ଅଟେ । ଉକ୍ତ ପତ୍ରିକା ସ୍ଥାନୀୟ ବିଷୟମାନ ରାଜଭକ୍ତି ପୂର୍ବକ ଉଲ୍ଲେଖ କରଇ; ତହିଁର ଲେଖାର ରୀତି ଶାନ୍ତଭାବ ଧାରଣ କରିଥାଏ **(its tone is moderate)** ତାହା ସ୍ଥାନୀୟ ବିଷୟର ତର୍କ ବିତର୍କ ଓ ଅନ୍ୟାନ୍ୟ ବିଷୟର କଲିକତା ସଂବାଦପତ୍ରମାନଙ୍କରୁ ନେଇ ପ୍ରକାଶ କରଇ । ବାଲେଶ୍ୱରର ଦୁଇଗୋଟି ପତ୍ରିକାପକ୍ଷରେ ସେଠାର କଲେକ୍ଟର ବିଡନ ସାହେବ ଲେଖନ୍ତି ଯେ ସର୍ବସାଧାରଣ ମତପକ୍ଷରେ ସେ ଦୁହିଁଙ୍କ ମଧ୍ୟରୁ କାହାରି କିଛି କର୍ତ୍ତୃତ୍ୱ ନାହିଁ ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଶ୍ରୀଯୁତ କମିଶନର ସାହେବ ଆମ୍ଭମାନଙ୍କ ପ୍ରତି ଯେ ମତ ପ୍ରକାଶ କରିଅଛନ୍ତି ତନ୍ନିମିତ୍ତ ଆମ୍ଭେମାନେ ତାଙ୍କୁ ଧନ୍ୟବାଦ ଦେଉଅଛୁଁ । ଆମ୍ଭମାନଙ୍କ ବାଲେଶ୍ୱରସ୍ଥ ସହଯୋଗୀମାନଙ୍କ ପ୍ରତି ଯେ ଦୋଷାରୋପ ହୋଇଅଛି ସେ ଦୋଷ ଆମ୍ଭମାନଙ୍କ ପ୍ରତି ମଧ୍ୟ ପୂର୍ବେ କେବେ କେବେ ଆରୋପ ହୋଇଥିଲା । ଏ ବିଷୟରେ ଆମ୍ଭମାନଙ୍କର କିଛି ବକ୍ତବ୍ୟ ଅଛି । ଏ ଦେଶରେ ସଭ୍ୟତା ଓ ଶିକ୍ଷା ବର୍ତ୍ତମାନ ଶୈଶବାବସ୍ଥାରେ ଅଛି ଓ ଲୋକେ ସାଧାରଣ ବିଷୟ ଘେନି ଆନ୍ଦୋଳନ କରିବାର ଅତି ବିରଳ । ଏହେତୁ ସମ୍ବାଦପତ୍ରମାନଙ୍କପ୍ରତି ସେମାନଙ୍କର ତେତେ ଆଗ୍ରହ ନାହିଁ ଓ ସର୍ବସାଧାରଣଙ୍କଠାରୁ ଆମ୍ଭେମାନେ ସମୁଚିତ ସାହାଯ୍ୟ ପାଉ ନାହୁଁ କିନ୍ତୁ ଏଥିପାଁଇ ଆମ୍ଭେମାନେ ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ଦୋଷୀ କରି ନ ପାରୁଁ କାରଣ ସେମାନେ ସମ୍ବାଦପତ୍ରର ଉପକାରିତା ଏପର୍ଯ୍ୟନ୍ତ ସମ୍ୟକ୍‌ରୂପେ ବୁଝି ପାରି ନାହାନ୍ତି । ମାତ୍ର ଆମ୍ଭମାନଙ୍କର କର୍ତ୍ତୃପକ୍ଷମାନେତ ସମ୍ବାଦପତ୍ରର ଫଳାଫଳ ଜାଣନ୍ତି । ସେମାନେ ଆମ୍ଭମାନଙ୍କୁ କି ସାହାଯ୍ୟ କରୁଅଛନ୍ତି ? ସର୍ବ ସାଧାରଣଙ୍କଠାରୁ କିମ୍ବା ଆମ୍ଭମାନଙ୍କର କର୍ତ୍ତୃପକ୍ଷମାନଙ୍କଠାରୁ ଆମ୍ଭେମାନେ ସମୁଚିତରୂପେ ସାହାଯ୍ୟ ପାଉ ନାହୁଁ ଏ ସ୍ଥଳେ ଆମ୍ଭମାନଙ୍କର କର୍ତ୍ତୃତ୍ୱ କାହୁଁ ହେବ ? ଆଠ ଦଶ ବର୍ଷ ପୂର୍ବେ ଆମ୍ଭମାନଙ୍କର ଭୂତପୂର୍ବ କମିଶନର ଶ୍ରୀଯୁତ ରାବନସା ସାହେବ ଆମ୍ଭମାନଙ୍କୁ ସରକାରୀ ସଂବାଦ ଯୋଗାଇବାର ବିଧି କରିଥିଲେ କିନ୍ତୁ କିଞ୍ଚିତ୍‌କାଳ ଉତ୍ତାରେ ସେ ବିଧି ଲୋପ ହେଲା । ଶ୍ରୀଯୁତ ଟଏନବି ସାହେବ କଲେକ୍‌ଟର ସ୍ଥାନୀୟ କମିଟୀମାନଙ୍କର ପ୍ରସ୍ତାବ ବା ନିର୍ଦ୍ଧାରଣ ପତ୍ର ସବୁର ପ୍ରତିଲିପି ଆମ୍ଭମାନଙ୍କୁ ଦେବାର ଆଜ୍ଞା କରିଥିଲେ ମାତ୍ର ସେ ଆଜ୍ଞା ତାଙ୍କ ଅନ୍ତେ ଅନ୍ତର୍ଦ୍ଧାନ ହେଲା ଆମ୍ଭମାନଙ୍କର କର୍ତ୍ତୃପକ୍ଷମାନେ ଆମ୍ଭମାନଙ୍କୁ ସମ୍ବାଦ ଯୋଗାଇବାରେ ସାହାଯ୍ୟ କରୁ ନାହାନ୍ତି । କିମ୍ବା ଆମ୍ଭେମାନେ ଲୋକଙ୍କର ଯେ ଗୁହାରି ପତ୍ରିକାରେ ଉଲ୍ଲେଖ କରୁଁ ତହିଁରେ ସେମାନେ ସମ୍ୟକ୍‌ରୂପେ କର୍ଣ୍ଣପାତ କରୁ ନାହାଁନ୍ତି ଯଦି ସେମାନେ ଏହା କରୁଥାନ୍ତେ ତେବେ ସମ୍ବାଦପତ୍ରପ୍ରତି ଲୋକମାନଙ୍କର ଆଗ୍ରହ ଓ ଆଦର ଅବଶ୍ୟ ବଢନ୍ତା ଓ ସେମାନେ ଆପଣାଗୁହାରି ଆମ୍ଭମାନଙ୍କୁ ଜଣାଇବାକୁ ଉତ୍ସୁକ ହୁଅନ୍ତେ । ଏହା ହେଲାରୁ ସର୍ବସାଧାରଣଙ୍କ ମତ ପକ୍ଷରେ ଆମ୍ଭମାନଙ୍କର କର୍ତ୍ତୃତ୍ୱ ବା ଆଧିପତ୍ୟ ଅବଶ୍ୟ ହୁଅନ୍ତା ଅତଏବ ଆମ୍ଭେମାନେ ଦେଖୁଁ ଯେ କମିଶନର ସାହେବ ଯେ ଦୋଷ ଉଲ୍ଲେଖ କରନ୍ତି ତହିଁର ଖଣ୍ଡନର ଉପାୟ ତାଙ୍କରି ହସ୍ତରେ ଅଛି । ସମ୍ବାଦପତ୍ର ପ୍ରତି କର୍ତ୍ତୃପକ୍ଷଙ୍କର ଅନାସ୍ଥା ସେ ଦୋଷର ମୂଳ କାରଣ ଅଟଇ । ଯଦି ସେମାନଙ୍କର ଆମ୍ଭମାନଙ୍କପ୍ରତି ଆସ୍ଥା ହେବ ଓ ଆମ୍ଭେମାନେ କୌଣସି ବିଷୟର ଗୁହାରି କଲେ ସେମାନେ ତାହା ଶୁଣି ତହିଁର ତଦନ୍ତ ଇତ୍ୟାଦି କରିବେ ତେବେ ଯାଇଁ ଆମ୍ଭମାନଙ୍କର କର୍ତ୍ତୃତ୍ୱ ଖଟିବ ଓ ଉନ୍ନତି ହେବ । ଆମ୍ଭମାନଙ୍କର ଉନ୍ନତି ଓ କର୍ତ୍ତୃତ୍ୱର ମୂଳ କାରଣ ଆମ୍ଭମାନଙ୍କ କର୍ତ୍ତୃପକ୍ଷଙ୍କ ହସ୍ତରେ ଅଛି ଓ ଭରଶାକରୁଁ ସେମାନେ ବିଶେଷତଃ ଶ୍ରୀଯୁକ୍ତ କମିଶନର ସାହେବ ଏ ବିଷୟର ସୁବିଚାର କରିବେ ।

*ଭା୧୬ଗ,ସଂ୩୮ଖ୍ୟା,୧୭।୯।୧୮୮୧*

## ସାପ୍ତାହିକସମ୍ବାଦ ।

## [ ମଧୁସୂଦନ ଦାସଙ୍କ ଓକାଲତୀ]

ଓଡିଶାର ପ୍ରଥମ ଏବଂ ଏପର୍ଯନ୍ତ ଏକମାତ୍ର ଏମ୍, ଏ, ଓ ବି, ଏଲ୍, ଉପାଧିଧାରୀ ବାବୁ ମଧୁସୂଦନ ଦାସ ଗତ ସପ୍ତାହରୁ ଏ ନଗରକୁ ଆସି ଏଠା ଅଦାଲତମାନଙ୍କରେ ଓକାଲତୀ କରିବା ଆରମ୍ଭ କରିଅଛନ୍ତି । ଏଥିପୂର୍ବେ ଏ ମହାଶୟ ହାଇକୋର୍ଟରେ ଜଣେ ଅନୁବାଦକ ଥିଲେ ଏବଂ ଚୋବିଶ ପରଗନ୍ନାରେ ଓକାଲତୀ ମଧ୍ୟ କରୁଥିଲେ । ଏତେଦିନେ ଓଡିଶାର ଅଦାଲତରେ ଜଣେ ଶିକ୍ଷିତ ଉଚ୍ଚଶ୍ରେଣୀର ଉକୀଲ ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ ।

ଓଡିଆ ପ୍ରବନ୍ଧମାଳାର ଖଣ୍ଡେ ବ୍ୟାଖ୍ୟା ଓଡିଶା ପେଟ୍ରିଅଟ୍ ପ୍ରେସରୁ ବାହାରିଅଛି । ବାବୁ ଭୁବନେଶ୍ୱର ଦତ୍ତ ଏଥିର ରଚୟିତା ଅଟନ୍ତି । ଆମ୍ଭେମାନେ ଖଣ୍ଡିଏ ପୁସ୍ତକ ଉପହାର ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏଥିର ମୂଲ୍ୟ ଟ ୦ । କିଛି ଅଧିକ ହୋଇଅଛି ।

*ଭା୧୬ଗ,ସଂ୩୯ଖ୍ୟା,୨୪।୯।୧୮୮୧*

# NOTICE

Is hereby given that Babu Madhusudan Das M.A., B.L. will deliver a lecture in English on Monday the 26th instant at 7 $^1/_2$ P.M. at the premises of the Cuttack Printing Company's Hall on "Unification of Indian Alphabets." Gentlemen, interested in the matter, are respectfully requested to be punctual in their attendance to secure proper seats.

Cuttack
24-09-81

Ramsanker Roy.

*ଅତିରିକ୍ତ, ୨୪/୯/୧୮୮୧*

## ଉତ୍କଳୀୟ ଡେପୁଟୀ କଲେକ୍ଟର ।

ଆମ୍ଭେମାନେ ଗତ ସପ୍ତାହରେ ବାବୁ ହରେକୃଷ୍ଣ ଦାସ ଡେପୁଟୀ କଲେକ୍ଟରଙ୍କ ମୃତ୍ୟୁ ସମାଚାର ପାଠକମାନଙ୍କୁ ଜଣାଇଅଛୁଁ । ଏ ଶୋକାବହ ଘଟଣାଦ୍ୱାରା ଓଡିଶାର ଗୋଟିଏ ଭାରୀ କ୍ଷତି ହୋଇଅଛି । ବାବୁ ଯେମନ୍ତ ଆପଣା ବାହୁ ବଳଦ୍ୱାରା ଅଳ୍ପକାଳ ମଧ୍ୟରେ ସାମାନ୍ୟ କିରାନିଗିରିଠାରୁ ଡେପୁଟୀ କଲେକ୍ଟରୀ ପର୍ଯନ୍ତ ଉଠିଥିଲେ ତେମନ୍ତ ଉଦାହରଣ ଅଳ୍ପ ଅଟଇ ଏବଂ ତାହାଙ୍କର କାର୍ଯ୍ୟକଳାପ ଓ ବୁଦ୍ଧି ଦେଖି ଆଶା ହେଉଥିଲା ଯେ ସମୟରେ ସେ ଜଣେ ଉତ୍ତମ ହାକିମ ହୋଇ ଏ ଦେଶର ଗୌରବ ବୃଦ୍ଧି କରନ୍ତେ । ମାତ୍ର ଓଡିଶାର ଦୁର୍ଭାଗ୍ୟ ହେତୁରୁ ଯମ ତାହା ସହିଲା ନାହିଁ । ଏକ ଆଡେ ହାକିମଙ୍କର ଅନାସ୍ଥା ଏବଂ ଅନ୍ୟଆଡେ ଯମର ନିଷ୍ଠୁର ଅତ୍ୟାଚାର ଏଥିରେ ଓଡିଶାର ଭାଗ୍ୟ କେତେ ଫିଟିବ ଆମ୍ଭେମାନେ ଭାବି ଆକୁଳ ହେଉଅଛୁଁ । ପଛ କଥା ତେଣିକି ଥାଉ ଚିରସ୍ମରଣୀୟ ଶ୍ରୀଯୁକ୍ତ ସୋରସାହେବ ଏଠାରେ କଲେକ୍ଟର ଥିଲା ବେଳେ କେତେଜଣ ଡେପୁଟୀ କଲେକ୍ଟର ନିଯୁକ୍ତ କରି ଯାଇଥିଲେ ତହିଁ ମଧ୍ୟରୁ ବର୍ତ୍ତମାନ ଏକମାତ୍ର ବାବୁ ଜଗନ୍ମୋହନ ରାୟ ଅଛନ୍ତି ଏବଂ ସେ ଅତ୍ୟନ୍ତ ପ୍ରଶଂସାର ସହିତ କାର୍ଯ୍ୟ କରି ଉଚ୍ଚପଦକୁ ଲଭି ଏତେବେଳେ ଓଡିଶାର ଟେକ ରଖିଅଛନ୍ତି । ତହିଁ ଉତ୍ତାରୁ ଶ୍ରୀଯୁକ୍ତ ରେବନ୍‌ସାସାହେବ ଏକଯୁଗ ଏଠାର କମିଶ୍ନରୀପଦରେ ରହିଲେ ଏବଂ ଓଡିଶାର ମଙ୍ଗଳ ନିୟତ ଏହାଙ୍କର ଚିନ୍ତାର ବିଷୟ ଥିଲା ଏବଂ ଅନେକଗୁଡିଏ ହିତକର ଅନୁଷ୍ଠାନ କରିଥିଲେହେଁ ଏକା ବାବୁ ନନ୍ଦକିଶୋର ଦାସ ଛଡା ଆଉ କେତେଜଣ ଡେପୁଟୀ କଲେକ୍ଟର କରିବାଦ୍ୱାରା ଏ ଦେଶର ମୁଖ ଉଜ୍ଜ୍ୱଳ କରିବାକୁ ଯତ୍ନ କଲେ ନାହିଁ ଏବଂ ନନ୍ଦକିଶୋର ବାବୁ ଯେପରି ସୁଖ୍ୟାତି ସହିତ କାର୍ଯ୍ୟ କରୁଅଛନ୍ତି ତାହା କାହାରିକୁ ଅବିଦିତ ନାହିଁ । ବର୍ତ୍ତମାନ କମିଶ୍ନର ଶ୍ରୀଯୁକ୍ତ ସ୍ମିଥସାହେବଙ୍କ ଯତ୍ନରେ ନ ହେଉ ତାହାଙ୍କ ଅମଳରେ ଏକା ବାବୁ ହରେକୃଷ୍ଣଦାସ ଡେପୁଟୀ ପଦରେ ନିଯୁକ୍ତ ହୋଇଥିଲେ ଏବଂ ସେ ଜଣେ ଭଲ ହାକିମ ହେବେ ବୋଲି ସମ୍ପୂର୍ଣ୍ଣ ଆଶା ଥିଲା । ଅତଏବ ଗତ କୋଡିଏ ବର୍ଷ ମଧ୍ୟରେ ନିଯୁକ୍ତ ହୋଇଥିବା ତିନିଜଣ ଉତ୍କଳୀୟ ଡେପୁଟୀ କଲେକ୍ଟର ଯୋଗ୍ୟତା ସହିତ କାର୍ଯ୍ୟ କରିଥିଲେ ହେଁ ଏପରି ଡେପୁଟିଙ୍କ ସଂଖ୍ୟା ବୃଦ୍ଧି ନ ହେବା ଅତ୍ୟନ୍ତ ଦୁଃଖର ବିଷୟ ଅଟଇ ଏବଂ ଏହା ଯେ କେବଳ ହାକିମଙ୍କ ଅମନୋଯୋଗରୁ ହେଉ ନାହିଁ ଏକଥା ବୋଲିବା ବାହୁଲ୍ୟ । ଉତ୍କଳୀୟ ଡେପୁଟୀ କଲେକ୍ଟରଙ୍କ ସଂଖ୍ୟା ବୃଦ୍ଧି ନ ହେଲେ ଦେଶର ମଙ୍ଗଳ ହେବ ନାହିଁ କାରଣ ଜନସାଧାରଣ ଏବଂ ଚିହ୍ନିତ ହାକିମଙ୍କ ମଧ୍ୟରେ ଏହିମାନେ ମଧ୍ୟସ୍ଥ ଅଟନ୍ତି । ଏହାଙ୍କଦ୍ୱାରା କଲେକ୍ଟର ଓ କମିଶ୍ନରମାନେ ଦେଶର ପ୍ରକୃତ ଅବସ୍ଥା ଏବଂ ଲୋକଙ୍କର ମନୋଭାବ ଜାଣି ପାରିବେ ଅତଏବ ଆମ୍ଭେମାନେ ଶ୍ରୀଯୁକ୍ତ କମିଶ୍ନରସାହେବଙ୍କୁ ନିତାନ୍ତ ଅନୁରୋଧ କରୁଅଛୁଁ ଯେ ବାବୁ ହରେକୃଷ୍ଣ ଦାସଙ୍କ ପଦରେ ଆଉ ଜଣେ ଏ ପ୍ରଦେଶୀୟ ବ୍ୟକ୍ତିଙ୍କୁ ନିଯୁକ୍ତ କରାଇ ଦେଉନ୍ତୁ ଏବଂ ଉତ୍କଳୀୟ ଡେପୁଟୀ କଲେକ୍ଟରଙ୍କ ସଂଖ୍ୟା ବୃଦ୍ଧି ବିଷୟରେ ସର୍ବଦା ଯତ୍ନବାନ୍ ହେଉନ୍ତୁ ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଯେ ସେ ଚେଷ୍ଟା କଲେ ତାହା ସଫଳ ହେବ । କେବଳ ଗୁଡିଏ ସବ୍‌ଡେପୁଟିଦ୍ୱାରା ଓଡିଶାକୁ ଭଣ୍ଡାଇଲେ କିଛି ହେବ ନାହିଁ ।

*ଭା/୧୬ଗ,ସଂ୪୧ଖ୍ୟା, ୧୫/୧୦/୧୮୮୧*

## ବାଳିକାବିଦ୍ୟାଳୟ ।

ଏ ନଗରରେ ଗୋଟିଏ ହିନ୍ଦୁ ବାଳିକାବିଦ୍ୟାଳୟ ଏଠା ନିବାସୀ କତିପୟ ବଙ୍ଗୀୟ ଭ୍ରାତାଙ୍କ ଯତ୍ନରେ କେତେକ ବର୍ଷ ହେଲା ସ୍ଥାପନ ହୋଇଅଛି । ତହିଁର କାର୍ଯ୍ୟ ଏପର୍ଯ୍ୟନ୍ତ ସର୍ବସାଧାରଣଙ୍କ ଗୋଚରରେ ବଡ ଆସୁ ନ ଥିଲା ଏ ବର୍ଷ ସେ ବିଦ୍ୟାଳୟର ଛାତ୍ରୀମାନଙ୍କୁ ପୁରସ୍କାର ବିତରଣ ସକାଶେ ଏଠା କଲେଜଗୃହରେ ଗତ ସୋମବାର ସଭା ହୋଇଥିବାରୁ ତହିଁର କାର୍ଯ୍ୟ ଆମ୍ଭମାନଙ୍କ ଗୋଚରରେ ଆସିଅଛି ଓ ମଧ୍ୟ ଏ ସଂକ୍ରାନ୍ତରେ ଖଣ୍ଡିଏ ଇଂରେଜୀପତ୍ର ଆମ୍ଭେମାନେ ପ୍ରାପ୍ତହୋଇଅଛୁଁ । ଆମ୍ଭେମାନେ ଏ ବିଷୟରେ ଅତିଶୟ ଆନନ୍ଦିତ ହୋଇ ସେ ପତ୍ର ସ୍ଥାନାନ୍ତରେ ପ୍ରକାଶ କଲୁଁ ଏବଂ ଇଂରେଜୀ ଜାଣୁ ନ ଥିବା ପାଠକମାନଙ୍କ ଜ୍ଞାତାର୍ଥେ ତହିଁର ସାରାଂଶ ଓ ସ୍କୁଲସଂକ୍ରାନ୍ତ କେତେକ ବୃତ୍ତାନ୍ତ ନିମ୍ନେ ଲେଖୁଅଛୁଁ ।

ସଭାରେ ଶ୍ରୀଯୁକ୍ତ କମିଶ୍ନରସାହେବ,ଡାକ୍ତର ଷ୍ଟୁଆର୍ଟ ସାହେବ, ତିନିଜଣ ଇଂରେଜ ମହିଳା ହିନ୍ଦୋଳର ରାଜା ଓ କେତେକ ଦେଶୀୟ ଭଦ୍ରବ୍ୟକ୍ତି ଉପସ୍ଥିତ ହୋଇଥିଲେ ଦୁଃଖର ବିଷୟ ଯେ ଅଧିକାଂଶ ଆମନ୍ତ୍ରିତ ବ୍ୟକ୍ତି ଅନୁପସ୍ଥିତ ରହିଲେ । ପ୍ରଥମେ ଛାତ୍ରିମାନେ କବିତା ଇତ୍ୟାଦି ପାଠ କଲେ ଓ ସେମାନଙ୍କର ସିଲେଇ କର୍ମମାନ ପ୍ରଦର୍ଶିତ ହେଲା । ତଦୁତ୍ତାରୁ କମିଶ୍ନର ସାହେବ ପୁରସ୍କାର ବିତରଣ କଲେ । ଟ୪୦ଙ୍କା ମୂଲ୍ୟର ରୂପାଫୁଲ ଇତ୍ୟାଦି ପଶମ,ପିତୁଳା ଓ ଛବି ପୁରସ୍କାର ଦିଆହୋଇଥିଲା ଓ ଏତଭିନ୍ନ ହିନ୍ଦୋଳର ରାଜା ଛଅ ଗୋଟି ରୂପା କର୍ଣ୍ଣଫୁଲ ପୁରସ୍କାର ଦେଲେ । ପରିଶେଷେ କମିଶ୍ନର ସାହେବ କ୍ଷୁଦ୍ରବକ୍ତୃତାଟିଏ କରି ସଭା ଭାଙ୍ଗିଲେ । ସେ ବାଳିକାମାନଙ୍କୁ ବିବାହ ଉତ୍ତାରେ ମଧ୍ୟ ଶିକ୍ଷାରେ ମନୋଯୋଗୀ ହେବା ସକାଶେ କହିଲେ ଓ ସ୍ତ୍ରୀ ଶିକ୍ଷାର ଉନ୍ନତି ପକ୍ଷରେ ଯତ୍ନ କରିବା କାରଣ ଜନସାଧାରଣଙ୍କୁ ଅନୁରୋଧ କଲେ ।

ଏ ବିଦ୍ୟାଳୟରେ ବର୍ତ୍ତମାନ ପଚିଶଟି ଛାତ୍ରୀ ଶିକ୍ଷା କରୁଅଛନ୍ତି ସେମାନଙ୍କ ମଧ୍ୟରେ

| | |
|---|---|
| ଓଡିଆବାଳିକା | ୪ |
| ବଙ୍ଗଦେଶୀୟ ବଙ୍ଗାଳିବାଳିକା | ୬ |
| ଏ ଦେଶୀୟ ଏଜନ | ୧୪ |
| ହିନ୍ଦୋସ୍ଥାନୀବାଳିକା | ୧ |
| | ୨୫ |

ଏ ବିଦ୍ୟାଳୟ ସକାଶେ ସରକାରରୁ ମାସିକ ଟ୧୫ଙ୍କା ସାହାଯ୍ୟ ମିଳଇ ଓ ଟ୧୬ଙ୍କା ଭେଦା ଉଠଇ । ମୋଟ ଟ୩୧ଙ୍କା ମଧ୍ୟରୁ ମାସିକ ଟ୩୦ଙ୍କା ବ୍ୟୟ ହୁଅଇ । ଏଥିର ଗୃହ ନିର୍ମାଣ ନିମିତ୍ତ ନିମ୍ନ ଲେଖିତ ଭେଦା ପ୍ରାପ୍ତି ହୋଇଅଛି । ଯଥା :

| | |
|---|---|
| କେଉଁଝରର ମହାରାଜା | ଟ ୫୦୦ |
| ଚୌଧୁରୀକୃତ୍ତିବାସଦାସ | ଟ ୩୦୦ |
| ରାଜା ଶ୍ୟାମାନନ୍ଦ ଦେ | ଟ ୨୫୦ |
| ଅନ୍ୟାନ୍ୟବ୍ୟକ୍ତି | ଟ ୫୦ |
| | ଟ୧୧୦୦ |

ତାଳଚେରର ରାଣୀ ଛାତ୍ରୀମାନଙ୍କୁ ପୁରସ୍କାର ବିତରଣ ସକାଶେ ବାର୍ଷିକ ଟ୨୦ଙ୍କା ଦେବାର ସ୍ୱୀକାର କରିଅଛନ୍ତି ଏହା ପ୍ରଶଂସନୀୟ ଅଟେ । ଜଣେ ମେମ୍ ଛାତ୍ରୀମାନଙ୍କୁ ସିଲେଇ କର୍ମ ଶିଖାଉଅଛି ଓ ଭାଷା ଶିକ୍ଷା ସକାଶେ ଦୁଇଜଣ ପଣ୍ଡିତ ନିଯୁକ୍ତଅଛନ୍ତି । କଲେଜିଏଟ ସ୍କୁଲର ହେଡମାଷ୍ଟର ବାବୁ ରାମଦାସ ଚକ୍ରବର୍ତ୍ତୀ ଏ ବିଦ୍ୟାଳୟର ସେକ୍ରେଟରୀ ଅଟନ୍ତି । ଏଥିର କାର୍ଯ୍ୟ ଯଥାସାଧ୍ୟ ଉତ୍ତମରୂପେ ଚଳୁଥିବାରୁ ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ । କିନ୍ତୁ ଉତ୍କଳୀୟ ବାଳିକା ଏ ବିଦ୍ୟାଳୟରେ ଅତି ଅଳ୍ପମାତ୍ର ଥିବାର ଅସନ୍ତୋଷଜନକ ଅଟଇ । ଉତ୍କଳରେ ସ୍ତ୍ରୀ ଶିକ୍ଷା ପୂର୍ବରୁ ଚଳିଆସୁଅଛି । ରାଜା ଓ ବିଷୟାପନ୍ନ କରଣମାନେ ଆପଣା ଆପଣା ବାଳିକାମାନଙ୍କୁ

ଘରେ କିଛି ଲେଖା ପଢ଼ାର ଶିକ୍ଷା ଦେଇଥାନ୍ତି । ବୋଧହୁଏ ସେମାନେ ସାଧାରଣ ବିଦ୍ୟାଳୟକୁ ବାଳିକା ପଠାଇବାର ନିନ୍ଦନୀୟ ଜ୍ଞାନ କରନ୍ତି, ମାତ୍ର ଏହା ଭ୍ରମ ଅଟଇ । ବଙ୍ଗଦେଶରେ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଆପଣା ଆପଣା ବାଳିକାଙ୍କୁ ସ୍କୁଲକୁ ପଠାଉଅଛନ୍ତି ଓ ଏଠା ବିଦ୍ୟାଳୟର ବଙ୍ଗୀୟ ଛାତ୍ରୀମାନେ ଭଦ୍ରକନ୍ୟା ଅଟନ୍ତି । ଅତଏବ ଉତ୍କଳୀୟମାନେ ଭ୍ରମ ତ୍ୟାଗ କରି ବାଳିକାମାନଙ୍କୁ ସ୍କୁଲକୁ ପଠାଉନ୍ତୁ ଓ ତହିଁର ଉନ୍ନତି ପକ୍ଷରେ ଯତ୍ନବାନ୍ ହେଉନ୍ତୁ । ଆମ୍ଭେମାନେ ଦେଖୁଁ ଯେ ବଙ୍ଗୀୟମାନେ ଏବିଦ୍ୟାଳୟ ପକ୍ଷରେ ବିଶେଷ ଯତ୍ନ ଓ ଅଧିକ ଚାନ୍ଦା ଅର୍ଥାତ୍ ଟ ୧ ୦ଙ୍କା ପ୍ରଦାନ କରୁଅଛନ୍ତି । ଏଥିରେ ଯେ କେବଳ ସେହିମାନଙ୍କର ଉପକାର ଏମନ୍ତ ନୁହେ ଓ ଯେଉଁମାନେ ଏପରି ମନେ କରନ୍ତି ସେମାନଙ୍କର ବଡ ଭ୍ରମ । ବିଦ୍ୟାଳୟଟି ସ୍ଥାୟୀ ହୋଇ ଉନ୍ନତ ଅବସ୍ଥାକୁ ଲଭିଲେ ଏ ଦେଶର ବିଶେଷ ଉପକାର ହେବ ଓ କିଛିକାଳ ଉତ୍ତାରେ ଅନେକ ଉତ୍କଳୀୟ ବାଳିକାଙ୍କୁ ସେଠାରେ ଶିକ୍ଷା କରିବାର ଦେଖାଯିବ । ଅତଏବ ସମସ୍ତେ ଏଥିର ଉନ୍ନତି ପକ୍ଷରେ ଯତ୍ନକରନ୍ତୁ । ଯେଉଁମାନେ ଗୃହ ନିର୍ମାଣ ସକାଶେ ମୁକ୍ତ ହସ୍ତରେ ଦାନ କରିଅଛନ୍ତି ଓ ଯେଉଁମାନେ ମାସିକ ଚାନ୍ଦା ଦେଉଅଛନ୍ତି ସେମାନଙ୍କୁ ଧନ୍ୟବାଦ ଦେଉଅଛୁଁ ।

*ଭା ୧୬ଗ, ସଂ ୪୪ଖ୍ୟା, ୫ । ୧୧ । ୧୮୮୧*

## କଟକ ରେବନ୍‌ଶା କଲେଜ ।

ଏ କଲେଜଟି ଚିରସ୍ଥାୟୀ ହେବାର ସମ୍ବାଦ ପାଇ ଆମ୍ଭେମାନେ ଅତି ଆନନ୍ଦିତ ହୋଇଅଛୁଁ । ଚାନ୍ଦା, ଛାତ୍ର ବେତନ, ମୟୂରଭଞ୍ଜ ମହାରାଜାଙ୍କ ଦତ୍ତ ଟଙ୍କାର ସୁଧ ଏବଂ ଗବର୍ଣ୍ଣମେଣ୍ଟଙ୍କ ସାହାଯ୍ୟରେ ଏ କଲେଜର କାର୍ଯ୍ୟ ଏପର୍ଯ୍ୟନ୍ତ ଚଳୁଥିଲା ବର୍ତ୍ତମାନ ଗବର୍ଣ୍ଣମେଣ୍ଟ ତହିଁର ସମୁଦାୟ ଭାର ଏହି ନିୟମରେ ଦେଇଅଛନ୍ତି କି ଛାତ୍ର ବେତନ ଓ ମୟୂରଭଞ୍ଜ ଟଙ୍କାର ସୁଧ ସରକାରରେ ଜମା ହେବ କଲେଜର ସକଳ ଖର୍ଚ୍ଚା ସରକାରରୁ ଚଳିବ, ତହିଁପାଇଁ ଚାନ୍ଦା ନିଆଯିବ ନାହିଁ । ଏ ଶୁଭସମ୍ବାଦରେ କଲେଜର ଅଧ୍ୟାପକମାନେ ଆନନ୍ଦିତ ହୋଇ କଲେଜ ଦିନେ ବନ୍ଦ କରିଥିଲେ । ବାସ୍ତବରେ ଏହା ଆନନ୍ଦର ବିଷୟ କାରଣ କଲେଜର କାର୍ଯ୍ୟ ସନ୍ତୋଷଜନକ ମତେ ଚଳୁ ନ ଥିବାରୁ ତାହା ଚିରସ୍ଥାୟୀ ହେବା ପକ୍ଷରେ ବଡ ସନ୍ଦେହ ଥିଲା । ଏପରି ସ୍ଥଳେ କଲେଜଟି ଚିରସ୍ଥାୟୀ ହେବା ବିଶେଷ ଆନନ୍ଦର ବିଷୟ । ଦୟାଳୁ ଓ ବିଦ୍ୟୋତ୍ସାହୀ ଗବର୍ଣ୍ଣମେଣ୍ଟ ଆମ୍ଭମାନଙ୍କୁ କଲେଜଟିଏ ପ୍ରଦାନ କଲେ ଏଥିପାଇଁ ଆମ୍ଭେମାନେ ତାଙ୍କୁ ଧନ୍ୟବାଦ ଦେଉ ଅଛୁଁ କିନ୍ତୁ ବର୍ତ୍ତମାନ କଲେଜ ଯେପରି ଅବସ୍ଥାରେ ଅଛି ସେହିପରି ଅବସ୍ଥାରେ ରହିଲେ ତେତେ ଉପକାର ହେବ ନାହିଁ ତେତେ ଆନନ୍ଦର ବିଷୟ ହେବ ନାହିଁ । ଗବର୍ଣ୍ଣମେଣ୍ଟ ଯେପରି ଦୟା ବହି କଲେଜଟିକୁ ଚିରସ୍ଥାୟୀ କଲେ ଓ ତହିଁର ସକଳ ଭାର ଆପଣା ଉପରେ ନେଲେ ସେହିପରି ତହିଁର ଉନ୍ନତି ପକ୍ଷରେ ଯତ୍ନ କରନ୍ତୁ । ବର୍ଷେ ହେଲା ଆଇନ ଶିକ୍ଷାର୍ଥେ କଲେଜରେ ଗୋଟିଏ Law Class ଫିଟିଅଛି ଏହା ଅତି ଉତ୍ତମ ହୋଇଅଛି ଓ ଏଥିରେ ବଡ ଉପକାର ହେବାର ସମ୍ଭାବନା । ଯେ ସ୍ଥଳେ ଗବର୍ଣ୍ଣମେଣ୍ଟ ଏତେ ବ୍ୟୟ ସ୍ୱୀକାର କରିଅଛନ୍ତି ସେ ସ୍ଥଳେ ଆଉ କିଛି ଅଧିକା ବ୍ୟୟରେ କୁଣ୍ଠିତ ନ ହେଉନ୍ତୁ ହେଲେ ତାଙ୍କର ଏତେ ବ୍ୟୟ ସମ୍ୟକ୍ ପ୍ରକାରରେ ଫଳଦାୟକ ହୋଇ ନ ପାରିବ । ଅତଏବ ଆମ୍ଭେମାନେ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରୁଅଛୁଁ ଯେ ବଙ୍ଗଦେଶର କଲେଜମାନଙ୍କରେ ଯେପରି ଅଧିକ ବେତନରେ ସୁଯୋଗ୍ୟ ପ୍ରିନ୍ସିପଲ ଇତ୍ୟାଦି ଅଛନ୍ତି ସେହିପରି ଏଠାରେ ହେଉ । ଏହା ହେଲେ ସବୁ ଉତ୍ତମ ହେବ ଓ ସରକାରଙ୍କର ଏତେ ବ୍ୟୟ ସମ୍ପୂର୍ଣ୍ଣରୂପେ ସଫଳ ହେବ । ଯେ ସ୍ଥଳେ କଲେଜଟି ଚିରସ୍ଥାୟୀ ହୋଇଅଛି ସେ ସ୍ଥଳେ ତହିଁର ଉନ୍ନତି ପକ୍ଷରେ ଅବଶ୍ୟ ଯତ୍ନ ହେବ ଏମନ୍ତ ଆଶା ହୋଇଅଛି ଓ କିଛି କାଳରେ ତାହା ଦେଖିବାରେ ଆସିବ । ସବୁ ଏକାବେଳକେ ହୋଇ ନ ପାରେ, କ୍ରମେ କଲେଜର ଉନ୍ନତି ହେବ ଏପରି ଭରସା ହେଉଅଛି ସୁତରାଂ କଲେଜ ଚିରସ୍ଥାୟୀ ହେବା ସମ୍ବାଦରେ ଆମ୍ଭମାନଙ୍କର ଆନ୍ତରିକ ଆନନ୍ଦ ଜାତ ହୋଇଅଛି ଓ ଆମ୍ଭେମାନେ କୃତଜ୍ଞତା ସହିତ ଗବର୍ଣ୍ଣମେଣ୍ଟଙ୍କର ପ୍ରଶଂସା କରୁଅଛୁଁ ।

*ଭା ୧୬ଗ, ସଂ ୪୫ଖ୍ୟା, ୧୨ । ୧୧ । ୧୮୮୧*

## [ପୁସ୍ତକାଳୟର ଅଭାବ]

ସ୍ଥାନାନ୍ତରେ ଏ ନଗରରେ ନୂତନ ସ୍ଥାପିତ ପୁସ୍ତକାଳୟର ସମ୍ପାଦକଙ୍କ ପ୍ରେରିତ ଖଣ୍ଡିଏ ଇଂରେଜୀ ପତ୍ର ପ୍ରକାଶ କଲୁଁ ତହିଁରୁ ପାଠକମାନେ ଅବଗତ ହେବେ ଯେ ପୁସ୍ତକାଳୟର ସାହାଯ୍ୟ ନିମିତ୍ତ ବାବୁ ସଦାନନ୍ଦ ମହାନ୍ତି ଏବଂ ବାବୁ କିଶୋରୀନାଥ ମିତ୍ର ଜଣକେ ଟ ୧୦ଙ୍କା ଲେଖାଏଁ ଏବଂ ବାବୁ ଅଚ୍ୟୁତାନନ୍ଦ ବୋଷ ଓ ବାବୁ ସଦାନନ୍ଦ ବେଉରା ଜଣକେ ଟ୫ଙ୍କା ଲେଖାଏ ଦାନ କରିଅଛନ୍ତି । ଏପର ବାବୁ ହରିଚରଣ ବାନୁର୍ଯ୍ୟା ଉକୀଲ ଏବଂ ବାବୁ ରାମପ୍ରସନ୍ନ ମୁଖୁର୍ଯ୍ୟା ଓ ବାବୁ ମଧୁସୂଦନ ରାଓ ଶିକ୍ଷକମାନେ କେତେଗୁଡିଏ ଇଂରାଜୀ ଏବଂ ବଙ୍ଗଳା ପୁସ୍ତକ ଦାନ କରିଅଛନ୍ତି । ନୂତନ ପୁସ୍ତକାଳୟ ପ୍ରତି ଉପରଲିଖିତ ମହାଶୟମାନଙ୍କର ଆସ୍ଥା ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ ଏବଂ ଆଶାକରୁଁ କି ଏଠାର ଅପର ଧନାଢ୍ୟ ଏବଂ ବିଦ୍ୱାନ୍ ବ୍ୟକ୍ତିମାନେ ଏହି ମାର୍ଗର ଅନୁଗାମୀ ହୋଇ ପୁସ୍ତକାଳୟଟିକୁ ଚିରସ୍ଥାୟୀ ଏବଂ ଆଶାନୁରୂପ କାର୍ଯ୍ୟକ୍ଷମ କରିବେ । ବଙ୍ଗଦେଶର ପ୍ରଧାନ ନଗରମାନଙ୍କର କଥା ତେଣିକି ଥାଉ ଅନେକ ସାମାନ୍ୟ ଗ୍ରାମରେ ସୁଦ୍ଧା ଗୋଟିଏ ଗୋଟିଏ ଉପଯୁକ୍ତ ପୁସ୍ତକାଳୟ ରହିଅଛି । ଓଡିଶାର ରାଜଧାନୀ କଟକ ନଗରରେ ସେପରି ନ ଥିବା ଭାରୀ ନିନ୍ଦାର ବିଷୟ ଅଟଇ । ସ୍ୱଦେଶାନୁରାଗିବ୍ୟକ୍ତିଙ୍କର ଏ କଥା ସର୍ବଦା ଚିନ୍ତା କରିବା ଉଚିତ ।

*ଭା୧୬ଗ,ସଂ୫୦ଖ୍ୟା,୧୭।୧୨।୧୮୮୧*

## ମୃତ ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ

ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଏ ସଂବାଦ ଲେଖିବାକୁ ବାଧ୍ୟ ହୋଇଅଛୁଁ । ଏମନ୍ତ ଶୋକାବହ ସଂବାଦ ଏତେ ଶୀଘ୍ର ଆମ୍ଭମାନଙ୍କୁ ଲେଖିବାକୁ ପଡିବ ଏହା ସ୍ୱପ୍ନର ଅଗୋଚର ଥିଲା କିନ୍ତୁ ଦୈବୀ ଘଟଣାକୁ ଆୟତ୍ତ କାହାର । ବାବୁ ପ୍ୟାରିମୋହନ ଆଚାର୍ଯ୍ୟ ଡୋମପଡା ମୁକାମରେ ଆଠ ଦଶ ଦିନ ଜ୍ୱର ଭୋଗ କରି ଆରୋଗ୍ୟ ଲାଭ ନିମିତ୍ତ ଗତ ଶନିବାର ଏ ନଗରସ୍ଥ ଆପଣା ଘରଠାକୁ ଆସିଥିଲେ ଏବଂ ତାହାଙ୍କର ପୀଡା ପ୍ରକାଶ୍ୟରେ କଠିନ ବୋଧ ହେଉ ନ ଥିବାରୁ ତହିଁର ସଂବାଦ ଅତ୍ୟଳ୍ପ ଲୋକ ପାଇଥିଲେ ଓ ତାହାଙ୍କ ଚିକିତ୍ସା ଘରେ ଘରେ ହେଉଥିଲା । ଗତ ଗୁରୁବାର ପ୍ରାତଃକାଳରେ ତାହାଙ୍କର ମୃତ୍ୟୁସଂବାଦ ଏମନ୍ତ ଆଶ୍ଚର୍ଯ୍ୟ ରୂପରେ ରଟନା ହେଲା କି ଯେଉଁମାନେ ପୂର୍ବ ରାତ୍ରରେ ତାହାଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲେ ସେମାନେ ସୁଦ୍ଧା ତଟସ୍ଥ ହେଲେ । ତାହାଙ୍କୁ ଚୋରା ସନ୍ନିପାତ ଧରିବା ଏବଂ ଚିକିତ୍ସକମାନେ ତାହା ଠଉରାଇ ନ ପାରିବାର ଆମ୍ଭେମାନେ ଅନୁମାନ କରୁଁ । ଯାହା ହେଉ ତହିଁର ବିଚାର ବର୍ତ୍ତମାନ ଅନାବଶ୍ୟକ ଓଡିଶା ଅତ୍ୟନ୍ତ ହତଭାଗିନୀ ଯେ ପ୍ୟାରିବାବୁଙ୍କ ପରି ପୁତ୍ରକୁ ଅକାଳେ ହରାଇଲା । ଏହାଙ୍କର ବୟସ କେବଳ ୩୦ ବର୍ଷ ଥିଲା ଏବଂ ଏହି ଅଳ୍ପକାଳ ମଧ୍ୟରେ ସେ ଯେମନ୍ତ କାର୍ଯ୍ୟକଳାପଦ୍ୱାରା ଆପଣାକୁ ଓଡିଶା ଏବଂ ଦକ୍ଷିଣରେ ପରିଚିତ କରିଅଛନ୍ତି ସେ ସମସ୍ତ ଏହି ପତ୍ରିକାର ପାଠକମାନେ ବିଲକ୍ଷଣ ସ୍ମରଣ ରଖିଥିବେ ବାହୁଲ୍ୟ ବର୍ଣ୍ଣନାର ପ୍ରୟୋଜନ ନାହିଁ । ସେ କେବଳ ବକ୍ତୃତାଦ୍ୱାରା ନୁହେ ମାତ୍ର କାର୍ଯ୍ୟଦ୍ୱାରା ଓଡିଶାର ଜଣେ ପରମବନ୍ଧୁ ବୋଲି ଜଣାଯାଇଅଛନ୍ତି ଏବଂ ଏତେବେଳ ପର୍ଯ୍ୟନ୍ତ ତାହାଙ୍କ ସ୍ଥାପିତ ବିଦ୍ୟାଳୟଟୀ ବିଦ୍ୟମାନ୍ ରହି ତାହାଙ୍କର ମହତ୍ତ୍ୱ ସ୍ୱଦେଶାନୁରାଗ ଉଦାରତା ଏବଂ ମନୁଷ୍ୟତାର ସାକ୍ଷ ଦେଉଅଛି । କେତେ ଦୁଃଖୀ ବାଳକ ଏଥିରେ ବିଦ୍ୟାଲାଭ କରୁଥିଲେ ସେମାନଙ୍କର ଦଶା ଭାବିବା ବେଳକୁ ହୃଦୟ ବିଦୀର୍ଣ୍ଣ ହେଉଅଛି । ଓଡିଶାର ଜଣେ ସାମାନ୍ୟ ବେତନଭୋଗୀ ଲୋକ ଏଡେ ମହତ୍ ଅନୁଷ୍ଠାନର ବ୍ରତୀ ହୋଇଥିଲେ କି ଯାହା ବଡ ବଡ ରାଜା ଜମିଦାରଙ୍କଠାରେ ଦେଖାଯାଇ ନାହିଁ ପ୍ୟାରିବାବୁ ଯେମନ୍ତ ସୁଶିକ୍ଷିତ ହୋଇ ସ୍ୱାଧୀନତା ଓ ଧର୍ମକୁ ଅବଲମ୍ବନ କରି ଚାଲୁଥିଲେ ତହିଁରେ ଆମ୍ଭମାନଙ୍କର ବିଶ୍ୱାସ ଥିଲା ଯେ ଭବିଷ୍ୟତରେ ତାହାଙ୍କଦ୍ୱାରା ଓଡିଶାର ଅନେକ କାର୍ଯ୍ୟ ହୁଅନ୍ତା ବର୍ତ୍ତମାନ ସେ ଆଶା ବିଫଳ ହେଲା । ପରମେଶ୍ୱର ଯେମନ୍ତ ଅକାଳରେ ତାହାଙ୍କୁ ଏ ପୃଥିବୀରୁ ଘେନିଗଲେ ତେମନ୍ତ ତାହାଙ୍କୁ ସ୍ୱର୍ଗୀୟ ସୁଖଦାନ କରନ୍ତୁ ଏବଂ ତାହାଙ୍କର ବୃଦ୍ଧ ପିତାମାତା ଏବଂ ଅଳ୍ପ

ବୟସ୍କା ପତ୍ନୀଙ୍କୁ ଏହି ଅସହନୀୟ ଶୋକକୁ ଶାନ୍ତରୂପେ ବହନ କରିବାକୁ ବଳୀୟାନ୍ କରନ୍ତୁ ଏହି ମାତ୍ର ଆମ୍ଭମାନଙ୍କର ପ୍ରାର୍ଥନା ।

*ଭା୧୭ଗ,ସଂ୫୨ଖ୍ୟା, ୩୧।୧୨।୧୮୮୧*

## ପ୍ରେରିତପତ୍ର ।

## [ଗଞ୍ଜାମ ଜିଲ୍ଲାର ଦୁଃଖି ଓଡିଆ]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହାଶୟ ସମୀପେଷୁ ।

ମହାଶୟ !

ଆମ୍ଭେମାନେ ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲୁଁ ଯେ ମୟୂରଭଞ୍ଜର ମହାରାଜା ୫୮୬ ଶତ ଟଙ୍କା ବେତନରେ ଏକଜଣ ଉପଯୁକ୍ତ ଦେଓ୍ୟାନ୍ ରଖିବା ନିମିତ୍ତ ଗଡଜାତ ସମୂହ ସୁପରିଣ୍ଟେଣ୍ଡେଣ୍ଟ୍ ସାହେବଙ୍କ ନିକଟରେ ପ୍ରସ୍ତାବ କରି ଅଛନ୍ତି । ଶ୍ରୀଯୁକ୍ତ ସାହେବ ମହୋଦୟ ଜଣେ ଉପଯୁକ୍ତ ଲୋକ ଖୋଜୁଥିଲେ । କିନ୍ତୁ ଏଥି ମଧ୍ୟରେ ମହାରାଜା ଗଡଜାତ ସମୂହର ଆସିଷ୍ଟେଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ବାବୁ ନନ୍ଦକିଶୋର ଦାସଙ୍କୁ ଦେଓ୍ୟାନ ପଦରେ ନିଯୁକ୍ତ କରିବା ପାଁଇ ସାହେବ ମହୋଦୟଙ୍କ ନିକଟକୁ ଆବେଦନ କରି ପଠାଇଲେ । ସାହେବ ମହୋଦୟ ବାବୁ ମହାଶୟଙ୍କର ମତ ପଚାରିଲାରୁ (ବୋଧହୁଏ) ସେ ଉପରୋକ୍ତ ବେତନରେ ଯିବାକୁ ଅସ୍ୱୀକୃତ ହେଲେ । ତତ୍‌ପରେ ମହାରାଜା ଓଡିଶା ସ୍କୁଲସମୂହର ଜଏଣ୍ଟଇନ୍‌ସ୍ପେକ୍ଟର ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟଙ୍କ ନାମରେ ସାହେବ ମହୋଦୟଙ୍କଠାକୁ ଆବେଦନ ପତ୍ର ପଠାଇଲେ ସାହେବ ମହୋଦୟ ରାଧାନାଥ ବାବୁଙ୍କର ମତ ପଚାରିଲାରୁ ବାବୁ ମହୋଦୟ କହିଲେ ଯେ ସେ ବୁଝିକରି ପଶ୍ଚାତ୍ ଏହାର ଉତ୍ତର ଦେବେ । ବର୍ତ୍ତମାନ ଶୁଣୁଅଛୁଁ ରାଧାନାଥ ବାବୁ ସେହି ପଦକୁ ଯିବା ନିମିତ୍ତ ଇଚ୍ଛୁକ ଅଛନ୍ତି । ବାସ୍ତବିକ ସେ ଯଦି ସେହି ପଦକୁ ଯିବାକୁ ଇଚ୍ଛୁକ ଥାନ୍ତି ତେବେ ଜାଣିଲୁଁ ଓଡିଶାର ଦୁର୍ଭାଗ୍ୟ ଦଶା ଉପସ୍ଥିତ ହୋଇଅଛି । ଯେହେତୁ ଓଡିଶା, ଜଏଣ୍ଟଇନ୍‌ସ୍ପେକ୍ଟରୀ ପଦରୁ ଜଣେ ପ୍ରକୃତ ଯୋଗ୍ୟ ବ୍ୟକ୍ତି ହରାଇବ, ଆଉ ଏପରି ଯୋଗ୍ୟବ୍ୟକ୍ତି ଶୀଘ୍ର ପାଇ ପାରିବ କି ନା ସନ୍ଦେହ । ବିଶେଷତଃ ଆମ୍ଭମାନଙ୍କ ଗୌରବ ହାନି ହୋଇ ଯିବ ଆଉ ଓଡିଶା ଗର୍ବ କରି ପାରିବ ନାହିଁ ଯେ ଜଣେ ଓଡିଶାବାସୀ ଶିକ୍ଷାବିଭାଗର ଶୀର୍ଷତମ ପଦରେ ଅଛି । ରାଧାନାଥ ବାବୁ ଦେଓ୍ୟାନୀ ପଦ ଗ୍ରହଣ କଲେ ତାହାଙ୍କ କାର୍ଯ୍ୟରେ ସାହେବ କିମ୍ବା ବଙ୍ଗାଳିମାନଙ୍କ ଭିନ୍ନ, ବୋଧହୁଏ ଶୀଘ୍ର ଓଡିଶାବାସୀ କେହି ନିଯୁକ୍ତ ହୋଇ ପାରିବେ ନାହିଁ । ଯେପରି ଭୂଦେବବାବୁ ସାହେବମାନଙ୍କର ଏକଚଟିୟା ଭାଙ୍ଗି ଇନ୍‌ସ୍ପେକ୍ଟରୀ ପଦ ବଙ୍ଗାଳୀ ମହଲରେ ଆଣି ସମସ୍ତଙ୍କର ଧନ୍ୟବାଦାର୍ହ ହୋଇଅଛନ୍ତି, ସେହିପରି ରାଧାନାଥ ବାବୁ ଇନ୍‌ସ୍ପେକ୍ଟର ହୋଇ ଓଡିଶାର ମୁଖୋଜ୍ୱଳ କରି ସମସ୍ତଙ୍କର ପ୍ରଶଂସାର୍ହ ହେବେ ବୋଲି ଆଶା ଥିଲା ତାହା ହୋଇଥିଲେ ଭବିଷ୍ୟତରେ ଓଡିଶାବାସିଙ୍କର ଇନ୍‌ସ୍ପେକ୍ଟର ହେବାର ବାଟ ପରିଷ୍କାର ହୋଇ ଥାଆନ୍ତା ବୋଧ ହୁଏ ଏବେ ସେ ବାଟ ପରିଷ୍କୃତ ହୋଇ ପାରିବ ନାହିଁ ।

ରାଧାନାଥବାବୁ ଏତେ ଅଳ୍ପବେତନରେ ଯିବାକୁ କାହିଁକି ମନ ବଳାଇ ଅଛନ୍ତି ତାହା ଆମ୍ଭେମାନେ ବୁଝିପାରୁ ନାହୁଁ ; ବର୍ତ୍ତମାନ ତାହାଙ୍କର ବେତନ ଓ ଗସ୍ତଖର୍ଚ୍ଚା ନେଇ ପ୍ରାୟ ପାଞ୍ଚଶତ ଟଙ୍କା ପର୍ଯ୍ୟନ୍ତ ପାଉଅଛନ୍ତି ବିଶେଷତଃ ଜନରବ ଯେ ଗଡଜାତ ନିମିତ୍ତ ପ୍ରତିମାସିକ ଦୁଇଶତ ଟଙ୍କା ଏଲାଉଏନ୍ସ (Allowance) ପାଇବାର କଥା ଅଛି । ଆହୁରି "ବଙ୍ଗବାସୀ"ରୁ ଅବଗତ ହେଲୁଁ ଯେ ହୁଗଲି କଲେଜର ୨ୟ ଶିକ୍ଷକ ବାବୁ ହରିଦାସଘୋଷ;କୃଷ୍ଣନଗର କଲେଜର ପ୍ରଧାନଶିକ୍ଷକ ବାବୁ ବୀରେଶ୍ୱରମିତ୍ର ପେନ୍‌ସନ୍ ନିମିତ୍ତ ଆବେଦନ କରିଅଛନ୍ତି ହେୟାରସ୍କୁଲ ପ୍ରଧାନ ଶିକ୍ଷକ ବାବୁ ଗିରିଶ୍ଚନ୍ଦ୍ରଦେବ ଆଉ ଏକମାସ ମାତ୍ର କାର୍ଯ୍ୟକରି ପାରିବେ; ଫେବୃଏରୀ ମାସଠାରୁ ତାହାଙ୍କୁ ପେନ୍‌ସନ୍ ନେବାକୁ ହେବ ରାଜସାହୀ କଲେଜର ବିଜ୍ଞାନଶାସ୍ତ୍ରର ଅଧ୍ୟାପକ ହୀରାଲାଲବାବୁଙ୍କର ମୃତ୍ୟୁ

ହୋଇଅଛି ଏମାନେ ବୋଧହୁଏ ପାଞ୍ଚଶତ ଟଙ୍କିଆ ଗ୍ରେଡରେ ଅଛନ୍ତି । ଯେତେବେଳେ ଏତେଗୁଡ଼ିଏ ପାଞ୍ଚଶତ ଟଙ୍କିଆ ଗ୍ରେଡର ପଦ ଶୂନ୍ୟ ହେଉଅଛି ତେତେବେଳେ ଏମାନଙ୍କମଧ୍ୟରୁ ଏକଗ୍ରେଡ ରାଧାନାଥ ବାବୁଙ୍କର ପାଇବାର ସମ୍ଭାବନା ।

ବାବୁ ମହାଶୟଙ୍କର ବର୍ତ୍ତମାନ ପଦଠାରୁ ମୟୂରଭଞ୍ଜର ଦେଓ୍ୟାନପଦ କିଛି ଉତ୍କୃଷ୍ଟ ନୁହେ ଓ ସେ ପଦରେ ତେତେ ଗୌରବ ନାହିଁ ବିଶେଷତଃ ଏତେ ଓଡିଶାବାସିଙ୍କର ସ୍ନେହ ଛାଡି ଏକା ମହାରାଜାଙ୍କ ସ୍ନେହରେ ଆବଦ୍ଧ ହେବେ ଏହା ବୋଧ ହେଉ ନାହିଁ; ଓ ଆମ୍ଭେମାନେ ତାହା ଆଶା କରୁନା । ଆମ୍ଭେମାନେ ଜାଣୁ ଯୋଡାକୁ ଘୋଡା ପାରଇ ନାହିଁ ସେ ସ୍ଥଳରେ ଏତେ ଓଡିଶାବାସିଙ୍କ ସ୍ନେହପାଶକୁ ଏକା ମହାରାଜାଙ୍କ ସ୍ନେହ ଛିନ୍ନକରି ପାରିବେ ନାହିଁ । ଯଦି ବାବୁ ମହାଶୟ ମହାରାଜାଙ୍କ ସ୍ନେହପାଶରେ ଆବଦ୍ଧ ହୁଅନ୍ତି ତେବେ ବୋଧ ହୁଏ କମିସନର ଓ ଡାଇରେକ୍ଟର ପ୍ରଭୃତି ମହୋଦୟଗଣ ଆଉ ଓଡିଶାବାସିମାନେ ଅତ୍ୟନ୍ତ ଦୁଃଖିତ ହେବେ ।

ପରିଶେଷରେ ବାବୁ ମହାଶୟଙ୍କୁ ଆମ୍ଭମାନଙ୍କର ପ୍ରାର୍ଥନା ଯେ ସେ ଏତେଲୋକଙ୍କୁ ଦୁଃଖିତ ନ କରାଉନ୍ତୁ । ଆମ୍ଭେମାନେ ପ୍ରତିଜ୍ଞା କରି କହିପାରୁଁ ବାବୁ ମହାଶୟଙ୍କର ଅଚିରାତ୍ ଉନ୍ନତି ହେବ ।

୨୯-୧୨-୮୧ — ଆପଣଙ୍କର
କଟକ — କେତେକଜଣ ଓଡିଆ ।

*ଅତିରିକ୍ତ, ୩୧/୧୨/୧୮୮୧*

# ୧୮୮୨

## ବନବାଳା

## ନାଟକାଭିନୟ ।

ମାହିଦାସ ବଜାର ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟଙ୍କ କୋଠା ନିକଟ ବାବୁ ହାରାଧନ ଘୋଷଙ୍କ କୋଠାଠାରେ ଫେବୃଏରୀମାସ ତା ୪ ରିଖ ଶନିବାର ରାତ୍ର ନଅ ଘଣ୍ଟା ସମୟରେ ଏ ନୂତନ ଓଡିୟା ନାଟକର ଅଭିନୟ ହେବ। ବିନା ଟିକଟରେ କେହି ଦେଖି ପାରିବେ ନାହିଁ ଟିକଟ କଟକପ୍ରିଣ୍ଟିଂକମ୍ପାନୀଙ୍କ ଯନ୍ତ୍ରାଳୟରେ ଆଉ ଅଭିନୟ ଦିନ ଅଭିନୟ ସ୍ଥାନରେ ପ୍ରାପ୍ତବ୍ୟ । ଚନ୍ଦାଦାତାମାନଙ୍କ ନିକଟକୁ ପୂର୍ବରୁ ଟିକଟ ପଠାଯିବ।

| | |
|---|---|
| ପ୍ରଥମ ଶ୍ରେଣୀ | ଟ ୧ |
| ଦ୍ୱିତୀୟ ଶ୍ରେଣୀ | ଟ୦୪ |

କଟକ
୨୦।୧।୮୨

ଶ୍ରୀ ଗୋପାଳଚନ୍ଦ୍ର ଦତ୍ତ
ସମ୍ପାଦକ

*ଅତିରିକ୍ତ,୨୧।୧।୧୮୮୨*

## [କଟକ ଏକାଡେମୀ]

ବାବୁ ପ୍ୟାରୀମୋହନ ଆଚାର୍ଯ୍ୟଙ୍କର ସ୍ଥାପିତ କଟକ ଏକଡେମୀ ନାମକ ବିଦ୍ୟାଳୟର ସମସ୍ତ ବ୍ୟୟ ସେ ଏକାକେ ନିର୍ବାହ କରୁଥିଲେ ଏଥିରେ ତାହାଙ୍କର ମାସିକ ଟ୮୦ ଙ୍କା ପର୍ଯ୍ୟନ୍ତ ବ୍ୟୟ ହେଉଥିଲା ତାହାଙ୍କ ଅକାଳମୃତ୍ୟୁରେ ସ୍କୁଲର ସ୍ଥାୟିତ୍ୱପ୍ରତି ଭାରୀ ବ୍ୟାଘାତ ହେବାରୁ ଏ ନଗରସ୍ଥ କେତେ ଜଣ କୃତବିଦ୍ୟ ଭଦ୍ରଲୋକ ଭେଦା ସଂଗ୍ରହ କରିବାର ଉଦ୍ୟମ କରିଅଛନ୍ତି । ଏ ବିଦ୍ୟାଳୟଦ୍ୱାରା ଅନେକ ଗରିବ ବାଳକଙ୍କର ଉପକାର ହେଉଅଛି କି ଯେଉଁମାନେ ରେବନ୍‌ସା କଲେଜିଏଟ୍ ସ୍କୁଲର ଉଚ୍ଚ ବେତନ ଦେଇ ବିଦ୍ୟାଲାଭ କରିବାକୁ ସମ୍ପୂର୍ଣ୍ଣରୂପେ ଅକ୍ଷମ ଅଟନ୍ତି । ନଗରବାସୀ ସମସ୍ତ କୃତବିଦ୍ୟ ଏବଂ ସଙ୍ଗତିପନ୍ନ ବ୍ୟକ୍ତିମାନେ ଇଚ୍ଛା କଲେ ମାସିକ ଟ୮୦ଙ୍କା ଭେଦା ଉଠିବା ବଡ କଥା ନୁହଇ ଏବଂ ଏକଜଣ ସାମାନ୍ୟ ଅବସ୍ଥାର ଲୋକଦ୍ୱାରା ଯେଉଁ ସ୍କୁଲଟି ତିନିବର୍ଷ ଉତ୍ତମ ଫଳ ଦେଖାଇ ଆସିଲା ତାହା ଏ ନଗରରେ ଏତେ ଲୋକ ଥାଉଁ ଥାଉଁ ଯେବେ ବିନାଶକୁ ଭଜଇ ତେବେ ଭାରୀ ଦୁଃଖ ଏବଂ ନିନ୍ଦାର ବିଷୟ ହେବ ଅତଏବ ଏ ବିଦ୍ୟାଳୟକୁ ସାହାଯ୍ୟ କରିବା ନିମିତ୍ତ ଆମ୍ଭେମାନେ ସର୍ବସାଧାରଣଙ୍କୁ ଅନୁରୋଧ କରୁଅଛୁଁ । ନଗରବାସୀ ସମସ୍ତଙ୍କର ଚେଷ୍ଟା ହେଲେ ଗୋଟିଏ ବିଦ୍ୟାଳୟ ନିର୍ବାହ ହେବା ବଡ କଥା ନୁହଇ ।

*ଭା୧୭ଗ,ସଂ୫ଖ୍ୟା, ୪।୨।୧୮୮୨*

## ଉଚ୍ଚଶିକ୍ଷାର ପ୍ରତିବନ୍ଧକ ।

ଶିକ୍ଷା ବିଭାଗର ଗତ ବାର୍ଷିକ ବିଜ୍ଞାପନୀ ଉପରେ ମାନ୍ୟବର ଛୋଟ ଲାଟ ସାହେବଙ୍କ ମନ୍ତବ୍ୟ ଅଳ୍ପଦିନ ହେଲା ବାହାରିଅଛି । ତହିଁରୁ ଦେଖାଯାଏ ଯେ ଗତବର୍ଷ ସର୍ବସୁଦ୍ଧା ୯୨୮୪୮୯ ପିଲା ବିଦ୍ୟାଳୟରେ ପଢୁଥିଲେ· ଏବଂ ଏଥିମଧ୍ୟରେ ୮୯୩୯୩୧ ପୁରୁଷ ପିଲା ଅଟନ୍ତି । ବଙ୍ଗଳାର ଗତ ଲୋକସଂଖ୍ୟା ଅନୁସାରେ ବିଦ୍ୟାଳୟରେ ପଢିବା ଉପଯୁକ୍ତ ବୟସର ପିଲାଙ୍କ ସଂଖ୍ୟା ୫୧ ଲକ୍ଷ ଅଟଇ ସୁତରାଂ ଏକ ଷଷ୍ଠାଂଶ ବାଳକ ଶିକ୍ଷାଲାଭ କରୁଅଛନ୍ତି । ଏଥିରେ ଗବର୍ଣ୍ଣମେଣ୍ଟଙ୍କର ନିଟବ୍ୟୟ ଟ୨୦୬୧୨୧୫ ପଡିଅଛି ଏବଂ ବଙ୍ଗଳା ପ୍ରଦେଶର ମୋଟ

## ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଆୟ ପ୍ରାୟ ୧୯କୋଟି ହେଉ ଥିବାରୁ ରାଜସ୍ୱ ଟଙ୍କା ପ୍ରତି ହରଦର ୨୫ ପାହୁଲା ଏବଂ ଲୋକସଂଖ୍ୟା ଦୃଷ୍ଟିରେ ଜଣପ୍ରତି ଦୁଇପଇସା ପଡିଅଛି । ବିଶ୍ୱବିଦ୍ୟାଳୟ ଏବଂ ସାହାଯ୍ୟକୃତ ବିଦ୍ୟାଳୟ ପ୍ରଭୃତି ସମସ୍ତ ଖର୍ଚ୍ଚା ମିଶାଇଲେ ଦେଖାଯାଏ ଯେ ଗବର୍ଣ୍ଣମେଣ୍ଟଙ୍କର ମୋଟ ଖର୍ଚ୍ଚା ଟ୫୫,୮୬,୦୦୦ଙ୍କା ହୋଇଥିଲା ଏବଂ ତହିଁ ମଧ୍ୟରୁ ଗବର୍ଣ୍ଣମେଣ୍ଟ କେବଳ ଶତକରା ଟ୪୦ ଙ୍କା ନିଜହସ୍ତରୁ ଦେଇ ଅଛନ୍ତି ଅବଶିଷ୍ଟ ଟଙ୍କା ଭେଦା ଛାତ୍ର ବେତନ, ପରୀକ୍ଷା ଫୀସ ପ୍ରଭୃତି ନାନାପ୍ରକାରେ ଲୋକଙ୍କଠାରୁ ଆଦାୟ ହୋଇଅଛି ସୁତରାଂ ଏକା ଗବର୍ଣ୍ଣମେଣ୍ଟଙ୍କ ବ୍ୟୟରେ ବଙ୍ଗବାସିମାନେ ଶିକ୍ଷାଲାଭ କରୁଅଛନ୍ତି ଏମନ୍ତ ବୋଲିବା ନିତାନ୍ତ ଅଳୀକ ଅଟଇ ।

ଉଚ୍ଚଶିକ୍ଷା ସମ୍ବନ୍ଧରେ ଡିରେକ୍ଟର ସାହେବ ଦେଖାଇ ଅଛନ୍ତି କି କଲେଜର ଛାତ୍ର ସଂଖ୍ୟା ଶତକରା ୨୧ଲେଖାଁଏ ବୃଦ୍ଧି ହୋଇଅଛି ଅର୍ଥାତ୍ ଗତବର୍ଷ କଲେଜ ଛାତ୍ରସଂଖ୍ୟା ୨୫୨୬ଜଣ ଏବଂ ତହିଁ ପୂର୍ବବର୍ଷ ୨୦୮୦ ଜଣଥିଲା । ଗବର୍ଣ୍ଣମେଣ୍ଟଙ୍କ ଅଧୀନରେ ୩ ପ୍ରକାର କଲେଜ ଅଛି ଯଥା;- ସରକାରୀ ସାହାଯ୍ୟକୃତ ଏବଂ ବିନା ସାହାଯ୍ୟ । ଏଥିକୁ ବିନା ସାହାଯ୍ୟ କଲେଜରେ ସର୍ବାପେକ୍ଷା ଅଧିକ ବୃଦ୍ଧି ଦେଖାଯାଏ । ମାନ୍ୟବର ଛୋଟ ଲାଟସାହେବ ଗତ ଚାରିବର୍ଷର ଖର୍ଚ୍ଚ ତୁଳନା କରି ସିଦ୍ଧାନ୍ତ କରିଅଛନ୍ତି କି କଲେଜ ଶିକ୍ଷାରେ ବିଶେଷ ଉପାୟଦ୍ୱାରା ପ୍ରାପ୍ତି ଟଙ୍କାର ବ୍ୟୟ ଅପେକ୍ଷା ଗବର୍ଣ୍ଣମେଣ୍ଟଙ୍କର ବ୍ୟୟ ଅଧିକ ବୃଦ୍ଧି ହେଉଅଛି । ଉଚ୍ଚଶିକ୍ଷାର ପ୍ରୟୋଜନ ବୃଦ୍ଧି ସଙ୍ଗେ ସଙ୍ଗେ ଅଧିକା ଅଧାପକ ନିଯୁକ୍ତ କରିବାର ଆବଶ୍ୟକତା ଏତେ ବୃଦ୍ଧି ହେଉଅଛି ଯେ ଗବର୍ଣ୍ଣମେଣ୍ଟଙ୍କୁ ତହିଁର ବ୍ୟୟ ଯୋଗାଇବା ଅସମ୍ଭବ ବୋଧ ହେଉଅଛି ଅତଏବ ଏଣିକି କଲେଜର ଶିକ୍ଷକଙ୍କ ନିମିତ୍ତ ଯେତେ ଅଧିକା ବ୍ୟୟ ପ୍ରୟୋଜନ ହେବ ତାହା ସ୍ୱୟଂ ଛାତ୍ରମାନେ ଦେବେ ଏବଂ ଏହି କାରଣରୁ ମାନ୍ୟବର ଛୋଟ ଲାଟସାହେବ ମୋଫସଲ କଲେଜମାନଙ୍କରେ ଛାତ୍ରଙ୍କ ବେତନ ବୃଦ୍ଧି କରିବାର ଆଜ୍ଞା ଦେଇଅଛନ୍ତି ।

ଆମ୍ଭମାନଙ୍କ ବିବେଚନାରେ ଏହି ବେତନ ବୃଦ୍ଧିର ଆଜ୍ଞା ଉଚ୍ଚଶିକ୍ଷା ପ୍ରତି ନିଶ୍ଚୟ ମାରକ ଅଟଇ ସନ୍ଦେହ ନାହିଁ । ସର ଆସଲୀ ଇଡନ ସାହେବ ଅତ୍ୟନ୍ତ ସୁଜାଣ ବୋଲି ଆମ୍ଭେମାନେ ବିଶ୍ୱାସ କରୁଁ ମାତ୍ର ତାହାଙ୍କର ଏ ପ୍ରକାର ବିଚାର ହେଲା ବଡ଼ ଆଶ୍ଚର୍ଯ୍ୟର ବିଷୟ ଅଟଇ । ତେବେ କି ସେ ଉଚ୍ଚଶିକ୍ଷାକୁ ହାତରେ ନ ମାରି ଭାତରେ ମାରିବାର ଉପାୟ କରିଅଛନ୍ତି ନୋହିଲେ ସେ ଅବଶ୍ୟ ମୋଫସଲର ଅବସ୍ଥାପ୍ରତି ଥରେ ଲକ୍ଷ କରିଥାନ୍ତେ । ଆମ୍ଭେମାନେ ଜାଣୁ ଯେ ରେବନ୍‌ସା କଲେଜ ଏବଂ ତଦନ୍ତର୍ଗତ ସ୍କୁଲର ଛାତ୍ରସଂଖ୍ୟା ଅଧିକ ନ ହେବାର ଗୋଟିଏ ପ୍ରଧାନ କାରଣ ଛାତ୍ରବେତନର ଉଚ୍ଚ ଭାଉ ଅଟଇ । ଏଠାରେ ବଡଲୋକଙ୍କ ସଂଖ୍ୟା ଅତ୍ୟନ୍ତ ଊଣା ଏବଂ ମଧ୍ୟବର୍ତ୍ତୀ ଲୋକ କି ଯେଉଁମାନେ ଜୀବିକା ଲାଭ ଆଶାରେ ଆପଣା ପିଲାମାନଙ୍କୁ ଉଚ୍ଚଶିକ୍ଷା ଦିଅନ୍ତି ସେମାନଙ୍କର ଅବସ୍ଥାକୁ ଏହା ଛାତ୍ରବେତନ ବଳାଇଅଛି । ଏଥି ଉପରେ ଆଉ ବୃଦ୍ଧି କରିବା କଲେଜ ଉଠାଇଦେବା ସଙ୍ଗେ ତୁଲ୍ୟ ଅଟଇ । ବରଂ ଆମ୍ଭେମାନେ ଗବର୍ଣ୍ଣମେଣ୍ଟରେ ପ୍ରାର୍ଥନା କରୁଁ କି ଓଡ଼ିଶା ପରି ପଛରେ ପଡିଥିବା ପ୍ରଦେଶକୁ ବଙ୍ଗଳାର ଅନ୍ୟାନ୍ୟ ପ୍ରଦେଶ ସଙ୍ଗେ ସମକକ୍ଷ କରିବା କାରଣ କିଛିକାଳ ନିମିତ୍ତ ଏଠା କଲେଜର ଛାତ୍ରବେତନ ବର୍ତ୍ତମାନ ଯାହାଅଛି ତହିଁରୁ ଊଣା କରନ୍ତୁ ଯେ ତଦ୍ଦ୍ୱାରା ଉଚ୍ଚ ଶିକ୍ଷାର ବିସ୍ତୃତି ହେବ । ଏଠାରେ ବେତନ ବୃଦ୍ଧି କରିବା କୌଣସିରୂପେ ଉଚିତ ନୁହଇ ।

*ଭା୧୭ଗ,ସଂ୬ଖ୍ୟା, ୧୧/୨/୧୮୮୨*

## ଉତ୍କଳ ନାଟକାଭିନୟ ।

ଗତବର୍ଷ କେତେକ ଉତ୍କଳ କୃତବିଦ୍ୟ ଯୁବକଙ୍କ ଯତ୍ନରେ ଏ ଶୁଭକାର୍ଯ୍ୟର ଅନୁଷ୍ଠାନ ହୋଇଥିବାର ପାଠକମାନେ ଅବଗତ ଅଛନ୍ତି । ସେମାନଙ୍କର ଉତ୍ସାହ ଓ ଶ୍ରମ ଦେଖି ଆମ୍ଭେମାନେ ସନ୍ତୁଷ୍ଟ ହୋଇଥିଲୁଁ ଓ ପୁନଃ ପୁନଃ ଅଭିନୟ ଦେଖିବାର ଆଶା କରିଥିଲୁଁ । ଏଥିରେ କେତେ ଅସୁବିଧା ଓ ଅର୍ଥକଷ୍ଟ ଘଟିଥିଲେ ହେଁ ସେ ଯୁବକମାନେ ନିରୁତ୍ସାହ ହେଲେ ନାହିଁ ଓ କାଞ୍ଚିକାବେରୀ ନାଟକର ରଚକ ବାବୁ ରାମଶଙ୍କର ରାୟ ବନବାଳା ନାମଧେୟରେ ଖଣ୍ଡିଏ ଉତ୍କଳ ନାଟକ ରଚନା କରନ୍ତେ ସେମାନେ ତହିଁର ଅଭିନୟର ଚେଷ୍ଟା କଲେ । ଏ ଅଭିନୟ ଗତ ଶନିବାର ହୋଇଥିଲା ଓ ଏକଟଙ୍କିଆ ଓ ଆଠଅଣିଆ ଟିକଟ ହୋଇଥିଲେ ହେଁ ଯଥେଷ୍ଟ ଦର୍ଶକ ହୋଇଥିଲେ ମାତ୍ର ସେମାନଙ୍କ ଆସନରେ କିଛି ଅଶୃଙ୍ଖଳା ଘଟିଥିଲା । ବନବାଳାର ଚରିତ୍ର ଜାଣିବାକୁ ପାଠକମାନେ କୌତୁକୀ

ହୋଇ ପାରନ୍ତି କିନ୍ତୁ ତାହା ବର୍ଣ୍ଣିବା ପୂର୍ବେ କହିବାର ଉଚିତ ଯେ ତାହା ନାଟକୋପଯୁକ୍ତ ନୁହେ ଓ ତହିଁର ରଚନା ପ୍ରଣାଳୀରୁ ମଧ୍ୟ ତାହା ହୃଦୟଙ୍ଗମ ହେବାର କଷ୍ଟ ହେଲା । ଆମ୍ଭେମାନେ ଯେତେଦୂର ବୁଝିଅଛୁଁ ତହିଁର ସଂକ୍ଷେପ ବୃତ୍ତାନ୍ତ ନିମ୍ନେ ଲେଖୁଅଛୁଁ ଯଥା; -

ନାଗେଶ ନାମକ ଓଡିଶାରାଜାଙ୍କର କନ୍ୟା ଚିତ୍ରଲେଖାଙ୍କୁ ଜଣେ ରାକ୍ଷସ ଅପହୃତ କଲା ମନ୍ତ୍ରିଙ୍କ ଉପରେ ସନ୍ଦେହ ହେବାରୁ ରାଜା ଏହି ଦଣ୍ଡାଜ୍ଞା କଲେ ଯେ ମନ୍ତ୍ରୀ ଚଉରିବର୍ଷ ବନବାସ କରିବେ ଓ ଏଥି ମଧ୍ୟରେ କନ୍ୟାପ୍ରାପ୍ତ ନ ହେଲେ ତାଙ୍କର ପ୍ରାଣଦଣ୍ଡ ହେବ । ମନ୍ତ୍ରୀ ସସ୍ତ୍ରୀକ ବନକୁ ଗମନ କଲେ ଓ ବନବାସ ଅବସ୍ଥାରେ ତାଙ୍କର ଗୋଟିଏ କନ୍ୟା ଜନ୍ମ ହେଲା ତାହାର ନାମ ବନବାଳା । ଗନ୍ଧର୍ବ ରାଜା ଏଥିର ସମ୍ବାଦ ପାଇ ମନ୍ତ୍ରୀଙ୍କ ସ୍ତ୍ରୀକୁ ଘେନିଯାଇ ଆପଣା ପୁରରେ ରଖିଲେ ଓ ବନବାଳାର ବ ୧୪ର୍ଷ ବୟସ ସମୟରେ ମନ୍ତ୍ରିଙ୍କର କାଳ ହେଲା ଓ ବନବାଳା ମନୋଦୁଃଖରେ ରହିଲେ ମନ୍ତ୍ରୀ ମୃତ୍ୟୁ ପୂର୍ବେ ଆପଣା କନ୍ୟାର ଓଡ଼ିଶା ରାଜକୁମାର ବୀରଚନ୍ଦ୍ର ସଙ୍ଗେ ଓ ଗନ୍ଧର୍ବ ରାଜକୁମାରର ଓଡ଼ିଶା ରାଜକନ୍ୟା ସଙ୍ଗେ ବିବାହ ହେବାର ପ୍ରସ୍ତାବ କରିଥିଲେ । ନାଗେଶ ଆପଣା କନ୍ୟାର ଉଦ୍ଦେଶ୍ୟ ନ ପାଇବାରୁ ବୀରଚନ୍ଦ୍ରକୁ ମନ୍ତ୍ରିଙ୍କର ପ୍ରାଣଦଣ୍ଡ ସକାଶେ ବନକୁ ପେସିଲେ । ବୀରଚନ୍ଦ୍ର ବନରେ ଘଟନାକ୍ରମେ ସଙ୍ଗିମାନଙ୍କଠାରୁ ବିଚ୍ଛିନ୍ନ ହୋଇ ଓ ଅନେକ କଷ୍ଟ ଭୋଗି ବନବାଳାଙ୍କ କୁଟୀରରେ ପ୍ରବେଶ ହେଲେ । ଶେଷେ ରାକ୍ଷସ କୌଶଳକ୍ରମେ ଗନ୍ଧର୍ବରାଜା ଏବଂ ଓଡିଶାରାଜାଙ୍କ ମଧ୍ୟରେ ଯୁଦ୍ଧ ଲଗାଇ ଦେଲା ଓ ଯୁଦ୍ଧରେ ଶେଷୋକ୍ତ ରାଜା ହାରି ଗଲେ ତଦନନ୍ତର ସମୁଦାୟ ବୃତ୍ତାନ୍ତ ପ୍ରକାଶ ହେବାରୁ ମୃତ ମନ୍ତ୍ରିଙ୍କ ପ୍ରସ୍ତାବମତେ ଉଭୟ ବିବାହ ସମ୍ପନ୍ନ ହେଲା । ଏ ଚରିତ୍ର ଯାହା ହେଉ ଆମ୍ଭେମାନେ ଗ୍ରନ୍ଥକର୍ତ୍ତାଙ୍କୁ ପ୍ରଶଂସା କରୁଅଛୁଁ କାରଣ ଏ ବିଷୟରେ ତାଙ୍କର ବିଶେଷ ଯତ୍ନ, ଶ୍ରମ ଓ ଉତ୍ସାହ ଦେଖାଯାଏ । ଏକବର୍ଷ ମଧ୍ୟରେ ସେ ଦୁଇଖଣ୍ଡ ଓଡ଼ିଆ ନାଟକ ରଚନା କରିବାରୁ ଦୁଇଥର ଓଡ଼ିଆ ଅଭିନୟ ଦେଖିଲୁଁ କୌଣସି କାର୍ଯ୍ୟ ପ୍ରଥମରୁ ଭଲ ହେବାର ସମ୍ଭବ ନୁହେ । ରାମଶଙ୍କର ବାବୁଙ୍କର ଆଧୁନିକ ଉତ୍ସାହ ସ୍ଥିରତର ରହିଲେ ସେ କିଛିଦିନେ ଉତ୍କୃଷ୍ଟ ନାଟକ ରଚନା କରି ଉତ୍କଳ ସାହିତ୍ୟର ଗୋଟିଏ ପ୍ରଧାନ ଅଭାବ ମୋଚନ କରିବେ ଏପରି ଆଶା ହେଉଅଛି ଓ ଏ ଆଶା ପୂର୍ଣ୍ଣ କରିବା ପକ୍ଷରେ ସେ ଯେପରି ତ୍ରୁଟି ନ କରନ୍ତୁ ଏହାଇ ଆମ୍ଭମାନଙ୍କର ଏକାନ୍ତ ବାସନା ।

ଅଭିନୟରେ କେତେକ ଦୋଷ ଲକ୍ଷିତ ହୋଇଥିଲା । କେହି ଗାଇଲା ପ୍ରାୟ, କେହି ପାଦରୀଙ୍କ ପ୍ରାୟ, କେହି ଶିଖିଲା ପ୍ରାୟ, କେହି ଅତି ଚଞ୍ଚଳ କହିଲେ ପ୍ରକୃତ କଥୋପକଥନ ପ୍ରାୟ କହି ନ ପାରିଲେ ମାତ୍ର ଏମାନଙ୍କ ସଂଖ୍ୟା ଅତି ଅଳ୍ପ ଉତ୍ତମ ଅଭିନୟକାରୀଙ୍କ ସଂଖ୍ୟା ଅଧିକ । ସେମାନଙ୍କ ମଧ୍ୟରେ ସୂତ୍ରଧର, ନାଗେଶ,ମଧୁକର,ବନବାଳା, ବହୁମୁଖ, ବୀରକର୍ମା, ଚିତ୍ରସେନ, ପ୍ରେମମୟୀ, ପାରିଜାତ, ଚିତ୍ରଲେଖା ଉତ୍କୃଷ୍ଟ ଅଭିନୟ କରିଥିଲେ ଓ ଦର୍ଶକମାନଙ୍କର ଆନନ୍ଦଧ୍ୱନି ପୁନଃ ପୁନଃ ଶୁଣା ଯାଇଥିଲା । ଅତଏବ ଆମ୍ଭେମାନେ ଗ୍ରନ୍ଥକର୍ତ୍ତା ଅଭିନେତୃଗଣ ଓ ଉଦ୍ୟମକାରୀ ଓ ଭେଦାଦାନ ଇତ୍ୟାଦି ପ୍ରକାର ସାହାଯ୍ୟକାରୀ ସମସ୍ତଙ୍କୁ ଧନ୍ୟବାଦ ପ୍ରଦାନ କରୁଅଛୁଁ ।

ଅବଶେଷରେ ଗୋଟିଏ ଆକ୍ଷେପର ବିଷୟ ନ କହି କ୍ଷାନ୍ତ ହୋଇ ନ ପାରିଲୁଁ । ଦର୍ଶକଙ୍କ ମଧ୍ୟରେ ଜଣେ ଭଦ୍ର କୁଳର ବ୍ୟକ୍ତି ଅତି ଅଭଦ୍ର ଓ ନୀଚ ବ୍ୟବହାର କରିଥିଲେ ଓ ତାଙ୍କର ଏପରି ମନ୍ଦ ବ୍ୟବହାର ହେତୁ ଦର୍ଶକ ଓ ଅଭିନେତୃବର୍ଗ ଉଭୟଙ୍କର ବଡ ଅସୁଖ ଜାତ ହୋଇଥିଲା ।

*ଭା୧୭ଗ,ସଂ୬ଖ୍ୟା,୧୧।୨।୧୮୮୨*

## [ଓଡ଼ିଆ ନାଟକ ଅଭିନୟ ]

ଗତ ଶନିବାର ରାତ୍ରରେ ବନବାଳା ନାମକ ଓଡିୟା ନାଟକର ଆଉ ଥରେ ଅଭିନୟ ହୋଇ ଥିଲା । ଏଥର ଟିକଟର ମୂଲ୍ୟ ପୂର୍ବାପେକ୍ଷା ଅଧେ ଧାର୍ଯ୍ୟ ହୋଇ ଥିଲେହେଁ ଦର୍ଶକଙ୍କ ସଂଖ୍ୟା ପ୍ରଥମଥରପରି ହୋଇ ନ ଥିଲା । ଦର୍ଶକମାନେ ବହୁତ ରାତ୍ର ପର୍ଯ୍ୟନ୍ତ ସ୍ଥିର ଭାବରେ ବସି ଦେଖିବାଦ୍ୱାରା ଅତ୍ୟନ୍ତ ଆମୋଦ ଲାଭ କରିବାର ପରିଚୟ ଦେଇ ଥିଲେ ।

*ଭା୧୭ଗ,ସଂ୭ଖ୍ୟା,୧୮।୨।୧୮୮୨*

## ସମାଲୋଚନା ।

ଆମ୍ଭେମାନେ ଉତ୍କଳ ହିତୈଷିଣୀ ଯନ୍ତ୍ରରେ ମୁଦ୍ରିତ ହେବା ତଳଲିଖିତ ପୁସ୍ତକମାନ ଉପହାର ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ।

ସ୍ୱାସ୍ଥ୍ୟରକ୍ଷା, ବାବୁ ଉମାପ୍ରସାଦ ଦେ କୃତ -ଏ ପୁସ୍ତକ ଖଣ୍ଡିକ ବହୁକାଳରୁ ଓଡିଶାର ବିଦ୍ୟାଳୟମାନଙ୍କରେ ପ୍ରଚଳିତ ଅଛି ସୁତରାଂ ତହିଁର ଅଧିକ ପରିଚୟର ପ୍ରୟୋଜନ ନାହିଁ ତେବେ ବର୍ତ୍ତମାନ ସଂସ୍କରଣରେ ଏହା ଅନେକ ପରିମାଣରେ ପରିବର୍ଦ୍ଧିତ ହୋଇଅଛି ଏବଂ ପାକଯନ୍ତ୍ର ଓ ରକ୍ତସଞ୍ଚାଳନ କ୍ରିୟା ଇତ୍ୟାଦି ବୁଝିବା କାରଣ କେତେଗୁଡ଼ିଏ ଉତ୍ତମ ଚିତ୍ର ଏଥିରେ ସନ୍ନିବେଶିତ ହୋଇ ଥିବାରୁ ବାଳକଙ୍କର ଅଧିକ ସୁବିଧା ହୋଇଅଛି । ଚିତ୍ରଗୁଡିକ ଏହିଠାରେ ପ୍ରସ୍ତୁତ ହେବା ବଡ ସୁଖର ବିଷୟ ଅଟଇ । ଏ ଦେଶରେ ସଚରାଚର ଘଟୁଥିବା କେତେ ଗୁଡିଏ ରୋଗର ଅତି ସରଳ ଔଷଧମାନ ପୁସ୍ତକରେ ପ୍ରକାଶ କରି ଗ୍ରନ୍ଥକର୍ତ୍ତା ମୋଫସଲବାସୀଙ୍କର ବଡ ଉପକାର କରିଅଛନ୍ତି ।

ବୈଷୟିକ ଦୀପିକା - ଏ ଖଣ୍ଡିଏ ବିଚିତ୍ର ଗ୍ରନ୍ଥ ଅଟଇ । ଏଥିରେ ଭୂଗୋଳ, ଇତିହାସ, ଅର୍ଥବ୍ୟବହାର କୃଷିତତ୍ତ୍ୱ ଆଇନ ରେବିନିୟୁ ବୋର୍ଡର ବିଧି ଇତ୍ୟାଦି ସକଳ ବିଷୟର କିଛି କିଛି ଉଲ୍ଲେଖ ଅଛି ଏବଂ ବହୁ ବ୍ୟବସାୟୀ ଯେମନ୍ତ କୌଣସି ଏକ ବିଷୟରେ ନିପୁଣତା ଲାଭ କରି ପାରଇ ନାହିଁ ତେମନ୍ତ ଏହାର ଦଶା ଘଟିଅଛି ତାହା ପଢିଲା ମାତ୍ରକେ ପାଠକମାନେ ଜାଣି ପାରିବେ । ଗ୍ରନ୍ଥ କର୍ତ୍ତା ବାବୁ କାଳୀପଦ ବାନୁର୍ଯ୍ୟା କି ସେ ଏ ପୁସ୍ତକ ସମ୍ପର୍କରେ ବିଶେଷରେ ଆପଣାକୁ ଜିଲ୍ଲା ଶିକ୍ଷା କମିଟିର ଜଣେ ମେମ୍ବର ବୋଲି ପରିଚୟ ଦେଇଅଛନ୍ତି ପ୍ରକାଶ୍ୟରେ ଏହାକୁ ବିଦ୍ୟାଳୟର ବ୍ୟବହାର ନିମିତ୍ତ ରଚନା କରି ନାହାନ୍ତି ଯେହେତୁ ଏହାର ନାମର ଅର୍ଥ ବିଷୟୀ ବା ମାମଲତକାର ବ୍ୟକ୍ତିର ହସ୍ତ ପୁସ୍ତକ ବୋଲି ସ୍ୱୟଂ ଗ୍ରନ୍ଥକାର କହିଅଛନ୍ତି ସୁତରାଂ ବିଚିତ୍ର ହେବା ତେତେ କ୍ଷତିର କଥା ନୁହଇ । ମାତ୍ର ବିଜ୍ଞାପନରେ ଗ୍ରନ୍ଥକାର ଲେଖିଅଛନ୍ତି କି "ଜମିଦାରୀ ଏବଂ ମହାଜନୀ ବିଷୟକ ଅନେକ ପୁସ୍ତକ ବଙ୍ଗ ଓ ଉତ୍କଳ ଭାଷାରେ ପ୍ରଚଳିତ ଥିଲେ ହେଁ ସେମାନଙ୍କରେ ସମସ୍ତ ଅଭାବମାନ ପୂର୍ଣ୍ଣ ହୋଇ ନାହିଁ ପୁଣି ତାହା ଅକୁଶଳୀ ଶିଳ୍ପୀର କାର୍ଯ୍ୟ ନ୍ୟାୟ ସମ୍ପାଦିତ ହୋଇଅଛି, ଏହି ହେତୁରୁ କଟକ ଜିଲ୍ଲାର ଡେପୁଟୀ ଇନସ୍ପେକ୍ଟର ଶ୍ରୀ ବାବୁ ଉମାପ୍ରସାଦ ଦେଙ୍କ ଅନୁରୋଧରେ ଆମ୍ଭେ ଏହି ବୈଷୟିକ ଦୀପିକାର ପ୍ରଥମଭାଗ ପ୍ରଣୟନ କଲୁଁ" । ଅତଏବ ପ୍ରଚଳିତ ଜମିଦାରୀ ସିରସ୍ତା ପରିବର୍ତ୍ତରେ ଏହି ପୁସ୍ତକକୁ ବିଦ୍ୟାଳୟମାନଙ୍କରେ ଚଳାଇବା ଗ୍ରନ୍ଥକାରଙ୍କର ମୋକ୍ଷ ଉଦ୍ଦେଶ୍ୟ ଅଟଇ ଏବଂ ଏଥିପାଁଇ କମିଟୀର ମେମ୍ବର ଏବଂ ଡେପୁଟି ଇନିସ୍ପେକ୍ଟରର ରାଣ ଦେବାକୁ ତ୍ରୁଟି କରି ନାହାନ୍ତି ଏବଂ ଏ ଜିଲାର ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ପସି ସାହେବଙ୍କୁ ଏ ପୁସ୍ତକ ଉପହାର ଦେଇଅଛନ୍ତି ଏଥକୁ ପ୍ରଶ୍ନ ଏହି ଅନ୍ୟାନ୍ୟ ଜମିଦାରୀ ସିରସ୍ତାଠାରୁ ଏହା କି ଉତ୍କୃଷ୍ଟ ହୋଇଅଛି ? ଆମ୍ଭେମାନେ ବାବୁ ନିମାଇଚରଣ ବୋଷ ଏବଂ କୁମାର ବୈକୁଣ୍ଠନାଥ ଦେଙ୍କ ଜମିଦାରୀ ସିରସ୍ତାମାନ ଦେଖିଅଛୁଁ ବୋଷଜୀଙ୍କ ଗ୍ରନ୍ଥ ଅଧିକ ବାହୁଲ୍ୟ ଏବଂ କୁମାରଙ୍କ ଗ୍ରନ୍ଥ ସଂକ୍ଷେପ ହେଲେହେଁ ଉଭୟରେ ଜମିଦାରୀ କାଗଜ ପତ୍ର ପ୍ରସ୍ତୁତ କରିବାର ନିୟମମାନ ଉତ୍ତମରୂପେ ବର୍ଣ୍ଣିତ ହୋଇଅଛି । ସମାଲୋଚିତ ଗ୍ରନ୍ଥ ଅନ୍ୟାନ୍ୟ ଅସାର ବିଷୟରେ ପରିପୂର୍ଣ୍ଣ ହୋଇ ଗ୍ରନ୍ଥର ପ୍ରକୃତ ଉଦ୍ଦେଶ୍ୟ ପରିଶିଷ୍ଟରୂପରେ ଏମନ୍ତ ସଂକ୍ଷେପରେ ଲେଖା ଅଛି ଯେ ତହିଁରୁ ବାଳକମାନଙ୍କର କୌଣସି ଉପକାର ହେବା ଅତ୍ୟନ୍ତ କଠିନ । ପୁଣି ଏହାର ଛାପା ସ୍ଥାନେ ସ୍ଥାନେ ଏମନ୍ତ ମନ୍ଦ ହୋଇଅଛି ଯେ ବାଳକଙ୍କ ପକ୍ଷରେ ପଢିବା ସହଜ ନୁହଇ ।

ଏ ପୁସ୍ତକ ଖଣ୍ଡିକ ଟିକା ଏବଂ ମନ୍ତବ୍ୟରେ ପରିପୂର୍ଣ୍ଣ ଏବଂ ସେ ସମସ୍ତ ଅନେକ ସ୍ଥଳରେ ଭ୍ରମାତ୍ମକ ଓ ଅସମ୍ପୂର୍ଣ୍ଣ ଥିବାର ଲକ୍ଷିତ ହୁଅଇ ପୁସ୍ତକର ଆରମ୍ଭରେ 'ସ୍ଥାବର ବା ଭୂସମ୍ପତ୍ତି' ର ଏହିପରି ଟୀକା ହୋଇଅଛି କି 'ଧନ ଧାନ୍ୟ ଧରା ଏହି ତିନି ପଦାର୍ଥ ଓ ଏଥିର ବିନିମୟରେ ଯେପଦାର୍ଥ ଲାଭ କରାଯାଏ ତାହାକୁ ସମ୍ପତ୍ତି କହି' ଏ ବ୍ୟାଖ୍ୟା କେତେଦୂର ସଙ୍ଗତ ହେଲା ପାଠକମାନେ ଅନାୟାସରେ ବୁଝି ପାରିବେ । ଏଥି ଉତ୍ତାରୁ ରାଜାର ଅର୍ଥ ଏହିପରି ହୋଇଅଛି କି 'ଦେଶର ଅଧିକାରୀକି ରାଜା କହି' ଏକଥା ସମାଲୋଚିତ ଗ୍ରନ୍ଥରେ ଲେଖିବାର କୌଣସି ପ୍ରୟୋଜନ ନାହିଁ ପୁଣି ଏଥିରେ ଛ ଧାଡିର ଏକ ଟିକା ସଂଯୁକ୍ତ ହୋଇଅଛି ଏବଂ ତାହା ଆହୁରି ଅପ୍ରାସଙ୍ଗିକ ।

ଏହିପରି ଅନେକ କୌତୁକ ଏ ଗ୍ରନ୍ଥରେ ଅଛି ପ୍ରସ୍ତାବ ବାହୁଲ୍ୟ ଭୟରେ ତହିଁର ଉଲ୍ଲେଖରୁ କ୍ଷାନ୍ତ ହେଲୁଁ । କୌତୁକପ୍ରିୟ ପାଠକମାନେ ଏ ଗ୍ରନ୍ଥ ଥରେ ପାଠ କଲେ ବିଫଳ ଶ୍ରମ ହେବ ନାହିଁ ।

*ଭା।୧୬ଗ,ସଂ୮ଖ୍ୟା,୨୫।୨।୧୮୮୨*

## ପ୍ରେରିତ ପତ୍ର ।

## [ପ୍ରତିବାଦ ପତ୍ର]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ

ମହାଶୟ ସମୀପେଷୁ

ମହାଶୟ !

ଆପଣଙ୍କ ତା ୧୮ଗିଖ ଫିବୃଏରୀର ପତ୍ରିକାରେ ବାବୁ ମଧୁସୂଦନ ରାଓଙ୍କ ଯେଉଁ ଇଂରାଜୀ ପତ୍ର ପ୍ରକାଶ ହୋଇଅଛି ତହିଁର କିଛି ପ୍ରତିବାଦ କରିବା ଆମ୍ଭର କର୍ତ୍ତବ୍ୟ ବୋଲି ଏହି ପତ୍ରଖଣ୍ଡକୁ ସାଧାରଣଙ୍କ ସମ୍ମୁଖରେ ପ୍ରକାଶ କରିବାକୁ ବାଧ ହେଲୁଁ ।

ଅନ୍ୟଙ୍କର କଥା ମିଥ୍ୟା ବୋଲିବାର ପୂର୍ବରେ ନିଜର କଥା ସତ୍ୟ ତାହା ପ୍ରମାଣ ନ କଲେ ଏବଂ ଆପଣ ଯେ ସତ୍ୟପ୍ରିୟ ତହିଁର ବିଶିଷ୍ଟ ବିଶ୍ୱାସମୂଳକ ପ୍ରମାଣ ନ କଲେ ଅନ୍ୟର କଥା ମିଥ୍ୟା ଏହା ପ୍ରକାଶ କରିବା ଯୁକ୍ତିଶାସ୍ତ୍ରର ବିରୋଧୀମତ ମଧୁବାବୁ "ପ୍ରବନ୍ଧମାଳା" ମଧରେ ତାଙ୍କ ଲିଖିତ ସମସ୍ତ ପ୍ରବନ୍ଧ ବୋଲିଅଛନ୍ତି ତହିଁର ପ୍ରମାଣ କଣ ? ଅବଧି ତହିଁର କିଛିମାତ୍ର ବିଶ୍ୱାସମୂଳକ ପ୍ରମାଣ ଦେଇପାରି ନାହିଁ । ଆପଣଙ୍କ ସନ ୧୮୮୦ ମସିହାର ଡିସମ୍ବର ମାସର ତା ୧୧ ଗିଖର ଉତ୍କଳଦୀପିକା ମଧରେ "ପ୍ରବନ୍ଧମାଳା" ସମ୍ପର୍କରେ ଯେଉଁ ସମାଲୋଚନା ହୋଇଥିଲା, ତହିଁ ମଧରେ ମଧୁବାବୁ ପ୍ରବନ୍ଧମାଳା ମଧରେ ଯେତେ ବିଷୟମାନ ଅନୁବାଦ ଅବା ସଂଗ୍ରହ କରି ସନ୍ନିବେଶିତ କରିଅଛନ୍ତି ତନ୍ମଧରେ ଉତ୍କଳ ଦର୍ପଣରୁ ତେରଗୋଟି ପ୍ରବନ୍ଧର ମଧ, ଛଗୋଟି ଉତ୍କଳଦର୍ପଣରୁ ଉଥିତ କରିବା ସମ୍ପର୍କରେ ଆମ୍ଭର କଥାର ପ୍ରମାଣ ସ୍ୱରୂପ ଦୃଷ୍ଟାନ୍ତ ଦର୍ଶାଇବା ହୋଇଥିଲା ଯେତେବେଳେ ସେ ଦର୍ପଣରୁ ଉଦ୍ଧୃତ ପ୍ରବନ୍ଧମାନ ତାଙ୍କର ବୋଲି ପ୍ରବନ୍ଧମାଳାରେ ଲେଖି ଦେଇ ନାହାନ୍ତି ତେତେବେଳେ ସେ ଲେଖା ତାଙ୍କ ନିଜ ସମ୍ପତ୍ତି ତାହା ସାଧାରଣ ଲୋକମାନେ କେବଳ ମାତ୍ର ଏତିକି କଥାରେ ବିଶ୍ୱାସ କରିବାକୁ ବାଧ କିପରି ହୋଇ ପାରେ ? ଭଲ, ରାଧାନାଥ ବାବୁ ଏବଂ ମଧୁ ବାବୁ ମିଳି କରି ଏକତ୍ରେ ଲେଖିଥିଲେ କି ନାହିଁ ଯେବେ ସେ କଥା ସତ୍ୟ ହୁଏ, ତାହା ହେଲେ କେଉଁ କେଉଁ ପ୍ରବନ୍ଧ ରାଧାନାଥବାବୁଙ୍କ ଓ କେଉଁ କେଉଁ ପ୍ରବନ୍ଧ ମଧୁବାବୁଙ୍କ ତାହା ଅନ୍ୟ ଲୋକମାନେ କିପରି ଜାଣି ପାରିବେ ?

ଯାହା ହେଉ ଏତେଦିନ ଉତ୍ତାରୁ ମଧୁବାବୁ ରାଧାନାଥ ବାବୁଙ୍କ ଗୋଟିଏ ଗୁପ୍ତ ରହସ୍ୟ ପ୍ରକାଶ କରିଅଛନ୍ତି । ଯଦିଚ ସେହି ଲେଖା ଆମ୍ଭର ମତ ଓ ରାଧାନାଥ ବାବୁଙ୍କ କାର୍ଯ୍ୟ ପ୍ରଣାଳୀର ପ୍ରତିବାଦର ସପକ୍ଷରେ ବିଶିଷ୍ଟ ପ୍ରମାଣ ହୋଇଅଛି ମାତ୍ର ଗୋଟିଏ ଅପ୍ରାସଙ୍ଗୀକ କଥାରେ ରାଧାନାଥ ବାବୁଙ୍କ ଗୁପ୍ତଚରିତ୍ରର ନିଗୂଢ଼ କଥା ଏବଂ ତାଙ୍କର ସରକାରୀ କାର୍ଯ୍ୟର ହାନିକର କର୍ତ୍ତବ୍ୟ ପରାୟଣତାର ବିଷୟରେ ଯେଉଁ ଗୁପ୍ତ ଦୁର୍ବଳତା ଅଛି ତାହା ସାଧାରଣ ସ୍ଥଳରେ ପ୍ରକାଶ କରିବା ମଧୁବାବୁଙ୍କର ନିତାନ୍ତ ଅନ୍ୟାୟ କାର୍ଯ୍ୟ ହୋଇଅଛି । ରାଧାନାଥ ବାବୁ ସ୍ୱୟଂ ମଧୁବାବୁଙ୍କ ବହିର ପ୍ରସ୍ତାବକ ଏବଂ ପୁରସ୍କାର ପ୍ରଦାତା ବୋଲାଯାଇ ପାରେ ସେ କିପରି ପୁଣି ସମ୍ପାଦକର ପରିଚ୍ଛଦପରି ଲୁଚାଇ ଲୁଚାଇ ଗତ ସନ ୧୮୮୦ ମସିହାର ଅକ୍ଟୁବର ମାସର ବାଲେଶ୍ୱର ସମ୍ବାଦବାହିକା ମଧରେ ଅବତୀର୍ଣ୍ଣହୋଇ ପୁଣି ପ୍ରବନ୍ଧମାଳାର ସମାଲୋଚନା କରିଥିଲେ ? ମଧୁବାବୁ ଏ ରହସ୍ୟ ଅଦ୍ୟ ପ୍ରକାଶ କରି କି ନିଗୂଢ଼ ବନ୍ଧୁତାର ପରିଚୟ ଦେଇଅଛନ୍ତି ? କି ଘୃଣାର ବିଷୟ ! ଏପରି କାର୍ଯ୍ୟକୁ ପୁଣି ନ୍ୟାୟ ସଂଗତ କାର୍ଯ୍ୟ ବୋଲିଅଛନ୍ତି ଯାହା ହେଉ ଆମ୍ଭେମାନେ କହୁଁ ଏହା କେତେଦୂର ନ୍ୟାୟସଙ୍ଗତ କାର୍ଯ୍ୟ ତାହା ସ୍ଥାନୀୟ କମିଶନର ସାହେବ ମହୋଦୟ ଏବଂ ଛୋଟ ଲାଟ ବାହାଦୁର ଏହାର ଅବଧାରଣା କରନ୍ତୁ ; ଏପରି ନ୍ୟାୟପଦ୍ଧତି

ମଧୁବାବୁଙ୍କ ନିଜ ସ୍ୱସମ୍ମତି ହୋଇ ପାରେ, କିନ୍ତୁ, ଜଗତର ଧର୍ମଭୀରୁ ଲୋକମାନେ ଏପରି ନ୍ୟାୟପରତାକୁ ଧର୍ମ ପଥର କଣ୍ଟକ ସ୍ୱରୂପ ମଣି ଥାନ୍ତି । ଭଲ, ଜଣେ ଜଜ ସାହେବ, ବିଚାର କରିବାବେଳେ ସେ ଜଜ ପୁଣି ବନ୍ଧୁବାନ୍ଧବଙ୍କ ମକଦ୍ଦମାର ଅର୍ଜି ବର୍ଣ୍ଣନାପତ୍ର ହାଇକୋର୍ଟର ଓଲ୍ଟାହାତ ବା ଦଉରାର ଜବାବ ଲେଖି ଦେଲେ ତହିଁରେ କିଛି ଦୋଷ ପଡୁନାହିଁ କି ? ସେପରି କର୍ମ ନ୍ୟାୟସଙ୍ଗତ କିପାଁଇ ନ ହେବ ? ସେ ଜଜର ସମୟରେ ଜଜ ଏବଂ ବନ୍ଧୁତାର ସମୟରେ ଆଇନଜ୍ଞ ମୁକ୍ତିଆର ଅବା ଗୁପ୍ତ ଉକୀଲ ହେଲା ମଧୁବାବୁଙ୍କ ମତରେ ଅବା (ସ୍ୱାର୍ଥସିଦ୍ଧିର ପଞ୍ଜିକାରେ) ଏହା ନ୍ୟାୟସଙ୍ଗତକାର୍ଯ୍ୟ ବୋଲାଯିବ କି ନାହିଁ ।

ବର୍ତ୍ତମାନ ଆହୁରି ଗୋଟିଏ କଥା ଏହି ଯେ ଗତ ସନ ୧୮୮୦ ମସିହାରେ ରାଧାନାଥ ବାବୁଙ୍କ ସରକାରୀ କାର୍ଯ୍ୟ ପ୍ରଥାର ଦୋଷ ଦେଖାଇ ଥିବା ନିମନ୍ତେ ବାଲେଶ୍ୱର ସମ୍ବାଦବାହିକା ସମ୍ପାଦକ ମହାଶୟ ଆମ୍ଭ ଉପରେ କି ବିରକ୍ତ ପ୍ରକାଶ କରିଥିଲେ ଏବଂ କିଛି ତୀବ୍ରୋକ୍ତିବର୍ଷଣ କରିଥିଲେ ମାତ୍ର ମଧୁ ବାବୁ ଯାହା ବୋଲନ୍ତି ଏହା ଯଦ୍ୟପି ସତ୍ୟ ହୁଏ, ଅର୍ଥାତ୍ ରାଧାନାଥ ବାବୁ ବାଲେଶ୍ୱର ସମ୍ବାଦବାହିକାର ପ୍ରବନ୍ଧମାଳାର ସମାଲୋଚନ କରି ସମ୍ପାଦକର ଅଭିନୟ କରିଥିଲେ, ଏ କଥା ଯଦି ସତ୍ୟ ହୁଏ, ତାହା ହେଲେ ଉଲ୍ଲିଖିତ ସମ୍ପାଦକ ମହାଶୟ କର୍ତ୍ତବ୍ୟ କର୍ମର ସମୀପରେ ନିତାନ୍ତ ଅପରାଧୀ ହୋଇଅଛନ୍ତି କି ନାହିଁ ତହିଁର ବିଚାର ସାଧାରଣ ଲୋକମାନେ କରନ୍ତୁ । ଯଦିଚ ବାହିକା ସମ୍ପାଦକ ରାଧାନାଥ ବାବୁଙ୍କ ଅଧୀନସ୍ଥ କର୍ମଚାରୀ କିନ୍ତୁ ସାଧାରଣଙ୍କ ପ୍ରତିନିଧି ହୋଇ ଜାଣିଶୁଣି ଜଣକ ନ୍ୟାୟକୁ ଅନ୍ୟାୟ ବୋଲି ପ୍ରତିପନ୍ନ କରିବାକୁ ଚେଷ୍ଟା କରିବା ଅବା ଅନ୍ୟାୟ କାର୍ଯ୍ୟକୁ ଗୋପନ ରଖି ପକ୍ଷପାତୀ ହେବା ନିତାନ୍ତ ଅନ୍ୟାୟ କାର୍ଯ୍ୟ । ଏହି ଗୁଣଥିବା ନିମନ୍ତେ ସାହେବମାନେ କହନ୍ତି ଯେ ଅବଧି ଦେଶୀୟମାନେ ସାଧାରଣର ପ୍ରତିନିଧିହେବାର ଯୋଗ୍ୟ ହୋଇ ନାହାନ୍ତି କେହି କେହି କହିବେ ସାହେବ ଏବଂ ବଙ୍ଗାଳିମାନଙ୍କ ମଧ୍ୟରେ ଏପରି ପକ୍ଷପାତୀର ଅଭାବ ନାହିଁ । ଏ କଥା ଆମ୍ଭେ ସ୍ୱୀକାର କରୁଁ, ମାତ୍ର ସାହେବ ନାମଟି ଆମ୍ଭମାନଙ୍କ ଆଦର୍ଶ ନୁହେ ପ୍ରକୃତ ଖ୍ରୀଷ୍ଟାନ ଜୀବନ ଆଦର୍ଶ, - ସାହେବ ସମ୍ପାଦକ ଅନେକେହେଁ ପକ୍ଷପାତୀ ଓ ବ୍ୟକ୍ତିଗତ ଅବା ସମ୍ପ୍ରଦା ଗତ ଯନ୍ତ୍ରସ୍ୱରୂପ ଅଛି, ସେଥିପାଁଇ ସେହି ପଥ ସମ୍ପାଦକଙ୍କର ଆଦର୍ଶ ତାହା ନୁହେ ସେ ପଥକୁ ଭଦ୍ରଲୋକ ମାତ୍ରକେ ଘୃଣା କରନ୍ତି ଏହା ଜାଣିବା ପ୍ରତ୍ୟେକ ସମ୍ବାଦପତ୍ରର ସମ୍ପାଦକଙ୍କ କର୍ତ୍ତବ୍ୟ କର୍ମ ଅଟଇ । ଯଦ୍ୟପି ମଧୁବାବୁଙ୍କ କଥା ସତ୍ୟ ହୁଏ, ତାହା ହେଲେ ସମ୍ବାଦବାହିକା ସମ୍ପାଦକଙ୍କର ଉଚିତ ହୁଏ ଯେ ଯେତେ ଦିନ ରାଧାନାଥ ବାବୁଙ୍କ ଅଧୀନସ୍ଥ କର୍ମଚାରୀ ନିଯୁକ୍ତ ରହିବେ ତେତେ ଦିନ ସମ୍ପାଦକର ଗୁରୁତର କାର୍ଯ୍ୟଭାର ଅପରର ହସ୍ତରେ ସମର୍ପଣ କରି ସମ୍ବାଦପତ୍ର ଖଣ୍ଡକର ମହତ୍ୱ ରକ୍ଷା କରନ୍ତୁ ।

ଏକ୍ଷଣେ ଆମ୍ଭେମାନେ ସ୍ଥାନୀୟ କମିଶନର ସାହେବ ଏବଂ ଛୋଟ ଲାଟ ବାହାଦୁରଙ୍କ ସମୀପରେ ପ୍ରାର୍ଥନା ଏତିକି ଯେ ସେମାନେ ଓଡିଶ୍ୟାର ଶିକ୍ଷାବିଭାଗର ଏହିପରି ଯେତେ ଘୃଣିତବ୍ୟାପାର ଗୁପ୍ତଭାବରେ ଚଳୁଅଛି ତହିଁର ପ୍ରତୀକାର କରନ୍ତୁ ମଧୁବାବୁ ବୋଲି ଅଛନ୍ତି କି ଅଧିକାଂଶ କର୍ମଚାରୀ ରାଧାନାଥ ବାବୁଙ୍କ ନିମ୍ନସ୍ଥ କର୍ମଚାରୀ ନୁହନ୍ତି ସେ ପକ୍ଷରେ ଆମ୍ଭର ବକ୍ତବ୍ୟ ଏତିକି ଯେ ବାବୁ ଉମେଶଚନ୍ଦ୍ର ବସୁ, ମଧୁସୂଦନ ରାଓ, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ଦ୍ୱାରିକାନାଥ ଚକ୍ରବର୍ତ୍ତୀ, ତ୍ରୈଲୋକ୍ୟନାଥ ଘୋଷ, ଏହି ପାଞ୍ଚଜଣଙ୍କ ମଧ୍ୟରୁ କେବଳ ଉମେଶବାବୁ ଭିନ୍ନ-ମଧୁବାବୁ ସ୍ୱୟଂ ଜଣେ ହୃଦୟମିତ୍ର ଏବଂ ଅପର ତିନିଜଣ ତାଙ୍କର ଅଧୀନସ୍ଥ ତେବେ ମଧୁବାବୁଙ୍କ କଥା କିପରି ଯୁକ୍ତିଯୁକ୍ତ ତାହା ସାଧାରଣେ ବିଚାର କରନ୍ତୁ ।

"ଗ୍ରେସମାର୍କ" ସମ୍ପର୍କରେ ଆମ୍ଭେ ଏତିକି କହୁଁକି ପରୀକ୍ଷକମାନଙ୍କର ଦସ୍ତଖତ କାଗଜ ବାହାର କଲେ ମଧୁବାବୁଙ୍କ ଆପତ୍ତି କେତେଦୂର ସାରଗର୍ଭ ତହିଁର ପ୍ରମାଣ ହୋଇ ପାରିବ ଥାଉ, ଯଥେଷ୍ଟ ହେଲା

ଇତି ।

୮।୩।୮୨ — ବଶମ୍ବଦ

କଟକ — ଦୀନନାଥ ବନ୍ଦ୍ୟୋପାଧ୍ୟାୟ

*ଅତିରିକ୍ତ, ୧୧।୩।୧୮୮୨*

## ପ୍ରେରିତପତ୍ର ।

ମହିମାବର ଉତ୍କଳଦୀପିକା ସମ୍ପାଦକ

ମହୋଦୟ ସମୀପେଷୁ ।

ସବିନୟ ନିବେଦନ ମିଦଂ

### କନ୍ଦମାଳ ।

### (ପୂର୍ବ ପ୍ରକାଶିତ ଉତ୍ତାରୁ ।)

ଗଞ୍ଜାମ ଜିଲା ମାଳ ସହିତ କଟକ ଜିଲାର କନ୍ଦମାଳକୁ ତୁଳନା କରିବାକୁ ଗଲେ ଯଦିଚ ଗଞ୍ଜାମ ମାଳରେ ହାଟ ବାଟ ଇତ୍ୟାଦିର କ୍ରମୋନ୍ନତି ହୋଇଅଛି ତେବେ ତାହା ସବୁ କଟକ ଅଞ୍ଚଳର ପରି ଅଳ୍ପ ବ୍ୟୟରେ ନ ହୋଇ ବହୁ ବ୍ୟୟରେ ହେଉଅଛି ବିଶେଷତଃ ଗଞ୍ଜାମ ଅଞ୍ଚଳର ସ୍କୁଲ ଗୁଡିକ କଟକ ଅଧୀନରେ ଥିବା ସ୍କୁଲମାନଙ୍କଠାରୁ ଅତ୍ୟନ୍ତ ଅନୁନ୍ନତ । ସେଠାରେ ଅନ୍ୟୂନ ୨୫ ବର୍ଷ ହେଲା ସ୍କୁଲ ସ୍ଥାପନ ହୋଇଅଛି । ଏଠା ନିମ୍ନଶ୍ରେଣୀ ସ୍କୁଲମାନଙ୍କର ବୟସ ୯ ବର୍ଷ ହୋଇଅଛି । ମଧ୍ୟମଶ୍ରେଣୀ ସ୍କୁଲର କଥା ଦୂରେ ଥାଉ ନିମ୍ନଶ୍ରେଣୀ ସ୍କୁଲମାନଙ୍କ ସହିତ୍ ସମକକ୍ଷ କରିବାକୁ ଗଲେ ଗଞ୍ଜାମ ବିଭାଗରେ ଶିକ୍ଷା କରିଥିବା କନ୍ଦମାଳ ନିବାସିଙ୍କ ବାଳକମାନଙ୍କର ଜ୍ଞାନୋନ୍ନତି କଟକ ବିଭାଗରେ ଶିକ୍ଷା କରୁଥିବା ବାଳକଙ୍କଠାରୁ ଅନେକାଂଶରେ ନ୍ୟୂନ ଅଛି । ସେମାନେ ସ୍କୁଲର ଆଦିକାଳରୁ ହିତୋପଦେଶ ଓ ଲେସି କୃତ ବ୍ୟାକରଣ ପାଠ୍ୟପୁସ୍ତକ କରିଅଛନ୍ତି ଏମାନେ ନୂତନ ନୂତନ ପୁସ୍ତକ ଆଲୋଚନା କରି ଭାଷାର ଉନ୍ନତିମାର୍ଗରେ ଦଣ୍ଡାୟମାନ ହେଉଅଛନ୍ତି ଏବଂ ସାହିତ୍ୟସଂସାରରେ ପଦାର୍ପଣ କରିବାକୁ ଅଗ୍ରବର୍ତ୍ତୀ ହେଉଅଛନ୍ତି । ସେମାନେ କ୍ଷେତ୍ରତତ୍ତ୍ୱର ନାମ ମାତ୍ର ଶ୍ରବଣ କରି ନାହାନ୍ତି ଏମାନେ ତଦ୍ଦାରା ବୁଦ୍ଧି ମାର୍ଜ୍ଜନ କରିବାକୁ ସମୁତ୍ସୁକ ହେଉଅଛନ୍ତି । ସେମାନେ ବିଜ୍ଞାନ ବୃକ୍ଷର ସୁସ୍ୱାଦୁ ଫଳ ଭକ୍ଷଣେଚ୍ଛୁମାନଙ୍କର ସହବାସ କରି ନାହାନ୍ତି । ଏମାନେ ସେହି ବୃକ୍ଷର ଛାୟାରେ ଉପବେଶନ କରି ପରମାନନ୍ଦ ଲାଭ କରୁଅଛନ୍ତି ଭୂଗୋଳ ଓ ଇତିହାସ ଶିକ୍ଷା କରିବା ଅଭିପ୍ରାୟରେ ଆସିୟାଖଣ୍ଡୀୟ ବିବରଣ ନାମରେ ଖଣ୍ଡେ ପୁସ୍ତକ ସେମାନଙ୍କର ନେତ୍ରପଥବର୍ତ୍ତୀ ହେଉଅଛି ସେ ପୁସ୍ତକ ବହୁଦିନ ତଳେ ଜଣେ ତେଲୁଙ୍ଗୁ ସୁବିଜ୍ଞ ବ୍ରାହ୍ମଣଙ୍କ ହସ୍ତରେ ରଚିତ ହୋଇଥିଲା । ଆମ୍ଭେମାନେ ସେ ପୁସ୍ତକ ଖଣ୍ଡି ପାଠ କରିଅଛୁଁ ପୁସ୍ତକର ଶବ୍ଦବିନ୍ୟାସ ଓ ରଚନା ବିଷଦ ନୁହେ ଉପେନ୍ଦ୍ରଭଞ୍ଜ ଜଣେ ଗଞ୍ଜାମନିବାସୀ ତାହାଙ୍କ ରଚନାରେ ଯେଉଁ ଯେଉଁ ସରଳ ପଦ୍ୟ କଥିତ ହୋଇଅଛି ତାହା ଆସିୟାଖଣ୍ଡୀୟର ରଚନା ସହିତ ବିଚାର କରିବାକୁ ଗଲେ ଶେଷୋକ୍ତ ପୁସ୍ତକ ଭାରତରେ ଆଉ ଗୋଟିଏ ଭାଷା ବୃଦ୍ଧି କରିଅଛି । ସେଠା ବାଳକମାନେ କଟକାଞ୍ଚଳର ବାଳକମାନଙ୍କଠାରୁ ପାଟୀଗଣିତ ଅଧିକ ଦୂରଶିକ୍ଷା କରନ୍ତି ନାହିଁ ୩ । ୪ ଜଣ ଶିକ୍ଷକ କୌଣସି କୌଣସି ସ୍କୁଲରେ କର୍ମ କରନ୍ତି । ପ୍ରଥମ ଶ୍ରେଣୀର ବେତନ ଟ ୨୪ଙ୍କା ଆଉ ସର୍ବ ନିମ୍ନ ବେତନ ଟ୮ଙ୍କା କଟକ ପ୍ରଦେଶରେ ସର୍ବୋଚ୍ଚ ବେତନ ଟ ୧୦ ଙ୍କା ଆଉ ସର୍ବ ନିମ୍ନ ଟ୭ଙ୍କା ମାତ୍ର । ଏଠାରେ ପ୍ରତ୍ୟେକ ସ୍କୁଲରେ ଜଣେ ଜଣେ ଶିକ୍ଷକ କର୍ମ କରନ୍ତି । ସୁବିଜ୍ଞ ପାଠକେ ଏହା ଜାଣନ୍ତି ଯେ ବିଦ୍ୟାଶିକ୍ଷା ସମସ୍ତ ଉନ୍ନତିର ମୂଳ କାରଣ ଆମ୍ଭେମାନେ ସେମାନଙ୍କର ୨୫ବର୍ଷ ଉନ୍ନତି ସହିତ କଟକ ଅନ୍ତର୍ଗତ ବିଭାଗର ୯ବର୍ଷର ଫଳ ଯାହା ଯାହା ଦେଖାଇଅଛୁଁ ତହିଁରୁ ଭବିଷ୍ୟତ୍ ଫଳ ବିଜ୍ଞମାନେ ବୁଝି ପାରିବେ । ଏକା ମାଳର କଥା କାହିଁକି ଗଞ୍ଜାମରେ ଆଉ ଅନେକ ଉନ୍ନତିର ଅନୁସନ୍ଧାନ ଅଛି । ତାହା ସବୁ କହିବାକୁ ଗଲେ ବାହୁଲ୍ୟ ହେବ । ତେବେ ଯେଉଁମାନେ ଏଥି ପୂର୍ବେ ଗଞ୍ଜାମର କେତେକ ଅଂଶ କଟକ ସଙ୍ଗେ ସଂଯୋଗ କରିବାକୁ ତର୍କ ବିତର୍କ କରିଥିଲେ ସେମାନଙ୍କର ମତ ଅଭ୍ରାନ୍ତ । କାରଣ କି ଗଞ୍ଜାମ ଜିଲା ନିବାସୀ ଉତ୍କଳଜାତି, ସେମାନଙ୍କର ଭାଷାଯେ ଓଡିଆ ତାହା ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ସ୍ପଷ୍ଟ ବୁଝି ଅଛନ୍ତି । ଓଡିୟା ଲେଖାପଢାର ଉନ୍ନତି ବିଷୟରେ ମାନ୍ୟବର ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ବିଶେଷ ଯତ୍ନ କରୁଅଛନ୍ତି । କିନ୍ତୁ ଗଞ୍ଜାମ ଓଡିୟାମାନଙ୍କ ପ୍ରତି ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କର ଯେ ଅନୁଗ୍ରହ ଦାନ ତାହା ଯେଉଁମାନଙ୍କ ହସ୍ତରେ ଅର୍ପିତ ହେଉଅଛି ସେମାନଙ୍କର କି ସ୍ୱଦେଶାଭିମାନ ଓ ସ୍ୱକୁଳାଭିମାନ ନାହିଁ ? ଗଞ୍ଜାମର

ଗୌରାଙ୍ଗ କର୍ମଚାରିମାନେ ଓଡିୟାରେ ଦରଖାସ୍ତ ଗ୍ରହଣ କରିବାକୁ ବିଶେଷ ଯତ୍ନବାନ୍ ତେବେ ସେଠାରେ ଇଂରାଜୀ ୧ମ ଭାଷା, ତେଲୁଗୁ ୨ୟ ଭାଷା ଓ ଉତ୍କଳ ୩ୟ ଭାଷା ପରି ବ୍ୟବହୃତ ହେଉଅଛି । ଉତ୍କଳ ୩ୟ ଏହାର କାରଣ କି ? (କ୍ରମଶଃ)

ବଶମ୍ବଦ

ଶ୍ରୀ------

*ଅଟିରିଭ,୧୧/୩/୧୮୮୨*

## [ଶ୍ରୀଯୁକ୍ତ ଲେଶି ସାହେବଙ୍କର କାର୍ଯ୍ୟତ୍ୟାଗ ]

ଏଠାର ଗବର୍ଣ୍ଣମେଣ୍ଟ ଓଡିୟା ଅନୁବାଦକ ଶ୍ରୀଯୁକ୍ତ ଲେଶି ସାହେବଙ୍କର କାର୍ଯ୍ୟରେ ନାନା ପ୍ରକାର ତ୍ରୁଟି ପ୍ରକାଶ ପାଇବାରୁ ଗବର୍ଣ୍ଣମେଣ୍ଟ ତାହାଙ୍କୁ କାର୍ଯ୍ୟ ତ୍ୟାଗ କରିବା ନିମିତ୍ତ ଆଦେଶ ଦେଇଥିଲେ ଏବଂ ଏସମ୍ବାଦ ଆମ୍ଭେମାନେ ଦୁଇ ମାସ ତଳେ ପାଠକମାନଙ୍କୁ ଜଣାଇଥିଲୁଁ । ସେ ଆଜ୍ଞା ଉପରେ ଉପରେ ବାହାରିଗଲା । ସମ୍ପ୍ରତି ଲେଶି ସାହେବଙ୍କ ପ୍ରାର୍ଥନାମତେ ଶ୍ରୀଯୁକ୍ତ କମିଶ୍ନର ସାହେବ ତାହାଙ୍କୁ ଡାକ୍ତର ସାହେବଙ୍କ ସାର୍ଟିଫିକଟ ଅନୁସାରେ ଛଅମାସର ଛୁଟୀ ଦେଇ ତାହାଙ୍କ କର୍ମରେ ଶ୍ରୀଯୁକ୍ତ ପାଦ୍ରି ମିଲର ସାହେବଙ୍କୁ ଏକଟିଂ ନିଯୁକ୍ତ କରି ଅଛନ୍ତି । ଲେଶି ସାହେବ କିଛି ନୂଆ ପୀଡିତ ହୋଇ ନାହାନ୍ତି ସେ ଏହି ପରି ପୀଡା ତିନି ବର୍ଷ ହେଲା ଭୋଗ କରୁଥିବା ପ୍ରତ୍ୟକ୍ଷେ ଯେବେ ସରକାରୀ କାର୍ଯ୍ୟ ନିର୍ବାହ କରି ପାରିଲେ ତେବେ ଆଜି ତାହାଙ୍କୁ ଛୁଟୀ ଦେବାର ଆବଶ୍ୟକତା କି ହେଲା । ପ୍ରଭେଦ ଏତିକି ଏତେକାଳ ଘରେ ଚିକିତ୍ସା ହେଉଥିଲା ଏଣିକି ଜେନରଲ ହାସପାତାଳରେ ରହି ଚିକିତ୍ସିତ ହେବେ । କମିଶ୍ନର ସାହେବ ତାହାଙ୍କ ଉପରେ ଅତିରିକ୍ତ ଦୟା ପ୍ରକାଶ କରି ଅଛରେ ଛୁଟି ଗଲେ ଆଉ ଛଅମାସ ସେହି ଭଳି ଚଳାଇ ନେଇଥିଲେ ପୂର୍ଣ୍ଣ ବେତନ ପାଇ ସେ ଆହୁରି ଧନ୍ୟବାଦ ଦିଅନ୍ତେ । ପାଦ୍ରି ମିଲର ସାହେବ ଏ ନଗରର ଜଣେ ମାନ୍ୟ ଲୋକ ଅଟନ୍ତି ଏବଂ ସେ ଯଥାର୍ଥ ପରିଶ୍ରମ ଓ ଯତ୍ନ ପୂର୍ବକ ଏ ଭାର ନିର୍ବାହ କରୁ ଅଛନ୍ତି କେବଳ ଏ କାର୍ଯ୍ୟଟି ପକ୍ଷେ ପାଦ୍ରିଙ୍କର ଏକହାତିୟା ହୋଇ ରହିଯାଏ, ଏଥି ପାଁଇ କେହି କେହି ଅସନ୍ତୋଷ ଥିବାର ଜଣାଯାଏ । କିନ୍ତୁ ଆମ୍ଭେମାନେ ଶୁଣୁ ଅଛୁଁ ଯେ ଶ୍ରୀଯୁକ୍ତ ମିଲର ସାହେବ ଲେଶି ସାହେବଙ୍କ ଦୁରବସ୍ଥାରେ ବ୍ୟଥିତ ହୋଇ ତାହାଙ୍କ ଉପକାର କାରଣ ଏ କାର୍ଯ୍ୟର ଭାର ଆପେ ନେଇ ଅଛନ୍ତି ଏବଂ ଅଧା ବେତନରେ ନୂତନ ଲୋକ ଏ ପଦରେ ନିଯୁକ୍ତ ହେବାକୁ ସମ୍ମତ ହେବାର କଠିନ ଜାଣି କମିଶ୍ନର ସାହେବ କିଛି କାଳନିମିତ୍ତ ତାହାଙ୍କୁ ନିଯୁକ୍ତ କରି ଅଛନ୍ତି ।

*ଭା/୧୭ଗ,ସଂ୨୬ଖ୍ୟା, ୧/୭/୧୮୮୨*

## ଆତ୍ମଶାସନ ସମ୍ପର୍କୀୟ ସଭାର ବିବରଣୀ ।

ଗତସପ୍ତାହ ଶୁକ୍ରବାର ଏଠା ଛାପାଖାନାରେ ଯେଉଁ ସଭା ହୋଇଥିଲା ଏବଂ ଯହିଁର ସମ୍ବାଦମାତ୍ର ଗତସପ୍ତାହରେ ଆମ୍ଭେମାନେ ଲେଖିଥିଲୁଁ ଏପରି ସଭା ଦୀର୍ଘକାଳ ହେଲା ଏ ନଗରରେ ଦେଖା ଯାଇ ନାହିଁ । ନଗରବାସୀ ରାଜା ଜମିଦାର ଗବର୍ଣ୍ଣମେଣ୍ଟ କର୍ମଚାରୀ ଓକୀଲ ମୁକ୍ତାର ମହାଜନ ଦୋକାନଦାର ପ୍ରଭୃତି ଏତେ ଲୋକ ଏକତ୍ରିତ ହୋଇଥିଲେ ଯେ ଦୋମହଲା ଘର ଭିତର ଛଡା ଦୁଇପାଖ ବାରନ୍ଦାରେ ମଧ ସ୍ଥାନ ହେଲା ନାହିଁ । ଅନେକ ଲୋକ ସ୍ଥାନ ନ ପାଇ ଫେରି ଗଲେ ଏବଂ ଅନେକ ଲୋକ ତଳେ ଛିଡା ହୋଇ ରହିଲେ । ସଭାଗୃହ ଏବଂ ବାରନ୍ଦାରେ ପ୍ରାୟ ଜଣ୩୦୦ଣ ସଭ୍ୟ ଉପସ୍ଥିତ ଥିଲେ । ଶ୍ରୀଯୁତ ବାବୁ ବିହାରୀଲାଲ ପଣ୍ଡିତ ସଭାପତି ପଦରେ ବରଣ ହୁଅନ୍ତେ ଦୁଇ ଚାରିକଥାରେ ସୁନ୍ଦରରୂପେ ଉକ୍ତ ସମ୍ମାନ ସକାଶେ ସଭାରେ କୃତଜ୍ଞତା ସ୍ୱୀକାର କଲେ ଏବଂ ଯୋଗ୍ୟତା ସହିତ ସଭାର କାର୍ଯ୍ୟ ନିର୍ବାହ କଲେ । ବାବୁ ହରିବଲ୍ଲଭ ବୋଷ ସଭାର ପ୍ରଥମ ନିର୍ଦ୍ଧାରଣ ଏହିପରି ପ୍ରସ୍ତାବ କଲେ କି ଆତ୍ମଶାସନରୂପ କ୍ଷମତା ପ୍ରଦାନ କରିବାରୁ ଅସ୍ମଦ୍ଦେଶୀୟମାନେ ଯତ୍ପରୋନାସ୍ତି ଆନନ୍ଦ ଏବଂ କୃତଜ୍ଞତା ସହିତ ମହାମାନ୍ୟ ଲର୍ଡ ରିପନଙ୍କୁ ଧନ୍ୟବାଦ ଦେଉଅଛନ୍ତି । ଶ୍ରୀଯୁକ୍ତ ରାଜା କିଲ୍ଲେ ଡୋମପଡା ଏ ପ୍ରସ୍ତାବକୁ ଅନୁମୋଦନ ଏବଂ ବାବୁ ମଧୁସୂଦନ ରାଓ ସମର୍ଥନ କଲେ । ତହିଁଉତ୍ତାରୁ

ବାବୁ ମଧୁସୂଦନ ଦାସ ଦ୍ୱିତୀୟ ନିର୍ଦ୍ଧାରଣ ଏହିପରି ପ୍ରସ୍ତାବ କଲେ କି ଏ ନଗର ଓଡିଶାର ରାଜଧାନୀ ଏବଂ ବାଣିଜ୍ୟର ପ୍ରଧାନ କେନ୍ଦ୍ର ହେଉ ଥିବାରୁ ଏବଂ ନାନା ବିଷୟରେ ଏହା ବଙ୍ଗଳାର ଅନେକ ନଗରପରି ଉନ୍ନତିକି ଲଭିଥିବାରୁ ଏଠାରେ ନିର୍ବାଚନ ପ୍ରଣାଳୀଦ୍ୱାରା ସଭା ସଙ୍ଗଠନର ବ୍ୟବସ୍ଥା ପ୍ରଚଳିତ ହେଉ ଏବଂ କମିଶ୍ନର ଏବଂ ସ୍ଥାନୀୟ ବୋର୍ଡର ସଭାପତି ଗବର୍ଣ୍ଣମେଣ୍ଟଙ୍କଦ୍ୱାରା ନିଯୁକ୍ତ ନ ହୋଇ ସଭାର ମନୋନୀତ ଅନୁସାରେ ନିଯୁକ୍ତ ହେଉନ୍ତୁ । ହାଜି ଅବଦୁଲରହମାନ ମୂଷା ଏ ପ୍ରସ୍ତାବକୁ ଅନୁମୋଦନ ଏବଂ ବିପୀନବିହାରୀ ମିତ୍ର ସମର୍ଥନ କଲେ । ପରିଶେଷରେ ବାବୁ ଯୋଗେଶ୍ୱରଚନ୍ଦ୍ର ତୃତୀୟ ନିର୍ଦ୍ଧାରଣ ଏହି ରୂପେ ପ୍ରସ୍ତାବ କଲେ କି ଉପରଲିଖିତ ନିର୍ଦ୍ଧାରଣମାନ ମହାମାନ୍ୟ ଲର୍ଡ ରିପନ ଏବଂ ମାନ୍ୟବର ବଙ୍ଗ ପ୍ରଦେଶର ଲେଫ୍ଟନେଣ୍ଟ ଗବର୍ଣ୍ଣରଙ୍କ ଗୋଚରାର୍ଥେ ଏ ସଭାର ବିବରଣର ଏକପ୍ରସ୍ତ ପ୍ରତିଲିପି ସେମାନଙ୍କ ସନ୍ନିଧିକୁ ପ୍ରେରିତ ହେଉ । ବାବୁ ପ୍ରିୟନାଥ ଚଟ୍ଟର୍ଯ୍ୟା ଏ ପ୍ରସ୍ତାବକୁ ଅନୁମୋଦନ ଏବଂ ବାବୁ ହରିଚରଣ ବାନୁର୍ଯ୍ୟା ସମର୍ଥନ କଲେ । ବାବୁ ହରିବଲ୍ଲଭ ବୋଷ ବାବୁ ମଧୁସୂଦନ ଦାସ ବାବୁ ଯୋଗେଶ୍ୱରଚନ୍ଦ୍ର ଏବଂ ବାବୁ ପ୍ରିୟନାଥ ଚଟ୍ଟର୍ଯ୍ୟା ଇଂରେଜୀରେ ଏବଂ ବାବୁ ମଧୁସୂଦନ ରାଓ ବାବୁ ବିପୀନବିହାରୀ ମିତ୍ର ଏବଂ ବାବୁ ହରିଚରଣ ବାନୁର୍ଯ୍ୟା ଦେଶୀୟ ଭାଷାରେ ବକ୍ତୃତା କରିଥିଲେ । ସ୍ଥାନାଭାବରୁ କେବଳ କେତୋଟି ବକ୍ତୃତାର ସାରାଂଶ ପାଠକମାନଙ୍କ ଜାଣିବା ନିମିତ୍ତ ଏଠାରେ ପ୍ରକାଶ କଲୁଁ ଯଥା;-

ବାବୁ ହରିବଲ୍ଲଭ ବୋଷ କହିଲେ କି ଆତ୍ମଶାସନରୂପ ଯେଉଁ ମହାରତ୍ନଟି ଲର୍ଡ ରିପନ ଦାନ କରିବାକୁ ପ୍ରସ୍ତୁତ ହୋଇଅଛନ୍ତି ତହିଁରେ ସେ ସମସ୍ତ ଭାରତବାସିଙ୍କର କୃତଜ୍ଞତାର ପାତ୍ର ହୋଇଅଛନ୍ତି ଓଡିଶାବାସିମାନେ ସେହି କୃତଜ୍ଞତା ବ୍ୟକ୍ତ କରିବାକୁ ଏଠାରେ ସମବେତ ହୋଇଅଛନ୍ତି । ଏପରି ଦାନ ଏକା ଇଂରାଜଙ୍କ ପରି ସ୍ୱାଧୀନପ୍ରିୟ ଜାତିଙ୍କର ଗୌରବ ବିସ୍ତାର କରୁଅଛି ଏବଂ ଲର୍ଡ ରିପନଙ୍କର ମହତ ଅନ୍ତଃକରଣ ଏବଂ ଦୟାଶୀଳ ଶାସନ ଏଥିରେ ପ୍ରତିବିମ୍ବିତ ହେଉଅଛି । ଏହାଦ୍ୱାରା ଭାରତବର୍ଷରେ ନୂତନ ଯୁଗ ଆରମ୍ଭ ହେବ ଏବଂ ଏହି ଦାନଟି ଭାରତବାସିଙ୍କ ସ୍ୱାଧୀନତାର ସନନ୍ଦସ୍ୱରୂପ ହୋଇଅଛି । କେହି କେହି ସଂକୀର୍ଣ୍ଣ ହୃଦୟ ଇଂରାଜ ଏ ଦାନର ବିରୁଦ୍ଧରେ କେତେ କଥା କହୁଅଛନ୍ତି ସତ୍ୟ ମାତ୍ର ଏହା ଉନ୍ନତ ଏବଂ ସ୍ୱାଧୀନ ଇଂରାଜମାନଙ୍କର ଜାତୀୟ ଭାବ ନୁହଇ । ବିଲାତର ସଂବାଦପତ୍ରମାନ ଏପ୍ରକାର ଦାନ ସକାଶେ ଲର୍ଡ ରିପନଙ୍କର ପ୍ରଶଂସା କରୁଅଛନ୍ତି ଏବଂ ଏହା ଇଂରାଜ ଜାତିର ଯୋଗ୍ୟ ବୋଲି ମୁକ୍ତକଣ୍ଠରେ ସ୍ୱୀକାର କରୁଅଛନ୍ତି । ମହାମତି ଲର୍ଡ ରିପନ ଯେମନ୍ତ ଉଦାର ଓ ଉନ୍ନତ ନୀତିର ଅନୁସରଣ କରି ଆତ୍ମଶାସନ ଆମ୍ଭମାନଙ୍କୁ ଦେଉ ଅଛନ୍ତି ତେମନ୍ତ ଆମ୍ଭମାନଙ୍କର ଉଚିତ ଯେ ଏ ଗୁରୁଭାର ବହିବାର ଯୋଗ୍ୟତା କାର୍ଯ୍ୟଦ୍ୱାରା ପ୍ରତିପନ୍ନ କରିବୁଁ । ଅବଧି ଦେଶୀୟମାନଙ୍କୁ ଯେତେ ସାଧାରଣ କାର୍ଯ୍ୟଭାର ଦିଆ ଯାଇଅଛି ସେ ସମସ୍ତ ସେମାନେ ଯୋଗ୍ୟତା ସହିତ ନିର୍ବାହ କରିଅଛନ୍ତି । ଆତ୍ମଶାସନରେ ମଧ ସେହି ଯୋଗ୍ୟତା ଦେଖାଇବେ ସନ୍ଦେହ ନାହିଁ ଏବଂ ତେତେବେଳେ ଏହାର ଶତ୍ରୁମାନେ ଲଜ୍ଜିତ ହେବେ ସନ୍ଦେହ ନାହିଁ । ବାବୁ ମଧୁସୂଦନ ରାଓ ଭାରତବର୍ଷର ପୂର୍ବ ଅବସ୍ଥା ମୁସଲମାନଙ୍କର ଅତ୍ୟାଚାର ଏବଂ ଇଂରାଜଙ୍କ ଏ ଦେଶ ଅଧିକାର କରିବାର ଐତିହାସିକ ବିଷୟମାନ ସ୍ମରଣ କରାଇ କହିଲେ କି ଭାରତବାସିମାନଙ୍କୁ ଉଦାର ଇଂରାଜ ଯେ ସ୍ୱାଧୀନତା ଦାନ କରିବେ ଏଥିରେ ବିଚିତ୍ର କିଛି ନାହିଁ ତାହା ସେମାନଙ୍କର ସ୍ୱାଭାବିକ କାର୍ଯ୍ୟ ଅଟଇ । ବ୍ରିଟିସସିଂହ ପ୍ରବଳ ପରାକ୍ରମୀ ହେଲେହେଁ ସୈନ୍ୟ ଓ ତୋପଦ୍ୱାରା ଶାସନ କରିବାକୁ ସୁଖ ମଣନ୍ତି ନାହିଁ । ନ୍ୟାୟ ଓ ଧର୍ମ ବଳରେ ପ୍ରଜାଙ୍କ ମନ ଆକର୍ଷଣ କରିବା ଏହାଙ୍କର ପ୍ରକୃତ ଶାସନପ୍ରଣାଳୀ ଅଟଇ । ଏତେକାଳ ପ୍ରଜାଙ୍କୁ ଜ୍ଞାନ ଓ ସଭ୍ୟତା ଶିଖାଇ ସେମାନଙ୍କ ଯୋଗ୍ୟତା ଅନୁସାରେ ଆତ୍ମଶାସନର ଭାର ଦେଉଅଛନ୍ତି ଏଉତ୍ତାରୁ ଆହୁରି ସ୍ୱାଧୀନତା ଦାନ କରିବେ । ବାବୁ ମଧୁସୂଦନ ଦାସ କହିଲେ କି ଓଡିଶାର ପୂର୍ବାବସ୍ଥା ଯାହା ଥାଉ ଗତ ୧୫/୨୦ ବର୍ଷ ହେଲା ଏଠାରେ ଶିକ୍ଷାର ଉନ୍ନତି ହେଉଅଛି ପ୍ରତିବର୍ଷ ଅନେକ ଛାତ୍ର ବିଶ୍ୱବିଦ୍ୟାଳୟର ଉପାଧିମାନ ପ୍ରାପ୍ତ ହୋଇ ଯୋଗ୍ୟତାର ପରିଚୟ ଦେଉଅଛନ୍ତି । ବାଣିଜ୍ୟ ବ୍ୟବସାୟର ବୃଦ୍ଧି ସଙ୍ଗେ ସଙ୍ଗେ ସାଧାରଣ ଲୋକଙ୍କର ଜ୍ଞାନ ଓ ସଭ୍ୟତା ବୃଦ୍ଧି ହେଉଅଛି ଅଳ୍ପବୟସ୍କ ବିଦ୍ୟାଳୟର ଛାତ୍ର ଏବଂ ସାମାନ୍ୟ ଦୋକାନଦାର ସୁଦ୍ଧା ହାକିମମାନଙ୍କ କାର୍ଯ୍ୟର ନ୍ୟାୟ ଅନ୍ୟାୟ ଅନୁଭବ କରିବାକୁ ସମର୍ଥ ହେଉଅଛନ୍ତି । ଏପରି ଅବସ୍ଥାରେ ଯେଉଁମାନେ ବୋଲନ୍ତି କି ଏଠାରେ ଆତ୍ମଶାସନପ୍ରଣାଳୀ ଚଳାଇବାର ସମୟ ହୋଇ ନାହିଁ ସେମାନେ ମହତ୍ ଭ୍ରମରେ ପଡିଅଛନ୍ତି । ଅବଶ୍ୟ ଏପ୍ରକାର

ଗୁରୁତର ବିଷୟରେ ଲୋକମାନେ ଏକାବେଳକେ ସମ୍ପୂର୍ଣ୍ଣ ଯୋଗ୍ୟତା ଦେଖାଇବେ ଏପରି ଆଶା କରିବା ଅଯୌକ୍ତିକ ଅଟଇ । ହାକିମମାନେ ଦୀର୍ଘକାଳ ଏହିପ୍ରକାର କାର୍ଯ୍ୟ କରି ଏବଂ ବିଶେଷ ବହୁଦର୍ଶିତା ଲାଭ କରି ସୁଦ୍ଧା ଯେତେବେଳେ ସମୟ ସମୟରେ ଭ୍ରମରେ ପଡୁଅଛନ୍ତି ସେ ସ୍ଥଳେ ଅନଭ୍ୟସ୍ତ ଲୋକଙ୍କ କଥା କେତେ ମାତ୍ର । କିନ୍ତୁ ପ୍ରଥମେ ଭ୍ରମ ହେବ ବୋଲି ଯେ ଲୋକଙ୍କୁ ଏ ଭାର ଦିଆଯିବ ନାହିଁ ଏହା ଯୁକ୍ତିଯୁକ୍ତ ନୁହଇ । ଯେବେ ଭାର ଦିଆ ନ ଯାଏ ତେବେ ସେମାନେ କଦାଚ ଶିକ୍ଷିତ ହେବେ ନାହିଁ । ଯେ ବ୍ୟକ୍ତି ସାହସ ଓ ଧୈର୍ଯ୍ୟତା ସହିତ କାର୍ଯ୍ୟ କରେ ସେ କେବେ କେବେ ଭ୍ରମରେ ପଡୁ ପଛକେ କାର୍ଯ୍ୟ ନ କରିବା ବ୍ୟକ୍ତିଠାରୁ ତାହାକୁ ଭଲ ବୋଲିବାକୁ ହେବ । ଘୋର ତୋଫାନରେ ଜାହାଜ ଟଳମଟଳ ହୋଇ ପ୍ରତିମୁହୂର୍ତ୍ତରେ ନିକଟସ୍ଥ ସାଂଘାତିକ ପଥରରାଶି ଉପରେ କଉଡି ପଡିବାର ଆଶଙ୍କା ସ୍ଥଳେ ଯେଉଁ ନାବିକ ସାହସକୁ ଅବଲମ୍ବନ କରି ମଙ୍ଗଧରାକୁ ମାଡି ବସିଥିବ ସେ କେତେବେଳେ ଜାହାଜକୁ ସମ୍ଭାଳି ନ ପାରିଲେ ସୁଦ୍ଧା ତାହାକୁ ପ୍ରକୃତ ନାବିକ ବୋଲା ଯିବ । ମାତ୍ର ଯେଉଁ ବ୍ୟକ୍ତି ସେ ସମୟରେ ହତାଶ ହୋଇ ମଙ୍ଗଧରା ପାଖକୁ ଯିବ ନାହିଁ ତାହାକୁ କେହି ଭଲ କହିବେ ନାହିଁ । ଅତଏବ ଏଠା ଲୋକଙ୍କୁ ଭାର ଦିଆଗଲେ ସେମାନେ ତାହା ନିର୍ବାହ କରିବାକୁ ଚେଷ୍ଟା କରିବେ ଏବଂ ତହିଁରେ ସଫଳ ହେବେ ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ମିଉନିସିପଲ ଇତ୍ୟାଦି କମିଟୀଦ୍ୱାରା କୌଣସି ଉପକାର ନ ହେବାର ଏକମାତ୍ର କାରଣ ଏହି କି ଉପଯୁକ୍ତ ବ୍ୟକ୍ତିଙ୍କୁ ସେ ଭାର ଦିଆ ଯାଉ ନାହିଁ । ହାକିମମାନେ କେବଳ ମର୍ଯ୍ୟାଦାବନ୍ତ ଏବଂ ଧନିଲୋକଙ୍କୁ ସାଧାରଣଙ୍କ ପ୍ରତିନିଧିସ୍ୱରୂପ ସଭାର ମେମ୍ବର ନିଯୁକ୍ତ କରନ୍ତି କିନ୍ତୁ ସେମାନେ ବୁଝନ୍ତି ନାହିଁ ଯେ ଯାହାର ଧନ ଓ ମର୍ଯ୍ୟାଦା ଯେତେ ଅଧିକ ସେ ସାଧାରଣ ଟାକ୍ସ ଦାତାଙ୍କଠାରୁ ତେତେ ଅନ୍ତରରେ ଅବସ୍ଥିତି କରଇ । ସୁତରାଂ ଉପଯୁକ୍ତ ସହାନୁଭୂତି ଅଭାବରୁ ତାହାଙ୍କ ଦ୍ୱାରା କୌଣସି କାର୍ଯ୍ୟ ହୁଅଇ ନାହିଁ ପ୍ରଜାମାନେ ସଭ୍ୟ ମନୋନୀତ କଲେ ସେପରି ଘଟିବ ନାହିଁ । ତହିଁରେ ଅବଶ୍ୟ ଭଲ ଫଳ ଫଳିବ । ବାବୁ ପ୍ରିୟନାଥ ଚାଟୁର୍ଯ୍ୟା କହିଲେ କି ଆଗେ ପହଁରିବା ଶିକ୍ଷା କରି ପଛେ ପାଣିକୁ ଓହ୍ଲାଇବା ଯୁକ୍ତି ଯେମନ୍ତ ହାସ୍ୟାସ୍ପଦ ଲୋକେ ଉପଯୁକ୍ତ ହେଲେ ତାହାଙ୍କୁ ଆତ୍ମଶାସନର ଭାର ଦେବା କଥା ତଦ୍ରୂପ ଅଟଇ । ପାଣିରେ ନ ପଶିଲେ ପହଁରିବାକୁ ଆସିବ ନାହିଁ ଏଥିରେ କେବେ କେବେ ବିପଦରେ ପଡିବାକୁ ହେବ ସତ୍ୟ ମାତ୍ର ତାହା ନ ହେଲେ ଶିକ୍ଷାର ଅନ୍ୟ ଉପାୟ ନାହିଁ । ଆତ୍ମଶାସନର ଯୋଗ୍ୟତା ଏପରି ନୁହଇ କି ଯାହା କାହାରିଠାରେ ଥିବା ଅସମ୍ଭବ । ଏମନ୍ତ ଦେଖା ଯାଉଅଛି ଯେ ଏକ ଏକ ବ୍ୟକ୍ତି ଅଳ୍ପବୟସରେ ପିତୃହୀନ ହୋଇ ବହୁ ପରିବାର ଏବଂ ବହୁ ସମ୍ପତ୍ତି ରକ୍ଷଣାବେକ୍ଷଣର ଉତ୍ତମ ବ୍ୟବସ୍ଥା କରିବାକୁ ସକ୍ଷମ ହେଉଅଛନ୍ତି ଏବଂ ଆତ୍ମଶାସନ କେବଳ ଏଥିର ବିସ୍ତୃତ ଭାବ ଭିନ୍ନ ଆଉ କିଛି ନୁହଇ । ଏଠା ଲୋକେ ସେ ଭାର ବହନ କରିବାକୁ ସମର୍ଥ ତହିଁରେ ସନ୍ଦେହ ନାହିଁ । ବର୍ତ୍ତମାନ କମିଟୀର ମେମ୍ବରମାନେ କେବଳ ହାକିମଙ୍କର ପାଳିଆ ଅଟନ୍ତି ଏମାନଙ୍କର ଆଧିପତ୍ୟ ଶୀଘ୍ର ଉଠିଯିବା ନିତାନ୍ତ ଆବଶ୍ୟକ । ଇତ୍ୟାଦି-

ସମସ୍ତଙ୍କର ବକ୍ତୃତା ଉତ୍ତମ ଓ ଯଥାଯୋଗ୍ୟ ହୋଇଥିଲା ଓ ପୁନଃପୁନଃ କରତାଳିଦ୍ୱାରା ସଭ୍ୟମାନେ ତହିଁରେ ଆନନ୍ଦ ଓ ସମ୍ମତି ପ୍ରକାଶ କରିଥିଲେ । ସମସ୍ତ ଉତ୍ତମ ବକ୍ତୃତାମଧ୍ୟରେ ବାବୁ ମଧୁସୂଦନ ଦାସ ଏବଂ ବାବୁ ପ୍ରିୟନାଥ ଚାଟୁର୍ଯ୍ୟାଙ୍କ ଇଂରାଜୀ ବକ୍ତୃତା ଅତ୍ୟନ୍ତ କର୍ଣ୍ଣପ୍ରିୟ ବୋଧ ହୋଇଥିଲା । ପ୍ରାୟ ଦୁଇଘଣ୍ଟା କାଳରେ ସଭାର କାର୍ଯ୍ୟ ଶେଷ ହେଲା ଏବଂ ସଭାପତିଙ୍କୁ ଧନ୍ୟବାଦ ଦିଆଯାଇ ସଭା ଭଙ୍ଗ ହେବା କାଳରେ ଗୋଟିଏ ବଡ କୌତୁକଜନକ ଘଟନା ହୋଇଥିଲା ଯେ ତାହା ନ ଲେଖି ଏ ପ୍ରସ୍ତାବ ଶେଷ କରି ନ ପାରୁଁ । ଘଟନାଟି ଏହି ଯେ ଶେଷ ବକ୍ତା ବାବୁ ହରିଚରଣ ବାନୁର୍ଯ୍ୟା ଆପଣା ବକ୍ତବ୍ୟ ବିଷୟ ମଧ୍ୟରେ ବର୍ତ୍ତମାନ ମିଉନିସିପାଲିଟୀର କାର୍ଯ୍ୟର ଉଦାହରଣ ସ୍ୱରୂପ ନୂତନ ମିଉନିସିପଲ ବଗିଚାରେ ଅନର୍ଥକ ଟଙ୍କା ବ୍ୟୟ ହେବାର କହିବାରୁ ଟାଉନ ଓବରସିଅର ବାବୁ କ୍ଷେତ୍ରମୋହନ ରାୟ ତହିଁର ପ୍ରତିବାଦ କରିବା ସକାଶେ ଦଣ୍ଡାୟମାନ ହୋଇ ଦୁଇ ଏକକଥା କହିବା ମାତ୍ରକେ ଦର୍ଶକମାନେ ଘନ ଘନ କରତାଳି ପ୍ରଦାନ ପୂର୍ବକ ତାହାଙ୍କ ମୁହଁ ବନ୍ଦ କରି ଦେଲେ ଏବଂ ସେ ଆଉ କିଛି କହିବାକୁ ଅବସର ନ ପାଇ ତୁନି ହୋଇ ଆପଣା ସ୍ଥାନକୁ ଫେରି ଆସିଲେ । ସେ ମନେ କରିଥିଲେ ଯେ ବର୍ତ୍ତମାନ ମିଉନିସିପାଲିଟୀର କାର୍ଯ୍ୟ ଉତ୍ତମ ଏବଂ ଟାକ୍ସଦାତାଙ୍କ ସନ୍ତୋଷ ମତେ ଚଳୁଅଛି ବୋଲି ଉପସ୍ଥିତ ସଭ୍ୟଙ୍କୁ ବୁଝାଇ ଦେଇ ପାରନ୍ତେ ମାତ୍ର ଏଠା ଲୋକଙ୍କର ମତ ଯେ ତହିଁର ସମ୍ପୂର୍ଣ୍ଣ ବିପରୀତ ତାହା ସେ ଅନେକ ବକ୍ତାଙ୍କ ମୁଖରୁ ଶୁଣି ଏବଂ ଅପର ସଭ୍ୟମାନଙ୍କ ଭାବରୁ ଜାଣି ପାରି ସୁଦ୍ଧା ତାହାଙ୍କର ଜ୍ଞାନ ଉଦୟ ହେଲା ନାହିଁ ବଡ ଆଶ୍ଚର୍ଯ୍ୟର ବିଷୟ ।

ବାସ୍ତବରେ କେହି କେହି ବକ୍ତା ଏଠା ମିଉନିସିପାଲିଟୀର କାର୍ଯ୍ୟ ଏବଂ ଅନେକ କମିଶ୍ନରଙ୍କର ଅମନୋଯୋଗିତା ଏବଂ କାର୍ଯ୍ୟ ଶିଥିଳତାକୁ ଯଥେଷ୍ଟରୂପେ ନିନ୍ଦା କରିଥିଲେ ଏବଂ ଆମ୍ଭେମାନେ କେତେକ ସପ୍ତାହ ହେଲା ପୁନଃପୁନଃ ଏ ବିଷୟରେ ଯାହା ଲେଖିଅଛୁଁ ତହିଁର ସାର୍ଥକତା ପ୍ରତିପାଦନ କରିଥିଲେ । ଟାକ୍ସଦାତାଙ୍କ ହିତକାମନାରେ ନଗରର ଅବସ୍ଥାପ୍ରତି ଦୃଷ୍ଟି କରି ଯେବେ କମିଶ୍ନରମାନେ ଉଚିତ ବିବେଚନା ପୂର୍ବକ କାର୍ଯ୍ୟ କରୁ ଥାନ୍ତେ ତେବେ ପ୍ରକାଶ୍ୟ ସଭାରେ ତାହାଙ୍କ ବିରୁଦ୍ଧରେ ଏପ୍ରକାର ମତ କଦାଚ କେହି ବ୍ୟକ୍ତ କରନ୍ତେ ନାହିଁ କିମ୍ବା ସଭ୍ୟମଣ୍ଡଳୀ ତାହା ଅନୁମୋଦନ କରନ୍ତେ ନାହିଁ ଏହିପରି କାର୍ଯ୍ୟ ଦୃଷ୍ଟିରେ ଆତ୍ମଶାସନ ପ୍ରଣାଳୀର ଅଧିକ ଗୌରବ ବଢିଅଛି ଏବଂ ତାହା ଶୀଘ୍ର ଲାଭ କରିବା କାରଣ ପ୍ରଜାସାଧାରଣର ମନ ଏତେ ବ୍ୟଗ୍ର ହୋଇଅଛି । ଆମ୍ଭେମାନେ ଆଶା କରୁଁ କି କର୍ତ୍ତୃପକ୍ଷମାନେ ଏଥିରୁ ଉପଯୁକ୍ତ ଶିକ୍ଷା ଲାଭ କରିବେ ।

*ଭା୧୭ଗ, ସଂ୨୭ଖ୍ୟା, ୮।୭।୧୮୮୨*

## ପ୍ରେରିତପତ୍ର ।

## [ଓଡିଆ-ବଙ୍ଗଳା ଅନୁବାଦ]

ଶ୍ରୀଯୁତ ଉତ୍କଳଦୀପିକା ସମ୍ପାଦକ ମହାଶୟ ଉଦାରଚରିତେଷ୍ଠୁ ।

ମହାଶୟ ।

ଆପଣଙ୍କର ବିଗତ ତା ୨୨ରିଖର ଦୀପିକାରେ ଦୀନୁବାବୁ ଯେଉଁ ପ୍ରେରିତପତ୍ର ଦେଇଅଛନ୍ତି ତତ୍ପାଠରେ ଏକାବେଳକେ ଆଶ୍ଚର୍ଯ୍ୟାନ୍ୱିତ ହୋଇଅଛୁଁ । ପତ୍ରପ୍ରେରକ ମୁକ୍ତକଣ୍ଠରେ ସ୍ୱୀକାର କରିଅଛନ୍ତି ଯେ ତାଙ୍କର ଓଡିଆ ବଙ୍ଗଳା ଭାଷାଗତ ବା ଜାତିଗତ କୌଣସି ପ୍ରକାର ବିଦ୍ୱେଷ ନାହିଁ ; ତାହା ନ ଥିବା ବାଞ୍ଛନୀୟ । ଲେଖକ ଯେ ଓଡିଆଭାଷାରେ ଅବଧି ଅନେକ ପୁସ୍ତକ ହୋଇ ନ ଥିବା ଓ ଯେତେପୁସ୍ତକ ହୋଇଅଛି ସେ ସମୁଦାୟର ମୂଲ୍ୟ ଏକତ୍ର କଲେ ଶଏଟଙ୍କାରୁ ଅଧିକ ନ ହେବା ହେତୁଁ ଦୁଃଖ ପ୍ରକାଶ କରିଅଛନ୍ତି । ଏପରି ସହାନୁଭୂତି ପ୍ରଶଂସନୀୟ ମାତ୍ର ସେ ଯେ ପୁଣି ସେ ପୁରୁଣାକଥା ଘେନି ଟିକିଏ ଆନ୍ଦୋଳନ କରିବାକୁ ଉପସ୍ଥିତ ହୋଇଅଛନ୍ତି ଏଥିରେ ଆମ୍ଭେମାନେ କଦାଚ ସହାନୁଭୂତି ପ୍ରକାଶ କରି ନ ପାରୁଁ । ବଙ୍ଗଳାଭାଷାରୁ ଅନୁବାଦ କରି ଗ୍ରନ୍ଥ ପ୍ରକାଶିତ କରିବାଦ୍ୱାରା ଓଡିଶାର ଯେଉଁ କ୍ଷତି ହୋଇଅଛି ତାହା ଓଡିଆପାଠକମାତ୍ରେ ଅବଧି ବିସ୍ମୃତ ହୋଇ ନାହାନ୍ତି । ପୁଣି ସେହି ଅନୁବାଦର ପ୍ରସ୍ତାବ କରିବାକୁ ବସିଲେ ବଙ୍ଗଳାଭାଷା ପ୍ରତି ନିତାନ୍ତ ପକ୍ଷପାତିତା, ଓଡିଆଭାଷାର ଅନଭିଜ୍ଞତା ଏବଂ ଓଡିଆଙ୍କ ହିତକାମନା ପ୍ରତି ବିଦ୍ୱେଷଭାବ ପ୍ରକାଶିତ ହୋଇ ପଡେ । ବୋଧ ହୁଏ ଦୀନୁ ବାବୁ ଯେଉଁ ଲାଇବ୍ରେରୀ କରିଅଛନ୍ତି ତହିଁରେ ଅବଶ୍ୟ ଅଧିକାଂଶ ବଙ୍ଗଳା ପୁସ୍ତକ ଏବଂ ସେହି ବଙ୍ଗପୁସ୍ତକମାନଙ୍କ ରଚନା ଓ ଗମ୍ଭୀରଭାବମାନ ମନରେ ଆନ୍ଦୋଳନ କରି ଓଡିଆଭାଷାରେ ସେପରି ପୁସ୍ତକ ଆଦୌ ହୋଇ ନ ଥିବାର ଦେଖି ଅତ୍ୟନ୍ତ ବ୍ୟସ୍ତ ହୋଇ ନିତାନ୍ତପକ୍ଷରେ ସେ ସବୁ ଅନୁବାଦ କରି ଥରେ ଓଡିଆମାନଙ୍କୁ ଦେଖାଇବା ନିମନ୍ତେ କିଛି ଚଞ୍ଚଳ ହୋଇଅଛନ୍ତି ଯେ ତାହା ହେଲେ ମଧ ଯଦି କେତେଖଣ୍ଡ ଓଡିଆପୁସ୍ତକ ସେହିପରି ପ୍ରକାଶିତ ହୁଏ ତେବେହେଁ ଓଡିଶାର କିଛି ଲାଭ ଅଛି ମଣିବାକୁ ହେବ । ଆମ୍ଭେମାନେ ବଙ୍ଗଳାରୁ ଓଡିଆ ଅନୁବାଦର ନିତାନ୍ତ ବିଦ୍ୱେଷୀ ଏବଂ ଯେପରି ଏକଆଡେ ଦୀନୁବାବୁଙ୍କର ଏଭଳି ଦୁଃଖ ପ୍ରକାଶକୁ ପ୍ରଶଂସା କରୁଅଛୁଁ ସେହିପରି ଅନ୍ୟ ଆଡେ ଶିକ୍ଷାବିଭାଗୀୟ କର୍ତ୍ତୃପକ୍ଷଙ୍କୁ ଯଥୋଚିତ ନିନ୍ଦା କରୁଅଛୁଁ । ରାଧାନାଥବାବୁ ସ୍କୁଲସମୂହର ଜଏଣ୍ଟ ଇନସ୍ପେକ୍ଟର ଥାଉଁ ଥାଉଁ ଓଡିଆଭାଷାର ଏଭଳି ଦୁର୍ଦ୍ଦଶା ହେବା ଅଧିକ ଶୋଚନାର ବିଷୟ । ସମୟ ସମୟରେ ଭଲ ଭଲ ପୁସ୍ତକ ରଚନା କରିବା ନିମନ୍ତେ ଲେଖକମାନଙ୍କୁ ଉତ୍ସାହିତ କରୁଥିଲେ କି ଆଜକୁ ଓଡିଆଭାଷାରେ କେତେଖଣ୍ଡି ଭଲ ଭଲ ପୁସ୍ତକ ବାହାରି ପାରି ନ ଥାନ୍ତା ? ପ୍ରାଇମେରୀ ପରୀକ୍ଷାରେ ବିତରଣ ହେବା ନିମନ୍ତେ ପ୍ରତିବର୍ଷ ହଜାର ହଜାର ଟଙ୍କା ବ୍ୟୟ ହୁଏ - ତଦ୍ୱାରା କି ଭାଷାର କୌଣସି ଉନ୍ନତି ସାଧିତ ହୋଇ ପାରେ ନାହିଁ ? ବୈଷୟିକଦୀପିକା ବାଲ୍ୟଶିକ୍ଷା ଭଳି ପୁସ୍ତକମାନ ସମୂଳେ କ୍ରୀତ ହୋଇ ଲେଖକଙ୍କୁ ପୁରସ୍କାର ଦିଆଯାଉଅଛି ମାତ୍ର ଭଲ ଭଲ ପାଠୋପଯୋଗୀ ପୁସ୍ତକ ଅପଣ୍ଡୋଗେ ପଡି ଗଡୁଅଛି - କେହି ପଚରିବାକୁ ନାହିଁ । ଏଥିରେ କି ଶିକ୍ଷାବିଭାଗୀୟ କର୍ତ୍ତୃପକ୍ଷମାନଙ୍କର ଓଡିଆଭାଷା ପ୍ରତି

ଅନାସ୍ଥା ପ୍ରକାଶିତ ହେଉ ନାହିଁ ? ବାଲେଶ୍ୱରଠାରେ ଯେତେ ପୁସ୍ତକ ମୁଦ୍ରାଙ୍କିତ ହେଉଅଛି ସେ ସମସ୍ତ ଅଧିକ ପରିମାଣରେ ଟଙ୍କାଇବାଦ୍ୱାରା ଅପର ଗ୍ରନ୍ଥକାରଙ୍କୁ କି ନିରୁତ୍ସାହିତ କରା ଯାଉ ନାହିଁ ? ବଙ୍ଗଳାଭାଷାରୁ ଯେ ଅନୁବାଦ କଲେ ଓଡିଆଭାଷାରେ ପୁସ୍ତକ ହେବ ନୋହିଲେ ହୋଇ ନ ପାରେ ଏହା କି ଶୁଣିବା ଶ୍ରୁତିକଟୁ ନୁହେ ? ପୁଣି ବଙ୍ଗଳାରୁ ଅନୁବାଦ ହେଲେ ମଧ କେତେଜଣ ତହିଁର ପାଠୂଆ ହେବେ ? ଯେବେ ଶିକ୍ଷାବିଭାଗ ତହିଁକି ସାହାଯ୍ୟ ନ କରିବେ ତେବେ କି ସେଥିରେ ଲାଭ ଅଛି ? ବଙ୍ଗଳାରୁ ଅନୁବାଦ ନ କଲେ ଯେ ଓଡିଆରେ ପୁସ୍ତକ ହୋଇ ନ ପାରେ ଏ ଯେ ପୁରୁଣାନିନ୍ଦାବାଦକୁ ଦୀନୁବାବୁ ପ୍ରତିପୋଷଣ କରିବାକୁ ଯାଉଅଛନ୍ତି । ମାତ୍ର ଆମ୍ଭେମାନେ କହୁଁ ଯେ ସଂସ୍କୃତ ଏବଂ ଇଂରାଜୀଭାଷା ଭଲ କରି ଶିଖି ଓଡିଆମାନେ ଯେତେବେଳେ ପୁସ୍ତକ ଲେଖିବେ ତେତେବେଳେ ଏକା ଭଲ ପୁସ୍ତକ ଓଡିଆରେ ବାହାରିବ । ଦୀନୁବାବୁ ଆପଣାର ଏ ପ୍ରକାର ମତ ପରିବର୍ତ୍ତିତ କରି ଓଡିଆଭାଷାରେ କେଉଁ କେଉଁ ପୁସ୍ତକର ଅଭାବ ଅଛି ଓ ପ୍ରତିବର୍ଷ କଲେକ୍ଟର ସାହେବ କେତେ କେତେ ଟଙ୍କା ଦେଇ କି କି ପୁସ୍ତକ କ୍ରୟ କରନ୍ତି ଓ ପ୍ରାଇମେରୀ ପାଠଶାଳାମାନଙ୍କରେ ବିତରତି ହେବା ନିମନ୍ତେ କେଉଁ କେଉଁ ପୁସ୍ତକ କ୍ରୀତ ହୁଏ ଏବଂ ଓଡିଶାର ନାନା ବିଭାଗୀୟ ସ୍କୁଲମାନଙ୍କରେ କେଉଁ କେଉଁ ପୁସ୍ତକ ପଢା ଯାଉଅଛି ଓ ସେମାନଙ୍କର ଦୋଷ ଗୁଣ ପୁଣି ଜଏଣ୍ଟ ଇନସ୍ପେକ୍ଟର ନୂତନ ନୂତନ ଭଲ ଭଲ ପୁସ୍ତକ ହେବା ପ୍ରତି କେତେଦୂର ଯତ୍ନ କରୁ ଅଛନ୍ତି ତହିଁର ସମାଲୋଚନା କଲେ ସେ ପ୍ରକୃତ ଓଡିଶାର ବନ୍ଧୁ ବୋଲି ପରିଚିତ ହେବେ ଓ ଆମ୍ଭେମାନେ ତାହାଙ୍କଠାରେ ତନ୍ନିମିତ୍ତ ଚିରବାଧିତ ରହିବୁଁ । ଇତି ।

କଟକ — ଆପଣଙ୍କର ବଶମ୍ୱଦ

୨୪।୭।୮୨ — ଜଣେ ଓଡ଼ିଆ ।

*ଅତିରିକ୍ତ, ୫।୮।୧୮୮୨*

## ଉତ୍କଳସଭା ।

ଗତ ସପ୍ତାହରେ ପ୍ରକାଶ ହୋଇଥିବା ବିଜ୍ଞାପନ ଅନୁସାରେ ଗତ ବୁଧବାର ରାତ୍ର ଆଠଘଣ୍ଟା ସମୟରେ ଆମ୍ଭମାନଙ୍କ କାର୍ଯ୍ୟାଳୟର ଦୋମହଲା ଘରେ ବୃହତ୍‌ସଭା ହୋଇଥିଲା । ଏପରି ବୃହତ୍‌ସଭା ଅନେକ କାଳରୁ ଏ ନଗରରେ ଦେଖା ଯାଇ ନ ଥିଲା । ଗତ ଜୁନମାସ ତା ୩୦ରିଖର ସଭାଠାରୁ ଏଥିରେ ଅଧିକ ଲୋକ ଉପସ୍ଥିତ ହୋଇଥିଲେ ଏବଂ ସଭାପ୍ରତି ଅତ୍ରତ୍ୟ ଲୋକଙ୍କର ଅଧିକ ଯତ୍ନର ପରିଚୟ ଏଥିରୁ ମିଳୁଅଛି । ଇଂରାଜଙ୍କ ମଧ୍ୟରେ କେବଳ ଉଲକିନ୍‌ସ ସାହେବ ବାରିଷ୍ଟର ଏବଂ ଡେବିଡ୍‌ସନ ସାହେବ ଡେପୁଟୀ କଲେକ୍ଟର ଉପସ୍ଥିତ ଥିଲେ ମାତ୍ର ସକଳ ଶ୍ରେଣୀର ଦେଶୀୟ ପ୍ରଧାନ ଲୋକମାନେ ଉପସ୍ଥିତ ହୋଇଥିଲେ । ଘର ଓ ଦୁଇ ବାରନ୍ଦାରେ ଏତେ ଲୋକ ହୋଇଥିଲେ ଯେ ଯିବା ଆସିବାର ବାଟ ମିଳିଲା ନାହିଁ ଏବଂ ଆସନର ଅଭାବରୁ ଅନେକ ଲୋକ ଛିଡା ହୋଇ ରହିଲେ ଏବଂ ଆହୁରି କେତେକ ଲୋକ ଛିଡା ହେବାର ସ୍ଥାନ ସୁଦ୍ଧା ନ ପାଇ ବାହୁଡି ଗଲେ । ନିୟମିତ ସମୟର ଅବିଳମ୍ବେ ସଭାର କାର୍ଯ୍ୟ ଆରମ୍ଭ ହୋଇ ସମସ୍ତଙ୍କ ମନୋନୀତ ମତେ ଶ୍ରୀ ଚୌଧୁରୀ କାଶୀନାଥ ଦାସ ସଭାପତିଙ୍କ ଆସନ ଗ୍ରହଣ କଲେ ଏବଂ ସେ ଦୁଇଚାରି ଅତିସୁନ୍ଦର ଏବଂ କୋମଳ ବାକ୍ୟଦ୍ୱାରା ଏହି ସମ୍ମାନ ସକାଶେ ସମସ୍ତଙ୍କୁ ଧନ୍ୟବାଦ ପ୍ରଦାନ ପୂର୍ବକ ଉପସ୍ଥିତ କାର୍ଯ୍ୟ ନିର୍ବାହ କରିବାର ଆଦେଶ ଦେଲେ । ବାବୁ ମଧୁସୂଦନ ରାଓ ସଭାର ପ୍ରଥମ ନିର୍ଦ୍ଧାରଣ ପ୍ରସ୍ତାବ ଏବଂ ବାବୁ ଜଗନ୍ମୋହନ ଲାଲ ତାହା ଅନୁମୋଦନ କଲେ । ପ୍ରଥମ ନିର୍ଦ୍ଧାରଣର ମର୍ମ୍ମ ଏହି କି ସ୍ଥାନୀୟ ଆତ୍ମଶାସନ ପ୍ରଣାଳୀ ପ୍ରବର୍ତ୍ତିତ ଏବଂ ସାଧାରଣ ମଙ୍ଗଳ କାର୍ଯ୍ୟ ସଂବୃଦ୍ଧି ଉଦ୍ଦେଶରେ ଏ ଜିଲାର ଗୋଟିଏ ଚିରସ୍ଥାୟୀ ସଭା ସ୍ଥାପିତ ହେଉ । ବାବୁ ମଧୁସୂଦନ ରାଓ ଏପ୍ରକାର ସଭାର ଆବଶ୍ୟକତା ଏବଂ ତଦ୍ୱାରା ଜାତୀୟ ଜୀବନ ଏବଂ ଏକତାର ସଂବୃଦ୍ଧି ବିଷୟରେ ଅନେକ ବ୍ୟାଖ୍ୟା କରି କହିଲେ ଯେ ସଭାଦ୍ୱାରା ଗବର୍ଣ୍ଣମେଣ୍ଟ ଏବଂ ପ୍ରଜା ଉଭୟଙ୍କର ହିତ ଅଛି ଗବର୍ଣ୍ଣମେଣ୍ଟ ଯେତେ ବିଚକ୍ଷଣ ଏବଂ ଦୟାଳୁ ହେଉନ୍ତୁ ପଛକେ ପ୍ରଜାଙ୍କର ଅଭାବ ଓ ଦୁଃଖ ଜାଣି ନ ପାରିଲେ ତହିଁର ସମ୍ୟକ୍ ପ୍ରତୀକାର କରିବାକୁ ସମର୍ଥ ହେବେ ନାହିଁ ପକ୍ଷାନ୍ତରେ ଗବର୍ଣ୍ଣମେଣ୍ଟଙ୍କର ପ୍ରକୃତ ଉଦ୍ଦେଶ୍ୟ ବୁଝି ନ ପାରି ଅନେକ ସମୟରେ ପ୍ରଜାମାନଙ୍କର ସ୍ୱାଭାବିକ ରାଜଭକ୍ତି

ଏବଂ ବିଶ୍ୱାସ ବିଚଳିତ ହୋଇ ଯାଏ । ସଭାଦ୍ୱାରା ଏ ଦୁଇଥିର ସାମଞ୍ଜସ୍ୟ ରକ୍ଷା ହେବ । ତହିଁ ଉତ୍ତାରୁ ବାବୁ ଜଗନ୍ମୋହନ ଲାଲ ଅସ୍ମଦ୍ଦେଶରେ ପ୍ରାଚୀନ କାଳରୁ ଚଳି ଆସୁଥିବା ପଞ୍ଚାୟେତ୍ ଏବଂ ଜାତୀୟ ସଭାର ବର୍ଣ୍ଣନା କରି ଆଧୁନିକ ସଭାର ଉଲ୍ଲେଖ କଲେ । ଏହାଙ୍କ ବକ୍ତୃତା ବଡ ସୁନ୍ଦର ଓ ରସାଳ ହୋଇଥିଲା ଏବଂ ଶ୍ରୋତାମାନେ ପୁନଃପୁନଃ କରତାଳି ପ୍ରଦାନ ପୂର୍ବକ ଆନନ୍ଦ ଓ ଗ୍ରାହକତା ପ୍ରକାଶ କରିଥିଲେ । ପଞ୍ଚାୟେତ୍ ଓ ଜାତୀୟ ସଭାକୁ ଲକ୍ଷ କରି ସେ କହିଲେ ଯେ ଏହାଙ୍କଦ୍ୱାରା ଯେମନ୍ତ ଉତ୍ତମ କାର୍ଯ୍ୟ ହେଉଥିଲା ବା ହେଉଅଛି ତେମନ୍ତ ଅଦାଲତଦ୍ୱାରା ହେଉ ନାହିଁ । ଦେବାନୀ ମୋକଦ୍ଦମା ଘେନି ଅଦାଲତକୁ ଆସିଲେ ଉଭୟପକ୍ଷ ଓକୀଲ ମକ୍ତାର ଅମଲା ଓ ଟପକନବିସଙ୍କର ଟଣାଟଣି ଓ ସରକାରୀ ଖର୍ଚ୍ଚାରେ ସର୍ବସ୍ୱାନ୍ତ ହୋଇ ଘରକୁ ଫେରି ଆସନ୍ତି । ଜୟର ଚିହ୍ନ କେବଳ ଡିକ୍ରିମାତ୍ର ହାତରେ ରହଇ କିନ୍ତୁ ପଞ୍ଚାଏତ ଉଭୟଙ୍କ କଳି ନିଷ୍ପତ୍ତି କରି ସମ୍ପତ୍ତି ରକ୍ଷାର ବାଟ ଦେଖାଇ ଦିଅନ୍ତି । ଏହିପରି ଫଉଜଦାରିରେ ଯଥାର୍ଥ ଦୋଷୀ ବ୍ୟକ୍ତି ଦଣ୍ଡ ପାଇଲେ ସେ କାରାବାସ ବା ଅର୍ଥଦଣ୍ଡ ପଞ୍ଚାଏତଙ୍କ ଦଣ୍ଡଠାରୁ ଅଧିକ ଫଳପ୍ରଦ ହୁଅଇ ନାହିଁ । ସ୍ୱ ଗ୍ରାମର ପାଞ୍ଚଜଣଙ୍କ ସାକ୍ଷାତରେ ଦୋଷୀ ସାବ୍ୟସ୍ତ ହୋଇ ଅଳ୍ପ ଅର୍ଥଦଣ୍ଡ ଦେବା ଏବଂ ଗୋଡତଳେ ପଡି ବା ହାତ ଓଠ ଧରି କ୍ଷମା ପ୍ରାର୍ଥନା କରିବା ସାମାନ୍ୟ ଦିଶିଲେହେଁ କଠିନ ଦଣ୍ଡ ଅଟଇ । ଜାତୀୟ ସଭାରେ ମଧ ଏହିପରି ନ୍ୟାୟ ହୋଇଥାଏ ଏବଂ ତହିଁର ଅତିରିକ୍ତ ଧର୍ମ ଓ ନୈତିକ ଶାସନ ଏହାଦ୍ୱାରା ହୁଅଇ କି ଯହିଁର ଅନ୍ୟ ଉପାୟ ବର୍ତ୍ତମାନ ନାହିଁ ଏକା ସାମାନ୍ୟ ଜାତିଙ୍କ ମଧରେ ଏ ସଭାମାନ ରହିଅଛି ଉଚ୍ଚ ଓ ଭଦ୍ର ଜାତି ମଧରେ ସେପରି ନାହିଁ । ଆଧୁନିକ ସଭା ପ୍ରସଙ୍ଗରେ ସେ କହିଲେ କି ପୂର୍ବେ ଏହି ନଗରରେ ଉତ୍କଳୋଲ୍ଲାସିନୀ ନାମକ ଏକ ସଭା ଥିଲା ଏବଂ ତାହା ଚିରସ୍ଥାୟୀ ନ ହେଲେ ମଧ ତଦ୍ଧାରା କେତେଗୁଡ଼ିଏ ମଙ୍ଗଳ କାର୍ଯ୍ୟ ସାଧିତ ହୋଇଥିଲା । ଏହିସବୁ କହି ପ୍ରସ୍ତାବିତ ସଭାକୁ ଚିରସ୍ଥାୟୀ ଓ କାର୍ଯ୍ୟକାରୀ କରିବା କାରଣ ସମସ୍ତଙ୍କୁ ଉତ୍ସାହିତ ହେବାକୁ ଅନୁରୋଧ କଲେ । ବାବୁ ହରେକୃଷ୍ଣ ଦାସ ୨ୟ ନିର୍ଦ୍ଧାରଣ ପାଠ କଲେ ତାହା ଏହି କି ଏ ସଭାର ନାମ ଉତ୍କଳ ସଭା ହେଉ ଏବଂ ଏଥିର ସଭ୍ୟମାନେ ଅଦ୍ୟ ମନୋନୀତ ହେଉନ୍ତୁ । ବାବୁ ଗୌରୀଶଙ୍କର ରାୟ ଏ ପ୍ରସ୍ତାବକୁ ମନୋନୀତ କଲାଉତ୍ତାରୁ ତାହା ଧାର୍ଯ୍ୟ ହେଲା ଏବଂ ବାବୁ ବଳରାମ ଦାସ ତୃତୀୟ ନିର୍ଦ୍ଧାରଣ ଅର୍ଥାତ୍ ଏହି ଏହି ବ୍ୟକ୍ତିମାନେ କି ଯେଉଁମାନଙ୍କ ନାମ ସେ ପାଠ କଲେ ବର୍ତ୍ତମାନ ଏ ସଭାର ସଭ୍ୟ ହେଉନ୍ତୁ ଏବଂ ସଭ୍ୟ ସଂଖ୍ୟା ବୃଦ୍ଧି କରିବା ଏବଂ କାର୍ଯ୍ୟ ନିର୍ବାହ କମିଟୀ ନିଯୁକ୍ତ କରିବା ଏମାନଙ୍କର କ୍ଷମତା ଥାଉ । ବାବୁ ନିମାଇ ଚରଣ ମିତ୍ର ଏ ପ୍ରସ୍ତାବ ମନୋନୀତ କଲେ । ବାବୁ ବିହାରିଲାଲ ପଣ୍ଡିତଙ୍କ ପ୍ରସ୍ତାବମତେ ଚୌଧୁରୀ କାଶୀନାଥଦାସ ଏ ସଭାର ସଭାପତି ବାବୁ ନନ୍ଦକିଶୋର ଦାସ ଏବଂ ହାଜି ଅବଦୁଲ ରହମାନ ମୁସା ସହକାରୀ ସଭାପତି ଏବଂ ବାବୁ ଗୌରୀଶଙ୍କର ରାୟ ସମ୍ପାଦକ ନିଯୁକ୍ତ ହେଲେ ଏବଂ ବାବୁ ବିଚ୍ଛନ୍ଦପଟ୍ଟନାୟକ ଏହାକୁ ଅନୁମୋଦନ କଲେ । ବାବୁ ବିହାରିଲାଲ ପଣ୍ଡିତ ଶ୍ରୀଯୁକ୍ତ କଲେକ୍ଟର ପଶ ସାହେବଙ୍କଠାରୁ ପାଇଥିବା ଖଣ୍ଡିଏ ଇଂରାଜୀ ପତ୍ର ଏ ସଭାରେ ପାଠ କଲାଉତ୍ତାରୁ ସଭାଦ୍ୱାରା ପଶ୍ଚାତ୍ ତହିଁର ଉତ୍ତର ଦିଆଯିବାର ସ୍ଥିର ହେଲା ଏବଂ ବାବୁ ମଧୁସୂଦନ ଦାସ ଅଦ୍ୟକାର କାର୍ଯ୍ୟ ନିମିତ୍ତ ସଭାପତିଙ୍କୁ ଧନ୍ୟବାଦ ଦେବାର ପ୍ରସ୍ତାବ କଲାରୁ ସମସ୍ତେ ଆନନ୍ଦ ସହିତ ଅନୁମୋଦନ କରି କରତାଳି ଦେଲେ ଏବଂ ସଭା ଭଙ୍ଗ ହେଲା । ଆମ୍ଭେମାନେ ଦେଖୁଅଛୁଁ ଯେ ଏ ସଭାଟି ବଡ ଶୁଭ କ୍ଷଣରେ ପ୍ରତିଷ୍ଠିତ ହୋଇଅଛି ଓ ନଗରବାସୀ ବିଦ୍ୱାନ୍ ବହୁଦର୍ଶୀ ଏବଂ କାର୍ଯ୍ୟକ୍ଷମ ବ୍ୟକ୍ତି ପ୍ରାୟ ସମସ୍ତେ ଏଥିରେ ଯୋଗ ଦେଇଅଛନ୍ତି ଏପରି ସଭା ଦୀର୍ଘକାଳସ୍ଥାୟୀ ହୋଇ ଜନସାଧାରଣଙ୍କର ହିତକର ବ୍ରତରେ ଅହରହନିଯୁକ୍ତ ହେବ ଏବଂ ଏଥିର ସଭ୍ୟମାନେ ଯଥାସାଧ ଉଦ୍ୟମ ଓ ଉତ୍ସାହ ସହକାରେ ଏହାର କାର୍ଯ୍ୟକାରିତା ବିସ୍ତାର କରିବାକୁ ଯତ୍ନଶୀଳ ହେବେ ଏହିମାତ୍ର ଆମ୍ଭମାନଙ୍କର ପ୍ରାର୍ଥନା ଅଟଇ ।

ଏହି ଦିନ ଠିକ ଏହି ସମୟରେ ଆଉ ଗୋଟିଏ ସଭା ମଧ ଶ୍ରୀ ଅର୍ଜ୍ଜୁନ ସାହୁ ଓ ଶ୍ରୀ ଦୀନନାଥ ବନ୍ଦ୍ୟୋପାଧାୟ ପ୍ରଭୃତିଙ୍କ ଆହ୍ୱାନ ମତେ ରେଭନସା କଲେଜଗୃହରେ ହୋଇଥିଲା । ନିର୍ଦ୍ଧାର୍ଯ୍ୟ ସମୟରେ କେହି ଉପସ୍ଥିତ ନୋହିବାରୁ ନଅଘଣ୍ଟା ପର୍ଯ୍ୟନ୍ତ ଅପେକ୍ଷା କରି ପ୍ରାୟ ଢ଼୨୦ଶ ସଭ୍ୟଙ୍କ ଉପସ୍ଥିତୀରେ ସଭାର କାର୍ଯ୍ୟ ଆରମ୍ଭ ହେଲା । ଏଥିରେ ଅଧିକାଂଶ ନିମ୍ନଶ୍ରେଣୀର ଲୋକ ଥିଲେ । ସଭା ପ୍ରାରମ୍ଭରେ ବାବୁ ଦ୍ୱାରିକାନାଥଆଚର୍ଯ୍ୟଙ୍କ ବକ୍ତୃତାରୁ ପ୍ରକାଶ ପାଇଲା ଯେ ଉତ୍କଳସଭା ସାଧାରଣଙ୍କୁ ଘେନି କାର୍ଯ୍ୟ କରି ନ ଥିବାରୁ ଓ ଓଡିୟା ଗୋଟିଏ ସ୍ୱତନ୍ତ୍ର ଭାଷା ଥାଉଁ ଥାଉଁ ବିଦେଶୀୟ ଭାଷା ଅର୍ଥାତ୍ ଇଂରାଜୀରେ ମହାମାନ୍ୟ ଲର୍ଡରିପନ ମହୋଦୟଙ୍କୁ ଅଭିନନ୍ଦନପତ୍ର

ଦିୟା ଯାଇଥିବାରୁ ଏ ସଭାର ଆବଶ୍ୟକତା ଓ ସାଧାରଣଙ୍କୁ ଆମନ୍ତ୍ରଣ କରା ହୋଇଥିଲା । ବାବୁ ଗୋପୀନାଥ ସାହୁ ସଭାପତି, ରେଭରେଣ୍ଡ ସେମ ସାହୁ ସହକାରୀ ସଭାପତି ଓ ବାବୁ ଦ୍ୱାରିକାନାଥ ଆଡ୍ଡ଼ୀର୍ଯ୍ୟ ସେକ୍ରେଟରୀ ମନୋନୀତ ହେଲେ । ଓଡିଶା ସାଧାରଣ ବ୍ୟକ୍ତିମାନଙ୍କ ସଭା ବୋଲି ଏ ସଭାର ନାମକରଣ ହେଲା । ମହାମାନ୍ୟ ଲର୍ଡରିପନଙ୍କ ନିକଟକୁ ଓଡିୟାରେ ଅଭିନନ୍ଦନପତ୍ର ପ୍ରେରଣ କରାଯିବାର ଓ ଏ ସଭାର ଶାଖାସଭା ସ୍ଥାପନ ହୋଇ ତଦ୍ୱାରା ଆତ୍ମଶାସନର ମର୍ମ ସାଧାରଣଙ୍କୁ ଅବଗତ କରାଇବାର ଏବଂ ଏ ସମ୍ବାଦ ତାରଯୋଗେ ଲାଟ ସାହେବଙ୍କ ନିକଟକୁ ପ୍ରେରିତ ହେବାର ଆଉ ଲାଟ ସାହେବଙ୍କୁ ଏଥିର ପେଟରନ ଅର୍ଥାତ୍ ମୁରବି ହେବାକୁ ସଭାର ଅଭିଭାବକଙ୍କଦ୍ୱାରା ଜଣାଇବାର ଧାର୍ଯ୍ୟ ହେଲା ।

ଏହି ସମୟରେ ଉତ୍କଳସଭା ଭଙ୍ଗ ହେବାରୁ କେତେକ ସମ୍ଭ୍ରାନ୍ତ ବ୍ୟକ୍ତି ଓ ଅଧିକାଂଶ ସ୍କୁଲ ଛାତ୍ର ସେଠାରେ ଉପସ୍ଥିତ ହୋଇ ଏକଦିନରେ ଏକ ଉଦ୍ଦେଶରେ ଦୁଇଗୋଟି ସଭା ହେବାର କାରଣ ଜାଣିବାକୁ ଇଚ୍ଛୁକ ଓ ପ୍ରାର୍ଥୀ ହେବାରୁ ସଭାପକ୍ଷରୁ ଯେଉଁ କାରଣମାନ ପ୍ରଦର୍ଶିତ ହେଲା ତାହା ଛାତ୍ରମାନଙ୍କୁ ସୁଦ୍ଧା ଭୁଲାଇ ପାରିଲା ନାହିଁ ସେମାନେ ସହଜ ଏବଂ ସରଳ ଯୁକ୍ତିଦ୍ୱାରା ଉକ୍ତ ସଭାର ଅନାବଶ୍ୟକତା ପ୍ରମାଣ କରାଇ ଦେଲେ ଏବଂ କୌଣସି ବିଦ୍ୱେଷଭାବ ଏ ସଭାର କାରଣ ବୋଲି ଅନେକଙ୍କର ବୋଧଗମ୍ୟ ହୋଇ ପଡିଲା ଗରିଜଣ ଛାତ୍ର ଏ ସମ୍ବନ୍ଧରେ କହିଥିଲେ କିନ୍ତୁ ଶେଷବକ୍ତା ଅତି ସୁନ୍ଦରରୂପରେ ଏକତା ବିଷୟରେ ଅନେକଗୁଡିଏ କଥା କହିଥିଲେ ଓ ସଭାଗୃହ ଆନନ୍ଦ ଧ୍ୱନିରେ ପରିପୂର୍ଣ୍ଣ ହୋଇଥିଲା ।

ବାବୁ ଦୀନନାଥ ବାନୁର୍ଯ୍ୟା ଏ ସଭାର ମୂଳ କାରଣ ଅଟନ୍ତି । ଏତେଦିନ ସେ ନାନା ବିଷୟରେ ଗବର୍ଣ୍ଣମେଣ୍ଟଙ୍କୁ ସାଧାରଣ ହିତକର ବିଷୟରେ ଦରଖାସ୍ତମାନ ପଠାଇ ଏକାକୀ ଏକ ଏକ ସଭାର କାର୍ଯ୍ୟ କରିଅଛନ୍ତି ଏଣିକି ବୃଦ୍ଧ ହେବାରୁପରା ସଭାର ସାହାଯ୍ୟ ଲୋଡୁ ଅଛନ୍ତି ଫଳତଃ ସଭାର ଅନ୍ୟ କାର୍ଯ୍ୟମାନ ଅନର୍ଥକ ହେଲେହେଁ ଆତ୍ମଶାସନର ମର୍ମ ଲୋକଙ୍କୁ ଅବଗତ କରାଇବାର ଉଦ୍ଦେଶ୍ୟଟି ଅତ୍ୟନ୍ତ ମହତ୍ ଅଟଇ । ମାତ୍ର ଯେ ସ୍ଥଳେ ବଙ୍ଗଳାର ଅନ୍ୟାନ୍ୟ ବୃହତ୍ ଜିଲ୍ଲାରେ ଗୋଟିଏ ସଭାଦ୍ୱାରା ସେ କାର୍ଯ୍ୟ ସମ୍ପନ୍ନ ହେବାର ଦେଖାଯାଏ ସେ ସ୍ଥଳେ କଟକପରି କ୍ଷୁଦ୍ର ସ୍ଥାନରେ ଦିଯୋଟି ସଭାର ଆବଶ୍ୟକତା ଆଦୌ ଜଣା ଯାଉ ନାହିଁ ତଥାଚ ଏକଦିନରେ ଦୁଇ ସଭା କରିବାଦ୍ୱାରା ଅଧିକ କି ଲାଭ ହେଲା । ଆମ୍ଭେମାନେ ଅନୁମାନକରୁଁ କି ଦୀନୁବାବୁ ସଭା ସଂଗଠନରେ ମନୋଯୋଗୀ ନ ହୋଇ ଆପେ ଏକ ଏକ ଦିନ ଏକ ଏକ ବଜାରରେ ଆତ୍ମଶାସନର ମର୍ମ ଲୋକଙ୍କୁ ବୁଝାଇ ଦେବାକୁ ପ୍ରବୃତ୍ତ ହେଲେ ସର୍ବାପେକ୍ଷା ଅଧିକ ପରିମାଣରେ କାର୍ଯ୍ୟ କରି ପାରିବେ ଏବଂ ସମସ୍ତ ସଭା ତାହାଙ୍କୁ ମୁକ୍ତକଣ୍ଠରେ ଧନ୍ୟବାଦ ଦେବେ ।

***ଭା୧୭ଗ, ସଂ୩୩ଖ୍ୟା, ୧୯।୮।୧୮୮୨***

## ଉତ୍କଳ ସଭା ।

ଗତ ସୋମବାର ଉତ୍କଳ ସଭାର ପ୍ରଥମ ଅଧିବେଶନ ହୋଇଥିଲା ଏବଂ ସ୍ଥାନୀୟ ଆତ୍ମଶାସନ ବିଧି ଏ ଜିଲ୍ଲାରେ ଚଳାଇବାର ନିୟମ ସ୍ଥିର କରିବା ଏ ସଭାର କାର୍ଯ୍ୟ ବୋଲି ପୂର୍ବରୁ ନିର୍ଦ୍ଦିଷ୍ଟ ହୋଇଥିଲା । ଅବଧି ସଭାର ସଭ୍ୟ ୧୦୯ ଜଣ ହୋଇଅଛନ୍ତି । ଏମାନେ ପ୍ରାୟ ସମସ୍ତେ ଆସିଥିଲେ ଏବଂ ଏଥିର ଦ୍ୱିଗୁଣ ଦର୍ଶକ ଉପସ୍ଥିତ ହୋଇଥିଲେ । ସଭା ଗୃହ ଲୋକରେ ପରିପୂର୍ଣ୍ଣ ହୋଇଥିଲା ଏହା ବଡ଼ ସୁଖର ବିଷୟ ଅଟଇ ଏବଂ ଏଥିରୁ ବିଲକ୍ଷଣ ପ୍ରତୀତି ହେଉଅଛି କି ଲୋକମାନେ ଅତ୍ୟନ୍ତ ଉତ୍ସାହ ସହିତ ଆତ୍ମଶାସନ ପ୍ରସ୍ତାବକୁ ସଫଳ କରିବା କାରଣ ମାତି ଅଛନ୍ତି । ଏ ଦିନ ବକ୍ତୃତା କରିବାର ବିଶେଷ ଆବଶ୍ୟକ ନ ଥିଲେହେଁ କେତେଗୁଡିଏ ସୁନ୍ଦର ବକ୍ତୃତା ହୋଇଥିଲା ଏବଂ କେତେକ ବାଦାନୁବାଦରେ ମଧ ସଭା ଗୃହର ବାୟୁ ଉଷ୍ଣ ହୋଇଥିଲା । ବାହୁଲ୍ୟ ଭୟରେ ତହିଁର ବର୍ଣ୍ଣନାରୁ କ୍ଷାନ୍ତ ରହି ସଭାରେ ଯେଉଁ କଥାମାନ ଧାର୍ଯ୍ୟ ହେଲା ତହିଁର ସଂକ୍ଷେପ ବିବରଣ ପାଠକମାନଙ୍କୁ ଜଣାଉଅଛୁଁ ।

ଆତ୍ମଶାସନ ବିଧି ଅନ୍ତର୍ଗତ ଦିଯୋଟି ବିଷୟ ଅଟଇ ଯଥା ନିର୍ବାଚନ ପ୍ରଣାଳୀରେ ନାଗରିକ ଅର୍ଥାତ୍ ମିଉନିସିପାଲିଟିର ବୋର୍ଡ ଏବଂ ସେହି ପ୍ରଣାଳୀରେ ସ୍ଥାନୀୟ ଏବଂ ଜିଲ୍ଲା ବୋର୍ଡ ସଂଗଠନ କରିବା । ପୂର୍ବରୁ ଏ

ନଗରବାସିମାନେ ଏକ ସଭା କରି ନିର୍ବାଚନ ପ୍ରଣାଳୀ ଏ ପ୍ରଦେଶରେ ଚଳାଇବାର ମତ ପ୍ରକାଶ କରିଅଛନ୍ତି । ତଦନୁସାରେ ମିଉନିସିପଲ କାର୍ଯ୍ୟ ଯେଉଁ ନିୟମରେ ଚଳିବା ଉଚିତ ଏହି ସଭାରେ ତାହା ଧାର୍ଯ୍ୟ ହେଲା । ସେ ନିୟମମାନ ଏହି କି ମିଉନିସିପଲ ଆଇନର ଧା ୧୬ ରା ଅନୁସାରେ ଏହି ନଗରର ଟାକ୍‌ସଦାତାଙ୍କ ମଧ୍ୟରୁ ଅନ୍ତତଃ ଏକ ତୃତୀୟାଂଶ ଲୋକଙ୍କ ଦସ୍ତଖତରେ ଏ ନଗରକୁ ନିର୍ବାଚନ ପ୍ରଣାଳୀ ପ୍ରଦାନ ନିମିତ୍ତ ଗବର୍ଣ୍ଣମେଣ୍ଟଙ୍କୁ ଏକ ଦରଖାସ୍ତ ପ୍ରେରିତ ହେବ ଏବଂ ସେ ଦରଖାସ୍ତରେ ଏହା ମଧ ପ୍ରାର୍ଥନା ହେବ କି ନିର୍ବାଚନ ପ୍ରଣାଳୀ ମତେ ମନୋନୀତ ହେବା କମିଶ୍ନରମାନେ ଯାହାଙ୍କୁ ଆପଣା ଚେଆରମାନ ମନୋନୀତ କରିବେ ଗବର୍ଣ୍ଣମେଣ୍ଟ ତାହାଙ୍କୁ ଉକ୍ତ କର୍ମରେ ନିଯୁକ୍ତ କରିବେ । ନିର୍ବାଚନ କ୍ରିୟା ସମ୍ପର୍କରେ ଏହିପରି ସଭା ପ୍ରସ୍ତାବ କରିଅଛନ୍ତି କି ଏହି ନଗର ବର୍ତ୍ତମାନ ପରି ଛଅ ଭାଗରେ ବିଭକ୍ତ ହେବ । ପ୍ରତ୍ୟେକ ଭାଗରୁ ତିନିଜଣ ଲେଖାଁଏ କମିଶ୍ନର ନିଯୁକ୍ତ ହେବେ ସୁତରାଂ ମିଉନିସିପଲ ବୋର୍ଡର କମିଶନରମାନଙ୍କର ସଂଖ୍ୟା ଜ୧୮ଣ ହେବ । ସମସ୍ତ ଟାକ୍‌ଦାତା କମିଶ୍ନର ନିଯୋଗ ବିଷୟରେ ମତ ଦେବାର ଅଧିକାରୀ ହେବେ । ମିଉନିସିପାଲିଟୀ ଅଥବା ତହିଁର ସୀମାର ୩ ମାଇଲ ମଧ୍ୟରେ ଯାହାର ବାସ ଯାହାର ବୟସ ବ ୨ ୧ ର୍ଷରୁ ଉର୍ଦ୍ଧ ଯେ ବର୍ଷକୁ ଟ୬ ଙ୍କା ବା ଅଧିକ ଟାକ୍ ଦିଏ ଓ ଲେଖାପଢା ଜାଣେ ଏବଂ ଯେ କୌଣସି ଜାମିନ ନ ଥିବା ଅପରାଧରେ ଦଣ୍ଡିତ ହୋଇ ନାହିଁ ସେହି ବ୍ୟକ୍ତି କମିଶ୍ନର ମନୋନୀତ ହୋଇ ପାରିବ । ଗବର୍ଣ୍ଣମେଣ୍ଟଙ୍କୁ ଦରଖାସ୍ତ ପ୍ରସ୍ତୁତ କରି ପଠାଇବା ଏବଂ ଏହି ସମସ୍ତ ପ୍ରସ୍ତାବାନୁସାରେ କାର୍ଯ୍ୟ କରିବା କାରଣ ଗୋଟିଏ କାର୍ଯ୍ୟ ନିର୍ବାହିକା ସଭା ସଂଗଠିତ ହୋଇଅଛି ଏବଂ ତହିଁରେ ଜ୨୬ଣ ସଭ୍ୟ ଅଛନ୍ତି । ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀ ଏବଂ ବାବୁ ଅତୁଳକୃଷ୍ଣ ରାୟ ଚୌଧୁରୀ ଏଥିର ଯୁଗ୍ମସମ୍ପାଦକ । ସ୍ଥାନୀୟ ଏବଂ ଜିଲ୍ଲା ବୋର୍ଡ କି ନିୟମରେ ଗଠିତ ହେବ ବିଋର କରି ସେଥିର ପ୍ରସ୍ତାବ ସାଧାରଣ ସଭାରେ ଆଗାମୀ ବୁଧବାର ଦିନ ଉପସ୍ଥିତ କରିବା କାରଣ ଏହି ସଭାକୁ ଭାର ଦିଆଯାଇଅଛି । ତହିଁର ବିବରଣ ଆଗାମୀ ସପ୍ତାହରେ ପାଠକମାନଙ୍କୁ ଅବଗତ କରାଇବୁଁ ।

*ଭା୧୭ଗ,ସଂ୩୪ଖ୍ୟା, ୨୬।୮।୧୮୮୨*

### ପ୍ରାପ୍ତ ।

### [ଶିକ୍ଷାବିଧାୟିନୀ ସଭା ]

ଗତ ରବିବାର ପ୍ରିଣ୍ଟିଂ କମ୍ପାନିଙ୍କ ଦୋମହଲାରେ ଶିକ୍ଷାବିଧାୟିନୀ ସଭାର ତୃତୀୟ ବର୍ଷର ଷାଣ୍ମାସିକ ଅଧିବେଶନ ହୋଇଥିଲା, ସଭା ମନ୍ଦିରରେ ନାନା ସ୍କୁଲର ଅନେକ ଗୁଡିଏ ଛାତ୍ର ଉପସ୍ଥିତ ଥିଲେ ସାଧାରଣତଃ ବାଳକମାନଙ୍କର ସଭାକୁ ବଡ ବଡ ଲୋକେ ଅବଜ୍ଞା କରନ୍ତି ମାତ୍ର ସୁଖର ବିଷୟ ଏ ସଭାରେ ଦୁଇଜଣ ଉଚ୍ଚଶ୍ରେଣିର ଶିକ୍ଷକ ଉପସ୍ଥିତ ଥିଲେ । ନିୟମିତ ସମୟର କିଞ୍ଚିତ୍ ପରେ ସଭାର କାର୍ଯ୍ୟ ଆରମ୍ଭ ହେଲା, ସଭ୍ୟମାନଙ୍କ ବକ୍ତୃତାରେ ଆମ୍ଭେମାନେ ଅତ୍ୟନ୍ତ ପ୍ରୀତ ହୋଇଅଛୁଁ ବିଶେଷତଃ ବାବୁ ଲଳିତମୋହନ ଚକ୍ରବର୍ତ୍ତୀ ମନୋହର ବକ୍ତୃତା କରିଥିଲେ । ଏ ଦେଶୀୟ ମହିଳାମାନଙ୍କର ଦୁରବସ୍ଥାର ବିଷୟ ସୁଲଳିତ ଓ ତେଜସ୍ୱିନୀ ଭାଷାରେ ପ୍ରକାଶ କରି ଶ୍ରୋତୃବର୍ଗଙ୍କୁ ଆପ୍ୟାୟିତ କରିଥିଲେ , ଅତି ଅଳ୍ପବୟସରେ ତାଙ୍କର ଏରୂପ ବକ୍ତୃତା ଶକ୍ତି ଦେଖି ଆମ୍ଭେମାନେ ଆଶ୍ଚର୍ଯ୍ୟ ହୋଇଅଛୁଁ । ସେ ଦିନ ଦୀନବାବୁଙ୍କ ସଭାରେ ମୃଗାଙ୍କବାବୁଙ୍କର ବକ୍ତୃତା ଶୁଣି ଆମ୍ଭମାନଙ୍କର ଯେରୂପ ଆନନ୍ଦଲାଭ ହୋଇଥିଲା ଆଜି ସେହିପରି ହୋଇଅଛି, ପ୍ରକୃତରେ ବକ୍ତୃତା ଶୁଣି ନାରୀଜାତିର ଉନ୍ନତି ବିଷୟରେ ଆମ୍ଭମାନଙ୍କର ସହାନୁଭୂତି ଅଧିକ ବଢିଅଛି । କଟକରେ ବାଳକମାନଙ୍କର ଅନେକ ସଭା ଦେଖାଯାଇଥିଲା ମାତ୍ର ଶିକ୍ଷା ବିଧାୟିନୀ ତନ୍ମଧ୍ୟରେ ପ୍ରକୃତ ଫଳ ଦେଖାଇଅଛି । ଗତ ଛମାସ ମଧ୍ୟରେ ସଭାରେ କେତେ ପ୍ରବନ୍ଧ ପାଠ ହୋଇଥିଲା ଓ କେତେ ବକ୍ତୃତା ହୋଇଥିଲା ବା କି କି କାର୍ଯ୍ୟ ହୋଇଥିଲା ତାହାସବୁ ଏ ସଭାରେ ଜଣାଇଥିଲେ ସଭାର କାର୍ଯ୍ୟ ସର୍ବାଙ୍ଗ ସୁନ୍ଦର ହୋଇଥାନ୍ତା । ପରିଶେଷରେ ପରମେଶ୍ୱରଙ୍କଠାରେ ପ୍ରାର୍ଥନା ଶିକ୍ଷାବିଧାୟିନୀ ସଭା ଦୀର୍ଘଜୀବିନୀ ହୋଇ ରଚନା ଓ ବକ୍ତୃତାର ଶିକ୍ଷା ଦିନକୁଦିନ ବୃଦ୍ଧିକରୁ ।

*ଭା୧୭ଗ,ସଂ ୩୫ଖ୍ୟା, ୨।୯।୧୮୮୨*

## ଉତ୍କଳସଭା ।

ଚଳିତ ମାସ ତା ୧ରିଖରେ ଏ ସଭାର ଅଧୀବେଶନରେ ସ୍ଥାନୀୟ ବୋର୍ଡ ସ୍ଥାପନ ବିଷୟରେ ଏହି ନିୟମମାନ ସ୍ଥିର ହୋଇଅଛି କି ସଦର ସବ୍‌ଡିବିଜନରେ ଯେଉଁ ବୋର୍ଡ ଗଠିତ ହେବ ତହିଁର ସଭ୍ୟ ଉକ୍ତ ସବ୍‌ଡିବିଜନ ଅନ୍ତର୍ଗତ ଥାନା ସକଳରୁ ନିର୍ବାଚିତ ହେବେ । କୌଣସି ଏକ ଥାନାରୁ ପାଞ୍ଚ ଜଣରୁ ଅଧିକ ମେୟର ମନୋନୀତ ହେବେ ନାହିଁ । ଏମାନଙ୍କ ସଙ୍ଗେ ସିବିଲ ସର୍ଜନ ବାରିକମାଷ୍ଟରସାହେବ, ଏବଂ ସ୍କୁଲ ସମୂହର ଡେପୁଟି ଇନସ୍ପେକ୍ଟରମାନେ ମେୟର ହେବେ । ମେୟରମାନେ ଆପଣା ଚେଅରମାନ ମନୋନୀତ କରିବେ । ମେୟର ମନୋନୀତ କରିବା ଏବଂ ମେୟର ହେବା ବ୍ୟକ୍ତିଙ୍କ ଯୋଗ୍ୟତା ଉଭୟ ସମ୍ପତ୍ତି ଏବଂ ମାନସିକ ଗୁଣସୂତ୍ରେ ସ୍ଥିର ହେବ । ଅର୍ଥାତ୍ ଯେଉଁମାନେ ବାର୍ଷିକ ଟ୧ଙ୍କା ରୋଡସେସ୍ ଦିଅନ୍ତି କିମ୍ବା ଅନ୍ୟ ଉପାୟରେ ଟ୧୦୦ଙ୍କା ଆୟ କରନ୍ତି ସେମାନେ ମେୟର ମନୋନୀତ କରିପାରିବେ ଆଉ ଯେଉଁମାନେ ବାର୍ଷିକ ଟ୫ଙ୍କା ରୋଡସେସ୍ ଦିଅନ୍ତି କିମ୍ବା କୌଣସି ଉପାୟରେ ଟ୫୦୦ଙ୍କା ଆୟ କରନ୍ତି ସେମାନେ ମେୟର ହେବାକାରଣ ପ୍ରାର୍ଥୀ ହୋଇପାରିବେ । ଏହା ଛଡା ସାର୍ଟିଫିକଟ ପାଇଥିବା ନେଟିବ ଡାକ୍ତର ଉକିଲ ଏବଂ ବିଶ୍ୱବିଦ୍ୟାଳୟର ଉପାଧିଧାରୀ ଅର୍ଥାତ୍ ଯେଉଁମାନେ ସ୍ଥାନୀୟ ବୋର୍ଡର ସୀମା ମଧ୍ୟରେ ବାସ କରୁଥିବେ ସେମାନେ ଉଭୟ ମେୟର ମନୋନୀତ କରିପାରିବେ ଏବଂ ମେୟର ହେବାର ଯୋଗ୍ୟ ହେବେ । ମେୟରମାନଙ୍କୁ ସଭାରେ ଉପସ୍ଥିତ ହେବା କାରଣ ଗସ୍ତ ଖର୍ଚ୍ଚା ଦିଆଯିବ ଏବଂ ସ୍ଥାନୀୟ ବୋର୍ଡକୁ କୌଣସି ନୂତନ ଟାକ୍ସ ଆଦାୟ କରିବାର କ୍ଷମତା ଦିଆଯିବ ନାହିଁ । ଗବର୍ଣ୍ଣମେଣ୍ଟଙ୍କର ଅଭିପ୍ରାୟରୁ ଜଣାଯାଏ ଯେ ନିର୍ବାଚନ ପ୍ରଣାଳୀରେ ସ୍ଥାନୀୟ ବୋର୍ଡ ସ୍ଥାପନ ସକାଶେ ଲୋକଙ୍କ ପକ୍ଷରୁ ଆବେଦନପତ୍ର ହେବାର ଆବଶ୍ୟକ ମାତ୍ର ତାହା ଅତ୍ୟନ୍ତ କଷ୍ଟକର ଏବଂ ଅସୁବିଧା ହେତୁରୁ ସଭା କଲେକ୍ଟରସାହେବଙ୍କ ଯୋଗେ ଗବର୍ଣ୍ଣମେଣ୍ଟରେ ଏହି ପ୍ରାର୍ଥନା କରିଅଛନ୍ତି କି ସେପରି ଦରଖାସ୍ତ ବିନା ସ୍ଥାନୀୟ ବୋର୍ଡର ମେୟର ଏବଂ ଚେଆରମାନ ନିର୍ବାଚନର ଅଧିକାର ଏଠା ଲୋକଙ୍କୁ ଦିଆଯିବ ।

ଉପର ଲିଖିତ ନିୟମମାନ ସଭା ଏକମତ ହୋଇ ସ୍ଥିର କରିଅଛନ୍ତି କେବଳ ଶିକ୍ଷିତ ଲୋକଙ୍କୁ ନିର୍ବାଚନର ଅଧିକାର ଦେବା ପ୍ରସଙ୍ଗରେ ବିସ୍ତର ତର୍କ ବିତର୍କ ହୋଇଥିଲା ତହିଁର କାରଣ ଏହିକି ଶିକ୍ଷିତ ଲୋକ କିଏ ତାହା ସ୍ଥିର କରିବା ବଡ କଠିନ କଥା ଏବଂ ପକ୍ଷାନ୍ତରେ ଏମନ୍ତ ଶିକ୍ଷିତ ଲୋକ ଦେଖିବାରେ ଆସଇ ନାହିଁ କି ଯାହାର ଆୟ ବାର୍ଷିକ ଟ୧୦୦ ଙ୍କା ସୁଦ୍ଧା ନୁହଇ । ଯେରୂପ ଆୟ ନିର୍ଦ୍ଦିଷ୍ଟ ହୋଇଅଛି ତହିଁରେ ଶିକ୍ଷିତଲୋକ ଛାଡଯାଉ ନାହାନ୍ତି ତେବେ ତାହାଙ୍କୁ ବିଶେଷକରି ଯୋଗ୍ୟ ବୋଲିବାର ପ୍ରୟୋଜନ କି ? ଏହି ହେତୁରୁ ଜଣେ ସଭ୍ୟ ଏକାବେଳକେ ଶିକ୍ଷିତ ଲୋକଙ୍କର ଉଲ୍ଲେଖ ନ କରିବାର ପ୍ରସ୍ତାବ କରିଥିଲେ ମାତ୍ର ଦୁଇ ଚାରି ଜଣ ଛଡା ଆଉ କେହି ତହିଁରେ ସମ୍ମତ ହେଲେ ନାହିଁ । ସୁତରାଂ ଗୁଣି ଲୋକମାନେ ଯୋଗ୍ୟ ବୋଲି ସ୍ଥିର ହେଲେ । ମାତ୍ର ସଭା କେବଳ ନେଟିବ ଡାକ୍ତର ଉକିଲ ଏବଂ ବିଶ୍ୱବିଦ୍ୟାଳୟର ଉପାଧିଧାରିଙ୍କୁ ଗୁଣୀ ମଧ୍ୟରେ ଆଣିଅଛନ୍ତି । ଏଥିରେ ପଣ୍ଡିତ ମୁକ୍ତାର ଅବଧାନ ଏବଂ ଅନ୍ୟାନ୍ୟ ଗୁଣିଲୋକଙ୍କର ହୃଦୟବେଦନା ଜାତ ହେବାର ସମ୍ଭାବନା । ଏଥିପାଁଇ ଆମ୍ଭେମାନେ ଏ ପ୍ରସ୍ତାବକୁ ଅନୁମୋଦନ କରୁନାହୁଁ । ଯେଉଁମାନେ ଗୁଣିଲୋକ ଥିବାର ମତ ଦେଲେ ସେମାନେ କେବଳ ଗୁଣର ଟେକ ରଖିବାକୁ ବ୍ୟସ୍ତ ହେଲେ । ସେପରି ନିୟମ କରିବାର ଦୋଷ ଗୁଣ କିଛି ଅନୁଭବ କରି ପାରିଲେ ନାହିଁ । ବିଦ୍ୟାଶୂନ୍ୟ ଭଟ୍ଟାଚାର୍ଯ୍ୟ ଏବଂ ଅର୍ଥଶୂନ୍ୟ ପଣ୍ଡିତ ଆମ୍ଭମାନଙ୍କ ବିବେଚନାରେ ଏକ ଶ୍ରେଣୀୟ ଲୋକ ଅଟନ୍ତି । ବୈଷୟିକ ବ୍ୟାପାରରେ ବରଂ ଉପାୟହୀନ ପଣ୍ଡିତଠାରୁ ବିଦ୍ୟାଶୂନ୍ୟ ଭଟ୍ଟାଚାର୍ଯ୍ୟ ଭଲ ତଥାଚ ସାଧାରଣ ହିତାହିତ ବ୍ୟବସ୍ଥାରେ ଏମାନଙ୍କ ମତ ଗ୍ରହଣ କରିବା ତେତେ ଆଦରର ବିଷୟ ନୁହଇ । ପରନ୍ତୁ କୌଣସି ସମାଜରେ ଏମାନଙ୍କର ସଂଖ୍ୟା ଅଧିକ ହୋଇ ନ ପାରେ । ସୁତରାଂ ଏମାନଙ୍କୁ ଛାଡିଦେଲେ କିଛି କ୍ଷତିନାହିଁ । ଆମ୍ଭେମାନେ ପୁରୀ ସଙ୍ଗେ ତୁଳନା କରି କହୁଅଛୁଁ ଯେ ସ୍ଥାନୀୟ ବୋର୍ଡ ବିଷୟରେ କଟକର ପ୍ରସ୍ତାବ ଭଲ ହୋଇ ନାହିଁ । ସ୍ଥାନୀୟ ବୋର୍ଡ ସ୍ଥାପନ ବିଧି ଅତ୍ୟନ୍ତ ଜଟିଳ ବ୍ୟାପାର ଅଟଇ ଏବଂ ଏହାର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ଉତ୍ତମରୂପରେ ପରୀକ୍ଷାକରି ଗୋଟାଏ ସୁନ୍ଦରମୂର୍ତ୍ତି ଗଢିବା ପାଁଇ ବିଶେଷ ବୁଦ୍ଧି ଓ ଅନୁଭବର ପ୍ରୟୋଜନ । ବୋଧ ହୁଅଇ କଟକ ସଭାର କାର୍ଯ୍ୟ କିଛି ତରତରିଆ ହୋଇଅଛି ।

*ଭା୧୭ଗ,ସଂ୩୬ଖ୍ୟା, ୯।୯।୧୮୮୨*

## ସମାଲୋଚନା ।

## ଦାସ ପଟ୍ଟନାୟକଙ୍କ ପୁସ୍ତକ ଶ୍ରେଣୀ ।

ଏହି ଶ୍ରେଣୀ ମଧ୍ୟରୁ ଆମ୍ଭେମାନେ ଖ୪ଣ୍ଡ ପୁସ୍ତକ ପ୍ରାପ୍ତ ହୋଇଅଛୁଁ । କେଉଁ ପୁସ୍ତକରୁ ଶ୍ରେଣୀ ଆରମ୍ଭ ହୋଇ କି ଶୃଙ୍ଖଳାରେ ଚାଲିଅଛି ଗ୍ରନ୍ଥକାର ସଂଖ୍ୟାଦ୍ୱାରା ନିର୍ଦ୍ଦେଶ କରି ନ ଥିବାରୁ ଆମ୍ଭେମାନେ ସ୍ୱେଚ୍ଛାକ୍ରମେ ପୁସ୍ତକମାନଙ୍କର ନାମ ଲେଖିବାକୁ ବାଧ ହୋଇଅଛୁଁ । ପୁସ୍ତକମାନଙ୍କର ନାମ ଯଥା,- ବାଳବୋଧିନୀ, ଜ୍ଞାନୋଦୟ, କାବ୍ୟକୁସୁମ ଓ ଭଜନମାଳା ପ୍ରଥମ ଲିଖିତ ପୁସ୍ତକର ଗ୍ରନ୍ଥକର୍ତ୍ତା ବାବୁ ଚତୁର୍ଭୁଜ ପଟ୍ଟନାୟକ ବି,ଏ. ଓ ବାବୁ ଦ୍ୱାରିକାନାଥ ଦାସ ଉଭୟ ଅଟନ୍ତି ଏବଂ ଅପରତିନି ପୁସ୍ତକ ପ୍ରଥମୋକ୍ତ ବାବୁ ଦ୍ୱିତୀୟୋକ୍ତ ବାବୁଙ୍କ ସାହାଯ୍ୟରେ ରଚନା କରିଅଛନ୍ତି । ସୁତରାଂ ବାବୁ ଚତୁର୍ଭୁଜ ପଟ୍ଟନାୟକଙ୍କୁ ଏଥିର ମୂଳାଧାର ବୋଲିବାକୁ ହେବ । ଏ ମହାଶୟ ଓଡିଶାର ପ୍ରଥମ ବି,ଏ, ଉପାଧିଧାରୀ ହୋଇ ମାତୃଭାଷାର ପୁଷ୍ଟିସାଧନ ପକ୍ଷରେ ବ୍ରତୀ ହୋଇଅଛନ୍ତି ଏଥିରେ ଆମ୍ଭେମାନେ ଅପାର ଆନନ୍ଦିତ ହୋଇ ଅଛୁଁ ଏବଂ ଶିକ୍ଷାବିଭାଗରେ କାର୍ଯ୍ୟ କରୁଥିବାରୁ ବିଭାଗୀୟ ଅଭାବ ପ୍ରତ୍ୟକ୍ଷ କରିବାର ସେ ଯେଉଁ ବିଶେଷ ସୁବିଧା ପାଇ ଅଛନ୍ତି ଆମ୍ଭେମାନେ ଆଶା କରୁଁ ଯେ ତାହା ପୂର୍ଣ୍ଣ କରିବା ପକ୍ଷରେ ସେ ଅଧିକ ପରିମାଣରେ ସମର୍ଥ ହେବେ । ଆମ୍ଭେମାନେ ତାହାଙ୍କ ପ୍ରାର୍ଥନା କରୁଁ ଯେ ସେ ଦୃଢ ସଂକଳ୍ପ ସହିତ ଏ କାର୍ଯ୍ୟରେ ପ୍ରବୃତ୍ତ ହେଉନ୍ତୁ । ଯେଉଁ ଚାରିଖଣ୍ଡି ପୁସ୍ତକ ସେ ବାହାର କରିଅଛନ୍ତି ତହିଁ ମଧ୍ୟରେ ଭଜନମାଳା ଗ୍ରନ୍ଥ ବ୍ରାହ୍ମମାନଙ୍କର ଉପାସନା ପ୍ରଣାଳୀ ଅଟଇ ଏବଂ ଏହା ଉତ୍ତମ ହୋଇଅଛି ବାଳବୋଧିନୀ ଓଡିଆ ବର୍ଣ୍ଣପରିଚୟର ନାମାନ୍ତର ଅଟଇ ମାତ୍ର ଏଥିରେ କେତେଗୁଡିଏ ହିତକର ଉପଦେଶ କୋମଳ କବିତାର ସନ୍ନିବେଶିତ ହୋଇଅଛି କି ତାହା ବାଳକମାନେ ଅନାୟାସରେ ଅଭ୍ୟାସ କରି ପାରିବେ ଏବଂ ତଦ୍ୱାରା ସେମାନଙ୍କର ଉପକାର ହେବ । କିନ୍ତୁ ଏଥିରେ ତିଥି ନକ୍ଷତ୍ର ଓ ମୁସଲମାନଙ୍କ ମାସପ୍ରଭୃତି ଅନେକ କଥା ଲେଖା ଅଛି କି ଯାହା ଶିଶୁମାନଙ୍କୁ ଶିଖାଇବା କିଛି ତରତରିଆ କାର୍ଯ୍ୟ ହୋଇଅଛି । ଏଥିର ମୂଲ୍ୟ ମଧ ଊଣା ହେବାର ଉଚିତ ଥିଲା । - ଜ୍ଞାନୋଦୟରେ ନାମ ଯୋଗ୍ୟ ଅନେକ ଶିଖିବାର ବିଷୟ ଏକତ୍ରିତ ହୋଇଅଛି ଯେ ତଦ୍ୱାରା ବାଳକ ବାଳିକାଙ୍କର ଅବଶ୍ୟ ଜ୍ଞାନ ବିସ୍ତାର ହେବ । କିନ୍ତୁ ଏହାର ପ୍ରବନ୍ଧମାନ ଏପରି ସଜାଡିବାର ଉଚିତ ଥିଲା କି ଯହିଁରେ ବାଳକମାନେ ଲଘୁଠାରୁ କ୍ରମଶଃ ଗୁରୁ ବିଷୟମାନ ବୁଝିବାକୁ ସହଜରେ ଅଗ୍ରସର ହୋଇ ପାରନ୍ତେ । କାବ୍ୟ କୁସୁମ ଉତ୍କୃଷ୍ଟ କବିତା ନ ହେଲେହେଁ ମନ୍ଦ ହୋଇ ନାହିଁ କିନ୍ତୁ ଏପରି କାର୍ଯ୍ୟରେ ସମୟ ନଷ୍ଟ କରିବାର ଅଭିପ୍ରାୟ ଆମ୍ଭେମାନେ ବୁଝି ପାରିଲୁଁ ନାହିଁ । ଏଥିରେ କୋମଳତା ଥିବାର ଗ୍ରନ୍ଥକାର ଯେତେ ଦାବୀ କରନ୍ତି ତାହାଙ୍କ ଟୀକାଦ୍ୱାରା ତେତେ ସମର୍ଥିତ ହୋଇ ନାହିଁ ଏବଂ କେତେ ଗୁଡିଏ ଅସଙ୍ଗତ ଶବ୍ଦ ଏଥିର ସୌନ୍ଦର୍ଯ୍ୟ ପ୍ରତି ବାଧା ଦେଇ ଅଛି ଯଥା- 'ଯାଅଇ' 'ନାହି ଫିରେ' 'ପଥହାରା' ଇତ୍ୟାଦି ।

*ଅତିରିକ୍ତ, ୧୧/୧୧/୧୮୮୨*

## ସ୍ତ୍ରୀ ଶିକ୍ଷା ।

ମହାଶୟ !

ସ୍ତ୍ରୀ ଶିକ୍ଷା ଉପରେ ସମାଜର ଉନ୍ନତି ଓ ଅବନତିର ସମ୍ପୂର୍ଣ୍ଣ ନିର୍ଭର କରେ । ସ୍ତ୍ରୀଶିକ୍ଷାଦ୍ୱାରା ସନ୍ତାନସନ୍ତତିର ଚରିତ୍ର ଗଠିତ ହୁଏ, ବାଳକ ବାଳିକାଗଣ ସମାଜରେ ପ୍ରବିଷ୍ଟ ହୋଇ ଯେ ସମସ୍ତ କାର୍ଯ୍ୟ କରନ୍ତି ସେ ସମସ୍ତର ମୂଳତତ୍ତ୍ୱ ସେମାନେ ବାଲ୍ୟକାଳରେ ଆପଣା ମାତାଠାରୁ ଶିକ୍ଷା ପାଇଥାନ୍ତି । ଯେ ପରିମାଣେ ସେମାନେ ଶୈଶବାବସ୍ଥାରେ ସୁଶିକ୍ଷିତ ବା କୁଶିକ୍ଷିତ ସେହି ପରିମାଣେ ସେମାନେ କାର୍ଯ୍ୟକ୍ଷେତ୍ରରେ ପ୍ରବେଶ ହୋଇ ଉନ୍ନତ ବା ଅବନତ ହୁଅନ୍ତି ।

ଶିଶୁର ହୃଦୟକୁ ପ୍ରକୃତରୂପେ ଶିକ୍ଷିତ କରିବାର ଭାର ମାତା ହସ୍ତରେ ନ୍ୟସ୍ତ ଅଛି । ପିତା ଆପଣାର ଉପଦେଶ ଓ ଦୃଷ୍ଟାନ୍ତଦ୍ୱାରା ସନ୍ତାନର ବୁଦ୍ଧିବୃତ୍ତିକୁ ସତେଜ କରି ଚିନ୍ତା ଶକ୍ତିକୁ ବୃଦ୍ଧି କରିପାରେ ସତ୍ୟ କିନ୍ତୁ

ହୃଦୟକୁ ସମ୍ପୂର୍ଣ୍ଣରୂପେ ସୁନ୍ଦର ଓ ବିକଶିତକରା କେବଳ ଏକ ମାତା ଭିନ୍ନ ଅନ୍ୟ କେହି ନ ପାରେ ସୁତରାଂ ମାତା କେବ୍‌ଳ ମନୁଷ୍ୟ ଚରିତ୍ରର ସର୍ବପ୍ରଧାନ ରଚୟିତ୍ରୀ ।

ଆମ୍ଭମାନଙ୍କ ସମାଜପ୍ରତି ଦୃଷ୍ଟିପାତ କଲେ ଏ ବିଷୟରେ ଏକାବେଳକେ ନୈରାଶ୍ୟ ହେବାକୁ ହୁଏ, ଅସ୍ମଦ୍ଦେଶୀୟ ମହିଳାଗଣ ଘୋର ଅଜ୍ଞାନତା ଓ କୁସଂସ୍କାରାପନ୍ନ ଏମାନଙ୍କପରି ହୀନାବସ୍ଥା କୌଣସି ସଭ୍ୟ ଜାତୀୟ ସ୍ତ୍ରୀ ଲୋକମାନଙ୍କଠାରେ ଦୃଷ୍ଟ ହୁଏ ନାହିଁ ସୁତରାଂ ଯେ ପର୍ଯ୍ୟନ୍ତ ଏମାନଙ୍କର ଅବସ୍ଥା ପରିବର୍ତ୍ତନ ହୋଇ ନାହିଁ ସେପର୍ଯ୍ୟନ୍ତ ସମାଜର ଉନ୍ନତିର ଆଶା କରାଯାଇ ନ ପାରେ ।

ବାଲ୍ୟକାଳରେ ଆମ୍ଭେମାନେ ଯାହା କିଛି ଶିକ୍ଷାକରୁଁ ସେ ସମସ୍ତ କୁଶିକ୍ଷା; ମାତାମାନଙ୍କର ସଙ୍କୀର୍ଣ୍ଣ ମତ ଓ ଆଚରଣରେ ଆମ୍ଭମାନଙ୍କର ହୃଦୟ ସଂକୀର୍ଣ୍ଣ ହୋଇ ପଡ଼େ, ମାନସିକ ଶିକ୍ଷା ବାଲ୍ୟକାଳରେ ଆମ୍ଭମାନଙ୍କର ଆଦୌ ହୁଏ ନାହିଁ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ମାତାମାନେ ନିଜେ ଯେତେବେଳେ ଅଶିକ୍ଷିତ ତେତେବେଳେ ସନ୍ତାନମାନେ କିରୂପେ ସେମାନଙ୍କଠାରୁ ସତ୍ ଶିକ୍ଷା ପାଇ ପାରିବେ । ସୁଶିକ୍ଷା ପରିବର୍ତ୍ତେ ସେମାନେ ଯେ ସମସ୍ତ କୁସଂସ୍କାର ମନ ମଧ୍ୟରେ ପ୍ରବିଷ୍ଟ କରାଇ ଦିଅନ୍ତି ସେଥିରୁ ରକ୍ଷା ପାଇବା କଠିଣ ହୋଇ ଉଠେ । ସ୍ୱାର୍ଥପରତା ଆମ୍ଭମାନଙ୍କର ଅସ୍ଥି, ମଜ୍ଜା ଓ ରକ୍ତ ସଙ୍ଗେ ସଂଲଗ୍ନ ହୋଇ ଯାଇଥାଏ, ସେହି କ୍ଷୁଦ୍ର ପରିବାର କେବଳ ପୃଥିବୀ ମଧ୍ୟରେ ଆମ୍ଭମାନଙ୍କର ସ୍ୱାର୍ଥର ପଦାର୍ଥ ହୁଏ ଆମ୍ଭମାନଙ୍କର ପୂର୍ବପୁରୁଷମାନେ ଯେଉଁମାନେ କି ସମସ୍ତ ପୃଥିବୀ ଓ ସମସ୍ତ ଜାତିକୁ ସହାନୁଭୂତି ଦେଇ ପୃଥିବୀର ଅଗ୍ରଗଣ୍ୟ ଜାତି ବୋଲି ଗଣ୍ୟ ହୋଇଅଛନ୍ତି ଆମ୍ଭେମାନେ ଯେ ସେହି ଶ୍ରେଷ୍ଠବଂଶ ସମ୍ଭୂତ ସେ ସମସ୍ତ କଥା ବିସ୍ମରଣ ହୋଇ ଆମ୍ଭମାନଙ୍କର ସହାନୁଭୂତି ଓ ମମତା ଯେ କେବଳ ଆପଣା ପରିବାର ମଧ୍ୟରେ ଆବଦ୍ଧ ରଖିଅଛୁଁ ଏହା ଅପେକ୍ଷା ଦୁଃଖର ବିଷୟ ଆଉ କଅଣ ହୋଇ ପାରେ ଅତଏବ ଯଦ୍ୟପି ଦେଶକୁ ଉନ୍ନତ ଦେଖିବାର ଅଭିଳାଷ ଥାଏ ସନ୍ତାନକୁ ଶିକ୍ଷିତ କରାଇବାର ଅଭିଳାଷ ଥାଏ ତେବେ ସର୍ବପ୍ରଥମେ ଦେଶର ସ୍ତ୍ରୀଲୋକମାନଙ୍କର ଉନ୍ନତି ଓ ଶିକ୍ଷା ନିମନ୍ତେ ଯତ୍ନକରା ନିତାନ୍ତ କର୍ତ୍ତବ୍ୟ । ଅଗ୍ରେ ସ୍ତ୍ରୀଲୋକମାନଙ୍କର ଉନ୍ନତି ନ ହେଲେ ଦେଶର ଉନ୍ନତି ସମ୍ପୂର୍ଣ୍ଣ ଅସମ୍ଭବ । ଆଶାକରୁଁ ଶିକ୍ଷିତ ଓଡ଼ିୟା ଯୁବକମାନେ ନିଜ ନିଜ କନ୍ୟା, ଭଗିନୀ, ସ୍ତ୍ରୀ ପ୍ରଭୃତିଙ୍କୁ ଶିକ୍ଷା ଦେବା ନିମନ୍ତେ ସାଧ୍ୟାନୁସାରେ ଯତ୍ନ କରିବେ ।

୧୨।୧୧।୮୨ — ବଶମ୍ବଦ

କଟକ — ଶ୍ରୀ---

*ଅତିରିକ୍ତ, ୧୮।୧୧।୧୮୮୨*

# ୧୮୮୩

## ବାଳବୋଧ ବ୍ୟାକରଣ।

ଶୀର୍ଷାଙ୍କିତ ପୁସ୍ତକ ଖଣ୍ଡ ଆମ୍ଭେମାନେ ଉପହାର ପାଇଥିବାର କୃତଜ୍ଞତା ସହିତରେ ସ୍ୱୀକାର କରୁଅଛୁଁ। ତାହା ଅଳ୍ପବୟସ୍କ ବାଳକ ବାଳିକାଙ୍କ ଶିକ୍ଷା ନିମିତ୍ତ ଶ୍ରୀ ଉଦୟନାଥ ... କର୍ତ୍ତୃକ ସଙ୍କଳିତ ... ଶ୍ରୀ ବାବୁ ବୃନ୍ଦାବନବିହାରୀ କରଙ୍କ ଆନୁକୂଲ୍ୟରେ ବାଲେଶ୍ୱର "ଦେଙ୍କ" ଉତ୍କଳ ଯନ୍ତ୍ରାଳୟରେ ମୁଦ୍ରିତ ହୋଇ ପ୍ରକାଶିତ ହୋଇଅଛି। ଗ୍ରନ୍ଥ ଖଣ୍ଡିକ ବାରପେଜୀ ଫରମାରେ ପୃ.୫୪ଷ୍ଠା -ମୂଲ୍ୟ ତିନିଅଣା ମାତ୍ର। ବ୍ୟାକରଣର ସୂତ୍ରାଦି କେବଳ କଣ୍ଠସ୍ଥ ନ କରି ଅଳ୍ପାୟାସରେ ତତ୍ସମୁଦାୟ ବୁଝିବାକୁ ବାଳକ ବାଳିକାମାନେ ସମର୍ଥ ହେବା ଅଭିପ୍ରାୟରେ ଗ୍ରନ୍ଥକାର ଏ ପୁସ୍ତକ ପ୍ରଣୟନ କରିଥିବାର ଭୂମିକାରେ ଲେଖି ଅଛନ୍ତି ଏବଂ ତନ୍ନିମିତ୍ତ ପ୍ରତ୍ୟେକ ବିଭାଗ ଶେଷରେ ପ୍ରଶ୍ନାବଳୀ ଓ ଅନୁଶୀଳନୀ ସନ୍ନିବିଷ୍ଟ କରି ଅଛନ୍ତି। ଏ ପୁସ୍ତକ ପାଠ କରିବା ସମୟରେ ପ୍ରଚଳିତ ଉତ୍କଳଭାଷା ବ୍ୟାକରଣ ଆମ୍ଭମାନଙ୍କ ସମ୍ମୁଖରେ ରହି ଥିଲା। ଭାଷା ବ୍ୟାକରଣ ଯେ ଅଳ୍ପବୟସ୍କ ବାଳକ ବାଳିକାଙ୍କ ନିମିତ୍ତ ଉପଯୋଗୀ ହୋଇଅଛି ତହିଁରେ ସନ୍ଦେହ ନାହିଁ। ଏଥିରେ ଅଧିକ ମଧ୍ୟରେ କେବଳ ଅନୁଶୀଳନୀ ଓ ପ୍ରଶ୍ନାବଳୀ କି ଯହିଁରେ ଛାତ୍ର ଅପେକ୍ଷା ଶିକ୍ଷକର ଉପକାର ଅଧିକ କିନ୍ତୁ ପକ୍ଷାନ୍ତରେ ବ୍ୟାକରଣୋପଯୋଗୀ ଭାଷା ଦୋଷରେ ଏହା ନିତାନ୍ତ ଦୂଷିତ ହୋଇଅଛି ଓ ସରଳଭାଷାରେ ସମୁଦାୟ ବିଷୟ କହିବା ନିମିତ୍ତ ଗ୍ରନ୍ଥକାର ସମର୍ଥ ହୋଇ ନାହାନ୍ତି। ମଧ ବିଷୟ ବିଭାଗ ପ୍ରାଞ୍ଜଳ ହୋଇ ନାହିଁ। ଲୋକରେ ପ୍ରଚଳିତ ଥିବା ଭାଷାଗତ ପ୍ରଧାନ ପ୍ରଧାନ ବିଷୟମାନ ବୁଝାଇ ଦେବାଦ୍ୱାରା ଭାଷା ଶିଖାଇବା ବ୍ୟାକରଣର ପ୍ରଧାନ ଉଦ୍ଦେଶ୍ୟ। ଯେବେ ସ୍ୱୟଂ ବ୍ୟାକରଣ ଭାଷାର ଅନଭିଜ୍ଞତା ପ୍ରକାଶ କରିବ ତେବେ ତହିଁରୁ କି ଫଳ ଉତ୍ପନ୍ନ ହୁଏ ? ପୁଣି ଅଳ୍ପବୟସ୍କ ବାଳକ ବାଳିକାଙ୍କ ନିମିତ୍ତ ଭାଷା ଶୁଦ୍ଧି ଯେ ନିତାନ୍ତ ଆବଶ୍ୟକୀୟ ତାହା ବୋଲା ବାହୁଲ୍ୟ ମାତ୍ର। ଯେଉଁମାନଙ୍କ ନିମିତ୍ତ ପୁସ୍ତକ ପ୍ରଣୀତ ହୋଇଅଛି ସେହିମାନଙ୍କର ବିଶେଷ ଉପଯୋଗୀ କରି ଗ୍ରନ୍ଥ ପ୍ରଣୟନ କରିବା ଉଚିତ ମାତ୍ର ଦୁଃଖର ବିଷୟ ଯେ କେତେ ଉତ୍କଳୀୟ ଗ୍ରନ୍ଥକାରମାନେ ତତ୍ପ୍ରତି ଆଦୌ ଦୃଷ୍ଟି ନ ରଖି ଏହାକୁ ଏକପ୍ରକାର ସାଉକାର ବ୍ୟବସାୟ ଚଳାଇବା ପ୍ରାୟ କରିଦେଲେଣି। କେବଳ କେତେଗୋଟି ଦୃଷ୍ଟାନ୍ତ ଦେଖାଇଲେ ଆମ୍ଭମାନଙ୍କର ଭାବ ପାଠକମାନଙ୍କୁ ବିଶେଷ ବୋଧଗମ୍ୟ ହେବ। ପ୍ରଥମତଃ ପଦ ବା ସନ୍ଧିର ବିଷୟ ବୋଲିବା ପୂର୍ବରେ ଗ୍ରନ୍ଥକାର ବର୍ଣ୍ଣନିର୍ଣ୍ଣୟରେ ମିଶ୍ରପଦର ଉଦାହରଣ ଦେଇ ସନ୍ଧିର ଅବତାରଣା କରି ଅଛନ୍ତି। 'ମୁଁ କାଲିରେ ଆସିବି' 'ସେମାନଙ୍କର ଉତ୍ତର', 'କି ହେତୁରୁ ଇହ ଆଗମନ' 'ନାଟୋଆ ପିଲା' 'ଦିଓଟି କରି' 'ଖୋଆଇବା' 'ଶୋଆଇବା' 'ଦେଆଇବା' 'ଆକାରର ପରେ' 'ଦୋହେଁ' 'ଥାଏ ନାହିଁ' 'ହୁକୁମ ହେଲା' 'ଅନେକ ଖୁଜିଲି' ଇତ୍ୟାଦିମାନ କେଉଁ ଓଡିୟାଭାଷାରେ କେତେବେଳେ ବ୍ୟବହୃତ ହୁଏ ତାହା ଆମ୍ଭେମାନେ ବୁଝି ପାରିଲୁଁ ନାହିଁ। ଅନ୍ୱୟ ଓ ପ୍ରତ୍ୟୟାନ୍ତ ପରିବର୍ତ୍ତରେ ଗ୍ରନ୍ଥକାର 'ଅନ୍ୟୟ' ଓ 'ପ୍ରତ୍ୟାନ୍ତ' ଲେଖି ଅଛନ୍ତି। ସକର୍ମକ ଓ ଅକର୍ମକ କ୍ରିୟାର ପ୍ରଭେଦ ସ୍ପଷ୍ଟ କରି ବୁଝାଇ ଦେବା ନିମିତ୍ତ ଗ୍ରନ୍ଥକାର ପୃ୨୪ଷ୍ଠାର ନିମ୍ନଭାଗରେ ଯେଉଁ ଟିପ୍ପଣୀ ଦେଇ ଅଛନ୍ତି ତାହା ଆଦୌ ଉପଯୋଗୀ ହୋଇ ନାହିଁ। ଅଧିକ ଆଉ ଉଦାହରଣ ଦେବାର ପ୍ରୟୋଜନ ନାହିଁ। ଓଡିୟାଭାଷାରେ ଭଲ ଭଲ ଗ୍ରନ୍ଥର ଅଦ୍ୟାପି ବିଶେଷ ଅଭାବ ରହିଅଛି। ଯେଉଁ ଲୋକ ତାହା ପୂରଣ କରିବାକୁ ଚେଷ୍ଟା କରିବ ତାହାର ଭାଷାପ୍ରତି ବିଶେଷ ଦୃଷ୍ଟି ରଖି ଚଳିବା ଉଚିତ ନୋହିଲେ ଯେଉଳି ଗ୍ରନ୍ଥ ନ ହେଲେ ଭାଷାର କୌଣସି ଅନିଷ୍ଟ ହେବାର ଆଶଙ୍କା ନାହିଁ। ଆମ୍ଭେମାନେ ଏତିକି ଉତ୍ତମରୂପେ ବୁଝାଇ ଦେବା ଦ୍ୱାରା ଆପଣାର ମନୋଭାବ ବ୍ୟକ୍ତ କରିବାକୁ ଯାଇ ପ୍ରବନ୍ଧଟି ଦୀର୍ଘକରି ପକାଇ ଅଛୁଁ।

ଭରସା କରୁଁ ପାଠକେ ବା ଗ୍ରନ୍ଥକାର ଏଥିରେ ରୁଷ୍ଟ ହେବେ ନାହିଁ । ଆମ୍ଭେମାନେ ଆଶା କରୁଁ ଗ୍ରନ୍ଥକାର ଏଥିର ସମସ୍ତ ଭାଷାଦୋଷ ସଂଶୋଧନ କରି ଅସ୍ପଷ୍ଟ ଓ ଭ୍ରମସଂକୁଳ ନିୟମମାନ ସରଳ ଏବଂ ଶୁଦ୍ଧି କରି ଗ୍ରନ୍ଥ ଖଣ୍ଡିକୁ ଉପଯୋଗୀ କରାଇବାକୁ ଚେଷ୍ଟା କରିବେ ।

*ଭା ୧୮ଗ, ସଂ ୯ଖ୍ୟା, ୩।୩।୧୮୮୩*

## ବିଜ୍ଞାପନ ।

## ଓଡିୟା ନାଟକାଭିନୟ

ମେଘାଦି ଅନିବାର୍ଯ୍ୟ ଅସୁବିଧା ହେତୁରୁ ଏହି ମାର୍ଚ୍ଚମାସ ତା୩ରିଖ ଶନିବାର ନ ହୋଇ ସେହିମାସ ତା୧୦ରିଖ ଶନିବାର ରାତ୍ରରେ ଶ୍ରୀଯୁକ୍ତ ବାବୁ କାଳୀପଦ ବନ୍ଦ୍ୟୋପାଧାୟ ମହାଶୟଙ୍କ କୋଠା ସମ୍ମୁଖସ୍ଥ ଅଗଣାରେ କଳିକାଳ ନାମକ ଏକ ଓଡିଆ ଉପନାଟକ (Farce) ଅଭିନୀତ ହେବ । ଅଭିନୟ ସନ୍ଧ୍ୟା ଘ୯ଷ୍ଟା ଉତ୍ତାରୁ ଆରମ୍ଭ ହୋଇ ପ୍ରାୟ ତିନିଘଣ୍ଟା କାଳ ବ୍ୟାପି ରହିବ । ବିନା ଟିକଟରେ କେହି ପ୍ରବେଶଲାଭ କରି ପାରିବେ ନାହିଁ। ଟିକଟର ମୂଲ୍ୟ ଯଥା-

ପ୍ରଥମଶ୍ରେଣୀ ଟ୧ ୵

ଦ୍ୱିତୀୟଶ୍ରେଣୀ ଟ୦୫

ସ୍କୁଲ ପିଲାମାନେ ଅଧେ ମୂଲ୍ୟ ଓ ଅଳ୍ପବୟସ୍କ ଅର୍ଥାତ୍ ବ୫ର୍ଷରୁ ନ୍ୟୂନ ଶିଶୁମାନେ କିଛି ନ ଦେଇ ଦେଖି ପାରିବେ ଟିକଟ କଟକ ପ୍ରିଣ୍ଟିଂକୁମ୍ପାନୀଙ୍କ ପୁସ୍ତକଦୋକାନ ଓ ଅଭିନୟ ସ୍ଥଳେ ମିଳି ପାରିବ । ଇତି ।

କଟକ ଶ୍ରୀ ଭାଗୀରଥୀ ଷାଠିୟା

୧।୩।୮୩

*ଭା ୧୮ଗ, ସଂ ୯ଖ୍ୟା, ୩।୩।୧୮୮୩*

## ଓଡିଶାର ସଂକ୍ଷିପ୍ତ ଇତିହାସ ।

ଏ ପୁସ୍ତକ ଆମ୍ଭେମାନେ ବହୁତ ଦିନରୁ ଉପହାର ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଅବକାଶାଭାବରୁ ଏଥିର ବିବରଣ ପାଠକମାନଙ୍କୁ ଜଣାଇବାରେ ଯାହା ବିଳମ୍ବ ହୋଇଅଛି ତହିଁପାଇ କ୍ଷମାପ୍ରାର୍ଥନା କରୁଅଛୁଁ ।

ଏ ପୁସ୍ତକ ବାଲେଶ୍ୱର ଦେଙ୍କ ଉତ୍କଳ ପ୍ରେସ ଦ୍ୱାରା ପ୍ରକାଶିତ କିଏ ଏଥିର ଗ୍ରନ୍ଥକାର ଏବଂ କି ଉଦ୍ଦେଶରେ ଏହା ପ୍ରକାଶିତ ହୋଇଅଛି ପ୍ରକାଶ ନାହିଁ । ଏ ଗ୍ରନ୍ଥ ପେ୧୨ଜି ୪୬ପୃଷ୍ଠାରେ ଶେଷ ହୋଇଅଛି ଏବଂ ତହିଁର ଅନ୍ୟୂନ ।⁄ ଅଂଶ ପ୍ରଶ୍ନାବଳୀ ମିହ୍ନା ଦେଲେ ଏଥିର ପ୍ରକୃତ କଳେବର ୩୦ ପୃଷ୍ଠାରୁ ଅଧିକ ହେବ ନାହିଁ ଏତିକିରେ ଗୋଟିଏ ପ୍ରଦେଶୀୟ ଇତିହାସର କେତେ କଥା ଲେଖାଯାଇ ପାରେ ତାହା ପାଠକମାନେ ଅନାୟାସରେ ଅନୁମାନ କରି ପାରିବେ ଆମ୍ଭମାନଙ୍କର ବୋଲିବାର ଅଧିକ । ପ୍ରକୃତରେ ଏହାକୁ ପାଠ କଲାବେଳେ ଦୋଳମଣ୍ଡପରେ ଗ୍ରାମ୍ୟ ଜ୍ୟୋତିଷଙ୍କଠାରୁ ପାଞ୍ଜି ଶୁଣିଲା ପ୍ରାୟ ବୋଧ ହେଲା । କାହା ଉତ୍ତାରୁ କେଉଁ ସମୟରେ କିଏ ରାଜା ହୋଇ କେଉଁ ପ୍ରଧାନ କାର୍ଯ୍ୟ କଲେ ଏତିକି ଭିନ୍ନ ଏଥିରେ ଆଉ କିଛି ନାହିଁ ଏବଂ ବୋଧ ହୁଅଇ ଏତିକିରେ ଇତିହାସର ଉଦ୍ଦେଶ୍ୟ ପୂର୍ଣ୍ଣ ହୁଅଇ ନାହିଁ ଏହା ଜାଣିପାରି ଗ୍ରନ୍ଥକାର ସୁବିଚାର ପୂର୍ବକ ଆପଣା ନାମ ଅପ୍ରକାଶ ରଖିଅଛନ୍ତି ସୁତରାଂ ରଚନା ସମ୍ପର୍କରେ ଆଉ କିଛି ବୋଲିବା ଅନାବଶ୍ୟକ । ଦୁଃଖର ବିଷୟ ଏହି କି ଏ ଗ୍ରନ୍ଥର ପ୍ରକାଶକ ଗ୍ରନ୍ଥକାରଙ୍କ ଆଦର୍ଶକୁ ଅନୁକରଣ କରି ନାହାନ୍ତି କାରଣ ଯଦ୍ୟପି କି ପୁସ୍ତକ ଖଣ୍ଡିକ ସଚିତ୍ର ହୋଇଅଛି ତହିଁରେ କୌଣସିରୂପେ ଦେଙ୍କ **ପ୍ରେସର**

ଯୋଗ୍ୟତା ପ୍ରକାଶ ହେଉଅଛି ଏପରି ଆମ୍ଭେମାନେ ବୋଲିବାକୁ ଅସମର୍ଥ । ଏହି ପ୍ରେସରେ ମୁଦ୍ରାଙ୍କନ କାର୍ଯ୍ୟ ସାଧାରଣରୂପେ ଯେଉଁ ଅବସ୍ଥାର ଦେଖାଯାଏ ତହିଁର ଅତିରିକ୍ତ ଏଥିରେ କିଛି ନାହିଁ । ଚିତ୍ର ମଧ୍ୟରେ ଖଣ୍ଡିଏ ନାନା ବର୍ଣ୍ଣରେ ରଞ୍ଜିତ ଓଡିଶାର ମାନଚିତ୍ର ଓ ଦୁଇଖଣ୍ଡି କ୍ଷୁଦ୍ରଚିତ୍ର ଅର୍ଥାତ୍ ଖଣ୍ଡିଏ ଭୁବନେଶ୍ୱର ଓ ଖଣ୍ଡିଏ ଜଗନ୍ନାଥଦେବଙ୍କ ମନ୍ଦିର । ଏମାନ ପଥର ଛାପାରେ ମୁଦ୍ରିତ ହୋଇଅଛି । କୌଣସି ବିବରଣ ବିନା ଯୋଡିଏ ମନ୍ଦିରର କ୍ଷୁଦ୍ର ଚିତ୍ର ଦେବାରେ କି ବିଶେଷ ହେଲା ଆମ୍ଭେମାନେ ବୁଝି ପାରିଲୁଁ ନାହିଁ । ଯାହା ହେଉ ଜଗନ୍ନାଥଙ୍କ ମନ୍ଦିରଟି ଆଖିକୁ ଘେନିଅଛି ମାତ୍ର ମାନଚିତ୍ରଟି ବିଡମ୍ବନା ମାତ୍ର । ଦେଖିଲା ମାତ୍ରକେ ବୋଧ ହୁଅଇ ଚିତ୍ର କରି ନ ଜାଣିବା ବ୍ୟକ୍ତି ଏହାକୁ ଲେଖି ଅଛି । ନଦୀ ନାଳ ସଡ଼କ ପ୍ରଭୃତି ଅନେକ ସ୍ଥଳରେ ବାରି ହେଉ ନାହିଁ । ପୁଣି ଅଶୁଦ୍ଧର ମଧ୍ୟ ସୀମା ନାହିଁ ମାନଚିତ୍ରରେ ଦେଖାଯାଏ ଯେ ଚିତ୍ରତୋଳା ନଦୀ ଚୌଦୁଆର ପାଖରୁ ବାହାରି ଅଛି ଏବଂ କାଠଯୋଡି ସାଲେପୁର ଦକ୍ଷିଣ ଏକ ସ୍ଥାନରେ ମହାନଦୀ ସଙ୍ଗେ ମିଶିଅଛି । ଉଦାହରଣ ସ୍ୱରୂପ ଏତିକି ଯଥେଷ୍ଟ ଅଟଇ ।

ପ୍ରକାଶକ ଏହିପରି ନିପୁଣତା ସହିତ ପୁସ୍ତକ ଖଣ୍ଡିକ ବାହାର କରି ତହିଁର ମୂଲ୍ୟ ଟ୦ ।⁄ ଧାର୍ଯ୍ୟ କରିଅଛନ୍ତି ଏବଂ ଏହା ବାହାରିବା ସଙ୍ଗେ ସଙ୍ଗେ ଓଡିଶାର ଜଏଣ୍ଟଇନ୍ସପେକ୍ଟର ଏହାକୁ ଏତେ ବ୍ୟଗ୍ରତା ସହିତ ବିଦ୍ୟାଳୟରେ ପ୍ରଚଳିତ କରି ଦେଇଅଛନ୍ତି ଯେ ଅନେକ ଛାତ୍ର ଯେ କି ଏଥି ପୂର୍ବେ ପ୍ରଚଳିତ ଥିବା ପୁସ୍ତକ କ୍ରୟ କରିଥିଲେ ବର୍ତ୍ତମାନ ଅର୍ଥଦଣ୍ଡ ଦେଇ ଏହାକୁ କିଣୁଅଛନ୍ତି । ଦେଙ୍କ ପ୍ରେସର ଯେବେ ନିତାନ୍ତ ଦୁରବସ୍ଥା ଘଟିଥାଏ ତେବେ ସେ ଏପ୍ରକାର ପୁସ୍ତକ ବାହାର କରି ଆପଣା ଅବସ୍ଥା ସୁଧରାଇ ନେଉନ୍ତୁ ତହିଁରେ କାହାରି ଆପତ୍ତି ହୋଇ ନ ପାରେ ମାତ୍ର ଜଏଣ୍ଟଇନ୍ସପେକ୍ଟରଙ୍କ ଏ କାର୍ଯ୍ୟକୁ ଆମ୍ଭେମାନେ କଦାଚ ଅନୁମୋଦନ କରି ନ ପାରୁଁ ଆଦୌ ପୁସ୍ତକଟି ଅନୁଗ୍ରହର ଯୋଗ୍ୟପାତ୍ର ନୁହେ । ତଥାଚ ଯେବେ ଜଏଣ୍ଟଇନ୍ସପେକ୍ଟରଙ୍କ ଏହା ପ୍ରତି ଅନୁଗ୍ରହ ହେଲା ତେବେ ଏଥିର ଉଚିତ ମୂଲ୍ୟ ଧାର୍ଯ୍ୟ କରାଇ ଆଗାମୀ ବର୍ଷକୁ ଚଳାଇ ଥିଲେ କୌଣସି କ୍ଷତି ନ ଥିଲା ଏଥିପାଁଇ ପିଲାମାନଙ୍କୁ ତହଖର୍ଚ୍ଚରେ ପକାଇବା କୌଣସି ମତେ ଉଚିତ ହୋଇ ନାହିଁ ।

*ଭା୧୮ଗ, ସଂ୧୦ଖ୍ୟା, ୧୦।୩।୧୮୮୩*

## [ଓଡିୟା ଅନୁବାଦକ ]

ବାବୁ ଚତୁର୍ଭୁଜ ପଟ୍ଟନାୟକ ଓଡିୟା ଅନୁବାଦକ କାର୍ଯ୍ୟର ଭାର ଗ୍ରହଣ କରିବା ନିମିତ୍ତ ଏହି ସପ୍ତାହରେ ଏଠାକୁ ଆସିବେ ବୋଲି ଶୁଣା ଯାଏ କିନ୍ତୁ ଅବଧି କେହି ବ୍ୟକ୍ତି ବାଲେଶ୍ୱରର ଡେପୁଟି ଇନ୍ସ୍ପେକ୍ଟର ପଦରେ ନିଯୁକ୍ତ ହୋଇ ନାହାନ୍ତି । ସଂବାଦ ବାହିକା ବାବୁ ଦୁର୍ଗାଚରଣ ସାହୁ ଏବଂ ବାଲେଶ୍ୱର ସ୍କୁଲର ୨ୟ ଶିକ୍ଷକଙ୍କୁ ଏ ପଦର ଯୋଗ୍ୟବ୍ୟକ୍ତି ବୋଲି ମନ୍ତବ୍ୟ ପ୍ରକାଶ କରିଅଛନ୍ତି । ଆମ୍ଭେମାନେ ଆଶା କରୁଁ କର୍ତ୍ତୃପକ୍ଷମାନେ ଯୋଗ୍ୟବ୍ୟକ୍ତିଙ୍କୁ ଏ ପଦ ପ୍ରଦାନ କରିବେ । ଓଡିୟା ଭାଷା ଯେଉଁବ୍ୟକ୍ତି ଉତ୍ତମ ରୂପେ ଜାଣନ୍ତି ତାହାଙ୍କ ଦାବୀ ଅଗ୍ରଗଣ୍ୟ ହେବାର ଉଚିତ ।

*ଭା୧୮ଗ, ସଂ୧୧ଖ୍ୟା, ୧୭।୩।୧୮୮୩*

## ପ୍ରେରିତପତ୍ର ।

## [ନାଟକାଭିନୟ ]

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସମୀପେଷୁ ।

ମହାଶୟ !

ଆପଣଙ୍କର ବିଗତ ପତ୍ରିକାରେ କଳିକାଳ ଉପନାଟକାଭିନୟର ଯେଉଁ ସମାଲୋଚନା ହୋଇଅଛି ତାହା ପାଠକରି ପ୍ରକୃତରେ ନାଟକାନୁରାଗୀ ମେଳ ଆପଣାର ତ୍ରୁଟି ସମଧିକ ବୁଝି ପାରି ଅତ୍ୟନ୍ତ ଦୁଃଖିତ ହୋଇଅଛନ୍ତି

ମାତ୍ର ସେମାନଙ୍କର ସମୁଦାୟ ତ୍ରୁଟି ନିଜ ଅବହେଳାରୁ ହୋଇଥିଲେ ସୁଦ୍ଧା ଅନେକ ଅନିବାର୍ଯ୍ୟ ଅସୁବିଧା ଯେ ତହିଁର ଏକ ପ୍ରଧାନ କାରଣ ତାହା କହିଲେ ଅବଶ୍ୟ ଆପଣ ଏବଂ ଆପଣଙ୍କର ପାଠକମାନେ ସ୍ୱୀକାର କରିବେ । ଆପଣଙ୍କ ପତ୍ରିକାରେ ଅଭିନୟ ହେବା ନିମିତ୍ତ ପ୍ରଥମେ ଏହି ମାସ ତା୩ରିଖକୁ ବିଜ୍ଞାପନ ଦିୟା ଯାଇଥିଲା ମାତ୍ର ବର୍ଷାଦି ହେତୁ ସେ ଦିନ ନ ହୋଇ ପୁଣି ସପ୍ତାହ କାଳ ଘୁଞ୍ଚଗଲା ମାତ୍ର ସେଦିନକୁ ମଧ୍ୟ ବର୍ଷାର ଭୟ ରହିବାରୁ ଅବଶେଷରେ ତା୧୩ ରିଖ ମଙ୍ଗଳବାର ଦିନ ସ୍ଥିର ହେଲା । ସେଦିନ ମଧ୍ୟ ଦିନକୁ ଯେପରି ବୃଷ୍ଟି ହୋଇଥିଲା ତାହା ସନ୍ଧ୍ୟା ପର୍ଯ୍ୟନ୍ତ ବ୍ୟାପିଥିଲେ ଅଭିନୟ ହେବା ଯେପରି କଷ୍ଟସାଧ ହୋଇଥାନ୍ତା ସେହିପରି ଅନେକ କ୍ଷତି ମଧ୍ୟ ଘଟିଥାନ୍ତା । ସ୍କୁଲରେ ବର୍ଷାଯୋଗେ ମେଳଗତ ସଭ୍ୟମାନେ ଏକତ୍ରିତ ହୋଇ ଆପଣା ଆପଣା ପାଠମାନ ମିଳାଇ ନେବା ଦୁଷ୍କର ହୋଇଗଲା ଏବଂ ଭବିଷ୍ୟତ୍ ଆଶା କରି ଯାହା ସମ୍ବାଦ ପତ୍ରରେ ବିଜ୍ଞାପନ ଦେଇଥିଲେ ପଛକୁ ବର୍ଷା ନ ଛାଡ଼ିବାରୁ ସେ ଆଶାରୁ ମଧ୍ୟ ବଞ୍ଚିତ ହେଲେ ପୁଣି ଦୁଇଥର ବିଜ୍ଞାପନ ଦିଆଗଲାରୁ ଆଉ କାଳ ବିଳମ୍ବ ସହ୍ୟ କରି ନ ପାରି ଅନେକ ଟଙ୍କାର ତ୍ରୁଟି ହେବାର ଆଶଙ୍କା ପହୁଞ୍ଚିଲାରୁ କୌଣସିରୂପେ କାର୍ଯ୍ୟ ସମାଧା କରିବା ନିମିତ୍ତ ବ୍ୟସ୍ତ ହୋଇଗଲେ । ଏଥିରେ ପୁଣି ଦୁଇ ତିନି ଜଣ ଅଭିନେତାଙ୍କ ଶରୀର ନିତାନ୍ତ ପୀଡିତ ହୋଇ ପଡିବାରୁ ଅଗତ୍ୟା ସେମାନଙ୍କୁ ଭିନ୍ନ ଲୋକ ଅଭିନୟ କରିବା ନିମିତ୍ତ ନିଯୁକ୍ତ କରିବାକୁ ହେଲା ଏବଂ ଜଣେ ଅନଭିଜ୍ଞ ଲୋକ ଅତି ଅଳ୍ପ କାଳ ମଧ୍ୟରେ ଯାହା ଅଭିନୟ କରିବାକୁ ସମର୍ଥ ହୋଇପାରିବ ତାହା ଆପଣ ସହଜରେ ବୁଝି ପାରୁଥିବେ । ସୁତରାଂ ଅଭିନୟକାରିମାନେ ଯେ ଦୈବୀ ବାଧାମାନଙ୍କରେ ପଡି ସର୍ବ ସମକ୍ଷରେ ଅତି ସୁନ୍ଦର ଅଭିନୟ ଦେଖାଇବାକୁ ସମର୍ଥ ହୋଇ ନାହାଁନ୍ତି ଏହା ବୋଲିବା ଅଧିକ । ସେ ଯାହା ହେଉ ଲୋକେ ଏବଂ ଆପଣ ସେମାନଙ୍କ ପ୍ରତି ପୂର୍ବପ୍ରାୟ ଆଗ୍ରହ ରଖିଥିଲେ କାଳେ ଯେ ସେମାନେ ସାଧାରଣଙ୍କ ମନ ହରଣ କରିବେ ତହିଁରେ ବିଚିତ୍ର କି ଅଛି ? ଏବଂ ଏଥରର ତ୍ରୁଟିରେ ଭବିଷ୍ୟତକୁ ସେମାନେ ପ୍ରସ୍ତୁତ ନ ହେଲେ କଦାପି ଦାଣ୍ଡକୁ ଯେ ବାହାରିବେ ନାହିଁ ତାହା ପ୍ରତିଶ୍ରୁତ ହୋଇଅଛନ୍ତି ସାଧାରଣ ଲୋକେ ସେମାନଙ୍କ ପ୍ରତି ଯଥାର୍ଥ ସହାନୁଭୂତି ରଖିଥିବାର ସେମାନେ ହୃଦୟଙ୍ଗମ କରିଅଛନ୍ତି ଏବଂ ତହିଁ ନିମିତ୍ତ ସେମାନଙ୍କଠାରେ ଆପଣା ହୃଦୟର କୃତଜ୍ଞତା ପ୍ରକାଶ କରୁଅଛନ୍ତି ଆପଣ ଲେଖିଅଛନ୍ତି ଯେ ଅଭିନୟ କାର୍ଯ୍ୟ ଯେପରି ବ୍ୟୟସାଧ ସେହିପରି ପରିଶ୍ରମ ସାପେକ୍ଷ ଏବଂ ସେମାନେ ଅବଧି ଜଣେ ଧନାଢ୍ୟ ମୁରବିର ଆଶ୍ରୟ ପାଇ ନ ଥିବରୁ ଆପଣ ଦୁଃଖ ପ୍ରକାଶ କରିଅଛନ୍ତି । ପ୍ରକୃତରେ ଅଭିନୟ କାର୍ଯ୍ୟ ବ୍ୟୟସାଧ ଓ ପରିଶ୍ରମ ସାପେକ୍ଷ ପୁଣି ଅନେକ ଲୋକଙ୍କ ଏକତା ନ ହେଲେ କଦାଚ ସଂଘଟିତ ହୋଇ ନ ପାରେ । ଓଡିଶା ଧନୀ ଲୋକଙ୍କର ବିଷୟ ଆପଣଙ୍କୁ କିଛି ଅଜ୍ଞାତ ନାହିଁ ସୁତରାଂ ତହିଁକି କିଛି ବୋଲିବା ଅନାବଶ୍ୟକ । ସ୍କୁଲରେ ଏ ନଗରବାସୀ ମାନ୍ୟବାନ୍ ବାବୁ ଶ୍ରୀ କାଳିପଦ ବନ୍ଦ୍ୟୋପାଧ୍ୟାୟ ଯଥାସାଧ ଏବଂ ମୁକ୍ତ ହସ୍ତରେ ଗତ ବର୍ଷ ପ୍ରାୟ ସାହାଯ୍ୟ କରି ନ ଥିଲେ ଏଥର ଅଭିନୟ କାର୍ଯ୍ୟ ହେବା ଏକପ୍ରକାର ଅସମ୍ଭବ ହୋଇ ପଡିଥାନ୍ତା । ବସ୍ତ୍ର, ବିଛଣା, ମଣ୍ଡପ, ଅଳଙ୍କାର, ପ୍ରୋଗ୍ରାମଛପାଇ, ଗୃହ, ଆଲୋକ ସଜ୍ଜା ଓ ପରିଦର୍ଶନାଦିରେ ସେ ଯେପରି ସାହାଯ୍ୟ କରିଅଛନ୍ତି ଏଠା ଅନ୍ୟ କୌଣସି ଲୋକଠାରୁ ସେ ସମସ୍ତ ଅକାତରରେ ପ୍ରାପ୍ତ ହେବା ସୁକଠିନ । ବାବୁ ମହାଶୟଙ୍କଠାରେ ଅଭିନୟକାରୀ ମେଳ ନିତାନ୍ତ କୃତଜ୍ଞତା ପାଶରେ ଆବଦ୍ଧ ହୋଇଅଛନ୍ତି ଏବଂ ଆପଣ ମଧ୍ୟ ଯତ୍ନ ଓ ସହାନୁଭୂତିରେ ସେମାନଙ୍କୁ କିଣି ନେଇ ଅଛନ୍ତି ଏବଂ ଚନ୍ଦାଦାତାମାନେ ମଧ୍ୟ ସହାନୁଭୂତି ଓ ଅର୍ଥ ସାହାଯ୍ୟରେ ସେମାନଙ୍କର ମନୋହରଣ କରି ସାଧାରଣ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ନିମ୍ନଲିଖିତରୂପେ ଅଭିନୟକାରୀ ମେଳ ଅର୍ଥ ସାହାଯ୍ୟ ପାଇଥିବାର କୃତଜ୍ଞତା ସହିତରେ ସ୍ୱୀକାର କରୁଅଛନ୍ତି ଏବଂ ସମ୍ପୂର୍ଣ୍ଣ ଆଶା ରଖିଅଛନ୍ତି ଯେ ଭବିଷ୍ୟତକୁ ଚନ୍ଦାଦାତାମାନେ ଓ ଅନ୍ୟଦେଶହିତୈଷୀ ଲୋକେ ଏମାନଙ୍କ ପ୍ରତି ଏହି ପରି ସହାନୁଭୂତି ଓ ଆଦର ପ୍ରଦର୍ଶନ କରିବେ । ବୋଲା ବାହୁଲ୍ୟ ଯେ ଉପଯୁକ୍ତ ପାଣ୍ଠି ହେବା ଯାଏ ନାଟକାନୁରାଗୀ ମେଳ ସାଧାରଣ ସମକ୍ଷରେ ସାହାଯ୍ୟ ନିମିତ୍ତ ଉପସ୍ଥିତ ହେଉଥିବେ । ଇତି ।

| | |
|---|---|
| ଶ୍ରୀ ବାବୁ ନନ୍ଦକିଶୋର ଦାସ | ଟ ୧୦ |
| ଶ୍ରୀ ମହନ୍ତ ନରସିଂହ ଦାସ | ଟ ୧୦ |
| ଶ୍ରୀ ଢେଙ୍କାନାଳ ମହାରାଜା | ଟ ୫ |
| ଶ୍ରୀ ବାବୁ ଜଗନ୍ମୋହନ ରାୟ | ଟ ୫ |
| ଶ୍ରୀ ବାବୁ ହରିବଲ୍ଲଭ ବୋଷ | ଟ ୫ |
| ଶ୍ରୀ ବାବୁ ଗୌରୀଶଙ୍କର ରାୟ | ଟ ୩ |
| ଶ୍ରୀ ବାବୁ ଶ୍ୟାମସୁନ୍ଦର ରାୟଗୁରୁ | ଟ ୩ |
| ଶ୍ରୀ ବାବୁ ଜଗନ୍ମୋହନ ଲାଲ | ଟ ୨ |
| ଶ୍ରୀ ବାବୁ ଜାନକୀବଲ୍ଲଭ ଘୋଷ | ଟ ୨ |
| ଶ୍ରୀ ବାବୁ ରାମପ୍ରସାଦ ସିଂହ | ଟ ୨ |
| ଶ୍ରୀ ବାବୁ ଗଣେଶ ପ୍ରସାଦ ସିଂହ | ଟ ୨ |
| ଶ୍ରୀ ବାବୁ ଶାମସୋନ ରାଉତ | ଟ ୧ |
| ଶ୍ରୀ ବାବୁ ଦଧିବାମନ ଦାସ | ଟ ୧ |
| ଶ୍ରୀ ବାବୁ ଭୁବନେଶ୍ୱର ଦତ୍ତ | ଟ ୧ |
| ଶ୍ରୀ ବାବୁ ଅଯୋଧ୍ୟାରାମ ଘୋଷ | ଟ ୧ |
| ଶ୍ରୀ ବାବୁ ପାର୍ବତୀଚରଣ ଚକ୍ରବର୍ତ୍ତୀ | ଟ ୧ |
| ଶ୍ରୀ ବାବୁ କୃଷ୍ଣମୋହନ ପଟ୍ଟନାୟକ | ଟ ୧ |
| ଶ୍ରୀ ବାବୁ ଗୁଣନିଧି ମହାନ୍ତି | ଟ ୧ |
| | ଟ ୫୬ |

୧୮।୧।୮୩

ଆପଣଙ୍କର ବଶମ୍ୱଦ
ନାଟକାନୁରାଗୀ ମେଳର
ଜଣେ ସଭ୍ୟ

***ଭା ୧୮ ଗ, ସଂ ୧୩ ଖ୍ୟା, ୩୧ ।୩ ।୧୮୮୩***

## ଉତ୍କଳସଭା ।

ଇଲବର୍ଟ ସାହେବଙ୍କ ଫଉଜଦାରୀ ବିଚାର ସଂକ୍ରାନ୍ତ ଆଇନ ସଂଶୋଧନ ବିଷୟକ ପାଣ୍ଡୁଲିପିର ବିଚାର ଏବଂ ସୁରେନ୍ଦ୍ର ବାବୁଙ୍କ ଉପସ୍ଥିତ ଦୁଃଖରେ ସହାନୁଭୂତି ପ୍ରକାଶ କରିବା କାରଣ ଗତ ସୋମବାର ରାତ୍ର ଘଂଣ୍ଟା ସମୟରେ ଉତ୍କଳ ସଭାର ଏକ ବିଶେଷ ଅଧିବେଶନ ହୋଇ ଥିଲା । ଏ ସଭାରେ ଅନେକ ସଭ୍ୟ ଏବଂ ଦର୍ଶକ ଉପସ୍ଥିତ ହୋଇ ସଭା ଗୃହକୁ ପୂର୍ଣ୍ଣ କରିଥିଲେ । ସଭାର କାର୍ଯ୍ୟ ଅତ୍ୟନ୍ତ ସୁଚାରୁ ରୂପେ ନିର୍ବାହିତ ହେଲା । ସଭାପତି ଏବଂ ସହକାରୀ ସଭାପତିମାନେ ଅନୁପସ୍ଥିତ ଥିବାରୁ ବାବୁ ହରିବଲ୍ଲଭ ବୋଷ ସଭାପତିର ଆସନରେ ମନୋନୀତ ହୋଇଥିଲେ ଏବଂ ବାବୁ ଯୋଗ୍ୟେଶ୍ୱରଚନ୍ଦ୍ର ବାବୁ ହରିଚରଣ ବାନୁର୍ଯ୍ୟା ବାବୁ ମଧୁସୂଦନ ରାଓ ଏବଂ ରାମଦାସ ଚକ୍ରବର୍ତ୍ତୀ ଇଂରାଜୀରେ ଏବଂ ବାବୁ ଜଗନ୍ମୋହନ ଲାଲ ଓ ବାବୁ ରାମଶଙ୍କର ରାୟ ପ୍ରଭୃତି ଓଡିଆ ଭାଷାରେ ଉପସ୍ଥିତ ପ୍ରସଙ୍ଗମାନଙ୍କରେ ବକ୍ତୃତା ପ୍ରଦାନ କରିଥିଲେ । ବାବୁ ରାମଦାସ ଚକ୍ରବର୍ତ୍ତୀ ସୁରେନ୍ଦ୍ର ବାବୁଙ୍କ ଗୁଣାବଳୀ ଯେମନ୍ତ ତେଜସ୍କର ରୂପେ ବାବୁ ଜଗନ୍ମୋହନ ଲାଲ ତାହାଙ୍କ ଦୁର୍ଭାଗ୍ୟକୁ ତେମନ୍ତ ରସପୂର୍ଣ୍ଣ ବାକ୍ୟରେ ବର୍ଣ୍ଣନା କରି ଦର୍ଶକଙ୍କ ମନ ଅଧିକ ପରିମାଣରେ ଆକର୍ଷଣ କରିଥିଲେ । ଇଲବର୍ଟ ସାହେବଙ୍କ ପାଣ୍ଡୁଲିପି ସମ୍ପର୍କରେ ସଭା ଏକମତ ହୋଇ ଧାର୍ଯ୍ୟ କଲେ କି ଦେଶୀୟ ସିବିଲିୟାନଙ୍କୁ ଇଂରାଜ ଅପରାଧିଙ୍କର ବିଚାର ଅଧିକାର ନ ଦେବା

ଦୁଷ୍ୟ ଅଟଇ ଏଥିରେ ଶାସନ କାର୍ଯ୍ୟର ଅସୁବିଧା ଘଟିବାର ସମ୍ଭାବନା ଏବଂ ଦେଶୀୟ ଲୋକଙ୍କର ଆନ୍ତରିକ ଇଚ୍ଛା ଯେ ଏହି ପ୍ରଭେଦଟି ଶୀଘ୍ର ଉଠି ଯାଉ ଅତଏବ ଏହି ପାଣ୍ଡୁଲିପି ବିଧିବଦ୍ଧ କରିବା ପ୍ରାର୍ଥନାରେ ସଭାରୁ ଖଣ୍ଡିଏ ଆବେଦନପତ୍ର ମହାମାନ୍ୟ ଗବର୍ଣ୍ଣର ଜେନରଲଙ୍କ ନିକଟକୁ ପଠା ଯିବ । ସୁରେନ୍ଦ୍ର ବାବୁଙ୍କ ସମ୍ପର୍କରେ ସ୍ୱଦେଶର ଉପକାର ଓ ଉନ୍ନତି ନିମିତ୍ତ ସେ ଅତି ମୂଲ୍ୟବାନ୍ କାର୍ଯ୍ୟମାନ କରିବାର ସଭା ସ୍ୱୀକାର କରି ତାହାଙ୍କ ଉପସ୍ଥିତ ଦୁଃଖରେ ଅତ୍ୟନ୍ତ ଦୁଃଖିତ ଥିବାର ବ୍ୟକ୍ତ କଲେ ଏବଂ ଏହି ବିଷୟ ତାହାଙ୍କୁ ଜଣାଇ ଦେବାର ଧାର୍ଯ୍ୟ ହେଲା । ଯଦ୍ୟପି କି କାର୍ଯ୍ୟତଃ ଏହି ସଭାକୁ ଅତ୍ରତ୍ୟ ଦେଶୀୟ ଲୋକଙ୍କର ସାଧାରଣ ସଭା ବୋଲା ଯାଇ ପାରେ ତଥାଚ ଆମ୍ଭେମାନେ ବିବେଚନା କରୁଁ କି ଉତ୍କଳ ସଭା ଏ ବିଷୟରେ ସାଧାରଣ ସଭା ଡକାଇ ଥିଲେ ଆହୁରି ଭଲ ହୋଇ ଥାନ୍ତା । ଏପର ପ୍ରିଭିକୌଁସିଲରେ ଯେଉଁ ମାମଲା ହେବାର କଥା ହେଉଅଛି ତହିଁର ବ୍ୟୟପ୍ରତି ସାହାଯ୍ୟ କରିବାର କିଛି କଥା ଏହି ସଭାରେ ନ ହେବାରୁ ଆମ୍ଭମାନଙ୍କର ତୃପ୍ତି ହୋଇ ନାହିଁ ।

*ଭା/୧୮ଗ,ସଂ୨୧ଖ୍ୟା, ୨୬/୫/୧୮୮୩*

## ସାପ୍ତାହିକ ସଂବାଦ ।

ବର୍ଦ୍ଧମାନର କଲେକ୍ଟର ଡବଲିଉ ଆର, ଲାରମିନି ସାହେବ ଏ,ସ୍ମିଥ ସାହେବଙ୍କ ଅନୁପସ୍ଥିତ କାଳ ସକାଶେ ଓଡିଶାର ଏକଟିଂ କମିଶନର ନିଯୁକ୍ତ ହୋଇଅଛନ୍ତି ।

ଡବଲିଉ, ଫର୍ଡାଇସ ସାହେବ ଖୋରଧାର ତୃତୀୟଶ୍ରେଣୀର ସବ୍ ଡେପୁଟୀ ପଦରେ ବାହାଲ ହେଲେ ।

ବାବୁ ମଧୁସୂଦନ ଦାସ ଏମ,ଏ, ଉକୀଲ ଏବଂ ବାବୁ ଶ୍ୟାମସୁନ୍ଦର ରାୟ ଗୁରୁ ଜମିଦାର କଟକ ମିଉନିସିପାଲିଟିର କମିଶନର ନିଯୁକ୍ତ ହେଲେ ।

ବାବୁ ରାଧାନାଥ ରାୟ ଓଡିଶାର ଜଏଣ୍ଟ ଇନ୍ସପେକ୍ଟର ଗତ ଫିବୃଏରୀ ମାସଠାରୁ ଦ୍ୱିତୀୟ ଶ୍ରେଣୀକୁ ପଦୋନ୍ନତି ପାଇଲେ ।

*ଭା/୧୮ଗ,ସଂ୨୬ଖ୍ୟା,୩୦/୬/୧୮୮୩*

## ଉତ୍କୃଷ୍ଟ ବଦାନ୍ୟତା ।

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦ ସହିତ ଅବଗତ ହେଲୁଁ ଯେ କେଉଁଝରିର ମହାରାଜା ଓଡିଶାର ଶିକ୍ଷା ଉନ୍ନତି ସାହାଯ୍ୟ ନିମିତ୍ତ ସମ୍ପ୍ରତି ଆଠ ହଜାର ଟଙ୍କା ଦାନ କରିଅଛନ୍ତି । ଏହି ଆଠ ହଜାର ଟଙ୍କା ମଧ୍ୟରୁ ପାଞ୍ଚ ହଜାର ଟଙ୍କା ଛାତ୍ରାବାସନିମିତ୍ତ ଏବଂ ଅବଶିଷ୍ଟ ତିନି ହଜାର ଟଙ୍କା ବାଳିକା ବିଦ୍ୟାଳୟ ନିମିତ୍ତ ନିୟୋଗ କରିବାର ମନସ୍ଥ ପ୍ରକାଶ କରିଅଛନ୍ତି । ମହାରାଜାଙ୍କର ଏହି ଦାନ ଯେମନ୍ତ ଉତ୍କୃଷ୍ଟ ତେମନ୍ତ ସୁବିବେଚନାପୂର୍ଣ୍ଣ ହୋଇଅଛି । ଓଡିଶାରେ ଶିକ୍ଷା ଦାନର ଶ୍ରେଷ୍ଠ ଉପାୟ ରେବନସା କଲେଜ ମୟୂରଭଞ୍ଜ ମହାରାଜାଙ୍କର କୀର୍ତ୍ତି ପ୍ରକାଶ କରୁଅଛି ମାତ୍ର ଗୋଟିଏ ଛାତ୍ରାବାସର ଅଭାବ ଯୋଗୁଁ ଅନେକ ପିଲାଙ୍କର ଏଠାରେ ପଢିବା ପକ୍ଷରେ ବ୍ୟାଘାତ ହେଉଥିଲା । ଏହି ଛାତ୍ରାବାସର କଳ୍ପନା ବହୁଦିନରୁ ହୋଇଥିଲେହେଁ ପାଣ୍ଠି ବିନା ଅବଧି ସଫଳ ହୋଇ ପାରି ନାହିଁ ଏବଂ ଆହୁରି ମଧ କେତେଦିନ ଏହିପରି ବାହାରି ଯାନ୍ତା । ଅତି ଉପଯୁକ୍ତ ସମୟରେ କେଉଁଝରିର ମହାରାଜା ସୁନ୍ଦର ବଦାନ୍ୟତାଦ୍ୱାରା ଏହି ଅଭାବ ମୋଚନ ପକ୍ଷରେ ଅଗ୍ରସର ହୋଇଅଛନ୍ତି ଏବଂ ଆମ୍ଭେମାନେ ଶୁଣିଅଛୁଁ ଯେ ଏହି ପାଞ୍ଚ ହଜାର ଟଙ୍କାରେ ଆପାତତଃ ସଂକଳ୍ପିତ ଛାତ୍ରାବାସଟି ସ୍ଥାପନ ହୋଇ ପାରିବ ଏବଂ ବର୍ତ୍ତମାନର ପ୍ରୟୋଜନ ସିଦ୍ଧ ହେବ । ଛାତ୍ରାବାସର ଅଭାବଟି ଯେମନ୍ତ ଗୁରୁତରରୂପେ ଲୋକେ ବୋଧ କରିବାର ଆମ୍ଭମାନଙ୍କ ଜ୍ଞାତସାରରେ ଆସିଅଛି ତହିଁରୁ ଅନାୟାସରେ ଅନୁମାନ ହେଉଅଛି ଯେ ଏହା ଫିଟିଲା ମାତ୍ରକେ ଅନେକ ଗୁଡିଏ ଛାତ୍ର ଏଠାରେ ଆଶ୍ରୟ ନେବେ ଏବଂ ଏମନ୍ତ ହୋଇ ପାରେ ଯେ ଅଳ୍ପକାଳ ମଧ୍ୟରେ ଏଥିର ଆୟତନ ବୃଦ୍ଧି କରିବାକୁ ହେବ । ଫଳତଃ ସେପରି ଅବସ୍ଥା ହେଲେ ମହାରାଜା ଆନନ୍ଦ ସହିତ ତହିଁର ଉପାୟ କରିଦେବେ ସନ୍ଦେହ ନାହିଁ ।

ବାଳିକା ବିଦ୍ୟାଳୟର ଦାନଟି ମଧ୍ୟ ଉପଯୁକ୍ତ ସମୟରେ ହୋଇଅଛି । ଏହି ବିଦ୍ୟାଳୟ ଏ ନଗରରେ ଅନେକ ଦିନରୁ ସ୍ଥାପିତ ଥିଲେହେଁ ଅର୍ଥାଭାବରେ ଏଥିର ସ୍ଥାୟିତ୍ୱ ସିଦ୍ଧ ହୋଇ ପାରି ନ ଥିଲା । କେତେକ ମାସ ହେଲା କେତେଜଣ ଭଦ୍ର ଲୋକଙ୍କ ସାହାଯ୍ୟରେ ଏହି ବିଦ୍ୟାଳୟ ସକାଶେ ଗୋଟିଏ କୋଠାଘର ପ୍ରସ୍ତୁତ ହେବାର ଆରମ୍ଭ ହୋଇଅଛି ମାତ୍ର ଉପଯୁକ୍ତ ଅର୍ଥ ଅଭାବରୁ ସମ୍ପୂର୍ଣ୍ଣ ହୋଇ ପାରୁ ନାହିଁ । ମହାରାଜାଙ୍କର ଉତ୍କୃଷ୍ଟ ଦାନଦ୍ୱାରା ଘରଟି ସମ୍ପୂର୍ଣ୍ଣ ହେବ ଏବଂ ବିଦ୍ୟାଳୟର ପ୍ରୟୋଜନୀୟ ଦ୍ରବ୍ୟାଦି ମଧ୍ୟ ସଂଗ୍ରହ ହୋଇ ପାରିବ ବଡ଼ ସୁଖର ବିଷୟ ଅଟଇ ।

*ଭା୧୮ଗ,ସଂ୨୯ଖ୍ୟା,୨୧/୭/୧୮୮୩*

## ଓଡିଆ ଗଜେଟ ।

ଏ ସପ୍ତାହରେ ଏ ନଗରରେ ବଙ୍ଗଦେଶର ପ୍ରଜାସ୍ୱତ୍ୱ ବିଷୟକ ପାଣ୍ଡୁଲିପି ଘେନି ବଡ଼ ଚହଲ ପଡିଅଛି । କଲେକ୍ଟର ସାହେବଙ୍କ ଅନୁରୋଧ ମତେ ଏ ନଗରବାସୀ କେତେଜଣ ଦେଶୀୟ ଭଦ୍ର ଲୋକ ଆପଣା ଆପଣା ମତ ଲେଖି ପଠାଇଅଛନ୍ତି ଏବଂ ଉତ୍କଳସଭାର ଯେଉଁ କମିଟୀ ବସିଅଛି ସେମାନେ ଏଥିର ବିଚାର କରୁଅଛନ୍ତି । ଏହି ବିଚାର ସମ୍ପର୍କରେ ଓଡିଆ ଗଜେଟରେ ଉକ୍ତ ପାଣ୍ଡୁଲିପି ଯେପରି ଛାପା ହୋଇଅଛି ତହିଁ ପ୍ରତି ଆମ୍ଭମାନଙ୍କର ଦୃଷ୍ଟି ଆକର୍ଷିତ ହେବାରୁ ଦେଖିଲୁଁ ଯେ ଉକ୍ତ ଗଜେଟରେ ଏଥିର ଅନୁବାଦ ସାବଧାନ ପୂର୍ବକ ପ୍ରକାଶିତ ହୋଇ ନାହିଁ । ଏଥିର କେତେ ସ୍ଥଳରେ ଏମନ୍ତ ଗୁରୁତର ଭ୍ରମ ହୋଇଅଛି କି ଯେଉଁମାନେ ଇଂରାଜୀ ଅଥବା ବଙ୍ଗଳା ନ ଜାଣି ଥିବାରୁ କେବଳ ଓଡିଆ ଅନୁବାଦ ଉପରେ ନିର୍ଭର କରନ୍ତି ସେମାନେ ଆଇନର ପ୍ରକୃତ ଅର୍ଥ ବୁଝିବାକୁ ଏକାବେଳକେ ଅସମର୍ଥ ହୋଇଅଛନ୍ତି । ଉଦାହରଣ ସ୍ୱରୂପ ତହିଁରୁ ଯୋଡିଏ ଦଫା ଏଠାରେ ଉଦ୍ଧୃତ କଲୁଁ ଯଥା;-

ପାଣ୍ଡୁଲିପିର ପ୍ରଥମଅଧ୍ୟାୟର ଧା ୩ ରାର ପ୍ରଷ୍ଟକରଣ ।-

"ଜମି ସମ୍ପର୍କରେ କେବଳ ସେହି ବ୍ୟକ୍ତିକି ରୟତ କୁହା ଯିବ ଯେ ଚାଷ, ବଗିଚା ବା ଚରାଉ କାର୍ଯ୍ୟରେ ଜମିକି ଲଗାଇ ଅଛି ବା ଯାହାର ସ୍ୱାର୍ଥଗତ ପିତା ବା ପିତାମହ ପ୍ରଭୃତି ପୂର୍ବପୁରୁଷମାନେ ସେହି ସେହି କାର୍ଯ୍ୟ ନିମନ୍ତେ ଉକ୍ତ ଜମିର ଦଖଲକାରୀ ହୋଇଅଛନ୍ତି ।

ମାତ୍ର ଉକ୍ତ ଜମି ମଧ୍ୟରେ ଯଦ୍ୟପି ବାସ୍ତୁ ବା ଘର ଡିହଥାଏ ତେବେ ତାହାର ଦଖଲକାରୀକି ମଧ୍ୟ ବାସ୍ତୁ ଭୂମିର ରୟତ ବୋଲା ଯିବ ।"

ଏଥିରୁ ଜଣାଯାଏ ଯେ ଯେଉଁ ବ୍ୟକ୍ତି ଚାଷ ଇତ୍ୟାଦି ସକାଶେ 'ଜମି ଲଗାଇଅଛି' ଅଥବା ଉତ୍ତରାଧିକାରୀ ସ୍ୱରୂପ ଚାଷ ଜମି ପାଇ ଅଛି ତାହାକୁ ରୟତ କୁହା ଯିବ । ଏଥକୁ ଯେଉଁ ବ୍ୟକ୍ତି ଜମି ଲଗାଇବ ସେ ରୟତ ଏମନ୍ତ ଅର୍ଥ ବିଷମ ହେଲା କାରଣ ଜମି ଯେ ଲଗାଏ ସେ ରୟତ ନୁହଇ ଯେ ଧରଇ ତାହାକୁ ରୟତ ବୋଲାଯାଏ । 'ଲଗାଇ ଅଛି' ସ୍ଥଳେ ଧରିଅଛି ଅଧିକ ପରିଷ୍କାର ହୁଅନ୍ତା ।

"ମାତ୍ର ଉକ୍ତ ଜମି ଇତ୍ୟାଦି" ଏଥିରୁ ଏହି ଅର୍ଥ ବୁଝା ଯାଉଅଛି କି ଉକ୍ତ ପ୍ରକାର ଜମି ମଧ୍ୟରେ ଯେବେ କେହି ରୟତର ଘରବାରି ଥିବ ତେବେ ତାହାକୁ ମଧ୍ୟ ବାସ୍ତୁଭୂମିର ରୟତ ବୋଲା ଯିବ ଅର୍ଥାତ୍ ଯାହାର ଚୁଛା ଚାଷ ଥିବ ତାହାକୁ ରୟତ ଏବଂ ଯାହାର ଜୋତ ସଙ୍ଗେ ଘରଡିହ ଥିବ ତାହାକୁ ବାସ୍ତୁଭୂମିର ରୟତ ବୋଲା ଯିବ । ସୁତରାଂ ରୟତ ଏବଂ ବାସ୍ତୁଭୂମିର ରୟତ ଏପରି ଦୁଇ ପ୍ରକାର ରୟତ କଳ୍ପିତ ହେଲେ ଏବଂ 'ମଧ୍ୟ' ଶବ୍ଦ ଯେ କାହିଁକି ବସିଲା ତାହା ସ୍ଥିର କରିବା କଠିଣ । ଏପର 'ତାହାର ଦଖଲକାରୀକି ମଧ୍ୟ ବାସ୍ତୁ ଭୂମିର ରୟତ ବୋଲା ଯିବ' ଏଥିରୁ ଗୋଟିଏ ଭାବ ବିଶୁଦ୍ଧରୂପେ ବୁଝା ଯାଉ ନାହିଁ । ବାସ୍ତବରେ ଆଇନର ପ୍ରକୃତଅର୍ଥ ଏଥିରୁ ଜଣା ଯାଉ ନାହିଁ । ଆଇନର ପ୍ରକୃତ ମର୍ମ ଏହି କି ଯେଉଁ ବ୍ୟକ୍ତି ଚାଷ ଇତ୍ୟାଦି ସକାଶେ ଜମି ନ ଧରେ ତାହାକୁ ରୟତ ବୋଲା ଯିବ ନାହିଁ ମାତ୍ର ଯେବେ ତାହାର ଚାଷ ଜମି ସଙ୍ଗେ ଏକା ଜୋତ ମଧ୍ୟରେ ତାହାର ଘରବାରି ଥିବ ତେବେ ସେହି ଘରଡିହକୁ ସୁଦ୍ଧା ସେ ରୟତ ସ୍ୱରୂପ ଭୋଗ କରୁଅଛି ବୋଲି ବୋଲା ଯିବ । ଏପରି ନ ଲେଖିଲେ ଘରଡିହ ଅଂଶ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ସମ୍ପର୍କରେ ସେ ରୟତ ହୋଇ ପାରିବ ନାହିଁ ବୋଲି ଆଇନ କର୍ତ୍ତାମାନେ 'ମାତ୍ର' ଶବ୍ଦରୁ ଆରମ୍ଭ କରି ଗୋଟିଏ ଉପବିଧି ଯୋଡ଼ି ଦେଇ ଅଛନ୍ତି । ମାତ୍ର ଅନୁବାଦର ଦୋଷରୁ ସେ ଭାବ ଆଦୌ ପ୍ରକାଶ ହେଉ ନାହିଁ ।

ଧା୪୬ରାଟି ଓଡ଼ିଆ ଗଜେଟରେ ଏହିପରି ଲେଖା ଅଛି ଯଥା; -

"କୌଣସି ଗ୍ରାମର ବା ମାହାଲର କୌଣସି ବାସିନ୍ଦା ରୟତ ଏହି ଆଇନ ପ୍ରଚଳିତ ହେବା ସମୟର ପୂର୍ବେ ହେଉ ବା ପରେ ହେଉ ବର୍ଷେ ପର୍ଯ୍ୟନ୍ତ ଏକାକୀ ବା ଅନ୍ୟର ଅଂଶିଦାର ସ୍ୱରୂପ ଉକ୍ତ ଗ୍ରାମର ବା ମାହାଲର ରୟତ ସ୍ୱରୂପ ରୟତୀ ଜମି ଭୋଗ କରିବାକୁ ହେଲେ ସେ ଉକ୍ତ ସମୟ ଅତୀତ ହେଲେ ଉକ୍ତ ଗ୍ରାମ ବା ମାହାଲର ବାସିନ୍ଦା ରୟତ ଆଉ ନୁହେ ବୋଲି ଜ୍ଞାନ କରା ଯିବ ।"

ଏଥିରୁ ଆଦୌ କିଛି ଅର୍ଥ ବୁଝା ଯାଉ ନାହିଁ କାରଣ ଗୋଟିଏ ପ୍ରଧାନ ଶବ୍ଦ ଲୋପ ହୋଇଅଛି । ଏଥିରେ ଲେଖା ଥିବା 'ରୟତୀ ଜମି ଭୋଗ କରିବାକୁ ହେଲେ' ପରିବର୍ତ୍ତରେ 'ରୟତି ଜମି ଭୋଗ କରିବାକୁ ବିରତ ହେଲେ' ଏହି ପରି ପାଠ କଲେ ଅର୍ଥ ଠିକ ମିଳିବ । ବାସ୍ତବରେ ଏହି ଧାରାଟି ବଙ୍ଗଳା ଗଜେଟରୁ ଅନୁବାଦିତ ହୋଇ ଥିବାରୁ ଏଥିରେ ଅନୁବାଦର ଦୋଷ କିଛି ଘଟି ନାହିଁ କେବଳ ମୁକାବିଲା ସମୟରେ ଅସାବଧାନତା ପୂର୍ବକ 'ବିରତ' ଶବ୍ଦ ଛାଡ ହୋଇ ଅଛି ବୋଲି ଅନର୍ଥ ଘଟିଅଛି ।

ଆଇନର ଅନୁବାଦ ଅତ୍ୟନ୍ତ ପରିଷ୍କାର ଏବଂ ସାଧାରଣଙ୍କ ବୋଧଗମ୍ୟ ହେବାର ଉଚିତ । ତାହା ନ ହେଲେ ଭୟାନକ ଉତ୍ପାତ ଜାତ ହେବାର ସମ୍ଭାବନା । ଅନୁବାଦ କାର୍ଯ୍ୟଟି ସ୍ୱଭାବତଃ ବଡ କଠିଣ ଏବଂ ନୂତନ ଲୋକ ପକ୍ଷରେ ଆହୁରି କଷ୍ଟକର ଅଟଇ । ନୂତନ ଅନୁବାଦକଙ୍କୁ ଏହି ଗୁରୁତର ଦାୟିତ୍ୱର ପରିଚୟ ଦେବା ସକାଶେ ଆମ୍ଭେମାନେ ଉପର ଲିଖିତ ସମାଲୋଚନାରେ ପ୍ରବୃତ୍ତ ହେଲୁଁ । ଆଶା କରୁଁ କି ସେ ଏ ବିଷୟକୁ ଉତ୍ତମରୂପେ ହୃଦୟଙ୍ଗମ କରି ଯଥାସାଧ୍ୟ ପରିଶ୍ରମ ଏବଂ ସାବଧାନତା ପୂର୍ବକ ଆପଣା କାର୍ଯ୍ୟ ନିର୍ବାହ କରିବେ ।

*ଭା୧୮ଗ,ସଂ୩୦ଖ୍ୟା, ୨୮।୭।୧୮୮୩*

## ପୁସ୍ତକ ପ୍ରାପ୍ତି ।

ଆମ୍ଭେମାନେ କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ଯେ ପୁରୁଷୋତ୍ତମ ପ୍ରିଣ୍ଟିଂକମ୍ପାନିଙ୍କ ଯନ୍ତ୍ରାଳୟରୁ ବାହାରି ଥିବା ଦୁଇଖଣ୍ଡ ଓଡ଼ିଆ ପୁସ୍ତକ ଉପହାର ପାଇ ଅଛୁଁ । ପୁରୀରେ ଅନେକ ଦିନରୁ ଯନ୍ତ୍ରାଳୟ ସ୍ଥାପିତ ହୋଇଥିବା ସ୍ଥଳେ ଅବଧି କେବଳ ଏହି ଦୁଇଖଣ୍ଡ ପୁସ୍ତିକା ବାହାରିବା ଯଦ୍ୟପି କି ଊଣା କଥା ଅଟଇ ତଥାପି ଏ କଥାକୁ ଆମ୍ଭେମାନେ ପ୍ରୀତିକର ମଣୁ ଅଛୁଁ କାରଣ ଏହା ଦେଖି ଆଶା ହେଉଅଛି କି ଏଣିକି ପୁସ୍ତକ ପ୍ରକାଶ ବିଷୟରେ ସେଠା ଲୋକେ ମନୋଯୋଗୀ ହେଲେଣି ଏବଂ ଏଥିର ସୁଫଳ ଅବଶ୍ୟ ଅନତିବିଳମ୍ବରେ ପ୍ରତ୍ୟକ୍ଷ ହେବ । କିନ୍ତୁ ଯନ୍ତ୍ରାଳୟର ଅଧିକାରିଙ୍କୁ ଛାପାର ଗୁଣ ଉନ୍ନତି ବିଷୟରେ ସମଧିକ ଯତ୍ନବାନ୍ ହେବା ଉଚିତ କାରଣ ଛାପା ଭଲ ନ ହେଲେ ପୁସ୍ତକ ପ୍ରକାଶ କରିବା ଏକପ୍ରକାର ବିଡମ୍ବନା । ବର୍ତ୍ତମାନ ଯେଉଁ ଦୁଇପୁସ୍ତିକା ପାଇଅଛୁଁ ତହିଁର ଛାପା ଭଲ ହୋଇ ନାହିଁ ଏବଂ ଆକୃତି ଓ ବନ୍ଧାଇ ମଧ ତଦ୍ରୂପ ଅଟଇ । ଏ ଦୋଷ ଗୁଡ଼ିକ ସର୍ବାଗ୍ରେ ଯନ୍ତ୍ରାଳୟରୁ ବହିଷ୍କୃତ ହେବାର ଉଚିତ ।

ଏ ଦୁଇ ପୁସ୍ତକ ମଧ୍ୟରୁ ଏକଖଣ୍ଡର ନାମ ସରଳ ପଦ୍ୟାବଳୀ । ଶ୍ରୀ ହରିହର ରଥ ପ୍ରକାଶିତ । କଳେବର ରଏଲ ୧୬ପୃଷ୍ଠାର ଏକ ଫର୍ମା ମାତ୍ର ମୂଲ୍ୟ ସୁଲଭ ଅର୍ଥାତ୍ ଏକଅଣା ଅଟଇ । ଏଥିରେ କ୍ଷୁଦ୍ର କ୍ଷୁଦ୍ର ଗୋ୯ଟା କବିତା ଲେଖା ଅଛି ଏବଂ ପ୍ରତ୍ୟେକ ପୃଷ୍ଠା ତଳେ ଯେତେ କଠିନ ଶବ୍ଦର ଅର୍ଥ ଲେଖା ଅଛି ତାହା ଦେଖିବା ମାତ୍ରକେ ବୋଧ ହେଉଅଛି ଯେ ସରଳ ପଦ୍ୟାବଳୀ ନାମଟା ଆଦୌ ସାର୍ଥକ ହୋଇ ନାହିଁ । ଭୂମିକା ନ ଥିବାରୁ କି ଉଦ୍ଦେଶରେ ଏ ପୁସ୍ତକ ପ୍ରଚରିତ ହୋଇଅଛି ଜଣା ଯାଉ ନାହିଁ ମାତ୍ର ବିଦ୍ୟାଳୟର ପାଠ୍ୟପୁସ୍ତକ ହୋଇଥିଲେ କୌଣସି ଏକଶ୍ରେଣୀର ପିଲାଙ୍କ ବୋଧପ୍ରତି ଉପଯୋଗୀ ହୋଇ ନାହିଁ ଏବଂ ସମସ୍ତ ପଦ୍ୟ ଏକଜଣଙ୍କର ଲେଖା କି ନା ବୁଝିବା କଠିନ ହୋଇଅଛି । ଯାହାହେଉ ଏଥିରେ ବସନ୍ତ ବର୍ଣ୍ଣନା ପ୍ରଭୃତି କେତୋଟି କବିତା ସୁନ୍ଦର ହୋଇଅଛି । ଗ୍ରୀଷ୍ମ ବର୍ଣ୍ଣନାର ଭାବ ମହାକବି କାଳିଦାସଙ୍କ ଋତୁସଂହାରରୁ ଗୃହୀତ ହୋଇ ଥିବାର ଜଣାଯାଏ ।

ଅପର ଗ୍ରନ୍ଥର ନାମ ସରଳ ବ୍ୟାକରଣ-ଶ୍ରୀ ହରିହର ରଥଙ୍କ ପ୍ରଣୀତ ମୂଲ୍ୟ ଏକ ଅଣା । ଗ୍ରନ୍ଥକର୍ତ୍ତା ଇଂରାଜୀ ବ୍ୟାକରଣର ଅନୁକରଣ କରିଅଛନ୍ତି । ଯଥା "ଯେଉଁ ପଦଦ୍ୱାରା ପୁରୁଷ ଜାତି ବୁଝାଏ ତାକୁ ପୁଲିଙ୍ଗ କହନ୍ତି ଯଥା ନର, ହଂସ, ମୟୂର ।" ତେବେ ପର୍ବତ, ସାଗର, ନଈ, ଛାଇ, ହାଟ, ବାଟ ଏହି ସବୁ ପଦରେ କେଉଁ କେଉଁ ଜାତି ବୁଝାଉଅଛି, ଏଥିରେ କିଏ କେଉଁ ଲିଙ୍ଗ ଜାଣିବାର ଉପାୟ କଣ ? ଗ୍ରନ୍ଥକାର କି ଏ ସବୁକୁ ଇଂରାଜୀ ଅନୁସାରେ ନପୁଂସକଲିଙ୍ଗ କହିବେ ? ଅଥଚ ନପୁଂସକଲିଙ୍ଗ ଅଛି ବୋଲି ସେ ସ୍ୱୀକାର କରି ନାହାନ୍ତି । ଏ ଗ୍ରନ୍ଥରେ ସନ୍ଧିପ୍ରକରଣ ନାହିଁ -ବୈୟାକରଣୀ ମହାଶୟ ବାଳକଙ୍କ ପକ୍ଷରେ ବିଦ୍ୟା+ଆଳୟ =ବିଦ୍ୟାଳୟ ଏ ସହଜ ଶିକ୍ଷାର ପୂର୍ବରୁ ତବ୍ୟ, ଅନୀୟ, ଇୟସ୍ ଓ ଇମନ୍ ପ୍ରତ୍ୟୟାନ୍ତ ପଦର ଶିକ୍ଷା ଅଧିକ ଉପଯୋଗୀ ବୋଲି ମନେ କରିଅଛନ୍ତି - ଯାହା ହେଉ ନିର୍ମାଲ୍ୟ ସେବା କଲା ପରି ପାଠକମାନେ ଏ ଗ୍ରନ୍ଥରୁ କେତେକ ବିଷୟର ଏକ ଏକ କଣିକା ଉପଦେଶ ପ୍ରାପ୍ତ ହେବେ ମାତ୍ର ଆମ୍ଭମାନଙ୍କର ଭୟ ହେଉଅଛି ଏଥିରେ ତାହାଙ୍କ କ୍ଷୁଧା ନିବାରଣ ହେବ ନାହିଁ । ପ୍ରକୃତରେ ଆମ୍ଭେମାନେ ଏଭଳି ପୁସ୍ତକ ପ୍ରଣୟନର ପକ୍ଷପାତୀ ନୋହୁଁ । ବିଶେଷତଃ ଓଡିୟା ଭାଷାରେ ସରଳ ବ୍ୟାକରଣର ଅଭାବ ନାହିଁ ।

*ଭା୧୮ଗ, ସଂ୩୪ଖ୍ୟା, ୨୫।୮।୧୮୮୩*

## ଶିକ୍ଷାବିଧାୟିକାସଭା ।

ଏ ନଗରସ୍ଥ ବିଦ୍ୟାଳୟମାନଙ୍କର କେତେ ଗୁଡିଏ ଛାତ୍ର ଶିକ୍ଷାବିଧାୟିକା ସଭା ନାମରେ ଗୋଟିଏ ସମାଜ ସ୍ଥାପନ କରିଅଛନ୍ତି । ଗତ ସୋମବାର ରାତ୍ରରେ ତହିଁର ଷାଣ୍ମାସିକ ଅଧିବେଶନ ପ୍ରିଣ୍ଟିଂ କମ୍ପାନିଙ୍କ ଅଟ୍ଟାଳିକାରେ ହୋଇ ଥିଲା । ଏଠା କଲେଜର ଜଣେ ଶିକ୍ଷକ ବାବୁ ସର୍ବେଶ୍ୱର ଭଟ୍ଟାଚାର୍ଯ୍ୟ ଏହି ଅଧିବେଶନରେ ସଭାପତିର ଆସନ ଗ୍ରହଣ କରିଥିଲେ । ସମ୍ପାଦକ ବାବୁ ଲଳିତ ମୋହନ ଚକ୍ରବର୍ତ୍ତୀ ସଭାର କାର୍ଯ୍ୟ ବିବରଣ ପାଠ କଲେ ତହିଁରୁ ଜଣାଗଲା ଯେ ସଭ୍ୟମାନେ ଉତ୍ସାହ ସହିତ ସଭାର କାର୍ଯ୍ୟ ନିର୍ବାହ କରୁଅଛନ୍ତି । ନିରାଶ୍ରୟ ବାଳକଙ୍କୁ ଶିକ୍ଷା ଲାଭର ବ୍ୟୟ ଯୋଗାଇବା, ନଗରସ୍ଥ କ୍ଷୁଦ୍ର କ୍ଷୁଦ୍ର ବିଦ୍ୟାଳୟମାନ ସନ୍ଦର୍ଶନ କରି ଶିକ୍ଷାର ଉନ୍ନତି ବିଷୟରେ ଉପଦେଶ ଦେବା, ପାରିତୋଷିକ ବିତରଣଦ୍ୱାରା ଛାତ୍ରମାନଙ୍କ ଉତ୍ସାହ ବଢାଇବା ଇତ୍ୟାଦି କାର୍ଯ୍ୟ ସଭା ଆପଣାର ସାମାନ୍ୟ ଆୟଦୃଷ୍ଟିରେ ଅଳ୍ପ ବ୍ୟୟରେ ନିର୍ବାହ କରୁଅଛନ୍ତି ସୁଖର ବିଷୟ ଅଟଇ । ଏ ସଭା ପୂର୍ବେ ନର୍ମାଲ ସ୍କୁଲରେ ହେଉଥିଲା ମାତ୍ର କର୍ତ୍ତୃପକ୍ଷମାନେ ନିଷେଧ କରିବାରୁ ସେଠାରୁ ଉଠିଯାଇ ବାବୁ ଗୋପାଲଚନ୍ଦ୍ର ବାନୁର୍ଯ୍ୟାଙ୍କ ଘରଠାରେ ହେଉଅଛି । କି ହେତୁ ନର୍ମାଲସ୍କୁଲରୁ ସଭା ତାଡିତ ହେଲା ବିଜ୍ଞାପନିରେ ପ୍ରକାଶିତ ହୋଇଥିଲେ ସର୍ବସାଧାରଣ ତହିଁର ସମାଲୋଚନା କରି ପାରନ୍ତେ ମାତ୍ର ହେତୁ ପ୍ରଦର୍ଶିତ ନ ହେବାରୁ ସଭ୍ୟମାନଙ୍କର କୌଣସି ତ୍ରୁଟି ହୋଇଥିବାର ସନ୍ଦେହ ହେଉଅଛି ନୋହିଲେ ଛାତ୍ରରୂପୀ ସଭ୍ୟମାନଙ୍କୁ ଶିକ୍ଷକରୂପୀ କର୍ତ୍ତୃପକ୍ଷମାନେ ଆଶ୍ରୟ ନ ଦେବାର ଅନ୍ୟ କାରଣ କଳ୍ପଣା କରିବା କଠିଣ । ବିଜ୍ଞାପନି ପାଠ ଶେଷ ହେଲାରୁ ବାବୁ ଚତୁର୍ଭୁଜ ପଟ୍ଟନାୟକ ଶିକ୍ଷା ବିଷୟରେ ଗୋଟିଏ ବକ୍ତୃତା ପ୍ରଦାନ କଲେ ଏବଂ ତହିଁଉତ୍ତାରୁ ସଭାପତି ସଭାର କାର୍ଯ୍ୟରେ ସନ୍ତୋଷ ପ୍ରକାଶ କରି ଗୋଟିଏ ହିତୋପଦେଶ ଦେଇ ସଭା ଭଙ୍ଗ କଲେ । ସଭାପତି କ୍ଷୁଦ୍ର ବକ୍ତୃତା ଦ୍ୱାରା ସେହି ଉପଦେଶକୁ ଏମନ୍ତ ସୁନ୍ଦର ରୂପେ ପ୍ରଦାନ କଲେ ଯେ ତାହା ସମସ୍ତଙ୍କ ମନକୁ ମୋହିତ କରିଦେଲା । ସେ ସଭ୍ୟମାନଙ୍କୁ ଏହି କଥା କହିଲେ ଯେ ବିଦ୍ୟାଭ୍ୟାସ ସଙ୍ଗେ ସଙ୍ଗେ ସୁନୀତି ଅଭ୍ୟାସ କରିବା ଅତ୍ୟନ୍ତ ପ୍ରୟୋଜନୀୟ ଅନେକ ଶିକ୍ଷିତ ଲୋକ ଯେ ନୀତିବାନ୍ ହୁଅନ୍ତି ନାହିଁ ତହିଁର କାରଣ ଏହି କି ସେମାନେ ପିଲା କାଳରୁ ତାହା ଅଭ୍ୟାସ କରନ୍ତି ନାହିଁ । ସଭା ଯେବେ ସୁନୀତି ଅଭ୍ୟାସ ପକ୍ଷରେ ମନୋଯୋଗୀ ହେବେ ଏବଂ ଏହି ବିଷୟରେ ଛାତ୍ରମାନଙ୍କର ପ୍ରବୃତ୍ତି ବଢାଇବେ ତେବେ ସେମାନେ ଗୋଟିଏ ମହତ୍‌କାର୍ଯ୍ୟ ସାଧନ କରିବେ ସନ୍ଦେହ ନାହିଁ । ଆମ୍ଭେମାନେ ଏକଥା ଗୁଡିକୁ ସମ୍ପୂର୍ଣ୍ଣରୂପେ ଅନୁମୋଦନ କରୁଁ । ବାସ୍ତବରେ ବିଦ୍ୟାଳୟର ଶିକ୍ଷାରେ ଏହି ଅଭାବ ଥିବାରୁ ଯେ ପରିମାଣରେ ଲୋକେ ଜ୍ଞାନି ହୋଇ ଅଛନ୍ତି ସେ ପରିମାଣରେ ତହିଁର ଫଳ ଲାଭ କରିବାକୁ ସକ୍ଷମ ହେଉ ନାହାନ୍ତି ।

*ଭା୧୮ଗ, ସଂ୩୫ଖ୍ୟା, ୧।୯।୧୮୮୩*

## ଶିକ୍ଷା ଓ ତହିଁର ଫଳ ।

ଗତ ସୋମବାର ଶିକ୍ଷାବିଧାୟିକା ସଭାର ଅଧିବେଶନରେ ବାବୁ ଚତୁର୍ଭୁଜ ପଟ୍ଟନାୟକ ଶିକ୍ଷା ବିଷୟରେ ଗୋଟିଏ ବକ୍ତୃତା ପ୍ରଦାନ କରିଥିଲେ । ବାବୁ ମହାଶୟଙ୍କର ଯେ ବକ୍ତୃତା କରିବାର ବିଶେଷ କ୍ଷମତା ଅଛି ଏଥିର ପରିଚୟ ପାଠକମାନଙ୍କୁ ପୂର୍ବରୁ ଦେଇଅଛୁଁ ଏବଂ ଏହିଦିନର ବକ୍ତୃତାରେ ମଧ୍ୟ ସେ ତାହା ବିଲକ୍ଷଣ ଦେଖାଇଅଛନ୍ତି । ପୂର୍ଣ୍ଣ ଏକଘଣ୍ଟାକାଳ ସେ ଅନର୍ଗଳ ଚିକ୍କଣ ଭାଷାରେ ଅନେକ ଗୁଡ଼ିଏ କଥା କହି ଗଲେ ଏବଂ ଶ୍ରୋତାମାନେ ଘନ ଘନ କରତାଳୀଦ୍ୱାରା ତହିଁରେ ଆନନ୍ଦ ଅନୁଭବ କରୁଥିବାର ପ୍ରକାଶ କଲେ । ବାସ୍ତବରେ ଯେ ତାହାଙ୍କର ବକ୍ତୃତା ଶୁଣିବ ସେ ତାହାଙ୍କୁ ସଦ୍‌ବକ୍ତା ବୋଲି ସ୍ୱୀକାର କରିବ । ଜଣେ ଉତ୍କଳୀୟ ଆପଣା ମାତୃଭାଷାରେ ବକ୍ତୃତା କରିବାରେ ବ୍ୟୁତ୍ପତ୍ତି ଲାଭ କରିବା ଗୌରବର ବିଷୟ ଅଟଇ । ବର୍ତ୍ତମାନ କାଳରେ ସୁବକ୍ତାର ପ୍ରୟୋଜନ ବଢ଼ିବାର ଦେଖାଯାଏ ଏବଂ ଆମ୍ଭେମାନେ ଏକାନ୍ତ ଆଶା କରୁଁ କି ଶିକ୍ଷିତ ଲୋକମାନେ ଏହି ଗୁଣ ଲାଭ କରିବାକୁ ସମଧିକ ଯତ୍ନବାନ୍ ହେବେ ।

ଚତୁର୍ଭୁଜ ବାବୁ ପ୍ରଥମେ ଶିକ୍ଷାର ସଂଜ୍ଞା ଓ ଉଦ୍ଦେଶ୍ୟ ବ୍ୟକ୍ତ କରି କହିଲେ ଯେ ଶିକ୍ଷା ତିନି ଭାଗରେ ବିଭକ୍ତ ହୋଇ ପାରେ ଯଥା ଜ୍ଞାନଶିକ୍ଷା ପ୍ରୀତିଶିକ୍ଷା ଓ ଇଚ୍ଛାଶିକ୍ଷା । ଜ୍ଞାନ ପୁଣି ତିନିପ୍ରକାର ଯଥା ପଦାର୍ଥଜ୍ଞାନ ମନୋବିଜ୍ଞାନ ଏବଂ ପରମାର୍ଥଜ୍ଞାନ । ଜ୍ଞାନ ଅର୍ଜିଲା ଉତ୍ତାରୁ ପ୍ରୀତିଶିକ୍ଷା କରିବ କାରଣ ପ୍ରୀତି ବିନା ଜ୍ଞାନ ନୀରସ ଅଟଇ । ପ୍ରୀତିଦ୍ୱାରା ଆପଣା ପରିବାରଠାରୁ କ୍ରମଶଃ ବିସ୍ତାର ପୂର୍ବକ ସମସ୍ତ ସଂସାରକୁ ଆପଣା ମନରେ ଧାରଣ କରିବ ମାତ୍ର ଇଚ୍ଛାର ପ୍ରାବଲ୍ୟ ନ ହେଲେ ଜ୍ଞାନ ଅଥବା ପ୍ରେମ ଆଦୌଲାଭ ହେବ ନାହିଁ । ଜ୍ଞାନ ବାଟ ଦେଖାଇବ ପ୍ରେମ ତାହା ଲାଭ କରିବାକୁ ପ୍ରବୃତ୍ତି ଜାତ କରିବ ମାତ୍ର ଇଚ୍ଛାର ବେଗ ଏକା ସେ ବାଟରେ ଘେନି ଯାଇ ବାଞ୍ଛିତ ଫଳକୁ ଲାଭ କରାଇବ । ଅତଏବ ଇଚ୍ଛାକୁ ଦୃଢ଼ କରିବା ଅତ୍ୟନ୍ତ ଆବଶ୍ୟକ । କିନ୍ତୁ ଦୁଃଖର ବିଷୟ ଯେ ବିଦ୍ୟାଳୟରେ ପଢ଼ିବା ବେଳେ ଯେ ପରିମାଣ ଇଚ୍ଛାର ବେଗ ଦେଖାଯାଏ ବିଦ୍ୟାଳୟ ତ୍ୟାଗ କଲା ଉତ୍ତାରୁ ତାହା ରହି ପାରଇ ନାହିଁ । ଶିକ୍ଷିତ ଲୋକଙ୍କର ଏହି ଦୋଷ ଅତ୍ୟନ୍ତ ଶୋଚନୀୟ ଅଟଇ । ଏହି ଉତ୍କଳଦେଶରେ କେତେ ଲୋକ ସୁଶିକ୍ଷିତ ହୋଇ ବିଦ୍ୟାଳୟରୁ ବାହାରି ଅଛନ୍ତି ଏବଂ ନାନା ଚାକରିଦ୍ୱାରା ଆପଣା ଉଦର ପ୍ରତିପାଳନ କରୁଅଛନ୍ତି ମାତ୍ର ଶିକ୍ଷିତ ଲୋକଙ୍କର କର୍ତ୍ତବ୍ୟ କାର୍ଯ୍ୟ ସାଧନ କରିବାକୁ କାହାରିକୁ ଦେଖା ଯାଉ ନାହିଁ । ଏତେ ଶିକ୍ଷିତ ଲୋକ କେଉଁଠାରେ ଲୁଚି ରହିଲେ କାହିଁ ସେମାନଙ୍କର ଅସ୍ତିତ୍ୱ କିଛି ମାତ୍ର ଜଣା ପଡୁ ନାହିଁ । ସ୍ୱଦେଶାନୁରାଗ ଓ ସ୍ୱଦେଶର ମଙ୍ଗଳ ସାଧନରେ କଦାଚିତ୍ ଦୁଇ ଏକ ବ୍ୟକ୍ତିଙ୍କୁ ବ୍ୟସ୍ତ ହେବାର ଦେଖାଯାଏ ନତୁବା ଅଧିକାଂଶ ମୃତ ପ୍ରାୟ ରହିଅଛନ୍ତି । ପୁଣି ଉତ୍କଳୀୟ ଶିକ୍ଷିତମାନେ ନିତାନ୍ତ କପଟୀ ସେମାନେ ଯାହା ବିଶ୍ୱାସ କରନ୍ତି ତାହା କାର୍ଯ୍ୟରେ ପରିଣତ କରନ୍ତି ନାହିଁ ଏବଂ ଯାହା କରନ୍ତି ତାହା ସେମାନଙ୍କର ବିଶ୍ୱାସର ଅନୁମୋଦିତ ନୁହଇ । ପାଶ୍ଚାତ୍ୟ ଶିକ୍ଷା ପାଶ୍ଚାତ୍ୟ ସଭ୍ୟତା ଯେବେ ଏଠାର ଶିକ୍ଷିତମାନଙ୍କୁ ଏହି ଗୁଣ ଶିଖାଇଲା ତେବେ ତେମନ୍ତ ଶିକ୍ଷା ଓ ତେମନ୍ତ ସଭ୍ୟତାରେ କି ପ୍ରୟୋଜନ ବରଂ ସେମାନ ନ ହେଲେତ ଭଲ ଥିଲା । ଶିକ୍ଷିତ ଲୋକମାନେ ଚିନ୍ତା କରନ୍ତି ଏକପ୍ରକାର ଏବଂ କାର୍ଯ୍ୟ କରନ୍ତି ଅନ୍ୟ ପ୍ରକାର ଏପରି ଚୋରପରି ଲୁକ୍କାୟିତ ଭାବ କଦାଚ ଶୋଭନୀୟ ନୁହଇ ଏହା ଶିକ୍ଷିତ ଲୋକଙ୍କର ଗୁରୁତର ଦୋଷ ବୋଲି ବକ୍ତା ଦୃଢ଼ରୂପେ ପ୍ରକାଶ୍ୟଭାବରେ ବ୍ୟକ୍ତ କଲେ । ତହିଁ ଉତ୍ତାରୁ ବକ୍ତୃତା ଶେଷ କରିବା ପୂର୍ବ ସଭ୍ୟମାନଙ୍କୁ ନିଶାରୂପୀ ରାକ୍ଷସୀଠାରୁ ସତର୍କ ରହିବାକୁ ଶକ୍ତରୂପେ ଅନୁରୋଧ କଲେ । ଛାତ୍ରମାନଙ୍କୁ ସତର୍କ କରି କହିଲେ କି ସେହି ନିଶାରୂପୀ ରାକ୍ଷସୀ ତୁମ୍ଭମାନଙ୍କ ସକାଶେ ଜଗି ବସି ଅଛି । ବର୍ତ୍ତମାନ ତୁମ୍ଭେମାନେ ତାହାକୁ ଦେଖିପାରୁ ନାହଁ କିନ୍ତୁ ଯେମନ୍ତ ବିଦ୍ୟାଳୟ ପରିତ୍ୟାଗ କରି କାର୍ଯ୍ୟକ୍ଷେତ୍ରରେ ପ୍ରବେଶ ହେବ ଏବଂ ଚାକରୀ ବା ବ୍ୟବସାୟଦ୍ୱାରା ଦୁଇଟଙ୍କା ଆପଣା ପକେଟରେ ରଖିବାକୁ ସମର୍ଥ ହେବ ତତ୍‌କ୍ଷଣାତ୍ ସେହି ରାକ୍ଷସୀ ତୁମ୍ଭମାନଙ୍କ ସାକ୍ଷାତରେ ଉପସ୍ଥିତ ହୋଇ ନାନା ପ୍ରଲୋଭନ ଦେଖାଇ ତୁମ୍ଭମାନଙ୍କୁ କରଗତ କରିବ ଏବଂ ଅଚିରେ ତୁମ୍ଭମାନଙ୍କର ସର୍ବନାଶ ଘିଆଇବ । ତୁମ୍ଭମାନଙ୍କୁ ଆଜିଠାରୁ ତାହାର କୁଚକ୍ରମାନ ଜଣାଇ ଦେଉଅଛୁଁ ଅତ୍ୟନ୍ତ ସାବଧାନ ହୋଇ ଚଳିବ ଯେମନ୍ତ କୌଣସିରୂପେ ତାହାକୁ ପାଖ ଲଗାଇ ଦେବ ନାହିଁ ତାହା ହେଲେ ତୁମ୍ଭମାନଙ୍କର ଆଉ କିଛି ଭୟ ନାହିଁ ଅତଏବ ବାର ବାର କହୁଅଛୁଁ ନିଶାରୂପୀ ରାକ୍ଷସୀଠାରୁ ସର୍ବଦା ସତର୍କ ରହିବ ।

ଆମ୍ଭେମାନେ ଚତୁର୍ଭୁଜ ବାବୁଙ୍କ ବକ୍ତୃତାର ଆଭାଷ ମାତ୍ର ଉପରେ ବର୍ଣ୍ଣନ କଲୁଁ ନୋହିଲେ ତାହାଙ୍କର ବାକ୍ୟ ବିନ୍ୟାସ ଓ ବୋଲିବାର ଭାବ ଭଙ୍ଗିର ସମୁଚିତ ସୁବିଚାର କରିବାକୁ ଆମ୍ଭେମାନେ ସମ୍ପୂର୍ଣ୍ଣରୂପେ ଅସମର୍ଥ ଅଟୁଁ । ମାତ୍ର ବକ୍ତାଙ୍କ ମତାମତ ବିଷୟରେ ଆମ୍ଭେମାନେ ଦୁଇ ଏକକଥା ନ କହି କ୍ଷାନ୍ତ ହୋଇ ନ ପାରୁଁ ବକ୍ତା ଉତ୍କଳୀୟ ଶିକ୍ଷିତ ଲୋକଙ୍କପ୍ରତି ଯୋଡିଏ ଦୋଷାରୋପ କରିଅଛନ୍ତି ଅର୍ଥାତ୍ କର୍ତ୍ତବ୍ୟବିମୂଢ଼ତା ଏବଂ କପଟତା । ପ୍ରଥମ ଅଭିଯୋଗଟି ଆଂଶିକ ସତ୍ୟ ହୋଇ ପାରେ ଏବଂ ତାହା ଆମ୍ଭେମାନେ ସମୟ ସମୟରେ ପ୍ରସଙ୍ଗକ୍ରମେ କହିବାକୁ ତ୍ରୁଟି କରି ନାହୁଁ । ଶିକ୍ଷିତ ଲୋକଙ୍କଠାରେ ସର୍ବସାଧାରଣଙ୍କର ବିଶେଷ ଆଶା ଭରସା ଏବଂ ଏ ବିଷୟରେ ସେମାନଙ୍କର ଦାୟିତ୍ୱ ମଧ ଅତ୍ୟନ୍ତ ଗରିଷ୍ଠ । ଏହି ହେତୁରୁ ସେମାନେ ଯେତେ କାର୍ଯ୍ୟ କଲେହେଁ ତହିଁରେ ତୃପ୍ତି ଜାତ ହେଉ ନାହିଁ । ଶିକ୍ଷିତ ସମ୍ପ୍ରଦାୟ ଯେ ଏକାବେଳକେ ନିସ୍ତେଜ ରହିଅଛନ୍ତି ଏରୂପ ବୋଲିବା ଅତ୍ୟୁକ୍ତି ଅଟଇ କାରଣ ପ୍ରକୃତରେ ଦେଖା ଯାଉଅଛି କି ଶିକ୍ଷିତ ଲୋକମାନେ ଆପଣା ଆପଣା ସାଧ୍ୟାନୁସାରେ କାର୍ଯ୍ୟ କରିବାକୁ ନିତାନ୍ତ ବିମୁଖ ନୁହନ୍ତି । ଅବଶ୍ୟ ବଙ୍ଗଦେଶ ପରି ଉତ୍କଳରେ ଉଚ୍ଚଶିକ୍ଷାର ବିସ୍ତାର ବା ଉନ୍ନତି ହୋଇ ନାହିଁ ସୁତରାଂ ସେଠା ଲୋକଙ୍କ ପରି ଏଠା ଲୋକେ କାର୍ଯ୍ୟ କରି ନ ପାରନ୍ତି । ମାତ୍ର ଏହା ବୋଲି ଏମାନଙ୍କୁ ଅକର୍ମଣ୍ୟ ବୋଲା ଯାଇ ନ ପାରେ । ଏଠାର ପ୍ରାୟ ସମସ୍ତ ଶିକ୍ଷିତ ଲୋକ ସରକାରୀ କାର୍ଯ୍ୟରେ ନିଯୁକ୍ତ ଅଛନ୍ତି ଏବଂ ସେମାନଙ୍କର କାର୍ଯ୍ୟ ଦେଖି କିଏ ସ୍ୱୀକାର ନ କରିବ ଯେ ଏମାନଙ୍କଦ୍ୱାରା ଯେମନ୍ତ ଏକପକ୍ଷରେ ବିଚାର ବା ଶାସନକାର୍ଯ୍ୟ ପୂର୍ବଠାରୁ ଅଧିକ ଯୋଗ୍ୟରୂପେ ନିର୍ବାହିତ ହେଉଅଛି ତେମନ୍ତ ଉତ୍କୋଚର ସୋତ କି ଯାହା ସରକାରୀ କଚେରିମାନଙ୍କର ମୂଳ ଧୋଇ ନେଉଥିଲା ବିସ୍ତର ପରିମାଣରେ ଶୁଖିଲା ପଡି ଆସିଅଛି । ଏହାଛଡା ଏମାନଙ୍କ ମଧ୍ୟରୁ କେହି ସମ୍ବାଦପତ୍ରଦ୍ୱାରା ସାଧାରଣ ମତ ଗଢୁ ଅଛନ୍ତି ଏବଂ ବିଦ୍ୟାଳୟର ଉପଯୋଗୀ ଏବଂ ଅନ୍ୟାନ୍ୟ ସୁପାଠ୍ୟ ପୁସ୍ତକ ରଚନାଦ୍ୱାରା ସାଧାରଣ ଜ୍ଞାନ ବିସ୍ତାର ପକ୍ଷରେ ସାହାଯ୍ୟ କରୁଅଛନ୍ତି । ଏମାନଙ୍କ କର୍ତ୍ତବ୍ୟ କର୍ମ ଅନେକ ରହିଅଛି ଏବଂ ସେମାନ ପୂର୍ଣ୍ଣ କରିବା ବିଷୟରେ ଏମାନଙ୍କର ସମଧିକ ଯତ୍ନ ଓ ଶ୍ରମ କରିବାର ଆବଶ୍ୟକ ଏହା ଆମ୍ଭେମାନେ ପୁନଃ ପୁନଃ ସ୍ୱୀକାର କରୁଁ ଏବଂ ସେଥିପକ୍ଷରେ ତତ୍ପର ହେବା ପାଇଁ ସେମାନଙ୍କୁ ପୁନଃ ପୁନଃ ଅନୁରୋଧ କରୁଁ ସତ୍ୟ ମାତ୍ର ସାମ୍ପ୍ରଦାୟିକରୂପେ ସେମାନଙ୍କୁ ନିନ୍ଦା କରିବା ଅବଶ୍ୟ ଅତ୍ୟୁକ୍ତି ବୋଲିବାକୁ ହେବ ।

ପରିଶେଷରେ କପଟତାର ଅଭିଯୋଗଟି ଅତ୍ୟନ୍ତ କଠିଣ ଏବଂ ଆମ୍ଭମାନଙ୍କ ବିବେଚନାରେ ତାହା ଅତ୍ୟନ୍ତ ଅଯୋଗ୍ୟ ଅଟଇ । ଦୁଃଖର ବିଷୟ ଯେ ବକ୍ତା କେବଳ ଅଭିଯୋଗ କରି କ୍ଷାନ୍ତ ରହିଲେ ତହିଁର କୌଣସି ହେତୁ ଅଥବା ଉଦାହରଣ ଦେଖାଇଲେ ନାହିଁ । ଏଣୁ କରି ସେହି ଅଭିଯୋଗର ଯଥାର୍ଥ ଉତ୍ତର ଦେବାକୁ ଆମ୍ଭେମାନେ ଅକ୍ଷମ ହେଉଅଛୁଁ । ବିନା ପ୍ରମାଣରେ ଏପରି ଏକପାଖିଆ ବିଚାର କରିବାର ଦେଖି ମହାଧନ୍ଦାରେ ପଡି ଅଛୁଁ ଏବଂ ଏହି କଥା ମନରେ ଉଦୟ ହେଉଅଛି କି ବକ୍ତା କହି ପାରନ୍ତି ବୋଲି କି ଯାହା ଇଚ୍ଛା ତାହା କହି ଯିବେ । ଆମ୍ଭେମାନେ ସ୍ୱୀକାର କରୁଁ କି ସମସ୍ତଙ୍କର ମନ ଏପରି ଦୃଢ ନୁହଇ କି ଯାହା ବିଶ୍ୱାସ କରିବେ ତାହା କାର୍ଯ୍ୟରେ ଦେଖାଇବେ ମାତ୍ର ଏହା ବୋଲି ଦୁର୍ବଳତାକୁ କପଟତା କିମ୍ବା ସ୍ୱେଚ୍ଛାଚାରିତାକୁ ସରଳତା ବୋଲିବା କି ଯୁକ୍ତିସିଦ୍ଧ ହେବ ? ବାସ୍ତବରେ ଆମ୍ଭେମାନେ ବିଶ୍ୱାସ କରୁଁ କି ଯେପରିମାଣରେ ଶିକ୍ଷାର ଉନ୍ନତି ହେଉଅଛି ସେପରିମାଣରେ କପଟତା ଅନ୍ତର୍ଦ୍ଧାନ ହେଉଅଛି । ଅତଏବ ଶିକ୍ଷିତ ସମ୍ପ୍ରଦାୟ ପ୍ରତି କପଟତାର ଅଭିଯୋଗ ଆମ୍ଭେମାନେ ସହିପାରୁ ନାହୁଁ ।

*ଭା/୧୮ଗ, ସଂ୩୫ଖ୍ୟା, ୧/୯/୧୮୮୩*

## ଓଡିୟା ଗଜେଟର ସଂଶୋଧନୀ ।

ବଙ୍ଗଦେଶୀୟ ପ୍ରଜାସତ୍ୱ ବିଷୟକ ପାଣ୍ଡୁଲିପିର ଯେଉଁ ଅନୁବାଦ ଓଡିୟାଗଜେଟରେ ଛାପା ହୋଇଅଛି ତହିଁରେ କେତେଗୁଡିଏ ଗୁରୁତର ଭ୍ରମ ଘଟିବା ଏବଂ ତଦ୍ୱାରା ଅନର୍ଥ ଜାତ ହେବାର ଆମ୍ଭେମାନେ ପାଠକମାନଙ୍କୁ ଜଣାଇଥିଲୁଁ ଏବଂ ତହିଁର ଯୋଡିଏ ଉଦାହରଣ ଦେଖାଇ ଦେଇଥିଲୁଁ ବଡ଼ ସୁଖର ବିଷୟ ଯେ ଆମ୍ଭମାନଙ୍କର ନୂତନ ଅନୁବାଦକ କେବଳ ଉକ୍ତ ଦୁଇ ଭ୍ରମ ଦେଖି ନିଶ୍ଚିନ୍ତ ନ ରହି ସେହି ପାଣ୍ଡୁଲିପି ସମ୍ପର୍କରେ ଏକ ଦୀର୍ଘ ଭ୍ରମ

ସଂଶୋଧନୀ ଗତ ମାସ ତା୩୦ରିଖର ଓଡିଆ ଗଜେଟରେ ପ୍ରକାଶ କରିଅଛନ୍ତି । ଅବଶ୍ୟ ଭ୍ରମ ହେବା ସ୍ୱାଭାବିକ ଏବଂ ଭ୍ରମ ହୋଇଥିବାର ଜାଣିଲା ମାତ୍ରକେ ଯେ ସଂଶୋଧନ ପକ୍ଷରେ ଅଗ୍ରସର ହୁଅଇ ସେ ପ୍ରଶଂସନୀୟ । ଦୀର୍ଘ ସଂଶୋଧନୀରୁ ସ୍ପଷ୍ଟ ଜଣାଯାଏ ଯେ ଚତୁର୍ଭୁଜ ବାବୁ ଭ୍ରମ ଘଟିବାର କଥା ଶୁଣି ସମୁଦାୟ ପାଣ୍ଡୁଲିପିକି ପାଠକରି ଆପଣା ସାଧମତେ ତହିଁର ଭ୍ରମମାନ ପରିହାର କରିଅଛନ୍ତି ମାତ୍ର କର୍ତ୍ତବ୍ୟ ଅନୁରୋଧରେ ଆମ୍ଭେମାନେ ବାଧ ହୋଇ କହୁଅଛୁଁ ଯେ ସେ ତହିଁରେ କୃତକାର୍ଯ୍ୟତା ଲାଭ କରି ନାହାନ୍ତି ଏବଂ ଏହି ଭ୍ରମ ସଂଶୋଧନର ହେତୁବାଦରେ ସେ ଯାହା ଲେଖିଅଛନ୍ତି କି "ଏହି ପାଣ୍ଡୁଲିପିରେ କେତେଗୋଟି କ୍ଷୁଦ୍ର କ୍ଷୁଦ୍ର ଭ୍ରମ ନାନାବିଧ କାରଣ ବଶରୁ ରହି ଯାଇଅଛି ତାହା ସବୁ ବିଶେଷରୂପେ ପ୍ରସ୍ତାବିତ ଆଇନର ପ୍ରକୃତ ମର୍ମର ବିରୋଧୀ ନୋହିଲେ ମଧ ଆମ୍ଭେ ସେଥି ନିମିତ୍ତ ଦୁଃଖିତ ଅଛୁଁ " ଏଥିରୁ ଅନୁମାନ ହେଉଅଛି କି ଆଇନର ପ୍ରକୃତ ମର୍ମ ଗ୍ରହଣ କରିବାକୁ ସକ୍ଷମ ହୋଇ ନାହାନ୍ତି ସୁତରାଂ ଏହି ଅନୁବାଦରେ ଯେ ସମସ୍ତ ଭ୍ରମ ଘଟି ଅଛି ତହିଁର ଗୁରୁତ୍ୱ କଳଣା କରି ପାରି ନାହାନ୍ତି କିନ୍ତୁ ଏକଦିଗରେ ଭ୍ରମ ସମସ୍ତଙ୍କୁ ଅତି ସାମାନ୍ୟ ଏବଂ ଅବିରୋଧୀ ବୋଲିବା ଏବଂ ଅନ୍ୟଦିଗରେ ତହିଁ ସକାଶେ ଦୁଃଖ ପ୍ରକାଶ କରିବା ଯେ କିପରି ହେଲା ଏହା ସହଜରେ ବୁଝାଯାଉ ନାହିଁ । ଆଦୌ ଗବର୍ଣ୍ଣମେଣ୍ଟ ଗଜେଟ ଯେ ଅନୁବାଦକଙ୍କର ଦୁଃଖ ପ୍ରକାଶ କରିବାର ଯୋଗ୍ୟ ସ୍ଥଳ ଏହା ଆମ୍ଭେମାନେ ବିବେଚନା କରି ପାରୁ ନାହୁଁ ଏବଂ ପ୍ରକାଶ୍ୟରେ ସଂଶୋଧନୀର ଦୀର୍ଘତା ତାହାଙ୍କ ଦୁଃଖ ପ୍ରକାଶର ଏକ ମାତ୍ର କାରଣ ବୋଲି ଜଣାଯାଏ ।

ଅନୁବାଦକ ଭ୍ରମ ସଂଶୋଧନର ଦୀର୍ଘ ତାଲିକାଟିଏ ଦେଇ ଅଛନ୍ତି ସତ୍ୟ ଏବଂ ଯେବେ ପାଣ୍ଡୁଲିପିରେ ଏତିକି ମାତ୍ର ଭ୍ରମ ଥାନ୍ତା ତେବେ ତଦ୍ୱାରା ପ୍ରକୃତ ମର୍ମର ହାନି ହୋଇ ନ ଥିବାର ସେ ଯାହା ବୋଲନ୍ତି ଅନେକାଂଶରେ ଯୁକ୍ତିଯୁକ୍ତ ହୁଅନ୍ତା । ବାସ୍ତବରେ ତାହା ନୁହଇ ଆମ୍ଭେମାନେ ତଳଲିଖିତ ଉଦାହରଣମାନଙ୍କଦ୍ୱାରା ଦେଖାଇବୁଁ ଯେ ତାହାଙ୍କର ଭ୍ରମ ସଂଶୋଧନ ସକଳ ସ୍ଥଳରେ ସାର୍ଥକ ହୋଇ ନାହିଁ ଏବଂ କେତେଗୁଡିଏ ଗୁରୁତର ଭ୍ରମ ପ୍ରତି ଆଦୌ ତାହାଙ୍କର ଦୃଷ୍ଟି ପଡି ନାହିଁ ।

ଭ୍ରମ ସଂଶୋଧନର ଏକ ସ୍ଥାନରେ ଲେଖା ଅଛି ୨ଧାରା ୩ ପ୍ରକରଣ 'ବିଧାନମାନଙ୍କ' ବଦଳରେ 'ବିଧାନ ବା ଦଲୀଲର' ପାଠ କରିବ ।

ଏଥକୁ ୨ଧାରା ୩ପ୍ରକରଣ ତଳଲିଖିତ ରୂପ ଅଟଇ ଯଥା-

'ପ୍ରସ୍ତାବିତ ଆଇନକାରୀ ହେବାରୁ ଯେଉଁ ଯେଉଁ ବିଧାନମାନ ରହିତ ହେବ, ପ୍ରସ୍ତାବିତ ଆଇନର ସେହି ସେହି ବିଷୟକ ଅଂଶ ରହିତ ବିଧାନମାନଙ୍କର ସ୍ଥାନ ଅଧିକାର କରିବ'

'ବିଧାନମାନଙ୍କ'ସ୍ଥାନରେ 'ବିଧାନ ବା ଦଲୀଲର' ପାଠ କଲେ ବିଶେଷ କି ଅର୍ଥ ହେଲା ପାଠକମାନେ ବୁଝି ପାରନ୍ତି କି ? ଏହି ପ୍ରକରଣର ପ୍ରଥମରେ 'ଦଲୀଲ' ଶବ୍ଦର ଉଲ୍ଲେଖ ଆଦୌ ନାହିଁ ତେବେ ଶେଷରେ ତହିଁର ପ୍ରସଙ୍ଗ କିପରି ଆସିବ । ପୁଣି ରହିତ ଦଲୀଲର ସ୍ଥାନକୁ ଆଇନର ବିଧାନ କିପରି ଅଧିକାର କରିବ ? ସୁତରାଂ ଏହି ବିଧାନର କିଛି ଅର୍ଥ ହେଲା ନାହିଁ । ପ୍ରକୃତ କଥା ଏହିକି ଇଂରାଜୀରେ ଏହି ଧାରାର ମର୍ମ ଯେପରି ଅଟଇ ଓଡିଆରେ ଆଦୌ ସେପରି ହୋଇ ନାହିଁ ।

ଆଇନର ୩ଧାରା ୫ପ୍ରକରଣରେ ଏହିପରି ଲେଖା ଅଛି ଯଥା-

'ମାତ୍ର ଉକ୍ତ ଜମି ମଧରେ ଯଦ୍ୟପି ବାସ୍ତୁ ବା ଘରଡିହ ଥାଏ, ତେବେ ତାହାର ଦଖଲକାରୀ କି ମଧ ବାସ୍ତୁ ଭୂମିର ରୟତ ବୋଲା ଯିବ '

ଏଥିରେ 'ତାହାର ମଧ' ବଦଳରେ 'ସେହି ବ୍ୟକ୍ତିକି ଉକ୍ତ' ପାଠ କରିବ ବୋଲି ସଂଶୋଧନୀରେ ଲେଖା ଅଛି । ଏଥକୁ 'ତାହାର ମଧ' ଏହି ଦୁଇଶବ୍ଦ ଏକତ୍ରେ ଆଦୌ ଲେଖା ହୋଇ ନାହିଁ ଏବଂ ଏହି କେତେ ଧାଡିରେ ଯେଉଁ ଅନର୍ଥ ଘଟୁଥିବାର ଆମ୍ଭେମାନେ ପୂର୍ବେ ପ୍ରକାଶ କରିଅଛୁଁ ତହିଁପ୍ରତି ଅନୁବାଦକଙ୍କର ଦୃଷ୍ଟି ଆଦୌ ଯାଇ ନାହିଁ ।

ଉପର ଲିଖିତ ଦୁଇ ଉଦାହରଣରୁ ପାଠକମାନେ ଦେଖିବେ ଯେ ଯେଉଁଠାରେ ଭ୍ରମ ସଂଶୋଧନର ଚେଷ୍ଟା ହୋଇଅଛି ସେଠାରେ ପ୍ରକୃତ ଭ୍ରମ ସଂଶୋଧିତ ହୋଇ ନାହିଁ । ପରିଶେଷରେ ଯେ ସମସ୍ତ ଭ୍ରମ ପ୍ରତି ଆଦୌ ଦୃଷ୍ଟି ପଡି ନାହିଁ ତହିଁର ଗୋଟିଏ ଉଦାହରଣ ଦେଉଅଛୁଁ ଯଥା-

ପାଣ୍ଡୁଲିପିର ୧୩ଧାରା

"୧୨ଧାରା ଅନୁସାରେ ଯେତେବେଳେ କୌଣସି ରେଜିଷ୍ଟରୀର ଅନୁମୋଦନ ସ୍ଥାନୀୟ ଗବର୍ଣ୍ଣମେଣ୍ଟଙ୍କଦ୍ୱାରା ପ୍ରକାଶିତ ହୋଇ ଯିବ ତଦୁତ୍ତାରୁ ଉକ୍ତ ରେଜିଷ୍ଟରୀଭୁକ୍ତ ସମସ୍ତ ଜମି ଅନ୍ୟାନ୍ୟ ଧାରା ମର୍ମର କୌଣସିରୂପେ ବିପରୀତ ହେଲେ ମଧ୍ୟ ଖମାରଜମି ବୋଲି ଗୃହୀତ ହେବ, ଏବଂ ତହିଁ ପାଖରେ ରେଜିଷ୍ଟରୀଭୁକ୍ତ ଅନ୍ୟାନ୍ୟ ସମସ୍ତ ଜମି ଏହି ଆଇନ ଲିଖିତ ଅନ୍ୟ କୌଣସି ଧାରାର ମର୍ମର ବିପରୀତ ହେଲେ ମଧ୍ୟ ରଇତୀ ଜମି ବୋଲି ଗୃହୀତ ହେବ ।"

ଯେବେ ରେଜଷ୍ଟରୀଭୁକ୍ତ ସମସ୍ତ ଜମି ଖମାର ଜମି ବୋଲି ଗୃହୀତ ହେବ ତେବେ ତହିଁ ପାଖରେ ରେଜଷ୍ଟରୀଭୁକ୍ତ ଅନ୍ୟାନ୍ୟ ଜମି କିପରି ସମ୍ଭବିବ ଯେ ସେ ସମସ୍ତକୁ ରଇତୀ ବୋଲାଯିବ ? ବାସ୍ତବରେ ଏ ଧାରାର ପ୍ରକୃତ ଅର୍ଥ ବୁଝାଯାଉ ନାହିଁ କିମ୍ବା ଏହାଦ୍ୱାରା ଖମାର ଓ ରଇତୀ ଜମିର ପ୍ରଭେଦ ହେଉ ନାହିଁ । ଆଇନର ପ୍ରକୃତ ମର୍ମ ଏହିକି ଯେଉଁ ସ୍ଥାନରେ ଖମାର ଜମିର ରେଜଷ୍ଟରୀ ପ୍ରସ୍ତୁତ ହେବ ସେହି ସ୍ଥାନରେ ରେଜଷ୍ଟରୀଭୁକ୍ତ ଜମି ଛଡା ଅନ୍ୟାନ୍ୟ ସମସ୍ତ ଜମି ରଇତୀ ଜମି ବୋଲି ଗଣ୍ୟ ହେବ । 'ତହିଁ ପାଖରେ ରେଜଷ୍ଟରୀଭୁକ୍ତ' ବଦଳରେ ଯେବେ 'ସେହି ସ୍ଥାନର ରେଜଷ୍ଟରୀ ଭୁକ୍ତ ଜମି ଛଡା' ପାଠ କରାଯାଏ ତେବେ ଏହି ଧାରାର ପ୍ରକୃତ ମର୍ମ ପ୍ରକାଶ ପାଇବ ।

ଆମ୍ଭେମାନେ ଭରସା କରୁଁ ଯେ ଉପରଲିଖିତ ବିଷୟମାନ ପାଠକରି ଅନୁବାଦକ ମହାଶୟ ହୃଦୟଙ୍ଗମ କରି ପାରିବେ ଯେ ଭ୍ରମ ସଂଶୋଧନ ଉତ୍ତାରୁ ମଧ୍ୟ ଏହି ପାଣ୍ଡୁଲିପିର ଅନୁବାଦରେ ଅନେକ ଗୁରୁତର ଭ୍ରମ ରହିଅଛି ଏବଂ ଏହାକୁ ଆପାଦମସ୍ତକ ପାଠ ଏବଂ ସକଳ ଭ୍ରମ ସଂଶୋଧନ ପୂର୍ବକ ଅନ୍ୟ ପାଣ୍ଡୁଲିପି ପ୍ରକାଶ ନ କଲେ ଉପଯୁକ୍ତ ପ୍ରତୀକାର ହେବ ନାହିଁ ।

ଅସମ୍ପୂର୍ଣ୍ଣ ଏବଂ ଅଶୁଦ୍ଧ ଭ୍ରମ ସଂଶୋଧନ ଦେଖିଲୁଁ ବୋଲି ଆମ୍ଭେମାନେ ପୁନର୍ବାର ଏହି ସମାଲୋଚନାରେ ପ୍ରବୃତ୍ତ ହେଲୁଁ ତଥାଚ ଅବକାଶ ଏବଂ ସ୍ଥାନର ଅଭାବ ହେତୁ ଏହାକୁ ସାଧ୍ୟମତେ ସଂକ୍ଷେପ କରିଅଛୁଁ ।

*ଭା୧୮ଗ,ସଂ୩୬ଖ୍ୟା,୮।୯।୧୮୮୩*

## [ସେବକ ମାସିକ ପତ୍ରିକା]

ଆମ୍ଭେମାନେ କୃତଜ୍ଞତା ସହିତ ସ୍ୱୀକାର କରୁ ଅଛୁଁ କି ସେବକନାମରେ ଖଣ୍ଡିଏ ମାସିକ ପତ୍ରର ପ୍ରଥମ ସଂଖ୍ୟା ଉପହାର ପାଇ ଅଛୁ । ଏହାର କଳେବର ପେ ୮ଜୀ ଡିମାଇ ୧୮ପୃଷ୍ଠା, ଏହି ନଗରସ୍ଥ ଉତ୍କଳହିତୈଷିଣୀ ଯନ୍ତ୍ରରେ ମୁଦ୍ରିତ ଏବଂ ବାବୁ ଭାବଗ୍ରାହୀ ଦାସଙ୍କଦ୍ୱାରା ସମ୍ପାଦିତ ଅଟଇ । ପତ୍ର ଖଣ୍ଡିକ ବାବୁ ଚତୁର୍ଭୁଜ ପଟ୍ଟନାୟକଙ୍କ ଯତ୍ନରେ ବାହାରିଅଛି ଏବଂ ଏହାର ଶିରୋନାମାରୁ ପ୍ରକାଶ ଯେ ହରିନାମ ପ୍ରଚାର କରିବା ଏହାର ପ୍ରଧାନ ଉଦ୍ଦେଶ୍ୟ ଅଟଇ । ଏଥିରେ ବ୍ରାହ୍ମଧର୍ମ ପ୍ରଚାର ବିଷୟକ ନାନା ସମ୍ବାଦ ଏବଂ ଆରମ୍ଭରେ ନବବିଧାନ ଭାବର ପ୍ରାର୍ଥନା ତହିଁର ବିଶେଷ ପରିଚୟ ଦେଉଅଛି । କିନ୍ତୁ ଧର୍ମ ପ୍ରଚାର ସଙ୍ଗେ ସଙ୍ଗେ ଏଥିରେ ସାହିତ୍ୟ ବିଜ୍ଞାନ ଶିକ୍ଷାଦି ବିଷୟକ ପ୍ରବନ୍ଧମାନ ସନ୍ନିବିଷ୍ଟ ହେବ ବୋଲି ଭୂମିକାରେ ଲେଖାଅଛି ସୁତରାଂ ଏହା ସର୍ବସାଧାରଣଙ୍କର ପ୍ରୟୋଜନୀୟ ହେବ । ଆଜି କାଲି ବଙ୍ଗଦେଶରେ ସମ୍ବାଦ ଓ ସାମୟିକ ପତ୍ରର ଯେପରି ବୃଦ୍ଧି ଦେଖାଯାଏ ତହିଁରେ ଉତ୍କଳ ପକ୍ଷରେ ତୁନି ହୋଇ ରହିବା ଅଶୋଭନୀୟ ହୁଅନ୍ତା ଉପଯୁକ୍ତ ସମୟରେ ଏ ପତ୍ର ବାହାରି ଅଛି ଏବଂ ଯେବେ ସୁବିଚାର ପୂର୍ବକ ଚଳିତ ହେବ ତେବେ ଅବଶ୍ୟ ଆଦରର ସାମଗ୍ରୀ ହେବ । ଆମ୍ଭମାନଙ୍କ ବିବେଚନାରେ ପ୍ରଥମ ସଂଖ୍ୟାରେ ନୂତନ ବିଷୟ ସବୁ ଦେବାର ଉଚିତ ଥିଲା । ଏଥିର ଅଧିକାଂଶ ପୁରୁଣା କଥାରେ ପୂର୍ଣ୍ଣ ହୋଇଅଛି କିନ୍ତୁ ଲେଖା ମନ୍ଦ ନୁହଇ ଏ ପକ୍ଷେ ଭରସା ହୁଅଇ ନୂତନ ନୂତନ ପ୍ରବନ୍ଧମାନ ବାହାରିବ ଯାହା ହେଉ ଆମ୍ଭେମାନେ ଆଶା କରୁଁ କି ଏ ପତ୍ରର ଅଧିକାରିମାନେ ଦୃଢଭାବରେ ଏବଂ ଯଥା ନିୟମରେ ଏହାକୁ ଚଳାଇବାକୁ ପ୍ରସ୍ତୁତ ହେବେ ଯେମନ୍ତ କି ଗ୍ରାହକ ହେବାପାଇଁ ଲୋକଙ୍କର ଆଗ୍ରହ ବଢିବ । ଅନ୍ୟଥା ଉତ୍କଳରେ କୌଣସି ସାମୟିକ ପତ୍ର ଦୀର୍ଘଜୀବୀ ହେବା କଠିନ ।

*ଭା୧୮ଗ,ସଂ୩୬ଖ୍ୟା,୮।୯।୧୮୮୩*

## ଓଡିଆ ଓ ଇଲବର୍ଟ ବିଲ ।

ଉପରୋକ୍ତ ଶିରୋନାମ ନିର୍ଦ୍ଦେଶ କରି ଜଣେ ଲୋକ ବୋଧ ହୁଏ ଜଣେ ଇଂରାଜ W.st. J.D. ସ୍ୱାକ୍ଷରରେ ଏକ ପତ୍ର ଡେଲିନିୟୁସକୁ ଲେଖିଅଛନ୍ତି । ଚଳିତମାସ ତା ୩୧ ରିଖର ଡେଲିନିୟୁସରେ ତାହା ସ୍ଥାନ ପାଇଅଛି । ଇଲବର୍ଟବିଲ ଭାରତ ବ୍ୟବସ୍ଥାପକ ସଭାରେ ଆଗତ ହେଲା ଦିନରୁ କ୍ଷୁଦ୍ରମନା ଭାରତୀୟ ଇଂରାଜମାନେ ନିଜ ସ୍ୱଭାବର ନୀଚତା ସମ୍ପାଦନ କରି ଯେରୂପ ତୀବ୍ର ଭାବରେ ଦେଶୀୟ ଲୋକଙ୍କର ଆଚରଣାଦି ସମାଲୋଚନା କରି ସେମାନଙ୍କୁ ଅଜସ୍ର ଭାବରେ ଗାଳି ମନ୍ଦ ଦେଇ ଆସୁଅଛନ୍ତି ତାହା କାହାରିକି ଅବିଦିତ ନାହିଁ । ପରାଧୀନ ଭାରତବାସୀ ତାହା ବିଶେଷ ସହିଷ୍ଣୁତା ସହିତରେ ସହ୍ୟ କରି ଯେରୂପ ଭାବରେ ଆପଣାର ମନୋସଂଯମତା ଦେଖାଇ ଆସିଅଛନ୍ତି ତାହା ଅତୀବ ପ୍ରଶଂସନୀୟ । ବଙ୍ଗଦେଶୀୟ ଲୋକେ ଓଡିୟାଙ୍କଠାରୁ ଯେ ଅନେକାଂଶରେ ସଭ୍ୟ ଓ ଉନ୍ନତ ହୋଇଅଛନ୍ତି ତାହା କେହି ମନା କରି ପାରିବେ ନାହିଁ । ଯେତେବେଳେ ସେମାନେ ଅଜସ୍ର ନିନ୍ଦାର ଭାଗୀ ହେଲେ ତେତେବେଳେ ଓଡିୟାମାନେ ଯେ କେତେ ନିନ୍ଦାର ଭାଗୀ ତାହା କହି ହେବ ନାହିଁ । ମାତ୍ର ଭାଗ୍ୟବଳକୁ ଏତେ ଦିନ ଗାଳି ଖିଆଯାଇ ନ ଥିଲା । ଅସହନୀୟ ହିଂସା ଭାବରୁ ହେଉ ଅଥବା ସ୍ୱଭାବସିଦ୍ଧ ମନ୍ଦଗୁଣରୁ ହେଉ ଉକ୍ତ ପତ୍ରପ୍ରେରକ ଦୁଇ ଚାରି କଥା ନ କହି ରହି ପାରିଲେ ନାହିଁ । ଗୀତାଦ୍ୟରେ ସେ ଗାଇଅଛନ୍ତି ଯେ " ଆମ୍ଭେ କେତେକ ଦିନ କଟକରେ ବାସ ଓ ମଫସଲରେ ଭ୍ରମଣ କରି ସେଠା ଲୋକମାନଙ୍କ ଆଚରଣ ସମ୍ବନ୍ଧରେ ଉତ୍ତମ ମତ ସ୍ଥିର କରିଅଛୁଁ ଯେ ତହିଁ ଉପରେ ନିର୍ଭର କରା ଯାଇ ପାରେ ।" ସେ କହନ୍ତି କି "ଓଡିଆମାନେ ଯେ ମନୁଷ୍ୟ ଜାତିର ଏକ ନିକୃଷ୍ଟ ଓ ନୀଚ ଶ୍ରେଣୀ ଭୁକ୍ତ ତହିଁରେ ଆଉ ଅନ୍ୟ ମତ ନାହିଁ । ସେମାନଙ୍କର ସତ୍ୟତା କେବେହେଁ ବିଶ୍ୱାସ କରାଯାଇ ନ ପାରେ ଓ ତାହା ଅସୀମ ସୀମା ଅତିକ୍ରମ କରିଅଛି । ଯେଉଁମାନେ କେବେ କୌଣସି କାର୍ଯ୍ୟ ବଶରୁ ତାଙ୍କ ସଙ୍ଗେ ମିଶିଅଛନ୍ତି ସେମାନେ ଏହି ମତରେ ପହୁଞ୍ଚି ଅଛନ୍ତି ଏବଂ ଆମ୍ଭେ ଦୃଢରୂପେ କହି ପାରୁଁ ଯେ ସେମାନେ ଆପଣା ଦେଶରେ ଏଥିଁ ଦଶଗୁଣ ଅଧିକ ଅଟନ୍ତି । ଇଂରାଜମାନେ ତାଙ୍କ ସଙ୍ଗେ କାରବାର କଲେ ତାଙ୍କର କାପୁରୁଷତ୍ୱ ଓ ଅନ୍ୟାନ୍ୟ ମନ୍ଦଗୁଣମାନ ବାହାରକୁ ପ୍ରକାଶ ପାଏ । ଦିନେ କଟକରେ ଜଣେ ବନ୍ଧୁଙ୍କ ସଙ୍ଗେ ଖାଉଥିବା ସମୟରେ ତାଙ୍କଠାକୁ ଆସୁଥିବା ମୋକଦ୍ଦମାନଙ୍କର କଥା କହୁଁ କହୁଁ ସେ କହିଲେ ଯେ କଠୋର ଭାବରେ ସେ କାର୍ଯ୍ୟ ଚଳାଉ ନ ଥିଲେ ଓଡିଆମାନେ ଆପଣାର ଅଶେଷ ମିଥ୍ୟାକଥା ଓ ପଂଝା ପଂଝା କୃତ୍ରିମ ସାକ୍ଷିଙ୍କ ସାହାଯ୍ୟରେ ଦେଶୀୟ ମେଜଷ୍ଟରଙ୍କ ପ୍ରାୟ ତାଙ୍କୁ ଠକାଇବା କିଛି ବିଚିତ୍ର ନୁହେ " ପୁଣି କହିଅଛନ୍ତି ଯେ "ସୃଷ୍ଟିର ଆଦ୍ୟ କାଳରୁ ପରିଚୟ ନ ଥିବା ସାକ୍ଷିମାନଙ୍କୁ ମଧ ଶିଖାଇବାରେ ଓଡିଆମାନଙ୍କର ଏକ ବିଶେଷ ଗୁଣ ଓ ଚତୁରି ଅଛି" ଇତ୍ୟାଦି । ଆହା ! ଏପରି ଅସାଧାରଣ ବିଚକ୍ଷଣ ହାକିମଙ୍କର ନାମ ପତ୍ରପ୍ରେରକ ଯାହା ଲୁଚାଇ ରଖିଲେ । ପାଠକେ ଏହାଙ୍କୁ ଚିହ୍ନି ରଖ । ସନ ୧୮୦୩ ମସିହାରେ ଓଡିଶା ଜୟ ହେଲା ତାରିଖରୁ ଆଜିକି ୮୦ବର୍ଷ ହେଲା ଇଂରାଜମାନେ ଓଡିଆଙ୍କ ସଙ୍ଗେ କାରବାର କରୁଅଛନ୍ତି କିନ୍ତୁ ଏ ଅଶୀତି ବର୍ଷ କାଳଉତାରୁ ଓଡିଆଙ୍କ ସମ୍ବନ୍ଧରେ ଇଂରାଜଙ୍କ ଏହିପରି ମତ । ଏପରି ବିଦ୍ୟାବାଗୀଶ ଆଉ ଦେଖା ଯାଇ ନାହିଁ ଭାରତବର୍ଷରେ ବହୁକାଳ ହାକିମି କରି ସକଳ ସ୍ଥାନର ବହୁଦର୍ଶିତା ଲାଭ କରିଅଛନ୍ତି ପରା । ଓଡିଆମାନେ ଅବଧି ପ୍ରକୃତ ଉନ୍ନତାବସ୍ଥାକୁ ଲଭି ନାହାନ୍ତି ଏହା ପ୍ରକୃତ କଥା । କିନ୍ତୁ ସଭ୍ୟ ଓ ଉନ୍ନତ ଇଂଲାଣ୍ଡରେ ଯେ ଅବଧି ଏପରି ମୂର୍ଖ ଓ ନୀଚ ପ୍ରକୃତିର ଲୋକ ଅଛନ୍ତି ଏତିକି ବିଚିତ୍ର ବୋଧ ହେଉଅଛି । ହେଉ, ଏହପରି ଗାଳି ଖାଉଁ ଖାଉଁ ଉତ୍କଳୀୟ ଭ୍ରାତାମାନେ ଉନ୍ନତି ଶିଖରାରୋହଣ କରିବାକୁ ସମଧିକ ପ୍ରୟାସୀ ଓ ଉତ୍ସାହୀ ହେଉନ୍ତୁ ଏହିତ ଆମ୍ଭମାନଙ୍କର ଏକାନ୍ତ ବାସନା ଏବଂ ଏହା ହେଲେ କାଳେ ସେହି ଇଂରାଜମାନେ ଯେ ପ୍ରଶଂସାବାଦ କରିବାକୁ ବାଧ ହେବେ ତହିଁରେ ସନ୍ଦେହ ନାହିଁ ।

*ଭା/୧୮ଗ,ସଂ୩୯ଖ୍ୟା,୨୯/୯/୧୮୮୩*

# ପ୍ରାପ୍ତ ପତ୍ର ।
## [ଓଡିଆ ଇଲବର୍ଟବିଲ]

ମହାଶୟ !

ଚଳିତ ମାସ ତା୨୧ରିଖ ଇଣ୍ଡିୟାନ ଡେଲିନିୟୁସ ପତ୍ରିକାରେ W.St. J.D. ସ୍ୱାକ୍ଷରିତ ଜଣେ ପତ୍ରପ୍ରେରକ "ଓଡିଆ ଓ ଇଲବର୍ଟବିଲ" ଶିର୍ଷାଙ୍କିତ ଏକ ପ୍ରସ୍ତାବ ଲେଖିଅଛନ୍ତି । ପ୍ରସ୍ତାବ ପାଠ କରିବା ପୂର୍ବରୁ ପ୍ରସ୍ତାବ ଲେଖକଙ୍କ ନାମ ଦେଖିବାକୁ ଆଗ୍ରହ ବଢ଼ିଲା । W.St. ଦେଖି ଜଣାଗଲା, ପ୍ରସ୍ତାବ ଲେଖକ ଇଂରାଜ ଓ କେହି ମହତମନା ପାଦରି ପେଗ ସାହେବ ପ୍ରଭୃତି ମହାତ୍ମାଙ୍କ ତୁଲ୍ୟ ଓଡିଆମାନଙ୍କର ବନ୍ଧୁ ହେବ । ନାମ ପବିତ୍ର, ପ୍ରସ୍ତାବ ପାହାଡତୋଡ଼ । ପ୍ରସ୍ତାବଟି ଆଗ୍ରହ ଓ ମନୋଯୋଗ ସହିତ ପଢ଼ିଲୁଁ । ଲେଖକ, "ଘାସ କାଟିବାକୁ ଯାଇ ଦଳବିସୋୟି" ପଣ ଜାହିର କରିଅଛନ୍ତି । ଇଲବର୍ଟବିଲ ପ୍ରଶ୍ନ ତୋଳି ଓଡିଆମାନଙ୍କୁ ନୀଚଜାତି, ଭୀରୁ , ମିଥ୍ୟାବାଦୀ ଇତ୍ୟାଦି କୁବାକ୍ୟ କହି ଆପଣାର କୁରୁଚି ଓ ଲଘୁମନର ପରିଚୟ ଦେଇଅଛନ୍ତି ।

ଜଣେ ବିଖ୍ୟାତ "Practical Phronologist" ପଣ୍ଡିତ ସହିତ ଅଳ୍ପ ଦିନ ପୂର୍ବରେ ଏହି କଲିକତା ନଗରୀରେ ସାକ୍ଷାତ ହୋଇଥିଲା । ସେ କଥା ପ୍ରସଙ୍ଗରେ କହିଲେ ଓଡିଆମାନେ ଅନାର୍ଯ୍ୟ ନୁହନ୍ତି । ସେମାନଙ୍କର ମସ୍ତକ ଓ ସମସ୍ତ ଆକୃତିର ଗଠଣ ଦେଖିଲେ ସେମାନଙ୍କୁ ଉଚ୍ଚ ଆର୍ଯ୍ୟକୁଳୋଦ୍ଭବ ବୋଲି ସ୍ପଷ୍ଟ ପରିଚୟ ମିଳେ । ସେମାନଙ୍କର ମସ୍ତିଷ୍କ ଆକର୍ଷିତ ଓ ଅବସ୍ଥା ଅନୁନ୍ନତ ଥିବାରୁ ସେମାନେ ଆର୍ଯ୍ୟସୋପାନରୁ ଉହ୍ଲାଇ ଯିବାର ଅନୁମାନ ହେଉ ଅଛି ।

ବାସ୍ତବିକ ଓଡିଶାର ଅଭାବ ବିସ୍ତର ।

୧। ରେଲବାଟ ଓଡିଶା ଭାଗ୍ୟରେ ଘଟିଲା ନାହିଁ ।

୨। ନାଳ, ଖଣ୍ଡେ ପର୍ବତ ମୂଳରେ, ଖଣ୍ଡେ ସମୁଦ୍ର କୂଳରେ । କାହାରି ସହିତ କାହାରି ଯୋଗ ନାହିଁ । ବଙ୍ଗଳା ହତା ଅର୍ଥାତ୍ ଭାରତବର୍ଷର ରାଜଧାନୀ ସହିତ ଏହାର ଯୋଗ ସଂଘଟଣ ହୋଇ ନାହିଁ । କଲିକତାଠାରୁ ଓଡିଶାର ଲଙ୍କା ଦ୍ୱୀପର ଦୂରତା ।

୩ । ଶିକ୍ଷା ତଥୈବଚ ।

୪। ଓଡିଶାକୁ ଯେଉଁ ଇଉରୋପୀୟ ହାକିମମାନେ ଯାଆନ୍ତି,ସେମାନଙ୍କ ମଧ୍ୟରୁ ଅଧିକାଂଶ ସାମାନ୍ୟ କୁଳୋଦ୍ଭବ ଯାବତ ବିଲାତର ଅରକଣା । କେହି କେହି ବଡ଼ଲୋକ ପୁଅଙ୍କୁ ଉଚ୍ଚ ପଦରେ ଦେଖାଯାଏ-ମାତ୍ର ସେ ବଙ୍ଗ ରଙ୍ଗଭୂମିକୁ ପଳାଇ ଆସିବାକୁ ପ୍ରତିଦିନ ଗଜେଟକୁ ଅନାଇ ବସିଥାଆନ୍ତି ।

୫। X X X X X X X X X X

୬। ଆଉ କେତେକ ବଙ୍ଗାଳୀ ହାକିମ ଦେଖିଅଛୁଁ । ଯେଉଁମାନେ ଆମଲାମାନଙ୍କ ଗୋସାଇଁ ବାପ । ମିଆଁଜାନ ଯେଉଁମାନଙ୍କର ବସା ଖରଚ ଚଳାଇ ନିଅନ୍ତି ।

୭। କେତେକ ଓଡିଆ ବେଳେ ବେଳେ ବଙ୍ଗଳା ଅନୁକରଣରେ ଝୁଟରେ ଦେଶହିତୈଷିତା ପରିଚ୍ଛଦ ପରିଧାନ କରି "ଦୁଃଖି ଓଡିଆମାନେ" କରୁଣ ସ୍ୱରରେ କ୍ରନ୍ଦନ ଧ୍ୱନି ତୋଳି ଉତ୍କଳ ଆକାଶ ବିଦୀର୍ଣ୍ଣ କରିଦିଅନ୍ତି । କିନ୍ତୁ ସାହେବଙ୍କ ନିଦ୍ରା ଭାଙ୍ଗିବା ଏମାନଙ୍କର ବଡ ଭୟ ! ! !

ଦେଶହିତୈଷିତାରୂପ ନମ୍ର ଆଲଆଲା ଏମାନଙ୍କର ଦେହରୁ ବାହାର କରି ନିଅ ; ଦେଖିବ ଭିତରେ ସ୍ୱାର୍ଥପରତାର ବୋଟାଦାର ସାଟିନ ଜାମା ବକ୍ଷରେ ଭିଡ଼ା । ଏହି ସବୁ ଓଡିଆମାନଙ୍କର ଅନୁନ୍ନତିର ଅନ୍ତରାୟ । ଆପଣଙ୍କୁ ଅନେକ କଥା ଜଣାଇବାର ମାନସ ରହିଲା ।

କଲିକତା — ବଂଶମ୍ବଦ

୨୨।୯।୮୩ — ଜଣେ ଓଡିଆ

*ଭା୧୮ଗ,ସଂ୩୯ଖ୍ୟା,୨୯।୯।୧୮୮୩*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## [ଉତ୍କଳୀୟ ସମ୍ବାଦପତ୍ରମାନଙ୍କର ସମାଲୋଚନା ]

ଗତ ସମ୍ବାଦ ବାହିକାରେ 'କସ୍ୟଚିତ୍ ସ୍ପଷ୍ଟବାଦିନ' ସ୍ୱାକ୍ଷରିତ ଖଣ୍ଡିଏ ପ୍ରେରିତପତ୍ର ବାହାରି ଅଛି । ତହିଁର ଲେଖକ ଅନ୍ୟାନ୍ୟ କଥା ପ୍ରସାଙ୍ଗରେ ଉତ୍କଳୀୟ ସମ୍ବାଦପତ୍ରମାନଙ୍କର ସମାଲୋଚନାରେ ପ୍ରବୃତ୍ତ ହୋଇ ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଅଛନ୍ତି କି "ଓଡିୟା କାଗଜମାନଙ୍କ ମଧ୍ୟରେ ଭାଷା ବିଷୟରେ ବାହିକା ପ୍ରଥମ, ଦୀପିକା ଦ୍ୱିତୀୟ, ପୁରୁଷୋତ୍ତମ ପତ୍ରିକା ତୃତୀୟ ଦର୍ପଣ ବଙ୍ଗଳାରୁ ଅନକୃତ" । ଏଥକୁ ବାହିକାର ସମ୍ପାଦକ ବୋଲନ୍ତି କି "ଦୀପିକାର ଭାଷା ଦ୍ୱିତୀୟ କି ବାହିକାର ଭାଷା ଦ୍ୱିତୀୟ ତାହା ଆମ୍ଭେମାନେ କହି ନ ପାରୁଁ ।" ସମ୍ପାଦକଙ୍କର ଏପରି ଦ୍ୱିଧା ଉପସ୍ଥିତ ହେବାର କୌଣସି ହେତୁ ଆମ୍ଭେମାନେ ବୁଝି ପାରିଲୁଁ ନାହିଁ । ଅନୁମାନ ହୁଅଇ ନମ୍ରତା ଅନୁରୋଧରେ ସେପ୍ରକାର କହି ଅଛନ୍ତି ନୋହିଲେ ବାହିକାର ଭାର ଜଣେ ସ୍ୱଦେଶୀୟ ଉଚ୍ଚଶ୍ରେଣୀର ଶିକ୍ଷିତ ଲୋକଙ୍କଠାରେ ନ୍ୟସ୍ତ ଥିବାରୁ ତହିଁର ଭାଷା ଯେ ଶ୍ରେଷ୍ଠ ହେବ ଏଥିରେ ବିଚିତ୍ର କି ? ପତ୍ରପ୍ରେରକ ଓଡିୟାଗଜେଟକୁ ଛାଡି ଯାଇଅଛନ୍ତି ତହିଁର ସମାଲୋଚନା ଏହି ସଙ୍ଗେ ହୋଇ ଯାଇଥିଲେ ଭଲ ହୋଇଥାନ୍ତା ।

*ଭା୧୮ଗ,ସଂ୪୦ଖ୍ୟା,୬।୧୦।୧୮୮୩*

## କଟକ ଆକାଡେମି ।

ଗତ ଶନିବାର ପ୍ରାତଃକାଳରେ ଏହି ବିଦ୍ୟାଳୟର ଛାତ୍ରମାନଙ୍କୁ ପାରିତୋଷିକ ଦେବା ନିମିତ୍ତ ଏଠା ପ୍ରିଣ୍ଟିଂ କମ୍ପାନିଙ୍କ ଦୋମହଲା ଉପରେ ସଭା ହୋଇଥିଲା । ସଭା ସ୍ଥଳରେ ଦୁଇଜଣ ଇଂରାଜ ଅର୍ଥାତ୍ ଆମ୍ଭମାନଙ୍କର ଦୀର୍ଘ ପରିଚିତ ଡାକ୍ତର ବକଲୀ ସାହେବ ଏବଂ ଇଉରୋପୀୟ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଯଙ୍ଗ ସାହେବ ଏହି ଦୁଇଜଣ ଇଂରାଜ ଏବଂ ଅନେକ ଗୁଡିଏ ଦେଶୀୟ ଭଦ୍ରଲୋକ ଉପସ୍ଥିତ ଥିଲେ । ଡାକ୍ତର ବକଲୀ ସାହେବ ସଭାପତିର ଆସନ ଗ୍ରହଣ ପୂର୍ବକ ସଭାର କାର୍ଯ୍ୟ ଆରମ୍ଭ କଲାରୁ ତାହାଙ୍କ ଆଦେଶାନୁସାରେ ବିଦ୍ୟାଳୟର ସମ୍ପାଦକ ବାବୁ ଭୁବନମୋହନ ଆଚାର୍ଯ୍ୟ ବାର୍ଷିକ ବିଜ୍ଞାପନୀ ପାଠ କଲେ । ତଦୁତ୍ତାରୁ ପୁରସ୍କାର ସ୍ୱରୂପ ପୁସ୍ତକମାନ ସଭାପତି ବାଣ୍ଟିଦେଲେ ଏବଂ ବିଦ୍ୟାଳୟର କାର୍ଯ୍ୟରେ ଆନନ୍ଦ ପ୍ରକାଶ ଏବଂ ପିଲାମାନଙ୍କ ଉତ୍ସାହବର୍ଦ୍ଧନ ଉପଲକ୍ଷରେ ଗୋଟିଏ ବକ୍ତୃତା ପ୍ରଦାନ କଲେ । ତାହାଙ୍କ ଅନୁରୋଧ ମତେ ଯଙ୍ଗ ସାହେବ ମଧ୍ୟ କେତେ ଗୁଡିଏ ନୀତିପୂର୍ଣ୍ଣ ବାକ୍ୟ ଛାତ୍ରମାନଙ୍କୁ କହିଲେ ଏବଂ ତହିଁ ଉତ୍ତାରୁ ସଭାପତିଙ୍କୁ ଧନ୍ୟବାଦ ପ୍ରଦାନ ପୂର୍ବକ ସଭା ଭଙ୍ଗ ହେଲା ।-

ଦୃଢ ସଂକଳ୍ପ ଯତ୍ନ ଓ ଅଧ୍ୟବସାୟଦ୍ୱାରା ସାମାନ୍ୟ ବୀଜରୁ କେମନ୍ତ ବୃହତ୍ ଫଳ ଜାତ ହୋଇ ପାରେ ଏହି ବିଦ୍ୟାଳୟ ତହିଁର ଜୀବନ୍ତ ଉଦାହରଣ ଅଟଇ । ଏଥିର ସ୍ଥାପନକର୍ତ୍ତା ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ କି ଯାହାଙ୍କର ଅକାଳ ମୃତ୍ୟୁ ଅଦ୍ୟାପି ଓଡିଶାବାସିଙ୍କୁ ସନ୍ତାପିତ କରାଉଅଛି ଓଡିଶାର ଜଣେ ପ୍ରକୃତ ବନ୍ଧୁ ଓ ହିତୈଷୀ ଥିଲେ । ତାହାଙ୍କ ଆର୍ଥିକ ଅବସ୍ଥା ଅତି ସାମାନ୍ୟ ଥିଲେହେଁ ନିଜ କାୟିକ ପରିଶ୍ରମ ଏବଂ ସାମାନ୍ୟ ଅର୍ଥ ସାହାଯ୍ୟରେ ସନ ୧୮୭୫ ସାଲରେ ଏହି ବିଦ୍ୟାଳୟକୁ ଅତି ସାମାନ୍ୟରୂପେ ଆରମ୍ଭ କରିଥିଲେ ଏବଂ ଆପେ ଯାହା ଅର୍ଜିବାକୁ ସମର୍ଥ ହେଉଥିଲେ ତହିଁର ଅଧିକାଂଶ ଏହି ବିଦ୍ୟାଳୟରେ ବ୍ୟୟ କରି ସ୍ୱଦେଶୀୟ ସନ୍ତାନମାନଙ୍କର ଅଜ୍ଞାନତିମିର ନାଶ_ପକ୍ଷରେ ସର୍ବଦା ଯତ୍ନବାନ୍ ଥିଲେ । ଏକମାତ୍ର ଧର୍ମର ଅନୁରୋଧରେ ସେ ଏହି ବିଦ୍ୟାଳୟ ସ୍ଥାପନ କରିଥିଲେ ବୋଲି ଯଦ୍ୟପି କି ଈଶ୍ୱର ସାମାନ୍ୟ ମନୁଷ୍ୟର ଅଗୋଚର ଜ୍ଞାନବଳରେ ତାହାଙ୍କୁ ଏହି ପୃଥିବୀରୁ ହରଣ କରି ନେଲେ ତଥାଚ ସେହି ବିଦ୍ୟାଳୟ ଅବଧି ବର୍ତ୍ତମାନ ରହିଅଛି ଏବଂ କ୍ରମଶଃ ଉନ୍ନତ ଅବସ୍ଥାକୁ ଲଭୁଅଛି । ବିଜ୍ଞାପନୀରୁ ଆମ୍ଭେମାନେ ଅବଗତ ହେଲୁଁ ଯେ ସନ ୧୮୮୨ ସାଲ ମାର୍ଚ୍ଚ ମାସ ଶେଷରେ ଏ ବିଦ୍ୟାଳୟରେ ଜ୧୩୨ଣ ଛାତ୍ର ବିଦ୍ୟାଲାଭ କରୁଥିଲେ ଏବଂ ବର୍ଷ ମଧ୍ୟରେ ଆଉ ଜ୩ଣ ଭରତି ହୋଇ ସନ ୧୮୮୩ ସାଲ ମାର୍ଚ୍ଚ ମାସ ଶେଷରେ ଛାତ୍ର ସଂଖ୍ୟା ଜ୧୩୫ଣ ହୋଇଥିଲା । ବର୍ତ୍ତମାନ କେବଳ ଜ୧୦୨ଣ ଛାତ୍ର ଏଠାରେ ଅଧ୍ୟୟନ କରୁଅଛନ୍ତି ଅର୍ଥାତ୍ ଛାତ୍ର ସଂଖ୍ୟା ୩୩ ଊଣା ପଡିଅଛି । ଏପରି ଊଣା ପଡିବାର କାରଣ ବିଦ୍ୟାଳୟର କୌଣସି ତ୍ରୁଟି ନୁହଇ । କେବଳ ଏ ଜିଲ୍ଲା ଏବଂ ନଗରରେ ଏଥି ମଧ୍ୟରେ ଅନେକ

ବିଦ୍ୟାଳୟଫିଟିବା ଏବଂ ବିଶେଷରେ ବାପଟିଷ୍ଟ ପାଦ୍ରିମାନଙ୍କର ନୂତନ ବିଦ୍ୟାଳୟ ଏ ନଗରରେ ସ୍ଥାପିତ ହେବାରୁ ଖ୍ରୀଷ୍ଟିୟାନ ଛାତ୍ରମାନେ ଏଠାରୁ ଉକ୍ତ ବିଦ୍ୟାଳୟକୁ ବାହାରି ଯିବା ହେତୁରୁ ଏହି ନ୍ୟୂନତା ସଂଘଟିତ ହୋଇଅଛି ।

ବିଜ୍ଞାପନୀ ବର୍ଷରେ ଏ ବିଦ୍ୟାଳୟର ଆୟ ତଳଲିଖିତ ପ୍ରକାର ଥିଲା ଯଥା -

| | | |
|---|---|---|
| ସାଧାରଣ ଭେଦା ଓ ଦାନ | ଟ | ୧୦୯ |
| ସରକାରୀ ସାହାଯ୍ୟ ମାସକୁ ୭୦ଟଙ୍କା ଲେଖାଁଏ ନବମ୍ବରଠାରୁ ମାର୍ଚ୍ଚପର୍ଯ୍ୟନ୍ତ | ଟ | ୨୪୦ |
| ଛାତ୍ରଙ୍କଠାରୁ ଆଦାୟ ହେବା ବେତନ ଓ ଅର୍ଥଦଣ୍ଡ | ଟ | ୧୪୦୨ |
| | ଟ | ୧୭୫୧ |

ଏହି ସମସ୍ତ ଆୟ ବର୍ଷ ମଧ୍ୟରେ ଖର୍ଚ୍ଚ ହୋଇ ଯାଇଥିବାରୁ ଛାତ୍ରମାନଙ୍କୁ ପୁରସ୍କାର ଦେବା ନିମିତ୍ତ ଅବଶିଷ୍ଟ କିଛି ଟଙ୍କା ନ ଥିଲା । ମାତ୍ର ଏଠା ସର୍ବସାଧାରଣ ବିଶେଷ ପ୍ରାର୍ଥନାପ୍ରତି ଅନୁକୂଳ ହେବାରୁ ଉକ୍ତ ଅଭାବ ପୂର୍ଣ୍ଣ ହେବାର ଏହି ସଭାରେ ପ୍ରତ୍ୟକ୍ଷ ଦେଖା ଗଲା ।

ବିଜ୍ଞାପନୀରୁ ଜଣାଯାଏ ଯେ ବିଶେଷ କାରଣରୁ ଛାତ୍ରସଂଖ୍ୟା ଆପାତତଃ ଊଣା ପଡିଥିଲେହେଁ ବିଦ୍ୟାଳୟର ଆର୍ଥିକ ଅବସ୍ଥାପୂର୍ବଠାରୁ ଭଲ ହୋଇ ଆସୁଅଛି । ହାରାହାରି ପ୍ରତିଦିନ ଜ୮ ୧ଣ ଛାତ୍ର ଉପସ୍ଥିତ ହେଉଅଛନ୍ତି ଏବଂ ଏମାନଙ୍କ ଶିକ୍ଷା ନିମିତ୍ତ ୮ ଶ୍ରେଣୀ ଫିଟିଅଛି । ଜ୫ଣ ଇଂରାଜୀ ଶିକ୍ଷକ ଏବଂ ଏକଜଣ ପଣ୍ଡିତଦ୍ୱାରା ଶିକ୍ଷାକାର୍ଯ୍ୟ ନିର୍ବାହ ହେଉଅଛି । ପ୍ରଧାନ ଶିକ୍ଷକ ବାବୁ ଦ୍ୱିଜେନ୍ଦ୍ରନାଥ ଦତ୍ତଙ୍କର ବିଜ୍ଞାପନୀରେ ଯେଉଁ ପ୍ରଶଂସା ହୋଇଅଛି ତହିଁକି ସେ ସମ୍ପୂର୍ଣ୍ଣରୂପେ ଭାଜନ ଅଟନ୍ତି । ତାହାଙ୍କର ସ୍ୱଭାବ ଯୋଗ୍ୟତା ଓ ଅଧ୍ୟବସାୟ ସମ୍ପର୍କରେ ଦ୍ୱିମତ ନାହିଁ । ଗତବର୍ଷ ଜ୩ଣ ଛାତ୍ର ପ୍ରବେଶିକା ପରୀକ୍ଷା ଦେଇଥିଲେ ସମସ୍ତେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ଏବଂ ତହିଁ ମଧ୍ୟରେ ଏକଜଣ ସରକାରୀ ବୃତ୍ତି ଅର୍ଜ୍ଜିଅଛନ୍ତି ।

ଏ ବିଦ୍ୟାଳୟଦ୍ୱାରା କିରୂପ ଉପକାର ସାଧନ ହେଉଅଛି ଉପରଲିଖିତ ବୃତ୍ତାନ୍ତରୁ ପାଠକମାନେ ଜାଣି ପାରିବେ । ଏଠା ରେବନସା କଲେଜର ସ୍କୁଲ ବିଭାଗରେ ଛାତ୍ର ବେତନ ଅଧିକ ଥିବାରୁ ଗରିବ ଛାତ୍ରଙ୍କର ମହତ୍ ଉପକାର ଏ ବିଦ୍ୟାଳୟଦ୍ୱାରା ସାଧିତ ହେଉଅଛି ଏବଂ ଆମ୍ଭେମାନେ ଏ ବିଦ୍ୟାଳୟର ସ୍ଥାୟିତ୍ୱ ଏବଂ ଉନ୍ନତି ଏକାନ୍ତ ପ୍ରାର୍ଥନା କରୁଅଛୁଁ ।

ପରିଶେଷରେ ବକ୍ତବ୍ୟ ଏହି ସାହେବମାନଙ୍କ ବକ୍ତୃତା ସଂକ୍ଷେପ ହେଲେହେଁ ବଡ ସୁଖକର ହୋଇଥିଲା ଏବଂ କେବଳ ସାରକଥାରେ ପୂର୍ଣ୍ଣ ଥିଲା । ଡାକ୍ତର ବକଲୀ ସାହେବ ଯେମନ୍ତ ମିଷ୍ଟଭାଷୀ ସୁବକ୍ତା ପାଠକମାନଙ୍କୁ ତହିଁର ପରିଚୟ ଦେବା ଅନାବଶ୍ୟକ । ଏହି ବିଦ୍ୟାଳୟର ସ୍ଥାପନକର୍ତ୍ତାଙ୍କୁ ଲକ୍ଷ୍ୟ କରି କହିଲେ ଯେ ସତ୍କର୍ମର କଳ୍ପନା ମନରୁ ଉଦୟ ହେଲେ କାଳ ବିଳମ୍ବ ନ କରି ତହିଁର ଅନୁଷ୍ଠାନରେ ପ୍ରବୃତ୍ତ ହେବାର ଉଚିତ କାରଣ କାହାକୁ ପରମେଶ୍ୱର କେଉଁଦିନ ପୃଥିବୀରୁ ଘେନି ଯିବେ ତହିଁର ସ୍ଥିରତା ନାହିଁ । ବିଦ୍ୟାଳୟର ସ୍ଥାପନକର୍ତ୍ତାଙ୍କର ଅକାଳେ ମୃତ୍ୟୁ ହେଲା କିନ୍ତୁ ତାହାଙ୍କର ସତ୍କର୍ମଟି କ୍ରମଶଃ ଉନ୍ନତି ଲାଭ କରି ସାଧାରଣ ଉପକାର ଏବଂ ଆନନ୍ଦର ବିଷୟ ହୋଇଅଛି । ଛାତ୍ରମାନଙ୍କୁ ସମ୍ବୋଧନ କରି ବିଦ୍ୟାଭ୍ୟାସରେ ସର୍ବଦା ପରିଶ୍ରମ ଏବଂ ଯତ୍ନ କରିବାକୁ ଉପଦେଶ ଦେଲେ । ଯେଉଁମାନେ ଅଧିକ ପରିଶ୍ରମ କରି ପୁରସ୍କାର ଲାଭ କଲେ ସେମାନଙ୍କର ଉଚିତ ଯେ ସମଧିକ ପରିଶ୍ରମ ଓ ଅଧ୍ୟବସାୟଦ୍ୱାରା ଉତ୍ତରୋତ୍ତର ଅଧିକ ପୁରସ୍କାର ଲାଭ କରିବେ ଯେଉଁମାନେ ପୁରସ୍କାରରୁ ଏ ବର୍ଷ ନିରାଶ ହେଲେ ସେମାନଙ୍କର ମଧ୍ୟ ହତାଶ ହେବାର କାରଣ ନାହିଁ । ଯେବେ ବିଦ୍ୟା ପଛରେ ଲାଗି ରହିବେ ତେବେ ଏ ବର୍ଷ ନ ହେଲାତ ଆରବର୍ଷକୁ ପୁରସ୍କାର ପାଇ ପାରିବେ ।

ତହିଁ ଉତ୍ତାରୁ ଶ୍ରୀଯୁକ୍ତ ଯଙ୍ଗ ସାହେବ ସଭାପତିଙ୍କ ଅନୁରୋଧ କ୍ରମେ ଗାତ୍ରୋତ୍ଥାନ ପୂର୍ବକ କହିଲେ କି ଆମ୍ଭେ ଏ ଦେଶକୁ ଆସି ବଡ ଦୁଃଖର ସହିତ ଶୁଣିଲୁଁ ଯେ ଏଠା ଲୋକମାନେ ବିଦ୍ୟାଳୟ ଛାଡିଲା ଉତ୍ତାରୁ ଆଉ ପଢାଶୁଣା କରନ୍ତି ନାହିଁ । ଏକଥା ଶୁଣି ଆମ୍ଭେ ଅତ୍ୟନ୍ତ ବିସ୍ମୟ ହୋଇଅଛୁଁ । ଆଜନ୍ମକାଳ ପଢିଲେ ଯେଉଁ ବିଦ୍ୟାର

ଶେଷ ନାହିଁ ଓ ମହାତ୍ମା ନିଉଟନ ଯହିଁର ପାର ନ ପାଇ କହିଅଛନ୍ତି କି ସେ କେବଳ ଜ୍ଞାନ ସମୁଦ୍ରର କୂଳରେ ପିଲାଙ୍କ ପରି ବାଲିଗଡରା ବାଛିଅଛନ୍ତି କେବଳ ବିଦ୍ୟାଳୟର ଶିକ୍ଷାରେ କିରୂପେ କାହାରି ତୃପ୍ତି ଜାତ ହୋଇ ପାରେ। ଏଥିପାଇଁ ସେ ସମସ୍ତଙ୍କୁ ଉପଦେଶ ଦେଲେ ଯେ ପୁସ୍ତକ ପଢିବା ପ୍ରତିଦିନର ଗୋଟିଏ ନିୟମିତ କାର୍ଯ୍ୟ ମଧ୍ୟରେ ପରିଗଣିତ କରିବା ସମସ୍ତଙ୍କର ଉଚିତ ଅଟଇ । ବିଲାତୀ ଲୋକଙ୍କର ପୁସ୍ତକ ପଢିବାପ୍ରତି ଏତାଦୃଶ ଅନୁରାଗ ଯେ ସାମାନ୍ୟ ଅବସ୍ଥାର ଲୋକ ସୁଦ୍ଧା ଆପଣା ଆପଣା ଅର୍ଜନରୁ କିଛି କିଛି ଅଲଗା କାଢି ରଖି ତଦ୍ୱାରା ପୁସ୍ତକ କ୍ରୟ କରନ୍ତି । ୟଙ୍ଗ ସାହେବ ଅସ୍ମଦ୍ଦେଶୀୟଙ୍କର ଯେଉଁ ଦୋଷ ଦେଖାଇ ଦେଇ ଅଛନ୍ତି ତାହା ଯଥାର୍ଥ ଅଟଇ ଏବଂ ସେଥିପାଇଁ ଆମ୍ଭମାନଙ୍କର ଲଜ୍ଜିତ ହେବା ଏବଂ ତାହା ସଂଶୋଧନ କରିବାର ଉଚିତ । ବାସ୍ତବରେ ଅଧିକାଂଶ ଲୋକ ବିଦ୍ୟାଳୟ ତ୍ୟାଗ ସଙ୍ଗେ ସଙ୍ଗେ ଲେଖା ପଢାକୁ ଏକାବେଳକେ ବିଦାୟ ଦିଅନ୍ତି । ଖଣ୍ଡେ ଚାକରିକୁ ବିଦ୍ୟାଭ୍ୟାସର ଚରମ ଫଳ ଜ୍ଞାନ କରନ୍ତି ଏବଂ ତାହା ଲାଭ ହେଲାଠାରୁ ବୃଥା ଗଳ୍ପ ଓ ଆମୋଦରେ କାଳ କଟାନ୍ତି । ୟଙ୍ଗ ସାହେବ ଆହୁରି ଗୋଟିଏ ସାରକଥା କହିଅଛନ୍ତି କି ଆପେ ଶିକ୍ଷିତ ହେବା ଯଥେଷ୍ଟ ନୁହଇ ବିଦ୍ୟା ବିତରଣ କରିବା ବିଦ୍ୱାନ୍ ଲୋକର ମହତ୍‌କାର୍ଯ୍ୟ ଅଟଇ । ପରକୁ ନ ଶିଖାଇଲେ ବିଦ୍ୟାର ବ୍ୟବସାୟ ହୁଅଇ ନାହିଁ ବାସ୍ତବରେ ତାହା ନିଷ୍ଫଳ ହୁଅଇ ।

*ଭା ୧୮ଗ, ସଂ ୪୦ଖ୍ୟା, ୬।୧୦।୧୮୮୩*

## [ନାଇଟ ସ୍କୁଲ ସ୍ଥାପନ ]

କଟକ ଏକାଡ଼େମୀର ୫ମ ଶିକ୍ଷକ ବାବୁ ଦୀନବନ୍ଧୁ ଦାସ ପ୍ରାୟ ୩ମାସ ହେବ ଆଲମଚାନ୍ଦ ବଜାରରେ ଗୋଟିଏ ନାଇଟସ୍କୁଲ ସ୍ଥାପନ କରିଅଛନ୍ତି । ଯେଉଁମାନେ କି ନିତାନ୍ତ ଗରିବ, ପିଲାଦିନୁ ପେଟପାଁଇ ମୂଲିୟାକାର୍ଯ୍ୟ କରନ୍ତି ଏବଂ ଲେଖାପଢା ଶିଖି ପାରିବାର କୌଣସି ସମ୍ଭାବନା ନାହିଁ, ସେହିମାନେ ଦିନରେ ଆପଣା ଆପଣା କାର୍ଯ୍ୟ କରି ରାତିରେ ଏ ସ୍କୁଲରେ ବିନା ବେତନରେ ଲେଖା ପଢା ଏବଂ ନୀତୀଶିକ୍ଷା ପାଉଅଛନ୍ତି ସ୍କୁଲ କାର୍ଯ୍ୟ ସନ୍ଧ୍ୟା ୭ଘଣ୍ଟା ଠାରୁ ୧୦ଘଣ୍ଟା ପର୍ଯ୍ୟନ୍ତ ହୁଅଇ ଏବଂ ଦୀନବନ୍ଧୁ ବାବୁ ନିଜେ ପରିଶ୍ରମ କରି ଶିକ୍ଷା ଦିଅନ୍ତି । ବର୍ତ୍ତମାନ ଛାତ୍ରସଂଖ୍ୟା ୩୮ ଜଣ ପର୍ଯ୍ୟନ୍ତ ହୋଇଅଛି ଓ ଦିନ ଦିନ ବୃଦ୍ଧି ହେବାର ଦେଖା ଯାଉଅଛି । ବାଳକ ଛଡା କେତେକ ପୂର୍ଣ୍ଣବୟସ୍କ ଲୋକ ମଧ ବିଶେଷ ମନୋଯୋଗ ପୂର୍ବକ ଶିକ୍ଷା କରୁ ଅଛନ୍ତି । ଏପରି ସ୍କୁଲ ଓଡିଶାରେ ନୂଆ ଉଦ୍ୟମ ବୋଲିବାକୁ ହେବ ଏହା ସ୍ଥାୟୀ ହେଲେ ବିଶେଷ ଉପକାର ସାଧିତ ହେବ ସନ୍ଦେହ ନାହିଁ ।

ବର୍ତ୍ତମାନ ଯେଉଁ ଗୃହରେ ଶିକ୍ଷାକାର୍ଯ୍ୟ ଚଳୁଅଛି, ତାହା ଅତି କ୍ଷୁଦ୍ର, ପୁଣି ଅନୁଚିତ ସ୍ଥାନରେ ସ୍ଥିତ, ଦୀନବନ୍ଧୁବାବୁ ସ୍କୁଲପାଇଁ ଗୋଟିଏ ସ୍ୱତନ୍ତ୍ର ଗୃହ ନିର୍ମାଣ କରିବା ନିମିତ୍ତ ଚାନ୍ଦା ସଂଗ୍ରହ କରୁଅଛନ୍ତି । ଆମ୍ଭେମାନେ ସଂପୂର୍ଣ୍ଣ ଭରସା କରୁଁ ଯେ ଏ ଦେଶୀୟ ଧନୀ ଓ ଭଦ୍ର ଲୋକମାନେ ଏ କାର୍ଯ୍ୟରେ ଯଥୋଚିତ ସହାନୁଭୂତି ଦେଖାଇ ଦୀନବନ୍ଧୁ ବାବୁଙ୍କୁ ଏହି ସାଧୁ କର୍ଯ୍ୟରେ ଅଧିକତର ଉତ୍ତେଜିତ କରିବେ ।

*ଭା ୧୮ଗ, ସଂ ୪୪ଖ୍ୟା, ୧୦।୧୧।୧୮୮୩*

## ନୂତନ ମହାଭାରତ ।

ବାଲେଶ୍ୱରର ଦେଙ୍କ ଉତ୍କଳ ପ୍ରେସରେ ଓଡିଆ ମହାଭାରତ ଛାପା ହେବାର ଆରମ୍ଭ ହୋଇଅଛି । ଏବଂ ଆମ୍ଭେମାନେ ଏଥିର ପ୍ରଥମ ପୃ୧୨ଷ୍ଠା ଦେଖିଅଛୁଁ । ଏଥିରେ କେବଳ ଅନୁକ୍ରମଣିକାଧ୍ୟାୟ ବାହାରି ଅଛି ଏବଂ ତାହା ପାଠ କରିବାରେ ଜଣାଗଲା ଯେ ରାଜା ଶ୍ୟାମାନନ୍ଦ ଦେ ଏହି ମହାଭାରତର ପ୍ରକାଶକ ଏବଂ ବାବୁ ଫକୀରମୋହନ ସେନାପତି ଏଥିର ରଚୟିତା ଅଟନ୍ତି । ଫକୀରମୋହନ ବାବୁ ଚୌକ ଅକ୍ଷରିୟା ବୃତ୍ତରେ ଏହାକୁ ମୂଳ ସଂସ୍କୃତରୁ ଅନୁବାଦ କରୁଅଛନ୍ତି ଏବଂ ଅନୁକ୍ରମଣିକାଧ୍ୟାୟ ପାଠ କରି ଆମ୍ଭେମାନେ ଆନନ୍ଦ ସହିତ କହୁଅଛୁଁ ଯେ ଉପଯୁକ୍ତ ହସ୍ତରେ ଏପ୍ରକାର ଗୁରୁତର ଭାର ନ୍ୟସ୍ତ ହୋଇଅଛି । ରଚନା ଯଥା ସମ୍ଭବ ସରଳ ଏବଂ ସାଧାରଣ ବୋଧଗମ୍ୟ ହୋଇଅଛି ଏବଂ ପୁରୁଣାକାଳର ଭାଷା ସଙ୍ଗେ ପ୍ରାୟ ମିଶି ଯାଉଅଛି । ବଙ୍ଗଳାରେ କାଳୀପ୍ରସାଦସିଂହ

ଏବଂ ବର୍ଦ୍ଧମାନର ମହାରାଜା ମହାଭାରତର ଅବିକଳ ବଙ୍ଗଳା ଅନୁବାଦମାନ ପ୍ରକାଶ କରି ଯେମନ୍ତ କୀର୍ତ୍ତି ରଖି ଯାଇଅଛନ୍ତି ଓଡିଶାରେ ରାଜ ଶ୍ୟାମାନନ୍ଦଦେ ଏହି ମହାଭାରତ ଶେଷ ପର୍ଯ୍ୟନ୍ତ ପ୍ରକାଶ କରି ଗଲେ ସେପ୍ରକାର କୀର୍ତ୍ତି ରଖି ଯିବେ ସନ୍ଦେହ ନାହିଁ । ଓଡିୟା ଭାଷାରେ ପ୍ରଥମ ସାରଳାଦାସ ଏବଂ ତଦପର କୃଷ୍ଣସିଂହ ମହାଭାରତ ପ୍ରକାଶ କରି ଯାଇଅଛନ୍ତି । ସାରଳାଦାସ ମହାଭାରତ ଏଅଞ୍ଚଳରେ ସର୍ବତ୍ର ପ୍ରଚଳିତ ଏବଂ ପୁରାଣରୂପେ ପଠିତ । ମାତ୍ର ଏହା ତାଳପତ୍ରରେ ରହିଅଛି । କୃଷ୍ଣସିଂହ ମହାଭାରତ ତେଡେ ସାଧାରଣରୂପେ ପ୍ରଚଳିତ ନ ହେଲେହେଁ ଶିକ୍ଷିତ ଲୋକଙ୍କଠାରେ ବିଶେଷରୂପେ ଆଦୃତ କାରଣ ଏହାର ରଚନା ଉତ୍ତମ ଏବଂ ସଂସ୍କୃତ ସହିତ ଅଧିକ ପରିମାଣରେ ଐକ୍ୟ ଅଛି । ଏଥିରୁ ଦୁଇ ତିନି ପର୍ବ ଛାପା ହୋଇଅଛି ଅର୍ଥାଭାବରୁ ସମ୍ପୂର୍ଣ୍ଣ ହୋଇ ପାରିଲା ନାହିଁ । ସମାଲୋଚିତ ମହାଭାରତ ସର୍ବମାତ୍ର ନୂତନ ଏବଂ ନୂତନ ଗ୍ରନ୍ଥ ପ୍ରତି ଏଦେଶବାସିଙ୍କର ଯେପ୍ରକାର ଅନାସ୍ଥା ତହିଁରେ ଏହା ଛାପା ହେଲେ ଯେ ଶୀଘ୍ର ଏଥିର ଗ୍ରାହକ ହେବେ ଏମନ୍ତ ଆଶା କରା ଯାଇ ନ ପାରେ ଏପ୍ରକାର ପ୍ରତିବନ୍ଧକ ସତ୍ୱେ ରାଜା ମହାଶୟ ଏପ୍ରକାର ବ୍ୟୟସାଧ କାର୍ଯ୍ୟରେ ହସ୍ତକ୍ଷେପଣ କରିବା ଅବଶ୍ୟ ଅତୀବ ପ୍ରଶଂସାର କାର୍ଯ୍ୟ ହେଲେହେଁ ଆମ୍ଭେମାନେ ଅନୁମାନ କରୁକି ଏଥିରେ ଯେତେଟଙ୍କା ବ୍ୟୟ ହେବ ଆପାତତଃ ସେ ପରିମାଣ ଫଳ ପ୍ରତ୍ୟକ୍ଷ ହେବ ନାହିଁ । ଏ କାର୍ଯ୍ୟଠାରୁ ଓଡିଶାରେ ଅନେକ ଗୁରୁତର ଅଭାବ ଅଛି କି ଯହିଁ ପ୍ରତି ଶୀଘ୍ର ମନୋଯୋଗ ଦେବାର ଆବଶ୍ୟକ ଏବଂ ଏଥିରୁ ଅଳ୍ପ ବ୍ୟୟରେ ଅଧିକ ଉପକାର ସାଧିତ ହୋଇପାରେ ।

*ଭା/୧୮ଗ,ସଂ୪୪ଖ୍ୟା, ୧୦/୧୧/୧୮୮୩*

## ପ୍ରେରିତ ପତ୍ର ।

## [ଉତ୍କଳ ଭାଷାର ଉନ୍ନତି]

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସମୀପେଷୁ ।

ମହାଶୟ !

ଏହି ନିମ୍ନଲେଖିତ ପତ୍ରଖଣ୍ଡ ଆପଣଙ୍କ ଜଗତ୍‌ବିଖ୍ୟାତ ପତ୍ରିକାରେ ସ୍ଥାନଦାନ କରି ଚିରବାଧିତ କରାଇବା ହେବେ ।

କଟକ ଓ ବାଲେଶ୍ୱର ଆଦି ଜିଲାରେ ଉତ୍କଳଭାଷାର ଉନ୍ନତି ମଧ୍ୟାହ୍ନ ସୂର୍ଯ୍ୟର ନ୍ୟାୟ ବେଳକୁ ବେଳ ତେଜସ୍କର ହୋଇ ପ୍ରବଳି ଉଠିବାର ଦେଖି ଗଞ୍ଜାମ ଜିଲାର ଉତ୍କଳଭାଷା ସହି ନ ପାରଇ ଏବଂ ବୀରକେଶ ଟେକି କହଇ ଗଞ୍ଜାମ ଜିଲାର ଆଧୁନିକ ଉତ୍କଳଭାଷାର ସହିତ କଟକର ଭାଷାକୁ ତୁଳନା କରି ଦେଖ, କେହି ନ ଜାଣିବାରୁ ସିନା ତାହାର ସୁଖ୍ୟାତି ପଡି ଯାଇଅଛି, ଯେସନ ସିନ୍ଦୁକ ମୁଦ୍ରିତ ଥିଲେ ତହିଁରେ କି କି ପଦାର୍ଥ ଅଛି କେହି ଜାଣି ନ ପାରଇ, ତେସନ ଗଞ୍ଜାମ ଜିଲାର ଉତ୍କଳଭାଷା ସିନ୍ଦୁକରେ ବନ୍ଦଥିଲା ନ୍ୟାୟ ଅପ୍ରକାଶମାନ ଥିବାରୁଁ , ବର୍ତ୍ତମାନ ଏହି ଜିଲାର ଉତ୍କଳ ସିନ୍ଦୁକ ଖୋଲି କରି, ତହିଁର ଭାଷା ଭଣ୍ଡାରରୁ ଶୁଦ୍ଧ ସୁମିଷ୍ଟ ଓ ମନୋରଞ୍ଜନ ବାକ୍ୟ କେତେ ଗୋଟି, ନିଦର୍ଶନ ସ୍ୱରୂପ, ନିମ୍ନେ ଉଲ୍ଲେଖ କଲୁଁ- ପାଠ କରି ତାହର ମଜାଟି ବୁଝିବା ହେବେ ।

"ଲୁଣବଣିଜାରମାନେଲେଖିତମୂଳରୁ କରାରସନନ୍ଦଲେଖି
"ଦେଇପୂର୍ବପରିରେ ଟ5000କୁବଦଳଟ500କୁଉଣାନଥିବା
"ଖରୀଦହେବାଗବର୍ଣ୍ଣମେଣ୍ଟପ୍ରାମିସରିନୋଟମାନଙ୍କଧାରାମତର
"ଖିବାକୁଅଙ୍ଗୀକାରଥିବାପକ୍ଷକୁଲୁଣଖରୀଦଛମାସକୁଦେବାସର
"ତଉପରେତେମନ୍ତବଣିଜାରିଙ୍କିଲାଗୁଆରେଲୁଣବିକ୍ରୟକରାଯିବ
"ଯେଉକ୍ଷରତଉପରେସେପରିଲୁଣଲାଗୁଆରେବିକ୍ରୟହେବକି

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

"ସେଷରତମାନଙ୍କବିଷୟରେଏତଦ୍ଦେସନ୍ତକକରିବାଅଧିକାରିଙ୍କି

"ଅବାସମୁଦ୍ରତୀରରେଥିବାଡିଷ୍ଟ୍ରିକ୍ଟମାନଙ୍କରକୌଡିଷ୍ଟ୍ରିକ୍ଟରେଆ

"ସିଷ୍ଟାଣ୍ଟକମିଷନରଙ୍କୁଅବାକୌହେଲେଲୁଣଗାଲିଚାର୍ଜଲିଭିଥି

"ବାଅଫିସରଙ୍କଅବାଦରଖାସ୍ତକରିଜାଣିଘେନିଆସେ"

"ଟଙ୍କାବିଷୟରେଦେବାରସିଦ1879ବର୍ଷଭାରତବର୍ଷିୟ

"ଷ୍ଟାମ୍ପଆଇନପ୍ରକାରେଷ୍ଟାମ୍ପିମାସୁଲବନ୍ଧାକିବାକୁଥିବାଦସ୍ତାବେଜ

"ହୋଇଅଛିଯେସକାସୁଭକ୍ତରସୀଦରଦ୍ୱିତୀୟଆଦର୍ଶଫେର୍ବ23

"ଆର୍ଟିକଲ (ଏ) ପ୍ରକାରେଏକଅଣା ଷ୍ଟାମ୍ପିଲଗାଇବାକୁଅର୍ହଥିବ"ଇତ୍ୟାଦି

ଏହି ଉପରୋକ୍ତ ପଁକ୍ତିମାନ କି ଦେଖିବାକୁ ସୁନ୍ଦର ଦିଶଇ ନାହିଁ ? ଅକ୍ଷରକୁ ଅକ୍ଷର ଯେତେ ଜକାଜକି ହୋଇ ଛାପା ହେଇଥିବ ତେତେ ଭଲ, କିଞ୍ଚିତ୍ ପ୍ରମାଣ ଛଡାଛଡି ହୋଇଗଲେ ଭାବ ମଧ ଛାଡି ଯାଇପାରେ, ବାକ୍ୟ ବିନ୍ୟାସର ଏହି ଏକ ନୂତନ ଜ୍ଞାନ ବୟାକରଣ ବେତ୍ତାମାନଙ୍କୁ ଅଗୋଚର ଥିଲା, ତାହା ଏତେବେଳେ ଗଞ୍ଜାମ ଜିଲା ଗଜେଟରେ ଓ ଅନ୍ୟାନ୍ୟ ଛାପା ଗ୍ରନ୍ଥମାନଙ୍କରେ ଆଶ୍ଚର୍ଯ୍ୟରୂପେ ନୂତନୋତ୍ପତ୍ତି ହୋଇଅଛି , ପୁଣି ଉକ୍ତ ଭାଷାଟି ଆପଣଙ୍କ ଶ୍ରବଣକୁ କେମନ୍ତ ଲାଗଇ ତାହା ଆମ୍ଭେ କହି ନ ପାରୁଁ , କିନ୍ତୁ ଏହି ଜିଲାରେ ତାହାଠାରୁ ବଳି କରି ଉତ୍କଳଭାଷା ଶୁଦ୍ଧରୂପେ ଅନୁବାଦ କରିବାକୁ ଅନ୍ୟ ସମସ୍ତ ଯୋଗ୍ୟବନ୍ତ ଉତ୍କଳୀୟମାନଙ୍କଠାରୁ , ଜଣେ ତେଲଙ୍ଗି ଲୋକ ବଳିଗଲେ, କାରଣ ବହୁ ଶ୍ରମରେ ଏତାଦୃଶ ସର୍ବ ଶ୍ରେଷ୍ଠ ଉତ୍କଳଭାଷାରେ ତର୍ଜମା କରିବାକୁ ତାଙ୍କ ବିନା ଅନ୍ୟ କେହି ଶିଖି ନାହାନ୍ତି, କେଉଁ ଟୀକା ବ୍ୟାକରଣରୁ ଶିଖିଅଛନ୍ତି ତାହା କହି ନ ପାରୁଁ, ଯାହା ହେଉ ତାଙ୍କୁ ମାସି ଟ୪୦ଙ୍କା ବେତନ ଦିଆ ଯାଉଅଛି, ମାତ୍ର ବିଦ୍ୟାକୁ ବର୍ତ୍ତନ ନୋହିଲା ଏବଂ ଯେଉଁ ଚିହ୍ନାଳୀ ଗରାଖ ହାକିମମାନେ ଏହି ଜିଲାରେ ବିଜେ କରି ଅଧିକାର କରୁଅଛନ୍ତି ଓ ବିଦ୍ୟା ପରୀକ୍ଷା କରି କାର୍ଯ୍ୟରେ ନିଯୁକ୍ତ କରୁଅଛନ୍ତି ସେମାନେ ଏଥି ନିମନ୍ତେ ପ୍ରଶଂସାର ପାତ୍ର ବୋଲିବାକୁ ହେବ- ଓଡିଆ ଜିଲା ହେବାରୁ ଓଡିଆ ଅକ୍ଷର ମାଳ ମାଳ ହୋଇ ଗଜେଟରେ ଛାପା ପଡିଗଲେ ଯଥେଷ୍ଟ , ନାମ ପଡଇ କି ନା ଓଡିଆଭାଷା ଗଞ୍ଜାମ ଗଜେଟରେ ପ୍ରଚୁର କରା ଯାଉଅଛି, ତାହା ବିଷୟରେ ଆରମ୍ଭରୁ ଏସରିକି କୌଣସି ବ୍ୟକ୍ତି କି କେବେ ଚର୍ଚ୍ଚା କରନ୍ତି ? କାହିଁକି କରିବେ ? ସମସ୍ତ କଚେରୀରେତ ତେଲଙ୍ଗାମାନେ ଉଚ୍ଚ ପଦରେ ନିଯୁକ୍ତ, ତେଲଙ୍ଗାଭାଷାରେ ସମସ୍ତ କାର୍ଯ୍ୟ ଚଳଇ, ଓଡିଆ କେଉଁ ଭାଷାରେ ଜମା ବୋଲି ତେଲଙ୍ଗାମାନେ ଜ୍ଞାନ କରନ୍ତି, ପୁଣି ଓଡିଆଭାଷାରେ ସେମାନେ ଏକଗୁଁ ଆରେକ ବଡ ଜାଣିବାର ବୋଲି ପରିଚୟ ଦିଅନ୍ତି , ଓଡିଆମାନଙ୍କର କଥାକୁ ମଧ କମ୍ବଳରୁ ଲୋମ ଗୋଟାଏ ବାଛି ପକାଇଲା ନ୍ୟାୟ ବାହୁନି ପକାନ୍ତି, ତାହା ଶୁଣି "ବଡ ଲୋକକୁ ଉତ୍ତର ନାହିଁ ଓ ଆକାଶକୁ ନିଶୁଣୀ ନାହିଁ" ଏମନ୍ତ ବିଚାରି ଉତ୍କଳୀୟ ବ୍ୟକ୍ତି ମୁଖ ବନ୍ଦ କରି ରହଇ; ତାହା କେବଳ ନୁହେ, କୌଣସି କାର୍ଯ୍ୟ ଭଙ୍ଗ ଭୟ ହେତୁଗୁଁ ଉତ୍କଳୀୟ ବ୍ୟକ୍ତି ମୁଖ ସ୍ତୁତି କରି କହଇ ହାଁ ଆୟା(ବାବୁ) ଆପଣଙ୍କ କଥାଟି ଯଥାର୍ଥ,ଆମ୍ଭର ନୋହିଲା, ଆଃ ଆପଣଙ୍କ ପରି ଶୁଦ୍ଧଭାଷା ଆମ୍ଭଙ୍କୁ କାହୁଁ ଆସିବ ? ଆପଣଙ୍କର ଶୁଦ୍ଧଭାଷା ପରି କୌଣସି ଆଚ୍ଛା ଜାଣିବା ଓଡିଆ ଲୋକତ କହି ପାରିବ ନାହିଁ, ଏତାଦୃଶ ଫୁଲ୍ଲାରବିନ୍ଦ ସ୍ୱରୂପ ପ୍ରଶଂସନୀୟ ବଚନ ଆହୁରି କେତେ ଉତ୍କଳୀୟ ମୁଖରୁ ଶ୍ରବଣ କଲା ପରେ, ଆୟାଙ୍କୁ ଚନ୍ଦନ ଲେପନ କଲା ପରି ଲାଗଇ, ତହୁଁ ଦରହାସ ବଦନରେ ଆୟା ଉଠି ଉତ୍କଳୀୟ ବ୍ୟକ୍ତିକୁ ମର୍ଯ୍ୟାଦା କରି ଆସନ ଦେବା ନିମନ୍ତେ ପ୍ରଥମେ ଆପଣା ଭଣ୍ଡାରିକି ଡାକି ଆଜ୍ଞା କରନ୍ତି "ଆରେ ଶୈତାନ (ଚୈତନ) ଏଟାକୁ ଆସନ୍ତୁ , ଭାଲୁଲୁକୁ ଆସି ଘେନିସନ୍ତି, ତିବାସିଟି (ଶତରଞ୍ଜି) ପରି ଦେଉ ଆସନୋପବିଷ୍ଟ ହେଲା ବାଦ ଆୟା ତହୁଁ ଶୁଦ୍ଧ ଓ ସଂସ୍କୃତାଡମ୍ବରରେ ଉତ୍କଳ ଭାଷାରେ କହିବାକୁ ଲାଗନ୍ତି, "ଆପଣ କ୍ୟାଣ ପାଁରେ ଆସି ଘେନିଚନ୍ତି କି ଆମକୁ ଗୌଚର୍ଗ ଅଛନ୍ତି,ହେଲେ ଆପଣଙ୍କୁ କିଛୁ କିଛୁ ହେଲ୍ଲେ ହିଙ୍ଗୁ ଲେଷ୍ଟୁ ଫାଟ ଆସୁଚନ୍ତି ନା ? ଆମେ କ୍ୟାଣ କରିବହେ ଆମର ଖତାକୁତ ସାଇବ ବଡ଼ ରଡି କରି ଭାଗ ପରି ଆମ ଉପରେ ମିଶୁଚନ୍ତି, ଟାଙ୍ଗାରେ ପିଟୁଚନ୍ତି ପରା ଆମକୁ ବଡ଼ ଡର ଲାଗୁଚନ୍ତି, ହେଲ୍ଲେ ଫାଇଟି ଆପଣଙ୍କୁ ଏକା ଦେବାର ଅଚନ୍ତି ବୋଲି

ଆମେ ଭୋତ ଭୋତ ବାଦନାମାନଙ୍କ ସାଇବଙ୍କ ତୁଲେ କରୁଚନ୍ତି,ଆପଣ ମନରେ କିଛୁ ଏକା ସିନ୍ତା କରିବାର ନାହିଁ, ଆମର ଖତା ସାତ୍ୟୋକି ମିଥ୍ୟାକି ତେବେ ଏକା ଆପଣଙ୍କୁ ଗୌଚର ହୋଚନ୍ତି, ଇତ୍ୟାଦି ଏତାଦୃଶ ଆହୁରି ଅନେକ ପ୍ରକାର ଭଙ୍ଗିରେ ଶୁଦ୍ଧ ସୁଶ୍ରାବ୍ୟ ମନୋହର ବର୍ଣ୍ଣନାତୀତ ବକ୍ତୃତାଟିର ଶେଷ ହୁଅଇ -ଗଞ୍ଜାମ ଜିଲାସ୍ଥ ଆୟାମାନଙ୍କର ଉପରୋକ୍ତ ପ୍ରକାରେ ଲେଖିବାର ଓ କହିବାର ଉଭୟ ପ୍ରକାର ଭାଷାକୁ ତୁଳନା କଲେ କଟକ ଓ ବାଲେଶ୍ୱର ଆଦି ଜିଲାର ଉତ୍କଳଭାଷା କି ବଳି ଯିବ ? ଆୟାମାନେ ହାସ୍ୟ କରି କହନ୍ତି କଟକ ଆଡର ଓଡିଆ ଭାଷା ସେକି ଭାଷା ? କିଛି ଶୁଦ୍ଧ ନୁହଇ , ଏହା ସତ୍ୟ ପ୍ରମାଣ କାରଣ ଉପେନ୍ଦ୍ରଭଞ୍ଜ ଏହି ଜିଲାର ଅତି ବିଖ୍ୟାତ କବି ଥିଲେ, ତାଙ୍କ କୃତ ଅନେକ ଉତ୍କଳ ଗ୍ରନ୍ଥମାନ ମୂଳ ଆଡୁ ବୁଝି ନେଇ ଅଗଆଡକୁ ଗଲା ସରିକି ଆୟାମାନେ ତହିଁରୁ ଅଶୁଦ୍ଧ ଓ ପୁରୁଣା ପଦମାନ ବାଛି ପକାଇ, ଭଲ ବଦଳେ ଭାଲୁ , ଲୋକ ବଦଳେ ଲୁକ୍., କଅଣ ବଦଳେ କ୍ୟାଣ , ଅଛି ବଦଳେ ଅଛନ୍ତି, ଏପରି ଶୁଦ୍ଧପଦ ଓ ବାକ୍ୟମାନ ବାହାର କରି ବ୍ୟବହାର କରୁଅଛନ୍ତି ପୁଣି ଏହି ନୂତନ ଭାଷାରେ ଉପେନ୍ଦ୍ରଭଞ୍ଜ କୃତ ବିଖ୍ୟାତ ପ୍ରାଚୀନ ଗ୍ରନ୍ଥମାନ ସଂଶୋଧନ କରି ଛାପା କଲେ ଅତ୍ୟନ୍ତ ଭଲ ହୁଅନ୍ତା, ମାତ୍ର ଅଭାବ ଏହି ଯେ ଗ୍ରନ୍ଥ ସଂଶୋଧନ କରିବାକୁ ବ୍ରାହ୍ମଣ ଶାସନମାନଙ୍କରେ ତେଡ଼େ ଭଳି କୌଣସି ପଣ୍ଡିତ ଯଦି ବାହାରିବାର ଦୁଷ୍କର, କେଉଟ କଣ୍ଡରା ଶାସନମାନଙ୍କରେ ପିଲାରୁ ବଡ଼ ସମସ୍ତେ ଏତାଦୃଶ ଭାଷାରେ ପ୍ରବୀଣ ଅଟନ୍ତି, ଏକି ଅତି ଆଶ୍ଚର୍ଯ୍ୟ ନୁହଇ ? ପୁଣି ଭାଗ୍ୟ ବଳରେ ଯେବେ ଗ୍ରନ୍ଥ କେତେଖଣ୍ଡ ଛାପା ହୁଅନ୍ତା ତେବେ ସ୍କୁଲମାନଙ୍କରେ ଉଚ୍ଚଶ୍ରେଣୀ ଛାତ୍ରମାନଙ୍କୁ ତହିଁର ଅର୍ଥ ଯଦି କିଞ୍ଚିତ୍ କଷ୍ଟକର ବୋଧ ହୁଅନ୍ତା ତଥାପି ପାଗଲଖାନାସ୍ଥ ଛାତ୍ରମାନେ ଶିକ୍ଷକର ସାହାଯ୍ୟ ବିନା ଅତି ସହଜରେ ତାହାର ମହ୍ନାଟି ବୁଝି ପାରନ୍ତେ- ଧନ୍ୟ ଗଞ୍ଜାମ ଜିଲାସ୍ଥ ଆୟାମାନଙ୍କର ଉତ୍କଳ ଭାଷା ଧନ୍ୟ-

ଜଣେ ସ୍ୱଦେଶନୁରାଗୀ ।

*ଭା୧୮ଗ,ସଂ୪୬ଖ୍ୟା, ୨୪।୧୧।୧୮୮୩*

## [ଅବଧାନ ବନ୍ଧୁ]

ଆମ୍ଭେମାନେ କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ଯେ ବାବୁ ମଧୁସୂଦନ ରାଓଙ୍କ କୃତ ଅବଧାନବନ୍ଧୁ ଖଣ୍ଡିଏ ଉପହାର ପାଇଅଛୁଁ । ଏ ପୁସ୍ତକର କଳେବର ପୃ୩୦ଷ୍ଠା ଏବଂ ଏହି ଯନ୍ତ୍ରାଳୟରେ ମୁଦ୍ରିତ ହୋଇଅଛି ମୂଲ୍ୟ ଟ୦୵ ମାତ୍ର । ଏଥିରେ ଚଟଶାଳିର ପିଲାମାନଙ୍କୁ ଶିକ୍ଷାଦେବା ଏବଂ ସେମାନଙ୍କ ହାଯିରାବହି ଇତ୍ୟାଦି ରଖିବାର କେତେଗୁଡିଏ ନିୟମ ଅତି ତାତ୍ପର୍ଯ୍ୟରୂପେ ସନ୍ନିବେଶିତ ହୋଇଅଛି । ଚଟଶାଳିର ପ୍ରଚଳିତ ଶିକ୍ଷା ରୀତିକୁ ଯଥା ସମ୍ଭବ ସ୍ଥିରରଖି ତହିଁସଙ୍ଗେ ଆଧୁନିକ ଉତ୍କୃଷ୍ଟ ରୀତିକୁ ମିଶାଇ ଶିକ୍ଷାକାର୍ଯ୍ୟର ଉନ୍ନତି ସାଧନର ଚେଷ୍ଟା ହୋଇଅଛି ଏବଂ ଆମ୍ଭେମାନେ ଆନନ୍ଦ ସହିତ ସ୍ୱୀକାର କରୁଅଛୁଁ ଯେ ଗ୍ରନ୍ଥକାର ଏଥିରେ ଉତ୍ତମରୂପେ କୃତକାର୍ଯ୍ୟ ହୋଇ ଅଛନ୍ତି । ଶିକ୍ଷାବିଭାଗୀୟ ଅନୁଭବୀ କର୍ମଚାରୀ ଭିନ୍ନ ଅନ୍ୟଦ୍ୱାରା ଏପ୍ରକାର ପୁସ୍ତକ ରଚନା ହୋଇ ନପାରେ ଏବଂ ଏହାଦ୍ୱାରା ଅବଧାନମାନଙ୍କର ଯଥୋଚିତ ସାହାଯ୍ୟ ହେବ ସନ୍ଦେହ ନାହିଁ ।

*ଭା୧୮ଗ,ସଂ୪୮ଖ୍ୟା, ୮।୧୨।୧୮୮୩*

## ଶିକ୍ଷା କମିଶନରଙ୍କର ରିପୋର୍ଟ ।

ପ୍ରାୟ ଅଢେଇ ବର୍ଷ ଅନୁସନ୍ଧାନ ଓ ବିଚାର ଉତ୍ତାରୁ ଏହି କମିଶନ ଆପଣା ରିପୋର୍ଟ ଇଣ୍ଡିଆ ଗବର୍ଣ୍ଣମେଣ୍ଟଙ୍କୁ ଅର୍ପଣ କରିଅଛନ୍ତି । ରିପୋର୍ଟଟି ସାମାନ୍ୟ ନୁହଇ ଏକା ତହିଁର କଳେବର ପୃ୭୦୦ଷ୍ଠା ଅଟଇ ଏପର ସେମାନେ ଯେତେ ଲୋକଙ୍କ ସାକ୍ଷ ନେଇ ଅଛନ୍ତି ଏବଂ ଯେତେ ଆବେଦନପତ୍ର ପାଇ ଅଛନ୍ତି ସେ ସମସ୍ତ ପ୍ରାୟ ପୃ୩୦୦ଷ୍ଠା ପୂର୍ଣ୍ଣ କରିଅଛି । ଏ ସମସ୍ତ ଆଲୋଚନା କରି କମିଶନ ଯେଉଁ ମନ୍ତବ୍ୟ ବ୍ୟକ୍ତ କରିଅଛନ୍ତି ଏବଂ ଶିକ୍ଷାର ଉନ୍ନତି ସାଧନ ନିମିତ୍ତ ଯେ ସମସ୍ତ ପରାମର୍ଶ ଦେଇ ଅଛନ୍ତି ତାହା ୬ଅଧ୍ୟାୟରେ ବିଭକ୍ତ ହୋଇଅଛି । ଯଥା -୧ମ ନିମ୍ନ

ଶିକ୍ଷା, ୨ୟ ସ୍କୁଲ ଓ କଲେଜ, ୩ୟ ବିଦ୍ୟାଳୟ ପରିଦର୍ଶନ ପରୀକ୍ଷା ଇତ୍ୟାଦି, ୪ର୍ଥ ସ୍ୱତନ୍ତ୍ର ବିଦ୍ୟାଳୟ ସହିତ ସମ୍ବନ୍ଧ ଏବଂ ସାହାଯ୍ୟର ବ୍ୟବସ୍ଥା, ୫ମ ବିଶେଷ ଶ୍ରେଣୀର ଶିକ୍ଷାସମ୍ପର୍କୀୟ ବ୍ୟବସ୍ଥା, ୬ଷ୍ଠ ଶିକ୍ଷାସମ୍ବନ୍ଧୀୟ ରାଜକୀୟ ବିଧାନ । ପ୍ରତ୍ୟେକ ଭାଗରେ ଯେତେ ଯେତେ ପରାମର୍ଶ ଦିଆ ଯାଇ ଅଛି ସେ ସମସ୍ତ ବର୍ଣ୍ଣନା କରିବାକୁ ଏହି କ୍ଷୁଦ୍ର ପତ୍ରିକାରେ ସ୍ଥାନ ନାହିଁ ଏବଂ ବର୍ତ୍ତମାନ ତହିଁର ବାହୁଲ୍ୟ ବର୍ଣ୍ଣନା ମଧ ପ୍ରୟୋଜନ ନାହିଁ କାରଣ ଏହାକୁ ବିବେଚନା କରି ଗବର୍ଣ୍ଣମେଣ୍ଟ ଯେଉଁ ବ୍ୟବସ୍ଥା କରିବାକୁ ପ୍ରବୃତ୍ତ ହେବେ ତାହା ଯଥାକାଳରେ ପ୍ରକାଶ ପାଇବ ଏବଂ ତେତେବେଳେ ତହିଁର ପରିଚୟ ପାଠକମାନେ ପାଇଲେ କାର୍ଯ୍ୟତଃ ସମସ୍ତ ସୁବିଧା ହେବ । ବର୍ତ୍ତମାନ ଏତିକି କହିଲେ ଯଥେଷ୍ଟ ହେବ ଯେ ଉଚ୍ଚଶିକ୍ଷା ପ୍ରତି ଲୋକଙ୍କର ଯେଉଁ ଆଶଙ୍କା ଥିଲା ରିପୋର୍ଟ ଦୃଷ୍ଟିରେ ତାହା ଦୂରୀଭୂତ ହୋଇଅଛି । କମିଶ୍ନରମାନଙ୍କ ପରାମର୍ଶର ମୂଳ ତତ୍ତ୍ୱ ଏହି କି ନିମ୍ନଶିକ୍ଷାକୁ ସାଧାରଣରୂପେ ଯଥାସାଧ୍ୟ ପ୍ରାଚୀନ କାଳରୁ ପ୍ରଚଳିତ ରହିଥିବା ପ୍ରଥାନୁସାରେ ଚଳାଇବା ସଙ୍ଗେ ସଙ୍ଗେ ତହିଁରେ ଥିବା ଦୋଷମାନ ସଂଶୋଧନ କରିବାକୁ ହେବ । ଏପ୍ରକାର ଭାବରେ ତହିଁର କାର୍ଯ୍ୟ କରାଇବାକୁ ହେବ ଯେ କ୍ରମୋନ୍ନତିଦ୍ୱାରା ଉଚ୍ଚଲାଭ କରିବାକୁ ଲୋକେ ସମର୍ଥ ହେବେ ଅବଶେଷରେ ସମାଜନୀତି ଓ ରାଜନୀତିର ନିଶଦ୍ୱାରା ଉଚ୍ଚଶିକ୍ଷାର ସମସ୍ତ ଅଙ୍ଗ ପରିପୁଷ୍ଟ କରିବାକୁ ହେବ ।

*ଭା୧୮୮ଗ,ସଂ୪୮ଖ୍ୟା, ୮।୧୨।୧୮୮୩*

## କଲିକତାରେ ଓଡିଶାର ସମ୍ମାନ ।

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦ ସହିତ ଅବଗତ ହେଲୁଁ ଯେ ମହା ପ୍ରଦର୍ଶନୀ ଦେଖିବା ନିମିତ୍ତ ଓଡିଶାରୁ ଯେଉଁ ରାଜା ଓ ଅନ୍ୟ ସମ୍ଭ୍ରାନ୍ତ ଲୋକମାନେ ଯାଇଅଛନ୍ତି ସେମାନଙ୍କର ରାଜଧାନୀଠାରେ ବଡଲାଟ ଏବଂ ଛୋଟଲାଟଙ୍କଠାରେ ବିଶେଷ ମର୍ଯ୍ୟାଦା ହୋଇଅଛି । ପ୍ରଦର୍ଶନୀ ପ୍ରତିଷ୍ଠା ଉପଲକ୍ଷରେ ଅନ୍ୟାନ୍ୟ ଦେଶୀୟ ଅଧିପତିଙ୍କ ପରି ଓଡିଶାର ରାଜାମାନଙ୍କୁ ଗବର୍ଣ୍ଣମେଣ୍ଟରୁ ଆମନ୍ତ୍ରଣ ହୋଇଥିଲା । ସେ ଦିନ ରାତ୍ରରେ ବଡଲାଟଙ୍କ ଭବନରେ ଯେଉଁ ବୈଠକ ହୋଇଥିଲା ତହିଁରେ ବଛା ହୋଇ ଅଳ୍ପ ଲୋକଙ୍କ ଆମନ୍ତ୍ରଣ ହୋଇଥିଲା ଏମନ୍ତ କି କଲିକତାବାସୀ ପାଞ୍ଚକି ଜ୬ଣ ଦେଶୀୟ ଲୋକରୁ ଅଧିକ ନ ଥିଲେ ମାତ୍ର ଓଡିଶାବାସୀ ସମସ୍ତଙ୍କୁ ଆମନ୍ତ୍ରଣ ହୋଇଥିଲା ଏହି ବୈଠକରେ ରାଜବଧୂଙ୍କ ସହିତ ସମସ୍ତଙ୍କର ଏବଂ ରାଜ କୁମାରଙ୍କ ସହିତ କେବଳ ରାଜାମାନଙ୍କର ଆଳାପ ହେଲା । ଶ୍ରୀଯୁକ୍ତ ଲାରମିନିସାହେବ ରାଜକୁମାରଙ୍କଠାରେ ପରିଚିତ କରାଇଦେଲେ ଏବଂ କର୍ଣ୍ଣେଲ ହେଣ୍ଡରସନ୍ ବାବୁ ନନ୍ଦକିଶୋର ଦାସ ଓ କୁମାର ବୈକୁଣ୍ଠନାଥଙ୍କୁ ରାଜବଧୂଙ୍କଠାରେ ପରିଚିତ କରାଇ ଦେଲେ । ତହିଁ ଆରଦିନ ସମସ୍ତେ ଛୋଟ ଲାଟ ସାହେବଙ୍କ ସାକ୍ଷାତ୍ ଲାଭ କଲେ । ଏହି ଦିନ ରାତ୍ରରେ ବଡ ଲାଟଙ୍କର ଲେବି ବୈଠକ ହୋଇଥିଲା ଏବଂ ଏଥିରେ କୁମାର ବୈକୁଣ୍ଠନାଥ ଦେ ଏବଂ ବାବୁ ନନ୍ଦକିଶୋର ଦାସ ଆମନ୍ତ୍ରଣମତେ ଉପସ୍ଥିତ ହୋଇଥିଲେ । ଉତ୍ତରପଶ୍ଚିମ ପ୍ରଭୃତି ଖଣ୍ଡର ଦେଶୀୟ ଅଧିପତିମାନେ ଏହି ବୈଠକରେ ଉପସ୍ଥିତ ହୁଅନ୍ତି ନାହିଁ ଓଡିଶା ରାଜାଙ୍କ ପ୍ରତି ଗବର୍ଣ୍ଣମେଣ୍ଟରୁ ସେହି ମର୍ଯ୍ୟାଦା ପ୍ରଦର୍ଶିତ ହେଲା ସୁତରାଂ ସେମାନଙ୍କୁ ଯିବାକୁ ପଡିଲା ନାହିଁ । ପୁନଶ୍ଚ ତହିଁ ଆର ଦିନ ନନ୍ଦକିଶୋର ବାବୁ ରାଜାମାନଙ୍କ ସହିତ ବଡଲାଟଙ୍କ ଭବନକୁ ଯାଇଥିଲେ ଏବଂ ବଡ ଲାଟସାହେବ ଏବଂ ଡିଉକ୍ ଅର୍ଥାତ୍ ରାଜକୁମାରଙ୍କଠାରେ ଏମାନେ ପୃଥକ୍ ରୂପେ ପରିଚିତ ହେଲେ । ବଡ ଲାଟ ଏବଂ ଡିଉକ ଏକତ୍ରରେ ବସି ରାଜାମାନଙ୍କୁ ଆପଣା ପାର୍ଶ୍ୱରେ ବସାଇଲେ ଏବଂ ବାବୁ ନନ୍ଦକିଶୋର ଦାସ ମଧ୍ୟସ୍ଥଳରେ ଛିଡା ହୋଇ ପରସ୍ପରର କଥାବାର୍ତ୍ତା ବୁଝାଇ ଦେଲେ । ଏଦିନ ରାତ୍ରରେ ଲବେଡିଅର ଅଟ୍ଟାଳିକାରେ ଛୋଟଲାଟ ସାହେବଙ୍କର ବୈଠକ ହୋଇଥିଲା । ଏଠାକୁ x x x x ଇଂରାଜ ଏବଂ ଦେଶୀୟ ସମ୍ଭ୍ରାନ୍ତ ବ୍ୟକ୍ତିମାନେ x x x x ହୋଇଥିଲେ ଓଡିଶାବାସି x x x x ଏହି ଆମନ୍ତ୍ରିତ ବ୍ୟକ୍ତିଙ୍କ ମଧ୍ୟରେ ଉପ x x x x ସମ୍ମାନିତ ହୋଇଥିଲେ । ଓଡିଶାରେ ଅତ୍ୟନ୍ତ ସକଳଠାରେ ସଦ୍‌ବ୍ୟବହାରଦ୍ୱାରା x x x x ରକ୍ଷା କରିଅଛନ୍ତି ଏବଂ x x x x ତାହାଙ୍କ ପ୍ରତି ଯେଉଁ ମର୍ଯ୍ୟାଦା x x x x ହୋଇଅଛି ତହିଁରେ ଓଡିଶାର x x x x ହୋଇଅଛି ସନ୍ଦେହ ନାହିଁ ।

**xxxx** ରାଜାମାନେ ସାମାନ୍ୟ ମର୍ଯ୍ୟାଦାର **xxxx**। ସେମାନେ କରଦ ଅଧିପତି **xxxx** ତାହାଙ୍କର ପ୍ରଚୁର କ୍ଷମତା **xxxx** ମେଣ୍ଟ ଏମାନଙ୍କ ମର୍ଯ୍ୟାଦା ଦୃଷ୍ଟି **xxxx**ରାଜପଦ ଚିରସ୍ଥାୟୀରୂପେ **xxxx**ଏମାନେ ଅଛନ୍ତି । ସୁତରାଂ ଏମାନଙ୍କର **xxxx** ପ୍ରାୟ ମର୍ଯ୍ୟାଦା ହେବ ଏଥିରେ ସନ୍ଦେହ କି ? ଦୁଃଖର ବିଷୟ ଯେ ଏମାନେ ଆପଣା କିଲ୍ଲା ମଧ୍ୟରେ ଚିରକାଳ ଆବଦ୍ଧ ଏବଂ ଜ୍ଞାନ ଓ ବିବେକ ଓ ସୁନୀତି ଶିକ୍ଷା ଏବଂ ସୁଶାସନର ଯଶଃ ଲାଭରୁ ବଞ୍ଚିତ ରହି ଆପଣାକୁ ଆପେ ଚିହ୍ନିବାକୁ ଅକ୍ଷମ ହୋଇଅଛନ୍ତି । ଏହି ପ୍ରଦର୍ଶନୀ ଉପଲକ୍ଷରେ ଏମାନଙ୍କ ମଧ୍ୟରୁ କେତେଜଣ ରାଜଧାନୀକୁ ଯିବାରୁ ମର୍ଯ୍ୟାଦା ପାଇବାଦ୍ୱାରା ଯେମନ୍ତ ଚରିତାର୍ଥ ହେଲେ ଆମ୍ଭେମାନେ ଆଶା କରୁଁ କି ଯେଉଁମାନେ ଯାଇ ନାହାନ୍ତି ସେମାନେ ଉତ୍ସାହିତ ହୋଇ ଭବିଷ୍ୟତକୁ ରାଜଧାନୀକୁ ଯାଇ ତଦ୍ରୂପ ସମ୍ମାନ ଲାଭ କରିବେ । ଆମ୍ଭେମାନେ ଆହୁରି ଆଶା କରୁଁ କି ଯେଉଁମାନେ ବର୍ତ୍ତମାନ ରାଜଧାନୀକୁ ଯାଇଅଛନ୍ତି ସେମାନେ ଯେମନ୍ତ ଏକତ୍ରରେ ବଡଲାଟ ଓ ଛୋଟଲାଟ ସାହେବଙ୍କ ସହିତ ଆଳାପ କଲେ ତେମନ୍ତ ଆପଣା ମଧ୍ୟରେ ସର୍ବଦା ଆଳାପ ଓ ସଦ୍ଭାବ ରଖିବାକୁ ଶିକ୍ଷା କରିବେ । ଏକ ରାଜାର ଅନ୍ୟ ରାଜା ସଙ୍ଗେ ସାକ୍ଷାତ୍ ହେବାର ବିରଳ କିନ୍ତୁ ଏଠାରୁ ତିନି ରାଜା ଏକତ୍ରରେ ଏକ ଜାହାଜରେ କଲିକତାକୁ ଯେମନ୍ତ ମିଳି ମିଶି ଗଲେ ତେମନ୍ତ ସର୍ବଦା ଆପଣା ଆପଣା ମଧ୍ୟରେ ମିଶା ମିଶି ହେଲେ ବଡ ସୁଖର ବିଷୟ ହେବ ଏବଂ ଆମ୍ଭେମାନେ ଏହାକୁ ଉପସ୍ଥିତ ପ୍ରଦର୍ଶନୀର ଏକ ଉତ୍କୃଷ୍ଟ ଏବଂ ଆନନ୍ଦଜନକ ଫଳସ୍ୱରୂପ ସର୍ବଦା ସ୍ମରଣ ରଖିବୁଁ ।

*ଭାଗ ୧୮, ସଂଖ୍ୟା ୫୦, ୧୫/୧୨/୧୮୮୩*

# ୧୮୮୪

## [ଓଡ଼ିଆ ଚିତ୍ରାବଳୀ]

ଶିକ୍ଷାବିଭାଗର ବାର୍ଷିକ ବିଜ୍ଞାପନୀ ପ୍ରତି ବଙ୍ଗଳାର ଲେଫ୍ଟନେଣ୍ଟ ଗବର୍ଣ୍ଣରଙ୍କ ମନ୍ତବ୍ୟ ପ୍ରକାଶ ହୋଇଅଛି । ତହିଁରେ ଅନ୍ୟାନ୍ୟ ବିଷୟ ମଧ୍ୟରେ ଲେଖାଅଛି କି ଓଡ଼ିଆ ଭାଷାରେ ଭୂଗୋଳର ଚିତ୍ରାବଳୀମାନ ନ ଥିବାରୁ ଓଡ଼ିଶା ସ୍କୁଲମାନଙ୍କର ବଡ଼ ଅସୁବିଧା ହୋଇଥିଲା । ମାନ୍ୟବର କୁମାର ବୈକୁଣ୍ଠନାଥ ଦେ ଖଣ୍ଡିଏ ଭୂଚିତ୍ରାବଳୀ ଏଥି ମଧ୍ୟରେ ପ୍ରକାଶ କରିଅଛନ୍ତି ଏବଂ କଥିତ ହୁଅଇ ତାହା ଉତ୍କୃଷ୍ଟ ହୋଇଅଛି ସ୍କୁଲର କାନ୍ଥରେ ଟଙ୍ଗା ହେବା ଭଳି ବଡ଼ ବଡ଼ ଚିତ୍ରାବଳୀମାନ ମଧ୍ୟ ପ୍ରସ୍ତୁତ କରିବା କାରଣ ସେହି ସାଧାରଣହିତୋତ୍ସାହୀ କୁମାର ପ୍ରତିଶ୍ରୁତ ହୋଇଅଛନ୍ତି । ଏପରି ଯଶ ଅର୍ଜିବା ଭାଗ୍ୟର କଥା ସିନା !

*ଭା/୧୯ଗ, ସଂ୬ଖ୍ୟା, ୯/୨/୧୮୮୪*

## ଉତ୍କଳ ପାଟୀଗଣିତ — ପ୍ରଥମଭାଗ ।

ଉତ୍କଳ ଦେଶରେ ବଙ୍ଗଳାର ଅନ୍ୟାନ୍ୟ ବିଭାଗ ପରି ସାଧାରଣ ଶିକ୍ଷାର ଉନ୍ନତି ଦିନ ଦିନ ଯେପରି ହେଉଅଛି ତାହା ଅତ୍ୟନ୍ତ ପ୍ରୀତିକର ଅଟଇ । ବିଦ୍ୟାଳୟ ଓ ଛାତ୍ରଙ୍କ ସଂଖ୍ୟା ସମୁଚିତ ବେଗରେ କ୍ରମଶଃ ବୃଦ୍ଧି ହେବାର ବାର୍ଷିକ ବିଜ୍ଞାପନୀମାନ ପରିଚୟ ଦେଉଅଛି । ଏହି ଶିକ୍ଷା ବୃଦ୍ଧି ସଙ୍ଗେ ସଙ୍ଗେ ପାଠ୍ୟ ପୁସ୍ତକ ବୃଦ୍ଧି ହେବା ସ୍ୱାଭାବିକ ଅଟଇ । ବାସ୍ତବରେ ପାଠ୍ୟ ପୁସ୍ତକର ସଂଖ୍ୟା ଅଥବା ବିକ୍ରୟର ପରିମାଣ ପ୍ରତି ବର୍ଷ ବୃଦ୍ଧି ହେଉଥିବାର ଦେଖାଯାଏ । ପାଠ୍ୟ ପୁସ୍ତକର ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଯେବେ ଗୁଣର ବୃଦ୍ଧି ଦେଖନ୍ତୁ ତେବେ ସାଧାରଣ ଶିକ୍ଷାର ପ୍ରକୃତ ଉନ୍ନତି ହେଉଅଛି ବୋଲି ବୋଲିବାକୁ ସାହସୀ ହୁଅନ୍ତୁ । ମାତ୍ର ଦୁଃଖର ବିଷୟ ଯେ ଉତ୍କୃଷ୍ଟ ପ୍ରଣାଳୀର ପାଠ୍ୟ ପୁସ୍ତକ ଓଡ଼ିଶାର ମୁଦ୍ରାଯନ୍ତ୍ର ପ୍ରସବ କରିବା ଅତ୍ୟନ୍ତ ବିରଳ । ଅଧିକାଂଶ ପୁସ୍ତକ କେବଳ ସଂକ୍ଷିପ୍ତସାର ଅଥଚ ତହିଁର ମୂଲ୍ୟ ଊଣା ନୁହଇ । ଏ ସମସ୍ତ ପୁସ୍ତକ ଓ ତହିଁର ମୂଲ୍ୟ ଏକତ୍ରେ ବିଚର କଲେ ପ୍ରତୀତି ହୁଅଇ ଯେମନ୍ତ ଗ୍ରନ୍ଥ ପ୍ରଣୟନ କରିବା ସୁଦ୍ଧା ଗୋଟିଏ ବ୍ୟବସାୟର କଥା ହୋଇଅଛି । କୌଣସି ରୂପେ ଦୁଇ ପଇସା ଲାଭ ହେଲେ ଯଥେଷ୍ଟ ହେଲା — ଗୁଣର କଥା କିଏ ବୁଝିବ ? ପୁଣି ସଂକ୍ଷିପ୍ତ ପୁସ୍ତକ ପ୍ରକାଶ କରିବାର ରୋଗ ଦିନ ଦିନ ଏତେ ବୃଦ୍ଧି ହେଉଅଛି ଯେ ତାହା ଦେଖି ବେଳେ ବେଳେ ମନରେ ଭୟ ହୁଅଇ ଯେମନ୍ତ କେତେ ବର୍ଷ ଉତ୍ତାରୁ ଲୋକଙ୍କ ଶିକ୍ଷା ଏତେ ସୂକ୍ଷ୍ମ ହୋଇଯିବ ଯେ ସ୍ଥୂଳ ଦୃଷ୍ଟିରେ ପ୍ରାୟ ପ୍ରତ୍ୟକ୍ଷ ହେବ ନାହିଁ । କେବଳ କେତେକ ଜଣ ସୂକ୍ଷ୍ମଦର୍ଶୀ ଶିକ୍ଷାବିଭାଗୀୟ କର୍ମଚରୀ କି ଯେଉଁମାନଙ୍କର ପ୍ରକାରାନ୍ତର ଉତ୍ସାହରେ ଏଥିର ସୃଷ୍ଟି ହେଉଅଛି ସେହିମାନଙ୍କର ପ୍ରକାଶିତ ବାର୍ଷିକ ତାଲିକାରେ ଏକା ଉନ୍ନତି ଦେଖାଯିବ । ପୁସ୍ତକ ବିଶେଷକୁ ଚିହ୍ନାଇଦେବା ବର୍ତ୍ତମାନ ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହଇ ଆମ୍ଭେମାନେ କେବଳ କାଳର ଲକ୍ଷଣକୁ ଚିହ୍ନାଇ ଦେଉଅଛୁଁ ଏବଂ ଯେଉଁମାନେ ଗତ ବ୨୦ର୍ଷରୁ ଉତ୍କଳ ପାଠ୍ୟ ପୁସ୍ତକର ଅବସ୍ଥା ନିରୀକ୍ଷଣ କରି ଆସୁଅଛନ୍ତି ସେମାନେ ଆମ୍ଭମାନଙ୍କର କଥାର ମୂଲ୍ୟ ଅବଶ୍ୟ ନିର୍ଣ୍ଣୟ କରିବାକୁ ସମର୍ଥ ହେବେ । ଫଳତଃ ଏମନ୍ତ କାଳରେ ଖଣ୍ଡିଏ ଉତ୍ତମ ପାଠ୍ୟ ପୁସ୍ତକ ଲାଭ କରିବା ସାମାନ୍ୟ ସୁଖର ବିଷୟ ନୁହଇ । ଏହି ହେତୁ ଉତ୍କଳ ପାଟୀଗଣିତର ପ୍ରଥମ ଭାଗ କି ଯାହା ଆମ୍ଭେମାନେ କୃତଜ୍ଞତା ସହିତରେ ଉପହାର ପାଇଥିବାର ସ୍ୱୀକାର କରୁଅଛୁଁ ସମଧିକ ଆଦର ଓ ଆନନ୍ଦ ସହିତରେ ଗ୍ରହଣ କରୁଅଛୁଁ । ଏଠା ସରକେ ସ୍କୁଲର ପ୍ରଧାନ ଶିକ୍ଷକ ବାବୁ ଉମେଶଚନ୍ଦ୍ର ବସୁ ଏହି ପୁସ୍ତକର ପ୍ରଣେତା ଅଟନ୍ତି ଏବଂ ସେ ଯେ ଏହାକୁ ସର୍ବାଙ୍ଗ ସମ୍ପୂର୍ଣ୍ଣ ଓ ସୁନ୍ଦର କରିବାକୁ କୌଣସି ଅଂଶରେ ତ୍ରୁଟି କରିନାହାନ୍ତି ଏହା କହିବାକୁ ଆମ୍ଭମାନଙ୍କର କିଛିମାତ୍ର ଦ୍ୱିଧା ହେଉନାହିଁ । ଏହି ପ୍ରଥମ ଭାଗରେ ଯେ ସମସ୍ତ ବିଷୟ ସନ୍ନିବିଷ୍ଟ ହୋଇଅଛି ଗ୍ରନ୍ଥକାର ଭୂମିକାରେ ତାହା ଚିହ୍ନାଇ

ଦେଇଅଛନ୍ତି ଯଥା—ଧାରାପାତ, ଅମିଶ୍ର, ମିଶ୍ର, ଚରିସୂତ୍ର ବ୍ୟତୀତ ସାଙ୍କେତିକ, ଐକିକ, ମିଶ୍ର କରଣ, ଦେଶୀୟ ଓ ବଙ୍ଗ ଶୁଭଙ୍କରୀ ଧାରା ନଳ, ଭିଆଣ ଏବଂ ନାନାବିଧ ପ୍ରଶ୍ନ । ଗ୍ରନ୍ଥକାର ଯାହା କହିଅଛନ୍ତି କି ଏ ଭାଗ ଏପରି ବିବେଚନା ସହିତ ସଙ୍କଳିତ ହୋଇଅଛି ଯେ ଏହାକୁ ଆୟତ୍ତ କରି ପାରିଲେ ସାଂସାରିକ ବିଷୟର ଯାବତୀୟ ଅଙ୍କ ସହଜରେ ସମ୍ପନ୍ନ କରାଯାଇପାରେ ତହିଁରେ କିଛି ସନ୍ଦେହ ନାହିଁ । ଅଙ୍କଦ୍ୱାରା ଯେ ସମସ୍ତ ସାଂସାରିକ ବିଷୟ ସାଧନ କରାଯାଏ ତହିର ଦୁଇ ପ୍ରଥା ବର୍ତ୍ତମାନକୁ ଏ ପ୍ରଦେଶରେ ପ୍ରଚଳିତ ଥିବାର ଦେଖାଯାଏ ଅର୍ଥାତ୍ ଗୋଟିଏ ଦେଶୀୟ ଧାରା କି ଯାହା ପ୍ରାଚୀନ ଓଝାଙ୍କ ସର୍ବସ୍ୱ ଏବଂ ଅପରଟି ଇଂରାଜୀ ଧାରା କି ଯାହା ଆଧୁନିକ ଶିକ୍ଷାର ମୂଳ ଅଟଇ । ଏହି ଉଭୟ ଧାରାର ବିଶେଷ ବିଶେଷ ଗୁଣ ଅଛି । ଏଥି ପାଁଇ ବ୍ୟବସାୟୀ ଲୋକ ପକ୍ଷରେ କେତେବେଳେ କେଉଁ ଧାରା ସମଧିକ ଆଦରଣୀୟ ହୁଅଇ । ମାତ୍ର ଉଭୟ ଧାରାକୁ ଏକ ବୃହତ୍ ଉଦ୍ଦେଶ୍ୟର ଅଙ୍ଗୀଭୂତ କରି ଯହିଁର କାର୍ଯ୍ୟକାରିତା ଯେଉଁ ଅଂଶରେ ଉତ୍କୃଷ୍ଟ ତାହା ଏକତ୍ରେ ଦେଖାଇବାର ଚେଷ୍ଟା ପ୍ରାୟ ଅବଧି ଏଠାରେ ହୋଇ ନ ଥିଲା । ବାବୁ ଉମେଶଚନ୍ଦ୍ର ବସୁ ଏହା ସୁଚାରୁରୂପେ ସମ୍ପନ୍ନ କରିବାଦ୍ୱାରା ଆମ୍ଭମାନଙ୍କର ବିଶେଷ ପ୍ରୀତିଭାଜନ ହୋଇଅଛନ୍ତି । ଛାତ୍ରମାନେ ଏ ଗ୍ରନ୍ଥକୁ ଆୟତ୍ତ କରି ପାରିଲେ ଦେଶୀୟ ଓ ଇଂରାଜୀ ପ୍ରଥାର ତାରତମ୍ୟ ଏବଂ ସମ୍ୟକ୍ ଜ୍ଞାନ ଏକ କାଳରେ ପାଇବେ । ପୁସ୍ତକଗତ ପ୍ରତ୍ୟେକ ବିଷୟର ଦୋଷ ଗୁଣ ସମାଲୋଚନା କରିବାକୁ ଆମ୍ଭମାନଙ୍କର ଅବକାଶ ବା ସ୍ଥାନ ନାହିଁ । ସ୍ଥୂଳରେ ଆମ୍ଭେମାନେ ଶ୍ରୀଯୁକ୍ତ ଜଏଣ୍ଟ ଇନ୍‌ସ୍ପେକ୍‌ଟର ବାବୁ ରାଧାନାଥ ରାୟଙ୍କ ସହିତ ସମ୍ପୂର୍ଣ୍ଣରୂପେ ଐକ୍ୟ ହୋଇ କହୁଅଛୁଁ କି ଓଡ଼ିଆ ଭାଷାରେ ଯେତେ ଅଙ୍କ ପୁସ୍ତକ ଅଛି ସେ ସମସ୍ତରୁ ଏ ପୁସ୍ତକ ଅନେକ ପରିମାଣରେ ଉତ୍କୃଷ୍ଟ ଏବଂ ଏହାକୁ ପ୍ରକାଶ କରି ଗ୍ରନ୍ଥକାର ଓଡ଼ିଶାର ଶିକ୍ଷା ବିଷୟରେ ବିଶେଷ ଉପକାର କରିଅଛନ୍ତି । ଅତଏବ ଏ ପୁସ୍ତକ ଓଡ଼ିଶାର ସର୍ବତ୍ରରେ ବ୍ୟାପିବା ପକ୍ଷରେ ଶିକ୍ଷା ବିଭାଗର କର୍ମଚାରିମାନେ ବିଶେଷ ସାହାଯ୍ୟ କରିବେ ଏକଥା ବୋଲିବା ବାହୁଲ୍ୟ ଏବଂ ଏହାର ଆଦର ଦେଖି ଓଡ଼ିଶାର ଅପର ଗ୍ରନ୍ଥକାରମାନେ ଉତ୍ସାହିତ ହୋଇ ଅନ୍ୟାନ୍ୟ ବିଷୟରେ ଉତ୍କୃଷ୍ଟ ଗ୍ରନ୍ଥମାନ ପ୍ରଣୟନ କରିବାକୁ ଉତ୍ସାହିତ ହେବେ ଏହା ମଧ ଆମ୍ଭମାନଙ୍କର ଏକାନ୍ତ ଆଶା ।

*ଭା୧୯ଗ,ସଂ୯ଖ୍ୟା,୨୨।୩।୧୮୮୪*

## ଉକାଲତୀ ପରୀକ୍ଷାର ଫଳ ।

ଏହି ପରୀକ୍ଷାର ଫଳ ଗତମାସ ତା ୨୬ ରିଖ ଗଜେଟରେ ପ୍ରକାଶିତ ହୋଇଅଛି ଏବଂ ଓଡ଼ିଶାରେ ଯେଉଁମାନେ ଏଥିରେ କୃତକାର୍ଯ୍ୟ ହୋଇ ଅଛନ୍ତି ସେମାନଙ୍କ ନାମ ଗତ ସପ୍ତାହରେ ପ୍ରକାଶ କରି ଅଛୁଁ । ଏଫଳ ରାବନସା କଲେଜ ପକ୍ଷରେ ଅତ୍ୟନ୍ତ ଶୁଭକର ଅଟଇ ଏବଂ ଉକ୍ତ କଲେଜର ସକଳ ପରୀକ୍ଷାରୁ ଏହା ଅତ୍ୟନ୍ତ ଉଜ୍ଜ୍ୱଳ ହୋଇ ଅଛି । ଏହି କଲେଜର ଆଇନ ଶ୍ରେଣୀରେ ଶିକ୍ଷା ଲାଭ କରିଥିବା ଚାରିଜଣ ଛାତ୍ର ଏବର୍ଷ ପରୀକ୍ଷା ଦେବାକୁ କଲିକତା ଯାଇଥିଲେ । ଏମାନେ ସମସ୍ତେ ଉର୍ତ୍ତୀର୍ଣ୍ଣ ହେଲେ ଅର୍ଥାତ୍ ଜଣେ ବି, ଏଲ ପରୀକ୍ଷାରେ ଏବଂ ତିନିଜଣ ଉକାଲତୀ ପରୀକ୍ଷାରେ । ଏବର୍ଷ ଉକାଲତୀ ପରୀକ୍ଷାର ପ୍ରଶ୍ନମାନ ଯେମନ୍ତ କଠିନ ଥିଲା ତହିଁରେ ବଡ଼ ଭୟ ହୋଇଥିଲା ମାତ୍ର ଦେଖା ଯାଉଅଛି ପରୀକ୍ଷକମାନେ ତହିଁର ଯଥାର୍ଥ ସୁବିଚାର କରି ଅଛନ୍ତି । ଉକାଲତିର ଉଚ୍ଚ ପରୀକ୍ଷାରେ ସର୍ବସୁଦ୍ଧା ଜ୭୨ଣ ଉପସ୍ଥିତ ହୋଇ ଥିଲେ ସେମାନଙ୍କ ମଧ୍ୟରୁ ଜ୨୦ଣ ଉଚ୍ଚ ଶ୍ରେଣୀରେ ଏବଂ ଜ୧୯ଣ ନିମ୍ନଶ୍ରେଣୀରେ କୃତକାର୍ଯ୍ୟ ହୋଇ ଅଛନ୍ତି । ଏସ୍ଥଳେ ଓଡ଼ିଶାର ସମସ୍ତ ପରୀକ୍ଷାର୍ଥୀ ଉର୍ତ୍ତୀର୍ଣ୍ଣ ହେବା ଆହୁରି ସୁଖ୍ୟାତିର ବିଷୟ । ନିମ୍ନଶ୍ରେଣୀର ପରୀକ୍ଷାର୍ଥୀ ଜ୩୦୦ଣରୁ ଅଧିକ ଥିଲେ ସେମାନଙ୍କ ମଧ୍ୟରୁ ଜ୧୪୭ଣ ଉର୍ତ୍ତୀର୍ଣ୍ଣ ହୋଇ ଅଛନ୍ତି । ଏଥି ମଧ୍ୟରେ ଓଡ଼ିଶାରୁ କେବଳ ଏକ ବ୍ୟକ୍ତି ଅର୍ଥାତ୍ ପୁରୀର ହରିହର ମିଶ୍ର ପରୀକ୍ଷାର୍ଥୀ ଥିଲେ ସେ କୃତକାର୍ଯ୍ୟ ହୋଇ ଅଛନ୍ତି । ଅତଏବ ନିମ୍ନଶ୍ରେଣୀର ପରୀକ୍ଷା ମଧ ଓଡ଼ିଶା ପକ୍ଷରେ ସମାନରୂପ ପ୍ରୀତିକର ହୋଇ ଅଛି ।

ଏ ପରୀକ୍ଷାର ଫଳରେ ଓଡ଼ିଶାବାସିମାନେ ବିଶେଷ ଆନନ୍ଦିତ ହେବାର କାରଣ ଏହି କି ଓଡ଼ିଶାର ସର୍ବୋଚ୍ଚ ଅଦାଲତରେ ଯେଉଁମାନେ କର୍ମ କରୁ ଅଛନ୍ତି ସେମାନେ ପ୍ରାୟ ସମସ୍ତେ ଅନ୍ୟତ୍ରରେ ଯୋଗ୍ୟତା ଲାଭ କରି ଏଠାକୁ କର୍ମ କରିବାକୁ ଆସି ଅଛନ୍ତି ଏବଂ ବାବୁ ଦୀନାନାଥ ସରକାର ଓ ବାବୁ ମଧୁସୂଦନ ଦାସଙ୍କୁ ଛାଡି ଆଉ ସମସ୍ତେ

ବଙ୍ଗଦେଶରୁ କେବଳ ଉକାଲତୀ କାର୍ଯ୍ୟ କରିବା କାରଣ ଏଠାକୁ ଆସି ଅଛନ୍ତି । ଏମାନଙ୍କଦ୍ୱାରା ଯେ ସାଧାରଣ ପ୍ରୟୋଜନ ପୂର୍ଣ୍ଣ ହେଉ ନାହିଁ ଏକଥା ବୋଲିବା ଆମ୍ଭମାନଙ୍କର ଅଭିପ୍ରାୟ ନୁହଇ ବାସ୍ତବରେ ଓଡ଼ିଶାପରି ସାମାନ୍ୟ ଆୟକର ପ୍ରଦେଶରେ ଯେପ୍ରକାର ଯୋଗ୍ୟ ଉକୀଲ ରହିଲେ ଚଳି ପାରେ ସେପରି ଆମ୍ଭମାନଙ୍କୁ ପ୍ରାପ୍ତ ହୋଇ ଅଛି ଏବଂ ସେମାନେ ଯୋଗ୍ୟତା ସହିତ ଆପଣା ଆପଣା କାର୍ଯ୍ୟ କରୁ ଅଛନ୍ତି । ତଥାଚ ଏ ପ୍ରଦେଶୀୟ ଲୋକଙ୍କ ମଧ୍ୟରୁ କାହାରିକୁ ଉକୀଲଙ୍କ ଶ୍ରେଣୀ ମଧ୍ୟରେ ଦେଖିବା ଦେଶାନୁରାଗୀ ବ୍ୟକ୍ତିମାନଙ୍କର ସ୍ୱାଭାବିକ ଆଶା ମାତ୍ର ହାଇକୋର୍ଟଙ୍କ ନିୟମାନୁସାରେ ସେପରି ଏକ ବ୍ୟକ୍ତି ସୁଦ୍ଧା ଦୀର୍ଘକାଳ ମଧ୍ୟରେ ଆମ୍ଭେମାନେ ଦେଖିବାକୁ ସମର୍ଥ ହୋଇ ନ ଥିଲୁଁ ବର୍ତ୍ତମାନ ଏ ପ୍ରଦେଶୀୟ ଜଣାଏ ଉଚ୍ଚ ଶ୍ରେଣୀର ଉକୀଲ ମଧ୍ୟରେ ପରିଗଣିତ ହେଲେ ଏବଂ ଆଗାମୀ ବର୍ଷସକାଶେ ମଧ୍ୟ କେତେଜଣ ପ୍ରସ୍ତୁତ ହେଉ ଅଛନ୍ତି । କ୍ରମେ କେତେବର୍ଷ ଏଠା ଲୋକମାନେ ଏହିପରି ମନୋଯୋଗୀ ହେଲେ ଯେ ଏପରି ଉକୀଲଙ୍କ ସଂଖ୍ୟା ଯେଥେଷ୍ଟ ହେବ ଏ ବିଷୟରେ ସନ୍ଦେହ ନାହିଁ, ଏବଂ ତହିଁରେ ଆଉ କିଛି ହେଉ ନ ହେଉ କେତେଗୁଡ଼ିଏ ଶିକ୍ଷିତଲୋକ ସ୍ୱାଧୀନଭାବରେ ଆପଣା ଜୀବିକା ନିର୍ବାହ କରିବା ସଙ୍ଗେ ସଙ୍ଗେ ସାଧାରଣ କାର୍ଯ୍ୟରେ ଯୋଗ ଦେବାକୁ ଅବକାଶ ପାଇବେ ଏହା ସାମାନ୍ୟ ମଙ୍ଗଳର ବିଷୟ ନୁହଇ । ଅବଧି ଯେତେ ଶିକ୍ଷିତ ଲୋକ ଏଠାରେ ଅଛନ୍ତି ପ୍ରାୟ ସମସ୍ତେ ସରକାରୀ ଚାକିରୀରେ ବନ୍ଦ ରହି ଅଛନ୍ତି । ଏମାନଙ୍କର କିଛି ମାତ୍ର ସ୍ୱାଧୀନତା ନାହିଁ ସୁତରାଂ ଇଚ୍ଛା ଓ ଯୋଗ୍ୟତା ଥିଲେ ମଧ୍ୟ ଏମାନେ କୌଣସି ରାଜକୀୟ କାର୍ଯ୍ୟର ଦୋଷ ଗୁଣ ଦେଖାଇ ପାରୁ ନାହାନ୍ତି । ବିଶେଷତଃ ଆଜିକାଲି କେବଳ ଆଇନର କାଳ। ଆଇନ ନ ଜାଣିଲେ ଦଣ୍ଡେ ନିର୍ବାହ ହେବାର କଠିନ । ମୋଫସଲର ଅନେକ ଅସୁବିଧାର କାରଣ ଆଇନ ନ ଜାଣିବା ଅଟଇ । ଉକୀଲଙ୍କ ସଂଖ୍ୟା ଅଧିକ ହେଲେ ଆଇନର ଜ୍ଞାନ ଦେଶରେ ଅଧିକତର ବିସ୍ତାର ହେବ ଏବଂ ତଦ୍ୱାରା ସାଧାରଣ ସ୍ୱତ୍ୱରକ୍ଷା କରିବା ଏବଂ ଅତ୍ୟାଚାରରୁ ବଞ୍ଚିବା ସକାଶେ ଲୋକମାନେ ଅଧିକତର ସକ୍ଷମ ହେବେ । ଏହି ସମସ୍ତ ବିବେଚନାରେ ଆମ୍ଭେମାନେ ଉକୀଲଙ୍କ ସଂଖ୍ୟା ବୃଦ୍ଧି ହେବାର କାମନା କରୁଅଛୁଁ ଏବଂ ତହିଁର ସୂତ୍ରପାତ ଦେଖି ଆନନ୍ଦିତ ହୋଇ ଅଛୁଁ ।

*ଭା/୧୯ଗ,ସଂ୧୪ଖ୍ୟା, ୫।୪।୧୮୮୪*

## ଓଡିଆ ପୁସ୍ତକ ।

ଆମ୍ଭେମାନେ ଅନେକ ଥର ଅନେକ ଲୋକଙ୍କ ମୁଖରୁ ଓଡ଼ିୟାରେ ଭଲ ଭଲ ପୁସ୍ତକ ହେଉ ନ ଥିବାର ଶୁଣିଅଛୁଁ ମଧ୍ୟ ଏକ ସମୟରେ ଜଣେ ପତ୍ରପ୍ରେରକ ଓଡ଼ିୟା ଭାଷାରେ ଯେଉଁ ପୁସ୍ତକମାନ ଛାପା ହୋଇଅଛି ସେ ସମସ୍ତର ମୂଲ୍ୟ ଏକତ୍ର କଲେ ଶଏ ଟଙ୍କାରୁ ଅଧିକ ନ ହେବା ହେତୁ ଦୁଃଖ ପ୍ରକାଶ କରିଥିଲେ । ଆମ୍ଭେମାନେ ପଚାରୁଁ ଓଡ଼ିୟା ଭାଷାରେ ଭଲ ଭଲ ପୁସ୍ତକ ନ ହେବା ପକ୍ଷେ ଦାୟୀ କିଏ ? ଜନସାଧାରଣ ସାଧାରଣ ଭାବର ପୁସ୍ତକ ପଢ଼ିବାକୁ ଆଗ୍ରହ ପ୍ରକାଶ କରିବେ ଯଥା–ଉପନ୍ୟାସ, ନାଟକ, ଧର୍ମଗ୍ରନ୍ଥ, ପଦ୍ୟ ଓ ଗୀତ ପୁସ୍ତକ ଇତ୍ୟାଦି । ଲୋକସାଧାରଣରେ ଯେତେଦିନଯାଏ ଭଲ ପୁସ୍ତକ ପଢ଼ିବା ପ୍ରତି ଆଗ୍ରହ ହୋଇ ନାହିଁ ତେତେଦିନଯାଏ ସାଧାରଣ ପାଠ୍ୟପୁସ୍ତକ ଦେଖିବାର ଆଶା କରିବା ବୃଥା ମାତ୍ର ସ୍କୁଲ ସମ୍ବନ୍ଧୀୟ ପୁସ୍ତକମାନଙ୍କର ଉନ୍ନତି ବିଧାନ ହେବା ପ୍ରତି ଦାୟୀ ସାଧାରଣ ଲୋକେ ନୁହନ୍ତି । ଶିକ୍ଷାବିଭାଗର କର୍ତ୍ତୃପକ୍ଷମାନେ ଏକା ଏଥିକି ଦାୟୀଅଟନ୍ତି ଗାଁ ପରିଗୁଣ ଧୋବା ତୁଠରୁ ଚିହ୍ନା ପଡ଼ଇ । ଓଡ଼ିୟାରେ ଭଲ ଭଲ ପାଠ୍ୟ ପୁସ୍ତକ ଦେଖିଲେ ଓଡ଼ିୟାଭାଷାରେ କି ପ୍ରକାର ଶିକ୍ଷା ଦିୟା ଯାଉ ଅଛି ତହିଁର ବିଶେଷ ପ୍ରତିପତ୍ତି ଲାଭ ହୁଅଇ । ସମସ୍ତଙ୍କୁ ମୁକ୍ତକଣ୍ଠରେ ସ୍ୱୀକାର କରିବାକୁ ହେବ ଯେ ଓଡ଼ିୟା ଗୋଟିଏ ଭାଷା ବୋଲି ବର୍ତ୍ତମାନ ବୋଧଗମ୍ୟ ହେବା କଠିନ ବ୍ୟାପାର ହୋଇଅଛି । ଭାଷା କାହାକୁ କହିବୁଁ ? ଯେଉଁ ଭାଷାରେ ସମୟ ବେଳେ ଖଣ୍ଡେ ଅଧେ ପଢ଼ିଲା ଭଳି ପୁସ୍ତକ ନ ମିଳିଲା ତାହାକୁ କିପ୍ରକାର ଭାଷା ବୋଲି ବୋଲିବୁଁ ? ପୁରାତନ କବିକୁଳର ଦୁର୍ବୋଧ ଅଥଚ ପ୍ରସିଦ୍ଧ ଗ୍ରନ୍ଥମାନ ଛାଡିଦେଲେ ବର୍ତ୍ତମାନ ଓଡ଼ିୟାରେ ଖଣ୍ଡିଏ ପଢ଼ିଲାଭଳି ପୁସ୍ତକ ମିଳିବ ନାହିଁ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ଶ୍ରମଶୀଳ ଲୋକ ଆରାମ ନେଲାବେଳେ ଖଣ୍ଡିଏ ଓଡିୟା ପୁସ୍ତକ(ଦୁଇ ଏକ ଖଣ୍ଡ ଛାଡି ) ମିଳିବ ନାହିଁ । ଏଥିର ହେତୁ କିସ ? ଶିକ୍ଷାବିଭାଗ କି ଏଥି ନିମିତ୍ତ

ତିଳମାତ୍ର ଦାୟୀ ନୁହଇ ? ଓଡ଼ିଶାର ବର୍ତ୍ତମାନ ଅବସ୍ଥା ଦେଖିବାକୁ ଗଲେ ସେମାନଙ୍କୁ ଦାୟୀ ବୋଲି ଆମ୍ଭେମାନେ ଜ୍ଞାନ କରିବୁଁ । ନିତାନ୍ତ ପକ୍ଷରେ ଯେଉଁ ସାହିତ୍ୟ ସମ୍ବନ୍ଧୀୟ ସାଧାରଣ ପାଠ୍ୟ ପୁସ୍ତକ ଓଡ଼ିୟାଭାଷା ଭଲରୂପେ ଶିଖାଇ ଦିଏ ତାହାକୁ ଉତ୍ସାହିତ କଲେ କି ଭାଷାର କିୟତ୍ପରିମାଣରେ ପୁଷ୍ଟିସାଧନ ହୁଅନ୍ତା ନାହିଁ ? ମାତ୍ର ଏ ସବୁ ଅରଣ୍ୟରେ ରୋଦନ କଲା ପ୍ରାୟ–କେହି ଶୁଣିବେ ନାହିଁ । ସାଧାରଣ ପାଠ୍ୟ ପୁସ୍ତକକୁ ପ୍ରଶ୍ରୟ ଦେବାର ତେଣିକି ଥାଉ ଯେଉଁ ପୁସ୍ତକ ନିମିତ୍ତ ଗବର୍ଣ୍ଣମେଣ୍ଟରୁ ପୁରସ୍କାର ପ୍ରଦତ୍ତ ହେଉଅଛି ତାହା ସୁଦ୍ଧା ବେଳେ ବେଳେ ଆଶା ଭରସା ପାଉ ନାହିଁ । ଏହା କି ସାମାନ୍ୟ ଦୁଃଖର ବିଷୟ ! ଗ୍ରନ୍ଥକାର ପରିଶ୍ରମ ସ୍ୱୀକାର କରି ସରକାରି ନୋଟିସ ଅନୁଯାୟୀ ଖଣ୍ଡିଏ ପୁସ୍ତକ ପ୍ରଣୟନ କଲା । ଅନ୍ୟାନ୍ୟ ଲୋକଙ୍କ ପୁସ୍ତକ ସଙ୍ଗେ ତୁଳା ହୋଇ ଭଲ ବୋଲି ପସନ୍ଦ ହେଲାରୁ ପୁରସ୍କାର ପ୍ରଦତ୍ତ ହେଲା । ଗ୍ରନ୍ଥକାର କେତେ ଆଶା ସ୍ୱପ୍ନ ଦେଖି ପୁସ୍ତକ ଛପାଇଲା । ମାତ୍ର କାହିଁ ? ଆଲମାରିର ପୁରାତନ ପୋକମାନେ ଗ୍ରନ୍ଥକୁ ଆଶ୍ରୟ କଲେ । ଏହିରୂପରେ ସର୍ବଶେଷକୁ ଗ୍ରନ୍ଥକାରର ଆଶା ଭରସା ଜଳବତ୍ ବହିଗଲା । ଆମ୍ଭେମାନେ ବାତୁଳ ହୋଇ ଏହା କହୁନାହୁଁ । ଦୃଷ୍ଟାନ୍ତ ସ୍ଥଳରେ ଏମନ୍ତ କହିବୁଁ ଯେ "କୃଷି ଶିକ୍ଷା" ନାମକ ପୁସ୍ତକ ବାବୁ ଭୁବନେଶ୍ୱରଦତ୍ତ ଓ ବାବୁ ନିମାଇଚରଣ ମିତ୍ରଙ୍କ କର୍ତ୍ତୃକ ପ୍ରଣୀତ ହୋଇ ଆଜକୁ ଏକ ବର୍ଷରୁ ଊର୍ଦ୍ଧ୍ୱ ହେବ ମୁଦ୍ରିତ ହୋଇଅଛି । ଗ୍ରନ୍ଥକାରମାନଙ୍କୁ ଏକଶତ ଟଙ୍କା ପୁରସ୍କାର ମିଳିଲା ସତ୍ୟ ମାତ୍ର ପୁସ୍ତକ ମୁଦ୍ରାଙ୍କନ କରିବାରେ ଆଉ ଏକଶତ ଟଙ୍କା ଅଧିକା ଖର୍ଚ୍ଚ କରିବାକୁ ହେଲା । ସାଧାରଣ ଲୋକଙ୍କରତ ସହଜରେ ଶିକ୍ଷା ପ୍ରତି ତେଡ଼େ ଆସ୍ଥା ହୋଇ ନାହିଁ ତହିଁକି ଶିକ୍ଷାବିଭାଗ ପ୍ରଶ୍ରୟ ଦେବାକୁ ଏକାନ୍ତ କୁଣ୍ଠିତ ସୁତରାଂ ଗ୍ରନ୍ଥକାରଙ୍କୁ ନାକ କାନ ମୋଡ଼ି ହାତରୁ ଛାପାଖାନାର ଦେଣ ପରିଶୋଧ କରିବାକୁ ପଡ଼ିଲା । ଏଥିପୂର୍ବେ ମୃତ ପ୍ୟାରିବାବୁଙ୍କ ଓଡ଼ିଶା ଇତିହାସର ଏହି ଦଶା ଘଟିଥିଲା । କି ଦୁଃଖର ବିଷୟ ! ଏପରି ସ୍ଥଳରେ ପରିଶ୍ରମ କେଉଁ ରୂପରେ ପୁରସ୍କୃତ ହେଲା ଆମ୍ଭେମାନେ ବୁଝି ପାରୁନାହୁଁ ଗ୍ରନ୍ଥକାରଙ୍କୁ ପୁସ୍ତକ ମୁଦ୍ରାଙ୍କିତ କରିବାରେ ବାଧ ନ କରାଇ ହାତକୁହାତ ଟଙ୍କା ଦେଇଥିଲେ ଭଲ କଥା ହୋଇଥାନ୍ତା । ଗୁଡ଼ ଦେଖାଇ ଅକାରଣ ତେଲ କାଣ୍ଡି ଭ୍ରମରେ ପକାଇବା କେଉଁ ରୂପରେ ଉଚିତ ହୋଇଅଛି ? ଶିକ୍ଷାବିଭାଗରୁ ପ୍ରତି ବର୍ଷ ସହସ୍ର ସହସ୍ର ଟଙ୍କାର ପୁସ୍ତକ କ୍ରୟ ହେଉଅଛି । ଆଜିସରିକି କେତେ ଆଳିମାଳିକା ପୁସ୍ତକ କିଣା ହୋଇ କେତେ ନାମତଃ ଗ୍ରନ୍ଥକାରଙ୍କ ଅକାଳ କାଣ୍ଡକୁ ଶିକାର ପତି ପଣେ ଅର୍ଜ୍ଜନ ହୋଇ ଯାଇଅଛି । ତେବେହେଁ ଯେଉଁ ପୁସ୍ତକଦ୍ୱାରା ପ୍ରକୃତ କିଛି କାର୍ଯ୍ୟ ହେବ, ଯେଉଁ ପୁସ୍ତକ ନିମିତ୍ତ ସ୍ୱୟଂ ଗବର୍ଣ୍ଣମେଣ୍ଟ ପୁରସ୍କାର ପ୍ରଦାନ କଲେ, ଶିକ୍ଷାବିଭାଗର ତହିଁକି ଲେଶମାତ୍ର ଦୃଷ୍ଟି ପଡିଲା ନାହିଁ । କାହିଁକି ? ସେଦିନ ଆମ୍ଭମାନଙ୍କୁ ଜଣେ ଲୋକ କହିଲେ ଯେବେ ପୁସ୍ତକ ବାଲେଶ୍ୱରର କୌଣସି ଲୋକ କର୍ତ୍ତୃକ ଛାପା ହୋଇଥାନ୍ତା ତେବେ ଆଜିକି ତହିଁର ଦୁଇ ତିନି ସଂସ୍କରଣ ଦେଖା ଯାଇଥାନ୍ତା । କଥାତ ସତ ପରି ପ୍ରତ୍ୟକ୍ଷ ହେଉଅଛି ମାତ୍ର ଏଥିର କାରଣ ବୁଝା ଯାଉ ନାହିଁ । କାହାକୁ ପଚାରିବା ? ଶିକ୍ଷାବିଭାଗର କେହି କି ଏଥିର ପ୍ରକୃତ ଉତ୍ତର ଦେବେ ? ଆମ୍ଭେମାନେ ଏ ରହସ୍ୟ କାଣ୍ଡ ଦେଖି ପ୍ରକୃତରେ ବଡ ଦୁଃଖିତ ହୋଇଅଛୁଁ ଏବଂ ନିତାନ୍ତ ବାଧ ହୋଇ ବେଳେ ସୁଦକ୍ଷ ଶ୍ରୀଯୁକ୍ତ କମିଶ୍ନର ସାହେବଙ୍କୁ ଏଥିର ବିହିତ ପ୍ରତୀକାର କରିବାକୁ ଅନୁରୋଧ କରୁଅଛୁଁ । ଯେଉଁ ବାଟେ ସହସ୍ର ସହସ୍ର ଗବର୍ଣ୍ଣମେଣ୍ଟ ମୁଦ୍ରା ଅନର୍ଥକ ଲୋକ ବିଶେଷର ଗାଣ୍ଠିଆରେ ପ୍ରବେଶ ନ କରି ଉଚିତ ମତ ଖର୍ଚ୍ଚ ହେବାଦ୍ୱାରା ଭାଷା ଓ ଦେଶର ଶ୍ରୀବୃଦ୍ଧି ସାଧନ କରିବାର ଉପାୟ ହେବ ସେହି ବାଟେ କର୍ତ୍ତୃପକ୍ଷମାନଙ୍କୁ ଚଳିବାକୁ ଦେଖିବା ଆମ୍ଭମାନଙ୍କର ଏକାନ୍ତ ଇଚ୍ଛା । ଓ ଏକାବେଳକେ ସେଥିର ବିହିତ ବନ୍ଦୋବସ୍ତ ହେଉ ।

*ଭା୧୯ଗ,ସଂ୧୫ଖ୍ୟା, ୧୨।୪।୧୮୮୪*

## ଓଡିୟା ପୁସ୍ତକ ।

ଗତ ଉତ୍କଳଦର୍ପଣରେ ଏହି ଶୀର୍ଷାଙ୍କିତ ଗୋଟିଏ ଅତି ଦୀର୍ଘ ପ୍ରବନ୍ଧ ବାହାରିଅଛି । ଏହା ଆମ୍ଭମାନଙ୍କର ପୂର୍ବ ପ୍ରକାଶିତ ସେହି ବିଷୟକ ପ୍ରବନ୍ଧର ଉତ୍ତର ଅଟଇ । ପାଠକମାନେ ମନୋଯୋଗ ପୂର୍ବକ ଏହାକୁ ପାଠ କରିବେ ଆମ୍ଭମାନଙ୍କର ଏକାନ୍ତ ଇଚ୍ଛା ଅଟଇ । ସେମାନଙ୍କ ସୁବିଧା ନିମିତ୍ତ ପ୍ରବନ୍ଧଟି ଉଦ୍ଧାର କରିବାର ଇଚ୍ଛା ଥିଲା ମାତ୍ର ସ୍ଥାନାଭାବରୁ ତହିଁରୁ କ୍ଷାନ୍ତ ହେଲୁଁ ଏବଂ ଯେଉଁ ପ୍ରବନ୍ଧ ଦର୍ପଣରେ ପ୍ରାୟ ଦଶସ୍ତମ୍ଭ ପୂର୍ଣ୍ଣ କରିଅଛି ତହିଁର

ସମାଲୋଚନା କରିବା ମଧ୍ୟ ସମୟସାପେକ୍ଷ । ଏପର ଯେ ସ୍ଥଳେ ଉକ୍ତ ପ୍ରବନ୍ଧ ଆମ୍ଭମାନଙ୍କ କଥାର ଉତ୍ତର ଅଟଇ ସେ ସ୍ଥଳେ ଆମ୍ଭମାନଙ୍କର ସମାଲୋଚନା କରିବା କେଡ଼େ ମୂଲ୍ୟବାନ୍ ହେବ ନାହିଁ । ଆମ୍ଭେମାନେ ଆଶା କରୁଁ ଯେ ସର୍ବସାଧାରଣ ତହିଁର ବିଚାର କରିବେ । ଆମ୍ଭମାନଙ୍କର କେବଳ ଦିଯୋଟି କଥା କହିବାର ଅତ୍ୟନ୍ତ ଆବଶ୍ୟକ ହୋଇଅଛି । ପ୍ରଥମ ଏହି କି ଆମ୍ଭମାନଙ୍କ ସହଯୋଗୀ କେବଳ ଜଏଣ୍ଟ ଇନ୍‌ସ୍ପେକ୍‌ଟରଙ୍କ ସଫାଇ ଦେଖାଇବାକୁ ଅତ୍ୟନ୍ତ ବ୍ୟସ୍ତ ହୋଇ ମାଜିଷ୍ଟ୍ରେଟଙ୍କୁ ଚିହ୍ନାଇ ଦେଇ ଅଛନ୍ତି । ମାଜିଷ୍ଟ୍ରେଟଙ୍କ ହାତରେ ଯେତେବେଳେ ଶିକ୍ଷା କାର୍ଯ୍ୟର ଅନେକ ଭାର ଅଛି ସେ ଯେ ଆମ୍ଭମାନଙ୍କର ଲକ୍ଷ୍ୟସ୍ଥଳ ନ ଥିଲେ ଏହା ସେ କିପରି ଜାଣିଲେ ? ଏବଂ ଏପ୍ରକାରେ ଅନ୍ୟ ଉପରେ ଦୋଷ ଢାଳି ଦେବା କେମନ୍ତ ସୁରୁଚିର ପରିଚାୟକ ତାହା ପାଠକମାନେ ବିଚାର କରିବେ । ଫଳତଃ ଏପରି ଲେଖା ଯେମନ୍ତ "ଠାକୁର ଘରେ କିଏ ନା ମୁଁ କଦଳି ଖାଇ ନାହିଁ" ପରି ହୋଇଅଛି । ଦ୍ୱିତୀୟ ଏହି କି ଲେଖକ ସିଦ୍ଧାନ୍ତ କରିଅଛନ୍ତି କି ଜଏଣ୍ଟ ଇନ୍‌ସ୍ପେକ୍‌ଟର ମହାଶୟ ଏ ପତ୍ରିକାର ସମ୍ପାଦକ ବାବୁ ଗୌରୀଶଙ୍କର ରାୟଙ୍କ ପ୍ରାକୃତ ଭୂଗୋଳକୁ ପାଠ୍ୟପୁସ୍ତକ ମଧ୍ୟରୁ ଅନ୍ତର କରି ଦେବାରେ ସେ ଈର୍ଷାପୂର୍ବକ ଶିକ୍ଷାବିଭାଗର ଅକାରଣ ଗ୍ଲାନି କରିଅଛନ୍ତି । ଅବଶ୍ୟ ଯାହାର ଯେମନ୍ତ ମନ ତାହାର ଭାବନା ସେପରି ହେବ । ମାତ୍ର ଆମ୍ଭେମାନେ ବିଶ୍ୱସ୍ତରୂପେ କହୁଅଛୁଁ ଯେ ସମ୍ପାଦକ ଉକ୍ତ ପ୍ରବନ୍ଧର ଅବତାରଣା କରି ନାହାନ୍ତି କିମ୍ବା ତାହାଙ୍କ ପ୍ରାକୃତ ଭୂଗୋଳ ସକାଶେ ସେ ଦିନେସୁଦ୍ଧା ଦୁଃଖିତ ହୋଇ ନାହାନ୍ତି । ପ୍ରକୃତରେ ଜଏଣ୍ଟ ଇନ୍‌ସ୍ପେକ୍‌ଟର ମହାଶୟ ଉକ୍ତ ପୁସ୍ତକକୁ ପୁନର୍ଦୃଷ୍ଟି କରି ସଂକ୍ଷେପରେ ପ୍ରକାଶ କରିବା ସକାଶେ ଅନୁରୋଧ କରିଥିଲେ ମାତ୍ର ଅନ୍ୟାନ୍ୟ ଗୁରୁତର କାର୍ଯ୍ୟରେ ସେ ସର୍ବଦା ବ୍ୟସ୍ତ ଥିବାରୁ ତାହା କରିବାକୁ ଅବକାଶ ପାଇଲେ ନାହିଁ । ପୁସ୍ତକ ଲେଖିବାକୁ ତାହାଙ୍କର ଅବକାଶ ଥିଲେ ଏତେ ଦୀର୍ଘକାଳ ମଧ୍ୟରେ ସେ ଅବଶ୍ୟ କୌଣସି ପୁସ୍ତକ ପ୍ରକାଶ କରିବାକୁ ଅଥବା ପାଠ୍ୟ ପୁସ୍ତକର ପ୍ରତିଯୋଗିତାରେ ଅଗ୍ରସର ହୋଇଥାନ୍ତେ । ଏସ୍ଥାନର ସାଧାରଣ ମତ ଦୃଷ୍ଟିରେ ଉକ୍ତ ପ୍ରବନ୍ଧ ଲେଖା ହୋଇଅଛି । ବ୍ୟକ୍ତି ବିଶେଷର ଗ୍ଲାନି ଗାଇଲେ ତହିଁର ମୂଲ୍ୟ ଊଣା ହେବାର ନୁହଇ ।

ପରିଶେଷରେ ବକ୍ତବ୍ୟ ଏହି କି ପ୍ରାଥମିକ ଶିକ୍ଷା ଛଳରେ ଯେ ସମସ୍ତ ପୁସ୍ତକକୁ ଉତ୍ସାହ ଦିଆ ଯାଇଅଛି ସେ ପ୍ରସଙ୍ଗରେ ସହଯୋଗିଙ୍କ ଠାରୁ କିଛି ନ ଶୁଣିବାରୁ ଆମ୍ଭେମାନେ ମନେ କରୁଅଛୁଁ ଯେ ଆମ୍ଭମାନଙ୍କ ପ୍ରସ୍ତାବର ସମ୍ପୂର୍ଣ୍ଣ ଉତ୍ତର ହୋଇ ନାହିଁ ।

*ଭା ୧୯ ଗ, ସଂ ୧୭ ଖ୍ୟା, ୨୬ । ୪ । ୧୮୮୪*

## ରେବନସା କଲେଜ ।

ଚଳିତ ମାସ ତା ୧୯ ରିଖ ଶନିବାର ଏଠା ରେବନସା କଲେଜ ସମ୍ବନ୍ଧୀୟ ସ୍କୁଲର ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନଙ୍କୁ ବାର୍ଷିକ ପାରିତୋଷିକ ବଣ୍ଟନର କ୍ରିୟା ସମ୍ପନ୍ନ ହେଲା । ଯେଉଁ ଗୃହରେ ପୁରସ୍କାର ପ୍ରଦତ୍ତ ହେଲା ତାହା ଅତି ସୁନ୍ଦର ଭାବରେ ସୁସଜ୍ଜିତ ହୋଇଥିଲା । ପୁଷ୍ପହାର, ପତ୍ରମାଳା, ପତାକା ଓ ଚିତ୍ରମାନଙ୍କରେ ଘରଟି ଅପୂର୍ବଶୋଭା ଧାରଣ କରି ଥିଲା । କଲେକ୍‌ଟର କରି ସାହେବ, ଜଏଣ୍ଟମାଜିଷ୍ଟ୍ରେଟ ଗୁପ୍ତସାହେବ, ଡାକ୍ତର ଷ୍ଟୁଆର୍ଟ ସାହେବ, ପାଦ୍ରି ମିଲର ସାହେବ ଓ ଅନ୍ୟ କେତେକଗୋଟି ଇଂରାଜ ଭଦ୍ରଲୋକ ଓ ମହୀଳା ଏବଂ ଦେଶୀୟ ଅନେକ ଭଦ୍ରମଣ୍ଡଳୀ ସମବେତ ହୋଇ ସ୍ଥାନଟି ଉଜ୍ଜ୍ୱଳ କରିଥିଲେ । ଦର୍ଶକ ସଂଖ୍ୟା ଆଶାନୁରୂପ ହୋଇଥିଲା ଏମନ୍ତ କି ସ୍ଥାନାଭାବ ହେତୁ ଅନେକେ ତନ୍ମଧ୍ୟରେ ବସିବାର ସ୍ଥାନ ପାଇଲେ ନାହିଁ । ଠିକ ସାତଘଣ୍ଟା ସମୟରେ କମିଶ୍ନର ଲାରମିନୀ ସାହେବ ଉପସ୍ଥିତ ହୋଇ ସଭାପତିର ଆସନ ଗ୍ରହଣ କରନ୍ତେ କାର୍ଯ୍ୟାବଳି ଆରମ୍ଭ ହେଲା । କଲେଜର ଅଧକ୍ଷ ଏଜର ସାହେବ ବାର୍ଷିକ ରିପୋର୍ଟ ପାଠ କଲେ । ଏବର୍ଷ କଲେଜ ଯେଉଁ ଉଜ୍ଜ୍ୱଳ ଫଳ ଦେଖାଇ ଅଛି ତହିଁରେ ବାର୍ଷିକ ରିପୋର୍ଟ ଅଳଙ୍କୃତ ହୋଇଥିବାର ବୋଲା ଯାଇ ପାରେ । କଲେଜରୁ ଜଣେ ଏମ ଏ, ଜଣେ ବି ଏଲ ଓ ତିନିଜଣ ଉଚ୍ଚ ଓକାଲତୀ ପରୀକ୍ଷାରେ ପାଶ କରିଥିବା ସର୍ବେ ଓଡ଼ିଶାପକ୍ଷେ ନୂତନ କଥା ଅଟଇ । ସୁତରାଂ ରିପୋର୍ଟ ଯେ ଅତି ସନ୍ତୋଷପ୍ରଦ ହୋଇଥିଲା ତାହା ବୋଲିବା ବାହୁଲ୍ୟ । ରିପୋର୍ଟ ପାଠ ହେଲା ଉତ୍ତାରୁ ପାରଦର୍ଶିତାନୁଯାୟୀ କମିଶ୍ନର ସାହେବ ସ୍ୱହସ୍ତରେ ବାଳକମାନଙ୍କୁ ପାରିତୋଷିକ ପୁସ୍ତକାଦି ପ୍ରଦାନ କଲେ । ନୂତନତ୍ତ୍ୱ ମଧ୍ୟରେ ଏତିକି ଯେ ଜଣେ

ନିମ୍ନଶ୍ରେଣୀୟ ବାଳକ ଛରିଶତ ମଧ୍ୟରୁ ତିନିଶତ ପଞ୍ଚାଶରୁ ଅଧିକ ନମ୍ବର ରଖିଥିବା ଯୋଗୁଁ ହେଡ଼ ମାଷ୍ଟର ରାମଦାସ ବାବୁ ପ୍ରତିଶ୍ରୁତ ହୋଇ ପୁସ୍ତକ ପୁରସ୍କାର ପ୍ରଦାନ କରିଥିଲେ । ବର୍ଷକ ମଧ୍ୟରେ ଯେଉଁମାନେ ଦିନେ ସୁଦ୍ଧା ବିଦ୍ୟାଳୟରେ ଅନୁପସ୍ଥିତ ହୋଇ ନାହାନ୍ତି ସେମାନଙ୍କୁ ପ୍ରତିବର୍ଷ ପୁରସ୍କାର ଦିଆଯାଏ ମାତ୍ର ଗତବର୍ଷ ଏଭଳି ବାଳକଙ୍କ ସଂଖ୍ୟା ଏତେ ଅଧିକ ହୋଇଥିଲା ଯେ ସେମାନଙ୍କୁ ପୁରସ୍କାର ଦେବାକୁ କଲେଜର ପାଣ୍ଠି ସକ୍ଷମ ହେଲା ନାହିଁ ସୁତରାଂ ପିଲା ଭୁଲାଇଲାପରି ଏକ ଏକ ପ୍ରଶଂସାପତ୍ର ସେମାନଙ୍କୁ ପ୍ରଦତ୍ତ ହେଲା ଏଥିର ସଂଖ୍ୟା ପ୍ରାୟ ପଞ୍ଚାଶ ଗୋଟିଏ ଛାତ୍ରକୁ ଜଞ୍ଜିରଲଗା ରୂପାର ବୋତାମ ପ୍ରଦତ୍ତ ହେଲା ଏହିରୂପରେ ପାରିତୋଷିକ ପ୍ରଦାନ ସାଙ୍ଗ ହେଲାରୁ ବାଳକମାନେ ଅଭ୍ୟସ୍ଥ ପାଠ ବୋଲଇଲେ । ପ୍ରଥମ ଦୁଇଗୋଟି ପଦ୍ୟ ଥିଲା ଓ ତାହା ତେତେ ମନୋହର ହେଲା ନାହିଁ । ତତ୍ପରେ କେତେଗୁଡ଼ିଏ କଥାବାର୍ତ୍ତା ସମ୍ବଳିତ ପାଠ ବୋଲା ହେଲା ଓ ଉପସ୍ଥିତ ସଭ୍ୟବୃନ୍ଦ ଏଥିରେ ଯତ୍ପରୋନାସ୍ତି ସୁଖାନୁଭବ କରିଥିଲେ । ସର୍ବଶେଷରେ ମୟୂରଭଞ୍ଜର ନବାଗତ ନାବାଳଗ ରାଜା ଗୋଟିଏ ଇଂରାଜୀ ପଦ୍ୟ ବୋଲି ସାରିଲାରୁ ସଭାପତି ଆସନ ପରିତ୍ୟାଗ କରି ସୁନ୍ଦର ବକ୍ତୃତାଟିଏ ପ୍ରଦାନ କଲେ । ଗତ ବର୍ଷର ପରୀକ୍ଷାର ଫଳରେ ଅପାର ଆନନ୍ଦ ପ୍ରକାଶ କରି କଲେଜର ନାମ ସାର୍ଥକ ଓ ତହିଁର କାର୍ଯ୍ୟକାରିତା ଦେଶୀୟ ଲୋକଙ୍କର ଉପକାରଜନକ ହୋଇଥିବାର ବ୍ୟକ୍ତ କରି କଥା ପ୍ରସଙ୍ଗରେ କହିଲେ ଯେ, "ମୟୂରଭଞ୍ଜର ମୃତ ମହାରାଜାଙ୍କ ବଦାନ୍ୟତାଯୋଗେ କଲେଜ ସ୍ଥାୟୀ ହୋଇଅଛି ଓ ତାହାଙ୍କର ପୁତ୍ର ବର୍ତ୍ତମାନ ଏଥିରେ ବିଦ୍ୟାଲାଭ କରିବା କାରଣ ଆସି ଅଛନ୍ତି । ଆପଣା ପିତାଙ୍କ କର୍ତ୍ତୃକ ପ୍ରତିଷ୍ଠିତ ହୋଇଥିବା କଲେଜରେ ଶିକ୍ଷା ଲାଭ କରି ଉତ୍ତରକାଳକୁ ନିଜପ୍ରଜାଙ୍କ ଉନ୍ନତିସାଧନ କରିବା କାଳରେ କଲେଜର ମଧ୍ୟ ଉନ୍ନତି ପକ୍ଷେ ମନୋଯୋଗୀ ହେବାର ଭରସା କରାଯାଏ । ଏ ଦେଶୀୟ ଲୋକେ ନିତାନ୍ତ ମୂର୍ଖ ବୋଲି କଥିତ ହୁଏ ମାତ୍ର ଆମ୍ଭେ ଆସି ଦେଖୁଅଛୁଁ ଯେ ଏଠା ଲୋକେ ସେପରି ନୁହନ୍ତି ବରଂ ଅନେକ ଉନ୍ନତ ଏବଂ ଉତ୍ତରକାଳକୁ ଆହୁରି ଉନ୍ନତ ହେବେ ଏଥିରେ ସନ୍ଦେହ ନାହିଁ, ଛାତ୍ରାବାସ ହେତୁ ଅନେକ ଅସୁବିଧା ହେଉଥିବା ବିଷୟରେ ଅଧକ୍ଷ ସାହେବ ରିପୋର୍ଟରେ ଲେଖି ଅଛନ୍ତି । ବର୍ତ୍ତମାନ ଏ ବିଷୟ ଗବର୍ଣ୍ଣମେଣ୍ଟଙ୍କ ବିଚାରାଧୀନ ଅଛି ଏବଂ ଶୀଘ୍ର ଗୋଟିଏ ଛାତ୍ରାବାସ ନିର୍ମିତ ହେବ ସନ୍ଦେହ ନାହିଁ ଏବଂ ଆଗାମୀ ବର୍ଷକୁ ଏ ଅସୁବିଧା ଦୂର ହୋଇ ଥିବାର ଲେଖି ଅଧକ୍ଷ ସାହେବ ଆନନ୍ଦ ପ୍ରକାଶ କରି ପାରିବେ ।" ତତ୍ପରେ ବାଳକଙ୍କୁ ସମ୍ବୋଧନ କରି କହିଲେ ଯେ "ଆଜିକାଲି ଶିକ୍ଷିତ ଯୁବକବୃନ୍ଦ ଚାକରି ଚାକରି ବୋଲି ଡାକ ଛାଡି ଅଛନ୍ତି ଏମନ୍ତ କି ବିଦ୍ୟାଶିକ୍ଷାର ଚରମ ଉଦ୍ଦେଶ୍ୟ ସରକାରୀ ଚାକରି ବୋଲି ଗୋଟିଏ ବିଶ୍ୱାସ ଲୋକଙ୍କ ମନରେ ବଦ୍ଧମୂଳ ହୋଇ ଯାଇଅଛି । ତୁମ୍ଭେମାନେ ବେଳେ ସୁଦ୍ଧା ତେମନ୍ତ ବିଚାର କରିବ ନାହିଁ । ଜ୍ଞାନାର୍ଜନ ବିଦ୍ୟାଶିକ୍ଷାର ପ୍ରଧାନ ଉଦ୍ଦେଶ୍ୟ । ପ୍ରଭୂତ ଜ୍ଞାନ ଲାଭ କରି ଭବିଷ୍ୟତକୁ ସ୍ୱାଧୀନ ଭାବରେ ଜୀବିକା ନିର୍ବାହ କରିବା ଭଳି ଶିକ୍ଷାଲାଭ କରିବାରେ ବ୍ରତୀ ହୁଅ । ସରକାରୀ ଚାକରି ଲୋଡ଼ିବା ମନ୍ଦ ନୁହଇ ମାତ୍ର ସମସ୍ତେ ତାହାକୁ ଅନାଇ ବସିଲେ ଗବର୍ଣ୍ଣମେଣ୍ଟ ଏତେ ଲୋକଙ୍କୁ କଦାଚ କର୍ମ ଯୋଗାଇ ପାରିବେ ନାହିଁ । ଏଥି ଯୋଗୁଁ ଆମ୍ଭେ କହୁଅଛୁଁ ସରକାରୀ ଚାକରି କି ଆପଣାର ପ୍ରଧାନ ଉଦ୍ଦେଶ୍ୟ କରି ଟିକିଏ କିଛି ଲେଖାପଢ଼ି କରି ପାରିଲାରୁ ବିଦ୍ୟାଳୟ ଛାଡି କଚେରୀକି ଯାଇ ଝାଙ୍କି ଅନାଇବାର ଚେଷ୍ଟା କରି ନାହିଁ । ଜୀବିକା ନିର୍ବାହ କରିବାର ନାନାବିଧ ଉପାୟ ଅଛି ଏବଂ ତହିଁକି ଆପଣାକୁ ଉପଯୋଗୀ କରାଇବାର ମୂଳ କର ।" ଇତ୍ୟାଦିରୂପ ନାନା ଉପଦେଶ ଗର୍ଭକ କଥା କହି ଆସନ ଗ୍ରହଣ କଲାରୁ ସଭାପତିଙ୍କି ଧନ୍ୟବାଦ ଦିଆଯାଇ ସଭାଭଙ୍ଗ ହେଲା ।

ସଭାପତିଙ୍କ ବକ୍ତୃତାଟି ସୁନ୍ଦର ହୋଇଥିଲେହେଁ ଆମ୍ଭମାନଙ୍କ ବିବେଚନାରେ ଗୋଟିଏ ଅଂଶରେ ତାହା ଅସମ୍ପୂର୍ଣ୍ଣ ରହିଗଲା । କେବଳ ସରକାରୀ ଚାକରୀକୁ ଚାହିଁ ନ ବସି ନାନା ବ୍ୟବସାୟ ଅବଲମ୍ବନ କରିବା କାରଣ ଛାତ୍ରମାନଙ୍କୁ ସାହେବ ପ୍ରଶଂସିତ ଉପଦେଶ ଦେଲେ ମାତ୍ର କି ଉପାୟରେ ଛାତ୍ରମାନେ ଅନ୍ୟାନ୍ୟ ବ୍ୟବସାୟ ଅବଲମ୍ବନ କରିବେ ତହିଁର ବାଟ ଦେଖାଇ ଦେଲେ ନାହିଁ । ଉପାୟ ଦେଖାଇ ନ ଦେଲେ ସେପରି ଉପଦେଶର ମୂଲ୍ୟ କେତେ ? ସଭାପତି ମହାଶୟ ଓଡ଼ିଶାର କମିଶ୍ନର ହେଉଅଛନ୍ତି ତାହାଙ୍କ ହାତରେ ଯେ କିଛି ଉପାୟ ନାହିଁ ଆମ୍ଭେମାନେ ଏପରି କହି ନ ପାରୁଁ । ବର୍ତ୍ତମାନ ଯେଉଁ ବାର୍ଷିକ ଫଳ ପ୍ରକାଶ ହେଲା ତହିଁରେ ସ୍ପଷ୍ଟ ଦେଖାଗଲା ଯେ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଏହି କଲେଜରେ ଆଇନ ଅଧାପନାର ସୁଯୋଗ କରି ଦିଆଯିବାରୁ କେତେ ଜଣ ଛାତ୍ର ଗୋଟିଏ ସ୍ୱାଧୀନ ବ୍ୟବସାୟ କରିବାର ଯୋଗ୍ୟତା ଲାଭ କଲେ । ଏତେକାଳ ଯେ ଛାତ୍ରମାନଙ୍କର ସେପରି ବ୍ୟବସାୟ ଦିଗକୁ ମନ ଯାଇ ନ ଥିଲା ଏମନ୍ତ ନୁହେ ମାତ୍ର ଉପାୟ ଅଭାବରେ ତହିଁରେ କୃତକାର୍ଯ୍ୟ ହେବାକୁ ପାରୁ ନ ଥିଲେ । ଏହିପରି ଉପାୟ ଥିଲେ ଚିକିତ୍ସା ଏବଂ ଇଞ୍ଜିନୀୟରୀଂ ବ୍ୟବସାୟ ଶିକ୍ଷା କରିବାକୁ କେତେ ଛାତ୍ର ପ୍ରବୃତ୍ତ ହୁଅନ୍ତେ । ଓଡ଼ିଶାରେ ଉକ୍ତ ଦୁଇ ବିଷୟର କଲେଜମାନ ନାହିଁ ଏବଂ ଦୀର୍ଘକାଳପର୍ଯ୍ୟନ୍ତ ହୋଇ ନ ପାରେ । ସେ ସବୁ ଶିକ୍ଷା କରିବା ନିମିତ୍ତ କଲିକତାକୁ ଯିବାର ଆବଶ୍ୟକ ମାତ୍ର ଏଠା କଲେଜର ନିୟମ ତହିଁର ପ୍ରତିକୂଳ ଅଟଇ । ରେବନସା କଲେଜର ବୃତ୍ତିମାନ କେବଳ ଏହି କଲେଜରେ ପ୍ରାପ୍ୟ ଅନ୍ୟଠାରେ ନୁହଇ । ଅତଏବ କେହି ବୃତ୍ତିଭୋଗୀ ଛାତ୍ର ଇଚ୍ଛା କଲେ ମେଡିକେଲ କିମ୍ବା ଇଞ୍ଜିନିୟରୀଂ କଲେଜରେ ସେହି ବୃତ୍ତିସାହାଯ୍ୟରେ ଅଧୟନ କରି ନ ପାରେ ସୁତରାଂ ଏ ପ୍ରକାର ସ୍ୱାଧୀନ ବ୍ୟବସାୟ ଓଡ଼ିଶାବାସିଙ୍କର ଶିଖିବାର ଉପାୟ ନାହିଁ । ଏଥିର ସୁବିଧା କରିଦେବା କମିଶ୍ନର ସାହେବଙ୍କର ଉଚିତ । ଅନ୍ତତଃ ଆମ୍ଭମାନଙ୍କ ବିବେଚନାରେ ମେଓ ବୃତ୍ତିକି ଚିକିତ୍ସା ଇଞ୍ଜିନୀୟରୀ ପ୍ରଭୃତି ବିଶେଷ ବିଦ୍ୟାଶିକ୍ଷା ନିମିତ୍ତ ଖଞ୍ଜି ଦେବାର ଉଚିତ ଯେ ତହିଁ ସାହାଯ୍ୟରେ କେହି କେହି ସ୍ୱାଧୀନ ବ୍ୟବସାୟଦ୍ୱାରା ଜୀବିକା ନିର୍ବାହ କରିବାକୁ ସକ୍ଷମ ହୋଇ ପାରିବେ ଅନ୍ୟାନ୍ୟ ବ୍ୟବସାୟ ଶିକ୍ଷା ନିମିତ୍ତ ମଧ କି ଉପାୟମାନ କରିବା ଉଚିତ ଛାତ୍ରମାନଙ୍କୁ ତହିଁର ସୁପରାମର୍ଶ ଦେବା ଓ ଗବର୍ଣ୍ଣମେଣ୍ଟଙ୍କଦ୍ୱାରା ଯେତେ ହୋଇପାରେ ତେତେ ସୁବିଧା ଦେବା ଉଚିତ । ଏହି ସବୁ ଉପାୟ କରିଦେବା କାରଣ ଆମ୍ଭେମାନେ କମିଶ୍ନର ସାହେବଙ୍କଠାରେ ପ୍ରାର୍ଥନା କରୁଁ ।

*ଭା୧୯ଗ, ସଂ୧୬ଖ୍ୟା, ୨୬।୪।୧୮୮୪*

## ପ୍ରେରିତପତ୍ର ।

## [ଓଡିଆ ଭାଷାର ମହତ୍ତ୍ୱ ସଂପର୍କରେ]

ମାନ୍ୟବର ଶ୍ରୀଯୁତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ ।

ମହାଶୟ ।

ମୁଁ ଦେଖୁଅଛି ଆଜିକାଲି ଓଡ଼ିଆ ଭାଷା ଘେନି ସମସ୍ତ ପତ୍ରିକାସଙ୍ଗୀନ ଗୋଳମାଳ ଲଗାଇଅଛନ୍ତି । କିପାଁଇରେ ବାବୁ ଅନୁବାଦ, ପ୍ରତିବାଦ, ବିବିଧ ସମ୍ବାଦ ଏତେ କଥା ଥାଉଁ ଥାଉଁ ଓଡ଼ିଆ ଭାଷା ଉପରେ ମାଡ କିପାଁଇ ? ଓଡ଼ିଆ ନାଓ୍ୟାରସ ଭାଷା ଏହି ଭାଷା ଘେନି ଯାହାର ଯାହା ଇଚ୍ଛା କରି ପାରେ ଏହାର କେହି ଓ୍ୟାରସ ଥିଲେ କି ଦର୍ପଣ ସୁଲଳିତ ଭାଷା ଗୋଡ଼ାକ ଉଜାଡି ପକାଉ ଥାଆନ୍ତେ । କହିବାକୁ ବୁଲିବାକୁ କେହି ନାହିଁ ଖତ ଗୋବର ଯାହା ଇଚ୍ଛା ଲେଖି ପକାଇଲେ ହେଲା । ମୂଳକଥା ଅଧିକାର । ସେ ଦିନ ଦର୍ପଣ କେତେଗୋଡିଏ କଥା କହି ଆପଣାକୁ ବେଶି ସଜାଡି ନେଲେ । କେତେଗୋଡିଏ କଥା ନୁହେ ସାଡେ ନଅଧା ପାଠ । ମୁଁ ମନରେ କଲି ଦର୍ପଣ ଆପଣା ସଫାଇ ନିମନ୍ତେ ଯେ ଦୀର୍ଘ ବକ୍ତୃତା କଲେ ସେଥିର କେହି ଜବାବ ଦେବ । କେ ଓ୍ୟାରସ ଅଛି କେ ଜବାବ ଦେବ । ମୁଁ ଜାବାବ ଦିଅନ୍ତି—ଗରଜ ? ଗୋଟାଏ କଥା ଏହି ଯାହା ମନକୁ ଯାହା ଆସେ ସେ ଲେଖି ପାରେ । ବଇ ଲେଖି ଲୋକେ ଦଶପଇସା ପାଉ ଅଛନ୍ତି ବଇ ଦୋକାନ କରି ଦେଶହିତୈଷୀ ହେଉଅଛନ୍ତି ତେବେ ମୁଁ କିପାଁ ସୁଖ୍ୟାତିଟା ନ ନେବି । ଖବରଦାର ମୁଁ ଆଜିଠାରୁ ସମ୍ବାଦପତ୍ରରେ କିଛି କିଛି ଲେଖିବି ମୋ ଭାଷା କେହି ଧରପଗଡ କରିବ ନାହିଁ ।

ଯେଉଁମାନେ ଓଡ଼ିଆ ଭାଷାକୁ ତୁଚ୍ଛ ମଣନ୍ତି ସେମାନେ ନିର୍ବୋଧ, ନିତାନ୍ତ ନିର୍ବୋଧ, ମୁଁ ବୋଲେ ଓଡ଼ିଆ ଚତୁର୍ବର୍ଗଫଳଦାଇନୀ । ଧର୍ମ-ଦେଶୋପକାରାୟ ନାମାୟ । ଅର୍ଥ-ରିଓ୍ୟାଡ଼ ପ୍ରସାଦାତ୍ ହଜାର ହଜାର ନଗଦ ବିକ୍ରୀ । କାମ—ଫତେ । ମୋକ୍ଷ—ଗୌରାଙ୍ଗ ପ୍ରାପ୍ତି ।

ସେ ଦିନ ମୋ ପାଖରେ ଜଣେ ବିଳାପ କରି କହିଲେ କାଣ୍ଡ କାରଖାନା ଦେଖି ଭଲ ଭଲ ଲେଖକମାନେ ହାତ ଗୋଟାଇ ବସିଲେଣି, ଦୁଃଖର ବିଷୟ । ମୁଁ କହେ ଦୁଃଖର ବିଷୟ କିଛି ନୁହେ ଯେ ତୈଳର ମର୍ଯ୍ୟାଦା ନ

ଜାଣେ ଚନ୍ଦ୍ରିକା ବ୍ୟବହାର ନ ଶିକ୍ଷିଅଛି ତାହାର ବଇ ଲେଖିବାର ଶକ୍ତି କାହୁଁ ଅଇଲା ରାତୀ ମଧରେ ଯେ ହଜାର ହଜାର କାପିବଇ ବୁଣି ପଡୁଅଛି ସେମାନେ କି ଦେଖୁ ନାହାନ୍ତି ?

ସେଦିନ ମୋର ଜଣେ ସାଙ୍ଗ ଦର୍ପଣ ପଢ଼ି ମୋତେ କେତୋଟି କଥା ପଚ୍ଚରିଲେ । କି ବିପଦ ସତ କହିଲେ ଲୋକେ ଗାଳି ଦେବେ । ନ କହିଲେ ବନ୍ଧୁତ୍ୱର ମର୍ଯ୍ୟାଦା ହାନି, କହିବାକୁ ହେଲା । ସାଙ୍ଗ ଯାହା ପଚ୍ଚରିଥିଲେ ତାହା ଆଉ ଲୋକେ ମଧ ଶୁଣନ୍ତୁ ।

ସାଙ୍ଗ ପଚ୍ଚରିଲେ—ଭ୍ରମଭଞ୍ଜନ, କୁମାରସମ୍ଭବ, କବିତାକଳାପ ଭଲ ଭଲ ଓଡିଆ କବିତା ମାନଙ୍କୁ ଅତିକ୍ରମ କରି କବିତାବଳୀ କିପାଁଇଁ କେଉଁ ଗୁଣରେ ସ୍ଥାନ ଅଧିକାର କଲା ?

ମୁଁ କହିଲି—ଅଧିକାର କଲା ।

ସାଙ୍ଗ—ଫକୀରମୋହନ, କ୍ଷିରୋଦ, ଶିବନାରାୟଣ ଭଲ ଇତିହାସମାନ ଛାଡି କିପାଁଇ ହେରିଶ କଦର୍ଯ୍ୟ ଇତିହାସକୁ ମୁଠେଇ ଧରା ଯାଇ ଅଛି ?

ମୁଁ—ଘର ପୁଅ ହେଉ କାଳିଆ ସେଉଟି ମୋର ବନମାଳିଆ ।

ସାଙ୍ଗ—ପ୍ୟାରୀ ଇତିହାସରେ "ବଞ୍ଚନା" ଶବ୍ଦଟା ଥିଲା ବୋଲି ବୃହସ୍ପତିମାନେ ତାକୁ ନିର୍ବାସିତ କଲେ ହରିଶବାବୁ ଯେବଙ୍ଗଳା ଖରକାଗଜରୁ କେତେ ଗୋଡିଏ ଭୟଙ୍କର କଥା ହାତମାରି ଆଣି କଳ୍ପିତରୂପେ ଖୁଣ୍ଟି ଅଛନ୍ତି ଏହା ବୃହସ୍ପତିମାନେ ଦେଖି ନାହାନ୍ତି ନା ପକ୍ଷପାତ ?

ମୁଁ—ରାମ ରାମ ! । ଏତିକି ଯେ ନ ବୁଝେ ସେ ଖବର କାଗଜ ନ ପଢୁ ।

ସାଙ୍ଗ—ଛାତ୍ରବୃତ୍ତି ପରୀକ୍ଷାରେ ତ ଅନେକଗୋଡିଏ ପଦ୍ୟପୁସ୍ତକ ଦିଆ ଯାଇ ଅଛି ତେବେ କି ସକାଶେ କେବଳ ରାଧାନାଥ ବାବୁ ବହି ପ୍ରାୟ ସର୍ବତ୍ର ପଢ଼ା ହୁଏ ?

ମୁଁ—ହୁକୁମଂ ଯସ୍ୟ ମୂଲୁଙ୍କ ତସ୍ୟ ।

ସାଙ୍ଗ—ତୁମ୍ଭେ ଯେତେ ଉତ୍ତର ଦେଲ ସବୁ କଥା ଭଲ କରି ବୁଝି ପାରିଲି ନାହିଁ ?

ମୁଁ—ବୁଝିଲାଓ୍ୱାଲା ବୁଝିବେ । ଆଚ୍ଛା ଆଉ ଦିନେ ଖଣ୍ଡେ ନୂଆ ଦର୍ପଣ ଆଣିବ ଭଲରୂପେ ଛବି ଦେଖାଇ ଦେବି । ଇତି ।

ଅନୁଗତସ୍ୟ
ମନ୍ଦକବି ଯଶଃ ପ୍ରାର୍ଥୀସ୍ୟ ।
ଜଣେ ଉଡିଆସ୍ୟ ।

***ଭା ୧୯ଗ, ସଂ ୧୮ଖ୍ୟା, ୩/୫/୧୮୮୪***

## ୪୦। ହିନ୍ଦୁ ବାଳିକା ବିଦ୍ୟାଳୟ ।

ଏ ବିଦ୍ୟାଳୟର ଛାତ୍ରୀମାନଙ୍କୁ ବାର୍ଷିକ ପୁରସ୍କାର ବିତରଣ ନିମନ୍ତେ ଗତ ସୋମବାର ଏ ବିଦ୍ୟାଳୟର ନୂତନ ଗୃହରେ ସଭା ହୋଇ ଥିଲା । ଶ୍ରୀଯୁତ କମିଶ୍ନର ଲାର୍ମିନି ସାହେବ, କଲେକ୍ଟର କରି ସାହେବ ଓ ଜଏଣ୍ଟ ମେଜଷ୍ଟର ଗୁପ୍ତ ସାହେବ ଶ୍ରୀଯୁକ୍ତ କରି ସାହେବଙ୍କ ମେମ ଓ ଅନ୍ୟ ଗରି ଜଣ ଇଂରାଜ ମହିଳା ଏବଂ କେତେକ ଦେଶୀୟ ଭଦ୍ରବ୍ୟକ୍ତି ସଭାରେ ଉପସ୍ଥିତ ହୋଇଥିଲେ ଓ ଶ୍ରୀଯୁକ୍ତ ଲାର୍ମିନି ସାହେବ ସଭାପତିର ଆସନ ଗ୍ରହଣ କରିଥିଲେ ଉପସ୍ଥିତ ସଭ୍ୟ ସଂଖ୍ୟା ଅଳ୍ପ ହେଲେହେଁ ସ୍ଥାନ ଅନୁରୂପ ହୋଇଥିଲା । ପ୍ରଥମେ ବିଦ୍ୟାଳୟର ସମ୍ପାଦକ ଶ୍ରୀଯୁକ୍ତ ବାବୁ ରାମଦାସ ଚକ୍ରବର୍ତ୍ତି ବାର୍ଷିକ ବିଜ୍ଞାପନୀ ପାଠ କଲେ । ତହିଁରୁ ପ୍ରକାଶ ହେଲା ଯେ ଗତ ବର୍ଷ ଛାତ୍ରୀ ସଂଖ୍ୟା ୪୫ ଥିଲା ମାତ୍ର ବର୍ଷ ଶେଷକୁ ଦିଯୋଟି ଊଣା ପଡିଲା କିନ୍ତୁ ଉପସ୍ଥିତ ଛାତ୍ରୀ ସଂଖ୍ୟା ଦିନାଳି ହାରାହାରି ପୂର୍ବାପେକ୍ଷା ଉତ୍ତମ ଅଟଇ । ଛାତ୍ରୀ ସଂଖ୍ୟା ବୃଦ୍ଧି ନ ହେବାର କାରଣ ଏହି ଯେ ଏ ନଗରରେ ସପରିବାରେ ବାସ କରିବା ଉତ୍କଳୀୟ ଭଦ୍ରବ୍ୟକ୍ତିଙ୍କ ସଂଖ୍ୟା ଅତ୍ୟଳ୍ପ ଅଟଇ ପୁଣି ଯେଉଁମାନେ ସପରିବାର ଅଛନ୍ତି ସେମାନେ ସମସ୍ତେ ସାଧାରଣ ସ୍କୁଲକୁ ବାଳିକା ପଠାଇବା ପକ୍ଷରେ ଯେ ସାମାଜିକ କୁସଂସ୍କାର ଅଛି ତାହା ଏଡି ଦେଇ ପାରୁ ନାହାନ୍ତି ।

ଏହାହିଁ ଛାତ୍ରୀ ସଂଖ୍ୟା ବୃଦ୍ଧିର ପ୍ରତିବନ୍ଧକ ଅଟଇ । ଛାତ୍ରୀମାନଙ୍କ ମଧ୍ୟରେ ବଙ୍ଗଦେଶୀୟା ବାଳିକା ଜଣ୍ଠ୧୭ଣ, ଏ ଦେଶୀୟା ବଙ୍ଗାଳି ବାଳିକା ଜଣ୍ଠ୧୩ ଣ ଏବଂ ଉତ୍କଳୀୟା ବାଳିକା ଜଣ୍ଠ୧୫ଣ ଅଟନ୍ତି । ବଙ୍ଗଳା ଏବଂ ଓଡ଼ିଆ ଉଭୟ ଭାଷା ପଠିତ ହୁଅଇ । ସରକାରରୁ ମାସିକ ଟ୩୦ଙ୍କା ସାହାଯ୍ୟ ମିଳଇ ଓ ଟ୩୧ଙ୍କା ଭେଦାଦ୍ୱାରା ଉଠଇ । ବାର୍ଷିକ ପୁରସ୍କାର ସକାଶେ ପୃଥକ ଋନ୍ଦା ହୁଅଇ ଏଥି ମଧ୍ୟରେ ତାଳଚେର ରାଣୀଙ୍କର ଦାନ ସର୍ବାପେକ୍ଷା ଅଧିକ ଅର୍ଥାତ୍ ବାର୍ଷିକ ଟ୨୦ଙ୍କା ବାବୁ କାଳିପଦ ବାନୁର୍ଯ୍ୟା ଏଥି ନିମନ୍ତେ ଏବର୍ଷ ଖ୫୦ଣ୍ଡ ଓଡ଼ିଆ ପୁସ୍ତକ ଦାନ କରିଅଛନ୍ତି । ଏଥି ପୂର୍ବେ ଏ ସ୍କୁଲ ଏଠାରେ ସେଠାରେ ଭଡ଼ା ଘରରେ ହେଉଥଲା । ବର୍ତ୍ତମାନ ତହିଁର କ୍ଷୁଦ୍ର ଅଟ୍ଟାଳିକାଟିଏ ଟ୨୩୦୦ଙ୍କା ବ୍ୟୟରେ ନିର୍ମାଣ ହୋଇଅଛି । ଏଥିପାଇଁ ସରକାରରୁ ଏକ ସହସ୍ର ଟଙ୍କା ସାହାଯ୍ୟ ମିଳିଅଛି ଓ ଅବଶିଷ୍ଟ ଭେଦ ଦ୍ୱାରା ଉଠିଅଛି । କେଉଁଝରର ମହାରାଜା ଟ୫୦୦ଙ୍କା ଚୌଧୁରି କାଶିନାଥ ଦାସ ଟ୩୦୦, କୁମାର ବୈକୁଣ୍ଠନାଥ ଦେ ଟ୨୫୦ ଙ୍କା ଓ ଅନ୍ୟ କେତେକ ଧନୀ ବ୍ୟକ୍ତି ପ୍ରତ୍ୟେକେ ଏକଶତ ଟଙ୍କା ଓ ତହିଁରୁ କମ ଭେଦା ଦେଇଅଛନ୍ତି । ସମସ୍ତଙ୍କର ନାମ ବିଜ୍ଞାପନୀରେ ଉଲ୍ଲେଖ ହୋଇ ଅଛି । ସମ୍ପାଦକ ମହାଶୟ ମେନେଜିଂ କମିଟିଙ୍କ ପକ୍ଷରୁ ଏ ସମସ୍ତ ଦାତାମାନଙ୍କୁ ଧନ୍ୟବାଦ ପ୍ରଦାନ କରି ଜଣାଇଲେ ଯେ କେଉଁଝରର ମହାରାଜା ଏ ସ୍କୁଲ ନିମନ୍ତେ ଆଉ ତିନି ସହସ୍ର ଟଙ୍କା ଦାନ କରିବାକୁ ଅଙ୍ଗୀକାର କରିଅଛନ୍ତି । ଏଥିପାଇଁ ତାଙ୍କୁ ଆହୁରି ଧନ୍ୟବାଦ ପ୍ରଦାନ କଲେ ।

ଏ ବିଦ୍ୟାଳୟର ଋରିଜଣ ଛାତ୍ରୀ ଏ ବର୍ଷ ପ୍ରାଇମେରି ଛାତ୍ରବୃତ୍ତିର ପରୀକ୍ଷା ଦେଇଥିଲେ ସେମାନଙ୍କ ମଧ୍ୟରୁ ଦୁଇ ଜଣ ଅର୍ଥାତ୍ ନିଶାମଣି ଦାସୀ ଓ ବାସନ୍ତୀ ବାଈ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ମାସିକ ଟ ୩ ଙ୍କା ଲେଖାଁଏ ଛାତ୍ରବୃତ୍ତି ଲଭିଅଛନ୍ତି ଓ ପ୍ରଥମୋକ୍ତ ବାଳିକା ଓଡ଼ିଶାପ୍ରଦେଶର ସମସ୍ତ ଉତ୍ତୀର୍ଣ୍ଣ ଛାତ୍ରଙ୍କ ମଧ୍ୟରେ ଷଷ୍ଠ ସ୍ଥାନ ପାଇଅଛି । ଏ ବାଳିକାଟି ଶ୍ରୀ ବାବୁ ନନ୍ଦକିଶୋର ଦାସଙ୍କର କନ୍ୟା ଅଟେ । ଏପରି ଫଳ ଅବଶ୍ୟ ପ୍ରଶଂସନୀୟ ଅଟେ । ଓଡ଼ିଶାର ବାଳିକା ବିଦ୍ୟାଳୟମାନଙ୍କ ମଧ୍ୟରେ ଏହା ସର୍ବ ପ୍ରଧାନ ହୋଇଅଛି ଏବଂ ପରୀକ୍ଷାରେ ଅନେକ ବାଳକ-ବିଦ୍ୟାଳୟକୁ ଜିଣିଅଛି ।

ବିଜ୍ଞାପନୀ ପାଠ ଉତ୍ତାରେ ଶ୍ରୀଯୁକ୍ତ କରି ସାହେବଙ୍କ ମେମ୍ ଛାତ୍ରିମାନଙ୍କୁ ପୁରସ୍କାର ବିତରଣ କଲେ । ତହୁଁ କେତେକ ଛାତ୍ରୀ ମୁଖସ୍ଥ କବିତା ପାଠ କଲେ ମାତ୍ର ତାହା ଆଦୌ ପ୍ରୀତିକର ନ ହେଲା । ତଦନନ୍ତର ବାବୁ ଚତୁର୍ଭୁଜ ପଟ୍ଟନାୟକ ଓଡ଼ିଆରେ ବକ୍ତୃତାଟିଏ କଲେ । ସେ କହିଲେ ଯେଉଁ ଭାରତ ଭୂମିରେ ଏଥିପୂର୍ବେ ସୀତା, ସାବିତ୍ରୀ, ଦମୟନ୍ତୀ ପ୍ରଭୃତି ସୁଯୋଗ୍ୟା ଓ ବୀରରମଣୀ ଥିଲେ ବର୍ତ୍ତମାନ ସେହି ଭୂମି ଖଣ୍ଡରେ ନାରୀମାନଙ୍କ ଦୁରବସ୍ଥା ଅତି ଶୋଚନୀୟ ଅଟେ । ଯାହା ହେଉ ଇଂରାଜଙ୍କ ଶାସନରେ ଅନ୍ୟାନ୍ୟ ଉନ୍ନତି ସହିତ ନାରୀମାନଙ୍କ ଉନ୍ନତି ମଧ ଅଙ୍କୁରିତ ହୋଇଅଛି ଓ କ୍ରମେ ତାହା ବର୍ଦ୍ଧନଶୀଳ ହୋଇ ଫଳଦାୟକ ହେବ । ଏଥିର ପ୍ରତ୍ୟକ୍ଷ ପ୍ରମାଣ ଏହି ବିଦ୍ୟାଳୟ ଓ ସଭା ଅଟଇ । ଆଜି ମହାଆନନ୍ଦର ଦିବସ ବୋଲିବାକୁ ହେବ । ଯେଉଁମାନଙ୍କ ଅର୍ଥ ସାହାଯ୍ୟରେ ଓ ପରିଶ୍ରମରେ ଏ ବିଦ୍ୟାଳୟଟି ସ୍ଥାପନ ହୋଇ ଚଳୁଅଛି ସେମାନଙ୍କୁ ସେ ଧନ୍ୟବାଦ ଦେଇ କେଉଁଝର ମହାରାଜାଙ୍କର ଅନୁଗାମୀ ହେବା କାରଣ ଅନ୍ୟ ଧନି ବ୍ୟକ୍ତିମାନଙ୍କୁ ଅନୁରୋଧ କଲେ ସମସ୍ତେ ଏହିପରି ସାହାଯ୍ୟ କଲେ ସ୍ତ୍ରୀ ଶିକ୍ଷାର ଓ ସେମାନଙ୍କ ଅବସ୍ଥାର ଉନ୍ନତି ଅବଶ୍ୟ ହେବ । ତହୁଁ ବିଦ୍ୟାଶିକ୍ଷା ଓ ସୁନୀତି ବିଷୟରେ ବାଳିକାମାନଙ୍କୁ କେତେଗୁଡ଼ିଏ ଉପଦେଶ ଦେଲେ ଓ ଇଂରେଜ ମହିଳାମାନଙ୍କୁ ଏ ସଭାକୁ ଆସିଥିବା ହେତୁ ଧନ୍ୟବାଦ ଦେଲେ । ସଭାପତି ଲାର୍ମିନୀ ସାହେବ କହିଲେ ପୂର୍ବବକ୍ତା ସମୁଦାୟ କଥା କହିଅଛନ୍ତି ଆଉ ଆମ୍ଭେ ଅଧିକ କ'ଣ କହିବୁଁ । ଆମ୍ଭେ ବାଲେଶ୍ୱର ଓ ଭଦରଖର ବାଳିକା ବିଦ୍ୟାଳୟ ମାନ ଦେଖିଅଛୁଁ । ଏ ବିଦ୍ୟାଳୟଟି ସର୍ବାପେକ୍ଷା ଉତ୍ତମ ଅଟଇ । ଏକାବେଳକେ "ବି,ଏ" ପାସ ହୋଇ ନ ପାରେ କିମ୍ବା "ଏଫ, ଏ" ଫେଲ ଯେ କଥାଟିଏ ବାହାରିଅଛି ସେ ପର୍ଯ୍ୟନ୍ତ ମଧ ହଠାତ୍ ହୋଇ ନ ପାରେ କ୍ରମେ ଏଥିର ଉନ୍ନତି ହେବ ଓ ଏଥି ପକ୍ଷରେ ସମସ୍ତଙ୍କର ଯତ୍ନ ଆବଶ୍ୟକ । ଆମ୍ଭେ ଭରସା କରୁଁ ଆଗାମୀ ବର୍ଷକୁ କେହି କେହି କେଉଁଝର ମହାରାଜାଙ୍କର ଅନୁଗାମୀ ହୋଇ ଥିବାର ଶୁଣି ଆନନ୍ଦିତ ହେବୁଁ । ତଦନନ୍ତର ବାବୁ ମଧୁସୂଦନ ଦାସ ସଭାପକ୍ଷରୁ ଲାର୍ମିନୀ ସାହେବ ଓ କରି ସାହେବଙ୍କ ମେମଙ୍କୁ ଧନ୍ୟବାଦ ଦେଲେ ଓ ସଭା ଭଙ୍ଗ ହେଲା ।

ଆମ୍ଭମାନଙ୍କ ବିବେଚନାରେ ଏ ବିଦ୍ୟାଳୟର କାର୍ଯ୍ୟ ସନ୍ତୋଷଜନକ ଅଟଇ ଓ ଏହାଦ୍ୱାରା କ୍ରମେ ସ୍ତ୍ରୀ ଶିକ୍ଷାର ଉନ୍ନତି ସାଧନ ହେବ । ପୂର୍ବେ ଉତ୍କଳୀୟା ଛାତ୍ରୀଙ୍କର ସଂଖ୍ୟା ଅତ୍ୟଳ୍ପ ଥିଲା ବର୍ତ୍ତମାନ ତାହା ପନ୍ଦରଜଣ ପର୍ଯ୍ୟନ୍ତ ବୃଦ୍ଧି ହୋଇଅଛି ଓ ମଧ୍ୟ ଏମାନେ ଉତ୍ତମରୂପେ ଶିକ୍ଷା କରୁଥିବାର ପରିଚୟ ମିଳିଅଛି । ପୁରସ୍କାର ପାଇବା ଜ୨୦ଣ ଛାତ୍ରୀଙ୍କ ମଧ୍ୟରେ ଆଠୋଟି ଓଡ଼ିୟା ତିନୋଟି ଦେଶୀୟା ବଙ୍ଗାଳୁଣୀ ଅଟନ୍ତି । ପ୍ରଥମ ଶ୍ରେଣୀର ପ୍ରଥମ ଓ ଦ୍ୱିତୀୟ ପୁରସ୍କାର ଓଡ଼ିଆ ବାଳିକା ଅର୍ଥାତ୍ ସେହି ନିଶାମଣି ଦାସୀ ଓ ବାସନ୍ତୀ ବାଈ ଲଭି ବଙ୍ଗାଳୀ ଛାତ୍ରୀମାନଙ୍କୁ ଜିଣିଅଛନ୍ତି । ଉତ୍କଳୀୟଙ୍କ ପକ୍ଷରେ ଏହା ଅତି ଆନନ୍ଦର ବିଷୟ । କିନ୍ତୁ ଆକ୍ଷେପର କଥା ଏହି ଯେ ସମସ୍ତ ଉତ୍କଳୀୟ ଭଦ୍ର ବ୍ୟକ୍ତିମାନେ ଆପଣା ଆପଣା ବାଳିକାମାନଙ୍କୁ ବିଦ୍ୟାଳୟକୁ ପଠାଉ ନାହାନ୍ତି । ଆମ୍ଭେମାନେ ଚତୁର୍ଭୁଜ ବାବୁ ଓ ଲାର୍ମିନୀ ସାହେବଙ୍କ ସହିତ ଯୋଗ ଦେଇ ଏ ବିଦ୍ୟାଳୟ ସାହାଯ୍ୟ ପକ୍ଷରେ କେଉଁଝରର ମହାରାଜାଙ୍କ ଅନୁଗାମୀ ହେବା କାରଣ ଧନୀ ବ୍ୟକ୍ତିମାନଙ୍କୁ ଯେପରି ଅନୁରୋଧ କରୁଅଛୁଁ ସେହିପରି କୁସଂସ୍କାର ପରିତ୍ୟାଗପୂର୍ବକ ବାଳିକାମାନଙ୍କୁ ବିଦ୍ୟାଳୟକୁ ପଠାଇବାରେ ବାବୁ ନନ୍ଦକିଶୋର ଦାସଙ୍କର ଅନୁଗାମୀ ହେବା କାରଣ ଉତ୍କଳୀୟ ଭଦ୍ରବ୍ୟକ୍ତିମାନଙ୍କୁ ଅନୁରୋଧ କରୁଅଛୁଁ । ଏ ବିଦ୍ୟାଳୟର ଉନ୍ନତି ପକ୍ଷରେ ସମ୍ପାଦକ ବାବୁ ରାମଦାସ ଚକ୍ରବର୍ତ୍ତୀଙ୍କର ବିଶେଷ ଯତ୍ନ ଦେଖି ତାଙ୍କୁ ଧନ୍ୟବାଦ ଦେଉଅଛୁଁ । ଏଥିପୂର୍ବେ ଛାତ୍ରୀମାନଙ୍କ ସିଲାଇ ଓ ବୁଣାକର୍ମମାନ ଏପରି ସଭାରେ ପ୍ରଦର୍ଶିତ ହେଉଥିଲା ଏଥର ତାହା ହୋଇ ନାହି ଭବିଷ୍ୟତରେ ଯେପରି ଏ ତ୍ରୁଟି ନ ହୁଏ ।

*ଭା/୧୯ଗ,ସଂ୧୯ଖ୍ୟା, ୧୦/୫/୧୮୮୪*

## ଓଡିୟା ପୁସ୍ତକ ।

ଏହି ବିଷୟରେ ଆମ୍ଭେମାନେ ଗୋଟିଏ ପ୍ରବନ୍ଧ ଲେଖିବାରୁ ଉତ୍କଳ ଦର୍ପଣ ମର୍ମାନ୍ତିକ ବ୍ୟଥା ପାଇ ଯେଉଁ ଦୀର୍ଘ ପ୍ରବନ୍ଧ ଲେଖି ଥିଲେ ଏବଂ ଯାହାକୁ ମନୋଯୋଗ ପୂର୍ବକ ପାଠ କରିବା କାରଣ ଆମ୍ଭେମାନେ ପାଠକମାନଙ୍କୁ ଅନୁରୋଧ କରିଥିଲୁଁ ତହିଁର ଏକ ସ୍ଥାନରେ ଲେଖା ଅଛି "ଦୀପିକା ସମ୍ପାଦକ ଗୌରୀଶଙ୍କର ବାବୁଙ୍କ ଭୂଗୋଳ ପରିବର୍ତ୍ତରେ ଦୁର୍ଗାଚରଣ ବାବୁଙ୍କ ପୁସ୍ତକ ଚଳାଇ ଶିକ୍ଷାବିଭାଗୀୟ କର୍ମଚାରିମାନେ ଜାଣି ଶୁଣି ବରୁଡ଼ି ବସାକୁ ଟେକା ଫୋପାଡିଲେ । ଆମ୍ଭେମାନେ ଦୀପିକାର ପ୍ରବନ୍ଧର ସମାଲୋଚନା କରୁଅଛୁଁ ତାହା ସେହି ବରୁଡି ଆକ୍ରମଣର ପ୍ରଥମ କିସ୍ତପରି ବୋଧ ହେଉଅଛି" ଅର୍ଥାତ୍ ଦର୍ପଣ ଅଳଙ୍କାର ଛଟାରେ ସର୍ବସାଧାରଣଙ୍କୁ ବୁଝାଇବାକୁ ବସିଥିଲେ ଯେ ଓଡ଼ିଶା ବିଭାଗର କାର୍ଯ୍ୟ ସର୍ବାଙ୍ଗ ସୁନ୍ଦର କେବଳ ଦୀପିକା ସମ୍ପାଦକଙ୍କର ଈର୍ଷ୍ୟା ଓ ନୀଚାଶୟତାରୁ ଓଡ଼ିଆ ପୁସ୍ତକ ଘେନି ଅନର୍ଥକ ଗୋଟାଏ ଆନ୍ଦୋଳନ ହେଉଅଛି । କିନ୍ତୁ ତେତେବେଳେ ଲେଖକ ଆଦୌ ଜାଣି ପାରି ନ ଥିଲେ ଯେ ଶିକ୍ଷାବିଭାଗୀୟ କର୍ମଚାରିଙ୍କ  ଯତ୍ନରେ ତାହାଙ୍କ ଘରେ ବହୁକାଳରୁ ବସାଟିଏ ପ୍ରସ୍ତୁତ ଓ ପରିବର୍ଦ୍ଧିତ ହୋଇ ବରୁଡ଼ିର ସଂଖ୍ୟା ଏତେ ବଢ଼ାଇ ଅଛି ଯେ ଆଉ ସେ ସବୁ ଶାନ୍ତଭାବରେ ରହି ନ ପାରି ସାଧାରଣ ମତର ଈଷତ୍ ସଞ୍ଚାଳନରେ ଗୃହବାସିମାନଙ୍କୁ ବେଢ଼ି ବିନ୍ଧି ପକାଉ ଅଛନ୍ତି । ଅଥବା 'ଦର୍ପଣ' ଏହା ଜାଣିବେ କିପରି ? ପରର ଅନୁସରଣ କରିବା ତାହାଙ୍କ ନାମର ଗୁଣ ଏବଂ ଏଥିରେ ଯେ ସର୍ବଦା ସଫଳ କାମ ହେବା ଅସମ୍ଭବ ଏ କଥା ବହୁଦର୍ଶିତାଦ୍ୱାରା ପୁନଃ ପୁନଃ ବିଡା ହୋଇଅଛି ।

ଉତ୍କଳ ଦର୍ପଣର ପ୍ରବନ୍ଧ ବାହାରିଲା ଉତ୍ତାରୁ ବାଲେଶ୍ୱର ସମ୍ବାଦ ବାହିକା ଓଡ଼ିଆ ଭାଷାର ସମାଲୋଚନା କ୍ରମେ ହରିଶ୍ଚନ୍ଦ୍ରଇତିହାସର ଭାଷା ଓ ଭାବଗତ ଦୋଷର ଉଦାହରଣ ସ୍ୱରୂପ ଉକ୍ତ ପୁସ୍ତକର  ପୃ ୧୪୩-୧୪୭ ସ୍ଥା ମାନ ଚିହ୍ନାଇ ଦେଲେ । ତହିଁରେ ଇଂରାଜଙ୍କ ପ୍ରଥମ ଅମଳଦାରିର ଅବସ୍ଥା ଯେରୂପ ବର୍ଣ୍ଣିତ ହୋଇଅଛି ତାହା ମରହଟ୍ଟା ଅମଳରୁ ଅନେକ ଗୁଣରେ ଅଧିକ ନିନ୍ଦିତ ଓ ଘୃଣିତ ଓ ପ୍ୟାରୀ ବାବୁଙ୍କ ଓଡ଼ିଶା ଇତିହାସର ପରିତ୍ୟକ୍ତ ଅଂଶଠାରୁ ଅଧିକ ଦୂଷଣୀୟ ଅଟଇ । କିନ୍ତୁ ଏତେ କାଳ ତାହା କାହାରି ମନକୁ ଆକର୍ଷଣ କରି ନ ଥିଲା ବାହିକା ଦୋଷ ଦେଖାଇ ଦେବା ମାତ୍ରକେ ଦେଙ୍କ ପ୍ରେସ  ସମ୍ପାଦକ ଲଣ୍ଡଭଣ୍ଡ ହୋଇ ତାରସମ୍ପାଦଦ୍ୱାରା ଉକ୍ତ ପୁସ୍ତକ ବିକ୍ରୟ

ରହିତ କରାଇଲେ ଏବଂ ଦୂଷିତ ଅଂଶ ସଂଶୋଧନ କରିବା ନିମନ୍ତେ ଉପାୟମାନ ଅବଲମ୍ବନ କରୁଅଛନ୍ତି ବୋଲି ଉତ୍କଳଦର୍ପଣରେ ଏକ ପ୍ରେରିତପତ୍ର ପ୍ରକାଶ ପୂର୍ବକ ସର୍ବସାଧାରଣଙ୍କୁ ଜଣାଇ ଦେଲେ । ଯେବେ ପ୍ରେସ ସମ୍ପାଦକ ସରଳଭାବରେ ଆପଣା ଭ୍ରମ ସ୍ୱୀକାର କରି ତାହା ସଂଶୋଧନ କରିବାକୁ ଯତ୍ନବାନ୍ ଅଛନ୍ତି ବୋଲି ଜଣାଇ ଦିଅନ୍ତେ ତେବେ ତାହା ସଲଖ ପାଠ ହୋଇ ଥାନ୍ତା ଏବଂ ତହିଁରେ କାହାରି କିଛି କହିବାର ବାଟ ରହନ୍ତା ନାହିଁ । ମାତ୍ର କାର୍ଯ୍ୟଦ୍ୱାରା ଦେଖା ଯାଉଅଛି ଯେ ସେପରି ସାଧୁତା ଯେମନ୍ତ ଉତ୍କଳଦର୍ପଣ ତେମନ୍ତ ଦେଙ୍କ ପ୍ରେସଠାରୁ ଆଶା କରିବା କେବଳ ବିଡ଼ମ୍ବନା ଅଟଇ । କାରଣ ପରସ୍ପରକୁ ରକ୍ଷା କରିବା ଉଦ୍ଦେଶ୍ୟରେ ଉକ୍ତ ପ୍ରେରିତପତ୍ର ବାହାରି ଅଛି ଏବଂ ତହିଁରେ ଯେଉଁ ନ୍ୟାୟ ଅବଲମ୍ବିତ ହୋଇଅଛି ତାହା ଅତି ଚମତ୍କାର ଅଟଇ ଅର୍ଥାତ୍ କରିବା ବ୍ୟକ୍ତି ଦୋଷୀ ନୁହେ କହିବା ଲୋକ ପ୍ରକୃତ ଦୋଷୀ । ପ୍ରେସ ସମ୍ପାଦକ ଲେଖି ଅଛନ୍ତି କି ହରିଶ୍ଚନ୍ଦ୍ର ଇତିହାସ ଦୁଇ ସଂସ୍କରଣ ପ୍ରାୟ ଶେଷ ହୋଇ ଗଲା ଓ ବାହିକା ସମ୍ପାଦକ ଛାତ୍ରବୃତ୍ତିର ପରୀକ୍ଷକ ଥିବାରୁ ଉକ୍ତ ପୁସ୍ତକକୁ ଅବଶ୍ୟ ପୁନଃ ପୁନଃ ଲେଉଟାଇ ଥିବେ ଏବଂ ଯେଉଁ ଦୋଷ ବର୍ତ୍ତମାନ ଚିହ୍ନାଇ ଦେଉ ଅଛନ୍ତି ତାହା ଏଥି ପୂର୍ବରୁ ତାହାଙ୍କୁ ଗୋଚର ହୋଇଥିବ । ମାତ୍ର ଏତେବେଳେ ଓଡ଼ିଆ ପୁସ୍ତକର ଆନ୍ଦୋଳନ ଲାଗିବାରୁ "ଦର୍ପଣ ସମ୍ପାଦକଙ୍କ ଦୋଷ ଦେଖାଇବା ଛଳରେ ହେଉ ଅଥବା ଦେଙ୍କ ଉତ୍କଳ ପ୍ରେସରେ ମୁଦ୍ରିତ ବୋଲି ହେଉ କିମ୍ବା ଦେଙ୍କଦ୍ୱାରା ପ୍ରକାଶିତ ବୋଲି ହେଉ ସେ ଉକ୍ତ ଇତିହାସର କୌଣସି ସ୍ଥଳରେ ଦୋଷ ଦେଖାଇ ଅଛନ୍ତି ଅତଏବ ସେ ଅମନୁଷ୍ୟ ଇତ୍ୟାଦି" । ଯଥାର୍ଥ କଥା । ବାହିକା ସମ୍ପାଦକ ଯେବେ ଉକ୍ତ ଦୋଷର କଥା ପୂର୍ବରୁ ଜାଣି ଥିଲେ ତେବେ ତେତେବେଳେ କହି ଥାନ୍ତେ ଆଉ ଯେବେ ବର୍ତ୍ତମାନ ଜାଣି ପାରିଲେ ତେବେ ଦର୍ପଣ ସକାଶେ ଅଥବା ଦେଙ୍କ ପ୍ରେସ ବା ଦେଙ୍କ ସକାଶେ ତୁନି ହୋଇ ରହି ଥାନ୍ତେ । କୌଣସି ସାଧାରଣ ତର୍କ ଲାଗି ଥିବା ସମୟରେ ପ୍ରକୃତ ନିରପେକ୍ଷ କଥା ମନେ ପଡିଲେ ସୁଦ୍ଧା ତାହା କହିବାଦ୍ୱାରା ପ୍ରଶସ୍ତ ଅନ୍ତଃକରଣ ବା ଦେଶହିତୈଷିତାର ପରିଚୟ ମିଳି ପାରେ କି ? ବିଶେଷ ବିଶେଷ ସ୍ୱାର୍ଥ ପ୍ରତି ଦୃଷ୍ଟି ନ ରଖି କୌଣସି କଥା କହି ଦେବା ବଡ଼ ଦୋଷ ବିଶେଷତଃ ଏ ପୁସ୍ତକକୁ କୁମାର ବୈକୁଣ୍ଠନାଥ ଦେ ପ୍ରକାଶ କରିବା ଏବଂ ଓଡ଼ିଶାର ଇଏଷ୍ଟ ଇନ୍‌ସ୍ପେକ୍ଟର ସର୍ବୋତ୍କୃଷ୍ଟ ଇତିହାସ ବୋଲି ପାଠ୍ୟପୁସ୍ତକ ମଧ୍ୟରେ ଧାର୍ଯ୍ୟ କରିବା ସମୟରେ ଅବଶ୍ୟ ଭଲରୂପେ ପରୀକ୍ଷା କରି ଦେଖି ଥିବେ ମାତ୍ର ତାହା ଦେଙ୍କ ପ୍ରକାଶିତ ବୋଲି ହେଉ ଅଥବା ଦେଙ୍କ ଉତ୍କଳ ପ୍ରେସରେ ମୁଦ୍ରିତ ବୋଲି ହେଉ ଅଥବା କର୍ତ୍ତବ୍ୟ କର୍ମର ଶିଥିଳତାରୁ ହେଉ କୌଣସି ଦୋଷ ନ ଧରି ସ୍ୱଚ୍ଛନ୍ଦରେ ବିଦ୍ୟାଳୟମାନଙ୍କରେ ଚଳାଇ ଦେଲେ ଏବଂ ସଂସ୍କରଣ ଉପରେ ସଂସ୍କରଣ ଉଡି ଗଲା । ଅତଏବ ବାହିକାଙ୍କ ଦୋଷ ଅତ୍ୟନ୍ତ ଗରିଷ୍ଠ ଏବଂ ଅମାର୍ଜନୀୟ । ଯାହା ହେଉ ଦେଙ୍କ ପ୍ରେସ ସମ୍ପାଦକ ବାହିକାଙ୍କଠାରେ କୃତଜ୍ଞତା ସ୍ୱୀକାର କରିଅଛନ୍ତି ଏବଂ ଆମ୍ଭେମାନେ ଆଶା କରୁଁ କି ଭବିଷ୍ୟତରେ କୌଣସି ପୁସ୍ତକ ଛାପା କରାଇବା ପୂର୍ବେ ବାହିକାଙ୍କର ମତ ଗ୍ରହଣ କରିବାକୁ ଚେଷ୍ଟା କରିବେ ତାହା ହେଲେ ବର୍ତ୍ତମାନପରି ଦୁର୍ଘଟଣା ନିବାରଣ ହେବ ଏବଂ ତଦ୍ଦ୍ୱାରା ସେ ବିଶେଷ ଲାଭବାନ୍ ହେବେ । ପରନ୍ତୁ ସେ ଯେବେ ବୁଝିଅଛନ୍ତି କି ଏକା ବାହିକା ତାହାଙ୍କର ଛିଦ୍ର ଅନୁସନ୍ଧାନ କରିବାକୁ ତତ୍ପର ତେବେ ସେ ଭ୍ରମରେ ପଡିଅଛନ୍ତି କାରଣ ଯେଉଁ ସମୟରେ ବାହିକାରେ ହରିଶ୍ଚନ୍ଦ୍ର ଇତିହାସର ଦୋଷ ବାହାରିଥିଲା ଠିକ୍ ସେହି ସମୟରେ ଜଣେ ପତ୍ରପ୍ରେରକ ଉକ୍ତ ପୁସ୍ତକର ଦୋଷ ଦୀପିକାରେ ଗାଇଥିଲେ । ଏଥିରୁ ଜଣା ଯାଉଅଛି ଯେ ଉତ୍କଳପୁସ୍ତକ ଉପରେ ବର୍ତ୍ତମାନ ସାଧାରଣଙ୍କ ଦୃଷ୍ଟି ପଡିଅଛି ଏମନ୍ତ ସ୍ଥଳେ ବ୍ୟକ୍ତିବିଶେଷପ୍ରତି ବୃଥା ଅଭିମାନ ବା କୋପ ପ୍ରକାଶ ନ କରି ଯହିଁରେ ସର୍ବସାଧାରଣଙ୍କ ମନସ୍କାମନା ପୂର୍ଣ୍ଣ ହେବ ଅର୍ଥାତ୍ ଉପଯୁକ୍ତ ପାଠ୍ୟ ପୁସ୍ତକମାନ ବିଦ୍ୟାଳୟରେ ପ୍ରଚଳିତ ହେବ ଏବଂ ଯୋଗ୍ୟ ଗ୍ରନ୍ଥକାରମାନେ ଭଲ ଭଲ ପୁସ୍ତକ ରଚନା କରିବାକୁ ଉତ୍ସାହିତ ହେବେ ତହିଁର ଚେଷ୍ଟା କରିବାର ଉଚିତ ।

*ଭା୧୯ଗ,ସଂ୨୦ଖ୍ୟା, ୧୭।୫।୧୮୮୪*

# ଓଡ଼ିଶାର ଶିକ୍ଷାବିଭାଗ ।

ଓଡ଼ିୟା ପୁସ୍ତକ ଉପଲକ୍ଷରେ ଏ ସମ୍ପର୍କରେ ଆମ୍ଭେମାନେ ଏବଂ ବାଲେଶ୍ୱର ସହଯୋଗିମାନେ ଯେଉଁ ପ୍ରବନ୍ଧମାନ ଲେଖି ଅଛନ୍ତି ତହିଁର ଗୋଟିଏ ସମାଲୋଚନା ଗତ ପ୍ରକାଶିତ ସେବକରେ ପ୍ରକଟିତ ହୋଇ ଅଛି । ପାଠକମାନେ ଜାଣନ୍ତି ଯେ ସେବକ ଓଡ଼ିଶା ବ୍ରାହ୍ମସମାଜର ମୁଖପାତ୍ର ଅଟନ୍ତି ଅବା ତଦ୍ରୂପ ଦାବୀ କରନ୍ତି ସୁତରାଂ ତାହାଙ୍କ ମତ ସ୍ୱଷ୍ଟ ସରଳ ଓ ନିରପେକ୍ଷ ହେବ ଏପରି ଆଶା କରିବା ଯୁକ୍ତି ଯୁକ୍ତ ଅଟଇ କିନ୍ତୁ ଏହି ସମାଲୋଚନା ଏମନ୍ତ ଭାବରେ ଲେଖା ହୋଇଅଛି ଯେ ଏଥିରୁ କୌଣସି ନିଷ୍ଚୟ ସିଦ୍ଧାନ୍ତ କରିବା କଠିନ । ବାସ୍ତବରେ ଏହା ଦେବଲୋକଙ୍କ ଭାଷାରେ ରଞ୍ଜିତ ହୋଇଅଛି ସାମାନ୍ୟ ମାନବମାନେ ଏଥିର ଯେପରି ଅର୍ଥ କରିବେ ସେପରି ହେବ । ଲେଖାର ସମସ୍ତ ଭାବ ଏକତ୍ରିତ କଲେ ଜଣାଯାଏ ଯେ ଲେଖକ ଏ ବିଷୟରେ ଅବଧି କୌଣସି ମତ ସ୍ଥିର କରି ପାରି ନାହାନ୍ତି ଅଥବା ଏହା ଶିକ୍ଷା ବିଭାଗୀୟ କର୍ମଚାରିଙ୍କ ଅନୁକୂଳ ବା ପ୍ରତିକୂଳରେ ଲେଖା ହୋଇଅଛି ଏବଂ ଲେଖକ ଶିକ୍ଷାବିଭାଗକୁ ରକ୍ଷା କରିବାକୁ ଯାଇ ତହିଁର ବିପରୀତ ହେତୁ ପାଇଲେ ସୁଦ୍ଧା ଆପଣା ଭ୍ରମ ସ୍ୱୀକାର ନ କରି ଆମ୍ଭମାନଙ୍କୁ ମିଶାଇ ଓଡ଼ିଶାର ଅପର ସମ୍ବାଦପତ୍ରମାନଙ୍କୁ ନିନ୍ଦା କରିଅଛନ୍ତି । ଏହି ସମାଲୋଚନାର ମୁଖବନ୍ଧରେ ଲେଖା ଅଛି । ଯଥା—

"ଉତ୍କଳଦୀପିକା ଭା ୧୯ ଗ, ୧୫, ୧୭ ଓ ସଂ ୨୦ଖ୍ୟା; ଉତ୍କଳ ଦର୍ପଣ ଭା୧୨ଗ ସଂ୧୬ଖ୍ୟା, ସମ୍ବାଦ ବାହିକା ଭା୧୭ଗ ସଂ୨୦ଖ୍ୟା ଆଲୋଚନାଭୂମି ପରିତ୍ୟାଗ କରି ଆକ୍ରମଣଭୂମିରେ ପଦ ନିକ୍ଷେପ କଲେ ଲେଖକମାନଙ୍କ ମୂର୍ତ୍ତି କିରୂପ ସୁନ୍ଦର ଦିଶଇ, ତାହା ପୂର୍ବଲିଖିତପତ୍ରମଧ୍ୟଗତ "ଓଡ଼ିୟାପୁସ୍ତକ" ଓ "ଓଡ଼ିୟାଭାଷା" ଶୀର୍ଷାଙ୍କିତ ପ୍ରବନ୍ଧମାନ ପାଠକଲେ ଜଣାପଡିବ । ତଥାପି ସୂର୍ଯ୍ୟାଲୋକରେ ପ୍ରକାଶ୍ୟଭାବରେ ବୀର ତୁଲ୍ୟ ଆକ୍ରମଣକଲେ କେତେକ ପରିମାଣରେ ପ୍ରଶଂସନୀୟ ହୋଇପାରେ, ମାତ୍ର ଅନ୍ଧକାରରେ ହିତାହିତ ବିବେଚନା ନ କରି ପ୍ରହାର ଆରମ୍ଭ କଲେ କାପୁରୁଷତାର ଚିହ୍ନ ଅଭିବ୍ୟଞ୍ଜିତ ହୁଏ । ସମସ୍ତେ ଗୋଳମାଳ କରି ପାଠ୍ୟପୁସ୍ତକମାନଙ୍କୁ ଲକ୍ଷ କରି ଅନେକ କଥା କହୁଅଛନ୍ତି, ମାତ୍ର କିଏ କେଉଁ କେଉଁ ବିଷୟ ନିମିତ୍ତ ଦୋଷୀ ବା କି କି କାରଣରୁ ଦୋଷ ଜାତ ହୋଇଅଛି, ତଦ୍‌ବିଷୟରେ ପରିଷ୍କାରରୂପେ କେହି କିଛି ଲେଖି ନାହାନ୍ତି । ବିଶେଷତଃ ଏ ବିଷୟ କିଛି ଏରୂପ ଗୁରୁତର ନୁହେଁଯେ ଯେ ସମ୍ପାଦକମାନେ ଏଡ଼େ ଏଡେ ପ୍ରବନ୍ଧ ଲେଖିବେ ଓ ସେହି ଛଳରେ ପରସ୍ପରଙ୍କ ନାନାକଟୁକଥା କହିବେ ।"

ପ୍ରଥମେ 'ଆଲୋଚନା ଭୂମି ପରିତ୍ୟାଗ କରି ଆକ୍ରମଣ ଭୂମିରେ ପଦ ନିକ୍ଷେପ' କରିବା କିପରି ହେଲା ଆମ୍ଭେମାନେ ବୁଝିପାରୁ ନାହୁଁ । ପ୍ରଶଂସା ଓ ନିନ୍ଦା ସମାଲୋଚନାର ଦିଯୋଟି ଅଙ୍ଗ ବୋଲିବାକୁ ହେବ ଏବଂ କାର୍ଯ୍ୟ ବିଶେଷର ନିନ୍ଦା ଅଗତ୍ୟା କର୍ତ୍ତାଙ୍କଠାରେ ବର୍ତ୍ତିବ । ଅତଏବ କୌଣସି ଅପକାର୍ଯ୍ୟ ସକାଶେ ତହିଁର କର୍ତ୍ତା ପ୍ରତି କଟାକ୍ଷ କଲେ ଯେବେ ତାହାକୁ ଆକ୍ରମଣ ବୋଲାଯାଏ ତେବେ ତାହା ଅନିବାର୍ଯ୍ୟ; ସମାଲୋଚନା ମାତ୍ରକେ ସେପରି ଅପରାଧର ଅପରାଧୀ ହେବେ । ନିନ୍ଦା କରିବାର କାରଣ ଅଯଥା ବା ଦୁର୍ବଳ ହୋଇ ପାରେ ମାତ୍ର ତାହା ବ୍ୟକ୍ତ କଲେ ଆକ୍ରମଣ କରିବା ହେବ ଏମନ୍ତ ଭୟ କରି ସାଧାରଣ ଭାବକୁ ଲୁଚାଇ ରଖିବା ଅଯୌକ୍ତିକ ଅଟଇ । ବରଂ ଆମ୍ଭେମାନେ ଅନୁମାନ କରୁଅଛୁଁ କି ଏହି ଆକ୍ରମଣ କରିବା ଭୟରୁ ଏବଂ ବେଳେ ବେଳେ ଚକ୍ଷୁଲଜ୍ଜା ବଶତଃ ସ୍ୱଷ୍ଟ କଥା ସମସ୍ତ ବାହାରି ପାରୁ ନାହିଁ । ଏ ଦୁର୍ବଳତା ଆମ୍ଭମାନଙ୍କର ବିଲକ୍ଷଣ ରହିଅଛି । ସାଧାରଣ ହିତାହିତ ବିଷୟରେ ସ୍ୱଷ୍ଟ କଥା କହିବାକୁ ହେବ ଏବଂ ତାହାକୁ କେହି ଆକ୍ରମଣ ବୁଝିଲେ ସୁଦ୍ଧା ଯେ ବ୍ୟକ୍ତି ନ୍ୟାୟ ଓ ନିରପେକ୍ଷ ଭାବରେ କାର୍ଯ୍ୟ କରିବେ ତାହାଙ୍କର କିଛିମାତ୍ର କ୍ଷତି ହେବ ନାହିଁ । ଶୁଦ୍ଧ ସୁବର୍ଣ୍ଣ ହୋଇ ଥିଲେ ପୋଡିବାଦ୍ୱାରା ତହିଁର ଜ୍ୟୋତି କେବଳ ଅଧିକ ହେବ ।

ଏଥି ଉତ୍ତାରୁ ଲେଖା ଅଛି କି ସମ୍ପାଦକମାନେ ବୀରତୁଲ୍ୟ ପ୍ରକାଶ୍ୟଭାବରେ ଆକ୍ରମଣ ନ କରି କାପୁରୁଷତା ଦେଖାଇ ଅଛନ୍ତି ଅଥଚ ଏ ବିଷୟ ଏଡେ ଗୁରୁତର ନୁହେ ଯେ ସମ୍ପାଦକମାନେ ତହିଁପାଇଁ ବଡ଼ ବଡ଼ ପ୍ରବନ୍ଧ ଲେଖିବେ ଏବଂ ପରସ୍ପରଙ୍କୁ କଟୁକଥା କହିବେ । ଏଠାରେ ଆମ୍ଭମାନଙ୍କର ଭୟ ହେଉଅଛି ଯେ ସେବକର ଲେଖକ ଯେ ସମସ୍ତ

ପ୍ରବନ୍ଧର ସମାଲୋଚନା କରୁଅଛନ୍ତି ସେମାନ ଭଲ କରି ପଢ଼ି ନାହାନ୍ତି ଅଥବା ନିରପେକ୍ଷ ଭାବରେ ସେ ସମସ୍ତର ପରିଚୟ ଦେଲେ ତାହାଙ୍କର ସ୍ୱାର୍ଥସିଦ୍ଧି ହେବ ନାହିଁ ବୋଲି ସମସ୍ତ ପ୍ରବନ୍ଧକୁ ଏକ ପ୍ରକାର ନିନ୍ଦା କରିଅଛନ୍ତି । ଆମ୍ଭେମାନେ ପ୍ରଥମ ପ୍ରବନ୍ଧରେ ସ୍ପଷ୍ଟରୂପେ ଶିକ୍ଷାବିଭାଗର କେତୋଟି ଦୋଷ ଦେଖାଇ ଦେଲୁଁ । ଦର୍ପଣ ଏକ ଦୀର୍ଘ ପ୍ରବନ୍ଧରେ ତହିଁର ଉତ୍ତର ଦେଲେ ଏବଂ ବାହିକା କେତେ ଖଣ୍ଡ ପୁସ୍ତକ ସମାଲୋଚନା ପୂର୍ବକ ଦୋଷଗୁଣ ଦେଖାଇ ଦେଲେ । କିନ୍ତୁ ଏମାନେ ସମସ୍ତେ କାପୁରୁଷପରି ଅନ୍ଧକାରରେ ପ୍ରହାର କଲେ କେହି କିଛି ସ୍ପଷ୍ଟ କରି କହିଲେ ନାହିଁ । କି ସୁନ୍ଦର ବିଚାର ! ସୁନା ପିତଳ ସବୁ ଏକଦର । ଭଲା ଆମ୍ଭେମାନେ ସମସ୍ତେ ଏକପ୍ରକାର ଦୋଷୀ ହେଲୁଁ କିନ୍ତୁ ସେବକରେ ଲେଖକ ଏହା କହିବା ଭିନ୍ନ ଅଧିକ କିଛି କଲେ କି ? କିଏ କେଉଁ ବିଷୟରେ ଦୋଷୀ ତାହା ସେ ଚିହ୍ନାଇ ଦେଇ ଅଛନ୍ତି କି ? ସାଧାରଣ ଶିକ୍ଷାର ଉନ୍ନତି ଚିନ୍ତା ଗୁରୁତର ବିଷୟ ନୁହେ ସେ ପ୍ରସଙ୍ଗରେ ଦୀର୍ଘ ପ୍ରବନ୍ଧ ଲେଖିବା ବଡ଼ ଅନ୍ୟାୟ ! କେବଳ ଅନୁମାନ ହୁଅଇ ଏହି ଅନ୍ୟାୟ କଥା ବୁଝାଇ ଦେବା ସକାଶେ ଦୀର୍ଘ ପ୍ରବନ୍ଧ ଲେଖି ସେବକର ୪୨ ପୃଷ୍ଠା ସ୍ଥାନ ପୂର୍ଣ୍ଣ କରିବା ଅନ୍ୟାୟ ନୁହଇ । ଏଠାରେ ଉପଦେଶ ସହିତ କାର୍ଯ୍ୟର କେମନ୍ତ ସୁନ୍ଦର ଐକ୍ୟତା ରହି ଅଛି ! ଅଥବା ଲେଖକ ବ୍ୟଙ୍ଗକରି କହିଅଛନ୍ତି ଯେ ଶିକ୍ଷାବିଭାଗ ଉକ୍ତ ବିଭାଗୀୟ କର୍ମଚାରିଙ୍କର ଲୀଳାଭୂମି ସେମାନଙ୍କର ଯାହା ଇଚ୍ଛା ତାହା କରିବେ । ଆଉ କାହାରି ଦୃଷ୍ଟି ତହିଁରେ ପଡ଼ିବ ନାହିଁ ଏଥିରେ କି ଗୁରୁତ୍ୱ ଅଛି ଯେ ସମ୍ବାଦପତ୍ରମାନେ ତହିଁରେ ଦୀର୍ଘ ପ୍ରବନ୍ଧ ଲେଖିବେ ଏବଂ ଆପଣା ମଧରେ କଳି କରିବେ । ଯାହା ହେଉ ଆମ୍ଭମାନଙ୍କ ସମ୍ପର୍କରେ ଏତିକି । ଶିକ୍ଷାବିଭାଗ ସମ୍ପର୍କରେ ଯାହା ଲେଖା ଅଛି ବାରାନ୍ତରେ ତହିଁର ବିଚାର କରିବାକୁ ହେବ ।

*ଭା/୧୯ଗ, ସଂ୨୬ଖ୍ୟା, ୨୮/୬/୧୮୮୪*

## ଓଡିଶାର ଶିକ୍ଷାବିଭାଗ ଏବଂ ଓଡିୟା ପୁସ୍ତକ ।

ବର୍ତ୍ତମାନ ଜଏଣ୍ଟ ଇନ୍‌ସ୍ପେକ୍ଟର ବାବୁ ରାଧାନାଥ ରାୟଙ୍କ ସମ୍ବନ୍ଧରେ ସେବକରେ ଯେତେ କଥା ଲେଖା ଅଛି ଗୋଟି ଗୋଟି କରି ସେ ସମସ୍ତର ସମାଲୋଚନା କଲେ ଏ କ୍ଷୁଦ୍ର ପତ୍ରିକାରେ ସ୍ଥାନ ହେବ ନାହିଁ । ପ୍ରକାଶ୍ୟରେ ବୋଧ ହୁଅଇ ଲେଖକ ତାହାଙ୍କ କାର୍ଯ୍ୟପ୍ରଣାଳୀ ନିର୍ଦ୍ଦୋଷ ବୋଲି ଦେଖାଇବାକୁ ଚେଷ୍ଟା କରିଅଛନ୍ତି ମାତ୍ର କୌଣସିଠାରେ ତହିଁର ସୁଯୁକ୍ତି ଉପସ୍ଥିତ କରିବା ତେଣିକି ଥାଉ ବରଂ ସେ ଯାହା କହିଅଛନ୍ତି ତହିଁରେ ଉକ୍ତ କାର୍ଯ୍ୟପ୍ରଣାଳୀର ଦୋଷ ପ୍ରକାଶ ପାଉଅଛି । ଯଥା–

ପ୍ରଥମେ ବୋଲା ଯାଇଅଛି କି ଉଚ୍ଚ ବିଦ୍ୟାଳୟର ପାଠ୍ୟପୁସ୍ତକମାନଙ୍କର ଯେଉଁ ତାଲିକା ଜଏଣ୍ଟ ଇନ୍‌ସ୍ପେକ୍ଟର ବାହାର କରିଅଛନ୍ତି ତାହା ସମସ୍ତଙ୍କ ମତରେ ନିର୍ଦ୍ଦୋଷ ନ ହେଲେହେଁ ଯେତେବେଳେ ସୁପାଠ୍ୟ ପୁସ୍ତକମାନ ଅଗ୍ରାଧିକ ପରିମାଣରେ ତାଲିକାରେ ସ୍ଥାନ ପାଇ ଅଛି ତେତେବେଳେ ଆମ୍ଭମାନଙ୍କର ସନ୍ତୁଷ୍ଟ ହେବାର ଉଚିତ ।' ଏଥକୁ ଆମ୍ଭେମାନେ କହୁଁ କି ଯେବେ କେବଳ ତାଲିକା ଦେଖି ସନ୍ତୁଷ୍ଟ ହେବାର ଉଚିତ ହୁଅଇ ତେବେ ରାଧାନାଥ ବାବୁଙ୍କ ବିରୁଦ୍ଧରେ କିଛି କହିବାର ନାହିଁ । କିନ୍ତୁ ଏହି ତାଲିକାରେ ଅଗ୍ରାଧିକ ପରିମାଣରେ ସୁପାଠ୍ୟ ପୁସ୍ତକମାନଙ୍କର ନାମ ଥିବାରୁ ଅଗତ୍ୟା ବୋଲିବାକୁ ହେଉଅଛି ଯେ ରାଧାନାଥ ବାବୁ ସୁପାଠ୍ୟ ପୁସ୍ତକ ବାଛିବାକୁ ଯୋଗ୍ୟ ନୁହନ୍ତି ଅଥବା ସମସ୍ତ ଗ୍ରନ୍ଥକାରଙ୍କୁ ସନ୍ତୁଷ୍ଟ କରିବା ଆଶାରେ ସକଳ ପୁସ୍ତକର ନାମ ତାଲିକାରେ ଲେଖି ଦେଇ ଅଛନ୍ତି । ପୁଣି ଯେତେବେଳେ ତାଲିକା ପ୍ରତି ଦୃଷ୍ଟି କରୁଁ ତେତେବେଳେ ଦେଖୁଁ ଯେ ଏଥି ଲେଖିତ କେତେ ପୁସ୍ତକ ଆଦୌ ମିଳିବାର ନାହିଁ ଏବଂ କେତେ ପୁସ୍ତକ ଗ୍ରନ୍ଥକାର ବା ଛାପାକାର ନିକଟରେ ପଡି ରହି ମାଟି ହେଉଅଛି କୌଣସି ବିଦ୍ୟାଳୟରେ ତାହା ପଠିତ ହୁଅଇ ନାହିଁ ବୋଲି ଖଣ୍ଡେ ସୁଦ୍ଧା ବିକ୍ରୟ ହେଉ ନାହିଁ ଏପରି ଅବସ୍ଥା ଦେଖିଲେ କାହାର ମନରେ ସନ୍ଦେହ ନ ହେବ ଯେ ତାଲିକାଖଣ୍ଡ କେବଳ ଦାଣ୍ଡର ଆଭରଣ–ସର୍ବସାଧାରଣଙ୍କ ଆଖିରେ ଧୂଳି ଦେବା ଉଦ୍ଦେଶରେ ପ୍ରସ୍ତୁତ ହୋଇଅଛି ନତୁବା ଶିକ୍ଷା ବିଭାଗୀୟ କର୍ମଚାରିମାନେ ଯେଉଁ ପୁସ୍ତକକୁ ଗୋପନରେ ଆଶ୍ରୟ ଦେବାକୁ ଇଚ୍ଛା କରନ୍ତି ସେହି ପୁସ୍ତକ ବିଦ୍ୟାଳୟମାନଙ୍କରେ ପଠିତ ହୁଅଇ । ବିଭାଗୀୟ କର୍ମଚାରିମାନେ କି

ଉପାୟରେ ତାହା କରିବାକୁ ସମର୍ଥ ହୁଅନ୍ତି ତହିଁର ଗୋଟିଏ ଉଦାହରଣ ସେ ଦିନ ସମ୍ବାଦବାହିକାରେ ବାହାରି ଥିଲା ଏବଂ ଆମ୍ଭେମାନେ ତାହା ଏ ପତ୍ରିକାରେ ପ୍ରକାଶ କରିଅଛୁଁ ଅର୍ଥାତ୍ ଦ୍ୱାରୀ ବାବୁଙ୍କ ଭୂଗୋଳ ସମ୍ପର୍କରେ ଦର୍ଶକାଭି ପ୍ରାୟ ବହିର ମନ୍ତବ୍ୟ । ସେବକର ଲେଖକ ଅବଶ୍ୟ ସେକଥା ପଢ଼ିଅଛନ୍ତି ଏବଂ ତାହାଙ୍କ ଲେଖାରୁ ବୋଧ ହୁଅଇ ଶିକ୍ଷାବିଭାଗର କାର୍ଯ୍ୟ କଳାପ ତାହାଙ୍କୁ ବିସ୍ତର ଜଣା ଅଛି । କିନ୍ତୁ ଏ ସବୁ ବିଷୟରେ ସେ କିଛି ନ କହି କେବଳ ତାଲିକାଟି ଏକପ୍ରକାର ସନ୍ତୋଷଜନକ ଥିବାର କହି ଯେ ତୁନି ହୋଇ ରହି ଅଛନ୍ତି ଏଥିର ଅର୍ଥ ବୁଝିବା କଠିନ ନୁହଇ । ଏହା X X X X କହିଅଛନ୍ତି କି 'ରାଧାନାଥ ବାବୁ X X X X ର ଯେତେ ପୁସ୍ତକ ବାହାରି ଅଛି ତାହାଙ୍କ ପୂର୍ବବର୍ତ୍ତୀ ଇଏଣ୍ଡ ଇନ୍‌ସ୍‌ପେକ୍ଟରମାନଙ୍କ ସମୟରେ ତାହା ହୋଇଥିଲା କି ନାହିଁ ସନ୍ଦେହର ବିଷୟ' ଏ କଥାର କିଛିମାତ୍ର ପ୍ରମାଣ ନାହିଁ ବରଂ ତାହାଙ୍କ ପ୍ରକାଶିତ ତାଲିକାରେ ଅନେକ ପୁରୁଣା ପୁସ୍ତକର ନାମ ଥିବାରୁ ତହିଁର ବିପରୀତ ପ୍ରମାଣ ହେଉଅଛି । ଓଡ଼ିଶାରେ ଯେମନ୍ତ ଦିନ ଦିନ ଶିକ୍ଷାର ଉନ୍ନତି ହେଉଅଛି ତହିଁରେ ପୂର୍ବଠାରୁ ବର୍ତ୍ତମାନ ଅଧିକ ପୁସ୍ତକ ବାହାରିବା ସ୍ୱାଭାବିକ ଅଟଇ ଏବଂ ରାଧାନାଥ ବାବୁଙ୍କ ଯତ୍ନରେ ତାହା ଘଟଣା ହେବା ଦୂରେ ଥାଉ ଉପର ଲିଖିତ ତାଲିକା ସଂକ୍ରାନ୍ତ କଥାଟି ଆଲୋଚନା କଲେ ସ୍ପଷ୍ଟ ଜଣା ଯିବ ଯେ ତାହାଙ୍କ ଅଯତ୍ନରୁ ଭଲ ପୁସ୍ତକ ଆଶାନୁରୂପେ ବାହାରି ପାରୁ ନାହିଁ । ପୁସ୍ତକ ନିର୍ବାଚନ ନିମିତ୍ତ ଗୋଟିଏ କମିଟୀ ଥିଲା ରାଧାନାଥ ବାବୁଙ୍କ ଅମଳରେ ତାହା ଉଠି ଗଲା ଏବଂ ସେ ଯେବେ ସ୍ୱୟଂ ଦମ୍ଭ ଏବଂ ନିରପେକ୍ଷ ଭାବରେ ଉତ୍କୃଷ୍ଟ ପୁସ୍ତକମାନ ବାଛି ବିଦ୍ୟାଳୟର ପାଠ୍ୟ ପୁସ୍ତକ ସ୍ୱରୂପ ଧାର୍ଯ୍ୟ କରନ୍ତେ ତାହା ହେଲେ ସୁଦ୍ଧା ଆମ୍ଭମାନଙ୍କର ଗୁହାରି କରିବାର କାରଣ ନ ଥାନ୍ତା ।

ଦ୍ୱିତୀୟରେ ସେବକ ଲେଖି ଅଛନ୍ତି କି 'କିପରି ଉତ୍ତମ' ପୁସ୍ତକ ଓଡ଼ିୟା ଭାଷାରେ ବାହାରିବ ରାଧାନାଥ ବାବୁ ସେଥି ନିମନ୍ତେ ସଦା ଯତ୍ନଶୀଳ' ଏବଂ 'ଭାଗ୍ୟବଳରେ କୁମାର ବୈକୁଣ୍ଠନାଥ ଦେ ତାହାଙ୍କର ସହୃଦୟ ବନ୍ଧୁ ହୋଇ ଥିବାରୁ ତାହାଙ୍କର ଏହି ଲିପ୍ସା ଚରିତାର୍ଥ ହେବାର ଅବକାଶ ମିଳି ଅଛି ।' କାହାର ଭାଗ୍ୟବଳରେ ଏ ସଂଯୋଗ ଘଟିଅଛି ଏବଂ ଏହାଦ୍ୱାରା କେଉଁ ବିଶେଷ ଫଳ ଲାଭ ହୋଇଅଛି ଆମ୍ଭେମାନେ ବୁଝି ପାରୁ ନାହୁଁ ଏବଂ ଲେଖକ ଏ ସବୁ ବିସ୍ତାରିତରୂପେ ଚିହ୍ନାଇ ଦେଇ ନାହାନ୍ତି ବରଂ ତାହାଙ୍କ ଲେଖାରୁ ବୋଧ ହେଉଅଛି ଯେ ଏରୂପ କାର୍ଯ୍ୟପ୍ରଣାଳୀ ତାହାଙ୍କର ସମ୍ପୂର୍ଣ୍ଣରୂପେ ମନୋନୀତ ନୁହଇ ଏବଂ ଏଥିପାଇଁ ସେ କହିଅଛନ୍ତି କି ଉତ୍କଳ ସାହିତ୍ୟର ଦରିଦ୍ରାବସ୍ଥାରେ ତାହା ଅନୁମୋଦନୀୟ ଅଟଇ । ବାସ୍ତବରେ ଯେତେବେଳେ ସ୍ମରଣ ହୁଅଇ ଯେ କୁମାର ବୈକୁଣ୍ଠନାଥଦେ ଓଡ଼ିଶାର ଅନ୍ୟାନ୍ୟ ଯନ୍ତ୍ରାଳୟର ଅଧିକାରିଙ୍କପରି ଜଣେ ବ୍ୟବସାୟୀ ଅଟନ୍ତି ଏବଂ ତାହାଙ୍କ ଯନ୍ତ୍ରାଳୟ ସର୍ବାପେକ୍ଷା ଉତ୍କୃଷ୍ଟ ନୁହଇ ଅଥଚ ଯେ ସମସ୍ତ ପାଠ୍ୟ ପୁସ୍ତକ ବାଲେଶ୍ୱରରୁ ବାହାରି ଅଛି ସେ ସମସ୍ତ ପ୍ରାୟ ସେହିଠାରୁ ପ୍ରକାଶ ହୁଅଇ ଏବଂ ରାଧାନାଥ ବାବୁଙ୍କର ଏକ ଭାଇ ସେହି ଯନ୍ତ୍ରାଳୟର ଜଣେ କର୍ମଚାରି ଏବଂ ସେହି ଯନ୍ତ୍ରାଳୟର ପୁସ୍ତକ ଅଧିକ ପରିମାଣରେ ବିକ୍ରୟ ହୁଅଇ ବୋଲି ଏକ ପ୍ରକାର ସାଧାରଣ ବିଶ୍ୱାସ ହୋଇଅଛି ' ପୁଣି ଏମନ୍ତ ମଧ ଶୁଣା ଯାଇ ଅଛି କି କେହି କେହି ଗ୍ରନ୍ଥାକାରଙ୍କୁ ସେଠାରେ ପୁସ୍ତକ ଛାପାଇବା ନିମିତ୍ତ ଅଥବା କୁମାରଙ୍କୁ ପୁସ୍ତକର ସତ୍ୱ ବିକ୍ରୟ କରିବା ନିମିତ୍ତ ସ୍ୱୟଂ ରାଧାନାଥ ବାବୁ ପରାମର୍ଶ ଦେଇ ଅଛନ୍ତି ଏବଂ ବାର୍ଷିକ ବିଜ୍ଞାପନୀରେ କୁମାରଙ୍କ ପ୍ରଶଂସା ଆଗକରି ଲେଖା ଯାଏ ତେତେବେଳେ ଉଭୟଙ୍କର ପ୍ରଗାଢ଼ ବନ୍ଧୁତାକୁ ପାଠ୍ୟପୁସ୍ତକ ସମ୍ପର୍କରେ କିପରି ପବିତ୍ର ସମ୍ମିଳନ ବୋଲା ଯିବ ? ଏମନ୍ତ ହୋଇ ପାରେ ଯେ ରାଧାନାଥ ବାବୁ ଆପଣା ସାଧ୍ୟାନୁସାରେ ସରଳଭାବରେ କାର୍ଯ୍ୟ କରୁ ଅଛନ୍ତି ଏବଂ ଯେ ସମସ୍ତ କଥା ଘେନି ଲୋକେ ତହିଁର ବିପରୀତ ଭାଳୁ ଅଛନ୍ତି ସେ ସମସ୍ତ କେବଳ ଘଟଣା ସୂତ୍ରରେ ଗ୍ରଥିତ ହୋଇ ଅଛି ତହିଁରେ ତାହାଙ୍କର କିଛି କର୍ତ୍ତୃତ୍ୱ ନାହିଁ କିନ୍ତୁ ତାହାଙ୍କୁ ବୁଝିବାର ଉଚିତ ଯେ ସେ ଯେଉଁ ବିଭାଗର କର୍ତ୍ତା କୁମାର ସେହି ବିଭାଗର ଜଣେ ବ୍ୟବସାୟୀ ଅଟନ୍ତି । ସୁତରାଂ ସାମାଜିକ ନିୟମରେ ଉଭୟଙ୍କର ଯେଡ଼େ ବନ୍ଧୁତା ଥାଉ ପଛକେ ରାଜକାର୍ଯ୍ୟାନୁରୋଧରେ ଏମନ୍ତ ସତର୍କ ଭାବରେ କାର୍ଯ୍ୟ କରିବାର ଉଚିତ କି ଯେମନ୍ତ କୌଣସି ସନ୍ଦେହର କାରଣ ରହି ନ ପାରେ । କେବଳ ଠିକ ହେଲେ ଯଥେଷ୍ଟ ହେବ

ନାହିଁ । ଏପରି ଠିକ ହୋଇ ଚାଲିବାର ଉଚିତ ଯେମନ୍ତ ଲୋକେ ତହିଁରେ ସନ୍ଦେହ କରିବାର କାରଣ ନ ହେବ । ରାଧାନାଥ ବାବୁଙ୍କ କାର୍ଯ୍ୟପ୍ରତି ଲୋକଙ୍କର ଭାବ କିରୂପ ତାହା ଯେବେ ସେ ପୂର୍ବରୁ ଜାଣି ନ ଥିଲେ ତେବେ ସେବକର ତଲ୍ଲିଖିତ.ଅଂଶଟି ପାଠ କରି ଅବଶ୍ୟ ଜାଣି ଥିବେ । ପାଠକମାନଙ୍କ ଜାଣିବା କାରଣ ତାହା ଏଠାରେ ଉଦ୍ଧୃତ କଲୁଁ ଯଥା—

"ରାଧାନାଥ ବାବୁ ଚତୁର ବ୍ୟକ୍ତି; ଏଣୁ ବିଦ୍ୟାଳୟର ପାଠ୍ୟପୁସ୍ତକମାନଙ୍କରେ ସେ କୌଣସି ସ୍ୱାର୍ଥ ରଖି ନାହାନ୍ତି । ତଥାପି ସ୍ୱାର୍ଥବାନ୍ ବୋଲି ତାହାଙ୍କୁ ସନ୍ଦେହ କରିବାକୁ ଅନେକେ ଛାଡି ନାହାନ୍ତି । ଏବିଷୟରେ ଆମ୍ଭେମାନେ ନୀରବ ହୋଇ ରହିବୁଁ । ଯେଉଁମାନେ ବିଶେଷଜ୍ଞ ସେମାନେ ଏତଦ୍‌ବିଷୟସଂକ୍ରାନ୍ତ ସକଳ ବିଷୟ ଜଣାଇ ପାରିବେ ।"

ରାଥାନାଥ ବାବୁଙ୍କ ପ୍ରତି ଲୋକଙ୍କର କିରୂପ ଭାବ ହୋଇ ଅଛି ସେବକ ତାହା ସ୍ପଷ୍ଟ ସ୍ୱୀକାର କରି ଅଛନ୍ତି ଅଥଚ ଅନ୍ୟାନ୍ୟ ସ୍ଥଳରେ ପଦେ ଅଧେ ତାହାଙ୍କ ସପକ୍ଷରେ କହିଥିବା ପ୍ରତ୍ୟକ୍ଷେ ଏଠାରେ ଆଦୌ ଗୋଟିଏ ଯୁକ୍ତି ଦେଖାଇ ପାରି ନାହାନ୍ତି ବରଂ ଏଥିର ପ୍ରତିବାଦ ନାହିଁ ବୋଲି ନୀରବ ହୋଇ ଅଛନ୍ତି । ଅପର ଏକ ସ୍ଥଳରେ ସେବକ ଉତ୍କଳ ଗ୍ରନ୍ଥକାରମାନଙ୍କ ଦୁର୍ଦ୍ଦଶାର କଥା ବର୍ଣ୍ଣନା କରି କାହାରି କାହାରି ଉପରେ ବାବୁ ଜିଉଙ୍କର କୋପଦୃଷ୍ଟି ପଡିବାର ଆଶଙ୍କା କରି ଅଛନ୍ତି ଏବଂ ଏପ୍ରକାର ଅବସ୍ଥାରେ ତାହାଙ୍କୁ ସ୍ଥାନାନ୍ତରିତ କରିବା ବାଞ୍ଛନୀୟ ବୋଲି କହିବାକୁ ଛାଡି ନାହାନ୍ତି ।

ସେବକର 'ସମାଲୋଚନା' ପ୍ରବନ୍ଧକୁ ରାଧାନାଥ ବାବୁ କି ପ୍ରକାର ଭାବରେ ପଢି ଅଛନ୍ତି ଆମ୍ଭେମାନେ କହି ନ ପାରୁଁ । ମାତ୍ର ଆମ୍ଭମାନଙ୍କ ମତରେ ସେବକର ଲେଖକ ତାହାଙ୍କର ଗୁଣ ଗାଇବା ସଙ୍ଗେ ସଙ୍ଗେ ତାହାଙ୍କ ଦୋଷମାନ ଦେଖାଇ ଦେବାକୁ ତ୍ରୁଟି କରି ନାହାନ୍ତି ଏବଂ ଏପରି ଲେଖକ ମୁହରେ ଏପରି କଥାର ଅର୍ଥ ଯେ ଅତ୍ୟନ୍ତ ଗରିଷ୍ଠ ତାହା ସମସ୍ତେ ଅନୁଭବ କରି ଥିବେ । ଆମ୍ଭେମାନେ ଆଶା କରୁଁ ଯେ ଏଥି ଉତ୍ତାରୁ ସେ ଆପଣା କାର୍ଯ୍ୟ ପ୍ରଣାଳୀ ସଂଶୋଧନ କରିବାକୁ ଅଥବା ତଦ୍‌ବିଷୟରେ ଲୋକଙ୍କ ଭ୍ରମ ଭାଙ୍ଗିବାକୁ ଶୀଘ୍ର ତତ୍ପର ହୋଇ ସମସ୍ତଙ୍କର ପ୍ରିୟପାତ୍ର ହେବେ । କିନ୍ତୁ ଆମ୍ଭେମାନେ ତାହାଙ୍କୁ ଅନୁରୋଧ କରୁଁ କି ଏ ବିଷୟ ରେ ସେବକଙ୍କ ପରାମର୍ଶ ଗ୍ରହଣ କରିବେ ନାହିଁ । ସେବକ କହି ଅଛନ୍ତି କି ରାଧାନାଥ ବାବୁ ଯେବେ ବର୍ଷକୁ ବର୍ଷ ଆପଣା କାର୍ଯ୍ୟ ପ୍ରଣାଳୀ ଏମନ୍ତ ଭାବରେ ଲେଉଟାଇ ଦେଉଥିବେ କି ଯେମନ୍ତ ସବୁ ଗ୍ରନ୍ଥକାର ଏକ ଏକ ବର୍ଷ ଆପଣା ଆପଣା ପୁସ୍ତକ ବିକ୍ରୟ ହେବାର ଦେଖି ସନ୍ତୁଷ୍ଟ ହେବେ । ଏଉଟା ନିତାନ୍ତ ମନରଖା କଥା ଏବଂ ଉତ୍କଳର ଗ୍ରନ୍ଥକାରଙ୍କପ୍ରତି ଏହା ଆଦୌ ଗୌରବର ବିଷୟ ନୁହଇ । ଯେଉଁ ଗ୍ରନ୍ଥକାରମାନେ ଏପରି ଅନୁଗ୍ରହର ଆଶା କରନ୍ତି ତାହାଙ୍କର ପୁସ୍ତକ ଲେଖିବାଠାରୁ ଭିକ୍ଷାମାଗି ପେଟ ପାଳିବାର ଉଚିତ । ପ୍ରକୃତରେ ଏହାଦ୍ୱାରା ଉତ୍କଳ ଭାଷାର ଉନ୍ନତି ସମ୍ଭବ ନୁହଇ କାରଣ ଭଲ ପୁସ୍ତକର ଆଦର ନ ବଢ଼ିଲେ ଭଲ ଲେଖକ ବାହାରିବେ ନାହିଁ । ଯେ ବ୍ୟକ୍ତି ସମସ୍ତଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରଇ ସେ କାହାରିକି ସନ୍ତୁଷ୍ଟ କରି ନପାରେ ଏକଥା ଚିର ପ୍ରସିଦ୍ଧ ଏବଂ ପୁସ୍ତକ ତାଲିକାରେ ଏହି ନୀତି ଅବଲମ୍ବିତ ହୋଇ ଅଛି ବୋଲି ତଦ୍ୱାରା ଦ୍ୱନ୍ଦ୍ୱ ଜାତ ହୋଇ ଅଛି । କେବଳ ଦମ୍ଭ ଓ ନିରପେକ୍ଷ ଭାବରେ ସର୍ବାପେକ୍ଷା ଉତ୍କୃଷ୍ଟ ପୁସ୍ତକମାନ ବାଛି ନେଇ ତାହାକୁ ଉତ୍ସାହ ଦେବା ଉଚିତ ଏବଂ ରାଧାନାଥ ବାବୁ ସ୍ୱୟଂ ପୁସ୍ତକ ନିର୍ବାଚନ ନ କରି କମିଟିର ସାହାଯ୍ୟ ନିଅନ୍ତୁ ଏବଂ ଯାହା କମିଟି ଧାର୍ଯ୍ୟ କରିବେ ତାହା ଅଟଳଭାବରେ ଚଳାଇବାପ୍ରତି ଦୃଷ୍ଟି ରଖନ୍ତୁ ତାହା ହେଲେ ସବୁକାର୍ଯ୍ୟ ଉତ୍ତମ ହେବ ଏବଂ ସହସ୍ର ବିରୋଧୀ ଦଳ ତାହାଙ୍କର କିଛି କରି ପାରିବେ ନାହିଁ ।

ପ୍ରବନ୍ଧ ଦୀର୍ଘ ହୋଇ ଯିବାରୁ ନିମ୍ନ ପ୍ରାଇମେରି ଶିକ୍ଷା ସମ୍ପର୍କରେ ସେବକଙ୍କ ସମାଲୋଚନାର ବିଚାର ଏଥର କରି ପାରିଲୁଁ ନାହିଁ ।

*ଭା।୧୯ଗ, ସଂ୨୭ଖ୍ୟା, ୫।୭।୧୮୮୪*

# ଓଡିଶାରଶିକ୍ଷା ବିଭାଗ ଏବଂ ଓଡିୟା ପୁସ୍ତକ ।

ନିମ୍ନ ଅର୍ଥାତ୍ ପ୍ରାଇମେରୀ ବିଦ୍ୟାଳୟର ପାଠ୍ୟପୁସ୍ତକ ସମ୍ପର୍କରେ ସେବକ ଲେଖିଅଛନ୍ତି କି ଜିଲାର ମାଜିଷ୍ଟ୍ରେଟମାନେ ଏ ପୁସ୍ତକମାନ ନିର୍ବାଚନ କରନ୍ତି ଏବଂ ଏକଦିଗରେ ସବ୍ଇନ୍ସ୍ପେକ୍ଟରେ ଓ ଡେପୁଟୀ ଇନ୍ସ୍ପେକ୍ଟରେ ଏବଂ ଅପର ଦିଗରେ ଶିକ୍ଷାକମିଟୀ ତାହାଙ୍କର ଉପଦେଷ୍ଟା ଥିବା ପ୍ରତ୍ୟକ୍ଷେ କାହିଁକି କିଛି ଅନିଷ୍ଟ ହେବ ଓ ଖୋଦ ମାଜିଷ୍ଟ୍ରେଟଙ୍କୁ ଛାଡି ଦେଇ ଗ୍ରନ୍ଥକାରମାନେ କେବଳ ଡେପୁଟୀଇନସ୍ପେକ୍ଟରଙ୍କୁ କାହିଁକି ଆକ୍ରମଣ କରିବେ ଅବା ଶିକ୍ଷାକମିଟୀ କାହିଁକି ତୁନି ହୋଇ ରହିବେ ବୁଝା ଯାଉ ନାହିଁ । ଯଥାର୍ଥ କଥା; ଯେ ବୁଝି ଅବୁଝା ହେବ ତାହାଙ୍କୁ ବୁଝାଇବ କିଏ ? ସେବକର ଏହି ପ୍ରବନ୍ଧର ଲେଖକ ଯେବେ ଆପଣା ନାମ ପ୍ରକାଶ କରି ଥାନ୍ତେ ତେବେ ତାହାଙ୍କ ସତ୍ୟପରାୟଣତା କେତେକଦୂର ଜଣା ପଡ଼ନ୍ତା ଫଳତଃ ଲେଖକ ଯେବେ ବାସ୍ତବରେ ନ ଜାଣି ଏପରି ଲେଖିଥିଲେ କିନ୍ତୁ ତାହାଙ୍କୁ ବୁଝାଇ ଦେବାର ଲୋକ ଥିବା ପ୍ରତ୍ୟକ୍ଷେ କେବଳ ପିଲା ଭୁଲାଇବା କଥା କହିବା କେମନ୍ତ ଶୋଭନୀୟ ତାହା ପାଠକମାନେ ବିବେଚନା କରନ୍ତୁ । ଏହି ସେବକ ସେବକସଭାଦ୍ୱାରା ପ୍ରକାଶିତ ହେଉଅଛି । ବାବୁ ଚତୁର୍ଭୁଜ ପଟ୍ଟନାୟକ ଯେ କି କେବଳ ବର୍ଷେ କେତେମାସ ପୂର୍ବେ ବାଲେଶ୍ୱର ଜିଲାର ଡେପୁଟୀ ଇନ୍ସ୍ପେକ୍ଟର ଥିଲେ ଏ ସଭାର ପ୍ରଧାନ ସଭ୍ୟ ଏବଂ କଟକର ବର୍ତ୍ତମାନ ଡେପୁଟୀ ଇନ୍ସ୍ପେକ୍ଟରେ ବାବୁ ମଧୁସୂଦନ ରାଓ ଉତ୍କଳ ବ୍ରାହ୍ମସମାଜର ସମ୍ପାଦକସ୍ୱରୂପ, ଏ ସଭାର ସଭ୍ୟ ହେବା ବିଚିତ୍ର ନୁହଇ ଅନ୍ତତଃ ଏହି ଦୁଇବ୍ୟକ୍ତିଙ୍କ ମଧ୍ୟରେ ଯେପ୍ରକାର ଘନିଷ୍ଠତା ରହିଅଛି ତହିଁରେ ଚତୁର୍ଭୁଜ ବାବୁ ଯେ ବର୍ତ୍ତମାନ ଶିକ୍ଷାବିଭାଗର କିଛି କଥା ନ ଜାଣନ୍ତି ଏମନ୍ତ ଅନୁମାନ କରିବା କଠିନ ବୋଧ ହେଉଅଛି । ଚତୁର୍ଭୁଜ ବାବୁ ଅବଶ୍ୟ ଜାଣନ୍ତି ଯେ ସେ ବାଲେଶ୍ୱରରେ ଥିଲା ବେଳେ ମାଜିଷ୍ଟ୍ରେଟ ସାହେବ ତାହାଙ୍କ ପରାମର୍ଶରେ ପୁସ୍ତକ କ୍ରୟ କରୁଥିଲେ ଏବଂ ସେ ଏଠାରେ ଦେଖୁଅଛନ୍ତି ବା ଶୁଣି ଥିବେ ଯେ ମାଜିଷ୍ଟ୍ରେଟ ଶିକ୍ଷା କମିଟୀର ସାହାଯ୍ୟ ଏବିଷୟରେ ଲୋଡନ୍ତି ନାହିଁ କିନ୍ତୁ ସେ ଏ ବିଷୟରେ ଲେଖକଙ୍କ ଭ୍ରମସଂଶୋଧନ କଲେ ନାହିଁ ଏବଂ ଅନାୟାସରେ ଜନସାଧାରଣରେ ଏହି ଭ୍ରମପ୍ରଚାର କରାଇ ଦେଲେ ଯେ 'ଶିକ୍ଷାକମିଟୀ ଅନାସ୍ଥା ପ୍ରକାଶ କରିବାରୁ ଘଟଣା କ୍ରମରେ ପୁସ୍ତକ ନିର୍ବାଚନର ଭାର ଡେପୁଟୀ ଇନ୍ସ୍ପେକ୍ଟରଙ୍କ ହାତରେ ପଡିଗଲା ।' ପ୍ରକୃତ କଥା ଏହି କି ମାଜିଷ୍ଟ୍ରେଟମାନେ ଓଡ଼ିଆ ଭାଷା ଜାଣନ୍ତି ନାହିଁ ଏବଂ ତହିଁରେ ମନୋଯୋଗ ଦେବାର ସେମାନଙ୍କର ଅବକାଶ ମଧ ନାହିଁ । ଡେପୁଟୀ ଇନ୍ସ୍ପେକ୍ଟରମାନଙ୍କୁ ଆପଣା ଅଧୀନସ୍ଥ ଶିକ୍ଷାବିଭାଗର ଉପଯୁକ୍ତ କର୍ମଚାରୀ ଜାଣି ସେମାନଙ୍କ ଉପରେ ନିର୍ଭର କରନ୍ତି ଏବଂ ଯେତେବେଳେ ଲୋକେ ଦେଖି ଅଛନ୍ତି କି ଏକ ଏକ ଡେପୁଟୀଙ୍କ ସମୟରେ ଏକ ଏକ ପ୍ରେସର ପୁସ୍ତକ ଅଧିକ ବିକ୍ରୟ ହୁଅଇ ଯଥା; ଉମାପ୍ରସାଦ ବାବୁଙ୍କ ସମୟରେ ହିତୈଷିଣୀ ପ୍ରେସର ଏବଂ ଚତୁର୍ଭୁଜ ବାବୁଙ୍କ ସମୟରେ ଦେଙ୍କ ପ୍ରେସର ତେତେବେଳେ ଡେପୁଟୀ ଇନ୍ସ୍ପେକ୍ଟରଙ୍କୁ ଆକ୍ରମଣ କରିବା କଥା ବୁଝିବାକୁ କି କଷ୍ଟ ହେଲା ଆମ୍ଭେମାନେ ବୁଝି ପାରୁ ନାହୁଁ । କେବେ କେବେ ଏମନ୍ତ ଘଟିଅଛି ଯେ ମାଜିଷ୍ଟ୍ରେଟ ସାହେବ କୌଣସି ଗ୍ରନ୍ଥକାରର ଅନୁରୋଧରେ ଆପେ ପୁସ୍ତକ କ୍ରୟ କରିଅଛନ୍ତି କିନ୍ତୁ ଏହା ବୋଲି ଏକା ମାଜିଷ୍ଟ୍ରେଟମାନେ ଦାୟଗ୍ରସ୍ତ ଡେପୁଟୀମାନଙ୍କର କିଛି ଦୋଷ ନାହିଁ ଏହା ଆମ୍ଭେମାନେ ବୋଲି ନ ପାରୁଁ । ଅଥଚ ସେବକ ଏହି କଥା ବୁଝାଇ ଦେବାକୁ ଯଥୋଚିତ ଆୟାସ ପାଇଅଛନ୍ତି । ଏପର ଯେବେ ବାହିକାଙ୍କ କଥା ସତ୍ୟ ହୁଅଇ ଏବଂ ଅବଧି ତହିଁର ପ୍ରକୃତ ପ୍ରତିବାଦ ଦେଖା ଯାଇ ନାହିଁ ତେବେ ଇଏଣ୍ଡ ଇନ୍ସ୍ପେକ୍ଟରଙ୍କର ମଧ ଏଥିରେ କର୍ତ୍ତୃତ୍ୱ ଅଛି କିନ୍ତୁ ସେବକ ତାହା କହିବେ ନାହିଁ । ପାଞ୍ଚଜଣଙ୍କ ଉପରେ ଦୋଷ ବାଣ୍ଟିଦେଇ ତହିଁର ଭାର ଊଣା କରିବା ତାହାଙ୍କର ଉଦ୍ଦେଶ୍ୟ ଅଟଇ ବୋଲି ଅନୁମାନ ହେଉଅଛି ।

ସେବକର ଲେଖକ କହିଅଛନ୍ତି କି ସେ ପୁରୀ ଓ ବାଲେଶ୍ୱରର ଡେପୁଟୀଇନ୍ସ୍ପେକ୍ଟରଙ୍କ କାର୍ଯ୍ୟ ସମ୍ପର୍କରେ କିଛି ଜାଣନ୍ତି ନାହିଁ କିନ୍ତୁ କଟକର ଡେପୁଟୀ ଇନ୍ସ୍ପେକ୍ଟରେ 'ଅବସ୍ଥା ଓ ସାଧ୍ୟାନୁସାରେ ନିରପେକ୍ଷ ଭାବରେ କାର୍ଯ୍ୟ କରୁଅଛନ୍ତି' । ଏହି ସିଦ୍ଧାନ୍ତର କୌଣସି ହେତୁ ଲେଖକ ଦର୍ଶାଇ ନ ଥିବାରୁ ଏଥିର ମୂଲ୍ୟ ନିରୂପଣ କରିବାକୁ ଆମ୍ଭେମାନେ ଅକ୍ଷମ ହେଲୁଁ । ଲେଖକ ଚେଷ୍ଟା କରିଥିଲେ ଅନ୍ତତଃ ଦେଢ଼ବର୍ଷ ପୂର୍ବେ ବାଲେଶ୍ୱରର ଡେପୁଟୀ ଇନ୍ସ୍ପେକ୍ଟର କିପରି କାର୍ଯ୍ୟ କରୁଥିଲେ ଏବଂ ଏହି ବର୍ଷ ଏଠାରେ କି କି ପୁସ୍ତକ କାହାଠାରୁ ଖରିଦ ହେଲା

ଅନାୟାସରେ ଜାଣିବାକୁ ସକ୍ଷମ ହୋଇ ଥାନ୍ତେ । କିନ୍ତୁ ତାହା ସେ କରିବେ ନାହିଁ କାହିଁକି ନା ଶିକ୍ଷାବିଭାଗର କର୍ମଚାରିମାନେ ଅଳ୍ପ ବେତନଭୋଗୀ ଏହାଙ୍କର ଗସ୍ତଖର୍ଚ୍ଚା ଏକ ବର୍ଷ ହେଲା ଊଣା ହୋଇ ଯିବାରୁ ଭାରୀ କଷ୍ଟରେ ଅଛନ୍ତି ଏମାନେ ସମୟ ସମୟରେ ଅନ୍ୟାୟ କରିବା ଅସମ୍ଭବ ନୁହଇ ମାତ୍ର ଅନ୍ୟାନ୍ୟ ବିଭାଗ ଅପେକ୍ଷା ଶିକ୍ଷାବିଭାଗ ସୁନୀତିରେ ଚାଳିତ ହେଉ ଅଛି ବୋଲିବାକୁ ହେବ । କେଡ଼େ ଦୟାଳୁ କଥା କି ସୁନ୍ଦର ଯୁକ୍ତି । ଏଥିର ପଟାନ୍ତର ଦେବା ଦୁସ୍ତର । ଇଂରାଜଙ୍କ ଶାସନପ୍ରଣାଳୀ ସମଗ୍ର ଭାବରେ ଆଲୋଚନା କଲେ ଉତ୍ତମ ଏବଂ ଭାରତବର୍ଷ ପ୍ରତି ମଙ୍ଗଳପ୍ରଦ ସୁତରାଂ ଜାତି ଓ ବର୍ଣ୍ଣ ଭେଦର ବ୍ୟବସ୍ଥା ବା ସିବିଲସରବିସ ବା ଶୈଳନିବାସ ବା ଭୂମିକର ଜଳକର ପ୍ରଭୃତି ଅତ୍ୟାଚାରର ଆନ୍ଦୋଳନ କରିବା କଦାପି ଯୁକ୍ତିଯୁକ୍ତ ନୁହେ । ଶିକ୍ଷାବିଭାଗର କର୍ମଚାରିମାନେ ନିୟମିତ ରୂପେ ଗସ୍ତ ଓ ପରୀକ୍ଷା କରୁଅଛନ୍ତି ବିଦ୍ୟାଳୟ ଓ ଛାତ୍ର ସଂଖ୍ୟାର ତାଲିକା ରଖୁଅଛନ୍ତି ଓ ତହିଁରୁ ଦିନ ଦିନ ଶିକ୍ଷାର ଉନ୍ନତି ଦେଖା ଯାଉଅଛି ସୁତରାଂ ସେମାନଙ୍କ ମଧ୍ୟରୁ କେହି କେହି ଯେବେ ଭଲମନ୍ଦ ନ ବିଚାରି ଗ୍ରନ୍ଥକାର ବା ଯନ୍ତ୍ରାଳୟ ବିଶେଷର ପକ୍ଷପାତୀ ହେଲେ ଅଥବା ପ୍ରାଇମେରୀ ଫଣ୍ଡ ବ୍ୟୟଦ୍ୱାରା ଆପେ ଅଥବା ଅନ୍ୟକୁ ଲାଭବାନ୍ କରାଇବାର ସନ୍ଦେହ ହେଲା ତେବେ ତାହା କହିବା କଦାଚ ଯୁକ୍ତିଯୁକ୍ତ ନୁହଇ । କାଳକ୍ରମେ ଏହି ନୀତି ଆମ୍ଭମାନଙ୍କୁ ଶିକ୍ଷାଦେବା ସକାଶେ ସେବକଙ୍କର ଆବିର୍ଭାବ ହୋଇଅଛି ।

ପରିଶେଷରେ ଆମ୍ଭମାନଙ୍କର ବକ୍ତବ୍ୟ ଏହି କି ଓଡ଼ିଶା ଶିକ୍ଷାବିଭାଗୀୟ କର୍ମଚାରିଙ୍କ ନିନ୍ଦା ଗାଇବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହଇ କିମ୍ବା ବର୍ତ୍ତମାନ ଯେଉଁ ବ୍ୟକ୍ତିମାନେ ସେ ସବୁ କର୍ମରେ ନିଯୁକ୍ତ ଅଛନ୍ତି ସେମାନେ ସର୍ବତୋଭାବରେ ମନ୍ଦ ବା ଅଯୋଗ୍ୟ ଏହାସୁଦ୍ଧା ଆମ୍ଭେମାନେ କହୁ ନାହୁଁ । ସେମାନଙ୍କର ଗୋଟିଏ କାର୍ଯ୍ୟ ଗୁରୁତର ଅନ୍ୟାୟ ଏବଂ ସାଧାରଣ କ୍ଷତିକର ଜଣାଯିବାରୁ ସଂଶୋଧନ କାମନାରେ ଆମ୍ଭେମାନେ ସରଳଭାବରେ ତାହା ଜନସାଧାରଣରେ ପ୍ରକାଶ କରିବାକୁ ବାଧ ହୋଇଅଛୁଁ । ଭରସା କରୁଁ ପାଠକ ଓ ସମାଲୋଚକମାନେ ଏହିଭାବରେ ଆମ୍ଭମାନଙ୍କ କଥାର ବିଚାର କରିବେ ।

*ଭା୧୯ଗ,ସଂ୩୧ଖ୍ୟା,୨।୮।୧୮୮୪*

# ୧୮୮୫

## ବଙ୍ଗାଳୀ ଏବଂ ଓଡ଼ିୟା ।

ଗତ ଦିସମ୍ବର ମାସ ତା ୨୩ ରିଖର ଷ୍ଟେଟସ୍‌ମାନ ସମ୍ବାଦପତ୍ରରେ ଏହି ନଗରର ତା ୧୮ ରିଖର ଏକ ପତ୍ର ପ୍ରକାଶିତ ହୋଇଅଛି । ସମ୍ବାଦଦାତା କେବଳ ଏଠା ମିଉନିସିପାଲିଟି ନିର୍ବାଚନ ସମ୍ବନ୍ଧରେ ଲେଖିଅଛନ୍ତି ଏବଂ ଲେଖୁ ଲେଖୁ ଆପଣା ମନର କଥା ଅଜ୍ଞାତ ଭାବରେ ଧରାଇ ଦେଇ ଅଛନ୍ତି । ଏଠା ମିଉନିସିପାଲିଟିର ନିର୍ବାଚନ ଗତ ମାସ ତା ୧୭ ରିଖରେ ହୋଇଥିବା ଓ ତହିଁର ଫଳ ସନ୍ତୋଷଜନକରୂପେ ହୋଇ ନ ଥିବା ଏବଂ ଯେଉଁ ଜ ୧ ୨ଣ କମିଶ୍ନର ଲୋକଙ୍କ କର୍ତ୍ତୃକ ମନୋନୀତ ହୋଇଅଛନ୍ତି ସେମାନଙ୍କ ମଧ୍ୟରୁ ଦଶଜଣ ସରକାରୀ କର୍ମକାରକ ଏବଂ ଅବଶିଷ୍ଟ ଦୁଇଜଣ ସ୍ଥାନୀୟ ଓକୀଲ ଥିବାର ଲେଖି ସମ୍ବାଦଦାତା କହିଅଛନ୍ତି ଯେ --

"ଏଠା ଲୋକେ ଅର୍ଥାତ୍ ପ୍ରକୃତ ଓଡ଼ିୟାମାନେ ହାକିମଙ୍କୁ ଦେବତା ଓ ଆମଲାଙ୍କୁ ଅର୍ଦ୍ଧ ଦେବତା ସ୍ୱରୂପ ଜ୍ଞାନ କରନ୍ତି । ଆମ୍ଭେ ବିଶ୍ୱାସ କରୁଁ ଏମାନେ ସମଗ୍ର ଭାରତବର୍ଷରେ ସର୍ବାପେକ୍ଷା ଅଧମଜାତି ଅଟନ୍ତି । ସଭ୍ୟତା ଏବଂ ଶିକ୍ଷାରେ ସେମାନଙ୍କର କିଛି ଉନ୍ନତି ହୋଇ ନାହିଁ । ବଙ୍ଗାଳୀ ଭ୍ରାତାଙ୍କୁ ସେମାନେ ହିଂସା ଚକ୍ଷୁରେ ଦୃଷ୍ଟି କରନ୍ତି । ସେମାନଙ୍କର ନାମତଃ ଉପକାରୀ ଅର୍ଥାତ୍ ଏଠା ଶାସନକର୍ତ୍ତାଙ୍କଦ୍ୱାରା ସେମାନେ ଏଥିର ଶିକ୍ଷା ଲାଭ କରିଅଛନ୍ତି । ରେବନସା ସାହେବ ସେମାନଙ୍କର ପ୍ରାଇମେରୀ ସ୍କୁଲରୁ ବଙ୍ଗଳାଭାଷା ଉଠାଇ ଦେଇ ଓଡ଼ିଆ ବନ୍ଧୁ ଏବଂ ଅମଲାଙ୍କୁ ବଙ୍ଗାଳିମାନେ ପରମ ଶତ୍ରୁ ବୋଲି ଜ୍ଞାନ କରିବାର ଶିକ୍ଷା ଦେଇଅଛନ୍ତି ।"

ଏହିପ୍ରକାରେ ଓଡ଼ିଆମାନଙ୍କୁ ଓ ତାଙ୍କ ହାକିମମାନଙ୍କୁ ସାଟିଫିକଟ ଦେଇ ୪ର୍ଥ ନମ୍ବର ଉଆର୍ଡର ନିର୍ବାଚନରେ ଭାରୀ ଧୂମଧାମ ହୋଇଥିବା ଓ ମେଜଷ୍ଟର କରିସାହେବ ଲୋକମାନଙ୍କୁ 'ନିକାଲ୍ ଦୋ' କହି ଗବୁକଦ୍ୱାରା ବାହାର କରି ଦେବାରେ ଅନ୍ୟାୟ କାର୍ଯ୍ୟ କରିଥିବାଦି ବିଷୟ ଲେଖିଅଛନ୍ତି । ଲେଖକ ମହାଶୟ ଏତେ ଶ୍ରମ ସ୍ୱୀକାର କରି କଟକ ନଗରରୁ କଲିକତାର ଷ୍ଟେଟସ୍‌ମାନ ନାମକ ବିଖ୍ୟାତ ଇଂରାଜୀ ପତ୍ରିକାକୁ ବହୁମୂଲ୍ୟ ସୁନୀତିଗର୍ଭକ ସମ୍ବାଦ ପଠାଇବାରେ ଯେଉଁ ଅସୀମ ଶ୍ରମ ସ୍ୱୀକାର କରିଅଛନ୍ତି ତହିଁ ନିମିତ୍ତ ତାହାଙ୍କୁ ଧନ୍ୟବାଦ ଦେବାର ନିତାନ୍ତ ପ୍ରୟୋଜନୀୟ । ମାତ୍ର ସେ କିଏ ? ତାଙ୍କର ନାମ ପ୍ରକାଶିତ ନୋହି ଥିବାରୁ ଆମ୍ଭେମାନେ ଧନ୍ୟବାଦଟା ପ୍ରକାଶ୍ୟ ଭାବରେ ଦେଇ ପାରିଲୁ ନାହିଁ । ତଥାପି ଲେଖକ ଯେ ଜଣେ ବଙ୍ଗାଳୀ ତାହା ତାଙ୍କର ସାଟିଫିକଟରୁ ପ୍ରକାଶ ପାଉଅଛି ଏବଂ ବିଶେଷ କରି କେବଳ ଚତୁର୍ଥ ନମ୍ବର ଉଆର୍ଡ଼ର କଥା ଲେଖିଥିବାରୁ ତାଙ୍କର ଯେ ଚତୁର୍ଥ ନମ୍ବର ଉଆର୍ଡ଼ ସଙ୍ଗେ ବିଶେଷ ସ୍ୱତ୍ୱ ସମ୍ପର୍କ ଅଛି ବା ଥିଲା ଏଥିରେ ସନ୍ଦେହ ନାହିଁ । ପୁଣି ସେହି ସାଟିଫିକଟରୁ ଏହା ମଧ ପ୍ରକାଶ ହେବ ଯେ ସେ ହାକିମ ବା ଅମଲାଶ୍ରେଣୀଭୁକ୍ତ ନୁହନ୍ତି । ଯାହା ହେଉ ଲେଖକ ଯେତେବେଳେ ନିଜେ ଚିହ୍ନା ଦେଇ ନାହାନ୍ତି ଆମ୍ଭେମାନେ ତାହାଙ୍କୁ ଚିହ୍ନାଇ ଦେବାର କୌଣସି ପ୍ରୟୋଜନ ନାହିଁ । ତଥାପି ଆମ୍ଭମାନଙ୍କର ଏତିକି ଦୁଃଖ ଯେ ଏତେକାଳ ଓଡ଼ିଶାର ଜଳପାନ କରି ସୁଦ୍ଧା କୌଣସି କୌଣସି ବଙ୍ଗାଳିଙ୍କର ଓଡ଼ିୟାଙ୍କ ପ୍ରତି ବୃଥା ବା ବିଦ୍ୱେଷଭାବ ତିରୋହିତ ହେଲା ନାହିଁ । ଓଡ଼ିୟାମାନେ ବଙ୍ଗାଳିଙ୍କି ଶତ୍ରୁ ସମାନ ଜ୍ଞାନ କରିବାର ଯାହା ଲେଖା ଅଛି ତହିଁ ସମ୍ପର୍କରେ ଆମ୍ଭେମାନେ କେବଳ ଏତିକି କହିବୁଁ ଯେ ଯେଉଁ ଜ ୧ ୨ଣ କମିଶ୍ନର ଲୋକଙ୍କ ଅର୍ଥାତ୍ ଓଡ଼ିୟାଙ୍କ କର୍ତ୍ତୃକ ମନୋନୀତ ହୋଇଅଛନ୍ତି ତହିଁର ଅର୍ଦ୍ଧାଂଶ ପ୍ରକୃତ ଓଡ଼ିୟା ନୁହନ୍ତି ଏବଂ ବାବୁ ଜାନକୀ ବଲ୍ଲଭ ଘୋଷ ଓ ଜଗନ୍ମୋହନ ଲାଲଙ୍କୁ ଛାଡ଼ି ଦେଲେ ଅବଶିଷ୍ଟ ଅର୍ଥାତ୍ ବାବୁ ଚନ୍ଦ୍ରଶେଖର ବାନୁର୍ଯ୍ୟା ବାବୁ ଯଜ୍ଞେଶ୍ୱର ଚନ୍ଦ୍ର ବାବୁ ହରିଚରଣ ବାନୁର୍ଯ୍ୟା ଓ ବାବୁ ରାମଦାସ ଚକ୍ରବର୍ତ୍ତୀ କଞ୍ଚା ବଙ୍ଗାଳୀ ଅଟନ୍ତି ଏବଂ ଏମାନଙ୍କୁ ମନୋନୀତ କରିବାରୁ ସ୍ପଷ୍ଟ ପ୍ରକାଶ ହେଉଅଛି କି ଓଡ଼ିୟାମାନଙ୍କର ବଙ୍ଗାଳିଙ୍କ ପ୍ରତି ଆଦୌ କୌଣସି ବିଦ୍ୱେଷ ନାହିଁ । ବାସ୍ତବରେ ଏହି

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ନିର୍ବାଚନ କାର୍ଯ୍ୟରେ ଓଡ଼ିୟାମାନେ ସେପ୍ରକାର କୌଣସି ଭାବର ବଶବର୍ତ୍ତୀ ନ ହୋଇ ଜାତି ନିର୍ବିଶେଷରେ କେବଳ ଗୁଣର ଆଦର କରିଅଛନ୍ତି । ପ୍ରକୃତ ପକ୍ଷେ ଆମ୍ଭମାନଙ୍କର ଏମନ୍ତ ବିଶ୍ୱାସ ଯେ ଓଡ଼ିଆମାନେ ବଙ୍ଗାଳୀ ଭ୍ରାତାଙ୍କୁ ହିଂସା ନ କରି ବରଂ ଆଦର ମର୍ଯ୍ୟାଦା କରନ୍ତି ଓ ବଙ୍ଗାଳିମାନେ ମଧ ପୂର୍ବେ ଯେପରି ଓଡ଼ିୟାଙ୍କୁ ଘୃଣା କରୁଥିଲେ ଏବେ କ୍ରମେ କ୍ରମେ ତାହା ଊଣା ହୋଇ ଯାଉଅଛି ଏମନ୍ତ କି ଅନେକକାଳ ମିଳା ମିଶା ହେବାରୁ ଉଭୟଙ୍କ ମଧରେ ଆନ୍ତରିକ ସୌହାର୍ଦ୍ଦ୍ୟ ଜନ୍ମି ଅଛି । ମୂଳକଥା ଏହି ଯେ ଲେଖକ ମିଉନିସିପଲ ନିର୍ବାଚନ ସମ୍ବନ୍ଧେ ଆପଣା ଅଭୀଷ୍ଟ ସିଦ୍ଧି କରି ନ ପାରିବାରୁ କ୍ରୋଧ ପରବଶ ହୋଇ ଅକାରଣ ଓଡ଼ିୟା ଓ ତାଙ୍କ ହାକିମଙ୍କର ନିନ୍ଦା ବାଦ କରି ପ୍ରକୃତ କଥାର ବାହାରକୁ ବାହାରି ଯାଇଅଛନ୍ତି ଏବଂ ଅଯଥା କଟୂକ୍ତିଦ୍ୱାରା ବନ୍ଧୁତା ସ୍ଥଳରେ ବିବାଦ ଜାତ କରିବାର ଚେଷ୍ଟା କରି ଅଛନ୍ତି । ଆମ୍ଭେମାନେ ତାହାଙ୍କ ଅନୁରୋଧ କରୁଁ ଯେ ଓଡ଼ିୟାଙ୍କ ସମ୍ବନ୍ଧରେ ଆଉ କୌଣସି ସମ୍ବାଦ ସମ୍ବାଦପତ୍ରିକାମାନଙ୍କରେ ପ୍ରଚରିତ ହେବା ଆଶାରେ ପଠାଇବା ପୂର୍ବରୁ ଥରେ ଓଡ଼ିୟାଙ୍କ ଚରିତ୍ର ବିଷୟ ଅନୁସନ୍ଧାନ କରି ଅଧୟନ କରନ୍ତୁ ଏବଂ ତତ୍ପରେ ସେ ଯାହା କହିବେ ତାହା ଅବଶ୍ୟ କିଛି ମୂଲ୍ୟବାନ ହୋଇ ପାରିବ ।

*ଭା/୨୦ଗ,ସଂ୧ଖ୍ୟା,୩/୧/୧୮୮୫*

## ପ୍ରେରିତପତ୍ର ।

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସମୀପେଷୁ

ମହାଶୟ !

ନିମ୍ନଲିଖିତ କେତେକ ପଂକ୍ତିକୁ ଆପଣଙ୍କ ବିଖ୍ୟାତ ପତ୍ରିକାରେ ସ୍ଥାନ ଦାନ ଦେଇ ବାଧିତ କରିବେ ।

ଏହି କି ପୁରୀ ଜିଲ୍ଲାର ବ୍ରାହ୍ମଣଶାସନମାନଙ୍କ ମଧରେ ପୁରୀର ନିକଟବର୍ତ୍ତୀ ଷୋଡ଼ଶ ଗୋଟି ବ୍ରାହ୍ମଣ ଶାସନ ପ୍ରଧାନ ଅଟଇ । ଏ ଶାସନୀ ବ୍ରାହ୍ମଣମାନେ ପରମ୍ପରାନୁଯାୟୀ ସଂସ୍କୃତ ବିଦ୍ୟାରେ ପରିଶ୍ରମ କରିଥିଲେ ସୁଦ୍ଧା ଆଶାନୁରୂପ ଫଳ ପ୍ରାପ୍ତିର ଅଭାବରୁ ନବ୍ୟ ରୀତିରେ ନିଜ ନିଜ ସନ୍ତାନମାନଙ୍କୁ ଶିକ୍ଷା ଦେଉ ଅଛନ୍ତି । ଆହୁରି ସୁଖର ବିଷୟ ଯେ ଏହି ଶାସନୀ ବ୍ରାହ୍ମଣମାନେ ଏକତ୍ର ହୋଇ ସତ୍ୟବାଦୀଠାରେ ଗୋଟିଏ ମାସିକ ସମାଜ ସ୍ଥାପନ କରି ଅଛନ୍ତି । ଏହି ସମାଜର ପ୍ରସ୍ତାବ ମତେ ବୀର ନରସିଂହପୁର ଶାସନ ଓ ଶ୍ରୀରାମଚନ୍ଦ୍ରପୁର ଶାସନରେ ଯଥାକ୍ରମେ "ଆର୍ଯ୍ୟନୀତି ପ୍ରଦୀପ" ଓ "ଉତ୍କଳଧର୍ମ ସୁଧାନୀଧି" ନାମରେ ଦୁଇଗୋଟୀ କାର୍ଯ୍ୟନିର୍ବାହକ ସମାଜ ଗଠିତ ହୋଇ ଅଛି ଚଳିତମାସ ତା ୨୧ ରିଖରେ ଆର୍ଯ୍ୟନୀତି ପ୍ରଦୀପ ସମାଜର ଅଧିବେଶନ ହୋଇ ଥିଲା । ଏଥିରେ ପ୍ରାୟ ଜ୪୦ ଣ ପଣ୍ଡିତ ସଭ୍ୟ ଉପସ୍ଥିତ ଥିଲେ । ପ୍ରଥମେ ଗତ ଅଧିବେଶନର ମନ୍ତବ୍ୟ ପାଠ ହେଲା ଉତ୍ତାରୁ "ଉତ୍କଳଦୀପିକା" ଓ "ଉତ୍କଳଦର୍ପଣ" ପଠିତ ହେଲା । ସଭୌଏକ ଶ୍ରୀ ରଘୁନାଥ ମିଶ୍ର ପଣ୍ଡିତ ମହାଶୟ ମହାମାନ୍ୟ ଲର୍ଡ଼ ରିପନଙ୍କ ପ୍ରସ୍ଥାନ ଓ ଲର୍ଡ ଡଫରିନଙ୍କ ଆଗମନରେ ଯଥାକ୍ରମେ ଦୁଃଖ ଓ ଆନନ୍ଦସୂଚକ ସୁଲଳିତ ବକ୍ତୃତା ପ୍ରଦାନ କରି ସଭ୍ୟମାନଙ୍କୁ ଆପ୍ୟାୟିତ କରି ଥିଲେ । ତହୁଁ ଦର୍ପଣର କ୍ରୋଡ଼ପତ୍ର ଲେଖିତ ବାଲ୍ୟବିବାହ ସ୍ଥଗିତ ଓ ବିଧବାବିବାହ ପ୍ରଚଳଣ ସମ୍ବନ୍ଧରେ ବାଦାନୁବାଦ ହୋଇ ଆଗାମୀ ଅଧିବେଶନକୁ ମନୁ ପ୍ରଭୃତି ଶାସ୍ତ୍ର ଆଲୋଚନା କରି କର୍ତ୍ତବ୍ୟ ସ୍ଥିର କରିବା ଭାର ସମସ୍ତ ସଭ୍ୟମାନେ ଗ୍ରହଣ କଲା ପର ସଭା ଭଙ୍ଗ ହେଲା । ପାଠକେ !--କେତେ ଦିନେ ଏ ଶାସନମାନଙ୍କରେ ସଭ୍ୟ ରାଜତ୍ୱର ସୁଖ ସ୍ଥାନ ପାଉ ଅଛି । ଜଗତ୍ପାତା ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା ଯେ ଏତଦ୍ଦେଶୀୟ ଜମିଦାର ଓ ରାଜାମାନଙ୍କ ସାହାଯ୍ୟରେ ଆମ୍ଭମାନଙ୍କର ଆଶା ସଫଳ କରନ୍ତୁ ।

୨୫/୧୨/୮୪ — ବଶମ୍ବଦ

ବୀରନରସିଂହପୁର — ଶ୍ରୀ ନୀଳକଣ୍ଠ ସଦସ୍ୟ

ଆର୍ଯ୍ୟନୀତି ପ୍ରଦୀପ ସମାଜର ସଭ୍ୟ

*ଭା/୨୦ଗ,ସଂ୧ଖ୍ୟା,୩/୧/୧୮୮୫*

## [ସମ୍ବାଦପତ୍ରମାନଙ୍କରେ ଓଡିୟା ପୁସ୍ତକ ସଂପର୍କିତ ଆଲୋଚନା]

ମହାଶୟ !

ଓଡ଼ିୟା ପୁସ୍ତକ ଘେନି କେତେକ କାଳରୁ ସ୍ଥାନୀୟ ସମ୍ବାଦପତ୍ରମାନଙ୍କରେ ତୁମୁଳ ଆନ୍ଦୋଳନ ଚଳି ଆସୁଅଛି । ଆପଣ ଓ ବାଲେଶ୍ୱର ସଂବାଦବାହିକା ଏକ ଆଡ଼େ ଏବଂ ଉତ୍କଳ ଦର୍ପଣ ଅନ୍ୟ ଆଡ଼େ । ମାସିକ ପତ୍ରିକାରୂପରେ ବର୍ତ୍ତମାନ ଯେଉଁ କାଗଜ ଏ ସ୍ଥାନରେ ଛାପା ହେଉଅଛି ତାହାକୁ ଦର୍ପଣ ଆଡ଼େ ପକାଇ ଦେଲେ କିଛି ଅସଙ୍ଗତ ହେବ ନାହି ବରଂ ସମସ୍ତେ ଉପଯୁକ୍ତ କାର୍ଯ୍ୟ ବୋଲି ଅନୁମୋଦନ କରିବେ । ଶିକ୍ଷାବିଭାଗର ପ୍ରଧାନ କର୍ତ୍ତୃପକ୍ଷମାନେ କିପରି ଭାବରେ ବିଦ୍ୟାଳୟମାନଙ୍କର ପାଠ୍ୟପୁସ୍ତକ ନିର୍ବାଚନ କରୁଅଛନ୍ତି ଓ ପ୍ରାଇମେରୀ ପରୀକ୍ଷାର ପୁରସ୍କାର ବଣ୍ଟନ ନିମନ୍ତେ ପ୍ରତିବର୍ଷ ଯାହା ସହସ୍ର ସହସ୍ର ଟଙ୍କା ଖର୍ଚ୍ଚ ହୁଏ ତହିଁରେ କି ପ୍ରକାର ପୁସ୍ତକକୁ ଉତ୍ସାହ ଦିଆ ଯାଉଅଛି ଓ ଏଥି ନିମିତ୍ତ ଦାୟୀ କିଏ ଏତିକି ବିବାଦର ପ୍ରଧାନ କଥା ଓ ଏ ଗୁଡ଼ିକ ମୀମାଂସା ପାଇଗଲେ ଆଉ କୌଣସି କଥା ଉଠିବ ନାହି ବୋଲି ଭରସା କରା ଯାଇ ପାରେ । ଆମ୍ଭେ ତୃତୀୟ ପକ୍ଷ । ଆପଣ ଓ ବାହିକା ଶିକ୍ଷାବିଭାଗର କାର୍ଯ୍ୟରେ ଯେପରି କଳଙ୍କ ଉପସ୍ଥିତ ହୋଇଅଛି ତାହା ଦେଖାଇଦେଇ ତହିଁର ସଂଶୋଧନ କରିବାକୁ ଏକାନ୍ତ ବ୍ୟଗ୍ର ମାତ୍ର ଦର୍ପଣ ଓ ତତ୍ପକ୍ଷୀୟମାନେ ଶିକ୍ଷାବିଭାଗର ସମୁଦାୟ କାର୍ଯ୍ୟକୁ ଭଲ ବୋଲି କହି ନାନାରୂପ ଆପତ୍ତି ଦେଖାଇ ଆପଣଙ୍କୁ ବାଟ ଛାଡୁ ନାହାନ୍ତି । ତେବେ ଆପଣ ପଚାରି ପାରନ୍ତି ଆମ୍ଭେ କି ବାଟ ଦେଖାଇବାକୁ ଉପସ୍ଥିତ ହୋଇଅଛୁ ? ମଧ୍ୟସ୍ଥର କାର୍ଯ୍ୟ ବିବାଦର ମୀମାଂସା କରିଦେବା ! ମାତ୍ର ଆମ୍ଭେ ମଧ୍ୟସ୍ଥ ରୂପରେ ଉପସ୍ଥିତ ହୋଇ ନାହୁଁ ଓ ହେବାକୁ ବାଞ୍ଛା ନ କରୁଁ । ଦର୍ପଣ ଓଗେର ମାନିବା ବ୍ୟକ୍ତି ନୁହନ୍ତି ଓ ପ୍ରକୃତରେ ସେହିମାନଙ୍କ ଯୋଗେ ଏତେ ଖୋଳ ତାଡ଼ ଲାଗିଅଛି ଓ ରାଧାନାଥ ବାବୁ ଏମାନେ ଯେତେ କଥା ଶୁଣି ପାରୁଥାନ୍ତେ ତହୁଁ ଅଧିକ ଶୁଣୁଅଛନ୍ତି । ଆମ୍ଭେ ତୃତୀୟପକ୍ଷ ଆଉ ଗୋଟିଏ ଗୁରୁତର ବିଷୟ ଘେନି ଉପସ୍ଥିତ ହୋଇଅଛୁଁ । ଆପଣ ଓ ସମ୍ବାଦ ବାହିକା ଓ ଦର୍ପଣ ଇତ୍ୟାଦିରେ ଯେତେ ଯେତେ କଥା ଅବଧି ଏ ସମ୍ପର୍କରେ ବାହାରିଅଛି ତାହା ଆମ୍ଭେ ନିବିଷ୍ଟଚିତ୍ତରେ ପଢ଼ିଅଛୁଁ ଓ ପଢ଼ି ସ୍ୱତଃ ଆମ୍ଭେ ଶିକ୍ଷାବିଭାଗର ବିରୁଦ୍ଧ ପକ୍ଷ ଅବଲମ୍ବନ କରିବାକୁ ବାଧ ହୋଇଅଛୁଁ । ମାତ୍ର ଆମ୍ଭର ଏହିପରି ଧାରଣା ହୋଇଅଛି ଯେ ତୁଛା ଏହିପରି ଆନ୍ଦୋଳନ ଲାଗି ଥିଲେ କୌଣସି ଫଳ ହେବ ନାହିଁ । ଶିକ୍ଷାବିଭାଗର ଭାରପ୍ରାପ୍ତ କର୍ମଚାରୀମାନେ ଆପଣା କାର୍ଯ୍ୟର ଗୁରୁତା ଅବଧି ହୃଦୟଙ୍ଗମ କରି ପାରି ନାହାନ୍ତି ଓ ସେମାନେ ଯେବେ ଆପଣା ଦାୟୀତ୍ୱ ବୁଝି କାର୍ଯ୍ୟକ୍ଷେତ୍ରରେ ଥାନ୍ତେ ତାହାହେଲେ କଦାପି ଏତେ କଥା ଆମ୍ଭେମାନେ ଶୁଣିବାକୁ ଯାଇ ନ ଥାନ୍ତୁ । ଓଡ଼ିୟା ଭାଷାର ଉତ୍କର୍ଷ ସାଧନ ଓ ସେହି ଭାଷାରେ ଯଥାସମ୍ଭବ ଲୋକଙ୍କ ମଧ୍ୟରେ ଜ୍ଞାନ ବିସ୍ତାର କରିବା ଏଠା ଶିକ୍ଷାବିଭାଗର ପ୍ରଧାନ ଉଦ୍ଦେଶ୍ୟ ଏବଂ ସେହି ଉଦ୍ଦେଶ୍ୟ ସାଧନାର୍ଥ ଉକ୍ତ ବିଭାଗର ପ୍ରତ୍ୟେକ କର୍ମଚାରିର କାର୍ଯ୍ୟ କରିବା ଉଚିତ ହୋଇ ଅଛି । ମାତ୍ର ସେପରି କାର୍ଯ୍ୟ ହେଉ ଅଛି କି ? ଭାଷାର ଉତ୍କର୍ଷ ସାଧନ କରିବାକୁ ହେଲେ ସୁଲେଖକଙ୍କୁ ଉତ୍ସାହ ଦେବା ଅଗ୍ରେ କର୍ତ୍ତବ୍ୟ । ମାତ୍ର ଆମ୍ଭେମାନେ ପଚାରୁଁ ଯେ ଶିକ୍ଷାବିଭାଗର କର୍ମଚାରିମାନେ ଖଣ୍ଡିଏ ପୁସ୍ତକ ବାହାରିଲାରୁ ତାହାକୁ ବି ଆଦ୍ୟୋପାନ୍ତ ପଢ଼ି ଦେଖନ୍ତି ? ଅଧିକ ଅବା କି କହିବା ଯେଉଁ ଦୁର୍ଗାଚରଣ ସାହୁଙ୍କର ପ୍ରାକୃତିକ ବିଜ୍ଞାନକୁ ଶିକ୍ଷାବିଭାଗର ପ୍ରଧାନ କର୍ତ୍ତା ବାବୁ ରାଧାନାଥ ରାୟ ସ୍ୱୟଂ ଅତ୍ୟୁତ୍କୃଷ୍ଟ ବୋଲି ସାର୍ଟିଫିକଟ ଲେଖି ଦେଇ ଥିଲେ ସେ ପୁସ୍ତକ କିପରି ଅଳ୍ପଦିନ ତଳେ ଆପଣଙ୍କର "ଆଗ ବୋଲ" ଚିହ୍ନାଇ ଦେଇ ଅଛନ୍ତି । ଏଣୁକରି ଯେତେବେଳେ ପୁସ୍ତକଟି ଆଦ୍ୟୋପାନ୍ତ ଉତ୍ତମରୂପେ ନ ଦେଖି ଲେଖକ ଏବଂ ପୁସ୍ତକର ବାହ୍ୟିକ ଦୃଶ୍ୟକୁ ଅନାଇ ଶିକ୍ଷାବିଭାଗର କର୍ମଚାରୀ ଆଖିବୁଜି ପ୍ରଶଂସାପତ୍ର ମାରି ଦେଲେ ତେତେବେଳେ ତାଙ୍କଠାରୁ ଭାଷାର ବା ଜ୍ଞାନର ଉନ୍ନତି ଆଶା କରିବା ବିଡ଼ମ୍ବନା ମାତ୍ର ଭାଷାର ଉନ୍ନତି ପକ୍ଷେ ସାଧାରଣ ଲୋକଙ୍କର ସୁଦ୍ଧା ଦାୟିତ୍ୱ ଅଛି ମାତ୍ର ଶିକ୍ଷାବିଭାଗ ଯେବେ ସେ ଦାୟିତ୍ୱ ପୂର୍ଣ୍ଣାଂଶରେ ନେବାକୁ ସକ୍ଷମ ନ ହେଲା ତେବେ ସେରୂପ ଶିକ୍ଷାବିଭାଗର ଥାଇଁ କି ଫଳ ଲାଭ ହେବ ? ସାଧାରଣ ଲୋକଙ୍କର ଅନ୍ୟାନ୍ୟ ଅନେକ କାର୍ଯ୍ୟ ଅଛି ଏବଂ ବେଳେ ବେଳେ ସେମାନେ ଶିକ୍ଷାବିଭାଗ ପ୍ରତି ଦୃଷ୍ଟି ପକାଇବାର ଆଶା କରା ଯାଇ ପାରେ । ପୁଣି ସାଧାରଣରୁ ସମସ୍ତ କାର୍ଯ୍ୟ ସୁବିଧା କ୍ରମେ ଚଳିବ ନାହି ବୋଲି ଶିକ୍ଷାବିଭାଗର ସୃଷ୍ଟି ଏବଂ ସେ ବିଭାଗରୁ ଯେବେ ଉପରୋକ୍ତରୂପେ

ଠକାଇ ଆରମ୍ଭ ହେଲା ତେବେ ଆଉ ରକ୍ଷା ନାହି । ଆମ୍ଭେ ପ୍ରସ୍ତାବ କରୁ ଅଛୁଁ ଏଥିର ବିହିତ ତଦନ୍ତ କାରଣ ଗୋଟିଏ କମେଟୀ ବା କମିଶନ ସ୍ଥାପିତ ହେବା କାରଣ ଶ୍ରୀଯୁକ୍ତ କମିଶନର ବା ଡାଇରେକ୍ଟର ସାହେବଙ୍କ ଛାମୁରେ ବା ଗବର୍ଣ୍ଣମେଣ୍ଟରେ ଆବେଦନ ହେଉ ।

ବାଲେଶ୍ୱର ପୁସ୍ତକ ଅଧିକପରିମାଣରେ ଚଳିତ ହେବା ବା କଟିଯିବା ଦୋଷପକ୍ଷେ ଅନେକେ ଏପରି ଆପତ୍ତି କରିପାରନ୍ତି ଯେ ଯେବେ କଟକରେ ସେହିଭଳି ବା ତାହାଠାରୁ ଉତ୍କୃଷ୍ଟ ପୁସ୍ତକ ମିଳୁଥାନ୍ତା ତେବେ ଅବଶ୍ୟ କର୍ତ୍ତୃପକ୍ଷଙ୍କୁ ସେପୁସ୍ତକକୁ ପ୍ରଶ୍ରୟଦେଲେ ନାହି ବୋଲି ନିନ୍ଦା କରା ଯାନ୍ତା, ମାତ୍ର ଆମ୍ଭେ କହୁଁ ଏହି ଆନ୍ଦୋଳନ ସମୟରେ ଯେତେଯେତେ କଥା ବାହାରକୁ ବାହାରି ପଡି ଅଛି ସେ ସମସ୍ତର ପ୍ରତୀକାର ହୋଇ ପାରିବବୋଲି ଲୋକଙ୍କ ମନରେ ବିଶ୍ୱାସ ନ ହେବାଯାଏ କିଏ କାହିଁକି ପୁସ୍ତକ ଲେଖି ହଇରାଣ ହେବାକୁ ମତି ବଳାଇବ ? ଘରୁ ଖାଇ ବାଣିଜ୍ୟ କରିବାରେ କାହାର ଆସ୍ଥା ଥାଏ ? ଶ୍ରଦ୍ଧାକରି କିଏ ବେଢ଼ି ପିନ୍ଧିବାକୁ ଇଚ୍ଛାକରେ ? ଅନ୍ୟ ପ୍ରେସରୁ ଖଣ୍ଡିଏ ଭଲ ପୁସ୍ତକ ବାହାରୁ ବାହାରୁ ସେହି ବିଷୟରେ ଖଣ୍ଡିଏ ପୁସ୍ତକ ଖର୍ବାକୃତି ହେଉ ପଛକେ ଦେଙ୍କ ପ୍ରେସରୁ ବାହାରି ପଡ଼ିବାର ଦେଖା ଯାଇଅଛି ଓ ସେ ବାହାରୁ ବାହାରୁ ପୂର୍ବଗ୍ରନ୍ଥକାରକୁ ତହିଁର ବଜ୍ରସମ ସଂବାଦ ଆସି ମହାଭାଳେଣି ଉପସ୍ଥିତ କରାଏ । ଏମନ୍ତ ସ୍ଥଳେ କିଏ କାହିଁକି ନିଆଁଭିତରେ ହାତପୁରାଇବାକୁ ଅଗ୍ରସର ହେବ । ଛାପାକରି ଖର୍ଚାନ୍ତ ହୋଇ ତୁମୁଳଭାବରେ ଲଢ଼ାଲଢ଼ି କରି ଫଳ ଦେଖିବାକୁ ସଚେଷ୍ଟ ହେବାର ସମୟ ଅବଧି ଓଡ଼ିଶାରେ ହୋଇ ନାହି ଓ ଶୀଘ୍ର ଯେ ହେବ ତହିଁର ମଧ ଆଶା ନାହି । ଏପରିସ୍ଥଳେ ଶିକ୍ଷାବିଭାଗର ଅନ୍ୟାୟ କାର୍ଯ୍ୟର ପ୍ରତୀକାର କରିବାର ଚେଷ୍ଟା ସାଧାରଣରୁ ନ ହେଲେ ଆଉ ଉପାୟ ନାହିଁ ଏବଂ ସେହି ଅନ୍ୟାୟ କାର୍ଯ୍ୟହେତୁ ଭାଷାର ଯେପରି ଅବନତି ଓ ବିକଳାବସ୍ଥା ଘଟୁଅଛି ତାହା କେହି ରୋଧ କରି ପାରିବ ନାହିଁ ।

ବର୍ତ୍ତମାନ ପ୍ରଶ୍ନ ହୋଇ ପାରେ ପ୍ରସ୍ତାବିତ ପ୍ରକାରେ ସାଧାରଣରୁ ଉଦ୍ୟମ ହେବାର ଉପାୟ କିସ ? ଆମ୍ଭେ ପଚାରୁ ଅଛୁଁ ଆପଣଙ୍କର ଉତ୍କଳସଭା କି ଏବିଷୟରେ ହସ୍ତକ୍ଷେପଣ କରିବ ନାହିଁ ?

କଟକ — ଆପଣଙ୍କର ତୃତୀୟପକ୍ଷ ।

୧୫/୧୨/୮୪

## *ଭା୨୦ଗ, ସଂ୧ଖ୍ୟା, ୩/୧/୧୮୮୫*

## [ସମ୍ବାଦ ସମାଲୋଚନା]

ଗତ ସପ୍ତାହର ଉତ୍କଳଦର୍ପଣର ଇଂରାଜୀ ସ୍ତମ୍ଭରେ କଟକରୁ ପ୍ରେରିତ ଖଣ୍ଡିଏ ଇଂରାଜୀପତ୍ର ପ୍ରକାଶ ହୋଇ ଅଛି । ତହିଁର ଏକ ସ୍ଥାନରେ ଲେଖା ଅଛି କି ଉତ୍କଳ ଦୀପିକା ପରି ପୁରାତନ ଓ ବହୁଦର୍ଶୀ ସମ୍ବାଦପତ୍ର ଯେମନ୍ତ ତେମନ୍ତ ଲୋକର ପତ୍ର ଛାପିବାକୁ ଲୋଭାଇବା ବଡ଼ ଆଶ୍ଚର୍ଯ୍ୟର ବିଷୟ ଅଟଇ । ପୁଣି ଏକ ସ୍ଥାନରେ ଲେଖା ଅଛି କି ଚତୁର୍ଭୁଜ ବାବୁ ଓ ପାଠମାଳା ବିରୁଦ୍ଧରେ ଯାହା ତାହା ଗ୍ରହଣ କରିବାକୁ ଦୀପିକାଙ୍କର କେତେ ତୃପ୍ତି ଜାତ ହୁଅଇ । ପତ୍ରପ୍ରେରକଙ୍କ ପରି ଆଜିକାଲିର ବିଦ୍ୱାନ ଲୋକଙ୍କ ନିକଟରେ ଦୀପିକା ହାସ୍ୟାସ୍ପଦ ହେବ ଏହା ଆମ୍ଭେମାନେ ବିଚିତ୍ର ମଣୁ ନାହୁ କିନ୍ତୁ ସେ ଏତେ ବିଦ୍ୟା ଓ ବିଚକ୍ଷଣତା ଅର୍ଜି ସୁଦ୍ଧା ଗୋଟିଏ ପୁରାତନ ନୀତିକୁ ଛାଡ଼ି ପାରି ନାହାନ୍ତି ଏତିକି ଆଶ୍ଚର୍ଯ୍ୟ । ପୁରାତନ ନୀତିଟି ଏହିକି ଯେବେ ଆପଣା ମୋକଦ୍ଦମା ପ୍ରମାଣ କରି ନ ପାର ତେବେ ବିପକ୍ଷର ଉକୀଲକୁ ଗାଳି ଦିଅ । ଯେବେ ପତ୍ରପ୍ରେରକ କେବଳ ଗାଳି ଦେବାରେ ଆପଣା ବ୍ୟୁତ୍ପତ୍ତି ନ ଦେଖାଇ ମୂଳ ପ୍ରସଙ୍ଗରେ କିଛି କହି ଥାନ୍ତେ ତେବେ ସର୍ବସାଧାରଣ ଆମ୍ଭମାନଙ୍କର ଦୋଷ ଜାଣି ପାରନ୍ତେ ଓ ଆମ୍ଭେମାନେ ମଧ ତହିଁରୁ ଶିକ୍ଷାଲାଭ କରି ଭବିଷ୍ୟତକୁ ସମଧିକ ଯୋଗ୍ୟତା ସହିତ ଆପଣା କର୍ତ୍ତବ୍ୟ ପାଳିବାକୁ ସକ୍ଷମ ହୁଅନ୍ତୁ । ଆମ୍ଭମାନଙ୍କର ଧାରଣା ଏହି କି କୌଣସି ସାଧାରଣ ବିଷୟରେ କାହାରି ବିରୁଦ୍ଧରେ ମତାମତ ପ୍ରକାଶ କରିବାରେ କ୍ଷତି ନାହି ବାସ୍ତବରେ ଲାଭ ଅଛି । ଯେବେ ମତଟି ଉଚିତ ହୁଅଇ ତେବେ ତହିଁରୁ ସେ ବ୍ୟକ୍ତି ଉପଦେଶ ପାଇ ପାରେ ଓ ଯେବେ ଅନୁଚିତ ହୁଅଇ ତେବେ ତହିଁର ପ୍ରତିବାଦ ଦ୍ୱାରା ମତ ପ୍ରକାଶକ ଏବଂ ତାହାଙ୍କ ସଙ୍ଗିମାନଙ୍କର

ଭ୍ରମ ଦୂର ହୋଇ ପାରେ ଭଲ କରି ବୁଝାଇ ଦେଲେ ଯେ ନ ବୁଝେ ବୁଝିଲା ଲୋକମାନେ ତାହାଠାରୁ ହତାଶ ହୋଇ ମୌନ ହୋଇ ରହନ୍ତି । କିନ୍ତୁ ତୁଚ୍ଛା ଗାଳି ଦେବାରେ କି ଫଳ ଲାଭ ହୁଅଇ ଏହା ଆମ୍ଭେମାନେ ବୁଝି ପାରିଲୁ ନାହିଁ ।

*ଭା/୨୦ଗ,ସଂଗଖ୍ୟା, ୧୭/୧/୧୮୮୫*

## [ପାଠ୍ୟପୁସ୍ତକ ନିର୍ବାଚନ କମିଟି ସଭ୍ୟ ମନୋନୟନ]

ଆମ୍ଭେମାନେ ଶୁଣିଲୁଁ ଯେ ଓଡ଼ିଶା ବିଦ୍ୟାଳୟମାନଙ୍କର ପାଠ୍ୟପୁସ୍ତକ ନିର୍ବାଚନ ନିମିତ୍ତ କେତେଜଣ ନୂତନ ସଭ୍ୟ ମନୋନୀତ ହୋଇ ଅଛନ୍ତି । ଯଥା; ବାବୁ ନନ୍ଦକିଶୋର ଦାସ ବାବୁ ସାମସନ୍ ରାଉତ ଓ ବାବୁ ଚତୁର୍ଭୁଜ ପଟ୍ଟନାୟକ । ଓଡ଼ିଶାର ଜଏଣ୍ଟଇନ୍‌ସ୍ପେକ୍‌ଟର ବାବୁ ରାଧାନାଥ ରାୟ ଓ କଟକର ଡେପୁଟିଇନ୍‌ସ୍ପେକ୍‌ଟର ବାବୁ ମଧୁସୂଦନ ରାଓ ପୂର୍ବରୁ ଏ କମିଟୀରେ ଅଛନ୍ତି ବୋଲି କଥିତ ହୁଅଇ ଏବଂ ପୁରୀର ଡେପୁଟୀଇନ୍‌ସ୍ପେକ୍‌ଟର ମଧ ଜଣେ ସଭ୍ୟ ହେବାର ଶୁଣାଯାଏ । ସର୍ବସୁଦ୍ଧା କମିଟୀର ସଭ୍ୟ ସଂଖ୍ୟା କେତେ ଓ କିଏ ତହିଁର ସଭାପତି ଓ କିଏ ସମ୍ପାଦକ ହୋଇଅଛନ୍ତି ସମସ୍ତ ସଭ୍ୟଙ୍କର ନାମ ସହିତ ଅବଶ୍ୟ କଲିକତା କିମ୍ବା ସ୍ଥାନୀୟ ଗଜେଟରେ ସର୍ବସାଧାରଣଙ୍କ ଗୋଚରାର୍ଥେ ପ୍ରକାଶିତ ହେବ ଏବଂ ତାହା ନ ହେବା ପର୍ଯ୍ୟନ୍ତ ଏଥି ସମ୍ପର୍କରେ ଆମ୍ଭେମାନେ କିଛି ମତାମତ ପ୍ରକାଶ କରି ନ ପାରୁ । ଆମ୍ଭେମାନେ ଆଶା କରୁଁ କି ଓଡ଼ିଶାର ତିନିଜିଲ୍ଲାର କେତେଜଣ ପ୍ରଧାନ ପ୍ରଧାନ ବିଦ୍ୱାନ୍ ଓ ବିବେଚକ ଲୋକ ଏ କମିଟୀରେ ସ୍ଥାନ ପାଇବେ ଏବଂ ଶିକ୍ଷା କମିଶନଙ୍କ ଅଭିପ୍ରାୟମତେ ଶିକ୍ଷାବିଭାଗର ନିଃସମ୍ପର୍କୀୟ ଲୋକ ଏ କମିଟୀର ମେମ୍ବର ହେବା ଉଚିତ । ଆମ୍ଭେମାନେ ଯେତେଜଣ ସଭ୍ୟଙ୍କ ନାମ ଉପରେ ଲେଖିଲୁଁ ଯେବେ ତେତିକିରେ ଶେଷ ହୁଅଇ ତେବେ ଏ କମିଟୀ ଓ ପୂର୍ବ ଦୁଇଜଣିଆ କମିଟୀର ଫଳ ଏକା ଘଟିବ ଏବଂ ତହିଁରେ ସର୍ବସାଧାରଣଙ୍କର ସନ୍ତୋଷ ଜାତ ହେବ ନାହିଁ । କିମ୍ବା ଏଠା ଶିକ୍ଷାବିଭାଗ ବିରୁଦ୍ଧରେ ଆମ୍ଭେମାନେ ଯେତେ କଥା କହିଅଛୁଁ ତାହା କିଛି ଘୁଞ୍ଚି ଯିବ ନାହିଁ । ଏଠା ଜଏଣ୍ଟଇନ୍‌ସ୍ପେକ୍‌ଟରଙ୍କର ଏ କମିଟୀ ପ୍ରତି ଦୃଷ୍ଟି ପଡ଼ିବାରୁ ଆମ୍ଭମାନଙ୍କର ବିଶ୍ୱାସ ହେଉଅଛି ଯେ ପାଠ୍ୟପୁସ୍ତକ ସଂକ୍ରାନ୍ତ ଆନ୍ଦୋଳନ ତାହାଙ୍କ ମନକୁ ଆକର୍ଷଣ କରିଅଛି ଏହା ସୁଖର ବିଷୟ ଅଟଇ ମାତ୍ର ଯେପ୍ରକାର କମିଟୀଦ୍ୱାରା ପ୍ରକୃତ ପ୍ରତୀକାର ହେବ ସେପ୍ରକାର ନ କଲେ ସବୁକାର୍ଯ୍ୟ ବିଫଳ ହେବ । ଯାହା ହେଉ ଏଥି ମଧରେ ଅନ୍ୟ ସଭ୍ୟ ନିଯୁକ୍ତ ନ ହୋଇଥିଲେ ମଧ ଆମ୍ଭେମାନେ ଆଶାକରୁଁ କି ବର୍ତ୍ତମାନ ଯେଉଁମାନେ ସଭ୍ୟ ହୋଇଅଛନ୍ତି ସେମାନେ ପରାମର୍ଶ କରି ଏହି କମିଟୀକୁ ପରିବର୍ଦ୍ଧିତ ଏବଂ କାର୍ଯ୍ୟକ୍ଷମ କରି ପାରିବେ ।

*ଭା/୨୦ଗ, ସଂଗଖ୍ୟା, ୧୭/୧/୧୮୮୫*

## ପ୍ରଦୀପ ।

ମହାଶୟ !

ମାସିକପତ୍ର ସମାଜ ଏବଂ ସାହିତ୍ୟୋନ୍ନତିର ଉତ୍କୃଷ୍ଟ ପରିଚାୟକ । ଯେଉଁ ଦେଶ ଯେତେଦୂର ଉନ୍ନତ ହୋଇ ଅଛି ମାସିକ ବା ସାମୟିକ ପତ୍ର ସେଠାରେ ତେତେ ବହୁଳତା ଲାଭ କରି ଅଛି । ଉଦାହରଣ ସ୍ୱରୂପ ଆମ୍ଭେ କେବଳ ବଙ୍ଗ ଦେଶର କଥା କହିବୁଁ । ବଙ୍ଗଳା ଭାଷା ଯେତେବେଳେ ନିତାନ୍ତ ଦୈନ୍ୟ ଦଶାରେ ଥିଲା ତେତେବେଳେ ସେ ଭାଷାର ସମ୍ବାଦ ବା ସାମୟିକ ପତ୍ର ନ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହି ମାତ୍ର କ୍ରମେ କ୍ରମେ ସମାଜ ସଙ୍ଗେ ଉକ୍ତ ଭାଷାର ଅକଳନୀୟ ଉନ୍ନତି ଘଟିତ ହୋଇ ଥିବାରୁ ଆଜି ସେହି ବଙ୍ଗ ଦେଶରେ ଅସଂଖ୍ୟ ଅଂସଖ୍ୟ ସମ୍ବାଦ ଓ ସାମୟିକ ପତ୍ର ବିଚରଣ କରି ଲୋକଙ୍କର ଜ୍ଞାନତୃଷ୍ଣା ନିବାରଣ କରୁ ଅଛି ।

ଆମ୍ଭ ଏଦେଶର ଓଡ଼ିଆ ଭାଷା ସମୟରେ ଲୁପ୍ତପ୍ରାୟ ହେବାକୁ ବସି ଥିଲା । ବର୍ତ୍ତମାନ କେତେକାଳ ହେଲା ତାହା କଥଞ୍ଚିତ୍‌ରୂପେ ଉଦ୍ଧୃତ ହୋଇ ଅଛି । ସମ୍ବାଦ ଏବଂ ସାମୟିକ ପତ୍ର ଯେତେ ଅଧିକ ହେବ ଭାଷାର ଯେ ସେହି ପରିମାଣରେ ଅଧିକ ଉତ୍କର୍ଷ ସାଧିତ ହେବ ଏହା ସର୍ବସମ୍ମତ । ଆମ୍ଭେ ପ୍ରକୃତରେ ବର୍ତ୍ତମାନ ସମୟରେ 'ପ୍ରଦୀପ'

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ନାମକ ଏକ ମାସିକପତ୍ରର ଅଭ୍ୟୁଦୟ ଦେଖି ପରମ ସୁଖୀ ହୋଇ ଅଛୁଁ । ଶୁଭାକାଙ୍କ୍ଷୀ ଲୋକେ ଅବଶ୍ୟ ଅଭିଳଷିତ ବସ୍ତୁକୁ ଦୋଷଶୂନ୍ୟରୂପେ ଦେଖିବାକୁ ସତତ ଚେଷ୍ଟା କରନ୍ତି ଏବଂ ଉତ୍ତରୋତ୍ତର ଦୋଷ ଦେଖାଇ ନ ଦେଲେ ସେ ଚେଷ୍ଟା କେବେହେଁ ଫଳବତୀ ହୋଇ ନ ପାରେ । 'ପ୍ରଦୀପ'ରେ ପ୍ରକାଶିତ ହୋଇଥିବା ବିଷୟମାନ କି ପ୍ରକାର ସୁରୁଚିସମ୍ପନ୍ନ ହୋଇ ଅଛି ତାହା ଅବଶ୍ୟ ଲୋକସାଧାରଣର ବିବେଚ୍ୟ ଏବଂ ସାଧାରଣ ଲୋକେ ତାହା ମନୋମତରୂପେ ଦେଖିବାକୁ ପାଇଲା ପୂର୍ବରୁ ଏତତ୍ପକ୍ଷେ କୌଣସି ମତାମତ ପ୍ରକାଶ କରିବା ଆମ୍ଭେ ଉଚିତ ବୋଧ କରୁ ନାହୁଁ । ମାତ୍ର ବିଷୟ ଯାହା ହେଉ ଭାଷାଟି ପରିଷ୍କାର ଓ ବିଶଦ ହେବା ନିତାନ୍ତ ଉଚିତ । ଅଧିକ କି ବୋଲିବୁଁ କେବଳ 'ସୂଚନା' ପାଠ କରି ଆମ୍ଭେ ଭଗ୍ନାଶ ହୋଇ ଅଛୁଁ । ଏକା ସେହି କଠିନ ବାକ୍ୟାବଳି ପୂର୍ଣ୍ଣ ଅଙ୍ଗହୀନ ସୂଚନା ପାଠ କଲେ ଓଡ଼ିଆ ଭାଷା ପ୍ରତି ବିହିତ ବିବେଚନା ଶୂନ୍ୟ 'ପ୍ରଦୀପ' ନିଜୋଦ୍ଦେଶ୍ୟ ସାଧନ କରିବା ପକ୍ଷେ ନିତାନ୍ତ ଅକର୍ମଣ୍ୟ ବୋଲି ସ୍ପଷ୍ଟ ପ୍ରତୀୟମାନ ହେବ । "ଜ୍ଞାନ ତୃଷ୍ଣା ନିବାରଣ କରା ?" "ଜ୍ଞାନ ଲାଭେଚ୍ଛାର ବେଗ ରୋଧ କରା ?" "ସମ୍ୟକ୍‌ରୂପେ ଦୂରୀଭୂତ କରା ପ୍ରଦୀପର ଦୁର୍ବଳ ଶିଖାର" ଇତ୍ୟାଦି କେବେହେଁ ଓଡ଼ିଆ ଭାଷା ମଧ୍ୟରେ ସ୍ଥାନ ପାଇବାର ଯୋଗ୍ୟ ନୁହେଁ । "ପ୍ରଦୀପ"ର ଅନେକ ସ୍ଥଳରେ ଏହି ବଙ୍ଗଳା "କରା" ଶବ୍ଦ ବ୍ୟବହୃତ ହୋଇ ଅଛି ଏବଂ କାହିଁକି ପୁଣି ତାହା ପ୍ରକୃତ ଓଡ଼ିଆ ଲେଖକଙ୍କ ଲେଖନୀ ପ୍ରସୂତ ହୋଇ ଥିଲେ ଆହୁରି ନିନ୍ଦାର ବିଷୟ ଅଟେ । "ନୈକଟ୍ୟତା" ଇତ୍ୟାଦି ଶବ୍ଦ ଲେଖିବାରେ ବ୍ୟାକରଣ ପ୍ରତି ଅବହେଳା ପ୍ରଦର୍ଶିତ ହୋଇ ଅଛି । "ଉତ୍କଳ ପୁତ୍ରମାନେ ଅଧମ ଜାତୀର ନିମ୍ନତମ ଶ୍ରେଣୀରେ ଭୁକ୍ତ" ଲେଖିବାଦ୍ୱାରା ଓଡ଼ିଆମାନଙ୍କୁ ସ୍ପଷ୍ଟ ରୂପେ ନିନ୍ଦା କରା ଯାଇଅଛି ।

ସେହି ପ୍ରବନ୍ଧର ଉପସଂହାରରେ ଲେଖା ଅଛି ଯେ "ମଧୁପ ମଧୁର ଅଭାବରେ ଇହଲୋକ ତ୍ୟାଗ କରିଅଛି" ପୁଣି "ପ୍ରଦୀପ" ନାମକ ପଦ୍ୟର ଚତୁର୍ଥ ପଦଦ୍ୱାରା ତହିଁର ସମର୍ଥନ କରା ଯାଇ ଲେଖା ଯାଇଅଛି ଯେ "ମଧୁପ" ମକରନ୍ଦ ପାନ କରିବାକୁ ଆସି କେବଳ ପଲାଶବନ ଦେଖିଲା । ଆମ୍ଭେ ଏଥିର ଗୁରୁତର ପ୍ରତିବାଦ କରୁଅଛୁଁ । ଯେଉଁମାନେ "ଉତ୍କଳ ମଧୁପ" ନିବିଷ୍ଟ ଚିତ୍ତରେ ପାଠ କରିଅଛନ୍ତି ସେମାନେ ଜାଣିଥିବେ ଯେ 'ମଧୁପ' କେତେକ ମୋଫସଲ ଗ୍ରାହକଙ୍କ ସ୍ୱାଭାବିକ ଆଦିଆପଣ ହେତୁରୁ ଇହଲୋକ ତ୍ୟାଗ କରି ଗଲା ମାତ୍ର ଉପେନ୍ଦ୍ରଭଞ୍ଜାଦି ପ୍ରାଚୀନ କବିମାନେ ଯେଉଁ ଉତ୍କଳ ସାହିତ୍ୟରେ ରମଣୀୟ ଉଦ୍ୟାନମାନ ନିର୍ମାଣ କରି ଯାଇଅଛନ୍ତି ସେଠାରେ କି ମଧୁପକୁ "ମଧୁର ଅଭାବ" ହୁଅନ୍ତା । ମଧ ଈଶ୍ୱରେଚ୍ଛାରେ ତାହା ହୋଇ ନାହିଁ ।

ଯାହା ହେଉ ଆମ୍ଭେ "ପ୍ରଦୀପ" ର ଲେଖକରୂପୀ କର୍ମଚାରିମାନଙ୍କୁ ଉପଦେଶ ଦେଉ ଅଛୁ ସେମାନେ ପ୍ରଦୀପରେ ପ୍ରକାଶିତ ହେବା ବିଷୟମାନଙ୍କ ଭାବ ଓ ଭାଷା ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିବେ ଅନ୍ୟଥା ସେମାନଙ୍କର ଉଦ୍ଦେଶ୍ୟ ସଫଳ ହେବାର କୌଣସି ଆଶା ନାହିଁ । ପ୍ରଥମ ସଂଖ୍ୟାର ମୂଳଠାରୁ ଶେଷ ପର୍ଯ୍ୟନ୍ତ ଅନେକ ବଙ୍ଗଳା ଶବ୍ଦ ବ୍ୟୂହାଦି ରହିଅଛି ଓ ଅନେକ ସ୍ଥାନରେ ତର୍କ ଏବଂ ରୁଚିର ତ୍ରୁଟି ଘଟିଅଛି । ଭବିଷ୍ୟତକୁ ଯହିଁରେ ଏ ସବୁ ତିରୋହିତ ହୋଇ ବିଶଦଭାଷା ଓ କଥାଦ୍ୱାରା "ପ୍ରଦୀପ" ପ୍ରକୃତରେ ଲୋକଙ୍କର ମନୋମତ ହୁଏ ତହିଁ ପ୍ରତି "ପ୍ରଦୀପ ଚାଳକ"ଙ୍କର ଯତ୍ନବାନ୍ ହେବା ଏକାନ୍ତ କର୍ତ୍ତବ୍ୟ ଏବଂ ଆମ୍ଭେ ଭରସା କରୁଁ ଯେ "ପ୍ରଦୀପ" ଏ କାର୍ଯ୍ୟରେ କୃତକାର୍ଯ୍ୟ ହୋଇ ଚିରକାଳ ଆମ୍ଭର ଓ ଓଡ଼ିଶାବାସୀ ମାତ୍ରର ଆନନ୍ଦ ବିଧାନ କରୁ ।

କେହି ଓଡ଼ିଆ ଶୁଭାକାଙ୍କ୍ଷୀ ।

*ଭା/୨୦ଗ,ସଂ୩୪୫୪/, ୧୭/୧/୧୮୮୪*

## [ମୁଦ୍ରାଯନ୍ତ୍ରର ଉନ୍ନତି]

ମୁଦ୍ରାଯନ୍ତ୍ରର ଉନ୍ନତି ହେତୁ ଚଳିତବର୍ଷ ବିଶେଷରୂପେ ସ୍ମରଣୀୟ ହେବ । ଏହି ବର୍ଷର ଆରମ୍ଭ ସଙ୍ଗେ ସଙ୍ଗେ ସଂସ୍କାରକ ଓ ସେବକ ମାସିକ ରୂପ ବଦଳାଇ ସାପ୍ତାହିକ ହେଲେ, ପ୍ରଦୀପ ନାମରେ ଏକ ମାସିକପତ୍ର ଏବଂ ତହିଁ ପଛେ ପଛେ ଶିକ୍ଷାବନ୍ଧୁ ନାମରେ ଅନ୍ୟ ଏକ ମାସିକ ପତ୍ର ବାହାରିଲେ । ଏପର ଏ ନଗରରେ ଆଉ ଗୋଟିଏ ମୁଦ୍ରାଯନ୍ତ୍ର ସ୍ଥାପନ ହେବାର ଉଦ୍ୟମ ଦୃଢ଼ରୂପେ ଆରମ୍ଭ ହୋଇଅଛି । ଓଡ଼ିଶା ପରି ସାମାନ୍ୟ ଓ ନିର୍ଦ୍ଧନ ରାଜ୍ୟରେ

ଏତେଗୁଡ଼ିଏ ସାମୟିକ ପତ୍ର ନିର୍ବାହ ହେବା ବଡ଼ ସହଜ ବ୍ୟାପାର ବୋଲି ଅନୁଭବୀ ଲୋକଙ୍କର ପ୍ରତୀତି ନ ହେଲେହେଁ ଯେମନ୍ତ ଉତ୍ସାହ ସହିତ ଏକ ମାସ ମଧ୍ୟରେ ଏମାନଙ୍କର ଜନ୍ମ ହୋଇଅଛି ତହିଁରୁ ଭରସା ହୁଅଇ ଯେ ଜନ୍ମଦାତାମାନେ ପୂର୍ବାପର ବିବେଚନା ପୂର୍ବକ କାର୍ଯ୍ୟକ୍ଷେତ୍ରରେ ପ୍ରବୃତ୍ତ ହୋଇଅଛନ୍ତି ଏବଂ ତିନିଖଣ୍ଡ ପତ୍ର ତିନୋଟି ପୃଥକ୍ ପୃଥକ୍ ଉଦ୍ଦେଶ୍ୟକୁ ସାର କରିଥିବାରୁ ସେହି ସେହି ଉଦ୍ଦେଶ୍ୟରେ ସାର୍ଥବାନ୍ ସମ୍ପ୍ରଦାୟଦ୍ୱାରା ପ୍ରତିପାଳିତ ହୋଇପାରିବେ ଏପରି ଆଶା ହେଉଅଛି । ଶେଷ ଲିଖିତ ବିବେଚନାରେ ଶିକ୍ଷାବନ୍ଧୁର ଭାଗ୍ୟ ଅଧିକ ଅନୁକୂଳ ବୋଧ ହୁଅଇ । ଏହି ପତ୍ରର ଭୂମିକାରୁ ଜଣାଯାଏ ଯେ ଶିକ୍ଷାସମ୍ବନ୍ଧୀୟ ବିଷୟମାନଙ୍କର ଆଲୋଚନା ଏବଂ ଛାତ୍ର ଶିକ୍ଷକ ଓ ପରିଦର୍ଶକମାନଙ୍କର ଜ୍ଞାନ ବର୍ଦ୍ଧନ ଏଥିର ଉଦ୍ଦେଶ୍ୟ ଅଟଇ ଓ ବର୍ତ୍ତମାନ ଓଡ଼ିଶାରେ ଦଶସହସ୍ରରୁ ଅଧିକ ବିଦ୍ୟାଳୟ ଏବଂ ଏକଶତରୁ ଅଧିକ ପରିଦର୍ଶକ ରହିଅଛନ୍ତି ଏବଂ ଶିକ୍ଷାବନ୍ଧୁର ମୂଲ୍ୟ ମଧ ଅତି ଅଳ୍ପ ଅର୍ଥାତ୍ ବର୍ଷକୁ ଡାକମାସୁଲ ସହିତ ଟ ୧ଙ୍କା ସୁତରାଂ ଏହା ଦୀର୍ଘଜୀବୀ ହେବାର ଉଚିତ । ଏ ପତ୍ରିକାର ଲେଖା ଉତ୍ତମ ହୋଇଅଛି ଏବଂ ଯଦ୍ୟପି କି ପ୍ରଥମ ସଂଖ୍ୟାରେ ଓଡ଼ିଶା ଶିକ୍ଷାବିଭାଗର ମୂଳଦେବତା ରାଧାନାଥ ବାବୁଙ୍କୁ ପୂଜା କରିବା ସଙ୍ଗେ ସଙ୍ଗେ ଦୀପକା ଓ ବାହିକାଙ୍କୁ ଆତ୍ମମର୍ଯ୍ୟାଦା ଓ ଭଦ୍ରୋଚିତ ସୁଜନତାବିହୀନ ବୋଲି କୁହା ଯାଇଅଛି ତହିଁପାଇଁ ଆମ୍ଭେମାନେ ତାହାଙ୍କ ରୁଚିର ଦୋଷ ଦେଇ ନ ପାରୁଁ କାରଣ ମୂଳ ଦେବତାର ପୂଜା କରିବା ଅବଶ୍ୟ କର୍ତ୍ତବ୍ୟ ଅଟଇ ଏବଂ ଶତ୍ରୁନିନ୍ଦା ଗାଇବାଧାନର ଗୋଟିଏ ଅଙ୍ଗ ଅଟଇ । କାଳକ୍ରମେ ପାଠ୍ୟପୁସ୍ତକର ଦୋଷ ଗୁଣ ବିଷୟରେ ଏଥିରେ ଅନେକ କଥା ଶୁଣିବାର ଆଶା ରହିଅଛି ।

*ଭା୨୦ଗ,ସଂ୫ଖ୍ୟା, ୩୧/୧/୧୮୮୫*

## ପାଠ୍ୟପୁସ୍ତକ ନିର୍ବାଚନ କମେଟି ।

ଏହି କମେଟି ପରିବର୍ଦ୍ଧିତ ହେବାରକଥା ଆମ୍ଭେମାନେ ଏଥିପୂର୍ବେ ଲେଖିଅଛୁଁ । ସମସ୍ତ ସଭ୍ୟମାନଙ୍କ ନାମ ତେତେବେଳେ ଆମ୍ଭେମାନେ ଜାଣି ପାରି ନଥିଲୁଁ । ବର୍ତ୍ତମାନ ବୁଝିଲୁଁ ଯେ ଓଡ଼ିଶାର ଜଏଣ୍ଟ ଇନ୍‌ସ୍ପେକ୍‌ଟର, ତିନିଜିଲ୍ଲାର ଡେପୁଟି ଇନ୍‌ସ୍ପେକ୍ଟରମାନେ, ଏଠା ନର୍ମାଲସ୍କୁଲର ସୁପ୍ରଣ୍ଡଣ୍ଟ ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀ ଏପରି ପାଞ୍ଚଜଣ ଶିକ୍ଷାବିଭାଗୀୟ କର୍ମଚାରୀ ଏବଂ ବାବୁ ନନ୍ଦକିଶୋର ଦାସ, ବାବୁ ସାମସେନ ରାଉତ, ଓ ବାବୁ ଚତୁର୍ଭୁଜ ପଟ୍ଟନାୟକ ଏପରି ତିନିଜଣ ଉକ୍ତ ବିଭାଗର ଅସମ୍ପର୍କୀୟ ବ୍ୟକ୍ତି ସର୍ବସୁଦ୍ଧା ଆଠଜଣ ଏହି କମେଟିର ସଭ୍ୟ ହୋଇଅଛନ୍ତି । ପୁଣି ଶେଷଲିଖିତ ତିନିଜଣଙ୍କ ମଧ୍ୟରୁ ବାବୁ ଚତୁର୍ଭୁଜ ପଟ୍ଟନାୟକ ନିତାନ୍ତ ଅସମ୍ପର୍କୀୟ ବ୍ୟକ୍ତି ନୁହନ୍ତି ବୋଲି ବୋଲାଯାଇ ପାରେ ଓ ପାଠ୍ୟପୁସ୍ତକ ଆନ୍ଦୋଳନ ସମ୍ପର୍କରେ ତହିଁର ଉଦାହରଣ ପ୍ରଦର୍ଶିତ ହୋଇଅଛି । ଅତଏବ ବୋଲାଯିବ ଯେ ଏହିକମେଟି କେବଳ ଶିକ୍ଷାବିଭାଗୀୟ କର୍ମଚାରିଙ୍କ କମିଟି ଅଟଇ କାରଣ ଜ୮ଣ ସଭ୍ୟମଧ୍ୟରେ ଦୁଇଜଣ ଅସମ୍ପର୍କୀୟ ବ୍ୟକ୍ତିଙ୍କର ମତ କେତେବେଳେ ପ୍ରବଳ ହୋଇ ନପାରେ ସୁତରାଂ ସେମାନଙ୍କର କମିଟିରେ ଥିବା ନଥିବା ସମାନକଥା ଏପରି କମିଟିଦ୍ୱାରା ଯେପରି ଫଳର ଆଶଙ୍କା ଆମ୍ଭେମାନେ ପୂର୍ବରୁ କରି ଥିଲୁଁ କାର୍ଯ୍ୟରେ ତାହାହିଁ ଘଟିଅଛି ଏବଂ ତାହା ଦେଖି ଆମ୍ଭମାନଙ୍କ ମନରେ ହେଉଅଛି ଯେମନ୍ତକି ଏହିପରି ଫଳ ଫଳାଇବା ଉଦ୍ଦେଶ୍ୟରେ ଶିକ୍ଷାବିଭାଗୀୟ ପ୍ରଧାନ କର୍ମଚାରୀ ଉପରଲିଖିତ ପ୍ରକାରରେ କମିଟିର ସଭ୍ୟ ନିଯୁକ୍ତ କରାଇ ଅଛନ୍ତି ।

ଅଳ୍ପଦିନତଳେ ଏହି କମିଟିର ପ୍ରଥମ ଅଧିବେଶନ ହୋଇଥିଲା । ଆଗାମୀ ବର୍ଷକୁ ଉଚ୍ଚପ୍ରାଇମେରି ଓ ଭର୍ଣ୍ଣାକ୍ୟୁଲର ବିଦ୍ୟାଳୟ ନିମିତ୍ତ ଯେ ସମସ୍ତ ପୁସ୍ତକ ଧାର୍ଯ୍ୟହେବ ତହିଁର ବିଚାର ଏସଭାର କାର୍ଯ୍ୟଥିଲା । କାର୍ଯ୍ୟାରମ୍ଭ ହୁଅନ୍ତେ ଦେଖାଗଲା ଯେ ସଭ୍ୟମାନଙ୍କ ନିୟୋଗପତ୍ରରେ କେବଳ ଭର୍ଣ୍ଣାକୁଲର ଓ ମାଇନରଛାତ୍ରବୃତ୍ତି ପରୀକ୍ଷା ସମ୍ପର୍କୀୟ ପାଠ୍ୟପୁସ୍ତକ ବାଛିବାର କ୍ଷମତା ସେମାନଙ୍କୁ ପ୍ରଦତ୍ତ ହେବାର ଲେଖାଅଛି । ଉକ୍ତ ନିୟୋଗପତ୍ରମାନ ଜଏଣ୍ଟ ଇନ୍‌ସ୍ପେକ୍ଟରଙ୍କ ପରାମର୍ଶମତେ ଗବର୍ଣ୍ଣମେଣ୍ଟ ପଠାଇଥିବାର ପ୍ରକାଶ । ଏଣେ ସେହି ଜଏଣ୍ଟ ମହାଶୟ ସମସ୍ତପୁସ୍ତକ ବିଷୟରେ କମିଟିର ମତ ପ୍ରାର୍ଥନାକଲେ । ଏଥିରୁ ଅନୁମାନ ହୁଅଇ ଯେ କମିଟି ଗଢ଼ିବାର ପ୍ରସ୍ତାବ

କରିବା ସମୟରେ ତାହାଙ୍କମତ ଭିନ୍ନ ପ୍ରକାର ଥିଲା ଏଣିକି ପ୍ରଶସ୍ତ ହୋଇଅଛି ଅଥବା ପ୍ରସ୍ତାବ କଲାବେଳେ ଭ୍ରମରେ ଆପଣାର ସମ୍ପୂର୍ଣ୍ଣ ମନ୍ତବ୍ୟ ପ୍ରକାଶକରି ପାରି ନ ଥିଲେ । ଯାହା ହେଉ ସଭ୍ୟମାନେ ଆପଣା ଆପଣା ନିଯୋଗପତ୍ରର ଅତିରିକ୍ତ କାର୍ଯ୍ୟକରିବାକୁ ଅସଙ୍ଗତ ମଣିଲେ ସୁତରାଂ କେବଳ ଭର୍ଣ୍ଣାକୁଲର ଛାତ୍ରବୃତ୍ତି ସକାଶେ କେଉ ପୁସ୍ତକମାନ ଧାର୍ଯ୍ୟ ହେବ ତହିଁର ବିଚାର ହେଲା । ଏସଭାରେ ଏଜିଲ୍ଲାର ଡେପୁଟି ଇନ୍‌ସ୍ପେକ୍ଟରଛଡ଼ା ନଗରବାସୀ ସମସ୍ତସଭ୍ୟ ଉପସ୍ଥିତ ଥିଲେ । ଯେସମସ୍ତ ପାଠ୍ୟପୁସ୍ତକ ଜଏଣ୍ଟ ଇନ୍‌ସ୍ପେକ୍‌ଟର ଉପସ୍ଥିତ କଲେ xxxx ସାହିତ୍ୟ ଇତିହାସ ପ୍ରଭୃତିରେ ଅଧିକ ପୁସ୍ତକ ନଥିବାରୁ ସହଜରେ ସ୍ଥିର ହୋଇଗଲା ଓ ସଭ୍ୟମାନେ ପୂର୍ବରୁ ସେ ବିଷୟମାନ ଚିନ୍ତାକରି ନ ଥିବା ଏବଂ ଆଗାମୀବର୍ଷ ନିମିତ୍ତ ସମୟ ଅଳ୍ପଥିବାରୁ ମଧ ଅଧିକ ବିଚାର କରିବାର ଆବଶ୍ୟକ ହେଲା ନାହି । କେବଳ ପ୍ରାକୃତଭୂଗୋଳ ଘେନି କିଛି ଅଧିକ ତର୍କ ବିତର୍କ ହୋଇଥିଲା । ବାବୁ ନନ୍ଦକିଶୋର ଦାସ ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀ ଓ ବାବୁ ସାମସନ ରାଉତ ଗୌରୀଶଙ୍କର ବାବୁଙ୍କ ପୁସ୍ତକ ସପକ୍ଷରେ ଏବଂ ବାବୁ ରାଧାନାଥ ରାୟ ଓ ବାବୁ ଚତୁର୍ଭୁଜ ପଟ୍ଟନାୟକ ଦୁର୍ଗାଚରଣ ବାବୁଙ୍କ ପୁସ୍ତକ ସପକ୍ଷରେ ମତଦେଲେ ଏବଂ ତିନିଜିଲ୍ଲାର ଇନସ୍ପେକ୍‌ଟରମାନେ ଏଥିପୂର୍ବରୁ ଶେଷଲିଖିତ ପୁସ୍ତକ ସପକ୍ଷରେ ମତଦେଇଥିବାରୁ ଅଧିକାଂଶମତ ଏଥିର ସପକ୍ଷରେ ହେଲା ସୁତରାଂ ତାହା ଧାର୍ଯ୍ୟହେଲା । ଏଠାରେ ସ୍ପଷ୍ଟ ଦେଖାଗଲା ଯେ ସ୍ୱାଧୀନସଭ୍ୟଙ୍କ ମତ ଏକରୂପ ଏବଂ ବିଭାଗୀୟ ସଭ୍ୟଙ୍କ ମତ ଅନ୍ୟରୂପ ଏବଂ ଯେସ୍ଥଳେ କମିଟିରେ ବିଭାଗୀୟସଭ୍ୟଙ୍କ ସଂଖ୍ୟା ପ୍ରାୟ ତିନିଗୁଣ ଅଧିକ ସେ ସ୍ଥଳେ ବିଭାଗୀୟ ମତ ପ୍ରବଳହେବ ଏଥିରେ ସନ୍ଦେହ କି ଅଛି ? ଏଥିପୂର୍ବେ ଜଏଣ୍ଟ ଇନ୍‌ସ୍ପେକ୍ଟର ଆପଣା ଅଧୀନସ୍ଥ ଡେପୁଟିମାନଙ୍କ ମତନେଇ ପୁସ୍ତକ ଧାର୍ଯ୍ୟକରୁ ଥିଲେ ଏତେବେଳେ ସୁଦ୍ଧା କାର୍ଯ୍ୟରେ ତାହାହିଁ ହେଲା ଓ ହେବ ସୁତରାଂ ଏ କମିଟିକୁ ବିଡ଼ମ୍ବନା ଭିନ୍ନ ଆଉ କି ବୋଲାଯିବ । ଜଏଣ୍ଟ ଇନସ୍ପେକ୍ଟର ଯେବେ ସ୍ୱାଧୀନମତର ପ୍ରତ୍ୟାଶୀ ହୋଇ ଥାନ୍ତେ ତେବେ କଦାଚ ଏପରିଭାବରେ କମିଟି ଗଢ଼ିବା କାରଣ ଗବର୍ଣ୍ଣମେଣ୍ଟଙ୍କୁ ପରାମର୍ଶ ଦେଇ ନ ଥାନ୍ତେ । ତାହାଙ୍କ ପରାମର୍ଶରେ କମିଟିରରୂପ ଏପରି ହୋଇ ଥିବାରୁ ଆମ୍ଭମାନଙ୍କୁ ଅଗତ୍ୟା ବୋଲିବାକୁ ହେଉଅଛି ଯେ ସେ କେବଳ ସାଧାରଣଙ୍କ ଆଖିରେ ଧୂଳିଦେଇ ଆପଣା ଇଚ୍ଛାନୁରୂପ କାର୍ଯ୍ୟସାଧନ ନିମିତ୍ତ ଏପରି କମିଟିର ସୃଷ୍ଟି କରି ଅଛନ୍ତି । ସ୍ୱାଧୀନସଭ୍ୟମାନେ ଯେ ଏଥିରେ ସନ୍ତୁଷ୍ଟ ନୁହନ୍ତି ତହିଁର ପରିଚୟ ଏଥିମଧରେ ପାୟା ଯାଇଅଛି କାରଣ କେହି କେହି ଇସ୍ତଫାଦେବାକୁ ସୁଦ୍ଧା ଭାଳିବାର ଆମ୍ଭେମାନେ ଶୁଣିଅଛୁଁ । ଆହୁରି ଗୋଟିଏ ରହସ୍ୟର ବିଷୟ ଏହିକି ଏହି ଅଧିବେଶନରେ ଏକଜଣ ସଭ୍ୟ ଆପଣାପୁସ୍ତକ ଦୁଇ ଏକଖଣ୍ଡ ଚଳାଇବା କାରଣ ଅମ୍ଳାନବଦନରେ ପ୍ରସ୍ତାବକଲେ । ତାହାଙ୍କ ପ୍ରସ୍ତାବ ଗ୍ରାହ୍ୟହେଲାକି ନାହି ଆମ୍ଭେମାନେ କହି ନ ପାରୁଁ ମାତ୍ର ଯେଉଁ ବ୍ୟକ୍ତି ଆପଣା ପୁସ୍ତକ ଚଳାଇବା କାରଣ ଏତେବ୍ୟସ୍ତ ସେବ୍ୟକ୍ତି ଏପରି କମିଟିର ସଭ୍ୟ ହେବାର କେମନ୍ତ ଯୋଗ୍ୟ ଏହା ବିଚାରର ଯୋଗ୍ୟ ଅଟଇ । ଆମ୍ଭେମାନେ ଜଏଣ୍ଟ ଇନ୍‌ସ୍ପେକ୍‌ଟରଙ୍କୁ ପୁନର୍ବାର ପ୍ରାର୍ଥନା କରୁ ଅଛୁଁ କି ଏଡୁକେଶନ କମିଶ୍ନରଙ୍କ ମତାନୁଯାୟୀ ପାଠ୍ୟପୁସ୍ତକ ନିର୍ବାଚନ କମିଟି ସୃଷ୍ଟିକରିବାକୁ ଯତ୍ନକରନ୍ତୁ ନୋହିଲେ ସର୍ବସାଧାରଣ ତାହାଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ହେବେ ନାହି ।

*ଭା୨୦ଗ, ସଂ୬ଖ୍ୟା, ୭।୨।୧୮୮୪*

## ପତ୍ରପ୍ରେରକଙ୍କ ପ୍ରତି ।

## [ପ୍ରଦୀପ]

ଓଡ଼ିଆ ଶୁଭାକାଙ୍କ୍ଷିଙ୍କର ସହଯୋଗୀ-- 'ପ୍ରଦୀପ' ସମ୍ପର୍କରେ ଏଥିପୂର୍ବ ଉତ୍କଳଦୀପିକାରେ ପ୍ରକାଶିତ ଓଡ଼ିଆ ଶୁଭାକାଙ୍କ୍ଷିଙ୍କର ପତ୍ରର ପ୍ରତିବାଦରେ ଲେଖକ ଲେଖିଅଛନ୍ତି କି ଉକ୍ତ ପତ୍ରପ୍ରେରକ ପ୍ରଦୀପର ଗୁଣଭାଗ ଛାଡ଼ି କେବଳ ଦୋଷଭାଗ ଦେଖାଇବାକୁ ତତ୍ପର ହୋଇ ଅଛନ୍ତି ଆଉ 'କରା' ଇତ୍ୟାଦି କ୍ରିୟାକୁ ଯାହା ପ୍ରକୃତ ଓଡ଼ିଆ ନୁହେ ବଙ୍ଗଳା ବୋଲି ନିର୍ଦ୍ଦେଶ କରିଅଛନ୍ତି ତାହା ସଙ୍ଗତ ନୁହଇ ଏବଂ ପତ୍ରପ୍ରେରକ ସ୍ୱୟଂ ତାହା ବ୍ୟବହାର କରିବାଦ୍ୱାରା ଆପଣା ମତ ରକ୍ଷା କରି ପାରି ନାହାନ୍ତି ଇତ୍ୟାଦି । ପତ୍ର ଖଣ୍ଡିକ ଅତ୍ୟନ୍ତ ଦୀର୍ଘ ହେବାରୁ ଆମ୍ଭେମାନେ

ପ୍ରକାଶ କରିବାକୁ ଅକ୍ଷମ ହେଲୁଁ । ଆମ୍ଭମାନଙ୍କ ବିବେଚନାରେ ଏହି ଭାଷା ଘଟିତ ପ୍ରସଙ୍ଗରେ ଗୋଟିଏ ପ୍ରବନ୍ଧ ପ୍ରଦୀପରେ ବାହାରିଲେ ଉତ୍ତମ ହେବ ।

ସ୍ଥାନାଭାବରୁ ଆଉ କେତେ ଖଣ୍ଡ ପ୍ରେରିତପତ୍ର ପ୍ରକାଶ ହୋଇ ପାରି ନାହି ଭବିଷ୍ୟତରେ ସେସବୁ ପ୍ରକାଶ କରିବାର ଇଚ୍ଛା ରହିଲା ।

*ଭା୨୦ଗ, ସଂ୬ଖ୍ୟା, ୭।୨।୧୮୮୫*

## [ଫକୀରମୋହନ ସେନାପତି ନୂତନ ଦେୱାନ]

ମହାଶୟ !

ଅଦ୍ୟ ନିବେଦନ ଏହି କି ଏ ଦଶପଲ୍ଲା କିଲ୍ଲାକୁ ଆଜକୁ ପ୍ରାୟ ମା୪ସ ହେବ ଶ୍ରୀ ବାବୁ ଫକୀରମୋହନ ସେନାପତି ନୂତନ ଦେଓ୍ୟାନ ପଦରେ ନିଯୁକ୍ତ ହୋଇ ଆସି ପ୍ରତିଦିନ କଚେରିକୁ ଯାଇ ମୁଦେଇ ଓ ମୁଦାଲା ଉଭୟ ପକ୍ଷଙ୍କ ଗୁହାରିମାନ ଶୁଣିଲା ଉତ୍ତାରୁ ଏବଂ ସେମାନଙ୍କୁ ଉପଯୁକ୍ତ କଥାମାନ ବୁଝାଇ ମକଦ୍ଦମାର ରାୟ ଲେଖି ଶେଷ ହୁକୁମ ନିମନ୍ତେ ଶ୍ରୀଯୁକ୍ତ ରାଜା ମହୋଦୟଙ୍କ ହଜୁରକୁ ନଥିମାନ ପଠାଉଅଛନ୍ତି । ତାହାଙ୍କ କାର୍ଯ୍ୟରେ ପ୍ରଜାମାନେ ଯଥେଷ୍ଟ ସନ୍ତୋଷରେ ଅଛନ୍ତି । ଆଜକୁ ପ୍ରାୟ ମା୧ସ ହେବ ସେ ଗଡ଼ମକାମରୁ ମଫସଲ ଗସ୍ତରେ ଯାଇ ଯୋଡ଼ମୁଁ ନାମକ ଜିଲାରେ ଅବସ୍ଥାନ କରି ସେ ଜିଲାର ପ୍ରଜାମାନଙ୍କ ସହିତ ସତ୍‌ପରାମର୍ଶ କରି ଓ ସେମାନଙ୍କୁ ଅନେକ ପ୍ରକାର ସଦୁପଦେଶ ପ୍ରଦାନଦ୍ୱାରା ମଦାଣିଆ ନାମରେ ଏକଗୋଟି ନୂତନ ବୃହତ୍ ସେତୁ ନିର୍ମାଣ କରାଇ ତଦ୍ୱାରା ରାଜସର୍କାରଙ୍କର ଓ ପ୍ରଜାମାନଙ୍କର ପ୍ରାୟ ବା୧୦୦ଟି ଜମି ଆବଦ୍ କରାଇବାର କ୍ଷମତା ଦର୍ଶାଇ ଆହୁରି ସେହି ଜିଲାରେ ମଧ୍ୟ ଶିଲୋଟି ନାମକ ଆଉ ଏକ ସେତୁ ପ୍ରସ୍ତୁତ କରାଇବାର ଆୟୋଜନ କରୁ ଅଛନ୍ତି । ପୁନଶ୍ଚ ଉକ୍ତ କିଲ୍ଲାର ମଧଖଣ୍ଡ ନାମକ ଜିଲାରେ ଗୋଟିଏ ନଦୀଦ୍ୱାରା ବା୨୦୦ଟି ଜମି ନଷ୍ଟ ହେଉଥିବାରୁ ସେହି ସ୍ଥଳେ ଗୋଟିଏ ସେତୁ ପ୍ରସ୍ତୁତ ହେବା ପାଇଁ ଉକ୍ତ ମହୋଦୟ ପ୍ରସ୍ତାବ କରିଅଛନ୍ତି । ବାବୁ ମହୋଦୟ ଏକ ବହୁଦର୍ଶୀ କ୍ଷମତାପନ୍ନ ଓ ଉପଯୁକ୍ତ କର୍ମଚାରୀ ଥିବାରୁ ତାହାଙ୍କ କାର୍ଯ୍ୟପ୍ରଣାଳୀଦ୍ୱାରା ଶ୍ରୀଯୁକ୍ତ ରାଜା ମହୋଦୟ ବିଶେଷ ସନ୍ତୁଷ୍ଟ ହେଉଥିବାରୁ ଆମ୍ଭେମାନେ ତାହାଙ୍କ କାର୍ଯ୍ୟରେ ସନ୍ତୋଷ ଲାଭ କରି ପରମେଶ୍ୱରଙ୍କ ପ୍ରାର୍ଥନା କରୁଅଛୁଁ ଯେ ଉକ୍ତ ମହୋଦୟ ବିଶେଷ କାର୍ଯ୍ୟଦକ୍ଷ ଏବଂ ଚିରଜୀବୀ ହୁଅନ୍ତୁ ।

X X X X X　　　　　　　　　　ଆପଣଙ୍କ ବଶମ୍ବଦ

X X X X X　　　　　　　　　　ଶ୍ରୀ ...

*ଭା୨୦ଗ, ସଂ୬ଖ୍ୟା, ୭।୨।୧୮୮୫*

## ପୁଣି ପାଠ୍ୟପୁସ୍ତକର କଥା ।

ଶିକ୍ଷାବନ୍ଧୁ ଓଡ଼ିଆ ପାଠ୍ୟପୁସ୍ତକ ସମ୍ବନ୍ଧୀୟ ଆନ୍ଦୋଳନର ବିଚାର କରୁ କରୁ ଲେଖିଅଛନ୍ତି କି "ରାଧାନାଥ ବାବୁଙ୍କର କୌଣସି ଭାଇ ଓଡ଼ିଆରେ କେତେଖଣ୍ଡ ପାଠ୍ୟପୁସ୍ତକ ଲେଖିଅଛନ୍ତି ସତ୍ୟ, କିନ୍ତୁ ଏଥିରେ କାହାର କି ଅପରାଧ ହେଲା ତାହା ଆମ୍ଭମାନଙ୍କ କ୍ଷୁଦ୍ରବୁଦ୍ଧିକୁ ଦିଶୁ ନାହି । ରାଧାନାଥ ବାବୁ କିମ୍ବା ତାହାଙ୍କ ଭାଇମାନେ ପାଠ୍ୟପୁସ୍ତକ ଲେଖିବେ ନାହି ଏବଂ ସେମାନଙ୍କ ପୁସ୍ତକ ଭଲ ହେଲେ ସୁଦ୍ଧା ବିଦ୍ୟାଳୟମାନଙ୍କରେ ପ୍ରବର୍ତ୍ତିତ ହେବ ନାହି ଏହା କେଉଁ ଦେଶର କେଉଁ ଶାସ୍ତ୍ରର କଥା ? ଆମ୍ଭେମାନେ ସାହସ ପୂର୍ବକ କହି ପାରୁଁ ଯେ ବିଜ୍ଞସହଯୋଗିମାନେ (ଦୀପିକା ଓ ବାହିକା) ନିଜର ମର୍ଯ୍ୟାଦା ଏବଂ ଭଦ୍ରୋଚିତ ସୌଜନ୍ୟ ଏକାବେଳକେ ବିସ୍ମୃତ ହୋଇ ରାଧାନାଥ ବାବୁଙ୍କର ଅକାରଣ ନିନ୍ଦାବାଦ କରି ଅନେକ ଶିକ୍ଷିତ ଲୋକଙ୍କର ଶ୍ରଦ୍ଧା ହରାଇଅଛନ୍ତି ।"

ସହଯୋଗିଙ୍କର ପ୍ରଥମେ କ୍ଷୁଦ୍ରବୁଦ୍ଧିର କଥା ଶୁଣି ଆମ୍ଭେମାନେ ଆଶ୍ୱସ୍ତ ହୋଇଥିଲୁଁ ମାତ୍ର ତହିଁ ପଛେ ପଛେ ଶାସ୍ତ୍ରବ୍ୟବସ୍ଥା ତଲବ ଓ ତାହା ଶୁଣିବାର ଅବକାଶ ନ ଦେଇ ଅସୀମ ସାହସ ପୂର୍ବକ କଥା କହିବାର ଦେଖି

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ବାସ୍ତବରେ ଆମ୍ଭେମାନେ ହତାଶ ହୋଇଅଛୁଁ । ଜନ୍ମ ହେବା ମାତ୍ରକେ ଯାହାଙ୍କର ଏତେ ସାହସ ତାହାଙ୍କ ସଙ୍ଗେ ଯୁକ୍ତି କରିବାତ ସହଜ ବ୍ୟାପାର ନୁହଇ । ସେ ଏଥି ମଧରେ ବୁଝି ଅଛନ୍ତି ଯେ ଆମ୍ଭେମାନେ ଅନେକ ଶିକ୍ଷିତ ଲୋକଙ୍କର ଶ୍ରଦ୍ଧା ହରାଇଅଛୁଁ ଅବଶ୍ୟ ଏହା ବୁଝିବା ତାହାଙ୍କ ପକ୍ଷରେ ଅସମ୍ଭବ ନୁହଇ, କାରଣ ଶିକ୍ଷିତଲୋକମାନେ ସମସ୍ତେ ତାହାଙ୍କର କରତଳସ୍ଥ ବୋଇଲେ ଅତ୍ୟୁକ୍ତି ହେବ ନାହି । ପ୍ରକୃତରେ ଶିକ୍ଷିତ ଲୋକଙ୍କ ସଙ୍ଗେ ଆମ୍ଭମାନଙ୍କର ଯୁକ୍ତି କରିବା ଅନାଧିକାର ଚର୍ଚ୍ଚା ବୋଲା ଯାଇପାରେ ଯେହେତୁ ଭୂଗୋଳ ପଢ଼ି ନାହୁଁ ଯେ ଦେଶର କଥା କହିବୁ ଓ ଅଙ୍କଶାସ୍ତ୍ରରେ ବ୍ୟୁତ୍ପତ୍ତି ନାହି ଯେ କ୍ଷେତ୍ରତତ୍ତ୍ୱର ନିୟମାନୁସାରେ ପ୍ରମାଣ କରି ଦେବୁଁ । ଆମ୍ଭେମାନେ ସାଧାରଣ ମନୁଷ୍ୟ, ମାନବପ୍ରକୃତିର ଭୂୟୋଦର୍ଶନଦ୍ୱାରା ବିଜ୍ଞଲୋକମାନେ ଯେଉଁ ରାଜନୀତି ସ୍ଥିର କରି ଯାଇଅଛନ୍ତି ଏବଂ ଯାହାଦ୍ୱାରା ସଂସାରୀ ଲୋକମାନେ ଚାଳିତ ହେଉଅଛନ୍ତି ଯେବେ ତାହା ଶାସ୍ତ୍ର ମଧରେ ପରିଗଣିତ ହେବ ତେବେ ଆମ୍ଭମାନଙ୍କର ଅପରାଧ ଅବା ସମ୍ପୂର୍ଣ୍ଣ ବା କିୟତ୍‌ପରିମାଣରେ ମାର୍ଜିତ ହେବ ନତୁବା ଆମ୍ଭମାନଙ୍କର ଆଉ ଉତ୍ତର ନାହି । ଇଂରାଜଙ୍କ ରାଜନୀତିକି ବିଜ୍ଞଲୋକମାନେ ପ୍ରଶଂସା କରନ୍ତି ଏବଂ ଆମ୍ଭେମାନେ ସାମାନ୍ୟ ବୁଦ୍ଧିଦ୍ୱାରା ତହିଁର କାର୍ଯ୍ୟକାରିତା ଉପଲବ୍ଧି କରୁଅଛୁଁ । ସେହି ରାଜନୀତିରେ ଲେଖାଅଛି କି ହାକିମ ବା ଉଚ୍ଚପଦସ୍ଥ ରାଜକର୍ମଚାରିମାନେ ଆପଣା ନିକଟସ୍ଥ ଭାଇ ବନ୍ଧୁଙ୍କୁ ଆପଣା ଅଧୀନସ୍ଥ କୌଣସି କର୍ମରେ ନିଯୁକ୍ତ କରିବେ ନାହି ବାଣିଜ୍ୟ ବ୍ୟବସାୟ କରି ପାରିବେ ନାହି କି ଯେଉଁ ଇଲାକାରେ ତାହାଙ୍କର ଜମିଦାରୀ ଥିବ ସେଠାରେ କାର୍ଯ୍ୟ କରିପାରିବେ ନାହି କି ଆପଣା ଅଧୀନସ୍ଥ ବା ଇଲାକାର ଲୋକ ଠାରୁ ଋଣ କରି ପାରିବେ ନାହି । ଏଣେ ଉଚ୍ଚ ପଦସ୍ଥ କର୍ମଚାରୀ ନିୟୋଗ ସମୟରେ ଗବର୍ଣ୍ଣମେଣ୍ଟ ଯଥାସାଧ ଚରିତ୍ର ଓ ଯୋଗ୍ୟତାପ୍ରତି ଦୃଷ୍ଟି ରଖିବା ଏବଂ ଲୋଭରୁ ଅନ୍ତର ରହିବା କାରଣ ଉପଯୁକ୍ତ ବେତନ ଦେବାର ନିୟମ କରିଅଛନ୍ତି । ସଚ୍ଚରିତ୍ର ଓ ଯୋଗ୍ୟ ଲୋକମାନେ ଯେ ନିକୃଷ୍ଟକାର୍ଯ୍ୟରେ ପ୍ରବୃତ୍ତ ହେବେ ଏଥିର ସମ୍ଭାବନା ଅବଶ୍ୟ ଅତ୍ୟଳ୍ପ ବୋଲିବାକୁ ହେବ । ତଥାଚ ମନୁଷ୍ୟ ସ୍ୱଭାବତଃ ଦୁର୍ବଳ କାଳେ ଅବସ୍ଥା ବିଶେଷରେ କୌଣସି କର୍ମଚାରୀ ବିଶୁଦ୍ଧ ନୀତିରୁ ବିଚଳିତ ହୋଇଯିବ ଏଥିପାଇଁ ଉପରଲିଖିତ ଓ ତଦ୍ରୂପ ଅନ୍ୟାନ୍ୟ ଆଟକମାନଙ୍କର ବିଧାନ ହୋଇଅଛି । ଏ ସମସ୍ତ ଆଟକଦ୍ୱାରା ଏକପକ୍ଷରେ ଯେମନ୍ତ କର୍ମଚାରିଙ୍କର ଅଜ୍ଞାତଭାବରେ ସୁଦ୍ଧା ପକ୍ଷପାତିତାର ତେମନ୍ତ ପକ୍ଷାନ୍ତରେ ଛିଦ୍ରାନୁସନ୍ଧାନକାରିଙ୍କର କଳଙ୍କ ରଟନାର ଅବକାଶର ମୂଳକାଟ ହୋଇଅଛି । ରାଧାନାଥ ବାବୁ ଅବା ତାହାଙ୍କର ଭାଇମାନେ ପୁସ୍ତକ ଲେଖିଲେ ଦୋଷ ହେଲା ଏକଥା ଆମ୍ଭେମାନେ କେବେ କହନ୍ତୁ ନାହି ଯଦ୍ୟପି ପାଠ୍ୟପୁସ୍ତକ ନିର୍ବାଚନ କରିବାର ଅଧିକାର ରାଧାନାଥ ବାବୁଙ୍କର ନ ଥାନ୍ତା ଯାହାର ଯୋଗ୍ୟତା ଅଛି ସେ ଅବଶ୍ୟ ପୁସ୍ତକ ଲେଖିବ ଏବଂ ତହିଁରେ ସଂସାରର ଲାଭ ବିନା ଅଲାଭ ନାହି । କିନ୍ତୁ ଯେ ପୁସ୍ତକ ଲେଖିବ ଯେବେ ବିଦ୍ୟାଳୟରେ ଚଳାଇବାର ଅଧିକାର ତାହାରି ରହିବ ଏବଂ ତାହା ଚଳାଇବା ପକ୍ଷେ ତାହାର ଅଧିକ ସୁବିଧା ହେବ ତେବେ ଅବଶ୍ୟ କେତେବେଳେ ହେଲେ ତହିଁରୁ ମନ୍ଦଫଳ ଜାତ ହେବାର ସମ୍ଭାବନା । ଆପଣାର ବିଚାରକ ଆପେ ହେଲେ ସର୍ବଦା ସୁବିଚାରର ଆଶା କରା ଯାଇ ନ ପାରେ ଏବଂ ସାଧାରଣ ସ୍ୱାର୍ଥ ଦୃଷ୍ଟିରେ ତାହା କରିବାକୁ ଦେବା ଉଚିତ ନୁହଇ । ବିଦ୍ୟାଳୟର ପାଠ୍ୟପୁସ୍ତକ ନିର୍ବାଚନ ନିମିତ୍ତ ଯେବେ ଗୋଟିଏ ସ୍ୱାଧୀନ କମେଟୀ ବସି ଥାନ୍ତା ଏବଂ ସେହି କମେଟୀ ରାଧାନାଥ ବାବୁଙ୍କ ପୁସ୍ତକ ଅନ୍ୟାନ୍ୟ ଲୋକଙ୍କ ପୁସ୍ତକପରି ବିଚାର ପୂର୍ବକ ଗ୍ରହଣ କରନ୍ତେ ତେବେ ଆମ୍ଭମାନଙ୍କର ଆପତ୍ତି କରିବାର ବିଶେଷ ହେତୁ ହୁଅନ୍ତା ନାହି । ବିଶେଷ ବୋଲିବାର କାରଣ ଏହି କି ରାଧାନାଥ ବାବୁ ଓଡ଼ିଶା ଶିକ୍ଷାବିଭାଗର ସର୍ବୋଚ୍ଚ କର୍ମଚାରୀ ହେଉଥିବା ପ୍ରତ୍ୟକ୍ଷେ ଗବର୍ଣ୍ଣମେଣ୍ଟଙ୍କ ବିଶେଷ ଅନୁମତି ଭିନ୍ନ ଆପଣା ଅଧୀନସ୍ଥ ବିଦ୍ୟାଳୟମାନଙ୍କ ନିମିତ୍ତ ପୁସ୍ତକ ଲେଖିବା ତାହାଙ୍କ ପକ୍ଷରେ ଉଚିତ ଅଟଇ କି ନା ଏହା ବିବେଚନାର ବିଷୟ ଅଟଇ କାରଣ ଏମନ୍ତ ଘଟିବା ଅସମ୍ଭବ ନୁହଇ ଯେ ତାହାଙ୍କୁ ତୁଷ୍ଟ କରିବା କାରଣ ତାହାଙ୍କ ଅଧୀନସ୍ଥ କର୍ମଚାରିମାନେ ତାହାଙ୍କ ରଚିତ ପୁସ୍ତକକୁ ଅଧିକ ପ୍ରଶ୍ରୟ ଦେବେ । କିନ୍ତୁ ଯେତେବେଳେ ଦେଖାଯାଉଅଛି କି ପୁସ୍ତକରଚନା ପୁସ୍ତକନିର୍ବାଚନ ଓ କିୟତ୍‌ପରିମାଣରେ ପୁସ୍ତକବିକ୍ରୟ ସୁଦ୍ଧା ଶିକ୍ଷାବିଭାଗୀୟ କର୍ମଚାରିଙ୍କ ହସ୍ତରେ ରହିଅଛି ସେ ସ୍ଥଳେ କେଉଁ ନ୍ୟାୟରେ ବୋଲା ଯିବ ଯେ ଏକାଧାରରେ ଏତେକଥା ରହିବା ଦୂଷଣୀୟ ନୁହଇ । ଶିକ୍ଷାବନ୍ଧୁ "ଶତ ଶତ ଲୋକଙ୍କ ଅନୁକୂଳ ମତ" ଉଲ୍ଲେଖ କରି

ରାଧାନାଥ ବାବୁଙ୍କ କାର୍ଯ୍ୟର ପୋଷକତା କରିଅଛନ୍ତି ମାତ୍ର ସେହି ଶତ ଶତ ଲୋକ ଯେ ପ୍ରାୟ ସମସ୍ତେ ରାଧାନାଥ ବାବୁଙ୍କ ଅଧୀନ ତାହା ସେ ଭାବି ନାହାନ୍ତି । ଯାହା ହେଉ ଯେବେ ସେ ପୂର୍ବରୁ ଜାଣି ନ ଥିଲେ ତେବେ ପାଠ୍ୟପୁସ୍ତକ କମିଟୀର ଗତ ଅଧିବେଶନର କାର୍ଯ୍ୟାବଳିରୁ ଜାଣିଥିବେ ଯେ ଅନ୍ତତଃ ଏକଖଣ୍ଡ ପୁସ୍ତକ ବିଷୟରେ ପୂର୍ବ ଓ ବର୍ତ୍ତମାନ ଇଂଏଣ୍ଟଇନ୍‌ସ୍ପେକ୍‌ଟରଙ୍କ ମଧ୍ୟରେ ମତଭେଦ ହୋଇଅଛି ଏବଂ ପୂର୍ବ ଇଂଏଣ୍ଟ ଇନ୍‌ସ୍ପେକ୍ଟର କେବଳ ମାନ୍ଧାତା ଅମଳର ବୋଲି ଯେବେ ଅଶ୍ରଦ୍ଧାର ପାତ୍ର ନ ହେବେ ତେବେ ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ ରାଧାନାଥବାବୁଙ୍କ ବିଚାରଟା ସର୍ବବାଦିସମ୍ମତ ନୁହଇ କି ତହିଁ ବିରୁଦ୍ଧରେ କଥା କହିବା ଅଭଦ୍ରତା ବୋଲା ଯାଇ ନ ପାରେ । ଶିକ୍ଷାବନ୍ଧୁ ସଂସାରକୁ ଆପଣା ତୁଲ୍ୟ ଦେଖି ମହାଭ୍ରମରେ ପଡିଅଛନ୍ତି । ଆମ୍ଭେମାନେ ତାହାଙ୍କୁ ଅନୁରୋଧ କରୁଅଛୁଁ ଯେ ଅକାରଣ ପୁରୁଣା କଥାର ଚର୍ଚ୍ଚା ନ କରି ଯେପରିରେ ଗୋଟିଏ ସ୍ୱାଧୀନଭାବର ପୁସ୍ତକ ନିର୍ବାଚନକମିଟୀ ଗଠିତ ହେବ ଓ ଉକ୍ତ କମିଟୀର ମତ ବିନା କୌଣସି ପୁସ୍ତକ କୌଣସି ପ୍ରକାରେ କୌଣସି ବିଦ୍ୟାଳୟରେ ବ୍ୟବହାର ହେବ ନାହି ସେପରି ପରାମର୍ଶ ଇଂଏଣ୍ଟ ଇନ୍‌ସ୍ପେକ୍‌ଟରଙ୍କୁ ପ୍ରଦାନ କରନ୍ତୁ । ଏପରି ହେଲେ କାହାରି କିଛି ଗୁହାରି ରହିବ ନାହି ଯୋଗ୍ୟ ଲେଖକମାନେ ପୁସ୍ତକ ଲେଖିବାକୁ ଉତ୍ସାହିତ ହେବେ ଏବଂ ଶିକ୍ଷା ବିଭାଗର ବାଞ୍ଛିତଫଳ ଲାଭ ହେବ ।

*ଭା୨୦ଗ,ସଂ୭ଖ୍ୟା, ୧୪।୨।୧୮୮୫*

## [ପାଠ୍ୟପୁସ୍ତକ ନିର୍ବାଚନ କମିଟି]

ପାଠ୍ୟପୁସ୍ତକ ନିର୍ବାଚନ କମିଟିର ପ୍ରଥମ ଅଧିବେଶନ ସମ୍ପର୍କରେ ଆମ୍ଭେମାନେ ଯାହା ଲେଖିଥିଲୁଁ ତହିଁକି ଲକ୍ଷ୍ୟ କରି ସଂସ୍କାରକ ଓ ସେବକ ଲେଖି ଅଛନ୍ତି କି ଉକ୍ତ ଅଧିବେଶନର ସମସ୍ତ ସଂବାଦ ସେ ବିଶ୍ୱସ୍ତସୂତ୍ରରୁ ଅବଗତ ହୋଇ ଅଛନ୍ତି ମାତ୍ର ଆମ୍ଭେମାନେ ରିପୋର୍ଟର ନ ପଠାଇ ଘରେ ବସି ଏପରି ସମ୍ବାଦ ଲେଖିବା ଅନ୍ୟାୟ ହୋଇ ଅଛି । ଆମ୍ଭମାନଙ୍କ ପକ୍ଷରେ ସେହିପରି ବିଶ୍ୱସ୍ତସୂତ୍ରରୁ କୌଣସି କଥା ଅବଗତ ହେବା ନିଷେଧ ଅଛି କି ? ଆଉ ପ୍ରକୃତ କଥା ଲୁଚାଇ ରଖି ଅନ୍ୟ ଲୋକର କଥାକୁ ଅପ୍ରକୃତ କହି ଦେଇ ନିଶ୍ଚିନ୍ତ ହେବା କି ଉଚିତ କାର୍ଯ୍ୟ ହେଲା ? ଲେଖକଙ୍କ ଭାବରୁ ଜଣାଯାଉ ଅଛି ଯେ ଏ କମିଟିର କାର୍ଯ୍ୟ ବିବରଣ ଗୋପନ ରହି ପାରିଲେ ତାହାଙ୍କର ମାନସ ପୂର୍ଣ୍ଣ ହୁଅନ୍ତା ମାତ୍ର ଦୈବବିଡ଼ମ୍ବନାକୁ ଆୟତ୍ତ କାହାର ଅଛି ?

*ଭା୨୦ଗ,ସଂ୮ଖ୍ୟା, ୨୧।୨।୧୮୮୫*

## ପୁଣି ଗୋଟିଏ ଛାପାଖାନା ।

ଏ ନଗରବାସୀ କେତେଜଣ ଶିକ୍ଷିତ ଲୋକଙ୍କ ଯତ୍ନରେ ଆଉ ଗୋଟିଏ ଛାପାଖାନା ବସିବାର ଉଦ୍ୟମ ଲାଗିଅଛି । ଏ ଛାପାଖାନାଟି କମ୍ପାନୀ ଅର୍ଥାତ୍ ଯୌତ ବ୍ୟବସାୟ ପ୍ରଣାଳୀରେ ସ୍ଥାପିତ ହେବ । କମ୍ପାନୀର ମୂଳଧନ "ପ୍ରଥମେ ଟ୪୦୦୦ଙ୍କା ସ୍ଥିର ହୋଇ ପ୍ରତ୍ୟେକ ଅଂଶର ମୂଲ୍ୟ ଟ୪୦ଙ୍କା ଲେଖାଏ ଏକଶତ ଅଂଶରେ ପୂର୍ଣ୍ଣ କରିବାର ଚେଷ୍ଟା ହେଉଥିଲା ମାତ୍ର ପ୍ରାର୍ଥୀଙ୍କ ସଂଖ୍ୟା ଅଧିକ ହେବାରୁ ୨୫ ଅଂଶର ପ୍ରାର୍ଥନା ଗ୍ରହଣ ପୂର୍ବକ ମୂଳଧନକୁ ଟ୫୦୦୦ଙ୍କା ପର୍ଯ୍ୟନ୍ତ ବଢ଼ାଇ ଦିୟା ଯାଇଅଛି । ଅଂଶ ନେବାର ଏପରି ଆଗ୍ରହ ଅବଶ୍ୟ ସୁଖକର ଏବଂ ଉତ୍ସାହଜନକ ଅଟଇ ଏବଂ ଏହାକୁ ଅନେକ ପରିମାଣରେ କଟକ ପ୍ରିଣ୍ଟିଂକମ୍ପାନୀଙ୍କର କୃତକାର୍ଯ୍ୟତାର ଫଳ ବୋଲିବାକୁ ହେବ । କଟକ ପ୍ରିଣ୍ଟିଂ କମ୍ପାନୀ ସ୍ଥାପନ ହେଲାବେଳେ ଯେଉଁମାନେ ଅଂଶ ନେଇଥିଲେ ସେମାନଙ୍କ ମଧ୍ୟରୁ କେହି କେହି ଗୋଟାଏ ଉତ୍ତମ କାର୍ଯ୍ୟରେ ଦାନ କରିବାର ଓ କେହି କେହି ଅବା ଟଙ୍କା ପାଣିକି ପକାଇ ଦେବାର ମନେ କରିଥିଲେ ଲାଭର ଆଶା ଅତ୍ୟଳ୍ପ ଲୋକଙ୍କ ମନରେ ଦୃଢ଼ରୂପେ ସ୍ଥାନ ପାଇଥିଲା । କୋଡିଏ ବର୍ଷରେ ଏହି ବ୍ୟବସାୟ ଏମନ୍ତ ସୁନ୍ଦରରୂପେ ନିର୍ବାହିତ ହେଲା ଯେ ଅଂଶିମାନେ ଶତକରା ପ୍ରାୟ ଦେଢ଼ଶତ ଟଙ୍କା ନଗଦ ପାଇଲେ ଅଥଚ ଯେତେ ଟଙ୍କା ଦେଇଥିଲେ ଦ୍ୱିଗୁଣ ମୂଲ୍ୟର ଦ୍ରବ୍ୟ ତାହାଙ୍କ କାରଖାନାରେ ଜମା ରହିଅଛି ।

ଏପରି ଅବସ୍ଥାରେ ଯେ ଏତେକାଳ ଏହି ପ୍ରିଣ୍ଟିଂ କମ୍ପାନୀ ଅନ୍ୟ କୌଣସି କମ୍ପାନୀର ପ୍ରବର୍ତ୍ତକ ହୋଇ ନାହି ଏହାହିଁ ବିଚିତ୍ର ଏବଂ ଏଠା ଲୋକଙ୍କର ବ୍ୟବସାୟ ପ୍ରତି ନିତାନ୍ତ ଅନାସ୍ଥାର ପରିଚୟ ଦେଉଅଛି । ଏହି ହେତୁ ଏତେଦିନେ ଗୋଟିଏ କମ୍ପାନୀ ବସିବାର ସୂତ୍ରପାତ ଦେଖିବା ବଡ଼ ଆନନ୍ଦର ବିଷୟ ଅଟଇ । ଶିକ୍ଷିତ ଲୋକଙ୍କର ଏ ଦିଗକୁ ମନ ଢଳିବା ବଡ଼ ଶୁଭଲକ୍ଷଣ ଅଟଇ । ବାସ୍ତବରେ ଯେପର୍ଯ୍ୟନ୍ତ ଶିକ୍ଷିତ ଲୋକମାନେ ବ୍ୟବସାୟ ପ୍ରତି ମନ ନ ବଳାଇବେ ସେ ପର୍ଯ୍ୟନ୍ତ ଉନ୍ନତିର କାମନା କରିବା ବୃଥା । ଧନାଗମର ପ୍ରଧାନ ଉପାୟ ବାଣିଜ୍ୟ । ଏହା ଆମ୍ଭମାନଙ୍କର ପ୍ରାଚୀନ ଋଷିବାକ୍ୟ ଏବଂ ଏଥିର ସତ୍ୟତା ପ୍ରତିଦିନ ପ୍ରତ୍ୟକ୍ଷ ହେଉ ଅଛି । ଏଠା ଶିକ୍ଷିତ ଯୁବାମାନେ କେବଳ ଚାକରିରୂପ ଧନ ଉପାର୍ଜ୍ଜନର ଅଧସ୍ଥ ଉପାୟକୁ ଅବଲମ୍ବନ କରି ରହିବାକୁ ଆଦୌ ସେମାନଙ୍କର ଉନ୍ନତି ହେଉ ନାହି । ବାସ୍ତବରେ ଚାକରିଦ୍ୱାରା ଉନ୍ନତିର ଆଶା ନାହି । ଚାକରିଆ ମାନେ ଦିନ ମଧରେ ୫।୬ ।୭ଣ୍ଟା ପାଇଟି କରି ଆସିଲେ ଅବଶିଷ୍ଟ ସମୟ ଆଳସ୍ୟ ବା ଅପକାର୍ଯ୍ୟରେ ବ୍ୟୟ କରିବାଦ୍ୱାରା କ୍ରମଶଃ ଅକର୍ମଣ୍ୟ ହୋଇ ପଡ଼ନ୍ତି । ସେହି ସମୟକୁ ଭଲ କାର୍ଯ୍ୟ ରେ ନିଯୁକ୍ତ କରିବାର ପ୍ରବର୍ତ୍ତକ କିଛି ନ ଥାଏ କିନ୍ତୁ ବ୍ୟବସାୟୀ ଲୋକର ଅବସ୍ଥା ସେପରି ନୁହଇ । ସେ ସର୍ବଦା କାର୍ଯ୍ୟ ଖୋଜି ବୂଲଇ ଏବଂ କେମନ୍ତେ ଚାରିପଇସା ଲାଭ ହେବ ତହିଁର ଚିନ୍ତା କରଇ ସୁତରାଂ ତାହାର ସମୟ ଆଳସ୍ୟ ବା ଅପକାର୍ଯ୍ୟରେ ନଷ୍ଟ ହୁଅଇ ନାହି ଓ କ୍ରମଶଃ ତାହାର ଅବସ୍ଥାର ଉନ୍ନତି ହେଉଥାଏ । ଏହିପରି ଦେଖାଯାଉଅଛି ଶିକ୍ଷିତ ଲୋକମାନଙ୍କର ବାଣିଜ୍ୟ ପ୍ରତି ଯେତେ ମନୋଯୋଗ ବୃଦ୍ଧି ହେବ ତେତେ ମଙ୍ଗଳର ସମ୍ଭାବନା । ପୁଣି ଯେଉଁମାନେ କହନ୍ତି କି ବାଣିଜ୍ୟ କରିବାକୁ ସେମାନଙ୍କର ମନ ଅଛି ମାତ୍ର ମୂଳଧନ ସଂଗ୍ରହ କରିବା କଠିନ ବୋଲି ଅଥବା ହାତରେ ଟଙ୍କା ନ ଥିବାରୁ ତାହା କରି ପାରନ୍ତି ନାହି ସେମାନେ ମଧ ବର୍ତ୍ତମାନ ଉଦାହରଣରୁ ସଦୁପଦେଶ ଲାଭ କରି ପାରନ୍ତି । କାରଣ ଏଠାରେ ଦେଖାଯାଉ ଅଛି କି ବାଣିଜ୍ୟ କରିବାର ଚେଷ୍ଟା ହେଲେ ମୂଳଧନର ଅଭାବ ହୁଅଇ ନାହି । କେତେଜଣ ଶିକ୍ଷିତ ଲୋକ ଗୋଟିଏ ବାଣିଜ୍ୟ କରିବେ ବୋଲି ଯେବେ ପ୍ରୟୋଜନର ଅଧିକ ମୂଳଧନ ଅକ୍ଲେଶରେ ହସ୍ତଗତ ହେଲା ତେବେ ମୂଳଧନ ଆପତ୍ତି କି ରୂପେ ପ୍ରବଳ ହେବ ? ଯେବେ ବାଣିଜ୍ୟ କରିବାର କଳ୍ପନା ଦୃଢ଼ ଏବଂ ସ୍ଥାୟୀ ହେବ ତେବେ ମୂଳଧନ ସଞ୍ଚୟ ଓ ସଂଗ୍ରହ କରିବାର ପ୍ରବୃତ୍ତି ଜନ୍ମିବ ଏବଂ ଯେ ସ୍ଥଳେ ଏକ ଜଣଦ୍ୱାରା ହୋଇ ନ ପାରିବ ସେ ସ୍ଥଳେ ଦଶ ଜଣ ମିଶିଲେ ଅବଶ୍ୟ ସିଦ୍ଧ ହେବ । ପ୍ରଥମରେ କୌଣସି ବାଣିଜ୍ୟ ଅଳ୍ପରେ ଆରମ୍ଭ କରି ତହିଁର ସଫଳତା ଦେଖାଇଲେ ପଛକୁ ମୂଳଧନର ପ୍ରତିବନ୍ଧକ ଆଦୌ ଅନୁଭବ ହେବ ନାହି । ଲୋକେ ଲାଭ ଦେଖିଲେ ଇଚ୍ଛାପୂର୍ବକ ତହିଁରେ ଯୋଗ ଦେବେ । ଫଳତଃ ଏଠାରେ ବାଣିଜ୍ୟ କରିବା ପ୍ରତି ଲୋକଙ୍କର ଇଚ୍ଛା ହୋଇଅଛି ଏବଂ ତହିଁପାଇଁ ଅର୍ଥ ନିଯୁକ୍ତ କରିବାକୁ ଅଗ୍ରସର ହେଉଅଛନ୍ତି ଏ ସମସ୍ତ ବଡ଼ ଆନନ୍ଦର ବିଷୟ ଅଟଇ । କିନ୍ତୁ ବାଣିଜ୍ୟ କରିବା ସକାଶେ ଯେମନ୍ତ ଇଚ୍ଛା ଓ ମୂଳଧନର ପ୍ରୟୋଜନ ବାଣିଜ୍ୟର ବିଷୟ ସ୍ଥିର କରିବା ତେମନ୍ତ ପ୍ରୟୋଜନ ଅଟଇ । ଏକ ବାଣିଜ୍ୟର କୃତକାର୍ଯ୍ୟତା ଯେପରିମାଣରେ ଅନ୍ୟ ବାଣିଜ୍ୟର ପ୍ରବର୍ତ୍ତକ ଅକୃତକାର୍ଯ୍ୟତା ସେହି ପରିମାଣରେ ସାଧାରଣ ଉତ୍ସାହଭଙ୍ଗର ହେତୁ ହୋଇ ପାରେ ଅତଏବ ଭାରୀ ସାବଧାନ ପୂର୍ବକ ବାଣିଜ୍ୟର ବିଷୟ ସ୍ଥିର କରିବା ଉଚିତ । ଏଠାରେ ବାଣିଜ୍ୟ କରିବାର ଏତେ ବାଟ ରହିଅଛି ଯେ ତହିଁର ସୀମା ନାହି । ଏସ୍ଥଳେ ଶିକ୍ଷିତ ଲୋକମାନେ କୋଣସି ନୂତନ ବାଣିଜ୍ୟର କଳ୍ପନା ନ କରି ଯେ କେବଳ ମୁଦ୍ରାଯନ୍ତ୍ର ବ୍ୟବସାୟ ଦିଗକୁ ଢଳି ଅଛନ୍ତି ଏହା ଆମ୍ଭମାନଙ୍କୁ ଆଶ୍ଚର୍ଯ୍ୟ ବୋଧ ହେଉଅଛି । ପୂର୍ବେ ଓଡ଼ିଶାରେ କେବଳ ପାଦ୍ରି ସାହେବଙ୍କ ଛାପାଖାନା ଥିଲା ତହିଁଉତ୍ତାରୁ କଟକରେ ଆଉ ଦିଯୋଟି ବାଲେଶ୍ୱରରେ ଦିଯୋଟି ଏବଂ ପୁରୀରେ ଦିଯୋଟି ଏପରି ଗୋ୬ଟି ଛାପାଖାନା ଏହି ବ୨୦ର୍ଷରେ ସ୍ଥାପିତ ହେଲା । ପୁରୀର ଛାପାଖାନାମାନ କ୍ଷତିଗ୍ରସ୍ତ ହୋଇ ରହିଅଛି ଏବଂ ଅନ୍ୟ ଛାପାଖାନାମାନ ଚାଲୁଥିଲେହେଁ କାହାରି ଏପରି ଉନ୍ନତି ହୋଇ ନାହି ଯେ ପୂର୍ବରୁ ସ୍ଥାପିତ ପାଦ୍ରି ସାହେବଙ୍କ ଛାପାଖାନାକୁ ବଳି ଯିବାର ତେଣିକି ଥାଉ ସମକକ୍ଷ ସୁଦ୍ଧା ହେବାର ବୋଲାଯିବ । କାର୍ଯ୍ୟର ଗୁଣ ବିବେଚନାରେ ପାଦ୍ରି ସାହେବଙ୍କ ଛାପାଖାନା ପ୍ରଥମ ଏବଂ ତହିଁପଛେ ସ୍ଥାପିତ ହୋଇ ଥିବା ପ୍ରିଣ୍ଟିଂ କମ୍ପାନୀଙ୍କ ଛାପାଖାନାକୁ ଦ୍ୱିତୀୟ ବୋଲା ଯିବ ଆଉ ସମସ୍ତେ ଅପେକ୍ଷାକୃତ ନିମ୍ନସ୍ଥାନରେ ରହିଅଛନ୍ତି ଏଥିର କାରଣ ଅନୁସନ୍ଧାନ କଲେ ଦେଖାଯିବ ଯେ ପାଦ୍ରି ସାହେବଙ୍କ

ଛାପାଖାନାର ନିଜର ସ୍ଥାୟୀ କାର୍ଯ୍ୟ ଗୋଟିଏ ଅଛି ଏବଂ ଗବର୍ଣ୍ଣମେଣ୍ଟ ଗଜେଟଦ୍ୱାରା ଗୋଟିଏ ସ୍ଥାୟୀ ଆୟ ରହିଅଛି ସୁତରାଂ ଆୟ ନିଶ୍ଚିତ ଥିବାରୁ ଛାପାକାର୍ଯ୍ୟରେ ନିପୁଣତା ଲାଭ କରିଥିବା ବ୍ୟକ୍ତିଙ୍କୁ ଉପଯୁକ୍ତ ବେତନ ଦେଇ ରଖିବାକୁ ସମର୍ଥ ହୋଇଅଛନ୍ତି ତଦ୍ୱାରା କାର୍ଯ୍ୟର ଉତ୍କୃଷ୍ଟତା ସମ୍ପାଦିତ ହେଉଅଛି । ଅନ୍ୟ କୌଣସି ଛାପାଖାନାରେ ସେପରି ଯୋଗ୍ୟ ବ୍ୟକ୍ତି ନାହି କିମ୍ବା ରଖିବାର ବଳ ନାହି କାରଣ ସେ ସମସ୍ତର ଆୟ ସେପରି ନିଶ୍ଚିତ ବା ପ୍ରଚୁର ନୁହଇ । ଆୟ ପ୍ରଚୁର ହେବାର ଅବା ବାଟ କାହିଁ ? ଗବର୍ଣ୍ଣମେଣ୍ଟ ଶିକ୍ଷାଦାନରେ ସହସ୍ର ସହସ୍ର ଟଙ୍କା ବ୍ୟୟ କରୁଅଛନ୍ତି ବୋଲି ବିଦ୍ୟାଳୟର ପାଠ୍ୟପୁସ୍ତକଦ୍ୱାରା ଛାପାଖାନାମାନ ମୁଠାଏ ଦାନା ପାଣି ପାଉ ଅଛନ୍ତି ନୋହିଲେ କୌଣସି ସାଧାରଣ ପାଠ୍ୟପୁସ୍ତକ ଏକଥରରେ ୧୦୦୦ଖଣ୍ଡ ଛାପା ହେଲେ ବିକ୍ରୟ ହେବାକୁ ବା ୫/୭ବର୍ଷ ବାହାରି ଯାଉଅଛି । ଏଥିରେ ଅଧିକଲାଭର ସମ୍ଭାବନା କାହିଁ ? ପ୍ରିଣ୍ଟିଂକମ୍ପାନୀ ପ୍ରଥମରୁ ସ୍ଥାନ ମାଡ଼ି ବସିଥିଲେ ବୋଲି କିୟତ୍ପରିମାଣରେ କାର୍ଯ୍ୟବିସ୍ତାର କରିବା ସଙ୍ଗେ ସଙ୍ଗେ କିଛି ଫଳ ପାଇ ଅଛନ୍ତି ଏବଂ ଯେବେ ଅପର ଛାପାଖାନାମାନେ ଏହାଙ୍କ ସଙ୍ଗେ ଭାଗ ବସାଇ ନ ଥାନ୍ତେ ତେବେ ଏତେବେଳେ ଏ କାରଖାନା ଗୋଟିଏ ପ୍ରକୃତ କାରଖାନା ଶ୍ରୀଧାରଣ କରିଥାନ୍ତା । ଛାପାଖାନାର ସଂଖ୍ୟା ଯେତେ ବୃଦ୍ଧି ହେଉଅଛି ଆୟରେ ତେତେ ବାଣ୍ଟ ବସୁଅଛି ଏବଂ କାହାରି ଅବସ୍ଥା ଭଲ ହେଉ ନାହି । ଏହି ସମସ୍ତ ବିଚାରରେ ଆମ୍ଭେମାନେ ଆଉ ଗୋଟିଏ ଛାପାଖାନା ଫିଟାଇବାର ପ୍ରସ୍ତାବକୁ ତେତେ ଲାଭଜନକ ବୋଧ କରୁ ନାହୁଁ । ଯେଉଁ ବ୍ୟବସାୟର ଅଭାବ ନାହି କେବଳ ଉନ୍ନତିସାପେକ୍ଷ ଅଳ୍ପ ମୂଳଧନରେ ସେ ବିଷୟପ୍ରତି ଆସକ୍ତ ନ ହୋଇ ନୂତନ ଗୋଟିଏ ବ୍ୟବସାୟର ଲକ୍ଷଣାରେ ଶିକ୍ଷିତ ଲୋକମାନଙ୍କୁ ମନୋଯୋଗୀ ଦେଖିଲେ ଆମ୍ଭେମାନେ ସମଧିକ ସନ୍ତୁଷ୍ଟ ହୁଅନ୍ତୁ ଓ ତଦ୍ୱାରା ଅଧିକତର ସାଧାରଣ ଲାଭ ହୁଅନ୍ତା -

*ଭା୨୦ଗ, ସଂ୮ଖ୍ୟା, ୨୧/୨/୧୮୮୫*

## ପ୍ରାପ୍ତପତ୍ର ।

## [ପ୍ରଦୀପ ଓ ଶିକ୍ଷାବନ୍ଧୁ]

ମହାଶୟ !

ଦେଶର ଉନ୍ନତି ପାଁଇ ମାସିକପତ୍ରର ଆବଶ୍ୟକ ଏହିତା ସର୍ବବାଦିସମ୍ମତ, ଯାହା ହେଉ ଏ ନଗରର କେତେକ କୃତବିଦ୍ୟ ଓ ଦେଶ ହିତୈଷୀ ବନ୍ଧୁ ଏହି ଅଭାବ ଦୂରୀକରଣାର୍ଥ ଦୁଇଗୋଟି ନୂତନ ମାସିକପତ୍ର ପ୍ରକାଶିତ କରିଛନ୍ତି । ଅବଶ୍ୟ ଦୁଇଗୋଟିର ଉଦ୍ଦେଶ୍ୟ ବିଭିନ୍ନ ଓ ମହତ୍ ତେଣୁ ଉଭୟ ଆଦରଣୀୟ । ପ୍ରଦୀପ ଓ ଶିକ୍ଷାବନ୍ଧୁ ନାମକ ଦୁଇଗୋଟି କାଗଜ । ପ୍ରଦୀପର ସମାଲୋଚନା ବିଶେଷରୂପେ ହୋଇ ଯାଇଥିବାରୁ ଆଉ କିଛି କହିବା ପାଁଇ ବର୍ତ୍ତମାନ ଆବଶ୍ୟକ ବୋଧ ହେଉ ନାହିଁ । ଶିକ୍ଷାବନ୍ଧ ସମ୍ବନ୍ଧରେ କିଛି କହିବାର ଆବଶ୍ୟକ ମନେ କରେଁ । କାଗଜର କଳେବର ଯଦ୍ୟପି ବୃହତ୍ ନୁହେ, ତଥାପି ଉଦ୍ଦେଶ୍ୟ ଯେପରି ମହତ୍ ସେହିପରି ମହତ୍ ଲୋକର ଲେଖାନୁରୂପ ଲେଖା ନ ଥିଲେ କାଗଜର ସ୍ଥାୟିତ୍ୱରେ କି ଉପକାର ହେବ ବର୍ତ୍ତମାନରେ କିଛି ଦିଶୁ ନାହିଁ ।

ଭୂମିକା ଯେରୂପ ଆରମ୍ଭରେ ଅନେକ ଭବିଷ୍ୟତ୍ ଆଶାର କଥା ଉଲ୍ଲେଖ କରିଅଛି ତହିଁରୁ ବୋଧହୁଏ ଯେ ଏହି କାଗଜଦ୍ୱାରା ଅନେକ ଅଭାବ ଦୂରୀଭୂତ ହେବ ଶିକ୍ଷକ ଓ ଛାତ୍ରମାନଙ୍କର ଅନେକ ଉପକାର ହେବ ଓ ମଧ୍ୟ ସମୟ ସମୟରେ କଥିତ ମିଥ୍ୟାରଟନା (ଅର୍ଥାତ୍ ସଂବାଦପତ୍ର ମାନଙ୍କରେ ଓଡ଼ିୟା ପୁସ୍ତକର ସମାଲୋଚନା) ସମୁଦାୟ ଲୋପ ହେବ ।

ପଦ୍ୟଟି ସହଜଭାଷାରେ ଅତିଚମତ୍କାର ଓ ମଧ୍ୟ ପାଠକମାନଙ୍କ ମନୋରଞ୍ଜକ ହୋଇଅଛି । ସ୍ଥାନବିଶେଷରେ ଲିଖିତ "ଜାଗୁ" ଶବ୍ଦଟି ବଙ୍ଗଳା ଶବ୍ଦ ପରି ବୋଧ ହେଉଅଛି ।

ତୃତୀୟ ଓ ଚତୁର୍ଥ ପ୍ରବନ୍ଧର ଉଦ୍ଦେଶ୍ୟ ସମାନ ବୋଧ ହୁଏ । ଏକ ପ୍ରାଞ୍ଜଳଭାଷାରେ ଅନ୍ୟ ଜଟିଳଭାଷାରେ ରଚିତ ହୋଇଅଛି କହିଲେ ବୋଧହୁଏ କିଛି ଦୋଷ ହେବ ନାହିଁ । ଚତୁର୍ଥ ପ୍ରବନ୍ଧର ଲେଖା ଯଦ୍ୟପି ଉତ୍କୃଷ୍ଟ ଓ ଜ୍ଞାନପୂର୍ଣ୍ଣ କିନ୍ତୁ ଭାବରେ ଅନ୍ତତଃ ମୋ ଭାବରୁ କିଛି ବୈଲକ୍ଷଣ୍ୟ ଘଟିଥିବାର ବୋଧ ହୁଏ ଅତଏବ ସାଧାରଣ

ବିଚାରାର୍ଥେ ଏଥିର ପ୍ରତିବାଦ କଲି । ଶିକ୍ଷକ କହିଛନ୍ତି ଯେ "ପ୍ରକୃତିରୂପ କାର୍ଯ୍ୟାଳୟରୁ କୋମଳ ମନ ଓ କୋମଳ ପ୍ରକୃତିବିଶିଷ୍ଟ ଏକ ଜଡ଼ପିଣ୍ଡ ଆମ୍ଭମାନଙ୍କ ହସ୍ତରେ ଅର୍ପିତ ହୁଏ **xxxx** ସେହି କ୍ଷୁଦ୍ର ପଦାର୍ଥରେ ସର୍ବପ୍ରକାର ବୀଜ ପ୍ରଦତ୍ତ ହୋଇଅଛି **xxxx** ବିଷବୃକ୍ଷ ଓ ଅମୃତବୃକ୍ଷର ବୀଜ" । କିନ୍ତୁ ମୋ ମତରେ ଏହିତା ଈଶ୍ୱରଙ୍କ କାର୍ଯ୍ୟର ବିରୋଧ । ଏହି କୋମଳପିଣ୍ଡରେ ଈଶ୍ୱର ଅମୃତବୃକ୍ଷର ବୀଜ ପ୍ରଦାନ କରିଛନ୍ତି । ଯଦ୍ୟପି ସେହି ବୀଜରୁ ବୃକ୍ଷ ଜାତ ହେବା ପାଇଁ ଆବଶ୍ୟକୀୟ ଦ୍ରବ୍ୟର ଅଭାବ ହୁଏ, ତେବେ, ଯେପରି କୌଣସି ଜମିର କର୍ଷଣ ନ ହେଲେ ତହିଁରେ ଅବୃକ୍ଷମାନ ଉତ୍ପାଦିତ ହୁଏ, ତଦନୁରୂପ ବିଷବୃକ୍ଷର ଜାତ ହେବ, କିନ୍ତୁ ବୀଜ କେଉଁଠାରୁ ଆସିଲା ପାଠକେ ସ୍ଥିର କରନ୍ତୁ ।

ସମ୍ପାଦକୀୟ ମନ୍ତବ୍ୟରୁ ପ୍ରକାଶ ଯେ କାଗଜ ଅପକ୍ଷପାତୀ ହେବାକୁ ପ୍ରସ୍ତୁତ ନାହିଁ । ବିଶେଷ ନ କହି ଏହିତା କହିଲେ ଯଥେଷ୍ଟ ହେବ ଯେ ସମ୍ପାଦକ ମହାଶୟ ସ୍ଥାନବିଶେଷରେ ପୂଜ ରକ୍ତ ପର୍ଯ୍ୟନ୍ତ ଆସି ଭାବଗ୍ରାହୀ ବାବୁଙ୍କ ସଂସ୍କାରକକୁ ଜିଣିଛନ୍ତି, ଏଣୁକରି ଓଡ଼ିୟା ପୁସ୍ତକ ଆଲୋଚନା ସମ୍ବନ୍ଧରେ ଭଲ ମନ୍ଦ କହିବାର ଅସମୟ ମନେ କରି ନିସ୍ତବ୍ଧ ହୋଇ ରହିଲି । ମାଲାବାରୀଙ୍କ ଚତୁର୍ଥ ପ୍ରସ୍ତାବରେ ଅମତ ହେବାର ସମ୍ପାଦକ ଯେଉଁ କାରଣ ଦେଖାଇଛନ୍ତି ତାହା କି କାରଣ କିଛି ବୁଝାଗଲା ନାହିଁ କେବଳ ପିଲାଭଣ୍ଡାଇବା ପରି ହୋଇଅଛି ।

ବାସନ୍ତୀଙ୍କ ପଦ୍ୟ ଗୋଟିକ ଅତି ସୁନ୍ଦର ଓ ଆଶାତୀତ । ଆଶା କରେ ଅନ୍ୟାନ୍ୟ ବାଳିକାମାନେ ଏହିପରି ଲେଖିବାକୁ ଯତ୍ନବତୀ ହେବେ, ଉତ୍କଳୀୟମାନଙ୍କ ଏହା ଗୋଟିଏ ଗର୍ବର କଥା ଯେ ଅତି ଅଳ୍ପବୟସ୍କା ବାଳିକା ଏକ ଉତ୍କୃଷ୍ଟ ପଦ୍ୟ ରଚନା କରିଅଛି ।

ସ୍ଥୂଳରେ କହିଲେ ପ୍ରଥମ ସଂଖ୍ୟାଟି ଆଶାନୁରୂପ ହୋଇଅଛି । କିନ୍ତୁ ସମ୍ପାଦକ ମହାଶୟ ଆରମ୍ଭରୁ ସ୍ଥଳବିଶେଷରେ ନ୍ୟାୟର ପଥକୁ ଅତିକ୍ରମ କରିଥିବାରୁ ତାଙ୍କୁ ମୋର ପ୍ରାର୍ଥନା ଯେ ଏହି କାଗଜଖଣ୍ଡିକ ଯେପରି କୌଣସି ଏକ ସମ୍ପ୍ରଦାୟର ଅନୁସରଣ ନ କରେ ତଦପକ୍ଷେ ବିଶେଷ ଦୃଷ୍ଟି ରଖିବେ ।

ଆ-

ଜଣେ ପାଠକ ।

*ଭା୨୦ଗ, ସଂ୯ଖ୍ୟା, ୨୮।୨।୧୮୮୫*

## [ଶିକ୍ଷାବନ୍ଧୁର ସମାଲୋଚନା]

'ଶିକ୍ଷାବନ୍ଧୁ' ଶିକ୍ଷକ ପରିଦର୍ଶକ ଓ ଛାତ୍ରମାନଙ୍କ ଉପକାର ସକାଶେ ଆବିର୍ଭୂତ ହୋଇ ଥିବାର କାର୍ଯ୍ୟତଃ ଜଏଣ୍ଟଇନ୍‌ସ୍ପେକ୍ଟର ରାଧାନାଥ ବାବୁଙ୍କ ଗୁଣ ଗାଇବା ଏବଂ ତାହାଙ୍କ ବିରୁଦ୍ଧରେ ଯେ କଥା କହିବ ତାହାକୁ ଗାଳିଦେବା ନିମିତ୍ତ ପ୍ରକାଶ ହୋଇ ଥିବାର ପରିଚୟ ଦେଉ ଅଛନ୍ତି ଅନ୍ତତଃ ଗତ ଦୁଇ ସଂଖ୍ୟା ଦେଖି ଏହି ଭାବ ସର୍ବସାଧାରଣଙ୍କ ମନରେ ଦୃଢ଼ୀକୃତ ହେଉ ଅଛି । ଶିକ୍ଷାବନ୍ଧୁଙ୍କୁ ବିବେଚନା କରିବାର ଉଚିତ ଯେ ରାଧାନାଥ ବାବୁଙ୍କର ପ୍ରଶଂସା ତାହାଙ୍କ ମୁଖରେ ଶୋଭା ପାଉନାହି କାରଣ ସେପରି ପ୍ରଶଂସାର ମୂଲ୍ୟ ଅଧିକ ହୋଇ ନ ପାରେ । ରାଧାନାଥ ବାବୁଙ୍କର କିଛି ଗୁଣ ନାହି ସମସ୍ତ ଦୋଷ ଏକଥା ଆମ୍ଭେମାନେ କହି ନାହୁଁ କି କେହି କହି ନ ପାରେ ସୁତରାଂ ସେଥିପାଇଁ ଭୀଷ୍ମଦେବ ଅଥବା କୌଣସି ନିରପେକ୍ଷ ସାର୍ଟିଫିକଟ ଦର୍ଶାଇବା ଅଧିକା ଅଟଇ । ପାଠ୍ୟପୁସ୍ତକ ସମ୍ପର୍କରେ ତାହାଙ୍କର କେତେଗୁଡ଼ିଏ ଅନ୍ୟାୟ ଓ ଅବିଚାରର କଥା ଘେନି ଏକବର୍ଷ ବା ଅଧିକ ହେଲା ତର୍କ ଲାଗିଅଛି ସେ ବିଷୟରେ ସହଯୋଗୀ ଆପଣା ଅଭିପ୍ରାୟ ବ୍ୟକ୍ତ କରି ପାରନ୍ତି କିନ୍ତୁ ପ୍ରକୃତ ପ୍ରସଙ୍ଗକୁ ଛାଡି ଦେଇ ବୃଥା ବାଗ୍‌ବିତଣ୍ଡା କଲେ ମାସିକ ପତ୍ରିକାର ଗୌରବର ବିଷୟ ହେବ ନାହି ଓ ଲୋକେ ସ୍ୱଭାବତଃ ମନେ କରିବେ ଯେ ଶିକ୍ଷାବନ୍ଧୁ ଶିକ୍ଷାବିଭାଗର ଗୁଣ ଗାଇବାକୁ ବ୍ୟସ୍ତ ।

*ଭା୨୦ଗ, ସଂ୯ଖ୍ୟା, ୨୮।୨।୧୮୮୫*

## [ଜାତୀୟ ସାହିତ୍ୟ]

ପ୍ରଦୀପଦ୍ୱିତୀୟ ସଂଖ୍ୟାରେ 'ଜାତୀୟସାହିତ୍ୟ' ଶିର୍ଷକପ୍ରବନ୍ଧ ପାଠକରି ଆମ୍ଭେମାନେ ଟିକିଏ ଧନ୍ଦାରେ ପଡିଅଛୁଁ। ତହିଁର ଏକସ୍ଥାନରେ ଲେଖାଅଛି ପ୍ରାଚୀନ ଉତ୍କଳ ସାହିତ୍ୟ ଆମ୍ଭମାନଙ୍କ ପୂର୍ବପୁରୁଷଙ୍କ ଆଦିରସ ପ୍ରିୟତା ଏବଂ କୁରୁଚିସମ୍ଭୂତ ଆଡ଼ମ୍ବର ପ୍ରିୟତା ସ୍ପଷ୍ଟାକ୍ଷରେ ଜ୍ଞାପନ କରୁଅଛି ସମୟେ ସମୟେ ସେମାନଙ୍କ ଶୋଭାନୁଭାବକତା ଏବଂ ଭକ୍ତିପରାୟଣତା ମଧ୍ୟ ସୁଚାରୁରୂପେ ପ୍ରଦର୍ଶିତ ହୋଇଅଛି। ଅନ୍ୟସ୍ଥାନରେ ଲେଖାଅଛି 'ଆମ୍ଭମାନଙ୍କ ଜାତୀୟ ସାହିତ୍ୟ ନିତାନ୍ତ ଅନୁନ୍ନତ' ଏବଂ ତହିଁପଛେ ପଛେ ବୋଲାଯାଇଅଛି ଆମ୍ଭମାନଙ୍କ ମଧ୍ୟରେ ଜାତୀୟତା ନାହି ଅତଏବ ଜାତୀୟ ସାହିତ୍ୟ ନାହି'। ପରିଶେଷରେ 'ନୂତନଭାବ ପ୍ରବର୍ତ୍ତିତ ଓ ପ୍ରଚରିତ କରିବା' ଜାତୀୟ ସାହିତ୍ୟର ଗୌରବର ଲକ୍ଷଣମଧ୍ୟରେ ନିର୍ଦ୍ଦେଶ କରିଅଛନ୍ତି। ଯେସ୍ଥଳେ ପ୍ରାଚୀନ ସାହିତ୍ୟରେ ଶୋଭାନୁଭାବକତା ଓ ଭକ୍ତି ପରାୟଣତା ପ୍ରଦର୍ଶିତ ହୋଇଅଛି ସେସ୍ଥଳେ ତାହାକୁ ଜାତୀୟ ସାହିତ୍ୟ ବୋଲା ନ ଯିବ କାହିଁକି ଆଉ ଯେବେ ଜାତୀୟ ସାହିତ୍ୟ ଆଦୌ ନାହି ତେବେ ତହିଁର ଅନୁନ୍ନତ ଅବସ୍ଥା କିରୂପେ ସମ୍ଭବ ହୋଇପାରେ। ପ୍ରଥମେ ଜାତୀୟତା ଏବଂ ଜାତୀୟ ସାହିତ୍ୟର ଲକ୍ଷଣ ଚିହ୍ନାଇ ଦେଇଥିଲେ ବୋଧହୁଅଇ ତାହାଙ୍କମତ ବୁଝିବାରେ କଷ୍ଟ ହୁଅନ୍ତା ନାହି। ଆମ୍ଭେମାନେ ଦେଖୁଅଛୁଁ ଯେ ଏକସମୟରେ ଓଡ଼ିଶାରେ ସାହିତ୍ୟର ଚର୍ଚ୍ଚ ବିଲକ୍ଷଣ ଥିଲା ଓ ନାନାବିଷୟରେ ଲୋକେ ଗ୍ରନ୍ଥ ରଚନାକରି ଯାଇଅଛନ୍ତି। ସେ ସମସ୍ତ ଆଦୌ ଜାତୀୟ ସାହିତ୍ୟ ମଧ୍ୟରେ ପରିଗଣିତ ହୋଇ ନପାରେ ଏଥିର ଯୁକ୍ତି ଆମ୍ଭେମାନେ ଘଟାଇପାରୁ ନାହୁ।–

*ଭା୨୦ଗ, ସଂ୯ଖ୍ୟା, ୨୮।୨।୧୮୮୫*

## ପ୍ରେରିତପତ୍ର।

## [ପୁରସ୍କାର ସମାରୋହ]

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସମୀପେଷୁ।

ମହାଶୟ!

ଆପଣଙ୍କ ପ୍ରସିଦ୍ଧ ଉତ୍କଳଦୀପିକାରେ ଏହି ସମ୍ବାଦଟିକୁ ସ୍ଥାନ ପ୍ରଦାନ କରି ବିଶେଷ ଉପକୃତ କରାଇବାହେବ। ଅତ୍ରସ୍ଥ ମଧ୍ୟମଶ୍ରେଣୀ ଉତ୍କଳ ବିଦ୍ୟାଳୟର ଛାତ୍ରମାନଙ୍କୁ ପୁରସ୍କାର ଦେବା ନିମିତ୍ତ ଶ୍ରୀଯୁତ ମହାରାଜା ବାହାଦୁର ଚଳିତମାସ ୧ ତାରିଖରେ ଏ ବିଦ୍ୟାଳୟରେ ଅତି ସମାରୋହ ସହିତ ଗୋଟିଏ ସଭା ଆହ୍ୱାନ କରି ଥିଲେ। ସେହି ସଭାରେ ମେନଜର, ସମସ୍ତ ଅମଲା ଓ ଅନ୍ୟାନ୍ୟ ଭଦ୍ରଲୋକ ପ୍ରାୟ ୫୦ ଜଣ ଉପସ୍ଥିତ ଥିଲେ। ମହାରାଜାଙ୍କର ଅନୁମତ୍ୟନୁଯାୟୀ ସ୍କୁଲର ପ୍ରଧାନ ଶିକ୍ଷକଙ୍କଦ୍ୱାରା ବାର୍ଷିକ ରିପୋର୍ଟ ପଠିତ ହେଲା ପରେ ବାବୁ କୁଞ୍ଜବିହାରୀ ଦେ ମେନଜର ଦଣ୍ଡାୟମାନ ହୋଇ ଅତି ଦୀର୍ଘ ଓ ଉତ୍ସାହପୂର୍ଣ୍ଣ ଗୋଟିଏ ବକ୍ତୃତା ପ୍ରଦାନ କରି ଥିଲେ, ଏବଂ ଛାତ୍ରମାନଙ୍କଶିକ୍ଷାର ବିଶେଷ ଉପକାରିତା ଦେଖାଇ ବିଦ୍ୟାଧ୍ୟୟନ ନିମିତ୍ତ ଉପଦେଶ ଦେଇ ଥିଲେ। ଆଉ ସ୍କୁଲର ଅଭାବମାନ ପୂରଣ କରିବା ପାଇଁ ମହାରାଜାଙ୍କୁ ଅନୁରୋଧ କରିଥିଲେ। ପୁରସ୍କାର ଶେଷରେ ମହାରାଜାଙ୍କର ଉପଦେଶପୂର୍ଣ୍ଣ ବକ୍ତୃତା ସମସ୍ତଙ୍କର ମନକୁ ହରଣ କରିଥିଲା। ପରିଶେଷରେ ଏଠାର ଶିକ୍ଷାବିଭାଗ ସମ୍ବନ୍ଧୀୟ ଅନେକ ଆଲୋଚନା ପର ଉକ୍ତ ବିଭାଗର ସୁବନ୍ଦୋବସ୍ତ କରାଇବା ନିମିତ୍ତ ଗୋଟିଏ ଶିକ୍ଷାକମେଟି ସ୍ଥାପିତ ହେବାର ନିର୍ଦ୍ଧାରିତ ହୋଇ ସଭା ଭଙ୍ଗ ହେଲା। ଇତି।

୩।୪।
କେଉଁଝର

ବଶମ୍ବଦ
ଶ୍ରୀ ଚକ୍ରଧର ରାୟ ମହାପାତ୍ର
କେଉଁଝର ସ୍କୁଲ ହେଡପଣ୍ଡିତ

*ଭା୨୦ଗ,ସଂ୧୭ଖ୍ୟା, ୨୫।୪।୧୮୮୫*

## [ଶିକ୍ଷାବନ୍ଧୁର ସମାଲୋଚନା]

ଶିକ୍ଷାବନ୍ଧୁ ବହୁତ ଦିନ ତଳେ ଆମ୍ଭମାନଙ୍କୁ ପଗ୍ଭରି ଥିଲେ କି ରାଧାନାଥବାବୁ କିମ୍ବା ତାହାଙ୍କ ଭାଇମାନେ ଭଲ ପୁସ୍ତକ ଲେଖିଲେ କାହିଁକି ତାହା ବିଦ୍ୟାଳୟରେ ଗ୍ଭଲିବ ନାହି ତହିଁକି ଆମ୍ଭେମାନେ ଉତ୍ତର କରି ଥିଲୁ କି ସେ ନିଜେ ତହିଁର ବିଗ୍ଭରକ ହେବାରୁ ଗ୍ଭଲିବା ଉଚିତ ନୁହଇ । ସହଯୋଗୀ ଏ ଯୁକ୍ତିକି ଅନୁମୋଦନ କରି ପୁଣି ପଗ୍ଭରି ଅଛନ୍ତି କି 'ରାଧାନାଥବାବୁ ଉକ୍ତ ବ୍ୟବସ୍ଥା ଲଘନ କରିବାର ପ୍ରମାଣ କାହିଁ?' ଆମ୍ଭେମାନେ ଅବଶ୍ୟ ସ୍ୱୀକାର କରିବୁଁ ଯେ ଏଥିକି ଆଉ ଆମ୍ଭମାନଙ୍କର ଉତ୍ତର ନାହି । ଏପରି ଅପୂର୍ବ ଯୁକ୍ତି ଏକା ଶିକ୍ଷାବିଭାଗକୁ ଶୋଭା ପାଏ ଆମ୍ଭେମାନେ ସାମାନ୍ୟ ବୁଦ୍ଧିରେ ଏତିକି ଜାଣୁ ଯେ ଆଗେ ଦୋଷ ଘଟିଲେ ବ୍ୟବସ୍ଥା ଖୋଜା ପଡ଼ଇ ଏବଂ ଅନ୍ତତଃ ରାଧାନାଥବାବୁଙ୍କ ଭାଇ ପୁସ୍ତକ ଲେଖି ଥିବାର ସେ ସ୍ପଷ୍ଟରୂପେ ସ୍ୱୀକାର କରି ଅଛନ୍ତି । ସେ ଆହୁରି କହି ଅଛନ୍ତି କି ଦୀପିକାର ସମ୍ପାଦକ ଜଣେ ପୁସ୍ତକ ବ୍ୟବସାୟୀ ସୁତରାଂ ତାହାଙ୍କ କଥା ମୂଲ୍ୟବାନ୍ ନୁହଇ କିନ୍ତୁ ଶିକ୍ଷାବନ୍ଧୁଙ୍କ କଥା ଅବଶ୍ୟ ମୂଲ୍ୟ ବାନ୍ ହେବ କାରଣ ସେ ଶିକ୍ଷାବିଭାଗର ଦାସ ଓ ତହିଁର ପୋଷକତା କରିବାକୁ ବାଧ୍ୟ । ଧନ୍ୟ ! ଧନ୍ୟ !

*ଭା/୨୦ଗ,ସଂ୧୮ଖ୍ୟା, ୨/୫/୧୮୮୫*

## [ବଙ୍ଗବାସୀ ସମ୍ବାଦପତ୍ର]

ବଙ୍ଗବାସୀ ବଙ୍ଗଳା ସଂବାଦପତ୍ରର ଗୌରବ ସ୍ଥଳ ହୋଇ ଅଛି ଅବଶ୍ୟ ସ୍ୱୀକାର କରିବାକୁ ହେବ । ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇ ପାଠ କଲୁଁ ଯେ ଗତସପ୍ତାହରେ ୨୩୦୦୦ ଖଣ୍ଡ କାଗଜ ଛାପା ହୋଇଥିଲା ତଥାଚ ନିଅଣ୍ଟ ହେଲା । ବଙ୍ଗପ୍ରଦେଶ କିମ୍ବା ଭାରତବର୍ଷର ଅନ୍ୟ କୌଣସି ଦେଶୀୟ ସଂବାଦପତ୍ର ଏତେ ଅଧିକ ପରିମାଣରେ ବିକ୍ରୟ ହେବାର ଶୁଣାଯାଇ ନାହି । ସଂବାଦପତ୍ରର ଶ୍ରୀବୃଦ୍ଧି ବାସ୍ତବରେ ସାଧାରଣ ଜ୍ଞାନବୃଦ୍ଧି ଓ ଜାତୀୟ ଉନ୍ନତିର ପରିଗ୍ଭୟକ ଅଟଇ । ଏଥିରୁ ସ୍ପଷ୍ଟ ଦେଖାଯାଉ ଅଛି ଯେ ସାଧାରଣବିଷୟର ଚର୍ଚ୍ଚାପ୍ରତି ଲୋକଙ୍କର କ୍ରମଶଃ ଆସ୍ଥା ବଢୁଅଛି ଆଉ ପୂର୍ବପ୍ରାୟ କେବଳ ଆପଣା ଘର କଥାରେ ବୁଡ଼ି ରହୁ ନାହାନ୍ତି । ଏହା ବର୍ତ୍ତମାନକାଳର ଶୁଭଲକ୍ଷଣ ଅଟଇ ଏବଂ ଭାରତବର୍ଷର ସକଳପ୍ରଦେଶରେ ଏହିପରି ସଂବାଦପତ୍ରର ବିସ୍ତୃତି ଦେଖିବାକୁ ଆମ୍ଭେମାନେ ଏକାନ୍ତ କାମନା କରୁଁ । ଏଠାରେ ଓଡ଼ିଶାର କଥା ମନେ ପଡିବାରୁ ଆମ୍ଭେମାନେ କହୁ ଅଛୁଁ ଯେ ଏଠାରେ ସମ୍ବାଦପତ୍ର ଚଳାଇବା ବିଡ଼ମ୍ବନା ଅଟଇ । ଦଶ କୋଡିଏ ହଜାର କଥା ତେଣିକି ଥାଉ ଦଶକୋଡି କାଗଜ ଭଲରୂପେ ବିକ୍ରୟ ହେଉଅଛି କି ନା ସନ୍ଦେହ । କେବେ କି ଆମ୍ଭେମାନେ ବଙ୍ଗଳା ବା ଅନ୍ୟ ପ୍ରଦେଶ ପରି ଉନ୍ନତି ଲଭିବୁଁ ।

*ଭା/୨୦ଗ,ସଂ୧୮ଖ୍ୟା, ୨/୫/୧୮୮୫*

## ପାଠ୍ୟପୁସ୍ତକ ନିର୍ବାଚନପ୍ରଣାଳୀ ।

ଶ୍ରୀଯୁକ୍ତ ଶ୍ରୀ ଶ୍ରୀ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସମୀପେଷୁ ।

ମହାଶୟ !

ବଡ଼ ସୁଖର ବିଷୟ ଯେ ଆଜିକାଲି ଶୂଦ୍ର, ଯୋଗାରମ୍ଭ କଲେ ରାମଚନ୍ଦ୍ର ଶିରଚ୍ଛେଦନ କରିବେ ବୋଲି ଭୟ ନାହିଁ; ଲେଖାପଢ଼ା କୌଣସି ଜାତି ବା ସମ୍ପ୍ରଦାୟବିଶେଷର ଏକ ହାତିଆ ବ୍ୟବସାୟ ନୁହେ; **xxxx** ଶୂଦ୍ର, କଣ୍ଡରା, ପାଣ, ବୃଦ୍ଧ, ବୃଦ୍ଧା, ଯୁବା, ଯୁବତି, ବାଳକ, ବାଳିକା ସମସ୍ତେ ଲେଖାପଢ଼ା ଶିଖିବାକୁ ସମୁତ୍ସୁକ । ଏହା ଗୋଟିଏ ଶୁଭ ଲକ୍ଷଣ ବୋଲି ଅବଶ୍ୟ ସ୍ୱୀକାର୍ଯ୍ୟ । ଏହା ସଙ୍ଗେ ସଙ୍ଗେ ଆଉ ଗୋଟିଏ ଶୁଭଲକ୍ଷଣ ମଧ୍ୟ ଲକ୍ଷିତ ହୁଏ । ନଗରେ, ଉପନଗରେ, ଗ୍ରାମେ, ପଲ୍ଲିଗ୍ରାମେ, ମନ୍ଦିରେ, ପ୍ରାସାଦେ, ପର୍ଣ୍ଣକୁଟୀରେ ବସି, ମନୁଦେବ, ବେଦବ୍ୟାସ, କପିଳ, କାଳିଦାସ ଲୀଳାବତୀ ପ୍ରଭୃତିମାନେ କଳନ୍ଦଶାସ୍ତ୍ର, ଠକ ଶାସ୍ତ୍ର, ଖାନସମା, ବବୁର୍ଚ୍ଚି, ଗ୍ଭକର, ଶଠସଖା, ଖଣ୍ଡ ସଙ୍ଗାତ, ଢିଙ୍କି, କୁଲାଆଦି ଗ୍ରନ୍ଥ ଓ ପତ୍ରିକା ମାନ ଲେଖୁ ଅଛନ୍ତି । ଆଶୁପ୍ରସବିନୀ ମୁଦ୍ରାଯନ୍ତ୍ର ମଧ୍ୟ ସେମାନଙ୍କୁ ପ୍ରଚୁର

ପରିମାଣରେ ପ୍ରସବ କରି କପର୍ଦ୍ଦ ମୂଲ୍ୟରେ ବିତରଣ କରୁଅଛି । ସଂକ୍ଷେପରେ କହିବାକୁ ଗଲେ, ବିବିଧଗ୍ରନ୍ଥ ଓ ପତ୍ରିକାମାନ ଏତେ ପରିମାଣରେ, ଏତେ ସୁଲଭମୂଲ୍ୟରେ, ଆଉ ଏତେ ସହଜରେ ମିଳୁଅଛି ଯେ ସେମାନଙ୍କୁ ପଢ଼ିବାକୁ ଯେତେ ସମୟ ଲାଗିବ ତାହା ସହିତ ତୁଳନା କଲେ, ମନୁଷ୍ୟଜୀବନ, ମହାସମୁଦ୍ରତୀରସ୍ଥ, ଦୂର୍ବାଗ୍ରସ୍ଥିତ ଶିଶିରବିନ୍ଦୁ ପରି ଅନୁମିତ ହୁଏ ।

ଏହି ରାଶୀକୃତ ବିବିଧ ଗ୍ରନ୍ଥମାନଙ୍କ ମଧ୍ୟରୁ କାହାକୁ ପ୍ରାପ୍ତବୟସ୍କମାନଙ୍କର ପଢ଼ିବା ଉଚିତ ତାହା ଆମ୍ଭେ ବିଚାର କରିବୁଁ ନାହିଁ । କେବଳ ସୁକୁମାରମତି ଅଳ୍ପବୟସ୍କ ବାଳକ ବାଳିକାମାନଙ୍କ ପାଠ୍ୟପୁସ୍ତକ ବିଷୟରେ କହିବା ଆମ୍ଭର ଉଦ୍ଦେଶ୍ୟ । ଯଦି ବିଦ୍ୟାଳୟର ପାଠ୍ୟପୁସ୍ତକ ନିର୍ବାଚନ ବିଷୟରେ ବହୁ ଦିନରୁ ଆନ୍ଦୋଳନ ଚଳୁ ନ ଥାନ୍ତା, ଯଦି ସମ୍ବାଦପତ୍ରିକାମାନେ ଉଚ୍ଚୈଃସ୍ୱରରେ ଚିତ୍କାର କରୁ ନ ଥାନ୍ତେ, ପୁଣି ଯଦି ସେମାନଙ୍କ ମଧ୍ୟରୁ କେହି କେହି ଛିନ୍ନମସ୍ତକା ହୋଇ ଭୀମ ରଡିରେ ତାଡ଼କା ପରି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ କମ୍ପାଇ ନ ଥାନ୍ତେ, ତେବେ ଆମ୍ଭେ ଏ ବିଷୟର ଆଲୋଚନା ମଧ୍ୟ କଦାପି କରି ନ ଥାନ୍ତୁ । କେବଳ ଘୋର ଯୁଦ୍ଧରେ ବିକମ୍ପିତ ଧରାଖଣ୍ଡକୁ ସୁସ୍ଥିର, ଆଉ ବିମର୍ଦ୍ଦିତ ସଶଙ୍କିତ ଜନମାନଙ୍କୁ ଶାନ୍ତିପ୍ରଦାନ କରିବାପାଇଁ ଆମ୍ଭେ ଏ ଯତ୍‌ସାମାନ୍ୟ ବିଷୟରେ ହସ୍ତକ୍ଷେପ କରୁଅଛୁଁ । କିନ୍ତୁ ଆଶଙ୍କା ହେଉଅଛି ଯେ ପ୍ରଥମରୁ ଆତ୍ମପରିଚୟ ନ ଦେଲେ, ରଣମଦରେ ମତ୍ତ କଳିକାଳର ସଂଶୟବାଦୀ ଲୋକେ ଆମ୍ଭ ଉପଦେଶକୁ ଗ୍ରହଣ  ନ କରି ଆଉ ଆମ୍ଭ ପ୍ରଦର୍ଶିତ ପଥର ଅନୁଗାମୀ ନ ହୋଇ, କାଳେ ବିନାଶ ପ୍ରାପ୍ତ ହେବେ । ଅତଏବ ଆମ୍ଭର ପରିଚୟ ଦେବା ଉଚିତ ଏବଂ ତାହା ଏହି ।

ଆମ୍ଭେ ଶଠଶାସ୍ତ୍ରର ପ୍ରଣେତା । ଏହି ଗ୍ରନ୍ଥ ଆଗାମୀ ସତ୍ୟଯୁଗ ପ୍ରାରମ୍ଭରେ ପ୍ରକାଶିତ ହେବ ଏହାର ସମାଲୋଚନା ଆମ୍ଭେ ସ୍ୱୟଂ ଶ୍ରୀକରରେ ଲେଖି ଗତ ଦ୍ୱାପରଯୁଗ ପ୍ରାନ୍ତରେ ଟହଲିଆ ନାମକ ସମ୍ବାଦପତ୍ରରେ ପ୍ରଚାର କରିଅଛୁଁ ।

ଆମ୍ଭେ ସୁରୁଚିପ୍ରିୟ-- ଯେଉଁସବୁ ପୁସ୍ତକ ବା ପତ୍ରରେ ନଈଶୁଆ, ବାଘଖିଆ, ବେଧା ଇତ୍ୟାଦି ବ୍ୟବହାର ହୁଏ ସେ ସବୁ ଆମ୍ଭର ପ୍ରିୟପାତ୍ର ଆଉ ତାହାର ଲେଖକମାନେ ଆମ୍ଭର ପରମ ସହାୟ । କାରଣ ଏ ସବୁ ବାକ୍ୟ ମୂର୍ଖ, ନୀଚ, ସୁତରାଂ ଈଶ୍ୱରଦୟାଭାଜନ ଲୋକେ ବ୍ୟବହାର କରନ୍ତି, ଏବଂ ଏହି ଲୋକଙ୍କ ସଂଖ୍ୟା ଅଧିକ । ତେବେ ଯେଉଁ ଭାଷା ଓ ଭାବ ବହୁଜନରେ ପ୍ରଚଳିତ; ତାହା ସୁରୁଚି ବ୍ୟତୀତ କଅଣ ହୋଇ ପାରେ ? ଅତଏବ ଆମ୍ଭଙ୍କୁ ସୁରୁଚିପତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଯେଉଁ ନ୍ୟାୟ ଓ ତର୍କ ପଢ଼ି ଚର୍ବାକ, ମିଲ୍ ପ୍ରଭୃତି ନରକକୁ ଗଲେ ଏବଂ ଯାହାଙ୍କର ପ୍ରାଦୁର୍ଭାବରୁ ଲୋକେ ଚିରପୋଷିତ ବହୁମୂଲ୍ୟ ସଂସ୍କାରମାନ ତ୍ୟାଗ କରି କୁମ୍ଭୀପାକରେ ଭ୍ରମଣ କରୁଅଛନ୍ତି, ଆମ୍ଭେ ସେହି ନ୍ୟାୟ ଓ ତର୍କର ଚିରବିରୋଧୀ ।

ଏ ବିଷୟରେ ଆଉ ଅଧିକ କହିବାର ପ୍ରୟୋଜନ ନାହି । "ଅତି ପରିଚୟେ ମାନହାନି ।"

କେଉଁ ନିୟମରେ ବିଦ୍ୟାଳୟର ପାଠ୍ୟପୁସ୍ତକ ନିର୍ବାଚନ ହେବ, ତାହା କହିବା ପୂର୍ବରୁ କିଏ ତାହା କରିବ, ତାହା କହିବା ଉଚିତ । ସମସ୍ତେ ଜାଣ ଯେ "ଏକମେବାଦ୍ୱିତୀୟଂ" "ବହୁତ ମନୁଷ୍ୟରେ ମୂଷା ମରେ ନାହି ।" ଏହା ଜାଣି ଶୁଣି ଯେ ତୁମ୍ଭେମାନେ ଭ୍ରମରେ ସମିତି ସମିତି ଚିତ୍କାର କରୁଅଛ ତାହା ତ୍ୟାଗ କରି ଏକଜଣକୁ ହର୍ତ୍ତା କର୍ତ୍ତା ଦୈବବିଧାତା ପଦରେ ନ୍ୟସ୍ତ କର । ଯାହାଙ୍କ ହାତରେ ଏ ଭାର ଅର୍ପଣ ହେବ ସେ ଭଲ ମନ୍ଦ ପାଇଁ ଇହ ପର ଉଭୟ ଲୋକରେ ଦାୟୀ ହେବେ । ପୁଣି ସେ ଆପଣାର ଦୟା ମାୟା ସ୍ୱାର୍ଥ ପ୍ରଭୃତି ପ୍ରତି ବିଶେଷ ଦୃଷ୍ଟି ରଖି ତଳଲିଖିତ ନିୟମାନୁସାରେ ପୁସ୍ତକ ନିର୍ବାଚନ କରିବେ । କାରଣ ଏପରି ପଦରେ ଈଶ୍ୱର ତାଙ୍କୁ ପ୍ରତିଷ୍ଠିତ କଲେ ବୋଲି ଅବଶ୍ୟ ସ୍ୱୀକାର କରିବାକୁ ହେବ । ଏଣୁ କରି ତାଙ୍କ କାର୍ଯ୍ୟ, ଦୟା, ମାୟା, ସ୍ୱାର୍ଥ ପ୍ରଭୃତି ଈଶ୍ୱରାନୁମୋଦିତ ଅଟେ । ଅତଏବ ସେ ଯାହା କରିବେ ତାହା ଅବଶ୍ୟ ଈଶ୍ୱରଙ୍କର ବିଶେଷ ପ୍ରୀତିଜନକ ହେବ; ପୁଣି ଯେଉଁମାନେ ଯେଉଁ ପ୍ରକାରରେ ତାଙ୍କର ସେବା କରିବେ, ସେମାନେ ସେଇ ପରିମାଣେ ଈଶ୍ୱରଙ୍କର ସେବା କରିବେ ।

ବର୍ତ୍ତମାନ ପ୍ରଶ୍ନ ହୋଇପାରେ କିପରି ଲୋକଙ୍କ ଉପରେ ଏପରି ଭାର ଅର୍ପଣ ହେବ । ଏ ସମ୍ବନ୍ଧରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଆମ୍ଭ ପରି ଲୋକ ଦେଖି ନିଯୁକ୍ତ କରିବ ।

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ନିମ୍ନ ଲେଖିତ ବିଷୟମାନ ବିବେଚନା କରି ନିର୍ବାଚନକାରୀ ପାଠ୍ୟପୁସ୍ତକ ନିର୍ବାଚନ କରିବେ ।

(୧) ବହି କେଉଁ ଜିଲ୍ଲାରୁ ବାହାରିଅଛି ।

(୨) ସେ ଜିଲ୍ଲାର ଲୋକେ ତାଙ୍କର କେତେଦୂର ଅନୁଗତ ଆଉ ସେମାନଙ୍କଦ୍ୱାରା ତାଙ୍କର କେତେଦୂର ସ୍ୱାର୍ଥ ସାଧନ ହୁଏ ।

(୩) କାହା ଛାପାଖାନାରୁ ବାହାରି ଅଛି ଆଉ ସେ କେତେଦୂର ତାଙ୍କର ଅନୁଗତ ଓ ସ୍ୱାର୍ଥସାଧନରେ ତତ୍ପର ।

(୪) ଗ୍ରନ୍ଥକର୍ତ୍ତା ତାଙ୍କର କେତେଦୂର ଅନୁଗତ ଆଉ ଉପାସକ ।

(୫) ଆଉ ତାଙ୍କୁ ଗ୍ରନ୍ଥରେ କେତେ ଆଶା ସ୍ୱାର୍ଥ ଦେବାକୁ ଗ୍ରନ୍ଥକର୍ତ୍ତା ସମ୍ମତ ।

(୬) ଆଉ ସେ ସ୍ୱୟଂ ପ୍ରୁଫଶିଟ ପର୍ଯ୍ୟନ୍ତ ସଂଶୋଧନ କରି ଦେଇଅଛନ୍ତି କି ନା ।

ଯଦି ଉପରୋକ୍ତ ନିୟମମାନ ପ୍ରତିପାଳନ କର ତେବେ ଅନାୟାସରେ ସୁରୁଗୁରୂପେ ବିଦ୍ୟାଳୟର ପାଠ୍ୟପୁସ୍ତକ ନିର୍ବାଚନ କାର୍ଯ୍ୟ ଚଳିବ । ଯଦି ନ କର, ତେବେ କଳିକାଳ ଥାଉଁ ଥାଉଁ ଭଗବାନ୍ କଳ୍କିଅବତାର ଧରିବାକୁ ଆଉ ଶିବ ସଂହାରମୂର୍ତ୍ତି ଧାରଣ କରିବାକୁ ପ୍ରତିଶ୍ରୁତ ହୋଇଅଛନ୍ତି ।

କଟକ
୨୭।୪।୮୫

ତୁମ୍ଭର ଚିର ଶୁଭାକାଙ୍କ୍ଷୀ
ଦେବଗୁରୁ ।

*ଭା୨୦ଗ, ସଂ୧୮ଖ୍ୟା, ୨।୫।୧୮୮୫*

## ପ୍ରେରିତ ପତ୍ର ।

ଜଣେ ବାଳିକାର ରବ ।

ଆସ ଆସ ବାଳାଗଣ ଜ୍ଞାନେ ମନ ଦିଅ ।
ବିଦ୍ୟାରୂପ ସୁଭୂଷଣେ ସୁସଜ୍ଜିତ ହୁଅ ॥
ବିଦ୍ୟା ସମ ଧନ ନାହିଁ ଏ ଧରାକାନନେ ।
କହିଛନ୍ତି ଅନୁଭବୀ ସାଧୁ ବିଜ୍ଞଜନେ ॥
ବିଦ୍ୟାରେ ଆମୋଦ କରେ ସଦା ଯେଉଁ ଜନ ।
ତାହାର ହୃଦୟ ନିତ୍ୟ ସତେଜ ଅମ୍ଳାନ ॥
ହିତାହିତ ସାରାସାର ପାପ ପୁଣ୍ୟ ଭେଦ ।
ଜାଣିବାକୁ ଜାଣେ ସେହୁ ହୋଇ ତତ୍ତ୍ୱବିଦ ॥
ସାଂସାରିକ ପାରତ୍ରିକ ବିଷୟରେ ଚତୁର ।
ହୋଇ ରମେ କାଳବକ୍ଷେ ନୋହିଣ କାତର ॥
ବିଦ୍ୟାର ମହିମା ଅଟେ ଅପାରୁଁ ଅପାର ।
ବିଦ୍ୟାଗୁଣେ ସାଧ୍ୟସବୁ ଅସାଧ୍ୟ କି ତାର ?
ଆମ୍ଭେମାନେ ନାରୀଜାତି ନୋହୁ ବିଦ୍ୟାବତୀ ।
ତାହାର ଗାରିମା ଅବା କହିବୁଁ କେମନ୍ତି ?
ହାୟ ହାୟ ଉତ୍କଳୀୟ ରମଣୀନିକର ।
କେମନ୍ତ ପିଞ୍ଜରବଦ୍ଧ ସାରିକା ପ୍ରକାର ॥
ହୋଇ ସଦା ପରାଧୀନା ଆଜ୍ଞା ସଦାଚାର ।
ନିରନ୍ତର ଅନ୍ତଃପୁରେ କରନ୍ତି ବିହାର ॥

ଦେଶାଗରର ଅନୁସରି ହେବା ଲଜ୍ଜାବତୀ ।
ନରପରି ନାରୀଏତ ସ୍ୱାଧୀନ ନୁହନ୍ତି ॥
ସଦାଧୀନ ଭାବେ ଭକ୍ତି ସବୁ ଗୁରୁଜନେ ।
ପାତିବ୍ରତ୍ୟ ଧର୍ମଗୁଣେ ପୂଜିବା ନିଉନେ ॥
ରଖିବା କୁଳମର୍ଯ୍ୟାଦାନ ହୋଇ ପ୍ରମଦା ।
ଡରିବା ଜଗତ ନିନ୍ଦା ଉଚିତେ ସର୍ବଦା ॥
ଏ ସବୁ ଉଚିତ କର୍ମ ସବୁ ନାରୀଙ୍କର ।
ଇତ୍ୟାଦି ସଦ୍‌ଗୁଣ ବିନା ସ୍ତ୍ରୀ ପ୍ରାଣ ଅସାର ॥
ତଥାପି ନିବିଡ଼ ପାଶେ ଥିବା ବନ୍ଦ ଅତି ।
ନ ଜାଣି ଜ୍ଞାନର କଥା ହେବା ମୂଢ଼ମତି ॥
ଉଚିତ ନୁହଇ କଦା କାହାରଇ ପ୍ରତି ।
ବିଦ୍ୟା ବିନା ଅଭାବୁକା ଅଜ୍ଞାତ ସୁନୀତି ॥
ପୂର୍ବକାଳେ କେତେ କେତେ ସତୀ କୁଳାଙ୍ଗନା
ବିଦ୍ୟା ବୁଦ୍ଧି ବୀର୍ଯ୍ୟ ଧନେ ଥିଲେ ଅସମାନା ॥
କେହି କେହି ବୀରପରି କଲେ ମହାରଣ ।
ବାହୁର ବିକ୍ରମେ କଲେ ଶତ୍ରୁ ସଂହାରଣ ॥
କେହି ଶସ୍ତ୍ରେ କେହି ଶାସ୍ତ୍ରେ କେହି ତପସ୍ୱିନୀ ।
କେହି କେହି ନାନାମତେ ମନ୍ତ୍ରଣାଦାୟିନୀ ॥
ବିବିଧ ଗୁଣେ ମଣ୍ଡିତା ଲୋକରେ ପୂଜିତା ।
ହୋଇ ସଦା ବିବେଚିକା କଲେ ସାର ଚିନ୍ତା ॥
ଆଜି କାଲି କେହି କେହି କହନ୍ତି ଏପରି ।
ପାଠ ପଢ଼ି କି କରିବେ ଆମ୍ଭ ଦେଶ ନାରୀ ?
ଗୃହ କର୍ମ କରିବାକୁ ହୋଇଲେ ସମର୍ଥ ॥
ପ୍ରଚୁରରୂପରେ ହେବ ତାଙ୍କ ଜୀବ ସାର୍ଥ ॥
ଲେଖା ପଢ଼ା କରିବାକୁ ନ ଯିବେ କଚେରି ।
କେବଳ ଭ୍ରମିବେ ଦାଣ୍ଡେ ମୁକ୍ତବେଶ ଧରି ॥
ଇତ୍ୟାଦି ପ୍ରକାରେ କେତେ କହନ୍ତି ବହୁତ ।
ନ ଜାଣନ୍ତି ଶୁଭାଶୁଭ ସ୍ତ୍ରୀ ଶିକ୍ଷାର ହିତ ॥
ଦେଖ ଯେଉଁ କୁଳାଙ୍ଗନା ବାହାରେ ନ ଆସେ ।
ବିଦ୍ୟା ତାର ଅଲାଭ କି ବୋଲିବ ସାହସେ ?
ନାହିଁ ସେତ ନିଯୋଜିବ ନିଜକୁ ଯତ୍ନରେ ।
ପୁତ୍ର କନ୍ୟା ଭ୍ରାତୃ ଭୃତ୍ୟେ କର୍ତ୍ତବ୍ୟ ବିଧିରେ ॥
ସାଧିବ ଗମ୍ଭୀର ଭାବେ ସୁନୀତି ଆଚରି ।
ପରିବାରୋଚିତ କର୍ମ ଦୁଃଖ ପରିହରି ॥
ଅସାର ସଂସାରେ ସୁଖେ ନୋହି ବିଳାସିନୀ ।
ସତ୍ୟ ନିତ୍ୟ ଶାନ୍ତିପଥେ ହେବ ପ୍ରଧାବିନୀ ॥

ଯେଉଁ ନାରୀ ନିଜମାନ ରକ୍ଷଣେ ସଂଯତା ।
ବିଦ୍ୟା ତାର ପ୍ରତି ବହୁଗୁଣେ ଫଳାନ୍ୱିତା ॥
କିନ୍ତୁ ବିଦ୍ୟାଧନ ଲାଭେ ଅଯୋଗ୍ୟ ଯୌବନ ।
ନାରୀ ଜାତି ପ୍ରତି ଅଟେ ଭାବୁଚି ଏସନ ॥
ବାଲ୍ୟକାଳ ଶୁଭ କାଳ ବିଦ୍ୟାଲାଭ ପାଇଁ ।
ଭାବି ବିଭବ-ଭୋଗର ପ୍ରାରମ୍ଭ ଅଟଇ ॥
ଆଉ ମଧ ଏବେ ବିଦ୍ୟା ଶିକ୍ଷାର ଉପାୟ ।
ମିଳିଅଛି ବହୁ ଭାଗ୍ୟେ ବିନା ବହୁବ୍ୟୟ ॥
ଶିକ୍ଷାଧ୍ୟକ୍ଷ ରାଧାନାଥ ରାୟ ମହାଶୟ ।
ବହୁ ଯତ୍ନେ ବାଳିକାଙ୍କ ପାଇଁ ବିଦ୍ୟାଳୟ ॥
ସ୍ଥାପନାର୍ଥେ ସୁଧାସମ ସୁଶିକ୍ଷା ବିତରି ।
ହୋଇଛନ୍ତି ଯୁଗେ ଯୁଗେ ବଡ଼ ଉପକାରୀ ॥
ଏଣୁ ପିତୃ ମାତୃଗଣ ଶୁଣ ମୋ ବିନତି ।
ପ୍ରେର ନିଜ କନ୍ୟାଗଣେ ବିଦ୍ୟାଳୟ ପ୍ରତି ॥
କନ୍ୟାଗଣେ ବିଦ୍ୟା ଦାନେ ଧର ଦୃଢ଼ମତି ।
କୁସଂସ୍କାର ମୋହଜାଲୁଁ ମୁକୁଳ ଝଟିତି ॥
ବାଳିକା ସକଳେ ଘେନ କହି ଉପଦେଶ ।
ଜ୍ଞାନେ ମନ ପ୍ରବର୍ତ୍ତାଅ ନ ହୁଅ ବିରସ ॥
ବିଦ୍ୟା ବୁଦ୍ଧି ସତ୍ୟ ଜ୍ଞାନେ ମନକୁ ନିବେଶ ।
ସଦାଚର କରି ହୁଅ ପିତୃ ମାତୃ ବଶ ॥
ତାହା ହେଲେ ଜଗଦୀଶ କରିବେ ଆଶୀଷ ।
ତହୁଁ ଉତ୍କଳ କରିବ ଆନନ୍ଦ ବିଶେଷ ॥

ଶ୍ରୀମତୀ ସୁଶୀଳା
ମିସନ ବାଳିକାବିଦ୍ୟାଳୟର ଛାତ୍ରୀ
କଟକ

*ଭା୨୦ଗ,ସଂ୨୪ଖ୍ୟା, ୧୩/୬/୧୮୮୪*

## ପାଠ୍ୟପୁସ୍ତକର ଆନ୍ଦୋଳନ ।

ପାଠ୍ୟପୁସ୍ତକ ସମ୍ବନ୍ଧୀୟ ଆନ୍ଦୋଳନ ବିଷୟରେ "ସଂସ୍କାରକ"ଙ୍କର ନୂତନ ଆବିଷ୍କାର ଏହି କି ଏ ପ୍ରକାର "ପୁସ୍ତକ ପ୍ରଣୟନ ଏବଂ ବିକ୍ରୟରେ ସ୍ୱାର୍ଥବାନ ବ୍ୟକ୍ତିଙ୍କ ହସ୍ତରେ ସମ୍ବାଦପତ୍ର ଚଳାଇବାର ଭାର ନ ଥିଲେ ଏ ଆନ୍ଦୋଳନ ଅନେକଦିନରୁ ବନ୍ଦ ହୋଇ ଯାଇଥାନ୍ତା" ସ୍ୱାର୍ଥବାନ୍ ବ୍ୟକ୍ତି ବିନା କୌଣସି ଆନ୍ଦୋଳନ ଅନ୍ୟ କାହାରିଦ୍ୱାରା ଘଟିଥାଏ କି ? କିନ୍ତୁ ସହଯୋଗୀ ଯେ ମଧ୍ୟସ୍ଥ ହେବାର ଦାବୀ କରନ୍ତି ତହିଁର ମୂଳ ଆମ୍ଭେମାନେ କିଛି ପାଉ ନାହୁଁ । **xxxx** ପତ୍ର ଚାଳକଙ୍କର ପାଠ୍ୟପୁସ୍ତକର ବିକ୍ରୟରେ ସ୍ୱାର୍ଥ ଥିବାର ଏବଂ ତହିଁରେ ସଂସ୍କାରକଙ୍କର ଅଂଶ ଉଣା ନ ଥିବାର ସମସ୍ତେ ଜାଣନ୍ତି ତେବେ ସେ କିପରି ମଧ୍ୟସ୍ଥ ହେବେ ଏବଂ ଆନ୍ଦୋଳନ କିପରି ବନ୍ଦ ହେବ ? ଆଉ ଏକ ବିଚିତ୍ର କଥା ଏହି କି ଯେବେ ସମସ୍ତେ ଏକରୂପ ସ୍ୱାର୍ଥବାନ୍ ହେଲେ ତେବେ ସମ୍ବାଦ ପତ୍ରମାନଙ୍କରେ ବିଭିନ୍ନ ମତ ପ୍ରକାଶ ହେବା ଏବଂ ସେ ହେତୁରୁ ଆନ୍ଦୋଳନ ଲାଗି ରହିବାର କାରଣ କି ? ପ୍ରକୃତ କଥା ଏହି କି ସଂସ୍କାରକ

ମଧ୍ୟସ୍ଥ ହେବାର ଯୋଗ୍ୟ ନୁହନ୍ତି କାରଣ ସେ ଆନ୍ଦୋଳନର ପ୍ରକୃତ କଥା ଜାଣନ୍ତି ଅଥଚ ନିଜର ସ୍ୱାର୍ଥ ପୂର୍ଣ୍ଣ କରିବା ଆଶାରେ ଅପର ସମ୍ବାଦପତ୍ରମାନଙ୍କୁ ନିନ୍ଦା ଏବଂ ଶିକ୍ଷା ବିଭାଗର ଖୋଷାମଦ କରିବାକୁ କୁଣ୍ଠିତ ନୁହନ୍ତି । ଶିକ୍ଷା ବିଭାଗର ଅଯଥା ମୁରବିଗିରି ଓ ସୁନାମି ବେନାମିରେ ପଣେ ରୋଜଗାର କରିବା ଏବଂ ତହିଁରେ ଅପର ଲୋକଙ୍କ କ୍ଷତି ହେଉଥିବା କଥା ସେ ସ୍ୱୟଂ ସ୍ୱୀକାର କରିଅଛନ୍ତି ମାତ୍ର ତାହାଙ୍କ ବିବେଚନାରେ ତହିଁରେ କିଛି ଦୋଷ ନାହିଁ । ଶିକ୍ଷା ବିଭାଗରୁ ଯେ କିଛି ଆୟ ହୋଇ ପାରେ ଉକ୍ତ ବିଭାଗୀୟ କର୍ମଚାରିମାନେ ଟାଣି ନେଉନ୍ତୁ ଆଉ ଯେଉଁ ଲେଖକମାନେ ଭଗ୍ନମନୋରଥ ହୋଇଅଛନ୍ତି ସେମାନଙ୍କ ସକାଶେ ସଂସ୍କାରକ ମୁକୁଳା ରହିଅଛି କେତେ ଲେଖିବେ ଲେଖନ୍ତୁ । ସହଯୋଗିଙ୍କର ଏ କଥା ଗୁଡ଼ିକ ପ୍ରକୃତ କି ବ୍ୟଙ୍ଗୋକ୍ତି ସ୍ଥିର କରିବା କଠିଣ । କୌଣସି ମତେ ଏଥିରୁ ପ୍ରକାଶ ପାଉଅଛି ଯେ ସେ ସ୍ପଷ୍ଟ କଥା କହିବାକୁ ସାହସୀ ନୁହନ୍ତି ।

ଏହି ପାଠ୍ୟପୁସ୍ତକ ସମ୍ପର୍କରେ ସହଯୋଗୀ ଆଉ ଗୋଟିଏ ମତ ଏହି ପରି ବ୍ୟକ୍ତ କରିଅଛନ୍ତି କି ନୂତନ ନୂତନ ପୁସ୍ତକମାନ ବିଦ୍ୟାଳୟରେ ଚଳାଇବାର ଉଚିତ । ପୁରୁଣା ପୁସ୍ତକକୁ ପ୍ରଶ୍ରୟ ଦେବାର ଉଚିତ ନୁହଇ । ତେବେ ଭଲ ମନ୍ଦ ବିଚାର କରିବାର ଆବଶ୍ୟକ ନାହିଁ । ପୁରୁଣା ପୁସ୍ତକ ଭଲ ହେଲେ ସୁଦ୍ଧା ଉପେକ୍ଷିତ ହେବ ଏବଂ ନୂତନ ପୁସ୍ତକ ଯେପରି ହେଉ ବିଦ୍ୟାଳୟମାନଙ୍କରେ ପଠିତ ହେବ । ଧନ୍ୟ ସଂସ୍କାରକ ଏପରି ନ୍ୟାୟ ପ୍ରଚାର ନ କଲେ ଆପଣଙ୍କର ନାମର ଗୌରବ କେମନ୍ତ ରକ୍ଷା ପାଇବ ଏବଂ ଏଠା ଶିକ୍ଷା ବିଭାଗକୁ ମଧ୍ୟ କିଏ ବଳ ଦେବ । କେବଳ ଆମ୍ଭମାନଙ୍କର ଏତିକି ଭୟ ହେଉଅଛି ଯେ ବିଶ୍ୱ ବିଦ୍ୟାଳୟ ଅଥବା ଅନ୍ୟ କୌଣସି ଶିକ୍ଷା ସମାଜରେ ଆପଣଙ୍କର ଏ ନୀତି ଗୃହୀତ ହେବ ନାହିଁ ।

*ଭା୨୦ଗ, ସଂ୨୭ଖ୍ୟା, ୪।୭।୧୮୮୫*

## ପାଠ୍ୟପୁସ୍ତକ ଓ ଶିକ୍ଷାବିଭାଗୀୟ କର୍ମଚାରୀ ।

ଶିକ୍ଷାବିଭାଗୀୟ କର୍ମଚାରିଙ୍କ ହସ୍ତରେ ପୁସ୍ତକ ନିର୍ବାଚନର ଭାର ଥିବାରୁ ସେମାନେ ଯେରୂପେ ଆପଣାର ଅଥବା ଆପଣା ଭାଇବନ୍ଧୁଙ୍କ ପ୍ରକାଶିତ ପୁସ୍ତକମାନଙ୍କୁ ଅଯଥା ପ୍ରଶ୍ରୟ ଦେଇ ସାଧାରଣ ଅନିଷ୍ଟ କରୁଅଛନ୍ତି ସେ ବିଷୟ ଆମ୍ଭେମାନେ ପୁନଃ ପାଠକମାନଙ୍କ ସମ୍ମୁଖରେ ଉପସ୍ଥିତ କରିଅଛୁଁ ଏବଂ ଯଦ୍ୟପି କି ଏପ୍ରକାର ଆନ୍ଦୋଳନରେ କୌଣସି ଫଳ ନ ହେବାରୁ କେହି କେହି ଆମ୍ଭମାନଙ୍କ ଲେଖାକୁ ଅନର୍ଥକ ଜ୍ଞାନ କରୁଥିବେ ତଥାଚ ଆମ୍ଭେମାନେ କ୍ଷାନ୍ତ ହୋଇ ପାରୁ ନାହୁଁ । ଫଳ ଘଟାଇବା ଅବଶ୍ୟ ଆମ୍ଭମାନଙ୍କର ସାଧାୟତ୍ତ ନୁହଇ ଯାହା ଅନ୍ୟାୟ ଦେଖିବୁଁ ପୁନଃ ପୁନଃ ତାହା ପ୍ରକାଶ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟକର୍ମ ସୁତରାଂ ସେ ଅନ୍ୟାୟ ବିଦ୍ୟମାନ ରହିଥିବା ପର୍ଯ୍ୟନ୍ତ ତହିଁର ପ୍ରତିବାଦ କରିବାକୁ ହେବ ଏବଂ ଏହା ମଧ୍ୟ ନିଶ୍ଚୟ ଯେ ଅନ୍ୟାୟ କାର୍ଯ୍ୟ ଚିରକାଳ ରହି ପାରିବ ନାହିଁ । ନାନା କୁଟୀଳ ଉପାୟଦ୍ୱାରା ସ୍ୱାର୍ଥପର ବ୍ୟକ୍ତିମାନେ କିଛିକାଳ ତାହା ଘୋଡାଇ ରଖିପାରନ୍ତି ଏବଂ ବର୍ତ୍ତମାନ ସମୟରେ ଯେରୂପ ସ୍ଥାନୀୟ ଗବର୍ଣ୍ଣମେଣ୍ଟ କେବଳ ସ୍ଥାନୀୟ ହାକିମଙ୍କ କଥାରେ ବାଟ ଚାଲୁଅଛନ୍ତି ଏବଂ ସ୍ଥାନୀୟ ହାକିମମାନେ କେତେଗୁଡ଼ିଏ କାନକୁହାଙ୍କର ଚିକ୍କଣ କଥା ଏବଂ ପୂଜାରେ ଭୁଲିପଡ଼ି ନିରପେକ୍ଷ ବିଚାର କରିବାକୁ ଅକ୍ଷମ ହେଉଅଛନ୍ତି ତହିଁରେ ସେମାନଙ୍କର ଆପାତତଃ ମାନସ ପୂର୍ଣ୍ଣ ହେଉଅଛି ମାତ୍ର ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ ଯେ ପରିଶେଷରେ ନ୍ୟାୟର ଜୟ ହେବ । କେବଳ ସେହି ଅନ୍ୟାୟ କାର୍ଯ୍ୟମାନଙ୍କୁ ସର୍ବସାଧାରଣଙ୍କ ସମୀପରେ ସର୍ବଦା ଉପସ୍ଥିତ ରଖିବା ଉଚିତ । ଫଳତଃ ଯେତେ ବିଳମ୍ବରେ ପ୍ରତୀକାର ହେଉ ପଛକେ ଏ ବିଷୟଟି ଯେ ଅତ୍ୟନ୍ତ ଅନ୍ୟାୟ ତହିଁରେ ସନ୍ଦେହ ନାହିଁ ପୁଣି ଦୁଃଖର ବିଷୟ ଯେ ଏକା ଓଡ଼ିଶା ଏହି ଅନ୍ୟାୟର ଫଳ ଭୋଗ କରୁଅଛି ଏମନ୍ତ ନୁହଇ ବଙ୍ଗଳାର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଏହା ବ୍ୟାପି ଥିବାର ଦେଖାଯାଉଅଛି । ଅଳ୍ପଦିନ ତଳେ ହିନ୍ଦୁପେଟ୍ରିୟଟ, ସାଧାରଣୀ ଏବଂ ବଙ୍ଗବାସୀରେ ଏହି ଅନ୍ୟାୟ କାର୍ଯ୍ୟ ସମ୍ପର୍କରେ କେତେକଥା ପାଠ କରିଥିଲୁଁ ଏବଂ ଚଳିତ ମାସ ତା ୧ ରିଖର ଦୈନିକରେ ଏହି ରୋଗ ବୃଦ୍ଧି ହେବାର ଆଉ ଗୋଟିଏ ସମାଚାର ପାଠକରି ଦୁଃଖିତ ଓ ବିସ୍ମିତ ହେଲୁଁ । ଉକ୍ତ ପତ୍ରିକା ଅନ୍ୟ ଏକ ସଂବାଦପତ୍ରରୁ ଅବଗତ ହୋଇଅଛନ୍ତି କି ମଇମନସିଂହର

ଡେପୁଟି ଇନ୍‌ସ୍ପେକ୍‌ଟର ବ୍ରଜେନ୍ଦ୍ରକୁମାର ଗୁହଙ୍କର ଶ୍ରୀନାଥ ଭଟ୍ଟାଚାର୍ଯ୍ୟ ନାମକ ଏକବ୍ୟକ୍ତି ଯୋଗରେ ଗୋଟିଏ ପୁସ୍ତକର ଦୋକାନ ଅଛି । ଶ୍ରୀନାଥ ବାବୁ ବ୍ୟାକରଣ ମଞ୍ଜୁଷାନାମକ ଖଣ୍ଡିଏ ପୁସ୍ତକର ସ୍ୱତ୍ୱ କ୍ରୟ କରନ୍ତେ ଡେପୁଟି ଇନ୍‌ସ୍ପେକ୍‌ଟର ଏକ ସରକ୍ୟୁଲିଅର ବାହାର କଲେ ଯେ ମଧ୍ୟଶ୍ରେଣୀର ପ୍ରଥମ ତିନିଶ୍ରେଣୀରେ ଉକ୍ତ ପୁସ୍ତକ ବ୍ୟବହୃତ ହେବ ଏବଂ ଏକ ସ୍କୁଲର ହେଡ଼ପଣ୍ଡିତ ଡେପୁଟି ଇନ୍‌ସ୍ପେକ୍‌ଟରଙ୍କ ଏପ୍ରକାର କ୍ଷମତାର ପ୍ରତିବାଦ କରିବାରୁ ଡେପୁଟି ତାହାଙ୍କୁ ବରଖାସ୍ତ କରାଇଲେ । ଏ ସମ୍ବନ୍ଧରେ "ଦୈନିକରେ" ଯାହା ଲେଖାଅଛି ତାହା ଆମ୍ଭମାନଙ୍କ ମତ ସହିତ ସମ୍ପୂର୍ଣ୍ଣ ଐକ୍ୟ ଥିବାରୁ ଏଠାରେ ଅବିକଳ ଉଦ୍ଧାର କଲୁଁ ଯଥା-

"ଆମ୍ଭେମାନେ ବଙ୍ଗଳା ପାଠ୍ୟପୁସ୍ତକ ସମ୍ବନ୍ଧରେ ସେଦିନ ଯାହା ଲେଖିଥିଲୁଁ ତାହା କିଛି ଅତି ରଞ୍ଜିତ ବା ଅତି ଚିତ୍ରିତ ନୁହଇ ସମ୍ପ୍ରତି ଆମ୍ଭମାନଙ୍କର କେହି କେହି ସହଯୋଗୀ ଏ ସମ୍ବନ୍ଧରେ ଯେ ସକଳ କଥା ପ୍ରକାଶ କରୁଅଛନ୍ତି ତଦ୍ୱାରା ଆମ୍ଭମାନଙ୍କର ମତ ଦୃଢ଼ତର ହେଉଅଛି । ଓଡସପଲପରି କେତେଗୁଡ଼ିଏ କୀଟ ସାହିତ୍ୟସଂସାରରେ ପ୍ରବେଶ କରି ନାନା ପ୍ରକାର ଅନର୍ଥ ଘଟାଉଅଛନ୍ତି ତାହା କିଛି ଅଲୀକ ନୁହଇ । ଆମ୍ଭେମାନେ ଦେଖି ସନ୍ତୁଷ୍ଟ ହେଲୁଁ ଯେ ଆମ୍ଭମାନଙ୍କର ଏକ ସହଯୋଗୀ ସୂକ୍ଷ୍ମଦର୍ଶୀ ସାଧାରଣୀ ଆମ୍ଭମାନଙ୍କ ମତକୁ ସମର୍ଥନ କରୁଅଛନ୍ତି । ଏହି ସମସ୍ତ ନିମ୍ନଶ୍ରେଣୀର ଗ୍ରନ୍ଥକାର ଡେପୁଟି ଇନ୍‌ସ୍ପେକ୍‌ଟରମାନଙ୍କର ପ୍ରସାଦଭୋଜୀ । ଏମାନେ ଆତ୍ମସ୍ୱାର୍ଥ ନିମିତ୍ତ ଆତ୍ମସମ୍ମାନକୁ ଜଳାଞ୍ଜଳୀ ଦେବାପାଇଁ କିଞ୍ଚିତ୍ ମାତ୍ର ଲଜ୍ଜିତ ବା କୁଣ୍ଠିତ ନୁହନ୍ତି । ଏଣେ ଅନେକ ଡେପୁଟି ଇନ୍‌ସ୍ପେକ୍‌ଟର ସ୍ୱାର୍ଥସିଦ୍ଧି ବା ଖୋସାମଦର ବଶୀଭୂତ ହୋଇ ଏମାନଙ୍କର ପରିପୋଷକ ହୋଇଅଛନ୍ତି ଏହି ଅନିଷ୍ଟର ପ୍ରତିବିଧାନ କରି ନ ପାରିଲେ ପିଲାମାନଙ୍କର କିଛିମାତ୍ର ଉପକାର ହେବାର ସମ୍ଭାବନା ନାହିଁ । ଅନେକ ଡେପୁଟିଇନ୍‌ସ୍ପେକ୍‌ଟର ପ୍ରକୃତ ଶିକ୍ଷା ପ୍ରତି ଦୃଷ୍ଟି ରଖି ପାଠ୍ୟପୁସ୍ତକ ନିର୍ବାଚନ କରନ୍ତି ନାହିଁ । ଆତ୍ମୀୟ ସ୍ୱଜନର ପ୍ରତିପାଳନ ସେମାନଙ୍କର ଉଦ୍ଦେଶ୍ୟ ହୋଇଯାଏ । ମୋଫସଲରେ ଏକା ଏହି ସମସ୍ତ ଡେପୁଟି ଇନ୍‌ସ୍ପେକ୍‌ଟରଙ୍କ ପ୍ରାଦୁର୍ଭାବ ଅଧିକ । **xxxx** ଡେପୁଟି ଇନ୍‌ସ୍ପେକ୍‌ଟରଙ୍କର ଏପ୍ରକାର ଆତ୍ମୀୟପାଳନୀ ବୃତ୍ତି ନିରୋଧ କରିବା ପାଠ୍ୟପୁସ୍ତକ ନିର୍ବାଚନୀ ସଭାର ଅବଶ୍ୟ କର୍ତ୍ତବ୍ୟ । ପୁଣି କେହି କେହି ଡେପୁଟି ଇନ୍‌ସ୍ପେକ୍‌ଟର ଭଲ ହେଉ ଅବା ମନ୍ଦ ହେଉ ଆପଣା ପୁସ୍ତକ ଆପଣା ପରିଦର୍ଶନାଧୀନ ସ୍କୁଲସମୂହରେ ପ୍ରଚଳିତ କରନ୍ତି ଆପଣା ଦ୍ରବ୍ୟର ଆପେ ବିକ୍ରେତା ହେଲେ ଯେଉଁ ଅନିଷ୍ଟ ଘଟଇ ଉପସ୍ଥିତ ସ୍ଥଳରେ ତାହା ଘଟୁଅଛି ।"

ଛରିଆଡ଼େ ଏହି ଗୁରୁତର ଅନିଷ୍ଟ ଅନୁଭୂତ ଓ ତହିଁର ପ୍ରତିବିଧାନ ନିମିତ୍ତ ଡାକ ପଡିଥିବା ସ୍ଥଳେ ସଂସ୍କାରକ ଯେବେ ଆମ୍ଭମାନଙ୍କର ଯୁକ୍ତିକି ଖଣ୍ଡ ଖଣ୍ଡ କରି କାଟି ଦେବେ ଆମ୍ଭେମାନେ ଏତିକି କହିବୁଁ ଯେ ସେ ବଡ଼ ବଳବାନ୍ । ବାରିକମାଷ୍ଟରି ପ୍ରତି ଯେଉଁ ନିଷିଦ୍ଧ ଆଜ୍ଞାର ଉଲ୍ଲେଖ କରିଅଛନ୍ତି ବୋଧ ହୁଅଇ ତାହାଙ୍କ ମତରେ ସେଟା ଅନ୍ୟାୟ ଆଉ ଶିକ୍ଷାବିଭାଗୀୟ କର୍ମଚାରିମାନେ ଆପେ ପୁସ୍ତକ ରଚୟିତା ପୁସ୍ତକ ବିକ୍ରେତା ଓ ପୁସ୍ତକ ନିର୍ବାଚକ ହେବା ନ୍ୟାୟସିଦ୍ଧ ଅଟଇ ।

*ଭା/୨୦ଗ,ସଂ୨୮ଖ୍ୟା,୧୧/୭/୧୮୮୪*

## ପାଠ୍ୟପୁସ୍ତକ ଓ ଶିକ୍ଷାବିଭାଗୀୟ କର୍ମଚାରୀ ।

ଆମ୍ଭେମାନେ ପୁନଃ ପୁନଃ ଏ ବିଷୟର ଅବତାରଣା କରି ଯେତିକି ଏ କୁରୀତି ଦମନ କରିବାର ଚେଷ୍ଟା କରୁଅଛୁଁ ତେତିକି କେବଳ ବିଫଳମନୋରଥ ହେଉଅଛୁଁ ବରଂ ତହିଁରୁ ଅଧିକ ଦେଖି ଅଛୁଁ ଯେ ଉକ୍ତ କୁରୀତି ବୃଦ୍ଧିକି ପାଉ ଅଛି । କାର୍ଯ୍ୟ ଦେଖି ଅନୁମାନ ହେଉଅଛି ଯେମନ୍ତ ଶିକ୍ଷାବିଭାଗୀୟ କର୍ମଚାରିମାନେ ଦୃଢ଼ପ୍ରତିଜ୍ଞ ହୋଇ ଅଛନ୍ତି ଯେ କ୍ରମାଗତ ଆଚରଣଦ୍ୱାରା ବିପକ୍ଷବାଦିଙ୍କୁ ଥକାଇ ଦେବେ ଅଥବା ଅଧିକ ମାତ୍ରାରେ ଆଚରଣ କରି ସର୍ବସାଧାରଣଙ୍କୁ ଭଲରୂପେ ଦେଖାଇ ଦେବେ ଯେ ତହିଁରେ କୌଣସି ଦୋଷ ବା ନିନ୍ଦାର କଥା ନାହିଁ । ଆମ୍ଭେମାନେ ଶିକ୍ଷାବିଭାଗୀୟ କର୍ମଚାରିଙ୍କର ଏହି ଚରିତକୁ ବରାବର ନିନ୍ଦା କରି ଆସୁଅଛୁଁ ଏବଂ ଯେଉଁମାନଙ୍କ ମତ ଆମ୍ଭେମାନେ ମାନ୍ୟ କରୁଁ ସେମାନେ ମଧ୍ୟ ଏହା ନିନ୍ଦନୀୟ ଥିବାର ପ୍ରକାଶ କରି ଅଛନ୍ତି ବରଂ ଯେଉଁମାନେ ଚକ୍ଷୁଲଜ୍ଜାବଶତଃ ପ୍ରକାଶ୍ୟରେ ଏହି

ମନ୍ଦକାର୍ଯ୍ୟକୁ ଅନୁମୋଦନ କରନ୍ତି ସେମାନଙ୍କ ମଧ୍ୟରୁ କେହି କେହି ଭିନ୍ନଭାବ ପ୍ରକାଶ କରିବାର ଶୁଣି ଅଛୁଁ । ଏଥି ଉତ୍ତାରୁ ଯେବେ ସର୍ବସାଧାରଣଙ୍କ ବିବେଚନାରେ ଏ କାର୍ଯ୍ୟ ନିନ୍ଦନୀୟ ବୋଲି ଗଣ୍ୟ ନ ହେବ ଅଥବା ନିୟତ ଆଚରଣଦ୍ୱାରା ନିନ୍ଦା ଭାବ ତହିଁରୁ ଅପସାରିତ ହୋଇ ଯିବ ତେବେ ଆମ୍ଭେମାନେ ଗୋଟିଏ ନୂତନ ଜ୍ଞାନଲାଭ କରିବୁଁ । କିନ୍ତୁ ଶିକ୍ଷାବିଭାଗର ସକଳ କାର୍ଯ୍ୟ ଉକ୍ତ ବିଭାଗୀୟ ଲୋକ ଛଡ଼ା ଅନ୍ୟମାନଙ୍କୁ ଜଣା ପଡ଼ିବାର ସୁବିଧା ନାହି ସୁତରାଂ ସମ୍ବାଦପତ୍ର ଯୋଗେ ସେ ସମସ୍ତ ସର୍ବସାଧାରଣଙ୍କୁ ଜଣାଇ ଦେବାର ଆବଶ୍ୟକ ହେଉ ଅଛି । ଶିକ୍ଷାବିଭାଗର ଏପ୍ରକାର କାର୍ଯ୍ୟ ଯେତେ ପ୍ରଚାର ହେବ ତେତେ ସାଧାରଣ ଲାଭ ଅଟଇ । କାର୍ଯ୍ୟ ଭଲ ହେଲେ ଶିକ୍ଷାବିଭାଗୀୟ କର୍ମଚାରିମାନେ ଅଧିକ ପ୍ରଶଂସା ଲାଭ ପୂର୍ବକ ଆହୁରି ଅଧିକ କରିବାକୁ ଉତ୍ସାହିତ ହେବେ ଏବଂ ଯେବେ ସମସ୍ତେ ମନ୍ଦ କହିବେ ତେବେ ତହିଁରୁ କ୍ଷାନ୍ତ ହେବେ ।

ଆମ୍ଭମାନଙ୍କର ଏହି ଦୀର୍ଘ ଭୂମିକାରେ ପାଠକମାନେ ବିରକ୍ତ ହେବେ ନାହି । ଚତୁର୍ଦ୍ଦିଗର ଅବସ୍ଥା ଦୃଷ୍ଟିରେ ନାନା ସନ୍ଦେହ ମନରେ ଉପସ୍ଥିତ ହେବାରୁ ସେପରି ଲେଖିବାକୁ ହେଲା । ଅଳ୍ପଦିନ ତଳେ ଶ୍ରୀଯୁକ୍ତ ଜଏଣ୍ଟଇନ୍‌ସ୍ପେକ୍ଟର ଏଠା ମିଉନିସିପାଲିଟିର ଏକ ବିଦ୍ୟାଳୟ ପରିଦର୍ଶନ କରି ମନ୍ତବ୍ୟ ବହିରେ ଅନ୍ୟାନ୍ୟ ବିଷୟ ମଧ୍ୟରେ ଲେଖି ଦେଲେ ଯେ ଏ ବିଦ୍ୟାଳୟରେ ଛାନ୍ଦମାଳା ପୁସ୍ତକ ପଢ଼ାଇବାର ଉଚିତ । କେହି ଅବା ମନେ କରନ୍ତି କି ଏପରି ଲେଖିବା ସାମାନ୍ୟ ବିଷୟ ଅଟଇ ଏଥିରେ କିଛି ଇତରବିଶେଷ ନାହି ମାତ୍ର ଆମ୍ଭମାନଙ୍କର ଧାରଣା ଯେ ଉଚ୍ଚ ଶ୍ରେଣୀର କର୍ମଚାରିମାନେ ସାମାନ୍ୟ ବିଷୟରେ ହସ୍ତକ୍ଷେପ କରନ୍ତି ନାହି ଓ କଲେ ଅବଶ୍ୟ ତହିଁରେ କୌଣସି ଉତ୍କୃଷ୍ଟ ତାତ୍ପର୍ଯ୍ୟ ଥାଇ ପାରେ ସୁତରାଂ ମନରେ ସନ୍ଦେହ ଉପସ୍ଥିତ ହେଉ ଅଛି ଓ ସେରୂପ ତାତ୍ପର୍ଯ୍ୟ ଖୋଜି ବାହାର କରିବାର ଆବଶ୍ୟକତା ଅନୁଭୂତ ହେଉ ଅଛି । ଆଦୌ ଛାନ୍ଦମାଳା ଯେତେ ଉତ୍କୃଷ୍ଟ ହେଲେହେଁ ଏମନ୍ତ ଖଣ୍ଡିଏ ପୁସ୍ତକ ଯେ ତାହାକୁ ପୁସ୍ତକ ବୋଲିବା ବିଡ଼ମ୍ବନା । ଏହା ପଢ଼ିବାକୁ ପିଲାମାନଙ୍କର ଦୁଇମାସ ସୁଦ୍ଧା ସମୟ ଲାଗିବ ନାହି । ପୁଣି ଜଏଣ୍ଟ ଇନ୍‌ସ୍ପେକ୍ଟରଙ୍କ ପ୍ରକାଶିତ ଲିଷ୍ଟରେ ଏହି ପୁସ୍ତକ ମଧ୍ୟମଶ୍ରେଣୀର ଓଡ଼ିୟା ବିଦ୍ୟାଳୟ ଏବଂ ଅପର ପ୍ରାଇମେରୀ ବିଦ୍ୟାଳୟର ପାଠ୍ୟପୁସ୍ତକ ବୋଲି ନିର୍ଦ୍ଦିଷ୍ଟ ହୋଇ ଅଛି ଯେ ବିଦ୍ୟାଳୟର କାର୍ଯ୍ୟାଧ୍ୟକ୍ଷମାନେ ଇଚ୍ଛା କଲେ ଏହାକୁ ଅନ୍ୟାନ୍ୟ ପୁସ୍ତକଠାରୁ ଅଗ୍ରଗଣ୍ୟ କରି ପାରନ୍ତି ଏବଂ ପାଠ୍ୟପୁସ୍ତକର ଲିଷ୍ଟମାନ ବାହୁଲ୍ୟରୂପେ ପ୍ରଚାରିତ ହୋଇ ଥିବାରୁ କାହାରି ନ ଜାଣିବାର କଥା ନାହି ତଥାଚ ସନ୍ଦେହ ହେଲେ ଖଣ୍ଡିଏ ଲିଷ୍ଟ ମିଉନିସିପାଲିଟିକୁ ପଠାଇ ଦେଲେ ଯଥେଷ୍ଟ ହୁଅନ୍ତା ତାହା ନ କରି ବିଶେଷରୂପେ ଉକ୍ତ ପୁସ୍ତକର ଉଲ୍ଲେଖ କରିବାର କୌଣସି ତାତ୍ପର୍ଯ୍ୟ ଦେଖାଯାଉ ନାହିଁ । ପକ୍ଷାନ୍ତରେ ଦେଖା ଯାଉଅଛି କି ଛାନ୍ଦମାଳାର ଗ୍ରନ୍ଥକାର ଜଏଣ୍ଟ ଇନସ୍‌ପେକ୍ଟରଙ୍କ ଜଣେ ଅତି ଆତ୍ମୀୟ ବନ୍ଧୁ ଅଟନ୍ତି କି ଯାହାଙ୍କୁ ସେ "ସୋଦର ପ୍ରତିମ" ବୋଲି ଏକ ସମୟରେ ସ୍ୱୀକାର କରି ଅଛନ୍ତି ଏବଂ ସେ ପ୍ରକାର ସମ୍ବନ୍ଧ ଅବଧି ରହିଥିବାର ସମସ୍ତେ ଜାଣନ୍ତି । ସୁତରାଂ ଏ ପ୍ରକାର ବନ୍ଧୁର ପୁସ୍ତକ ଅଧିକତର ପ୍ରିୟ ହେବାର ସ୍ୱଭାବସିଦ୍ଧ ଏବଂ ଏହି ହେତୁ ନାନା ବିଦ୍ୟାଳୟର ଲିଷ୍ଟରେ ସେ ପୁସ୍ତକକୁ ସ୍ଥାନଦାନ କରି ସୁଦ୍ଧା ତୃପ୍ତ ନ ହୋଇ ବିଶେଷ ମନ୍ତବ୍ୟ ଦ୍ୱାରା ତହିଁର ଅଧିକ ବିସ୍ତାର ବା ବିକ୍ରୟର ଉପାୟ କରି ଦେଇଅଛନ୍ତି । କିନ୍ତୁ ଯେମନ୍ତ ବନ୍ଦୋବସ୍ତରେ ଏ ପୁସ୍ତକ ଏବଂ ଏହିପରି ଅନ୍ୟାନ୍ୟ କେତେକ ଖଣ୍ଡ ପୁସ୍ତକ ବିକ୍ରୟ ହେଉଥିବାର ଆମ୍ଭେମାନେ ଶୁଣି ଅଛୁଁ ଏବଂ ଯହିଁରେ ପ୍ରାୟ ଦଶହଜାର ଖଣ୍ଡ ପୁସ୍ତକ ଦଶମାସ ମଧ୍ୟରେ ବିକ୍ରୟ ହୋଇଅଛି ତଦ୍ଦୃଷ୍ଟିରେ ଏପ୍ରକାର ବିଶେଷ ଉପାୟର କିଛି ମାତ୍ର ଆବଶ୍ୟକତା ଜଣା ଯାଉ ନାହି । ସେ ଦିନ ଜଣେ ଭଦ୍ରଲୋକ ଆମ୍ଭମାନଙ୍କ ସାକ୍ଷାତରେ କହିଲେ ଯେ ଏକ ବିଦ୍ୟାଳୟର ଶିକ୍ଷକଙ୍କୁ ବୃତ୍ତି ବାଣ୍ଟିବା ସମୟରେ ଜଣେ ସବ୍ ଇନ୍‌ସ୍ପେକ୍ଟର ପିଲାମାନଙ୍କ ହାତରେ ଖଣ୍ଡେ ଲେଖାଁଏ ଛାନ୍ଦମାଳା ଦେଲେ ଏବଂ ତହିଁର ମୂଲ୍ୟ ଶିକ୍ଷକଙ୍କ ବୃତ୍ତିରୁ କାଟି ନେଇ ପିଲାଙ୍କଠାରୁ ତାହା ଆଦାୟ କରି ନେବାକୁ ତାହାଙ୍କୁ କହି ଦେଲେ । ଆଉ ଜଣେ ଶିକ୍ଷକ ଏକଦିନ କହିଲେ ଯେ ତାହାଙ୍କର ଟ୧୦ଙ୍କା ବୃତ୍ତି ପାଉଣା ହେବାକୁ ଟ୭୍ୟଙ୍କା ନଗଦ ଓ ଟ୨୍ୟଙ୍କାର ପୁସ୍ତକ ଦିଆ ଗଲା । ସେ ଉକ୍ତ ପୁସ୍ତକମାନ କ୍ରମେ କ୍ରମେ ବିକ୍ରୟ କରି ମୂଲ୍ୟ ଆଦାୟ କରୁ ଅଛନ୍ତି । ଯେବେ ପରିଦର୍ଶନ କର୍ମଚାରିଙ୍କ ଯୋଗେ ଏବଂ ପ୍ରାଇମେରୀ ଫଣ୍ଡର ପ୍ରସାଦରୁ ପୁସ୍ତକ ବିକ୍ରୟର ଏପରି ଅସାଧାରଣ ସୁଯୋଗର କଥା ସତ୍ୟ ହୁଅଇ ଏବଂ

ଯେପ୍ରକାର ମୂଳରୁ ଶୁଣା ଯାଇଅଛି ତାହା ବିଚାର କଲେ ନିତାନ୍ତ ମିଥ୍ୟାବୋଲି ସହସା ବିଶ୍ୱାସ ହେଉ ନାହିଁ ତେବେ ପରିଦର୍ଶନ କର୍ମଚାରିଙ୍କ ପୁସ୍ତକ ବିକ୍ରୟ ନିମିତ୍ତ ଅଧିକ ସୁବିଧା କରିବାର କୌଣସି ଆବଶ୍ୟକତା ନାହିଁ ବରଂ ଏପ୍ରକାର ବିକ୍ରୟ କରିବା ଯେବେ କର୍ତ୍ତୃପକ୍ଷଙ୍କର ବିବେଚନାରେ ଅନ୍ୟାୟ ହୁଅଇ ତେବେ ତହିଁର କିଛି ପ୍ରତିବିଧାନ କରିବାର ଆବଶ୍ୟକ । ଜଏଣ୍ଟ ଇନ୍‌ସ୍ପେକ୍ଟର ଯେବେ ପରିଦର୍ଶନ କାର୍ଯ୍ୟ ଯଥୋଚିତ ମନୋଯୋଗପୂର୍ବକ କରନ୍ତି ତେବେ ତାହାଙ୍କ ଜ୍ଞାତସାରରେ ଏବିଷୟ ନ ଆସିବାର କଥା ନାହିଁ ଅଥବା ପ୍ରାଇମେରି ଶିକ୍ଷାରେ ତାହାଙ୍କର ସାକ୍ଷାତ୍ ସମ୍ବନ୍ଧ ନାହିଁ ବୋଲି ଏସମସ୍ତ ବୁଝନ୍ତି ନାହିଁ । ଫଳତଃ ପୂର୍ବରୁ ଯେବେ ଏବିଷୟ ଦିଗକୁ ତାହାଙ୍କ ଦୃଷ୍ଟି ଯାଇ ନାହିଁ ଏତେବେଳେ ଅବଶ୍ୟ **xxxx** ମନରେ ଉଦୟ ହେବ ଯେ ମନୁଷ୍ୟ ଦେବତା ନୁହଇ ଏବଂ ପ୍ରାଇମେରି ଫଣ୍ଡ ଯୋଗୁଁ ଯେଉଁ ସୁବିଧା ହୋଇ ଅଛି ତହିଁରେ ଏପରି ଘଟଣା ହେବା ବିଚିତ୍ର ନୁହଇ ଏବଂ ଉଣା ଅଧିକରେ ହେଉ ଅଛି । ପ୍ରାଇମେରି ଫଣ୍ଡ ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ଏହି କି ତହିଁପୂର୍ବ ଶିକ୍ଷାବିଭାଗୀୟ କୌଣସି କର୍ମଚାରୀ ବିରୁଦ୍ଧରେ ଏପ୍ରକାର କଥା ଶୁଣା ନ ଥିଲା ପ୍ରଥମେ ବାବୁ ଚତୁର୍ଭୁଜ ପଟ୍ଟନାୟକ ଇନ୍‌ସପେକଟିଂ ପଣ୍ଡିତ ପ୍ରଭୃତିଙ୍କଦ୍ୱାରା ପୁସ୍ତକ ବିକ୍ରୟ କରାଇବା କଥା ବାଲେଶ୍ୱର ସମ୍ବାଦବାହିକାରେ ବାହାରିଲା ତହିଁ ଉତ୍ତାରୁ ଏଜିଲ୍ଲାରେ ସେପରି କଥା ଶୁଣା ଯାଉ ଅଛି । ଶିକ୍ଷାବିଭାଗୀୟ କର୍ମଚାରୀଙ୍କର ଏପରି କାର୍ଯ୍ୟ ଉଚିତ ଅଟଇ କି ନା ପାଠକମାନେ ବିଚାର କରନ୍ତୁ ।

*ଭା୨୦ଗ,ସଂ୨୯ଖ୍ୟା, ୧୮।୭।୧୮୮୫*

## [କାଳ କି ନ କରେ]

ସଂବାଦ ବାହିକା ଜଏଣ୍ଟ ଇନ୍‌ସ୍ପେକ୍ଟରର ବାବୁ ରାଧାନାଥ ରାୟଙ୍କ କାର୍ଯ୍ୟର ସମାଲୋଚନା କରିଥିବାରୁ ତାହାକୁ ବ୍ୟକ୍ତିଗତ ଆକ୍ରମଣ ନିଶ୍ଚୟ କରି ତହିଁନିମିତ୍ତ ସଂସ୍କାରକ ବାଲେଶ୍ୱରର ବାବୁ ଭଗବାନଚନ୍ଦ୍ର ଦାସଙ୍କୁ ଭାରୀ ଯବାବଦିହିରେ ଆଣିଥିଲେ । ସେହି ସଂସ୍କାରକର ଗତ ସଂଖ୍ୟାର 'କାଳ କି ନ କରେ' ପ୍ରବନ୍ଧରେ ବାବୁ ଗୌରୀଶଙ୍କର ରାୟଙ୍କ ସମ୍ପର୍କରେ ଯାହା ଲେଖା ଅଛି ଓ ଯହିଁର ସମାଲୋଚନା ଏପଛେ କରିବାକୁ ଇଚ୍ଛା ରହିଲା ତାହା କି ବ୍ୟକ୍ତିଗତ ଆକ୍ରମଣ ନୁହଇ ? ଯେବେ ତାହା ହୋଇଅଛି ତେବେ ତହିଁ ନିମିତ୍ତ ସଂସ୍କାରକ ଆପଣାର ଜନ୍ମଦାତା ପୋଷଣକର୍ତ୍ତା ପ୍ରକୃତ କାର୍ଯ୍ୟାଧକ୍ଷ ଓ ସମ୍ପାଦକ ଏବଂ ସେବକସଭାର ସୃଷ୍ଟିକର୍ତ୍ତା ଓ ବ୍ରାହ୍ମସମାଜର ପ୍ରଧାନ ସଭ୍ୟ ବାବୁ ଚତୁର୍ଭୁଜ ପଟ୍ଟନାୟକଙ୍କୁ କଇଫିୟତ୍ ତଲବ କରିବେ କି ? ପୁଣି ପ୍ରକୃତବିଷୟ ନ ଜାଣିବାର ସ୍ୱୀକାର କରିବା ସ୍ଥଳେ ଏପରି ଆକ୍ରମଣ କରିବା ଆହୁରି ଚମତ୍କାର । ବାସ୍ତବରେ ସଂସ୍କାରକ ଅନ୍ଧଭାବରେ ଶିକ୍ଷାବିଭାଗର କାର୍ଯ୍ୟବିଶେଷର ପୋଷକତା କରିବାକୁ ଯାଇ ମହା କୁସଂସ୍କାରରେ ପଡିଅଛନ୍ତି ଏବଂ ଏଥିପାଇଁ ଆମ୍ଭେମାନେ ତାହାଙ୍କ ସହିତ ଦୁଃଖିତ ହୋଇ କହୁଅଛୁଁ ଯେ 'କାଳ କି ନ କରେ' ।

*ଭା୨୦ଗ, ସଂ୩୦ଖ୍ୟା, ୨୫।୭।୧୮୮୫*

## [ରାଧାନାଥ ରାୟ ଓ ଗୌରୀଶଙ୍କର]

ଗତ ୩୧ ସଂଖ୍ୟା ସଂସ୍କାରକ ଓ ସେବକରେ 'କାଳ କି ନ କରେ' ନାମରେ ଯେଉଁ ପ୍ରବନ୍ଧ ବାହାରି ଥିଲା ଏବଂ ଯହିଁର କିଞ୍ଚିତ୍ ଉଲ୍ଲେଖ ଆମ୍ଭେମାନେ ଗତ ସପ୍ତାହରେ କରିଥିଲୁଁ ତହିଁର ସଂକ୍ଷେପ ମର୍ମ ଏହି କି ରାଧାନାଥବାବୁ ଅଠର ବର୍ଷ ପୂର୍ବେ ଗୌରୀଶଙ୍କର ବାବୁଙ୍କର ବିଶେଷ ପ୍ରଶଂସାବାଚକ ଏକ କବିତା ପ୍ରକାଶ କରି କେତେବଡ଼ ବନ୍ଧୁଭାବ ଦେଖାଇ ଥିଲେ ଆଜି ସେହି ଗୌରୀଶଙ୍କର ପାଠ୍ୟପୁସ୍ତକ ଆନ୍ଦୋଳନ ଘେନି ରାଧାନାଥବିରୋଧୀ ହୋଇ ଅଛନ୍ତି । ସହଯୋଗିଙ୍କର ଏପ୍ରକାର ଭାବ ଉଦୟ ହେବାର ହେତୁ ଏହି କି ଛାନ୍ଦମାଳା ସମ୍ପର୍କରେ ଆମ୍ଭେମାନେ ଜଏଣ୍ଟ ଇନ୍‌ସ୍ପେକ୍ଟରଙ୍କର ଗୋଟିଏ କାର୍ଯ୍ୟକୁ ନିନ୍ଦା କରି ଥିଲୁଁ । ସେ କାର୍ଯ୍ୟଟି କିସ ସହଯୋଗୀ ତାହା ଜାଣି ନ ଥିବାର ସ୍ୱୀକାର କରି ଅଛନ୍ତି ସୁତରାଂ ଆମ୍ଭମାନଙ୍କ ସିଦ୍ଧାନ୍ତ ସଙ୍ଗତ କି ଅସଙ୍ଗତ ସେ ବିଚାର କରିବାକୁ ଅକ୍ଷମ କିନ୍ତୁ

ସେ ଦିଗକୁ ଯିବାର ପ୍ରୟୋଜନ ନାହିଁ ରାଧାନାଥ ବାବୁଙ୍କ ଟେକ ରଖିବା ତାହାଙ୍କର ଉଦ୍ଦେଶ୍ୟ ଏବଂ ଏଥିପାଇଁ ଗୌରୀଶଙ୍କର ବାବୁଙ୍କ ସହିତ ରାଧାନାଥ ବାବୁଙ୍କର ବୈବାହିକ ସମ୍ବନ୍ଧ ପର୍ଯ୍ୟନ୍ତ ଟାଣି ଆଣି ଆପେ ଘୃଣା କରୁଥିବା ବ୍ୟକ୍ତିଗତ ଆକ୍ରମଣକୁ ଜାଣି ଶୁଣି ପ୍ରଶ୍ରୟ ଦେଇ ଅଛନ୍ତି । ଯେମନ୍ତ ରାଧାନାଥ ବାବୁଙ୍କ ବିରୁଦ୍ଧରେ କିଛି କଥା ହେଲେ ସେ ହତବୁଦ୍ଧି ହୋଇ ଯାନ୍ତି । ଯାହାର ମନ ଏରୂପ ସେ ଲୋକ ସମ୍ବାଦପତ୍ରର ଭାର ନେବା କେମନ୍ତ ବିଡ଼ମ୍ବନା ତାହା ସାଧାରଣ ବିବେଚନା କରିବେ । ଆମ୍ଭେମାନେ ସହଯୋଗିଙ୍କର ଲେଖା ଓ ରୁଚି ଦେଖି ଦୁଃଖିତ ହୋଇ କହୁଁ ଅଛୁଁ ଯେ ସେ ସମ୍ବାଦପତ୍ରର ମର୍ଯ୍ୟାଦା ରକ୍ଷା କରିବାକୁ ଆଦୌ ଯୋଗ୍ୟ ନୁହନ୍ତି । ତାହାଙ୍କ ମତରେ ସମ୍ବାଦପତ୍ରର ସମ୍ପାଦକ ଆପଣା ବନ୍ଧୁ ବାନ୍ଧବ ବା ହିତାକାଂକ୍ଷୀଙ୍କର ସାଧାରଣ କାର୍ଯ୍ୟ ବିରୁଦ୍ଧରେ କୌଣସି କଥା ପ୍ରକାଶ କରି ଦେବେ ନାହିଁ ବରଂ କେହି ପ୍ରକାଶ କଲେ ତାହାକୁ ଅକୃତଜ୍ଞ ବୋଲି ଚିହ୍ନାଇ ଦେବେ ଏବଂ ଯୁକ୍ତି ଥାଉ ଅବା ନ ଥାଉ ତହିଁର ପ୍ରତିବାଦ କରିବେ । ଧନ୍ୟମହାତ୍ମା ସଂସ୍କାରକ ଆପଣଙ୍କର ଆବିର୍ଭାବରେ କି ଜଗତ୍ ଏହି ନୀତି ଶିକ୍ଷା କରିବ ! ସହଯୋଗିଙ୍କର ଦୁର୍ବଳ ମନର ପରିଚୟ ଏଥିରୁ ଅଧିକ କି ହୋଇ ପାରେ କିନ୍ତୁ ତାହାଙ୍କର ଯୁକ୍ତିର ଦୁର୍ବଳତା ତଦପେକ୍ଷା ଅଧିକ । ସେ ଯୁକ୍ତି ଏତିକି ଯେ "ବିଦ୍ୟା ବୁଦ୍ଧି ସୌଜନ୍ୟ ଓ ଦେଶାନୁରାଗ ଦୃଷ୍ଟିରେ ଅନେକ ଲୋକ ରାଧାନାଥବାବୁଙ୍କୁ ଗୌରୀଶଙ୍କରଙ୍କଠାରୁ ଉଚ୍ଚ ଦରର ଲୋକ ବୋଲି ଗ୍ରହଣ କରନ୍ତି" ଏବଂ ରାଧାନାଥ ବାବୁ ଏଡ଼େ ହୀନ ନୁହନ୍ତି ଯେ କର୍ତ୍ତବ୍ୟ ଜ୍ଞାନ ଛାଡି ବନ୍ଧୁଭାବର ଅନୁରୋଧରେ କୌଣସି କାର୍ଯ୍ୟ କରିବେ । ଗୌରୀଶଙ୍କର ବାବୁ ଯେ ରାଧାନାଥ ବାବୁଙ୍କ ସଙ୍ଗେ ଅନ୍ତତଃ ଏକ ନିକିତିରେ ବସିବାର ଯୋଗ୍ୟ ହେଲେ ଏଥିପାଇଁ ଆମ୍ଭେମାନେ ସହଯୋଗିଙ୍କୁ ଧନ୍ୟବାଦ ଦେଉ ଅଛୁଁ ଆଉ କର୍ତ୍ତବ୍ୟଜ୍ଞାନଠାରେ ବନ୍ଧୁଭାବକୁ ହୀନ ବୃତ୍ତି ବୋଲିବାରୁ ଆମ୍ଭେମାନେ ସନ୍ତୁଷ୍ଟ ହେଲୁଁ କିନ୍ତୁ ଗୌରୀଶଙ୍କର କର୍ତ୍ତବ୍ୟଜ୍ଞାନରେ ବନ୍ଧୁଭାବକୁ ଉପେକ୍ଷା କରିବାରୁ ଦୁଃଖିତ ହେଲେ ଆଉ ଗୌରୀଶଙ୍କରଙ୍କଠାରୁ ଶ୍ରେଷ୍ଠ ହେଲେ ବୋଲି ରାଧାନାଥ ବାବୁଙ୍କ ସମସ୍ତ କାର୍ଯ୍ୟ ସୁନ୍ଦର ହେଲା ଓ ସାଧାରଣଙ୍କ ଚକ୍ଷୁରେ ତାହାଙ୍କର କୌଣସି କାର୍ଯ୍ୟ ଅସୁନ୍ଦର ଦିଶିବ ନାହିଁ ଏ କେମନ୍ତ ବିଚାର । ଆମ୍ଭେମାନେ ବିଶ୍ୱାସ କରୁଁ ଯେ ରାଧାନାଥ ବାବୁ ଆପଣାକୁ ଅଭ୍ରାନ୍ତ ବୋଲି ବିଚାର କରନ୍ତି ନାହିଁ ଅଥବା ଉଚ୍ଚ ଦରର ଲୋକ ବୋଲି ସାଧାରଣ ମତକୁ ଅନାସ୍ଥା କରନ୍ତି । ସହଯୋଗୀ ତାହାଙ୍କପ୍ରତି ସେପ୍ରକାର କଣ୍ଟଣାର ବାଟ ଫିଟାଇ କେବଳ ତାହାଙ୍କ ମହତ୍ତ୍ୱରେ କଳଙ୍କ ଲାଗାଇ ଅଛ ।

*ଭା/୨୦ଗ, ସଂ୩୧ଖ୍ୟା, ୧/୮/୧୮୮୫*

## [ପାଠ୍ୟପୁସ୍ତକ କମେଟୀ]

ଗତ ଶନିବାର ପାଠ୍ୟପୁସ୍ତକ କମେଟୀର ଯେଉଁ ଅଧିବେଶନ ହୋଇଥିଲା ତହିଁ ସମ୍ପର୍କରେ ପ୍ରାପ୍ତ ହୋଇଥିବା ଜଣେ ବନ୍ଧୁଙ୍କ ପତ୍ର ଏଠାରେ ପ୍ରକାଶ କଲୁଁ ଯଥା;-

"ସ୍ୱାର୍ଥାନ୍ଧ ବ୍ୟକ୍ତି ସମ୍ପାଦକ ହେଲେ ମୟୂରପୁଚ୍ଛଧାରୀ କାକପରି ହୁଅଇ, ତାହାର୍ ବାହ୍ୟ ଗୌରବ ବୋବାଇଲାବେଳେ ଚିହ୍ନା ପଡିଯାଏ । ଏହି କଥାର ଗୋଟିଏ ଟଟକା ଦୃଷ୍ଟାନ୍ତ ଗତସଂଖ୍ୟକ ସଂସ୍କାରକର ସମ୍ବାଦସ୍ତମ୍ଭରେ ଦେଖାଦେଇଅଛି । ତାହା ଏହି--ଗତ ଶନିବାର ପାଠ୍ୟପୁସ୍ତକ ନିର୍ବାଚନ ସବ୍‌କମିଟୀରେ ସ୍ୱାସ୍ଥ୍ୟରକ୍ଷାର ପାଣ୍ଡୁଲିପିମାନ ମନୋନୀତ ନୋହିବାରୁ କେଉଁ ପ୍ରଣାଳୀରେ ସ୍ୱାସ୍ଥ୍ୟରକ୍ଷା ଗ୍ରନ୍ଥ ପ୍ରଣୟନ କଲେ ପାଠୋପଯୋଗୀ ହେବ ତହିଁ ସମ୍ବନ୍ଧରେ ନିୟମାବଳୀ ପ୍ରସ୍ତୁତ କରି ସାଧାରଣଙ୍କୁ ଜଣାଇବା କାରଣ ବାବୁ ରାଧାନାଥ ରାୟ ଓ ବାବୁ ମଧୁସୂଦନ ରାଓଙ୍କପ୍ରତି ଭାରାର୍ପିତ ହେଲା । ବିଶ୍ୱାସସୂତ୍ରେ ଅବଗତ ହେଲୁଁ ଯେ କମିଟୀର ଜଣେ ସଭ୍ୟ ଚତୁର୍ଭୁଜ ବାବୁ ଆପଣା ପାଣ୍ଡୁଲିପିଖଣ୍ଡି ଗୁପ୍ତଭାବରେ ନେଇ ଦୋଷାଂଶମାନ ସଂଶୋଧନ କରିଦେବା ନିମିତ୍ତ ସଭ୍ୟମାନଙ୍କୁ ବାଦାନୁବାଦରୂପେ ବହୁତ ଅନୁରୋଧ କଲେ କିନ୍ତୁ ଏପରି ମହାପାପ କରିବାକୁ କେହି ମଙ୍ଗିଲେ ନାହିଁ, ତହୁଁ ସଂସ୍କାରକରେ ଲେଖା ହେଲା "ଯେଉଁମାନେ ଗ୍ରନ୍ଥ ପ୍ରଣୟନ କରି କମିଟୀରେ ଦାଖଲ କରିଥିଲେ, ସ୍ୱାସ୍ଥ୍ୟରକ୍ଷା-ଜ୍ଞାନ ବିଷୟରେ ଉଲ୍ଲିଖିତ ବାବୁଦ୍ୱୟ ଯେ ସେମାନଙ୍କଠାରୁ ଅଧିକ ଉପଯୁକ୍ତ ଆମ୍ଭେମାନେ ସ୍ୱୀକାର କରି ନ ପାରୁଁ । ତେବେ କି ନିୟମାବଳୀ

ବାହାରୁ ଅଛି କ୍ରମେ ଜଣା ପଡ଼ିବ ଓ ବାବୁଦ୍ୱୟଙ୍କର ପାଣ୍ଡିତ୍ୟ ମଧ୍ୟ ପ୍ରକାଶ ପାଇବ ।" ବାସ୍ତବିକ କଥା, ସ୍ୱାସ୍ଥ୍ୟରକ୍ଷାର ନିୟମ ଜାଣୁ ଥିଲେ ରାଧାନାଥ ବାବୁ ଓ ମଧୁବାବୁ ଏପରି ଦୁର୍ବଳ ଏବଂ ସ୍ୱାସ୍ଥ୍ୟରକ୍ଷାର ନିୟମ ଜାଣୁ ନ ଥିଲେ ଚତୁର୍ଭୁଜ ବାବୁ ଏପରି ସବଳକାୟ ହୋଇ ନ ଥାନ୍ତେ । ଅତଏବ ଆମ୍ଭେମାନେ କହୁଁ ସ୍ୱାର୍ଥାନ୍ଧ ବ୍ୟକ୍ତି ସମ୍ପାଦକ ହେଲେ ଏହିପରି କେତେ ଚତୁର୍ଭୁଜୀ ଖଞ୍ଜର ନିଦର୍ଶନ ମିଳଇ । ଯେଉଁ ରାଧାନାଥ ତୌଲଲେ ଗୌରୀଶଙ୍କରଙ୍କଠାରୁ ଭାରୀ, ସେ ପୁଣି ଚତୁର୍ଭୁଜ ପ୍ରଭୃତିଙ୍କଠାରୁ ଉଶ୍ୱାସ ହୋଇ ଗଲେ । ଏଣିକି ତାଙ୍କ ପୁସ୍ତକ ମନୋନୀତ ନୋହିଲେ ଆଜିଯାଏ ଯେତେ ଯଶ ଗାଇଅଛନ୍ତି ତହିଁର ଓଲଟା ପାଠ ପଢ଼ିବେ ।"

ପତ୍ରପ୍ରେରକ ଯଥେଷ୍ଟ କହି ଅଛନ୍ତି ତହିଁରୁ ପାଠକମାନେ ଆପଣା ଆପଣା ମନ୍ତବ୍ୟ ସ୍ଥିର କରି ନେବେ । ସଂସ୍କାରକ ସେଦିନ ଯେତେବେଳେ କହି ଥିଲେ କି ବିଦ୍ୟା ବୁଦ୍ଧି ଇତ୍ୟାଦିରେ ରାଧାନାଥବାବୁଙ୍କୁ ଅନେକ ଲୋକ ଉଚ୍ଚଦରର ଲୋକ ଜ୍ଞାନ କରନ୍ତି ତେତେବେଳେ ବୋଧ ହୁଅଇ ସେହି ଅନେକ ଲୋକ ମଧ୍ୟରେ ବାବୁ ଚତୁର୍ଭୁଜ ପଟ୍ଟନାୟକଙ୍କୁ ଧରି ନ ଥିଲେ ଅଥବା ଘର ନ ବୁଝି କେବଳ ପର କଥାରେ ମାତି ଥିଲେ ଅନ୍ୟଥା ଏତେ ଶୀଘ୍ର ରାଧାନାଥବାବୁଙ୍କୁ ପରୀକ୍ଷା କରିବାର ପ୍ରୟୋଜନ ହୁଅନ୍ତା ନାହିଁ । ଫଳତଃ ଏ ପରୀକ୍ଷାର ଫଳ ଯାହା ହେଉ ଚତୁର୍ଭୁଜ ବାବୁଙ୍କର ଏହି କମିଟୀରେ ଥରକୁ ଦୁଇ ଥର ଯେଉଁ ଅଭିନୟ ଦେଖା ଗଲା ତହିଁରୁ ବିଲକ୍ଷଣ ପ୍ରମାଣ ହେଉ ଅଛି ଯେ ସେ ଏ କମିଟୀର ଯୋଗ୍ୟ ନୁହନ୍ତି । ଜଏଣ୍ଟ ଇନ୍‌ସ୍ପେକ୍ଟର ରାଧାନାଥ ବାବୁ ଏହାଙ୍କୁ ମନୋନୀତ କରି ଆପଣା ସୁବୁଦ୍ଧିର ପରିଚୟ ଦେଇ ନାହାନ୍ତି । ଏଥର ତାହାଙ୍କୁ ଅନୁରୋଧ ଯେ ଆପଣା ଭ୍ରମ ସଂଶୋଧନ କରନ୍ତୁ । ଆପଣା ସ୍ୱାର୍ଥ ନିମିତ୍ତ ଯେଉଁମାନେ ସର୍ବଦା ବ୍ୟସ୍ତ ସେମାନେ କୌଣସି ସାଧାରଣ ସଭାରେ ବସିବାର ଉପଯୁକ୍ତ ନୁହନ୍ତି ।

*ଭା୨୦ଗ, ସଂ୩୧ଖ୍ୟା, ୧।୮।୧୮୮୫*

## ଶିକ୍ଷାବିଭାଗ ଓ ଶିକ୍ଷାବନ୍ଧୁ ।

ଶିକ୍ଷାବନ୍ଧୁଙ୍କର ଅକାରଣ ବାକ୍ୟବାଣ ଏବଂ ଅସଙ୍ଗତ ବିଚାରରେ ଆମ୍ଭେମାନେ ଅତ୍ୟନ୍ତ କଷ୍ଟ ପାଇ 'ତ୍ରାହି ମଧୁସୂଦନ' ଡାକ ପକାଉଅଛୁଁ । ଏ ବିପଦରୁ ଉଦ୍ଧାର ପାଇବାର ଅନ୍ୟ ଉପାୟ ଦିଶୁ ନାହିଁ । ଆମ୍ଭେମାନେ ଆଶା କରିଥିଲୁଁ କି ଯେମନ୍ତ ଶିକ୍ଷାର ଉନ୍ନତି ସାଧନ ତେମନ୍ତ ଶିକ୍ଷାବିଭାଗୀୟ କର୍ମଚାରିଙ୍କର ଚରିତ୍ର ସଂଶୋଧନ ଏବଂ ସେମାନଙ୍କୁ ସୁନୀତି ଶିକ୍ଷା ଦେବା ଶିକ୍ଷାବନ୍ଧୁ ଆପଣାର.କର୍ତ୍ତବ୍ୟ କର୍ମ୍ମ ବୋଲି ଜ୍ଞାନ କରିବେ । ମାତ୍ର କାର୍ଯ୍ୟତଃ ଦେଖା ଯାଉଅଛି ଯେ ଉକ୍ତ କର୍ମଚାରୀଙ୍କ କାର୍ଯ୍ୟ ପ୍ରତି ସେ ଆଦୌ ଦୃଷ୍ଟି ରଖନ୍ତି ନାହିଁ ବରଂ କେହି ସେ ସମ୍ପର୍କରେ କିଛି କହିଲେ ତହିଁର ସତ୍ୟ ମିଥ୍ୟା ଅନୁସନ୍ଧାନ କରିବା ପୂର୍ବ ତାହାକୁ ଗାଳି ଦେବାକୁ ତତ୍ପର । ଆମ୍ଭେମାନେ ଯେଉଁ ଅନ୍ୟାୟ କାର୍ଯ୍ୟର ଉଲ୍ଲେଖ କରିଥିଲୁଁ ତାହା କେତେକାଳ ହେଲା ହୋଇ ଆସୁଅଛି ଶିକ୍ଷାବନ୍ଧୁ ସେଥିର କିଛିମାତ୍ର ଜାଣୁ ନ ଥିବାର ପ୍ରକାଶ କରିଅଛନ୍ତି ଅଥଚ ଆମ୍ଭେମାନେ କହିଦେଲୁଁ ବୋଲି ପ୍ରତିପନ୍ନ କରି ଦେଲେ ଯେ ରଧାନାଥ ବାବୁଙ୍କର ନିନ୍ଦା ଗାଇବା ଆମ୍ଭମାନଙ୍କର ନିତ୍ୟ ବ୍ରତ । ଯେବେ ଆମ୍ଭମାନଙ୍କର କଥା ନିତାନ୍ତ ଅମୂଳକ ବୋଲି ପ୍ରମାଣ କରି ଦିଅନ୍ତେ ତେବେ ସେପରି କହିଲେ ଶୋଭା ପାନ୍ତା ଏବଂ ଆମ୍ଭେମାନେ ଅନୁତାପ ଓ କ୍ଷମାପ୍ରାର୍ଥନା ବା ଅନ୍ୟ ପ୍ରକାରେ ପ୍ରାୟଶ୍ଚିତ୍ତ କରିବାକୁ କିଞ୍ଚିତ୍ ମାତ୍ର ଦ୍ୱିଧା କରନ୍ତୁ ନାହିଁ କିନ୍ତୁ ଅନ୍ୟଥା ପ୍ରମାଣ ହେଲେ ଆମ୍ଭମାନଙ୍କର ଦୋଷ ଦେଖାଇବା କି ବନ୍ଧୁତାର କାର୍ଯ୍ୟ ହେବ ନାହିଁ ? ସୁତରାଂ କିଛି ନ ବୁଝି ପ୍ରଥମରୁ ନିନ୍ଦୁକ ବୋଲି ଗାଳିଦେବା କେମନ୍ତ ସରଳତା ଏବଂ ନ୍ୟାୟ ବିଚାର ଅଟଇ ସର୍ବସାଧାରଣ ତହିଁର ବିଚାର କରିବେ । ଆଉ ଯେବେ ଆମ୍ଭେମାନେ ନିନ୍ଦୁକ ଓ ବିଦ୍ୱେଷୀ ତେବେ ଅନୁସନ୍ଧାନ କରିବା ସକାଶେ ପରାମର୍ଶ ଦେବାର ଆବଶ୍ୟକ କି ? ଶିକ୍ଷାବନ୍ଧୁ ଲେଖିଅଛନ୍ତି କି ଜଏଣ୍ଟ ଇନ୍‌ସ୍ପେକ୍ଟର ସର୍ବଜ୍ଞ ବା ସର୍ବବ୍ୟାପୀ ନୁହନ୍ତି ଯେ କୌଣସି ବିଷୟ ତାହାଙ୍କର ଜ୍ଞାତସାରରେ ନ ଆସିଲେ ସେ ତହିଁର ପ୍ରତିବିଧାନ କରିବେ । ସହଯୋଗିଙ୍କର ଏ ଉକାଲତୀ ନିତାନ୍ତ ଅସାର ଅଟଇ । ଯେବେ ମନୁଷ୍ୟ ସର୍ବଜ୍ଞ ହୋଇ ପାରନ୍ତା ତେବେ ଏକା ଶିକ୍ଷା ବିଭାଗୀୟ ଡାଇରେକ୍ଟର ସକଳ କର୍ମ କଲିକତାରେ ବସି କରନ୍ତେ । ମନୁଷ୍ୟ

ପକ୍ଷରେ ସେପରି କ୍ଷମତା ଅସମ୍ଭବ ବୋଲି ନାନା ଶ୍ରେଣୀର ପରିଦର୍ଶକ ନିଯୁକ୍ତ ହୋଇଅଛନ୍ତି । ଶିକ୍ଷା ସମ୍ବନ୍ଧରେ ଜଏଣ୍ଟ ଇନସ୍ପେକ୍ଟର ବିଭାଗୀୟ କର୍ତ୍ତା ଅଟନ୍ତି ସେ ଆପଣା ଇଲାକା ମଧ୍ୟରେ ନିୟତ ଭ୍ରମଣ କରି ସକଳ ବିଷୟର ତତ୍ତ୍ୱାବଧାରଣ କରିବେ ବୋଲି ଗବର୍ଣ୍ଣମେଣ୍ଟ ତାହାଙ୍କୁ ଏଡେବଡ଼ ଆଧି ଦେଇ ଅଛନ୍ତି । ଯେବେ କୌଣସି ଦୋଷ ତାହାଙ୍କର ତୀକ୍ଷ୍ଣ ଦୃଷ୍ଟି କି ବଳାଇ ଗଲା ତେବେ ତହିଁରେ ତାହାଙ୍କ କାର୍ଯ୍ୟର ଯତ୍କିଞ୍ଚିତ୍ ସୁଦ୍ଧା ଦୋଷ ହେଲା ନାହି ଏକଥା କିପରି ବୋଲାଯିବ ? ଜଏଣ୍ଟ ଇନସ୍ପେକ୍ଟର ଯେବେ ମନେ କରିଥିବେ ଯେ ସେ ତୁନି ହୋଇ କଚେରିରେ ବସିରହିବେ ଲୋକେ ଗୁହାରି କଲେ ତହିଁର ବିଚାର କରିବେ ତେବେ ଏତିକି ବୋଲିବାକୁ ହେବ ଯେ ଏ ଦେଶର ରୀତି ନୀତି ତାହାଙ୍କୁ କିଛି ଜଣାନାହି ଅଳ୍ପ ବେତନର କର୍ମଚାରିମାନେ ଉଚ୍ଚପଦସ୍ଥ କର୍ମଚାରିଙ୍କଠାରେ ଏତେ ଭୟ ଓ ଭକ୍ତି ରଖନ୍ତି ଯେ ନିତାନ୍ତ ପ୍ରାଣକୁ ନ ବାଧିଲେ ମୁହ ଫିଟାଇ କଥାଏ କୁହନ୍ତି ନାହି ଏମନ୍ତ ସ୍ଥଳେ ଗୁହାରି ଶୁଣିବାର ପ୍ରତ୍ୟାଶା କେମନ୍ତ ଦୁର୍ବଳ ତାହା ଅନାୟାସରେ ବୁଝା ଯାଇ ପାରେ ।

*ଭା୨୦ଗ,ସଂ୩୪ଖ୍ୟା, ୨୨।୮।୧୮୮୪*

## ବିଜ୍ଞାପନ ।

## ଶିଶୁପାଳନ

ଏ ପ୍ରକାର ପୁସ୍ତକ ଉତ୍କଳଭାଷାରେ କେବେହେଁ ପ୍ରକାଶିତ ହୋଇ ନାହି । ଏ ଦେଶରେ ପିଲାମାନେ ଶୈଶବାବସ୍ଥାରେ ଉତ୍ତମରୂପେ ପ୍ରତିପାଳିତ ହୁଅନ୍ତି ନାହି ତହିଁର କାରଣ କେବଳ ଗୃହସ୍ଥମାନଙ୍କର ଅଜ୍ଞାନତା । ଏହି ଅଜ୍ଞାନତା ବିଦୂରିତ କରିବା ମାନସରେ ଏହି ଗ୍ରନ୍ଥ ଖଣ୍ଡିକ ପ୍ରକାଶିତ ହୋଇଅଛି । ଶିଶୁକୁ କି ପ୍ରକାରେ ନିରୋଗରେ ରଖିବାକୁ ହେବ ଏବଂ ରୋଗ ଉପସ୍ଥିତ ହେଲେ କି ପ୍ରକାର ଚିକିତ୍ସା ଏବଂ କି କି ଚିକିତ୍ସା ଅବଲମ୍ବନ କରିବାକୁ ହେବ ତାହା ସୁନ୍ଦର ସରଳ ଭାଷାରେ ଏହି ପୁସ୍ତକରେ ପ୍ରକଟିତ ହୋଇଅଛି । ସୂତିକାଗୃହ, ଶିଶୁର ଜନ୍ମକାଳୀନ ପ୍ରକ୍ରିୟା, ଅନ୍ତୁଡିଶଯ୍ୟା ଓ ଘରର ବିବରଣ ଶିଶୁର ଖାଦ୍ୟ ଇତ୍ୟାଦି ବିଷୟମାନ ଏଥିରେ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଅଛି । କଟକ କଲେଜର ଅଧ୍ୟାପକ ବାବୁ ରାମପ୍ରସନ୍ନ ମୁଖୋପାଧ୍ୟାୟଙ୍କ ନିକଟରେ, କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଯନ୍ତ୍ରାଳୟରେ, ବାଲୁବଜାରସ୍ଥିତ ଓଡ଼ିଶା ସେଣ୍ଟ୍ରାଲମେଡିକେଲ ହଲରେ, ଆଲମଚନ୍ଦ ବଜାରସ୍ଥ ବାବୁ ଭାଗୀରଥୀ ସାଠିଯାଙ୍କ ପୁସ୍ତକାଗାରରେ, ମେଡିକେଲ ସ୍କୁଲ ଲାଇବ୍ରେରିରେ ତତ୍ତ୍ୱ କଲେ ଏହି ପୁସ୍ତକ ମିଳି ପାରିବ । ଏକତ୍ରରେ ଦଶ ଖଣ୍ଡ କ୍ରୟ କଲେ ଏକ ଖଣ୍ଡ ଉପହାର ଦିଆଯିବ ।

*ଅତିରିକ୍ତ, ୨୯।୮।୧୮।୮୪*

## ପ୍ରେରିତପତ୍ର ।

## [ସାହିତ୍ୟ ସଭା]

ମାନ୍ୟବର ଶ୍ରୀଲ ଶ୍ରୀଯୁକ୍ତ ଉତ୍କଳ ଦୀପିକା
ସମ୍ପାଦକ ମହାଶୟ ସମୀପେଷୁ

ମହାଶୟ ।

କେତେକ ବର୍ଷ ହେଲା ଏହି କଟକ ସହରରେ "ଶିକ୍ଷାବିଧାୟିକା" ଓ "ସାହିତ୍ୟରଞ୍ଜିନୀ ସଭା" ନାମକ ଦୁଇଗୋଟି ସଭା ଥିଲା । ଏହି ଦୁଇ ସଭାର ଉଦ୍ଦେଶ୍ୟ ପ୍ରାୟ ଏକ ଓ ଉଭୟ ସଭାର ସଭ୍ୟମାନେ ପ୍ରାୟ ଏକ । ଏପରି ସ୍ଥଳେ ଯେବେ ଉଭୟ ସଭା ଏକପ୍ରାଣ ଓ ଏକମନ ହୋଇ କାର୍ଯ୍ୟ କରନ୍ତି ତାହା ହେଲେ ଅବଶ୍ୟ ବଳ ଅଧିକ ହେବ, କାର୍ଯ୍ୟ ବେଶୀ ପରିମାଣରେ ସାଧିତ ହେବ ଏବଂ ସମୟ ମଧ୍ୟ ଅଳ୍ପ ବ୍ୟୟୀତ ହେବ ଏହି ଅଭିପ୍ରାୟରେ ଶିକ୍ଷାବିଧାୟିକା ସଭାର ପ୍ରସ୍ତାବାନୁସାରେ ଉଭୟ ସଭା ମିଳିତ ହୋଇ "ଶିକ୍ଷାବିଧାୟିନୀ ସଭା" ନାମରେ ଗୋଟିଏ

ନୂଆ ସଭା ସନ ୧୮୮୪ସାଲ ଅକ୍ଟୋବର ମାସ ତା ୧୪ ରିଖରେ ସଂଗଠିତ ହୋଇ ଅଛି ଏବଂ ଉଭୟ ସଭାର କାର୍ଯ୍ୟମାନ ଏହି ନୂତନ ସଭାର କାର୍ଯ୍ୟ ବୋଲି ପରିଗଣିତ ହୋଇ ଅଛି । ଏହି ଶିକ୍ଷାବିଧାୟିନୀ ସଭାର ବାର୍ଷିକ ଅଧିବେଶନ ଚଳିତମାସର ତା ୮ରିଖ ଶନିବାର ହୋଇ ଯାଇ ଅଛି । ଯେଉଁମାନେ ଉକ୍ତ ସମୟରେ ସଭାସ୍ଥଳେ ଉପସ୍ଥିତ ଥାଇ ବାର୍ଷିକ ବିବରଣୀ ଶ୍ରବଣ କରି ଅଛନ୍ତି ସେମାନେ ଏ ନୂତନ ସଭାର ଉଦ୍ଦେଶ୍ୟ, ନିୟମ ଏବଂ ସଭାଦ୍ୱାରା କି କି କାର୍ଯ୍ୟ ହୋଇ ଅଛି ଇତ୍ୟାଦି ବିଷୟ ବିଷଦଭାବରେ ହୃଦୟଙ୍ଗମ କରି ଥିବେ । ବର୍ତ୍ତମାନ ସର୍ବସାଧାରଣଙ୍କର ଜ୍ଞାପନାର୍ଥ ସେହି ବାର୍ଷିକ ବିବରଣୀର ସାରାଂଶ ଉଦ୍ଧୃତ କଲି ।

**ସଭାର ଉଦ୍ଦେଶ୍ୟ** ।-ଜାତୀୟ ସାହିତ୍ୟର ଉନ୍ନତି କରିବା, ମାତୃଭାଷାର ଉନ୍ନତି କରିବା, ରାଜ ଭାଷାରେ କଥୋପକଥନ କରିବାକୁ ଏବଂ ରଚନାଦି କରିବାକୁ ଶିକ୍ଷା କରିବା, ଦେଶରେ ଗ୍ରନ୍ଥକାର ଓ ବକ୍ତାମାନଙ୍କର ସଂଖ୍ୟା ବୃଦ୍ଧି କରିବା, ବଙ୍ଗାଳୀ ଓଡିଆମାନଙ୍କ ମଧରେ ଚିରବିରାଜିତ ବିଦ୍ୱେଷଭାବ ଦୂରୀଭୂତ କରିବା, ଯଥାସାଧ ସମାଜର ଉନ୍ନତି ସାଧନ କରିବା, ଗରିବ ନିଃସହାୟ ପଠନେଚ୍ଛୁ, ସଚ୍ଚରିତ୍ର ବୁଦ୍ଧିମାନ୍ ବାଳକମାନଙ୍କୁ ସେମାନଙ୍କର ବେତନାଦି ଆବଶ୍ୟକୀୟ ବ୍ୟୟ ପ୍ରଦାନଦ୍ୱାରା ସେମାନଙ୍କର ଶିକ୍ଷାର ଉତ୍କର୍ଷ ସାଧନ କରିବା ଇତ୍ୟାଦି ଏ ସଭାର ମୁଖ୍ୟ ଉଦ୍ଦେଶ୍ୟ ।

**ସଭାର ନିୟମ** ।- ରାଜନୈତିକ ଏବଂ ବିଶେଷ ସାମ୍ପ୍ରଦାୟିକ ଧର୍ମସମ୍ବନ୍ଧୀୟ ବିଷୟ ବ୍ୟତୀତ ଏ ସଭାରେ ଅନ୍ୟ ସମସ୍ତ ବିଷୟର ଆଲୋଚନା ହୋଇ ପାରେ, ଯେ କେହି ସଭ୍ୟ ହେବାକୁ ଇଚ୍ଛା କଲେ ବିଦେଶୀ ହେଲେ ମଧ ଏ ସଭାର ସଭ୍ୟ ହୋଇ ପାରିବେ ଇତ୍ୟାଦି ।

ଏ ସଭାର ଉଦ୍ଦେଶ୍ୟ ସବୁ ସାଧନ କରିବା ନିମନ୍ତେ ସଭାର ଚାରିଗୋଟି ବିଭାଗ ଅଛି ।

୧. ଶିକ୍ଷାବିଭାଗ : - ଭାଷାର ଉନ୍ନତି ସାଧନ କରିବା ଏବଂ ଚରିତ୍ର ସଂଗଠନ ଏ ବିଭାଗର ମୁଖ୍ୟ ଉଦ୍ଦେଶ୍ୟ । ଏଥିରେ ରଚନା ପାଠ, ବକ୍ତୃତା ପ୍ରଦାନ ଓ ସେହି ସବୁର ସମାଲୋଚନା ହୁଏ । ସମ୍ମିଳଣିଠାରୁ ବାର୍ଷିକ ଅଧିବେଶନ ଯାଏ ସଭାର ସର୍ବସମେତ ୧୩ଟି ଅଧିବେଶନ ହୋଇ ଯାଇ ଅଛି ।

୨. କାର୍ଯ୍ୟବିଭାଗ :- ସଭାର ସମସ୍ତ ଉଦ୍ଦେଶ୍ୟ କାର୍ଯ୍ୟରେ ପରିଣତ କରିବା ନିମନ୍ତେ ଓ ସଭାର ଆୟ ବ୍ୟୟ ନିର୍ଦ୍ଧାରଣ ନିମନ୍ତେ, ସଭାର ସଭାପତି, ସହକାରୀ ସଭାପତି, ସମ୍ପାଦକ, ସହକାରୀ ସମ୍ପାଦକ, କୋଷାଧକ୍ଷ ଏବଂ ସଭାଦ୍ୱାରା ନିର୍ବାଚିତ ଆଉ କେତେଗୁଡିଏ ସଭ୍ୟ ନେଇ ଗୋଟିଏ ସମିତି ଗଠିତ ହୋଇ ଅଛି । ଏ ସମିତିର ନାମ "କାର୍ଯ୍ୟନିର୍ବାହିକା ସମିତି" ଏ ସମିତିର ଜଣେ **xxxx** ସମ୍ପାଦକ ଅଛନ୍ତି । ଗତ ବର୍ଷ ସମିତିର **xxxx** ଟି ଅଧିବେଶନ ହୋଇ ଥିଲା । ସମିତିଦ୍ୱାରା ଦରିଦ୍ର କୋଷର ଯେଉଁ କାର୍ଯ୍ୟ କରା ଯାଇ ଅଛି ତାହା ସାହାଯ୍ୟକରୀ ବିଭାଗରେ ଦେଖାଇଲୁଁ ଓ ସଭାର ଅନ୍ୟାନ୍ୟ ଯେଉଁ କାର୍ଯ୍ୟ କରା ହୋଇ ଅଛି ତାହା ପ୍ରକାଶ କରା ଅନାବଶ୍ୟକ ମୋଟରେ ଏତିକି କହିଲେ ଯଥେଷ୍ଟ ହେବ ଯେ ସଭାର କାର୍ଯ୍ୟ ବଡ ସନ୍ତୋଷପ୍ରଦ ନୁହେ ।

୩ ସାହାଯ୍ୟକାରୀ ବିଭାଗ । - ଗରିବ ଶିକ୍ଷାପ୍ରୟାସୀ ନିଃସହାୟ, ବେତନ ଦେବାକୁ ଅସମର୍ଥ ପଠନେଚ୍ଛୁ, ବୁଦ୍ଧିମାନ୍, ସଚ୍ଚରିତ୍ର ବାଳକମାନଙ୍କର ବେତନାଦି ଅନ୍ୟାନ୍ୟ ଆବଶ୍ୟକୀୟ ଖରଚ ଦାନଦ୍ୱାରା ତାହାଙ୍କର ଶିକ୍ଷାର ଉନ୍ନତି ସାଧନ କରିବା ଏ ବିଭାଗର ଉଦ୍ଦେଶ୍ୟ । ଏ ବିଭାଗରେ ଜଣେ ସ୍ୱତନ୍ତ୍ର ସମ୍ପାଦକ, ୩ ଜଣ ସହକାରୀ ସମ୍ପାଦକ,ଜଣେ ସହଯୋଗୀ ସମ୍ପାଦକ, ଓ କେତେକ ଜଣ ଚାନ୍ଦାସଂଗ୍ରାହକ ଅଛନ୍ତି । ଏ ବିଭାଗର କୋଷ ସଭାର କୋଷଠାରୁ ପୃଥକ୍ ଓ ଏ କୋଷର ଟଙ୍କା ସଭାର କୋଷାଧକ୍ଷଙ୍କଠାରେ ନ ଥାଇ ଏହି ବିଭାଗର ସମ୍ପାଦକ ଶ୍ରୀ ବାବୁ ବୈକୁଣ୍ଠନାଥ ଦତ୍ତ ବି,ଏ, ଙ୍କ ନିକଟରେ ଥାଏ । ସମ୍ପାଦକ ମହାଶୟ କାର୍ଯ୍ୟନିର୍ବାହିକା ସମିତିର ଆଦେଶମତେ ଏ କୋଷର ଟଙ୍କା ବ୍ୟୟ କରନ୍ତି । ଏ କୋଷର ପ୍ରାୟ ଟ୬୦ଙ୍କା ସେଭିଂସ ବେଙ୍କରେ ଜମା ଅଛି ଏ କୋଷର ମାସିକ ଆୟ ପ୍ରାୟ ଟ୧୫ଙ୍କା ହେଲେହେଁ ଗତବର୍ଷ ମାସିକ ହାରାହାରି ଟ ୮ଙ୍କାରୁ ବେଶୀ ଓସୁଲ ହୋଇ ନାହିଁ । ବର୍ତ୍ତମାନ ପ୍ରାୟ କୌଣସି କୌଣସି ଚାନ୍ଦା ଦାତାମାନଙ୍କ ଉପରେ ୮।୯ ମାସର ଚନ୍ଦା ବାକୀ ଅଛି । ଏହି ବିଭାଗର କାର୍ଯ୍ୟ ଉତ୍ତମରୂପେ ନିର୍ବାହ କରିବା ନିମନ୍ତେ ବର୍ତ୍ତମାନ ସଭ୍ୟମାନେ ଯତ୍ନ କରୁଅଛନ୍ତି, ଫଳ ଈଶ୍ୱରେଚ୍ଛା ଦରିଦ୍ରକୋଷ (poor fund) ଆୟ ବ୍ୟୟ ଶିକ୍ଷାବିଧାୟିକା ସଭାର ୪ର୍ଥ ବାର୍ଷିକ ।

| | |
|---|---|
| ଅଧିବେଶନ ପର ବାକୀ | ଟ ୧୪ ⁄୳ |
| ଏକକାଳୀନ୍ ଦାନ ଓ ବାହାରର ଋନ୍ଦା | ଟ୧୧୯ ⁄୳ |
| ସର୍ଭେସ୍କୁଲରୁ ଚାନ୍ଦା ଆଦାୟ | ଟ ୧୧ ।⁄ |
| କଲେଜ କଲେଜିଏଟ ସ୍କୁଲର | |
| ଚାନ୍ଦା ଆଦାୟ | ଟ ୨୬ ⁄ |
| ମୋଟ | ଟ୧୭୧ ⁄ |
| ଖରଚ | ଟ ୬୦ ।⁄ ପାଇ |
| ଚଳିତବର୍ଷକୁ ବାକୀ | ଟ୧୧୧ । |

ବର୍ତ୍ତମାନ ଏ କୋଷରୁ କେବଳ ବେତନ ନେଇ ପ୍ୟାରୀମୋହନ ଏକାଡେମୀରେ ୨ ଜଣ ମଡେଲ ସ୍କୁଲରେ ୧ ଜଣ ଓ ଟାଉନ ସ୍କୁଲରେ ୩ ଜଣ ଏହିପରି ୬ ଜଣ ବାଳକ ଅଧ୍ୟୟନ କରୁ ଅଛନ୍ତି ।

ବର୍ତ୍ତମାନ ଏ କୋଷର ଆୟ ନିତାନ୍ତ କମ ଥିବାରୁ ଛାତ୍ରମାନଙ୍କର ସମସ୍ତ ଅଭାବ ପୂର୍ଣ୍ଣ କରିବାକୁ ସଭା ସକ୍ଷମ ହୋଇ ପାରୁ ନାହିଁ । ଯେବେ ଆମ୍ଭ ଦେଶର ଧନୀଲୋକ ଗଡ଼ଜାତ ରାଜା ଓ ଜମିଦାରମାନେ ଏହି ଦରିଦ୍ରକୋଷ ଉପରେ ଥରେ ଦୃଷ୍ଟିନିକ୍ଷେପ କରିବେ ତାହା ହେଲେ ଦରିଦ୍ର ବାଳକମାନଙ୍କର ଦୁଃଖ ଦୂର ହେବ, ସେମାନଙ୍କର କୀର୍ତ୍ତି ଜାଜ୍ଜ୍ୱଲ୍ୟମାନ ରହିବ, କ୍ଷୁଦ୍ର ଶିକ୍ଷା ବିଧାୟିନୀ ସଭାର ଉଦ୍ଦେଶ୍ୟ ସଫଳ ହେବ ମାତ୍ର ।

୪ ମୁଦ୍ରାଙ୍କନ ବିଭାଗ- ସଭାରେ ଗଠିତ ଭଲ ଭଲ ରଚନା ବକ୍ତୃତା, ସଭ୍ୟ ଅଥବା ଅନ୍ୟ ଲୋକମାନଙ୍କଦ୍ୱାରା ରଚିତ ପତ୍ରିକା ଅଥବା ପୁସ୍ତକ ଗୁଡିକ ମୁଦ୍ରାଙ୍କନ କରିବା ଏ ବିଭାଗର ଉଦ୍ଦେଶ୍ୟ ସଭାର କୋଷ ପ୍ରାୟ ଶୂନ୍ୟ ଥିବା ଯୋଗୁଁ ପୁସ୍ତକ ଓ ରଚନା ପ୍ରସ୍ତୁତ ଥିଲେ ସୁଦ୍ଧା ଏ ବିଭାଗର କାର୍ଯ୍ୟ ବନ୍ଦ ରହିଅଛି ।

ଗତ ବାର୍ଷିକ ଅଧିବେଶନ ସମୟରେ ସଭାର ଖରଚ ବାଦେ ସଭାର କୋଷରେ ଟ୭ ।୬ ଜମା ଥିଲା ।

ସଭାର କର୍ମଚାରୀମାନଙ୍କର ନାମ ।

ଶ୍ରୀ ବାବୁ ଗଣପତି ଦାସ ବି ଏ ସଭାପତି,
ଶ୍ରୀ ବାବୁ ପୂର୍ଣ୍ଣଚନ୍ଦ୍ର ପାଲିତ ସହକାରୀ ସଭାପତି,
ଶ୍ରୀ ବାବୁ ମୃଗାଙ୍କଧର ରାୟ ସମ୍ପାଦକ,
ଶ୍ରୀ ବାବୁ ବିନାୟକ କର ସହକାରୀ ସମ୍ପାଦକ,
ଶ୍ରୀ ବାବୁ ଶରଚ୍ଚନ୍ଦ୍ର ମୁଖୋପାଧ୍ୟାୟ କୋଷାଧ୍ୟକ୍ଷ,
ଶ୍ରୀ ବାବୁ ବୈକୁଣ୍ଠ ନାଥ ବି,ଏ, ଦରିଦ୍ରକୋଷ(poor fund)ର ସମ୍ପାଦକ ।

୭।୮।୮୫
କଟକ

ଆପଣଙ୍କର ଏକାନ୍ତ ବଶମ୍ବଦ
ଶ୍ରୀ ହାରାଚାନ୍ଦ ଘୋଷ ଶିକ୍ଷାବିଧାୟିନୀସଭାର
କାର୍ଯ୍ୟନିର୍ବାହିକା ସମିତିର ସମ୍ପାଦକ ।

*ଭା୨୦ଗ, ସଂ୩୬ଖ୍ୟା, ୧୨।୯।୧୮୮୫*

## [ବାର୍ଷିକ ପୁରସ୍କାର ପ୍ରଦାନ ଉତ୍ସବ]

ଗତ ଗୁରୁବାର ପ୍ରାତଃକାଳ ଘ୮ଣ୍ଟା ସମୟରେ କଟକ ଆକାଡମିର ଛାତ୍ରମାନଙ୍କୁ ବାର୍ଷିକ ପୁରସ୍କାର ଦାନ ଉପଲକ୍ଷରେ କଟକ ପ୍ରିଣ୍ଟିଂକମ୍ପାନିଙ୍କ ଦୋମହଲାରେ ସଭା ହୋଇ ଥିଲା । ଦୁଃଖର ବିଷୟ ଯେ ନଗରବାସୀ ପ୍ରାୟ ସମସ୍ତ ଦେଶୀୟ ଭଦ୍ରଲୋକଙ୍କୁ ଆମନ୍ତ୍ରଣ ହୋଇଥିବା ପ୍ରତ୍ୟକ୍ଷେ ତିନି ଚାରିଜଣରୁ ଅଧିକ ଉପଗତ ହୋଇ ନ ଥିଲେ । ପ୍ରକୃତରେ ସ୍କୁଲର ଛାତ୍ର ଶିକ୍ଷକ ସମ୍ପାଦକ ଓ ଦୁଇ ତିନିଜଣ ମେମ୍ବରଙ୍କୁ ଘେନି ସଭାର କାର୍ଯ୍ୟ ହୋଇ ଥିଲା । ଜଣେ ଦେଶୀୟ ଲୋକର ସଂସ୍ଥାପିତ ଗୋଟିଏ ସ୍ୱାଧୀନ ବିଦ୍ୟାଳୟର ପ୍ରତି ଏପ୍ରକାର ଅନାସ୍ଥା ବଡ ଶୋଚନୀୟ

ବିଷୟ ଅଟଇ ଏବଂ ଏହି ପ୍ରକାର ବ୍ୟବହାର ଦେଖି କେହି କେହି କହନ୍ତି କି ଯେବେ କୌଣସି ହାକିମ ଏ ସଭାର ସଭାପତି ହୋଇଥାନ୍ତେ ତେବେ କେତେ ବଡ଼ ବଡ଼ ଲୋକ ଲଣ୍ଡଭଣ୍ଡ ହୋଇ ଦୌଡ଼ି ଆସି ଆଗମାଡ଼ି ବସି ଥାନ୍ତେ । ବାସ୍ତବରେ ଆମ୍ଭେମାନେ ଯେତେ ପଢ଼ାଶୁଣା କଲେ ବା ସଭ୍ୟ ଭବ୍ୟ ହେଲେହେଁ ଅନୁସରଣିୟା ସ୍ୱଭାବ ନ ଛାଡ଼ିବା ପର୍ଯ୍ୟନ୍ତ ପ୍ରକୃତ ଉନ୍ନତିମାର୍ଗରେ ଚାଲି ପାରିବା ନାହି । ଯାହା ହେଉ ଆମ୍ଭମାନଙ୍କର ଅତି ଶ୍ରଦ୍ଧାସ୍ପଦ ବୃଦ୍ଧ ପାଦ୍ରି ବକଲି ସାହେବଙ୍କୁ ସୁବିବେଚନାପୂର୍ବକ ଏ ସଭାର ସଭାପତିତ୍ୱରେ ବରଣ କରା ଯାଇ ଥିଲା ଏବଂ ସେ ପ୍ରବେଶ ହୋଇ କାର୍ଯ୍ୟାରମ୍ଭ କଲାରୁ ଏହି ଆକାଡେମିର ସେକ୍ରେଟରୀ ବାବୁ କୃଷ୍ଣଚନ୍ଦ୍ର ମହାନ୍ତି ବାର୍ଷିକ ବିବରଣୀ ପାଠକଲେ । ଏବଂ ତାହା ଶୁଣି ସମସ୍ତେ ସନ୍ତୁଷ୍ଟ ହେଲେ ଦେଶହିତୈଷୀ ମୃତ ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ ଏ ବିଦ୍ୟାଳୟ ଆପଣା ବ୍ୟୟରେ ସ୍ଥାପନ କରି ଥିଲେ । ତାହାଙ୍କ ଅକାଳ ମୃତ୍ୟୁରେ ଏହାର ଯେପରି ଦୁରବସ୍ଥା ହୋଇଥିଲା ଓ ଯେପରି ଉପାୟରେ ସଜାଡ଼ ହେଲା ପାଠକମାନେ ଜାଣନ୍ତି । ବର୍ତ୍ତମାନ ବିଦ୍ୟାଳୟର ଆର୍ଥିକ ଅବସ୍ଥା ଉତ୍ତମ ହୋଇ ଅଛି ଏବଂ ତହିଁପାଇଁ କୃଷ୍ଣଚନ୍ଦ୍ର ବାବୁଙ୍କୁ ଆମ୍ଭେମାନେ ଯଥୋଚିତ ପ୍ରଶଂସା କରୁଅଛୁଁ ମନ୍ଦଅବସ୍ଥାରେ ବିଦ୍ୟାଳୟର ଭାର ନେଇ ଭଲ ଅବସ୍ଥାରେ ପହୁଞ୍ଚାଇବା କେବଳ ତାହାଙ୍କର ଆନ୍ତରିକ ଯତ୍ନ ଓ ସୁବିବେଚନା ସହିତ କାର୍ଯ୍ୟ ନିର୍ବାହର ଫଳ ଅଟଇ । ବର୍ତ୍ତମାନ ଏବିଦ୍ୟାଳୟରେ ଜ୧ ୨ ୪ଣ ଛାତ୍ର ପଢୁଅଛନ୍ତି ଏବଂ ନାନାକାରଣରୁ ଏବର୍ଷ ପ୍ରବେଶିକା ପରୀକ୍ଷାର ଫଳ ଭଲ ହୋଇ ନ ଥିଲେହେଁ ଏଣିକି ଅଧିକ କାର୍ଯ୍ୟକାରିତା ଦେଖାଇବାର ବନ୍ଦୋବସ୍ତ ହୋଇଅଛି । ବିବରଣୀ ପାଠ ଉତ୍ତାରୁ ପାରିତୋଷିକ ବଣ୍ଟନ ହେଲା ଏବଂ ତହିଁ ଉତ୍ତାରୁ ଛାତ୍ରମାନେ ସଂସ୍କୃତ ଓଡିୟା ଏବଂ ଇଂରାଜୀରେ ମୁଖସ୍ଥ କରି ଥିବା ପାଠ ପଢ଼ିଲେ । ଏଥିରେ ସଭାସ୍ଥ ବ୍ୟକ୍ତିଙ୍କର ବଡ଼ ଆନନ୍ଦ ହୋଇଥିଲା । ଏହି ପାଠପଢ଼ିବା ପିଲାମାନଙ୍କ ମଧ୍ୟରୁ କେତେକ ଜଣଙ୍କୁ ପାରିତୋଷିକ ମିଳିଲା ଆଉ ଯେଉଁମାନେ ନ ପାଇଲେ ସଭାପତି ବକଲି ସାହେବ ଆପଣା ହାତରୁ ପୁସ୍ତକ କିଣି ସେମାନଙ୍କୁ ପାରିତୋଷିକ ଦେବା ନିମିତ୍ତ ଅଙ୍ଗୀକାର କରି ଗଲେ । ସଭାପତିଙ୍କ ବକ୍ତୃତାଉତ୍ତାରୁ ପାଦ୍ରି ଯଙ୍ଗ ସାହେବ ଗୋଟିଏ ସାରଗର୍ଭ ଏବଂ ଉତ୍କୃଷ୍ଟ ଉପଦେଶ ପୂର୍ଣ୍ଣ ବକ୍ତୃତା କଲେ ଏବଂ ତହିଁଉତ୍ତାରୁ ସଭାଭଙ୍ଗ ହେଲା ।

*ଉ।୨୦ଗ, ସଂ୪୧ଖ୍ୟା, ୧୦।୧୦।୧୮୮୪*

# ୧୮୮୬

## ଶିକ୍ଷାବିଭାଗର ବାର୍ଷିକ-ବିଜ୍ଞାପନୀ

ଶିକ୍ଷାବିଭାଗର ସନ ୧୮୮୪/୮୫ ସାଲର ବିଜ୍ଞାପନୀରୁ ପ୍ରକାଶ ଯେ ଯଦ୍ୟପି କି ସନ ୧୮୮୨ଓ୧୮୮୩ ରେ ଯେମନ୍ତ ବିଦ୍ୟାଳୟ ଏବଂ ଛାତ୍ରସଂଖ୍ୟା ବୃଦ୍ଧି ହୋଇଥିଲା ଅନ୍ୟାନ୍ୟ ବର୍ଷରେ ସେପରି ବୃଦ୍ଧି ହୋଇ ନାହି ତଥାଚ ପ୍ରତିବର୍ଷ କିଛି କିଛି ବୃଦ୍ଧି ହେଉଅଛି । ଯଥା ସନ ୧୮୮୩-୮୪ ସାଲରେ ୭୦,୨୫୭ ବିଦ୍ୟାଳୟରେ ୧,୩୯,୬୦୯ ଛାତ୍ର ପଢୁଥିବା ସ୍ଥଳେ ସନ ୧୮୮୪-୮୫ରେ ବିଦ୍ୟାଳୟ ଓ ଛାତ୍ରସଂଖ୍ୟା ଯଥାକ୍ରମେ ୭୨,୬୦୪୧ ଏବଂ୧୪,୭୦,୧୮୦ ହୋଇ ଥିଲା । ଶିକ୍ଷାଦାନର ବ୍ୟୟ ସନ ୧୮୮୩-୮୪ ସାଲରେ ସର୍ବସୁଦ୍ଧା ବ୍ୟୟ ଟ ୭୪,୮୩୦୦୦ଙ୍କା ମଧରୁ ସରକାର ଟ ୨୯,୪୨,୦୦୦ଙ୍କା ଦେଇଥିଲେ ଏବଂ ସନ ୧୮୮୪-୮୫ ସାଲରେ ସର୍ବସୁଦ୍ଧା ବ୍ୟୟ ଟ ୭୮,୧୫,୦୦୦ଙ୍କା ମଧରୁ ସରକାର ଟ ୩୦,୮୦,୦୦୦ଙ୍କା ଦେଇ ଥିଲେ । ଅତଏବ ପ୍ରତ୍ୟକ୍ଷ ଦେଖାଯାଉଅଛି କି ସାଧାରଣଶିକ୍ଷା ବିଷୟରେ ଗବର୍ଣ୍ଣମେଣ୍ଟ ଏକଗୁଣ ଖର୍ଚ୍ଚ କରିବା ସ୍ଥଳେ ଲୋକେ ଦେଢ଼ଗୁଣ ଖର୍ଚ୍ଚ କରୁଅଛନ୍ତି ଓ ବର୍ଷକୁ ବର୍ଷ ଯେଉଁ ପରିମାଣରେ ଶିକ୍ଷାବିସ୍ତାର ହେଉଅଛି ସେହି ପରିମାଣରେ ଗବର୍ଣ୍ଣମେଣ୍ଟଙ୍କ ବ୍ୟୟ ବୃଦ୍ଧି ହେଉ ନାହିଁ । ଏଥି ଉତ୍ତାରୁ ଯେଉଁମାନେ କହନ୍ତି କି ଦେଶୀୟ ଲୋକମାନେ କେବଳ ସରକାରଙ୍କ ବ୍ୟୟରେ ଶିକ୍ଷିତ ହେଉଅଛନ୍ତି ସେମାନେ ଅବଶ୍ୟ ଲଜ୍ଜିତ ହେବେ । ବାସ୍ତବରେ ଯେଉଁ ଉଚ୍ଚଶିକ୍ଷା ପ୍ରଦାନରେ ଗବର୍ଣ୍ଣମେଣ୍ଟଙ୍କର ସର୍ବାପେକ୍ଷା ଅଧିକ ବ୍ୟୟ ହେଉଅଛି ତହିଁରେ କେବଳ ସରକାରି କଲେଜ - ସଙ୍ଗେ ସାହାଯ୍ୟକୃତ ବା ବିନା ସାହାଯ୍ୟକୃତ କଲେଜର ଫଳ ପ୍ରାୟ ସମାନ ରହିଅଛି । ଯଥା, ଏଫ,ଏ ପରିକ୍ଷାରେ ସରକାରି କଲେଜରୁ ଶତକରା ୭୮ଜଣ ଏବଂ ବେସରକାରି କଲେଜରୁ ୬୩ ଏବଂ ବିଏ ପରୀକ୍ଷାରେ ଯଥାକ୍ରମେ ୭୬ ଓ ୭୦ ଲେଖାଏଁ ଉତ୍ତୀର୍ଣ୍ଣ ହୋଇଥିଲେ । ଏମନ୍ତ ସୁନ୍ଦର ଫଳ ଦୃଷ୍ଟିରେ ମାନ୍ୟବର ଛୋଟଲାଟ ସାହେବ କହିଅଛନ୍ତି କି ଉଚ୍ଚସିକ୍ଷା-ବିଷୟରେ ବଙ୍ଗୀୟ ଗବର୍ଣ୍ଣମେଣ୍ଟ ଅବସର ନେବାର ଆରମ୍ଭ କରିପାରନ୍ତି ଏବଂ ବେସରକାରି ଉପାୟଦ୍ୱାରା ତହିଁର ମର୍ଯ୍ୟାଦା ରକ୍ଷା ହୋଇପାରିବ । ଆମ୍ଭମାନଙ୍କ ବିବେଚନାରେ ଗବର୍ଣ୍ଣମେଣ୍ଟଙ୍କର ଏ ବିଷୟରେ ତରତର ହେବା ଉଚିତ ନୁହଇ ।

ପ୍ରାଇମେରୀ ଅର୍ଥାତ୍ ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ କେତେଗୁଡ଼ିଏ ନୂତନ ପ୍ରସ୍ତାବ ଏ ବର୍ଷମଧରେ ହୋଇଥିଲା । ଯଥା କ୍ଷେତ୍ରତତ୍ତ୍ୱ ପରିବର୍ତ୍ତରେ କ୍ଷେତ୍ରପରିମାଣର ଶିକ୍ଷା ଦେବା ଏବଂ ଗୁରୁମାନଙ୍କ ପାରିତୋଷିକ ମନିଅର୍ଡରଦ୍ୱାରା ପଠାଗଲେ ତହିଁର ଖର୍ଚ୍ଚା ପାରିତୋଷିକରୁ କଟା ନ ଯାଇ ପ୍ରାଥମିକ ଫଣ୍ଡରୁ ଦିଆଯିବ । ପ୍ରଥମ ପ୍ରସ୍ତାବ-ସମ୍ପର୍କରେ ଏକଟିଂ ଡିରେକ୍ଟର ସାହେବ ଏହି ଅଭିପ୍ରାୟ ବ୍ୟକ୍ତ କରିଥିଲେ କି କ୍ଷେତ୍ରତତ୍ତ୍ୱର ସାହାଯ୍ୟ ବିନା କ୍ଷେତ୍ରପରିମାଣର ଉତ୍ତମ ଶିକ୍ଷା ହୋଇ ନ ପାରେ ଅତଏବ ଦୁଇବିଷୟ ଶିକ୍ଷା ଦେବାର ଉଚିତ । ଗବର୍ଣ୍ଣମେଣ୍ଟ ଏଥିରେ ସମ୍ମତ ହୋଇଅଛନ୍ତି । ଦ୍ୱିତୀୟ ପ୍ରସ୍ତାବସମ୍ବନ୍ଧରେ ଛୋଟଲାଟ କହିଅଛନ୍ତି କି ପାରିତୋଷିକ ବାଣ୍ଟିବା କାର୍ଯ୍ୟ ଜିଲ୍ଲା ବୋର୍ଡକୁ ଅର୍ପିତ ହେଉଅଛି ସେମାନେ ବିଭାଗୀୟ କର୍ମଚରିଙ୍କ ସହିତ ପରାମର୍ଶ ପୂର୍ବକ ତହିଁର ବ୍ୟବସ୍ଥା କରିବେ ଅତଏବ ମନିଅର୍ଡର ଦ୍ୱାରା ପାରିତୋଷିକ ଦେବା ନିୟମକୁ ଗବର୍ଣ୍ଣମେଣ୍ଟ ମଞ୍ଜୁର କଲେ ସୁଦ୍ଧା ସକଳଜିଲ୍ଲାରେ ବର୍ତ୍ତମାନ ସେ ନିୟମ ଜାରି କରିବାର ଉଚିତ ନୁହଇ ।

ଗୁରୁଶିକ୍ଷା ସମ୍ପର୍କରେ ଗୋଟିଏ ତୃଟି ଲକ୍ଷିତ ହୋଇଅଛି ଏବଂ ମାନ୍ୟବର ଛୋଟଲାଟ ସାହେବ ବାଲେଶ୍ୱରରେ ଥିବା ସମୟରେ ଏ କଥା ବିଶେଷରୂପେ ତାହାଙ୍କ ଛାମୁରେ ଉପସ୍ଥିତ ହୋଇଥିଲା । ଉକ୍ତ ତୃଟି

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଏହି କି ଗୁରୁମାନେ ନର୍ମାଲସ୍କୁଲର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲାଉତ୍ତାରୁ ଶିକ୍ଷକତା ଛାଡି ଦେଇ ଅନ୍ୟ ଲାଭକର ବ୍ୟବସାୟ ଲୋଡନ୍ତି । ଡାକ୍ତର ମାର୍ଟିନ ସାହେବ ଗୁରୁମାନଙ୍କଠାରୁ ତିନିବର୍ଷର ଏକରାରନାମା ନେବାକୁ ପ୍ରସ୍ତାବ କରିଅଛନ୍ତି ଏବଂ ଡିରେକ୍ଟର ସାହେବ ଏ ପ୍ରସ୍ତାବକୁ ଅନୁମୋଦନ କରିଅଛନ୍ତି ମାନ୍ୟବର ଲେଫ୍ଟନେଣ୍ଟ ଗବର୍ଣ୍ଣର ଏ ପ୍ରସ୍ତାବ ମଞ୍ଜୁର କରି ନାହାନ୍ତି । ସେ କହିଅଛନ୍ତି କି ନର୍ମାଲସ୍କୁଲର ସମସ୍ତ ବିଷୟ ବର୍ତ୍ତମାନ ଗବର୍ଣ୍ଣମେଣ୍ଟଙ୍କ ବିଗ୍ଭରାଧୀନରେ ଅଛି ।

ଓଡିଆ-ପାଠ୍ୟପୁସ୍ତକ ନିର୍ବାଚନ କମିଟୀ ସମ୍ବନ୍ଧରେ ଲେଖାଅଛି କି ପୂର୍ବେ ଏ କମିଟୀରେ ତିନିଜଣ ସଭ୍ୟ ଥିଲେ ବର୍ତ୍ତମାନ ଆଠଜଣ ହୋଇଅଛନ୍ତି ଏବଂ ତହିଁ ମଧ୍ୟରେ ତିନିଜଣ ବେସରକାରୀ ଲୋକ ଅଟନ୍ତି । ଏଠାରେ ବେସରକାରୀ ଲୋକର ଅର୍ଥ ଶିକ୍ଷାବିଭାଗର ବହିର୍ଭୂତ ଲୋକ ହୋଇଅଛି । ବର୍ଷ ମଧ୍ୟରେ ଖ୬୨ଣ୍ଡ ପୁସ୍ତକ ପ୍ରକାଶ ହୋଇଥିଲା ତହିଁ ମଧ୍ୟରୁ ଖ୪ଣ୍ଡ ତାଲିକାଭୁକ୍ତ ହୋଇଅଛି ।

*ଭା୨୧ଗ, ସଂ୨୪୍ୟା, ୯/୧/୧୮୮୬*

## ମହାଭାରତ ପ୍ରଗ୍ଭରର ଅନୁଷ୍ଠାନ ।

ଓଡିଶାରେ ଆଜକୁ କୋଡିଏ ବର୍ଷ ହେବ ଦେଶୀୟ ଲୋକଙ୍କ ଯତ୍ନରେ ଛାପାଖାନା ସ୍ଥାପିତ ହୋଇ ନାନା ଉତ୍କଳଭାଷା ଗ୍ରନ୍ଥ ପ୍ରକାଶ ହେଲା ମାତ୍ର ଏପର୍ଯ୍ୟନ୍ତ ମହାଭାରତ ରୂପ ସର୍ବଜନ ଆଦରଣୀୟ ଅମୂଲ୍ୟ ରତ୍ନଭଣ୍ଡାର ଦେଶୀୟଭାଷାରେ ପ୍ରକାଶିତ ହେଲା ନାହିଁ ଅବଶ୍ୟ ଦୁଃଖର ବିଷୟ ଅଟଇ । ବ ୧ ୨/୧୩ ର୍ଷ ପୂର୍ବେ ସମ୍ବଲପୁରର ଭୂତପୂର୍ବ ଡେପୁଟୀକମିଶ୍ନର ଶ୍ରୀଯୁକ୍ତ ବୋଇ ସାହେବ ଏ ବିଷୟରେ ମନୋଯୋଗୀ ହୋଇ କୃଷ୍ଣସିଂହ ରଚିତ ଭାଷା ମହାଭାରତର ପ୍ରଥମ ଦୁଇପର୍ବ ପ୍ରକାଶ କରିଥିଲେ ମାତ୍ର ଉତ୍ସାହ ଅଭାବରୁ ଆଉ ଅଗ୍ରସର ହୋଇ ପାରିଲେ ନାହିଁ । କାରଣ ମହାଭାରତ ଯେମନ୍ତ ବୃହତ୍ ପୁସ୍ତକ ତହିଁର ମୁଦ୍ରାଙ୍କନବ୍ୟୟ ତେମନ୍ତ ଭାରୀଅଟଇ ଏବଂ ଓଡିଶାରେ ଗ୍ରାହକସଂଖ୍ୟା ଅତ୍ୟନ୍ତ ଊଣା ଥିବାରୁ ସାମାନ୍ୟ ଆୟବାନ୍ ବ୍ୟକ୍ତି ପକ୍ଷରେ ଏମନ୍ତ ଗୁରୁତର କାର୍ଯ୍ୟ ନିର୍ବାହ ହେବା ଏକପ୍ରକାର ଅସାଧ । ସୁତରାଂ ଏତେକାଳ ତହିଁରେ କେହି ହାତ ଦେଇ ନ ଥିଲେ । ଇଦାନୀ ବାବୁ ଫକୀରମୋହନ ସେନାପତି ମୂଳ ସଂସ୍କୃତ ଗ୍ରନ୍ଥ ମହାଭାରତ ଗ୍ରନ୍ଥକୁ ଭାଷାରେ ଅନୁବାଦ କରିବାରୁ ବାଲେଶ୍ୱରର ରାଜା ଶ୍ୟାମାନନ୍ଦ ଦେ ତାହା ପ୍ରକାଶ କରିବାକୁ ଅନୁକୂଳ ହୋଇଥିଲେ ଏବଂ ଗତବର୍ଷ ସେ ବିଷୟ ଆମ୍ଭେମାନେ ଆନନ୍ଦ ସହିତ ପାଠକମାନଙ୍କୁ ଜଣାଇବା ସଙ୍ଗେ ସଙ୍ଗେ ଫକୀରମୋହନ ବାବୁଙ୍କ ଅନୁବାଦର ପ୍ରଶଂସା କରିଥିଲୁଁ । ସମ୍ପ୍ରତି ସେହି ମହାଭାରତ ଅନୁବାଦ ପ୍ରକାଶ ବିଷୟରେ ବାଲେଶ୍ୱରବାସୀ ବାବୁ ଭଗବାନଚନ୍ଦ୍ର ଦାସଙ୍କର ଖଣ୍ଡିଏ ବିଜ୍ଞାପନ ବାହାରି ଥିବାରୁ ଅନୁମାନ ହେଉଅଛି ଯେ ରାଜା ମହୋଦୟ କୌଣସି କାରଣରୁ ଉକ୍ତ ଶୁଭସଂକଳ୍ପ ପରିତ୍ୟାଗ କରି ଅଛନ୍ତି । ଯାହା ହେଉ ଭଗବାନ ବାବୁ ତଳଲିଖିତ ନିୟମରେ ମହାଭାରତର ଅନୁବାଦ ପ୍ରକାଶ କରିବାକୁ ଇଚ୍ଛା କରିଅଛନ୍ତି ଯଥା-

"ପ୍ରତିମାସ ରଏଲ ପେ ୮ କି ୬ଫାର୍ମ ଅର୍ଥାତ୍ ପୃ୪୮ଷ୍ଠା ଲେଖାଏଁ ଛାପା ହେବ । ମାସର ଶେଷଦିବସରେ ଏକ ଏକ ଖଣ୍ଡ ପ୍ରକାଶିତ ହେବ । ଆପାତତଃ ଆମ୍ଭେମାନେ ଗ୍ଭରିଶତ ଗ୍ରାହକ ପ୍ରାପ୍ତ ହେଲେ ଆସନ୍ତା ମାଘମାସଠାରୁ ପ୍ରକାଶ ଆରମ୍ଭ କରିବୁଁ । ଏହାର ବର୍ଷକୁ ଅର୍ଥାତ୍ ଖ୧୨ଣ୍ଡର ମୂଲ୍ୟ ଟ୩ଙ୍କା ମା୬ସକୁ ଅର୍ଥାତ୍ ଖ୬ଣ୍ଡର ମୂଲ୍ୟ ଟ୧ ଙ୍କା ବାରଅଣା ଏବଂ ପ୍ରତି ଖଣ୍ଡର ମୂଲ୍ୟ ଟ ଙ୍କା ପାଞ୍ଚଅଣା; ମାତ୍ର ଆମ୍ଭେମାନେ ୪ ଶତରୁ ଅଧିକ ଗ୍ରାହକ ପ୍ରାପ୍ତ ହେଲେ ବାର୍ଷିକ **xxxx** ଟ ୩ ଙ୍କା ରୁ ଟ୨ଙ୍କା ପର୍ଯ୍ୟନ୍ତ କମାଇ ଦେଇପାରୁଁ । ପୁସ୍ତକର ପ୍ରଥମଖଣ୍ଡ ପ୍ରାପ୍ତ ହେଲା ଉତ୍ତାରୁ ମୂଲ୍ୟ ଦେବାକୁ ହେବ ଆପାତତଃ ଗ୍ରାହକ ମହାଶୟମାନେ ଆପଣା ଆପଣା ନାମ ଧାମ ଲେଖି ପଠାଇବେ" ।

ଉପରଲିଖିତ ନିୟମାବଳୀରେ ସମସ୍ତ କଥା ଲେଖାଅଛି । କେବଳ କେତେଦିନେ ଉକ୍ତ ନିୟମରେ ପୁସ୍ତକ ଶେଷ ହେବ ପ୍ରକାଶକ ଲେଖି ଦେଇଥିଲେ ଭଲ ହୋଇଥାନ୍ତା । କାରଣ ଖଣ୍ଡିଆ ପୁସ୍ତକ ନେବାକୁ କେହି ସମ୍ମତ

ହେବେ ନାହିଁ ଅଥଚ ସମୁଦାୟ ପୁସ୍ତକ ପାଇବାକୁ କେତେ ଖର୍ଚ୍ଚ ଲାଗିବ ତାହା ଅନୁମାନ କରି ନ ପାରିବା ହେତୁ କେହି କେହି ଗ୍ରାହକ ଇଚ୍ଛା ଥିଲେ ସୁଦ୍ଧା ସହସା ପ୍ରବୃତ୍ତ ହେବେ ନାହିଁ । ଆମ୍ଭେମାନେ ଆଶା କରୁଁ କି ପ୍ରକାଶକ ଅତିଶୀଘ୍ର ନିୟମାବଳୀର ଏହି ଅଭାବଟି ପୂର୍ଣ୍ଣ କରିବା ବିଷୟରେ ଯତ୍ନବାନ୍ ହେବେ । ସସମ୍ପୂର୍ଣ୍ଣ ପୁସ୍ତକ କେତେକାଳ ମଧ୍ୟରେ ସର୍ବସୁଦ୍ଧା କେତେ ମୂଲ୍ୟରେ ପ୍ରାପ୍ତ ହୋଇପାରିବ ଏକଥା ଜାଣିବାକୁ ଅନେକ ଲୋକଙ୍କର ଇଚ୍ଛା । ଆଜିକାଲି ଓଡିଶାରେ ଯେମନ୍ତ ଶିକ୍ଷା ବିସ୍ତାର ହେଉଅଛି ଏବଂ ବିଦ୍ୱାନ୍‌ଲୋକଙ୍କର ସଂଖ୍ୟା ବଢୁ ଅଛି ତଦ୍ଦୃଷ୍ଟିରେ ଯେବେ ପ୍ରକାଶକ ମହାଶୟ ଆଶାନୁରୂପ ଗ୍ରାହକ ପାଇବାକୁ ଅକ୍ଷମ ହେବେ ତେବେ ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ହେବୁଁ । ବରଂ ଆମ୍ଭେମାନେ ଆଶା କରୁଁ କି ଓଡିଶାର ରାଜା ଜମିଦାର ଏବଂ ଧନାଢ୍ୟବ୍ୟକ୍ତିମାନେ ଏପ୍ରକାର ମଙ୍ଗଳକାର୍ଯ୍ୟରେ ଉତ୍ସାହ ଦେବ । କାରଣ ଜଣକେ ଖ ୫/୧୦ଖ ଲେଖାଏଁ ଗ୍ରହଣ କରିବାକୁ ସ୍ୱୀକୃତ ହେବେ । ତଦ୍ଦ୍ୱାରା ସେମାନଙ୍କର ଧନ ଅପାତ୍ରରେ ପଡିବ ନାହିଁ ବାସ୍ତବରେ ଓଡିଶାର ଗୋଟିଏ ମହତ୍ ଅଭାବ ବିଦୂରୀତ ହେବ । ବରଦାକାନ୍ତ ବାବୁଙ୍କ ମହାଭାରତ ପ୍ରକାଶ ନିମିତ୍ତ ଭାରତବାସି ଧନାଢ୍ୟ ବ୍ୟକ୍ତିମାନେ କେତେ କେତେ ଟଙ୍କା ଦାନ କରୁଅଛନ୍ତି ଓଡିଶାବାସିମାନେ କି ସେଭଳିକାର୍ଯ୍ୟରେ ସହାନୁଭୂତି ଦେଖାଇବାକୁ କୁଣ୍ଠିତ ହେବେ ? ବୋଲିବା ବାହୁଲ୍ୟ ଯେ ଗ୍ରହଣେଚ୍ଛୁକ ମହାଶୟମାନେ ଆପଣା ଆପଣା ନାମଧାମ ବାଲେଶ୍ୱର ନିବାସି ବାବୁ ଭଗବାନଚନ୍ଦ୍ର ଦାସଙ୍କ ନିକଟକୁ ଲେଖି ପଠାଇବାକୁ ତତ୍ପର ହେବେ ।

*ଭା୨୧ଗ, ସଂ୪ଖ୍ୟା, ୨୩।୧।୧୮୮୬*

## ପ୍ରେରିତପତ୍ର ।

## [କଲେଜଟି ଗବର୍ଣ୍ଣମେଣ୍ଟଙ୍କ ଅଧୀନରେ ରହୁ]

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସମୀପେଷୁ।

ନିମ୍ନଲିଖିତ କେତେକ ପଙ୍କ୍ତିଗୁଡିକୁ ସଂଶୋଧନ କରି ଆପଣଙ୍କ ବିଖ୍ୟାତ ପତ୍ରିକାରେ ମୁଦ୍ରିତକରି ବାଧିତକରିବା ହେବେ ।

ପ୍ରଦେଶରେ ଜନରବ ଉଠିଅଛି କି ଗଞ୍ଜାମ ବ୍ରହ୍ମପୁରରେ ସ୍ଥାପିତ ହୋଇଥିବା ଗବର୍ଣ୍ଣମେଣ୍ଟ କଲେଜ ମିଉନିସିପାଲଟି-ତଳେ ରହିବ ତାହାହେଲେ ଏ ପ୍ରଦେଶସ୍ଥ ଓଡିୟାମାନଙ୍କର ଦୁଃଖର ସୀମା ରହିବନାହିଁ । ଗବର୍ଣ୍ଣମେଣ୍ଟଙ୍କ ଅଧୀନରେ ଥିବାର ଏପ୍ରଦେଶର କେତେ କେତେ ଓଡିୟା ଛାତ୍ରମାନଙ୍କୁ ଏନଟରନ୍ସ ପାଶକରିବାଯାଏ ଛଅଟଙ୍କା ଓ ଏଫ୍ ,ଏ ପାଶ କରିବାଯାଏ ଦଶଟଙ୍କା ଛାତ୍ରବୃତ୍ତି ମିଳୁଥିଲା । ମିଉନିସ୍‌ପାଲିଟିର ଅଧୀନ ହେଲେ ଗରୀବ ଓଡିୟାମାନଙ୍କର କପାଳର ବିପରୀତ ହୋଇଯିବ । ଭବିଷ୍ୟତ୍‌କୁ ଆମ୍ଭମାନଙ୍କର ଆଶଙ୍କା ହେଉଅଛି କି ଯେବେ ମିଉନ୍‌ସିପାଲଟିର ଧନ ନିଅଣ୍ଟ ହେବ ତେବେ ଉକ୍ତ ବିଦ୍ୟାଳୟଟି କି ଟେକିଦେବାର ନିର୍ଣ୍ଣୟ କରିବେ ଏହା ହେଲେ ଏଦେଶର୍ କମା ବ୍ରାହ୍ମଣମାନେ ଓ ତେଲିଙ୍ଗୀମାନେ ମାନ୍ଦ୍ରାଜ ଓ ରାଜବନ୍ଦର ଇତ୍ୟାଦି ସ୍ଥଳରେ ବିଦ୍ୟା ଚର୍ଚ୍ଚା କରିପାରିବେ ଓଡିୟାମାନେ ସେଠାକୁ ଯାଇ ପାରିବେ ନାହିଁ କମା ଓ ତେଲଙ୍ଗାଙ୍କର ସେହି ସେହି ଦେଶରେ ବନ୍ଧୁ ଓ କାହାରି କାହାରି ନିଜଘର ଥିବାରୁ ବହୁ ସୁବିଧା ହେବ । ଯେବେ ଉକ୍ଳ ଦେଶଟି ଗୋଟିଏ ପ୍ରଭୁତଳେ ଥାଇ ଥୋକେଭାଗ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କ ଅଧୀନରେ ଥୋକେ ବଙ୍ଗଳାରେ କେତେକ ମଧ୍ୟପ୍ରଦେଶରେ ମିଶି ନ ଥାନ୍ତା ତେବେ ଆମ୍ଭର କାହାରିକୁ ଗୁହାରି କହିବାର ଆବଶ୍ୟକ ନଥାନ୍ତା । ଅତଏବ ଭାରତବର୍ଷ ଗବର୍ଣ୍ଣମେଣ୍ଟକୁ ଆମ୍ଭମାନଙ୍କର ଦୃଢ଼ପ୍ରାର୍ଥନା କଲେଜଟି ଗବର୍ଣ୍ଣମେଣ୍ଟଙ୍କ ଅଧୀନରେ ରହୁ । ଭିନ୍ନ ଭିନ୍ନ ପ୍ରସିଡେନ୍‌ସିରେ ଭୁକ୍ତ ହେଉଥିବା ସକଳ ଉତ୍କଳଦେଶ ଗୁଡିକ ଏକତ୍ରରେ ଏକ ପ୍ରଭୁତଳେ ପରିପାଳନ କରାଯାଉ ।

ଆମ୍ଭର ପ୍ରେରିତପତ୍ର ପାଠକଲା ମାତ୍ର ଏତେକଥା ସଫଳ ହେବ ନାହିଁ । ଯେମନ୍ତ ଉର୍ଣ୍ଣନାଭିସୂତ୍ରରେ ବନ୍ଧା

ନ ଯାଏ ମରହସ୍ତୀ । ସମୁଦ୍ରକୁ ଶଙ୍ଖେ ପାଣି ନକରେ ଭରତି । ଏଥି ସକାଶେ ଆମ୍ଭର ହେ ଉତ୍କଳୀୟ ବନ୍ଧୁମାନେ କାର୍ଯ୍ୟ ସଫଳ ହେବାଲାଗି ବହୁ ଚେଷ୍ଟା କରନ୍ତୁ ।

ରସୁଲକୋଣ୍ଡା
୨୧।୧।୧୮୮୬

ଆପଣଙ୍କ ଅନୁଗ୍ରହାକାଙ୍କ୍ଷୀ ଓ
ଏକାନ୍ତ ବଶମ୍ବଦ
ଶ୍ରୀହରିତ୍ରିପାଠୀ ଶର୍ମା
ବାଳିକାସ୍କୁଲ ଶିକ୍ଷକ

*ଭା୨୧ଗ, ୪ସଂଖ୍ୟା, ୩୦।୧।୧୮୮୬*

## ସ୍ଥାନୀୟ ପୁସ୍ତକନିର୍ବାଚନୀକମିଟୀ ।

ବଙ୍ଗୀୟ ଶିକ୍ଷାବିଭାଗର ଡାଇରେକ୍ଟର ସାହେବ ଗତବାର୍ଷିକବିଜ୍ଞାପନୀରେ ଓଡିଶାପୁସ୍ତକ ନିର୍ବାଚନୀ କମିଟୀ ବିଷୟରେ ତଳଲିଖିତ କଥାଗୁଡିକ ଲେଖିଅଛନ୍ତି ଯଥା;-

"ଓଡିଶା ପୁସ୍ତକନିର୍ବାଚନୀ କମିଟୀ ବିସ୍ତୃତଭାବର ଗଠିତ ହୋଇ ସଭ୍ୟସଂଖ୍ୟା ଜଣ୩ଣ ସ୍ଥଳେ ଜଣ୮ଣ ହୋଇଅଛି । ଏମାନଙ୍କ ମଧ୍ୟରୁ ଜଣ୩ଣ ବେସରକାରୀ ଭଦ୍ରଲୋକ ଏବଂ ଅଧିକାଂଶ ସଭ୍ୟଙ୍କ ସମ୍ପର୍କରେ ଏକଥା କହିବା ଉଚିତ ହେଉଅଛି କି ଯେଉଁମାନେ ଏ ସବୁ ପୁସ୍ତକ ପଢାଇବା ଓ ପରୀକ୍ଷା କରିବାର କାର୍ଯ୍ୟ କରନ୍ତି ଏବଂ ତଦ୍ଦ୍ୱାରା ଉକ୍ତ ପୁସ୍ତକସମସ୍ତର ଉପଯୋଗିତା ବିଚାର କରିବାକୁ ଭଲ ସୁଯୋଗ ଲଭନ୍ତି ସେମାନଙ୍କର ଏ କମିଟୀରେ ରହିବା ଆବଶ୍ୟକ ଅଟଇ"।

ଏଥିଉତ୍ତାରୁ ଆଉ ଏକସ୍ଥଳେ ଲେଖାଅଛି କି "କେତେକ ପାଠ୍ୟପୁସ୍ତକ ଘେନି ସ୍ଥାନୀୟ ସମ୍ବାଦପତ୍ରମାନଙ୍କରେ ଆନ୍ଦୋଳନ ଲାଗିଥିଲା । ଯେହେତୁ ବିବାଦକାରୀ ଗ୍ରନ୍ଥକାର ଏବଂ ସେମାନଙ୍କ ଦଳଭୁକ୍ତ ଲୋକଙ୍କ ଝଗଡା ସହଜରେ ନିଷ୍ପତ୍ତି ହେବାର ନୁହଇ ଏବିଷୟ ପ୍ରତି କେତେ ପରିମାଣରେ ଅବଧି ମନୋଯୋଗ ରହିଅଛି । ଶାଖା ନିର୍ବାଚନୀ କମିଟୀଦ୍ୱାରା ମନୋନୀତ ହେବା ବାସ୍ତବରେ ଉପଯୁକ୍ତ ଏବଂ ସୁଲଭପୁସ୍ତକ ସର୍ବଦା ସର୍ବସାଧାରଣରେ ଆଦରଣୀୟ ହେବ ।"

ଯେଉଁମାନେ ଓଡିଶାଶିକ୍ଷାବିଭାଗର କାର୍ଯ୍ୟ ଓ ତହିଁ ସମ୍ପର୍କରେ ସ୍ଥାନୀୟସମ୍ବାଦପତ୍ରର ଆନ୍ଦୋଳନ ମନୋନିବେଶପୂର୍ବକ ବୁଝି ନାହାନ୍ତି ସେମାନଙ୍କ କାନରେ ଡାଇରେକ୍ଟର ସାହେବଙ୍କ ଉପରଲିଖିତ କଥାଗୁଡିକ ନ୍ୟାୟସଙ୍ଗତ ଶୁଭିବ ସନ୍ଦେହ ନାହି । ଯେଉଁମାନେ ଯେ ବିଷୟ ପଢାଇବା ବା ପରୀକ୍ଷା କରିବାର କାର୍ଯ୍ୟ କରନ୍ତି ସେମାନେ ସେ ବିଷୟର ଭଲ ପୁସ୍ତକ ବାଛି ନେବାକୁ ଅଧିକତର ସକ୍ଷମ ଏବଂ ନିରପେକ୍ଷଭାବରେ ଭଲ ପୁସ୍ତକ ବଛାଗଲେ ଗ୍ରନ୍ଥକାରଙ୍କ ବିବାଦ କରିବାର ବାଟ ରହିବ ନାହି ଏ କଥା ସତ୍ୟ ମାତ୍ର ଓଡିଶାର ଦୁର୍ଭାଗ୍ୟକୁ ସେ କଥା ଖଟୁ ନାହି ଏବଂ ବଡଦୁଃଖର ବିଷୟ ଯେ ଏତେକାଳ ଏ ବିଷୟ ସ୍ଥାନୀୟସମ୍ବାଦପତ୍ରମାନଙ୍କରେ ଆନ୍ଦୋଳିତ ହେବା ପ୍ରଯ୍ୟୋକ୍ଷେ ଡାଇରେକ୍ଟର ମହାଶୟ ତହିଁର ପ୍ରକୃତ ମର୍ମ ଅବଗତ ହୋଇ ପାରିଲେ ନାହି । ଏଥିପାଇଁ ଆମ୍ଭେମାନେ ତାହାଙ୍କର ଦୋଷ ଦେଉ ନାହୁଁ । ଏ ଦୋଷ ପରିଦର୍ଶକ କର୍ମଚାରିଙ୍କର । ଜଏଣ୍ଟ ଇନ୍‌ସ୍ପେକ୍ଟର ଏଠା ଶିକ୍ଷାବିଭାଗର ପ୍ରଧାନକର୍ମଚାରୀ । ଏ ସବୁ ବିଷୟ ଉତ୍ତମରୂପେ ଆଲୋଚନା କରିବା ଏବଂ ଉପରିସ୍ଥ କର୍ମଚାରିଙ୍କି ଜଣାଇବା ତାହାଙ୍କର କର୍ତ୍ତବ୍ୟ ଅଟଇ ମାତ୍ର ସେ ଯେ ଆପଣାର ନିନ୍ଦା ଆପେ ସ୍ପଷ୍ଟ କରି ଲେଖି ପଠାଇବେ ଏପରି ଆଶା କରିବା ଅତିରିକ୍ତ ଅଟଇ । ଆମ୍ଭେମାନେ ମନେ କରିଥିଲୁଁ ଯେ ବିଭାଗୀୟ ଇନ୍‌ସ୍ପେକ୍ଟର ଗତବର୍ଷ ଏଠାକୁ ଆସିଥିଲେ ପ୍ରକୃତ କଥା ବୁଝି ଯାଇଥିବେ ମାତ୍ର କାର୍ଯ୍ୟରୁ ତାହା ଜଣା ପଡୁ ନାହି ଅଥବା ବୁଝି ଯାଇଥିଲେ ଡାଇରେକ୍ଟର ମହାଶୟଙ୍କୁ ବୁଝାଇ ପାରି ନାହାନ୍ତି । ନୋହିଲେ ଏପରି ଭ୍ରମ କାହିଁକି ହେଲା ? ବର୍ତ୍ତମାନ ପୁଣି ଇନ୍‌ସ୍ପେକ୍ଟର ମହାଶୟ ଏ ପ୍ରଦେଶକୁ ଆସିଅଛନ୍ତି ଆମ୍ଭେମାନେ ତାହାଙ୍କୁ ବିଶେଷରୂପେ ଅନୁରୋଧ କରୁଅଛୁଁ କି ସେ ଏ ନଗରବାସୀ ନିରପେକ୍ଷ ଅଥଚ ଏ ସବୁ ବିଷୟ ଭଲରୂପେ ଜାଣିଥିବା ଭଦ୍ର ଲୋକଙ୍କ ସହିତ କଥାବାର୍ତ୍ତା ଏବଂ ସ୍ଥାନୀୟସମ୍ବାଦପତ୍ରମାନଙ୍କର ଲେଖା ପାଠଦ୍ୱାରା ପ୍ରକୃତ ଅବସ୍ଥା ବୁଝିବାକୁ ଚେଷ୍ଟା କରନ୍ତୁ । ଯେଉଁଠାରେ ଗୋଟିଏ

ବିଭାଗର କାର୍ଯ୍ୟରେ ଦୀର୍ଘକାଳରୁ ଭାରୀ ଅସନ୍ତୋଷ ପ୍ରକାଶ ହୋଇ ଆସୁଅଛି ସେ ବିଭାଗୀୟ ପ୍ରଧାନ ପରିଦର୍ଶକ ଯେବେ ତାହା ଭଲରୂପେ ବୁଝି ବା ତହିଁର ଉଚିତ ପ୍ରତିବିଧାନ କରି ନ ପାରିଲେ ତେବେ ତାହାଙ୍କ କର୍ତ୍ତବ୍ୟ କାର୍ଯ୍ୟ ସମ୍ପୂର୍ଣ୍ଣରୂପେ ନିର୍ବାହିତ ହେଲା ବୋଲି କିରୂପେ ବୋଲାଯିବ । ସେପ୍ରକାର ଉଚ୍ଚ କର୍ମଚାରିଙ୍କଠାରେ ଆମ୍ଭମାନଙ୍କର ବହୁତ ଆଶା ଏବଂ ତହିଁରେ ନିରାଶ ହେଲେ ବଡ ଦୁଃଖ ହେବ । ଆମ୍ଭମାନଙ୍କ ବୋଲିବାର ଉଦ୍ଦେଶ୍ୟ ଏହିକି ଓଡିଶାର ଅଧିକାଂଶ ପାଠ୍ୟପୁସ୍ତକ ପ୍ରଣେତା ଓ ପ୍ରକାଶକଙ୍କ ସଙ୍ଗେ ଶିକ୍ଷାବିଭାଗୀୟ ପରିଦର୍ଶକ ଏବଂ ପୁସ୍ତକନିର୍ବାଚନୀ କମିଟୀର ଗାଢ଼ ସମ୍ବନ୍ଧ ରହିଅଛି ଏବଂ ଏକଥା ଏଠା ଲୋକଙ୍କୁ ଅଜଣା ନାହିଁ ଓ ଆମ୍ଭେମାନେ ପୁନଃପୁନଃ ଦେଖାଇଅଛୁଁ । ଏପରି ସମ୍ବନ୍ଧ ରହିଥିବା ସ୍ଥଳେ ପରିଦର୍ଶକ ପରୀକ୍ଷକ ବା ଶିକ୍ଷକ ସାବଧାନ ହୋଇ ଚଳିଲେ ସୁଦ୍ଧା ପ୍ରକୃତିବଶରୁ ନିକିତିର କଣ୍ଟା ଦୋହଲି ଯାଇ ପାରେ ଏବଂ ଗବର୍ଣ୍ଣମେଣ୍ଟ ବହୁଦର୍ଶିତା ଦ୍ୱାରା ତହିଁର ପ୍ରତିବିଧାନ କରିଅଛନ୍ତି । ଯେବେ ଏହି ଲୋକମାନେ ପୁସ୍ତକ ରଚନା ନ କଲେ ଶିକ୍ଷାବିଭାଗର କର୍ମ ଚଳିବାର ଉପାୟନ୍ତର ନାହିଁ ଏବଂ ନିର୍ବାଚନୀ କମିଟୀକି ଯଥାସାଧ ସ୍ୱାଧୀନ କରିବାର ଉଚିତ । ତାହା ନ ହେଲେ ସୁବିଚାରର ଆଶା ନାହିଁ । ଆମ୍ଭେମାନେ ସ୍ଥାନୀୟ ଶିକ୍ଷାବିଭାଗର ଅନ୍ୟାନ୍ୟ ତ୍ରୁଟିର କଥା ଏଠାରେ ଉଲ୍ଲେଖ କରୁ ନାହୁଁ କାରଣ ଆମ୍ଭମାନଙ୍କର ଦୃଢ ବିଶ୍ୱାସ ଯେ ପୁସ୍ତକନିର୍ବାଚନୀ କମିଟୀ ନ୍ୟାୟସଙ୍ଗତ ରୂପେ ଗଠିତ ଏବଂ ତହିଁର କ୍ଷମତା ବିସ୍ତାରିତରୂପେ ନିର୍ଦ୍ଧାରିତ ହେଲେ ଅନେକ ଗୁଡିଏ ଦୋଷ ପ୍ରକ୍ଷାଳିତ ହେବ । ତହିଁଉତାରୁ ଶିକ୍ଷାବିଭାଗୀୟ ପରିଦର୍ଶକଙ୍କ ପ୍ରତି ପୁସ୍ତକରଚନା ବିଷୟରେ କେତେ ଗୁଡିଏ ବିଧି ହେବାର ଉଚିତ ଯେମନ୍ତ କି କେବଳ ବ୍ୟବସାୟଦୃଷ୍ଟିରେ ସେମାନେ ପୁସ୍ତକ ରଚନା କରିବାକୁ ସମର୍ଥ ହେବେ ନାହି ମାତ୍ର ଗବର୍ଣ୍ଣମେଣ୍ଟଙ୍କ ବିଶେଷ ଅନୁମତିକ୍ରମେ କୌଣସି ବିଶେଷ ବିଷୟରେ ପୁସ୍ତକ ଲେଖି ପାରିବେ ।

*ଭା୨୧ଗ, ସଂ୧୦ଖ୍ୟା, ୬।୩।୧୮୮୬*

## [ଓଡିଆମାନଙ୍କ ପ୍ରତି ପକ୍ଷପାତ]

ମହାଶୟ !

ନିମ୍ନଲିଖିତ କେତେକ ପଂକ୍ତିକି ସଂଶୋଧନ କରି ଆପଣଙ୍କ ବିଖ୍ୟାତ ପତ୍ରିକାରେ ମୁଦ୍ରିତ କରି ବାଧିତ କରିବା ହେବେ ।

କେତେକ ସଂଖ୍ୟକ ଉତ୍କଳ ଦୀପିକାରେ ପାଠ କରିଥିଲୁଁ କି ଭିନ୍ନ ଭିନ୍ନ ପ୍ରସିଡେନ୍‌ସୀ ଭୁକ୍ତ ଥିବା ଉତ୍କଳ ଭୂମି ଗୁଡିକୁ ଅର୍ଥାତ୍ ବଙ୍ଗଳାରେ ମିଶିଥିବା ମାନ୍ଦ୍ରାଜରେ ମିଶିଥିବା ଓ ମଧ ପ୍ରଦେଶରେ ମିଶିଥିବା ପ୍ରଦେଶ ଗୁଡିକୁ ଏକତ୍ରିତ କରି ଓ ଏକ ରାଜ୍ୟଭୁକ୍ତ କରିଦେଇ ସମଗ୍ର ଗରୀବ ଓ ଅନାଥ ଓଡିୟା ମାନଙ୍କୁ ଏକଧାରା ଓ ଏକଶିକ୍ଷାରେ ପରିପାଳନ କରାଯିବ ବୋଲି, ମାତ୍ର ଭାରତ ଗବର୍ଣ୍ଣମେଣ୍ଟ ଆମ୍ଭ ଓ ଓଡିୟା ମାନଙ୍କ ବିଷୟରେ ନିତାନ୍ତ ପକ୍ଷପାତ କରିଅଛନ୍ତି । xxxx ପିଲାଙ୍କୁ ଭଣ୍ଡିଲା ପରି ଜଟାଇଦେଇ ଆମ୍ଭମାନଙ୍କର ଗୁହାରି ଶୁଣିବାକୁ କର୍ଣ୍ଣକୁହର ପଥ ମନାକରି ଦେଉଅଛନ୍ତି ।

ଆମ୍ଭେମାନେ ଭିନ୍ନ ଭିନ୍ନ ଧାରାନୁସାରେ ପରିପାଳନ କରାଯିବାରୁ ଆମ୍ଭେମାନେ କେତେ କଷ୍ଟ ପଡି ବିଦ୍ୟାଶିକ୍ଷା କଲେହେଁ ବଡ ବଡ ପଦ ଲଭିବାର ଅତ୍ୟନ୍ତ ଦୁଷ୍କର କାରଣ ବଙ୍ଗଳାର ଓଡିୟା ମାନଙ୍କୁ ଅଧିକରେ ବଙ୍ଗଳା ଶିକ୍ଷିବାର ଆବଶ୍ୟକ । ଓ ମାନ୍ଦ୍ରାଜର ଓଡିୟା ମାନେ ତେଲଙ୍ଗା ଶିକ୍ଷିବାର ଆବଶ୍ୟକ ବିଦେଶିମାନେ ଦୁଇଗୋଟି ଭାଷା ଶିକ୍ଷାକରି କାର୍ଯ୍ୟ xxxx, ଆମ୍ଭେମାନେ ତିନିଗୋଟି ଭାଷା ଅର୍ଥାତ୍ ଇଙ୍ଗଲିଷ୍ ସ୍ୱଭାଷା ଓ ବଙ୍ଗଳା ତେଲଙ୍ଗା ଶିଖିବାର ଆବଶ୍ୟକ, ଅତଏବ ଭାରତ ଗବର୍ଣ୍ଣମେଣ୍ଟଙ୍କୁ ଆମ୍ଭମାନଙ୍କର ଦୃଢ ପ୍ରାର୍ଥନା ଅତିଶୀଘ୍ର ଆମ୍ଭମାନଙ୍କୁ ଅନ୍ୟ ଏକ ପ୍ରସିଡେନ୍‌ସି ଭୁକ୍ତ କରାଇ ଏକତ୍ରରେ ପାଳନ କରନ୍ତୁ । ଇତି

ରସୁଲକୋଣ୍ଡା — ବଶମ୍ବଦ

୧୭।୪।୮୬ — ଶ୍ରୀ

*ଭା୨୧ଗ, ସଂ୧୮ଖ୍ୟା, ୧।୫।୧୮୮୬*

## [ବହିରେ ଦୋଷ]

ଆମ୍ଭେମାନେ ଓଡିୟାଭାଷାର ଖଣ୍ଡିଏ ହସ୍ତାକ୍ଷର ଲେଖିବାର ବହି(Copy Book) ଉପହାର ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଉକ୍ତ ବହି ଏଠା ମିସନ ପ୍ରେସରେ ଛାପା ହୋଇଅଛି । ଏ ବହିର ଛାପା ଏବଂ କାଗଜ xxxx ଏବଂ ମୂଲ୍ୟ ମଧ ଅଧିକ ନୁହଇ - xxxx ଓଡିୟାରେ ଏତଦ୍ୱାରା ହସ୍ତାକ୍ଷର ବସାଇବାର ବହିର ଅଭାବ ମୋଚିତ ହୋଇଥିଲେ ହେଁ ତାହା ଅସମ୍ପୂର୍ଣ୍ଣ ରୂପରେ ପ୍ରସ୍ତୁତ ହୋଇଥିବାରୁ ଆମ୍ଭେମାନେ ଉକ୍ତ ପୁସ୍ତକ ଦେଖି ଆଶାନୁରୂପ ସନ୍ତୁଷ୍ଟ ହୋଇପାରିଲୁଁ ନାହି । ଔ ,ଔକାର,ମ୍ର,ଷ୍ଵ..ଇତ୍ୟାଦି ଅନେକ ମାତ୍ରା ଓ ଅକ୍ଷରର ଆଦୌ ସନ୍ନିବେଶ ଏ ବହିରେ ଦେଖାଗଲା ନାହି । ଦ୍ୱିତୀୟ ପୃଷ୍ଠାରେ "ବଞ୍ଚ" ଶବ୍ଦ "ବାଂଛ" ରୂପରେ ଲେଖାଯାଇଥିବା ଦ୍ୱାରା ବାଳକମାନଙ୍କୁ ଅଧ୍ୟାୟଶିକ୍ଷା ଦିଆଯିବାର ଉପାୟ ହୋଇଥିବାର ଦେଖାଯାଏ । ଏହି ପରି କେତେଗୁଡିଏ ଦୋଷ ରହିଯିବାରୁ ପୁସ୍ତକ ଖଣ୍ଡିକର ଆମ୍ଭେମାନେ ବିଶେଷ ପ୍ରଶଂସା କରିପାରିଲୁଁ ନାହି । ଭରସା କରୁଁ ପ୍ରକାଶକ ଉକ୍ତ ଦୋଷମାନ ସଂଶୋଧନକରି ଗ୍ରନ୍ଥଖଣ୍ଡିକ ନିର୍ଦ୍ଦୋଷ କରିବାକୁ ଚେଷ୍ଟା କରିବେ । ତାହା ନ ହେଲେ ଯେଉଁ ବାଳକମାନଙ୍କ ନିମିତ୍ତ ଏଥିର ସୃଷ୍ଟି ହୋଇଅଛି ତାଙ୍କର୍ ସମ୍ୟକ୍ ଉପକାର ହୋଇପାରିବ ନାହି । ହସ୍ତାକ୍ଷର ସକାଶେ ନିର୍ଦ୍ଦିଷ୍ଟ ହୋଇଥିବା ବାକ୍ୟମାନ ମନ୍ଦ ନୁହଇ ମାତ୍ର କେତେକ ବାକ୍ୟରେ ରଚନାଗତ ଦୋଷ ରହିଅଛି । ଯଥା 'ଈଶ୍ୱରଙ୍କୁ ଭୟକଲେ ପାପ ଘୃଣା ହୁଏ" ଇତ୍ୟାଦି । "ପାପ ଘୃଣା ହୁଏ" ଓଡିୟାରେ ଏପରି ଶବ୍ଦବିନ୍ୟାସ ହୁଅଇ ନାହି । "ପାପପ୍ରତି ଘୃଣାଜନ୍ମେ" ଏହିପରି ହେବାର ଉଚିତ ଥିଲା । ଏ ଦୋଷମାନ ମଧ ନିରାକୃତ ହେବାର ଉଚିତ ।

*ଭା/୨୧ଗ, ସଂ୧୯ଖ୍ୟା, ୮/୪/୧୮୮୬*

## [ଓଡିଶାରେ ଉଚ୍ଚଶିକ୍ଷା ଫଳ କଣ ହେଲା ?]

ଅବକାରୀ ମହକୁମାରେ କେତେଗୁଡିଏ କର୍ମ ଖାଲି ଥିବାରୁ ତହିଁର ବନ୍ଦୋବସ୍ତ ସମ୍ପର୍କରେ ଆମ୍ଭେମାନେ ଶୁଣୁଅଛୁଁ ଯେ ଶ୍ରୀଯୁକ୍ତ ଇଂଲିସ୍ ସାହେବ କଲିକତାଗଜେଟରେ ବିଜ୍ଞାପନ ଦେଇ କର୍ମପ୍ରାର୍ଥିମାନଙ୍କୁ ଆହ୍ୱାନ କରିଅଛନ୍ତି । ଏଥକୁ ଦେଖାଯାଏ ଯେ ନୂତନ ବନ୍ଦୋବାସ୍ତ xxxx ଦୁଇଜଣ ଅଧିକା କର୍ମଚାରୀ xxxx.ସଭାଟି ସକାଶେ ଜଣେ xxxx ଟ୫୦ଙ୍କା ଏବଂ xxxx କାର୍ଯ୍ୟ ସକାଶେ ଜଣେ ଇନ୍‌ସ୍ପେକ୍‌ଟର ବେତନ ଟ୭୫ଙ୍କା ଠାରୁ ବାର୍ଷିକ ବୃଦ୍ଧି ଦ୍ୱାରା ଟ୧୦୦ଙ୍କା ପର୍ଯ୍ୟନ୍ତ ଏପର ହେଡକିରାନୀ ପ୍ରଭୃତି କେତେଜଣ କର୍ମଚାରିଙ୍କର ବେତନ କିଛି କିଛି ବୃଦ୍ଧି ହେବ ତହିଁର ସର୍ବୋଚ୍ଚ ସଂଖ୍ୟା ଟ ୭୦ଙ୍କା ଏହି ସାମାନ୍ୟ ଚାକର ସକାଶେ ସମସ୍ତ ବଙ୍ଗଦେଶରେ ଉମେଦବାର ଖୋଜିବାର ତାତ୍ପର୍ଯ୍ୟ ଆମ୍ଭେମାନେ କିଛି ବୁଝି ପାରୁ ନାହୁଁ ଓଡିଶାରେ ଯେବେ ଏହିସବୁ କର୍ମ ସକାଶେ ଯୋଗ୍ୟଲୋକର ଅଭାବ ହେଲା ତେବେ ଉଚ୍ଚଶିକ୍ଷାର ଫଳ କି ହେଲା ? ଆମ୍ଭେମାନେ ସ୍ୱୀକାର କରୁଁ ଯେ ଓଡିଶା ଅପେକ୍ଷା ବଙ୍ଗଳାରେ ଶିକ୍ଷା ଉନ୍ନତି ଅଧିକ ହୋଇଅଛି କିନ୍ତୁ ସେହିପରି ବଙ୍ଗବାସିଙ୍କ ନିମିତ୍ତ ବଡ଼ ବଡ଼ ଚାକରିର ଦ୍ୱାର ମୁକ୍ତ ରହିଅଛି । ଉପସ୍ଥିତ ସାମାନ୍ୟ ଚାକରୀ ସକାଶେ ଯୋଗ୍ୟ ଲୋକର ଅଭାବ ଏଠାରେ ନାହିଁ ବରଂ ଅନାୟାସରେ ବୋଲାଯାଇ ପାରେ ଯେ ଓଡିୟାଭାଷା ଓ ଏପ୍ରଦେଶ ବାସିଙ୍କ ରୀତି ନୀତି ବଙ୍ଗବାସିଙ୍କୁ ଜଣା ନ ଥିବାରେ ସେମାନେ ଅଧିକ ଯୋଗ୍ୟତାସହିତ ଏହି କାର୍ଯ୍ୟସବୁ ନିର୍ବାହ କରିବା ସମ୍ଭବ ନୁହଇ । ବିଜ୍ଞାପନର ଭିଆଣ ଦେଖି ଆମ୍ଭମାନଙ୍କ ମନରେ ସନ୍ଦେହ ହେଉଅଛି ଯେ ବଙ୍ଗଳାର କୌଣସି ଲୋକକୁ ପ୍ରତିପାଳନ କରିବାର ସୂତ୍ର ହୋଇଅଛି ଏବଂ ଇଂଲିସ ସାହେବ ଏ ଜିଲ୍ଲାକୁ ନୂତନ ଆସିଥିବାରୁ ଭ୍ରମରେ ପଡିଅଛନ୍ତି ଆମ୍ଭେମାନେ ଏକାନ୍ତ ଆଶା କରୁଁ ଯେ ଏକଟିଙ୍ଗି କଲେକ୍ଟର ଆପଣା ଜିଲ୍ଲା ଲୋକଙ୍କ ପ୍ରତି ନିର୍ଦ୍ଦୟା ପ୍ରକାଶ ପୂର୍ବକ ସର୍ବସାଧାରଣଙ୍କ ଠାରେ ଅପ୍ରିୟ ହେବେ ନାହିଁ । ସରକାରଙ୍କ କାର୍ଯ୍ୟ ସୁଚାରୁରୂପେ ନିର୍ବାହ ହେବାପ୍ରତି କଲେକ୍ଟର ସାହେବଙ୍କର ଦୃଷ୍ଟି ରଖିବା ଯେମନ୍ତ କର୍ତ୍ତବ୍ୟ ଆପଣା ଅଧୀନସ୍ଥ ଲୋକମାନେ ମୁଠାଏ ଦାନା ପାଇବା ପ୍ରତି ଦୃଷ୍ଟି ରଖିବା ତେମନ୍ତ କର୍ତ୍ତବ୍ୟ ଅଟଇ ।

*ଭା/୨୧ଗ, ସଂ୨୪ଖ୍ୟା, ୧୨/୬/୧୮୮୬*

## [ଓଡିଆ ଗଜେଟ]

ଆମ୍ଭେମାନେ ଶୁଣିଲୁଁ ଯେ ଶ୍ରୀଯୁତ କମିଶନର ସାହେବ ଓଡିଆଗଜେଟ ଉଠାଇ ଦେବାର ପ୍ରସ୍ତାବ କରିଅଛନ୍ତି । ସେଥିରେ ଯେ ସରକାରୀ ସମ୍ବାଦମାନ ଓ ଆଇନମାନ ପ୍ରକାଶ ହୁଅଇ ସେସବୁ କୌଣସି ସ୍ଥାନୀୟ ସମ୍ବାଦପତ୍ରରେ ପ୍ରକାଶ ହେବ । ଓଡିଆ ଗଜେଟ ପାଇଁ ଯେମହକୁମା ଅଛି ତାହା ଉଠି ଯିବ କେବଳ ଉତ୍କଳ ଅନୁବାଦକ ରହିବେ ସେ ସରକାରୀ ସମ୍ବାଦ ଇତ୍ୟାଦି ସବୁ ଓଡିଆରେ ଅନୁବାଦ କରି ସମ୍ବାଦପତ୍ରଠାକୁ ପଠାଇଦେବେ । ତାହା ପ୍ରକାଶ କରିବା ଖର୍ଚ୍ଚାର ବନ୍ଦୋବସ୍ତ ସମ୍ବାଦପତ୍ରଅଧିକାରିଙ୍କ ସଙ୍ଗେ ହେବ ।

ଆମ୍ଭମାନଙ୍କ ବିବେଚନାରେ ଏ ପ୍ରସ୍ତାବ ଅତି ଉତ୍ତମ ଅଟଇ । ଓଡିଆଗଜେଟର ଦୁରବସ୍ଥା କାହାରିକୁ ଅବିଦିତ ନାହିଁ ତହିଁର ଉନ୍ନତିର ଚେଷ୍ଟା ଥରକୁଥର ହେଉଥିଲେହେଁ ସଫଳ ହୋଇ ନାହିଁ ଅବା ଯଥାର୍ଥମତେ ଚେଷ୍ଟା ଓ ଯତ୍ନ ହୋଇ ନାହିଁ । ଯାହା ହେଉ ଯଦି ତହିଁଯୋଗେ ଅଧିକ ଅବା ବ୍ୟୟ ତୁଲ୍ୟ ଉପକାର ନାହିଁ ସେପରି ଗଜେଟ ରଖିବାର କି ପ୍ରୟୋଜନ । ଅତିଅଳ୍ପ ବାହାରଲୋକ ସେ ଗଜେଟ ନିଅନ୍ତି ଓ ଯେଉମାନେ ନିଅନ୍ତି ସେମାନଙ୍କଠାରୁ ତହିଁର ମୂଲ୍ୟ ସହଜେ ପ୍ରାପ୍ତି ହୁଅଇ ନାହିଁ । କଚେରୀରେ ତହିଁର ଆଦର ଆଦୌ ନାହିଁ ଓ ପ୍ରାୟ କେହି ତାହା ଫିଟାଇ ଦେଖନ୍ତି ନାହିଁ କାରଣ ତହିଁଲିଖିତ ପ୍ରସଙ୍ଗମାନ ପୂର୍ବରୁ ବଙ୍ଗଳା ଗଜେଟରେ ପ୍ରକାଶ ହୋଇ ଥାଏ ଓ ପ୍ରତିକଚେରୀକୁ ବଙ୍ଗଳାଗଜେଟ ଆସୁଥିବାରୁ ପ୍ରାୟ ସମସ୍ତେ ତହିଁରୁ ଅବଗତଂଆନ୍ତି ଓଡିୟାଗଜେଟରେ ତାହା ପ୍ରକାଶ ହେଲା ବେଳକୁ "ପରଖବର" ତୁଲ୍ୟ ହୋଇଥାଏ । ଏପରି ଅବସ୍ଥାରେ ତହିଁର ଆଦର କାହିଁକି ହେବ । ସୁତରାଂ ତହିଁର ବ୍ୟୟ ଅନୁସାରେ ଫଳ ନାହିଁ । କେହି ଅବା କହି ପାରନ୍ତି କାନୁନଗୋମାନେ ବଙ୍ଗଳାଗଜେଟ ପାନ୍ତି ନାହିଁ ଓଡିୟାଗଜେଟ ଉଠିଗଲେ ସେମାନଙ୍କର ଅସୁବିଧା ହେବ । କିନ୍ତୁ ଆମ୍ଭେମାନେ କହୁ ଯେଉଁ ସମ୍ବାଦପତ୍ରରେ ସରକାରୀସମ୍ବାଦ ଇତ୍ୟାଦି ସବୁ ପ୍ରକାଶ ହେବ ସେ ସମ୍ବାଦପତ୍ରମାନ କାନୁନଗୋମାନଙ୍କୁ ଯୋଗାଇଲେ ହେଲା ଏଥିରେ ବ୍ୟୟ ମଧ ଅଧିକ ନ ପଡିବ । ଗଜେଟ ଛାପା ଓ ମହକୁମାରେ ଯେତେ ଖର୍ଚ୍ଚ ହେଉଅଛି ସମ୍ବାଦପତ୍ରରେ ସରକାରୀ ସମ୍ବାଦ ଛପାଇବା ଓ ସରକାରୀ କଚେରୀ ଓ କାନୁନଗୋମାନଙ୍କ ପାଇଁ କେତେକ ଖଣ୍ଡ ପତ୍ରିକା ନେବାର ଖର୍ଚ୍ଚା ଅବଶ୍ୟ ଅନେକ ଊଣା ପଡିବ । ଗଜେଟର ପାଠକ ଅପେକ୍ଷା କୌଣସି ସମ୍ବାଦପତ୍ରର ପାଠକଙ୍କ ସଂଖ୍ୟା ଅନେକ ଅଧିକ ଅଟେ । ତହିଁରେ ପ୍ରକାଶିତ ସରକାରୀ ସମ୍ବାଦମାନ ଅନେକ ଲୋକ ଜାଣି ପାରିବେ ଓ ସର୍ବସାଧାରଣରେ ଉତ୍ତମରୂପେ ପ୍ରଚାର ହେବ ଅଥଚ ଖର୍ଚ୍ଚା ଊଣା ପଡିବ । ଏପରି ଉପାୟ ଅବଶ୍ୟ କର୍ତ୍ତବ୍ୟ ।

*ଭା୨୧ଗ,ସଂ୨୪ଖ୍ୟା, ୧୨।୬।୧୮୮୬*

## [ରାଧାନାଥଙ୍କ କେଦାରଗୌରୀ]

ମହାଶୟ !

ଓଡିଶା ଶିକ୍ଷାବିଭାଗୀୟ । ଜା ।ଇନସ୍ପେକ୍ଟର ଶ୍ରୀଯୁତ ବାବୁ ରାଧାନାଥ ରାୟଙ୍କ କୃତ କେଦାରଗୌରୀ ନାମରେ ଖଣ୍ଡିଏ କ୍ଷୁଦ୍ରପୁସ୍ତକ ପଦ୍ୟବନ୍ଧରେ ରଚିତ ହୋଇ ଛାପାହୋଇ ଅଛି ବୋଧହୁଏ ପ୍ରାୟ ଆପଣ ଦେଖିଥିବେ । ସେହି ପୁସ୍ତକରୁ ଖଣ୍ଡେ ମୋତେ ମିଳିଥିବାରୁ ମୁଁ ତାକୁ ଆଦ୍ୟୋପାନ୍ତ ମନୋଯୋଗପୂର୍ବକ ପାଠକରି ଦେଖିଲି ଯେ ବାବୁ ମହାଶୟ କଥାଗୁଡିକ ଯେପରି ଘଟାଇ ଅଛନ୍ତି ଏଥିଦ୍ୱାରା ତାଙ୍କ ରଚନା ଚତୁରୀକି ଅବଶ୍ୟ ଧନ୍ୟବାଦ ଦେବାକୁ ହେବ ଏଥିରେ ସନ୍ଦେହ ନାହି । ଯେହେତୁ କାଳ୍ପନିକ ଶକ୍ତିଦ୍ୱାରା କଥାଟିଏ ରଚନା କରି ତାହାକୁ ନିର୍ଦ୍ଦୋଷଭାବରେ ସାଙ୍ଗ କରିବା ଏବଂ ତହିଁଦ୍ୱାରା ସାଧାରଣ କୃତବିଦ୍ୟମାନଙ୍କର ସନ୍ତୋଷ ଜନ୍ମାଇବା ଏହା ସମସ୍ତଙ୍କ କପାଳରେ ଘଟି ପାରଇ ନାହି ।

କିନ୍ତୁ ଉକ୍ତବିଷୟରେ ମୋହର ପ୍ରଶ୍ନ ଏହି ଯେ ଉକ୍ତ ପୁସ୍ତକରେ ଯେଉଁ ଗପ ବାବୁ ମହାଶୟ ଲେଖିବା ଆରମ୍ଭରେ ଲେଖି ଅଛନ୍ତି କି ପୌରାଣିକ କଥାରୁ ଏହାକୁ ଲେଖିଅଛୁଁ । ଅଥଚ କେଉଁ ପୁରାଣରେ ଉକ୍ତ କଥା ବର୍ଣ୍ଣନ କରାଯାଇ ଅଛି ତାହା ପ୍ରକାଶ କରି ନାହାନ୍ତି । ଭୁବନେଶ୍ୱର କ୍ଷେତ୍ରର ସମସ୍ତ ବିଷୟ ଶିବପୁରାଣ, ଏକାମ୍ରପୁରାଣ ଓ

କପିଳସଂହିତା ଏହି ଏହି ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଅଛି ଯେ ତହିଁ ମଧ୍ୟରେ ଉକ୍ତ ବିଷୟର ଗନ୍ଧମାତ୍ର ଉଲ୍ଲେଖ କରାଯାଇ ନାହିଁ । ତେବେ ଏପରି କାହିଁରେ ଯେ ବର୍ଣ୍ଣନ କରାଯାଇ ଅଛି ଉଚକମହାଶୟ ଅଥବା ଅନ୍ୟ କେହି ଅନୁଗ୍ରହପୂର୍ବକ କୌଣସି ଉତ୍କଳ ସମ୍ବାଦପତ୍ରଦ୍ୱାରା ପ୍ରକାଶ କରି ଆମ୍ଭମାନଙ୍କର ଭ୍ରମ ସଂଶୋଧନ କରିବେ । ଆଉ ବାବୁ ମହାଶୟ ଉକ୍ତ ବିଷୟ ପ୍ରକଟ କରାଇଲା ପରେ ଉପରଲିଖିତ ପୁରାଣମାନଙ୍କରେ କେଦାରଗୌରୀର ବର୍ଣ୍ଣନ ଯେପରି ହୋଇ ଅଛି ତାହା ପଛେ ପ୍ରକାଶ କରାଯିବ ।       ।ଇତି।

୮।୬।୮୬

ନି । ଢ । ପାଠକ ।

*ଭା୨୧ଗ, ସଂ୨୫ଖ୍ୟା, ୧୯।୬।୧୮୮୬*

## [ବାର୍ଷିକ ପରୀକ୍ଷା ଫଳ ]

ସନ ୧୮୮୬ ମସିହା କଟକ ନର୍ମାଲସ୍କୁଲପଣ୍ଡିତ ବିଭାଗର ବାର୍ଷିକ ପରୀକ୍ଷାରେ ତଳଲିଖିତ ଛାତ୍ରମାନେ ପାସପତ୍ର ଲାଭ କରିଅଛନ୍ତି ।

| | |
|---|---|
| ୧ ଶ୍ରୀ ନୀଳକଣ୍ଠ ମିଶ୍ର | ଉଚ୍ଚ ୧ମ ଶ୍ରେଣୀ |
| ୨ ,, ବାଳକୃଷ୍ଣ ପାତ୍ର | ,, |
| ୩ ,, ରାମଚନ୍ଦ୍ର ଦାସ | ମଧ୍ୟମ ୧ମ ଶ୍ରେଣୀ |
| ୪ ,, ଗୋପୀନାଥ ରଥ | ,, |
| ୫ ,, ଜୟକୃଷ୍ଣ ମିଶ୍ର | ,, |
| ୬ ,, ପଦ୍ମନାଭ ତ୍ରିପାଠୀ | ,, |
| ୭ ,, ଗଦାଧର ଶତପଥୀ | ,, |
| ୮ ,, ଚକ୍ରଧର ପଣ୍ଡା | ନିମ୍ନ ୧ମ ଶ୍ରେଣୀ |
| ୯ ,, ହରିହର ପଣ୍ଡା | ,, |
| ୧୦ ,, ମାଧବ ମହାପାତ୍ର | ମଧ୍ୟମ ୨ୟ ଶ୍ରେଣୀ |
| ୧୧ ,, ହରିବନ୍ଧୁ ତ୍ରିପାଠୀ | ,, |
| ୧୨ ,, ରାଧାକୃଷ୍ଣ ଆଚାର୍ଯ୍ୟ | ,, |
| ୧୩ ,, ଦୁର୍ଗାଚରଣ ସାମନ୍ତ | ନିମ୍ନ ୨ୟ ଶ୍ରେଣୀ |
| ୧୪ ,, ଚିନ୍ତାମଣି ନାୟକ | ,, |
| ୧୫ ,, ଶଚୀନ୍ଦ୍ର ମାଝୀ | ,, |
| ୧୬ ,, କମଳଲୋଚନ ସାହୁ | ,, |
| ୧୭ ,, ଭିକାରିଚରଣ ଦାସ | ମଧ୍ୟମ ୩ୟ ଶ୍ରେଣୀ |
| ୧୮ ,, ମଧୁସୂଦନ ମିଶ୍ର(ଖ) | ,, |
| ୧୯ ,, ମଧୁସୂଦନ ମିଶ୍ର(କ) | ,, |
| ୨୦ ,, ଆର୍ତ୍ତତ୍ରାଣ ଶତପଥୀ | ,, |

| | | |
|---|---|---|
| ୨୧ | ,, ଚିନ୍ତାମଣି ନନ୍ଦ | ମଧ୍ୟମ ୩ୟ ଶ୍ରେଣୀ |
| ୨୨ | ,, ସନାତନ ପଟ୍ଟନାୟକ | ,, |
| ୨୩ | ,, ମିଛୁ ନନ୍ଦ | ,, |
| ୨୪ | ,, ବୃନ୍ଦାବନ ମିଶ୍ର | ,, |
| ୨୫ | ,, ଜଗନ୍ନାଥ ଦାସ | ,, |
| ୨୬ | ,, ଅନିରୁଦ୍ଧ ଦାସ | ,, |
| ୨୭ | ,, ଧନେଶ୍ୱର ନାୟକ | ,, |
| ୨୮ | ,, କୃଷ୍ଣମୋହନ ପଣ୍ଡା | ,, |
| ୨୯ | ,, ଶ୍ରୀନିବାସପଟ୍ଟନାୟକ | ନିମ୍ନ ୩ୟ ଶ୍ରେଣୀ |
| ୩୦ | ,, ଗଙ୍ଗାଧର ମହାପାତ୍ର | ,, |
| ୩୧ | ,, ଚିନ୍ତାମଣି ଧଳ | ,, |
| ୩୨ | ,, ଗୋବିନ୍ଦ ମିଶ୍ର | ,, |
| ୩୩ | ,, ବିନାୟକ ପ୍ରହରାଜ | ,, |
| ୩୪ | ,, ଦ୍ୱାରକାନାଥ ସିଂହ | ,, |

*ଭା୨୧ଗ, ସଂ୨୬ଖ୍ୟା, ୨୬।୬।୧୮୮୬*

## [ତ୍ରିଭାଷି ଶିକ୍ଷା]

ସ୍ଥାନାନ୍ତରେ ପ୍ରକାଶିତ ଖଣ୍ଡିଏ ଇଂରାଜୀ ପତ୍ରରେ ପାଠକମାନେ ଦେଖିବେ ଓଡିଶା ବିଦ୍ୟାଳୟମାନଙ୍କରେ ଓଡିଯାଭାଷା ସଙ୍ଗେ ସଙ୍ଗେ ତେଲଙ୍ଗୀ ଓ ବଙ୍ଗଳାଭାଷାର ଶିକ୍ଷା ଦେବା କାରଣ ଲେଖକ ପ୍ରସ୍ତାବ କରିଅଛନ୍ତି । ସେ କହିଅଛନ୍ତି କି ଓଡିଶାରେ ଯେତେ ବଙ୍ଗାଳୀ ଓ ତେଲଙ୍ଗୀ  ମହାଜନ ଓ ବେପାରୀ କାର୍ଯ୍ୟ କରୁଅଛନ୍ତି ମାନ୍ଦ୍ରାଜ ଓ ବଙ୍ଗଳା ହତାରେ ତେତେ ଓଡିୟା ମହାଜନ ଓ ବେପାରୀ ନାହାନ୍ତି । ବଙ୍ଗଳା ଓ ତେଲଙ୍ଗୀ ଶିଖିଲେ ଏମାନେ ଆପଣା ସୁବିଧାମତେ ଉକ୍ତ ଦୁଇ ଦେଶରେ ବେପାର ବାଣିଜ୍ୟ ଏବଂ ସରକାରୀ ଚାକରୀ କରିପାରିବେ ସୁତରାଂ ଓଡିୟାଙ୍କର କାର୍ଯ୍ୟକ୍ଷେତ୍ର ବିସ୍ତାର ହେବ । ଏହି ପତ୍ରପ୍ରେରକ ପୂର୍ବେ ଓଡିୟାଭାଷା ଉଠାଇ ଦେବାର ଏକ ପ୍ରକାର ପ୍ରସ୍ତାବ କରିଥିଲେ ଏତେବେଳେ ସେ ମତ ବିଚଳିତ ହେବାର ଦେଖି ଆମ୍ଭେମାନେ ଆନନ୍ଦିତ ହେଲୁଁ । ସେ ଆଉ ଟିକିଏ ଚିନ୍ତାକଲେ ବୁଝିପାରିବେ ଯେ ଦୁଇ ତିନିଭାଷାରେ ଶିକ୍ଷା ହେବା ଅପେକ୍ଷା ଏକଭାଷା ପ୍ରଚଳିତ ଥିବା ରାଜ୍ୟଖଣ୍ଡକୁ ଅନ୍ତତଃ ସାଧାରଣ ଶିକ୍ଷାଦାନ ସମ୍ବନ୍ଧରେ ଏକ ସ୍ଥାନୀୟ ଗବର୍ଣ୍ଣମେଣ୍ଟଙ୍କ ଅଧୀନରେ ରଖିବା ଅଧିକ ସୁବିଧାଜନକ ଏବଂ ଯୁକ୍ତିସଙ୍ଗତ ଅଟଇ । ଯେତେ ଭିନ୍ନ ଭିନ୍ନ  ଭାଷା ଶିଖିବା ତେତେ ବିଦେଶୀୟଙ୍କ ସଙ୍ଗେ କାରବାର କରିବାର ସୁବିଧା ହେବ ସନ୍ଦେହ ନାହି ଏବଂ ଆବଶ୍ୟକ ମତେ ଓଡିୟାମାନେ ବଙ୍ଗଳା ବା ତେଲଙ୍ଗୀ ଶିଖିବାକୁ ତ୍ରୁଟି କରୁ ନାହାନ୍ତି ତେବେ ଓଡିୟାମାନେ ଅନ୍ୟତ୍ରରେ ବାଣିଜ୍ୟ ବ୍ୟାପାର ନ କରିବାର କାରଣ ସ୍ୱତନ୍ତ୍ର  ଏବଂ ସମୟାନ୍ତରେ ତହିଁର ଆଲୋଚନା କରିବାର ଇଚ୍ଛା ରହିଲା ।

*ଭା୨୧ଗ, ସଂ୨୭ଖ୍ୟା, ୩।୭।୧୮୮୬*

## ଓଡିୟା ପାଠ୍ୟପୁସ୍ତକ ନିର୍ବାଚନ କମିଟୀ ।

ଏ କମିଟୀର କାର୍ଯ୍ୟ ଏତେଦିନ ଅପ୍ରକାଶ୍ୟ ରହି ଥିଲା । ଏଣିକି କମିଟୀ ଆପଣାର କାର୍ଯ୍ୟାବଳୀ ଓଡ଼ିୟାଗଜେଟରେ ଛାପା କରିବାର ନିୟମ କରି ବଡ ଭଲ କରି ଅଛନ୍ତି । ଅନ୍ତତଃ ଗତମାସ ତା ୨୨ ରିଖରେ ଏହି

କମିଟୀର ଯେଉଁ ଅଧିବେଶନ ହୋଇଥିଲା ତହିଁର ବିବରଣ ପ୍ରକାଶିତ ହୋଇଅଛି ଏବଂ ତହିଁରେ ତଳଲିଖିତ କଥାମାନ ସ୍ଥିର ହୋଇଅଛି ଯଥା-

୧। ଅନ୍ତତଃ ଋରିଜଣ ସଭ୍ୟ କୌଣସି ଅଧିବେଶନରେ ଉପସ୍ଥିତ ହେଲେ ସଭାର କାର୍ଯ୍ୟ ହେବ ।

୨। ସ୍ୱାସ୍ଥ୍ୟରକ୍ଷା ବିଷୟରେ ଯେ ସବୁ ହସ୍ତଲିପି କମିଟୀଙ୍କ ବିଜ୍ଞାପନାନୁସାରେ ପ୍ରାପ୍ତ ହୋଇଅଛି ତହିଁର ବିଋର ନିମିତ୍ତ ଗୋଟିଏ ସବ୍ କମିଟୀ ବସିବ । ଏଥିର ସଭ୍ୟପଦରେ ବାବୁ ମଧୁସୂଦନ ରାଓ,ବାବୁ ଦ୍ୱାରୀକାନାଥ ଚକ୍ରବର୍ତ୍ତୀ,ବାବୁ ନନ୍ଦକିଶୋର ଦାସ ଓ ବାବୁ ଅବିନାଶଚନ୍ଦ୍ର ଋଟ୍ଟର୍ଯ୍ୟା ହେଲେ । ଏମାନେ ତିନିମାସ ମଧରେ ଆପଣା ମନ୍ତବ୍ୟ ଜଣାଇବେ ।

୩ । କେବଳ ପାଠମାଳା ଲୋଅର ପ୍ରାଇମେରୀ ବିଦ୍ୟାଳୟର ପାଠ୍ୟପୁସ୍ତକ ହେବ ଅଧିକାଂଶ ସଭ୍ୟଙ୍କ ମତରେ ଧାର୍ଯ୍ୟ ହେଲା ।

୪। ଛାନ୍ଦମାଳା ଲୋଅର ପ୍ରାଇମେରୀ ବିଦ୍ୟାଳୟର ଅଯୋଗ୍ୟ ବୋଲି ଶ୍ରୀଯୁକ୍ତ ଗ୍ରାଣ୍ଟ ସାହେବ ଯେଉଁ ଆପତ୍ତି କରିଥିଲେ ତାହା ଏକବାକ୍ୟରେ ଅଗ୍ରାହ୍ୟ ହେଲା ।

୫। ବାବୁ ଚତୁର୍ଭୁଜ ପଟ୍ଟନାୟକ ସ୍ୱାସ୍ଥ୍ୟରକ୍ଷା ସମ୍ବନ୍ଧୀୟ ପୁସ୍ତକ ମିଯାଦ ଗତେ ପ୍ରାପ୍ତ ହୋଇଥିବାର ସେକ୍ରେଟରୀ ଜଣାଇବାରୁ ତାହା ଅଗ୍ରାହ୍ୟ ହେଲା ।

୬। କନିଂହାମ ସାହେବଙ୍କ ସ୍ୱାସ୍ଥ୍ୟରକ୍ଷା ସରି ଯାଇଥିବାର ଜଏଣ୍ଟ ଇନ୍‌ସ୍ପେକ୍ଟର ଜଣାଇବାରୁ ଚଳିତବର୍ଷ ନିମିତ୍ତ ଚତୁର୍ଭୁଜବାବୁ ସ୍ୱାସ୍ଥ୍ୟସାଧନା ଉଚ୍ଚ ପ୍ରାଇମେରୀ ଶିକ୍ଷାର ପାଠ୍ୟପୁସ୍ତକ ଧାର୍ଯ୍ୟ ହେଲା ।

ଉପରଲିଖିତ କାର୍ଯ୍ୟାବଳୀ ପାଠ କରି ଆମ୍ଭେମାନେ କମିଟୀଙ୍କ ମଙ୍ଗଳବାଦ ପ୍ରଦାନ କରି ପାରିଲୁଁ ନାହିଁ ମାତ୍ର ଜଏଣ୍ଟ ଇନସ୍ପେକ୍ଟର ବାବୁ ରାଧାନାଥ ରାଏ ଏବଂ ବାବୁ ଚତୁର୍ଭୁଜ ପଟ୍ଟନାୟକଙ୍କୁ ତାହା ପ୍ରଦାନ କରିବା ଉଚିତ ବିବେଚନା କରୁଅଛୁଁ । ପାଠମାଳାର ରଚୟିତା ଜଏଣ୍ଟ ଇନ୍‌ସ୍ପେକ୍ଟରଙ୍କ ଭାଇ ବାବୁ ସୀତାନାଥରାୟ ଅଟନ୍ତି ବର୍ତ୍ତମାନ ଏକଥା ସମସ୍ତେ ଜାଣନ୍ତି କିନ୍ତୁ ଏ ପୁସ୍ତକ ନୂଆ ବାହାରିବା ସମୟରେ ଏହାକୁ ପାଠ୍ୟପୁସ୍ତକ ମଧ୍ୟରେ ସ୍ଥାନଦାନ ଦେବା କାରଣ ଜଏଣ୍ଟ ଇନ୍‌ସ୍ପେକ୍ଟର ଯେମନ୍ତ ବ୍ୟଗ୍ରତା ଦେଖାଇ ଥିଲେ ଏବଂ ଗ୍ରନ୍ଥକାରଙ୍କ ନାମ ଗୋପନ ରଖିବା କାରଣ ଯେତେ ଚେଷ୍ଟା ହୋଇଥିଲା ଓ ରାଧାନାଥବାବୁଙ୍କର ଏଥିରେ କୌଣସି ସମ୍ପର୍କ ନ ଥିବାର ସର୍ବସାଧାରଣଙ୍କୁ ଜଣାଇବା ସକାଶେ ଉତ୍କଳଦର୍ପଣ ଯେତେ ଲଢିଥିଲେ ସେ ସମସ୍ତ ପୁନଃପୁନଃ ଏ ପତ୍ରିକାରେ ପ୍ରକାଶ ହୋଇଅଛି ପୁନରାବୃତ୍ତିର ଆବଶ୍ୟକ ନାହିଁ । ସେହି ସବୁ ବିଷୟ ଏବଂ ପାଠ୍ୟପୁସ୍ତକର ଅନ୍ୟାନ୍ୟ ଆନ୍ଦୋଳନ ହେତୁ ପାଠ୍ୟପୁସ୍ତକ ନିର୍ବାଚନ କମିଟୀ ସଂଗଠିତ ବା ବର୍ଦ୍ଧିତ ହେଲା । ଜଏଣ୍ଟ ଇନ୍‌ସ୍ପେକ୍‌ଟର ଏହି କମିଟୀର ସଭ୍ୟ ମନୋନୀତ କରି ଅଛନ୍ତି ଏବଂ ଯେମନ୍ତ କୌଶଳରେ ସଭ୍ୟ ବଛା ଯାଇଅଛି ତାହା ଦେଖି ଆମ୍ଭେମାନେ ପ୍ରଥମରୁ କହି ଆସୁଅଛୁଁ ଯେ ଏପରି କମିଟୀଦ୍ୱାରା ସର୍ବସାଧାରଣଙ୍କର ସନ୍ତୋଷଜନକରୂପେ କାର୍ଯ୍ୟ ନିର୍ବାହ ହେବ ନାହିଁ । ଏତେବେଳେ ଏହି କମିଟୀ ପାଠମାଳାକୁ ନିମ୍ନପ୍ରାଇମେରୀ ଶିକ୍ଷାର ଏକମାତ୍ର ପାଠ୍ୟପୁସ୍ତକ ଧାର୍ଯ୍ୟ କରିବାରୁ ପ୍ରତ୍ୟକ୍ଷ ଦେଖିଲୁଁ ଯେ ଜଏଣ୍ଟ ଇନ୍‌ସ୍ପେକ୍ଟରଙ୍କ ପୂର୍ବକାର୍ଯ୍ୟ ସମର୍ଥିତ ହେଲା ତାହାଙ୍କ ଉଦ୍ଦେଶ୍ୟ ସଫଳ ହେଲା ଅଥଚ କମିଟୀର ବିଋରରେ ତାହା ହେବାରୁ ତାହାଙ୍କର ଦାୟୀତ୍ୱ କିଛି ରହିଲା ନାହିଁ । କାର୍ଯ୍ୟାବଳୀରୁ ଜଣା ଯାଉଅଛି ଯେ ଅଧିକାଂଶ ସଭ୍ୟଙ୍କ ମତରେ ପାଠଶାଳା ନିର୍ବାଚିତ ହୋଇଅଛି । କିନ୍ତୁ କେଉଁ କେଉଁ ସଭ୍ୟ ସପକ୍ଷ ଓ କେଉମାନେ ବିପକ୍ଷରେ ମତ ଦେଇଥିଲେ ତାହାଙ୍କ ନାମ ପ୍ରକାଶ ହୋଇଥିଲେ କେତେ ଦୂର ସ୍ୱାଧୀନ ଭାବରେ ଏ କଥାର ବିଋର ହୋଇଅଛି ଜଣା ପଡିଥାନ୍ତା । ନିମ୍ନଶିକ୍ଷାର ଭାର ପ୍ରଧାନରୂପେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ହାତରେ ରହିଅଛି । ଭିନ୍ନ ଭିନ୍ନ ମାଜିଷ୍ଟ୍ରେଟ୍ ଆପଣା ଆପଣା ଜିଲ୍ଲାରେ ଭିନ୍ନ ଭିନ୍ନ ପୁସ୍ତକ ଚଳାଇ ପାରନ୍ତି । ଏ ଶିକ୍ଷାନିମିତ୍ତ ଖଣ୍ଡିଏ ପୁସ୍ତକ ନିର୍ଦ୍ଦେଶ କରିବା କମିଟୀଙ୍କର ଉଚିତ କାର୍ଯ୍ୟ କି ? ଆମ୍ଭମାନଙ୍କ ବିବେଚନାରେ କମିଟୀ କେବଳ ସମଶ୍ରେଣୀୟ କେତେଖଣ୍ଡ ପୁସ୍ତକ ବାଛି ଦେଇ କ୍ଷାନ୍ତ ରହିଥାନ୍ତେ । ବୋଧୋଦୟ ବିଶେଷରୂପେ ନିମ୍ନଶିକ୍ଷାର ପାଠ୍ୟପୁସ୍ତକ ବୋଲି ଗବର୍ଣ୍ଣମେଣ୍ଟରୁ ଧାର୍ଯ୍ୟ ହୋଇଅଛି । ସେ ପୁସ୍ତକ ଇଂରାଜୀ ଚେମ୍ବର୍ସ ସାହେବଙ୍କ

ବୋଧୋଦୟର ଆଦର୍ଶରେ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କଦ୍ୱାରା ପ୍ରଣିତ ଏବଂ ବଙ୍ଗଳାର ଅଧିକାଂଶ ବିଦ୍ୟାଳୟରେ ପ୍ରଚଳିତ ଥିବା ପ୍ରତ୍ୟେକ୍ଷେ କେଉଁ କାରଣରେ କମିଟୀ ଏହାକୁ ଅଯୋଗ୍ୟ ଜ୍ଞାନ କଲେ କିଛି ବୁଝାଯାଉ ନାହିଁ । ପାଠମାଳାର ମୂଲ୍ୟ ବୋଧୋଦୟର ଦ୍ୱିଗୁଣ ଏବଂ ସେଥିରେ କେତେଗୁଡିଏ ଏମନ୍ତ କଥା ଅଛି ଯାହାକି ନିମ୍ନ ପ୍ରାଇମେରୀ ବିଦ୍ୟାଳୟର ଛାତ୍ରଙ୍କ ପ୍ରତି ଅଯୋଗ୍ୟ ଅଟଇ । ସ୍ୱୟଂ ଜଏଣ୍ଟ ଇନ୍‌ସ୍ପେକ୍ଟର ସ୍ୱଳ୍ପ ମୂଲ୍ୟର ପୁସ୍ତକ ଲୋଡିବାର କେତେଥର ଶୁଣା ଯାଇଅଛି ଏସ୍ଥଳେ ମୋଫସଲର ଗରିବ ଛାତ୍ରଙ୍କୁ ଦୁଇଅଣା ବଦଳରେ ଚାରିଅଣାର ପୁସ୍ତକ କିଣିବାକୁ ବାଧ କରିବା ଉଚିତ ହୋଇଅଛି କି ? ସୁତରାଂ କମିଟୀ ସୁବିଚାର କରିଥିବାର କୌଣସି କାରଣ ଦେଖା ଯାଉ ନାହିଁ । ଆମ୍ଭେମାନେ ଜାଣୁଁ ଯେ ବୋଧୋଦୟ ସହିତ ଆମ୍ଭମାନଙ୍କର ସମ୍ପର୍କ ରହି ଥିବାରୁ ସ୍ୱାର୍ଥପରତାର ରାଣ ପକାଇ ଆମ୍ଭମାନଙ୍କ କଥା ଅଗ୍ରାହ୍ୟ କରିବାକୁ କେହି ସର୍ବସାଧାରଣଙ୍କୁ ଅନୁରୋଧ କରିବେ ମାତ୍ର ସ୍ୱାର୍ଥବାନ୍ ବ୍ୟକ୍ତିମାନେ ( ଯଥା ପୁସ୍ତକ ପ୍ରଣେତା ବା ସେମାନଙ୍କ ଭାଇବନ୍ଧୁ ଓ ପୁସ୍ତକ ବିକ୍ରେତା ଇତ୍ୟାଦି) ନିର୍ବାଚନକମିଟୀର ସଭ୍ୟ ମଧରେ ରହିଥିବା ସ୍ଥଳେ ସେ କଥା କେତେ ପ୍ରବଳ ହେବ ଧୀରଭାବରେ ବିଚାର କରିବା ଆବଶ୍ୟକ । କମିଟୀର ସଭ୍ୟମାନେ ସୁଦ୍ଧା ମନୁଷ୍ୟ ସେମାନଙ୍କର ଚକ୍ଷୁଲଜ୍ଜା ଉପରୋଧ ଅନୁରୋଧ ବା ସ୍ୱାର୍ଥପ୍ରତି ଆସ୍ଥା ନାହି ଏକଥା କିପରି ବୋଲା ଯିବ ? ଯାହା ହେଉ ଜଏଣ୍ଟ ଇନସ୍ପେକ୍ଟର ଏବାଜି ଆଚ୍ଛା ଜିଣିଅଛନ୍ତି ।

ବାବୁ ଚତୁର୍ଭୁଜ ପଟ୍ଟନାୟକଙ୍କ ସ୍ୱାସ୍ଥ୍ୟସାଧନବିଷୟରେ ବକ୍ତବ୍ୟ ଏତିକି ଯେ ଏ ପୁସ୍ତକ ମିୟାଦ ଗତେ ଉପସ୍ଥିତ ହେବାରୁ କମିଟୀ ଅଗ୍ରାହ୍ୟ କଲେ । ପୁଣି ବାବୁ ଶାମସନ ରାଉତଙ୍କ ପ୍ରସ୍ତାବ ଏବଂ ବାବୁ ଅବିନାଶଚନ୍ଦ୍ର ଚଟ୍ଟର୍ଯ୍ୟାଙ୍କ ଅନୁମୋଦନ କ୍ରମେ ଅଧିକାଂଶ ସଭ୍ୟଙ୍କ ମତରେ ଏହି ପୁସ୍ତକ ଏବର୍ଷ ସକାଶେ ଧାର୍ଯ୍ୟ ହେଲା । ଅର୍ଥାତ୍ କମିଟୀ ଯାହାକୁ ଅଗ୍ରାହ୍ୟ କଲେ ତାହାକୁ ଧାର୍ଯ୍ୟ କଲେ ଆଉ ଯେବେ ଏହି ପୁସ୍ତକ କମିଟୀ ବିଚାରାଧୀନରେ ରହିଥିବ ଅନ୍ୟ ସମସ୍ତ ପୁସ୍ତକଠାରୁ ଭଲ ହୋଇଥିବ ତେବେ ଆରବର୍ଷ ଏହାକୁ ଉପେକ୍ଷା କରିବା କି ଉଚିତ ହେବ ? ଏଥର କମିଟୀ ବସିବାର ପ୍ରାୟ ଏକ ମାସ ପୂର୍ବରୁ ଜଏଣ୍ଟ ଇନ୍‌ସ୍ପେକ୍ଟର କନିଂହାମ ସାହେବଙ୍କ ସ୍ୱାସ୍ଥ୍ୟରକ୍ଷା ଶେଷ ହୋଇଥିବାର ଉକ୍ତ କମିଟୀକି ଜଣାଇ ଥିଲେ ଏଥିପାଇଁ ସ୍ୱାସ୍ଥ୍ୟ ସାଧନକୁ ପାଠ୍ୟପୁସ୍ତକ ଧାର୍ଯ୍ୟ କରିବାର ପ୍ରସ୍ତାବ ହେଲା । ଏଥକୁ କନିଂହାମଙ୍କ ପୁସ୍ତକ ଏପରି ନୁହଇ ଯେ ଅଳ୍ପକାଳ ମଧରେ ଆଉ ଏକଥର ଛାପା ହୋଇ ନ ପାରନ୍ତା ଏବଂ ତାହା ଗବର୍ଣ୍ଣମେଣ୍ଟଙ୍କ ପୁସ୍ତକ ଥିବାରୁ ଏବର୍ଷର ପ୍ରୟୋଜନ ଅନୁସାରେ ଛପାଇ ନେବାରେ କିଛି ବାଧା ନ ଥିଲା । କନିଂହାମ ସ୍ୱାସ୍ଥ୍ୟରକ୍ଷା ବଦଳରେ କମିଟୀ ନୂତନ ପୁସ୍ତକ ଲୋଡୁ ଅଛନ୍ତି ଯେବେ ତାହା ବାଛି ନେବାରେ ବିଳମ୍ବ ହେଲା ତେବେ ପ୍ରଚଳିତ ପୁସ୍ତକକୁ ଏବର୍ଷ ରଖିବାର ସରଳ ବାଟ ଥିଲା । ମାତ୍ର ଜଏଣ୍ଟ ଇନସ୍ପେକ୍ଟର କିମ୍ୱା କମିଟୀର ଅନ୍ୟ କୌଣସି ଏପରି ପ୍ରସ୍ତାବ କଲେ ନାହି ଅଗ୍ରାହ୍ୟ ପୁସ୍ତକକୁ ଚଳାଇବାର ପ୍ରସ୍ତାବ ହେଲା ଏବଂ ଅଧିକାଂଶ ସଭ୍ୟ ତହିଁରେ ସମ୍ମତି ପ୍ରଦାନ କଲେ । ଚତୁର୍ଭୁଜ ବାବୁ କମିଟୀର ଭାବଗତି ଜାଣି ପାରି ହେଉ ଅଥବା ସାହସପୂର୍ବକ ହେଉ ଆଗଭଳି ପୁସ୍ତକ ଛପାଇ ଥିଲେ ବୋଲି ଫଳଲାଭ କଲେ ଆଉ ଦୁଇ ତିନିଜଣ ଗ୍ରନ୍ଥକାର ଏହିପରି କରିଥିଲେ କମିଟୀ ହରବରରେ ପଡି ବୁଝିଥାନ୍ତେ ଯେ ତାହାଙ୍କ କାର୍ଯ୍ୟ କେମନ୍ତ ଅନ୍ୟାୟ ହୋଇ ଅଛି ।

*ଭା୨୧ଗ, ସଂ୨୮ଖ୍ୟା, ୧୦।୭।୧୮୮୬*

## ଅଳଙ୍କାର ବୋଧୋଦୟ ।

ସ୍ଥାନାନ୍ତରେ ପ୍ରକାଶିତ ବାମଣ୍ଡାବିଜ୍ଞାପନରେ ଏ ପୁସ୍ତକର ଆବଶ୍ୟକୀୟ ପରିଚୟ ପାଠକମାନେ ପାଇ ଅଛନ୍ତି ଏବଂ ପ୍ରଶଂସା ପତ୍ରମାନ ପାଠକରି ଏଥିର ଗୁଣାଗୁଣ ମଧ ବୁଝିଅଛନ୍ତି । ଏ ପୁସ୍ତକ ମୁଦ୍ରିତ ହେବାପୂର୍ବେ ଗ୍ରନ୍ଥକାର ଆମ୍ଭମାନଙ୍କ ଜଏଣ୍ଟ ଏନସ୍ପେକ୍ଟର ବାବୁ ରାଧାନାଥ ରାୟଙ୍କୁ ଏହାର ପାଣ୍ଡୁଲିପି ଦେଖାଇଥିଲେ ଏବଂ ସେ ଯେଉଁ ଅନୁକୂଳମତ ପ୍ରଦାନ କରି ଅଛନ୍ତି ତାହା ମଧ ପୁସ୍ତକସଙ୍ଗେ ଛାପା ହୋଇଅଛି । ସୁତରାଂ ପୁସ୍ତକ ଖଣ୍ଡିକ ଭଲ ହୋଇଅଛି ଏକଥା ଆଉ ବୋଲିବାର ପ୍ରୟୋଜନ ନାହିଁ । ଗଡଜାତ ରାଜାମାନଙ୍କ ମଧରେ ବାମଣ୍ଡାଧିପତି ଜଣେ ବୁଦ୍ଧିମାନ୍ ସୁସଭ୍ୟ ଏବଂ ଉନ୍ନତ ରାଜା ଅଟନ୍ତି । ବିଦ୍ୟା ପ୍ରତି ଏହାଙ୍କର କେମନ୍ତ ଅନୁରାଗ ମୁକ୍ତିକୋପନିଷତ୍ ପୁସ୍ତକ

ଭାଷା ଅନୁବାଦ ସହିତ ପ୍ରକାଶ ଓ ବିନାମୂଲ୍ୟରେ ବିତରଣ ଏବଂ ସ୍ୱରାଜ୍ୟରେ ଗୋଟିଏ ମୁଦ୍ରାଯନ୍ତ୍ର ସ୍ଥାପନ କରିବାରୁ ସର୍ବ ସାଧାରଣ ଉତ୍ତମରୂପେ ଜାଣିଅଛନ୍ତି । ସମସ୍ତ ରାଜକାର୍ଯ୍ୟ ସ୍ୱୟଂ ଦେଖି ଶୁଣି ନିର୍ବାହକରିବା ଏବଂ ସ୍ୱରାଜ୍ୟର ଉନ୍ନତି ଚିନ୍ତାରେ ସର୍ବଦା ବ୍ୟସ୍ତଥାଇ ସେ ଦେଶୀୟଭାଷା ଶୁଦ୍ଧରୂପେ ଲେଖିବାର ଶିକ୍ଷା ଦେବା ଉଦ୍ଦେଶରେ ସଂସ୍କୃତ ଅଳଙ୍କାର ଶାସ୍ତ୍ରର ସାରକଥାମାନ ଭାଷାରେ ରଚନା କରିବାକୁ ଏବଂ ନାନାଭାଷାଗ୍ରନ୍ଥରୁ ଉଦାହରଣମାନ ଲୋଡ଼ି ତହିଁରେ ସନ୍ନିବେଶ କରିବାକୁ ଅବସର ପାଇ ଅଛନ୍ତି ଏକଥା ଆଉରି ଅଧିକ ପ୍ରଶଂସାର ବିଷୟ ଅଟଇ । ସାଧାରଣ ହିତକାର୍ଯ୍ୟରେ ନିତାନ୍ତ ଅନୁରାଗ ନ ଜନ୍ମିଲେ ରାଜଭୋଗରେ ପହୁଡୁଥିବାଲୋକ ଏତାଦୃଶ ଶ୍ରମଶୀଳ କାର୍ଯ୍ୟରେ ପ୍ରବର୍ତ୍ତିତ ହୁଅନ୍ତି ନାହିଁ । ଅଳଙ୍କାରର କେତେଗୁଡିଏ ମୂଳସୂତ୍ର ସର୍ବସାର ବ୍ୟାକରଣରେ ପ୍ରକାଶ ହୋଇଥିଲେ ହେଁ ଅଳଙ୍କାର ବୋଧୋଦୟ ଉକ୍ତ ବିଷୟର ଖଣ୍ଡିଏ ସ୍ୱତନ୍ତ୍ର ଗ୍ରନ୍ଥ ହେବାରୁ ଏହାକୁ ଓଡିୟାଭାଷାର ନୂତନ ଗ୍ରନ୍ଥ ବୋଲାଯାଇପାରେ । ଏଥିରେ ଅନେକଗୁଡିଏ ପ୍ରୟୋଜନୀୟ ବିଷୟ ଶୁଦ୍ଧରୂପେ ବୁଝାଇ ଦିୟାଯାଇଅଛି ଏବଂ ଶିକ୍ଷାବିଭାଗର କର୍ତ୍ତୃପକ୍ଷମାନେ ଏହାର ପ୍ରୟୋଜନୀୟତା ଅନୁଭବ କରି ନର୍ମାଲ ବିଦ୍ୟାଳୟର ପାଠ୍ୟପୁସ୍ତକର ତାଲିକାରେ ଏହାକୁ ସ୍ଥାନଦେଇ ଅଛନ୍ତି । ଅବଶ୍ୟ ପ୍ରଥମ ଉଦ୍ୟମରେ ଏପରି କଠିନ ପୁସ୍ତକ ସର୍ବାଙ୍ଗ ସୁନ୍ଦରହେବ ଏପରି ଆଶା କରାଯାଇ ନ ପାରେ ତେଣୁ ପୁସ୍ତକର ସ୍ଥାନେ ସ୍ଥାନେ କେତେଗୁଡିଏ ତୃଟି ଲକ୍ଷିତ ହୋଇଅଛି । ଏକଏକ ସ୍ଥଳରେ ଏକ ଏକ ସଞ୍ଜ୍ଞାର ଯେ ବ୍ୟାଖ୍ୟା ହୋଇଅଛି ତହିଁର ଅର୍ଥ ସହଜରେ ବୁଝାଯାଉ ନାହିଁ ଓ ବୁଝାଇ ଦେବାର ଚେଷ୍ଟା ହୋଇ ନାହିଁ । ଯଥା 'ଅଭିଧାଶକ୍ତିଦ୍ୱାରା ଯେଉଁ ଅର୍ଥ ଜଣାଯାଏ ତାହାକୁ ବାଚ୍ୟାର୍ଥବୋଲି' । କିନ୍ତୁ ଅଭିଧାଶକ୍ତି ବୁଝାଇବାର ଚେଷ୍ଟା ହୋଇ ନାହି । ଅନେକ ଉଦାହରଣରେ କେବଳ ସଂସ୍କୃତ ବାକ୍ୟ ଭାଷାରେ ଅନୁବାଦ କରି ଦିୟା ଯାଇଅଛି । ଏପ୍ରଣାଳୀ ଆମ୍ଭମାନଙ୍କ ବିବେଚନାରେ ଉତ୍ତମ ନୁହଇ । ଏଥିରୁ କେହି କେହି ଅନୁମାନ କରିପାରନ୍ତି ଯେ ଭାଷାପ୍ରତି ସେ ସବୁ ଖଟଇ ନାହିଁ । ଅବଶ୍ୟ ଆମ୍ଭେମାନେ ସ୍ୱୀକାରକରୁଁ ଯେ ଉଦାହରଣମାନ ଖୋଜି ଆଣିମା ଅଳ୍ପସମୟ ସାପେକ୍ଷ ନୁହଇ ଏବଂ ଏଥିପାଇଁ ଆମ୍ଭେମାନେ ଆଶା କରୁଁ କି ରାଜାମହୋଦୟ ଏହି ସମୟରୁ ପ୍ରସ୍ତୁତ ରହି ଭବିଷ୍ୟତ୍ ସଂସ୍କରଣରେ ବର୍ତ୍ତମାନର ତୃଟିମାନ ପୂର୍ଣ୍ଣ କରିବେ ।

*ଭା୨୧ଗ, ସଂ୨୮ଖ୍ୟା, ୧୦।୭।୧୮୮୬*

## [ଓଡିଶାବାସୀଙ୍କ ପ୍ରତି ଅନ୍ୟାୟ]

ଗଞ୍ଜାମରୁ ଜଣେ ଓଡିୟା ପତ୍ରପ୍ରେରକ ଲେଖିଅଛନ୍ତି କି ଉକ୍ତ ଜିଲ୍ଲାରେ ପୂର୍ବେ ତିନିଜଣ ସ୍କୁଲଡେପୁଟୀ ଇନ୍‌ସ୍ପେକ୍ଟର ଥିଲେ କିନ୍ତୁ ପ୍ରାଥମିକ ପାଠଶାଳାସଂଖ୍ୟା ବର୍ଷକୁ ବର୍ଷ ବୃଦ୍ଧିହେତୁ ଆଉ ଜଣେ ଡେପୁଟୀ ଇନ୍‌ସ୍ପେକ୍ଟର ଆବଶ୍ୟକ ହୋଇଅଛି ଏବଂ ବାବୁ ଶଶିଭୂଷଣ ପାଲିତ ତହିଁରେ ନିଯୁକ୍ତ ହୋଇଅଛନ୍ତି । ଶଶିବାବୁଙ୍କର ଘର ବଙ୍ଗଳାରେ ହେଲେହେଁ ଅନେକଦିନ ହେଲା ଗଞ୍ଜାମ ଜିଲ୍ଲାରେ ବାସକରି ବ୍ରହ୍ମପୁର କଲେଜର ସହକାରୀ ଶିକ୍ଷକତା କାର୍ଯ୍ୟରେ ନିଯୁକ୍ତଥିଲେ ଏବଂ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରେ ସନ ୧୮୮୪ ସାଲରେ ବି,ଏ, ପରୀକ୍ଷା ପାଶ କରି ଅଛନ୍ତି, ଅତି ଶାନ୍ତ ଓ ସୁଶୀଳ ଲୋକ ଅଟନ୍ତି । ନୂତନ ପଦରେ କିପରି କାର୍ଯ୍ୟ କରିବେ ଜଣାଯାଇ ନାହି ଏଥିମଧ୍ୟରେ କେବଳ ଏତିକି ଜନରବ ଉଠିଅଛି ଯେ ଗ୍ରାଣ୍ଟ ପାଶ କରିବା ବିଷୟରେ ସେ ଅତି କଠିନ ଅଟନ୍ତି । ଅନ୍ୟ ତିନିଜଣ ଡେପୁଟୀଙ୍କ ମଧ୍ୟରୁ ଦୁଇଜଣ ଓଡିୟା ବା ବଙ୍ଗାଳୀ ଏବଂ ଅନ୍ୟ ଜଣ ଦ୍ରାବିଡ ବ୍ରାହ୍ମଣକୁଳରେ ଜନ୍ମ ମାତ୍ର ଓଡିୟା ଦେଶରେ ଅନେକ ଦିନରୁ ବାସ କରିଅଛନ୍ତି । ଯାହା ହେଉ ସ୍ଥାନୀୟ ଓଡିୟାମାନେ ଅଧିକପରିମାଣରେ କାର୍ଯ୍ୟ ନ ପାଇବାରୁ ପତ୍ରପ୍ରେରକ ଦୁଃଖ ପ୍ରକାଶ କରିଅଛନ୍ତି । ଗଞ୍ଜାମବାସୀଙ୍କର ଏ ଦୁଃଖ ଆଜିକାଲିର ନୁହେ । ସ୍ଥାନୀୟ କର୍ତ୍ତୃପକ୍ଷଙ୍କର ସେମାନଙ୍କୁ ଉପଯୁକ୍ତ ଉତ୍ସାହ ଦେବା ନିତାନ୍ତ କର୍ତ୍ତବ୍ୟ କାରଣ ପ୍ରଥମେ ହାତଧରି ଟେକି ନ ଦେଲେ ଛିଡା ହେବା ଅତି କଠିନ । ଆଉ ଓଡିୟାମାନଙ୍କର ମଧ କର୍ତ୍ତବ୍ୟ ଯେ ଉଚ୍ଚଶିକ୍ଷା ଲାଭ କରିବାକୁ ସମଧିକ ଯତ୍ନବାନ୍ ହେଉନ୍ତୁ ତାହାହେଲେ ୯ଟତି କାର୍ଯ୍ୟ ଲଭିପାରିବେ ।

*ଭା୨୧ଗ, ସଂ୨୯ଖ୍ୟା, ୧୭।୭।୧୮୮୬*

## [ରେଭେନ୍ସା କଲେଜିଏଟ୍ ସ୍କୁଲରେ ଶିକ୍ଷକ ନିଯୁକ୍ତି]

ମହାଶୟ !

ଅନୁଗ୍ରହପୂର୍ବକ ନିମ୍ନାଙ୍କିତ କତିପୟ ପଁକ୍ତିକୁ ଆପଣଙ୍କ ସୁବିଖ୍ୟାତ ପତ୍ରିକାର ଏକପାର୍ଶ୍ୱରେ ସ୍ଥାନଦାନ କରି ବାଧିତ କରିବେ ।

ରେଭେନ୍ସା କଲେଜିଏଟ୍ ସ୍କୁଲ ଓଡିଶାରେ ସର୍ବଶ୍ରେଷ୍ଠ ଏବଂ ଅଧିକାଂଶ ଯୋଗ୍ୟଲୋକ ଏଥିରେ ଶିକ୍ଷକତା କାର୍ଯ୍ୟରେ ନିଯୁକ୍ତ ହୋଇଅଛନ୍ତି । ଯେଉଁମାନେ ଯୋଗ୍ୟତାରୂପ ହିମାଳୟର ଉନ୍ନତତମ ଶିଖରରେ ଆରୋହଣ କରିଅଛନ୍ତି, ଯେଉଁମାନଙ୍କ ବାକ୍ୟ, ସମାଜର ଦର୍ପଣସ୍ୱରୂପ ଏବଂ ଯେଉଁମାନଙ୍କ ଉପଦେଶ ଭାରତର କୋହିନୂର ସ୍ୱରୂପ, ସେମାନଙ୍କ ମଧ୍ୟରୁ କାହାରି ନୃଶଂସ ବ୍ୟବହାର ଦେଖିଲେ ହୃଦୟ ଶୋକାକୁଳିତ ହୁଏ । ସମ୍ପ୍ରତି ଉପରୋକ୍ତ ବିଦ୍ୟାଳୟର ୨ୟ ପଣ୍ଡିତ ଶ୍ରୀଯୁକ୍ତ ବିଶ୍ୱନାଥ ସପଥୀ ବେତ୍ରରୂପ ଲାଙ୍ଗଳଦ୍ୱାରା ଛାତ୍ରମାନଙ୍କର କୋମଳାଙ୍ଗ କର୍ଷଣ କରୁଅଛନ୍ତି । ସେ ଯେରୂପଭାବେ ଛାତ୍ରମାନଙ୍କ ଅଙ୍ଗରେ "ବାଘବଜେଇ ଛକ" କାଟୁ ଅଛନ୍ତି, ତାହା ଦେଖିଲେ କାହା ନୟନରୁ ଅଶ୍ରୁପାତ ନ ହେବ ? ସେଦିନ ଉକ୍ତ ବିଦ୍ୟାଳୟ ଷଷ୍ଠଶ୍ରେଣୀର ଜଣେ ଛାତ୍ର ଯେରୂପ ପଶୁବତ୍ ପ୍ରହାରିତ ହୋଇଥିଲା, ତାହା ଦେଖି ଅନେକଲୋକ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ ଏବଂ ଜଣେ ସମ୍ଭ୍ରାନ୍ତ ଭଦ୍ରଲୋକ ଅଶ୍ରୁପାତ କରିବାକୁ ଉଦ୍ୟତ ହୋଇଥିଲେ । ଆଉ ମଧ ଅନେକ ବାର ୪ର୍ଥ ଶ୍ରେଣୀରେ ଯେଉଁ ଅତ୍ୟାଚାର କରିଥିଲେ, ତହିଁ ନିମିତ୍ତ ଜଣେ ଶିକ୍ଷକ ତାଙ୍କୁ ସଦୁପଦେଶ ପ୍ରଦାନ କରିଅଛନ୍ତି ।

ଓଡିୟା ବାଳକମାନେ ସ୍ୱଭାବତଃ ଶାନ୍ତ ଏବଂ ସତ୍ପ୍ରକୃତିବିଶିଷ୍ଟ । ସେମାନେ ଭୟରେ କୌଣସି କଥା କହିବାକୁ ସାହସ କରନ୍ତି ନାହିଁ । ଏହି ନିମିତ୍ତ ଏତାଦୃଶ କଠୋର ଅତ୍ୟାଚାର ଉପରିସ୍ଥ କର୍ମଚାରିମାନଙ୍କ କର୍ଣ୍ଣଗୋଚର ହୁଏ ନାହିଁ । ସେମାନେ ଯେବେ ବଙ୍ଗଦେଶର କେତେକ ସ୍ଥାନର ବାଳକମାନଙ୍କ ଅନୁକରଣ କରୁଥାନ୍ତେ, ତାହା ହେଲେ ଉପରୋକ୍ତ ମହାତ୍ମାଙ୍କର ଏ ସ୍ୱଭାବ ଅଦ୍ୟାବଧି ଜୀବିତ ନ ଥାନ୍ତା । ଆଜିକାଲି ସମୟର ଗତି ବିଚିତ୍ର; ଏଥିରେ ପଣ୍ଡିତ ମହାଶୟଙ୍କର ଏରୂପ ବ୍ୟବହାର ବାଞ୍ଛନୀୟ ନୁହେ ।

ଆମ୍ଭେମାନେ ଶିକ୍ଷାପ୍ରଣାଳୀର ପ୍ରତ୍ୟେକ ପୃଷ୍ଠା ଲେଉଟାଇ ସୁଦ୍ଧା, ବଡ ବଡ ଛାତ୍ରମାନଙ୍କୁ ଅପରିମିତ ଶାରୀରିକ ଦଣ୍ଡଦେବା ବିଷୟ ଦେଖିଲୁଁ ନାହି । ପଣ୍ଡିତ ମହାଶୟ ଏପରି କରିବା ସମ୍ପୂର୍ଣ୍ଣ ଗର୍ହିତ କାର୍ଯ୍ୟ । ଭରସା କରୁଁ ଏଣିକି ସେ ଆପଣାର ଏହି ସ୍ୱଭାବ ପରିତ୍ୟାଗପୂର୍ବକ ଦେଶ କାଳ ପାତ୍ର ବିଚାରକରି ନୀତି ଅନୁସାରେ ଶିକ୍ଷା ଦେବାକୁ ବାଧ ହେବ । ଛାତ୍ରମାନେ ମଧ ଏଣିକି ଦକ୍ଷତାର ସହିତ କାର୍ଯ୍ୟକରିବା ଉଚିତ । ଇତି ।

୧୨/୭/୮୬ ଜଣେ ସତ୍ୟବାଦୀ

କଟକ

*ଭା୨୧ଶ, ସଂ୨୯ଖ୍ୟା, ୧୭/୭/୧୮୮୬*

## ସଂସ୍କାରକଙ୍କ ପ୍ରଳାପ ।

ପାଠ୍ୟପୁସ୍ତକନିର୍ବାଚନ କମିଟୀର କାର୍ଯ୍ୟ ସମ୍ପର୍କରେ ଏଥି ପୂର୍ବେ ଆପଣା ମନ୍ତବ୍ୟ ପ୍ରକାଶ କରିବାବେଳେ ଆମ୍ଭେମାନେ ନିଶ୍ଚୟ ମନେ କରିଥିଲୁଁ ଯେ ସଂସ୍କାରକରେ ତହିଁର ପ୍ରତିବାଦ ବାହାରିବ ଏବଂ ଉକ୍ତ ପତ୍ରିକାର କର୍ତ୍ତା ନିର୍ବାଚନକମିଟୀର ଜଣେ ସଭ୍ୟ ଥିବାରୁ ଆଶା କରିଥିଲୁଁ ଯେ ତାହାଙ୍କଠାରୁ ଏମନ୍ତ କିଛି କଥା ଶୁଣିବୁଁ ଯେ ତହିଁରେ ଆମ୍ଭମାନଙ୍କର କିଛି ଭ୍ରମ ହୋଇଥିଲେ ସଂଶୋଧିତ ହେବ ଅଥବା କମିଟୀର ଭିତର କଥା ଯାହା ପ୍ରକାଶ ହୋଇ ନାହି ତାହା ଜଣା ପଡିବ । ମାତ୍ର ଗତସଂଖ୍ୟାକ ସଂସ୍କାରକ ପାଠ କରି ଏକାବେଳକେ ନିରାଶ ହେଲୁଁ । ସହଯୋଗୀ ଆମ୍ଭମାନଙ୍କର କୌଣସି କଥାର ଉଚିତ ପ୍ରତିବାଦ କରିବାକୁ ସକ୍ଷମ ନ ହୋଇ ଏଣେ ତେଣେ କେତେଗୁଡିଏ ପ୍ରଳାପ ବାଣୀ କହି ଦେଇ ଲୋକଙ୍କୁ ଭୁଲାଇବାର ଚେଷ୍ଟା କରିଅଛନ୍ତି । ଆମ୍ଭେମାନେ ତହିଁର ଦୁଇ ଚାରୋଟି ନମୁନା ନିମ୍ନେ ପ୍ରକାଶ କଲୁଁ ଯଥା-

ଦୃଶ୍ୟ ହେଲା ? ଏହି କାରଣରୁ ଆମ୍ଭେ କହୁଁ ଗବର୍ଣ୍ଣମେଣ୍ଟ ଆମ୍ଭ ଓଡିୟାମାନଙ୍କ ପକ୍ଷେ ପକ୍ଷପାତାବଲମ୍ବନ ବହିଅଛନ୍ତି । ଯେବେ ମୁକୁନ୍ଦରାଓ ବି,ଏ, ତେବେ ଭାରତ ଗବର୍ଣ୍ଣମେଣ୍ଟଙ୍କୁ ଆମ୍ଭ ଗଞ୍ଜାମ ଓଡିୟାମାନଙ୍କର ଦୃଢପ୍ରାର୍ଥନା ତେଲଙ୍ଗା ଓ କମା ବାଳକମାନଙ୍କପାଇ ଯେଉଁପରି ତେଲଙ୍ଗା ଶାସ୍ତ୍ରୀ ନିଯୁକ୍ତ କରାଯାଇ ଅଛି ସେହିପରି ଆମ୍ଭ ଓଡିୟାମାନଙ୍କ ଓଡିୟା ଶିକ୍ଷାର୍ଥେ ଉକ୍ତ କଲେଜରେ ଆଉ ଏକଜଣ ଉପଯୁକ୍ତ ଓଡିୟାଶାସ୍ତ୍ରୀ ନିଯୁକ୍ତ କରନ୍ତୁ ।

୨୬।୭।୮୬ ବଶମ୍ବଦ

ଶ୍ରୀ -----

ରସୁଲକୋଣ୍ଡା

*ଭା୨୧ଗ, ସଂ୩୨ଖ୍ୟା,୭।୮।୧୮୮୬*

## [ଓଡିଆମାନଙ୍କ ପ୍ରତି ଅବିଚାର ]

ଘୁମୁସରରୁ ଜଣେ ପତ୍ରପେରକ ଲେଖିଅଛନ୍ତି କି ରସୁଲକୁଣ୍ଡାର ମିଡିଲିସ୍କୁଲ ବ୩୦ର୍ଷ ପର୍ଯ୍ୟନ୍ତ ଗବର୍ଣ୍ଣମେଣ୍ଟ- ମିଡିଲିସ୍କୁଲ ଥିଲା ସନ ୧୮୮୪ ସାଲ ଅକ୍ଟୋବର ମାସଠାରୁ ଗଞ୍ଜାମର ଲୋକଲଫଣ୍ଡକୁ ଅର୍ପିତ ହେବାରୁ ଓଡିୟାମାନଙ୍କ ପ୍ରତି ବଡ ଅବିଚାର ହୋଇଅଛି । କାରଣ ଲୋକଲଫଣ୍ଡର ଅଧିକାଂଶ ସଭ୍ୟ ଏବଂ ସ୍କୁଲର ସେକ୍ରେଟରୀ କମାବ୍ରାହ୍ମଣ କି ଯେଉମାନେ ସ୍ୱଜାତୀୟ ଲୋକଙ୍କ ଉନ୍ନତି ଉଦ୍ଦେଶରେ ଓଡିୟାଙ୍କପ୍ରତି ଯଥେଷ୍ଟ ସହାନୁଭୂତି ପ୍ରକାଶ କରନ୍ତି ନାହି । ଘୁମୁସର ପ୍ରଦେଶ ପ୍ରକୃତ ଓଡିୟା ରାଜ୍ୟ ଏବଂ ଏଠା ମିଡିଲ୍‌ସ୍କୁଲର ପ୍ରଧାନ ଶିକ୍ଷକ ଓଡିୟା ହେଲେ ଓଡିୟାମାନଙ୍କର ଯେମନ୍ତ ଶିକ୍ଷାର ସୁବିଧା ହେବ କମାବ୍ରାହ୍ମଣ ଶିକ୍ଷକଦ୍ୱାରା ସେପରି ହେବାର ଆଶା କରାଯାଇ ନ ପାରେ । ପୂର୍ବେ ଏହିସ୍କୁଲର ପ୍ରଧାନ ଶିକ୍ଷକ ପଦରେ ଜଣେ "ମାଟ୍ରିକ୍ୟୁଲେସନ" ପାସ କରିଥିବା କମା ବ୍ରାହ୍ମଣ ନିଯୁକ୍ତ ଥିଲେ । ବର୍ତ୍ତମାନ ଉକ୍ତ ପରୀକ୍ଷା ପାସ କରିଥିବା ଓଡିୟାଲୋକର ଅସଦ୍ଭାବ ନ ଥିବା ପ୍ରତ୍ୟକ୍ଷେ କମିଟି ଜଣେ ଏଫ, ଏ, ପାସ କରିଥିବା ଲୋକ ଉକ୍ତ କର୍ମ ସକାଶେ ଲୋଡୁଅଛନ୍ତି କାରଣ ଉକ୍ତ ପରୀକ୍ଷା ପାସ କରିଥିବା ଓଡିୟାଲୋକ ବହୁତ ନ ଥିବାରୁ ଜଣେ କମା ବ୍ରାହ୍ମଣକୁ ନିଯୁକ୍ତ କରିବାର ସୁବିଧା ହେବ । ପତ୍ରପ୍ରେରକ ଆହୁରି ଲେଖିଅଛନ୍ତି କି କମାବ୍ରାହ୍ମଣମାନେ ଓଡିୟା ପଢାଇପାରିବାର ତେଣିକି ଥାଉ ତାହାଙ୍କର ଓଡିୟାକଥା ଶୁଣିଲେ ଓଡିୟାମାନେ ହାସ୍ୟସମ୍ବରଣ କରିପାରନ୍ତି ନାହି ଏପର ଫଣ୍ଡରେ କୌଣସି ସମୟରେ ଟଙ୍କା ନିଅଣ୍ଟ ହେଲେ ସ୍କୁଲଟି ଉଠିଯିବାର ଭୟ ଅଛି । ଅତଏବ ପତ୍ରପ୍ରେରକ ପ୍ରାର୍ଥନା କରିଅଛନ୍ତି କି ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଏ ସ୍କୁଲଟିକି ଲୋକଲଫଣ୍ଡରୁ କାଢିନେଇ ପୂର୍ବପ୍ରାୟ ଖାସସ୍କୁଲମଧରେ ରଖନ୍ତୁ ଏବଂ ଓଡିୟାଙ୍କ ମଧରେ ଏଫ, ଏ, ପାସ କରିବା ଲୋକଙ୍କ ସଂଖ୍ୟା ଅଧିକ ହେବାପର୍ଯ୍ୟନ୍ତ ମାଟ୍ରିକ୍ୟୁଲେସନ ପାସ କରିଥିବା ଓଡିୟାଙ୍କୁ ଉକ୍ତ ସ୍କୁଲର ପ୍ରଧାନ ଶିକ୍ଷକତା ଦିୟାଯାଉ ।

ଗଞ୍ଜାମଜିଲ୍ଲାରେ କମା ବ୍ରାହ୍ମଣଙ୍କର ପ୍ରାଦୁର୍ଭାବ ଏବଂ ଓଡିୟାଙ୍କର ଅତ୍ୟନ୍ତ ଦୁରବସ୍ଥା ଗୋଟିଏ ପୁରୁଣା ଗୁହାରୀ ଏବଂ ଗବର୍ଣ୍ଣମେଣ୍ଟ ଏପର୍ଯ୍ୟନ୍ତ କିଛି ସୁବିଚାର କଲେ ନାହିଁ ବଡ ଦୁଃଖର ବିଷୟ ଅଟଇ । ସ୍ଥାନୀୟ ହାକିମମାନେ ଆଉ କେତେକାଳ ଏ ବିଷୟରେ ନିଶ୍ଚେଷ୍ଟ ରହିବେ ?

*ଭା୨୧ଗ, ସଂ୩୩ଖ୍ୟା, ୧୪।୮।୧୮୮୬*

## ବ୍ୟାବହାରିକ ଜ୍ଞାନଶିକ୍ଷା ।

ବ୍ୟାବହାରିକ ଜ୍ଞାନଶିକ୍ଷାର ଭବିଷ୍ୟତ ଓ ବର୍ତ୍ତମାନ ଅବସ୍ଥା ଜାଣିବା ନିମନ୍ତେ ଗଭର୍ଣରଜେନରେଲ ବାହାଦୁର ଅଭିପ୍ରାୟ ପ୍ରକାଶ କରିବାରେ ହୋମ ଡିପାର୍ଟମେଣ୍ଟରୁ ସେହି ବିଷୟର ଗୋଟିଏ ସ୍ମାରକଲିପି ପ୍ରସ୍ତୁତ ହୋଇଅଛି । ଏଥିର ସାରାଂଶ ନିମ୍ନରେ ସମୁଦ୍ଧୃତ ହେଲା ।

ଆଇନ ଓ ଚିକିତ୍ସାଦି ଶିକ୍ଷା ସମ୍ବନ୍ଧରେ ବଙ୍ଗପ୍ରଦେଶରେ ମାନ୍ଦ୍ରାଜ ଓ ବୋମ୍ବାଇ ପ୍ରଦେଶ ଅପେକ୍ଷା

ବିଶେଷ ଉପାୟ ଓ ଉନ୍ନତି ପରିଦୃଷ୍ଟ ହୁଅଇ । ମାନ୍ଦ୍ରାଜରେ କେବଳ ଏକ କଲେଜରୁ ବର୍ତ୍ତମାନ ପର୍ଯ୍ୟନ୍ତ ଜ୨୩୮ଣ ଓ ବୋମ୍ବାଇରେ ଜ୧୩୨ଣ ସେହିପରି ବଙ୍ଗଳାରେ ଜ୧୩୨୮ଣ ଛାତ୍ର ଆଇନ ଉପାଧି ଲାଭ କରିଅଛନ୍ତି- ଚିକିତ୍ସା ଶିକ୍ଷାବିଷୟରେ ତିନିଗୋଟି ରାଜଧାନୀନଗର ବ୍ୟତୀତ ଅପର ସ୍ଥଳରେ ବିଶେଷ ଉପାୟ ଦୃଷ୍ଟ ହୁଅଇ ନାହିଁ - ଇରୀପ ଶିକ୍ଷାପ୍ରଣାଳୀ ବିସ୍ତାର ସମ୍ବନ୍ଧରେ କିଛି ମାତ୍ର ଉତ୍ସାହଦାନର କାର୍ଯ୍ୟ ହୋଇଅଛି। ଶିଳ୍ପବିଦ୍ୟାଶିକ୍ଷାସମ୍ବନ୍ଧରେ ନୂତନ ପଦ୍ଧତିର ସୃଷ୍ଟି ଆବଶ୍ୟକ କରେ ।

ବର୍ତ୍ତମାନ ବିଶ୍ୱବିଦ୍ୟାଳୟର ଶିକ୍ଷା ଅନେକ ଅଂଶରେ ବିସ୍ତାରିତ ହେଲେ କି ହେବ ବ୍ୟାବହାରିକ ଜ୍ଞାନର ଶିକ୍ଷା ତତ୍‌ସଙ୍ଗରେ ବିସ୍ତାରପ୍ରାପ୍ତ ହୋଇ ନାହି । ଶିକ୍ଷାକମିଶନ ଭାରତବର୍ଷର ଶିକ୍ଷା ବିସ୍ତାରବିଷୟରେ ତିନୋଟି ଅବସ୍ଥାର ଉଲ୍ଲେଖ କରିଅଛନ୍ତି -୧ମ ୧୮୫୪ ଖ୍ରୀଷ୍ଟାବ୍ଦର ସୁପ୍ରସିଦ୍ଧ ଡେସ୍ପାଚ୍ ଅବା ଡିରେକ୍ଟର ସଭାର ପ୍ରେରିତ ଚିଠିର ପୂର୍ବକାଳିକ ଶିକ୍ଷାର ଅବସ୍ଥା । ୨ୟ ୧୮୭୧ ସାଲ ପର୍ଯ୍ୟନ୍ତ ଶିକ୍ଷାର ଅବସ୍ଥା ଏବଂ ୩ୟ ୧୮୭୧ ସାଲଠାରୁ ଏପର୍ଯ୍ୟନ୍ତ ଶିକ୍ଷାର ଅବସ୍ଥା ଗଭର୍ଣ୍ଣମେଣ୍ଟପ୍ରଦତ୍ତ ଶିକ୍ଷାର ସୂତ୍ରପାତ ୧୮୧୩ ସାଲରେ ହେଲା କିନ୍ତୁ ୧୮୨୫ ମସିହା ପର୍ଯ୍ୟନ୍ତ ଗଭର୍ଣ୍ଣମେଣ୍ଟ ଶିକ୍ଷାକାର୍ଯ୍ୟର ବିସ୍ତାର ପକ୍ଷରେ ପ୍ରକୃତ ହସ୍ତକ୍ଷେପ କରି ନ ଥିଲେ - ଏତେକାଳ ପର୍ଯ୍ୟନ୍ତ ମିଶନରିସମ୍ପ୍ରଦାୟ ଓ ରାଜକର୍ମଚାରିପ୍ରଭୃତି ଅନ୍ୟାନ୍ୟ ବ୍ୟକ୍ତିଗଣ ଶିକ୍ଷାପ୍ରତି ଦୃଷ୍ଟିପାତ କରିଥିଲେ । ଗଭର୍ଣ୍ଣମେଣ୍ଟ ୧୮୨୫ ମସିହାରେ ପ୍ରଥମତଃ ଏକଲକ୍ଷ ଟଙ୍କା ବ୍ୟୟର ମଞ୍ଜୁର ପ୍ରଦାନ କଲେ ୧୮୫୪ସାଲଠାରୁ ରାଜକୀୟ ଯତ୍ନରେ ପ୍ରକୃତ ଶିକ୍ଷାର ଲବ୍ଧ ପ୍ରସାର ହେଲା କିନ୍ତୁ ଏ ସମୟରେ ମଧ୍ୟ ବ୍ୟାବହାରିକ ଶିକ୍ଷା ପ୍ରତି ଦୃଷ୍ଟିପାତ ହୋଇ ନାହିଁ । ଗତ କେତେକବର୍ଷ ହେଲା ଶିଳ୍ପଶିକ୍ଷାଦି ବ୍ୟାବହାରିକ ଜ୍ଞାନଶିକ୍ଷାର ପ୍ରୟୋଜନୀୟତା ବିଶେଷରୂପେ ଉପଲବ୍ଧ ହେବାର ଲକ୍ଷିତ ହେଉଅଛି । ଶିକ୍ଷାକମିଶନ ଏ ଶିକ୍ଷାର ଅଭାବ ଅନୁଭବ କରି ପ୍ରସ୍ତାବ କରିଥିଲେ ଯେ ବାଳକମାନଙ୍କର କେବଳ ବିଶ୍ୱବିଦ୍ୟାଳୟର ଶିକ୍ଷା ପ୍ରତି ଦୃଷ୍ଟି ନ ରଖି ଯାହାଦ୍ୱାରା ଆରମ୍ଭରୁ ସମସ୍ତ ବିଷୟର ଆବଶ୍ୟକ ଜ୍ଞାନ ଶିକ୍ଷା କରିବାକୁ ସମର୍ଥ ହୁଅନ୍ତି ଏପରି ଶିକ୍ଷାପ୍ରଣାଳୀ ପ୍ରବର୍ତ୍ତିତ ହେବାର ଆବଶ୍ୟକ ଅତଏବ ବାଣିଜ୍ୟ ଓ ଶିଳ୍ପାଦି ଶିକ୍ଷାର ଜ୍ଞାନଲାଭ ବିଷୟରେ ପ୍ରଥମରୁ ଦୃଷ୍ଟି ରଖା ଆବଶ୍ୟକ । ଅନେକ ସ୍ଥଳରେ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଅନେକ ଛାତ୍ର ପଢାଶୁଣା ପରିତ୍ୟାଗ କରନ୍ତି । କୌଣସି ବ୍ୟାବହାରିକ ଜ୍ଞାନ ଶିକ୍ଷା ଅଭାବରେ ସେମାନଙ୍କ ଶିକ୍ଷିତ ଜ୍ଞାନ ନିଷ୍ଫଳ ହୁଏ ଅତଏବ ଶିକ୍ଷାକମିଶନ ଅନୁରୋଧ କରିଅଛନ୍ତି ଯେ ଉଚ୍ଚ ଶ୍ରେଣୀର ସ୍କୁଲମାନଙ୍କର ଉପର ଶ୍ରେଣୀରେ ଦୁଇଗୋଟି ବିଭାଗ କରାଯାଉ । ଗୋଟିଏ ଶ୍ରେଣୀ କେବଳ ପ୍ରବେଶିକା ପରୀକ୍ଷାର ଉପଯୋଗୀ ପୁସ୍ତକମାନ ପଠିତ ହେବାର ଅନ୍ୟ ଶ୍ରେଣୀରେ ଛାତ୍ରମାନଙ୍କୁ ବାଣିଜ୍ୟ ଓ ଶିଳ୍ପାଦି ବ୍ୟାବହାରିକ ଜ୍ଞାନର ଶିକ୍ଷା ଦାନ କରିବାର ବ୍ୟବସ୍ଥା ହେବ ଓ ଉଭୟ ବିଭାଗର ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନଙ୍କୁ ନିମ୍ନ ଶ୍ରେଣୀର ରାଜକାର୍ଯ୍ୟରେ ସମାନ ଦାବୀର ସାର୍ଟିଫିକେଟ ପ୍ରଦତ୍ତ ହେବ । ଏହି ଦ୍ୱିବିଧ ଶିକ୍ଷାର ପ୍ରସ୍ତାବ ଓ କମିଶନର ତତ୍‌ସମ୍ବନ୍ଧୀୟ ଅପରାପର ପ୍ରସ୍ତାବମାନଙ୍କୁ କାର୍ଯ୍ୟରେ ପରିଣତ କରିବା ବିଷୟରେ ଯତ୍ନ ଓ ବିଧାନ କରିବାକୁ ସ୍ଥାନୀୟ ଗଭର୍ଣ୍ଣମେଣ୍ଟଙ୍କୁ ଭାରତବର୍ଷୀୟ ଗଭର୍ଣ୍ଣମେଣ୍ଟ ଅନୁରୋଧ କରି କହିଅଛନ୍ତି କି ବ୍ୟାବହାରିକ ଜ୍ଞାନଶିକ୍ଷା ନିମନ୍ତେ ଯହିଁରେ ସାଧାରଣବଦାନ୍ୟତା ବିନିଯୋଜିତ ହେବ ଓ କେବଳ ଶିଳ୍ପବିଦ୍ୟାଳୟମାନଙ୍କ ପାଁଇ ନ ହୋଇ ସାଧାରଣ ଶିଳ୍ପଶିକ୍ଷାର ପୁରସ୍କାର ଅବା ବୃତ୍ତି ବିହିତ ହୋଇପାରିବ ତହିଁର ଚେଷ୍ଟା କରିବା ଆବଶ୍ୟକ । କିନ୍ତୁ ବ୍ୟାବହାରିକ ଜ୍ଞାନଶିକ୍ଷାର ବିଦ୍ୟାଳୟ ସମସ୍ତ ପୃଥକ୍ ପ୍ରଣାଳୀରେ ସ୍ଥାପିତ ହେଲେ ତାଦୃଶ ଫଳପ୍ରଦ ହେବନାହିଁ । ଅତଏବ ବଙ୍ଗଳାର ଶିକ୍ଷା ବିଭାଗର ଡିରେକ୍ଟର ଟନିସାହେବ ସେହିବିଷୟରେ ଅଭିମତ ପ୍ରକାଶ କରିଅଛନ୍ତି ଯେ ସ୍ୱତନ୍ତ୍ରପ୍ରଣାଳୀରେ ଶିଳ୍ପବିଦ୍ୟାଳୟମାନ ବସାଇଲେ ତତ୍‌ପ୍ରତି ଦେଶୀୟଲୋକଙ୍କର ଭକ୍ତି ଶ୍ରଦ୍ଧା ଓ ବିଶେଷ ସମ୍ଭ୍ରମ ରହିବ ନାହିଁ । ଏ ଶିକ୍ଷା ବିଶ୍ୱବିଦ୍ୟାଳୟର ଅନ୍ତର୍ନିବିଷ୍ଟ ହେଲେ ସାଧାରଣଶିକ୍ଷାପରି ଦେଶୀୟମାନଙ୍କର ଶ୍ରଦ୍ଧା ଆକର୍ଷଣ କରିବ । ଏଠା ଭଦ୍ରଲୋକମାନେ ହସ୍ତସାଧ୍ୟ ଅବା ଶ୍ରମିକକାର୍ଯ୍ୟକୁ ଅମର୍ଯ୍ୟାଦାବିଷୟ ଜ୍ଞାନ କରନ୍ତି । ସ୍ୱତନ୍ତ୍ରରୂପରେ ଏ ଶିକ୍ଷା ସଂସ୍ଥାପିତ ହେଲେ ଅର୍ଥାତ୍ ବିଶ୍ୱବିଦ୍ୟାଳୟସହିତ ଏହାର ସଂସ୍ରବ ନ ରହିଲେ ଏ ଶିକ୍ଷା ସିଦ୍ଧ ହେବାର ଓ ସ୍ୱତନ୍ତ୍ର କର୍ମପ୍ରାପ୍ତିର ପର୍ଯ୍ୟାପ୍ତ ଉପାୟଭାବରେ ଏଥିରେ ପ୍ରଲୋଭନର ଅଭାବ ହେବ - ଅତଏବ ଡିଷ୍ଟ୍ରିକ୍ଟ ଇଣ୍ଡଷ୍ଟ୍ରିଆଲ ସ୍କୁଲ ବା

ଶିଳ୍ପବିଦ୍ୟାଳୟମାନଙ୍କୁ ଡିଷ୍ଟ୍ରିକ୍ଟ ହାଇସ୍କୁଲରେ ସନ୍ନିବିଷ୍ଟ କରିବାକୁ ହେବ । ଏ ଶିଳ୍ପବିଦ୍ୟାଳୟମାନ ଗୋଟିଏ ମଧ୍ୟବର୍ତ୍ତିସ୍କୁଲର ଶାଖାସ୍ୱରୂପ ହେବ ଓ ଏହି ମଧ୍ୟବର୍ତ୍ତୀ ବିଦ୍ୟାଳୟ ଉଚ୍ଚ ଶିଳ୍ପଶିକ୍ଷାର ମୂଳସ୍ଥାନହେବ । ଏହି ମଧ୍ୟବର୍ତ୍ତି ବିଦ୍ୟାଳୟ ପ୍ରଦେଶୀୟ ଶିଳ୍ପବିଦ୍ୟାଳୟ ବା ଇଞ୍ଜିନିୟରିଂ କଲେଜନାମରେ ଅଭିହିତହେବ ସାଧାରଣ ଶିକ୍ଷାବିଭାଗର ଅଧ୍ୟକ୍ଷ ବା ଶିଳ୍ପକଲେଜର ଅଧ୍ୟକ୍ଷଙ୍କ ସମ୍ମତି ବ୍ୟତିରେକେ ଅନ୍ୟ କୌଣସିରେ ଏ ସ୍କୁଲ ସ୍ଥାପିତ ହୋଇପାରିବ ନାହିଁ । ବୃତ୍ତିର ବ୍ୟବସ୍ଥାଦ୍ୱାରା ଉତ୍କୃଷ୍ଟଛାତ୍ର ସଂଗୃହୀତ ହେବ ଓ ଏହି ସମସ୍ତ ଛାତ୍ର ମଧ୍ୟରୁ ଶିଳ୍ପବିଦ୍ୟାଳୟସମୂହର ଶିକ୍ଷକ ନିୟୋଜିତ ହେବେ । କେଉଁ ପ୍ରଦେଶନିମନ୍ତେ କେଉଁ କେଉଁ ଶିଳ୍ପ ପ୍ରୟୋଜନ ମଧ୍ୟବର୍ତ୍ତୀ ବିଦ୍ୟାଳୟର କର୍ତ୍ତୃପକ୍ଷ, ଲୋକାଲବୋର୍ଡ, ଡିଷ୍ଟ୍ରିକ୍ଟ ଅଫିସର ଓ କୃଷିବାଣିଜ୍ୟର ଡିରେକ୍ଟରମାନଙ୍କସହିତ ପରାମର୍ଶ କରି ତାହା ସ୍ଥିର କରିବେ ଓ ସ୍କୁଲର ବ୍ୟୟଭାର ସମଗ୍ର ଅବା ଆଶିଂକ ସ୍ଥାନୀୟଫଣ୍ଡ ଉପରେ ପଡିବ । ଏହି ପ୍ରଣାଳୀ ଅନୁମୋଦିତ ହେଲେ କାର୍ଯ୍ୟକାରୀ ହେବ ଓ ଦେଶର ମହତ୍ ଅଭାବ ମୋଚନ ହେବ ।

*ଭା୨୧ଗ, ସଂ୩୪ଖ୍ୟା, ୨୧।୮।୧୮୮୬*

## ସ୍ଥାନୀୟ ।
## ଉତ୍କଳସାହିତ୍ୟସମ୍ମିଳନୀ ।

ଝୁଲଣଯାତ୍ରା ଉପଲକ୍ଷରେ ଏହି ସଭାପ୍ରତିଷ୍ଠା ଉଦ୍‌ଯୋଗରେ ବର୍ତ୍ତମାନ ଏ ନଗରରେ ଥିବା ନିମ୍ନଲିଖିତ ପୁସ୍ତକ ପ୍ରଣେତା;--

ଶ୍ରୀଯୁକ୍ତ ବାବୁ ଦୀନନାଥ ବନ୍ଦ୍ୟୋପାଧ୍ୟାୟ ।
ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟ ।
ଶ୍ରୀଯୁକ୍ତ ବାବୁ ଗୌରୀଶଙ୍କର ରାୟ ।
ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓ ।
ଶ୍ରୀଯୁକ୍ତ ବାବୁ ରାମଶଙ୍କର ରାୟ ।
ଶ୍ରୀଯୁକ୍ତ ବାବୁ ବଳରାମ ଦାସ ।
ଶ୍ରୀଯୁକ୍ତ ବାବୁ ଗୋବିନ୍ଦରଥ ।
ଶ୍ରୀଯୁକ୍ତ ବାବୁ ଜଗନ୍ମୋହନ ଲାଲା ।
ଶ୍ରୀଯୁକ୍ତ ବାବୁ ଚତୁର୍ଭୁଜ ପଟ୍ଟନାୟକ
ଶ୍ରୀଯକ୍ତ ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀ ।
ଶ୍ରୀଯୁକ୍ତ ବାବୁ ଲଳିତ ମୋହନ ଚକ୍ରବର୍ତ୍ତୀ ।
ଶ୍ରୀଯୁକ୍ତ ବାବୁ ରାମପ୍ରସନ୍ନ ମୁଖୁର୍ଯ୍ୟା ।
ପଣ୍ଡିତ ଶ୍ରୀ ପ୍ରଭାକର ବିଦ୍ୟାରତ୍ନ ।
ପଣ୍ଡିତ ଶ୍ରୀ ଗଦାଧର ତ୍ରୀପାଠି ।
ପଣ୍ଡିତ ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣ ।
ପଣ୍ଡିତ ଶ୍ରୀ ନିମାଇବଲ୍ଲଭ ଭଟ୍ଟାଚାର୍ଯ୍ୟ ପ୍ରଭୃତିମାନଙ୍କୁ ନିମ୍ନାଙ୍କିତ ପତ୍ର ।

ମହାଶୟ !

"ଉତ୍କଳ ସଂସାରରେ ସାହିତ୍ୟ ଓ ଲେଖକଙ୍କ ଅଭାବ ନ ଥିଲେ ହେଁ ସାହିତ୍ୟର ଉନ୍ନତିଚର୍ଚ୍ଚା ସକାଶେ କୌଣସି ପ୍ରତିଷ୍ଠିତପ୍ରଣାଳୀ ନ ଥିବାରୁ ଆମ୍ଭେ ଉତ୍କଳ ଆର୍ଯ୍ୟ ସାହିତ୍ୟସମ୍ମିଳନୀ ପ୍ରତିଷ୍ଠା କରିବାକୁ ସଙ୍କଳ୍ପ କରିଅଛୁଁ ମାତ୍ର ତାହା ଆପଣଙ୍କ ପରି ବିଦ୍ୟୋତ୍ସାହୀ ବ୍ୟକ୍ତିର ସାହାଯ୍ୟ ସାପେକ୍ଷ କରେ ଅତଏବ ଆପଣ ଅନୁଗ୍ରହପୂର୍ବକ ଆମ୍ଭଗୃହରେ

ଝୁଲଣଯାତ୍ରା ଉପଲକ୍ଷରେ ଉପସ୍ଥିତ ହୋଇ ଉକ୍ତସଭାରେ ଯୋଗଦାନ କରି ବାଧିତ କରିବା ହେବେ ଇତି ।"

ମହମୁଦିୟା ବଜାର
ତା୧୪ରିଖ ଅଗଷ୍ଟ
ସନ ୧୮୮୬ ମସିହା

ଶ୍ରୀ କାଳୀପଦ ବନ୍ଦ୍ୟୋପାଧ୍ୟାୟ

ପ୍ରେରଣ କରିବାରେ :- ପଣ୍ଡିତ ଶ୍ରୀ ନିମାଇବଲ୍ଲଭ ଭଟ୍ଟାଚାର୍ଯ୍ୟ, ବାବୁ ଲଳିତମୋହନ ଚକ୍ରବର୍ତ୍ତୀ ପଣ୍ଡିତ ଶ୍ରୀ ପ୍ରଭାକର ବିଦ୍ୟାରତ୍ନ, ବାବୁ ଦୀନନାଥ ବନ୍ଦ୍ୟୋପାଧ୍ୟାୟ, ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟ, ବାବୁ ଜଗନ୍ମୋହନ ଲାଲା, ବାବୁ ଗୌରୀଶଙ୍କର ରାୟ ପ୍ରଭୃତି ଅନ୍ୟ କେତେକ ଭଦ୍ରଲୋକଙ୍କ ସମ୍ମୁଖରେ ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟ ଦ୍ୱାରା ସଭାର ଉଦ୍ଦେଶ୍ୟ ବିବୃତ ହେଲା ଉତ୍ତାରୁ ତାଙ୍କ ପ୍ରସ୍ତାବମତେ ନିମ୍ନଲିଖିତ ବିଷୟମାନ ବାବୁ ଚତୁର୍ଭୁଜ ପଟ୍ଟନାୟକଙ୍କ ଦ୍ୱାରା ବିତର୍କିତ ହୋଇ ପଣ୍ଡିତ ନିମାଇବଲ୍ଲଭ ଭଟ୍ଟାଚାର୍ଯ୍ୟଙ୍କ ସଭାପତିତ୍ୱରେ ଏହିପରି ସିଦ୍ଧାନ୍ତ ହେଲା:-

୧ମ,ଏହି ସଭାର ସମ୍ମିଳନ ପ୍ରତିବର୍ଷ ଏକବାର ହେବା ଆବଶ୍ୟକ ।

୨ୟ, ସାହିତ୍ୟ, ବିଜ୍ଞାନ ଓ ଶିଳ୍ପ ଇତ୍ୟାଦି ପୁସ୍ତକମାନ ଏ ପ୍ରଦେଶରେ ପ୍ରଚଳନପକ୍ଷେ ଯତ୍ନ କରିବା ଆବଶ୍ୟକ ।

୩ୟ, ଉତ୍ତମ ଉତ୍ତମ ପାଠ୍ୟପୁସ୍ତକ ସ୍କୁଲ ଓ ପାଠଶାଳାରେ ଅପ୍ରତିଦ୍ୱନ୍ଦିରୂପେ ଅନ୍ୟ ଉତ୍ତମ ପୁସ୍ତକ ପ୍ରକାଶ ହେବା ପର୍ଯ୍ୟନ୍ତ ଚଳିବାର ଚେଷ୍ଟା କରିବାର ଆବଶ୍ୟକ ।

୪ର୍ଥ, ଯହିଁରେ ଉତ୍ତମ ପାଠ୍ୟପୁସ୍ତକ ସ୍କୁଲ ଓ ପାଠଶାଳାରେ ନିର୍ବାଚିତ ହୁଏ ତହିଁରେ ଯତ୍ନ କରିବା ଆବଶ୍ୟକ ।

୫ମ, ପୁସ୍ତକ ପୁସ୍ତିକା ସମାଲୋଚନା କରିବାର ଓ ଅସମର୍ଥ ଗ୍ରନ୍ଥକାରଙ୍କୁ ସାହାଯ୍ୟ କରିବାର ପ୍ରୟୋଜନ ।

୬ଷ୍ଠ, ଅଶ୍ଳୀଳ ପୁସ୍ତକ ପ୍ରଚାର ନ ହେବା ପକ୍ଷେ ଯତ୍ନ କରିବା ଉଚିତ ।

୭ମ, ଧର୍ମବିରୁଦ୍ଧ ଯାପ୍ୟ ବା ପ୍ରକାଶ୍ୟ ଭାବପୂର୍ଣ୍ଣ ବିଷୟ ଯେଉଁ ପୁସ୍ତକରେ ଥାଏ ତାହା ସ୍କୁଲ ବା ପାଠଶାଳାରେ ବ୍ୟବହାର ହେବା ବିରୁଦ୍ଧେ ଯତ୍ନ କରିବା ଆବଶ୍ୟକ ।

୨ୟ ପ୍ରସ୍ତାବ ବାବୁ ଗୌରୀଶଙ୍କର ରାୟଙ୍କର ପ୍ରସ୍ତାବନା ଓ ବାବୁ ଚତୁର୍ଭୁଜ ପଟ୍ଟନାୟକଙ୍କ ସହାୟତାରେ କାର୍ଯ୍ୟକାରି ଶାଖାସଭାକୁ ଏସଭାର ନିୟମାବଳୀ ପ୍ରସ୍ତୁତ କରିବା ସକାଶେ ଭାର ଅର୍ପଣ କରା ଗଲା ।

୩ୟ ପ୍ରସ୍ତାବ ବାବୁ ଚତୁର୍ଭୁଜ ପଟ୍ଟନାୟକଙ୍କ ପ୍ରସ୍ତାବନା ମତେ ଏ ସଭାର ପ୍ରସ୍ତାବନା ଲିପି ସର୍ବତ୍ର ଭଦ୍ରମଣ୍ଡଳୀରେ ପ୍ରଚାର କରିବା କାରଣ ସ୍ଥିର ହେଲା ।

୪ର୍ଥ ପ୍ରସ୍ତାବ ବାବୁ ଚତୁର୍ଭୁଜ ପଟ୍ଟନାୟକଙ୍କ ପ୍ରସ୍ତାବନା ଓ ବାବୁ ଗୌରୀଶଙ୍କର ରାୟ ଓ ଦୀନନାଥ ବନ୍ଦ୍ୟୋପାଧ୍ୟାୟସହାୟତାରେ ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟଙ୍କୁ ସମ୍ପାଦକ ନିୟୋଗ କରାଗଲା ଏବଂ ସ୍ଥିର ହେଲା ଯେ ସମୟ ସମୟରେ ସଭାପତି ମନୋନୀତ ହେବେ ।

୫ମ ପ୍ରସ୍ତାବ ବାବୁ ଚତୁର୍ଭୁଜ ପଟ୍ଟନାୟକ, ବାବୁ ଗୌରୀଶଙ୍କର ରାୟ ବାବୁ ଜଗନ୍ମୋହନ ଲାଲା, ବାବୁ ଦୀନନାଥ ବନ୍ଦ୍ୟୋପାଧ୍ୟାୟ, ବାବୁ ଲଳିତମୋହନ ଚକ୍ରବର୍ତ୍ତୀ ଓ କାଳୀପଦ ବନ୍ଦ୍ୟୋପାଧ୍ୟାୟଙ୍କ ମଧ୍ୟରେ ଅନେକ ତର୍କ ବିତର୍କ ହେଲା ପରେ ସମ୍ପାଦକଙ୍କ ସହିତ ନିମ୍ନଲିଖିତ ଶାଖାସଭା ଗଠିତ ହେଲା :-

ଶ୍ରୀଯୁତ ବାବୁ ଗୌରୀଶଙ୍କର ରାୟ ।

ଶ୍ରୀଯୁତ ବାବୁ ଜଗନ୍ମୋହନ ଲାଲା ।

ଶ୍ରୀଯୁତ ବାବୁ ଦୀନନାଥ ବନ୍ଦ୍ୟୋପାଧ୍ୟାୟ ।

ଶ୍ରୀଯୁତ ବାବୁ ନିମାଇବଲ୍ଲଭ ଭଟ୍ଟାଚାର୍ଯ୍ୟ ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଅବଶେଷରେ ବାବୁ କାଳୀପଦବନ୍ଦ୍ୟୋପାଧ୍ୟାୟଙ୍କ ପ୍ରଣିତ "ସଂକ୍ଷିପ୍ତ ଭାରତୀୟ ବିବରଣାବଳୀ" ଓ "ଶୁଦ୍ଧାଗ୍ରର" ପ୍ରଣେତା ଓ ଅନ୍ୟାନ୍ୟ ସଭ୍ୟମାନଙ୍କୁ ବିତରଣ କଲା ପର ନୃତ୍ୟଗୀତାଦି ଦର୍ଶନ ଓ ଶ୍ରବଣ କରି ସଦାଳାପରେ ସଭା ଭଙ୍ଗ ହେଲା ।

## ଭା୨୧ଗ, ସଂ୩୪ଖ୍ୟା, ୨୧।୮।୧୮୮୬

## [ସାହିତ୍ୟ ସମ୍ମିଳନୀ]

ମହାଶୟ !

ଅନୁଗ୍ରହ ପୂର୍ବକ ନିମ୍ନାଙ୍କିତ କତିପୟ ପଂକ୍ତିକୁ ଆପଣଙ୍କ ସୁବିଖ୍ୟାତ ପତ୍ରିକାର ଏକପାର୍ଶ୍ୱରେ ସ୍ଥାନ ଦାନ କରି ବାଧିତ କରିବେ ।

ଉତ୍କଳ-ସାହିତ୍ୟର ଯେରୂପ ଦୁର୍ଦ୍ଦଶା ତାହା ଆଲୋଚନା କରିବାକୁ ଗଲେ ମନ ବିଷାଦିତ ହୁଏ । ଏରୂପ ସ୍ଥଳେ "ସାହିତ୍ୟସମ୍ମିଳନୀ" ସଭାର ସଂଗଠନ କେତେଦୂର ଶୁଭଦାୟକ ତାହା ବର୍ଣ୍ଣନାତୀତ । ଅନେକ ଗୁଡ଼ିଏ ମାନ୍ୟଗଣ୍ୟ ବ୍ୟକ୍ତି ଏଥିରେ ମନୋଯୋଗୀ ହୋଇଥିବାର ଦେଖି ବୋଧ ହେଉଅଛି ଯେ ଉତ୍କଳ ସାହିତ୍ୟର ଦୁରବସ୍ଥା ଏତେଦିନ ପରେ , ଭଦ୍ରମଣ୍ଡଳୀଙ୍କର ମନ ଆକର୍ଷଣ କରୁଅଛି, ଏବଂ ସଭାର ମହତ୍ ଉଦ୍ଦେଶ୍ୟ ଗୁଡ଼ିକ ଦେଖି ମନରେ ସଞ୍ଚାର ହେଉଅଛି ଯେ ଉତ୍କଳଜନନୀ ଏଣିକି ସାହିତ୍ୟ ଅଳଙ୍କାରଦ୍ୱାରା ଭୂଷିତ ହେବେ, ଏବଂ ତାଙ୍କର ସନ୍ତାନଗଣ ସାହିତ୍ୟ ଆଲୋକ ସାହାଯ୍ୟରେ ନିଜ ନିଜ ଚକ୍ଷୁକୁ ଚରିତାର୍ଥ ମଣିବେ । ଆମ୍ଭେମାନେ, ସଭାର ସଂଗଠନକର୍ତ୍ତା ମାନଙ୍କୁ ଶତ ଶତ ଧନ୍ୟବାଦ ଦେଉଅଛୁଁ, ଏବଂ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛୁଁ ଯେ ଏହି ସଭା ଦୁର୍ଦ୍ଦାନ୍ତମାନଙ୍କର ବାଧା ବିଘ୍ନରୁ ଅନ୍ତର ହୋଇ ଦୀର୍ଘଜୀବିନୀ ହେଉନ୍ତୁ ଏବଂ ନିଜତେଜୋମୟ ଦୀପ୍ତିରେ ଉତ୍କଳର ଅନ୍ଧକାର ଦୂର କରନ୍ତୁ ।

ଏରୂପ ସୁଖ ସମୟରେ "ସଂସ୍କାରକ" ଆମ୍ଭମାନଙ୍କ ଆନନ୍ଦରେ ହଳାହଳ ମିଶ୍ରିତ କରିଅଛନ୍ତି । ସେ "ସାହିତ୍ୟସମ୍ମିଳନୀ" ର ସଂଗଠନ ବିଷୟ ଉଲ୍ଲେଖ କରୁକରୁ ନିଜ ପ୍ରକୃତିବଶତଃ ଯେଉଁ କୁତ୍ସିତ ବାକ୍ୟମାନ ପ୍ରୟୋଗ କରି "ସାହିତ୍ୟସମ୍ମିଳନୀ" ର ସଭ୍ୟମାନଙ୍କୁ ଅନ୍ୟାୟ ଆକ୍ରମଣ କରିଅଛନ୍ତି, ତାହା ପାଠ କରି କିଏ ବିସ୍ମିତ ନ ହେବ ? ସଭାସ୍ଥଳରେ ଅନେକ ମାନ୍ୟଗଣ୍ୟ ବ୍ୟକ୍ତି ଉପସ୍ଥିତ ଥିଲେ, ଆଉ ମଧ୍ୟ କାଳୀବାବୁ ଓଡିଶାରେ ଜଣେ କ୍ଷମତାପନ୍ନ ଲୋକ । "ସଂସ୍କାରକ" ତାଙ୍କ ଗୃହର ବିଷୟ ପ୍ରକାଶ କରି ଏବଂ ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କୁ ଲାଞ୍ଛନା କରି କେତେଦୂର ଅନଧିକାରଚର୍ଚ୍ଚା ଓ ଜଘନ୍ୟତାର କାର୍ଯ୍ୟ କରିଅଛନ୍ତି ତାହା ପାଠକମାନେ ସହଜରେ ହୃଦୟଙ୍ଗମ କରିପାରିବେ । ସେହି ସଭା ସ୍ଥଳରେ ସଂସ୍କାରକର ସୁଯୋଗ୍ୟ ସଂପାଦକ ବାବୁ ଚତୁର୍ଭୁଜ ପଟ୍ଟନାୟକ ଉପସ୍ଥିତ ଥିଲେ । ସେଠାରେ ଯେବେ ତଦ୍ରୂପ ଘଟନା, ସେ ଦେଖିଥିଲେ, ତେବେ "ଆଘ୍ରାଣଂ ଅର୍ଦ୍ଧଭୋଜନଂ"- ସେ କି ସେହି ସବୁ ବିଷୟରେ ଭାଗୀ ନୁହନ୍ତି ?- ସଂସ୍କାରକଙ୍କ ଚିତ୍କାର ଶୁଣି ପ୍ରତୀୟମାନ ହେଉଅଛି ଯେ, ଏରୂପ ସଭା ତାଙ୍କର ରୁଚିବିରୁଦ୍ଧ ।

"ସଂସ୍କାରକ" ର ସେହି କେତେକ ପଁକ୍ତି ପାଠ କରି ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ଅଛୁଁ । ଭରସା କରୁଁ କାଳୀବାବୁ ନ୍ୟାୟ, ଧର୍ମ, ମାନ ଏବଂ ସତ୍ୟର ଅନୁରୋଧରେ ସଂସ୍କାରକଙ୍କ ମୁଖରେ ପାନେ ଔଷଧ ଦେବେ । ତାଙ୍କର ନିଜମୂର୍ତ୍ତି ଦେଖି ସଂସ୍କାରକ ଅବଗୁଣ୍ଠନବତୀ ହୋଇ ବିନୟସମ୍ଭାଷଣ କରିପାରନ୍ତି କିନ୍ତୁ ତାଙ୍କପରି ଜଣେ ନ୍ୟାୟପର ଲୋକ ସଂସ୍କାରକଙ୍କ ସାଷ୍ଟାଙ୍ଗ ପ୍ରଣାମ ପ୍ରତି ଶୁଦ୍ଧା ଦୃଷ୍ଟିପାତ କରିବା ସନ୍ଦେହ ।

ଦେଶର ଉପକାରସାଧନ ହେବା ସମ୍ବାଦପତ୍ର ପ୍ରଚାରର ପ୍ରଧାନ ଉଦ୍ଦେଶ୍ୟ କିନ୍ତୁ "ସଂସ୍କାରକ" କେଉଁ ଉଦ୍ଦେଶ୍ୟରେ ଜନ୍ମ ଗ୍ରହଣ କରିଅଛନ୍ତି, ତାହା ବୁଝା ଯାଉ ନାହିଁ । ତାଙ୍କର ଦେଶହିତୈଷିତାର ଅଦ୍ଭୁତ ପରିଚୟ ଅନେକବାର ମିଳିଅଛି । କିୟଦିବସ ପୂର୍ବେ ଲେଖିଥିଲେ "ଉତ୍କଳସମ୍ମିଳନୀ ସଭା ସକଳ ଯେଉଁ ଚାନ୍ଦା ସଂଗ୍ରହ କରିବେ , ସେଥିର କିୟଦଂଶ ପାଇଲେ ଆମ୍ଭେମାନେ ସଂସ୍କାରକରେ ଅତିରିକ୍ତ ପ୍ରସ୍ତାବ ବାହାରକରି ଆନ୍ଦୋଳନ ଲଗାଇ ଦେବାକୁ ପ୍ରସ୍ତୁତ ରହିଅଛୁଁ" । ସମ୍ବାଦପତ୍ର ଚଳାଇବା ଗୋଟିଏ ବ୍ୟବସାୟ ହୋଇଥିବା ସ୍ଥଳେ, ଅର୍ଥ ନ

ପାଇଲେ ଦେଶର ଉପକାର ନିମିତ୍ତ କାହିଁକି ଅତିରିକ୍ତ ପ୍ରସ୍ତାବ ବାହାରିବ ? କେତେଦିନ ପୂର୍ବେ ବଙ୍ଗାଳିମାନଙ୍କୁ ବିଷମ ଆକ୍ରମଣ କରି, ଓଡିଆମାନଙ୍କ ସହିତ ସେମାନଙ୍କର ବିଲୁପ୍ତ ବିଦ୍ୱେଷ ଭାବକୁ ପୁନରାଗମନ ନିମିତ୍ତ ସମ୍ବୋଧନ କରୁଥିଲେ, କିନ୍ତୁ ଜଗଦୀଶ୍ୱର ଏହି ପାପକାର୍ଯ୍ୟରେ ପ୍ରଶ୍ରୟ ଦେଲେ ନାହିଁ । ସେ ବ୍ରାହ୍ମଧର୍ମର ମୁଖପାତ୍ର ବୋଲି ଦାବୀ କରନ୍ତି କିନ୍ତୁ ତାଙ୍କର ପବିତ୍ର ଅଙ୍ଗରେ ଯେଉଁ କଦର୍ଯ୍ୟ ଏବଂ କୁତ୍ସିତ ବାକ୍ୟ କେବେ କେବେ ଦେଖାଯାଏ, ତାହା ପାଠ କଲେ, ଧର୍ମପ୍ରତି ତାଙ୍କର କିରୂପ ଧାରଣା ଅଛି ସହଜରେ ବୁଝାଯିବ । କଳି ଲଗାଇବାତ ସାପ୍ତାହିକ କାର୍ଯ୍ୟ । ଏବେ ବଡ଼ଲୋକମାନଙ୍କୁ ଘରିପଦ ତୋଷାମଦ କରି କହି ଦୁଇ ପଇସା ପାଇବା ନିମିତ୍ତ ମନେ ମନେ ପ୍ରତ୍ୟାଶା କରିବା ଗୋଟିଏ ବ୍ୟବସାୟ ।

ଧନ୍ୟ ସଂସ୍କାରକ ! ଆପଣ ନ ଥିଲେ ଆମ୍ଭେମାନେ କାହାଯୋଗେ ଆଜି ଏହା ସବୁ ଲେଖନ୍ତୁ ? ଆପଣ ସିନା ଓଡିଶାର ହାଡ଼ ଗଙ୍ଗାରେ ପକାଇବ ! ଆପଣଙ୍କ ପରି, "ଘାସ କାଟିଯାଇ ଦେଉଳରେ ପରିଛାପଣ" କିଏ କରିବ ? ଆମ୍ଭେମାନେ ପ୍ରକୃତ କଥା ଲେଖିଲୁଁ ବୋଲି ଆପଣ ମର୍ମାହତ ହୋଇ ରାଗ କରିବେ ନାହି । ଆଜି ଆଉ ଲେଖୁ ନାହୁଁ । ଇତି ।

ଜଣେ ଓଡ଼ିଆ ।

*ଭା୨୧ଗ, ସଂ୩୫ଖ୍ୟା, ୨୮।୮।୧୮୮୬*

## କଟକ ମିଉନିସିପଲ ବିଦ୍ୟାଳୟ ।

ଏ ନଗରରେ ମିଉନିସିପାଲିଟୀଦ୍ୱାରା ଯେତେ ବିଦ୍ୟାଳୟ ସ୍ଥାପିତ ହୋଇଅଛି । ସେଥିର ଛାତ୍ର ଓ ଛାତ୍ରୀମାନଙ୍କୁ ବାର୍ଷିକପରୀକ୍ଷାର ପୁରସ୍କାର ପ୍ରଦାନ ନିମିତ୍ତ ଗତ ଗୁରୁବାର ସକାଳବେଳେ ରେବନସା କଲେଜଗୃହରେ ଗୋଟିଏ ସଭା ହୋଇଥିଲା । "ମିଉନିସିପଲସ୍କୁଲର ଛାତ୍ରମାନଙ୍କୁ ପୁରସ୍କାର ଦେବା ଯଦ୍ୟପି କି ନୂଆକଥା ନୁହଇ ମାତ୍ର ନଗରବାସୀ ସକଳଶ୍ରେଣୀର ଭଦ୍ରଲୋକଙ୍କୁ ଆମନ୍ତ୍ରଣ କରି ପ୍ରକାଶ୍ୟସଭାରେ ଉକ୍ତ ପୁରସ୍କାର ବିତରଣକାର୍ଯ୍ୟ ନିର୍ବାହ କରିବା ଏ ନଗରପକ୍ଷରେ ନୂଆ ବୋଲିବାକୁ ହେବ ଏବଂ ସାଧାରଣ ନିର୍ବାଚନ ପ୍ରଣାଳୀରେ ସୃଷ୍ଟି ହୋଇଥିବା ମିଉନିସିପାଲିଟୀଦ୍ୱାରା ପ୍ରଥମ ହୋଇ ଏପରି ସଭା ଆହୁତ ହୋଇଥିବାରୁ ଆମ୍ଭେମାନେ ସ୍ୱଭାବତଃ ଆଶା କରିଥିଲୁଁ ଯେ ନଗରବାସୀ ଅନେକ ଲୋକ ଏ ସଭାରେ ଉପସ୍ଥିତ ହୋଇ ସେମାନଙ୍କ ମନୋନିତ କମିଶ୍ନରମାନେ ଶିକ୍ଷାବିଷୟରେ କି ପ୍ରକାର କାର୍ଯ୍ୟ କରିଅଛନ୍ତି ଏବଂ ତହିଁର ଫଳ କିପରି ହୋଇଅଛି ପ୍ରତ୍ୟକ୍ଷ କରିବେ । ମାତ୍ର ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ କହୁଅଛୁଁ ଯେ ଚ୍ୟାରମାନ ନଗରବାସୀ ଦେଶୀୟ ଓ ବିଦେଶୀୟ ଅନେକ ଭଦ୍ରଲୋକଙ୍କୁ ଆମନ୍ତ୍ରଣ କରିଥିଲେହେଁ ଅତି ଅଳ୍ପଲୋକ ଉପସ୍ଥିତ ହୋଇଥିଲେ । ଇଂରାଜଙ୍କ ମଧ୍ୟରେ ଏକମାତ୍ର କମିଶ୍ନର ସାହେବ ଏବଂ ଦୁଇଜଣ ବିବିଙ୍କି ଏ ସଭାରେ ଦେଖିଲୁଁ ଏବଂ ଦେଶୀୟ ଲୋକଙ୍କ ମଧ୍ୟରେ ଏକଜଣ ଜମିଦାର ମୁନସୀ ସୁଲତାନମହମ୍ମଦ ଘରିଜଣ ଡେପୁଟୀ ଓ ସବ୍‌ଡେପୁଟୀ ୫/୬ ଜଣ ଶିକ୍ଷାବିଭାଗୀୟକର୍ମଚାରୀ ଏବଂ ୩/୪ ଜଣ ଅମଲା ଉପସ୍ଥିତ ଥିଲେ । ଅନ୍ୟ କଥା ତେଣିକି ଥାଉ ମିଉନିସିପଲ କମିଶ୍ନର ଜ୧୮ଣଙ୍କ ମଧ୍ୟରୁ ଚତୁର୍ଥାଂଶ ସୁଦ୍ଧା ଉପସ୍ଥିତ ନ ଥିଲେ । ବାସ୍ତବରେ ସଭାଗତ ବ୍ୟକ୍ତିଙ୍କି ଦେଖି ମନେ ହେଉଥିଲା ଯେମନ୍ତ ସରକାରୀ ହାକିମ ଓ ଶିକ୍ଷାବିଭାଗୀୟ କର୍ମଚାରୀଛଡା ସାଧାରଣ ଶିକ୍ଷାବିଷୟରେ କାହାରି ମନୋଯୋଗ ନାହି । ସରକାରୀ ବିଦ୍ୟାଳୟର ପୁରସ୍କାରବଣ୍ଟନ ସମୟରେ ଆମ୍ଭେମାନେ ଅନେକ ଲୋକଙ୍କୁ ଉପସ୍ଥିତ ହେବାର ଦେଖିଅଛୁଁ ମାତ୍ର ମିଉନିସିପଲ ବିଦ୍ୟାଳୟର କାର୍ଯ୍ୟ ଆତ୍ମଶାସନପ୍ରଣାଳୀ କ୍ରମେ ଲୋକଙ୍କର ବିଶେଷ କାର୍ଯ୍ୟ ହେଉଥିବା ପ୍ରତ୍ୟକ୍ଷେ ତହିଁରେ ଏପରି ଉଦାସିନତା ଦେଖି ଭାରୀ ହତାଶ ହେଲୁଁ । କେହି କେହି ଅବା ଏମନ୍ତ ମନେ କରିପାରନ୍ତି ଯେ ଯୋଗ୍ୟଲୋକଙ୍କୁ ମିଉନିସିପଲକମିଶ୍ନର ପଦରେ ନିର୍ବାଚନ କରି ଦେଲା ଉତ୍ତାରୁ ସେମାନଙ୍କ କାର୍ଯ୍ୟ ଦେଖିବାର ଆଉ ପ୍ରୟୋଜନ ନାହି ମାତ୍ର ଏପରି ବିଚାର ଭଲ ନୁହଇ ଅନ୍ତତଃ କମିଶ୍ନରମାନଙ୍କ ଉତ୍ସାହବର୍ଦ୍ଧନ ନିମିତ୍ତ ସେମାନଙ୍କ କାର୍ଯ୍ୟ ଦେଖିବା ଉଚିତ ତାହା ନ ହେଲେ କର୍ତ୍ତବ୍ୟ କାର୍ଯ୍ୟ ନିର୍ବାହ କରିବାରେ ସେମାନଙ୍କର ତାଦୃଶ ସୁଖଲାଭ

ହେବ ନାହି । ଭରସା କରୁଁ ଭବିଷ୍ୟତ୍‌କୁ ଏ ବିଷୟରେ  ଲୋକଙ୍କର ଅନୁରାଗ ଦେଖି ଆନନ୍ଦିତ ହେବୁଁ ।

ଯଦ୍ୟପି କି ଦର୍ଶକଙ୍କ ସଂଖ୍ୟା ଊଣା ହେବାରୁ ଏକପାଖସଭାର ଅନେକଗୁଡିଏ ଆସନ ଖାଲି ପଡିଥିଲା ମାତ୍ର ଅନ୍ୟପାଖ ଛାତ୍ରୀ ଓ ଛାତ୍ରଙ୍କଦ୍ୱାରା ପୂର୍ଣ୍ଣ ହୋଇଥିଲା ଏବଂ ପ୍ରଥମ ଘରିଧାଡ଼ିରେ କେବଳ ବାଳିକାମାନଙ୍କୁ ବସାଇ ଦିଆଯାଇଥିବାରୁ ବଡ଼ ସୁନ୍ଦର ଦିଶୁଥିଲା । ସଭାପତି କମିଶନର ସାହେବ କାର୍ଯ୍ୟାରମ୍ଭ କଲାରୁ ମିଉନିସିପଲକମିଶ୍ନର ବାବୁ 'ରାମଦାସଚକ୍ରବର୍ତ୍ତୀ କି ତାହାଙ୍କ ତତ୍ତ୍ୱାବଧାନରେ ଏହି ବିଦ୍ୟାଳୟମାନ ଅଛି ବାର୍ଷିକବିଜ୍ଞାପନୀ ପାଠକଲେ ଏବଂ ତାହା ଶେଷ ହେଲାରୁ  ପୁରସ୍କାର ବଣ୍ଟନ ହେଲା । ପ୍ରଥମେ ବାଳିକାମାନଙ୍କୁ ଯୋଗ୍ୟତାନୁସାରେ ରୂପାର ଫୁଲ ପ୍ରଜାପତି ଇତ୍ୟାଦି ଅଳଙ୍କାର ପୁସ୍ତକ ପିତଳଗିଲାସ ଏବଂ ଲୁଗାମାନ ଦିଆ ଗଲା । ପୁସ୍ତକମଧ୍ୟରେ କ୍ଷେତ୍ରତତ୍ତ୍ୱର ଭାଗ ଅତ୍ୟନ୍ତ ଅଧିକ ଥିବା ଏବଂ ଶିଶୁପାଳନପ୍ରଭୃତି ସ୍ତ୍ରୀମାନଙ୍କର ଅଧିକ ପ୍ରୟୋଜନୀୟ ପୁସ୍ତକ ଆଦୌ ନ ଥିବାରୁ  କେତେଲୋକଙ୍କ ମନକୁ ଭଲ ଲାଗିଲା ନାହି । ତହିଁ ଉତ୍ତାରୁ ପାଠଶାଳା ଓ ମକତବର ଛାତ୍ରମାନଙ୍କୁ ଯଥାକ୍ରମେ ଓଡିଆ ଓ ପାରସୀ ପୁସ୍ତକମାନ ଯୋଗ୍ୟତାନୁସାରେ ବଣ୍ଟା ଗଲା  । ପରିଶେଷରେ ଯୋଗ୍ୟତାନୁସାରେ  ପୁରସ୍କାର ପାଇ ନ ଥିବା ବାଳିକାଙ୍କୁ  ନାନା ପ୍ରକାର କଣ୍ଢେଇ ଓ ଅନ୍ୟାନ୍ୟ ଖେଳନା ବଣ୍ଟାଗଲା । ପୁରସ୍କାର ବଣ୍ଟା ଯାଇଥିବା ସମସ୍ତ ଦ୍ରବ୍ୟର ମୂଲ୍ୟ ଟ୧୦୦ଙ୍କା  ଅଟଇ । ପରିଶେଷରେ କେତେ ଜଣ ବାଳିକା ଅଭ୍ୟାସ କରିଥିବା ଛାନ୍ଦମାନ ପାଠ କଲେ ଏବଂ ତହିଁରେ ଦର୍ଶକମାନଙ୍କର ବଡ଼ ସୁଖ ହୋଇଥିଲା । ମକତବର ପିଲାମାନେ ମଧ୍ୟ ଅଭ୍ୟସ୍ତ ପାଠ ଶୁଣାଇଲେ ମାତ୍ର ତାହା ଆଦୌ ଭଲ ହୋଇ ନ ଥିଲା । ଏଥି ଉତ୍ତାରୁ ସଭା ଭଙ୍ଗ ହେଲା ଏବଂ ବାଳକ ବାଳିକାମାନେ କିଛି କିଛି ମିଷ୍ଟାନ୍ନ ପାଇ ମହାଆନନ୍ଦରେ ଘରକୁ ଚାଲିଗଲେ ।

ମିଉନିସିପାଲିଟୀର ଅଧୀନରେ ଏ ନଗରରେ ଚାରୋଟି ବାଳିକାବିଦ୍ୟାଳୟ ପାଞ୍ଚଟି ପାଠଶାଳା ଏବଂ ଚାରୋଟି ମକ୍ତବ ଅଛି । ଏଥିରେ ୧୫୯ ବାଳିକା ୧୫୨ବାଳକ ଏବଂ ମକ୍ତବରେ ୬୮ ମୁସଲମାନପିଲା ପଢୁଅଛନ୍ତି । ବାଳିକାଙ୍କ ସଂଖ୍ୟା ପୂର୍ବବର୍ଷ ପ୍ରାୟ ରହିଅଛି ମାତ୍ର ପୂର୍ବବର୍ଷ ପାଠଶାଳାରେ ୨୭୦ ବାଳକ ଓ ମକ୍ତବରେ ୮୧ ବାଳକ ଥିଲେ । ମୁସଲମାନପିଲା ଊଣା ପଡିବାର କିଛି କାରଣ ଜଣାଗଲା ନାହିଁ । ପାଠଶାଳା ପିଲା ଊଣା ହେବାର କାରଣ ଏହିକି ଗତବର୍ଷ ୧୦ ଗୋଟି ପାଠଶାଳା ଥିଲା କିନ୍ତୁ ସେସବୁ ପରସ୍ପର ଲଗାଲଗି ଥିବାରୁ ମିଉନିସିପାଲିଟୀ ପାଞ୍ଚଟା ଉଠାଇ ଦେଲେ । ସାହି ଲୋକଙ୍କର ମନକୁ ଏକଥା ନ ଆସିବାରୁ ସେମାନେ ଆପଣା ଆପଣା ପିଲାଙ୍କୁ ପଢାଇବା କାରଣ ଅନ୍ୟ ଚାଟଶାଳୀ ରଖିଅଛନ୍ତି । ସୁତରାଂ ମିଉନିସିପଲପାଠଶାଳାର ଛାତ୍ରସଂଖ୍ୟା ଊଣା ପଡିଅଛି । ପକ୍ଷାନ୍ତରେ ଶିକ୍ଷାର ଫଳ ପ୍ରୀତିକର ହୋଇଅଛି । ଯଥା ଜ୫ଣ ବାଳିକା ଅପର ପ୍ରାଇମେରୀ ଓ ଜ୯ଣ ବାଳିକା ଲୋଅର ପ୍ରାଇମେରୀ ପାଶ କରିଅଛନ୍ତି ଏବଂ ପାଠଶାଳାଛାତ୍ରଙ୍କ ମଧ୍ୟରୁ କେବଳ ସାନ୍ତସାହିପାଠଶାଳାରୁ ଏକଜଣ ଲୋଅର ପ୍ରାଇମେରୀ ପାଶ କରିଅଛି । ଏଥିପୂର୍ବେ ମିଉନିସିପଲସ୍କୁଲର କୌଣସି ଛାତ୍ର କୌଣସି ପରୀକ୍ଷାପାଶ କରି ନ ଥିଲା ।

ବାଳିକାବିଦ୍ୟାଳୟର ଛାତ୍ରିମାନେ ବିନା ଖର୍ଚ୍ଚରେ ପଢୁଅଛନ୍ତି ଏମାନେ କିଛି ବେତନ ଦିଅନ୍ତି ନାହି କିମ୍ବା ପୁସ୍ତକସୁଦ୍ଧା ହାତରୁ କିଣନ୍ତି ନାହିଁ । ସ୍ତ୍ରୀ ଶିକ୍ଷାର ବିଶେଷ ଉତ୍ସାହ କାରଣ ମିଉନିସିପାଲିଟୀ ଏହି ନିୟମ କରିଅଛନ୍ତି ମାତ୍ର ପାଠଶାଳାର ପିଲାମାନେ ହାତରୁ ପୁସ୍ତକ କିଣନ୍ତି ଏବଂ ଅବଧାନଙ୍କୁ କିଛି, ବେତନସ୍ୱରୂପ ଦିଅନ୍ତି ।

*ଭା୨୧ଗ, ସଂ୩୮ଖ୍ୟା, ୧୮।୯।୧୮୮୬*

## [ଓଡିଆ ପାଠ୍ୟପୁସ୍ତକ]

ସନ ୧୮୮୯ ସାଲର ପ୍ରବେଶିକା ପରୀକ୍ଷା ନିମିତ୍ତ ଯେ ସମସ୍ତ ପାଠ୍ୟପୁସ୍ତକ ଧାର୍ଯ୍ୟ ହୋଇ ଅଛି ତହିଁ ମଧ୍ୟରେ ଓଡିୟା ଭାଷାରେ ମଧୁବାବୁଙ୍କର ପ୍ରବନ୍ଧମାଳା ଏବଂ ଫକୀରମୋହନ ବାବୁଙ୍କର ରାମାୟଣ ଅଯୋଧ୍ୟା କାଣ୍ଡ ନିରୂପିତ ହୋଇଅଛି । ଏହି ପୁସ୍ତକମାନନିର୍ବାଚିତ ହେବା ଅନ୍ୟାୟ ହୋଇଅଛି ଏମନ୍ତ ବୋଲିବା ଆମ୍ଭମାନଙ୍କର

ଉଦେଶ୍ୟ ନୁହଇ । ବାସ୍ତବରେ ବର୍ତ୍ତମାନ ସମୟର ରଚିତ ପୁସ୍ତକମାନ ବାଛିବାକୁ ହେଲେ ଏ ସବୁ ଛାଡି ଅନ୍ୟ କିଛି ଦିଆଯାଇ ନ ପାରେ । ମାତ୍ର ଆମ୍ଭମାନଙ୍କର ଦୁଃଖ ଏହି ଯେ ଅନ୍ତତଃ ଦୁଇ ତିନିଶତ ବର୍ଷର ପ୍ରାଚୀନ ଉତ୍କୃଷ୍ଟ କାବ୍ୟମାନ ଓଡିୟା ଭାଷାରେ ରହିଥିବା ଏବଂ ଅବଧି ଜନସାଧାରଣରେ ସମୁଚିତ ଆଦର ସହିତ ଗୃହୀତ ହେଉଥିବା ପ୍ରତ୍ୟକ୍ଷେ ପ୍ରବେଶିକା ପରୀକ୍ଷାରେ ତହିଁର ନାମ ଗନ୍ଧ ରହିଲା ନାହି । ଅନ୍ୟାନ୍ୟ ଭାଷାର ପ୍ରାଚୀନ ପୁସ୍ତକମାନ ନିର୍ଦ୍ଦିଷ୍ଟ ହୋଇଅଛି ଏବଂ ସେସବୁ ସଙ୍ଗରେ ତୁଳନା କରି ଦେଖିଲେ ବୋଧ ହେଉଅଛି ଯେମନ୍ତ ଓଡିୟା ଭାଷା ଗୋଟିଏ ଆଧୁନିକ ଭାଷା ଅଟଇ ଇଂରାଜୀ ସଂସ୍କୃତ, ପାରସୀ, ବଙ୍ଗଳା ଉର୍ଦ୍ଦୁରେ ଯେପରି କାବ୍ୟ ସଂଗ୍ରହମାନ ବିଶ୍ୱବିଦ୍ୟାଳୟ ସକାଶେ ପ୍ରସ୍ତୁତ ହୋଇଅଛି ଓଡିୟା ଭାଷାରେ ସେହିପରି ଖଣ୍ଡିଏ ପୁସ୍ତକ ହେଲେ ଭାଷାର ଗୌରବ ରକ୍ଷା ହୁଅନ୍ତା । କେବେ ସରକାରୀ ବିଦ୍ୟାଳୟମାନଙ୍କରେ ଉତ୍କଳ ଭାଷାର ଆଦର ହେବ ଆମ୍ଭେମାନେ ନିଶ୍ଚୟ କରିପାରୁ ନାହୁଁ ।

*ଭା୨୧ଗ, ସଂ୪୧ଖ୍ୟା, ୧୬।୧୦।୧୮୮୬*

## [ରାଧାନାଥ ରାୟଙ୍କ 'ଚନ୍ଦ୍ରଭାଗା' ]

ଚନ୍ଦ୍ରଭାଗା - ବାବୁ ରାଧାନାଥରାୟଙ୍କଦ୍ୱାରା ପ୍ରଣୀତ ଓ ପ୍ରକାଶିତ । ମୂଲ୍ୟ ଦୁଇପଇସା । -ଆମ୍ଭେମାନେ ଉକ୍ତ ପୁସ୍ତକରୁ ଖଣ୍ଡିଏ ଗ୍ରନ୍ଥକାରଙ୍କଠାରୁ ଉପହାର ପାଇଥିବାର କୃତଜ୍ଞତାସହିତ ସ୍ୱୀକାର କରୁଅଛୁଁ । ଗ୍ରନ୍ଥଖଣ୍ଡି ଉକ୍ତ ବାବୁଙ୍କ କୃତ " କେଦାରଗୌରୀ" ନାମ୍ନୀ କ୍ଷୁଦ୍ରପୁସ୍ତିକା ଆକାରର ଅଟଇ ମାତ୍ର ଏହା ବଡଅକ୍ଷରରେ ଛାପା ହୋଇ ପୃ ୩୫ଷା ଅଧିକାର କରିଅଛି । ରାଧାନାଥ ବାବୁ ଉତ୍କଳସାହିତ୍ୟ ସମାଜରେ ଅପରିଚିତ ନୁହନ୍ତି ଏବଂ ଅନେକଦିନ ସେ କବିତା ଲେଖିବା ଛାଡିଦେଇଥିବାର ଦେଖି ଆମ୍ଭେମାନେ ଦୁଃଖିତ ହୋଇଥିଲୁଁ । ବର୍ତ୍ତମାନ "କେଦାରଗୌରୀ" ପଛେ ପଛେ "ଚନ୍ଦ୍ରଭାଗା" ପ୍ରକାଶିତ ହେବାରୁ ବାବୁ ମହାଶୟଙ୍କର କବିତା ଲେଖିବା ପ୍ରତି ଅନୁରାଗର ପୁନରାବୃତ୍ତି ହେବାର ଦେଖି ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ । ଗ୍ରନ୍ଥଖଣ୍ଡି ସାଧାରଣ ପଠନୋପଯୋଗୀ ହୋଇଅଛି ଏବଂ ଆମ୍ଭେମାନେ ତାହା ପାଠ କରି ଆନନ୍ଦ ଲାଭ କରିଥିବାର ମୁକ୍ତକଣ୍ଠରେ ସ୍ୱୀକାର କରୁଅଛୁଁ ।

*ଭା୨୧ଗ, ସଂ୪୪ଖ୍ୟା, ୬।୧୧।୧୮୮୬*

## ବିଜ୍ଞାପନ ।

## ପୁସ୍ତକ ବିତରଣ ।

ମାନ୍ୟବର ଶ୍ରୀଯୁକ୍ତ ଶ୍ରୀ ଶ୍ରୀ ତାଳଚେରଦୁର୍ଗାଧିପତି ଏଥିପୂର୍ବେ ଆତ୍ମବୋଧ ପୁସ୍ତକ ଅନୁବାଦସହିତ ପ୍ରକାଶ କରି ସର୍ବସାଧାରଣଙ୍କୁ ବିନା ମୂଲ୍ୟରେ ବିତରଣ କରିଥିଲେ ଏବଂ ଅବଧି ତହିଁର କେତେକଖଣ୍ଡ ବାକୀ ଥିବାରୁ ବଣ୍ଟନ ହେଉଅଛି । ସମ୍ପ୍ରତି ବେଦାନ୍ତରତ୍ନାବଳୀ ଦ୍ୱିତୀୟକକ୍ଷ ଅପରୋକ୍ଷାନୁଭୂତି ନାମକ ସଂସ୍କୃତଗ୍ରନ୍ଥ ଉତ୍କଳଅନୁବାଦସହିତ ପ୍ରକାଶ କରି ବିନାମୂଲ୍ୟରେ ବିତରଣ କରିବା କାରଣ ଆମ୍ଭଙ୍କୁ ଆଦେଶ କରିବାରୁ ସର୍ବସାଧାରଣଙ୍କୁ ଜଣାଉଅଛୁଁ କି ଯାହାଙ୍କର ଏ ପୁସ୍ତକ ପାଠ କରିବାକୁ ଆଗ୍ରହ ହେବ ଆମ୍ଭ ନିକଟକୁ ପତ୍ର ଲେଖିଲେ ପଠାଇ ଦେବୁଁ । ଯେଉଁମାନେ ଡାକଦ୍ୱାରା ପୁସ୍ତକ ପାଇବାର ଇଚ୍ଛା କରିବେ ସେମାନେ ଦୁଇପଇସିଆ ଡାକଟିକଟ ଏକଖଣ୍ଡ ପଠାଇବେ ।

୨୪।୧୧।୮୬

ଶ୍ରୀ ଗୌରୀଶଙ୍କର ରାୟ
କଟକପ୍ରିଣ୍ଟିଂ କମ୍ପାନୀ ସମ୍ପାଦକ ।

*ଭା୨୧ଗ, ସଂ୪୭ଖ୍ୟା, ୨୭।୧୧।୧୮୮୬*

## ଉତ୍କଳସଭା ।

ପୁରୁଷୋତ୍ତମ କ୍ଷେତ୍ରସ୍ଥିତ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରର କାର୍ଯ୍ୟନିର୍ବାହ ସମ୍ପର୍କରେ ସନ ୧୮୮୬ ସାଲ ଡିସେମ୍ବର ମାସ ତା୫ରିଖରେ କଟକ ପ୍ରିଣ୍ଟିଂକମ୍ପାନିଙ୍କ ଦ୍ୱିତଳଗୃହରେ ଉତ୍କଳସଭାର ଯେଉଁ ଅଧିବେଶନ ହୋଇଥିଲା ତହିଁରେ

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ତନ୍ନିଲିଖିତ ନିର୍ଦ୍ଧାରଣମାନ ଧାର୍ଯ୍ୟ ହେଲା ଯଥା-

୧ମ ନିର୍ଦ୍ଧାରଣ- ଶ୍ରୀ ପୁରୁଷୋତ୍ତମକ୍ଷେତ୍ରସ୍ଥିତ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରର କାର୍ଯ୍ୟନିର୍ବାହ ସମ୍ପର୍କରେ ଉତ୍ତମ ବନ୍ଦୋବସ୍ତ କରିବା କାରଣ ଦେବାନୀ କାର୍ଯ୍ୟବିଧିର ଧା୫୩୯ରା ଅନୁସାରେ ଗବର୍ଣ୍ଣମେଣ୍ଟ ମୋକଦ୍ଦମା ଦାଏର କରିବାକୁ ମନସ୍ଥ କରିବାର ଉତ୍କଳସଭା ଅବଗତ ହୋଇ ସେ ବିଷୟରେ ସଭାର ଅଭିପ୍ରାୟ ଓ ଭାବ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବା କର୍ତ୍ତବ୍ୟଜ୍ଞାନ କରୁଅଛନ୍ତି ।

ବର୍ତ୍ତମାନ ଯେଉଁ ବନ୍ଦୋବସ୍ତରେ ମନ୍ଦିରର କାର୍ଯ୍ୟ ନିର୍ବାହ ହେଉଅଛି ତହିଁରେ ଏପରି କିଛି ବିଶୃଙ୍ଖଳା ଘଟିବାର ସଭା ଜ୍ଞାତ ନୁହନ୍ତି କି ଯହିଁନିମିତ୍ତ ପ୍ରସ୍ତାବିତ ପ୍ରକାର କଠିନ ଉପାୟ ପ୍ରୟୋଗ କରିବାକୁ ହେବ । ଅଥଚ କୌଣସି ଗୁରୁତର ଅପକାର୍ଯ୍ୟ ଘଟନା ହୋଇଥିଲେ ଏ ସଭା ମନ୍ଦିରର ଅତିନିକଟରେ ଥିବାରୁ ଅବଶ୍ୟ ତାହା ଜାଣିପାରନ୍ତେ ।

ରାୟ ବୈଦ୍ୟନାଥ ପଣ୍ଡିତ ବାହାଦୁର ଉପସ୍ଥିତ ଏବଂ ବାବୁ ରାମଶଙ୍କର ରାୟ ଅନୁମୋଦନ କଲାରୁ ଏକବାକ୍ୟରେ ଧାର୍ଯ୍ୟ ହେଲା ।

୨ୟ ନିର୍ଦ୍ଧାରଣ- ପୁରୀ ରାଜାମାନେ ଗୋଟିଏ ପ୍ରାଚୀନ ରାଜବଂଶର ପ୍ରତିନିଧି ଅଟନ୍ତି । ଏହାଙ୍କର ପୂର୍ବପୁରୁଷମାନେ କେବଳ ଓଡିଶା କାହିଁକି ପ୍ରାୟ ୪୦ ହଜାର ବର୍ଗମାଇଲ ଭୂମିର ଶାସନକର୍ତ୍ତା ଥିଲେ । ସେହିମାନେ ପୁରୀର ମନ୍ଦିର ନିର୍ମାଣ ଏବଂ ସେଠାରେ ଦେବତା ପ୍ରକାଶ କରିଥିବାରୁ ପୁରୀର ରାଜାମାନେ ଠାକୁରରାଜାନାମରେ ଅଭିହିତ ହୋଇ ଆସୁଅଛନ୍ତି । ଏମାନଙ୍କୁ ମନ୍ଦିରର ସୁପ୍ରଣ୍ଟେଣ୍ଡିରୁ ଖାରଜ କଲେ ସେମାନଙ୍କ ମର୍ଯ୍ୟାଦା ଅନର୍ଥକ ଓ ଅନୁପଯୁକ୍ତ ରୂପେ ଖର୍ବ ହେବ । ଏବଂ ତାହା ସମସ୍ତ ହିନ୍ଦୁଙ୍କର ଇଚ୍ଛାବିରୁଦ୍ଧ ହେବ ଏବଂ ଏ ସଭା ଅନୁସନ୍ଧାନଦ୍ୱାରା ବୁଝିଅଛନ୍ତି ଯେ କେତେକ ଗଡ଼ଜାତର ରାଜାମାନେ ଏଥପୂର୍ବରୁ ଅର୍ଥାତ୍ ଛୋଟଲାଟ ସାହେବ ଓଡିଶାକୁ ଆସିଥିବା ସମୟରେ ତାହାଙ୍କ ନିକଟରେ ଏକ ଆବେଦନପତ୍ରଦ୍ୱାରା ହିନ୍ଦୁମାନଙ୍କର ଏହିଭାବକୁ ପ୍ରକାଶ କରିଅଛନ୍ତି ।

ବାବୁ ଗୋଲକଚନ୍ଦ୍ର ବୋଷ ଉପସ୍ଥିତ ଓ ବାବୁ ଜଗନ୍ମୋହନ ରାୟ ଅନୁମୋଦନ କଲାରୁ ଏକବାକ୍ୟରେ ଧାର୍ଯ୍ୟ ହେଲା ।

୩ୟ ନିର୍ଦ୍ଧାରଣ- ସେବା ସମ୍ପର୍କୀୟ ଭୋଗରାଗ ଏବଂ ଅନ୍ୟାନ୍ୟ ଦ୍ରବ୍ୟର ମୂଲ୍ୟ ବୃଦ୍ଧି ହେବାରୁ ଗବର୍ଣ୍ଣମେଣ୍ଟ ସେ ସମସ୍ତ ବ୍ୟୟନିର୍ବାହ ନିମିତ୍ତ ଯେଉଁ ଜମୀଦାରୀ ଖଞ୍ଜି ଦେଇଅଛନ୍ତି ତହିଁର ଆୟ ନିଅଣ୍ଟ ହୋଇଅଛି ଏବଂ କେତେକ ବର୍ଷ ହେଲା ସୁପ୍ରଣ୍ଟେଣ୍ଟ ଆପଣା ହାତରୁ ତାହା ପୂର୍ଣ୍ଣ କରୁଅଛନ୍ତି । ଏ ସଭାର ବିବେଚନାରେ କୌଣସି କାର୍ଯ୍ୟନିର୍ବାହକକମେଟୀ ଏ ଭାର ନେବେ ନାହିଁ ଏବଂ ଫଳ ଏହି ହେବ ଯେ ଗବର୍ଣ୍ଣମେଣ୍ଟ ଅଧିକା ଦାନ କରିବେ ନତୁବା ନିତ୍ୟାନି କାଟ ହେବ ।

ପଣ୍ଡିତ ଗୋବିନ୍ଦରଥ ପ୍ରସ୍ତାବ ଓ ପଣ୍ଡିତ ହରେକୃଷ୍ଣ ସତପଥୀ ଅନୁମୋଦନ କଲାରୁ ଏକବାକ୍ୟରେ ଧାର୍ଯ୍ୟ ହେଲା ।

୪ର୍ଥ ନିର୍ଦ୍ଧାରଣ- ଏହି ନିର୍ଦ୍ଧାରଣମାନଙ୍କର ପ୍ରତିଲିପୀ ଭାରତବର୍ଷୀୟ ଏବଂ ବଙ୍ଗୀୟ ଗବର୍ଣ୍ଣମେଣ୍ଟଙ୍କ ନିକଟକୁ ପଠାଯିବ ।

ବାବୁ ଯଜ୍ଞେଶ୍ୱରଚନ୍ଦ୍ର ଉପସ୍ଥିତ ଓ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ ଅନୁମୋଦନ କଲାରୁ ଏକବାକ୍ୟରେ ଧାର୍ଯ୍ୟ ହେଲା ।

ଶ୍ରୀ ଗୌରୀଶଙ୍କର ରାୟ,
ଅବୈତନିକ ସମ୍ପାଦକ

*ଭା୨୧ଗ,ସଂ୪୯ଖ୍ୟା, ୧୧ /୧୨/ ୧୮୮୬*

## ପ୍ରେରିତ ପତ୍ର ।

## [ଓଡିୟା ଅନୁବାଦ]

ଶ୍ରୀଯୁତ ଉତ୍କଳଦୀପିକାର ସମ୍ପାଦକ ମହାଶୟ

ସମୀପେଷୁ

ମହାଶୟ,

ଗତ ନବେମ୍ବର ମାସ ତା ୨ ୨ ରିଖରେ ଉତ୍କଳ ଦୀପିକାର ସମ୍ପାଦକୀୟସ୍ତମ୍ଭରେ ସେହିମାସ ତା ୧୮ ରିଖର ଓଡିୟାଗଜେଟରେ ପ୍ରକାଶିତ ରେବିନିଉବୋର୍ଡଙ୍କ ବିଜ୍ଞାପନର ୨ ଧାରାର ଅନୁବାଦସମ୍ବନ୍ଧରେ ଆପଣ ଯେଉଁ ମନ୍ତବ୍ୟ ପ୍ରକାଶ କରିଅଛନ୍ତି ତହିଁର ପ୍ରତ୍ୟୁତ୍ତର ନିମ୍ନରେ ଦିଆଗଲା ।

ଉକ୍ତ ବିଜ୍ଞାପନର ୨ ଧାରା ଇଂରାଜୀରେ ଏହିରୂପେ ଲେଖାଅଛି ଯଥା-

"Any instrument bearing an uncancelled and adhesive stamp is considered as stamped."

ଏଥିର ଓଡିୟାଅନୁବାଦ ଏହିପରି ହୋଇଅଛି, ଯଥା "କୌଣସି ନିଦର୍ଶନପତ୍ରରେ ଅକର୍ମଣ୍ୟ ହୋଇ ନ ଥିବା ଅଠାଲଗା ଷ୍ଟାମ୍ପ ଦିଆଯାଇଥିଲେ ମଧ୍ୟ ତାହା ଷ୍ଟାମ୍ପ ଦିଆଯାଇ ନ ଥିବାପରି ବିବେଚିତ ହେବ ।" ପ୍ରଥମଦୃଷ୍ଟିରେ ଏହି ଅନୁବାଦ ଅସଙ୍ଗତ ବୋଧ ହୋଇପାରେ ସତ୍ୟ, ମାତ୍ର ୧୮୭୯ ସାଲର ଭାରତବର୍ଷୀୟ ଷ୍ଟାମ୍ପବିଷୟକ ୧ ଆଇନର ୧୧ ଧାରା ପ୍ରତି ଦୃଷ୍ଟିକଲେ ପ୍ରତୀୟମାନ ହେବ ଯେ ଇଂରାଜୀବିଜ୍ଞାପନରେ ବା ତହିଁର ଓଡିୟାଅନୁବାଦରେ କୌଣସି ଦୋଷ ନାହିଁ । ଯେହେତୁ ଉକ୍ତଧାରାର ମର୍ମ୍ମ ଏହି କି କୌଣସି ନିଦର୍ଶନପତ୍ରରେ ଅକର୍ମଣ୍ୟ କରାଯାଇଥିବା ଅଠାଲଗା ଷ୍ଟାମ୍ପ ଥିଲେ ତାହା ଷ୍ଟାମ୍ପଯୁକ୍ତ ବୋଲି ଜ୍ଞାନ ହେବ ।

ଆମ୍ଭେ ଆପଣଙ୍କର ବଶମ୍ବଦ
Dhuneswar Mahapatra
Head Pundit, Translator's
Office Cuttack .

କଟକ
୨।୧୨।୮୬

*ଭା/୨୧ଗ, ସଂ୪୯ଖ୍ୟା, ୧୧/୧୨/୧୮୮୬*

## ବିଜ୍ଞାପନ ।

## ଅତିସୁଲଭ ।

ଉତ୍କଳଦୀପିକାର ବାର୍ଷିକ ଅଗ୍ରିମ ମୂଲ୍ୟ ଟ୫୮ ଓ ଡାକମାସୁଲ ଟ୦ ।୳ ଧାର୍ଯ୍ୟ ଅଛି । ସଙ୍ଗତିପନ୍ନ ବ୍ୟକ୍ତିମାନେ ଆନନ୍ଦସହିତ ଏହି ମୂଲ୍ୟ ଦେଇ ପତ୍ରିକା ନେଇ ଆସୁଥିଲେହେଁ ଓଡିଶା ଅବସ୍ଥାଦୃଷ୍ଟିରେ ଅନେକଲୋକଙ୍କ ପକ୍ଷରେ ଉଚ୍ଚଥିବାର କେହି କେହି ବନ୍ଧୁ ଜ୍ଞାନ କରନ୍ତି । ଅତଏବ କଟକ ପ୍ରିଣ୍ଟିଂକମ୍ପାନୀ ପତ୍ରିକାର ଅଧିକ ପ୍ରଚାର ଉଦ୍ଦେଶ୍ୟରେ ନିୟମ କରିଅଛନ୍ତି କି ଆଗାମୀ ବର୍ଷ ଅର୍ଥାତ୍ ସନ୧୮୮୭ ସାଲ ଜାନୁଆରିମାସ ଆରମ୍ଭଠାରୁ ଉତ୍କଳଦୀପିକାର ଅଗ୍ରିମ ବାର୍ଷିକ ମୂଲ୍ୟ ଟ୩୮ ଧାର୍ଯ୍ୟ କରିବେ । ଏହି ମୂଲ୍ୟରେ ସଦର ମୋଫସଲ ସର୍ବତ୍ରରେ ଦିୟାଯିବ । ଯାହାଙ୍କଠାରେ ବକୀୟା ପାଉଣାଅଛି ସେମାନେ ସମସ୍ତ ବାକୀ ଆଦାୟ କରି ଆଗତୁରା ମୂଲ୍ୟ ଦେଲେ ଏହି ନିୟମର ଫଳ ପାଇବେ । ବକୀୟା ଦରର କିଛିମାତ୍ର ପରିବର୍ତ୍ତନ ହୋଇ ନାହି ।

କଟକ ପ୍ରିଣ୍ଟିଂକମ୍ପାନୀ
୨୩। ୧୧।୮୬

ଶ୍ରୀ ଗୌରୀଶଙ୍କର ରାୟ
ସେକ୍ରଟରୀ

*ଭା/୨୧ଗ, ସଂ୪୯ଖ୍ୟା, ୧୧/୧୨/୧୮୮୬*

## ବ୍ୟବସ୍ଥାପକସଭାର ସଂସ୍କରଣ ।

ଏଦେଶର ବ୍ୟବସ୍ଥାପକସଭାମାନଙ୍କରେ ଦେଶୀୟଲୋକଙ୍କ ପ୍ରତିନିଧିମାନଙ୍କୁ ସଭ୍ୟନିଯୋଗ ବିଷୟରେ କୌଣସି ନିୟମ କରିବାପାଇଁ ଗବର୍ଣ୍ଣମେଣ୍ଟରେ ଆବେଦନ କରିବାକାରଣ ଚଳିତମାସ ତା ୧୯ ରିଖରେ ଏ ନଗରସ୍ଥ ଉତ୍କଳସଭାର ଏକ ଅଧିବେଶନ ହୋଇଥିଲା । ସଭାପତି ଅନିର୍ବାର୍ଯ୍ୟ କାରଣବଶତଃ ଉପସ୍ଥିତ ନ ହେବାରୁ ବାବୁକାଳୀପଦବନ୍ଦ୍ୟୋପାଧ୍ୟାୟ ସଭାପତିତ୍ୱରେ ବରିତ ହୋଇ କାର୍ଯ୍ୟାରମ୍ଭ କଲେ । ବାବୁ ଯୋଗେଶ୍ୱରଚନ୍ଦ୍ର ପ୍ରସ୍ତାବ କଲେ କି ଏ ସଭାର ବିବେଚନାରେ ଭାରତବର୍ଷ ଏବଂ ଇଂଲଣ୍ଡ ଉଭୟଦେଶର ମଙ୍ଗଳନିମିତ୍ତ ଅତ୍ୟନ୍ତ ଆବଶ୍ୟକ ହୋଇଅଛି ଯେ ଏ ଦେଶର ବ୍ୟବସ୍ଥାପକସଭାମାନଙ୍କରେ ଦେଶୀୟଲୋକଙ୍କ ପ୍ରତିନିଧିମାନଙ୍କୁ ପ୍ରବେଶାଧିକାର ଦେବା ବିଷୟରେ କୌଣସି ନିୟମ ଗବର୍ଣ୍ଣମେଣ୍ଟ କରିବେ ଏ ପ୍ରସ୍ତାବର କାରଣସ୍ୱରୂପ ବାବୁମହାଶୟ ବୁଝାଇ ଦେଲେ ଯେ ବର୍ତ୍ତମାନ ବ୍ୟବସ୍ଥାପକସଭାରେ କେବଳ ଇଂରାଜମାନଙ୍କର ଆଧିପତ୍ୟ ସେମାନେ ଦୋଶୀୟଲୋକଙ୍କ ଭାବ ଓ ପ୍ରୟୋଜନ ସମ୍ୟକରୂପେ ବୁଝିପାରନ୍ତି ନାହିଁ ଏବଂ ଯଦ୍ୟପି କି କେତେକଜଣ ଦେଶୀୟଲୋକ ସଭ୍ୟସ୍ୱରୂପ ଗୃହୀତ ହୁଅନ୍ତି ମାତ୍ର ସେମାନେ ଏପରି ଲୋକ ନୁହନ୍ତି କି ଯାହାଙ୍କୁ ଦେଶୀୟଲୋକଙ୍କ ପ୍ରତିନିଧି ବୋଲାଯିବ ଏବଂ ଅଧିକାଂଶସ୍ଥଳରେ ଯେଉଁମାନେ ଶାସନକର୍ତ୍ତାଙ୍କ ମନରଖା କଥା କହିବେ ସେହିମାନେ ମନୋନୀତ ହୁଅନ୍ତି । ଏଥିର ଫଳ ଏହି ହୋଇଅଛି ଯେ ଶାସନକର୍ତ୍ତାମାନେ ଇଚ୍ଛାନୁରୂପ କାର୍ଯ୍ୟ କରିପାରନ୍ତି ଏବଂ ଦେଶୀୟଲୋକେ ଆପଣା କଥା ଜଣାଇ ପାରନ୍ତି ନାହିଁ । ଏହି ହେତୁରୁ କରଭାର ଦିନ ଦିନ ବୃଦ୍ଧି ହେଉଅଛି ଟଙ୍କା ଏଣେ ତେଣେ ବାହାରି ଯାଉଅଛି ଅଥଚ ଅସ୍ମଦ୍ଦେଶୀୟଙ୍କ ଅବସ୍ଥା ଭଲ ହେଉ ନାହିଁ । ବାବୁ ମଧୁସୂଦନ ଦାସ ଏ ପ୍ରସ୍ତାବକୁ ଅନୁମୋଦନ କରି କହିଲେ କି ଯେଉଁମାନେ ଏ ଦେଶର ଶାସନପ୍ରଣାଳୀ ଏବଂ ଆପଣାର ଅବସ୍ଥା କଥା ଚିନ୍ତା କରନ୍ତି ସେମାନଙ୍କ ମଧରେ ଏମନ୍ତ କେହି ହେବ ନାହିଁ ଯେ କି ଏ ପ୍ରସ୍ତାବକୁ ଅନୁମୋଦନ ନ କରିବ ମାତ୍ର ଦୁଃଖରବିଷୟ ଯେ ଏ ପ୍ରଦେଶରେ ଏ ସବୁ ଚିନ୍ତା କରିବା ଲୋକଙ୍କ ସଂଖ୍ୟା ଅତ୍ୟନ୍ତ ଊଣା ଏବଂ ଆଜିର ସଭା ସେଥିର ପରିଚୟ ଦେଉଅଛି ଅର୍ଥାତ୍ ଅତିଅଳ୍ପ ଲୋକ ଉପସ୍ଥିତ ହୋଇଅଛନ୍ତି ଯେଉଁମାନେ ପେଟର ଚିନ୍ତାରେ ଦିବାରାତ୍ର ବ୍ୟସ୍ତ ସେମାନଙ୍କଠାରୁ ଏପ୍ରକାର ଗୁରୁତର ବିଷୟର ଭାବନା ଆଶା କରିବା ଅସଙ୍ଗତ ମାତ୍ର ଯେଉଁମାନଙ୍କୁ ପରମେଶ୍ୱର ଏମନ୍ତ ସଙ୍ଗତିପନ୍ନ ଅବସ୍ଥାରେ ରଖିଅଛନ୍ତି ଯେ ସେମାନଙ୍କୁ ପେଟର ଚିନ୍ତା ଆଦୌ ବାଧଇ ନାହିଁ ଅଥବା ଅଳ୍ପ ସମୟ ସେ ଚିନ୍ତାରେ ବ୍ୟୟ କରିବାକୁ ହୁଅଇ ସେମାନଙ୍କର ଏହି ଗୁରୁତରଚିନ୍ତାରେ ମଗ୍ନ ହେବା ଏବଂ ତହିଁର ବ୍ୟବସ୍ଥା କରିବା ନିତାନ୍ତ କର୍ତ୍ତବ୍ୟ ଏଠାକାର ସମ୍ଭ୍ରାନ୍ତ ଓ ଧନାଢ୍ୟ ଲୋକମାନେ ଏ ବିଷୟରେ ଅଧିକତର ମନୋଯୋଗୀ ନ ହେଲେ କିପରି ଆମ୍ଭମାନଙ୍କର ଦୁରବସ୍ଥାର ପ୍ରତିକାର ହେବ।ଯାହା ହେଉ ଏ ନଗରବାସୀ କେତେକଲୋକ ଏ ଗୁରୁତର ବିଷୟର ମହତ୍ତ୍ୱ ବୁଝିପାରି ସଭାରେ ଉପଗତ ହୋଇଅଛନ୍ତି ସୁଖରବିଷୟ ଅଟଇ ସଭାପତିଙ୍କ ଅନୁରୋଧମତେ ଶ୍ରୀ ଏ,କେ ରାୟ ସାହେବ ଏ ପ୍ରସ୍ତାବକୁ ସମର୍ଥନ କରି ଏକ ସଂକ୍ଷେପ ଇଂରାଜୀ ବକ୍ତୃତାଦ୍ୱାରା ପ୍ରତିନିଧିଶାସନପ୍ରଣାଳୀର ମହତ୍ତ୍ୱ ବର୍ଣ୍ଣନା କଲେ ଏବଂ କେତେଗୁଡିଏ ଉଦାହରଣଦ୍ୱାରା ଦେଖାଇଦେଲେ ଯେ ବ୍ୟବସ୍ଥାପକ ସଭାରେ ଦେଶୀୟଲୋକଙ୍କର ପ୍ରତିନିଧି ନ ଥିବାରୁ ଆମ୍ଭମାନଙ୍କ ଦୁଃଖ ଦୂର ହେଉ ନାହି କିମ୍ବା ଉନ୍ନିତର ମାର୍ଗରେ ଆମ୍ଭେମାନେ ଅଗ୍ରସର ହୋଇପାରୁ ନାହୁଁ । ସ୍ୱଦେଶର ଶାସନରେ ଦେଶୀୟଲୋକ ଅଧିକାର ନ ପାଇଲେ ସେ ଶାସନ କଦାଚ ମଙ୍ଗଳପ୍ରଦ ହେବାର ନୁହଇ ଏବଂ ସେ ଅଧିକାର ପାଇବାର ଏକମାତ୍ର ଉପାୟ ପୁନଃପୁନଃ ତହିଁର ଆନ୍ଦୋଳନ କରିବାର ଏବଂ ସାଧାରଣ ଭାବ ଶାସନକର୍ତ୍ତାମାନଙ୍କୁ ଜଣାଇବାର ଅଟଇ । ରାୟ ସାହେବଙ୍କ କଥାକୁ ପୁନଃ ପୁନଃ କରତାଳିଦ୍ୱାରା ସଭା ଅନୁମୋଦନ କରିଥିଲେ । ସମସ୍ତଙ୍କ ସମ୍ମତିରେ ଏ ପ୍ରସ୍ତାବ ଧାର୍ଯ୍ୟ ହେବାରୁ ବାବୁ ବିପିନବିହାରୀ ମିତ୍ର ପ୍ରସ୍ତାବ କଲେ କି ଏହି ନିର୍ଦ୍ଧାରଣର ପ୍ରତିଲିପି ସ୍ଥାନୀୟ ଗବର୍ଣ୍ଣମେଣ୍ଟଙ୍କ ନିକଟକୁ ପଠାଯାଉ ଏବଂ ତହିଁସଙ୍ଗେ ପ୍ରାର୍ଥନା ହେଉ କି ସମସ୍ତଶ୍ରେଣୀର ଦେଶୀୟଲୋକଙ୍କ ମନରେ ଉଦୟ ହୋଇଥିବା ଏହି ଭାବକୁ ବିଲାତର ସେକ୍ରେଟରୀ ଅବ ଷ୍ଟେଟଙ୍କୁ ଜଣାଇବା କାରଣ ସେ ଭାରତବର୍ଷର ରାଜପ୍ରତିନିଧି ଏବଂ ଗବର୍ଣ୍ଣର ଜେନରଲଙ୍କୁ ଅନୁରୋଧ କରିବେ । ବାବୁ ଗୋକୁଳାନନ୍ଦ ଚୌଧୁରୀ ଏ ପ୍ରସ୍ତାବକୁ ଅନୁମୋଦନ କଲେ ଏବଂ ଏକବାକ୍ୟରେ ଧାର୍ଯ୍ୟ ହେଲା । ଏଥି ଉତ୍ତାରୁ କଳିକତାର ଜାତୀୟସମିତିକି ଏ ସଭାରୁ ପ୍ରତିନିଧି ପଠାଇବାର କଥା

ଉଠାଇବାରୁ ପଣ୍ଡିତ ଗୋବିନ୍ଦରଥ ଓ ବାବୁ ରାମଶଙ୍କର ରାୟଙ୍କ ପ୍ରସ୍ତାବ ଏବଂ ବାବୁ ଗୋକୁଳାନନ୍ଦ ଚୌଧୁରୀ ଓ ବାବୁ ରାଧାଶ୍ୟାମ ସରକାରଙ୍କ ଅନୁମୋଦନ ମତେ ବାବୁ ହରିବଲ୍ଲଭ ବୋଷ, ବାବୁ ମଧୁସୂଦନ ଦାସ , ବାବୁ ଗୋଲକଚନ୍ଦ୍ର ବୋଷ ଓ ବାବୁ କାଳୀପଦ ବାନୁର୍ଯ୍ୟାଙ୍କୁ ପ୍ରତିନିଧିସ୍ୱରୂପ ପଠାଇବାର ଧାର୍ଯ୍ୟ ହେଲା ।

*ଭା୨୧ଗ,ସଂ୫୧ଖ୍ୟା, ୨୫।୧୨।୧୮୮୬*

## ପ୍ରେରିତପତ୍ର ।

## [ଛାତ୍ରମାନଙ୍କୁ ପରୀକ୍ଷା]

ଶ୍ରୀଯୁକ୍ତ ମାନ୍ୟବର ଉତ୍କଳଦୀପିକାସମ୍ପାଦକ ମହାଶୟସମୀପେଷୁ ।-

ମହାଶୟ !

ବିଗତ ୧୫ରିଖ ବୁଧବାର ବେଳ ଘ ୧୧ଟିକା ସମୟରେ ଆମ୍ଭମାନଙ୍କର ମାନନୀୟ ଶ୍ରୀଲ ଶ୍ରୀଯୁକ୍ତ ଶ୍ରୀ କଲେକ୍ଟର ସାହେବ ମହୋଦୟ ଅତ୍ରତ୍ୟ ମଧ୍ୟମଶ୍ରେଣୀ ଇଂରାଜୀ ବିଦ୍ୟାଳୟର ଛାତ୍ରମାନଙ୍କୁ ପରୀକ୍ଷା କରିବା ନିମିତ୍ତ ଫକୀରପଡା ବଙ୍ଗଳାଠାକୁ ଡକାଇବାରୁ ଆମ୍ଭେମାନେ ଛାତ୍ରମାନଙ୍କ ସହ ନିର୍ଦ୍ଦିଷ୍ଟସ୍ଥାନରେ ଉପସ୍ଥିତ ହେଲୁଁ । ସାହେ ମହୋଦୟ ପ୍ରଥମେ ବାଳକମାନଙ୍କର ନାମ ଜାତି ଓ ବ୍ୟବସାୟ ପଚାରି ତତ୍ପରେ ଇଂରାଜୀ ଓଡିଆ ପୁସ୍ତକମାନଙ୍କରୁ ଅନେକ ବିଷୟମାନ ପରୀକ୍ଷାକଲେ । ଏହା ପ୍ରାୟ ୨ ଘଣ୍ଟା ସମୟ ବ୍ୟାପି ହୋଇଥିଲା । ପରେ ବାଳକମାନଙ୍କୁ ଗଭୀରଭାବ ପୂର୍ଣ୍ଣ ଅନେକ ଉପଦେଶ ପ୍ରଦାନକଲେ ଏବଂ ଆପଣାର ମନ୍ତବ୍ୟ ଦର୍ଶକାଭିପ୍ରାୟ ବହିରେ ପ୍ରକାଶ କଲେ ଓ ଛାତ୍ରମାନଙ୍କୁ ଗୁରୁବାରଦିନ ଛୁଟୀଦେବାନିମିତ୍ତ ଲେଖିଦେଇ ଗଲେ । ସମସ୍ତ ବାଳକମାନେ କରତାଳିଦ୍ୱାରା ତାହାଙ୍କର ଜୟଘୋଷଣା ପ୍ରଚାର କରିବାରୁ ସାହେବ ମହୋଦୟ ଅତ୍ୟନ୍ତ ପ୍ରୀତ ହେଲେ; ଆଉ ସ୍କୁଲ୍‌ଠାରୁ ଗୋଟିଏ ସଡକ ନ ଥିବାର ଜଣାଇବାରୁ ଉକ୍ତ ଅଭାବଟି ମୋଚନ କରିବାର ଆଜ୍ଞାପ୍ରଦାନ କଲେ । ଶ୍ରୀଯୁକ୍ତ ସେକ୍ରେଟରୀ ଜମିଦାର ଚଉଧୁରୀ ଶ୍ରୀବାବୁ ନରସିଂହ ପ୍ରହରାଜଙ୍କୁ ସ୍କୁଲର ଅଧିକାଂଶ ବ୍ୟୟ ଭାରବହନ କରିବାର ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇ ବାବୁ ମହୋଦୟଙ୍କୁ ଅନେକ ପ୍ରଶଂସା କଲେ । ଜଗତ୍‌ପାତା ପରମେଶ୍ୱରଙ୍କଠାରେ ଆମ୍ଭମାନଙ୍କର ବିନୀତ ପ୍ରାର୍ଥନା ଏହିଯେ ଏପରି ସରଳପ୍ରକୃତିକ ବିଦ୍ୟାନୁରାଗୀ ଓ ପ୍ରଜାବତ୍ସଳ କଲେକ୍ଟର ମହୋଦୟଙ୍କୁ ଓଡିଶାରେ ଚିରସ୍ଥାୟୀ କଲେ ଭବିଷ୍ୟତରେ ଓଡିଶାର ଅନେକ ଶୁଭଫଳ ଫଳିପାରିବ ଇତି ।

ସିଦ୍ଧେଶ୍ୱରପୁର — ବଶମ୍ୱଦ

୨୦।୧୨।୮୬ — Banchha Nidhi Mahanti
Head master.

*ଭା୨୧ଗ,ସଂ୫୧ଖ୍ୟା, ୨୫।୧୨।୧୮୮୬*

## [ଅଶୁଦ୍ଧ ବିଜ୍ଞାପନ]

ମହାଶୟ !

ଓଡିୟାଗଜେଟରେ ଷ୍ଟାମ୍ପସଙ୍କ୍ରାନ୍ତ ବିଜ୍ଞାପନର ଧା୨ରା ବୁଝାଯାଉ ନ ଥିବାରୁ ତାହା ଭୁଲ ଥିବାର ଆପଣ ଲେଖିଥିଲେ । ବୋଧ ହୁଏ ଏହା ଉତ୍କଳଅନୁବାଦକଙ୍କ ବିରୁଦ୍ଧ ଥିବାରୁ ତାଙ୍କର ହେଡପଣ୍ଡିତ ଆପଣା ମୁନିବଙ୍କ ପୋଷକତାରେ ଖଣ୍ଡିଏପତ୍ର ଗତସପ୍ତାହରେ ପ୍ରକାଶ କରାଇଛନ୍ତି । ସେ ବୋଲନ୍ତି ପ୍ରଥମପୃଷ୍ଠାରେ ଅନୁବାଦ ଅସଙ୍ଗତ ବୋଧ ହୋଇପାରେ ମାତ୍ର ଆଇନ ଦେଖିଲେ ଜଣାଯିବ ଯେ ଅନୁବାଦରେ କୌଣସି ଦୋଷ ନାହିଁ । ଦୋଷ ନାହିଁ କିପରି ? ଆମ୍ଭେ କହୁଁ ତାହା ସମ୍ପୂର୍ଣ୍ଣ ଦୋଷଯୁକ୍ତ ଅଟେ । କାରଣ ଆମ୍ଭେ ତାହା ଆଦୌ ବୁଝି ନ ପାରି ଧନ୍ଦାହେଲୁଁ । ପୁଣି ହେଡପଣ୍ଡିତେ ଯେ ଇଂରାଜୀବିଜ୍ଞାପନ ଆପଣାପତ୍ରରେ ଦେଇଥିଲେ ତହିଁରେ ତାଙ୍କ ଲେଖା ଦୋଷରୁ କିମ୍ବା

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଆପଣଙ୍କ ଛାପାଦୋଷରୁ ଭୁଲ ଥିବାରୁ ଆହୁରି ବଣା ହେଲୁଁ । ଖୋଜି ଖୋଜି କେତେ କଷ୍ଟରେ ଅସଲ ବିଜ୍ଞାପନ ଖଣ୍ଡେ ପାଇବାରୁଁ ଯାଇ ଅର୍ଥ ବୁଝି ପାରିଲୁଁ । କାଳେ ଆମ୍ଭପରି ଅନ୍ୟ କେହି କେହି ବୁଝିପାରି ନ ଥିବେ ଏ ହେତୁ ଶୁଦ୍ଧ ଇଂରାଜୀ ବିଜ୍ଞାପନ ଅନୁବାଦକଙ୍କ ଅଶୁଦ୍ଧ ଓ ଆମ୍ଭକୃତ ଶୁଦ୍ଧ ଓଡିଆ ବିଜ୍ଞାପନ ନିମ୍ନେ ଲେଖିଲୁଁ ଯଥା-

ଇଂରାଜୀ ଶୁଦ୍ଧବିଜ୍ଞାପନ ।

2. Any instrument bearing an uncancelled adhesive stamp is considered as unstamped.

ଓଡିୟା ଗଜେଟରେ ଅଶୁଦ୍ଧ ବିଜ୍ଞାପନ ।

୨ କୌଣସି ନିଦର୍ଶନପତ୍ରରେ ଅକର୍ମଣ୍ୟ ହୋଇ ନ ଥିବା ଅଠାଲଗା ଷ୍ଟାମ୍ପ ଦିଆଯାଇଥିଲେ ମଧ ତାହା ଷ୍ଟାମ୍ପ ଦିଆଯାଇ ନ ଥିବା ପରି ବିବେଚିତ ହେବ ।

ଆମ୍ଭକୃତ ଶୁଦ୍ଧ ବିଜ୍ଞାପନ ।

୨ କୌଣସି ନିଦର୍ଶନ ପତ୍ରରେ ଅଠାଲଗା ଷ୍ଟାମ୍ପ(ଯଥା ରସିଦଟିକଲି) ଦେଇ ସେ ଷ୍ଟାମ୍ପକୁ ମାରି ନ ଦେଲେ (କିମ୍ୱା ନଷ୍ଟକରି ନ ଦେଲେ) ଉକ୍ତ ନିଦର୍ଶନ ପତ୍ରରେ ଷ୍ଟାମ୍ପ ଦିଆଯାଇ ନ ଥିବାର ଜ୍ଞାନ କରାଯିବ ।

ଷ୍ଟାମ୍ପ ଆଇନର ଧା ୧ ୧ରାରେ ବିଧିଅଛି ଯେ କୌଣସି ନିଦର୍ଶନପତ୍ରରେ ଅଠାଲଗା ଷ୍ଟାମ୍ପ ଦିଆଗଲେ ସେ ଷ୍ଟାମ୍ପକୁ ଏପରି ମାରିଦେବାକୁ ହେବ କି ଯେପରି ତାହା ଆଉ ବ୍ୟବହାର ହୋଇ ନ ପାରିବ ଏପରି , ନଷ୍ଟକରା ହୋଇ ନ ଥିଲେ ସେ ନିଦର୍ଶନପତ୍ରରେ ଷ୍ଟାମ୍ପଲାଗି ନ ଥିବାର ଜ୍ଞାନ କରାଯିବ । ଏହିବିଧି ପ୍ରଚାର କରାଇବାର ଉକ୍ତ ବିଜ୍ଞାପନର ଉଦ୍ଦେଶ୍ୟ । ଏକଥା ଆମ୍ଭବିଜ୍ଞାପନ ପଢିଲାମାତ୍ରକେ ସହଜରେ ବୁଝାଯାଉଛି ମାତ୍ର ଓଡିଆଗେଜେଟର ବିଜ୍ଞାପନ ଭ୍ରମରେ ପକାଇ ଦେଉଅଛି । ଏଥିର କାରଣ କଣ ? ବୋଧହୁଏ ଉକ୍ତ ଅନୁବାଦକ ଇଂରେଜୀଶବ୍ଦର ପରିବର୍ତ୍ତେ ଗୋଟିଏ ଓଡିଆଶବ୍ଦ ବସାଇ ଦିଅନ୍ତି , ଓଡିଆରେ ସେ ଭାବ ପ୍ରକାଶ ପାଉଛି କି ନା ଦୃଷ୍ଟି ନ ରଖନ୍ତି ଯଥା "uncancelled" ପରିବର୍ତ୍ତେ "ଅକର୍ମଣ୍ୟ ହୋଇ ନ ଥବା" ଏ ଶବ୍ଦଟି ବଙ୍ଗଳା ଆଇନରେ ଅଛି ବୋଧହୁଏ ସେଥିରୁ କିମ୍ୱା ବଙ୍ଗଳାଗଜେଟରୁ ନେଇଛନ୍ତି । ଆଉ ଅର୍ଥକୁ ଦୃଷ୍ଟି ନାହି । ଅନେକ କଥାତ ବଙ୍ଗଳାଗଜେଟରେ ବାହାରିଲେ ଯାଇଁ ପଛେ ଓଡିଆଗଜେଟରେ ବାହାରେ । ଏଥି ପୂର୍ବେ ଆପଣ ତାଙ୍କର ଅନେକ ଭୁଲ ଦର୍ଶାଇ ଥିବାରୁ ତଦନ୍ତ ଲାଗିଥିଲା, ଫଳ ଜଣା ନାହି । ଛୋଟ ଲେସିସାହେବଙ୍କ ଓଡିଆଭାଷା ବଡ ଦୋଷଯୁକ୍ତ ହେଉଥିଲା, ଚତୁର୍ଭୁଜ ବାବୁ ଏ କାର୍ଯ୍ୟରେ ନିଯୁକ୍ତ ହେବାରୁ ଶୁଦ୍ଧ ଓଡିଆ ଲେଖାର ଆଶା କରିଥିଲୁଁ ମାତ୍ର ଏ ଲେସିସାହେବଠୁଁ ବଳିଲେ ବୃଥା ଏହାଙ୍କ "ବି" "ଏ" ଉପାଧି ।-ଅଧିକଂ ଗୁସ୍ତାଗି ।

କଟକ　　　　　　　　　　　ଲେଖକ

୧୪ । ୧ ୨ । ୮୬

*ଭା ୨ ୧ ଗ, ସଂ ୪ ୧ ଖ୍ୟା, ୨ ୪ । ୧ ୨ । ୧ ୮ ୮ ୬*

## ନିବେଦନ ।

## (ପୂର୍ବପ୍ରକାଶିତ ଉତ୍ତାରୁ)

୪."ବ୍ରାହ୍ମସମାଜର ବିରଚିତ ବ୍ରାହ୍ମଧର୍ମ୍ମ ପୁସ୍ତକ ଆଲୋଚନାକଲେ" ଇତ୍ୟାଦି ।

ବ୍ରାହ୍ମସମାଜର "ବିରଚିତ" ବ୍ରାହ୍ମଧର୍ମ୍ମପୁସ୍ତକ ନ ଲେଖିଲେ ଠିକ୍ ହୁଅନ୍ତା । କାରଣ, ଅନେକ ଲୋକ କୌଣସି ଉଦ୍ଦେଶ୍ୟରେ ଏକତ୍ରିତ ହେଲେ ସେହି ସମଷ୍ଟିର ନାମକୁ ସମାଜ କୁହାଯାଏ । ବ୍ରାହ୍ମସମାଜର ଅନ୍ତର୍ଗତ ସକଳ ବ୍ରାହ୍ମକର୍ତ୍ତୃକ କିଛି ଏହି ପୁସ୍ତକ ବିରଚିତ ହୋଇ ନାହି । କିନ୍ତୁ ପ୍ରଧାନ ଆଚାର୍ଯ୍ୟ ମହର୍ଷି ଦେବେନ୍ଦ୍ର ନାଥ ଠାକୁର ଓ ତାହାଙ୍କର କେତେକ ଜଣ ସଂସ୍କୃତଜ୍ଞ ବନ୍ଧୁଙ୍କର ସାହାଯ୍ୟରେ ଏହି ପୁସ୍ତକ ସଙ୍କଳିତ ଓ ପ୍ରକାଶିତ ହୋଇଅଛି ଏ କଥା ଲେଖିବାର ତାତ୍ପର୍ଯ୍ୟ ଏହି କି ଏହି ପୁସ୍ତକର କୌଣସି ସ୍ଥାନରେ ଯଦି କିଛି ଭୁଲ ଥାଏ, ତେବେ ସେଥି ନିମନ୍ତେ ସମସ୍ତ ବ୍ରାହ୍ମସମାଜ ଦାୟୀ ନୁହନ୍ତି ।

୫. ଲେଖକ ଲେଖିଅଛନ୍ତି ବ୍ରାହ୍ମଧର୍ମନାମକ ପୁସ୍ତକରେ ଋକ୍‌ବେଦ ଗୁଡିକର ଅର୍ଥ ଏପରି କପଟଭାବରେ କରା ଯାଇଅଛି ଯେ, ତହିଁରେ ଅଜ୍ଞମାନେ ଅନାୟାସରେ ବଞ୍ଚିତ ହୋଇ ପଡିବେ ।

ବେଦ ଅତି ପ୍ରାଚୀନ ଗ୍ରନ୍ଥ । ଏହାର ଭାଷା ଅତିଶୟ କଠିନ ଓ ଜଟୀଳ । ତହିଁରେ ପୁଣି ବୈଦିକକାଳର ଆଚାର ବ୍ୟବହାର,ରୀତି ନୀତି ପରିବର୍ତ୍ତିତ ହୋଇ ହିନ୍ଦୁସମାଜ ବର୍ତ୍ତମାନ ଏକ ପ୍ରକାର ନୂତନ ଆକାରରେ ଗଠିତ ହୋଇଅଛି । ବୈଦିକସମୟର ହିନ୍ଦୁସମାଜ ଓ ବର୍ତ୍ତମାନସମୟର ହିନ୍ଦୁସମାଜ ସମ୍ପୂର୍ଣ୍ଣ ବିଭିନ୍ନ ବସ୍ତୁ କହିଲେ ଅତ୍ୟୁକ୍ତି ହେବ ନାହିଁ : ଅତଏବ ଏତେ ପ୍ରାଚୀନକାଳର ଦୁରୂହ ଓ କଠିନଗ୍ରନ୍ଥର ଅର୍ଥବୋଧ ଓ ବ୍ୟାଖ୍ୟା କରିବାକୁ ଅଗ୍ରସର ହେଲେ କୌଣସି କୌଣସିସ୍ଥାନରେ ଅଥବା ଅନେକସ୍ଥାନରେ ଅର୍ଥକାରକଙ୍କୁ ଭ୍ରମରେ ପଡ଼ିବାର ସମ୍ଭାବନା । ଏହା କିଛି ବିଚିତ୍ର ନୁହେ । ପ୍ରଧାନଆଚାର୍ଯ୍ୟ ମହାଶୟ ଯେତେବେଳେ ସେହି ଦୁରୂହକାର୍ଯ୍ୟରେ (ବେଦ ବ୍ୟାଖ୍ୟାରେ)ପ୍ରବୃତ୍ତ ହୋଇଅଛନ୍ତି, ତେତେବେଳେ ତାହାଙ୍କର ମଧ କୌଣସି କୌଣସି ସ୍ଥଳରେ ସେହିପରି ଭ୍ରମପ୍ରମାଦ ଘଟିଥିବ, ଏହା କିଛି ଆଶ୍ଚର୍ଯ୍ୟ ନୁହେ ।

ଆଉ ଯଦିବା ଶ୍ଳୋକାର୍ଥ କରିବାକୁ ଯାଇ କୌଣସି କୌଣସିସ୍ଥଳରେ ଭ୍ରମ ଘଟିଥାଏ , ତଥାପି ଏଥିରେ କୌଣସି କୌଣସି ଅନିଷ୍ଟଶଙ୍କା ହେଉ ନାହିଁ । କାରଣ ଏହି ଗ୍ରନ୍ଥକୁ ବ୍ରାହ୍ମମାନେ କିଛି ଅଭ୍ରାନ୍ତ ବେଦ ବୋଲି ସ୍ୱୀକାର କରନ୍ତି ନାହିଁ କିମ୍ବା ସ୍ୱୀକାର କରିବା ନିମନ୍ତେ କାହାରିକୁ ବାଧ କରନ୍ତି ନାହିଁ । ବ୍ରାହ୍ମସମାଜର ଅନ୍ତର୍ଗତ ଏପରି ଅନେକଲୋକ ଅଛନ୍ତି ଯେଉଁମାନେ ଏହି ପୁସ୍ତକ ପଢିବା ଦୂରେ ଥାଉ ଦର୍ଶନ କିମ୍ବା ସ୍ପର୍ଶ କରି ନାହାନ୍ତି , ଅଥଚ ବ୍ରାହ୍ମ ବୋଲି ପରିଚିତ ହେଉଅଛନ୍ତି ।

ଏହି ଗ୍ରନ୍ଥର ଶ୍ଳୋକାର୍ଥ ସବୁସ୍ଥାନରେ ଠିକ୍ କି ନା, ସେ ବିଷୟରେ ସ୍ପଷ୍ଟ ସାକ୍ଷ୍ୟ ଦେଇ ନ ପାରୁଁ , ତେବେ ଏତିକି କହିପାରୁଁ କି ଏଥିରେ ଯେଉଁ ସବୁ ବିଷୟ ଲିଖିତ ହୋଇଅଛି, ଯେଉଁ ସବୁ ଭାବ ସନ୍ନିବଦ୍ଧ କରା ହୋଇଅଛି,ତାହା ମନୁଷ୍ୟର ଆଧ୍ୟାତ୍ମିକ ଉନ୍ନତିର ପକ୍ଷରେ ଅନୁକୂଳ ଅଟଇ । ବେଦର ଶ୍ଳୋକାର୍ଥ ବୋଲି ଯେ ଆମ୍ଭେମାନେ ଏହି ପୁସ୍ତକକୁ ଅଧିକ ସମାଦର କରୁଁ ତାହା ନୁହେ । ଏହି ଗ୍ରନ୍ଥ ବେଦର ଶ୍ଳୋକାର୍ଥ ନ ହୋଇ ଯଦି ପ୍ରଧାନଆଚାର୍ଯ୍ୟଙ୍କର ସ୍ୱରଚିତ ହୁଅନ୍ତା ତାହାହେଲେ ସୁଦ୍ଧା ସେହିପରି ଆଦର କରିବାକୁ କୁଣ୍ଠିତ ହୁଅନ୍ତୁ ନାହିଁ । ପୁଣି ତହିଁ ସଙ୍ଗେ ସଙ୍ଗେ ଏକଥା ମଧ ସ୍ୱୀକାର କରୁଅଛୁଁ କି ଲେଖକ ତାହାଙ୍କ ଗ୍ରନ୍ଥରୁ ଯଦି କିଛି ଭ୍ରମ ଦେଖାଇ ଦିଅନ୍ତି ତାହା ହେଲେ ଆମ୍ଭେମାନେ ତାହାକୁ ସଂଶୋଧନ କରିବାକୁ ଓ ତତ୍ପରେ ଗ୍ରହଣୋପଯୋଗୀ ହେଲେ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛୁଁ ।

କିନ୍ତୁ ବେଦର ଅର୍ଥ କପଟଭାବରେ କରାଯାଇଅଛି ବୋଲି ଲେଖକଙ୍କୁ ଏକସ୍ଥାନରେ ଲେଖିବାକୁ ଦେଖି ଅତ୍ୟନ୍ତ ଦୁଃଖିତ ହେଲୁଁ । ଅବଶ୍ୟ ମହର୍ଷିଙ୍କ ଲିଖିତ ଗ୍ରନ୍ଥର କୌଣସି ସ୍ଥାନରେ ଭ୍ରମ ଥାଇପାରେ ସତ୍ୟ, ଏହା ମୁଁ ପୂର୍ବରୁ ସ୍ୱୀକାର କରିଅଛି । କିନ୍ତୁ ସେ ଯେ କପଟଭାବରେ ଅର୍ଥ କରି ଅଜ୍ଞମାନଙ୍କୁ ଭୁଲାଇ ବ୍ରାହ୍ମ କରିବା ସକାଶେ ଏହି ଗ୍ରନ୍ଥ ପ୍ରକାଶ କରିଅଛନ୍ତି , ଏହା ବିଶ୍ୱାସଯୋଗ୍ୟ ହେଉ ନାହିଁ । ଗତ ଦୁଇବର୍ଷ ପୂର୍ବେ ଯେତେବେଳେ ପ୍ରଧାନ ଆଚାର୍ଯ୍ୟମହାଶୟ ହିମାଳୟରୁ ଆସି ଏକଦିନ କଲିକତା ସାଧାରଣ ବ୍ରାହ୍ମସମାଜର ଉପାସନାଳୟରେ ଉପାସନା କରିଥିଲେ,ସେହିଦିନ ମୁଁ ସ୍ୱଚକ୍ଷୁରେ ଦେଖିଅଛି ଶତ ଶତ ହିନ୍ଦୁ ତାହାଙ୍କୁ ସମ୍ମାନ କରିବା ନିମନ୍ତେ ଅଗ୍ରସର ହୋଇଥିଲେ । ସେ ଯେ କେବଳ ବ୍ରାହ୍ମମାନଙ୍କନିକଟରେ ମାନ୍ୟ ଏମନ୍ତ ନୁହେ କିନ୍ତୁ ଶତ ଶତ ଗଣ୍ୟ ମାନ୍ୟ ହିନ୍ଦୁଙ୍କନିକଟରେ ମଧ ପୂଜନୀୟ ବ୍ୟକ୍ତି । ଯେଉଁ ବ୍ୟକ୍ତି ଏତେଦୂର ଉଚ୍ଚଆସନରେ ପ୍ରତିଷ୍ଠିତ, ତାହାଙ୍କ ପ୍ରତି ହଠାତ୍ ଏମନ୍ତ ଅପ୍ରିୟ କଠୋରବାକ୍ୟ ପ୍ରୟୋଗ କରିବା କେତେଦୂର ସଙ୍ଗତ ହୋଇଅଛି ଲେଖକ ଥରେ ଧୀରଭାବରେ ଚିନ୍ତା କରି ଦେଖିବେ, ମୋହର ଏହିମାତ୍ର ନିବେଦନ ।

କ୍ରମଶଃ

ଶ୍ରୀ ଲଳିତମୋହନ ଚକ୍ରବର୍ତ୍ତୀ
କଟକ

ଭା୨୧ଗ,ସଂ୫୧ଖ୍ୟା, ୨୫/୧୨/୧୮୮୬

# ୧୮୮୭

## କଟକଟାଉନସ୍କୁଲ ।

ଏହି ବିଦ୍ୟାଳୟ ବାବୁ ମଧୁସୂଦନ ରାଓ ଡେପୁଟିଇନ୍‌ସ୍ପେକ୍ଟରଙ୍କ ଯତ୍ନରେ ସ୍ଥାପିତ ହୋଇ ଇଂରାଜ-ମଧ୍ୟମଶ୍ରେଣୀରେ ପରିଣତ ହୋଇଅଛି । ସରକାରରୁ ମାସି ଟ୩୦ଙ୍କା ସାହାଯ୍ୟ ମିଳଇ ଏବଂ ଏଥିର କାର୍ଯ୍ୟ ଯେ ଅତି ସୁନ୍ଦରରୂପେ ଚାଲୁଅଛି ବାର୍ଷିକପରୀକ୍ଷାର ପ୍ରଶଂସନୀୟ ଫଳରୁ ତାହା ଉତ୍ତମରୂପେ ଜଣାଯାଉଅଛି । ପୂର୍ବେ ଏ ବିଦ୍ୟାଳୟର ନିୟମ ସମସ୍ତ ଏ ପ୍ରଦେଶର ସାଧାରଣବିଦ୍ୟାଳୟ ପରି ଥିଲା କିନ୍ତୁ ଅଳ୍ପକାଳ ହେଲା ବ୍ରାହ୍ମଉପାସନା ଶିକ୍ଷା ଦେବାର ନିୟମ ହୋଇଅଛି । ପ୍ରଥମେ କିଛିକାଳ ସ୍କୁଲ ଭାଙ୍ଗିଲାମାତ୍ରକେ ଛାତ୍ରମାନେ ଘରକୁ ନ ଯାଇ ଉପାସନା କରୁଥିଲେ ମାତ୍ର ସେ ସମୟ ସୁବିଧାଜନକ ନ ହେବାରୁ ସମ୍ପ୍ରତି ଘ ୧ ୦୨ ଣ୍ଟାରେ ସ୍କୁଲ ଫିଟିବା ମାତ୍ରକେ ଏକଘଣ୍ଟା ଉପାସନା ଓ ତହିଁ ଉତ୍ତାରୁ ଶିକ୍ଷାକାର୍ଯ୍ୟ ଆରମ୍ଭ ହୁଅଇ । ଉପାସନାରେ କେହି ଛାତ୍ର ଯୋଗ ନ ଦେଲେ ତାହାକୁ ଶାସ୍ତି ଦିଆ ଯାଇଥିଲା କିନ୍ତୁ ଇଦାନୀଂ ସେପରି ବଳାତ୍କାର ନିୟମରହିତ ହୋଇ ଛାତ୍ରଙ୍କର ଇଚ୍ଛାଧୀନ ହୋଇଅଛି । ଫଳତଃ ଯେତେବେଳେ ଶିକ୍ଷକମାନେ ଉପାସନା କରାଇବେ ତେତେବେଳେ ଛାତ୍ରମାନେ ଉଦାସୀନ ରହିବେ ଏପରି ସମ୍ଭବ ନୁହଇ । ଏହିରୂପେ ଟାଉନସ୍କୁଲଟି ବ୍ରାହ୍ମବିଦ୍ୟାଳୟରେ ପ୍ରବର୍ତ୍ତିତ ହେବାରୁ ଦୁଇ ତିନିଜଣ ପତ୍ରପ୍ରେରକ ଆଶ୍ଚର୍ଯ୍ୟ ଦୁଃଖିତ ହୋଇଅଛନ୍ତି । ସେମାନଙ୍କ ମତରେ ସରକାରୀ ସାହାଯ୍ୟକୃତ ବିଦ୍ୟାଳୟରେ ଧର୍ମ ବିଶେଷର ଶିକ୍ଷା ଦେବା ପୁଣି ହିନ୍ଦୁମାନଙ୍କୁ ବ୍ରାହ୍ମମତରେ ଉପାସନା କରିବାକୁ ବାଧ୍ୟ କରିବା ଅନୁଚିତ ଅଟଇ ଏବଂ ଏ ନିୟମ ରହିତ କରାଇବା ଉଦ୍ଦେଶରେ କର୍ତ୍ତୃପକ୍ଷଙ୍କୁ ଜଣାଇବା କାରଣ ଆମ୍ଭମାନଙ୍କୁ ଅନୁରୋଧ କରିଅଛନ୍ତି । ଏଥକୁ ଆମ୍ଭେମାନେ ବିବେଚନା କରୁଁ କି ଯେସ୍ଥଳେ ଏ ବିଦ୍ୟାଳୟର ସ୍ଥାପନକର୍ତ୍ତା ଓ ତତ୍ତ୍ୱାବଧାରକ ଏସ୍ଥାନର ଜଣେ ପ୍ରଧାନ ବ୍ରାହ୍ମ ଓ ଉତ୍କଳ ବ୍ରାହ୍ମସମାଜର ଉପାଚାର୍ଯ୍ୟ ସେସ୍ଥଳେ ଏହା ବ୍ରହ୍ମବିଦ୍ୟାଳୟରେ ପରିଣତ ହେବା ବିଚିତ୍ର ନୁହଇ ଆଉ ଯେସ୍ଥଳେ ସରକାର ଖ୍ରୀଷ୍ଟିୟାନ ଓ ମୁସଲମାନ ବିଦ୍ୟାଳୟକୁ ସାହାଯ୍ୟ ଦେଉଅଛନ୍ତି ସେ ସ୍ଥଳେ ବ୍ରାହ୍ମବିଦ୍ୟାଳୟକୁ ସାହାଯ୍ୟ ଦେବା କିଛି ଅନ୍ୟାୟ ନୁହଇ । ଲୋକମାନେ ଇଚ୍ଛାନୁସାରେ ଆପଣାର ପିଲାମାନଙ୍କୁ କୌଣସି ଧର୍ମଶିକ୍ଷା ଦେଇ ପାରନ୍ତି । ସରକାରଙ୍କର ତହିଁରେ ଆପତ୍ତି ନାହିଁ । ଲେଖାପଢ଼ି ଶିଖାଇବାର ବନ୍ଦୋବସ୍ତ ଯେଉଁଠାରେ ଅଛି ସରକାର ସେହିଠାରେ ସାହାଯ୍ୟ ଦେଉଅଛନ୍ତି ଧର୍ମସଙ୍ଗେ ତାହାଙ୍କର କିଛି ସମ୍ପର୍କ ନାହିଁ ତେବେ ସାଧାରଣ-ନୀତିବିରୁଦ୍ଧ ଶିକ୍ଷା କୌଣସିଠାରେ ଦିଆଗଲେ ସରକାରଙ୍କର ତହିଁରେ ଆପତ୍ତି ହୋଇପାରେ । ବିଶେଷ ଧର୍ମସମ୍ବନ୍ଧୀୟ ବିଦ୍ୟାଳୟକୁ ପିଲାଙ୍କୁ ପଠାଇ ନ ପଠାଇବାର ଅଧିକାର ଅଭିଭାବକଙ୍କ ହସ୍ତରେ ରହିଅଛି । ଯେଉଁଠାରେ ଧର୍ମ ନଷ୍ଟ ହେବାର ଶଙ୍କା କରିବେ ସେଠାକୁ ପିଲାଙ୍କୁ ପଠାଇ ନ ପାରନ୍ତି । କେବଳ ଏତିକି ବୋଲାଯାଇପାରେ ଯେ କୌଣସି ସାଧାରଣବିଦ୍ୟାଳୟକୁ ବିଶେଷ ଧର୍ମ-ବିଦ୍ୟାଳୟ କରିବା ପୂର୍ବେ ସର୍ବସାଧାରଣଙ୍କୁ ଅଥବା ଛାତ୍ରମାନଙ୍କ ଅଭିଭାବକମାନଙ୍କୁ ଜଣାଇ ଦେବାର ଉଚିତ ଏବଂ ବିଦ୍ୟାଳୟର ନୂତନ ବର୍ଷ ଆରମ୍ଭରେ କରିବାର ଭଲ ନୋହିଲେ ବର୍ଷମଧରେ ଅଥବା ପରୀକ୍ଷାର ଅଳ୍ପକାଳ-ପୂର୍ବରେ ଏପ୍ରକାର ପରିବର୍ତ୍ତନଦ୍ୱାରା ଛାତ୍ରମାନଙ୍କର କ୍ଷତି ହେବାର ସମ୍ଭାବନା । ଏପରି କିଛି ହୋଇଅଛି କି ନାହିଁ ପତ୍ରପ୍ରେରକମାନେ ଲେଖି ନାହାନ୍ତି ।

ପରିଶେଷରେ ଆମ୍ଭମାନଙ୍କର ବକ୍ତବ୍ୟ ଏହି କି ଯଦ୍ୟପି କି ବିଶେଷ ଧର୍ମସମ୍ବନ୍ଧୀୟ ବିଦ୍ୟାଳୟରେ ଉକ୍ତ ଧର୍ମବିଷୟକ ଗ୍ରନ୍ଥ ପଠିତ ବା ଉପଦେଶ ପ୍ରଦତ୍ତ ହୁଅଇ ମାତ୍ର କୌଣସିଠାରେ ଉପାସନା ଶିକ୍ଷା ଦିଆଯାଉଥିବାର ଆମ୍ଭମାନଙ୍କ ଜ୍ଞାତସାରରେ ଆସି ନାହିଁ । ଏରୂପ ସ୍ପଷ୍ଟଭାବରେ ଯେଉଁଠାରେ ଶିକ୍ଷା ଦିଆଯାଏ ସେଠାରେ

ଦିଆଯାଉ ଥିବା ସରକାରୀ ସାହାଯ୍ୟ ଉକ୍ତ ଧର୍ମର ଉତ୍ସାହ ନିମିତ୍ତ ଦିଆ ଯାଉଥିବାର କାହିଁକି ବୋଲା ନ ଯିବ ଆମ୍ଭେମାନେ ସ୍ଥିର କରିପାରୁ ନାହୁଁ ।

*ଭା ୨୨ଗ, ସଂ ୪ ଖ୍ୟା, ୧୫।୧। ୧୮୮୭*

## [ଓଡିୟା ଡେପୁଟିକଲେକ୍ଟର]

ଗତବର୍ଷ ପରି ଏ ବର୍ଷ ଜଣେ ଓଡିୟାକୁ ଡେପୁଟିକଲେକ୍ଟରୀ କର୍ମ ଦେବାକୁ ଗବର୍ଣ୍ଣମେଣ୍ଟ ସମ୍ମତ ହେବାରୁ ଆମ୍ଭମାନଙ୍କ କମିଶ୍ନର ସାହେବ ବାବୁ ଶାମସନ ରାଉତ ବାବୁ ସୁଦାମଚନ୍ଦ୍ର ନାୟକ ଏବଂ ବାବୁ ଗୋପାଳବଲ୍ଲଭ ଦାସଙ୍କର ନାମ ପଠାଇଥିଲେ । ତହିଁ ମଧ୍ୟରୁ ଶେଷଲିଖିତ ବ୍ୟକ୍ତିଙ୍କି ଗବର୍ଣ୍ଣମେଣ୍ଟ ନିଯୋଗ କରିଅଛନ୍ତି । ସର ରିଭର୍ଷ ଟାମସନ ଦୁଇବର୍ଷରେ ଦୁଇଜଣ ଉତ୍କଳବାସିଙ୍କି ଡେପୁଟିକଲେକ୍ଟରୀ ପ୍ରଦାନ କରି ଓଡିଶାବାସିଙ୍କର ବିଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ପୁଣି ଗତଥର ଜଣେ ଚାକରିୟା ଏବଂ ଏଥର ଜଣେ ସୁଶିକ୍ଷିତ ଉଚ୍ଚ ଉପାଧିଧାରୀ ନୂତନ ଲୋକଙ୍କୁ ତାହା ଦାନ କରି ବିଶେଷ ସୁବିଚାର କରିଅଛନ୍ତି । ବୋଲିବା ବାହୁଲ୍ୟ ଯେ ଗୋପାଳବାବୁଙ୍କ ନିଯୋଗରେ ସମସ୍ତେ ଆନନ୍ଦିତ ହୋଇଅଛନ୍ତି ।

*ଭା ୨୨ଗ,ସଂ୪ଖ୍ୟା,୨୨।୧। ୧୮୮୭*

## ସତୀ ନାଟକ ।

ଓଡିଶାରେ ଆଜିକାଲି ନୂତନ ପୁସ୍ତକମଧରେ କେବଳ ବିଦ୍ୟାଳୟର ସାମାନ୍ୟ ପାଠ-ପୁସ୍ତକ ବାହାରୁ-ଥିବା ଏବଂ ତାହା ପୁଣି ଶିକ୍ଷାବିଭାଗର କାର୍ଯ୍ୟକୌଶଳକ୍ରମେ ବିଶେଷବ୍ୟକ୍ତିଙ୍କ ହାତରେ ରହିବାରୁ ଭଲ ଭଲ ଲେଖକମାନେ ହତାଶହୋଇ ମୌନାବଲମ୍ବନ କରିଥିବାସ୍ଥଳେ ଖଣ୍ଡିଏ ସାଧାରଣ ପାଠୋପଯୋଗୀ ନୂତନ ପୁସ୍ତକ ବାହାରିବାର ଦେଖିଲେ ମାନ କେମନ୍ତ ଆନନ୍ଦରେ ପରିପୂର୍ଣ୍ଣ ହୁଅଇ ତାହା କହିହେଉ ନାହି । ବିଶେଷତ ଏ ପ୍ରଦେଶର ଅବସ୍ଥା ଏରୂପ ଯେ ପ୍ରଚଳିତ ଛାନ୍ଦବନ୍ଦି ପୁସ୍ତକ ଛଡା ଅନ୍ୟକୌଣସି ନୂତନ ପୁସ୍ତକ ସର୍ବସାଧାରଣଙ୍କର ରୁଚିକର ହୋଇ ନାହି । ନାଟକର କଥାତ ଆହୁରି ଶୋଚନୀୟ । ଗତ ଦଶନ୍ଧିରେ ଯେଉଁ ଦୁଇଖଣ୍ଡ ନାଟକ ଓଡିୟାରେ ପ୍ରକାଶିତ ହୋଇଅଛି ସେ ସବୁ ବିକ୍ରୟ ଅଭାବରୁ ଗୋଦାମରେ ପଡିରହି କୀଟର କ୍ରୀଡାଭୂମି ହୋଇଅଛି । ଏତେପ୍ରକାର ବାଧା ବିଘ୍ନକୁ ଉପେକ୍ଷି ବାବୁ ଜଗନ୍ମୋହନ ଲାଲା ସତୀନାଟକ ନାମରେ ଖଣ୍ଡେ ପୁସ୍ତକ ବହୁ ପରିଶ୍ରମ ଓ ବ୍ୟୟସ୍ୱୀକାରପୂର୍ବକ ରଚନା ଓ ପ୍ରକାଶ କରିବାରେ ସାଧାରଣଙ୍କ କୃତଜ୍ଞତାର ଭାଜନ ହୋଇଅଛନ୍ତି ସନ୍ଦେହ ନାହି । କାରଣ ଲାଭର ଆଶା ନ ଥିବାସ୍ଥଳେ କେବଳ ସ୍ୱଦେଶର ହିତୋଦ୍ଦେଶରେ ସେ କାର୍ଯ୍ୟରେ ବ୍ରତୀ ହେବା ବିନା ଅନ୍ୟକିଛି ବୋଲାଯାଇ ନ ପାରେ ଓ ଏ ପୁସ୍ତକର ସ୍ୱଳ୍ପମୂଲ୍ୟ ଏବଂ ତହିଁରେ ରଞ୍ଜିତ ହୋଇଥିବା ସୁନୀତିମାନ ଏହି ଉଦ୍ଦେଶର ଯଥେଷ୍ଟ ସାକ୍ଷ୍ୟ ଦେଉଅଛି ।

କୌଣସି ପୌରାଣିକ ବା ଐତିହାସିକ ବିଷୟ ଅବଲମ୍ବନପୂର୍ବକ ଏଗ୍ରନ୍ଥ ରଚିତ ହୋଇ ନାହି । ଏଥିରେ ବର୍ଣ୍ଣିତ ହୋଇଥିବା ବିଷୟଟି ସମ୍ପୂର୍ଣ୍ଣ ନୂତନ ଏବଂ ଗ୍ରନ୍ଥକାର ତାହା ସଂକ୍ଷେପରେ ସ୍ଥାନାନ୍ତରେ ପ୍ରକାଶିତ ବିଜ୍ଞାପନରେ ଲେଖିଅଛନ୍ତି ପାଠକମାନେ ତହିଁରୁ ସମସ୍ତ ଜାଣିପାରିବେ ।

ନାଟକରଚନା- ବିଷୟରେ ଗ୍ରନ୍ଥକାର ନିତାନ୍ତ ନୂତନ ନୁହନ୍ତି । ଏଥିପୂର୍ବେ ସେ ବାବାଜି ନାଟକ ନାମରେ ଆଉ ଖଣ୍ଡିଏ ପୁସ୍ତକ ରଚନା କରିଥିଲେ । ଅତଏବ ସତୀନାଟକ ଦ୍ୱିତୀୟପ୍ରଯତ୍ନର ଫଳସ୍ୱରୂପ ଏବଂ ଏଥର ସେ ପୂର୍ବଠାରୁ ବିସ୍ତର ପରିମାଣରେ ସଫଳ ହୋଇଅଛନ୍ତି ପାଠକମାନେ ଥରେ ଏ ଗ୍ରନ୍ଥକୁ ପାଠକଲେ ଜାଣିପାରିବେ । ବାସ୍ତବରେ ଏହାକୁ ଖଣ୍ଡିଏ ଉତ୍କୃଷ୍ଟ ନାଟକ ବୋଲିବାକୁ ହେବ ।

ଏ ଗ୍ରନ୍ଥର ଭାଷା ପ୍ରାଞ୍ଜଳ ସର୍ବଜନର ସୁଖବୋଧ୍ୟ ହୋଇଅଛି ଓ ସାଧୁଶବ୍ଦରେ ପରିଚିତ ହୋଇଥିବାରୁ ବିଦ୍ୱଜ୍ଜନମାନଙ୍କର ସୁଖ ପାଠ୍ୟ ଓ ରଚିଦାୟକ ହୋଇଅଛି, ଇତର ଲୋକଙ୍କର ଉକ୍ତି ମଧ ସୁନ୍ଦର ହୋଇଅଛି ଓ ଏଠା ଚତୁଃପାର୍ଶ୍ୱବର୍ତ୍ତୀ ପ୍ରଦେଶରେ ଯେଉଁ ଗ୍ରାମ୍ୟଭାଷା ପ୍ରଚଳିତ ଅବିକଳ ତଦ୍ରୂପ ।

ପଦ୍ୟରଚନାର ଚାତୁରୀ ମଧ ଊଣା ନୁହେ । ତହିଁର ଛନ୍ଦସବୁ ଶୁଦ୍ଧସମଯୋଚିତ । ଗ୍ରନ୍ଥବାହୁଲ୍ୟ କରିବା-ନିମନ୍ତେ କେତେକ ବ୍ୟକ୍ତି ଅପ୍ରାସଙ୍ଗିକ ବୃତ୍ତାନ୍ତ ଓ ପଦ୍ୟାବଳୀରେ ତାହାର କଳେବର ପୂର୍ଣ୍ଣକରନ୍ତି ଏଥିରୁ ତାହାର ଅଭାବ ସୁନ୍ଦରରୂପେ ପରିହୃତ ହୋଇଅଛି ।

ପୂର୍ବାପର ସାମଞ୍ଜସ୍ୟ ଗ୍ରନ୍ଥର ଏକ ମହଦ୍‌ଗୁଣ ଦୁଇଏକସ୍ଥଳରେ ସାମାନ୍ୟ ଅମେଳ ଦୃଶ୍ୟ ହୁଏ । କୃତବିଦ୍ୟବ୍ୟକ୍ତି ପ୍ରାୟ ରାଜା ଗଦ୍ୟ ପଦ୍ୟରେ କଥୋପକଥନ କରୁଅଛନ୍ତି ଅଥଚ ରାଣୀମାନେ କହନ୍ତି ଯେ ତାଙ୍କର ପଢାଶୁଣା କିଛି ନାହି । ଗ୍ରନ୍ଥକର୍ତ୍ତା ଯେବେ ଜଗିକରି ଲେଖିଥାନ୍ତେ ଯେ ଧର୍ମ୍ମନୈତିକ ଉପଦେଶମାନ ଲାଭ କରି ନାହାନ୍ତି ତେବେ ଅବା ହୋଇଥାନ୍ତା । ପୋଖରିପାଣି ବସିବାର ନାମଟାସୁଦ୍ଧା ଦୃଶ୍ୟ କାବ୍ୟରେ ପରିବର୍ଜ୍ଜନୀୟ । ମୁଖ ପ୍ରକ୍ଷାଳନରୂପ ଛଳନା ଯଥେଷ୍ଟ ହୋଇଥାନ୍ତା ।

ଦେଶ, କାଳ ଓ କ୍ରିୟାର ଐକ୍ୟ ନାଟକର ପ୍ରଧାନ ଗୁଣ । ତାହାର ସ୍ୱଭାବ ଏଥିରେ ସମ୍ଭବ ଅନୁସାରେ ଯଥେଷ୍ଟ ହୋଇଅଛି । ଅଭିନୟର ଦେଶ ଏକ ନୋହିଲେ ହେଁ ସ୍ଥାନସବୁ ପରସ୍ପର ନିକଟବର୍ତ୍ତୀ ହୋଇଅଛି । କାଳର ପରିଣାମ ଏକଦିନ ନୋହିଲେ ହେଁ ସମୁଦାୟ କ୍ରିୟା ଅଳ୍ପ ସମୟମଧରେ ପରିସମାପ୍ତ ହୋଇଅଛି । ଏବଂ ନାଟକର ପ୍ରଧାନ ଚରିତକୁ ବିସ୍ମରଣ କରାଇଦେବାଭଳି ତଦଧୀନ ଚରିତ ଅର୍ଥାତ୍ କ୍ରିୟାର ସାଂଖ୍ୟୀୟ ଆତିଶଯ୍ୟ ଓ ଚିତ୍ତାକର୍ଷଣୀୟତାର ଗୁରୁତ୍ୱ ଲକ୍ଷିତ ହୁଅଇ ନାହି ।

ନାଟକର ଆଉ ମହତ୍ ଉଦ୍ଦେଶ୍ୟ ଏହି ଯେ ସମାଜର ଦୋଷ ସଂଶୋଧନ । ସତୀନାଟକ ରଚୟିତାଙ୍କର ମଧ ସେହି ଉଦ୍ଦେଶ୍ୟ । ଗଡଜାତର ଅତ୍ୟାଚାର ତହିଁରେ ଯାହା ପ୍ରକଟିତ ହୋଇଅଛି ତାହା ଏକସମୟରେ ସମ୍ପୂର୍ଣ୍ଣ ଥିଲା ବର୍ତ୍ତମାନ ତାହାର ଅନେକ ହ୍ରାସ ହୋଇଅଛି । ହେଲେହେଁ ଏପରି ଦୁର୍ଘଟନା ଘଟିବାର ସମ୍ପୂର୍ଣ୍ଣ ସୁବିଧା ରହିଅଛି । ଏ ନାଟକଖଣ୍ଡି ସେହି ଅତ୍ୟାଚାରର ଗୋଟିଏ ମୂର୍ତ୍ତିମାନ୍ ଐତିହାସିକ ନିଦର୍ଶନ ହୋଇ ରହିଲା ।

ଗ୍ରନ୍ଥର ଅଂଶମାନ ଉଦ୍ଧାରକରି ସମାଲୋଚନା କରିବା ନିମନ୍ତେ ଆମ୍ଭର ସ୍ଥାନ ନାହି କି ସମୟ ନାହି ମଧ ପ୍ରୟୋଜନ ନାହି ଆମ୍ଭେମାନେ ସର୍ବ ସାଧାରଣଙ୍କୁ ଅନୁରୋଧ କରୁଅଛୁଁ ଯେ ଏହାକୁ ଥରେ ପାଠକରି ଗ୍ରନ୍ଥକାରଙ୍କ ଶ୍ରମ ସଫଳ କରନ୍ତୁ ।

*ଭା୨୨ଗ,ସଂ୫ଖ୍ୟା, ୨୯।୧।୧୮୮୭*

## ପ୍ରେରିତ ପତ୍ର

## [ଭାଷାର ବ୍ୟବହାର]

ମହାଶୟ

ଗତମାସ ତା ୨୯ ରିଖ ଦୀପିକାରେ ଜଣେ ପତ୍ରପ୍ରେରକ ଲେଖିଥିଲେ କି "ଅଛନ୍ତି" ପରିବର୍ତ୍ତେ "ଛନ୍ତି" କିପାଁ ବ୍ୟବହାର ନୋହିବ ଏହାର ନିମ୍ନଲିଖିତ କାରଣ ଅନୁଗ୍ରହକରି ପାଠକମାନଙ୍କୁ ଜଣାଇଲେ ଏହାଯୁକ୍ତ କି ଅଯୁକ୍ତ ସେମାନେ ବିଚାର କରିବେ ।

### ଭାଷା ଦୁଇପ୍ରକାର କଥିତ ଓ ଲିଖିତ ।

ଏଦୁଇ ଭାଷାର ବିଭିନ୍ନତା ନ ରହିଲେ ଗୋଟିଏ ଅନ୍ୟଟିଠାରୁ ଆଦରଣୀୟ ହେବ ନାହିଁ । ଏହେତୁ ଅଛୁଁ, ଅଛ ଇତ୍ୟାଦି ଲିଖିତ ଭାଷାରେ ଓ ଛୁଁ, ଛ ଇତ୍ୟାଦି କଥିତ ଭାଷାରେ ପ୍ରୟୋଗ ହୁଅଇ ; ପୁଣି ଯାହା ଅଳ୍ପସମୟରେ ଓ ଅଳ୍ପ ପରିଶ୍ରମରେ ସାଧିତ ହୁଅଇ ତାହା ସୁନ୍ଦର ହୁଅଇ ନାହିଁ,ଏହି କାରଣରୁ ଛୁଁ, ଛ ଅପେକ୍ଷା ଅଛୁଁ, ଅଛ ଅଧିକ ସୁଶ୍ରାବ୍ୟ । କେବଳ ଖଣ୍ଡେ ଧୂତିପିନ୍ଧି ଆମ୍ଭେମାନେ ଘରେ ରହିପାରୁ ମାତ୍ର ବାହାରକୁ ବାହାରିବା ସମୟରେ ଦୁଇଖଣ୍ଡ ଅଥବା ଅଧିକ ବସ୍ତ୍ର ଆବଶ୍ୟକ ହୁଏ ଏହି ନିମନ୍ତେ କଥିତଭାଷାରେ ଛୁଁ, ଛ ଓ ଲିଖିତଭାଷାରେ ଅଛୁଁ, ଅଛ ବ୍ୟବହାର ହୋଇ ଆସୁଅଛି । କାରଣ କି କଥିତଭାଷା ଘରେ ରହିଲା ପରି ପରସ୍ପରେ ବ୍ୟବହୃତ ହୁଅଇ ଓ ଏହା ମଧ ଅଳ୍ପ ସମୟରେ ବିସ୍ମରଣ ହୁଅଇ ମାତ୍ର ଲିଖିତଭାଷା ଏପରି ନୁହଇ । ଏହା ବହୁକାଳବ୍ୟାପି

ସମାଜରେ ଅବସ୍ଥିତ କରଇ । ମାତ୍ର ଲାଭ ସାଧାରଣଙ୍କ ଦୃଷ୍ଟିରେ ସାମାନ୍ୟ ବୋଲି କେହି ଗ୍ରାହ୍ୟ କରନ୍ତି ନାହିଁ ମାତ୍ର ଅକ୍ଷର ଲାଭ ଅତ୍ୟନ୍ତ ଅଧିକ (ସର୍ବମତ୍ୟନ୍ତ ଗର୍ହିତଂ) ସୁତରାଂ ମାତ୍ରା ଲାଭର ଆନନ୍ଦ ଅପେକ୍ଷା ଅଧିକରେ ଆନନ୍ଦ ଅନୁଭବ କରିବୁଁ ସନ୍ଦେହ ନାହିଁ କିନ୍ତୁ ସାଧାରଣଙ୍କ ମନରେ ଉକ୍ତ ଆନନ୍ଦ କଦାପି ଉଦ୍ଭବ ହେବ ନାହିଁ । କଥିତ ଭାଷା ଆଦରଣୀୟ ଅଟେ ସୁତରାଂ ଯେଉଁଲୋକ ଆମ୍ଭମାନଙ୍କର ପ୍ରିୟ ତାହାଠାରେ ଉକ୍ତ ଭାଷା ପ୍ରୟୋଗ କଲେ କୌଣସି କ୍ଷତି ନାହିଁ ବରଂ ସୁଖର ବିଷୟ ଅଟେ । ମାତ୍ର ଜଗତର ସମସ୍ତ ଲୋକ ଆମ୍ଭମାନଙ୍କର ପ୍ରିୟ ନୁହନ୍ତି । କଥିତଭାଷା ପ୍ରୟୋଗକରି ସେମାନଙ୍କଠାରେ କାହୁଁ ପ୍ରଶଂସନୀୟ ହେବା । ସାଧାରଣର ପ୍ରଶଂସା ଲାଭ କରିବାକୁ ଯେ ଆଶାକରେ ସେ ଭାଷାକୁ ଉତ୍ତମରୂପେ ସଜ୍ଜିତ କରିବାକୁ ସାଧ୍ୟମତେ ଚେଷ୍ଟା କରେ; ଏହି ଭାଷାକୁ ଲିଖିତଭାଷା ବୋଲି ଓ ଏଥିରେ ଅଛନ୍ତି, ଅଛୁଁ ଇତ୍ୟାଦି ପ୍ରୟୋଗ ହୁଅଇ ।

କେନ୍ଦ୍ରାପଡା
୫-୨-୮୭

ବଶମ୍ବଦ
ଶ୍ରୀ--------

*ଭା୨୨ଗ ,ସଂ୭ଖ୍ୟା,୧୨।୨।୧୮୮୭*

## ଏଠା ଶିକ୍ଷା ବିଭାଗ ଓ ସଂସ୍କାରକ ।

ଏ ନଗରରେ ପ୍ରଚାରିତ ନବସଂବାଦପ୍ରତି ଏଠା ଶିକ୍ଷାବିଭାଗର ଅତିରିକ୍ତ ସହାନୁଭୂତି ଥିବା ବରଂ ଏଜିଲ୍ଲାର କେତେକ ଇନସ୍ପେକ୍‌ଟିଂ ପଣ୍ଡିତ ଓ ସବ୍ ଇନସ୍ପେକ୍ଟର ଗ୍ରାହକ ସଂଗ୍ରହ ଠାରୁ ଟଙ୍କା କଉଡି ଉସୁଲ ପର୍ଯ୍ୟନ୍ତ କାର୍ଯ୍ୟଦ୍ୱାରା ଉକ୍ତ ପତ୍ରିକାର ସାହାଯ୍ୟ କରିବା କଥା ନାନାଯୁକ୍ତି ଓ ପ୍ରମାଣଦ୍ୱାରା ସଂସ୍କାରକ ପ୍ରତିପନ୍ନ କରି ଲେଖିଅଛନ୍ତି କି "ନବସଂବାଦର" ସମ୍ପାଦକ ଓ ପ୍ରକାଶକ "ସାଧୁବାବୁ ଓ ଭୂପତି ବାବୁ କେବଳ ୨ ଗୋଟି ବିଦ୍ୟାଳୟର ଶିକ୍ଷକ ହୋଇ ଯଦ୍ୟପି ସମଗ୍ର କଟକ ଜିଲ୍ଲାର ଶିକ୍ଷକ ଇନସ୍ପେକ୍‌ଟିଂ ପଣ୍ଡିତ ଓ ସ୍କୁଲ ସବ୍ ଇନସ୍ପେକ୍ଟରମାନଙ୍କୁ ନିଜର କରଗତ କଲେ ଏହା କି ଅଦ୍ଭୁତ ବିଦ୍ୟାର ଫଳ ନୁହେ ? ଏହା କି ଉତ୍କଳଦେଶ ପକ୍ଷରେ ନବସଂବାଦ ନୁହେ ? ସହଯୋଗୀ ଦୀପିକା ଓ ସମ୍ବାଦବାହିକା ଏପରି ସଂବାଦ କି କେବେ ଶୁଣିଅଛନ୍ତି ? ଆମ୍ଭେମାନେ ଶ୍ରବଣ ଡେରି ଡେରି ଏହି ନବସମ୍ବାଦମାନ ସଂଗ୍ରହ କରିଅଛୁଁ ।" ଏଥକୁ ଆମ୍ଭମାନଙ୍କର ବକ୍ତବ୍ୟ ଯେ ଦୀପିକା ପକ୍ଷରେ ସ୍ଥାନୀୟ ଶିକ୍ଷାବିଭାଗର ଏପ୍ରକାର କାଣ୍ଡମାନ ନବସଂବାଦ ନୁହଇ । ଦୀପିକା ଏ ବିଭାଗର ଦୁର୍ଣ୍ଣୀତିମାନ ସର୍ବସାଧାରଣଙ୍କୁ ଜଣାଇବାରେ ସାଧ୍ୟମତ ଚେଷ୍ଟା କରିଅଛନ୍ତି ଏବଂ ତହିଁପାଇ ଅନ୍ୟର କଥା ତେଣିକି ଥାଉ ଏହି ସଂସ୍କାରକଙ୍କଠାରୁ କେତେ ଗାଳି ଓ କଟୂକ୍ତି ପୁରସ୍କାର ପାଇଅଛନ୍ତି । ବର୍ତ୍ତମାନ ସଂସ୍କାରକଙ୍କ ଭ୍ରମ ଭାଙ୍ଗିଲା ଏବଂ ସେ ଶିକ୍ଷାବିଭାଗର କେତେକ ଅନୀତି ବୁଝିପାରିବାକୁ ସମର୍ଥ ହେଲେ ଏଥି ପାଇଁ ବୋଲାଯିବ ଯେ ନବସଂବାଦ ତାହାଙ୍କ ପକ୍ଷରେ ପ୍ରକୃତ ନବସମ୍ବାଦ ଅଟଇ । ଏ ନବସମ୍ବାଦ ସେ ପ୍ରାପ୍ତ ହେବାରୁ ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ । ମାତ୍ର ଭୟ ହେଉଅଛି ସେ ମଧ ଆମ୍ଭମାନଙ୍କ ପରି ଲେଖି ଲେଖି ଥକିବେ ଅଥଚ ଫଳ କିଛି ହେବ ନାହିଁ । ସରକାରୀ କାର୍ଯ୍ୟାଳୟମାନଙ୍କ ମଧରେ କେବଳ ବିଦ୍ୟାଳୟଟି ପବିତ୍ର ସ୍ଥାନ ଥିଲା । ସବୁ କଚେରୀର କାର୍ଯ୍ୟକାରକମାନେ କିଛ କିଛି ଉପରିଲାଭ କରୁ ଥିଲେ କେବଳ ଶିକ୍ଷା ବିଭାଗୀୟ ଲୋକଙ୍କର କୌଣସିମତେ ପଇସାଟିଏ ଲାଭ କରିବାର ଉପାୟ ନ ଥିଲା । କ୍ରମେ ଶିକ୍ଷା ବିଭାଗର କାର୍ଯ୍ୟକ୍ଷେତ୍ର ବିସ୍ତାର ହୋଇ କର୍ମଚାରିଙ୍କ ସଂଖ୍ୟା ବୃଦ୍ଧି ହେବା ଏବଂ ପ୍ରାଇମେରି ଶିକ୍ଷାନାମରେ ଅନେକ ଟଙ୍କା ସରକାର ବିଞ୍ଚିବା ଆରମ୍ଭ କରିବା ସଙ୍ଗେ ବୋଧ ହୁଅଇ ନିତ୍ୟ ନିର୍ବାହଦ୍ରବ୍ୟର ମୂଲ୍ୟ ବା କର୍ମଚାରିଙ୍କ ବାବୁଗିରି ବଢିବାରୁ କେହି କେହି ଲୋଭ ପରବଶ ହୋଇ ରୋଜଗାରର ଅନ୍ୟାୟ ଉପାୟ ବାହାର କଲେ ଏବଂ ଲାଭଜନକ ହେବାରୁ ଅନ୍ୟମାନେ ତହିଁରେ ଯୋଗ ଦେଲେ ଏବଂ ନୂତନ ଉପାୟମାନ ବାହାର କଲେ । ଏହି ଅଭ୍ୟାସ କ୍ରମଶଃ ଏତେ ବୃଦ୍ଧି ହୋଇଅଛି ଯେ ଆଉ ତହିଁରେ କିଛି ଦୋଷ ଅଛି ବୋଲି କେହି ବୁଝିପାରୁ ନାହାନ୍ତି । ତାହା ନ ହେଲେ ଯେଉଁମାନେ ଧର୍ମସ୍ଥାପନ ଓ ସୁନୀତି ଶିକ୍ଷାଦେବା ବିଷୟରେ

ଅତିଶୟ ବ୍ୟସ୍ତ ବୋଲି ସଂସାରରେ ପରିଚୟ ଦିଅନ୍ତି ସେମାନେ ଏପରି କାର୍ଯ୍ୟରେ ଲିପ୍ତ ହୁଅନ୍ତେ ନାହିଁ । ଶିକ୍ଷାବିଭାଗ ଆଦୌ ସୁନୀତି ଦେବାର ସ୍ଥାନ ତହିଁରେ ଏ ଜିଲ୍ଲାର ନିମ୍ନ ଓ ମଧ୍ୟମ ଶ୍ରେଣୀ ବିଦ୍ୟାଳୟ-ସମ୍ପର୍କୀୟ କର୍ମଚାରିଙ୍କ ମଧ୍ୟରେ ଅନେକ ଗୁଡିଏ ବ୍ରାହ୍ମ ରହିଥିବାରୁ ସୁନୀତି ଶିକ୍ଷାର ଅଧିକ ଉପାୟ ହୋଇଅଛି ବୋଲିବାକୁ ହେବ ଅଥଚ ଏହି ଜିଲ୍ଲାର ଛାତ୍ର ଓ ଶିକ୍ଷା ବିଭାଗୀୟ କର୍ମକାରକମାନେ ପୂର୍ବେ ଯେମନ୍ତ ଅଧିକ ପରିମାଣରେ ଶିକ୍ଷାବନ୍ଧୁ ନେଉଥିଲେ ବର୍ତ୍ତମାନ ସେହିପରି ନବସମ୍ବାଦ ନେଉଅଛନ୍ତି । ଅବଶ୍ୟ ବ୍ରାହ୍ମଧର୍ମ ସଙ୍ଗେ ଶିକ୍ଷାବିଭାଗର କିଛି ସମ୍ପର୍କ ନାହିଁ ମାତ୍ର ସତ୍ୟ ହେଉ ବା ନ ହେଉ କେତେକ ଲୋକଙ୍କଠାରୁ ସେପରି ଜନରବ ଶୁଣିଥିବାରୁ ଆମ୍ଭେମାନେ ତହିଁର ଉଲ୍ଲେଖ କଲୁଁ କି ଯାହାଙ୍କପ୍ରତି ତାହା ଖଟିବ ସେ ସାବଧାନ ହୋଇ ଚାଲିବେ ।

ଆମ୍ଭେମାନେ କିକଥା କହୁ କହୁ କେଉଁଆଡେ ବାହାରି ଆସିଲୁଁ । ଆମ୍ଭମାନଙ୍କର ବକ୍ତବ୍ୟ ଏହି କି ଏଠା ଶିକ୍ଷାବିଭାଗ ଛାପାଖାନାଠାରୁ ପୁସ୍ତକ ଓ ସମ୍ବାଦପତ୍ର ବିକ୍ରୟ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଅନାୟାସରେ କଲେ ଓ କ୍ରମାଗତ ତହିଁର ଗୁହାରି ହେଲେ ହେଁ ପ୍ରଧାନ କର୍ମଚାରିମାନେ ତହିଁର ପ୍ରତିକାର ନ କରି ବରଂ ନିୟମାବଳୀ ଦ୍ୱାରା କୁନୀତିର ସାହାଯ୍ୟ କଲେ ଏବଂ ଚକ୍ଷୁଲଜ୍ଜାବଶତଃ ବା ଉଦାସୀନତା ହେତୁ ଭଦ୍ରସମାଜ ବା ସଭା ସମିତି ତୁନି ହୋଇ ରହିଲେ । ସୁତରାଂ ଆଉ ଉପାୟ ନାହିଁ ।

*ଭା୨୨ଗ,ସଂ୧୭ଖ୍ୟା,୨୩।୪।୧୮୮୭*

## ପ୍ରେରିତପତ୍ର ।

## [ଭାଷା ପାଇଁ ବୃତ୍ତି]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ ମାନ୍ୟବରେଷୁ ।

ମହାଶୟ !

ଏଠା ଶିକ୍ଷାବିଭାଗୀୟ ପ୍ରଭୁଙ୍କର ସ୍ୱେଚ୍ଛାଚାରିତା ବିଷୟ ଓଡିଶାର ପ୍ରାୟ ସମୁଦାୟ ସମ୍ବାଦପତ୍ରମାନଙ୍କରେ ଆନ୍ଦୋଳିତ ହେଉଥିଲେହେଁ ସେମାନଙ୍କର ତହିଁରେ ଭ୍ରୂକ୍ଷେପ ନାହିଁ । ପୁଣି ଗୋଟିଏ ବିଷୟ ଅତି ନିକଟସ୍ଥ ହୋଇଅଛି । ଓଡିୟା ଅପରପ୍ରାଇମେରୀ ପରୀକ୍ଷାର ଫଳ ଅଳ୍ପଦିନରେ ବାହାରିବ । ସେଥିରେ ଏଠା ରେଭେନ୍‌ସା ବାଳିକା ବିଦ୍ୟାଳୟର ଦୁଇଗୋଟି ଛାତ୍ରୀ ପରୀକ୍ଷା ଦେଇଅଛନ୍ତି । ସେମାନଙ୍କର ଭାଷା ବଙ୍ଗଳା, ପ୍ରଶ୍ନ ଭିନ୍ନ, ପରୀକ୍ଷକ ମଧ୍ୟ ଭିନ୍ନ; କିନ୍ତୁ ସେମାନେ ଓଡିୟାଭାଷାରେ ପରୀକ୍ଷା ଦେଇଥିବା ବାଳକ ବାଳିକାଙ୍କ ହକରେ ଭାଗ ବସାଇ ପାରନ୍ତି ବି ନାହିଁ ଓ ନମ୍ବର ଅନୁସାରେ ସେମାନଙ୍କର ନାମ ଓଡିଆ ପିଲାଙ୍କ ସଙ୍ଗରେ ମିଶି ପାରେ କି ନାହିଁ, ଆପଣ ଏ ବିଷୟର ପ୍ରତ୍ୟୁତ୍ତର ଦେବେ । କାରଣ ଓଡିଶାରେ ଉକ୍ତ ପରୀକ୍ଷାରେ ଯେଉଁ ଗୋ ୨୦ଟି ବୃତ୍ତି ଗବର୍ଣ୍ଣମେଣ୍ଟ ମଞ୍ଜୁର କରିଅଛନ୍ତି ତାହା କେବଳ ଓଡିୟାଭାଷା ପାଇଁ ବୋଲି ଆମ୍ଭମାନଙ୍କର ଦୃଢବିଶ୍ୱାସ । ଯେବେ ବଙ୍ଗଭାଷାରେ ପରୀକ୍ଷା ଦେଲେ ଓଡିୟାଭାଷାର ତୁଲ୍ୟ ଗଣ୍ୟ ହୋଇ ପାରେ ତେବେ କଟକ ନର୍ମାଲ ସ୍କୁଲରୁ କାହିଁକି ବଙ୍ଗଳାଭାଷା ଉଠିଗଲା ? ଭରସା କରୁଁ ଜଏଣ୍ଟ ଇନ୍‌ସ୍ପେକ୍ଟର ମହାଶୟ ଲୋକଙ୍କ ଅନୁରୋଧ-ରକ୍ଷା ତ୍ୟାଗକରି ନିରପେକ୍ଷ ଭାବରେ କାର୍ଯ୍ୟ କରିବେ ।

ସମ୍ପାଦକ ମହାଶୟ ! ଆପଣ କହି ପାରନ୍ତି ପରୀକ୍ଷାର ଫଳ ପ୍ରକାଶ ନ ହେଉଣୁ ଏ ବିଷୟର ଚର୍ଚ୍ଚା କାହିଁ କି; ମାତ୍ର ଆମ୍ଭମାନଙ୍କର ଗୋଟିଏ ଭ୍ରମ ହୋଇଅଛି ଯେ ଏହି ବିଭାଗ ଥରେ ଯାହା କରନ୍ତି ଲୋକେ ସେଥିରେ ନାନାପ୍ରକାର ଦୋଷ ଦେଖାଇ ଦେଲେ ସୁଦ୍ଧା ସେମାନେ ତାହା ଦେଖି, ଦେଖିପାରନ୍ତି ନାହିଁ । ବୋଧହୁଏ ସେମ୍ଭାନେ ମନେ କରନ୍ତି "ସମସ୍ତଙ୍କୁ ଶିକ୍ଷା ଦେବାର ଅଧିକାର ଆମ୍ଭମାନଙ୍କର ଅଛି, ଆମ୍ଭମାନଙ୍କୁ ଶିକ୍ଷା ଦେବ କିଏ ?"

କଟକ — ଆପଣଙ୍କର

୨୧-୪-୮୭ — ଜଣେ ଓଡିୟା

*ଭା୨୨ଗ ,ସଂ୧୭ଖ୍ୟା, ୨୩।୪।୧୮୮୭*

## [ଏଫ,ଏ କ୍ଲାସ ଉଠିଯିବ]

ଉଚ୍ଚ ଶିକ୍ଷା ବିରୁଦ୍ଧରେ କୌଣସି କୌଣସି ସ୍ଥଳେ ମତ ପ୍ରଚାରିତ ହେବାର ଦେଖି ଜଣେ ପତ୍ର ପ୍ରେରକଙ୍କ ମନରେ ଶଙ୍କା ହୋଇଅଛି ଗଞ୍ଜାମ-ବ୍ରହ୍ମପୁର କଲେଜର ଏଫ, ଏ, କ୍ଲାସ ଉଠିଯିବ ପରା ଏବଂ ତାହା ହେଲେ ସେଠା ଓଡିୟାଙ୍କର ଦଶା ଫେରିବାର ଯାହା କିଛି ଆଶା ଅଛି ତାହା ଲୋପ ହେବ । ବ୍ରହ୍ମପୁର କଲେଜ ଉଠିଯିବାର ଆମ୍ଭେମାନେ କିଛି ଶୁଣି ନାହୁଁ ଏବଂ ଗବର୍ଣ୍ଣମେଣ୍ଟ ଏପରି ନିର୍ଦ୍ଦୟ ବିଚାର କରିବେ ବୋଲି ସମ୍ଭବ ହେଉ ନାହିଁ । ଯେବେ ସେପରି କିଛି ପ୍ରସ୍ତାବ ଶୁଣା ଯିବ ତେବେ ଗଞ୍ଜାମବାସିମାନଙ୍କୁ ଅନୁରୋଧ ଯେ ଅବିଳମ୍ବେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କୁ ଆବେଦନ କଲେ ବିହିତ ବିଚାର ହେବ ।

*ଭା୨୨ଗ ,ସଂ୧୮ଖ୍ୟା,୩୦।୪।୧୮୮୭*

## ଛାତ୍ର ସମାଜର ଉତ୍ସବ ।

ଏ ନଗରରେ ଦୁଇ ବର୍ଷ ହେଲା ଗୋଟିଏ ଛାତ୍ରସମାଜ ପ୍ରତିଷ୍ଠିତ ହୋଇଅଛି । ଟାଉନସ୍କୁଲର ଛାତ୍ରମାନେ ଏଥିର ପ୍ରଧାନ ସଭ୍ୟ ଅଟନ୍ତି । ଏହି ସମାଜର ୨ୟ ସାମ୍ବତ୍ସରିକ ଉତ୍ସବ ଚଳିତମାସ ତା ୨୨-୨୩ ଓ ୨୪ରେ ହୋଇଥିଲା । ଏ ଉତ୍ସବ ଏକପ୍ରକାର ବ୍ରାହ୍ମସମାଜର ଉତ୍ସବତୁଲ୍ୟ ଅଟଇ । ପ୍ରକୃତରେ ଦୁଇଦିନ ଏ ସମାଜ ଏଠା ବ୍ରାହ୍ମସମାଜଗୃହରେ ଉପାସନା କରିଥିଲେ । ଶେଷଦିନ ଅପରାହ୍ନକାଳରେ ବାବୁ ଦେବେନ୍ଦ୍ରନାଥ ମୁଖୁର୍ଯ୍ୟା ପ୍ରିଣ୍ଟିଂ କମ୍ପାନିଙ୍କ କୋଠାରେ "ଶିକ୍ଷାର ଦାୟିତ୍ୱ କି" ଏହି ବିଷୟରେ ଗୋଟିଏ ବକ୍ତୃତା ପ୍ରଦାନ କରିଥିଲେ । ବକ୍ତା ବୁଝାଇଦେଲେ ଯେ ଶିକ୍ଷାର ଉଦ୍ଦେଶ୍ୟ ଜ୍ଞାନ ଲାଭକରିବା ଏହି ଜ୍ଞାନର ଆରମ୍ଭ ଈଶ୍ୱରଙ୍କୁ ଭୟକରିବା ଅଟଇ ଓ ଯେଉଁ ଜ୍ଞାନରେ ଈଶ୍ୱରଙ୍କୁ ଜଣାଯାଏ ତାହାର ଯଥାର୍ଥ ଜ୍ଞାନ ପୁସ୍ତକ ଦ୍ୱାରା ଏ ଜ୍ଞାନଲାଭ ହୁଅଇ ନାହି । ଏଣୁ ପୁସ୍ତକ ପଢିବାରେ କିଛି ଫଳ ନାହିଁ । ବିବେକଦ୍ୱାରା ପ୍ରକୃତ ଜ୍ଞାନଲାଭ ହୁଅଇ ଓ ତହିଁର ଅନୁସରଣ କରିବା ଉଚିତ । ଏଥିର ଉଦାହରଣସ୍ୱରୂପ ଶାକ୍ୟସିଂହ ମହମ୍ମଦପ୍ରଭୃତିଙ୍କର ସଂକ୍ଷେପ ଜୀବନୀ ବ୍ୟକ୍ତକରି କହିଲେ କି ଏମାନେ କଠୋର ତପସ୍ୟାଦ୍ୱାରା ଜ୍ଞାନଲାଭ କରିଥିଲେ ପୁସ୍ତକ ପଢିବାରେ ଏମାନଙ୍କର ଜ୍ଞାନଲାଭ ହୋଇ ନାହିଁ ଓ କେବଳ ପୁସ୍ତକ ପଢିବାରେ ରହିଥିଲେ ସେମାନେ କଦାଚ ଏ ପ୍ରକାର ଜ୍ଞାନୀ ହୋଇ ନ ଥାନ୍ତେ । ପୁସ୍ତକ ପଢିବା ଏକାବେଳକେ ଅନାବଶ୍ୟକ ଏମନ୍ତ ନୁହଇ ବୋଲି ବକ୍ତା ଛାତ୍ରମାନଙ୍କୁ ସାବଧାନ କରିଦେଇଥିଲେ ହେଁ ଏକଥା ମଧ କହିଥିଲେ ଯେ ଆଜିକାଲି ସ୍କୁଲରେ ପଢି ଅନେକପିଲା ନାସ୍ତିକ ହେଉଅଛନ୍ତି ଓ ତାହା ପୁସ୍ତକପାଠର ଫଳ ବୋଲି ସେ ବ୍ୟକ୍ତ କରିଥିଲେ । ପରିଶେଷରେ ସେ କହିଲେ ଯେ ଆପେ ଯେମନ୍ତ ଜ୍ଞାନଲାଭ କରିବ ଅପରଲୋକଙ୍କ ଜ୍ଞାନ ଲାଭବିଷୟରେ ତେମନ୍ତ ସର୍ବଦା ସାହାଯ୍ୟ କରିବ ଶିକ୍ଷାର ଏ ଗୋଟିଏ ଗୁରୁତର ଦାୟିତ୍ୱ ଅଟଇ ।

ବକ୍ତୃତା ସଭାରେ ଯେଉଁମାନେ ଉପସ୍ଥିତ ଥିଲେ ସେମାନେ ପ୍ରାୟ ସମସ୍ତେ ଛାତ୍ରି ଅନ୍ୟଦର୍ଶକ ଦଶଜଣ ସୁଦ୍ଧା ହେବେ କି ନାହି ସନ୍ଦେହ । ଫଳତଃ ଛାତ୍ରଙ୍କ ଇଚ୍ଛାମତେ ସେମାନଙ୍କ ଉପଦେଶନିମିତ୍ତ ଯେଉଁ ସଭା ହୋଇଥିଲା ତହିଁରେ ଉପରଲିଖିତ ଭାବର ବକ୍ତୃତା ଆମ୍ଭମାନଙ୍କ ମନକୁ ଆସିଲା ନାହିଁ । ଛାତ୍ରମାନଙ୍କୁ ପୁସ୍ତକ ପଢିବାପ୍ରତି ବିଶେଷ ମନୋଯୋଗୀ ହେବାର ଉପଦେଶ ଦେବା ଉଚିତ । ପଢିବା ସେମାନଙ୍କର ଏକମାତ୍ର କର୍ତ୍ତବ୍ୟ ହେଉଅଛି । ଯେବେ ସେମାନଙ୍କୁ ଆଜିଠାରୁ ବୋଲାଯିବ ଯେ ପୁସ୍ତକ ପଢିବା ନିତାନ୍ତ ଅନାବଶ୍ୟକ ନ ହେଲେ ହେଁ ତହିଁର ବିଶେଷ ପ୍ରୟୋଜନତା ନାହିଁ ଓ ତଦ୍ଦ୍ୱାରା ପ୍ରକୃତ ଜ୍ଞାନଲାଭ ହୁଅଇ ନାହିଁ ତାହା ହେଲେ ସେମାନେ କାହିଁକି ପଢିବା ବିଷୟରେ ପରିଶ୍ରମ କରିବେ ? ଆଉ ପୁସ୍ତକ ପଢିବାଦ୍ୱାରା ଲୋକେ ନାସ୍ତିକ ହୁଅନ୍ତି ବା ଜ୍ଞାନଲାଭ କରିପାରନ୍ତି ନାହିଁ ଏକଥା ବୋଲିବା ମଧ ଠିକ ନୁହଇ । ଛାତ୍ରମାନେ ପୁସ୍ତକ ପଢିବା ଦ୍ୱାରା ଜ୍ଞାନଲାଭ କରନ୍ତି ଏବଂ ତହିଁରେ ଜ୍ଞାନଲାଭ ହେବ ପଣ୍ଡିତ ଓ ବିବେଚକ ବ୍ୟକ୍ତିମାନେ ସେପ୍ରକାର ପୁସ୍ତକମାନ ବିଦ୍ୟାଳୟ ନିମିତ୍ତ ଧାର୍ଯ୍ୟ କରି ଅଛନ୍ତି ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ବିଦ୍ୟାଳୟର ଶିକ୍ଷା ସମାପ୍ତ କଲା ଉତ୍ତାରୁ ବିବେକର ଉପଦେଶ ଲୋକଙ୍କୁ ଦିୟା ଯିବାର ପ୍ରକୃତ ସମୟ ହେଉଅଛି । ପଢ଼ିବା ସମୟରୁ ଏପରି ଭାବମାନ ସେମାନଙ୍କ ମନରେ ସଞ୍ଚିତ ହେଲେ ପଢ଼ାର ବ୍ୟାଘାତ ବିନା ଅନ୍ୟଫଳ ହେବ ନାହିଁ ଏବଂ ଏଥିରେ ଯେ ବ୍ରାହ୍ମଧର୍ମର ଉନ୍ନତି ହେବ ଏ ବିଷୟରେ ମଧ୍ୟ ସନ୍ଦେହ ହେଉଅଛି ।

*ଭା ୨୨ଗ,ସଂ୧୮ଖ୍ୟ,୩୦।୪।୧୮୮୭*

## [ଶୁଦ୍ଧ ଉତ୍କଳଭାଷା]

ଉତ୍କଳ ଭାଷା ଶୁଦ୍ଧରୂପେ ଲେଖାପଢ଼ି ନ ହେବା ବିଷୟରେ ଶ୍ରୀ ରଘୁନାଥ ମିଶ୍ରଙ୍କ ପତ୍ର ସ୍ଥାନାନ୍ତରେ ପ୍ରକାଶ କରି ସର୍ବସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରୁଅଛୁଁ । ଆମ୍ଭମାନଙ୍କ ବିବେଚନାରେ ଓକୀଲ ଓ ମୁକ୍ତାରମାନଙ୍କର ଏ ବିଷୟରେ ବିଶେଷ ଚେଷ୍ଟା କରିବାର ଉଚିତ । ବର୍ତ୍ତମାନ କେବଳ ପାଶ କରିବା ଲୋକମାନେ ଉକ୍ତ କର୍ମମାନ ପାଉଅଛନ୍ତି ସେମାନେ ଅବଶ୍ୟ ଶୁଦ୍ଧରୂପେ ଲେଖି ଜାଣନ୍ତି ସନ୍ଦେହ ନାହିଁ ଏବଂ ଶିକ୍ଷିତ ଲୋକମାନେ ଏଣିକି ଅମଲା ମଧ୍ୟ ହେଉଅଛନ୍ତି । କେବଳ ଅସୁବିଧା ଏତିକି ଯେଉଁମାନେ ଓକୀଲ ଓ ମୁକ୍ତାରଙ୍କ ମୋହରରି କର୍ମ କରନ୍ତି ସେମାନଙ୍କର ବିଦ୍ୟା ତେତେ ନାହିଁ । କିନ୍ତୁ ସ୍କୁଲରୁ ବାହାରିବା ପିଲାଙ୍କର ସଂଖ୍ୟା ଯେମନ୍ତ ଦିନ ଦିନ ବୃଦ୍ଧି ହେଉଅଛି ଓକୀଲ ମୁକ୍ତାରମାନେ ଚେଷ୍ଟା କଲେ ଏମାନଙ୍କ ମଧ୍ୟରୁ ମୋହରର ପାଇ ପାରନ୍ତି ଆଉ ମୋହରରଙ୍କ ଲେଖା ପ୍ରତି ସର୍ବଦା ଦୃଷ୍ଟି ରଖିଲେ ଏବଂ ସେମାନଙ୍କୁ ଉପଦେଶ ଦେଲେ କ୍ରମଶଃ ଶୁଦ୍ଧ ଲେଖାର ଉନ୍ନତି ହୋଇ ପାରେ । ବହୁଦିନର ଅଭ୍ୟାସ ଏକାବେଳକେ ପରିବର୍ତ୍ତିତ ହେବା ସହଜ ନୁହଇ କିନ୍ତୁ ଶୁଦ୍ଧ ଲେଖିବାର ଆବଶ୍ୟକତା ସର୍ବଦା ମୋହରରମାନଙ୍କୁ ସ୍ମରଣ କରାଇ ଦେଉଥିଲେ କ୍ରମଶଃ ତହିଁପ୍ରତି ଲୋକଙ୍କର ଯତ୍ନ ବଢ଼ିବ ଓ ସମୟରେ ବାଞ୍ଛିତ ଫଳ ଲାଭ ହେବ ।

*ଭା ୨୨ଗ ,ସଂ୧୯ଖ୍ୟା,୭।୫।୧୮୮୭*

## [ଓଡିୟା ଗଜେଟ]

ଓଡିୟା ଗଜେଟରେ ଓଡିଶା ବିଦ୍ୟାଳୟମାନଙ୍କର ପାଠ୍ୟପୁସ୍ତକର ତାଲିକା ଇଂରାଜୀ ଭାଷାରେ ପ୍ରକାଶିତ ହେବାର କୌଣସି କାରଣ ଜଣା ଯାଉ ନାହିଁ ଏବଂ ଆମ୍ଭମାନଙ୍କ ବିବେଚନାରେ ଏରୂପ ପ୍ରକାଶ କରିବା ଅନ୍ୟାୟ ଓ ଅନର୍ଥକ ଅଟଇ । ଓଡିୟା ଗଜେଟ ଇଂରାଜୀ ନଜାଣିବା ବ୍ୟକ୍ତିମାନେ ବିଶେଷରେ ପାଠ କରନ୍ତି ଏବଂ ପାଠ୍ୟପୁସ୍ତକର ତାଲିକା ସଙ୍ଗେ ଓଡିୟା ବିଦ୍ୟାଳୟମାନଙ୍କର ବିଶେଷ ସମ୍ବନ୍ଧ । ଏ ତାଲିକାଟି ଇଂରାଜୀଭାଷାରେ ପୁସ୍ତକ ନିର୍ବାଚନ କମିଟି ପଠାଇ ଦେଇଥିବାର ବୋଧ ହୁଅଇ କିନ୍ତୁ ଉକ୍ତ କମିଟୀ ଯେବେ ଇଂରାଜୀ ଭାଷାରେ ପ୍ରକାଶ କରିବାକୁ ଲେଖି ଥିଲେ ତେବେ ତାହାଙ୍କର ଭାରି ଭ୍ରମ ବୋଲିବାକୁ ହେବ ଆଉ ଯେବେ ସେପରି ପ୍ରାର୍ଥନା ନ କରି କେବଳ ପଠାଇ ଦେଇଥିଲେ ତେବେ ତାହାକୁ ଓଡିୟାରେ ଅନୁବାଦ ନ କରିବା ଗବର୍ଣ୍ଣମେଣ୍ଟ ଅନୁବାଦକଙ୍କର ଦୋଷ ଅଟଇ । ଗଜେଟଦ୍ୱାରା କିପରି ଲୋକଙ୍କର ପ୍ରକୃତ ଉପକାର ହେବ ତହିଁର ବିଚାର କରିବା ତାହାଙ୍କର କର୍ତ୍ତବ୍ୟ ଅଟଇ । ଯେବେ ଗଜେଟଦ୍ୱାରା ଲୋକଙ୍କର ଉପକାର ନ ହେଲା ତେବେ ତାହା ରଖିବାର ପ୍ରୟୋଜନ କି ଏହିପ୍ରକାର ବିବେଚନାର ତ୍ରୁଟିରୁ ଓଡିୟା ଗଜେଟପ୍ରତି ଲୋକଙ୍କର ଆସ୍ଥା ହେଉ ନାହିଁ ।

*ଭା୨୨ଗ, ସଂ୨୧ଖ୍ୟା ,୨୧।୫। ୧୮୮୭*

## [୧୮୮୭/୮୮ ମସିହାର ଉଚ୍ଚ ପ୍ରାଇମେରୀ ବିଦ୍ୟାଳୟମାନଙ୍କ ନିର୍ବାଚିତ ପୁସ୍ତକ ତାଲିକା ।]

### ଗଦ୍ୟ ଓ ପଦ୍ୟ

୧ମ ଶ୍ରେଣୀ- ତୃତୀୟପାଠ ଓ କବିତାକଳାପ

୨ୟ ଶ୍ରେଣୀ- ଦ୍ଵିତୀୟପାଠ ବା ବୋଧୋଦୟ ବା ନୀତିମଞ୍ଜରୀ ବା ପାଠମାଳା ବା ବୋଧାଙ୍କୁର ଓ ଛାନ୍ଦମାଳା ବା ନୀତିମାଳା

୩ୟ ଶ୍ରେଣୀ- ବର୍ଣ୍ଣବୋଧକ ବା ବର୍ଣ୍ଣଜ୍ଞାନ ବା ଶିକ୍ଷାମଞ୍ଜରୀ ବା ବାଲ୍ୟଶିକ୍ଷା ବା ପ୍ରଥମଶିକ୍ଷା ବା ବାଳବୋଧିନୀ ବା ପ୍ରଥମପାଠ

### ଓଡିୟା ବ୍ୟାକରଣ ।

୧ମ ଶ୍ରେଣୀ- ବାଳବୋଧ ବ୍ୟାକରଣ ବା ଭାଷା ବ୍ୟାକରଣ

୨ୟ ଶ୍ରେଣୀ- ସରଳବ୍ୟାକରଣ ବା ବ୍ୟାକରଣମଞ୍ଜରୀ

### ଇତିହାସ ।

୧ମ ଶ୍ରେଣୀ- ଓଡିଶାର ସଂକ୍ଷିପ୍ତ ଇତିହାସ ବା ସୀତାନାଥଙ୍କ ଓଡିଶାର ଇତିବୃତ୍ତ

### ଭୂଗୋଳ ।

୧ମ ଶ୍ରେଣୀ- ସରଳ ଭୂଗୋଳପାଠ ବା ସରଳ ଭୂଗୋଳ ଓ ଓଡିଶାର ଭୂଗୋଳ

୨ୟ ଶ୍ରେଣୀ- ସରଳ ଭୂଗୋଳ ଅବା ଭୂଗୋଳସାର (ଦେଙ୍କ ବା ରଥଙ୍କ କୃତ)

### ପାଟୀଗଣିତ ।

୧ମ ଶ୍ରେଣୀ- ଉମେଶଚନ୍ଦ୍ରଙ୍କ ପାଟୀଗଣିତ ବା ଅଙ୍କଶିକ୍ଷାମଞ୍ଜରୀ ବା ଅଙ୍କପ୍ରବନ୍ଧ ବା ପ୍ରଥମାଙ୍କ

୨ୟ ଶ୍ରେଣୀ- ଅଙ୍କବାଲ୍ୟଶିକ୍ଷା ବା ଗୋବିନ୍ଦରଥଙ୍କ ବା ରାଉତଙ୍କ ପାଟୀଗଣିତ କ୍ଷେତ୍ରତତ୍ତ୍ଵ ।

୧ମ ଶ୍ରେଣୀ- ଉମାପ୍ରସାଦଙ୍କ କ୍ଷେତ୍ରତତ୍ତ୍ଵ ବା ଶିବନାରାୟଣଙ୍କ କ୍ଷେତ୍ରତତ୍ତ୍ଵ ବା ସୀତାନାଥଙ୍କ କ୍ଷେତ୍ରତତ୍ତ୍ଵ

### ବିଜ୍ଞାନ ।

୧ମ ଶ୍ରେଣୀ- ବିଜ୍ଞାପନସୂତ୍ର

### ସ୍ଵାସ୍ଥ୍ୟରକ୍ଷା ।

୧ମ ଶ୍ରେଣୀ- ରାମକୃଷ୍ଣଙ୍କ ସରଳ ଶରୀରରକ୍ଷା

### କ୍ଷେତ୍ରପରିମାଣ ।

୧ମ ଶ୍ରେଣୀ- ସରଳ ପରିମିତି ବା ସରଳ କ୍ଷେତ୍ରପରିମାଣ

**୧୮୮୭/୮୮ ମସିହାର ନିମ୍ନ ପ୍ରାଇମେରୀ ବିଦ୍ୟାଳୟମାନଙ୍କ ନିର୍ବାଚିତ ପୁସ୍ତକର ତାଲିକା ।**

ଓଡିୟା ଭାଷା- ଗଦ୍ୟ- ବୋଧୋଦୟ ବା ପାଠମାଳା ପଦ୍ୟ ଛାନ୍ଦମାଳା ବା ନୀତିମାଳା

ପାଟୀଗଣିତ- ଅଙ୍କ ଶିକ୍ଷାମଞ୍ଜରୀ ବା ଅଙ୍କପ୍ରବନ୍ଧ ବା ପ୍ରାଇମେରୀ ପାଟୀଗଣିତ ବା ସରଳ ପାଟୀଗଣିତ (ରାଉତଙ୍କ) ବା ପ୍ରଥମାଙ୍କ ବା ପାଟୀଗଣିତ (ରଥଙ୍କ) ବା ଅଙ୍କ ବାଲ୍ୟଶିକ୍ଷା ବା ପାଟୀଗଣିତ (ଉମେଷନ୍ଦ୍ରଙ୍କ)

ମାନସାଙ୍କ ଓ ବଜାର ହିସାବ- ସୀତାନାଥଙ୍କ ମାନସାଙ୍କ ଓ ବଜାର ହିସାବ

ଜମିଦାରୀ ଶିରସ୍ତା- ଦେଙ୍କ ସଂକ୍ଷିପ୍ତ ଜମିଦାରୀ ବା କେ ପି ବାନୁର୍ଯ୍ୟାଙ୍କ ସଂକ୍ଷିପ୍ତ ବୈଷୟିକ ଦୀପିକା

ସ୍ଵାସ୍ଥ୍ୟରକ୍ଷା- ରାମକୃଷ୍ଣଙ୍କ ସରଳ ଶରୀରରକ୍ଷା ବା ମିସ୍ ଆଇଡାଫିଲିପଙ୍କ ସ୍ଵାସ୍ଥ୍ୟରକ୍ଷା ବିଷୟକ ପ୍ରଶ୍ନୋତ୍ତର ମାଳ

କ୍ଷେତ୍ରପରିମାଣ- ସରଳ କ୍ଷେତ୍ରପରିମାଣ ବା ରମାନାଥଙ୍କ କ୍ଷେତ୍ରପରିମାଣ ବା ସରଳ ପରିମିତି

ଏ, ଶ୍ରେଣୀର ନିର୍ଦ୍ଦିଷ୍ଟ ପୁସ୍ତକ ।

ଗଦ୍ୟ- ବୋଧୋଦୟ ବା ବୋଧାଙ୍କୁର ବା ଦ୍ୱିତୀୟପାଠ

ପଦ୍ୟ- ଛାନ୍ଦମାଳା

ପାଟୀଗଣିତ- ନିମ୍ନ ପ୍ରାଇମେରୀ ବିଦ୍ୟାଳୟର ନିର୍ବାଚିତ ପୁସ୍ତକ

ମାନସାଙ୍କ ଓ ବଜାର ହିସାବ- ସୀତାନାଥଙ୍କ ମାନସାଙ୍କ ଓ ବଜାର ହିସାବ

ବି, ଶ୍ରେଣୀର ନିର୍ଦ୍ଦିଷ୍ଟ ପୁସ୍ତକ ।

ଓଡ଼ିଆ- ସୋସାଇଟିଙ୍କ ବର୍ଣ୍ଣବୋଧକ ବା ରଥଙ୍କ ବର୍ଣ୍ଣବୋଧକ ବା ବର୍ଣ୍ଣବିଜ୍ଞାନ ବା ପ୍ରଥମଶିକ୍ଷା ବା ଅଙ୍କ

ଶିକ୍ଷାମଞ୍ଜରୀ ବା ପ୍ରଥମପାଠ ବା ବାଲ୍ୟଶିକ୍ଷା ବା ବର୍ଣ୍ଣବିଜ୍ଞାନ ବା ବାଳବୋଧିନୀ

ପାଟୀଗଣିତ- ଅଙ୍କପାଠ ବା ଅଙ୍କସାର ବା ଅଙ୍କଶିକ୍ଷା ।

*ଭା୨୨ଗ,ସଂ୨୧ଖ୍ୟା,୨୧।୫।୧୮୮୭*

## ଓଡିଆ ଲେଖାପଢା ।

ମହାଶୟ !

ଓଡିଆ ଭାଷା ଶୁଦ୍ଧରୂପେ ଲେଖାପଢି ନ ହେଉଥିବା ସମ୍ପର୍କରେ ଗତ ସପ୍ତାହର ଦୀପିକାରେ ଖଣ୍ଡିଏ ପ୍ରେରିତପତ୍ର ଏବଂ ସମ୍ପାଦକୀୟ ସ୍ତମ୍ଭରେ ତହିଁର ଆଲୋଚନା ପାଠ କରି ଅମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହେଲୁଁ । ବାସ୍ତବିକ ଦିନୁ ଦିନୁ ଓଡିଆଭାଷାର ବଡ ଅବନତି ହେଉଅଛି । ଯେତେ ଦିନ ପର୍ଯ୍ୟନ୍ତ ସମସ୍ତ ସର୍କାରୀ କାର୍ଯ୍ୟ ଶିକ୍ଷିତଲୋକମାନଙ୍କର ହସ୍ତଗତ ନ ହେବ, ଅନୁପଯୁକ୍ତ ଏବଂ ଫାଙ୍କି ଦେଇ କାମ ପାଇବା ବ୍ୟକ୍ତିଙ୍କ ସଂଖ୍ୟା ଊଣା ନ ହେବ ଏବଂ କାର୍ଯ୍ୟାଳୟମାନଙ୍କର ତତ୍ତ୍ୱାବଧାରକମାନେ ବିଶେଷ ଦୃଷ୍ଟି ନ ରଖିବେ କେତେଦିନ ପର୍ଯ୍ୟନ୍ତ ଏ କଣ୍ଟକ ଦୂରୀଭୂତ ହେବା ସହଜ ନୁହେ ।

କେତେ ଶିକ୍ଷିତ ଲୋକ ମଧ ଅମଲା କର୍ମରେ ରହି ଅଶୁଦ୍ଧ ଲେଖିବାକୁ ଦୋଷଜନକ ଜ୍ଞାନ କରନ୍ତି ନାହିଁ ଏଥିର କାରଣ ଏହି ଯେ, ସେମାନେ ଶୀଘ୍ର ସଂକ୍ରାମକ ରୋଗଗ୍ରସ୍ତ ହୋଇ ପଡନ୍ତି ଏବଂ ଉପରିସ୍ଥ କର୍ମଚାରୀ ବା ହାକିମମାନଙ୍କର ସେ ବିଷୟରେ ଦୃଷ୍ଟି ନ ଥାଏ । କେବଳ ଓକୀଲ ଏବଂ ମୁକ୍ତାରମାନଙ୍କ ଦ୍ୱାରା ଭାଷାର ସମସ୍ତ ଦୋଷ ଅପସାରିତ ହେବା ସମ୍ଭବ ନୁହେ କାରଣ ଗବର୍ଣ୍ଣମେଣ୍ଟଙ୍କ କାର୍ଯ୍ୟାଳୟମାନଙ୍କ ପ୍ରତି ଦୃଷ୍ଟିପାତ କଲେ ତାହା ଅବଶ୍ୟ "ସମୁଦ୍ରରୁ ଶଙ୍ଖେ ପାଣି" ପରି ବୋଧ ହେବ । ବିଶେଷଃ କୌଣସି ଗବର୍ଣ୍ଣମେଣ୍ଟ କାର୍ଯ୍ୟାଳୟରେ ସୁଦ୍ଧା ଶୁଦ୍ଧରୂପେ ଲେଖାପଢି ହୁଏ ନାହିଁ ।

ପୋଲିସ ବିଭାଗରେ ଅଧିକାଂଶ ଅଶିକ୍ଷିତ ଲୋକ ନିଯୁକ୍ତ ହୁଅନ୍ତି । ଶିକ୍ଷିତ ଲୋକଙ୍କ ସଂଖ୍ୟା ଏ ବିଭାଗରେ ଅତ୍ୟନ୍ତ ଅଳ୍ପ; ପୁଣି "ଅଧାପାଠୁଆ" ରାଇଟର କନେଷ୍ଟବଳମାନଙ୍କ ଉପରେ ଲେଖାପଢିର ସମସ୍ତ ଭାର ଥାଏ । ଏ ବିଭାଗରେ "ମସମାତ" ଓ "ବନାମ" ପ୍ରଭୃତି କେତେକ ଶବ୍ଦ ବ୍ୟବହୃତ ହୁଏ । ପୁଣି ଆଉ କେତେକ ଶବ୍ଦ ବ୍ୟବହୃତ ହୁଏ ଯେ, ତାହା ବୁଝିବା ଦୁରୂହ । ଲେଖାପଢିର ନିୟମ ଏ ବିଭାଗରେ ଏପରି କଦର୍ଯ୍ୟ ଯେ ଜଣେ ଶିକ୍ଷିତ ଲୋକ ପୋଲିସରେ କୌଣସି ସମ୍ବାଦ ଦେବାକୁ ଗଲେ କଷ୍ଟର ସୀମା ନ ଥାଏ ।

ଦରଖାସ୍ତ ଲେଖକ ଏବଂ ଦସ୍ତାବିଜ ଲେଖକମାନେ ଆଦୌ କୌଣସି ବିଷୟରେ ଦୃଷ୍ଟି ରଖନ୍ତି ନାହି ଏହି ସବୁ କାର୍ଯ୍ୟରେ ମଧ "ଅଧା ପାଠୁଆ" ଙ୍କ ସଂଖ୍ୟା ଅଧିକ । ବୋଲିବା ବାହୁଲ୍ୟ ଯେ ଲେଖିବା ବ୍ୟକ୍ତିଙ୍କ ଦୋଷରେ କେତେ ଲୋକ ମାମଲା ମୋକଦ୍ଦମାରେ ଶେଷକୁ ବଡ ଦୁଃଖାନୁଭବ କରନ୍ତି ।

ଗବର୍ଣ୍ଣମେଣ୍ଟଙ୍କର ଅନ୍ୟ କାର୍ଯ୍ୟାଳୟମାନଙ୍କରେ ଶୁଦ୍ଧରୂପେ ଲେଖାପଢି ହେଉ ବା ନ ହେଉ ଶିକ୍ଷା ବିଭାଗ ଆପଣାର କର୍ତ୍ତବ୍ୟ ପ୍ରତିପାଳନ କରିବା ଉଚିତ କିନ୍ତୁ ଏ ବିଭାଗର କେତେ କର୍ମଚାରୀ ବି ଯେଉଁମାନେ "ପଣ୍ଡିତ" ବୋଲି ସମ୍ବୋଧିତ ହୁଅନ୍ତି, ସେମାନଙ୍କ ମଧରୁ ଅଧିକାଂଶ ବ୍ୟକ୍ତି ଶୁଦ୍ଧରୂପେ ଲେଖି ଜାଣନ୍ତି ନାହି । ଏହି ପରି

ପଣ୍ଡିତଙ୍କର ଖଣ୍ଡେ ଖଣ୍ଡେ ପତ୍ରରେ ୪୦-୫୦ଟା ଅଶୁଦ୍ଧରୁ ନ୍ୟୂନ ନ ଥାଏ । ଆଉ ମଧ୍ୟ କେତେ ପଣ୍ଡିତଙ୍କ ଅପଟୁତା ହେତୁରୁ ମୋଫସଲର କୌଣସି କୌଣସି ବିଦ୍ୟାଳୟର ଆଦୌ ଶ୍ରୁତ ଲିଖନ ହୁଏ ନାହିଁ କିମ୍ବା ଶୁଦ୍ଧ ଲେଖିବାର ଶିକ୍ଷା ଦିଆ ଯାଏ ନାହି । ଏଥିର ପରିଚୟ ଭର୍ଣ୍ଣାକ୍ୟୁଲର ପରୀକ୍ଷକମାନେ ଉତ୍ତର କାଗଜରୁ ପାଉଥିବେ ।

ଇଂରାଜି ବା ପାରଷିଭାଷାରେ ବର୍ଣ୍ଣାଶୁଦ୍ଧି ରହିଲେ ତାହା ଯେପରି ଭିନ୍ନାର୍ଥବୋଧକ ବା ନିରର୍ଥକ ହୁଏ ଓଡିୟାରେ ମଧ୍ୟ ସେହିପରି ହୁଏ କିନ୍ତୁ ଇଂରାଜ ବା ପାରଷିଙ୍କ ପରି ଅଧିକାଂଶ ଓଡିୟାଭାଷାର ଦୋଷ ଦେଖିବାକୁ ଘୃଣା କରନ୍ତି ନାହିଁ କିମ୍ବା ଅଶୁଦ୍ଧରୂପେ ଲେଖିବାକୁ ଲଜ୍ଜିତ ହୁଅନ୍ତି ନାହିଁ । ଯାହା ହେଉ ଏ ଦୋଷ ଶୀଘ୍ର ଦୂର କରିବାର ଉପାୟ କରିବା କର୍ତ୍ତବ୍ୟ । କେବଳ ଶିକ୍ଷା ବିଭାଗ ଏ ବିଷୟରେ ଆଲୋଚନା କଲେ ବା ଓକୀଲ ଏବଂ ମୁକ୍ତାରମାନେ ଦୃଷ୍ଟି ରଖିଲେ ଏ ଦୋଷ ସମ୍ପୂର୍ଣ୍ଣରୂପେ ଦୂରୀକୃତ ହୋଇ ପାରିବ ନାହି ଆମ୍ଭମାନଙ୍କ ବିବେଚନାରେ ସମସ୍ତ ସରକାରୀ କାର୍ଯ୍ୟାଳୟମାନଙ୍କରେ ଶୁଦ୍ଧରୂପେ ଓଡିୟାଭାଷାର ଲେଖାପଢି ହେବାର ଆଦେଶ ପ୍ରଚାର ନିମିତ୍ତ ଯଦି ଉତ୍କଳସଭା ଏବଂ ଅନ୍ୟାନ୍ୟ ସଭାସମିତି ଗବର୍ଣ୍ଣମେଣ୍ଟଙ୍କ ନିକଟରେ ଆବେଦନ କରିବେ ତାହା ହେଲେ ଏଥିର ସୁବିଚାର କରାଯାଇ ପାରେ । ଆଉ ମଧ୍ୟ ଯେଉଁମାନେ ଓଡିୟାକୁ ସ୍ଥାୟୀ କରି ଉତ୍କଳ ସାହିତ୍ୟଜଗତରେ ଅସାଧାରଣ କୀର୍ତ୍ତିସ୍ତମ୍ଭ ସ୍ଥାପନ କରିଅଛନ୍ତି ସେମାନେ ଏ ବିଷୟରେ ଚେଷ୍ଟିତ ହେବା ଉଚିତ । ଇତି ।

ଆପଣଙ୍କର

ଶ୍ରୀକୃଷ୍ଣ ମହାପାତ୍ର ।

*ଭା୨୨ଗ,ସଂ୨୭ଖ୍ୟା,୨।୭।୧୮୮୭*

## [ଶିକ୍ଷା କମିଟୀ]

**ମହାଶୟ !**

ଏହିକି ଯେ ଆପଣଙ୍କ ୯-୭-୮୭ ଲିଖିତ ସଂ୨୮ଖ୍ୟକ ଦୀପିକାରେ ଅବଗତ ହେଲୁଁ ଯେ, ଢେଙ୍କାନାଳରୁ ଜଣେ ପତ୍ରପ୍ରେରକ ଶିକ୍ଷାକମିଟୀ ଅଧିବେଶନସମ୍ବନ୍ଧୀୟ ଏକ ପ୍ରବନ୍ଧ ଲେଖିଥିଲେ ସେ ଅମୂଳକ ମାତ୍ର । କାରଣ ଏଠାରେ କମିଟୀ ସ୍ଥାପନଦିବସାବଧି ଓଡିୟାରେ ଅଧୀବେଶନ ହୋଇ ଆସୁଥିଲା । ମେମ୍ବରମାନଙ୍କ ମଧ୍ୟରୁ ଅର୍ଦ୍ଧେକ ଇଂରାଜୀ ଜାଣନ୍ତି, ଆଉ ଅର୍ଦ୍ଧେକ ଓଡିୟା ପଢା ଅଟନ୍ତି । ଓଡିୟା ପଢା ମେମ୍ବରମାନେ ଯୁଗ ବହିଗଲେ ସୁଦ୍ଧା ଇଂରାଜୀ ଜାଣି ପାରିବେ ନାହି । ଏମାନଙ୍କ ନିକଟକୁ ବିଜ୍ଞାପନ ଗଲେ କେହି ଉପସ୍ଥିତ ହୁଅନ୍ତି କେହି ବା ଉପସ୍ଥିତ ହୁଅନ୍ତି ନାହି । ଏକ ବର୍ଷ ହେଲା କମିଟୀର କାର୍ଯ୍ୟାବଳୀ ଇଂରାଜୀରେ ଲେଖା ହୋଇ ଆସୁଅଛି । ଶ୍ରୀଯୁକ୍ତ ମେକମିଲନ ସାହେବ କମିଟୀରେ ମେମ୍ବର ଯେଉଁ ଦିନୁ ନିର୍ବାଚିତ ହୋଇ ଅଛନ୍ତି ଥରେ ମାତ୍ର କମିଟୀ ହୋଇଥିଲା । ତହିଁରେ ଇଂରାଜୀରେ କଥୋପକଥନ ହେଉ ଥାଏ, ସଭ୍ୟମାନଙ୍କୁ ଓଡିୟାରେ ବୁଝାଇଦିଆଯାଉଥାଏ ସଭ୍ୟମାନେ ମଞ୍ଜୁର କରୁଥାନ୍ତି । ଆଉ ଅନ୍ୟାନ୍ୟ ଦର୍ଶକମାନେ ବୁଝିଲେ କେତେ ବା ନ ବୁଝିଲେ କେତେ ? ଆମ୍ଭେ ଜଣେ ମେମ୍ବର ଅପମାନରତ କିଛି କାରଣ ଦେଖି ନାହୁଁ । ମଧ୍ୟ ସେଦିନ ଶ୍ରୀଯୁକ୍ତ ମେନେଜର ବାବୁ ଶ୍ରୀ ସୁଦାମଚରଣ ନାୟକ ଉପସ୍ଥିତ ନ ଥିଲେ ।

ଆମ୍ଭେ ଏସ୍ଥାନରେ ଥିବାସମୟରେ କମିଟୀ ଅଧିବେଶନରେ ଉପସ୍ଥିତ ଥାଉଁ ମାତ୍ର କେହି କେହି ଓଡିୟା ଜାଣିଥିବା ମେମ୍ବର କୌଣସି ଦିନ କୌଣସି ଭାବ ବ୍ୟକ୍ତ କରିବା ଆମ୍ଭେ ଜାଣି ନାହୁଁ । ଆମ୍ଭେ ଜାଣିବାରେ ସେମାନେ ସାକ୍ଷୀଗୋପୀନାଥ ପରି ବସିଥାନ୍ତି । ଏପରିସ୍ଥଳରେ ପତ୍ରପ୍ରେରକଙ୍କ ଆପତ୍ତି କେତେଦୂର ଯଥାର୍ଥ ଅଟଇ ଆପଣ ବୁଝିପାରିବେ । ଇତି ।

। ନି । ଶ୍ରୀ ଗୌରାଙ୍ଗଛାମୁ ପଟ୍ଟନାୟକ

***ଭା୨୨ଗ,ସଂ୩୦ଖ୍ୟା,୨୩।୭।୧୮୮୭***

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## [ ଗଞ୍ଜାମ ଜିଲ୍ଲାର ସରକାରୀ କଚେରୀମାନଙ୍କରେ ତୈଲଙ୍ଗି ଭାଷା ]

ଗଞ୍ଜାମ ଜିଲ୍ଲାର ସରକାରୀ କଚେରୀମାନଙ୍କରେ ତୈଲଙ୍ଗି ଭାଷା ଓ ତୈଲଙ୍ଗି କର୍ମଚାରିଙ୍କ ପ୍ରାଦୁର୍ଭାବ ହେତୁ ସେଠା ଓଡିୟାଙ୍କର ଯେଉଁ ଅନିଷ୍ଟ ହୋଇଅଛି ତାହା ପାଠକମାନଙ୍କୁ ଅବିଦିତ ନାହିଁ ଓ ସେଠା ଓଡିୟାଙ୍କର ଏହି ଦୁଃଖ ସମ୍ବନ୍ଧରେ ଆମ୍ଭେମାନେ କ୍ରମାଗତ ପ୍ରେରିତପତ୍ରମାନ ପାଉଅଛୁଁ ଓ ଓଡିଶାର ଅପର ସମ୍ବାଦପତ୍ରରେ ମଧ୍ୟ ପ୍ରକାଶ ପାଉଅଛି ମାତ୍ର ଫଳ କିଛି ହେଉ ନାହିଁ । ଗଞ୍ଜାମ ପ୍ରକୃତରେ ଓଡିୟା ପ୍ରଦେଶ ଏବଂ ସେ ଜିଲ୍ଲା ଅନ୍ତର୍ଗତ ରାଜା ପ୍ରଜା ସମସ୍ତେ ଓଡିୟା ତେଲଙ୍ଗାଙ୍କର ଭାଗ ଅତ୍ୟନ୍ତ ଊଣା । ଏସ୍ଥଳେ ସେଠା କଚେରୀମାନଙ୍କରେ ଓଡିୟାଭାଷା ପ୍ରଚଳିତ ହେବା ଏବଂ ଶିକ୍ଷିତ ଓଡିୟାଙ୍କୁ ସରକାରୀ କାର୍ଯ୍ୟରେ ନିଯୋଗ କରିବା ନିତ୍ୟାନ୍ତ ଆବଶ୍ୟକ ଓ ନୀତିସଙ୍ଗତ ଅଟଇ ସନ୍ଦେହ ନାହିଁ । ମାନ୍ଦ୍ରାଜର ବିଗତ ଗବର୍ଣ୍ଣରଙ୍କ ନିକଟରେ ଗଞ୍ଜାମବାସିମାନେ ଏ ବିଷୟରେ ଆବେଦନ କରିଥିଲେ ମାତ୍ର ଫଳ ହେଲା ନାହିଁ ବୋଲି ନିରସ୍ତ ହେବାର ଉଚିତ ନୁହଇ । ନୂତନ ଗବର୍ଣ୍ଣରଙ୍କଠାରେ ପୁନର୍ବାର ଆବେଦନ କରିବା ଏବଂ ତହିଁ ସଙ୍ଗେ ସଙ୍ଗେ ମାନ୍ଦ୍ରାଜର ପ୍ରଧାନ ସମ୍ବାଦପତ୍ରମାନଙ୍କରେ ଆନ୍ଦୋଳନ ଲଗାଇବାକୁ ଆମ୍ଭେମାନେ ଗଞ୍ଜାମବାସିଙ୍କୁ ପରାମର୍ଶ ଦେବା ବିନା ଅନ୍ୟ କିଛିକରି ନ ପାରୁଁ । ଯେସ୍ଥଳେ ଯୁକ୍ତି ଓ ନ୍ୟାୟ ସେମାନଙ୍କ ସପକ୍ଷରେ ଅଛି ସେସ୍ଥଳେ ଗବର୍ଣ୍ଣମେଣ୍ଟ ଅବଶ୍ୟ ସେମାନଙ୍କର ଗୁହାରି ଶୁଣିବେ ସନ୍ଦେହ ନାହିଁ କେବଳ ପୁନଃ ଚେଷ୍ଟା କରିବା ଏବଂ ଫଳଲାଭ ନ ହେବା ପର୍ଯ୍ୟନ୍ତ ଦୃଢରୂପେ ତହିଁରେ ଲାଗିରହିବାର ଉଚିତ ଶାସନକର୍ତ୍ତାମାନେ ସେମାନଙ୍କ ଦୁଃଖ ହୃଦୟଙ୍ଗମ କରି ପାରିଲେ ପ୍ରତୀକାର କରିବାକୁ ବିଳମ୍ବ କରିବେ ନାହିଁ ।

*ଭା୨୨ଗ ,ସଂ ୩୨ଖ୍ୟା,୬।୮।୧୮୮୭*

## ଓଡିଶାର ଦୁଃଖ ।

ଏହି ଶିରୋନାମାରେ ଗୋଟିଏ ପ୍ରବନ୍ଧ ଗତ ତା୨୭ରିଖର ସଂସ୍କାରକରେ ବାହାରିଅଛି । ତହିଁରେ ଲେଖାଅଛି କି ବଙ୍ଗଦେଶର ଛୋଟଲାଟଙ୍କଠାରୁ ଜିଲ୍ଲାହାକିମ ପର୍ଯ୍ୟନ୍ତ ଶିକ୍ଷିତ ଓଡିୟାଙ୍କୁ ସରକାରୀ କର୍ମରେ ନିଯୁକ୍ତ କରିବାଦ୍ୱାରା xxxx ହେଉଥିବା ପ୍ରତ୍ୟକ୍ଷେ ଓଡିଶାର ଶିକ୍ଷାବିଭାଗର ପ୍ରଧାନକର୍ମଚାରୀ କି ଯାହାଙ୍କୁ ଏ ବିଷୟରେ ଅଗ୍ରସର ହେବାର ଉଚିତ ଓଡିୟାଙ୍କ ପ୍ରତି ତାହାଙ୍କର ସୁଦୃଷ୍ଟି ପଡୁ ନାହିଁ । ଏଥିର ଉଦାହରଣସ୍ୱରୂପ ଲେଖା ଯାଇଅଛି କି ପୁରୀ ଜିଲାସ୍କୁଲର ଦ୍ୱିତୀୟ ଶିକ୍ଷକର ପଦ ଖାଲି ଥିଲା । ଏଠାରେ ବିଏ ପାସ କରିଥିବା ଓଡିୟା ଥିବା ପ୍ରତ୍ୟକ୍ଷେ ସେମାନଙ୍କ ମଧ୍ୟରୁ କାହାରିକି ଏ ପଦ ଦିୟା ନ ଯାଇ ବାବୁ ବିଜୟଚନ୍ଦ୍ର ମଜୁମଦାର ନାମକ ଜଣେ କଲିକତାବାସି ବ୍ରାହ୍ମପ୍ରଚାରକଙ୍କୁ ଦିୟାଗଲା ଓ ଏମନ୍ତ ଗୁପ୍ତଭାବରେ ଏ ନିୟୋଗ ହେଲା ଯେ କର୍ମ ଖାଲିଥିବାର ବିଜ୍ଞାପନସୁଦ୍ଧା ଦିଆଗଲା ନାହିଁ । ସହଯୋଗୀ ଆହୁରି ଅନୁମାନ କରିଅଛନ୍ତି କି ବିଜୟବାବୁ ଏଠା ଡେପୁଟୀଇନ୍‌ସ୍ପେକ୍ଟରଙ୍କ ଜାମାତା ହେବାର କଥା ଅଛି ଅବା ଥିଲା ବୋଲି ତାହାଙ୍କ ସାହାଯ୍ୟ ନିମିତ୍ତ ଜଏଣ୍ଟ ଇନ୍‌ସ୍ପେକ୍ଟର ଏପରି କରିଅଛନ୍ତି । ଫଳତଃ ଏ ଅନୁମାନ ସତ୍ୟ ହେଉ ବା ନ ହେଉ (ଅବଶ୍ୟ ତାହା ଭବିଷ୍ୟତ୍‌ର କଥା ।) ଓଡିଶାବାସିଙ୍କି ଉପେକ୍ଷା କରି ଜଣେ ବଙ୍ଗବାସିକି ପୁରୀ ପରି ହିନ୍ଦୁମାନଙ୍କର ପ୍ରଧାନ ତୀର୍ଥସ୍ଥାନରେ ଶିକ୍ଷାବିଭାଗ ଓ ବ୍ରାହ୍ମଧର୍ମ ସମ୍ବନ୍ଧୀୟ ଗୋଳମାଳ ଲାଗିଥିବା ସମୟରେ ଶିକ୍ଷକସ୍ୱରୂପ ନିଯୁକ୍ତ କରିବା ବିଷୟରେ ସହଯୋଗୀ ଯାହା ଲେଖିଅଛନ୍ତି ତହିଁରେ ଆମ୍ଭେମାନେ ସମ୍ପୂର୍ଣ୍ଣରୂପେ ଐକ୍ୟ ଅଛୁଁ ଏବଂ ଯେବେ ଆମ୍ଭମାନଙ୍କର ଜଏଣ୍ଟ ଇନ୍‌ସ୍ପେକ୍ଟରଙ୍କ ମନୋନୀତରୂପେ ଏ ନିୟୋଗ ହୋଇଥାଏ ତେବେ ସେ ନିତାନ୍ତ ଅନ୍ୟାୟ କରିଅଛନ୍ତି ସନ୍ଦେହ ନାହିଁ । ତାହାଙ୍କର ଏ କାର୍ଯ୍ୟ ବର୍ତ୍ତମାନ ବ୍ରାହ୍ମଧର୍ମବିଷୟରେ ଗବର୍ଣ୍ଣମେଣ୍ଟଙ୍କୁ ଆବେଦନ କରିଥିବା ହିନ୍ଦୁମାନଙ୍କ ଅଥବା ଭାଗବତ ଭକ୍ତିପ୍ରଦାୟିନୀ ସଭାକୁ ବିଦ୍ରୂପ କଲା ପ୍ରାୟ ହୋଇଅଛି । ଏପ୍ରକାର ଘଟନା ଦେଖି କାହା ମନରେ ବିଶ୍ୱାସ ହେବ ଯେ ଏଠା ଶିକ୍ଷାବିଭାଗ ବ୍ରାହ୍ମଧର୍ମର ପ୍ରଚାର ବିଷୟରେ ଆଉ ସହାୟତା କରିବେ ନାହିଁ ଓ ଶ୍ରୀଯୁକ୍ତ କମିଶ୍ନରସାହେବ ଯେଉଁ ଆଶ୍ୱାସବାକ୍ୟରେ ନିର୍ଭର କରିଅଛନ୍ତି ତାହା ଅଟଳ ରହିବ ତଥାଚ

ଇଏଣ୍ଟଇନ୍‌ସ୍ପେକ୍ଟର ମହାଶୟ ଏ ନିୟୋଗସପକ୍ଷରେ ମତ ଦେବାସମୟରେ ଧର୍ମର କଥା କିଛି ଭାବି ନାହାନ୍ତି ଏ କଥା ଆମ୍ଭେମାନେ ସ୍ୱୀକାର କରିବାକୁ ପ୍ରସ୍ତୁତ ଅଛୁଁ । ସମ୍ଭବତଃ ସେ ଧର୍ମର ବିଚାରଦ୍ୱାରା ଚାଳିତ ହୋଇ ନାହାନ୍ତି ଓ ସେବ୍ୟକ୍ତିକି ନିୟୋଗ କରିବାର କୌଣସି ବିଶେଷ କାରଣ ଥାଇପାରେ । ମାତ୍ର କାରଣ ଯାହା ଥାଉ ଯେତେବେଳେ ସେ ପ୍ରକାଶ୍ୟ ବିଜ୍ଞାପନଦ୍ୱାରା କର୍ମ ପ୍ରାର୍ଥିମାନଙ୍କୁ ଆହ୍ୱାନ ଓ ସେମାନଙ୍କ ପ୍ରତିକିଛି ଗୁଣ ବିଚାର ନ କରି ଜଣେ ବାହାରଲୋକକୁ ନିଯୁକ୍ତ କରିଅଛନ୍ତି ସେସ୍ଥଳେ ତାହାଙ୍କର କାର୍ଯ୍ୟଟି ଅନ୍ୟାୟ ହୋଇଅଛି ବୋଲି ଅବଶ୍ୟ କୁହାଯିବ । ଶିକ୍ଷାବିଭାଗୀୟ କେତେ ସାମାନ୍ୟ ସାମାନ୍ୟ ପଦ ନିମିତ୍ତ ଏଠାରେ ବିଜ୍ଞାପନ ଦିଆଯିବାର ଦେଖାଯାଏ । ଏ କାର୍ଯ୍ୟ ସକାଶେ ତହିଁର ବିପରୀତ ପ୍ରଥା ଅନୁସରିବାର କାରଣ କି ? ସାହେବମାନେ ଏ ଦେଶୀୟଲୋକଙ୍କ ଦାବୀ ଉପେକ୍ଷା କରି ସ୍ୱଦେଶୀୟଙ୍କୁ ବଡ ବଡ କର୍ମରେ ନିୟୋଗ କରନ୍ତି ବୋଲି ଆମ୍ଭମାନଙ୍କର କେତେ ଦୁଃଖ ଓ କେତେ ଗୁହାରି ଇଏଣ୍ଟଇନ୍‌ସ୍ପେକ୍ଟର ଓଡିଶାବାସୀ ହୋଇ ସ୍ୱଦେଶୀୟଙ୍କପ୍ରତି ଏପରି ବାମ ହେବା ଅଧିକ ଦୁଃଖର କଥା ଏହା କିଏ ଅସ୍ୱୀକାର କରିବ । ସେ ଯେବେ ବିଜ୍ଞାପନଦ୍ୱାରା କର୍ମପ୍ରାର୍ଥିମାନଙ୍କର ଆବେଦନ ଗ୍ରହଣ କରିବା ଉଚିତ ବନ୍ଦୋବସ୍ତ କରିଥାନ୍ତେ ତେବେ କାହାରି ଦୁଃଖ ରହନ୍ତା ନାହିଁ । ଯେସ୍ଥଳେ ତାହା ହୋଇ ନାହିଁ ସେସ୍ଥଳେ ଭବିଷ୍ୟତକୁ ଯେମନ୍ତ ନିୟମାନୁସାରେ କାର୍ଯ୍ୟ ହେବ ଏ ବିଷୟ ଗବର୍ଣ୍ଣମେଣ୍ଟଙ୍କୁ ଦେଖିବାର ଆବଶ୍ୟକ ଏଥି ନିମିତ୍ତ ଆମ୍ଭେମାନେ ଆଶା କରୁଁ କି ଏ ବିଷୟ ଗବର୍ଣ୍ଣମେଣ୍ଟଙ୍କ ଜ୍ଞାତସାରରେ ଆସିବ ନୋହିଲେ ଓଡିଶାବାସିଙ୍କର ସମୟ ସମୟରେ ଏହିପରି କ୍ଷତି ହେଉଥିବ ।

*ଭା୨୨ଗ,ସଂ୪୩ଖ୍ୟା, ୫।୧୧।୧୮୮୭*

# ୧୮୮୮

## [ପୁସ୍ତକ ପ୍ରାପ୍ତି ସ୍ୱୀକାର ]

ଆମ୍ଭେମାନେ ତଳଲିଖିତ ପୁସ୍ତକମାନ ଉପହାର ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ।-

ଶିଶୁଶରୀରପାଳନ - ବାବୁ ଭଗବାନଚନ୍ଦ୍ର ଦାସଙ୍କ ଦ୍ୱାରା ପ୍ରକାଶିତ ଏବଂ ବାଲେଶ୍ୱର ଉତ୍କଳପ୍ରିଣ୍ଟିଂ କମ୍ପାନିଙ୍କ ଯନ୍ତ୍ରାଳୟରେ ମୁଦ୍ରିତ। ଗ୍ରନ୍ଥକାରଙ୍କ ନାମ ଲେଖା ନାହିଁ। ଏଥିରେ ସକାଳୁଁ ଉଠିବା ଗାଧୋଇବା ଖାଇବା ପିଇବା ଶୋଇବା ଓ ପିନ୍ଧିବା ସମ୍ପର୍କୀୟ କେତେଗୁଡ଼ିଏ ଆବଶ୍ୟକୀୟ ନିୟମ ଏବଂ ଓଲାଉଠା ବସନ୍ତ କାଛୁ କୁଣ୍ଡିଆ ପ୍ରଭୃତି କେତେକ ରୋଗର ସହଜ ପ୍ରତୀକାର ଲେଖା ଅଛି ଓ ସର୍ବଶେଷରେ କେତେଗୁଡ଼ିଏ ନୀତିକଥା ଯୋଗ ହୋଇଅଛି। ନାମରୁ ଏ ପୁସ୍ତକ ପିଲାମାନଙ୍କ ସକାଶେ ହୋଇଥିବାର ଜଣା ଯାଉଥିଲେହେଁ ଏହାଦ୍ୱାରା ପିଲା ଓ ବଡ଼ମନୁଷ୍ୟ ସମାନରୂପ ଉପଦେଶ ଲାଭ କରିପାରିବେ ଆଉ ଏଥିର ଭାଷାମାନ ବୁଝିବା ଭଳି ସହଜ ହୋଇଅଛି।

ଆତସବାଜି — ଶ୍ରୀ ଭଗବାନଚନ୍ଦ୍ର ଦାସଙ୍କଦ୍ୱାରା ପ୍ରକାଶିତ ଓ ଓଡ଼ିଶାମିସନଯନ୍ତ୍ରରେ ମୁଦ୍ରିତ, ଏବଂ ବାମଣ୍ଡାର ଯୁବରାଜଙ୍କୁ ଉତ୍ସର୍ଗିତ ହୋଇଅଛି। ଏଥିରେ ଏ ପ୍ରଦେଶରେ ପ୍ରାଚୀନକାଳରୁ ପ୍ରଚଳିତ ଘଡ଼ି ଚନ୍ଦ୍ର ଉଦିୟା ହାବେଲୀ, ତୋପ, ବମ, କଦମ୍ବଗଛ ପ୍ରଭୃତି ବାଣମାନ ପ୍ରସ୍ତୁତ କରିବାର ପ୍ରଣାଳୀ ସହଜଭାଷାରେ ଲେଖା ହୋଇଅଛି ନୂତନମଧରେ କେବଳ ରକ୍ତ ପୀତ, ନୀଳ,ହରିତବର୍ଣ୍ଣର ଚନ୍ଦ୍ରଉଦିଆ ପ୍ରସ୍ତୁତ କରିବାର ଧାରା ଦିଆଯାଇଅଛି। ବର୍ତ୍ତମାନ ସମୟରେ ଏ ପ୍ରଦେଶରେ ରଙ୍ଗୀନ ବାଣର ଯେପରି କାର୍ଯ୍ୟ ହେଉଅଛି ଏବଂ ଯହିଁନିମିତ୍ତ ଏ ନଗରବାସୀ ସାମମହମ୍ମଦ ପ୍ରଶଂସା ଲାଭ କରିଅଛି ସେସବୁର ଧାରା ପୁସ୍ତକରେ ଥିଲେ ଅଧିକତର ଆଦରଣୀୟ ହୋଇଥାନ୍ତା।

*ଭା/୨୩ଗ,ସଂ୧ଖ୍ୟା,୭/୧/୧୮୮୮*

## ବିଜ୍ଞାପନ ।

## [ଛାପାକଳ]

ଉକ୍ତ ପତ୍ରରୁ ଆହୁରି ଅବଗତ ହେଲୁଁ ଯେ କୁମାର ବୈକୁଣ୍ଠନାଥଙ୍କ ପ୍ରସ୍ତାବମତେ ରୋଡ଼ଶେଷର ଫାରମମାନ ଛାପିବା ନିମନ୍ତେ ଗୋଟାଏ ଛାପାକଳ ଆଣିବାର ସ୍ଥିର ହୋଇଅଛି। ବାଲେଶ୍ୱର ନଗରରେ ଯୋଡ଼ାଏ ଛାପାଖାନା ଥିବା ଏବଂ ସେ ସବୁରେ ଯଥେଷ୍ଟ କାର୍ଯ୍ୟ ହେଉ ନ ଥିବା ସ୍ଥଳେ ଏ ପ୍ରସ୍ତାବର ଆବଶ୍ୟକତା ଆମ୍ଭେମାନେ କିଛି ବୁଝି ପାରିଲୁଁ ନାହି। ସାଧାରଣ ପ୍ରତିଯୋଗିତା ଅପେକ୍ଷା ସ୍ୱତନ୍ତ୍ର ପ୍ରେସଦ୍ୱାରା ରୋଡ଼ଶେଷ ଫାରମମାନ ଶସ୍ତାରେ ହେବ ଏପରି କଦାଚ ବୋଲା ଯାଇ ନ ପାରେ। ବିଶେଷତଃ ଛାପାଖାନା ବସାଇବାର ମୂଳଧନ ଓ ଚଳାଇବାରେ ଯେ ବ୍ୟୟ ହେବ ତାହା ଉଠିବ କି ନାହିଁ ନିଶ୍ଚୟ ବୋଲାଯାଇ ନ ପାରେ ଓ ତାହା ଗୋଟିଏ ଫନ୍ଦା ସ୍ୱରୂପ ଥିବାରୁ ବିଶେଷକାର୍ଯ୍ୟ ନିମିତ୍ତ ଗଠିତ ହୋଇଥିବା ସ୍ଥାନୀୟ ସମିତିକି ସାଧାରଣଧନ ଦ୍ୱାରା ତାହା କହିବାର ଅଧିକାର ନାହିଁ। ଏପରି ଲୋକଙ୍କୁ ବାଣିଜ୍ୟ ବ୍ୟବସାୟ କରିବା କାରଣ ଉତ୍ସାହ ଦେବା ସ୍ଥାନୀୟସମିତିର କର୍ତ୍ତବ୍ୟ ହେଉଅଛି ତହିଁର ବିରୁଦ୍ଧାଚରଣ ବାଞ୍ଛନୀୟ ନୁହଇ। ଅତଏବ ବାଲେଶ୍ୱର ଡିଷ୍ଟ୍ରିକ୍ଟବୋର୍ଡ଼ଙ୍କ ବିଚାର କୌଣସିମତେ ଯୁକ୍ତିଯୁକ୍ତ ବୋଧ ହେଉ ନାହିଁ।

*ଭା/୨୩ଗ,ସଂ୪ଖ୍ୟା,୨୮/୧/୧୮୮୮*

# ଅଭ୍ୟର୍ଥନା ସଭା ।

ଭାରତ ଜାତୀୟସମିତିର ମାନ୍ଦ୍ରାଜଠାରେ ହୋଇଥିବା ତୃତୀୟଅଧିବେଶନରେ ଉପସ୍ଥିତ ହେବା ନିମିତ୍ତ ଏଠା ଉତ୍କଳସଭାରୁ ବାବୁ ମଧୁସୂଦନ ଦାସ ଓ ବାବୁ ଗୌରୀଶଙ୍କର ରାୟ ନିଜର ତ୍ୟାଗସ୍ୱୀକାର ପୂର୍ବକ ଯାଇ ସେଠା କାର୍ଯ୍ୟ ନିର୍ବାହାନ୍ତେ ଏ ନଗରକୁ ଫେରି ଆସିଥିବାରୁ ସେମାନଙ୍କୁ ଯଥାଯୋଗ୍ୟ ଅଭ୍ୟର୍ଥନା ପ୍ରଦାନ ନିମିତ୍ତ ଗତ ରବିବାରଦିନ ଏଠା ପ୍ରିଣ୍ଟିଂ କମ୍ପାନୀଙ୍କ ଦ୍ୱିତଳଗୃହରେ ଏକସଭା ହୋଇଥିଲା । ଅପରାହ୍ନ ଘ୪ଟିକା ସମୟରେ ସଭା ହେବାର ବିଜ୍ଞାପନ ଦିଆ ଯାଇଥିଲେହେଁ ତହିଁର ଅର୍ଦ୍ଧଘଣ୍ଟାପୂର୍ବରୁ ଲୋକେ ଆସିବାକୁ ଆରମ୍ଭ କଲେ ଏମନ୍ତ କି ଘ୪ଣ୍ଟା ସମୟକୁ ଗୃହଟି ପୂର୍ଣ୍ଣ ହୋଇଗଲା ଏବଂ କ୍ରମେ ଏତେଲୋକ ଆସିଛନ୍ତି ଯେ ଘର ବାରଣ୍ଡା ସମସ୍ତ ପୂର୍ଣ୍ଣ ହେବାରୁ ସ୍ଥାନ ନ ପାଇ ଅନେକଲୋକ ବାହୁଡ଼ି ଗଲେ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ଫିରିଙ୍ଗି, ମାରୁଆଡ଼ି, ମାନ୍ଦ୍ରାଜୀ, ସରକାରୀ କର୍ମଚାରୀ, ଜମିଦାର, ସଉଦାଗର ଇତ୍ୟାଦି ସମସ୍ତପ୍ରକାର ଲୋକ ଅନ୍ୟୂନ ପାଞ୍ଚଶତ ସଭାସ୍ଥଳକୁ ଆସି ଅଭ୍ୟର୍ଥନା କାର୍ଯ୍ୟରେ ଯୋଗ ଦେଇଥିଲେ କେବଳ ଉକୀଲଙ୍କ ସଂଖ୍ୟା ଊଣା ଥିଲା । ସେ ଦିନ ଏମାନଙ୍କର ଏକାର୍ଯ୍ୟରେ ଯେରୂପ ଉତ୍ସାହ ଦେଖାଗଲା ତାହା ଆମ୍ଭେମାନେ ଇତିପୂର୍ବେ କେବେହେଁ ଦେଖି ନ ଥିଲୁଁ ଏବଂ ଏ ସଭାରୁ ଏ ଦେଶୀୟ ଲୋକଙ୍କର ଜାତୀୟସମିତି ପ୍ରତି ପ୍ରଗାଢ଼ଭକ୍ତି ଏବଂ ଆଦର ଥିବା ଏବଂ ଯେଉଁ ପ୍ରତିନିଧିମାନେ ଏଠାରୁ ଯାଇଥିଲେ ତାଙ୍କଠାରେ ସେମାନଙ୍କର ବିଶ୍ୱାସ ଏବଂ ନିର୍ଭର ଥିବାର ସ୍ପଷ୍ଟ ପ୍ରମାଣ ମିଳିଲା ମଧ କଲିକତାଦି ଅଞ୍ଚଳର ଦୁଇ ତିନିଜଣ ମୁସଲମାନମାନେ ଜାତୀୟସମିତିରୁ ମୁସଲମାନମାନଙ୍କୁ ବିରତ କରିବା ଉଦ୍ଦେଶରେ ଯେଉଁ ଯତ୍ନ କରୁଅଛନ୍ତି ତହିଁକି ଏଠା ମୁସଲମାନମାନଙ୍କର ସହାନୁଭୂତି ନ ଥିବାର ସ୍ପଷ୍ଟ ପରିଚୟ ମିଳିଲା । ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟ ଏକବାକ୍ୟରେ ସଭାପତି ମନୋନୀତ ହୋଇ ସଭାପତିର ଆସନ ଗ୍ରହଣପୂର୍ବକ ଗୋଟିଏ କ୍ଷୁଦ୍ର ବକ୍ତୃତାରେ ସେ ସଭାର ଉଦ୍ଦେଶ୍ୟ ବିବରିତ କରି ପ୍ରତିନିଧିମାନଙ୍କୁ ପରିଚୟ କରାଇ ଦେଇ ସେମାନଙ୍କୁ ଗତ ମାନ୍ଦ୍ରାଜ ଅଧିବେଶନର କାର୍ଯ୍ୟାବଳୀ ବର୍ଣ୍ଣନା କରିବା କାରଣ ପ୍ରାର୍ଥନା କଲେ । ତହୁଁ ବାବୁ ମଧୁସୂଦନ ଦାସ ସଭ୍ୟମଣ୍ଡଳୀଙ୍କ ଉତ୍ସାହସୂଚକ ମହତୀ କରତାଳିଧ୍ୱନି ସହିତ ଉଥିତ ହୋଇ ଇଂରାଜୀଭାଷାରେ ତେଜଃପୂର୍ଣ୍ଣ ଦୀର୍ଘ ସୁଲଳିତ ବକ୍ତୃତାଦ୍ୱାରା ଜାତୀୟସମିତିର ଉଦ୍ଦେଶ୍ୟ ଏବଂ ଆବଶ୍ୟକତା ଓ ମାନ୍ଦ୍ରାଜ ଅଧିବେଶନର କାର୍ଯ୍ୟାବଳୀ ଉତ୍ତମରୂପେ ବୁଝାଇ ଦେଇ ସମୁଦାୟ ଭାରତବର୍ଷ ଏବଂ ଇଂଲଣ୍ଡରେ ଏ ବିଷୟର ଆନ୍ଦୋଳନ କରିବା କାରଣ ଅନୁରୋଧ କଲେ । ଦାସ ମହାଶୟଙ୍କ ବକ୍ତୃତାଟି ପ୍ରକୃତରେ ଅତ୍ୟନ୍ତ ମନୋହାରୀ ହୋଇଥିଲା ଏବଂ କିୟତ୍କ୍ଷଣ ବକ୍ତୃତା କଲା ଉତ୍ତାରୁ ଯେତେବେଳେ ସେ ସଭାପତିଙ୍କି କେତେକ୍ଷଣ ବକ୍ତୃତା କରିବାକୁ ପାରିବେ ବୋଲି ପଚାରିଲେ ତେତେବେଳେ ସଭ୍ୟମାନେ ଏକବାକ୍ୟରେ ଯେତେକ୍ଷଣ ସେ ବକ୍ତୃତା କରିବେ ତେତେକ୍ଷଣ ଶୁଣିବା ସକାଶେ ପ୍ରସ୍ତୁତ ଥିବାର ବ୍ୟକ୍ତ କଲେ । ଏହାଙ୍କ ଇଂରାଜୀଭାଷାରେ ଉତ୍ତମ ଅଧିକାର ଥିବା ବିଷୟ କାହାରିକି ଅବିଦିତ ନାହିଁ ଏବଂ ଏ ମହାଶୟ ପ୍ରାୟ ଦେଢ଼ଘଣ୍ଟା କାଳ ବକ୍ତୃତା କରିଥିଲେ ଓ ସଭ୍ୟମାନେ ଘନ ଘନ କରତାଳି ପ୍ରଦାନ ଏବଂ ଉତ୍ସାହସୂଚକ ବାକ୍ୟମାନ ପ୍ରୟୋଗ କରି ଆପଣାର ଆନନ୍ଦ ଜଣାଇଥିଲେ । ସୟଦ ଆମେଦ ହୁସେନ ବର୍ତ୍ତମାନ ଲକ୍ଷ୍ନୌଠାରେ ଜାତୀୟସମିତି ବିରୁଦ୍ଧରେ ଯେଉଁ ବକ୍ତୃତା କରିଅଛନ୍ତି ତାହାକୁ ଉଲ୍ଲେଖ କରି ତଦୁକ୍ତ ସମୁଦାୟ ଯୁକ୍ତି ତନ୍ନ ତନ୍ନ କରି ଖଣ୍ଡନ କରି କହିଲେ କି ମୁସଲମାନଧର୍ମ୍ମର ଆଦିନେତା ଯେଉଁ ମହମ୍ମଦ ସ୍ୱକୀୟ ସ୍ୱାର୍ଥତ୍ୟାଗର ଅଦ୍ଭୁତ ଉଦାହରଣ ଦେଖାଇ ସେହି ଭିତ୍ତିରେ ମୁସଲମାନ ଧର୍ମ୍ମ ସ୍ଥାପନ କରି ଯାଇଅଛନ୍ତି ତାଙ୍କରି ଧର୍ମ୍ମାବଲମ୍ବୀ ହୋଇ ଆପଣାର ପୁଅ ନାତି ପୁତୁରାର ମଙ୍ଗଳ ବାଞ୍ଛାରୂପ ଅଧମ ସ୍ୱାର୍ଥ ପ୍ରଣୋଦିତ ହୋଇ ସୟଦ ଆମେଦ ପ୍ରଭୃତି ଯେ ପଞ୍ଚବିଂଶକୋଟି ଭାରତବାସିଙ୍କର ଉନ୍ନତି ମୂଳରେ କୁଠାରାଘାତ କରିବାକୁ ବସିଅଛନ୍ତି ଏହା ନିତାନ୍ତ ଦୁଃଖର ବିଷୟ । ବାବୁ ମହାଶୟଙ୍କ ବକ୍ତୃତା ଶେଷ ହେଲା ଉତ୍ତାରୁ ଅନ୍ୟତର ପ୍ରତିନିଧି ବାବୁ ଗୌରୀଶଙ୍କର ରାୟଙ୍କୁ ସଭାପତି ବକ୍ତବ୍ୟ ବ୍ୟକ୍ତ କରିବା କାରଣ ପ୍ରାର୍ଥନା କଲେ । ସଭ୍ୟମାନଙ୍କମଧରେ ଅନେକେ ଇଂରାଜୀ ଜାଣି ନ

ଥିଲେ ସୁତରାଂ ସେମାନଙ୍କ ବୁଝିବା ନିମିତ୍ତ ବାବୁ ମହୋଦୟ ଓଡ଼ିୟାରେ ଗୋଟିଏ ସୁନ୍ଦର ବକ୍ତୃତା କରିଥିଲେ। ଏ ମହାଶୟ ଉଠିବା ସମୟରେ ମଧ୍ୟ ସଭ୍ୟମାନେ ପୂର୍ବ ପ୍ରାୟ ତୁମୁଳ କରତାଳି ଧ୍ୱନି କରିଥିଲେ ଏବଂ ବାବୁ ମହୋଦୟ କେବେ କୌଣସି ସମିତିରେ ବକ୍ତୃତା କରି ନ ଥିବା, ମଧ୍ୟ ବୟସାଧିକ ହେତୁ ଦାନ୍ତ ପଡ଼ିଯାଇଥିବାଯୋଗେ ବକ୍ତୃତା ଦେବାର ସମୟ ଅତିବାହିତ ହୋଇଥିବାର ବ୍ୟକ୍ତ କଲେ ସୁଦ୍ଧା ସଭ୍ୟମାନେ ତାହା ମାନିଲେ ନାହିଁ। ପ୍ରକୃତରେ ବାବୁ ମହାଶୟଙ୍କ ବକ୍ତୃତା ଯେରୂପ ହୃଦୟଗ୍ରାହୀ ସରଳ ଏବଂ ରହସ୍ୟଭାବୋଦ୍ରେକକାରୀ ଭାଷାରେ ବ୍ୟକ୍ତ ହୋଇଥିଲା ତହିଁରେ ସଭ୍ୟବୃନ୍ଦ ଅପାର ଆମୋଦ ଉପଭୋଗ କରିଥିଲେ ଏବଂ ପ୍ରତିଦିନ ଆମ୍ଭେମାନେ ଯାହା ଦେଖା ଶୁଣା କରୁଅଛୁଁ ସେହି ସବୁ ବିଷୟ ଉଲ୍ଲେଖ କରି ଏମନ୍ତ ସୁନ୍ଦର ଭାବରେ ଆପଣାର ଭାବ ବ୍ୟକ୍ତ କରିଥିଲେ ଯେ ସଭ୍ୟବୃନ୍ଦ ଘନ ଘନ କରତାଳି ଇତ୍ୟାଦିଦ୍ୱାରା ତହିଁରେ ଆଶାତିରିକ୍ତ ତୃପ୍ତିଲାଭ କରିଥିବାର ବ୍ୟକ୍ତ କଲେ। ସୟଦ ଆମେଦଙ୍କ ବକ୍ତୃତାକୁ ଉଲ୍ଲେଖ କରି ଏ ମହାଶୟ କହିଲେ ଯେ ତାହା ନିତାନ୍ତ ନୀଚତାର ପରିଚାୟକ ଏବଂ ଅନ୍ୟଠାରେ ଯାହା ଥାଉ ଏଠାରେ ଯେମନ୍ତ ଆଖଡ଼ା ତେମନ୍ତ ଦଶହରା ସମୟରେ ହିନ୍ଦୁ ଓ ମୁସଲମାନମାନେ ମିଳିମିଶି ଆମୋଦ ପ୍ରମୋଦ କରନ୍ତି ସୁତରାଂ ଏଠାରେ ଏମାନଙ୍କ ମଧ୍ୟରେ କଦାପି ବିଚ୍ଛେଦ ଜନ୍ମିବ ନାହିଁ। ତଦୁତ୍ତାରୁ ବାବୁ ରାମାକ୍ଷୟ ଚଟ୍ଟୋପାଧ୍ୟାୟ ଇଂରାଜୀଭାଷାରେ ଗୋଟିଏ କ୍ଷୁଦ୍ର ଅଥଚ ମନୋହାରିଣୀ ବକ୍ତୃତା କଲାରୁ ସଭାପତି ମହାଶୟ ସମୁଦାୟ ବକ୍ତୃତାମାନ ଆଲୋଚନା କରତଃ ସଭ୍ୟବୃନ୍ଦ ଏବଂ ପ୍ରତିନିଧିଦ୍ୱୟଙ୍କୁ ଧନ୍ୟବାଦ ପ୍ରଦାନ କରି ସଭା ଭଙ୍ଗ କଲେ। ତତ୍ପରେ ସଭାପତିଙ୍କି ଧନ୍ୟବାଦ ଦିଆ ଯାଇ ରାତ୍ର ପ୍ରାୟ ଘ୭ଣ୍ଟା ସମୟରେ ସଭା ଭଙ୍ଗ ହେଲା। ଏ ଦିନ ଅନେକଲୋକେ ବାରନ୍ଦା ଆଦିରେ ଠିଆ ହୋଇଥିଲେ ଏବଂ ଅନେକେ ସ୍ଥାନାଭାବରୁ ବାଧ୍ୟ ହୋଇ ଲେଉଟି ଗଲେ। ଏଠା ଲୋକଙ୍କର ଜାତୀୟସମିତି ପ୍ରତି ଏରୂପ ଆଦର ଅତୀବ ପ୍ରଶଂସନୀୟ ଏବଂ ଆମ୍ଭେମାନେ ଭରସା କରୁଁ କି ଏହିଠାରେ ଏହା ଶେଷ ନ ହୋଇ ପ୍ରତିଦିନ ପରିବର୍ଦ୍ଧିତ ହେଉ କାରଣ ଜାତୀୟସମିତିଦ୍ୱାରା ଭାରତର ମଙ୍ଗଳ ହେବାର ଯେଉଁ ଦ୍ୱାର ଉଦ୍‌ଘାଟିତ ହୋଇଅଛି ତାହା ଯାବତୀୟ ଭାରତବାସିଙ୍କ ଯତ୍ନ ଓ ଉତ୍ସାହ ବିନା ସଂଘଟିତ ହେବାର ଆଶା ନାହିଁ।

*ଭା୨୩ଗ, ସଂ୫ଖ୍ୟା, ୪।୨।୧୮୮୮*

## କଳିକାଳ।

ଶ୍ରୀବାବୁ ରାମଶଙ୍କର ରାୟ ପ୍ରଣୀତ ପ୍ରହସନ। ଉତ୍କଳଭାଷାରେ ଏପରି ଖଣ୍ଡିଏ ପୁସ୍ତକ ମୁଦ୍ରିତ ହେବାର ଦୃଶ୍ୟ ହୁଏ ନାହିଁ। ବିଚାରରେ ପ୍ରହସନ ବୋଲି ଏହାକୁ ବୋଲା ଯାଇ ନ ପାରେ। କୃଷ୍ଣଚରଣ ପାଣି ଶୋଚନୀୟ ନୋହିଲେହେଁ ହାସ୍ୟରସୋଦ୍ଦୀପକ ନୁହେ। ପୁନରପି ପ୍ରାନ୍ତଭାଗରେ ରସମଞ୍ଜରୀର ଯେଉଁ ଦୁଃଖ ପ୍ରକାଶିତ ହୋଇଅଛି ତାହା ସଂପୂର୍ଣ୍ଣ କରୁଣାରସୋଦ୍ଦୀପକ।

ଦର୍ଶକମଣ୍ଡଳୀର ଚିତ୍ତବୃତ୍ତି ଆଲୋଡ଼ନ କରିବାରେ ଗ୍ରନ୍ଥକାର କୌଣସି ତ୍ରୁଟି କରିନାହାନ୍ତି ଓ ସେମାନଙ୍କ ହୃଦୟତନ୍ତ୍ରୀର ସୂକ୍ଷ୍ମତମତନ୍ତ୍ରସ୍ପର୍ଶରେ ମଧ୍ୟ ସମ୍ପୂର୍ଣ୍ଣ କୃତକାର୍ଯ୍ୟ ହୋଇଅଛନ୍ତି। ଗୋଟିଏ ଗୋଟିଏ ଚରିତ୍ର ଜୀବନ୍ତ ଓ ପ୍ରକୃତରୂପେ ଚିତ୍ରିତ ହୋଇଅଛି। କିନ୍ତୁ ସ୍ଥୂଳରୂପେ ଏହି ପୁସ୍ତକକୁ ଭାଗ ଭାଗ କରି ବିଚାର କଲେ ଏ ଗୋଟିଏ ସ୍ୱତନ୍ତ୍ର ହାସ୍ୟ ଓ କରୁଣରସ ମିଶ୍ରିତ ନାଟକ ହୋଇଅଛି। ବଡ଼ ବଡ଼ ନାଟ୍ୟଶାଳାରେ ଲୋକମାନେ କରୁଣରସରେ ଆର୍ଦ୍ର ହୃଦୟ ଓ ବିଷନ୍ନ ହୋଇ ଗୃହକୁ ଫେରି ନ ଯିବେ ବୋଲି ଅଭିନେତୃବୃନ୍ଦ ପରିଶେଷରେ ଗୋଟିଏ କୌତୁକାବହ ସଂକ୍ଷିପ୍ତ ଓ ବିଶେଷରେ କଳ୍ପନାମୂଳକ ପ୍ରହସନ ଅଭିନୟ କରିଥାନ୍ତି ଯେ ଲୋକେ ପ୍ରଫୁଲ୍ଲଚିତ୍ତରେ ସ୍ୱ ସ୍ୱ ଗୃହକୁ ପ୍ରତ୍ୟାଗମନ କରିବେ। କିନ୍ତୁ ଏହାଦ୍ୱାରା ସେପରି ଫଳ ମିଳିବ ନାହିଁ। ବୋଧ ହୁଅଇ ସାମାନ୍ୟ ନାୟକ ନାୟିକାର ଇତରକଥା ଏହାର ବିଷୟ ହେବାରୁ ଗ୍ରନ୍ଥକାର ସେପରି ନାମ ଦେଇଅଛନ୍ତି। ସମାଜର ଦୋଷ ସଂଶୋଧନ ଏହାର ମୁଖ୍ୟ ଉଦ୍ଦେଶ୍ୟ ବୋଲି ଯାହା ଗ୍ରନ୍ଥକାର ମୁଖବନ୍ଧରେ ବ୍ୟକ୍ତ କରିଅଛନ୍ତି ସେ ଉଦ୍ଦେଶ୍ୟ ପ୍ରଚୁରରୂପେ ସିଦ୍ଧ ହେଉଅଛି। ଏଥିରେ ସନ୍ଦେହ ମାତ୍ର ନାହିଁ।

ଏବଂ ଏଥିର ଭାଷା ଓ ରଚନା ବାଞ୍ଛନୀୟ ହୋଇଅଛି। ଇତି।

ଏ ପୁସ୍ତକ ସମ୍ବନ୍ଧରେ ବାବୁ ରାଧାନାଥ ରାୟ ଯେଉଁ ମତ ପ୍ରଦାନ କରିଅଛନ୍ତି ଗ୍ରନ୍ଥକାରଙ୍କ ଅନୁରୋଧ କ୍ରମେ ନିମ୍ନେ ପ୍ରକାଶିତ ହେଲା।

I thank you for your kind present of "Kalikala" the first serio-comie farce in the Orya language. I have read the book with great pleasure. Some of the characters are drawn with that fine perception of the ludicrous which is essential to comedy . Kristna Charan and Bansibadan are almost life-like and we meet with their prototypes in society almost daily.

I must say, however, that I do not consider the little Prahasana fortunate. Taking the work as a whole it has more of tragedy in it than comedy.

*ଭା୨୩ଗ,ସଂ୮ଖ୍ୟା,୨୫।୨।୧୮୮୮*

## [ଇଂରାଜୀ ଭାଷାପ୍ରୀତି ]

ମହାଶୟ !

ନିମ୍ନଲିଖିତ କେତେକ ପଁକ୍ତିକୁ ଆପଣଙ୍କ ପତ୍ରିକାରେ ସ୍ଥାନଦାନ ଦେଇ ବାଧିତ କରିବା ହେବେ।

ଗତ ସଂଖ୍ୟକ ସଂସ୍କାରକରେ ବାବୁ ଲଳିତମୋହନ ଚକ୍ରବର୍ତ୍ତିଙ୍କର ମାନ୍ୟବର ଶ୍ରଦ୍ଧାସ୍ପଦ ଶ୍ରୀଯୁକ୍ତ ବାବୁ ମଧୁସୂଦନ ଦାସଙ୍କ ପ୍ରତି ବରାହଆକ୍ରୋଷ ଦେଖି ଯତ୍ପରୋନାସ୍ତି ଦୁଃଖିତ ହେବାକୁ ହୋଇଅଛି। ବାବୁ ମହୋଦୟ କେଉ ଦୋଷ ଲେଖି ଏପ୍ରକାର ଦଣ୍ଡ ଭୋଗ କରିଅଛନ୍ତି ତାହା ଆମ୍ଭେ ପିନଲ କୋଡ଼ର ପ୍ରତ୍ୟେକ ପୃଷ୍ଠା ପୁଙ୍ଖାନୁପୁଙ୍ଖ ଅନ୍ୱେଷଣ କରି କୌଣସି ଦଫା ପାଇଲୁଁ ନାହିଁ। ଯଦି ପିନଲକୋଡ଼ ନୂତନ ସଂସ୍କରଣ ହୋଇଥାଏ ତାହା ହେଲେ ସେ ଭିନ୍ନ କଥା। ଦୋଷ ମଧ୍ୟରେ ଏହି ଯେ ବାବୁ ମହୋଦୟ ଜାତୀୟସମିତିର କଥା ଇଂରାଜୀଭାଷାରେ କହି ଅଛନ୍ତି। ଏହା କି ଦୂଷଣୀୟ ? ଜାତୀୟସମିତି କାହାକୁ କହନ୍ତି ଏବଂ ଏହା କି ନିମନ୍ତେ ହୋଇଥିଲା ସେ କଥା ଓଡ଼ିଶାର ସାଧାରଣ ଲୋକ କେତେଜଣ ଜାଣନ୍ତି ? ଯେଉଁମାନେ ସେ ଭାବ ବୁଝନ୍ତି ସେମାନଙ୍କ ମଧ୍ୟରୁ ଶତକଡ଼ା ୯୯ ଜଣ ଇଂରାଜୀ ଭାଷା ଜାଣନ୍ତି। ଏପ୍ରକାର ସ୍ଥଳେ ପ୍ରଥମେ ଇଂରାଜୀରେ କହି ତତ୍ପରେ ଓଡ଼ିଆରେ ସେ କଥା ବୁଝାଇଦେବାଦ୍ୱାରା କି ମହାପାପ ହୋଇଅଛି। ତାହା ବୁଝା ଯାଉ ନାହିଁ।

କାଳୀଦାସଙ୍କୁ ପ୍ରକୃତରୂପେ ଜାଣିବାକୁ ହେଲେ ସଂସ୍କୃତ, ସେକ୍ସପିଅରଙ୍କୁ ଜାଣିବାକୁ ହେଲେ ଇଂରାଜୀ ଏବଂ ଫରଦୁସିଙ୍କୁ ଜାଣିବାକୁ ହେଲେ ଫାର୍ସିଭାଷା ବିଶଦରୂପେ ଜାଣିବା ଯେପରି ନିତାନ୍ତ ପ୍ରୟୋଜନୀୟ, ସେହିପରି ଜାତୀୟସମିତି ବିରାଟସଭାରେ ଯେଉଁ ଭାଷାରେ କାର୍ଯ୍ୟ ହୋଇଥିବ ସେହି ଭାଷାରେ ଅନ୍ୟସ୍ଥାରେ ପ୍ରକାଶ କଲେ ତଦ୍ୱାରା ବିରାଟସଭାସ୍ଥ କାର୍ଯ୍ୟପ୍ରଣାଳୀ ଓ ତତ୍ରସ୍ଥ ଲୋକମାନଙ୍କର ହୃଦୟର ଭାବ ବହୁଳପରିମାଣରେ ଜଣାଯିବ ଏଥିରେ କିଛି ସନ୍ଦେହ ନାହିଁ । ଏ କଥା ସତ୍ୟ କି ମିଥ୍ୟା ଯେଉଁ ଇଂରାଜୀ ଓ ଓଡ଼ିଆଭାଷାଜ୍ଞ ଲୋକ କଟକ ସଭାରେ ଉପସ୍ଥିତ ଥିବେ ସେ ତାହା ଜାଣି ପାରିଥିବେ।

ପୁନଶ୍ଚ ବକ୍ତୃତା କରିବା କାର୍ଯ୍ୟ ଅଭ୍ୟାସ ଉପରେ ନିର୍ଭର କରେ ଯେଉଁ ଲୋକ ଯେଉଁ ଭାଷାରେ ବିଶେଷ ଅଭ୍ୟାସ କରିଅଛି ସେ ଭାଷାରେ ସେ ବିଶଦରୂପେ କହି ପାରିବ। ସୁତରାଂ ମଧୁବାବୁ ଯେ ଜଣେ ଇଂରାଜୀଭାଷାରେ କହିବା ବିଷୟରେ ପଟୁ ଏକଥା କିଏ ଅସ୍ୱୀକାର କରିବ ?

ଆହୁରି, ଇଂରାଜୀଭାଷାରେ ଯେତେ ରାଜନୈତିକ ଶବ୍ଦମାନ ଅଛି ତାହା ଓଡ଼ିୟା ବା ବଙ୍ଗଳାଭାଷାରେ ନାହିଁ। ବକ୍ତୃତା ସମୟରେ ବକ୍ତୃତାକାରୀ ସେ ଶବ୍ଦମାନଙ୍କୁ ଅନୁବାଦ କରି କହିବାକୁ ଗଲେ ଯେ ବକ୍ତୃତାର କେତେ ରସଭଙ୍ଗ ହେବ ଏହା କିଏ ଅସ୍ୱୀକାର କରିବ ?

ଏହିସବୁ ଏବଂ ଅନ୍ୟାନ୍ୟ ଉପଯୁକ୍ତ କାରଣ ଥାଉଁ ଥାଉଁ ଲଳିତବାବୁ କାହିଁକି ହଠାତ୍ ସେପ୍ରକାର ଅଯଥା କଟୁକ୍ତି ପ୍ରୟୋଗ କରି ଉକ୍ତ ମହାତ୍ମାଙ୍କର ସାତପୁରୁଷ ସୋଧି ଅଛନ୍ତି ତାହାର କୌଣସି କାରଣ ପ୍ରକାଶ ପାଉ ନାହିଁ। ଲଳିତବାବୁଙ୍କ ଢଙ୍ଗ ଦେଖି କେହି କେହି କହୁଅଛନ୍ତି ଯେ ସେ ବଡ଼ଲୋକମାନଙ୍କ ଉପରେ ମତ ପ୍ରକାଶ କରି ଆପଣା ନାମ ବିଖ୍ୟାତ କରିବାକୁ ଋହାନ୍ତି ଏବଂ ଭଲ ମନ୍ଦ ନ ବୁଝି ଆଜି ବାମଣ୍ଡାଙ୍କ ଉପରେ କାଲି ମଧୁବାବୁଙ୍କ ଉପରେ କଳାପାହାଡ଼ିଆ ଯଶଲାଭ ନିମନ୍ତେ କୁଣ୍ଠିତ ହେଉ ନାହାନ୍ତି। ମାତ୍ର ଏପ୍ରକାର ଅଭିପ୍ରାୟ ଲଳିତବାବୁଙ୍କର ନୁହେଁ ତାହା ଆମ୍ଭେ ଜାଣୁଁ। ଲଳିତବାବୁଙ୍କର ଦୋଷ ଏହି ଯେ ସେ ସମୁଦାୟ କଥାର ଆଗ ପଛ ବିଋର ନ କରି ହଠାତ୍ ଯୌବନ-ସୁଲଭ ରକ୍ତ ତେଜରେ କଣାମେଘପରି ଅସରାଏ ବର୍ଷି ଦିଅନ୍ତି । ଏକଥା ପ୍ରଥମ ଅବସ୍ଥାରେ ହୋଇଥାଏ ଏବଂ ତାହା ମାର୍ଜନୀୟ । କିନ୍ତୁ ସଂପାଦକମାନଙ୍କର ଏକଆଡିଆସତରେ ଲିଖିତପତ୍ରମାନ ପ୍ରକାଶ କରିବା ବିଚାର ଉପରେ ନିର୍ଭର କରେ ଏବଂ ଉକ୍ତ ପତ୍ର ମଧ୍ୟରୁ ଦୋଷଯୁକ୍ତ ପଁକ୍ତିମାନ ପରିତ୍ୟାଗ କରି ଦେଉଥିଲେ ଉତ୍ତମ ହେଉଥାନ୍ତା। ଆମ୍ଭେ ଅନୁରୋଧ କରୁଁ ଯେ ଲଳିତବାବୁ କଟୁକ୍ତି ପ୍ରୟୋଗ ନ କରି ଧୀରସମୀରେ ଯମୁନାତୀରେ ପରିଭ୍ରମଣ ପୂର୍ବକ ଆପଣା ମତ ଓ କଥାର ମୂଲ୍ୟ ରଖନ୍ତୁ।

ପରିଶେଷରେ ସ୍ୱଦେଶ ହିତାକାଂକ୍ଷୀ ପରମଭକ୍ତିଭଜନ ଶ୍ରୀଯୁକ୍ତ ବାବୁ ମଧୁସୂଦନ ଦାସ ଓ ଗୌରୀଶଙ୍କର ରାୟ ମହୋଦୟମାନଙ୍କୁ ଉତ୍କଳର ହିତରେ ସଦାବ୍ରତୀ ଥିବାରୁ ଅନ୍ତର ସହିତ ଧନ୍ୟବାଦ ଦେଉଅଛୁଁ।

ଶ୍ରୀ ଦା ---

*ଭା୨୩ଗ,ସଂ୮ଖ୍ୟା,୨୫।୨।୧୮୮୮*

## ପ୍ରେରିତପତ୍ର ।

## [କଳିକାଳ ନାଟକ ]

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ।

ମହାଶୟ,

ଆମ୍ଭପ୍ରଣୀତ "କଳିକାଳ" ନାଟକ ସମ୍ବନ୍ଧରେ ଓଡ଼ିଶା ସ୍କୁଲ ସମୂହର ଜଏଣ୍ଟଇନ୍‌ସ୍ପେକ୍ଟର ବାବୁ ଶ୍ରୀ ରାଧାନାଥ ରାୟ ମହୋଦୟ ଯେଉଁ ମତ ପ୍ରଦାନ କରିଥିଲେ ତାହା ଆପଣ ଆମ୍ଭପ୍ରାର୍ଥନାମତେ ପ୍ରକାଶ କରିଥିବାରୁ ଆମ୍ଭେ ଆପଣାର କୃତଜ୍ଞତା ପ୍ରକାଶ କରୁଅଛୁଁ। ତହିଁର ଦ୍ୱିତୀୟ ପରିଚ୍ଛେଦରେ ବାବୁ ମହୋଦୟ ଲେଖିଥିଲେ "I must say, however, that I do not consider the title Prahasana fortunate." ମାତ୍ର ଆପଣଙ୍କର ବିଜ୍ଞ କମ୍ପୋଜିଟର ମହାଶୟ, "title" ସ୍ଥାନରେ "little" ବସାଇ ଦେଇ ମହାଅନର୍ଥ ଘଟାଇ ଅଛନ୍ତି। ଏ ବିଷୟ ଆପଣ ଏବଂ ଆପଣଙ୍କ ପାଠକବର୍ଗଙ୍କ ବିଦିତାର୍ଥ ନିବେଦନ କଲି।

ପରିଶେଷରେ ଏ ପୁସ୍ତକକୁ ପ୍ରହସନ ବୋଲି ଅଭିହିତ କରିବା ପକ୍ଷେ ଆପଣ ଯାହା ଅନୁମାନ କରିଅଛନ୍ତି ତାହା ଯଥାର୍ଥ ଅଟଇ। ଇଂରାଜୀରେ ଫାର୍ସ (Farce) ଶବ୍ଦ ଅତି ବିସ୍ତୃତ ଅଟଇ। ଭାଷାରେ ତହିଁର ନାମକରଣ ଅଦ୍ୟାପି ହୋଇ ନାହିଁ। ବଙ୍ଗଳାରେ 'ପ୍ରହସନ' ଶବ୍ଦ 'ଫାର୍ସ' ପରିବର୍ତ୍ତରେ ବ୍ୟବହୃତ ହେଉଥିବାର ଦେଖି ଆମ୍ଭେ ସେହି ଶବ୍ଦ ବ୍ୟବହାର କରିଅଛୁଁ। ପୁସ୍ତକ ରଚିତ ହେବା ସମୟରେ ଆମ୍ଭେ ମାନେ "ଉପନାଟକ" ବୋଲି ଅଭିହିତ **xxxx** ନୂତନ ନାମପ୍ରତି କାଳେ କେହି **xxxx** । ଏହି ହେତୁ ଏବଂ "ଫାର୍ସ" **xxxx** ହୋଇ ନ ଥିବା.**xxxx** ଶବ୍ଦ ବସାଇଅଛୁଁ । **xxxx** ସିଦ୍ଧ ହୋଇଥାଏ ତେବେ ନାମକରଣ ପକ୍ଷରେ ଯେ ଦୋଷ ହୋଇଅଛି ତାହା ବୋଧହୁଏ ପାଠକେ ମାର୍ଜନା କରିବାକୁ କୁଣ୍ଠିତ ହେବେ ନାହିଁ। ଇତି

କଟକ
୮।୩।୮୮

ଆପଣଙ୍କର
ଶ୍ରୀ ରାମଶଙ୍କର ରାୟ

*ଭା୨୩ଗ,ସଂ୧୧ଖ୍ୟା,୧୭।୩।୧୮୮୮*

## ପୁସ୍ତକପ୍ରାପ୍ତି ।

ଆମ୍ଭେମାନେ ତଳଲିଖିତ ପୁସ୍ତକମାନ ଉପହାର ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ। ଏଥିମଧ୍ୟରୁ କେତେଖଣ୍ଡ ପୁସ୍ତକ ସମ୍ବନ୍ଧରେ ବହୁବିଳମ୍ବ ହୋଇଥିବାରୁ ବିନୀତଭାବରେ ପ୍ରେରକଙ୍କ ନିକଟରେ କ୍ଷମାପ୍ରାର୍ଥନା କରୁଅଛୁଁ।

ପଦାର୍ଥବିଜ୍ଞାନ - ବାବୁ ରାମକୃଷ୍ଣସାହୁଙ୍କ ଦ୍ୱାରା ପ୍ରକାଶିତ ଓ ଏ ନଗରସ୍ଥ ଭିକ୍ଟୋରିଆ ଯନ୍ତ୍ରାଳୟରେ ମୁଦ୍ରିତ ଓ ବାବୁ ନନ୍ଦକିଶୋରଦାସଙ୍କୁ ଉତ୍ସର୍ଗିତ ମୂଲ୍ୟ ଟ୦।୶୶ଏ ଗ୍ରନ୍ଥ କଟକକଲେଜର ଭୂତପୂର୍ବ ବିଜ୍ଞାନାଧ୍ୟାପକ ବାବୁ ଯୋଗେଷଚନ୍ଦ୍ର ରାୟଙ୍କ କୃତବଙ୍ଗଳା ପଦାର୍ଥବିଜ୍ଞାନର ଉତ୍କଳ ଅନୁବାଦ ଅଟଇ। ପ୍ରକାଶକ ବହୁବ୍ୟୟ ସ୍ୱୀକାର କରି ଚିତ୍ରମାନ ଏଠାରେ ଖୋଳାଇ ଏ ପୁସ୍ତକକୁ ସର୍ବାଙ୍ଗସୁନ୍ଦର କରିଅଛନ୍ତି ଏବଂ ଉତ୍କଳରେ ଯେତେ ପଦାର୍ଥବିଜ୍ଞାନ ପୁସ୍ତକ ପ୍ରଚଳିତ ଅଛି ସବୁଠାରୁ ବୃହତ୍ ଓ ପୂର୍ଣ୍ଣାବୟବ ହୋଇଅଛି ସନ୍ଦେହ ନାହିଁ। ପାଠ୍ୟପୁସ୍ତକକମିଟୀ ଏହାକୁ ପାଠ୍ୟପୁସ୍ତକ ମଧ୍ୟରେ ସ୍ଥାନଦାନ ପୂର୍ବକ ପ୍ରକାଶକଙ୍କୁ ଯଥୋଚିତ ଉତ୍ସାହ ଦାନ କରିଅଛନ୍ତି। କେବଳ ମୋଫସଲର ଶିକ୍ଷକମାନେ ଏହାକୁ ଭଲକରି ପଢ଼ାଇ ପାରିଲେ ସକଳ ଆଶା ପୂର୍ଣ୍ଣ ହେବ।

ପାଟୀଗଣିତ ପ୍ରଥମ ଭାଗ - ନିମ୍ନ ଓ ଉଚ୍ଚ ପ୍ରାଇମେରୀ ବିଦ୍ୟାଳୟର ଛାତ୍ରମାନଙ୍କ ନିମିତ୍ତ ବାରିପଦା ମଧ୍ୟମଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ବାବୁ ଚୈତନ୍ୟପ୍ରସାଦ ରାୟଙ୍କଦ୍ୱାରା ସଙ୍କଳିତ ଏବଂ ମୟୂରଭଞ୍ଜ ରାଜଯନ୍ତ୍ରାଳୟରେ ମୁଦ୍ରିତ, ମୂଲ୍ୟ ଆଠଅଣା । ମୟୂରଭଞ୍ଜଯନ୍ତ୍ରାଳୟରୁ ପ୍ରଥମରେ ଏହି ବଡ଼ପୁସ୍ତକ ବାହାରିବାର ଆମ୍ଭେମାନେ ଦେଖିଲୁଁ ଏବଂ ତଦୃଷ୍ଟିରେ ଏହାର ମୁଦ୍ରାଙ୍କନ କାର୍ଯ୍ୟ ମନ୍ଦ ବୋଲାଯାଇ ନ ପାରେ। ପୁସ୍ତକଖଣ୍ଡିକ ଉମେଶ ବାବୁଙ୍କ ପାଟୀଗଣିତର ଆଦର୍ଶରେ ହୋଇଅଛି ଏବଂ ତହିଁର ପ୍ରଥମଭାଗ ଅପେକ୍ଷା ଏଥିରେ ଉଣା ବିଷୟ ଥିଲେ ହେଁ ଯେଉଁ ଦେଶରେ ହୋଇଅଛି ତହିଁପାଇଁ ଯଥେଷ୍ଟ ଅଟଇ ଓ ଉଦାହରଣ ପ୍ରଚୁରପରିମାଣରେ ଦିଆଯାଇଅଛି। ପୁସ୍ତକର କଳେବର ଦୃଷ୍ଟିରେ ମୂଲ୍ୟ ସୁଲଭ ହୋଇଅଛି। ଭରସା କରୁଁ ପୁସ୍ତକ ନିର୍ବାଚନ-କମିଟୀ ଏଥିପ୍ରତି ସୁବିଚାର କରିବେ।

ଭାରତବର୍ଷର ସଂକ୍ଷିପ୍ତଭୂଗୋଳ -ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟଙ୍କ ଦ୍ୱାରା ସଂଗୃହୀତ ଓ ଉତ୍କଳହିତୈଷିଣୀଯନ୍ତ୍ରରେ ମୁଦ୍ରିତ। ମୂଲ୍ୟ ଦୁଇଅଣା— ଏଥିରେ ଭାରତବର୍ଷର ଦୁଇଖଣ୍ଡ କ୍ଷୁଦ୍ର କ୍ଷୁଦ୍ର ମାନଚିତ୍ର ଅଛି। ପୁସ୍ତକର କଳେବର ପୃ ୩୨ ଷା ସୁତରାଂ ଯେତେ ସଂକ୍ଷେପ ହୋଇପାରେ ତାହା ହୋଇଅଛି ଏବଂ ସରଳମତି ବାଳକଙ୍କ ପକ୍ଷରେ ଉପଯୋଗୀ ହେବା ପ୍ରତି ଗ୍ରନ୍ଥକାରଙ୍କ ଦୃଷ୍ଟି ରହିଥିବାର ପ୍ରକାଶ ପାଉଅଛି ଠାବେ ଠାବେ ଭାଷାର ସାମାନ୍ୟ ବିକୃତି ଓ ବର୍ଣ୍ଣାଶୁଦ୍ଧି ଯାହା ରହି ଯାଇଅଛି ଅନ୍ୟ ସଂସ୍କରଣରେ ଘୁଞ୍ଚି ଯାଇପାରେ।

ଅବତାର ଚୌତିଶା— ପଣ୍ଡିତ ଶ୍ରୀ ଦୟାନିଧି ଶାସ୍ତ୍ରୀଙ୍କଦ୍ୱାରା ରଚିତ ଏବଂ ଉତ୍କଳହିତୈଷଣୀ ଯନ୍ତ୍ରାଳୟରେ ମୁଦ୍ରିତ ମୂଲ୍ୟ ଟ ୦।୩ । ନାମରୁ ପୁସ୍ତକର ପରିଚୟ ପ୍ରାପ୍ତ ହେଉଅଛି ଏବଂ ଦଶଅବତାରର ଦଶଟି ପ୍ରତିମୂର୍ତ୍ତି ସନ୍ନିବେଶିତ ହେବାରୁ ଏହାକୁ ଉତ୍କଳର ପ୍ରଥମ ସଚିତ୍ର ଚୌତୀଶା ବୋଲା ଯାଇପାରେ। ରଚନା ମନ୍ଦ ହୋଇ ନାହିଁ ଏବଂ ବାହୁଲ୍ୟ ଅର୍ଥ ଓ ଐତିହାସିକ ଟୀକା ଦିଆ ଯାଇଥିବାରୁ ପାଠକଙ୍କ ବୁଝିବା ପକ୍ଷରେ ସୁଗମ ହୋଇଅଛି।

ରତ୍ନାକର ପ୍ରଥମଖଣ୍ଡ ବାବୁ ନାରାୟଣ ମିଶ୍ରଙ୍କ ଦ୍ୱାରା ସଂଗୃହୀତ ଏବଂ ବାବୁ ଭଗବାନ ଖାଡ଼ଙ୍ଗାଙ୍କ ଦ୍ୱାରା ପ୍ରକାଶିତ ଓ କଟକ ଭିକ୍ଟୋରିଆ ଯନ୍ତ୍ରାଳୟରେ ମୁଦ୍ରିତ। ମୂଲ୍ୟ ଟ ୦।୬। ଏପୁସ୍ତକ କଟକ ନର୍ମାଲସ୍କୁଲର ସୁପରିଣ୍ଟେଣ୍ଡେଣ୍ଟ ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତିଙ୍କି ଉତ୍ସର୍ଗିତ ହୋଇଅଛି। ଏଥିର କଳେବର ୧୩ ପୃଷ୍ଠା। ବଙ୍ଗଳା କୌତୁକତରଙ୍ଗିଣୀ ପୁସ୍ତକ ଆଦର୍ଶରେ ଏହା ପ୍ରଣୀତ ହେବାର ଜଣାଯାଏ। ଏଥିରେ କେତେଗୁଡ଼ିଏ ସାମାନ୍ୟ ଭୋଜବାଜିର କୌଶଳ ଯଥା କାଚ ଛେଦାଇବା, ଅଗ୍ନିଧରିବା, ଘଣ୍ଟାକ ମଧ୍ୟରେ ଗଛ ପ୍ରସ୍ତୁତ କରିବା ଓ ଗୃହୀଲୋକର ଉପଯୋଗୀ ବସ୍ତ୍ର ଓ ଅଳଙ୍କାରାଦିର ଦାଗ ଛଡ଼ାଇବା ଗାମୁଛା ରଙ୍ଗିବା ମଶା ମାଛିର ଉପଦ୍ରବ ଲଘିବା ଇତ୍ୟାଦି ନାନାବିଷୟର ସହଜ ଉପାୟ ବର୍ଣ୍ଣିତ ହୋଇଅଛି।

*ଭା୨୩ଗ,ସଂ୧୫ଖ୍ୟା,୧୪।୪।୧୮୮୮*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## [ ଓଡିଶା ପେଟ୍ରିୟଟ ପତ୍ରିକା]

ଓଡ଼ିଶାପେଟ୍ରିୟଟ ନାମରେ ଖଣ୍ଡିଏ ଇଂରାଜୀସମ୍ବାଦପତ୍ର ଆମ୍ଭେମାନେ ଗତ ସପ୍ତାହରେ ପାଇ ନାମ ଦେଖି ମନେ କରିଥିଲୁଁ କି ସଂସ୍କାରକଙ୍କ ଅଦର୍ଶନରେ କାଳୀବାବୁଙ୍କ ପ୍ରକାଶିତ ପୁରୁଣା ଓଡିଶାପେଟ୍ରିୟଟ୍ ବା ଉତ୍କଳ ହିତୈଷିଣୀ ପୁନର୍ଜୀବିତ ହେଲା ପରା ମାତ୍ର ତାହା ପାଠ କରି ଅବଗତ ହେଲୁଁ ଯେ ଏ ସମ୍ବାଦପତ୍ର ସଂସ୍କାରକର ରୂପାନ୍ତର ଅଟଇ। ସମ୍ପାଦକ ଲେଖିଅଛନ୍ତି କି ସଂସ୍କାରକ ଗତ ପାଞ୍ଚବର୍ଷ ଚମତ୍କାର କାର୍ଯ୍ୟ କରିବାରୁ ତାହାଙ୍କର ବନ୍ଧୁ ଓ ସ୍ୱଦେଶୀୟମାନେ ସନ୍ତୁଷ୍ଟ ହୋଇ ଉତ୍କଳହିତୈଷୀ ଉପାଧି ପ୍ରଦାନ କରିଅଛନ୍ତି ଅତଏବ ଏଣିକି ସଂସ୍କାରକ ଉକ୍ତ ନାମ ଧାରଣ କଲେ। ଏ ସମ୍ବାଦପତ୍ରର ମୂଲ୍ୟ ପୂର୍ବପ୍ରାୟ ରହିଲା କେବଳ ପ୍ରଭେଦ ଏତିକି ଯେ ସଂସ୍କାରକର ଓଡ଼ିଆ ଏଥିରେ ପ୍ରକାଶିତ ନ ହୋଇ ଖଣ୍ଡିଏ ମାସିକପତ୍ରିକାରେ ସଂଯୁକ୍ତ ହେବ ଏବଂ ତାହା ଶୀଘ୍ର ବାହାରିବାର ବନ୍ଦୋବସ୍ତ ଲାଗିଅଛି। ଏଥିରୁ ପାଠକମାନେ ଦେଖିବେ ଯେ ସଂସ୍କାରକ ଅଧିକ ଦିନ ଅଦୃଶ୍ୟ ନ ହୋଇ ନୂତନ ଉପାଧି ଧାରଣପୂର୍ବକ କେବଳ ଇଂରାଜୀଭାଷାରେ ଉତ୍କଳରେ ବିରାଜିତ ହେଲେ ମାତ୍ର ସୁତ୍କଳପ୍ରେସର ମାନେଜର ବିଜ୍ଞାପନ ଦେଇଅଛନ୍ତି କି ସଂସ୍କାରକର ବକୀୟା ମୂଲ୍ୟ ଗ୍ରାହକମାନେ ଶୀଘ୍ର ପ୍ରଦାନ ନ କଲେ ଓଡ଼ିଶାପେଟ୍ରିୟଟ୍ ଅଧିକଦିନ ରହି ପାରିବ ନାହିଁ। ଆମ୍ଭେମାନେ ଭରସା କରୁଁ ଗ୍ରାହକମାନେ ଏଥର ତତ୍ପର ହୋଇ ମୂଲ୍ୟ ପ୍ରଦାନ କରିବେ।

*ଭା୨୩ଗ, ସଂ୧୭ଖ୍ୟା, ୨୮।୪।୧୮୮୮*

## ପୁସ୍ତକପ୍ରାପ୍ତି

ସୁଚିତ୍ରରାମାୟଣ —ଶ୍ରୀ ବାବୁ ଭାଗୀରଥୀ ଷାଠିୟାଙ୍କଦ୍ୱାରା ରଚିତ ଏବଂ କଟକ ପ୍ରିଣ୍ଟିଂ କୁମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତମୂଲ୍ୟ ଚାରିଅଣା ଏ ପୁସ୍ତକର ଆକାର ୧୨ ପେଜି ପୃ୪୩ଷ୍ଠା ଏଥିରେ ନାନା ରାଗ ଛା୪୧ନ୍ଦରେ ରାମାୟଣର ପ୍ରଧାନ ବିବରଣ ସରଳ ଅଥଚ ସରସଭାଷାରେ ଅତି ସଂକ୍ଷିପ୍ତରୂପେ ବର୍ଣ୍ଣିତ ହୋଇଅଛି। ବାବୁ ଭାଗୀରଥୀ ଷାଠିୟା କଟକ ପ୍ରିଣ୍ଟିଂକୁମ୍ପାନୀଙ୍କ ପ୍ରିଣ୍ଟର ଅଟନ୍ତି କବିତାରଚନାରେ ତାହାଙ୍କର ଏହି ପ୍ରଥମ ଚେଷ୍ଟା ସଫଳ ହେବାର ଦେଖି ଆମ୍ଭେମାନେ ଆନନ୍ଦିତ ହେଲୁଁ। ଗ୍ରନ୍ଥକାରଙ୍କ ଅନୁରୋଧମତେ ବାବୁ ରାଧାନାଥ ରାୟ ଜଏଣ୍ଟ ଇନ୍‌ସ୍ପେକ୍‌ଟରଙ୍କ ଏହି ପୁସ୍ତକ ସମ୍ପର୍କୀୟ ମନ୍ତବ୍ୟ ଏଠାରେ ପ୍ରକାଶ କଲୁଁ ଯଥା —

"ଆପଣଙ୍କ ପ୍ରଣୀତ ସୁଚିତ୍ରରାମାୟଣର ଉପହାର କୃତଜ୍ଞଚିତ୍ତରେ ଗ୍ରହଣ କଲୁଁ। ପୁସ୍ତକର ଭାଷାପ୍ରାଞ୍ଜଳ ଏବଂ ରଚନା ଏକ ଏକ ସ୍ଥାନରେ ପ୍ରୀତିପ୍ରଦ ହୋଇଅଛି। ଆମ୍ଭେ ଆଶା କରୁଁ ଆପଣଙ୍କର ଏହି ସଦୁଦ୍ୟମ ସାଧାରଣଙ୍କଠାରୁ ଉଚିତ ଉତ୍ସାହଲାଭ କରି ପାରିବ।" ବୋଲିବା ବାହୁଲ୍ୟ ଯେ ଏଥିରେ ଆମ୍ଭେମାନେ ସମ୍ପୂର୍ଣ୍ଣ ଐକ୍ୟ ଅଛୁଁ। ଭରସା କରୁଁ ସର୍ବସାଧାରଣ ଗ୍ରନ୍ଥକାରଙ୍କ ଆଶା ସଫଳ କରିବେ।

ଉତ୍କଳ ପରିମିତି— କଟକ ସର୍ଭେସ୍କୁଲର ହେଡ଼ମାଷ୍ଟର ବାବୁ ଉମେଶଚନ୍ଦ୍ର ବସୁଙ୍କଦ୍ୱାରା ପ୍ରଣୀତ ଏବଂ କଟକ ଭିକ୍‌ଟୋରୀଆଯନ୍ତ୍ରରେ ମୁଦ୍ରିତ ମୂଲ୍ୟ ଟ ୦୳୵। ଏ ପୁସ୍ତକର କଳେବର ୧୨ ପେଜି ୧୩୧ ପୃଷ୍ଠା। ଏ ପୁସ୍ତକର ବିଜ୍ଞାପନରୁ ପ୍ରକାଶ ଯେ ମାଇନର ଓ ଛାତ୍ରବୃତ୍ତି ପରୀକ୍ଷାର୍ଥୀ ଏବଂ ସର୍ଭେ ଓ ନର୍ମାଲସ୍କୁଲର ଛାତ୍ରମାନଙ୍କର ପାଠୋପଯୋଗୀ ସମସ୍ତ ବିଷୟ ଏଥିରେ ସନ୍ନିବେଶିତ ହୋଇଅଛି ଏବଂ ଏଥିର ପ୍ରଣୟନ ବିଷୟରେ ବାବୁ ଭୂପତିନାଥ ବସୁ ବି,ଏ, ଓ ବାବୁ ଚକ୍ରଧର ଆଚାର୍ଯ୍ୟ ସାହାଯ୍ୟ କରିଅଛନ୍ତି ଏବଂ ବାବୁ ରାଧାନାଥ ରାୟ ଜଏଣ୍ଟ ଇନ୍‌ସ୍ପେକ୍‌ଟର ଏହାକୁ ଆଦ୍ୟପ୍ରାନ୍ତ ପାଠ କରି ଆବଶ୍ୟକମତେ ସଂଶୋଧନ କରି ଦେଇଅଛନ୍ତି। ଏଥି ଉତ୍ତାରୁ ବୋଲିବା ବାହୁଲ୍ୟ ଯେ ଏ ପୁସ୍ତକଖଣ୍ଡିକ ଉତ୍କୃଷ୍ଟ ହୋଇଅଛି ଏବଂ ଏହାଦ୍ୱାରା ଉତ୍କଳଭାଷାପୁସ୍ତକର ଗୋଟିଏ ଅଭାବ ଦୂର ହୋଇଅଛି। ଆମ୍ଭେମାନେ ଏକାନ୍ତ ଆଶା କରୁଁ କି ପୁସ୍ତକନିର୍ବାଚନ କମିଟୀ ଏହାକୁ ପାଠ୍ୟପୁସ୍ତକ ବୋଲି ଧାର୍ଯ୍ୟ କରି ଗ୍ରନ୍ଥକାରଙ୍କୁ ସମୁଚିତରୂପେ ଉତ୍ସାହିତ କରାଇବେ।

ପାଚକ ସଂଗ୍ରହ - ଡାକ୍ତର ରାମକୃଷ୍ଣ ସାହୁଙ୍କଦ୍ୱାରା ପ୍ରଣୀତ ଏବଂ କଟକ ଭିକଟୋରୀଆ ଯନ୍ତ୍ରାଳୟରେ

ମୁଦ୍ରିତ ମୂଲ୍ୟ ଟ୦/୩ । ନାନାପ୍ରକାର ଜ୍ୱର ସନିପାତ ଇତ୍ୟାଦି ରୋଗର ପାଚନମାନ ଏଥିରେ ଲେଖାଅଛି । ଏବଂ କୁମାର ବୈକୁଣ୍ଠନାଥ ଦେଙ୍କୁ ଏ ପୁସ୍ତକ ଉତ୍ସର୍ଗିତ ହୋଇଅଛି । ଜ୍ୱରଚିକିତ୍ସାର ଏପରି ଅଳ୍ପମୂଲ୍ୟର ପୁସ୍ତକ ଅବଶ୍ୟ ଅନେକଲୋକଙ୍କ ଉପକାରରେ ଆସିବ । ଗ୍ରନ୍ଥକାର ଯେବେ ଏଥି ସଙ୍ଗେ ଭିନ୍ନଜ୍ୱରର ଲକ୍ଷଣ ସାମାନ୍ୟ ଲୋକଙ୍କ ବୁଝିବାଭଳି ସରଳରେ ଲେଖି ଦେଇଥାନ୍ତେ ତାହା ହେଲେ ଆଉରି ଭଲ ହୋଇଥାନ୍ତା । କାରଣ ବୈଦ୍ୟର ବିନା ସାହାଯ୍ୟରେ ଲୋକେ ସାମାନ୍ୟଜ୍ୱରର ଚିକିତ୍ସା କରିପାରନ୍ତେ ।

*ଭା୨୩ଗ,ସଂ୧୭ଖ୍ୟା,୨୮।୪।୧୮୮୮*

## [୧୮୮୮ । ୮୯ ସାଲର ପାଠ୍ୟପୁସ୍ତକ ତାଲିକା]

ସନ ୧୮୮୮ । ୮୯ ସାଲର ପାଠ୍ୟପୁସ୍ତକ ତାଲିକା ।

ଉଚ୍ଚ ପ୍ରାଇମେରୀ ସ୍କୁଲ ।

ସାହିତ୍ୟ ।

୧ମ ଶ୍ରେଣୀ - ତୃତୀୟ ପାଠ ।

ପଦ୍ୟ ।

ବସୁ ଏବଂ ଆଚାର୍ଯ୍ୟଙ୍କ କୃତ କବିତାକୁସୁମ ।

ସାହିତ୍ୟ ।

୨ୟ ଶ୍ରେଣୀ - ବୋଧୋଦୟ କିମ୍ବା ଦ୍ୱିତୀୟପାଠ କିମ୍ବା ଏଚ,ସି,ଦେ କୃତ ପାଠମାଳା / **କିମ୍ବା କଟକ ପ୍ରିଣ୍ଟିଂ** କମ୍ପାନୀ ପ୍ରେସ୍ ବୋଧୋଦୟ କିମ୍ବା ବୋଧାଙ୍କୁର ନୀତିମଞ୍ଜରୀ କିମ୍ବା ନୀତିକଥା ।

ପଦ୍ୟ ।

ଛାନ୍ଦମାଳା କିମ୍ବା ନୀତିମାଳା ।

୩ୟ ଶ୍ରେଣୀ - କଲିକତା ସ୍କୁଲବୁକ ସୋସାଇଟୀ ପ୍ରେସ ବର୍ଣ୍ଣବୋଧକ କିମ୍ବା ବର୍ଣ୍ଣବିଜ୍ଞାନ କିମ୍ବା ଶିକ୍ଷାମଞ୍ଜରୀ କିମ୍ବା ବାଲ୍ୟଶିକ୍ଷା କିମ୍ବା ପ୍ରଥମଶିକ୍ଷା କିମ୍ବା ବାଳବୋଧିନୀ କିମ୍ବା ପ୍ରଥମପାଠ କିମ୍ବା ଗୋବିନ୍ଦରଥ କୃତ ବର୍ଣ୍ଣବୋଧକ କିମ୍ବା ମିସନ ପ୍ରେସ ବର୍ଣ୍ଣବୋଧକ ।

**ଓଡ଼ିୟା ବ୍ୟାକରଣ ।**

୧ମ ଶ୍ରେଣୀ - ବାଳବୋଧ ବ୍ୟାକରଣ କିମ୍ବା ଭାଷା ବ୍ୟାକରଣ ।

୨ୟ ଶ୍ରେଣୀ - ସରଳ ବ୍ୟାକରଣ କିମ୍ବା ବ୍ୟାକରଣ ମଞ୍ଜରୀ

ଇତିହାସ ।

୧ମ ଶ୍ରେଣୀ - ଓଡ଼ିଶା ସଂକ୍ଷିପ୍ତ ଇତିହାସ କିମ୍ବା ସୀତାନାଥଙ୍କ ଓଡ଼ିଶାର ଇତିବୃତ୍ତ ।

ଭୂଗୋଳ ।

୧ମ ଶ୍ରେଣୀ - ସୀତାନାଥ ରାୟଙ୍କ ସରଳ ଭୂଗୋଳପାଠ କିମ୍ବା ଦ୍ୱାରିକାନାଥ ଚକ୍ରବର୍ତ୍ତୀଙ୍କ ସରଳ ଭୂଗୋଳ ଏବଂ ଦ୍ୱାରିକାନାଥ ଚକ୍ରବର୍ତ୍ତୀଙ୍କ ଦେ ପ୍ରେସ ଓଡ଼ିଶା ଭୂଗୋଳ ।

୨ୟ ଶ୍ରେଣୀ - ସରଳଭୂଗୋଳ ପାଠ କିମ୍ବା ସରଳଭୂଗୋଳ କିମ୍ବା ଦେ କିମ୍ବା ରଥଙ୍କ ଭୂଗୋଳସାର ।

ଅଙ୍କ ।

୧ମ ଶ୍ରେଣୀ - ଉମେଶଚନ୍ଦ୍ର କୃତ ପାଟୀଗଣିତ କିମ୍ବା ବଳରାମ କୃତ ଅଙ୍କଶିକ୍ଷା ମଞ୍ଜରୀ କିମ୍ବା ହଁସନାଥ କୃତ ଅଙ୍କପ୍ରବନ୍ଧ କିମ୍ବା ରମାନାଥ ପ୍ରଥମାଙ୍କ । ଚରିଗୋଟି ମିଶ୍ର ଓ ଅମିଶ୍ରଧାରା, ସାଙ୍କେତିକ, ତ୍ରୟରାଶିକ, ବହୁରାଶିକ, ଦେଶୀୟ ନଳ ।

୨ୟ ଶ୍ରେଣୀ - ଅଙ୍କବାଲ୍ୟଶିକ୍ଷା କିମ୍ବା ଗୋବିନ୍ଦରଥ କିମ୍ବା ରାଉତ କୃତ ପାଟୀଗଣିତ । ଚରିଗୋଟି ମିଶ୍ର ଏବଂ ଅମିଶ୍ର ଧାରା ।

୩ୟ ଶ୍ରେଣୀ - ଚାରିଗୋଟି ମିଶ୍ର ଧାରା, ପଣିକିଆ, ସୋଧ୍ ଇତ୍ୟାଦି।

**କ୍ଷେତ୍ରତତ୍ତ୍ୱ।**

୧ମ ଶ୍ରେଣୀ - ସୀତାନାଥ କ୍ଷେତ୍ରତତ୍ତ୍ୱ କିମ୍ବା ଶିବନାରାୟଣ କ୍ଷେତ୍ରତତ୍ତ୍ୱ କିମ୍ବା ଉମାପ୍ରସାଦ ଦେ କ୍ଷେତ୍ରତତ୍ତ୍ୱ ପ୍ରଥମ ଅଧ୍ୟାର ୨୬ ପ୍ରତିଜ୍ଞା ପର୍ଯ୍ୟନ୍ତ।

୨ୟ ଶ୍ରେଣୀ - ଉପରୋକ୍ତ ତିନିଗୋଟି କ୍ଷେତ୍ରତତ୍ତ୍ୱ ମଧ୍ୟରୁ କୌଣସି କ୍ଷେତ୍ରତତ୍ତ୍ୱର ପ୍ରଥମ ଅଧ୍ୟାୟର ପଞ୍ଚମ ପ୍ରତିଜ୍ଞା ପର୍ଯ୍ୟନ୍ତ।

**ବିଜ୍ଞାନ ।**

୧ମ ଶ୍ରେଣୀ - ବିଜ୍ଞାନସୂତ୍ର ।

**ସ୍ୱାସ୍ଥ୍ୟ ରକ୍ଷା ।**

୧ମ ଶ୍ରେଣୀ - ରାମକୃଷ୍ଣ କୃତ ସରଳ ଶରୀରରକ୍ଷା ।

**କ୍ଷେତ୍ରପରିମାଣ।**

୧ମ ଶ୍ରେଣୀ - ସରଳ ପରିମିତି କିମ୍ବା ସରଳ କ୍ଷେତ୍ରପରିମାଣ।

Sd. Radha Nath Roy
Joint Inspector of Schools, Orissa Division

*ଭା୨୩ଗ,ସଂ୧୬ଖ୍ୟା,୨୮।୪।୧୮୮୮*

## କଟକ ଏକାଡେମୀ ।

ଗତ ସପ୍ତାହ ଶୁକ୍ରବାର ଏ ସ୍କୁଲର ବାର୍ଷିକ ପୁରସ୍କାର ବିତରଣ ସଭାର ସଂକ୍ଷେପ ବିବରଣ ପାଠକମାନଙ୍କୁ ଜଣାଇଅଛୁଁ। ଶ୍ରୀଯୁକ୍ତ କମିଶ୍ନରସାହେବ ଯେଉଁ ବକ୍ତୃତା କରିଥିଲେ ତାହା ଅତି ସଂକ୍ଷେପ ହୋଇଥିଲେ ସୁଦ୍ଧା ତହିଁରେ ଦୁଇ ଏକ ସାରକଥା ଥିଲା ବୋଲି ପାଠକମାନଙ୍କୁ ଜଣାଇବାର ଆବଶ୍ୟକ ହେଉଅଛି। ଏକାଡେମୀର କାର୍ଯ୍ୟ ଓ ପରୀକ୍ଷାର ଫଳ- ପ୍ରତି ସନ୍ତୋଷ ପ୍ରକାଶ କରି ଛାତ୍ରଙ୍କର ନୀତିଶିକ୍ଷାବିଷୟରେ କହିଲେ କି ଏ ବିଦ୍ୟାଳୟରେ ନୀତିଶିକ୍ଷା ନିମିତ୍ତ ଛାତ୍ର ଓ ଶିକ୍ଷକମାନେ ପ୍ରତି ସପ୍ତାହରେ ଏକଥର ବୈଠକ କରିବାର ଯାହା ବିଜ୍ଞାପନୀରୁ ପ୍ରକାଶ ପାଇଲା ତାହା ସୁଖର ବିଷୟ ଅଟଇ। ଶିକ୍ଷକଙ୍କ ସହିତ ଛାତ୍ରମାନଙ୍କର ନୀତିଚର୍ଚ୍ଚାଦ୍ୱାରା ଅବଶ୍ୟ ଭଲ ହେବ କେବଳ ଏତିକି ସାବଧାନ ହେବାର ଉଚିତ ଯେମନ୍ତ କି ଛାତ୍ରମାନେରାଜନୀତି ବିଚାରରେ ପ୍ରବୃତ୍ତ ନ ହେବେ। ରାଜନୀତି ଛାତ୍ରମାନଙ୍କର କାର୍ଯ୍ୟ ନୁହେ ତାହା ଅନ୍ୟ ଏବଂ ସେମାନଙ୍କଠାରୁ ବୟୋଃଧିକ ଲୋକଙ୍କର କାର୍ଯ୍ୟ। ବଙ୍ଗଳାର କେତେକ ସ୍କୁଲଛାତ୍ର ସମୟ ସମୟରେ ରାଜନୈତିକ ଆନ୍ଦୋଳନରେ ଜଡ଼ିତ ହେବାର ଦେଖି ଅନୁମାନ ହୁଅଇ ଓଡ଼ିଶାଛାତ୍ରଙ୍କୁ ସାବଧାନ କରିବାକାରଣ ସାହେବ ପ୍ରଶଂସିତ ଉକ୍ତ କଥା କହିଅଛନ୍ତି ନୋହିଲେ ଓଡ଼ିଶା ସ୍କୁଲଛାତ୍ରଙ୍କ ମଧ୍ୟରେ ଉକ୍ତ ଆନ୍ଦୋଳନ ପ୍ରବେଶ କରିବାର ଅବଧି ଦେଖା ଯାଇ ନାହିଁ ଏବଂ ଭରସା ହୁଅଇ ବର୍ତ୍ତମାନ ଉପଦେଶ ଦ୍ୱାରା ସେମାନେ ଆହୁରି ସତର୍କ ହେବେ। ସ୍କୁଲଟି ବର୍ତ୍ତମାନ ଭଡାଘରେ ହେଉଥିବା ଏବଂ ଏଥିପାଇଁ ଗୋଟିଏ ସ୍ୱତନ୍ତ୍ର ଘର ନିର୍ମାଣ କାରଣ ବହୁଦିନରୁ ଚେଷ୍ଟା ହେଉଥିବା ପ୍ରତ୍ୟକ୍ଷେ ଅବଧି ତାହା ହୋଇ ନ ଥିବା ସମ୍ବନ୍ଧରେ ସାହେବ କହିଲେ କି ଏ ଗୃହ ନିର୍ମାଣାର୍ଥେ ପ୍ରାୟ ଟ. ୫୦୦ଙ୍କା ଭେଦାଦ୍ୱାରା ଆଦାୟ ହୋଇଅଛି ଗବର୍ଣମେଣ୍ଟରୁ ନିୟମିତ ସାହାଯ୍ୟ ପାଯାଯିବ ଓ ପ୍ରାୟ ଦୁଇହଜାର ଟଙ୍କା ଭେଦାଦ୍ୱାରା ଉଠିବାର ପ୍ରୟୋଜନ। ସ୍କୁଲକମିଟୀ ଏଥିପାଇଁ ସର୍ବସାଧାରଣଙ୍କୁ ପ୍ରାର୍ଥନା କରିଅଛନ୍ତି ଓ ସେ ପ୍ରାର୍ଥନା ସଫଳ ହେବା ଉଚିତ। ଏଠା ଲୋକମାନେ ଭେଦା ଦେବାକୁ ପଶ୍ଚାତ୍‌ପଦ ନୁହନ୍ତି। ଅଳ୍ପକାଳ ପୂର୍ବର ଲୋକମାନେ ସମୁଚିତ ବଦାନ୍ୟତାପୂର୍ବକ ଅର୍ଥଦାନ କରି ରେଭେନସା କଲେଜ ଓ ମେଡ଼ିକଲସ୍କୁଲପ୍ରଭୃତି ସ୍ଥାପନ କରିଅଛନ୍ତି। ବର୍ତ୍ତମାନର ଲୋକମାନେ ଯେବେ ଏକାଡ଼େମୀର ସ୍କୁଲଗୃହର ଅଭାବ ମୋଚନ କରିବାକୁ ଅଗ୍ରସର ନ ହେବେ ତେବେ ଲଜ୍ଜା ଓ ନିନ୍ଦାର ବିଷୟ ହେବ। ଆମ୍ଭମାନଙ୍କ ବିବେଚନାରେ ଏ ବିଦ୍ୟାଳୟର ଗୃହନିର୍ମାଣ ନିମିତ୍ତ ସର୍ବସାଧାରଣଙ୍କୁ ଯେତେଦୂର ଅନୁରୋଧ କରିପାରନ୍ତି ତାହା

କରିଅଛନ୍ତି ଏବଂ ଆଶା କରୁଁ କି ଏହି ତାହାଙ୍କର ପ୍ରଥମ ଅନୁରୋଧଟା ବ୍ୟର୍ଥ ହେବ ନାହିଁ। ବାସ୍ତବରେ ଜଣେ ସାମାନ୍ୟଅବସ୍ଥାର ଲୋକ ଯେଉଁ ସ୍କୁଲଟିକୁ ସ୍ଥାପନ କରି ଯାଇଅଛନ୍ତି ଏବଂ ଯଦ୍ଦ୍ୱାରା ଅନେକ ଉପକାର ହେଉଅଛି ଯେବେ ଗୋଟିଏ ଉପଯୁକ୍ତ ଘର ଅଭାବରୁ ତାହା ସୁଚାରୁରୂପେ ଚାଲି ନ ପାରିବ ତେବେ ନିନ୍ଦାର ବିଷୟ ବିନା ଆଉ କି ବୋଲାଯିବ। ଦୁଇ ତିନିହଜାର ଟଙ୍କା ଭେଦାଦ୍ୱାରା ଉଠିବା ଏ ଜିଲା କାହିଁକି ଏ ନଗରପକ୍ଷରେ ବଡ଼କଥା ନୁହଇ। ଇଚ୍ଛା କଲେ ଏକ ଏକ ଲୋକ ତାହା କରିପାରନ୍ତି କେବଳ ଏ ବିଦ୍ୟାଳୟ ପ୍ରତି ସର୍ବସାଧାରଣଙ୍କର କୃପାଦୃଷ୍ଟି ପଡ଼ିବା ଆବଶ୍ୟକ।

ପରିଶେଷରେ କମିଶ୍ନରସାହେବ କହିଲେ କି ଓଡ଼ିଶା ଓଡ଼ିୟାଙ୍କ ସକାଶେ ଅର୍ଥାତ୍ ଓଡ଼ିଶାର ସକଳ ସରକାରୀକାର୍ଯ୍ୟ କେବଳ ଓଡ଼ିୟାମାନେ ପାଇବେ ବୋଲି ସମ୍ପ୍ରତି ଯେଉଁ କଥା ଉଠି ଅଛି ତାହା ଅତ୍ୟନ୍ତ ଅନ୍ୟାୟ ଓ ଅନିଷ୍ଟଜନକ ଅଟଇ। ଓଡ଼ିଶା ଓଡ଼ିୟାଙ୍କ ସକାଶେ ଏ କଥାର ଅର୍ଥ କଲେ ଫଳ ଏହି ହେବ ଯେ ବଙ୍ଗଳା ବଙ୍ଗାଳିଙ୍କ ସକାଶେ ଏବଂ ବିହାର ବିହାରୀଙ୍କ ସକାଶେ ଅର୍ଥାତ୍ ଯେଉଁ ସ୍ଥାନର ଲୋକ ସେହିଠାରେ କାର୍ଯ୍ୟ ପାଇବେ ଯେତେ ଯୋଗ୍ୟ ହେଲେ ସୁଦ୍ଧା ଅନ୍ୟସ୍ଥାନକୁ ଯାଇ ପାରିବେ ନାହିଁ। ସରକାରୀ ଚାକରୀକି ଏମନ୍ତ ସଂକୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ କରିବା ଯୁକ୍ତିସଙ୍ଗତ ବା ହିତକର ହୋଇ ନ ପାରେ ବରଂ ସାକ୍ଷାତ୍ ଅନିଷ୍ଟକର ଅଟଇ। ପ୍ରତିଯୋଗିତାପ୍ରଣାଳୀ ଅନୁସାରେ ସରକାରୀକାର୍ଯ୍ୟ ଲାଭ କରିବା ଉଚିତ ନୀତି ହେଉଅଛି ଏବଂ ଯେସ୍ଥଳେ ଓଡ଼ିଶାରେ ଉଚ୍ଚଶିକ୍ଷା ଲାଭ କରିବାର ସମ୍ପୂର୍ଣ୍ଣ ସୁଯୋଗ ରହିଅଛି ସେସ୍ଥଳେ ଏଠା ଲୋକେ ପ୍ରତିଯୋଗିତାକୁ ଡ଼ରିବେ ବା ତହିଁରେ ଉତ୍ତୀର୍ଣ୍ଣ ନ ହେବେ ଏପ୍ରକାର ବୋଲାଯାଇ ନ ପାରେ । ଅତଏବ ଏଠା ବିଦ୍ୟାଳୟର ଛାତ୍ର ଓ ଅପରଶିକ୍ଷିତ ଲୋକଙ୍କର ଶିକ୍ଷାଲାଭ ପ୍ରତି ଏମନ୍ତ ମନୋଯୋଗୀ ହେବାର ଉଚିତ ଯେମନ୍ତ କି ପ୍ରତିଯୋଗିତାରେ ଅନ୍ୟ ପ୍ରଦେଶୀୟଲୋକଙ୍କୁ ଜିଣିପାରିବେ କେବଳ ସ୍ଥାନ ବିଶେଷରେ ରହିଅଛନ୍ତି ବୋଲି ସେଠାର ସବୁ ଚାକରୀ ପାଇବାକୁ ଆଶା କଲେ ଚାଲିବ ନାହିଁ। ସାହେବ ପ୍ରଶଂସିତ ଓଡିୟାଙ୍କ ସକାଶେ ଓଡ଼ିଶା  କଥାଟା କେଉଁଠାରୁ ପାଇଲେ ଏବଂ ସ୍କୁଲର ପୁରସ୍କାରବିତରଣସଭାରେ କିହେତୁ ତହିଁର ବିଚାର କଲେ ଏ ବିଷୟରେ ଏଠାରେ ଅନେକ ଚର୍ଚ୍ଚା ଲାଗିଅଛି ଏବଂ କେତେକଲୋକ ତାହାଙ୍କ ମତକୁ ଅନୁମୋଦନ ଓ କେତେକଲୋକ ତହିଁର ବିପରୀତ କରୁଅଛନ୍ତି। ଆମ୍ଭେମାନେ ଅନୁମାନ କରୁଁ କି ବାବୁ ସେମସାହୁଙ୍କ ବକ୍ତୃତା ଉପଲକ୍ଷରେ ଇଂଲୀସମାନ କାଗଜରେ ଯେଉଁ ତାରସଂବାଦ ବାହାରିଥିଲା ଓ ତହିଁରେ ଉକ୍ତ ପତ୍ରିକାର ସମ୍ପାଦକ ଯେଉଁ ଭ୍ରମାତ୍ମକ ଶିରୋନାମା ଯୋଗ କରିଥିଲେ ତହିଁରେ ଅନିଷ୍ଟ ଜାତ ହେବାର ଆଶଙ୍କା କରି ସାହେବମହୋଦୟ ତନ୍ନିବାରଣାର୍ଥେ ଆପଣା-ମନ୍ତବ୍ୟ ବ୍ୟକ୍ତ କରିଅଛନ୍ତି। ବାସ୍ତବରେ ଉକ୍ତ ତାରସଂବାଦ ବାହାରିବାଦିନଠାରୁ ଏଠା ଓଡ଼ିୟା ଓ ବଙ୍ଗାଳୀଙ୍କ ମଧ୍ୟରେ କିଛି ମନାନ୍ତର ଘଟିବାର ଦେଖି ଆମ୍ଭେମାନେ ବଡ଼ ଦୁଃଖିତ ହୋଇଥିଲୁଁ ଓ କାଳେ ଏ ବିଷୟରେ କିଛି କହିଲେ ମନାନ୍ତର ବୃଦ୍ଧି ହେବ ଏହି ଭୟରେ ନିରବ ଥିଲୁଁ। ଭ୍ରମାତ୍ମକ ତାରସଂବାଦ ଉପଲକ୍ଷରେ କମିଶ୍ନର ସାହେବଙ୍କ ମନ୍ତବ୍ୟ ପଠିତ ହୋଇଥିବାରୁ ତାହା ସକଳଅଂଶରେ ଯଥାର୍ଥ ନ ହେଲେ ସୁଦ୍ଧା ଆମ୍ଭମାନଙ୍କ ବିବେଚନାରେ ତାହା ଉଚିତସମୟରେ ପ୍ରକାଶିତ ହୋଇଅଛି ଏବଂ ତଦ୍ଦ୍ୱାରା ଓଡ଼ିୟା ବଙ୍ଗାଳୀଙ୍କ ମଧ୍ୟରେ ଘଟିଥିବା ସାମାନ୍ୟ ମନାନ୍ତର ବୃଦ୍ଧି ନ ପାଇ ବରଂ ଅଦୃଶ୍ୟ ହେଉଅଛି ବଡ଼ ସୁଖର ବିଷୟ ଅଟଇ। ବାସ୍ତବରେ ଏକପକ୍ଷରେ ଗବର୍ଣ୍ଣମେଣ୍ଟ ଓଡିୟାଙ୍କ ଦୁରବସ୍ଥାଦୃଷ୍ଟିରେ ଅନୁଗ୍ରହପୂର୍ବକ ଡେପୁଟୀଆଦି କାର୍ଯ୍ୟ ଦାନ କରୁଥିବା ଏବଂ ଅନ୍ୟପକ୍ଷରେ ସିବିଲସରଭିସ କମିଶ୍ନରମାନଙ୍କ ପ୍ରସ୍ତାବ  ଗବର୍ଣ୍ଣମେଣ୍ଟଙ୍କ ବିଚାରାଧୀନରେ ଥିବା ଅବସ୍ଥାରେ ଚାକରୀବିଷୟରେ କୌଣସି ସାଧାରଣ ଆନ୍ଦୋଳନ କରିବାର ପ୍ରୟୋଜନ ବା ସମୟ ଉପସ୍ଥିତ ହୋଇ ନାହିଁ। ସ୍ଥଳବିଶେଷରେ ଘଟୁଥିବା ଅନ୍ୟାୟକାର୍ଯ୍ୟର ପ୍ରତୀକାର ଲୋଡ଼ିବାର ପୃଥକ୍ ଉପାୟ ଅଛି ଓ ତାହା ଅବଲମ୍ବନ କରିବାକୁ ମନା ନାହିଁ।

*ଭା୨୩ଗ, ସଂ୧୯ଖ୍ୟା, ୧୨।୫।୧୮୮୮*

## [ସମ୍ପାଦକଙ୍କର ଦାୟିତ୍ୱ]

ବାବୁ ଭୋଳାନାଥ ସାମନ୍ତରାୟ ଉତ୍କଳସମ୍ବାଦପତ୍ରମାନଙ୍କର ସଂସ୍କାରବିଷୟରେ କିଛି ଅତିରିକ୍ତରୂପେ ବ୍ୟସ୍ତ ହୋଇ କାନ୍ଥିଠାରୁ ଏଥିମଧ୍ୟରେ ଓଡ଼ିୟାସମ୍ବାଦପତ୍ରକୁ ଏକଖଣ୍ଡ ଏବଂ ବାଲେଶ୍ୱରସମ୍ବାଦବାହିକାକୁ ଏକଖଣ୍ଡ ପତ୍ର ଲେଖି ପଠାଇଅଛନ୍ତି ଓ ସେ ସବୁ ପ୍ରକାଶ ହୋଇଅଛି। ଓଡ଼ିୟାରେ ପ୍ରକାଶିତ ପତ୍ରର ଶେଷରେ ଲେଖାଅଛି କି "ଯଦି ଉତ୍କଳୀୟସମ୍ପାଦକମାନେ କର୍ତ୍ତବ୍ୟ ବିସ୍ମୃତ ହୋଇ ବ୍ୟକ୍ତିଗତ କୁତ୍ସାପୂର୍ଣ୍ଣ ଓ ସ୍ୱାର୍ଥଜଡ଼ିତ ପ୍ରବନ୍ଧ ଲେଖନ୍ତି ଏବଂ ତତ୍‌ସଙ୍ଗେ ଉତ୍କଳୀୟମାନଙ୍କର ମନ ଓ ରୁଚିର ହୀନତାକୁ ପ୍ରଶ୍ରୟ ଦିଅନ୍ତି ମୁଁ ଅତିବିନୀତଭାବରେ ସର୍ବସାଧାରଣଙ୍କୁ ଅନୁରୋଧ କରୁଅଛି ଯେ ଏପରି ସମ୍ବାଦପତ୍ର ଯେମନ୍ତ ନ ପଢ଼ନ୍ତି।" ବାହିକାରେ ପ୍ରକାଶିତପତ୍ରରେ କିରୂପ ଗୁଣବିଶିଷ୍ଟ ଏବଂ ଯୋଗ୍ୟଲୋକ ସମ୍ବାଦପତ୍ରର ସମ୍ପାଦକ ହେବାର ଉଚିତ ତହିଁର ବାହୁଲ୍ୟ ବ୍ୟାଖ୍ୟା ଉତ୍ତାରୁ ଉତ୍କଳୀୟସମ୍ପାଦକମାନଙ୍କୁ ବିନୀତଭାବରେ ଅନୁରୋଧ କରିଅଛନ୍ତି କି "ସେମାନେ ସମ୍ବାଦପତ୍ର ଲେଖିବାବେଳେ ନିଜ ଦାୟିତ୍ୱ ସ୍ମରଣ କରିବେ। ସମ୍ପାଦକର ଦାୟିତ୍ୱ-ଜ୍ଞାନ ନ ଥିଲେ ସେ ସମ୍ବାଦପତ୍ର ପାଠଯୋଗ୍ୟ ନୁହଇ ଏହା ନିଶ୍ଚୟ" ଲେଖକଙ୍କ ସାଧୁ ଇଚ୍ଛା ସକାଶେ ତାହାଙ୍କୁ ଧନ୍ୟବାଦ ଦେଉଅଛୁଁ ମାତ୍ର ତୁଚ୍ଛା ଉପଦେଶ ନ ଦେଇ ଯେବେ ସମୟସମୟରେ ଆଦର୍ଶପ୍ରବନ୍ଧ ଓ ଉତ୍କଳସମ୍ବାଦପତ୍ରରେ ପ୍ରକାଶ ହେଉଥିବା ପ୍ରବନ୍ଧବିଶେଷର ସମାଲୋଚନା ପ୍ରକାଶ କରାନ୍ତି ତେବେ ସମ୍ପାଦକମାନଙ୍କର ପ୍ରକୃତ ଶିକ୍ଷା ଏବଂ ତାହାଙ୍କର ବାଞ୍ଛିତ ଫଳ ଲାଭ ହୁଅନ୍ତା।

*ଭା୨୩ଗ,ସଂ୨୦ଖ୍ୟା,୧୯।୫।୧୮୮୮*

## [ଓଡିଶା ପେଟ୍ରିୟଟ ଓ ମଧୁସୂଦନ]

ପ୍ରେରିତ ପତ୍ରସ୍ତମ୍ଭରେ ବାବୁ ମଧୁସୂଦନଦାସଙ୍କର ଖଣ୍ଡିଏ ପତ୍ର ପ୍ରକାଶିତ ହେଲା। ସେଥିରେ ଲେଖାଅଛି କି ଓଡ଼ିଶାପେଟ୍ରିୟଟ ନାମରେ ଗତ କେତେକ ସପ୍ତାହରୁ ଯେଉଁ ଇଂରାଜ-ସମ୍ବାଦପତ୍ର ପ୍ରକାଶିତ ହେଉଅଛି ତହିଁରେ ବାବୁ ମହାଶୟଙ୍କର କାୟିକ ବା ଆର୍ଥିକ ବା ଉଭୟ ସାହାଯ୍ୟ ଅଛି ବୋଲି କାହାରି କାହାରି ମନରେ ଲାଗି ଯାଇଥିବାର ଜଣାଯାଏ। ଏପରି ବିଶ୍ୱାସ ଜନ୍ମାଇବାର ମୂଳକାରଣ କିଏ ଏବଂ କେଉଁ ଅଭିପ୍ରାୟ ସିଦ୍ଧ ନିମିତ୍ତ ତାହା ହୋଇଅଛି ବାବୁ ମହାଶୟଙ୍କୁ ଅଗୋଚର ମାତ୍ର ଏଥିର ପ୍ରତିବାଦ କରିବା ଆବଶ୍ୟକ ହେବାରୁ ସେ ସର୍ବସାଧାରଣଙ୍କୁ ଜଣାଇ ଦେଇଅଛନ୍ତି କି ଉକ୍ତ ସମ୍ବାଦପତ୍ର ସହିତ ତାହାଙ୍କର କୌଣସି ପ୍ରକାର ଯୋଗ ନ ଥିଲା କି ନାହିଁ ବରଂ ତହିଁରେ ପ୍ରକାଶିତ ହୋଇଥିବା ଦୁଇ ଏକ ପ୍ରବନ୍ଧ କି ଯହିଁର ନାମ ସମ୍ପାଦକ ଆତ୍ମରକ୍ଷାକାଣ୍ଡ ଦେଇଅଛନ୍ତି ତହିଁରେ ପ୍ରକାଶିତ ଅଭିପ୍ରାୟମାନ ପାଠ କରି ବୁଝିଅଛନ୍ତି ଯେ କୌଣସି ବୁଦ୍ଧିମାନ୍‌ବ୍ୟକ୍ତିର ତହିଁ ପ୍ରତି ସହାନୁଭୂତି ହେବ ନାହିଁ ଓ ସେ ସବୁ ନିତାନ୍ତ ସ୍ୱାର୍ଥପର ବୋଲି ଜଣା ଯାଉଅଛି।

ଆମ୍ଭେମାନେ ମଧ ଭ୍ରମାତ୍ମକ ଜନରବ ଶୁଣି ଆଶ୍ଚର୍ଯ୍ୟ ହୋଇଥିଲୁ ଏବଂ ଓଡ଼ିଶାପେଟ୍ରିୟଟର ମତ ଓ ରଚନା ଦେଖି ମଧୁବାବୁଙ୍କର କିପରି ତହିଁରେ ଯୋଗଦାନର ଚିହ୍ନ ନ ଦେଖି ବ୍ୟସ୍ତ ହୋଇଥିଲୁଁ ବର୍ତ୍ତମାନ ତାହାଙ୍କର ସ୍ୱହସ୍ତଲିଖିତ ପ୍ରତିବାଦ ପ୍ରକାଶ କରିବାକୁ ସମର୍ଥ ହେବାରୁ ବଡ଼ ଆନନ୍ଦିତ ହେଲୁଁ। ଓଡ଼ିଶାପେଟ୍ରିଅଟ୍ ଆପେ ଆପଣାକୁ ଉଚ୍ଚ ଉପାଧି ଦାନ କରି ଯେରୂପ ଭାବରେ ଉତ୍କଳର ହିତ ସାଧନ କରିବାକୁ ବସିଅଛନ୍ତି ତହିଁରେ ଅହିତ ବିନା ହିତର ଆଶା ନାହିଁ ଏବଂ ତଦ୍ଦ୍ୱାରା ଉତ୍କଳର ଗୌରବ ପ୍ରକାଶ ନ ହୋଇ ତହିଁର ବିପରୀତ ଫଳ ଘଟିବାର ସମ୍ଭାବନା ଥିବା ସ୍ଥଳେ ଉତ୍କଳର ହିତାକାଂକ୍ଷିମାନଙ୍କର ତହିଁ ପ୍ରତି ସହାନୁଭୂତି ନ ଥିବାର ସ୍ପଷ୍ଟରୂପେ ଜଣାଇ ଦେବାର ଉଚିତ ହେଉଅଛି। ଏବଂ ଆମ୍ଭମାନଙ୍କର ଦୃଢ଼ବିଶ୍ୱାସ ଯେ ମଧୁବାବୁ ଏ ବିଷୟରେ ଏଠାର ସାଧାରଣମତ ପ୍ରକାଶ କରିଅଛନ୍ତି।

*ଭା୨୩ଗ,ସଂ୨୦ଖ୍ୟା,୧୯।୫।୧୮୮୮*

## [ପାଠ୍ୟପୁସ୍ତକ]

ବଙ୍ଗବାସିରେ ପାଠକଙ୍କୁ କି ପାଠ୍ୟ ପୁସ୍ତକ ସମ୍ବନ୍ଧରେ ଏଠା ଶିକ୍ଷାବିଭାଗର ଯେପ୍ରକାର କାଣ୍ଡ କ୍ରମାଗତ ବହୁକାଳ ପର୍ଯ୍ୟନ୍ତ ପାଠକମାନଙ୍କୁ ଦେଖାଇ ଆସୁଥିଲୁଁ ଏବଂ, ଯହିଁର ବିରାମ ଅବଧି ହୋଇ ନାହିଁ ବଙ୍ଗ ହତାରେ ଠିକ୍ ସେହିପ୍ରକାର କାଣ୍ଡମାନ ଘଟୁଅଛି ପ୍ରେସିଡେନ୍‌ସି ଓ ବର୍ଦ୍ଧମାନ ବିଭାଗର ଇନ୍‌ସ୍ପେକ୍ଟରମାନଙ୍କୁ ଶୁଦ୍ଧା ଉକ୍ତ ପତ୍ରିକା ଏହି କଳଙ୍କରୁ ଅନ୍ତର ରଖି ନାହାନ୍ତି। ଯେ ସ୍ଥଳେ ଇନ୍‌ସ୍ପେକ୍ଟରଙ୍କର ଏ ଦଶା ସେ ସ୍ଥଳେ ତାହାଙ୍କର ଅଧୀନ ଜଏେଣ୍ଟଇନ୍‌ସ୍ପେକ୍ଟରଙ୍କ କଥା କେତେବଡ଼ ବା କିଏ ଧରିବ ? ଶିକ୍ଷାବିଭାଗର ଡିରେକ୍ଟରସାହେବ ଏ କଥା ଜାଣିପାରି ଗତବର୍ଷର ବିଜ୍ଞାପନୀରେ ତହିଁର ଉଲ୍ଲେଖ କରିଥିଲେ ଏବଂ, ଇନ୍‌ସ୍ପେକ୍ଟରମାନଙ୍କୁ ଅତ୍ୟନ୍ତ ସାବଧାନ ପୂର୍ବକ କାର୍ଯ୍ୟ କରିବାକୁ ଉପଦେଶ ଦେଇଥିଲେ ଯେମନ୍ତ କି ସ୍କୁଲରେ ଅଧକ୍ଷ ଓ ଶିକ୍ଷକମାନେ ସମ୍ପୂର୍ଣ୍ଣରୂପ ସ୍ୱାଧୀନ ଭାବରେ ଆପଣାର ପାଠ୍ୟପୁସ୍ତକ ବାଛିନେଇ ପାରିବେ। ଏଥକୁ ବଙ୍ଗବାସି ଲେଖିଅଛନ୍ତି କି ଡେପୁଟୀ ଇନ୍‌ସ୍ପେକ୍ଟରମାନେ ପ୍ରଧାନ ଇନ୍‌ସ୍ପେକ୍ଟରଙ୍କ ମନ ଯୋଗାଇବାକୁ ବାଧ ସ୍କୁଲର ଅଧକ୍ଷମାନେ ଡେପୁଟୀ ଓ ପ୍ରଧାନ ଇନ୍‌ସ୍ପେକ୍ଟରଙ୍କ ପୂଜା ସକାଶେ ବ୍ୟସ୍ତ ଓ ଶିକ୍ଷକମାନେ ପରିଦର୍ଶକମାନଙ୍କର ଦାସ। ପରିଦର୍ଶକମାନଙ୍କର ସ୍ୱାର୍ଥ ଓ ଅନୁଗ୍ରହ ଯେତେଦିନ ଚଳିବ ତେତେଦିନ ପାଠ୍ୟପୁସ୍ତକ ନିର୍ବାଚନରେ ଏହି ପ୍ରକାର ଗୋଳମାଳ ଲାଗିଥିବ। କୌଣସି ବିଭାଗର ସରକାରୀ କର୍ମଚାରୀ ବ୍ୟବସାୟ ବାଣିଜ୍ୟ କରି ପାରିବେ ନାହିଁ। ସରକାରୀ ଚିକିତ୍ସକମାନେ ଔଷଧାଳୟର ଅଂଶୀ ହୋଇ ପାରିବେ ନାହିଁ। ବିଚାରକମାନେ ନିଜ ଏଲାକାରେ ଜମି ଆଦି ଖରିଦ କରି ପାରିବେ ନାହିଁ କିନ୍ତୁ ଶିକ୍ଷାବିଭାଗର ପରିଦର୍ଶକମାନେ ଛାପାଖାନାରେ କାର୍ଯ୍ୟ କରିବେ କାହିଁକି ? ବେ ନାମିରେ କଳଙ୍କ ମୋଚନ ହୁଅଇ ନାହିଁ ଗବର୍ଣ୍ଣମେଣ୍ଟ ପ୍ରତୀକାର ନ କଲେ ପ୍ରତୀକାର ହେବ ନାହିଁ ଶିକ୍ଷାବିଭାଗର ପରିଦର୍ଶକମାନଙ୍କୁ ସ୍କୁଲ ପାଠ୍ୟପୁସ୍ତକ କରିବାକୁ ଦେଲେ ନିଶ୍ଚୟ ବିଭ୍ରାଟ ଘଟିବ" ଏଥିରୁ ପାଠକମାନେ ଦେଖିବେ ଯେ ଯେଉଁ କଥା ଆମ୍ଭେମାନେ ନିଜ ଅନୁଭବଦ୍ୱାରା ଓଡ଼ିଶାରେ ପ୍ରତ୍ୟକ୍ଷ କରିଅଛୁଁ ଏବଂ ବିଶେଷ ପରିଶ୍ରମସହିତ ସର୍ବସାଧାରଣରେ ପ୍ରକାଶକରିବାରୁ ଅବଧି ସ୍ୱାର୍ଥପର ବୋଲି ଗାଳି ଖାଉଅଛୁଁ ତାହା ବଙ୍ଗଳାରେ ବିଲକ୍ଷଣ ରହିଅଛି ବରଂ ସଂକ୍ରାମକରୂପେ ଏ ପ୍ରଦେଶକୁ ଆସିଅଛି ଏବଂ, ବଙ୍ଗବାସିଙ୍କ ସହିତ ଆମ୍ଭେମାନେ ଐକ୍ୟହୋଇ କହୁଅଛୁଁ ଯେ ଗବର୍ଣ୍ଣମେଣ୍ଟ ବିଶେଷ ପ୍ରତୀକାର ନ କଲେ ଶିକ୍ଷାବିଭାଗର ଏ କଳଙ୍କ ଘୁଞ୍ଚିବ ନାହିଁ।

### *ଭା୨୩ଗ, ସଂ୨୦ଖ୍ୟା, ୧୯।୫।୧୮୮୮*

## [ନାଟ୍ୟଶାଳା]

ବାବୁ ମଧୁସୂଦନ ଦାସଙ୍କ କଲ୍ୟାଣରୁ ଏନଗରରୁ ନାଟ୍ୟଶାଳାର ଅଭାବ ବିଦୂରିତ ହେବାରୁ ଏଠା ସୌକିନ ଅଭିନୟପ୍ରଦର୍ଶକ ସମ୍ପ୍ରଦାୟ ନାଟ୍ୟାଭିନୟ ଦେଖାଇବାକୁ ଅଧିକ ତତ୍ପର ହେବାର ଦେଖି ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ। ମଧୁବାବୁ ଯେପରି ନାଟ୍ୟଶାଳାଟି ନିର୍ମାଣ ଏବଂ ନାନା ଦୃଶ୍ୟପଟରେ ରଞ୍ଜିତ କରିଅଛନ୍ତି ଏବଂ ରୋସନାଇ ଇତ୍ୟାଦି ସକଳ ବିଷୟର ସୁବନ୍ଦୋବସ୍ତ କରିବାଦ୍ୱାରା ଯେମନ୍ତ ଉତ୍ସାହ ଦେଇଅଛନ୍ତି ତହିଁରେ କିଛିକାଳ ସୁନ୍ଦରରୂପେ କାର୍ଯ୍ୟ ନିର୍ବାହ ହେବ ଏବଂ ବର୍ଷାକାଳରେ ସୁଦ୍ଧା ବ୍ୟାଘାତ ହେବ ନାହି। ଅଭିନେତା ସମ୍ପ୍ରଦାୟ ମଧ ଯେମନ୍ତ ମନୋଯୋଗୀ ହୋଇଅଛନ୍ତି ତାହା ଆଶାପୂର୍ଣ୍ଣ ଅଟଇ ଏବଂ କ୍ରମଶଃ ଏହି ଚର୍ଚ୍ଚା ଲାଗିଥିଲେ ବଡ଼ଭଲ ହେବ ଏବଂ ସେମାନେ ସମସ୍ତଙ୍କର ଧନ୍ୟବାଦର ପାତ୍ର ହେବେ। ଗତ ଶନିବାର କିରାତାର୍ଜ୍ଜୁନୀୟନାଟକ ଏବଂ ବିବାହ ବିଭ୍ରାଟ ପ୍ରହସନ ଅଭିନୀତ ହୋଇଥିଲା। ଯଦ୍ୟପି କି ମୋଟରେ ଅଭିନୟ ଭଲ ହୋଇଥିଲା ମାତ୍ର ଅଭିନୟ ଦେଖାଇବାବ୍ୟକ୍ତିଙ୍କ ମଧରୁ ଅଧିକାଂଶ ଲୋକଙ୍କର ସ୍ୱର ଅତ୍ୟନ୍ତ ମୃଦୁ ଥିବାରୁ ଅଳ୍ପଦୂରରେ ଥିବା ଦର୍ଶକମାନେ ସୁଦ୍ଧା ଶୁଣିବାକୁ ପାଉ ନ ଥିଲେ ଏଯୋଗୁଁ ସମସ୍ତ ସୁଖ ଅନୁଭବ କରିପାରିଲେ ନାହି। ନାଟକଠାରୁ ପ୍ରହସନଟି ଅପେକ୍ଷାକୃତ ଭଲ ହୋଇଥିଲା ମାତ୍ର ଏ ଦୋଷରୁ ବର୍ଜିତ ନ ଥିଲା । ନାଟକ ଅଭିନୟ କାର୍ଯ୍ୟଟି ଗାୟନବକ୍ତୃତା ପରି ଗଳାବାଜିର କାର୍ଯ୍ୟ ଅଟଇ। ସବୁ ଏକଦିଗ ମାତ୍ର ଉଚ୍ଚସ୍ୱର ଏକଦିଗ। କଥା ବା ଗୀତ ଶୁଣା ନ ଗଲେ ତହିଁରେ କେଉଁ ସୁଖ ?

ଏମାନଙ୍କର ଗୀତ ଗାଇବାର କ୍ଷମତା ମଧ୍ୟ ଅତ୍ୟନ୍ତ ଊଣା ଦେଖାଗଲା। ଭଲରୂପେ ଗାନ ଅଭ୍ୟାସ ନ କଲେ ଅଭିନୟ ସୁନ୍ଦର ହେବ ନାହିଁ ଏବଂ ନିୟମିତରୂପେ ଗାଇବାକୁ ଶିକ୍ଷା କଲେ ଗଳାର ସ୍ୱର ମଧ୍ୟ ତେଜ ହେବ। ଗୀତ ଓ ବାଦ୍ୟ ନାଟକର ପ୍ରଧାନ ଅଙ୍ଗ ଏହି ଦୁଇବିଷୟରେ ରୀତିମତ କିଛିକାଳ ଯେଉଁମାନେ ପରିଶ୍ରମ କରିବେ ସେହିମାନଙ୍କ ଅଭିନୟ କାର୍ଯ୍ୟ ସର୍ବାଙ୍ଗସୁନ୍ଦର ହେବ। ସୌକିନସମ୍ପ୍ରଦାୟଙ୍କୁ ଏବିଷୟରେ ମନୋଯୋଗୀ ହେବା କାରଣ ଆମ୍ଭେମାନେ ବାର ବାର ଅନୁରୋଧ କରୁଅଛୁଁ।

*ଭା୨୩ଗ, ସଂ୨୨ଖ୍ୟା, ୨।୬।୧୮୮୮*

## ଉତ୍କଳ ଇତିବୃତ୍ତ

କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଯନ୍ତ୍ରାଳୟରେ ଓ ବାଲେଶ୍ୱର ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକଙ୍କ ନିକଟରେ ପ୍ରାପ୍ତବ୍ୟ।

ଏହା ଅପର ପ୍ରାଇମେରୀ ପରୀକ୍ଷାର ପାଠ୍ୟପୁସ୍ତକ ନିର୍ଦ୍ଦିଷ୍ଟ ହୋଇଅଛି। ଓଡ଼ିଶାର ସଂକ୍ଷିପ୍ତ ଇତିହାସ କ୍ରୟ ନ କରି ଛାତ୍ରମାନେ ଉତ୍କଳ ଇତିବୃତ୍ତ କ୍ରୟ କଲେ ବିଶେଷ ଲାଭବାନ୍ ହେବେ। କାରଣ ଓଡ଼ିଶା ଇତିହାସର ମୂଲ୍ୟ ଟ ୦। ଅଣା, ମାତ୍ର ଉତ୍କଳ ଇତିବୃତ୍ତର ମୂଲ୍ୟ ଟ ୦୵ ଅଣା ଅଟେ। ଓଡ଼ିଶାଇତିହାସର ଯେଉଁ ନୂତନ ସଂସ୍କରଣ ପ୍ରକାଶିତ ହୋଇଅଛି ତାହା ଇତିବୃତ୍ତ ସଙ୍ଗେ ଏପରି ଐକ୍ୟ ହୋଇ ମୁଦ୍ରିତ ହୋଇ ଅଛି ଯେ ତାହାର ପ୍ରତି ଲାଇନ ଏବଂ ପ୍ରତିଶବ୍ଦ ଇତିବୃତ୍ତର ପ୍ରତିଲାଇନ ଏବଂ ପ୍ରତିଶବ୍ଦ ସଙ୍ଗେ କୌଣସି ପାର୍ଥକ୍ୟ ନାହିଁ। ଛାତ୍ରମାନେ ଦୁଇ ଅଣାର ପୁସ୍ତକ କ୍ରୟ କରି ଯାହା ପଢ଼ିବେ ଚରିଅଣାର ପୁସ୍ତକରେ ମଧ୍ୟ ଅବିକଳ ସେହିତା ପଢ଼ିବେ।

୪ । ୬ । ୮୮

ବାଲେଶ୍ୱର — ଶ୍ରୀ ସୀତାନାଥ ରାୟ।

*ଭା୨୩ଗ, ସଂ୨୫ଖ୍ୟା, ୨୩।୬।୧୮୮୮*

## ବିନା ମୂଲ୍ୟରେ ବିତରିତ ।

ତତ୍ତ୍ୱବୋଧକ ନାମକ ପୁସ୍ତକଖଣ୍ଡି ଉତ୍କଳକ୍ଷେତ୍ରରେ ବିତରଣ କରିବା ପାଇଁ ବହୁପ୍ରୟାସସହିତ ପ୍ରକାଶ କରିଅଛୁଁ, ମହାତ୍ମାମାନଙ୍କୁ ଅନୁରୋଧ ଯେ, ଏହି ପୁସ୍ତକରୁ ଖଣ୍ଡିଏ ଲେଖାଏଁ ନେଇଁ ପଠନ କରନ୍ତୁ ଯହିଁରେ କି ଆମ୍ଭର ଶ୍ରମ ସଫଳ ହେବ ନିମ୍ନଲିଖିତ ସ୍ଥାନମାନଙ୍କରେ ପୁସ୍ତକ ପ୍ରାପ୍ତବ୍ୟ କେବଳ ଡାକମାସୁଲ ନିମିତ୍ତ ଦୁଇପଇସା ପଠାଇବାକୁ ହେବ।

କଟକ ପ୍ରିଣ୍ଟିଂକୁମ୍ପାନୀଙ୍କ ପୁସ୍ତକାଳୟରେ ଏବଂ ବାଲେଶ୍ୱରର ସମ୍ବାଦବାହିକାଙ୍କ ଅଫିସରେ

ଶ୍ରୀଯୁତ ରାମଭଦ୍ର ସାହ
ନିନାଦେବ
ବାମଣ୍ଡା
ତା ୧୪।୫।୮୮

*ଭା୨୩ଗ, ସଂ୨୫ଖ୍ୟା, ୨୩।୬।୧୮୮୮*

## ପାଠ୍ୟପୁସ୍ତକ ଯୋଗାଇବାର ନିୟମ ।

ଓଡ଼ିଶାପୁସ୍ତକ ବିକ୍ରୟର ଅତି ସଂକୀର୍ଣ୍ଣସ୍ଥାନ। ବିଦ୍ୟାଳୟର ଅତି ନିମ୍ନଶ୍ରେଣୀର ପାଠ୍ୟପୁସ୍ତକ ଛଡ଼ା ଅନ୍ୟ କୌଣସି ପୁସ୍ତକ ଏକହଜାର ଖଣ୍ଡ ବିକ୍ରୟ ହେବାକୁ ଦୁଇ ତିନିବର୍ଷ ଲାଗଇ ଅଥଚ ଏକ ସଂସ୍କରଣରେ ଏକହଜାର ଛପା ନ କଲେ ମୂଲ୍ୟ ସୁଲଭ ହୁଅଇ ନାହିଁ। ବିଦ୍ୟାଳୟର କୌଣସି ଏକଶ୍ରେଣୀ ନିମିତ୍ତ ଦୁଇ ତିନି ବା ଅଧିକଖଣ୍ଡ

ପୁସ୍ତକ ନିର୍ଦ୍ଦିଷ୍ଟ ହେଲେ ଏକ ଏକ ପୁସ୍ତକର ବିକ୍ରୟ ଆହୁରି ଊଣା ହୁଅଇ ଏବଂ କୌଣସି ପୁସ୍ତକ ଆଦୌ ବିକ୍ରୟ ହୁଅଇ ନାହି। ଏଥିରେ ଗ୍ରନ୍ଥକାର ବା ପ୍ରକାଶକଙ୍କର ଲାଭ ଅତି ସାମାନ୍ୟ ହୁଅଇ ବା କାହାରି ଆଦୌ ହୁଅଇ ନାହି। ଏହି କାରଣରୁ ଆମ୍ଭେମାନେ ପାଠ୍ୟପୁସ୍ତକନିର୍ବାଚକ କମିଟୀଙ୍କଠାରେ କୌଣସି ଏକଶ୍ରେଣୀ ନିମିତ୍ତ ଅନେକଖଣ୍ଡ ପୁସ୍ତକ ଧାର୍ଯ୍ୟ ନ କରିବାର ପ୍ରସ୍ତାବ କରିଥିଲୁଁ। ଏକଶ୍ରେଣୀ ନିମିତ୍ତ ଖଣ୍ଡିଏ ଗ୍ରନ୍ଥ ନିର୍ବାଚିତ ହେଲେ ଯେ ଏକପ୍ରକାର ଏକହାତିଆ ବ୍ୟବସାୟ ହେବ ଏବଂ ତଦ୍ଦ୍ୱାରା ଉକ୍ତ ପୁସ୍ତକ ପ୍ରାପ୍ତି ବିଷୟରେ ଅସୁବିଧା ହେବ ଏକଥା ଆମ୍ଭେମାନେ କଳ୍ପନା କରିପାରି ନ ଥିଲୁଁ ଓ ବାସ୍ତବରେ ସକଳ ପୁସ୍ତକ ସମ୍ପର୍କରେ ଏପରି ଘଟି ନାହି। ପ୍ରବନ୍ଧମାଳା, ତୃତୀୟପାଠ, କବିତାବଳୀର ୨ୟ ଭାଗ, ବିଜ୍ଞାନସୂତ୍ର,ସରଳଶରୀରରକ୍ଷା, ଭୂଗୋଳପାଠ, କବିତାକୁସୁମ ଓ ସରଳଜଡ଼ବିଜ୍ଞାନ ଏସବୁ ପୁସ୍ତକ ଏକ ଏକ ବିଦ୍ୟାଳୟର ଏକ ଏକ ଶ୍ରେଣୀ ନିମିତ୍ତ ନିର୍ଦ୍ଦିଷ୍ଟ ହୋଇଅଛି ଏଥିମଧ୍ୟରୁ କୌଣସି ଏକ ପୁସ୍ତକ ବଦଳରେ ଅନ୍ୟ କିଛି ପୁସ୍ତକ ଧାର୍ଯ୍ୟ ହୋଇ ନାହି। କିନ୍ତୁ ଶେଷଲିଖିତ ଦୁଇ ପୁସ୍ତକ ଛଡ଼ା ଅନ୍ୟ କୌଣସି ପୁସ୍ତକ ପ୍ରାପ୍ତିବିଷୟରେ କିଛି ମାତ୍ର ଅସୁବିଧା ନାହି। କାରଣ ଗ୍ରନ୍ଥକାର ବା ପ୍ରକାଶକମାନେ ନାନା ସ୍ଥାନରେ ପୁସ୍ତକ ରଖାଇ ଏବଂ ଉପଯୁକ୍ତ କମିଶନ ପ୍ରଦାନପୂର୍ବକ ନାନା ଲୋକଙ୍କଦ୍ୱାରା ବିକ୍ରୟ କରାଉ ଅଛନ୍ତି ଓ ଛାତ୍ରମାନେ ଯାହାର ଯେଉଁଠାରେ ଇଚ୍ଛା ସେଠାରେ କିଣି ନେଉଅଛନ୍ତି। କିନ୍ତୁ କବିତାକୁସୁମ ଓ ସରଳଜଡ଼ବିଜ୍ଞାନର ପ୍ରକାଶକ ଭିକ୍‌ଟୋରିୟାପ୍ରେସ ଉକ୍ତ ଦୁଇପୁସ୍ତକସମ୍ବନ୍ଧରେ ନିୟମ କରିଅଛନ୍ତି କି ଗ୍ରାହକ ଓ ପୁସ୍ତକବିକ୍ରେତାଙ୍କୁ ଏକାଦରରେ ବିକ୍ରୟ କରିବେ ଓ କେହି ତେତେ ଅଧିକ ଟଙ୍କାର ପୁସ୍ତକ ନେଲେ ସୁଦ୍ଧା କିଛି କମିଶନ ଦେବେ ନାହି। ଏଥିର ଫଳ ଏହି ହୋଇଅଛି ଯେ ଛାତ୍ରମାନେ ଉକ୍ତ ପ୍ରେସର ଦୋକାନକୁ ଯିବାକୁ ହେବ ଓ ଯାହାର ଯେଉଁଠାରେ ଇଚ୍ଛା ସେଠାରେ ସେ କ୍ରୟ କରିପାରିବ ନାହି କାରଣ ବିନା ଲାଭରେ ପୁସ୍ତକ ବିକ୍ରେତା କାହିଁକି ତାହା କ୍ରୟ କରି ଆଣି ଆପଣା ଦୋକାନରେ ରଖିବ। ଆମ୍ଭେମାନେ ଅନୁଭବଦ୍ୱାରା ବୁଝିଅଛୁଁ ଯେ ଏଥିରେ ସଦର ମୋଫସଲର ଅନେକ ଛାତ୍ରଙ୍କର ଭାରୀ କଷ୍ଟ ହୋଇଅଛି ଏବଂ କଟକ ପ୍ରିଣ୍ଟିଂ କମ୍ପାନୀ ଯଥାସାଧ୍ୟ ଆପଣାଗ୍ରାହକମଣ୍ଡଳୀର ଅସୁବିଧା ଲାଘବ ଉଦ୍ଦେଶରେ ବିନା ଲାଭରେ ଅନେକ ଟଙ୍କାର ପୁସ୍ତକ କ୍ରୟ କରି ଆଣି ସେମାନଙ୍କୁ ଯୋଗାଉଅଛନ୍ତି। କିନ୍ତୁ ଏହା ସମସ୍ତଙ୍କ ପକ୍ଷରେ ସୁବିଧାଜନକ ନୁହଇ ଏବଂ ଏପରି ଅନୁଗ୍ରହରେ ସର୍ବଦା କାର୍ଯ୍ୟ ଚାଲି ନ ପାରେ। ଉକ୍ତ ପୁସ୍ତକଦ୍ୱୟର ପ୍ରତିଦ୍ୱନ୍ଦୀପୁସ୍ତକ କିଛି ନ ଥିବାରୁ ପୁସ୍ତକବିକ୍ରୟସମ୍ବନ୍ଧରେ ନୂତନ ପ୍ରେସ ଏହି ନୂତନନିୟମ ଜାରୀ କରିବାକୁ ସାହସୀ ହୋଇଅଛନ୍ତି ନତୁବା ଏପରି ହୁଅନ୍ତା ନାହି। ମୋଫସଲର ପୁସ୍ତକ ବିକ୍ରେତାଙ୍କର ପାଣ୍ଠି ନାହି ଯେ ସେମାନେ ଆଗତୁରା ନଗଦ କିଣି ପୁସ୍ତକ ବିକ୍ରୟ କରିବେ ଓ ସେମାନଙ୍କୁ ସୁଦ୍ଧା କମିଶନ ଦେବାର ନିୟମ ହୋଇଅଛି ବୋଲି ଜଣାଯାଇ ନାହି। ପୁସ୍ତକନିର୍ବାଚନକମିଟୀ ଏହି ଦୁଇପୁସ୍ତକକୁ ନିର୍ବାଚନ କରିଅଛନ୍ତି ବୋଲି ଆମ୍ଭେମାନେ ସେମାନଙ୍କର ଦୋଷ ଦେଇ ନ ପାରୁଁ କାରଣ ସେମାନଙ୍କ ବିବେଚନାରେ ଯେଉଁ ପୁସ୍ତକ ଭଲ ହେବ କେବଳ ତହିଁର କେହି ପ୍ରତିଦ୍ୱନ୍ଦୀ ନାହି ବୋଲି ତାହାକୁ ପରିତ୍ୟାଗ କରିବା ଉଚିତ ନୁହଇ। ଉପଯୁକ୍ତ ପୁସ୍ତକକୁ ସେମାନେ ଅବଶ୍ୟ ଉତ୍ସାହ ଦେବେ। କିନ୍ତୁ ଉପର ଲିଖିତ ଅସୁବିଧା ଦୃଷ୍ଟିରେ ଆମ୍ଭେମାନେ ବିବେଚନା କରୁଁ କି ଯେଉଁ ପୁସ୍ତକ ସେମାନେ ନିର୍ବାଚନ କରିବେ ତାହା ସର୍ବସାଧାରଣଙ୍କ ପ୍ରାପ୍ତି ବିଷୟରେ ଯଥେଷ୍ଟ ସୁବିଧା କରି ଦେବାକୁ ଗ୍ରନ୍ଥକାର ପ୍ରସ୍ତୁତ ଅଛନ୍ତି କି ନା ଏକଥା ସେମାନଙ୍କଦେଖିବାର କର୍ତ୍ତବ୍ୟ ହେଉଅଛି। କାରଣ ସେମାନଙ୍କ ଆଦେଶକ୍ରମେ ଛାତ୍ରମାନେ ଉକ୍ତ ପୁସ୍ତକ ପଢ଼ିବାକୁ ବାଧ୍ୟ ସୁତରାଂ ତାହା ସହଜରେ ଯୋଗାଇବାର ବ୍ୟବସ୍ଥା କରିବାର ଭାର ସେମାନଙ୍କ ଉପରେ ରହିଅଛି। ଆମ୍ଭେମାନେ ପୁସ୍ତକନିର୍ବାଚନକମିଟୀଙ୍କଠାରେ ଏଥିର ସୁବିଚାର ପ୍ରାର୍ଥନା କରୁଁ।

*ଭା୨୩ଗ,ସଂ୨୬ଖ୍ୟା,୩୦।୬।୧୮୮୮*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## ଅନ୍ୟାୟ ପ୍ରତିବାଦ ।

କବିତାକୁସୁମ ଓ ସରଳ ପଦାର୍ଥବିଜ୍ଞାନର ବିକ୍ରୟ ସମ୍ବନ୍ଧରେ ଦୀପିକା ଓ ବାହିକାର ଗୁହାରି ନିତାନ୍ତ ଅକର୍ମଣ୍ୟ ବୋଲି ପ୍ରତିପନ୍ନ କରିବାକୁ ଚେଷ୍ଟା କରି ଓଡ଼ିଆ ଓ ନବସଂବାଦ ଲେଖିଅଛନ୍ତି କି "ଦୀପିକାର ବାବୁ ଗୌରୀଶଙ୍କର ରାୟ ଏବଂ ବାହିକାର ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ଉଭୟ ପୁସ୍ତକବିକ୍ରେତା ଅଟନ୍ତି ଏମାନେ ବିକ୍ରୟ କରିବାକୁ ପୁସ୍ତକ ପାଇ ନାହାନ୍ତି ଏଣୁ ଉଭୟେ ସ୍ୱୀୟସମ୍ବାଦପତ୍ରରେ ଆନ୍ଦୋଳନ ଆରମ୍ଭ କରିଅଛନ୍ତି । ପ୍ରକୃତରେ ଉକ୍ତ ଦୁଇପୁସ୍ତକ ବିକ୍ରୟର ଅଭାବ ହୋଇଅଛି କି ନା ତାହା ମୋଫସଲର ଶିକ୍ଷକ ଏବଂ ଛାତ୍ରମାନଙ୍କଠାରୁ ଅବଗତ ନ ହେଲେ ଆମ୍ଭେମାନେ କହିପାରିବୁ ନାହିଁ । ଗ୍ରନ୍ଥକର୍ତ୍ତାମାନେ ସ୍ୱଦେଶହିତୈଷିତା ପ୍ରକାଶ କରିବା ନିମନ୍ତେ କିମ୍ବା ଏଜଣ୍ଟମାନଙ୍କ ସଙ୍ଗେ ଶତ୍ରୁତା ସାଧନ ନିମିତ୍ତ ଗ୍ରନ୍ଥପ୍ରକାଶ କରି ନାହାନ୍ତି । ଗ୍ରନ୍ଥ ବିକ୍ରୟ କରି ଲାଭବାନ୍ ହେବା ସେମାନଙ୍କରଏକମାତ୍ର ଉଦ୍ଦେଶ୍ୟ ଅଟେ ଏପରିସ୍ଥଳେ ସେମାନେ ପୁସ୍ତକବିକ୍ରୟରେ ଅମନୋଯୋଗୀ ହୋଇଅଛନ୍ତି ଏହା ବିଶ୍ୱାସ ହେଉ ନାହିଁ । ବାଲେଶ୍ୱରରେ ଦେଙ୍କ ପ୍ରେସରେ ଏବଂ କଟକରେ ଗ୍ରନ୍ଥକର୍ତ୍ତାମାନେ ସ୍ୱୟଂ ପୁସ୍ତକ ବିକ୍ରୟ ନିମନ୍ତେ ପ୍ରସ୍ତୁତ ରଖିଅଛନ୍ତି । ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ କିମ୍ବା ବାବୁ ଗୌରୀଶଙ୍କର ରାୟ ପୁସ୍ତକ ବିକ୍ରୟ ନ କଲେ ଯେ ପୁସ୍ତକ ବିକ୍ରୟ ହେବ ନାହିଁ ଏପରି କୌଣସି କଥା ନୁହେ ।" ଆହା ! କିସୁନ୍ଦର ଯୁକ୍ତି ! କି ଚମତ୍କାର ଉକାଲତୀ ! ଯେଉଁମାନେ ଯେଉଁବିଷୟର ବ୍ୟବସାୟୀ ସେମାନେ ଅନୁଭବଦ୍ୱାରା ତହିଁ ସମ୍ପର୍କୀୟ ଭଲ ମନ୍ଦ ଜାଣିବାକୁ ଅଧିକ ସକ୍ଷମ ଏକଥା ସମସ୍ତେ ସ୍ୱୀକାର କରିବେ । ଗୌରୀଶଙ୍କର ବାବୁ ଓ ଗୋବିନ୍ଦବାବୁ ବହୁ କାଳର ପୁସ୍ତକବିକ୍ରେତା ଥିବାରୁ ଏମାନଙ୍କଠାରେ ଅନେକ ସ୍କୁଲଶିକ୍ଷକ ଓ ଛାତ୍ର ସ୍ୱୟଂ ବା ପତ୍ରଦ୍ୱାରା ପୁସ୍ତକ ଲୋଡ଼ନ୍ତି ଓ ନ ପାଇଲେ କଷ୍ଟ ଭୋଗକରି ଅନ୍ୟତ୍ର ଲୋଡ଼ିବାକୁ ବାଧ ହୁଅନ୍ତି ଓ ଅଧିକା ଖର୍ଚ୍ଚାନ୍ତ ହୁଅନ୍ତି । କ୍ରେତାଙ୍କ କଷ୍ଟରେ ଲାଘବ କରିବା ଉଦ୍ଦେଶରେ ଗୌରୀଶଙ୍କର ବାବୁ ଏ ପର୍ଯ୍ୟନ୍ତ ବିନାଲାଭରେ ଖ ୧୫୫ଣ୍ଡ କବିତାକୁସୁମ ଓ ଖ ୫୫ଣ୍ଡ ପଦାର୍ଥ ବିଜ୍ଞାନ ହାତରୁ ଟଙ୍କା ଦେଇ କିଣିଆଣି ଅସଲଦାମରେ ବିକ୍ରୟ କରିଅଛନ୍ତି । "ଓଡ଼ିଆ" ଉକ୍ତ ଦୁଇବାବୁଙ୍କୁ ପୁସ୍ତକବିକ୍ରେତା ବୋଲି ସ୍ୱୀକାର କରୁଅଛନ୍ତି ଅଥଚ ତାହାଙ୍କ କଥା ବିଶ୍ୱାସ କରିବେ ନାହିଁ ଏବଂ ଉଡ଼ାଇଦେବାର ଚେଷ୍ଟା କରିବେ । କୁସଂସ୍କାରବିଶିଷ୍ଟ ବ୍ୟକ୍ତି ଭିନ୍ନ ଏପରି କଥା ଅନ୍ୟ କେହି କହିବ କି ? କେହି ଶିକ୍ଷକ ବା ଛାତ୍ର ତାହାଙ୍କ ନିକଟରେ ଗୁହାରି କରି ନାହାନ୍ତି ବୋଲି ସେ ଲେଖିଅଛନ୍ତି ମାତ୍ର ଯେତେବେଳେ ଅନ୍ୟସୂତ୍ରରୁ ଗୁହାରି ଶୁଣିଲେ ତେତେବେଳେ ତାହାଙ୍କର ଅନୁସନ୍ଧାନ କରିବା ବି କର୍ତ୍ତବ୍ୟ ନ ଥିଲା ଏବଂ ଅନୁସନ୍ଧାନପୂର୍ବରୁ ଅନ୍ୟକୁ ଦୋଷୀ ବୋଲିବା କି ନ୍ୟାୟସଙ୍ଗତ ହେଲା ? ସମ୍ବାଦପତ୍ରର ଦାୟିତ୍ୱ ପ୍ରତି ଯାହାର କିଛିମାତ୍ର ଦୃଷ୍ଟି ଅଛି ସେ ଏପରି କଦାଚ କହିବ ନାହିଁ । ଆଉ ଯାହା ସହଯୋଗୀ ଲେଖିଅଛନ୍ତି କି ଗୌରୀଶଙ୍କର ବାବୁ ଓ ଗୋବିନ୍ଦ ବାବୁ ପୁସ୍ତକ ପାଇଲେ ନାହିଁ ବୋଲି ରଡ଼ି ପକାଇଅଛନ୍ତି ଏହା ଶୁଣିବାକୁ ଆମ୍ଭେମାନେ ପ୍ରଥମ ପ୍ରବନ୍ଧ ଲେଖିବା ସମୟରୁ ପ୍ରସ୍ତୁତ ଥିଲୁଁ । ଆମ୍ଭେମାନେ ଜାଣୁ ଯେ ବିଦ୍ୟାଳୟର ପାଠ୍ୟପୁସ୍ତକ ପ୍ରକାଶ ଓ ବିକ୍ରୟ ସମ୍ପର୍କରେ ଉକ୍ତବାବୁଦ୍ୱୟଙ୍କୁ ଓଡ଼ିଆ ଓ ନବସଂବାଦ ଦଳଭୁକ୍ତ ଲୋକମାନେ ସେମାନଙ୍କର ଭାରୀ ବିପକ୍ଷ ବୋଲି ମନେ କରନ୍ତି ଓ ସେ ସମ୍ପର୍କରେ କିଛି କଥା ପଡ଼ିଲେ ଭଲ ମନ୍ଦ ନ ବିଚାରି ଏକମାତ୍ର ସ୍ୱାର୍ଥପରତାର ଦୋହାଇଦ୍ୱାରା ସ୍ୱପକ୍ଷ ସମର୍ଥନ କରିବାକୁ ଛାଡ଼ିବେ ନାହିଁ । ଫଳତଃ ତାହାଇ ଘଟିଅଛି କିନ୍ତୁ ଯେବେ ସହଯୋଗିଙ୍କର ଏକଥା ବିଶ୍ୱାସ କରିବାକୁ ହେବ ତେବେ ଦେ-ପ୍ରେସ ଅନୁଗୃହୀତ ହୋଇଅଛି ବୋଲି ସ୍ୱଭାବତଃ ତାହାଙ୍କ ମନ ଗ୍ରନ୍ଥକାରଙ୍କ ସ୍ୱପକ୍ଷରେ ଆକୃଷ୍ଟ ହୋଇଅଛି ଏକଥା ବିଶ୍ୱାସ ନ ହେବ କାହିଁକି ? ପରକୁ ଦୋଷଦେବାପୂର୍ବେ ଆପଣା କଥା ଟିକିଏ ଭାବିବାର ଉଚିତ । ଏଜେଣ୍ଟମାନଙ୍କ ସହିତ ଗ୍ରନ୍ଥକାରଙ୍କର ଶତ୍ରୁତା ଥାଇ ନ ପାରେ କିନ୍ତୁ ଗୌରୀଶଙ୍କର ଓ ରାମପ୍ରସନ୍ନ ବାବୁ ପ୍ରଭୃତି ପରିଚିତ ଏଜଣ୍ଟଙ୍କୁ ନ ଦେଇ କେବଳ ଦେ-ପ୍ରେସକୁ ପୁସ୍ତକ ଯୋଗାଇବାର ଅବଶ୍ୟ କୌଣସି ଗୂଢ଼କାରଣ ଥିବ ତାହାସବୁ ବିଚାର କରିବାର ଆବଶ୍ୟକ ନାହିଁ । ଆମ୍ଭେମାନେ ଏତିକି କହୁଅଛୁଁ ଯେ ଅନ୍ୟାନ୍ୟ ପୁସ୍ତକ ବିକ୍ରୟସମ୍ବନ୍ଧରେ ଯେପରି ସୁବିଧା ଅଛି ଏହି ଦୁଇପୁସ୍ତକ ସମ୍ବନ୍ଧରେ ସେପରି ନାହିଁ । ଯେସ୍ଥଳେ କମିଟୀଙ୍କ ଆଦେଶମତେ ସମସ୍ତେ ପୁସ୍ତକ କ୍ରୟକରିବାକୁ ବାଧ ସେ ସ୍ଥଳେ ଗଛ ଉପରେ ଥିଲେ ସୁଦ୍ଧା ସେମାନେ କଷ୍ଟସହିତ

କ୍ରୟକରିବେ ଆମ୍ଭେମାନେ କେବଳ ସୁବିଧାର କଥା କହିଅଛୁଁ। ଗୌରୀଶଙ୍କର ବା ଗୋବିନ୍ଦଚନ୍ଦ୍ର ବିନା ପୁସ୍ତକ ବିକ୍ରୟ ହେବ ନାହିଁ ବାଧତାସ୍ଥଳେ ସେପରି କଳ୍ପନା କରିବା ବୃଥା ତେବେ ଅନ୍ତତଃ ଏତେକ ହୁଅନ୍ତା ଯେ ଏମାନଙ୍କୁ ଦିୟା ଯାଇଥିଲେ ଅନ୍ତତଃ ଦେ-ପ୍ରେସ ଦୁଇପଇସା ଲେଖାଁଏ ଡାକମାସୁଲ ନାମରେ ଅଧିକା ଲାଭ କରିପାରନ୍ତେ ନାହିଁ ବାଲେଶ୍ୱରର ପୁସ୍ତକମାନ କଟକରେ ବିନା ଖର୍ଚ୍ଚାରେ ବିକ୍ରୟ ହେଉଅଛି ଏବଂ ଉକ୍ତ ଦୁଇ ପୁସ୍ତକ ବିକ୍ରୟନିମିତ୍ତ ଅଧିକ ପରିମାଣରେ ଡାକରେ ଅଣାଇଲେ ସୁଦ୍ଧା ଖଣ୍ଡପ୍ରତି ଡାକମାସୁଲ ଦୁଇପଇସା ପଡ଼ିବ ନାହିଁ।

ପରିଶେଷରେ ବକ୍ତବ୍ୟ ଏହି କି ବାବୁ ରାମକୃଷ୍ଣ ସାହୁଙ୍କ ସକାଶେ ଏପରି ହୋଇଥିବାର ବାହିକା ଯାହା ଅନୁମାନ କରିଅଛନ୍ତି ତାହା ଠିକ ନୁହଇ। ଏହା ନୂତନ ଭିକ୍ଟୋରିୟା ପ୍ରେସର ନୂତନ ବ୍ୟବସ୍ଥା।

*ଭା୨୩ଗ,ସଂ୨୯ଖ୍ୟା,୨୧।୭।୧୮୮୮*

## ପ୍ରେରିତପତ୍ର ।

## [ନୂତନ ସ୍କୁଲ]

ସମ୍ପାଦକ ମହାଶୟ !

ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଆସିକା ନଗରରେ ଘୁମୁସର ତାଲୁକା ବୋର୍ଡ଼ଫଣ୍ଡ ଧନରେ ଲୋକଲଫଣ୍ଡ ମିଃ ସ୍କୁଲ ଖୋଲାଯାଇ ଅଛି। ସାଧାରଣରେ ଗଞ୍ଜାମ ଜିଲ୍ଲା ପ୍ରାୟ ସମଗ୍ର ଓଡ଼ିୟାମାନଙ୍କ ନିବାସ ସ୍ଥାନ ସୁତରାଂ ତାଲୁକାବୋର୍ଡ଼ ଯେତେ ବ୍ୟୟ ସଂଗ୍ରହ କରନ୍ତି ସେ ସମସ୍ତ ଭାର ଗଞ୍ଜାମର ସମସ୍ତ ଗରିବ ଓଡ଼ିୟାମାନେ ନିର୍ଭର କରୁଅଛନ୍ତି। ଏଥକୁ ଶୁଣୁଅଛୁଁ ଯେ ଆସିକାସ୍କୁଲରେ ଓଡ଼ିୟା ଛାତ୍ରଙ୍କ ସଂଖ୍ୟା କେବଳ କମିଯାଉଅଛି ଓଡ଼ିୟାମାନେ ଯେତେବେଳେ ଏପରି ଗରିବ ଅବସ୍ଥାରେ ଥାଇ ସ୍ୱଦେଶର ଧନ ବ୍ୟୟ କରାଇ ଆପଣାର ମଙ୍ଗଳସାଧନ ନ କରି ବିଦେଶୀୟମାନଙ୍କର ପୋଷକତାରେ ଅପବ୍ୟୟରେ ଖର୍ଚ୍ଚିତ ହେବ ତେବେ କି ଦୁଃଖର ବିଷୟ ନୁହେ ? ରସୁଲକୁଣ୍ଡା ଇଚ୍ଛାପୁର ମିଃ ସ୍କୁଲରେ ପଢ଼ା କରୁଥିବା ଓଡ଼ିୟା ଛାତ୍ରମାନଙ୍କ ମଧ୍ୟରେ ଉଚ୍ଚତମ ଶ୍ରେଣୀ ବାଳକମାନଙ୍କ ମଧ୍ୟରେ ଯେଉଁ ଛାତ୍ର ଉଚ୍ଚପାୟା ପାଏ ସେହି ଛାତ୍ର ମାସିକ ଟ୬ଙ୍କା ଛାତ୍ରବୃତ୍ତି ନେଇ ମେଟ୍ରକ୍ଲେଶନ ପାଶ କଲାଯାଏ ଗବର୍ଣ୍ଣମେଣ୍ଟରୁ ସାହାଯ୍ୟ ପାଇ ପାରେ। ଆମ୍ଭର ସମ୍ପୂର୍ଣ୍ଣ ଭରସା ଆସି ମିଃ ସ୍କୁଲରେ ମଧ ଉପରୋକ୍ତ ବିଧି ଅବଶ୍ୟ ପ୍ରଚଳିତ ହେବ ଅତଏବ ରସୁଲକୁଣ୍ଡା ଆଉ ବ୍ରହ୍ମପୁର ଅଞ୍ଚଳର ଶିକ୍ଷାବିଭାଗୀୟ ଡେଃ ଇ,ଙ୍କ ନିକଟରେ ଆମ୍ଭର ଦୃଢ଼ ପ୍ରାର୍ଥନା ଏହି କି ବାବୁ ମହାଶୟମାନେ ଆପଣା ଆପଣା ରେଞ୍ଜିଗସ୍ତ ସମୟରେ ଆସିକା ନିକଟସ୍ଥ ଗ୍ରାମମାନଙ୍କପଟେ ଯାଇଥିବା ସମୟରେ ସେହି ସେହି ଗ୍ରାମବାସିମାନଙ୍କୁ ଆସିକା ସ୍କୁଲରେ ପଢ଼ିବା ବିଷୟରେ ବିଶେଷ ଉତ୍ସାହ ଦାନ କରନ୍ତୁ। ଉପସଂହାରସ୍ଥଳେ ଆସିକାରେ ଥିବା ଉତ୍କଳୀୟ ଅମଲାମାନଙ୍କୁ ଆମ୍ଭର ପ୍ରାର୍ଥନା ଏହି କି ଆସିକା ସ୍କୁଲରେ ଯେତେପର୍ଯ୍ୟନ୍ତ ଓଡ଼ିୟା ଛାତ୍ର ବିଶେଷ ରୂପେ ଜମା ହୁଅନ୍ତି, ସେହି ବିଷୟରେ ଆସିକାରେ ଉତ୍କଳହିତୈଷିଣୀ ସମାଜ ଖୋଲା ଯାଇ ନିକଟସ୍ଥ ଗ୍ରାମମାନଙ୍କୁ ବିଜ୍ଞାପନ ପଠାଯାଉ। ଇତି।

| | |
|---|---|
| ୧୦।୮।୮୮ | ବଶମ୍ୱଦ |
| ଧୂଆଁଛାଇଗ୍ରାମ | ଶ୍ରୀ ହରିହର ତ୍ରିପାଠୀ |
| ଡାକଘର ରସୁଲକୁଣ୍ଡା | ଉତ୍କଳ ଶ୍ରେୟସ୍କରି |
| ଜି- ଗଞ୍ଜା | ସମାଜର ସମ୍ପାଦକ |

*ଭା୨୩ଗ,ସଂ୩୫ଖ୍ୟା,୧।୯।୧୮୮୮*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## ପ୍ୟାରୀମୋହନ ଏକାଡେମୀ ।

ଆମ୍ଭେମାନେ କଟକ ପ୍ୟାରୀମୋହନ ଏକାଡେମୀ ସମ୍ବନ୍ଧରେ ଖଣ୍ଡିଏ ପ୍ରେରିତପତ୍ର ନିମ୍ନେ ପ୍ରକାଶ କଲୁଁ। ତହିଁରୁ ଏ ବିଦ୍ୟାଳୟର ଉପକାରିତା ଓ କାର୍ଯ୍ୟକାରିତା ପାଠକେ ଉତ୍ତମରୂପେ ଜାଣି ପାରିବେ। ସ୍କୁଲସମ୍ପାଦକଙ୍କ ସହିତ ଆମ୍ଭେମାନେ ଐକ୍ୟ ହୋଇ କେଉଁଝରର ମହାରାଜାଙ୍କୁ ଶତ ଶତ ଧନ୍ୟବାଦ ଦେଉଅଛୁଁ ଯେହେତୁ ମହାରାଜା ଟ ୧୦୦୦ଙ୍କା ଉକ୍ତ ସ୍କୁଲଗୃହ ନିର୍ମାଣାର୍ଥେ ପ୍ରଦାନ କରି ଗୋଟିଏ କୀର୍ତ୍ତିକୁ ଚିରସ୍ଥାୟୀ କରିବା ବିଷୟରେ ବିଶେଷ ସାହାଯ୍ୟ କରିଅଛନ୍ତି ଏବଂ ମହାରାଜା ଯେମନ୍ତ ବହୁବ୍ୟୟରେ ଏଠା କଲେଜଗୃହ ସଂଲଗ୍ନ ଛାତ୍ରାବାସ ନିର୍ମାଣ କରାଇଦେଇ ସାଧାରଣଶିକ୍ଷାପ୍ରତି ବିଲକ୍ଷଣ ସାହାଯ୍ୟ କରିଅଛନ୍ତି ତେମନ୍ତ ଆଉ ଦୁଇହଜାର ଦାନ କରି ଏକାଡେମୀ ସ୍କୁଲଗୃହଟି ନିର୍ମାଣ କରାଇଦେଲେ ତାହାଙ୍କର ଯଶ ଆହୁରି ଅଧିକ ବଢ଼ନ୍ତା ଏବଂ ଏହି କୀର୍ତ୍ତିରକ୍ଷାର ମୂଳକାରଣ ବୋଲି ତାହାଙ୍କ ନାମ ତହିଁ ସଙ୍ଗେ ଚିରକାଳକୁ ଲାଗିରହନ୍ତା। ଆମ୍ଭେମାନେ ଅବଗତ ହେଲୁଁ ଯେ ଯେଉଁ ଭଡ଼ାଘରରେ ଏପର୍ଯ୍ୟନ୍ତ ଉକ୍ତ ସ୍କୁଲ ହେଉ ଥିଲା ସେଘର ନିତାନ୍ତ ଜୀର୍ଣ୍ଣାବସ୍ଥା ହୋଇ ଯିବାରୁ କଟକ ମିଉନିସିପାଲହାଟରେ ଥିବା ପକ୍କା କୋଠାରେ ଗତ ମଙ୍ଗଳବାରଠାରୁ ସ୍କୁଲ ହେଉ ଅଛି। ସ୍କୁଲନିମନ୍ତେ ଗୋଟିଏ ନୂତନ ଘର ଶୀଘ୍ର ନିର୍ମାଣ ହେବା ନିତାନ୍ତ ଆବଶ୍ୟକ ହୋଇ ପଡ଼ିଅଛି ଅତଏବ ଆମ୍ଭେମାନେ ଆଶା କରୁଁ କେଉଁଝର ମହାରାଜାଙ୍କପରି ଅନ୍ୟାନ୍ୟ ରାଜା ଓ ଜମିଦାରମାନେ ଆପଣା ଆପଣା ସାଧ୍ୟାନୁସାରେ କିଛି କିଛି ଭେଦା ଦେବେ ଶୁଣି ଆନନ୍ଦିତ ହେଲୁଁ ଯେ ଗଡ଼ଜାତର ପିଲାମାନେ ଉକ୍ତ ସ୍କୁଲରେ ପଢ଼ିବା ନିମନ୍ତେ ସୁବିଧା କରିବା କାରଣ ବିଶେଷ ବନ୍ଦୋବସ୍ତ ହେଉଅଛି ଏପର୍ଯ୍ୟନ୍ତ ଢେଙ୍କାନାଳ, ଆଠମଲ୍ଲିକ, ରଣପୁର ଓ ବଡ଼ାମ୍ବାର କେତେକ ବାଳକ ଉକ୍ତ ସ୍କୁଲରେ ଅଳ୍ପ ବେତନ ଦେଇ ପଢୁ ଅଛନ୍ତି।

ମହାଶୟ-ଏଥିପୂର୍ବେ କଟକସ୍ଥ ପ୍ୟାରୀମୋହନ ଏକାଡେମୀ ନାମକ ବିଦ୍ୟାଳୟ ନିମନ୍ତେ ଗୃହ ନିର୍ମାଣାର୍ଥ ଯେଉଁ ଯେଉଁ ରାଜା ଓ ଜମିଦାରପ୍ରଭୃତି ଭେଦା ଦେଇଥିଲେ ତାହା ଆପଣଙ୍କ ପତ୍ରିକାରେ କୃତଜ୍ଞତା ସହିତ ପ୍ରାପ୍ତିସ୍ୱୀକାର କରିଥିଲୁଁ। ବର୍ତ୍ତମାନ କେଉଁଝରର ମହାରାଜା ଶ୍ରୀ ଧନୁର୍ଜୟ ନାରାୟଣ ଭଞ୍ଜ ଦେବ ବାହାଦୁର ଉକ୍ତ ବିଦ୍ୟାଳୟ ଗୃହ ନିର୍ମାଣାର୍ଥ ଏକ ସହସ୍ର ମୁଦ୍ରା ଦେବା ନିମନ୍ତେ ପ୍ରତିଶୃତ ହୋଇ ମହାରାଜା ଆପଣାର ବଦାନ୍ୟତା ଓ ଦେଶହିତୈଷିତାର ଯଥେଷ୍ଟ ପରିଚୟ ଦେଇ ଅଛନ୍ତି ଏଥିନିମିତ୍ତ ମହାରାଜାଙ୍କୁ ଭୂରି ଭୂରି ଧନ୍ୟବାଦ ଦେଉଅଛୁଁ। ମହାରାଜା ବାହାଦୁର ଯେବେ ସମୁଦାୟ ବ୍ୟୟ ବହନ କରି ଗୃହଟିଏ ନିର୍ମାଣ କରାଇ ଦେଇ ଥାନ୍ତେ ତେବେ ତାହା କଟକରେ ତାଙ୍କର ଗୋଟିଏ ଚିରସ୍ମରଣୀୟ କୀର୍ତ୍ତି ହୋଇ ରହିଥାନ୍ତା। ଆମ୍ଭମାନଙ୍କର ମାନ୍ୟବର ଶ୍ରୀଯୁକ୍ତ କମିଶନର ଓ୍ୟାରସଲି ସାହେବ ଉକ୍ତ ସ୍କୁଲସମ୍ବନ୍ଧରେ ଯେଉଁ ମନ୍ତବ୍ୟ ପ୍ରକାଶ କରି ଅଛନ୍ତି ତହିଁର ପ୍ରତିଲିପି ଏଥିସଙ୍ଗେ ଦେଇ ପ୍ରାର୍ଥନା କରୁଅଛି ଯେ ଆପଣ ଅନୁଗ୍ରହପୂର୍ବକ ସର୍ବସାଧାରଣଙ୍କ ଜାଣିବା ନିମନ୍ତେ ତାହା ପ୍ରକାଶ କରିବା ହେବେ।

୨୮।୮।୮୮ ବଶମ୍ବଦ

ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି

*ଭା୨୩ଗ,ସଂ୩୬ଖ୍ୟା,୮।୯।୧୮୮୮*

## ଉତ୍କଳସଭା ।

ଆଗାମୀ ପ୍ରଦେଶୀୟ ଏବଂ ମହାସମିତିମାନଙ୍କ ନିମିତ୍ତ ପ୍ରତିନିଧି ନିର୍ବାଚନ କରିବା ଏବଂ ଓଡ଼ିଶାର କୌଣସି କୌଣସି ସ୍ଥଳରେ ଅନ୍ନକଷ୍ଟ ଉପସ୍ଥିତ ହୋଇଥିବା କଥା ବିଚାର କରିବା କାରଣ ଗତମଙ୍ଗଳବାର ସନ୍ଧ୍ୟାସମୟରେ ଉତ୍କଳସଭାର ଗୋଟିଏ ଅଧିବେଶନ ହୋଇଥିଲା। ସହକାରି ସଭାପତି ବାବୁ ମଧୁସୂଦନ ଦାସ ସଭାର କାର୍ଯ୍ୟାରମ୍ଭ କରି ଜଣାଇଲେ ଯେ ଗତବର୍ଷ ଯେଉଁ ସମୟରେ ମାନ୍ଦ୍ରାଜରେ ମହାସମିତି ବସିଥିଲା ତେତେବେଳେ ପ୍ରଦେଶୀୟସମିତିର କଳ୍ପନା ହୋଇଅଛି। ମହାସମିତିରେ ସମସ୍ତ ଭାରତବର୍ଷର ଅଭାବ ଦୁଃଖର ଚର୍ଚ୍ଚା ହୁଅଇ କିନ୍ତୁ ଏକ ଏକ ପ୍ରଦେଶର ଦୁଃଖ ଓ ଅଭାବର ଚର୍ଚ୍ଚା ହୁଅଇ ନାହିଁ। ଏହା କରିବାକୁ ହେଲେ ପ୍ରଦେଶବିଶେଷର କେଉଁ ଦୁଃଖ ବା ଅଭାବ ଗୁରୁତର ତାହା ଆଗେ ଆପଣାମଧ୍ୟରେ ସ୍ଥିର ନ କଲେ ମହାସମିତିରେ କିରୂପେ ଉପସ୍ଥିତ ହେବ ? ଅତଏବ ପ୍ରତ୍ୟେକ ପ୍ରଦେଶରେ ଗୋଟିଏ ଲେଖାଁଏ ପ୍ରଦେଶୀୟସମିତି ହେବାର ବିଚାର ହୋଇ ବଙ୍ଗୀୟ

ପ୍ରତିନିଧିମାନେ ଦୁର୍ଗାପୂଜାଛୁଟୀ ସମୟରେ କଲିକତାରେ ପ୍ରଦେଶୀୟସମିତିର ଅଧିବେଶନ ହେବାର ଧାର୍ଯ୍ୟକଲେ। ତଦନୁସାରେ ବଙ୍ଗଳାର ପ୍ରଥମ ପ୍ରଦେଶୀୟସମିତି ଏହି ଅକ୍ଟୁବରମାସ ତା ୨୫ । ୨୬ ଓ ୨୭ ରିଖରେ ବସିବ ଏବଂ ଏଥିରେ ଖାସମାହାଲଅବକାରୀ ପୁଲୀସ ଆସାମକୁଲିଙ୍କ ଅବସ୍ଥା ଇତ୍ୟାଦି ବିଷୟର ବିଗ୍ଭର ହେବ। ଉତ୍କଳରୁ ଏସମିତିକି ପ୍ରତିନିଧି ପଠାଇବାର ଆବଶ୍ୟକ ଏବଂ ଉତ୍କଳର ଅବସ୍ଥା ସମ୍ବନ୍ଧରେ ବାବୁ ଜଗନ୍ମୋହନ ରାୟଙ୍କର ଯେପରି ଜ୍ଞାନ ଓ ବହୁଦର୍ଶିତା ଅଛି ସେପରି ଆଉ ଜଣେ ମିଳିବାର କଠିନ ଅତଏବ ତାହାଙ୍କୁ ପ୍ରତିନିଧି ନିର୍ବାଚନ କଲେ ବଡ଼ଭଲ ହେବ। ଏ ବିଷୟରେ ଅନ୍ୟାନ୍ୟ ସଭ୍ୟମାନେ ମତବ୍ୟକ୍ତ କଲାଉତାରୁ ବାବୁ ଜଗନ୍ମୋହନ ରାୟ, ବାବୁ ମଧୁସୂଦନ ଦାସ,ବାବୁ ବିପିନବିହାରୀ ମିତ୍ର, ବାବୁ ଲାଲବିହାରୀ ଘୋଷ ଏବଂ ବାବୁ ଜାନକୀନାଥ ବୋଷ ପ୍ରତିନିଧି ମନୋନୀତ ହେଲେ। ମହାସମିତି ସକାଶେ ପ୍ରତିନିଧି ନିର୍ବାଚନ କରିବା ପ୍ରସ୍ତାବ ଆଗାମୀ ଅଧିବେଶନ ପର୍ଯ୍ୟନ୍ତ ସ୍ଥଗିତ ରହିଲା।

ଦୁର୍ଭିକ୍ଷ ସମ୍ପର୍କରେ ସଭାରେ ଏହିକଥା ସ୍ଥିର ହେଲା କି ଖୋରଧାରେ ସାହାଯ୍ୟଦାନର ଯଥୋଚିତ ବନ୍ଦୋବସ୍ତ ହୋଇଅଛି। ବାଙ୍କୀର ଅବସ୍ଥା ଉତ୍ତମରୂପେ ତଦନ୍ତ କରିବା ଏବଂ ଆବଶ୍ୟକମତେ ସାହାଯ୍ୟଦାନ କରିବା କାରଣ ଶ୍ରୀଯୁକ୍ତ ଡେସ୍‌ଗ୍ରାଟୁଲେଟ ସାହେବ ଆବଶ୍ୟକୀୟ ଅର୍ଥସହିତ କଲେକ୍ଟରସାହେବଙ୍କଦ୍ୱାରା ପ୍ରେରିତ ହୋଇଅଛନ୍ତି। କେବଳ ଅନୁଗୁଳ ସମ୍ବନ୍ଧରେ ମତଭେଦ ରହିଅଛି ଅର୍ଥାତ୍ ସେଠା ଲୋକଙ୍କ ପକ୍ଷରୁ ସାହାଯ୍ୟ ସକାଶେ ପୁନଃ ପୁନଃ ପ୍ରାର୍ଥନା ହେଉଅଛି, କିନ୍ତୁ ସରକାରୀକର୍ମକାରକମାନେ ସେଠାରେ ଅନ୍ନକଷ୍ଟ ଘଟିଥିବାର ଅସ୍ୱୀକାର କରୁଅଛନ୍ତି। ଅତଏବ ସଭାରେ ଧାର୍ଯ୍ୟହେଲା କି ଆଶିଷ୍ଟଣ୍ଟ ସୁପ୍ରଣ୍ଟ ଅଥବା ତଦ୍ରୂପ କୌଣସି କର୍ମଚାରିଙ୍କୁ ଅନୁଗୁଳର ଅବସ୍ଥା ଅନୁସନ୍ଧାନ ନିମିତ୍ତ ପଠାଇବା କାରଣ ଶ୍ରୀଯୁକ୍ତ ଗଡ଼ଜାତସୁପ୍ରଣ୍ଟଙ୍କୁ ପ୍ରାର୍ଥନା କରାଯାଉ ଏବଂ ଏ ସଭାରୁ ବାବୁ ଭୂପତିନାଥ ବସୁଙ୍କୁ ପଠାଯାଉ ଯେ ସେ ଉକ୍ତସ୍ଥାନର ଅବସ୍ଥା ଦେଖିଆସି ସଭାକୁ ଜଣାଇବେ। ସେଠାର ପ୍ରକୃତ ଅବସ୍ଥା ସଭା ଜାଣିଲାରୁ ସାହାଯ୍ୟଦାନ ବିଷୟରେ ସଭା ଯଥାସାଧ ଚେଷ୍ଟାକରିବେ।

*ଭା୨୩ଗ,ସଂ୪୦ଖ୍ୟା,୬।୧୦।୧୮୮୮*

## ସାଧାରଣଶିକ୍ଷାର ବ୍ୟବସ୍ଥା ।

ଆମ୍ଭମାନଙ୍କ ଗବର୍ଣ୍ଣର ଜେନରଲ ଲର୍ଡ଼ ଡଫରିନ୍ ଆପଣା ଶାସନକାଳ ରାଜ୍ୟଲାଭ ଓ ରାଜ୍ୟରକ୍ଷାର ଚିନ୍ତାରେ ଅତିବାହିତ କରି ଶେଷସମୟରେ ଘରକରଣା ପ୍ରତି ଟିକିଏ ମନୋଯୋଗୀ ହୋଇଅଛନ୍ତି ଏବଂ ତହିଁର ଫଳସ୍ୱରୂପ ଯୋଡ଼ିଏ ନିର୍ଦ୍ଧାରଣ ବାହାରିଅଛି ଅର୍ଥାତ୍ ଖଣ୍ଡିଏ ସାଧାରଣଶିକ୍ଷା ଓ ଖଣ୍ଡିଏ ସାଧାରଣସ୍ୱାସ୍ଥ୍ୟରକ୍ଷାବିଷୟରେ। ଆମ୍ଭେମାନେ ଅଦ୍ୟ ପ୍ରଥମଟିର କିଞ୍ଚିତ୍ ପରିଚୟ ଦେଉଅଛୁଁ।

ସାଧାରଣଶିକ୍ଷାଦାନ ସମ୍ପର୍କୀୟ ଯେଉଁ ତାଲିକା ପ୍ରସ୍ତୁତ ହୋଇଅଛି ତହିଁରୁ ପ୍ରକାଶ ଯେ ଶିକ୍ଷାଦାନରେ ଏକବର୍ଷରେ ଗବର୍ଣ୍ଣମେଣ୍ଟଙ୍କର ୮୫୨ ଲକ୍ଷ ସ୍ଥାନୀୟ ଓ ମିଉନିସିପଲସମିତିଙ୍କର ୪୯ ଲକ୍ଷ ଏବଂ ଲୋକମାନଙ୍କର ୧୧୭୨ ଲକ୍ଷ ଟଙ୍କା ବ୍ୟୟ ହୋଇଅଛି । ଏଥକୁ ଲର୍ଡ଼ ମହାତ୍ମା ଏହି ମନ୍ତବ୍ୟ ପ୍ରକାଶ କରିଅଛନ୍ତି କି ଶିକ୍ଷାଦାନ ସରକାରଙ୍କର କର୍ତ୍ତବ୍ୟ ହେଲେହେଁ ଲୋକେ ଆପଣାଶିକ୍ଷାର ଉପାୟ ଆପେ କରିପାରିଲେ ସରକାରଙ୍କର ହାତ ଉଠାଇବାର ଉଚିତ । ସରକାର ଲୋକଙ୍କୁ ବାଟ ଦେଖାଇଦେଇ ଅଲଗା ହୋଇଯିବେ କେବଳ ଆବଶ୍ୟକମତେ ସାହାଯ୍ୟ କରୁଥିବେ । ଏଣୁ ଶିକ୍ଷାବିଷୟରେ ସରକାରୀ ଖର୍ଚ୍ଚା ବର୍ଷକୁ ବର୍ଷ ଊଣା ହେଉଥିବ । ଏହି ନୀତିପ୍ରତି ଦୃଷ୍ଟି ରଖିଲେ ଆଉ ନୂଆକଲେଜ କି ହାଇସ୍କୁଲ ବସାଇବାକୁ ହେବ ନାହିଁ ବରଂ ଯେଉଁଠାରେ ଲୋକେ ଉକ୍ତ ପ୍ରକାର ବିଦ୍ୟାଳୟ କରିପାରିବେ ସେଠାରୁ ସରକାରୀ ବିଦ୍ୟାଳୟମାନ ଉଠିଯିବ । ଏଥରୁ ସ୍ପଷ୍ଟ ଦେଖାଯାଏ ଯେ ଶିକ୍ଷା-ବିଭାଗର ବ୍ୟୟ ଊଣା କରିବା ମୂଳ ଉଦ୍ଦେଶ୍ୟ ଅଟଇ ଏବଂ ଏଥିରେ ଯେତେ ଶିକ୍ଷାର ଉନ୍ନତି ହେବ ତାହା ଅନାୟାସରେ ବୁଝା ଯାଉଅଛି । ଅନ୍ତତଃ ପ୍ରାଥମିକ ଶିକ୍ଷାଦାନ ଇଉରୋପ ଓ ଆମେରିକାର ସକଳଦେଶରେ ଗବର୍ଣ୍ଣମେଣ୍ଟଙ୍କର କର୍ତ୍ତବ୍ୟ ବୋଲି ସ୍ୱୀକୃତ ହୋଇଥିବା ସ୍ଥଳେ ଭାରତୀୟ ଗବର୍ଣ୍ଣମେଣ୍ଟ ସେ ଦାୟିତ୍ୱ ଗ୍ରହଣ କରିବାକୁ ପ୍ରସ୍ତୁତ ବୋଲି ସ୍ପଷ୍ଟକରି ଲେଖି ନାହାନ୍ତି। ଆମ୍ଭେମାନେ ଏ ପ୍ରକାର ନୀତିକୁ କଦାଚ ଭଲ କହି ନ ପାରୁଁ। ଲୋକମାନେ ଏତେବେଳେସୁଦ୍ଧା ସରକାରୀଖର୍ଚ୍ଚାର ଦୁଇଗୁଣ ଶିକ୍ଷାବିଷୟରେ ଖର୍ଚ୍ଚ କରୁଅଛନ୍ତି ଏବଂ ଆହୁରି ଅଧିକ ଖର୍ଚ୍ଚ କରିବେ

କିନ୍ତୁ ଗବର୍ଣ୍ଣମେଣ୍ଟଙ୍କ ଦାୟିତ୍ୱ ଛାଡ଼ ହୋଇ ନ ପାରେ ଓ ତାହା ଛାଡ଼ିଦେଲେ ଉନ୍ନତି ନ ହୋଇ ଅବନତି ହେବ ।

ଆମ୍ଭେମାନେ ଆଶା କରିଥିଲୁଁ ଯେ ଲର୍ଡ଼ଡ଼ଫରିନ ଯେତେବେଳେ ସାଧାରଣଶିକ୍ଷା ପ୍ରତି ଦୃଷ୍ଟି ପକାଇଅଛନ୍ତି ତେତେବେଳେ ଶିଳ୍ପାଦିକାର୍ଯ୍ୟର ଶିକ୍ଷାଦାନ ବିଷୟରେ କିଛି ସୁବ୍ୟବସ୍ଥା କରିବେ । ଏଥକୁ ଲର୍ଡ଼ମହାତ୍ମା କହିଅଛନ୍ତି କି ଭାରତବର୍ଷରେ ଅବଧି ଶିଳ୍ପକାର୍ଯ୍ୟ ଓ ବ୍ୟବସାୟର ବିଶେଷ ଚର୍ଚ୍ଚା ଯେପର୍ଯ୍ୟନ୍ତ ହୋଇ ନାହିଁ ସେପର୍ଯ୍ୟନ୍ତ ଲୋକଙ୍କୁ ଶିକ୍ଷା ଦେଲେ କେବଳ କାର୍ଯ୍ୟ ଖୋଜିବୁଲିବାରେ ବ୍ୟସ୍ତ ହେବେ ଏବଂ ସରକାରଙ୍କୁ ବିରକ୍ତ କରିବେ । ରେଲବାଟ ଓ କଳକାରଖାନା ଫିଟିବାଦ୍ୱାରା କେତେପ୍ରକାର ଶିଳ୍ପକାର୍ଯ୍ୟର ପ୍ରୟୋଜନ ବର୍ତ୍ତମାନ ଦେଖା ଯାଉଅଛି ଏବଂ ଏସବୁ ବିଷୟରେ ଶିକ୍ଷା ଦେବାର ଉପାୟ କରିଦେବାକୁ ଗବର୍ଣ୍ଣମେଣ୍ଟ ଆବଶ୍ୟକ ଜ୍ଞାନକରନ୍ତି । କିନ୍ତୁ କେଉଁକାର୍ଯ୍ୟର ଶିକ୍ଷା କେଉଁସ୍ଥାନରେ ଦେଲେ ଆଶାନୁରୂପ ଉପକାର ହେବ ତାହା ଜାଣିବାର କୌଣସି ଉପାୟ ହୋଇ ନାହିଁ ଓ ପ୍ରଧାନ ଗବର୍ଣ୍ଣମେଣ୍ଟଙ୍କ ଦ୍ୱାରା ହୋଇ ନ ପାରେ । ଅତଏବ ମହାମାନ୍ୟ ଗବର୍ଣ୍ଣର ଜେନେରଲ୍ ସ୍ଥାନୀୟଗବର୍ଣ୍ଣମେଣ୍ଟମାନଙ୍କୁ ପରାମର୍ଶ ଦେଇଅଛନ୍ତି ଯେ ସେମାନେ ଆପଣା ଆପଣା ଏଲାକାମଧ୍ୟରେ କେଉଁ ସ୍ଥାନରେ କିପ୍ରକାର ଶିଳ୍ପବ୍ୟବସାୟ ଇତ୍ୟାଦି କି ପରିମାଣରେ ହେଉଅଛି ତହିଁର ଅନୁସନ୍ଧାନ କରିବେ ଏବଂ ସେହି ଅନୁସନ୍ଧାନକାର୍ଯ୍ୟ ଶେଷ ହେଲାରୁ ପ୍ରତ୍ୟେକ ସ୍ଥାନର ଅବସ୍ଥା ଦୃଷ୍ଟିରେ ଯେପ୍ରକାର ଶିକ୍ଷାଦାନର ଉପାୟ କରିବାର ଉଚିତ ବୋଧହେବ ତାହା କରିବା ପାଇଁ ଏ ବିଷୟରେ ପାରଦର୍ଶିତା ଲାଭ କରିଥିବା ଲୋକଙ୍କର ଗୋଟିଏ ସମିତି ଗଠିତ ହେବ ଯେ ସେମାନେ ଶିଳ୍ପଶିକ୍ଷା ବିଷୟକ ରାଜକୀୟ କମିଶ୍ନରମାନଙ୍କ ନିର୍ଦ୍ଦିଷ୍ଟମାର୍ଗରେ ତହିଁର ବ୍ୟବସ୍ଥା କରିବେ । ପ୍ରଥମେ ପ୍ରଦେଶୀୟ ଶିଳ୍ପବିଦ୍ୟାଳୟମାନ ବସିବ ଓ ସେସବୁର କାର୍ଯ୍ୟ ବିସ୍ତାର ହେଲେ ଏ ବିଷୟର ବିଶ୍ୱବିଦ୍ୟାଳୟ ବସାଇବାର ଚେଷ୍ଟା ହେବ ।

ନୀତିଶିକ୍ଷା ବିଷୟରେ ଏଥିପୂର୍ବେ ଯେଉଁ ନିର୍ଦ୍ଧାରଣ ବାହାରିଥିଲା ବର୍ତ୍ତମାନ ନିର୍ଦ୍ଧାରଣରେ ମଧ୍ୟ ସେହି କଥାମାନ ଲେଖାଅଛି । କେବଳ ଅଧିକା ଏତିକି ଯେ ନୀତିଶିକ୍ଷା ବିଷୟରେ ଶିକ୍ଷାସମିତିର ପ୍ରସ୍ତାବମତେ ଖଣ୍ଡେ ପୁସ୍ତକ ରଚନା ହୋଇ ସମସ୍ତ ବିଦ୍ୟାଳୟର ପାଠ୍ୟପୁସ୍ତକ ହେବ । ବିଲାତର ସେକ୍ରେଟରୀ ମଧ୍ୟ ଏଥିରେ ଏକମତ ହୋଇଅଛନ୍ତି । ପୁସ୍ତକ ପାଠଦ୍ୱାରା ନୀତିଶିକ୍ଷାର ବିଶେଷ ସାହାଯ୍ୟ ହେବ ବୋଲି ଆମ୍ଭମାନଙ୍କର ମନକୁ ଘେନୁ ନାହିଁ । ଆଉ ଶିଳ୍ପବିଦ୍ୟାଶିକ୍ଷାବିଷୟରେ ଉପରେ ଯାହା ଲେଖାଗଲା ତାହା ଶୀଘ୍ର କିଛି ହେବାର ଆଶା ନାହିଁ ।

*ଭା ୨୩ଗ, ସଂ ୪ ୨ଖ୍ୟା, ୩ା ୧୧।୧୮୮୮*

## ଉଷା ।

ଏହି ନାମରେ ବାବୁ ରାଧାନାଥ ରାୟଙ୍କ ବିରଚିତ ଖଣ୍ଡିଏ ପଦ୍ୟମୟ ପୁସ୍ତିକା ଆମ୍ଭେମାନେ ପ୍ରାପ୍ତ ହେବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏହା ଏନଗରସ୍ଥ ଭିକ୍ଟୋରିୟାପ୍ରେସ୍‌ରେ ମୁଦ୍ରିତ ଏବଂ ବିଦ୍ୟୋତ୍ସାହିପ୍ରବର ଶ୍ରୀ ତାଳଚେରାଧିପତିଙ୍କ ନାମରେ ଉତ୍ସର୍ଗିତ ହୋଇଅଛି । ଉତ୍ସର୍ଗପତ୍ରରେ ଲେଖା ଅଛି କି ତାଳଚେରାଧିପତି ଆପଣାରାଜ୍ୟର ଅକ୍ଷମବ୍ୟକ୍ତିମାନଙ୍କର ଗ୍ରାସାଚ୍ଛାଦନର ଭାର ସ୍ୱୟଂ ଗ୍ରହଣ କରିଅଛନ୍ତି ଏବଂ ଏପରି ପ୍ରକୃତ ସାତ୍ୱିକଭାବାପନ୍ନ ସୁବ୍ୟବସ୍ଥା କବି ଅନ୍ୟ କୌଣସିଠାରେ ଦେଖି ନ ଥିବାରୁ ରାଜାଙ୍କର ଯଥାର୍ଥ ପ୍ରଶଂସା କରିଅଛନ୍ତି ।

କବିତାର ସଂକ୍ଷେପ ବିବରଣ ଏହି କି ବାଲେଶ୍ୱର ନିକଟ ନୂରପୁରରେ ଏକରାଜା ଥିଲେ । ଉଷାନାମରେ ତାହାଙ୍କର ଏକମାତ୍ର କନ୍ୟା ଥିଲା । ଉଷାକୁ କ୍ଷଣମାତ୍ର ଦୃଷ୍ଟିରୁ ଅନ୍ତର ରଖି ପାରୁ ନ ଥିଲେ ବୋଲି ରାଜା ମୃଗୟାକୁ ସୁଦ୍ଧା କନ୍ୟାକୁ ସଙ୍ଗରେ ଘେନି ଯାଉଥିଲେ । ସଙ୍ଗବଶତ ଉଷା କ୍ଷତ୍ରିୟକୁଳସୁଲଭ ବୀରବୃତ୍ତି ଅବଲମ୍ବନ କରି ସର୍ବଦା ଅରଣ୍ୟରେ ବୁଲି ସିକାର କରିବାରେ ପ୍ରମତ୍ତ ଥିଲେ । ଯୌବନକାଳ ଆରମ୍ଭ ହେବାରୁ ଉଷା ପଣ କଲେ କି ଯେଉଁ ରାଜପୁତ୍ର ତାହାଙ୍କୁ ଦୌଡ଼ିବାରେ ଜିଣିବ ତାହାଙ୍କୁ ବିବାହ ହେବେ ଓ ଯେ ହାରିଯିବ ତାହାର ଶିରଚ୍ଛେଦନ ହେବ । ଉଷାର ରୂପଲାବଣ୍ୟରେ ମତ୍ତ ହୋଇ ଶତାଧିକ ରାଜପୁତ୍ର ନାନାଦିଗରୁ ଆସି ଦୁଡ଼ ଲଗାଇଲେ ମାତ୍ର ହାରି ଯାଇ ପ୍ରାଣ ବିସର୍ଜନ କଲେ । ପରିଶେଷରେ ମୟୂରଭଞ୍ଜ ଅନ୍ତର୍ଗତ ହେମପୁରର

ରାଜକୁମାର ଜୟନ୍ତ କାର୍ତ୍ତିକେୟଙ୍କ ପ୍ରସାଦରୁ ସେହି ପଣରେ ଜୟଲାଭ କରି ଉଷାକୁ ପ୍ରାପ୍ତ ହେଲେ ମାତ୍ର ବିବାହବେଦୀରେ ହାତ ଗଣ୍ଠି ପଡ଼ିବା ସମୟରେ କରସ୍ପର୍ଶମାତ୍ରକେ ଦୁହିଙ୍କର ପ୍ରାଣ ବିୟୋଗ ହେଲା ।

କବି ଯେପରି ଏହି କବିତାକୁ ରଚନା କରିଅଛନ୍ତି ଆମଳ ପଢିଗଲେ ତାହାଙ୍କର ପରିଶ୍ରମ ଉତ୍ତମରୂପେ ଜଣାଯିବ । ପ୍ରକୃତରେ ଏହି କବିତା ବଡ଼ ଉତ୍କୃଷ୍ଟ ହୋଇଅଛି ଏବଂ ବୀର କରୁଣରସାଦିର ଅବତାରଣା ସ୍ଥାନେ ସ୍ଥାନେ ଯେମନ୍ତ ସୁକୌଶଳ ଓ ନିପୁଣତାସହିତ କରା ଯାଇଅଛି ଓ ଅଷ୍ଟସାତ୍ତ୍ୱିକ୍ୟର ବର୍ଣ୍ଣନା ଯେପରି ପରିପାଟୀରେ ହୋଇଅଛି ଗୀତଗ୍ରାହକପାଠକମାନେ ଅବଶ୍ୟ କବିତାର ପ୍ରଶଂସା କରିବେ ସନ୍ଦେହ ନାହିଁ ।

ଆମ୍ଭମାନଙ୍କର ଜଣେ ବନ୍ଧୁ ଏପୁସ୍ତକ ସମ୍ବନ୍ଧରେ ଯାହା ଲେଖିଅଛନ୍ତି ପାଠକମାନଙ୍କ ଜାଣିବା କାରଣ ନିମ୍ନେ ପ୍ରକାଶିତ ହେଲା ଯଥା ।

"ବଡ଼ ସୁଖର ବିଷୟ ଯେ ପୁନର୍ବାର ଶ୍ରୀ ବାବୁ ରାଧାନାଥ ରାୟ ଉତ୍କଳୀୟ ସାହିତ୍ୟସଂସାରରେ "ଉଷା" ରୂପରେ ଅବତରଣ କରିଅଛନ୍ତି, ଦୁଇବର୍ଷ ହେଲା ଏହାଙ୍କର କବିତ୍ୱ-ଶକ୍ତିର ବିକାଶ ବିଳସିତ ହେଉଅଛି, ପୂର୍ବେ ଆମ୍ଭେ ଅନୁମାନ କରି ଲେଖିଥିଲୁଁ ଯେ ଏ ମହାଶୟ ଉତ୍କଳୀୟ କିମ୍ବଦନ୍ତି ଲେଖିବାରେ ଉଦ୍ୟତ ହୋଇଅଛନ୍ତି ବୋଲି ତାହା କାର୍ଯ୍ୟରେ ଫଳିବାର ଦେଖାଗଲା, ପୁରୀ କୋଣାର୍କ ଭୁବନେଶ୍ୱର କଟକ ଏଥର ବାଲେଶ୍ୱର ଉଷାରେ ନିବନ୍ଧ ହେଲା । ସ୍ୱଭାବତଃ ଅଭ୍ୟାସବଶରୁ ଉଷାର ଭାଷା ପୂର୍ବାପେକ୍ଷା ବହୁଗୁଣ ସୁନ୍ଦର ହୋଇଅଛି, ନନ୍ଦିକେଶ୍ୱରୀର ଉପନ୍ୟାସ ଉଚ୍ଛଦରର ହେଲେହେଁ ଉଷାର ଅଳଙ୍କାରପଟୁତା ପୂର୍ବ ପୂର୍ବ ପୁସ୍ତିକାମାନଙ୍କୁ ଜୟ କରିଅଛି, ମଧ ଉଷାକୁ ଯେ ସେ ପଢି ଯେ ତାହାର ସମୁଦାୟ ଭାବ ଗ୍ରହଣ କରିବାକୁ ସମର୍ଥ ହେବେ ତାହା ନୁହେ ।

ଦ୍ରବ୍ୟରେ ରାୟ ମହାଶୟଙ୍କର ରଚିତ ପୁସ୍ତିକାବଳୀର ସାଦୃଶ୍ୟ ଦର୍ଶାଇଲେ ବୋଲିବାକୁ ହେବ ଯେ ଚନ୍ଦ୍ରଭାଗା ଇଟାଲୀର ସ୍ଥପତି ବିନିର୍ମ୍ମିତ ଶଙ୍ଖମରମରଶିଳାର ମସୃଣ ଓ ବନ୍ଧୁର ମୂର୍ତ୍ତି ବିଶେଷ ? କେଦାରଗୌରୀ ଆଭ୍ୟନ୍ତରିଣ ମାନସିକ ପ୍ରେମଲହରୀର ଓ ସଂକଳ୍ପନିଚୟର ଅଭିବ୍ୟଞ୍ଜକ ସ୍ଫଟିକବିଗ୍ରହ ବିଶେଷ । ନନ୍ଦିକେଶ୍ୱରୀ ମହାସରୋବରଭୂଷଣ ଗୋଟିଏ ବିଶାଳା କମଳ ପ୍ରାୟ ଓ ଉଷା ହୀରକଖଣ୍ଡ ମଣ୍ଡିତ କଟକର ସୁବିଖ୍ୟାତ ରାଜା ଓ ବନକୁସୁମବିଶେଷ ।

ବୋଲିବା ବାହୁଲ୍ୟ ଯେ ଉକ୍ତ ପୁସ୍ତିକାମାନଙ୍କର ଭିତ୍ତି କଳ୍ପନା ଓ ଉପରର ଗଠନା ତତ୍ସଂଭୂତ ବିଚିତ୍ର ପୁଷ୍ପ ଅଟଇ ।

ଉଦାହରଣ ଦେଖାଇ ମୋର ଉପର୍ଯ୍ୟୁକ୍ତବାକ୍ୟ ସଫଳ କରିବାକୁ ଗଲେ ବିସ୍ତର ଲେଖିବାକୁ ହେବ, ପାଠକମାନେ ପଢିଲେ ସ୍ୱୟଂ ଉପର୍ଯ୍ୟୁକ୍ତ ବିଷୟର ସତ୍ୟତା ହୃଦୟଙ୍ଗମ କରି ପାରିବେ ।

ମଧ ପ୍ରଥମ ଅବକାଶରେ ଖଣ୍ଡ ଖଣ୍ଡ ଉଦ୍ଧୃତ କରି ସଂବାଦପତ୍ରରେ ଲେଖିଲେ ମୁଦ୍ରାକାରିପ୍ରତି କେତେକ ଅନ୍ୟାୟ କରିବା ହୁଏ ।

ନିମ୍ନଜତୀନ୍ଦୋଃ କିରଣେଷ୍ୱିବାଙ୍କଃ । ଏହି ନିୟମାନୁସାରେ ଯେ ଦୁଇ ଏକ ସାମାନ୍ୟ ଭ୍ରମ ଅଛି ତାହା ମୁ ଲେଖିବି ନାହିଁ ।"

*ଭା୨୩ଗ, ସଂ୪୬ଖ୍ୟା, ୧।୧୨।୧୮୮୮*

## ପୁଣି ନାଟକାଭିନୟ ।

ଏ ନଗରବାସୀ ବିଖ୍ୟାତ ବାବୁ ମଧୁସୂଦନ ଦାସ ଆପଣା ବ୍ୟୟରେ ଆପଣାକୋଠିମଧରେ ନାଟକାଭିନୟର ଉପଯୋଗୀ ଗୋଟିଏ ସ୍ଥାୟୀ ନାଟମନ୍ଦିର ପ୍ରସ୍ତୁତ ଓ ତହିଁର ଆବଶ୍ୟକୀୟ ଚିତ୍ରାଦି ଯୋଗାଇଦେଇ ସର୍ବସାଧାରଣଙ୍କର ବିଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି ଏବଂ ତାହାଙ୍କ ପ୍ରସାଦରୁ ନଗରବାସିମାନେ ସମୟ ସମୟରେ ନାଟକାଭିନୟ ଦେଖିବାକୁ ସମର୍ଥ ହେବାରୁ ତାହାଙ୍କୁ କଲ୍ୟାଣ କରୁଅଛନ୍ତି । ସାଧାରଣ-ହିତବ୍ରତପରାୟଣ ଏବଂ ଉତ୍ସାହିଲୋକଙ୍କଦ୍ୱାରା ଏକା ଏପରି କାର୍ଯ୍ୟମାନ ହୁଅଇ ଆମ୍ଭେମାନେ ଏକାନ୍ତ ପ୍ରାର୍ଥନା କରୁଁ ଓଡ଼ିଶାରେ ଏପରି ଲୋକଙ୍କ ସଂଖ୍ୟା କ୍ରମଶ ବୃଦ୍ଧି ହେଉ ।

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ଏହି ନାଟମନ୍ଦିରରେ ଗତସପ୍ତାହରେ ଗୋଟିଏ ଅଭିନୟ ହେବାର ଲେଖିଥିଲୁଁ । ଏଥର ଆଉ ଏକ ଅଭିନୟର ଉଲ୍ଲେଖ କରୁଅଛୁଁ । ଗତ ଦୁର୍ଗାପୂଜାସମୟରେ ଦିଗିତପଡ଼ା ଗ୍ରାମରେ ଯେଉଁମାନେ କାଞ୍ଚିକାବେରୀ ନାଟକର ଅଭିନୟ କରିଥିଲେ ଓ ଯାହାଙ୍କ କାର୍ଯ୍ୟର ଅନୁକୂଳ ସମାଲୋଚନା ଆମ୍ଭେମାନେ ଏଥିପୂର୍ବେ କରିଥିଲୁଁ ସେହିମାନେ ଏ ନଗରକୁ ଆସି ଗତ ଶନିବାର ରାତ୍ରରେ ମଧୁବାବୁଙ୍କ ଉପରଲିଖିତ ନାଟମନ୍ଦିରରେ ଉକ୍ତ ନାଟକର ଅଭିନୟ ଦେଖାଇ ଥିଲେ । ଦର୍ଶକମାନଙ୍କୁ ମୂଲ୍ୟ ଦେଇ ଟିକଟ କିଣିବାକୁ ହୋଇଥିଲେ ମଧ ପ୍ରାୟ ୧୫୦/୨୦୦ ଲୋକ ଦେଖିବାକୁ ଯାଇଥିଲେ ଏବଂ ଅଭିନୟକାରିମାନେ ଏମନ୍ତ ପରିପାଟୀ ଓ ବିଚକ୍ଷଣତାସହିତ କାର୍ଯ୍ୟ କଲେ ଯେ ଦର୍ଶକବୃନ୍ଦ ପୁନଃ ପୁନଃ ପ୍ରଶଂସା ନ କରି ଥୟ ହୋଇ ପାରିଲେନାହିଁ । ଯେ ଯେଉଁବେଶ ଧରିଥିଲା ତାହାର ଅନୁରୂପ କାର୍ଯ୍ୟ କରିଥିଲା । ଅଧିକାଂଶଲୋକ ନିପୁଣତା ସହିତ କାର୍ଯ୍ୟ କରିଥିଲେହେଁ କାଞ୍ଚି ଓ ପୁରୀର ରାଜାମାନେ ବିଦୂଷକ ଓ ଭଦ୍ରା ଦର୍ଶକମାନଙ୍କର ଅଧିକ ପ୍ରଶଂସାଭାଜନ ହୋଇଥିଲେ । ଭଦ୍ରାର ଦୁଇ ତିନି ସଂଗୀତମଧ ବଡ଼ ମନୋହର ହୋଇଥିଲା । ମୋଟରେ ଆମ୍ଭେମାନେ କହିପାରୁଁ ଯେ ଏମାନେ ମଫସଲରୁ ଆସି ଯେମନ୍ତ କାର୍ଯ୍ୟ ଦେଖାଇଲେ ସଦରସ୍ଥାନର ଅଭିନୟକାରିଙ୍କଠାରେ କ୍ୱଚିତ୍ ଦେଖାଯାଇ ଅଛି । ବାଦ୍ୟ ଓ ଗାୟନରେ କିଛି କିଛି ତୃଟି ଦେଖା ଯାଇଥିଲା ମାତ୍ର ଏ ସବୁରେ ଯୋଗ୍ୟତା ଲାଭ କରିବା ଅଳ୍ପ ପରିଶ୍ରମର କଥା ନୁହଇ ଏବଂ ଏଠାରେ ଭଲ ଶିକ୍ଷକ ମଧ ନାହାନ୍ତି ଶିକ୍ଷିତଯୁବକମାନଙ୍କର ଏ ବିଷୟରେ ମନୋଯୋଗୀ ହେବାର ଉଚିତ ।

ଆମ୍ଭେମାନେ ଆନନ୍ଦ ସହିତ ଅବଗତ ହେଲୁଁ ଯେ ଏ ଦିନର କାର୍ଯ୍ୟ ସଫଳ ହେବାର ଦେଖି ଏ ନଗରବାସି କେତେକ ଯୁବା ଶୀଘ୍ର ଗୋଟିଏ ନାଟକର ଅଭିନୟ ଦେଖାଇବାକୁ ମନୋଯୋଗୀ ହୋଇ ଅଛନ୍ତି । ଏହିସମୟରେ ମୋଫସଲ ଅନ୍ୟାନ୍ୟ ଗ୍ରାମର ନାଟକାଭିନୟଦଳଙ୍କୁ ଅନୁରୋଧ କରୁଅଛୁଁ ଯେ ସେମାନେ ଆପଣା ଆପଣା ଗ୍ରାମରେ ଯାହା କରିଥିଲେ ଏ ନଗରବାସିଙ୍କି ତାହା ଦେଖାଇ ଆପଣା ଆପଣା ପରିଶ୍ରମକୁ ସଫଳ କରନ୍ତୁ । ଦିଗିତପଡ଼ାର ଦଳ ସୁନ୍ଦର ଆଦର୍ଶ ଦେଖାଇ ଅଛନ୍ତି ଅନ୍ୟାନ୍ୟଗ୍ରାମର ଏଥିର ଅନୁଗମନକଲେ ବଡ଼ ସୁଖର ବିଷୟ ହେବ ।

*ଭା୨୩ଗ,ସଂ୪୬ଖ୍ୟା,୮।୧୨।୧୮୮୮*

## ପ୍ରେରିତପତ୍ର ।

## [ଓଡ଼ିଶା ଶିକ୍ଷାବିଭାଗ]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ

ମହାଶୟ ସମୀପେଷୁ ।

ମହାଶୟ !

ଓଡ଼ିଶା ଶିକ୍ଷାବିଭାଗର ପରିଦର୍ଶକ କର୍ମଚାରିମାନଙ୍କ କାର୍ଯ୍ୟ ଘେନି ଗତ ପାଞ୍ଚବର୍ଷମଧରେ ସମ୍ବାଦପତ୍ରମଣ୍ଡଳୀରେ ଅନେକ ଆନ୍ଦୋଳନ ଏବଂ ତର୍କବିତର୍କ ହୋଇଅଛି ଏବଂ ତହିଁରେ ବିଶେଷ ଫଳ ନ ହୋଇଥିଲେସୁଦ୍ଧା ସମସ୍ତେ ବୁଝି ପାରିଅଛନ୍ତି ଯେ ବ୍ୟକ୍ତିବିଶେଷର ସ୍ୱେଚ୍ଛାଚାରିତା ହେତୁରୁ ଗବର୍ଣମେଣ୍ଟଙ୍କର ଗୋଟିଏ କାର୍ଯ୍ୟବିଭାଗରେ ନାନାପ୍ରକାର ଅନ୍ୟାୟକାର୍ଯ୍ୟ ସ୍ଥାନ ପାଉଅଛି । ଓଡ଼ିଶା କର୍ତ୍ତୃପକ୍ଷୀୟମାନଙ୍କ ଦୃଷ୍ଟିର ବହୁଦୂରରେ ଅବସ୍ଥିତ ଏହିହେତୁରୁ ଏ ବିଭାଗର କାର୍ଯ୍ୟ ସେମାନଙ୍କ ଦୃଷ୍ଟିଗୋଚର ହୁଅଇ ନାହିଁ ଏବଂ ଜଏଣ୍ଟ ଇନ୍‌ସ୍ପେକଟରଙ୍କ ଗୁଣ ସେମାନଙ୍କୁ ଜଣାଇବାନିମନ୍ତେ ଓଡ଼ିଶାରେଲୋକ ଅଳ୍ପ ଏଥିଯୋଗେ ଜଏଣ୍ଟ ଇନ୍‌ସ୍ପେକଟରଙ୍କର ଏକାଧିପତ୍ୟ ଓ ସ୍ୱେଚ୍ଛାଚାରିତା ପ୍ରବଳ । ସଂବାଦପତ୍ରମାନେ ପାଞ୍ଚବର୍ଷକାଳ ଚିତ୍କାର କଲେ- କିଛି ହେଲା ନାହିଁ - ଏଥିରୁ ସେମାନେ ବୁଝିପାରିଅଛନ୍ତି ଯେ ସେମାନେ ଯାହା କରିବେ କେହି ତହିଁରେ ବାଧା ଦେଇପାରିବେ ନାହିଁ -ଯେ ଯେତେ ବାଧା ଦେଲେ କିଛି ଫଳ ହେବ ନାହିଁ ଯେ ବାଧା ଦେବେ ସେ ଶତ୍ରୁ ହେବେ ସୁତରାଂ ସ୍ୱେଚ୍ଛାଚାରିତା ବ୍ୟବସାୟଟାକୁ ଜଏଣ୍ଟଇନ୍‌ସ୍ପେକଟର Patent କରି ନେଇଅଛନ୍ତି ।

ଚଳିତବର୍ଷର ଭର୍ଣାକ୍ୟୁଲର, ମାଇନର ଓ ଅପର ପ୍ରାଇମେରୀ ପରୀକ୍ଷାର ପରୀକ୍ଷକ ନିର୍ବାଚନ ଘେନି

ଚାରିଆଡ଼େ ଆନ୍ଦୋଳନ ଲାଗିଅଛି ; କେହି ବାହାରକୁ ନ ବାହାରିଲେସୁଦ୍ଧା ପରସ୍ପରରେ ସମସ୍ତେ ସେ ବିଷୟ ଆଲୋଚନା କରୁଅଛନ୍ତି ଜଏଣ୍ଟ ଇନ୍‌ସ୍ପେକଟରଙ୍କ ସମସ୍ତଙ୍କର ଶତ୍ରୁନୁହନ୍ତି ସୁତରାଂ ଏଥିରୁ ବୁଝାଯାଉଅଛି ଯେ କାର୍ଯ୍ୟଟି ଗୁରୁତର ଅନ୍ୟାୟ ହୋଇଅଛି । ପରୀକ୍ଷକମାନଙ୍କ ମଧ୍ୟରୁ ଅନେକଙ୍କର ନାମ ଶୁଣି କେହି ହାସ୍ୟସମ୍ବରଣ କରି ପାରୁ ନାହାନ୍ତି । କାଳ କଅଣ ନ କରେ ? ଓଡ଼ିଶାରେ ଯୋଗ୍ୟଲୋକଙ୍କର ଏପରି ଅଭାବ ଯେ ଏପରି ଲୋକସୁଦ୍ଧା ପରୀକ୍ଷକ ହେଲେ । ପରୀକ୍ଷକ ପଦର ଦାୟିତ୍ୱ ଓ ଗୁରୁତ୍ୱ ବୋଧହୁଏ ଜଏଣ୍ଟ ଇନ୍‌ସ୍ପେକଟରଙ୍କୁ ଜଣା ନାହିଁ । ପଞ୍ଜାବ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ଲାରପେଣ୍ଟ ସାହେବ ଏଡ଼େ ବଡ଼ଲୋକ ହୋଇସୁଦ୍ଧା ପରୀକ୍ଷାର୍ଥିଙ୍କଠାରୁ ଉତ୍କୋଚ ଗ୍ରହଣ କରିଥିଲେ- ସାମାନ୍ୟଲୋକ କଅଣ ନ କରିପାରନ୍ତି ?

ପରୀକ୍ଷକ ନିର୍ବାଚନ ଆଇନରେ ଲେଖାଅଛି ଯେ ବଡ଼ଲାଟ ଓରଫ ଜଏଣ୍ଟ ଇନ୍‌ସ୍ପେକଟର ଓ ଛୋଟଲାଟ ଓରଫ ଡେପୁଟୀ ଇନ୍‌ସ୍ପେକଟରଙ୍କ ବନ୍ଧୁବାନ୍ଧବ, ଆଶ୍ରିତ ଓ ଉପକାରୀ ଲୋକମାନେ ପରୀକ୍ଷକ ପଦରେ ଅଧିକାରୀ । ଜଗନ୍ନାଥବାବୁଙ୍କର ଦାବୀ ୨ ଗୋଟି ଯଥା,-ସେ ବଡ଼ଲାଟଙ୍କର ପ୍ରାଇଭେଟ ସେକ୍ରେଟରୀ ଓ ଛୋଟଲାଟଙ୍କର କନିଷ୍ଠଭ୍ରାତା । ବିଶ୍ୱନାଥ କର ଓ ସାଧୁଚରଣ ରାୟ ଛୋଟଲାଟଙ୍କର ଚେଲା ଓ କାଉନିସିଲର ମେମ୍ବର । ଯୋଗେନ୍ଦ୍ର ବାବୁ ବଡ଼ଲାଟଙ୍କର ଅଣ୍ଡର ସେକ୍ରେଟରୀ । ବିଜୟ ବାବୁ ଛୋଟଲାଟଙ୍କର ଜାମାତା । ତେବେ ଏଥିରେ ଅନ୍ୟାୟ କଅଣ ହେଲା ବୁଝାଯାଉ ନାହିଁ । ମୁଁ ଜଣେ ବନ୍ଧୁଙ୍କୁ ପଚାରିଲି "ଆପଣ ଗୋଟାଏ ପରୀକ୍ଷକ ହୋଇପାରିଲେ ନାହିଁ ?" ସେ ଉତ୍ତର ଦେଲେ "ମୁଁ ଡାକ୍ତର ନୁହେଁ ଯେ କାହାର ଚିକିତ୍ସା କରି ଦାବୀକରିବି କିମ୍ବା ବ୍ରାହ୍ମ ନୁହେଁ ଯେ ଆକ୍ଷିବୁଜି ଉପାସନା କରି ବର ପାଇବି, କିଅବା ବଡ଼ଲୋକ ନୁହେଁ **xxxx** ଜଏଣ୍ଟ ଇନ୍‌ସ୍ପେକଟରଙ୍କ ଅମଲାମଧ୍ୟରୁ ଜେନାମଣି ଓ ଲୋକନାଥ ସିଂହ ବାକୀ ଅଛନ୍ତି ଆରବର୍ଷକୁ ସେହିମାନେ ପାଇବେ ।"

ଧନ୍ୟ ଓଡ଼ିଶା ଶିକ୍ଷାବିଭାଗ ! ତୁମ୍ଭେ ନ କରିପାର ଏପରି କାର୍ଯ୍ୟ ନାହିଁ । ତୁମ୍ଭ ପ୍ରସାଦରୁ ଗ୍ରନ୍ଥକାରଙ୍କ କୁଳ ବୁଡ଼ିଲା ଅଧାପାଠୁଆଙ୍କର ବାକ୍ସ ସିନ୍ଦୁକ ପୂରିଲା-ଧନ୍ୟ ତୁମ୍ଭର ବେନାମୀ ବ୍ୟବସାୟ ! ଯାହାର କୋଷ୍ଠିରେ ରାଜଯୋଗ ପାଇଥିବ ସେ ତୁମ୍ଭରି କମ୍ପାନିରେ ମିଶିଲେ ସେ ଫଳଭୋଗ କରିବ ।

ସତ୍ୟ-ବାଦୀ

*ଭା/୨୩ଗ,ସଂ୫୦ଖ୍ୟା,୨୯/୧୨/୧୮୮୮*

# ୧୮୮୯

## [ଓଡିଶା ପେଟ୍ରିଅଟ ବନ୍ଦ]

ସନ ୧୮୮୮ ସାଲ ଶେଷ ହେବା ସଙ୍ଗେ ସଙ୍ଗେ ଏ ନଗରରେ ପ୍ରକାଶ ହେଉଥିବା ଇଂରାଜିସାପ୍ତାହିକ ପତ୍ର ଓଡ଼ିଶାପେଟ୍ରିଅଟ ବିଦାୟ ହୋଇଗଲେ । ଦୁଇସପ୍ତାହ ପୂର୍ବରୁ ସୁଢ଼ଲପ୍ରେସ ବନ୍ଦ ହୋଇଯାଇଥିଲା ଏବଂ ଗତ ଦୁଇସପ୍ତାହର ପେଟ୍ରିଅଟ ଭିକ୍ଟୋରିୟା ପ୍ରେସରେ ମୁଦ୍ରିତ ହୋଇଥିଲା । ପେଟ୍ରିଅଟ ବନ୍ଦ ହେବାର ସମ୍ବାଦ ପ୍ରକାଶ କରି ଲେଖକ ଲେଖିଅଛନ୍ତି କି ତହିଁର ଅଧିକାରୀ ଗତ ବ୬ର୍ଷରେ ସମ୍ବାଦପତ୍ର ଚଳାଇବାଦ୍ୱାରା ପାଞ୍ଚହଜାର ଟଙ୍କା କ୍ଷତି ସହିଅଛନ୍ତି ଆଉ କ୍ଷତିସହିବାକୁ ତାହାଙ୍କର ବଳ ନାହିଁ । ଆହୁରି ଲେଖିଅଛନ୍ତି କି ଓଡ଼ିଶାରେ ସମ୍ବାଦପତ୍ର ପାଠକଙ୍କ ସଂଖ୍ୟା ଅତ୍ୟନ୍ତ ଊଣା । ଏଥିଉତ୍ତାରୁ ଯେଉଁ ସମୟରେ ପାଠକଙ୍କ ସଂଖ୍ୟା ବୃଦ୍ଧି ହେବ ତେତେବେଳେ ବର୍ତ୍ତମାନ ସମ୍ପାଦକଙ୍କଠାରୁ ଅଧିକ ଯୋଗ୍ୟଲୋକ କେହି ଓଡ଼ିଶାରେ ପୁନର୍ବାର ଇଂରାଜୀ ସମ୍ବାଦପତ୍ର ପ୍ରଚାର କରିବାକୁ ସମର୍ଥ ହେବ । ଓଡ଼ିଶାପେଟ୍ରିଅଟ ଉଠିଯିବାରେ ଆମ୍ଭମାନଙ୍କର ଦୁଃଖ ନାହିଁ କାରଣ ଆମ୍ଭେମାନେ ପ୍ରଥମରୁ ଜାଣିଥିଲୁଁ ଯେ ତାହା ସ୍ଥାୟୀ ହୋଇପାରିବ ନାହିଁ କିନ୍ତୁ ଓଡ଼ିଶାପରି ଗରିବଦେଶର କୌଣସି ସାମାନ୍ୟ ସଙ୍ଗତିପନ୍ନ ଅଥଚ ସ୍ୱଦେଶର ହିତକର କାର୍ଯ୍ୟରେ ଆଗ୍ରହବାନ୍ ଏବଂ ଉତ୍ସାହୀ ଲୋକର ପାଞ୍ଚହଜାର ଟଙ୍କା କ୍ଷତି ହେବା ବଡ଼ ଦୁଃଖର ବିଷୟ ଅଟଇ । କାରଣ ଏପରି ଲୋକର ଆଗ୍ରହ ଓ ଉତ୍ସାହ ଭ୍ରମାତ୍ମକ ମାର୍ଗରେ ଚାଳିତ ହୋଇ ନ ଥିଲେ ତଦ୍ୱାରା କିଛି ସାଧାରଣ ଉପକାର ହୋଇଥାନ୍ତା ଏବଂ ଅପର ଉତ୍ସାହୀଲୋକ ଅନ୍ୟ କିଛି ହିତକର କାର୍ଯ୍ୟ କରିବାକୁ ପ୍ରବୃତ୍ତ ହୋଇଥାନ୍ତା । ଏ ନଗରରେ ନୂତନ ଯନ୍ତ୍ରାଳୟ ସ୍ଥାପିତ ହେବାର ଉଦ୍ୟମକାଳରେ ଆମ୍ଭେମାନେ ଏହିକଥା କହିଥିଲୁଁ ମାତ୍ର ସେକାଳରେ ଓଡ଼ିଶାପେଟ୍ରିଅଟର ପୂର୍ବଅବତାର ସଂସ୍କାରକ ଆମ୍ଭମାନଙ୍କୁ ସ୍ୱାର୍ଥପରବୋଲି କେତେ ଟାହୁଲି କରିଥିଲେ । ସେସମୟରେ ଆମ୍ଭମାନଙ୍କ କଥାକୁ ଟିକିଏ ଧୀରଭାବରେ ବିଚାର କରିଥିଲେ ଏପରି ଘଟି ନ ଥାନ୍ତା । କେବଳ ଛାପାଖାନାର ସଂଖ୍ୟା ବୃଦ୍ଧିହେଲେ ଦର ଊଣା ହେବ ବୋଲି ଯାହା କହିଥିଲେ ଏତିକିକଥା ଏଡ଼େ ସତ୍ୟ ହେଲା ଯେ ପ୍ରତିଯୋଗିତାରେ ମାଟିର ଦର ହୋଇଅଛି ଅଥଚ ସେଥିରେ ସୁଦ୍ଧା କାର୍ଯ୍ୟ ଯଥେଷ୍ଟ ମିଳୁ ନାହିଁ ଯେ କାହାରି ପେଟ ପୂରିବ । ସ୍ଥୂଳକଥା ଏହିକି ଓଡ଼ିଶାର ସେଦିନ ଉପସ୍ଥିତ ହୋଇ ନାହିଁ କି ଯେ ସମୟରେ ଅନେକଗୁଡିଏ ଯନ୍ତ୍ରାଳୟ ଏଠାରେ ନିର୍ବାହିତ ହୋଇ ପାରିବ । କଲିକତାର ଗଳି ଗଳିରେ ଛାପାଖାନା ବସିଅଛି ବୋଲି ସର୍ବତ୍ରରେ ତାହା ସଫଳ ହେବ ଏହା ଯୁକ୍ତିସିଦ୍ଧ କଥା ନୁହଇ ବିଶେଷରେ ଓଡ଼ିଶାର ଅବସ୍ଥା ସମ୍ପୂର୍ଣ୍ଣରୂପେ ପୃଥକ୍ । ବ୨୩ର୍ଷ ଉତ୍କଳଦୀପିକା ପ୍ରଚାରିତ ହୋଇ ଅବଧି ପାଞ୍ଚଶତ ଗ୍ରାହକ ହୋଇ ନାହାନ୍ତି । ପୁସ୍ତକର କଥା ତହୁଁ ଶୋଚନୀୟ । ଲାବନ୍ୟବତୀପ୍ରଭୃତି ସର୍ବଜନଆଦରଣୀୟ ପୁସ୍ତକ ଏକହଜାର ଛାପା ହେଲେ ବ୪ର୍ଷରେ ବିକ୍ରୟ ହେବା କଠିନ । ଅନ୍ୟାନ୍ୟ ପୁସ୍ତକର ଏକହଜାରଖଣ୍ଡ ବ୮।୧୦ ର୍ଷରେ କଟିବା କଠିନ । ଜମିଦାରୀ ଓ ମହାଜନୀ ଫାରମ ନାମମାତ୍ର ରହିଅଛି । ଏପରି ଅବସ୍ଥାରେ କିଏ ଆଶା କରିବ ଯେ ମୁଦ୍ରାଯନ୍ତ୍ର ଓଡ଼ିଶାରେ ଲାଭବାନ୍ ହେବ ।

*ଭା୨୪ଗ,ସଂ୧ଖ୍ୟା,୫।୧।୧୮୮୯*

## ପୁସ୍ତକ ସମାଲୋଚନା ।

### ହିଂସା ।

ଏହି ପୁସ୍ତକ ଖଣ୍ଡିକ ନୀତି ଓ ଜ୍ଞାନ ବିଷୟକ ଉପଦେଶମାନ ପ୍ରଦାନ କରିବା ଆଶୟରେ ରଚିତ ହୋଇଥିବାର ଜଣାଯାଏ । ବାସ୍ତବରେ ଆମୂଳ ସମସ୍ତ ପୁସ୍ତକ ପାଠକଲେ କେତେକ ନୀତିଉପଦେଶ ଏବଂ କେତେକ ଶାନ୍ତିରସସଂପନ୍ନ

ଜ୍ଞାନୋପଦେଶ ଲାଭ ହୋଇ ପାରିବ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଉକ୍ତ ବିଷୟର ଉପଦେଶ ସବୁ ଗଦ୍ୟ ରଚନାରେ ସୁବୋଧ ହୁଅଇ । ବିଦ୍ୟାରେ ସେପରି ହୋଇପାରିବାର ସନ୍ଦେହ । ତଥାଚ ରଚକ ଆପଣା କର୍ତ୍ତବ୍ୟରେ ତୃଟି କରିଥିବାର ଦେଖାଯାଏ ନାହିଁ । କେବଳ ଏହି ପୁସ୍ତକଖଣ୍ଡି ନାଟସୁଆଙ୍ଗ ବୃତ୍ତରେ ରଚନା ହୋଇଥିବାରୁ ବିଷୟର ଗୁରୁତ୍ୱର ଅନୁକୂଳ ହୋଇ ନ ଥିବାର ବୋଲଯାଇ ପାରେ ।

ଏହି ପୁସ୍ତକର ରଚକ ଶ୍ରୀଯୁକ୍ତ ବାବୁ ବୈକୁଣ୍ଠ ମହାପାତ୍ର ଏବଂ ପ୍ରକାଶକ ଶ୍ରୀ ବାବୁ ରାଧାମାଧବ ନାୟକ ଭିକ୍ଟୋରୀୟା ପ୍ରେସରେ ମୁଦ୍ରିତ ହୋଇଅଛି ।

*ଭା/୨୪ଗ,ସଂ୫ଖ୍ୟା,୨/୨/୧୮୮୯*

## ନବୋଦ୍ୟମ ।

ଏ ପୁସ୍ତକର ରଚକ କଟକ ରେବନ୍‌ଶା କଲେଜର ଛାତ୍ର ବାବୁ ଚନ୍ଦ୍ରମୋହନ ମାହାରଣା । ନବୋଦ୍ୟମ ବୋଲିବାରୁ ବୋଧ ହୁଅଇ ଯେ ଗ୍ରନ୍ଥକାରଙ୍କର ପୁସ୍ତକରଚନାର ନବୋଦ୍ୟମ ଏହି ହେବ ଏଥିରେ ସନ୍ଦେହ ନାହିଁ । ଯେହେତୁ କେତେକ ପୁରୁଣା କବିତାମାନଙ୍କରୁ ଭାବ ଉଠାଇ ନିଆଯାଇ ଏବଂ କେତେକ ବିଷୟ କଳ୍ପିତ ହୋଇ ପଦ୍ୟଗୁଡିକ ରଚନା କରାଯାଇ ଅଛି । ଆଉ ସେହି ରଚନାସବୁ ପାଠକଲେ ଜଣାଯାଏ ଯେ ରଚକ ସରଳାନ୍ତଃକରଣ ଓ ଭାବୁକ ବ୍ୟକ୍ତି ଆଉମଧ ଏ ଆବଶ୍ୟକ ଭବିଷ୍ୟତକୁ ଉତ୍ତମ ରଚକ ହୋଇ ପାରିବେ । ଯେହେତୁ ଏହାଙ୍କ ବିଷୟ ସବୁ ତେତେ ଅସାରଗର୍ଭକ ନୁହଇ । କେବଳ ରଚକଙ୍କୁ ଏତିକି କହିବାକୁ ଅଛି ଯେ "(ଆୟ ବିନୋଦିନି) (ଥାଏ ଦ୍ୱନ୍ଦର୍ଶନେ)(ଆଇନାଦି ଭଙ୍ଗିରେ ବି)(ଭାଳୁଣ ଥିବ)" ଇତ୍ୟାଦି, ଏହିପରି ଯେଉଁ ଯେଉଁ ପଦସବୁ ରଚନା ମଧ୍ୟରେ ସନ୍ନିହିତ ହୋଇଅଛି ଭବିଷ୍ୟତକୁ ସେପରି ଲେଖିଲେ ସାଧାରଣ ପାଠକମାନଙ୍କ ଦୃଷ୍ଟିରେ ଅଗ୍ରାହ୍ୟ ହୋଇପାରେ ଅତଏବ ତହିଁପ୍ରତି ଦୃଷ୍ଟି ରଖିବେ ।

*ଭା/୨୪ଗ,ସଂ୫ଖ୍ୟା,୨/୨/୧୮୮୯*

## [ପ୍ରିଣ୍ଟିଂ କମ୍ପାନୀରେ ସଭା]

ଫିବୃୟାରି ତା ୧ ରିଖ ଶୁକ୍ରବାର ସନ୍ଧ୍ୟାସମୟରେ ଏଠା ପ୍ରିଣ୍ଟିଂ କମ୍ପାନୀରେ ଓଡ଼ିଶାସଭାର ଗୋଟିଏ ବିଶେଷ ସଭା ହୋଇଥିଲା । ଏହି ସଭାରୁ ଯେଉଁମାନେ ଆଲାହାବାଦସ୍ଥ ମହାସମିତିକୁ ଏଠାର ପ୍ରତିନିଧିସ୍ୱରୂପ ମନୋନୀତ ହୋଇ ପ୍ରେରିତ ହୋଇଥିଲେ ସେମାନଙ୍କ ମଧ୍ୟରୁ ଯେଉଁ ଦୁଇଜଣ ପ୍ରୋକ୍ତ ମହାସମିତିରେ ଯୋଗ ପ୍ରଦାନକରି ପ୍ରତ୍ୟାଗତ ହୋଇଅଛନ୍ତି ସେହି ଦୁଇଜଣଙ୍କୁ ଅଭ୍ୟର୍ଥନା କରିବା ସକାଶେ ସଭା ଆହୂତ ହୋଇଥିଲା । ବାବୁ ଜନ ସାମସେନ ରାଉତ ଓ ମୁନସି ମହମ୍ମଦ ଅତହର ଉକ୍ତ ପ୍ରତିନିଧି ଦ୍ୱୟ ଅଟନ୍ତି । ସଭା ପ୍ରାରମ୍ଭରେ ଉକ୍ତ ଦିବସର ସଭାପତି ମଧୁସୂଦନ ଦାସ ପ୍ରତିନିଧିଦ୍ୱୟଙ୍କୁ ବିଶେଷ ଧନ୍ୟବାଦ ପ୍ରଦାନକରି ସଭାରେ ଗୋଟିଏ ପ୍ରସ୍ତାବ ଉପସ୍ଥିତ କରିଥିଲେ । ମହାସମିତିରେ ବ୍ୟବସ୍ଥାପକ ସଭା ପରିବର୍ତ୍ତନସମ୍ବନ୍ଧରେ ଗୋଟିଏ ପ୍ରସ୍ତାବ ଧାର୍ଯ୍ୟ ହୋଇଥିବାର ସମସ୍ତଙ୍କୁ ଜଣାଅଛି । ଆମ୍ଭମାନଙ୍କର ଭାରତଗବର୍ଣ୍ଣମେଣ୍ଟ ଉକ୍ତ ପ୍ରସ୍ତାବ ପୋଷଣାର୍ଥସ୍ୱରୂପ ବିଲାତସ୍ଥ ଭାରତ ସେକ୍ରେଟରୀଙ୍କ ନିକଟକୁ ଏକପତ୍ର ଲେଖିଅଛନ୍ତି । ଉକ୍ତ ପତ୍ରର ସମସ୍ତ ବିବରଣ ସାଧାରଣଙ୍କ ଗୋଚରରେ ଆସି ନ ଥିଲେହେଁ ପତ୍ରର ଆଭାସ ଏତିକି ମାତ୍ର ପ୍ରକାଶ ହୋଇଅଛି ଯେ ମହାସମିତି ଯାହା ପ୍ରାର୍ଥନା କରୁଅଛନ୍ତି ତତ୍ପକ୍ଷରେ କିଞ୍ଚିତ୍ ଲେଖା ହୋଇଅଛି । ଏଣୁକରି ବଙ୍ଗଦେଶର କୌଣସି କୌଣସି ସଭା ଭାରତଗବର୍ଣ୍ଣମେଣ୍ଟଙ୍କୁ ଧନ୍ୟବାଦ ପ୍ରଦାନ କରିଅଛନ୍ତି । ଏ ସଭାରୁ ମଧ ଧନ୍ୟବାଦ ପ୍ରେରିତ ହେବା ସ୍ଥିର ହେଲା । ପ୍ରତିନିଧିଦ୍ୱୟଙ୍କ ମଧ୍ୟରୁ ଜଣକ ଖର୍ଚ୍ଚା ସଭା ବହନ କରିଥିଲେ । ଚନ୍ଦାଦ୍ୱାରା ସର୍ବସୁଦ୍ଧା ଟ ୧୪୦ଙ୍କା ଉଠିଥିଲା ଚନ୍ଦାଦାତାମାନଙ୍କୁ ଧନ୍ୟବାଦ ପ୍ରଦାନାନ୍ତର ବାବୁ ଜନ ସାମସେନ ରାଉତ ଓ ମୁନସି ମହମ୍ମଦ ଅତହର ମହାସମିତିର କାର୍ଯ୍ୟାବଳି ବିଷୟରେ ବକ୍ତୃତା ପ୍ରଦାନ କରିଥିଲେ ଓ ବାବୁ ଜଗନ୍ମୋହନ ଲାଲା ଓଡ଼ିଆରେ ଟୀକା କରିଥିଲେ । ମହାସମିତିର କାର୍ଯ୍ୟମାନ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଆମ୍ଭେମାନେ ଯଥାସମୟରେ ପାଠକମାନଙ୍କୁ ଜଣାଇଅଛୁଁ ପୁନରୁକ୍ତି କରା ଅନାବଶ୍ୟକ ଜ୍ଞାନ କରି ପ୍ରତିନିଧିମାନଙ୍କ ବକ୍ତୃତା ଉପେକ୍ଷା କଲୁଁ । ତେବେ ସେମାନେ ମହାସମିତି ବନ୍ଦୋବସ୍ତକାରିମାନଙ୍କ କାର୍ଯ୍ୟରେ ପ୍ରୀତିଲାଭ କରିବାର ପ୍ରକାଶ କରିବା ଶୁଣି ଆମ୍ଭେମାନେ ଆହ୍ଲାଦିତ ହେଲୁଁ । ପ୍ରାୟ ଢ଼ ୧୪୦୦ଣ ପ୍ରତିନିଧିଙ୍କୁ ଅଭ୍ୟର୍ଥନାକରି ନିୟମିତରୂପେ ସେମାନଙ୍କ ସେବା ଚଳାଇବା ବଡ଼ ସହଜବ୍ୟାପାର ନୁହଇ । ଏଥିପାଇଁ ବନ୍ଦୋବସ୍ତକାରିମାନେ ଧନ୍ୟବାଦ ଓ ପ୍ରଶଂସାର ଯୋଗ୍ୟ ।

*ଭା୨୪ଗ,ସଂ୬ଖ୍ୟା, ୯।୨।୧୮୮୯*

## ନାଟକାଭିନୟ ।

ଗତ ମଙ୍ଗଳବାର ଶ୍ରୀପଞ୍ଚମୀଦିନ ରାତ୍ରରେ ଏଠା ପୁରାତନ ସୌଖିନ ନାଟକାଭିନୟସମ୍ପ୍ରଦାୟ ବାବୁ ମଧୁସୂଦନ ଦାସ ଓକିଲଙ୍କ ହତାମଧରେ ଓଡ଼ିୟା କଳିକାଳନାଟକ ବା ପ୍ରହସନର ଅଭିନୟ କରିଥିଲେ । ପୂର୍ବର ବିସ୍ତୃତରୂପେ ନୋଟିସ ଇତ୍ୟାଦି ଦିୟାଯିବାର ଧୂମଧାମ ହୋଇଥିଲେ ହେଁ ଉପଯୁକ୍ତ ସଂଖ୍ୟକ ଦର୍ଶକ ହୋଇ ନ ଥିଲେ ଏବଂ ଗତଥରର ବଙ୍ଗଳାନାଟକାଭିନୟରେ ଏମାନେ କୃତକାର୍ଯ୍ୟତା ଲାଭକରି ନ ଥିବା ଏଥିର ହେତୁ ବୋଲି ଅନେକେ ଅନୁମାନ କରୁଅଛନ୍ତି । ସେ ଯାହା ହେଉ ଏଥର କୃତକାର୍ଯ୍ୟତାସହିତରେ ଓଡ଼ିୟା ନାଟକର ଅଭିନୟ କରିବାଦ୍ୱାରା ଉକ୍ତ ସମ୍ପ୍ରଦାୟ ଆପଣାର ମର୍ଯ୍ୟାଦା ବଜାୟ ରଖିବାକୁ ସମର୍ଥ ହେବାର ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ । ରାତ୍ର ପ୍ରାୟ ଦଶଘଣ୍ଟା ସମୟରେ ଅଭିନୟକାର୍ଯ୍ୟ ଆରମ୍ଭ ହୋଇ ଗୋଟାକମଧରେ ଶେଷ ହୋଇଗଲା ଏବଂ ଦର୍ଶକମଣ୍ଡଳୀ ଆପଣା କରତାଳି ଇତ୍ୟାଦିଦ୍ୱାରା ପ୍ରଭୂତ ଆନନ୍ଦ ଉପଭୋଗ କରିଥିବାର ପୁନଃପୁନ ବ୍ୟକ୍ତ କରିବାର ଦେଖାଗଲା । ଯଦ୍ୟପି କି ସ୍ତ୍ରୀଚରିତ୍ର ଅଭିନୟକାଳରେ ସ୍ଥାନେ ସ୍ଥାନେ ଅଛ ଅଛ ବୈଲକ୍ଷଣ୍ୟ ଦୃଷ୍ଟ ହୋଇଥିଲା ତଥାପି ମୋଟରେ ସମସ୍ତ ଅଭିନେତାମାନେ ଆପଣା ଆପଣା ଅଭିନୟ କାର୍ଯ୍ୟଦକ୍ଷତା ସହିତରେ ସମ୍ପନ୍ନ କରିଅଛନ୍ତି । ଗାନଗୁଡ଼ିକ ମନ୍ଦ ହୋଇ ନ ଥିଲା ମାତ୍ର ସବୁ ଗାନଠାରୁ ପାର୍ବତୀବାୟୀର ଗୀତ ଅତ୍ୟନ୍ତ ଶ୍ରୁତିସୁଖକର ଓ ମନୋହାରି ହୋଇଥିଲା ଏବଂ ମତୁଆଲାର ଦୃଶ୍ୟ ଦର୍ଶକଙ୍କୁ ମତାଇ ଦେଇଥିଲା । ଐକତାନିକ ବାଦ୍ୟର ମଧ ଏଥର ଉତ୍ତମ ବନ୍ଦୋବସ୍ତ ହୋଇଥିଲା ଏବଂ ମଧୁବାବୁ ସ୍ୱୟଂ ଏଥିର ତତ୍ତ୍ୱାବଧାରଣ କରି ତହିଁରେ ଯୋଗ ଦେଇଥିବାରୁ ତାହା ପ୍ରାୟ ଜମି ରହିଥିବାର ଦେଖାଗଲା ।

ଉକ୍ତ ନାଟକାଭିନୟଉତ୍ତାରୁ କେତେକଜଣ ଅଭିନେତା ବଙ୍ଗଳା ମାଣିକପୀରର ପାଲା ଆରମ୍ଭ କରି ପ୍ରାୟ ଅର୍ଦ୍ଧଘଣ୍ଟାପର୍ଯ୍ୟନ୍ତ ଦର୍ଶକମଣ୍ଡଳୀର ତୃପ୍ତିବିଧାନ କରିଥିଲେ । ମୋଟରେ ଯେଉଁମାନେ ଅଭିନୟ ଦେଖିବାକୁ ସମାଗତ ହୋଇଥିଲେ ସେମାନେ ଶ୍ରୀପଞ୍ଚମୀର ରାତ୍ରଟି ବଡ଼ ଆମୋଦରେ କଟାଇଲେ ।

ଆମ୍ଭେମାନେ ଏଠା ରଙ୍ଗମଞ୍ଚରେ କେତେକବର୍ଷ ଉତ୍ତାରୁ ପୁଣି ଓଡ଼ିୟାନାଟକର ଅଭିନୟ କୃତକାର୍ଯ୍ୟତାସହିତ ସମ୍ପନ୍ନ ହେଉଥିବାର ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ । ଆମ୍ଭେମାନେ ଭରସା କରୁଁ ସୌଖିନ ସମ୍ପ୍ରଦାୟ ଆମ୍ଭମାନଙ୍କୁ ଏହିପରି ଉତ୍ତରୋତ୍ତର ନାଟକାଭିନୟ ଦେଖାଇ ଗୋଟିଏ ବିଶୁଦ୍ଧ ଆମୋଦର ପଥ ପରିଷ୍କୃତ କରନ୍ତୁ ଏବଂ ଦେଶୀୟଲୋକମାନଙ୍କୁ ମଧ ନିବେଦନ ଯେ ସେମାନେ ଅନୁଗ୍ରହ କରି କିଞ୍ଚିତ୍ ଅର୍ଥ ଓ ସମୟ ବ୍ୟୟ ସ୍ୱୀକାରପୂର୍ବକ ଅଭିନୟ ସ୍ଥଳରେ ଉପସ୍ଥିତ ହୋଇ ଏମାନଙ୍କୁ ସମୁତ୍ସାହିତ କରିବାରେ ଅଗ୍ରସର ହେଉନ୍ତୁ ।

*ଭା୨୪ଗ,ସଂ୬ଖ୍ୟା,୯।୨।୧୮୮୯*

## ନାଟ୍ୟାଭିନୟ ।

ଗତ ଶନିବାର ରାତ୍ରରେ କଳିକାଳ ନାମକ ପ୍ରହସନର ପୁନରଭିନୟ ହୋଇଥିଲା । କଳିକାଳ ଓଡ଼ିୟାଭାଷାରେ ତତ୍ଶ୍ରେଣୀର ଏକମାତ୍ର ପୁସ୍ତକ ଏବଂ ତହିଁରେ ସମାଜର କେତେଗୁଡ଼ିଏ ଅତ୍ୟନ୍ତ ଦୂଷଣୀୟ କାର୍ଯ୍ୟ ଜାଜ୍ୱଲ୍ୟମାନରୂପେ ଚିତ୍ରିତ ହୋଇଅଛି । ଗ୍ରନ୍ଥକର୍ତ୍ତା ଆମ୍ଭମାନଙ୍କୁ "ପ୍ରେମତରୀ" ରେ ବସାଇ ଆଶାସମୁଦ୍ରମଧକୁ ନେଇ **XXXX** ନିରାଶ କରିବାକୁ ବସିଥିଲେ । କିନ୍ତୁ "କଳିକାଳ" ଦ୍ୱାରା ସେ ଆଶା ସଫଳ ହୋଇଅଛି । "କଳିକାଳ" ପ୍ରଚଳିତ ଓଡ଼ିୟାକଥାରେ

ରଚିତ ଓ ଗଦ୍ୟମୟ ସୁତରାଂ ଏଥିର ଅଭିନୟର ପ୍ରତ୍ୟେକ ଶବ୍ଦ ଦର୍ଶକମାନଙ୍କ ଅଭିନୟରେ ପ୍ରତିବିମ୍ବିତ ହେଉଥିଲା । ପ୍ରଥମ ଅଭିନୟ ସର୍ବାଙ୍ଗ ସୁନ୍ଦର ହୋଇଥିଲା । ଦ୍ୱିତୀୟଦୃଶ୍ୟରେ ବୈଷ୍ଣବଚରଣର ଅଭିନୟ ପ୍ରଶଂସନୀୟ ଏବଂ ଆତ୍ମାରାମ ବାବାଜୀଙ୍କ ଭଜନସ୍ୱରବିକୃତଯୋଗୁଁ ଭଲ ହୋଇ ନ ଥିଲେ ସୁଦ୍ଧା 'କଳିଭାଗବତ' ଦ୍ୱାରା ସେ କ୍ଷତିପୂରଣ କରିଥିଲେ । ପ୍ରେମଦାସୀର ଗୀତ ଗୁଡ଼ିକ ପ୍ରକୃତ ପ୍ରେମମୟ ହୋଇଥିଲା । ତୃତୀୟ ଅଭିନୟରେ କୃଷ୍ଣଚରଣବାବୁଙ୍କ ବୈଠକଖାନାର ଆମୋଦ ଓ ମତୁଆଲାମାନଙ୍କ ଭଙ୍ଗି ଦେଖି ସମସ୍ତେ ଷୋଳଅଣା ଆନନ୍ଦ ଅନୁଭବ କରୁଥିଲେ କିନ୍ତୁ ପ୍ରକୃତରେ ତାହା ହାସ୍ୟର ବିଷୟ ନୁହେ-ତହିଁର ଅଭ୍ୟନ୍ତରର ପ୍ରତ୍ୟେକ ସ୍ତର ବିସ୍ମୟ ପରିପୂର୍ଣ୍ଣ । ଚତୁର୍ଥ ଓ ପଞ୍ଚମ ଅଭିନୟ ସ୍ୱାଭାବିକ ବିଷାଦର ଚିତ୍ର । ସ୍ଥୂଳତଃ ସେଦିନର ଅଭିନୟ ପୁସ୍ତକର ମର୍ଯ୍ୟାଦା ରଖିବାରେ ତ୍ରୁଟି କରି ନ ଥିଲା । କଳିକାଳର ଅଭିନୟ ବାହ୍ୟତଃ ଯାହା ଦେଖାଯାଏ ତହିଁର ଅଭ୍ୟନ୍ତରରେ ତାହା ଅପେକ୍ଷା ଅଧିକ କିଛି ଅଛି ଏବଂ ଟିକିଏ ଚିନ୍ତା ନ କଲେ ତାହା ଅନୁଭବ କରିବା ସମ୍ଭବ ନୁହେ । କଳିକାଳ ପ୍ରହସନ ଆଖ୍ୟାଧାରୀ ହେଲେସୁଦ୍ଧା ତହିଁର ଶେଷାଂଶ ଅତ୍ୟନ୍ତ ଦୁଃଖଜନକ ଏହିହେତୁରୁ ଦର୍ଶକମାନେ ଦୁଃଖିତଚିତ୍ତରେ ଗୃହକୁ ଫେରି ନ ଆସିବେ ବୋଲି ବଙ୍ଗଳା "ମାଣିକପୀର ପାଲା" ହୋଇଥିଲା । ବାସ୍ତବିକ ତହିଁର ଜୀବନ୍ତପୀର ଓ ପୀରସାହେବଙ୍କ ସିରିଣି ଭକ୍ଷଣ ଦେଖି ଲୋକେ "କଳିକାଳକୁ" ଭୁଲିଯାଇ "ସତ୍ୟଯୁଗ" କୁ ଭାବିଥିଲେ । ଶିକ୍ଷିତ ଯୁବକ ବିଳାସପ୍ରିୟ ଓ ଧର୍ମ୍ମଭ୍ରଷ୍ଟ ହୋଇ ଅପରିମିତ ବ୍ୟୟ, ସୁରାପାନ, ବେଶ୍ୟାସଂସର୍ଗ, ପ୍ରଭୃତି ନାନାପ୍ରକାର କୁକର୍ମ କରି ଶେଷରେ କି ଫଳ ଭୋଗକରେ ତାହା "କଳିକାଳ" ଦେଖାଇ ଦେଉଅଛି ଏହି ହେତୁରୁ । ଏଥିର ଅଭିନୟଦ୍ୱାରା ସମାଜର ଉପକାର ହେବ ବୋଲି ଆମ୍ଭମାନଙ୍କର ଆଶା ହେଉଅଛି ସେଦିନ ଅଭିନୟସ୍ଥଳରେ ପୂର୍ବଥର ଅପେକ୍ଷା ଅଧିକ ଦର୍ଶକ ଉପସ୍ଥିତ ହୋଇଥିଲେ କିନ୍ତୁ ଆସନର କଷ୍ଟରେ ଲୋକଙ୍କ ମନ ଜାଣି ଯାଇଥିଲା । ମଧୁବାବୁଙ୍କ ଯତ୍ନରୁ ଏଠାରେ ନାଟ୍ୟାଭିନୟ ଦେଖିବାର ଉପାୟ ସହଜ ହୋଇଅଛି ଆଶା କରୁଁ ସୌଖିନ ନାଟ୍ୟାଭିନୟସମ୍ପ୍ରଦାୟିଙ୍କର ସ୍ଥାୟୀ ହେବା ପକ୍ଷରେ ସାଧାରଣ ଯତ୍ନବାନ ହେବେ ।

*ଭା୨୪ଗ,ସଂ୭ଖ୍ୟା, ୧୬।୨।୧୮୮୯*

## ଓଡ଼ିଶାର ଉଚ୍ଚଶିକ୍ଷା ।

ଓଡ଼ିଶାରେ ଏକମାତ୍ର କଟକସ୍ଥ ରେଭେନ୍‌ଶାକଲେଜ ଉଚ୍ଚଶିକ୍ଷା ପ୍ରଦାତା । ଏତଦ୍‌ବ୍ୟତୀତ ଆହୁରି କେତେକ ଗୋଟି ବିଦ୍ୟାଳୟ ଅଛି କିନ୍ତୁ ତାହାସବୁ କେବଳ ଉଚ୍ଚଶିକ୍ଷାର ଦ୍ୱାରଦେଶରେ ପହୁଞ୍ଚାନ୍ତି । ଓଡିଶାରେ ଏପ୍ରକାର ବିଦ୍ୟାଳୟ ଅର୍ଥାତ୍ ଏଣ୍ଟ୍ରେନ୍ସ ବା ପ୍ରବେଶିକା ସ୍କୁଲ ୧୧-ଗୋଟି ନିମ୍ନଲିଖିତ ସ୍ଥାନମାନଙ୍କରେ ଅଛି ଯଥା; କଟକରେ ୫ ଯାଜପୁରେ ୧ କେନ୍ଦ୍ରାପଡ଼ାରେ ୧ ପୁରୀରେ ୧, ବାଲେଶ୍ୱରନଗରରେ ୧, ଭଦ୍ରଖରେ ୧ ଓ ଲକ୍ଷଣନାଥରେ ୧ । ପ୍ରବେଶିକାପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରସଂଖ୍ୟା ପୂର୍ବବର୍ଷାପେକ୍ଷା କ୍ରମାନ୍ୱୟେ ବେଶୀ ହୋଇ ଆସୁଅଛି ସୁତରାଂ ଏଫ୍ ଏ ଶ୍ରେଣୀର ଛାତ୍ରସଂଖ୍ୟା ବୃଦ୍ଧି ହୋଇଅଛି, ଫଳରେ ମଧ ଦେଖାଯାଉ ଅଛି ଯେ ଏଫଏର ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ର କ୍ରମାନ୍ୱୟେ ବେଶି ହେଉଅଛନ୍ତି । ଆଜକୁ ଦଶବର୍ଷ ପୂର୍ବରେ ଦୁଇ ତିନିଜଣରୁ ବେଶି ଉତ୍ତୀର୍ଣ୍ଣତା ଲାଭ କରିବାକୁ ସକ୍ଷମ ହେଉ ନ ଥିଲେ । ଗତ ତିନି ଚାରିବର୍ଷ ହେଲା ପ୍ରାୟ ହରଦରରେ ଦଶ ବାରଜଣ ଲେଖାଏ ଉତ୍ତୀର୍ଣ୍ଣତା ଲାଭ କରୁଅଛନ୍ତି । ବିଏ, ପରୀକ୍ଷାର ଫଳ ମଧ ସନ୍ତୋଷଜନକ ଅଟଇ । ବିଏର ପ୍ରଥମଉଦ୍ୟମରେ କେହି ଉତ୍ତୀର୍ଣ୍ଣ ହୋଇ ପାରି ନ ଥିଲେ ଦ୍ୱିତୀୟ ଓ ତୃତୀୟ ଉଦ୍ୟମରେ ଜଣେ ଲେଖାଏଁ ଉତ୍ତୀର୍ଣ୍ଣ ହୋଇଥିଲେ, ଚତୁର୍ଥ ଉଦ୍ୟମରେ ଅର୍ଥାତ୍ ୧୮୮୨ ମସିହାର ପରୀକ୍ଷାରେ ଜ୭ଣଙ୍କ ମଧରୁ ଜ୫ଣ ଉତ୍ତୀର୍ଣ୍ଣତାଲାଭ କରିଥିଲେ । ଉକ୍ତ ବର୍ଷରେ ଜଣେ ପ୍ରଥମଶ୍ରେଣୀରେ ଓ ଜ୨ଣ ୨ୟ ଶ୍ରେଣୀରେ ଏବଂ ବାକୀ ଜ୨ଣ ୩ୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏହିବର୍ଷଠାରୁ ବିଏ ପରୀକ୍ଷାର ଫଳ ଉତ୍ତମ ହୋଇ ଆସୁଅଛି । ଏଠାରେ ବିଏଲ ଅର୍ଥାତ୍ ଆଇନକ୍ଲାସ ଖୋଲା ହୋଇଥିବାରୁ ବିଏ ଉପାଧିଧାରୀ ଛାତ୍ରମାନେ ସେଠାରେ ଅଧୟନ କରି ଜୀବିକା ଉପାର୍ଜନ କରିବା ଉପାୟ ଅନ୍ୱେଷଣ କରନ୍ତି । କିନ୍ତୁ ଓଡ଼ିଶାର ଶିକ୍ଷାର ଶେଷ ଏହିଠାରେ ହୁଅଇ । ବର୍ତ୍ତମାନ ଓଡ଼ିଶାର ଓଡ଼ିୟାଙ୍କ ମଧରେ ଯେତେ ବିଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ତନ୍ମଧ୍ୟରୁ ଦୁଇଜଣ ଓଡ଼ିୟା ଶ୍ରୀବାବୁ ମଧୁସୂଦନ ଦାସ ଓ ତାଙ୍କ

## ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଭ୍ରାତା ବାବୁଗୋପାଳବଲ୍ଲଭ ଦାସ ଏମ୍‌ଏ ଉପାଧି ଧାରଣ କରିବାକୁ ସକ୍ଷମ ହୋଇଅଛନ୍ତି । ପ୍ରଥମ ଜଣ ଖ୍ରୀଷ୍ଟିୟାନ ହୋଇ କଲିକତାରେ ପାଠ କରିଥିବାରୁ ଏତେସରିକି ଆସି ପାରିଲେ ୨ୟ ଜଣ ତାଙ୍କ ଭ୍ରାତା ଥିବାରୁ ସୁତରାଂ ବିଶେଷ ସାହାଯ୍ୟ ଓ ଉତ୍ସାହ ପାଇଥିବାରୁ ଓଡ଼ିଶାର ଟେକ ରଖିବାକୁ ସକ୍ଷମ ହୋଇ ପାରିଛନ୍ତି । ଏଠାରେଭନଶା କଲେଜର ଉତ୍ତୀର୍ଣ୍ଣ ଛାତ୍ର ମଧ୍ୟରୁ ଆଉ ଦୁଇଜଣ ଏମ୍‌ଏ ପାଶ କରିଛନ୍ତି ସତ୍ୟ କିନ୍ତୁ ସେମାନେ ବିଦେଶୀ ସୁତରାଂ ଓଡ଼ିଶାର ଲାଭ କିଛି ନାହି । ଏଠା ଛାତ୍ରମାନେ ଏମ୍‌ଏ ପରୀକ୍ଷାରେ ଉପସ୍ଥିତ ହୋଇ ନ ପାରିବ । କାରଣ ନିମ୍ନେ ପ୍ରଦର୍ଶିତ ହେଲା । ଏଠାରେ ବିଏ କ୍ଲାସପର୍ଯ୍ୟନ୍ତ ଖୋଲାଅଛି । ଏଠାରେ ଯେଉଁ ଅଧ୍ୟାପକ ଆସୁଅଛନ୍ତି ଓ ଏଠାରେ ଅଛନ୍ତିସେମାନେ ପ୍ରଥମରୁ କଲେଜରେ ଶିକ୍ଷାପ୍ରଦାନକରିବାର ପ୍ରଥା ଏହିଠାରେ ଶିକ୍ଷା କରିବାକୁ ଆସନ୍ତିସେମାନେ କେବଳ ପରୀକ୍ଷୋତ୍ତୀର୍ଣ୍ଣ ହୋଇ ଏଠାରେ ବହୁଦର୍ଶୀତା ଲାଭ କରି ଅନ୍ୟ କଲେଜମାନଙ୍କୁ ସ୍ଥାନାନ୍ତରିତ ହୁଅନ୍ତି ସୁତରାଂ କେହି ଅଧ୍ୟାପକ ନାହାନ୍ତି ଯେ ଏମ୍‌ଏ କ୍ଲାସରେ ଶିକ୍ଷା ପ୍ରଦାନ କରିବାକୁ ସକ୍ଷମ ହେବେ । ଏଠାରେ ମଧ ଏମ୍‌ଏ କ୍ଲାସ ଖୋଲା ହୋଇ ନାହି । ଓଡ଼ିଶାବାସିଙ୍କ ଅବସ୍ଥା ଅତୀତ ଗରିବ ଏହା କାହାରିକୁ ଅବିଦିତ ନାହି ଆଉ ଗରିବ ଓ ମଧମଶ୍ରେଣୀୟ ଲୋକମାନଙ୍କ ବାଳକମାନେ ବେଶି ପାଠାଭ୍ୟାସ କରିଥାନ୍ତି । ସେମାନେ ବୃତ୍ତି ଉପରେ ଆପଣା ଆପଣା ପାଠୋନ୍ନତିର ଆଶା ରଖି ଥାଆନ୍ତି ବିଏ କ୍ଲାସପର୍ଯ୍ୟନ୍ତ ବୃତ୍ତି ଥିବାରୁ ପାଠ କରିବାକୁ ସକ୍ଷମ ହୁଅନ୍ତି ଏମ୍‌ଏ କ୍ଲାସ ଏଠାରେତ ନାହି କଲିକତାକୁ ଗଲେ ସେଠାର ଖର୍ଚ୍ଚା ଯେ ଅଧିକ ତାହା ଯୋଗାଇବାକୁ ସେମାନେ କୌଣସିପ୍ରକାରରେ ସମର୍ଥ ନୁହନ୍ତି ସୁତରାଂ ଏହିଠାରେ ସେମାନଙ୍କ ପାଠାଭ୍ୟାସ ଶେଷ ହୁଅଇ । ପୂର୍ବରେ ବିଏ କ୍ଲାସ ନ ଥିବାସମୟରେ ଏଫ୍‌ଏ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନେ ବୃତ୍ତିଲାଭ କରି କଲିକତାନଗରକୁ ପାଠାର୍ଥେ ଯାଉଥିଲେ ସେ ସମୟରେ ଟ୨୦ଙ୍କା ହିସାବ ମାସିକ ବୃତ୍ତି ଥିଲା କିନ୍ତୁ ତାହା ଅନାଟନ ହେବାରୁ କେହି କେହି ମେଓ ବୃତ୍ତି ଟ୨୦ଙ୍କା ମଧ ଅଧିକା ଲାଭ କରୁଥିଲେ । କିନ୍ତୁ ଯାହା ହେଉ ବିଏ କ୍ଲାସ ଫିଟିବାଦ୍ୱାରା ବୃତ୍ତିଭୋଗୀ ବାଳକମାନେ ଓ କେତେକ ବୃତ୍ତି ନ ପାଇ ମଧ ଅଧ୍ୟୟନ କରୁଅଛନ୍ତି । ଢେଙ୍କାନାଳ ଓ ମୟୂରଭଞ୍ଜ ରାଜା କେତେକ ବୃତ୍ତିସ୍ଥାପନ କରି ଯାଇଥିବାରୁ ଅନେକ ଛାତ୍ରଙ୍କର ଉପକାର ହେଉଅଛି ତାଳଚେର ରାଜା ମଧ ଶିକ୍ଷୋନ୍ନତିପ୍ରତି ସାହାଯ୍ୟ କରୁଅଛନ୍ତି କେଉଁଝର ରାଜା କଲେଜର ଗୃହ ନିର୍ମାଣଦିପକ୍ଷରେ ସାହାଯ୍ୟ କରିଅଛନ୍ତି ଓ ଏହି ରାଜାମାନଙ୍କ ସାହାଯ୍ୟ ହେତୁରୁ ରେଭନଶା କଲେଜ ଜୀବିତ ଅଛି କିନ୍ତୁ ଶିକ୍ଷାର ସୀମା ଏହିଠାରେ ଶେଷ ହୁଅଇ ଦୁଃଖ ଏତିକି ଯେ ଅନ୍ୟ ରାଜାମାନେ ସାହାଯ୍ୟପ୍ରଦାନ କରିବାକୁ ଅଗ୍ରସର ହେଉ ନାହାନ୍ତି । ଛୋଟଲାଟଙ୍କ ଆଗମନ ସମୟରେ ତାଙ୍କୁ କେତେକ ଉପାଧିଧାରୀ ଛାତ୍ର ଅଭିନନ୍ଦନପତ୍ର ପ୍ରଦାନ କରିଥିଲେ ଛୋଟଲାଟ ବାହାଦୁର ଏଠାରେ ଏମ୍‌ଏ କ୍ଲାସ ଫିଟିବାସମ୍ବନ୍ଧରେ ଶିକ୍ଷାବିଭାଗର ଡାଇରେକ୍ଟରଙ୍କ ସହିତ ପରାମର୍ଶ କରିବାକୁ କହିଯାଇ ଅଛନ୍ତି । ପ୍ରାୟ ତିନିମାସ ଅତୀତ ହେଲା କିଛି ଉତ୍ତର ପହୁଞ୍ଚ ନାହି । ବଙ୍ଗଦେଶର ଚଉଆଡ଼େ ଉଚ୍ଚଶିକ୍ଷାର ସ୍ରୋତ ଚଳିଅଛି ଓ ତହିଁର ଉପାୟ ମଧ ରହିଅଛି କିନ୍ତୁ ଓଡ଼ିଶ୍ୟାରେ କି କେବଳ ବିଏ ପାଶ କଲେ ଶିକ୍ଷାର ଶେଷ ହେବ ? ବଡ଼ଲାଟ ବାହାଦୁର ଉଚ୍ଚଶିକ୍ଷା ଉନ୍ନତି ପାଇଁ ଯଥାସାଧ ଚେଷ୍ଟା କରିବାକୁ ପ୍ରସ୍ତୁତ ଥିବାର ବ୍ୟକ୍ତ କରିଅଛନ୍ତି ଓ ଲୋକଙ୍କ ସାହାଯ୍ୟ ମଧ ଚହୁଅଛନ୍ତି । ଏମନ୍ତସମୟରେ ଆମ୍ଭେମାନେ କି ନିସ୍ତବ୍ଧ ହୋଇ ରହିବା ? ଆମ୍ଭମାନଙ୍କର ଯାହା ଅଭାବ ତଦ୍ଦୂରୀକରଣାର୍ଥେ କି ଚେଷ୍ଟା ସୁଦ୍ଧା ହେବ ନାହି ? ଓଡ଼ିଶ୍ୟାର ଲୋକେ ବଡ଼ ବଡ଼ ସରକାରୀ କାର୍ଯ୍ୟ ପାଉ ନାହାନ୍ତି କାରଣ ବଙ୍ଗଦେଶସହିତ ଓଡ଼ିଶ୍ୟା ସମକକ୍ଷ ହୋଇ ନାହି ଏହା ସତ୍ୟ କିନ୍ତୁ ସମକକ୍ଷ ହେବାପାଇଁ ଚେଷ୍ଟା ଓଡ଼ିଶ୍ୟାବାସିଙ୍କଠାରେ ନିହିତ । ଆମ୍ଭେମାନେ ବର୍ତ୍ତମାନ ପ୍ରାର୍ଥନା କରୁଁ ଯେ ଦେଶହିତୈଷୀ ରାଜା ଜମିଦାରମାନେ ଏଠାରେ ଗୋଟିଏ ଏମ୍‌ଏ କ୍ଲାସ ଫିଟିବାପାଇଁ ଗଭର୍ଣ୍ଣମେଣ୍ଟଙ୍କୁ ନିବେଦନ କରନ୍ତୁ ନତୁବା ବୃତ୍ତିସ୍ଥାପନ କରନ୍ତୁ ଯାହାବଳରେ ଏଠା ଛାତ୍ରମାନେ କଲିକତାରେ ପାଠ କରିବାକୁ ସକ୍ଷମ ହେବେ । ଏଠା ବିଦ୍ୟୋତ୍ସାହି ଲୋକମାନେ ଏବିଷୟରେ ଆନ୍ଦୋଳନ କଲେ କିଛି ଫଳ ହୋଇପାରେ । ଆଶା କରୁଁ ସେମାନେ ମଧ ଚେଷ୍ଟା କରିବାକୁ ହେଳା କରିବେ ନାହି ।

*ଭା୨୪ଗ, ସଂ୭ଖ୍ୟା, ୧୬।୨।୧୮୮୯*

# ଉତ୍କଳ ସମ୍ମିଳନୀର ଦ୍ୱିତୀୟଅଧିବେଶନ ।

ଉତ୍କଳସମ୍ମିଳନୀର ଦ୍ୱିତୀୟ ଅଧିବେଶନ ଫିବ୍ରୋରୀ ମାସ ତା ୨ ରିଖ ସନ୍ଧ୍ୟା ଘ୮ଣ୍ଟା ସମୟରେ କଟକ ବାଙ୍କାବଜାରସ୍ଥିତ ସାମନ୍ତ ଶ୍ରୀ ନନ୍ଦକିଶୋରଦାସଙ୍କ ବସାଠାରେ ହୋଇଥିଲା । ଏ ଦିନ ନିମ୍ନଲିଖିତ ସଭ୍ୟମାନେ ଉପସ୍ଥିତ ଥିଲେ ।

ସାମନ୍ତ ଶ୍ରୀ ରାସବିହାରି ନାୟକ
" " ପଦ୍ମନାଭ ଦାସ
" " ଜଗତ୍‌ବଲ୍ଲଭ ଦାସ
" " ଦାମୋଦରପଟ୍ଟନାୟକ
" " କୃଷ୍ଣଚରଣ ମହାନ୍ତି
" " ଜଗବନ୍ଧୁ ମହାନ୍ତି
" " ଲକ୍ଷ୍ମଣ ମହାନ୍ତି
" " ବନମାଳୀ ଦାସ
" " ରାଘବାନନ୍ଦ ଦାସ
" " ଅଭିମନ୍ୟୁ ମହାପାତ୍ର
" " ଜୟେକୃଷ୍ଣ ମହାନ୍ତି
" " କୃଷ୍ଣମୋହନପଟ୍ଟନାୟକ
" " ଶ୍ରୀଧର ମହାନ୍ତି
" " ଲକ୍ଷ୍ମୀଚରଣ ମହାନ୍ତି
" " ଉଦ୍ଧବଚରଣ ମହାନ୍ତି
" " ଭାଗବତ ଭଞ୍ଜ
" " ଗୁଣନିଧି ଦାସ
" " ସୁଦର୍ଶନ ଦାସ
" " କାଶିନାଥ ଦାସ
" " ଅନନ୍ତଚରଣ ମହାନ୍ତି
" " ଦଧିବାମନ ଦାସ
" " ଭଗବାନ ମହାନ୍ତି
" " କୃପାସିନ୍ଧୁ ଦାସ
" " କାଳନ୍ଦିଚରଣ ଦାସ
" " ଅଭିରାମ ଦାସ
" " ନନ୍ଦକିଶୋର ମହାନ୍ତି
" " ଗୁରୁଚରଣ ଦାସ
" " ବାନାବର ମହାନ୍ତି
" " ବୃନ୍ଦାବନ ଦାସ
" " ଉଦୟନାଥ ପଟ୍ଟନାୟକ
,, ,, କାଶିନାଥ ମହାନ୍ତି
,, ,, ମଧୁସୂଦନ ଜଗଦେବ । ତା। ଟାକୋଳ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ସାମନ୍ତ ଶ୍ରୀ ଶିବିଚରଣ ପଟ୍ଟନାୟକ
" " କୃଷ୍ଣଚନ୍ଦ୍ର ମହାନ୍ତି
" " ରାଜକିଶୋର ଦାସ ।ତା । ଜୟପୁର
" " ମାୟାଧର ଦାସ
" " ରାଜକିଶୋର ଦାସ ।ତ। ।ତିସାଣିଆ
" " ବ୍ରଜକିଶୋର ଦାସ

ଏପର ବ୍ରାହ୍ମଣାଦି ପ୍ରାୟ ଅନେକ ଦର୍ଶକ ଉପସ୍ଥିତ ଥିଲେ ।

(୨) ଅଦ୍ୟ ସଭାରେ ସଭାପତି ସାମନ୍ତ ଶ୍ରୀ ନନ୍ଦକିଶୋର ଦାସ ଓ ସହକାରୀ ସଭାପତି ସାମନ୍ତ ଶ୍ରୀ ହରେକୃଷ୍ଣ ଦାସ ଅନୁପସ୍ଥିତ ଥିବାରୁ ସାମନ୍ତ ଶ୍ରୀ ଜଗବନ୍ଧୁ ଦାସଙ୍କ ପ୍ରସ୍ତାବ, ସାମନ୍ତ ଶ୍ରୀ ଦାମୋଦର ପଟ୍ଟନାୟକଙ୍କ ଅନୁମୋଦନ ଓ ସର୍ବସମ୍ମତି ଅନୁସାରେ ଅଦ୍ୟ ଦିବସ କାର୍ଯ୍ୟ ନିର୍ବାହ ନିମନ୍ତେ ସାମନ୍ତ ଶ୍ରୀ ରାସବିହାରୀ ନାୟକ ସଭାପତି ପଦରେ ମନୋନୀତ ହୋଇ ଆସନ ଗ୍ରହଣ କଲାରୁ ସଭାର କାର୍ଯ୍ୟ ଆରମ୍ଭ ହେଲା ।

(୩) ପ୍ରଥମ ଅଧିବେଶନର କାର୍ଯ୍ୟାବଳୀ ପଠନ ହୋଇ ସ୍ଥିରୀକୃତ ହେଲା ।

(୪) ସମ୍ମିଳନୀ ପ୍ରଥମ ଅଧିବେଶନରେ ଯେଉଁ ଯେଉଁ ନିୟମାନୁସାରେ ସଭାର କାର୍ଯ୍ୟ ନିର୍ବାହ ହେବ ତାହା ସବୁ ସ୍ଥିର କରିବା ନିମନ୍ତେ ସାମନ୍ତ ଶ୍ରୀ ନନ୍ଦକିଶୋର ଦାସ, ସାମନ୍ତ ଶ୍ରୀ ହରେକୃଷ୍ଣ ଦାସ, ସାମନ୍ତ ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ ଓ ସାମନ୍ତ ଶ୍ରୀ ବାନାବର ମହାନ୍ତିଙ୍କ ପ୍ରତି ଭାର ଦିଆ ଯାଇ ଥିଲା । ସେମାନଙ୍କ କୃତ ନିମ୍ନଲିଖିତ ନିୟମାବଳୀ ସାମନ୍ତ ଶ୍ରୀ ବାନାବର ମହାନ୍ତିଙ୍କଦ୍ୱାରା ପଠିତ ହେଲା । ତାହା ଏହି:--

**ଉତ୍କଳ ସମ୍ମିଳନୀର ନିୟମାବଳୀ ।**

୧ମ--ଏ ସଭାର ଅଧିବେଶନ ପ୍ରତି ମାସରେ ଏକଥର ହେବ ।

୨ୟ--ସଭାପତି ସମସ୍ତ ଅଧିବେଶନରେ ସଭାପତିର ଆସନ ଗ୍ରହଣ କରି କାର୍ଯ୍ୟ ସମାଧା କରିବେ । ତାଙ୍କ ଅନୁପସ୍ଥିତ ସମୟରେ ସହକାରୀ ସଭାପତି ତଦ୍ରୂପ କରିବେ । ଉଭୟଙ୍କ ଅନୁପସ୍ଥିତ ସମୟରେ ସଭ୍ୟମାନେ ଆପଣାମଧ୍ୟରୁ ଜଣେ ସଭାପତି ମନୋନୀତ କରି କାର୍ଯ୍ୟ ଚଳାଇବେ ।

୩ୟ--ବିଶେଷ ଅଧିବେଶନ କୌଣସି ସମୟରେ ସଭାପତି ଅଥବା ସହକାରୀ ସଭାପତିଙ୍କ ଇଚ୍ଛାମତେ ଆହୁତ ହୋଇ ପାରିବ ମଧ ସଭ୍ୟମାନଙ୍କ ମଧ୍ୟରୁ ଅନ୍ୟୂନ ସାତ ଜଣ ସଭାପତି ବା ସହକାରୀ ସଭାପତିଙ୍କୁ ଲେଖିଲେ ସେ ସଭା ଆହ୍ୱାନ କରିବାକୁ ବାଧ ହେବେ ।

୪ର୍ଥ--ଅଧିକାଂଶ ମତ ଅନୁସାରେ ଉପସ୍ଥିତ ବିଷୟମାନ ମୀମାଂସିତ ହେବ । ସମାନ ମତ ହେଲେ ସଭାପତିଙ୍କର ମତ ପ୍ରବଳ ହେବ ।

୫ମ--ଜଣେ ସ୍ୱତନ୍ତ୍ର କୋଷାଧକ୍ଷ ନିଯୁକ୍ତ ହେବା ପର୍ଯ୍ୟନ୍ତ ସମ୍ପାଦକ ବର୍ତ୍ତମାନ କୋଷାଧକ୍ଷର କାର୍ଯ୍ୟ କରିବେ ଏବଂ ସହକାରିସମ୍ପାଦକ ହିସାବ ରଖିବେ ଓ ଅନ୍ୟାନ୍ୟ ଯେ କାର୍ଯ୍ୟ ସମ୍ପାଦକଙ୍କଦ୍ୱାରା ଅର୍ପିତ ହେବ ତାହା ନିର୍ବାହ କରିବେ ।

୬ଷ--ଏଥିପର ନୂତନ ସଭ୍ୟ ସଭାଭୁକ୍ତ ହେବାର ପ୍ରସ୍ତାବ ବିଧିମତେ ଅନୁମୋଦନ ହେଲାରୁ ଉପସ୍ଥିତ ସଭ୍ୟମାନଙ୍କ ମତ ଅନୁସାରେ ମନୋନୀତ ହେବ ।

୭ମ--ମଫସଲସ୍ଥ ଭିନ୍ନ ଭିନ୍ନ ସ୍ଥାନରେ ଏ ସଭାର ଶାଖାସଭା ସ୍ଥାପନ ହେବା ବିଷୟରେ ଯତ୍ନ କରାଯିବ ।

ଉଲ୍ଲିଖିତ ନିୟମମାନ ସର୍ବସମ୍ମତି ଅନୁସାରେ ସ୍ଥିରୀକୃତ ହେଲା ।

(୫) ସାମନ୍ତ ଶ୍ରୀ ଦାମୋଦର ପଟ୍ଟନାୟକ ଏହି ପ୍ରସ୍ତାବ କଲେ କି ଉତ୍କଳସମ୍ମିଳନୀ ସଭାରେ ସାମନ୍ତ ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି, ସାମନ୍ତ ଶ୍ରୀ ରାଜକିଶୋର ଦାସ । ପ୍ର । ଜୟପୁର, ସାମନ୍ତ ଶ୍ରୀ ମାୟାଧର ଦାସ, ସାମନ୍ତ ଶ୍ରୀ ଶିବଚନ୍ଦ୍ର ପଟ୍ଟନାୟକ, ସାମନ୍ତ ଶ୍ରୀ ରାଜକିଶୋର ଦାସ । ପ୍ର । ତିସାଣିଆ ଓ ସାମନ୍ତ ଶ୍ରୀ ମଧୁସୂଦନ ଜଗଦେବ

। ସା । ଟାଙ୍କୋଳ । କି । ଖୋର୍ଦ୍ଧାଙ୍କୁ ସଭ୍ୟ ପଦରେ ମନୋନୀତ କରାଯାଉ ।

ଏ ପ୍ରସ୍ତାବ ସାମନ୍ତ ଶ୍ରୀ ଜଗତ୍‌ବଲ୍ଲଭ ଦାସ ଅନୁମୋଦନ କଲାରୁ ସର୍ବସମ୍ମତି ଅନୁସାରେ ସ୍ଥିର କରାଗଲା ।

(୬) ଯେଉଁ ଛାତ୍ରମାନେ ବିଦ୍ୟାଶିକ୍ଷା କରିବାପାଇଁ ମଫସଲରୁ ଆପଣା ଘରଛାଡ଼ି ସହରରେ ବାସ କରୁଅଛନ୍ତି ସେମାନଙ୍କ ସଙ୍ଗେ କେହି ଅଭିଭାବକ ନ ଥିଲେ ସେମାନଙ୍କ ଅଭିଭାବକଙ୍କ ସମ୍ମତିକ୍ରମେ କିପରି ତାଙ୍କର ତତ୍ତ୍ୱାବଧାରଣ ହୋଇ ପାରିବ ଏ ବିଷୟରେ ପ୍ରସ୍ତାବ କରିବାର ଭାର ସାମନ୍ତ ଶ୍ରୀ ରାସବିହାରି ନାୟକ, ସାମନ୍ତ ଶ୍ରୀ ଜଗତାନନ୍ଦ ଦାସ, ସାମନ୍ତ ଶ୍ରୀ ଚତୁର୍ଭୁଜ ମହାନ୍ତିଙ୍କପ୍ରତି ଅର୍ପିତ ଥିଲା । ଉକ୍ତ ପ୍ରସ୍ତାବ ସେମାନଙ୍କ ମଧ୍ୟରୁ ସାମନ୍ତ ଶ୍ରୀ ରାସବିହାରି ନାୟକ ଆଗତ କଲେ । ଯଥା:--

ବିଦେଶୀୟ ଛାତ୍ରମାନଙ୍କ ନିମନ୍ତେ ସାଧାରଣ ଛାତ୍ରାବାସ ନିର୍ମାଣ କରାଇ ସେଠାରେ ସେମାନଙ୍କୁ ଏକତ୍ରାବସ୍ଥିତ କରାଗଲେ ସେମାନଙ୍କର ଅର୍ଥ ବ୍ୟୟର ଲାଘବ ଓ ତତ୍ତ୍ୱାବଧାରଣର ସୁବିଧା ହୋଇ ପାରିବ ମାତ୍ର ସେପରି ଛାତ୍ରାବାସ ପ୍ରସ୍ତୁତ କରିବାନିମନ୍ତେ ଅର୍ଥର ସାପେକ୍ଷ ଓ ପିଲାମାନଙ୍କୁ ଛାତ୍ରାବାସରେ ରଖିବାକୁ ହେଲେ ସେମାନଙ୍କ ଅଭିଭାବକମାନଙ୍କର ମତ ପ୍ରଥମେ ସଂଗ୍ରହ କରିବା ଆବଶ୍ୟକ । ଅତଏବ ବର୍ତ୍ତମାନ ଏଠାରେ ପଢୁଥିବା ମଫସଲ ବାସୀ ଶ୍ରୀ କରଣପିଲାମାନଙ୍କ ନାମ, ବାସସ୍ଥାନ, ସେମାନଙ୍କ ଅଭିଭାବକମାନଙ୍କ ନାମର ଏକ ତାଲିକା ଓ ପ୍ରତ୍ୟେକ ପିଲାର ବସାଖର୍ଚ୍ଚ ମାସକୁ ବର୍ତ୍ତମାନ କେତେଲେଖାଁଏ ବ୍ୟୟ ହେଉଅଛି ଓ ଏକତ୍ରାବସ୍ଥିତ ହେଲେ କେତେ ଖର୍ଚ୍ଚ ପଡ଼ିପାରେ ତାହା ସ୍ଥିରକରି ଆଗାମି ସଭାରେ ଆଗତ କରିବା କାରଣ ସାମନ୍ତ ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି, ସାମନ୍ତ ଶ୍ରୀ ଦାମୋଦର ପଟ୍ଟନାୟକ ଓ ସାମନ୍ତ ଶ୍ରୀ ଅଭିମନ୍ୟୁ ମହାପାତ୍ରଙ୍କ ପ୍ରତି ଭାର ଦିଆଯାଉ ।

ଏ ପ୍ରସ୍ତାବ ସାମନ୍ତ ଶ୍ରୀ ଗୁଣନିଧି ଦାସ ଅନୁମୋଦନ କଲାରୁ ସର୍ବସମ୍ମତି ଅନୁସାରେ ତାହା କରାଗଲା ।

(୭) ଯେଉଁ ଶ୍ରୀ କରଣ ପିଲାମାନେ ଅର୍ଥାଭାବରୁ ବିଦ୍ୟାଶିକ୍ଷା କରିବାକୁ ଅସମର୍ଥ ସେମାନଙ୍କୁ କିପରି ସାହାଯ୍ୟ କରାଯାଇ ପାରିବ ଏ ବିଷୟରେ ସାମନ୍ତ ଶ୍ରୀ ନନ୍ଦକିଶୋର ଦାସ, ସାମନ୍ତ ଶ୍ରୀ ରାସବିହାରି ନାୟକ, ସାମନ୍ତ ଶ୍ରୀ ପଦ୍ମଚରଣ ଦାସ ଓ ସାମନ୍ତ ଶ୍ରୀ ଗୋକୁଳାନନ୍ଦ ଚୌଧୁରିଙ୍କ ପ୍ରତି ଭାର ଥିଲା । ସେମାନଙ୍କର ଏହି ପ୍ରସ୍ତାବ ସାମନ୍ତ ଶ୍ରୀ ରାସବିହାରି ନାୟକ ସଭାରେ ଆଗତ କଲେ କି ଗରିବ ପିଲାମାନଙ୍କମଧ୍ୟରୁ କାହାକୁ ସ୍କୁଲ ଦରମା, କାହାକୁ ବସାଖର୍ଚ୍ଚ ଅଥବା କାହାକୁ ଉଭୟ ବେତନ ଓ ବସାଖର୍ଚ୍ଚା ଦେବା ଏବଂ ଅନ୍ୟାନ୍ୟ ଉପାୟଦ୍ୱାରା ସାହାଯ୍ୟ କରାଯାଇ ପାରିବ ମାତ୍ର ଏହି ମହତ୍‌କାର୍ଯ୍ୟ ସକାଶେ ବିଶେଷ ସହାନୁଭୂତି ଓ ଅଧିକ ଅର୍ଥ ଆବଶ୍ୟକ କରେ ଏବଂ ଅର୍ଥସଂଗ୍ରହ କି ପରିମାଣରେ ହୋଇ ପାରିବ ତାହା ପ୍ରଥମେ ଦେଖିବା ଆବଶ୍ୟକ । ଏଣୁ ସେ ପ୍ରସ୍ତାବକଲେ କି ଉକ୍ତ କାର୍ଯ୍ୟସକାଶେ ଚାନ୍ଦା ସଂଗ୍ରହ କରିବାର ଭାର ସାମନ୍ତ ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି, ସାମନ୍ତ ଶ୍ରୀ ଦାମୋଦର ପଟ୍ଟନାୟକ, ସାମନ୍ତ ଶ୍ରୀ ଅଭିମନ୍ୟୁ ମହାପାତ୍ର ଓ ସାମନ୍ତ ଶ୍ରୀ ଗୁଣନିଧି ଦାସଙ୍କ ପ୍ରତି ଭାର ଦିଆ ଯାଉ ।

*ଅତିରିକ୍ତ, ୯।୩।୧୮୮୯*

## [ସମାଲୋଚନା ପତ୍ରିକା]

ସାହିତ୍ୟସମ୍ମିଳନୀ ସଭାର ସମାଲୋଚନା ନାମରେ ଖଣ୍ଡିଏ ପତ୍ରିକା ଏ ନଗରର ଓଡ଼ିଶା ପାଟ୍ରିଅଟ ପ୍ରେସରୁ ବାହାରିଅଛି ଏବଂ ତହିଁରେ ଶ୍ରୀ ପ୍ରଭାକର ବିଦ୍ୟାରତ୍ନଙ୍କ ପ୍ରଣୀତ ଭାଷାବ୍ୟାକରଣର କେତେଗୁଡ଼ିଏ ଦୋଷ ଦେଖାଇ ଦିଆ ଯାଇଅଛି । ଏହି ସମାଲୋଚନା ପତ୍ରିକା ବାହୁଲ୍ୟରୂପେ ବିତରିତ ହୋଇଥିବା ଏବଂ ତହିଁରେ ଲେଖା ଥିବା ବିଷୟମାନଙ୍କର ସଂକ୍ଷେପ ପରିଚୟ ଓ ତହିଁର ପ୍ରତିବାଦମାନ ଦୀପିକାର ଅତିରିକ୍ତରେ ପ୍ରକାଶିତ ପ୍ରେରିତପତ୍ରରେ ଲେଖାଥିବାରୁ ଭରସା ହେଉଅଛି ଯେ ପାଠକମାନେ ସମସ୍ତ ବିଷୟ ଅବଗତ ହୋଇପାରିବେ । ବିଶେଷତଃ ପୁସ୍ତକ ଖଣ୍ଡିକ ଅବଧି ସର୍ବସାଧାରଣଙ୍କର ଦୃଷ୍ଟିଗୋଚରରେ ଆସିବାର ଆମ୍ଭମାନଙ୍କୁ ଜଣା ନାହିଁ । ଅତଏବ ସମାଲୋଚନାର ସମାଲୋଚନା କରିବା ଅନାବଶ୍ୟକ ।

*ଭା୨୪ଗ, ସଂ୧୬ଖ୍ୟା, ୨୦।୪।୧୮୮୯*

## ପ୍ରେରିତପତ୍ର ।

## [ପୁସ୍ତକ ସମାଲୋଚନା]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ ।

ମହାଶୟ !

ଏ ନଗରରେ ଚଳିତ ମାସ ତା ୫ ରିଖରେ ଓଡ଼ିଶାପେଟ୍ରିଅଟ ପ୍ରେସରେ ଉତ୍କଳ ସାହିତ୍ୟସମ୍ମିଳନୀ ସଭାର ଅଗାଡ଼ିଝଡା ସମ୍ପାଦକ ଶ୍ରୀ ଦୟାନିଧି ଶାସ୍ତ୍ରୀଙ୍କଦ୍ୱାରା ପ୍ରକାଶିତ " ଉତ୍କଳ ସାହିତ୍ୟସମ୍ମିଳନୀ ସଭାର ସମାଲୋଚନା" ଏହି ଶୀର୍ଷାଙ୍କିତ ୯ପୃଷ୍ଠାର ଖଣ୍ଡିଏ ପୁସ୍ତିକା ସହର ମଧ୍ୟରେ ସ୍ଥାନେ ସ୍ଥାନେ ବିତରିତ ହେଉଥିବାରୁ ଆମ୍ଭେ ତାହା କୌଣସି ବନ୍ଧୁଙ୍କଠାରୁ ପ୍ରାପ୍ତ ହୋଇ ଆଦ୍ୟନ୍ତ ପାଠକରି ତହିଁରେ କେତେକ ଅମୂଳକ କଥା ଲିଖିତ ଥିବାର ଦେଖି ତହିଁ ପକ୍ଷରେ ପାଠକମହାଶୟମାନଙ୍କ ଗୋଚରାର୍ଥେ କେତେକ ବିଷୟ ନିମ୍ନରେ ଲେଖୁଅଛୁଁ ।

ଏଠାରେ ସାହିତ୍ୟସମ୍ମିଳନୀ ସଭା ତିନିବର୍ଷ ହେଲା ସ୍ଥାପିତ ହେବାର ତହିଁରେ ପ୍ରକାଶିତ ହୋଇଅଛି, କିନ୍ତୁ ଏଥି ମଧ୍ୟରେ କୌଣସି ପ୍ରକାର ସଭାର କାର୍ଯ୍ୟ ସାଧାରଣରେ ପ୍ରଚାର ହୋଇ ନ ଥିଲା, କି ଆଶ୍ଚର୍ଯ୍ୟ ସର୍ବଜ୍ଞତାର କାର୍ଯ୍ୟ, ଭାଷାଦର୍ଶର ଅପେକ୍ଷାରେ ଏପର୍ଯ୍ୟନ୍ତ ସଭା ନୀରବଭାବରେ ରହି ଆପଣାର ଅସ୍ତ୍ରଶାଣିତ କରୁଥିଲା ପରା, କିମ୍ବା ଆପଣା ସମ୍ମୁଖରେ ଘଟୁଥିବା ରହସ୍ୟଜନକ ବ୍ୟାପାରମାନ ଦେଖି ମୁଗ୍ଧ ହୋଇ କର୍ତ୍ତବ୍ୟସାଧନରେ କଳଙ୍କିତ ଲେଖନୀର କଳଙ୍କକ୍ଷାଳନର ଅବସର ପାଇ ନ ଥିଲା ତାହା କିଛି ବୁଝାଯାଉ ନାହିଁ ।

ପୁସ୍ତକନିର୍ବାଚନ ସଭା ଯେଉଁ ଯେଉଁ ପୁସ୍ତକମାନଙ୍କୁ ନିର୍ବାଚିତ କରିଅଛନ୍ତି ଏବଂ ଶାସ୍ତ୍ରୀ ସମ୍ପାଦକ ହେବା ପୂର୍ବେ ଓ ପରେ ଯେ ଯେ ପୁସ୍ତକମାନ ମୁଦ୍ରିତ ହୋଇଅଛି ତହିଁ ମଧ୍ୟରୁ କୌଣସି ପୁସ୍ତକ ଏପରି ସମାଲୋଚନା ବାହାର ହେବାର ଦେଖି ନାହୁଁ ଓ ଶୁଣି ନାହୁଁ ଏବଂ ଶାସ୍ତ୍ରୀ ମଧ ନିର୍ବାଚକ ସଭାର ଅବଗତି ନିମିତ୍ତ ଏ କାର୍ଯ୍ୟରେ ପ୍ରବୃତ୍ତ ହେବାର ଲେଖିଅଛନ୍ତି; ଏ ଶାସ୍ତ୍ରୀ ଯେ ଜଣେ ଅଦ୍ୱିତୀୟ ଭାଷାବିତ୍ ଏବଂ ଉକ୍ତ ସଭାର ପୃଷ୍ଟପୋଷକ ବ୍ୟକ୍ତି ଏପର୍ଯ୍ୟନ୍ତ ସାଧାରଣରେ ପରିଚିତ ଥିବାର ଦେଖା ବା ଶୁଣାଯାଇ ନାହିଁ । "ବାମନ ହୋଇ ଚନ୍ଦେ ହାତ" । ଏ ପ୍ରବାଦ ଏ ପକ୍ଷରେ ଯଥେଷ୍ଟ ଅଟେ ।

ଆଧୁନିକ ଓ ପ୍ରାଚୀନ ଗ୍ରନ୍ଥକାରମାନଙ୍କର ଉଦ୍ଦେଶ୍ୟ ଦେଖାଇ ଯାହା ଲେଖି ଅଛନ୍ତି ତାହା ନିତାନ୍ତ ଅମୂଳକ । ବର୍ତ୍ତମାନରେ ଯେତେ ଗ୍ରନ୍ଥ ପ୍ରଚାର ହେଉଅଛି ସମସ୍ତ ପ୍ରାୟ ମୂଲ୍ୟରେ ବିକ୍ରୀତ । କେବଳ ଶ୍ରୀଯୁତ ତାଳଚେର ଓ ବାମଣ୍ଡା ଏହି ଦୁର୍ଗଦ୍ୱୟର ଅଧିପତି ମହୋଦୟ କେତେକ ପୁସ୍ତକ ବିନାମୂଲ୍ୟରେ ପ୍ରଦାନ କରି ଅଛନ୍ତି ଓ କରୁଅଛନ୍ତି । ଶାସ୍ତ୍ରୀ ଯେଉଁ କୁକ୍ଷିମ୍ଭରିମାନଙ୍କର ଚେଲା ହୋଇ ଗାଉଅଛନ୍ତି ସେମାନଙ୍କର ପ୍ରଚାରିତ ପୁସ୍ତକ ଗୁଡ଼ିକୁ ଟିକିଏ ଦେଖିବା ଉଚିତ ଥିଲା । ଶ୍ରୀଯୁତ ଜଏଣ୍ଟ ଇନ୍‌ସ୍ପେକ୍‌ଟରଙ୍କର ସମ୍ପର୍କ ଉଲ୍ଲେଖ କରି ଯାହା ଲେଖିଅଛନ୍ତି ତାହା ନିତାନ୍ତ କଦର୍ଯ୍ୟରୁଚିର ପରିଚାୟକ ଅଟେ ।

ବର୍ତ୍ତମାନ ଶିକ୍ଷିତ ହୋଇ ତନ୍ତି, ତେଲି, ଶୁଣ୍ଢି, ସୁନାରୀ, ବଣିୟା ଇତ୍ୟାଦି କୁଳପ୍ରସୂତ ବ୍ୟକ୍ତିମାନେ ଅତି ଉଚ୍ଚତମ ଶିକ୍ଷା ଲାଭ କରି ସାଧାରଣରେ ବିଶେଷ ପରିମାଣରେ ବିଖ୍ୟାତ ହୋଇଅଛନ୍ତି ତେବେ ବେଦର୍ଜୀ ଶାସ୍ତ୍ରୀ ଦର୍ଜିପୁସ୍ତକରେ ଏଡ଼େ କି ହେତୁ ରାଗାନ୍ଧ ହୋଇ ଅଛନ୍ତି, ଶାସ୍ତ୍ରୀଙ୍କର ଶାସ୍ତ୍ରଜ୍ଞାନଟା ମଧ ଅତି ବିଚିତ୍ର "ନୀଚାଦପ୍ୟୁତ୍ତମାଂ ବିଦ୍ୟାଂ" ଭଲା ଏତିକି ଶିଖି ଶାସ୍ତ୍ରୀ ହୋଇଥାନ୍ତେ । ଭାଷାଦର୍ଶର ସମାଲୋଚନାରେ ପ୍ରବୃତ୍ତ ହୋଇ ଅନ୍ୟାନ୍ୟମାନଙ୍କୁ କୁତ୍ସା କରିବାର ଉଦ୍ଦେଶ୍ୟ କିଛି ଦେଖୁ ନାହୁଁ । ବୋଧହୁଏ ଏତାଦୃଶ ସମାଲୋଚନା-ରାକ୍ଷସୀର କବଳ ଏ କରେ ପୂର୍ଣ୍ଣତା ଲାଭ କଲା ନାହି ।

ଜଏଣ୍ଟଇନ୍‌ସ୍ପେକ୍ଟର ମହୋଦୟଙ୍କର ସମ୍ପର୍କୀୟ ଲୋକ ହେଲେ ପୁସ୍ତକ ପ୍ରଣୟନ କରିବ ନାହିଁ । ଶାସ୍ତ୍ରୀ ଏ ଶାସ୍ତ୍ର କେଉଁଠାରୁ ଶିକ୍ଷା କଲେ ତାହା ଜାଣିପାରୁ ନାହୁଁ । "ଏବର୍ଷ ଘରଛାଉଣି କି ସେ ବର୍ଷ ଘରଛାଉଣି" ଇତ୍ୟାଦି ଯାହା ଲେଖିଅଛନ୍ତି ବର୍ତ୍ତମାନ ସେହି ସମୟ ହୋଇଥିବାରୁ ନିଜ ବ୍ୟବସାୟଟା ମନେ ପଡି ଗଲା ପରା ଶାସ୍ତ୍ରୀଙ୍କ ମତରେ ଏ କାର୍ଯ୍ୟ ମାସିକ ବା ଦୈନିକ, ବାର୍ଷିକ ହେଲେ ଲେଖକ ଏକ ବର୍ଷ ମଧ୍ୟରେ କିଛି ଲେଖିଲେ ତାହା

ବିସ୍ମୟକର ହେବାର ହେତୁ କଣ ? ଭଲ ପୁସ୍ତକ ହେଲେ ମଧ୍ୟ କୌଣସି ସମ୍ପର୍କ ଥିଲେ ଅନାଦୃତ ହେବାର ବିଧିଟା ତାଙ୍କ ହସ୍ତଗତ ପରା । ଦାନ୍ତ ପଡ଼ିବା ଓ ପାଚଲା ବାଳ କେତେକ ଲୋକଙ୍କର ଦେଖି ଆଉମାନଙ୍କୁ ଅପ୍ରାପ୍ତ ବୟସ୍କ ଉଲ୍ଲେଖ କରିଅଛନ୍ତି "ନ ତେନ ବୃଦ୍ଧୋ ଭବତି ଯେନାସ୍ୟ ପଳିତଂ ଶିରଃ" । ଏହା ଟିକିଏ ମନେ କଲେ ନାହିଁ ।

ଏହି ସମାଲୋଚନା ପାଠରେ "ଆଧୁନିକ" "ଶିକ୍ଷା" "କାହାରିକୁ" ପ୍ରଭୃତି କେତେକ ଶବ୍ଦଦେଖି ଶାସ୍ତ୍ରୀଙ୍କର ବର୍ଣ୍ଣଜ୍ଞାନ ଉତ୍ତମ ହୋଇଥିବାର ପ୍ରକାଶ ପାଉଅଛି ଏବଂ ସେ ପୁଣି ବ୍ୟାକରଣର ସମାଲୋଚକ ଏହା ଅତି ଦୁଃଖର ବିଷୟ ଅଟେ । ଡାଇରେକ୍ଟର ସାହେବମହୋଦୟଙ୍କ ପ୍ରତି ଯେଉଁ ଆଶା କରାଯାଇ ସ୍ୱାଭିପ୍ରାୟ ବ୍ୟକ୍ତ ହୋଇଅଛି । ନିଜେ ଡାଇରେକ୍ଟର ନ ହେଲେ ତାହା ସଫଳ ହେବାର ଆଶା ଦେଖାଯାଉ ନାହିଁ ।

ଓଡ଼ିଶାରେ ଏପର୍ଯ୍ୟନ୍ତ ପ୍ରକୃତ ପକ୍ଷରେ ସାହିତ୍ୟ ସମାଲୋଚନାର ସଭା ସ୍ଥାପିତ ହୋଇ ନାହିଁ । ପ୍ରୋକ୍ତ ଅଚିହ୍ନିତ ଓ କାର୍ଯ୍ୟକାରୀ ସଭା ଯଦ୍ୟପି କାର୍ଯ୍ୟ କରିବାକୁ ଅଗ୍ରସର ହୋଇଅଛନ୍ତି ଏହା ଆନନ୍ଦର ବିଷୟ ଅଟେ । ସର୍ବସାର ତୁଲ୍ୟ ଅସାର ଓ ଦୋଷାକର ବ୍ୟାକରଣ ଥାଉଁ ଥାଉଁ ତାହାକୁ କି ହେତୁ ଅଗ୍ରେ ଦେଖିବାକୁ କୁଣ୍ଠିତ ହେଲେ । ତାହାରି ସମାଲୋଚନାରେ ପ୍ରବୃତ୍ତ ହୋଇଥିଲେ ସମସ୍ତ ପ୍ରାପ୍ତ ହୋଇଥାନ୍ତେ ଭାଷାଦର୍ଶ ଏପର୍ଯ୍ୟନ୍ତ ସାଧାରଣରେ ପ୍ରଚରିତ ହୋଇ ନାହିଁ । ତାହାର ସାରାସାର ବିଚାର ବର୍ତ୍ତମାନ ଉପେକ୍ଷିତ । ପୁସ୍ତକମାନଙ୍କର ଗୁଣଦୋଷ ଦେଖାଇବା ସମାଲୋଚନାର ଉଦ୍ଦେଶ୍ୟ ଅଟେ । ଗୁଣ ପରିତ୍ୟାଗ କରି କେବଳ ଦୋଷ ଉଲ୍ଲେଖ କରିବା ସମ୍ପୂର୍ଣ୍ଣ ଖଳତାର କାର୍ଯ୍ୟ ଯେହେତୁ "ଖଳୋଽବଲୋକତେ ଦୋଷାନ୍ ଗୁଣ ପୂର୍ଣ୍ଣେଷୁ ବସ୍ତୁଷୁ । ବନେ ପୁଷ୍ପ ଫଳାକୀର୍ଣ୍ଣେ ପୁରୀଷ ମିବ ଶୁକରଃ" ଅଶୁଦ୍ଧ ଦେଖାଇବା ସ୍ଥଳରେ ତାଦୃଶ ଲୋକର ବର୍ଣ୍ଣ ଓ ଭାଷା ଠିକ ରହିବାର ଉଚିତ । ଏହା ଅବଶ୍ୟ ପାଠକେ ସ୍ୱୀକାର କରିବେ । ତାହାର ଅଭାବ ସ୍ଥଳରେ ଏହି ପ୍ରବାଦ ଯଥେଷ୍ଟ ଅଟେ । ଖଳଃ ସର୍ଷପ ମାତ୍ରାଣି ପରଚ୍ଛିଦ୍ରାଣି ପଶ୍ୟତି । ଆତ୍ମନୋବେଲ୍ୱ ମାତ୍ରାଣି ପଶ୍ୟନ୍ନପି ନ ପଶ୍ୟତି । ବେଲପରି ଆପଣାର ଦୋଷ ଦିଶେ ନାହିଁ । ସୋରିଷପରି ପରଦୋଷ ବିରଳଭାବରେ ଦୃଶ୍ୟ ହୁଏ ।

ଭାଷାଦର୍ଶର ମୂଳ ଉଲ୍ଲେଖ କରି ଯେଉଁ ଅଯୌକ୍ତିକ ଯୁକ୍ତି ଦେଖାଇ ଅଛନ୍ତି ତହିଁର ପ୍ରତ୍ୟେକର ଅଯୌକ୍ତିକତା ପରେ ଦେଖାଇବୁଁ ଭୂମିକାକୁ ଲକ୍ଷ କରିବାରେ ପ୍ରବନ୍ଧ ଦୀର୍ଘ ବୋଧ ହେବାରୁ ଆଜ କ୍ଷାନ୍ତ ହେଲୁଁ । ଇତି

କଟକ — କ୍ରମଶଃ

୧୨।୪।୮୯ — ଦୀ, କ,

*ଅତିରିକ୍ତ, ୨୦।୪।୧୮୮୯*

## [ସାହିତ୍ୟ ନାମରେ ବାହାଦୁରୀ ]

ମହାଶୟ ।

ଶିକ୍ଷାବିସ୍ତାରର ସଙ୍ଗେ ସଙ୍ଗେ ଆଜିକାଲି ଶିକ୍ଷିତ ସମାଜରେ ଏକନୂତନ ସମ୍ପ୍ରଦାୟର ଲୋକ ଦେଖା ଦେଇଅଛନ୍ତି । ସେମାନେ ସାଧାରଣ ଲୋକଙ୍କ ଚକ୍ଷୁରେ ଧୂଳି ଦେଇ ଅପରର ଚିନ୍ତାପ୍ରସୂତ ଓ ଗବେଷଣାପୂର୍ଣ୍ଣ ପ୍ରବନ୍ଧମାନ କିଞ୍ଚିତ୍ ଯୋଗ ବିୟୋଗ ଓ ପରିବର୍ତ୍ତନପୂର୍ବକ ଭିନ୍ନଭାଷାରେ ପ୍ରକାଶ କରି ସାହିତ୍ୟସମାଜରେ ନାମ କିଣିବା ପାଇଁ ବ୍ୟସ୍ତ । ସେହି ପ୍ରବନ୍ଧ ସକଳ ସେମାନଙ୍କର ସ୍ୱସ୍ୱ ମସ୍ତିଷ୍କପ୍ରସୂତ ବୋଲି ସାଧାରଣଙ୍କ ମନରେ ବିଶ୍ୱାସ ଜନ୍ମାଇବାରେ ସେମାନେ ତ୍ରୁଟି କରୁ ନାହାନ୍ତି । ଆପଣଙ୍କ ପାଠକମାନଙ୍କୁ ବିଦିତ ଅଛି ଯେ କୌଣସି ଉତ୍କଳୀୟ ଶିକ୍ଷିତଲୋକ ସେକ୍ସପିୟରଙ୍କର ଗୋଟିଏ କବିତାର କିଞ୍ଚିତ୍ ରୂପାନ୍ତର କରି ତାହାକୁ ଓଡ଼ିଯାଭାଷାରେ "କେଦାରଗୌରୀ" ନାମରେ ପ୍ରକାଶ କରି ତାହା ପୌରାଣିକ ଉପାଖ୍ୟାନ ବୋଲି ଛଳନା କରିଥିବାରୁ ସଂବାଦପତ୍ରମାନଙ୍କରେ ବିନ୍ଧାବିନ୍ଧି ଲାଗିଥିଲା, କିନ୍ତୁ ସେ ରୋଗ ଅଦ୍ୟାପି ବିଦୂରିତ ହୋଇ ନାହିଁ ବରଂ ଶିଷ୍ୟମଣ୍ଡଳିରେ ତହିଁର ଅଧିକ ସଞ୍ଚାର ହେଉଅଛି ।

କେତେକମାସ ହେଲା "ଆଶା" ନାମକ ପତ୍ରିକାରେ "ମ୍ୟାଟ୍‌ସିନୀ" ଶିର୍ଷକ ଗୋଟିଏ ପ୍ରବନ୍ଧ ପ୍ରକାଶିତ ହେଉଥିଲା । ଗତସଂଖ୍ୟାକ ପତ୍ରିକାରେ ତାହା ଶେଷ ହୋଇଅଛି । ଉକ୍ତ ପ୍ରବନ୍ଧର ଭାଷାର ଲାଳିତ୍ୟ ଓ ଚାତୁର୍ଯ୍ୟ ଦେଖି

ଚତୁର୍ଦ୍ଦିଗରେ; ପ୍ରବନ୍ଧଲେଖକଙ୍କର ଜୟ ଜୟକାର ପଡ଼ି ଯାଇଅଛି ଓ କେହି କେହି ତାହାଙ୍କୁ ଓଡ଼ିଶାର "ଦେବୀପ୍ରସନ୍ନ" ବୋଲି କହିବାକୁ ଛାଡୁନାହାନ୍ତି କିନ୍ତୁ ବାସ୍ତବିକ କି ପ୍ରବନ୍ଧଟି ସେହି ଲେଖକଙ୍କର ମସ୍ତିଷ୍କପ୍ରସୂତ ? ପାଠକମାନେ ତତ୍ତ୍ୱାନୁସନ୍ଧାନ କଲେ ଗଳଦ୍ ଲୁଚି ରହିବ ନାହିଁ । କଷ୍ଟସ୍ୱୀକାରପୂର୍ବକ 'ନବ୍ୟଭାରତ' ସମ୍ପାଦକ ବାବୁ ଦେବୀପ୍ରସନ୍ନ ରାୟ ଚୌଧୁରୀଙ୍କ ପ୍ରଣୀତ ବଙ୍ଗଳା "ବିବେକବାଣୀ" ନାମକ ପୁସ୍ତକସ୍ଥ "କର୍ତ୍ତବ୍ୟନିଷ୍ଠ ପ୍ରେମାବତାର ବା ମ୍ୟାଟ୍‌ସିନୀ" ନାମକ ପ୍ରବନ୍ଧ ସହିତ ଆଶାରେ ପ୍ରକାଶିତ "ମ୍ୟାଟ୍‌ସିନୀ" ନାମକ ପ୍ରବନ୍ଧଟିକୁ ମିଳାଇ ଦେଖିଲେ ଜାଣି ପାରିବେ ଯେ ପ୍ରବନ୍ଧ ଦୁଇଟି ମଧ୍ୟରେ ଓଡ଼ିଆ ବଙ୍ଗଳାଭାଷା ଓ ସ୍ଥାନେ ସ୍ଥାନେ ଗଣିତଶାସ୍ତ୍ରାନୁଯାୟୀ କିଞ୍ଚିତ୍ ଯୋଗ ବିୟୋଗ ବ୍ୟତୀତ ଆଉ କିଛି ପ୍ରଭେଦ ନାହିଁ । କର୍ତ୍ତବ୍ୟନିଷ୍ଠ ମ୍ୟାଟ୍‌ସିନୀଙ୍କର ଜୀବନବୃତ୍ତାନ୍ତ ଲେଖିବାକୁ ଯାଇ "ଆଶା" ନିଜର କର୍ତ୍ତବ୍ୟପାଳନରେ କିପରି ସାଧୁତା ପ୍ରକାଶ କରିଅଛନ୍ତି ତାହା ଆମ୍ଭେମାନେ ଦେଖାଇ ଦେଲୁଁ--ଏହିପରି ଗଳଦ୍ ଆହୁରି ଅନେକ ଅଛି ।

ଗୋଟିଏ ଦୁର୍ବଳ ଭାଷାର ଉନ୍ନତି କରିବା ନିମନ୍ତେ ଭିନ୍ନ ଭିନ୍ନ ଭାଷାର ଗ୍ରନ୍ଥ ଅନୁବାଦ କରିବା ବା ଭିନ୍ନ ଭିନ୍ନ ଲେଖକଙ୍କର ଚିନ୍ତା ଗ୍ରହଣ କରି ପ୍ରବନ୍ଧାଦି ଲେଖିବା ଦୂଷଣୀୟ ନୁହେଁ କିନ୍ତୁ ନିଜର ବାହାଦୁରୀ ଦେଖାଇବା ନିମନ୍ତେ ଗୁପ୍ତ ଭାବରେ ତାହା କରିବା "ଚୌର୍ଯ୍ୟବୃତ୍ତି" ।। ଶିକ୍ଷିତ ଆଖ୍ୟାଭିଳାଷୀ ଲୋକମାନଙ୍କପକ୍ଷରେ ଏରୂପ ଦୁର୍ନୀତି ବଡ଼ କଳଙ୍କର ବିଷୟ । ଆଶାକରୁଁ ଭବିଷ୍ୟତ୍‌ରେ ଏହି କଳଙ୍କ ବିଦୂରିତ ହେବ ।

ବଶମ୍ୱଦ

ନାଛୋଡ଼ବନ୍ଧା

*ଅତିରିକ୍ତ, ୨୦/୪/୧୮୮୯*

## (ପୂର୍ବପ୍ରକାଶିତ ଉତ୍ତାରୁ)

ସମାଲୋଚନାରେ କେତେକ ମୂଳ ଉଦ୍ଧୃତ କରି ଯେଉଁ ଯୁକ୍ତି ଦେଖାଇଅଛନ୍ତି ତାହା ସମାଲୋଚକର ଅପୂର୍ବ ବିଶେଷବିଜ୍ଞତାର ପରିଚୟକ ହୋଇଅଛି ।

ମୂଳ--ଯାହା ପାଠ କଲେ ଉତ୍କଳଭାଷା ଶୁଦ୍ଧରୂପେ କହିବାକୁ ଓ ଲେଖିବାକୁ ଲୋକେ ସମର୍ଥ ହୁଅନ୍ତି ତାହାକୁ ଉତ୍କଳବ୍ୟାକରଣ ବୋଲାଯାଏ ।

ସମାଲୋଚକ ଯୁକ୍ତି--ଯାହା ଶାସ୍ତ୍ର କି ଗ୍ରନ୍ଥ, କି ପୁସ୍ତକ କିଛି ବିଶେଷ୍ୟରୂପରେ ନାହି ଆଉ ଆଜି କାଲି ଖବରକାଗଜ କେତେଗୁଡ଼ିଏ ପାଠ କଲେ ଲୋକମାନେ ଉତ୍କଳଭାଷା ଶୁଦ୍ଧରୂପେ କହିବାକୁ ଓ ଲେଖିବାକୁ ସମର୍ଥ ହୋଉଅଛନ୍ତି ଅତଏବ ଏହି ନିୟମାନୁସାରେ ଖବରକାଗଜକୁ ସୁଦ୍ଧା ବ୍ୟାକରଣ ବୋଲାଯାଇପାରେ ।

ଆହା ! କି ସୁନ୍ଦର ଯୁକ୍ତି, ଏପରି ସ୍ଥୂଳବୁଦ୍ଧି କିଏ "ଯାହା" ପଦରେ ଖବରକାଗଜପର୍ଯ୍ୟନ୍ତ ଅର୍ଥ ବୁଝିବ । ଗ୍ରନ୍ଥମାତ୍ରେ ପଠିତ ହେଲେ ଅବଶ୍ୟ ଜ୍ଞାନ ବୃଦ୍ଧି ହୁଏ କୌଣସିପ୍ରକାର ଜ୍ଞାନ ଯହିଁରେ ନ ହେବ ସେ ଗ୍ରନ୍ଥ ନୁହେ, ତେବେ ସମସ୍ତେ ବ୍ୟାକରଣ ହୋଇ ପାରନ୍ତି । ଏଠାରେ ଯତ୍ ଶବ୍ଦ ଦ୍ୱାରା ବିଶେଷ୍ୟ ସ୍ପଷ୍ଟ ହେଉଅଛି; ନିରର୍ଥକ ପୃଥକ୍ ବିଶେଷ୍ୟ ପଦ ଦେଇ ପଁକ୍ତି ବଢ଼ାଇବା ସ୍ଥୂଳବୁଦ୍ଧିର କାର୍ଯ୍ୟ ଅଟେ ।

୨ୟ--ମୂଳ । ଅଆ କଖ ପ୍ରଭୃତିକୁ ବର୍ଣ୍ଣ ବୋଲାଯାଏ ଇତ୍ୟାଦି ମୂଳ ଉପରେ ବର୍ଣ୍ଣର ଆକାର ପ୍ରତ୍ୟେକରେ ଲେଖା ନ ଥିବାର ଯେଉଁ ଯୁକ୍ତି ଦେଖାଇଅଛନ୍ତି ତାହା ଅକିଞ୍ଚିତ୍କର । ଅ, ଆ, ପ୍ରଭୃତି ବର୍ଣ୍ଣମାଳା ନ ପଢ଼ି କେହି ବ୍ୟାକରଣ ପଢ଼ିବାକୁ ଯିବ ନାହି; ସ୍ୱର ୧୩ ଓ ବ୍ୟଞ୍ଜନ ୩୬ ଏରୂପ ୪୯ ବର୍ଣ୍ଣ ଭେଦରେ କି ଦୋଷ ହେଲା । ଦୀର୍ଘ ଌକାର ପ୍ରୟୋଗର ଭାଷାରେ ଗୋଟିଏ ଉଦାହରଣ ଦେଖାଇଥିଲେ ଚତୁର୍ଦ୍ଦଶ ସ୍ୱର ବୋଲିବାର ଉଚିତ ହୁଅନ୍ତା ବ୍ୟବହାର ନ ଥାଇ କେବଳ ସଂଖ୍ୟା ଦେଖାଇବା ବୃଥା । ଆଶ୍ଚର୍ଯ୍ୟ ଭେଦରେ ବର୍ଣ୍ଣଭେଦ ଅନେକପ୍ରକାର ଅଛି--ସ୍ୱର ୧୪ କେହି ୧୬ ସ୍ୱର ସ୍ୱୀକାର କରନ୍ତି ଉପେନ୍ଦ୍ରଭଞ୍ଜ ଷୋଡ଼ଶସ୍ୱର ସ୍ୱୀକାର କରି ଚଉପଦୀଚନ୍ଦ୍ର ନାମରେ ଖଣ୍ଡିଏ ଗୀତକାବ୍ୟ ଲେଖିଅଛନ୍ତି; କେହି କେହି ହ୍ରସ୍ୱ ଦୀର୍ଘ ଓ ପ୍ଲୁତ ଭେଦରେ ୨୨ ଦ୍ୱାବିଂଶତି ସ୍ୱର ଉଲ୍ଲେଖ

କରିଅଛନ୍ତି, ଶାରଦାତିଳକ ପ୍ରଭୃତିରେ ସ୍ୱର ଓ ବ୍ୟଞ୍ଜନ ଉଭୟ ମିଶି ୬୩ ବା ୬୪ ପ୍ରକାର ବର୍ଣ୍ଣଭେଦ ଲିଖିତ ଅଛି; ଭାଷାଦର୍ଶରେ ୪୯ ବର୍ଣ୍ଣ ବ୍ୟବହାର ଅନୁସାରେ ଲିଖିତ ଥିବାର ଦୋଷ ବୋଲାଯାଇ ନ ପାରେ, କେବଳ ପୋଥି କିଣି କେହି ବିଦ୍ୱାନ୍ ହୁଅନ୍ତି ନାହିଁ; ଗୁରୁ ଉପଦେଶ ନିତାନ୍ତ ପ୍ରୟୋଜନୀୟ ।

୩ୟ । ମୁ--ସ୍ୱରଭେଦ ଦୁଇପ୍ରକାର ହ୍ରସ୍ୱ ଓ ଦୀର୍ଘ, ଅ ଇ ଉ ଋ ଌ ଏହି ପାଞ୍ଚଟି ହ୍ରସ୍ୱ ଆଉମାନେ 'ଦୀର୍ଘ' ଅଟନ୍ତି, ଏଥିରେ ପିଲାମାନେ ଜାଣିବେ ଯେ ଆ ଈ ଊ ୠ ୡ ଏ ଐ ଓ ଔ ୯ ଟି ଦୀର୍ଘସ୍ୱର ।

କି ଅନ୍ଧ ପରଂପରା ! ଦୀର୍ଘ ୡକାର ପରିତ୍ୟକ୍ତ ହୋଇ ଯେତେବେଳେ ସ୍ୱର ସଂଖ୍ୟା ୧୩ ହୋଇଅଛି ତହିଁରୁ ୫ ହ୍ରସ୍ୱ ଗଲେ ଆଉ ୮ ନ ହୋଇ ୯ କିପରି ହେଲା ତାହା ବୁଝାଯାଉ ନାହି ।

୪ର୍ଥରେ । ବ୍ୟଞ୍ଜନବର୍ଣ୍ଣ ଉଲ୍ଲେଖ କରି ଯେଉଁ ଯୁକ୍ତି ଦେଖାଇଅଛନ୍ତି ତାହା ପାଠ କରି କିଏ ହାସ୍ୟ ସମ୍ବରଣ କରି ପାରିବ; ୪୯ କି ୪୮ ପଢ଼ିଂସେ ପ୍ରଥମ ହରବରରେ ପଡି ତାହାକୁ ଦୁଇବାରରେ ଦେଖାଇ ଅଛନ୍ତି । ( ୍ ) ଚିହ୍ନଦ୍ୱାରା ବ୍ୟଞ୍ଜନ ଚିହ୍ନିତ ହୁଏ ପୂର୍ବେ ବା ପରେ ସ୍ୱର ନ ଥିଲେ ବ୍ୟଞ୍ଜନ ଉଚ୍ଚାରିତ ହୋଇ ନ ପାରେ । ଏଥିରେ କମଳ ଓ ଗମନ ଏହି ଦୁଇଶବ୍ଦ ଦେଖାଇ ଏଥିରେ ( ୍ ) ଏହି ଚିହ୍ନ ନ ଦେବାର ଭୁଲ ଦେଖାଇ ଅଛନ୍ତି; ସତ, ଏହା ସମ୍ପୂର୍ଣ୍ଣ ଭୁଲ ହୋଇଅଛି କିନ୍ତୁ ଟିକିଏ ଅନୁଧାବନ କରି ଦେଖା ଉଚିତ ଯେ ଉକ୍ତ ଶବ୍ଦ ସସ୍ୱର ବ୍ୟଞ୍ଜନ ନା କେବଳ ବ୍ୟଞ୍ଜନ; ସ୍ୱରବର୍ଣ୍ଣପ୍ରକରଣରେ ଯେତେବେଳେ ଲେଖାଅଛି ସ୍ୱରବର୍ଣ୍ଣମାନେ ଅନ୍ୟ ବର୍ଣ୍ଣର ସାହାଯ୍ୟ ନ ନେଇ ଉଚ୍ଚାରିତ ହୁଅନ୍ତି ତେବେ ବ୍ୟଞ୍ଜନ ସ୍ୱର ସାହାଯ୍ୟ ଭିନ୍ନ ଉଚ୍ଚାରିତ ହେବାର କେଉଁଠାରୁ ଆସିଲା; ବାକ୍, ତତ୍ ନିର ଇତ୍ୟାଦିର ଶେଷବର୍ଣ୍ଣ ଉଚ୍ଚାରଣରେ ପୂର୍ବବର୍ତ୍ତ ସ୍ୱର ପ୍ରଧାନ ସହାୟ ଅଟେ । (କ୍) (ତ୍) (ର୍) ଏହାକୁ କେବଳ ସ୍ୱତନ୍ତ୍ର ରୂପରେ ଉଚ୍ଚାରଣ କରି ଦେଖାଇବା ସମାଲୋଚକର କାର୍ଯ୍ୟ ଅଟେ ।

୫ମ । ସନ୍ଧିସୂତ୍ର ଉଲ୍ଲେଖ କରି ଯୁକ୍ତି ଦେଖାଇ ଅଛନ୍ତି ଯେ ସମାନ ସ୍ୱର ଦୀର୍ଘ ହୋଇ ପରବର୍ଣ୍ଣରେ ଯୋଗ ହେଲେ ଜନାନ୍ତିକ--ଗୃହାଗତ ନ ହୋଇ ଜନାନ୍ତ୍ୟାକ, ଗୃହଘାତ ଇତ୍ୟାଦି ହୋଇଯିବ ।

ପୂର୍ବବର୍ଣ୍ଣକୁ ପରବର୍ଣ୍ଣ ପଢ଼ି ଏପରି ହରବରରେ ପଡ଼ିଅଛନ୍ତି ବ୍ୟାକରଣ ଟିକିଏ ମାତ୍ର ଗନ୍ଧ ଆଘ୍ରାଣ କରିଥିଲେ କେହି ଏପରି ଯୁକ୍ତି ଦେଖାଇବାକୁ ସାହସ କରନ୍ତା ନାହି ।

୬ । ନୟନ ଓ ସୂଚ୍ୟଗ୍ର ଏହି ଦୁଇପଦ ସାଧନର ମୂଳସୂତ୍ର ଉଲ୍ଲେଖ କରି ଯୁକ୍ତି ଦେଖାଇ ଅଛନ୍ତି ଯେ ସନ୍ଧିଜାତ ବର୍ଣ୍ଣ କେଉଁଠାରେ ଯୁକ୍ତ ହେବ ତାହା ପ୍ରକାଶ ନ ଥିବାରୁ ବାଳକମାନେ (ନୟନା) ଓ (ଶୂଚ୍ୟଗ୍ରା) ଏହିପରି ପଦ ସିଦ୍ଧ କରିଦେବେ ।

ପ୍ରଚଳିତ ସିଦ୍ଧ ପଦର ବ୍ୟବହାରଦ୍ୱାରା ତାହା ସ୍ପଷ୍ଟ ହେଲା ନାହି ପରା; ଏପରି ଯୁକ୍ତି କି ପ୍ରକୃତ ଯୁକ୍ତି ଅଟେ ? ପାଠକମାନେ ତାହା ହୃଦୟଙ୍ଗମ କରିପାରିବେ ।

୭ମ । ଉତ୍କଳଭାଷାରେ ସନ୍ଧିର ତାଦୃଶ ଆବଶ୍ୟକତା ନାହି; ଇତ୍ୟାଦିକୁ ଉଲ୍ଲେଖ କରି ଅୟି ଅମୃତ ଭାଷିଣି । ହେ ଈଶ୍ୱର । ଇତ୍ୟାଦିସ୍ଥଳରେ ସନ୍ଧିସୂତ୍ରାନୁସାରେ ସନ୍ଧି ନିଷେଧ ଲିଖିତ ଥିବାର ଦେଖାଇଅଛନ୍ତି ।

କି ମୂଢ଼ତାର କାର୍ଯ୍ୟ । ଭାଷାପ୍ରଚଳିତ କେତେକ ସଂସ୍କୃତ ଶବ୍ଦରେ ସନ୍ଧିର ଆବଶ୍ୟକତା ଉଲ୍ଲେଖ ହୋଇଅଛି, ତାହା ହେଲେ ସମାଲୋଚକଙ୍କ ମତରେ ଉକ୍ତ ଉଦ୍ଧୃତ ଦୁଇପଦ କି ଉତ୍କଳଭାଷା ! ! ! ଏତାଦୃଶ ଭାଷା ଜ୍ଞାନକୁ ଧନ୍ୟବାଦ ।

୮ ଓ ୯ମରେ ବ୍ୟଞ୍ଜନସନ୍ଧିରେ ନ ଓ ମ ସ୍ଥଳରେ ଂ ଅନୁସ୍ୱାର ନ ହେବା ବିଧିକି ଲକ୍ଷ କରି ଦେଖାଇଥିବା ଯୁକ୍ତିରେ ଦେଖା ଯାଉଅଛି ଯେ ଅପଦାନ୍ତରେ ଶାନ୍ତ ଗନ୍ତବ୍ୟ ପଦାନ୍ତରେ ଶଙ୍କର ସରମ୍ଭ ଇତ୍ୟାଦିରେ ସୁବୋଧ ସୂତ୍ରକୁ ଜଟିଳ ଉଲ୍ଲେଖ କରି ସର୍ବସାରର ଆଶ୍ରୟ ଉପଦେଶ ଦେଇଅଛନ୍ତି; ଏଥିରେ ଏକ ଏକ ବିଷୟ ନେଇ ଏକ ଏକ କ୍ଷୁଦ୍ର ସୂତ୍ର ହୋଇଅଛି ଏହା ବାଳକମାନଙ୍କପକ୍ଷରେ ଅତି ସୁବୋଧ ହୋଇଅଛି; କେତେକ ସୂତ୍ରରେ ସନ୍ଧିଜାତ ବର୍ଣ୍ଣର ଯୋଗ ବିଷୟ ଉଲ୍ଲେଖ ହୋଇ ନାହିଁ ବୋଲି ଏହା କୌଣସି ଅଂଶରେ ତାହାଠାରୁ ନ୍ୟୂନ ନୁହେଁ; ସୁନା ଏକମହଣ ଯେତେସ୍ଥାନ ଅଧିକାର କରିବ ତୁଳା ଏକମହଣ ତାହାଠାରୁ ଅଧିକସ୍ଥାନ ଆକ୍ରମଣ କରିପାରେ ।

୧୦--ତକ୍ରାଳ ଓ ତତ୍‌ଫଳ ଇତ୍ୟାଦିସ୍ଥଳରେ ଦ-ସ୍ଥାନରେ ତ-ହେବାର ସୂତ୍ର ଲେଖା ନ ଥିବାର ଏବଂ ଅନାବଶ୍ୟକ ସୂତ୍ର କେତେକ ଥିବାର ଯୁକ୍ତି ଦେଖାଇଅଛନ୍ତି; ଏଥିରେ ଅନାବଶ୍ୟକ ସୂତ୍ର ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ; ଷତ୍ୱ ଣତ୍ୱ ପ୍ରକରଣରେ ଯାହା ଉଲ୍ଲେଖ ହୋଇଅଛି ତାହା ସଂସ୍କୃତ ରୀତିମୂଳକ ଅଟେ । ବ୍ୟାକରଣ ଲେଖିବାକୁ ଗଲେ ସ୍ଥଳେ ସ୍ଥଳେ ସଂସ୍କୃତରୀତି ଉପେକ୍ଷିତ ହୋଇ ନ ପାରେ ।

୧୧--ଶବ୍ଦପ୍ରକରଣ ପ୍ରାରମ୍ଭରେ ପ୍ରକୃତି ପ୍ରତ୍ୟୟର ସଂଜ୍ଞା ଉଲ୍ଲେଖ କରି ସ୍ୱୟଂ ବୁଝି ନ ପାରି ଭୁଲ ଦେଖାଇଅଛନ୍ତି; କ୍ରିୟା ବିଶେଷଣରେ କୌଣସି ପ୍ରତ୍ୟୟ ଯୋଗ ହୋଇ ନ ପାରିବାର କହିଅଛନ୍ତି; କ୍ରିୟାବିଶେଷଣରେ ଅବଶ୍ୟ ବିଭକ୍ତି ଯୋଗ ହୁଏ, ତାହା ନ ହେଲେ ପଦ ହୋଇ ନ ପାରେ, ଅପଦର କୌଣସିଠାରେ ପ୍ରୟୋଗ ହୋଇ ନ ପାରେ, ଆହା ! ! ! କି ସୂକ୍ଷ୍ମବୁଦ୍ଧି ବିଶେଷଣଗତ ବିଭକ୍ତିର ଗତାର୍ଥତା ଅବଶ୍ୟ ସ୍ୱୀକାର କରିବାକୁ ହେବ ଅନ୍ୟଥା ସଂସ୍କୃତରେ ଦଧି ଓ ଅସ୍ଥି ଶୀଘ୍ରଂ ଏଥିରେ କି ଉକ୍ତି ଯୋଗ ହୋଇ ନାହିଁ ଏହା କେଉଁ ମୂର୍ଖ ସ୍ୱୀକାର କରିବ । ସ୍ତ୍ରୀ ପ୍ରତ୍ୟୟର ପୃଥକ୍ ପ୍ରକରଣ ଏହା କାହିଁକି ତଦ୍ଧିତର ଅନ୍ତର୍ଭୂତ ହେବ, କୌଣସି ଭାଷା ବା ସଂସ୍କୃତ ବ୍ୟାକରଣରେ ସ୍ତ୍ରୀ ପ୍ରତ୍ୟୟ ତଦ୍ଧିତ ଅନ୍ତର୍ଗତ ହୋଇ ନାହିଁ; ସଂସ୍କୃତରେ ଅବ୍ୟୟ ଓ ସ୍ତ୍ରୀ ପ୍ରତ୍ୟୟ ପୃଥକ୍ ପୃଥକ୍ ପ୍ରକରଣରେ ଲିଖିତ ଅଛି । ପ୍ରତ୍ୟୟ ଯେ ପାଞ୍ଚଭାଗରେ ବିଭକ୍ତ ହେବାର ମୂଳରେ ଅଛି ଏଥିରେ କି ଦୋଷ ହେଲା ?

ପ୍ରକୃତି ଓ ପ୍ରତ୍ୟୟ ଶିକ୍ଷା ଅନାବଶ୍ୟକ ବୋଲି ଯେଉଁମାନଙ୍କର ମତ ସେମାନଙ୍କର ବ୍ୟାକରଣ ଜ୍ଞାନ କେତେଦୂର ତାହା ପାଠକମାନେ ଜାଣି ପାରିବେ ।

୧୨--ବିଶେଷ୍ୟର ସୂତ୍ର ଉଲ୍ଲେଖ ହୋଇ ମୂଳରେ ମୃଦୁତା ଅଛି; ଏ ଶୁଦ୍ଧ କରି ଦୃଦୁତା ସ୍ଥଳରେ ଦୁହିତା ଲେଖିଅଛନ୍ତି ଏ କାହାର ଭୁଲ ତାହା ପାଠକେ ଜାଣିବେ, ମୃଦୁତା ଓ ଗମନ ଏ ଦୁଇଗୋଟି ପଦ ସମାଲୋଚକଙ୍କ ମତରେ ବିଶେଷ୍ୟ ନୁହେଁ ପିଲାମାନେ ଏହାକୁ ବିଶେଷ୍ୟରୂପରେ ଶିକ୍ଷା କଲେ ବଡ଼ ଭୁଲ ଶିକ୍ଷା ହେବାର ଦେଖାଇଅଛନ୍ତି । ଗୁଣବାଚକ ଓ କ୍ରିୟାବାଚକ ବିଶେଷ୍ୟ ଘେନି ଯେଉଁ ଉଦାହରଣସହିତ ଯୁକ୍ତି ଦେଖାଇ ଅଛନ୍ତି ତାହା କେବଳ କଣ୍ଟାବାଡ଼ରେ ଲୁଗା ପକାଇ କଳି କରିବାର କଥା ମାତ୍ର; ଅତଏବ ତାହା ଉପେକ୍ଷିତ ।

୧୩--ଲିଙ୍ଗପ୍ରକରଣରେ ମୂଳରେ ପୁରୁଷ ସ୍ତ୍ରୀ ପ୍ରଭୃତିର ଭେଦବୋଧକ ଚିହ୍ନକୁ ଲିଙ୍ଗ ବୋଲଯାଏ ଏହିପରି ସୂତ୍ର ଲେଖାଅଛି ।

ସମାଲୋଚକ ଲିଙ୍ଗମୂଳରେ ଦୃଷ୍ଟି ନ କରି ଅଗ୍ରକୁ ଦେଖି ନିଜର ଭ୍ରମାତ୍ମକ ଯୁକ୍ତି ଦେଖାଇଅଛନ୍ତି; ମୂଳସୂତ୍ରକୁ ବିଶଦରୂପରେ ଯାହା ବୁଝାଇ ଦିଆ ହୋଇଅଛି, "ତହିଁରୁ ଜାତିକୁ ବୁଝାଇଲେ କେବଳ ବିଶେଷ୍ୟ ପଦ ପୁଂଲିଙ୍ଗ ଓ ସ୍ତ୍ରୀ ଲିଙ୍ଗ ହେବ । (ଲତା ଏକ ସ୍ତ୍ରୀଜାତିକୁ ବୁଝାଉଅଛି ଉଦ୍‌ଭିଦ ମାତ୍ର ତେବେ ଏ କ୍ଲୀବ ଲିଙ୍ଗ ହେବ ପରା)" ଇତ୍ୟାଦି ଯାହା ଯୁକ୍ତି ଦେଖାଇଅଛନ୍ତି ତାହା ନିତାନ୍ତ ଅସାର ଓ ଯୁକ୍ତି ବହିର୍ଭୂତ ଅଟେ, ଏପରି ଯୁକ୍ତି କେଉଁଠାରୁ ପାଇଲେ । ଅଥଚ ଲିଙ୍ଗକୁ ଭଲରୂପେ ଆଦ୍ୟନ୍ତ ଦେଖି ସର୍ବସାରରୁ କେତେକ ଅପହୃତ ବୋଲି ଲେଖିଅଛନ୍ତି; ସର୍ବସାରରୁ ଏଥିରେ କିଛି ମାତ୍ର ଥିବାର ଦେଖାଯାଏ ନାହିଁ । ଏକ ବ୍ୟାକରଣରେ ଯେ ଯେଉଁ ଲିଙ୍ଗ ବୋଲି ବ୍ୟକ୍ତ ହୋଇଅଛି ବ୍ୟାକରଣାନ୍ତରରେ ସେ ଅନ୍ୟ ଲିଙ୍ଗ କିପରି ହେବ ଏବଂ ବ୍ୟାକରଣ ଅନୁକରଣ ବା ଅପହୃତ ବୋଲାଯାଇ ନ ପାରେ ।

୧୪--ପୁରୁଷ ପ୍ରକରଣରେ ଯୁକ୍ତି ଯଥା--ଆମ୍ଭେ, ତୁମ୍ଭେ, ସେ ଏମାନଙ୍କର ଆକାରଗତ ଓ ଅର୍ଥଗତ ଭେଦ ଜନ୍ମରୁ ଅଛି ପୁରୁଷ ସଂଜ୍ଞାରେ କଣ ପ୍ରଭେଦ ଜଣାଗଲା ପୁରୁଷ ସଂଜ୍ଞାରେ କେବଳ କ୍ରିୟାର ପ୍ରଭେଦ ଜଣାଯାଏ; ଅତଏବ ଏ ସୂତ୍ର ନିତାନ୍ତ ଅସଂଗତ ଓ ମନଗଢ଼ା ।

ପୁରୁଷର ବିଶେଷବିଧି କ୍ରିୟା ପ୍ରକରଣରେ ସ୍ପଷ୍ଟ ହୋଇଅଛି । ଆମ୍ଭେ ତୁମ୍ଭେ ସେ ଏମାନଙ୍କର ବିଭିନ୍ନତା ନ ଥିବାର କିଏ କହୁଅଛି, ଭାଷାର ବ୍ୟବହାର ଅନୁସାରେ ଅସ୍ମଦ, ଯୁଷ୍ମଦ ନ ଲେଖି ଆମ୍ଭେ ତୁମ୍ଭେ ଲେଖିଲେ କଣ ଦୋଷ ହେଲା ? ବୁଝାଯାଉ ନାହିଁ; ବ୍ୟବହାର ବୈପରୀତ୍ୟ ହେଲେ ମନଗଢ଼ା ହୁଏ, ଏଥିରେତ ତାହା କିଛି ହୋଇ ନାହିଁ; ତେବେ ଏହା ସମାଲୋଚକଙ୍କର ମନଗଢ଼ା,ଗ୍ରନ୍ଥକର୍ତ୍ତାର ନୁହେଁ ।

୧୫--କାରକ-ମୂଳସୂତ୍ରରେ କାରକ ୫ପ୍ରକାର ଓ କାରକ ବିଭକ୍ତ ୭ପ୍ରକାର ଚତୁର୍ଥୀ କାରକ ପରିତ୍ୟକ୍ତ ଇତ୍ୟାଦି ବିଷୟ ଘେନି ଦେଖାଇଥିବା ଯୁକ୍ତିରୁ ସ୍ପଷ୍ଟ ପ୍ରକାଶ ଯେ ଉକ୍ତବିଷୟ ସମସ୍ତ ମୂଳରେ ପ୍ରକାଶରୂପରେ ବର୍ଣ୍ଣିତ ହୋଇଅଛି । ଦ୍ୱିତୀୟା. ଓ ଚତୁର୍ଥୀର ଭାଷା ବିଭକ୍ତିଗତ ବିଭିନ୍ନତା ନ ଥିବାରୁ ଦ୍ୱିତୀୟାମଧ୍ୟରେ ଚତୁର୍ଥୀ ଅନ୍ତର୍ଭୁତ ହୋଇଅଛି; ରୁଚ ଓ ଦାଧାତୁ ଦ୍ୱିକର୍ମକ ନୋହି ଥିବାରୁ ଆକ୍ଷେପମଧ୍ୟ ଦେଖାଇଅଛନ୍ତି । ଭାଷାରେ ପ୍ରଯୋଜକ ବା ସଂପ୍ରଦାନସ୍ଥଳରେ ଦ୍ୱିକର୍ମକତା ସହଜରେ ବାଳକମାନେ ବୁଝିପାରିବେ, ଉକ୍ତ ଅନୁକ୍ତ କର୍ମର ବିଷୟ ସଂକ୍ଷେପରେ ଏ ଗ୍ରନ୍ଥରେ ବର୍ଣ୍ଣିତ ଅଛି, ସମ୍ବନ୍ଧ ମଧ୍ୟ ବିବେଚିତ ହୋଇଅଛି । "ହରିଙ୍କି ଭାତ ରୁଚୁ ନାହିଁ" ଏଠାରେ ହରି କର୍ମପଦ ବୁଝିଲେ କି କ୍ଷତି ହେଲା, ନିଜେ ନ ବୁଝି ପାରି ପରକୁ ଡିଆରିବା ଇତରଲୋକର କାର୍ଯ୍ୟ; ଭାଷା ନ ଜାଣି ପ୍ରକାଶକ ହେବା ଅନୁଚିତ ।

୧୬--କାରକ ପ୍ରକରଣରେ "କ୍ରିୟା ସାଧନକାରୀର ନାମ କର୍ତ୍ତା ସେ ଦୁଇପ୍ରକାର ପ୍ରଧାନ ଓ ପ୍ରଯୋଜକ । ଏହାକୁ ଲକ୍ଷକରି ରାମ ବୃକ୍ଷ କାଟୁଅଛି, ଗୋପାଳ ରାମଦ୍ୱାରା ବୃକ୍ଷ କଟାଉଅଛି ଓ ବଢାଇ ଘର କରୁଅଛି । ଏଥିରେ ଗୋପାଳ ଦ୍ୱାରା ବଢ଼ାଇ ଦ୍ୱାରା ସ୍ପଷ୍ଟ ଲେଖି କ୍ରିୟା ସାଧନକାରିତ୍ୱ କାହାରିଠାରେ ସ୍ଥିରକରି ନ ପାରି ଭ୍ରମରେ ପଡ଼ିଅଛନ୍ତି, ରାମର କ୍ରିୟା ସାଧନକାରିତ୍ୱ ପକ୍ଷରେ କେହି ସଂଦିଗ୍ଧହୋଇ ପାରିବେ ନାହିଁ; "ଦ୍ୱାରା" ତାହା ସ୍ପଷ୍ଟକରି ଦେଉଅଛି "କ୍ରିୟା ମୁଖ୍ୟପ୍ରଯୋଜକୌ କର୍ତ୍ତା" ଏ ସୂତ୍ର ଆଜି ପ୍ରଧାନ ବ୍ୟାକରଣରୁ ଉଠାଇଦେବା ପରା ?

୧୭--କର୍ମକାରକରେ ମଧ୍ୟ "କ୍ରିୟାର ବ୍ୟାପ୍ୟ ଅର୍ଥାତ୍ ଯେ ବସ୍ତୁ ଅବଲମ୍ବନ କରି କ୍ରିୟାର କାର୍ଯ୍ୟ ଘଟନା ହୁଏ ତାହାକୁ କର୍ମ ବୋଲାଯାଏ । ଏହି ସୂତ୍ର ପ୍ରତିବାଦରେ ଗୋପାଳ ଶୋଇଲେ ଶତ୍ରୁ ମଲା, ଏଠାରେ ଶୋଇଲା ମଲା କ୍ରିୟାର କାର୍ଯ୍ୟ ଗୋପାଳ ଓ ଶତ୍ରୁକୁ ଅବଲମ୍ବନ କଲା କି ନାହିଁ; ଦେଖନ୍ତୁ ତେବେ ଗୋପାଳ ଓ ଶତ୍ରୁର କର୍ମ ସଂଜ୍ଞାତ ହେବ ସେ କର୍ତ୍ତା କିପରି ହେବ ?"

ଏ ବଡ଼ ସୁନ୍ଦର ଯୁକ୍ତି କ୍ରିୟା ପ୍ରକରଣରେ ଅକର୍ମକ ସକର୍ମକ ସ୍ଥଳରେ (୩୯) ପୃଷ୍ଠାରେ ଏହା ସୁସ୍ପଷ୍ଟ ହୋଇଅଛି; ଉକ୍ତ ଯୁକ୍ତି ଗତ ଦୁଇ ଉଦାହରଣର କ୍ରିୟା ଦୁଇଟୀ ସମାଲୋଚକଙ୍କ ମତରେ ସକର୍ମକ ଥିବାର ବ୍ୟକ୍ତ ହୋଇଅଛି ଧନ୍ୟ ବ୍ୟାକରଣ ଜ୍ଞାନ । ନାଶିଲେ ଡିଆରିଲେ ଏ ଦୁଇଟୀର ଅସୁନ୍ଦରତା କଣ ? ଭାଷାରେ ଏପ୍ରକାର ପ୍ରୟୋଗ କି ଦୂଷଣୀୟ ? ଏହା ଭାଷାବିତ୍ ମାତ୍ରେ ଜାଣନ୍ତି । କୌଣସି ବ୍ୟାକରଣରେ ବିଶେଷ୍ୟ ପ୍ରକରଣରେ "ଗେରସ୍ତ" ଶବ୍ଦ ଉଦାହରଣ ଦିଆ ହୋଇଅଛି ସେପରି ଶବ୍ଦ ଦେଇଥିଲେ ଭଲ ହୋଇଥାନ୍ତା ?

୧୮--ଅପାଦାନ କାରକର ସୂତ୍ର ଉଲ୍ଲେଖ କରି, ସୂତ୍ରର କେତେକ ଅସଂପୂର୍ଣ୍ଣତା ଦେଖାଇ ଅଛନ୍ତି; ଅର୍ଥବିଶେଷରେ ବିଶେଷ ବିଶେଷ କାରକ ହେବାର ସୂତ୍ର ଏବଂ ବାକ୍ୟବିନ୍ୟାସର ପ୍ରକରଣ ନ ଥିବାର ଯେ ଆକ୍ଷେପ ଦେଖାଇ ଅଛନ୍ତି ତାହା ଅକିଞ୍ଚିତ୍କର ।

କାରକମାନଙ୍କର ବିଶେଷ ବିଶେଷ ଅର୍ଥରେ ପ୍ରୟୋଗ ସଂକ୍ଷେପରେ ଏଥିରେ ସୂଚିତ ଅଛି, ନିରର୍ଥକ ସୂତ୍ର ବାହୁଲ୍ୟରେ ଗ୍ରନ୍ଥର କଳେବର ବୃଦ୍ଧିକରା ଏ ଗ୍ରନ୍ଥର ଉଦ୍ଦେଶ୍ୟ ନୁହେ, ଯାହା ସହଜରେ ବେଦ୍ୟ ତନ୍ନିମିତ୍ତ ଜଟିଳସୂତ୍ରର ଆବଶ୍ୟକତା ନାହିଁ । ପରିଶିଷ୍ଟରେ ଏଥିରେ ବାକ୍ୟବିନ୍ୟାସର ବିଷୟ ସଂକ୍ଷେପରେ ଲିଖିତ । ରଚନାଶିକ୍ଷା ନିମିତ୍ତ ଉତ୍କଳରଚନା ନାମରେ ଖଣ୍ଡିଏ ପୁସ୍ତକ ସ୍କୁଲମାନଙ୍କରେ ପ୍ରଚଳିତ ହେଉଅଛି । ତଦ୍ୱିଷୟ ନେଇ ନିରର୍ଥକ ଗ୍ରନ୍ଥବୃଦ୍ଧି ଅନାବଶ୍ୟକ ବିବେଚିତ ହେବାରୁ ତାହାର ବାହୁଲ୍ୟ ଉପେକ୍ଷିତ ହୋଇଅଛି ।

ପରେ ସର୍ବସାରବ୍ୟାକରଣର ସମାଲୋଚନାରେ ପ୍ରବୃତ୍ତ ହେବାର ମାନସ ରହିଲା । ଇତି ।

୨୨।୪।୮୯ ଶ୍ରୀ ଦୀ--କ

*ଅତିରିକ୍ତ, ୨୦।୪।୧୮୮୯*

## ପଦ୍ମମାଳୀ ।

ଓଡିୟାଭାଷାରେ ଉପନ୍ୟାସ ନ ଥିଲା । ଉମେଶ ବାବୁ ଏହିମାର୍ଗରେ ସର୍ବପ୍ରଥମ ପଥିକ ହୋଇଥିବାରୁ ଆମ୍ଭେମାନେ ଆଦରର ସହିତ ତାହାଙ୍କ ରଚିତ ପୁସ୍ତକକୁ ଅଭିନନ୍ଦନ କରୁଅଛୁଁ ।

ଏ ପୁସ୍ତକର ନାମ ପଦ୍ମମାଳୀ । ନୀଳଗିରିର ବର୍ତ୍ତମାନ ରାଜାଙ୍କର ଅପ୍ରାପ୍ତ ବ୍ୟବହାର ଅବସ୍ଥାରେ ସେହି ରାଜ୍ୟର ଜଣେ ପ୍ରଧାନ ପାତ୍ର ଗୋଟିଏ ଭଦ୍ରପରିବାର ପ୍ରତି ଘୋରତର ଅତ୍ୟାଚାର କରିଥିଲେ, ସେହି ଘଟନା ଅବଲମ୍ବନ କରି ପଦ୍ମମାଳୀ ରଚିତ ହୋଇଅଛି ।

ଐତିହାସିକ ଉପନ୍ୟାସରେ ଲେଖକଙ୍କର କଳ୍ପନା ନିରଙ୍କୁଶ ହୋଇ ଚାଲିପାରେ ନାହିଁ । ଲେଖକ ବାଧ୍ୟ ହୋଇ ଐତିହାସିକ ସତ୍ୟଦ୍ୱାରା କଳ୍ପନାର ଗତିକୁ ସୀମାବଦ୍ଧ କରନ୍ତି । ପଦ୍ମମାଳୀରେ ତାହା ଅବଶ୍ୟ ହୋଇଅଛି । ତଥାଚ ଉଚିତ ସୀମା ମଧ୍ୟରେ ରହି ଗ୍ରନ୍ଥକାର ଏକ ଏକସ୍ଥାନରେ କଳ୍ପନାର ସମ୍ୟକ୍ ସ୍ଫୂର୍ତ୍ତି ଦେଖାଇ ଅଛନ୍ତି ।

ଗ୍ରନ୍ଥକାରଙ୍କର ବର୍ଣ୍ଣନାଛଟା ମଧ ସ୍ଥଳବିଶେଷରେ ପ୍ରଶଂସନୀୟ ହୋଇଅଛି । ମାଣତ୍ରୀର ଜାଗର ଯାତ୍ରା, ପଦ୍ମମାଳୀର ରୂପବର୍ଣ୍ଣନ, ପାଞ୍ଚ ଗଡ଼ରେ ଗ୍ରାମ୍ୟଲୋକମାନଙ୍କ ମଧ୍ୟରେ ପଦ୍ମମାଳୀର ଅପହରଣ ସମ୍ବନ୍ଧରେ କଥାବାର୍ତ୍ତା, କପଟିପଦା ରାଜବାଟୀରେ କାର୍ଯ୍ୟାର୍ଥୀ ଏବଂ ବ୍ୟବହାରାର୍ଥିମାନଙ୍କର ସମାବେଶ ପ୍ରଭୃତି ବିଷୟମାନଙ୍କରେ ଗ୍ରନ୍ଥକାର ଆଶାନୁରୂପ ଅଭିଜ୍ଞତା ଏବଂ କୌଶଳ ଦେଖାଇ ଅଛନ୍ତି ଏହା ପ୍ରତ୍ୟେକ ପାଠକ ସ୍ୱୀକାର କରିବେ । ଗ୍ରନ୍ଥକାର ସ୍ୱୟଂ ଗଡ଼ଜାତରେ ଭ୍ରମଣ କରିଥିବାରୁ ଏବଂ ବର୍ତ୍ତମାନ ଗଡ଼ଜାତରେ ଅବସ୍ଥାନ କରୁଥିବାରୁ ଗଡ଼ଜାତୀ ରୀତିନୀତିରେ ସମ୍ୟକ୍ ଅଭିଜ୍ଞତା ଲାଭ କରି ଅଛନ୍ତି ଏବଂ ସେହି ଅଭିଜ୍ଞତା ନିଜ ରଚିତ ଗ୍ରନ୍ଥରେ ପ୍ରତିଫଳିତ କରିବା ବିଷୟରେ କିୟତ୍ପରିମାଣରେ କୃତକାର୍ଯ୍ୟ ମଧ୍ୟ ହୋଇ ଅଛନ୍ତି ।

ଗୁଣର କଥା କହି ଦୋଷର ଉଲ୍ଲେଖ କରିବୁଁ । ଗ୍ରନ୍ଥରେ କେତେଗୁଡ଼ିଏ ଏମନ୍ତ ଦୋଷ ଅଛି ଯାହା ସେଥିର ଉତ୍କର୍ଷର ବିଶେଷ ବିରୋଧୀ ହୋଇଅଛି । ସର୍ବାଦୌ ଭାଷାଗତ ଦୋଷ--ଏଦୋଷ ଏଗ୍ରନ୍ଥର ଏକ ଏକ ସ୍ଥଳରେ ଏତେ ଅଧିକ ଯେ ସେହି ସେହି ଅଂଶର ଭାଷାକୁ ଓଡିୟା ନ କହି ଅପଭ୍ରଷ୍ଟ ବଙ୍ଗଳା ବୋଲାଯାଇ ପାରେ ।

୨ୟ ରୁଚିଗତଦୋଷ । ଏଦୋଷ ପୁସ୍ତକର ଅଧିକାଂଶ ପରିଚ୍ଛେଦରେ ସୁଲଭ । ସର୍ବୋପରି ନାୟକ ନାୟିକାର ପ୍ରଥମମିଳନ ଏବଂ ଅନୁରାଗ ସଂଚାରର ବର୍ଣ୍ଣନା ଗ୍ରନ୍ଥକାରଙ୍କର ସୁରୁଚିର ସମୁଚିତ ହୋଇ ନାହିଁ । ଏ ଅଂଶରେ ସମ୍ଭବପରତା ଏବଂ ଅବଳାସୁଲଭଶାଳୀନତାକୁ ପଦଦଳିତ କରି ଯେତେ ଯାହା ମନକୁ ଆସିଅଛି ଗ୍ରନ୍ଥକାର ସେହି କଥା ଲିପିବଦ୍ଧ କରି ଅଛନ୍ତି । ଏକ ଏକସ୍ଥାନରେ ଅସଙ୍ଗତ ଏବଂ ଅପ୍ରାସଙ୍ଗିକ କଥାମଧ ବିସ୍ତର ଦେଖାଯାଏ । ପରନ୍ତୁ ଏହି ଅଂଶମାନଙ୍କରେ ଗ୍ରନ୍ଥକାର ଯେଉଁ ନୀତିଜ୍ଞତା ଦେଖାଇବାପାଇଁ **xxxx** ହୋଇଅଛନ୍ତି ତାହା ସର୍ବଜନପ୍ରଶସ୍ତ ପ୍ରଚଳିତ ନୀତିପଦ୍ଧତିର ସମ୍ପୂର୍ଣ୍ଣ ବିରୋଧୀ । ଅନ୍ୟାନ୍ୟ ଉଦାହରଣସତ୍ୱେ ମହନ୍ତଙ୍କର ଚରିତବର୍ଣ୍ଣନାଦ୍ୱାରା ଆମ୍ଭମାନଙ୍କର ଏହିମତ କେତେଦୂର ସମର୍ଥିତ ହେଉଅଛି ତାହା ବୁଦ୍ଧିମାନ ପାଠକେ ଅବଶ୍ୟ ଜାଣିପାରିବେ ।

ପଦ୍ମମାଳୀ ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଆଶାନୁରୂପ ନ ହେଲେ ସୁଦ୍ଧା ଆମ୍ଭେମାନେ ଏହାକୁ ଭାବି ଉତ୍କୃଷ୍ଟତର ଗ୍ରନ୍ଥର ଅଗ୍ରସୂଚକରୂପେ ଗ୍ରହଣ କରିବାକୁ କୁଣ୍ଠିତ ହେବୁ ନାହିଁ । ଆମ୍ଭେମାନେ ଗ୍ରନ୍ଥର ଦୋଷ ସମ୍ବନ୍ଧରେ ଯାହା ଯାହା କହିଲୁଁ ତାହା ଗ୍ରନ୍ଥକାରଙ୍କୁ ଭଗ୍ନୋତ୍ସାହ କରିବା ଉଦ୍ଦେଶ୍ୟରେ କହି ନାହୁଁ; କେବଳ ଭବିଷ୍ୟତ୍‌ରେ ତାହାଙ୍କୁ ସତର୍କ କରାଇ ଦେବାର ଆମ୍ଭମାନଙ୍କର ଏକମାତ୍ର ଅଭିପ୍ରାୟ ଅଟେ । ବୋଲିବାର ବାହୁଲ୍ୟ ଯେ ଗ୍ରନ୍ଥକାରଙ୍କପରି କୃତବିଦ୍ୟଯୁବକଙ୍କୁ ସର୍ବଜନସାମାନ୍ୟଜୀବିକାର୍ଜନ ଅପେକ୍ଷା ଉତ୍କୃଷ୍ଟତର ବ୍ରତରେ ବ୍ରତୀ ଦେଖି ଆମ୍ଭେମାନେ ଯତ୍ପରୋନାସ୍ତି ପ୍ରୀତ ହୋଇଅଛୁଁ ।

*ଭା/୨୪ଗ,ସଂ୧୮ଖ୍ୟା, ୪/୫/୧୮୮୯*

# ପ୍ରେରିତପତ୍ର ।

## [ପଦ୍ମମାଳୀ ଉପନ୍ୟାସ]

ଶ୍ରୀଯୁକ୍ତ ଉତ୍କଳଦୀପିକାସମ୍ପାଦକ ମହାଶୟ ସମୀପେଷୁ--

ମହାଶୟ !

ଚଳିତ ମାସ ତା ୪ ରିଖ ଦୀପିକାରେ ପଦ୍ମମାଳୀର ସମାଲୋଚନା ଦେଖି ଆମ୍ଭେ ଅତିଶୟ ସନ୍ତୁଷ୍ଟ ହେଲୁଁ ଓ ସମାଲୋଚନା ସକାଶେ ଆମ୍ଭେ ଆପଣଙ୍କୁ ହୃଦୟର ସହିତ ଧନ୍ୟବାଦ ଦେଉଅଛୁଁ । ସମାଲୋଚନାର ସକଳ ଅଂଶରେ ଆମ୍ଭେ ଆପଣଙ୍କ ସହିତ ଏକ ହୋଇ ନ ପାରି, ଆମ୍ଭର ମତ ନିମ୍ନରେ ବିବୃତ କଲୁଁ । ଭରସା କରୁଁ ଆପଣଙ୍କର ପତ୍ରିକାରେ ଆମ୍ଭର ଏ ପତ୍ରକୁ ସ୍ଥାନ ଦାନ କରି ବାଧିତ କରିବା ହେବେ ।

ଏ ପୁସ୍ତକକୁ ଆପଣ ଉପନ୍ୟାସ ନାମ ଦେଇ ଅଛନ୍ତି, ଉତ୍କଳଭାଷାରେ Historical Romance ର ଅନ୍ୟ ନାମ ନ ଥିବାରୁ ଆମ୍ଭେ ମଧ ଏହାକୁ ଓଡ଼ିୟାରେ ଉପନ୍ୟାସ କହିବାକୁ ବାଧ ହୋଇ ଅଛୁଁ । ଉପନ୍ୟାସର ଇଂରାଜୀ ନାମ Novel, Novel ଓ Romance ଏକ ନୁହେ । Novel ରେ ଲେଖକ କେବଳ ପ୍ରକୃତିର ଅବିକଳ ପ୍ରତିକୃତି ଦେବାକୁ ଉଦ୍ଦେଶ୍ୟ କରନ୍ତି କିନ୍ତୁ Romance ରେ (ଆପଣଙ୍କର ଭାଷାରେ) ଲେଖକଙ୍କର କଳ୍ପନା ନିରଙ୍କୁଶ ହୋଇ ରହେ ନାହିଁ । ଆପଣ ସମାଲୋଚନାରେ ଏ ବିଭିନ୍ନତାକୁ ଦୃଷ୍ଟିରେ ରଖି ନ ଥିବାରୁ ଆମ୍ଭେ ଏହା କହିବାକୁ ବାଧ ହେଲୁଁ ।

ନୀଳଗିରିର ବର୍ତ୍ତମାନ ରାଜାଙ୍କର ନାବାଳକି ସମୟରେ କେବଳ ଜଣେ ପ୍ରଧାନ ପାତ୍ରର ଗୋଟିଏ ଭଦ୍ରପରିବାରପ୍ରତି ଏକ ଘୋର ଅତ୍ୟାଚାରକୁ ଅବଲମ୍ବନ କରି ଏଗ୍ରନ୍ଥ ରଚନା ହୋଇଅଛି, ତାହା ନୁହେ । ହରିବାବୁଙ୍କର ନୀଳଗିରି ଆକ୍ରମଣ ଅନ୍ୟତର ଘଟନା । ଏହି ପ୍ରାୟ ସମସାମୟିକ ଘଟନାଦ୍ୱୟକୁ ଅବଲମ୍ବନ କରି ଆମ୍ଭେ ଏହି ଗ୍ରନ୍ଥ ପ୍ରଣୟନ କରିଅଛୁଁ ।

ଗ୍ରନ୍ଥକାର ସ୍ୱୟଂ ଗଡ଼ଜାତରେ ଭ୍ରମଣ କରି ଥିବାର ଆପଣ ଲେଖିଅଛନ୍ତି । ଆମ୍ଭେ ଅବଶ୍ୟ କଟକଠାରୁ ଢେଙ୍କାନାଳପର୍ଯ୍ୟନ୍ତ ଭ୍ରମଣ କରିଅଛୁଁ ଓ ଏଠାକୁ ଆସିଲାବେଳେ ଆମ୍ଭେ ଅବଶ୍ୟ ଆଠଗଡର଼ ଜଙ୍ଗଲ ଅତିକ୍ରମ କରି ଆସି ଅଛୁଁ ।

ଆମ୍ଭ ଗ୍ରନ୍ଥଟି ସର୍ବାଙ୍ଗସୁନ୍ଦର ହୋଇଅଛି ଏହା ଆମ୍ଭପକ୍ଷରେ ବୋଲିବାର ଧୃଷ୍ଟତାର କାର୍ଯ୍ୟ ହେବ । ଆପଣ ପ୍ରଧାନତଃ ଯେଉଁ ଦୁଇଗୋଟି ଦୋଷ ଦର୍ଶାଇ ଅଛନ୍ତି ତହିଁର ବିଚାର ଅବଶ୍ୟ ସୁଶିକ୍ଷିତ ଜନସମାଜ କରିବେ । ତେବେ କେବଳ ଆପଣଙ୍କର ଅଭିଯୋଗରେ କାଳେ ସେମାନେ ଆମ୍ଭର ସଫାଇ ନ ନେଇ, ଏକତରଫା ବିଚାରରେ ଆମ୍ଭକୁ ଦଣ୍ଡ ଦିଅନ୍ତି, ଏହା ଆଶଙ୍କା କରି ଆମ୍ଭେ ଦୁଇ ଚାରିପଦ ବୋଲିବାକୁ ବାଧ ହେଲୁଁ ।

୧ମ । ଭାଷାଗତ ଦୋଷ ଓଡ଼ିୟା ଆମ୍ଭର ମାତୃଭାଷା ନୁହେ; ଉତ୍କଳଦେଶର ସହିତ ଆମ୍ଭର ସମ୍ବନ୍ଧ ଦୀର୍ଘକାଳ ବ୍ୟାପୀ ନୁହେ, ଓଡ଼ିୟାଭାଷାରେ ଏପରି ପୁସ୍ତକମାନ ନାହିଁ ଯାହା ପାଠକରି ବିଦେଶୀୟ କେହି ଓଡ଼ିୟାଭାଷାରେ ପାରଂଗମ ହୋଇପାରିବେ । ଏପରି ଅବସ୍ଥାରେ, ପୁସ୍ତକ ପ୍ରଚାର କରିବାରୁ ପୂର୍ବ ଆମ୍ଭେ ଆପଣା ଅନଭିଜ୍ଞତାର ପରିଚୟ ଦେଇଅଛୁଁ । "ଏ ଦୋଷ ଏ ଗ୍ରନ୍ଥର ଏକ ଏକସ୍ଥଳରେ ଏତେ ଅଧିକ ଯେ ସେହି ସେହି ଅଂଶର ଭାଷାକୁ ଓଡ଼ିୟା ନ କହି ଅପଭ୍ରଷ୍ଟ ବଙ୍ଗଳା ବୋଲାଯାଇ ପାରେ ।" ଏହା ହୋଇଥିଲେ, ବିଚିତ୍ର ନୁହେ କିନ୍ତୁ ଉଦାହରଣଦ୍ୱାରା ଏପରି "ଅପଭ୍ରଷ୍ଟ ବଙ୍ଗଳାଦ୍ୱାରା" ପୁସ୍ତକର ଭାଷାର ସରଳତା ଓ ପ୍ରାଞ୍ଜଳତାର କି ପରିମାଣରେ ଲାଘବ ହୋଇଅଛି ଏହା ସମାଲୋଚକଙ୍କର ଦର୍ଶାଇ ଦେବାର ଉଚିତ ଥିଲା ।

ଭାଷା ଦୁଇପ୍ରକାର । ଜୀବିତ ଓ ମୃତ । ସଂସ୍କୃତ, ଆରବୀ, ଗ୍ରୀକ, ଲାଟିନ ଇତ୍ୟାଦି ମୃତଭାଷା । କିନ୍ତୁ ଯେଉଁଭାଷାକୁ ମୁଖରେ ଉଚ୍ଚାରଣ କରି ଲୋକମାନେ ଆପଣା ଆପଣାର ଭାବ ଅଭିବ୍ୟକ୍ତ କରନ୍ତି ସେ ଭାଷାକୁ

ଜୀବିତ ଭାଷା ବୋଲଯାଏ । ଯେପରି ବଙ୍ଗଳା, ଓଡ଼ିୟା, ଇଂରାଜୀ, ଫ୍ରେଞ୍ଚ, ଜର୍ମାନ ଇତ୍ୟାଦି । ଜୀବିତ ଭାଷା ଅନ୍ୟାନ୍ୟ ଜୀବିତପଦାର୍ଥର ନ୍ୟାୟ ପରିବର୍ତ୍ତନଶୀଳ । ଚସରଙ୍କର (Chaucer) ସମୟଠାରୁ ବର୍ତ୍ତମାନ ସମୟପର୍ଯ୍ୟନ୍ତ ଇଂରାଜୀଭାଷାର ପରିବର୍ତ୍ତନ (Mutability of the English literature) ଅନୁଶୀଳନ କରିବାକୁ ହେଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଭାଷାର ପ୍ରତ୍ୟେକସୋପାନରେ ନୂତନ ନୂତନ ଭାବସବୁ ପ୍ରବେଶ କରି ଭାଷାର ଉନ୍ନତିସାଧନ କରି ଅଛି । ଯେଉଁ ଭାଷାରେ ଯେତେ ସୁସ୍ପଷ୍ଟରୂପେ ଭାବସବୁ ବ୍ୟକ୍ତ କରାଯାଇପାରେ ସେଭାଷା ତେତେ ଉତ୍କୃଷ୍ଟ । ଏବିଷୟରେ ଇଂରାଜୀ ଓ ବଙ୍ଗଳାଭାଷା ଯେତେ ଉତ୍କର୍ଷସାଧନ କରିଅଛି, ତାହା ଓଡ଼ିୟାଭାଷା କରିଅଛି, ଏହା ଆପଣ କହିବେ ଟିକି ? ଅଭିନବପ୍ରଣାଳୀରେ ଭାବବ୍ୟକ୍ତ କରିବାଦ୍ୱାରା ଭାଷାକୁ ମୂଲ୍ୟବାନ୍ କରିବା ଅଭିପ୍ରାୟରେ ଆମ୍ଭେ ଏ ପୁସ୍ତକର ଉଦ୍ୟମ କରିଅଛୁଁ ।

୨ୟ । ରୁଚିଗତ ଦୋଷ--"ଏ ଦୋଷ ପୁସ୍ତକର ଅଧିକାଂଶ ପରିଚ୍ଛଦରେ ସୁଲଭ ।" ('ପରିଚ୍ଛଦ'ଶବ୍ଦ କେଉଁ ଅଭିଧାନରୁ ପ୍ରାପ୍ତ ହେଲେ ତାହା ଆମ୍ଭେ ଜାଣିପାରିଲେ ଆପଣଙ୍କ ଠାରେ ବଡ଼ କୃତଜ୍ଞ ହେବୁଁ) ସମାଲୋଚକ ଏହା କହି, ଗୋଟାଏଦୃଷ୍ଟାନ୍ତ ଦେଇ ନାହାନ୍ତି । ଉଦାହରଣ ଦେଲେ ଆମ୍ଭେ କାଳିଦାସ ଓ ଶ୍ରୀହର୍ଷଙ୍କୁ ପରିତ୍ୟାଗ କରି ପାଶ୍ଚାତ୍ୟ ସାହିତ୍ୟର ଲେଖକାଗ୍ରଣୀମାନଙ୍କର ଗ୍ରନ୍ଥମାନଙ୍କରୁ ସମାଲୋଚକଙ୍କର ରୁଚିର ଅନୁରୂପ ଉପହାର ଦେବାରେ ତ୍ରୁଟି କରିବୁଁ ନାହିଁ । ଆମ୍ଭ ଜାଣିବାରେ,କେବଳ ଏକସ୍ଥଳରେ ଦୁର୍ଯ୍ୟୋଧନ ଓ ବୃଦ୍ଧାର କଥୋପକଥନ ସୁରୁଚିସମ୍ମତ ହୋଇ ନାହିଁ । ତାହା ହେଲେ ସୁଦ୍ଧା ଦୁର୍ଯ୍ୟୋଧନର ଚରିତ୍ର ଅସଂପୂର୍ଣ୍ଣ ରହିଯିବ ବୋଲି, ଆମ୍ଭେ ଏଠାରେ ଢୋକେ ରୁଚି ଗିଳି ଯାଇଅଛୁଁ ।

"ପରନ୍ତୁ ଏହି ଅଂଶମାନଙ୍କରେ ଗ୍ରନ୍ଥକାର ଯେଉଁ ନୀତିଜ୍ଞତା ଦେଖାଇବା ପାଇଁ ପ୍ରୟାସୀ ହୋଇଅଛନ୍ତି ତାହା ସର୍ବଜନ ପ୍ରଶସ୍ତ ପ୍ରଚଳିତ ନୀତିପଦ୍ଧତିର ସଂପୂର୍ଣ୍ଣ ବିରୋଧୀ" ଆମ୍ଭେ ନୀତିଜ୍ଞତା ଦେଖାଇବାପାଇଁ ପ୍ରୟାସୀ ହୋଇ ନାହୁଁ । ଆମ୍ଭେ ଇତିହାସ ଲେଖକ (Historian) ନୀତିବିଷୟକ ଲେଖକ (Morlist) ନୋହୁଁ (Farce) (ବେଲି) ଲେଖକମାନେ ନୀତିଜ୍ଞତା ଦେଖାଇବାକୁ ଓ କୁରୁଚିର ସଂସ୍କାର କରିବାକୁ ଯତ୍ନ କରନ୍ତୁ, କିନ୍ତୁ ତାହା ଆମ୍ଭର କାର୍ଯ୍ୟ ନୁହେ ଆମ୍ଭେ ଯାହା ଦେଖିବୁଁ ତାହା ଲେଖିବୁଁ । ମହନ୍ତଙ୍କର ଚରିତ୍ରକୁ ଆମ୍ଭେ ଯେପରି ଦେଖିଅଛୁଁ ସେହିପରି ଚିତ୍ର କରିଅଛୁଁ । ପାରନେଲର (Hermit) ସନ୍ୟାସିଙ୍କପରି ତାହାଙ୍କୁ ଚିତ୍ର କରିଥିଲେ ସ୍ୱାଭାବିକ ହୋଇଥାନ୍ତାଟିକି ?

ଢେଙ୍କାନାଳ
ତା୬ରି ମେ
ସନ ୧୮୮୯ ମସିହା

ଆପଣଙ୍କର
ବଶମ୍ୱଦ
ଉମେଶଚନ୍ଦ୍ରସରକାର

*ଭା୨୪ଗ,ସଂ୨୦ଖ୍ୟା, ୧୮/୫/୧୮୮୯*

## ନୂତନ ପୁସ୍ତକ ! ନୂତନ ପୁସ୍ତକ !!
## ବର୍ଣ୍ଣନିର୍ଣ୍ଣୟ ।

ଶ୍ରୀ ମଧୁସୂଦନ ମିଶ୍ରଙ୍କକର୍ତ୍ତୃକ ସଙ୍କଳିତ ।

ଏହି ପୁସ୍ତକ ପ୍ରଥମ ଶିକ୍ଷାର୍ଥି ବାଳକମାନଙ୍କର ପ୍ରଥମ ପାଠ୍ୟପୁସ୍ତକ । ଏହା ପାଠ କଲେ ବାଳକମାନେ ସ୍ୱଳ୍ପାୟାସରେ ଏବଂ ଅଳ୍ପ ଦିବସ ମଧରେ ସୁଚରୁରୂପେ ଉତ୍କଳବର୍ଣ୍ଣ ପରିଚୟ କରି ପାରିବେ । ଏଥିରେ ସତରଫଳା ତଦନୁଯାୟୀ ଶବ୍ଦ ଲେଖିବାର ପ୍ରଣାଳୀ, ସପ୍ତାଙ୍ଗ, ସାମାନ୍ୟ ସାମାନ୍ୟ ଲଘୁପାଠ, କୋଇଲି, ଦଶଅବତାର ଓ ଦିଗନିର୍ଣ୍ଣୟ ବିଷୟ ସକଳ ବିଶଦରୂପେ ସନ୍ନିବେଶିତ ହୋଇଅଛି । ମୂଲ୍ୟ ଟ ୦। ଡାକ ମାସୁଲ ଟ ୦୬ ମାତ୍ର । ପୁସ୍ତକ କଟକ ପ୍ରିଣ୍ଟିଂକମ୍ପାନିଙ୍କ ପ୍ରେସରେ, ବାବୁ ରାମପ୍ରସନ୍ନ ମୁଖୋପାଧାୟଙ୍କ ପୁସ୍ତକଦୋକାନରେ ଏବଂ ତାଳଚେରସ୍କୁଲ ହେଡ଼ପଣ୍ଡିତଙ୍କ ନିକଟରେ ପ୍ରାପ୍ତବ୍ୟ ।

*ଭା୨୪ଗ,ସଂ୨୬ଖ୍ୟା, ୨୯/୬/୧୮୮୯*

## ଓଡ଼ିଶାର ଯୁବାମାନେ ।

ଗତ ରବିବାର ଏଠା ଗ୍ରାଡୁଏଟସଭାର ଏକ ଅଧିବେଶନ ହୋଇଥିଲା ଏବଂ ତହିଁରେ ବାବୁ ଗଣପତି ଦାସ ଶୀର୍ଷାଙ୍କିତ ବିଷୟରେ ଖଣ୍ଡିଏ ଇଂରାଜୀରଚନା ପାଠ କରିଥିଲେ । ଏଥିପୂର୍ବେ ଆମ୍ଭେମାନେ ଏହି ସଭାର ଏକ ଏକ ଅଧିବେଶନରେ ବାଲ୍ୟବିବାହ ଜାତିନିୟମ ପ୍ରଭୃତି କେତେକ ବିଷୟରେ ରଚନା ପଠିତ ହେବାର ଶୁଣିଥିଲୁଁ ଏବଂ ରଚକମାନେ ସାଧ୍ୟାନୁସାରେ ଯତ୍ନକରି ଅନୁକୂଳ ଓ ପ୍ରତିକୂଳ ମତମାନ ନାନାସ୍ଥାନରୁ ସଂଗ୍ରହପୂର୍ବକ ଶ୍ରୋତାମାନଙ୍କ ସମ୍ମୁଖରେ ଉପସ୍ଥିତ କରିଥିଲେ ଏବଂ ସାବଧାନତା ସହିତ ତହିଁର ମୀମାଂସା କରିବାରେ ଯୋଗ୍ୟତା ଦେଖାଇଥିଲେ । ମାତ୍ର ସେ ବିଷୟମାନ ଅତ୍ୟନ୍ତ ଗୁରୁତର ଓ ପ୍ରବୀଣମାନଙ୍କର ବିଚାର ସାପେକ୍ଷ ଥିବାରୁ ଶିକ୍ଷିତଯୁବାଙ୍କ ସଭାପ୍ରତି ବଡ଼ ଉପଯୋଗୀ ହୋଇ ନ ଥିଲା । ଗଣପତିବାବୁଙ୍କ ରଚନା ଯେମନ୍ତ ଏ ସଭାର ଉପଯୋଗୀ ହୋଇଥିଲା ତହିଁର ଭାଷା ଭାବ ଓ ବିଚାରପ୍ରଣାଳୀ ତେମନ୍ତ ସରସ ଓ ସୁନ୍ଦର ହୋଇଥିଲା । ରଚନାର ସାରମର୍ମ ଏହି କି ଶିକ୍ଷିତ ଯୁବାମାନେ ଓଡ଼ିଶାର ଆଶା ଭରସା ଅଟନ୍ତି ମାତ୍ର ଏମାନେ ଆପଣା ଜୀବନରେ ଶିକ୍ଷାର ଫଳ ଦେଖାଉ ନାହାନ୍ତି ବିଦ୍ୟାଳୟରୁ ବାହାରି ଚାକରୀ ବା ଓକାଲତି କଲେ ଯଥେଷ୍ଟ ହେଲା । ଧନଅର୍ଜନ ଏକମାତ୍ର ଲକ୍ଷସ୍ଥଳ କିନ୍ତୁ ସଚ୍ଚରିତ୍ରତା କର୍ତ୍ତବ୍ୟପରାୟଣତା ସ୍ୱଦେଶାନୁରାଗର ଉନ୍ନତି ତତ୍ତ୍ୱାନୁସନ୍ଧାନ ଧର୍ମଚର୍ଚ୍ଚା ଇତ୍ୟାଦି ପ୍ରତି ସେମାନଙ୍କର ଆଦୌ ଦୃଷ୍ଟି ନାହିଁ । ଆଳସ୍ୟ ବୃଥାଗଳ୍ପ ଓ ଆମୋଦ ପ୍ରମୋଦରେ ଆପଣାଅବକାଶକାଳକୁ ନଷ୍ଟ କରନ୍ତି । ଏ କଥାଗୁଡ଼ିକ ଯେ ଯଥାର୍ଥ ଏଥିରେ ସନ୍ଦେହ ନାହିଁ ଏବଂ ଜଣେ ଶିକ୍ଷିତ ଯୁବାଠାରୁ ଏପ୍ରକାର ଆତ୍ମପରିଚାୟକ କଥା ଶୁଣି ଆମ୍ଭେମାନେ ଅତ୍ୟନ୍ତ ପ୍ରୀତ ହୋଇଅଛୁଁ । କାରଣ ଆପଣାର ଦୋଷ ଅନୁସନ୍ଧାନବିନା ଉନ୍ନତିର ଅନ୍ୟଉପାୟ ନାହିଁ ଦୁଃଖର ବିଷୟ ଯେ କେବଳ ଦଶବାରଜଣ ସଭ୍ୟ ଏ ସଭାରେ ଉପସ୍ଥିତ ଥିବାରୁ ଏ କଥାଗୁଡ଼ିକ ଶୁଣିଲେ ଅଧିକାଂଶ ସଭ୍ୟ ଅନୁପସ୍ଥିତହେତୁ ତାହା ଶୁଣିପାରିଲେ ନାହିଁ । ଆମ୍ଭମାନଙ୍କର ଇଚ୍ଛା ଯେ ଏହି ରଚନା ମୁଦ୍ରିତହୋଇ ଖଣ୍ଡେ ଖଣ୍ଡେ ପ୍ରତ୍ୟେକ ଶିକ୍ଷିତଯୁବାଙ୍କ ନିକଟରେ ରହିବାର ଉଚିତ ଯେ ପ୍ରତିଦିନ ଦର୍ପଣପରି ତାହାକୁ ଦେଖୁଥିଲେ ଅବଶ୍ୟ କିଛି ଉପକାର ହେବ । ବିଦ୍ୟାଶିକ୍ଷାର ପ୍ରୟୋଜନ ମନୁଷ୍ୟତା ଲାଭକରିବା ଓ ମନୁଷ୍ୟତା କାର୍ଯ୍ୟଉପରେ ନିର୍ଭର ରଖେ । ବିଦ୍ୟାଳୟରେ ଯେ ସମସ୍ତ ସୁନୀତି ଶିକ୍ଷାକରିବ ସଂସାରରେ ପ୍ରବେଶକରି ସେ ସବୁକାର୍ଯ୍ୟରେ ପରିଣତ ହେଲେ ମନୁଷ୍ୟ ହେବ ଆପଣା ପେଟସକାଶେ କିଏ ଧନ ଅର୍ଜୁନାହିଁ କି ? ଶିକ୍ଷିତ ଅଶିକ୍ଷିତର ପ୍ରଭେଦ ଧନଅର୍ଜନର ନ୍ୟୂନାଧିକଦ୍ୱାରା ଜଣାଯାଏ ନାହିଁ । କିନ୍ତୁ ଚରିତ୍ର ଓ କାର୍ଯ୍ୟଦ୍ୱାରା ଜଣାଯାଏ । ଆମ୍ଭେମାନେ ଆଶା କରୁଁ କି ଉତ୍କଳର ଯୁବାବୃନ୍ଦ ସର୍ବଦା ଆପଣା କାର୍ଯ୍ୟପ୍ରତି ଦୃଷ୍ଟି କରିବେ ଏବଂ ପରସ୍ପରର ଉନ୍ନତିନିମିତ୍ତ ଆପଣା ଆପଣାର ସଭାରେ ସର୍ବଦା ଏହି ବିଷୟର ଚର୍ଚ୍ଚା କରିବେ । ତାହା ହେଲେ ଆପଣା ଆପଣା କର୍ତ୍ତବ୍ୟଜ୍ଞାନ ସେମାନଙ୍କ ମନରେ ସର୍ବଦା ଯାଗର୍ରୂଥିବ । ପାରସ୍ୟକବି ସେଖସାଦି କହିଅଛନ୍ତି କି ବିଦ୍ୟା ଯେତେ ପଢ଼ିଲେ କି ହେବ ଯେବେ ତାହା କାର୍ଯ୍ୟରେ ପରିଣତ ନ କଲ ତେବେ ତୁମ୍ଭେ ମୂର୍ଖ । ଗୋଟାଏ ବଳଦଉପରେ କେତେଗୁଡ଼ାଏ ପୁସ୍ତକ ଲଦିଦେଲେ ଯେମନ୍ତ ମଧ ତୁମ୍ଭର ପୁସ୍ତକପଢ଼ିବା, ତେମନ୍ତ ହେବ । ଅର୍ଥାତ୍ ସେପରି ପଢ଼ାରେ ତୁମ୍ଭେ ବିବେକୀ ବା ତତ୍ତ୍ୱଦର୍ଶୀ ହୋଇ ପାରିବ ନାହିଁ ।

*ଭା୨୪ଗ,ସଂ୩୮ଖ୍ୟା, ୨୧।୯।୧୮୮୯*

## ସାଧାରଣ ପୁସ୍ତକାଗାରର ଆବଶ୍ୟକତା ।

ଆମ୍ଭେମାନେ ଗତବର୍ଷ ଉଚ୍ଚଶିକ୍ଷାସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ଲେଖିଥିଲୁଁ । ପ୍ରୋକ୍ତପ୍ରବନ୍ଧରେ ଏଠା ରେଭନ୍‌ସାକଲେଜରେ ଗୋଟିଏ ଏମ୍ କ୍ଲାସ ଫିଟାଇବା ଅଥବା କଲିକତା ପଠନାର୍ଥେ ଏଠା କଲେଜର ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନଙ୍କୁ ବ୍ୟୟ ଯୋଗାଇବାସକାଶେ ବୃତ୍ତିସ୍ଥାପନ ବିଷୟ ଉଲ୍ଲିଖିତ ଥିଲା । ଗବର୍ଣ୍ଣମେଣ୍ଟ ଉଚ୍ଚଶିକ୍ଷା ବିସ୍ତାର କରିବାକୁ ପ୍ରସ୍ତୁତ ଅଛନ୍ତି କିନ୍ତୁ ଦେଶୀୟ ଲୋକଙ୍କ ସାହାଯ୍ୟ ଆବଶ୍ୟକ କରନ୍ତି । ଓଡ଼ିଶାର ଶିକ୍ଷା ଅନ୍ୟାନ୍ୟଦେଶାପେକ୍ଷା ନିକୃଷ୍ଟ ତଥାପି ଅତିଅଳ୍ପବର୍ଷ ମଧ୍ୟରେ ଶିକ୍ଷାସ୍ରୋତ ପ୍ରବଳବେଗରେ ଧାବିତ ହୋଇଅଛି । ଅବଶ୍ୟ ଶିକ୍ଷାର ସୀମା

ନାହିଁ କିନ୍ତୁ ଶିକ୍ଷା ଯୋଗାଇବା ଉପାୟ ନ ଥିବା ହେତୁରୁ ଓଡ଼ିଶାସମ୍ବନ୍ଧରେ ଏଠାରେଭନ୍‌ଶାକଲେଜ ଉଚ୍ଚଶିକ୍ଷାର ଶେଷସୀମା ହୋଇଅଛି । ଆମ୍ଭେମାନେ ରାଜା, ଜମିଦାର, ଧନୀ ଓ ଦେଶହିତୈଷିମାନଙ୍କୁ ଏମ୍‌ଏ କ୍ଲାସର ପଠନୋପାୟ ସକାଶେ ଯଥାସାଧ ସାହାଯ୍ୟ ପ୍ରଦାନାର୍ଥେ ଲେଖିଥିଲୁଁ ଓ ଲେଖୁଅଛୁଁ । କେବଳ ଏମ୍ ଏ ପରୀକ୍ଷାରେ ଉପସ୍ଥିତ ହୋଇପାରିଲେ ଶିକ୍ଷା ସମାପ୍ତ ହେବ ନାହି । ଉଚ୍ଚଶିକ୍ଷା ପ୍ରଦାନର ପ୍ରଧାନ୍ ଅଙ୍ଗ ପୁସ୍ତକ.। ସୁବିଖ୍ୟାତ କବିମାନଙ୍କ ପୁସ୍ତକ ଯେତେ ପାଠ କରିବ ବିଦ୍ୟାବୁଦ୍ଧି ତେତେ ବୃଦ୍ଧି ହେବ । ବିଦ୍ୟାଳୟର ଛାତ୍ରମାନେ ଶିକ୍ଷକମାନଙ୍କଠାରୁ ଅଧ୍ୟୟନସମ୍ପର୍କରେ ଯଥାସାଧ ସାହାଯ୍ୟ ପ୍ରାପ୍ତ ହୋଇ ଥାଆନ୍ତି । ଇଂରାଜୀଭାଷାର ନାନାପ୍ରକାର ପଠନୋପଯୋଗୀ ପୁସ୍ତକ ଅଛି ଓ ଉକ୍ତପୁସ୍ତକମାନ ସମସ୍ତଶ୍ରେଣୀର ପାଠାଧ୍ୟାୟିମାନେ ପ୍ରାପ୍ତ ହେବାକୁ ସକ୍ଷମ ହୁଅନ୍ତି ନାହି । ବାଲ୍ୟକାଳରୁ ସେମାନେ ଅତିକଷ୍ଟରେ ଓ ଅନେକେ ଅନ୍ୟର ସାହାଯ୍ୟରେ ବୃଦ୍ଧିବୃତ୍ତିର ପରିଚାଳନା କରି ସ୍ୱଦେଶର ପୂଜ୍ୟ ହୋଇଛନ୍ତି । କିନ୍ତୁ ଉଚ୍ଚଶିକ୍ଷା ଯାହା ବର୍ତ୍ତମାନ ସେମାନେ ପ୍ରାପ୍ତ ହୋଇଛନ୍ତି ତାହା କେବଳ କେତେକ ନିର୍ଦ୍ଦିଷ୍ଟ ପୁସ୍ତକ ପଠନର ଫଳ । ଶିକ୍ଷା ଗଭୀରତର ହେବାକୁ ହେଲେ ଭିନ୍ନ ଭିନ୍ନ ଗ୍ରନ୍ଥକାରମାନଙ୍କ ପୁସ୍ତକ ପଠନର ଆବଶ୍ୟକ । ଅନ୍ୟାନ୍ୟଦେଶର ଛାତ୍ରମାନେ ଭିନ୍ନ ଭିନ୍ନ ପୁସ୍ତକ ପାଠ କରନ୍ତି ଓ ସେମାନଙ୍କର ଉକ୍ତ ପୁସ୍ତକସବୁକୁ ପ୍ରାପ୍ତିପକ୍ଷରେ ଅସୁବିଧା ନାହି । ଅନ୍ୟାନ୍ୟଦେଶମାନ ଓଡ଼ିଶାପରି ବିଦ୍ୟାପକ୍ଷରେ ନିର୍ଦ୍ଧନୀ ନୁହନ୍ତି ଓ ସେସମସ୍ତସ୍ଥାନର ବିଦ୍ୟୋତ୍ସାହୀ ଲୋକମାନେ ବିଦ୍ୟୋନ୍ନତିପକ୍ଷରେ ବିଶେଷ ସାହାଯ୍ୟ ଓ ମନୋଯୋଗ ପ୍ରଦାନ କରିବା ଶିକ୍ଷାର ହ୍ରାସ ନ ହୋଇ ଦିନକୁ ଦିନ ବୃଦ୍ଧି ହେଉଅଛି । ସ୍ଥାନେ ସ୍ଥାନେ ପୁସ୍ତକାଗାର ସ୍ଥାପିତ ହେବାରୁ ଓ ବିଦ୍ୟୋତ୍ସାହି ଓ ଧନଶାଳିମାନଙ୍କ ନିକଟରେ ପୁସ୍ତକ ପ୍ରାପ୍ତ ହେବାରୁ ଶିକ୍ଷାର୍ଥିମାନେ ଉତ୍ତମଶିକ୍ଷା ପ୍ରାପ୍ତ ହୁଅନ୍ତି । ଏତଦ୍ଦେଶରେ ଶିକ୍ଷା ପ୍ରଥମସୋପାନରେ ଉପସ୍ଥିତ ହୋଇଅଛି ଓ ବିଦ୍ୟାଚର୍ଚ୍ଚା ଅଧିକ ନାହି ଓ ମଧ ଧନୀ ବିଦ୍ୟୋତ୍ସାହୀ ଲୋକ ପ୍ରାପ୍ତ ହେବା ବିରଳ ସୁତରାଂ ବିଦ୍ୟାଳୟ ବ୍ୟତୀତ ଅନ୍ୟାନ୍ୟସ୍ଥାନରେ ଅତିଅଳ୍ପ ପୁସ୍ତକ ପ୍ରାପ୍ତ ହୁଅଇ ଏଠା କଲେଜରେ ମଧ ବିସ୍ତର ପୁସ୍ତକ ନାହି ଓ ଯାହା କିଛି ଅଛି ତାହା ସମସ୍ତପାଠାଧ୍ୟାୟୀ ପ୍ରାପ୍ତ ହୋଇ ପାରନ୍ତି ନାହି । ବିଦ୍ୟାଚର୍ଚ୍ଚା ବୃଦ୍ଧି ହେବା ସକାଶେ ଅତି କମ୍‌ରେ ଗୋଟିଏ ପୁସ୍ତକାଗାର ରହିବାର ଆବଶ୍ୟକ । ସାଧାରଣ ଗୋଟିଏ ପୁସ୍ତକାଗାର ସ୍ଥାପନକରିବାକୁ ଚେଷ୍ଟା କଲେ ସହଜରେ ହୋଇପାରେ । ପ୍ରବାଦ· ଅଛି "ପାଞ୍ଚ ସାତ୍‌କା ଲାଠି ଏକ ଆଦିମ୍‌କା ବୋଝ ।" ଓ ଏପ୍ରବାଦଟି ଯଥାର୍ଥ ଅଟେ । ଏହି ପ୍ରବାଦାନୁସାରେ ବିଦ୍ୟୋତ୍ସାହୀ ଧନୀ ଜମିଦାର ରାଜା ଓ ମହାରାଜାମାନେ ଯଥାସାଧ ସାହାଯ୍ୟପ୍ରଦାନ କଲେ ଏନଗରରେ ଗୋଟିଏ ପୁସ୍ତକାଗାର ଅନାୟାସରେ ସ୍ଥାପିତ ହୋଇପାରେ । ସାଧାରଣ ସ୍ଥାପିତ ପୁସ୍ତକାଗାରରେ ସମସ୍ତଶ୍ରେଣୀର ପାଠାଧ୍ୟାୟୀ ସହଜରେ ପୁସ୍ତକ ପାଠ କରିବାକୁ ସମର୍ଥ ହେବେ । ଆମ୍ଭେମାନେ ଆଶା କରୁଁ ଏହି ଅଭାବପୂର୍ଣ୍ଣ କରିବା ସକାଶେ ସାଧାରଣ ବଦ୍ଧପରିକରହେଲେ ଅକ୍ଳେଶରେ ଅଭାବ ଦୂରୀଭୂତ ହେବ ଆମ୍ଭେମାନେ ଜାଣୁ ଯେ ଏଠାରେ ଦୁଇ ତିନିଥର ଏଥିର ଉଦ୍ୟମ ହୋଇ ବିଫଳ ହୋଇଅଛି ମାତ୍ର ଶିକ୍ଷିତ ଲୋକଙ୍କସଂଖ୍ୟା ଦିନ ଦିନ ବୃଦ୍ଧି ହେଉଥିବାରୁ ଆଶା ହେଉଅଛି କି ଯାହା ପୂର୍ବେ ଅସାଧ ଥିଲା ବର୍ତ୍ତମାନ ସିଦ୍ଧ ହୋଇ ପାରିବ । ଶିକ୍ଷିତ ଲୋକଙ୍କର ଏଥିରେ ବିଶେଷ ଯତ୍ନ ଓ ଚେଷ୍ଟା କରିବାର ଆବଶ୍ୟକ । ବିହିତ ଯତ୍ନ ହେଉଥିଲେ ଅଳ୍ପଦିନରେ ନ ହେବ ଦୁଇ ତନିବର୍ଷରେ ଏକପ୍ରକାର କାର୍ଯ୍ୟ ହୋଇପାରେ ।

*ଭା ୨୪ଗ, ସଂ ୪୬ଖ୍ୟା, ୩୦ । ୧୧ । ୧୮୮୯*

## ଶିକ୍ଷାର ଉଦ୍ଦେଶ୍ୟ ।

ସହଯୋଗୀ ଦୀପକ ଶିକ୍ଷିତସମ୍ପ୍ରଦାୟର ଦୁର୍ଦ୍ଦଶା ନାମକ ପ୍ରବନ୍ଧରେ ସେମାନଙ୍କର ନାନା ଦୁଃଖର କଥା ବର୍ଣ୍ଣନା କରି ଶେଷରେ ଏହି କଥା ଲେଖିଅଛନ୍ତି କି "ଯେବେ ଗ୍ରାଜୁଏଟ ଏବଂ ଅଣ୍ଡର ଗ୍ରାଜୁଏଟ ସଭା ଦେଶର ପ୍ରକୃତ ହିତାର୍ଥେ ଜନ୍ମଗ୍ରହଣ କରିଥାନ୍ତି ତାହା ହେଲେ ଉକ୍ତ ସଭାର ସଭ୍ୟମାନଙ୍କର କର୍ତ୍ତବ୍ୟ ବିଶେଷ ଚିନ୍ତାଶୀଳତା ସହିତ ଶିକ୍ଷିତସମ୍ପ୍ରଦାୟର ଆର୍ଥିକ ଅଭାବ ବିଦୂରିତ କରିବା ପାଇଁ ବିଶେଷ ବିଶେଷ ଉପାୟ ଉଦ୍ଭାବନା କରିବା" । ସହଯୋଗୀ ଏବିଷୟରେ ନିଜର ମତ ପ୍ରକାଶ କରିବାକୁ ଅଙ୍ଗୀକାର କରିଅଛନ୍ତି ଏବଂ ତଦ୍ଦ୍ୱାରା ସଭାର ଅବଶ୍ୟ

ଅନେକ ସାହାଯ୍ୟ ହେବ । କିନ୍ତୁ ଆମ୍ଭମାନଙ୍କ ମତରେ ଗୋଟିଏ ଭାରୀ ସମସ୍ୟା ଉପସ୍ଥିତ ହୋଇଅଛି । ଅର୍ଥ ଉପାର୍ଜନ କି ଶିକ୍ଷିତସମାଜର ଏକମାତ୍ର ବା ମୋକ୍ଷ୍ୟ ଉଦ୍ଦେଶ୍ୟ ? ଏବଂ ଏକା ଏହିମାନଙ୍କର ଆର୍ଥିକ ଅଭାବ କି ସର୍ବାପେକ୍ଷା ଅଧିକ ? ଯେବେ ତାହା ହୁଏ ତେବେ ଏତେ ଏତେ ଅର୍ଥ ବ୍ୟୟ ଓ ଦଶପନ୍ଦରବର୍ଷ ପରିଶ୍ରମ କରି ଶିକ୍ଷାଲାଭ କରିବା ଭ୍ରମ ବୋଲିବାକୁ ହେବ । ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ ବର୍ତ୍ତମାନ କାଳରେ ଅଧିକ ଅର୍ଥ ଉପାର୍ଜନ କରିବା ଆଶାରେ ଅନେକ ଲୋକ ଉଚ୍ଚଶିକ୍ଷା ଲାଭ କରିବାକୁ ପ୍ରବୃତ୍ତ ହେଉଅଛନ୍ତି ଏବଂ ଅନେକସ୍ଥଳରେ ସେ ଆଶା ବୃଥା ହେଉ ନାହିଁ । ଯେଉଁମାନେ ଉଚ୍ଚଶିକ୍ଷାରେ ଅଧିକ ଯୋଗ୍ୟତା ଲାଭ କରୁଅଛନ୍ତି ସେମାନେ ପ୍ରାୟ ବଡ଼ ବଡ଼ ଚାକରୀ ପାଇ ଅଥବା ବ୍ୟବସାୟ ବିଶେଷରେ ଅଧିକ ବିଚକ୍ଷଣତା ଦେଖାଇ ଧନବାନ୍ ହେଉଅଛନ୍ତି ମାତ୍ର ସମସ୍ତ ଶିକ୍ଷିତଲୋକ ଧନବାନ୍ ହେବେ ଏପରି ହୋଇ ପାରିବ କି ? ତାହା ନ ହେଲେ ଆର୍ଥିକ ଅଭାବର ଅର୍ଥ କିସ ? ଶିକ୍ଷିତ ଲୋକମାନେ ଖାଇବା ବିନା ଗଡି ମରୁଅଛନ୍ତି ଏପରି ଅବସ୍ଥା ପ୍ରାୟ କୌଣସିଠାରେ ଘଟି ନାହିଁ । ଯେବେ ଘଟିବ ତେବେ ତାହା ଶିକ୍ଷାର ଦୋଷ ଭିନ୍ନ ଆଉ କିଛି ବୋଲାଯିବ ନାହିଁ । ଶିକ୍ଷିତ ଲୋକ ଅର୍ଥ ଆମ୍ଭମାନଙ୍କ ବୁଝିବାରେ ବିଦ୍ୱାନ୍ ଲୋକ ଅଟଇ ଓ ବିଦ୍ୱାନ୍‌ଲୋକର ଆର୍ଥିକ ଅବସ୍ଥା କୌଣସି କାଳରେ ବା ଦେଶରେ ଅନ୍ୟାନ୍ୟ ଲୋକାପେକ୍ଷା ଉତ୍କୃଷ୍ଟ ହେବା ସାଧାରଣ ଘଟନା ନୁହଇ ବରଂ ଲକ୍ଷ୍ମୀ ସରସ୍ୱତୀଙ୍କର ବିବାଦ ବୋଲି ଦୀର୍ଘକାଳରୁ ପ୍ରବାଦ ଚାଲି ଆସୁଅଛି । ଅର୍ଥକରୀ ବିଦ୍ୟା ଗୋଟିଏ ସ୍ୱତନ୍ତ୍ର କଥା । ଯେଉଁମାନେ ସେପ୍ରକାର ବିଦ୍ୟାଶିକ୍ଷା କରି ସରକାରୀକର୍ମଚାରୀ ଉକୀଲ ଡାକ୍ତର ଇଞ୍ଜିନିୟର ପୁସ୍ତକରଚକ ଇତ୍ୟାଦି ହେଉଅଛନ୍ତି ସେମାନେ ଆପଣା ଆପଣା ଯୋଗ୍ୟତାନୁସାରେ ଫଳପାଉଅଛନ୍ତି ଏବଂ ଜନସମାଜର ପ୍ରୟୋଜନ ଅନୁସାରେ ସେମାନଙ୍କ ସଂଖ୍ୟାର ମଧ୍ୟ ସୀମା ଅଛି । କିନ୍ତୁ ଏଥିପାଇଁ କିଏ ବୋଲିବ ଯେ ଜନସମାଜ ନିମିତ୍ତ ଯେତିକି ବିଦ୍ୱାନ୍‌ର ଲୋଡ଼ା ତଦପେକ୍ଷା ଅଧିକ ଲୋକ ବିଦ୍ୱାନ୍ ହେବାର ଉଚିତ ।

ମହାଙ୍ଗାଗ୍ରାମରେ ବ୧୦ର୍ଷ ହେବ ଭର୍ଣ୍ଣାକ୍ୟୁଲର ସ୍କୁଲ ଉଠି ଯାଇଥିବାରୁ ସେଠାରେ ବର୍ତ୍ତମାନ ଗୋଟିଏ ନୂତନ ମାଇନରସ୍କୁଲ ସ୍ଥାପନ ହେବା ବିଷୟରେ ଉକ୍ତସ୍କୁଲର ସମ୍ପାଦକ ବାବୁ ଶ୍ରୀ ଲାଲା ନୀଳମଣିରାୟ ଏକ ପ୍ରେରିତପତ୍ର ପ୍ରେରଣ କରିଥିଲେ ଓ ତାହା ଗତ ମାସର ଶେଷ ସପ୍ତାହର ଦୀପିକାରେ ପ୍ରକାଶିତ ହୋଇଅଛି ସମ୍ପାଦକ ମହାଶୟ ସାଧାରଣ ସାହାଯ୍ୟ ପ୍ରାର୍ଥନା କରିଅଛନ୍ତି । ପ୍ରତ୍ୟେକ ମୋଫସଲରେ ଶିକ୍ଷାସ୍ରୋତ ଯେତେ ବୃଦ୍ଧି ହୁଏ ତେତେ ଉତ୍ତମ ଓ ଉନ୍ନତିର ଶୁଭଚିହ୍ନ ଓ ଦେଶର ମଙ୍ଗଳାକାଙ୍କ୍ଷିମାନଙ୍କର ତଦୁନ୍ନତିପାଇଁ ଯଥୋଚିତ ସାହାଯ୍ୟ ପ୍ରଦାନ କରା ବିଧେୟ । ସମ୍ପାଦକମହାଶୟଙ୍କର ଉଚିତ ଯେ ଉକ୍ତ ସ୍କୁଲର ବ୍ୟୟ ନିର୍ବାହାର୍ଥେ ତତ୍ର ଗ୍ରାମବାସିମାନେ କେତେ ପରିମାଣରେ ସାହାଯ୍ୟ କରିଅଛନ୍ତି ଓ ବାକୀ ଅନ୍ୟାନ୍ୟମାନଙ୍କଠାରୁ କେତେ ସାହାଯ୍ୟ ଗ୍ରହଣ କଲେ ସ୍କୁଲ ଚଳିପାରିବ ତାହା ଉଲ୍ଲେଖ କରିବେ । ଆମ୍ଭେମାନେ ଆଶା କରୁଁ ବିଦ୍ୟୋତ୍ସାହିମାନେ ଅବଶ୍ୟ କିଛି କିଛି ସାହାଯ୍ୟ କରି ସ୍ୱ ସ୍ୱ ବଦାନ୍ୟତା ପ୍ରକାଶ କରିବେ ।

*ଭା୨୪ଗ,ସଂ୪୮ଖ୍ୟା, ୧୪।୧୨।୧୮୮୯*

# ୧୮୯୦

## ଦ୍ୱିଭାଷୀ

### [ନୂତନ ପୁସ୍ତକ]

ମାଇନର ଭର୍ଣ୍ଣାକ୍ୟୁଲର ସ୍କୁଲ ଓ ଏଣ୍ଟ୍ରେନ୍ସ ସ୍କୁଲର ଅଧିକାଂଶ ଶ୍ରେଣୀର ଛାତ୍ରମାନଙ୍କର ଇଂରାଜୀ ଶିକ୍ଷା ପକ୍ଷରେ ଏହି ପୁସ୍ତକ ଅତ୍ୟନ୍ତ ଉପଯୋଗୀ । ଏଥିରେ ପ୍ରାୟ ଦୁଇ ସହସ୍ର ଆବଶ୍ୟକୀୟ ଓ ନାନା ବିଷୟକ ଓଡ଼ିଆ ଶବ୍ଦର ଇଂରାଜୀ ଅନୁବାଦ; ପ୍ରତ୍ୟେକ ଇଂରାଜୀ ଶବ୍ଦର ଉଚ୍ଚାରଣ ଓ ପ୍ରତ୍ୟେକ ପୃଷ୍ଠାରେ ଗୋଟିଏ ଲେଖାଏଁ ଇଂରାଜୀ ହିତୋପଦେଶ ଓ ତାହାର ଓଡ଼ିଆ ଅନୁବାଦ ଅଛି । ମୂଲ୍ୟ ଟ ୦। କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ପୁସ୍ତକାଳୟରେ ପ୍ରାପ୍ତବ୍ୟ ।

*ଉ/୨୫ଗ,ସଂ୧ଖ୍ୟା, ୪/ ୧/୧୮୯୦*

## ବଙ୍ଗଳାର ଶିକ୍ଷା

ସାଧାରଣ ଶିକ୍ଷାର ବିବରଣ ଏଥିପୂର୍ବେ ପାଠକମାନଙ୍କୁ ଜଣାଇଅଛୁଁ । ବର୍ତ୍ତମାନ ବିଶେଷ ଶିକ୍ଷା ସମ୍ବନ୍ଧରେ କିଛି କହିବାକୁ ଇଚ୍ଛା କରୁ ଅଛୁଁ । ବିଶେଷ ଶିକ୍ଷାର ଦୁଇ ଶାଖା ଅଟଇ । ଗୋଟିଏ ଜାତି ବିଶେଷର ଶିକ୍ଷା ନିମିତ୍ତ ବିଶେଷ ବନ୍ଦୋବସ୍ତ ଅପରଟି ସାଧାରଣ ଲୋକଙ୍କୁ ବିଶେଷ ବିଶେଷ ବ୍ୟବସାୟର ଶିକ୍ଷାଦାନ ଜାତିବିଶେଷର ଶିକ୍ଷା ସମ୍ବନ୍ଧରେ ଏତିକି ବକ୍ତବ୍ୟ ଯେ ଫିରିଙ୍ଗି ମୁସଲମାନ ଏବଂ ଆଦିମ ଲୋକଙ୍କୁ ଶିକ୍ଷା ଦେବା ନିମିତ୍ତ ଗବର୍ଣ୍ଣମେଣ୍ଟ ଯେ ସମସ୍ତ ବିଶେଷ ବନ୍ଦୋବସ୍ତ କରି ଅଛନ୍ତି ତାହା ସବୁ କ୍ରମଶଃ ଶୁଭଫଳ ଧାରଣ କରୁ ଅଛି ଏବଂ ଏସବୁ ଜାତି ମଧ୍ୟରେ ଶିକ୍ଷାର କ୍ରମଶଃ ଉନ୍ନତି ହେଉଅଛି ।

ବ୍ୟବସାୟ ଶିକ୍ଷା ସମ୍ବନ୍ଧରେ ଦେଖାଯାଏ ଯେ ସନ ୧୮୮୮/୮୯ ରେ ଜଂ୯୩୫ଣ ଆଇନ ଜଂ୯୯୯ ଣ ଚିକିତ୍ସା, ଜଂ୫୧୮ଣ ଇଞ୍ଜିନିୟରିଂ ଏବଂ ଜଂ୬୫୧ଣ ଶିଳ୍ପାଦି କାର୍ଯ୍ୟ ଶିକ୍ଷା କରୁଥିଲେ । ଏହି ଅଙ୍କମାନ ପୂର୍ବ ବର୍ଷର ଅଙ୍କ ସଙ୍ଗେ ତୁଳନା କଲେ ଦେଖାଯାଏ ଯେ ଆଇନ ଛାତ୍ରଙ୍କ ସଂଖ୍ୟା ଅନେକ ଊଣା ପଡିଅଛି । ଏବଂ ଚିକିତ୍ସା ଛାତ୍ରଙ୍କ ସଂଖ୍ୟା ବୃଦ୍ଧି ହେଉଅଛି । ଗବର୍ଣ୍ଣମେଣ୍ଟ ଏଥିର କାରଣ ଯଥାର୍ଥ ରୂପେ ନିର୍ଦ୍ଦେଶ କରିଅଛନ୍ତି କି ଆଇନ ବ୍ୟବସାୟୀଙ୍କ ଦଳ ଅତ୍ୟନ୍ତ ଅଧିକ ହେବାରୁ ସେ ବ୍ୟବସାୟର ରସ ଆଉ ନାହିଁ ଓ ପକ୍ଷାନ୍ତରେ ଚିକିତ୍ସା ବ୍ୟବସାୟ ଦ୍ୱାରା ଭବିଷ୍ୟତ ଉନ୍ନତିର ଆଶା ଅଧିକ ଦେଖାଯାଉଅଛି । ଯେଉଁ ବ୍ୟବସାୟରେ ଅଧିକ ଅର୍ଜନ ହେବ ଲୋକେ ସେହି ଦିଗକୁ ଝୁଙ୍କିବେ ଏହା ସାଧାରଣ ନିୟମ ଅଟଇ । ଏବଂ ଆଇନର ଅବନତି ଏବଂ ଚିକିତ୍ସାର ଉନ୍ନତି ହେବା ଅବଶ୍ୟ ଅଧିକ ସୁଖର ବିଷୟ ଅଟଇ ସନ୍ଦେହ ନାହିଁ । ରୋଗୀ ସଦା ସୁଖୀ ଚିକିତ୍ସା ତହିଁର ସାହାଯ୍ୟ କରୁ ଥିବାରୁ ଅବଶ୍ୟ ଶ୍ରେଷ୍ଠ ବ୍ୟବସାୟ ଅଟଇ । ଆଇନ ଦ୍ୱାରା ଅଧିକାଂଶ ସ୍ଥଳରେ କେବଳ ଅର୍ଥକ୍ଷୟ ଓ ବୃଥା ଅଭିମାନ ଓ ହିଂସା ଚରିତାର୍ଥ ହୁଅଇ । ମାମଲା ମୋକଦ୍ଦମାରେ କେତେ ଘର ଉଚ୍ଛନ୍ନ ହୋଇଅଛି ତହିଁର ସୀମା ନାହିଁ । ଶିବପୁର ଇଞ୍ଜିନିୟରିଂ କଲେଜ ସମ୍ବନ୍ଧରେ ସନ ୧୮୮୭ ସାଲରେ ଯେଉଁ କମିଶନ ବସିଥିଲା ସେଥିର ରିପୋର୍ଟ ପାପ୍ତ ହୋଇଅଛୁ । ମାତ୍ର ବ୍ୟବସାୟ ଶିକ୍ଷା ସମ୍ବନ୍ଧରେ କଲିନ ସାହେବଙ୍କର ତଦନ୍ତ ଅବଧି ଶେଷ ହୋଇ ନ ଥିବାରୁ ତହିଁର ଶେଷ ନିଷ୍ପତି ହୋଇ ନାହିଁ। ଗବର୍ଣ୍ଣମେଣ୍ଟଙ୍କର ଏ ବିଷୟରେ ଯତ୍ନ ରହିଥିବାରୁ ଆମ୍ଭମାନଙ୍କର ଆଶା ହେଉଅଛି ଯେ, ଅଚିରେ ବଙ୍ଗ ଦେଶରେ ବ୍ୟବସାୟ ବାଣିଜ୍ୟ ଶିକ୍ଷା ଦେବାର ଉପଯୁକ୍ତ ବନ୍ଦୋବସ୍ତ ହେବ । ଶିଳ୍ପ ବିଦ୍ୟାଳୟର କାର୍ଯ୍ୟ ମଧ୍ୟ ଉତ୍ତମରୂପେ ଚାଲୁଅଛି । ଏବଂ କେତେକ ଛାତ୍ରଙ୍କୁ ଶିକ୍ଷକତାର ଯୋଗ୍ୟତା ଶିକ୍ଷା ଦେବା କାରଣ ବିଶେଷ ବନ୍ଦୋବସ୍ତ ହୋଇଅଛି । କଲିକତା ମେଡିକାଲ କଲେଜରେ ଜଂ୫ଣ ସ୍ତ୍ରୀ ବିଶ୍ୱବିଦ୍ୟାଳୟର ଚିକିତ୍ସା ଯୋଗ୍ୟତା ନିମିତ୍ତ ଅଧ୍ୟୟନ କରୁ ଅଛନ୍ତି । ଏବଂ ଜଂ୧୯ଣ ସ୍ତ୍ରୀ କାମ୍ବଲ ଚିକିତ୍ସା ବିଦ୍ୟାଳୟରେ ପଢୁଅଛନ୍ତି । କଟକ ଚିକିତ୍ସା ବିଦ୍ୟାଳୟରେ ଦୁଇଜଣ ସ୍ତ୍ରୀ ପଢୁଅଛନ୍ତି, ତହିଁ ମଧ୍ୟରୁ ଏକ ଏକ ଜଣ ଏବର୍ଷ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

*ଉ/ ୨୫ଗ, ସଂ୯ଖ୍ୟା, ୧/୩/୧୮୯୦*

# ୧୮୯୧

## ମାନ୍ଦ୍ରାଜ-ଓଡ଼ିୟା ଶିକ୍ଷା ସମାଜ

ଉପର ଲିଖିତ ନାମରେ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ପାରଳାଖେମୁଣ୍ଡିରେ ଗୋଟିଏ ସମାଜସ୍ଥାପିତ ହୋଇଅଛି ଏବଂ ତହିଁରେ ପ୍ରଥମ ଅଧିବେଶନର ବିବରଣ ଆମ୍ଭେ ପ୍ରାପ୍ତ ହୋଇଥିବାରୁ ତହିଁର ସାରମର୍ମ ଏଠାରେ ପ୍ରକାଶ କଲୁଁ ।

ଏହି ଅଧିବେଶନ ଗତ ମଇମାସ ତା ୨୨ରିଖରେ ଶ୍ରୀମାନ ଜଗନ୍ନାଥ ସ୍ୱାମିଙ୍କ ମନ୍ଦିରରେ ହୋଇଥିଲା ଏବଂ ସ୍ଥାନୀୟ ଉତ୍କଳ ଓ ତୈଲଙ୍ଗ ଭଦ୍ରଲୋକମାନେ ଉପସ୍ଥିତ ଥିଲେ । ମାନ୍ଦ୍ରାଜ ପ୍ରଦେଶବାସୀ ଓଡ଼ିୟାଙ୍କ ଶିକ୍ଷାର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଥିବାରୁ ତହିଁର ପ୍ରତୀକାର ଉପାୟ ସ୍ଥିର କରିବା ଏ ସଭାର ଉଦ୍ଦେଶ୍ୟ ଥିଲା । ଶ୍ରୀଯୁକ୍ତ ବି,କେ, ଦ୍ୱୈପାୟନ ରାଓ କି ସେ କେନାରି ସମାଜ ଭୁକ୍ତ ହେଲେହେଁ ଉତ୍କଳୀୟଙ୍କର ଜଣେ ହିତାକାଂକ୍ଷୀ ଅଟନ୍ତି । ଏ ସଭାର ସଭାପତି ପଦରେ ବରିତ ହୋଇ କାର୍ଯ୍ୟାରମ୍ଭ କଲେ ଏବଂ ମାନ୍ଦ୍ରାଜ ପ୍ରଦେଶସ୍ତ ଉତ୍କଳୀୟଙ୍କର ଶିକ୍ଷାର ଶୋଚନୀୟ ଅବସ୍ଥା ବିଷଦ ରୂପେ ବୁଝାଇ ଦେଲେ । ତହିଁ ଉତ୍ତାରୁ ବାବୁ ଅପନା ପଣ୍ଡା ଓ ବାବୁ ନରସିଂହ ନାୟକ ଏହି ବିଷୟରେ ଉତ୍ତମ ବକ୍ତୃତାମାନ ପ୍ରଦାନ କଲାରୁ ତଳ ଲିଖିତ ବିଷୟମାନ ଧାର୍ଯ୍ୟ ହେଲା । ଯଥା

୧ । ମାନ୍ଦ୍ରାଜ-ଓଡ଼ିୟା ଶିକ୍ଷା ସମାଜ ନାମରେ ଗୋଟିଏ ସଭା ସ୍ଥାପିତ ହେବ ଏବଂ ଆପାତତଃ ବାବୁ ରାଧାଚରଣ ଅଧିକାରୀ ବାବୁ ଗୌରଚନ୍ଦ୍ର ପାତ୍ର ଅସମ୍ଭବ ଅଟଇ । ଆମ୍ଭେମାନେ ଆଶାକରୁଁ କି ଏ ସଭା ଦୀର୍ଘକାଳ ସ୍ଥାୟୀ ହୋଇ ଏହି ହିତକର ବ୍ରତ ପାଳନରେ ଯଥୋଚିତ ଚେଷ୍ଟା ଓ ଅଧବସାୟ ପ୍ରଦର୍ଶନ କରିବେ । ବାବୁ ଶ୍ୟାମସୁନ୍ଦର ରାଜଗୁରୁ, ବାବୁ ଅପନା ପଣ୍ଡା, ବାବୁ ନୀଳମଣି ପରିଚ୍ଛା, ବାବୁ ନରସିଂହ ନାୟକ, ବାବୁ ଗଦାଧର ପାତ୍ର, ଶ୍ରୀଯୁକ୍ତ ନରସିଂହ ଲୁନାଓଡୁଗାରୁ, ଶ୍ରୀଯୁକ୍ତ କେ ଗୋବିନ୍ଦ ରାଓ ନାଏଡୁ ଗାରୁ ଏବଂ ଶ୍ରୀଯୁକ୍ତ ବି କେ ଦ୍ୱୈପାୟନ ରାଓ ଏଥିରେ ସଭ୍ୟ ହେବେ ।

୨ । ଓଡ଼ିୟା ପିଲାଙ୍କର ସ୍କୁଲରେ ପଢ଼ିବାର ବ୍ୟୟ ନିର୍ବାହାର୍ଥ ଅର୍ଥ ସଂଗୃହୀତ ହେବ ଏବଂ ତହିଁର ନାମ " ମାନ୍ଦ୍ରାଜ-ଓଡ଼ିୟା ଶିକ୍ଷା ଫଣ୍ଡ" ରଖାଯିବ ।

୩ । ଗଞ୍ଜାମ ଜିଲ୍ଲାର ବରହମପୁର ନଗରରେ ସନ ୧୮୯୨ ସାଲ ଜାନୁଏରୀ ବା ମଇମାସରେ ଓଡ଼ିୟା ଶିକ୍ଷା ସମିତିର ପ୍ରଥମ ଅଧିବେଶନ ହେବ ଏବଂ ଏଥି ମଧ୍ୟରେ ଯେ କିଛି ଅର୍ଥ ସଂଗୃହୀତ ହୋଇଥିବ ସେହି ସମିତିକୁ ପ୍ରଦତ୍ତ ହେବ ।

ଏଥି ଉତ୍ତାରୁ ସେହି ମଇ ମାସ ତା୨୬ରିଖର ଏସଭାର ଏକ ଅଧିବେଶନ ହୋଇ ସଭାର ନିୟମାବଳୀ ସ୍ଥିର ହେଲା ଏବଂ ଶ୍ରୀଯୁକ୍ତ ବି.କେ. ଦ୍ୱୈପାୟନ ରାଓ ସମ୍ପାଦକ ପଦରେ ମନୋନୀତ ହେଲେ । ଏ ସଭା ମାସରେ ଥରେ ଲେଖାଏଁ ବସିବାର ନିୟମ ହୋଇଅଛି ।

ସଭାର ଉଦ୍ଦେଶ୍ୟ ମହତ୍ ଏବଂ ଭେଦା ଓ ଦାନ ପ୍ରଭୃତି ଦ୍ୱାରା ଅର୍ଥ ସଂଗ୍ରହ କରି ତଦ୍ୱାରା ଓଡ଼ିୟା ପିଲାଙ୍କୁ ସ୍କୁଲରେ ପଢ଼ିବା ବିଷୟରେ ସାହାଯ୍ୟ କରିବାର କଳ୍ପନାଟି କାର୍ଯ୍ୟକର ଓ ଉତ୍ତମ ଅଟଇ । ବାସ୍ତବରେ ଦକ୍ଷିଣ ପ୍ରଦେଶର ଓଡ଼ିୟାମାନେ ନିତାନ୍ତ ଗରିବ ଓ ବିନା ସାହାଯ୍ୟରେ ସେମାନଙ୍କର ଉନ୍ନତି ହେବା-ଏକ ପ୍ରକାର ଅସମ୍ଭବ ଅଟଇ । ଆମ୍ଭେମାନେ ଆଶାକରୁଁ କି ଏ ସଭା ଦୀର୍ଘକାଳ ସ୍ଥାୟୀ ହୋଇ ଏହି ହିତକର ବ୍ରତ ପାଳନରେ ଯଥୋଚିତ ଚେଷ୍ଟା ଓ ଅଧବସାୟ ପ୍ରଦର୍ଶନ କରାଇବେ ।

*ଭା୨୬ଗ,ସଂ୩୦ଖ୍ୟା,୨୫।୭।୧୮୯୧*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## ଉତ୍କଳ ଅଭିଧାନ ।

ଉତ୍କଳ ଭାଷାରେ ଲିଖନ ପଠନ କରୁଥିବା ସମସ୍ତଙ୍କର ଅତି ପ୍ରୟୋଜନୀୟ ପୁସ୍ତକ ସଚିତ୍ର ।

ଶିକ୍ଷା ବିଭାଗର ଡିରେକ୍ଟର ଏବଂ କମିଶନର ମହୋଦୟ ଖଣ୍ଡିଏ ଉତ୍କଳୀୟ ବୃହତ୍ ଶବ୍ଦକୋଷ ଅଭାବ ବିଷୟ ସରକାରୀ ରିପୋର୍ଟରେ ପୁନଃ ପୁନଃ ଉଲ୍ଲେଖ କରିଥିବାରୁ ଆମ୍ଭେ ଏହି ଅଭାବ ମୋଚନ ନିମିତ୍ତ ପ୍ରାୟ ତିନି ବର୍ଷ କାଳ ଯଥାସାଧ୍ୟ ପରିଶ୍ରମ କରି କେତେକ ଖଣ୍ଡ ଅଭିଧାନ ଓ କେତେକ ବନ୍ଧୁଙ୍କ ସାହାଯ୍ୟରେ ଏହି ଅଭିଧାନ ସଂକଳନ କରି ଅଛୁଁ । ଏଥିରେ ଧାତୁ ପ୍ରତ୍ୟୟ ସହିତ ଶବ୍ଦ ବ୍ୟୁତ୍ପତ୍ତି ଓ ଶବ୍ଦାର୍ଥ ଏ ସ୍ଥଳ ବିଶେଷରେ ପୁରାତନ ଆଧୁନିକ କବିମାନଙ୍କ ଗ୍ରନ୍ଥରୁ ଶିଷ୍ଟ ପ୍ରୟୋଗମାନ ଏବଂ ଶେଷରେ ଧାତୁମାଳା ପ୍ରଦତ୍ତ ହୋଇଅଛି । ସ୍ଥୁଳରେ ପ୍ରାୟ ଦ୍ୱାବିଂଶତି ସହସ୍ର ଶବ୍ଦ ଏହି ପୁସ୍ତକରେ ସମାବେଶିତ ହୋଇଅଛି । ପୁସ୍ତକର ଆକାର ରଏଲ ଆଠପେଜୀ ଆଠଶତ ପୃଷ୍ଠା ମୂଲ୍ୟ ପାଞ୍ଚ ଟଙ୍କା !

ଶିକ୍ଷା ବିଭାଗର ଡାଇରେକ୍ଟର ମହୋଦୟ ଏହି ପୁସ୍ତକର ବ୍ୟୟ ସାହାଯ୍ୟ ସ୍ୱରୂପ ଆମ୍ଭଙ୍କୁ ଏକ ହଜାର ଟଙ୍କା ଦେଇଅଛନ୍ତି ଏବଂ କେତେକ ଖଣ୍ଡ ପୁସ୍ତକ ମଧ କିଣି ଦେବାକୁ ପ୍ରତିଶୃତି ହୋଇଅଛନ୍ତି ।

ପୁସ୍ତକ ଗ୍ରହଣେଚ୍ଛୁ ବ୍ୟକ୍ତିମାନେ ଆମ୍ଭ ନିକଟରେ ତତ୍ତ୍ୱ କଲେ ପୁସ୍ତକ ପାଇ ପାରିବେ । ମଫସଲ ଗ୍ରାହକମାନଙ୍କୁ ମୂଲ୍ୟଛଡା ଡାକ ମାହାସୁଲ ଟ୦ । ଦେବାକୁ ପଡିବ ।

ଯେଉଁମାନେ ଏକାବେଳେକେ ଦଶଖଣ୍ଡି ପୁସ୍ତକ ଗ୍ରହଣ କରିବେ ସେମାନଙ୍କୁ ବିନା ମୂଲ୍ୟରେ ଖଣ୍ଡିଏ ପୁସ୍ତକ ଦିଆଯିବ ।

ଯେଉଁ ପୁସ୍ତକରେ ଆମ୍ଭର ସ୍ୱାକ୍ଷର ନ ଥିବ ସେ ପୁସ୍ତକ ଚୋରା ବୋଲି ଗଣ୍ୟ ହେବ । ଏପରି ପୁସ୍ତକ କେହି ବିକ୍ରୟ କରୁଥିବାର ବା କେହି କିଣୁଥିବାର କେହି ଧରିଦେଲେ ଆମ୍ଭେ ତାହାକୁ ଦଶଟଙ୍କା ପୁରସ୍କାର ଦେବୁଁ ।

ଶ୍ରୀ ଜଗନ୍ନାଥ ରାଓ

ବାଲୁବଜାର, କାଳୀଗଳୀ

*ଭା୨୬ଗ, ସଂ୩୧ଖ୍ୟା, ୧।୮।୧୮୯୧*

## ପ୍ରେରିତ ପତ୍ର ।

ମହାଶୟ !

ଓଡ଼ିଶାରେ ଇଂରାଜୀ ଶିକ୍ଷାର ଆଦର ଓ ବିସ୍ତାର କ୍ରମଶଃ ବୃଦ୍ଧି ପାଉଅଛି । କିନ୍ତୁ ସମସ୍ତ ଶିକ୍ଷିତ ଲୋକମାନେ ଓଡ଼ିଆ ଭାଷା ପ୍ରତି ଆଶାନୁରୂପ ଅନୁରାଗ ପ୍ରଦର୍ଶନ କରନ୍ତି ବୋଲି ଆମ୍ଭେମାନେ ବିଶ୍ୱାସ କରୁ ନାହୁଁ । ଉତ୍କଳ ପ୍ରତିଭାର ସମ୍ପାଦକଙ୍କ ପରି ଅନେକ ଲୋକ ଭାବନ୍ତି । ଓଡ଼ିଆ ଭାଷାରେ ସାହିତ୍ୟ ନାହିଁ । କୂପର ପରିଧିର ବାହାରେ ପୃଥିବୀର ସୀମା ନାହିଁ ବୋଲି, କୂପ ମଣ୍ଡୁକର ଦୃଢ ବିଶ୍ୱାସ । ଅନେକ ଲୋକ ଚିରକାଳ ତଦ୍ରୂପ ବିଶ୍ୱାସର ବଶୀଭୂତ । ସୁତରାଂ ସେମାନେ ମୁଦ୍ରିତ ବା ହିଂସ୍ରାଙ୍କିତ ଓଡ଼ିଆ ପୁସ୍ତକକୁ ସେମାନଙ୍କ ଦସ୍ତ ବା ନେତ୍ରର ଉପଯୁକ୍ତ ପଦାର୍ଥ ବୋଲି ଜ୍ଞାନ କରନ୍ତି ନାହିଁ । କିନ୍ତୁ ଓଡ଼ିଆ ଭାଷାଭିଜ୍ଞ,ବିଦେଶୀୟ ବ୍ୟକ୍ତିମାନେ ଓଡ଼ିଆଭାଷାର କିପରି ଆଦର କରନ୍ତି , ତହିଁର ଗୋଟିଏ ପ୍ରମାଣ ଦେବା ଉଦ୍ଦେଶ୍ୟରେ ଆମ୍ଭମାନଙ୍କର ଜଣେ ମାନ୍ୟାସ୍ପଦ ବନ୍ଧୁଙ୍କ ପତ୍ରର କିୟଦଂଶର ଅନୁବାଦ ଏହିଠାରେ ପ୍ରଦାନ କରୁଅଛୁଁ-"**XXXX** ଯେଉଁ ଓଡ଼ିଆ ପୁସ୍ତକ ମାନ ତୁମ୍ଭେ ଅଣାଇ ଦେଇଥିଲ ତନ୍ମଧ୍ୟରୁ ଖଣ୍ଡିଏ ପୁସ୍ତକର କିୟଦଂଶ ପାଠ କରି ଅଛୁଁ । ଉପେନ୍ଦ୍ରଭଞ୍ଜଙ୍କର କବିତା ଯଥାର୍ଥ କବି ଶକ୍ତିର ପରିଚାୟକ ଏବଂ ମନୋହର ଭାବ ପରିପୂର୍ଣ୍ଣ କିନ୍ତୁ ତହିଁର ଉପରିଭାଗ ଏଡ଼େ କଠିନ ଯେ ( ତାହା ଭେଦ କରେ ) ରସାସ୍ୱାଦନ କରିବା ସମସ୍ତଙ୍କର ସାଧାଧୀନ ନୁହେଁ । **XXXX** ଜଣେ ବନ୍ଧୁ ଆମ୍ଭ ହସ୍ତରେ ଓଡ଼ିଆ ପୁସ୍ତକ ଦେଖି ବିଦ୍ରୂପ କରିଥିଲେ । କିନ୍ତୁ ଓଡ଼ିଶାର ପ୍ରାକୃତିକ ଦୃଶ୍ୟ ପ୍ରାଚୀନ କୀର୍ତ୍ତି

ଏବଂ ପତନ୍ମୋନ୍ମୁଖ ଶିଳ୍ପ ପ୍ରତି ଆମ୍ଭର ଯେପରି ଭକ୍ତି, ସାହିତ୍ୟ ପ୍ରତି ସେହିପରି ଅନୁରାଗ । ଉପେନ୍ଦ୍ରଭଞ୍ଜ ପ୍ରଭୃତି ଯେଉଁ ଭାଷାର କବି,ସେ ଭାଷାର ନିନ୍ଦା ଅନୁମୋଦନୀୟ ନୁହେଁ । XXXX ଇଉରୋପ ଭ୍ରମଣ ନାମକ ଯେଉଁ ଇଂରାଜୀ ପୁସ୍ତକ ଖଣ୍ଡିକ ତୁମ୍ଭଙ୍କୁ ଉପହାର ଦେଉଁ ଅଛୁଁ , ତହିଁ ସଙ୍ଗେ ତୁମ୍ଭର "ବନବାଳା" ପ୍ରତ୍ୟର୍ପଣ କଲୁଁ । "ବର୍ଣ୍ଣବାଳାର ପ୍ରତ୍ୟେକ ଅଙ୍ଗ ପର୍ଯ୍ୟବେକ୍ଷଣ କରିଅଛୁଁ । କିନ୍ତୁ କୌଣସି ଅଙ୍ଗର ଅସମ୍ପୂର୍ଣ୍ଣତା ଦେଖି ନାହୁଁ . । କେବଳ ସ୍ଥାନେ ସ୍ଥାନେ ବିଶୁଦ୍ଧ ଦୈଶିକ ଭାଷାର ଏକତ୍ର ସମାବେଶ ଓ ventriloquism ଦୋଷ ଲିକ୍ଷିତ ହେଲା । ପୁସ୍ତକ ଖଣ୍ଡିକୁ ବିଶେଷ ଆଗ୍ରହ ସହିତ ପଢ଼ିବାର କାରଣ ଏହି ଯେ, ପୂର୍ବେ ଓଡ଼ିୟା ଭାଷାରେ ନାଟକ ନ ଥିଲା । ଏବଂ (ସେ ଭାଷାରେ ) ନାଟକ ରଚିତ ହୋଇଅଛି ବୋଲି ଆମ୍ଭେ ଜାଣି ନ ଥିଲୁ । ପୁସ୍ତକ ଖଣ୍ଡି ପାଠ କରି ଯେଉଁ ସନ୍ତୋଷ ଲାଭ କଲୁଁ ତନିମିତ୍ତ ତୁମ୍ଭକୁ ଧନ୍ୟବାଦ ଦେଉଁଅଛୁଁ । ଗ୍ରନ୍ଥକର୍ତ୍ତା ଅବଶ୍ୟ ସୁଶିକ୍ଷିତ ହୋଇଥିବେ ଯେଉଁ ଦେଶର ଶିକ୍ଷିତ ଲୋକମାନେ ବୁଝି ପାରନ୍ତି, ସେ ଦେଶର ଉନ୍ନତି ବା ଅବନତି ନିମନ୍ତେ ସେମାନେ ଦାୟୀ, ସେ ଦେଶର ସାହିତ୍ୟ ଉନ୍ନତିର ଯଥାର୍ଥ ଅଧିକାରୀ । XXXX ।"

ଯାହାଙ୍କ ପତ୍ରରୁ ଉପରୋକ୍ତ ଅଂଶ ଉଦ୍ଧୃତ ହେଲା, ସେ ବଙ୍ଗଦେଶର ଜଣେ ମାନ୍ୟଗଣ୍ୟ ଏବଂ ଖ୍ୟାତିନାମା ଭଦ୍ରଲୋକ । ତାଙ୍କର ଉତ୍କଳ ସାହିତ୍ୟ ପ୍ରତି ଅନୁରାଗ-ଓଡ଼ିୟା ଭାଷାର ଗୌରବର ବିଷୟ । ବିନାନୁମତିରେ କାହାରି ପତ୍ର ପ୍ରକାଶ କରିବା ସଙ୍ଗତ ନୁହଁଇ । ଏହି ହେତୁରୁ ଆମ୍ଭେମାନେ ତାହାଙ୍କ ନାମ ଉଲ୍ଲେଖ କରିପାରିଲୁଁ ନାହିଁ । ଇତି ।

କଲିକତା

୨୩।୮। ୯୧ ଜଣେ ଓଡ଼ିୟା

*ଭା୨୬ଗ, ସଂ୩୬ଖ୍ୟା, ୫।୯।୧୮୯୧*

## [ମାନ୍ଦ୍ରାଜ ଓଡ଼ିୟା ଶିକ୍ଷା ପାଣ୍ଠି ]

ଓଡ଼ିୟାଙ୍କ ଶିକ୍ଷୋନ୍ନତିର ଉପାୟ କରିବା ନିମନ୍ତେ ପାରଳାଖେମୁଣ୍ଡିରେ ଗୋଟିଏ ସଭା ସ୍ଥାପିତ ହୋଇଥିବା ଏବଂ ବାବୁ ବି,କେ ଦ୍ୱୈପାୟନ ରାଓ ତହିଁର ସମ୍ପାଦକ ହୋଇଥିବା ବିବରଣ ଏଥିପୂର୍ବେ ପାଠକମାନଙ୍କୁ ଜଣାଇ ଅଛୁଁ . । ଏହି କମେଟୀ ସମ୍ପ୍ରତି ଏକ ସାଧାରଣ ଆବେଦନ ପତ୍ର ପ୍ରଚାର କରି ସର୍ବସାଧାରଣଙ୍କଠାରୁ ଭେଦା ପ୍ରାର୍ଥନା କରିଅଛନ୍ତି । ଭେଦା ଦ୍ୱାରା ଯେ କିଛି ଅର୍ଥ ସଂଗ୍ରହ ହେବ ତାହା 'ମାନ୍ଦ୍ରାଜ ଓଡ଼ିୟା ଶିକ୍ଷା ପାଣ୍ଠି ନାମକ' ତହବୀଲରେ ଜମା ହୋଇ ତହିଁରୁ ଦୁଇ ତିନିଟା ସ୍କୁଲ ସ୍ଥାପିତ ହେବ, କଲେଜ ଓ ଉଚ୍ଚ ବିଦ୍ୟାଳୟରେ ପଢ଼ିବା କାରଣ ବୃତ୍ତି ଖଞ୍ଜା ହେବ ଏବଂ ଆବଶ୍ୟକମତେ କେହି କେହି ଛାତ୍ରଙ୍କୁ ଅର୍ଥ ସାହାଯ୍ୟ ଦିଆଯିବ । ଯାହାଙ୍କର ଯାହା ଦେବାକୁ ଇଚ୍ଛା ହେବ ସମ୍ପାଦକଙ୍କ ନିକଟକୁ ପଠାଇଦେବେ । ଆମ୍ଭେ ମାନେ ଆଶା କରୁଁ ମାନ୍ଦ୍ରାଜୀ ଓଡ଼ିୟା ଭ୍ରାତାଙ୍କ ସାହାଯ୍ୟ ନିମିତ୍ତ ଓଡ଼ିଶାବାସୀମାନେ ବଦାନ୍ୟତା ସହିତ ଅଗ୍ରସର ହେବେ । ଓଡ଼ିୟାମାନେ ଆପଣା ମାତୃଭାଷାରେ ଶିକ୍ଷାଲାଭ କରି ପାରିବେ ଏପରି ବିଦ୍ୟାଳୟ ଗଞ୍ଜାମ ଜିଲ୍ଲାରେ ଆଦୌ ନାହିଁ ଏ କଥା ଆମ୍ଭମାନଙ୍କୁ ବଡ ଆଶ୍ଚର୍ଯ୍ୟବୋଧ ହେଉ ଅଛି । ଗବର୍ଣ୍ଣମେଣ୍ଟ ଏବଂ ସ୍ଥାନୀୟ ବୋର୍ଡଙ୍କୁ ଏ ଅଭାବ ଦୂର କରିବା କାରଣ ପୁନଃ ଆବେଦନ କରିବା ଉଚିତ୍ । କମିଟୀ ଏ ବିଷୟରେ ସର୍ବାଗ୍ରେ ମନୋଯୋଗୀ ହେଉନ୍ତୁ । ଅନ୍ତତଃ ଯେ ସବୁ ସ୍ଥାନରେ ଓଡ଼ିୟାଙ୍କ ବସତି ଅଧିକ ସେଠାରେ ଏପରି ସରକାରୀ ବା ସାହାଯ୍ୟକୃତ ବିଦ୍ୟାଳୟ ସ୍ଥାପିତ ହେବା ନିତାନ୍ତ ଆବଶ୍ୟକ ହେଉଅଛି ତାହା ନ ହେଲେ ଗବର୍ଣ୍ଣମେଣ୍ଟଙ୍କ ଶିକ୍ଷାନୀତିର କଳଙ୍କ ହେବ ।

*ଭା୧୬ଗ, ସଂ୪୭ଖ୍ୟା, ୫।୧୨।୧୮୯୧*

## ୧୮୯୨

## ପ୍ରେରିତପତ୍ର ।

## [ଉତ୍କଳ ପ୍ରଭା]

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ

ମହାଶୟ !

"ମଧୁପ" ଓ "ପ୍ରଦୀପ" ପ୍ରଭୃତି ଅନେକ ଓଡ଼ିଆ ମାସିକପତ୍ର ଅକାଳମୃତ୍ୟୁଗ୍ରସ୍ତ ହୋଇଥିଲେ । କେବଳ ଅର୍ଥାଭାବ ସେମାନଙ୍କର ଲୋପର କାରଣ ନୁହଇ; ଶିକ୍ଷିତ ଲୋକମାନଙ୍କର ଅନାସ୍ଥା ମଧ ଗୋଟିଏ ପ୍ରଧାନ କାରଣ । ମୟୂରଭଞ୍ଜର ନବୀନ ମହାରାଜା ଓଡ଼ିଶାର ଶିକ୍ଷିତ ଲୋକମାନଙ୍କ ଲେଖନୀର ସାହାଯ୍ୟ ପ୍ରାର୍ଥନା କରି ଏବଂ ସେହି ସାହାଯ୍ୟ ଉପରେ ନିର୍ଭର କରି "ଉତ୍କଳପ୍ରଭା" ପ୍ରକାଶ କରିଅଛନ୍ତି । ମହାରାଜାଙ୍କ ଆଶା କିରୂପ ସଫଳ ହୋଇଅଛି, ଏହି ଆଠମାସର ଉତ୍କଳପ୍ରଭାରୁ ତହିଁର ପରିଚୟ ମିଳୁଅଛି । ଧନ୍ୟ ଓଡ଼ିଶା ! ଧନ୍ୟ ଶିକ୍ଷାର ମହତ୍ତ୍ୱ !

କିନ୍ତୁ, ଅନେକ ଆବଶ୍ୟକୀୟ ବିଷୟର ଅଭାବ ହେଲେ ସୁଦ୍ଧା ଓଡ଼ିଶାର ସୌଭାଗ୍ୟବଶତଃ ବର୍ତ୍ତମାନ ସମାଲୋଚନାର ଅଭାବ ନାହିଁ । କିୟତ୍କାଳପୂର୍ବେ ଦୁଇଜଣ ଦେଶହିତୈଷୀ ନାମାକାଂକ୍ଷୀ ବିଜ୍ଞ ପୁରୁଷ ବାଲେଶ୍ୱରର କୌଣସି ସଂବାଦପତ୍ରରେ ଓଡ଼ିଶାର ସଂବାଦପତ୍ରମାନଙ୍କର କାର୍ଯ୍ୟ ଓ ଉଦ୍ଦେଶର ହେୟ ସମାଲୋଚନା କରି ସେମାନଙ୍କ ପ୍ରତି ଅଯଥା କଟୂକ୍ତି ପ୍ରୟୋଗ କରିଥିଲେ । ସମ୍ପ୍ରତି କଲିକତାର ଖେରବାଗାନପ୍ରବାସୀ ସେହିପରି ଜଣେ ସମାଲୋଚକ ଦୀପିକାରେ ଉତ୍କଳପ୍ରଭାର ସମାଲୋଚନା କରୁଅଛନ୍ତି । ଉକ୍ତ ସମାଲୋଚନାର ସମାଲୋଚନା କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେ । ସମାଲୋଚନା ଦୂଷଣୀୟ ନୁହେ କିନ୍ତୁ ଜ୍ଞାନି ଲୋକଦ୍ୱାରା ନ ହେଲେ ତାହା ବାଚାଳତା ବୋଲି ପରିଗଣିତ ହୁଏ । ଯେଉଁ ସମାଲୋଚନାଦ୍ୱାରା ଲେଖକ, ପାଠକ, ବା ସମାଲୋଚକ-କାହାରି କୌଣସି ଉପକାର ହେବା ସମ୍ଭବ ନୁହେ, ସେରୂପ ସମାଲୋଚନାଦ୍ୱାରା ସାଧାରଣ ହିତବ୍ରତୀ ସମ୍ବାଦପତ୍ରର କଳେବରର ଏକଅଂଶ ଅପହରଣ କରିବା ଅନୁମୋଦନୀୟ ନୁହଇ । ଦୀପିକାର ଅନେକ ପାଠକ ଉତ୍କଳପ୍ରଭାର ପାଠକ ନୁହନ୍ତି ସୁତରାଂ ଦୀପିକାରେ ତହିଁର ସମାଲୋଚନା ସୁନ୍ଦର ନୁହଇ । ଆମ୍ଭେମାନେ ଖେରବାଗାନପ୍ରବାସୀ ସମାଲୋଚକଙ୍କର ଉଦ୍ଦେଶ୍ୟ ବୁଝିବାକୁ ଅକ୍ଷମ । "ସାହିତ୍ୟଚର୍ଚ୍ଚା" ବା "ଦେଶହିତୈଷିତା" ଉକ୍ତ ସମାଲୋଚନାର ଗୋଟିଏ ଉଦ୍ଦେଶ୍ୟ ବୋଲି ଛଳନା କରିବାର ସୁଦ୍ଧା ଉପାୟ ନାହିଁ । ପୂର୍ବେ କହିଅଛୁଁ ଯେ ଆମ୍ଭେମାନେ ଉକ୍ତ ସମାଲୋଚନାର ସମାଲୋଚନା କରିବା ନିମନ୍ତେ ଇଚ୍ଛୁକ ନୋହୁଁ ସୁତରାଂ ସମାଲୋଚନାର ଭାଷା ବା ଯାଥାର୍ଥ୍ୟ ସମ୍ବନ୍ଧରେ ମୌନାବଲମ୍ବନ ଶ୍ରେୟସ୍କର । କିନ୍ତୁ ଗୋଟିଏ ବିଚିତ୍ର ଦୃଶ୍ୟ ସମ୍ବନ୍ଧରେ ପଦେ ନ କହି ରହିପାରିଲୁଁ ନାହିଁ । ଓଡ଼ିଆସମାଲୋଚନାର ଇଂରାଜୀ ଶିରୋନାମା ଅତିମନୋହର । ଧୂଳି ଝଦର ସହିତ ହ୍ୟାଟ୍ ପରିଧାନ କରିବା ଅଦ୍ୟାବଧି କୌଣସି ପ୍ରଦେଶରେ ପ୍ରଚଳିତ ହୋଇ ନାହିଁ । ବିଜ୍ଞବୃବ ସମାଲୋଚକ ପତ୍ରଶେଷରେ ଯେଉଁ ଇଂରାଜୀ ପଁକ୍ତିଟି ଲେଖିଅଛନ୍ତି, ସମାଲୋଚନା ସହିତ ତାହାର ସମ୍ପର୍କ କିସ ?

ଯେଉଁମାନେ ସମ୍ପ୍ରତି ଉତ୍କଳପ୍ରଭାର କେବଳ ସମାଲୋଚନାରେ ବ୍ୟସ୍ତ, ସେମାନେ ସେମାନଙ୍କର ଶ୍ରମ

ଓ ଜ୍ଞାନ ଉତ୍କଳପ୍ରଭା ନିମନ୍ତେ ପ୍ରବନ୍ଧ ଲେଖିବାରେ ବ୍ୟୟ କଲେ ସେମାନଙ୍କର ନିଜର ଓ ଉତ୍କଳପ୍ରଭାର ଉପକାର ହେବ ଏବଂ ସାଧାରଣ ତହିଁରେ ଅତୃପ୍ତ ହେବେ ନାହିଁ ।

କଲିକତା ଜଣେ ପାଠକ ।

୧ ।୧।୯୨

*ଭା ୨୭ଗ, ସଂ ୨ଖ୍ୟା, ୯ ।୧ ।୧୮୯୨*

## ଉତ୍କଳପ୍ରଭା ଓ ଚିଲିକା ।

Salon of Athens took for his mutto " know thyself "

ଯେଉଁ ଜାତିର ସାହିତ୍ୟ ନାହିଁ ସେ ଜାତି ଜଗତରେ ସଭ୍ୟଜନପଦବୀ-ସୋପାନ-ଆରୋହଣକୁ ଯୋଗ୍ୟ ନୁହେ ପୁଣି ଯେ ସାହିତ୍ୟରେ ପ୍ରକୃତ କବିର ଉଦୟ ହୋଇ ନାହିଁ ସେ ସାହିତ୍ୟ ସାହିତ୍ୟ ନୁହେ ।

ଉତ୍କଳର ନବୀନ ଭଞ୍ଜ ନୃପତି ଶୁଭକ୍ଷଣରେ ଉତ୍କଳସାହିତ୍ୟର ଉନ୍ନତି ସକାଶେ ସଙ୍କଳ୍ପ କରି ଥିବାର ଆମ୍ଭେମାନେ ଶୁଣୁଅଛୁଁ ଏବଂ ପ୍ରଭାର ଆବିର୍ଭାବରେ ତାହାର ଲକ୍ଷଣ ଦେଖୁଅଛୁଁ । କେତେଖଣ୍ଡ ପ୍ରଭା ପଢ଼ିଲୁଁ ମାତ୍ର ପ୍ରଭା ଦୁର୍ଭେଦ୍ୟ ତମ ତଡିଦେଇ ଉତ୍କଳରେ ଜ୍ଞାନାଲୋକ ବିସ୍ତାର କରିବ ଏମନ୍ତଆଶା ଆମ୍ଭମାନଙ୍କ ମନରେ ସ୍ଥାନ ପାଉ ନ ଥିଲା । କବି କହୁଅଛନ୍ତି ।

"--ତମ ପଳାଉଛି ହୋଇ ତର ତର<br>
ପ୍ରାଚୀ ନଭଃ ନବ-ବିଭାରେ ଭାସ୍ୱର ।<br>
ରବି ରୂପେ ଏବେ ଉଦୟ ଅଚଳେ<br>
ରବି--ବଂଶ-ମଣି ଉଦିତ ଉତ୍କଳେ ।

କବିବାକ୍ୟରେ ଆସ୍ଥା କରି ଆଶାର ସଞ୍ଚାର ହେଉ ଅଛି । କବି କେବଳ କହୁ ଅଛନ୍ତି ଏମନ୍ତ ନୁହେ । ପ୍ରଭା ବେଦୀରେ ଆବିର୍ଭୂତ ହୋଇ ଉତ୍କଳର ଅର୍ଦ୍ଧକୋଟୀ ଲୋକଙ୍କୁ ଡାକି ଫୁକାରି --ପ୍ରାଚୀନଭଃ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି କହୁ ଅଛନ୍ତି । "ରବି ରୂପେ ଏବେ ଉଦୟ ଅଚଳେ ।

ରବି-ବଂଶ-ମଣି ଉଦିତ ଉତ୍କଳେ" । ବଡ଼ ଲମ୍ବାକଥା--ବଡ଼ ଗୁରୁକଥା । ଏଡ଼େ ଗୁରୁ ବାକ୍ୟର ଗୌରବ ରକ୍ଷା ନ ହେଲେ ଆଶା ବିପଦଗ୍ରସ୍ତ ହେବ--ଉତ୍କଳ ସାଧୁହୃଦୟ ବିଚଳିତ ହେବ--କବିବାକ୍ୟ ଜାଦୁକର--ଜଷ୍ଟିରୂପେ ପରିଣତ ହେବ--ସୁଦୂର ରବିକୁଳକୁ କଳଙ୍କ ପ୍ରେରଣ କରାହେବ । ସାଧୁ କବି ସାବଧାନ । ସାଧୁ-ରବି-ବଂଶ-ମଣି ସାବଧାନ । ଏମହତୀ ମଣି କାଞ୍ଚନ ଯୋଗ ଯେମନ୍ତ ପ୍ରହେଳିକାରେ ପରିଣତ ନ ହେଉ ।

ରବି-ବଂଶ-ମଣି "ମେଘାସନ କୁଞ୍ଜବିହାର ରସିକ" ହେଉନ୍ତୁ; "ଅଶ୍ୱ ସଞ୍ଚାଳନେ ଅଦ୍ଭୁତ କୌଶଳୀ" ହେଉନ୍ତୁ; "ଦୃଷ୍ଟି ଭେଦି ଯାର ବଜ୍ରନାଦୀ ନଳ" ବିଜନ ବନବିହାରୀ ବ୍ୟାଘ୍ର କୁଞ୍ଜରଙ୍କର ଭୀଷଣ ଓଦାରଣ ଦେହରୁ ଜୀବନକୁ ପୃଥକ୍ କରୁ; ଏହା କ୍ଷତ୍ରିୟ ସୁଲଭ ଧର୍ମ--କବି ଚିତ୍ରର ସହଜ ଉପାଦାନ । କିନ୍ତୁ "ଉତ୍କଳ ଅଜ୍ଞାନତମ ଧ୍ୱଂସକାରୀ--ନବୋଦିତ ଏହି ଭଞ୍ଜ ରବି-କରେ" "ବୀଣା ପାଣି-ପୂଜା-ଯୋଗ୍ୟ-କଞ୍ଜ-କୁଳ-ଫୁଟିବାର ଏହିକାଳ ଅନୁକୂଳ "-ପୁଣି ସେ ପଦ୍ମଫୁଟିବ କବି ହୃଦୟରେ, ସେହି ପଦ୍ମେ ପଦ୍ମବାସିନୀ ଭାରତୀ-ପୂଜିବେ-ତୋପଦ ଉତ୍କଳ-ସନ୍ତତି" ।

ବଡ଼ ଧୂମ ଧାମରେ ବୀଣାପାଣି ପୂଜାର ଆୟୋଜନ ଶ୍ରୀମାନ୍-କଳାବାନ୍-ରବି-ବଂଶ-ମଣି ଉତ୍କଳ ବୀଣାପାଣି-ପୂଜା ଆରମ୍ଭକୁ କୁଶହସ୍ତ ହୋଇ ବସି ଅଛନ୍ତି-କବିକଞ୍ଜକୁଳ ଠୁଳକରି କଳ୍ପନା ଆରତିରେ ଆହୁତି ପ୍ରଦାନ କରୁଅଛନ୍ତି, ବୀଣାପାଣିର-ପୂଜାର ସମ୍ଭାର ସଜଡ଼ା ହେଉଅଛି । ଶୁଭଦିନ ଆଗତ ଭାବି-ଆମ୍ଭେମାନେ ଦୂରରେ ଥାଇ ଦେବୀ ବୀଣାପାଣିଙ୍କୁ ଜୁହାର କରୁ ଅଛୁଁ । କବିଙ୍କୁ ଓ ରବି-କୁଳ-ମଣିଙ୍କୁ ସସମ୍ଭ୍ରମ ସମ୍ମାନ ଉପହାର ଦେଇ ଅଛୁଁ । ଅବଶେଷରେ ଗୋଟିଏ କଥା କହିବୁଁ; ଇଚ୍ଛା ଯଦି ସାଧୁ ହୁଏ, ପ୍ରାଣ ଯଦି ସରଳ ହୁଏ, ସତ୍କାର୍ଯ୍ୟସାଧନକୁ ଯଦି ମତି ହୁଏ, କାର୍ଯ୍ୟ

ଯେଡ଼େ ଗୁରୁ ହେଉ, ଶକ୍ତି ଯେତେ ଲଘୁ ହେଉ, ତାହା ସୁସମ୍ପନ୍ନ କରିବାକୁ ଈଶ୍ୱର ସହାୟ ହୁଅନ୍ତି ।

ଏବେ ବୀଣାପାଣିଙ୍କ ଠାରେ ଜଣାଣ କବି, ଗଭୀର କର୍ଣ୍ଣଭେଦୀ ତୂରୀ ନାଦରେ ଯେ ଘୋଷଣା ପ୍ରଚାର କରୁଅଛନ୍ତି ତାହା "ନିସାର ପଟହାଇବେତରେ" ନ ହୋଇ କାର୍ଯ୍ୟରେ ପ୍ରତିପନ୍ନ ହେଉ ।

ବଡ଼ଦିନ-କାନ୍ତି ।　　　　　　　　　　　　　　　　ଶ୍ରୀ-

### ଭା୨୭ଗ,ସଂ୩ଖ୍ୟା, ୧୬।୧।୧୮୯୨

## [ସ୍କୁଲ ସ୍ଥାପନ ପାଇଁ ଦାବି ]

ମହାଶୟ !

ଆମ୍ଭର ନିମ୍ନଲିଖିତ ବିଷୟଟିକି ଆପଣଙ୍କ ଜଗଦ୍‌ବିଖ୍ୟାତ ପତ୍ରିକାରେ ପ୍ରକାଶ କରି ବାଧିତ କରିବେ ।

ଶ୍ରୀକୃଷ୍ଣପୁର ମଧ୍ୟମଶ୍ରେଣୀ ଇଂରାଜୀବିଦ୍ୟାଳୟଟି ଅନେକ ଦିନରୁ ଏ ଅଞ୍ଚଳର ପ୍ରଧାନ ଜମିଦାର ଶ୍ରୀଲ ଶ୍ରୀଯୁକ୍ତ ଶ୍ରୀବାବୁ ଗୋଲୋକଚନ୍ଦ୍ର ବୋଷ ମହାଶୟଙ୍କଦ୍ୱାରା ସ୍ଥାପିତ ହୋଇ ଏଅଞ୍ଚଳର ଅନେକ ଗରିବ ଓ ନିଃସହାୟ ବାଳକମାନଙ୍କୁ ଯତ୍‌କିଞ୍ଚିତ୍ ଶିକ୍ଷାଦାନ କରୁଥିଲା । ବର୍ତ୍ତମାନ ଉକ୍ତ ସ୍କୁଲଟିର ସମ୍ପାଦକ ଓ ଚାନ୍ଦାଦାତାମାନଙ୍କର ଯତ୍ନାଭାବରୁ ସ୍କୁଲଟି ଉଠି ଯାଇ ସେହି ଗରିବ ଓ ନିଃସହାୟ ବାଳକମାନଙ୍କୁ ସେହି ଯତ୍‌କିଞ୍ଚିତ୍ ଶିକ୍ଷାରୁ ରହିତ କରିଅଛି । ଏହା ଦେଖି କୋଟପଦ୍ମା ମଠର ମହନ୍ତ ତପୋନିଧି ଶ୍ରୀଯୁକ୍ତ ରଘୁନାଥପୁରୀ ଗୋସାଇଁ ମହାଶୟ ସେହି ସ୍କୁଲଟିକୁ ତାଙ୍କ ମଠ ନିକଟକୁ ଉଠାଇ ନେଇ ନିଜ ବ୍ୟୟ ଓ ଯତ୍ନରେ ଚଳାଇବାକୁ କଟକ ଡିଃ ବୋର୍ଡରେ ଦରଖାସ୍ତ କରିଅଛନ୍ତି । ଆଶା କରୁଁ ଏପରି ଅବସ୍ଥାରେ ସ୍କୁଲଟି ଉତ୍ତମରୂପେ ଚଳିପାରେ । ଛାତ୍ରସଂଖ୍ୟା ଅଧିକ ହେବାର ମଧ୍ୟ ସମ୍ଭାବନା କାରଣ ମହନ୍ତ ମହାଶୟଙ୍କ ମଠର ଚତୁଃପାର୍ଶ୍ୱରେ କୁଆଁପାଳ, ଘୟାଁପାଳ, ମୂଳବସନ୍ତ, ଜୟିପୁର, ବାଲିପଡିଆ, ନୂଆଁଗାଁପ୍ରଭୃତି ଅନେକ ଗୁଡିଏ ଭଦ୍ରବସତି ଅଛି । କେତେକ ଭଦ୍ରଲୋକଙ୍କ ଅନୁରୋଧରେ ମହନ୍ତ ମହାଶୟ ଡିଃ ବୋର୍ଡରେ ଏପରି ଦରଖାସ୍ତ କରିଅଛନ୍ତି, ଆଶା କରୁଁ ଡିଃ ବୋର୍ଡର ଭାଇସ୍ ଚେୟାରମେନ ମହୋଦୟ ସେପରି ସ୍ଥାନରେ ଗୋଟିଏ ସ୍କୁଲ ସ୍ଥାପନ କରିବାକୁ ଅନୁମତି ପ୍ରଦାନ କରିବାକୁ କୁଣ୍ଠିତ ହେବେ ନାହିଁ । ମହନ୍ତ ମହାଶୟଙ୍କୁ ମଧ୍ୟ ଏପରି କାର୍ଯ୍ୟରେ ବ୍ରତୀ ହେବାର ଦେଖି ସମସ୍ତେ ଧନ୍ୟବାଦ କରୁଅଛନ୍ତି । ଇତି ।

ରାମଚନ୍ଦ୍ରପୁର　　　　　　　　　　　　　　　　ଆପଣଙ୍କର
କୁଆଁପାଳ ପୋଃ ଅଃ　　　　　　　　　　　　　　　　।ବା
୧୬।୧।୯୨　　　　　　　　　　　　　　　　ଶ୍ରୀ ଗୋବିନ୍ଦଚନ୍ଦ୍ର କର

### ଭା୨୭ଗ,ସଂ୪ଖ୍ୟା, ୨୩।୧।୧୮୯୨

## ରାୟ ନନ୍ଦକିଶୋର ଦାସ ବାହାଦୂର ।

ରାୟ ନନ୍ଦକିଶୋର ଦାସ ବାହାଦୂର ଦେଶୀୟ ସିଭିଲିୟାନଶ୍ରେଣୀରେ ଭରତି ହେବାଦିନୁ ଓଡ଼ିଶାର ଗୌରବ ବଢ଼ାଇଥିଲେ ଏବଂ ତହିପାଇଁ ଆମ୍ଭେମାନେ ବଡ଼ ଆନନ୍ଦିତ ହୋଇ ଥିଲୁଁ ମାତ୍ର ସେ ଆପଣାର ଅମୂଲ୍ୟ ଯୋଗ୍ୟତାଦ୍ୱାରା ଗବର୍ଣ୍ଣମେଣ୍ଟଙ୍କର କି ପର୍ଯ୍ୟନ୍ତ ବିଶ୍ୱାସଭାଜନ ହୋଇ ଅଛନ୍ତି ତାହା ତେତେବେଳେ କେହି ଜାଣି ପାରି ନ ଥିଲେ । ଅନୁଗୁଳର ଡିଷ୍ଟ୍ରିକ୍ଟ କଲେକ୍ଟର ଏବଂ ତହିଁ ପରେ କେଉଁଝରର ପୋଲିଟିକଲ ଏଜଣ୍ଟ ପଦମାନ ତାହାଙ୍କୁ ପ୍ରଦତ୍ତ ତାହା ବିଶେଷରୂପେ ଜଣା ପଡିଲା । ବିଶେଷତଃ ପୋଲିଟିକଲ ଏଜେଣ୍ଟ ପଦ ଅତ୍ୟନ୍ତ ଦାୟିତ୍ୱପୂର୍ଣ୍ଣ ଅଟଇ । ଯାହାର ବୁଦ୍ଧି, ବିବେଚନା, ରାଜନୈତିକକୌଶଳ ମାନସିକଦମ୍ଭତା ପ୍ରଭୃତିରେ ଏକାନ୍ତ ବିଶ୍ୱାସ ହୁଅଇ ତାହାକୁ ସରକାର ଏ ପଦ ଦିଅନ୍ତି । ଦେଶୀୟ ଲୋକଙ୍କ ମଧ୍ୟରେ ଏପରି ପଦ ପାଇବା ଲୋକଙ୍କ ସଂଖ୍ୟା ଅତି ବିରଳ । ଜଣେ ଓଡ଼ିଆ ତାହା ପାଇବାକୁ ସମର୍ଥ ହେଲା ସାମାନ୍ୟ ଗୌରବ ଓ ସମ୍ମାନର କଥା ନୁହଇ । ଅଥଚ ଅଳ୍ପ ବିବେଚନାରେ ସେ ଏ ପଦ ଲଭି ନାହାନ୍ତି । ବଙ୍ଗେଶ୍ୱର ସର, ଇଲିୟଟ ବାହାଦୂର ଯେ କି ପରଆଖିରେ କିଛି ନ ଦେଖି ସକଳ ଗୁରୁତରବିଷୟ

ଆପେ ସୂକ୍ଷ୍ମରୂପେ ବୁଝି ସୁଝି ସ୍ଥିର କରନ୍ତି ସେ ଅନେକ ଦିନ ଭାବି ଭାବି ଏହାଙ୍କୁ ଏ ପଦ ପ୍ରଦାନ କରିଅଛନ୍ତି ଏବଂ ଏହି ନିଯୋଗ ସାଧାରଣମତରେ ଅନୁମୋଦିତ ହେବାରୁ ଅଧିକ ପ୍ରଶଂସନୀୟ ହୋଇଅଛି । ନନ୍ଦକିଶୋର ବାବୁଙ୍କ ଯୋଗେ ଓଡ଼ିଶାର ମୁଖୋଜ୍ଜ୍ୱଳ ହେଲା ବଡ଼ ଆନନ୍ଦର ବିଷୟ ଅଟଇ ଏବଂ ଏହି ଆନନ୍ଦ ପ୍ରକାଶ କରିବାକାରଣ ଏ ନଗରରେ କେତେଦିନ ହେଲା ଭୋଜି ମଜଲିସ ଇତ୍ୟାଦି ଉତ୍ସବ ଲାଗିଥିଲା । ଏଥିମଧ୍ୟରେ କେତେଗୁଡ଼ିଏ ତାହାଙ୍କ ବନ୍ଧୁମାନଙ୍କଦ୍ୱାରା ଅନୁଷ୍ଠିତ ହୋଇଥିଲା ଓ ତହିଁରେ ବିଶେଷ କିଛି ନ ଥିଲେହେଁ ଯୋଗ୍ୟବ୍ୟକ୍ତିର ସମ୍ମାନ କରିବାକୁ ଏଠା ଲୋକମାନେ କ୍ରମଶଃ ଅଧିକ ଅଗ୍ରସର ହେବାର ଦେଖି ଆମ୍ଭେମାନେ ଆନନ୍ଦିତ ହେଲୁଁ । କିନ୍ତୁ ଗୋଟିଏ ଉତ୍ସବ ସର୍ବାପେକ୍ଷା ଅଧିକ ପ୍ରୀତିକର ହୋଇଥିଲା । କମିଶ୍ନରୀ ଓ ସୁପ୍ରେଣ୍ଟେଣ୍ଡି ମହକୁମାର କିରାନୀ ଓ ଅମଲାମାନେ ମିଶି ରାୟ ବାହାଦୂରଙ୍କ ସମ୍ମାନାର୍ଥେ ଗତ ସୋମବାରରାତ୍ରରେ ପ୍ରିଣ୍ଟିଂକମ୍ପାନୀଙ୍କ ଅଟ୍ଟାଳିକାରେ ମଜଲିସ କରି ଅନେକ ଭଦ୍ରଲୋକଙ୍କୁ ଆମନ୍ତ୍ରଣ କରି ନୃତ୍ୟ ଗୀତ ଓ ଭୋଜି ଇତ୍ୟାଦିଦ୍ୱାରା ବଡ଼ ସୁନ୍ଦରରୂପେ ପରିତୋଷ କରିଥିଲେ । ଆମନ୍ତ୍ରଣକାରିଙ୍କ ମଧ୍ୟରୁ ବାବୁ ନାରାୟଣପ୍ରସାଦ ମିତ୍ର ସଂକ୍ଷେପ ବକ୍ତୃତାରେ ରାୟ ବାହାଦୂରଙ୍କ ଅଧୀନରେ ଅମଲାମାନେ ବଡ଼ ସୁଖରେ କାଳ କଟାଇଥିବା ଏବଂ ତାହାଙ୍କ ଦୟା ସ୍ନେହ ଗୁଣଗ୍ରାହିତା ଓ ଶାନ୍ତସ୍ୱଭାବ ଏବଂ ସଦ୍‌ବ୍ୟବହାର ନିମନ୍ତେ ତାହାଙ୍କଠାରେ ବିଶେଷ ଋଣୀ ଥିବାରୁ ତନ୍ନିମିତ୍ତ କୃତଜ୍ଞତା ପ୍ରକାଶ ଏବଂ ତାହାଙ୍କ ଉନ୍ନତିରେ ଆହ୍ଲାଦିତ ହେବାର ପ୍ରକାଶ କଲେ । ରାୟ ବାହାଦୂର ତହିଁର ଉତ୍ତରରେ ସେମାନଙ୍କୁ ଧନ୍ୟବାଦ ଦେଇ କହିଲେ କି ତାହାଙ୍କ ଜୀବନର ଘଟନାବଳି ମଧ୍ୟରେ ଏଥି ଅପେକ୍ଷା ଆନନ୍ଦ ଓ ଗୌରବର ବିଷୟ ଆଉ କିଛି ଅନୁଭବ କରିପାରୁ ନାହାନ୍ତି । ସେ ସ୍ୱୟଂ ଏକ ସମୟରେ କିରାନୀ ଥିଲେ । ଅମଲାଙ୍କ ଅବସ୍ଥା ଅଙ୍ଗରେ ବିତାଇ ଅଛନ୍ତି । ଯେଉଁ ଅମଲାମାନଙ୍କୁ ଘେନି ସେ କାର୍ଯ୍ୟ କରୁଥିଲେ ସେମାନଙ୍କର ତାହାଙ୍କ ପ୍ରତି ଏତାଦୃଶ ଅନୁରାଗ ଦେଖି ସେ ଆପଣାକୁ ବଡ଼ ଭାଗ୍ୟବାନ୍ ମନେ କରୁଅଛନ୍ତି । ବାସ୍ତବରେ ଅଧୀନସ୍ଥ ଲୋକର ସ୍ନେହ ଓ ଭକ୍ତି ଆକର୍ଷଣ କରିବା ସାମାନ୍ୟ ଗୁଣ ନୁହଇ । ସମାନ ସମାନ ଲୋକରେ ପ୍ରୀତି ହେବ । ସାଧାରଣ କଥା କିନ୍ତୁ ଯେଉଁବ୍ୟକ୍ତି ଛୋଟ ବଡ ସମସ୍ତଙ୍କର ପ୍ରୀତିଭାଜନ ହୁଏ ସେ ଅସାଧାରଣ ଗୁଣବାନ୍ । ଏହି ଗୁଣ ହେତୁ ପରମେଶ୍ୱର ନନ୍ଦକିଶୋର ବାବୁଙ୍କର କ୍ରମଶଃ ଉନ୍ନତି କରୁଅଛନ୍ତି ଏବଂ କରିବେ ।

*ଭା୨୭ଘ,ସଂ୧୧ଖ୍ୟା, ୫।୩।୧୮୯୨*

## ମାଇନର ଇତ୍ୟାଦି ପରୀକ୍ଷାର ଫଳ ।

ଏଥର ଏ ସମସ୍ତ ପରୀକ୍ଷାର ଫଳ ପୂର୍ବବର୍ଷମାନଙ୍କ ଅପେକ୍ଷା କିଞ୍ଚିତ୍ ଶୀଘ୍ର ବାହାରି ଅଛି ସୁଖର ବିଷୟ ଅଟଇ ।

ମାଇନର--ଗତଥର ଜ୧୦୬ଣ ପରୀକ୍ଷାର୍ଥିଙ୍କ ମଧ୍ୟରୁ ୧ମ ଶ୍ରେଣୀରେ ଜ୧୨ଣ, ୨ୟଶ୍ରେଣୀରେ ଜ୨୫ଣ ଏବଂ ୩ୟ ଶ୍ରେଣୀରେ ଜ୩୦ଣ ଗାଏ ଜ୬୭ଣ ଉତ୍ତୀର୍ଣ୍ଣ ହୋଇଥିଲେ ଏଥର ଜ୧୦୨ ଣ ପରୀକ୍ଷାର୍ଥିଙ୍କ ମଧ୍ୟରୁ ୧ମ ଶ୍ରେଣୀରେ ଜ୬ଣ, ୨ୟରେ ଜ ୧୯ଣ ଏବଂ ୩ୟରେ ଜ୧୬ଣ ଗାଏ ଜ ୪୧ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଗତବର୍ଷର ପୂର୍ବବର୍ଷରେ ଜ୯୯ଣମଧ୍ୟରୁ ଜ୬୦ଣ ପାଶ କରିଥିଲେ । ସୁତରାଂ ଗତ ଦୁଇବର୍ଷଠାରୁ ଏବର୍ଷର ଫଳ ମନ୍ଦ ହୋଇଅଛି ଅର୍ଥାତ୍ ପୂର୍ବ ଦୁଇବର୍ଷରେ ଶତକରା ୫୦ରୁ ଅଧିକ ପାଶ କରିଥିବା ପ୍ରତ୍ୟକ୍ଷେ ଏବର୍ଷ ଶତକରା ୫୦ରୁ ଊଣା ହୋଇଅଛି । ଗତବର୍ଷ ମୁଗଲବନ୍ଦୀ ଓ ଗଡ଼ଜାତ ପ୍ରାୟ ସମାନ ଭାଗରେ ପ୍ରଥମ ଶ୍ରେଣୀରେ ଥିଲେ । ଏଥର ଉକ୍ତ ଶ୍ରେଣୀରେ ଗଡ଼ଜାତର ନାମ ନାହିଁ ଏବଂ ମୁଗଲବନ୍ଦୀ ତିନିଜିଲ୍ଲା ମଧ୍ୟରେ କଟକର ଟାଉନସ୍କୁଲ ପ୍ରଥମ ଦୁଇସ୍ଥାନ ମଡ଼େଲସ୍କୁଲ ଚତୁର୍ଥ ଓ ରଘୁନାଥପୁର ଷଷ୍ଠ ସ୍ଥାନ ଅଧିକାର କରିଅଛି । ବାଲେଶ୍ୱରରେ ଯୁବିଲିସ୍କୁଲ ୩ୟ ଓ ପୁରୀରେ ଖୋରଧା ୫ମ ସ୍ଥାନ ପାଇଅଛି । ଗଡ଼ଜାତମଧ୍ୟରେ ବୌଦ ଓ ଢେଙ୍କାନାଳର ଜଣେଲେଖାଁଏ ଛାତ୍ର ୨ୟ ଶ୍ରେଣୀରେଉତ୍ତୀର୍ଣ୍ଣ ହୋଇଅଛନ୍ତି । ମୋଟରେ କଟକଜିଲ୍ଲାର ଜ୧୯ଣ ବାଲେଶ୍ୱରର ଜ୧୪ଣ ପୁରୀର ଜ୬ଣ ଓ ଗଡ଼ଜାତର ଜ୨ଣ ପାଶ କରିଅଛନ୍ତି ।

ଭର୍ଣ୍ଣାକ୍ୟୁଲର ପରୀକ୍ଷା--ଗତବର୍ଷ ଜ୨୭୧ଣ ପରୀକ୍ଷାର୍ଥିଙ୍କ ମଧ୍ୟରୁ ୧ମଶ୍ରେଣୀରେ ଜ୩୬ଣ, ୨ୟରେ ଜ୬୭ଣ ଏବଂ ୩ୟରେ ଜ୬୫ଣ ଗାଏ ଜ୧୬୮ଣ ଉତ୍ତୀର୍ଣ୍ଣ ହୋଇଥିଲେ । ଏଥର ଜ୧୮୩ଣ ପରୀକ୍ଷା ଦେଇ

ତହିଁମଧ୍ୟରୁ ୧ମ ଶ୍ରେଣୀରେ ଜଣ୧୭ଣ ୨ୟରେ ଜଣ୪୨ଣ ଏବଂ ୩ୟରେ ଜଣ୬୧ଣ ଗାଏ ଜଣ୧୨୦ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ସୁତରାଂ ଉଭୟ ସଂଖ୍ୟା ଓ ଯୋଗ୍ୟତାରେ ଏଥରର ଫଳ ଗତଥରଠାରୁ ନିକୃଷ୍ଟ ହୋଇଅଛି । ପରୀକ୍ଷାର୍ଥିଙ୍କ ସଂଖ୍ୟା ଏବର୍ଷ କାହିଁକି ଏତେ ଊଣା ହେଲା ନିଶ୍ଚୟ ଜଣାଯାଇ ନାହିଁ । ସମ୍ଭବତଃ ପରୀକ୍ଷା ପଛଘୁଞ୍ଚା ଦେଇ ଶୀଘ୍ର ପଡ଼ିବା ଏଥିର କାରଣ ହୋଇ ପାରେ । ନତୁବା ବୋଲିବାକୁ ହେବ ଯେ ଭର୍ଣ୍ଣାକ୍ୟୁଲର ପାଶ କଲେ ଚାକରୀ ପାଇବାର ସୁବିଧା ନାହିଁ ବୋଲି ତହିଁ ପ୍ରତି ଆଦର ଊଣା ହେଉଅଛି । ସର୍ବସୁଦ୍ଧା କଟକଜିଲ୍ଲାର ଜଣ୪୦ଣ, ବାଲେଶ୍ୱରର ଜଣ୨୩ଣ, ପୁରୀର ଜଣ୨୯ଣ ଓ ଗଡ଼ଜାତର ଜଣ୧୩ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଗତବର୍ଷ ଅନେକଗୁଡ଼ିଏ ବାଳିକା ପାଶ କରିଥିଲେ ଏଥର କେବଳ ଜ ୩ଣଙ୍କର ନାମ ଅଛି ମାତ୍ର ୧ମ ଓ ୩ୟସ୍ଥାନ ରେବନ୍‌ସା ବାଳିକାବିଦ୍ୟାଳୟର ଛାତ୍ରୀମାନେ ଅଧିକାର କରିଅଛନ୍ତି । ବାଳକମଧ୍ୟରେ ମହାସିଂହପୁରର ଜଣେ ଛାତ୍ର ସର୍ବୋଚ୍ଚ ସ୍ଥାନ ପାଇ ଅଛି ।

ଗଡ଼ଜାତର ଫଳ ଏଥର ଉଭୟ ପରୀକ୍ଷାରେ ଊଣା ପଡିବା ବଡ଼ ଦୁଃଖର ବିଷୟ ଅଟଇ । ମୁଗଲବନ୍ଦିର ସ୍କୁଲମାନ ଯେ ଯାହାର ଟେକ ରଖିବାକୁ ନିତାନ୍ତ ଊଣା କରି ନାହାନ୍ତି ଏବଂ ଅଳ୍ପକାଳସ୍ଥାପିତ ମହାଗ୍ରାମ ସ୍କୁଲର ଜ୨ଣ ଛାତ୍ର ଦୁଇପରୀକ୍ଷାରେ ପାଶ କରିବା ବଡ଼ ସୁଖର ବିଷୟ ଅଟଇ ।

ଅପରପ୍ରାଇମେରୀ--ଗତଥର ଜ ୫୨୫ଣ ପରୀକ୍ଷାର୍ଥିଙ୍କ ମଧ୍ୟରୁ ୧ମ ଶ୍ରେଣୀରେ ଜଣ୧୬୩ଣ, ୨ୟରେ ଜଣ୧୬୭ଣ ଏବଂ ୩ୟରେ ଜଣ୧୧୨ଣ ଗାଏ ଜଣ୪୪୨ଣ ପାଶ କରିଥିଲେ । ଏଥର ଜଣ୩୮୦ଣ ପରୀକ୍ଷା ଦେଇ ତହିଁ ମଧ୍ୟରୁ ୧ମଶ୍ରେଣୀରେ ଜଣ୧୧୫ଣ ୨ୟରେ ଜଣ୧୦୧ଣ ଏବଂ ୩ୟରେ ଜଣ୪୮ଣ ଗାଏ ଜଣ୨୬୪ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ସୁତରାଂ ସଂଖ୍ୟା ଏବଂ ହାରାହାରି ଫଳ ଉଭୟ ଗତବର୍ଷଠାରୁ ମନ୍ଦ ହୋଇଅଛି । ଅର୍ଥାତ୍ ଗତବର୍ଷ ଶତକରା ୮୪-ସ୍ଥଳେ ଏଥର ଶତକରା ୭୦ପାଶ କରିଅଛନ୍ତି । ଗତବର୍ଷ ବାଳିକାମାନେ ସର୍ବୋଚ୍ଚ ସ୍ଥାନ ଅଧିକାର କରି ଏକା ୧ମ ଶ୍ରେଣୀରେ ଜଣ୨୫ଣ ଉତ୍ତୀର୍ଣ୍ଣ ହୋଇଥିଲେ । ଏଥର ନୟାଗଡ଼ର ଜଣେ ବାଳକ ସର୍ବୋଚ୍ଚ ସ୍ଥାନ ଅଧିକାର କରି ଅଛି ମାତ୍ର ୨ୟଠାରୁ ୫ମ ପର୍ଯ୍ୟନ୍ତ ସ୍ଥାନମାନ ବାଳିକାମାନେ ଲଭିଅଛନ୍ତି ।

***ଭା୨୭ଗ,ସଂ୧୧ଖ୍ୟା, ୫।୩।୧୮୯୨***

## [ଅପରପ୍ରାଇମେରୀ ବୃତ୍ତି]

ସନ ୧୮୯୧ ସାଲରେ ଓଡ଼ିଶାରେ ଅପର ପ୍ରାଇମେରୀ ପରୀକ୍ଷାରେ ବୃତ୍ତି ପାଇଥିବା ଛାତ୍ରମାନଙ୍କର ନାମ ।

| | |
|---|---|
| ଶ୍ରୀମତୀ ମତୀଦାସ | ଫିମେଲ୍ ଅର୍ଫାନେଜ |
| ଭଜନାନନ୍ଦ ଦାସ | ଉରାଳି |
| ଦୈତ୍ୟାରି କର | କାଶୀପୁର |
| ଶ୍ରୀମତୀ ମନମୋହିନୀ ନାୟକ | ଚାନ୍ଦନିଚୌକ |
| ସ୍ୱପ୍ନେଶ୍ୱର ଦାସ | ମଧ **xxxx** |
| ନୀରଦ ଘୋଷ | ରେଭନ୍ସ୍ **xx**ବାଳିକାବିଦ୍ୟାଳୟ |
| ଲୋକନାଥ ସୁବୁଧି | ବାଣପୁର |
| ଭାଗବତ ଦାସ | ମୁକୁନ୍ଦଦାସପୁର |
| ବଳଭଦ୍ର ଭୂୟାଁ | ତୋଟାପଡ଼ା |
| ଶ୍ରୀମତୀ ଜାନକୀ ଦେଈ | ଚଣାହଟା |
| ଲାଲମୋହନ ମହାନ୍ତି | ନୂଆପାରି |
| ଶଶୀମୁଖୀ ବାରିକ | ମୋଫତ ବାଳିକାବିଦ୍ୟାଳୟ |
| କୃଷ୍ଣପ୍ରସାଦ ମଣ୍ଡଳ | ଭଦ୍ରପୁର |

| | |
|---|---|
| ରାଧାଶ୍ୟାମ ରାୟ ମହାପାତ୍ର | ମୁକୁନ୍ଦପୁର |
| ନୀଳମଣି ପଧାନ | ଚଣ୍ଡୀପଦା |
| ବୈଦ୍ୟନାଥ ଦାସ | ଧଳପୁର |
| ଗୋବିନ୍ଦ ମହାପାତ୍ର ଖଣ୍ଡପଡ଼ା | |
| ରାଧାମଣି ଦେଈ | ଢେଙ୍କାନାଳ ବାଳିକା ବିଦ୍ୟାଳୟ |
| କ୍ଷେତ୍ରମୋହନ ମହାପାତ୍ର | ନୀଳଗିରି |
| ଲକ୍ଷ୍ମୀଧର ପଧାନ | ବିରୁ |
| ନାରାୟଣ ପ୍ରସାଦ ଦାସ | ରଣପୁର |
| ଅଭିମନ୍ୟୁ ପାଳ | ପାଲ୍ଲହରା । |

R.N. Rai
Joint Inspector of Schools
Orissa

*ଭା/୨୭ଗ,ସଂ୧୧ଖ୍ୟା,୫ ।୩ ।୧୮୯୨*

## [ପ୍ରବନ୍ଧ ସମ୍ପର୍କରେ ମତାମତ]

ମହାଶୟ !

ଉତ୍କଳପ୍ରଭାର ୧ ୦ମ ସଂଖ୍ୟାରେ ପ୍ରକାଶିତ କେତେଗୋଟି ପ୍ରବନ୍ଧସମ୍ବନ୍ଧରେ ଆମ୍ଭେମାନେ କିଛି କହିବାକୁ ଇଚ୍ଛା କରିଅଛୁଁ । ଅନୁଗ୍ରହପୂର୍ବକ ଆପଣଙ୍କ ପତ୍ରିକାରେ ପ୍ରକାଶକରି ବାଧିତ କରିବାହେବେ ।

୧ମ--ବାବୁ ଫକୀରମୋହନ ସେନାପତିଙ୍କର "ଯୋଷେଫାଇନ" । ଫକୀରମୋହନ ବାବୁ କବି ହୋଇପାରନ୍ତି, କିନ୍ତୁ ଉଲ୍ଲିଖିତ ଯୋଷେଫାଇନରୁ ଆମ୍ଭେମାନେ ସେଥିର କିଛ ପରିଚୟ ପାଇଲୁଁ ନାହିଁ । ଏ ଜଣେ ସାଧାରଣ ପଦ୍ୟଲେଖକପରି ବୋଧ ହେଲେ । ଉକ୍ତ ପଦ୍ୟର ଦୁଇ ଏକସ୍ଥଳ ପଢ଼ି ହାସ୍ୟ ସମ୍ବରଣ କରି ପାରିଲୁଁ ନାହିଁ । ଯଥା:--

ପୁସ୍ତକ ଖଣ୍ଡିଏ ଆଣି ଆଲମାରୀରୁ କାଢ଼ି ।
ମନ ଭୁଲାଇବାପାଇଁ ପଢ଼ିଲେ ଦ୍ୱିଧାଡି ।୧।
ଆଠ ନଅଦଶ ଏଗାରଟା ଗଲା ବାଜି,
କିପାଇଁ ବିଳମ୍ବ ପ୍ରାଣକାନ୍ତ କଲେ ଆଜି ।୨ ।
ମୁଚକି ମୁଚକି ହସିଲେପା ସ୍ୱାମୀ ମୁଖଶଶୀ ।୩।

ଆଉ ଏକସ୍ଥାନରେ ଅଛି 'ସେହି ହସି ସେହି କଥା' ଏପରି ବ୍ୟବହାର ଆମ୍ଭେମାନେ ନୂଆ ଦେଖିଲୁଁ ।

ସେ ଯାହା ହେଉ ଫକୀରମୋହନ ବାବୁ ଉକ୍ତ ପଦ୍ୟରେ ଗୋଟିଏ ଅଦ୍ଭୁତକଥା ଲେଖି ବସିଅଛନ୍ତି--ଅର୍ଥାତ୍ ଯୋଷେଫାଇନ ତାଙ୍କର ରୂପରାଶି ଘେନି ବୋଇତରେ ବସି ଆମେରିକା ଚାଲିଗଲେ । ଏକଥା ସେ କାହୁଁ ପାଇଲେ ? କବି ଏବଂ ଔପନ୍ୟାସିକମାନଙ୍କର ଅଧିକାର ଅଛି, ସେମାନେ ସାମାନ୍ୟ ଐତିହାସିକ ଘଟନା ଅବଲମ୍ବନ କରି କଳ୍ପନାର ସାହାଯ୍ୟରେ ତାକୁ ଅନେକଦୂର ବଢ଼ାଇପାରନ୍ତି; ମାତ୍ର ଏପରି ଉଜ୍ଜ୍ୱଳ ସତ୍ୟର ଅପଳାପ କରିବେ, ଏହା ନିତାନ୍ତ ଅମାର୍ଜନୀୟ । ଏପରି ଲେଖକମାନଙ୍କୁ ସାହିତ୍ୟଜଗତରେ ବିଶ୍ୱାସଘାତକ ନ କହି ଆଉ କଣ କୁହାଯିବ ? ଲୋକେ ଏପରି 'ଗଦ୍ୟପଦ୍ୟ' ରାଶି ରାଶି ଲେଖନ୍ତୁ, ସେଥିରେ କାହାରି ବିଶେଷ କ୍ଷତି ବୃଦ୍ଧି ନାହିଁ; ଆମ୍ଭମାନଙ୍କର ବକ୍ତବ୍ୟ ଏତିକି ଯେ, ଫକୀରମୋହନ ବାବୁ ଓ ତତ୍ପଥାବଲମ୍ବୀ ଅନ୍ୟାନ୍ୟ ଲେଖକମାନେ ଏପରି ଭୟାନକ ମିଥ୍ୟାକଥା ଲେଖି ପାଠକମାନଙ୍କୁ ବିରକ୍ତ ନ କରନ୍ତୁ ।

୨ୟ--ଶ୍ରୀମତୀ ରେବାରାୟଙ୍କ 'ଜୀବନର ପ୍ରକୃତ ସୌନ୍ଦର୍ଯ୍ୟ ସାଧାରଣତଃ ବାଳକ ବାଳିକାମାନଙ୍କର ଲେଖା ଯେପରି ଅପକ୍ୱ ଓ ଦୋଷଯୁକ୍ତ ହୋଇଥାଏ, ଏହା ସେଥିରୁ ଅଧିକ ମନ୍ଦ ହୋଇ ନାହିଁ; ବରଂ ଟିକିଏ ଭଲ ହୋଇଅଛି ।

ଏ ମଧ ଗୋଟିଏ ଅଦ୍ଭୁତ କଥା ଲେଖି ନିତାନ୍ତ ବାଲ୍ୟସୁଲଭ ଚପଳତାର ପରିଚୟ ଦେଇଅଛନ୍ତି । 'ମହାବୀର ନେପୋଲିଅନ ଅସଚ୍ଚରିତ୍ର ଥିଲେ' କେଉଁ ସାହସରେ ଲେଖିବା ଏପରି କଥା ଲେଖି ବସିଲେ ଆମ୍ଭେମାନେ ବୁଝିପାରୁ ନାହୁଁ । ମନୁଷ୍ୟମାତ୍ରକେ ସମସ୍ତଙ୍କର ଦୁର୍ବଳତା ଅଛି, ଭ୍ରାନ୍ତି ଅଛି ; ନେପୋଲିଅନଙ୍କର ମଧ ଥିଲା, ଏହା ଆମ୍ଭେମାନେ ସ୍ୱୀକାର କରୁଁ । କିନ୍ତୁ ନେପୋଲିଅନ ଯେ ଚରିତ୍ରସମ୍ବନ୍ଧରେ ଜଣେ ମହାରଥୀ ଥିଲେ ଏହା ନିଶ୍ଚିତ କଥା । ସେ ବାଲ୍ୟକାଳରୁ ଆରମ୍ଭକରି ଶେଷଜୀବନ ପର୍ଯ୍ୟନ୍ତ ଶତ ଶତ ପ୍ରଲୋଭନ ବୀରବିକ୍ରମରେ ପରାଜୟ କରି ଅସାଧାରଣ ମାନସିକଶକ୍ତିର ପରିଚୟ ପ୍ରଦାନ କରିଅଛନ୍ତି । ନେପୋଲିଅନ ତତ୍କାଳୀନ ଫ୍ରାନ୍ସର ଅତୀତ ବସ୍ତୁ । ଧର୍ମ ଓ ନୀତି ବିଷୟରେ ତାଙ୍କର ଗୋଟିଏ ଗୋଟିଏ ଉକ୍ତି ପାଠ କଲେ ହୃଦୟ ମୋହିତ ଓ ସ୍ତମ୍ଭିତ ହୋଇଯାଏ । ଘରକଣରେ ବସି ଦୁଇଚାରି ପତ୍ର ବଙ୍ଗଳା ଓଲଟାଇ ଏପରି ଭୟାନକକଥା ଲେଖିବା କି ଲେଖିକାଙ୍କପକ୍ଷରେ ସାମାନ୍ୟ ଧୃଷ୍ଟତା ଓ ପ୍ରଗଲ୍ଭତାର ବିଷୟ ? ପୁଣି 'ଅସଚ୍ଚରିତ୍ର ଥିବାରୁ ନେପୋଲିୟନ ଶେଷଜୀବନରେ କଷ୍ଟ ଭୋଗ କଲେ; ଏ କେଉଁ ଦେଶୀ ସତ୍ୟ ? ସାଧୁ ସଚ୍ଚରିତ୍ର ନରନାରୀଙ୍କର ସାଂସାରିକ ଦୁଃଖ କଷ୍ଟ ନାହିଁ ଏକଥା କିଏ କହିଲା ? ଏହାର ଲକ୍ଷ ଲକ୍ଷ ଦୃଷ୍ଟାନ୍ତ ଇତିହାସରେ ଓ ଚକ୍ଷୁର ସମକ୍ଷରେ ଥାଉଁ ଥାଉଁ ଏପରି ଲେଖିବା ନିତାନ୍ତ ଅନ୍ଧତା ।

ଆଉ ଏକସ୍ଥାନରେ ଲେଖାଅଛି 'ପୁରୁଷ ଚରିତ୍ର ଅପେକ୍ଷା ସ୍ତ୍ରୀ ଚରିତ୍ର ପ୍ରତି ବିଶେଷ ଦୃଷ୍ଟି ରଖିବା ଉଚିତ; ଯେହେତୁ ସ୍ତ୍ରୀଚରିତ୍ର ଅଳ୍ପରେ କଳଙ୍କିତ ହୁଏ, ପୁରୁଷଚରିତ୍ରରେ ସେପରି ଆଶଙ୍କା ନାହିଁ । ଲେଖିକା ଜଣେ ବ୍ରାହ୍ମିକା, ତାଙ୍କ ମୁହଁରୁ ଏପରି 'ସୃଷ୍ଟିଛଡ଼ା ସତ୍ୟ' ଶୁଣି ଆମ୍ଭେମାନେ ଅବାକ୍ ହୋଇଅଛୁଁ ।

୩ୟ--ବାବୁ ସାଧୁଚରଣ ରାୟଙ୍କ 'ସ୍ୱାଧୀନତା' ଲେଖାରୁ ବୋଧ ହେଉଅଛି ଯେପରି ଲେଖକ କୌଣସି ବିଶେଷ କାରଣରୁ ମୁଣ୍ଡ କୋଡ଼ି ହେଉ ଅଛନ୍ତି । ଅନେକସ୍ଥଳରେ ଭାବ ଅସଂଲଗ୍ନ ସ୍ଥାନେ ସ୍ଥାନେ ପ୍ରଳାପ ବକିଲାପରି ବୋଧ ହେଉଅଛି । ଲେଖକ କହନ୍ତି ଧର୍ମପ୍ରବର୍ତ୍ତକ ଓ ପ୍ରଚାରକମାନଙ୍କର କଥାରେ ଓ କାର୍ଯ୍ୟରେ କିଛି ଫଳ ହୁଏ ନାହିଁ; ମାତ୍ର ବିପ୍ଳବ ଏକଦିବସରେ ସମସ୍ତ ଜଗତକୁ ଭ୍ରାତୃ-ପ୍ରେମରେ ମିଳାଇ ଦିଏ ।

XXXX XXXX XXXX

ଛି ! ବ୍ରାହ୍ମ ହୋଇ ଏପରି କଥା ? ଆମ୍ଭେମାନେ ରାଷ୍ଟ୍ରବିପ୍ଳବର ଉପକାରତା ସ୍ୱୀକାର କରୁଁ; କିନ୍ତୁ ଏହାକୁ ପ୍ରେମପ୍ରଚାରର ପ୍ରକୃଷ୍ଟ ପ୍ରଣାଳୀ ବୋଲି କଦାଚ କହି ନ ପାରୁଁ--ଏହା ଉତ୍କଟରୋଗବିଶେଷର ଔଷଧ, କିନ୍ତୁ ଜୀବନରକ୍ଷକ ପୁଷ୍ଟିକର ଖାଦ୍ୟ ନୁହେ । ଦୈନନ୍ଦିନ ଆହାର ଅଭାବରେ ଏହାର କିଛିମାତ୍ର ମୂଲ୍ୟ ଥାଏ ନାହିଁ--ବରଂ ଜୀବନ କ୍ଷୟ ପ୍ରାପ୍ତ ହୁଏ ।

ପୁଣି 'ଅନ୍ୟର ପଦ ଲେହନ କଲେ' ବା 'କାହାରି ଉଦ୍ଗାର ଭକ୍ଷଣ କଲେ' କେଉଁ ସାମାଜିକ ବା ରାଜନୈତିକ ନିୟମାନୁସାରେ ମନୁଷ୍ୟ ଦଣ୍ଡନୀୟ ହୁଏ ? ଆଉ 'ନିଜର ପାଳିତ ଶୁକପକ୍ଷିକୁ ଉଡାଇ ଦେଲେ' ବା 'ଦୁଇଗୋଡ଼ ଉପରକୁ ଟେକି ଦୁଇହାତରେ ବାଟ ଚାଲିଲେ' କେଉଁଦେଶୀ ଲୋକଙ୍କର ରକ୍ତ ଶୁଷ୍କ ହୁଏ ? ଏ ସବୁ ପ୍ରଳାପ ନୁହେତ କଣ ?

'ମାରେ ସିପାହୀ ନାମ ସରଦାରର' ଏକଥାର କାହାରସଙ୍ଗରେ କି ସମ୍ବନ୍ଧ, ଆମ୍ଭେମାନେ କିଛି ବୁଝିପାରିଲୁଁ ନାହିଁ । ଏହିପରି ଆହୁରି ଅନେକ କ୍ଷୁଦ୍ର କ୍ଷୁଦ୍ର ଅସମ୍ଭବ କଥା ଅଛି, ସେ ସମସ୍ତ ଲେଖିବା ନିଷ୍ପ୍ରୟୋଜନ ।

ଭାଷାଦୋଷ ମଧ ଅନେକ ଦୃଷ୍ଟ ହେଲା; ଯଥା;--ସଶଙ୍କିତ, ଅସତ୍ୟର ଆବିର୍ଭାବ ବଳବତୀ ହୁଏ, ଇତ୍ୟାଦି ।

୪ର୍ଥ--ବାବୁ ଗଣପତିଦାସଙ୍କ 'ହିତବାଦ କି ?' ଧର୍ମଶାସ୍ତ୍ର, ବିବେକ, ଈଶ୍ୱର ସବୁ ଉଡ଼ାଇ ଦେଇ ଗଣପତିବାବୁ ନିରୀଶ୍ୱର ସ୍ୱାର୍ଥମୂଳକ ହିତବାଦ ପ୍ରଚାର କରିବାକୁ କମର ବାନ୍ଧି ଧନୁ ଧରି ଅଛନ୍ତି । ହିତବାଦିଙ୍କର ଗୁରୁ ଓ ତାଙ୍କର ଅନେକ ଚେଲାତ ପାରି ନାହାନ୍ତି--ଗଣପତିବାବୁ ବା କେଉଁକଡ଼ାରେ ଗଣ୍ଡାଏ ? ଯାହା ହେଉ ଉକ୍ତ ପ୍ରବନ୍ଧର ବିସ୍ତୃତ

ସମାଲୋଚନା ଯଥାସମୟରେ ଉତ୍କଳପ୍ରଭାରେ ପ୍ରକାଶିତ ହେବ--ବର୍ତ୍ତମାନ ଆମ୍ଭେମାନେ ସେସମ୍ବନ୍ଧରେ କିଛି କହିବୁଁ ନାହିଁ । ଇତି ।

କଟକ — ବଶମ୍ବଦ

୧୪।୫।୯୨ — ଶ୍ରୀ--

## ଭା୨୭ଗ, ସଂ୨୧ଖ୍ୟା, ୨୧।୫।୧୮୯୨

## [କବିଙ୍କୁ ସମାଲୋଚନା]

ସ୍ଥାନାନ୍ତରେ ଉତ୍କଳପ୍ରଭାସମ୍ପାଦକଙ୍କର ଖଣ୍ଡିଏ ପତ୍ର ପ୍ରକାଶିତ ହେଲା । ସେ 'ପ୍ରଭା'ରେ ପ୍ରବନ୍ଧ ପ୍ରକାଶବିଷୟରେ ଯାହା ଲେଖିଅଛନ୍ତି ତହିଁରେ ଆମ୍ଭମାନଙ୍କର ସହାନୁଭୂତି ଅଛି । ଆମ୍ଭେମାନେ ସମ୍ପାଦକଙ୍କ ସମ୍ବନ୍ଧରେ କେବଳ ଜଣେ ପତ୍ରପ୍ରେରକଙ୍କ ମତ ପ୍ରକାଶ କରିଥିଲୁଁ । ସମସ୍ତଙ୍କ ମନ ରଖିବା ଅସମ୍ଭବ । ପ୍ରାଚିନ କବିଙ୍କ ବିରୁଦ୍ଧରେ ସମାଲୋଚନା କରିବା ସମ୍ପାଦକଙ୍କର ତ୍ରୁଟି ବୋଲି ଆମ୍ଭେମାନେ କହି ନାହୁଁ । ତଦ୍ୱାରା ବାସ୍ତବରେ ଉପକାର ଅଛି । ସେସମ୍ବନ୍ଧରେ ଯେଉଁ ପ୍ରେରିତପତ୍ର ଆମ୍ଭେମାନେ ପ୍ରକାଶ କରିଅଛୁଁ ତାହା ସମ୍ପାଦକଙ୍କ ବିରୁଦ୍ଧରେ ନୁହଇ । ପ୍ରବନ୍ଧଲେଖକଙ୍କ ମତର ପ୍ରତିବାଦ ଅଟଇ । ଏ ବିଷୟରେ ଆମ୍ଭମାନଙ୍କର ବକ୍ତବ୍ୟ ଏହି କି ପ୍ରବନ୍ଧଲେଖକ ଉପେନ୍ଦ୍ର ଭଞ୍ଜଙ୍କର ଯେଉଁ ଦିଯୋଟି ଦୋଷ ଦେଖାଇ ଅଛନ୍ତି ତାହା ସାବ୍ୟସ୍ତ କରିବାର ଉପଯୁକ୍ତ ପ୍ରମାଣ ଦେଖାଇ ନାହାନ୍ତି ଏବଂ ପତ୍ରପ୍ରେରକ ମଧ ତହିଁର ଉତ୍ତର ଦେଇ ନାହାନ୍ତି । ଯେପରି ସମ୍ବଲପୁରହିତୈଷିଣୀର ଜଣେ ପତ୍ରପ୍ରେରକ ଉପଧାସ୍ୱର ବିଷୟରେ ସୁସଙ୍ଗତ ଉତ୍ତର ଦେଇଅଛନ୍ତି ସେପରି ଅନ୍ୟ କୌଣସି ପତ୍ରରେ ଦେଖିଲୁଁ ନାହି । ଅନାବଶ୍ୟକୀୟ ବାକ୍‌ବିତଣ୍ଡା କରିବା ଭଲ ନୁହଇ । ଏହି ହେତୁରୁ ଆମ୍ଭେମାନେ କେତେଗୁଡ଼ିଏ ପ୍ରେରିତପତ୍ର ପ୍ରକାଶ କରିବାରୁ ନିରସ୍ତ ହେଲୁଁ ।

## ଭା୨୭ଗ, ସଂ୨୪ଖ୍ୟା, ୧୧।୬।୧୮୯୨

## ବି, ଏ, ପରୀକ୍ଷାର ଫଳ ।

ଗତ ବି, ଏ, ପରୀକ୍ଷାରଫଳ କଲିକତାଗଜେଟରେ ବାହାରିଅଛି । ଅନରବିଭାଗରେ ଜ୬୭ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଇଂରାଜୀଭାଷାରେ ପ୍ରେସିଡେନ୍‌ସିକଲେଜ ଏବଂ ଅଙ୍କରେ କୃଷ୍ଣନଗର କଲେଜ ପ୍ରଥମ ହୋଇଅଛି ଏହା ଦୁଇବିଷୟର ପ୍ରଥମଶ୍ରେଣୀରେ ଯଥାକ୍ରମେ ଜ୨ଓ ୧ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ବିଜ୍ଞାନ ଏବଂ ସଂସ୍କୃତରେ କେହି ପ୍ରଥମଶ୍ରେଣୀରେ ପାଶ କରିବାକୁ ସମର୍ଥ ହୋଇ ନାହାନ୍ତି । ସୁତରାଂ ଗୁଣାନୁସାରେ ଫଳ ବଡ଼ ସନ୍ତୋଷଜନକ ବୋଲାଯାଇ ନ ପାରେ । ପାଶବିଭାଗରେ ଜ୨୩୭ ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଅତଏବ ଦେଖାଯାଏ ଯେ ଏବର୍ଷ ମୋଟ ପରୀକ୍ଷାର୍ଥୀ ଜ୧୨୩୫ଣ ମଧ୍ୟରୁ ଜ ୬୭+୨୩୭=୩୦୪ଣ ପାଶ କରିଅଛନ୍ତି । ଏ ଫଳ ନିତାନ୍ତ ମନ୍ଦ ହେଲେହେଁ ଗତବର୍ଷଠାରୁ ଭିନ୍ନ ହେବାର ବୋଲାଯାଇ ନ ପାରେ କାରଣ ଗତ ବର୍ଷ ଜ୮୬୦ଣ ମଧ୍ୟରୁ ଜ୨୪୦ ଣ ଉତ୍ତୀର୍ଣ୍ଣ ହୋଇଥିଲେ । ଏଥିରୁ ବୋଧ ହେଉଅଛି ଯେ ଏ ପରୀକ୍ଷାଟି ବଡ଼ କଠିନ ଏବଂ ଯେସ୍ଥଳେ ଏହା ସାଧାରଣତଃ କଲେଜର ଶେଷପରୀକ୍ଷା ଅଟଇ ଛାତ୍ରମାନଙ୍କର ଗୁଣାଗୁଣ ଦୃଢ଼ଭାବରେ ବିଚାର କରିବା ଅସଙ୍ଗତ ନୁହଇ ।

ଏଠା ରେଭନ୍‌ସାକଲେଜରୁ ଉତ୍ତୀର୍ଣ୍ଣ ହୋଇଥିବା ଜ୬ଣ ଛାତ୍ରଙ୍କ ନାମ ଗତସପ୍ତାହରେ ପ୍ରକାଶ କରିଥିଲୁଁ । ମାତ୍ର ପ୍ରକୃତରେ ଜ୭ଣ ଏଠାରୁ ପାଶ କରିଅଛନ୍ତି । ଶେଷଛାତ୍ରର ନାମ ଉପେନ୍ଦ୍ରନାରାୟଣ ଦତ୍ତ ଗୁପ୍ତ ଅଟଇ ଗତବର୍ଷ ଜ୮ଣ ପରୀକ୍ଷା ଦେଇ ତହିଁ ମଧ୍ୟରୁ କେବଳ ଏକଜଣ ପାଶବିଭାଗରେ କୃତକାର୍ଯ୍ୟ ହୋଇ ଥିଲେ । ଏଥର ଜ ୧୯ଣ ପରୀକ୍ଷା ଦେଇ ତହିଁମଧ୍ୟରୁ ଉପରଲିଖିତମତେ ଜ୭ଣ ପାଶବିଭାଗରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଗତବର୍ଷଠାରୁ ଅବଶ୍ୟ ଏବର୍ଷର ଫଳସଂଖ୍ୟା ଏବଂ ଅନୁପାତରେ ଭଲ ବୋଲିବାକୁ ହେବ ମାତ୍ର କ୍ରମାଗତ ଦୁଇବର୍ଷମଧ୍ୟରେ ଜଣେ ସୁଦ୍ଧା ଅନରବିଭାଗରେ ଉତ୍ତୀର୍ଣ୍ଣ ନ ହେବା ଭାରୀ ଅସନ୍ତୋଷଜନକ ଅଟଇ ଏବଂ ଏଥିରୁ ବୋଧ ହେଉଅଛି ଯେ ଏ କଲେଜର ଶିକ୍ଷାକାର୍ଯ୍ୟ ଭଲ ହେଉ ନାହି । ଅନରବିଭାଗରେ ଗତବର୍ଷ ଜ୯୧ଣ ଏବଂ ଏବର୍ଷ ଜ୬୭ଣ ଉତ୍ତୀର୍ଣ୍ଣ ହୋଇଥିବାସ୍ଥଳେ ରେଭନସାକଲେଜରୁ କେହି ଜଣେ ପାଶ କରି ନ ପାରିବା କେବଳ ଛାତ୍ରଙ୍କଦୋଷରୁ ଘଟି ଅଛି

ଏପରି ବୋଲାଯାଇ ନ ପାରେ । ପୂର୍ବେ ମୁଖସ୍ଥକରି ପାଶ କରିବାର ସୁବିଧା ଥିବାରୁ ଛାତ୍ରମାନେ ନିଜପରିଶ୍ରମରେ କୃତକାର୍ଯ୍ୟ ହେଉଥିଲେ ଏଣିକି ଯୋଗ୍ୟତାପ୍ରତି ଅଧିକ ମନୋଯୋଗୀ ହେବାରୁ ଉପଯୁକ୍ତ ଶିକ୍ଷକଙ୍କ ସାହାଯ୍ୟ ବିନା ଭଲ ଶିକ୍ଷା କରିବାର ଉପାୟ ନାହିଁ ।

*ଭା୨୭ଗ,ସଂ୨୪ଖ୍ୟା, ୧୧।୬।୧୮୯୨*

## ଡେପୁଟୀ ପରୀକ୍ଷାର ଫଳ ।

ଗତ ମାରଚମାସରେ ଡେପୁଟୀ କଲେକ୍ଟରୀପଦପ୍ରାର୍ଥିମାନଙ୍କର ଯେଉଁ ପରୀକ୍ଷା ହୋଇଥିଲା ତହିଁର ଫଳ ବାହାରି ଅଛି ଏବଂ ଓଡ଼ିଶାପ୍ରତି ତାହା ବିଶେଷ ଶୁଭପ୍ରଦ ଥିବାର ଗତ ସପ୍ତାହରେ ପାଠକମାନଙ୍କୁ ଜଣାଇଅଛୁଁ । ଜ୨୦ଣ ଡେପୁଟୀ ଏବଂ ଦଶଜଣ ସବ ଡେପୁଟୀ ପଦସକାଶେ ତାଇଦ ନବିସ ପ୍ରୟୋଜନ ଥିବା ଏବଂ ତହିଁ ନିମନ୍ତେ ପରୀକ୍ଷା ହେବାର ପୂର୍ବରୁ ବିଜ୍ଞାପନ ଦିଆ ଯାଇ ଥିଲା । ଏହି ବିଜ୍ଞାପନ ଅନୁସାରେ ଜ୧୯୫ଣ ପରୀକ୍ଷା ଦେବାକୁ ପ୍ରାର୍ଥନା କଲେ ମାତ୍ର ଜ୫ଣ ଉପସ୍ଥିତ ନ ହୋଇ ଜ୧୯୦ଣ ପରୀକ୍ଷା ଦେଲେ ଏମାନଙ୍କ ମଧ୍ୟରୁ ଆପଣା ଆପଣା ଦେଶୀୟ ଭାଷା ସ୍ୱରୂପ ଜ୧୭୬ଣ ବଙ୍ଗଭାଷା ଜ୮ଣ ହିନ୍ଦୋସ୍ଥାନୀଭାଷା ଏବଂ ଜ୫ଣ ଓଡ଼ିଆ ଭାଷାରେ ପରୀକ୍ଷା ଦେଇଥିଲେ । କେବଳ ଜଣେ ସାହେବ କୌଣସି ଦେଶୀୟଭାଷାରେ ପରୀକ୍ଷା ଦେଇ ନ ଥିଲା । ଏହି ଜ୧୯୦ଣଙ୍କ ମଧ୍ୟରୁ ଜ୧୭୯ଣ ଆବଶ୍ୟକୀୟ ସର୍ବନିମ୍ନ ଏକ ତୃତୀୟାଂଶ ଅଙ୍କ ଲାଭ କରିବାକୁ ସମର୍ଥ ହୋଇ ଅଛନ୍ତି । ଅର୍ଥାତ୍ କେବଳ ଜ୧୧ଣ ପାଶ କରି ନାହାନ୍ତି । ଏ ଫଳ ଅବଶ୍ୟ ବଡ଼ ସନ୍ତୋଷଜନକ ବୋଲିବାକୁ ହେବ । ଗୁଣାନୁସାରେ ଯେଉଁ ଦଶଜଣ ଉଚ୍ଚ ସ୍ଥାନ ଲଭିଲେ ଏବଂ ଯାହାଙ୍କ ମଧ୍ୟରେ ବାବୁ ଶ୍ରୀରାମଚନ୍ଦ୍ର ବସୁ ପ୍ରଥମ ଓ ବାବୁ ରାଜକିଶୋର ଦାସ ୪ର୍ଥ ହେଲେ ସେମାନେ ମାସକୁ ଟ୫୦ଙ୍କା ଲେଖାଏଁ ବେତନରେ ଶିକ୍ଷାନବିସ ଡେପୁଟୀ ନିଯୁକ୍ତ ହେଲେ ଏବଂ ଏଥି ମଧ୍ୟରୁ ତିନିଜଣ ସବ ଡେପୁଟୀ ଥାଇ ମାସକୁ ଏକଶତ ଟଙ୍କାଲେଖାଏଁ ବେତନ ପାଉଥିବାରୁ ସେମାନଙ୍କୁ ଏକାବେଳକେ ଏକଟିଂ ଡେପୁଟୀ ପଦରେ ନିଯୁକ୍ତ କରାଗଲା । ଏହି ଦଶଜଣଙ୍କ ମଧ୍ୟରେ କେହି ମୁସଲମାନ ନାହିଁ । ପରୀକ୍ଷାର ଅଙ୍କ, ସରକାରୀଚାକରୀରେ ସୁଖ୍ୟାତି ଲଭିଥିବା ବଂଶୀୟ ଲୋକ ଏବଂ ଭିନ୍ନଶ୍ରେଣୀର ଲୋକ ବିବେଚନାରେ ଆଉ ଦଶଜଣ ଶିକ୍ଷା ନବିସ ନିଯୁକ୍ତ ହୋଇଅଛନ୍ତି । ଏଥିରେ ତିନିଜଣ ମୁସଲମାନ ଅଛନ୍ତି ମାତ୍ର ଓଡ଼ିଶାବାସୀ କେହି ନାହାନ୍ତି । ଅନୁମାନ ହୁଅଇ ପ୍ରତିଯୋଗିତାରେ ଜ୨ଣ ଓଡ଼ିଆ କୃତକାର୍ଯ୍ୟ ହେଲେ ବୋଲି ମାନ୍ୟବର ଛୋଟଲାଟ ଆଉ କାହିଁର ଦାବୀ ବିଚାର କଲେ ନାହିଁ । ମାତ୍ର ଓଡ଼ିଆମାନେ ବହୁକାଳରୁ ଉପେକ୍ଷିତ ହୋଇଥିବା ସ୍ଥଳେ ଏକଜଣ ମନୋନୀତ ହୋଇଥିଲେ ଆମ୍ଭେମାନେ ବଡ଼ ଆନନ୍ଦିତ ହୋଇଥାନ୍ତୁ । ଯାହା ହେଉ ସୁଖର ବିଷୟ ଯେ ଆମ୍ଭମାନଙ୍କ ଛୋଟ ଲାଟବାହାଦୂର ଓଡ଼ିଶାକୁ ଏକାବେଳକେ ପାସୋରି ନାହାନ୍ତି କାରଣ ଉତ୍ତୀର୍ଣ୍ଣ ଲୋକଙ୍କମଧ୍ୟରୁ ଡେପୁଟୀ-ଶିକ୍ଷାନବୀସ ନିର୍ବାଚନ କଲା ଉତ୍ତାରୁ ଯେଉଁ ଦଶଜଣଙ୍କୁ ସବ୍‌ଡେପୁଟୀର ଶିକ୍ଷାନବିସ ସ୍ୱରୂପ ଗ୍ରହଣ କରି ଅଛନ୍ତି ସେମାନଙ୍କ ମଧ୍ୟରେ ଜଣେ ଓଡ଼ିଆ ବାବୁ ଅଭୟପ୍ରସାଦ ଦାସ ବି, ଏ, ଅଛନ୍ତି । ସୁତରାଂ ଓଡ଼ିଶାର ଜ୫ଣ ପରୀକ୍ଷାର୍ଥିଙ୍କ ମଧ୍ୟରୁ ଦୁଇଜଣ ଡେପୁଟୀ ଏବଂ ଏକଜଣ ସବ ଡେପୁଟୀ ପଦ ନିମନ୍ତେ ଗୃହୀତ ହେଲେ ଏବଂ ଅପର ଦୁଇଜଣ ହାରିଗଲେ । ସ୍ଥୂଳରେ ଏଥର ଉଦ୍ୟମର ଫଳ ସନ୍ତୋଷଜନକ ହୋଇଅଛି ଏବଂ ଆମ୍ଭେମାନେ ଆଶା କରୁଁ କି ଓଡ଼ିଶାର ବି,ଏ, ମାନେ ଏଥିରେ ଉତ୍ସାହିତ ହୋଇ ଆଗାମୀ ପରୀକ୍ଷାରେ ଉପସ୍ଥିତ ହେବାକୁ ଯତ୍ନ କରିବେ । ବଙ୍ଗାଳିଙ୍କ ସଙ୍ଗେ ପ୍ରତିଯୋଗିତାରେ ଓଡ଼ିଆମାନେ ପାରିବେ ନାହିଁ ଏକଥା ଆଉ କାହାରି ମନେ କରିବା ଉଚିତ ନୁହଇ ଯେଉଁମାନେ ବି,ଏ, ପରୀକ୍ଷାରେ ଉଚ୍ଚସ୍ଥାନ ଲାଭ କରିବାକୁ ସମର୍ଥ ହୋଇଅଛନ୍ତି  ସେମାନେ ଏହି ପ୍ରତିଯୋଗିତା ପରୀକ୍ଷାରେ ସଫଳ ହେବାର ବିଲକ୍ଷଣ ସମ୍ଭାବନା କାରଣ ବାବୁ ଶ୍ରୀରାମଚନ୍ଦ୍ରବସୁ ଓ ବାବୁ ରାଜକିଶୋର ଦାସ ଯେମନ୍ତ ବି, ଏ, ଓ ବି, ଏଲ ପରୀକ୍ଷାରେ ଉଚ୍ଚସ୍ଥାନ ପାଇଥିଲେ ତେମନ୍ତ ଏହି ପ୍ରତିଯୋଗିତା ପରୀକ୍ଷାରେ ମଧ କୃତକାର୍ଯ୍ୟ ହେଲେ ।

*ଭା୨୭ଗ,ସଂ୨୪ଖ୍ୟା, ୧୧।୬।୧୮୯୨*

## ନୂତନ ପୁସ୍ତକ ।

ତ୍ରିଭାଷୀ ଅର୍ଥାତ୍ ଓଡ଼ିୟା, ବଙ୍ଗଳା, ଓ ଦେବନାଗର ବର୍ଣ୍ଣପରିଚୟ । ଏହି ପୁସ୍ତକସାହାଯ୍ୟରେ ଓଡ଼ିୟାବାଳକମାନେ ସହଜରେ ବଙ୍ଗଳା ଓ ଦେବନାଗର ଶିକ୍ଷି ପାରିବେ । ବଡ଼ଅକ୍ଷରରେ ଛାପା ହୋଇଅଛି । ମୂଲ୍ୟ ଦୁଇ ଅଣା । କଟକ ପ୍ରିଣ୍ଟିଂ କୋମ୍ପାନୀଙ୍କ ପୁସ୍ତକାଳୟରେ ବିକ୍ରୟ ହୁଅଇ ।

ସେକ୍ରେଟରୀ

*ଭା୨୭ଗ, ସଂ୨୫ଖ୍ୟା, ୧୮।୬।୧୮୯୨*

## [ଓଡ଼ିଆରୁ ଇଂରାଜୀ ଉଚ୍ଚାରଣ]

ଓଡ଼ିଆ, ଏହି ଶବ୍ଦକୁ ଇଂରାଜୀ କେଉଁ କେଉଁ ଅକ୍ଷରରେ ଲେଖିବାକୁ ହେବ ତାହା ସ୍ଥିର କରି ଦେବା କାରଣ ଓଡ଼ିଶାର କମିଶନର ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିବାରୁ ସେହି ଉପଲକ୍ଷରେ ବଙ୍ଗୀୟ ଗବର୍ଣ୍ଣମେଣ୍ଟଙ୍କ ଓଡ଼ିଆଅନୁବାଦକ ଏକ ମନ୍ତବ୍ୟ ଲେଖିଅଛନ୍ତି ଏବଂ ତହିଁରେ ପ୍ରକାଶ କରିଅଛନ୍ତି କି ଓଡ଼ିଆଶବ୍ଦଟି ଇଂରାଜୀ ଅକ୍ଷରରେ ନାନାପ୍ରକାର ଲେଖାଯାଉଥିଲା । ବର୍ତ୍ତମାନ କେବଳ ଦୁଇପ୍ରକାର ପ୍ରଚଳିତ ଅଛି ଅର୍ଥାତ୍ ଓଡ଼ିଆ ଏବଂ ଉଡ଼ିୟା (Odiya and Uriya) ଏଥିମଧ୍ୟରୁ ଓଡ଼ିଆ (Oriya) ଶୁଦ୍ଧ ଅଟଇ । ସେ ଆହୁରି କହିଅଛନ୍ତି କି ଏଣିକି ଯେପରି ଇଂରାଜୀଅକ୍ଷରରେ ଉକ୍ତ ଶବ୍ଦ ଲେଖାଯିବ ବଙ୍ଗଳା ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶର ଓଡ଼ିଆ ପ୍ରଚଳିତ ଭୂମିଖଣ୍ଡରେ ଏକସମାନ ପ୍ରଚଳିତ ହେବାର ଉଚିତ । ଗଭର୍ଣ୍ଣମେଣ୍ଟଙ୍କ ନିଷ୍ପତ୍ତି ବାହାରି ନାହିଁ ।

*ଭା୨୭ଗ, ସଂ୩୨ଖ୍ୟା, ୬।୮।୧୮୯୨*

## ପୁସ୍ତକ ପ୍ରାପ୍ତି ।

ଆମ୍ଭେମାନେ ତଳଲିଖିତ ପୁସ୍ତକମାନ ଉପହାର ପାଇବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ।

ବନ୍ଦୋବସ୍ତ ଆଇନ ପ୍ରଥମଭାଗ ଏଥିରେ ବଙ୍ଗୀୟ ରେବନ୍ୟୁବୋର୍ଡଙ୍କ ସନ ୧୮୯୨ ସାଲର ସର୍ଭେମାନୁ-ଏଲ ଅର୍ଥାତ୍ ଜରୀବକାର୍ଯ୍ୟବିଷୟକ ଉପବିଧିମାନ ଉତ୍କଳଭାଷାରେ ଶ୍ରୀ ବାବୁହାରାଣଚନ୍ଦ୍ରଘୋଷ ଓ ଶ୍ରୀ ବାବୁ ବୈକୁଣ୍ଠନାଥଦତ୍ତ ବି, ଏଲ, ଓକୀଲଙ୍କଦ୍ୱାରା ଉତ୍କଳଭାଷାରେ ଅନୁବାଦିତ ଓ ପ୍ରକାଶିତ ହୋଇ ଅଛି । ଏହା କଟକ ପ୍ରିଣ୍ଟିଂକମ୍ପାନୀଙ୍କଦ୍ୱାରା ମୁଦ୍ରିତ । ମୂଲ୍ୟ ବାରଅଣା । ବର୍ତ୍ତମାନସମୟରେ ଓଡ଼ିଶାରେ ଏ ପୁସ୍ତକ କେତେ ପ୍ରୟୋଜନୀୟ ଅଧିକ କହିବାର ଆବଶ୍ୟକ ନାହିଁ । ଲୋକମାନେ ଜରୀବ ଓ ବନ୍ଦୋବସ୍ତ ସମ୍ବନ୍ଧୀୟ ନିୟମମାନ ନ ଜାଣିବା ଏବଂ ଉଚ୍ଚକର୍ମଚାରିମାନେ ତାହା ସବୁ ଲୋକଙ୍କୁ ନ ଜଣାଇବାରୁ ଅମିନପ୍ରଭୃତି ସାମାନ୍ୟ କର୍ମଚାରିଙ୍କ ପ୍ରତାରଣାରେ ପଡି ଜମିଦାର ଓ ପ୍ରଜାମାନେ କେତେପ୍ରକାର ଲଣ୍ଡଭଣ୍ଡ ଓ ତହଖର୍ଚ୍ଚରେ ପଡୁ ଅଛନ୍ତି ତହିଁର ସୀମା ନାହିଁ । ଏ ପୁସ୍ତକରେ ସରକାରଙ୍କ ଅଭିପ୍ରାୟ ଓ କାର୍ଯ୍ୟପ୍ରଣାଳୀ ବିସ୍ତାରିତ ରୂପେ ବୁଝାଇ ଦିଆଯାଇ ଅଛି ଏବଂ ଅନୁବାଦ ମଧ ଏପରି ସରଳଭାଷାରେ ହୋଇ ଅଛି ଯେ ସାଧାରଣ ଲୋକଙ୍କ ବୁଝିବାର କଷ୍ଟ ହେବ ନାହିଁ । ଆମ୍ଭମାନଙ୍କର ଏକାନ୍ତ ବିଶ୍ୱାସ ଯେ ଏ ପୁସ୍ତକଦ୍ୱାରା ବର୍ତ୍ତମାନ କାଳରେ ବିଶେଷ ସାହାଯ୍ୟ ହେବ ଏବଂ, ଅନ୍ତତଃ ପ୍ରତ୍ୟେକ ଗ୍ରାମରେ ଏହି ପୁସ୍ତକର ଦୁଇ ଏକଖଣ୍ଡ ରହିବା ଉଚିତ ।

ବୃନ୍ଦାବର--ଏ ଖଣ୍ଡିଏ ପ୍ରହସନ, ବାବୁରାମଶଙ୍କରରାୟଙ୍କଦ୍ୱାରା ବିରଚିତ ଏବଂ କଟକ ପ୍ରିଣ୍ଟିଂକମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ । ମୂଲ୍ୟ ଚାରିଅଣା ଓଡ଼ିଶାରେ ନାଟକର ଆଦର ଅବଧି ହୋଇ ନ ଥିବା ଓ ଯେଉଁମାନେ ଏପର୍ଯ୍ୟନ୍ତ ନାଟକ ରଚନା କରି ପ୍ରକାଶ କରି ଅଛନ୍ତି ପୁସ୍ତକ ବିକ୍ରୟଦ୍ୱାରା ତହିଁର ଛାପାଖରଚ ସୁଦ୍ଧା ଏ ପର୍ଯ୍ୟନ୍ତ ଉଠାଇ ପାରି ନ ଥିବା ପ୍ରତ୍ୟେକ୍ଷେ ବାବୁ ରାମଶଙ୍କର ରାୟଙ୍କର କ୍ରମାଗତ ନାଟକ ପ୍ରକାଶ ବିଷୟରେ ଶ୍ରମ ଓ ଯତ୍ନ ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇ ଅଛୁଁ । ଏଥିପାଇଁ ତାହାଙ୍କୁ ଧନ୍ୟବାଦ ଦେଉ ଅଛୁଁ । ଏଥିପୂର୍ବେ ଏ ପ୍ରହସନର ଅଭିନୟ ଏ ନଗରରେ ହୋଇ ଥିଲା ଏବଂ ସେ ସମୟରେ ଆମ୍ଭେମାନେ ଏଥିସମ୍ବନ୍ଧରେ ଆପଣା ମନ୍ତବ୍ୟ

ବ୍ୟକ୍ତ କରିଥିଲୁଁ । ବର୍ତ୍ତମାନ ସଂଶୋଧିତ ହୋଇ ଛାପା ହୋଇ ଅଛି । ଏଥିରେ ବୃଦ୍ଧବୟସରେ ବିବାହ ହେବାର ହଟହଟା ବିଲକ୍ଷଣ ରୂପେ ପ୍ରଦର୍ଶିତ ହୋଇ ଅଛି । ରଚନାଟି ରଙ୍ଗରସ ଓ ବିଦ୍ରୂପରେ ଏମନ୍ତ ପରିପୂର୍ଣ୍ଣ ଯେ ପଢ଼ିବା କାଳରେ ହାସ୍ୟ ସମ୍ବରଣ କରିବା କଠିନ । କେବଳ ନୈତିକ ବିବେଚନାରେ ଟିକିଏ ଦୋଷ ରହିବାର ଆମ୍ଭମାନଙ୍କୁ ଜଣା ଯାଉ ଅଛି । ବୁଢ଼ାଦିନେ ବିବାହ ହେବା ନିତାନ୍ତ ନିନ୍ଦା ହେଲେହେଁ ସମାଜରେ ଅନେକ ଘଟୁଅଛି ସୁତରାଂ ସେ ନିନ୍ଦା ପ୍ରକାଶ କରିବା ଭଲ କିନ୍ତୁ ଭଦ୍ରକୁଳାଙ୍ଗନା ପିତା ସ୍ୱାମୀପ୍ରଭୃତି ଗୁରୁଜନଙ୍କ କଥା ଏଡ଼ିଦେଇ ଉକର ସଙ୍ଗେ ଘରୁ ବାହାରି ଯିବାର ଉଦାହରଣ ଅତି ବିରଳ ଏବଂ କ୍ୱଚିତ୍ କେବେ ଘଟିଲେ ମଧ ସେ କୁତ୍ସା ଖଣ୍ଡିଏ ପୁସ୍ତକର ଅଙ୍ଗସ୍ୱରୂପ ରହିବା ସୁରୁଚି ଅନୁମୋଦିତ ବୋଲା ଯାଇ ନ ପାରେ ।

*ଭା୨୭ଗ, ସଂ୪୩ଖ୍ୟା, ୫।୧୧।୧୮୯୨*

## [ପାଠ୍ୟପୁସ୍ତକ ନିର୍ବାଚନକମିଟି]

ପାଠ୍ୟପୁସ୍ତକ ନିର୍ବାଚନସମ୍ବନ୍ଧରେ ଏଥିପୂର୍ବେ ବିସ୍ତର ଆନ୍ଦୋଳନ ହୋଇଥିଲା ଏବଂ ଅବଧି ବଙ୍ଗଳାରେ ଲାଗିଅଛି ମାତ୍ର ମାନ୍ୟବର ଛୋଟଲାଟ ଗତ ବାର୍ଷିକ ରିପୋର୍ଟର ସମାଲୋଚନାରେ ନିର୍ବାଚନ କମିଟୀର କାର୍ଯ୍ୟ ସନ୍ତୋଷଜନକ ଥିବାର କହିଅଛନ୍ତି ଏବଂ ଭବିଷ୍ୟତ୍ ସକାଶେ ନିୟମ କରିଅଛନ୍ତି କି ପାଠ୍ୟପୁସ୍ତକ ନିର୍ବାଚନକମିଟୀର କୌଣସି ସଭ୍ୟର କେହି ଆତ୍ମୀୟ ବ୍ୟକ୍ତି ଯେବେ କୌଣସି ପାଠ୍ୟପୁସ୍ତକର ପ୍ରକାଶକ ବା ପ୍ରଣେତା ହେବ ତେବେ ସେହି ପୁସ୍ତକର ବିଚାର ସମୟରେ ଉକ୍ତ ସଭ୍ୟ କମିଟୀ ଅଧିବେଶନରେ ଉପସ୍ଥିତ ରହି ପାରିବେ ନାହିଁ ଅର୍ଥାତ୍ ତାହାଙ୍କ ଅସାକ୍ଷାତରେ ଅନ୍ୟ ସଭ୍ୟମାନେ ସେ ପୁସ୍ତକର ବିଚାର କରିବେ । ଏ ନିୟମ ବଡ଼ ଭଲ ହୋଇଅଛି ଏବଂ ଏହାଦ୍ୱାରା ଅନେକ ଭ୍ରମ ଓ ସନ୍ଦେହ ଦୂର ହେବ ।

*ଭା୨୭ଗ, ସଂ୪୬ଖ୍ୟା, ୨୬।୧୧।୧୮୯୨*

## [ଓଡ଼ିଆ ଯାତ୍ରା]

ଗତ ରାସପୂର୍ଣ୍ଣିମାରାତ୍ରରେ ବାଲେଶ୍ୱରର ଶ୍ରୀ ଗୋବିନ୍ଦଜିଉଙ୍କ ମନ୍ଦିରରେ ସେହିନଗର ବାରବାଟୀସାହିର ନୂତନଗଠିତ ଏକଯାତ୍ରାଦଳ ସୀତାବନବାସ ଯାତ୍ରାଭିନୟ କରିଥିଲେ । ଏମାନଙ୍କର କାର୍ଯ୍ୟ ଦେଖି ସହଯୋଗୀ ଓଡ଼ିଆ ଓ ନବସମ୍ବାଦ ଲେଖିଅଛନ୍ତି କି ଓଡ଼ିଆରେ ଭଲ ଯାତ୍ରା ବା ହୋଇପାରିବ ନାହିଁ ଏପରି ଯେଉଁମାନେ କହନ୍ତି ଥରେ ଏହିଯାତ୍ରା ଦେଖିଲେ ସେମାନଙ୍କର ଭ୍ରମ ବିଦୂରିତ ହେବ । ଉତ୍କଳବାସିମାତ୍ରକେ ଏ ସମ୍ବାଦରେ ଆନନ୍ଦିତ ହେବେ ଏବଂ ଏହି ଦଳକୁ ଯଥୋଚିତ ଉତ୍ସାହ ହେବେ ଆମ୍ଭମାନଙ୍କର ଏହି କାମନା ।

*ଭା୨୭ଗ, ସଂ୫୧ଖ୍ୟା, ୩୧।୧୨।୧୮୯୨*

# ୧୮୯୩

## ପ୍ରେରିତପତ୍ର ।

## [ଉଚ୍ଚ ଶିକ୍ଷାରେ ବାଧକ]

ମାନ୍ୟବର ଉତ୍କଳ ଦୀପିକା ସମ୍ପାଦକ ମହାଶୟ ସମୀପେଷୁ ।
ମହାଶୟ,

ଉତ୍କଳପ୍ରଦେଶର ମୋଫସଲବାସିମାନଙ୍କ ମଧ୍ୟରେ ଉଚ୍ଚଶିକ୍ଷା ଯେପରି ଅତ୍ୟନ୍ତ କମ୍ ତାହା ପାଠକବର୍ଗଙ୍କର ଅଜ୍ଞାତ ନୁହେ। କୌଣସି ସ୍ଥଳେ ବାଳକମାନଙ୍କୁ ଉଚ୍ଚଶିକ୍ଷାରେ ସେମାନଙ୍କର ଅଭିଭାବକମାନେ ପ୍ରବେଶ କରାଇବାକୁ ତୃଟୀ କରି ନାହାନ୍ତି କିନ୍ତୁ ବାଳକମାନେ ସାମାନ୍ୟ ଇଂରେଜୀ ପଢ଼ିଲା ମାତ୍ରେ ସେମାନଙ୍କୁ ସ୍ୱଧର୍ମ ତ୍ୟାଗ କରିବା ଓ ଅଧିକାଂଶ ବ୍ରାହ୍ମଧର୍ମାବଲମ୍ବୀ ହେବା ଘଟଣାଟି ଯାହା ଘଟୁଅଛି ଏହାହିଁ ଉଚ୍ଚଶିକ୍ଷାର ଖର୍ବତା କରୁଅଛି।

ନନ୍ଦକିଶୋର ବଳ ନାମକ ଗୋଟିଏ ବାଳକ କଟକ ଟାଉନସ୍କୁଲରେ ବିଦ୍ୟାଧ୍ୟୟନ କରି କଲେଜୀୟଟସ୍କୁଲର ତୃତୀୟଶ୍ରେଣୀରେ ବିଦ୍ୟାଧ୍ୟୟନ କରୁଥିଲା କେତେକ ବ୍ରାହ୍ମମାନଙ୍କ ସହିତ ନନ୍ଦ କିଶୋରର ପରିଚୟ ଥିବାରୁ ସେମାନେ ତାକୁ ଗତ ମାଘଉତ୍ସବ ଦିବସ ବ୍ରାହ୍ମଧର୍ମରେ ଦୀକ୍ଷିତ କରାଇବା ନିମନ୍ତେ ବିଶେଷ ଚେଷ୍ଟା କରିଥିଲେ ସୁତରାଂ ନନ୍ଦକିଶୋରର ଅଭିଭାବକମାନେ ତାହା ଜାଣିପାରି ଚଳିତମାସ ତା ୬ରିଖ ଦିବସ ତାଙ୍କୁ କେନ୍ଦରାପଡ଼ାକୁ ଅଣାଇ ସେଠାସ୍କୁଲରେ ବିଦ୍ୟାଧ୍ୟୟନ କରାଉ ଅଛନ୍ତି।

ଏଥିରୁ ପାଠକବର୍ଗ ବୁଝିବେ ଯେ ମୋଫସଲ ବାଳକମାନଙ୍କ ଉଚ୍ଚଶିକ୍ଷାରେ କିପରି ଘୋରତର ବାଧା ମଧ୍ୟେ ମଧ୍ୟେ ଘଟୁଅଛି ଏରୂପ ଗୁରୁତର ବ୍ୟାଘାତ ଶିକ୍ଷା ସମୟରେ ଘଟୁଥିବାସ୍ଥଳେ ଲୋକଙ୍କର ଉଚ୍ଚଶିକ୍ଷା ଦେବାକୁ ଯେ ପ୍ରବୃତ୍ତି ହେବା କଠିନ ବୋଧ ହେଉଅଛି।

ବ୍ରାହ୍ମମାନେ ମଧ୍ୟେ ମଧ୍ୟେ ହିନ୍ଦୁମାନଙ୍କୁ ବିଶେଷତଃ ସ୍କୁଲ ଛାତ୍ରମାନଙ୍କୁ ବ୍ରାହ୍ମ କରାଇବାକୁ ଚେଷ୍ଟା କରିବା ଏହା ନିତାନ୍ତ ଅନ୍ୟାୟ । ଆଶା କରୁଁ ଯେଉଁମାନେ ଏସବୁ କାର୍ଯ୍ୟରେ ପ୍ରବୃତ କରାଉ ଅଛନ୍ତି ସେମାନେ ତାହା ପରିତ୍ୟାଗ କରିବେ। ଇତି ।

ତା ୩୧।୧।୯୩ — ବଶମ୍ବଦ
କୁଜଙ୍ଗ । — ଶ୍ରୀ ନିତ୍ୟାନନ୍ଦଜେନା ।

*ଭା/୨୮ଗ, ସଂ୬ଖ୍ୟା, ୧୧/୨/୧୮୯୩*

## [ଲେଖକମାନଙ୍କୁ ପୁରସ୍କାର]

ଉତ୍କଳପ୍ରଭାର ପ୍ରବନ୍ଧ ଲେଖକମାନଙ୍କୁ ପ୍ରବନ୍ଧର ଗୁଣ ବିବେଚନାରେ ପୁରସ୍କାର ବାଣ୍ଟିବା କାର୍ଯ୍ୟ ଏଣିକି ଶୀଘ୍ର ହେବାର ଦେଖି ଆନନ୍ଦିତ ହେଲୁଁ। ଗତ ଉତ୍କଳପ୍ରଭାରୁ ପ୍ରକାଶ ଯେ ଚଳିତବର୍ଷର ୧ମଠାରୁ ୪ର୍ଥ ପର୍ଯ୍ୟନ୍ତ ସଂଖ୍ୟାରେ ପ୍ରକାଶିତ "କପିଳାସର" ଲେଖକ ବାବୁ ଚନ୍ଦ୍ରମୋହନ ମହାରଣା, "ଅନନ୍ତପ୍ରେମର" ଲେଖକ ବାବୁ ବିଶ୍ୱନାଥ କର, "ବର୍ତ୍ତମାନର" ଲେଖକ ବାବୁ ଦୈତ୍ୟାରିପ୍ରସାଦ ଶଙ୍ଖୁଆ ଏବଂ "କବି ଉପେନ୍ଦ୍ରଭଞ୍ଜର" ଲେଖକ ବାବୁ ରାମନାରାୟଣରାୟ ଟ୧୦ଙ୍କା ଲେଖାଁଏ, "ହିତବାଦୀ" ଓ "ଉତ୍କଳ ସାହିତ୍ୟ" ସକାଶେ

ବାବୁ ଗଣପତି ଦାସ ଟ ୧୫ ଙ୍କା ଲେଖାଁଏ ଟ୩୦ଙ୍କା ଏବଂ "କମଳସୁନ୍ଦରୀ" ଲେଖକ ବାବୁ ଦାମୋଦର ମିଶ୍ର ଟ୧୪ ଙ୍କା ପୁରସ୍କାର ପାଇଅଛନ୍ତି। ଭରସା କରୁଁ ଏଥିରେ ଲେଖକମାନଙ୍କର ଉତ୍ସାହ ବୃଦ୍ଧି ହେବ।

*ଭା/୨୮ଗ, ସଂ୧୧ଖ୍ୟା, ୧୮/୩/୧୮୯୩*

## ଶିକ୍ଷାବିଭାଗ-ରହସ୍ୟ।

ମହାଶୟ !

କି ଘୋର ଅନ୍ୟାୟ ! କି ଘୋର ପକ୍ଷପାତିତା! ଶିକ୍ଷାବିଭାଗର ଏ ଦୋଷ କି କେବେହେଁ ଯିବ ନାହିଁ? ବାରମ୍ବାର ଦୋଷ ଦେଖାଇ ଦେଲେ ସୁଦ୍ଧା କର୍ତ୍ତୃପକ୍ଷୀୟମାନେ ଦାରଭୂତୋ ମୁରାରି ହୋଇ ବସୁଅଛନ୍ତି। "ଯେତେ ବୋଲିବୁ ବୋଲ, ମୋ ଦେହଟା ଯାକ ପୋଲ" ଯେପରି କଥାରେ କହନ୍ତି, ଶିକ୍ଷାବିଭାଗୀୟ କର୍ତ୍ତୃପକ୍ଷୀୟମାନେ ବାରବାର ଦୋଷ କରି ଯେବେ ସେହିପରି କହି ନୀରବ ହେଉଅଛନ୍ତି।

ଆଜକୁ ପ୍ରାୟ ୮ ମାସ ହେବ ବାଲେଶ୍ୱରଡେପୁଟୀ, ଇଃ ହରନାଥ ବାବୁଙ୍କର କେତେ ଗୋଟି ପୁତ୍ର କନ୍ୟା ବିସୂଚିକା ରୋଗରେ ମୃତ୍ୟୁମୁଖରେ ପତିତ ହେବାରୁ ସେ ଛୁଟୀ ଘେନି ବଙ୍ଗଦେଶରେ ଅନ୍ୟ କୌଣସି ଋକିରି ପ୍ରତ୍ୟାଶାରେ ଥିଲେ, ଏବଂ ବାବୁ ରଘୁନାଥ ଘୋଷ ବିଭାଗୀୟ ସବଃ ଇଃ ବାଲେଶ୍ୱର ଡେଃ ଇଃ, କାର୍ଯ୍ୟରେ ଏକଟିଂ ସ୍ୱରୂପ ନିଯୁକ୍ତ ହୋଇଥିଲେ। ବର୍ତ୍ତମାନ ବିଶ୍ୱସ୍ତସୂତ୍ରେ ଅବଗତ ହେଲୁଁ ଯେ ହରନାଥ ବାବୁ ଆଉ ଓଡ଼ିଶାକୁ ଫେରିଆସୁ ନାହାନ୍ତି,କଲେଜିୟଟ ସ୍କୁଲ, ଛୁଟୀପ୍ରାପ୍ତ ୨ୟ ଶିକ୍ଷକ ବାବୁ ରାଜେନ୍ଦ୍ର ଲାଲବାନୁର୍ଯ୍ୟା ବାଲେଶ୍ୱର ଡେଃ ଇଃ କାର୍ଯ୍ୟରେ ନିଯୁକ୍ତ ହୋଇଅଛନ୍ତି। ରଘୁବାବୁଙ୍କ ଏକଟିଂ ସମୟ ଶେଷହେବାକୁ ଆହୁରି ପ୍ରାୟ ୨ ମାସ ଅଛି,ଏପରି ସମୟରେ ହଠାତ୍ ରାଜେନ୍ଦ୍ରବାବୁଙ୍କୁ ଡେଃ ଇଃ ହେବାର ଶୁଣି ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହୋଇଅଛୁଁ।

ଏଥିପୂର୍ବେ ରାଜେନ୍ଦ୍ରବାବୁ ଏଠାରୁ ସ୍ଥାନାନ୍ତରିତ ହେବା ଇଚ୍ଛାରେ ଡାଇରେକ୍ଟରଙ୍କଠାରେ କେବଳ ଆବେଦନ କରିଥିଲେ। ରାଜେନ୍ଦ୍ରବାବୁ ପୀଡ଼ିତ ଥିବାରୁ ଆଜକୁ ପ୍ରାୟ ୧୦/୧୫ ଦିନ ହେବ ଛୁଟୀ ଘେନି ସ୍ୱଦେଶକୁ ଯାଇଅଛନ୍ତି, ବାବୁ ସୁଦର୍ଶନଦାସ ଓ କତିପୟ ଓଡିଆ ବି,ଏ ଉପାଧିଧାରୀ ୨ୟ ଶିକ୍ଷକ କାର୍ଯ୍ୟରେ ପ୍ରାର୍ଥୀ ଥିବା ସତ୍ତ୍ୱେ ଜଣେ ବଙ୍ଗୀୟଯୁବକ ବାବୁ କରୁଣାସିନ୍ଧୁ ସିଂହ ଉକ୍ତ କାର୍ଯ୍ୟରେ ଏକଟିଂ ସ୍ୱରୂପ ନିଯୁକ୍ତ ହୋଇଥିଲେ। ବର୍ତ୍ତମାନ ଶୁଣୁଅଛୁଁ ଯେ କରୁଣାବାବୁ ଡାଇରେକ୍ଟରଙ୍କ ପରଶନାଲ ଆଶିଷ୍ଟେଣ୍ଟଙ୍କର ସମ୍ପର୍କରେ ଜାମାତା କି କଣ ହୁଅନ୍ତି। କରୁଣାବାବୁଙ୍କୁ କଲେଜିୟଟସ୍କୁଲରେ ଗୋଟିଏ ଋକୀରୀ ଦେବା ଅଭିପ୍ରାୟରେ ଉକ୍ତ ପରସନାଲ ବାବୁ ଉଦ୍ୟୋଗ କରି ରଘୁବାବୁଙ୍କ ଦାବୀପ୍ରତି ଦୃଷ୍ଟି ନ କରି, ଓଡ଼ିଶାବିଭାଗର ଇଃ ମହୋଦୟଙ୍କ ବିନା ପରାମର୍ଶରେ ହଠାତ୍ ରାଜେନ୍ଦ୍ରବାବୁଙ୍କୁ ବାଲେଶ୍ୱର ଡେପୁଟୀ ଇଃ ପଦରେ ନିଯୁକ୍ତ କରି ପକାଇଲେ ଓ କରୁଣା ବାବୁଙ୍କୁ ୨ୟ ଶିକ୍ଷକ ପଦ ଦେବା ନିମନ୍ତେ କଲେଜିଏଟ୍ ସ୍କୁଲର ହେଡ଼ମାଷ୍ଟର ତାଙ୍କଦ୍ୱାରା ଅନୁରୁଦ୍ଧ ହୋଇ ଥିଲେ। ଏହା ଯେବେ ପ୍ରକୃତ ଘଟନା ହୋଇଥାଏ ତେବେ କି ଭୟାନକ ଅନ୍ୟାୟ।।

ଆମ୍ଭେମାନେ ଯେତେଦୂର ଜାଣୁଁ ରଘୁବାବୁ ଜଣେ ଅନେକ ଦିନର ଯୋଗ୍ୟ, ସୁଦକ୍ଷ ବହୁଦର୍ଶୀ ସବଃ ଇଃ; ଏହି କାର୍ଯ୍ୟରେ ତାଙ୍କର କେଶ ପକ୍ୱ ହୋଇଗଲାଣି। ଏଥରକୁ ଲାଗି ସେ ପ୍ରାୟ ୭/୮ ଥର ଏକଟିଂ ସ୍ୱରୂପ ଡେଃ ଇଃ କାର୍ଯ୍ୟ କରିଅଛନ୍ତି ଓ ପ୍ରାୟ ୨୨/୨୩ ବର୍ଷ ହେବ ପ୍ରଶଂସା ସହିତ ସରକାରୀ କାର୍ଯ୍ୟ କରି ଆସୁଅଛନ୍ତି। ବିଶ୍ୱସ୍ତସୂତ୍ରେ ଅବଗତ ହେଲୁଁ ଯେ ଇଃ ମହୋଦୟ ରଘୁବାବୁଙ୍କୁ ଡେଃ ଇଃ କାର୍ଯ୍ୟରେ ବାହାଲ କରିବାଲାଗି ୨/୪ ଦିନ ମଧ୍ୟରେ ଡ଼ାଇରେକ୍ଟରଙ୍କଠାକୁ ଲେଖିଥାନ୍ତେ। ଇତିମଧ୍ୟରେ କରୁଣ ବାବୁଙ୍କୁ କଲେଜିୟଟ ସ୍କୁଲର ୨ୟ ଶିକ୍ଷକ କାର୍ଯ୍ୟରେ, ଏବଂ ରାଜେନ୍ଦ୍ରବାବୁଙ୍କୁ ବାଲେଶ୍ୱରର ଡେଃ ଇଃ ପଦରେ

ସୁଯୋଗ୍ୟ ଓଡ଼ିଆଲୋକ ଥାଉଁ ଥାଉଁ ଏଡ଼େ ତରତର ହୋଇ ନିଯୁକ୍ତ ହେବାର ଦେଖି ଆମ୍ଭେମାନେ ମର୍ମ୍ମାନ୍ତିକ ଦୁଃଖିତ ହୋଇଅଛୁଁ। ଇଦୃଶ ନିଯୁକ୍ତିର ଆମ୍ଭେମାନେ ଘୋରତର ବିରୋଧୀ। ଯେବେ ଏହିପରି ଥରକୁଥର ଉତ୍କଳଭାଷା ଅନଭିଜ୍ଞ ବିଦେଶୀୟ ଲୋକମାନେ ଆସି ଓଡ଼ିଆଙ୍କ ଦାନା ମାରିବେ, ତେବେ ଏତେ ଅର୍ଥ ବ୍ୟୟକରି ଗବର୍ଣ୍ଣମେଣ୍ଟର ଏଠାରେ ଗୋଟାଏ କଲେଜ ଓ ସ୍କୁଲମାନ ରଖିବାର ଆବଶ୍ୟକ କଅଣ? ଶୁଣିବାରେ ରାଜେନ୍ଦ୍ରବାବୁ ଓଡ଼ିଆମାନଙ୍କୁ ଭୟାନକ ଘୃଣା ଦୃଷ୍ଟିରେ ଦେଖନ୍ତି ଓ ଓଡ଼ିଆଭାଷାର 'ଅ' ଅକ୍ଷର ତାହାଙ୍କୁ ଅଜଣା। ସେ କିପରି ଓଡ଼ିଶାରେ ଡେଃ ଇଃ ହୋଇ ଓଡ଼ିଆଭାଷାରେ ଓଡ଼ିଆପିଲାଙ୍କୁ, ବିଶେଷତଃ ପଲ୍ଲୀଗ୍ରାମସ୍ଥ ପାଠଶାଳାର କଞ୍ଚାଓଡ଼ିଆ ଛୁଆଙ୍କୁ ପରୀକ୍ଷା କରିବେ? ଧନ୍ୟ ଡାଇରେକ୍ଟରଙ୍କ ବିଚାର !!!

ଓଡ଼ିଆଭାଷା ନ ଜାଣିଥିବାରୁ ପୂର୍ବେ ଶଶଧରବାବୁ ଡେଃ ଇଃ ହୋଇ ଉକ୍ତ କାର୍ଯ୍ୟରେ ବେଶୀଦିନ ରହିପାରି ନ ଥିଲେ। ସେହିଦିନଠାରୁ ଓଡ଼ିଆଭାଷା ଅନଭିଜ୍ଞ ବେଳକୁ ଡେଃ ଇଃ କାର୍ଯ୍ୟ ନ ଦେବାର ନିୟମ ହୋଇଅଛି; ଏପରିସ୍ଥଳେ ରାଜେନ୍ଦ୍ରବାବୁ କିପରି ବାଲେଶ୍ୱରର ଡେଃ ଇଃ ହୋଇ ପାରିବେ ? ମାନ୍ୟବର ଡାଇରେକ୍ଟର ସାହେବ ଏ ବିଷୟ ଜାଣିପାରିଲେ ତାଙ୍କର ପରଶନାଲ ଆସିଷ୍ଟେଣ୍ଟବାବୁଙ୍କର ଏ ଚାତୁରୀ ରହିପାରିବ ନାହିଁ। ଆମ୍ଭମାନଙ୍କର ଓଡ଼ିଶାବିଭାଗର ଇଃ ମହୋଦୟଙ୍କୁ ନିବେଦନ ଏହି ଯେ, ସେ ଏ ବିଷୟରେ ଶୀଘ୍ର ଡିରେକ୍ଟରଙ୍କଠାକୁ ଲେଖନ୍ତୁ-ଲେଖିଲେ ଅବଶ୍ୟ ଏପରି ଅନ୍ୟାୟର ପ୍ରତୀକାର ହେବ ସନ୍ଦେହ ନାହିଁ। ଯେବେ ସେ ନ ଲେଖନ୍ତି ତେବେ ଓଡିଆଙ୍କ ପ୍ରତି ଭୟାନକ ଅନ୍ୟାୟ ହେବ। ଯେବେ କୌଣସି ସାହେବ ଓଡ଼ିଶାର ଇଃ ହୋଇଥାନ୍ତେ ତେବେ କି ପରଶନାଲ ଆଶିଷ୍ଟେଣ୍ଟବାବୁ ଏପରିକାର୍ଯ୍ୟ କରିବାକୁ ସାହସ କରନ୍ତେ ? ଇଃ ମହୋଦୟ ସ୍ୱୟଂ ଯେ କାରଣରୁ Western Circleର ଇଃ ହୋଇପାରିଲେ ନାହିଁ ସେହି କାରଣ ଦର୍ଶାଇ ଏପରି ଅନ୍ୟାୟକାର୍ଯ୍ୟର ଘୋର ପ୍ରତିବାଦ କରନ୍ତେ। ପରିଶେଷରେ ଓଡ଼ିଶା ଗ୍ରାଜୁଏଟ୍ ଓ ଅଣ୍ଡର ଗ୍ରାଜୁଏଟ୍ ସଭାଙ୍କୁ ମୋର ବିଶେଷ ଅନୁରୋଧ ଏହି ଯେ, ଉକ୍ତ ସଭା ଏ ସମ୍ବନ୍ଧରେ କମିଶନର ଓ ଡାଇରେକ୍ଟରଙ୍କଠାକୁ ଆବେଦନପତ୍ର ପ୍ରେରଣ କରନ୍ତୁ, ଏବଂ ସମ୍ବାଦପତ୍ରରେ ପ୍ରତିବାଦ କରନ୍ତୁ।

ଆପଣଙ୍କର ଏକାନ୍ତ
ବଶମ୍ବଦ
ଜଣେ ଓଡ଼ିଆ।

*ଭା ୨୮ଗ, ସଂ ୧୧ଖ୍ୟା, ୧୮/୩/୧୮୯୩*

## ଓଡ଼ିଆ-ଗଜେଟ ।

ଗବର୍ଣ୍ଣମେଣ୍ଟ ସମୟ ସମୟରେ ଯେସବୁ ଆଇନ ଦସ୍ତୁର ଅମଳ ଇତ୍ୟାଦି ଜାରୀ କରନ୍ତି ଅଥବା ଜାରୀ କରିବାର ପ୍ରସ୍ତାବ କରନ୍ତି ଏବଂ ଗବର୍ଣ୍ଣମେଣ୍ଟଙ୍କ ସ୍ଥାପିତ ନାନା ମହକୁମାର ଯେସମସ୍ତ ଆଦେଶ ସମୟ ସମୟରେ ପ୍ରଚରିତ ହୁଅଇ ତାହା ସବୁ ସର୍ବସାଧାରଣଙ୍କୁ ଜଣାଇବା କାରଣ ସରକାରୀ ଇଂରାଜୀ ଗଜେଟ ଅଛି । ଇଂରାଜୀ ନ ଜାଣିବା ଲୋକଙ୍କ ଜ୍ଞାତାର୍ଥେ ଭାରତର ନାନା ପ୍ରଦେଶରେ ଦେଶୀୟଭାଷାର ଗଜେଟମାନ ମଧ୍ୟ ଅଛି। ବଙ୍ଗୀୟ ଗବର୍ଣ୍ଣମେଣ୍ଟ ଅଧୀନ ଇଂରାଜୀ କଲିକତାଗଜେଟ ଛଡା ବଙ୍ଗଳା, ହିନ୍ଦି ଏବଂ ଓଡ଼ିୟାଭାଷାର ଗଜେଟମାନ ଅଛି। ଓଡ଼ିଆ ଗବର୍ଣ୍ଣମେଣ୍ଟ ଗଜେଟ ଓଡ଼ିଶାବାସିଙ୍କ ହିତାର୍ଥେ ପ୍ରାୟ ବ୪୦ର୍ଷରୁ ଉର୍ଦ୍ଧ୍ୱ ହେବ ଏହି କଟକ ନଗରରେ ପ୍ରତି ସପ୍ତାହରେ ପ୍ରଚରିତ ହେଉଅଛି ଏବଂ ଏଥିରେ ଓଡ଼ିଶାପ୍ରତି ଖଟୁଥିବା ଆଇନ, ଆଇନର ପାଣ୍ଡୁଲିପି, ଆଇନାନ୍ତର୍ଗତ ଉପବିଧି ହାଇକୋର୍ଟ ଓ ରେବନ୍ୟୁ ବୋର୍ଡ଼ଙ୍କ ଦସ୍ତୁରଅମଳ ହାକିମମାନଙ୍କ ନିଯୋଗ ବଦଳି ଇତ୍ୟାଦି ନାନା ବିଭାଗର ବିଜ୍ଞାପନ ଇତ୍ୟାଦି ପ୍ରତି ସପ୍ତାହରେ ପ୍ରକାଶ ହୁଅଇ। ମାତ୍ର ଦୁଃଖର ବିଷୟ ଯେ ଦୀର୍ଘକାଳରୁ ଏହି ଗଜେଟ ପ୍ରଚରିତ ହେଉଥିବା ଏବଂ ତହିଁରେ ଅନେକ ପ୍ରୟୋଜନୀୟ ବିଷୟ ପ୍ରକାଶ ହେଉଥିବାସ୍ଥଳେ ଅବଧି ତହିଁର କିଛି ମାତ୍ର ଆଦର ହୋଇ ନାହିଁ। ପ୍ରତି ସପ୍ତାହରେ ପ୍ରାୟ ଖ ୧୫୦ଖଣ୍ଡ ଗଜେଟ ଛାପା ହୁଅଇ ଏବଂ ସେସମସ୍ତ ସରକାରୀ କଚେରୀମାନଙ୍କୁ ବଣ୍ଟାଯାଏ। ବାହାର ଲୋକ ପ୍ରାୟ

କେହି ମୂଲ୍ୟ ଦେଇ ଏହାକୁ ଗ୍ରହଣ କରନ୍ତି ନାହିଁ। ଓଡ଼ିଆଗଜେଟର ଏପରି ହତାଦର ଦେଖି ଓଡ଼ିଶା କମିଶନରମାନେ ସମୟ ସମୟରେ ତହିଁର ଉନ୍ନତିସାଧନର ଚେଷ୍ଟା କରିବାକୁ ତ୍ରୁଟି କରି ନାହାନ୍ତି। ଓଡ଼ିଶାର ପରମହିତକାରୀ ବନ୍ଧୁ ଶ୍ରୀଯୁକ୍ତ ରାବେନଶା ସାହେବ କମିଶନର୍ ଥିଲାବେଳେ ଓଡ଼ିଆ ଗଜେଟର ଉନ୍ନତି ସକାଶେ କେତେଗୁଡ଼ିଏ ଉପଯୁକ୍ତ ଆଦେଶ ପ୍ରଦାନ କରି ଓଡ଼ିଆ ଟ୍ରାନ୍ସଲେଟରଙ୍କ ବେତନ ବୃଦ୍ଧି ଓ ତାହାଙ୍କ ମହକୁମା ବଳିଷ୍ଠ କରିଥିଲେ। ଆମ୍ଭମାନଙ୍କର ଆଶା ଥିଲା ଯେ ତଦ୍ଦ୍ୱାରା ଗଜେଟର ଆଗ୍ରହ ବୃଦ୍ଧି ହୁଅନ୍ତା ମାତ୍ର କି କାରଣରୁ କହି ନ ପାରୁଁ ସେ ଆଦେଶମାନ ଦୃଢ଼ରୂପେ ପ୍ରତିପାଳିତ ହେଲା ନାହିଁ ଗଜେଟର ଅବସ୍ଥା ପୂର୍ବପ୍ରାୟ ରହିଗଲା। ଶ୍ରୀଯୁକ୍ତ ମେଟକାଫ ସାହେବ କମିଶନର୍ ଓଡ଼ିଆ ଗଜେଟର ଶୋଚ୍ନୀୟ ଅବସ୍ଥା ଦେଖି ଏଥିରେ ସରକାରଙ୍କର ଟଙ୍କା ବ୍ୟୟ କରିବାର ଅନର୍ଥକ ବିବେଚନା କରି ତାହା ଉଠାଇ ଦେବାର ପ୍ରସ୍ତାବ କରିଥିଲେ। ଅବଧି ସେ ପ୍ରସ୍ତାବର ଶେଷ ମୀମାଂସା ହୋଇ ନାହିଁ ଏଥିମଧ୍ୟରେ ଆମ୍ଭମାନଙ୍କର ବର୍ତ୍ତମାନ ବାହାଲି କମିଶନର ଶ୍ରୀଯୁକ୍ତ ଟଏନବୀ ସାହେବ ଓଡ଼ିଆଗଜେଟକୁ ଏକାବେଳକେ ଉଠାଇ ଦେବା ସୁପରାମର୍ଶ ବିବେଚନା ନ କରି କିପରି ତହିଁର ଉନ୍ନତି ଓ ଆଦର ହେବ ଏହି ବିଷୟ ବିବେଚନା କରି ରିପୋର୍ଟ କରିବା କାରଣ ଗୋଟିଏ କମିଟୀ ନିଯୁକ୍ତ କରିଅଛନ୍ତି ଏବଂ ତାହାଙ୍କ ପର୍ସନେଲ୍ ଆଶିଷ୍ଟାଣ୍ଟ ବାବୁ ଗୋପାଳବଲ୍ଲଭ ଦାସ ଏହି କମିଟୀର ସଭାପତି ହୋଇଅଛନ୍ତି। କମିଟୀ କେତେକ ଉଚ୍ଚପଦସ୍ଥ ସରକାରୀ କର୍ମଚାରିଙ୍କ ମତ ସଂଗ୍ରହ କରି ଏବିଷୟର ବିବେଚନା କରୁଅଛନ୍ତି ମାତ୍ର ଆମ୍ଭେମାନେ ବିଚାର କରୁଁକି ସାଧାରଣ ଲୋକଙ୍କ ମଧ୍ୟରେ ଏ ସମ୍ବନ୍ଧରେ କାହାରି କିଛି ପରାମର୍ଶ ଦେବାର ଥିଲେ ସେ ତାହା ସ୍ୱୟଂ କମିଟୀକୁ କିମ୍ବା ସମ୍ବାଦପତ୍ର ଯୋଗେ ଜଣାଇଲେ କମିଟୀର ଅନେକ ସାହାଯ୍ୟ ହେବ। ଓଡ଼ିଆଗଜେଟଟି ଉଠିଯିବା ଅବଶ୍ୟ ଦୁର୍ଭାଗ୍ୟର ବିଷୟ ହେବ କିନ୍ତୁ ଯେବେ ତାହା ସର୍ବସାଧାରଣଙ୍କ ପ୍ରୟୋଜନରେ ନ ଆସିବ ଓ କେହି ତାହା ଲୋଡ଼ିବେ ନାହିଁ ତେବେ ସରକାର ଅନର୍ଥକ ବ୍ୟୟ କରି ତାହା କେବେ ରଖିବେ ନାହିଁ ଏବଂ ବୃଥା ବ୍ୟୟସକାଶେ ସରକାରଙ୍କୁ କେହି ପରାମର୍ଶ ଦେବେ ନାହିଁ। କାରଣ ସରକାରଙ୍କ ଅପବ୍ୟୟ ସାଧାରଣ କ୍ଷତି ଭିନ୍ନ ଆଉ କିଛି ନୁହଇ। ପକ୍ଷାନ୍ତରେ ଓଡ଼ିଆଗଜେଟଟି ଉଠି ଗଲେ ତହିଁର ପୁନଃର୍ଜନ୍ମ ଆଶା କରିବା ସହଜ ନୁହଇ। ଯଦ୍ୟପି କି ଇଂରାଜୀ ଶିକ୍ଷାବିସ୍ତାର ସଙ୍ଗେ ସଙ୍ଗେ ଅନୁବାଦର ପ୍ରୟୋଜନ ଊଣା ହେଉଅଛି ଏବଂ ଶିକ୍ଷିତ ଲୋକମାନେ ଇଂରାଜୀ ଗଜେଟରୁ ସକଳ ବିଷୟ ଜାଣିପାରୁ ଅଛନ୍ତି ତଥାଚ ସେଦିନ ବହୁତ ବିଳମ୍ବ ଅଛି ଯେଉଁଦିନ କି ଦେଶର ଅଧିକାଂଶ ଲୋକ ଇଂରାଜୀରେ ଶିକ୍ଷିତ ହୋଇ ଇଂରାଜୀଗଜେଟରୁ ସମସ୍ତ ଜାଣିପାରିବେ। ଅଥଚ ସମୟ ଏପରି ହୋଇଅଛି ଯେ ପ୍ରାୟ ପ୍ରତିସପ୍ତାହରେ ଗବର୍ଣ୍ଣମେଣ୍ଟଙ୍କର ଗୋଟିଏ ଗୋଟିଏ ନୂତନ ବିଧି ପ୍ରଚଳିତ ହେଉଅଛି ଯାହା ନ ଜାଣିଲେ ଜମିଦାର ପ୍ରଜା ବ୍ୟବସାଦାର ପ୍ରଭୃତି ନାନା ଶ୍ରେଣୀର ବିଷୟୀ ଲୋକଙ୍କ ଚାଲିବା କଠିନ। ଏହି ହେତୁରୁ ଓଡ଼ିଆ ଗବର୍ଣ୍ଣମେଣ୍ଟଗଜେଟକୁ ରକ୍ଷା କରି ତହିଁର ଆଦର ବଢ଼ାଇବାର ଚେଷ୍ଟା କରିବା ଉଚିତ। ଆମ୍ଭେମାନେ ବାରାନ୍ତରେ ଏଥିର ଆଲୋଚନା କରିବୁଁ।

*ଭା୨୮ଗ, ସଂ୧୫ଖ୍ୟା, ୧୫।୪।୧୮୯୩*

## ଓଡ଼ିଆ-ଗଜେଟ ।

ଓଡ଼ିଆଗଜେଟ ସମ୍ବନ୍ଧରେ ମାଲୁଦର ମାନେଜରଙ୍କର ଯେଉଁ ପତ୍ର ଗତ ସପ୍ତାହରେ ଆମ୍ଭେମାନେ ପ୍ରକାଶ କରିଅଛୁଁ ତହିଁରୁ ସ୍ପଷ୍ଟ ଜଣାଯାଉଅଛି କି ଗଜେଟର ପ୍ରଚାର ସକାଶେ ଅବଧି କିଛି ଚେଷ୍ଟା ହୋଇ ନାହିଁ। ମୋଫସଲର କାନଗୋଇମାନଙ୍କୁ କି ଉଦ୍ଦେଶରେ ଗଜେଟ ଦିଆଯାଏ ଆମ୍ଭେମାନେ ଅବଗତ ନୋହୁଁ ମାତ୍ର ଯେ କୌଣସି ଉଦ୍ଦେଶ୍ୟ ଥାଉ ଗଜେଟ ଯେତେବେଳେ ସରକାରୀକାଗଜ ହେଉଅଛି ତାହା ଲୋକଙ୍କୁ ଦେଖାଇବା ଓ ତହିଁର ଗ୍ରାହକ ହେବା କାରଣ ସେମାନଙ୍କୁ ପ୍ରବର୍ତ୍ତାଇବା କାନଗୋଇମାନଙ୍କର କର୍ତ୍ତବ୍ୟ ହେଉଅଛି ସନ୍ଦେହ ନାହିଁ ଏବଂ ସେମାନେ ମନୋଯୋଗୀ ହେଲେ ଗଜେଟର ଗ୍ରାହକ ଅବଶ୍ୟ କିଛି ବୃଦ୍ଧି ହେବ। ବୋଧ ହୁଅଇ ଅବଧି କୌଣସି ହାକିମ ଏବିଷୟରେ କାନଗୋଇମାନଙ୍କର ସାହାଯ୍ୟ ଲୋଡ଼ି ନାହାନ୍ତି। ଏଣିକି ବିଭାଗୀୟ

କମିଶନର ସାହେବଙ୍କ ଆଦେଶ ହେଲେ ଜିଲ୍ଲା କଲେକ୍ଟରମାନେ ଆପଣା ଆପଣା ଅଧୀନସ୍ଥ କାନଗୋଇଙ୍କ ନାମରେ ପରୱାନା କରିବେ ଯେ ସେମାନେ ଓଡ଼ିଆଗଜେଟର ମୂଲ୍ୟ ଓ ତାହା ପାଇବାର ଉପାୟ ଲୋକଙ୍କୁ ଜଣାଇ ଦେବେ ବରଂ ଏବିଷୟରେ ବିଜ୍ଞାପନ ଆପଣା ଆପଣା କଚେରୀଘରର ଦାଣ୍ଡପାଖରେ ମାରି ଦେଇଥିବେ ଓ କାର୍ଯ୍ୟୋପଲକ୍ଷରେ ଜମିଦାର ପ୍ରଭୃତିଙ୍କ ସଙ୍ଗେ ଦେଖା ହେଲେ ଗଜେଟର କଥା ସେମାନଙ୍କୁ କହି ଦେବେ। ଆମ୍ଭମାନଙ୍କର ବିଶ୍ୱାସ ଯେ କାନଗୋଇଙ୍କ ସାହାଯ୍ୟରେ ଓଡ଼ିଆଗଜେଟ ପ୍ରଚାରର ଅନେକ ସୁବିଧା ହେବ। ଅନ୍ତତଃ ତହିଁର ମୂଲ୍ୟ ଓ ତାହା ପ୍ରାପ୍ତି ବିଷୟରେ ଯେପରି ଭ୍ରମ ଥିବାର ପତ୍ରପ୍ରେରକ ଲେଖିଅଛନ୍ତି ତାହା ରହିବ ନାହିଁ।

କିନ୍ତୁ ଗଜେଟର କଥା ମୋଫସଲରେ ଯେତେ ପ୍ରଚାର ହେଲେ ସୁଦ୍ଧା ତହିଁର ମୂଲ୍ୟ ଊଣା ନ ହେଲେ ଗ୍ରାହକସଂଖ୍ୟା ବୃଦ୍ଧି ହେବାର ଆଶା କରାଯାଇ ନ ପାରେ । ବର୍ତ୍ତମାନ ଓଡିଆରେ ଯେତେ ସମ୍ବାଦପତ୍ର ପ୍ରଚାରିତ ହେଉଅଛି କାହାରି ମୂଲ୍ୟ ଡାକମାସୁଲ ସହିତ ବାର୍ଷିକ ଟ୩ଙ୍କାରୁ ଅଧିକ ନୁହେ। ଯଦ୍ୟପି କି କୌଣସି ସମ୍ବାଦପତ୍ରରେ ଏକ ଏକ ଆଇନ କିମ୍ବା ତହିଁର ପାଣ୍ଡୁଲିପି ସମ୍ପୂର୍ଣ୍ଣ ପ୍ରକାଶ ହୁଅଇ ନାହିଁ ମାତ୍ର ତହିଁମଧ୍ୟରୁ ଯାହାସବୁ ସର୍ବସାଧାରଣଙ୍କ ଜାଣିବାର ନିତାନ୍ତ ଆବଶ୍ୟକ ସେହିସବୁର ସାର ମର୍ମ୍ମ ଓ ତହିଁର ଦୋଷଗୁଣ ପ୍ରକାଶ ହେବାରେ ତ୍ରୁଟି ହୁଅଇ ନାହିଁ ଏବଂ ଲୋକଙ୍କ ଜାଣିବାଯୋଗ୍ୟ ସରକାରୀ ଅନ୍ୟାନ୍ୟ ସମ୍ବାଦ ମଧ ଦିଆଯାଏ। ସୁତରାଂ ସମ୍ବାଦପତ୍ରଦ୍ୱାରା ଅଳ୍ପବ୍ୟୟରେ ସରକାରୀ ଆଦେଶ ଓ ଅନ୍ୟାନ୍ୟ ସାଧାରଣ ସମ୍ବାଦ ଜାଣିବାର ସୁବିଧା ଥିବା ପ୍ରତ୍ୟକ୍ଷେ ବାର୍ଷିକ ଡାକମାସୁଲ ସହିତ ଟ୯ଙ୍କା ମୂଲ୍ୟ ଦେଇ ଓଡିଆଗଜେଟ ନେବାକୁ ଅଧିକଲୋକ କଦାଚ ଇଚ୍ଛା କରିବେ ନାହିଁ । ବିଶେଷତଃ ଓଡିଶାରେ ଲେଖାପଢା ଜାଣିବା ଲୋକଙ୍କ ସଂଖ୍ୟା ଊଣା ଏବଂ ସଙ୍ଗତିପନ୍ନ ଲୋକଙ୍କ ସଂଖ୍ୟା ମଧ୍ୟ ଊଣା ଅଟଇ । ବାର୍ଷିକ ଟ୯ଙ୍କା ଦେଇ ଗଜେଟ ନେବାର ବଳ ଅନେକ ଲୋକଙ୍କର ନାହିଁ। ଏପରି ଅବସ୍ଥାରେ ଓଡ଼ିଆଗଜେଟର ମୂଲ୍ୟ ଡାକମାସୁଲ ସହିତ ବାର୍ଷିକ ଟ୩ ଙ୍କାରୁ ଅଧିକ ଧାର୍ଯ୍ୟ କରିବା ଉଚିତ ନୁହେ । ବରଂ ଆମ୍ଭମାନଙ୍କ ବିବେଚନାରେ ପ୍ରଥମେ ଟ୨ଙ୍କା ବା ଟ୨½ଙ୍କା କରିବା ଉଚିତ । କେତେକବର୍ଷ ଉତ୍ତାରୁ ଆଦର ବଢ଼ିଲେ ମୂଲ୍ୟ କିଛି ବଢାଇ ଦିଆଯାଇ ପାରେ। ଗଜେଟର ଆକାର ଦୃଷ୍ଟିରେ ଆମ୍ଭମାନଙ୍କ ପ୍ରସ୍ତାବିତ ମୂଲ୍ୟ ଅସଙ୍ଗତ ହେବ ନାହିଁ ଏବଂ ସରକାରଙ୍କର ତହିଁରେ କ୍ଷତି ହେବାର ମଧ ଭୟ ନାହି। ଦାଣ୍ଡର ଗ୍ରାହକ କେହି ନ ହେଲେ ମଧ ଯେସ୍ଥଳେ ଓଡ଼ିଆଗଜେଟ ଛାପା ହେଉଅଛି ଏବଂ ହେବ ଓ ସରକାର ତହିଁର ସମ୍ପୂର୍ଣ୍ଣ ବ୍ୟୟ ସହିବେ ସେସ୍ଥଳେ ଗ୍ରାହକଙ୍କଠାରୁ ଯାହା ମିଳିବ ତାହା ଲାଭ ବୋଲିବାକୁ ହେବ। ବର୍ତ୍ତମାନ ଗଜେଟର ଗ୍ରାହକ ଆଦୌ ନାହିଁ ବୋଲିବା ଅତ୍ୟୁକ୍ତି ନୁହଇ। ଯେବେ ମୂଲ୍ୟ ଊଣା ହେଲେ ଙ୍କ୧୦-୨୦ଣ ଗ୍ରାହକ ହେବେ ତେବେ କିଛି ହେଲେ ଆୟ ହେବ। ଅନ୍ତତଃ କେହି ନ ପଢ଼ିବାସ୍ଥଳେ ଏତେ ଲୋକ ପଢ଼ିବେ ଏତିକି ସାମାନ୍ୟ ଲାଭ ନୁହଇ। ଅତଏବ ସର୍ବାଦୌ ଗଜେଟର ମୂଲ୍ୟ ଊଣା କରିବା ଆବଶ୍ୟକ। ଭରସା କରୁଁ କର୍ତ୍ତୃପକ୍ଷମାନେ ଏଥିରେ ଦ୍ୱିଧା ନ କରି ଶୀଘ୍ର ବିହିତ ଆଦେଶ କରିବେ ।

*ଭା୨୮ଗ,ସଂ୧୬ଖ୍ୟା,୨୯।୪।୧୮୯୩*

## ପ୍ରବେଶିକାପରୀକ୍ଷାର ଫଳ।

ଗତ କଲିକତାଗଜେଟରୁ ପ୍ରକାଶ ଯେ କଲିକତା ବିଶ୍ୱବିଦ୍ୟାଳୟମାନଙ୍କରୁ ୧ମ ଶ୍ରେଣୀରେ ଙ୍କ୯୪୫ଣ ୨ୟ ଶ୍ରେଣୀରେ ଙ୍କ୧୯୦୧ଣ ଓ ୩ୟ ଶ୍ରେଣୀରେ ଙ୍କ୮୭୬ଣ ସର୍ବସୁଦ୍ଧା ଙ୍କ୩୭୨୨ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି। ଏଥି ପୂର୍ବବର୍ଷ ଙ୍କ୧୮୬୬ଣ ଏବଂ ତହିଁ ପୂର୍ବଦୁଇବର୍ଷରେ ଙ୍କ୨୧୫୧ଣ ଓ ଙ୍କ୨୬୪୩ଣ ଉତ୍ତୀର୍ଣ୍ଣ ହୋଇଥିଲେ। ପୂର୍ବବର୍ଷମାନଙ୍କର ମୋଟ ଫଳ ତୁଳନାରେ ଏ ବର୍ଷର ଫଳ ଉତ୍ତମ ହୋଇଅଛି। ଗତବର୍ଷର ଉତ୍ତୀର୍ଣ୍ଣ ଛାତ୍ରସଂଖ୍ୟା ଅପେକ୍ଷା ଏବର୍ଷର ସଂଖ୍ୟା ଦ୍ୱିଗୁଣ ଅଟେ। ଫଳ ଅତି ଉତ୍କୃଷ୍ଟ ହୋଇଥିଲେ ସୁଦ୍ଧା ଏକବର୍ଷରେ ଏତେ ନ୍ୟୁନସଂଖ୍ୟା ଓ ଅନ୍ୟବର୍ଷରେ ତହିଁର ଦ୍ୱିଗୁଣତର ହେବାର କାରଣ ଅନୁସନ୍ଧାନ କରିବାର ଉଚିତ ଆମ୍ଭମାନଙ୍କମତରେ ପରୀକ୍ଷା ସମଭାବରେ ନ ହେଉଥିବାର ସମ୍ଭବ ହେଉଅଛି ସୁତରାଂ ଫଳ ଅସାଧାରଣରୂପେ ଅସମାନ ପଡ଼ିଅଛି।

## ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଓଡ଼ିଶାରୁ ଗତ ପୂର୍ବବର୍ଷରେ ଜଣ୧୦୬ଣ ପରୀକ୍ଷା ଦେଇ ଜ୪୭ଣ ଓ ଗତବର୍ଷରେ ଜଣ୯୪ଣ ମଧ୍ୟରୁ ଜ୧୯ଣ ଓ ଏବର୍ଷ ଜଣ୯୮ଣ ମଧ୍ୟରୁ ଜ୭୭ଣ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି। ଏବର୍ଷର ମୋଟ ଫଳ ପୂର୍ବବର୍ଷମାନଙ୍କ ଅପେକ୍ଷା ଅନେକ ଉତ୍ତମ ହୋଇଅଛି। କିନ୍ତୁ ଗତବର୍ଷରେ ଜଣ୧୯ଣ ଓ ଏବର୍ଷରେ ଜ୭୭ଣ ଅର୍ଥାତ୍ ଚତୁର୍ଗୁଣ ହେବା ଓଡ଼ିଶାପ୍ରତି ଗୌରବରଜନକ ହେଲେ ସୁଦ୍ଧା ପରୀକ୍ଷାର ନିୟମ ଅସମାନ ଥିବା ସ୍ପଷ୍ଟ ପ୍ରତୀୟମାନ ହେଉଅଛି।

ଓଡ଼ିଶାରେ ପ୍ରବେଶିକା ବିଦ୍ୟାଳୟ ଗତବର୍ଷରେ ଗୋ୯ଟି ଥିଲା କଟକ ସାମ୍ୟବାଦୀ ସ୍କୁଲର ଅପମୃତ୍ୟୁ ଓ କଟକ ଟାଉନସ୍କୁଲର ପ୍ୟାରୀମୋହନ ଏକାଡେମିସହ ସମ୍ମିଳନ ହେତୁରୁ ଦୁଇଗୋଟି ସ୍କୁଲ ତତ୍ପୂର୍ବ ବର୍ଷାପେକ୍ଷା କମ ପଡ଼ିଥିଲା କିନ୍ତୁ ଏ ବର୍ଷ ମୟୂରଭଞ୍ଜସ୍କୁଲ ଯୋଗ ହୋଇଥିବାରୁ ସର୍ବ ସୁଦ୍ଧା ଗୋ୧୦ଟି ସ୍କୁଲରୁ ପରୀକ୍ଷାର୍ଥିମାନେ ପ୍ରେରିତ ହୋଇଥିଲେ ।

*ଭା୨୮ଗ, ସଂ୧୯ଖ୍ୟା, ୧୩।୫।୧୮୯୩*

## [ଓଡ଼ିଆ ଗଜେଟ]

ଓଡ଼ିଆଗଜେଟ ସମ୍ବନ୍ଧରେ "ଜନୈକ ଓଡ଼ିଆ ଗ୍ରାଡୁଏଟ" ସ୍ୱାକ୍ଷରିତ ଏକ ପତ୍ର ପାଇଅଛୁଁ। ସ୍ଥାନାଭାବରୁ ପତ୍ରଟି ସମ୍ପୂର୍ଣ୍ଣ ପ୍ରକାଶ କରିବାକୁ ଅକ୍ଷମ ହୋଇ ଗଜେଟର ଉନ୍ନତି ନିମନ୍ତେ ତହିଁରେ ଯେଉଁ ପ୍ରସ୍ତାବମାନ ହୋଇଅଛି ତାହା ପ୍ରକାଶ କରୁଅଛୁଁ। ଗୋଟିଏ ଏହିକି କାନଗୋଇମାନଙ୍କ ନିକଟକୁ ଯେଉଁ ଗଜେଟ ପଠାଯାଏ ତାହା କଲେକ୍ଟରୀ ସିରସ୍ତାର ସଦରକାନଗୋଇଙ୍କଦ୍ୱାରା ପଠା ନ ଯାଇ ଅନୁବାଦକଙ୍କ ଅଫିସରୁ ପଠାଯିବ ଯେ ସେମାନେ ଯଥା ସମୟରେ ପାଇବେ ଏବଂ ତାହା ସବୁ ରୀତିମତେ ପଢ଼ିବା ବିଷୟରେ ଉପଯୁକ୍ତ କର୍ତ୍ତୃପକ୍ଷ ଆଦେଶ ଦେବେ। ତାହା ହେଲେ କାନଗୋଇମାନେ ଗଜେଟ ପାଇ ତହିଁର ମୋଡ଼କ ସୁଦ୍ଧା ନ ଫିଟାଇ ସିରସ୍ତାରେ ଜମା କରିବେ ନାହିଁ। ୨ୟ ଏହିକି ଓଡ଼ିଶା ବିଭାଗର ସମସ୍ତ ସରକାରୀ କଚେରୀର କର୍ତ୍ତୃପକ୍ଷମାନଙ୍କୁ ଆଦେଶ ହେବ ଯେ ଯେତେବେଳେ ଯାହାଙ୍କ କଚେରୀରେ କୌଣସି କର୍ମ ଖାଲି ହେବ ତହିଁର ବିଜ୍ଞାପନ ଓଡ଼ିଆଗଜେଟରେ ପ୍ରକାଶ ହେବା ନିମନ୍ତେ ପଠାଇବେ। ୩ୟ ଏହି କି ସାଧାରଣରେ ବିଶେଷ ପ୍ରକାଶ୍ୟତା ଲାଭାର୍ଥେ ଓଡ଼ିଆଗଜେଟ ପ୍ରତ୍ୟେକ ଫାଣ୍ଡିକୁ ପଠାଯିବ ଓ ଫାଣ୍ଡିର ଭାରପ୍ରାପ୍ତ ପୁଲୀସ କର୍ମଚରିପ୍ରତି ଆଦେଶ ଥିବ ଯେ ସେ ଆପଣା ଏଲାକାର ପ୍ରଧାନ ବ୍ୟକ୍ତିଙ୍କୁ ତାହା ପଢ଼ିବାକୁ ଦେବେ। ଗଜେଟ ସମ୍ପର୍କରେ ଆମ୍ଭମାନଙ୍କର ବକ୍ତବ୍ୟ ଶେଷ ହୋଇ ନ ଥିବାରୁ ଏ ପ୍ରସ୍ତାବମାନଙ୍କର ବିଚାରରୁ ଅଦ୍ୟ କ୍ଷାନ୍ତ ହେଲୁଁ।

*ଭା୨୮ଗ, ସଂ୨୦ଖ୍ୟା, ୨୦।୫।୧୮୯୩*

## ବିଶ୍ୱବିଦ୍ୟାଳୟର ପରୀକ୍ଷା ଫଳ ।

ପ୍ରବେଶିକା- ଏଥିର ସମାଲୋଚନା ଏଥିପୂର୍ବେ ହୋଇଅଛି।

ଏଫ୍, ଏ, ପରୀକ୍ଷା -ଗତବର୍ଷ ଜ୨୪୮୯ଣଙ୍କ ମଧ୍ୟରୁ ଜ୧୧୨୪ଣ ଏବଂ ତହିଁ ପୂର୍ବବର୍ଷ ଜ୨୦୫୮ଣଙ୍କ ମଧ୍ୟରୁ ଜ୭୬୨ଣ ପାଶ୍ କରିଥିଲେ। ଏ ବର୍ଷ କେତେଜଣ ପରୀକ୍ଷାର୍ଥୀ ହୋଇ ଥିଲେ ଜଣା ଯାଇ ନାହିଁ ମାତ୍ର କଥିତ ହୁଅଇ ଯେ ଶତକରା ୩୪ଜଣ କୃତକାର୍ଯ୍ୟ ହୋଇଅଛନ୍ତି। ଏଥକୁ ୧ମ ଶ୍ରେଣୀରେ ଜ୪୨ଣ, ୨ୟ ଶ୍ରେଣୀରେ ଜଣ୧୮୮ଣ ଏବଂ ୩ୟ ଶ୍ରେଣୀରେ ଜ୬୯୯ଣ ସର୍ବସୁଦ୍ଧା ଜଣ୯୨୯ଣ ପାଶ କରିଥିବାରୁ ପ୍ରାର୍ଥିଙ୍କ ସଂଖ୍ୟା ଜ୨୭୦୦ଣରୁ ଉର୍ଦ୍ଧ୍ୱ ହୋଇଥିବ। ସୁତରାଂ ଗତବର୍ଷଠାରୁ ଅଧିକ ପରୀକ୍ଷାର୍ଥୀ ହୋଇଥିଲେହେଁ ଊଣାଲୋକ କୃତକାର୍ଯ୍ୟ ହେଲେ ଏବଂ ଏବର୍ଷର ଫଳ ଅନୁପାତରେ ଗତ ପୂର୍ବବର୍ଷର ଫଳ ସଙ୍ଗେ ସମାନ ହୋଇ ଅଛି। ଏପରି ଅସ୍ଥିର ଫଳ ଅବଶ୍ୟ ଅସୁନ୍ଦର ଅଟଇ ଏବଂ ଏଥିରେ ଛାତ୍ରମାନଙ୍କର ହତାଶ ହେବାର ଆଶଙ୍କା ହେଉଅଛି। ଯୋଗ୍ୟତାନୁସାରେ ହୁଗଳି କଲେଜ ପ୍ରଥମ ଓ ପ୍ରେସିଡେନ୍ସି କଲେଜ ଦ୍ୱିତୀୟ

ହୋଇଅଛି। ତୃତୀୟ ଓ ଚତୁର୍ଥସ୍ଥାନ ମଧ୍ୟ ହୁଗଲିଭାଗ୍ୟରେ ପଡ଼ିବାରୁ ଏହି କଲେଜର ଟେକ ଅଧିକ ବୋଲିବାକୁ ହେବ। ଏଠା ରେବନସାକଲେଜରୁ ଗତ ପୂର୍ବବର୍ଷ ଢ଼୨୮ଣଙ୍କ ମଧ୍ୟରୁ ଢ଼୧୨ଣ ଏବଂ ଗତ ବର୍ଷ ଢ଼୪୨ଣଙ୍କମଧ୍ୟରୁ ଢ଼୨୦ଣ ଉତ୍ତୀର୍ଣ୍ଣ ହୋଇଥିଲେ। ଏବର୍ଷ ଢ଼୪୦ଣଙ୍କ ମଧ୍ୟରୁ କେବଳ ଢ଼୫ଣ ଏବଂ ତହିଁ ମଧ୍ୟରୁ କେବଳ ଏକଜଣ ୨ୟ ଏବଂ ଆଉ ଚାରିଜଣ ୩ୟ ଶ୍ରେଣୀରେ ପାଶ କରିଅଛନ୍ତି। ସୁତରାଂ ଏ ଫଳ ଏବର୍ଷର ସାଧାରଣ ଫଳ ଏବଂ ଅନ୍ୟାନ୍ୟ ବର୍ଷର ଏହି କଲେଜର ଫଳ ତୁଳନାରେ ନିତାନ୍ତ ମନ୍ଦ ହୋଇଅଛି ଏବଂ ଏଥିପାଇଁ ଓଡ଼ିଶାବାସୀ ମାତ୍ରକେ ଦୁଃଖିତ ହେବେ ସନ୍ଦେହ ନାହିଁ।

ବି,ଏ, ପରୀକ୍ଷା-ଗତ ପୂର୍ବବର୍ଷ ଢ଼୮୬୦ଣଙ୍କ ମଧ୍ୟରୁ ଢ଼୨୪୦ଣ ଏବଂ ଗତବର୍ଷ ଢ଼୧୨୩୫ଣଙ୍କମଧ୍ୟରୁ ଢ଼୩୦୪ଣ ଓ ତହିଁମଧ୍ୟରୁ ଅନରରେ ଢ଼୬୭ଣ ଉତ୍ତୀର୍ଣ୍ଣ ହୋଇଥିଲେ । ଏବର୍ଷ ଅନରରେ ଢ଼୬୭ଣ ଏବଂ ପାଶରେ ଢ଼୨୫୧ଣ ସର୍ବସୁଦ୍ଧା ଢ଼୩୧୨ ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି ଓ ଢାକାକଲେଜ ସର୍ବୋଚ୍ଚସ୍ଥାନ ପାଇଅଛି । ମୋଟ ସଂଖ୍ୟା ଗତବର୍ଷ ସଙ୍ଗେ ପ୍ରାୟ ସମାନ ରହିଅଛି କିନ୍ତୁ ଗତ ଦୁଇବର୍ଷ ଶତକଡ଼ା ଢ଼୨୫ଣ କୃତକାର୍ଯ୍ୟ ହେବା ସ୍ଥଳେ ଏବର୍ଷ ଶତକଡ଼ା ଢ଼୨୦ଣରୁ ଉଣା ପାଶ କରିବାର କଥିତ ହୁଅଇ। ଏ ଅଂଶରେ ଫଳ ମନ୍ଦ ହେବାର ଜଣାଯାଏ।

ଏଠା ରେବନଶା କଲେଜର ଫଳ ବଡ଼ ଶୋଚନୀୟ ଅଟଇ। ଗତ ପୂର୍ବବର୍ଷ ଢ଼୮ଣ ପରୀକ୍ଷାର୍ଥିଙ୍କ ମଧ୍ୟରୁ କେବଳ ଏକଜଣ ଓ ଗତବର୍ଷ ଢ଼୧୯ଣଙ୍କ ମଧ୍ୟରୁ ଢ଼୭ଣ ଉତ୍ତୀର୍ଣ୍ଣ ହୋଇଥିଲେ। ଏବର୍ଷ ଢ଼୨୦ଣ ପରୀକ୍ଷା ଦେଲେ ମାତ୍ର କେବଳ ଢ଼୨ଣ ପାଶ ପରୀକ୍ଷାରେ କୃତକାର୍ଯ୍ୟ ହେଲେ। ପୂର୍ବ ଦୁଇବର୍ଷ ପରି ଏବର୍ଷ ମଧ୍ୟ ଅନରପରୀକ୍ଷାରେ ଓଡ଼ିଶାର କୌଣସି ଛାତ୍ରର ନାମ ନାହିଁ। ପୁଣି ଯେଉଁ ଦୁଇଜଣ ପାଶ କରିଅଛନ୍ତି ସେମାନେ ପୁରୁଣା ଛାତ୍ର ଏବଂ ତହିଁ ମଧ୍ୟରୁ ଏକଜଣ ପ୍ରକୃତ ପକ୍ଷରେ ଏ କଲେଜର ଛାତ୍ର ନୁହଇ। କ୍ରମାଗତ କେତେକବର୍ଷ ମନ୍ଦଫଳ ଘଟିବା ବଡ଼ ଦୁର୍ଭାଗ୍ୟର କଥା ଅଟଇ। କି କାରଣରୁ ଏପରି ହୋଇଅଛି ଏବଂ ଏଥିପାଇଁ ଅଧ୍ୟାପକ ବା ଛାତ୍ର କିଏ ଦାୟୀ ଏକଥା ଭଲରୂପେ ଅନୁସନ୍ଧାନ କରିବା ଉଚିତ। ଓଡ଼ିଶାରେ ଉଚ୍ଚଶିକ୍ଷା କ୍ରମେ ବୃଦ୍ଧି ହେବାର ଆଶା ହେଉଥିଲା ତହିଁରେ ଏପରି ବିଘ୍ନ ଘଟିଲା କାହିଁକି ସମସ୍ତ ଓଡ଼ିଶାବାସିଙ୍କର ବିଶେଷତଃ ଶିକ୍ଷିତ ସମ୍ପ୍ରଦାୟ ଅର୍ଥାତ୍ ଗ୍ରାଜୁଏଟ ସଭା ଏକାନ୍ତ ମନୋଯୋଗ ପୂର୍ବକ ଚିନ୍ତାକରି ପ୍ରତୀକାର କରନ୍ତୁ । ଏମନ୍ତ ସମୟରେ ନିଶ୍ଚିନ୍ତ ହେବାର ନୁହେ।

*ଭା୨୮ଗ, ସଂ୨୧ଖ୍ୟା, ୨୬।୫।୧୮୯୩*

## ଓଡ଼ିଆଗଜେଟ।

ଓଡ଼ିଆଗଜେଟର ଗ୍ରାହକବୃଦ୍ଧିର ପ୍ରଧାନ ଉପାୟ ତହିଁର ମୂଲ୍ୟ ଉଣା କରିବା ହେଉଅଛି। ମାତ୍ର କେବଳ ମୂଲ୍ୟ ଉଣା ହେଲେ ଯେ ଆଦର ବଢ଼ିବ ଏପରି ଆଶା କରାଯାଇ ନ ପାରେ। ସେଥିରେ ସର୍ବସାଧାରଣଙ୍କ ପ୍ରୟୋଜନୀୟ ବିଷୟ ରହିବା ଉଚିତ। ସମ୍ପ୍ରତି ଓଡ଼ିଆ ଗଜେଟରେ ଆଇନ ଆଇନର ପାଣ୍ଡୁଲିପି ଏବଂ ଆଇନାନୁସାର ଯେ ସମସ୍ତ ବିଜ୍ଞାପନ ପ୍ରକାଶ ହେବା ନିତାନ୍ତ ଆବଶ୍ୟକ ସେ ବିଜ୍ଞାପନମାନ ଏବଂ ଏଥିଉତ୍ତାରୁ କର୍ମଚାରୀ ନିୟୋଗ ଓ ହାଇକୋର୍ଟର ସରକ୍ୟୁଲର ପ୍ରଭୃତି କେତେକ ବିଷୟ ପ୍ରକାଶିତ ହୁଅଇ। ରେବନ୍ୟୁବୋର୍ଡର ସରକ୍ୟୁଲରମାନ ପୂର୍ବେ ପ୍ରକାଶିତ ହେଉଥିଲା ଏବେ ହେଉ ନାହିଁ ଏବଂ ଉତ୍କଳବନ୍ଧୁ ରେବେନସା ସାହେବ ଓଡ଼ିଶାର କମିଶ୍ନର ଥିବା କାଳରେ ଯେ ସମସ୍ତ ବିଷୟ ଓଡ଼ିଆଗଜେଟରେ ପ୍ରକାଶ ହେବାର ଆଦେଶ ଦେଇଥିଲେ ଯଥା ବଜାରଦର ବୃଷ୍ଟି ଓ ଫସଲର ଅବସ୍ଥା ବାଣିଜ୍ୟଦ୍ରବ୍ୟର ଆମଦାନୀ ରପ୍ତାନୀ ଓ ଜନ୍ମମୃତ୍ୟୁର ବିବରଣ ଇତ୍ୟାଦି ତାହାସବୁ କିଛିକାଳ ଅବିବେଚିତ ପ୍ରକାରରେ ପ୍ରକାଶ ହେଲା ଉତ୍ତାରୁ ବହୁତ ଦିନରୁ ରହିତ ହୋଇଅଛି। ଏହାସବୁ ପ୍ରକାଶ କରିବା ନିମନ୍ତେ ଅନୁବାଦକ ଓ ତାହାଙ୍କ ମହକୁମାର ବେତନ ବୃଦ୍ଧି ହୋଇଥିଲା। ସେହି କାଳରୁ ସରକାରଙ୍କର ଅଧିକ ବ୍ୟୟ ହୋଇ ଆସୁଅଛି ଅଥଚ ଯେଉଁ ଉଦ୍ଦେଶରେ ବ୍ୟୟ

ବଢ଼ିଥିଲା ତାହା ସଫଳ ହେଉ ନାହିଁ। ଏହାସବୁ ରହିତ ହେବାର କୌଣସି କାରଣ ଥାଇପାରେ ମାତ୍ର ଆମ୍ଭମାନଙ୍କ ବିବେଚନାରେ ଏହା ସବୁ ପ୍ରକାଶ ହେବା ଉଚିତ ଏବଂ ତଦ୍ଦ୍ୱାରା ଗଜେଟର ଆଦର ବଢ଼ିବାର କଥା। ଯେବେ ବୋଲାଯିବ ଯେ ଆଇନ ଓ ଆଇନର ପାଣ୍ଡୁଲିପି ଜନସାଧାରଣଙ୍କୁ ଜଣାଇବା କାରଣ ସରକାରଙ୍କର ଓଡ଼ିଆଗଜେଟ ରଖିବା ନିତାନ୍ତ ପ୍ରୟୋଜନ ଏବଂ ତେତିକି ଉଦ୍ଦେଶ୍ୟ ସାଧିତ ହେଲେ ଯଥେଷ୍ଟ ହେଲା ତେବେ ଓଡ଼ିଆଗଜେଟରେ ତେତିକି ବିଷୟ ପ୍ରକାଶ କରି ବିନା ମୂଲ୍ୟରେ କେତେଖଣ୍ଡ ଗଜେଟ ବିତରଣ କଲେ ଯଥେଷ୍ଟ ହେବ। ଏଥିରେ ଗଜେଟର ଛାପା ଏବଂ ମହକୁମା ଖରଚା ଊଣା ପଡ଼ିବ ଏବଂ ବ୍ୟବସ୍ଥାପକସଭାର ପ୍ରୟୋଜନ ଯେତେ ଊଣାବ୍ୟୟରେ ସିଦ୍ଧ ହୋଇପାରେ ତାହା ହେବା ଉଚିତ। କିନ୍ତୁ ଗଜେଟର ଆଦର ବଢ଼ାଇବା ଅବଶ୍ୟ ବାଞ୍ଛନୀୟ ଓ ତହିଁର ବନ୍ଦୋବସ୍ତ ପୂର୍ବରୁ ହୋଇଥିବା ପ୍ରତ୍ୟକ୍ଷେ ମହକୁମାର ବ୍ୟୟ ଊଣା ନ କରି ପ୍ରଥମେ ସର୍ବସାଧାରଣଙ୍କ ମନୋରଞ୍ଜନ ନିମନ୍ତେ ସରକାରୀଦପ୍ତରରୁ ସୁପ୍ରାପ୍ୟ ବିବିଧ ସମ୍ବାଦମାନ ଅନ୍ତତଃ କିଛିକାଳ ତହିଁରେ ଦେଇ ବିଡ଼ିବା ଭଲ। ଯେବେ ପରିଶେଷରେ କିଛି ଫଳ ନ ହେବ ତେବେ ବ୍ୟୟ ସଂକ୍ଷେପର ଚେଷ୍ଟା କରିବାକୁ ହେବ।

କେହି କେହି କହିପାରନ୍ତି ଯେ ବିବିଧ ବିଷୟମାନ ଓଡ଼ିଆଗଜେଟରେ ଦେଲେ ତହିଁର କଳେବର ସୁତରାଂ ଛାପା ଖରଚ ବୃଦ୍ଧି ହେବ। ଏଥକୁ ଆମ୍ଭେମାନେ କହୁଁ ଯେ ଗଜେଟ ଚଳାଇବାର ଭାର ଯାହାଙ୍କ ହାତରେ ଅଛି ସେ ସୁବିବେଚନା ପୂର୍ବକ କାର୍ଯ୍ୟ କଲେ ବ୍ୟୟ ବଢ଼ିବ ନାହିଁ। ବର୍ତ୍ତମାନ ଯେପରି ରୀତିରେ ଗଜେଟ ଚଳିତ ହେଉଅଛି ତହିଁରେ ଅନର୍ଥକ ଅନେକ ସ୍ଥାନ ନଷ୍ଟ ହେଉଅଛି। ଏଥିର କେତୋଟି ଉଦାହରଣ ଦେଖାଉ ଅଛୁଁ। ହାଇକୋର୍ଟର ସରକ୍ୟୁଲରମାନ ଗଜେଟରେ ଯାହା ଛାପା ହୁଅଇ ତାହା ଅଧିକାଂଶ ମହକୁମାସମ୍ବନ୍ଧୀୟ ଅର୍ଥାତ୍ କେଉଁ ସମୟରେ କିପରି ଫାରମରେ ମାସକବାର ସାଲତମାମି ଇତ୍ୟାଦି ପଠାଇବାକୁ ହେବ ଏବଂ ଦସ୍ତୁର ଅମଳ କେଉଁ ବିଧି କିପରି ସଂଶୋଧିତ ବା ପରିବର୍ତ୍ତିତ ହେଲା ଏହାସବୁ ଥାଏ ଏବଂ ସମୟ ସମୟରେ ଗୋଟିଏ ଗୋଟିଏ ବଡ଼ ନକଶାରେ ଦୁଇପୃଷ୍ଠା ବାହାରି ଯାଏ। ଏହାସବୁ ଜନସାଧାରଣଙ୍କର ଜାଣିବାର କିଛି ପ୍ରୟୋଜନ ନାହିଁ ଏବଂ ଏହା ଛାପାକରି ଗଜେଟର ଖରଚ ବଢ଼ାଇବା ବିନା ଆଉ କିଛି ଫଳ ନାହିଁ। ସରକାରୀ କୁଇନାଇନର ବିକ୍ରୟବିଜ୍ଞାପନ କଲିକତା ଇଂରାଜୀଗଜେଟର ଏକ ସ୍ତମ୍ଭର ପ୍ରାୟ ଏକ ଚତୁର୍ଥାଂଶରେ ପ୍ରକାଶିତ ହୁଅଇ ମାତ୍ର ଓଡ଼ିଆଗଜେଟର ପ୍ରାୟ ଏକପୃଷ୍ଠା ସ୍ଥାନ ଅଧିକାର କରୁଅଛି ଏବଂ, ଓଡ଼ିଆ ଓ ଇଂରାଜୀ ଉଭୟଭାଷାରେ ଦିଆ ଯାଉଅଛି। ଓଡ଼ିଆଗଜେଟରେ ଇଂରାଜୀ ବିଜ୍ଞାପନ ପ୍ରକାଶ ହେବାର ଆବଶ୍ୟକତା କିଛି ମାତ୍ର ଜଣାଯାଉ ନାହିଁ। ଏହିପରି ଦେବାନୀଅଦାଲତରେ ଜମିଦାରୀପ୍ରଭୃତି ନିଲାମ ହେବାର ବିଜ୍ଞାପନ କଲିକତାଗଜେଟରେ ପ୍ରାୟ ଦଶ ଧାଡ଼ୀର ଉର୍ଦ୍ଧ୍ୱ ହୁଅଇ ନାହିଁ କିନ୍ତୁ ଓଡିଆଗଜେଟରେ ନିଲାମି ଇସ୍ତହାର ସଂପୂର୍ଣ୍ଣ ପ୍ରକାଶିତ ହୁଅଇ ଏବଂ, ତହିଁରେ ଏକ ପୃଷ୍ଠା ବା ଅଧିକ ବାହାରି ଯାଏ। ଆମ୍ଭମାନଙ୍କ ବିବେଚନାରେ ଯେବେ ଗଜେଟପ୍ରକାଶକ ବିଷୟର ଗୁରୁତ୍ୱ ଏବଂ ଗଜେଟର ଛାପାଖରଚା ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରିବେ ତେବେ ଅନର୍ଥକ ଯେତେ ସ୍ଥାନ ନଷ୍ଟ ହେଉଅଛି ତେତିକିରେ ଅନ୍ୟାନ୍ୟ ପ୍ରୟୋଜନୀୟବିଷୟ ପ୍ରକାଶ ହୋଇ ପାରିବ ସୁତରାଂ ବ୍ୟୟ ବୃଦ୍ଧି ହେବାର ଅନୁମାନ ହେଉ ନାହିଁ। ସଂକ୍ଷେପରେ ଗଜେଟର ଉନ୍ନତି ଗଜେଟ ପ୍ରକାଶକଙ୍କ ଉପରେ ଅଧିକାଂଶ ନିର୍ଭର ରଖେ ଏବଂ, କମିଶନର ସାହେବଙ୍କର ତହିଁପ୍ରତି ଦୃଷ୍ଟି ରଖିବା ଉଚିତ । କେବଳ କାର୍ଯ୍ୟ ଖାଲିର ବିଜ୍ଞାପନ ଦିଆଗଲେ ଗଜେଟର ଆଦର ବଢ଼ିବ ଏ କଥା ଆମ୍ଭମାନଙ୍କ ମନକୁ ଘେନୁ ନାହିଁ ଗଜେଟର ଗ୍ରାହକ ବୃଦ୍ଧି ନ ହେଲେ ବିଜ୍ଞାପନର ଅଧିକ ପ୍ରଚାର ହେବ ନାହିଁ ଏବଂ ଉମେଦବାରମାନେ ଗଜେଟର ଗ୍ରାହକ ହେବେ ଏପରି ଆଶା କରିବା ବୃଥା।

ପରିଶେଷରେ ଆମ୍ଭମାନଙ୍କର ବକ୍ତବ୍ୟ ଏହିକି ଗଜେଟରେ ପ୍ରୟୋଜନୀୟ ବିଷୟ ପ୍ରକାଶ ହେବା ଯେମନ୍ତ ବାଞ୍ଛନୀୟ ତହିଁର ଭାଷା ସର୍ବସାଧାରଣଙ୍କ ବୋଧଗମ୍ୟ ହେବା ତେମନ୍ତ ଅଟଇ। ବର୍ତ୍ତମାନ ଯେପରି

ସାଧୁଭାଷାରେ ଗଜେଟ ପ୍ରକାଶିତ ହେଉଅଛି ତାହା ମୋଫସଲି ଲୋକଙ୍କର ବୁଝିବାର ତେଣିକି ଥାଉ ସମୟ ସମୟରେ ନଗରବାସି ଶିକ୍ଷିତଲୋକେ ବ୍ୟସ୍ତ ହେବାର ଦେଖାଯାଇଅଛି।

*ଭା୨୮ଗ, ସଂ୨୧ଖ୍ୟା, ୨୭।୫।୧୮୯୩*

## ପ୍ରେରିତପତ୍ର ।

## [ଉପେନ୍ଦ୍ର ଭଞ୍ଜ]

ମାନ୍ୟବର ଶ୍ରୀଳ ଶ୍ରୀଯୁତ ଉତ୍କଳଦୀପିକା ସମ୍ପାଦକ ମହୋଦୟ ସମୀପେଷୁ ।

ମହାଶୟ!

ଅନୁଗ୍ରହ ପ୍ରଦର୍ଶନପୂର୍ବକ ଆପଣଙ୍କ ପତ୍ରିକାରେ ନିମ୍ନଲିଖିତ କେତେକ ପଁକ୍ତିକୁ ସ୍ଥାନ ଦେଇ ବାଧିତ କରିବା ହେବେ।

ଏଥିପୂର୍ବେ ଆପଣଙ୍କ ପତ୍ରିକାରେ କବି ଉପେନ୍ଦ୍ରଭଞ୍ଜଙ୍କ ସମ୍ବନ୍ଧରେ ଯାହା କହିଥିଲୁଁ ଗତ ତା ୧୪ ରିଖ ସମ୍ବଲପୁର ହିତୈଷିଣୀରେ ରାମ ନାରାୟଣ ବାବୁ ତହିଁର ଯେଉଁ ଉତ୍ତର ଦେଇ ଅଛନ୍ତି ତାହା ପାଠ କରି ସାତିଶୟ ପ୍ରୀତ ହେଲୁଁ। ତାହାଙ୍କର ଉତ୍ତର ଯେପରିଭାବରେ ଲେଖା ହୋଇଅଛି ତାହା ଯେ ଉତ୍କଳପ୍ରଭାରେ ପ୍ରକାଶିତ ସମାଲୋଚନାଠାରୁ ଅନେକ ଅଂଶରେ ଉତ୍କୃଷ୍ଟ ଏଥିରେ ସନ୍ଦେହ ନାହିଁ, କେବଳ ସେ ଟିକିଏ କ୍ଷେମଟାନାଚ ଦେଖାଇ ନ ଥଲେ ଏବଂ ଆମ୍ଭର ସ୍ଥୁଳବୁଦ୍ଧିକୁ ଉପହାସ ନ କରି ପରିହାସ କରିଥିଲେ ତାହାଙ୍କର ଉତ୍ତର ବିଶୁଦ୍ଧ ହୋଇଥାନ୍ତା ଏବଂ ସେ ଅଧିକ ପ୍ରଶଂସନୀୟ ଓ ଶ୍ରଦ୍ଧାଭାଜନ ହୋଇଥାନ୍ତେ। ସେ ଯାହା ହେଉ ସେ ଆମ୍ଭଦୁହିଙ୍କର ବ୍ୟକ୍ତିଗତ କଥା ତାହା ନେଇ ସମୟ ନଷ୍ଟ କରିବାର ପ୍ରୟୋଜନ ନାହିଁ। ବ୍ୟକ୍ତିଗତ କଥାର ଗୋଟିଏ ଦିଓଟି ଉତ୍ତର ଦେବାର ଆବଶ୍ୟକ, ମାତ୍ର ତାହା ପରେ ହେବ- ଆଗେ ପ୍ରଧାନ ଆଲୋଚ୍ୟ ବିଷୟ ଦେଖାଯାଉ।

ଆଲୋଚ୍ୟ ବିଷୟର ଅବତାରଣା କରିବା ପୂର୍ବରୁ ସେ ସମ୍ବନ୍ଧରେ କେତୋଟି କଥା କହିବା ନିତାନ୍ତ ଆବଶ୍ୟକ।

ପ୍ରଥମତଃ ଜୁନ ତା ୧୪ରିଖ ଓଡ଼ିଆ ଓ ନବସମ୍ବାଦରେ ଯେଉଁ ଗୋଲକଧନ୍ଦା ବାହାରି ଅଛି ସେ ମୁଁ ନୁହେଁ, କିମ୍ବା ତହିଁରେ ମୋହର ସହାନୁଭୂତି ନାହିଁ, କିମ୍ବା ମୁଁ ତାହାର ପୋଷକତା ବା ଅନୁମୋଦନ କରେଁ ନାହିଁ। ଦ୍ୱିତୀୟତଃ ରାମନାରାୟଣବାବୁଙ୍କ ଉତ୍ତରରୁ ଜଣାଯାଏ ଯେ ମୁଁ ଯାହାକୁ ମନ୍ଦ ନୁହେଁ ବୋଲି କହିଲି ସେ ତାହାକୁ ମନେ କରନ୍ତି ଯେ ମୁଁ ତାହାକୁ ଭଲ ବୋଲି ଧଇଲି। ଏପରି ଯୁକ୍ତିରେ ଅନୁମାନ ପ୍ରଣାଳୀର ( inference) ବ୍ୟତିକ୍ରମ ଘଟୁଅଛି। ଯାହା ମନ୍ଦ ନୁହେ ତାହା ଯେ ବସ୍ତୁତଃ ଭଲ ଏହା ନୁହେଁ, ଭଲ ଓ ମନ୍ଦ ମଧରେ ଯେ ଗୋଟିଏ ଅବସ୍ଥା ଅଛି ତାହା ବୁଝାଇବାକୁ ବୋଧ ହୁଏ ଏଠାରେ ନ୍ୟାୟଶାସ୍ତ୍ରର ଆଲୋଚନା କରିବାର ପ୍ରୟୋଜନ ନାହିଁ। ତୃତୀୟତଃ- ବୈଦେହୀଶବିଳାସର ସମାଲୋଚନା, ବୈଦେହୀଶବିଳାସରେ ଅଙ୍କିତ ରାମଚରିତ୍ରର ସମାଲୋଚନା, ଏବଂ ଉପେନ୍ଦ୍ରଭଞ୍ଜଙ୍କର ସମାଲୋଚନା,ଏହି ତିନିଗୋଟିର ଯେ ପାର୍ଥକ୍ୟ ଅଛି ତାହା ବୋଧ କରେଁ କାହାରିକୁ ବୁଝାଇ ଦେବାକୁ ହେବ ନାହିଁ, କିନ୍ତୁ ରାମନାରାୟଣ ବାବୁ ଓ ପାଠକବୃନ୍ଦଙ୍କୁ ବିଶେଷ ଅନୁରୋଧ ଯେ ଏହି ପାର୍ଥକ୍ୟ ଯେପରି ସେମାନେ ବିଶେଷରୂପେ ସ୍ମରଣ ରଖି ବାଧିତ କରିବେ। ଚତୁର୍ଥତଃ-ଉପେନ୍ଦ୍ରଭଞ୍ଜଙ୍କର ଲେଖନୀପ୍ରସୂତ ସମସ୍ତ ଗ୍ରନ୍ଥ, କିମ୍ବା ତାହାଙ୍କୁ, କିମ୍ବା ରାମନାରାୟଣ ବାବୁଙ୍କୁ ନିନ୍ଦା ବା ସ୍ତୁତି କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେ ଏହା ପୂର୍ବରେ କହିଥିଲୁଁ, ବର୍ତ୍ତମାନ କହୁଅଛୁଁ, ଏବଂ ଏହା ବିଶେଷ କରି ମନେ ରଖିବାକୁ ବିଶେଷ କରି ଅନୁରୋଧ କରୁଅଛୁଁ। କେବଳ ରାମନାରାୟଣ ବାବୁ ଉତ୍କଳପ୍ରଭାରେ ଉପେନ୍ଦ୍ରଭଞ୍ଜଙ୍କର ରୁଚିସମ୍ବନ୍ଧରେ ଯେପରିଭାବରେ ଯେପରି ସମାଲୋଚନା କରିଅଛନ୍ତି ତାହା ଆମ୍ଭମାନଙ୍କର ଆଲୋଚ୍ୟ।

ଏପରି ବିସ୍ତାରିତ ମୁଖବନ୍ଧ ନିତାନ୍ତ ପ୍ରୟୋଜନ,କାରଣ ଆମ୍ଭେମାନେ ଏକ ଦୁରୂହ ବିଷୟର ମୀମାଂସା

କରିବାକୁ ଯାଉଅଛୁଁ। ଏକପକ୍ଷରେ ରାମନାରାୟଣବାବୁଙ୍କର ଉଦ୍ଦେଶ୍ୟ ମହତ୍ ସେ ଜାତୀୟ ସାହିତ୍ୟ ଜାତୀୟ ରୁଚି ପରିମାର୍ଜିତ କରି ନୂତନ ଜାତୀୟ ଜୀବନ ସଞ୍ଚାର କରାଇବା ବ୍ରତରେ ବ୍ରତୀ । ଅନ୍ୟପକ୍ଷରେ ଆଜହୁଁ ଯୁଗଯୁଗାନ୍ତର ପୂର୍ବରେ ଯେତେବେଳେ ପାଶ୍ଚାତ୍ୟ ସଭ୍ୟତା ଆଲୋକରେ ଆମ୍ଭମାନଙ୍କର ଦେଶ ଆଲୋକିତ ହୋଇ ନ ଥିଲା ସେତେବେଳେ ଜଣେ ଉତ୍କଳୀୟ ରାଜବଂଶୋଦ୍ଭବ ରାଜସିଂହାସନାଧିକାରୀ, କୌଣସି ବ୍ୟକ୍ତିର ନିନ୍ଦା ବା ସ୍ତୁତି କରି ବିଖ୍ୟାତନାମା ହେବା କିମ୍ବା ଅର୍ଥୋପାର୍ଜନ କରିବାର କୌଣସି ଆଶା ନ ରଖି ଯାହା ଲେଖିଯାଇଅଛନ୍ତି ଏବଂ ଯାହାକୁ ଆମ୍ଭମାନଙ୍କ ପୂର୍ବପୁରୁଷମାନେ ଅମୂଲ୍ୟ ରତ୍ନ ଜ୍ଞାନ କରୁଥିଲେ ସେଥିପାଇଁ ସେ " ଉତ୍କଳଙ୍କ ସ୍ୱର୍ଗୀୟ ରୁଚିରେ କଳଙ୍କ କାଳିମା ଲେପନକାରୀ" ଏବଂ " ଜାତୀୟ ସାହିତ୍ୟର ଘୋର ଅନିଷ୍ଟକାରୀ" ଅଟନ୍ତି କି ନା ଏହା ମୀମାଂସା କରିବାକୁ ହେବ।

ଦ୍ୱିତୀୟଭାଗ ଅଷ୍ଟମସଂଖ୍ୟା ଉତ୍କଳପ୍ରଭାର ପୃ୨୪୫ଷାରେ ରାମନାରାୟଣବାବୁ କହନ୍ତି " ଆମ୍ଭମାନଙ୍କ ଆଲୋଚ୍ୟମାନ କାବ୍ୟରେ କବି ରାମଚନ୍ଦ୍ରଙ୍କର ନିଷ୍କଳଙ୍କ ସ୍ୱର୍ଗୀୟ ପବିତ୍ର ରୁଚିରେ ଯେ କିପରି କଳଙ୍କକାଳିମା ଲେପନ କରିଅଛନ୍ତି ତାହା ପୂର୍ବପ୍ରସଙ୍ଗରେ ଆଲୋଚନା କରିଅଛୁଁ। ବର୍ତ୍ତମାନ ପ୍ରବନ୍ଧ ବାହୁଲ୍ୟ ହେତୁ ସେ ସମ୍ବନ୍ଧରେ ବିଶେଷ ଆଲୋଚନା ନ କରି ଏ ପ୍ରବନ୍ଧ ଉପସଂହାର କରିବୁଁ, କବି ତାଙ୍କୁ ଜଗଦ୍ଵିଖ୍ୟାତ ରସିକ ପୁରୁଷ କରିବାକୁ ଯାଇ ଆମ୍ଭମାନଙ୍କ ଜାତୀୟ ସାହିତ୍ୟର ଘୋର ଅନିଷ୍ଟ ସାଧନ କରିଅଛନ୍ତି ଏବଂ ଉକ୍ତ ସଂଖ୍ୟକ ଉତ୍କଳପ୍ରଭାର ପୃ୨୫୦ଷାରେ ରାମନାରାୟଣବାବୁ ଆହୁରି ଲେଖିଅଛନ୍ତି "ତାଙ୍କର ପ୍ରତ୍ୟେକ କାବ୍ୟ କେବଳ ପ୍ରଣୟୀଯୁଗଳର ଅସାର ଓ ବିଭତ୍ସ ବିଳାସକ୍ରୀଡ଼ାରେ ପରିପୂର୍ଣ୍ଣ" ଏହିପରି ଯେଉଁ ଉପେନ୍ଦ୍ରଭଞ୍ଜ ତାହାଙ୍କ ଅଙ୍କିତ ରାମଚନ୍ଦ୍ରଙ୍କର ଛବି କେତେଦୂର କାମୁକ ତାହା ଦେଖାଇବାପାଇଁ ଜୁନ ମାସ ତା ୧୪ ରିଖ ସମ୍ବଲପୁର ହିତୈଷିଣୀରେ ରାମନାରାୟଣ ବାବୁ ବୈଦେହୀଶ ବିଳାସରୁ ଅଂଶମାନ ଉଦ୍ଧୃତ କରି ଅଛନ୍ତି। ପୁଣି ଆମ୍ଭେ "ବେଦନାସହ ନୋହେ ରାମ ଭାଷେ".... ଇତ୍ୟାଦିର ଯେଉଁ ଅର୍ଥ କରିଥିଲୁଁ ତାହା ଏଠାରେ ଖଟିଲା ନାହିଁ, ଏବଂ ଆମ୍ଭେ ସ୍ୱୀକାର କରୁଅଛୁଁ ଯେ କବି ରାମଚନ୍ଦ୍ରଙ୍କୁ ନିତାନ୍ତ କାମୁକ ବୋଲି ଚିତ୍ରିତ କରିଅଛନ୍ତି । ମାତ୍ର ଯେଉଁ କବି ପ୍ରତ୍ୟେକ କାବ୍ୟକୁ "କେବଳ ପ୍ରଣୟୀଯୁଗଳର ଅସାର ଓ ବିଭତ୍ସ ବିଳାସକ୍ରୀଡାରେ ପରିପୁର୍ଣ୍ଣ" କରିଅଛନ୍ତି ସେ କବି ସ୍ୱୟଂ ଭଗବାନ ରାମଚନ୍ଦ୍ରଙ୍କ ପରି ନାୟକ ପାଇ ସେଠାରେ କାମୁକତାର ପ୍ରଶଂସା ନ କରି ମାର୍କଣ୍ଡେୟଙ୍କଦ୍ୱାରା ନିନ୍ଦା କରାଇବାକୁ କାହିଁକି ଗଲେ? ଯେଉଁ କାମୁକତାର ଛବି ଅଙ୍କିତ କରିଛନ୍ତି ବୋଲି ଆମ୍ଭେମାନେ କବିଙ୍କୁ ନିନ୍ଦା କରୁଅଛୁ ସେହିକାମୁକତାକୁ କବି ସ୍ୱୟଂ ନିନ୍ଦା କରିଛନ୍ତି। କିନ୍ତୁ ଦୁଃଖର ବିଷୟ ଯେ ରାମଚନ୍ଦ୍ରଙ୍କର କାମୁକତା ନିନ୍ଦ୍ୟ ବୋଲି ପ୍ରମାଣ କରିବାକୁ ଯାଇ କବିଙ୍କର ନିଜ ବଚନ ଉଦ୍ଧୃତ କରିସୁଦ୍ଧା ରାମନାରାୟଣ ବାବୁ କହନ୍ତି ଯେ ମାର୍କଣ୍ଡେୟ ନିନ୍ଦା କଲେ, ଉପେନ୍ଦ୍ରଭଞ୍ଜ ନିନ୍ଦା କଲେ ବୋଲି ସେ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି ଉପେନ୍ଦ୍ରଭଞ୍ଜ କାମୁକତାର ନିନ୍ଦା କରିଅଛନ୍ତି ବୋଲି କହିବାକୁ ରାମନାରାୟଣ ବାବୁ କୁଣ୍ଠିତ କାହିଁକି? ଅନବଧାନବଶବର୍ତ୍ତୀ ଉତ୍କଳପ୍ରଭାରେ ଏହା ନ କରି ପାରିଥାନ୍ତି; କିନ୍ତୁ ହିତୈଷିଣୀରେ ସ୍ୱୀକାର କରିବାକୁ କୁଣ୍ଠିତ କାହିଁକି? ବିତଣ୍ଡା ଅର୍ଥ କରି କିଆଗୋହରିକି ଟଣାଟଣି ନ କରିଥିଲେ ପ୍ରକୃତ ରହସ୍ୟ ବାହାରିଥାନ୍ତା କି? ସମାଲୋଚନା ପ୍ରକୃତ ନିରପେକ୍ଷ କି ନା ଜାଣିବାର ଉପାୟାନ୍ତର ଥିଲା କି ? ଏହି ନୀତିର ଅନୁସରଣ କରି ଉପେନ୍ଦ୍ରଭଞ୍ଜଙ୍କୁ ଜାତୀୟସାହିତ୍ୟର ଘୋର ଅନିଷ୍ଟକାରୀ ପ୍ରଭୃତି ଭୂଷଣରେ ଭୂଷିତ କରିବାର କେତେଦୂର ଯୁକ୍ତିଯୁକ୍ତ ଓ ନ୍ୟାୟସଙ୍ଗତ ତାହା ରାମନାରାୟଣବାବୁ ଓ ପାଠକମାନେ କହନ୍ତୁ ।

ଏଠାରେ ଜିଜ୍ଞାସ୍ୟ ଯେ ରାମଚନ୍ଦ୍ରଙ୍କୁ ଏପରି କାମୁକ ବୋଲି ଚିତ୍ରିତ କରି ପୁଣି ନିନ୍ଦା କରିବାରେ କବିଙ୍କର କି ଉଦ୍ଦେଶ୍ୟ ଥିଲା, ଯଦ୍ୟପି ରାମନାରାୟଣ ବାବୁ ବୈଦେହୀଶ ବିଳାସରେ ଅଙ୍କିତ ରାମଚରିତ୍ର କିମ୍ବା ବୈଦେହୀଶବିଳାସର ସମାଲୋଚନା କରିଥାନ୍ତେ ତାହା ହେଲେ ଏପରି ପ୍ରଶ୍ନ ପ୍ରୟୋଜନ ହୋଇ ନ ପାରନ୍ତା; କିନ୍ତୁ ଯେତେବେଳେ ଉପେନ୍ଦ୍ରଭଞ୍ଜଙ୍କର ସମାଲୋଚନା କରା ହୋଇଅଛି ସେତେବେଳେ କବିଙ୍କର ଉଦ୍ଦେଶ୍ୟ ପ୍ରକାଶ କରିବା ସମାଲୋଚକଙ୍କର ଉଚିତ ନୁହେ କି? ଏବଂ ଯେଉଁମାନେ ତାଙ୍କ ସମାଲୋଚନା ପାଠ କରି ଉପେନ୍ଦ୍ରଭଞ୍ଜଙ୍କ ସମ୍ବନ୍ଧରେ ମତାମତ ସ୍ଥିର କରିବେ ତାହାଙ୍କର ଉଚିତ ନୁହେ କି ? ଆମ୍ଭେ ଜଣେ ମଝିମଝିଆ

ଆମ୍ଭର ସ୍ଥୁଳ ବୁଦ୍ଧିକି ଯାହା ଯାହା ଦିଶିବ ତାହା ଯେ ହାସ୍ୟାସ୍ପଦ ହେବ ଏବଂ କେହି କେହି ଯେ ତାହାକୁ "ବିତଣ୍ଡା" ବୋଲି ଉଡ଼ାଇ ଦେବେ ଏଥିରେ ସନ୍ଦେହ ନାହିଁ । ତଥାପି ରାମଚନ୍ଦ୍ରଙ୍କର କାମୁକତାର ଭାବାନ୍ତର ଦେଖାଇବାକୁ ଯିବାରେ ଉପେନ୍ଦ୍ରଭଞ୍ଜ ସ୍ୱୟଂ ସେହି କାମୁକତାର ନିନ୍ଦା କରିଥିବାର ପ୍ରମାଣ ସ୍ୱୟଂ ରାମନାରାୟଣ ବାବୁଙ୍କ ଲେଖନୀରୁ ବାହାରିଥିବାରୁ ଆଶା ହେଉଅଛି ଯେ ଆମ୍ଭ ସ୍ଥୁଳବୁଦ୍ଧିକି ଯାହା ଦିଶୁଅଛି ତାହା କହିଲେ ସେ ପ୍ରକୃତକଥା ପ୍ରକାଶ କରି ଜନସାଧାରଣ ଏବଂ ତତ୍‌ସହିତ ଆମ୍ଭଙ୍କୁ ବାଧିତ ଓ ଉପକୃତ କରିବେ ।

ରାମଚନ୍ଦ୍ରଙ୍କୁ ନିତାନ୍ତ କାମୁକ ବୋଲି ଚିତ୍ରିତ କରି ମାର୍କଣ୍ଡେୟଙ୍କଦ୍ୱାରା ନିନ୍ଦା କରାଇବାରେ କବିଙ୍କର ଦିଓଟି ଉଦ୍ଦେଶ୍ୟ ସ୍ପଷ୍ଟ ପ୍ରତୀୟମାନ ହେଉଅଛି । ପ୍ରଥମତଃ ବିଷ୍ଣୁ ସୁଦ୍ଧା ମନୁଷ୍ୟ ଶରୀର ଧାରଣ କଲେ କାମୁକତାର ବଶବର୍ତ୍ତୀ ହେବେ,ଏବଂ ସେହି କାମୁକତା ନରଦେହଧାରୀ ବିଷ୍ଣୁଙ୍କଠାରେ ଥିଲେ ସୁଦ୍ଧା ମନୁଷ୍ୟ (ମାର୍କଣ୍ଡେୟଙ୍କ) ଦ୍ୱାରା ନିନ୍ଦନୀୟ । କାଳେ ବିଷ୍ଣୁ ଜ୍ଞାନ କରି ରାମଚନ୍ଦ୍ରଙ୍କର ସାଧାରଣ କାମୁକତାକୁ ମନୁଷ୍ୟ (ମାର୍କଣ୍ଡେୟ) ନିନ୍ଦା ନ କରିବେ ଏହା ନିବାରଣ କରିବା ପାଇଁ କବି ଜାଣି ଶୁଣି ରାମଚନ୍ଦ୍ରଙ୍କୁ ନିତାନ୍ତ କାମୁକ କରି ଚିତ୍ରିତ କରିଅଛନ୍ତି; ଏହା ଭିନ୍ନ କବିଙ୍କର ଅନ୍ୟ କୌଣସି ଉଦ୍ଦେଶ୍ୟ ଥିଲା ପରି ବୋଧ ହେଉ ନାହିଁ । କିନ୍ତୁ ଏ ଉଦ୍ଦେଶ୍ୟ କିମ୍ବା ଅନ୍ୟ କୌଣସି ଉଦ୍ଦେଶ୍ୟ ରାମନାରାୟଣ ବାବୁ ହିତୈଷିଣୀରେ ପ୍ରକାଶ କରିବାକୁ କୁଣ୍ଠିତ ଏବଂ ଉତ୍କଳପ୍ରଭାରେ କୌଣସି ଉଦ୍ଦେଶ୍ୟ ସ୍ଥିର କରିବାର ବିଷୟ ଦେଇ ନାହାନ୍ତି - ଉତ୍କଳପ୍ରଭାରେ ମାର୍କଣ୍ଡେୟଙ୍କ ବଚନ ଉଦ୍ଧୃତ କରିବା ଉଚିତ ନ ଥିଲା କି ? ସମୁଦାୟ ବୈଦେହୀଶବିଳାସ ଦୋଷରାଶିରେ ପରିପୂର୍ଣ୍ଣ କରି ଯଦି କବି ଏହି ଏକମାତ୍ର ନୀତି ଦେଖାଇଥାନ୍ତି ଯେ ନରଦେହଧାରୀ ବିଷ୍ଣୁଙ୍କଠାରେ ସୁଦ୍ଧା କାମୁକତା ମନୁଷ୍ୟଦ୍ୱାରା ନିନ୍ଦନୀୟ, ତାହା ହେଲେ ତାହାଙ୍କପ୍ରତି ଯେଉଁ ବିଶେଷଣମାନ ପ୍ରୟୋଗ ହୋଇଅଛି ତାହା କି ଉଚିତ ?

ଏହା ତ ଗଲା ଆମ୍ଭ ସ୍ଥୁଳବୁଦ୍ଧିର ବ୍ୟାଖ୍ୟା ଏହାକୁ କିଆବୁଦାମୂଳକୁ ପେଲିଦେବା କଥା; କିନ୍ତୁ ପାଠକେ କବିଙ୍କର ପ୍ରକୃତ ଉଦ୍ଦେଶ୍ୟ ପ୍ରକାଶ କରିବାକୁ ରାମନାରାୟଣବାବୁ ନ୍ୟାୟତଃ ବାଧ ନୁହନ୍ତି କି ?ଏକପକ୍ଷରେ "ଉତ୍କଳ ମହାଶ୍ମଶାନ" ରେ ଉତ୍କଳ ସାହିତ୍ୟର ଆଲୋଚନା ନାହିଁ ବୋଲି ରାମନାରାୟଣ ବାବୁ ସ୍ୱୟଂ ଦେଖୁଅଛନ୍ତି; ପୁଣି ସେହି ମହାଶ୍ମଶାନରେ ମୋହପରି ଗୋଟାଏ ଗୋଟାଏ ମୁର୍ଦ୍ଦାରଫୋରସ ଗୃଧ୍ର ବିନିନ୍ଦିତ ସୁଲଳିତସ୍ୱରରେ ବେଳେ ବେଳେ ଯେଉଁ ସ୍ଥୁଳବୁଦ୍ଧି ପ୍ରକାଶ କରୁଅଛନ୍ତି ତହିଁଦ୍ୱାରା ରାମନାରାୟଣ ବାବୁଙ୍କ ସମାଲୋଚନାର ଗୌରବ ଲାଘବ ହେବାର ଆଶଙ୍କା; କାରଣ ଉକ୍ତ ମହାଶ୍ମଶାନବାସୀ ଅଜ୍ଞଲୋକମାନେ ନିଶ୍ଚୟ ଭାବିବେ ଯେ ଉକ୍ତ ସମାଲୋଚନା ନିରପେକ୍ଷଭାବରେ ହୋଇ ନାହିଁ ; ତହିଁରେ ଅନେକ ବିଷୟ ଉହ୍ୟ ବା ଗୁପ୍ତ କରା ହୋଇଅଛି । ପ୍ରତ୍ୟେକ କଥାର ମୀମାଂସା କରିବାପାଇଁ ଏପରି ତର୍କବିତର୍କ କଲେ ହିମାଳୟ ଲେଖନୀ ଓ ସପ୍ତସମୁଦ୍ର ମସ୍ୟାଧାର ନ ହେଲେ ଚଳିବ ନାହି । ତହିଁରେ ପୁଣି ତାହାସବୁ ଓଟରା ଓଟରି କରି ବାହାର କରିବାକୁ ମୋହପରି ମୁର୍ଦ୍ଦାରଫୋରସ ଅଛ ଏବଂ ଯେ ଅଛନ୍ତି ତାହାଙ୍କର ଏପରି ଅପ୍ରୀତିକର କାର୍ଯ୍ୟରେ ପ୍ରବୃତ୍ତ ହେବାକୁ ଇଚ୍ଛା ନ ଥାଇ ପାରେ । ସୁତରାଂ ଗୋଟିଏ ମହତ୍ ଉଦ୍ଦେଶ୍ୟ ସାଧନ କରିବାକୁ ଯାଇ ରାମନାରାୟଣବାବୁ ଯେ ଏପରି ଗୋଟିଏ କଳଙ୍କ ତେବେ ଏହା କେତେବେଳେ ବାଞ୍ଛନୀୟ ନୁହେ । ଅପରପକ୍ଷରେ ଯେତେବେଳେ ଗୋଟିଏ ମୃତ ବ୍ୟକ୍ତିକୁ ଆମ୍ଭେମାନେ ଗୋଟିଏ ମହତ୍ ଦୋଷରେ ଦୋଷୀ କରିବାକୁ ଯାଉଅଛୁଁ ସେତେବେଳେ ତାହାପ୍ରତି ଯାହା ନ୍ୟାଯ୍ୟ ତାହା କରିବା ଉଚିତ ନୁହେ କି ? ଏଠାରେ ରାମନାରାୟଣ ବାବୁ କହି ପାରନ୍ତି ଯେ ତାହାଙ୍କର ସମାଲୋଚନା ମୋହପରି ମଝିମଝିଆ କିମ୍ବା ଯେଉଁମାନେ ଉପେନ୍ଦ୍ରଭଞ୍ଜଙ୍କର ସମସ୍ତ କାବ୍ୟ ପଢି ନାହାନ୍ତି ତାଙ୍କପାଇଁ ନୁହେ; ତାହା ହେଲେ ଉତ୍କଳପ୍ରଭାରେ ପ୍ରକାଶିତ ସମାଲୋଚନାରୁ ଉପେନ୍ଦ୍ରଭଞ୍ଜଙ୍କ ସମ୍ବନ୍ଧରେ କୌଣସି ମତାମତ ସ୍ଥିର କରିବା କେବଳ ଉତ୍କଳସାହିତ୍ୟ କାନନରେ ସଦାବିହାରୀ ଭ୍ରମରମାନଙ୍କ ବ୍ୟତୀତ ଅନ୍ୟ କାହାରି ଉଚିତ ନୁହେ ବୋଲି ସାଧାରଣଙ୍କୁ ସାବଧାନ କରାଇ ଦେବା ଉଚିତ ନୁହେଁ କି ? ଏହାର ଉତ୍ତର ପାଠକମାନେ ଏବଂ ରାମନାରାୟଣ ବାବୁ ଦେଉନ୍ତୁ ।

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ଏପର୍ଯ୍ୟନ୍ତ ଯାହା କୁହାଗଲା ସେଥିରୁ ପାଠକମାନଙ୍କର କିମ୍ୱା ରାମନାରାୟଣ ବାବୁଙ୍କର ମନେ କରିବା ଉଚିତ ନୁହେ ଯେ କବି ଉପେନ୍ଦ୍ରଭଞ୍ଜ ବୁଦ୍ଧଦେବଙ୍କ ପରି ଚରିତ୍ରର ଲୋକ, କିମ୍ୱା ତାହାଙ୍କର ସମସ୍ତ କାବ୍ୟ ବିଶୁଦ୍ଧ, କିମ୍ୱା ସବୁଥିରେ ମହତ୍ ଉଦ୍ଦେଶ୍ୟ ଅଛି ବୋଲି ଆମ୍ଭେ କହୁଅଛୁଁ କିମ୍ୱା ତାହାଙ୍କ ରଚିତ ସମସ୍ତ ପୁସ୍ତକମାନଙ୍କୁ ବିଦ୍ୟାଳୟର ପାଠ୍ୟପୁସ୍ତକ ହେବାପାଇଁ ଅନୁରୋଧ କରୁଅଛୁଁ । ତାହାଙ୍କ ସକଳଗ୍ରନ୍ଥ ଆଦିରସରେ ପରିପୂର୍ଣ୍ଣ ନୁହେ ବୋଲି କିଏ କହିପାରିବ । ସ୍ଥଳବିଶେଷରେ କୌଣସି କୌଣସି ଗ୍ରନ୍ଥ ଆଧୁନିକରୁଚି ଦୃଷ୍ଟିରେ ଅଶ୍ଳୀଳତାପର୍ଯ୍ୟନ୍ତ ଯାଇଅଛି ବୋଲି କିଏ ଅସ୍ୱୀକାର କରିବ ? କିନ୍ତୁ ତାହା ବୋଲି ଯେତେବେଳେ ତାହାଙ୍କ ରଚିତ ଅଧିକାଂଶ ଗ୍ରନ୍ଥର ଆଜପର୍ଯ୍ୟନ୍ତ ମୁଦ୍ରାଙ୍କନ ସୁଦ୍ଧା ହୋଇ ନାହି ଏବଂ ସେ ସମସ୍ତ ଦୁଃଷ୍ପ୍ରାପ୍ୟ, ତେତେବେଳେ ଗ୍ରନ୍ଥ ବିଶେଷର କିମ୍ୱା ନାୟକ ନାୟିକା ବିଶେଷର ସମାଲୋଚନା ନ କରି ଏକାବେଳକେ ଉପରୋକ୍ତ ପ୍ରକାରେ କବିଙ୍କୁ "ସ୍ୱର୍ଗୀୟଭାବରେ କଳଙ୍କ କାଳିମା ଲେପନକାରୀ, ଜାତୀୟ ସାହିତ୍ୟର ଘୋର ଅନିଷ୍ଟକାରୀ" ପ୍ରଭୃତି ବୋଲି ଘୋଷଣା କରି ବୁଲିବା ଯୁକ୍ତିଯୁକ୍ତ ଓ ନ୍ୟାୟସଙ୍ଗତ କି ?

ପାଠକମାନେ ମନେ କରନ୍ତୁ କବିଙ୍କର ସମସ୍ତ କାବ୍ୟ "କେବଳ ଆଦିରସର ଅସାର ଓ ବିଭତ୍ସକ୍ରୀଡ଼ାରେ ପରିପୂର୍ଣ୍ଣ ;" ତାହା ହେଲେ ଦେଶ କାଳ ପାତ୍ର ବିବେଚନାରେ ତାହାଙ୍କର ଦୋଷଗୁଣ ସ୍ଥିର କରିବା ଉଚିତ ? ଯେ କେବଳ ପ୍ରଚଳିତରୁଚି ଦୃଷ୍ଟିରେ ନିନ୍ଦାସ୍ତୁତି ବର୍ଷଣ କରିବା ଉଚିତ ? ପାଠକ ଏବଂ ରାମନାରାୟଣ ବାବୁ ଓଡ଼ିଶାର ଇତିବୃତ୍ତରେ ସ୍ୱର୍ଗୀୟ ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ଓଡ଼ିଶାର ଦେବାଳୟମାନଙ୍କରେ ଅଶ୍ଳୀଳମୂର୍ତ୍ତି ଓ ଛବିମାନଙ୍କସମ୍ୱନ୍ଧରେ ଯାହା କହିଅଛନ୍ତି ତାହାସହିତ ଥରେ ଭାବି ଦେଖନ୍ତୁ ଦେଖି, ଯେଉଁ ଖ୍ରୀଷ୍ଟୀୟ ଉନବିଂଶ ଶତାବ୍ଦୀର ଶେଷଭାଗରେ ଆଦିରସ ନେଇଁ ଉପେନ୍ଦ୍ରଭଞ୍ଜ ଲାଞ୍ଛିତ ସେହି ସମୟରେ ଯେଉଁ ଦେଶରେ ପବିତ୍ରତୋୟା ଚିତ୍ରୋତ୍ପଳାବକ୍ଷରେ ସ୍ନାନକାରିଣୀ ଯୁବତିମାନଙ୍କ ପ୍ରତି ଲୋକେ ଦୃଷ୍ଟି ପକାଇବାକୁ ଛାଡ଼ୁ ନାହାନ୍ତି, ସେହି ସମୟରେ ଯେଉଁ ଦେଶରେ ଲୋମହର୍ଷଣକର ପାପକାର୍ଯ୍ୟରେ ରତା ପାର୍ବତୀ ଆବିର୍ଭୂତା, ଯେଉଁ ଦେଶରେ ପୂର୍ବକାଳରେ ପୁଣ୍ୟତୋୟା ଗଙ୍ଗାଙ୍କର ସ୍ତୁତି ରଚନା କରିବାକୁ ଯାଇ ମୁନି ବାଲ୍ମୀକୀ "ମାତଃ ! ଶୈଳସୁତାସପତ୍ନି ! ବସୁଧାଶୃଙ୍ଗାର ହାରାବଳି ! ସ୍ୱର୍ଗାରୋହଣ ବୈଜୟନ୍ତି ! ଭବତୀଂ ଭାଗୀରଥୀଂ ପ୍ରାର୍ଥୟେ ।" ବୋଲି ଆରମ୍ଭ କରି ପୁନଶ୍ଚ କହିଅଛନ୍ତି ।

"ଗନ୍ଧର୍ବାମରସିଦ୍ଧି କିନ୍ନରବଧୂ ତୁଙ୍ଗସ୍ତନାସ୍ଫାଳିତଂ ସ୍ନାନାୟ ପ୍ରତିବାସରଂ ଭବତୁମେ ଗାଙ୍ଗ ଜଳଂ ନିର୍ମଳଂ" ଏବଂ ସେହି ଦେଶରେ କିମ୍ୱଦନ୍ତି ଅଛି ଯେ ମା ସରସ୍ୱତୀଙ୍କ କୃପାରୁ ସାତଜନ୍ମର ମୂର୍ଖତା ଦୋଷରୁ ମୁକ୍ତ ହେବା ମାତ୍ରକେ ମହାକବି କାଳୀଦାସ ଆରମ୍ଭ କଲେ ।

"କଜ୍ଜ୍ୱଳପୂରିତ ଲୋଚନଭାରେ, ସ୍ତନଯୁଗ ଶୋଭିତ ମୁକ୍ତାହାରେ, ବୀଣାପୁସ୍ତକ ରଞ୍ଜିତହସ୍ତେ ଭଗବତି ଭାରତି ଦେବି ନମସ୍ତେ"

ସେହି ଦେଶରେ ଯେତେବେଳେ ଆଧୁନିକ ରୁଚି ପ୍ରଭୃତି ସ୍ୱପ୍ନରେ ଜଣା ନ ଥିଲା ସେତେବେଳେ ଜଣେ ରାଜସିଂହାସନାଧିକାରୀ ରାଜତନୟ ଯାହା ଲେଖିଯାଇଅଛି ସେଥିପାଇଁ ତାହାକୁ ଏପରି ଦୋଷାରୋପ କରିବା ଉଚିତ କି ? ବୋଧ ହୁଏ ଯେତେକାଳ ଆମ୍ଭମାନଙ୍କ ଜଗନ୍ନାଥେ ମାସରସ୍ୱତୀଙ୍କୁ ଛାଡପତ୍ର ଦେଇ ନାହାନ୍ତି କିମ୍ୱା ଆମ୍ଭେମାନେ ଜଗନ୍ନାଥଙ୍କୁ ଛାଡି ନାହୁଁ ସେତେବେଳେ ଆମ୍ଭମାନଙ୍କର ଏ ଜାତୀୟଦୋଷ ଦୂର ହେବାର ସମ୍ଭାବନା ଦିଶୁ ନାହିଁ । ସେ ଯାହା ହେଉ ରାମନାରାୟଣ ବାବୁ ଓ ପାଠକମାନେ ଆପଣମାନେ ଭାବି ଦେଖନ୍ତୁ ଆମ୍ଭେମାନେ ଆଜି ଯାହାକୁ ସୁରୁଚି, ବିଶୁଦ୍ଧତା ପ୍ରଭୃତି କହୁଅଛୁଁ ତାହା ଯୁଗଯୁଗାନ୍ତର ରହିବ କି ? ଆଜି ଆମ୍ଭେମାନେ ଉପେନ୍ଦ୍ରଭଞ୍ଜଙ୍କୁ ଏବଂ ତାହାଙ୍କର ଗ୍ରନ୍ଥାବଳିର ଅଦରକାରୀ ଆମ୍ଭମାନଙ୍କ ପୂର୍ବପୁରୁଷମାନଙ୍କୁ ନିନ୍ଦା କରିବାପାଇଁ ଅଭିଧାନର ଶବ୍ଦ ପାଉ ନାହୁଁ । ଯେତେବେଳେ ବେଦ ପ୍ରଭୃତିର ମାନ୍ୟ ରହୁ ନାହିଁ ଏବଂ ବୌଦ୍ଧଧର୍ମ ଭାରତବର୍ଷରୁ ନିର୍ବାସିତ ହୋଇଅଛି ସେତେବେଳେ ଆମ୍ଭମାନଙ୍କ ପରପୁରୁଷମାନେ ଆମ୍ଭମାନଙ୍କର କାର୍ଯ୍ୟକୁ ନିନ୍ଦା କରି ନ ପାରନ୍ତି କି ? ତାଙ୍କ ସମୟରେ ଆମ୍ଭମାନଙ୍କ ରୀତିନୀତି ଯୁକ୍ତିଯୁକ୍ତ ନ ହେଲେ ସେମାନଙ୍କର ଆମ୍ଭମାନଙ୍କୁ ଗାଳି ଦେବା ଉଚିତ ? ନା ଆମ୍ଭମାନଙ୍କ ରୀତିନୀତି କାର୍ଯ୍ୟବିଶେଷକୁ ପରିହାର୍ଯ୍ୟ କରିବା ଉଚିତ ? ମାଦକଦ୍ରବ୍ୟ ସେବନକାରିର ପୁତ୍ର ମାଦକଦ୍ରବ୍ୟ

ସେବନ କରିବାର ନିବାରଣ କରିବାକୁ ଗଲେ ତାହାର ପିତା ପିତାମହଙ୍କୁ ଗାଳିଦେଇ ବୁଲିବା ଉଚିତ ? ନା ମାଦକଦ୍ରବ୍ୟ ସେବନ ଗର୍ହିତ ବୋଲି ବୁଝାଇବା ଉଚିତ ? ଯେତେବେଳେ ବୁଦ୍ଧ, ଯିଶୁ, ଚୈତନ୍ୟପ୍ରଭୃତି ଧର୍ମପ୍ରଚାର ଆରମ୍ଭ କଲେ ସେତେବେଳେ ସେମାନେ ଯେଉଁ କୁରୀତି ପ୍ରଭୃତି ଦେଖିଥିଲେ ସେସବୁ ପରିହାର କରିବାକୁ ଉପଦେଶ ଦେଇଥିଲେ ? ନା ଆପଣାର ପିତା ପିତାମହପ୍ରଭୃତି ଏବଂ ଭାଇବନ୍ଧୁ ସାହିପଡିଶାର ଚୌଦପୁରୁଷଙ୍କୁ ଜାତୀୟଭାଷା ଜାତୀୟଜୀବନ ପ୍ରଭୃତିର ଘୋର ଅନିଷ୍ଟକାରୀଆଦି ବିଶେଷଣରେ ଅଳଙ୍କୃତ କରିଥିଲେ ? ଧର୍ମପ୍ରଚାରକମାନେ ଧର୍ମଶାସ୍ତ୍ରବିଶେଷର ନିନ୍ଦା କରିଥାନ୍ତି ? ନା ଶାସ୍ତ୍ରପ୍ରଣେତାର ନିନ୍ଦା କରିଥାନ୍ତି ? ପାଠକେ ଏବଂ ରାମନାରାୟଣବାବୁ ଆପଣ ଦେଖନ୍ତୁ ଦେଖି ଉପେନ୍ଦ୍ରଭଞ୍ଜଙ୍କୁ ନିନ୍ଦା କରି ସୁରୁଚି ପ୍ରଚାର କରିବା ଏହି ନୀତିଅନ୍ତର୍ଗତ ନୁହେ କି ? ଏହି ନୀତିର ଫଳାଫଳ ୧୭୦୦ ଖ୍ରୀଷ୍ଟାବ୍ଦର ଫରାଶିବିପ୍ଳବ ଏବଂ ଆଧୁନିକ ବିଦ୍ୟାଳୟର କୌଣସି କୌଣସି ଘରପୋଡିଆ ଛାତ୍ରମାନଙ୍କର କାର୍ଯ୍ୟରୁ ସ୍ଥିର କରନ୍ତୁ । ସେଥିର ଆଲୋଚନାରେ ପ୍ରବୃତ୍ତ ହେବା ଏ ଉପଯୁକ୍ତ ସ୍ଥଳ ନୁହେ । ବର୍ତ୍ତମାନ ପାଠକେ ଓ ରାମନାରାୟଣ ବାବୁ ଦେଖନ୍ତୁ- ଉତ୍କଳପ୍ରଭାର ପ୍ରକାଶିତ ସମାଲୋଚନାର ବିଷୟ କି ।-କବି ଉପେନ୍ଦ୍ରଭଞ୍ଜଙ୍କର ସମସ୍ତ କିମ୍ବା କୌଣସି ଗ୍ରନ୍ଥ ବିଶେଷ ନୁହେ । ସେ ସ୍ୱୟଂ । ତାହାଙ୍କ ସହିତ ଆମ୍ଭମାନଙ୍କର କି ସମ୍ବନ୍ଧ ? ତାହାଙ୍କ ସମୟରେ ଦେଶ କାଳ ବି ଥିଲା, ଏବଂ ସମାଜ ସଂସ୍କାର ପାଇଁ କେଉଁ ନୀତିର ଅନୁସରଣ କରା ହୋଇଅଛି । ଏହି ସବୁ ବିଷୟ ନିରପେକ୍ଷଭାବରେ ଦେଖି ବିବେଚନା କରନ୍ତୁ ଯେ କବି ଉପେନ୍ଦ୍ରଭଞ୍ଜଙ୍କ ପ୍ରତି ଯେଉଁ ବିଶେଷଣମାନ ପ୍ରୟୋଗ ହୋଇଅଛି ତାହା ଉଚିତ କି ନା ।

"କାଳକୁ ଚାହିଁ, ଦିନକରେ ଦାରୁଣ ବିହି"

ପ୍ରବନ୍ଧର ଯଥେଷ୍ଟ ଦୀର୍ଘକାୟ ହେଲାଣି, ଏ ସମ୍ବନ୍ଧରେ ଆଉ ଲେଖିବାର ବର୍ତ୍ତମାନ ପ୍ରୟୋଜନ ନାହିଁ ।

ହିତୈଷିଣୀରେ ପ୍ରକାଶିତ ଉତ୍ତର ସମ୍ବନ୍ଧରେ ଦୁଇ ଏକ ଗୋଟି କଥା ରାମନାରାୟଣ ବାବୁଙ୍କୁ କହି ବିଦାୟ ନେବୁଁ ।

ଆମ୍ଭେ ଯେ "ବାନର ହାତରେ ଶାଳଗ୍ରାମ ଇତ୍ୟାଦି" ଲେଖିଥିଲୁଁ ତାହା ଆପଣ ଦେହକୁ ନେବାର ଉଚିତ ହେଉଅଛି କି ? ସେ ପ୍ରବନ୍ଧରେ ଆପଣଙ୍କୁ ଉପେନ୍ଦ୍ରଭଞ୍ଜଙ୍କ ସହିତ ତୁଳନା କରା ହୋଇ ନାହିଁ ବା ଆପଣଙ୍କ ଦକ୍ଷତା କି ଶିକ୍ଷା ବିଷୟରେ ବୋଲା ଯାଇ ନାହିଁ । ଆଉ ଅଧିକ କହିବାର ପ୍ରୟୋଜନ କି ? ଗୋଲକଧନ୍ଦା ଉପେନ୍ଦ୍ରଭଞ୍ଜଙ୍କ ତୁଳନାରେ ବାନର ହେବାକୁ ଲଜ୍ଜିତ ନୁହନ୍ତି; ଆଜି ଉପେନ୍ଦ୍ରଭଞ୍ଜଙ୍କୁ ହାତରେ ପାଇଲେ ବାନର ଠାରୁ ହୀନତା ସ୍ୱୀକାର କରିବାକୁ ପ୍ରସ୍ତୁତ ।

ଏପରି ଗଳ୍ପ ଶୁଣାଯାଏ ଯେ ପାରିତୋଷିକ ପାଇବା ଆଶାରେ ରାମନାରାୟଣ ବାବୁ ଉତ୍କଳପ୍ରଭାରେ ଉପେନ୍ଦ୍ରଭଞ୍ଜଙ୍କର ସମାଲୋଚନା କରୁଥିଲେ-ମୋହ ପ୍ରତିବାଦ ଦ୍ୱାରା ତହିଁରେ ତାହାଙ୍କର ଅନିଷ୍ଟ ଘଟିଲା ଏହା ଯଦି ପ୍ରକୃତ ହୁଏ ମୁଁ ଏଥିପାଇଁ ବଡ଼ ଦୁଃଖିତ, କିନ୍ତୁ ମୁଁ କେତେବେଳେ ଏ ଉଦ୍ଦେଶ୍ୟରେ ପ୍ରତିବାଦ କରି ନାହିଁ – କିମ୍ବା ମୁଁ ରାମନାରାୟଣ ବାବୁଙ୍କର ପ୍ରତିଦ୍ୱନ୍ଦୀ ହେବାକୁ ପ୍ରୟାସୀ ନୁହେଁ କେବଳ ଜଣେ ମୃତ ବ୍ୟକ୍ତିର ଯେପରି ଭାବରେ ସମାଲୋଚନା ହେଉଅଛି ତାହା ଦେଖି ମୁଁ ଏ କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛି । ଏଥିରେ ମୋହର ଯଦି ଦୋଷ ହୋଇଥାଏ ତାହା ହେଲେ ଆଶା କରେଁ ଯେ ରାମନାରାୟଣ ବାବୁ ଓ ପାଠକେ କ୍ଷମା କରିବେ-

ସର୍ବଶେଷରେ ରାମନାରାୟଣ ବାବୁ ହିତୈଷିଣୀରେ ଯେ କ୍ଷେମଟା ନାଚ ଜମ୍ବୁବାନ ପ୍ରଭୃତି ଦେଖାଇ ଅଛନ୍ତି ତାହା ସେ ଅସାବଧାନତା ବଶତଃ ଲେଖି ପାରି ଥାନ୍ତି- ତାହା ଯଦି ସେ ବର୍ତ୍ତମାନ "ସ୍ଥିରଚିତ୍ତ ଧୀରବୁଦ୍ଧି ପଞ୍ଚଭୂତ କୁଶଳରେ" ଦେଖି ତାହା ପ୍ରତ୍ୟାହାର କରି ନିଅନ୍ତି ତାହା ହେଲେ ଆମ୍ଭର କିଛି ବକ୍ତବ୍ୟ ନାହିଁ – କିନ୍ତୁ ଯଦି ତାହା ନ କରି ପ୍ରତିବାଦର ଅପେକ୍ଷା କରନ୍ତି ତାହା ସ୍ପଷ୍ଟରୂପେ କହିଲେ ତାହାର ଉତ୍ତର ଦେବୁଁ -ନ୍ୟାୟତଃ ଜନସାଧାରଣ ଯାହା ସ୍ଥିର କରି ଦେବେ ତାହା ଅବଶ୍ୟ ନତଶୀର ହୋଇ ଗ୍ରହଣ କରିବାକୁ ଆମ୍ଭେ କୁଣ୍ଠିତ ନୋହୁଁ ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ
ସାବଧାନ ସାବଧାନ ଆରେ ମୂଢମତି
ସତତ ଜାଗ୍ରତଛନ୍ତି ଜଗତର ପତି
କଟକ
୨୭।୬।୯୩

ଆପଣଙ୍କର ବଶମ୍ୱଦ
ଗୋଲକଧନ୍ଦା

*ଭା୨୮ଗ, ସଂ୨୬ଖ୍ୟା, ୧।୭।୧୮୯୩*

[ଗୋଲକଧନ୍ଦା]

ମହାଶୟ ।

ନିମ୍ନଲିଖିତ କେତେକ ପଁକ୍ତିକୁ ଆପଣଙ୍କ ଜଗତ୍‌ବିଖ୍ୟାତ ପତ୍ରିକାର ଏକାଂଶରେ ସ୍ଥାନଦାନ କରି ଉପକୃତ କରିବାହେବେ ।

କହିବାର ଅନେକ ଥିଲା ଏବଂ ଲେଖିବାକୁ ମଧ ଅନେକ ଥିଲା ମାତ୍ର ସେ ସମସ୍ତ ଅକାଳରେ ମାନସପଟରେ ଉଦିତ ହୋଇ ପୁଣି ଅନ୍ତର୍ହିତ ହୋଇଅଛି । ସ୍ଥିରଚିତ୍ତ, ଧୀରବୁଦ୍ଧି ଏବଂ ପଞ୍ଚଭୂତ ଆତ୍ମାର କୁଶଳରେ ସତ୍ୟକରି କହୁଅଛୁ, ଆପଣଙ୍କ ପ୍ରଦର୍ଶିତ ୧୭୦୦ ଖ୍ରୀଷ୍ଟାବ୍ଦର ଫରାଶିରାଷ୍ଟ୍ରବିପ୍ଲବ ଓ ଉନବିଂଶ ଶତାବ୍ଦୀର ୯୩ବର୍ଷ ମଇମାସର ଘରପୋଡ଼ିଆ ଛାତ୍ରମାନଙ୍କ ଦୌରାତ୍ମ୍ୟର ବିଷୟ ମନେକରି ବାସ୍ତବିକ ଅନ୍ତରାତ୍ମା ଶୁଷ୍କ ହୋଇଅଛି । କାରଣ ଆମ୍ଭମାନଙ୍କ ନିବାସ ସାମାନ୍ୟ ପର୍ଣ୍ଣକୁଟୀର; ତାହା ଆମ୍ଭମାନଙ୍କର ଏକମାତ୍ର ଆଶ୍ରୟସ୍ଥଳ, ଭରସାସ୍ଥଳ ଏବଂ ସର୍ବସମ୍ୱଳ ;ସୁତରାଂ ମନର କଥା ମନରେ ରଖି ବର୍ତ୍ତମାନ ଯାବତୀୟ ବିଷୟରୁ ଅପସୃତ ହେଲୁଁ । ଜମ୍ବୁବାନ ପ୍ରଭୃତି ଶବ୍ଦ ପ୍ରତ୍ୟାହାର କରି ନେଇ ସ୍ୱୀୟ ନାମର ପୂର୍ବରେ ସଂଯୁକ୍ତ କରିଦେଲୁଁ । ଏବଂ ଆପଣଙ୍କ ପ୍ରକୃତ ଅଭିପ୍ରାୟ ନ ବୁଝି ଭ୍ରମବଶତଃ ଲେଖିଥିବାଲାଗି କ୍ଷମାପ୍ରାର୍ଥନା କଲୁଁ । ଏବେ ରଙ୍ଗଭୂମିରୁ ଆପଣମାନଙ୍କ ସମ୍ମୁଖରୁ ଧୀରେ ଧୀରେ ପ୍ରତ୍ୟାଗମନ କଲୁଁ । ଅଜ୍ଞାତ ବା ସଜ୍ଞାତଭାବରେ ଯେକିଛି ଦୋଷ କରିଅଛୁଁ ଅନୁଗ୍ରହ ପୂର୍ବକ ତାହା କ୍ଷମାକରିବା ହେବେ ।

କିନ୍ତୁ ବଡ଼ କ୍ଷୋଭର ବିଷୟ ଏହି ଯେ ଆପଣ ସାଧାରଣ ପାଠକମାନଙ୍କୁ ଜଣାଉଅଛନ୍ତି "ଆମ୍ଭେମାନେ ଉପେନ୍ଦ୍ରଭଞ୍ଜଙ୍କୁ ନିନ୍ଦା କରୁଅଛୁଁ ।" ଯେବେ ନିନ୍ଦାକରିବାର ଅଭିପ୍ରାୟ ଥାଆନ୍ତା ତାହା ହେଲେ ୨ୟ ଖଣ୍ଡ ୫ମ ସଂଖ୍ୟା ପ୍ରଭାର ୧୪୮ ପୃଷ୍ଠାରେ, ଆମ୍ଭେମାନେ କବିଙ୍କ ଅଗାଧ ରଚନାଶକ୍ତି ଓ ଶବ୍ଦପାଣ୍ଡିତ୍ୟଠାରେ ନତ ମସ୍ତକ ହୁଅନ୍ତୁ ନାହିଁ ।

ଆହୁରି ଗୋଟିଏ କଥା ଏହି ଯେ ବୈଦେହୀଶବିଳାସହିଁ ଆମ୍ଭମାନଙ୍କର ଆଲୋଚନାର ବିଷୟ; ତାହା ଆମ୍ଭେମାନେ ପ୍ରବନ୍ଧାରମ୍ଭରେ ଉଲ୍ଲେଖ କରିଥିଲେହେଁ ଆପଣ ଆମ୍ଭମାନଙ୍କୁ କବିଙ୍କ ବିଦ୍ୱେଷକାରୀ ଓ ସମାଲୋଚନାକାରୀ ବୋଲି ସାଧାରଣରେ ପରିଚିତ କରାଇବାପାଇଁ ବ୍ୟସ୍ତ ସମସ୍ତ; ଏଥୁଁ ବଳି ଦୁଃଖ ଆଉ କଅଣ ଅଛି ?

ଆଉ ଅଧିକ ଲେଖିବୁଁ ନାହିଁ । କେ ଜାଣେ କଅଣ ଲେଖିବାକୁ ଯାଇ କଅଣ ଲେଖି ପକାଇବୁଁ । ପରିଶେଷରେ ଆପଣଙ୍କୁ ଧନ୍ୟବାଦ ଦେଇ, "ବାଳକେ ମୋର ବୋଲ କର, ବେଳହୁଁ ଗୋବିନ୍ଦ ସୁମର" ଏହି ମହାନୀତିକି ସ୍ମରଣ କରି, କ୍ଷାନ୍ତ ହେଲୁଁ ।

୪ । ୭ । ୯୩
କଟକ

ବଶମ୍ୱଦ
ଶ୍ରୀ ଲାଲା ରାମନାରାୟଣ ରାୟ

*ଭା୨୮ଗ, ସଂ୨୭ଖ୍ୟା, ୮।୭।୧୮୯୩*

## [ଉତ୍କଳ ପ୍ରଭା ଓ ଉତ୍କଳ ସାହିତ୍ୟ ]

ମହାଶୟ ।

ପୁରସ୍କାରବିତରଣପ୍ରଥା ପ୍ରଚଳିତ କରି "ଉତ୍କଳପ୍ରଭା" ଯେପରି ଉତ୍କଳସାହିତ୍ୟର ପ୍ରଭୂତ ମଙ୍ଗଳସାଧନ କରୁଅଛନ୍ତି, ପକ୍ଷାନ୍ତରରେ ସେହିପରି ତଦ୍ଦ୍ୱାରା ତାହାର ମହାନ୍ ଅମଙ୍ଗଳ ସାଧନ କରୁଅଛନ୍ତି ବୋଇଲେ ଅତ୍ୟୁକ୍ତି ହେବ ନାହିଁ। ଉତ୍କଳର କୃତୀସନ୍ତାନମାନଙ୍କର ଗବେଷଣାପୂର୍ଣ୍ଣ ପ୍ରବନ୍ଧମାନଙ୍କଦ୍ୱାରା ଯେତେବେଳେ "ଉତ୍କଳପ୍ରଭାର" କଳେବର ପରିପୁଷ୍ଟ ହେଉଅଛି ଦେଖିବାକୁ ପାଉଁ, ତେତେବେଳେ ମନୋମଧ୍ୟରେ ମହତୀ ଆଶାର ସଞ୍ଚାର ହୁଏ, ମାତ୍ର ଯେତେବେଳେ କତିପୟ ଅନାଡ଼ି ଲେଖକଙ୍କର ବଙ୍ଗଳା ପ୍ରବନ୍ଧମାନଙ୍କରୁ ଅନୁବାଦିତ ଓ ସ୍ୱକପୋଳକଳ୍ପିତ ବୋଲି ପ୍ରତିପାଦିତ ପ୍ରବନ୍ଧସମୂହ "ଉତ୍କଳପ୍ରଭାରେ" ସ୍ଥାନ ପାଇ ପୁରସ୍କାରର ଯୋଗ୍ୟ ବୋଲି ବିବେଚିତ ହେଉଅଛି ଦେଖିବାକୁ ପାଉଁ, ତେତେବେଳେ ଅର୍ଥ ଓ ପ୍ରତିଷ୍ଠା ପ୍ରାପ୍ତିର ପ୍ରଲୋଭନରେ ପଡ଼ି ଏପରି ଅନ୍ୟାୟ କାର୍ଯ୍ୟରେ ପ୍ରବୃତ୍ତ ହେବା ଅପେକ୍ଷା ଦୁର୍ବଳ ଲେଖନୀକୁ ବିଶ୍ରାମ ଦେବା ସହସ୍ରଗୁଣରେ ଶ୍ରେୟସ୍କର ବୋଲି ବିବେଚନା କରୁଁ। ଆମ୍ଭେମାନେ ଜାଣୁ ଅନେକ ଦରିଦ୍ର ଏକ ଦିନରେ ବିପୁଳ ସମ୍ପତ୍ତିର ଅଧିକାରୀ ହେବାକୁ, ଅନେକ ମୂର୍ଖ ଏକରାତ୍ରରେ ସରସ୍ୱତୀଙ୍କର ବରପୁତ୍ର ହେବାକୁ, ଏବଂ ଅନେକ ଢାଲତରବାରି ଶୂନ୍ୟ ଭୀରୁ ସହସା ନିଧିରାମ ସର୍ଦ୍ଦାର ସାଜିବାକୁ ଆକାଙ୍କ୍ଷା କରନ୍ତି, ମାତ୍ର କିରୂପେ କ୍ରମେ କ୍ରମେ ଅଧ୍ୟବସାୟବଳରେ ତଦ୍ରୂପ ହେବାକୁ ହୁଏ, ତାହା ଜାଣନ୍ତି ନାହିଁ। ଉତ୍କଳସାହିତ୍ୟ ଜଗତରେ ପ୍ରତିଷ୍ଠା ଲାଭ କରିବାକୁ ଅନେକ ଲୋକର ଏକାନ୍ତ ବାସନା, ଏବଂ ଆଜିକାଲି କେତେଗୁଡ଼ିଏ "ଅକାଳ କୁଷ୍ମାଣ୍ଡ" ବଙ୍ଗଳା ପ୍ରବନ୍ଧମାନଙ୍କରୁ ଚୋରିକରି ହଣ ହଣ କରି ଏଣୁ ତେଣୁ ଗୁଡ଼ାଏ ଲେଖିପକାଇ ପ୍ରବନ୍ଧଲେଖକ ଦଳଭୁକ୍ତ ହେଉଅଛନ୍ତି ସତ୍ୟ, ମାତ୍ର ତାହା ହେଲେ କି ହେବ ? ମୟୂର ପକ୍ଷଦ୍ୱାରା ଶୋଭିତ କାକ ଅଥବା ସିଂହଚର୍ମ୍ମାଚ୍ଛାଦିତ ମେଷର ନ୍ୟାୟ ଯେତେବେଳେ ସେମାନଙ୍କର ପ୍ରବଞ୍ଚନା ପ୍ରକାଶିତ ହୋଇ ପଡ଼େ, ତେତେବେଳେ ସେମାନେ ସାଧାରଣଙ୍କ ସମୀପରେ ଲାଞ୍ଛିତ ହୁଅନ୍ତି ମାତ୍ର । ଇତିପୂର୍ବେ ଏହିପରି ଦୁଇ ଚାରିଜଣ ବ୍ୟକ୍ତି ପାଠକମାନଙ୍କ ଚକ୍ଷୁରେ ଧୂଳି ନିକ୍ଷେପ କରିବାକୁ ଯାଇ ଧରା ପଡ଼ିବାରୁ ଲାଞ୍ଛିତ ହୋଇଅଛନ୍ତି। ଈଦୃଶ ବ୍ୟକ୍ତିମାନଙ୍କର ମନେ ରଖିବା ଉଚିତ ଯେ,

କାକସ୍ୟ ଚଞ୍ଚୁ ଯଦି ସ୍ୱର୍ଣ୍ଣଯୁକ୍ତା
ମାଣିକ୍ୟଯୁକ୍ତୌ ଚରଣୌଚ ତସ୍ୟ।
ଏକୈକପକ୍ଷେ ଗଜରାଜମୁକ୍ତା
ତଥାପି କାକୋ ନଚ ରାଜହଂସଃ।

ଉତ୍କଳଭାଷା ଆଜିକାଲି "ନାଓୟାତିଶ ମାଲ" ତୁଲ୍ୟ ହୋଇ ପଡ଼ିଅଛି ଯାହାର ଇଚ୍ଛା, ସଦୁପାୟରେ ହେଉ ଅଥବା ଅସଦୁପାୟରେ ହେଉ ଅଧିକାର କଲେଇ ହେଲା। କିନ୍ତୁ ଗ୍ରନ୍ଥକାର ଓ ପାଠକମାନଙ୍କ ଚକ୍ଷୁରେ ଧୂଳି ନିକ୍ଷେପ କରି କୌଣସି ଗ୍ରନ୍ଥର କିୟଦଂଶ ଅଥବା କୌଣସି ପ୍ରବନ୍ଧକୁ ଭାଷାନ୍ତରିତ କରି ସ୍ୱୀୟ କପୋଳକଳ୍ପିତ ବୋଲି ପରିଚୟ ଦେବା ଆମ୍ଭେମାନେ ଅନ୍ୟାୟ କାର୍ଯ୍ୟ ବୋଲି ବିବେଚନା କରୁଁ। ଈଦୃଶ ଅନ୍ୟାୟ କାର୍ଯ୍ୟର ଗୋଟିଏ ଦୃଷ୍ଟାନ୍ତ ଆଜି ଆମ୍ଭେମାନେ ପାଠକମାନଙ୍କ ସମ୍ମୁଖରେ ଧାରଣ କରିବୁଁ। ଦ୍ୱିତୀୟ ଭାଗ "ଉତ୍କଳପ୍ରଭାର" ୧୧ଶ ଓ ୧୨ଶ ସଂଖ୍ୟାରେ "ମନୁଷ୍ୟପ୍ରତି ଈଶ୍ୱରଦତ୍ତ ବୃତ୍ତିସମୂହର ପରିଚାଳନାର ଫଳ" ନାମକ ଯେଉଁ ପ୍ରବନ୍ଧ ପ୍ରକାଶିତ ହୋଇଅଛି, ତାହା ଶ୍ରୀଯୁକ୍ତ ବାବୁ ଗୋପାଳଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟଙ୍କ କୃତ "ଶିକ୍ଷାପ୍ରଣାଳୀ" ନାମକ ବଙ୍ଗଳା ଗ୍ରନ୍ଥର ୨୯ ପୃଷ୍ଠା ଠାରୁ ୪୬ ପୃଷ୍ଠା ପର୍ଯ୍ୟନ୍ତ ଅବିକଳ ଭାଷାନ୍ତର ମାତ୍ର। ନମୁନାସ୍ୱରୂପ ଆମ୍ଭେମାନେ ଉକ୍ତ ପ୍ରବନ୍ଧର ଆଦ୍ୟରୁ କିୟଦଂଶ ଉଦ୍ଧୃତ କଲୁଁ।

ଓଡ଼ିଆ- ମନୁଷ୍ୟମାତ୍ରର ଦୁଇଅଂଶ ଅଛି। ଜଡ଼ାଂଶ ଓ ଚୈତନ୍ୟାଂଶ । ଶରୀରକୁ ଜଡାଂଶ ଓ ମନକୁ ଚୈତନ୍ୟାଂଶ କହି । ଉପଯୁକ୍ତ ଆହାର ଓ ବ୍ୟାୟାମ ଦ୍ୱାରା ଯେରୂପ ଶରୀର ରକ୍ଷା ଓ ପୁଷ୍ଟି ହୁଏ, ଏବଂ ଆହାରଭାବରେ ଅଥବା କଦର୍ଯ୍ୟ ବା ଗୁରୁତର ଆହାର କଲେ ଯେରୂପ ଶାରୀରିକ ପୀଡା ଜନ୍ମେ, ମନ ସେହିରୂପ ଉପଯୁକ୍ତ ଆହାରଦ୍ୱାରା ପରିବର୍ଦ୍ଧିତ ଓ ଅନାହାରରେ କ୍ଲିଷ୍ଟ ଏବଂ ଅତିରିକ୍ତ ଆହାରରେ ପୀଡ଼ିତ ହୁଏ, ଇତ୍ୟାଦି।

### ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ବଙ୍ଗଳା- ମନୁଷ୍ୟମାତ୍ରେରଇ ଦୁଇଅଂଶ ଆଛେ; ଜଡ଼ାଂଶ ଓ ଚୈତନ୍ୟାଂଶ,ଶରୀରକେ ଜଡାଂଶ ଏବଂ ମନକେ ଚୈତନ୍ୟାଂଶ କହେ । ଉପଯୁକ୍ତ ଆହାର ଓ ବ୍ୟାୟାମଦ୍ୱାରା ଯେରୂପ ଶରୀରେର ରକ୍ଷା ଓ ପୁଷ୍ଟି ହୟ ଏବଂ ଆହାରାଭାବେ ଅଥବା କଦର୍ଯ୍ୟ ବା ଗୁରୁତର ଆହାର କରିଲେ ଯେରୂପ ଶାରୀରିକ ପୀଡ଼ା ଜନ୍ମେ, ମନଓ ସେଇରୂପ ଉପଯୁକ୍ତ ଆହାରଦ୍ୱାରା ପରିବର୍ଦ୍ଧିତ ଓ ଅନାହାରେ କ୍ଲିଷ୍ଟ ଏବଂ ଅତିରିକ୍ତ ଆହାରେ ପୀଡ଼ିତ ହୟ ଇତ୍ୟାଦି।

ପରିଶେଷରେ "ଉତ୍କଳପ୍ରଭାର" ସମ୍ପାଦକଙ୍କ ନିକଟରେ ଆମ୍ଭମାନଙ୍କର ବିନୀତ ନିବେଦନ ଏହି କି ଉକ୍ତ ପ୍ରବନ୍ଧପରି ଶଏଟା ପ୍ରବନ୍ଧ ଲେଖିଦେବାକୁ ଆମ୍ଭେମାନେ ପ୍ରସ୍ତୁତ ଅଛୁଁ, ଏବଂ ସେଥିସକାଶେ ସମ୍ପାଦକ ମହାଶୟ କି ଭାଉରେ ଆମ୍ଭମାନଙ୍କୁ ପୁରସ୍କାର ବିତରଣ କରିବେ, ତାହା ଜଣାଇଲେ ଉକ୍ତ କାର୍ଯ୍ୟରେ ଶୀଘ୍ର ବ୍ରତୀ ହେବୁଁ। ଆମ୍ଭମାନଙ୍କ ବିବେଚନାରେ ଏପରିଭାବରେ ପୁରସ୍କାର ଦେବାର ପ୍ରଣାଳୀ ପରିତ୍ୟାଗ କରି ଲବ୍ଧପ୍ରତିଷ୍ଠ ଲେଖକମାନଙ୍କୁ କିଞ୍ଚିତ୍ ପାରିଶ୍ରମିକ ଦେଇ ସେମାନଙ୍କଦ୍ୱାରା ପ୍ରବନ୍ଧ ଲେଖାଇ ନେଲେ ଭଲ ହୁଅନ୍ତା ପରା!!!

ନିବେଦକ
ଶ୍ରୀ ଅନଙ୍ଗମୋହନ ଚକ୍ରବର୍ତ୍ତୀ

*ଭା୨୮ଗ, ସଂ୨୭ଖ୍ୟା, ୮।୭।୧୮୯୩*

## [ପରୀକ୍ଷା]

ମାନ୍ୟବର ଶ୍ରୀଯୁତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ

ମହାଶୟ!

ନିମ୍ନଲିଖିତ କେତେକ ପଁକ୍ତିକୁ ଦୀପିକାରେ ପ୍ରକାଶକରି ବାଧିତ କରିବେ।

ଜନରବରୁ ଶୁଣାଯାଏ ଏବର୍ଷ ମାଇନର ଭର୍ଣାକ୍ୟୁଲର ଓ ଉଚ୍ଚପ୍ରାଇମେରୀ ପରିକ୍ଷା ଆଗାମୀ ଅକ୍ଟୋବର ୧ମ ସପ୍ତାହରେ ହେବ। ଏହା ଯଦି ପ୍ରକୃତ ହୋଇଥାଏ ତେବେ ପରୀକ୍ଷାର୍ଥିମାନଙ୍କର ବିଶେଷ ଅସୁବିଧା ହେବ। ଯେହେତୁ ପରୀକ୍ଷା ଆଶ୍ୱିନମାସ ଆରମ୍ଭରେ ପଡୁଥିବାରୁ ତେତେବେଳକୁ ନଦୀବୃଦ୍ଧି ଓ ଝଡ଼ବୃଷ୍ଟି ଉଣାହୋଇ ନ ଥିବ ଏବଂ ବିଲଖାଲ ଯୋଡ଼ ଜଳପୂର୍ଣ୍ଣ ଓ ମଫସଲରାସ୍ତା କର୍ଦ୍ଦମପୂର୍ଣ୍ଣ ହୋଇଥିବ। ଏହେତୁ ଅଭିଭାବକମାନେ ପିଲାଙ୍କୁ ପଠାଇବାକୁ ଅସମ୍ମତ ହେବେ। ଯେଉଁମାନେ ଆସିବେ ତାଙ୍କର କଷ୍ଟହେବ ଆଉ ପୂର୍ବ ୨ ବର୍ଷ ଡିସମ୍ବର ଓ ନବମ୍ବର ମାସରେ ପରୀକ୍ଷା ହେଉଥିବା ସ୍ଥଳେ ଏବର୍ଷ ଏତେଶୀଘ୍ର ହେବାରୁ ପରୀକ୍ଷାର୍ଥିଙ୍କର କ୍ଷତି ହେବା ସମ୍ଭବ। ମଫସଲର ଅନେକ ଗରିବଛାତ୍ର ପାଠ୍ୟପୁସ୍ତକ ସଂଗ୍ରହ କରୁ କରୁ ଅନେକଦିନ ଗତ ହୋଇଯାଏ ସୁତରାଂ ସେମାନଙ୍କର ପାଠ୍ୟପୁସ୍ତକ ଶେଷ ହୋଇ ନ ଥିବ । ଏଥିରୁ ଆଗାମୀ ପରୀକ୍ଷାରଫଳ ଯାହା ହେବ ତାହା ପାଠକେ ବୁଝିବେ ।

ଯଦି ଉକ୍ତପରୀକ୍ଷା ତାରିଖ ସମସ୍ତ ବଙ୍ଗଳାସକାଶେ ଡାଇରେକ୍ଟର ନିର୍ଦ୍ଦେଶ କରିଥାନ୍ତି ତେବେ ନାଚାର । ଯେବେ ଉକ୍ତ ତାରିଖ କେବଳ ଓଡ଼ିଶା ନିମନ୍ତେ ଇନସ୍ପେକ୍ଟର କରିଥାନ୍ତି ତେବେ ତାଙ୍କୁ ପ୍ରାର୍ଥନାଯେ ଉକ୍ତ ତାରିଖ ନବମ୍ବର ମାସକୁ ଘୁଞ୍ଚାଇଦେବେ ।

କଟକ
୨୩।୭।୯୩

ବଶମ୍ବଦ
ଜଣେ ପରିଦର୍ଶକ କର୍ମଚାରୀ

*ଭା୨୮ଗ, ସଂ୨୯ଖ୍ୟା, ୨୨।୭।୧୮୯୩*

## ପ୍ରେରିତପତ୍ର ।

### [ଉପେନ୍ଦ୍ର ଭଞ୍ଜ]

ଶ୍ରୀଳଶ୍ରୀଯୁକ୍ତ ମହାମାନ୍ୟ ଉତ୍କଳଦୀପିକା ସମ୍ପାଦକ
ମହାଶୟ ସମୀପେଷୁ

ମହାଶୟ,

ଆପଣଙ୍କର ଗତପତ୍ରିକାରେ ଜନନେନ୍ଦ୍ରିୟ ପବିତ୍ର ସ୍ଥାନ ହେଉଥିବାର ଠିକେ ଠିକେ ପ୍ରମାଣ ଦେଇ ତାହା ବିସ୍ତାରିତରୂପେ ବୁଝାଇ ଦେବା ଓ ଲାବଣ୍ୟବତୀରୁ ଉପେନ୍ଦ୍ରଭଞ୍ଜଙ୍କର ସୁରୁଚି ଓ ଧର୍ମଭୀରୁତା ପ୍ରମାଣ କରିବା ମାନସରେ "କ୍ରମଶଃ" ବୋଲି ଲେଖିଥିଲୁଁ ମାତ୍ର

ଏସମୟେ ମଣ୍ଡିବାକୁ ଉତ୍କଳଆକାଶ
ଅକସ୍ମାତେ ଇନ୍ଦ୍ରଧନୁ ହେବାରୁ ପ୍ରକାଶ

ଉପରୋକ୍ତ ବିଷୟମାନ ଆଉ ଏଥିରେ ଲେଖିବୁଁ ନାହିଁ ସେ ବିଷୟମାନ ଏବଂ ଫରାସିବିପ୍ଳବ ପ୍ରଭୃତି ବିଷୟମାନ ଜାଣିବାର ଇଚ୍ଛା ହେଲେ ପାଠକମାନେ "ଇନ୍ଦ୍ରଧନୁ" ଦେଖନ୍ତୁ। କେବଳ ଆମ୍ଭର ପ୍ରକୃତ ନାମ କାହିଁକି ପ୍ରକାଶ କରୁ ନାହୁଁ ବା କରିବୁଁ ନାହିଁ ତାହା କହି ଆପଣଙ୍କ ପାଠକମାନଙ୍କଠାରୁ ବିଦାୟ ନେଉଅଛୁଁ।

ଆମ୍ଭେ ଉପେନ୍ଦ୍ର ଭଞ୍ଜଙ୍କ ସମ୍ବନ୍ଧରେ କେବଳ ଯୁକ୍ତି ଲୋଡୁଅଛୁଁ ଏଣୁକରି ସୁବିଖ୍ୟାତ ବର୍କ ସାହେବଙ୍କ ଫରାସି ବିପ୍ଳବନାମକ ଗ୍ରନ୍ଥରେ ଯେ ଲେଖାଅଛି " If what this society has thought proper to send forth had been a piece of argument, it would have signified little whose argument it was. It would be neither the more nor the less convincing on account of the party it came from" ( Burke's Works Vol. II page 281 George Bell and sons Edition) ଅର୍ଥାତ୍ (ମୋଟାମୋଟି) କିଏ ଯୁକ୍ତି କଲା ଏହା ଜାଣିବାଦ୍ୱାରା ଯୁକ୍ତି ଅଧିକ ବା ଅଳ୍ପ ଯୁକ୍ତିଯୁକ୍ତ ହୁଏ ନାହିଁ ଏହି ନୀତିର ଅନୁସରଣ କରି ଆମ୍ଭର ପ୍ରକୃତ ନାମ ପ୍ରକାଶ କରୁ ନାହୁଁ ପୁଣି "ବାନର ହାତରେ ଶାଳଗ୍ରାମ" ଇତ୍ୟାଦି କାହିଁକି କହିଥିଲୁଁ ତାହା ପରେ ପ୍ରକାଶ କରିବୁଁ ଇତିମଧ୍ୟରେ ପ୍ରାର୍ଥନା ଏତିକି ଯେ କେଉଁ ନୀତି ଅନୁସାରେ ସମ୍ବଲପୁର ହିତୈଷିଣୀ "ଶୋଣିତ ଶ୍ରାବ ପାଟଳ" "କେଳିକିଳା" ପ୍ରଭୃତି ପ୍ରାପ୍ତ ହେଲେ ସେ ତାହା ବୁଝାଇ ଦେବେ ଇତି।

କଟକ
୧୭।୮।୯୩

ଆପଣଙ୍କର ବଶମ୍ବଦ,
ଗୋଲକଧନ୍ଦା

*ଭାଗ ୨୮, ସଂ ୩୩ଖ୍ୟା, ୧୯।୮।୧୮୯୩*

## ପ୍ରେରିତପତ୍ର ।

### [ଉତ୍କଳ-ସଙ୍ଗୀତ]

ମାନ୍ୟବର ଶ୍ରୀଯୁକ୍ତ ଶ୍ରୀ "ଉତ୍କଳଦୀପିକା" ସମ୍ପାଦକ ମହାଶୟ ସମୀପେଷୁ

ମହାଶୟ।

ଆଜି ଉତ୍କଳ-ସଙ୍ଗୀତ-ଜଗତରେ ଗୋଟିଏ ଶୁଭଦିନ। ଉତ୍କଳ-ସଙ୍ଗୀତରେ ଆଦର କ୍ରମଶଃ ବୃଦ୍ଧି ହେଉଅଛି। ଦାମୋଦର ବାବୁ ସମସ୍ତଙ୍କୁ ସଙ୍ଗୀତ-ସାଗରରେ ମଜାଇବାକୁ ବ୍ରତୀ। କାଳେ ଦରିଦ୍ର ଉତ୍କଳବାସୀ ଏହି ସୁବିଧା ଭୋଗ କରିବାକୁ ଅକ୍ଷମ ହେବେ, ପଟ୍ଟନାୟକ ମହାଶୟ ତାହାଙ୍କ ପ୍ରକାଶିତ "ସଙ୍ଗୀତ-ସାଗର" ପୁସ୍ତକ ଅର୍ଦ୍ଧ ମୂଲ୍ୟରେ ବିକ୍ରୟ କରିବାକୁ ବିଜ୍ଞାପନ ଦେଇ ଅଛନ୍ତି। ଯଦି ବାବୁ ମହାଶୟ ଉତ୍କଳମାତାର ଦାରିଦ୍ର୍ୟ

ଦୃଷ୍ଟିରେ ଏହା କରିଥାନ୍ତି, ତାହା ହେଲେ ଅବଶ୍ୟ ସେ ଧନ୍ୟବାଦର ପାତ୍ର ଅଟନ୍ତି। କିନ୍ତୁ ବଡ଼ ଦୁଃଖର ସହିତ ଅବଗତ ହେଲୁଁ ଯେ "ସଙ୍ଗୀତ-ସାର" ନାମକ ଅନ୍ୟ ଏକ ପୁସ୍ତକ ପ୍ରକାଶିତ ହେବାରୁ ଦାମୋଦର ବାବୁ ତରତରରେ ଏପରି କରି ଅଛନ୍ତି - କେବଳ ଦୁଇଜଣଙ୍କ କଳିଆରେ ତୃତୀୟବ୍ୟକ୍ତିର ଲାଭ। ଶେଷରେ ବକ୍ତବ୍ୟ ଏହି ଯେ ଆମ୍ଭେ ଅଦ୍ୟ ଦୀପିକାରେ ବିଜ୍ଞାପନ ପଢ଼ି "ସଙ୍ଗୀତ-ସାଗର" କିଣିବା ଅଭିପ୍ରାୟରେ ନିରୂପିତ ବିକ୍ରୟସ୍ଥାନରେ ଅନ୍ୱେଷଣ କରିବାରେ ଜ୍ଞାତ ହେଲୁଁ ଯେ ତୃତୀୟ ଓ ଚତୁର୍ଥ ତରଙ୍ଗ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇ ନାହିଁ ଓ ହେବାର କେତେକାଳ ବିଳମ୍ବ ଅଛି। ଦାମୋଦର ବାବୁ ଯେତେବେଳେ କୁହନ୍ତି "ପୁସ୍ତକ ସଂଖ୍ୟା ଅଙ୍କ" ସେଥିରୁ ଜଣା ଯାଉଥିଲା ଯେ ତାହାଙ୍କ ପ୍ରକାଶିତ ଓ ପ୍ରଣୀତ ସମସ୍ତ ପୁସ୍ତକ; "ସଙ୍ଗୀତ-ସାଗର" ତୃତୀୟ ଓ ଚତୁର୍ଥ ତରଙ୍ଗ ପ୍ରକାଶ ହୋଇ ନାହିଁ ବୋଲି ଯେ ବାଦ୍ ଗଲା ଏହା କିଛି ଜଣାଯାଉ ନ ଥିଲା। ଦାମୋଦର ବାବୁଙ୍କର ଏହି ଉଚ୍ଚାଟ ବିଜ୍ଞାପନ ଦ୍ୱାରା କ୍ରେତାମାନେ କେବଳ ହରବରରେ ପଡ଼ୁଅଛନ୍ତି। ଆଶା କରୁଁ ବାବୁ ମହାଶୟ ଶୀଘ୍ର ପୁସ୍ତକ ପ୍ରକାଶ ପ୍ରତି ଚେଷ୍ଟା କରିବେ - । ଇତି।

କଟକ                                                                 ବଶମ୍ବଦ

୨।୯।୯୩                                                              ଜଣେ କ୍ରେତା ।

*ଭା୨୮ଗ, ସଂ୩୬ଖ୍ୟା, ୯।୯।୧୮୯୩*

## ପୁସ୍ତକପ୍ରାପ୍ତି।

ଆମ୍ଭେମାନେ ନିମ୍ନଲିଖିତ ପୁସ୍ତକମାନ ଉପହାର ପାଇବାର କୃତଜ୍ଞତାସହିତ ସ୍ୱୀକାର କରୁଅଛୁଁ। ବନ୍ୟପୁଷ୍ପାଞ୍ଜଳୀ- ବାଲେଶ୍ୱରର ଜଣେ ନିବାସୀ ଶ୍ରୀ ରାଜନାରାୟଣ ଦାସ ଜମିଦାରଙ୍କଦ୍ୱାରା ବିରଚିତ ଏବଂ ଏନଗର ଭିକ୍ଟୋରିୟାପ୍ରେସରେ ମୁଦ୍ରିତ । ଏ ଖଣ୍ଡିଏ କ୍ଷୁଦ୍ର ପଦ୍ୟପୁସ୍ତକ। ଏହା ବାବୁ ମଧୁସୂଦନ ରାଓଙ୍କ ନାମରେ ଉତ୍ସର୍ଗିତ ଏବଂ ବିତରଣାର୍ଥେ ପ୍ରକାଶିତ ହୋଇଅଛି। ଏଥିରେ 'ଜନନୀ' 'ସଂସାର'ପ୍ରଭୃତି ଋରୋଟି ପ୍ରବନ୍ଧ ଏବଂ ଗୋଟିଏ ଭଜନ ସନ୍ନିବେଶିତ ହୋଇଅଛି। ସେ ସବୁର ଭାଷା ଅତି ସରଳ ଏବଂ ଭକ୍ତିଭାବରେ ପରିପୂର୍ଣ୍ଣ। ଏ ସୁନ୍ଦର ପୁସ୍ତକ ଖଣ୍ଡିକ ପଢ଼ିବାକୁ ସର୍ବସାଧାରଣଙ୍କୁ ଅନୁରୋଧ କରୁଅଛୁଁ । ଏହା ସ୍କୁଲପାଠ୍ୟପୁସ୍ତକର ମଧ ଯୋଗ୍ୟ ଅଟଇ । ମୁଖବନ୍ଧରେ ଗ୍ରନ୍ଥକାର ଯଥେଷ୍ଟ ବିନୟତାର ପରିଚୟ ଦେଇଅଛନ୍ତି ଏବଂ ସେହି ହେତୁରେ ଏହାର ନାମ ବନ୍ୟପୁଷ୍ପାଞ୍ଜଳୀ ଦେଇଅଛନ୍ତି । ମାତ୍ର ବନରେ ଫୁଟିଲେ ସୁଦ୍ଧା ଗ୍ରାହକ ନିକଟରେ ଫୁଲର ଆଦର ହୋଇ ନାହିଁ। ଏପର୍ଯ୍ୟନ୍ତ ସାଧାରଣ ଲୋକେ କବିତା ରଚନା କରୁଥିଲେ । ରାଜକବୀ ପଛେ ପଛେ ଜମିଦାରକବିଙ୍କୁ ଦେଖି ଆମ୍ଭେମାନେ ବଡ଼ ଆନନ୍ଦିତ ହେଲୁଁ ।

ସଙ୍ଗୀତସାଗର ତୃତୀୟ ଓ ଚତୁର୍ଥତରଙ୍ଗ- ଶ୍ରୀ ଦାମୋଦର ପଟ୍ଟନାୟକଙ୍କଦ୍ୱାରା ସଂଗୃହୀତ ଏବଂ ଯଥାକ୍ରମେ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ପ୍ରେସ ଏବଂ ରାୟ ପ୍ରେସରେ ମୁଦ୍ରିତ, ମୂଲ୍ୟ ପ୍ରତିଖଣ୍ଡ ଟ୦୵ ଲେଖାଁଏ । ଏପୁସ୍ତକର ପ୍ରଥମ ତରଙ୍ଗ ବାହାରିବାବେଳେ ଆମ୍ଭେମାନେ ଯେଉଁ ଆନନ୍ଦସୂଚକ ମତ ପ୍ରକାଶ କରିଥିଲୁଁ ତହିଁ ଉପରେ ଅଧିକ କିଛି କହିବାର ନାହିଁ ଓ ଗ୍ରନ୍ଥର ଆଦର ଦେଖି ଗ୍ରନ୍ଥକାର ଅନ୍ୟାନ୍ୟ ତରଙ୍ଗମାନ ବାହାର କରିବାକୁ ପ୍ରବୃତ୍ତ ହେବା ଏବଂ ମୂଲ୍ୟ ଊଣା କରିବା ହେତୁ ତାହାଙ୍କୁ ଧନ୍ୟବାଦ ଦେଉଅଛୁଁ।

ସଙ୍ଗୀତସାର ପ୍ରଥମଭାଗ - ଶ୍ରୀ ବାବୁ ରାସବିହାରୀ ରାୟଙ୍କ ଦ୍ୱାରା ସଂଗୃହୀତ ଓ ପ୍ରକାଶିତ ଏବଂ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ପ୍ରେସରେ ମୁଦ୍ରିତ। ମୂଲ୍ୟ ଟ୦୷ । ଭୂମିକାରୁ ପ୍ରକାଶ ଯେ ଭିଙ୍ଗାରପୁରର ପ୍ରସିଦ୍ଧ ଦକ୍ଷିଣୀ ନାଟଦଳର ଗୁରୁ କାର୍ତ୍ତିକ ସାହୁଙ୍କ ବିଶେଷ ସାହାଯ୍ୟରେ ଏ ପୁସ୍ତକ ସଙ୍କଳିତ ହୋଇଅଛି ଏବଂ ସଙ୍ଗୀତ ସାଗରର ଭୂମିକାରୁ ମଧ ତହିଁ ନିମନ୍ତେ ସେହି କାର୍ତ୍ତିକ ସାହୁଙ୍କର ସାହାଯ୍ୟ ନିୟା ଯାଇ ଥିବାର ଜଣାଯାଏ।

ଫଳତଃ ଉଭୟ ଗ୍ରନ୍ଥରେ ତାହାର ବଛା ବଛା ଗୀତମାନ ଅଛି ଏବଂ ସେସବୁର ବିଶେଷ ଆଦର ଆଜିକାଲି ଦେଖାଯାଏ। ଅତଏବ ଯେଉଁମାନଙ୍କର ଅସୀମସଙ୍ଗୀତ ସାଗର ଭ୍ରମଣ କରି ଏକ ପରେ ଏକ ତରଙ୍ଗମାନ ଲଙ୍ଘିବାର ବଳ ବା ଅବକାଶ ନାହିଁ ସେମାନେ ସଙ୍ଗୀତସାରରେ ତୃପ୍ତି ଲଭିବେ ଏହି ଆଶାରେ ବୋଧହୁଅଇ ଏ ପୁସ୍ତକ ବାହାରିଅଛି ଏବଂ ଆମ୍ଭମାନଙ୍କ ବିବେଚନାରେ ଆଶା ଅସଙ୍ଗତ ନୁହଇ। ମାତ୍ର ଏହି ସଙ୍ଗୀତସାର ସଙ୍ଗେ ପ୍ରଥମଭାଗ ଯୋଗ ହେବାର ଦେଖି ଭୟ ହେଉଅଛି କାଳେ ଏହାର ଅନ୍ୟାନ୍ୟ ଭାଗମାନ ବାହାରି ସାର ଅତିସାରକୁ ଲେଉଟି ନ ପଡ଼େ ।

*ଭା୨୮ଗ, ସଂ୩୮ଖ୍ୟା, ୨୩/୯/୧୮୯୩*

## [ବାର୍ଷିକ ପୁରସ୍କାର ବିତରଣ ସଭା]

ଗତ ବୁଧବାର ଦିବା ଦୁଇପ୍ରହର ସମୟରେ ଏଠା ରାବନ୍‌ସାକଲେଜ ଗୃହରେ କଲେଜିଏଟ ସ୍କୁଲ ବାଳକମାନଙ୍କୁ ବାର୍ଷିକ ପୁରସ୍କାର ବିତରଣ ନିମନ୍ତେ ସଭା ହୋଇଥିଲା। ସଭା ଗୃହଟି ଫୁଲପତ୍ର ତୋରଣ ଇତ୍ୟାଦିରେ ମନୋହରରୂପେ ସୁସଜ୍ଜିତ ହୋଇଥିଲା। ନଗରବାସୀ ଦେଶୀୟ ଓ ବିଦେଶୀୟ ଅନେକ ଭଦ୍ରଲୋକମାନେ ଆଶାନୁରୂପ ଉପସ୍ଥିତ ହୋଇ ନ ଥିଲେ ହେଁ ସଭାଗୃହଟି ଏକପ୍ରକାର ପୂର୍ଣ୍ଣ ହୋଇଥିଲା । ଶ୍ରୀଯୁକ୍ତ କମିଶନର କୁକ୍ ସାହେବ ସଭାପତିର ଆସନ ଗ୍ରହଣ କରନ୍ତେ ହେଡ଼ମାଷ୍ଟର ବାର୍ଷିକବିବରଣ ପାଠ କଲେ। ତହିଁ ଉତ୍ତାରୁ ସଭାପତି ମହାଶୟ ସ୍ୱହସ୍ତରେ ପୁରସ୍କାର ପୁସ୍ତକମାନ ବାଣ୍ଟି ଦେଲା ଉତ୍ତାରୁ ଗୋଟିଏ ବକ୍ତୃତା କରି ସଭା ଭଙ୍ଗ କଲେ । ବକ୍ତୃତାର ସାରମର୍ମ ଏହି କି ସ୍କୁଲର ଛାତ୍ର ସଂଖ୍ୟା ବୃଦ୍ଧି, ଆର୍ଥିକ ଅବସ୍ଥା ଭଲ ଏବଂ ଶିକ୍ଷାକାର୍ଯ୍ୟ ସୁନ୍ଦରରୂପେ ନିର୍ବାହ ହେବା ବଡ଼ ଆନନ୍ଦର ବିଷୟ ଅଟଇ ଯେହେତୁ ରିପୋର୍ଟରୁ ଜଣାଗଲା ଯେ ବାର୍ଷିକ ଆୟ ପ୍ରାୟ ୧୨ ହଜାର ଏବଂ ବ୍ୟୟ ୯ ହଜାର ଟଙ୍କା ଅଟଇ ଅର୍ଥାତ୍ ଦୁଇହଜାରରୁ ଅଧିକ ଟଙ୍କା ଉଦ୍ଧର୍ତ୍ତ ହୋଇଅଛି। ଏ ବିଷୟରେ ଅଧିକ କିଛି ବୋଲିବାର ନାହିଁ। ଏଠାରେ ପ୍ରାୟ ପଞ୍ଚାଶ ବର୍ଷ ହେଲା ସ୍କୁଲ ଏବଂ ପ୍ରାୟ ବ୨୦ର୍ଷ ହେଲା କଲେଜ ସ୍ଥାପିତହେବା ପ୍ରତ୍ୟକ୍ଷେ ଅବଧି ଓଡ଼ିଶାବାସିମାନେ କାର୍ଯ୍ୟ ପ୍ରାର୍ଥନା କଲାବେଳେ ବିଶେଷ ବିବେଚନାର ଦାବୀ କରନ୍ତି ଏଥିରେ ସେ ଆଶ୍ଚର୍ଯ୍ୟ ହୋଇଅଛନ୍ତି। ଏପରି ଦାବୀର ଅର୍ଥ ଏହି କି ବିଦ୍ୟାଶିକ୍ଷା ଓ ବୁଦ୍ଧିରେ ଓଡ଼ିଆମାନେ ଏ ପ୍ରଦେଶୀୟ ଅନ୍ୟାନ୍ୟ ଲୋକଙ୍କଠାରୁ ନ୍ୟୂନ ଅଥବା ବିଶେଷ ଅସୁବିଧାରେ ପଡ଼ିଅଛନ୍ତି। ବିଦ୍ୟା ବୁଦ୍ଧିର ନ୍ୟୂନତା ସ୍ୱୀକାର କରିବାର କାରଣ ନାହିଁ ଏବଂ ସେପରି ଭାବ ମନରେ ଘୋଷି ରଖିଲେ ଉନ୍ନତିର ଅସମ୍ଭବ। ଅସୁବିଧା କଥା ବିବେଚନା କଲେ ଦିନାଜପୁର ରଙ୍ଗପୁର ପ୍ରଭୃତି ସ୍ଥାନ ସଙ୍ଗେ ଓଡ଼ିଶାର ବିଶେଷ ପ୍ରଭେଦ ନାହିଁ। ଅତଏବ ଓଡ଼ିଆମାନଙ୍କର ଉଚିତ ଯେ ଚାକରୀ ପାଇବା ସକାଶେ ବିଶେଷ ଅନୁଗ୍ରହର ଆଶା ନ କରି ସାଧାରଣ ପ୍ରତିଯୋଗିତାରେ ବଙ୍ଗାଳିଙ୍କ ସଙ୍ଗେ ସମାନ ହେବାର ଚେଷ୍ଟା ଓ ଯତ୍ନ କରିବା ଉଚିତ। ଆପଣାକୁ ଊଣା ମନେ କଲେ ଚିରଦିନ ତଳେ ପଡ଼ିରହିବ ଆଉ ଉପରକୁ ଉଠିପାରିବ ନାହିଁ। ଦ୍ୱିତୀୟ କଥା ଏହି କି ଛାତ୍ରମାନଙ୍କର ଅବାଧ୍ୟପଣିଆ କଥା ଶୁଣିବା ବଡ଼ ଦୁଃଖର ବିଷୟ ଅଟଇ। ଓଡ଼ିଆମାନେ ଅତ୍ୟନ୍ତ ଆଜ୍ଞାବହ ଏବଂ ଶାନ୍ତ ବୋଲି ପ୍ରସିଦ୍ଧ। କେତେକ ଜଣ ଛାତ୍ରଙ୍କ ଦୁଷ୍ଚାରର ହେତୁ ସେ ଖ୍ୟାତିରେ କଳଙ୍କ ଲାଗିବା ବଡ଼ ଅସୁନ୍ଦର। ଭରସା କରୁଁ ଭବିଷ୍ୟତ୍‌କୁ ଆଉ ଏପରି ଘଟିବ ନାହିଁ। ଶିଷ୍ଟାଚାରଦ୍ୱାରା ମନୁଷ୍ୟତା ଲାଭ ହୁଅଇ। ଛାତ୍ରମାନେ ଏହି କଥା ସ୍ମରଣ ରଖି ଯେମନ୍ତ ବିଦ୍ୟାବାନ୍ ତେମନ୍ତ ଚରିତ୍ରବାନ୍ ହେବାକୁ ଶିକ୍ଷା କରିବେ।

ସଭାପତିଙ୍କ ବକ୍ତୃତା ଶେଷ ହେଲାରୁ କଲେଜର ପ୍ରିନସିପାଲ ହଲ୍ଲାଟ୍ ସାହେବ ସଭାପତିଙ୍କୁ ଧନ୍ୟବାଦ ଦେଇ ତାହାଙ୍କ ବକ୍ତୃତାର ପୋଷକତାରେ ଦୁଇ ଚାରି କଥା କହି ପରିଶେଷରେ ଛାତ୍ରମାନଙ୍କର କ୍ରୀକେଟ ଖେଳର ପ୍ରଶଂସା କଲେ ଏବଂ ଆସନ୍ତା ଶୀତକାଳରେ ଇଉରୋପୀୟଙ୍କ ସଙ୍ଗେ କ୍ରୀକେଟ ଲଢ଼ାଇ କରିବା କାରଣ ପ୍ରସ୍ତୁତ ହେବାକୁ ଅନୁରୋଧ କଲେ। ବର୍ତ୍ତମାନ ହେଡ଼ମାଷ୍ଟରଙ୍କ ପ୍ରଶଂସା କରି କହିଲେ ଯେ ସେ ପିଲାମାନଙ୍କୁ ଯେପରି ଶାସନରେ ରଖି ଅଛନ୍ତି ତଦ୍ଦ୍ୱାରା ଶୀଘ୍ର ସେମାନଙ୍କ ଚରିତ୍ରର ଉନ୍ନତି ହେବ ।

*ଭା୨୮ଗ, ସଂ୪୧ଖ୍ୟା, ୧୪/୧୦/୧୮୯୩*

## ପ୍ରାପ୍ତ ।

## [ନାଟକ ଅଭିନୟ]

ମାହାଙ୍ଗାରେ ଗତ ଦୁର୍ଗାପୂଜା ଉପଲକ୍ଷେ ଚୌଧୁରୀ ଜନାର୍ଦ୍ଦନପ୍ରସାଦ ରାୟ ଓର୍ଫ ମଏନାବାବୁଙ୍କ ଘରଠାରେ ସୌକିନ ଯୁବକଦଳ ବିଖ୍ୟାତ ମାଇକେଲ ମଧୁସୂଦନଦତ୍ତଙ୍କ କୃତ ମେଘନାଦବଧ ନାଟକର ଅଭିନୟ କରିଥିଲେ। ମୋଫସଲରେ ନାଟକାଭିନୟ ସମ୍ବନ୍ଧେ ନାନାଦି ଅସୁବିଧା ସେ ସବୁଦୃଷ୍ଟିରେ ଅଭିନୟ ଯେତେଦୂର ଉତ୍ତମ ହୋଇପାରେ ତାହା ହୋଇଥିଲା ଅଭିନୟକାରିଙ୍କ ମଧ୍ୟରେ ରାବଣ ଓ ଇନ୍ଦ୍ରଜିତ ସର୍ବୋତ୍କୃଷ୍ଟ ଅଭିନୟ କରିଥିଲେ । ଏଠାରେ ଆଉଥରେ ନାଟକାଭିନୟ ଦୁଇବର୍ଷପୂର୍ବେ ହୋଇଥିଲା ଓ ଅସୁରେଶ୍ୱର ଓ କୋଟପଦାରେ ମଧ ନିକଟରେ ହୋଇଅଛି ଓ ଲୋକଙ୍କର ଚିତ୍ତ ଆକର୍ଷଣ କରିଅଛି । ମୋଫସଲରେ ସୁଦ୍ଧା ଜନସାଧାରଣଙ୍କର ନାଟକାଭିନୟପ୍ରତି ଶ୍ରଦ୍ଧା ଦେଖି ଆମ୍ଭେମାନେ ବୋଧ କରୁଅଛୁଁ ଯେ ଲୋକଙ୍କର ରୁଚି ପରିବର୍ତ୍ତନ ହୋଇ ଆସୁଅଛି ଆଉ ନୀତି ଭ୍ରଷ୍ଟକର ଭଣ୍ଡ ସୁଆଙ୍ଗ ପ୍ରୀତିକର ହେବ ନାହିଁ ଏଥିପ୍ରତି ଲୋକଙ୍କର ଅରୁଚି ଜାତ ହେଲେ ତାହା ସବୁ ରହିବ ଓ ନାଟକାଭିନୟ ପ୍ରଚରଯୋଗେ ସମାଜର ଉନ୍ନତିସାଧନ ହେବ । ଏଥିରେ କେହି କେହି ପାଠକ ମନେ କରିବେ ଯେ ଯେଉଁ ମଏନାବାବୁଙ୍କ ଗୃହଠାରେ ଦୁଇଥର ନାଟକାଭିନୟ ହୋଇଗଲାଣି ସେଠାରେ ଭଣ୍ଡ-ସୁଆଙ୍ଗ ରହିତ ହୋଇଥିବ କିମ୍ବା ନିତାନ୍ତପକ୍ଷେ ତହିଁ ପ୍ରତି ଅଶ୍ରଦ୍ଧା ଜନ୍ମିଥିବ। କିନ୍ତୁ ଶୁଣିବାରେ ସେଠାରେ ଏଥିର ବିପରୀତ ଅବସ୍ଥା ସୁଆଙ୍ଗକଥା ତେଣିକି ଥାଉ ଦଣ୍ଡ ଓ ଅଶ୍ଳୀଳ ଗୀତର ପ୍ରଭାବ ଲେଶମାତ୍ର ଊଣା ହୋଇ ନାହିଁ। ନବମୀଦିନ ବଳିଦାନ ଉତ୍ତାରେ ମଜଲିସରେ ଓ ଦଶହରାଦିନ ମେଢ଼ ସଙ୍ଗରେ ଯେପରି ଭଣ୍ଡ ଗୀତ ପୂର୍ବରୁ ହୋଇ ଆସୁଥିଲା ସେହିପରି ହେଉଅଛି। ଆହୁରି ଏହି ଯେ ଚଣ୍ଡୀମଣ୍ଡପର କାନ୍ଥରେ ମେଢନିକଟରେ ଓ ଦୃଷ୍ଟିଗୋଚର ସ୍ଥାନରେ ଭଣ୍ଡ ଛବି ଅଙ୍କିତ ହୋଇଥାଏ। ପୁତ୍ର କନ୍ୟା ଭାଇ ଭଗିନୀ ପ୍ରଭୃତି ସମସ୍ତେ ସେଠାକୁ ଏକତ୍ରିତ ହୋଇ ଯାଇଥାଆନ୍ତି ଓ ଅଷ୍ଟମୀ ଦିନ ତାରିଣୀ ବ୍ରତ ପୂଜା ସକାଶେ ସମସ୍ତ ଭଦ୍ରମହିଳାମାନେ ସେଠାରେ ଏକତ୍ରିତ ହୋଇଥାନ୍ତି। ଏପରିସ୍ଥାନରେ ବି ଭଣ୍ଡ ଛବି ରହିବା ଉଚିତ? କେହି କେହି ବୋଲନ୍ତି ପୂର୍ବରୁ ଯାହା ହୋଇ ଆସୁଛି ତାହା କିପରି ରହିତ ହେବ। ଏଥକୁ ଆମ୍ଭେମାନେ କହୁଁ ଆଦିମଅବସ୍ଥାରେ ଲୋକେ ବସ୍ତ୍ରପରିଧାନ ନ କରି ବଲ୍କଳ ଧାରଣ କରୁଥିଲେ କି ଯେପରି କୌଣସି କୌଣସି ବଣୁଆ ଲୋକେ ଏପର୍ଯ୍ୟନ୍ତ କରୁଅଛନ୍ତି ବର୍ତ୍ତମାନ ବସ୍ତ୍ର ପରିଧାନ କାହିଁକି ହେଉଅଛି ପୁଣି ପୂର୍ବପରି କେବଳ ଧୋତୀ ଚାଦରରେ ଚଳୁ ନାହିଁ ଭଦ୍ରଲୋକେ କୁର୍ତ୍ତା ନ ପିନ୍ଧିଲେ ପଦାକୁ ବାହାରୁ ନାହାନ୍ତି। ସର୍ବାଙ୍ଗ ଲୁଚାଇବା ଯେଉଁ ସମୟର ରୁଚି ହୋଇଗଲାଣି ସେ ସମୟରେ ଗୁପ୍ତାଙ୍ଗ ଚିତ୍ର ଓ ଗୀତାଦିଦ୍ୱାରା ପ୍ରକାଶ କରାଇବାର କି ଉଚିତ? କଦାପି ହୋଇ ନ ପାରେ କାଳୋଚିତାନୁସାରେ ବ୍ୟବହାର କରିବା ଉଚିତ। ଯାହା ମନ୍ଦ ଓ ବନ୍ଦ କଲେ କିଛି କ୍ଷତି ନାହିଁ ବରଂ ଶ୍ରେୟସ୍କର ଓ ସଭ୍ୟରୁଚି ସଙ୍ଗେ ସୁସଙ୍ଗତ ତାହା ରହିତ କରିବା ସମ୍ୟକ୍ ପ୍ରକାରେ କର୍ତ୍ତବ୍ୟ। ଏଥିପୂର୍ବେ ସେହିଗ୍ରାମର ଦୁଇ ଯୁବାବ୍ୟକ୍ତି ଏହା ରହିତକରିବାର ଚେଷ୍ଟା କରିଥିଲେ ମାତ୍ର ସେମାନେ ଅମାର୍ଗରେ ଚାଲିବାରୁ ସେ ଚେଷ୍ଟା ବିଫଳ ହୋଇଗଲା । ଆମ୍ଭେମାନେ ଭରସା କରୁଁ ସୌକିନ ନାଟକାଭିନୟଦଳର ସୁଶିକ୍ଷିତ ଯୁବକମାନେ ଏଥିର ଚେଷ୍ଟା କଲେ କୃତକାର୍ଯ୍ୟ ହୋଇପାରିବେ ସେ ଚେଷ୍ଟା କରିବା ଉଚିତ କାରଣ ନାଟକାଭିନୟ ସହିତ ଭଣ୍ଡଗୀତ ଓ ଚିତ୍ରାଦି ଅସଙ୍ଗତ ହେଉଅଛି। ସେମାନେ ଏହା ରହିତ କରିପାରିଲେ ନାଟକର ଉଦ୍ଦେଶ୍ୟ ସାଧନ ହେବ ଓ ସେମାନେ ପ୍ରଶଂସା ଓ ଧନ୍ୟବାଦର ପାତ୍ର ହେବେ ଓ ସେମାନଙ୍କ ନାମ ରହିଯିବ ।

*ଭା୨୮ଗ, ସଂ୪୩ଖ୍ୟା, ୧୧/୧୧/୧୮୯୩*

# ଓଡ଼ିଶା ଓ ଶ୍ରୀଯୁକ୍ତ କୁକ୍‌ସାହେବ ।

ଆମ୍ଭମାନଙ୍କର ଏକଟି କମିଶ୍ନର ଶ୍ରୀଯୁକ୍ତ କୁକ୍‌ସାହେବ ଓଡ଼ିଶା ଲୋକଙ୍କ ଅବସ୍ଥାସମ୍ବନ୍ଧରେ ଓଡ଼ିଶାବିଭାଗର ଗତ ବାର୍ଷିକ ରିପୋର୍ଟରେ ନିମ୍ନଲିଖିତ ମନ୍ତବ୍ୟ ପ୍ରକଶ କରିଅଛନ୍ତି, ଯଥା-

ଓଡ଼ିଶାକୁ ଦରିଦ୍ରବିଭାଗ ବୋଲି ଯଥାତଥା ବର୍ଣ୍ଣନା କରିବାର ଆମ୍ଭେ ଅନେକଥର ଶୁଣିଅଛୁଁ ମାତ୍ର ଏହି ମତର ପୋଷକତାରେ ଆମ୍ଭେ ନିଜେ କିଛି ଦେଖି ନାହୁଁ। ଅନ୍ୟାନ୍ୟ ସ୍ଥାନଠାରୁ ଏଠାରେ ଖାଦ୍ୟଦ୍ରବ୍ୟାଦିର ମୂଲ୍ୟ ଊଣା,ବଙ୍ଗାଳିଙ୍କଠାରୁ ଏଠା ଲୋକମାନେ ହୃଷ୍ଟପୁଷ୍ଟ ଓ ବଳବାନ୍,ଖାସମାହାଲ ଏବଂ ନାବାଳଗି ମାହାଲମାନଙ୍କରେ ଓଡ଼ିଆଙ୍କର ଖଜଣା ଊଣା ଅଥବା ଛାଡ଼ର ଆପତ୍ତି ଏବଂ ଦାଦନ ପାଇବାର ଦରଖାସ୍ତ ବଙ୍ଗଳାଅପେକ୍ଷା ଅଧିକ ଆଗ୍ରହସହିତ ଶୁଣାଯାଏ।ଏଥିଉତ୍ତାରୁ ଏମାନଙ୍କ କ୍ଷେତ୍ରକୁ ଜଳ ଦେବା ସକାଶେ ଅତ୍ୟନ୍ତ ବ୍ୟୟଶୀଳ ନାଳମାନ ଖୋଳା ହୋଇଅଛି କି ତହିଁର ଖରଚ ସେମାନେ ଏପର୍ଯ୍ୟନ୍ତ ଦେଇ ନାହାନ୍ତି ଏବଂ ଏମାନଙ୍କ ରକ୍ଷାନିମନ୍ତେ ଯେଉଁ ବନ୍ଧମାନ ପ୍ରସ୍ତୁତ ହୋଇଅଛି ସେ ସମସ୍ତର ବ୍ୟୟ ସରକାର ଉପରେ ପଡୁଅଛି ଏବଂ ଅନ୍ୟ ସ୍ଥାନପରି ସ୍ଥାନୀୟ କରଦ୍ୱାରା ନିର୍ବାହ ହେଉ ନାହିଁ । ଓଡ଼ିଶାବାସିଙ୍କର ଗୋଟିଏ ସ୍ଥିର ଧାରଣା ଏହି କି ସେମାନଙ୍କର ଦେଶ ଅତ୍ୟନ୍ତ ଦରିଦ୍ର ଏବଂ ତହିଁ ପାଇଁ ସେମାନେ ପରିବାରସ୍ଥ ପାଡ଼ିତ ପିଲାପରି ଅଧିକ ଆଦର ପାଇବାର ଯୋଗ୍ୟ । ମାତ୍ର ବନ୍ଦୋବସ୍ତକର୍ମଚାରିଙ୍କଠାରୁ ଆମ୍ଭେ ଯେ ସବୁ କଥା ଅବଗତ ହୋଇଅଛୁଁ ତଦ୍ଦ୍ୱାରା ସେମାନଙ୍କର ଦାବୀ ସମର୍ଥିତ ହେଉ ନାହିଁ । ମାତ୍ର ପୁନଃ ପୁନଃ କହିବାବଳରେ ଲୋକଙ୍କ ମତ ସରକାରୀ କର୍ମଚାରିଙ୍କ ମତ ହୋଇ ଯାଇଅଛି ଏବଂ ଫସଲସମ୍ବନ୍ଧୀୟ ତାଲିକାମାନ ତହିଁର ପୋଷକତା କରୁଅଛି । ବୁଣାସମୟରେ ଜଳର ଅଭାବ ଥିଲା ଯୁଲାଇମାସରେ ବନ୍ୟା ହେତୁ କଟକଜିଲ୍ଲାରେ କିଛି କ୍ଷତି ହୋଇଥିଲା ଓ ଝିଣ୍ଟିକା ପଡ଼ି କିଛି ଫସଲ ନଷ୍ଟ ହୋଇଥିଲା। କେବଳ ବାଲେଶ୍ୱରଜିଲ୍ଲାର କେତେକ ମୌଜାରେ ସମ୍ପୂର୍ଣ୍ଣରୂପେ ଫସଲ ନଷ୍ଟ ହୋଇଥିଲା ମାତ୍ର ଶ୍ରୀଯୁକ୍ତ କର୍ଣ୍ଣସ ସାହେବ ସାହାଯ୍ୟ କାର୍ଯ୍ୟରେ ଅନେକ ଟଙ୍କା ବ୍ୟୟକରିବା ବିନା ତହିଁର ଉଚିତ ପ୍ରତୀକାର କରିବାକୁ ସମର୍ଥ ହୋଇଥିଲେ । ଏବିଷୟ ଅତ୍ୟନ୍ତ ସାମାନ୍ୟ ଥିବାରୁ କିପ୍ରକାରେ ଅନ୍ନକଷ୍ଟ ନିବାରଣ ହେଲା ଜିଲ୍ଲାହାକିମ ତହିଁର ସବିଶେଷ ବିବରଣ ଲେଖି ନାହାନ୍ତି। ତଥାଚ ପୁରୀ ଓ କଟକଅପେକ୍ଷା ବାଲେଶ୍ୱରର ଦୁଇ ପ୍ରଧାନଫସଲ ଉତ୍ତମ ହୋଇଥିଲା । ଆମ୍ଭ ବିବେଚନାରେ ହାରାହାରି ଫସଲର ପ୍ରକୃତଭାବ ଓଡ଼ିଶାରେ ବିଶେଷତ ପୁରୀ ଓ କଟକର କଚେରୀମାନଙ୍କରେ କେହି ବୁଝିପାରି ନାହାନ୍ତି ।"

ଆହୁରି ଏକସ୍ଥାନରେ ସାହେବ ମହୋଦୟ ଲେଖିଅଛନ୍ତି କି ଓଡ଼ିଆମାନେ ବଙ୍ଗାଳିଙ୍କଠାରୁ ଭଲ ଅଛନ୍ତି ପୂଜା ଓ କ୍ରିୟାକଳାପରେ ଅଧିକ ଟଙ୍କା ବ୍ୟୟକରନ୍ତି ଏବଂ ଓଡ଼ିଶା କ୍ରମାଗତ ସୌଭାଗ୍ୟପଥରେ ଅଗ୍ରସର ହେଉଅଛି।

ବଙ୍ଗଳାରେ ଏହିମର୍ମରେ ଗୋଟିଏ ଗୀତ ଅଛି କି ଦରିଦ୍ର ଦୁର୍ନାମଠାରୁ ଧନର ଅପବାଦ ଭଲ। ଏହି ନ୍ୟାୟରେ ଆଜି କୁକ୍ ସାହେବଙ୍କ ମୁଖରୁ ଓଡ଼ିଆମାନେ ବଙ୍ଗାଳିଙ୍କ ଅପେକ୍ଷା ସୁଖରେ ଥିବାର କଥା ଶୁଣି ଆମ୍ଭେମାନେ ଆନନ୍ଦିତ ହେଲୁଁ। ମାତ୍ର କଥାଟା ଯଥାର୍ଥ କି? ଯେଉଁ ହାକିମମାନେ ଦୀର୍ଘକାଳ ଓଡ଼ିଶାରେ ରହି ଲୋକଙ୍କ ଅବସ୍ଥା ସୂକ୍ଷ୍ମରୂପେ ଅନୁସନ୍ଧାନପୂର୍ବକ ପ୍ରକୃତକଥା ଜାଣିବାକୁ ସକ୍ଷମ ହୋଇ ଅଛନ୍ତି ସେମାନଙ୍କର ବହୁଦର୍ଶିତା ଅଳ୍ପଦିନ ଏଠାକୁ ଆସିଥିବା କୁକ୍‌ସାହେବ ଏବଂ ତାହାଙ୍କ ସମ୍ବାଦଦାତା ବନ୍ଦୋବସ୍ତ କର୍ମଚାରିଙ୍କଠାରେ ପରାସ୍ତ ହେଲା ଆଶ୍ଚର୍ଯ୍ୟର ବିଷୟ ଅଟଇ। ସାହେବ ମହୋଦୟଙ୍କ ଲେଖାଭଙ୍ଗିରୁ ଜଣାଯାଏ ଯେ ଓଡ଼ିଶାରେ ଗତବର୍ଷ ନିୟମିତ ପରିମାଣ ଫସଲ ହୋଇଥିଲା କୌଣସିଠାରେ ରାଜସ୍ୱ ଛାଡ଼ ଦେବା ଉଚିତ ହୋଇ ନାହିଁ ଏବଂ ଜଳକର ବୃଦ୍ଧି କରିବା,ବନ୍ଧ ନିମନ୍ତେ ଟିକସ ବସାଇବା ଏବଂ ନୂତନ ବନ୍ଦୋବସ୍ତରେ ଟାଣ ଜମା ଧାର୍ଯ୍ୟ କରିବା ଉଚିତ। ତାହାଙ୍କ ମନ୍ତବ୍ୟ ପାଠ କରି ବାସ୍ତବରେ ଆମ୍ଭେମାନେ ଭୀତ ହୋଇଅଛୁ ।

*ଭା୨୮ଖ, ସଂ୪୪ଖ୍ୟା, ୧୮।୧୧।୧୮୯୩*

## ପ୍ରାପ୍ତ ।

## [ନାଟକ ଅଭିନୟ]

ମାହାଙ୍ଗାରେ ଗତ ଦୁର୍ଗାପୂଜା ଉପଲକ୍ଷେ ଚୌଧୁରୀ ଜନାର୍ଦ୍ଦନପ୍ରସାଦ ରାୟ ଓର୍ଫ ମଏନାବାବୁଙ୍କ ଘରଠାରେ ସୌକିନ ଯୁବକଦଳ ବିଖ୍ୟାତ ମାଇକେଲ ମଧୁସୂଦନଦତ୍ତଙ୍କ କୃତ ମେଘନାଦବଧ ନାଟକର ଅଭିନୟ କରିଥିଲେ। ମୋଫସଲରେ ନାଟକାଭିନୟ ସମ୍ବନ୍ଧେ ନାନାଦି ଅସୁବିଧା ସେ ସବୁଦୃଷ୍ଟିରେ ଅଭିନୟ ଯେତେଦୂର ଉତ୍ତମ ହୋଇପାରେ ତାହା ହୋଇଥିଲା ଅଭିନୟକାରିଙ୍କ ମଧ୍ୟରେ ରାବଣ ଓ ଇନ୍ଦ୍ରଜିତ ସର୍ବୋତ୍କୃଷ୍ଟ ଅଭିନୟ କରିଥିଲେ । ଏଠାରେ ଆଉଥରେ ନାଟକାଭିନୟ ଦୁଇବର୍ଷପୂର୍ବେ ହୋଇଥିଲା ଓ ଅସୁରେଶ୍ୱର ଓ କୋଟପଦାରେ ମଧ ନିକଟରେ ହୋଇଅଛି ଓ ଲୋକଙ୍କର ଚିତ୍ତ ଆକର୍ଷଣ କରିଅଛି । ମୋଫସଲରେ ସୁଦ୍ଧା ଜନସାଧାରଣଙ୍କର ନାଟକାଭିନୟପ୍ରତି ଶ୍ରଦ୍ଧା ଦେଖି ଆମ୍ଭେମାନେ ବୋଧ କରୁଅଛୁଁ ଯେ ଲୋକଙ୍କର ରୁଚି ପରିବର୍ତ୍ତନ ହୋଇ ଆସୁଅଛି ଆଉ ନୀତି ଭ୍ରଷ୍ଟକର ଭଣ୍ଡ ସୁଆଙ୍ଗ ପ୍ରୀତିକର ହେବ ନାହିଁ ଏଥିପ୍ରତି ଲୋକଙ୍କର ଅରୁଚି ଜାତ ହେଲେ ତାହା ସବୁ ରହିବ ଓ ନାଟକାଭିନୟ ପ୍ରଚାରଯୋଗେ ସମାଜର ଉନ୍ନତିସାଧନ ହେବ । ଏଥିରେ କେହି କେହି ପାଠକ ମନେ କରିବେ ଯେ ଯେଉଁ ମଏନାବାବୁଙ୍କ ଗୃହଠାରେ ଦୁଇଥର ନାଟକାଭିନୟ ହୋଇଗଲାଣି ସେଠାରେ ଭଣ୍ଡ-ସୁଆଙ୍ଗ ରହିତ ହୋଇଥିବ କିମ୍ବା ନିତାନ୍ତପକ୍ଷେ ତହିଁ ପ୍ରତି ଅଶ୍ରଦ୍ଧା ଜନ୍ମିଥିବ। କିନ୍ତୁ ଶୁଣିବାରେ ସେଠାରେ ଏଥିର ବିପରୀତ ଅବସ୍ଥା ସୁଆଙ୍ଗକଥା ତେଣିକି ଥାଉ ଦଣ୍ଡ ଓ ଅଶ୍ଳୀଳ ଗୀତର ପ୍ରଭାବ ଲେଶମାତ୍ର ଊଣା ହୋଇ ନାହିଁ। ନବମୀଦିନ ବଳିଦାନ ଉତ୍ତାରେ ମଜଲିସରେ ଓ ଦଶହରାଦିନ ମେଢ଼ ସଙ୍ଗରେ ଯେପରି ଭଣ୍ଡ ଗୀତ ପୂର୍ବରୁ ହୋଇ ଆସୁଥିଲା ସେହିପରି ହେଉଅଛି। ଆହୁରି ଏହି ଯେ ଚଣ୍ଡୀମଣ୍ଡପର କାନ୍ଥରେ ମେଢନିକଟରେ ଓ ଦୃଷ୍ଟିଗୋଚର ସ୍ଥାନରେ ଭଣ୍ଡ ଛବି ଅଙ୍କିତ ହୋଇଥାଏ। ପୁତ୍ର କନ୍ୟା ଭାଇ ଭଗିନୀ ପ୍ରଭୃତି ସମସ୍ତେ ସେଠାକୁ ଏକତ୍ରିତ ହୋଇ ଯାଇଥାଆନ୍ତି ଓ ଅଷ୍ଟମୀ ଦିନ ତାରିଣୀ ବ୍ରତ ପୂଜା ସକାଶେ ସମସ୍ତ ଭଦ୍ରମହିଳାମାନେ ସେଠାରେ ଏକତ୍ରିତ ହୋଇଥାନ୍ତି। ଏପରିସ୍ଥାନରେ ବି ଭଣ୍ଡ ଛବି ରହିବା ଉଚିତ? କେହି କେହି ବୋଲନ୍ତି ପୂର୍ବରୁ ଯାହା ହୋଇ ଆସୁଛି ତାହା କିପରି ରହିତ ହେବ। ଏଥକୁ ଆମ୍ଭେମାନେ କହୁଁ ଆଦିମଅବସ୍ଥାରେ ଲୋକେ ବସ୍ତ୍ରପରିଧାନ ନ କରି ବଲ୍କଳ ଧାରଣ କରୁଥିଲେ କି ଯେପରି କୌଣସି କୌଣସି ବଣୁଆ ଲୋକେ ଏପର୍ଯ୍ୟନ୍ତ କରୁଅଛନ୍ତି ବର୍ତ୍ତମାନ ବସ୍ତ୍ର ପରିଧାନ କାହିଁକି ହେଉଅଛି ପୁଣି ପୂର୍ବପରି କେବଳ ଧୋତୀ ଚାଦରରେ ଚଳୁ ନାହିଁ ଭଦ୍ରଲୋକେ କୁର୍ତ୍ତା ନ ପିନ୍ଧିଲେ ପଦାକୁ ବାହାରୁ ନାହାନ୍ତି। ସର୍ବାଙ୍ଗ ଲୁଚାଇବା ଯେଉଁ ସମୟର ରୁଚି ହୋଇଗଲାଣି ସେ ସମୟରେ ଗୁପ୍ତାଙ୍ଗ ଚିତ୍ର ଓ ଗୀତାଦିଦ୍ୱାରା ପ୍ରକାଶ କରାଇବାର କି ଉଚିତ? କଦାପି ହୋଇ ନ ପାରେ କାଳୋଚିତାନୁସାରେ ବ୍ୟବହାର କରିବା ଉଚିତ। ଯାହା ମନ୍ଦ ଓ ବନ୍ଦ କଲେ କିଛି କ୍ଷତି ନାହିଁ ବରଂ ଶ୍ରେୟସ୍କର ଓ ସଭ୍ୟରୁଚି ସଙ୍ଗେ ସୁସଙ୍ଗତ ତାହା ରହିତ କରିବା ସମ୍ୟକ୍ ପ୍ରକାରେ କର୍ତ୍ତବ୍ୟ। ଏଥିପୂର୍ବେ ସେହିଗ୍ରାମର ଦୁଇ ଯୁବାବ୍ୟକ୍ତି ଏହା ରହିତକରିବାର ଚେଷ୍ଟା କରିଥିଲେ ମାତ୍ର ସେମାନେ ଅମାର୍ଗରେ ଚଳିବାରୁ ସେ ଚେଷ୍ଟା ବିଫଳ ହୋଇଗଲା । ଆମ୍ଭେମାନେ ଭରସା କରୁଁ ସୌକିନ ନାଟକାଭିନୟଦଳର ସୁଶିକ୍ଷିତ ଯୁବକମାନେ ଏଥିର ଚେଷ୍ଟା କଲେ କୃତକାର୍ଯ୍ୟ ହୋଇପାରିବେ ଓ ଚେଷ୍ଟା କରିବା ଉଚିତ କାରଣ ନାଟକାଭିନୟ ସହିତ ଭଣ୍ଡଗୀତ ଓ ଚିତ୍ରାଦି ଅସଙ୍ଗତ ହେଉଅଛି। ସେମାନେ ଏହା ରହିତ କରିପାରିଲେ ନାଟକର ଉଦ୍ଦେଶ୍ୟ ସାଧନ ହେବ ଓ ସେମାନେ ପ୍ରଶଂସା ଓ ଧନ୍ୟବାଦର ପାତ୍ର ହେବେ ଓ ସେମାନଙ୍କ ନାମ ରହିଯିବ ।

*ଭା୨୮ଗ, ସଂ୪୩ଖ୍ୟା, ୧୧।୧୧।୧୮୯୩*

# ଓଡ଼ିଶା ଓ ଶ୍ରୀଯୁକ୍ତ କୁକ୍‌ସାହେବ।

ଆମ୍ଭମାନଙ୍କର ଏକଟିଂ କମିଶ୍ନର ଶ୍ରୀଯୁକ୍ତ କୁକ୍‌ସାହେବ ଓଡ଼ିଶା ଲୋକଙ୍କ ଅବସ୍ଥାସମ୍ବନ୍ଧରେ ଓଡ଼ିଶାବିଭାଗର ଗତ ବାର୍ଷିକ ରିପୋର୍ଟରେ ନିମ୍ନଲିଖିତ ମନ୍ତବ୍ୟ ପ୍ରକଶ କରିଅଛନ୍ତି, ଯଥା-

ଓଡ଼ିଶାକୁ ଦରିଦ୍ରବିଭାଗ ବୋଲି ଯଥାତଥା ବର୍ଣ୍ଣନା କରିବାର ଆମ୍ଭେ ଅନେକଥର ଶୁଣିଅଛୁଁ ମାତ୍ର ଏହି ମତର ପୋଷକତାରେ ଆମ୍ଭେ ନିଜେ କିଛି ଦେଖି ନାହୁଁ। ଅନ୍ୟାନ୍ୟ ସ୍ଥାନଠାରୁ ଏଠାରେ ଖାଦ୍ୟଦ୍ରବ୍ୟାଦିର ମୂଲ୍ୟ ଊଣା,ବଙ୍ଗାଳିଙ୍କଠାରୁ ଏଠା ଲୋକମାନେ ହୃଷ୍ଟପୁଷ୍ଟ ଓ ବଳବାନ୍,ଖାସମାହାଲ ଏବଂ ନାବାଳଗି ମାହାଲମାନଙ୍କରେ ଓଡ଼ିଆଙ୍କର ଖଜଣା ଊଣା ଅଥବା ଛାଡ଼ର ଆପତ୍ତି ଏବଂ ଦାଦନ ପାଇବାର ଦରଖାସ୍ତ ବଙ୍ଗଳାଅପେକ୍ଷା ଅଧିକ ଆଗ୍ରହସହିତ ଶୁଣାଯାଏ।ଏଥିଉତ୍ତାରୁ ଏମାନଙ୍କ କ୍ଷେତ୍ରକୁ ଜଳ ଦେବା ସକାଶେ ଅତ୍ୟନ୍ତ ବ୍ୟୟଶୀଳ ନାଳମାନ ଖୋଳା ହୋଇଅଛି କି ତହିଁର ଖରଚ ସେମାନେ ଏପର୍ଯ୍ୟନ୍ତ ଦେଇ ନାହାନ୍ତି ଏବଂ ଏମାନଙ୍କ ରକ୍ଷାନିମନ୍ତେ ଯେଉଁ ବନ୍ଧମାନ ପ୍ରସ୍ତୁତ ହୋଇଅଛି ସେ ସମସ୍ତର ବ୍ୟୟ ସରକାର ଉପରେ ପଡୁଅଛି ଏବଂ ଅନ୍ୟ ସ୍ଥାନପରି ସ୍ଥାନୀୟ କରଦ୍ୱାରା ନିର୍ବାହ ହେଉ ନାହିଁ । ଓଡ଼ିଶାବାସିଙ୍କର ଗୋଟିଏ ସ୍ଥିର ଧାରଣା ଏହି କି ସେମାନଙ୍କର ଦେଶ ଅତ୍ୟନ୍ତ ଦରିଦ୍ର ଏବଂ ତହିଁ ପାଇଁ ସେମାନେ ପରିବାରସ୍ଥ ପୀଡ଼ିତ ପିଲାପରି ଅଧିକ ଆଦର ପାଇବାର ଯୋଗ୍ୟ । ମାତ୍ର ବନ୍ଦୋବସ୍ତକର୍ମଚାରିଙ୍କଠାରୁ ଆମ୍ଭେ ଯେ ସବୁ କଥା ଅବଗତ ହୋଇଅଛୁଁ ତଦ୍ୱାରା ସେମାନଙ୍କର ଦାବୀ ସମର୍ଥିତ ହେଉ ନାହିଁ । ମାତ୍ର ପୁନଃ ପୁନଃ କହିବାବଳରେ ଲୋକଙ୍କ ମତ ସରକାରୀ କର୍ମଚାରିଙ୍କ ମତ ହୋଇ ଯାଇଅଛି ଏବଂ ଫସଲସମ୍ବନ୍ଧୀୟ ତାଲିକାମାନ ତହିଁର ପୋଷକତା କରୁଅଛି । ବୁଣାସମୟରେ ଜଳର ଅଭାବ ଥିଲା ଯୁଲାଇମାସରେ ବନ୍ୟା ହେତୁ କଟକଜିଲ୍ଲାରେ କିଛି କ୍ଷତି ହୋଇଥିଲା ଓ ଝିଣ୍ଟିକା ପଡ଼ି କିଛି ଫସଲ ନଷ୍ଟ ହୋଇଥିଲା। କେବଳ ବାଲେଶ୍ୱରଜିଲ୍ଲାର କେତେକ ମୌଜାରେ ସମ୍ପୂର୍ଣ୍ଣରୂପେ ଫସଲ ନଷ୍ଟ ହୋଇଥିଲା ମାତ୍ର ଶ୍ରୀଯୁକ୍ତ କର୍ଣ୍ଣେସ ସାହେବ ସାହାଯ୍ୟ କାର୍ଯ୍ୟରେ ଅନେକ ଟଙ୍କା ବ୍ୟୟକରିବା ବିନା ତହିଁର ଉଚିତ ପ୍ରତୀକାର କରିବାକୁ ସମର୍ଥ ହୋଇଥିଲେ । ଏବିଷୟ ଅତ୍ୟନ୍ତ ସାମାନ୍ୟ ଥିବାରୁ କିପ୍ରକାରେ ଅନ୍ନକଷ୍ଟ ନିବାରଣ ହେଲା ଜିଲ୍ଲାହାକିମ ତହିଁର ସବିଶେଷ ବିବରଣ ଲେଖି ନାହାନ୍ତି। ତଥାଚ ପୁରୀ ଓ କଟକଅପେକ୍ଷା ବାଲେଶ୍ୱରର ଦୁଇ ପ୍ରଧାନଫସଲ ଉତ୍ତମ ହୋଇଥିଲା । ଆମ୍ଭ ବିବେଚନାରେ ହାରାହାରି ଫସଲର ପ୍ରକୃତଭାବ ଓଡ଼ିଶାରେ ବିଶେଷତ ପୁରୀ ଓ କଟକର କଚେରୀମାନଙ୍କରେ କେହି ବୁଝିପାରି ନାହାନ୍ତି ।"

ଆହୁରି ଏକସ୍ଥାନରେ ସାହେବ ମହୋଦୟ ଲେଖିଅଛନ୍ତି କି ଓଡ଼ିଆମାନେ ବଙ୍ଗାଳିଙ୍କଠାରୁ ଭଲ ଅଛନ୍ତି ପୂଜା ଓ କ୍ରିୟାକଳାପରେ ଅଧିକ ଟଙ୍କା ବ୍ୟୟକରନ୍ତି ଏବଂ ଓଡ଼ିଶା କ୍ରମାଗତ ସୌଭାଗ୍ୟପଥରେ ଅଗ୍ରସର ହେଉଅଛି।

ବଙ୍ଗଳାରେ ଏହିମର୍ମରେ ଗୋଟିଏ ଗୀତ ଅଛି କି ଦରିଦ୍ର ଦୁର୍ନାମଠାରୁ ଧନର ଅପବାଦ ଭଲ। ଏହି ନ୍ୟାୟରେ ଆଜି କୁକ୍ ସାହେବଙ୍କ ମୁଖରୁ ଓଡ଼ିଆମାନେ ବଙ୍ଗାଳିଙ୍କ ଅପେକ୍ଷା ସୁଖରେ ଥିବାର କଥା ଶୁଣି ଆମ୍ଭେମାନେ ଆନନ୍ଦିତ ହେଲୁଁ। ମାତ୍ର କଥାଟା ଯଥାର୍ଥ କି ? ଯେଉଁ ହାକିମମାନେ ଦୀର୍ଘକାଳ ଓଡ଼ିଶାରେ ରହି ଲୋକଙ୍କ ଅବସ୍ଥା ସୂକ୍ଷ୍ମରୂପେ ଅନୁସନ୍ଧାନପୂର୍ବକ ପ୍ରକୃତକଥା ଜାଣିବାକୁ ସକ୍ଷମ ହୋଇ ଅଛନ୍ତି ସେମାନଙ୍କର ବହୁଦର୍ଶିତା ଅଳ୍ପଦିନ ଏଠାକୁ ଆସିଥିବା କୁକ୍‌ସାହେବ ଏବଂ ତାହାଙ୍କ ସମ୍ବାଦଦାତା ବନ୍ଦୋବସ୍ତ କର୍ମଚାରିଙ୍କଠାରେ ପରାସ୍ତ ହେଲା ଆଶ୍ଚର୍ଯ୍ୟର ବିଷୟ ଅଟଇ। ସାହେବ ମହୋଦୟଙ୍କ ଲେଖାଭଙ୍ଗିରୁ ଜଣାଯାଏ ଯେ ଓଡ଼ିଶାରେ ଗତବର୍ଷ ନିୟମିତ ପରିମାଣ ଫସଲ ହୋଇଥିଲା କୌଣସିଠାରେ ରାଜସ୍ୱ ଛାଡ଼ ଦେବା ଉଚିତ ହୋଇ ନାହିଁ ଏବଂ ଜଳକର ବୃଦ୍ଧି କରିବା.ବନ୍ଧ ନିମନ୍ତେ ଟିକସ ବସାଇବା ଏବଂ ନୂତନ ବନ୍ଦୋବସ୍ତରେ ଟାଣ ଜମା ଧାର୍ଯ୍ୟ କରିବା ଉଚିତ। ତାହାଙ୍କ ମନ୍ତବ୍ୟ ପାଠ କରି ବାସ୍ତବରେ ଆମ୍ଭେମାନେ ଭୀତ ହୋଇଅଛୁ ।

*ଭା୨୮ଖ, ସଂ୪୪ଖ୍ୟା, ୧୮/୧୧/୧୮୯୩*

## ୧୮୯୪

## ଶିକ୍ଷାର ଫଳ କି ସ୍ୱାର୍ଥପରତା ।

ଏ ନଗରରେ ଥିବା ରାବନଶା ବାଳିକା ବିଦ୍ୟାଳୟ ପ୍ରସଙ୍ଗ ପାଠକମାନେ ଅବଗତ ଅଛନ୍ତି । ଏଥିର କାର୍ଯ୍ୟ ନିର୍ବାହ ଓ ତତ୍ତ୍ୱାବଧାରଣ ନିମନ୍ତେ ଗୋଟିଏ କମିଟୀ ଅଛି ତହିଁର ସଭ୍ୟମାନେ ଶିକ୍ଷିତ ଓ ପ୍ରଧାନ ବ୍ୟକ୍ତି ଅଟନ୍ତି ଓ ଅନେକଙ୍କର ନିବାସ ବିଦ୍ୟାଳୟ ନିକଟରେ କିମ୍ବା ଅଧିକ ଦୂରରେ ନୁହେଁ । ସଭ୍ୟମାନଙ୍କ ସଂଖ୍ୟା ଜ୧୮ଣ କିନ୍ତୁ କୌଣସି ଅଧିବେଶନରେ ପାଞ୍ଚଜଣ ଉପସ୍ଥିତ ନ ହେଲେ କୋରମ ହେବ ନାହିଁ କିମ୍ବା କିଛି କାର୍ଯ୍ୟ ହେବ ନାହିଁ । କମିଟୀର ଜଣେ ସେକ୍ରେଟରୀ ଅଛନ୍ତି ସେ ସମସ୍ତ କାର୍ଯ୍ୟ ନିର୍ବାହ କରନ୍ତି କେବଳ ଗୁରୁତର କାର୍ଯ୍ୟ ସକାଶେ କମିଟୀର ଅଧିବେଶନ ଆବଶ୍ୟକ ହୁଅଇ । କେତେକ ଗୁରୁତର କାର୍ଯ୍ୟ ସକାଶେ କମିଟୀର ଅଧିବେଶନ ଆବଶ୍ୟକ ହେବାରୁ ଗତ ଡିସମ୍ବରମାସ ତା ୩୧ ରିଖ ରବିବାରକୁ ସେକ୍ରେଟରୀ ମହାଶୟ ସଭା ଆହୁତ କଲେ ମାତ୍ର କେବଳ ଜ ୩ ଣ ସଭ୍ୟ ଉପସ୍ଥିତ ହେବାରୁ ସଭା ହୋଇ ନ ପାରିଲା ତହୁଁ ଚଳିତମାସ ତା ୧୪ ରିଖ ରବିବାରକୁ ପୁନର୍ବାର ସଭା ଆହୁତ ହେଲା ଏଥରବି ସେହିଫଳ, ସେକ୍ରେଟରୀ ସହିତ ଜ ୪ଣ ସଭ୍ୟରୁ ଅଧିକ ନ ଆସିଲେ ତହୁଁ ସେକ୍ରେଟରୀ ମହାଶୟ ମହା ବ୍ୟସ୍ତ ହୋଇ ସ୍କୁଲର ନିକଟବର୍ତ୍ତୀ ସଭ୍ୟମାନଙ୍କୁ ବିନୟ ପୂର୍ବକ ଡାକି ପଠାଇଲେ ମାତ୍ର ସମସ୍ତେ "ମୋହର କାର୍ଯ୍ୟ ଅଛି" ବୋଲି କହି ନ ଆସିଲେ । ତହୁଁ ସେକ୍ରେଟରୀ ଓ ଦୂରରୁ ଆସିଥିବା ସଭ୍ୟ ବଡ଼ ବ୍ୟସ୍ତ ଓ ବିରକ୍ତ ହୋଇ ଫେରିଗଲେ ।

ଏଥିପୂର୍ବେ ଅତି ଗୁରୁତର ଓ ପ୍ରଧାନ ବିଷୟରେ ଉତ୍କଳ ସଭାର ଏକ ଅଧିବେଶନ ଆହୁତ ହୋଇଥିଲା ମାତ୍ର ୪/୫ ଜଣ ବ୍ୟତୀତ ଅନ୍ୟ ସଭ୍ୟମାନେ ନ ଆସିବାରୁ ସଭା ହୋଇ ନ ପାରିବା ପ୍ରସଙ୍ଗ ପାଠକମାନଙ୍କୁ ଜଣାଇଅଛି । ଏହି ଦୋଷରେ ଏ ସଭା ଓ ଏଠାର ଅନ୍ୟାନ୍ୟ ହିତକର ସଭାମାନ ଭାଙ୍ଗିଲା ପ୍ରାୟ ହୋଇଅଛି । ସୁଶିକ୍ଷିତ ବ୍ୟକ୍ତିମାନେ ଯଦି ଏପରି ଅଳସୁଆ ଓ ସ୍ୱାର୍ଥପର ହେବେ ଯେ ସଭାକୁ ଥରେ ଅଧେ ଆସିବା କଷ୍ଟକର ଓ "ମୋହର କାର୍ଯ୍ୟ ଅଛି" ଏହି ଦୋହି ଦେବେ ତେବେ ଆଉ ଏ ଦେଶର ଅବା ସମାଜର କି ମଙ୍ଗଳ ଓ ଉନ୍ନତି ହେବ ? ଶିକ୍ଷା କଣ କେବଳ ଆପଣା ପିଲା ପୋଷିବାପାଇଁ ?-ଏ ପେଟର ଅନେକ ଉପାୟ ଅଛି; ମୂର୍ଖମାନେ ସୁଦ୍ଧା ଏଥିରେ ଅପାରଗ ନୁହନ୍ତି ବରଂ କେତେକ ଶିକ୍ଷିତଲୋକ ଅପେକ୍ଷା ଅଧିକ ଉପାୟ କରନ୍ତି । ତେବେ ଆଉ ଶିକ୍ଷାର ଉତ୍ସର୍ଗ କ'ଣ ?- କେବଳ ନିଜକାର୍ଯ୍ୟ ନୁହେ ନିଜକାର୍ଯ୍ୟ ପରକାର୍ଯ୍ୟ ଦେଶର କାର୍ଯ୍ୟ ଏହିପରି ସକଳ କାର୍ଯ୍ୟ ସାଧାନୁସାରେ ସମାଧାନ୍ କରିବା ଶିକ୍ଷାର ଉଦ୍ଦେଶ୍ୟ । ନଚେତ୍ ଶିକ୍ଷା ବିଫଳ । ସ୍ୱାର୍ଥପର ଶିକ୍ଷିତ ଲୋକ ଅପେକ୍ଷା ଅସ୍ୱାର୍ଥପର ମୂର୍ଖଲୋକ ଦେଶପ୍ରତି ସହସ୍ରଗୁଣେ ଶ୍ରେୟସ୍କର ।

ସଭାର କାର୍ଯ୍ୟ କି "ମୋହର କାର୍ଯ୍ୟ" ମଧ୍ୟରେ ଆସୁ ନାହିଁ ? କୌଣସି ସମାଜର କି ଦେଶର କି ସାଧାରଣ ଉନ୍ନତି କି ମଙ୍ଗଳ ସକାଶେ ସଭାମାନ ସ୍ଥାପିତ ହୋଇଥାଏ । ସଭାର ସଭ୍ୟମାନେ କି ସମାଜରୁ କିମ୍ବା ଦେଶରୁ ଅନ୍ତର ? ସମାଜର କିମ୍ବା ଦେଶର ଉନ୍ନତି ଓ ମଙ୍ଗଳ ହେଲେ କି ସଭ୍ୟମାନଙ୍କର ପ୍ରତ୍ୟକ୍ଷ କିମ୍ବା ପ୍ରକାରାନ୍ତର ମଙ୍ଗଳ ନାହିଁ ? "ମୋହର କାର୍ଯ୍ୟରେ"ଯେପରି ମୋହର ମଙ୍ଗଳ ସେହିପରି ସାଧାରଣ କାର୍ଯ୍ୟରେ ବି ମୋହର ମଙ୍ଗଳ ଅଛି ପ୍ରତ୍ୟକ୍ଷ ନ ହେଲେ ପ୍ରକାରାନ୍ତରେ, ନଗଦ ନ ହେଲେ କାଳିବାସିରେ ହେଲେ ଅବଶ୍ୟ "ମୋହର ମଙ୍ଗଳ"- ଏବଂ ତହିଁ ସଙ୍ଗେ ସଂଙ୍ଗେ ଅନ୍ୟାନ୍ୟର ମଙ୍ଗଳ ସର୍ବସାଧାରଣର ମଙ୍ଗଳ ସମସ୍ତ ଅଛି ଏତକ ଦୂରଦର୍ଶିତା ଓ ବିବେଚନା ଯଦି ଶିକ୍ଷାଦ୍ୱାରା ନ ହେଲା ତେବେ ଆଉ ଶିକ୍ଷାର କି ଫଳ ? ଇଙ୍ଗରେଜମାନଙ୍କର ଏତେ ଉନ୍ନତି ଓ ମଙ୍ଗଳ କିପ୍ରକାରେ ହୋଇଅଛି ? "ମୋହର କାର୍ଯ୍ୟ ଅଛି" ଏହି ଆଳସ୍ୟ ସ୍ୱାର୍ଥପର ବାକ୍ୟର ପରିତ୍ୟାଗ

ତହିଁର ଗୋଟିଏ ପ୍ରଧାନ କାରଣ ଅଟଇ ଏଥିର ବାହୁଲ୍ୟ ବ୍ୟାଖ୍ୟା ଅନାବଶ୍ୟକ ଯେହେତୁ ତାହା ଦେଦୀପ୍ୟମାନ । ଅନେକ ଶିକ୍ଷିତଲୋକେ ସାହେବ ହେବାକୁ ଚାହାନ୍ତି ତେବେ ସାହେବଙ୍କର ଏ ଗୁଣଟି କାହିଁକି ଅନୁକରଣ କରୁ ନାହାନ୍ତି ? ଏହା ଅନୁକରଣ କଲେ ସେମାନଙ୍କ ପରି ଉନ୍ନତି ଲାଭ କରିବା ସାଧ ହେବ ନାହିଁ । ସାହେବଙ୍କର ଗୁଣମାନ ଅନୁକରଣ ନ କଲେ କିପରି ପ୍ରକୃତ ସାହେବ ହେବେ । ଏପରି ଅନୁକରଣ ହାସ୍ୟାସ୍ପଦର ବିଷୟ ନ ହୋଇ ବରଂ ପ୍ରଶଂସାର ବିଷୟ ହେବ ଏବଂ ତଦ୍ୱାରା ସମାଜ ଓ ଦେଶର ଉନ୍ନତି ଓ ମଙ୍ଗଳ ସାଧନ ହେବ ସନ୍ଦେହ ନାହିଁ ।

*ଭା୨୯ଗ,ସଂ୪ଖ୍ୟା, ୨୭।୧।୧୮୯୪*

## ପ୍ରେରିତପତ୍ର ।

## [ଓଡ଼ିଶାର ମେଡିକାଲ ସ୍କୁଲ]

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସମୀପେଷୁ ।

ମହାଶୟ,

ଅଧୀନର ଉତ୍ସାହପୂର୍ଣ୍ଣ କେତେକ ପଁକ୍ତିକୁ ଆପଣଙ୍କର ଜଗଦ୍‌ବିଖ୍ୟାତ ପତ୍ରିକାରେ ସ୍ଥାନ ଦାନ କରି ବାଧିତ କରିବା ହେବେ ।

ଓଡ଼ିଶାର ମେଡ଼ିକଲ୍ ସ୍କୁଲ ଉଠିଯିବାର ଶୁଣି ଅତ୍ୟନ୍ତ ଦୁଃଖିତ ହେଲି ମାତ୍ର ଉଠିଯିବାର କିଛି କାରଣ ଜଣାଯାଉ ନାହିଁ । ସମ୍ଭବତଃ ଉତ୍କଳ ସନ୍ତାନଙ୍କର ନିରୁତ୍ସାହ ଓ ବଙ୍ଗୀୟ ସନ୍ତାନଙ୍କର ଆଦରର ଆଧିକ୍ୟ ହେତୁ ଏପରି ଘଟୁ ଅଛି । କାରଣ ଉକ୍ତ ସ୍କୁଲ ବିଶେଷତଃ ଉତ୍କଳ ସନ୍ତାନଙ୍କର ଉନ୍ନତି ସକାଶେ ମହାମାନ୍ୟବର ଡାକ୍ତର ଷ୍ଟୁଆର୍ଟ ସାହେବଙ୍କ ଯତ୍ନରେ ସ୍ଥାପିତ ହୋଇଥିଲା । ଏପରି ଉତ୍ସାହିଙ୍କ ନାମ ଉତ୍କଳ ଭୂମିରୁ ତିରୋହିତ ହେଉଅଛି ବଡ଼ ପରିତାପର ବିଷୟ ଅଟେ ।

ହେ ଉତ୍କଳବାସି ବିଦ୍ୟୋତ୍ସାହି ଭ୍ରାତୃଗଣ ! ଆପଣାର ଶରୀରତତ୍ତ୍ୱ ବିଷୟକ ବିଦ୍ୟାଧ୍ୟୟନ କରିବାକୁ ତିଳେମାତ୍ର ମନରେ ଉତ୍ସାହ ହେଉ ନାହିଁ କି ଯେ ଛାତ୍ରଙ୍କର ଅଭାବରେ ଏହି ମହତୀ କୀର୍ତ୍ତି ଉତ୍କଳରୁ ତିରୋହିତ ହେଉଅଛି ।

ହେ ଉତ୍କଳବାସୀ ଛାତ୍ରଗଣ ! ଶରୀରତତ୍ତ୍ୱ ବିଷୟକ ଜ୍ଞାନ ଲାଭ କଲେ ଧନ, ମାନ, ଯଶ ଲବ୍ଧ ହେବ, ମଧ ତୁମ୍ଭ ଅନୁସରଣରେ ରାଜା, ପ୍ରଜା, ଧନୀ, ଦରିଦ୍ର ପର୍ଯ୍ୟନ୍ତ ଆଶ୍ରିତ ହେବେ । ତୁମ୍ଭେମାନେ ଏପରି ମହତୀ ବିଦ୍ୟାରେ ନିରୁତ୍ସାହୀ ଦେଖି ଆନ୍ତରିକ ଦୁଃଖ ଉପସ୍ଥିତ ହେଉଅଛି । ଆଶାକରେଁ ଏହି ମହତ୍ ବ୍ରତରେ ବ୍ରତୀ ହେଲେ ଉତ୍କଳର ଗୌରବ ଦିନକୁ ଦିନ ବୃଦ୍ଧି ହେବ, ବହୁନାଳଂ । ଇତି

୧୯-୧-୯୪ ବଶମ୍ବଦ

ତାଳଚେର ଶ୍ରୀ କୃପାସିନ୍ଧୁ ଭୂୟାଁ

*ଭା୨୯ଗ,ସଂ୪ଖ୍ୟା, ୨୭।୧।୧୮୯୪*

## ପ୍ରେରିତପତ୍ର ।

## ଉତ୍କଳର କୀର୍ତ୍ତି ଓ କବି ।

ମାନ୍ୟବର ଶ୍ରୀଳ ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ ।

" Our sweetest songs are those that tells us saddest thoughts," Shellays.

ସେହିଗୀତ ଅତି ମଧୁର ଯହିଁରେ ଅତୀବ ଦୁଃଖଜନକ ଚିନ୍ତା ଉଦ୍ଭାଷିତ ହୁଏ ।

ଇତିହାସବେତ୍ତା ପଣ୍ଡିତବର ମହାତ୍ମା ରମେଶଚନ୍ଦ୍ର ଦତ୍ତ ତାଙ୍କ ପ୍ରକାଶିତ ବଙ୍ଗଦେଶର ଇତିହାସରେ

ଲେଖିଅଛନ୍ତି ;-ପୂର୍ବକାଳରେ ଓଡ଼ିଶ୍ୟା ଭାରତବର୍ଷ ମଧ୍ୟରେ ଅତୀବ ଉନ୍ନତିଶାଳୀ ଦେଶ ଥିଲା । ଓଡ଼ିଆଜାତିର ପତନ ପରି ପୃଥିବୀପୃଷ୍ଠରେ କୌଣସି ଉନ୍ନତିଶୀଳ ଜାତିର ଏତେ ଅଳ୍ପ କାଳମଧ୍ୟରେ ଏପରି ଅଧଃପତନ ହୋଇ ନାହିଁ । ସାଧୁ ପଣ୍ଡିତବର ! ତୁମ୍ଭର ହୃଦୟ ଅତି ପ୍ରଶସ୍ତ- ଅତି ମହତ୍ -ପରଦୁଃଖରେ ଅତି କାତର । ତୁମ୍ଭର ଏହି ବାକ୍ୟରେ ଛାନ୍ଦ ନାହିଁ, ଅନୁପ୍ରାସ ନାହିଁ, ଯମକ ନାହିଁ- କିନ୍ତୁ ଏହା କାବ୍ୟ ହୃଦୟଭେଦି କାବ୍ୟ । ତୁମ୍ଭେ ଭୁବନେଶ୍ୱର ମନ୍ଦିରର ଚୂଡ଼ା ଦେଖିଅଛ, ଖଣ୍ଡଗିରିର କାଣ୍ଡ ଦେଖିଅଛ, ତେଣୁ ଓଡ଼ିଶ୍ୟାର ଚୂଡ଼ାନ୍ତ ଉନ୍ନତିର ପରିମାପ କରିଅଛ । ଆଜି କଲିକତା ମହାନଗରୀରେ କଁସାଇଟୋଲାରେ ସେହି ଜାତୀୟ ଲୋକଙ୍କର ଅତିହୀନ ବୁଦ୍ଧି , ଅତିହୀନ ବ୍ୟବସ୍ଥା, ଅତିହୀନ ଅବସ୍ଥା ଦେଖି ପରଦୁଃଖକାତର ତୁମ୍ଭ ସାଧୁହୃଦୟରୁ ଏହିପଦେ ହୃଦୟଭେଦୀ ଦୁଃଖର ଗାନ- କବିତା ବାହାରିପଡ଼ିଅଛି । ଏହି ପଦକରେ ଉତ୍କଳ ତୁମ୍ଭଠାରେ ଚିରଋଣୀ । ଉତ୍କଳପକ୍ଷରେ ତୁମ୍ଭେ ମହାକବି । ତୁମ୍ଭଙ୍କୁ ଭକ୍ତିପୂର୍ଣ୍ଣ ହୃଦୟରେ ନମସ୍କାର । ଭ୍ରାତଃ ! ଉତ୍କଳକବି, ଲେଖକ । ତୁମ୍ଭମାନଙ୍କଠାରେ କରପୁଟରେ ନିବେଦନ କରୁଅଛି- ଆଜି "ଶେଯ ଲେଉଟାଇ କବରୀ ଫିଟାଇ କର ଭରି କୁଚ ସନ୍ଧିରେ, ଖୋଜେ ଅଧିରେ" ଏହି ଉଦ୍‌ଭ୍ରାନ୍ତ ପ୍ରେମର କବିତା ଆବୃତ୍ତି କରିବା ଏବଂ ଏହିଭଳି କବିତା ରଚନା କରି ପ୍ରକାଶ କରିବାଦ୍ୱାରା ଏହି ଉଦ୍‌ଭ୍ରାନ୍ତ- ପ୍ରଣୀତ ଉତ୍କଳର ଉନ୍ନତିର ଆଶା ବିଡ଼ମ୍ବନା ! ବାନ୍ଧ ଭଞ୍ଜୀୟ ପୋଥି, ଗାଅ-ଦୁଃଖର ଗୀତ-ଛାନ୍ଦ ମିଳୁ, ପଦ ମିଳୁ, ବା ନ ମିଳୁ- ଗାଅ-ଦୁଃଖର ଗୀତ- ଝରୁ ଆଖିରୁ ଜଳ-କରୁଣ ରସରେ ହୃଦୟ ବିଧୌତ ହେଉ- ଭ୍ରାନ୍ତି ବିଦୂରିତ ହେଉ- ପୂର୍ବସ୍ମୃତି ଜାଗୁ ଉତ୍କଳର ଶୁଭଦିନ ଆସିବ ।

ମେଦିନୀପୁର — ବିନୀତ

୧୫।୪।୯୪ — ଶ୍ରୀ ଭୋଳାନାଥସାମନ୍ତରାୟ

*ଭା।୨ ୯ଗ,ସଂ୧୮ଖ୍ୟା, ୫।୫।୧୮୯୪*

## [ଓଡ଼ିଆ ଭାଷା ଉଠାଇବାର ଚକ୍ରାନ୍ତ]

ସମ୍ବଲପୁରର ପୁଲିସକାଗଜମାନ ଏଣିକି ଓଡ଼ିଆଭାଷାରେ ଲେଖା ନ ଯାଇ ହିନ୍ଦିଭାଷାରେ ଲେଖାଯିବାର ପ୍ରସ୍ତାବ ହେବାରୁ ସମ୍ବଲପୁରହିତୈଷିଣୀ ଯଥାର୍ଥ କହିଅଛନ୍ତି କି ଏ ପ୍ରସ୍ତାବ ସମ୍ବଲପୁରରୁ ଓଡ଼ିୟାଭାଷା ଉଠାଇଦେବାର ଚେଷ୍ଟାଭିନ୍ନ ଅନ୍ୟ କିଛି ନୁହେ । ବାସ୍ତବରେ ପୁଲିସକାଗଜମାନ ଦେଶୀୟଭାଷାରେ ଲେଖାହେବାର ନିୟମ ସର୍ବତ୍ରରେ ପ୍ରଚଳିତ ଏବଂ ତାହା ହେବା ଉଚିତ । ସମ୍ବଲପୁର ଭାଷା ଯେସ୍ଥଳେ ଓଡ଼ିଆ ଅଟେ ସେସ୍ଥଳେ ହିନ୍ଦିଭାଷାରେ ପୁଲିସ ତଦାରଖି କାଗଜମାନ ଲେଖାଯିବା ଅନ୍ୟାୟ ଏବଂ ତହିଁରେ ନାନାଭ୍ରମ ଓ ଅସୁବିଧା ଘଟିବାର ସନ୍ଦେହ ନାହିଁ । ସମ୍ବଲପୁରବାସିଙ୍କର ଏହି ସମୟର ଏ ପ୍ରସ୍ତାବର ପ୍ରତିବାଦ କରିବା ଉଚିତ ।

*ଭା।୨ ୯ଗ,ସଂ୨୫ଖ୍ୟା, ୨୩।୬।୧୮୯୪*

## କବି ଉପେନ୍ଦ୍ରଭଞ୍ଜ ଓ ରାଧାନାଥ ରାୟ ।

କଲିକତାର ବଙ୍ଗବାସୀ ନାମକ ସମ୍ବାଦପତ୍ରରେ ସ୍ୱର୍ଗୀୟ ଭୂଦେବ ମୁଖୁର୍ଯ୍ୟାଙ୍କ ସଂକ୍ଷିପ୍ତ ଜୀବନୀ କେତେ ସପ୍ତାହ ହେଲା ପ୍ରକାଶିତ ହେଉ ଅଛି । ସେ ସମ୍ବନ୍ଧରେ ଗତମାସ ତା ୨୩ ରିଖର ପ୍ରବନ୍ଧରେ ବାବୁ ରାଧାନାଥ ରାୟଙ୍କ ସେହି ମାସ ତା ୧୨ ରିଖର ଖଣ୍ଡିଏ ପତ୍ର ସନ୍ନିବେଶିତ ହୋଇ ଅଛି । ଉକ୍ତ ପତ୍ରରେ ରାଧାନାଥବାବୁ ଅନ୍ୟାନ୍ୟ ବିଷୟ ମଧ୍ୟରେ ଲେଖି ଅଛନ୍ତି । ଉତ୍କଳ କବି ଶ୍ରେଷ୍ଠ ଉପେନ୍ଦ୍ରଭଞ୍ଜଙ୍କ ପ୍ରସଙ୍ଗରେ ତାହାଙ୍କ ସହିତ ଭୂଦେବବାବୁଙ୍କର ନିମ୍ନଲିଖିତ କଥାବାର୍ତ୍ତା ହୋଇ ଥିଲା ।

"ସଂସ୍କୃତ ସାହିତ୍ୟର ପ୍ରସଙ୍ଗ ହେଉ ହେଉ ଅନୁସଙ୍ଗତ ଉତ୍କଳ ସାହିତ୍ୟର କଥା ପଡ଼ିଗଲା । ଉତ୍କଳର ସର୍ବପ୍ରଧାନ କବି ଉପେନ୍ଦ୍ର ଭଞ୍ଜଙ୍କ ସର୍ବପ୍ରଧାନ କାବ୍ୟ ବୈଦେହୀଶବିଳାସରୁ ମୁଁ କେତେଗୁଡ଼ିଏ ଉତ୍କୃଷ୍ଟ କବିତାର ଆବୃତି କରି ତହିଁର ଅର୍ଥ ବୁଝାଇ ଦେଲି । ସେ ଭାବର ସୌନ୍ଦର୍ଯ୍ୟରେ ଚମତ୍କୃତ ଏବଂ ମୋହିତ ହୋଇ କହିଲେ 'ଏହି

ଓଡ଼ିଶାକୁ ବଙ୍ଗାଳିମାନେ ବେହେରାର ଦେଶ କହନ୍ତି !' ଏହା କହି ସେ ଭଞ୍ଜକବିଙ୍କର ଜୀବନୀ ଏବଂ ରଚନା ସମ୍ବନ୍ଧରେ ମୋତେ ଅନେକ ପ୍ରଶ୍ନ କଲେ । ମୋ ଠାରୁ ଭଞ୍ଜକବିଙ୍କ କବିତା ସେ ସମୟ ସମୟରେ ଶୁଣୁଥିଲେ ଏବଂ ସେହି ରଚନାର ପକ୍ଷପାତୀ ସେ ଏତେଦୂର ହୋଇଥିଲେ ଯେ ଓଡ଼ିଶାରୁ ହୁଗୁଳିକି ଫେରିଯାଇ କୌଣସି ଲବ୍ଧପ୍ରତିଷ୍ଠ ବଙ୍ଗକବିଦ୍ୱାରା ମୋତେ ଲକ୍ଷ କରି ଗୋଟିଏ ଆଶୀର୍ବାଦସୂଚକ କବିତା ଲେଖାଇ ଏଡୁକେଶନ ଗେଜେଟରେ ତାହା ପ୍ରକାଶ କରାଇ ଥିଲେ ।"

ଉପର ଲିଖିତ କଥାବାର୍ତ୍ତା ଭଞ୍ଜୀୟ ଆନ୍ଦୋଳନର ବହୁ ବର୍ଷ ପୂର୍ବେ ଘଟିଥିଲା ଏବଂ ସେ ସମୟରେ ରାଧାନାଥ ବାବୁ ନିରପେକ୍ଷ ଭାବରେ ଆପଣା ବିଶ୍ୱାସ ଓ ବିବେଚନା ମତେ ଭଞ୍ଜଙ୍କ କାବ୍ୟ ସମ୍ବନ୍ଧରେ ସେପରି କହିଥିଲେ ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ତାହାଙ୍କର ସେହି ମତ ଯେ ସ୍ଥିର ରହି ଅଛି ତାହା ଗତ ମାର୍ଚ୍ଚମାସରେ ଓଡ଼ିଆ ନବସମ୍ବାଦ ଯୋଗେ ତାହାଙ୍କ ପ୍ରକାଶିତ ପତ୍ରରୁ ପ୍ରମାଣ ହେଉଅଛି । ଏହି ପତ୍ରରେ ସରଳ ଭାବରେ ଆପଣାମତ ପ୍ରକାଶ କରିଥିବାର ଆମ୍ଭେମାନେ କହି ଥିଲୁଁ ମାତ୍ର ସମ୍ବଲପୁର ହିତୈଷିଣୀ ମନକୁ ତାହା ଆସିଲା ନାହିଁ । ସହଯୋଗୀ ତହିଁର କେତେ ପ୍ରତିବାଦ ପ୍ରକାଶ କରି ଶେଷରେ ବିଶ୍ୱସ୍ତସୂତ୍ରେ ତହିଁର ଏହି ନିଗୂଢତତ୍ତ୍ୱ ଜାଣି ପାରିବାର ଲେଖି ଅଛନ୍ତି କି ରାଧାନାଥ ବାବୁଙ୍କ ବାଲେଶ୍ୱରସ୍ଥ ବସାଘର ପୋଡ଼ିଯିବାରୁ ସେ ଡର ଡର ହୋଇ ଉକ୍ତ ମନ୍ତବ୍ୟ ଓଡ଼ିଆ ନବସମ୍ବାଦରେ ପ୍ରକାଶ କରିଥିଲେ । ଅର୍ଥାତ୍ ଆହୁରି ଅନିଷ୍ଟ ଭୟରେ ଅଥବା ଘରପୋଡ଼ି କ୍ଷତି ହେତୁ ହତବୁଦ୍ଧ ହୋଇ ସେ ଉକ୍ତ ମନ୍ତବ୍ୟ ପ୍ରକାଶ କରି ଦେଲେ ନତୁବା ସେ ସରଳଭାବରେ ତାହା କରି ନାହାନ୍ତି । ଏଥକୁ ସମ୍ବାଦବାହିକା ଉଚିତ ପ୍ରଶ୍ନ କରି ଅଛନ୍ତି କି ରାଧାନାଥ ବାବୁଙ୍କ ଘର ମାରିଚ ମାସ ତା ୨୪ ରିଖରେ ପୋଡ଼ିଯିବା ଓ ତହିଁର ଦଶଦିନ ପୂର୍ବ ସେହିମାସ ତା ୧୪ ରିଖରେ ତାହାଙ୍କ ମତ ବାହାରିବା ପ୍ରତ୍ୟକ୍ଷେ ହିତୈଷିଣୀ କେମନ୍ତ ବିଶ୍ୱସ୍ତ ସୂତ୍ରରେ ତାହାଙ୍କ ଲିଖିତ ନିଗୂଢତତ୍ତ୍ୱ ଜାଣିପାରିଲେ ତାହା ପ୍ରକାଶ କରି ସନ୍ଦେହ ଦୂର କରିବେ ।

*ଭା୨୯ଗ,ସଂ୨୭ଖ୍ୟା, ୭।୭।୧୮୯୪*

## ପ୍ରାପ୍ତ ।

## ଉତ୍କଳ କବି କଳି ।

ନରତ୍ୱଂ ଦୁର୍ଲ୍ଲଭଂ ଲୋକେ ବିଦ୍ୟା ତତ୍ର ସୁଦୁର୍ଲ୍ଲଭା ।

କବିତ୍ୱଂ ଦୁର୍ଲ୍ଲଭଂ ତତ୍ର ଶକ୍ତି ସ୍ତତ୍ର ସୁଦୁର୍ଲ୍ଲଭା ।

ଏ ଧରାଧାମରେ ମନୁଷ୍ୟ ଜନ୍ମ ଦୁର୍ଲ୍ଲଭ, ବିଦ୍ୟା ସୁଦୁର୍ଲ୍ଲଭ, ବିଦ୍ୟା ଥାଇ କବିତ୍ୱ ଥିଲେ ଅତି ଦୁର୍ଲ୍ଲଭ ପୁଣି କବିତ୍ୱରେ ଶକ୍ତି ଚୂଡ଼ାନ୍ତ ଦୁର୍ଲ୍ଲଭ । ଏହି ଶ୍ଳୋକଟି ଉତ୍କଳ-କବି କଳି ମୀମାଂସା ପକ୍ଷରେ କି ଯଥେଷ୍ଟ ନୁହେ ?

ଭଞ୍ଜ କବିତା ଘେନି ସୁଦୀର୍ଘକାଳ ଉତ୍କଳରେ ଯେଉଁ କଳି ଚଳୁଅଛି ଏହାକୁ କଳି ନ ବୋଲି ଉତ୍କଳଭାଷା ହ୍ରଦର ମନ୍ଥନ ବୋଇଲେ ହୁଏ । ଏ ମନ୍ଥନରେ ହୁଏତ ସମସ୍ତଙ୍କର କିଛି କିଛି ଲାଭ ଅଛି । ଲାଭ କି ? କାହାର ଅମୃତ । କାହାର ବିଷ। ବିଷ ଓ ଅମୃତ ଦୁଇ ଆଦରର ପଦାର୍ଥ- ଅବଶ୍ୟ ପ୍ରୟୋଜନକୁ ଘେନି ବିଷ ରୋଗୀର ଔଷଧ । ଅମୃତ ଭୋଗୀର ଭୋଗ । ଫୁଲରୁ ମଧୁମକ୍ଷିକା ମଧୁ ଗ୍ରହଣ କରେ- ଊର୍ଣ୍ଣନାଭ ବିଷ ଗ୍ରହଣ କରେ- ଫୁଲରେ ଅମୃତ ଅଛି ଫୁଲରେ ବିଷ ଅଛି । ଊର୍ଣ୍ଣନାଭର ବିଷ ପ୍ରୟୋଜନ, ମଧୁମକ୍ଷିକାର ମଧୁ ପ୍ରୟୋଜନ । ମଧୁମକ୍ଷୀକା ଓ ଊର୍ଣ୍ଣନାଭ ସମଦର୍ଶୀ ଚକ୍ଷୁରେ ସମାନ ।

ଭଞ୍ଜୀୟ କାବ୍ୟ ମନ୍ଥନକାରିମାନେ ହୃଦୟବାନ୍ ହୋଇପାରନ୍ତି, ଜାତୀୟ ସାହିତ୍ୟାନୁରାଗୀ ହୋଇ ପାରନ୍ତି,ସେମାନଙ୍କର ଉଦ୍ଦେଶ୍ୟ ମହତ୍ ହୋଇପାରେ କିନ୍ତୁ ଯେ ଭାବରେ ଏ ଆନ୍ଦୋଳନ ଚଳୁଅଛି ତାହା କବିଗତ,କାବ୍ୟଗତ ଓ ଭାବଗତ ନ ହୋଇ ବ୍ୟକ୍ତିଗତ, ଜାତିଗତ ଓ ଦଳଗତ ହୋଇ ମୂଳରୁ ଅଶ୍ଳୀଳରୁଚି, ଅଶ୍ଳୀଳଭାବ ଏବଂ ଗ୍ରାମ୍ୟତା ଦୋଷରେ ଆପ୍ଳୁତ ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଅନେକଦିନର ଗୋଟାଏ ଘଟନାସ୍ମରଣ ହେଉଅଛି । ଦିନକରେ ଦୁଇଗୋଟି ହାଟୁଆ-ଗୃହସ୍ଥ-ରମଣୀ ପ୍ରକାଶ୍ୟ ରାଜପଥ ପାର୍ଶ୍ୱରେ କଳି ଆରମ୍ଭ କରିଥିଲେ । ଗଳାର,ଝଁକାର, ହୁଙ୍କାର, ଅଶ୍ରାବ୍ୟ, ବାକ୍ୟ ସ୍ରୋତ ଏବଂ ବୀଭତ୍ସ-ଅଙ୍ଗ-ଭଙ୍ଗିର ଅଭିନୟ ଦେଖି ଓ ଶୁଣି ଲୋକେ ଅବାକ୍ ହୋଇଥିଲେ । କେହି ନିବାରଣ କଲେ, ତାହାର ମହତ୍ୱ ସାରି ଦେଉଥିଲେ । ତିନିଦିନ ଦିନରାତି କଳି ଚଳିଥିଲା । ଜଣେ ବୃଦ୍ଧ ପଥିକ କହିବସିଲେ "ଆରେ, କିଆଁ ବାରଣ କର ଜଣେ ଥକିପଡ଼ିଲେ ଆପେ କଳି ବନ୍ଦ ହେବ" । ଭଞ୍ଜୀୟ କଳି ଏହିଭଳି ସ୍ଥଗିତ ହେବାର ଅନୁମାନ ହୁଏ ।

ଜଣେ ବିଜ୍ଞ ବଙ୍ଗାଳୀ ଉତ୍କଳର ପ୍ରାକୃତିକ ଶୋଭା ଦେଖି କହିଥିଲେ, ଏ ପ୍ରଦେଶ ସୌନ୍ଦର୍ଯ୍ୟର ଆକର । ବନ, ପର୍ବତ, ନଦୀ, ସମୁଦ୍ର, ହ୍ରଦ ଓ ପ୍ରାଚୀନ କୀର୍ତ୍ତିମାନ ଜୀବନ୍ତ ଓ ଉଜ୍ଜ୍ୱଳ ଭାବରେ ବିରାଜିତ । କିନ୍ତୁ ମନୁଷ୍ୟମାନେ ଅସଭ୍ୟ ଓ ହୀନଦଶା ପ୍ରାପ୍ତ । ଇଂରାଜକବି ଗୋଲଡ୍‌ସ୍ମିଥ୍ ପତିତ ଇତାଲିର ପ୍ରାକୃତିକ ଶିକ୍ଷିତଲୋକ ଦର୍ଶନ କରି ଅବଶେଷରେ କହିଥିଲେ । "Man is the only growth that dwindles here" । ଏଠାରେ ସବୁ ପଦାର୍ଥର ଉନ୍ନତି କେବଳ ମନୁଷ୍ୟ ହୀନଦଶା ପ୍ରାପ୍ତ ।

ଅଭାଗ୍ୟ ଓଡ଼ିଶ୍ୟାର ଶିକ୍ଷିତମାନଙ୍କ ହସ୍ତରେ ଉଡିଶ୍ୟାର ଅଭାଗ୍ୟ । ବୀରକୁଳ ଓ କବିକୁଳ ଲୀଳା ଭୂମିସ୍ୱରୂପ ଉତ୍କଳ ସାମାନ୍ୟ ଭଞ୍ଜ କବି ଘେନି ବାତୁଳ ! ଭାରତବର୍ଷରେ ପ୍ରତିପ୍ରଦେଶରେ ଜ୍ଞାନର ପ୍ରଦୀପ ଜଳି ଉଠିଅଛି, ଜାତୀୟତାର ଅଗ୍ନି ପ୍ରଜ୍ୱଳିତ ହୋଇଅଛି ଏକତାର ବୈଦ୍ୟୁତିକ କ୍ରିୟା ଆରମ୍ଭ ହୋଇଅଛି, ଉତ୍କଳ ଇନ୍ଦ୍ରଧନୁ ଓ ବିଜୁଳି ଘେନି ବାଳଲୀଳା କରୁଅଛନ୍ତି । ଏ ହତଭାଗ୍ୟ ଦେଶର କି ଭାବି ଉନ୍ନତିର ଆଶା ନାହିଁ ?

ଶ୍ରୀ ଭୋଳାନାଥ ସାମନ୍ତରାୟ

*ଭା୨୯ଗ,ସଂ୩୪ଖ୍ୟା, ୨୫।୮।୧୮୯୪*

## ବିଜ୍ଞାପନ ।

ନିମ୍ନଲିଖିତ ପୁସ୍ତକମାନ କଟକ ପ୍ରିଣ୍ଟିଂକମ୍ପାନିଙ୍କ ପୁସ୍ତକାଳୟରେ ବିକ୍ରୟ ହେଉଅଛି ।

| | |
|---|---|
| ନାଡ଼ିନେତ୍ର, ମୂତ୍ର, ଆଦିଲକ୍ଷଣ | ଟ୦ ⁄ |
| ପର୍ଯ୍ୟାୟ ମୁକ୍ତାବଳୀ | ଟ୦ ।⁄ |
| ହଂସଦୂତ ଶ୍ଳୋକ ଅର୍ଥସହିତ | ଟ୦ ⁄⁄ |
| ମାଲ୍ୟବନ୍ତ ଚଉତୀଶା | ଟ୦ ‹୬ |
| ରକ୍ମିଣୀ ହରଣ | ଟ୦ ⁄⁄ |
| ନନ୍ଦିକାଳରଦ୍ର(ଜ୍ୟୋତିଷଶାସ୍ତ୍ର) | ଟ୦ ⁄ |
| ଶ୍ରୀରାମଚନ୍ଦ୍ରଙ୍କ ବନଗମନ(ସୁଲଳିତ ରାଗରାଗିଣୀଯୁକ୍ତ ଛାନ୍ଦ) | ଟ୦ ⁄⁄⁄ |
| ପତିତପାବନାଷ୍ଟକ ଅର୍ଥସହିତ | ଟ୦ ‹୨ |

*ଭା୨୯ଗ,ସଂ୩୪ଖ୍ୟା, ୨୫।୮।୧୮୯୪*

## ଅଭ୍ୟର୍ଥନାସଭା ।

ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର ଜ୍ୟୋତିଷ ଶାସ୍ତ୍ରରେ ଅସାଧାରଣ ପାଣ୍ଡିତ୍ୟ ଦେଖାଇ ଗବର୍ଣ୍ଣମେଣ୍ଟଙ୍କଠାରୁ ସମ୍ମାନ ପାଇ ଓଡ଼ିଶାର ମୁଖୋଜ୍ଜ୍ୱଳ କଲେ । ଓଡ଼ିଶାବାସିଙ୍କର ଏଥିରେ ଯେଉଁ ଅସୀମ ଆନନ୍ଦ ଲାଭ ହୋଇଅଛି ତାହା ପ୍ରକାଶ ନ କରି ନୀରବ ରହିବା ନିତାନ୍ତ ଅସାମାଜିକ ବିବେଚନା କରି ଏ ନଗରବାସି ଦେଶୀୟ ଲୋକମାନେ ଗତ ସୋମବାର ସନ୍ଧ୍ୟା ସମୟରେ ପ୍ରିଣ୍ଟିଂକମ୍ପାନୀଙ୍କ ଦ୍ୱିତଳ ଗୃହରେ ଏକ ଅଭ୍ୟର୍ଥନା ସଭା ରଚନା କରି ଥିଲେ । ସଭାଗୃହଟି ଫୁଲ ପତ୍ର ତୋରଣାରେ ଅତ୍ୟନ୍ତ ସୁସଜ୍ଜିତ ଏବଂ ବାହାର ଭିତର ବିସ୍ତର

ଦୀପାବଳିରେ ଆଲୋକିତ ହୋଇଥିଲା । ଲୋକର ଭିଡ଼ ଏମନ୍ତ ହୋଇଥିଲା ଯେ ପଛକୁ ଯେଉଁମାନେ ଆସିଲେ ସେମାନେ ସଭାଭିତରକୁ ପ୍ରବେଶ କରି ପାରିଲେ ନାହିଁ । ଠିକ୍ ଘ ୮ଣ୍ଟା ସମୟରେ ମହାମହୋପାଧ୍ୟାୟ ସଭାରେ ଉପସ୍ଥିତ ହେବାରୁ ତାହାଙ୍କୁ ଆଦର ପୂର୍ବକ ଉଚ୍ଚ ଆସନରେ ବସାଇ ଦିଯାଯାଇ ସଂଗୀତ ଆରମ୍ଭ ହେଲା । ତହିଁଉତ୍ତାରୁ ଶ୍ରୀ ପଣ୍ଡିତ ମାର୍କଣ୍ଡେୟ ମହାପାତ୍ର ସଂସ୍କୃତଭାଷାରେ ମହାମହୋପାଧ୍ୟାୟଙ୍କ ଗୁଣ କୀର୍ତ୍ତନ କରି କହିଲେ କି ସେହି ପଦ ସୃଷ୍ଟି ହେବା ଦିନରୁ ଅନ୍ୟାନ୍ୟ ସ୍ଥାନର ପଣ୍ଡିତମାନେ ତଦ୍ୱାରା ଭୂଷିତ ହୋଇଥିଲେହେଁ ଓଡ଼ିଶାର କୌଣସି ଲୋକ ପ୍ରାପ୍ତ ହୋଇ ନ ଥିଲେ । ଶ୍ରୀ ଚନ୍ଦ୍ରଶେଖର ସାମନ୍ତ ଓଡ଼ିଶାରେ ସର୍ବ ପ୍ରଥମେ ଏ ପଦ ପାଇ ଆପେ ଆପେ ଧନ୍ୟ ଧନ୍ୟ ହେବା ସଙ୍ଗେ ସଙ୍ଗେ ଓଡ଼ିଶାକୁ ଗୌରବାନ୍ୱିତ କରିଅଛନ୍ତି । ଏଥିଉତ୍ତାରୁ ମହାମହୋପାଧ୍ୟାୟ ସ୍ୱରଚିତ ସଂସ୍କୃତ ସିଦ୍ଧାନ୍ତଦର୍ପଣରୁ ପୃଥିବୀ ନିଷ୍ଚଳ ଥିବା ପ୍ରସଙ୍ଗରେ କେତେକ ଯୁକ୍ତିର ବ୍ୟାଖ୍ୟା କରିବା ଦ୍ୱାରା ସଭାସ୍ଥଳମାନଙ୍କୁ ଆପ୍ୟାୟିତ କଲେ । ପରିଶେଷରେ ଫୁଲ ଚନ୍ଦନ ଅତର ପାନ ଦିୟାଯାଇ ଆଉ ଗୋଟିଏ ସଙ୍ଗୀତ ହୋଇ ସଭାଭଙ୍ଗ ହେଲା ଏହି ସମୟରେ ସଭାଗୃହ ସମ୍ମୁଖରେ ଆତସବାଜିର ଗଛମାନ ପ୍ରଜ୍ୱଳିତ ହେଲା । ଆତସବାଜିଗୁଡ଼ିକ ସୁନ୍ଦର ହୋଇଥିଲା ଏବଂ ତାହା ଦେଖିବାକୁ ଦାଣ୍ଡରେ ଅନେକ ଲୋକ ଜମା ହୋଇଥିଲେ । ଆତସବାଜି ଶେଷ ହେବାରୁ ସମସ୍ତେ ଆପଣା ଆପଣା ଗୃହକୁ ପ୍ରସ୍ଥାନ କଲେ । ବୋଲିବା ବାହୁଲ୍ୟ ଯେ ସଭାର ସମସ୍ତ କାର୍ଯ୍ୟ ପରିପାଟୀରୂପେ ନିର୍ବାହିତ ହୋଇଥିଲା । କେବଳ ପୂର୍ବରୁ ସାବଧାନ ନ ହେବାରୁ ଅନେକ ଅନିମନ୍ତ୍ରିତ ଲୋକ ପୂର୍ବରୁ ସ୍ଥାନ ମାଡ଼ିବସି ନିମନ୍ତ୍ରିତ ବ୍ୟକ୍ତିମାନଙ୍କର ଅସୁବିଧା ଜନ୍ମାଇଥିଲେ । ଯେଉଁ ସଙ୍ଗୀତ ଦ୍ୱୟ ଗାୟନ ହୋଇଥିଲା ତାହା ନିମ୍ନେ ପ୍ରକାଶିତ ହେଲା, ଯଥା-

### ୧ମ ଗୀତ ।

### ରାଗିଣୀଝିଞ୍ଜିଟ-ତାଳ କ୍ଷେମଟା ।

ଆସ ମିଳି ବନ୍ଧୁଗଣ ଆଜ ହେ ଉତ୍ସବ ଦିନ ।
ପଠାଣି ସାମନ୍ତେ ସୁଖେ କର ସର୍ବେ ଆଲିଙ୍ଗନ । ଘୋଷା ।
ଜଗତେ ଯେ ଶ୍ରମ କରି ଜ୍ୟୋତିଷମଧ୍ୟେ ବିଚରି,
ପଣ୍ଡିତପଣକୁ ପଟାନ୍ତର ନାହିଁ ତ୍ରିଭୁବନ । ୧।
ଯାକୁ ଦେଖ ବଂଶବନ ଯୋଗାଇ ଦୂରବୀକ୍ଷଣ
ସଭ୍ୟ ଜଗତର ଚଳ କଳୁ ଅଛି ଅନୁକ୍ଷଣ ।୨ ।
ବୋଲ ଯେ ଭାଇ ଜଗତେ "ବିଦ୍ୟା ସର୍ବତ୍ର ପୂଜ୍ୟତେ"
ଜୀବନ୍ତ ଦୃଷ୍ଟାନ୍ତ ତାର ଚିର ସୁଖେ ସନ୍ଦର୍ଶନ । ୩ ।
ଗୁଣ ପୂଜା କରେ ଗୁଣୀ, ପୂଜିଛନ୍ତି ମହାରାଣୀ-
ତୋଳିଛନ୍ତି ମହାସୁମ ଶୋହି ଭାରତ ଉଦ୍ୟାନ ।୪ ।
ଧନ୍ୟ ରାଜା ଧନ୍ୟ ଦେଶ, ଯେ ଦେଶେ ପଣ୍ଡିତ ବାସ,
ଧନ୍ୟ ସେହୁ ଜନ ଯାର ସାର ପଣ୍ଡିତ ପୂଜନ ।୫।
ଉତ୍କଳେ ପଞ୍ଜିବିଧାନ ଯାହା ଘେନି ପ୍ରତିଦିନ
ଉଜ୍ଜ୍ୱଳ କରିଛି ଦେଶ ଅରଣ୍ୟେ ଲଭି ଜନମ ।୬।
ମହାମହଉପାଧ୍ୟାୟ ଉପାଧିରେ ଅଦ୍ୱିତୀୟ
ସାମନ୍ତ ଚନ୍ଦ୍ରଶେଖର ଗାଅ ଯାଇ ପ୍ରୀତିଧନ ।୭।
ସାକ୍ଷୀ ରଖି ଗଣନାଥ ଫୁଲମାଳେ ପୂଜ ଭ୍ରାତ
ଗଣକ ଯେ ଗଣିଥିଲା ଭବେ ଆଜି ଶୁଭ ଦିନ ।୮

୨ୟ ଗୀତ

ରାଗିଣୀ ସାହାନା-ତାଳ ଯତ୍

ଆସ ଆସ ବନ୍ଧୁଗଣ ଆଜି ଶୁଭ ଦିନରେ ।
ଭକ୍ତି ପୁଷ୍ପାଞ୍ଜଳି ଦେବା ବୃଦ୍ଧ ଚନ୍ଦ୍ରଶେଖରେ । ଘୋଷା ।
ଜୀର୍ଣ୍ଣ ଶୀର୍ଣ୍ଣ ତନୁ ଶାଳଗ୍ରାମ ଶିଳାରତନ ।
ପ୍ରଭାକର ସମ ପ୍ରଭା କର ରୂପ ଦର୍ଶନ ।୧।
ଦ୍ୱିତୀୟ ଭାସ୍କର ଅଛି ଉତ୍କଳର ଆକାଶେ ।
ଭଜି ବୁଦ୍ଧଜନ-ମନ ଆହା କେଡ଼େ ଉଲ୍ଲାସେ ।୨।
ରାଜବଂଶ ଅବତଂସ ଛାଡ଼ି ସୁଖସମ୍ଭୋଗ ।
ଦିବାରାତ୍ର ଗଗନରେ ମନ କଲା ସଂଯୋଗ ।୩।
ବିଜ୍ଞାନ-ଆଲୋକ-ହୀନ ପରବତ କନ୍ଦରେ ।
ଆକାଶ ବଢ଼ିଲା ହେଲେ ନିଜ ବୁଦ୍ଧିବଳରେ ।୪।

*ଭା୨୯ଗ,ସଂ୩୭ଖ୍ୟା, ୮/୯/୧୮୯୪*

## ପୁସ୍ତକପ୍ରାପ୍ତି ।

ଆମ୍ଭେମାନେ ନିମ୍ନଲିଖିତ ପୁସ୍ତକମାନ ଉପହାର ପାଇବାର କୃତଜ୍ଞତାସହିତ ସ୍ୱୀକାର କରୁଅଛୁଁ ।

**ବନ୍ୟପୁଷ୍ପାଞ୍ଜଳୀ ୨ୟାଞ୍ଜଳୀ**-ଏ ପୁସ୍ତକ ବାବୁ ରାଜନାରାୟଣ ଦାସ ଜମିଦାରଙ୍କଦ୍ୱାରା ବିରଚିତ , ଏନଗର ଭିକ୍ଟୋରିଆ ପ୍ରେସରେ ମୁଦ୍ରିତ ଏବଂ ବାବୁ ସୁଦାମଚନ୍ଦ୍ର ନାୟକଙ୍କ ନାମରେ ଉତ୍ସର୍ଗିତ । ଏହାର ପ୍ରଥମାଞ୍ଜଳୀ ପ୍ରକାଶ ସମୟରେ ଯାହା କହିଅଛୁଁ ତଦପେକ୍ଷା ଅଧିକ କହିବାର କିଛି ନାହିଁ । କେବଳ ଏତିକି ବୋଇଲେ ଯଥେଷ୍ଟ ହେବ ଯେ ପ୍ରଥମଭାଗଠାରୁ ଏଭାଗ କିଛି ବଡ଼ ଏବଂ ଗୁଣରେ ବରଂ ସରସ ଅଟେ ।

**ତୁଳସୀସ୍ତବକ ।**-ଏ ପୁସ୍ତକ ସୁପରିଚିତ କବି ବାବୁ ରାଧାନାଥରାୟଙ୍କ ଦ୍ୱାରା ବିରଚିତ ଏବଂ ଏ ନଗରର ରାୟପ୍ରେସରେ ମୁଦ୍ରିତ । ଏହା ଆଠମଲ୍ଲିକର ମହାରାଜାଙ୍କ ନାମରେ ଉତ୍ସର୍ଗିତ ହୋଇ ଅଛି । ଉତ୍ସର୍ଗପତ୍ରରୁ ପ୍ରକାଶ ଯେ ଭାଷାନୁରାଗ ଓ ସାହିତ୍ୟଗ୍ରାହକତା ଓଡ଼ିଶାରୁ ପଳାଇ ବାମଣ୍ଡାରେ ଆଶ୍ରୟ ନେବାର କବିଙ୍କର ଧାରଣା ଥିଲା ମାତ୍ର ତାହାଙ୍କ ପ୍ରକାଶିତ ମହାଯାତ୍ରା ନାମକ କାବ୍ୟସମ୍ବନ୍ଧରେ ଆଠମଲ୍ଲିକର ମହାରାଜା ତାହାଙ୍କୁ ଉତ୍ସାହପ୍ରଦପତ୍ର ଲେଖିବାରୁ ସେ ଭ୍ରମ ଭାଜିଗଲା ଓ କୃତଜ୍ଞତାସ୍ୱରୂପ ସେହି କାବ୍ୟଟି ଶେଷ କରି ମହାରାଜାଙ୍କୁ ଭେଟି ଦେଇ ଥାନ୍ତେ ମାତ୍ର ସ୍ୱାସ୍ଥ୍ୟ ଶାନ୍ତି ଓ ଅବସର ଅଭାବରୁ ତାହା କରି ନ ପାରି ତୁଳସୀସ୍ତବକ ନାମକ ଏହି କ୍ଷୁଦ୍ରପୁସ୍ତକ ଉପହାର ଦେଇଅଛନ୍ତି ଏବଂ ଅତ୍ୟନ୍ତ ବିନୟଭାବ ପ୍ରକାଶନିମନ୍ତେ ସେପରି ନାମ ଦେଇଅଛନ୍ତି । କବି ଏକବାକ୍ୟରେ ଦୁଇରାଜାଙ୍କର ପ୍ରଶଂସା କରି ବଡ଼ ଚତୁରତାର ପରିଚୟ ଦେଇଅଛନ୍ତି ଏବଂ ଆଠମଲ୍ଲିକର ମହାରାଜାଙ୍କ ହେତୁ ଓଡ଼ିଶାର ସମ୍ମାନ ରକ୍ଷା ପାଇଲା ଏଥିପାଇଁ ଆମ୍ଭେମାନେ ମଧ ତାହାଙ୍କ ସଙ୍ଗେ ଯୋଗ ହୋଇ କୃତଜ୍ଞତା ପ୍ରକାଶ କରୁଁ ଅଛୁଁ । ସେ ଯାହା ହେଉ ତୁଳସୀସ୍ତବକ ଅତି କ୍ଷୁଦ୍ର (ପୃ ୧୪ଷା ମାତ୍ର) ପଦ୍ୟପୁସ୍ତକ ହେଲେହେଁ ନାମର ସାର୍ଥକତା ଆନନ୍ଦଜନକରୂପେ ପ୍ରତିପନ୍ନ କରିଅଛି । କଥାରେ କହନ୍ତି ତୁଳସୀ ଦୁଇ ପତ୍ରରୁ ବାସେ । ଏଥିରେ ମଧ ବର୍ଷା ଓ ଶରତ୍ ଏହି ଦୁଇ ଋତୁର ବର୍ଣ୍ଣନା ହୋଇ କାବ୍ୟର ସୌରଭ ପ୍ରକାଶ କରୁ ଅଛି । ମାତ୍ର ବର୍ଣ୍ଣନାର ଭଙ୍ଗୀରେ ନୂତନତ୍ୱ ବିଲକ୍ଷଣ ରହିଅଛି ଅର୍ଥାତ୍ ପ୍ରାୟ ପ୍ରତିପଦରେ ବର୍ଣ୍ଣିତକାଳର ଗୋଟିଏ ଗୋଟିଏ ଘଟନା ସଙ୍ଗେ କବି ଗୋଟିଏ ଗୋଟିଏ ନୀତି ବା ଉପଦେଶ ବାକ୍ୟ ଉପମାସ୍ୱରୂପ ଏମନ୍ତ ସୁନ୍ଦରରୂପେ ଖଞ୍ଜି ଦେଇଅଛନ୍ତି ଯେ ସାଧାରଣ ରଚନାରେ ସେପରି ଦେଖାଯାଏ ନାହିଁ । ସକଳସ୍ଥଳେ ଦୃଷ୍ଟାନ୍ତମାନ ସଂପୂର୍ଣ୍ଣ ସଫଳ ହୋଇ ନ ଥିଲେହେଁ ସ୍ଥୂଳରେ ଏହା କବିଙ୍କର ଉପଯୁକ୍ତ ହୋଇଅଛି ନିଃସନ୍ଦେହ ବୋଲାଯାଇ ପାରେ । ଆମ୍ଭେମାନେ ସର୍ବସାଧାରଣ ଏହାକୁ ପାଠ କରିବା କାରଣ ଅନୁରୋଧ କରୁ ଅଛୁଁ ।

ପରିଶେଷରେ ଆମ୍ଭମାନଙ୍କର ଗ୍ରନ୍ଥକାରଙ୍କଠାରେ ଅନୁରୋଧ ଏହି କି ଖଣ୍ଡଗ୍ରନ୍ଥ ରଚନାଦ୍ୱାରା ଶକ୍ତିର ଅପବ୍ୟୟ ନ କରି ଗୋଟିଏ ଗୋଟିଏ ପୁସ୍ତକ ସଂପୂର୍ଣ୍ଣ କରିବାର ଚେଷ୍ଟା କରିବେ । ସ୍ୱାସ୍ଥ୍ୟ ଓ ଅବକାଶର ଅଭାବସତ୍ୱେ ରଚନା ଛାଡ଼ି ନ ଥିବାରୁ ଏକଥା କହୁ ଅଛୁଁ । ଈଶ୍ୱର ତାହାଙ୍କର ଅଭାବ ଦୂର କରି ଆରମ୍ଭ କରିଥିବା ଗ୍ରନ୍ଥମାନ ସମାପ୍ତ କରିବାର ଶକ୍ତି ପ୍ରଦାନ କରନ୍ତୁ ।

*ଭା୨୯ଗ,ସଂ୩୮ଖ୍ୟା, ୨୨।୯।୧୮୯୪*

## ଓଡ଼ିଶାର ବାର୍ଷିକ ବିବରଣ ।

ଅନ୍ୟାନ୍ୟ ବିଭାଗ ପରି ଓଡ଼ିଶାର ସନ ୧୮।୯୩।୯୪ ସାଲର ବାର୍ଷିକ ବିବରଣ ମାନ୍ୟବର ବଙ୍ଗୀୟ ଛୋଟଲାଟଙ୍କ ମନ୍ତବ୍ୟ ସହିତ କଲିକତା ଗଜେଟରେ ପ୍ରକାଶିତ ହୋଇଅଛି । ଏହି ବାର୍ଷିକ ବିବରଣ ଓଡ଼ିଶାର। ବର୍ତ୍ତମାନ କମିସନର ଶ୍ରୀଯୁକ୍ତ କୁକସାହେବ ଲେଖି ଅଛନ୍ତି ଏବଂ ଅନ୍ୟାନ୍ୟ ବିଭାଗୀୟ ରିପୋର୍ଟ ତୁଳନାରେ ଏହା କ୍ଷୁଦ୍ର ହେଲେହେଁ ଗଜେଟର ପୃ ୪ ୨ଷ୍ଠା ଅଧିକାର କରି ଅଛି । ସୁତରାଂ ଏଥିର ମର୍ମ ସଂକ୍ଷେପରେ ସୁଦ୍ଧା ଏକଥରରେ ପାଠକମାନଙ୍କୁ ଉପହାର ଦେବା ଅସମ୍ଭବ । ଅତଏବ ଆମ୍ଭେମାନେ କ୍ରମେ କ୍ରମେ ଏଥିର ସାର କଥାମାନ ଜଣାଇବାକୁ ଚେଷ୍ଟା କରିବୁଁ ।

ମାନ୍ୟବର ଛୋଟଲାଟ ରିପୋର୍ଟ ସମ୍ବନ୍ଧରେ ଏହି ମନ୍ତବ୍ୟ ପ୍ରକାଶ କରି ଅଛନ୍ତି କି ଏହା ସଂକ୍ଷେପ ଏବଂ ଚିକ୍କଣରୂପେ ଲେଖା ହୋଇ ଅଛି ଏବଂ କମିଶନର ଓ କଲେକ୍‌ଟରମାନେ ଯେ ସମସ୍ତ ବିଷୟରେ ଏହି ବର୍ଷ ମଧ୍ୟରେ ମନୋଯୋଗ ପ୍ରଦାନ କରି ଥିଲେ ସେ ସମସ୍ତର ମନୋହର ବିବରଣ ଲେଖା ଅଛି ମାତ୍ର ଅନ୍ୟାନ୍ୟ ବିଭାଗୀୟ ରିପୋର୍ଟମାନଙ୍କରେ ଯେମନ୍ତ ଶାସନ କାର୍ଯ୍ୟର ଉନ୍ନତି ଉଦ୍ଦେଶ୍ୟରେ ସୁପରାମର୍ଶମାନ ପ୍ରଦତ୍ତ ହୋଇ ଅଛି ଏଥିରେ ସେପରି କିଛି ନାହିଁ । କଲେକ୍ଟରମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ଷ୍ଟିଭିନସନ ଏବଂ ଜଗନିସ ସାହେବମାନଙ୍କର ପ୍ରଶଂସା ଲେଖା ଅଛି । ବିଷୟ ବିଶେଷ ସମ୍ବନ୍ଧରେ ମାନ୍ୟବର ଛୋଟଲାଟ ଯାହା କହି ଅଛନ୍ତି ତାହା ସେହି ବିଷୟରେ ରିପୋଟର ମର୍ମ୍ମ ପ୍ରକାଶ କରିବା ସମୟରେ ଜଣାଇବୁଁ ।

ରିପୋଟ ଲିଖିତ ନାନା ବିଷୟ ମଧ୍ୟରୁ ସର୍ବାଗ୍ରେ ଦେଶୀୟ ସମ୍ବାଦ ପତ୍ର ସମ୍ବନ୍ଧରେ ଯାହା ଲେଖା ଅଛି ତାହା ପ୍ରକାଶ କରୁଅଛୁଁ । କାରଣ ଏଥିରେ ଆମ୍ଭମାନଙ୍କର ସମ୍ପର୍କ ଅଛି ଏବଂ ଆପଣା କଥା ଆଗେ ବୁଝିବା ସ୍ୱାଭାବିକ ଅଟେ ।

କମିଶନର ସାହେବ ମହୋଦୟ ଲେଖିଅଛନ୍ତି କି ଓଡ଼ିଶାରେ ତିନିଖଣ୍ଡ ସମ୍ବାଦ ପତ୍ର ଅଛି ଯଥା ଉତ୍କଳଦୀପିକା, ବାଲେଶ୍ୱର ସମ୍ବାଦ ବାହିକା ଏବଂ ଓଡ଼ିଆ ନବସମ୍ବାଦ ଏ ସମସ୍ତ ସମ୍ବାଦ ପତ୍ରର ଲେଖା ରାଜଭକ୍ତି ଯୁକ୍ତ ଏବଂ ସମଭାବାପନ୍ନ । ଓଡ଼ିଆ ସମ୍ବାଦପତ୍ରର ସ୍ୱର ବଙ୍ଗଳା ସମ୍ବାଦପତ୍ର ଠାରୁ ଭଲ । ପ୍ରଥମ ଲିଖିତ. ସମ୍ବାଦପତ୍ର ଅନ୍ୟ ଦୁଇଠାରୁ ଅଧିକ ପ୍ରଚାରିତ ଏବଂ ସାଧାରଣତଃ ଓଡ଼ିଶାର ପ୍ରସଙ୍ଗମାନ ଯଥା ବନ୍ଦୋବସ୍ତ ଲବଣ ପୋକ୍ରାନ ଇତ୍ୟାଦି ଏବଂ ବେଳେ ବେଳେ ଆପୁ, ସଂସ୍କୃତପାଠ, କୁଲି ଆଇନ ଓ ହିନ୍ଦୁ ମୁସଲମାନମାନଙ୍କ ବିବାଦ କଥା ଲେଖା ହୋଇ ଥାଏ । ହିନ୍ଦୁ ମୁସଲମାନମାନଙ୍କର ମନାନ୍ତରରେ ଦୁଃଖ ପ୍ରକାଶିତ ହୋଇ ଅଛି ଅଥଚ କୌଣସି ସମ୍ପ୍ରଦାୟ ପକ୍ଷକୁ ଢଳି ନାହିଁ । ଅନ୍ୟ ଦୁଇ ସମ୍ବାଦପତ୍ର ପ୍ରଧାନତଃ ସ୍ଥାନୀୟ ବିଷୟର ଚର୍ଚ୍ଚା କରିଥିଲେ ।

ଏହି ବର୍ଷ ଆଉ ଦୁଇଖଣ୍ଡ ସାମୟିକପତ୍ର ବାହାରି ଥିଲା । ଏମାନଙ୍କ ସମ୍ବନ୍ଧରେ କଟକ କଲେକ୍ଟର ଲେଖି ଅଛନ୍ତି କି "ଏ ସହର ଏବଂ ମୋଫସଲର କେତେଜଣ ଶିକ୍ଷିତଲୋକ ଓଡ଼ିଶାର ପ୍ରଥମ ଏବଂ ସର୍ବାପେକ୍ଷା ବିଖ୍ୟାତ କବି ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ପ୍ରଚାର ଏବଂ ସମାଲୋଚନା ମନ୍ତବ୍ୟ ଇନ୍ଦ୍ରଧନୁ ନାମକ ଏକଖଣ୍ଡ ଅସାମୟିକ ପତ୍ରିକା ବାହାର କଲେ । ଅନ୍ୟ ଏକଦା ତହିଁ ବିରୁଦ୍ଧରେ କେହି କେହି ଏକାଳର କୌଣସି ଲେଖକଙ୍କ ନାମ ପ୍ରକାଶ କରିବାକୁ ଚେଷ୍ଟା କଲେ । ଏହି ଶେଷ ଲିଖିତ ଦଳ ବାମଣ୍ଡା ବିଜୁଳି ନାମକ ଏକ ପତ୍ରିକା ପ୍ରକାଶ କଲେ । ଏହି ଦୁଇଦଳରେ କିଛିଦିନ କାଗଜ ବଢ଼ାଇ ଲାଗିଥିଲା ମାତ୍ର ସମ୍ପ୍ରତି ବହୁ ପରିମାଣରେ ଶାନ୍ତଭାବ ସ୍ଥାନ ପାଇଅଛି ।"

ଆମ୍ଭେ ଗତବର୍ଷ ପରି ଏବର୍ଷ କହୁଅଛୁଁ ଯେ ଆପଣାର ମଙ୍ଗଳ ସଙ୍ଗେ ଯେଉଁ ପ୍ରସଙ୍ଗର ଅତ୍ୟନ୍ତ ସମ୍ବନ୍ଧ

ଓଡ଼ିଶା ବାସିମାନେ ତାହାଘେନି ବ୍ୟସ୍ତ ହୁଅନ୍ତି ଯଥା ବର୍ତ୍ତମାନ ହେଉଥିବା ବନ୍ଦୋବସ୍ତ । ବଙ୍ଗଳାଠାରୁ ଓଡ଼ିଶାର ଲୋକ ବରଂ ଅଳ୍ପ ପରିମାଣରେ ରାଜନୈତିକ ବିଷୟର ଚର୍ଚ୍ଚା କରନ୍ତି ଏବଂ ପ୍ରକୃତ କଥା ଜାଣିବାର ଭଲ ଉପାୟ ନ ଥିବାସ୍ଥଳେ ଏପରି କରିବା ସୁବୁଦ୍ଧିର କାର୍ଯ୍ୟ ଅଟେ । ଓଡ଼ିଶା ଓ ବଙ୍ଗଳାର ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ମଧ୍ୟରେ ପ୍ରଭେଦ ଏହିକି ବ୨୫ର୍ଷ ପୂର୍ବେ ଗବର୍ଣ୍ଣମେଣ୍ଟଙ୍କ ସରଳ ଭାବ ପ୍ରତି ବଙ୍ଗବାସିଙ୍କର ଯେପରି ନିର୍ଭର ଥିଲା ଓଡ଼ିଶାବାସିଙ୍କର ବର୍ତ୍ତମାନ ସେହିପରି ଅଛି । ସେମାନେ ଗବର୍ଣ୍ଣମେଣ୍ଟଙ୍କ ନିନ୍ଦୁକ ଅପେକ୍ଷା ବରଂ ସମର୍ଥନକାରୀ ଅଟନ୍ତି । ବଙ୍ଗଳାର ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଶ୍ରେଣିର କେତେକ ଲୋକଙ୍କ ମଧ୍ୟରେ ଯେପରି ମୂର୍ଖତା ଓ ପ୍ରତିହିଁସାମୂଳକ ନିନ୍ଦାବାଦ ଦେଖାଯାଏ ଓ ଯାହା ସଚରାଚର ପଡ଼ିଆଭୂମିରେ ପଡୁ ନ ଥିଲେ ରାଜନୈତିକ ବିପଦ ଉପସ୍ଥିତ କରି ପାରନ୍ତା ତହିଁର କୌଣସି ସଙ୍କେତ ଏପର୍ଯ୍ୟନ୍ତ ଏଠାରେ ଦେଖା ଯାଇନାହିଁ ।

କମିଶନର ସାହେବ ଆପଣା ରିପୋଟରେ ଏହି ସାଧାରଣ ଅଭିପ୍ରାୟ ପ୍ରକାଶ କରିଅଛନ୍ତି କି ବର୍ଣ୍ଣିତ ବର୍ଷ ଫସଲ ପକ୍ଷରେ ବରଂ ଅନୁକୂଳ ଥିଲା । କେବଳ କଟକ ଜିଲାରେ ଗତ ତିନି ଚାରି ବର୍ଷରୁ ଅଳ୍ପ ଫସଲ ହେଉଅଛି । ଏଥିପାଁଇ ଧାନ ଚାଉଳର ମୂଲ୍ୟ ଚଢା ହୋଇ ନାହିଁ । ଅନ୍ୟାନ୍ୟ ସ୍ଥାନରେ ଉଚ୍ଚଦର ହେବାରୁ ତାହା ଘଟିଅଛି । ଚାଷିପ୍ରଜାଙ୍କ ଅବସ୍ଥା ଭଲ ଛଡ଼ା ମନ୍ଦ ବିବେଚିତ ହୋଇ ନ ପାରେ କାରଣ ଉଚ୍ଚଦର ହେତୁ ତାଙ୍କର ଅବଶ୍ୟ ଲାଭ ହୋଇଥିବ । ମୂଲିଆଙ୍କ ଅବସ୍ଥା ଅବଶ୍ୟ ଭଲ ନୁହେ କାରଣ ଏଠାରେ ଅନ୍ୟ ବ୍ୟବସାୟର କାରଖାନା ନାହିଁ ଯେ ଚଷାଙ୍କ କାର୍ଯ୍ୟ ଛାଡ଼ି ସେଠାରେ ମୂଲ ଲାଗିବେ ଏବଂ ସେପରି ସୁଯୋଗ ପାଇଲେ ସୁଦ୍ଧା ସହଜରେ ଚାଷବନ୍ଦିର ମୂଲ ଛାଡ଼ିବେ ନାହିଁ । ତଥାଚ ଯେତେବେଳେ ଅନେକ ଓଡ଼ିଆ କଲିକତା ଏବଂ ଅନ୍ୟତ୍ରେ କାର୍ଯ୍ୟ କରିବାକୁ ଯାଉଅଛନ୍ତି ତେତେବେଳେ ଏମନ୍ତ ବୋଲାଯାଇ ନ ପାରେ ଯେ ଯେଉଁଠାରେ ଭଲ ରୋଜଗାର ହେବ ସେଠାକୁ ଯିବାପାଇଁ ଓଡ଼ିଆର ସାହସ ନାହିଁ । ଅତଏବ ଓଡ଼ିଆ ମୂଲିଆର ଅବସ୍ଥା ପ୍ରଥମ ଦୃଷ୍ଟିରେ ଯେମନ୍ତ ମନ୍ଦ ଦେଖାଯାଏ ପ୍ରକୃତରେ ତେମନ୍ତ ଥିବା ପ୍ରତି ଆମ୍ଭର ସନ୍ଦେହ ହେଉଅଛି । ଆମ୍ଭେ ଶୁଣିଅଛୁଁ ଯେ ଅନେକ ମୂଲିଆ ଚାଷୀ ଅଥବା କଣ୍ଟ୍ରାକ୍ଟରଠାରୁ ଦାଦନ ନେଇଥିବାରୁ ଦାଦନ ନ ପାଇଲେ କେବଳ ଅଧିକ ମୂଲ ହେତୁ ଅନ୍ୟ ସ୍ଥାନକୁ ଯିବାକୁ ଅକ୍ଷମ । ଦାଦନ ନେଇଥିବାରୁ କାର୍ଯ୍ୟ ଛାଡ଼ି ଯିବାକୁ ସେମାନଙ୍କର ସ୍ୱାଧୀନତା ନ ଥାଏ । ସୁତରାଂ ମୂଲ ବଢାଇବାର ଶକ୍ତି ନାହିଁ । ଚାଷୀ ଅଥବା କଣ୍ଟ୍ରାକ୍ଟର- ଯାହା ମୂଲ ଦେବ ତାହା ଗ୍ରହଣ କରିବାକୁ ବାଧ । ସମ୍ଭବତଃ ଏହି କାରଣରୁ ଓଡ଼ିଶାରେ ମୂଲିଆଙ୍କର ମୂଲ୍ୟ ବୃଦ୍ଧି ହେଉ ନାହିଁ । ଓଡ଼ିଶାରେ କାରଖାନାମାନ ସ୍ଥାପିତ ହେବାର ସମ୍ଭାବନା ନାହିଁ ମାତ୍ର ରେଲବାଇ ହେଲେ ଯେଉଁଠାରେ ଅଧିକ ମୂଲ ମିଳିବ ସେଠାକୁ ଯିବା ସକାଶେ ଅଧିକ ସଂଖ୍ୟାରେ ଓଡ଼ିଆ ପ୍ରବୃତ୍ତ ହେବେ ।

ବନ୍ଦୋବସ୍ତ କାର୍ଯ୍ୟ ନିଃଶଙ୍କରେ ଚାଲୁଅଛି । ଅମିନଙ୍କର ଅତ୍ୟାଚାର ପୂର୍ବଠାରୁ ଊଣା ଶୁଣାଯାଏ ଏବଂ ବନ୍ଦୋବସ୍ତରେ ରୟତମାନଙ୍କର ରାଜା କିପରି ହେବ ତାହା ଜାଣିବାର ସମୟ ଅବଧି ଉପସ୍ଥିତ ହୋଇ ନ ଥିବାରୁ ସେମାନେ ମୌନଭାବ ଧାରଣ କରିଅଛନ୍ତି ।

ଇଷ୍ଟକୋଷ୍ଟ ରେଲବାଟର କାର୍ଯ୍ୟ ସ୍ଥଗିତ ଅଛି । ମହାନଦୀର କେଉଁ ସ୍ଥାନରେ ସେତୁ ହେବ ଅବଧି ମୀମାଂସା ହୋଇ ନାହିଁ । ରଥଯାତ୍ରାବେଳେ ଅନେକ ଯାତ୍ରୀ ପୁରୀକୁ ଆସିବା ଏ ବର୍ଷର ଗୋଟିଏ ପ୍ରଧାନ ଘଟନା । ଯାତ୍ରୀ ସଂଖ୍ୟା ଲକ୍ଷାଧିକ ହେଲେହେଁ ମୃତ୍ୟୁସଂଖ୍ୟା ଅତ୍ୟନ୍ତ ଊଣା ପଡ଼ିବା ବଡ଼ ସୌଭାଗ୍ୟର ବିଷୟ ଅଟେ । ଜାହାଜ କମ୍ପାନିମାନେ ଯାତ୍ରୀଙ୍କୁ ନେବା ଆଣିବା କାର୍ଯ୍ୟ ବଡ଼ ତତ୍ପରରୂପେ କରିଥିଲେ ଏବଂ ଏହି ହେତୁରୁ ଯାତ୍ରୀମାନଙ୍କର କ୍ଳେଶ ବିଶେଷ ପରିମାଣରେ ଲାଘବ ହୋଇଥିଲା । ଯେଉଁ କାଳରେ ଜାହାଜ ବାଟ ଫିଟି ନ ଥିଲା ଏବଂ କଲିକତାରୁ କଟକ ପର୍ଯ୍ୟନ୍ତ ତିନିଶତ ମାଇଲର ଉର୍ଦ୍ଧ୍ୱ ବାଟ ଲୋକେ ଚାଲି ଆସୁଥିଲେ ସେ କାଳର ମୃତ୍ୟୁସଂଖ୍ୟା ସହିତ ସନ ୧୮୯୩ ସାଲର ମୃତ୍ୟୁସଂଖ୍ୟା ମିଶାଇ ଦେଖିବା କୌତୁକର ବିଷୟ ହେବ ।

ଗଞ୍ଜାଇସମିତି ଓଡ଼ିଶାକୁ ଆସି କଟକ ଓ ପୁରୀରେ ସାକ୍ଷ୍ୟ ଗ୍ରହଣ କରିଥିଲେ । ଓଡ଼ିଆମାନେ ଗଞ୍ଜେଇ ବ୍ୟବହାର ନିଷେଧର ପକ୍ଷପାତୀ ନୁହନ୍ତି । ସେହିପରି ଆପୁସମିତି ସମ୍ମୁଖରେ ଓଡ଼ିଆ ସାକ୍ଷିମାନେ ଆପୁ ନିଷେଧ ବିରୁଦ୍ଧରେ ସାକ୍ଷ୍ୟ ଦେଇଥିଲେ ।

· ଉପରଲିଖିତ ମନ୍ତବ୍ୟରୁ ସ୍ପଷ୍ଟ ଜଣାଯାଉଅଛି ଯେ ଆମ୍ଭମାନଙ୍କ କମିଶନର ଶ୍ରୀଯୁକ୍ତ କୁକ୍ ସାହେବ୍ ଓଡ଼ିଆମାନଙ୍କୁ ସୁଖ ପାନ୍ତି ଏବଂ ସେମାନଙ୍କ ମଙ୍ଗଳ କାମନା କରନ୍ତି । ଆପଣା ଏଲାକାର ଲୋକଙ୍କ ପ୍ରତି ସ୍ଥାନୀୟ ଶାସନକର୍ତ୍ତାଙ୍କର ଏପରି ଭାବ ଓ ସହାନୁଭୂତି ଅବଶ୍ୟ ପ୍ରୀତିକର ଅଟେ ଏବଂ ତହିଁପାଇଁ ଆମ୍ଭେମାନେ ତାହାଙ୍କୁ ଧନ୍ୟବାଦ ଦେଉଅଛୁଁ ମାତ୍ର ଓଡ଼ିଆଙ୍କ ମଙ୍ଗଳ ନିମନ୍ତେ ସେ ଯେମନ୍ତ ବ୍ୟଗ୍ର ସେମାନଙ୍କ ପ୍ରକୃତ ଅବସ୍ଥା ଅବଗତ ହେବା ନିମନ୍ତେ ତେତେ ନୁହନ୍ତି । ତାହା ହୋଇଥିଲେ ସେ ଜାଣି ପାରିଥାନ୍ତେ ଯେ ଧାନ ଚାଉଳର ଉଚ୍ଚ ଦରରେ ଚାଷିଙ୍କର ଲାଭ ହୋଇ ନାହିଁ ଦିନ ମଜୁରୀ କରିବା ମୂଲିଆଙ୍କ ମଧ୍ୟରେ ମଧ୍ୟ ଅନେକ ଚାଷି ଅଛନ୍ତି ବିଲାତି ଦ୍ରବ୍ୟର ଆମଦାନୀ ଲୁଣପୋକ୍ତାନ ରହିତ ଜଙ୍ଗଲ ରକ୍ଷା ଆଇନର କଠୋରତା ପ୍ରଭୃତି ନାନା କାରଣରୁ ମୂଲିଆଙ୍କର ବର୍ତ୍ତମାନ ଶୋଚନୀୟ ଅବସ୍ଥା ଘଟିଅଛି । ମୂଲ ବୃଦ୍ଧି ହେବାର କାରଣ ଦାଦନ ନ ଥାଇ ଦରିଦ୍ରତା ଅଟେ ଜାହାଜ କମ୍ପାନିମାନେ ଅଧେ ବାଟରେ ଅନେକ ଯାତ୍ରିଙ୍କୁ ଛାଡ଼ିଦେଇ ମୃତ୍ୟୁସଂଖ୍ୟା ବଢାଇବାର ସାହାଯ୍ୟ କରିଥିଲେ ମାତ୍ର  ସେସବୁ ମୃତ୍ୟୁ ସରକାରୀ କାଗଜରେ ଚଢ଼ି ନାହିଁ । ଇତ୍ୟାଦି ।

*ଭା୨୯ଗ,ସଂ୪୩ଖ୍ୟା, ୧୦।୧୧।୧୮୯୪*

## ପ୍ରେରିତପତ୍ର ।

## [ପାଠ୍ୟପୁସ୍ତକରେ ଭ୍ରମ ]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ

ମହାଶୟ ସମୀପେଷୁ ।

ମହାଶୟ !

ନିମ୍ନୋଦ୍ଧୃତ କେତେ ଗୁଡ଼ିଏ ପଂକ୍ତିକୁ ଆପଣଙ୍କର ବିଖ୍ୟାତ ପତ୍ରିକାର ଏକ ପାର୍ଶ୍ୱରେ ସ୍ଥାନ ପ୍ରଦାନ କରି ବାଧିତ କରିବା ହେବେ ।

ଆମ୍ଭ ଗ୍ରାମସ୍ଥ ଅପର ପ୍ରାଇମେରୀ ସ୍କୁଲର ଶିକ୍ଷକ କୌଣସି ବାଳକକୁ ସୀତାନାଥ ବାବୁଙ୍କର "ବର୍ଦ୍ଧିତ ଦଶମ ମୁଦ୍ରଣର ପ୍ରଥମ ପାଠ" ପଢାଉ ଥିଲେ । ସେ ଉକ୍ତ ପୁସ୍ତକର ଆଦ୍ୟରୁ ବିସର୍ଗ ଯୋଗ ପର୍ଯ୍ୟନ୍ତ ପଢି ପୃ୧୭ଷ୍ଠାରେ ଲେଖା ହୋଇ ଥିବା ବିସର୍ଗ ଯୋଗର ଉଦାହରଣ ସବୁ ପଢିଲାବେଳେ "ଦୁଃସାହସ କରି କୌଣସି କାର୍ଯ୍ୟ ନ କର" ଏହି ଧାଡ଼ିର 'କା' ପର୍ଯ୍ୟନ୍ତ ପଢି ଆଉ ଅଗ୍ରସର ନ ହେବାରେ ଶିକ୍ଷକ ପଚାରିଲେ "କିରେ ପଢୁ ନାହୁଁ କାହିଁକି" ବାଳକଟି "ର୍ଯ୍ୟ" ଉପରେ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲା "ମହାଶୟ ! ଏଉଟା କଅଣ ? ଆପଣ ତ ମୋତେ ଏପରି ଅକ୍ଷର ପଢାଇ ନାହାନ୍ତି ; ମୁଁ କିପରି ପଢିବି ?" ଶିକ୍ଷକ କହିଲେ "ଆରେ !!! ଏ ଅକ୍ଷରଟା ଏଠାରେ କିପରି ଲେଖିଲା ? ଆଚ୍ଛା ତୁ ସେ ଅକ୍ଷର ପରେ ପଢିବୁ" ବାଳକ କହିଲା "ପରେତ ପଢିବି ଏଠାରେ କାହିଁକି ଲେଖିଛି ? ଶିକ୍ଷକ ତାହାର ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦାନରେ ଅସମର୍ଥ ହୋଇ ତାକୁ ସେ ଅକ୍ଷରଟା ଛାଡ଼ିଯିବାକୁ କହି ପୃ୧୯ଷ୍ଠାରେ ର ଫଳା ଯୋଗ ପର୍ଯ୍ୟନ୍ତ ପଢାଇଲେ । ବାଳକ ୍ର ଫଳା ଯୋଗର ଉଦାହରଣ ପଢୁ ପଢୁ "ଗୁରୁଜନଙ୍କୁ ପ୍ରଣାମ କର" ଏହି ଧାଡାଟି ପଢିବା ବେଳେ ପୂର୍ବପରି 'ନ' ପର୍ଯ୍ୟନ୍ତ ପଢି ଙ୍କୁ ଉପରେ ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ ଶିକ୍ଷକଙ୍କୁ ପଚାରିଲା "ମହାଶୟ ! ଏଇଟା କି ଅକ୍ଷର ? ଓଡ଼ିଆ ଟିକି ?" ଶିକ୍ଷକ କହିଲେ "ଓଡ଼ିଆ ନୁହେ ତ ଆଉ କଅଣ ? ଛି ! ଛି !! ଏପରି ବହି ମୁଁ ଆଜି ପର୍ଯ୍ୟନ୍ତ ଦେଖି ନାହିଁ । ଆଚ୍ଛା ତୁ ସେ ଅକ୍ଷର ପରେ ପଢିବୁ" ବାଳକ ପୂର୍ବାପେକ୍ଷା ଅଧିକତର ବିସ୍ମୟାନ୍ୱିତ ହୋଇ କହିଲା "ତେବେବି, ଏକିତାପରେ ଯାହାକୁ ପରେ ପଢିବାକୁ ହେବ,  ତାହା ଆଗେ ଲେଖା ହୋଇ ଥାଏ ? ଆରେ ବାଃ ଆଚ୍ଛା କିତାପତ ? ବେଶ୍ କିତାପତ ?" ଶିକ୍ଷକ କହିଲେ "ଆରେ ତାହା ନୁହେ; ଏଥର ଭୁଲରେ ଏପରି ହୋଇଅଛି । ଆର ଥରକୁ ଛାପା ହେଲେ ଏପରି ରହିବ ନାହିଁ, ଏକା କହି ଆଉ କିଛି ଦୂର ପଢାନ୍ତେ ପୃ ୨୩ ଷ୍ଠାରେ ଙ୍X କ=ଙ୍କ; ଙX ଖ=ଙ୍ଖ; ଙX ଗ=ଙ୍ଗ ଏବଂ ଙ୍X ଘ=ଙ୍ଘ; ଏହି ଚାରିଟି ସଂଯୁକ୍ତ ବର୍ଣ୍ଣର ଉଦାହରଣରେ "କହନ୍ତି" ଲେଖା ହୋଇଥିବାର ଦେଖି ବାଳକ ପୂର୍ବ

and the formation of the hybrid Laria leaves no room for doubt that Uriya will through physical causes ever remain the language of the mass of the tract from which the Chief Commissioner means to drive it out. The people will no doubt be put to great inconvenience and will be able to make little progress or rather move backward. If the authorities chose to spend the taxpayers money for his retrograde motion. We have no option but to bow to hem. We, however, still cling to the hope that the Chief Commissioner will not hesitate to cancel his orders in consideration of all circumstances a good ruler as he is reported to be.

ଭାଗ ୩୦, ସଂଖ୍ୟା ୧୮, ୪।୫।୧୮୯୫

## BANISHMENT OF URIYA FROM THE CENTRAL PROVINCES.

VI

We do not know nor have we the means even to guess what the Chief Commissioner thinks or is likely to think of what we have as yet said on the subject; for we have so long tried but in vain to find out the principle or the policy on which his Resolution is based. We have however, quoted at length from Mr. Beamse's Comparative grammar of European reputation to show that this measure is impolitic as well immoral –so impolic so immoral that even the tyrannical Russians do not feel justified in adopting it. We have adduced facts to show that it is simply impossible to replace Uriya by Hindi. We cannot say whether such considerations account for anything with the Chief Commissioner and his counsellers. For there is in the resolution even no attempt to meet each arguments as have been adduced .There is , however, no doubt as to the good inventions of the Chief Commissioner but he has been misguided. Had he consulted such men as Messers Beames, Toynbee, Stevenson, Ravenshaw who are well acquainted with Uriya character and language, instead of his Inspector General of Police and the Judicial Commissioners, he would never have taken this false step. There is no doubt that the words of local officers should not go for nothing. At the same time it is to be remembered that the experience and opinion of a man of the Chief Commissioner's position ought to carry greater weight than that of a Judicial Commissioner or an Inspector General of Police. The Chief Commissioner has himself an experience of the disadvantages when the administrator cannot understand the language of those whom he is to govern. If our memory does not fail us, a few years ago the Chief Commissioner himself had to express regret that he could not understand the people as he did not know Uriya and it was too late for him to learn it when he came as a Rolical agent to put down a rising in Bamra. It is not difficult to imagine what a blessing it is to understand the language of the mass in cases like this. It blesseth both the govemor and the governed, the one feels that he has his conscience satisfied, and the other, that he has unburdened his heart; both feel that justice has been honored.

Such instances are of course rare as far as the position of a political agent or a Chief Commissioner is concerned. But the reason is the case when a rustic young girl, an old woman, or boy seeks redress before the police or in a court of justice , and such cases are of daily occurrence. It is to grant redress, to protect the poor from the rich, the helpless from the powerful that the administrators of justice and the protectors of life and property are maintained at the expense of the tax payer. It is simply to say what he has to say that the poorest man must procure at least eight annas worth court-fee stamp which goes to maintain the administrator of justice and the protector of life and property. It is easy to imagine what will be the feelings of the aggrieved to place himself at the mercy of an interpreter who is no better than a low paid earthly being of low education and morals; what will be his feelings when he finds that he has to crack his head to find out words from the language of those for whose maintenance his pocket is drained off and for whose maintenance he had just to pay the value of court fee stamps; what will be his feelings to see that the cart is put before the horse.

It may not matter much to a man of the Chief Commissioner's position whether poor Sam Sahu is fined a couple of rupees or sent to the jail. But it is highly desirable, nay very absolutely necessary from administration point of view that the administrator's local agency should know the language of the mass. The head of the administrator is to shape his measures with reference to the thoughts, habits and the feelings of the people ascertained through his local agencies. Now in his Inaugural Address at St. Andrews John Stuart Mill says " Without knowing the language of a people, we never really know their thoughts, their feelings, and their type of character". In so backward a tract as Sambalpur it is absolutely necessary for the advancement of the people that the local agency should have a through knowledge of the thoughts , feelings and character of the people. The foreign administration will, otherwise, become typically foreign. The local agency of the administrater will not command the same confidence of the mass as our worthy commissioners messers Shore, Ravensha, Toynbee, Stevenson others. In their case the meanest peasant felt a great relief when he found that his rustic words had been understood by those who were to make or mar his fortune. What was necessary here or elsewhere years ago are still necessary in Sambalpur which is now more than half a century behinds other parts of India,- where it is considered a great achievement when a boy passes the Entrance examination of the Calcutta University. Apart from this, the policy of the Chief Commissioner is quite impolitic with reference to the character of the mass who are describe by competent authorities as an inflammeable mob**XXXX** to form melies whenever it pleases them. Of this the Chief Commissioner himself has an experience. Bamara as mentioned above.

If it pleases him to call considerations like these as sentimental and stick to his Resolution we say once more that Uriya will ever remain the language of the mass and his name will be remembered as that of the Roman Emperor who issued a mandate to use in finine gender a word used in masculine gender, which is still used in the latter gender inspite of the imperial mandate. We shall be sorry to see that the memory of a man of the Chief Commissioner's character and disposition should be perpetuated in this fashion- like that of Kalapahar.

*ଭାଗ୩୦ଗ, ସଂ୧୯ଖ୍ୟା, ୧୧।୫।୧୮୯୫*

## [୧୮୯୪।୯୫ ମସିହାର ଏଫ, ଏ ପରୀକ୍ଷା]

୧୮୯୪।୯୫ ମସିହାର ଏଫ,ଏ ପରୀକ୍ଷାରେ ନିମ୍ନଲିଖିତ ଛାତ୍ରମାନେ ରେଭେନସା କଲେଜରୁ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି ।

**୧ମ ଶ୍ରେଣୀ ।**

୧ ଗୋପାଳଚନ୍ଦ୍ର ପ୍ରହରାଜ

**୨ୟ ଶ୍ରେଣୀ ।**

୧ ଅଭିରାମ ଭଞ୍ଜ

୨ ଯୋଗେଷଚନ୍ଦ୍ର ଚଟ୍ଟୋପାଧ୍ୟାୟ

୩ କୃଷ୍ଣଚନ୍ଦ୍ର ପାଲିତ

**୩ୟ ଶ୍ରେଣୀ ।**

୧ ଗୋବିନ୍ଦ୍ରପ୍ରସାଦ ବସୁ
୨ ରାମକୃଷ୍ଣ ବସୁ
୩ ଉପେନ୍ଦ୍ରନାଥ ଭୂୟାଁ
୪ ଭବାନୀଶଙ୍କର ଦାସ
୫ ଯୋଗେଷଚନ୍ଦ୍ର ଘୋଷ
୬ ଜ୍ୟୋତିଷଚନ୍ଦ୍ର ଘୋଷ
୭ ତାରେଶ୍ୱର ମହାନ୍ତି
୮ ନବକୃଷ୍ଣ ମୁଖୋପାଧ୍ୟାୟ
୯ ପ୍ରବୋଧଚନ୍ଦ୍ର ମୁଖୋପାଧ୍ୟାୟ
୧୦ ବଂଶୀଧର ପଟ୍ଟନାୟକ
୧୧ ଉପେନ୍ଦ୍ରନାଥ ପଟ୍ଟନାୟକ
୧୨ ଜିୟାଲ ହକ୍

*ଭାଗ୩୦ଗ, ସଂ୧୯ଖ୍ୟା, ୧୧।୫।୧୮୯୫*

## ମଧ୍ୟପ୍ରଦେଶରେ ଓଡ଼ିଆ

ସମ୍ବଲପୁରର ସରକାରୀ କଚେରିମାନଙ୍କରେ ଓଡ଼ିଆ ପରିବର୍ତ୍ତରେ ହିନ୍ଦି ଭାଷା ଚଳାଇବା ପ୍ରସଙ୍ଗ ଉପଲକ୍ଷରେ ସମ୍ବଲପୁର ଓ ମଧ୍ୟ ପ୍ରଦେଶର ଅନ୍ୟାନ୍ୟ ସ୍ଥାନରେ କେତେ ଓଡ଼ିଆ ବାସକରନ୍ତି ଏକଥା ଜାଣିବାକୁ ଅନେକ ଲୋକ ବ୍ୟଗ୍ର ହୋଇଥିଲେ । ସମ୍ବଲପୁର ହିତୈଷିଣୀର ସମ୍ପାଦକ ଚଳିତ ମାସ ତା ୧୦ ରିଖର ପତ୍ରିକାରେ ତହିଁର ବିସ୍ତାରିତ ବିବରଣ ପ୍ରକାଶ କରି ସର୍ବସାଧାରଣଙ୍କର କୃତଜ୍ଞତାର ପାତ୍ର ହୋଇଅଛନ୍ତି । ଆମ୍ଭେମାନେ ତହିଁର ସଂକ୍ଷେପ ବିବରଣ ନିମ୍ନେ ପ୍ରକାଶ କଲୁଁ ଯଥା ।

ଖାସ ସମ୍ବଲପୁର ଜିଲାର ଲୋକ ସଂଖ୍ୟା ୭ଲକ୍ଷ ୯୬ ହଜାର ୪୧୩ ଜଣ ମଧ୍ୟରୁ ୫ଲକ୍ଷ ୯୫ ହଜାର ୬୦୧ ଜଣ ଓଡ଼ିଆଭାଷା ବ୍ୟବହାର କରନ୍ତି ଏବଂ ପ୍ରାୟ ଦେଢ଼ଲକ୍ଷ ଲୋକର ଭାଷା ହିନ୍ଦି । ଅବଶିଷ୍ଟ ପ୍ରାୟ ୫୦ ହଜାର ଲୋକର ଭାଷା ଉର୍ଦ୍ଦୁ ମରହଟା ଇତ୍ୟାଦି ଅଟେ । ମାତ୍ର ଓଡ଼ିଆଙ୍କ ମଧ୍ୟରେ ବାସ ଏବଂ ସେମାନଙ୍କ ସଙ୍ଗେ କାରବାର କରିବା ହେତୁ ଅଧିକାଂଶ ମୁସଲମାନ ଏବଂ ଅନ୍ୟାନ୍ୟ ଜାତିମାନେ ଯେ ଓଡିଆ କହିବା ଓ ଲେଖିବା ପଢିବାକୁ ଶିକ୍ଷିଅଛନ୍ତି ଏବଂ ମାତୃଭାଷା ରୂପେ ବ୍ୟବହାର କରନ୍ତି ଏହା ବୋଲିବା ବାହୁଲ୍ୟ ।

*ଭା୩୦ଗ, ସଂ୧୯ଖ୍ୟା, ୧୧।୫।୧୮୯୫*

## ଉତ୍କଳ ସଭା ଓ ସମ୍ବଲପୁରର ଭାଷା ।

ଗତ ପୂର୍ବ ଶୁକ୍ରବାର ସନ୍ଧ୍ୟା ସମୟରେ କଟକ ପ୍ରିଣ୍ଟିଂକମ୍ପାନୀଙ୍କ କୋଠାରେ ଉତ୍କଳ ସଭାର ଏକ ଅଧିବେଶନ ହୋଇଥିଲା । ସଭାର ନିୟମିତ ସଭ୍ୟ ଛଡ଼ା ନଗରବାସୀ ଅପର କେତେଜଣ ଭଦ୍ରଲୋକ ସମାଗତ ହୋଇ ଥିଲେ । ଉତ୍କଳସଭାର ସଭାପତି ଚୌଧୁରୀ କାଶିନାଥଦାସ ସ୍ୱର୍ଗଗାମୀ ହେବାରୁ ତାହାଙ୍କ ସ୍ଥଳରେ ଜଣେ ସଭାପତି ନିଯୁକ୍ତ କରିବା ଏବଂ ସମ୍ବଲପୁର ଜିଲାର ଅଦାଲତ ଓ କଚେରିମାନଙ୍କର ଭାଷା ପରିବର୍ତ୍ତନ ବିଷୟକ ସ୍ଥାନୀୟ ଗବର୍ଣ୍ଣମେଣ୍ଟଙ୍କ ଆଦେଶର ପ୍ରତିବାଦ କରିବା ଏହି ଅଧିବେଶନର ପ୍ରଧାନ କାର୍ଯ୍ୟ ଥିଲା । ପ୍ରଥମ କାର୍ଯ୍ୟ ସମ୍ବନ୍ଧରେ ସଭ୍ୟମାନେ ଏକ ବାକ୍ୟରେ ସହକାରୀ ସଭାପତି ବାବୁ ମଧୁସୂଦନ ଦାସଙ୍କୁ ସଭାପତି ଏବଂ ବାବୁ ଯଜ୍ଞେଶ୍ୱର ଚନ୍ଦ୍ରଙ୍କୁ ସହକାରୀ ସଭାପତି ନିଯୁକ୍ତ କଲେ । ଏହି ନିଯୋଗ ଉପଲକ୍ଷରେ କଥା ଉଠିଥିଲା କି ଏ ନଗରବାସୀ କେହି ରାଜା ବଡ଼ ଜମିଦାର ଧନାଢ୍ୟ ମହାଜନ ପ୍ରଭୃତି ପ୍ରଧାନ ଲୋକଙ୍କ ମଧ୍ୟରୁ କେହି ସଭାପତି ପଦରେ ମନୋନୀତ ହେଲେ ବଡ଼ ସୁଖର ବିଷୟ ହୁଅନ୍ତା ମାତ୍ର ସେପରି ଯେଉଁମାନେ ଅଛନ୍ତି ସେମାନଙ୍କର ସାଧାରଣ ବିଷୟରେ ବିଶେଷ ମନୋଯୋଗୀ ହେବାର ତେଣିକି ଥାଉ ସଭାର ଅଧିବେଶନରେ ଉପସ୍ଥିତ ହେବା ବିରଳ । ସେମାନଙ୍କ ମଧ୍ୟରୁ କାହାରି ହାତରେ ସଭାର କାର୍ଯ୍ୟ ନିର୍ବାହର ଭାର ଅର୍ପଣ କଲେ ସଭାର ଉଦେଶ୍ୟ ସଂସାଧିତ ହେବା କଠିନ । ପ୍ରକୃତରେ ଯେଉଁମାନଙ୍କର ସ୍ୱଦେଶର ସାଧାରଣ ହିତାହିତରେ ବିଶେଷ ଆସ୍ଥା ଓ ସହାନୁଭୂତି ଅଛି ଯେଉଁମାନେ ସାଧାରଣ କାର୍ଯ୍ୟ ଅନୁରୋଧରେ କାୟିକ ଓ ମାନସିକ ଶ୍ରମ ସ୍ୱୀକାର କରିବାକୁ ପ୍ରସ୍ତୁତ ଏବଂ ସମୟ ପଡିଲେ ନିଜର ସୁବିଧା ବା ସ୍ୱାର୍ଥକୁ ଉପେକ୍ଷା କରନ୍ତି ଅଥଚ ଯେତେବେଳେ ଯେଉ ସାଧାରଣ ପ୍ରସଙ୍ଗ ଉପସ୍ଥିତ ହୁଏ ତହିଁର ସୁମୀମାଂସା କରିବାକୁ ବିଚକ୍ଷଣ ସେହିମାନେ ସମାଜର ପ୍ରଧାନ ଲୋକ ଏବଂ ସଭାର ଭାର ବାହକ ହେବାର ଯୋଗ୍ୟ । ସେମାନଙ୍କୁ ଛାଡି ଅନ୍ୟତ୍ରେ ସଭାପତି ଲୋଡିବା ବିଫଳ ଅଟେ ଅତଏବ ସଭା ଯାହାଙ୍କୁ ସଭାପତି ଓ ସହକାରୀ ସଭାପତି ପଦମାନଙ୍କରେ ନିଯୁକ୍ତ କଲେ ସେମାନେ ସର୍ବାଂଶରେ ତହିଁର ଯୋଗ୍ୟ ସନ୍ଦେହ ନାହିଁ ।

ଦ୍ୱିତୀୟ ପ୍ରସଙ୍ଗ ଅର୍ଥାତ୍ ସମ୍ବଲପୁରର ଭାଷା ପରିବର୍ତ୍ତନ ସମ୍ବନ୍ଧରେ ସଭାପତି ବାବୁ ମଧୁସୂଦନ ଦାସ ଏକ ତେଜସ୍କର ଦୀର୍ଘ ବକ୍ତୃତାଦ୍ୱାରା ପ୍ରକାଶ କଲେ କି ଖାସ ସମ୍ବଲପୁର ଜିଲାର ମୋଟ ଲୋକସଂଖ୍ୟା ସ୍ଥଳରେ ୮ ଲକ୍ଷ ମଧ୍ୟରୁ ୬ ଲକ୍ଷ ଓଡ଼ିଆ ହେବାରୁ ସେ ଜିଲ୍ଲା ସର୍ବତୋ ଭାବରେ ଓଡିଆ ରାଜ୍ୟ ତହିଁରେ ସନ୍ଦେହ ନାହିଁ । ଅପର ଦୁଇଲକ୍ଷ ଲୋକଙ୍କ ମାତୃଭାଷା ଓଡିଆ ନ ହେଲେ ମଧ୍ୟ ଓଡିଆଙ୍କ ସଙ୍ଗରେ ବାସ ଓ କାରବାର କରିବାଦ୍ୱାରା ଓଡିଆ ଭାଷା ଲେଖା ପଢ଼ା କରିବାକୁ ଓ କହିବାକୁ ଜାଣନ୍ତି । ସୁତରାଂ ସମ୍ବଲପୁର ପ୍ରକୃତରେ ଓଡିଆ ରାଜ୍ୟ ଏବଂ ଯେସ୍ଥଳେ ଗବର୍ଣ୍ଣମେଣ୍ଟ ସୁବିବେଚନା ପୂର୍ବକ ସର୍ବତ୍ରରେ ଏହି ରାଜନୀତି ପ୍ରଚାର କରିଅଛନ୍ତି ଯେଉଁ ରାଜ୍ୟର ଅଧିକାଂଶ ଲୋକଙ୍କର ଯେଉଁ ମାତୃଭାଷା ସେହି ରାଜ୍ୟର ଅଦାଲତ ଓ କଚେରିମାନଙ୍କରେ ସେହି ଭାଷା ପ୍ରଚଳିତ ହେବା ସେସ୍ଥଳେ ମଧ୍ୟ ପ୍ରଦେଶର ପ୍ରଧାନ କମିସନର ସମ୍ବଲପୁର ଓଡ଼ିଆ ଭାଷା ଉଠାଇ ଦେଇ ତହିଁ ପରିବର୍ତ୍ତରେ ହିନ୍ଦିଭାଷା ପ୍ରଚଳିତ ହେବା ଆଦେଶ ପ୍ରଚାର କରିଅଛନ୍ତି ବଡ଼ ଦୁଃଖ ଏବଂ ଆଶ୍ଚର୍ଯ୍ୟର ବିଷୟ ଅଟେ । ପୁଣି ଚିଫ୍ କମିଶନର ମହୋଦୟ ଏହି ପରିବର୍ତ୍ତନର ଯେଉଁ ହେତୁ ଦେଖାଇ ଅଛନ୍ତି ତାହା ଅଧିକତର ଆଶ୍ଚର୍ଯ୍ୟ ଅଟେ । ସେ କହନ୍ତି କି ମଧ୍ୟପ୍ରଦେଶର ଅନ୍ୟାନ୍ୟ ସ୍ଥାନରେ ହିନ୍ଦି ପ୍ରଚଳିତ ଥିବା ପ୍ରତ୍ୟକ୍ଷେ ସମ୍ବଲପୁରରେ ଭିନ୍ନ ଭାଷା ଓଡ଼ିଆ ପ୍ରଚଳିତ ଥିବାରୁ ସୁଶାସନ ଉଦ୍ଦେଶରେ କର୍ମଚାରୀ ପରିବର୍ତ୍ତନର ସୁବିଧା ହେଉ ନାହିଁ ଏବଂ ପୁଲୀସ ବିଭାଗରେ ସର୍ବାପେକ୍ଷା

ଅଧିକ ଅସୁବିଧା ଘଟୁଅଛି । ଏଥକୁ ଶାସନ କାର୍ଯ୍ୟରେ ଲୋକଙ୍କ ସୁବିଧା ଅପେକ୍ଷା ସରକାରୀ କର୍ମଚାରିଙ୍କ ସୁବିଧା ଅଧିକ ଦେଖିବାକୁ ହେବ ଏହା ନୂଆ କଥା ଅଟେ । ଲୋକମାନେ ଆପଣା ଧନ ପ୍ରାଣ ରକ୍ଷା ଓ ସୁବିଚାର ପାଇବା ନିମନ୍ତେ କର ଛଡ଼ା କୋଟଫିସ ଇତ୍ୟାଦିଦ୍ୱାରା ଖରଚା ଦେଉଅଛନ୍ତି । ଯେଉଁମାନେ ଅର୍ଥ ବ୍ୟୟ କରୁଅଛନ୍ତି ସେମାନଙ୍କର ସୁବିଧା ପ୍ରତି ଦୃଷ୍ଟି କରିବାକୁ ହେବ ନାହିଁ ମାତ୍ର ଯେଉଁମାନେ ଶାସନକାର୍ଯ୍ୟ ଲୋକଙ୍କ ହିତ ନିମନ୍ତେ ନିର୍ବାହ କରିବା କାରଣ ସେହି ଅର୍ଥ ବେତନାଦିରୂପେ ଭୋଗ କରୁଅଛନ୍ତି ସେମାନଙ୍କର ସୁବିଧା ଦେଖିବାକୁ ହେବ ଏ କେମନ୍ତ ବିଚାର ? କେତେଜଣ ସରକାରୀ କର୍ମକାରକ ଲୋକଙ୍କ ଭାଷା ଶିକ୍ଷିବାକୁ ଆଳସ୍ୟ କରିବେ ବୋଲି କି ଲକ୍ଷ ଲକ୍ଷ ଲୋକଙ୍କୁ କଷ୍ଟ ଦେବା ଉଚିତ ? ଯେଉଁ ଯେଉଁ ରାଜ୍ୟଖଣ୍ଡରେ ଯେଉ ଯେଉ ଭାଷା ପ୍ରଚଳିତ ତାହା ସରକାରୀ କର୍ମଚାରୀଙ୍କୁ ସିକ୍ଷିବା ପାଇଁ ସରକାର ବିଶେଷ ନିୟମ କରିଅଛନ୍ତି ଏବଂ ତହିଁପାଁଇ ପୁରସ୍କାର ଦେବାର ନିୟମ ମଧ୍ୟ କରିଅଛନ୍ତି । ତଥାଚ ଯେଉଁମାନେ ଅବହେଳା କରିବେ ସେମାନଙ୍କପାଇଁ ବି ଲୋକେ ସୁବିଚାରରୁ ବଞ୍ଚିତ ହେବେ ? ଯେତେ ଉପାୟ କଲେ ମଧ୍ୟ ଲୋକେ ଆପଣା ମାତୃଭାଷା ଛାଡିବେ ନାହିଁ କି ସମସ୍ତେ ହିନ୍ଦି ଭାଷା ଶିକ୍ଷି ପାରିବେ ନାହିଁ । ତାହା ସମ୍ଭବ ହେଲେ ଇଂରାଜ ଶାସିତ ସର୍ବତ୍ରରେ ଏକା ଇଂରାଜୀଭାଷା ପ୍ରଚଳିତ ହୋଇପାରନ୍ତା ଓ ତହିଁରୁ ଅଧିକ ସୁବିଧା ଆଉ କୌଣସି ରୂପେ ହେବାର ନୁହେ । ଫଳତଃ କଚେରିର ଭାଷା ପରିବର୍ତ୍ତନରେ ଲୋକଙ୍କର କଷ୍ଟର ସୀମା ରହିବ ନାହିଁ ପୁଲୀସର ଭାଷା ଭିନ୍ନ ହେବା ଆହୁରି ଅଦ୍ଭୁତ ।

*ଭା୩୦ଗ, ସଂ୧୯ଖ୍ୟା, ୧୧/୫/୧୮୯୫*

## BANISHMENT OF URIYA FROM THE CENTRAL PROVINCES.

### VII

We have so long confined ourselves to reasons quite independent of and apart from the Resolution of the Chief Commissioner, for which it is simply hoping against hope to try to replace Uriya by Hindi in Sambalpur. In our last issue we said, however, that we have so long tried in vain to find out the policy or principle on which the Resolution is based. To day we shall use the terms policy and principle for the sake of convenience however inappropriate the application may be. May it be called principle or policy, a glance at it shows that there can be nothing more half-hearted and half hazard. Provision has been made to teach Hindi but the Resolution is silent as to whether the orders apply to the Feudatory States dependent on Sambalpur; and it is these States which cover the greater part of the area of the district. If it is thought that no such declaration is necessary as under-hand means can achieve it better, why is direct measure necessary for the part where there is direct influence ? The very necessity for the direct measure should have shown that underhand means will be of no avail for this purpose. If it is contemplated to exclude these States from the operation of the Resolution no man with a grain of commonsense should expect to replace Uriya by Hindi. Apart from this, is to be presumed that these states are so well administered as to necessitate no concern between the mass there and government officials ? If such is the case, it is of course a matter of great satisfaction and congratulation that the people in

these Native States are so well off. It is not in this respect alone that the Chief Commissioner's Resolution is half-hazard. It is intended to replace Uriya by Hindi and directs at the same time in para 5 that " *A colloquial knowledge of Uriya must, however, be acquired within a certain period by officials transferred from other districts"* Is this measure ever calculated to smother the love for one's mother tongue ? Is this a measure calculated to be effective ? If it is meant as a sweet coating or a little oiling to make the bitter pill go down smoothly and pleasantly nothing can be more short-sighted and ill calculated. It may make the pill go down smoothly and pleasantly but it will at the same time make it quite inoperative. It is perhaps for this reason that the people of Sambalpur are apparently so silent. According to the theory of the Chief Commissioner himself, they are laughing in their sleeves at the proposed measure; they expect that the interpretors will not be above the influence of the all-powerful Mahaprasad and there is no need now of raising their voice against the Chief Commissioner's orders. But backward as they are, they forget that there will be a regular auction for Mahaprasadship and fortune will smile on the highest bidder. It is therefore for the sake of justice, good administration and for the good name of the Chief Commissioner on the one hand and from love of our mother tongue on the other that we are dwelling on the subject at length.

Looked from the point of view of those whom the Resolution compells to learn the language, the measure is curious indeed. The officials should go about picking up the colloquial language of the people, but it is considered a great sin to learn the alphabets. The reverse is the case with the officials of the Bengal Government. They learn the language by reading books and papers and we understand that our present Commissioner Mr. G. Stevenson learnt Uriya before he came out to India. So we once said that we should not be surprised if we are told one day that the sun rises in the west in the Central Provinces. We cannot understand why the officials should learn the colloquial language and not the alphabets and the language of books. This clearly shows that the measure has been adopted without even an attempt to know what the language is it. A glance at Mr. Beame's Comparative Grammar would have shown that it is in the colloquial words mainly that Hindi differs from Uriya, both having decended from Sanskrit. If the officials are to learn what distinguishes Uriya from Hindi where lies the necessity for abolishing the language to the great inconvenience of the people ? Is it the Uriya alphabets and the language of the book that helps the Mahaprasadship ? Will not the knowledge of the colloquial suffice for the purpose ? We are sorry thus to be led to think that the words of the resolution quoted above are not sincere and earnest; they are meant as a sweet coating for the bitter pill. The ignorant mass are not to blame if they follow this royal standard of morality.

There is another point in connection wth this which deserves special notice. It is laid down in para 5 of the resolution that " In the case of lower grades of officials of certain departments such as the police and forests whose duties are not of a clerical nature, it may perhaps not be necessary to enforce the above rules strictly." In addition to this all officials drawing less than Rs. 10 a month are not required to learn Hindi. Are these calculated to replace Uriya by Hindi ? or are the words sincere and earnest ? We leave it to the reader to think what he likes of measures like these.

The principal reason for the measure is said to be the great inconvenience of administration. From 1862 at least to 1885 there was only one Uriya Deputy Collector in the three districts of Orissa, all others having been brought from Bengal and the bulk of officials at present is still from Bengal. Has the Bengal Government ever complained of any inconvenience ? Has it ever entertained even the idea of replacing Uriya by Bengali ? On the contrary it decided that Uriya should continue to be the court language when the contrary was urged in 1868 by no less an authority than the Director of Public Instructions. It may be said that no inconvenience is felt as there is not the same difference between Bengalee and Uriya as between the latter and Hindi. We had and have officials from the inhabitants of Behar. Babus Jagadam Sahai and Madhab Lall who are to deal with the peasants, having to work in the Canal Revenue Department. Has there ever been any complaint of any inconvenience ? To crown all Mr. Beames says at page 33 Vol I of his grammar " Oriya is in many respects more like Hindi than Bengali". We are at a loss to understand why the things should be different in two provinces though the same Englishman is at the head of the administrations of both.

To meet the argument that the number of the Uriya speaking people in Sambalpur is small when compared with those speaking Hindi and Marahati the following table compares the number of the people speaking different languages under the Governments of Bengal, Madras and the Central Provinces.

| Langugae | Bengal | Central Provinces | Madras |
|---|---|---|---|
| Bengali | 3,77,39,954 | 1,509 | 1,173 |
| Hindi | 2,61,47,647 | 64,97,700 | 449 |
| Uriya | 46,08,893 | 6,85,971 | 12,92,163 |
| Marahatti | 901 | 21,15,603 | 1,23,530 |
| Telgue | 13,143 | 1,01,311 | 1,36,53,674 |
| Tamil | 6,026 | 5,832 | XXXX |

It is to be noted here that the number of the Hindi speaking people in the Central Provinces includes those who speak what is called Chhatesgurhi language in the Chief Commissioner's Resolution and Laria of which no mention is made in that Resolution. Is there a great difference between the proportion that the number of Uriya speaking people bear to those speaking Hindi or Bengali in Bengal or Tamil or Telgue in Madras on the one hand and that it bears to the Hindi or Marahatti speaking population of the Central Provinces on the other ? Had such a comparison been ever made the Resolution should never have been passed on this consideration. As the Chief Commissioner's measure is neither calculated to replace Uriya by Hindi nor justifiable on any consideration we earnestly hope and pray that he will be pleased to take the matter into his serious consideration and cancel his Resolution. It will simply go to exault him like the orders of our Lieutenant the Governor in matter of trial by jury.

*ଭା୩୦ଗ, ସଂ୨୦ଖ୍ୟା, ୧୮।୫।୧୮୯୫*

## ସମ୍ବଲପୁରର ଭାଷା ପରିବର୍ତ୍ତନ ଆଦେଶର ପ୍ରତିବାଦ ।

ସମ୍ବଲପୁରରେ ସରକାରୀ ଭାଷା ପରିବର୍ତ୍ତନ ବିଷୟକ ମଧ୍ୟପ୍ରଦେଶର ଚିଫ କମିଶନରଙ୍କ ଆଦେଶ ସମ୍ବନ୍ଧରେ କଲିକତାର ଷ୍ଟେଟସମାନ ନାମକ ଇଂରାଜୀ ଦୈନିକ ସମ୍ବାଦପତ୍ରର ଚଳିତ ମାସ ତା ୧୧ ରିଖର କାଗଜରେ ଗୋଟିଏ ସୁଯୁକ୍ତିପୂର୍ଣ୍ଣ ଉତ୍କୃଷ୍ଟ ପ୍ରବନ୍ଧ ବାହାରିଅଛି । ସୁଯୋଗ୍ୟ ସମ୍ପାଦକ ମହାଶୟ ଲେଖିଅଛନ୍ତି କି ସମ୍ବଲପୁର ଜିଲ୍ଲାର ଚାରି ପଞ୍ଚମାଂଶ ଲୋକ ଓଡିୟା ଥିବାର ଚିଫ କମିଶନର ସାହେବ ସ୍ୱୟଂ ସ୍ୱୀକାର କରିଥିବା ପ୍ରତ୍ୟକ୍ଷେ ସେ ଜିଲ୍ଲାର ସରକାରୀ କାର୍ଯ୍ୟାଳୟମାନଙ୍କରେ ଓଡିୟା ଭାଷା ବଦଳରେ ହିନ୍ଦି ଭାଷା ପ୍ରଚଳିତ ହେବା କଥା ଶୁଣି ସେଠାଲୋକଙ୍କର ଯେଉଁ ଗଭୀରଅସନ୍ତୋଷ ଜାତ ହୋଇଅଛି ତାହାକୁ କେବଳ ମାନସିକ ଭାବ ବୋଲି ଉପେକ୍ଷା କରିବା କୌଣସିମତେ ଉଚିତ ନୁହେ । ପ୍ରକୃତ ସେହି ଅସନ୍ତୋଷଭାବ ଅମୂଳକ ନ ଥାଇ ଯଥାର୍ଥ ଅଟେ କାରଣ ଗବର୍ଣ୍ଣମେଣ୍ଟ ଏହି ରାଜନୀତି ବହୁକାଳରୁ ଅନୁସରି ଆସିଅଛନ୍ତି କି ଯେଉଁ ସ୍ଥାନର ଅଧିକାଂଶ ନିବାସିଙ୍କର ଯେଉଁ ଭାଷା ତାହାର ସେ ସ୍ଥାନର କଚେରୀ ଭାଷା ଅଟେ ଏବଂ ବହୁଦର୍ଶିତାଦ୍ୱାରା ପ୍ରଚୁରରୂପେ ପ୍ରମାଣିତ ହୋଇଅଛି ଯେ ଏହି ରାଜନୀତି ଲୋକଙ୍କ ସୁରକ୍ଷା ନିମନ୍ତେ ନିତାନ୍ତ ଆବଶ୍ୟକ, ଲୋକଙ୍କ ସୁବିଧା କଥା କହିବା ଅଧିକ ସମସ୍ତ ଦେଶରେ ଏହି ରାଜନୀତି ହିତକର ଏବଂ ବିଶେଷତଃ ଭାରତବର୍ଷରେ ଯେଉଁଠାରେ କି ନିମ୍ନ ଶ୍ରେଣୀର ସରକାରୀ ଚାକରଙ୍କ ମଧ୍ୟରେ ଅସତ୍‌ଲୋକର ସଂଖ୍ୟା ଅଧିକ । ସୁବିଚାର ଓ ସୁରକ୍ଷା ସକାଶେ ଲୋକେ ଯାହାଙ୍କ ଉପରେ ନିର୍ଭର କରନ୍ତି ସେମାନଙ୍କୁ ଆପଣା ଆପଣା ଅଭିପ୍ରାୟ ଓ ଦୁଃଖ ଆପଣା ଭାଷାରେ ଜଣାଇ ପାରିବେ ନାହିଁ କି ସେମାନଙ୍କର ଆଦେଶ ବୁଝି ପାରିବେ ନାହିଁ ଏବଂ ତହିଁ ପାଇଁ ଦ୍ୱିଭାଷୀର ସାହାଯ୍ୟ ନେବାକୁ ହେବ ଏଥୁଁ ବଳି ଶୋଚନୀୟ ଅବସ୍ଥା ଆଉ କି ହୋଇ ପାରେ ? ହାକିମ, ଅମଲା ବିଶେଷତଃ ପୁଲୀସ କର୍ମଚାରୀଙ୍କ ବଦଳିର ସୁବିଧା ନିମନ୍ତେ ସମ୍ବଲପୁରରେ ହିନ୍ଦି ଚଳାଇବା ଚିଫ କମିଶନରଙ୍କ ଉଦ୍ଦେଶ୍ୟ ଅଟେ । ଏ ଉଦ୍ଦେଶ୍ୟ ଅବଶ୍ୟ ମହତ ସନ୍ଦେହ ନାହିଁ ମାତ୍ର ଯେଉଁ ଅନିଷ୍ଟ ନିବାରଣନିମନ୍ତେ ଚିଫକମିଶନର ଏ ଉପାୟ ଉଦ୍ଭାବନ କରିଅଛନ୍ତି ତାହା ଅଧିକତର ଅନିଷ୍ଟଜନକ ହେବାର ସନ୍ଦେହ ହେଉଅଛି । ତାହାଙ୍କ ଉଦ୍ଦେଶ୍ୟ ସାଧନ ନିମନ୍ତେ ଚିଫକମିଶନରଙ୍କ ଉଚିତ ହେଉଅଛି ଯେ ସମ୍ବଲପୁରକୁ ଓଡିଶାକୁ ବଦଳି କରି ଦେଉନ୍ତୁ କାରଣ ପ୍ରକୃତରେ ସମ୍ବଲପୁର ଓଡିଶାର ଅନ୍ତର୍ଗତ ଅଟେ ଏବଂ ଯେବେ ନିତାନ୍ତରେ ସମ୍ବଲପୁର ମଧ୍ୟପ୍ରଦେଶର ଅନ୍ତର୍ଗତ ରହିବାର ଉଚିତ ତେବେ ଏପରି କୌଣସି ବନ୍ଦୋବସ୍ତ ହେଉ କି ଯଦ୍ୱାରା ଓଡିଶା ସଙ୍ଗେ ସମ୍ବଲପୁରର ସରକାରୀ କର୍ମଚାରିଙ୍କର ସମୟ ସମୟରେ ବଦଳି ହୋଇ ପାରିବ । ଚିଫ କମିଶନର ପ୍ରଦର୍ଶିତ

ହେତୁମାନ ଭ୍ରମାତ୍ମକ ଅଟେ ସନ୍ଦେହ ନାହିଁ । ଏକ ସମୟରେ ହିନ୍ଦି ସମ୍ବଲପୁରର ପ୍ରଚଳିତ ଭାଷା ହେବ ଏ କଥା ଗୋଟିଏ ଅନିଶ୍ଚିତ ଅନୁମାନ ବିନା ଆଉ କିଛି ନୁହେ ଏବଂ ତାହା କେବେ ଘଟିଲେ ସୁଦ୍ଧା ବର୍ତ୍ତମାନ ଘଟିବା ପ୍ରାୟ ମନେ କରି ଲୋକଙ୍କୁ ହରବର କରିବା ଯୁକ୍ତି ସଙ୍ଗତ ବୋଲା ଯାଇ ନ ପାରେ । ଯେବେ ତାହା ଘଟିବା ଚିଫ କମିଶନର ସମ୍ଭବ କରନ୍ତି ତେବେ ହିନ୍ଦି ବିଦ୍ୟାଳୟମାନ ପ୍ରଚୁରରୂପେ ଏହି ସମୟରୁ ବସାଇ ଦେଉନ୍ତୁ ଯେ ଲୋକମାନେ ତାହା ଶିକ୍ଷା କରିବାକୁ ଉତ୍ସାହିତ ହେବେ ! ଦଶ ଟଙ୍କାର ଉର୍ଦ୍ଧ୍ୱ ବେତନର ଅମଲାମାନଙ୍କ ପ୍ରତି ଆଦେଶ ହୋଇଅଛି ଯେ ହିନ୍ଦି ନ ଶିକ୍ଷିଲେ କାର୍ଯ୍ୟରେ ରହି ପାରିବେ ନାହିଁ । ବୟସ ଅବସ୍ଥା ଏବଂ କାର୍ଯ୍ୟକାଳର ବିଚାର ବିନା ସମସ୍ତଙ୍କ ପ୍ରତି ଏପରି ଆଦେଶ ଦେବା ବଡ ପୀଡାଜନକ ଅଟେ । ଚିଫ କମିଶନରଙ୍କ ଶେଷ ଯୁକ୍ତି ଏହି କି ସମ୍ବଲପୁରର ଓଡିୟା ଭାଷା ଓଡିଶାର ଭାଷାପରି ନୁହେ ମାତ୍ର ଯେବେ ସେ ଭାଷାର ସଂଶ୍ରବ ହିନ୍ଦି ଅପେକ୍ଷା ଓଡିଆ ସହିତ ଅଧିକ ଓ ଏହା ସମ୍ଭବ ହେଉଅଛି ତେବେ ସେ ଯୁକ୍ତିର କିଛି ବଳ ନାହିଁ ।

ଉପରଲିଖିତ ନିରପେକ୍ଷ ଓ ନ୍ୟାୟସଙ୍ଗତ ମନ୍ତବ୍ୟ ଉପରେ ଆମ୍ଭେମାନେ ଅଧିକ କିଛି କହିବାକୁ ସମର୍ଥ ନୋହୁଁ । ଓଡିଆଙ୍କ ଦୁଃଖ ସର୍ବସାଧାରଣଙ୍କୁ ଜଣାଇବା କାରଣ ସେ ତତ୍ପର ହେବାରୁ ଆମ୍ଭେମାନେ ଷ୍ଟେଟସମାନର ସମ୍ପାଦକଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛୁଁ । ଭରସା କରୁଁ ଏହାଦ୍ୱାରା ସୁଫଳ ଫଳିବ ।

*ଭା/୩୦ଗ, ସଂ୨୧ଖ୍ୟା, ୨୫/୫/୧୮୯୫*

## [ଉତ୍କଳସଭାର ସଭାପତିଙ୍କର ଗଭର୍ଣ୍ଣର ଜେନେରାଲଙ୍କ ନିକଟକୁ ଭାଷା ସମ୍ବନ୍ଧୀୟ ପତ୍ର ]

**TO HIS EXCELLENCY THE RIGHT HON'BLE VICTOR ALEXANDER BRUCE EARL OF ELGIN , P.C.G.M.S.I., G.M.I.E. VICEROY AND GOVERNOR GENERAL OF INDIA.**

MAY IT PLEASE YOUR EXCELLENCY.

THE HUMBLE MEMORIAL OF THE ORISSA ASSOCIATION.

Most respectfully sheweth:-

That your Excellency's memorialists have read with regret and anxious concern a resolution of the Chief Commissioner of the Central Provinces, dated 15th January 1895, directing the abolition of Uriya as the court and official language of Sambalpur, and the introduction of Hindi in its place from the commencement of the next calendar year.

2. That some years ago, before education had made any progress in Orissa, and while the Bengalee element preponderated in the subordinate, executive and judicial, and even in the ministerial ranks of service to a greater extent than it is now, it was proposed to abolish Uriya ; and the advocates of this proposal suggested the introduction of Bengalee as the court and official language of Orissa; but after it had been exposed long to the storm of controversy the Uriya languge held its own, and its abolition was considered impolitic in the opinion of the European officials who had the administration of Orissa at the time. One of these officials, Mr. John Beames of the Civil Service, in referring to this controversy in his " Comparative grammar of the Modern Aryan languages of India", writes, " we are bound to fight tooth and nail

against the Bengalee theory, "and, by upholding the speech of land folk and helping them to purify and improve it, " to render it impossible for interested persons to establish any barrier between the free intercourse of all classes of society,"

3. That the printing press has since the date of the above controversy rescued from oblivion much of what is valuable in Uriya literature,while the advance of education in recent years has contributed a fresh stock to it.

4. That during the above controversy not only the individuality of the Uriya language was established, but it was brought to public notice that the language retained the Sanskrit words for the names of things in daily household use and preserved the Sanskrit like pronunciation of the alphabet. Uriya has also absorbed and assimilated a considerable number of words from the aboriginal languages in use among some of the hill tribes of Orissa, and among some of the tribes residing in certain parts of the Madras Presidency.

5. That the language of a race to be of any value must be an epitomo of the principal events in the history of the race; hence a language which retains everything ancient in it with a conservative tenacity while it adopts and assimilates everything new, however foreign to its native genius, is superior to one which from want of a love of conservatism sacrifices ancient words and forms to a conventional abbreviation of vocabulary and pronunciation.

6. That while the Uriya language retains with jealousy ancient forms of the Aryan language it has shown itself capable of absorbing and assimilating non-aryan languages.

7. That since the abovementioned successful struggle of the Uriya language with Bengalee, the individuality of Uriya has been recognised by Bengalee residents of Orissa and the resolution of the Association to submit this memorial was cordially supported by its Bengalee members.

8. That Uriya continues to be the court and official language of Orissa, and the importance of maintaining it as such was also recognised the other day by the Madras Government when that Government ruled that both Telegu and Uriya were to be the court language in the District of Ganjam.

9. That your Excellency's memorialists have therefore learnt with surprise that the Government of Central Provinces has taken a different view of the importance of this language and has decided to abolish it in Sambalpur.

10. That it appears from the resolution of the Chief Commissioner that the object of the proposed measure is to facilitate transfers among the officials by unification of the court language in the several districts under his administration, as also to eradicate the local custom of " *mohaprasad*" which has proved an effectual barrier to the discovery and remedy of administrative evils.

11. That Your Excellency's memorialists beg respectfully to submit that in

spite of there being three different court languages in the area under the administration of His Honor the Lieutenant Governor of Bengal, the work of administration has never demanded the measure proposed by the Chief Commissioner.

12. That your Excellency's memorialists beg to draw your Excelllency's attention to para 4 of the Chief Commissioner's resolution from which it appears that that officer had received petitions from the people of Sambalpur protesting against the measure, and " *he largely sympathizes with the sentimental feelings of the petitioners and admits that the measure will cause a general inconvenience*".

13. That as the resolution admits that the measure will entail inconvenience to the people affected by it, it is not necessary for your Excellency's memorialists to dwell at any length on that point.

14. That your memorialists observe with surprise that a measure entailing inconvenience on the people and opposed to their feelings should have been inaugurated with a view to punish " the formation of eliques and family connections" among officials.

15. That the Chief Commissioner's proposal to punish the people for the corruption among and abuse of authority by the officials being opposed to natural ideas of justice, and being unprecedented in the History of British Administration in India, the resolution in question has engendered a general dissatisfaction among the people and has evoked journalistic criticism.

16. That in a country where the people are ignorant, the integrity of officials ought to be maintained by close supervision, and any violation thereof ought to be punished with the utmost severity, for the least manifestation of susceptibility in an official to deviate from the path of integrity and uprightness is understood by an ignorant people as a demand of consideration for such deviation. It was on these considerations that the Law Commissioners did not provide in the Penal Code a section for the punishment of one who gives a bribe to a public servant, and to this day though the Indian Penal Code has been amended several times, the giver of a bribe cannot be convicted under that code except under the general sections regarding abetment of offences.

17. That in giving their reasons for not inserting an independent section in the Indian Penal Code for the punishment of the giver of bribe. The Law Commissioners remarked:-

" In such countries we think that the
"giving of bribes is not a proper
"subject of punishment. It would
"be absurd in such a state of society
"to reproach the giver of a bribe with
" corrupting the virtue of public

"servants, as it would be to say
" that the traveller who delivers his
"money when a pistol is held to his
"breast corrupts the virtue of a
" highway man. We would by no
" means be understood to say that
" India, under the British
" Government, is in a state answering to
" this last description; still we fear it
" is undeniable that corruption does
" prevail to a great extent among
" the lower classes of public
"functionaries, that the power which
" those functionaries possess renders
" them formidable to the body of the
" people, that in the great majority
"of cases the receiver of the bribe
" is really the tempter and that the
" giver of the bribe is really acting
" in self defence"

18. That Your Excellency's memorialists beg respectfully to point out that the remarks of the Law Commissioners quoted above are applicable to the state of things in Sambalpur as described in the Chief Commissioner's resolution, but the remedy suggested aims at rewarding the officials at the sacrifice of the convenience of the people, for the resolution contemplates " to open" to the Sambalpur officials " a larger area of preferment in the adjoining districts" *as a reward for their acquisition of a knowledge of Hindi.*

19. That Your Excellency's memorialists submit that in the case of officials whose transfer is necessitated with a view to secure purity of administration, a compulsory acquisition of the Hindi language would be the mildest penalty, and a failure to comply with this requisition ought to be visited with removal from service.

20. That the history of the Court language in use in the district of Sambalpur, as given in the second para of the Chief Commissioner's resolution, shows that on a previous occasion the Uriya language was excluded from official and Court record, but on the petition of the people the then Chief Commissioner allowed it to remain side by side with the Uriya, and this system was continued till 1866.

21. That a reversion to the state of things as it existed before 1865 would have obviated all the difficulties of transfer and interchange of officials enlarged upon in the resolution and the total exclusion of the Uriya language is, to say the

least, disproportionately severe for administrative necessity. even if such a necessity did exist.

22. That as a matter of fact such administrative necessity does not exist, for it appears from the third para of the Chief Commissioner's resolution that " *Hindi is used officially to a considerable extent and a still large number of officials are sufficiently familiar with it for ordinary intercourse.*

23.That under these circumstances the officials whose transfer from Sambalpur is an administrative necessity may be transferred to other districts as they are "*sufficiently familiar with Hindi for ordinary intercouse*".

24. That on the reasoning of the Chief Commissioner, as formulated in the concluding portion of the third para of his resolution, there ought not to be any difficulty in getting officials from other districts to take up the duties of those, who may be transferred from Sambalpur, for it appears that the Uriya used in the courts of Sambalpur has an " admixture of Hindi" in it; and if the chief commissioner believes " people that the generally" (of whom by far the greater portion must be uneducated) " find no difficulty in picking up this language" the officials who may be transferred from other district to Sambalpur ought to have less difficulty in picking up such a language.

25. That the Association beg to observe that from the commencement of British rule in India it has been the settled policy of our rulers to leave to every race the use of its language, religion and even unreasonable local customs, which owing to their prevalence through ages, have been endeared to the people, and the benign British Government has not like the Chief Commissioner of Central provinces disposed of the "wishes of the people as sentimental feelings" deserving nothing more than a format expression of sympathy.

26. That it has always been the aim of the British Government to introduce a free intercourse between the ruling and the subject races of India with a view that the former may become familiar with what the Chief Commissioner calls merely the sentimental feelings of the people, and to this and various means have been suggested and tried.

27. That the ignorance of the language of the subject races of India has always been considered one of the Chief barriers to the necessary acquaintance with the feelings of the people, and every encouragement has been given to an acquisition by officials of the languages of the country which they are appointed to administer.

28. That at no time were the evil consequences of the ignorance of the native dialects by Englishmen in India better realized and the necessity for its removal more earnestly felt than they were about the time of the Indian mutiny.

29. That the London Times in its issue of 10th November 1858 in dwelling on

this subject wrote as follows-

" The traditionary Nabab, who was
supposed to have with all his wealth
"a miserable conscience and a
"diseased liver and the more recent
" " old Indian" who came home
"generally a bachelor to end his days
" among expectant relatives, could
"speak with the natives and therefore
" sympathized with them more than
" the cadet who in these days of the
" overland route goes to India scarcely
" feeling that he has left England
" and who counts the weeks till he
" shall obtain furlough or leave the
" country for ever. It is surely a
" curious result of bringing England
" nearer to India, that it should be
" the means of severing the English
" man from the native, of widening
" the vast gulf that separates the
" European from the Indian, yet such
" is the fact and it is *to our ignorance*
" of the native dialects, it is to this
" want of intercourse which ignorance
"involves,that we must in great
" measure attribute the tremendous
" surprise with which we had to face
" the mutiny of last year."

30. That in order to facilitate the acquirement of the native dialect it was at one time proposed to substitute for the complicated orientel alphabets the Roman letters but even this innovation, which involved a change of alphabet only without interference with the dialect, was not authoritatively enforced though the change was proposed by statesmen like Sir Charles Trevelyan and Sir Henry Prinsep and was supported by the " Times" " the London Review" and the " Globe"

31. That the proposed change of the alphabets did not meet with favour from those who had the administration of the country in their hands and it was eventually decided to preserve the various alphabets at least" as monuments of human ingenuity and as such should be respected."

32. That this innovation did not meet with favour from the authorities in more recent time, and this is evident from the fact that the High Court of Calcutta in a circular order dated 18th August 1881 discontinued the practice of recording evidence in romanized vernacular which evidently had obtained in some Courts; and in still more recent time the substitution of the Debnagri alphabet for the Kayathi in Behar was not allowed by His Honor the present Lieutenant Governor of Bengal.

33. That the change decided upon by the Chief Commissioner of the Central Provinces is opposed to the policy of non-interference with the language of a people which has been followed by our rulers both in the past and the present.

34. That it seems from the Chief Commissioner's resolution that the change proposed to be introduced by him was suggested by the head of the Local Police.

35. That Your Excellency's memorialists beg to point out that to resolve upon such an important and unusual change on the recommendation of an Inspector General of Police argues an ignorance on the part of the Chief Commissioner of the treatment which the far less unpopular attempt at romanizing the Indian alphabets received at the hand of the authorities, though it received support from quarters entitled to far more respect than the Inspector General of Police in the Central Provinces.

36. That Your Excellency's humble memorialists respectfully beg to submit that to deprive a people of the use of their mother tongue is the worst type of gagging and is yet unknown even in the most despotic form of Government.

37. That even the Russian Government, which the Indians look upon as a typical despotic form of Government , has not abolished Polish though it is the language of a very small portion of the population under that Government.

38. That the other evil which the exclusion of the Uriya language is intended to remove is the local custom of Mahaprosad.

39. That Mohaprosad means the offerings made to the Jaggernath at Puri, and any two Hindus anxious to be friends to one another contract such friendship by a ceremony of mutual present of Mahaprosad, which on account of its sanctity impresses the parties with a solemnity of the ceremony and thus is supposed to render the tie of friendship indissoluble.

40. That, as appears from his resolution the Chief Commissioner of the Central Provinces believes that under the custom in Orissa, men of different castes bind themselves to one another in an offensive and defensive alliance which though originally designed as a cement of friendship has certainly proved an effectual barrier to the discovery and remedy of administrative evils.

41. That if the friendship formed by Mahaprosad be an effectual barrier to the discovery and removal of administrative evil it ought to have been so in Orissa, where the Lord of Mahaprosad has his temple and where the custom had its origin

and largely prevails, but as a matter of fact the custom has not manifested any of these evil effects in Orissa, and the Chief Commissioner's belief as to its evil effects in Orissa will on enquiry be found altogether delusive and unfounded.

42. That Your Excellency's humble memorialists have no doubt that interest may furnish motives to men to combine to defeat the aims of justice but such interest may arise from relationship as well as from friendship whether Mahaprosad be the basis of such friendship or not.

43. That if the brotherhood cented by Mahaprasad be abused and turned into an offensive and defensive lances, any remedy to be effectual aim at removing the false ideas prejudices of the people with **xxxx** to Mahaprosad and not at **xxxx** the language of the people,**xxxx** the latter measure will be no more effectual in removing the evil or the exclusion of the English language from the Lodges of Freesons would prevent two unworthy members of that noble fraternity make their brotherhood the basis an alliance for the accomplishment of some unworthy object.

44. That Your Excellency's memorialists submit that the exclusion of xxx from the court and official words would not exclude it from friendly intercourse between Mahaprosad friends, and the measure opted by the Chief Commissioner could not be handed down to post as a wise and effectual remedy.

45. That during the short period Your Excellency's Viceroyalty His Excellency has, by paying personal attention to their just complaints, endeared Yourself to the people, and the memorialists sincerely hope that the unusual and arbitrary measure adopted by the Chief Commissioner will not be allowed to take effect.

CUTTACK, President
20-6-95 Orissa Association.

*ଭା୩୦ଗ, ସଂ୨୫ଖ୍ୟା, ୨୨।୬।୧୮୯୫*

## ସମ୍ବଲପୁରର ସରକାରୀଭାଷା ।

ସମ୍ବଲପୁରରେ ସରକାରୀଭାଷା ଓଡିଆ ବଦଳରେ ହିନ୍ଦି ହେବା ବିଷୟକ ମଧ୍ୟ ପ୍ରଦେଶର ପ୍ରଧାନ କମିଶନରଙ୍କ ଆଦେଶ ବିରୁଦ୍ଧରେ ସମ୍ବଲପୁରବାସିମାନେ ଇଣ୍ଡିଆ ଗବର୍ଣ୍ଣମେଣ୍ଟଙ୍କୁ ଆବେଦନ ପଠାଇବାର ସ୍ଥିର କରିଅଛନ୍ତି । ଏ ବିଷୟରେ ସମ୍ବଲପୁରଠାରେ ଏକ ବୃହତ ସଭା ହୋଇ ଥିବାର ସମ୍ବଲପୁର ହିତୈଷିଣୀରୁ ଆନନ୍ଦ ସହିତ ଅବଗତ ହୋଇ ପାଠକମାନଙ୍କ ଜାଣିବା କାରଣ ନିମ୍ନେ ପ୍ରକାଶ କଲୁଁ ଯଥା -

ଗତ ୧୩ ତାରିଖ ଦିନ ସମ୍ବଲପୁରର ଶ୍ରୀସୋମନାଥ ଦେବଙ୍କ ମନ୍ଦିରଠାରେ ଭାଷା ପରିବର୍ତ୍ତନ ସମ୍ବନ୍ଧରେ ଏକ ସଭା ହୋଇଥିଲା । ସଭାସ୍ଥଳରେ ସହରର ସକଳ ଶ୍ରେଣୀର ଅନେକ ଲୋକ ଉପସ୍ଥିତ ହୋଇ ଥିଲେ । ଶ୍ରୀଯୁକ୍ତ ସୋମନାଥ ବାବୁ ସଭାପତିର ଆସନ ଗ୍ରହଣ କରିଥିଲେ । ମହାମାନ୍ୟ ଚିଫ୍ କମିଶ୍ନର ବାହାଦୁରଙ୍କର ଭାଷା ପରିବର୍ତ୍ତନ ବିଷୟକ ଆଦେଶ ବିରୁଦ୍ଧରେ ଭାରତର ମହିମାବର ଗବର୍ଣ୍ଣର ଜେନରଲ ଏବଂ ରାଜପ୍ରତିନିଧିଙ୍କ ଛାମୁଙ୍କୁ ପଠାଯିବା ସକାଶେ ଯେଉଁ ଦରଖାସ୍ତ ଲିଖିତ ହୋଇଥିଲା ତାହା ଉକ୍ତ ସଭାରେ ସମ୍ପାଦକ ଶ୍ରୀଯୁକ୍ତ ଧରଣୀଧର ମିଶ୍ର ମହୋଦୟ ପାଠ କଲେ । ତଦନନ୍ତର ସଭାପତି ମହୋଦୟ ଉପସ୍ଥିତ ବ୍ୟକ୍ତିମାନଙ୍କର ମତ ଗ୍ରହଣ କଲେ । ସମସ୍ତେ ଏକ ବାକ୍ୟରେ ଉକ୍ତ ଦରଖାସ୍ତ ଅନୁମୋଦନ କଲେ ।

ପରେ ସମ୍ପାଦକ ଧରଣୀଧର ବାବୁଙ୍କ ପ୍ରସ୍ତାବ ମତେ ନିମ୍ନଲିଖିତ ସିଦ୍ଧାନ୍ତ ହୋଇ ସଭା ଭଙ୍ଗ ହେଲା ।

୧- "ଉକ୍ତ ଅପିଲ ଦରଖାସ୍ତ ଓଡିଆ ଓ ଇଂରେଜୀରେ ଛାପା ହେଉ ।

୨- ଓଡିଆରେ ଛାପା ଅପିଲ ଦରଖାସ୍ତରୁ ଏକ ଖଣ୍ଡ ଲେଖାଁଏ , ପ୍ରତ୍ୟେକ ଚକରେ ନିଯୁକ୍ତ ଥିବା ଲୋକମାନଙ୍କ ନିକଟକୁ ସେକ୍ରେଟରୀ ପଠାଇ ସେମାନଙ୍କୁ ପ୍ରାର୍ଥନା କରିବେ ଯେ ସେମାନେ ଶାଖା ସଭା ସ୍ଥାପନ କରି ଉକ୍ତ ଅପିଲକୁ ଅବିକଳ କିମ୍ବା ପରିବର୍ତ୍ତନ ସହିତ ଗ୍ରହଣ କରିବା ବିଷୟରେ ବାଦାନୁବାଦ କରିବେ । ସଭାର ମତ ସ୍ଥିର ହେଲାରୁ ସେହି ସେହି ଚକର ଲୋକମାନଙ୍କର ସ୍ୱାକ୍ଷର ସଂଗ୍ରହ କରିବେ, ପରେ ଉକ୍ତ କାଗଜାତ୍ ସମ୍ପାଦକ ମହୋଦୟଙ୍କ ନିକଟକୁ ପଠାଇ ଦେବେ ।

୩- ଏଠାରେ ସମ୍ପାଦକ ଧରଣୀଧର ବାବୁ ଲୋକମାନଙ୍କର ସ୍ୱାକ୍ଷର ସଂଗ୍ରହ କରିବେ । ଚକମାନଙ୍କର କାଗଜ ପାଇଲେ ସେ ସବୁ ଏକତ୍ର କରି ବିଧିମତେ ଗବର୍ଣ୍ଣର ଜେନେରଲ ବାହାଦୁରଙ୍କ ଛାମୁକୁ ପଠାଇବେ ।

୪- ଆବଶ୍ୟକୀୟ ବ୍ୟୟ ନିର୍ବାହ ନିମନ୍ତେ ଚାନ୍ଦା ସଂଗ୍ରହ କରାଯାଇ ଶ୍ରୀଯୁକ୍ତ ପର୍ଶୁରାମ ସୁଆରଙ୍କ ନିକଟରେ ଜମା ହେଉ ।

୫- ସହରରୁ ଚାନ୍ଦା ଅସୁଲ କରିବା ସକାଶେ ଦୁଇ ଟଙ୍କା ବେତନରେ ଜଣେ ଲୋକ ନିଯୁକ୍ତ କରାଯାଉ"।

*ଭା୩୦ଗ, ସଂ୨୭ଖ୍ୟା, ୬।୭।୧୮୯୫*

## [ଭାଷା ପରିବର୍ତ୍ତନ ସମ୍ପର୍କରେ]

ଭାଷା ପରିବର୍ତ୍ତନ ସମ୍ବନ୍ଧରେ ସମ୍ବଲପୁରବାସିମାନେ ସଭା କରି ମହାମାନ୍ୟ ଗଭର୍ଣ୍ଣର ଜେନେରଲ ବାହାଦୂରଙ୍କ ନିକଟକୁ ଯେଉଁ ଆବେଦନପତ୍ର ପଠାଇବାର ସ୍ଥିର କରିଥିଲେ ସେହି ଆବେଦନପତ୍ର ଚଳିତମାସ ପ୍ରଥମ ତାରିଖରେ ପଠାଯାଇ ଅଛି ଏବଂ ଆମ୍ଭେମାନେ ତହିଁର ଏକଖଣ୍ଡ ପ୍ରତିଲିପି ପ୍ରାପ୍ତ ହୋଇଅଛୁଁ । ଆବେଦନପତ୍ର ଅତ୍ୟନ୍ତ ଦୀର୍ଘ ଥିବା ଏବଂ ଏଥିର ଅନେକ ଯୁକ୍ତି ଉତ୍କଳ ସଭାରୁ ପଠାଯାଇଥିବା ପତ୍ର ସଙ୍ଗେ ଐକ୍ୟ ଥିବାରୁ ତହିଁ ନିମନ୍ତେ ସ୍ଥାନ ଯୋଗାଇବାକୁ ଅକ୍ଷମ ହେଲୁଁ । ସେ ଆବେଦନପତ୍ରରେ ଅଧିକ ପ୍ରାର୍ଥନା ଏହି ହୋଇଅଛି କି ଯଦ୍ୟପି ଭାଷା ସମ୍ବନ୍ଧୀୟ ମଧ୍ୟପ୍ରଦେଶର ଚିଫକମିଶନରଙ୍କ ଆଦେଶ ରହିତ କରିବା ଗଭର୍ଣ୍ଣମେଣ୍ଟ ଅନୁଚିତ ବୋଧ କରନ୍ତି ତେବେ ସମ୍ବଲପୁର ଜିଲା ଓ ତହିଁ ସଂଲଗ୍ନ ଗଡ଼ଜାତମାନଙ୍କୁ ମଧ୍ୟପ୍ରଦେଶରୁ ଖାରଜ କରି ଓଡିଶା କମିଶନରଙ୍କ ଅଧିନରେ ରଖା ଯାଉ । ଏ ସମ୍ବନ୍ଧରେ ଆମ୍ଭମାନଙ୍କ ମନ୍ତବ୍ୟ ଏ ପଛେ ପ୍ରକାଶ କରିବୁଁ ।

*ଭା୩୦ଗ, ସଂ୨୮ଖ୍ୟା, ୧୩।୭।୧୮୯୫*

## [ସୁତଲଦେବ ପ୍ରବନ୍ଧ : ଆଲୋଚନା]

**ମହାଶୟ !**

ଗତ ତା ୧୯ ରିଖ ଜୁନର "ଓଡ଼ିଆ ଓ ନବସମ୍ବାଦ"ରେ ପ୍ରକାଶିତ "ସୁତଲଦେବ"ଶୀର୍ଷକ ପ୍ରବନ୍ଧଟି ସମ୍ବନ୍ଧରେ ଆମ୍ଭମାନଙ୍କର କିଛି ବକ୍ତବ୍ୟ ଥିବାରୁ ତାହା ନିମ୍ନେ ପ୍ରକଟିତ କରୁ ଅଛୁଁ; ଅନୁଗ୍ରହ ପୂର୍ବକ ଆପଣଙ୍କ ପତ୍ରିକାସ୍ଥ କରି ବାଧିତ କରିବା ହେବେ ।

ମନସ୍ୱୀ ଲେଖକ ଆପଣା ପ୍ରବନ୍ଧର ଏକସ୍ଥଳରେ ଲେଖିଅଛନ୍ତି:- "ମୁଁ ସୁତଲ ଦେବଙ୍କୁ ଦେଖି ଅଛି, ଓଡିଶାର ସମସ୍ତ ରାଜାଙ୍କୁ ଦେଖିଅଛି ଏବଂ ଭାରତବର୍ଷର ଅଧିକାଂଶ ରାଜାଙ୍କ କଥା ଯଥାସମ୍ଭବ ବିସ୍ୱ(ଶ୍ୱ ?)ସ୍ତ ସୂତ୍ରରେ ଅବଗତ ହୋଇ ଅଛି । ସମସ୍ତ ଦେଖି ଶୁଣି ମୋହର ଦୃଢବିଶ୍ୱାସ ହୋଇ ଅଛି ଯେ ସୁତଲ ଦେବଙ୍କ ତୁଲ୍ୟ ରାଜା ଭାରତବର୍ଷରେ ପ୍ରାୟ ନାହାନ୍ତି" । ଏଥକୁ ଆମ୍ଭମାନଙ୍କର ବକ୍ତବ୍ୟ ଏହିକି ଲେଖକ ଓଡିଶାର ରାଜାମାନଙ୍କୁ ସ୍ୱଚକ୍ଷୁରେ ଦେଖିଥିବାରୁ ସେମାନଙ୍କର ଗୁଣାଗୁଣ ବିଚାର କରି ସେମାନଙ୍କୁ ସୁତଲ ଦେବଙ୍କ ତଳେ ଆସନ ଦେବାକୁ ଅଧିକାରୀ ହୋଇ ପାରନ୍ତି ମାତ୍ର ବିଶାଳ ଭାରତର ଅଧିକାଂଶ ରାଜାଙ୍କ କଥା କେବଳ ଯଥାସମ୍ଭବ ବିଶ୍ୱସ୍ତ ସୂତ୍ରରେ

ଅବଗତ ହୋଇ ସେମାନଙ୍କ ସମ୍ବନ୍ଧରେ ଏପ୍ରକାର ଅସମୀଚୀନ ମନ୍ତବ୍ୟ ପ୍ରକାଶ କରିବା ଆମ୍ଭମାନଙ୍କୁ ସୁନ୍ଦର ବୋଧ ହେଲା ନାହିଁ । ପରନ୍ତୁ ଆମ୍ଭେମାନେ ଏଥିରେ ଟିକିଏ ସ୍ତାବକତାର ମାତ୍ରାଧିକ୍ୟର ଆଘ୍ରାଣ ପ୍ରାପ୍ତ ହେଲୁଁ ।

ପ୍ରବନ୍ଧର ସ୍ଥଳାନ୍ତରରେ ଲେଖକ ଲେଖି ଅଛନ୍ତି । "କ୍ଷୁଦ୍ର ଦେବଗଡ଼ ନଗରରୁ ବର୍ତ୍ତମାନ ଯେତେ ଓଡିଆ ସୁଲେଖକ ବାହାରିବେ ସମଗ୍ର ଓଡ଼ିଶ୍ୟାରେ ସେଥିରୁ ଅଧିକ ବାହାରିବେ କି ନାହିଁ ସନ୍ଦେହ ।" ଲେଖକ ଯେ କେହି ହେଉନ୍ତୁ ନା କାହିଁକି ସେ ଯେ ଜଣେ ଉତ୍ତମ ଉତ୍କଳେତିହାସାଭିଜ୍ଞ ବ୍ୟକ୍ତି ଏଥିରେ ଆଉ ସନ୍ଦେହ ନାହିଁ । ମାତ୍ର ଏହି ମନ୍ତବ୍ୟଟି ଲେଖକଙ୍କର କେଉଁ ପ୍ରମାଣ ଉପରେ ସ୍ଥାପିତ ଆମ୍ଭେମାନେ ବୁଝିବାକୁ ଏକାନ୍ତ ଅକ୍ଷମ । ଯଦି କେବଳ "ହିତୈଷିଣୀ" ଉପରେ ନିର୍ଭର କରି ଲେଖକ ଏପ୍ରକାର ମନ୍ତବ୍ୟ ପ୍ରୟୋଗ କରି ଥାନ୍ତି ତାହା ହେଲେ ଆମ୍ଭେମାନେ କହିପାରୁଁ ଯେ ଉତ୍କଳୀୟ ଲେଖକମାନଙ୍କ ସହାନୁଭୂତି ବ୍ୟତୀତ "ହିତୈଷିଣୀ" ଦଣ୍ଡେମାତ୍ର ଜୀବିତ ରହି ପାରିବ ନାହିଁ । ଆଉ, ଯଦି ବାସ୍ତବିକ ଦେବଗଡରେ ଅନେକ ଅପ୍ରକାଶିତ ସୁଲେଖକ ଥାନ୍ତି ସେମାନଙ୍କ ସଂଖ୍ୟା ଯେ ଉତ୍କଳୀୟ ସୁଲେଖକଙ୍କ ଠାରୁ ଅଧିକ ହେବ ଏହା ଆମ୍ଭେମାନେ କଦାପି ବିଶ୍ୱାସ କରି ନ ପାରୁଁ ।

ଶେଷରେ ବକ୍ତବ୍ୟ ଏହି କି ଆମ୍ଭେମାନେ ମହାରାଜ ସୁତଳ ଦେବଙ୍କୁ ସ୍ୱଚକ୍ଷୁରେ ଦେଖି ନ ଥିଲେହେଁ ଲେଖକଙ୍କର ପ୍ରତ୍ୟେକ କଥାରେ (କେବଳ ଉପରୋକ୍ତ ଦୁଇଟି କଥା ଛଡା) ସରଳ ବିଶ୍ୱାସ ସ୍ଥାପନକରିବାକୁ ପ୍ରସ୍ତୁତ ଅଛୁଁ । ବର୍ତ୍ତମାନ ଲେଖକମହାଶୟଙ୍କ ନିକଟରେ ଆମ୍ଭମାନଙ୍କର ବିନୀତ ପ୍ରାର୍ଥନା କି ଯଦ୍ୟପି ସେ ଆମ୍ଭମାନଙ୍କର ଉପରୋକ୍ତ ଆପତ୍ତିଦ୍ୱୟକୁ ନିତାନ୍ତ ଅଯୌକ୍ତିକ ମନେ ନ କରନ୍ତି ତାହା ହେଲେ ଆପଣାର ଉକ୍ତ ମନ୍ତବ୍ୟ ଦ୍ୱୟକୁ ପ୍ରତ୍ୟାହାର କରି ନେଇ ନିଜର ପ୍ରଶସ୍ତ ଉଦାରତାର ପରିଚୟ ଦେଇ ପାରିବେ କି ? ଇତି ।

କଟକ ଆପଣଙ୍କର

୨୭-୦୬-୯୫ ଶ୍ରୀ—

*ଭାଗ୩୦ଗ, ସଂ୩୦ଖ୍ୟା, ୨୭।୭।୧୮୯୫*

## ସମ୍ବଲପୁର ଓଡ଼ିଶାଭୁକ୍ତ ହୋଇପାରେ କି ?

ସମ୍ବଲପୁରରୁ ସରକାରୀ କାର୍ଯ୍ୟାଳୟମାନଙ୍କର ଭାଷା ପରିବର୍ତ୍ତନ ପ୍ରସ୍ତାବବିରୁଦ୍ଧରେ ସେଠା ଜନସାଧାରଣ ଯେଉଁ ଆବେଦନ ପତ୍ର ମହାମାନ୍ୟ ଗବର୍ଣ୍ଣର ଜେନରଲ ବାହାଦୁରଙ୍କ ନିକଟକୁ ପଠାଇ ଅଛନ୍ତି ତହିଁର ଗୋଟିଏ ପ୍ରାର୍ଥନା ସମ୍ବଲପୁରକୁ ଓଡିଶା ଭୁକ୍ତ କରିବା ଅଟେ । ଆବେଦନ ପତ୍ରରେ ଏହି ପ୍ରାର୍ଥନା ସପକ୍ଷରେ ଅନେକ ସୁଯୁକ୍ତିପୂର୍ଣ୍ଣ ହେତୁ ପ୍ରଦର୍ଶିତ ହୋଇଅଛି । ପ୍ରକୃତରେ ସମ୍ବଲପୁର ଓଡିଶା ରାଜ୍ୟ ଏବଂ ଓଡିଶାର ଏକ ଅଂଶ ଅଟେ ସନ୍ଦେହ ନାହିଁ । ଏକା ସମ୍ବଲପୁର ଜିଲ୍ଲା କାହିଁକି ତହିଁର ସଂଯୁକ୍ତ ଗଡଜାତ ବା ଫିଉଡେଟରୀ ମାହାଲମାନ ମଧ୍ୟ ଓଡିଆ ରାଜ୍ୟ । ଏହି ସମୁଦାୟ ରାଜ୍ୟଖଣ୍ଡ ଓଡିଶା ସଙ୍ଗେ ଏକ ଶାସନାଧୀନରେ ଆସିଲେ ତହିଁର ଉନ୍ନତି ହେବ ଏହା ମଧ୍ୟ ଆମ୍ଭମାନଙ୍କର ସ୍ଥିର ବିଶ୍ୱାସ ଏବଂ ଏହା ଆମ୍ଭେମାନେ ସମୟ ସମୟରେ ପ୍ରକାଶ କରିବାକୁ ତ୍ରୁଟିକରି ନାହୁଁ । ଉତ୍କଳସଭା ସମ୍ବଲପୁରର ଭାଷା ପରିବର୍ତ୍ତନ ବିଷୟକ ଆଦେଶ ବିରୁଦ୍ଧରେ ଯେଉଁ ଆବେଦନପତ୍ର ଇଣ୍ଡିଆ ଗବର୍ଣ୍ଣମେଣ୍ଟଙ୍କୁ ପଠାଇ ଅଛନ୍ତି ତହିଁରେ ସମ୍ବଲପୁରକୁ ଓଡିଶା ଭୁକ୍ତ କରିବାର ପ୍ରାର୍ଥନା ହୋଇ ନାହିଁ ସତ୍ୟ । ମାତ୍ର ତହିଁରୁ ଏମନ୍ତ ସିଦ୍ଧାନ୍ତ ହୋଇ ନ ପାରେ ଯେ ସଭା ସେ ପ୍ରସ୍ତାବକୁ ଅନୁମୋଦନ କରୁ ନାହାନ୍ତି । ଶାସନ କାର୍ଯ୍ୟର ସୁବିଧା ନିମନ୍ତେ ଯେପ୍ରକାର ରାଜ୍ୟ ବିଭାଗ ହୋଇଅଛି ତହିଁର ପରିବର୍ତ୍ତନ ଅନେକ କାରଣ ଉପରେ ନିର୍ଭର କରେ ବୋଲି ସଭା ସେ ଦିଗକୁ ନ ଯାଇ କେବଳ ମଧ୍ୟପ୍ରଦେଶର ପ୍ରଧାନ କମିଶନର ଯେ ସମସ୍ତ ହେତୁବାଦରେ ସମ୍ବଲପୁରରୁ ଓଡିୟା ଉଠାଇ ଦେଇ ତହିଁ ବଦଳରେ ହିନ୍ଦୀ ପ୍ରଚଳିତ କରିବାର ଆଦେଶ ଦେଇ ଅଛନ୍ତି ସଭା ସେସମସ୍ତ ଖଣ୍ଡନ କରି ଦେଖାଇ ଦେଇଅଛନ୍ତି ଯେ ବଙ୍ଗ ମାନ୍ଦ୍ରାଜ ପ୍ରଭୃତି ଏକ ଏକ ଶାସନାଧୀନରେ ଭିନ୍ନ ଭିନ୍ନ ମାତୃଭାଷା ପ୍ରଚଳିତ ରାଜ୍ୟମାନଙ୍କର ଶାସନକାର୍ଯ୍ୟ ନିର୍ବାହ କଷ୍ଟକର ହୋଇ ନ ଥିବା ପ୍ରତ୍ୟକ୍ଷେ ମଧ୍ୟପ୍ରଦେଶରେ ସେପରି ହେବାର କୌଣସି କାରଣ ନାହିଁ ଏବଂ ପ୍ରଧାନ କମିଶନର ବାହାଦୁର ଭ୍ରମରେ ପଡି ସେପରି ଆଦେଶ ଦେଇ ଅଛନ୍ତି । ଲୋକମାନଙ୍କ ଅଭାବ ଅଭିପ୍ରାୟ ବୁଝିବା ସକାଶେ ସେମାନଙ୍କ ମାତୃଭାଷା ଜାଣିବା ରାଜକର୍ମଚାରିଙ୍କର

ଉଚିତ ହେଉଅଛି । ଶାସନକର୍ତ୍ତାଙ୍କ ସୁବିଧା ନିମନ୍ତେ ଲୋକଙ୍କ ମାତୃଭାଷା ଉଠାଇଦେବା ସେମାନଙ୍କ ମୁଖ ବାନ୍ଧି ଦେବା ତୁଲ୍ୟ ଅଟେ । ବୁଦ୍ଧିମାନ ଇଂରାଜ ଗବର୍ଣ୍ଣମେଣ୍ଟ ଏପରି କୌଣସିଠାରେ କରି ନାହାନ୍ତି ଏବଂ ଏପରି କରିବା ସୁନୀତି ନୁହେ । ସମ୍ବଲପୁର ଯେବେ ଓଡିଶା ଶାସନଭୁକ୍ତ ହେବ ତେବେ ପ୍ରଧାନ କମିଶନରଙ୍କ କଥିତ ଆପତ୍ତି ଓ ଅସୁବିଧାମାନ ସହଜରେ ଉଠିଯିବ ସନ୍ଦେହ ନାହିଁ । ମାତ୍ର ଏହା ହୋଇ ପାରେ କି ନା ଏତିକି ବିଚାର୍ଯ୍ୟ ଅଟେ ।

ଆମ୍ଭମାନଙ୍କ ବିବେଚନାରେ ସମ୍ବଲପୁର ଓଡିଶାଭୁକ୍ତ ହେବାର ପ୍ରତିବନ୍ଧକ ଯୋଡିଏ ଅଟେ ।୧- ଦୂରତ୍ୱ ଏବଂ ୨- ଓଡିଶା ବିଭାଗର କାର୍ଯ୍ୟ ବୃଦ୍ଧି । ପ୍ରଥମ ଆପତ୍ତି ସମ୍ବନ୍ଧରେ ସମ୍ବଲପୁରବାସିମାନେ ଦେଖାଇ ଅଛନ୍ତି ଯେ ସେଠାରୁ କଟକ ରାଏପୁର ଅପେକ୍ଷା ଅଧିକ ଦୂର ନୁହେ ଏବଂ କଟକକୁ ମଧ୍ୟ ଶୀଘ୍ର ରେଲବାଟ ଫିଟିବାର ସ୍ଥିର ହୋଇଅଛି । ସମ୍ପ୍ରତି ମଧ୍ୟ ମହାନଦୀ ଯୋଗେ ଅନ୍ତତଃ ବର୍ଷ ମଧ୍ୟରେ ମା୮ /୧୦ସ ନୌକା ବାଟ ବହିଅଛି । ସୁତରାଂ ପ୍ରଥମ ହେତୁଟି ବିଶେଷ ଅସୁବିଧାଜନକ ବୋଧ ହେଉ ନାହିଁ । ୨ୟ ହେତୁ ସମ୍ବନ୍ଧରେ ଦେଖାଯାଏ ଯେ ବଙ୍ଗଳାର ଅନ୍ୟାନ୍ୟ କମିଶନରି ବିଭାଗପ୍ରତି ଓଡିଶା ବିଭାଗ ଅନେକ ଊଣା ଅର୍ଥାତ୍ ଅନ୍ୟାନ୍ୟ ଏକ ଏକ ବିଭାଗର ଆୟତନ କୋଡିଏ ହଜାର ବର୍ଗମାଇଲରୁ ପ୍ରାୟ ଊଣା ନ ଥିବା ପ୍ରତ୍ୟକ୍ଷେ ଓଡିଶାର ଆୟତନ ୧୦ ହଜାର ବର୍ଗ ମାଇଲରୁ ଊଣା ଏବଂ ସମ୍ବଲପୁର ଯୋଗ ହେଲେ ସର୍ବସୁଦ୍ଧା ପ୍ରାୟ ୧୫ ହଜାର ବର୍ଗମାଇଲ ହେବ । ଅତଏବ ଓଡିଶାର ସଙ୍ଗେ ସମ୍ବଲପୁର ଯୋଗ ହେଲେ ଓଡିଶା କମିଶନରଙ୍କ କାର୍ଯ୍ୟ ଅତ୍ୟନ୍ତ ବୃଦ୍ଧି ହେବାର ଭୟ ନାହିଁ । କିନ୍ତୁ ଆପତ୍ତି ହୋଇପାରେ ଯେ ଓଡିଶା କମିଶନରଙ୍କ ହସ୍ତରେ ଗଡ଼ଜାତର ଭାର ଥିବାରୁ ତାହାଙ୍କର କାର୍ଯ୍ୟ ଯଥେଷ୍ଟ ଅଛି । ତହିଁ ଉପରେ ସମ୍ବଲପୁରର ମୋଗଲବନ୍ଦି ଗଡ଼ଜାତର ଭାର ମିଶିଲେ କାର୍ଯ୍ୟ ବଳାଇବା ସମ୍ଭବ । ଏ ଆପତ୍ତି ଅବଶ୍ୟ ଦୁର୍ବଳ ନ ହେଲେହେଁ ଅଖଣ୍ଡନୀୟ ନୁହେ । ଅନଗୁଳର ଜିଲା ହାକିମଙ୍କୁ ଗଡଜାତ ସୁପ୍ରଣ୍ଟଣ୍ଡୀ ଏଲାକାର ଅନେକ ଭାର ଦିଆଯିବାରୁ ସୁପ୍ରଣ୍ଟଣ୍ଟ ସାହେବଙ୍କର ଯଥେଷ୍ଟ ସାହାଯ୍ୟ ହୋଇଅଛି । ସମ୍ବଲପୁର ଏଲାକାର ଗଡଜାତ ନିମନ୍ତେ ଯେଉଁ ପୋଲିଟିକଲ ଏଜଣ୍ଟ ଅଛନ୍ତି ସେ ମଧ୍ୟ ସୁପ୍ରଣ୍ଟଣ୍ଟ ସାହେବଙ୍କର ଜଣେ ସହକାରୀ ହେବେ । ତାହା ହେଲେ କାର୍ଯ୍ୟ ନିର୍ବାହ କରିବା କୌଣସି ମତେ ଅସାଧ୍ୟ ବୋଲାଯାଇ ନ ପାରେ । ଅଥବା ଓଡିଶା କମିଶନରଙ୍କଠାରୁ ଗଡ଼ଜାତ ସୁପ୍ରଣ୍ଟଣ୍ଡୀ ଏଲାକା ବାହାର କରି ନେଇ ଓଡିଶା ଓ ସମ୍ବଲପୁର ଏଲାକାର ସମଗ୍ର ଗଡଜାତ ନିମନ୍ତେ ଜଣେ ସ୍ୱତନ୍ତ୍ର ସୁପ୍ରଣ୍ଟଣ୍ଟ ରଖାଯାଇ ପାରେ । ଗଞ୍ଜାମର ଜିଲା କଲେକ୍ଟର ଯେପରି ମାନ୍ଦ୍ରାଜ ଗବର୍ଣ୍ଣରଙ୍କ ଏଜଣ୍ଟ ହୋଇ ସେ ଅଞ୍ଚଳରେ ଗଡଜାତର କାର୍ଯ୍ୟମାନ ବୁଝାସୁଝା କରୁଅଛନ୍ତି । ସେହିପରି ଅନଗୁଳର କଲେକ୍ଟର ବଙ୍ଗୀୟ ଗବର୍ଣ୍ଣମେଣ୍ଟଙ୍କ ଏଜଣ୍ଟ ସ୍ୱରୂପ ଓଡିଶା ଓ ସମ୍ବଲପୁରର ଗଡଜାତମାନଙ୍କ କାର୍ଯ୍ୟ ନିର୍ବାହ କରିବେ । ମାତ୍ର ଓଡିଶା କମିଶନରଙ୍କଠାରୁ ଗଡଜାତ ସୁପ୍ରଣ୍ଟଣ୍ଡି ଅଧିକାର ବାହାରି ଗଲେ କମିଶନରୀର ଗୌରବ ବିସ୍ତର ଊଣା ହୋଇ ଯିବ ଏବଂ ଯୋଗ୍ୟ ଓ ପ୍ରବୀଣ କମିଶନରମାନେ ଓଡିଶାକୁ ଆସିବାକୁ ଆସ୍ଥା କରିବେ ନାହିଁ ଏହି ଭୟରେ ଆମ୍ଭେମାନେ ଏଥିର ପକ୍ଷପାତୀ ହୋଇପାରୁ ନାହୁଁ ।

*ଭା୩୦ଗ, ସଂ୩୧ଖ୍ୟା, ୩/୮/୧୮୯୫*

## [ପାଠ୍ୟପୁସ୍ତକରେ ଓଡିଆ ଅନୁବାଦ ସଂପର୍କରେ ପତ୍ର]

ମହାଶୟ !

ଆଜି କାଲି "ନୂତନ ପାଠ"ର ଉତ୍କଳାନୁବାଦ ଘେନି ଟିକିଏ ଚହଳ ପଡି ଯାଇଥିବାରୁ ତତ୍‌ସମ୍ବନ୍ଧରେ ଦୁଇ ଏକ କଥା ନ କହି ରହି ପାରିଲୁଁ ନାହିଁ ।

"ନୂତନପାଠ"ର ଅନୁବାଦକ ବିଜ୍ଞାପନରେ ଲେଖିଅଛନ୍ତି "ଡିରେକ୍ଟର "ମହୋଦୟ ଉକ୍ତ ପୁସ୍ତକ (ନୂତନ ପାଠ)ର ଉତ୍କଳାନୁବାଦ "ବୋଧୋଦୟ ପରିବର୍ତ୍ତରେ ଓଡିଶାର ବିଦ୍ୟାଳୟମାନଙ୍କରେ ବ୍ୟବହୃତ ହେବାର ଆଦେଶ ପ୍ରଦାନ କରି ଥିବାରୁ" ସେ ତାହା ଅନୁବାଦ କରି ପ୍ରକାଶ କରିଅଛନ୍ତି । ଡିରେକ୍ଟର ମହୋଦୟ ଏପ୍ରକାର ଆଦେଶ କେବେ ପ୍ରଚାର କଲେ ? ଆମ୍ଭେମାନେ ଯେତେଦୂର ଜାଣୁ ସେଥିରେ ନିର୍ଭର କରି ରହି ପାରୁଁ ଯେ ସେ ଏପ୍ରକାର

ଆଦେଶ ଆଦୌ ପ୍ରଚାର କରି ନାହାନ୍ତି । "ବୋଧୋଦୟ" ପରିବର୍ତ୍ତରେ "ନୂତନ ପାଠ"କେବଳ ବଙ୍ଗପ୍ରଦେଶର ବିଦ୍ୟାଳୟମାନଙ୍କରେ ପ୍ରଚଳିତ ହେବାର ଆଦେଶ କଲିକତା ଗେଜେଟରେ ପ୍ରକାଶିତ ହୋଇଥିବାର ଆମ୍ଭେମାନେ ଅବଗତ ଅଛୁଁ । ବଙ୍ଗପ୍ରଦେଶ କହିଲେ କି ଓଡିଶା ତଦ୍‌ଭୁକ୍ତ ବୋଲି ବୁଝିବାକୁ ହେବ ? ବଙ୍ଗପ୍ରଦେଶରେ ପ୍ରଚଳିତ ସମସ୍ତ ପାଠ୍ୟପୁସ୍ତକ କି ଓଡିଶାରେ ଚାଲୁଅଛି ? "ବୋଧୋଦୟ" ପରିବର୍ତ୍ତରେ "ନୂତନ ପାଠ"ଓଡିଶାରେ ଚଳାଇବାର ଇଚ୍ଛା ଥିଲେ ଡିରେକ୍ଟର ମହୋଦୟ କି "ନୂତନପାଠର ଓଡିଆ ଅନୁବାଦ ଓଡିଶାରେ ପ୍ରଚଳିତ ହେବ" ଏ ପ୍ରକାର ସ୍ପଷ୍ଟ ଆଦେଶ ଦେଇ ପାରି ନ ଥାନ୍ତେ ? ଏ ପ୍ରକାର କୌଣସି ଆଦେଶ ନ ଥିବା ସ୍ଥଳେ ଅନୁବାଦକ କିପରି ଜାଣିଲେ ଯେ "ନୂତନପାଠ"ର ଉତ୍କଳାନୁବାଦ ଓଡିଶାରେ ବ୍ୟବହୃତ ହେବ ? ଓଡିଶାର ଇନ୍‌ସ୍ପେକ୍‌ଟର ମହୋଦୟ କି ଡିରେକ୍ଟରଙ୍କଠାରୁ ଏ ପ୍ରକାର କୌଣସି ଆଦେଶ ପାଇଅଛନ୍ତି ? ଯଦି ପାଇଥାନ୍ତି ତେବେ ତାହା ପ୍ରକାଶ କରି ସର୍ବସାଧାରଣଙ୍କୁ ଅନୁବାଦ କରିବାର ସମାନ ଅଧିକାର ଦେବା ଉଚିତ । ଏବଂ ଟେକ୍‌ଷ୍ଟବୁକ କମିଟୀଦ୍ୱାରା ଯେଉଁ ଅନୁବାଦ ଶ୍ରେଷ୍ଠ ବୋଲି ବିବେଚିତ ହେବ ତାହାହିଁ ପ୍ରଚଳନ କରିବା ବିଧେୟ । ଇନ୍‌ସ୍ପେକ୍ଟର ମହୋଦୟ ଆଦୌ ଏପ୍ରକାର ଆଦେଶ ପାଇଅଛନ୍ତି କି ନାହିଁ ତାହା ସର୍ବସାଧାରଣ ଓ ବିଶେଷତଃ ଟେକ୍‌ଷ୍ଟବୁକ କମିଟୀର ମେମ୍ବରମାନଙ୍କୁ ଜଣାଇ ଦେବାର ଉଚିତ ।

"ନୂତନପାଠ"ନିଜଗୁଣରେ ସର୍ବତ୍ର ଆଦୃତ ହେବ; ହେଉ । କିନ୍ତୁ ତାହା ବୋଲି ଉତ୍କଳୀୟ ଲେଖକମାନଙ୍କୁ ଉତ୍କୃଷ୍ଟ ପୁସ୍ତକ ପ୍ରଣୟନ କରିବା ନିମିତ୍ତ ଆହ୍ୱାନ ନ କରି ଏକାବେଳକେ ତହିଁର ଅନୁବାଦ ପ୍ରଚଳନର ଆଦେଶ ଦେବା କୌଣସିମତେ ଉଚିତ ହୋଇ ନ ପାରେ । ସେଥିଦ୍ୱାରା ଓଡିଆ ସାହିତ୍ୟ ପ୍ରତି ଘୋର ଅବିଚାର କରା ହେବ ।

ଆମ୍ଭେମାନେ ବିଶ୍ୱସ୍ତସୂତ୍ରରୁ ଅବଗତ ହେଲୁଁ ଯେ "ନୂତନପାଠ" ର ଅନୁବାଦ କରିବା ନିମିତ୍ତ ଓଡିଶାର ଅନେକ ଗୁଡିଏ ଲେଖକ ଗ୍ରନ୍ଥକର୍ତ୍ତାଙ୍କ ନିକଟରେ ଅନୁମତିପ୍ରାର୍ଥୀ ହୋଇଥିଲେ । ମାତ୍ର ସେ ସମସ୍ତଙ୍କର ପ୍ରାର୍ଥନା ଉପେକ୍ଷା କରି କେବଳ ବାବୁ ଅଭିନ୍ନ ନାୟକଙ୍କୁ ଯୋଗ୍ୟତମ ବୋଲି ଜାଣିଲେ କିପରି ? ଅଭିନ୍ନ ବାବୁ କି ଗ୍ରନ୍ଥକର୍ତ୍ତାଙ୍କର ବିଶେଷ ପରିଚିତ ? ନା, ସେ ଉତ୍କୃଷ୍ଟ ସାର୍ଟିଫିକେଟ ଦେଖାଇବାକୁ ସକ୍ଷମ ହୋଇଥିଲେ ? "ସବ୍‌ଜାନତା" ମହାଶୟ ଏହି ନିଗୂଢ ରହସ୍ୟ ଭେଦ କରି ନିଜ ନାମର ସାର୍ଥକତା ସମ୍ପାଦନ କରିବାକୁ ସଚେଷ୍ଟ ହେବେ କି ?

ଅଭିନ୍ନ ବାବୁଙ୍କର ଅନୁବାଦ ମଧ୍ୟ ଯେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ହୋଇଅଛି ତାହା ନୁହେ । ପାଠକେ ! ଟିକିଏ ନମୁନା ଦେଖନ୍ତୁ । ପୃ ୬୦ ଷ୍ଠାରେ "ବିଦେଶୀ"ପ୍ରବନ୍ଧର ଆଦ୍ୟରେ "ମନୁଷ୍ୟର ଖାଲି ଯେ ପିତା ମାତା, ଭାଇ, ଭଉଣୀ ପ୍ରଭୃତି ଆପଣା ଲୋକମାନଙ୍କୁ ଘେନି ଏକତ୍ର ରହିବାକୁ ଇଚ୍ଛା କରେ" ଇତ୍ୟାଦି । ପାଠକେ ! "ଇଚ୍ଛା କରେ" କିପରି ଓଡିଆ ? ତାହା ସୁକୁମାରମତି ବାଳକ ବାଳିକାମାନେ ହୃଦୟଙ୍ଗମ କରି ପାରିବେ ଟିକି ? ଏପର ବର୍ଣ୍ଣାଶୁଦ୍ଧି ଯେ ଦୁଇ ଏକ ସ୍ଥଳେ ନାହିଁ ଏମନ୍ତ ନୁହେ । ପତ୍ର ବାହୁଲ୍ୟ ଭୟରେ ସେ ସବୁ ଦେଖାଇବାରୁ କ୍ଷାନ୍ତ ହେଲୁଁ । ପୁଣି ସ୍ଥାନେ ସ୍ଥାନେ ଅନୁବାଦକ ମହାଶୟ ଓଡିଆ ସମ୍ବନ୍ଧରେ ଯେଉଁ କେତୋଟି କଥା ଯୋଗ କରି ଦେଇଅଛନ୍ତି ତାହା କରିବାରେ ତାଙ୍କର ଅଧିକାର ଅଛିତ ? କୌଣସି ପ୍ରକାରେ ସ୍ୱୀକାର ନ କରି ଏପ୍ରକାର [illegible]ନତା ପରିଚାଳନା କରିବା କେତେଦୂର ଆଇନ ବା ନୀତିସଙ୍ଗତ ତାହା କେବଳ ଅନୁବାଦକ ମହାଶୟ କହି ପାରିବେ ।

ପରିଶେଷରେ ଇନସ୍ପେକ୍ଟର ମହୋଦୟଙ୍କୁ ବିନୀତପ୍ରାର୍ଥନା କି ସେ "ନୂତନପାଠ"ର ଅନୁବାଦ ପ୍ରଚଳନ ସମ୍ବନ୍ଧରେ ଡିରେକ୍ଟର ମହୋଦୟଙ୍କର କୌଣସି ସ୍ପଷ୍ଟ ଆଦେଶ ଅଛି କି ନାହିଁ ତାହା ଟେକ୍‌ଷ୍ଟବୁକ କମିଟୀର ମେମ୍ବରମାନଙ୍କୁ ଜଣାଇଦେବେ । ନଚେତ୍ ସେମାନଙ୍କର ଭ୍ରମରେ ପଡିବାର ସମ୍ଭାବନା । ଆଉ ମେମ୍ବରମାନଙ୍କୁ ମଧ୍ୟ ଆମ୍ଭମାନଙ୍କର ବିଶେଷ ଅନୁରୋଧ କି ସେମାନେ ଏହି ଅନୁବାଦ ପୁସ୍ତକ ନିର୍ବାଚନ କାଳରେ ବିଶେଷ ସାବଧାନତାର ସହିତ କାର୍ଯ୍ୟ କରିବେ । ଇତି ।

ଆପଣଙ୍କର
କୁଚ୍ଛଜାନତା

*ଭାଗ୩୦ଗ, ସଂ୩୨ଖ୍ୟା, ୧୦।୮।୧୮୯୫*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## [ଓଡ଼ିଆ ପୁସ୍ତକର ବିଭ୍ରାଟ ସମ୍ପର୍କୀୟ ପତ୍ର]

ମହାଶୟ !

ଓଡିଆ ପୁସ୍ତକମାନଙ୍କରେ ଆଜିକାଲି ମହା ବିଭ୍ରାଟ ଘଟିଅଛି । କୌଣସି କୌଣସି ପାଠ୍ୟପୁସ୍ତକ ସମ୍ବନ୍ଧରେ ଯେଉଁ ବିଭ୍ରାଟ ଘଟିଅଛି, ତତ୍ସମ୍ବନ୍ଧରେ ଆମ୍ଭେମାନେ ଏ ପ୍ରସ୍ତାବରେ କିଛି କହିବୁ ନାହିଁ । ଇତି ପୂର୍ବେ କେହି କେହି ସେ ବିଷୟ ସମ୍ବାଦପତ୍ରରେ ଉତ୍‌ଥାପନ କରିଅଛନ୍ତି – ଏବଂ ଭବିଷ୍ୟତରେ ଉତ୍କଳଭାଷାର ଉନ୍ନତି ପ୍ରୟାସୀ ସାହିତ୍ୟାନୁରାଗୀ ସୁଧୀବର୍ଗଙ୍କ କର୍ତ୍ତୃକ ଏ ବିଷୟ ସମ୍ୟକ ଆଲୋଚିତ ହେବ, ଏପରି ଆଶା ମଧ୍ୟ ଅଛି । ଆନ୍ଦୋଳନ ଜୀବନୀ ଶକ୍ତିର ପରିଚାୟକ । ସୁତରାଂ ଏ ବିଷୟରେ ଆନ୍ଦୋଳନ ଏକାନ୍ତ ବାଞ୍ଛନୀୟ ।

ଆମ୍ଭେମାନେ ଯେଉଁ ବିଭ୍ରାଟର କଥା ଉତ୍‌ଥାପନ କରିବାକୁ ପ୍ରବୃତ୍ତ ହୋଇଅଛୁଁ-ତାହା "ଉତ୍ସର୍ଗପତ୍ରର" ବିଭ୍ରାଟ । ଯେତେ କ୍ଷୁଦ୍ରାୟତନର ପୁସ୍ତକ ହେଉ ନା କାହିଁକି - ଫିଟାଇ ଦେଖ, ଦେଖିବାକୁ ପାଇବ ଯେ ତାହା ରାଜା ମହାରାଜାଙ୍କର ନାମରେ ଉତ୍ସୃଷ୍ଟ । ଗ୍ରନ୍ଥକାରମାନେ ସ୍ୱପ୍ରଣୀତ ପୁସ୍ତକ ପୁସ୍ତିକା ସମୂହକୁ ରାଜା ମହାରାଜାଙ୍କ ନାମରେ ଉତ୍ସର୍ଗକରି ଆନ୍ତରିକ ଭକ୍ତି ଓ କୃତଜ୍ଞତାର ପରାକାଷ୍ଠା ପ୍ରଦର୍ଶନ କରନ୍ତୁ, ତହିଁରେ ଆମ୍ଭମାନଙ୍କର କିଛି କହିବାର ନାହିଁ । କାରଣ , ସେସବୁ ସେମାନଙ୍କର ନିଜସ୍ୱ –ସ୍ୱସମ୍ପତ୍ତିର ଯଥେଚ୍ଛା ଦାନରେ ସେମାନଙ୍କର ସମ୍ପୂର୍ଣ୍ଣ ଅଧିକାର ଅଛି । କିନ୍ତୁ ଅନ୍ୟାନ୍ୟ ଗ୍ରନ୍ଥକାରମାନଙ୍କ କୃତ ଗ୍ରନ୍ଥସମୂହ ଭାଷାନ୍ତରିତ କରି ମୁଦ୍ରିତ କରିବା ସକାଶେ ଅନୁମତି ପ୍ରାପ୍ତ ପ୍ରକାଶକମାନେ ଉକ୍ତ ଗ୍ରନ୍ଥମାନଙ୍କୁ ଯଥେଚ୍ଛା ଉତ୍ସର୍ଗ କରି ପାରନ୍ତି କି ନାହିଁ , ତଦ୍ୱିଷୟରେ ଆମ୍ଭମାନଙ୍କର ଗଭୀର ସନ୍ଦେହ ଅଛି ।

ଭକ୍ତିଭାଜନ ଶ୍ରୀଯୁକ୍ତ ତାରାକୁମାର କବିରତ୍ନଙ୍କ କୃତ "ଶ୍ରୀମୂର୍ତ୍ତି ଦର୍ଶନର" ଉତ୍କଳାନୁବାଦ ସମ୍ପ୍ରତି ବିତରଣୋଦ୍ଦେଶ୍ୟରେ ବାମଣ୍ଡା ସୁଜଳ ପ୍ରେସରୁ ପ୍ରସ୍ତୁତ ହୋଇଅଛି । ପ୍ରକାଶକ ମହାଶୟ ତାହାକୁ ଶ୍ରୀଯୁକ୍ତ ମଧୁସୂଦନ ରାଓଙ୍କର ସୁପବିତ୍ର ନାମରେ ଉତ୍ସର୍ଗ କରିଅଛନ୍ତି । ପ୍ରକାଶକ ଉତ୍ସର୍ଗ ପତ୍ରର ଏକ ସ୍ଥାନରେ ମଧୁବାବୁଙ୍କୁ "ଉତ୍କଳ ଖଣ୍ଡରେ ସଂପ୍ରତି "ଆଦର୍ଶ ମନୁଷ୍ୟ" ନାମରେ ସୁପରିଚିତ"ବୋଲି ଉଲ୍ଲେଖ କରିଅଛନ୍ତି । ମଧୁବାବୁଙ୍କ ପ୍ରତି ଆମ୍ଭମାନଙ୍କର ଗଭୀର ଶ୍ରଦ୍ଧା ଓ ଭକ୍ତି ଅଛି ସୁତରାଂ ସେ ଆମ୍ଭମାନଙ୍କ ନିକଟରେ ଆଦର୍ଶ ମନୁଷ୍ୟ ବୋଲି ଗଣ୍ୟ ହୋଇ ପାରନ୍ତି । କିନ୍ତୁ ସମଗ୍ର ଉତ୍କଳଖଣ୍ଡ ତାହାଙ୍କୁ "ଆଦର୍ଶ ମନୁଷ୍ୟ" ବୋଲି ଗ୍ରହଣ କରିବ କି ନାହିଁ , ତାହା ସନ୍ଦେହ ସ୍ଥଳ । ମଧୁବାବୁ ମଧ୍ୟ ଈଦୃଶ ଉତ୍ସର୍ଗପତ୍ରର ପକ୍ଷପାତି ହେବେ କି ?

ଆଜିକି ପ୍ରାୟ ୩ ବର୍ଷ ହେବ "ଶ୍ରୀମୂର୍ତ୍ତି ଦର୍ଶନର" ଆହୁରି ଗୋଟିଏ ଉତ୍କଳାନୁବାଦ କଟକ ସାହେବଜାଦା ବଜାରସ୍ଥ "ଭକ୍ତି ଗ୍ରନ୍ଥାଳୟରୁ" ପ୍ରକାଶିତ ହୋଇଥିଲା - ଅବଧି ତାହା ମଧ୍ୟ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ବିକ୍ରୟ ହେଉଅଛି । ଆଶ୍ଚର୍ଯ୍ୟର ବିଷୟ ପ୍ରକାଶକ ଶ୍ରୀଯୁକ୍ତ କାଳୀ ପ୍ରସାଦ ରାୟଙ୍କ କର୍ତ୍ତୃକ ତାହା ପରଲୋକ ଗତ ଭ୍ରାତାଙ୍କର ନାମରେ ଉତ୍ସୃଷ୍ଟ ହୋଇଅଛି । ଭ୍ରାତୃଭକ୍ତିରେ ଅନୁପ୍ରାଣିତ ହୋଇ "ଭକ୍ତି ଗ୍ରନ୍ଥାଳୟର"କାର୍ଯ୍ୟାଧ୍ୟକ୍ଷ ମହାଶୟ ଉକ୍ତ ପୁସ୍ତିକା ଖଣ୍ଡି ପରଲୋକଗତ ଭ୍ରାତାଙ୍କୁ ଉତ୍ସର୍ଗ କରିଅଛନ୍ତି ଦେଖି ଆମ୍ଭେମାନେ ତାହାଙ୍କୁ ଆନ୍ତରିକ ଧନ୍ୟବାଦ ଦେଉ ଅଛୁଁ ସତ୍ୟ କିନ୍ତୁ ଜିଜ୍ଞାସ୍ୟ ଏହିକି ପରଧନକୁ ଏପରି ଯଥେଚ୍ଛା ଦାନରେ ପ୍ରକାଶକଦ୍ୱୟଙ୍କର ଅଧିକାର ଅଛି କି ?

"ଶ୍ରୀମୂର୍ତ୍ତି ଦର୍ଶନ"ତାରାକୁମାରଙ୍କ କୃତ "କୃଷ୍ଣଭକ୍ତି ରସାମୃତ" ନାମକ ଖଣ୍ଡିଏ ଗ୍ରନ୍ଥର ଅଂଶ ବିଶେଷ ମାତ୍ର । "କୃଷ୍ଣଭକ୍ତି ରସାମୃତ" ଗ୍ରନ୍ଥ କାଣିକାଧୀଶ ଶ୍ରୀମାନ ମହିମାରଞ୍ଜନଙ୍କର ନାମରେ ଉତ୍ସୃଷ୍ଟ । ସୁତରାଂ ଜଣକର ନାମରେ ଉତ୍ସୃଷ୍ଟ ବସ୍ତୁକୁ ଆଉ ଜଣଙ୍କର ନାମରେ ଉତ୍ସର୍ଗ କରିବାଟା କେତେ ଦୂର ନ୍ୟାୟାନୁଗତ ଏବଂ ଏପରି କରିବାରେ ପ୍ରକାଶକମାନଙ୍କର ଅଧିକାର ଅଛି କି ନାହିଁ , ତାହା ଜାଣିବା ସକାଶେ ବାସନା ରହିଲା । ଯେଉଁମାନଙ୍କୁ

ତାହା ଉତ୍ସୃଷ୍ଟ ହୋଇଅଛି, ସେମାନେ ଏପରି ପରର ଉଚ୍ଛିଷ୍ଟ ଗ୍ରହଣ କରିବାକୁ ରାଜି ହେବେତ ? ଏପରି କଲେ ଗ୍ରନ୍ଥକର୍ତ୍ତାମାନେ ସ୍ୱୀୟ ଗ୍ରନ୍ଥକୁ ଭାଷାନ୍ତରିତ କରିବା ସକାଶେ ଅନୁମତି ଦେବେଟି କି ? ସେମାନଙ୍କର ଅନୁମତି ଦାନ ରହିତ ହେଲେ ଉତ୍କଳଭାଷା ଗୋଟିଏ ସୌଭାଗ୍ୟରୁ ବଞ୍ଚିତ ହେବ ନାହିଁ କି ?

"ଶ୍ରୀମୂର୍ତ୍ତି ଦର୍ଶନର"ପ୍ରକାଶକ ଦ୍ୱୟ ଯେ କେବଳ ଆମ୍ଭମାନଙ୍କର ଏହି ପ୍ରସ୍ତାବର ଲକ୍ଷ, ତାହା ନୁହେ । ରାଧାନାଥ ବାବୁଙ୍କର "ଚିଲିକା"ପ୍ରକାଶକ, ମଧୁସୂଦନ ମିଶ୍ରଙ୍କ କୃତ "ପିତୃଭକ୍ତି"ପ୍ରକାଶକ, ଯୋଗେଶ ବାବୁଙ୍କର "ପଦାର୍ଥବିଜ୍ଞାନର" ଉତ୍କଳାନୁବାଦର ପ୍ରକାଶକ ,ପ୍ରାଚୀନ କବିମାନଙ୍କ କୃତ "ସଙ୍ଗୀତସାଗର" ଓ "ସଙ୍ଗୀତ ସର୍ବସାର" ପ୍ରକାଶକ, "ସଙ୍ଗୀତ କଳାପ" ପ୍ରକାଶକ, ଦାସଙ୍କର ଭାଗବତରୁ ସଂକଳିତ "ସର୍ବସାର ଭାଗବତ" ପ୍ରକାଶକ, ମଧୁବାବୁ ଓ ରାଧାନାଥ ବାବୁ ପ୍ରଭୃତିଙ୍କର "କବିତା ସଂଗ୍ରହ"ପ୍ରକାଶକମାନେ ମଧ୍ୟ ଆମ୍ଭମାନଙ୍କର ଲକ୍ଷ । ଦେଖି ଆହୁରି ବିସ୍ମିତ ହେଲୁଁ ଯେ,ଗତାସୁ ଦୁଇ ଖଣ୍ଡି ମାସିକ ପତ୍ର("ଆଶା"ଓ"ଉତ୍କଳ ଚିକିତ୍ସକ") ଏବଂ ଦୁଇଖଣ୍ଡ ଅଭିଧାନ ("ଉତ୍କଳ ଅଭିଧାନ" ଏବଂ "ପକେଟ ଅଭିଧାନ") ମଧ୍ୟ ବ୍ୟକ୍ତିବିଶେଷଙ୍କ ନାମରେ ଉତ୍ସୃଷ୍ଟ । ମାସିକପତ୍ର ଓ ଉତ୍କଳ ଅଭିଧାନ ଇଜମାଲି ଜମି ସଦୃଶ ସମସ୍ତଙ୍କର ଅଧିକାରଭୁକ୍ତ ବୋଲି ନିର୍ଦ୍ଦେଶ କରାଯାଇପାରେ । କାରଣ, ମାସିକ ପତ୍ର ଗ୍ରାହକ, ଅନୁଗ୍ରାହକ ଓ ଲେଖକ ମାନଙ୍କର ସହାନୁଭୂତି ଓ ସାହାଯ୍ୟ ବଳରେ ପରିଚାଳିତ ଏବଂ ଜନସାଧାରଣର ହିତସାଧନୋଦେଶ୍ୟରେ ପଣ୍ଡିତମାନଙ୍କ କର୍ତ୍ତୃକ ପୂର୍ବରୁ ଅଭିଧାନ ସଂକଳିତ । ସୁତରାଂ ଏମାନେ କିରୂପେ ସମ୍ପାଦକ ଓ ପ୍ରକାଶକମାନଙ୍କ କର୍ତ୍ତୃକ ବ୍ୟକ୍ତିବିଶେଷର ନାମରେ ଉତ୍ସୃଷ୍ଟ ହେଲେ, ତାହା ଆମ୍ଭେମାନେ ବୁଝିପାରିଲୁ ନାହିଁ । ହୁଏତ ଦିନେ ଏପରି ମଧ୍ୟ ଦେଖିବାକୁ ପାଇବୁଁ ଯେ , ଦାସଙ୍କର ଭାଗବତ, ମିଶ୍ରଙ୍କର ମହାଭାରତ ଓ ଭଞ୍ଜଙ୍କର ବୈଦେହୀଶ ବିଳାସ ପ୍ରଭୃତି ଗ୍ରନ୍ଥ ସମୂହ ତତ୍‌ପ୍ରକାଶକମାନଙ୍କ କର୍ତ୍ତୃକ , ରାଜା ମହାରାଜାଙ୍କର ନାମରେ ଉତ୍ସୃଷ୍ଟ ହୋଇଅଛି । ହାୟ ! କି ନକଲେ ଦାରୁଣ ବିହି, କାଳକୁ ଚାହିଁ !!!

ଉପସଂହାରରେ ବକ୍ତବ୍ୟ ଏହିକି, ଯେଉଁ ସବୁ ପୁସ୍ତକର ନାମ ଆମ୍ଭେମାନେ ଉପରେ ଉଲ୍ଲେଖ କଲୁଁ, ତନ୍ମଧ୍ୟରୁ କାହାରି କପିରାଇଟ୍ ପ୍ରକାଶକ ମାନେ କ୍ରୟ କରିଥିବାର ଆମ୍ଭମାନଙ୍କୁ ଜଣା ନାହିଁ ଏବଂ କପିରାଇଟ୍ କ୍ରୟ କରିଥିଲେହେଁ ଏପରି ଉତ୍ସର୍ଗ କରିବାରେ ସେମାନଙ୍କର ନ୍ୟାଯ୍ୟ ଅଧିକାର ଅଛି କି ନାହିଁ , ତାହାର ସଦୁତ୍ତର ଦେଇ ପ୍ରକାଶକମାନେ ଆମ୍ଭମାନଙ୍କୁ ବାଧିତ କରିବେ କି ?

ଉତ୍ସର୍ଗ ବିତରଣ — ସଦୁତ୍ତରାକାଂକ୍ଷୀ
କାର୍ଯ୍ୟାଳୟ — ଶ୍ରୀମତ୍ ଉତ୍ସର୍ଗାନନ୍ଦ ସ୍ୱାମୀ
ମାୟାନଗର

*ଭାଗ୩୦ଗ, ସଂ୩୩ଖ୍ୟା, ୧୭।୮।୧୮୯୪*

## ପୁସ୍ତକପ୍ରାପ୍ତି ।

## [କୃତଜ୍ଞତା]

ଆମ୍ଭେମାନେ ନିମ୍ନଲିଖିତ ପୁସ୍ତକମାନ ଉପହାର ପାଇବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ।

ରତ୍ନାବଳୀ – ସଂସ୍କୃତ ରତ୍ନାବଳୀ ନାଟକକୁ ସମ୍ବଲପୁର ଜିଲା ଅନ୍ତର୍ଗତ ସୋନପୁର ରାଜଧାନିର ଯୁବରାଜ ଶ୍ରୀମାନ ବୀରମିତ୍ରୋଦୟ ସିଂହ ଦେବ ଉତ୍କଳଭାଷାରେ ଗଦ୍ୟ ଓ ଗୀତରେ ଅନୁବାଦ କରି ପ୍ରକାଶ କରିଅଛନ୍ତି ଏବଂ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ହୋଇଅଛି । ଆମ୍ଭେମାନେ ଏ ପୁସ୍ତକ ପଢ଼ି ଆନନ୍ଦିତ ହୋଇଅଛୁଁ । ଏହାର ଭାଷା ଉନ୍ନତ ସୁରୁଚି ପୂର୍ଣ୍ଣ ଅଥଚ କ୍ଲିଷ୍ଟ ନୁହେଁ ଏବଂ ଭାବ ମନୋହର । ଏହା ଥରେ ପାଠକରିବା ନିମନ୍ତେ ସର୍ବସାଧାରଣଙ୍କୁ ଅନୁରୋଧ କରୁଁ ଭଦ୍ର ମଣ୍ଡଳିରେ ଏହା ଅଭିନୀତ ହେଲେ ଆନନ୍ଦପ୍ରଦ ହେବ ସନ୍ଦେହ ନାହିଁ ।

ଚମତ୍କାର ଚନ୍ଦ୍ରିକା- ଏହି ନାମର ମୂଳ ସଂସ୍କୃତ ଗ୍ରନ୍ଥରୁ ପଣ୍ଡିତ ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣଙ୍କ ଦ୍ୱାରା ଉତ୍କଳ ଛାନ୍ଦବନ୍ଦିରେ ଅନୁବାଦ ହୋଇ ଏ ନଗରସ୍ଥ ଅରୁଣୋଦୟ ଯନ୍ତ୍ରରେ ମୁଦ୍ରିତ ହୋଇଅଛି । ଏଥିରେ ଶ୍ରୀକୃଷ୍ଣଙ୍କ

ଗୋପଲୀଳାର କେତେକ କୌତୁକ ବିଷୟ ସରଳ ଭାଷାରେ ବର୍ଣ୍ଣିତ ହୋଇଅଛି ମାତ୍ର ନାମାନୁରୂପ ଚମତ୍କାରିତ୍ୱ କିଛି ଦେଖିଲୁଁ ନାହିଁ ।

ଅନ୍ଧଚାତୁରୀ –ଶ୍ରୀ ଭାଗୀରଥୀ ସାଠିଆଙ୍କ ଦ୍ୱାରା ରଚିତ ଏବଂ ଏନଗରସ୍ଥ ଅରୁଣୋଦୟ ଯନ୍ତ୍ରରେ ମୁଦ୍ରିତ । ଜଣେ ଅନ୍ଧ ଏକଜଣର ସ୍ତ୍ରୀକୁ ତାହାଠାରୁ ଠକି ନେଇଥିଲା ମାତ୍ର ରାଜଦରବାରରେ ମନ୍ତ୍ରୀଙ୍କ ସୁକୌଶଳରେ ଧରାପଡିବାରୁ ଦଣ୍ଡନୀୟ ହେଲା ଅନ୍ଧର ଚାତୁରି ରହିପାରିଲା ନାହିଁ ଏହି ବିଷୟ ନାନା ରାଗିଣୀର ଛାନ୍ଦରେ ବର୍ଣ୍ଣିତ ହୋଇଅଛି । ଏଥିର ଭାଷା ସରଳ ଏବଂ ମନୋହର ମାତ୍ର ବିଷୟ ତଦୁପଯୁକ୍ତ ହୋଇ ନାହିଁ ।

ଭଜନମାଳା-ଖଣ୍ଡପଡାଧିପ ଶ୍ରୀ ନଟବର ସିଂହ ମର୍ଦରାଜ ଭ୍ରମରବର ରାୟଙ୍କ ଦ୍ୱାରା ବିରଚିତ ଏବଂ ଏ ନଗରସ୍ଥ ରାୟ ପ୍ରେସରେ ମୁଦ୍ରିତ । ଏହି କ୍ଷୁଦ୍ର ପୁସ୍ତିକାରେ ରାମ ଓ କୃଷ୍ଣଙ୍କ ଉଦ୍ଦେଶରେ କେତୋଟି ଭକ୍ତିପୂର୍ଣ୍ଣ ନାନା ରାଗିଣୀର ସଙ୍ଗୀତ ସନ୍ନିବେଶିତ ହୋଇଅଛି । ଗୀତ ସବୁର ତାଳ ଲେଖା ନାହିଁ । ମାତ୍ର ଭାବ ଉତ୍ତମ ଅଟେ । କେବଳ ବିତରଣାର୍ଥେ ପ୍ରକାଶିତ ହୋଇଅଛି ।

ସଂକ୍ଷିପ୍ତ ଉତ୍କଳ ଅଭିଧାନ - ବାବୁ ଜଗନ୍ନାଥ ରାଓଙ୍କ ଦ୍ୱାରା ପ୍ରକାଶିତ ଶ୍ରୀଯୁକ୍ତ ବାମଣ୍ଡା ରାଜାଙ୍କ ନାମରେ ଉତ୍ସର୍ଗିତ ଏବଂ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଦ୍ୱାରା ମୁଦ୍ରିତ । ଜଗନ୍ନାଥବାବୁ ଏଥିପୂର୍ବେ ଖଣ୍ଡିଏ ବୃହତ୍ ଅଭିଧାନ ପ୍ରକାଶ କରିଥିଲେ । କିନ୍ତୁ ତହିଁର ମୂଲ୍ୟାଧିକ୍ୟ ହେତୁ ସମସ୍ତଙ୍କ ପକ୍ଷରେ ସୁବିଧାଜନକ ନୁହେ । ଏଥିପାଇଁ ସେ ଏହି ସଂକ୍ଷିପ୍ତ ଅଭିଧାନ ପ୍ରକାଶ କରିଅଛନ୍ତି । ଏହା କ୍ଷୁଦ୍ର ଅକ୍ଷର ଏବଂ କ୍ଷୁଦ୍ର ଆକୃତିରେ ପୃ୪୪୦ଷ୍ଠାରେ ସମାପ୍ତ ଏବଂ ଏଥିରେ ପ୍ରାୟ ଦଶସହସ୍ର ଶବ୍ଦ ଅଛି । ଏପୁସ୍ତକ ଅତିପ୍ରୟୋଜନୀୟ ସନ୍ଦେହ ନାହିଁ ଏବଂ ଏହା ପ୍ରକାଶକରି ଗ୍ରନ୍ଥକାର ସର୍ବସାଧାରଣ ବିଶେଷତଃ ବିଦ୍ୟାଳୟର ଛାତ୍ରମାନଙ୍କର ଉପକାର କରିଅଛନ୍ତି । କେତେଗୁଡିଏ ନିତାନ୍ତ ଜଣା ଶବ୍ଦ ପରିବର୍ତ୍ତରେ ଆଉ କେତେକ ଅର୍ଥସାପେକ୍ଷ ଶବ୍ଦ ସନ୍ନିବେଶିତ ଏବଂ ବର୍ତ୍ତମାନର ମୂଲ୍ୟ ଏକଟଙ୍କାରୁ ଊଣା ହେଲେ ଏହାର ଉପକାରିତା ଆହୁରି ବୃଦ୍ଧିହେବ ବୋଲି ଆଶା ହେଉଅଛି ।

ଜୀର୍ଣ୍ଣମଞ୍ଜରୀ-ସଂସ୍କୃତ ଜୀର୍ଣ୍ଣମଞ୍ଜରୀ ନାମକ ଚିକିତ୍ସାଗ୍ରନ୍ଥରୁ କବିରାଜ ଶ୍ରୀ ଫକୀର ତ୍ରିପାଠୀଙ୍କ ଦ୍ୱାରା ସଙ୍କଳିତ ଏବଂ ଉତ୍କଳଭାଷାରେ ଅନୁବାଦିତ ଏବଂ ଏ ନଗରସ୍ଥ ଅରୁଣୋଦୟ ଯନ୍ତ୍ରରେ ମୁଦ୍ରିତ । ମୂଲ୍ୟ ଟ୦/ଏ ପୁସ୍ତକ ଅତି କ୍ଷୁଦ୍ର ଅର୍ଥାତ୍ ୮ପୃଷ୍ଠା ମାତ୍ର ହେଲେହେଁ ଏଥିରେ ଯେଉଁ ୩୧ଟା ଶ୍ଳୋକ ଅର୍ଥ ସହିତ ପ୍ରକାଶିତ ହୋଇଅଛି ତଦ୍ୱାରା ସଚରାଚର ବ୍ୟବହାରୀୟ ଖାଦ୍ୟ ଦ୍ରବ୍ୟ କିଏ କାହିଁରେ ଜୀର୍ଣ୍ଣ ହେବାର ଲେଖାଥିବାରୁ ବଡ ଉପକାରୀ ଅଟେ । ଅଜୀର୍ଣ୍ଣ ସବୁରୋଗର ମୂଳ । ଯେଉଁ ଖାଦ୍ୟ ହେତୁ ତାହା ଘଟିବ ଅବିଳମ୍ବେ ତହିଁର ପ୍ରତୀକାର ଏ ପୁସ୍ତକ ସାହାଯ୍ୟରେ ହୋଇପାରିବ ଅଥଚ ଯେ ସବୁଦ୍ରବ୍ୟ ସର୍ବଦା ଲୋକଙ୍କ ଘରେ ଥାଏ କିମ୍ବା ଅତି ସୁପ୍ରାପ୍ୟ ପ୍ରତୀକାର ସ୍ୱରୂପ ସେହି ସବୁଦ୍ରବ୍ୟ ଉଲ୍ଲେଖ ହୋଇଅଛି ।

ଅନୁଗୁଳର ଇତିହାସ ଏବଂ ଭୂଗୋଳ-ଉତ୍କଳ ଭାଷାରେ ବାବୁ ଭଗବାନ ଚରଣଦାସଙ୍କ ଦ୍ୱାରା ପ୍ରକାଶିତ ଏବଂ ଏ ନଗରସ୍ଥ ଭିକ୍ଟୋରିଆ ଯନ୍ତ୍ରରେ ମୁଦ୍ରିତ । ଏ ପୁସ୍ତକର କଳେବର ପୃ୩୯ଷ୍ଠା ମୂଲ୍ୟ ଟ୦। ଅନଗୁଳର ବର୍ତ୍ତମାନ ଡେପୁଟି କମିସ୍ନର ଶ୍ରୀଯୁକ୍ତ ଉଆଲିସାହେବଙ୍କ ନାମରେ ଉତ୍ସର୍ଗିତ । କନ୍ଧମାଳ ସମ୍ପ୍ରତି ଅନୁଗୁଳ ଜିଲାର ଅନ୍ତର୍ଗତ ହେବାରୁ ତହିଁର ବିବରଣ ମଧ୍ୟ ସନ୍ନିବେଶିତ ହୋଇଅଛି । ବିଜ୍ଞାପନରୁ ପ୍ରକାଶ ଯେ ଗ୍ରନ୍ଥକାର ଓଡିଶା ବିଦ୍ୟାଳୟ ସମୂହର ଇନସ୍ପେକ୍‌ଟରଙ୍କ ଅନୁରୋଧ ଏବଂ ପ୍ରଦର୍ଶିତ ପ୍ରଣାଳୀ ଅନୁସାରେ ଏ ପୁସ୍ତକ ପ୍ରଣୟନ କରିଅଛନ୍ତି ଏବଂ ଇନସ୍ପେକ୍‌ଟର ମହୋଦୟ ମଧ୍ୟ ଅନୁଗୁଳ ଜିଲାର ଛାତ୍ର ଓ ଶିକ୍ଷକମାନଙ୍କୁ ବିତରଣ କରିବା କାରଣ ପ୍ରଚୁର ପରିମାଣରେ ଏପୁସ୍ତକ କିଣିବାପାଁଇ ଅନୁଗୁଳର ସବ ଇନସ୍ପେକ୍‌ଟରଙ୍କୁ ଆଦେଶ ଦେଇ ଉଭୟ ଉଭୟର ମାନସ ପୂର୍ଣ୍ଣ କରିଅଛନ୍ତି । ପିଲାମାନଙ୍କ ପଢିବା ପକ୍ଷରେ ଗୋଟିଏ କ୍ଷୁଦ୍ର ଜିଲା ପ୍ରତି ବିଷୟ ବଳି ପଡିଅଛି

*ଭା୩୦ଗ, ସଂ୩୪ଖ୍ୟା, ୨୪।୮।୧୮୯୪*

## ଅଦ୍ଭୁତ ମୀମାଂସା ।

ମହାଶୟ !

'ନୂତନ ପାଠ' ନାମକ ଖଣ୍ଡିଏ ବଙ୍ଗଳା ପୁସ୍ତକର ଉତ୍କଳାନୁବାଦ ପ୍ରକାଶିତ ହୋଇ ଓଡିଶା ପାଠ୍ୟ ପୁସ୍ତକ ନିର୍ବାଚନ କମିଟୀର ହସ୍ତରେ ସମର୍ପିତ ହୋଇଅଛି । ପୁସ୍ତକ ଖଣ୍ଡି କମିଟୀ ନିର୍ବାଚନ କରିବେ କି ନାହିଁ , ତାହା ସେମାନଙ୍କ ବିବେଚନା ଉପରେ ନିର୍ଭର କରେ । ମାତ୍ର ଏପ୍ରକାର ବିଷୟରେ ସାଧାରଣଙ୍କର ପଦେ ଅଧେ କହିବାର ସମ୍ପୂର୍ଣ୍ଣ ଅଧିକାର ଅଛି । ଏଥିପୂର୍ବେ ଦୀପିକାର ସ୍ତମ୍ଭରେ ୨/୩ ଖଣ୍ଡି ପତ୍ର ସେ ସମ୍ବନ୍ଧରେ ପ୍ରକାଶିତ ହୋଇ ଅଛି ଏବଂ ବିଗତ ତା ୨୧ ରିଖର ଓଡିଆ ନବସମ୍ବାଦରେ ମଧ୍ୟ ଖଣ୍ଡିଏ ପତ୍ର ପ୍ରକାଶିତ ହୋଇ ଅଛି । ଏହି ଶେଷୋକ୍ତ ପତ୍ର ଖଣ୍ଡିକର ଅଦ୍ଭୁତ ମୀମାଂସା ସମ୍ବନ୍ଧରେ ଆମ୍ଭମାନଙ୍କର ଦୁଇ ଏକ କଥା କହିବାର ଅଛି -ତେବେ ପ୍ରସଙ୍ଗକ୍ରମେ ମୂଳବିଷୟ ସମ୍ବନ୍ଧରେ ମଧ୍ୟ କିଛି ନ କହି ରହି ପାରିଲୁ ନାହିଁ ।

ପ୍ରଥମ କଥା- ପ୍ରକାଶକଙ୍କର ପ୍ରତାରଣା ପ୍ରବୃତ୍ତି ଓ ଦୁଃସାହସିକତା ! ସେ ପୁସ୍ତକର ବିଜ୍ଞାପନରେ ସୁସ୍ପଷ୍ଟ ଲେଖି ଅଛନ୍ତି ଯେ ନୂତନ ପାଠର ଉତ୍କଳାନୁବାଦ ଓଡିଶାରେ ଚଳିବା ପାଇଁ ଡିରେକ୍ଟର ସାହେବ ଆଦେଶ ଦେଇ ଅଛନ୍ତି । ଆଦେଶଟା କଣ ସାକ୍ଷାତ୍‌ଭାବରେ ପ୍ରକାଶକଙ୍କ ନିକଟକୁ ଆସିଥିଲା ? ଏହାରି ନାମ ଦିନ ଦୁଇପହରେ ଡକାଏତୀ । ଏହାଦ୍ୱାରା ସାଧରଣଙ୍କର ବିଶେଷତଃ ପୁସ୍ତକ ନିର୍ବାଚନ କମିଟୀର ସଭ୍ୟମାନଙ୍କ ଚକ୍ଷୁରେ ଧୂଳି ନିକ୍ଷେପ କରା ହୋଇ ଅଛି । ଓଡିଶା ସ୍କୁଲସମୂହର ଇନସ୍ପେକ୍ଟର ଓ ପୁସ୍ତକ ନିର୍ବାଚନ କମିଟୀର ସମ୍ପାଦକ ମହାଶୟ "କୁଛ ଜାନତା" ଙ୍କ ଅନୁରୋଧ ଅନୁସାରେ କମିଟୀର ସଭ୍ୟମାନଙ୍କୁ ସଂଶୟମୁକ୍ତ କରି ଅଛନ୍ତି କି ନାହିଁ, ଜାଣୁନା । ମାତ୍ର ଏତିକି କହିପାରୁଁ ସେ ତାହା କରିବାକୁ ଧର୍ମତଃ, ନ୍ୟାୟତଃ ବାଧ୍ୟ ।

୨ୟ କଥା- ଉତ୍କଳ ସାହିତ୍ୟ ପ୍ରତି ଓ ଉତ୍କଳର ସାଧାରଣ ଲେଖକମାନଙ୍କ ପ୍ରତି ଘୋର ଅବିଚାର । ଯେଉଁମାନେ ସ୍ୱାର୍ଥର ପ୍ରେରଣାରେ ଲଣ୍ଡଭଣ୍ଡ ହୋଇ ଗ୍ରନ୍ଥକର୍ତ୍ତାଙ୍କ ନିକଟରେ ଅନୁବାଦ ନିମିତ୍ତ ଅନୁମତିପ୍ରାର୍ଥୀ ହୋଇ ପଡିଲେ ସେମାନେ କି ଦେଶର ଘୋର ଶତ୍ରୁ ନୁହନ୍ତି ? ଏହିଥିରେ ଓଡିଆଙ୍କ ଟେକ ରହିବ ଟି କି ? କି ଦୁର୍ଭାଗ୍ୟ ! ନିମ୍ନ ପ୍ରାଇମେରୀ ପାଇଁ ଖଣ୍ଡେ ପୁସ୍ତକ ଲେଖିବାଭଳି ଲୋକ ଏ ପର୍ଯ୍ୟନ୍ତ ଓଡିଶାରେ ଜନ୍ମି ନାହାନ୍ତି ? ଆମ୍ଭେମାନେ ଶୁଣିଅଛୁଁ ଆମ୍ଭମାନଙ୍କର ସୁଯୋଗ୍ୟ ଇନସ୍ପେକ୍ଟର ମହୋଦୟ ଏ ପ୍ରକାର ଅନୁବାଦ ପୁସ୍ତକ ପ୍ରଚଳନର ଘୋର ବିରୋଧୀ । ଏହା ଯେବେ ପ୍ରକୃତ ହୋଇ ଥାଏ ଏବଂ ତାଙ୍କର ଉକ୍ତ ମତ ଯେବେ କେବଳ ମୌଖିକ ମାତ୍ର ନ ହୋଇଥାଏ , ତେବେ ତାଙ୍କଦ୍ୱାରା ଏହି ଅବିଚାରର ପ୍ରତିବିଧାନ ହୋଇ ପାରିବ , ଆମ୍ଭେମାନେ ସମ୍ପୂର୍ଣ୍ଣ ଆଶା ରଖୁଅଛୁଁ ।

୩ୟ- ଦୀପିକାର 'ଜଣେ ପାଠକ'ଙ୍କ ସଦମ୍ଭ ଉକ୍ତି । ସେପରା "ଜଣେ ପାଠକ" ମାତ୍ର ? କମିଟୀର ସଭ୍ୟମାନେ ଅନୁବାଦରେ ଭ୍ରମ ଦେଖାଇଲେ ତାହା ସଂଶୋଧିତ ହୋଇ ଏକସପ୍ତାହରେ ପୁସ୍ତକର ନୂତନ ସଂସ୍କରଣ ବାହାରିବ , ଏପରି ଦମ୍ଭପୂର୍ଣ୍ଣ ଉକ୍ତି ପ୍ରୟୋଗ କରିବାରେ ତାଙ୍କର କି ଅଧିକାର ବା ପ୍ରୟୋଜନ ଥିଲା ? ପୁସ୍ତକ ସଙ୍ଗେ ସ୍ୱୀୟ ସମ୍ପର୍କଟା ସୁସ୍ପଷ୍ଟ ପ୍ରକାଶ କରି ଲେଖିଥିଲେ ହାନି କଣ ହୋଇଥାଆନ୍ତା ?

ତାର ପରେ ଓଡିଆ ନବସମ୍ବାଦଙ୍କ "ଶ୍ରୀ-" ଙ୍କ ଉକ୍ତି! ସେ କହନ୍ତି 'ନୂତନ ପାଠ' "ପଲ୍ଲି ଗ୍ରାମବାସୀ ଛାତ୍ରମାନଙ୍କର" ବୈଷୟିକ ଜ୍ଞାନର ଅଭାବ ପୂରଣ କରିଅଛି । ହୋଇପାରେ, କିନ୍ତୁ ସେ ଅଭାବ କି ଓଡିଶାର କୌଣସି ଲେଖକଙ୍କଦ୍ୱାରା ପୂରଣ ହୋଇ ପାରନ୍ତା ନାହିଁ ? 'ନୂତନ ପାଠ'କଣ ସକଳ ଦେଶର ସେହି ଅଭାବ ପୂରଣ କରିବାପାଇଁ ବିଧାତାଙ୍କଦ୍ୱାରା ପ୍ରେରିତ ହୋଇଅଛି ?

ତାଙ୍କର ଦ୍ୱିତୀୟ କଥା, "ପରୀକ୍ଷାରେ ଏକ ପୁସ୍ତକ ନିର୍ବାଚିତ ହେବା ବାଞ୍ଛନୀୟ ।" ଏହା କଣ ଋଷିବାକ୍ୟ , ନା ବେଦବାଣୀ ? "ପରୀକ୍ଷାର ସମତା ରକ୍ଷା କରିବା ପ୍ରଧାନ କାର୍ଯ୍ୟ ।" ଏ କଥା ପତ୍ରପ୍ରେରକଙ୍କୁ କିଏ କହିଲା ? ଏ ବିଧି ଏକା ନିମ୍ନ ପ୍ରାଇମେରୀ ପରୀକ୍ଷାରେ, ନା ଉଚ୍ଚ ପ୍ରାଇମେରୀ ଓ ଛାତ୍ରବୃତ୍ତି ପ୍ରଭୃତି ସର୍ବବିଧ ପରୀକ୍ଷାରେ ? ଏଣିକି କଣ ସବୁ ପରୀକ୍ଷାର ପାଠ୍ୟ ପୁସ୍ତକମାନ ବଙ୍ଗଳାରୁ ଅନୁବାଦ ହେବ । ଧନ୍ୟକାଳ ! ଧନ୍ୟ ମୀମାଂସା !!!

ଧନ୍ୟ ଦେଶହିତୈଷଣା !!! ପୁଣି ପତ୍ରପ୍ରେରକ କହୁ ଅଛନ୍ତି, "ଚାରି ପାଞ୍ଚ ବର୍ଷ ପରେ ଏହି ନୂତନ ପାଠ ଉଠି ଯାଇପାରେ , ତେତେବେଳେ କୃତବିଦ୍ୟ ବ୍ୟକ୍ତିମାନେ ଆପଣାର ଯୋଗ୍ୟତା ଦେଖାଇ ନୂତନ ପୁସ୍ତକ ପ୍ରଣୟନ କରି ପ୍ରଚଳନ କରିପାରନ୍ତି ସେଥିରେ ଆପତ୍ତି କଣ ?" ପଚାରୁଁ ସେତେବେଳକୁ "ପରୀକ୍ଷାର ସମତା ରକ୍ଷା" ବିଧି କେଉଁ ଆଡ଼େ ଯିବ ? "ତେତେବେଳେ କୃତବିଦ୍ୟ ବ୍ୟକ୍ତିମାନେ ଯୋଗ୍ୟତା" ଦେଖାଇବେ, ଏତେବେଳେ କଣ ଦେଖାଇ ପାରିବେ ନାହିଁ , ଏକଥା ପତ୍ରପ୍ରେରକ ନିଶ୍ଚିତରୂପେ ଜାଣିପାରିଅଛନ୍ତି ? ଏଇଥିପାଁଇ ଆମ୍ଭେମାନେ କହୁଥିଲୁଁ "ଅଦ୍ଭୁତ ମୀମାଂସା !" କିନ୍ତୁ କହିଲେ କଣ ହେବ ? ଆଜିକାଲି ଓଡିଶାରେ ସବୁବିଷୟରେ "ଅଦ୍ଭୁତ ମୀମାଂସା"ର କାଳପଡିଅଛି !!!

୨୮।୮।୧୮୯୫ ଶ୍ରୀ ବାଚସ୍ପତି

*ଭା୩୦ଗ, ସଂ୩୫ଖ୍ୟା, ୩୧।୮।୧୮୯୫*

## [ପ୍ରାପ୍ତପତ୍ର : ପୁସ୍ତକ ପ୍ରକାଶନ ]

ମହାଶୟ !

୨୧।୮।୯୫ "ଉତ୍କଳଦୀପିକାରେ" ଆମ୍ଭେମାନେ ଉତ୍ସର୍ଗପତ୍ର ବିଭ୍ରାଟର କଥା ଉଲ୍ଲେଖ କରି ଅନ୍ୟକୃତ ଗ୍ରନ୍ଥ ଉତ୍ସର୍ଗ କରିବାରେ ପ୍ରକାଶକମାନଙ୍କର ଅଧିକାର ଅଛି କି ନାହିଁ, ତାହାର ସଦୁତ୍ତରାକାଂକ୍ଷୀ ହୋଇଥିଲୁଁ । ୨୮।୮।୯୫ର "ହିତୈଷିଣୀରେ" ସମ୍ପାଦକ ମହାଶୟ ଯେଉଁ ଉତ୍ତର ଦେଇଅଛନ୍ତି, ତାହା ନିତାନ୍ତ ଅସଙ୍ଗତ ବୋଧ ହେବାରୁ ପଦେ ଅଧେ ନ କହି ଆଉ ରହି ପାରିଲୁ ନାହିଁ । ବୃଥା ବାଦାନୁବାଦରେ ଦୀପିକା ଭଳି ଖଣ୍ଡିଏ କାଗଜରେ ଏତେ ଅଧିକ ସ୍ଥାନ ମାଡ଼ିବସିବା ଆମ୍ଭମାନଙ୍କର ଅବଶ୍ୟ ଇଚ୍ଛା ନୁହେଁ । କିନ୍ତୁ ସାଧାରଣର ହିତକର ଗୋଟାଏ ଗୁରୁତର କଥା ଯେତେବେଳେ ଉଠିଅଛି, ତେତେବେଳେ ତାହାର ମିମାଂସା ନ ହେବା ଯାଏ ବାଦ ପ୍ରତିବାଦ ଅନିବାର୍ଯ୍ୟ ।

ଅନ୍ୟକୃତ ଗ୍ରନ୍ଥସମୂହ ଆପଣାର ମନୋମତ ବ୍ୟକ୍ତିଙ୍କୁ ଉତ୍ସର୍ଗ କରିବାରେ ପ୍ରକାଶକମାନଙ୍କର ଅଧିକାର ଅଛି କି ନାହିଁ - ଆମ୍ଭେମାନେ ତାହାର ସଦୁତ୍ତର ପ୍ରାର୍ଥୀ ହୋଇଥିଲୁ । "ହିତୈଷିଣୀ" ସମ୍ପାଦକ ଏବଂ "ଶ୍ରୀମୂର୍ତ୍ତି ଦର୍ଶନ" ପ୍ରକାଶକ ନୀଳମଣି ବାବୁ ତାହାର କଅଣ ସଦୁତ୍ତର ଦେଇଅଛନ୍ତି , ପାଠକମାନେ ଦେଖନ୍ତୁ:- "ବଙ୍ଗ ଏବଂ ବିଲାତରେ ଗ୍ରନ୍ଥକାରମାନେ ସ୍ୱପ୍ରଣୀତ ପୁସ୍ତକମାନ ମନୋମତ ବ୍ୟକ୍ତିଙ୍କ ନାମରେ ଉପହାର ଦେଇଥାନ୍ତି । କି ପୂର୍ବ କାଳରେ କି ବର୍ତ୍ତମାନ ଅନେକ କବି ଏବଂ ଲେଖକ ରାଜା ଏବଂ ବଡଲୋକଙ୍କୁ ଉତ୍ସର୍ଗ କରିଅଛନ୍ତି , ମଧ୍ୟ ବର୍ତ୍ତମାନ ସୁଦ୍ଧା କରୁଅଛନ୍ତି । ସ୍ୱୟଂ ଟେନିସନ ମହାରାଣୀଙ୍କୁ ଉତ୍ସର୍ଗ କରିଅଛନ୍ତି ଇତ୍ୟାଦି ଇତ୍ୟାଦି ।" ନୀଳମଣିବାବୁଙ୍କର ଏତାଦୃଶ ଉତ୍ତର "ସଜନାମୂଳେ ବୁଡ଼େଇଲି ପାଉଁଶ,ତୋତେ ଦେଖି ମୋହର ବଡ ଶରଧା, ଭଲ ନୁହେଁ କି ? ବୋଲିବା ବାହୁଲ୍ୟ , ଉଦ୍ଧୃତ ବାକ୍ୟମାନ ଆତ୍ମପକ୍ଷ ସମର୍ଥନରେ ବ୍ୟସ୍ତ "ହିତୈଷିଣୀର" ବିରୋଧୀ – କିନ୍ତୁ ପ୍ରତିପକ୍ଷ ବାଦିମାନଙ୍କ ପକ୍ଷ ସମର୍ଥନକାରୀ ।

ସାରୁ ଖୋଳୁ ଖୋଳୁ ମହାଦେବ ବାହାରିଲା ପ୍ରାୟ "ହିତୈଷିଣୀ" ଅସତ୍ୟ ଅମୂଳକ ପ୍ରମାଣର ଆବର୍ଜ୍ଜନା ରାଶୀ ମଧ୍ୟରେ ଆତ୍ମଦୋଷ ଘୋଡାଇବାକୁ ଯାଇ କିପରି ଆତ୍ମପରିଚୟ ଦେଇଅଛନ୍ତି, ପାଠକମାନେ ତାହା ଦେଖନ୍ତୁ । "ପ୍ରକାଶକମାନେ ସ୍ୱପ୍ରକାଶିତ ପୁସ୍ତକମାନ ମନୋମତ ବ୍ୟକ୍ତିମାନଙ୍କ ନାମରେ ଉପହାର ଦେଇଥାନ୍ତି"ଉଲ୍ଲେଖ କରି ସେ କହୁଅଛନ୍ତି "ବିଦ୍ୟାସାଗରଙ୍କ ଶକୁନ୍ତଳା ବନମାଳୀ ବାବୁ ଓଡିଆରେ ଅନୁବାଦ କରି ଢେଙ୍କାନାଳର ମହାରାଜାଙ୍କୁ ଉତ୍ସର୍ଗ କରିଥିଲେ । ବଙ୍ଗଦେଶର ମାଇକେଲଙ୍କର ଅନେକ ପୁସ୍ତକ ରାଜା ଏବଂ ବଡଲୋକଙ୍କର ନାମରେ ଉତ୍ସୃଷ୍ଟ ହୋଇଥିଲା । ସ୍ୱୟଂ ଉତ୍ସର୍ଗାନନ୍ଦ ମଧ୍ୟ ଏହି ଶ୍ରେଣୀର ଜଣେ ବୋଲି ଅନୁମାନ ହୁଅଇ ।" ହିତୈଷିଣୀର ଉକ୍ତି କେତେ ଦୂର ସତ୍ୟ , ତାହା ବର୍ତ୍ତମାନ ଦେଖାଯାଉ । ବନମାଳୀ ବାବୁଙ୍କର "ଶକୁନ୍ତଳା" ନୂତନ ସଂସ୍କରଣ ୧୮୯୩ ମସିହାରେ

କଟକ ପ୍ରିଣ୍ଟିଂ କୋମ୍ପାନୀଙ୍କ ଯନ୍ତ୍ରାଳୟରୁ ପ୍ରସୂତ ହୋଇଅଛି । ଉକ୍ତ ସଂସ୍କରଣର "ଶକୁନ୍ତଳା" ଫିଟାଇ ଦେଖିଲେ ପାଠକମାନେ ଜାଣିପାରିବେ ଯେ, ତାହା ଢେଙ୍କାନାଳ ମହାରାଜାଙ୍କୁ ଉତ୍ସୃଷ୍ଟ ହୋଇଅଛି ବୋଲି " ହିତୈଷିଣୀ" ଯାହା ଘୋଷଣା କରିଅଛନ୍ତି, ତାହା ସଂପୂର୍ଣ୍ଣ ମିଥ୍ୟା । ଶୁଣାଯାଏ ମାନ୍ଧାତା ଅମଳର ସଂସ୍କରଣରେ "ଶକୁନ୍ତଳା" ଢେଙ୍କାନାଳର ମହାରାଜାଙ୍କୁ ଉତ୍ସୃଷ୍ଟ ହୋଇଥିଲା । କିନ୍ତୁ ସଦସତ୍ ବିଚାରକ୍ଷମ ବନମାଳୀ ବାବୁ ପରବର୍ତ୍ତୀ ସଂସ୍କରଣର "ଶକୁନ୍ତଳାରୁ" ଉତ୍ସର୍ଗପତ୍ର ନିଷ୍କାସିତ କରି ଆତ୍ମଭ୍ରମ ସଂଶୋଧନ ପୂର୍ବକ ଉଦାରତାର ପରିଚୟ ଦେଇଅଛନ୍ତି । ମନୁଷ୍ୟ ଦୋଷଗୁଣଜଡ଼ିତ । କିନ୍ତୁ କେତେକବ୍ୟକ୍ତି ଏପରି ଅଛନ୍ତି ଯେ ଆପଣା ଦୋଷ ଜାଣିପାରିଲେ ସୁଦ୍ଧା ତାହା ସ୍ୱୀକାର କରିବାକୁ ନାରାଜ । "ହିତୈଷିଣୀ" ସମ୍ପାଦକ ବୋଧ ହୁଏ ଏହି ଶ୍ରେଣୀଭୁକ୍ତ ହେବେପରା ।! ତାହା ନ ହେଲେ ସେ ଆପଣାର ଉକ୍ତିରେ ଆତ୍ମଦୋଷ ପ୍ରକାରାନ୍ତରରେ ପ୍ରମାଣିତ କରି ସୁଦ୍ଧା ତାହା ସ୍ୱୀକାର କରିବାକୁ ଏଡ଼େ କୁଣ୍ଠିତ କାହିଁକି ?

ଓଡିଆ ପୁସ୍ତକ ସମ୍ବନ୍ଧରେ "ହିତୈଷିଣୀ" ସମ୍ପାଦକଙ୍କର ଯେପରି ଜ୍ଞାନ ଅଛି, ତାହା ଆମ୍ଭେମାନେ ଦେଖାଇଲୁଁ । ବର୍ତ୍ତମାନ ଦେଖାଯାଉ,ବଙ୍ଗଳାପୁସ୍ତକ ସମ୍ବନ୍ଧରେ ତାହାଙ୍କର କିପରି ଜ୍ଞାନ ଅଛି - ଇଂରାଜୀରେ ଯେ ତତୋଽଧିକ ଜ୍ଞାନ ଅଛି , ତାହା ତାହାଙ୍କର ଟେନିସନ ଇତ୍ୟାଦିର ନାମୋଲ୍ଲେଖରୁ ଜଣା ପଡୁଅଛି । ବଙ୍ଗଦେଶର ମାଇକେଲଙ୍କର ଅନେକ ପୁସ୍ତକ (ପ୍ରକାଶକଙ୍କ କର୍ତ୍ତୃକ ?) ରାଜା ଏବଂ ବଡଲୋକମାନଙ୍କ ନାମରେ ଉତ୍ସୃଷ୍ଟ ହୋଇଥିଲା – ସମ୍ପାଦକ ମହାଶୟ ଏ ସମ୍ବାଦ କାହୁଁ ପାଇଲେ ? ବାବୁ ରାଜକିଶୋର ଦେ ମାଇକେଲଙ୍କର ସ୍ୱତ୍ୱ କ୍ରେତା ଓ ପ୍ରକାଶକ । ପୁସ୍ତକର ସ୍ୱତ୍ୱ କିଣିଥିଲେହେଁ ମାଇକେଲଙ୍କ କୌଣସି ଗ୍ରନ୍ଥ ପ୍ରକାଶକଙ୍କ କର୍ତ୍ତୃକ "ରାଜା ଏବଂ ବଡଲୋକମାନଙ୍କ ନାମରେ ଉତ୍ସୃଷ୍ଟ" ହୋଇ ନାହିଁ । ପାଠକମାନେ ଟିକିଏ ଶ୍ରମ ସ୍ୱୀକାର କଲେ ଦେଖିବାକୁ ପାଇବେ ଯେ , ମାଇକେଲଙ୍କର ଗ୍ରନ୍ଥ ସମୂହ ମଧ୍ୟରୁ "ଶର୍ମିଷ୍ଠାନାଟକ" ରାଜା ପ୍ରତାପଚନ୍ଦ୍ର ସିଂହ ଏବଂ ରାଜା ଈଶ୍ୱରଚନ୍ଦ୍ର ସିଂହଙ୍କୁ, "ବୀରାଙ୍ଗନା କାବ୍ୟ" ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କୁ, "କୃଷ୍ଣକୁମାରୀ ନାଟକ" କେଶବଚନ୍ଦ୍ର ଗଙ୍ଗୋପାଧ୍ୟାୟଙ୍କୁ "ତିଲୋତ୍ତମା ସମ୍ଭବ କାବ୍ୟ" ଯତୀନ୍ଦ୍ରମୋହନ ଠାକୁରଙ୍କୁ ଏବଂ "ହେକ୍ଟର ବଧ" ଭୂଦେବ ମୁଖୋପାଧ୍ୟାୟଙ୍କୁ ମାଇକେଲ ସ୍ୱୟଂ ଉତ୍ସର୍ଗ କରିଅଛନ୍ତି । ପ୍ରକାଶକ ସେସବୁ ଗ୍ରନ୍ଥକୁ ରାଜା ଏବଂ ବଡଲୋକଙ୍କ ନାମରେ ଉତ୍ସର୍ଗ କରିଅଛନ୍ତି ବୋଲି "ହିତୈଷିଣୀ" ଯାହା କହୁଅଛନ୍ତି, ତାହା ଠିକ୍ ନୁହେଁ । ଏପରିକି ମାଇକେଲଙ୍କର ଅନୁତ୍ସୃଷ୍ଟ ଗ୍ରନ୍ଥମାନଙ୍କ ମଧ୍ୟରୁ (ମେଘନାଦ ବଧ , ବ୍ରଜାଙ୍ଗନା କାବ୍ୟ, ଚତୁର୍ଦ୍ଦଶପଦୀ କବିତାବଳୀ ଏବଂ ଏକେଇ କି ବଲେ ସଭ୍ୟତା ? ) କୌଣସି ଗ୍ରନ୍ଥ ପ୍ରକାଶକ କାହାରିକୁ ଉତ୍ସର୍ଗ କରିନାହାନ୍ତି, ଅଥବା କରିପାରି ନାହାନ୍ତି । ଅନ୍ୟକୃତ ଗ୍ରନ୍ଥକୁ ଉତ୍ସର୍ଗ କରିବାରେ ଯଦ୍ୟପି ପ୍ରକାଶକମାନଙ୍କର ଅଧିକାର ଥାନ୍ତା, ତେବେ ମାଇକେଲଙ୍କର ଗ୍ରନ୍ଥ ପ୍ରକାଶକ "ମେଘନାଦ" ଭଳି ଗ୍ରନ୍ଥକୁ ରାଜା ମହାରାଜାଙ୍କ ନାମରେ ଉତ୍ସର୍ଗ କରି ମୁଠେ ଟଙ୍କା ମାରି ନେଇପାରି ନ ଥାନ୍ତେ କି ?

ଆମ୍ଭେମାନେ ଅନ୍ୟକୃତ ଗ୍ରନ୍ଥକୁ ଉତ୍ସର୍ଗ କରିଅଛୁଁ ବୋଲି "ହିତୈଷିଣୀ" ସମ୍ପାଦକ ଅନୁମାନ କରନ୍ତି । କିନ୍ତୁ ସମ୍ପାଦକଙ୍କର ମନେ ରଖିବା ଉଚିତ ଯେ ଏଠାରେ ଅନୁମାନର କଥା ହେଉ ନାହିଁ - ପ୍ରତ୍ୟକ୍ଷ ପ୍ରମାଣର କଥା ହେଉଅଛି । ଅନୁମାନର କଥାଟା "ହିତୈଷିଣୀର" ସମ୍ପାଦକୀୟ ବୈଠକୀ ରହସ୍ୟ ସକାଶେ ରଖିଦେଲେ ଚଳିଥାନ୍ତା । ଅନୁମାନର ଅମଳ ଗଲାଣି , ପ୍ରତ୍ୟକ୍ଷ ପ୍ରମାଣର ଅମଳ ପଡିଲାଣି । "ହିତୈଷିଣୀର" ଏହି ଅନୁମାନରେ ଯେ ଶିକ୍ଷିତ ଉତ୍କଳର ମନ ଟଳିବ , ଏହା ଆମ୍ଭମାନଙ୍କର ମନକୁ ପାଉ ନାହିଁ ।

"ଅନୁବାଦ ହେଲେ ପୁସ୍ତକ ନୂତନ ହୁଏ - ଏପରି ପୁସ୍ତକର ଉତ୍ସର୍ଗ କରିବାର ସମସ୍ତଙ୍କୁ ଅଧିକାର ଅଛି" – ଏ ଅଦ୍ଭୁତ ଯୁକ୍ତି ହିତୈଷିଣୀଙ୍କ ପକ୍ଷରେ ଶୋଭା ପାଏ । ଭାଷାନ୍ତରିତ କୌଣସି ଗ୍ରନ୍ଥ ସଦସତ୍ ବିଚାରକ୍ଷମ ପ୍ରକାଶକ ମାନଙ୍କ (ଉତ୍କଳୀୟ କେତଗୁଡିଏ ପ୍ରକାଶକ ବ୍ୟତୀତ)କର୍ତ୍ତୃକ ବ୍ୟକ୍ତିବିଶେଷଙ୍କୁ ଉତ୍ସୃଷ୍ଟ ହୋଇଥିବାର ଆମ୍ଭମାନଙ୍କୁ ଜଣା ନାହିଁ । ସମ୍ପାଦକଙ୍କୁ ଜଣାଥିଲେ ଲେଖି ବାଧିତ କରିବେ । କାରଣ ଉପସ୍ଥିତ ନ ହେଲେ କାର୍ଯ୍ୟ ହୁଏ ନାହିଁ -ଏକଥା ସର୍ବବାଦୀସମ୍ମତ । "ଇଂଲଣ୍ଡ ଏବଂ ବଙ୍ଗଦେଶ ପ୍ରଭୃତିରେ ଏହି ରୀତି ସଂଶୋଧନ ସକାଶେ ଦେଶହିତୈଷୀ ବାହାରି ନ ଥିଲେ,ଏତେକାଳକେ ଓଡିଶ୍ୟାରେ ବାହାରିପଡିଲେ" ବୋଲି ହିତୈଷିଣୀ ଯେଉଁ ଆକ୍ଷେପ ପ୍ରକାଶ

କରିଅଛନ୍ତି, ତାହା ନିତାନ୍ତ ଅମୂଳକ । ଇଂଲଣ୍ଡ ଏବଂ ବଙ୍ଗଦେଶରେ ଯଦି ଏହି ରୀତି ପ୍ରଶ୍ରୟ ପାଇଥାଏ , ତେବେ ତାହାର ସଂଶୋଧନ ସକାଶେ ଅବଶ୍ୟ ଦେଶହିତୈଷୀ ବାହାରି ଥିବେ-କିନ୍ତୁ " ହିତୈଷିଣୀ" ସମ୍ପାଦକଙ୍କୁ ତାହା ଜଣା ନାହିଁ ।

ମଧୁବାବୁ ଯେ "ସୁଚରିତ୍ର ପୁରୁଷ" ତାହା ଆମ୍ଭେମାନେ ଅସ୍ୱୀକାର କରି ନାହୁଁ କିମ୍ବା କରୁଁ ନାହୁଁ । କେବଳ ତାହାଙ୍କୁ "ଆଦର୍ଶ ମନୁଷ୍ୟ"କହିବାରେ ଆମ୍ଭମାନଙ୍କର ବିଷମ ଆପତ୍ତି ଅଛି । ତାହାଙ୍କୁ "ସମଗ୍ର ଉତ୍କଳଖଣ୍ଡର ଆଦର୍ଶ ମନୁଷ୍ୟ" ବୋଲି ଘୋଷଣା କରିବା ପୂର୍ବରୁ "ହିତୈଷିଣୀ" ସମ୍ପାଦକ ମହାଶୟ ବଙ୍କିମବାବୁଙ୍କ କୃତ "ଧର୍ମତତ୍ତ୍ୱ" "କୃଷ୍ଣ ଚରିତ୍ର" ଏବଂ କୋମତଙ୍କ କୃତ ଗ୍ରନ୍ଥାବଳୀର ଇଂରାଜୀ ଅନୁବାଦ ପଢିଥିଲେ ଏପରି ମାରାତ୍ମକ ମତ ପ୍ରକାଶରେ କଦାପି ସାହସୀ ହୋଇ ନ ଥାନ୍ତେ ବୋଲି ଆମ୍ଭମାନଙ୍କର ବିଶ୍ୱାସ । ମହାପୁରୁଷ କୋମତ ପଞ୍ଚବିଂଶବର୍ଷ ବ୍ୟାପୀ ଗଭୀର ଚିନ୍ତା ଏବଂ ଆଲୋଚନା ପରେ "ଆଦର୍ଶ ମନୁଷ୍ୟତ୍ତ୍ୱ" ବୁଝାଇବା ସକାଶେ ପ୍ରାୟ ପଞ୍ଚସହସ୍ର ପୃଷ୍ଠା ପରିମିତ ଗ୍ରନ୍ଥ ଫରାସୀ ଭାଷାରେ ଲେଖି ଯାଇ ଅଛନ୍ତି । ପ୍ରତ୍ୟକ୍ଷ ବାଦୀମାନଙ୍କ ମତରେ "ଆଦର୍ଶ ମନୁଷ୍ୟ" ମାନୁଷୀ ଶକ୍ତିଦ୍ୱାରା କର୍ମ ନିର୍ବାହ କରନ୍ତି , କିନ୍ତୁ ତାହାଙ୍କ ଚରିତ୍ର ଅମାନୁଷ । ବଙ୍କିମବାବୁ ତାହାଙ୍କର "କୃଷ୍ଣ ଚରିତ୍ରରେ" କୃଷ୍ଣଙ୍କର ଆଦର୍ଶ ମନୁଷ୍ୟତ୍ତ୍ୱ ପ୍ରତିପାଦନ ସକାଶେ ପ୍ରୟାସ ପାଇ ଅଛନ୍ତି । ଆହୁରି ମଧ୍ୟ ଦେଖନ୍ତୁ । ସମଗ୍ର ଉତ୍କଳଖଣ୍ଡ ଯେଉଁ ଧର୍ମାବଲମ୍ବୀ , ଯେଉଁସବୁ ଆଚାର ବ୍ୟବହାର ଓ ରୀତିନୀତିର ଅନୁରାଗୀ, ତାହାର ସହିତ ମଧୁବାବୁଙ୍କର ସହାନୁଭୂତି ନ ଥିବା ପ୍ରତ୍ୟକ୍ଷେ ସମଗ୍ର ଉତ୍କଳ କିରୂପେ ତାହାଙ୍କୁ " ଆଦର୍ଶ ମନୁଷ୍ୟ" ବୋଲି ଗ୍ରହଣ କରିବ ? କାରଣ ଯେ ଯାହାର ଆଦର୍ଶ, ସେ ତାହାକୁ ସର୍ବଦା ସମ୍ମୁଖରେ ରଖି ତଦନୁଯାୟୀ ଜୀବନ ଗଠନ କରେ । ମଧୁବାବୁଙ୍କର ଆଦର୍ଶ ଜୀବନକୁ ସମ୍ମୁଖରେ ରଖି ଜାତୀୟ ଜୀବନ ସଂଗଠନ କରିବାକୁ ଗଲେ ଉତ୍କଳକୁ କୌଳିକ ଧର୍ମାନୁଷ୍ଠାନରେ ଅନାସ୍ଥା ପ୍ରଦର୍ଶନ କରି ଯୁଗଧର୍ମାନୁରାଗୀ ହେବାକୁ ହେବ । କିନ୍ତୁ ଇଦୃଶ କାର୍ଯ୍ୟରେ ଉତ୍କଳ ସମ୍ମତ କି ନା –ସ୍ୱୟଂ "ହିତୈଷିଣୀ" ସମ୍ପାଦକ ମଧ୍ୟ ସ୍ୱଜାତି ଓ ସ୍ୱଧର୍ମ୍ମ ବଜାଏ ରଖି ତାହାଙ୍କର ପ୍ରତିପାଦିତ "ଆଦର୍ଶ ମନୁଷ୍ୟର" ଅନୁଗାମୀ ହୋଇ ପାରିବେ କି ନା – ତାହାର ମୀମାଂସା ଅଗ୍ରେ ପ୍ରୟୋଜନ । ନତୁବା ଯୁଗଧର୍ମାନୁପ୍ରାଣିତ "ଉତ୍କଳ ପୁତ୍ରଙ୍କର" "ଉତ୍କଳ ଭ୍ରମଣରେ" ଆତ୍ମବିସ୍ମୃତ ହୋଇ ଉତ୍କଳରେ ମଧୁବାବୁଙ୍କର "ଆଦର୍ଶ ମନୁଷ୍ୟତ୍ତ୍ୱ" ପ୍ରତିଷ୍ଠିତ କରିବା ସକାଶେ ପ୍ରୟାସ ପାଇବା ବିଡମ୍ବନା ମାତ୍ର ନୁହେ କି ? ଇତି ।

ଉତ୍ସର୍ଗବିତରଣ
କାର୍ଯ୍ୟାଳୟ
ମାୟାନଗର ।

ମୀମାଂସାପ୍ରାର୍ଥୀ
ଶ୍ରୀମତ୍ ଉତ୍ସର୍ଗାନନ୍ଦ ସ୍ୱାମୀ

*ଅତିରିକ୍ତ ଉତ୍କଳ ଦୀପିକା, ୨୧।୯।୧୮୯୪*

## ପ୍ରେରିତପତ୍ର ।

## ତାରକ ସଂହାର ସମାଲୋଚନା ।

ମହାଶୟ !

ପ୍ରଭା ନିଷ୍ପ୍ରଭ ହେଲେ , ବିଜୁଳୀ ଚମକି ଶେଷରେ ଚମକାଭୟରେ ଅନ୍ତର୍ଦ୍ଧାନ ହେଲେ, ଇନ୍ଦ୍ରଧନୁ ଯାହାହେଉ ଚାଲିଅଛି । ଯଥାସାଧ୍ୟ ନିଜକାର୍ଯ୍ୟ ସାଧନ କରୁଅଛି । ଇନ୍ଦ୍ରଧନୁର ଅଭିଭାବକମାନେ ତହିଁପାଇଁ ଧନ୍ୟବାଦର ପାତ୍ର , କାରଣ ତହିଁରେ ସମୟ ସମୟରେ ଯେପରି ଭାବର ପ୍ରବନ୍ଧ ଓ କବିତା ପ୍ରକାଶ ପାଉଅଛି ତାହା ପାଠ କରି ମନରେ ଉଚ୍ଚାଶାର ଉଦ୍ରେକ ହେଉଅଛି । ସମୟରେ ଉଡିଶ୍ୟାରେ ସୁକବି ଓ ସୁଲେଖକ ହୋଇପାରିବେ ଏ ଆଶା ମଧ୍ୟ ସହଜରେ ମନରେ ଉଦୟ ହେଉଅଛି ।

ଆଜି ନଂ ୧ ୨ ମର ଇନ୍ଦ୍ରଧନୁରେ ପ୍ରକାଶିତ "ତାରକ ସଂହାର" କବିତାଟି ସମ୍ପର୍କରେ ଦୁଇଏକ କଥା କହିବାକୁ ମନ ବଳିଅଛି । ଲେଖକଙ୍କ ନାମ ପ୍ରକାଶ ପାଇ ନାହିଁ , କାରଣ ସେ ପ୍ରକାଶ କରି ନାହାନ୍ତି । ଯାହାହେଉ,

ନାମରେ କିଛି ଆସେ ଯାଏ ନାହିଁ , ଗୁଣରେ ସବୁ ଅଛି । ସୁକବିଙ୍କ ନାମ ସୁଗୁଣ ବଳରେ ଯେତେ ଘୋଡାଇ ରଖିଲେ ସୁଧା ଆପେ ଆପେ ଫୁଟି ପଦାକୁ ବାହାରି ପଡେ । ସେ ଯାହାହେଉ ନାମଘେନି ବ୍ୟାକୁଳ ହେବାର ବର୍ତ୍ତମାନ ତେତେ ଦରକାର ହୋଇ ନାହିଁ । କବିତାଟି ନୂତନ, ମାତ୍ର ଲେଖକ "ଶିକ୍ଷାନବିସ୍" ହେଲେ ତାଙ୍କର ଭାବର ଛଟା, ଭାଷା ଚାତୁରୀ, କିଛି "ପୋଖତା"ଧରଣର ବୋଧ ହେଉଅଛି । "କୃତ କୃତ୍ୟ" ଅଦିତିନନ୍ଦନ, "ମଳୀମସ" ଛାପାଦୋଷରେ "କୃତ୍ୟ କୃତ୍ୟ" "ଆଦିତିନନ୍ଦନ" ଓ "ମଳିମସ୍" ହେଲେ ହୋଇ ଯାଇ ଅଛି ପୁଣି "ଝାଳବୁହା" "ହେବାଯାଏ" ଆଦି କେତେ ଗୋଟି ଶବ୍ଦ ମଧ୍ୟ ଶୃତି କଟୁ ବୋଧ ହେଉଅଛି । ଉପମା ଦୋଷ ମଧ୍ୟ ଠାଏ ଦୁଇଠା ଘଟିଅଛି ପ୨୦୦ଦ ଠାରେ ।

........ ......... "ଜଳଦ ଗମ୍ଭୀର"
"ସ୍ୱରଜିଣା ସ୍ୱରେ ଧୀରେ କହିଲେ" .......
ସୁଶ୍ରାବ୍ୟ ହେଲେ ମଧ୍ୟ କିଞ୍ଚିତ୍ ଅଡୁଆ ଲାଗୁଅଛି ।
ପ୩୪୮ ଓପ ୩୫୦ଦ ଠାରେ ....ବିଚିତ୍ର ବିଧିକୁ"
"ବିଚିତ୍ର ବିଚିତ୍ର ନୁହେ ! ପୁରୁତା କାମନା"
କେମତି କେମତି ଲାଗୁଅଛି ।

ପ ୪୪୫ ଦ ଠାରୁ ପ ୪୫୬ ଦ ଯାକେ ଅତି ସୁନ୍ଦର ହୋଇଅଛି, ମାତ୍ର ଶେଷ ପଦଟି କାହିଁକି ଭଲ ଲାଗୁ ନାହିଁ । ଉପମାଟି ମଧ୍ୟ ଯଥାଯୋଗ୍ୟ ବା ସଙ୍ଗତ ବୋଧ ହେଉ ନାହିଁ ଯଥା ।

"ବାଜିଲା ବାଜଣା ନାନା ବାଜିଲା ହୃଦୟ"
"ତନ୍ତ୍ରୀ ଏକ ତାନେମାନେ ନାଚିଲା ଧମନୀ"
"ରଣରଙ୍ଗେ, ସର୍ବଦେବେ ଘେନିଲେ ପଲକେ"
"ବିବିଧ ଆୟୁଧ ଏକେ ଏକେ ଦେବୋପମା"
"ଚରିତାର୍ଥ କରିବାକୁ ଜୀବନ ସଂଗ୍ରାମେ"
"ଉଠେ ଯଥା ମନୋଲ୍ଲାସେ ପାଇ ନବବଳ ।"
"ଶଙ୍ଖଘଣ୍ଟା ନାଦେ ଯାତ୍ରୀଗଣ ଶ୍ରାନ୍ତ କ୍ଳାନ୍ତ"
"ମୁମୂର୍ଷୁ ଟାଣିବା ପାଇଁ ରଥ ନନ୍ଦିଘୋଷ ।"

ପୁଣି ଜଗନ୍ନାଥଦେବଙ୍କ ନନ୍ଦିଘୋଷ ବିକେ ଉପମା କିଛି ବେସି ହୋଇ ପଡିଥିବାର ଜଣା ପଡୁଅଛି ।

ଦୋଷ ପରିହାର କଲେ , କବିତାଟି ଉତ୍କଳ ସାହିତ୍ୟ କ୍ଷେତ୍ରରେ ଅତ୍ୟାଦରର ପଦାର୍ଥ ହେବାର ସୂଚନା ଦେଖାଉଅଛି । ସୁନ୍ଦର ଭାବରେ ପୂର୍ଣ୍ଣ, ଚିକ୍କଣ ବସତି, ତେଜସ୍ୱୀ ଲେଖା ପୁଣି ଭାଷା ଓ ଭାବରେ ଅଙ୍ଗ ପୂର୍ଣ୍ଣ ।

"ଦୁର୍ଜୟ ଦୁର୍ଦାନ୍ତ ମହାତାରକ ଦାନବ"
"କରାଳ କବଳୁ କରି କି ପରି ଉଧାର"
"ଦୁଲ୍ଲଭ ତ୍ରିଦଶାଳୟ ଦେବ ସେନାପତି ।"
"ହୋଇ ଦେବ ସେନାପତି, ଅଦିତିନନ୍ଦନେ"
"କଲେ ଚିର ସୁଖି, କହ ମାତ ବୀଣାପାଣି"
"ସ୍ୱୟମ୍ଭୁ ନନ୍ଦିନୀ , ବନ୍ଦି ଚରଣାରବିନ୍ଦେ"
"ମାଗୁଛି ଏ ମୂଢ ନୋହି କବିଯଶ ଇପ୍‌ସୁ"
"ଇଛିମାତ୍ର ଘୋସିବାକୁ ତ୍ରିଦିବ କାହାଣି ।"
ମଙ୍ଗଳାଚରଣ ମନ୍ଦ ହୋଇ ନାହିଁ ।

ମଇକେଲଙ୍କର ।

"ବନ୍ଦି ଚରଣାରବିନ୍ଦ , ଅତି ମନ୍ଦମତି"
"ଆମି ତାକି ଆବାର ତୋ ମାୟଶ୍ୱେତଭୁଜେ"
"ଭାରତି ! ଯେ ମତି ମାତଃ ବସିଲା ଆସିୟା"
"ବାଲ୍ମିକିର ରସନାୟ (ପଦ୍ମାସନେ ଯେନ)"
"ଯବେ ଖରତରଶରେ , ଗହନ କାନନେ"............

... .... ... .....

ବଡ ସଙ୍ଗରେ ସାନର ତୁଳନା ଦୃଷ୍ଟି କଟୁ ହୁଅଇ ସତ୍ୟ, ମାତ୍ର ଉପରେ ଯାହା ଉଦ୍ଧୃତ କରାଗଲା ତୁଳନାରେ ତାହା ନିକୃଷ୍ଟ ଥିବାର ବୋଲାଯାଇ ନ ପାରେ ।

"ତାରକ ସଂହାର" ରଚନା ପୂର୍ଣ୍ଣ ହେଲେ ଖଣ୍ଡିଏ କାବ୍ୟ ହେବ । ପଦ୍ୟକ୍ଷେତ୍ରରେ କିପରି ସ୍ଥାନ ପାଇବ ବର୍ତ୍ତମାନ ବୋଲାଯାଇ ନ ପାରେ । ତାହା ଭବିଷ୍ୟତ ଗର୍ଭରେ , ମାତ୍ର ପ୍ରଥମ ସର୍ଗ ପାଠରେ ଯାହା ସୂଚିତ ହେଉଅଛି ତହିଁରୁ ବୋଲାଯାଇ ପାରେ ଲକ୍ଷଣ ମନ୍ଦ ନୁହେ । ଲେଖକଙ୍କର କଳ୍ପନା ଶକ୍ତିରେ ବଳ ଓ ତେଜ ଅଛି । ଚାତୁରି ବେସ ଅଛି । ଭାବର ଗଭୀରତା ଓ ପୂର୍ଣ୍ଣତା ମଧ୍ୟ ଲକ୍ଷିତ ହେଉଅଛି । ସଙ୍ଗେ ସଙ୍ଗେ ଭାବ ଓ ଭାଷାର ସାମଞ୍ଜସ୍ୟ ରହିଅଛି । ପୁଣି ରଚନା ନୈପୁନ୍ୟରେ ବିଷୟ ବର୍ଣ୍ଣନା ଯେପରି ଶ୍ରୋତରେ ଚାଲିଅଛି , କାବ୍ୟଖଣ୍ଡି ସେହିପରି ଭାବରେ ସମାପ୍ତ ହେଲେ ସର୍ବାଙ୍ଗ ସୁନ୍ଦର ହେବାର ସମ୍ଭାବନା । ନିମ୍ନରେ କିୟଦଂଶ ଉଦ୍ଧୃତ କରି ଏ ପ୍ରବନ୍ଧ ଶେଷ କରିବାକୁ ଇଚ୍ଛା ।

ଚିତ୍ରକର ଓ କବି ଦୁଇଙ୍କ ମଧ୍ୟରେ ପାର୍ଥକ୍ୟ ଅଳ୍ପ , କିଛି ନାହିଁ ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ରାଇଫେଲଙ୍କର ଚିତ୍ରପଟ , ମିଲଟନଙ୍କର କବିତାର ଭାବ ଓ ସୌନ୍ଦର୍ଯ୍ୟ ଏକଇ ପ୍ରକାର । ଗାର କାଟିଲେ ଚିତ୍ରକର ହୁଅନ୍ତି ନାହିଁ । ଲେଖୁଁ ଲେଖୁଁ ଯାହା ଉତରିଗଲା , ସେ ଲେଖା ଲେଖା ନୁହଇ । "ତାରକସଂହାର" ପାଠ କରି ମନରେ ହେଉଅଛି, ଲେଖକ ଚିତ୍ରପଟ ପ୍ରାୟ କଳ୍ପନାଦେବୀଙ୍କି ଚକ୍ଷୁରେ ରଖି ଯାହା ଦେଖୁଥିଲେ ତାହା ଅଙ୍କିତ କରୁଥିଲେ । ଦେବରାଜଙ୍କର ଶୋଚନୀୟ ଅବସ୍ଥାରେ ଆପ୍ଳୁତ ଥିଲେ ସୁତରାଂ ସେ ନିଜେ "ଅମର ବଚନରେ" ଆରମ୍ଭ କରିଦେଲେ ।

"ହାୟରେ ଦାରୁଣ ବିଧି କି ନ କରୁ ତୁହି"
"ଦେବଗଣେ ଏଦୁର୍ଦ୍ଦଶା ଅନ୍ୟେ କି ନ କରୁ"
"କି ଅଧପତନ ଅହୋ କେଡେ ବିପର୍ଯ୍ୟୟ"
"ବିଦ୍ୟୁତ ପ୍ରଭା ଜିଣି ପ୍ରଭାରାଶିରେ ପ୍ରଦୀପ୍ତ"
"ତ୍ରିଦିବୁଁ ତାଡ଼ିତ ଆହା ସୁରଗଣେ"
"ଆସୀନ ତମସାବୃତ ହିମାଦ୍ରି କନ୍ଦରେ"
"ଶତଧା ବିଦରେ ହିୟା ନୟନ ପତନେ"
"ପଟାନ୍ତର ହୀନ ଏହି ମର୍ମ୍ମଭେଦି ଦୃଶ୍ୟ ;

ଦେବତା ହେଲେ ମଧ୍ୟ ରକ୍ତମାଂସ ପିଣ୍ଡ , ପୂର୍ବାବସ୍ଥା ଚିନ୍ତାରେ ବ୍ୟସ୍ତ ହୋଇ ଦେବରାଜ ଆପେ ଆପଣାକୁ ଦାୟୀ କରୁଅଛନ୍ତି । ଉଚ୍ଚମନାମାନେ ବିପଦଗ୍ରସ୍ତ ହେଲେ, ଦୋଷ ଆପଣା ମୁଣ୍ଡରେ ନିଅନ୍ତି । ବିପଦରୁ ଉଦ୍ଧାର ଶକ୍ତି କିନ୍ତୁ ତାଙ୍କରି ଠାରେ ଥାଏ । ଦେବରାଜ ପୁନଶ୍ଚ କହିଲେ

******* ******* *******

"ମୋ ଅଦୃଷ୍ଟବଶୁଁ ଗ୍ରହରାଜ ସମ
ସୁବିମଳ ସମୁଜ୍ଜ୍ୱଳ କାନ୍ତି ପ୍ରଭାହୀନ

ଅଦିତି ନନ୍ଦନେ ଆଜି , ଅହୋ କି ଦୁର୍ଦ୍ଦଶା
ବିଦରେ ହୃଦୟ  ଦେଖି ଏ ପରିବର୍ତ୍ତନ
କି.ନ କରି ପାରୁ ଦୁଃଖଦିବସେ ଶର୍ବରୀ
କେଡ଼େ ପରାକ୍ରମୀ ତୁହିରେ ଦାରୁଣଦୁଃଖ ।

ଏପରି ଉଛ୍ୱାସୋକ୍ତି ପରେ କେତେ ସୁନ୍ଦର  ପଦ ନିସୃତ ହୋଇଅଛି, ପାଠ କଲେ ବାସ୍ତବିକ ମନ ଗଦ ଗଦ ହୋଇଯାଏ ।

"କରିକି ପାରିବୁ ତୁହି କେବେ କିଛି ମନେ
"ନିଜ ନିକେତନ ନିଜେ ପରାକ୍ରମୀ ମନ
"ସତତ ସକ୍ଷମ ଯହିଁ ତହିଁ ରଚିବାକୁ
"ବିଳାସ ମନ୍ଦିର ଆତ୍ମ;  ଭୁଞ୍ଜାଇ ତ୍ରିଦିବେ
"ନିରୟ ଯନ୍ତଣା ଘୋର: ମଣଇ ନରକ
"ଦୁର୍ଲଭ ତ୍ରିଦଶାଳୟ" ++
ଏହିଠାରେ ମିଲଟନଙ୍କର ସେହି ବାଲ୍ୟକାଳ ଘୋଷିତ
" The mind is its own place and in itself
"Can make a Heaven of Hell, a Hell of Heaven"

ମନରେ ପଡୁଅଛି । ସମ୍ଭବତଃ କବିଙ୍କମନରେ ମଧ୍ୟ ଗୁଣଗୁଣ ହେଉଥିଲା । ହେଲେ କେହି କାହାରିକୁ ଉଣା ପଡିଲେ ନାହିଁ । ଲେଖି ଜାଣିବା ଲୋକ କଥା ଅଲଗା, ପୁଣି କବି ହେଲେତ କଥା ନାହିଁ । ଦେବରାଜ ବିପଦଗ୍ରସ୍ତ ହେଲେ, ନିଜର ନିଜତ୍ୱ କେତେବେ ଛାଡି ପାରିବେ । ଆପେ ଆପଣାକୁ ଦୁଃଖ ମୁଖରେ ବଳିଦାନ ଦେବାକୁ ଉଦ୍ୟତ, କେଡ଼େ ସୁନ୍ଦର କହିଲେ

"ନୁହେ ଏହା ରାଜ ଧର୍ମ୍ମ ବିପଦେ ସ୍ୱଜନେ
"ଛାଡିଯିବା ବହୁଁ ବହୁଁ ପିଣ୍ଡେ ପ୍ରାଣବାୟୁ

******** *******

"ଶିହରେ ଶରୀର ଅହୋ ଭାବିଲେ ମନରେ
"ପରପଦ ସେବା-ଘୋର ନରକ ଯନ୍ତଣା,
"କେମନ୍ତ ସେ ପ୍ରାଣ ଯେ ତା ମଣେ ସୁଖକର ?
"ବିଳମ୍ବେ କି କାର୍ଯ୍ୟ ଆଉ  ? ଥରେ ଧରି ବଜ୍ର
"ପଶେ ରଣେ ଏକା ଦେଖେ କି ଅଛି ଭାଗ୍ୟରେ
"ମନ୍ତର ସାଧନ କିବା ଶରୀର ପତନ,

ଧନ୍ୟ କଳ୍ପନା ! ଆଚ୍ଛା ଦେବସଭା ଗୋଟିଏ କମାଇଦେଇଅଛି । ସମସ୍ତେ ମେଳି କଲା ପରି ଦେବତାମାନେ ଏକ ସ୍ଥାନରେ ଗୁଣ୍ଡ । କେହି କାହାରିକୁ ଉଣା ନୁହନ୍ତି । ସମସ୍ତଙ୍କର ଏକ ଦଶା । ଦେବରାଜ ଆତ୍ମକଥା କହି ନିସ୍ତବ୍ଧ ହେଲେ, ସମସ୍ତେ ତାଙ୍କ କଥା ଶୁଣିଲେ, କବି ଏହିଠାରେ କିସୁନ୍ଦର ଉପମାଟିଏ ଦେଲେ

"ଏତେ କହି ଉଭା ହେଲେ ସହସ୍ରାକ୍ଷ
"ଦେଖି ସସମ୍ଭ୍ରମେ ସର୍ବ ଅଦିତି ନନ୍ଦନେ
"କାଷ୍ଠ ପୁତଳିକା ପରି ଉପେଖି ଆସନ୍ନ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

******* *******

"ଚାହେଁ ଏକ ଦୃଷ୍ଟେ ଯଥା ନେପାଳୀ ବଙ୍ଗାଳୀ
"ମରହଟ୍ଟା କାଶ୍ମୀରୀ ପଞ୍ଜାବି ତେଲଙ୍ଗୀ
"ଆଦି ନାନାଜାତି ଲକ୍ଷ ଲକ୍ଷ ନର ନାରୀ
"ଭୁଲି ଆତ୍ମଜ୍ଞାନ ସର୍ବେ ସରଧାବାଲିରେ
"ବିରାଜିଲେ ମେଘାଚ୍ଛନ୍ନ ଅନ୍ଧାର ଦିବସେ
"ନନ୍ଦିଘୋଷ ରଥୋପରେ ଦେବ ଜଗନ୍ନାଥ

******* *******

ପ୍ରବନ୍ଧ ଦୀର୍ଘ ହୋଇପଡୁଅଛି, ନୋହିଲେ ଲେଖିବାକୁ ଅନେକ ରହିଗଲା । କବି ଜାତୀୟ ଭାବ ଯେପରି ତେଜପୂର୍ଣ୍ଣ ଭାବରେ ଲେଖିଅଛନ୍ତି ତାହା ନ ପଢ଼ିଲେ ଅନୁଭୂତ ହେବ ନାହିଁ । ଏହି କେତୋଟି ପଦ ଉଦ୍ଧୃତ ନ କରି କ୍ଷାନ୍ତ ହୋଇ ପାରିଲୁଁ ନାହିଁ ।

"ବିମୁଖ ନୁହଇ ବିଧି ଏକାକୀ ବାସବେ
"ବସାଇଛି ଏକ ନାବେ ଅଦିତି ନନ୍ଦନେ
"ସର୍ବେ ବନ୍ଧ ପ୍ରେମ ଡୋରେ-ପବିତ୍ର ବିଚିତ୍ର
"କୋମଳ ମୃଣାଳ ସୂତ୍ରୁଁ ସୁଦୃଢ ବଜ୍ରରୁ,
"ଦେବକୁଳ ଭାଗ୍ୟରବି ହାୟ ଅସ୍ତମିତ
"ଥାଉ ଦିବ୍ୟ ନେତ୍ର, ହାୟ, ଅଦିତିନନ୍ଦନେ
"ନ ଚିହ୍ନନ୍ତି ପରସ୍ପରେ ! *******
"ଜାତୀୟ - ଜୀବନତରୀ ବହିବା ଯତନେ
"ଧରି କର୍ଣ୍ଣଧାର ଦୃଢେ ଶୋକ-ସିନ୍ଧୁ ନୀରେ
"ଉତାଳ ତରଙ୍ଗେ ପୂର୍ଣ୍ଣ ବିପଦ ସଙ୍କୁଳେ
"ତରିବା ମରିବାଯାଏ - ଯା ଥାଉ କପାଳେ ଇତ୍ୟାଦି

******* *******

ଆଜି ଏତିକି । କବିତାଟିର ଆଦ୍ୟପ୍ରାନ୍ତ ତଲେଇ ଦେଖିଲେ ଅତିଉଚ୍ଚ ଓ ମହତ ଭାବମାନ ନିହିତ ଥିବାର ଜଣାପଡିବ । "ଜାତୀୟତାର" ବୀଜମନ୍ତ୍ର ରହିଅଛି । "ତ୍ରିଦଶାଳୟ" "ଜାତୁଧାନ" ଛବି ଅହରହ ପାଠକଙ୍କ କଳ୍ପନାରେ ମଧ୍ୟ ଝକ ଝକ କରୁଅଛି । "ତାରକ ସଂହାର" ପୂର୍ଣ୍ଣ କଳେବର ପ୍ରାପ୍ତ ହୋଇ ପ୍ରତିଷ୍ଠା ଲାଭ କରୁ କାୟମନବାକ୍ୟରେ ଏହି ପ୍ରାର୍ଥନା ।

ବଶମ୍ୱଦ
ଜଣେ ପାଠକ

*ଭା୩୦ଗ, ସଂ୪୧ଖ୍ୟା, ୨୬।୧୦।୧୮୯୫*

[ଓଡିଶାର ଉନ୍ନତି ନିମନ୍ତେ କମିଶ୍ନର ଶ୍ରୀଯୁକ୍ତ କୁକ୍ ସାହେବଙ୍କ ଅବଦାନ ]

ଓଡିଶା କମିଶନରଙ୍କ ସନ ୧୮୯୪/୯୫ସାଲର ସାଧାରଣ ବାର୍ଷିକ ବିବରଣ ଗତ କଲିକତା ଗଜେଟରେ ପ୍ରକାଶିତ ହୋଇଅଛି । ଏହି ରିପୋଟ ଲେଖକ ଶ୍ରୀଯୁକ୍ତ କୁକ୍‌ସାହେବ ଅଟନ୍ତି ଯେ କି ଅଳ୍ପକାଳ ହେଲା ଏଠାରୁ ବିଦାୟ

ହୋଇ ଯାଇ ଅଛନ୍ତି । ସାହେବ ଜଣେ ସୁଯୋଗ୍ୟ କମିଶନର ଏବଂ ଆମ୍ଭେମାନେ ତାହାଙ୍କର କେତେକ ସୁବିଚାରର ପ୍ରସଙ୍ଗ ଏ ପତ୍ରିକାରେ ପ୍ରକାଶ କରି ତାହାଙ୍କର ପ୍ରଶଂସା କରିଅଛୁଁ ମାତ୍ର ଏହି ରିପୋର୍ଟରୁ ତାହାଙ୍କର ଓଡିଶା ପ୍ରତି ଯେପରି ସହାନୁଭୂତି ଓ ଶୁଭକାମନାର ପରିଚୟ ପାଇଲୁଁ ସେପରି ଅନ୍ୟ କୌଣସି ସମୟରେ ଜାଣି ପାରି ନ ଥିଲୁଁ । ଏଥିପାଁଇ ତାହାଙ୍କର ବିଚ୍ଛେଦ ଅଧିକ କଷ୍ଟକର ବୋଧ ହେଉଅଛି । ଓଡିଶାର ଭାଷା ଓ ଆୟତନ ଲବଣ ବ୍ୟବସାୟ ଉଚ୍ଚଶିକ୍ଷା ଓଡିଆଙ୍କ ଉନ୍ନତି ବିଷୟରେ ସେ ଯାହା କହି ଅଛନ୍ତି ତହିଁରେ ଏ ପ୍ରଦେଶର ସାଧାରଣ ମତ ସୁନ୍ଦର ରୂପେ ପ୍ରତିଫଳିତ ହୋଇଅଛି । ଆମ୍ଭେମାନେ କ୍ରମେ କ୍ରମେ ସେ ସବୁ ପାଠକମାନଙ୍କୁ ଜଣାଇବୁଁ ।

*ଭା ୩୦ଗ, ସଂ୪୨ଖ୍ୟା, ୨।୧୧।୧୮୯୫*

## ଓଡିଶାର ବାର୍ଷିକ ବିବରଣ ।

ଓଡିଶାର ଗତ ବାର୍ଷିକ ବିବରଣ ମଧ୍ୟରେ ଶ୍ରୀଯୁକ୍ତ କୁକ୍‌ସାହେବ କମିଶନର ସମସ୍ତ ଓଡିଆ ଭାଷା ପ୍ରଚଳିତ ଭୂଖଣ୍ଡରେ ଏହି ଶାସନାଧୀନରେ ଆଣିବାର ପ୍ରସ୍ତାବ କରି ଆମ୍ଭମାନଙ୍କର ବିଶେଷ କୃତଜ୍ଞତା ଭାଜନ ହୋଇ ଅଛନ୍ତି । ସମସ୍ତ ଓଡିଶାବାସିଙ୍କର ଏହି ଆନ୍ତରିକ ପ୍ରାର୍ଥନା ଅଟେ ଏବଂ ଆମ୍ଭେମାନେ ଅନ୍ୟାନ୍ୟ ସହଯୋଗିଙ୍କ ସହିତ ଏହି ପ୍ରସଙ୍ଗର ପୁନ ପୁନ ଉଲ୍ଲେଖ କରି ଗବର୍ଣ୍ଣମେଣ୍ଟଙ୍କ ସୁବିଚାର ଲୋଡିବାରେ ତ୍ରୁଟି କରୁନାହୁଁ । ସମ୍ପ୍ରତି ସମ୍ବଲପୁରରୁ ଓଡିଆଭାଷା ଉଠି ଯିବାର ପ୍ରସ୍ତାବ ହେବାରୁ ତହିଁ ବିରୁଦ୍ଧରେ କେତେ ଗୁଡିଏ ଇଂରାଜୀ ପ୍ରବନ୍ଧ ପ୍ରକାଶ କରି ତହିଁରେ ଯେ ସମସ୍ତ ଯୁକ୍ତି ଦର୍ଶାଇ ଥିଲୁ ଶ୍ରୀଯୁକ୍ତ କୁକ୍‌ସାହେବ ଅତି ସଂକ୍ଷେପ ଏବଂ ସୁନ୍ଦର ଭାଷାରେ ସେ ସମସ୍ତର ପୋଷକତା କରି ଅଛନ୍ତି ଏବଂ ସମସ୍ତ ଓଡିଆ ପ୍ରଚଳିତ ରାଜ୍ୟକୁ ଏକ ବିଭାଗଭୁକ୍ତ କରିବା କାରଣ ଦୃଢରୂପେ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଅଛନ୍ତି । ସେ କହିଅଛନ୍ତି କି ଓଡିଶା ବିଭାଗ ଭୂମି ପରିମାଣ ଏବଂ ଲୋକସଂଖ୍ୟାରେ କ୍ଷୁଦ୍ର ଅଟେ ଏବଂ ଏଥିସଙ୍ଗେ ସମ୍ବଲପୁର ଜିଲା ଓ ତହିଁର ଅଧୀନ ଗଡଜାତ ପାଟନା ସୋନପୁର ରେଢାଖୋଲ ବାମଣ୍ଡା ଓ କଳାହାଣ୍ଡି ମାହାଲମାନ ଏବଂ ଗଞ୍ଜାମ ଜିଲା ସମସ୍ତ ଅଥବା ତହିଁର ଏକ ଅଂଶ ଓ ତହିଁ ସଙ୍ଗେ ଖିମିଣ୍ଡି ଓ ଘୁମୁସର ତାଲୁକାମାନ ଯୋଗ ହେଲେ ଓଡିଶା ବିଭାଗର ଅଙ୍ଗ ପୁଷ୍ଟ ହେବ ଅଥଚ ଏହି ବିସ୍ତୃତ ରାଜ୍ୟର କାର୍ଯ୍ୟ ନିର୍ବାହ କରିବାକୁ କମିଶନର ସାହେବଙ୍କ ଅବକାଶର ଅଭାବ ହେବ ନାହିଁ । ସମସ୍ତ ଓଡିଶା ଏକ ବିଭାଗର ଅନ୍ତର୍ଗତ କରି ଏକା ଆଇନ୍ ଓ ନିୟମାବଳୀ ଅଧୀନ କରିବା ଏକାନ୍ତ ବାଞ୍ଛନୀୟ ବର୍ତ୍ତମାନ ପରି ଓଡିଶାର ଏକ ସାମାନ୍ୟ ଅଂଶ ମଧ୍ୟ ପ୍ରଦେଶର ଅଧୀନ ଏବଂ ଅପର ସାମାନ୍ୟ ଅଂଶ ମାନ୍ଦ୍ରାଜର ଅଧୀନ ରହିବା ଶ୍ରେୟସ୍କର ନୁହେ । ସନ ୧୮୪୧ ମସିହାର ମାନଚିତ୍ରରେ ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜର ଅନ୍ତର୍ଗତ ଉପର ଲିଖିତ ରାଜ୍ୟଖଣ୍ଡ ମାନ ଓଡିଶା ପ୍ରଦେଶ ମଧ୍ୟରେ ଭରତି ହୋଇଅଛି । ରାଜକୀୟ ହେତୁରେ ମଧ୍ୟ ଓଡିଶାର ଗଡଜାତ ସୁପ୍ରଣ୍ଟଙ୍କ ଅଧିକାରରେ ସମ୍ବଲପୁର ଆସିବା ଉଚିତ କାରଣ ତାହାହେଲେ ବୌଦ କିମ୍ବା ଆଠମଲ୍ଲିକରେ କୌଣସି ଗୋଳମାଳ ହେଲେ ଅନ୍ୟ ପ୍ରଦେଶର କର୍ମଚାରିଙ୍କ ସାହାଯ୍ୟ ଲୋଡିବା ବିନା ସୁପ୍ରଣ୍ଟ ସାହେବ ସ୍ୱୟଂ ତାହା ନିବାରଣ କରିବାକୁ ସକ୍ଷମ ହେବେ ଏହିପରି ଗଞ୍ଜାମ ଓଡିଶା ସଙ୍ଗେ ଯୋଗ ହେଲେ ନୟାଗଡ ମେଳି ସମୟରେ ଯେଉଁ ଅସୁବିଧା ଘଟିଥିଲା ତାହା ଆଉ ଘଟିବ ନାହିଁ । ଏକା ଗୋଳମାଳ ସମୟରେ କାହିଁକି ଶାନ୍ତି ସମୟରେ ମଧ୍ୟ ସମସ୍ତ ଓଡିଶା ଏକ ଶାସନ କର୍ତ୍ତାର ତତ୍ତ୍ୱାବଧାରଣରେ ରହିଲେ ଉନ୍ନତିର ସୁଗମ ହେବ । ସମ୍ବଲପୁର ନାଗପୁର ଅପେକ୍ଷା କଟକକୁ ନିକଟ ଏବଂ ରେଲବାଟ ଶୀଘ୍ର ଫିଟିବାର ଉଦ୍ୟମ ଲାଗି ଥିବାରୁ ଦୂରତ୍ୱର ଆପତ୍ତି ଆଦୌ ଖଟି ନ ପାରେ ଓଡିଆ ମାନଙ୍କର ଜାତି ଏବଂ ଭାଷାଗତ ସ୍ୱତନ୍ତତା ଅଛି । ଏହା ଲୋପ ହେବାର ନୁହେ ବରଂ କ୍ରମଶଃ ଓଡିଆଭାଷା ଗଡଜାତ ମଧ୍ୟରେ ବିସ୍ତାର ହେଉଅଛି । ଏକ ଦିଗରେ ହିନ୍ଦି ଓ ଅନ୍ୟ ଦିଗରେ ତେଲଙ୍ଗାଙ୍କ ସଙ୍ଗେ ପଡି ସୁଦ୍ଧା ଓଡିଆମାନେ ଆପଣା ଭାଷା ରକ୍ଷା କରିବାକୁ ସମର୍ଥ ହୋଇଅଛନ୍ତି ମାତ୍ର ଅଳ୍ପ ସଂଖ୍ୟକ ଏକ ଜାତୀୟ ଲୋକଙ୍କୁ ବହୁସଂଖ୍ୟକ ଭିନ୍ନଜାତୀୟ ସଙ୍ଗରେ ବଳପୂର୍ବକ ମିଶାଇ ରଖିବାର ଅଳ୍ପ ସଂଖ୍ୟକ ଲୋକଙ୍କ ଜାତୀୟ ସ୍ୱଭାବ ଓ ବାସନାର ପଦେ ପଦେ ବିପଦ ଏବଂ ସମ୍ବଲପୁରରେ ହିନ୍ଦି ଜାରୀ ହେବାର ପ୍ରସ୍ତାବ ତହିଁର ଗୋଟିଏ ଉଦାହରଣ ଅଟେ ।

ଏହିପରି ଅନେକ ସୁଯୁକ୍ତି ଦର୍ଶାଇ ଶ୍ରୀଯୁକ୍ତ କମିଶନର ସାହେବ ଆପଣା ପ୍ରସ୍ତାବର ପୋଷକତା କରିଅଛନ୍ତି । ଦୁଃଖର ବିଷୟ ଯେ ବଙ୍ଗୀୟ ଗବର୍ଣ୍ଣମେଣ୍ଟ ଆପଣା ନିର୍ଦ୍ଧାରଣରେ ଏବିଷୟରେ କିଛି କହି ନାହାନ୍ତି । ଏମନ୍ତ ସୁଯୁକ୍ତିପୂର୍ଣ୍ଣ ପ୍ରସ୍ତାବ ଯେ ଗବର୍ଣ୍ଣମେଣ୍ଟଙ୍କ ମନକୁ ଘେନି ନାହିଁ ଆମ୍ଭେମାନେ କେତେବେଳେ ବିଶ୍ୱାସ କରିବୁ ନାହିଁ । ମାତ୍ର କାଳେ ସେ ଇଣ୍ଡିଆ ଗବର୍ଣ୍ଣମେଣ୍ଟଙ୍କୁ ଏ ପ୍ରସ୍ତାବ ଜଣାଇବାରେ ହେଳା କରିବେ ଏଥିପାଇଁ ତାହାଙ୍କୁ ସ୍ମରଣ କରାଇଦେବା ଓଡିଶାବାସିଙ୍କର ଉଚିତ ହେଉଅଛି । ଏବିଷୟରେ ଶୀଘ୍ର ମନୋଯୋଗୀ ହେବା କାରଣ ସର୍ବସାଧାରଣଙ୍କୁ ଅନୁରୋଧ କରୁଁ ।

*ଭା ୩୦ଗ, ସଂ୪୩ଖ୍ୟା, ୯।୧୧।୧୮୯୫*

## [ପ୍ରାପ୍ତପତ୍ର : କବିତାମଞ୍ଜରୀ, ଯଯାତି କେଶରୀ]

ମହାଶୟ !

ଉତ୍କଳ-ସାହିତ୍ୟ-ବିପଣୀରେ ଆଜିକାଲି ଦୁଇଖଣ୍ଡି ନୂତନଗ୍ରନ୍ଥର ଆମଦାନୀ ହୋଇଅଛି – ଖଣ୍ଡିଏ "କବିତାମଞ୍ଜରୀ, ଅନ୍ୟଟି "ଯଯାତି କେଶରୀ" । ଉଭୟର ଅନ୍ତ୍ୟବର୍ଣ୍ଣ "ରୀ",ସୁତରାଂ ଗ୍ରନ୍ଥଦ୍ୱୟର ନାମ ସ୍ମରଣ ରଖିବା ପକ୍ଷରେ ବିଶେଷ ସୁବିଧା । ଯେଉଁ ଭାଷାରେ ପୁସ୍ତକ ପ୍ରକାଶିତ ହେଲେ ମୁଦ୍ରାଙ୍କନ ବ୍ୟୟ ସୁଦ୍ଧା ଉଠିବା କଠିନ, ସମାଲୋଚ୍ୟ ଗ୍ରନ୍ଥଦ୍ୱୟ ସେହି ଭାଷାରେ ପ୍ରକାଶିତ ହୋଇଅଛି –ଗ୍ରନ୍ଥକାର ଓ ପ୍ରକାଶକମାନଙ୍କ ପକ୍ଷରେ ଏହା କିଛି ଅଳ୍ପ ପ୍ରଶଂସାର କଥା ନୁହେଁ । ଉଭୟ ଗ୍ରନ୍ଥକାର ଗୁଣୀ ଓ କ୍ଷମତାଶାଳୀ – ସୌଭାଗ୍ୟର ବିଷୟ କହିବାକୁ ହେବ ଯେ , ଯେଉଁମାନଙ୍କର ଗୌରବାନ୍ୱିତ ନାମରେ ପୁସ୍ତକ ଉତ୍ସୃଷ୍ଟ ହୋଇଅଛି, ସେମାନେ ମଧ୍ୟ ଗୁଣୀ ଓ କ୍ଷମତାଶାଳୀ । ଏପର ମଣି-କାଞ୍ଚନର ସଂଯୋଗ ଦର୍ଶନରେ କିଏ ସୁଖୀ ନ ହେବ ? ଗ୍ରନ୍ଥଦ୍ୱୟର ଉତ୍ସର୍ଗପତ୍ରରୁ ଆମ୍ଭେମାନେ ଜାଣିପାରିଲୁଁ ଯେ , ଅପରିମେୟ ସ୍ୱଦେଶାନୁରାଗ "କବିତାମଞ୍ଜରୀର"କବିଙ୍କ ହୃଦୟରେ ଏବଂ ଅତିରିକ୍ତ ବାମଣ୍ଡା ଦର୍ଶନାନୁରାଗ "ଯଯାତିକେଶରୀର" କବିଙ୍କ ହୃଦୟରେ କାର୍ଯ୍ୟ କରୁଅଛି । ଉତ୍କଳ ସାହିତ୍ୟର ଏହି ଦୁଃଖ ଓ ଦୁର୍ଦ୍ଦିନରେ ପ୍ରତିଭାଶାଳୀ କବିଦ୍ୱୟଙ୍କର ଦୁଇଗୋଟୀ ମାନସପ୍ରସୂତ ପୁତ୍ର ଜନ୍ମିଅଛି –ସାହିତ୍ୟାନୁରାଗି ପାଠକମାନେ ସେଥିସକାଶେ ଥରେ ଜୟଧ୍ୱନି କରନ୍ତୁ ।

"କବିତା ମଞ୍ଜରୀ" ଏବଂ "ଯଯାତିକେଶରୀ" ଉଭୟ ପୁସ୍ତକମଧ୍ୟରୁ ପ୍ରଥମୋକ୍ତଟୀ ଖଣ୍ଡ-କବିତା ଓ ଶେଷୋକ୍ତଟୀ କାବ୍ୟଗ୍ରନ୍ଥ । " କବିତାମଞ୍ଜରୀ" ଆଦିରସବର୍ଜିତ,ସୁରୁଚି ଅନୁମୋଦିତ -ସୁତରାଂ ତାହା ଶିକ୍ଷକ ଓ ଛାତ୍ର ମଧ୍ୟରେ, ପିତା ଓ ପୁତ୍ର ମଧ୍ୟରେ , ଭାଇ ଓ ଭଉଣୀ ମଧ୍ୟରେ ପଠନୋପଯୋଗୀ ହୋଇଅଛି । ଭାବ ଓ ଭାଷାର ମାଧୁର୍ଯ୍ୟ ଗୁଣରୁ "କବିତାମଞ୍ଜରୀର" ଅଧିକାଂଶ କବିତା ମନୋହାରୀ ହୋଇଅଛି, ଏକଥା ଆମ୍ଭେମାନେ ନିଃସନ୍ଦେହଚିତ୍ତରେ କହିପାରୁଁ । "ଯଯାତି କେଶରୀରେ"ଭାଷାର ମାଧୁରୀ ,ଛନ୍ଦୋବନ୍ଧର ବାହାଦୁରୀ,ଏବଂ କଳ୍ପନାର ଚାତୁରୀ ଯଥେଷ୍ଟ ପରିମାଣରେ ଅଛି ସତ୍ୟ-କିନ୍ତୁ ଦୁଃଖର ବିଷୟ, ଆଦିରସାଶ୍ରିତ ହୋଇଥିବାରୁ ତାହା ଆବାଳ-ବୃଦ୍ଧ-ବନିତାର ପଠନୋପଯୋଗୀ ହୋଇ ନାହିଁ । ଆକାଶର ନିର୍ମଳ ଜଳ ପୃଥିବୀର ଆବିଳ କ୍ଷେତ୍ରରେ ପଡି ଯେପରି କଳୁଷିତ ହୋଇଯାଏ,ସେହିପରି ଯଯାତିକେଶରୀଙ୍କର ଅନିନ୍ଦ୍ୟ ଦେବଚରିତ୍ର ସମାଲୋଚ୍ୟ "ଯଯାତିକେଶରୀରେ" ଅତିଶୟ ଜଘନ୍ୟ ପ୍ରକୃତି ଧାରଣ କରିଅଛି ଦେଖି ଆମ୍ଭେମାନେ ଦୁଃଖିତ ହେଲୁଁ । ସାଧୁବାକ୍ୟ ଅଛି , "ନ କେବଳଂ ଯୋ ମହତୋପଭାଷତେ,ଶୃଣୋତି ତସ୍ମାଦପି ଯଃ ସଃ ପାପଭାକ୍"-ମହତ୍ ଚରିତ୍ର ଯେଉଁ ଗ୍ରନ୍ଥରେ ନିନ୍ଦନୀୟରୂପେ ଚିତ୍ରିତ ହୋଇଥାଏ , ତାହା ପାଠ ଅଥବା ଶ୍ରବଣ କଲେ ମଧ୍ୟ ପାପଭାଗୀ ହେବାକୁ ହୁଏ । ସୁତରାଂ ଅର୍ଥ ଓ ପରିଶ୍ରମର ବିନିମୟରେ ପୂଜ୍ୟ ଯଯାତିକେଶରୀଙ୍କର କଳଙ୍କ କାହାଣୀ ପାଠଦ୍ୱାରା ତଦୀୟ ବଂଶଧରମାନଙ୍କର ଯେ କେଉଁ ହିତ ସାଧିତ ହେବ, ତାହା ଆମ୍ଭେମାନେ ଧାରଣା କରିପାରିଲୁଁ ନାହିଁ ।

"କବିତାମଞ୍ଜରୀ" ଗ୍ରନ୍ଥକାରଙ୍କ କର୍ତ୍ତୃକ ପ୍ରକାଶିତ । ଗ୍ରନ୍ଥକାର ଯେତେବେଳେ ସ୍ୱୟଂ ଗ୍ରନ୍ଥ ପ୍ରକାଶକ, ତେତେବେଳେ "ଏମ୍,ଏଙ୍କ ଦ୍ୱାରା ପ୍ରକାଶିତ" ନ ଲେଖିଥିଲେ ବୋଧହୁଏ ଭଲ ହୋଇଥାନ୍ତା । "ଯଯାତିକେଶରୀ" ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନଙ୍କ କର୍ତ୍ତୃକ ପ୍ରକାଶିତ । ପ୍ରକାଶକ ପୁସ୍ତକର ଭୂମିକାରେ ଲେଖିଅଛନ୍ତି, ଆଦିରସକୁ

କିରୂପେ ଉଚିତ ସୀମାରେ ଆବଦ୍ଧ ରଖା ଯାଇପାରେ,ତାହା "ଯଯାତିକେଶରୀରେ" ପ୍ରଦର୍ଶିତ ହୋଇଅଛି । ପ୍ରକାଶକଙ୍କର ଏତାଦୃଶ ସ୍ତୁତିବାଦର ମୋହିନୀମାୟାରେ ଭୁଲି "ଯଯାତିକେଶରୀ" ପଢ଼ିବାକୁ ଯାଇ ଆମ୍ଭେମାନେ ପ୍ରତାରିତ ହୋଇଅଛୁଁ - ଏବଂ ଯେଉଁମାନେ ଉକ୍ତ ଗ୍ରନ୍ଥ ପାଠ କରିବେ, ସେମାନେ ଆଦିରସକୁ କିପରି ଉଚିତ ସୀମାରେ ଆବଦ୍ଧ ରଖାଯାଇ ଅଛି, ତାହା ବୁଝିପାରିବେ । ଶ୍ରଦ୍ଧେୟ ରାମନାରାୟଣ ବାବୁ ଓ ମଧୁବାବୁ (ମଧୁବାବୁ ଆପଣାର ନାମ ଅପ୍ରକାଶିତ ରଖିଲେ ହେଁ ବିଶ୍ୱସ୍ତ ସୂତ୍ରରୁ ଆମ୍ଭେମାନେ ତାଙ୍କ ନାମ ଅବଗତ ହୋଇଅଛୁଁ) ଇତିପୂର୍ବେ "ଯଯାତିକେଶରୀ" ସମ୍ବନ୍ଧରେ "ହିତୈଷିଣୀରେ" ଯେଉଁ ଅଭିପ୍ରାୟ ପ୍ରକାଶ କରିଅଛନ୍ତି, ତାହା ପାଠ କଲେ "ଯଯାତିକେଶରୀର" ଉପାଦେୟତା ସମ୍ବନ୍ଧରେ ପାଠକମାନଙ୍କର ଆଉ ସନ୍ଦେହ ରହିବ ନାହିଁ ।

"କବିତା ମଞ୍ଜରୀର"କବି -ନବୀନ, ଯଯାତି-କେଶରୀର କବି ପ୍ରବୀଣ -ନବୀନ ଓ ପ୍ରବୀଣ କବିଙ୍କର ଦୁଇଖଣ୍ଡି ନୂତନ ପୁସ୍ତକ ପାଇ ଆଜି ଆମ୍ଭେମାନେ ଭକ୍ତିପୂର୍ଣ୍ଣ ହୃଦୟରେ ଉଭୟଙ୍କୁ ଅଭିବାଦନ କରୁଅଛୁ । ଉଭୟଙ୍କ ହୃଦୟରେ ନୈସର୍ଗିକ ପ୍ରତିଭା ଅଛି - ଉଭୟ କବି ମଧ୍ୟ ବାଗ୍‌ଦେବୀଙ୍କ ସେବାରେ ତାହା ବିନିଯୋଗ କରିଅଛନ୍ତି । ରାଜକାର୍ଯ୍ୟରେ ବ୍ୟସ୍ତ ଥାଇଁ , ବହୁତର ପ୍ରତିକୂଳ ଅବସ୍ଥାର ସହିତ ସଂଗ୍ରାମ କରି ଉକ୍ତ କବିଦ୍ୱୟ ଉପେକ୍ଷିତ ଉତ୍କଳ ଭାଷାର ଉନ୍ନତି ସାଧନରେ ଯେପରି ଅନୁରାଗ ଓ ଅଧ୍ୟବସାୟ ପ୍ରଦର୍ଶନ କରୁଅଛନ୍ତି , ତାହା କିଛି ଉଣା ପ୍ରଶଂସାର କଥା ନୁହେ । "ତାରକସଂହାରର"ଦାସ କବି ଓ "ମହାଯାତ୍ରାର"ରାୟ କବି , ଉଭୟର ଆରାଧ୍ୟ ଦେବତା ଏକ, ଉଭୟର ମାନସିକ ଗତି ଏକଆଡ଼କୁ ପ୍ରଧାବିତ,ଉଭୟର ପ୍ରତିଭା ମଧ୍ୟ ଏକ ପ୍ରକୃତିର -ପ୍ରଭେଦ ଏହି କି ସାନ ଓ ବଡ଼ , ନବୀନ ଓ ପ୍ରବୀଣ , ବଙ୍ଗାଳୀ ଓ ଓଡ଼ିଆ । କିନ୍ତୁ ଅପରିହାର୍ଯ୍ୟ କର୍ତ୍ତବ୍ୟାନୁରୋଧର ଆମ୍ଭେମାନେ ଏକଥା ନ କହି ଆଉ ରହିପାରିଲୁ ନାହି ଯେ, ଭଞ୍ଜଗୁରୁଙ୍କଠାରୁ ଶିକ୍ଷା ପାଇଥିଲେହେଁ ଭଞ୍ଜ ରୁଚିର ଅନୁଗାମୀ ନ ହୋଇ "କବିତାମଞ୍ଜରୀରେ" ଦାସ କବି ଯେପରି ମାର୍ଜିତ ରୁଚିର ପରିଚୟ ଦେଇଅଛନ୍ତି – ସୁନୀତି ଓ ସୁରୁଚିର ପକ୍ଷପାତି ହେଲେହେଁ "ଯଯାତି କେଶରୀରେ"ରାୟକବି ସେପରି ମାର୍ଜିତ ରୁଚିର ପରିଚୟ ଦେଇପାରୁ ନାହାନ୍ତି । ରାୟ କବିଙ୍କର ପରିଶ୍ରମ ଓ ଶକ୍ତି "ଯଯାତିକେଶରୀରେ"ଅପବ୍ୟବହୃତ ନ ହୋଇ ଅନ୍ୟ କୌଣସି ସଦ୍‌ଗ୍ରନ୍ଥରେ ପର୍ଯ୍ୟବସିତ ହୋଇଥିଲେ ଆମ୍ଭମାନଙ୍କର ବିବେଚନାରେ ଭଲ ହୋଇଥାନ୍ତା । କାରଣ, ଯେଉଁ ବ୍ୟକ୍ତି ରକ୍ଷକ, ସେ ଯେବେ ଭକ୍ଷକ ହେବ –ବଇଦ ଯେବେ ମଲୁ ହେବ- ତେବେ ଅନ୍ୟେ ପରେ କା କଥା !!!

ତା୧୯ରିଖ, ନବେମ୍ବର୧୮୯୫ କସ୍ୟଚିଦ୍ ନିରପେକ୍ଷ-

ବାଦୀନଃ

କଟକ

*ଭାଗ୩୦ଗ, ସଂ୪୫ଖ୍ୟା, ୨୩।୧୧।୧୮୯୫*

## ଓଡ଼ିଶାର ଗତ ବାର୍ଷିକ ବିବରଣ ।

ଶ୍ରୀଯୁକ୍ତ କୁକ୍ ସାହେବ କମିଶନରଙ୍କର ଯୋଡିଏ ପ୍ରସ୍ତାବର ଉଲ୍ଲେଖ ଏଥିପୂର୍ବେ କରିଅଛୁଁ । ତାହାଙ୍କର ରିପୋର୍ଟରେ ଆଉ ଯୋଡିଏ ପ୍ରଧାନ ପ୍ରସ୍ତାବର ଅବତାରଣା ହୋଇଅଛି । ଯଥା ଗୋଟିଏ ବାଙ୍କିକିଲ୍ଲା ଓ ଅନ୍ୟଟି ଶିକ୍ଷାସମ୍ବନ୍ଧରେ ଅଟେ । ବାଙ୍କି ବର୍ତ୍ତମାନ କଟକଜିଲ୍ଲାର ଗୋଟିଏ ସବ୍ ଡିବିଜନ ହୋଇଅଛି । ସାହେବ ମହୋଦୟ କହନ୍ତି କି ଏହାର ଭୌଗଳିକସ୍ଥାନ ଦେଖିଲେ ଖୋରଧାର ଅଂଶ ବୋଲିବାରେ କାହାରି ଦ୍ୱିଧା ହେବ ନାହିଁ । ପ୍ରକୃତରେ ବାଙ୍କି ମୁଗଲବନ୍ଦି ମଧ୍ୟରେ ଆସିବା ସମୟରେ ପ୍ରଥମେ ଖୋରଧାରେ ସଂଯୁକ୍ତ ହେବାର ପ୍ରସ୍ତାବ ହୋଇଥିଲା । କେବଳ ବାଙ୍କିଠାରୁ ଓ ଖୋରଧା ଓ ପୁରୀକି ବାଟର ଅସୁବିଧା ଘଟିତ ଆପତ୍ତି ହେତୁ ସେ ପ୍ରସ୍ତାବ ଅଗ୍ରାହ୍ୟ ହୋଇ ବାଙ୍କି କଟକର ସାମିଲ ହେଲା । ସମ୍ପ୍ରତି ରେଲବାଟ ଫିଟିବାର ଆରମ୍ଭ ହେବାରୁ ସେ ଆପତ୍ତି ଆଉ ରହିବ ନାହିଁ । କଟକ ଗୋଟିଏ ଅତି ବୃହତ୍ ଜିଲ୍ଲା ଏବଂ ପୁରୀ ଗୋଟିଏ ଅତି କ୍ଷୁଦ୍ର ଜିଲ୍ଲା । କଟକର କେତେକ ଅଂଶ ପୁରୀରେ ଭରତି କରି ଏହି ଅସମତା ଭାଙ୍ଗିବା ନିତାନ୍ତ ବାଞ୍ଛନୀୟ ଏବଂ ଏହାଦ୍ୱାରା କାର୍ଯ୍ୟ ନିର୍ବାହର ଅନେକ ସୁବିଧା ହେବ । ଅତ୍‌ଏବ କମିଶନର ସାହେବ କହିଅଛନ୍ତି କି ଯେମନ୍ତ ବୈତରଣୀ ନଦୀ

କଟକ ଓ ବାଲେଶ୍ୱର ଜିଲ୍ଲାର ସୀମା ହୋଇଅଛି ସେହିପରି କାଠଯୋଡି ନଦୀ ଓ ତହିଁର ଗୋଟିଏ ଶାଖା କଟକ ଓ ପୁରୀ ଜିଲ୍ଲାର ସୀମା ଧାର୍ଯ୍ୟ ହେଲେ କଟକ ଜିଲ୍ଲା ହାକିମଙ୍କର ଅନେକ ଉପକାର ହେବ ଏବଂ ଉଭୟଜିଲ୍ଲାର କାର୍ଯ୍ୟରେ ଅସମତା ରହିବ ନାହିଁ । ମାନ୍ୟବର ଛୋଟଲାଟ ବାହାଦୂର ଏ ପ୍ରସ୍ତାବ ଉତ୍ତମ ବିବେଚନା କରି ପୃଥକ୍‌ରୂପେ ରିପୋର୍ଟ କରିବାର ଆଦେଶ ଦେଇଅଛନ୍ତି । ପୃଥକ୍ ରିପୋର୍ଟର ଭାର ଶ୍ରୀଯୁକ୍ତ ଦତ୍ତ ସାହେବଙ୍କ ଉପରେ ପଡିଲା ଏବଂ ସେ ଏ ପ୍ରସ୍ତାବରେ ଐକ୍ୟ ହେବେ କି ନାହିଁ ସମୟରେ ଜଣାଯିବ । ଆମ୍ଭମାନଙ୍କ ବିବେଚନାରେ କୁକ୍‌ସାହେବ ଲୋକଙ୍କ ସୁବିଧା ଅପେକ୍ଷା ସରକାରୀ କର୍ମଚାରୀଙ୍କ ସୁବିଧା ପ୍ରତି ଅତିରିକ୍ତ ଦୃଷ୍ଟି କରିଅଛନ୍ତି । ଜିଲ୍ଲାମାନ ଯଥାସମ୍ଭବ ସମାନ ଆୟତନର ହେଲେ ଅବଶ୍ୟ କାର୍ଯ୍ୟର ଅସମତା ଅନେକ ପରିମାଣରେ ବିଦୂରିତ ହୋଇପାରେ । ମାତ୍ର କଟକ ଓ ପୁରୀ ପରି ଯେସବୁ ଜିଲ୍ଲାର ସଦରମୁକାମ ଏକ ପ୍ରାନ୍ତରେ ସ୍ଥିତ ସେସବୁ ଜିଲ୍ଲାର ଏଲାକା ବାଣ୍ଟିବାରେ ବିଶେଷ ବିବେଚନାର ଆବଶ୍ୟକ ସନ୍ଦେହ ନାହିଁ । କଟକ ଓ ପୁରୀର ସୀମା କାଠଯୋଡି ନଦୀ ହେଲେ ସେହି ନଦୀର ଦକ୍ଷିଣପାରିର ଲୋକେ କଟକ ଛାଡି ଖୋରଧା ଓ ପୁରୀକି ମାମଲା କରି ଯିବାକୁ ବାଧ୍ୟ ହେଲେ ସେମାନଙ୍କର କି ସାମାନ୍ୟ କଷ୍ଟ ହେବ ? କଟକରୁ ଖୋରଧା ଓ ପୁରୀକି ରେଳବାଟ ଫିଟିଲେ ସୁଦ୍ଧା ଯେପର୍ଯ୍ୟନ୍ତ ବାଙ୍କିସଙ୍ଗେ ଯୋଗ ହୋଇ ନାହିଁ ସେପର୍ଯ୍ୟନ୍ତ ଯେଉଁ ଆପତ୍ତିରେ ବାଙ୍କି କଟକ ସାମିଲ ହୋଇଅଛି ତାହା ଅଦୃଶ୍ୟ ହେବ କି ?

ଶିକ୍ଷାସମ୍ବନ୍ଧରେ ସାହେବ ମହୋଦୟ ଲେଖିଅଛନ୍ତି କି ଓଡିଶା ଉଚ୍ଚଶିକ୍ଷାରେ ପଶ୍ଚାତ୍‌ପଦ ହେଲେହେଁ ଏହି ବିଭାଗରେ ରେବନସା କଲେଜନାମରେ ଉଚ୍ଚଶିକ୍ଷାର ଗୋଟିଏ କଲେଜରୁ ଅଧିକ ନାହିଁ । ଏହି କଲେଜର ଅଧ୍ୟକ୍ଷ ଶ୍ରୀଯୁକ୍ତ ହଲବାର୍ଡ ସାହେବ ଯୋଗ୍ୟଲୋକ ହେଲେହେଁ କିକାରଣରୁ ବି,ଏ, ଏବଂ ଏଫ,ବି , ପରୀକ୍ଷାର ଫଳ ସନ୍ତୋଷଜନକ ହେଉ ନାହିଁ ଅନୁସନ୍ଧାନ କରି ବିହିତ ପ୍ରତିକାର ଶୀଘ୍ର କରିବାର ଉଚିତ । ଓଡିଆମାନେ ସ୍ୱଦେଶରେ ସରକାରୀ କାର୍ଯ୍ୟ କରିବା ନିମନ୍ତେ ଯୋଗ୍ୟତା ଲାଭ କରିବାକୁ ଇଚ୍ଛା କରନ୍ତି ଏବଂ ସେ ବାସନା ପ୍ରସଂଶନୀୟ ଅଟେ ବୋଲି ତହିଁର ସଂପୂର୍ଣ୍ଣ ସହାୟତା କରିବା ଉଚିତ । ସାହେବ ମହୋଦୟ ଆହୁରି ଲେଖିଅଛନ୍ତି କି ଶିକ୍ଷାବିଭାଗର ସ୍ଥାନୀୟ ତତ୍ତ୍ୱାବଧାରଣ ତାହାଙ୍କ ହାତରେ ଥିଲେହେଁ ସେହି ବିଭାଗର କର୍ମଚାରିମାନେ ଯଥାସମୟରେ କୌଣସି ବିଷୟ ତାହାଙ୍କୁ ନ ଜଣାଇ ବାର୍ଷିକ ରିପୋର୍ଟ ସକାଶେ ସକଳବିଷୟ ରଖିଦିଅନ୍ତି । ବର୍ଷ ଶେଷ ହେବାର ଅନେକ ମାସ ଉତ୍ତାରୁ ଶିକ୍ଷାବିଭାଗର ଡାଇରେକ୍ଟରଙ୍କଦ୍ୱାରା ଇନସ୍ପେକ୍ଟରଙ୍କ ବାର୍ଷିକ ରିପୋର୍ଟ ତାହାଙ୍କ ହସ୍ତଗତ ହୁଅଇ । ସୁତରାଂ ବର୍ଷମଧ୍ୟରେ ଗବର୍ଣ୍ଣମେଣ୍ଟଙ୍କ ଆଦେଶ ଏବଂ ଅଭିପ୍ରାୟମତେ କି କାର୍ଯ୍ୟ ହେଲା ବା ନ ହେଲା ତାହା ଜଣାଯାଏ ନାହିଁ । ଯେ ସମସ୍ତ ବିଷୟ ଯେଉଁ ସମୟରେ ଶିକ୍ଷାବିଭାଗର ଜ୍ଞାତସାରରେ ଆସେ ସେହି ସମୟରେ କମିଶନର ସାହେବଙ୍କୁ ଜଣାଇ ଦେଲେ ଭଲ ହୁଅନ୍ତା ସନ୍ଦେହ ନାହି । ଶିଭିଲ ଓ ଶିକ୍ଷା ବିଭାଗୀୟ କର୍ମଚାରିମାନେ ମିଶି କାର୍ଯ୍ୟ କରିବା ଅଭିପ୍ରାୟରେ ସନ ୧୮୭୨ ସାଲର ନୀତି ସ୍ଥିର ହୋଇ ଜଣେ ଖାସ୍ ଇନସ୍ପେକ୍ଟର ଓଡିଶା ସକାଶେ ନିଯୁକ୍ତ ହେଲେ । ସେ ନୀତିର ପରିବର୍ତ୍ତନ ହୋଇ ନାହିଁ ମାତ୍ର କାର୍ଯ୍ୟତଃ ତାହା ଅନ୍ୟଥା ହୋଇଅଛି । ଏଥକୁ ମାନ୍ୟବର ଛୋଟଲାଟ ବାହାଦୂର ଏହି ମନ୍ତବ୍ୟ ପ୍ରକାଶ କରିଅଛନ୍ତି କି ଏଣିକି ଶିକ୍ଷାବିଭାଗ ସଙ୍ଗେ କମିଶ୍ନର ସାହେବଙ୍କ ସମ୍ବନ୍ଧ ନିକଟତର ହେବ ।

*ଭା୩୦ଗ, ସଂ୪୬ଖ୍ୟା, ୩୦।୧୧।୧୮୯୫*

## [ପୁସ୍ତକ ସମାଲୋଚନା]

ମହାଶୟ !

ଉତ୍କଳର ଯୋଗ୍ୟପୁତ୍ର ଶ୍ରୀଯୁକ୍ତ ବାବୁ ଗୋପାଳବଲ୍ଲଭ ଦାସଙ୍କ ବିରଚିତ ଉପହାର ସୂତ୍ରରେ ପ୍ରାପ୍ତ "କବିତାମଞ୍ଜରୀ" ଟି କୃତଜ୍ଞ ଚିତ୍ତରେ ଗ୍ରହଣ କରି ଆମୂଳ ପାଠ କରିବାରୁ ମୋହ ମନରେ ଯେଉଁ ଭାବ ଉଦୟ ହେଲା ତାହାହିଁ ଆପଣଙ୍କ ପତ୍ରିକାର ପାଠକମାନଙ୍କ ସମକ୍ଷରେ ଉପସ୍ଥିତ କରୁଅଛି । କବି ମହୋଦୟ ଜାତୀୟ ଉନ୍ନତି

ଓ ସ୍ୱଦେଶ ହିତକାମନାରେ ଆପଣାକୁ ନିଯୁକ୍ତ କରି ଲେଖନୀ ଧାରଣ କରିଅଛନ୍ତି । ମଞ୍ଜରୀର "ଉଷା" ପାଖୁଡାଟି ଅତ୍ୟୁତ୍କୃଷ୍ଟ ହୋଇଅଛି । ଏହା ଦେଶ, କାଳ , ପାତ୍ରର ଅପୂର୍ବ ମିଳନ ସମ୍ଭୂତ ଏଥିରେ ହୃଦୟୋନ୍ମାଦକାରୀ କ୍ଷମତାଟି ବହୁଳ ପରିମାଣରେ ଅଛି । "କାରୁକାର୍ଯ୍ୟଶୋଭା" ବର୍ଣ୍ଣନାଟି ପଢିଲାବେଳେ ପ୍ରକୃତରେ "ନିଜକୁ ପାଷାଣ ବୋଲି ହୁଏ ଜ୍ଞାନ" । ବୋଧହୁଏ ଯେପରି ଭୁବନେଶ୍ୱର ଓ ପୁରୀ ମନ୍ଦିରର ଚିତ୍ରପଟ ସମ୍ମୁଖରେ ରଖା ହୋଇଅଛି । ଉତ୍କଳର ପୁରାତନ ଗୌରବ କାହାଣୀ ପଢିଲାବେଳେ ହୃଦୟ ବୀରରସାପ୍ଲୁତ ହୁଏ । ମୋହର ସ୍ଥିର ବିଶ୍ୱାସ କବି ମହୋଦୟଙ୍କର ଧାରଣା "ସାମରିକ ଗୌରବହିଁ ପ୍ରକୃତ ଗୌରବ"।

କବି ଉତ୍କଳର ପୁରାତନ ଗୌରବ ସ୍ମରଣ କରି ଯେପରି ଆନନ୍ଦରେ ନାଚି ଉଠିଛନ୍ତି ବର୍ତ୍ତମାନ ଦୁରବସ୍ଥା ଦେଖି ସେହିପରି ମ୍ରିୟମାଣ ହୋଇଅଛନ୍ତି । ଆଶାର ଅଦ୍ଭୁତ ଗୁଣ । ଏହା ନ ଥିଲେ ସଂସାର ଦଣ୍ଡେ ଚଳନ୍ତା ନାହିଁ । "ଦୁଃଖିନୀ ଓଡିଶା"ହୁଏତ ଶୁଭଦିନ ଦେଖି ପାରେ ଏହି ଆଶାରେ କଥଞ୍ଚିତ୍ ଶୋକ ସଂବରଣ କରିଅଛନ୍ତି । ମଞ୍ଜରୀରୁ କେତେଗୁଡିଏ ସୁଗନ୍ଧରେଣୁ ମୁଁ ଆପଣଙ୍କ ପତ୍ରିକାର ପାଠକମାନଙ୍କ କରକମଳରେ ଅର୍ପଣ କରୁଅଛି । ଆଶା କରେ କବି ମହାଶୟ ମୋହର ଏ ଅନଧିକାର ଚର୍ଚ୍ଚା ଦୋଷ ମାର୍ଜନା କରିବେ ।

"ଅଭିମାନ ନର　　　ମନୁ ଦୂର କର
ଆମ୍ଭ ଏହି ଦଶାଧାୟି
ରୂପ ଯଉବନ　　　ନୁହେଁ କଦାଚନ
ପାଷାଣୁ ଅଧିକ ସ୍ଥାୟୀ"
"ଯାହାନାମ ଦୟାମୟ ହେଲେ ସେହି ନିରଦୟ
ଦୟାରୁ ନୁହଇ ସେହି କେଭେହେଁ ବଞ୍ଚିତ
ନିଗୂଢ଼ ଉଦ୍ଦେଶ୍ୟ ତାଙ୍କ ନରେ ଅବିଦିତ"
" ବଡ଼ ଯେଉଁ କାର୍ଯ୍ୟ କରେ ସର୍ବାଙ୍ଗେ
ସୌନ୍ଦର୍ଯ୍ୟ ଧରେ
ରଙ୍କ ଲୋକ କଥା ତହିଁ ଅତି ବିଡମ୍ବନା
ମନରେ ମାରିବା ଭଲ ମନର ବେଦନା"
"ଯାହା ଲାଭେ ଯେତେ ଦୁଃଖ ଘଟଇ
ତାହା ଲାଭେ ତେତେ ମନ ବଳଇ
ଏଣୁକରି ଦୁଃଖ ନ ହୁଅ ଦୁଃଖୀ
ତୁମ୍ଭବିନା କେହି ନୁହଇ ସୁଖୀ
ତୁମ୍ଭକୁ ଯେ ଜନ ସୁଖ ମଣଇ
ଅନନ୍ତ ସୁଖର ଭାଗୀ ହୁଅଇ"
"ସ୍ୱାର୍ଥପର ଜଗତରେ ଆଦୃତ ସେ ଜନ
ନିଜ ସ୍ୱାର୍ଥ କରିଅଛ ଯେହୁ ବିସର୍ଜନ"

କଟକ　　　　　　　　ଆପଣଙ୍କର ବଶମ୍ୱଦ
୨୫।୧୧।୯୫　　　　　　ଶ୍ରୀ————

***ଭାଗ ୩୦ଗ, ସଂଖ୍ୟା ୪୭, ୨୧।୧୨।୧୮୯୫***

## ଓଡିଶାର ଗତ ବାର୍ଷିକ ବିବରଣ ।

ଓଡିଆମାନଙ୍କ ସାଂସାରିକ ଅବସ୍ଥା ସମ୍ବନ୍ଧରେ ଶ୍ରୀଯୁକ୍ତ କୁକସାହେବଙ୍କ ମନ୍ତବ୍ୟ ପାଠକମାନଙ୍କୁ ଜଣାଉଅଛୁ । ବର୍ତ୍ତମାନ ଓଡିଆମାନଙ୍କ ସାମାଜିକ ଏବଂ ରାଜକୀୟ ଚର୍ଚ୍ଚା ବିଷୟରେ ସାହେବ ମହୋଦୟ ଯାହା କହିଅଛନ୍ତି ତାହା ସଂକ୍ଷେପରେ ଜଣାଉଅଛୁ ଯଥା –

ଗତପୂର୍ବ ବାର୍ଷିକ ବିବରଣୀରେ ଯେ ସମସ୍ତ ସଭା ସମିତିର ଉଲ୍ଲେଖ ହୋଇଥିଲା ତହିଁ ମଧ୍ୟରୁ କେବଳ ଉତ୍କଳସଭା ଓ ପୁରୀମନ୍ଦିର ସଂସ୍କାର ସମିତି ଅସ୍ତିତ୍ୱର ଚିହ୍ନ ଦେଖାଇଥିଲେ ସ୍ୱ ସରକାରୀ ଜଳକର ନିୟମାବଳି ଏବଂ ରାଜ ନିୟମ ବିଷୟକ ଆଇନ ଇତ୍ୟାଦିର ପ୍ରସଙ୍ଗ ଉପସ୍ଥିତ ହୋଇ ନ ଥିଲେ ଉତ୍କଳସଭାର ଅଧିବେଶନ ପ୍ରାୟ ହୁଅନ୍ତା ନାହିଁ । ବନ୍ଦୋବସ୍ତର ଭାବନାରେ ଓଡିଆମାନେ ବ୍ୟସ୍ତ ହେବାର ଆଶ୍ଚର୍ଯ୍ୟର ବିଷୟ ନୁହେ । ମାତ୍ର ଅଢେଇ ବର୍ଷରୁ ଉର୍ଦ୍ଧ୍ୱକାଳ ଆମ୍ଭେ ଏଠାରେ ରହିଅଛୁଁ ଏବଂ ବନ୍ଦୋବସ୍ତ କାର୍ଯ୍ୟ ବରାବର ଲାଗି ରହିଅଛି ଅଥଚ ଜମିଦାର ସଭାର ନାମ ଛଡା ଆଉ କିଛି ଶୁଣିନାହୁଁ । ସନାତନ ଧର୍ମରକ୍ଷଣୀ ସଭା ଓ ଗୋରକ୍ଷଣୀ ସଭା ବିଦେଶୀୟ ଲୋକଙ୍କ ଉତ୍ତେଜନାରେ ବସିଥିଲା ମାତ୍ର ସେଥିରେ ମାତିବା ଏକପ୍ରକାର ଆଳସ୍ୟରେ ଦିନ କାଟିବା ଦେଖି ଲୋକେ କ୍ଷାନ୍ତ ହେଲେ । ଚତୁର ଓଡିଆମାନେ ଗୋରକ୍ଷଣୀ ବ୍ୟାପାରର ଧର୍ମ ଓଡଣିର ସରୁସୂତା ଭିତରୁ ରାଜକୀୟ ଭାବ ଦେଖିପାରି ଅଳ୍ପ ସଂଖ୍ୟକ ବିଦେଶୀୟ ଲୋକଙ୍କ ସନ୍ତୋଷ ନିମନ୍ତେ ମୁସଲମାନମାନଙ୍କ ସଙ୍ଗେ କଜିଆ କରିବାର ଲୋକ ନୁହନ୍ତି । ହିନ୍ଦୁ ଓ ମୁସଲମାନ ପୂର୍ବପ୍ରାୟ ଦୁର୍ଗାପୂଜା ମୋହରମ ଇତ୍ୟାଦି ପର୍ବରେ ଏକ ଯୋଗରେ ଆମୋଦ ପ୍ରମୋଦ କରୁଅଛନ୍ତି । ଜାତୀୟ ମହାସମିତିର କଥା ଆଉ ଶୁଣାଯାଉ ନାହିଁ । ଏହିସବୁ କାରଣରୁ ସ୍ପଷ୍ଟ ପ୍ରକାଶ ଯେ ଓଡିଶାର ସଭାସମିତିମାନ ଆପଣା ସୁଖେ ଗଠିତ ହୋଇ ନ ଥିଲେ । ପ୍ରକୃତରେ ଓଡିଆମାନଙ୍କର ରାଜକୀୟ କିମ୍ବା ସାମାଜିକ ଉଦ୍ଦେଶରେ ସଭାସମିତି ସ୍ଥାପନ କରିବାର ପ୍ରବୃତ୍ତି ନାହିଁ ।

ବର୍ଣ୍ଣିତବର୍ଷରେ ତହିଁ ପୂର୍ବବର୍ଷ ପ୍ରାୟ ତିନିଖଣ୍ଡି କାଗଜ ଯଥା ଉତ୍କଳଦୀପିକା ବାଲେଶ୍ୱର ସମ୍ବାଦବାହିକା ଏବଂ ଓଡିଆ ଓ ନବସମ୍ବାଦ ସ୍ଥାନୀୟ ଯନ୍ତ୍ରାଳୟରୁ ବାହାରିଥିଲା । ଏମାନଙ୍କର ଭାବ ଓ ବିଷୟରେ କିଛି ପରିବର୍ତ୍ତନ ଘଟି ନାହିଁ ଏବଂ ଏମାନେ ସର୍ବଦା ରାଜଭକ୍ତ । ସମ୍ବଲପୁରର ଓଡିଆଭାଷା ସମ୍ପର୍କରେ ଗବର୍ଣ୍ଣମେଣ୍ଟଙ୍କ କାର୍ଯ୍ୟର ନିନ୍ଦା କରିବାବେଳେ ମଧ୍ୟ ଉତ୍କଳଦୀପିକା ଅପୂର୍ବ ସୁରୁଚି ଏବଂ ଧୀରତାର ପରିଚୟ ଦେଇଥିଲା ।

ସଭା ସମିତି ସମ୍ବନ୍ଧରେ ସାହେବ ମହୋଦୟଙ୍କର ଉପରଲିଖିତ ମନ୍ତବ୍ୟ କୌଣସିମତେ ଅସଙ୍ଗତ ବୋଲାଯାଇ ନ ପାରେ । ଓଡିଆମାନେ ଯେ ଆପଣା ଭଲ ମନ୍ଦ ବୁଝି ପାରନ୍ତି ନାହିଁ ଏମନ୍ତ ନୁହେ । ମାତ୍ର ସେମାନେ ଗରିବ ଓ ଦୁର୍ବଳ ଓ ରାଜଭକ୍ତ ଏବଂ ଶିକ୍ଷିତ ଲୋକଙ୍କ ସଂଖ୍ୟା ଅତ୍ୟନ୍ତ ଊଣା । ଏହିସବୁ କାରଣରୁ ସେମାନେ ଆପଣା ଆପଣା ପେଟ ପାଳିବାର ଧନ୍ଦା ଛଡା ରାଜକୀୟ ବା ସାମାଜିକ ବିଷୟର ଚିନ୍ତା କରିବାକୁ ସକ୍ଷମ ହୋଇ ନାହାନ୍ତି ମାତ୍ର ସାହେବ ମହୋଦୟ ଯାହା ଲେଖିଅଛନ୍ତି କି ଗୋରକ୍ଷଣୀ ସଭାର ପ୍ରବର୍ତ୍ତକ ବିଦେଶୀୟ ଲୋକ ଅଟନ୍ତି ଏବଂ ଓଡିଆଙ୍କର ଏଥିରେ ସହାନୁଭୂତି ନାହିଁ ଓ ଏହାର ମୂଳରେ ରାଜକୀୟ ଆୟ ଏଥିରେ ଆମ୍ଭେମାନେ ଐକ୍ୟ ହୋଇ ପାରୁ ନାହୁଁ । ଗୋହତ୍ୟା ନିବାରଣ ବିଷୟରେ ଅନ୍ୟାନ୍ୟ ହିନ୍ଦୁଠାରୁ ଉତ୍କଳର ହିନ୍ଦୁମାନେ କୌଣସି ଅଂଶରେ ଊଣା ନୁହନ୍ତି ମାତ୍ର ଆପଣା ଶାନ୍ତ ପ୍ରକୃତି ରକ୍ଷା ପୂର୍ବକ କୌଣସି ପ୍ରତିକାର ନ ଦେଖି ନିରବ ରହିଅଛନ୍ତି ।

*ସମ୍ବାଦ, ସଂ୪୯ଖ୍ୟା, ୨୧।୧୨।୧୮୯୫*

# ୧୮୯୬

## [ଓଡିଆମାନଙ୍କର ସାମାଜିକତା]

ମହାଶୟ !

ଆଜକୁ ପ୍ରାୟ ଶଏବର୍ଷତଳେ ସାମାଜିକତାବିଷୟରେ ଓଡ଼ିଆମାନଙ୍କର ଦୁର୍ଦ୍ଦଶା ଯାହାଥିଲା, ତାହା ଏବେ କେତେ ଉଣା ହେଲାପରି ଦୃଶ୍ୟ ହେଉଅଛି ପୂର୍ବରେ ସମାଜସ୍ଥାପନ କରି ପତ୍ରିକାଦି ଛପାଇବା, ସେହି ସମ୍ବାଦପତ୍ରମାନ ଇତର ପ୍ରଦେଶମାନଙ୍କୁ ପ୍ରେରଣ କରିବା, ଆପଣା ଭାଷାର ଉନ୍ନତିଲାଭ କରିବା, ଏବଂ ସମାଜଦ୍ୱାରା ଓଡ଼ିଆମାନଙ୍କର ଉତ୍ସାହବର୍ଦ୍ଧନ କରିବା. ପ୍ରଭୃତି କାର୍ଯ୍ୟକଳାପ କିଛି ହିଁ ନ ଥିଲା, କିନ୍ତୁ ସମ୍ବଲପୁର, କଟକ ଓ ବାଲେଶ୍ୱର ନିବାସୀ ଓଡ଼ିଆମାନେ ସମାଜଦ୍ୱାରା ମନୁଷ୍ୟଜାତିର କେତେପର୍ଯ୍ୟନ୍ତ ପ୍ରତିଷ୍ଠାଲାଭ ହୁଏ, ତାହା ଅବଗତ ହୋଇ ଗୋଟିଏ ଗୋଟିଏ ସମାଜସ୍ଥାପନପୂର୍ବକ ସାମାଜିକକାର୍ଯ୍ୟମାନ ଉତ୍ତମରୂପେ ଚଳାଇ, ଭାଷାର ଉନ୍ନତିଲାଭ କରୁଅଛନ୍ତି ଓ କରାଉଅଛନ୍ତି ।

ଏହା ଜାଣି ଗଞ୍ଜାମଜିଲ୍ଲା ପାରଳାନିବାସି ଓଡ଼ିଆମାନେ ମଧ ‘ଉତ୍କଳହିତୈଷିଣୀ’ ନାମକ ଗୋଟିଏ ସମାଜ ଆଜକୁ ପ୍ରାୟ ଦଶବର୍ଷ ହେବ ପ୍ରତିଷ୍ଠା କରି ଉକ୍ତଜିଲ୍ଲାନ୍ତଗତ ଗଭର୍ଣ୍ଣମେଣ୍ଟ କଚେରିମାନଙ୍କରେ ଓଡ଼ିଆଭାଷା ପ୍ରଚୁର କରିବାର ଅଛି ବୋଲି ତାହାଙ୍କ ଦ୍ୱାରା ସହ୍ୟ କରାଇଅଛନ୍ତି, ଏବଂ ସମାଜଟି ଯେଉଁ ଯେଉଁ କାର୍ଯ୍ୟମାନଙ୍କରେ ହସ୍ତକ୍ଷେପ କରିଅଛି ତହିଁରୁ ଗୋଟିଏ ସୁଦ୍ଧା ନିଷ୍ଫଳ ହୋଇ ନାହିଁ ଏକାବେଳକେ ନିଷ୍ଫଳ ହୋଇ ନାହିଁ । ବୋଇଲେ ଅତ୍ୟୁକ୍ତି ହେବ ନାହିଁ, ଉକ୍ତ କାର୍ଯ୍ୟମାନଙ୍କର ମୁଖ୍ୟକର୍ତ୍ତା ବାବୁ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ବି,ଏ, ଅଟନ୍ତି ପୁଣି ସେହି ନଗରରେ ‘ଉତ୍କଳବିଦ୍ୟାବର୍ଦ୍ଧିନୀ’ ନାମକ ଗୋଟିଏ ସମାଜ ଅଛି ସେଇଟି ଉତ୍କଳମାନଙ୍କ ବିଦ୍ୟାବିବୃଦ୍ଧିବିଷୟରେ ଯତ୍ପରୋନାସ୍ତି ସାହାଯ୍ୟ ପ୍ରଦାନ କରୁଅଛି ।

ପାରଳା ପୁଅଙ୍କର ଏହି ସୁବିଧା ଦେଖି ଓ ଶୁଣି ସନ ୧୮୯୨ ସାଲରେ ଗଞ୍ଜାମଅନ୍ତର୍ଗତ ଟେକାଲି ନିବାସୀ କେତେକ ଓଡ଼ିଆମାନେ ଏକତ୍ରିତ ହୋଇ ଗୋଟିଏ ସମାଜସ୍ଥାପନ କରିବାକୁ ମନୋଯୋଗୀ ହେଲେ, କେତେକାଳଯାଏ ସମିତିଟିକୁ ‘ରୀଡ଼ିଙ୍ଗରୁମ’ ନାମ ପ୍ରଦାନ କରି ସମ୍ବାଦପତ୍ରାଦି ଆନୟନ, ପ୍ରତିସାପ୍ତାହିକ ସଭାରେ ଉପନ୍ୟାସାଦି ପଠନ ଓ ତଦୁପଲକ୍ଷେ କେତେକ କାଳ ସମ୍ଭାଷଣରେ କାଳକଟାଉଥିଲେ, ତତ୍ପରେ ସନ୧୮୯୩ ସାଲର ଜାନୁଆରୀ ମାସରେ ସମିତିଟିକୁ ‘ଉତ୍କଳମନୋରଞ୍ଜନୀ’ ଆଖ୍ୟା ପ୍ରଦାନ କରି ଉତ୍କଳମାନଙ୍କ ହିତେଚ୍ଛୁ ହୋଇ ହିତ ସାଧନ ମଣ୍ଡପର ପ୍ରଥମ ସୋପାନରେ ପଦାର୍ପଣ କଲେ, ସେହିଦିନାବଧି ସମାଜ ରାଜନୈତିକ, ସାମାଜିକ ଓ ଧର୍ମବିଷୟକ କାର୍ଯ୍ୟମାନଙ୍କରେ ପ୍ରବେଶ କଲା ।

ସମାଜର କାର୍ଯ୍ୟସାଧନ ନିମିତ୍ତେ ଅର୍ଥ କେବଳ ଆବଶ୍ୟକ ଅଟେ , ଏଣୁ ଉକ୍ତ ଗ୍ରାମର ରାଜାମାନଙ୍କଠାକୁ ଯାଇ କହିବାରୁ ଶ୍ରୀଶ୍ରୀଶ୍ରୀ ଗଜପତି ବାସୁଦେବ ଦେଉ, ମହାରାଜା ମାସିକ ଚାନ୍ଦା ଟ୨ଙ୍କା, ସମାଜଗୃହ ନିର୍ମାଣ ବିଷୟରେ ଟ ୨୫ଙ୍କା ଏବଂ ସାମଗ୍ରୀ ବିଷୟରେ ଆଉ କେତେ ସାହାଯ୍ୟ କରିବାକୁ ସ୍ୱୀକାର କରିଅଛନ୍ତି ପୁଣି କରୁଅଛନ୍ତି, ଏଥି ବିଷୟରେ ଶ୍ରୀଶ୍ରୀଶ୍ରୀ ଜଗଦେବ ମହାରାଜାଙ୍କର ସାହାଯ୍ୟ ମଧ ନିତାନ୍ତ ଆବଶ୍ୟକ, ବାବୁ ଶ୍ରୀ ଲକ୍ଷ୍ମୀଶରଣଭଞ୍ଜ ମାସିକ ଟ୨ ଙ୍କା ଏବଂ ବାବୁ ଶ୍ରୀ ବାୟାହାତୀସାମନ୍ତ ମାସକୁ ଟ୦ । ଲେଖାଁଏ ଦେବାକୁ ନିଜ ନିଜ ମତ ପ୍ରକାଶ କରିଅଛନ୍ତି, ଆଉ କେତେ ଧନ ସଭ୍ୟମାନଙ୍କଠାରୁ ଚାନ୍ଦାସ୍ୱରୂପ ସଂଗ୍ରହ ହେଉଅଛି, ପାରଳାନଗରର ଶ୍ରୀଶ୍ରୀଶ୍ରୀ ପଦ୍ମନାଭନାରାୟଣଦେବ ମହାରାଜାଙ୍କଠାକୁ ମଧ ଉତ୍ସାହପତ୍ର ଲେଖିଥିଲୁଁ, ଭରସା କରୁଁ ଶ୍ରୀ ମହାରାଜା ଅଚ୍ଚ

ଦିନରେ କାର୍ଯ୍ୟ ସଫଳ କରିବେ । ମାର୍ଗରେ ପୁରୁଣା ଟେକ୍କାଲି ନାମକ ଗ୍ରାମରେ ଉପସ୍ଥିତ ହୋଇ ସେଠାରେ ରହିବାକୁ ହୋଇଥିଲା । ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଓଡ଼ିଆମାନଙ୍କର ହିତସାଧନ ନିମିତ୍ତ ସେହିସ୍ଥଳର ତୈଲଙ୍ଗିମାନେ ଧନ ସାହାଯ୍ୟ କରୁଅଛନ୍ତି । ଏସ୍ଥଳେ ଯେଉଁମାନେ ଜାତିରେ ଓଡ଼ିଆ ସେମାନେ ସ୍ୱଜାତିର ମଙ୍ଗଳସାଧନ ନିମନ୍ତେ ଅଧିକ ଉତ୍ସାହସହିତ ତତ୍ପର ହେବେ ଏହା ଆମ୍ଭେମାନେ କାମନା କରୁଅଛୁଁ ପ୍ରସ୍ତୁତରେ ସମାଜକୋଷରେ ପ୍ରାୟ ଟ ୧୫୦ଙ୍କା ଅଛି ଆଉ କେତେ ଧନସଂଗ୍ରହ କରି ସମାଜଗୃହ ନିର୍ମାଣ କରିବାକୁ ଇଚ୍ଛା କରୁଁ ପ୍ରାୟ ବର୍ଷକ ତଳେ ଏହି ସମାଜଟି ଅତି ଦୁର୍ଦ୍ଦଶାରେ ଥିବାରୁ ଏହିସ୍ଥଳର ଓଡ଼ିଆ ଭଦ୍ରବ୍ୟକ୍ତିମାନଙ୍କୁ ଦୁଇ ତିନିଥର ଆହ୍ୱାନ କରି ଡୋମପଡ଼ାର ମାନେଜର ଶ୍ରୀ ବାବୁ ଫକୀରମୋହନ ସେନାପତି ମହାଶୟଙ୍କୁ ସଭାପତିର ଆସନ ଗ୍ରହଣାର୍ଥେ ପ୍ରାର୍ଥନା କରିବାରେ ସେ ସମ୍ମତ ହୋଇ, ସମାଜର ଲାଭ ଓ ଉପକାରୀତା ବିଷୟରେ ବକ୍ତୃତା ପ୍ରଦାନ କରି ଧନ୍ୟବାଦର ପାତ୍ର ହୋଇଥିଲେ ପ୍ରସ୍ତୁତରେ ସମାଜଟି ଉତ୍ତମରୂପେ କାର୍ଯ୍ୟ ନିର୍ବାହ କରୁଅଛି, ତନ୍ମଧ୍ୟରୁ ଗୋଟିଏ ଏହି ଯେ, ପ୍ରଥମେ ଗଞ୍ଜାମଜିଲ୍ଲା ରେଲଓୟେ ଡିପାର୍ଟମେଣ୍ଟରେ ତୈଲଙ୍ଗୀଭାଷା ପ୍ରଚୁରଥିଲା, କିନ୍ତୁ ତଦ୍‌ବ୍ୟତୀରେକେ ଓଡ଼ିଆଭାଷା ପ୍ରଚୁର କରାଇ ଅଛି ।

ଏଣୁ ପ୍ରାର୍ଥନା ଏହି ଯେ, ପରମାରାଧପିତା ପରମେଶ୍ୱର ଥରେ ଓଡ଼ିଆ ପୁଅଙ୍କ ମାନସସରୋବରରେ ଆସଙ୍ଗହଂସକୁ ଭାସମାନ କରାଇ, ଜ୍ଞାନାଦିତ୍ୟ ଉଦୟରେ ସମାଜର ଅନ୍ଧକାର ନାଶ କରି ପୁଅଙ୍କ ଦ୍ୱାରା ଧନ ସାହାଯ୍ୟ କରାଇ କାର୍ଯ୍ୟକଳାପ ସୁଚାରୁରୂପେ ପରିଚାଳନା କରାଉଥିବେ ।

ଇତି ।

ତା ୨୬ ରିଖ ଡିସମ୍ବର  
ସନ୧୮୯୫ ମସିହା  
ଟେକ୍କାଲି

ବଶମ୍ବଦ  
ଶ୍ରୀଗୋପୀନାଥ ଅଧିକାରୀ  
ଜଣେ ସଭ୍ୟ

*ଭାଗ୩୧ଗ,ସଂ୨ଖ୍ୟା, ୧୧।୧।୧୮୯୬*

## ଉତ୍କଳପାଞ୍ଜି ରହସ୍ୟ

କଟକ ପ୍ରିଣ୍ଟିଂକମ୍ପାନୀ ସ୍ଥାପିତ ହେବାର ଅଳ୍ପକାଳ ଉତ୍ତାରୁ ସେହି କମ୍ପାନିର ପ୍ରଧାନ କର୍ତ୍ତା ଅତୁଳନୀୟ ଉତ୍କଳ ହିତୈଷୀ ସ୍ୱର୍ଗୀୟ ବିଚିତ୍ରାନନ୍ଦ ଦାସ ଖଣ୍ଡପଡ଼ାର ଶ୍ରୀ ସାମନ୍ତ ଚନ୍ଦ୍ରଶେଖର ସିଂହଙ୍କର ଜ୍ୟୋତିଷ ବିଦ୍ୟାରେ ଅସାଧାରଣ ପାଣ୍ଡିତ୍ୟ ଦେଖି ତାହାଙ୍କର ସଂଶୋଧିତ ସିଦ୍ଧାନ୍ତ ଦର୍ପଣ ଅନୁସାରେ ଉତ୍କଳ ପଞ୍ଜିକା ପ୍ରକାଶ କରିବା କାରଣ ତାହାଙ୍କୁ ଅନୁରୋଧ କଲେ । ସେ ସମୟରେ ତାଳପତ୍ର ପାଞ୍ଜି ଏ ଦେଶରେ ପ୍ରଚଳିତ ଥିଲା ଏବଂ ତହିଁରେ ଗଣନାର ଭ୍ରମ ଛଡ଼ା ଏକ ଅନ୍ୟଠାରୁ ନକଲ କରିବାରେ ମଧ ଅନେକ ଭ୍ରମ ରହି ଯାଉଥିଲା । ସାମନ୍ତ ମହାଶୟ ତହିଁରେ ସମ୍ମତ ହେଲେ ମାତ୍ର ତାହାଙ୍କର ନିତ୍ୟ କର୍ମ ଉତ୍ତାରୁ ଅଳ୍ପ ଅବକାଶ ଥାଏବୋଲି ଏହି ବନ୍ଦୋବସ୍ତ ହେଲା ଯେ ଖୋରଧା ନିବାସୀ ସ୍ୱର୍ଗୀୟ ହରିହର ଖଡ଼ିରତ୍ନ ପାଞ୍ଜି ସାଧି ତାହାଙ୍କ ନିକଟରେ ରହି ସମସ୍ତ ସଂଶୋଧନ କରାଇ ଆଣି କମ୍ପାନିଙ୍କ କାର୍ଯ୍ୟାଳୟରେ ଉପସ୍ଥିତ କଲେ ତାହା ଛାପାହୋଇ ସର୍ବତ୍ର ପ୍ରଚାରିତ ହେବ । ହରିହର ଖଡ଼ିରତ୍ନଙ୍କ ଉତ୍ତାରୁ ସେହି ବଂଶୀୟ ଶ୍ରୀ ସଦାଶିବ ଖଡ଼ିରତ୍ନ ସେହିପରି କାର୍ଯ୍ୟ କରି ଆସୁଥିଲେ । ସଦାଶିବ ଖଡ଼ିରତ୍ନ ଦୀର୍ଘକାଳ ପୀଡ଼ିତହେତୁ କାର୍ଯ୍ୟରେ ବିଶୃଙ୍ଖଳା ଘଟିବାରୁ ସାମନ୍ତ ମହାଶୟ ପାଞ୍ଜିର ସମସ୍ତ ଭାର ଆପଣା ହାତରେ ନେଲେ ଏବଂ ଗବର୍ଣ୍ଣମେଣ୍ଟରୁ ମହାମହୋପାଧ୍ୟାୟ ପଦରେ ଭୂଷିତ ହେବାରୁ ପାଞ୍ଜିର ବିଶୁଦ୍ଧତା ରକ୍ଷା କରିବା ପାଇଁ ସମଧିକ ଯତ୍ନବାନ୍ ହେଲେ । ଅତଏବ କଟକ ପ୍ରିଣ୍ଟିଂକମ୍ପାନିଙ୍କ ଯନ୍ତ୍ରାଳୟରେ ଆରମ୍ଭଠାରୁ ଏପର୍ଯ୍ୟନ୍ତ ଯେଉଁ ଉତ୍କଳ ପାଞ୍ଜି ଛାପା ହୋଇ ଆସୁଅଛି ତାହାଇ ମହାମହୋପାଧାୟଙ୍କ ଶିଦ୍ଧାନ୍ତଦର୍ପଣ ଅନୁସାରେ ସୁତରାଂ ବିଶୁଦ୍ଧ ପଞ୍ଜିକା ଅଟେ ।

ବର୍ତ୍ତମାନ ଆଉ ଦୁଇଖଣ୍ଡି ପାଞ୍ଜି ଉତ୍କଳ ପୁସ୍ତକ ହାଟରେ ଉପସ୍ଥିତ ହୋଇଅଛି । ଖଣ୍ଡିଏ ପାଞ୍ଜି ଶ୍ରୀ ସଦାଶିବ ଖଡ଼ିରତ୍ନ କମ୍ପାନିର ସାହାଯ୍ୟରୁ ନୈରାଶ୍ୟ ହୋଇ ଅରୁଣୋଦୟ ଯନ୍ତ୍ରାଳୟ ଯୋଗେ ବାହାର କରିଅଛନ୍ତି ଏବଂ ସେହି

ସମ୍ବନ୍ଧରେ ମହାମହୋପାଧ୍ୟାୟଙ୍କର ଯେଉଁ ପତ୍ର ଏଥିପୂର୍ବେ ପ୍ରକାଶିତ ହୋଇଅଛି ତହିଁରୁ ପାଠକମାନେ ବିଚାର କରିବାକୁ ସମର୍ଥ ହେବେ । ପ୍ରକୃତରେ ଖଡ଼ିରତ୍ନ ମହାଶୟ ତହିଁର ଗଣକ ଏ କେବଳ ସେ ସକଳ ବିଷୟରେ ପାରଦର୍ଶିତା ଲଭି ନ ଥିବାରୁ ସେପରି ପାଞ୍ଜି ବାହାର କରି ଗୁରୁଙ୍କ ସହିତ ପ୍ରତିଯୋଗିତା କରିବା ଅବଶ୍ୟ ଅନ୍ୟାୟ ବୋଲିବାକୁ ହେବ ।

ଅନ୍ୟଖଣ୍ଡି ବାବୁ ସୀତାନାଥ ରାୟଙ୍କ ସ୍ଥାପିତ ରାୟପ୍ରେସରୁ ପ୍ରକାଶିତ ହୋଇଅଛି । ଏହି ପାଞ୍ଜି ଉପରେ ଲେଖା ଅଛି କି ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସାମନ୍ତଙ୍କ ବିଶୁଦ୍ଧ ସିଦ୍ଧାନ୍ତ ଦର୍ପଣାନୁସାରେ ଶ୍ରୀ ନିମାଇଁଚରଣ ଘୋଷ ତାହା ପ୍ରକାଶ କରିଅଛନ୍ତି । ଦୁଇ ତିନି ମାସ ପୂର୍ବେ ନିମାଇଁ ଚରଣ ଘୋଷ ନାମକ ଏକବ୍ୟକ୍ତି ପାଞ୍ଜି ଛପାଇବାର ଦର ବୁଝିବା କାରଣ କାଉପୁରଠାରୁ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ନିକଟକୁ ଖଣ୍ଡେ ପୋଷ୍ଟକାର୍ଡ଼ ପଠାଇଥିଲେ ଏବଂ ଯଥା ନିୟମରେ ତହିଁର ଉତ୍ତର ଦିଆଯାଇ ଥିଲା । ରାୟ ପ୍ରେସରୁ ପାଞ୍ଜି ବାହାରିଲା ଉତ୍ତାରୁ ବୁଝିଲୁଁ ଯେ ନିମାଇଁ ବାବୁ କାଉପୁର ସ୍କୁଲର ଶିକ୍ଷକ ମାତ୍ର ମହାମହୋପାଧ୍ୟାୟଙ୍କ ପୁସ୍ତକ ଅବଧି ପ୍ରକାଶ ହୋଇ ନ ଥିବା ସ୍ଥଳେ ସେ ତାହା ଶିକ୍ଷା କରି ପାଞ୍ଜି ପ୍ରସ୍ତୁତ କରିବାକୁ ସମର୍ଥ ହେବାର ଦେଖି ନିଶ୍ଚୟ ବୋଧ ହେଲା ଯେ ସେ ମହାମହୋପାଧ୍ୟାୟଙ୍କଠାରୁ ଶିକ୍ଷା କରିଥିବେ । ତାହାଙ୍କଠାରେ ଅନୁସନ୍ଧାନ କରିବାରେ ସେ ଲେଖି ଅଛନ୍ତି କି ନିମାଇଁଚରଣ ବାବୁଙ୍କୁ ଶିକ୍ଷା ଦେବାର ଦୂରେ ଥାଉ ସେ ଆଦୌ ତାଙ୍କୁ ଜାଣନ୍ତି ନାହିଁ । ଖଣ୍ଡପଡ଼ା ସ୍କୁଲ ମାଷ୍ଟର ଶ୍ରୀ ରାଜବଲ୍ଲଭ ମିଶ୍ର ତାହାଙ୍କର ଜଣେ ଛାତ୍ର ଓ ସ୍ନେହିଲୋକ ଥିବାରୁ ମିଶ୍ରଙ୍କଦ୍ୱାରା ପାଞ୍ଜି ଲେଖାଇ ଥିଲେ । ମିଶ୍ରଙ୍କର ଭଣଜା ହରିହର ନନ୍ଦ ସେ ଚିଠାରୁ ନକଲ କରି ସୀତାନାଥ ବାବୁଙ୍କ ପ୍ରେସରେ ତିଥ୍ୟାଦି ଆଗେ ଛପାଇ କମ୍ପାନିଙ୍କ ଯନ୍ତ୍ରାଳୟରୁ ପାଞ୍ଜି ବାହାରିଲା ଉତ୍ତାରୁ ପାଳକାଦି ତହିଁରେ ସନ୍ନିବେଶିତ କରି ବାହାର କରି ଅଛନ୍ତି । କେବଳ ଅନ୍ୟ ବ୍ୟକ୍ତି ସାଧିଥିବାର ସମ୍ଭାବନାପାଇଁ କେତେକ ତିଥ୍ୟାଦିରେ ଲି ୧ ୫ ଦ୍ୟା ପର୍ଯ୍ୟନ୍ତ ନ୍ୟୁନାତିରେକ କରି ଦିଆଯାଇଅଛି । ତିଥି ବ୍ୟାପ୍ତିଠାରେ ପୂର୍ବପରବିଦ୍ଧ ନିମନ୍ତେ ଏକଲିତା ସୁଦ୍ଧା ପ୍ରଭେଦ ହେଲେ ଶ୍ରାଦ୍ଧାଦି ଧର୍ମକାର୍ଯ୍ୟ ନଷ୍ଟ ହୁଏ ପ୍ରକାଶକ ତାହା ଯାଣନ୍ତି ନାହିଁ । ଅତଏବ ଏ ପାଞ୍ଜି ଯେ ବେନାମି ବା ଚୋରାପାଞ୍ଜି ଅଟେ ଏଥିରେ ସନ୍ଦେହ ନାହିଁ । ଓଡ଼ିଶାରେ ବେନାମି ପୁସ୍ତକ ପ୍ରଚାରର ନୂଆ ଘଟନା ଏ ପାଞ୍ଜି ନୁହେ । ତାଳଚେର ରାଜାଙ୍କ ଇତିହାସ ପ୍ରଭୃତି କେତେକ ବେନାମି ପୁସ୍ତକର କଥା ପ୍ରାୟ ସମସ୍ତେ ଜାଣନ୍ତି ଏବଂ ସେ ସମ୍ବନ୍ଧରେ ଓଡ଼ିଶା ଶିକ୍ଷାବିଭାଗୀୟ କେହି କେହି କର୍ମଚାରିଙ୍କ କାର୍ଯ୍ୟବିଶେଷର ସମାଲୋଚନା ହୋଇଥିଲା । ଏହି ବେନାମି ପାଞ୍ଜିରେ ମଧ ଦୁଇଜଣ ଶିକ୍ଷକଙ୍କର ଯୋଗ ଦେଖାଯାଏ ଓ ସେମାନେ ଯେ ଆଦୌ କିଛି ନ ଜାଣନ୍ତି ବିଶ୍ୱାସ କରିବା କଠିନ ଏ ପ୍ରକାର ଆଚରଣର ଶିକ୍ଷକଙ୍କଦ୍ୱାରା ଛାତ୍ରମାନଙ୍କର ସୁନୀତି ଶିକ୍ଷା ହେବ କି ? ଆଉ ବର୍ତ୍ତମାନ ଓଡ଼ିଶାକୁ ଯନ୍ତ୍ରାଳୟର ସଂଖ୍ୟା ବଳାଇ ନାହିଁ ଏବଂ ଅବଧି ସେ ସବୁ ଭଦ୍ର ଲୋକଙ୍କଦ୍ୱାରା ଚାଳିତ ହେଉ ଅଛି । ଏଥି ମଧରେ ଯେବେ ରୋଜଗାରପାଇଁ ଏତେସରିକି ହେଲା ତେବେ ଭବିଷ୍ୟତକୁ କି ନ ହେବ ।

*ଭାଗ ୧ ଗ, ସଂଖ୍ୟା, ୧୮/୧/୧୮୯୬*

## ଭାଷାରକ୍ଷାର ଚେଷ୍ଟା ।

ସରକାରୀ କଚେରିମାନଙ୍କର ଭାଷା ପରିବର୍ତ୍ତନ ବିଷୟରେ ଇଣ୍ଡିଆ ଗବର୍ଣ୍ଣମେଣ୍ଟରୁ ସୁବିଚାର ନ ପାଇ ସମ୍ବଲପୁର ବାସୀମାନେ ବିଲାତ ଅପିଲ କରିବାର ଆୟୋଜନ କରୁଅଛନ୍ତି ଶୁଣି ଆମ୍ଭେମାନେ ଆନନ୍ଦିତ ହେଲୁ । ଆମ୍ଭମାନଙ୍କର ଏକାନ୍ତ ଧାରଣା ଯେ ଭାରତଗବର୍ଣ୍ଣମେଣ୍ଟ ସମ୍ବଲପୁର କଚେରିମାନଙ୍କରେ ଓଡ଼ିଆ ପରିବର୍ତ୍ତରେ ହିନ୍ଦି ଚଳାଇବାର ଅନିଷ୍ଟକାରିତା ଆଦୌ ହୃଦୟଙ୍ଗମ ନ କରି କେବଳ ମଧ ପ୍ରଦେଶର ଚିଫ କମିଶନରଙ୍କ ମହତ୍ୱ ରକ୍ଷା କରିବା ଅଭିପ୍ରାୟରେ ତାହାଙ୍କ ଆଦେଶକୁ ବଳ ବତ୍ତର ରଖି ଅଛନ୍ତି । ବିଲାତର ପାରଲିମେଣ୍ଟ ସଭାରେ ଏକଥା ପଡ଼ିଲେ ଅବଶ୍ୟ ସୁବିଚାର ହେବ । ଏହି ସୁବିଚାର ପାଇବା ସହଜ ବ୍ୟାପାର ନୁହେ । ଅନ୍ତତଃ ଅତ୍ୟନ୍ତ ବ୍ୟୟସାଧ ଏଥିପାଇଁ ପ୍ରାୟ ଏକହଜାର ଟଙ୍କା ପ୍ରୟୋଜନ । ଏଥିରୁ ଉଣାରେ କାର୍ଯ୍ୟ ହେବା ଆଶା ନାହିଁ । ସମ୍ବଲପୁର ଜିଲ୍ଲାର ଓଡ଼ିଆମାନଙ୍କ ମଧରେ ସଙ୍ଗତିପନ୍ନ ଲୋକଙ୍କ ସଂଖ୍ୟା ଏତେ ଅଧିକ ନୁହେ ଯେ ଏକା ସେମାନେ ଭେଦାଦ୍ୱାରା ତାହା

ସଂଗ୍ରହ କରିପାରିବେ । ଏଥିରେ ଛତିଶଗଡ଼ ଏବଂ ଓଡ଼ିଶା ଅନ୍ତର୍ଗତ ଗଡ଼ଜାତ ରାଜାମାନଙ୍କର ଏବଂ ମୋଗଲବନ୍ଦି ଲୋକଙ୍କର ସାହାଯ୍ୟ ଆବଶ୍ୟକ । ଏମାନେ ସମସ୍ତେ ଭେଦାଦେଲେ ଅର୍ଥାଭାବ ରହିବ ନାହିଁ । ଚିଫ୍ କମିଶନରଙ୍କ ଅନ୍ୟାୟ ଆଦେଶ କେବଳ ସମ୍ବଲପୁର ଜିଲ୍ଲା ବାସିଙ୍କ ପ୍ରତି ଅନିଷ୍ଟ ଜନକ, ଅନ୍ୟ କାହାରିପ୍ରତି ନୁହେ ସତ୍ୟ । ମାତ୍ର ଯେଉଁମାନଙ୍କର ବିପଦ ଉପସ୍ଥିତ ହୋଇଅଛି । ସେମାନଙ୍କୁ ରକ୍ଷା କରିବା ସମସ୍ତ ଓଡ଼ିଆଙ୍କର କର୍ତ୍ତବ୍ୟ ସନ୍ଦେହ ନାହିଁ । ବିଶେଷତଃ ଛତିଶଗଡ଼ର ଓଡ଼ିଆ ରାଜାମାନେ ଯେ ସ୍ଥଳେ ଉଡବରନ ସାହେବଙ୍କ ସ୍ମରଣାର୍ଥେ ହଜାରଟଙ୍କା ବ୍ୟୟରେ ଗୋଟିଏ କୀର୍ତ୍ତି ସ୍ଥାପନ କରି ଅଛନ୍ତି  ସେ ସ୍ଥଳେ ସେହି ସାହେବଙ୍କର ସୁଖ୍ୟାତିର କଳଙ୍କ ଛଡ଼ାଇବା ସେମାନଙ୍କର ଅତ୍ୟନ୍ତ କର୍ତ୍ତବ୍ୟ ଏହା ବୋଲିବା ବାହୁଲ୍ୟ । ଏବଂ ଏଥିପାଇଁ ସାମାନ୍ୟ ବ୍ୟୟ ସ୍ୱୀକାର କରିବାକୁ ସେମାନେ ଅସମର୍ଥ ନୁହନ୍ତି ଆମ୍ଭମାନଙ୍କ ବିବେଚନାରେ ସମ୍ବଲପୁରରୁ ଓଡ଼ିଆ ଭାଷା ଉଠାଇ ଦେବା ଉଡବରନ ସାହେବଙ୍କର  ଶାସନକାଳର ଏକ ମାତ୍ର କଳଙ୍କ ଅଟେ ଏବଂ ଏହି କଳଙ୍କ ତାହାଙ୍କର ସମସ୍ତ ସଦ୍‌ଗୁଣକୁ ଘୋଡ଼ାଇ ପକାଇ ଅଛି । ଓଡ଼ିଆଭାଷାର ବିପଦ ସମସ୍ତ ଓଡ଼ିଶା ବାସିଙ୍କର ସାଧାରଣ ବିପଦ ଅଟେ । ଆମ୍ଭେମାନେ ଏ ପ୍ରଦେଶରେ ଥାଇ ବାକ୍ୟଦ୍ୱାରା ସମ୍ବଲପୁର ଭ୍ରାତାଙ୍କ ପ୍ରତି ଯଥେଷ୍ଟ ସହାନୁଭୂତି ଦେଖାଇ ଅଛୁଁ । ବର୍ତ୍ତମାନ କାର୍ଯ୍ୟର ସମୟ ଉପସ୍ଥିତ ହୋଇଅଛି । ଏତେବେଳେ ଯେବେ ଆମ୍ଭେମାନେ ଅର୍ଥ ସାହାଯ୍ୟରେ କୁଣ୍ଠିତ ହେଲୁଁ ତେବେ ଆମ୍ଭମାନଙ୍କର ବାଚନିକ ସହାନୁଭୂତିର କିଛି ମୂଲ୍ୟ ରହିବ ନାହିଁ । ଅର୍ଥ ସାହାଯ୍ୟ ବର୍ତ୍ତମାନ ସମୟରେ ସହାନୁଭୂତିର ଯଥାର୍ଥ ପରିଚାୟକ । ଅତଏବ ଆମ୍ଭେମାନେ ସମସ୍ତ ଉତ୍କଳ ଭ୍ରାତାଙ୍କୁ ଏ ସମୟରେ ଭେଦାଦାନ କରିବାକୁ ଅନୁରୋଧ କରୁଅଛୁ । ଯେ ଯାହା ଦେବାକୁ ଇଚ୍ଛା କରିବେ ସମ୍ବଲପୁର ନିବାସୀ ବାବୁ ଧରଣିଧର ମିଶ୍ରଙ୍କ ନିକଟକୁ ପଠାଇ ଦେବେ ଅଥବା ଆମ୍ଭମାନଙ୍କ ନିକଟକୁ ପଠାଇଲେ ଆମ୍ଭେମାନେ ଯଥାସ୍ଥାନରେ ପହୁଞ୍ଚାଇ ଦେବୁ ଏବଂ ପ୍ରାପ୍ତି ସ୍ୱୀକାର କରିବୁଁ ।

*ଭା୩୧ଗ,ସଂ୬ଖ୍ୟା,୮।୨।୧୮୯୬*

## ପ୍ରେରିତପତ୍ର ।

## [ଆଲୋଚନା ସଭା ]

ଶ୍ରୀଯୁକ୍ତ ମାନ୍ୟବର ଉତ୍କଳଦୀପିକାର ସମ୍ପାଦକ
ମହୋଦୟ ସମୀପେଷୁ ।

ମହାଶୟ ?

ବିଗତ ସନିବାର ସନ୍ଧ୍ୟା ୭ ଘଟିକା ସମୟରେ ଏଠାକାର ନର୍ମ୍ୟାଲ ସ୍କୁଲ ଗୃହରେ "ଆଲୋଚନା ସଭାର" ଦ୍ୱିତୀୟ ସାମ୍ବତ୍ସରିକ ଅଧିବେଶନ ହୋଇଥିଲା । ନଗରର ବହୁସଂଖ୍ୟକ ଗଣ୍ୟମାନ୍ୟ ଭଦ୍ର ମହୋଦୟ ମାନଙ୍କର ସମ୍ମିଳନ କ୍ଷେତ୍ର ହୋଇ ନ ଥିଲେହେଁ କତିପୟ ରାଜକୁମାର ଓ ଉଚ୍ଚଶିକ୍ଷାପ୍ରାପ୍ତ  ଅସଂଖ୍ୟ ଛାତ୍ରମାନଙ୍କର ସମାଗମ ହେତୁରୁ ସଭାସ୍ଥଳ ଅତିଶୟ ରମଣୀୟ ବେଶକୁ ଧାରଣ କରିଥିଲା । ସଭାର ସ୍ଥାୟୀ ସଭାପତି ଶ୍ରୀଯୁକ୍ତ ମଧୁସୂଦନ ରାଓଙ୍କ କର୍ତ୍ତୃକ ଅନୁରୁଦ୍ଧ ହୋଇ ଭକ୍ତିଭାଜନ  ଶ୍ରୀଯୁକ୍ତ ରାଧାନାଥ ରାୟ ମହୋଦୟ ସଭାପତି ଆସନ ଗ୍ରହଣ କଲେ । ସମ୍ପାଦକଙ୍କ କର୍ତ୍ତୃକ ସଭାର ବାର୍ଷିକ କାର୍ଯ୍ୟ  ବିବରଣୀ ପଠିତ ହେଲା ଉତ୍ତାରୁ ଉପସ୍ଥିତ କତିପୟ ଭଦ୍ର ମହୋଦୟଙ୍କ କର୍ତ୍ତୃକ କେତେଗୁଡ଼ିଏ ପ୍ରସ୍ତାବ ଆଗତ ଏବଂ ଗୃହୀତ ହେଲା । ଅନନ୍ତର ସଭାପତି ମହାଶୟ ସଭାର ଉଦ୍ଦେଶ୍ୟ ଓ କାର୍ଯ୍ୟ ସମ୍ବନ୍ଧରେ କିଛି କହି ସଭାର ଜନ୍ମଦାତା ମଧୁବାବୁଙ୍କୁ ତାଙ୍କ ଇଦୃଶ ସାଧୁ ଅନୁଷ୍ଠାନ ସକାଶେ ଧନ୍ୟବାଦ ଦେଇ ସଭା ଭଙ୍ଗ କଲେ । ବିନାଡ଼ମ୍ବରରେ "ଆଲୋଚନା ସଭାର" ଦ୍ୱିତୀୟ ସାମ୍ବତ୍ସରିକ ଅଧିବେଶନ ଏହିରୂପେ ସମାପ୍ତ ହେଲା ।

ସାଧୁ ଯାହାର ଇଚ୍ଛା, ଭଗବାନ ତାହାର ସହାୟ । ମଧୁବାବୁଙ୍କ "ଆଲୋଚନା ସଭା" ସଂଗଠନର ଉଦ୍ଦେଶ୍ୟ ସାଧୁ । ସୁତରାଂ ବିପୁଳ ବାଧା ବିଘ୍ନକୁ ଅତିକ୍ରମ କରି ସଭା ଭଗବାନଙ୍କ କୃପାରୁ ତୃତୀୟ ବର୍ଷରେ ପଦାର୍ପଣ

କରିଅଛି । "ଆଲୋଚନା ସଭା" ଓ "ଦରୀଦ୍ର କୋଷ" -ସଭାର ଏହି ଯୋଡ଼ିଏ ବିଭାଗ । ସାହିତ୍ୟ ଚର୍ଚ୍ଚା ସଭାର ପ୍ରଥମୋକ୍ତ ଏବଂ ଆର୍ଥିକ ସାହାଯ୍ୟ ଦ୍ୱାରା ଦେଶର ଗରିବ ଛାତ୍ରମାନଙ୍କୁ ଶିକ୍ଷାଦାନ ଶେଷୋକ୍ତ ବିଭାଗର ଉଦ୍ଦେଶ୍ୟ । ସୁତରାଂ ସଭାର ଉଦ୍ଦେଶ୍ୟ ପ୍ରଶଂସାର୍ହ । ଦ୍ୱିତୀୟ ବର୍ଷରେ ସଭା ଯେପରି କାର୍ଯ୍ୟ କରିଅଛି, ତାହା ମଧ୍ୟ ଆଶାପ୍ରଦ ଉକ୍ତ ସଭା ପ୍ରତି ସାଧାରଣର ଏବଂ ଦେଶର କୃତବିଦ୍ୟ ଭଦ୍ର ମହୋଦୟ ମାନଙ୍କର ଦୃଷ୍ଟି ଆମ୍ଭେମାନେ ଆକର୍ଷଣ କରୁଅଛୁ । କାରଣ, ସମବେତ ଚେଷ୍ଟା ପ୍ରଭାବରୁ ସଭା ତୃତୀୟ ବର୍ଷରେ ଆହୁରି ଅଧିକ କାର୍ଯ୍ୟ କରି ପାରିବ ବୋଲି ଆଶା ହେଉ ଅଛି । "ଆଲୋଚନା ସଭାର" ସାଧାରଣ ଅଧିବେଶନ ପ୍ରତି ଶନିବାର ଦିନ ନର୍ମ୍ୟାଲ ସ୍କୁଲରେ ହୋଇଥାଏ ସତ୍ୟ, କିନ୍ତୁ ତାହାର କାର୍ଯ୍ୟକ୍ଷେତ୍ର ଉକ୍ତ ସ୍କୁଲର ସଙ୍କୀର୍ଣ୍ଣ ସୀମାରେ ଆବଦ୍ଧ. ନୁହେ । ସାହିତ୍ୟାନୁରାଗୀ ବ୍ୟକ୍ତିମାନେ ବହୁ ଦୂରରେ ଅବସ୍ଥିତି କଲେହେଁ ସଭାର ସଭ୍ୟଶ୍ରେଣୀ ଭୁକ୍ତ ହୋଇ ଅଛନ୍ତି - ଏବଂ ଗରିବ ଛାତ୍ରମାନେ ଅନ୍ୟାନ୍ୟ ସ୍କୁଲରେ ପଢୁଥିଲେହେଁ ଉକ୍ତ ସଭା ସଂଶ୍ଲିଷ୍ଟ "ଦରିଦ୍ର କୋଷରୁ" ସାହାଯ୍ୟ ପାଉ ଅଛନ୍ତି । ବାର୍ଷିକ କାର୍ଯ୍ୟ ବିବରଣୀରୁ ତାହାର ପରିଚୟ ପାଇ ଆମ୍ଭେମାନେ ସୁଖୀ ହେଲୁଁ ।

ଓଡ଼ିଆ ଉତ୍କଳର ଅଶିକ୍ଷିତ ମୂର୍ଖ ସମସ୍ତଙ୍କ ଭାଷା ସମସ୍ତଙ୍କୁ ଘେନି ଦେଶ ଓ ସମାଜ । ସୁତରାଂ ଓଡ଼ିଆ ଭାଷା ଉପରେ ଦେଶର ଓ ସମାଜର ଅଶେଷ ଉନ୍ନତି ନିର୍ଭର କରୁଅଛି ଦେଖି ଉକ୍ତ ଭାଷାର ଶ୍ରୀବୃଦ୍ଧି ସାଧନ ସକାଶେ ଭକ୍ତିଭାଜନ ଶ୍ରୀଯୁକ୍ତ ମଧୁସୂଦନ ରାଓ ମହୋଦୟ "ଆଲୋଚନା ସଭା" ପ୍ରତିଷ୍ଠିତ କରି ସ୍ୱୟଂ ତାହାର ପରିଚାଳଣାର ଭାର ଗ୍ରହଣ କରି ଅଛନ୍ତି । ନର୍ମ୍ୟାଲ ସ୍କୁଲ ମାତୃଭାଷାର କିଲ୍ଲା- "ଆଲୋଚନା ସଭା" ଉକ୍ତ କିଲ୍ଲା-ସଂଶ୍ଲିଷ୍ଟ Parade ground (କିଲ୍ଲାପଡ଼ିଆ) । ଉକ୍ତ କିଲ୍ଲାପଡ଼ିଆରେ ସୁଦକ୍ଷ ସେନାପତିଙ୍କ କର୍ତ୍ତୃତ୍ତ୍ୱାଧୀନରେ ଥାଇ ମାତୃଭାଷାର Drill ବିଧିମତେ ଶିକ୍ଷା କରି ଉପଯୁକ୍ତ ସେନା ଦଳର ଉଦ୍ଭବ ହେଉ, ଆମ୍ଭମାନଙ୍କର ଏହା ଆନ୍ତରିକ କାମନା ଶୁଭମସ୍ତୁ ।

ତା ୨ ରିଖ, — ଶ୍ରୀ ଅନଙ୍ଗ ମୋହନ ଚକ୍ରବର୍ତ୍ତୀ
ଫେବୃୟାରି, — ବାଖରାବାଦ ।
୧୮୯୬ ମସିହା — କଟକ

*ଭାଗ ୧୮, ସଂ ୬ଖ୍ୟା, ୮/୨/୧୮୯୬*

## ପୁସ୍ତକ ପ୍ରାପ୍ତିସ୍ୱୀକାର

ବୃନ୍ଦାବନଚନ୍ଦ୍ର ବିନୋଦନାଟକ-ଖଣ୍ଡପଡ଼ା ରାଜକୁମାର ଶ୍ରୀ ମହେନ୍ଦ୍ରସିଂହ ସାମନ୍ତଙ୍କଦ୍ୱାରା ରଚିତ ଏନଗରସ୍ଥ ରାୟ ପ୍ରେସରେ ମୁଦ୍ରିତ ଓ ବିନାମୂଲ୍ୟରେ ବିତରିତ । ଉତ୍କଳର ଅଧିକାଂଶ ରାଜତନୟ ବୃଥା ବିଳାସରେ ଦିନ କାଟିବାସ୍ଥଳେ ସାହିତ୍ୟ ଚର୍ଚ୍ଚାରେ ଏହାଙ୍କର ଅନୁରାଗ ପ୍ରଶଂଶାର ବିଷୟ ଅଟେ । ପୁଣି ବ୍ୟୟ ସ୍ୱୀକାରପୂର୍ବକ ପୁସ୍ତକ ଛପାଇ ବିନାମୂଲ୍ୟରେ ବିତରଣ କରିବ ଆହୁରି ପ୍ରଶଂସନୀୟ । ଏ ପୁସ୍ତକ ଗଦ୍ୟ ଓ ରାଗ ତାଳ ସଂଯୁକ୍ତ ପଦ୍ୟ ବା ଗୀତରେ ରଚିତ ହୋଇ ଏହାର ନାମ ନାଟକ ଦିଆଯାଇଥିଲେହେଁ ନାଟକର ନୀୟମ ଗୁଣ ବା ବର୍ଣ୍ଣନାର ବିଶେଷ ଅଭାବ ଏଥିରେ ଦେଖାଯାଏ । ଏହାକୁ ଉତ୍କଳର ଚମ୍ପୂକାବ୍ୟ ବୋଲାଯାଇପାରେ ଅଥବା ପ୍ରସିଦ୍ଧ ଗୋପୀନାଥବଲ୍ଲଭ ନାଟକର ଅନୁକରଣରେ ଏହା ରଚିତ ହୋଇଅଛି ମାତ୍ର ତହିଁର ମାଧୁର୍ଯ୍ୟ ଲାଳିତ୍ୟ ଏଥିରେ ନାହିଁ । ଏହାର ଗଦ୍ୟାଂଶ ଆଦ୍ୟୋପାନ୍ତ ଏମନ୍ତ ଦୀର୍ଘ ସମାସ ଯୁକ୍ତ ହୋଇଅଛି ଯେ ଅର୍ଥବୋଧ ଓ ରସାସ୍ୱାଦନ ବିଷୟରେ ବିଲକ୍ଷଣ ବ୍ୟାଘାତ ଜନ୍ମୁଅଛି ପଦ୍ୟାଂଶ ଅପେକ୍ଷାକୃତ ଉତ୍ତମ କେବଳ ଠାବେ ଠାବେ ଅଶ୍ଳୀଳତା ପୁନରୁକ୍ତତା ପ୍ରଭୃତି ଦୋଷ ରହିଅଛି । ଯାହାହେଉ ଗ୍ରନ୍ଥକାରଙ୍କର ପ୍ରଥମୋଦ୍ୟମ ଆଶାପ୍ରଦ ଭରସା କରୁଁ ସେ ଭଗ୍ନୋତ୍ସାହ ନ ହୋଇ ଯେ ପଥାବଲମ୍ବନ କରିଅଛନ୍ତି ତହିଁରେ ଅଗ୍ରସର ହେବାକୁ ଚେଷ୍ଟା କରିବେ ।

ପରିମିତି ସମାଧାନ-ଶ୍ରୀ ସୁଦର୍ଶନ ନନ୍ଦଙ୍କ ଦ୍ୱାରା ସଂକଳିତ ଏବଂ ଅରୁଣୋଦୟ ଯନ୍ତ୍ରାଳୟରେ ମୁଦ୍ରିତ । ଏହା ବାବୁ ଉମେଶ୍ଚନ୍ଦ୍ରବସୁଙ୍କ ଉତ୍କଳ ପରିମିତିର ସମାଧାନ ଅଟେ । ଏପରି ପୁସ୍ତକଦ୍ୱାରା ଛାତ୍ରମାନଙ୍କ ଚିନ୍ତାଶକ୍ତି ସମ୍ୟକ୍ ପରିଚାଳନାର ବ୍ୟାଘାତ ଘଟିବାର ସମ୍ଭାବନା ହେତୁ ଆମ୍ଭେମାନେ ଏହାର ପକ୍ଷପାତୀ ନ ହେଲେ ବର୍ତ୍ତମାନ ରୀତି ଦେଖି ବୋଲିବାକୁ ହେବ ଯେ ଏହାଦ୍ୱାରା ଅନେକ ଛାତ୍ରଙ୍କର ଉପକାର ହେବ ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ବାଲ୍ୟବନ୍ଧୁ ୧ମ ଭାଗ- ମୁନସି ସେଖ ମନିରୁଦ୍ଦୀନଙ୍କ ଦ୍ୱାରା ପ୍ରଣୀତ ବାଲେଶ୍ୱର ଦେଙ୍କ ଉତ୍କଳ ଯନ୍ତ୍ରାଳୟରେ ମୁଦ୍ରିତ ଏବଂ ବାବୁ ରାଧାନାଥଙ୍କ ନାମରେ ଉତ୍ସର୍ଗିତ । ମୂଲ୍ୟ ଟ ୦</ ଏଥିରେ କେତେଗୁଡ଼ିଏ ସାଧାରଣ ଉତ୍କଳ ଶବ୍ଦମଧ୍ୟରୁ ଏକ ଏକ ଶବ୍ଦର କେତେଗୁଡ଼ିଏ ସଂସ୍କୃତ ପ୍ରତିଶବ୍ଦ ବାଳକମାନଙ୍କ ଶିକ୍ଷାର୍ଥେ ଦିଆଯାଇ ଅଛି । ଏଥିର ବିଶେଷ ପ୍ରୟୋଜନ ଆମ୍ଭେମାନେ ଅନୁମାନ କରିପାରିଲୁ ନାହିଁ ।

ତମାଖୁର ଅପକାରିତା-ଶ୍ରୀ ନୀଳମଣି ବିଦ୍ୟାରତ୍ନଙ୍କଦ୍ୱାରା ସଙ୍କଳିତ ଏବଂ ବାମଣ୍ଡା ଯନ୍ତ୍ରାଳୟରେ ମୁଦ୍ରିତ । ଏ ପୁସ୍ତକ ଶ୍ରୀରାୟ ବାହାଦୂର ଗୋବିନ୍ଦବଲ୍ଲଭ ରାୟ ମହାଶୟଙ୍କ ନାମରେ ଉତ୍ସର୍ଗିତ ହୋଇଅଛି । ତମାଖୁର ବ୍ୟବହାର ଏମନ୍ତ ସାଧାରଣ ହୋଇଅଛି ଯେ, ଏ ପୁସ୍ତକଦ୍ୱାରା ସେ ଅଭ୍ୟାସ ବିଶେଷ ସଂଯତ ହେବାର ଆଶା କରିବା ଅସମ୍ଭବ । ତଥାଚ ଏ ପୁସ୍ତକ ପଢ଼ିବାପାଇଁ ଆମ୍ଭେମାନେ ସମସ୍ତଙ୍କୁ ଅନୁରୋଧ କରୁଅଛୁଁ । ଗୁଣାଗୁଣ ଜାଣିପାରି ଯେବେ କେହି କେହି ବିରତ ହୁଅନ୍ତି ତହିଁରେ ମଧ ଲାଭ ଅଛି ।

ମାତା-ଏହିକ୍ଷୁଦ୍ର ଉତ୍କଳ ପଦ୍ୟଗ୍ରନ୍ଥ ଶ୍ରୀ ଦାମୋଦର ପଦ୍ୟାଳଙ୍କାରଙ୍କଦ୍ୱାରା ପ୍ରଣୀତ । ତାହାଙ୍କ ଜ୍ୟେଷ୍ଠଭ୍ରାତା ଶ୍ରୀ ନୀଳମଣି ବିଦ୍ୟାରତ୍ନଙ୍କ ନାମରେ ଉତ୍ସର୍ଗିତ ଏବଂ ଏ ନଗର ରାୟ ପ୍ରେସରେ ମୁଦ୍ରିତ । ଭୂମିକାରୁ ପ୍ରକାଶ ଯେ ଗ୍ରନ୍ଥକାର ମାତାଙ୍କ ଆଦେଶ ଅନୁସାରେ ଏହା ରଚନା କରି ଶ୍ରୀବାବୁ ରାଧାନାଥ ରାୟଙ୍କ ଆନୁକୂଲ୍ୟରେ ପ୍ରକାଶ କରିଅଛନ୍ତି । ଏହାର ଭାଷା ଅତିସରଳ ଏବଂ ଭାବ ସୁନ୍ଦର ଅଟେ ।

ବୈଷୟିକ ଶିକ୍ଷା ୧ ଭାଗ- ଶ୍ରୀ ରାମତାରକ ସେନଙ୍କଦ୍ୱାରା ପ୍ରଣୀତ ଏବଂ ବାଲେଶ୍ୱର ଦେଙ୍କ ଯନ୍ତ୍ରାଳୟରେ ମୁଦ୍ରିତ । ମୂଲ୍ୟ ଟ ୦ ଏଥିରେ ନାନାପ୍ରକାର ପଟା ପାଉତି ତମସୁକ କବାଲା ପ୍ରଭୃତି ଦଲିଲ ଦସ୍ତାବିଜ, ଘରାଉ ପତ୍ର ଓ ଦରଖାସ୍ତଆଦି ଲେଖିବାର ନିୟମ ଓ ଆଦର୍ଶଲିପି ସନ୍ନିବେଶିତ ହୋଇଅଛି ଯେ ମୋଫସଲର ନିମ୍ନ ବିଦ୍ୟାଳୟର ଛାତ୍ରମାନେ ତାହା ଶିକ୍ଷାକରି ଯଥା ସମୟରେ ଆପଣା ଆପଣା ସାମାନ୍ୟ ବୈଷୟିକ ବ୍ୟାପାର ନିର୍ବାହ କରିବାକୁ ସମର୍ଥ ହେବେ । ସାମାନ୍ୟ ବୋଲିବାର ଅଭିପ୍ରାୟ ଏହି କି ବର୍ତ୍ତମାନ କାଳରେ ଦଲିଲାଦି ସମ୍ବନ୍ଧରେ ଆଇନ୍ ଘଟିତ ଏତେ ସୂକ୍ଷ୍ମ ତର୍କ ଉପସ୍ଥିତ ହେଉଅଛି ଯେ ବ୍ୟବହାରଜୀବୀଙ୍କ ଦ୍ୱାରା ପ୍ରତ୍ୟେକ ଅବସ୍ଥା ଅନୁସାରେ ଦଲିଲାଦି ପ୍ରସ୍ତୁତ ବା ସଂଶୋଧିତ ନ ହେଲେ ତହିଁ ଉପରେ ନିର୍ଭର କରିବା ସର୍ବଦା ନିରାପଦ ନୁହେ । ଷ୍ଟାମ୍ପ ଆଇନ୍ ଏବଂ ଦଲିଲ ରେଜେଷ୍ଟରୀର ବିଧିମାନ ମଧ ପ୍ରତ୍ୟେକ ଦଲିଲ ଲେଖକର ଜାଣିବାର ଉଚିତ । ଅନ୍ତତଃ ଫିସର ଦର ଏ ପୁସ୍ତକରେ ଦେବାର ପ୍ରୟୋଜନ ।

*ଭାଗ ୧ ଗ, ସଂ ୭ ଖ୍ୟା, ୧୪/୨/୧୮୯୬*

### [ବଙ୍ଗୀୟ ବ୍ୟବସ୍ଥାପକ ସଭାର ସଦସ୍ୟ ]

ଶ୍ରୀଯୁକ୍ତ ମଧୁସୂଦନ ଦାସ ବଙ୍ଗୀୟ ବ୍ୟବସ୍ଥାପକ ସଭାର ଜଣେ ସଦସ୍ୟ ନିଯୁକ୍ତ ହେବାର ଗତ କଲିକତା ଗଜେଟରେ ପାଠ କରି ଅତ୍ୟନ୍ତ ଆନନ୍ଦିତ ହେଲୁ । ଏଥିପୂର୍ବେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ବାହାଦୂର ଏହି ପଦ ଏକ ସମୟରେ ପାଇ ଓଡ଼ିଶାର ଗୌରବ ବଢ଼ାଇ ଥିଲେ । ମାତ୍ର ସେ ସମୟରେ ନିର୍ବାଚନ ପ୍ରଥା ପ୍ରଚଳିତ ନ ଥିଲା । ସ୍ଥାନୀୟ ଲୋକଙ୍କ ଇଚ୍ଛାନୁସାରେ ଗବର୍ଣ୍ଣମେଣ୍ଟ ଦାସ ମହାଶୟଙ୍କୁ ନିଯୁକ୍ତ କରି ଓଡ଼ିଶା ବାସିଙ୍କର କୃତଜ୍ଞତା ଭାଜନ ହୋଇ ଅଛନ୍ତି ଏବଂ ଆମ୍ଭମାନଙ୍କର ଏକାନ୍ତ ଆଶା ଯେ ଏ ନିୟୋଗଦ୍ୱାରା ଓଡ଼ିଶାର ମଙ୍ଗଳ ହେବ ।

*ଭାଗ ୧ ଗ, ସଂ ୮ ଖ୍ୟା, ୨୨/୨/୧୮୯୬*

### [ଭାଷାରକ୍ଷା ଚେଷ୍ଟା]

'ଭାଷାରକ୍ଷା ଚେଷ୍ଟା' ପ୍ରବନ୍ଧରେ ଆମ୍ଭେମାନେ ଏଥିପୂର୍ବେ ସମ୍ବଲପୁରରୁ ଓଡ଼ିଆ ଭାଷା ଉଠିଯିବା ଆଦେଶ ବିରୁଦ୍ଧରେ ବିଲାତ ଅପିଲର ବ୍ୟୟ ଭାର ନିର୍ବାହ ବିଷୟରେ ସମ୍ବଲପୁର ବାସିଙ୍କୁ ସାହାଯ୍ୟ କରିବା କାରଣ ସର୍ବ ସାଧାରଣଙ୍କୁ ଅନୁରୋଧ କରିଥିଲୁଁ । ସର୍ବାଗ୍ରେ ଆମ୍ଭମାନଙ୍କର ଅନୁରୋଧ ପାଲଲହଡ଼ାରେ ସଫଳ ହେବାର ଦେଖି

ଅତ୍ୟନ୍ତ ଆନନ୍ଦିତ ହୋଇ ସେଠାର ସୁଯୋଗ୍ୟ ମାନେଜର ବାବୁ ଦାମୋଦର ପଟ୍ଟନାୟକଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛୁଁ ପଟ୍ଟନାୟକ ମହାଶୟ ପାଲଲହଡ଼ାଠାରୁ ଦଶଟଙ୍କା ଭେଦା ସଂଗ୍ରହ କରି ଆମ୍ଭମାନଙ୍କ ନିକଟକୁ ପଠାଇ ଦେଇ ଅଛନ୍ତି । ଭେଦା ଦାତାଙ୍କ ନାମ ନିମ୍ନେ ପ୍ରକାଶିତ ହେଲା ଯଥା-

| | |
|---|---|
| ବାବୁ ଦାମୋଦର ପଟ୍ଟନାୟକ ମାନେଜର | ଟ୫ |
| ବାବୁ ଲମ୍ବୋଦର ପଟ୍ଟନାୟକ ହେଡ଼କିରାନୀ | ଟ୧ |
| ବାବୁ ବ୍ରହ୍ମାନନ୍ଦ ମହାନ୍ତି ସିରସ୍ତାଦାର | ଟ୧ |
| ବାବୁ ନାରାୟଣ ପ୍ରସାଦ ମହାନ୍ତି ମୋହରର | ଟ୧ |
| ବାବୁ ଚିନ୍ତାମଣି ଗିରି ମୋହରର | ଟ୦୳ |
| ବାବୁ ପୁରନ୍ଦର ଦାସ ଶିକ୍ଷକ | ଟ୦୳ |

ଅନ୍ୟ ଜ ୩ ଣ ମୋହରର ଏବଂ ବାବୁ ପ୍ରଭାକର ପରମଗୁରୁ ଟ୦ । ଲେଖାଏ ଟ ୧ ଆହୁରି ପଟ୍ଟନାୟକ ମହାଶୟ ସାଧାରଣ ଉତ୍କଳ ବାସିଙ୍କର ଉତ୍ସାହ ଏବଂ କର୍ତ୍ତବ୍ୟ ଜ୍ଞାନ ବର୍ଦ୍ଧନାର୍ଥେ ଗୋଟିଏ ଗୀତ ରଚନା କରି ପଠାଇବାରୁ ସାଦରେ ଏଠାରେ ପ୍ରକାଶ କଲୁଁ । ଯଥା-ରାଗଭୈରବି । ଆଦିତାଳ ।

("ମନା କରୁଥିଲି ରାଧେ" ବୃତ୍ତରେ)
ରହନା, ରହନା, ଆଉ ଅଚିନ୍ତାରେ ମନ
(ଅଚିନ୍ତାରେ ଆଉ ମନ ଅଚିନ୍ତାରେ ମନ)
ଦେଖୁ ଦେଖୁ ମାତୃ-ଭାଷା ଅଙ୍ଗର ଛେଦନ ।ଘୋଷା ।
ସ୍ୱର୍ଗରୁ ବଳି ଜନନୀ ସଂସାରରେ ସୁଖ ମଣି
ତାର ଦୁରଦଶା ଶୁଣି ସହେକି ଜୀବନ
(ଭାଇ ସହେକି ଜୀବନ ) ।୧।
ସମ୍ବଲପୁରୁ ଜନନୀ ହୁଏ ଆଜି ନିର୍ବାସିନୀ
କାଲି କି ହେବ ଭବନେ ନକର ଭାବନ ?
(କିଛି ନ କର ଭାବନ ?) ।୨।
ଯାଉ ଏ ଜୀବନଧନ ହେଉ ଏକ ପ୍ରାଣ ମନ
ହେଉ ଶରୀର ପତନ ରଖ ଏବେ ପଣ
(ସର୍ବେ ରଖ ଏବେ ପଣ) ।୩।
ଜନନୀ-ରସନା ହିନ୍ଦି କାଟଇ ଜାତିକି ନିନ୍ଦି
ଉଠରେ ଉତ୍କଳ ଭାଇ ଘେନ ନିବେଦନ
(ଭାଇ ସହେକି ଜୀବନ) ।୪।

ଏଥି ଉତ୍ତାରୁ ଆମ୍ଭମାନଙ୍କର ଅଧିକ କିଛି କହିବାର ନାହିଁ । ଏକାନ୍ତ ଭରସା କରୁଁ ଯେ ପାଲଲହଡ଼ାର ଅନୁକରଣରେ ସମସ୍ତ ଉତ୍କଳ ବାସୀ ଏ ବିଷୟରେ ତତ୍ପର ହୋଇ ସ୍ୱଦେଶାନୁରାଗ ଏବଂ ସଜୀବତାର ପରିଚୟ ଦେବ ।

*ଭାଗ୩୧ଗ,ସଂ୯ଖ୍ୟା, ୨୯।୨।୧୮୯୬*

## ମାନ୍ୟବର ବାବୁ ମଧୁସୂଦନଦାସ ।

ଗତ ସପ୍ତାହରୁ ଆମ୍ଭମାନଙ୍କର ଶ୍ରଦ୍ଧାସ୍ପଦ ମାନ୍ୟବର ବାବୁ ମଧୁସୂଦନଦାସଙ୍କୁ ବଙ୍ଗୀୟ ବ୍ୟବସ୍ଥାପକସଭାର ସଭ୍ୟପଦରେ ନିଯୁକ୍ତ ହୋଇଥିବା ହେତୁ ଅଭିବାଦନ କରିବାର ଧୂମ ଲାଗିଯାଇଅଛି । ଆଜି କାଲି ଚତୁର୍ଦ୍ଦିକରେ ଦୋଳ ଏବଂ ବିବାହ ଉତ୍ସବ ଲାଗିଥିବାରୁ ଲୋକଙ୍କର ଆନନ୍ଦର ପରିସୀମା ନାହିଁ ଏବଂ ତହିଁଉପରେ ଦେଶର ତାବତ

ଲୋକଙ୍କର ସ୍ନେହଭାଜନ ମାନ୍ୟବର ବାବୁ ମଧୁସୂଦନଦାସଙ୍କୁ ବଙ୍ଗ ବ୍ୟବସ୍ଥାପକ ସଭାର ଆସନ ଗ୍ରହଣାର୍ଥ ପଠାଇବା ଆହୁରି ଆନନ୍ଦର ବିଷୟ ହୋଇଅଛି । ଗତ ପୂର୍ବ ବୁଧବାରଦିନ ଏଠା ଓକିଲମାନେ ଓକିଲ ଖାନାରେ ସଭା କରି ବାବୁ ମହୋଦୟଙ୍କୁ ଆପଣାର ଆନନ୍ଦ ଜଣାଇଥିଲେ । ସେଠାରେ ବାବୁ ଜାନକୀନାଥବସୁ ଓକିଲ ପ୍ରକାଶ କଲେ ଯେ ଓଡ଼ିଶାରେ ବର୍ତ୍ତମାନ ବନ୍ଦୋବସ୍ତ ଓ ଜଳକର ଘେନି ଲୋକେ ବ୍ୟସ୍ତ ଅଛନ୍ତି । ଏମନ୍ତ ସମୟରେ ଏଦେଶରୁ ଜଣେ ପ୍ରତିନିଧି ବଙ୍ଗ ବ୍ୟବସ୍ଥାପକ ସଭାରେ ଆସନ ଗ୍ରହଣ କରିବା ବଡ଼ ସୌଭାଗ୍ୟର ବିଷୟ ଏବଂ ଯେଉଁ ପ୍ରତିନିଧି ମନୋନୀତ ହୋଇଅଛନ୍ତି ତାଙ୍କଠାରୁ ଅଧିକ ଉପଯୁକ୍ତ ଲୋକ ଏଠାରେ ନାହିଁ ଏବଂ ତାଙ୍କଦ୍ୱାରା ଯେ ଏଦେଶର ମଙ୍ଗଳ ବିଧାନ ହେବ ଏଥିରେ ସନ୍ଦେହ କି ଅଛି ? ତଦନନ୍ତର ଅନ୍ୟାନ୍ୟ କେତେକ ଓକିଲ ଆପଣାର ଆନନ୍ଦ ପ୍ରକାଶ କଲାରୁ ପ୍ରସ୍ତାବ ଧାର୍ଯ୍ୟ ହେଲା । ମାନ୍ୟବର ବାବୁ ମଧୁସୂଦନଦାସ ତପ୍ରରେ ଆସନରୁ ଉଠି ଆପଣାର ବ୍ୟବସାୟର ସଙ୍ଗୀମାନଙ୍କଠାରୁ ଏପ୍ରକାର ଅଭିବାଦନ ପ୍ରାପ୍ତ ହୋଇ ନିତାନ୍ତ କୃତଜ୍ଞ ହୋଇଥିବାର ପ୍ରକାଶ କରି ମିଷ୍ଟ ବାକ୍ୟରେ ସମସ୍ତଙ୍କୁ ପ୍ରୀତ କଲେ ଏବଂ ତାଙ୍କଦ୍ୱାରା ଓଡ଼ିଶାର ମଙ୍ଗଳ ବିଧାନ ହେବା ବିଷୟରେ ସେ ସର୍ବଦା ସେମାନଙ୍କର ସତ୍‌ପରାମର୍ଶ ଏବଂ ସାହାଯ୍ୟ ଉପରେ ନିର୍ଭର କରି କାର୍ଯ୍ୟ କରିବାର ପ୍ରକାଶ କଲେ ।

ତହିଁପର ଶୁକ୍ରବାରଦିନ ଅପରାହ୍ନକାଳରେ ଏଠା ମିଶନ କଲେଜ ଗୃହରେ ମାନ୍ୟବର ବାବୁ ମହୋଦୟଙ୍କୁ ଅଭିବାଦନ କରିବା କାରଣ ଏଠା ଦେଶୀୟ ଖ୍ରୀଷ୍ଟିୟାନ୍ ମଣ୍ଡଳିରୁ ଏକସଭା ଆହୂତ ହୋଇଥିଲା । ଉକ୍ତ ସଭାରେ ଖ୍ରୀଷ୍ଟିୟାନ୍ ଛଡ଼ା ହିନ୍ଦୁ ଏବଂ ଅନ୍ୟଧର୍ମାବଲମ୍ବୀ ଲୋକମାନେ ମଧ୍ୟ ସମୁପସ୍ଥିତ ଥିଲେ । ପାଦ୍ରୀ ବେଲିସାହେବ୍ ସଭାପତିର ଆସନ ଗ୍ରହଣ କରିଥିଲେ ଏବଂ ପାଦ୍ରୀ ୟଙ୍ଗ ଓ ଭନ୍‌ସାହେବ ପ୍ରଭୃତି କେତେକ ଇଂରାଜ ଓ କେତେକ ଦେଶୀୟ ଖ୍ରୀଷ୍ଟିୟାନ ଭଦ୍ରମହିଳା ମଧ୍ୟ ସଭାସ୍ଥଳରେ ଉପସ୍ଥିତ ଥିଲେ । ପାଦ୍ରୀ ବେଲିସାହେବ ସଭାର କାର୍ଯ୍ୟ ଆରମ୍ଭ କରି ପ୍ରଥମତଃ ଅନ୍ୟଧର୍ମାବଲମ୍ବୀ ଲୋକେ ସଭାସ୍ଥଳରେ ସମାଗତ ଥିବାର ଦେଖି ଆନନ୍ଦ ପ୍ରକାଶ କରତଃ କହିଲେ ଯେ ଭିନ୍ନ ଧର୍ମାବଲମ୍ବୀ ଲୋକମାନେ ଏପରି ଏକତ୍ର ସମବେତ ହେବା ବଡ଼ ଆନନ୍ଦର ବିଷୟ ଏଥିରେ ପରସ୍ପର ମନୋଗତ ଭାବମାନ ପ୍ରକାଶିତ ହୋଇ ପରସ୍ପର ପରିଚିତ ହେବାଦ୍ୱାରା ଉନ୍ନତି ମାର୍ଗ ପରିଷ୍କୃତ ହୁଅଇ । ଏହେତୁ ସେ ପ୍ରୋକ୍ତ ଲୋକମାନଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରି କହିଲେ ଯେ ମଧୁବାବୁ ତାଙ୍କର ପ୍ରତିବେଶୀ ଏବଂ ମିଶନ ସଭାର ପ୍ରଧାନ ମେମ୍ବର । ଅଥଚ ଯେତେବେଳେ କୌଣସି ଗୁରୁତର ବିଷୟର ପରାମର୍ଶ ଆବଶ୍ୟକ ହୁଅଇ ତେତେବେଳେ ମଧୁବାବୁଙ୍କୁ ଧଇଲେ ସେ ହଜାର କାର୍ଯ୍ୟ ଛାଡ଼ି ଆପଣାର ଲାଭ ଆଡ଼କୁ ଦୃଷ୍ଟି ନ ରଖି ସାହାଯ୍ୟ ପ୍ରଦାନ କରନ୍ତି । ତପ୍ରରେ ସେ ମଧୁବାବୁଙ୍କର ଅନେକ ଗୁଣାନୁବାଦ କରି ତାଙ୍କୁ ଅଭିବାଦନ କରଣାର୍ଥ ଅଭିନନ୍ଦନ ପତ୍ର ପାଠ କରିବା କାରଣ ପାଦ୍ରୀ ସେମସାହୁଙ୍କୁ ଅନୁରୋଧ କରିବାରୁ ସେ ଯେଉଁ ଅଭିନନ୍ଦନ ପତ୍ର ପାଠ କଲେ ତାହା ନିମ୍ନେ ପ୍ରକାଶିତ ହେଲା ।

To

The Hon'ble Mr. Madhu Sudan Das,

M.A.,B.L.

President of the Orissa Native Christian Association.

Honourable and dear Sir,

We the undersigned, in behalf of the Orissa Native Christian Association, which has the honor of having you as its President, and which for that reason feels itself the more honoured by your exaltation, embrace the opportunity on the happy event of your appointment to be a remember of the Bengal Legislative Council, of conveying to you the hearty congratulations of the Association.

Orissa could not have made a better selection to represent her in the Council, and while, in common with other children of the soil, we rejoice at, the event, we have additional causes for thankfulness inasmuch as in you , the whole Native

Christian community of Orissa, whose interests are in various respects of a special kind, will find a friend to represent them in the Council, and in their anticipations they could endorse the request which Joseph addressed to Pharaoh's officer when he said. "Think on me when it shall be well with thee. and show kindness unto me."

It has been observed, and often remarked by yourself, that the Native Christian Community labours under a disadvantage in its claims being neglected by Government owing simply to its being voiceless, and having no patron to urge its cause. Now that the heart which discovered this draw back and the lips which revealed it, have attained a position from which the cause of the neglected Community can be effectualy pleaded, may we not, in respect to this particular matter and depending on the providence of God, appropriately say, "Who knoweth whether thou art come to the kingdom for such a time as this.?"

We are quite confident that you will fulfil the expectations we cherish concerning you, and earnestly pray that He in Whose hands the destinies of the world rest, will endue you with the wisdom needful for your responsible station, and so guide you as to make your influence a source of much blessing to our dear mother land,

With our united and best wishes
We remain
your ever admiring and sincere friends
Cuttack the 28 th Feby. 1896.

ତତ୍ପରେ ମଧୁବାବୁ ଆସନ ପରିତ୍ୟାଗ ପୂର୍ବକ ବ୍ୟକ୍ତ କଲେ ଯେ ତାଙ୍କୁ ଅଭିବାଦନ କରିବାଦ୍ୱାରା ସଭା ଆପଣାକୁ ଆପେ ଅଭିବାଦନ କରୁଅଛି । କାରଣ ସେ ଜାଣନ୍ତି ଯେ ସେ ସଭାଛଡ଼ା ଅନ୍ୟ କିଛି ନୁହନ୍ତି । ଏହା କହି ଶରୀରର ଅଙ୍ଗପ୍ରତ୍ୟଙ୍ଗମାନେ ଆପଣା ମଧ୍ୟରେ କିଏ ବଡ଼ବୋଲି ଯେଉଁ କଳି ଲଗାଇବାର ଗଳ୍ପ ନୀତି କଥାରେ ସମସ୍ତେ ପଢିଅଛନ୍ତି ତାହା ସ୍ମରଣ କରାଇଦେଇ କହିଲେ ଯେ ସେ ଆପଣାକୁ କଦାପି ବଡ଼ବୋଲି ମଣି ନାହାନ୍ତି । ବଙ୍ଗବ୍ୟବସ୍ଥାପକ ସଭାର କାର୍ଯ୍ୟ ବଡ଼ ଗୁରୁତର । ସେ ସଭାର ମେମ୍ବର ହେଲେ ଯେ ଭୋଜନ ଉତ୍ତାରୁ ପଲଙ୍କରେ ପଡ଼ି ଧୂମପାନ କରିବାର ସୁଖ ମିଳଇ ତାହା ନୁହେ । ସେ ପଦରେ ଧାଇଁ ଅତ୍ୟନ୍ତ ପରିଶ୍ରମ କରିବାକୁ ପଡ଼ିବ । ସେ ପରିଶ୍ରମ ନିମିତ୍ତ କାତର ନୁହନ୍ତି ମାତ୍ର ଭିନ୍ନ ଭିନ୍ନ ସଂପ୍ରଦାୟର ଲୋକେ ସମବେତ ହୋଇ ତାଙ୍କୁ ଅଭିବାଦନ କରିବାଦ୍ୱାରା ସେ ବୁଝିଅଛନ୍ତି ଯେ ସମସ୍ତେ ତାଙ୍କୁ ସେପଦର କାର୍ଯ୍ୟ ସମ୍ୟକ୍‌ରୂପେ ସମାଧାନ କରିବା କାରଣ ସାହାଯ୍ୟ ଓ ପରାମର୍ଶ ପ୍ରଦାନ କରିବା ଏହିରୂପ ମିଷ୍ଟ ବାକ୍ୟ ଉଚ୍ଚାରଣ କରି ଆସନ ଗ୍ରହଣ କଲାରୁ ପାଦ୍ରୀ ଯଙ୍ଗସାହେବ ତାଙ୍କର ଗୁଣାନୁବାଦ କରି କହିଲେ ଯେ ଛୋଟ ନାଗପୁରର ଲୋକେ ତାଙ୍କୁ ଜାଣିନାହାନ୍ତି ମାତ୍ର ଜାଣିଥିଲେ ସେମାନେ ମଧ ତାଙ୍କୁ ଏହିପଦ ସକାଶେ ମନୋନୀତ କରିଥାନ୍ତେ । ପରେ ଅନ୍ୟ କେତେକ ବ୍ୟକ୍ତି ଇଂରାଜୀ ଏବଂ ଓଡ଼ିଆରେ ମାନ୍ୟବର ବାବୁ ମହୋଦୟଙ୍କର ଗୁଣାନୁବାଦ କରିଥିଲେ ।

ପରିଶେଷରେ ଏହି ଉଦ୍ଦେଶ୍ୟରେ ଗତ ରବିବାର ସନ୍ଧ୍ୟାସମୟରେ ଏଠା ଉତ୍କଳସଭାର ଏକ ଅଧିବେଶନ ହୋଇଥିଲା । ବାବୁ ଯୋଗେଶ୍ୱରଚନ୍ଦ୍ର ସଭାପତିର ଆସନ ଗ୍ରହଣ କରି ସଭାର ଉଦ୍ଦେଶ୍ୟ ବୁଝାଇ ଦେଇ ପ୍ରକାଶ କଲେ ଯେ ବାବୁ ମହୋଦୟ ଉତ୍କଳର ସର୍ବତ୍ର ପରିଚିତ ଏବଂ ତାଙ୍କୁ ବଳି ଯୋଗ୍ୟଲୋକ ଉତ୍କଳରେ ନାହିଁ ଏବଂ ସେ ଯେ ଆପଣାର ଏତେ ତ୍ୟାଗ ସ୍ୱୀକାର ପୂର୍ବକ ଦେଶର କାର୍ଯ୍ୟକୁ ସ୍ୱଚ୍ଛନ୍ଦରେ ଅଗ୍ରସର ହୋଇ ଯାଉଅଛନ୍ତି ଏଥୁଁ ବଳି ଆଉ ଆନନ୍ଦର ବିଷୟ କି ହୋଇପାରେ । ତତ୍ପରେ ଅନ୍ୟ ବ୍ୟକ୍ତିମାନେ ପ୍ରକାଶ କଲେ ଯେ ବଡ଼ ଦେଉଳର ମୋକଦ୍ଦମା ପ୍ରଭୃତି ଗୁରୁତର ସମସ୍ୟା ସମୟରେ ମଧୁବାବୁ ଦେଶକୁ ବିପଦରୁ ରକ୍ଷା କରିଅଛନ୍ତି । ଆତ୍ମଶାସନ

ପ୍ରଣାଳୀ ଓ ଲବଣ ଶୁଳ୍କ ପ୍ରଭୃତି ଦେଶର ତାବଦୀୟ କାର୍ଯ୍ୟରେ ଅଗ୍ରସର ହୋଇ ସଭା ସମିତିଦ୍ୱାରା ଲୋକମାନଙ୍କୁ ସତ୍ ପରାମର୍ଶ ଓ ଉପଦେଶ ପ୍ରଦାନ କରି ଅଛନ୍ତି । ସେ ଉତ୍କଳସଭାର ସଭାପତି ଏବଂ ସଭା ତାଙ୍କ ନିମିତ୍ତ ବଞ୍ଚିଅଛି । ଏଥିଉତ୍ତାରୁ ତାଙ୍କର ଉକ୍ତ ନିୟୋଗରେ ଆନନ୍ଦ ପ୍ରକାଶ ସୂଚକ ଏକ ପ୍ରସ୍ତାବ ଧାର୍ଯ୍ୟ ହେଲାରୁ ମାନ୍ୟବର ମହୋଦୟ ଗାତ୍ରୋତ୍ଥାନ କରି ପ୍ରକାଶ କଲେ ଯେ ବ୯ର୍ଷ ତଳେ ସେ ଏହି ସଭାରୁ ପ୍ରତିନିଧି ହୋଇ ମାନ୍ଦ୍ରାଜ ଗମନ କରିଥିଲେ ଏବଂ ତେତେବେଳେ ତାଙ୍କ ସଙ୍ଗେ ସଭାର ସମ୍ପାଦକ ବାବୁ ଗୌରୀଶଙ୍କର ରାୟ ଯାଇଥିଲେ । ତାଙ୍କର ସଙ୍ଗୀଠାରୁ ସେ ସମୟରେ ସେ ଯେଉଁ ଉପଦେଶ ଓ ପରାମର୍ଶମାନ ପାଇଥିଲେ ଅଦ୍ୟାପି ତାହା ତାଙ୍କର ସ୍ମରଣ ଅଛି ଏବଂ ସେ ମନେ କରୁଅଛନ୍ତି ଯେ ବଙ୍ଗ ବ୍ୟବସ୍ଥାପକ ସଭାକୁ ତାଙ୍କ ସଙ୍ଗେ ସେ ଯାଇଥିଲେ ଅନେକ କାର୍ଯ୍ୟ ହୋଇ ପାରିଥାନ୍ତା । ମାତ୍ର ଈଶ୍ୱରଙ୍କର ତାହା ଅଭିପ୍ରେତ ନୁହେ । ସେ ଏହିଠାରେ ଥାଇଁ ଦେଶର ତାବତ୍ ବିଷୟରେ ତାଙ୍କୁ ସାହାଯ୍ୟ ଓ ପରାମର୍ଶ ପ୍ରଦାନ କରିବେ । ଅନେକେ କହନ୍ତି ଯେ ଓଡ଼ିଶା ନିତାନ୍ତ ଅନୁନ୍ନତ ମାତ୍ର ସେ ତାହା ମାନିବାକୁ ପ୍ରସ୍ତୁତ ନୁହନ୍ତି । ଉନ୍ନତି ବା ଅବନତି ଦେଶର ଶିକ୍ଷିତ ଲୋକଙ୍କ ସଂଖ୍ୟା ଉପରେ ବିଶେଷ ନିର୍ଭର କରଇ ନାହିଁ । ଲୋକେ ଯଦି ଶାସନ କାର୍ଯ୍ୟର ଗୁରୁତ୍ୱ ବୁଝି ଶାସନ କାର୍ଯ୍ୟ ସମ୍ବନ୍ଧରେ ପ୍ରତିନିଧି ପ୍ରେରଣ କରି ପାରିଲେ ତାହାହେଲେ ଦେଶକୁ ନିତାନ୍ତ ଅନୁନ୍ନତ ବୋଲି କିରୂପେ ବୋଲାଯିବ । ତଦ୍‌ପରେ ଓଡ଼ିଆଙ୍କ ମଧ୍ୟରେ ଶିକ୍ଷିତ ଲୋକ ଅଳ୍ପ ହେଲେହେଁ ଏ ଦେଶବାସୀ ବଙ୍ଗାଳିଙ୍କି ମିଶାଇଲେ ତହିଁର ସଂଖ୍ୟା ଅଳ୍ପ ହେବ ନାହିଁ । ପରେ ବଙ୍ଗାଳି ଓଡ଼ିଆଙ୍କ ମଧ୍ୟରେ ପ୍ରଭେଦ ସୂଚକ ମନୋମାଳିନ୍ୟ ବାଦ କେବଳ ଯୁବାଜନୋଚିତ ଔଦ୍ଧତ୍ୟ ଭିନ୍ନ ଅନ୍ୟ ନୁହେ କାରଣ ଏହି କାର୍ଯ୍ୟରେ ବଙ୍ଗାଳିମାନେ ଓଡ଼ିଆଙ୍କ ସଙ୍ଗେ ମିଶି ସମଭାବରେ ଆନନ୍ଦ ପ୍ରକାଶ କରୁଅଛନ୍ତି । ସେ ଯେଉଁ ପଦରେ ନିଯୁକ୍ତ ହେଲେ ତହିଁର ଗୁରୁତ୍ୱ ଅଧିକ ଏବଂ ଦେଶବାସିଙ୍କ ପରାମର୍ଶ ଉପରେ ସେ ସର୍ବଦା ନିର୍ଭର କରନ୍ତି । ସମ୍ବାଦପତ୍ରର ବଳ ଏ ଦେଶରେ ନାହିଁ । ସମ୍ବାଦପତ୍ର ସବୁ ସମୟରେ ଦେଶର ଲୋକଙ୍କର ମନୋଭାବ ପ୍ରକାଶ ନ କଲେହେଁ ତାହା ଲୋକଶିକ୍ଷାର ପରମ ଉପାଦେୟ ପଦାର୍ଥ । ସେ ଅନେକ ସ୍ଥାନରୁ ଅନେକ ଅଭିବାଦନପତ୍ର ପାଇଅଛନ୍ତି ଏବଂ ତାଙ୍କର ନିୟୋଗରେ ଇଂରାଜଠାରୁ ଦେଶୀୟ ଲୋକମାନେ ସମସ୍ତେ ଆନନ୍ଦିତ ହୋଇଥିବାର ଜାଣି ସେ ଅତ୍ୟନ୍ତ ପ୍ରୀତ ହୋଇ ଅଛନ୍ତି । ସେ ବଙ୍ଗ ବ୍ୟବସ୍ଥାପକ ସଭାର ଜଣେ ମେମ୍ବର ମାତ୍ର । ସେ ସଭାରେ ଅନେକ ମେମ୍ବର ଅଛନ୍ତି । ତାଙ୍କ ମତରେ ଯେ ସଭା ସର୍ବଦା ପରିଚାଳିତ ହେବ ଏହା ଆଶା କରିବା ଦୁରାଶା ମାତ୍ର । ତଥାପି ଈଶ୍ୱର ଅନୁଗ୍ରହ ରଖିଥିଲେ ସେ କୌଣସି କାର୍ଯ୍ୟ କରିବାରେ ତିଳମାତ୍ର ତ୍ରୁଟି କରିବେ ନାହିଁ ଏବଂ ସେ କୌଣସି କାର୍ଯ୍ୟ କରି ପାରନ୍ତୁ ଅବା ନ ପାରନ୍ତୁ ଏତକ ନିଶ୍ଚୟ କରି କହି ପାରିବେ ଯେ ଲୋକେ ବର୍ତ୍ତମାନ ତାଙ୍କ ପ୍ରତି ଯେଉଁ ବିଶ୍ୱାସ ଅର୍ପଣ କରିଅଛନ୍ତି ତହିଁକି ତାଙ୍କୁ କେହି ବିଶ୍ୱାସଘାତକ ବୋଲି ଏପଛେ କହି ନ ପାରିବେ । ଏଥି ଉତ୍ତାରୁ ଦର୍ପଣର ରାଜା ଦୁଇପଦ ମିଷ୍ଟକଥା କହି ଆନନ୍ଦ ପ୍ରକାଶ କଲେ ।

ଏହି ରୂପେ ଦୋଳ ଏବଂ ବିବାହର ଆନନ୍ଦ ମଧ୍ୟରେ ଆମ୍ଭେମାନେ ମାନ୍ୟବର ମଧୁବାବୁଙ୍କର ଆନନ୍ଦମୟ ଶିବିକା ବହନ କରି ଗତ ସପ୍ତାହ ଆନନ୍ଦରେ କଟାଇ ତାଙ୍କୁ ଏଠାରୁ ବିଦାୟ ଦେଲୁଁ । ଆଜି ବୋଟରେ ସେ କଲିକତା ଯାତ୍ରା କରିବେ । ମଧୁବାବୁ ଯେ ଦେଶୀୟ ସମସ୍ତ ଲୋକଙ୍କର ପ୍ରତିନିଧି ହୋଇ ଚାଲିଲେ ଏଥିରେ ଏଥି ଉତ୍ତାରୁ ଆଉ ସନ୍ଦେହ ରହିଲା ନାହିଁ ଏଣିକି ଜଗଦୀଶ୍ୱର ତାଙ୍କୁ ଯଥେଷ୍ଟ ବଳ ଏବଂ ସ୍ୱାସ୍ଥ୍ୟ ପ୍ରଦାନ ପୂର୍ବକ ଦେଶ ହିତକର କାର୍ଯ୍ୟରେ ଯଶସ୍ୱୀ କରାଇଲେ ଆମ୍ଭେମାନେ ଚରିତାର୍ଥ ହେବୁଁ ।

*ଭା/୩୧ଗ, ସଂ୧୦ଖ୍ୟା, ୭/୩/୧୮୯୬*

## [ଓଡିଆ ଭାଷାକୁ ପ୍ରାଧାନ୍ୟ]

କଟକ ରେବନ୍‌ସା କଲେଜରୁ ଯେଉଁମାନେ ବି, ଏଲ୍, ପରୀକ୍ଷା ଦେଇ ଓଡ଼ିଶାରେ ଉକାଲତି କରୁଅଛନ୍ତି ଏବଂ ସେହି ହେତୁ ଯେଉଁମାନେ ଓଡ଼ିଆଭାଷା ଏବଂ ବିଶେଷ ଅବସ୍ଥା ଭଲ ଜାଣନ୍ତି ଅନ୍ୟାନ୍ୟ ବ୍ୟକ୍ତି ଅପେକ୍ଷା ଓଡ଼ିଶାରେ ମୁନସଫି ପଦ ପାଇବାର ଉତ୍କୃଷ୍ଟ ଦାବିପ୍ରତି ଗବର୍ଣ୍ଣମେଣ୍ଟ ସୁବିଚାର କରିବେ କି ?

ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ବଙ୍ଗୀୟ ବ୍ୟବସ୍ଥାପକ ସଭାରେ ଏହି ପ୍ରଶ୍ନ କରିବାରେ ମାନ୍ୟବର ଶ୍ରୀଯୁକ୍ତ କଟନ ସାହେବ ଉତ୍ତର ଦେଲେ କି ମାନ୍ୟବର ଛୋଟ ଲେଫ୍‌ଟନାଣ୍ଟ ଗବର୍ଣ୍ଣର ପତ୍ର ଦ୍ୱାରା ହାଇକୋର୍ଟଙ୍କ ସହିତ ଏ ବିଷୟର ପରାମର୍ଶ କରିବେ ।

*ଭାଗ୧୧, ସଂ୧୪ଖ୍ୟା, ୪/୪/୧୮୯୬*

## ପ୍ରାପ୍ତ ।

## ସଙ୍ଗୀତମାଳାର ସଂକ୍ଷିପ୍ତ ସମାଲୋଚନା ।

"Music" Said Luther "is a fair and glorious gift from God"

ଯାହାଙ୍କ ହୃଦୟ, ବ୍ୟବହାର ଓ ବାକ୍ୟ ମଧୁମୟ- ସଙ୍ଗୀତମୟ, ଆଜି ସେହି ଭକ୍ତିଭାଜନ କବି ମଧୁସୂଦନଙ୍କ ବିରଚିତ ମଧୁମୟ ସଙ୍ଗୀତମାଳା ଉପହାର ପାଇ ପରମ ଉପକୃତ ହେଲୁଁ । ଏ ସଙ୍ଗୀତମାନ ପାରମାର୍ଥିକ ଭାବରେ ରଚିତ । ଏହାର ସମାଲୋଚନା ହୋଇ ନ ପାରେ । ମାତ୍ର କବିଙ୍କର ସରସ କବିତାର ଗୁଣାଲୋଚନା କରାଯାଉ । କବି "ନିବେଦନ"ରେ କହିଅଛନ୍ତି ସେ ବଙ୍ଗଳା, ସଂସ୍କୃତ ଓ ସୌରାଷ୍ଟ୍ର ପ୍ରଭୃତି ରାଗ ରାଗିଣୀ ସଂଯୁକ୍ତରେ ଏହି ସଙ୍ଗୀତମାନ ରଚନା କରି ସନ୍ଦେହ କରିଅଛନ୍ତି, ଏ ରାଗିଣୀମାନ ବା ଉତ୍କଳୀୟମାନଙ୍କର ହୃଦୟଗ୍ରାହୀ ହୋଇ ନ ପାରେ । କବିଙ୍କର ଏ ସନ୍ଦେହ ବୃଥା । କାରଣ ପାଶ୍ଚାତ୍ୟ ପଣ୍ଡିତପ୍ରବର Haleny କହିଅଛନ୍ତି "Music is an art that God has given us, in which the voices of all nations may unite their prayers in one harmonians rhythm" ସଙ୍ଗୀତ ବିଭୁଦତ୍ତ କୌଶଳ, ଯହିଁରେ ସକଳ ଜାତି ସମ୍ମିଳିତ ହୋଇ ତାନ ଲୟ ସ୍ୱରରେ ତାଙ୍କ ଗୁଣ ଗାନ କରି ପାରନ୍ତି ।

ଭାଷା ସୃଷ୍ଟି ପୂର୍ବରୁ ସଙ୍ଗୀତର ସୃଷ୍ଟି ହୋଇଅଛି । ସୃଷ୍ଟିର ଆଦିକାଳରୁ ସଙ୍ଗୀତ । ପ୍ରକୃତି ଅବ୍ୟକ୍ତ ସଙ୍ଗୀତରେ ଅନୁକ୍ଷଣ ପୂର୍ଣ୍ଣ ରହିଅଛି । ଆଦିମ କାଳରୁ ମନୁଷ୍ୟ - ଶ୍ରମର ମଧୁରସଙ୍ଗୀ - ସଙ୍ଗୀତ । ନାବିକ ନଦୀସ୍ରୋତରେ ସଙ୍ଗୀତଲହରୀ ତୋଳି ନାବ ଚଳାଉଅଛି, ଗୋପାଳକ ଗୋରୁ ଗୋଠରେ ଆପଣା ମନକୁ ଚାହିଁ ଗୀତ ଗାଉଅଛି, କୃଷାଣ କୃଷି କ୍ଷେତ୍ରରେ ହଳ ଚାଳନ ବେଳେ ଲଙ୍ଗଳିଆ ଗୀତ ଗାଇ ସୁଖୀ ହେଉଅଛି । ସଙ୍ଗୀତ ଏ ମର ସଂସାରରେ ବିଭୁଦତ୍ତ ସଞ୍ଜୀବନୀ । ଶୋକ, ତାପ, ଶ୍ରମ ଜନିତ କ୍ଳେଶମାନ ଦୂର କରିବାକୁ ଏକା ସଙ୍ଗୀତହିଁ ମୋହନ ମନ୍ତ । ଯାହାଙ୍କର ପ୍ରଦତ୍ତ ସଙ୍ଗୀତ ତାହାଙ୍କ ପ୍ରୀତିରେ ଏହାର ଗାୟକ ହେଲେ ସମ୍ୟକ୍ କଲ୍ୟାଣ ସାଧିତ ହୁଏ ।

କବି ଗାଉଅଛନ୍ତି ;-

ମୋ ମନ ସୁମନ ଦେଇ ହରିପଦ ପୂଜିବି ରେ,
ଅଧମ ତାରଣ ହରି, ଏ ଅଧମେ କୃପା କରି,
ଆସିବେ ହୃଦ କୁଟୀରେ ସଦାନନ୍ଦେ ମଜ୍ଜିବିରେ ।
ସେ ବିଶ୍ୱ ମୋହନ ମୁଖ ଦେଖି ପାଶୋରିବି ଦୁଃଖ
ନରକର କୀଟ ମୁହିଁ, ଦେବଭାବ ଭଜିବିରେ ।
ଅନାଇଁ ଥିବି ତାହାଙ୍କୁ କହିବି ପ୍ରାଣ ନାହାଙ୍କୁ
ସେ ପଦ ରାଜିବ ଛାଡ଼ି, କାହିଁ ଆଉ ନ ଯିବିରେ ।

ଏ ଭାବ ନିର୍ମଳ-ଅତଳସ୍ପର୍ଶ । ଅନନ୍ତ ଦେବ, ଗୃହଦେବତାରୂପେ କବିଙ୍କ ପୂଜା ଗ୍ରହଣ କରୁଅଛନ୍ତି । ବିଭୁ ପୂଜନରେ କବି ନରକର କୀଟକୁ ଦେବତ୍ୱ ଦାନ କରୁଅଛନ୍ତି । ନିଷ୍କାମ ପ୍ରେମ ଢାଳି ଦେଇ ସଖ୍ୟଭାବରେ ପ୍ରାଣ ନାହାଙ୍କର ରାଜୀବ ପଦରେ ଲୟ ଲଗାଇ ଅଛନ୍ତି । ଶତ ସଙ୍ଗୀତ ଥାଉ ତେଣିକି ଏହି ଏକ ସଙ୍ଗୀତ ଭାଷାର ସମ୍ପଦ -ଭାବର ଭଣ୍ଡାର ।

"Music" Said Plato "is a moral law." It gives a soul to the Universe, wings to the mind, flight to the imagination, a charm to sadness, gaiety and life to every thing."

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଜ୍ଞାନୀ ଶ୍ରେଷ୍ଠ ପ୍ଲେଟୋ କହିଅଛନ୍ତି ସଙ୍ଗୀତ, ନୀତିସଙ୍ଗୀତ। ଏହା ଜଗତକୁ ଆତ୍ମା, ମନକୁ ପକ୍ଷ , କଳ୍ପନାକୁ ଡେଣା ବିଷନ୍ନତାକୁ ପ୍ରସନ୍ନତା ଏବଂ ପ୍ରତ୍ୟେକ ପଦାର୍ଥକୁ ପ୍ରମୋଦ ଓ ଜୀବନ ଦାନ କରେ।

କବି, ପ୍ରଥମ ସଙ୍ଗୀତରେ ଏହି ଭାବର ଅବତାରଣା କରି ଅଛନ୍ତି ଯଥା;

ଭାଟିଆରୀ-ଆଡ଼ତାଳୀ।
ଏ ଜୀବନ ନୁହେ ବୃଥା ଖେଳା
ଚେତରେ ବହନ ଗଲା ବେଳା;'
ପ୍ରତି ନିମେଷରେ ଯାଉଅଛି ଚାଲି
ଧର ରେ ନ କର ଲବେ ହେଳା।
ସ୍ୱପ୍ନ ମାୟା ନୁହେ ଏ ଭୁବନ
ଏ ମହା ଶିକ୍ଷାର ନିକେତନ
ଯେବେ ଆରେ ଜୀବ ଆସିଛୁ ଏଠାକୁ।
ସାଧିଯା ବିଧିର ଇଷ୍ଟ ଲୀଳା।
ଅତୀତର ବୃଥା ଭାବନାରେ
ଅବା ଭବିଷ୍ୟତ୍ ଛଳନାରେ
ନ ଭୁଲ ରେ ଭାଇ ବର୍ତ୍ତମାନେ ଥାଇ
ଲକ୍ଷ ସ୍ଥିର କର ଫେଡ଼ି ଡୋଳା।
ବିଳାସ ଆଳସ୍ୟ ପରିହରି
ମହାଜନ ମାର୍ଗ ଅନୁସରି
ଜଗତର ସେବା କର ପ୍ରାଣ ପଣେ,
ଏ ଜଗତ ନୁହେ ମିଛ ମେଳା।
ପ୍ରଭୁ କାର୍ଯ୍ୟ ସାଧି ନିରନ୍ତର
ହୁଅ ନିତି ନିତି ଅଗ୍ରସର
ଭବସିନ୍ଧୁ ତରି ଯାଅ ପର ଲୋକେ
ଧରି ହରି ପାଦ-ପଦ୍ମ-ଭେଳା।

ଆମ୍ଭେମାନେ ବାହୁଲ୍ୟ ଭୟରେ ଆଉ ଅଗ୍ରସର ହେଲୁଁ ନାହିଁ। ବିଭୁ ଭକ୍ତି-ରସିକ ପାଠକ ପାଠିକାମାନେ ନିତ୍ୟ ଏ ସଙ୍ଗୀତ ଗାନ କରି କବିଙ୍କର ଉଦ୍ଦେଶ୍ୟ ଓ ଆପଣା ଜୀବନକୁ କୃତାର୍ଥ କରନ୍ତୁ।

ମହିଷାଦଳ ଶ୍ରୀ ଭୋଳାନାଥ ସାମନ୍ତରାୟ

୬।୩।୯୬

*ଭା୩୧ଗ, ସଂ୧୪ଖ୍ୟା, ୪।୪।୧୮୯୬*

## ପ୍ରେରିତପତ୍ର।

## [ଓଡିଆ ଭାଷା ପ୍ରତି ଅବହେଳା ]

ଶ୍ରୀଳ ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସନ୍ନିଧାନେଷୁ।

ମହାଶୟ !

ନିମ୍ନଲିଖିତ କତିପୟପଙ୍କ୍ତି ଆପଣଙ୍କର ଜଗଦ୍‌ବିଖ୍ୟାତ ପତ୍ରିକାରେ ସ୍ଥାନ ଦେଇ ଚିରବାଧିତ କରିବା ହେବେ।

ବିଗତ ଫିବ୍ରୋରୀ ମାସରେ ଗୃହୀତ ହୋଇଥିବା ମୋକ୍ତାରୀ ପରୀକ୍ଷାରେ ଓଡ଼ିଶାବିଭାଗରୁ ଏକବିଂଶତି ଜଣ ଛାତ୍ର ପରୀକ୍ଷା ଦେଇ ଥିଲେ ସେମାନଙ୍କ ମଧ୍ୟରୁ ଜ୭ଣ ଛାତ୍ର ମୌଖିକ ପରୀକ୍ଷାରେ ପାଶ କରିଥିଲେ ଉକ୍ତ ସାତଜଣ ମଧ୍ୟରୁ ଏକଜଣ ଇଂରେଜୀଭାଷାରେ ଅବଶିଷ୍ଟ ଜ୬ଣ ଓଡ଼ିଆଭାଷାରେ ଉତ୍ତର ଲେଖି ଥିଲେ ଦୁଃଖର ବିଷୟ ଯେ ସେମାନଙ୍କ ମଧ୍ୟରୁ ଜଣେ କେହି ସୁଦ୍ଧା ପରୀକ୍ଷୋତ୍ତୀର୍ଣ୍ଣ ହୋଇ ନାହାନ୍ତି ।

ଚଳିତ ସପ୍ତାହରେ କେତେକଜଣ ପରୀକ୍ଷାର୍ଥୀ ଯେଉଁମାନେ କି ଓରେଲ ଏକଜାମିନରେ ପାଶ କରିଥିଲେ ଉକ୍ତ ପରୀକ୍ଷା ଫଳରେ ଅସନ୍ତୁଷ୍ଟ ହୋଇ ସେମାନେ ମୋକ୍ତାରୀ ପରୀକ୍ଷାର ସେକ୍ରେଟରୀ ମହାଶୟଙ୍କ ନିକଟ ସେମାନଙ୍କ ଉତ୍ତର କାଗଜ ପୁନରାୟ ଜଣେ ଉତ୍କଳଭାଷାଜ୍ଞ ଓକିଲଙ୍କଦ୍ୱାରା ଦେଖାଯିବା ନିମନ୍ତେ ଆବେଦନ କରିଅଛନ୍ତି ସେମାନଙ୍କର ବିଶ୍ୱାସ ଯେ ଓଡ଼ିଆଭାଷାରେ ପରୀକ୍ଷା ଦେଇଥିବାରୁ ପରୀକ୍ଷକ ମହାଶୟ ଓଡ଼ିଆଭାଷା ନ ଜାଣି ଥିବାରୁ ଏପରି ଦୁର୍ଘଟନା ଘଟିଅଛି । ସେମାନଙ୍କର ବିଶ୍ୱାସ ଯେ ସମ୍ପୂର୍ଣ୍ଣ ଅମୂଳକ ଏହା କୁହାଯାଇ ନ ପାରେ । ବର୍ତ୍ତମାନ ଭରସା କରୁ ସମ୍ପାଦକ ମହାଶୟ ଗରିବ ଉତ୍କଳବାସୀଙ୍କ ପ୍ରତି ସଦୟ ହୋଇ ଜଣେ ଓଡ଼ିଶାର ଉକୀଲଙ୍କଦ୍ୱାରା ପୁନରାୟ ଦେଖାଯିବା ସକାଶେ ଅନୁମତି ଦେଲେ ସୁଫଳ ଫଳିବାର ସମ୍ଭାବନା । ଇତି ।

୨୦।୬।୯୬ ବଶମ୍ବଦ

ଶ୍ରୀ ଗୌରୀଚରଣ ଦାସ

ମୋକ୍ତାର ଯାଜପୁର

*ଭାଗ୩୧ଗ, ସଂ୨୧ଖ୍ୟା, ୨୩।୫।୧୮୯୬*

## [ଓଡିଶାର ସାହିତ୍ୟିକ ଇତିବୃତ୍ତି ]

ବାବୁ କୃଷ୍ଣପ୍ରସାଦ ଚୌଧୁରୀ ଓଡିଶାର ସାହିତ୍ୟିକ ଇତିବୃତ୍ତି ସଂଗ୍ରହ ବିଷୟରେ ଏଥି ପୂର୍ବେ ଗୋଟିଏ ପ୍ରସ୍ତାବ ଏ ପତ୍ରିକାରେ ପ୍ରକାଶ କରିଥିଲେ ସମ୍ପ୍ରତି ତହିଁର ବ୍ୟାଖ୍ୟା ସୂଚକ ଏକ ଦୀର୍ଘପତ୍ର ସମ୍ବଲପୁର ହିତୈଷିଣୀରେ ପ୍ରକାଶ କରିଅଛନ୍ତି ଏବଂ ସହଯୋଗୀ ତହିଁର ପୋଷକତା କରି ସାହାଯ୍ୟ ସ୍ୱରୂପ କେତେକ ଉପଦେଶ ଦେଇଅଛନ୍ତି । ଓଡିଶାରେ ସବୁ ବିଷୟର ଅଭାବ । ଯେଉଁ ସାଧାରଣ ଅଭାବ ପୂର୍ଣ୍ଣ କରିବାକୁ ଯେ ଚେଷ୍ଟା କରିବ ସର୍ବ ସାଧାରଣଙ୍କର ଶ୍ରଦ୍ଧା ଓ ଭକ୍ତିର ପାତ୍ର ହେବ ସନ୍ଦେହ ନାହିଁ କୃଷ୍ଣପ୍ରସାଦ ବାବୁ ଯେଉଁ ବିଷୟର ଅବତାରଣ କରିଅଛନ୍ତି ଯେବେ ସ୍ୱୟଂ ତହିଁରେ କ୍ରମାଗତ ଚେଷ୍ଟା ଓ ଯତ୍ନ କରିବେ ତେବେ କେତେକାଂଶରେ ସଫଳ ହୋଇ ପାରିବେ । ଅନ୍ୟମାନଙ୍କର ସାହାଯ୍ୟ ପାଇବା ସମୟ ସାପେକ୍ଷ । ଅନ୍ତତଃ ଉତ୍ତମ ବିଷୟରେ ଚେଷ୍ଟା କରି ଦେଖିବ ଭଲ ଏବଂ କୃଷ୍ଣପ୍ରସାଦ ବାବୁଙ୍କପରି ଓଡିଶାର ଏକ ଏକ ଲୋକ ଯେବେ ଏକ ଏକ ବିଷୟରେ ଚେଷ୍ଟା କରିବେ ତେବେ ଅନେକ ଉପକାର ହେବ । ପରନ୍ତୁ କୃଷ୍ଣପ୍ରସାଦ ବାବୁ ଯେ କହି ଅଛନ୍ତି କି ରାଜକୀୟ ବା ସାମାଜିକ ଉନ୍ନତି ପ୍ରକୃତ ଉନ୍ନତି ନୁହେ ଧର୍ମ ଓ ନୀତିର ଉନ୍ନତିହିଁ ପ୍ରକୃତ ଉନ୍ନତି ଏବଂ ସାହିତ୍ୟ ଚର୍ଚ୍ଚା ସେହି ଉନ୍ନତିର ନାମାନ୍ତର ମାତ୍ର, ଏକଥା ଆମ୍ଭମାନଙ୍କୁ ବଡ ଅଡୁଆ ଜଣା ଯାଉଅଛି । ଧର୍ମ ଗୋଟିଏ ବହୁ ବ୍ୟାପକ ଶବ୍ଦ । ରାଜନୀତି ସମାଜ ନୀତି ଓ ସକଳ ନୀତି ଏହାର ଅନ୍ତର୍ଗତ ଅଟେ । ଏମନ୍ତ ସ୍ଥଳେ ରାଜକୀୟ ବା ସାମାଜିକ ଉନ୍ନତି ପ୍ରକୃତ ଉନ୍ନତି ନୁହେ ଏହା କିପରି ବୋଲାଯିବ ? ବାସ୍ତବରେ ରାଜକୀୟ ଓ ସାମାଜିକ ନିୟମମାନଙ୍କର ମୂଳ ଉଦ୍ଦେଶ୍ୟ ଧର୍ମରକ୍ଷା ଏବଂ ସେ ସମସ୍ତର ଉନ୍ନତି ସଙ୍ଗେ ଧର୍ମର ଉନ୍ନତି ଜଡ଼ିତ ଅଛି । ଏକା ସାହିତ୍ୟ ଚର୍ଚ୍ଚରେ ଧର୍ମ ଉନ୍ନତି ସମ୍ଭବ ଅନ୍ୟ କାହିଁରେ ନାହିଁ ଏକଥା ଆମ୍ଭମାନଙ୍କ ମନକୁ ଆସୁ ନାହିଁ । ଅତଏବ ଯେମନ୍ତ ସାହିତ୍ୟ ଚର୍ଚ୍ଚରେ ତେମନ୍ତ ରାଜକୀୟ ଏବଂ ସାମାଜିକ ଚର୍ଚ୍ଚରେ ଯୋଗ୍ୟ ଲୋକଙ୍କର ମନୋଯୋଗୀ ହେବା ଉଚିତ ବରଂ ଯେପରି ସମୟ ପଡିଅଛି ରାଜକୀୟ ଏବଂ ସାମାଜିକ ଉନ୍ନତିର ଅଧିକ ଚିନ୍ତା କରିବା ଆବଶ୍ୟକ କାରଣ ପେଟ ନ ପୂରିଲେ ସାହିତ୍ୟ ଚର୍ଚ୍ଚର ଅବକାଶ ମିଳିବ ନାହିଁ ।

*ଭାଗ୩୧ଗ, ସଂ୪୩ଖ୍ୟା, ୭।୧୧।୧୮୯୬*

# ୧୮୯୭

## [ପ୍ରାପ୍ତ ପତ୍ର : ପାପର ପ୍ରାୟଶ୍ଚିତ୍ତ]

ମହାଶୟ !

"ଉତ୍କଳ ସାହିତ୍ୟ" ପ୍ରଥମଭାଗ ୪ର୍ଥ ଓ ୫ମ ସଂଖ୍ୟାରେ ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନ ମହୋଦୟଙ୍କର "ପାପର ପ୍ରାୟଶ୍ଚିତ୍ତ" ଶୀର୍ଷକ ଗୋଟିଏ ପ୍ରବନ୍ଧ ପ୍ରକାଶିତ ହୋଇଅଛି । ପାଠକମାନେ ଟିକିଏ ଆୟାସ ସ୍ୱୀକାର ପୂର୍ବକ ସାଧାରଣ ବ୍ରାହ୍ମ ସମାଜର ଭକ୍ତିଭାଜନ ପ୍ରଚାରକ ଶୀଯୁକ୍ତ ନଗେନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟ ମହୋଦୟଙ୍କ ପ୍ରଣୀତ "ଧର୍ମ୍ମ ଜିଜ୍ଞାସା" ନାମକ ପୁସ୍ତକ ଦ୍ୱିତୀୟ ଭାଗର ୧୨୯ପୃଷ୍ଠା ଠାରୁ ୧୫୬ ପୃଷ୍ଠା ପର୍ଯ୍ୟନ୍ତ ବ୍ୟାପୀ "ପାପର ପ୍ରାୟଶ୍ଚିତ୍ତ" ନାମକ ଦୀର୍ଘ ପ୍ରବନ୍ଧର ସହିତ ନୀଳମଣି ବାବୁଙ୍କ "ପାପର ପ୍ରାୟଶ୍ଚିତ୍ତ" ଶୀର୍ଷକ ପ୍ରବନ୍ଧଟି ମିଳାଇ ଦେଖିଲେ ଜାଣି ପାରିବେ ଯେ,ଶେଷୋକ୍ତ ପ୍ରବନ୍ଧଟି ପୂର୍ବୋକ୍ତ ପ୍ରବନ୍ଧର ସାରାଂଶ ସଙ୍କଳନ ମାତ୍ର । ସମାଲୋଚ୍ୟ ପ୍ରବନ୍ଧରେ ନୀଳମଣି ବାବୁଙ୍କ ନିଜସ୍ୱ ଯାହା ଅଛି ,ତାହା କିଛିହିଁ ନୁହେଁ କହିଲେ ଚଳେ । ଅଧିକନ୍ତୁ ବଙ୍ଗଭାଷାନଭିଜ୍ଞ ପାଠକମାନଙ୍କ ଆକ୍ଷିରେ ଧୂଳି ନିକ୍ଷେପ କରିବା ଅଭିପ୍ରାୟରେ ସୁଚତୁର ବିଦ୍ୟାରତ୍ନ ମହୋଦୟ ସ୍ୱୀୟ ପ୍ରବନ୍ଧର ଠାବେ ଠାବେ ନଗେନ୍ଦ୍ର ବାବୁଙ୍କ ଭାଷା ମଧ୍ୟ ଖଞ୍ଜିଦେବାକୁ ଛାଡି ନାହାନ୍ତି ।

ଯଥା : -

ବଙ୍ଗଳା- ପାପବୋଧ ଓ ପୁଣ୍ୟବୋଧ ସ୍ୱାଭାବିକ ଓ ବିଶ୍ୱଜନୀନ । ତଥାଚ ଇହା ନିଶ୍ଚୟ ଯେ, ପାପ ଓ ପୁଣ୍ୟେର ସ୍ୱରୂପ ବିଷୟେ ଅତି ଅଳ୍ପ ଲୋକେର ପ୍ରକୃତ ଜ୍ଞାନ ଆଛେ । ପାପ କି, ଓ ପୁଣ୍ୟ କି, ଜିଜ୍ଞାସା କରିଲେ ବିଭିନ୍ନ ସମ୍ପ୍ରଦାୟେର ମଧ୍ୟେ ଅତି ଅଳ୍ପ ଲୋକେଇ ସଦୁତ୍ତର ପ୍ରଦାନ କରିତେ ପାରେନ ।

ଓଡିଆ- ପାପପୁଣ୍ୟ ବୋଧ ସ୍ୱାଭାବିକ ଓ ସାର୍ବଜନୀନ । ଏହା ହେଲେ ସୁଦ୍ଧା ପାପ ଓ ପୁଣ୍ୟର ସ୍ୱରୂପ ସମ୍ବନ୍ଧରେ ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଚିରବିବାଦ ଲାଗିଅଛି ।

ବଙ୍ଗଳା- ଇଂରାଜୀ ଭାଷାତେଓ Atonement(ପ୍ରାୟଶ୍ଚିତ୍ତ) ଶବ୍ଦେର ବାକ୍ୟାର୍ଥେ At- one-ment ଏକୀଭୂତ ହଓୟା ଅର୍ଥାତ୍ ପାପ କରିୟା ପବିତ୍ର ସ୍ୱରୂପ ପରମେଶ୍ୱର ହଇତେ ଦୂରେ ପଡିୟା ଛିଲାମ ,ବିଛିନ୍ନ ହଇୟା ଛିଲାମ, ଆବାର ମିଳିତ ହଇଲାମ । ପ୍ରାୟଶ୍ଚିତ୍ତ ସେଇ ଦୂରତ୍ୱ ବିନାଶ କରିଲ , ଏକୀଭୂତ କରିଲ, ମିଳିତ କରିଲ ।

ଓଡିଆ- "ପ୍ରାୟଶ୍ଚିତ୍ତର" ଇଂରେଜୀ ପ୍ରତିଶବ୍ଦ Atonement, ଏହି ଶବ୍ଦର ବାକ୍ୟାର୍ଥ ଏହି ଯେ At- one-ment, ଏକୀଭୂତ ହେବା, ଅର୍ଥାତ୍ ପାପଲିପ୍ତ ହୋଇ ପବିତ୍ର ସ୍ୱରୂପ ପରମେଶ୍ୱରଙ୍କଠାରୁ ବିଚ୍ୟୁତ ହୋଇ ଦୂରରେ ପଡିଥିଲି – ବିଚ୍ଛିନ୍ନ ହୋଇଥିଲି, ପୁନଶ୍ଚ ମିଳିତ ହେଲି , ପ୍ରାୟଶ୍ଚିତ୍ତ ସେହି ଦୂରତ୍ୱ ବିନାଶ କରି ଏକୀଭୂତ ବା ମିଳିତ କରିଦେଲା ।

ବଙ୍ଗଳା- ପାପ କରିୟା ତନ୍ନିମିତ୍ତ ସନ୍ତାପ କରିଲେ ସେଇ ପାପ ହଇତେ ସେ ମୁକ୍ତ ହୟ। ଏମନ କର୍ମ୍ମ ଆର କରିବ ନା , ଏଇ ପ୍ରତିଜ୍ଞା କରିୟା ତାହା ହଇତେ ନିବୃତ ହଇଲେ ସେ ପବିତ୍ର ହୟ ।

ଓଡିଆ- ପାପ କରି ତନ୍ନିମିତ୍ତ ସନ୍ତାପ କଲେ ସେହି ପାପରୁ ସେ ମୁକ୍ତ ହୁଏ । ଏପରି କର୍ମ୍ମ ଆଉ କରିବି ନାହିଁ , ଏହି ପ୍ରତିଜ୍ଞା କରି ତହିଁରୁ ନିବୃତ୍ତ ହେଲେ ସେ ପବିତ୍ର ହୁଏ । ଆଉ ଉଦ୍ଧୃତ କରିବା ଅନାବଶ୍ୟକ, ମଧ୍ୟ ସ୍ଥାନାଭାବ । ଉପସଂହାରରେ ପ୍ରବନ୍ଧ ଲେଖକଙ୍କ ସହିତ ଏକମତ ହୋଇ ଆମ୍ଭେମାନେ ମଧ୍ୟ କହୁ ଅଛୁଁ ଯେ, ବଙ୍ଗଳା ପ୍ରବନ୍ଧର ଭାବ, ଚିନ୍ତା ଓ ଭାଷାଦି ଚୋରୀ କରିବାକୁ ଯାଇ ସେ ଯେଉଁ ପାପ କରିଅଛନ୍ତି , ତାହାର

ଏକମାତ୍ର ପ୍ରାୟଶ୍ଚିତ୍ତ ଅନୁତାପ । ଅନୁତପ୍ତ ହୋଇ ଏପରି କର୍ମ୍ମ ଆଉ କରିବି ନାହିଁ , ଏହି ପ୍ରତିଜ୍ଞା କରି ତହିଁରୁ ସେ ଯଦି ନିବୃତ୍ତ ହୁଅନ୍ତି ,ତେବେତ ମଙ୍ଗଳ । ନତୁବା "ଉତ୍କଳସାହିତ୍ୟ" ରେ "ପାପର ପ୍ରାୟଶ୍ଚିତ୍ତ" ଶୀର୍ଷକ ପ୍ରବନ୍ଧାଦି ଲେଖି ମୁକ୍ତି ଓ ପବିତ୍ରତା ଲାଭର ଆକାଂକ୍ଷା ବିଡମ୍ବନା ମାତ୍ର ନୁହେଁ କି ?

୧୦।୫।୯୭ ଆପଣଙ୍କର

କଟକ ପ୍ରକୃତବାଦୀ,

*ଭାଗ୩୨ଗ, ସଂ୨୦ଖ୍ୟା, ୧୫।୫।୧୮୯୭*

## [ ଓଡିଆ ପୁସ୍ତକ ପ୍ରକାଶନ ]

ଛାପାପୁସ୍ତକ ପ୍ରକାଶ ବିଷୟକ ସନ ୧୮୯୫ ସାଲର ସରକାରୀ ରିପୋଟରେ ଓଡିଆ ପୁସ୍ତକ ସମ୍ବନ୍ଧରେ ଲେଖା ଅଛି କି "ସେହି ବର୍ଷ ଖ୧୧୦ଣ୍ଡ ପୁସ୍ତକ ପ୍ରାପ୍ତ ହୋଇଥିଲା । ତହିଁ ପୂର୍ବବର୍ଷରେ ପ୍ରାପ୍ତ ହେବା ପୁସ୍ତକର ସଂଖ୍ୟା ଖ୪୫ ଣ୍ଡ ଥିଲା । ଅଧିକାଂଶ ପୁସ୍ତକ ବଙ୍ଗଳାରୁ ଅନୁବାଦିତ ସ୍କୁଲ ପାଠ୍ୟପୁସ୍ତକ ଏବଂ କ୍ଷୁଦ୍ର କ୍ଷୁଦ୍ର ପଦ୍ୟ ଓ ଧର୍ମପୁସ୍ତକ ଅଟେ । କେବଳ ଏକଖଣ୍ଡ ପୁସ୍ତକ ବିଶେଷ ଉଲ୍ଲେଖର ଯୋଗ୍ୟ ଯଥା ବାବୁ ରାମଶଙ୍କର ରାୟଙ୍କ ରଚିତ ବିବାସିନୀ । ଏହା ଖଣ୍ଡିଏ ଉପନ୍ୟାସ ଏବଂ ଏଥିରେ ଓଡିଶା ଯେଉଁ ସମୟରେ ମରହଟାଙ୍କର ଆଧିପତ୍ୟରେ ଥିଲା ସେ ସମୟର ସାମାଜିକ ଏବଂ ରାଜକୀୟ ଅବସ୍ଥା ଚିତ୍ରିତ ହୋଇ ଅଛି । ସମ୍ଭବତଃ ଏ ପୁସ୍ତକ ଓଡିଆଭାଷାର ପ୍ରଥମ ଉପନ୍ୟାସ ଅଟେ । ସହସା ଦେଖାଯାଏ ଯେ ହିନ୍ଦି ଏବଂ ଓଡିଆ ଲେଖକମାନେ ସେମାନଙ୍କ ବଙ୍ଗାଳି ଭାଇଙ୍କୁ ଆଦର୍ଶସ୍ୱରୂପ ମଣନ୍ତି ଏବଂ ସେ ସବୁ ଭାଷାଲିଖିତ ଅଧିକାଂଶ ପୁସ୍ତକ ବିଶେଷତଃ ଯେ ସମସ୍ତ ସ୍କୁଲର ବ୍ୟବହାର୍ଯ୍ୟ ସେ ସମସ୍ତ ଅଳ୍ପ ବା ଅଧିକ ପରିବର୍ତ୍ତନ ସହିତ ବଙ୍ଗଳା ପୁସ୍ତକର ଅନୁବାଦ ଛଡା ଆଉ କିଛି ନୁହେ ।" ଆମ୍ଭେମାନେ ଆଶା କରୁଁ ଓଡିଆ ସ୍କୁଲ ପାଠ୍ୟପୁସ୍ତକ ନିର୍ବାଚନ କମିଟି ଏଥିର ବିଚାର କରିବେ । ସ୍କୁଲ ପୁସ୍ତକ ଏକହାତିଆ ହେବାରୁ ଏପରି ମନ୍ଦ ଫଳ ଘଟୁଅଛି ଯେବେ ସେହି ଏକହାତିଆ ବ୍ୟବସାୟ ଭାଙ୍ଗିଯିବ ଏବଂ ଭଲ ଭଲ ପୁସ୍ତକ ବାହାରକରିବା କାରଣ ସମୁଚିତ ଉତ୍ସାହ ଦିଆଯିବ ତେବେ ଅବଶ୍ୟ ସୁଫଳ ଫଳିବ ।

*ଭାଗ୩୨ଗ, ସଂ୨୨ଖ୍ୟା, ୨୯।୫।୧୮୯୭*

## ପଣ୍ଡିତ-ସର୍ବସ୍ୱ ।

ଅଷ୍ଟମଲ୍ଲିକାଧିପତି ମହାରାଜା ଶ୍ରୀ ମହେନ୍ଦ୍ର ଦେବ ଉତ୍କଳ ଅନୁବାଦ ସହିତ ଉତ୍କଳର ଅତ୍ୟନ୍ତ ଆଦରଣୀୟ ପଣ୍ଡିତ ସର୍ବସ୍ୱ ନାମକ ସଂସ୍କୃତ ସ୍ମୃତି ଗ୍ରନ୍ଥ ଅନୁବାଦ ସହିତ ପ୍ରକାଶ କରି ବିନାମୂଲ୍ୟରେ ବିତରଣ କରୁଅଛନ୍ତି ଏବଂ ଆମ୍ଭେମାନେ ଏଥିରୁ ଏକ ଏକ ଖଣ୍ଡ ପ୍ରାପ୍ତ ହେବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏହା କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ଏବଂ ସେହି ଯନ୍ତ୍ରାଳୟର ପୂର୍ବ ଏବଂ ବର୍ତ୍ତମାନ ପଣ୍ଡିତ ଦ୍ୱୟ ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣ ଏବଂ ଶ୍ରୀ ସର୍ବେଶ୍ୱର ଆଚାର୍ଯ୍ୟଙ୍କ ଦ୍ୱାରା ଅନୁବାଦିତ । ଏ ପୁସ୍ତକ ଅନୁବାଦ ସହିତ ରଏଲ ଆଠପୃଷ୍ଠା ଆକୃତିର ପୃ ୩୬୧ ଷ୍ଠା ସୁତରାଂ ଖଣ୍ଡିଏ ବୃହତ୍ ପୁସ୍ତକ ଅଟେ ଏବଂ ଏହାର ଛାପା ଓ କାଗଜ ଭଲ । ସର୍ବ ସାଧାରଣଙ୍କର ସୁବିଧା ନିମନ୍ତେ ପୁସ୍ତକର ପ୍ରାନ୍ତ ଭାଗରେ ଖଣ୍ଡିଏ ବିସ୍ତାରିତ ସୂଚିପତ୍ର ପ୍ରଦତ୍ତ ହୋଇଅଛି ଯେ ଯାହାର ଯେଉଁ ବିଷୟରେ ବ୍ୟବସ୍ଥା ଜାଣିବାର ଆବଶ୍ୟକ ସେ ତକ୍ଷଣାତ୍ ତାହା ବାହାର କରିପାରିବେ । ଏ ଗ୍ରନ୍ଥ କାହାଦ୍ୱାରା କେଉଁ ସମୟରେ ରଚିତ ହୋଇଅଛି ଜଣା ଯାଉ ନାହିଁ । ଗ୍ରନ୍ଥକାର ଅତି ନମ୍ରଭାବରେ ଆପଣାର ନାମ ଗୋପନ କରି ଯଥାର୍ଥ ପାଣ୍ଡିତ୍ୟ ଏବଂ ନିଃସ୍ୱାର୍ଥ ପରୋପକାରିତାର ପରିଚୟ ଦେଇଅଛନ୍ତି ଏବଂ ତହିଁ ପାଇଁ ଏ ଗ୍ରନ୍ଥପ୍ରତି ଅଧିକ ଆଦର ଓ ବିଶ୍ୱାସ ହେଉଅଛି । ଏଥିରେ ବର୍ଣ୍ଣାଚାର, ଉପବାସାଦିର କାଳ,ଶୌଚାଶୌଚ ଶ୍ରାଦ୍ଧକର୍ମ ପ୍ରାୟଶ୍ଚିତ୍ତ ପ୍ରତିଷ୍ଠାଦିର ବ୍ୟବସ୍ଥା ପ୍ରଦତ୍ତ ହୋଇଅଛି ଏବଂ ଜ୍ୟୋତିଷ ଗଣନାର ବିସ୍ତାରିତ ଉଲ୍ଲେଖ ଅଛି । ଗ୍ରନ୍ଥକାରଙ୍କର ନାମ ଯାହା ହେଉ ସେ ଯେ ଜଣେ ଉତ୍କଳବାସୀ ପଣ୍ଡିତ ଏବଂ ଓଡିଶାର ହିନ୍ଦୁମାନଙ୍କ ସକାଶେ ଏ ଗ୍ରନ୍ଥ ପ୍ରଣୟନ କରିଅଛନ୍ତି ଏଥିରେ ସନ୍ଦେହ ନାହିଁ । କାରଣ ବିଧବା ବିବାହ ଏବଂ ସକଳବର୍ଣ୍ଣର ଦଶରାତ୍ର ଅଶୌଚ ପାଳିବା ରୀତି ଯାହାକି

ଓଡିଶାରେ ବିଶେଷ ପ୍ରଚଳିତ ତହିଁର ବ୍ୟବସ୍ଥା ଏଥିରେ ଅଛି ଏବଂ ଉତ୍କଳର ପଣ୍ଡିତମାନେ ଏ ଗ୍ରନ୍ଥକୁ ନାନା ବ୍ୟବସ୍ଥାରେ ଉଲ୍ଲେଖ କରିବାର ସର୍ବଦା ଦେଖା ଯାଉଅଛି । ଏପରି ଗ୍ରନ୍ଥ ଓଡିଶାରେ ଏପର୍ଯ୍ୟନ୍ତ ବାହୁଲ୍ୟରୂପେ ପ୍ରଚାରିତ ହୋଇ ନ ଥିବା ଗୋଟିଏ ଭାରୀ ଅଭାବ ଥିଲା । ଶ୍ରୀମାନ୍ ମହାରାଜା ଅଷ୍ଟମଲ୍ଲିକାଧିପତି ସର୍ବ ସାଧାରଣଙ୍କ ଜାଣିବା ନିମନ୍ତେ ଏହାକୁ ଅନୁବାଦ ସହିତ ପ୍ରକାଶ ଏବଂ ବିନା ମୂଲ୍ୟରେ ବିତରଣ କରିବାଦ୍ୱାରା ବିଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ଏହା ବୋଲିବା ଅଧିକ । ଆମ୍ଭେମାନେ ଅବଗତ ହେଲୁଁ ଯେ ଏହି ସଂସ୍କରଣରେ ଖ୩୦୦୦ଖ ପୁସ୍ତକ ମୁଦ୍ରିତ ହୋଇଅଛି । ଅତଏବ ଏହା ପ୍ରଚାର ବିଷୟରେ ସେ ଆନ୍ତରିକ ଶ୍ରଦ୍ଧା ଓ ଉଦାରତା ଯଥେଷ୍ଟ ରୂପେ ଦେଖାଇଅଛନ୍ତି । ଯେଉଁ ପୁସ୍ତକ ଏପର୍ଯ୍ୟନ୍ତ ମୁଦ୍ରିତ ହୋଇ ନ ଥିଲା ତହିଁର ପ୍ରଥମ ମୁଦ୍ରାଙ୍କନ ଏବଂ ଅନୁବାଦରେ ତ୍ରୁଟି ରହିବା ଅନିବାର୍ଯ୍ୟ ଏବଂ ମହାରାଜା ଭୂମିକାରେ ତହିଁପାଇଁ କ୍ଷମା ପ୍ରାର୍ଥନା କରିଥିବା ସ୍ଥଳେ ଆଉ କିଛି ବୋଲାଯାଇ ନ ପାରେ । ଭରସା କରୁଁ ପଣ୍ଡିତମାନେ ଏଥିରେ ଯେ ସବୁ ଭ୍ରମ ଦେଖିବେ ତାହା ମହାରାଜାଙ୍କୁ ଜଣାଇବା ବିଷୟରେ ଶ୍ରମ ସ୍ୱୀକାର କରିବାକୁ କୁଣ୍ଠିତ ନ ହେଲେ ଏ ପକ୍ଷେ କୌଣସି ସମୟରେ ଶୋଧିତ ଗ୍ରନ୍ଥ ବାହାରି ପାରିବ ।

*ଭା୩୨ଗ, ସଂ୨୨ଖ୍ୟା, ୨୯।୫।୧୮୯୭*

## ପ୍ରଜାସ୍ୱତ୍ୱ ଆଇନ ସଂଶୋଧନ ପାଣ୍ଡୁଲିପି

ଓଡିଶାର ଜରୀବ ବନ୍ଦୋବସ୍ତ କାର୍ଯ୍ୟ ନିଶ୍ଚିନ୍ତରୂପେ ସମାଧା କରିବା ଅଭିପ୍ରାୟରେ ଗବର୍ଣ୍ଣମେଣ୍ଟ ବଙ୍ଗୀୟ ସନ ୧୮୮୫ ସାଲର ପ୍ରଜାସତ୍ୱ ଆଇନ ଯାହାକି ପ୍ରଧାନତଃ ବଙ୍ଗଳାର ଚିରସ୍ଥାୟୀ ବନ୍ଦୋବସ୍ତ ମାହଲ ସମ୍ବନ୍ଧରେ ଜାରୀ ହୋଇଥିଲା ତାହା ଓଡିଶାରେ ପ୍ରଚଳିତ ହେଲା । ମାତ୍ର ଅଳ୍ପ କାଳରେ ଜଣା ପଡିଲା ଯେ ସେହି ଆଇନର ବିଧାନମତେ ଜରୀବ ଓ ବନ୍ଦୋବସ୍ତ କାର୍ଯ୍ୟ ସମାଧା କରିବା ଅତୀବ କଷ୍ଟକର । ତେଣୁ ଏକ ବର୍ଷ ହେଲା ଆଇନ ସଂଶୋଧନର ପ୍ରସ୍ତାବ ବଙ୍ଗଳା ଗବର୍ଣ୍ଣମେଣ୍ଟ ଉପସ୍ଥିତ କଲେ ଏବଂ ତାହା ଇଣ୍ଡିଆ ଗବର୍ଣ୍ଣମେଣ୍ଟ ଏବଂ ବିଲାତସ୍ଥ ଷ୍ଟେଟ ସେକ୍ରଟରୀ ଅନୁମୋଦନ କରିବାରୁ ବଙ୍ଗୀୟ ବ୍ୟବସ୍ଥାପକ ସଭାର ଗତ ଅପ୍ରେଲମାସ ତା୩ ରିଖର ଅଧିବେଶନରେ ସେହି ପ୍ରସ୍ତାବିତ ବିଷୟର ପାଣ୍ଡୁଲିପି ଉପସ୍ଥିତ ହେଲା । ପାଣ୍ଡୁଲିପିର ଉଦ୍ଦେଶ୍ୟ ପ୍ରଜାସତ୍ୱ ଆଇନର ଧା ୩୦,୩୧,୩୯,୫୨ଓ୧୧୯ରା ଏବଂ ୧୦ମ ଅଧ୍ୟାୟ ସଂଶୋଧନ କରିବା ବଙ୍ଗୀୟ ଗବର୍ଣ୍ଣମେଣ୍ଟ ସେକ୍ରଟରୀ ମାନ୍ୟବର ଫିନ୍ଲୁକେନ ସାହେବ ଏହି ପାଣ୍ଡୁଲିପିର ହେତୁବାଦ ଏବଂ ଅଭିପ୍ରାୟ ବ୍ୟବସ୍ଥାପକ ସଭାରେ ଯେପରି ବୁଝାଇ ଦେଇଥିଲେ ଆମ୍ଭେମାନେ ଅଦ୍ୟ ତହିଁର ସଂକ୍ଷେପ ମର୍ମ୍ମ ପାଠକମାନଙ୍କୁ ଜଣାଉଅଛୁଁ । ଏ ପକ୍ଷେ ପାଣ୍ଡୁଲିପିର ସମାଲୋଚନା କରିବୁଁ ।

ମାନ୍ୟବର ଫିନ୍ଲୁକେନ ସାହେବ ବୁଝାଇ ଦେଲେ କି ପ୍ରଚଳିତ ଆଇନ ପରିବର୍ତ୍ତନର ଅଭିପ୍ରାୟ ତିନୋଟି ଅଟେ ଯଥା-

୧- ସନ ୧୮୮୫ ସାଲର ପ୍ରଜାସତ୍ୱ ଆଇନର ୧୦ମ ଅଧାୟ ଅନୁସାରେ କାର୍ଯ୍ୟ କରିବାରେ କାର୍ଯ୍ୟପ୍ରଣାଳି ଘଟିତ ଯେ ସମସ୍ତ ସନ୍ଦେହ ଓ ବାଧା ଉଦୟ ହୋଇଅଛି ସେ ସବୁ ପରିଷ୍କାର କରିବା ;

୨- ବୃହତ୍ ଭୂମିଖଣ୍ଡର ବନ୍ଦୋବସ୍ତ କରିବା ସମୟରେ ଜମାବନ୍ଦୀର ସହଜ ଉପାୟ ସ୍ଥିର କରିବ; ଏବଂ

୩- ଜମାବୃଦ୍ଧି ଓ କର୍ମବିଷୟକ ଆଇନର ବିଧାନମାନ ଏମନ୍ତ ଭାବରେ ସଂଶୋଧନ କରିବା ଯେମନ୍ତ କି ଆଇନର ସେହି ସମସ୍ତ ବିଧାନ କାର୍ଯ୍ୟକର ହେବ ଏବଂ ଆଇନର ଭାଷାଗତ ଜଟିଳତା ଅଥବା ଦେବାନୀ ଅଦାଲତର ବ୍ୟାଖ୍ୟା ହେତୁ ସେ ସମସ୍ତ କାର୍ଯ୍ୟତଃ ଅଚଳ ବୋଧ ହେବାରୁ ଆଇନ କର୍ତ୍ତାଙ୍କ ଅଭିପ୍ରାୟ ସ୍ପଷ୍ଟରୂପେ ସାଧିତ ହେବ ।

ପ୍ରଚଳିତ ୧୦ ଅଧ୍ୟାୟ ଅନୁସାରେ ରାଜସ୍ୱ କର୍ମଚାରୀ ବନ୍ଦୋବସ୍ତ କରିବା ସମୟରେ ସତ୍ୱ ଓ ଦଖଲ ସମ୍ବନ୍ଧୀୟ ସମସ୍ତ ବିବାଦ ନିଷ୍ପତ୍ତି କରିବାର ଅଧିକାର ପାଇଅଛନ୍ତି ଏବଂ ସେମାନଙ୍କ ନିଷ୍ପତ୍ତି ଅଦାଲତର ଡିକ୍ରୀ ତୁଲ୍ୟ ପ୍ରବଳ ହୋଇଅଛି । ଏଥକୁ ରାଜସ୍ୱ କର୍ମଚାରିମାନେ ଅଦାଲତର ପ୍ରଣାଳୀ ଅନୁସାରେ ବିବାଦ ନିଷ୍ପତ୍ତି କରିବା

ସୁବିଧାଜନକ ବୋଧ କରୁ ନାହାନ୍ତି ଏବଂ ହାଇକୋଟ ମଧ୍ୟେ ଅନେକ ସ୍ଥଳେ ସେମାନଙ୍କର ଅଧିକାରର ପ୍ରତିକୂଳରେ ମତ ପ୍ରକାଶ କରିଅଛନ୍ତି । ଅତଏବ ପାଣ୍ଡୁଲିପିରେ ପ୍ରସ୍ତାବ ହୋଇଅଛି କି ସତ୍ୱ ଓ ଦଖଲ ସମ୍ବନ୍ଧୀୟ ବିବାଦର ଅନୁସନ୍ଧାନ ମାତ୍ର ରାଜସ୍ୱ କର୍ମଚାରୀ ସରାସରିରୂପେ କରିବେ ମାତ୍ର ଯେ ବ୍ୟକ୍ତି ତହିଁରେ ଅସମ୍ମତ ହେବ ସେ ଦେବାନୀ ଅଦାଲତରେ ନାଲଶ କରିପାରିବ। ମାତ୍ର ଉଚିତ ଖଜଣା ବନ୍ଦୋବସ୍ତ ସମ୍ବନ୍ଧୀୟ ରାଜସ୍ୱ କର୍ମଚାରିଙ୍କ ଆଦେଶ ବିରୁଦ୍ଧରେ ପ୍ରଚଳିତ ଆଇନରେ କେବଳ ବିଶେଷ ଜଜଙ୍କ ନିକଟରେ ଅପିଲ ହେବାର ଯେଉଁ ବିଧି ଅଛି ତାହା ରହିତ ହୋଇ ସେ ଅପିଲ ରାଜସ୍ୱ ଏଲାକାର ଉପରିସ୍ଥ ହାକିମମାନଙ୍କ ନିକଟରେ ହେବ ଏବଂ ସେମାନଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ହେବ । ଫଳତଃ ସଂଶୋଧିତ ଆଇନରେ ସତ୍ୱ ଓ ଦଖଲ ଓ ଅଧିଘଟିତ ବିବାଦର ଶେଷ ନିଷ୍ପତ୍ତି ରାଜସ୍ୱକର୍ମଚାରିଙ୍କଠାରୁ ଏକାବେଳେ କାଢ଼ିନେଇ ଦେବାନୀ ଅଦାଲତଙ୍କ ହସ୍ତରେ ଦେବାର ଏବଂ ଉଚିତ କରଧାର୍ଯ୍ୟ ଘଟିତ ବିବାଦର ଶେଷ ନିଷ୍ପତ୍ତି ଏକା ରାଜସ୍ୱ ବିଭାଗୀୟ ହାକିମଙ୍କ ହାତରେ ରହିବା ଏବଂ କେବଳ ନିର୍ଦ୍ଦିଷ୍ଟ କେତେଗୁଡ଼ିଏ ବିଷୟରେ ଅଦାଲତରେ ନାଲଶ ଚାଲିବାର ପ୍ରସ୍ତାବ ହୋଇଅଛି । ସ୍ଥୂଳରେ ଦେବାନୀ ଅଦାଲତର କ୍ଷମତା ବୃଦ୍ଧି ବିନା ଖର୍ବ ହୋଇ ନାହିଁ ।

ଜମାବନ୍ଦିର ସୁବିଧା କରିବା ପ୍ରସ୍ତାବିତ ଆଇନର ୨ୟ ଉଦ୍ଦେଶ୍ୟ । ଏଥକୁ ପ୍ରଚଳିତ ଆଇନ ଅର୍ନୁସାରେ ଜମା ବଢାଇବା ବା ଖସାଇବାର ପ୍ରତ୍ୟେକ ଘଟନା ଗୋଟିଏ ଗୋଟିଏ ମୋକଦ୍ଦମା ହେବ ଏବଂ ଦେବାନୀ ଅଦାଲତର ପ୍ରଣାଳୀ ଅନୁସାରେ ତହିଁର ବିଚାର ହେବ । ଏଥିରେ ଯେ କେତେ ସମୟ ବଳ ଓ ଅର୍ଥ ବ୍ୟୟର କଥା ତାହା ସମସ୍ତେ ଜାଣନ୍ତି । ପୁଣି ଦିଗ୍ଧ୩୦ନ ମିୟାଦକୁ ଜଗି ରହିବାକୁ ହେବ । ମିୟାଦ ଗତ ହେଲେ ଆଉ କିଛି ଶୁଣାଯିବ ନାହିଁ । ଓଡ଼ିଶାପରି ଯେଉଁଠାରେ ବିସ୍ତୃତ ଭୂମିଖଣ୍ଡର ବନ୍ଦୋବସ୍ତ ପ୍ରୟୋଜନ ସେଠାରେ ଲକ୍ଷ ଲକ୍ଷ ମୋକଦ୍ଦମା ଉପସ୍ଥିତ ହେବାର ସମ୍ଭାବନା । ଏହା ଜମିଦାର ବା ପ୍ରଜାପକ୍ଷରେ ସୁବିଧାଜନକ ନୁହେ । ଅତଏବ ପ୍ରସ୍ତାବିତ ପାଣ୍ଡୁଲିପିର ଧା୧୦୪କରାରେ ରାଜସ୍ୱ କର୍ମଚାରିଙ୍କୁ କ୍ଷମତା ଦେବାର ହେଉଅଛି କି ସେମାନେ (୧) ଉଭୟପକ୍ଷ ରଫାଦ୍ୱାରା ଯେଉଁ ଜମା ଦେବାକୁ ଇଚ୍ଛା କରିବେ ତାହା ଉଚିତ ବୋଧ ହେଲେ ଅଥବା (୨) ସେ ଯେଉଁ ଜମା ପ୍ରସ୍ତାବ କରି ତାହାକୁ ଉଭୟପକ୍ଷ ଗ୍ରହଣ କଲେ ଅଥବା (୩ ) ଯେଉଁଠାରେ ସୁବିଧା ହେବ ନିରଖବନ୍ଦି ପ୍ରସ୍ତୁତ କରି ସେହି ନିରଖ ବନ୍ଦି ଅନୁସାରେ ଜମା ଧାର୍ଯ୍ୟ କରିବେ ଅଥବା (୪) ପ୍ରଚଳିତ ଜମା ସ୍ଥିର ରଖିବେ କିମ୍ବା ପ୍ରଜାସ୍ୱତ୍ୱ ଆଇନର ଲିଖିତ ହେତୁ ଅନୁସାରେ ଊଣା ବା ଅଧିକ କରିବେ । ଜମାବନ୍ଦିର ଏହି ଚାରି ଉପାୟ ମଧ୍ୟେରୁ ୧ମ ଓ ୨ୟ ଜମିଦାର ଏବଂ ପ୍ରଜାର ସମ୍ମତି ସହିତ ହେବାର ଥିବାରୁ ସେ ସମ୍ବନ୍ଧରେ କିଛି ବକ୍ତବ୍ୟ ନାହିଁ । ଏଥିରେ କାର୍ଯ୍ୟର ଅନେକ ସୁବିଧା ହେବ । ଯେଉଁଠାରେ ଜମିଦାର ପ୍ରଜା ରାଜି ନ ହେବେ ସେଠାରେ ୩ୟ ବା ୪ର୍ଥ ଉପାୟ ଅବଲମ୍ବନ କରିବାକୁ ହେବ । ଚତୁର୍ଥ ଉପାୟଟି ପ୍ରଚଳିତ ଆଇନାନୁସାରେ ଅଟେ ଏବଂ ୩ୟ ଅର୍ଥାତ୍ ନିରବନ୍ଦି ନୂତନ ନିୟମ ହେଲେହେଁ ରାଜସ୍ୱ କର୍ମଚାରୀ ମାଟିର ଗୁଣ , ଭୂମିର ଅବସ୍ଥିତ, ଜଳ ମଡାଇବାର ସୁବିଧା ଇତ୍ୟାଦି ପ୍ରତି ଦୃଷ୍ଟି ରଖି ତାହା ପ୍ରସ୍ତୁତ କରିବେ ଏବଂ ତହିଁପ୍ରତି ଆପତ୍ତି ଶୁଣାଯାଇ ଉପରିସ୍ଥ ହାକିମଙ୍କଦ୍ୱାରା ମଞ୍ଜୁର ହେଲା ଉତାରୁ ତାହା କାର୍ଯ୍ୟକର ହେବ । ରାଜସ୍ୱ ବନ୍ଦୋବସ୍ତର ସୁବିଧା ନିମନ୍ତେ ଏହି ପ୍ରକାର ଜମାବନ୍ଦିର ପ୍ରସ୍ତାବ ହୋଇଅଛି । ଯେଉଁଠାରେ ଲକ୍ଷ ଲକ୍ଷ ପ୍ରଜାର ଜମା ଧାର୍ଯ୍ୟ କରିବାକୁ ସେଠାରେ ଏହା ଅବଲମ୍ବିତ ହେବ । ଯେଉଁଠାରେ ଜମିଦାର ବା ପ୍ରଜା ବିଶେଷ ଅଦାଲତଦ୍ୱାରା ଜମା ଧାର୍ଯ୍ୟ କରାଇବାକୁ ଇଚ୍ଛା କରିବେ ସେଠାରେ ତାହା କରାଇନେବାର ଆପତ୍ତି ନାହିଁ । ରାଜସ୍ୱକର୍ମଚାରୀ ଜମା ଧାର୍ଯ୍ୟ କରିବା ବିଷୟରେ ବରଂ ଦେବାନି ଅଦାଲତ ଅପେକ୍ଷା ଅଧିକ ସକ୍ଷମ ଏ ବିଷୟ ପୂର୍ବରୁ ସ୍ୱୀକାର ହୋଇଅଛି ଏବଂ ପୂର୍ବ ଆଇନକର୍ତ୍ତାଙ୍କର ଅଭିପ୍ରାୟ ଏହାଇ ଥିଲା ।

ପାଣ୍ଡୁଲିପିର ୩ୟ ଉଦ୍ଦେଶ୍ୟ ଜମାବୃଦ୍ଧି ସଂକ୍ରାନ୍ତ ବିଧିମାନ ସଂଶୋଧନ ଓ କାର୍ଯ୍ୟକର କରିବା । ପ୍ରଚଳିତ ଦର ଘେନି ଖଜଣା ବୃଦ୍ଧି କରିବାର ଆଇନରେ ଗୋଟିଏ ବିଧି ଅଛି । ମାତ୍ର ପ୍ରଚଳିତ ଦରର ଅର୍ଥ ସମ୍ବନ୍ଧରେ ଅନେକ ସନ୍ଦେହ ରହିଅଛି । ଗୋଟିଏ ମୋକଦ୍ଦମାରେ ହାଇକୋଟ ନିଷ୍ପତ୍ତି କରିଅଛନ୍ତି କି ହାରାହାରି ଦରକୁ ପ୍ରଚଳିତ ଦର ବୋଲାଯାଇ ନ ପାରେ । ମାତ୍ର ପ୍ରଚଳିତ ଦର କିସ ଅଟେ ତାହା ନିଶ୍ଚୟ ହୋଇ ନାହିଁ । ପାଣ୍ଡୁଲିପିରେ ପ୍ରଚଳିତ ଦର ସ୍ଥିର କରିବାର ଏମନ୍ତ ସହଜ ସଙ୍କେତ ଦିଆ ଯାଇଅଛି ଯେ ହାରାହାରି ଦର ନ ଧରି ଅଧିକାଂଶ ପ୍ରଜା ଯେଉଁ ଦରରେ

ଖଜଣା ଦେଇଅଛନ୍ତି ତାହାକୁ ଧରିବାକୁ ହେବ ଏବଂ ଏଥିରେ କାଳେ କିଛି ଅନିଷ୍ଟ ଘଟିବ ଏଥିପାଇଁ ଗବର୍ଣ୍ଣମେଣ୍ଟ ଏହି ଧାରା ଅନୁସାରେ କାର୍ଯ୍ୟ କରିବାକୁ ଅନୁମତି ଦେବା ନ ଦେବାର ଅଧିକାର ଆପଣା ହାତରେ ରଖିଅଛନ୍ତି । ଅନ୍ୟାନ୍ୟ ସାମାନ୍ୟ ସଂଶୋଧନର ଉଲ୍ଲେଖ ପ୍ରୟୋଜନ ନାହିଁ ।

ଆମ୍ଭେମାନେ ପାଣ୍ଡୁଲିପିର ସଂକ୍ଷେପ ବିବରଣ ଉପରେ ପ୍ରକାଶ କଲୁଁ ଓଡିଶା ବନ୍ଦୋବସ୍ତର ସୁବିଧା ନିମନ୍ତେ ଏଥିର ଅବତାରଣା ସୁତରାଂ ଓଡିଶାର ଜମିଦାର ଏବଂ ପ୍ରଜାଙ୍କର ଏଥି ସଙ୍ଗେ ବିଶେଷ ସମ୍ବନ୍ଧ ରହିଅଛି । ସେମାନେ ପ୍ରସ୍ତାବିତ ବିଧାନମାନ ଉତ୍ତମରୂପେ ଆଲୋଚନା କରି ଇଷ୍ଟାନିଷ୍ଟ ବିଚାର କରନ୍ତୁ ଏବଂ ଆପତ୍ତିଜନକ ବିଷୟ ଦେଖିଲେ ତହିଁର ପ୍ରତିକାର ଶୀଘ୍ର ଲୋଡିବାର ଯତ୍ନ କରନ୍ତୁ । ଏ ବିଷୟରେ କୌଣସିମତେ ହେଳା କରିବାର ନୁହେ ।

*ଭା୩୨ଗ, ସଂ୨୨ଖ୍ୟା, ୨୯/୫/୧୯୮୭*

## ଅନୁବାଦ

ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ମୁକ୍ତିମଣ୍ଡପସ୍ଥ ପଣ୍ଡିତମାନଙ୍କର ଏହି ବ୍ୟବସ୍ଥା ଅଟେ ।

ଔଡ୍ର କୃଷକ କ୍ଷତ୍ରିୟ ପ୍ରଭୃତି ସ୍ପୃଶ୍ୟଜନ ଜାତିର ଜନମାନେ ଦୁର୍ଭିକ୍ଷ ସମୟରେ କ୍ଷୁଧାରେ ପୀଡିତ ହୋଇ ରାଜପ୍ରଦତ୍ତ ତଣ୍ଡୁଳାଦି ଗ୍ରହଣ କଲେ ପତିତ ହେବେ କି ନାହିଁ -ଏହା ପ୍ରଥମ ପ୍ରଶ୍ନ ।

ତହିଁର ଉତ୍ତର ଏହି ଯେ ସେମାନେ ପତିତ ହେବେ ନାହିଁ । ତହିଁର ପ୍ରମାଣ ଯଥା ; - ଯୋଗୀ ଯାଜ୍ଞବଲ୍କ୍ୟ ଆପଦ୍ଧର୍ମ୍ମ ପ୍ରକରଣରେ କହିଅଛନ୍ତି:-

ସ୍ନାତକମାନେ ଆପଦ୍‌କାଳରେ କୃଷିକର୍ମ, ଶିଳ୍ପକର୍ମ୍ମ , ଭୃତି ଅର୍ଥାତ୍ ପ୍ରେଷ୍ୟତ୍ୱକର୍ମ, ବିଦ୍ୟା ଅର୍ଥାତ୍ ବେତନ ଗ୍ରହଣ ପୂର୍ବକ ଅଧ୍ୟାପନା କର୍ମ୍ମ କୁସୀଦ ଅର୍ଥାତ୍ ବୃଦ୍ଧ୍ୟର୍ଥ ଦ୍ରବ୍ୟପ୍ରୟୋଗ କର୍ମ, ଶକଟ ଅର୍ଥାତ୍ ଭଡ଼ାରେ ଧାନ୍ୟାଦି ବହନ କର୍ମ୍ମ, ଗିରି ଅର୍ଥାତ୍ ବନରୁ ତୃଣକାଷ୍ଠାଦି ଆହରଣ କର୍ମ୍ମ, ସେବା ଅର୍ଥାତ୍ ପରିଚିତ୍ତାନୁବର୍ତ୍ତନ କର୍ମ୍ମ, ଅନୂପ ଅର୍ଥାତ୍ ପ୍ରଚୁର ତୃଣବୃକ୍ଷଜଳପ୍ରାୟ ପ୍ରଦେଶର ଆଶ୍ରୟ କର୍ମ୍ମ ଏବଂ ନୃପଯାଚନ ଭୈକ୍ଷ୍ୟ ଅର୍ଥାତ୍ ରାଜପ୍ରଦତ୍ତ ତଣ୍ଡୁଳାଦି ଗ୍ରହଣ କର୍ମ୍ମ ସ୍ୱରୂପ ଜୀବନୋପାୟମାନ ଅବଲମ୍ବନ କରି ପାରିବେ ।

ପ୍ରକାଶ ଥାଉ କି ଉଲ୍ଲିଖିତ ବ୍ୟାଖ୍ୟା ମିତାକ୍ଷରାରେ ପ୍ରଦତ୍ତ ହୋଇଅଛି ।

ମନୁ ଗ୍ରନ୍ଥର ଦଶମ ଅଧ୍ୟାୟରେ ମଧ୍ୟ ତଦ୍ରୂପ ବିଧାନ ଅଛି, ଯଥା:-

ବିଦ୍ୟା, ଶିଳ୍ପ, ଭୃତି, ସେବା ,ଗୋରକ୍ଷା, ବିପଣି ଅର୍ଥାତ୍ ଦୋକାନ ପ୍ରଭୃତି ଦେବା , କୃଷି,ଗିରି, ଭୈକ୍ଷ୍ୟ ଅର୍ଥାତ୍ ରାଜପ୍ରଦତ୍ତ ତଣ୍ଡୁଳାଦି ଗ୍ରହଣ ଓ କୁସୀଦ ଅର୍ଥାତ୍ ସୁଦରେ ମୂଳଧନର ବୃଦ୍ଧି—ଏହି ଦଶଗୋଟି ଜୀବନୋପାୟ ଅଟେ ।

ପରାଶର ଗ୍ରନ୍ଥର ସପ୍ତମ ଅଧ୍ୟାୟର ଆପଦ୍ଧର୍ମ୍ମ ପ୍ରକରଣରେ ମଧ୍ୟ ତଦ୍ରୂପ ବିଧାନ ଅଛି । ଯଥା:—

ଦେଶଭଙ୍ଗ ଅର୍ଥାତ୍ ଦୁର୍ଭିକ୍ଷ ମଡକ ପ୍ରଭୃତି ପ୍ରବାସକାଳ , ବ୍ୟାଧିକାଳ ଅର୍ଥାତ୍ ପୀଡିତାବସ୍ଥା, ଏବଂ ବ୍ୟସନ ଅର୍ଥାତ୍ ବିପଦ୍‌କାଳ ଉପସ୍ଥିତ ହେଲେ, ଆପଣାର ଦେହକୁ ରକ୍ଷା କରି ପଶ୍ଚାତ୍ ଧର୍ମ୍ମାଚରଣ କରିବ ଅର୍ଥାତ୍ ଶାସ୍ତ୍ରାନୁଯାୟୀ ଆଚାର ଅବଲମ୍ବନ କରିବ ।

*ଭା୩୨ଗ, ସଂ୨୪ଖ୍ୟା, ୧୨/୬/୧୮୯୭*

[ ଓଡ଼ିଆ ଭାଷା: ଟି. ଇ. ରେଭେନ୍ସା]

To

THE EDITOR OF UTKAL DIPIKA
DEAR SIR,

Before I left for England I was requested by several men to pay a visit to old Mr T.E Ravenshaw and convey to him their salams .The following account of my

visit to him will be read with interests by a large number of people in Orissa, and I hope you will not grudge it some space in our paper.I did not know Mr, Ravenshaw. I never met him in India; he had left the country before I return to Orissa. I am glad indeed that I had the honor of meeting him. I shall give a bare account of what I saw **xxxx** heard making no comments. "**xxxx** me as I am" said Cromwell to his painter.No doubt that shows really worthy man to the best advantage.Mr Ravenshaw lives in Sussex about 5 miles from the three Bridges **xxxx** in the London and Brighton line. It is not far from Brighton for on a clear day you can see Brighton from the terrace of Mr. Ravenshaw's house. I went to this place last Sunday. As I came out of the train ,a short old man with a grey beard walked up to me and accosting me " Mr Das ?" shook hands as if we had been old friends of years. I said "Mr Ravenshaw I am sorry you should have come all this way. Surely I would have found my way to your house." He replied "But I felt it my duty to come and meet you here". We got into his brougham drawn by a pair of fine dark bays and drove off. After a few minutes he said "Excuse my asking this question. Are you a genuine Oorya ?" I said "every drop of blood in me was of Orya origin". He- "I am very fond of your race and I would talk more freely to an Orya than to any other man."

Mr.R- "ଓଡିଆ ପିକା ଖାଅ" these words were followed by the offer of a cigar (a veretable Oriya cigar.)

Mr. R took me all over his house, his gardens, and all over his belongings, I had straw-berries and goose-berries from the trees, lovely branches of grapes from the hot house and flowers from the green house. He took me over to his cowshed and his dairy. I saw the ferrets **xxxx** shooting **xxxx** grounds where I **xxxxx** and pheasants. I saw his horse and judging from the good animals he has I should think he is a good judge of horse flesh and takes interest in his horses.

Inside his house, in the drawing room, I was shown some jewelry made at Cuttack, Pornos of the hookah which he used when out in India.

I "Do you know Mr.Ravenshaw that the hookah has used in the Government Hof at Calcutta in the days of Warren Hastings ? I saw an inviron issued from the Government House with these words in a corner. 'Ladies and gentlemen to bring their hookas.'

Mr. R "Oh yes, every body smoked the hookah, we used to dine in white jackets and have the hookah under the table."

I saw beautiful paintings of his three sons. Two of them are now in India. All his sons joined the army,the youngest accompanied Lord Roberts in his celebrated march in Afghanistan, and died from the after consequences of it.

I saw one କଟୁରି and one knife which were made in Dhenkanal and were presented by the old Maharaja of Dhenkanal .I also two tusks and a lot of Gurjat weapons which were mostly from Keonjhur.

Mr. RAVENSHAW made very kind enquiries of all the Rajahs of the Tributary Mahals. He made searching enquiries regarding the disturbances in Keonjhur and Nayagar. Fortunately acted as a pleader in both these cases, so I could give him all the information. But I was surprised at the deep insight he must have had into the character and disposition of the people and Rajahs of Gurjat, and what was more remarkable he had sufficient recollection **xxxx** and disposition of **xxxx** to be able at the **xxxx** as to how a particular man would act under given circumstances.

The most interesting part of simply house is his workshop.It is **xxxx** perfectly equipped for an amount of a workshop. From the tiny tools only by watchmaker to big lathes worked by a steam engine are to be found here and Mr. RAVENSHAW can repair a watch as well as make a chair and kerosine lamp.

Mr. RAVENSHAW has a strong desire to see Orissa once more. He offered to go out to India in connection with the present famine, but the Government of India said that they were not in need of any outside help. They would have saved money, saved many lives and saved many blunders,if they had availed themselves of the services of such a valuable old officer ,especially as the services were gratuitous.

The old gentleman has a strong desire to see Orissa once more, and I think it will be a very good thing if his old friends in Orissa send him an invitation and offer to pay his expenses. It will be graceful to the host and grateful to the guest. Mr. RAVENSHAW has desired me to convey his salams to a number of gentlemen.This duty I must postpone till I return to Cuttack, Mr RAVENSHAW particularly requested me to spend a day with him before I return to Orissa, and I shall certainly avail myself of his hospitable offer; and I am sure when I return to Cuttack I shall have much to speak to you about this interesting warm hearted gentleman .

This morning I met (at a public meeting) a gentleman who was also a Commissioner of the Orissa Division for some time, I asked him his present address. His reply was "But I shall be going away to one of these watering place in about ten days " Is not this a contrast?

I was delighted to receive the other day a few issues of the *Utkala Dipika*. You have noticed with great joy the Time on the settlement of Orissa **xxxx** to have inspired new hopes. A friend from Cuttack writing about the settlement of Orissa **xxxx** **xxxx** **xxxx** But in London it is a *news paper* and does not carry more influence than that. I am deeply interested in the permanent settlement of Orissa , but that subject I must receive for private correspondence.

London
12 July 1897

Yours truly
An Uriya

ଭାଗ୨ଗ, ସଂଖ୍ୟା୨୭ଧ୍ୟା, ୨।୮।୧୮୯୨

## A BRIEF ACCOUNT OF ORISSA UNDER BRITISH ADMINISTRATION

Very few Englishmen know anything of Orissa. This is very strange, considering that a very interesting history of the Province in two volumes by Sir W. W. Hunter has been before the English public for several years. It has many things which should be of interest to the students of ancient religion, architecture, and customs in India.

This is, no doubt, owing to the fact that Orissa was added to the British Indian Empire nearly half a century after the battle of Plassey, and it is also due to the fact that the people of the Province have not hitherto taken any part in the political movements in India.Whether this was the right attitude for the people to take need not be discussed here, but the result of nearly a century's British rule has been that a race who, at the commencement,invited the British Army not only to occupy the Province, but also to take charge of the great Hindu god Juggernath, and who, as will be shown presently, up to the present day have supported Government in every measure,* are beginning to lose faith in the promises and sense of justice and integrity of the British Government.This is matter for sad reflection both to the ruling as well as the subject race.

It is a fact that the English Traders of the East India Company's time first went to Orissa ,*i.e*, before they went to Bengal .The following extract from "The Early Annals of the English in Bengal" will show when and how the English first went to Orissa, and how they were received and treated by the people there.

"In March 1633, the Company's
"Agent at Masulipatam, meeting with
"a growing scarcity of cloth in that
"place, resolved on sending out an
"expedition to open up trade with the
"fertile provinces at the mouth of the
"Ganges. The party, which consisted
"of eight Englishmen,set sail in a
"country boat, such as may still be
'seen in many of the ports along the
"coast,an oddlooking but serviceable
"craft, having a square sail, an oar
"like rudder , and a high poop ,with a
"thatched house built on it for a cabin.
"On reaching Harsapur or Harispur,

* The Age of Consent Bill,which was opposed by every race in India, and even by men like Sir Ramesh Mitter was supported.

"the modern Harispur Gar. at the
"mouth of the Patna in Orissa, they
"transferred themselves and their
"merchandise to small boats, and so
"ascended the river some eight miles
"as far as Kosida.There they took
"the high road to Cuttack which then,
"as now passed through Balikuda, the
"chief village of the fiscal division
"of Benahar,and the important town
"of Jagatsingpore or as it was till
"lately called Harispur.From
"Cuttack the travellers repaired to the
"coast of Malcandy or Makund Deo
"in Fort Barbati , *where they were*
"*received with great kindness*," &c.

The following is the narrative of the expedition as given by William Bruton , of Southwark, Quarter- Master of the ship Hopewell:

"The twenty- second of March,1632,
"I being in the country of Carmandel
"with six Englishmen more, at a place
"called Massalupatam,a town of
"merchandise, Mr John Norris, the agent
"there, was resolved to send two
"merchants into Bengalla for the settling
"of a factory there; and these six
"Englishmen (of the which I was one)
"were to go with the merchants,and
"withal to carry a present from the
"agent to the Nabob, or King of that
"country . Wherefore a junk was
"hired at Massalupatam to be our
"convoy: and the said junk did belong
"unto these parts, and the names of
"the Englishmen that were appointed
"for that voyage were Mr. Ralph
"Cartwright, Merchant, Mr. Thomas
"Colley. second , Mr. William Bruton,
"John Dobson, Edward Peteford , John

"Busby, John Ward and William"
Withall "

"Though we hired the aforesaid
"junk on March 22 nd, yet it was the
"sixth of April following before we
"could be fitted to depart from Massa
"lupatam, and in much various
"weather with many difficulties and
"dangers (which to relate here would
"be tedious and impertinent to my
"intended discourse).The twenty
"first of April, being then Easter Day,
"we were at anchor in a bay before
"a town called Harssapore it is a
"place of good strength, with whom
"our merchants held commerce with
"correspondency + .This twenty- first
"day in the morning .Mr Ralph
"Cartwright sent the money ashore to
"the Governor of Harssapore into his
"safe keeping and protection until
"such time he came ashore himself. So
"presently there came a Portugal
"frigate fiercely in hostility towards
"us, but we made ready for their
"entertainment and fitted ourselves
"and the vessel for our best defences
"but at last they steered of from us
"and upon our command, She came
"to an anchor somewhere near us; and
"the master of her came on board of
"us, who being examined whence he
"came and whither he was bound, to
"which demands he answered nothing
"worthy of belief as the sequel showed;
"for he seemed a friendly trader,
"but was indeed a false invader for

+ This points to XXXXX anterior English XXXXXX

"on the 22nd day Mr. Cartwright
"went ashore to the Governor of
"Harssapore; and on the 24 th day
"the master of the frigate ( with the
"assistance of some of the ribble rabble
"rascals of the town) did set upon
"Mr. Cartwright and Mr. Colley
"*where our men* (being oppressed by
"multitudes) had like to have been all
"slain or spoiled, but that
"Luckilp (Lakhshmip) the Raja there rescued
"them with two hundred men."

The above shows the commercial relation between the two races .

Nearly two hundred years after, i;e, in1803, an English expedition was sent from Madras to occupy Orissa. The English army had to march through the borders of the Chilka where as Sir W.W. Hunter says, a couple of cannon and three hundred men might have disputed for days the dangerous channel. But instead of an opposing army the General commanding the expedition found a deputation of venerable white robed Bramhins, Who begged that their temple, the religious key to the province, might be placed under the protection of the British".(a)

This was remarkable in a province which was the only part of India unknown to the Mahomedans, even in the fourteenth century, and where the Mahomedans never exercised the same control which they did over Bengal. The welcome the religions leaders of the race gave to the English army was the outcome of the implicit confidence they had in the sense of justice of the British nation.

(a)" History of Orissa" by Sir, W. Hunter, Vol-II P.56. Also "History of Orissa" by G. Toynbee.

*ଅଟିରିକ୍ତ ୨୦/୧୧/୧୮୯୭*

## ବିଲାତରେ ଓଡିଶାରଚର୍ଚ୍ଚା ।

ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ବିଲାତକୁ ଯାଇ ସେଠାର ଅନେକ ସମ୍ଭ୍ରାନ୍ତ ଲୋକ ଏବଂ ସଭାସମିତିରେ ସୁପରିଚିତ ହେବା ଏବଂ ବକ୍ତୃତାଦି ପ୍ରଦାନ କରିବାଦ୍ୱାରା ଯେପରି ଗୌରବାନ୍ୱିତ ହୋଇଅଛନ୍ତି ତହିଁର କିଞ୍ଚିତ ଆଭାଷ ଏଥି ପୂର୍ବେ ପ୍ରକାଶିତ ତାହାଙ୍କର କେତେଖଣ୍ଡ ପତ୍ର ଓ ତତ୍ ସମ୍ବନ୍ଧରେ ଆମ୍ଭମାନଙ୍କର ବକ୍ତବ୍ୟଦ୍ୱାରା ପାଠକ ମାନେ ଅବଗତ ହୋଇଅଛନ୍ତି । ଓଡିଶାପରି ସାମାନ୍ୟ ଓ ଦରିଦ୍ରଦେଶ ପ୍ରତି ଏହାର ଯଥେଷ୍ଟ ମାତ୍ର ମଧୁବାବୁ ସଭ୍ୟତମ ବିଲାତରେ ଆପଣ ବିଦ୍ୟା ବୁଦ୍ଧିର ପରିଚୟ ଦେବାଦ୍ୱାରା ନିଜର ଗୌରବ ବର୍ଦ୍ଧନ ସଙ୍ଗେ ସଙ୍ଗେ ଓଡିଶାର ଗୌରବ ବୃଦ୍ଧି କରି କ୍ଷାନ୍ତ ହୋଇନାହାନ୍ତି । ପାଠକମାନେ ଶୁଣି ଆନନ୍ଦିତ ହେବେ ଯେ ସେ ଓଡିଶାର ବର୍ତ୍ତମାନ ବନ୍ଦୋବସ୍ତର ପ୍ରସଙ୍ଗ ଯାହାକି ସର୍ବାପେକ୍ଷ ଗୁରୁତର ସାମୟିକ ପ୍ରସଙ୍ଗ ଅଟେ ତାହା ଏକ ପୁସ୍ତିକାରେ ଇଂରାଜ ଲୋକଙ୍କୁ ଜଣାଇଁ

ସମସ୍ତ ଓଡ଼ିଶାବାସିଙ୍କର ବିଶେଷ କୃତଜ୍ଞତାର ପାତ୍ର ହୋଇଅଛନ୍ତି ଏବଂ ସ୍ୱଦେଶାନୁରାଗିତାର ଉଜ୍ଜ୍ୱଳ ପ୍ରମାଣ ଦେଇଅଛନ୍ତି । ଓଡ଼ିଶାର ଜମିଦାର ସଭାଗତ ଫିବୃୟାରୀ ମାସରେ ବଙ୍ଗୀୟ ଗବର୍ଣ୍ଣମେଣ୍ଟଙ୍କ ସମୀପକୁ ଚିରସ୍ଥାୟୀ ବନ୍ଦୋବସ୍ତ ସକାଶେ ଯେଉଁ ଆବେଦନ ପତ୍ର ପଠାଇଥିଲେ ଏବଂ ତାହା ଅବଲମ୍ବନ କରି ବିଲାତର ଟାଇମସ ସମ୍ବାଦ ପତ୍ରର ଗତ ଅପ୍ରେଲ ମାସ ତା ୨୭ ରିଖର ସଂଖ୍ୟାରେ ଯେଉଁ ପ୍ରବନ୍ଧ ବାହାରିଥିଲା ଉକ୍ତ ପୁସ୍ତିକାରେ ସେହି ଦୁଇ ବିଷୟ ମଧୁବାବୁ ପ୍ରକାଶ କରି ତହିଁ ସଙ୍ଗେ ଆପଣାର ଗୋଟିଏ ଅତି ସୁନ୍ଦର ଏବଂ ଯୁକ୍ତିପୂର୍ଣ୍ଣ ମନ୍ତବ୍ୟ ଯୋଗ କରିଅଛନ୍ତି । ଏହି ମନ୍ତବ୍ୟଟି ଅତ୍ୟନ୍ତ ମୂଲ୍ୟବାନ୍ ବିବେଚନାରେ ଅତିରିକ୍ତ ସ୍ୱରୂପ ପାଠକମାନଙ୍କ ଅବଗତି ନିମନ୍ତେ ପ୍ରକାଶ କଲୁଁ । ଇଂରାଜି ନ ଜାଣିବା ପାଠକମାନଙ୍କ ତୃପ୍ତି ନିମନ୍ତେ ତହିଁର ସଂକ୍ଷେପ ମର୍ମ ନିମ୍ନେ ପ୍ରକାଶିତ ହେଲା । ଯଥା ।

ଓଡ଼ିଶା ବାସିମାନଙ୍କର ଇଂରାଜଙ୍କ ସୁବିଚାର ଏବଂ ମର୍ଯ୍ୟାଦାରେ ଅସୀମ ବିଶ୍ୱାସ ହେବାରୁ ସନ ୧୮୦୩ ସାଲରେ ଶ୍ରୀ ଜଗନ୍ନାଥ ମନ୍ଦିରର ପଣ୍ଡା ପଢ଼ୀଆରୀମାନେ ଏଦେଶ ଅଧିକାର ଏବଂ ଶ୍ରୀମନ୍ଦିରର ଭାର ନେବା କାରଣ ଇଂରାଜମାନଙ୍କୁ ଆମନ୍ତ୍ରଣ କରିଥିଲେ ଏବଂ ତଦନୁସାରେ ବ୍ରୀଟିସ ଗବର୍ଣ୍ଣମେଣ୍ଟ କେତେକାଳ ମନ୍ଦିରର କାର୍ଯ୍ୟ ନିର୍ବାହ କରି କେତେକ ଖ୍ରୀଷ୍ଟିୟାନ ମାନଙ୍କ ଆପତ୍ତିରେ ତାହା ପରିତ୍ୟାଗ କଲେ । ମାତ୍ର ଶ୍ରୀଯୁକ୍ତ ଟଏନବି ସାହେବଙ୍କ ପ୍ରକାଶିତ ଅଙ୍କ ଦେଖିଲେ ସ୍ପଷ୍ଟ ଜଣାଯିବ ଯେ ଓଡ଼ିଶାର ଅବସ୍ଥା ମରହଟ୍ଟା ଅମଳରେ ଯାହା ଥିଲା ଇଂରାଜ ଗବର୍ଣ୍ଣମେଣ୍ଟଙ୍କ ରାଜସ୍ୱ ବନ୍ଦୋବସ୍ତ ହେତୁ ତହିଁରୁ ମନ୍ଦ ହେଲା । ଓଡ଼ିଶା ବିଶେଷରେ ଧୋଇ ଓ ମରୁଡ଼ିର ଅଧୀନ ଧୋଇ ପ୍ରାୟ ପ୍ରତିବର୍ଷ କୌଣସି ଅଂଶରେ ଘଟିଥାଏ । ଏଥିପାଇଁ ଅନେକ ବନ୍ଧ ରଖିବାର ଆବଶ୍ୟକ । ପୂର୍ବ ବନ୍ଦୋବସ୍ତର ଜମାବନ୍ଦି ବନ୍ଧ ରକ୍ଷା ଦୃଷ୍ଟିରେ ସ୍ଥିର ହୋଇଥିଲା ଏବଂ ସରକାର ବନ୍ଧମାନ ରକ୍ଷା କରିଆସୁଥିଲେ । ଧୋଇ ନିମନ୍ତେ ରାଜସ୍ୱ ଛାଡ଼ ଦେଉଥିଲେ । ଇଦାନୀ ସରକାର ବନ୍ଧମାନ ଛାଡିଦେଲେ ଏବଂ ରାଜସ୍ୱ ଛାଡିଦେବା ରହିତ କଲେ । ସୁତରାଂ ଜମିଦାର ଏବଂ ପ୍ରଜା ଉଭୟଙ୍କର କଷ୍ଟ ବଢ଼ିଲା । ଏଥିର ଏକମାତ୍ର ପ୍ରତିକାର ଚିରସ୍ଥାୟୀ ବନ୍ଦୋବସ୍ତ ଅଟେ । ତାହା ହେଲେ ଜମିଦାରଙ୍କର ସମ୍ପତ୍ତି ପ୍ରତି ମମତା ଏବଂ ବନ୍ଧ ଆଦି ଉନ୍ନତି କାର୍ଯ୍ୟରେ ଅର୍ଥ ବ୍ୟୟ କରିବାର ପ୍ରବୃତ୍ତି ଜନ୍ମିବ । ଚିରସ୍ଥାୟୀ ବନ୍ଦୋବସ୍ତ ଓଡ଼ିଶାକୁ ପ୍ରଦାନ କରିବେ ବୋଲି ସରକାର ପୁନଃ ପୁନଃ ପ୍ରତିଜ୍ଞା କରି ଆସିଅଛନ୍ତି ଏବଂ ସେ ପ୍ରତିଜ୍ଞା ଆଇନରେ ମଧ୍ୟ ସ୍ପଷ୍ଟାକ୍ଷରରେ ଲେଖାଅଛି । ପ୍ରତିଜ୍ଞାରକ୍ଷା ପ୍ରତି ଶ୍ରୀମତୀ ଭାରେତଶ୍ୱରୀଙ୍କ ପ୍ରଗାଢ ମନୋଯୋଗ ସନ ୧୮୫୮ ସାଲର ଘୋଷଣା ପତ୍ର ଲେଖା ସମ୍ବନ୍ଧରେ ଲର୍ଡ ଡରବିଙ୍କ ପ୍ରତି ତାହାଙ୍କର ଆଦେଶରୁ ବିଲକ୍ଷଣ ଜଣା ଯାଉ ଅଛି । କଥିତ ହୁଅଇ ଯେ ଲର୍ଡ କିମ୍ବରଲି ଭାରତୀୟ ଷ୍ଟେଟ ସେକ୍ରଟରୀ ଥିବା କାଳରେ ସନ୧୮୯୩ ସାଲ ତା ୨୩ ରିଖ ନବମ୍ବର ଲିଖିତ ନ୧୪୭ମ୍ବର ପତ୍ରରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରସଙ୍ଗ ଉତ୍ପନ୍ନ କରନ୍ତେ ଇଣ୍ଡିୟା ଗବର୍ଣ୍ଣମେଣ୍ଟ ଉତ୍ତର ଦେଇଥିଲେ କି ଏପରି କିଛି ନାହିଁ କି ଯହିଁରୁ ଜମିଦାରମାନେ ଯୁକ୍ତିସଙ୍ଗତ ରୂପେ ଚିରସ୍ଥାୟୀ ବନ୍ଦୋବସ୍ତ ପାଇବାର ଆଶା କରିପାରିବେ । ମାତ୍ର ଯେବେ ସେହି ପତ୍ର ଏବଂ ତହିଁର ଉତ୍ତର ପ୍ରକାଶିତ ହେବ ତେବେ ସମ୍ଭବତଃ ଗବର୍ଣ୍ଣମେଣ୍ଟଙ୍କ କଥା ଥାକି ପାରିବ ନାହିଁ । ଶ୍ରୀମତୀ ଭାରତେଶ୍ୱରୀ ଓଡ଼ିଶା ପ୍ରତି ଇଂଲଣ୍ଡର ପ୍ରତିଜ୍ଞା ରକ୍ଷା କରି ଓଡ଼ିଶାର ବର୍ତ୍ତମାନ ରାଜସ୍ୱ ବନ୍ଦୋବସ୍ତକୁ ଚିରସ୍ଥାୟୀ କରିଦେଲେ ଭାରତ ପ୍ରତି ତାହାଙ୍କର ପ୍ରଗାଢ଼ ମନୋଯୋଗ ଏବଂ ଏହି ହୀରକ ଯୁବିଲି ବର୍ଷର ସମୁଚିତ ଉପଯୋଗୀ ହେବ ମାତ୍ର ଯେବେ ଗବର୍ଣ୍ଣମେଣ୍ଟ ତାହା ପ୍ରଦାନ ନ କରିବେ ତେବେ ଧୋଇଦ୍ୱାରା ଘଟିଥିବା ଅନିଷ୍ଟ ସକାଶେ ରାଜସ୍ୱ ଛାଡ ଦେବା ଉଚିତ ।

ଉପରଲିଖିତ ମନ୍ତବ୍ୟ ସମ୍ବନ୍ଧେ ଆମ୍ଭମାନଙ୍କର ଆଉ କିଛି ବକ୍ତବ୍ୟ ନାହିଁ । ଆମ୍ଭମାନଙ୍କର ଏକାନ୍ତ ବିଶ୍ୱାସ ଯେ ଓଡ଼ିଶାର ଜମିଦାରମାନେ ଆମ୍ଭମାନଙ୍କ ସହିତ ଐକ୍ୟ ହୋଇ ଏଥିପାଇଁ ମଧୁବାବୁଙ୍କୁ ଅସଂଖ୍ୟ ଧନ୍ୟବାଦ ଦେବେ । ମାତ୍ର ଏତିକିରେ ନିଶ୍ଚିନ୍ତ ହେଲେ କିଛି ଫଳ ହେବ ନାହିଁ ଅବିଳମ୍ବେ ଏ ବିଷୟର ଆନ୍ଦୋଳନ କରିବା ଜମିଦାର ସଭାର ଉଚିତ ହେଉଅଛି । ଭରସା କରୁଁ ସଭା ତତ୍ପର ହେବେ ।

*ଭାଗ୩୨ଗ, ସଂ୪୫ଖ୍ୟା, ୨୦/୧୧/୧୮୯୭*

## ଅଭ୍ୟର୍ଥନା ସଭା ।

ଶ୍ରୀଯୁକ୍ତ ମାନ୍ୟବର ମଧୁସୂଦନ ଦାସ ବିଲାତରୁ ପ୍ରତ୍ୟାଗମନ କରିବାରୁ ତାହାଙ୍କୁ ମଙ୍ଗଳ-ବାଦ ଏବଂ ସମାଦର ପ୍ରଦାନନିମନ୍ତେ ଗତ ସୋମବାର ସନ୍ଧ୍ୟାସମୟରେ କଟକ ପ୍ରିଣ୍ଟିଂ କମ୍ପାନିଙ୍କ କୋଠାରେ ଗୋଟିଏ ଭାରୀ ସଭା ହୋଇଥିଲା । ନଗରବାସୀ ପ୍ରାୟ ସମସ୍ତ ନାବାଳଗ ରାଜକୁମାର ସେମାନଙ୍କ ଅଭିଭାବକ ବା ଶିକ୍ଷକଙ୍କ ସହିତ ଏବଂ ଅନେକ ଜମିଦାର,ମହାଜନ, ଅଧ୍ୟାପକ ,ଉକିଲ, ମୁକ୍ତାର ,ଉଚ୍ଚ ରାଜକର୍ମଚାରୀ ଏବଂ ଅନ୍ୟାନ୍ୟ ଭଦ୍ରଲୋକ ଉପସ୍ଥିତ ହୋଇଥିଲେ । କଲେଜ ଓ ସ୍କୁଲଛାତ୍ର ଏବଂ ଅନ୍ୟାନ୍ୟ ଦର୍ଶକମଧ୍ୟ ଏତେ ଆସିଥିଲେ ଯେ ସ୍ଥାନାଭାବ ଜଣାଯାଇଥିଲା । ରାୟ ହରିବଲ୍ଲଭ ବସୁ ବାହାଦୂର ସଭାପତି ମନୋନୀତ ହୋଇ କାର୍ଯ୍ୟାରମ୍ଭ କରି ଏହି ମର୍ମରେ କହିଲେ କି ମାନ୍ୟବର ମଧୁସୂଦନ ଦାସ କେତେକାଳ ଏଠାରେ ପୀଡିତ ଥାଇ ନାନା ଚିକିତ୍ସାରେ ଆରୋଗ୍ୟ ହୋଇ ନ ପାରି ଶେଷରେ ସାହସପୂର୍ବକ ବିଲାତଯାତ୍ରା କଲେ ଏବଂ ତହିଁରେ ତାହାଙ୍କର ଅନେକ ବନ୍ଧୁବାନ୍ଧବ ସଶଙ୍କିତ ହୋଇଥିଲେ । ସେ ବିଲାତରେ ପହୁଞ୍ଚିବାର ଅଳ୍ପଦିନରେ ସୁଚିକିତ୍ସାଦ୍ୱାରା ସ୍ୱାସ୍ଥ୍ୟଲାଭ କରନ୍ତେ ନିଶ୍ଚିନ୍ତ ନ ହୋଇ ବିଲାତର ଅନେକ ସମ୍ଭ୍ରାନ୍ତ ଲୋକଙ୍କ ସହିତ ଆଳାପ ପରିଚୟ ଏବଂ ସଭା ସମିତିରେ ଯୋଗଦାନପୂର୍ବକ ସ୍ୱଦେଶର ମଙ୍ଗଳ ଚେଷ୍ଟାରେ ଆପଣାକୁ ନିଯୁକ୍ତ କଲେ । ସେ ଯେସବୁ ହିତଚେଷ୍ଟା କରିଅଛନ୍ତି ତହିଁର ଆଭାସ ଉତ୍କଳଦୀପିକାରେ ପ୍ରକାଶିତ ତାହାଙ୍କର ପତ୍ରାଦିରୁ ସର୍ବସାଧାରଣ ଜାଣିପାରି ଅଛନ୍ତି ଏବଂ ଏଣିକି ତାହାଙ୍କଠାରୁ ବିଶେଷ ଜାଣିପାରିବେ । ସେ ସ୍ୱାସ୍ଥ୍ୟଶରୀର ଘେନି ଆସିଅଛନ୍ତି ଏଥିପାଇଁ ତାହାଙ୍କ ବନ୍ଧୁମାନେ ମହା ଆନନ୍ଦିତ ହୋଇଅଛନ୍ତି ଏବଂ ସେ ସ୍ୱତଃ ପ୍ରବୃତ୍ତ ହୋଇ ଓଡିଶାର ମଙ୍ଗଳ ସାଧନ ନିମନ୍ତେ ସେଠାରେ ବହୁତ ଯତ୍ନ ଓ ପରିଶ୍ରମ କରିବାଦ୍ୱାରା ସ୍ୱଦେଶାନୁରାଗିତାର ଉଜ୍ଜ୍ୱଳ ଆଦର୍ଶ ଦେଖାଇ ସମସ୍ତ ଓଡିଶାବାସିଙ୍କୁ ବିଶେଷରେ ଗୁଣୀ କରିଅଛନ୍ତି । ଏହାଙ୍କର ସମୁଚିତ ସମାଦର ଏବଂ ଅଭ୍ୟର୍ଥନା ସକାଶେ ଏତେ ଲୋକ ଏ ସଭାରେ ଏକତ୍ରିତ ହୋଇଅଛନ୍ତି ଏବଂ ସେମାନେ ବକ୍ତାଙ୍କଠାରେ ସେ ଭାର ନ୍ୟସ୍ତ କରିବାରେ ସେ ଆପଣାକୁ ଧନ୍ୟ ଜ୍ଞାନକଲେ । ମଧୁବାବୁ ବିଲାତରେ ଯାହା ଦେଖିଅଛନ୍ତି ଏବଂ କରିଅଛନ୍ତି ତାହାଙ୍କଠାରୁ ଶୁଣିବାକୁ ସଭାର ବିଶେଷ ଆଗ୍ରହ । ଅତଏବ ସଭାର ସମୟ ନଷ୍ଟ କରିବାର ପ୍ରୟୋଜନ ନାହିଁ ।

ସଭାପତି ଆସନ ଗ୍ରହଣ କଲାରୁ ମାନ୍ୟବର ମଧୁସୂଦନ ଦାସ ମହାଶୟ ଅଭ୍ୟର୍ଥନା ନିମନ୍ତେ ବିନୟଭାବରେ କୃତଜ୍ଞତା ସ୍ୱୀକାରପୂର୍ବକ କହିଲେ କି ସେ ଏତେ ସମ୍ମାନର ପାତ୍ର ନୁହନ୍ତି । ବିଲାତର ଯେଉଁ ମହାନୁଭବମାନଙ୍କର ଉଦାର ସାହାଯ୍ୟରେ ସେ ସେଠାରେ ଯତକିଞ୍ଚିତ୍ କାର୍ଯ୍ୟ କରିବାକୁ ସମର୍ଥ ହୋଇଅଛନ୍ତି ସେହିମାନେ ସେ ସମ୍ମାନର ଯୋଗ୍ୟ ପାତ୍ର ଏବଂ ସେମାନଙ୍କ ସକାଶେ ତାହା ସେ ଗ୍ରହଣ କଲେ । ତହିଁ ଉତ୍ତାରୁ ବିଲାତପ୍ରସଙ୍ଗ ଆରମ୍ଭ କରି କହିଲେ କି ବିଲାତର ଯେଉଁ ଦିଗକୁ ଚାହିଁବ ଦେଖିବ ଯେମନ୍ତ ଜଣକିଆ କଥା ନାହିଁ ସକଳବିଷୟରେ ମେଳ ଅର୍ଥାତ୍ ବହୁଜଣ ମିଶି କାର୍ଯ୍ୟ କରିବାର ବ୍ୟାପାର । ଚାରିଆଡେ ଦେଖ ବ୍ୟବସାୟିଙ୍କର ଦଳ, କ୍ରେତାଙ୍କର ଦଳ, କଳବାଲାଙ୍କ ଦଳ,ରାଜନୈତିକ ସାମାଜିକ ଧର୍ମପ୍ରଚାରପ୍ରଭୃତି ସମସ୍ତ ବିଷୟର ସଭାସମିତି । କେହି ଆପଣାମନକୁ ଚାଲିବାର ନାହିଁ । ସମସ୍ତେ ଆପଣା ଆପଣା ଦଳଭୁକ୍ତ ଲୋକଙ୍କ ମତାମତର ଅଧୀନ । ଦଳଭୁକ୍ତ ବଡଲୋକ ଗରୀବ ଲୋକଙ୍କ ସଙ୍ଗେ ମିଶି ପରାମର୍ଶ କରୁଅଛି । ଏହାଇ ବିଲାତର ଉନ୍ନତିର କାରଣ । ଏ ଭାବ ଅସ୍ମଦ୍ଦେଶୀୟଙ୍କର ଶିକ୍ଷା କରିବା ଉଚିତ । ଏଠାରେ ଶିକ୍ଷିତଲୋକମାନେ ସାଧାରଣ ଲୋକଙ୍କଠାରୁ ପ୍ରାୟ ପୃଥକ୍ ରହନ୍ତି ସୁତରାଂ ସେମାନଙ୍କର ଚିନ୍ତା ଭିନ୍ନ ଭିନ୍ନ ଦିଗରେ ଯାଏ ଏବଂ ଐକ୍ୟତାସ୍ଥାପନ ହୋଇପାରେ ନାହିଁ । ପରସ୍ପର ମେଳ ହେତୁ ବିଶ୍ୱାସ ଦୃଢ଼ ହୁଏ ଏବଂ ସେହି ବିଶ୍ୱାସ ସ୍ଥିର ରଖିବାସକାଶେ ସତତା ଅବଲମ୍ବନ କରିବାକୁ ହୁଏ । ବିଶ୍ୱାସ ହେବାରୁ ଲୋକେ ଯୌଥକାରବାରରେ ଟଙ୍କା ଦେବାକୁ କୁଣ୍ଠିତ ହୁଅନ୍ତି ନାହିଁ ଏବଂ ତଦ୍ଦ୍ୱାରା ବ୍ୟବସାୟର ଉନ୍ନତି । ଏ ଦେଶରେ ସେ ବିଶ୍ୱାସ ଅଭାବରୁ ଲୋକେ ଆପଣା ଆପଣା ସଞ୍ଚିତଧନ ସରକାରୀ କାଗଜରେ ଅଥବା ଅଳଙ୍କାରରେ ଏବଂ କେତେ ଥବା ଭୂମିରେ ଲୁଚାଇ ରଖି ଦିଅନ୍ତି । ଏଥିରେ ଆୟ ଅଧିକ ହୁଅଇ ନାହିଁ ଏବଂ ଅନେକସ୍ଥଳେ ତ୍ରୁଟି ହୁଅଇ ।

ରାଜନୈତିକ ବ୍ୟପାରରେ ପାରଲିମେଣ୍ଟର ମେମ୍ବରମାନଙ୍କୁ ଆମ୍ଭେମାନେ ବଡ ମନେ କରୁଁ । ମାତ୍ର ସେମାନେ ଲୋକଙ୍କଦ୍ୱାରା ମନୋନୀତ ହୋଇ ସେ ପଦ ପାଇଅଛନ୍ତି । ନିୟୋଗକର୍ତ୍ତାଙ୍କ ପରାମର୍ଶର ଅଧୀନରେ ସେମାନଙ୍କୁ ଚାଲିବାକୁ ହୁଏ । ଯେବେ ଭିନ୍ନମତ କରିବେ ତେବେ ସେମାନଙ୍କ ପଦ ରହିବ ନାହିଁ ସ୍ଥୁଳରେ ସେମାନେ କେବଳ ଲୋକଙ୍କର ପ୍ରତିନିଧି ସୁତରାଂ ସେମାନଙ୍କର ଅଧୀନ । ସାଧାରଣ ଲୋକର ମତହିଁ ବିଲାତର ପ୍ରଧାନମତ । ବିଲାତର ମହିଳାମାନଙ୍କର ଚରିତ୍ର ଅତି ମହତ୍ ଏବଂ ପ୍ରଶଂଶନୀୟ ସେମାନଙ୍କ କୋମଳହୃଦୟ ପରଦୁଃଖରେ ଶୀଘ୍ର ବିଗଳିତ ହୁଏ ଏବଂ ଗୃହମଧ୍ୟରେ ସେମାନଙ୍କ କର୍ତ୍ତୃତ୍ୱ ଅସୀମ । ସେମାନେ ପାରଲିମେଣ୍ଟର ସଭ୍ୟ ହେବାକୁ ବିଶେଷ ଚେଷ୍ଟା କରୁଅଛନ୍ତି । ଏ ସମସ୍ତ ଏବଂ ଅନ୍ୟାନ୍ୟ ବିଷୟରେ ପ୍ରାୟ ଏକଘଣ୍ଟାକାଳ ଅତି ସୁନ୍ଦର ଏବଂ ଶିକ୍ଷାପ୍ରଦ ବକ୍ତୃତା ପ୍ରଦାନ କରି ଶେଷରେ ଓଡିଶାର ଚିରସ୍ଥାୟୀ ବନ୍ଦୋବସ୍ତ ସମ୍ବନ୍ଧରେ କେତେଜଣ ଉଚ୍ଚପଦସ୍ଥ ବ୍ୟକ୍ତିମାନେ ତାହାଙ୍କ ନିକଟକୁ ଯେଉଁ ପତ୍ର ଲେଖିଅଛନ୍ତି ତାହା ପାଠ କରିବାରେ ଜଣାଗଲା ଯେ ସେ ବିଷୟରେ ସେ ଅନେକ ଯତ୍ନ ଓ ଚେଷ୍ଟା କରିଅଛନ୍ତି ଏବଂ ସେଠାଲୋକଙ୍କ ଭାବରୁ ଜଣାଗଲା ଯେ ଯଦ୍ୟପି କି ଏଣିକି ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଦାନ କରିବା ସାଧାରଣ ମତ ନୁହେ ମାତ୍ର ଓଡିଶାକୁ ତାହା ପ୍ରଦାନ କରିବାକୁ ଗବର୍ଣ୍ଣମେଣ୍ଟ ପୁନଃ ପ୍ରତିଜ୍ଞା କରିବା କଥା ଯେବେ ପ୍ରକୃତ ହୁଏ ତେବେ ବିଲାତର ଲୋକମାନେ ତାହା ଅବଶ୍ୟ ପ୍ରତିପାଳନ କରିବେ । ସେହି କଥା ବିଲାତର ଲୋକଙ୍କୁ ବୁଝାଇଦେବା ଏବଂ ସେମାନଙ୍କ ସହାନୁଭୂତି ଲାଭର ଚେଷ୍ଟା କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ହେଉଅଛି ଏବଂ ତହିଁ ପାଇଁ ଅସ୍ମଦେଶୀୟଙ୍କର ବିଶେଷ ଚେଷ୍ଟାବାନ୍ ହେବାର ଉପଦେଶ ଦେଇ ସେ ବକ୍ତୃତା ଶେଷ କଲେ ଏବଂ ସଭାପତିଙ୍କୁ ଧନ୍ୟବାଦ ଦିୟାଯାଇ ସଭା ଭଙ୍ଗ ହେଲା ।

*ଭାଗ୩୨ଗ, ସଂ୪୭ଖ୍ୟା, ୪।୧୨।୧୮୯୭*

# ୧୮୯୮

## ପ୍ରେରିତପତ୍ର ।
## [ମଧୁବାବୁଙ୍କର ବିଲାତ ଭ୍ରମଣ ]

ମାନ୍ୟବର ବାବୁ ମଧୁସୂଦନ ଦାସଙ୍କର ବିଲାତ ଭ୍ରମଣ ଏବର୍ଷର ଗୋଟିଏ ପ୍ରଧାନ ଘଟନା ବୋଲିବାକୁ ହେବ । ଏ ପର୍ଯ୍ୟନ୍ତ କେହି ଉତ୍କଳ ପୁତ୍ର ବିଲାତ ଦେଖି ନ ଥିଲେ । ମଧୁବାବୁ ବିଲାତକୁ ଯାଇ ସେଠାର କେତେକ ମାନ୍ୟ ଗନ୍ୟ ଲୋକଙ୍କ ସଙ୍ଗେ ସାକ୍ଷାତ କରି ଓଡିଶାର ଅବସ୍ଥା ଜଣାଇଁ ଓ ଚିରସ୍ଥାୟୀ ବନ୍ଦୋବସ୍ତର ଆବଶ୍ୟକତା ବିଶେଷରୂପେ ଦର୍ଶାଇ ଓଡିଶାର ଅନେକ ଉପକାର କରିଅଛନ୍ତି । ଆହୁରି ସେ ବିଲାତର କେତେ ସଭା ସମିତିର ସଭ୍ୟ ଶ୍ରେଣୀଭୁକ୍ତ ହୋଇ ଓଡିଶା ଓ ବିଲାତ ମଧ୍ୟରେ ଗୋଟିଏ ଏପରି ସମ୍ବନ୍ଧ ସ୍ଥାପନ କରି ଅଛନ୍ତି କି ଯଦ୍ୱାରା କେତେବେଳେ ହେଲେ କିଛି ସୁଫଳ ଫଳିବାର ସମ୍ଭାବନା ସେ ବିଲାତରୁ ଫେରି ଆସିଲାରୁ ଏ ନଗରବାସିମାନେ ତାହାଙ୍କର ଅଭ୍ୟର୍ଥନା କରି ହୃଦୟର କୃତଜ୍ଞତା ପ୍ରକାଶ କରି ଅଛନ୍ତି ସୁଖର ବିଷୟ ଅଟେ । ଏହିକି ତାହାଙ୍କର ଉପଦେଶ ଓ ଆଦର୍ଶ ହୃଦୟଙ୍ଗମ କରି ସ୍ୱଦେଶର ହିତ ଓ ଉନ୍ନତି ଚିନ୍ତାରେ ଓଡିଶାର ଶିକ୍ଷିତ ଲୋକମାନେ ଉତ୍ସାହ ସହିତ ପ୍ରବୃତ୍ତ ହେଉନ୍ତୁ ଏହାଇ ଆମ୍ଭମାନଙ୍କର ବିନୀତ ପ୍ରାର୍ଥନା । ଗତ କାଳ ଆଉ ଫେରି ଆସିବ ନାହିଁ ମାତ୍ର ତହିଁରେ ଯେ ସମସ୍ତ ସଦୁପଦେଶ ଏବଂ ବହୁଦର୍ଶିତା ଲାଭ କରିଅଛୁ ସେ ସବୁ କାର୍ଯ୍ୟରେ ପରିଣତ କରିବା ପାଇଁ ଏକାନ୍ତ ଯତ୍ନ ଓ ଚେଷ୍ଟା କଲେ ତାହା ବିଫଳ ହେବ ନାହିଁ ।

*ଭା୩୩ଗ,ସଂ୧ଖ୍ୟା, ୧/୧/୧୮୯୮*

## ଓଡିଶାର ସାଧାରଣ ଶିକ୍ଷା ।
## [ପୂର୍ବ ପ୍ରକାଶିତ ଉତ୍ତାରୁ]

ରେବନସା କଲେଜ ଓଡିଶାର ସର୍ବପ୍ରଧାନ ବିଦ୍ୟାଳୟ ଅଟେ । ବର୍ଣ୍ଣିତ ବର୍ଷରେ ୭୧ ଛାତ୍ର ଏବଂ ତହିଁ ପୂର୍ବବର୍ଷ ୭୬ ଛାତ୍ର ଥିଲେ । ଏହାର ମୋଟ ବ୍ୟୟ ଟ୨୨୮୮୩ ଙ୍କା ମଧ୍ୟରୁ ଛାତ୍ର ବେତନ ଟ୪୩୬୫ ଙ୍କା ଯାଇ ଅବଶିଷ୍ଟ ପ୍ରାଦେଶିକ ରାଜସ୍ୱରୁ ଦିଆ ଯାଇଥିଲା । ବି,ଏ, ପରୀକ୍ଷାରେ ଜ୧୬ ଣ ମଧ୍ୟରୁ ଜ୫ଣ ଏବଂ ଏଫ, ଏ, ପରୀକ୍ଷାରେ ଜ୨୭ଣ ମଧ୍ୟରୁ ଜ୧୧ଣ ଗତ ମାରଚ ମାସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏ ଛଡା ଦୁଇ ଜଣ ବି,ଏଲ, ଏବଂ ଏକଜଣ ଉକାଲତୀ ପରୀକ୍ଷାରେ ସଫଳ ହୋଇଥିଲେ । ଏଥି ସଂଲଗ୍ନ ସ୍କୁଲର ଛାତ୍ର ସଂଖ୍ୟା ଏବର୍ଷ ଜ୨୬୫ଣ ଏବଂ ତହିଁ ପୂର୍ବ ବର୍ଷ ଜ୨୮୭ ଣ ଥିଲା । ମୋଟ ବ୍ୟୟ ଟ୮୬୦୪ଙ୍କାକୁ ଛାତ୍ର ବେତନ ଟ୫୯୪୭ ଙ୍କା ଆଦାୟ ହୋଇଥିଲା । ପ୍ରବେଶିକା ପରୀକ୍ଷା ନିମନ୍ତେ ପଠାଯିବା ଜ୧୯ ଣ ଛାତ୍ର ମଧ୍ୟରୁ ଜ୧୭ ଣ ପାସ କରିଥିଲେ । ଓଡିଶାର ଭୂତପୂର୍ବ କମିଶନର ଶ୍ରୀଯୁକ୍ତ ରେବନ୍‌ସା ସାହେବ ପାଞ୍ଚବର୍ଷର ଅର୍ଦ୍ଧବ୍ୟୟ ନିମନ୍ତେ ସ୍ଥାନୀୟ ଭେଦାଦ୍ୱାରା ଟ୩୦୦୦୦ ଙ୍କା ସଂଗ୍ରହ କରିବାରୁ ଏ କଲେଜ ସ୍ଥାପିତ ହେଲା ଏବଂ ତାହାଙ୍କର ଏବଂ ତାହାଙ୍କ ପରବର୍ତ୍ତି କମିଶନରମାନଙ୍କ ଚେଷ୍ଟାରେ ଆଦାୟ ହେବା ଭେଦା ଦ୍ୱାରା ଏଥିର ସ୍ଥାୟିତ୍ୱ ଏବଂ ଉନ୍ନତି ସାଧନ ହେବା ପ୍ରତ୍ୟକ୍ଷେ କମିଶନର ସାହେବଙ୍କୁ ନ ପଚାରି ଗତ ମାରିଚ ମାସର ନୂତନ ବନ୍ଦୋବସ୍ତରେ ଏହି କଲେଜ ଚିରକାଳ ନିମନ୍ତେ ଜଣେ ଇଉରୋପୀୟ ପ୍ରିନ୍‌ସିପଲର ସାହାଯ୍ୟରୁ ବଞ୍ଚିତ ହେବାରୁ ବର୍ତ୍ତମାନ କମିଶନର ଶ୍ରୀଯୁକ୍ତ କୁକ୍ ସାହେବ ଦୁଃଖ ପ୍ରକାଶ କରିଅଛନ୍ତି । ସେ କହି ଅଛନ୍ତି କି ଓଡିଶା ଗଡ଼ଜାତମାନଙ୍କ

ସଙ୍ଗେ ଏହି କଲେଜର ନିକଟ ସମ୍ବନ୍ଧ ଏବଂ ନାବାଲଗ ରାଜାମାନେ ସ୍ୱତନ୍ତ୍ର ଗୋଟିଏ ରାଜକୁମାର କଲେଜର ବ୍ୟୟରୁ ଅବ୍ୟାହତି ପାଇ ଏଠାରେ ପଢୁଥିବାରୁ ଜଣେ ଇଉରୋପୀୟ ପ୍ରିନ୍ସିପଲ ରହିବାର ନିତାନ୍ତ ଆବଶ୍ୟକ। ବିଶେଷତଃ ଓଡିଶା ବିଭାଗର ଲୋକ ସଂଖ୍ୟା ଏବଂ ରେବନ୍ସା କଲେଜର ଛାତ୍ରସଂଖ୍ୟା ପାଟନା ବିଭାଗ ଓ ସେଠା କଲେଜର ଲୋକ ଓ ଛାତ୍ରସଂଖ୍ୟାର ଏକ ତୃତୀୟାଂଶରୁ ଅଧିକ ହେଉଥିବା ସ୍ଥଳେ ପାଟନା କଲେଜରେ ଦୁଇଜଣ ଅଧ୍ୟାପକ ଏବଂ ଏକଜଣ ପ୍ରିନସିପଲ ଏପରି ଜଣଣ ଇଉରୋପୀୟ ଖଞ୍ଜା ହୋଇଥିବା ସ୍ଥଳେ ରେବନସା କଲେଜରେ ଜଣେ ସୁଦ୍ଧା ନ ରହିବା ଅନ୍ୟାୟ ଅଟେ। ଅତଏବ ସେ ଏବିଷୟ ପୁନର୍ବିଚାର କରିବା ନିମନ୍ତେ ଗବର୍ଣମେଣ୍ଟଙ୍କୁ ଅନୁରୋଧ କରିଅଛନ୍ତି ଏବଂ ଆମ୍ଭେମାନେ ପୂର୍ବେ ଜଣାଇଅଛୁଁ ଯେ ଶିକ୍ଷାବିଭାଗର ଡାଇରେକ୍ଟରଙ୍କଠାରୁ ଗବର୍ଣମେଣ୍ଟ ଏ ବିଷୟର ରିପୋର୍ଟ ତଲବ କରିଅଛନ୍ତି। ଆମ୍ଭେମାନେ ନୂତନ ବନ୍ଦୋବସ୍ତର ମର୍ମ ଏହିପରି ବୁଝିଅଛୁଁ କି ଉଚ୍ଚ ବେତନ ସ୍ଥଳେ ଇଉରୋପୀୟ ଏବଂ ଅଳ୍ପ ବେତନ ସ୍ଥଳେ ଦେଶୀୟ ପ୍ରିନସିପଲ ରଖା ଯାଇଅଛି। ଦେଶୀୟ ଲୋକଙ୍କୁ ଉଚ୍ଚ ବେତନ ଅଥବା ଉଚ୍ଚ ଅଧିକାର ଯୋଗ୍ୟତାସ୍ଥଳେ ବଞ୍ଚିତ କରିବା ନ୍ୟାୟସଙ୍ଗତ କହି ନ ପାରୁଁ। ଫଳତଃ କେତେକ ସ୍ଥଳେ ଇଉରୋପୀୟ ଏବଂ କେତେକ ସ୍ଥଳେ ଦେଶୀୟ ପ୍ରିନସିପଲ ଖଞ୍ଜା ହୋଇଥିବା ସ୍ଥଳେ କେଉଁଠାର ଫଳ କିପରି ହେବ ବ ୨/୩ ବର୍ଷରେ ଜଣା ପଡିବ। ତହିଁ ପୂର୍ବରୁ କିଛି ବୋଲାଯାଇ ନ ପାରେ। ପରନ୍ତୁ ଯେବେ କେବଳ ଗଡ଼ଜାତର ନାବାଲଗ ରାଜାଙ୍କ ସକାଶେ ଇଉରୋପୀୟ ପ୍ରିନସିପଲ ନିତାନ୍ତ ଆବଶ୍ୟକ ତେବେ ହଲବାର୍ଡ ସାହେବଙ୍କ ପ୍ରତାପରେ ନାବାଲଗ ରାଜାମାନେ ସ୍କୁଲ ଛାଡି ପଳାଇବା ଏବଂ ତାହାଙ୍କ ଉତ୍ତାରୁ ପୁନର୍ବାର ଭରତି ହେବାର କାରଣ ବୁଝାଇ ଦେବା ଉଚିତ ଥିଲା। ପକ୍ଷାନ୍ତରେ ଅନେକ ସ୍ଥଳେ ଇଉରୋପୀୟ ଶିକ୍ଷକଦ୍ୱାରା ଗଡ଼ଜାତ ରାଜାମାନଙ୍କର ହିତର ବିପରୀତ ଘଟିବାର ଦେଖା ଯାଇଅଛି।

*ଭା୩୩ଗ, ସଂ୮ଖ୍ୟା, ୧୯/୨/୧୮୯୮*

## [ଓଡିଶା ପ୍ରତି ଅବହେଳା]

ଅଦ୍ୟ ବଙ୍ଗୀୟ ବ୍ୟବସ୍ଥାପକ ସଭା ଫିଟିବାର ଧାର୍ଯ୍ୟ ହୋଇଅଛି। ଓଡିଶାର ପ୍ରତିନିଧି ମାନ୍ୟବର ମଧୁସୂଦନ ଦାସଙ୍କ କାର୍ଯ୍ୟକାଳ ଗତ ତା ୧୨ ରିଖରେ ପୂର୍ଣ୍ଣ ହୋଇଯାଇଅଛି । ତାହାଙ୍କ ସ୍ଥାନରେ ନୂତନ ସଦସ୍ୟ ଏଥର ଉପସ୍ଥିତ ହେବେ। ପ୍ରଜାସ୍ୱତ୍ୱବିଷୟକ ଆଇନ ସଂଶୋଧନର ପାଣ୍ଡୁଲିପିର ବିଚାର ଏହି ବର୍ଷର ଅଧିବେଶନରେ ହେବ। ତହିଁସଙ୍ଗେ ଓଡିଶାର ବିଶେଷ ସମ୍ପର୍କ । ଏସମୟରେ ଓଡିଶାର ସଦସ୍ୟ ନ ରହିବା ବଡ଼ ଦୁଃଖର ବିଷୟ ଅଟେ।

*ଭା୩୩ଗ, ସଂ୯ଖ୍ୟା, ୨୬/୨/୧୮୯୮*

## ପୁସ୍ତକ ପ୍ରାପ୍ତି ସ୍ୱୀକାର।

ଆମ୍ଭେମାନେ ନିମ୍ନଲିଖିତ ପୁସ୍ତକମାନ ଯଥାସମୟରେ ପାଇବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ।

**ବାଳିକାପାଠ** - ଖଲ୍ଲିକୋଟର ରାଣୀ ଶ୍ରୀ ପାଟ ମହାଦେବୀ କନକମଞ୍ଜରୀଙ୍କ କୃତ କଟକ ରାୟ ପ୍ରେସରେ ମୁଦ୍ରିତ ଏବଂ ବିନାମୂଲ୍ୟେ ବିତରିତ। ଉତ୍ତମ ବନ୍ଧାଇ, ସଚିତ୍ର ଏବଂ ସାଧାରଣ ଆକାରର ପୃ ୧୭୪ ଷାରେ ସମ୍ପୂର୍ଣ୍ଣ। ଏଥିରେ ରାମାୟଣ ମହାଭାରତ କେତେକ ଜୀବଜନ୍ତୁ ଉଦ୍ଭିଦ ଏବଂ ଆଦର୍ଶ ସ୍ତ୍ରୀ ଓ ରନ୍ଧାବଡ଼ା ଘରକରଣା ଇତ୍ୟାଦି କଥାମାନ ଅଛି। ଓଡିଶା ଶିକ୍ଷାବିଭାଗର ଇନସ୍ପେକ୍ଟର ରାୟ ରାଧାନାଥ ରାୟ ବାହାଦୂରଙ୍କ ମତରେ ଏକା ଓଡିଶାରେ କାହିଁକି ସମସ୍ତ ବଙ୍ଗପ୍ରଦେଶରେ ସ୍ତ୍ରୀ ଶିକ୍ଷାର ଉପଯୋଗୀ ଏପରି ପୁସ୍ତକ ବିରଳ। ଏଥିଉପରେ ଆମ୍ଭମାନଙ୍କର କିଛି ବୋଲିବା ଅଧିକ। ମାତ୍ର ନୀତିଶିକ୍ଷାର ଅମୂଲ୍ୟ ଆକାର ରାମାୟଣ ଓ ମହାଭାରତ ଆଇମାଙ୍କ କାହାଣୀ ତୁଲ୍ୟ ଏବଂ ରନ୍ଧାବଡ଼ା ଘରକରଣା ଇତ୍ୟାଦି ସ୍ତ୍ରୀମାନଙ୍କର

ଦୈନିକ କାର୍ଯ୍ୟ ପୁସ୍ତକଦ୍ୱାରା ଶିକ୍ଷିବା ବିଷୟଟା ଆମ୍ଭମାନଙ୍କୁ ଅଡୁଆ ବୋଧ ହେଲା । ଅଥବା ଏହା ବର୍ତ୍ତମାନ୍ କାଳର ଅନୁରୂପ ଅଟେ ।

ଗୃହସ୍ଥ ଜୀବନ ଅର୍ଥାତ୍ ସ୍ତ୍ରୀଲୋକଙ୍କ ଗୃହଧର୍ମ-ଶ୍ରୀ ଭଗବାନ ସାନ୍ତରାଙ୍କ ପ୍ରଣୀତ ଏବଂ ଏ ନଗରସ୍ଥ ଓଡିଶା ଦର୍ପଣ ପ୍ରେସରେ ମୁଦ୍ରିତ । ଏହି କ୍ଷୁଦ୍ର ପୁସ୍ତକର କଳେବର ପୃ ୨ଷ୍ଠା ଏବଂ ଏଥିରେ ଗୃହକର୍ମ, ସ୍ୱାମୀ ଓ ଗୁରୁଜନଙ୍କ ସେବା ଏବଂ ସନ୍ତାନାଦିଙ୍କ ଶିକ୍ଷାବିଷୟରେ କେତେଗୁଡିଏ ଉପଦେଶ ପ୍ରଦତ୍ତ ହୋଇଅଛି ।

**ଲୀଳାବତୀ ଅଥବା ମା ଝିଅଙ୍କ କଥାବାର୍ତ୍ତା**-ଶ୍ରୀ ପାର୍ବତୀ ଚରଣ ଦାସ ବି,ଏ,ଙ୍କ ଦ୍ୱାରା ରଚିତ, ଓଡିଶା ଦର୍ପଣ ପ୍ରେସରେ ମୁଦ୍ରିତ ଏବଂ ଢେଙ୍କାନାଳର ରାଣୀଙ୍କୁ ଉତ୍ସର୍ଗିତ । ଏହି କ୍ଷୁଦ୍ର ପୁସ୍ତକର କଳେବର ପୃ ୨୬ ଷ୍ଠା ଏଥିରେ ମା ଏବଂ ଝିଅଙ୍କ କଥୋପକଥନ ଛଳେ ସ୍ତ୍ରୀମାନଙ୍କ ସ୍ୱଭାବ ଏବଂ କର୍ତ୍ତବ୍ୟ କାର୍ଯ୍ୟ ସମ୍ବନ୍ଧରେ କେତେଗୁଡିଏ ସଦୁପଦେଶ ପ୍ରଦତ୍ତ ହୋଇଅଛି । ଠାବେ ଠାବେ ଭାଷା କିଞ୍ଚିତ ଅତି ଗ୍ରାମ୍ୟତାକୁ ସ୍ପର୍ଶ କରିଅଛି ।

ଉପରଲିଖିତ ପୁସ୍ତକମାନ ପ୍ରକାଶିତ ହେବା ଦ୍ୱାରା ଜଣାଯାଏ ଯେ ସ୍ତ୍ରୀଶିକ୍ଷା ପ୍ରତି ଲୋକଙ୍କର ମନ ଅଧିକତର ଜାଗ୍ରତ ହେଉଅଛି । ମାତ୍ର ଶିକ୍ଷୋପଯୋଗୀ ବିଷୟ ସମ୍ବନ୍ଧରେ ଭ୍ରମ ରହିଅଛି । ପୁରୁଷ କିପରି ସ୍ତ୍ରୀମାନଙ୍କୁ ବିଦ୍ୟାଶିକ୍ଷା ଦେବା କର୍ତ୍ତବ୍ୟ ଏବଂ ତହିଁପାଇଁ ଭିନ୍ନପ୍ରକାର ପୁସ୍ତକ ରଚନାର ପ୍ରୟୋଜନ ଦେଖାଯାଉ ନାହିଁ ।

**ସଙ୍ଗୀତ ରାଧାମାଧବ ନାଟକ**- ବିଶାଖାପାଟନାର ଅନ୍ତର୍ଗତ ଜୟପୁର ରାଜକୁମାର ବୀରବର ଶ୍ରୀ ବିକ୍ରମଦେବ ବର୍ମାଙ୍କ ବିରଚିତ ଏବଂ କଟକ ପ୍ରିଣ୍ଟିଂ କମ୍ପାନିରେ ମୁଦ୍ରିତ । ଏହା ପୃ୪୫ ଷ୍ଠାରେ ପୂର୍ଣ୍ଣ ଏବଂ ନାନା ରାଗିଣିରେ ଗୀତ ନାନା ଛାନ୍ଦର ଶ୍ଳୋକ ଓ ଗଦ୍ୟରେ ଆଧୁନିକ ନାଟକ ଅପେକ୍ଷା ଗୋପୀନାଥବଲ୍ଲଭ ନାଟକର ରୀତିରେ ଶ୍ରୀ ରାଧାକୃଷ୍ଣଙ୍କର ଗୋଟିଏ ଲୀଳା ବର୍ଣ୍ଣିତ ହୋଇଅଛି । ଗ୍ରନ୍ଥକାର ଓଡିଶାର ଦକ୍ଷିଣ ପ୍ରାନ୍ତସୀମା ବାସୀ ହୋଇ ଶୁଦ୍ଧା ନିଜ ମାତୃଭାଷାର ବିଶୁଦ୍ଧତା ରକ୍ଷା କରିବାକୁ ଅନେକ ପରିମାଣରେ ସମର୍ଥ ହୋଇଅଛନ୍ତି । ଏବଂ ତେତେଦୂରରେ ଉତ୍କଳଭାଷାର ଏପରି ଚର୍ଚ୍ଚା ହେଉଅଛି । ଏହା ଦେଖି ମନରେ ବହୁତ ଆନନ୍ଦ ଜାତ ହେଉଅଛି । ଏ ପୁସ୍ତକ ଭକ୍ତ ଓ ସଙ୍ଗୀତ ପ୍ରୀୟମାନଙ୍କର ଅବଶ୍ୟ ଆଦରର ସାମଗ୍ରି ଏବଂ ଆମ୍ଭେମାନେ ବିବେଚନା କରୁଁ କି ଏଥିର ଅଭିନୟ ବା ଯାତ୍ରା ହେଲେ ବଡ ରୁଚିକର ହେବ ।

**ଶକୁନ୍ତଳା ନାଟକ** - ଶ୍ରୀ ହରିହର ରଥ ଶର୍ମାଙ୍କଦ୍ୱାରା ଅନୁବାଦିତ ଏବଂ ଉତ୍କଳ ଦର୍ପଣ ଯନ୍ତ୍ରାଳୟରେ ମୁଦ୍ରିତ । ସଂସ୍କୃତ ଅଭିଜ୍ଞାନ ଶକୁନ୍ତଳା ନାଟକର ଏହା ଅନୁବାଦ ଅଟେ । ରାୟ ରାଧାନାଥ ରାୟ ବାହାଦୂର ଏହି ଅନୁବାଦର ଭାଷା ସ୍ଥଳରେ ଉତ୍ତମ ହୋଇଥିବାର ମନ୍ତବ୍ୟ ପ୍ରକାଶ କରିଅଛନ୍ତି ଏବଂ ଆମ୍ଭେମାନେ ତହିଁରେ ଐକ୍ୟ ଅଛୁଁ । ମୁଦ୍ରାଙ୍କନ କାର୍ଯ୍ୟ ମନ୍ଦ ହୋଇ ନାହିଁ ମାତ୍ର ଦୁର୍ଭାଗ୍ୟବଶତଃ ଆମ୍ଭେମାନେ ଯେଉଁ ପୁସ୍ତକ ଖଣ୍ଡିକ ଉପହାର ପାଇଅଛୁଁ ତହିଁରେ ପୃ୭୩ଷ୍ଠା ଠାରୁ ପୃ୮ ୪ଷ୍ଠା ପର୍ଯ୍ୟନ୍ତ ନାହିଁ । ଏହା ଅବଶ୍ୟ ଯନ୍ତ୍ରାଳୟର ଭ୍ରମ ଏବଂ ଏପରି ବେଳେ ବେଳେ ଘଟିବା ବିଚିତ୍ର ନୁହେ । ଯାହାହେଉ ଗ୍ରନ୍ଥକାର ଏ ପୁସ୍ତକ ପ୍ରକାଶ ଦ୍ୱାରା ଉତ୍କଳସାହିତ୍ୟ ଭଣ୍ଡାରର ପୁଷ୍ଟିସାଧନ କରିଅଛନ୍ତି ଏବଂ ଆମ୍ଭେମାନେ ଅନୁରୋଧ କରୁଁ ସର୍ବସାଧାରଣ ଏହା ପାଠଦ୍ୱାରା ତାହାଙ୍କର ଉତ୍ସାହ ବର୍ଦ୍ଧନ କରିବେ ।

*ଭା୩୩ଗ,ସଂ୧୧ଖ୍ୟା, ୧୨।୩।୧୮୯୮*

## [ଓଡିଆ ପାଞ୍ଜି ]

ଏବର୍ଷ ଓଡିୟା ପାଞ୍ଜି ସମ୍ବନ୍ଧରେ ପ୍ରିଣ୍ଟିଂ କମ୍ପାନିର ସମ୍ପାଦକଙ୍କର ଖଣ୍ଡିଏ ପ୍ରେରିତ ପତ୍ର ଗତ ଓଡିୟା ନବସମ୍ବାଦରେ ପ୍ରକାଶିତ ହୋଇଅଛି । ଦୀପିକାର ପାଠକମାନଙ୍କ ଜାଣିବା କାରଣ ସ୍ଥାନାନ୍ତରେ ତାହା ପ୍ରକାଶ କଲୁଁ । ପ୍ରିଣ୍ଟିଂ କମ୍ପାନୀ ଯେମନ୍ତ ଛାପା ଓଡିଆ ପାଞ୍ଜି ପ୍ରଚାରର ତେମନ୍ତ ମହା ମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କ ଖ୍ୟାତି ପ୍ରଚାରର ମୂଳକର୍ତ୍ତା ଅଟନ୍ତି । ସାମନ୍ତ ମହାଶୟ ରାୟ ପ୍ରେସରେ ଏଥର ଖଣ୍ଡେ ପାଞ୍ଜି ବାହାର କରି କମ୍ପାନୀର ପ୍ରତିଦ୍ୱନ୍ଦ୍ୱୀ ହେଲେ । ଯେବେ ସେ ପାଞ୍ଜି **ଅ**ପେକ୍ଷାକୃତ ବିଶୁଦ୍ଧ ଏବଂ ସୁଲଭ ହୋଇଥାନ୍ତା ତେବେ ସେପରି ପ୍ରତିଯୋଗିତାରେ ଜନସାଧାରଣରେ ଉପକାର ହୁଅନ୍ତା । ମାତ୍ର ସେ କେବଳ ଆପଣା ନାମବଳରେ

ଅଶୁଦ୍ଧପୂର୍ଣ୍ଣ ପାଞ୍ଜି ଖଣ୍ଡକୁ ଶୁଦ୍ଧ ବୋଲି ପ୍ରଚାର କରିବାକୁ ବ୍ୟସ୍ତ ଥିଲେ ଖଡିରତ୍ନ ତାହାଙ୍କର ଭ୍ରମମାନ ଦେଖାଇ ଦେବାରେ ବର୍ତ୍ତମାନ୍ ସ୍ୱୀକାର କରି ତାହାଙ୍କ ପାଞ୍ଜିର କ୍ରେତାମାନଙ୍କୁ ସେସବୁ ଭ୍ରମ ସଂଶୋଧନ କରିଦେବାକୁ ଅନୁରୋଧ କରିଅଛନ୍ତି ଏବଂ ସେସବୁ ଭ୍ରମ ତାହାଙ୍କର ଶିଷ୍ୟମାନଙ୍କ ଅସାବଧାନତା ଯୋଗୁ ଘଟିବାର ଲେଖିଅଛନ୍ତି । **XXXX** ତାହାଙ୍କର ପ୍ରଧାନ ଶିଷ୍ୟ ରାଜବଲ୍ଲଭ ଗତ ଦିସମ୍ବର ମାସ ତା ୨୯ ରିଖର ନବସଂବାଦରେ ଯେଉଁ ପତ୍ର ପ୍ରକାଶ କରିଅଛନ୍ତି ତହିଁରେ ସେସବୁ ଭ୍ରମ ନିମନ୍ତେ ସାମନ୍ତ ମହାଶୟଙ୍କୁ ଦାୟୀ କରିଅଛନ୍ତି । ଯେଉଁ ଗୁରୁ ଶିଷ୍ୟ ଦୁଇଜଣ ମିଶି ପାଞ୍ଜିଖଣ୍ଡକ ବାହାର କରିଅଛନ୍ତି ସେମାନେ ପରସ୍ପରକୁ ଦୋଷୀ କରିବା ସାମାନ୍ୟ କୌତୁକର ବିଷୟ ନୁହେ ଏବଂ ସେମାନଙ୍କ ଉପରେ ନିର୍ଭର କରିବା ବିଡମ୍ବନା ବିନା ଆଉ କି ବୋଲାଯିବ ? ଲୋକେ ଆପଣା ଆପଣା ରୁଚି ଏବଂ ବିବେଚନା ଅନୁସାରେ ଯେଉଁ ପାଞ୍ଜି ଇଛା ଗ୍ରହଣ କରନ୍ତୁ ମାତ୍ର ଏହା ସ୍ୱୀକାର କରିବାକୁ ହେବ ଯେ ପ୍ରିଣ୍ଟିଂ କମ୍ପାନୀ ସାଧ୍ୟମତେ ଶୁଦ୍ଧ ପାଞ୍ଜି ବାହାର କରି ନ ଥିଲେ ସାମନ୍ତଙ୍କର ଭ୍ରମପୂର୍ଣ୍ଣ ପାଞ୍ଜି ଅଭ୍ରାନ୍ତ ବୋଲି ପ୍ରଚଳିତ ହୋଇଥାନ୍ତା ଏବଂ ତଦ୍ୱାରା କେତେଲୋକର କ୍ରୀୟାକଳାପ ନଷ୍ଟ ହୋଇଥାନ୍ତା । କଟକ ପ୍ରିଣ୍ଟିଂକମ୍ପାନୀ ସେ ଅନିଷ୍ଟ ନିବାରଣ କରି ସର୍ବସାଧାରଣଙ୍କ ଧନ୍ୟବାଦର ପାତ୍ର ହୋଇଅଛନ୍ତି ସନ୍ଦେହ ନାହିଁ ପରନ୍ତୁ ସାମନ୍ତ ମହାଶୟ ଏତେଦିନେ ତାହାଙ୍କର ପାଞ୍ଜିର ଗ୍ରାହକମାନଙ୍କୁ ଭ୍ରମ ସଂଶୋଧନ କରି ନେବାପାଇଁ ଯେ ଅନୁରୋଧ କରିଅଛନ୍ତି ତାହା ସମ୍ଭବ କି ? ତାହାଙ୍କର ବିଜ୍ଞାପନ କେତେ କ୍ରେତାର ଦୃଷ୍ଟିଗୋଚର ହେବ ଏବଂ କେତେ ଲୋକ ସଂଶୋଧନ କରିବାକୁ ସମର୍ଥ ହେବେ ?

*ଭାଗ୩୩, ସଂ୧୬ଖ୍ୟା, ୧୬।୪।୧୮୯୮*

## [ମଧୁସୂଦନ ଦାସଙ୍କ ବିଜ୍ଞାପନ ]

ସ୍ଥାନାନ୍ତରେ ପ୍ରକାଶିତ ମାନ୍ୟବର ବାବୁ ମଧୁସୂଦନ ଦାସଙ୍କ ବିଜ୍ଞାପନ ପ୍ରତି ପାଠକମାନଙ୍କର ଦୃଷ୍ଟି ପ୍ରାର୍ଥନା କରୁଅଛୁ । ମଧୁବାବୁଙ୍କର ଅବାରିତଦ୍ୱାରା ଏବଂ ସର୍ବ ଶ୍ରେଣୀର ଭଦ୍ରଲୋକଙ୍କ ସହିତ ବନ୍ଧୁତା ସ୍ଥାପନ ଏବଂ ଦେଶର କଲ୍ୟାଣ ନିମନ୍ତେ କଥାବାର୍ତ୍ତା କରିବା ଅଭିପ୍ରାୟରେ ଅହରହ ଆପଣା କୋଠିକୁ ଆମନ୍ତ୍ରଣ କରି ସମାଦର କରୁଅଛନ୍ତି । ବନ୍ଧୁଭାବରେ କୌଣସି ବିଷୟର କଥାବାର୍ତ୍ତା ତାହାଙ୍କସଙ୍ଗେ କଲେ ସକଳ ବିଷୟ ଜାଣିବାର ସଂପୂର୍ଣ୍ଣ ସୁବିଧାଥିବା ପ୍ରତ୍ୟକ୍ଷେ ବେନାମି ପତ୍ର ଲେଖି ତାହାଙ୍କୁ ବ୍ୟସ୍ତ କରିବାର କୌଣସି କାରଣ ଆମ୍ଭେମାନେ ବୁଝିପାରୁ ନାହୁଁ । ଏପରି ବେନାମିପତ୍ରଦ୍ୱାରା କିଛି ଲାଭର ଆଶା ନାହିଁ ଏବଂ ସେପରି ପତ୍ର କୌଣସି ଭଦ୍ରଲୋକ ନିକଟକୁ ଲେଖିବା ଆଦୌ ଅନ୍ୟାୟ ।

*ଭାଗ୩୩, ସଂ୧୭ଖ୍ୟା, ୨୩।୪।୧୮୯୮*

## ପୁରୀ ମନ୍ଦିର ।

ସ୍ଥାନାନ୍ତରେ ପ୍ରକାଶିତ ବିଜ୍ଞାପନରୁ ସର୍ବସାଧାରଣ ଅବଗତ ହେବେ ଯେ ପୁରୀ ମନ୍ଦିରର କାର୍ଯ୍ୟ ସୁବନ୍ଦୋବସ୍ତରେ ନିର୍ବାହ ହେବାର ଉପାୟ ସ୍ଥିର କରିବା କାରଣ ଆଗାମୀ ସୋମବାର ଉତ୍କଳସଭାର ଗୋଟିଏ ଅଧିବେଶନ ହେବ। ପାଠକମାନଙ୍କର ମନେପଡ଼ିବ ଯେ ଠିକ ବ ୧୨ ର୍ଷ ତଳେ ଅର୍ଥାତ୍ ସନ ୧୮୮୬ ସାଲରେ ପୁରୀ ମନ୍ଦିରର ଭାର ପୁରୀ ରାଜବଂଶ ହାତରୁ କାଢିନେଇ ଗୋଟିଏ କମିଟୀକୁ ଅର୍ପଣ କରିବା ଅଭିପ୍ରାୟରେ ସରକାର ବାହାଦୂର ଇଚ୍ଛା କରିବାରୁ ଏହି ଉତ୍କଳସଭାର ଉଦ୍ୟମରେ ଓଡିଶାର ସର୍ବସାଧାରଣ ତହିଁର ଘୋର ପ୍ରତିବାଦ କରିଥିଲେ ଏବଂ ପ୍ରଜାବତ୍ସଳ ଇଂରାଜଗବର୍ଣ୍ଣମେଣ୍ଟ ଜନସାଧାରଣଙ୍କ ଇଚ୍ଛା ଓ ଅନୁରୋଧ ଭାଙ୍ଗିବା ଉଚିତ ବିବେଚନା ନ କରି ଦୟାପୂର୍ବକ ପୁରୀର ରାଜମାତାଙ୍କୁ କେତେକ ନିୟମରେ ଆବଦ୍ଧ କରି ମୋକଦ୍ଦମା ଉଠାଇ ନେଲେ । ସେ ସମୟରୁ କେତେକବର୍ଷ ପର୍ଯ୍ୟନ୍ତ ଏକ ପରେ ଏକ କେତେକ ଯୋଗ୍ୟଲୋକ ପୁରୀ ମନ୍ଦିରର ମାନେଜର ହୋଇ ସୁବନ୍ଦୋବସ୍ତରେ କାର୍ଯ୍ୟ ଚଳାଉଥିଲେ । ପରିଶେଷରେ ସୁଯୋଗ୍ୟ ମାନେଜର ନିୟୋଗ ହେବା ରହିତ ହେଲା ଏବଂ ପୁରୀ ରାଣୀ ଏକପ୍ରକାରରେ ମନ୍ଦିରର କାର୍ଯ୍ୟ ନିର୍ବାହ କରି ଆସୁଥିଲେ । ବର୍ତ୍ତମାନର ପୁରୀ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ରାଜା ମୁକୁନ୍ଦଦେବ ବୟଃପ୍ରାପ୍ତ ହୁଅନ୍ତେ କାର୍ଯ୍ୟଭାର ସ୍ୱୟଂ ଗ୍ରହଣ କଲେ ଏବଂ ତାହାଙ୍କର ଶରୀର ପୀଡ଼ା ଏବଂ ବିଷୟ ବୁଦ୍ଧିର ସ୍ୱଳ୍ପତା ହେତୁ ସେ ସୁପରାମର୍ଶ ଅନୁସାରେ ସମସ୍ତ କାର୍ଯ୍ୟର ଭାର ରାଜା ବୈଦ୍ୟନାଥ ପଣ୍ଡିତ ବାହାଦୂର ବାବୁ ମଧୁସୂଦନ ଦାସ ଏବଂ ବାବୁ ଗୋକୁଳାନନ୍ଦ ଚୌଧୁରୀଙ୍କୁ ଅର୍ପଣ କଲେ । ଏ ବନ୍ଦୋବସ୍ତ ଉତ୍ତମ ହୋଇଥିଲା ଏବଂ ଭାରପ୍ରାପ୍ତ ବ୍ୟକ୍ତିମାନେ ଯଥୋଚିତ ମନୋଯୋଗ ଏବଂ ପରିଶ୍ରମ ସହିତ ସମସ୍ତ ବୁଝାସୁଝା କରୁଥିଲେ । ଏଥିମଧ୍ୟରେ ବାବୁ ମଧୁସୂଦନ ଦାସ ବିଲାତ ଗଲେ ଏବଂ ଅନ୍ୟ ଦୁଇଜଣଙ୍କ ମଧ୍ୟରେ ମତାନ୍ତର ଘଟିଲା । ଏଥିଉତ୍ତାରୁ ରାଜା ସ୍ୱହସ୍ତରେ ସମସ୍ତ ଭାର ନେଇ କାର୍ଯ୍ୟ ଚଳାଇ ଆସୁଅଛନ୍ତି । ଏଠାରେ ବୋଲିବା ଆବଶ୍ୟକ ଯେ ମାନ୍ୟବର ବାବୁ ମଧୁସୂଦନ ଦାସ ପୁରୀ ମନ୍ଦିର ସମ୍ବନ୍ଧୀୟ ମୋକଦ୍ଦମାର ସୂତ୍ରପାତ ହେବାକାଳରୁ ତାହା ଶେଷହେବା ପର୍ଯ୍ୟନ୍ତ ଆପଣାର ପ୍ରଗାଢ଼ ବୁଦ୍ଧି ଓ ଅଧ୍ୟବସାୟ ସହକାରେ ଯେତେ ଉପକାର କରିଥିଲେ ତାହା କାହାରିକି ଅବିଦିତ ନାହିଁ ବରଂ ସମସ୍ତ ଓଡ଼ିଶାବାସୀ ତାହାଙ୍କୁ ଧନ୍ୟବାଦ ଦେଇଥିଲେ । ପୁରୀ ରାଣୀ ତାହାଙ୍କର ଅକୃତ୍ରିମ ବନ୍ଧୁତା ହୃଦୟଙ୍ଗମ କରି ତାହାଙ୍କ ଉପରେ ଏକାନ୍ତ ବିଶ୍ୱାସ ସ୍ଥାପନ ପୂର୍ବକ ତାହାଙ୍କ ପରାମର୍ଶରେ ଚାଲୁଥିଲେ । ମଧୁବାବୁ ରାଜା ମୁକୁନ୍ଦଦେବଙ୍କର ସାମାନ୍ୟ ଉପକାର କରିନାହାନ୍ତି । ତାହାଙ୍କ ପୀଡ଼ାମୁକ୍ତି ଆଶାରେ ପ୍ରଥମେ ପୁରୀରେ ଚିକିତ୍ସା କରାଇ ତହିଁଉତ୍ତାରୁ କଟକ ଓ କଲିକତାକୁ ସଙ୍ଗେ ଘେନି ବୁଲି ତାହାଙ୍କ ଆରୋଗ୍ୟର ଯଥୋଚିତ ଉପାୟ କଲେ ଏବଂ ଆମ୍ଭେମାନେ ଶୁଣିଅଛୁଁ ଯେ କେତେସ୍ଥଳେ ଡାକ୍ତରର ଫିସ୍ ସୁଦ୍ଧା ସେ ଆପଣା ହାତରୁ ଦେଇଅଛନ୍ତି । ମାତ୍ର ସେ ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ରାଜା ଅବଧି ଆରୋଗ୍ୟ ହୋଇ ନାହାନ୍ତି ଏବଂ ସୁଯୋଗ୍ୟ ଚିକିତ୍ସକଦ୍ୱାରା ଚିକିତ୍ସା କରାଇବାକୁ ତାହାଙ୍କୁ ପ୍ରବୃତ୍ତ କରାଇବା ଅସମ୍ଭବ ହୋଇଅଛି । ଏଣେ ବିଷୟବୁଦ୍ଧି ଅଭାବରୁ ସ୍ୱୟଂ ରାଜକାର୍ଯ୍ୟ ନିର୍ବାହ କରିବାକୁ ଅକ୍ଷମ ତହିଁଉପରେ ପରିବେଷ୍ଟିତ ଚାଟୁକାରଙ୍କ ପରାମର୍ଶରେ ଚାଳିତ । ଏଥିରେ ଯେଉଁ ମନ୍ଦଫଳ ଘଟିବା ଅନିବାର୍ଯ୍ୟ ତାହା ଘଟିବାର ଆରମ୍ଭ ହୋଇଅଛି । ଅଳ୍ପଦିନତଳେ ଗୋଟାଏ ଫଉଜଦାରୀ ମୋକଦ୍ଦମାରେ ପ୍ରକାଶ ପାଇଲା ଯେ ଅନେକ ମୂଲ୍ୟବାନ୍ ରତ୍ନାଦି ଅଳଙ୍କାର ଏବଂ ରାମେଶ୍ୱରୀ ସୁନା ମୋହର ଓ ଅନ୍ୟାନ୍ୟ ମୁଦ୍ରା ଅପବ୍ୟୟ ହୋଇଅଛି । ଏସବୁ ରାଜାଙ୍କର ନିଜ ସମ୍ପତ୍ତି କି ମନ୍ଦିରର ସମ୍ପତ୍ତି ତଦନ୍ତ ହେଲେ ଜଣାଯିବ । ମନ୍ଦିରର ନୀତିଭୋଗ ବର୍ତ୍ତମାନ ଋଣଦ୍ୱାରା ନିର୍ବାହ ହେଉଥିବାରୁ ସ୍ପଷ୍ଟ ଜଣାଯାଉଅଛି ଯେ ମନ୍ଦିରର ଆୟ ଅପବ୍ୟୟ ହେଉଅଛି ଏବଂ ଯେଉଁ ମହାଜନମାନେ ତମସୁକ ଦ୍ୱାରା ଠାକୁରମାନଙ୍କ ନୀତି ସକାଶେ ଋଣ ଦେଉଅଛନ୍ତି ସେମାନେ ଠାକୁରଙ୍କ ସମ୍ପତ୍ତି ବିରୁଦ୍ଧରେ ମାମଲା ଚଳାଇପାରନ୍ତି । ତାହାହେଲେ ବଡ ବିଭ୍ରାଟ ହେବ । ଅନେକ ସମ୍ଭ୍ରାନ୍ତ ବ୍ୟକ୍ତି ଏବଂ କେହି କେହି ସରକାରୀ ଉଚ୍ଚକର୍ମଚାରୀ ବିବେଚନା କରନ୍ତି କି ତାହାଙ୍କର ମତି ସ୍ଥିର ନାହିଁ । ଏ ସମସ୍ତ ଅତ୍ୟନ୍ତ ଦୁଃଖର ବିଷୟ ଅଟେ କେବଳ ପୁରୀ ମନ୍ଦିର ଓଡ଼ିଶାର ପ୍ରାଚୀନ କୀର୍ତ୍ତି କି ଯହିଁପାଇଁ ଓଡିଶାର ଗୌରବ ତହିଁର ସଂରକ୍ଷଣ ସକାଶେ ଆମ୍ଭେମାନେ ବାଧ୍ୟ ହୋଇ ଏସବୁ ଘଟନା ପ୍ରକାଶ କଲୁଁ । ପୁରୀ ମନ୍ଦିର ଏବଂ ରାଜବଂଶର ସୁରକ୍ଷା ଏବଂ ସୌଭାଗ୍ୟ ସମସ୍ତ ଓଡିଶାବାସିଙ୍କର ଏକାନ୍ତ ବାଞ୍ଛନୀୟ । ଅତଏବ ଆମ୍ଭେମାନେ ଆଶା କରୁଁ କି ସର୍ବସାଧାରଣ ବିହିତ ଉପାୟ ଅବଲମ୍ବନ କରିବାକୁ ଯତ୍ନବାନ୍ ହେବେ ।

*ଭା୩୩ଗ, ସଂ୧୮ଖ୍ୟା, ୩୦।୪।୧୮୯୮*

## ପୁରୀମନ୍ଦିର ।

ପୂର୍ବ ପ୍ରକାଶିତ ବିଜ୍ଞାପନ ଅନୁସାରେ ଗତ ସୋମବାର ସନ୍ଧ୍ୟା ସମୟରେ ପୁରୀ ମନ୍ଦିର ବିଷୟରେ ଉତ୍କଳ ସଭାର ଅଧିବେଶନ ହୋଇଥିଲା । ସେଦିନ ମୁସଲମାନମାନଙ୍କର ପର୍ବ ହେତୁ କଚେରୀମାନ ବନ୍ଦ ଥିବାରେ କେତେକ ଲୋକ ମୋଫସଲକୁ ବାହାରି ଯାଇଥିବା ଅଥବା ଅନ୍ୟାନ୍ୟ କାର୍ଯ୍ୟରେ ନିଯୁକ୍ତ ଥିବାରୁ ସଭାକୁ ଅଧିକ ଲୋକ ଆସି ନ ଥିଲେ । ସଭ୍ୟ ଓ ଦର୍ଶକମାନଙ୍କ ସଂଖ୍ୟା ୨୦।୨୫ ରୁ ଅଧିକ ନ ଥିଲା । ସଭାପତି ବାବୁ ମଧୁସୂଦନ ଦାସ ମହାଶୟ ସଭାର କାର୍ଯ୍ୟାରମ୍ଭ କରି କହିଲେ କି ସେ ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀ ହୋଇଥିବା ପ୍ରତ୍ୟକ୍ଷେ ପୁରୀ ମନ୍ଦିରରେ ତାହାଙ୍କର ଆସ୍ଥା ଓ ସହାନୁଭୂତି ଦେଖି କେତେକ ଆଶ୍ଚର୍ଯ୍ୟ ହେବାର ସେ ଅବଗତ ହୋଇଅଛନ୍ତି । ପୁରୀ ମନ୍ଦିରର କେତେକ ପ୍ରଧାନ ବ୍ୟବସ୍ଥା ତାହାଙ୍କୁ ଭଲ ଲାଗେ । ଜାତିଭେଦ

ହିନ୍ଦୁଧର୍ମର ଗୋଟିଏ ପ୍ରଧାନ କଥା ପ୍ରାଚିନ କାଳରେ ଏହା ବ୍ୟବସ୍ଥାଗତ ଥିଲା କିନ୍ତୁ ଶେଷକୁ ଅନୁଗତ ହୋଇ ପଡିବାରୁ ତହିଁରୁ ଅନେକ ଅନିଷ୍ଟ ଜାତ ହୋଇଅଛି ଏବଂ ଐକ୍ୟତାର ବିଶେଷ ବାଧା ଜନ୍ମାଇଅଛି । ପୁରୀ ମନ୍ଦିରରେ ଜାତି ବିଚାର ନାହିଁ । ସୂପକାର ବା ସୁଆରମାନେ ବ୍ରାହ୍ମଣ ଜାତି ନୁହନ୍ତି । ଈଶ୍ୱରଙ୍କ ନିକଟରେ ସମସ୍ତ ମନୁଷ୍ୟ ଏକଜାତି, ଏକତ୍ରେ ଆହାର ପାନକରି ପରସ୍ପରକୁ ପ୍ରେମ କରିବା ଉଚିତ ମହାପ୍ରସାଦ ଏହି ଶିକ୍ଷା ଦେଉଅଛି ଏବଂ ପୁରୀର ରାଜା ପର୍ବ ବିଶେଷରେ ଠାକୁରଙ୍କ ମନ୍ଦିର ଝାଡୁ କରିବା ଦ୍ୱାରା ପୃଥିବୀର ବଡ଼ ବଡ଼ ରାଜାମାନେ ଈଶ୍ୱରଙ୍କର କୀର୍ତ୍ତିର ଭିନ୍ନ ଆଉ କିଛି ନ ଥିବାର ପରିଚୟ ଦେଉଅଛି । ଧର୍ମର ଟେକ ଯେଉଁଠାରେ ଦେଖାଯିବ ସେଠାରେ କାହାର ମନ ଆନନ୍ଦିତ ନ ହେବ ? ବିଶେଷତଃ ଗତ ବ୧୦/୧୨ର୍ଷରୁ ପୁରୀ ରାଜା ସଂସାରର ସୁରକ୍ଷା ବିଷୟରେ ସେ ବିଶେଷ ପରିଶ୍ରମ ଓ ଯତ୍ନ କରିବାର ସମସ୍ତଙ୍କୁ ଜଣା ଅଛି । ଅବଶ୍ୟ ତେତେବଡ ଘରର ଉନ୍ନତି ହେଲେ ତାହାଙ୍କ ପ୍ରଗାଢ ପରିଶ୍ରମର ପୁରସ୍କାର ଲାଭ ହେବ ଏମନ୍ତ ଆଶା ମଧ୍ୟ କରିଥିଲେ । ମାତ୍ର ସେ ଆଶା ଦୂରେ ଥାଉ ସେ ଘରଟି ଭାଙ୍ଗିଗଲେ ତାହାଙ୍କର ସମସ୍ତ ଶ୍ରମ ବିଫଳ ହେବ । ଏହି ଦୁଃଖ ତାହାଙ୍କୁ ବିଶେଷ ବାଧୁଅଛି । ଏଥିଉତ୍ତାରୁ ପୁରୀର ରାଜା ମୁକୁନ୍ଦଦେବ ମନ୍ଦିରର ସମ୍ପତ୍ତି କେତେକ ଅପବ୍ୟୟ କରିବାର ଉଦାହରଣ ଦେଖାଇ କହିଲେ କି ମନ୍ଦିରର କାର୍ଯ୍ୟ ନିର୍ବାହର ବର୍ତ୍ତମାନ ଅବସ୍ଥା ତଦନ୍ତ ଏବଂ ତାହା ସୁଶୃଙ୍ଖଳାରୂପେ ନିର୍ବାହ ହେବାର ଉପାୟ ସ୍ଥିର କରିବା କାରଣ ଗୋଟିଏ କମିଟି ଗଠିତ ହେଲେ ଭଲ ହେବ । ରାଜା ବୈଦ୍ୟନାଥ ପଣ୍ଡିତ ବାହାଦୁର ସଭାପତିଙ୍କ ବକ୍ତୃତାର ସମର୍ଥନରେ କହିଲେ କି ପୁରୀ ମନ୍ଦିର ଭାରତବର୍ଷର ସମସ୍ତ ହିନ୍ଦୁମାନଙ୍କର ସର୍ବୋତ୍କୃଷ୍ଟ ତୀର୍ଥ ଏବଂ ଏହାର ସୁରକ୍ଷା ଓ ଉନ୍ନତି ବିଷୟରେ ସମସ୍ତଙ୍କର ସମ୍ପର୍କ ଅଛି ସେ ସ୍ୱୟଂ କିଛିଦିନ ଏହି ମନ୍ଦିରର କାର୍ଯ୍ୟ ଚଳାଇ ଦେଖିଅଛନ୍ତି ଏବଂ ସ୍ୱହସ୍ତରୁ ଅନେକ ଟଙ୍କା ବ୍ୟୟ କରିଅଛନ୍ତି । ମନ୍ଦିରର କାର୍ଯ୍ୟ ନିର୍ବାହ ନିମନ୍ତେ ଯେପରି ଯୋଗ୍ୟତାର ଆବଶ୍ୟକ ପୁରୀର ବର୍ତ୍ତମାନ ରାଜା ଏବଂ ତାହାଙ୍କ ପରାମର୍ଶଦାତାଙ୍କ ଠାରେ ସେପରି କିଛି ଦେଖା ଯାଉ ନାହିଁ ସୁଶୃଙ୍ଖଳାରେ କାର୍ଯ୍ୟ ନିର୍ବାହର କୌଣସି ସୁବନ୍ଦୋବସ୍ତ ଶୀଘ୍ର ହେବା ଆବଶ୍ୟକ । କେତେକ ତର୍କ ବିତର୍କ ଉତ୍ତାରୁ ସଭାରେ ଧାର୍ଯ୍ୟ ହେଲା ସେ ପୁରୀ ମନ୍ଦିରର କାର୍ଯ୍ୟନିର୍ବାହ ବର୍ତ୍ତମାନ ଯେଉଁ ଧାରାରେ ହେଉଅଛି ତହିଁର ବିଶେଷ ତଦନ୍ତ କରିବା ଏବଂ ଭବିଷ୍ୟତ କାର୍ଯ୍ୟନିର୍ବାହ ସମ୍ବନ୍ଧରେ ମନ୍ଦିରର ସେବକମାନ ଏବଂ ପୁରୀର ପ୍ରଧାନ ଲୋକମାନଙ୍କ ସଙ୍ଗେ ପରାମର୍ଶ କରି ଏବଂ ସରକାରଙ୍କର ମତ ଗ୍ରହଣ ପୂର୍ବକ ଗୋଟିଏ କଳ୍ପନା ସ୍ଥିର କରିବା କାରଣ ଗୋଟିଏ କମିଟି ସ୍ଥାପିତ ହେଉ ଏବଂ ରାଜା ବୈଦ୍ୟନାଥ ପଣ୍ଡିତ ବାହାଦୁର , ବାବୁ ବିହାରିଲାଲ ପଣ୍ଡିତ, ବାବୁ ମଧୁସୂଦନ ଦାସ, ବାବୁ ଖୋସାଲଚନ୍ଦ୍ର, ବାବୁ ଗୌରୀଶଙ୍କର ରାୟ ଏବଂ ବାବୁ ରାମଶଙ୍କର ରାୟ ତହିଁର ସଭ୍ୟ ହେଉନ୍ତୁ । ଏମାନେ ଯାହା ସ୍ଥିର କରିବେ ଶୀଘ୍ର ତହିଁର ରିପୋର୍ଟ ସଭାକୁ ଅର୍ପଣ କଲେ ସଭାରେ ସର୍ବସାଧାରଣ ବିବେଚନା କରି ଯେମନ୍ତ ସିଦ୍ଧାନ୍ତ କରିବେ ତଦନୁସାରେ କାର୍ଯ୍ୟ ହେବ । ଆମ୍ଭେମାନେ ଏକାନ୍ତ ଆଶା କରୁଁ କି କମିଟିର ସଭ୍ୟମାନେ ଏ ବିଷୟରେ ତତ୍ପର ହେବେ । ଏଥିରେ ଯେତେ ବିଳମ୍ବ ହେବ ତେତେ ଅଧିକ କ୍ଷତି ହେବ । ପୁରୀ ରାଜାଙ୍କର ମର୍ଯ୍ୟାଦା ଖର୍ବ ହେବା କୌଣସିମତେ ବାଞ୍ଛନୀୟ ନୁହେ । ଆମ୍ଭେମାନେ ଏତିକି ଦେଖିବାକୁ ଆଶା କରୁଁ ଯେମନ୍ତ ତାହାଙ୍କର କାର୍ଯ୍ୟ ଓ ବିଚାର ଦୋଷରେ ମନ୍ଦିର କୌଣସି କ୍ଷତି ନ ହୁଏ ।

*ଭା୩୩ଗ, ସଂ୧୯ଖ୍ୟା, ୭/୫/୧୮୯୮*

**ଉତ୍କଳ-ସାହିତ୍ୟ ।**

**ଓଡିଶାରେ ଏକମାତ୍ର**

**ସମାଜ , ଧର୍ମ, ସାହିତ୍ୟ, ବିଜ୍ଞାନ, ଇତିହାସ ପ୍ରଭୃତି**

**ନାନା ବିଷୟକ ମାସିକପତ୍ର ଓ ସମାଲୋଚନା ।**

୧୮୯୭ ଖ୍ରୀଃ ଜାନୁୟାରୀ ମାସରୁ ନିୟମିତରୂପେ ପ୍ରକାଶିତ ହେଉଅଛି । ଆକାର ରଏଲ ୮ ପେଜୀ ୩ ଫର୍ମା । କାଗଜ ଉତ୍କୃଷ୍ଟ, ଛାପା ସୁନ୍ଦର । ଉତ୍କଳର କବିବର ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର, ଭକ୍ତକବି ଶ୍ରୀଯୁକ୍ତ ମଧୁସୂଦନ ରାଓ, ହାସ୍ୟରସ ଓ ବ୍ୟଙ୍ଗୋକ୍ତିର ଉତ୍ସ ଶ୍ରୀଯୁକ୍ତ ଫକୀର ମୋହନ ସେନାପତି,

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ଚିନ୍ତାଶୀଳ ଲେଖକ ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣା, ଶ୍ରୀଯୁକ୍ତ ରମାନାଥ ଦାସ, ଶ୍ରୀଯୁକ୍ତ ସାମନ୍ତ ରାଜନାରାୟଣ ଦାସ, ଶ୍ରୀଯୁକ୍ତ ସାଧୁଚରଣ ରାୟ, ଶ୍ରୀଯୁକ୍ତ ପଣ୍ଡିତ ପୁରୁଷୋତ୍ତମ ତର୍କାଳଙ୍କାର,ଶ୍ରୀଯୁକ୍ତ ଦାମୋଦର ପଟ୍ଟନାୟକ, ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ନନ୍ଦ, ଶ୍ରୀଯୁକ୍ତ ଭୋଳାନାଥ ସାମନ୍ତରାୟ, ସମ୍ବଲପୁର ଅଞ୍ଚଳର ପରିଚିତ ସୁଲେଖକ ଶ୍ରୀଯୁକ୍ତ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ , ଶ୍ରୀଯୁକ୍ତ ଗଙ୍ଗାଧର ମେହେର,ଗଞ୍ଜାମ ଅଞ୍ଚଳର ପ୍ରଧାନ ଲେଖକ ଶ୍ରୀଯୁକ୍ତ ସଦାଶିବ ବିଦ୍ୟାଭୂଷଣ ପ୍ରଭୃତି ଏହାର ନିୟମିତ ଲେଖକ । ଅଳ୍ପ ସମୟ ମଧ୍ୟରେ ଗ୍ରାହକସଂଖ୍ୟା ଆଶାତୀତ ବୃଦ୍ଧିଲାଭ କରିଅଛି ଏବଂ କ୍ରମେ କ୍ରମେ କରୁଅଛି । ବାର୍ଷିକ ମୂଲ୍ୟ ଡାକମାସୁଲ ସହିତ ଦିଓଟି ଟଙ୍କା ମାତ୍ର ।

ଶୀଘ୍ର ଆକାର ବୃଦ୍ଧିର ସମ୍ଭାବନା ଅଛି । ଘରେ ବସି ନାନା ଦେଶର ସାହିତ୍ୟର ଅବସ୍ଥା, ଇତିହାସ, କାବ୍ୟ, ଉପନ୍ୟାସ, ରାଜନୀତି, ସମାଜନୀତି, ବିଜ୍ଞାନ, ଦର୍ଶନ ପ୍ରଭୃତି ପାଠ କରିବାକୁ ଇଚ୍ଛା ଥିଲେ- ଓଡିଆ ସାହିତ୍ୟର ଉନ୍ନତି କାମନା ପ୍ରାଣରେ ଥିଲେ ସତ୍ୱର ନିମ୍ନସ୍ୱାକ୍ଷରକାରିଙ୍କ ନିକଟକୁ ପତ୍ର ଓ ମୂଲ୍ୟ ପ୍ରେରଣ କରି ଏହାର ଗ୍ରାହକ ହେଉନ୍ତୁ ।

**ଗରିବ ଛାତ୍ରମାନଙ୍କ ପକ୍ଷରେ ମହାସୁଯୋଗ ।**

ଉତ୍କଳର ଦରିଦ୍ର ଛାତ୍ରମାନଙ୍କ ସୁବିଧାର୍ଥେ ଏହି ପତ୍ରିକା ସେମାନଙ୍କୁ ଅର୍ଦ୍ଧ ମୂଲ୍ୟରେ ପ୍ରଦାନ କରିବାର ବ୍ୟବସ୍ଥା ହୋଇଅଛି - ସେମାନେ ଆପଣା ଆପଣା ଅବସ୍ଥାର ଉପଯୁକ୍ତ ପ୍ରମାଣ ସହ ଆବେଦନ କଲେ ଅକ୍ଲେଶରେ ଅର୍ଦ୍ଧ ମୂଲ୍ୟରେ ଏହା ପାଇ ପାରିବେ ।

ପୁଣି କୌଣସି ବ୍ୟକ୍ତି ୫ଖଣ୍ଡି ପତ୍ରିକାର ଅଗ୍ରିମ ପୂର୍ଣ୍ଣ ମୂଲ୍ୟ ପ୍ରଦାନ କଲେ ବିନା ମୂଲ୍ୟରେ ଖଣ୍ଡିଏ ପତ୍ରିକା ପାଇ ପାରିବେ ।

ଉତ୍ସାହ ଓ ଅନୁରାଗର ଅଭାବରୁ ଅନେକଗୁଡିଏ ସାମୟିକ ପତ୍ରିକା ଇତିପୂର୍ବେ ଉତ୍କଳସାହିତ୍ୟ କ୍ଷେତ୍ରରୁ ଅନ୍ତର୍ହିତ ହୋଇଥିବାରୁ ସାମୟିକ ପତ୍ରିକାର ସ୍ଥାୟିତ୍ୱ ସମ୍ବନ୍ଧରେ ଅନେକେ ସନ୍ଦିହାନ ହେଲେହେଁ "ଉତ୍କଳସାହିତ୍ୟ"ର ଜନ୍ମ ଓ ବିସ୍ତୃତ ପ୍ରଚାର ଉକ୍ତ ସନ୍ଦେହ ଅନେକ ପରିମାଣରେ ଦୂର କରିବାକୁ ସକ୍ଷମ ହୋଇଅଛି । ଉତ୍କଳର ସ୍ୱଦେଶବତ୍ସଳ,ସାହିତ୍ୟାନୁରାଗୀ ଧନୀ , ଦରିଦ୍ର ସକଳ ଶ୍ରେଣୀର ବ୍ୟକ୍ତିମାନେ ଆମ୍ଭମାନଙ୍କର ସହାୟ ହେଲେ "ଉତ୍କଳସାହିତ୍ୟର"ର ଅପମୃତ୍ୟୁ ଭୟ ଏକାବେଳକେ ଦୂରୀଭୂତ ହେବ ଏବଂ ଉତ୍କଳଭୂମିର ଗୋଟିଏ ପ୍ରଧାନ କଳଙ୍କ ମଧ୍ୟ କ୍ଷାଳିତ ହେବ ।

ପରିଶେଷରେ ବକ୍ତବ୍ୟ, ବର୍ତ୍ତମାନ "ଉତ୍କଳସାହିତ୍ୟ"ର ଗ୍ରାହକସଂଖ୍ୟା ୫୦୦ ରୁ ଊର୍ଦ୍ଧ୍ୱ । ପ୍ରତ୍ୟେକ ଗ୍ରାହକ ଯେବେ ଆମ୍ଭମାନଙ୍କୁ ଅନ୍ତତଃ ଜଣେ ନୂତନ ଗ୍ରାହକ କରି ଦେଇ ପାରନ୍ତି, ତାହାହେଲେ ଅବିଳମ୍ବେ "ଉତ୍କଳସାହିତ୍ୟ" ର ଗ୍ରାହକସଂଖ୍ୟା ଏକହଜାର ପୂର୍ଣ୍ଣ ହେବା କିଛି ବିଚିତ୍ର ନୁହେ । ଏହି ପବିତ୍ର ଓ ଗୁରୁତର କାର୍ଯ୍ୟରେ ଆମ୍ଭମାନଙ୍କର ସହାୟତା କରିବା ନିମିତ୍ତ ଆମ୍ଭେମାନେ ଶିକ୍ଷିତ ଓ ସ୍ୱଦେଶବତ୍ସଳ ଉତ୍କଳ ସନ୍ତାନମାନଙ୍କୁ ସାଦରେ ଓ ବିନୀତଚିତ୍ତରେ ଆହ୍ୱାନ କରୁଅଛୁଁ । ଇତି ।

ଉତ୍କଳସାହିତ୍ୟ କାର୍ଯ୍ୟାଳୟ
କଟକ

ଶ୍ରୀ କୃଷ୍ଣପ୍ରସାଦ ଚୌଧୁରୀ
କାର୍ଯ୍ୟାଧ୍ୟକ୍ଷ ।

*ଭା୩୩ଗ, ସଂ୨୪ଖ୍ୟା, ୧୧।୬।୧୮୯୮*

## ପୁସ୍ତକ ପ୍ରାପ୍ତି ।

ନିମ୍ନଲିଖିତ ପୁସ୍ତକମାନ ଉପହାର ପାଇବାର ଆମ୍ଭେମାନେ କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଯଥା-

**ଭର୍ତ୍ତୃହରି ସୁଭାଷିତ ନୀତିଶତକ** - ଶ୍ରୀ ସୂର୍ଯ୍ୟନାରାୟଣ ବିଷୟୀଙ୍କଦ୍ୱାରା ଗଦ୍ୟ ପଦ୍ୟାନୁବାଦ ସହିତ ପ୍ରଥମବାର ପ୍ରକାଶିତ ଏବଂ ଗଞ୍ଜାମଜିଲ୍ଲା ପାରଳାଖେମଣ୍ଡି ନଗରସ୍ଥ ଗଜପତି ଯନ୍ତ୍ରାଳୟରେ ମୁଦ୍ରିତ । ଭର୍ତ୍ତୃହରିଙ୍କର ଏହି ସଂସ୍କୃତ ନୀତି ଗ୍ରନ୍ଥ ଚାଣକ୍ୟ ନୀତି ପରି ଅମୂଲ୍ୟ ନୀତିରତ୍ନର ଆକାର ଅଟେ କି ଯାହା ହୃଦୟରେ ସଞ୍ଚୟ କରି ରଖିଲେ ମୂର୍ଖାନ୍ଧକାର ବିଦୂରିତ ହୁଏ ଏବଂ ଦୃଢ଼ତା ସହିତ ବ୍ୟବହାର କଲେ ସର୍ବଦା

ସୁଖଶାନ୍ତି ଲାଭ ହୁଏ । ସୂର୍ଯ୍ୟନାରାୟଣବିଷୟୀ ମହାଶୟ ଏହାକୁ ଟୀକା ଓ ଗଦ୍ୟ ପଦ୍ୟ ଅନୁବାଦ ସହିତ ଉତ୍କଳଭାଷାରେ ପ୍ରକାଶ କରି ଉତ୍କଳବାସିଙ୍କର କୃତଜ୍ଞତା ଭାଜନ ହୋଇଅଛନ୍ତି ସନ୍ଦେହ ନାହିଁ । ଅନୁବାଦ ସାଧାରଣତଃ ଉତ୍ତମ ହୋଇଥିଲେହେଁ ଠାବେ ଠାବେ କ୍ଲିଷ୍ଟତା ରହିଅଛି ବୋଧକରୁଁ କେବଳ ଗଦ୍ୟାନୁବାଦ ସହିତ ପ୍ରକାଶ ହୋଇଥିଲେ ଅଧିକ ସରଳ ଏବଂ ସୁଲଭ ହୋଇଥାନ୍ତା ।

**ମାନସାଙ୍କସାର ୨ୟ ସଂସ୍କରଣ-** ଏ ନଗରର ଟ୍ରେନିଂ ସ୍କୁଲର ସର୍ଭେ ମାଷ୍ଟର ଶ୍ରୀଯୁକ୍ତ ଆର୍ତ୍ତତ୍ରାଣ ସତପଥି ଏହାର ଗ୍ରନ୍ଥକାର ଏବଂ ଯନ୍ତ୍ରାଳୟ ମୁଦ୍ରାକାର ଅଟନ୍ତି । ପ୍ରଥମ ସଂସ୍କରଣରେ ଏହାର ଆଦର ଦେଖି ଗ୍ରନ୍ଥକାର ଉତ୍ସାହିତ ହୋଇ ୨ୟ ସଂସ୍କରଣ ଅଧିକ ଯତ୍ନ ଓ ପରିଶ୍ରମ ସହକାରେ ବାହାର କରିଅଛନ୍ତି ଏବଂ ମୂଲ୍ୟ ଟ୦/〳ସ୍ଥଳେ ଟ୦/ କରି ଅଛନ୍ତି ସୁତରାଂ ସମଧିକ ଆଦରଣୀୟ ହେବ ସନ୍ଦେହ ନାହିଁ । ପ୍ରକୃତରେ ଯାହା ଶିକ୍ଷା ଦେବା ଏ ପୁସ୍ତକର ଉଦ୍ଦେଶ୍ୟ ତହିଁପାଇଁ ଏହା ଉତ୍କୃଷ୍ଟରୂପେ ଉପଯୋଗୀ ହୋଇଅଛି । କେତେକ ପରିମାଣରେ ବାହୁଲ୍ୟତା ପରିହାର ପୂର୍ବକ ପୁସ୍ତକର ଆକାର ଛୋଟ ଏବଂ ମୂଲ୍ୟ ଆହୁରି ସୁଲଭ ହୋଇପାରେ ।

**ଚଣ୍ଡୀଲୀଳା-**ଆଳିର ରାଜା ଶ୍ରୀ ଯଦୁନାଥ ଦେବଙ୍କ ଦ୍ୱାରା ବିରଚିତ ଏବଂ ଏ ନଗରର ରାୟପ୍ରେସରେ ମୁଦ୍ରିତ । ଏ ପୁସ୍ତକର କଳେବର ପୃ ୧୯୮ଷ୍ଠା । ଗ୍ରନ୍ଥକାର କୌଣସି ଭୂମିକା ବା ବିଜ୍ଞାପନ ପ୍ରକାଶ କରି ନ ଥିଲେ ହେଁ ଶ୍ରୀଚଣ୍ଡୀପୁରାଣୋକ୍ତ ଚଣ୍ଡୀଲୀଳା ଜନସାଧାରଣରେ ପ୍ରଚାର କରିବା ଅଭିପ୍ରାୟରେ ଉତ୍କଳ ପଦ୍ୟରେ ଯଥାସାଧ୍ୟ ସରଳ ଭାଷାରେ ରଚନା କରି ଏ ପୁସ୍ତକ ପ୍ରକାଶ କରିଅଛନ୍ତି ଏବଂ ଏ ପୁସ୍ତକ ମୂଲ୍ୟ କିଛି ଲେଖା ନ ଥିବାରୁ ବିତରଣାର୍ଥ ପ୍ରକାଶିତ ହୋଇଥିବାର ଜଣା ଯାଉଅଛି । ଚଣ୍ଡୀବିଷୟକ ଗ୍ରନ୍ଥ ଏଥିପୂର୍ବେ ଉତ୍କଳଭାଷାରେ ପ୍ରକାଶିତ ହୋଇଥିଲେହେଁ ଉତ୍କଳବାସିଙ୍କ ହିତାର୍ଥେ ଆଳିର ରାଜା ଅନେକ ପରିଶ୍ରମ ଓ ବ୍ୟୟ ସ୍ୱୀକାର ପୂର୍ବକ ଏ ପୁସ୍ତକ ଜନସାଧାରଣଙ୍କୁ ପ୍ରଦାନ କରିବାରୁ ସେ ଅଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ଆଶା କରୁଁ ତାହାଙ୍କର ସାହିତ୍ୟାନୁରାଗ କ୍ରମଶଃ ବୃଦ୍ଧି ପାଇବ ।

**ସ୍କୁଲ୍ ଡ୍ରିଲଶିକ୍ଷା ୧ମ ଭାଗ-**ଏ ନଗର ନିବାସୀ ଶ୍ରୀ ବାବୁ ଭଗବାନଚନ୍ଦ୍ର ସିଂହଙ୍କଦ୍ୱାରା ପ୍ରଣୀତ ଏବଂ କଟକ ପ୍ରିଣ୍ଟିଂକମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ । ପୁସ୍ତକର କଳେବର ପୃ ୩୨ଷ୍ଠା ଓ ମୂଲ୍ୟ ଟ୦୵୰ ଅଟେ । ଉତ୍କଳଭାଷାରେ ଏହା ନୂତନ ଗ୍ରନ୍ଥ ଅଟେ । ବିଦ୍ୟାଳୟର ଛାତ୍ରମାନଙ୍କର ବ୍ୟାୟାମସାଧନ ଗୋଟିଏ ଶିକ୍ଷାର ପ୍ରଧାନ ଏବଂ ଆବଶ୍ୟକୀୟ ଅଙ୍ଗ ହୋଇଅଛି ଏବଂ ସେହି ଶିକ୍ଷାର ସାହାଯ୍ୟ ନିମନ୍ତେ ଏ ପୁସ୍ତକ ପ୍ରକାଶିତ ହୋଇଅଛି । ପୁସ୍ତକର ଆକାର ଛୋଟ ହେଲେହେଁ ବହୁତର ଚିତ୍ର ସନ୍ନିବିଷ୍ଟ ହେତୁ ଏଥିର ବିସ୍ତର ବ୍ୟୟ ହୋଇଅଛି ଏବଂ ତଦ୍ଦୃଷ୍ଟିରେ ଯେଉଁ ମୂଲ୍ୟ ଧାର୍ଯ୍ୟ ହୋଇଅଛି ତାହା ଅତ୍ୟନ୍ତ ସୁଲଭ ବୋଲିବାକୁ ହେବ । ବିନା ଉପକରଣ ସୁତରାଂ ବିନା ବ୍ୟୟରେ ଯେ ସବୁ ଅଙ୍ଗ ସାଧନ ହୋଇପାରିବ କେବଳ ସେହି ସମସ୍ତ ପୁସ୍ତକରେ ପ୍ରଦତ୍ତ ହୋଇଥିବାରୁ ଏହା ସକଳ ଶ୍ରେଣୀର ବିଦ୍ୟାଳୟର ଉପଯୋଗୀ ହୋଇଅଛି ବିଶେଷତଃ ମୋଫସଲର ବିଦ୍ୟାଳୟମାନଙ୍କ ପକ୍ଷରେ ଏ ପୁସ୍ତକ ଅମୂଲ୍ୟ ଅଟେ । କାରଣ ସେ ସବୁ ସ୍ଥାନରେ ଉପଯୁକ୍ତ ଶିକ୍ଷକ ଓ ଦ୍ରବ୍ୟର ଅଭାବ ହେତୁ ଉତ୍ତମ ବ୍ୟାୟାମ ଶିକ୍ଷାର ଉପାୟ ନାହିଁ । ଏ ପୁସ୍ତକ ଅବଲମ୍ବନ ପୂର୍ବକ ସ୍କୁଲଶିକ୍ଷକମାନେ ଅନାୟାସରେ ଛାତ୍ରମାନଙ୍କୁ ଅବକାଶସମୟରେ ଏଥିର ଶିକ୍ଷା ଦେଇପାରିବେ । ଆମ୍ଭେମାନେ ଏକାନ୍ତ ଆଶା କରୁଁ କି ସର୍ବସାଧାରଣ ବିଶେଷତଃ ସ୍କୁଲର କର୍ତ୍ତୃପକ୍ଷମାନେ ଗ୍ରନ୍ଥକାରଙ୍କୁ ଉତ୍ସାହ ଦେବା ପ୍ରତି ମୁକ୍ତହସ୍ତ ହେବେ । ତାହାହେଲେ ଅବିଳମ୍ବେ ଏହାର ୨ୟ ଭାଗ ପ୍ରକାଶିତ ହେବ ।

**ଭଜନସାରସଂଗ୍ରହ-** ଶ୍ରୀ ବାଳକୃଷ୍ଣଦାସଙ୍କ ଦ୍ୱାରା ପ୍ରକାଶିତ ଏବଂ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ଗ୍ରନ୍ଥକାର କେତେଗୁଡ଼ିଏ ଓଡ଼ିଆ ହିନ୍ଦି ବଙ୍ଗଳା ଓ ତୈଲଙ୍ଗ ଭଜନ ଅର୍ଥାତ୍ ଭକ୍ତିରସାତ୍ମକ ଗୀତ ସଂଗ୍ରହ କରି ପ୍ରକାଶ କରିଅଛନ୍ତି । ଆଦିରସାତ୍ମକ ଅନେକ ଗୀତ ପୁସ୍ତକ ପ୍ରକାଶ ହୋଇଥିବାସ୍ଥଳେ ଏପରି ଖଣ୍ଡିଏ ପୁସ୍ତକ ବାହାରିବା ଆନନ୍ଦର ବିଷୟ ଅଟେ ।

ଶ୍ରୀ ବୈକୁଣ୍ଠସହସ୍ରନାମ – ଶ୍ରୀ ପାରେଶ୍ୱରସେନାପତିଙ୍କଦ୍ୱାରା ବିରଚିତ ଏବଂ ଓଡିଶା ଦର୍ପଣ ଯନ୍ତ୍ରାଳୟରେ ମୁଦ୍ରିତ । ଗ୍ରନ୍ଥକାର ଜଣେ କବି ସ୍ୱରୂପ ଏ ଜିଲାରେ ପରିଚିତ ଏବଂ ଏହି ସହସ୍ରନାମ ଗ୍ରନ୍ଥ ଉତ୍କଳଭାଷାରେ ବର୍ଣ୍ଣନା କରି ସେ ଖ୍ୟାତି ରକ୍ଷା କରିବାକୁ ସମର୍ଥ ହୋଇଅଛନ୍ତି ।

*ଭା୩୩ଗ, ସଂ୨୫ଖ୍ୟା, ୧୮।୬।୧୮୯୮*

## [ପୁରୀ ନଗରର ସଂକ୍ଷିପ୍ତ ଇତିହାସ]

'ପୁରୀ ନଗରର ସଂକ୍ଷିପ୍ତ ଇତିହାସ' ନାମରେ ଖଣ୍ଡିଏ କ୍ଷୁଦ୍ର ପୁସ୍ତକ ପୁରୀର କଲେକ୍‌ଟର ଶ୍ରୀଯୁକ୍ତ ଡବଲିଉ , ଏଚ, ଲି ସାହେବ ଏଠା ମିସନ ପ୍ରେସରେ ଛାପା କରାଇ ପ୍ରକାଶ କରିଅଛନ୍ତି । ସାହେବ ମହୋଦୟ ପୁସ୍ତକ ଖଣ୍ଡିକ ଇଂରାଜୀରେ ଲେଖି ତହିଁର ଓଡିୟା ଏବଂ ସେଠା ସ୍କୁଲ ଡେପୁଟୀ ଇନସ୍ପେକ୍‌ଟର ବାବୁ ଭଗବତୀଚରଣ ସେନଙ୍କଦ୍ୱାରା ତାହା ବଙ୍ଗଳା ଏବଂ ଓଡିୟାରେ ଅନୁବାଦ କରାଇ ଅଛନ୍ତି ଏବଂ ପୁରୀ ନଗରର ଖଣ୍ଡିଏ ମାନଚିତ୍ର ସହିତ ସେହି ତିନି ଭାଷାରେ ଏ ପୁସ୍ତକ ଛାପା ହୋଇଅଛି । ପୁସ୍ତକର ଆକାର କ୍ଷୁଦ୍ର ଏବଂ ସର୍ବସୁଦ୍ଧା ପୃ ୨୦ଷ୍ଠାରୁ ଅଧିକ ନୁହେ । ପ୍ରତ୍ୟେକ ଖଣ୍ଡର ମୂଲ୍ୟ ଟ୦/ । ଏହି ସଂକ୍ଷିପ୍ତ ଇତିବୃତ୍ତର ସଂକ୍ଷେପ ମର୍ମ ଏହିକି ଆଦିମକାଳରେ ପୁରୀ ଶବର ଓ କନ୍ଧ ପ୍ରଭୃତି ଆରଣ୍ୟ ବର୍ବର ଜାତିର ଆବାସଭୂମି ଥିଲା କି ସେମାନେ ଆଧୁନିକ ହାଡି, ପାଣ,ଡମ ପ୍ରଭୃତିଙ୍କ ପୂର୍ବପୁରୁଷ ସଙ୍ଗେ ସମ୍ପର୍କ ରଖୁଥିଲେ । ସେଠାର ସ୍ୱାସ୍ଥ୍ୟକର ଜଳ ବାୟୁ ଓ ସମୁଦ୍ରର ସାନ୍ନିଧ୍ୟ ନିବନ୍ଧନ ଆର୍ଯ୍ୟମାନେ ରାଜ୍ୟ ସ୍ଥାପନ କରି ଶବରମାନଙ୍କର ପ୍ରତିଷ୍ଠିତ ନୀଳପ୍ରସ୍ତର ପୂଜା ଦେଖି ଜଗନ୍ନାଥ ନାମରେ କାଷ୍ଠ ପ୍ରତିମା ପ୍ରତିଷ୍ଠା କରି ଲୋକମାନଙ୍କର ଭକ୍ତି ଏତେଦୂର ଆକର୍ଷଣ କରିଥିଲେ ଯେ ତଦ୍ୱାରା ପ୍ରଚୁର ଅର୍ଥ ଅର୍ଜନ କରି ଗୋଟିଏ ମନ୍ଦିର ନିର୍ମାଣ କଲେ । ଏବଂ ଓଡିଶା ମହା ପୁଣ୍ୟ ଭୂମି ବୋଲି ପ୍ରତିଷ୍ଠିତ ହେଲା । ଖ୍ରୀଷ୍ଟାବ୍ଦ ପୂର୍ବ ୫୩୮ ଠାରୁ ୪୨୧ ବର୍ଷ ମଧ୍ୟରେ ଉତ୍ତର ଦିଗରୁ ଯବନମାନେ ଆସି ବାରମ୍ବାର ଓଡିଶାକୁ ଆକ୍ରମଣ କଲେ ଏବଂ ସେହିମାନଙ୍କ ସଙ୍ଗରେ ବୌଦ୍ଧଧର୍ମ ଓଡିଶାରେ ପ୍ରବେଶ କଲା । ଖ୍ରୀଷ୍ଟାବ୍ଦ ପୂର୍ବ ୫୪୩ ସାଲରେ ବୁଦ୍ଧ ଦନ୍ତପୁରୀକୁ ଆନୀତ ହୋଇ କିଛିକାଳ ପରେ ସିଂହଳ ଦ୍ୱୀପକୁ ପ୍ରେରିତ ହେଲା । ତହିଁର ଏକଶତ ବର୍ଷ ଉତ୍ତାରୁ ରକ୍ତବାହୁ ସେନାପତିଙ୍କ ଅଧୀନରେ ନାବିକ ଦସ୍ୟୁମାନେ ପୁରୀ ଆକ୍ରମଣ କରି କ୍ରମେ ସେହି ଦସ୍ୟୁମାନେ ଯବନ ନାମରେ ସ୍ଥାୟୀ ଭାବରେ ବାସ କଲେ । ପରେ ୪୭୪ ଖ୍ରୀଷ୍ଟାବ୍ଦରେ ଯଜାତିକେଶରୀ ନାମକ ଏକଜଣ ସ୍ୱଦେଶାନୁରାଗୀ ଯୋଦ୍ଧା ଅଭ୍ୟୁଦିତ ହୋଇ ଯବନମାନଙ୍କୁ ତଡି ଦେଇ ରାଜତ୍ୱ ସ୍ଥାପନ କଲେ । ଏହି ବଂଶର ଲଜହୀ ସନ ୧୧୩୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଥିଲା ଏବଂ ଏଥି ମଧ୍ୟରେ ଭୁବନେଶ୍ୱର ଏବଂ ପୁରୀ ମନ୍ଦିରମାନ ନିର୍ମାଣ ହୋଇଥିଲା । କେଶରୀ ବଂଶ ଉତ୍ତାରୁ ବଙ୍ଗୀୟ ଦେବବଂଶ ରାଜତ୍ୱ କଲେ । ଅନଙ୍ଗ ଭୀମଦେବ ସନ ୧୧୭୫ ସାଲଠାରୁ ସନ ୧୨୦୨ ସାଲ ପର୍ଯ୍ୟନ୍ତ ରାଜତ୍ୱ କରି ପୁରୀର ବର୍ତ୍ତମାନ ମନ୍ଦିର ନିର୍ମାଣ କରାଇ ଥିଲେ । ପରେ ମୋଗଲମାନେ ଓଡିଶା ଅଧିକାର କରିବାରୁ ସନ ୧୫୩୪ ସାଲରେ ଓଡିଶାର ନରପତିମାନେ ଖୋରଧାର ରାଜବଂଶରେ ପରିଣତ ହେଲେ ଏବଂ ସନ୧୭୫୬ ସାଲରେ ମରହଟ୍ଟାମାନେ ଓଡିଶା ଜୟ କଲେ । ମରହଟ୍ଟାମାନେ ପୁରୀ ଯାତ୍ରୀକର ବସାଇବା ଭିନ୍ନ ଆଉ କିଛି ବିଶେଷ କାର୍ଯ୍ୟ କରିବାର ଜଣା ନାହିଁ । ପରିଶେଷରେ ସନ ୧୮୦୩ ସାଲରେ ଇଂରାଜ ସୈନ୍ୟ ଗଞ୍ଜାମରୁ ନରସିଂହ ପଟଣାବାଟେ ପୁରୀରେ ପ୍ରବେଶ କଲେ । ବ୍ରିଟିସ ଆଗମନ ଜଗନ୍ନାଥ ମନ୍ଦିରର ପଣ୍ଡାମାନଙ୍କୁ ରକ୍ତବାହୁର ଆକ୍ରମଣର ପୁନରାବୃତ୍ତି ସଦୃଶ ବୋଧ ହେବାରୁ ଆକ୍ରମଣକାରୀଙ୍କ କୋପ ଶାନ୍ତି ନିମନ୍ତେ ପୁରୀ ମନ୍ଦିର ତାହାଙ୍କ ହସ୍ତରେ ଅର୍ପଣ କରିବାକୁ ପଣ୍ଡାମାନେ ସଂକଳ୍ପ କଲେ । ସମସ୍ତଙ୍କର ସତ୍ ଏବଂ ଧର୍ମସଂସ୍କାର ପ୍ରତି ଯଥୋଚିତ ଦୃଷ୍ଟି ରଖିବାପାଇଁ ବ୍ରିଟିସ ସେନାପତିଙ୍କର ଦୃଢ଼ ଆଦେଶ ଥିବାରୁ ମନ୍ଦିରର କୌଣସି ଅନିଷ୍ଟ ହୋଇ ନ ଥିଲା । ବାସ୍ତବରେ ବ୍ରିଟିସ ସେନା ରକ୍ଷକ ସ୍ୱରୂପ ସାଦରେ ଗୃହୀତ ହେଲେ । ପାଇକ ବିଦ୍ରୋହ ପରେ ଖୋରଧାର ରାଜାମାନେ ପୁରୀରେ ରାଜା ହେଲେ ।

ଉପର ଲିଖିତ ସଂକ୍ଷିପ୍ତ ବିବରଣ କି ଅଭିପ୍ରାୟରେ ପ୍ରକାଶିତ ହୋଇଅଛି ପାଠକମାନେ ବୁଝି ନେବେ ଏବଂ ସାମାନ୍ୟ ମୂଲ୍ୟର ପୁସ୍ତକ ଥିବାରୁ ଖଣ୍ଡେ ଖଣ୍ଡେ କିଣି ନେଇ ପାଠ କଲେ କୌତୂହଳପୂର୍ଣ୍ଣ ହେବ ।

*ଭାଗ ୩୩, ସଂଖ୍ୟା ୨୯, ୧୬।୭।୧୮୯୮*

## [ଅନୁବାଦ ପୁସ୍ତକ]

ଚଳିତବର୍ଷର ୬ଷ୍ଠ ସଂଖ୍ୟା ଉତ୍କଳସାହିତ୍ୟରେ ପାଠ କଲୁଁ କି ବାଲେଶ୍ୱର ଉତ୍ତରାଞ୍ଚଳ ଭୋଗରାଇ ଗ୍ରାମରେ ଏକ ସମୟରେ ଜାନକୀ ବଲ୍ଲଭ କରଶର୍ମା ନାମରେ ଏକଜଣ ଉତ୍କଳ ପଣ୍ଡିତ ଥିଲେ । ବର୍ତ୍ତମାନ ତାହାଙ୍କର ଅଧସ୍ତନ ପୁରୁଷମାନେ ମଧ୍ୟ ସଙ୍ଗତିପନ୍ନ ଏବଂ ସଂସ୍କୃତଜ୍ଞ ହୋଇ ସେହି ସ୍ଥାନରେ ବାସ କରିଅଛନ୍ତି । ସେ ଗ୍ରାମର ଜମିଦାର ମେଦିନାପୁର ଜିଲା ଅନ୍ତର୍ଗତ ପଟାସପୁର ପ୍ରଗଣା ପାଞ୍ଚୋଟି ନିବାସୀ ବିଖ୍ୟାତ ଶ୍ରୀ ଚୌଧୁରୀ ଗୋପେନ୍ଦ୍ର ନନ୍ଦନ ଦାସ ମହାପାତ୍ର । ଏହି ଜମିଦାର ବଂଶର ପୂର୍ବପୁରୁଷ ଚୌଧୁରାଣୀ ଗୁଣ୍ଡିଚା ଦେଈଙ୍କର ସଭା ପଣ୍ଡିତ ଉପରଲିଖିତ ପଣ୍ଡିତ ଜାନକୀ ବଲ୍ଲଭ ଥିଲେ । ସେହି ଚୌଧୁରାଣୀଙ୍କର ଆଦେଶ ମତେ ପଣ୍ଡିତ ମହୋଦୟ ଶ୍ରୀମଦ୍‌ଭାଗବତ ଗ୍ରନ୍ଥ ପ୍ରାକୃତ ଉତ୍କଳ ଭାଷାରେ ଅନୁବାଦ କରିଥିଲେ ଏବଂ ତାହା ଜଗନ୍ନାଥ ଦାସଙ୍କ ଉତ୍କଳ ଭାଗବତ ଅପେକ୍ଷା ମୂଳ ସଂସ୍କୃତ ସହିତ ଅଧିକ ମିଶିଥିଲା । ସେହି ଗ୍ରନ୍ଥ ସୁବର୍ଣ୍ଣରେଖାର ଉତ୍ତରାଞ୍ଚଳରେ ପ୍ରଚଳିତ ଓ ବାଲେଶ୍ୱର ଜିଲା ଛଡା ଓଡିଶାର ଅନ୍ୟାନ୍ୟ ଜିଲାର ଲୋକମାନଙ୍କୁ ଏହା ଜଣା ଅଛି କି ନାହିଁ ସନ୍ଦେହ । ସେହି ପଣ୍ଡିତ ମହୋଦୟ ଶ୍ରୀମଦ୍‌ଭଗବଦ୍‌ଗୀତା ମଧ୍ୟ ଓଡିଆ ଭାଷାରେ ଅନୁବାଦ କରିଥିଲେ । ଜଗନ୍ନାଥ ଦାସଙ୍କ ରଚିତ ଭାଗବତ ଅସମ୍ପୂର୍ଣ୍ଣ ବୋଲି କେହି କେହି ନୂତନ ଅନୁବାଦ ପ୍ରକାଶ କରିବାକୁ ଚେଷ୍ଟିତ ଥିବାର ଆମ୍ଭେମାନେ ଶୁଣିଅଛୁଁ । ପଣ୍ଡିତ ଜାନକୀ ବଲ୍ଲଭଙ୍କ ଭାଗବତ ଅଣାଇ ଦେଖିବା କାରଣ ଆମ୍ଭେମାନେ ସେମାନଙ୍କୁ ଅନୁରୋଧ କରୁଅଛୁ ଏବଂ ଯେବେ ତାହା ବିଶୁଦ୍ଧ ଥିବାର ଦେଖାଯିବ ତେବେ ଛାପା ହେବାର ଉଚିତ ଏହା ବୋଲିବା ବାହୁଲ୍ୟ ।

*ଭାଗ ୩୩, ସଂଖ୍ୟା ୩୨, ୬।୮।୧୮୯୮*

## ଓଡିଆ ପୁସ୍ତକ

ଭାରତର ଭିନ୍ନ ଭିନ୍ନ ପ୍ରଦେଶରେ ନାନା ଭାଷାରେ ଯେ ସବୁ ପୁସ୍ତକ ଛାପା ଓ ପ୍ରଚାର ହୁଏ ତହିଁରୁ ଖଣ୍ଡିଏ ବାର୍ଷିକ ସରକାରୀ ରିପୋର୍ଟ ପ୍ରକାଶିତ ହୁଅଇ । ସ୍ନ ୧୮୯୬ ସାଲର ବାର୍ଷିକ ରିପୋର୍ଟ ସମ୍ପ୍ରତି ବାହାରିଅଛି ଏବଂ ତହିଁରେ ଓଡିଆ ପୁସ୍ତକ ସମ୍ବନ୍ଧରେ ନିମ୍ନଲିଖିତ ବିବରଣ ଲେଖା ଅଛି । ଯଥା-

ଗତବର୍ଷ ଅର୍ଥାତ୍ ସ୍ନ ୧୮୯୫ ସାଲରେ ଓଡିଶାର ଯନ୍ତ୍ରାଳୟମାନଙ୍କରୁ ଖ ୧୫୬ ଣ୍ଡ ପୁସ୍ତକ ବାହାରି ଥିଲା । ଏବର୍ଷ ଖ ୧୧୬ ଣ୍ଡ ବାହାରି ଅଛି । ଗତ ବର୍ଷର ପୁସ୍ତକ ମଧ୍ୟରେ ନାଟକ ଖ ୪ଣ୍ଡ , ଉପନ୍ୟାସ ଖ୫ ଣ୍ଡ, ଇତିହାସ ଖ୪ ଣ୍ଡ, ଗଦ୍ୟ ଖ ୧୭ ଣ୍ଡ, ବାଜେ ଖ ୧୭ଣ୍ଡ ପଦ୍ୟ ଖ ୨୯ଣ୍ଡ, ଧର୍ମ ଖ ୨୪ ଣ୍ଡ, ଅଙ୍କ ଖ ୭ଣ୍ଡ ଏବଂ ପଦାର୍ଥ ବିଜ୍ଞାନ ଖ ୩ ଣ୍ଡ ଥିଲା । ଏ ବର୍ଷ ଜୀବନ ଚରିତ ଖ୩ ଣ୍ଡ, ନାଟକ ଖ ୧୧ଣ୍ଡ, ଉପନ୍ୟାସ ଖ ୨ ଣ୍ଡ, ଇତିହାସ ଖ୬ଣ୍ଡ,ଗଦ୍ୟ ଖ୨୭ ଣ୍ଡ, ଚିକିତ୍ସା ଖ ୧ଣ୍ଡ, ବାଜେ ଖ ୨୨ ଣ୍ଡ, ପଦ୍ୟ ଖ ୪୩ ଣ୍ଡ, ଧର୍ମ ଖ ୩୧ ଣ୍ଡ, ଅଙ୍କ ଖ ୨ ଣ୍ଡ, ପଦାର୍ଥ ବିଜ୍ଞାନ ଖ ୩ ଣ୍ଡ ଏବଂ ଭ୍ରମଣ ଖ ୧ଣ୍ଡ ଅଟେ ।

ନିମ୍ନଲିଖିତ ଓଡିଆ ପୁସ୍ତକମାନ ବିଶେଷ ଉଲ୍ଲେଖର ଯୋଗ୍ୟ ଅଟେ । ଯଥା –

ନାଟକ- ବାବୁ ହରିହରରଥଙ୍କର ଭଟ୍ଟ ନାରାୟଣଙ୍କ ସୁପରିଚିତ ସଂସ୍କୃତ ବେଣୀସଂହାର ନାଟକର ଉତ୍କଳ ଅନୁବାଦ ।

ବାଜେ – ବିବିଧପ୍ରବନ୍ଧ, ବାବୁ ବିଶ୍ୱନାଥ କରଙ୍କର ନାନା ବିଷୟ ରଚିତ ପ୍ରବନ୍ଧମାନଙ୍କର ସଂଗ୍ରହ ।

ପଦ୍ୟ-ଭାବନା – ବାବୁ ସାଧୁଚରଣ ରାୟଙ୍କର ରଚିତ କ୍ଷୁଦ୍ର କ୍ଷୁଦ୍ର ପଦ୍ୟମାନଙ୍କର ସଂଗ୍ରହ । ତହିଁ ମଧ୍ୟରେ କେତେଗୁଡିକର ଅନେକ ଗୁଣ ଅଛି ।

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ଭ୍ରମଣ-ଦାକ୍ଷିଣାତ୍ୟ ଭ୍ରମଣ-ବାବୁ ଶଶୀଭୂଷଣ ରାୟ ଦକ୍ଷିଣ ଭାରତ ଭ୍ରମଣ କାଳରେ ଯେ ସବୁ ମନୁଷ୍ୟ ଓ ଦ୍ରବ୍ୟାଦି ଭେଟିଥିଲେ ସେ ସମ୍ବନ୍ଧରେ ତାହାଙ୍କର ଦୃଷ୍ଟିର ଫଳ ଦୈନିକ ଲିପି ରୀତିରେ ଏ ପୁସ୍ତକରେ ପ୍ରକାଶ କରିଅଛନ୍ତି ।

ଓଡିୟା ସାହିତ୍ୟର ଅବଧି ବାଲ୍ୟାବସ୍ଥା ପୁରାତନ କାବ୍ୟ ଛଡା ଯେଉଁ ଅଳ୍ପସଂଖ୍ୟକ ପାଠୋପଯୁକ୍ତ ପୁସ୍ତକ ଏ ଭାଷାରେ ବାହାରୁ ଅଛି ତାହା ଅଧିକାଂଶ ବଙ୍ଗଳାର ଅନୁବାଦ ଅଟେ । ବଙ୍ଗଳା ଭାଷା ଅଧିକତର ଅଙ୍ଗ ପୁଷ୍ଟି ହେତୁ ନିକଟବର୍ତ୍ତୀ ଅନ୍ୟାନ୍ୟ ଦେଶୀୟ ଭାଷାରେ ତାହାର ବଳ ସଞ୍ଚାରିତ ହେଉଅଛି । ସାଧାରଣତଃ ବୋଲା ଯାଇପାରେ ଯେ ଓଡିୟା ଭାଷା ଓ ସାହିତ୍ୟ ବିଶେଷରୂପେ ବଙ୍ଗଳାର ପ୍ରତିଛାୟା ଅଟେ । ଓଡିୟା ଲେଖକମାନେ ବର୍ଣ୍ଣମାଳାନୁସାରେ ଛନ୍ଦର ଅତ୍ୟନ୍ତ ଅନୁରାଗୀ, ଏବଂ ସେମାନଙ୍କ ରଚିତ ପଦ୍ୟ ପ୍ରଧାନତଃ ଚୌତିଶା , ପୌରାଣିକ ପଦ୍ୟ ଓ ଲୀଳା ଅଟେ ।

ବଙ୍ଗଳା ଗବର୍ଣ୍ଣମେଣ୍ଟଙ୍କ ଅଧୀନ ପୁସ୍ତକାଗାରର ରକ୍ଷକଙ୍କ ମନ୍ତବ୍ୟାନୁସାରେ ଉପରଲିଖିତ ବିବରଣ ପ୍ରକାଶିତ ହୋଇଅଛି ଏବଂ ତାହା କେତେ ଦୂର ସୁସଙ୍ଗତ ହୋଇଅଛି ପାଠକମାନେ ବିଚାର କରିବେ । ଆଧୁନିକ ଓଡିୟା ସାହିତ୍ୟର ଅବଧି ବାଲ୍ୟାବସ୍ଥା ଏଥିରେ ସନ୍ଦେହ ନାହି ମାତ୍ର ଓଡିୟା ଲେଖକମାନେ ସାଧାରଣତଃ ବଙ୍ଗଳା ସାହିତ୍ୟର ଅନୁକରଣ କରନ୍ତି ଏହା ସ୍ୱୀକାର କରିବାକୁ କିଛି ଅଡୁଆ ବୋଧ ହେଉଅଛି । ପ୍ରକୃତରେ ଅଳ୍ପ ଦିନ ହେଲା ଓଡିଶାରେ ଶିକ୍ଷାର ବିସ୍ତାର ଆରମ୍ଭ ହୋଇଅଛି ଏବଂ ଶିକ୍ଷିତ ଓଡିୟାଙ୍କ ସଂଖ୍ୟା ଅଳ୍ପ ଏବଂ ଓଡିୟା ଭାଷା ପ୍ରଚଳିତ ଦେଶର ଆୟତନ ମଧ୍ୟ ଅଳ୍ପ ଅଟେ ଏହି କାରଣରୁ ଆଶାନୁରୂପ ଫଳ ଦେଖିବାରେ ଆସୁ ନାହିଁ । ଶିକ୍ଷିତ ଲୋକଙ୍କର ସଂଖ୍ୟା ଏବଂ ଚେଷ୍ଟା ଅଧିକ ହେଲେ ଅବଶ୍ୟ ଓଡିୟା ସାହିତ୍ୟର ଅଙ୍ଗ ପୁଷ୍ଟି ହେବ ।

ପରିଶେଷରେ ବକ୍ତବ୍ୟ ଏହି କି ମଧ୍ୟପ୍ରଦେଶର ପୁସ୍ତକର ତାଲିକାରେ ଓଡିୟାଭାଷାର ନାମ ଆଦୌ ନାହିଁ ଅଥଚ ବାମଣ୍ଡାରେ ଅନେକ ବର୍ଷରୁ ଯନ୍ତ୍ରାଳୟ ରହିଅଛି ଏବଂ ଅନେକ ପୁସ୍ତକ ମଧ୍ୟ ସେଠାରେ ମୁଦ୍ରିତ ହୋଇଅଛି । ବାମଣ୍ଡା ଗଡଜାତ ବା କରଦ ରାଜ୍ୟ ବୋଲି ସେଠା ପ୍ରକାଶିତ ପୁସ୍ତକମାନ ସରକାରୀ ପୁସ୍ତକାଗାରକୁ ଯାଏ ନାହିଁ କି, ?

*୭ମଭାଗ, ୨୩ସଂଖ୍ୟା, ୨୦।୮।୧୮୯୮*

## ଓଡ଼ିୟା-ସଂବାଦପତ୍ର ।

ଉତ୍କଳସାହିତ୍ୟର ୮ମ ସଂଖ୍ୟାରେ 'ଉତ୍କଳସାହିତ୍ୟ ଏବଂ ଉତ୍କଳୀୟ ପାଠକ' ଶିର୍ଷକ ଗୋଟିଏ ପ୍ରବନ୍ଧ ପ୍ରକାଶିତ ହୋଇଅଛି । ତହିଁର ଲେଖକ ବାବୁ କୃଷ୍ଣପ୍ରସାଦ ଚୌଧୁରୀ ଓଡ଼ିୟାଭାଷାର ସଂବାଦପତ୍ରମାନଙ୍କ ସମ୍ବନ୍ଧରେ ଦୁଃଖର ସହିତ ଲେଖିଅଛନ୍ତି କି ବର୍ତ୍ତମାନ ପ୍ରଚାରିତ ହେଉଥିବା ଚାରିଖଣ୍ଡ ସଂବାଦପତ୍ର ମଧ୍ୟରୁ କୌଣସି ଖଣ୍ଡିଏ ପତ୍ରିକା ସ୍ୱାଧୀନ ଭାବରେ ପରିଚାଳିତ ହେବାର ଦେଖାଯାଏ ନାହିଁ । ଅନେକ ରାଜନୈତିକ ପ୍ରଶ୍ନ ସମ୍ବନ୍ଧରେ ସମ୍ପାଦକମାନଙ୍କର ସ୍ୱାଧୀନ ମତର ଅଭାବ ପରିଦୃଷ୍ଟ ହୁଏ ଏବଂ ଅଧିକାଂଶ ପ୍ରବନ୍ଧ ଇଂରାଜୀ ବା ବଙ୍ଗଳା ପତ୍ରର ଅନୁବାଦ ମାତ୍ର । ସମାଜ, ନୀତି ଓ ଧର୍ମ ସଂସ୍କାର ବିଷୟରେ ସମସ୍ତେ ସମଭାବରେ ନିର୍ଜୀବ ଓ ନିସ୍ତେଜ ଏବଂ 'ହିତୈଷିଣୀ' ବେଳେ ବେଳେ ଟିକିଏ ସଜୀବତାର ପରିଚୟ ଦେଲେହେଁ ତାହା ଅରଣ୍ୟରେ ରୋଦନବତ୍ ନିଷ୍ଫଳ ହୋଇଯାଏ । ଓଡିୟାମାନଙ୍କର ଶାରୀରିକ ଓ ମାନସିକ ବୃତ୍ତି ନିଚୟର ପ୍ରକୃତ ଅନୁଶୀଳନର ଏକାନ୍ତ ଅଭାବ ହେତୁ ଏପର୍ଯ୍ୟନ୍ତ ସେମାନଙ୍କର ଚରିତ୍ର ଗଠିତ ହୋଇ ନାହିଁ ଏବଂ ଜଗତ୍ ସମ୍ମୁଖରେ ଗୋଟିଏ ଜାତିବୋଲି ପରିଚୟ ଦେବାର ଉପଯୋଗିତା ଜନ୍ମି ନାହିଁ । ଏ ଅଭାବ ଦୂର କରିବାକୁ ସଚେଷ୍ଟ ହେବା ଦେଶୀୟ ସମ୍ପାଦକ ମଣ୍ଡଳୀର ବିଶେଷ କର୍ତ୍ତବ୍ୟ ଅଟେ । ସେ ବିଶ୍ୱାସ କରନ୍ତି ଯେ ଓଡ଼ିଶାରେ ବଙ୍ଗଳା ସମ୍ବାଦପତ୍ରାଦିର ପାଠକଙ୍କ ସଂଖ୍ୟା ପାଞ୍ଚସହସ୍ରରୁ ଊଣା ନୁହେ । ଯେବେ 'ବଙ୍ଗବାସୀ' ପ୍ରଭୃତି ବୃହଦାକାର ଏବଂ ଉତ୍କୃଷ୍ଟ ପତ୍ରିକାର ବାର୍ଷିକ ମୂଲ୍ୟ ଟ୨ଙ୍କା ସଙ୍ଗେ ଓଡ଼ିୟା ସମ୍ବାଦପତ୍ରର ମୂଲ୍ୟ ସମାନ ହୋଇ ତିନିଟଙ୍କା ହୋଇ ନ ଥାନ୍ତା ତେବେ ସେହି ପାଞ୍ଚସହସ୍ର ଶିକ୍ଷିତ ଓଡିୟା ବଙ୍ଗଳା ସମ୍ବାଦପତ୍ରର ଆଶ୍ରୟ ନିଅନ୍ତେ ନାହିଁ ।

ଲେଖକ ଯେ ଓଡ଼ିଶାର ସଂବାଦପତ୍ରମାନଙ୍କର ମଙ୍ଗଳ କାମନାରେ ଉପରଲିଖିତ ମନ୍ତବ୍ୟ ପ୍ରକାଶ କରିଅଛନ୍ତି ତହିଁରେ ସନ୍ଦେହ ନାହିଁ ଏବଂ ତହିଁପାଇଁ ଆମ୍ଭେମାନେ ତାହାଙ୍କୁ ଧନ୍ୟବାଦ ଦେଉଅଛୁଁ । ଯେ ତ୍ରୁଟି ଦେଖାଇଦିଏ ତାହାକୁ ଆମ୍ଭେମାନେ ପରମବନ୍ଧୁ ଜ୍ଞାନ କରୁଁ । ମାତ୍ର ଯେ ସମସ୍ତ ତ୍ରୁଟି ଦେଖାଇଅଛନ୍ତି ସେସବୁ କେଉଁ ସଂବାଦପତ୍ରପ୍ରତି କି ପରିମାଣ ସୁସଙ୍ଗତ ସେ ପତ୍ରିକାର ସମ୍ପାଦକ ତହିଁର ବିଚାର କରିବେ । ଦୀପିକା ସମ୍ବନ୍ଧରେ ସେ ଯାହା କହିଅଛନ୍ତି କି ଗତ ବ ୩୦ର୍ଷରେ ଏହାର ଆକାର ଆଦୌ ବୃଦ୍ଧି ହୋଇ ନାହିଁ ଏହା ଠିକ୍ ନୁହେ । ଦୀପିକା ପ୍ରଥମେ ଅଧାତକ୍ତା ରଏଲ୍ କାଗଜରେ ଛାପା ହେଉ ଥିଲା ଏବଂ ଅଗ୍ରୀମ ମୂଲ୍ୟ ଟ୫ ଙ୍କା ଥିଲା । ସନ ୧୮୮୨ ସାଲରୁ ଏହା ପୂର୍ଣ୍ଣ ଏକତକ୍ତା ରଏଲ କାଗଜରେ ଛାପା ହେଉଅଛି ଏବଂ ସନ ୧୮୮୭ ସାଲରୁ ମୂଲ୍ୟ ଟ ୩ ଙ୍କା ହୋଇଅଛି ଅର୍ଥାତ୍ ଆକାର ଦ୍ୱିଗୁ ଣ ବୃଦ୍ଧି ଅଥଚ ମୂଲ୍ୟ ଟ୨ ଙ୍କା ଊଣା ହୋଇଅଛି । ଏଥିରେ ଆଶା ଥିଲାକି ଅବିଳମ୍ବେ ଅନ୍ତତଃ ଗ୍ରାହକ ସଂଖ୍ୟା ଦ୍ୱିଗୁଣ ହେବ ମାତ୍ର ଅବଧି ତାହା ଘଟି ନାହିଁ । ବରଂ ଅଧିକା ଖରଚାହେତୁ ଆର୍ଥିକଅବସ୍ଥା ହ୍ରାସ ହୋଇଅଛି । ତଥାଚ ଗ୍ରାହକ ସଂଖ୍ୟା କ୍ରମେ କ୍ରମେ ବଢୁଥିବା ଏବଂ ପୁରୁଣା ଗ୍ରାହକମାନଙ୍କର ସ୍ନେହ ଓ ଆଦର ଅଟଳ ରହିଥିବାରୁ ଉତ୍ସାହିତ ହୋଇ ପତ୍ରିକା ଚଳାଉ ଅଛୁଁ । ମୂଲ୍ୟ ଊଣା ହେଲେ ଗ୍ରାହକ ସଂଖ୍ୟା ଏତେ ଅଧିକ ହେବ ଯେ ପରିଣାମରେ ଲାଭ ବିନା କ୍ଷତି ହେବ ନାହିଁ ଏହା ଯେବେ ଓଡ଼ିଶାର ବର୍ତ୍ତମାନ ଅବସ୍ଥାପ୍ରତି ଯଥାର୍ଥ ହୁଅନ୍ତା ତେବେ ଚଉଧୁରୀଙ୍କ ମତରେ ସର୍ବାପେକ୍ଷା ଉତ୍କୃଷ୍ଟ ସଂବାଦପତ୍ର 'ହିତୈଷିଣୀ' ବାର୍ଷିକ ମୂଲ୍ୟ ଦୁଇଟଙ୍କା ଏବଂ କେତେକ ସଂଖ୍ୟା ଏକଟଙ୍କା ଧାର୍ଯ୍ୟ କରିଥିବାରୁ ଓଡିଶାର ପ୍ରାୟ ସମସ୍ତ ଗ୍ରାହକ ଆକର୍ଷଣ କରି ନେଇଥାନ୍ତେ । ଏଥିରୁ ବୋଧ ହେଉଅଛି ଯେ ଲେଖକଙ୍କ କଥା ଦେଶ କାଳ ବିବେଚନାରେ ସମୀଚିନ ହୋଇ ନାହିଁ । ଓଡିଶା ବଙ୍ଗଳାର ସମକକ୍ଷ ହେବାକୁ ଅନେକ ବିଳମ୍ବ ଅଛି ଏବଂ ବଙ୍ଗଳା ସଙ୍ଗେ ପ୍ରତିଯୋଗିତା କରିବା ଆମ୍ଭମାନଙ୍କର ସାମର୍ଥ୍ୟ ଓ ଅଭିପ୍ରାୟ ନୁହେ । ଅସ୍ମଦେଶୀୟ ଲୋକମାନେ ସୁଶିକ୍ଷିତ ହୋଇ ବଙ୍ଗଳା ଓ ଇଂରାଜୀ ଉତ୍କୃଷ୍ଟ ସଂବାଦପତ୍ରମାନ ପାଠ କରନ୍ତୁ ଏହା ଆମ୍ଭେମାନେ କାମନା କରୁଁ ଯେଉଁମାନଙ୍କର ସେ ଶକ୍ତି ନାହିଁ ସେମାନଙ୍କୁ ସେ ସବୁ ସଂବାଦପତ୍ରର ଆବଶ୍ୟକୀୟ ହିତକର ବିଷୟମାନ କିଛି କିଛି ଉପହାର ଦେବା ଏବଂ ସ୍ୱଦେଶର ଅଭାବ ଏବଂ ଆକାଂକ୍ଷା କର୍ତ୍ତୃପକ୍ଷ ଓ ଜନସାଧାରଣଙ୍କୁ ଜଣାଇବା ଅଭିପ୍ରାୟରେ ଆମ୍ଭେମାନେ ଏକାର୍ଯ୍ୟରେ ପ୍ରବୃତ୍ତ ହୋଇଅଛୁଁ । ଏଥିରେ ଆମ୍ଭମାନଙ୍କର ଅଧିକାଂଶ ଲେଖା ଇଂରାଜୀ ଓ ବଙ୍ଗଳା ସଂବାଦପତ୍ରର ଅନୁବାଦ ମାତ୍ର ବୋଲି ଶିକ୍ଷିତ ସମାଜର କେହି କେହି ବିବେଚନା କଲେ ତହିଁନିମନ୍ତେ ଆମ୍ଭେମାନେ ଦୁଃଖିତ ନୋହୁଁ । କାରଣ ଯେଉଁମାନଙ୍କୁ ସେ ସବୁ ଉପହାର ଦେଉଅଛୁଁ ସେମାନେ ତାହା ଆଗ୍ରହ ସହିତ ଗ୍ରହଣ କରୁଅଛନ୍ତି ଏବଂ ଶିକ୍ଷିତ ସମାଜର ଯେଉଁମାନେ ସ୍ଥାନୀୟ ସମ୍ବାଦପତ୍ରର ଉନ୍ନତି କାମନା କରନ୍ତି ସେମାନେ ଆମ୍ଭମାନଙ୍କୁ ଯଥେଷ୍ଟ ଉତ୍ସାହ ଦେଉଅଛନ୍ତି । ଆମ୍ଭମାନଙ୍କର ବିଶ୍ୱାସ ଯେ ବଙ୍ଗଳା ଏବଂ ଇଂରାଜୀ ସମ୍ବାଦପତ୍ରରେ ଅନେକ ଉତ୍କୃଷ୍ଟ ବିଷୟ ପ୍ରକାଶ ହୁଅଇ ଏବଂ ତହିଁରୁ କିଛି କିଛି ଉତ୍କଳୀୟଙ୍କୁ ଜଣାଇବାରେ ହିତ ବିନା ଅହିତ ନାହିଁ । ଏଥିରେ ସ୍ୱାଧୀନତାର ଅଭାବ କିପରି ଘଟିଲା ଆମ୍ଭେମାନେ ବୁଝି ପାରୁ ନାହୁଁ । ସମ୍ଭବତଃ ଲେଖକ ମତରେ ଯାହା ପାଞ୍ଚ ଜଣର ମତ ସଙ୍ଗେ ମିଶେ ତାହା ସ୍ୱାଧୀନ ମତ ନୁହେଁ । ମାତ୍ର ଆମ୍ଭେମାନେ ମନେ କରୁଁ କି ବିବେକ ଜ୍ଞାନ ଅନୁସାରେ ନିରପେକ୍ଷ ଭାବରେ ଯେଉଁ ମତ ପ୍ରକାଶିତ ହୁଏ ତାହା ସ୍ୱାଧୀନ ମତ । ଫଳତଃ ଶିକ୍ଷିତ ଲୋକଙ୍କଠାରେ ଆପଣା ଗୁଣ ଦେଖାଇବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ । ଆପଣାର ସାମାନ୍ୟ ଶକ୍ତି ଅନୁସାରେ ଜନସାଧାରଣର ସେବା କରିବା ଆମ୍ଭମାନଙ୍କର ବ୍ରତ । ସେବକର ସ୍ୱାଧୀନତା ନାହିଁ ଏହା କହିଲେ ଆମ୍ଭମାନଙ୍କର ଆଉ କିଛି ବକ୍ତବ୍ୟ ନାହିଁ ମାତ୍ର ତାହା ଭୃତ୍ୟର ଅଯୋଗ୍ୟତା ବୋଲାଯିବ କି ? ଯାହାହେଉ ଯେବେ ଲେଖକଙ୍କ ମତରେ ଓଡିଶାର କୌଣସି ସମ୍ବାଦପତ୍ରର ସ୍ୱାଧୀନ ମତ ନାହିଁ ଏବଂ ଜଟିଳ ରାଜନୈତିକ ବିଷୟର ମର୍ମ ବୁଝାଇ ଦେବାର କ୍ଷମତା ନାହିଁ ତେବେ ତାହାଙ୍କଠାରେ ଆମ୍ଭମାନଙ୍କର ଏତିକି ଅନୁରୋଧ ଯେ ସେ କେବଳ ତ୍ରୁଟି ଦେଖାଇ ଦେଇ ନିଶ୍ଚିନ୍ତ ନ ରହି କେତେଟା ଆଦର୍ଶ ପ୍ରବନ୍ଧ ପ୍ରକାଶ କରି ସୁଶିକ୍ଷା ଦେଲେ ଆମ୍ଭେମାନେ ତାହାଙ୍କ ଠାରେ କୃତଜ୍ଞ ହେବୁଁ ।

*ଭା୩୩ଗ, ସଂ୪୧ଖ୍ୟା, ୮।୧୦।୧୮୯୮*

# ୧୮୯୯

## [ବାର୍ଷିକ ପୁରସ୍କାର ବିତରଣ ସଭା ]

ମହାଶୟ ।

ନିମ୍ନଲିଖିତ ପଂକ୍ତି ନିଚୟକୁ ଆପଣଙ୍କର ଭୁବନବିଖ୍ୟାତ ପତ୍ରିକାର କୌଣେକ ଦେଶରେ ସ୍ଥାନ ପ୍ରଦାନ କରି ବାଧିତ କରିବା ହେବେ ।

ପୁରୀ ଜିଲ୍ଲାନ୍ତର୍ଗତ ଲେମ୍ବାଇ ପ୍ରଗନା ପୁରୀ ମହାରାଜାଙ୍କ ଜମିଦାରୀ । ଏହି ପ୍ରଗନାରେ ସ୍ୱର୍ଗୀୟ ମହାରାଜା ଦିବ୍ୟସିଂହ ଦେବଙ୍କ ରାଜତ୍ୱ ସମୟରୁ ଗୋଟିଏ ମଧମ ଶ୍ରେଣୀ ସ୍କୁଲ କେବଳ ମହାରାଜାଙ୍କ ଅର୍ଦ୍ଧ ସାହାଯ୍ୟରେ ବ ୨ ୫ର୍ଷ କାଳ ସଜୀବ ଥିଲା ଅଧୁନା ସେହି ବିଦ୍ୟାଳୟଟି ବାବୁ ପ୍ରାଣନାଥ ଦାସ, ଶ୍ରୀ ବାବୁ ବୀରଭଦ୍ର କାନୁନଗୋଇ ଓ ତାରେଶ୍ୱର ପଟ୍ଟନାୟକ ପ୍ରଭୃତିଙ୍କ ଯତ୍ନରେ ମଧମ ଶ୍ରେଣୀ ଇଂରେଜୀ ବିଦ୍ୟାଳୟରେ ପରିଣତ ହୋଇ ୧୮୯୪ ମସୀହାରୁ ଡେଲାଙ୍ଗରେ ପ୍ରତିଷ୍ଠିତ ହୋଇଅଛି ।

ଏ ବିଦ୍ୟାଳୟର ବାର୍ଷିକ ପୁରସ୍କାର ବିତରଣ ସମୟରେ ମହାରାଜାଙ୍କ ପ୍ରଧାନ କର୍ମଚାରୀ ସଭାପତି ଆସନ ଗ୍ରହଣ କରନ୍ତି । ୧୮୯୮ ମସିହାର ପୁରସ୍କାର ବିତରଣ ଚଳିତ ତା ୧୬ ରିଖରେ ହୋଇ ଥିଲା । ମିଷ୍ଟର ଜେ, ସି, ପ୍ରାଇସ୍ ସାହେବ ମହୋଦୟ ସଭାପତିର ଆସନ ଗ୍ରହଣ କରିଥିଲେ । କାର୍ଯ୍ୟାରମ୍ଭ ହେଲାରୁ ବିଦ୍ୟାଳୟର ବାର୍ଷିକ ବିତରଣ ଇଂରାଜୀ ଭାଷାରେ ପଠିତ ହେଲା । ତଦନନ୍ତର ଛାତ୍ରମାନେ ଇଂରେଜୀ ଓ ଉତ୍କଳ ଭାଷାରେ ନାନାବିଧ ଗାନମାନ ସୁଲଳିତ ସ୍ୱରରେ ଗାନ କରିଥିଲେ । ପ୍ରତ୍ୟେକ ଗାନ ଶେଷରେ ବିଦ୍ୟାଳୟ ଗୃହଟି କରତାଳିରେ ନିନାଦିତ ହେଉଥିଲା । ସାହେବ ମହୋଦୟ ପ୍ରତ୍ୟେକ ବାର କରତାଳି ପ୍ରଦାନ କରି ସୁହୃଦୟଭାବ ପରିଚୟ ଦେଉଥିଲେ । ଗାନାନ୍ତେ ସ୍କୁଲ କୋଷରୁ ପୁରସ୍କାର ବିତରଣ କରାଗଲାରୁ ସ୍ଥାନୀୟ ଉପସ୍ଥିତ ଭଦ୍ର ବ୍ୟକ୍ତି ସର୍ବରାକାର ଓ ମହାଜନମାନେ ସୁ ସ୍ୱର ଯୁକ୍ତ ଗାନ ସକାଶେ ପୁରସ୍କାର ପ୍ରଦାନ କରିଥିଲେ ।

ସାହେବ ମହୋଦୟ ଦଣ୍ଡାୟମାନ ହୋଇ ଗୋଟିଏ ସଦୁପଦେଶ ପୂର୍ଣ୍ଣ ବକ୍ତୃତା ପ୍ରଦାନ କରି ଅଜ୍ଞ ଇଂରାଜୀ ଭାଷାଜ୍ଞ ଛାତ୍ର ଓ କେତେକ ଇଂରାଜୀ ଭାଷାନଭିଜ୍ଞ ଉପସ୍ଥିତ ଭଦ୍ର ବ୍ୟକ୍ତିମାନଙ୍କୁ ବକ୍ତୃତାର ସାରାଂଶ ଉତ୍କଳ ଭାଷାରେ ପ୍ରକାଶ କରିବାକୁ ସ୍କୁଲର ପ୍ରଧାନ ଶିକ୍ଷକଙ୍କୁ ଅନୁରୋଧ କଲେ । ଶଂସିତ ସାହେବ ମହୋଦୟ ବକ୍ତୃତାରେ ପ୍ରକାଶ କରିଥିଲେ ଯେ ସ୍କୁଲ ସଂଲଗ୍ନରେ ଛାତ୍ରାବାସ ଥିବା ବଡ଼ ସୁଖର ବିଷୟ । ଆହୁରି ସୁଖର ବିଷୟ ଯେ ଛାତ୍ରାବାସରେ ଆହାର ପାନାଦିର ସୁବନ୍ଦୋବସ୍ତ ହୋଇଅଛି । ଏତିକି ମା ଚରିତ୍ର ପ୍ରତି ସମୁଚିତ ତତ୍ତ୍ୱାବଧାନ ଆବଶ୍ୟକ । ତଦନନ୍ତର ଧନ୍ୟବାଦ ପ୍ରଦାନ କରା ଯାଇ ସଭା ଭଙ୍ଗ ହେଲା । ସାହେବ ମହୋଦୟଙ୍କ ଅନୁଗ୍ରହରୁ ଏଠାର ଛାତ୍ରମାନଙ୍କୁ ମିଠାଇ ବିତରିତ ହୋଇଥିଲା ।

ସ୍ଥାନୀୟ ପୁରସ୍କାରଦାତାଙ୍କ ନାମ - ପରିମାଣ

ଶ୍ରୀ ବାବୁ ରାମକୃଷ୍ଣ ପଟ୍ଟନାୟକ... ... ଟ୧

ଶ୍ରୀ ବାବୁ ମଦନମୋହନ ପଟ୍ଟନାୟକ.....ଟ୦୮

ଶ୍ରୀ ବାବୁ ପଦ୍ମଚରଣ ମହାନ୍ତି..............ଟ୧

ଶ୍ରୀ ବାବୁ ଲୋକନାଥ ବ୍ରହ୍ମା ..............ଟ୧

ଶ୍ରୀ ବାବୁ ସାଧୁଚରଣ ଦାସ(ପେଷ୍କାର).....ଟ ୧
ଶ୍ରୀ ବାବୁ ସୁଦର୍ଶନ ନାୟକ................ଟ ୧ ।
ଶ୍ରୀ ବାବୁ ବିଦ୍ୟାଧର ମଙ୍ଗରାଜ ...........ଟ ୦ ।

ଢ଼େଲାଙ୍ଗ — ବଶମ୍ବଦ

୩୧।୧।୯୯ — ଶ୍ରୀ ଚୈତନ୍ୟ ପୃଷ୍ଟି

*ଭାଗ୩୪ଗ, ସଂଖ୍ୟା, ୧୧।୨।୧୮୯୯*

## [ସାହିତ୍ୟ ସଭା ]

ମହାଶୟ !

ଆମ୍ଭମାନଙ୍କର ଏହି ବିଦ୍ୟାଳୟ ସଂଲଗ୍ନରେ ଶ୍ରୀଯୁତ କୃଷ୍ଣଚନ୍ଦ୍ର ନନ୍ଦ ମହୋଦୟଙ୍କ ଯତ୍ନରେ ସାହିତ୍ୟ ସମାଲୋଚନା ଓ କ୍ରୀଡ଼ା ବିଧାୟିନୀ ନାମରେ ଦୁଇଗୋଟି ସଭା ସଂସ୍ଥାପିତ ହୋଇଅଛି । ପ୍ରଥମୋକ୍ତ ସଭାର ଅଧିବେଶନ ସାପ୍ତାହିକ ହୁଏ । ଏହାର ସଭାପତି ଶ୍ରୀଯୁତ ରେଭରେଣ୍ଡ ଜି ହାଉଏଲ୍ସ ବି,ଏ ବି ଡି ମହୋଦୟ ଓ ସମ୍ପାଦକ ଶ୍ରୀଯୁତ କୃଷ୍ଣଚନ୍ଦ୍ର ନନ୍ଦ ଅଟନ୍ତି । ସଭାପତି ମହାଶୟ ପ୍ରତି ଶୁକ୍ରବାର ଏବଂ ଅନେକ ସମୟରେ ତାହାଙ୍କ ପତ୍ନୀ ସଭାରେ ଉପସ୍ଥିତ ହୋଇ ସଦୁପଦେଶ ଏବଂ ଉତ୍ସାହଦ୍ୱାରା ସଭ୍ୟମାନଙ୍କର ଉନ୍ନତିର ଯତ୍ନ କରିଥାଆନ୍ତି । ଅଧିକାଂଶ ସଭ୍ୟ ପ୍ରଥମ ୩ ଶ୍ରେଣୀର ଛାତ୍ର ଏବଂ କେତେ ଗୁଡ଼ିଏ ରେଭେନ୍ସା କଲେଜର ଛାତ୍ର ଅଟନ୍ତି । ଗତ ୬ ମାସ ମଧ୍ୟରେ ଏହି ସଭାର ଗୋଟିଏ ସାଧାରଣ ଅଧିବେଶନ ଛଡା ୨୪ଟି ଅଧିବେଶନ ହୋଇଅଛି । ସଭା ସଂଲଗ୍ନରେ ଗୋଟିଏ ପୁସ୍ତକାଳୟ ଖୋଲା ହୋଇଅଛି । ଏଥିରେ କେତେକ ଖଣ୍ଡି ପୁସ୍ତକ ସଂଗୃହୀତ ହୋଇଅଛି । ସଭା ପକ୍ଷରୁ ୨ ଖଣ୍ଡି ଇଂରାଜୀ ଓ ଖଣ୍ଡିଏ ଓଡ଼ିଆ ସମ୍ବାଦପତ୍ର ଅଣାଯାଏ ସଭ୍ୟମାନେ ସ୍ୱେଚ୍ଛାକ୍ରମେ ଶନିବାର ଦିନ ୨ଟା ଠାରୁ ୪ଟା ପର୍ଯ୍ୟନ୍ତ ଏହିଠାରେ ବସି ପୁସ୍ତକ ବା ସମ୍ବାଦପତ୍ର ପାଠ କରି ଥାଆନ୍ତି ।

କ୍ରୀଡ଼ା ବିଧାୟିନୀ ସଭାରେ ଏହି ବିଦ୍ୟାଳୟର ଅଧିକାଂଶ ବାଳକ ଓ ଅନ୍ୟାନ୍ୟ ବିଦ୍ୟାଳୟର ବାଳକମାନେ ଯୋଗ ଦେଇଥାଆନ୍ତି । ଏହାର ସଭାପତି ଶ୍ରୀଯୁତ କୃଷ୍ଣଚନ୍ଦ୍ର ନନ୍ଦ ମହୋଦୟ ଏବଂ ସମ୍ପାଦକ ଶ୍ରୀଯୁତ ଯୋଶେଫ୍ ଯଶୋବନ୍ତ ସାହୁ ମହାଶୟ । ଏହି ବିଦ୍ୟାଳୟର ପ୍ରଥମ ୪ ଶ୍ରେଣୀର ବାଳକମାନେ ପ୍ରତ୍ୟେକେ କିଛି କିଛି ଚାନ୍ଦା ଦିଅନ୍ତି । ମାତ୍ର ତାହା ସାମାନ୍ୟ କିନ୍ତୁ ସଭାପତି ମହାଶୟଙ୍କ ଯତ୍ନଦ୍ୱାରା କେତେକ ଧନୀ ଲୋକ ଏକକାଳୀନ କିଛି କିଛି ପ୍ରଦାନ କରିଅଛନ୍ତି । ଏଥି ମଧ୍ୟରେ ଏହି ଦଳ ଅନ୍ୟ କେତେକ ଦଳକୁ କ୍ରୀଡ଼ାରେ ପରାସ୍ତ କରିବା ଶୁଣି କୁମାର ହରିହର ନାଥ ପଣ୍ଡିତ ୧୯ ଟଙ୍କାର ଦୁଇଗୋଟି ବ୍ୟାଟ ଓ ନଗଦ ଟ୫ଙ୍କା ଦେଇ ଅଛନ୍ତି, ଏଥି ନିମନ୍ତେ ଆମ୍ଭେମାନେ ତାହାଙ୍କଠାରେ କୃତଜ୍ଞତା ପ୍ରକାଶ କରୁଅଛୁଁ । ଆହୁରି ମଧ୍ୟ ଏହି ମହାଶୟ ରୌପ୍ୟପଦକ ପୁରସ୍କାର ଦେବେବୋଲି ଅଙ୍ଗୀକାର କରିଅଛନ୍ତି ।

ଏହାଙ୍କର ପିତା ଶ୍ରୀଯୁତ ରାଜା ବାହାଦୂର ବୈଦ୍ୟନାଥ ପଣ୍ଡିତ ବାହାଦୂର ଆମ୍ଭମାନଙ୍କ ସଭାପତିଙ୍କଠାରୁ ସଭାର ଉଦ୍ଦେଶ୍ୟ ଅବଗତ ହୋଇ ପୁସ୍ତକାଳୟକୁ ଟ୧୦ଙ୍କା ଓ କ୍ରୀଡ଼ା ବିଧାୟିନୀ ସଭାକୁ ଦୁଇ ଥରରେ ଟ ୨୫ଙ୍କା ପ୍ରଦାନ କରିଅଛନ୍ତି । ଏହାଙ୍କର ବଦାନ୍ୟତା ଉତ୍କଳ ବିଖ୍ୟାତ । ଈଶ୍ୱର ଏହି ମହାତ୍ମାଙ୍କୁ ଦୀର୍ଘଜୀବନ ପ୍ରଦାନ କରନ୍ତୁ ।

ଗତ ଦରବାର ସମୟରେ ଶ୍ରୀଯୁତ ପାରିକୁଦର ରାଜା ବାହାଦୂର ପରିଦର୍ଶନ କରିବାକୁ ଆସିଥିଲେ । ଏହି ମହୋଦୟଙ୍କର ସୌଜନ୍ୟ, ଶିଷ୍ଟତା ଲୋକପ୍ରିୟତା ଓ ନିରହଙ୍କାର ପ୍ରଭୃତି ଗୁଣାବଳୀ ଦର୍ଶନ କରି ଆମ୍ଭେମାନେ ଅତ୍ୟନ୍ତ ଆପ୍ୟାୟିତ ହୋଇଥିଲୁଁ । ଏହି ମହାତ୍ମା ପୁରସ୍କାର ବିତରଣ ନିମନ୍ତେ କ୍ରୀଡ଼ାବିଧାୟିନୀକୁ ଟ୨୦ଙ୍କା ଦେଇ ଯାଇଅଛନ୍ତି ଏବଂ ପିତୃ ମାତୃହୀନ ବାଳିକାମାନଙ୍କର ବିଦ୍ୟାଳୟ ପରିଦର୍ଶନ କରି ସେମାନଙ୍କୁ ଟ୧୫ଙ୍କା ଦେଇଗଲେ ।

ଜଗଦୀଶ୍ୱରଙ୍କଠାରେ ପ୍ରାର୍ଥନା ଯେ ସେ ଇହ ସଂସାରରେ ଖ୍ୟାତି ଓ ଦୀର୍ଘଜୀବନ ଲାଭ କରନ୍ତୁ ।

୨୬।୧୧।୯୯

ମିସନ୍ ସ୍କୁଲ — ଶ୍ରୀଶ୍ୟାମସୁନ୍ଦର ସାହୁ

କଟକ — ଛାତ୍ର

*ଭାଗ୩୪ଗ,ସଂ୬ଖ୍ୟା, ୧୧।୨।୧୮୯୯*

## ବିଜ୍ଞାପନ ।

ଅତି ଆବଶ୍ୟକୀୟ ନୂତନ ପୁସ୍ତକ

## ଚୌକିଦାରୀ ଆଇନ ।

ବହି କିଣିବା ପୂର୍ବରୁ ଯାକୁ ଥରେ ପଢ଼ି ଦେଖ ।

ଓଡ଼ିଶାବାସିଙ୍କର ସୁପରିଚିତ ପରମବନ୍ଧୁ ବୋର୍ଡ଼ର ମେମ୍ବର ମାନ୍ୟବର ଶ୍ରୀଯୁତ ଜି,ଟଏନ୍‌ବି ସାହେବଙ୍କ ଚୌକିଦାରୀ ମାନୁଏଲକୁ ଆମ୍ଭେ ଓଡ଼ିଆରେ ଅନୁବାଦ କରିଅଛୁଁ । ହାକିମମାନଙ୍କ ବ୍ୟବହାର ପାଁଇ ସରକାର କେବଳ ଟଏନବି ସାହେବଙ୍କ ଇଂରାଜୀ ବହି ଯୋଗାଇ ଥାନ୍ତି । ସୁତରାଂ ପଞ୍ଚାୟତର ସଭ୍ୟ ଜମିଦାର ଓ ଯେଉଁ ସରକାରୀ କର୍ମଚାରିମାନେ ଇଂରାଜୀ ଜାଣନ୍ତି ନାହିଁ ସେମାନେ ଟଏନ୍‌ବି ସାହେବଙ୍କ ଓଡ଼ିଆ ବହି ରଖିଲେ ଯେ ସମସ୍ତଙ୍କର ବିଶେଷ ସୁବିଧା ଓ ଉପକାର ହେବ ଏହା କହିବା ବାହୁଲ୍ୟ ମାତ୍ର ।

ସେ ବହିରେ ହାଇକୋର୍ଟଙ୍କ ନଜିର, ଗବର୍ଣ୍ଣମେଣ୍ଟଙ୍କ ସର୍‌କୁଲର, ଫୌଜଦାରୀ କାର୍ଯ୍ୟବିଧି ଓ ଅନ୍ୟାନ୍ୟ ଆଇନର ଜ୍ଞାତବ୍ୟ ବିଷୟମାନ ଥିବାରୁ ଜାଗିର ଜମି ଓ ଅନ୍ୟାନ୍ୟ ବିଷୟର ମୀମାଂସା ପାଇଁ ଯେ ଅନେକ ସୁବିଧା ହେବ ଏହା ମଧ କହିବା ବାହୁଲ୍ୟମାତ୍ର ।

ଗବର୍ଣ୍ଣମେଣ୍ଟଙ୍କ ଆଦେଶ ଅନୁସାରେ ଏହି ବହି ବିକ୍ରୀ ପାଇଁ ଜିଲା ଓ ସବ୍‌ଡିବିଜନ କଚେରି, ଥାନା, ଫାଣ୍ଡି ଓ କାନୁନଗୋମାନଙ୍କ କଚେରିରେ ରଖାଇବାକୁ ଏବଂ ତାହା ଖରିଦ କରିବାକୁ ପଞ୍ଚାୟତମାନଙ୍କୁ ପ୍ରବର୍ତ୍ତାଇବା ପାଇଁ ଜିଲା ହାକିମମାନଙ୍କପ୍ରତି କମିଶନର ସାହେବ ଆଦେଶ ଦେଇଅଛନ୍ତି ।

ଏହି ବହି ଚଳାଇବା ପାଇଁ ଆମ୍ଭମାନଙ୍କର ମାନନୀୟ କମିଶନର ଶ୍ରୀଯୁତ ଜି,ଷ୍ଟିଭିନ୍‌ସନ୍ ସାହେବ ଗବର୍ଣ୍ଣମେଣ୍ଟଙ୍କୁ ଯେଉଁ ଚିଠି ଲେଖିଥିଲେ ତହିଁରେ ସେ କହିଥିଲେ ଯେ ଉପଯୁକ୍ତ ବ୍ୟକ୍ତିମାନଙ୍କ ପ୍ରଶଂସାପତ୍ର ଅନୁସାରେ ଏ ବହି ଯେ ଅଧିକ ଭଲ ହୋଇଅଛି କେବଳ ତାହା ନୁହେ, ଏଥିରେ ଟଏନବି ସାହେବଙ୍କ ଟୀକାମାନଙ୍କର ଅନୁବାଦ ଦିଆଯାଇ ଥିବାରୁ ଏ ବହି ଅତି ଅଧିକ ବ୍ୟବହାରୋପଯୋଗୀ ହୋଇଅଛି । (The present translation of the Act will not only be an improvement on the present as certified to by compitent authorities whose opinion are attached to application but the fact that the notes in Mr. Toynbee's Manual are also translated will add immensely to the utility of the work.)

ଏ ବହିର ପାଣ୍ଡୁଲିପି ଅତି ଯତ୍ନରେ ସଂଶୋଧନ କରିଦେଇ ଆଧୁନିକ ଉତ୍କଳ ସାହିତ୍ୟର ନେତା ଭକ୍ତିଭାଜନ ଶ୍ରୀଯୁତ ରାୟ ରାଧାନାଥ ରାୟ ବାହାଦୂର ଲେଖିଅଛନ୍ତି ଯେ, "The language is clear and easy and as such is adapted to the comprehension of the people of rural tracts and the elucidatory notes which have been inserted in the body of the work have enhanced its usefulness I heartily wish success to the undertaking as it is first of its kind in the Oriya language ଅର୍ଥାତ୍ ଏହାର ଭାଷା ସରଳ ଓ ସୁସ୍ପଷ୍ଟ ହୋଇ ଥିବାରୁ ମୋଫସଲ ଲୋକମାନେ ଯାକୁ ଅତି ସହଜରେ ବୁଝି ପାରିବେ ଏବଂ ଏଥିରେ ଯେ ଟୀକାମାନ ଦିଆ ଯାଇଅଛି ତାହାଦ୍ୱାରା ଏ ପୁସ୍ତକର ଉପଯୋଗିତା

ବୃଦ୍ଧି ପାଇଅଛି । ଓଡ଼ିଆ ଭାଷାରେ ଏପରି ପୁସ୍ତକ ଏହି ପ୍ରଥମେ ହୋଇ ଥିବାରୁ ଏହା କୃତକାର୍ଯ୍ୟ ହେଉ ବୋଲି ଆମ୍ଭେ ଆନ୍ତରିକ କାମନା କରୁଁ ।

ଭକ୍ତିଭାଜନ ସୁବିଖ୍ୟାତ ଓକିଲ ଶ୍ରୀଯୁତ ରାୟ ହରିବଲ୍ଲଭ ବୋଷ ବାହାଦୂର କହିଅଛନ୍ତି ଯେ "To most of the sections appearing in the authoritative translation Babu Gopal Bullhab Das has added his free translation in so simple and easy words that by reading his translations those for whom the Act in Vernacular is intended will not have the slightest difficulty in grasping the meaning and object of the sections ଅର୍ଥାତ୍ ବାବୁ ଗୋପାଳବଲ୍ଲଭ ଦାସ ସରଳ ଓ ସହଜ ଭାଷାରେ ଅଧିକାଂଶ ଧାରାମାନଙ୍କର ଯେଉଁ ଅନୁବାଦ ଦେଇଅଛନ୍ତି ତାହାଦ୍ୱାରା ସେ ଧାରାମାନଙ୍କର ଅର୍ଥ ଓ ଉଦ୍ଦେଶ୍ୟ ବୁଝିବାପକ୍ଷରେ, ଯେଉଁମାନେ ଓଡ଼ିଆ ଆଇନ ପଢିବେ ସେମାନଙ୍କର କିଛିମାତ୍ର କଷ୍ଟ ହେବ ନାହିଁ ।

ଅନ୍ୟତର ସୁବିଖ୍ୟାତ ଓକିଲ ଆମ୍ଭର ପୂଜ୍ୟପାଦ ଅଗ୍ରଜ ଶ୍ରୀଯୁତ ବାବୁ ମଧୁସୂଦନ ଦାସ କହିଅଛନ୍ତି ଯେ Babu Gopal Bulhab Das's Edition of the Act with the explanatory notes supplies this want and for this he certainly deserves the thanks and support of all who are interested in the efficent and satisfactory working of the system ଅର୍ଥାତ୍ ଆଇନର ଓଡ଼ିଆ ଅନୁବାଦରେ ଯେଉଁ ଅଭାବମାନ ଅଛି ତାହା ସବୁ ବାବୁ ଗୋପାଳବଲ୍ଲଭ ଦାସଙ୍କ ବ୍ୟାଖ୍ୟା ଦ୍ୱାରା ପୂରଣ ହୋଇଅଛି । ସେହି ହେତୁରୁ ଚୌକିଦାରୀ ପ୍ରଣାଳୀ ସନ୍ତୋଷଜନକ ଓ ସୁଚାରୁରୂପେ କାର୍ଯ୍ୟରେ ପରିଣତ କରିବାକୁ ଯେଉଁମାନେ ଲୋଡ଼ନ୍ତି ଗୋପାଳବାବୁ ସେମାନଙ୍କ ସାହାଯ୍ୟ ଓ ଧନ୍ୟବାଦର ପାତ୍ର ଅଟନ୍ତି ।

ଶ୍ରୀଯୁତ କମିଶନର ସାହେବ ଗବର୍ଣ୍ଣମେଣ୍ଟ, ଓ ଜିଲା ହାକିମମାନଙ୍କଠାକୁ ଯେଉଁ ପତ୍ରମାନ ଲେଖି ଅଛନ୍ତି ଏବଂ ରାୟ ଶ୍ରୀ ରାଧାନାଥ ରାୟ ବାହାଦୂର ରାୟ ଶ୍ରୀ ହରିବଲ୍ଲଭ ବୋଷ ବାହାଦୂର ଓ ବାବୁ ଶ୍ରୀ ମଧୁସୂଦନ ଦାସଙ୍କ ମନ୍ତବ୍ୟମାନ ପୁସ୍ତକ ସଙ୍ଗେ ଦିଆଗଲା । ସେଥିରେ ଆଇନର ଗବର୍ଣ୍ଣମେଣ୍ଟଙ୍କ ଓଡ଼ିଆ ଅନୁବାଦର ବିଷୟମାନ ବିଶେଷରୂପେ ବର୍ଣ୍ଣିତ ଅଛି ।

ଏହି ଆଇନ ସମ୍ବନ୍ଧରେ ଖଣ୍ଡେ ବହି ବାହାରିଲାଣି ବୋଲି ଓ ଆଉ ବାହାରିବ ବୋଲି ଶୁଣା ଯାଉଅଛି । ସେ ବହିମାନ ଆମ୍ଭ ବହି ଅପେକ୍ଷା ଶସ୍ତା ଦରରେ ବିକ୍ରି ହେବା ସମ୍ଭାବନା ଯେଉଁମାନେ କେବଳ ଶସ୍ତା ଦେଖି ବହି କିଣିବେ ସେମାନେ ଯେ ସବୁ ପ୍ରକାରେ କ୍ଷତିଗ୍ରସ୍ତ ହେବେ ଏହା କହିବା ବାହୁଲ୍ୟ ମାତ୍ର ।

ଆମ୍ଭ ବହି ଏହି ଫେବୃଏରୀମାସ ତା୨୦ରିଖ ସୁଦ୍ଧା କିଣିବାକୁ ମିଳିବ । ଇତି ।

| | |
|---|---|
| କଟକ | ଶ୍ରୀ ଗୋପାଳବଲ୍ଲଭ ଦାସ |
| ତା୭ରିଖ ଫେବୃଏରୀ | ଓଡ଼ିଶା କମିଶନରଙ୍କ |
| ସନ ୧୮୯୯ | ପର୍ଷନାଲ ଅଶିଷ୍ଟଣ୍ଟ । |

*ଭାଗ୩୪ଗ,ସଂ୯ଖ୍ୟା, ୪।୩।୧୮୯୯*

## ନୂତନ ପୁସ୍ତକ ।

ନିମ୍ନଲିଖିତ ପୁସ୍ତକମାନ ଉପହାର ପାଇବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ।

ତାଳସର୍ବସାର ସଂଗ୍ରହ-ପାରଲାଖିମୁଣ୍ଡିର ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣଦେବଙ୍କଦ୍ୱାରା ବିରଚିତ ଏବଂ ସେହି ସ୍ଥାନର ଗଜପତି ଯନ୍ତ୍ରାଳୟରେ ମୁଦ୍ରିତ । ଏପର୍ଯ୍ୟନ୍ତ ସଙ୍ଗୀତ ଶାସ୍ତ୍ରର କୌଣସି ପୁସ୍ତକ ଓଡ଼ିଆଭାଷାରେ ପ୍ରକାଶିତ ହୋଇ ନ ଥିବାର ଦେଖି ଗ୍ରନ୍ଥକାର ସ୍ୱଦେଶାନୁରାଗ ବଶତଃ ସଂସ୍କୃତ ନାନା ପୁସ୍ତକରୁ ତାଳ ସମ୍ବନ୍ଧୀୟ ସାର କଥାମାନ ସଂଗ୍ରହ କରି ଉତ୍କଳ ଅନୁବାଦ ସହିତ ଏ ପୁସ୍ତକ ପ୍ରକାଶ କରିଅଛନ୍ତି । ଗୀତ ବାଦ୍ୟ ଓ ନୃତ୍ୟର

ଏକମାତ୍ର ଆଧାର ତାଳ ଅଟେ । ତାଳ ସେ ସମସ୍ତର ମାନଦଣ୍ଡ ଏବଂ ତାଳ ବିନା କାହାରି ଗତି ନାହିଁ । ଏଥିପାଇଁ ଗ୍ରନ୍ଥକାର ପ୍ରଥମେ ତାଳଜ୍ଞାନ ଲୋକସମାଜରେ ପ୍ରଚାର କରିବା ଅଭିପ୍ରାୟରେ ଏ ପୁସ୍ତକ ପ୍ରକାଶ କରି ସର୍ବସାଧାରଣଙ୍କର ଧନ୍ୟବାଦର ପାତ୍ର ହୋଇଅଛନ୍ତି, ତାଳ ବୁଝିବାର ଅତ୍ୟାବଶ୍ୟକୀୟ, ପ୍ରାୟ ସକଳ କଥା ଏଥିରେ ଲେଖାଅଛି ଏବଂ ଦାକ୍ଷିଣାତ୍ୟ ପ୍ରଧାନ ସାତତାଳର ବିଶେଷ ପରିଚୟ ସହିତ ଏକଶତ ଦଶ ତାଳର ସଂକ୍ଷେପ ପରିଚୟ ମଧ୍ୟ ଦିଆ ହୋଇଅଛି । ଏହି ୧୧୦ ତାଳ ବର୍ତ୍ତମାନ୍ ଓଡ଼ିଶାରେ ପ୍ରଚଳିତ ଅଛି କି ନାହିଁ ଗ୍ରନ୍ଥରୁ ଜଣାପଡୁ ନାହିଁ । ସମ୍ଭବତଃ ଧ୍ରୁବାଦି ପ୍ରଧାନ ସାତତାଳ ଉପରେ ବ୍ରହ୍ମ ରୁଦ୍ରାଦି ଆଉ କେତୋଟି ତାଳରୁ ଅଧିକାଂଶ ତାଳ ବ୍ୟବହାରରେ ଆସିବାର ଦେଖା ଯାଏ ନାହିଁ । ଅଥଚ ସେହି ସମସ୍ତର ସଂକ୍ଷେପ ପରିଚୟରେ ପୁସ୍ତକର ତିନିଭାଗ ବାହାରି ଯାଇଅଛି । ପରନ୍ତୁ କେବଳ ତାଳଜ୍ଞାନ ବ୍ୟବହାର ପ୍ରତି ଯଥେଷ୍ଟ ନୁହେ । ସାଧନ ଆବଶ୍ୟକ ମୃଦଙ୍ଗ ବାଦ୍ୟଶିକ୍ଷା ସାଧନର ଉପାୟ ଅଟେ । ବାଦ୍ୟଶିକ୍ଷା ବିଷୟରେ ଗ୍ରନ୍ଥକାର ଅବା ସମୟାନ୍ତରେ ଅନ୍ୟ ପୁସ୍ତକ ବାହାର କରିବାର ଇଚ୍ଛା କରିଥିବେ । ମାତ୍ର ଆମ୍ଭେମାନେ ଅନୁମାନ କରୁଁ କି ଏହି ପୁସ୍ତକର ଅନ୍ୟ ସଂସ୍କରଣରେ ଅନାବଶ୍ୟକୀୟ ବାହୁଲ୍ୟତା ପରିତ୍ୟାଗ ପୂର୍ବକ ସଚରାଚର ପ୍ରଚଳିତ ତାଳମାନଙ୍କର ସାଧନା ପ୍ରଣାଳୀ କହିଦେଲେ ବିଶେଷ ଉପକାର ହେବ । ଆପାତତଃ ଏ ପୁସ୍ତକରୁ ଖଣ୍ଡେ ଖଣ୍ଡେ ଲାଭ କରି ଗ୍ରନ୍ଥକାରଙ୍କୁ ଉତ୍ସାହ ଦେବା ନିମନ୍ତେ ସଙ୍ଗୀତାନୁରାଗିମାନଙ୍କୁ ବିଶେଷ ଅନୁରୋଧ କରୁଅଛୁଁ ।

ଛାନ୍ଦମାଳା ୨ୟ ଖଣ୍ଡ-ଶ୍ରୀ ବାବୁ ମଧୁସୂଦନ ରାଓଙ୍କଦ୍ୱାରା ପ୍ରଣୀତ ଏବଂ ଏ ନଗରସ୍ଥ ଅରୁଣୋଦୟ ଯନ୍ତ୍ରରେ ମୁଦ୍ରିତ । ମୂଲ୍ୟ ଟ ୦ । ଉଚ୍ଚ ପ୍ରାଥମିକ ଏବଂ ମଧ୍ୟଶ୍ରେଣୀ ବିଦ୍ୟାଳୟ ମାନଙ୍କରେ ବ୍ୟବହାର ନିମନ୍ତେ ଏ ପୁସ୍ତକ ପ୍ରକାଶିତ ହୋଇଅଛି ଏବଂ ଉତ୍କଳ ସାହିତ୍ୟରେ ଗ୍ରନ୍ଥକାରଙ୍କର ପ୍ରତିଷ୍ଠା ଏହା ଉପଯୋଗିତାର ଉତ୍ତମ ପ୍ରମାଣ ଅଟେ । ଆଶା କରୁଁ ଏହି ଖଣ୍ଡ ପ୍ରଥମଖଣ୍ଡ ପରି ଉତ୍କଳ ବିଦ୍ୟାଳୟମାନଙ୍କରେ ସମାଦୃତ ହେବ ।

ଚୌକିଦାରି ମ୍ୟାନୁଏଲ-ଶ୍ରୀ ଶ୍ରୀକୃଷ୍ଣ ମହାପାତ୍ରଙ୍କଦ୍ୱାରା ସଙ୍କଳିତ ଏବଂ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଯନ୍ତ୍ରାଳୟରେ ମୁଦ୍ରିତ । ସମସ୍ତଙ୍କୁ ଜଣା ଅଛି ଯେ ଆସନ୍ତା ଅପ୍ରେଲ ମାସ ଆରମ୍ଭରୁ ସନ ୧୮୭୦ ସାଲର ଆଇନ ଓଡ଼ିଶାରେ ଜାରୀ ହେବ ଏବଂ ସେହି ଆଇନାନୁଯାଇ କାର୍ଯ୍ୟ ନିର୍ବାହ ହେବା ଅଭିପ୍ରାୟରେ ଗତ କେତେକ ମାସରୁ ଗ୍ରାମ ଗ୍ରାମରେ ପଞ୍ଚାଏତ ଦଫାଦାର ଚୌକିଦାର ପ୍ରଭୃତି ନିଯୋଗ ଏବଂ ଟିକସ ବନ୍ଦୋବସ୍ତ କାର୍ଯ୍ୟମାନ ଚାଲିଅଛି । ସେହି ଆଇନ ଓ ଅନ୍ୟ ଯେ ସବୁ ଆଇନଦ୍ୱାରା ଏ ପର୍ଯ୍ୟନ୍ତ ତାହା ସଂଶୋଧିତ ହୋଇଅଛି ଏବଂ ସେ ସମ୍ବନ୍ଧୀୟ ନିୟମାବଳୀମାନ ଯଥେଷ୍ଟ ଟୀକା ଓ ବ୍ୟାଖ୍ୟା ସହିତ ଏହି ପୁସ୍ତକରେ ପ୍ରକାଶିତ ହୋଇଅଛି । ଏହାର ଭାଷା ଯଥାସାଧ୍ୟ ସରଳ ଏବଂ ବ୍ୟାଖ୍ୟା ସୁବୋଧ ହୋଇଅଛି । ଆଶା କରୁଁ ଏହାର ମୂଲ୍ୟ ସେହିପରି ସୁଲଭ ହେବ ଯେମନ୍ତ କି ମୋଫସଲର ଲୋକମାନେ ଅଧିକ ମୂଲ୍ୟ ହେତୁ ଏହି ଅତ୍ୟାବଶ୍ୟକୀୟ ପୁସ୍ତକ ଖଣ୍ଡେ ଖଣ୍ଡେ ରଖିବାକୁ ଅସମର୍ଥ ହେବେ ନାହିଁ । ପୁସ୍ତକର ପୃ ୨୪ଷ୍ଠାରେ ଦଣ୍ଡବିଧି ଆଇନର ଅନେକ ଗୁଡ଼ିଏ ଧାରାର ଗୋଟିଏ ତାଲିକା ଦିଆ ଯାଇଅଛି ମାତ୍ର ସେ ଆଇନ ନ ଦେଖି ଲୋକେ ଯେଉଁ ଧାରାର ଯେଉଁ ଅପରାଧ ତାହା ସ୍ଥିର କରି ପାରିବେ ନାହିଁ । ଏହି ତାଲିକା ଟିକିଏ ବିସ୍ତୃତ ହୋଇଥିଲେ ଭଲ ହୋଇଥାନ୍ତା ପରନ୍ତୁ ଅନ୍ୟାନ୍ୟ ସରକାରୀ ମହକୁମାର ସମନ ନୋଟୀସ ଆଦେଶାଦି ଯାରୀ କରିବା ବିଷୟରେ ସରକାରୀ ପିୟାଦା ପ୍ରଭୃତିଙ୍କୁ ଚୌକିୟାମାନେ ବର୍ତ୍ତମାନ ଯେଉଁ ସାହାଯ୍ୟ ଦେଉଅଛନ୍ତି ତହିଁର ଉଲ୍ଲେଖ ନ ହେବାର କାରଣ ବୁଝିପାରୁ ନାହୁଁ । ଏଥି ଉତ୍ତାରୁ ଅବଗତ ହେଲୁଁ ଯେ ପୁସ୍ତକର ମୂଲ୍ୟ ଟ୦୵୲ ହୋଇଅଛି ଅତଏବ ଯଥୋଚିତ ସୁଲଭ ହୋଇଅଛି ।

ବିବିଧ ସଂଗ୍ରହ । ଶ୍ରୀ ବାବୁ ମାଧବ ଲାଲ ଓଡ଼ିଶା କେନାଲ ଡେପୁଟୀ କଲେକ୍ଟରଙ୍କଦ୍ୱାରା ପ୍ରଣୀତ ଏବଂ ଏ ନଗରସ୍ଥ ଅରୁଣୋଦୟଯନ୍ତ୍ରାଳୟରେ ମୁଦ୍ରିତ । ମୂଲ୍ୟ ଏକଟଙ୍କା । ଓଡ଼ିଶାର ଜନସାଧାରଣ ବିଶେଷତଃ ମୋଫସଲବାସିମାନେ ଅର୍ଥାଭାବ ହେତୁ ନାନାବିଷୟର ପୁସ୍ତକାଦି ସଂଗ୍ରହ କରି ଆପଣା ଆପଣାର ଜ୍ଞାନ-ପିପାସା ତୃପ୍ତି କରିବାକୁ ଅସମର୍ଥ ହେବାର ଦେଖି ନାନାସ୍ଥାନରୁ ନାନାବିଷୟ ସଂଗ୍ରହପୂର୍ବକ ଏହି ପୁସ୍ତକ ପ୍ରକାଶ କରିବାର

ଗ୍ରନ୍ଥକାର ଏଥିର ଭୂମିକାରେ ଲେଖିଅଛନ୍ତି । ମାଧବ ବାବୁ ବିହାରପ୍ରଦେଶବାସୀ କାର୍ଯ୍ୟୋପଲକ୍ଷରେ କେତେକ ବର୍ଷ ହେଲା ଓଡ଼ିଶାକୁ ଆସି ଏଥିମଧ୍ୟରେ ସ୍ଥାନୀୟଭାଷା ଆୟତ୍ତ କରି ଏବଂ ଏଠା ନିବାସିଙ୍କର ଅଭାବ ବୁଝିପାରି ତହିଁର ପ୍ରତୀକାର ନିମନ୍ତେ ଆପଣାର କଷ୍ଟାର୍ଜିତ ଅବସର ନିୟୋଗଦ୍ୱାରା ଏ ପୁସ୍ତକ ପ୍ରକାଶ କରି ଅଛନ୍ତି ଏଥିପାଇଁ ସେ ଅଶେଷ ଧନ୍ୟବାଦର ପାତ୍ର ଏବଂ ଆମ୍ଭେମାନେ ମୁକ୍ତକଣ୍ଠରେ ତାହା ପ୍ରଦାନ କରୁଅଛୁଁ । ଏ ପୁସ୍ତକସଙ୍ଗେ ବାବୁ ଫକୀରମୋହନ ସେନାପତି, ରାୟ ରାଧାନାଥରାୟ ବାହାଦୂର ବାବୁ ବିଶ୍ୱନାଥ କର, ମୌଲବୀ ମହମ୍ମଦ ଅବଦୁଲସମଦ ଏବଂ ବାବୁ ପ୍ୟାରୀମୋହନ ସେନ ଏବଂ ବାବୁ ମଧୁସୂଦନ ରାଓଙ୍କର ପ୍ରଶଂସାପତ୍ରମାନ ଜଡ଼ିତ ଥିବାସ୍ଥଳେ ଏହାର ଗୁଣ ସମ୍ବନ୍ଧରେ ଆଉ କିଛି କହିବାର ଆବଶ୍ୟକ ନାହିଁ । ଆମ୍ଭମାନଙ୍କର କ୍ଷୁଦ୍ରବିବେଚନାରେ ଏ ପୁସ୍ତକ ସଙ୍କଳନରେ ଗ୍ରନ୍ଥକାରଙ୍କର ସହାନୁଭୂତି ସହିତ ବିଚାରର ସମତା ରହି ପାରି ନାହିଁ । ଅନ୍ୟାନ୍ୟ ପୁସ୍ତକର କଳେବର ବିବେଚନାରେ ଏହାର ମୂଲ୍ୟ ନିତାନ୍ତ ଅଧିକ ବୋଲାଯାଇ ନ ପାରିଲେ ମଧ ମୋଫସଲର ଅଧିକାଂଶ ଲୋକ ପକ୍ଷରେ ଏକଟଙ୍କା ଦେଇ ଖଣ୍ଡେ ପୁସ୍ତକ କିଣିବା ସୁସାଧ ନୁହେ । ବିଶେଷତଃ ପୁସ୍ତକରେ ଏମନ୍ତ ଅନେକ କଥା ଅଛି ଯାହା କି ଯତ୍‌ସାମାନ୍ୟ ମୂଲ୍ୟରେ ଅଥବା ବିନା ମୂଲ୍ୟରେ ଲୋକଙ୍କର ହସ୍ତଗତ ହେଉଅଛି ଏବଂ ବିଦ୍ୟାଳୟର ଛାତ୍ରମାନଙ୍କୁ ସୁଦ୍ଧା ଅବିଦିତ ନାହିଁ । ଯଥା ଭୂଗୋଳ, ଇତିହାସ, ଅଙ୍କ, ସ୍ୱାସ୍ଥ୍ୟ ସାଧନ, ପଶା ଇତ୍ୟାଦି କ୍ରୀଡ଼ା, ଫୁଲାଦି ଠାର, ଢଗମାଳିକା ପ୍ରହେଳିକା ପ୍ରତିବର୍ଷ ପାଞ୍ଜିରେ ପ୍ରକାଶ ହେଉଥିବା ବିଷୟ କର୍ମ ଏବଂ ଜ୍ୟୋତିଷରୁ ଅଳପ ମାତ୍ର ସାମୁଦ୍ରିକ ନିତ୍ୟକର୍ମ ଅଶୌଚ ବ୍ୟବସ୍ଥା ଇତ୍ୟାଦି । ଏସବୁ ଛାଡ଼ିଦେଲେ ପୁସ୍ତକର ଆଠପଣରୁ ଅଧିକ ବାହାରିଯିବ । ଅବଶିଷ୍ଟ କେତେକ ବିଷୟ ଯଥା ପୁରାଣ ବେଦ ସଙ୍ଗୀତାଦି କୃଷି ବିଷୟରେ ଯାହା ଲେଖା ଅଛି ତାହା ନିତାନ୍ତ ଅପୂର୍ଣ୍ଣ ସୁତରାଂ ନିଷ୍ଫଳ, ପୁଣି ବିଷୟ କର୍ମ ମଧରେ ଯାହା ଅଧିକ ପ୍ରୟୋଜନୀୟ ଯଥା ପ୍ରଜାସତ୍ୱ, ଜଳକର, ପଥକର, ଚୌକିଦାରୀ, ନିୟମ ପ୍ରଭୃତି ବିଷୟର କିଛିମାତ୍ର ଉଲ୍ଲେଖ ନାହିଁ । ଖଣ୍ଡିଏ ପୁସ୍ତକରେ ସକଳ ବିଷୟ ପ୍ରୟୋଜନାନୁସାରେ ବୁଝାଇଦେବା ବଡ଼ କଠିନ କାର୍ଯ୍ୟ ମାତ୍ର ଏହା ବୋଲି ଏ ପୁସ୍ତକକୁ ଏକାବେଳେ ଅଗ୍ରାହ୍ୟ କରିବା ଆମ୍ଭମାନଙ୍କର ଅଭିପ୍ରାୟ ନୁହେ । ବାସ୍ତବରେ ଏଥିରେ ଅନେକ ଶିକ୍ଷା ଏବଂ ଆମୋଦପ୍ରଦ କଥା ଅଛି ଏବଂ ଶ୍ରଦ୍ଧା ଓ ସଙ୍ଗତିବାନ୍ ଲୋକମାନେ ଏଥିରୁ ଖଣ୍ଡେ ଖଣ୍ଡେ କ୍ରୟ ଓ ପାଠ କଲେ ସେମାନଙ୍କର ଶ୍ରମ ବିଫଳ ହେବ ନାହିଁ ।

*ଭା୩୪ଗ,ସଂ୧୦ଖ୍ୟା, ୧୧।୩।୧୮୯୯*

## ପୁସ୍ତକ-ପ୍ରାପ୍ତି ।

ଆମ୍ଭେମାନେ ନିମ୍ନଲିଖିତ ନୂତନପୁସ୍ତକମାନ ଉପହାର ପାଇବାର କୃତଜ୍ଞତାସହିତ ସ୍ୱୀକାର କରୁଅଛୁଁ । ଯଥା;

ଚୌକୀଦାରୀ ମାନୁଏଲ-ଓଡ଼ିଶାର ପୁରାତନବନ୍ଧୁ ମାନ୍ୟବର ଶ୍ରୀଯୁକ୍ତ ଟଏନବୀ ସାହେବଙ୍କ କୃତ ଇଂରାଜୀ ଚୌକୀଦାରୀମାନୁଏଲକୁ ଓଡ଼ିଶା କମିଶନରଙ୍କ ପରଶନଲ ଆଶିଷ୍ଟେଣ୍ଟ ବାବୁ ଗୋପାଳବଲ୍ଲଭ ଦାସ ଓଡ଼ିୟାଭାଷାରେ ଅନୁବାଦ କରି ଏ ପୁସ୍ତକ ପ୍ରକାଶ କରିଅଛନ୍ତି । ଏହା ଓଡ଼ିଶା ମିଶନପ୍ରେସରେ ମୁଦ୍ରିତ ଏବଂ ଏଥିର ମୂଲ୍ୟ ଟ ୧ ଙ୍କା ଭୂମିକାରେ ଗ୍ରନ୍ଥକାର ଲେଖିଅଛନ୍ତି କି ଚୌକୀଦାରୀ ଆଇନର ଯେଉଁ ଓଡ଼ିୟା ଅନୁବାଦ ସରକାରୀ ଗଜେଟରେ ଛାପା ହୋଇଅଛି ତାହା ବୁଝିବା ସୁଶିକ୍ଷିତ ଲୋକଙ୍କପକ୍ଷରେ ସୁକଠିନ ଥିବା ପ୍ରତ୍ୟକ୍ଷେ ମୋଫସଲର ଯେଉଁମାନେ ସ୍କୁଲ ମାଡ଼ି ନାହାନ୍ତି ଅଧିକାଂଶ ସେପରି ଲୋକ ପଞ୍ଚାଏତ ହୋଇ ତାହା ବୁଝି କାର୍ଯ୍ୟ କରିପାରିବେ ନାହିଁ । ଏହି ଅସୁବିଧା ଘୁଞ୍ଚାଇବା ଅଭିପ୍ରାୟରେ ସେ ପ୍ରୟୋଜନୀୟସ୍ଥଳମାନଙ୍କରେ ନିଜର ଟୀକାସ୍ୱରୂପ ସହଜରେ ବୁଝାଇ ଦେଇଅଛନ୍ତି । ଏବଂ ଟଏନବୀ ସାହେବଙ୍କ ଇଂରାଜୀ ଟୀକାର ମଧ ସହଜ ଅନୁବାଦ କରିଦେଇଅଛନ୍ତି ! ଅତଏବ ଚୌକୀଦାରୀ ଆଇନ ଏବଂ ସେସମ୍ବନ୍ଧୀୟ ନିୟମାବଳି ପ୍ରଭୃତି ମୋଫସଲର ସାମାନ୍ୟ ଲେଖି ପଢ଼ି ଜାଣିବା ଲୋକମାନଙ୍କର ବୁଝିପାରିବା ଭଳି ସରଳଭାଷାରେ ପ୍ରକାଶ କରିବା ଗ୍ରନ୍ଥକାରଙ୍କର ପ୍ରଧାନ ଅଭିପ୍ରାୟ ଏବଂ ପୁସ୍ତକ ଶେଷରେ ସଂଯୁକ୍ତ ହୋଇଥିବା ପ୍ରଶଂସାପତ୍ରମାନଙ୍କରୁ ପ୍ରକାଶ ଯେ ଓଡ଼ିଶାର କମିଶନର ଶ୍ରୀଯୁକ୍ତ ଷ୍ଟିଭିନ୍‌ସନ ସାହେବ,

ସ୍କୁଲସମୂହର ଇନସ୍ପେକ୍ଟର ରାୟ ରାଧାନାଥ ରାୟ ବାହାଦୁର, ସରକାରୀ ଉକୀଲ ରାୟ ହରିବଲ୍ଲଭ ବୋଷ ଏବଂ ଉକୀଲ ବାବୁ ମଧୁସୂଦନ ଦାସ ତହିଁର ପୋଷକତା କରିଅଛନ୍ତି । ଏମାନଙ୍କ ମତ ଓଡ଼ିଶାବାସୀଙ୍କଠାରେ ଅଗ୍ରଗଣ୍ୟ ଏଥିରେ ଦ୍ୱିରୁକ୍ତି ନାହିଁ । ମାତ୍ର ଏଥିମଧ୍ୟରେ ବାବୁ ଶ୍ରୀକୃଷ୍ଣ ମହାପାତ୍ର ଏହି ବିଷୟରେ ଖଣ୍ଡିଏ ପୁସ୍ତକ ବାହାର କରି ଅତି ସୁଲଭ ଅର୍ଥାତ୍ ଟ ୦।୵ ମୂଲ୍ୟରେ ବିକ୍ରୟ କରୁଅଛନ୍ତି ଏବଂ ଉପରଲିଖିତ ମତଦାତାମାନେ ଶେଷଲିଖିତ ପୁସ୍ତକ ନ ଦେଖି ମତ ଦେଇଥିବାରୁ ସେମାନଙ୍କ ମତ ତେତେ ପ୍ରବଳ ହୋଇ ପାରୁ ନାହିଁ । କେଉଁ ପୁସ୍ତକର ଭାଷା କିପରି ତାହା ସର୍ବସାଧାରଣଙ୍କୁ ଜଣାଇବା ନିମନ୍ତେ ଆମ୍ଭେମାନେ ଉଭୟ ପୁସ୍ତକର ଆଦ୍ୟଭାଗରୁ କେତେକ ଧାଡ଼ି ଉଦ୍ଧାର କଲୁଁ ଯଥା;-

"ଗବର୍ଣ୍ଣମେଣ୍ଟକୁ ଅବ୍ୟବହିତରୂପେ ରାଜସ୍ୱଦାୟୀ ମାହାଲର ସାଧାରଣ ରେଜଷ୍ଟରୀ ବହିରେ ତଦ୍ରୂପ ରାଜସ୍ୱଦାୟୀ ଭୂସ୍ୱାମୀ ବୋଲି ଯେଉଁବ୍ୟକ୍ତିଙ୍କ ନାମ ଲେଖାଥାଏ, ଅଥବା ନିଷ୍କରଭୂମିର ସାଧାରଣ ରେଜଷ୍ଟରୀ ବହିରେ ନିଷ୍କରଭୂମିର ଭୂସ୍ୱାମୀ ବୋଲି ଯେଉଁବ୍ୟକ୍ତିଙ୍କ ନାମ ଲେଖାଥାଏ "ଜମିଦାର" ଶବ୍ଦରେ ସେହି ବ୍ୟକ୍ତିକୁ ବୁଝାଇବ

ବ୍ୟାଖ୍ୟା- ଅର୍ଥାତ୍ ଜମିଦାର ଶବ୍ଦ ଏଠାରେ ଜମିଦାର ଓ ଲାଖରାଜଦାର ବୁଝାଉଛି ।"

ଗୋପାଳ ବାବୁଙ୍କ ପୁସ୍ତକରେ ପୃ୩ଷ୍ଠା "ଯେଉଁସବୁ ମାହାଲର ଖଜଣା ପରବାହାରେ ସରକାରଙ୍କୁ ଦିଆଯାଏ, ସେହିସବୁ ମାହାଲର ସାଧାରଣ ରେଜଷ୍ଟରୀ ବହିରେ ଯେଉଁବ୍ୟକ୍ତିଙ୍କର ନାମ ସେରୂପ ମାହାଲର ମାଲିକ ବୋଲି ଦରଜ ହୋଇଥିବ ତାଙ୍କୁ, କିମ୍ବା ନିଷ୍କରଭୂମିର ସାଧାରଣ ରେଜଷ୍ଟରୀ ବହିରେ ନିଷ୍କରଭୂମିର ମାଲିକବୋଲି ଯେଉଁ ବ୍ୟକ୍ତିଙ୍କ ନାମ ଦରଜ ହୋଇଥିବ ତାଙ୍କୁ ଜମିଦାର ବୋଲି ବୁଝାଇବ ।"

ଶ୍ରୀକୃଷ୍ଣ ବାବୁଙ୍କ ପୁସ୍ତକର ୨ୟ ପୃଷ୍ଠା ।

ଗୋପାଳ ବାବୁଙ୍କ ପୁସ୍ତକରେ ଏହି ବିଷୟ ତଳେ ଆହୁରି କେତେଗୁଡ଼ିଏ ଟୀକା ପ୍ରଦତ୍ତ ହୋଇଅଛି ମାତ୍ର ସର୍ବସାଧାରଣଙ୍କପକ୍ଷରେ ସେସବୁ ତେତେ ପ୍ରୟୋଜନୀୟ ନୁହେ । ସଂକ୍ଷେପରେ ଗୋପାଳ ବାବୁଙ୍କ ପୁସ୍ତକ, ଶ୍ରୀକୃଷ୍ଣବାବୁଙ୍କ ପୁସ୍ତକଠାରୁ କଳେବରରେ ପ୍ରାୟ ଦ୍ୱିଗୁଣ ଏବଂ ମୂଲ୍ୟରେ ଅଢ଼େଇଗୁଣ ଅଧିକ ହୋଇଅଛି ଏବଂ ତହିଁରେ ଲୋକଙ୍କର ଜାଣିବାଯୋଗ୍ୟ ଏତେ ଅଧିକ ବିଷୟ ନାହିଁ । ବର୍ତ୍ତମାନ ଶସ୍ତାକାଳପ୍ରତି ଉପଯୋଗୀ ବୋଲାଯିବ । ପୁସ୍ତକର ମୂଲ୍ୟ ଟ ୦୳ ହେଲେ ଭଲ ହେବ ।

*ଭା୩୪ଗ,ସଂ୧୧ଖ୍ୟା, ୧୮।୩।୧୮୯୯*

## ପୁସ୍ତକ ପ୍ରାପ୍ତି ।

ଆମ୍ଭେମାନେ ନିମ୍ନଲିଖିତ ପୁସ୍ତକମାନ ଉପହାର ପାଇବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ।

ଆଦିଶାସ୍ତ୍ର- ମୂଳ ସଂସ୍କୃତ ଏବଂ ଚୌଦଅକ୍ଷରୀ ପଦ୍ୟରେ ତହିଁର ଅନୁବାଦ ଶ୍ରୀ ଦୈତାରିପ୍ରସାଦ ଦାସଙ୍କଦ୍ୱାରା ପ୍ରକାଶିତ ନୀଳଗିରି ରାଜାଙ୍କ ନାମରେ ଉତ୍ସର୍ଗିତ ଏବଂ ବାଲେଶ୍ୱର ଦେଙ୍କ ଉତ୍କଳ ଯନ୍ତ୍ରାଳୟରେ ମୁଦ୍ରିତ । ଏ ପୁସ୍ତକର କଳେବର ପୃ୬୮ ଷ୍ଠା ଏବଂ ମୂଲ୍ୟ ଟ୦୯ ଅଟେ । ଆଦିଶାସ୍ତ୍ରର ଅପର ନାମ ରତିଶାସ୍ତ୍ର । ନାମ ଶୁଣି କେତେ ଲୋକ ଏହାକୁ ଅଶ୍ଳୀଳ ପୁସ୍ତକ ଅନୁମାନ କରି ଚମକି ପଡ଼ନ୍ତି । ମାତ୍ର ଏ ପୁସ୍ତକ ପଢ଼ିଲେ ସେ ଭ୍ରମ ରହିବ ନାହିଁ । ସଂସାର ରକ୍ଷାର ଆଦିକାରଣ ସ୍ତ୍ରୀ ପୁରୁଷର ସଂଯୋଗ ଏବଂ ଯେପ୍ରକାର ସଂଯୋଗରେ ଉଭୟେ ସୁଖରେ କାଳଯାପନ କରି ଦୀର୍ଘାୟୁ ଓ ବଳିଷ୍ଠ ପୁତ୍ର କନ୍ୟା ଲାଭ କରିବେ ତାହା ବର୍ଣ୍ଣିତ ହୋଇଥିବାରୁ ଏହାର ନାମ ଆଦିଶାସ୍ତ୍ର ହୋଇଅଛି । ପ୍ରାଚୀନ କାଳରେ ଋଷିବର ଗର୍ଗ ମହାରାଜା ଜନ୍ମେଜୟଙ୍କ ପ୍ରଶ୍ନମତେ ଏ ଶାସ୍ତ୍ର ପ୍ରକାଶ କରିଥିଲେ । ଏଥିର ଭାଷା ସରଳ ଏବଂ ଏଥିରେ ଅନେକ ଜ୍ଞାତବ୍ୟ ବିଷୟ ଅଛି ଯଦ୍ଦ୍ୱାରା ପାଠକମାନଙ୍କର ଉପକାର ହେବ ।

ଉତ୍କଳଭ୍ରମଣ- କଟକ ଅରୁଣୋଦୟ ଯନ୍ତ୍ରାଳୟରେ ମୁଦ୍ରିତ କଳେବର ପୃ୪୯ଷ୍ଠା ମୂଲ୍ୟ୦୵ ଗ୍ରନ୍ଥକାର

ଆପଣାର ନାମ ପ୍ରକାଶ କରି ନ ଥିଲେହେଁ ବାବୁ ଫକୀରମୋହନ ସେନାପତିଙ୍କର ରସାଳ ରଚନା ଓଡ଼ିଶା ପାଠକମାନଙ୍କଠାରେ ଏଡ଼େ ସୁପରିଚିତ ଯେ ତାହାଙ୍କୁ ଏହାର ଗ୍ରନ୍ଥକାର ଅନୁମାନ କରିବାରେ କାହାରି ଦ୍ୱିଧା ହେଉ ନାହିଁ । ବିଶେଷତଃ ଏହା ପୂର୍ବ ପରିଚିତ ଗ୍ରନ୍ଥ ନୂତନ ବେଶରେ ବାହାରିଅଛି । ଏଥିରେ ଓଡ଼ିଶା ମଧ୍ୟପ୍ରଦେଶ ଏବଂ ଗଞ୍ଜାମବାସୀ ଉତ୍କଳ ରାଜା ଜମିଦାର ଓ ଅପର କବି, ଶିକ୍ଷିତ ଓ ବିଖ୍ୟାତ ଲୋକଙ୍କର ଗୁଣାଗୁଣର ସଂକ୍ଷେପ ସମାଲୋଚନା ହୋଇଅଛି । ଚରିତ୍ର ସମାଲୋଚନା ପାଠରେ ଆଦୌ ଅନେକଙ୍କର ରୁଚି ତହିଁରେ ପୁଣି ଏ ପୁସ୍ତକ ଯାତ୍ରାର ସୁଆଙ୍ଗ ଅର୍ଥାତ୍ ହାସ୍ୟୋଦ୍ଦୀପକ ପ୍ରଣାଳୀରେ ରଚିତ ହୋଇଥିବାରୁ ଏହାର ପାଠକ ଅନେକ ହେବେ ସନ୍ଦେହ ନାହିଁ ।

ଗୀତ ସ୍ତବକ-ନାନା ରାଗ ରାଗିଣୀ ଏବଂ ତାଳର କେତେଗୁଡ଼ିଏ ଆଦିରସାତ୍ମକ ସଂଗୀତ ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ନାମରେ ଅଙ୍କିତ ଏବଂ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ବି,ଏ ଙ୍କ ଦ୍ୱାରା ପ୍ରକାଶିତ ମାତ୍ର ରଚକ କିଏ ସ୍ପଷ୍ଟ ବୋଲାଯାଇ ନାହିଁ ଏ ପୁସ୍ତକ ପାରଲାଖେମଣ୍ଡିସ୍ଥ ଗଜପତି ଯନ୍ତ୍ରାଳୟରେ ମୁଦ୍ରିତ । ଏହାର ଛାପା ମନ୍ଦ ନୁହେ ଏବଂ ବନ୍ଧାଇ ଉତ୍ତମ ଅଟେ । ଓଡିଶାରେ ଏ ପ୍ରକାର ସଙ୍ଗୀତର ଅଭାବ ନ ଥିଲେହେଁ ନବ ନବ ସଙ୍ଗୀତରେ ଯେଉଁମାନଙ୍କର ଅନୁରାଗ ସେମାନେ ଏ ପୁସ୍ତକ ଲିଖିତ ଗୀତମାନ ଗାଇ ଅବଶ୍ୟ ଆନନ୍ଦ ଲାଭ କରିବେ ।

କୃଷ୍ଣପ୍ରେମତରଙ୍ଗିଣୀ- ଶ୍ରୀ ଶରଚ୍ଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟଙ୍କଦ୍ୱାରା ବିରଚିତ ଏବଂ କଟକ ରାୟପ୍ରେସରେ ମୁଦ୍ରିତ ମୂଲ୍ୟ ଟ୦। ଏହି ନୂତନ ସଂସ୍କୃତ ପଦ୍ୟ ଗ୍ରନ୍ଥ ପ୍ରାଚୀନ ଶ୍ରୀ ଜୟଦେବ ଗୋସ୍ୱାମିଙ୍କ ଗୀତଗୋବିନ୍ଦର ଅନୁକରଣରେ ରଚିତ ହୋଇଅଛି ଏବଂ ଯଥାଯୋଗ୍ୟରୂପେ ବାମଣ୍ଡାଧିପ ସର ବାସୁଦେବ ସୁଦ୍ଧଳଦେବ କେ,ସି,ଆଇ,ଇଙ୍କ ନାମରେ ଉତ୍ସର୍ଗିତ ହୋଇଅଛି । ଗ୍ରନ୍ଥକାର ଶରଚ୍ଚନ୍ଦ୍ର ବାବୁ ଏହି ଜିଲ୍ଲା ଅନ୍ତର୍ଗତ ମାହାଙ୍ଗା ଗ୍ରାମନିବାସୀ ଅଟନ୍ତି ଏବଂ ଅନେକ ବର୍ଷରୁ ଭଦରଖର ଉଚ୍ଚ ଇଂରାଜୀ ସ୍କୁଲର ହେଡ଼ମାଷ୍ଟରୀ କାର୍ଯ୍ୟ କରୁଅଛନ୍ତି । ସେ ପଣ୍ଡିତ ଉପାଧି ଧାରୀ ନ ହେଲେହେଁ ଏହି ପୁସ୍ତକ ରଚନାଦ୍ୱାରା ଯେଉଁ ପାଣ୍ଡିତ୍ୟର ପରିଚୟ ଦେଇଅଛନ୍ତି ତହିଁରେ ସେ ଉଚ୍ଚ ସ୍ଥାନ ପାଇବାର ଯୋଗ୍ୟ ସନ୍ଦେହ ନାହିଁ । ରାୟ ରାଧାନାଥ ରାୟ ବାହାଦୂର ଏ ପୁସ୍ତକ ସମ୍ବନ୍ଧରେ ଲେଖିଅଛନ୍ତି କି "ମୋହ ବିବେଚନାରେ ଏହା ଅପେକ୍ଷା ଗୀତଗୋବିନ୍ଦର ଉତ୍କୃଷ୍ଟତର ଅନୁକୃତି ହେବାର ପ୍ରାୟ ଅସମ୍ଭବ । ବିଶେଷତଃ ଗୀତାଂଶରେ ଅନୁକୃତିର ରଚନା ଏମନ୍ତ ମଧୁର ଓ ଲଳିତ ହୋଇଅଛି ଯେ ମୂଳ ସହିତ ତାହାର ପ୍ରଭେଦ ବାରିଦେବା ସହଜ କଥା ନୁହେ ।" ବୋଲିବା ବାହୁଲ୍ୟ ଯେ ଅପର ଯେଉଁ ଯୋଗ୍ୟବ୍ୟକ୍ତିମାନେ ଏ ପୁସ୍ତକ ପାଠ କରିଅଛନ୍ତି ସେମାନେ ଉକ୍ତ ମତର ସଂପୂର୍ଣ୍ଣ ପୋଷକତା କରିଅଛନ୍ତି । ସର୍ବସାଧାରଣଙ୍କଠାରେ ଆମ୍ଭମାନଙ୍କର ବିଶେଷ ଅନୁରୋଧ ଯେ ଏ ପୁସ୍ତକ ଶୀଘ୍ର ହସ୍ତଗତ କରି ଗ୍ରନ୍ଥକାରଙ୍କର ଶ୍ରମ ସଫଳ ଏବଂ ସ୍ୱଦେଶର ଗୌରବ ରକ୍ଷା କରନ୍ତୁ ।

ବଙ୍ଗୀୟ ପ୍ରଜାସତ୍ୱ ଆଇନ- ଶ୍ରୀ ଶ୍ରୀକୃଷ୍ଣ ମହାପାତ୍ରଙ୍କଦ୍ୱାରା ପ୍ରକାଶିତ ଏବଂ କଟକ ପ୍ରିଣ୍ଟିଂ କମ୍ପାନୀଙ୍କଦ୍ୱାରା ମୁଦ୍ରିତ । ମୂଲ୍ୟ ଟ୧< ଗତ ବ୯ର୍ଷରୁ ଏହି ଆଇନର ଅଂଶମାନ କ୍ରମେ କ୍ରମେ ଓଡ଼ିଶାରେ ଜାରୀ ହୋଇ ଆସୁଥିଲେହେଁ ଓଡ଼ିଶାର ନୂତନ ବନ୍ଦୋବସ୍ତ ଶେଷ ହୋଇ ଆସିବା ବେଳକୁ ଏହାର ପ୍ରୟୋଜନ ବିଶେଷ ଜଣା ଯାଉଅଛି ଏବଂ ଏଥିପୂର୍ବେ କେବଳ କେତେଗୁଡ଼ିଏ ଧାରାବିଶିଷ୍ଟ ଯେଉଁ ପୁସ୍ତକ ଏହି ନାମରେ ପ୍ରକାଶିତ ହୋଇ ସରକାରୀ କଚେରୀମାନଙ୍କରେ ବିକ୍ରୟ ହେଉଅଛି ତାହା 'ଅସମ୍ପୂର୍ଣ୍ଣତା ହେତୁ ଅକର୍ମଣ୍ୟ ହୋଇଅଛି । ସୁତରାଂ ସଂପୂର୍ଣ୍ଣରୂପେ ଏହି ଆଇନ ପ୍ରକାଶଦ୍ୱାରା ଗୋଟିଏ ଅଭାବ ଦୂର ହୋଇଅଛି ।

*ଭାଗ୩୪ଗ,ସଂ୨୭ଖ୍ୟା, ୮।୭।୧୮୯୯*

## ପୁସ୍ତକ ପ୍ରାପ୍ତି ସ୍ୱୀକାର ।

ସଙ୍ଗୀତଶିକ୍ଷା ପ୍ରଥମଖଣ୍ଡ-ଶ୍ରୀ ବାବୁ କିଶୋରୀମୋହନ ଦାସଙ୍କଦ୍ୱାରା ପ୍ରକାଶିତ, ଶ୍ରୀ ବାବୁ ଗୋପାଳବଲ୍ଲଭ ଦାସ ଏମ୍,ଏ,ଙ୍କ ନାମରେ ଉତ୍ସର୍ଗିତ ଏବଂ କଟକ ରାୟପ୍ରେସରେ ମୁଦ୍ରିତ । ପୁସ୍ତକର କଳେବର ପୃ୧୭୯ଷ୍ଠା ଏବଂ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ମୂଲ୍ୟ ଟ ୦ ୪ । ଉତ୍କଳରେ ସଙ୍ଗୀତର ଚର୍ଚ୍ଚା ଅତି ପ୍ରାଚୀନ କାଳରୁ ହୋଇ ଆସୁଅଛି ନାନା ରାଗ ରାଗିଣୀ ଓ ତାଳସଂଯୁକ୍ତ ଛାନ୍ଦ ଚୌପଦୀ ଇତ୍ୟାଦିରୁ ତାହା ଉତ୍ତମରୂପେ ପ୍ରକାଶ । ସେ ସବୁର ସଂଖ୍ୟା ଏତେ ଯେ ପ୍ରାୟ ବଣୀ୫ର୍ଷ ହେଲା ଛାପା ହେବାର ଆରମ୍ଭ ହୋଇ ଏପର୍ଯ୍ୟନ୍ତ ଶେଷ ହୋଇ ପାରି ନାହିଁ । ସେ ସମୟର କବିମାନେ ଯେ ସଂସ୍କୃତ ସଙ୍ଗୀତ ଶାସ୍ତ୍ରରେ ନିପୁଣ ନ ଥିଲେ ଓ ରାଗ ତାଳାଦିର ପ୍ରୟୋଗରେ ଗୀତ ରଚନା କରିବାର ସମ୍ଭବ ନୁହେ । ଦୁଃଖର ବିଷୟ ଯେ ସେମାନେ ଅନେକାନେକ ଶାସ୍ତ୍ରର ଅନୁବାଦ ବା ବ୍ୟାଖ୍ୟା ଉତ୍କଳଭାଷାରେ କରିଯାଇଥିବା ପ୍ରତ୍ୟକ୍ଷେ ସଙ୍ଗୀତ ତତ୍ତ୍ୱ ଜ୍ଞାପକ କୌଣସି ଗ୍ରନ୍ଥ ଲେଖି ନାହାନ୍ତି ଅଥବା ଲେଖି ରଖିଥିଲେ ଅବଧି ପ୍ରଚାରିତ ହୋଇ ନାହିଁ । ବର୍ତ୍ତମାନ୍ ଦାକ୍ଷିଣାତ୍ୟ ଉତ୍କଳୀୟଙ୍କ ମଧ୍ୟରେ କେହି କେହି ସଙ୍ଗୀତତତ୍ତ୍ୱଜ୍ଞ ବ୍ୟକ୍ତି ଥିବାର ଶୁଣିଅଛୁଁ ମାତ୍ର କେହି କୌଣସି ପୁସ୍ତକ ପ୍ରଚାରଦ୍ୱାରା ଲୋକ ଶିକ୍ଷାର ଯତ୍ନ କରି ନାହାନ୍ତି । ନିଜ ଓଡ଼ିଶାର କଥା କି କହିବୁ ? ଏଠାରେ ସଙ୍ଗୀତଚର୍ଚ୍ଚା ଯଥେଷ୍ଟ ଥିଲେହେଁ ଲୋକମାନେ ଏମନ୍ତ ସାରଗ୍ରାହୀ ହୋଇଅଛନ୍ତି ଯେ ରାଗ ଯାହାହେଉ ପଛକେ ଗୀତର ରଚନା ଓ ଭାବ ଭଲ ହେଲେ ମହାନନ୍ଦ ଲାଭ ହେଲା । ବାସ୍ତବରେ ଏଠା ଲୋକଙ୍କର ରାଗ ରାଗିଣୀର ଜ୍ଞାନ କେବଳ ଶୁଣା କଥା ଉପରେ ନିର୍ଭର । ଏହି ମୂଢ଼ତା ଦୂର କରିବା ଆଶାରେ କିଶୋରୀମୋହନ ବାବୁ ସମାଲୋଚିତ ଗ୍ରନ୍ଥ ପ୍ରକାଶ କରି ଆମ୍ଭମାନଙ୍କର ଧନ୍ୟବାଦର ପାତ୍ର ହୋଇଅଛନ୍ତି । ଉର୍ଦ୍ଦୁ ଓ ସଂସ୍କୃତ ଭାଷାରେ ସଙ୍ଗୀତତତ୍ତ୍ୱ ଓ ସାଧନ ଗ୍ରନ୍ଥମାନ ବହୁକାଳରୁ ପ୍ରକାଶିତ ହୋଇଅଛି । ମାତ୍ର ଉତ୍କଳରେ ଏହି ସଙ୍ଗୀତ ଶିକ୍ଷା ପ୍ରଥମ ଗ୍ରନ୍ଥ ଅଟେ । ଅବଶ୍ୟ ଅନେକାନେକ ଗ୍ରନ୍ଥରୁ ଏହା ସଙ୍କଳିତ ହୋଇଅଛି ଏବଂ ଜ୍ଞାତବ୍ୟ ବିଷୟମାନ ପ୍ରକାଶ କରିବାରେ ଯତ୍ନର ତ୍ରୁଟି ହୋଇ ନାହିଁ । ଏହାକୁ ମନୋଯୋଗ ପୂର୍ବକ ପଢ଼ିବା ନିମନ୍ତେ ଆମ୍ଭେମାନେ ସର୍ବସାଧାରଣଙ୍କୁ ଅନୁରୋଧ କରୁଅଛୁଁ । ଏହା ପାଠ କଲେ ସହଜରେ ସଙ୍ଗୀତ ଶିକ୍ଷା ଲାଭ ହେବ ଏମନ୍ତ ଆଶା କରି ନ ପାରୁଁ ମାତ୍ର ସ୍ୱର ରାଗ ତାଳାଦି ପଦାର୍ଥ ଓ କି ପ୍ରକାରେ ସେମାନେ ଚିହ୍ନାଯିବେ ଏବଂ କେମନ୍ତ ସାଧନରେ ଆୟତ୍ତ ହେବେ ସେ ସମସ୍ତ ପାଠକମାନେ ଜାଣି ପାରିବେ ଏବଂ ଯାହାର ଶ୍ରଦ୍ଧା ହେବ ସେ ତହିଁରେ ଶ୍ରମ କରିବାକୁ ପ୍ରବୃତ୍ତ ହେବ । ସଙ୍ଗୀତବିଦ୍ୟା ଅତ୍ୟନ୍ତ କଠିନ ବିଦ୍ୟା ସୁନିପୁଣ ସଙ୍ଗୀତଜ୍ଞର ସହବାସ ଓ ଉପଦେଶ ବିନା ଶିକ୍ଷା ଏବଂ ଦୀର୍ଘକାଳ ସାଧନ ବିନା ତହିଁରେ ଅଧିକାର ଲାଭ ହେବା ଅସମ୍ଭବ । ଏ ପୁସ୍ତକରେ ଜ୍ଞାତବ୍ୟ ବିଷୟର ଆଭାଷ ମାତ୍ର ଯାହା ଦିଆ ଯାଇଅଛି ତହିଁରୁ ପାଠକମାନେ ଏହାର କଠିନତା ବୁଝି ପାରିବେ । ଓଡ଼ିଶାରେ ଦକ୍ଷିଣୀ ଏବଂ ହିନ୍ଦୋସ୍ଥାନୀ ଏହି ଦୁଇ ମତର ସଙ୍ଗୀତ ପ୍ରଚଳିତ ଅଛି ଏବଂ ସେ ସବୁ ଏକ ମଳରୁ ଉଦ୍ଭବ ହୋଇଥିଲେହେଁ ରାଗ ତାଳାଦିର ନାମ ଓ ସାଧନ ପ୍ରଣାଳୀରେ ଅନେକ ପ୍ରଭେଦ ରହିଅଛି । ଗ୍ରନ୍ଥକାର ଓଡ଼ିଶା ସକାଶେ ଏ ପୁସ୍ତକ ପ୍ରକାଶ କରିଥିବା ସ୍ଥଳେ ଏ ପ୍ରଦେଶରେ ବହୁତର ଭାବରେ ପ୍ରଚଳିତ ଥିବା ଦକ୍ଷିଣୀ ସଙ୍ଗୀତର ଅଧିକ ପରିଚୟ ହୋଇଥିଲେ ଭଲ ହୋଇଥାନ୍ତା ଗ୍ରନ୍ଥର ଶେଷ ଅଧ୍ୟାୟରେ ନାନା ରାଗ ଓ ତାଳର କେତେଗୁଡ଼ିଏ ଓଡ଼ିଆ ଗୀତ ପ୍ରକାଶିତ ହୋଇଅଛି । ମାତ୍ର ଏକ ଏକ ଗୀତକୁ ଲୋକେ ଭିନ୍ନ ଭିନ୍ନ ରାଗ ଓ ତାଳରେ ଗାଉଥିବା ସ୍ଥଳେ କାହାର ଗାଇବା ଠିକ୍ ହେଲା ତାହା ବୁଝିବାର କୌଣସି ଉପାୟ ନାହିଁ । ପ୍ରକୃତରେ ଅନେକ ଲୋକ ରାଗ ବିଶେଷର ନିଶ୍ଚୟ ପରିଚୟ ହୃଦୟଙ୍ଗମ କରି ନ ପାରି ଏକପ୍ରକାର ଗାନ୍ତି ଏବଂ ଏକରାଗର ନାମ କହନ୍ତି । ଏହି ଭ୍ରମ ନିବାରଣର ଚେଷ୍ଟା କରିବା ଆବଶ୍ୟକ । ଭରସା କରୁଁ ଗ୍ରନ୍ଥକାର ଯେତେବେଳେ ଏ ବିଷୟରେ ଏତେ ଶ୍ରମ ସ୍ୱୀକାର କରିଅଛନ୍ତି ଏବଂ ଅନ୍ୟ ଖଣ୍ଡ ପ୍ରକାଶ କରିବାକୁ ପ୍ରତିଶ୍ରୁତ ହୋଇଅଛନ୍ତି ତେତେବେଳେ ସେ ତହିଁରୁ ବିରତ ହେବେ ନାହିଁ । ସର୍ବସାଧାରଣଙ୍କଠାରେ ବିଶେଷ ଅନୁରୋଧ ତାହାଙ୍କୁ ଯଥୋଚିତ ଉତ୍ସାହ ପ୍ରଦାନ କରିବେ । ତହିଁରେ ତ୍ରୁଟି ହେଲେ ତାହାଙ୍କର ଦୋଷ ହେବ ନାହିଁ ।

*ଭା୩୪ଗ, ସଂ୨୮ଖ୍ୟା, ୧୫।୭। ୧୮୯୯*

## ଭର୍ଣ୍ଣାକ୍ୟୁଲର ଶିକ୍ଷାର ବ୍ୟବସ୍ଥା ।

ଭର୍ଣ୍ଣାକ୍ୟୁଲର ଅର୍ଥାତ୍ ମାତୃଭାଷାଶିକ୍ଷା ଦାନର ଯେଉଁ ବ୍ୟବସ୍ଥା ଭାରତ ସାମ୍ରାଜ୍ୟରେ ପ୍ରଚଳିତ ଅଛି ତାହା ପରିବର୍ତ୍ତନ ଓ ସଂଶୋଧନ କରିବାର ଆବଶ୍ୟକତା ଭାରତ ଗବର୍ଣ୍ଣମେଣ୍ଟ ଏବଂ ସ୍ଥାନୀୟ ଗବର୍ଣ୍ଣମେଣ୍ଟମାନେ ଅନୁଭବ

କରିଥିଲେ । ବିଶେଷତଃ କୃଷିଶିକ୍ଷା ଦାନ ସଂଲଗ୍ନରେ ସିମଳାଠାରେ ସନ ୧୮୯୩ ସାଲରେ ଏକ ସଭା ବସିଥିଲା । ସେହି ସଭାରେ କୃଷକ ଶ୍ରେଣୀର ଲୋକଙ୍କ ମଧ୍ୟରେ ପ୍ରାଥମିକ ଶିକ୍ଷା ବିସ୍ତାର କରିବା ବାଞ୍ଛନୀୟ ବୋଲି ଅବଧାରିତ ହେବାରୁ କିପ୍ରକାରେ ତାହା ଭାରତର ଭିନ୍ନ ଭିନ୍ନ ପ୍ରଦେଶରେ କାର୍ଯ୍ୟରେ ପରିଣତ ହେବ ତାହା ସ୍ଥିର କରିବା ନିମନ୍ତେ ପ୍ରତ୍ୟେକ ପ୍ରଦେଶରେ ଗୋଟିଏ ସଭା ହୋଇଥିଲା । ବଙ୍ଗପ୍ରଦେଶ ନିମନ୍ତେ ସନ ୧୮୯୬ ସାଲ ଜାନୁଆରୀମାସରେ ଯେଉଁ ସଭା ବସିଥିଲା ତହିଁରେ ସିଦ୍ଧାନ୍ତ ହେଲା ଯେ ପ୍ରାଥମିକ ଏବଂ ଉଚ୍ଚ ସମସ୍ତଶ୍ରେଣୀର ବିଦ୍ୟାଳୟରେ କୃଷିଶିକ୍ଷା ଦିଆଯିବ । ତଦନୁସାରେ ଶିବପୁର ଇଞ୍ଜିନୀୟରୀ କଲେଜରେ ଗୋଟିଏ କୃଷିଶ୍ରେଣୀ ଫିଟିଲା ଏବଂ ତଦ୍ଦ୍ୱାରା ଉଚ୍ଚ ଅଙ୍ଗର ଶିକ୍ଷାଦାନର ବ୍ୟବସ୍ଥା ହେଲା । ମାତ୍ର ଭର୍ଣ୍ଣାକ୍ୟୁଲର ସ୍କୁଲ ସମୂହର ଛାତ୍ରମାନଙ୍କ ନିମନ୍ତେ କୌଣସି ବନ୍ଦୋବସ୍ତ ହେଲା ନାହିଁ । ତହୁଁ ବଙ୍ଗୀୟ ଛୋଟଲାଟ ବାହାଦୂର ସନ ୧୮୯୮ସାଲ ଅଗଷ୍ଟ ମାସରେ ଗୋଟିଏ କମିଟୀ ନିଯୁକ୍ତ କଲେ । ଏହି କମିଟୀର ସଭାପତି ଶ୍ରୀଯୁକ୍ତ ପେଡ୍‌ଲର ସାହେବ ଏବଂ ଜ୮ଣ ମେମ୍ବରମାନଙ୍କ ମଧ୍ୟରେ ଏକଜଣ ୟୁରୋପୀୟ ଛଡ଼ା ବାକୀ ଜ୭ଣ ଦେଶୀୟ ଯୋଗ୍ୟଲୋକ ଥିଲେ, ଯଥା- ବାବୁ ରାଧିକାପ୍ରସନ୍ନ ମୁଖୁର୍ଯ୍ୟା, ଡାକ୍ତର ଜେ,ସି,ବୋଷ,ଡାକ୍ତର ପି,ସି,ରାୟ, ଶ୍ରୀଯୁକ୍ତ ଏନ୍,ଜି, ମୁଖୁର୍ଯ୍ୟା ଇତ୍ୟାଦି । କମିଟୀ ପ୍ରତି ଏହି ଅନୁରୋଧ ଥିଲା କି ଭର୍ଣ୍ଣାକ୍ୟୁଲର ବିଦ୍ୟାଳୟ ସମୂହର ଶିକ୍ଷାପ୍ରଣାଳୀ ଏପ୍ରକାର ସଂସ୍କାର ହେବା ଆବଶ୍ୟକ ଯେମନ୍ତ କି ତାହା ଛାତ୍ରମାନଙ୍କ ସ୍ମୃତି ଶକ୍ତିର ଅଭ୍ୟାସଠାରୁ ଜ୍ଞାନବୃଦ୍ଧିର ଉପଯୋଗୀ ହେବ । କମିଟୀ ସମସ୍ତ ବିଷୟ ଆଲୋଚନା କରି ଯେଉଁ ରିପୋଟ ପ୍ରଦାନ କରିଅଛନ୍ତି ଏବଂ ବଙ୍ଗୀୟ ଶିକ୍ଷା ବିଭାଗର ଡିରେକ୍ଟର ମହୋଦୟ ମଧ୍ୟପ୍ରଦେଶର ଭର୍ଣ୍ଣାକ୍ୟୁଲର ବିଦ୍ୟାଳୟମାନ ପରିଦର୍ଶନ କରି ସେଠା ଶିକ୍ଷାପ୍ରଣାଳି ବିଷୟରେ ଯେଉଁ ରିପୋଟ କରିଅଛନ୍ତି ବଙ୍ଗୀୟ ଗବର୍ଣ୍ଣମେଣ୍ଟ ସେ ସମସ୍ତ କଲିକତା ଗେଜେଟରେ ସର୍ବସାଧାରଣଙ୍କ ଜ୍ଞାତାର୍ଥେ ପ୍ରକାଶ କରି କହିଅଛନ୍ତି ତତ୍‌ସମ୍ବନ୍ଧରେ ଯେ କେହି ବ୍ୟକ୍ତି କୌଣସି କୌଣସି ମନ୍ତବ୍ୟ ପ୍ରକାଶ କରିବାକୁ ଇଚ୍ଛା କରିବେ ତାହା ଆସନ୍ତା ଅକ୍ଟୋବର ମାସ ତା ୧ ରିଖ ଅଥବା ତହିଁପୂର୍ବେ ଲେଖି ପଠାଇଲେ ଗବର୍ଣ୍ଣମେଣ୍ଟରେ ଗୃହୀତ ହେବ । କମିଟୀର ରିପୋଟ ଗବର୍ଣ୍ଣମେଣ୍ଟଙ୍କ ବିବେଚନାରେ ଅତ୍ୟନ୍ତ ସାବଧାନତା ଏବଂ ସୂକ୍ଷ୍ମ ଅନୁସନ୍ଧାନପୂର୍ବକ ପ୍ରସ୍ତୁତ ହୋଇଅଛି ଏବଂ ବିଲାତରେ ବହୁଦର୍ଶନ ଉତ୍ତାରୁ ଯାହା ଗୃହୀତ ହୋଇଅଛି ତାହା ଏ ଦେଶରେ ପ୍ରଚଳିତ ହୋଇପାରିବାର ଉପାୟ ପ୍ରଦର୍ଶିତ ହୋଇଅଛି । ଏଥିରୁ ଜଣାଯାଏ ଯେ କୌଣସି ଗୁରୁତର ଆପତ୍ତି ଯଥାସମୟରେ ପ୍ରଦର୍ଶିତ ନ ହେଲେ ଗବର୍ଣ୍ଣମେଣ୍ଟ କମିଟୀର ରିପୋଟ ଅନୁସାରେ ଭର୍ଣ୍ଣାକ୍ୟୁଲର ଶିକ୍ଷାର ସଂସ୍କାର କରିବେ । ଉପରଲିଖିତ କମିଟୀର ରିପୋଟର ସାରାଂଶ ଏହିକି ବାଲ୍ୟଶିକ୍ଷା ବିଷୟରେ ଯୋଡ଼ିଏ ମୂଳନୀତି ବିଲାତରେ ଗୃହୀତ ହୋଇଅଛି ଯଥା- (୧)ପିଲାମାନେ ସ୍ୱଭାବତଃ ଚଞ୍ଚଳ, ସ୍ଥିରହୋଇ ବସିପାରନ୍ତି ନାହିଁ । ଶିକ୍ଷକ ଏପରି ଭାବରେ ସେମାନଙ୍କୁ ଚଳାଇବେ ଯେମନ୍ତ କି ସେମାନଙ୍କର ସେହି ସ୍ୱାଭାବିକ ବୃତ୍ତିର ପରିଚାଳନାଦ୍ୱାରା ଶିକ୍ଷା ହେବ । (୨) ଅଙ୍ଗ ପରିଚାଳନ ସ୍ୱାସ୍ଥ୍ୟ ଲାଭର ହେତୁ । ପିଲାମାନଙ୍କୁ ସେ ବିଷୟରେ ଏବଂ ସେମାନଙ୍କର ଜ୍ଞାନେନ୍ଦ୍ରିୟମାନ ବିଶେଷତଃ ଦର୍ଶନ ଏବଂ ସ୍ପର୍ଶେନ୍ଦ୍ରିୟର ଉପଯୁକ୍ତ ବ୍ୟବହାର ବିଷୟରେ ଏବଂ ସେମାନଙ୍କୁ ନାନା ବିଷୟ ପଚାରିବ ପ୍ରତି ଉତ୍ସାହ ଦେବେ ଯେ ତଦ୍ଦ୍ୱାରା ସେମାନଙ୍କର କ୍ରମେ କ୍ରମେ ସେହିସବୁ ପ୍ରବୃତ୍ତି ପୁଷ୍ଟିଲାଭ କରିବ । ପିଲାମାନେ ସ୍କୁଲରେ କେବଳ ଲେଖାପଢ଼ାରେ ସର୍ବଦା ନିଯୁକ୍ତ ରହିଲେ ସେମାନଙ୍କର ଶିକ୍ଷାର ଏକ ଅଙ୍ଗ ମାତ୍ର ପରିପୁଷ୍ଟ ହୁଅଇ ଏବଂ ବହୁକ୍ଷଣ ସେହି କାର୍ଯ୍ୟ କରୁ କରୁ ବିରକ୍ତି ଜାତ ହୁଏ । ଶରୀରର ଦୃଢ଼ତାସାଧନ ବିନା ଶିକ୍ଷା ସଂପୂର୍ଣ୍ଣତା ଅସମ୍ଭବ ଏବଂ ତହିଁନିମନ୍ତେ ଡ୍ରିଲବ୍ୟାୟାମାଦିର ଆବଶ୍ୟକ । ଏହିସବୁ ବିବେଚନାରେ କମିଟୀ ସର୍ବପ୍ରଥମେ କିଣ୍ଡରଗାରଟନ ଏବଂ ବସ୍ତୁସାହାଯ୍ୟ ପ୍ରଣାଳୀରେ ଶିକ୍ଷାଦେବାର ପ୍ରସ୍ତାବ କରିଅଛନ୍ତି । ଡ୍ରୟିଂ ଡ୍ରିଲ ଓ ଅନ୍ୟପ୍ରକାର ବ୍ୟାୟାମର ଶିକ୍ଷା ମଧ୍ୟ ସକଳ ବିଦ୍ୟାଳୟରେ ପ୍ରଥମରୁ ଦିଆଯିବ । ଭର୍ଣ୍ଣାକ୍ୟୁଲର ଶିକ୍ଷା ୪ ଭାଗରେ ବିଭକ୍ତ ହେବ ଯଥା (୧) ଶିଶୁ ଶ୍ରେଣୀ, (୨) ନିମ୍ନ ପ୍ରାଥମିକ, (୩) ଉଚ୍ଚ ପ୍ରାଥମିକ, (୪) ମଧ୍ୟଛାତ୍ରବୃତ୍ତି । ଶିଶୁ ଶ୍ରେଣୀରେ ବର୍ଷାର୍ଷ ପଢ଼ିବାକୁ ହେବ ଏବଂ ପ୍ରଥମ ବର୍ଷରେ ଆଦୌ ପୁସ୍ତକ ପାଠ ନାହିଁ । ତହିଁଉତ୍ତାରୁ ନିମ୍ନ ପ୍ରାଥମିକ ଶ୍ରେଣୀରେ ୨ ବର୍ଷ, ଉଚ୍ଚ ପ୍ରାଥମିକ ଶ୍ରେଣୀରେ ୨ ବର୍ଷ ଏବଂ ମଧ୍ୟଛାତ୍ର ବୃତ୍ତିରେ ବ୨ର୍ଷ ପ୍ରତ୍ୟେକ ବର୍ଷର

ପାଠ୍ୟ ବିଷୟ ବିସ୍ତାରିତରୂପେ ରିପୋଟରେ ଏକ ଏକ ଷ୍ଟାଣ୍ଡାର୍ଡ ନାମରେ ବର୍ଣ୍ଣିତ ହୋଇଅଛି । ପଞ୍ଚମ ବର୍ଷ ଶିଶୁ ବିଦ୍ୟାଳୟରେ ଭରତି ହୋଇ ବ ୧୩ର୍ଷ ବୟଃକ୍ରମ ବେଳେ ଅର୍ଥାତ୍ ଆଠବର୍ଷରେ ଛାତ୍ରବୃତ୍ତି ପରୀକ୍ଷା ଦେଇପାରିବେ । ପଢ଼ିବାର କାଳ ବର୍ତ୍ତମାନ ନିୟମସଙ୍ଗେ ସମାନ ମାତ୍ର ପାଠ୍ୟପୁସ୍ତକର ସଂଖ୍ୟା ନିତାନ୍ତ ଊଣା ଅର୍ଥାତ୍ ନିମ୍ନପ୍ରାଇମେରିରେ ଖ୨ଣ୍ଡ ଉଚ୍ଚ ପ୍ରାଇମେରିରେ ଖ୩ଣ୍ଡ ଏବଂ ମଧ୍ୟଛାତ୍ରବୃତ୍ତିରେ ଖ୫ଣ୍ଡ ମାତ୍ର । ବର୍ତ୍ତମାନ୍ ଛାତ୍ରବୃତ୍ତି ପରୀକ୍ଷାନିମନ୍ତେ ପୃ ୧୪୦୦ ଷ୍ଠା ପୁସ୍ତକ ପଢ଼ିବାକୁ ହୁଅଇ ଓ ତହିଁର ମୂଲ୍ୟ ଟ ୬ଙ୍କା ନୂତନ ପ୍ରସ୍ତାବ ଅନୁସାରେ ୫/୬ ଶତ ପୃଷ୍ଠାମାତ୍ର ପଢ଼ିବାକୁ ହେବ ଏବଂ ତହିଁର ମୂଲ୍ୟ ଟ ୧ୟରୁ ଅଧିକ ହେବ ନାହିଁ । ଏ ପ୍ରସ୍ତାବ ଗବର୍ଣ୍ଣମେଣ୍ଟରୁ ମଞ୍ଜୁର ହେଲେ ପାଠ୍ୟପୁସ୍ତକ ପ୍ରଣୟନ ବିଷୟରେ ବିଜ୍ଞାପନ ଦିଆଯିବ । ଶିକ୍ଷକମାନଙ୍କର ଅଧିକ ପରିଶ୍ରମ ହେବ ଏବଂ ସେମାନଙ୍କ ନିମନ୍ତେ ଏହି ପ୍ରଣାଳୀ ଅନୁସାରେ ଶିକ୍ଷାବିଧାନମାନ ପ୍ରସ୍ତୁତ ହେବ । ଆମ୍ଭମାନଙ୍କ ବିବେଚନାରେ ପ୍ରସ୍ତାବିତ ଶିକ୍ଷା ପ୍ରଣାଳୀର ଗୁଣ ଅନେକ ଅଛି ଏବଂ ତହିଁର ଦୋଷ ବାହାର କରିବା ସହଜ କଥା ନୁହେ । ଯୋଗ୍ୟଲୋକମାନେ ଏକତ୍ରେ ବସି ଅନେକ ଆଲୋଚନା ପୂର୍ବକ ଏ ବ୍ୟବସ୍ଥା କରିଅଛନ୍ତି । ଏହା ପ୍ରଚଳିତ ହେଲା ଉତ୍ତାରୁ ସାମାନ୍ୟ ତ୍ରୁଟି ଯାହା ଲକ୍ଷିତ ହେବ ତାହା କ୍ରମେ କ୍ରମେ ସଂଶୋଧନ ହୋଇଯିବ ।

*ଭା୩୪ଗ, ସଂ୨୯ଖ୍ୟା, ୨୨।୭। ୧୮୯୯*

## [୧୮୯୯ ମସିହା ଓଡ଼ିଆ ଶିକ୍ଷକତା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ର]

ସନ ୧୮୯୯ ମସାହାରେ ଓଡ଼ିଶାର କଟକ ଟ୍ରେନିଂସ୍କୁଲରୁ ଓଡ଼ିଆ ଶିକ୍ଷକତା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନଙ୍କର ନାମ

| ନାମ | ଉଚ୍ଚ ମଧ୍ୟମ | ମୋଟ ନମ୍ବର |
|---|---|---|
| ପର୍ଶୁରାମ ଷଡ଼ଙ୍ଗି | | ୪୨୧ |
| ଭଜମନ ସାହୁ | | ୪୧୩ |
| ଅରଜୁନ ଭୂୟାଁ | | ୩୬୯ |
| ମାହାଦେବ ମିଶ୍ର | | ୩୬୭ |
| ରଘୁନାଥ ମିଶ୍ର | | ୩୩୦ |
| ଗୋପୀନାଥ ମିଶ୍ର | | ୩୨୧ |
| | ୨ୟ ଗ୍ରେଡ୍ | |
| | ଉଚ୍ଚ | |
| ମୃତ୍ୟୁଞ୍ଜୟ ରଥ | | ୫୧୧ |
| | ମଧ୍ୟମ | |
| ଚୈତନ ପ୍ରସାଦ ଯେନା | | ୪୫୯ |
| ଶ୍ରୀଧର ମିଶ୍ର | | ୪୩୦ |
| ବ୍ରହ୍ମାନନ୍ଦ ଷଡ଼ଙ୍ଗି | | ୪୨୨ |
| ହରିହର ମିଶ୍ର | | ୪୦୦ |
| କାଶିନାଥ ଶତପଥୀ | | ୩୮୭ |
| ବିଶ୍ୱନାଥ ବେହେରା | | ୩୭୦ |
| ଗଙ୍ଗାଧର ମିଶ୍ର | | ୩୫୨ |
| ନାରାୟଣ ଗୋସ୍ୱାମୀ | | ୩୪୪ |

| | |
|---|---|
| ପଦ୍ମଚରଣ ମହାନ୍ତି | ୩୩୧ |
| ନନ୍ଦକିଶୋର ସେନ | ୩୨୫ |

ୱୟ ଗ୍ରେଡ୍

ଉଚ୍ଚ

| | |
|---|---|
| ସନାତନ ପ୍ରଧାନ | ୪୩୮ |
| ରାଜକିଶୋର ମହାନ୍ତି | ୪୧୪ |
| କରୁଣାକର ପଣ୍ଡା | ୪୦୬ |

ମଧ୍ୟମ

| | |
|---|---|
| ଜଗବନ୍ଧୁ ଦାସ | ୩୮୫ |
| ପୁରୁଷୋତ୍ତମ ମିଶ୍ର | ୩୭୧ |
| ବିଦ୍ୟାଧର ମଲ୍ଲିଆ | ୩୭୦ |
| ନଟବର ଦାସ | ୩୬୩ |
| ଅନନ୍ତ ରଥ | ୩୪୧ |
| ମନ୍ଦରଧର ଦାସ | ୩୩୫ |
| ଉଗ୍ରସେନ ଦାସ | ୩୨୬ |
| କ୍ରିଷ୍ଣପ୍ରସାଦ ଦାସ | ୩୧୭ |

*ଭା୩୪ଗ, ସଂ୨୯ଖ୍ୟା, ୨୨/୭/୧୮୯୯*

[ବାଲେଶ୍ୱର ସମ୍ବାଦବାହିକା]

କେତେକ ମାସ ଉତ୍ତାରୁ ବାଲେଶ୍ୱର ସମ୍ବାଦବାହିକା ନୂତନ ବେଶରେ ବାହାରିଅଛି ଓ ଆମ୍ଭେମାନେ ଚଳିତ ମାସ ତା ୩ ରିଖର ପତ୍ରିକା ପାଇ ଆନନ୍ଦିତ ହୋଇଅଛୁଁ । ବାହିକା ଏତେକାଳ ନିଦ୍ରିତ ଥିବାର କାରଣ ଏହି କି ଯେଉଁ ଯନ୍ତ୍ରାଳୟରେ ତାହା ଛାପା ହେଉଥିଲା ତାହା ବାଲେଶ୍ୱର ପ୍ରିଣ୍ଟିଂକମ୍ପାନିଙ୍କର ସମ୍ପତ୍ତି ଥିଲା । କମ୍ପାନିର ନେତାମାନଙ୍କ ମଧ୍ୟରୁ କେହି ମୃତ ଓ କେହି ସ୍ଥାନାନ୍ତରିତ ହେବାଦ୍ୱାରା କାର୍ଯ୍ୟରେ ବିଶୃଙ୍ଖଳା ଘଟିବାରୁ ଅବଶିଷ୍ଟ ଅଂଶିମାନେ ଯନ୍ତ୍ରାଳୟକୁ ସମ୍ଭାଳି ନ ପାରି ସାମନ୍ତ ଶ୍ରୀ ରାଜନାରାୟଣ ଦାସଙ୍କ ହସ୍ତରେ ବିକ୍ରୟ କଲେ ଏବଂ ନୂତନ ଅଧିକାରୀ କାର୍ଯ୍ୟ ଚଳାଇବାର ସୁବନ୍ଦୋବସ୍ତ କରୁ କରୁ ଏତେଦିନ ବାହାରି ଗଲା । ବର୍ତ୍ତମାନ ବାହିକାର ଆକାର ଠିକ ଓଡ଼ିଆ ନବସମ୍ବାଦ ପରି ହୋଇଅଛି କେବଳ ଶିରନାମାଟି ଦ୍ୱିଗୁଣ ସ୍ଥାନ ଅଧିକାର କରିଅଛି ।

*ଭା୩୪ଗ, ସଂ୩୨ଖ୍ୟା, ୧୨/୮/୧୮୯୯*

# ୧୯୦୦

## ଅଳଙ୍କାରସାର ।

ବାମଣ୍ଡାର ସୁଯୋଗ୍ୟ ରାଜକୁମାର ଶ୍ରୀଯୁକ୍ତ ସଚ୍ଚିଦାନନ୍ଦଦେବ ମହୋଦୟ ପ୍ରଣୀତ "ଅଳଙ୍କାରସାର" ନାମକ ପୁସ୍ତକ ଭାଷାବିଷୟକ ଜ୍ଞାନବୃଦ୍ଧି ସକାଶେ ପ୍ରତ୍ୟେକ ଭାଷାନୁରାଗୀ ବ୍ୟକ୍ତିଙ୍କର ଅବଶ୍ୟ ପାଠ କରିବା ଉଚିତ । ପୁସ୍ତକ ସରଳଭାଷାରେ ଉଦାହରଣ ସହିତ ରଚିତ ହୋଇ ଥିବାର ପାଠକମାନେଂ ଅପରର ସାହାଯ୍ୟ ବ୍ୟତିରେକେ ବର୍ଣ୍ଣିତ ବିଷୟ ସହଜରେ ହୃଦୟଙ୍ଗମ କରି ପାରିବେ । ପୁସ୍ତକଖଣ୍ଡି ଅନୁପାଦେୟ ହୋଇଥିବା କଥା ଉତ୍କଳଭାଷା ପାରଦର୍ଶୀ ପଣ୍ଡିତମାନେ ମୁକ୍ତକଣ୍ଠରେ ସ୍ୱୀକାର କରି ପ୍ରଣେତାଙ୍କୁ ଧନ୍ୟବାଦ ପ୍ରଦାନ କରିଅଛନ୍ତି । ଏହି ପୁସ୍ତକ କଟକ ପ୍ରିଣ୍ଟିଂକମ୍ପାନୀଙ୍କ ପୁସ୍ତକଦୋକାନରେ ଏବଂ ବାମଣ୍ଡା ଛାପାଖାନାରେ ଆଶାତୀତ ସୁଲଭ ମୂଲ୍ୟ ଚାରିଅଣାରେ ବିକ୍ରୟ କରାଯାଉଅଛି । ଡାକମାସୁଲ ଏକଅଣା ମାତ୍ର ।

*ଭା୩୫ଗ, ସଂ୧୫ଖ୍ୟା, ୧୪/୪/୧୯୦୦*

## ହାଇସ୍କୁଲର ନୂତନ ଶିକ୍ଷା ନୀତି ।

ଇଂରାଜୀ ହାଇସ୍କୁଲର ଶିକ୍ଷା ସମ୍ବନ୍ଧରେ ମାନ୍ୟବର ବଙ୍ଗେଶ୍ୱରଙ୍କର ଗୋଟିଏ ନୂତନ ବ୍ୟବସ୍ଥା ଗତ ତା ୪ ରିଖର କଲିକତା ଗଜେଟରେ ସର୍ବସାଧାରଣଙ୍କର ଗୋଚରାର୍ଥେ ପ୍ରକାଶିତ ହୋଇଅଛି । ସନ ୧୮୮୩ ସାଲରେ ଗବର୍ଣ୍ଣମେଣ୍ଟଙ୍କର ଆଦେଶରେ ଯେଉଁ ଶିକ୍ଷା ସମିତି ବସିଥିଲା ସେହି ସମିତି ପରାମର୍ଶ ଦେଇଥିଲେ କି ହାଇସ୍କୁଲମାନଙ୍କର ଉଚ୍ଚ ଶ୍ରେଣୀର ପାଠ୍ୟ ଦୁଇ ଭାଗରେ ବିଭକ୍ତ ହେବ ଯେ ଏକଭାଗ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାର ଉପଯୋଗୀ ହେବ ଏବଂ ଅନ୍ୟ ଭାଗ ଶିଳ୍ପ ବାଣିଜ୍ୟାଦି ବ୍ୟବସାୟର ଉପଯୋଗୀ ହେବ । ବହୁକାଳ ସେ ପରାମର୍ଶ ଅନୁସାରେ କିଛି କାର୍ଯ୍ୟ ହୋଇ ନ ଥିଲା । ସନ ୧୮୯୮ ସାଲରେ ଶିବପୁର ଇଞ୍ଜିନିୟରିଂ କଲେଜର ଅଧ୍ୟକ୍ଷ ସ୍ଲେଟର ସାହେବ ବଙ୍ଗପ୍ରଦେଶର ଶିଳ୍ପବିଦ୍ୟାଳୟମାନ ପରିଦର୍ଶନ କରି ରିପୋଟ ଦେବାରେ ଶିକ୍ଷାବିଭାଗର ଡିରେକ୍ଟରଙ୍କର ମନ୍ତବ୍ୟ ସହିତ ବଙ୍ଗେଶ୍ୱରଙ୍କ ନିକଟରେ ଉପସ୍ଥିତ ହୁଅନ୍ତେ ବଙ୍ଗେଶ୍ୱର ସରଜନ ଉଡବରନ ବାହାଦୁର ତଦ୍ଦୃଷ୍ଟିରେ ଆଦେଶ ପ୍ରଚାର କରିଅଛନ୍ତି କି ଆସନ୍ତା ସନ ୧୯୦୧ ସାଲ ଜାନୁଆରୀ ମାସ ପ୍ରଥମ ତାରିଖରୁ ହାଇସ୍କୁଲର ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ଶିକ୍ଷା କ, ଖ ଓ ଗ ଏହି ତିନି ଭାଗରେ ବିଭକ୍ତ ହେବ । କ- ବିଭାଗରେ ଇଂରାଜୀ ସଂସ୍କୃତ ପାରସ୍ୟ ଇତ୍ୟାଦି ମଧ୍ୟରୁ ଗୋଟିଏ ଭାଷା ଅଙ୍କ, ଇତିହାସ ଭୂଗୋଳ ବିଜ୍ଞାନ ଓ ଡ୍ରଇଂ ଯେପରି ବର୍ତ୍ତମାନ ଶିକ୍ଷା ଦିଯା ଯାଉଅଛି ସେହିପରି ଦିଆଯିବ , ଖ-ବିଭାଗରେ ଇଂରାଜୀ ଭାଷା, ଅଙ୍କ, ଡ୍ରଇଂ ବ୍ୟବହାରିକ ଜ୍ୟାମିତି, ଭୂମିପରିମାଣ, ଜରୀବ, ଇଞ୍ଜିନିୟରିଂ ଏବଂ କାୟିକ ପରିଶ୍ରମର ଶିକ୍ଷା ଦିଆଯିବ ; ଏବଂ ଗ - ବିଭାଗରେ ଇଂରାଜୀ, ଅଙ୍କ ଇତିହାସ ଭୂଗୋଳ, ବିଜ୍ଞାନ ଭୂମି ପରିମାଣ, ଶିଳ୍ପ ଏବଂ ରସାୟନ ଓ ପଦାର୍ଥବିଦ୍ୟାର ମୌଳିକ ବିଷୟ ଶିକ୍ଷା ଦିଆଯିବ । ରାଞ୍ଚି, କମିଲ୍ଲା, ମଇମନସିଂ, ବାଙ୍କିପୁର, ରଙ୍ଗପୁର, ମେଦିନୀପୁର, ବରିସାଲ ଢାକା ଏବଂ ପବନା ଏହି ସମସ୍ତ ଜିଲା ସ୍କୁଲ, ଖ-ବିଭାଗର ଏବଂ ହୁଗଲୀ, କଲିକତାର ହେଅରସ୍କୁଲ, ଏବଂ ଉତ୍ତରପଡ଼ା ଢାକା ଓ ବାଙ୍କିପୁରର ସରକାରୀ ସ୍କୁଲମାନଙ୍କରେ ଗ-ବିଭାଗର ଶିକ୍ଷା ଦିଆଯିବ । ଏଥିର ଫଳ ଏହି ହେବ ଯେ ଆଗାମୀ ବର୍ଷରୁ ହାଇସ୍କୁଲର ଶିକ୍ଷା ଦୁଇ ଶାଖା ହୋଇଯିବ ଅର୍ଥାତ୍ ଏକଶାଖା ସାହିତ୍ୟ ମୂଳକ ଯହିଁରେ କି କ- ବିଭାଗର ବିଷୟମାନ ପଠିତ ହେବ ଏବଂ ଅପର ଶାଖା ବ୍ୟବହାରିକ ମୂଳକ ଯହିଁରେ କି ଖ ଓ ଗ - ବିଭାଗର ବିଷୟମାନ ପଠିତ ହେବ । ପ୍ରଥମ ଶାଖାର ପରୀକ୍ଷା ବର୍ତ୍ତମାନ୍ ଯେପରି ବିଶ୍ୱବିଦ୍ୟାଳୟଦ୍ୱାରା ହେଉଅଛି ଏବଂ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନେ କଲେଜରେ ଭରତି

ହେଉଅଛନ୍ତି ସେହିପରି ହେବ । ଅନ୍ୟ ଶାଖାର ପରୀକ୍ଷାର ଭାର ନେବା କାରଣ କଲିକତା ବିଶ୍ୱବିଦ୍ୟାଳୟକୁ ଅନୁରୋଧ କରିବ । କାରଣ ଶିକ୍ଷାବିଭାଗର ଡିରେକ୍ଟରଙ୍କୁ ଗବର୍ଣ୍ଣମେଣ୍ଟ ଆଦେଶ ଦେଇଅଛନ୍ତି । ବିଶ୍ୱବିଦ୍ୟାଳୟ ସେ ଭାର ଗ୍ରହଣ କଲେ ବଙ୍ଗେଶ୍ୱର ଆନନ୍ଦିତ ହେବେ । ଯେବେ କୌଣସି କାରଣରୁ ତାହା ହୋଇ ନ ପାରିବ ତେବେ ଗବର୍ଣ୍ଣମେଣ୍ଟ ପରୀକ୍ଷା ଗ୍ରହଣର ଭିନ୍ନ ବନ୍ଦୋବସ୍ତ କରିବେ । ଖ ଓ ଗ-ବିଭାଗର ପ୍ରଥମ ଅର୍ଥାତ୍ ସ୍କୁଲ ପରୀକ୍ଷାରେ ଯେଉଁମାନେ ଉତ୍ତୀର୍ଣ୍ଣ ହେବେ  ସେମାନେ ଯେଉଁ କଲେଜମାନଙ୍କରେ ଅଧ୍ୟୟନ କରିବେ  ତହିଁର ଆଦେଶ ଏ ପଛେ ବାହାରିବ । କଲେଜରେ ଦୁଇବର୍ଷ ପଢ଼ିବାକୁ ହେବ ଓ ଅଙ୍କ, ବିଜ୍ଞାନ, ବାଣିଜ୍ୟସମ୍ବନ୍ଧୀୟ ଇତିହାସ ଭୂଗୋଳ ଇତ୍ୟାଦି ସଙ୍ଗେ ଇଂରାଜୀରେ ବ୍ୟବହାରିକ ପତ୍ର ରଚନା କରିବା, ପତ୍ରାଦିର ସାରାଂଶ ଲେଖିବା, ଭଲ ଅକ୍ଷର ଲେଖିବା, ହେସାବାଦି ଖାତା ପତ୍ର ଲେଖିବା ଇତ୍ୟାଦି ଅଭ୍ୟାସ କରିବାକୁ ହେବ । କଲେଜରେ ଦୁଇବର୍ଷ ପଢ଼ି ଯେଉଁମାନେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାର୍ଟିଫିକଟ ପାଇବେ ତାହା ଏଫ,ଏ, ପରୀକ୍ଷାର ସାରଟିଫିକଟ ତୁଲ୍ୟ  ଜ୍ଞାନ ହେବ ଏବଂ ସେମାନେ ବାଣିଜ୍ୟ କୋଠି ଇତ୍ୟାଦିରେ କାର୍ଯ୍ୟ ପାଇ ପାରିବେ ଏବଂ ସରକାରୀ କାର୍ଯ୍ୟ ପାଇବାର ମଧ୍ୟ ଯୋଗ୍ୟ ହେବେ ।

ଗବର୍ଣ୍ଣମେଣ୍ଟଙ୍କର ଉପରଲିଖିତ ବ୍ୟବସ୍ଥାର ଅଭିପ୍ରାୟ ମହତ୍ ଏଥିରେ ସନ୍ଦେହ ନାହିଁ । ଯେଉଁମାନେ ସ୍ୱାଭାବିକ ସ୍ମରଣ ବା ବୁଦ୍ଧିଶକ୍ତିର ଅଳ୍ପତା ହେତୁ ଅନେକ ପରିଶ୍ରମ କରି ସୁଦ୍ଧା ସାହିତ୍ୟ ବିଭାଗରେ ପ୍ରବେଶିକା ପରୀକ୍ଷା ଦେଇ ପାରୁ ନାହାନ୍ତି  ଅଥଚ ବ୍ୟବହାରିକ ବିଭାଗରେ କୃତକାର୍ଯ୍ୟତା ଲାଭ କରିବାକୁ ଯୋଗ୍ୟ ଆଲୋଚିତ ନିୟମରେ ସେମାନେ ସାରଟିଫିକଟ ଏବଂ ତହିଁ ବଳରେ ଚାକରୀ ପାଇବା କିମ୍ବା ଶିଳ୍ପାଦି ବ୍ୟବସାୟରେ ପେଟ ପାଳିବାକୁ ସମର୍ଥ ହେବେ  ଏବଂ ବି,ଏ, ବା ଏମ୍,ଏ, ପାସ କଲା ଉତ୍ତାରୁ  ସରକାରୀ ବା ମହାଜନୀ ଅଫିସରେ କାର୍ଯ୍ୟ ଶିକ୍ଷା କରିବାକୁ ହେବ ନାହିଁ । ଏପକ୍ଷରେ ଉପରଲିଖିତ ନିୟମ ଭଲ ବୋଲିବାକୁ ହେବ । ମାତ୍ର ଅନ୍ୟ  ପକ୍ଷରେ ଭୟ ହେଉଅଛି ଯେ ଏଥିରେ ଉଚ୍ଚ ଶିକ୍ଷାର ଅବନତି ବିନା ଉନ୍ନତିର ଆଶା ନାହିଁ । ଅଧିକାଂଶ ଲୋକ ବଡ଼ ଚାକରୀ ବା ଅନ୍ୟ ପ୍ରକାରେ ଅଧିକ ଧନ ଅର୍ଜିବା ଆଶାରେ ବାଧ ହୋଇ ଉଚ୍ଚ ଶିକ୍ଷା ନିମନ୍ତେ ଅପରିସୀମ ପରିଶ୍ରମ କରନ୍ତି । ଯେବେ ଅଳ୍ପ ଶିକ୍ଷାରେ ଚାକରୀ ଇତ୍ୟାଦି ପାଇବାର ସହଜ ବାଟ ମିଳିବ ତେବେ କେବଳ ବିଦ୍ୟାଲାଭ ନିମନ୍ତେ ଉଚ୍ଚ ଶିକ୍ଷାର ଆଦର ତେତେ ହେବ ନାହିଁ ଏବଂ ଯେ ପରିମାଣରେ ବିଦ୍ୱାନ୍‌ଲୋକର ସଂଖ୍ୟା ଊଣା ହେବ ସେ ପରିମାଣରେ ଦେଶର ଅଧୋଗତି ହେବ ଏହାଂ ଆଶ୍ଚର୍ଯ୍ୟର ବିଷୟ ନୁହେ । ବ୍ୟବସାୟ ଶିକ୍ଷାର ଅଧିକ ସୁଯୋଗ ପ୍ରଦାନ ପୂର୍ବକ ଦେଶର ଦରିଦ୍ରତାର ପ୍ରତିକାର ନିମନ୍ତେ ଆମ୍ଭେମାନେ ଗବର୍ଣ୍ଣମେଣ୍ଟଙ୍କୁ ଅହରହ ପ୍ରାର୍ଥନା କରୁଅଛୁଁ । ମାତ୍ର ଅଧିକ ସୁଯୋଗ ନ ଦେଇ ଗବର୍ଣ୍ଣମେଣ୍ଟ ଯେଉଁ ବନ୍ଧାବନ୍ଧି ନିୟମ କରିଅଛନ୍ତି ତହିଁର ପକ୍ଷପାତୀ ଆମ୍ଭେମାନେ ହୋଇ ପାରୁ ନାହୁଁ ।

*ଭାଗ୩୫ଗ,ସଂ୧୫ଖ୍ୟା, ୧୪/୪/୧୯୦୦*

## ଆଲୋଚନା ।

ଉପରଲିଖିତ ନାମରେ ଖଣ୍ଡିଏ ମାସିକା ପତ୍ରିକା ବାମଣ୍ଡା ସୁଜଳପ୍ରେସରୁ ଗତ ମାର୍ଚ୍ଚ ମାସରୁ ବାହାରିବାର ଆରମ୍ଭ ହୋଇଅଛି ଏବଂ ଆମ୍ଭେମାନେ ସେହି ପ୍ରଥମ ସଂଖ୍ୟା ଉପହାର ପାଇବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏହାର କଳେବର ଡିମାଇ ପେ ୧ ୨ ଜି ପୃ୨୪ଷ୍ଠା, ବାର୍ଷିକ ମୂଲ୍ୟ ଟ୧<ଙ୍କା, ସମ୍ପାଦକ ଶ୍ରୀ ଜଳନ୍ଧର ଦେବ ଏବଂ ପ୍ରକାଶର ସ୍ଥାନ ବାମଣ୍ଡାର ରାଜଧାନୀ ଦେବଗଡ଼ । ମୁଖବନ୍ଧରୁ ପ୍ରକାଶ ଯେ ଦେବଗଡ଼ଠାରେ ପ୍ରାୟ ବ୬ର୍ଷେ ହେଲା ଆଲୋଚନା ସମିତି ନାମରେ ଗୋଟିଏ ସମିତି ସ୍ଥାପିତ ହୋଇଅଛି । ବାମଣ୍ଡାର ରାଜକୁମାରମାନେ ଏବଂ ଅନ୍ୟାନ୍ୟ ଭଦ୍ରଲୋକ ପ୍ରାୟ ଜ୫୦ ଣ ସମିତିର ସଭ୍ୟ ଏବଂ ଯୁବରାଜ ଶ୍ରୀ ସଚ୍ଚିଦାନନ୍ଦ ଦେବ ସଭାପତି ଅଟନ୍ତି । ସମିତିର ଜଣେ ଉତ୍ସାହୀ ସଭ୍ୟ ଏବଂ ରାଜକୁମାର ସ୍କୁଲର ହେଡ଼ମାଷ୍ଟର ଶ୍ରୀ ଯୋଗେଶଚନ୍ଦ୍ର ଦାସଙ୍କ ପ୍ରସ୍ତାବ ମତେ ଏହି  ପତ୍ରିକା ପ୍ରକାଶିତ ହେବାର ଆରମ୍ଭ ହୋଇଅଛି ଯେ ଏହାଦ୍ୱାରା ସଭ୍ୟମାନଙ୍କର ରଚନାଶକ୍ତି ବୃଦ୍ଧି ହେବ ଏବଂ ସମୟ ସମୟରେ ସଭାର ଆଲୋଚିତ ବିଷୟ ଏଥିରେ ପ୍ରକାଶ ହେଲେ ସେ ସମ୍ବନ୍ଧରେ ଶିକ୍ଷିତ ଲୋକଙ୍କର ମତାମତ ଜଣାଯିବ । ଅର୍ଥାଭାବରୁ ପତ୍ରିକା ବନ୍ଦ ହେବ ନାହିଁ  ପ୍ରସ୍ତାବକ ମହାଶୟ ଏପରି ସାହସ ଦେଇ ଅଛନ୍ତି ଏବଂ

ପ୍ରତି ସପ୍ତାହ ନିମନ୍ତେ ଏହା ଗୋ୬ଟି ପ୍ରବନ୍ଧ ପ୍ରକାଶ ହେବାର କଳ୍ପନା ଥିବାରୁ ଲେଖକର ଅଭାବର ଆଶଙ୍କା ନାହିଁ । ଏଥିରୁ ପାଠକମାନେ ଅନାୟାସରେ ବୁଝିବେ ଯେ ପ୍ରକାଶକଙ୍କର ଆଶା ଉଚ୍ଚ ନୁହେ ଏବଂ ମୂଳ ଯଥା ସମ୍ଭବ ଅଳ୍ପ ହୋଇଅଛି । ଏ ସମସ୍ତ ପତ୍ରିକାର ସ୍ଥାୟିତ୍ୱର ଅନୁକୂଳ ଅଟେ ଏବଂ ଆମ୍ଭେମାନେ ଏକାନ୍ତ କାମନାକରୁଁ କି ଏହା ଦୀର୍ଘକାଳ ସ୍ଥାୟୀ ହୋଇ ବାମଣ୍ଡାର ଯଶ ବିସ୍ତାର କରିବ । ବାମଣ୍ଡା ଉତ୍କଳଖଣ୍ଡର ଏକପ୍ରାନ୍ତରେ ରହିଥିଲେହେଁ ଉତ୍କଳ ସାହିତ୍ୟ ଚର୍ଚ୍ଚରେ ଅପେକ୍ଷାକୃତ ଉଚ୍ଚସ୍ଥାନ ଲଭିବା ଅବଶ୍ୟ ପ୍ରଶଂସାର ବିଷୟ ଅଟେ । ଏହି ପ୍ରଥମ ସଂଖ୍ୟାରେ ଛୋଟ ବଡ଼ ଗଦ୍ୟ ଓ ପଦ୍ୟ ଗୋ ୧ ୨ ଟି ରଚନା ବାହାରିଅଛି । ସେ ସବୁ ଓଡ଼ିଶାର ସାଧାରଣ ଚିନ୍ତା ଓ ରଚନାର ସମତୁଲ୍ୟ ବିନା ନ୍ୟୂନ ବୋଲିବାର କୌଣସି କାରଣ ନାହିଁ ।

*ଭା୩୫ଗ, ସଂ୧୬ଖ୍ୟା, ୨୧/୪/୧୯୦୦*

## ପୁରସ୍କାର ବିତରଣ ।

ଗତ ପୂର୍ବ ଶୁକ୍ରବାର ଅପରାହ୍ନ ଘ ୪ ଣ୍ଟା ସମୟରେ ରେଭେନସା କଲେଜିୟଟସ୍କୁଲର ପୁରସ୍କାର ବିତରଣ ଆରମ୍ଭ ହୋଇଥିଲା । ନବାଗତ ଶ୍ରୀଯୁକ୍ତ ବିଭାଗୀୟ କମିଶନର ମିଃ ହରିସ ସଭାପତିର ଆସନ ଗ୍ରହଣ କରି ପୁସ୍ତକ ବିତରଣ କରିଥିଲେ । କଲେଜର ପ୍ରିନ୍‌ସିପାଲ ବାବୁ ନୀଳକଣ୍ଠ ମଜୁମଦାର ବାର୍ଷିକ ରିପୋଟ ପାଠ କରିଥିଲେ । ସେଥିର ସାରାଂଶ ନିମ୍ନେ ପ୍ରଦତ୍ତ ହେଲା ।

ସନ ୧୯୮୫ ସାଲରେ କଲେଜବିଭାଗର ଛାତ୍ର ସଂଖ୍ୟା ୧ ୯ ଥିଲା ୧୮୯୯ ସାଲରେ ୮୪ ହୋଇଥିଲା ଚଳିତ ସନର ମାର୍ଚ୍ଚମାସର ଶେଷପର୍ଯ୍ୟନ୍ତ ୯ ୯ ହୋଇଥିଲା । ପାଞ୍ଚବର୍ଷ ମଧରେ ଛାତ୍ରସଂଖ୍ୟା ଶତକଡ଼ା ଜ୭୦ଣ ବୃଦ୍ଧି ପାଇଅଛି । ଦୈନିକ ଉପସ୍ଥିତ ପୂର୍ବାପେକ୍ଷା ଉତ୍ତମ ହୋଇଅଛି ।

ପରୀକ୍ଷାର ଫଳ ଯଥା ସମୟରେ ପାଠକମାନଙ୍କୁ ଜଣାଇଅଛୁଁ ସୁତରାଂ ଆଉ ଉଲ୍ଲେଖ କରିବାର ଆବଶ୍ୟକ ନ ରଖେ ।

ପରୀକ୍ଷାର ଫଳ ଅନ୍ୟାନ୍ୟ କଲେଜର ଫଳ ଅନୁପାତରେ ପ୍ରବେଶିକା ପରୀକ୍ଷାରେ କଲେଜିୟଟସ୍କୁଲ ୪ର୍ଥ ସ୍ଥାନ ଅଧିକାର କରିଅଛି ।

କେବଳ ଢ଼ାକା, ହିନ୍ଦୁ ଓ ପାଟଣା କଲେଜ ୧ମ ୨ୟ ଓ ୩ୟ ସ୍ଥାନ ଅଧିକାର କରିଥିଲେ ।

ଏଲ ଏ ପରୀକ୍ଷାରେ ୫ମ ସ୍ଥାନ ଓ ବି, ଏ, ପରୀକ୍ଷାରେ ୨ୟ ସ୍ଥାନ ଅଧିକାର କରିଥିଲେ ।

ଏମ୍ ଏ ପରୀକ୍ଷାରେ ୩ ଜଣ ପରୀକ୍ଷା ପ୍ରଦାନ କରିଥିଲେ କିନ୍ତୁ କେହି ଉତ୍ତୀର୍ଣ୍ଣତା ଲାଭ କରିପାରିଲେ ନାହିଁ ।

ବିଏଲ ପରୀକ୍ଷାରେ ଗତ ତିନିବର୍ଷ ହେଲା କେହି କୃତକାର୍ଯ୍ୟ ହୋଇପାରି ନାହାନ୍ତି । ଏଥକୁ କଇଫିୟତ୍ ଏହି ଯେ ପରୀକ୍ଷାର୍ଥୀ ଯୁବକମାନେ କଲେଜ ଶିକ୍ଷା ପ୍ରାପ୍ତ ହେଲାପରେ ସେମାନଙ୍କୁ ଘରେ ଶିକ୍ଷା କରିବା ନିମନ୍ତେ ଛାଡ଼ି ଦିଆଯାଏ । ଏଣିକି ସାପ୍ତାହିକ, ପାକ୍ଷିକ, ମାସିକ, ବାର୍ଷିକ ପରୀକ୍ଷା କରାଯିବ । ବର୍ତ୍ତମାନ ଓଡ଼ିଶାର ଏପରି ଅବସ୍ଥା ନାହିଁ ଯେ ଓଡ଼ିଶାର ଶିକ୍ଷିତ ସନ୍ତାନମାନେ ସ୍ୱସ୍ୱ ଇଚ୍ଛାନୁସାରେ ପରିଶ୍ରମ କରି ଶିକ୍ଷା ଲାଭ କରିବେ ।

କ୍ରୀଡ଼ାସମ୍ବନ୍ଧରେ ଲେଖା ଥିଲା ଯେ କ୍ରୀଡ଼ା ସ୍ଥାନ ଓଡ଼ିଶା କମିଶନରୀ କଚେରୀ ନିମନ୍ତେ ଗ୍ରହଣ କରା ହୋଇଅଛି ମାତ୍ର ଭୂତପୂର୍ବ କମିଶନର ମିଃ ମାରିଣ୍ଡିନ ଲାଲବାଗହତାର କିୟଦଂଶ କ୍ରୀଡାସ୍ଥାନପାଇଁ ଛାଡିଦେବାକୁ କହିଥିଲେ କିନ୍ତୁ ଏହା କାର୍ଯ୍ୟରେ ପରିଣତ ହେବା ପୂର୍ବରୁ ସାହେବ ମହୋଦୟ ସ୍ଥାନାନ୍ତରିତ ହୋଇଅଛନ୍ତି । ସୁତରାଂ ଏଥିର ଭାର କଲେକ୍‌ଟର ସାହେବଙ୍କୁ ଅର୍ପିତ କରା ହୋଇଅଛି ।

ହୋଷ୍ଟେଲ ଅବା ବୋର୍ଡିଂ ଘର ଅବା ଛାତ୍ରାବାସ ସନ ୧୮୯୬/୯୭ ସାଲରେ ୨୦ ଜଣ ଛାତ୍ର ବାସ କରିଥିଲେ । ସନ ୧୮୯୮/ ୯୯ ରେ ଛାତ୍ରସଂଖ୍ୟା ଜ୩୮ଣ ହୋଇଥିଲା ଓ ବର୍ଷର ଅନ୍ୟାନ୍ୟ ସମୟରେ ଛାତ୍ରସଂଖ୍ୟା ୪୦ ଠାରୁ ୫୦ ପର୍ଯ୍ୟନ୍ତ ହୋଇଥିଲା । ବର୍ତ୍ତମାନ ଛାତ୍ରାବାସର କାର୍ଯ୍ୟ ଚଳାଇବାର ସୁବନ୍ଦୋବସ୍ତ ହୋଇଅଛି । ଜଣେ ବାସିନ୍ଦା ସୁପରିଣ୍ଟେଣ୍ଡେଣ୍ଟ ଓ ଏକଜଣ ଆଶିଷ୍ଟାଣ୍ଟ ସର୍କାର ନିଯୁକ୍ତ ହୋଇଅଛନ୍ତି । ଏଣିକି ଅଧିକ ଛାତ୍ର ହେବାର

ସମ୍ଭାବନା ଛାତ୍ରାବାସର କାର୍ଯ୍ୟ ପରିଦର୍ଶନ ନିମନ୍ତେ ଏକ କମିଟି ସ୍ଥାପିତ ହୋଇଅଛି ସେଥିର ସଭାପତି ସ୍ୱୟଂ ମାଜିଷ୍ଟ୍ରେଟ ।

ନୀତିଶିକ୍ଷା । ଏତଦ୍‌ପକ୍ଷରେ ସୁଦୃଷ୍ଟି ଥିଲା ମାତ୍ର ଦୁଇ ଗୋଟି ଦୁର୍ଘଟନା ଉପସ୍ଥିତ ହୋଇଥିଲା । ଗୋଟିଏ ସର୍ଭେ ସ୍କୁଲରେ ଓ ଅନ୍ୟଟି କଲେଜିୟଟ ସ୍କୁଲରେ ଦୋଷିମାନଙ୍କ ପ୍ରତି ଅର୍ଥଦଣ୍ଡ, କାୟିକ ଓ ବିତାଡିତ ଦଣ୍ଡ ପ୍ରଦତ୍ତହୋଇଥିଲା । ସେମାନେ ବଡ଼ ଦୁର୍ଦ୍ଦାନ୍ତ ଛାତ୍ର, ସେମାନେ କଟକବାସୀ ବଙ୍ଗାଳି ଭଦ୍ରଲୋକର ପୁତ୍ର ଅବା ସମ୍ପର୍କୀୟ ଅଟନ୍ତି । ଓଡ଼ିଆ ଛାତ୍ରମାନେ ସୁଶୀଳ ଓ ଶାନ୍ତ ଅଟନ୍ତି । ଏହି ବଙ୍ଗାଳି ଛାତ୍ରମାନେ ବର୍ତ୍ତମାନ ମଧ୍ଯ କଲେଜ କମ୍ପାଉଣ୍ଡ ମଧ୍ୟରେ ଆସି ଗୋଳମାଳ କରୁଅଛନ୍ତି । ସେମାନଙ୍କୁ ଫୌଜଦାରୀରେ ଚାଲାଣ ଦେବା ନିମନ୍ତେ ପୁଲୀସ ସୁପ୍ରଣ୍ଡଣ୍ଟଙ୍କୁ ଲେଖା ହୋଇଅଛି । ଏମାନେ କଲିକତାସ୍ଥ ଦୁର୍ଦ୍ଦାନ୍ତ ଛାତ୍ରଙ୍କ ସ୍ୱଭାବ ଅନୁକରଣ କରୁଅଛନ୍ତି । ଏହା ପ୍ରଥମାବସ୍ଥାରୁ ନଷ୍ଟ କରିବା ଉଚିତ ହେଉଅଛି ।

ପୁରସ୍କାରଦାତା -(୧) ବଙ୍ଗୀୟ ଛୋଟଲାଟ ବାହାଦୁର କେବଳ ଓଡ଼ିଆ ଛାତ୍ରମାନଙ୍କୁ ପୁରସ୍କାର ପୁସ୍ତକ ପ୍ରଦାନ ନିମନ୍ତେ ଟ ୧୦୦ ଙ୍କା ବିତରଣ କରିଥିଲେ । ଏହା କେବଳ ଓଡ଼ିଆ ଛାତ୍ରମାନଙ୍କୁ ଦିଆ ହୋଇଅଛି ।

(୨) ମିଃ ମଧୁସୂଦନ ଦାସ ବୃତ୍ତି ପାଇ ଟ ୨୪୦ ଙ୍କା ଓ ଇଂରାଜୀ ରଚନା ନିମନ୍ତେ ଦୁଇଗୋଟା ରୌପ୍ୟ ପଦକ ଦେଇଥିଲେ ।

(୩) ରାୟ ଯଜ୍ଞେଶ୍ୱର ଚନ୍ଦ୍ର ବାହାଦୁର ଉଡବର୍ଣ୍ଣ ପ୍ରାଇଜ ବୋଲି ଟ ୫୦୦ଙ୍କା ଦେଇଥିଲେ ଓ ପେଡ୍ଲର ପ୍ରାଇଜ ଓ ଗ୍ରାଉସ ପ୍ରାଇଜ ଦେଇଥିଲେ ମଧ୍ୟ ଆହୁରି କେତେକ ବହି ପୁରସ୍କାର ଦେଇଥିଲେ ଏହାଙ୍କର ପୁରସ୍କାର ପୁସ୍ତକ ୫୦ ରୁ ୬୦ ପର୍ଯ୍ୟନ୍ତ ହେବ ।

*ଭାଗ୫୫, ସଂ୧୭ଖ୍ୟା, ୨୮/୪/୧୯୦୦*

## ଓଡ଼ିଶାର ସଦସ୍ୟ ନିର୍ବାଚନ ।

ଓଡ଼ିଶାର ସଦଶ୍ୟ ନିର୍ବାଚନ ସମ୍ବନ୍ଧରେ ଗତ ସୋମବାର ସକାଳ ଘ୮ଣ୍ଟା ବେଳେ କଟକଜିଲା ବୋରଡର ଯେଉଁ ବିଶେଷ ଅଧିବେଶନ ହୋଇଥିଲା ତାହା ଗୋଟିଏ ବୃହତ୍ ସଭା ଥିଲା । ଏହି ସଭା ଜିଲା ବୋରଡର ନୂତନ ମେମ୍ବରମାନଙ୍କର ପ୍ରଥମ ଅଧିବେଶନ ଥିଲା । ଏବଂ ବଙ୍ଗୀୟ ବ୍ୟବସ୍ଥାପକ ସଭା ନିମନ୍ତେ ସଦସ୍ୟ ମନୋନୀତ କରିବାର ଅଧିକାର ଗୋଟିଏ ଅତ୍ୟନ୍ତ ଗରିଷ୍ଠ ବ୍ୟାପାର ଯାହାକି ଅନେକବର୍ଷରେ ଥରେ ହାତକୁ ଆସିବାର କଥା ଏବଂ ତହିଁର ସମସ୍ତ ମେମ୍ବରମାନଙ୍କର ଯୋଗ ଦେବା ନିତାନ୍ତ କର୍ତ୍ତବ୍ୟ । ଏହି ବିବେଚନାରେ କେବଳ ଯାଜପୁର ଓ କେନ୍ଦରାପଡ଼ାର ସବଡିବିଜନ ଅଫିସରମାନେ ଓ ଆଉ ଏକଜଣ ଛଡ଼ା ଅନ୍ୟ ସମସ୍ତ ମେମ୍ବର (ଜ୧୬ଣ) ସମବେତ ହୋଇଥିଲେ ଏବଂ ତହିଁମଧ୍ୟରେ ସଦସ୍ୟ ପଦପ୍ରାର୍ଥୀ ରାୟ ହରିବଲ୍ଲଭ ବୋଷ ବାହାଦୁର ଏବଂ ବାବୁ ମଧୁସୂଦନ ଦାସ ମେମ୍ବରମାନେ ଉପସ୍ଥିତ ଥିଲେ । ପ୍ରଥମେ ସାଧାରଣ ସଭାର କାର୍ଯ୍ୟ ସମାଧା ହେଲାରୁ ବିଶେଷ ଅଧିବେଶନ ଆରମ୍ଭ ହୁଅନ୍ତେ ଜିଲା ବୋରଡର ନୂତନ ମେମ୍ବରଙ୍କ ନାମ ଗଜେଟ ହୋଇଥିଲା ମାତ୍ର ଚେଆରମେନଙ୍କର ନୂତନ ନିଯୋଗ ଗଜେଟରେ ବାହାରି ନ ଥିବା ସ୍ଥଳେ ବୋରଡ ଆଇନସଙ୍ଗତ ରୂପେ ଗଠିତ ହେବାର ବୋଲାଯିବ କି ନା ଏହି କଥା ପଡ଼ିଥିଲା । ଏଥକୁ ଯେତେବେଳେ ଜିଲାର ମାଜିଷ୍ଟ୍ରେଟ ବୋରଡର ଚେଆରମେନ ସର୍ବଦା ହୋଇ ଆସୁଅଛନ୍ତି ଏବଂ ପୂର୍ବ ନିଯୋଗ ଅନୁସାରେ କାର୍ଯ୍ୟ କରୁଅଛନ୍ତି ଅଥଚ ଅନ୍ୟ କେହି ନିଯୋଗ ହୋଇ ନାହିଁ ବା ହେବାର ସମ୍ଭାବନା ନାହିଁ ତେତେବେଳେ କିଛି ଆଇନଘଟିତ ଦୋଷ ହୋଇ ନ ପାରେ । ଏହି କଥୋପକଥନ ଉତ୍ତାରୁ ସଭାର ପ୍ରକୃତ କାର୍ଯ୍ୟ ସମ୍ବନ୍ଧରେ ବାବୁ ଗୌରୀଶଙ୍କର ରାୟ ପ୍ରସ୍ତାବ କଲେ କି ଗବର୍ଣ୍ଣମେଣ୍ଟଙ୍କର ନିର୍ଦ୍ଧାରଣ ଅନୁସାରେ ବଙ୍ଗୀୟ ବ୍ୟବସ୍ଥାପକ ସଭାର ସଦସ୍ୟ ମନୋନୀତ କରିବାକାରଣ ଏହି ବୋରଡ ପକ୍ଷରୁ ରେଭରେଣ୍ଡବେଲି ସାହେବଙ୍କୁ ପ୍ରତିନିଧି ନିଯୁକ୍ତ କରାଯାଉ ଏବଂ ତାହାଙ୍କୁ ଉପଦେଶ ଦିଆଯାଉକି ସେ ବାବୁ ମଧୁସୂଦନ ଦାସଙ୍କୁ ମନୋନୀତ କରିବାର ଯତ୍ନ କରିବେ । ରେଭରେଣ୍ଡବେଲି ସାହେବ ତଦନୁଯାୟୀ କାର୍ଯ୍ୟ କରିବାକୁ ସମ୍ମତ ହେଲେ ଏବଂ ସୟଦ ମକବୁଲ ଅଲି ସେ ପ୍ରସ୍ତାବ ଅନୁମୋଦନ କଲେ । ସେଥିରେ ଆଉ କାହାରି କିଛି କହିବାର ଅଛି କି ନାହିଁ

## ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଶ୍ରୀଯୁକ୍ତ ଚେଆରମେନ ସାହେବ ପ୍ରଶ୍ନ କରନ୍ତେ ବାବୁ ଜାନକୀନାଥ ବୋଷ ଛିଡ଼ା ହୋଇ ଅନ୍ୟ ଦୁଇ ଜଣ ପଦପ୍ରାର୍ଥୀଙ୍କର ଆବେଦନପତ୍ରମାନ ଦେଖିବାର ଓ ଆଉ କିଛି କହିବାର ଚେଷ୍ଟା କରୁଥିଲେ ଏମନ୍ତ ସମୟରେ ରାୟ ହରିବଲ୍ଲଭ ବୋଷ ବାହାଦୁର କହିଲେ କି ତାହାଙ୍କର ଶାରୀରିକ ଏବଂ ମାନସିକ ଅବସ୍ଥା ବର୍ତ୍ତମାନ ଭଲ ନ ଥିବା ଓ ସେ ଯେ ସମସ୍ତ ସମ୍ମାନ ପାଇଅଛନ୍ତି ତହିଁ ଉପରେ ଅଧିକ ସମ୍ମାନ ନିମନ୍ତେ ବ୍ୟସ୍ତ ନ ଥିବା ଓ ସେ କେବଳ ବନ୍ଧୁମାନଙ୍କ ଉପରୋଧରେ ପ୍ରାର୍ଥୀ ହୋଇଥିବାରୁ ତାହାଙ୍କ ବିବେଚନାରେ ସଭାରେ ଆଗତ ହୋଇଥିବା ପ୍ରସ୍ତାବ ଏକମତରେ ଗୃହୀତ ହେବା ଉଚିତ । ଏହିପରି ସେ ଆପଣା ପ୍ରାର୍ଥନା ପରିତ୍ୟାଗ କଲେ ଏବଂ ପ୍ରସ୍ତାବ ବିରୁଦ୍ଧରେ ଆଉ କେହି କିଛି ନ କହିବାରୁ ତାହା ସର୍ବସମ୍ମତିକ୍ରମେ ଅବଧାରିତ ହୋଇ ସଭା ଭଙ୍ଗ ହେଲା । ଅତଏବ ସଭାର କାର୍ଯ୍ୟ ବଡ଼ ସୁନ୍ଦରରୂପେ ନିର୍ବାହ ହୋଇ ଗଲା । ଯେଉଁମାନେ ଅନେକ ବାଦାନୁବାଦ ଶୁଣିବାର ଆଶା କରି ଆସିଥିଲେ ସେମାନେ ବିଫଳକାମ ହୋଇ ଫେରି ଗଲେ, ରାୟ ବାହାଦୁର ଉଚିତ କାରଣରେ ଆପଣାର ଦାବୀ ପରିତ୍ୟାଗ କରି ସୁବୁଦ୍ଧିର ଓ ମହତର କାର୍ଯ୍ୟ କଲେ ଏବଂ ତାହାଙ୍କର ପ୍ରକୃତ ଅବସ୍ଥା ନ ଭାବି ଯେଉଁ ବନ୍ଧୁମାନେ ତାହାଙ୍କୁ ମତାଇଥିଲେ ସେମାନଙ୍କର ବିବେଚନା ଓ ଯତ୍ନର ଦୋଷ ପ୍ରକାଶ ହୋଇଗଲା । ଆମ୍ଭେମାନେ ପ୍ରଥମରୁ କହିଥିଲୁଁ ଯେ ରାୟ ବାହାଦୁର ଏ ପଦପାଇଁ ବ୍ୟସ୍ତ ନ ଥିଲେ ଏବଂ ପରିଶେଷରେ ତାହାର ପ୍ରତ୍ୟକ୍ଷ ହେଲା । ସର୍ବୋପରି ଜିଲା ବୋରଡର ଏହି ଅଧିବେଶନର କାର୍ଯ୍ୟ ଅତ୍ୟନ୍ତ ପ୍ରୀତିକର ହେବାର କାରଣ ଏହି କି ଅନେକ ମେମ୍ବର ଉପରୋଧ, ଅନୁରୋଧ, ବାଧା ବିଘ୍ନ ପ୍ରତି ଆଦୌ ଦୃଷ୍ଟି ନ କରି ନିଜ ନିଜ ବିଶ୍ୱାସ ଓ ବିଚାର ଅନୁସାରେ କର୍ତ୍ତବ୍ୟ ପାଳନର ଦୃଢ଼ତା ଦେଖାଇ ଅଛନ୍ତି । ଏପରି ସଭାର ବିଶେଷ ଗୌରବ ଅଛି ସନ୍ଦେହ ନାହିଁ ଏବଂ ଏଥିପାଇଁ ଆମ୍ଭେମାନେ ଆପଣାକୁ ଭଗବାନ୍ ଜ୍ଞାନ କରୁଁ। ଆମ୍ଭେମାନେ ବିଶ୍ୱସ୍ତ ସୂତ୍ରେ ଅବଗତ ହୋଇଅଛୁଁ ଯେ କେହି କେହି ମେମ୍ବର ବ୍ୟକ୍ତିବିଶେଷ ସକାଶେ ମତ ଦେବା ଓ ତାହା ନ ହେଲେ ସଭାରେ ଉପସ୍ଥିତ ନ ହେବା କାରଣ ବିଶେଷରୂପେ ଅନୁରୋଧ ହୋଇଥିଲେ ମାତ୍ର କର୍ତ୍ତବ୍ୟର ଅନୁରୋଧ ପାଖରେ ତାହା ଠାକି ପାରିଲା ନାହିଁ ।

*ଭା୩୫ଗ, ସଂ୨୦ଖ୍ୟା, ୧୯/୫/୧୯୦୦*

### [ଏଫ,ଏ, ଓ ଏଣ୍ଟ୍ରାନ୍ସ ପରୀକ୍ଷାର ଫଳ]

ଗତ ଏଫ, ଏ, ଓ ଏଣ୍ଟ୍ରାନ୍ସ ପରୀକ୍ଷାର ଫଳ ବାହାରି ଅଛି ।

ଓଡିଶାରୁ ନିମ୍ନଲିଖିତ ଛାତ୍ରମାନେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

**ଏଫ,ଏ,**

**୧ମ ଶ୍ରେଣୀ ।**

୧. ବୈଦ୍ୟନାଥ ମିଶ୍ର — ରେଃ କଲେଜ କଟକ

**୨ୟ ଶ୍ରେଣୀ ।**

୨. ବ୍ରଜସୁନ୍ଦର ଦାସ — ,,
୩. ଗୋପବନ୍ଧୁ ଦାସ — ,,
୪. ଗୋପୀନାଥ ଦାସ — ,,
୫. ଲୋକନାଥ ପଟ୍ଟନାୟକ — ,,

**୩ ୟ ଶ୍ରେଣୀ ।**

୬. ଦୋଳଗୋବିନ୍ଦ ବସୁ — ,,
୭. ଜ୍ଞାନେନ୍ଦ୍ର ବ୍ରହ୍ମ — ,,
୮. ଶାନ୍ତିରାମ ଚକ୍ରବର୍ତ୍ତୀ — ,,

| | |
|---|---|
| ୯. ଜ୍ୟୋତିଷଚନ୍ଦ୍ର ଚଟ୍ଟୋପାଧ୍ୟାୟ | ,, |
| ୧୦. ଦେବେନ୍ଦ୍ରନାଥ ଦାସ | ,, |
| ୧୧. କପିଳେଶ୍ୱର ଦାସ | ,, |
| ୧୨. ସତୀଷଚନ୍ଦ୍ର ଦେ | ,, |
| ୧୩. ଅତୁଲ୍ୟକୃଷ୍ଣ ଘୋଷ | ,, |
| ୧୪. ଜ୍ୟୋତୀନ୍ଦ୍ରନାଥ ଦାସ | ,, |
| ୧୫. ଆନନ୍ଦଚନ୍ଦ୍ର ମହାନ୍ତି | ,, |
| ୧୬. ଯୋଗୀନ୍ଦ୍ରନାଥ ମହାନ୍ତି | ,, |
| ୧୭. ତ୍ରୈଲୋକ୍ୟନାଥ ମିତ୍ର | ,, |
| ୧୮. ଗିରୀନ୍ଦ୍ର ନାଥ ମୁଖୋପାଧ୍ୟାୟ | ,, |
| ୧୯. ଆନନ୍ଦଚନ୍ଦ୍ର ପଟ୍ଟନାୟକ | ,, |
| ୨୦. ଡମ୍ବରୁଧର ପଟ୍ଟନାୟକ | ,, |
| ୨୧. ନିତ୍ୟାନନ୍ଦ ଶତପଥୀ | ,, |
| ୨୨. ବାଲୁଙ୍କେଶ୍ୱର ମିଶ୍ର | ଶିକ୍ଷକ |

ଏଣ୍ଟ୍ରାନ୍ସ ।

୧ମ ଶ୍ରେଣୀ ।

| | |
|---|---|
| ୧. ଚିନ୍ତାମଣି ଆଚାର୍ଯ୍ୟ | କଟକ ପ୍ୟାରିମୋହନ ଏକାଡେମୀ |
| ୨. ନିଶାରଞ୍ଜନ ଭଟ୍ଟାଚାର୍ଯ୍ୟ | ଭଦ୍ରଖ |
| ୩. ଦୁର୍ଗାଚରଣ ଦାସ | ରେଃ.କଃ. ସ୍କୁଲ |
| ୪. ଗୁରୁପ୍ରସାଦ ଦାସ | ବାଲେଶ୍ୱରଜିଲା ସ୍କୁଲ |
| ୫. ପୀତାମ୍ବରଚନ୍ଦ୍ର ଦେ | ,, |
| ୬. ସୁରେଶଚନ୍ଦ୍ର ଗୁପ୍ତ | କଟକ ଏକାଡେମୀ |
| ୭. ଘନଶ୍ୟାମ ମହାନ୍ତି | ବାଲେଶ୍ୱରଜିଲା ସ୍କୁଲ |
| ୮.ଦାମୋଦର ମିଶ୍ର | ରେଃ କଃ ସ୍କୁଲ |
| ୯. ମୋଫିଜୁଦ୍ଦିନ ମହମ୍ମଦ | ରେଃ କଃ ସ୍କୁଲ. |
| ୧୦. ପୁତ୍‌ସାଭି ସୁନ୍ଦାରାମ | ବାହାରଛାତ୍ର |
| ୧୧. ସଦାଶିବ ରଥ | ପୁରୀ ଜିଲାସ୍କୁଲ |
| ୧୨. ଗୌରପଦ ମିତ୍ର | ,, |
| ୧୩. ମହେଶଚନ୍ଦ୍ର ରାୟ | ,, |
| ୧୪. ଅତୀନ୍ଦ୍ର ନାଥ ସେନ | ,, |
| ୧୫. ଜଗନ୍ନାଥ ତ୍ରିପାଠୀ | ରେଃ କଃ ସ୍କୁଲ |

୨ୟ ଶ୍ରେଣୀ।

| | |
|---|---|
| ୧୬. ବାହାଦୁର ଲାଲସାହା | ବାଲେଶ୍ୱର ଖ୍ରୀଷ୍ଟିୟାନସ୍କୁଲ |
| ୧୭. ମହମ୍ମଦ ଅବଦୁଲା | ରେଃ କଃ ସ୍କୁଲ |

| | |
|---|---|
| ୧୮. ବାମନ କାନୁନଗୋ | ରେଃ କଃ ସ୍କୁଲ |
| ୧୯.ଭାଗବତ ପଟେଲ | ,, |
| ୨୦. ଲଳିତମୋହନ ଚଟ୍ଟୋପାଧ୍ୟାୟ | ବାଲେଶ୍ୱର ଜିଲ୍ଲା |
| ୨୧. ଗଗନଚନ୍ଦ୍ର ଦାସ | କଟକ ମିସନ |
| ୨୨. ପ୍ରବୋଧଚନ୍ଦ୍ର ଦାସ | ,, |
| ୨୩. ହରିପ୍ରସାଦ ଦାସ | ବାଲେଶ୍ୱର ଜିଲ୍ଲା |
| ୨୪. ମଧୁସୂଦନ ମହାପାତ୍ର | ,, |
| ୨୫. ମିର୍ଜା କରିମ ବକସ | ,, |
| ୨୬. ମହମ୍ମଦ ଇସୁଫ ଖାଁ | ,, |
| ୨୭. ସୁଦର୍ଶନ ଦାସ | ରେଃ କଃ ସ୍କୁଲ |
| ୨୮.ଉଦୟନାଥ ଦାସ | ,, |
| ୨୯.ଗୋପାଳ ଛି | ,, |
| ୩୦. ହାରିନ୍ ଅହମ୍ମଦ | ,, |
| ୩୧. ହରିମୋହନ ପାଳିତ | ,, |
| ୩୨. ହରିସିଂହ ଠାକୁର | କଟକ ମିସନ |
| ୩୩. ଏ ଯେମ୍‌ସ | ,, |
| ୩୪. ଶରତ୍‌ଚନ୍ଦ୍ର ପାଲ | ,, |
| ୩୫. ସୟଦ୍ ରେଜାକ ରସୁଲ | ରେଃ କଃ ସ୍କୁଲ |
| ୩୬. ମାଧବାନନ୍ଦ କାବ୍ୟତୀର୍ଥ | ଯାଜପୁର ସ୍କୁଲ |
| ୩୭.ଗଣେଶମହାଦେଓ ବୁବୁକୁଅର | ବାହାର ଛାତ୍ର |
| ୩୮. ବାଳକୃଷ୍ଣ ମହାନ୍ତି | ବାହାର ଛାତ୍ର |
| ୩୯. ନରସିଂହ ମିଶ୍ର | ,, |
| ୪୦. ଭାଗବତ ପଟ୍ଟନାୟକ | ,, |
| ୪୧. ହୃଷୀକେଶ ମିଶ୍ର | କଟକ ଏକାଡେମୀ |
| ୪୨. ବ୍ରଜବନ୍ଧୁ ନନ୍ଦ | ,, |
| ୪୩. ଈଶ୍ୱରଚନ୍ଦ୍ର ମିତ୍ର | ଲକ୍ଷ୍ମଣନାଥ ସ୍କୁଲ |
| ୪୪.ଶରତଚନ୍ଦ୍ର ନାଗ | ,, |
| ୪୫.ସୟଦ ସଖାଉ ଏତଅଲି | ରେଃ କଃ ସ୍କୁଲ |
| ୪୬. ,, ଉଆସକ୍ ଅଲି | ,, |
| ୪୭. ନାରାୟଣ ମିଶ୍ର | ପୁରୀ ଜିଲା ସ୍କୁଲ |
| **୩ୟ ଶ୍ରେଣୀ ।** | |
| ୪୮.ଏତାଏତ ଅଲି | ରେଃ କଃ ସ୍କୁଲ |
| ୪୯. ବୀରେନ୍ଦ୍ର କିଶୋର ଦାସ | ,, |
| ୫୦. ଈଶ୍ୱରଶଶୀ ବନ୍ଦ୍ୟୋପାଧ୍ୟାୟ | ପୁରୀ ଜିଲା ସ୍କୁଲ |

| | |
|---|---|
| ୫୧.ପ୍ରସନ୍ନଚନ୍ଦ୍ର ବେହେରା | କଟକ ମିସନ |
| ୫୨.ଯେ, ଦାସ | ,, |
| ୫୩.କୃପାସିନ୍ଧୁ ରାଓ | ,, |
| ୫୪.ନୀରଦନାଥ ପାଲ | ,, |
| ୫୫. ରାସବିହାରୀ ପଟ୍ଟନାୟକ | ,, |
| ୫୬.ଯେ, ରଥ | ,, |
| ୫୭. ମଦନମୋହନ ସାହୁ | ,, |
| ୫୮. କୃଷ୍ଣପ୍ରସାଦ ଦାସ | ଯାଜପୁର ସ୍କୁଲ |
| ୫୯.ବଂଶୀଧର ମହାନ୍ତି | ,, |
| ୬୦.ଲୋକନାଥ ଦାସ | କେନ୍ଦ୍ରାପଡ଼ା ସ୍କୁଲ |
| ୬୧.ଚିନ୍ତାମଣି ମହାନ୍ତି | ,, |
| ୬୨.ରାଧାକାନ୍ତ କାନୁନ୍‌ଗୋ | ,, |
| ୬୩.ବିଘ୍ନେଶ୍ୱର ଚଟ୍ଟୋପାଧ୍ୟାୟ | ,, |
| ୬୪.ନରସିଂହଚରଣ ଦାସ | କଟକ ଏକାଡେମୀ |
| ୬୫.କାମରୁଲ ରହେମାନ | ରେଃ କଃ ସ୍କୁଲ |
| ୬୬.ରାଜେନ୍ଦ୍ର ମହାପାତ୍ର | ,, |
| ୬୭.ଋରୁଚନ୍ଦ୍ର ରାୟ ଚୌଧୁରୀ | ,, |
| ୬୮.ବନମାଳୀ ତ୍ରିପାଠୀ | ,, |
| ୬୯.ଲାଲା ହରିପ୍ରସାଦ ଋନ୍ଦ | ଢେଙ୍କାନାଳ |
| ୭୦.କେଶବଚନ୍ଦ୍ର ମିଶ୍ର | ଢେଙ୍କାନାଳ |
| ୭୧.ଶ୍ୟାମସୁନ୍ଦର ମହାନ୍ତି | ଭଦ୍ରଖ |
| ୭୨.ଗୟାପ୍ରସାଦ ରାୟ | ,, |
| ୭୩.ଭାଗବତ ପାଣିଗ୍ରାହୀ | ବାହାରଛାତ୍ର |
| ୭୪.ଦ୍ୱିଜେନ୍ଦ୍ରନାଥ ରାୟ | ଲକ୍ଷ୍ମଣନାଥ |
| ୭୫.ରଜନୀକାନ୍ତ ସିଂହ | ମୟୂରଭଞ୍ଜ |
| ୭୬.ରାମକୃଷ୍ଣ ମିଶ୍ର | ,, |
| ୭୭.ଦଉହରି ମିଶ୍ର | ଯାଜପୁର |

ସମ୍ବଲପୁର ସ୍କୁଲରୁ ନିମ୍ନଲିଖିତ ଛାତ୍ରମାନେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

ୃତୀୟ ଶ୍ରେଣୀ

| | |
|---|---|
| ୧. ରାମଚନ୍ଦ୍ର ମିଶ୍ର | ସମ୍ବଲପୁର ସ୍କୁଲ |
| ୨. ରାମଚନ୍ଦ୍ର ସୀତାରାମ ମହୁରକର | ,, |
| ୩. ଶ୍ୟାମଚରଣ ପାଢୀ | ,, |

*ଭା୩୫ଗ,ସଂ୨୦ଖ୍ୟା, ୧୯/୫/୧୯୦୦*

## ପ୍ରେରିତପତ୍ର
## [ବାର୍ଷିକ ସାହିତ୍ୟ ସଭା]

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ
ମହାଶୟ ସମୀପେଷୁ

ମହାଶୟ !

ନିମ୍ନୋକ୍ତ ବିଷୟଟି ପତ୍ରିକାସ୍ଥ କରି ବାଧିତ କରିବା ହେବେ ।

ଅଦ୍ୟ "କିଶୋରଚନ୍ଦ୍ର ଉତ୍କଳ ସାହିତ୍ୟ ସମାଲୋଚନା" ସମାଜର ପଞ୍ଚମ ବର୍ଷର ବାର୍ଷିକ ଅଧିବେଶନ ରାଜବାଟିଠାରେ ହୋଇଥିଲା । ସଭାର ବିଶାଳ ପଟ୍ଟଗୃହଟି ଉତ୍ତମରୂପେ ସୁସଜ୍ଜିତ ଓ ନାନା ବର୍ଣ୍ଣର ଆଲୋକଦ୍ୱାରା ସୁରଞ୍ଜିତ ହୋଇଥିଲା ଜିଲ୍ଲାର ମେନେଜର; ଅନଗୁଳ ପୋଲୀସ ଇନ୍‌ସ୍ପେକ୍‌ଟର ସହିତ ଜ ୫୫ଣ ସଭ୍ୟ ଉପସ୍ଥିତ ଥିଲେ । ସଭାପତି ମାନ୍ୟବର ରାଜା ମହୋଦୟଙ୍କ ଆଦେଶ ମତେ ସମ୍ପାଦକ ଯେଉଁ ସୁଦୀର୍ଘ ବାର୍ଷିକ ବିବରଣୀ ପାଠ କରିଥିଲେ ତହିଁର ଅଭିପ୍ରାୟ ଏହି ଯେ ସାହିତ୍ୟାନୁରାଗୀ ମାନ୍ୟବର ତାଳଚେରାଧିନାଥଙ୍କର ମାନସୋପୂର୍ଣ୍ଣ ଅକୃତ୍ରିମ ଶ୍ରଧା ଓ ଯତ୍ନ ପ୍ରଯୁକ୍ତ ସଭା ବ୬ର୍ଷ ହେଲା ନିୟମିତ ପରିଚାଳିତ ହୋଇ ଯଥା ସମ୍ଭବ ମାତୃଭୂମିର ସେବାରେ ଅଭିନୀତ ହୋଇଅଛି । ଅଳ୍ପ ବୟସରେ ତାଳଚେର ଭୂପତିଙ୍କର ହୃଦୟରେ ମାତୃଭାଷା ପ୍ରତି ଏତାଦୃଶ ଉତ୍ସାହ ଉପଜାତ ହେବା ମଙ୍ଗଳର ହେତୁ ବୋଲି ଅବଶ୍ୟ ସ୍ୱୀକାର କରିବାକୁ ହେବ । ବର୍ଣ୍ଣିତ ବର୍ଷରେ ସର୍ବ ମୋଟ ଗୋ୪୬ ଟି ଅଧିବେଶନ ହୋଇ ଥିଲା । ପ୍ରତ୍ୟେକ ଅଧିବେଶନରେ ହାରାହାରି ଜ ୨ ୯ଣ ସଭ୍ୟ ଉପସ୍ଥିତ ହୋଇଥିଲେ । ସଭାପତି ଶ୍ରୀଯୁକ୍ତ ନରପତି ମହୋଦୟ ମୋଫସଲ ଭ୍ରମଣ ଅଥବା ସୁଖ ହେତୁ କେବଳ ଗୋ ୬ ଟି ଅଧିବେଶନ ଛଡ଼ା ଆଉ ସମସ୍ତ ଅଧିବେଶନରେ ଯୋଗ ଦେଇଥିଲେ ।

ବର୍ଣ୍ଣିତ ବର୍ଷର ସଂ ୨ ୯ ଖ୍ୟକ ଅଧିବେଶନରେ ସୁବିଖ୍ୟାତ ଓଡିଶ୍ୟାର କମିଶନର ସି. ଆର. ମ୍ୟାରେଣ୍ଡିନ ସାହେବ ବାହାଦୁର ମହାରାଜା ମହୋଦୟଙ୍କ ଅନୁରୋଧ କ୍ରମେ ସଭାପତିର ଆସନ ଗହଣ କରି ସଭାର କାର୍ଯ୍ୟ ପ୍ରଣାଳିରେ ଅତ୍ୟନ୍ତ ପ୍ରସଂଶା ଦାନ କରିଥିଲେ । ଏହା ଅବଶ୍ୟ ଗୌରବର ବିଷୟ ଅଟେ ।

ବର୍ଷ ଶେଷ ସୁଦ୍ଧା ବ୍ରାହ୍ମ ; ଶଶିକଳା; କୁମୁଦିନୀ; କୁନ୍ଦଲତା; କୁମାରୋତ୍ସବ, ବର୍ଷା, ପୁତ୍ର ଶୋକାତୁରା ଜନନୀ, ରସାଳ, ବାକ୍‌ଦେବୀପ୍ରାର୍ଥନା ମେଘଦୂତ; ହରିବଂଶ, ଓଡିୟା ପଦ୍ୟ ଅନୁବାଦ ପ୍ରଭୃତି ଛୋଟ ବଡ଼ ଗୋ୧୩୯ଟି ପଦ୍ୟ ଏବଂ ଗଡ଼ଜାତ ପ୍ରାଚୀନ ଅବସ୍ଥା; ସାହିତ୍ୟ ଉନ୍ନତିର ଉପାୟ; କୃଷି, ବାଣିଜ୍ୟ; ବ୍ୟାୟାମର ଉପକାରିତା; କୀଶୋର ବିଳାସ; ବିମଳା ଉପନ୍ୟାସ ପ୍ରଭୃତି ଛୋଟ ବଡ଼ ଗୋ ୩୩ ଟି ଗଦ୍ୟ ପ୍ରବନ୍ଧ ଏବଂ ନାନା ବିଷୟର ଗୋ ୧୬ ଟି ସଙ୍ଗୀତ ସଭା ପ୍ରାପ୍ତ ହୋଇଅଛି ।

ବାମଣ୍ଡାର ସୁଯୋଗ୍ୟ ରାଜକୁମାର ଗୁଣଗ୍ରାହୀ ଶ୍ରୀମାନ୍ ସଚ୍ଚିଦାନନ୍ଦ ଦେବଙ୍କ ପ୍ରଣୀତ "ଅଳଙ୍କାର ସାର"; ଉତ୍କଳର ସୁଲେଖକ ବାବୁ ନନ୍ଦକିଶୋର ବଳ ବି, ଏ ଙ୍କ କୃତ 'ପଲ୍ଲିଚିତ୍ର' ; ସାହିତ୍ୟାନୁରାଗୀ ବାବୁ ନୀଳମଣିଚନ୍ଦ୍ର ଦେଙ୍କ କୃତ ବାବୁ ଦୁର୍ଗାଚରଣ ରାୟଙ୍କ ପ୍ରକାଶିତ "କପିଳାସ ଦର୍ଶନ" ନାମକ ପୁସ୍ତକ ସଭା ଉପହାର ପାଇ ରଚକମାନଙ୍କ ନିକଟ କୃତଜ୍ଞତା ସ୍ୱୀକାର କରି ଅଛି ।

ବାର୍ଷିକ ବିବରଣୀ ପାଠ ଉତ୍ତାରୁ ସଭାର ଜନ୍ମୋତ୍ସବ ଉପଲକ୍ଷେ ନାନା ପ୍ରକାର ଗଦ୍ୟ, ପଦ୍ୟ, ସଙ୍ଗୀତ ରଚକମାନଙ୍କଦ୍ୱାରା ପଠିତ ହୋଇ ସଭାପତି ଏବଂ ଉପସ୍ଥିତ ସଭ୍ୟମଣ୍ଡଳିଙ୍କର ପ୍ରୀତି ସମ୍ପାଦନ କରିଥିଲା । ସର୍ବ ଶେଷରେ ମାନ୍ୟବର ସଭାପତି ରାଜା ମହୋଦୟ ଯେଉଁ ଉତ୍ସାହପ୍ରଦ, ହୃଦୟଗ୍ରାହୀ ବକ୍ତୃତା ପ୍ରଦାନ କରି ଥିଲେ ତହିଁର ସାର ଅଭିପ୍ରାୟ ଏ ନିମ୍ନେ ପ୍ରକଟିତ ହେଲା ।

"ଏହି ସମାଜ ମାତୃଭାଷାର ଉନ୍ନତି କଳ୍ପେ ସ୍ଥାପିତ ହୋଇ ଆଜକୁ ବ୬ର୍ଷ ହେଲା ସାହିତ୍ୟ କ୍ଷେତ୍ରରେ ଯେ ଯେ କାର୍ଯ୍ୟ କରିଅଛି ତାହା ଆଶାନୁରୂପ ସନ୍ତୋଷ ଜନକ ନ ହେଲେହେଁ ନିତାନ୍ତ ଅନୁନ୍ନତ ବୋଲି କୁହାଯାଇ ନ ପାରେ ।

ସଭା ସାହିତ୍ୟ ବିଷୟ ନାନା କାର୍ଯ୍ୟର ଆଲୋଚନା ଭାର ଗ୍ରହଣ କରି କୌଣସି ସୁମହତ୍ କାର୍ଯ୍ୟ କରି ପାରି ନାହିଁ ଆଶା କରୁଁ ଆଗାମୀ ବର୍ଷକୁ ଏହି ଅଭାବ ନିରାକରଣ ନିମନ୍ତେ ଯଥାସାଧ ଚେଷ୍ଟା କରିବାକୁ ହେବ ।

ଗତବର୍ଷ ଉପସ୍ଥିତ ସଭ୍ୟ ସଂଖ୍ୟା ପ୍ରତି ଦୃଷ୍ଟିପାତ କଲେ ଯଣାଯାଏ ଯେ ବର୍ଣ୍ଣିତ ବର୍ଷରେ ସଭା ପ୍ରତି ସଭ୍ୟମାନଙ୍କର ଶ୍ରଦ୍ଧା କ୍ରମଶଃ ପରିବର୍ଦ୍ଧିତ ହେଉଅଛି ଏହା ଅତ୍ୟନ୍ତ ଆନନ୍ଦର ବିଷୟ ଅଟେ , ଗତବର୍ଷର ବାକୀ ଏବଂ ବର୍ଣ୍ଣିତବର୍ଷର ଚାନ୍ଦା ପ୍ରାୟ ସମସ୍ତ ଅସୁଲ ହୋଇ ଯାଇଅଛି । ଯାହା ସାମାନ୍ୟ ମାତ୍ର ଅସୁଲ ହେବାକୁ ବାକୀ ଅଛି ତାହା ଅଳ୍ପ ସମୟ ମଧ୍ୟରେ ଅସୁଲ ହେବାର ସମ୍ପୂର୍ଣ୍ଣ ଆଶା କରାଯାଏ ସଭ୍ୟମାନଙ୍କର ଏହିପରି ଚାନ୍ଦା ଅସୁଲ ଦେବାର ଆଗ୍ରହରୁ ସଭା ପ୍ରତି ସେମାନଙ୍କର ବିଶେଷ ଶ୍ରଦ୍ଧା ଥିବାର ପ୍ରକାଶ ପାଉଅଛି ଏହା ଦେଖି ଅତ୍ୟନ୍ତ ଆନନ୍ଦିତ ଅଛୁଁ ।

ସଭା ଲାଇବ୍ରେରିରେ ଅନେକ ଗୁଡିଏ ସାହିତ୍ୟ ବିଷୟକ ପୁସ୍ତକ ସଂଗୃହୀତ ହୋଇଅଛି । ବାକୀ କେତେକ ସାହିତ୍ୟ ପୁସ୍ତକ ସଂଗ୍ରହ ହେବାର ଆବଶ୍ୟକ ଥିବାରୁ ତାହା ଯେତେ ଶୀଘ୍ର ହେବାକୁ ପାରେ ଅଣାଯିବ । ସଭା, ଜଗତ୍‌ବିଖ୍ୟାତ ଉତ୍କଳଦୀପିକା, ହିତୈଷିଣୀ ଉତ୍କଳ ସାହିତ୍ୟ ଏବଂ ଆଲୋଚନା ଯେ କି ନୂତନ ବାମଣ୍ଡା ସାହିତ୍ୟ ସଭାରୁ ବାହାରିଅଛି ତହିଁର ନିୟମିତ ଗ୍ରାହକ ଅଟେ । ଓଡିୟା ସାହିତ୍ୟ ବିଷୟକ ସମସ୍ତ ପତ୍ରିକାର ସଭା ଗ୍ରାହକ ହେବା ଏକାନ୍ତ ବାଞ୍ଛନୀୟ । ଗତବର୍ଷଠାରୁ ବର୍ଣ୍ଣିତବର୍ଷର ରଚକମାନଙ୍କ ରଚନା ସବୁ ଏକପ୍ରକାର ଆଶାପ୍ରଦ ଓ ପ୍ରୀତିକର ଅଟେ ସେମାନଙ୍କ ମଧ୍ୟରୁ ପଣ୍ଡିତ ଦାଶରଥି ବିଦ୍ୟାରତ୍ନଙ୍କ ସଂସ୍କୃତ ମେଘଦୂତର ମନ୍ଦାକ୍ରାନ୍ତ ବୃତ୍ତରେ ଉତ୍କଳ ଅନୁବାଦ ଏବଂ ହରିବଂଶର ଉତ୍କଳ ପଦ୍ୟ । ରାମଚନ୍ଦ୍ର ରଥ କୃତ ବ୍ରାହ୍ମି, ମାତୃଶୋକ, କୁନ୍ଦଲତା,ଭାଗୀରଥି ମିଶ୍ର କୃତ ବିମଳା ଉପନ୍ୟାସ,ଘନଶ୍ୟାମ ମିଶ୍ରଙ୍କ କୃତ ଶଶିକଳା କବିତା ଉତ୍ତମ ହୋଇଥିବାରୁ ସେମାନଙ୍କୁ ଧନ୍ୟବାଦ ଦେଲୁଁ ବିଶେଷତଃ ବିଦ୍ୟାରତ୍ନଙ୍କ ଉତ୍କଳ ମେଘଦୂତ ଓ ହରିବଂଶ ବିଶେଷ ପ୍ରଶଂସାର୍ହ ଏବଂ ନିତ୍ୟାନନ୍ଦ ଦାସ, କପିଳେଶ୍ୱର ଦାସ, ଘନଶ୍ୟାମ ମିଶ୍ର ପ୍ରଭୃତି ରଚକମାନଙ୍କୁ ସେମାନଙ୍କ କ୍ଷୁଦ୍ର କ୍ଷୁଦ୍ର କବିତା ଶକାଶ ଧନ୍ୟବାଦ ଦେଇ ଆଗାମୀବର୍ଷ ସକାଶେ ବିଶେଷ ଆଶା କରୁଁ ଅବଶେଷରେ ସମସ୍ତ ସଭ୍ୟମାନେ ଆଗ୍ରହ ସହିତ ଅଦ୍ୟ ସଭାରେ ଯୋଗଦାନ ଦେଇଥିବାରୁ ସେମାନଙ୍କୁ ଧନ୍ୟବାଦ ଦେଇ ସଭା ବନ୍ଦ ହେଉ" ।

ମାନ୍ୟବର ସଭାପତି ମହୋଦୟଙ୍କର ଉପରଲିଖିତ ବକ୍ତୃତା ଶେଷ ହେଲାରୁ ପ୍ରଶଂସିତ ମେନେଜର ମହୋଦୟ ଭକ୍ତି ଓ ଆନନ୍ଦ ସହକାରେ ଗୋଟିଏ ସୁବାସିତ କୁସୁମମାଳ ସଭାପତି ମହୋଦୟଙ୍କ ଗଳାରେ ଅର୍ପଣ କରିଥିଲେ । ସମସ୍ତ ଉପସ୍ଥିତ ସଭ୍ୟମାନଙ୍କୁ ପାନ ଅତର ପ୍ରଭୃତି ଦିଆଗଲାପର ଅଦ୍ୟ ବାର୍ଷିକ ସଭା ନିମନ୍ତେ ସଭାପତି ମହୋଦୟଙ୍କୁ ଧନ୍ୟବାଦ ଦେଇ କରତାଳି ଦାନ ପୂର୍ବକ ସଭାଭଙ୍ଗ ହେଲା ।

ବଶମ୍ବଦ

ତାଳଚେର — ଶ୍ରୀ ଭାଗୀରଥି ମିଶ୍ର

ତା୨୫।୫।୧୯୦୦ — ସଃ. ସମ୍ପାଦକ

*ଭାଗ୩୫ଗ, ସଂ୨୩ଖ୍ୟା, ୯।୬।୧୯୦୦*

## ବିଜ୍ଞାପନ ।

## ଗୀତ ଗିରୀଶ ।

ହରପାର୍ବତୀଙ୍କ କେଳିବିନୋଦ ଭକ୍ତିଗ୍ରନ୍ଥ । ଏଥିର ବିଶେଷ ପରିଚୟ ଦେବା ନିଷ୍ପ୍ରୟୋଜନ । 'ଗୀତ ଗୋବିନ୍ଦ' ଯେପରି ରାଧାକୃଷ୍ଣ ରସ କେଳି ବିଷୟ, ଯେତେ ସର୍ଗ ଯେତେ ଗାଥା ଯେପରି ରାଗରାଗିଣୀ ତଦ୍ରୂପ ହର ପାର୍ବତୀଙ୍କ ସମ୍ବନ୍ଧରେ ଏ ମହାକାବ୍ୟ ।

ମୂଲ୍ୟ ଅତିସୁଲଭ ଟ ୦/୬ ମାତ୍ର କଟକ ପ୍ରିଣ୍ଟିଂ କୋମ୍ପାନିଙ୍କ ପୁସ୍ତକ ଦୋକାନରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି ।

*ଭାଗ୩୫ଗ, ସଂ୨୩ଖ୍ୟା, ୯।୬।୧୯୦୦*

## କପିଳାସ ଦର୍ଶନ ।

ଶ୍ରୀ ନୀଳମଣି ଚାନ୍ଦ ଦେ ବି, ଏ, ପ୍ରଣୀତ । ନବଉତ୍କଳର କବିଚୂଡ଼ାମଣି ରାୟ ଶ୍ରୀ ରାଧାନାଥ ରାୟ ବାହାଦୁରଙ୍କଦ୍ୱାରା ବିଶେଷରୂପେ ପ୍ରଶଂସିତ ।

ମୂଲ୍ୟ ଏକଅଣା ମାତ୍ର ।

ଉତ୍କଳ ଭୂମିର ପରମପବିତ୍ର ସାକ୍ଷାତ୍ କୈଳାସ ଧାମର ନିତ୍ୟ ଅଭିନବ ଶୋଭା ହୃଦୟଙ୍ଗମ କରିବାକୁ ଯେଉଁମାନେ ପ୍ରୟାସୀ ସେମାନଙ୍କର ପ୍ରତ୍ୟେକଙ୍କଠାରେ ଉପରୋକ୍ତ ପୁସ୍ତକର ଏକ ଏକ ଖଣ୍ଡ ଥିବା ଅତୀବ ବାଞ୍ଛନୀୟ । ପୁସ୍ତକ କେବଳ ଗ୍ରନ୍ଥକର୍ତ୍ତାଙ୍କର ତୁଳସୀପୁର - କଟକ ଠିକଣାରେ କିମ୍ବା କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ପୁସ୍ତକାଳୟରେ ପ୍ରାପ୍ତବ୍ୟ ।

ଶ୍ରୀ ଦୁର୍ଗାଚରଣ ରାୟ ।

*ଭାଗ୫୮, ସଂ୨୩ଖ୍ୟା, ୯।୬।୧୯୦୦*

## [ଭାଷା ସମ୍ବନ୍ଧରେ ଆଦେଶ]

ଓଡ଼ିଶା ବିଭାଗର କମିଶନର ସାହେବ ଦରଖାସ୍ତର ଅକ୍ଷର ଏବଂ ଭାଷା ସମ୍ବନ୍ଧରେ ଯେଉ ନୂତନ ଆଦେଶ ଦେଇଅଛନ୍ତି ସ୍ଥାନାନ୍ତରରେ ପ୍ରକାଶିତ ବିଜ୍ଞାପନରୁ ପାଠକମାନେ ଅବଗତ ହେବେ । ଏକା କମିଶନରି କାହିଁକି ସକଳ କଚେରୀରେ ଦାଖଲ ହେବା ଅଧିକାଂଶ ଦରଖାସ୍ତ ଦେଖିଲେ ସ୍ପଷ୍ଟ ଜଣା ଯାଏ ଯେମନ୍ତ ଏ ପ୍ରଦେଶରେ ଶିକ୍ଷାର ଆଦର ଆଦୌ ନାହିଁ ଅଥବା ବିଦ୍ୟାଳୟର ଶିକ୍ଷା ସହିତ କଚେରୀର କାର୍ଯ୍ୟର କୌଣସି ସମ୍ପର୍କ ନାହିଁ । ସେ ପ୍ରକାର ଦରଖାସ୍ତ ପାଠରେ ସରକାରି କର୍ମଚାରିଙ୍କର ବୃଥା ସମୟ ନଷ୍ଟ ସୁତରାଂ ସାଧାରଣ କ୍ଷତି ହେଉଅଛି ଏବଂ ବେଳେ ବେଳେ ଲେଖା ଦୋଷରୁ ପ୍ରକୃତ ମର୍ମ ବୁଝା ନ ଯିବାରୁ ଦରଖାସ୍ତ ଦାତାର କ୍ଷତି ହେଉଅଛି । ଅତଏବ ସାହେବ ମହୋଦୟଙ୍କର ଆଦେଶ ସମ୍ପୂର୍ଣ୍ଣରୂପେ ନ୍ୟାୟ ସଙ୍ଗତ ଏବଂ ସକଳ କଚେରୀରେ ତାହା ମାନ୍ୟ ହେବା ବାଞ୍ଛନୀୟ । ଇଂରାଜୀ ଲେଖକଙ୍କର ଅକ୍ଷର ସୁନ୍ଦର ଏବଂ ଭାଷା ଶୁଦ୍ଧ ନ ହେଲେ ସରକାରୀ କାର୍ଯ୍ୟ ପାଇବା ସୁକଠିନ ମାତ୍ର ଓଡ଼ିଆଭାଷା ବେଳକୁ ସେ ବିଚାର କିଛି ହୁଅଇ ନାହିଁ ଏହା ବଡ଼ ଦୁଃଖର ବିଷୟ ଅଟେ ଏବଂ ସେହି କାରଣରୁ ଭାଷା ବିଦ୍ୟାଳୟମାନଙ୍କରେ ଅବନତି ଘଟୁଅଛି । ଓଡ଼ିୟା ଦରଖାସ୍ତ ହାକିମ ମାନେ ନିଜେ ପଢ଼ନ୍ତି ନାହିଁ ବୋଲି ତହିଁର କଦର୍ଯ୍ୟ ଅକ୍ଷର ଓ ଭାଷା ସର୍ବଦା ସେମାନଙ୍କର ଦୃଷ୍ଟିରେ ପଡେ ନାହିଁ । ସିରସ୍ତାଦାର ଓ ପେଷକାରମାନେ ସେ ସବୁ ଦେଖନ୍ତି ଏବଂ ସେମାନେ ଯେବେ ସାହେବ ମହୋଦୟଙ୍କର ଆଦେଶ ଦୃଢ଼ରୂପେ ପ୍ରତିପାଳନ କରିବେ ତେବେ ଅଳ୍ପ ସମୟରେ ଶିକ୍ଷିତ ଲୋକଙ୍କର ଆଦର ଏବଂ ବାଞ୍ଛିତ ଉନ୍ନତି ଲାଭ ହେବ ।

*ଭାଗ୫୮, ସଂ୨୭ଖ୍ୟା, ୭।୭।୧୯୦୦*

## [ ସ୍ତ୍ରୀ ଶିକ୍ଷା]

ମହାଶୟ ।

ନିମ୍ନଲିଖିତ ପଁକ୍ତିଚୟକୁ ଆପଣଙ୍କ ପତ୍ରିକାରେ ପ୍ରକାଶ କରି ଅନୁଗୃହୀତ କରିବେ ।

ସ୍ତ୍ରୀ-ଶିକ୍ଷା ବିସ୍ତାର ପକ୍ଷେ ଓଡିଶାରେ କୌଣସି ଚେଷ୍ଟା ହେଉ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡିଶାର ସ୍ଥାନେ ସ୍ଥାନେ ଯେଉଁ କେତୋଟି ପ୍ରାଥମିକ ଓ ମଧ୍ୟମ ଶ୍ରେଣୀର ବାଳିକା ବିଦ୍ୟାଳୟ ଅଛି ସେଥି ମଧ୍ୟରେ "କଟକ ରାଭେନ୍ସା ହିନ୍ଦୁ ବାଳିକା ବିଦ୍ୟାଳୟ" ଟି ସକଳ ବିଷୟରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଅଛି । ମାତ୍ର ଏହାର ଆର୍ଥିକ ଅବସ୍ଥା ମଧ ଭଲ ନୁହେ । ଏହା ଯେ କଟକ ବାସୀ ବିଦ୍ୟୋତ୍ସାହୀ ଭଦ୍ର ବ୍ୟକ୍ତିମାନଙ୍କ ପକ୍ଷରେ ନିନ୍ଦାର କଥା - ସେଥିରେ ଆଉ ସନ୍ଦେହ କଣ ଅଛି ? ସେ ଯାହା ହେଉ , ସକଳ ବିଷୟରେ ନିରୁତ୍ସାହୀ ଉତ୍କଳୀୟମାନଙ୍କ ମଧ୍ୟରେ କାହାରିକୁ କୌଣସି ବିଷୟରେ ଟିକିଏ ଉତ୍ସାହୀ ହେବାକୁ ଦେଖିଲେ ପ୍ରାଣ ପୁଲକିତ ହୋଇଉଠେ ।

ଉତ୍କଳ ପରିଚିତ ଏବଂ ବର୍ତ୍ତମାନ ପୁଣ୍ୟଲୋକର ଯାତ୍ରୀ କଟକ ଜିଲାନ୍ତର୍ଗତ ମହାଙ୍ଗା ନିବାସୀ ଶ୍ରୀଯୁକ୍ତ ଜଗନ୍ମୋହନ ଲାଲ ମହାଶୟଙ୍କର ନାନା ବିଷୟରେ ଯୁବା-ଜନୋଚିତ ଉତ୍ସାହ ଓ ଉଦ୍ୟମଶୀଳତା ଯେ ଅନେକଙ୍କ ପକ୍ଷରେ ଆଦର୍ଶସ୍ଥାନୀୟ ତାହା ବୋଲିବା ବାହୁଲ୍ୟମାତ୍ର । ଆଜି ଦୀପିକାର ପାଠକମାନଙ୍କୁ ସେ ବିଷୟରେ ଗୋଟିଏ ଉଦାହରଣ ଦେବୁ କେତେକ ବର୍ଷ ପୂର୍ବେ ଲାଲା ମହୋଦୟଙ୍କର ଗୋଟିଏ କନ୍ୟା ଶ୍ରୀଯୁକ୍ତା ଶ୍ରୀମତୀ ବିବୀ ଏହି ବିଦ୍ୟାଳୟର ଗୋଟିଏ ଛାତ୍ରୀ ଥିଲେ । ଜ୍ଞାନାର୍ଜନ ବିଷୟରେ ତାଙ୍କର ସ୍ପୃହା ଅତ୍ୟନ୍ତ ବଳବତୀ ଥିଲା । ମାତ୍ର ବିବାହ ବନ୍ଧନ ହେତୁରୁ ତାହାଙ୍କୁ ଅକାଳେ ବିଦ୍ୟାଳୟ ପରିତ୍ୟାଗ କରିବାକୁ ହୋଇଥିଲା । କେବଳ କି ବିଦ୍ୟାଳୟ ପରିତ୍ୟାଗ ? ବିବାହର ଅଳ୍ପ ସମୟ ପରେ ସେ ବୃଦ୍ଧ ଲାଲା ମହୋଦୟଙ୍କୁ ଗଭୀର ଶୋକସାଗରରେ ମଗ୍ନ କରି ଇହସଂସାର ମଧ୍ୟ ପରିତ୍ୟାଗ କରି ଚାଲିଗଲେ । ଲାଲା ସାହେବ ଏତତ୍ ଗଭୀର ଶୋକରେ ମଗ୍ନ ଥିଲେ ମଧ୍ୟ ପ୍ରାଣପ୍ରିୟା ଶ୍ରୀମତୀର ଆତ୍ମାର କଲ୍ୟାଣୋଦ୍ଦେଶ୍ୟରେ ଏହି ବିଦ୍ୟାଳୟର ଛାତ୍ରୀମାନଙ୍କୁ ପୁରସ୍କାର ଦେବା ନିମନ୍ତେ ତିନିଟଙ୍କା ପଠାଇ ଦେଇ ସ୍ତ୍ରୀ ଶିକ୍ଷା ବିସ୍ତାର ପକ୍ଷରେ ଆପଣାର ଗଭୀର ଅନୁରାଗ ଥିବାର ପ୍ରକାଶ କରିଅଛନ୍ତି । ଏହି ବିଦ୍ୟାଳୟର କର୍ତ୍ତୃପକ୍ଷମାନେ ଅତ୍ୟନ୍ତ କୃତଜ୍ଞ ଚିତ୍ତରେ ଉକ୍ତ ଦାନ ଗ୍ରହଣ କରି ସାଧାରଣରେ ଦାତାଙ୍କର ସର୍ବବିଧ ମଙ୍ଗଳ କାମନା କରୁଅଛନ୍ତି । ଦାତାଙ୍କ ଅଭିପ୍ରାୟମତେ ଏହି ଟଙ୍କାରେ ପୁସ୍ତକ କ୍ରୟ କରାଯାଇ ଆଗାମୀ ବିଭାଗୀୟ ପରୀକ୍ଷାରେ ଏହି ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ଛାତ୍ରୀମାନଙ୍କୁ "ଶ୍ରୀମତୀ ପୁରସ୍କାର" ନାମରେ ବିତରିତ ହେବ । ଇତି ।

ବଶମ୍ବଦ

ଶ୍ରୀ କୃଷ୍ଣପ୍ରସାଦ ଚୌଧୁରୀ
ପ୍ରଧାନ ଶିକ୍ଷକ
କଟକ ରାଃ ହିଃ ବାଳିକା ବିଦ୍ୟାଳୟ

କଟକ
୨୧।୮।୧୯୦୦

*ଭାଗ ୫୦, ସଂ ୩୪ଖ୍ୟା, ୨୫।୮।୧୯୦୦*

## [କଟକ ସର୍ଭେ ସ୍କୁଲର ପରୀକ୍ଷା ଫଳ]

ସନ ୧୮୯୯-୧୯୦୦ ମସିହାର ପରୀକ୍ଷାରେ କଟକ ସର୍ଭେ ସ୍କୁଲରୁ ନିମ୍ନଲିଖିତ ଛାତ୍ରମାନେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

**୧ମ ବିଭାଗ ।**

କ୍ଷିରୋଦନାଥ କରଣ
ଦ୍ୱିଜରାୟ ମୁଖୁର୍ଯି
ରାଜେନ୍ଦ୍ର ନାଥ ଘୋଷ
ଇନ୍ଦ୍ରମଣି ପଟ୍ଟନାୟକ
ହରିପଦ ବାନୁର୍ଯି
ଯାମିନୀକାନ୍ତ ଗୁହ
ଯୋଗେଶ୍ଚନ୍ଦ୍ର ଘୋଷ
ସୁଶୀଳଚନ୍ଦ୍ର ମଯୁମଦାର
ଅକ୍ଷୟକୁମାର ଗୁପ୍ତ
ଗୋଲକବିହାରୀ ଦାସ

**୨ୟ ବିଭାଗ ।**

ଶରଚ୍ଚନ୍ଦ୍ର ଚାଟୁର୍ଯି
ବାଞ୍ଛାନିଧି ମହାନ୍ତି

ସଚୀନ୍ଦ୍ର କୁମାର ବସୁ
ରସିକଚନ୍ଦ୍ର ଦେ ଭୌମିକ
ସଦୟକୃଷ୍ଣ ବସୁ
ରାମଚନ୍ଦ୍ର ମିଶ୍ର
ପୁଳିନବିହାରୀ ଚାଟୁର୍ଯି
ରାସବିହାରୀ ଦାସ
କୁଳମଣି ଦାସ
ନରେନ୍ଦ୍ର ମୁଖୁର୍ଯି
ହରିହର ଦାସ

୩ୟ ବିଭାଗ ।

ଦାମୋଦର ଦାସ
ସାଦତଅଲି ମିଆଁ
ସେଖ ଅବଦୁଲ ହମିଦ ମିଆଁ
ମଜବର ରହମନ ମିଆଁ
ଦାଶରଥି ପଟ୍ଟନାୟକ
ଶରତ୍‌ଚନ୍ଦ୍ର ଚନ୍ଦ୍ର
ଯଦୁମଣି ପାତ୍ର
ଗୋକୁଳାନନ୍ଦ ଦାସ
ଦାମୋଦର ଦାସଗୁପ୍ତ
ସେଖ୍ ଅମିରୁଲ୍ଲା
ବନମାଳୀ ପଣ୍ଡା
ସୟଦ ଅମଜଦ୍‌ଅଲି
କାଶୀନାଥ ସେନାପତି

*ଭା୩୫ଗ, ସଂ୩୧ଖ୍ୟା, ୪।୮।୧୯୦୦*

## ପ୍ରେରିତପତ୍ର ।

## [ଉତ୍କଳ ସାହିତ୍ୟ ]

ପରମ ମାନ୍ୟବର ଶ୍ରୀଳ ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହୋଦୟେଷୁ

ମହାଶୟ !

ଉତ୍କଳ ପ୍ରଭା ଏବଂ ଇନ୍ଦ୍ରଧନୁର ବିଲୟ ପରେ "ଉତ୍କଳ ସାହିତ୍ୟ" ନାମକ ମାସିକ ପତ୍ରିକାର ଆବିର୍ଭାବ ହୋଇଅଛି । କିନ୍ତୁ ଦୁଃଖର ବିଷୟ ଏହି ଯେ ପାଠକମାନଙ୍କର ଉତ୍ସାହ ଅଭାବରୁ ପତ୍ରିକା ଖଣ୍ଡି ବିଲୁପ୍ତ ହୋଇଯିବାର ଭୟ ହୁଏ । ଉତ୍କଳ ସାହିତ୍ୟର ସମ୍ପାଦକ ମହୋଦୟ ଅହିନ୍ଦୁ ବୋଲି କେତେକ ସୁଶିକ୍ଷିତ ଭଦ୍ରଲୋକ ପତ୍ରିକାକୁ ଘୃଣା କରନ୍ତି । ସମ୍ପାଦକ ମଧ୍ୟ ସ୍ୱଧର୍ମ ବିସ୍ତାର ବିଷୟରେ ଅଧୀର ହୋଇ ପଡ଼ୁଅଛନ୍ତି । ଉତ୍କଳ ସାହିତ୍ୟର ଜନ୍ମ କାଳରେ ଅଧିକାଂଶ ହିନ୍ଦୁ ପାଠକ ସ୍ଥିର କରିଥିଲେ ଉତ୍କଳ ସାହିତ୍ୟ ହିନ୍ଦୁଧର୍ମର ନିନ୍ଦାକାରୀ ବ୍ରାହ୍ମଧର୍ମ ପରିପୋଷକ । ଆମ୍ଭମାନଙ୍କ ସୁଯୋଗ୍ୟ ଧର୍ମନିଷ୍ଠ ସମ୍ପାଦକ ଘୋଷଣା କଲେ ଯେ ବିଭିନ୍ନ ରୁଚିର ପ୍ରବନ୍ଧମାନ ସେ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛନ୍ତି । କିନ୍ତୁ ଫଳତଃ ସେପରି ଦେଖାଯାଉ ନାହିଁ । ହୁଏତ ଅଗ୍ରାହ୍ୟ ହେବା ଭୟରେ ହିନ୍ଦୁ ସନ୍ତାନମାନେ ସ୍ୱଧର୍ମ ବିଷୟରେ ଓ

ବ୍ରାହ୍ମଧର୍ମର ନାନା ପ୍ରକାର ଭ୍ରାନ୍ତ ଧାରଣା ସମ୍ବନ୍ଧରେ ସ୍ୱାଧୀନ ମତ ପ୍ରକାଶ କରୁ ନାହାନ୍ତି କିମ୍ବା କରୁଥିଲେ ମଧ୍ୟ ସମ୍ପାଦକ ସେ ସମସ୍ତ ଅଯୁକ୍ତିଯୁକ୍ତ ବୋଲି ଗ୍ରହଣ କରୁନାହାନ୍ତି । କ୍ରମେ କ୍ରମେ ଉତ୍କଳସାହିତ୍ୟରେ ଜାତି ଧର୍ମର ନିନ୍ଦା, ଦେବତାନିନ୍ଦା, ଅବତାରନିନ୍ଦା, ହିନ୍ଦୁସମାଜର ନିନ୍ଦା ପ୍ରଭୃତି ଘୋଷିତ ହେଉଅଛି । ସାହିତ୍ୟପତ୍ରିକାରେ ଧର୍ମ ଚର୍ଚ୍ଚା ନ କଲେ କ'ଣ ଭଲ ହୁଅନ୍ତା ନାହିଁ ? ପର ଧର୍ମର ନିନ୍ଦାଦ୍ୱାରା କଣ ସ୍ୱଧର୍ମର ପ୍ରତିଷ୍ଠା ହୁଏ ? ପତ୍ରିକାଖଣ୍ଡି ସ୍ଥାୟୀ ହେଉ ଆମ୍ଭମାନଙ୍କର ଆନ୍ତରିକ ଇଚ୍ଛା ସମ୍ପାଦକଙ୍କର ମଧ୍ୟ ସେହି ଇଚ୍ଛା । କିନ୍ତୁ ସେହି ଇଚ୍ଛାର ପ୍ରତିକୂଳ ବ୍ୟବହାର ଦେଖିଲେ ଆମ୍ଭ ହୃଦୟ ସଂତପ୍ତ ହୁଏ । ରାଜା ମହାରାଜା ଜମିଦାର ସାଧାରଣ ପାଠକ ସମସ୍ତଙ୍କଠାରୁ ଅଗ୍ରୀମ ମୂଲ୍ୟ ଏବଂ ଚେଦା ସଂଗ୍ରହ କରି ସମ୍ପାଦକେ ଗୋଟିଏ ପ୍ରେସ ଖୋଲିବାକୁ ଯାଉଅଛନ୍ତି । କିନ୍ତୁ ତାହା ପାଠକମାନଙ୍କର ହିତ କାମନାରେ କି ଧର୍ମ ପ୍ରତିଷ୍ଠାର୍ଥ କିପରି ଲୋକମାନଙ୍କର ବିଶ୍ୱାସ ହେବ । ଯାହା ହେଉ ସମ୍ପାଦକଙ୍କୁ ଏବଂ ବ୍ରାହ୍ମ ଧର୍ମରେ ଏପ୍ରେଣ୍ଟିସ୍‌ଥିବା ବ୍ୟକ୍ତିମାନଙ୍କୁ ଆମ୍ଭର ବିନୀତ ପ୍ରାର୍ଥନା ଯେ ଧର୍ମ ଚର୍ଚ୍ଚାରୁ ବିରତ ହୋଇ ନିରୋଳ ସାହିତ୍ୟ ସେବାରେ ଅନୁରକ୍ତ ହେଲେ ଉତ୍କଳର ହିତାକାଂକ୍ଷୀ ବୋଲି ପରିଚିତ ହେବେ । ଇତି ।

ଜଣେ ପାଠକ ।

*ଭାଗ୩୫ଗ, ସଂ୩୫ଖ୍ୟା, ୧/୯/୧୯୦୦*

## [ବାଳିକା ଶିକ୍ଷାପାଇଁ ପ୍ରୋତ୍ସାହନ]

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ ।

ମହାଶୟ !

ବାଳକ ବାଳିକାମାନଙ୍କୁ ପଠନାବସ୍ଥାରେ ନାନାପ୍ରକାର ପୁରସ୍କାର ବିତରଣଦ୍ୱାରା ଉତ୍ସାହିତ କରିବା ବର୍ତ୍ତମାନ ଶିକ୍ଷାନୀତିର ଗୋଟିଏ ପ୍ରଧାନ ଅଙ୍ଗ । ଏଥିନିମନ୍ତେ ଆମ୍ଭମାନଙ୍କର ଦୟାଳୁ ଗବର୍ଣ୍ଣମେଣ୍ଟ ପ୍ରତିବର୍ଷ ଅନେକ ବ୍ୟୟ କରି ଆସୁଥିଲେ । ଗତ କେତେକ ବର୍ଷ ହେଲା ରାଜକୋଷର ଅସ୍ୱଚ୍ଛଳତାର ହେତୁ ଦର୍ଶାଇ ଆମ୍ଭମାନଙ୍କ ଗବର୍ଣ୍ଣମେଣ୍ଟ ଶିକ୍ଷାବିଭାଗର ତହବିଲରୁ ପୁରସ୍କାର ପାଣ୍ଠିଟି କର୍ତ୍ତନ କରିଅଛନ୍ତି, ସେହି ହେତୁରୁ ବର୍ତ୍ତମାନ ପ୍ରାୟ ସକଳ ସରକାରୀ ବିଦ୍ୟାଳୟରେ ସାଧାରଣ ଚେଦାଦ୍ୱାରା ପୁରସ୍କାର ବଣ୍ଟନ ହୋଇଥାଏ । ମାତ୍ର ଅନ୍ୟାନ୍ୟ ବିଷୟପରି ଏ ବିଷୟରେ ମଧ୍ୟ ଆମ୍ଭମାନଙ୍କ ଦେଶର ସାଧାରଣ ଲୋକେ ବହୁପରିମାଣେ ଉଦାସୀନ । ଆମ୍ଭମାନଙ୍କ ଦେଶରେ ସ୍ତ୍ରୀ ଶିକ୍ଷାର ଅବସ୍ଥା ଯେପରି ଶୋଚନୀୟ ସେଥିରେ ବାଳକମାନଙ୍କ ଅପେକ୍ଷା ବାଳିକାମାନଙ୍କୁ ନାନାପ୍ରକାର ପୁରସ୍କାର ବଣ୍ଟନଦ୍ୱାରା ବିଦ୍ୟାଶିକ୍ଷାରେ ପ୍ରଲୁବ୍ଧ କରିବା ଯେ ଅତ୍ୟନ୍ତ ଆବଶ୍ୟକ ତାହା ବୋଲିବା ନିଷ୍ପ୍ରୟୋଜନ । ପୂର୍ବେ ଏହି ନଗରର ବଦାନ୍ୟ ଭଦ୍ର ମଣ୍ଡଳୀଙ୍କ ସାହାଯ୍ୟରେ ଏହି ବିଦ୍ୟାଳୟର ଛାତ୍ରୀମାନଙ୍କୁ ପ୍ରତିବର୍ଷ ପୁରସ୍କାର ବଣ୍ଟନ କରା ଯାଉଥିଲା । ନଗରର ପ୍ରଧାନ ପ୍ରଧାନ ରାଜକର୍ମଚାରିମାନେ ଆସି ସ୍ୱହସ୍ତରେ ପୁରସ୍କାର ବଣ୍ଟନ କରି ସୁକୁମାରମତି ବାଳିକାମାନଙ୍କୁ କେତେ ଉତ୍ସାହ ପ୍ରଦାନ କରୁଥିଲେ । ମାତ୍ର ଦୁଃଖର ବିଷୟ ଗତ ତିନିଚାରି ବର୍ଷରୁ ନଗରବାସୀ ଅବସ୍ଥାପନ୍ନ ଭଦ୍ରଲୋକମାନଙ୍କର ବଦାନ୍ୟତା ଅଭାବରୁ ଏହି ବ୍ୟାପାରଟି ବନ୍ଦ ହୋଇ ଯାଇଅଛି । ଏହା ସେମାନଙ୍କ ପକ୍ଷରେ ଅବଶ୍ୟ ପ୍ରଶଂସାର ବିଷୟ ନୁହେଁ । କେତେକ ସପ୍ତାହ ପୂର୍ବେ ଏହି ଜିଲାର ମାହାଙ୍ଗା ଗ୍ରାମନିବାସୀ ଉତ୍କଳ ପରିଚିତ ଶ୍ରୀଯୁକ୍ତ ଜଗନ୍ମୋହନ ଲାଲ ମହୋଦୟ ତାଙ୍କର ପରଲୋକଗତା ଗୋଟିଏ କନ୍ୟାଙ୍କ ନାମରେ ଏହି ବିଦ୍ୟାଳୟରୁ ଗତବର୍ଷ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରୀମାନଙ୍କୁ ପୁରସ୍କାର ପ୍ରଦାନ ନିମନ୍ତେ ତିନିଟଙ୍କା ଦାନ କରିଥିବା ବିଷୟ ଏଠାରେ ପ୍ରକାଶ କରିଥିଲୁଁ ଏବଂ ତାଙ୍କର ଏହି ହିତକର ବିଷୟରେ ଯୁବଜନୋଚିତ **xxxx** ଓ ଉଦ୍ୟମଶୀଳତାର ପ୍ରଶଂସା କରି ତାହା ଅନେକଙ୍କର ଆଦର୍ଶସ୍ଥାନୀୟ ଥିବାର ଉଲ୍ଲେଖ କରିଥିଲୁଁ । ବର୍ତ୍ତମାନ୍ ଅତ୍ୟନ୍ତ ଆନନ୍ଦର ସହିତ ପ୍ରକାଶ କରୁଅଛୁଁ ଯେ ସୁପ୍ରବୀଣ ଲାଲ୍ ମହୋଦୟ ଆମ୍ଭମାନଙ୍କ ନିକଟରୁ ଏହି ବିଦ୍ୟାଳୟର ପୁରସ୍କାର ବଣ୍ଟନ ପ୍ରଥା ବନ୍ଦ ହୋଇ ଯାଇଥିବାର ଅବଗତ ହୋଇ ତାଙ୍କର କନ୍ୟା ନାମରେ ନାମିତ ଦାନକୁ ବାର୍ଷିକ କରିଅଛନ୍ତି ଏବଂ ତାହାର ପରିମାଣ ପାଞ୍ଚଟଙ୍କା କରିଅଛନ୍ତି । କି ହୃଦୟବତ୍ତା କି ବଦାନ୍ୟତା !! ତାଙ୍କର ଏହି ମୂଲ୍ୟବାନ୍ ଦାନ କୃତଜ୍ଞ ଚିତ୍ତରେ ଗ୍ରହଣ କରି ଏହି

ବିଦ୍ୟାଳୟର କର୍ତ୍ତୃପକ୍ଷମାନେ ପୁନରାୟ ତାହାଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛନ୍ତି ଏବଂ ତାଙ୍କର ଦୀର୍ଘାୟୁ ଓ ଅଖଣ୍ଡ ସ୍ୱାସ୍ଥ୍ୟ ନିମନ୍ତେ ମଙ୍ଗଳମୟ ବିଧାତାଙ୍କ ନିକଟରେ ହୃଦ୍ଗତ ପ୍ରାର୍ଥନା କରୁଅଛନ୍ତି । ଇତି ।

ଅନୁମତ୍ୟନୁସାରେ

ରାଭେନ୍‌ସା ହିନ୍ଦୁ ବାଳିକା ବିଦ୍ୟାଳୟ — ଶ୍ରୀକୃଷ୍ଣପ୍ରସାଦ ଚୌଧୁରୀ

କଟକ , ୧୮।୯।୦୦ — ପ୍ରଧାନ ଶିକ୍ଷକ

*ଉ।୩୫ଗ, ସଂ୩୯ଖ୍ୟା, ୧୩।୧୦।୧୯୦୦*

## [ଓଡିୟାରେ ଅରଜି]

ଆସିକାର ଡିଷ୍ଟ୍ରିକ୍ଟ ମୁନସଫ ଶ୍ରୀଯୁକ୍ତ ରାମଲିଙ୍ଗ ଶାସ୍ତ୍ରୀ ଆଦେଶ କରିଅଛନ୍ତି କି ଏଣିକି ଅଦାଲତରେ ଯେତେ ମୋକଦ୍ଦମାର ଅରଜି ବର୍ଣ୍ଣନା ପତ୍ର ପ୍ରଭୃତି ଦାଖଲ ହେବ ସେ ସବୁ ଓଡିୟା ଭାଷା ଓ ଓଡିୟା ଅକ୍ଷରରେ ଲେଖା ଯିବ । ଘୁମସରର ଓଡିୟାମାନେ ଏଥିରେ ମହା ଆନନ୍ଦିତ ହୋଇଅଛନ୍ତି ବୋଲି ଜଣେ ପତ୍ରପ୍ରେରକ ଲେଖିଅଛନ୍ତି । ଯେଉଁଠାରେ ଓଡିୟାଙ୍କର ସଂଖ୍ୟା ଅଧିକ ସେଠାରେ ଅଦାଲତର ଭାଷା ଓଡିୟା ହେବା ଯୁକ୍ତିସଙ୍ଗତ ଏବଂ ମୁନସଫ ମହାଶୟ ସେପରି ଆଦେଶ ପ୍ରଦାନ କରି ସୁଖ୍ୟାତି ଭାଜନ ହୋଇଅଛନ୍ତି ।

*ଉ।୩୫ଗ, ସଂ୪୧ଖ୍ୟା, ୨୭।୧୦।୧୯୦୦*

## [ମହାରାଜାଙ୍କ ବଦାନ୍ୟତା]

**ମହାଶୟ**

ନିମ୍ନଲିଖିତ ବିଷୟଟିକୁ ଆପଣଙ୍କ ପତ୍ରିକାରେ ସ୍ଥାନ ଦାନ କରି ବାଧିତ କରିବା ହେବେ ।

ଗତ ସେପ୍ଟେମ୍ବରମାସ ତା୨୯ ରିଖରେ ବଡ଼ ଖେମୁଣ୍ଡିର ମହାରାଜା ଦର୍ଶନାଭିପ୍ରାୟରେ ଭୁବନେଶ୍ୱର କ୍ଷେତ୍ରକୁ ଶୁଭାଗମନ କରିଥିଲେ । ମହାରାଜାଙ୍କର ବିଦ୍ୟାନୁରାଗ ଓ ଦେଶ ହିତୈଶିତା ଗୁଣାଦିର ବିଷୟ ତାହାଙ୍କ ଦେଓଆନ ଓ ପଣ୍ଡିତ ଏବଂ ଭୁବନେଶ୍ୱର କ୍ଷେତ୍ରସ୍ଥ ପଣ୍ଡାଙ୍କଠାରୁ ବୁଝିପାରି ତତ୍ରତ୍ୟ ଶିକ୍ଷିତ ସମ୍ପ୍ରଦାୟ ଭୁବନେଶ୍ୱର ଶିକ୍ଷାବିବର୍ଦ୍ଧିନୀ ସଭାର ଏକ ବିଶେଷ ଅଧିବେଶନ କରି ମହାରାଜାଙ୍କୁ ସଭାସ୍ଥଳକୁ ଆମନ୍ତ୍ରଣ କରିବା ଅଭିପ୍ରାୟରେ ପତ୍ର ପଠାନ୍ତେ ମହାରାଜା ଉକ୍ତ ପତ୍ରକୁ ଆଦରର ସହିତ ଗ୍ରହଣ କରି ସଭାସ୍ଥଳରେ ଉପସ୍ଥିତ ହେଲେ । ତତ୍ରତ୍ୟ ଲୋକମାନଙ୍କର ଓ ସ୍କୁଲର ସମସ୍ତ ଅବସ୍ଥା ଅବଗତ ହୋଇ ମହାରାଜା ଆପଣାର ଉଦାରତା ପ୍ରକାଶ ପୂର୍ବକ ଭୁବନେଶ୍ୱର ଇଂରାଜୀ ସ୍କୁଲକୁ ବାର୍ଷିକ ଟ୬୦ଙ୍କା ଦେବାର ଅଙ୍ଗୀକାର କରି ଦର୍ଶକାଭିପ୍ରାୟ ବହି ଓ ଚାନ୍ଦା ବହିରେ ଲେଖି ଦେଇଗଲେ । ମହାରାଜାଙ୍କର ଏହି ବଦାନ୍ୟତା ଗୁଣରେ ସଭାସ୍ଥିତ ସମସ୍ତ ସଭ୍ୟ ଆନନ୍ଦରେ ମଗ୍ନ ହୋଇ ଘନ ଘନ କରତାଳିଦ୍ୱାରା ମହାରାଜାଙ୍କର ଯଶ ବୃଦ୍ଧି ଓ ଦୀର୍ଘ ଜୀବନ କାମନା କଲେ । ଏଥି ପୂର୍ବେ ଖଡିଆଳ ରାଜାଙ୍କ ମଧ୍ୟମ ପୁତ୍ର ବାର୍ଷିକ ଟ୫୦ଙ୍କା ଲେଖାଏଁ ଉକ୍ତ ସ୍କୁଲକୁ ଦେବାର ଅଙ୍ଗୀକାର କରି ଚଳିତ ବର୍ଷର ଟ୫୦ଙ୍କା ପଠାଇ ଥିବା ବିଷୟ ସାଧାରଣଙ୍କୁ ଜଣାଇ ଅଛୁଁ । ଆଶା ହୁଏ ଉକ୍ତ ମହୋଦୟଙ୍କ ପରି ଉଦାର ଚରିତ ରାଜା ଓ ଜମିଦାରମାନେ ଉକ୍ତ ସ୍କୁଲକୁ ଶକ୍ତି ଅନୁସାରେ ସାହାଯ୍ୟ କରି ଗୋଟିଏ କ୍ଷେତ୍ର ସ୍ଥାନର ମୁଖ ଉଜ୍ଜ୍ୱଳ କରିବା ଦ୍ୱାରା ଆମ୍ଭମାନଙ୍କର ଭକ୍ତିଭାଜନ ହେବେ ।

ଇତି ।

୩୦।୧୦।୧୯୦୦ — ଶ୍ରୀ ଦର୍ଶକ

ଭୁବନେଶ୍ୱର

*ଉ।୩୫ଗ, ସଂ୪୨ଖ୍ୟା, ୩।୧୧।୧୯୦୦*

## ବିଜ୍ଞାପନ ।

## ଅମରକୋଷ ।

ଚିରକାଳରୁ ଯେଉଁ ଅମରକୋଷ ବାଳବୋଧିନୀ ଟୀକା ସହିତ ଗ୍ରାହକମାନଙ୍କ ନିକଟରେ ପରିଚିତ ଅଛି ବର୍ତ୍ତମାନ୍ ସେହି ଅମରକୋଷ ଉତ୍ତମ ଅକ୍ଷରରେ ଛାପା ହୋଇ କଟକ ବାଲୁବଜାରସ୍ଥିତ ଅରୁଣୋଦୟ ଯନ୍ତ୍ରାଳୟରେ, ବାବୁ ରାମପ୍ରସନ୍ନ ମୁଖୋପାଧ୍ୟାୟ ବୁକ୍ ଏଜେଣ୍ଟଙ୍କ ନିକଟରେ ଏବଂ ଆମ୍ଭ ନିକଟରେ ବିକ୍ରୟାର୍ଥ ପ୍ରସ୍ତୁତ ଅଛି ।

ପ୍ରତ୍ୟେକ ଖଣ୍ଡର ମୂଲ୍ୟ ଟ୧ଙ୍କା ।

ସୁତାହାଟ,କଟକ ଶ୍ରୀ ସୁଦର୍ଶନ ନନ୍ଦଶର୍ମା ।

## ଚାଟଶାଳୀପାଠ

ଏଥିରେ ପିଲାମାନଙ୍କର ପ୍ରଥମାବସ୍ଥାରେ ପଢ଼ିବାର ପ୍ରୟୋଜନୀୟ ବିଷୟମାନ ଦିଆ ଯାଇଅଛି ; ଯଥା;- ବର୍ଣ୍ଣପରିଚୟ, ସତଫଳା, ବନା, ସାଦାପଣକିୟା, କଡାଗଣ୍ଡା ପଣକିଆ ,ଗୁଣ୍ଠବିଶ୍ଵା ପଣକିଆ, ପାହିଅଣା ପଣକିଆ, ଶୋଧ୍ଧ , ବିବିଧ ପରିମାଣ, ମାନସାଙ୍କ, କମଳଲୋଚନ, କେଶବ କୋଇଲି, ଗଣେଶାଷ୍ଟକ,ଶ୍ରୀକୃଷ୍ଣଙ୍କ ପ୍ରତି ମାତାଙ୍କର ଉକ୍ତି, କଳା କଳେବର କହ୍ନାଇ, ଦଶ ଅବତାର ଓ ମନବୋଧ ଚଉତିଶା । ଅତି ସୁଲଭ ମୂଲ୍ୟ ଟ ୦/୬ ମାତ୍ର ।

ସୁତାହାଟ,କଟକ ଶ୍ରୀ ସୁଦର୍ଶନ ନନ୍ଦଶର୍ମା ।

## ଉତ୍କଳ ମଧୁପ ।

"ଉତ୍କଳମଧୁପ"ନୂତନ ରୀତିର ଖଣ୍ଡିଏ ମାସିକ ପତ୍ରିକା। ଏହାର ଉଦ୍ଦେଶ୍ୟ ସାରସଂଗ୍ରହ ଉତ୍କୃଷ୍ଟ ବଚନ ସଙ୍କଳନ ଏବଂ ସଂକ୍ଷେପରେ ନାନା ଜ୍ଞାତବ୍ୟ ବିଷୟ ପ୍ରକାଶ। ବାର୍ଷିକ ମୂଲ୍ୟ ମାସୁଲ ସମେତ ଏଗାର ଅଣା। ଶୀଘ୍ର ବାର ଅଣା ପଠାଇ ଗ୍ରାହକ ହେଲେ ୬ ଖଣ୍ଡି ଉପଯୋଗୀ ପୁସ୍ତକ ଉପହାର ଦିଆ ଯିବ। ଏକ ଅଣା ପଠାଇଲେ ମଧୁପର ଏକ ସଂଖ୍ୟା ନମୁନାସ୍ୱରୂପ ପଠାଯିବ।

୬।୧୦।୧୯୦୦ — ଶ୍ରୀରସାନନ୍ଦ ପ୍ରଧାନ
ଦେବଗଡ ପୋଃ। — ମାନେଜର,
ସମ୍ବଲପୁର

## ନୃସିଂହପୁରାଣ ।

ଏ ଗ୍ରନ୍ଥ ପାଠ କଲେ ପାଠକବୃନ୍ଦ ସାଂସାରିକ ଯାବତୀୟ କର୍ତ୍ତବ୍ୟ କାର୍ଯ୍ୟ ଉତ୍ତମରୂପେ ବୁଝି ପାରିବେ। ବିଷୟ ଗୁଡ଼ିକ ସ୍ମରଣ ରଖି ତଦନୁଯାୟୀ ଚଳିଲେ ମୋହମାୟାକୁ ଅତିକ୍ରମ କରି ପରମପଦ ଲଭି ପାରିବେ। ସମସ୍ତ ପୁରାଣର ସାର ବିଷୟମାନ ସରଳଭାଷାରେ ସୁସଙ୍ଗତରୂପେ ଏଥିରେ ସନ୍ନିବେଶିତ ହୋଇଅଛି। ଏହା ଗୃହିମାନଙ୍କର ଗୃହର ରତ୍ନସ୍ୱରୂପ ଅଟେ। ଅତଏବ ଗୃହୀମାତ୍ରକେ ଏଥିରୁ ଖଣ୍ଡିଏ ଖଣ୍ଡିଏ କ୍ରୟ କରି ପଢ଼ିବା ଓ ପଢ଼ାଇ ଶୁଣିବା ଉଚିତ। ଏହା ୭ ଖଣ୍ଡରେ ବିଭକ୍ତ। ପ୍ରତ୍ୟେକ ଖଣ୍ଡର ନାମ ଗ୍ରନ୍ଥକାର ରତ୍ନାକର ନାମରେ ଉଲ୍ଲେଖ କରିଅଛନ୍ତି। ଏଥିର ୧ମ ରତ୍ନାକର ମୁଦ୍ରିତ ହୋଇ କଟକ ପ୍ରିଣ୍ଟିଂକମ୍ପାନିଙ୍କ ଯନ୍ତ୍ରାଳୟରେ ବିକ୍ରୟ ହେଉଅଛି।

ମୂଲ୍ୟ ଖ୧ଣ୍ଡ ଟ ୧/ ଡାକମାସୁଲ ଟ ୦/

ଦରଘାବଜାର
କଟକ — ପୁରାଣପ୍ରକାଶକ କମ୍ପାନୀ।

ନିମ୍ନପ୍ରାଇମେରୀ, ଅପରପ୍ରାଇମେରୀ, ଭର୍ଣ୍ଣାକ୍ୟୁଲର ଏବଂ ମାଇନର ସ୍କୁଲର ପାଠ୍ୟପୁସ୍ତକ ଏବଂତହିଁର ବ୍ୟାଖ୍ୟା ଉଚିତ ମୂଲ୍ୟରେ କଟକ ପ୍ରିଣ୍ଟିଂକମ୍ପାନୀଙ୍କ ପୁସ୍ତକ ଦୋକାନରେ ବିକ୍ରୟ ହେଉଅଛି।

ମୋଫସଲର ଗ୍ରାହକମାନଙ୍କୁ ପ୍ରଚୁର ପରିମାଣରେ କମିସନ୍ ଦିଆଯାଏ। ନାନାପ୍ରକାର କାଗଜ, ପେନ୍‌ସିଲ, କଲମ, ଦୁଆତ,ପ୍ରଭୃତି ସ୍କୁଲ୍ ଏବଂ ଗବର୍ଣ୍ଣମେଣ୍ଟଙ୍କ ଅଫିସରେ ଲେଖିବାର ଯାବତୀୟ ସରଞ୍ଜାମମାନ ସୁଲଭ ମୂଲ୍ୟରେ ଆମ୍ଭ ନିକଟରେ ମିଳିବ। ଇତି ।

ଶ୍ରୀ ଗୌରୀଶଙ୍କର ରାୟ।
ସେକ୍ରେଟରୀ।

*ଭା୩୫ଗ, ସଂ୪୨ଖ୍ୟା, ୩।୧୧।୧୯୦୦*

## ବାମଣ୍ଡାର ରାଜା।

ବାମଣ୍ଡାର ରାଜା ସର ସୁଡଳଦେବ କେ,ସି,ଆଇ, ଇ କଟକନଗରୀକୁ କାର୍ଯ୍ୟୋପଲକ୍ଷେ ଆସିଥିବାର ପାଠକମାନଙ୍କୁ ଜଣାଇଅଛୁଁ। ତାଙ୍କୁ ଅଭ୍ୟର୍ଥନା କରିବା ସକାଶେ ଗତ ପୂର୍ବ ଶୁକ୍ରବାର ଦିନ ସନ୍ଧ୍ୟା ସମୟରେ ଏଠାପ୍ରିଣ୍ଟିଂ କୁମ୍ପାନୀଙ୍କ ଦ୍ୱିତଳଗୃହରେ ଏକ ବୃହତ୍ ସଭା ହୋଇଥିଲା। ସଭାଗୃହଟି ଆଲୋକମାଳାରେ ଉତ୍ତମରୂପେ ସୁସଜ୍ଜିତ ହୋଇଥିଲା ଏବଂ ସହରର ହିନ୍ଦୁ,ମୁସଲମାନ, ଖ୍ରୀଷ୍ଟିୟାନ ଓ ପାର୍ସି ଏରୂପ ସର୍ବଶ୍ରେଣୀୟ ଲୋକେ ରାଜା ମହୋଦୟଙ୍କୁ ଅଭିବାଦନ କରିବା କାରଣ ସମୁପସ୍ଥିତ ଥିଲେ। ରାଜା ମହୋଦୟ ଆପଣା ଯୁବରାଜଙ୍କ ସହିତ ସଭା ଗୃହରେ ପହୁଞ୍ଚି ଉପସ୍ଥିତ ଭଦ୍ରଲୋକଙ୍କ ସଙ୍ଗେ ପରିଚିତ ଓ କଥୋପକଥନ ହେଲାପରେ ଏକ ଗୋଟିପୋପିଲାର ନୃତ୍ୟ ହୋଇଥିଲା। ନୃତ୍ୟାନ୍ତେ ପିଲାଟି ରାଜା ମହୋଦୟଙ୍କ ନାମର ନବରଚିତ ନିମ୍ନଲିଖିତ ଗୀତ ଗାୟନ କଲା।

ସଙ୍ଗୀତ -"ମନସ୍ୱିଜ ମନମୋହନ" - ବୃତ୍ତରେ ।
ସରସିଜ ସରଶୋଭନ ମନମୋହନ ବଳେ (ରେ)
ଇନ୍ଦୁନିଶିର, ବିନ୍ଦୁଶିଶିର କିବା ଢଳ ଢଳ (ରେ) ।        ଘୋଷା।
ବିଜେ ବାମଣ୍ଡାମଣ୍ଡନ ସଙ୍ଗେ ସୁଯୋଗ୍ୟ ନନ୍ଦନ
ସାରସ୍ୱତ-କୁଞ୍ଜେ ବୁଧ ଶଶୀ ଖସି ପଡୁଛି କି ତଳେ (ରେ)
ସତ ପଙ୍କଜ ବାସିନୀ ହରି ଶ୍ରୀ ଅଙ୍କ ଶାୟିନୀ
ମିତ୍ରତା ଆଚରି ଶତ୍ରୁତା ପାଶୋରି ଝୁଲୁଛନ୍ତି ଗଳେ (ରେ)
ମୋର ମାନସ ନରେଶ ସୁଖେ ରଖନ୍ତୁ ପରେଶ
ବରଷେ ବରଷେ ନବର ହରଷେ ସେବୁଁ ଫୁଲ ଦଳେ (ରେ)।

ତଦ୍‌ପରେ ଗୁଆଲିୟର ଜଣେ ଗାୟକ କିଞ୍ଚିତ୍ କାଳ ଗାୟନ କଲାପରେ ଫୁଲ ପାନ ଓ ଅତର ବଣ୍ଟନ ହୋଇ ସଭା ଭଙ୍ଗ ହେଲା । ଏ ଦିନର ସଭା ନଗରବାସିଙ୍କର ଏକପ୍ରକାର ସ୍ୱ ପ୍ରଣୋଦିତ ଉତ୍ସାହ ଓ ସୁରୁଚିର ଫଳ ଥିବା ହେତୁ ସେ ଦିନ ଯେଉଁମାନେ ସଭାରେ ଉପସ୍ଥିତ ହୋଇଥିଲେ ସମସ୍ତେ ଆମ୍ଭମାନଙ୍କର ଅଶେଷ ଧନ୍ୟବାଦର ପାତ୍ର ଅଟନ୍ତି । ଏଥି ଉତ୍ତାରୁ ଗତ ରବିବାରଦିନ ସଂନ୍ଧ୍ୟାସମୟରେ କନିକାର ରାଜା ତାଙ୍କୁ ଆପଣା ନବରରେ ଅଭ୍ୟର୍ଥନା କରିଥିଲେ। ନଗରବାସୀ ତାବଦୀୟ ଭଦ୍ରଲୋକେ ଧର୍ମ ଏବଂ ପଦନିର୍ବିଶେଷରେ ନିମନ୍ତ୍ରିତ ହୋଇଥିଲେ ଏବଂ ତଦୁପଲକ୍ଷେ ନବରଟି ଆଲୋକମାଳା ଓ ପତାକାଦିରେ ଉତ୍ତମରୂପେ ସଜ୍ଜିତ ହୋଇଥିଲା। ରାଜାମହୋଦୟ ସେଠାରେ ପହୁଞ୍ଚି କିୟତ୍କାଳ ସମାଗତ ଭଦ୍ରମଣ୍ଡଳି ସଙ୍ଗେ ମିଷ୍ଟାଳାପ କଲାରୁ ସେତାରାଠାରୁ ଆସିଥିବା ଏକଦଳ ପ୍ରସିଦ୍ଧ ସରକସବାଲାଙ୍କର କେତେଗୁଡ଼ିଏ ବାଜି ପ୍ରଦର୍ଶିତ ହୋଇଥିଲା। ତତ୍ପରେ ନବାବିଷ୍କୃତ X-Rays ପ୍ରଦର୍ଶିତ ହୋଇ ବକ୍ସିବଜାରସ୍ଥ ମୋବାରକ ହୋସେନଙ୍କ ଆତସବାଜି ହେଲାପରେ ସାନ୍ଧ୍ୟମିଳନ ଭଙ୍ଗ ହେଲା । ଏହି ଉଭୟ ଦିନରେ ନଗରବାସୀ ଭଦ୍ରଲୋକେ ରାଜା ମହୋଦୟଙ୍କ ସାକ୍ଷାତ ଲାଭକରି ତାଙ୍କର ମିଷ୍ଟାଳାପରେ ଯେପରି ଆନନ୍ଦିତ

ହୋଇଥିଲେ ରାଜା ମହୋଦୟ ମଧ ସେମାନଙ୍କର ସ୍ନେହ ଓ ଭକ୍ତି ହେତୁ ଅତ୍ୟନ୍ତ କୃତଜ୍ଞ ହୋଇଥିବାର ପ୍ରକାଶ କରି ନିଜର ଆନନ୍ଦ ଜଣାଇଥିଲେ । ରାଜାମହୋଦୟ ଏଠାରେ ଅବସ୍ଥାନ କରିଥିବା ସମୟ ମଧରେ ଏଠା ହିନ୍ଦୁ ବାଳିକା ବିଦ୍ୟାଳୟ, ନର୍ମାଲସ୍କୁଲ ପ୍ରଭୃତି ପରିଦର୍ଶନ କରିଥିଲେ । କଲେଜ ବନ୍ଦ ଥିବାରୁ ତାହା ଦେଖି ପାରିଲେ ନାହିଁ । ନର୍ମାଲସ୍କୁଲର ଛାତ୍ରସମିତିପାଣ୍ଠକୁ ରାଜାମହୋଦୟ ଟ୧୦୦ ଙ୍କା ଦାନ କରିଥିବାର ଆମ୍ଭେମାନେ ଅବଗତ ହୋଇଅଛୁଁ । ରାଜାମହୋଦୟଙ୍କ ପ୍ରାୟ ଗୁଣୀ ଏବଂ ଧନୀଲୋକଙ୍କର ଏ ସ୍ଥାନକୁ ସମାଗମ ଅତି ଦୁର୍ଲ୍ଲଭ ଏବଂ ତାଙ୍କର ବର୍ତ୍ତମାନ ଆଗମନ ଏଠା ପ୍ରଧାନ ଶିକ୍ଷାଳୟର କୌଣସି ସ୍ଥାୟୀ କାର୍ଯ୍ୟ ଦ୍ୱାରା କୀର୍ତ୍ତି ଲାଭ କରିଥିଲେ ଆମ୍ଭେମାନେ ଅବଶ୍ୟ ଅତ୍ୟନ୍ତ ଆନନ୍ଦିତ ହୋଇଥାନ୍ତୁ । ସେ ବାଳିକା ବିଦ୍ୟାଳୟର ବାଳିକାମାନଙ୍କୁ ପୁରସ୍କାର ନିମିତ୍ତ ଟ ୫୦ ଙ୍କା ଏବଂ ବିଦ୍ୟାଳୟ ଗୃହର ଜୀର୍ଣ୍ଣ ସଂସ୍କାର ନିମିତ୍ତ ବାର୍ଷିକ ଟ ୩୦ ଙ୍କା ଦାନ କରିଅଛନ୍ତି ।

ବାମଣ୍ଡାର ରାଜା ଏଠାରେ ଆପଣାର କାର୍ଯ୍ୟ ସମାଧାନ କରି ଗତ ସୋମବାର ଅପରାହ୍ନର ରେଳଗାଡିଦ୍ୱାରା ପୁରୁଷୋତ୍ତମ କ୍ଷେତ୍ରକୁ ବିଜେହେଲେ । ସେଦିନ ଦୁଇପ୍ରହର ସମୟରେ ସେ ଏଠା ଟାଉନସ୍କୁଲ ପରିଦର୍ଶନ କରିବାକୁ ଆସିଥିଲେ । ସ୍କୁଲଗୃହର ଦ୍ୱାରଦେଶ ପୂର୍ଣ୍ଣକୁମ୍ଭ ଓ ପତାକାଦିଦ୍ୱାରା ସଜ୍ଜୀଭୂତ ହୋଇଥିଲା । ଏ ସମୟରେ ସ୍କୁଲର ପିଲାଙ୍କଦ୍ୱାରା ନିମ୍ନଲିଖିତ ପଦ୍ୟଟି ପଠିତ ହେଲା ଏବଂ ରାଜାମହୋଦୟ ଯୁବରାଜ ସ୍ୱୀୟ କୋଷରୁ ମାସିକ ଟ୪୦ଙ୍କା ସ୍କୁଲକୁ ସାହାଯ୍ୟ କରିବା କାରଣ ସ୍ଥିର କରିଥିବା ବିଷୟ ପ୍ରକାଶ କଲେ । ପଦ୍ୟଟି ଏହି ଯଥା । –

(୧)

ଜୟ ବାମଣ୍ଡା ମଣ୍ଡନ ସୁଚ୍ଛଳଦେବ ରାଜନ
ଜ୍ଞାନୀ, ଧୀର, ଦାତା,କବି ଶ୍ରୀବାସୁଦେବ,
ସ୍ଥାପିଛ କୀର୍ତ୍ତି ଅକ୍ଷୟ 'ଅଳଙ୍କାର ବୋଧୋଦୟ'
"ଚିତ୍ରୋତ୍ପଳା" "ବୀରବାମା" ରଚିଣ ଦେବ ।
ଘୋଷେ ତବ ଜୟ ହେ ଭୂପ ,
'ହିତୈଷିଣୀ' 'ଆଲୋଚନା' ସଙ୍ଗେ 'ମଧୁପ' ।

(୨)

ଦୁର୍ଲ୍ଲଭ ଆସନ ଭଜି ସପତ୍ନୀଭାବ ବରଜି
ବିଶାଳବକ୍ଷେ କ୍ରୀଡନ୍ତି କମଳା ବାଣୀ,
ବିନୀତା ଭାରତୀ ସତୀ ଅଟନ୍ତି ଶ୍ରେୟସୀ ଅତି
ସାମ୍ରାଜ୍ୟଲକ୍ଷ୍ମୀ ଯେବେ ବା ପ୍ରେୟସୀ ରାଣୀ,
ବୁଝିଛ ଏ ମର୍ମ ନରେଶ,
ଘୋଷେ ତବ ଯଶ ତେଣୁ ଉତ୍କଳଦେଶ ।

(୩)

ସ୍ୱାଗତ ବାମଣ୍ଡାପତି ରାଜଆଭରଣେ ଯତି
ତବ ଶୁଭ ଆଗମନେ ଆମ୍ଭେ ଉଷତ ;
ଜ୍ଞାନ କର୍ମ ସମାବେଶେ ଅର୍ଜିଛ ଦେଶେ ବିଦେଶେ
ଅକ୍ଷୟ କୀରତି ଯାହା ଘୋଷେ ଭାରତ
ପ୍ରମାଣିଛ ତବ ଜୀବନ
ରାଜା ରାଜ୍ୟାଶ୍ରମ ଋଷି ବୁଧ ବଚନ।

(୪)

ଥିଲା ସମୃଦ୍ଧ ଉତ୍କଳ ହୋଇଛି ହୀନ ଦୁର୍ବଳ
ଶୌର୍ଯ୍ୟ ବୀର୍ଯ୍ୟ, କୌଶଳାଦି ଯାଇଛି କାହିଁ,
ହରାଇ ଗୌରବାମୃତ ହୋଇଅଛି ଅର୍ଦ୍ଧମୃତ
ତା ଦୁଃଖକୁ ତାଳେ କେହି ଚାହୁଁତ ନାହିଁ
କେଉଁ ଦେଶୁ ଆସି ରାଜନ
ନୀଳାମୃତ ସଞ୍ଜୀବନୀ ମନ୍ତ୍ରୋଚ୍ଚାରଣ ।

(୫)

ଅତି କଷଣେ ଅର୍ଜିତ ଦରିଦ୍ରକୃଷକ ବିତ୍ତ
ଲୁଣ୍ଠନ କରି ମଣିମା ନିଷ୍ଠୁରରୂପେ,
ଅସାରଧାତୁ ଭୂଷଣ କରିଣ ଅଙ୍ଗେ ଧାରଣ
ବିଳାସ ତଳ୍ପେ ନିଦ୍ରିତ ସ୍ୱଦେଶୀ ଭୂପେ
ରାଜା ପ୍ରଜା-ହୃଦ-ରଞ୍ଜନ,
ଏହା ଜାଣି ଛାମୁ କର ରାଜ୍ୟ ଶାସନ ।

(୬)

ହେ କ୍ଷଣଜନ୍ମା ପୁରୁଷ ବିଦ୍ୟା ବୁଦ୍ଧି ପଉରୁଷ
ଦେଶେ ବିଦେଶରେ ତବ ହୁଏ ଘୋଷିତ,
ଅତିକ୍ରମି ଶତ ଶତ ଜୀବ ଜ୍ୟୋତିଷ୍କ ଜଗତ
ସୁରଲୋକେ ହେଉଅଛି ପ୍ରତିଧ୍ୱନିତ,
ଦେଖ ସୁର ତନୟାଗଣ
ମାନସ ପୁଷ୍ପ କରନ୍ତି ଶିରେ ବର୍ଷଣ ।

(୭)

ଜୟ ଶ୍ରୀ ସଚ୍ଚିଦାନନ୍ଦ ଦେବ କବି, ସଦାନନ୍ଦ
ବିନୟୀ, ଅମୃତଭାଷୀ, ପବିତ୍ର ହୃଦ,
ସାହିତ୍ୟ କୁଞ୍ଜ ବିହାରୀ ଆଶ୍ରିତ- ହୃଦୟ ହାରୀ
ତବ ଦରଶନେ ହୃଦେ ଉଚ୍ଛୁଳେ ମୁଦ
ଯୋଗ୍ୟ ପିତା ଯୋଗ୍ୟ ନନ୍ଦନ,
ପିନାକୀ ପାଶେ ସେନାନୀ ପ୍ରାୟ ଶୋଭନ ।

(୮)

ଚିର ଦରିଦ୍ର ଉତ୍କଳ ନାହିଁ ବିଦ୍ୟାଧନ ବଳ
ସଙ୍ଗ ତ୍ୟଜି ଗଲେ ତେଣୁ ଅନ୍ୟ ଭଗିନୀ
ଭବାଦୃଶ ସୁସନ୍ତତି ଯୋଗେ ହୋଇ ପୁତ୍ରବତୀ
ଉତ୍କଳଭାରତୀ କିପାଁ ଚିର ଦୁଃଖିନୀ
ବର୍ଷି ତବ କୃପା ଅସାର
ପଲ୍ଲବିତ କରୁ ତନୁ ମାତୃଭାଷାର ।

***ଭାଗ୫ଗ,ସଂ୪ସଂଖ୍ୟା, ୧୦/୧୧/୧୯୦୦***

# ପାଠ୍ୟପୁସ୍ତକ ନିର୍ବାଚନ କମିଟି ।

ଏହି କମିଟି ଗଠନ ଏବଂ କାର୍ଯ୍ୟ ସମ୍ବନ୍ଧରେ ଯେଉଁ ନୂତନ ନିୟମାବଳି ହେବାର କଥା ଥିଲା ତାହା ଗତ ତା ୧୪ରିଖର କଲିକତା ଗଜେଟରେ ବାହାରିଅଛି । କଲିକତାଠାରେ ଗୋଟିଏ ସଦର କମିଟି ହେବ ଓ ତହିଁର ସଭାପତି ଶିକ୍ଷା ବିଭାଗର ଡାଇରେକ୍ଟର ହେବେ ଓ ଆଉ ଜ୨୦ଣ ମେମ୍ବର ହେବେ । ପ୍ରେସିଡେନ୍ସି ବିଭାଗର ସ୍କୁଲ ଇନ୍‌ସ୍ପେକ୍ଟର ସେକ୍ରେଟରୀ ହେବେ । ସଦର କମିଟିର ଅଧୀନରେ ବିହାର ଓ ଛୋଟନାଗପୁର ସକାଶେ ଗୋଟିଏ ସବ୍ କମିଟି ବାଙ୍କୀପୁରଠାରେ ଏବଂ ଓଡିଶା ସକାଶେ କଟକଠାରେ ଗଠିତ ହେବ । ସେହି ଦୁଇ କମିଟିର ସଭ୍ୟ ସଂଖ୍ୟା ସଭାପତି ଛଡା ଯଥାକ୍ରମେ ୮ ଓ ୫ ହେବ । ବାଙ୍କୀପୁର କମିଟିର ସଭାପତି ପାଟନା ବିଭାଗର ଇନ୍‌ସ୍ପେକ୍ଟରେ ଏବଂ ଓଡିଶା କମିଟିର ସଭାପତି ଓଡିଶା ବିଭାଗର ଇନସ୍ପେକ୍ଟର ହେବେ ଏବଂ ବାଙ୍କୀପୁରର ଅଶିଷ୍ଟଣ୍ଟ ଇନ୍‌ସ୍ପେକ୍ଟରେ ଓ କଟକର ଡେପୁଟି ଇନ୍‌ସ୍ପେକ୍ଟର ଯଥାକ୍ରମେ ସେହି ଦୁଇ କମିଟିର ସେକ୍ରେଟରୀ ହେବେ । ସଦର କମିଟି ଇଂରାଜୀ, ବଙ୍ଗଳା ଓ ଅନ୍ୟାନ୍ୟ ଭାଷା ପୁସ୍ତକର ବିଚାର କରିବେ ଏବଂ ବାଙ୍କୀପୁରର କମିଟି କେବଳ ବିହାର ଓ ଛୋଟନାଗପୁରର ପ୍ରଚଳିତ ଭାଷା ପୁସ୍ତକ ଏବଂ କଟକର କମିଟି କେବଳ ଓଡିଶା ପ୍ରଚଳିତ ଭାଷା ପୁସ୍ତକର ବିଚାର କରିବେ । ଶିକ୍ଷାବିଭାଗର ଡାଇରେକ୍ଟର ଯେଉଁ ପୁସ୍ତକ ପଠାଇବେ କମିଟିମାନେ କେବଳ ତହିଁର ଉପଯୋଗିତା ବିଚାର କରିବେ । ତାହା ଛଡ଼ା ପ୍ରାଇଜ୍ ଓ ଲାଇବ୍ରେରି ପୁସ୍ତକର ବିଚାର କରି ପାରିବେ । ମାତ୍ର ଗବର୍ଣ୍ଣମେଣ୍ଟ ଯେଉଁ ପୁସ୍ତକ ମଞ୍ଜୁର କରିବେ ଏବଂ ପ୍ରତିବର୍ଷ ଜାନୁୟାରୀ ମାସରେ ଯେଉଁ ପାଠ୍ୟପୁସ୍ତକର ତାଲିକା ଗବର୍ଣ୍ଣମେଣ୍ଟଙ୍କର ଆଦେଶାନୁସାରେ ବାହାରିବ ତାହା ଛଡ଼ା ଅନ୍ୟ କୌଣସି ପୁସ୍ତକ କୌଣସି ବିଦ୍ୟାଳୟରେ ପାଠ୍ୟପୁସ୍ତକ ସ୍ୱରୂପ ବ୍ୟବହାର ହେବ ନାହିଁ । ଯଦ୍ୟପି କୌଣସି ସାହାଯ୍ୟପ୍ରାପ୍ତ ବା ଅନ୍ୟ ବିଦ୍ୟାଳୟରେ ପାଠ୍ୟପୁସ୍ତକ ତାଲିକା ଛଡ଼ା ଅନ୍ୟ ପୁସ୍ତକ ପଢ଼ାଯିବ ତେବେ ସେ ବିଦ୍ୟାଳୟର ଛାତ୍ର ପାସ କଲେ ସୁଦ୍ଧା ସରକାର ବୃତ୍ତି ବା ସାରଟିଫିକଟ ପାଇବ ନାହିଁ ।

କୌଣସି ଗ୍ରନ୍ଥକାର ବା ପ୍ରକାଶକ ଯେଉଁ ପୁସ୍ତକ ବ୍ୟବହାର ହେବା ନିମନ୍ତେ ବାଞ୍ଛା କରିବ ସେ ସେହି ପୁସ୍ତକର ଖ ୩ ଣ୍ଡ ଏକ ଛାପା ଆବେଦନପତ୍ର ସହିତ ଶିକ୍ଷା ବିଭାଗର ଡାଇରେକ୍ଟରଙ୍କ ନିକଟକୁ ପଠାଇବ । ଯେବେ ଡାଇରେକ୍ଟର ମହାଶୟ ସେ ପୁସ୍ତକ ସମ୍ବନ୍ଧରେ କମିଟିର ମତ ଗ୍ରହଣ କରିବା ଉଚିତ ବିବେଚନା କରିବେ ତେବେ ଆଉ ଯେତେ ଖଣ୍ଡ ପୁସ୍ତକ କମିଟିର ବିଚାର ନିମନ୍ତେ ଦରକାର ହେବ ତାହା ପଠାଇଦେବା କାରଣ ଲେଖିପଠାଇବେ । ଗ୍ରନ୍ଥକାର ବା ପ୍ରକାଶକ ଯେତେ ଖଣ୍ଡ ପୁସ୍ତକ ଦେବେ ତହିଁର ମୂଲ୍ୟ ପାଇବେ ନାହିଁ ଏବଂ ପୁସ୍ତକ ଅଗ୍ରାହ୍ୟ ହେଲେ ତହିଁର କାରଣ ଦର୍ଶାଇବାକୁ ଡାଇରେକ୍ଟର ବାଧ ନୁହନ୍ତି ।

*ଭା ୩୫ଗ, ସଂ୪୬ଖ୍ୟା, ୧/୧୨/୧୯୦୦*

## ୧୯୦୧

## Mrs. BESANT and OUR STUDENTS.

TO THE EDITOR OF UTKAL DIPIKA,

Sir,

I was present at all the lectures given by Mrs. Annie Besant. These meetings were largely attended but the audience consisted chiefly of students of the Ravenshaw College and of the several schools here.

Some of her remarks were very flattering to us Indians and I fear that in some quarters they have produced an impression that as a nation we are superior to the civilized nations of Europe. Such an impression is likely to work much mischief, if it increases our reluctance to exert for improvement. Orissa is sadly looking in progressive energy and no one will deplore it more than Mrs. Besant if her visit to Orissa would increase the lethargic propensities of my race.

Mrs.Besant's suggestions regarding an improved system of education where the Indian youth would be brought up amidst environments and religious teachings calculated to inspire "the plastic material of youth" with patriotism, a regard for our eminent ancestors and a spirit of self sacrifice, are very sound and practical and would commend themselves to every right-thinking man. If the applause with which Mrs. Besant's remarks on this point were received meant sincere sympathy, an effort should be made to put her suggestions in practice in Orissa, instead of subscribing to a College in Benares, Orissa is a very poor province and her poverty has been one of the chief causes of her present state of education and progress, It is not prudent for Orissa to help sister provinces, She should not forget the old but sound advice "Charity should begin at home." If there are hearts and hands in Orissa anxious to inaugurate an improved system of education on the lines indicated by Mrs. Besant they should be busy in Orissa.

As for Mrs. Besant's remarks regarding spiritual matters, reincarnation, theosophy and such like subjects, I should advise our students not to give their thoughts to these matters at present. A belief in theosophy or reincarnation is not an essential element in any system of education. Mrs. Besant advised her audience to adopt the

system of education followed at Harrow and Eton. Everybody knows theosophy or the doctrine of reincarnation is not taught at either of those schools. Mrs. Besant has passed through several phases of faith . I do not say whether this is to her credit or discredit. But it is clear that the principle of spiritual evolution has been busily at work with her and she may live to see and to show a further stage of spiritual evolution which may result in a renunciation of the faith in the enunciation of which she is now so eloquent.Mrs. Besant preached materialism and atheism for several years and described in equally eloquent terms the joys resulting from them. She has been a Christian, a theist, a Malthusian, an Antimalthusian, a Polytheist a Pantheist and it may be she has passed through other phases of faith unknown to the public. At one period of her life she said "Prayer was gradually discontinued as utterly at variance with any dignified idea of God and as in contradiction to all the results of scientific investigation" The late Mr. Gladstone the Grand Old Man of England or more properly the Grand old man of the world, (for the world has not produced many men of his intellectual calibre) wrote of Mrs. Besant.

Her several schemes of belief or nonbelief appear to have been entertained one after another, with the same undoubting confidence, until the junctures successively arrived for their not regretful, but rather contemptuous rejection. They are no where based upon reasoning, but they rest upon one and the same authority- the authority of Mrs. Besant."

On her own account Mrs. Besant's Guru said to her "Child your pride is terrible, you are as proud as Lucifer himself."

My advise to my student friends is not to be dazzled by the new light. They should use the opportunities of a student life in the pursuit of knowledge bearing in mind. Mrs. Besant's remarks that they have to serve a God above and their country below and that self sacrifice to be an efficient motive in after-life must be practised in young age. When our young men have completed their university career they may examine Mrs. Besant's theories of theosophy and reincarnation (if she has not renounced them by that time) following the advice Mr. Bradlaugh gave to Mrs. Besant:- " You should never say you have an opinion on a subject until you have tried to study the strongest things said against the view to which you are inclined. You must not think you know a subject until you are acquainted with all that the best minds have said about it."

CUTTACK — Yours & C.

20th February 1901 — An Old Uriya.

ଭା୩୬ଗ, ସଂ୮ଖ୍ୟା, ୨୩/୨/୧୯୦୧

## ପ୍ରେରିତପତ୍ର ।

## [ପ୍ରବନ୍ଧ ଗୁଣାଦର୍ଶ]

ମାନ୍ୟବର ଶ୍ରୀଳ ଶ୍ରୀଯୁକ୍ତ ବାବୁ ଉତ୍କଳଦୀପିକା

ସମ୍ପାଦକ ମହାଶୟେଷୁ।

ନିବେଦନମିଦମ୍।

ମହାଶୟ !

ଆପଣଙ୍କ ଜଗନ୍ମୋହିନୀ ପତ୍ରିକାର ଏକପାର୍ଶ୍ୱରେ ଆମ୍ଭର କ୍ଷୁଦ୍ର ପ୍ରବନ୍ଧ ଖଣ୍ଡିକୁ ସ୍ଥାନ ଦେଲେ ଆପଣଙ୍କ ସ୍ନେହ ପାଶରେ ଚିରବାଧିତ ହେବୁଁ।

"ଗୁଣାଦର୍ଶ"

ମୟୂରଭଞ୍ଜ ସଂସ୍କୃତ ବିଦ୍ୟାଳୟସ୍ଥ ପଣ୍ଡିତ ଶ୍ରୀଳ ଶ୍ରୀଯୁକ୍ତ ବାବୁ ବୁଦ୍ଧିନାଥ କାବ୍ୟତୀର୍ଥ ମହାଶୟଙ୍କ ବିରଚିତ "ଗୁଣାଦର୍ଶ" ପୁସ୍ତକ ଖଣ୍ଡେ ଉପହାର ସ୍ୱରୂପ ପ୍ରାପ୍ତ ହୋଇ କୃତଜ୍ଞତା ସ୍ୱୀକାର କରୁ ଅଛୁଁ ଏବଂ ତାହାର ସର୍ବାଂଶ ପର୍ଯ୍ୟାଲୋଚନା କରିବାରେ ଆମ୍ଭେ କୌଣସି ଦୋଷ ଦେଖି ପାରୁ ନାହୁଁ ଓ କବିବର ଉପେନ୍ଦ୍ରଭଞ୍ଜ ବୀରଙ୍କ ରଚିତ ଗ୍ରନ୍ଥରେ ମଣିରେ କୀଟବେଧ ପ୍ରାୟ ଯାହାକି ଦୋଷାରୋପ କରିଥିଲେ ତାହାର ସର୍ବ ଭାବରେ ଉଦ୍ଧାର ଦେଖି ଉକ୍ତ କାବ୍ୟତୀର୍ଥ ମହାଶୟ ଆମ୍ଭମାନଙ୍କର ବିଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି। ସନ ୧୯୦୧ ଖ୍ରୀଷ୍ଟାବ୍ଦ ଜାନୁୟାରୀ ତା୧୬ ରିଖରେ ପ୍ରକାଶିତ "ସମ୍ବଲପୁର ହିତୈଷିଣୀ" ପତ୍ରିକାରେ ଏକ ଅଜ୍ଞାତନାମା ପତ୍ରଲେଖକ ଲେଖିଅଛନ୍ତି "କାବ୍ୟତୀର୍ଥ ମହାଶୟ ଗୁଡ଼ିଏ ସ୍ଥୁଳତୂଷାବଘାତ କରିଅଛନ୍ତି" ଏହି ବାକ୍ୟର ସ୍ଥୁଳତୂଷାସ୍ୱରୂପ ଦୋଷର ଅବଘାତ (ଖଣ୍ଡନ) କରିଅଛନ୍ତି ଏହି ଅର୍ଥରେ କେବଳ ଯଥାର୍ଥତା ଦେଖୁଁ। ସମଦୃଷ୍ଟିରେ ଦେଖିଲେ ସାହିତ୍ୟ ରସାଭିଜ୍ଞ ବ୍ୟକ୍ତିମାନଙ୍କର ପ୍ରାୟ ଉକ୍ତ ପୁସ୍ତକ ବିଶେଷ ଆଦରଣୀୟ ହେବ। ସେ ଯାହା ହେଉ ଉକ୍ତ କାବ୍ୟତୀର୍ଥ ମହାଶୟଙ୍କ ସାହିତ୍ୟ ବିଦଗ୍ଧତା ଦେଖି ଆମ୍ଭେମାନେ ଅତି ସନ୍ତୁଷ୍ଟ ହୋଇଅଛୁଁ । ଇତି।

ମଲ୍ଲଭୂମି ଚନ୍ଦ୍ରୀଦୁର୍ଗ,
ଘୁଁଟୀୟାପୋଃ,
ମେଦିନୀପୁର,।
୧।୨।୧୯୦୧

ସାହିତ୍ୟ ଗୁଣଗ୍ରାହୀ
ପଣ୍ଡିତ ଶ୍ରୀ ଈଶ୍ୱରଚନ୍ଦ୍ର ତ୍ରିପାଠୀ ଶର୍ମ୍ମା

*ଭାଗ୩୬ଗ, ସଂ୯ଖ୍ୟା, ୨।୩।୧୯୦୧*

## ବଙ୍ଗୀୟ ବ୍ୟବସ୍ଥାପକ ସଭାରେ ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ।

ବଙ୍ଗୀୟ ବ୍ୟବସ୍ଥାପକ ସଭାର ଗତ ତା୧୨ରିଖର ଅଧିବେଶନରେ ଓଡିଶା ଜିଲା ବୋରଡ ସମୂହର ସଦସ୍ୟ ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ଯେ ସବୁ ପ୍ରଶ୍ନ କରିଥିଲେ ତହିଁର ଉତ୍ତର ସହିତ ନିମ୍ନେ ପ୍ରକାଶିତ ହେଲା। ଯଥା –

ପ୍ରଶ୍ନ- ଗତ ପାଞ୍ଚବର୍ଷ ମଧ୍ୟରେ ପ୍ରତିବର୍ଷ ପୁରୀ ମିଉନିସିପାଲିଟି ଲଜିଂହାଉସ ଫଣ୍ଡରୁ କେତେ ଟଙ୍କାଲେଖାଏଁ ପାଇଅଛନ୍ତି ?

ମାନ୍ୟବର ଶ୍ରୀଯୁକ୍ତ ବେକର ସାହେବ ଉତ୍ତର ଦେଲେ କି ଆପଣ ଲୋଡ଼ିବା ତାଲିକା ପ୍ରସ୍ତୁତ କରି ସଭା ସମ୍ମୁଖରେ ରଖିଦେଲୁ।

ପ୍ରଶ୍ନ- ଗତ ତା୬ରିଖର ନିର୍ଦ୍ଧାରଣରେ ବଙ୍ଗୀୟଗବର୍ଣ୍ଣମେଣ୍ଟ ଲେଖିଅଛନ୍ତି କି ଅନ୍ୟାନ୍ୟ ସମ୍ପ୍ରଦାୟର ଲୋକପରି ଓଡିୟାଙ୍କ ପକ୍ଷରେ ସମସ୍ତ ସରକାରୀ ଚାକରିରେ ପ୍ରବେଶ କରିବାର ଦ୍ୱାର ସମାନରୂପେ ମୁକ୍ତ ଅଛି ଏବଂ ଏ ବିଷୟ ସରକାରୀ ସକଳ ମହକୁମାକୁ ଜଣାଇ ଦିଆଯାଇଅଛି। ଏଥକୁ ଯେ ସବୁ ଚାକର ପ୍ରତିଯୋଗିତା ପରୀକ୍ଷା ବିନା ହାକିମଙ୍କର ପସନ୍ଦ ଅନୁସାରେ ଦିଆଯାଏ ଭିନ୍ନ ଭିନ୍ନ ମହକୁମାର ହାକିମମାନେ ସେ ପ୍ରକାର ପଦ ଶୂନ୍ୟ ହେଲେ କର୍ମଚାରୀ ନିୟୋଗ ନିମନ୍ତେ ଓଡିୟା ଗେଜେଟ ବା ସ୍ଥାନୀୟ ସମ୍ବାଦପତ୍ରରେ ଦିଅନ୍ତି କି ନାହିଁ? ଓଡିଶାର ନିମକି ବିଭାଗ ମାନ୍ଦ୍ରାଜରୁ ବଙ୍ଗଳାକୁ ଫେରି ଆସିବା ବେଳେ ଅଧିକା ଅମଲା ନିଯୁକ୍ତ ହୋଇଥିଲେ କି ନା ଏବଂ ସେମାନେ କେଉଁ ଦେଶୀୟ ଲୋକ ଓ କେତେ ବେତନରେ ନିଯୁକ୍ତ ହୋଇଥିଲେ ଇତ୍ୟାଦି?

ମାନ୍ୟବର ଶ୍ରୀଯୁକ୍ତ ବେକର ସାହେବ ଉତ୍ତର ଦେଲେ କି ବିଜ୍ଞାପନ ଦେବାର ପ୍ରସ୍ତାବ ହୋଇ ନ ଥିଲା। ସକଳ ମହକୁମାକୁ ଆଦେଶ ପଠା ଯିବାର ଦରଖାସ୍ତକାରିମାନଙ୍କୁ ଜଣାଇ ଦିଆଯାଇଥିଲା। ନିମକି ମହକୁମାର ଅମଲା ଓ ନିମ୍ନଶ୍ରେଣୀର ପରିଦର୍ଶନ କର୍ମଚାରୀ ନିୟୋଗର ଭାର ଅବକାରୀ ଓ ନିମକି କମିଶନରଙ୍କଠାରେ ଅଛି ଏବଂ ସେ ବିଷୟ କିଛି ଗବର୍ଣ୍ଣମେଣ୍ଟଙ୍କୁ ଜଣା ନାହିଁ।

ପ୍ରଶ୍ନ- ଗତ ବନ୍ଦୋବସ୍ତରେ ବଳରାମପୁର, ରଗଡି ଏବଂ ଚୌଷଠିପଡା ଏହି ତିନି ମାହାଲ ଉପରେ ଅଧିକା କର ଧାର୍ଯ୍ୟ ହେବାରୁ ଉକ୍ତ ଜିଲ୍ଲାର ଜମିଦାରମାନେ ଇଣ୍ଡିୟା ଗବର୍ଣ୍ଣମେଣ୍ଟରେ ଆପତ୍ତି କରିବାର ଇଚ୍ଛା କରି ସେହି ତିନି ମାହାଲ ସମ୍ବନ୍ଧରେ ଜିଲାର କଲେକ୍‌ଟର,ସେଟଲମେଣ୍ଟ ଅଫିସର, ଜମିଦାରୀ, ଦପ୍ତରର ଡାଇରେକଟର ପ୍ରଭୃତି ମାନଙ୍କ ରିପୋଟର ନକଲ ପ୍ରାର୍ଥନା କରିବାରେ କମିଶନର ସାହେବ ନାସ୍ତି କଲେ। ପୂର୍ବ ଅର୍ଥାତ୍ ସନ ୧୮୩୯।୪୦ ସାଲର ବନ୍ଦୋବସ୍ତରେ ଏହି ଜମିଦାରମାନେ ସେମାନଙ୍କ ମାହାଲର ରାଜସ୍ୱ ବୃଦ୍ଧି ନ ହେବା ବିଷୟ କମିଶନର ଓ ରେବନ୍ୟୁ ବୋରଡଙ୍କ ରିପୋଟର ନକଲ ବିନା ବାଧାରେ ପାଇଥିବା ପ୍ରତ୍ୟକ୍ଷେ ବର୍ତ୍ତମାନ ତହିଁର ବିପରୀତ ହୋଇଅଛି। ଭାରତ ଗବର୍ଣ୍ଣମେଣ୍ଟଙ୍କଠାରେ ଲୋକେ ଆପଣା ଆପଣା ବନ୍ଦୋବସ୍ତ ଘଟିତ ଦୁଃଖ ଜଣାଇବା କାରଣ ସେ ସମସ୍ତ କାଗଜର ନକଲ ପ୍ରାର୍ଥନା କରିବେ ଗବର୍ଣ୍ଣମେଣ୍ଟ ସେ ସମସ୍ତ ନକଲ ଦେବା କାରଣ ସ୍ଥାନୀୟ ହାକିମମାନଙ୍କୁ ଆଦେଶ ଦେବେ କି?

ମାନ୍ୟବର ଶ୍ରୀଯୁକ୍ତ ସଲାକ ସାହେବ ଉତ୍ତର ଦେଲେ କି ଓଡିଶାର କମିଶନର ଏ ବିଷୟରେ ଯାହା କରିଅଛନ୍ତି ତାହା ଗବର୍ଣ୍ଣମେଣ୍ଟଙ୍କୁ ଜଣା ନାହିଁ। ବୋଧ ହୁଅଇ ସେ ବୋରଡଙ୍କ ବିଧିପୁସ୍ତକର ଧା ୨ ୨ରା ଅନୁସାରେ ନକଲ ଦେବାକୁ ନାସ୍ତି କରିଅଛନ୍ତି। ମାତ୍ର ଏହି ବିଶେଷ ସ୍ଥଳେ ପ୍ରଶ୍ନଲିଖିତ ଜମିଦାରମାନଙ୍କୁ ସେମାନଙ୍କ ପ୍ରାର୍ଥିତ ନକଲ ଦେବା ବିଷୟରେ ଗବର୍ଣ୍ଣମେଣ୍ଟ ଅସମ୍ମତ ନୁହନ୍ତି।

ଏଥିରୁ ପାଠକମାନେ ଦେଖିବେ ଯେ ମାନ୍ୟବର ମଧୁବାବୁଙ୍କର ପ୍ରାର୍ଥନା ସାଧାରଣ ପ୍ରକାରର ଥିଲା। ମାତ୍ର ଗବର୍ଣ୍ଣମେଣ୍ଟ ତହିଁରେ ସମ୍ମତ ନ ହୋଇ କେବଳ ଉପର ଲିଖିତ ତିନି ଜମିଦାର ମାନଙ୍କ ପ୍ରତି ବିଶେଷ ଅନୁଗ୍ରହ ପ୍ରକାଶ କଲେ। ଏହା ପ୍ରଚୁର ହେଲା ନାହିଁ। ଯହିଁରେ ସାଧାରଣ ସୁବିଧା ହେବ ସେପରି ନିୟମ ହେବା ଉଚିତ। ଲୋକେ ଆପଣା ସତ୍ୱରକ୍ଷା ନିମନ୍ତେ ଯେଉଁ କାଗଜର ନକଲ ଲୋଡିବେ ତହିଁରେ ଆପତ୍ତି କରିବା ସରକାରଙ୍କ ପକ୍ଷରେ ଶୋଭନୀୟ ନୁହେ।

ପୁରୀ ମିଉନିସିପଲ କମିଶ୍ନର ଏବଂ ସେମାନଙ୍କର ଚେଆରମାନଙ୍କ ମଧ୍ୟରେ ମତାନ୍ତର ଘଟିବା ବିଷୟରେ ମଧୁ ବାବୁ କେତେକ ପ୍ରଶ୍ନ କରିଥିଲେ ମାତ୍ର ସେ ସବୁ ତର୍କମୂଳକ ଥିବା ହେତୁରେ ଗବର୍ଣ୍ଣମେଣ୍ଟ ଅଗ୍ରାହ୍ୟ କଲେ। ବିଷୟଟି ଗୁରୁତର ଅଟେ ଏବଂ ଆମ୍ଭେମାନେ ଏକାନ୍ତ ଆଶା କରୁଁ କି ସୁଯୋଗ୍ୟ ସଦସ୍ୟ ମହାଶୟ ଏତିକିରେ କ୍ଷାନ୍ତ ହେବେ ନାହିଁ।

*ଭା୩୬ଗ,ସଂ୧୬ଖ୍ୟା, ୨୦।୪।୧୯୦୧*

## ବାଳିକା ବିଦ୍ୟାଳୟର ପୁରସ୍କାର ବିତରଣ।

ଗତ ଶନିବାର ଅପରାହ୍ଣ ଘ୪୍ୟା ବେଳେ ଏ ନଗରର ରେବନସା ହିନ୍ଦୁ ବାଳିକା ବିଦ୍ୟାଳୟ ଗୃହରେ ସେହି ବିଦ୍ୟାଳୟର ଛାତ୍ରୀଙ୍କ ମଧ୍ୟରେ ଯେଉଁମାନେ ଭଲ ପଢ଼ା କରିଥିଲେ ସେମାନଙ୍କୁ ପୁରସ୍କାର ଦେବା କାରଣ ଗୋଟିଏ ସଭା ହୋଇଥିଲା । ଓଡିଶାର କମିଶନର ଶ୍ରୀଯୁକ୍ତ କାରଷ୍ଟେୟର୍ସ ସାହେବ ସଭାପତିର ଆସନ ଗ୍ରହଣ କରିଥିଲେ। ତାହାଙ୍କୁ ଛାଡି ଜ୧୦ଣ ଇଉରୋପୀୟ ସାହେବ ଓ ମେମ୍ ଏବଂ ଜ୨୫/୩୦ଣ ଦେଶୀୟ ଭଦ୍ର ଲୋକ ଉପସ୍ଥିତ ଥିଲେ। ପ୍ରଥମେ ବିଦ୍ୟାଳୟର ସମ୍ପାଦକ ବାବୁ ଉମେଶଚନ୍ଦ୍ର ବୋଷ ବାର୍ଷିକ ବିବରଣ ପାଠ କଲେ। ତହିଁର ସଂକ୍ଷେପ ମର୍ମ ଏହି କି ସନ ୧୯୦୦/୧୯୦୧ ସାଲ ଶେଷରେ ଜ୫୫ଣ ବାଳିକା ଏବଂ ଜ୪ଣ ଦଶବର୍ଷର ନ୍ୟୂନ ବାଳକ ଗାଏ ଜ୫୯ଣ ପଢୁଥିଲେ ଏବଂ ତହିଁ ପୂର୍ବ ବର୍ଷର ସଂଖ୍ୟା ୮୨ ଥିଲା। ମାତ୍ର ଛାତ୍ରୀ ଓ ଛାତ୍ର ସଂଖ୍ୟା ଜ୨୩ଣ ଊଣା ହୋଇଥିଲେହେଁ ଦୈନିକ ହାରାହାରି ଉପସ୍ଥିତ ଊଣା ପଡି ନ ଥିଲା। ଏଥିରୁ ବୋଧ ହୁଅଇ ଅନେକ ପିଲା ବର୍ଷର ଶେଷ ଭାଗରେ ବିଦ୍ୟାଳୟ ତ୍ୟାଗ କରିଥିଲେ। କେତେକ ବର୍ଷ ହେଲା ଉଠିଯାଇଥିବା ଚାନ୍ଦନି ଚୌକ ମିଉନିସିପାଲିଟି ବାଳିକା ବିଦ୍ୟାଳୟ ପୁନର୍ବାର ସ୍ଥାପିତ ହେବା ଏବଂ ସେଠାରେ ଫିସ୍ ଓ ପାଠ୍ୟ ପୁସ୍ତକ କିଣିବା ବିନା ପଢ଼ିବାର ସୁବିଧା ହେତୁ ହିନ୍ଦୁ ବାଳିକା ବିଦ୍ୟାଳୟର ଛାତ୍ରୀ ଊଣା ପଡିବାର ଜଣା ଯାଏ। ବିଦ୍ୟାଳୟର ବାର୍ଷିକ ବ୍ୟୟ ଟ୯୮୪ଙ୍କା ମାତ୍ର ଆୟ ସ୍କୁଲ ଫିସ ଟ୮୬ଙ୍କା ଭେଦା ଟ ୪୨୦ଙ୍କା ଏବଂ ସରକାରି ସାହାଯ୍ୟ ଟ୪୪୪ଙ୍କା ଗାଏ ଟ ୯୫୦ଙ୍କା ହୋଇଥିଲା। ସୁତରାଂ ଟ୩୪ଙ୍କା ଅଧିକା ବ୍ୟୟ ହୋଇଥିଲା ଏବଂ ତାହା ବିଦ୍ୟାଳୟର ପୂର୍ବ ସଞ୍ଚିତ ପାଣ୍ଠିରୁ ଦିଆ ଯାଇଅଛି। ଘରର ବାର୍ଷିକ ମରାମତି ବ୍ୟୟ ନିର୍ବାହର କୌଣସି ବନ୍ଦୋବସ୍ତ ନ ଥିଲା। ମାତ୍ର ଏ ବର୍ଷରୁ ବାମଣ୍ଡାର ମାନ୍ୟବର ରାଜା ବାହାଦୁର ବାର୍ଷିକ ଟ୩୦ଙ୍କା ଦାନ ଅଙ୍ଗୀକାର କରିବାରୁ ସେ ଅଭାବ ଘୁଞ୍ଚି ଯାଇଅଛି। ବର୍ତ୍ତମାନ ଯେଉଁ ଜ୫୫ଣ ଛାତ୍ରୀ ଅଛନ୍ତି ସେମାନଙ୍କ ମଧ୍ୟରେ ଜ୪୧ଣ ଓଡିଶା ଏବଂ ଜ୧୪ଣ ବଙ୍ଗବାସୀ ଅଟନ୍ତି ଏବଂ ଏମାନଙ୍କ ଶିକ୍ଷା ନିମନ୍ତେ ଜ୪ଣ ଶିକ୍ଷକ ନିଯୁକ୍ତ ଅଛନ୍ତି। ପୁରସ୍କାର ବିତରଣ ବିଷୟରେ ଏ ନଗରର ଅନେକ ଭଦ୍ର ଲୋକ ସାହାଯ୍ୟ କରିଅଛନ୍ତି। ତନ୍ମଧ୍ୟରେ ବାମଣ୍ଡାର ରାଜା,କନିକା ଓ ଢେଙ୍କାନାଳର ରାଣୀମାନେ, ହରିବଲ୍ଲଭ ବୋଷ ଓ ଯୋଗେଶ୍ୱର ଚନ୍ଦ୍ର ରାୟ ବାହାଦୁର ମାନେ ବାବୁ ଜଗନ୍ମୋହନ ଲାଲ ଓ ବାବୁ ଶଶୀଭୂଷଣ ରାୟ ଅଧିକ ସାହାଯ୍ୟ ଦେଇ ଅଛନ୍ତି।

ରିପୋଟ ପାଠାନ୍ତର କେତେ ଜଣ ବାଳିକା ଅଭ୍ୟାସ କରିଥିବା ବଙ୍ଗଳା ଏବଂ ଓଡିୟା ପଦ୍ୟ ପଢ଼ିଲେ ଓ ତାହା ବଡ଼ ପ୍ରୀତିକର ହୋଇଥିଲା। ତଦନନ୍ତର ସଭାପତି ମହୋଦୟ ପୁରସ୍କାର ବାଣ୍ଟି ଦେଇ ଯେଉଁ ବକ୍ତୃତା କଲେ ତହିଁର ସଂକ୍ଷେପ ମର୍ମ ଏହିକି ଏ ବିଦ୍ୟାଳୟର ଛାତ୍ରୀ ସଂଖ୍ୟା ଏବଂ ଆୟ ଊଣା ହେବା ବଡ ଦୁଃଖର ବିଷୟ ଅଟେ। ଯେବେ କେବଳ ଚାନ୍ଦନି ଚୌକ ବିଦ୍ୟାଳୟ ହେତୁ ଛାତ୍ରୀ ସଂଖ୍ୟା ଊଣା ହୋଇ ଥାଏ ତେବେ ବୋଲିବାକୁ ହେବ ଯେ ଏଠାରେ ଊଣା ହେଲେହେଁ ମୋଟରେ ବାଳିକା ଶିକ୍ଷାର କ୍ଷତି ହୋଇ ନାହିଁ। ମାତ୍ର ଆର୍ଥିକ ଅବସ୍ଥାର ଅବନତି ବିଶେଷ ଶୋଚନୀୟ ଏବଂ ତହିଁର ଆଶୁ ପ୍ରତିକାର ନ ହେଲେ ବିଦ୍ୟାଳୟ ରହିବା କଷ୍ଟ। ଆର୍ଥିକ ଅଭାବ ମୋଚନର ଏକମାତ୍ର ସାଧାରଣ ଭେଦା ଉପରେ ନିର୍ଭର କରେ ଏବଂ ଓଡିଶାରେ ଏତେ ରାଜା ଜମିଦାର ଏବଂ ଅନ୍ୟାନ୍ୟ ସଙ୍ଗତିପନ୍ନ ଲୋକ ଥିବା ପ୍ରତ୍ୟକ୍ଷେ ଓଡିଶାର ପରମ ହିତୈଷୀ ରେବନସା ସାହେବଙ୍କର ଏହି କୀର୍ତ୍ତି ଉଜ୍ଜ୍ୱଳ ରୂପେ ରକ୍ଷା ହୋଇ ନ ପାରିଲେ ବଡ଼ ଦୁଃଖର ବିଷୟ ହେବ ସନ୍ଦେହ ନାହିଁ। ମଧ୍ୟପ୍ରଦେଶାନ୍ତର୍ଗତ ବାମଣ୍ଡାର ରାଜା ଓଡିୟାଙ୍କର ହିତୋନ୍ନତି କାମନାରେ ଏ ବିଦ୍ୟାଳୟର ଅଭାବ ପୂର୍ଣ୍ଣ କରିବାକୁ ଅଗ୍ରସର ହେବା ସ୍ଥଳେ ଖାସ ଓଡିଶାର ରାଜା ଓ ଅନ୍ୟାନ୍ୟ ଧନାଢ୍ୟ ବ୍ୟକ୍ତିଙ୍କର ନିଶ୍ଚିନ୍ତ ରହିବା ନିତାନ୍ତ ଅଶୋଭନୀୟ। ଆଶା ହୁଅଇ ସେମାନେ ଏ ବିଷୟରେ ଆଉ ପଶ୍ଚାତ୍‌ପଦ ହେବେ ନାହିଁ ଏବଂ ଆଗାମୀ ବର୍ଷରେ ଏ ବିଦ୍ୟାଳୟର ଅବସ୍ଥା ଭଲ ଦେଖା ଯିବ।

ପରି ଶେଷରେ ସଭାପତିଙ୍କୁ ଧନ୍ୟବାଦ ଦିୟା ଯାଇ ସଭା ଭଙ୍ଗ ହେଲା ଏବଂ ବିଦ୍ୟାଳୟର ଛାତ୍ର ଓ

ଛାତ୍ରୀମାନଙ୍କୁ ମିଷ୍ଟାନ୍ନ ଦିୟା ଯାଇ ବିଦାୟ ଦିୟାଗଲା।

ଆସ୍ମମାନଙ୍କର ଏକାନ୍ତ ଅନୁରୋଧ ଯେ କମିଶନର ସାହେବଙ୍କର ସାଧୁ ଉପଦେଶ ଅସ୍ମଦେଶୀୟ ମାନେ ଦିବ୍ୟ ଚିତ୍ତରେ ଗ୍ରହଣ କରିବେ।

*ଭାଗ୩୬ଗ,ସଂ୧୭ଖ୍ୟା, ୨୭।୪।୧୯୦୧*

## ଡେପୁଟି ଓ ସବଡେପୁଟି ପରୀକ୍ଷାର ଫଳ।

ଗତ ଅପ୍ରେଲ ମାସ ତା ୯ ରିଖ ଓ ତହିଁ ପର ଦିଂ୩ନ ଏହି ପରୀକ୍ଷା କଲିକତାଠାରେ ଗୃହୀତ ହୋଇଥିଲା। ସର୍ବସୁଦ୍ଧା ଜଂ୧୦୫ଣ ପରୀକ୍ଷା ଦେବାର ଅନୁମତି ପାଇଥିଲେ ମାତ୍ର ପ୍ରକୃତରେ ଜଂ୯୯ଣ ଉପସ୍ଥିତ ହୋଇ ପ୍ରଶ୍ନ କାଗଜର ଉତ୍ତର ଲେଖି ଦେଇଥିଲେ। ସେମାନଙ୍କ ମଧରେ ଜଂ୧୨ଣ ମୁସଲମାନ, ଜଂ୫ଣ ବିହାରୀ ହିନ୍ଦୁ ଏବଂ ଜଂ୨ ଣ ଓଡିଯା ଥିଲେ। ଯେଉଁମାନେ ଏକ ତୃତୀୟାଂଶ ବା ତହିଁରୁ ଅଧିକ ନମ୍ବର ରଖି ପାରିଥିଲେ ସେମାନଙ୍କ ସଂଖ୍ୟା ଜଂ୯୬ଣ। ପୂର୍ବରୁ ଘୋଷଣା ଦିୟା ଯାଇଥିଲା ଯେ ଏଥର ପରୀକ୍ଷାର ଫଳାନୁସାରେ ସର୍ବୋଚ୍ଚ ନମ୍ବର ପାଇବା ଜଂ୩ଣ ଡେପୁଟିକଲେକ୍ଟର ନିଯୁକ୍ତ ହେବେ ଏବଂ ମାନ୍ୟବର ବଙ୍ଗେଶ୍ୱରଙ୍କର ମନୋନୀତମତେ ପରୀକ୍ଷୋତ୍ତୀର୍ଣ୍ଣ ବ୍ୟକ୍ତିଙ୍କ ମଧ୍ୟରୁ ଜଂ୨ଣ ଡେପୁଟି ଏବଂ ଜଂ୩ଣ ସବଡେପୁଟି ନିଯୁକ୍ତ ହେବେ। ତଦନୁସାରେ ବାବୁ ରେବତୀ ମୋହନ ଚକ୍ରବର୍ତ୍ତୀ ଏମ୍ , ଏ, ବାବୁ ଅକ୍ଷୟକୁମାର ସୁର ବି,ଏ,ଏବଂ ବାବୁ ପ୍ରଫୁଲ୍ଲଶଙ୍କର ସେନ ଏମ୍, ଏ, ଯଥାକ୍ରମେ ୫୯୬,୫୭୧ ଓ ୫୬୬ ନମ୍ବର ପାଇଥିବାରୁ ସେମାନେ ଏବଂ ଜଣେ ଓଡିୟା ବାବୁ ଦୟାନିଧି ଦାସ ବି,ଏ,ଏବଂ ଜଣେ ବିହାରୀ ମୁସଲମାନ ମୌଲଭି ସୟଦ ଅବଦୁ ସମଦ ବି,ଏ, ଶିକ୍ଷାନବୀସ ଡେପୁଟି କଲେକ୍ଟର ସ୍ୱରୂପ ଗୃହୀତ ହେଲେ। ସେମାନେ ଶିକ୍ଷା ସମୟରେ ପ୍ରତିମାସ ଟ୫୦ ଙ୍କା ଲେଖାଏଁ ଖୋରାକି ପାଇବେ ଏବଂ ଯୋଗ୍ୟତା ଦେଖାଇ ପାରିଲେ ଏକଟିଂ ଶ୍ରେଣୀ ଅଥବା ଅଷ୍ଟମଶ୍ରେଣୀ ଡେପୁଟିକଲେକ୍ଟରିରେ ଭରତି ହେବେ।

ନିମ୍ନ ଲିଖିତ ପ୍ରାର୍ଥିଙ୍କୁ ମାନ୍ୟବର ଛୋଟଲାଟ ମହୋଦୟ ସବଡେପୁଟି ପଦ ନିମନ୍ତେ ମନୋନୀତ କଲେ ଯଥା:-

ବାବୁ ଭୁବନମୋହନ ଚାଟୁର୍ଯ୍ୟା ବି,ଏ, ବାବୁ ଜିତେନ୍ଦ୍ରନାଥ ସରକାର ବି,ଏ, ଏବଂ ବାବୁ ଅମରେନ୍ଦ୍ରନାଥ ପାଲ ଚୌଧୁରୀ ବି,ଏ, । ଏମାନେ ସମ୍ପ୍ରତି ମାସକୁ ଟଂ୩୦ ଙ୍କା ଖୋରାକି ପାଇ କାର୍ଯ୍ୟ ଶିକ୍ଷା କରିବେ ଏବଂ ସନ୍ତୋଷଜନକ ରିପୋଟ ହେଲେ ଚତୁର୍ଥ ଶ୍ରେଣୀର ସବ୍‌ଡେପୁଟି ପଦ ଖାଲି ହେବା ମାତ୍ରେ ଭରତି ହେବେ।

ଡେପୁଟି ଓ ସବ୍‌ଡେପୁଟି ପଦରେ ଯେଉଁମାନେ ମନୋନୀତ ହେଲେ ସେମାନେ ସମସ୍ତେ ଗତ ଦିସମ୍ବର ମାସ ତା ୩୧ ରିଖର ବିଜ୍ଞାପନ ଅନୁସାରେ ଯୋଗ୍ୟତାର ଡାକ୍ତରି ସାରଟିଫିକଟ ଦାଖଲ କରିବାକୁ ବାଧ। ଯେ ଯେଉଁ ଜିଲାରେ କାର୍ଯ୍ୟ କରିବେ ତହିଁର ଆଦେଶ ଏ ପଛେ ବାହାରିବ।

ଉପର ଲିଖିତ ଆଦେଶରେ ପାଠକମାନେ ଦେଖିବେ ଯେ ଏଥର ଏକଜଣ ଓଡିୟାର ଭାଗ୍ୟ ଫିଟିଅଛି ଏବଂ ସେ ଅନ୍ୟାନ୍ୟ ବର୍ଷପରି ପ୍ରଥମେ ସବଡେପୁଟି ନ ହୋଇ ଏକାବେଳେ ଡେପୁଟି ଶ୍ରେଣୀରେ ଗୃହୀତ ହୋଇଅଛନ୍ତି। ଓଡିଶାପ୍ରତି ଏତେ ଅନୁଗ୍ରହ ପ୍ରକାଶ କରିବା ହେତୁ ମାନ୍ୟବର ବଙ୍ଗେଶ୍ୱର ସରଜାନ ଉଡବରନଙ୍କୁ ଆସ୍ମେମାନେ ଅଶେଷ ଧନ୍ୟବାଦ ଦେଉଅଛୁଁ ଏବଂ ଓଡିଶା ଜିଲା ବୋରଡସମୂହର ବର୍ତ୍ତମାନ୍ ପ୍ରତିନିଧି ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ଏ ବିଷୟରେ ଯତ୍ନ କରିଥିବାରୁ ସେ ମଧ ଧନ୍ୟବାଦର ପାତ୍ର ଅଟନ୍ତି। ଭରସା କରୁଁ ଦୟାନିଧି ବାବୁ କାର୍ଯ୍ୟକ୍ଷେତ୍ରରେ ସୁଖ୍ୟାତି ଲାଭ କରି ଏହି ଅନୁଗ୍ରହର ଟେକ ରକ୍ଷା କରିବେ।

*ଭାଗ୩୬ଗ,ସଂ୨୫ଖ୍ୟା, ୨୨।୬।୧୯୦୧*

## ଅଭିନବ ପୁରସ୍କାର ସଭା ।

ଗତ ପୂର୍ବ ଶୁକ୍ରବାର ସନ୍ଧ୍ୟାବେଳେ ଏ ନଗରସ୍ଥ ପ୍ରିଣ୍ଟିଂ କମ୍ପାନୀଙ୍କ କୋଠାରେ ଗୋଟିଏ ମନୋହର ଅଭିନବ ସଭା ହୋଇଥିଲା । ସଚରାଚର ବିଦ୍ୟାଳୟର ଛାତ୍ରମାନଙ୍କୁ ପରୀକ୍ଷାର ଫଳାନୁସାରେ ପୁରସ୍କାର ଦେବା କାରଣ ସଭା ହେବାର ଦେଖା ଅଛି ଏବଂ ସରକାରୀ ଉପାଧି ଦାନ ଉପଲକ୍ଷରେ ଦରବାର ହେବାର ମଧ୍ୟ ଦେଖା ଅଛି। ମାତ୍ର ଦେଶୀୟ ସମ୍ପ୍ରଦାୟ ବିଶେଷ ଏକ ଯୋଗରେ କେହି ଗୁଣବାନ୍ ବ୍ୟକ୍ତିର ସମାଦର ନିମନ୍ତେ ଏପରି ସଭା କରିବାର ପୂର୍ବେ ଏଠାରେ କେବେ ଦେଖି ଥିବାର ସ୍ମରଣ ହେଉ ନାହିଁ। ଏଥି ପାଇଁ ଏହାକୁ ଅଭିନବ ସଭା ବୋଲିବାକୁ ହେବ। ଏହା ନଗରବାସୀ ମାରବାଡିମାନଙ୍କଦ୍ୱାରା ଅନୁଷ୍ଠିତ ହୋଇଥିଲା। ମାରବାଡିମାନଙ୍କ ମୁଖଣ୍ଡ ବ୍ୟକ୍ତି ବାବୁ ହରଦେଉରାୟ ପ୍ରଭୃତି ନିମନ୍ତ୍ରଣ ପତ୍ରଦ୍ୱାରା ଏ ନଗରବାସୀ ନାନା ଶ୍ରେଣୀର ଦେଶୀୟ ଭଦ୍ରଲୋକଙ୍କୁ ଆହ୍ୱାନ କରିଥିଲେହେଁ ବଡ ଦୁଃଖର ବିଷୟ ଯେ ଜ୧୦/୧୫ ଣରୁ ଅଧିକ ଶୁଭାଗମନର କ୍ଳେଶ ସ୍ୱୀକାର କରି ପାରି ନ ଥିଲେ। କେବଳ ମାରବାଡିଦଳର ଜ୨୦/୨୫ ଣ ଉପସ୍ଥିତ ଥିବାରୁ ସଭା ଏକପ୍ରକାର ପୂର୍ଣ୍ଣ ହୋଇଥିଲା। ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ଯଥାବିଧିରେ ସଭାପତି ପଦରେ ବରୀତ ହୋଇ କହିଲେ କି ଏ ନଗରବାସୀ ମାରବାଡିମାନେ ଏକ ପକ୍ଷରେ ବିଦେଶୀ ହେଲେହେଁ ପ୍ରକୃତରେ ଭାରତ ଭୂମିର ସନ୍ତାନ ହେତୁ ଆମ୍ଭମାନଙ୍କର ଭାଇ ଅଟନ୍ତି ଏବଂ ଭାଷା ଓ ରୀତିନୀତିର ଯେତେ ପ୍ରଭେଦ ହେଉ ପଛକେ ସେ ସମ୍ବନ୍ଧ ଭିନ୍ନ ହେବାର ନୁହେଁ। ସେମାନଙ୍କର ସ୍ୱଜାତି ପ୍ରେମ,ଐକ୍ୟତା, ସ୍ୱାଧୀନତା ଏବଂ ବ୍ୟବସାୟ ବୃଦ୍ଧି ଅସ୍ମଦେଶୀୟ ଓଡିଆମାନଙ୍କର ଶିକ୍ଷାର ସ୍ଥଳ ଏବଂ ଅଦ୍ୟ ସଭାର ଶୁଭାନୁଷ୍ଠାନଦ୍ୱାରା ସେମାନେ ଆଉ ଗୋଟିଏ ନୂତନ ଶିକ୍ଷା ଦେଲେ। ସେମାନେ ଆମ୍ଭମାନଙ୍କ ପରି ସରକାରୀ ଚାକରୀ ସକାଶେ ଲାଳାୟିତ ନୁହନ୍ତି, ସ୍ୱାଧୀନ ବ୍ୟବସାୟରେ ଜୀବିକା ନିର୍ବାହ କରି ମାନୀ ଓ ଧନୀ ହୋଇଅଛନ୍ତି ଏବଂ ସତ୍କାର୍ଯ୍ୟଦ୍ୱାରା ତହିଁର ଟେକ ରଖିଅଛନ୍ତି। ସେମାନେ ବାକ୍‌ପଟୁ ନୁହନ୍ତି,କାର୍ଯ୍ୟପଟୁ! ଏକଭାବରେ ବାକ୍ୟର ମୂଲ୍ୟ ମାତ୍ର ଅନେକ ଲୋକର ବାକ୍ୟ ଏକ ହୋଇ ତାହା ଯେ ବହୁମୂଲ୍ୟ ସୁବର୍ଣ୍ଣ ହୁଅଇ ଏହି ସଭାରେ ଆଗତ ହୋଇଥିବା ଅତି ସୁନ୍ଦର ସ୍ୱର୍ଣ୍ଣ ପଦକ ଯାହା କି ସେମାନେ ଏ ନଗରର ନବୀନ ଉଦ୍ୟମଶୀଳ ସ୍ୱାଧୀନ ଇଂରାଜୀ ଚିକିତ୍ସା ବ୍ୟବସାୟୀ ବାବୁ ଅକ୍ଷୟକୁମାର ଘୋଷଙ୍କୁ ପ୍ରଦାନ ନିମିତ୍ତ ପ୍ରସ୍ତୁତ କରି ଆଣିଅଛନ୍ତି ତାହା ତହିଁର ସାକ୍ଷ ଦେଉଅଛି। ରାଜ ଦ୍ୱାରରେ ଅନେକ ଲୋକ ସମ୍ମାନିତ ହେବାର ଦେଖା ଯାଇଅଛି ମାତ୍ର କେହି ହିତକାରୀ ସ୍ୱଦେଶୀୟଙ୍କଦ୍ୱାରା ଏପରି ସମ୍ମାନିତ ହେବାର ଏ ନଗରରେ ଏପର୍ଯ୍ୟନ୍ତ ଦେଖି ନାହୁଁ। ରାଜ ସମ୍ମାନଠାରୁ ଲୋକସମ୍ମାନ ଅଧିକ ଏହା ବୋଲିବା ବାହୁଲ୍ୟ ! କାରଣ ଏକ ଜଣ ରାଜ ପୁରୁଷର ଅନୁଗ୍ରହ ହେଲେ ରାଜସମ୍ମାନ ମିଳିପାରେ ମାତ୍ର ଦଶଜଣର ଏକ ମତ ନ ହେଲେ ଲୋକସମ୍ମାନ ପ୍ରାପ୍ତ ହୁଅଇ ନାହିଁ। ଏହି ଭାବର ସୁନ୍ଦର ବକ୍ତୃତା କରି ମାନ୍ୟବର ସଭାପତି ମହୋଦୟ ସୁବର୍ଣ୍ଣ ପଦକଟି ବାବୁ ଅକ୍ଷୟକୁମାର ଘୋଷଙ୍କୁ ପ୍ରଦାନ କରି ତାହାଙ୍କୁ ସମ୍ବୋଧନ ପୂର୍ବକ କହିଲେ କି ତୁମ୍ଭେ ଅଳ୍ପ ବୟସରେ ବ୍ୟବସାୟର ପ୍ରଥମାବସ୍ଥାରେ ଏମନ୍ତ ସୁଖ୍ୟାତି ଭାଜନ ହେବାକୁ ସମର୍ଥ ହୋଇଅଛ ବଡ଼ ଆନନ୍ଦର ବିଷୟ ଅଟେ । ତୁମ୍ଭେ ଏହି ଆନନ୍ଦରେ ତୃପ୍ତ ନ ହୋଇ ଉତ୍ତରୋତ୍ତର ବ୍ୟବସାୟର ଉନ୍ନତି କରିବ ଏବଂ ପୁରସ୍କାରର ଆଶା ନ ରଖି ଆପଣା କର୍ତ୍ତବ୍ୟ ପାଳନରେ ଦୃଢ଼ରୂପେ ମନୋଯୋଗୀ ହେବ। କର୍ତ୍ତବ୍ୟ ପରାୟଣ ବ୍ୟକ୍ତିର ଶ୍ରମ ବୃଥା ଯାଏ ନାହିଁ, ଇହ କାଳରେ ଅଧିକ ଧନ ଲାଭ ନ ହେଲେ ପର କାଳରେ ପୁଣ୍ୟବଳରେ ସୁଖଲାଭ ହୁଏ ଏବଂ ତାହା ପରମ ଲାଭ। ତହିଁ ଉତ୍ତାରୁ ମାରବାଡିମାନଙ୍କର ପ୍ରଦତ୍ତ ଅଭିନନ୍ଦନପତ୍ର ବାବୁ ରାଧାକାନ୍ତ ଘୋଷ ପାଠ କଲେ ଏବଂ ଅକ୍ଷୟବାବୁ ତହିଁ ଉତ୍ତରରେ କୃତଜ୍ଞତା ପ୍ରକାଶ କଲା ଉତ୍ତାରୁ ସଭା ଭଙ୍ଗ ହେଲା। ଅଭିନନ୍ଦନପତ୍ରର ପ୍ରତିଲିପି ଏହି।-

To BABU AKSHOY KOOMAR GHOSE

Medical Practitioner

Dear Sir,

The services, you have rendered to our community, at Cuttack, have no value in Money. Your kind promptitude in making invited calls, your ingenions

and deliberate prescriptions, ensuring success in the majority of cases, and your sympathetic words of hope and fortitude by the sicky-bed—all these have put us under an obligation from which nothing could absolve us. It is , therefore, with blended feelings of indebtedness and admiration that we make to you a present of this gold medal, a by no means ample recompense for your invaluable services.

We are, Dear Sir, Yours faithfully, Hara Dutt Rai, Hari Ram, Dutta Ram, Debi Dutt, Biseswar Lall. Jai Narain, Tulsi Ram. Sunai Ram, Kalu Ram,

Cuttack, The 14th June, 1901

ଏଥିର ସଂକ୍ଷେପ ମର୍ମ ଏହି କି ହେ ଅକ୍ଷୟବାବୁ ଡାକ୍ତର ! ଆମ୍ଭମାନଙ୍କ ସମ୍ପ୍ରଦାୟର ଅନେକ ଲୋକଙ୍କର ପୀଡ଼ା ସମୟରେ ଆପଣ ଆହ୍ୱାନ ମାତ୍ରେ ଉପସ୍ଥିତ ହୋଇ ବିଚକ୍ଷଣ ଚିକିତ୍ସାଦ୍ୱାରା ଅଧିକାଂଶ ରୋଗିଙ୍କୁ ଯେପରି ଆରୋଗ୍ୟ କରି ଅଛ ଏବଂ ରୋଗିର ଶଯ୍ୟାରେ ବସି ଯେପରି ସହାନୁଭୂତି ଓ ଧୈର୍ଯ୍ୟ ଓ ଆଶାବାକ୍ୟଦ୍ୱାରା କଷ୍ଟ ଦୂର କରିଅଛ ତହିଁର ମୂଲ୍ୟ ଧନଦ୍ୱାରା ନିର୍ଣ୍ଣୟ ହୋଇ ନ ପାରେ। ଆମ୍ଭେମାନେ କୃତଜ୍ଞତା ଓ ଶ୍ରଦ୍ଧାପୂର୍ଣ୍ଣ ହୃଦୟରେ ଏହି ସୁବର୍ଣ୍ଣ ପଦକ ପ୍ରଦାନ କଲୁଁ ଏହା କୌଣସି ରୂପେ ଆପଣଙ୍କର ଅମୂଲ୍ୟ କାର୍ଯ୍ୟର ସମୁଚିତ ପୁରସ୍କାର ନୁହେ । ସ୍ୱାକ୍ଷର ଶ୍ରୀ ହରଦତ୍ତ ରାୟ, ହରିରାମ, ଦତ୍ତରାମ, ଦେବୀ ଦତ୍ତ ପ୍ରଭୃତି - ତା୧୪ରିଖ ଜୁନ ସନ ୧୯୦୧ ସାଲ।

ସୁବର୍ଣ୍ଣ ପଦକର ମୂଲ୍ୟ ଟ୧୫୦ ଙ୍କା ଏବଂ କଳିକତା କୁକକେଲଭିଙ୍କ କୋଠିରେ ପ୍ରସ୍ତୁତ ହୋଇଅଛି।

ଏ ସମ୍ବନ୍ଧରେ ଆମ୍ଭମାନଙ୍କର ଆଉ କିଛି ବୋଲିବା ଅନାବଶ୍ୟକ। ମାରବାଡିମାନେ ଗୁଣ ଗ୍ରାହୀତାର ଗୋଟିଏ ଅଭିନବ ସୁନ୍ଦର ପରିଚୟ ଦେଇ ଆମ୍ଭମାନଙ୍କର ଅଶେଷ କୃତଜ୍ଞତାର ଭାଜନ ହୋଇଅଛନ୍ତି ଏବଂ ଆମ୍ଭେମାନେ ଏକାନ୍ତ ଆଶା କରୁଁ କି ସେମାନେ ଅଦ୍ୟ ଯେଉଁ ମହତ୍ ଉଦାହରଣ ଦେଖାଇଲେ ତାହା ଅସ୍ମଦ୍ଦେଶୀୟଙ୍କଠାରେ ବିଫଳ ହେବ ନାହିଁ।

*ଭାଗ ୩୬ଗ, ସଂ ୨୫ଖ୍ୟା, ୨୨।୬।୧୯୦୧*

## [ଓଡିଆମାନଙ୍କର ଇଂରାଜୀ ସମ୍ବାଦପତ୍ର]

ପାରଲାଖିମିଡି ଗଞ୍ଜାମ ନିୟୁସର ବିଦାୟରୁ ପ୍ରକାଶ ହେଉଥିବା ଗଞ୍ଜାମ ନିୟୁସନାମକ ଇଂରାଜି ସାପ୍ତାହିକ ସଂବାଦପତ୍ରର ଗତମାସ ତା୨୯ରିଖର ସଂଖ୍ୟାଉପରେ ବଡ଼ ବଡ଼ ଇଂରାଜି ଅକ୍ଷରରେ ଏହା ଶେଷସଂଖ୍ୟା ବୋଲି ମୁଦ୍ରିତ ହୋଇଥିବାର ଦେଖି ଅତ୍ୟନ୍ତ ଦୁଃଖିତ ଓ ବିସ୍ମିତ ହେଲୁଁ। ସରକାରୀ ବନ୍ଦୋବସ୍ତରେ ପାରଳାଖିମିଡି ମାନ୍ଦ୍ରାଜ ପ୍ରଦେଶାନ୍ତର୍ଗତ ଗଞ୍ଜାମ ବିଭାଗରେ ସ୍ଥାପିତ ହେଲେହେଁ ତାହା ପ୍ରକୃତପକ୍ଷେ ଓଡିଶାର ଏକଅଂଶ ଏବଂ ଗଞ୍ଜାମ ନିୟୁସ ଓଡିୟାମାନଙ୍କର ହିତ,ଉନ୍ନତି ଏବଂ ଆଶା ଜନ ସାଧାରଣ ଏବଂ ଗବର୍ଣ୍ଣମେଣ୍ଟଙ୍କୁ ଜ୍ଞାତ କରାଇବା କାର୍ଯ୍ୟରେ ନିଯୁକ୍ତ ଥିଲା। ଏକକଥାରେ ଏହା ଓଡିୟାମାନଙ୍କର ଏକମାତ୍ର ଇଂରାଜି ସମ୍ବାଦପତ୍ର ଥିଲା।ଏହା ଉଠିଯିବା ଅତ୍ୟନ୍ତ ଦୁଃଖର ବିଷୟ ନୁହେକି ? ଉଠିଯିବାର କାରଣ ଗ୍ରାହକମାନଙ୍କର ଅଦିୟାପଣ ? ମାନେଜରଙ୍କ ବିଜ୍ଞାପନରୁ ପ୍ରକାଶ ଯେ ଗ୍ରାହକମାନଙ୍କ ମଧ୍ୟରୁ ତିନି-ଚତୁର୍ଥାଂଶଠାରେ ମୂଲ୍ୟ ବାକି ରହିଅଛି। ସେ ପାଞ୍ଚବର୍ଷ କାଗଜ ଚଳାଇ ଛାପାଖରଚା ପର୍ଯ୍ୟନ୍ତ ଯୋଗାଇ ପାରିଲେ ନାହିଁ। ଅନ୍ୟାନ୍ୟ ଖରଚା କଥା କି ବୋଲାଯିବ ? କହିପାରନ୍ତି ଯେ ଓଡିଶାରେ ଇଂରାଜୀ ଶିକ୍ଷିତ ଓ ସାଧାରଣ ହିତୋତ୍ସାହୀଙ୍କର ସଂଖ୍ୟା ଏତେ ଊଣା ଯେ ତହିଁରେ ଏପରି ଘଟିବା ବିସ୍ମୟକର ନୁହେ। ଏ ଯୁକ୍ତିଅସାର ନ ହେଲେହେଁ ପ୍ରଥମେ ଗ୍ରାହକ ହେବାଦ୍ୱାରା ମାନେଜରଙ୍କ ଆଶା ବଢାଇ ପରେ ମୂଲ୍ୟ ଦେବାକୁ ତ୍ରୁଟି କରିବା ସଚ୍ଚରିତ୍ରତାର ବହିର୍ଭୂତ ଏବଂ ଅଳ୍ପ ସଂଖ୍ୟକ ଶିକ୍ଷିତ ଓଡିଶାବାସିଙ୍କ ପ୍ରତି ତାହା ନିନ୍ଦାର ବିଷୟ ଅଟେ। ଯେବେ ଉକ୍ତ ସମ୍ବାଦପତ୍ର ଲୋକଙ୍କର ମନୋନୀତ ନ ହେଲା ତେବେ ଯେ ଯେତେଦିନ ନେଲେ ତହିଁର ମୂଲ୍ୟ ଦେଇ ନାମ କଟାଇଥିଲେ ମାନେଜର

ଭ୍ରମରେ ପଡି ଏତେ କ୍ଷତିଗ୍ରସ୍ତ ହୋଇ ନ ଥାନ୍ତେ । ଯାହା ହେବାର ହୋଇଗଲା ଏବଂ ଜଣାଗଲା ଯେ ଓଡିଶାରେ ଇଂରାଜୀ ସମ୍ବାଦ ପତ୍ର ଚଳାଇବାର ସମୟ ଉପସ୍ଥିତ ହୋଇ ନାହିଁ । ସମ୍ପ୍ରତି ଆମ୍ଭମାନଙ୍କର ଏକାନ୍ତ ଅନୁରୋଧ ଏହି କି ଗଞ୍ଜାମ ନିୟୁସର ବାକୀଦାର ଗ୍ରାହକମାନେ ଆପଣା ଆପଣା ଦେଣ ପରିଶୋଧ କରି ନିଜ ନିଜ ସମ୍ମାନ ଏବଂ ମାନେଜରଙ୍କୁ କ୍ଷତିର ଦାୟରୁ ରକ୍ଷା କରନ୍ତୁ ।

*ଭାଗ୬ଗ, ସଂ୨୭ଖ୍ୟା, ୬।୭।୧୯୦୧*

## ପୁସ୍ତକ ପ୍ରାପ୍ତି ସ୍ୱୀକାର

**ଗୁଣ୍ଡିଚାଯାତ୍ରା ।**- ପଣ୍ଡିତ ଲୋକନାଥମହାପାତ୍ର କାବ୍ୟତୀର୍ଥଙ୍କଦ୍ୱାରା ରଚିତ । ଏ ନଗରସ୍ଥ ଦରପଣରାଜ ଯନ୍ତ୍ରାଳୟରେ ମୁଦ୍ରିତ । ଏ ପୁସ୍ତକ ରୟେଲ ପେ ୧୬ଜୀ ଫର୍ମାରେ ପୃ ୧୬ଷ୍ଠା । ଗ୍ରନ୍ଥର ବିଷୟ ନାମରୁ ପ୍ରକାଶ । ଏଥିର ଭାଷା ସରଳ ଭାବ ବିଶୁଦ୍ଧ ଏବଂ ଗୀତ ଛାନ୍ଦରେ ଯାତ୍ରାର ସମସ୍ତ ଘଟନା ମନୋହରରୂପେ ବର୍ଣ୍ଣନା ହୋଇଥିବାରୁ ପଢ଼ିବାକୁ ସୁଖକର ହୋଇଅଛି । ଓଲାଉଠାର ଉତ୍ପାତ ବର୍ଣ୍ଣନାରେ ବିଭତ୍ସ କରୁଣ ଶାନ୍ତିରସର ଜ୍ୱଳନ୍ତଚିତ୍ର ଅଙ୍କିତ ହୋଇଅଛି । କାବ୍ୟତୀର୍ଥ ମହାଶୟଙ୍କ ଶକ୍ତି କବିତା ଲେଖିବାର ଯଥେଷ୍ଟ ଅଛି ଏବଂ ଆଶା କରୁଁ ପାଠକମାନେ ପୁସ୍ତକ ପଢି ତାହାଙ୍କୁ ଉତ୍ସାହ ପ୍ରଦାନ କରିବେ ।

**ବାସବଦତ୍ତା ।**- ଶ୍ରୀ ଆର୍ତ୍ତତ୍ରାଣ ଶତପଥୀ ପ୍ରଣୀତ ଏ ନଗରର ଅରୁଣୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ଏବଂ ବିନାମୂଲ୍ୟରେ ବିତରିତ । ଏହା ସାଧାରଣ ପେ ୧୬ଜୀ ଆକାରର ପୃ୬୩ଷ୍ଠା । ପୁସ୍ତକଟିର ଭାଷା ସରଳ ଏବଂ ବଙ୍ଗଳାଶ୍ରୀ ରାଗରେ ଲିଖିତ ହୋଇଥିବାରୁ ପଢିବାକୁ ମନ୍ଦ ହୋଇ ନାହିଁ । ପ୍ରତ୍ୟେକ ପଦର ପ୍ରଥମ ଦୁଇଚରଣ ଗୋ୬ଟି ଅକ୍ଷରରେ ସଂଗଠିତ ହେବା ଗୀତର ନିୟମ ଥିବାରୁ ପୁସ୍ତକର ଏକସ୍ଥଳରେ "ରୋହିଣୀସଙ୍ଗ ହରିଦ୍ରାଙ୍କିତ ଅଙ୍ଗ" ଏରୂପ ଗୋ ୫ଓ୭ ଟି ଅକ୍ଷର କାହିଁକି ହେଲା ବୁଝିପାରିଲୁଁ ନାହିଁ । ଲେଖକ ଚେଷ୍ଟା କରିଥିଲେ ଏହାକୁ ଅବଶ୍ୟ ପରିହାର କରିପାରିଥାନ୍ତେ ଏବଂ କରିବା ଉଚିତ ଥିଲା । ଲେଖକଙ୍କର ବଡ଼ ବଡ଼ ଶବ୍ଦ ବ୍ୟବହାର କରିବାରେ ମଧ ବିଶେଷ ଶ୍ରଦ୍ଧା ଥିବାର ଦେଖାଗଲା । ତଥାପି "ମତ୍ତକାଶିନୀ" କୁ "ମତ୍ତକାଶୀ" ଓ "କୃକାଟିକା" କୁ "କୃକଟିକା"ହୋଇଅଛି ଏବଂ ଯମକ ଅନୁରୋଧରେ ଲେଖକ "ଚାମୀକର ଗୋରୀ ସ୍ୱାମୀ କରଧରି"ଲେଖିବାକୁ ମଧ ଛାଡିନାହାନ୍ତି । ମାତ୍ର ଲେଖିବା ଛଟାଟି ଭଲ ଏବଂ ଲେଖକ କାଳେ ସୁକବି ହୋଇପାରିବାର ଲକ୍ଷଣମାନ ଦେଖାଯାଉଅଛି । ସାର କଥା କହିବାକୁ ଗଲେ ଏଭଳି ବିଷୟରେ କବିତା ଲେଖିବା ଆମ୍ଭମାନଙ୍କୁ ସୁଖକର ଲାଗିଲା ନାହିଁ । ମହେନ୍ଦ୍ର ନଗରର ରାଜକୁମାର ସୁନ୍ଦରୀ ସ୍ତ୍ରୀ ସ୍ୱପ୍ନରେ ଦେଖି କାମରୋଗରେ ଉନ୍ମତ୍ତ ହୋଇ ବୟସ୍ୟ ସଙ୍ଗେ ସେହି କନ୍ୟାର ଉଦ୍ଦେଶରେ ବାହାରି ବିନ୍ଧ୍ୟଗିରିରେ ଶାରୀଶୁଆଙ୍କ କଥୋପକଥନରୁ ପୁଷ୍ପପୁର କନ୍ୟା ପିତାଙ୍କ ବିହିତ ସ୍ୱୟମ୍ବର ସଭାକୁ ବ୍ୟର୍ଥ କରି ଏହି ରାଜକୁମାରଙ୍କୁ ସ୍ୱପ୍ନରେ ଦେଖି ଅନଙ୍ଗ ବାଣରେ ଜର୍ଜରିତ ହୋଇ ଦିନ ଯାପନ କରୁଥିବାର ଜାଣିପାରି ଶାରିକାଠାରୁ କେତକୀପାଖୁଡ଼ାରେ କରଜମୁନ ଲିଖିତ ପତ୍ର ନେଇ ଶାରିକା ପଥ ଦେଖାଇବା ଅନୁସାରେ ପୁଷ୍ପପୁରକୁ ଯାଇ ସଖୀ ଯୋଗେ ଅନ୍ତଃପୁରରେ ପ୍ରବେଶ କରି ରାଜକୁମାରୀ ସଙ୍ଗେ ସାକ୍ଷାତ ହେବା ମାତ୍ରକେ ଗାନ୍ଧର୍ବ ବିବାହ ବିଧିରେ ଏକାବେଳକେ "ଗାଢ଼ ଆଲିଙ୍ଗନେ ଜଡିଯାଇ" ରାଗ ରହସ୍ୟରେ ମତ୍ତ ହେଲେ । ଆଗେ ଯାହାହେଉ ଏକାଳକୁ ଏମନ୍ତ ବିଷୟରେ ଶ୍ରମ କରିବା ଭଲ ଲାଗଇ ନାହିଁ । ତହିଁଉପରେ ପୁଣି "ନବୀନାକାମିନୀର ସଘଟ ବାନ୍ତଖରକରଜ ବିହୁନେ" ଏବଂ "ଅବଳାବାଳାର ଗଳେ ମୋତିମାଳା ଦେଲୁ ଅଛି ଉରପର,ସ୍ତନାଙ୍କୁର ବାଧା" ମଧ "ଚକ୍ରକୁଚା ଶକ୍ରହୃଦୟ ହାରିଣୀ" ଲେଖିବାଦ୍ୱାରା ଆଦିରସର ଚରମସ୍ଥାନରେ ଲେଖକ ପହୁଞ୍ଚିଅଛନ୍ତି । ଆଦିରସରେ ଆମ୍ଭମାନଙ୍କର କବିତାର ଅଭାବ ନାହିଁ ଏବଂ ମହାକବି ଉପେନ୍ଦ୍ରଭଞ୍ଜ ତହିଁର ପରାକାଷ୍ଠା ଦେଖାଇ ଯାଇଅଛନ୍ତି । ସେକାଳକୁ ଯାହାହେଉ ଏକାଳରେ ଆଉ ତାହା ତେତେସରିକି ଭଲ ଲାଗଇ ନାହିଁ ତେବେ ରାଧାନାଥ ବାବୁଙ୍କ କବିତାରେ ଆଦିରସର ସାଧାରଣ ରସଠାରୁ କୁତ୍ସିତ ରସ ପର୍ଯ୍ୟନ୍ତ ଲେଖା ହୋଇଅଛି

ବୋଲି ତାହାକୁ ଆଧୁନିକ ରୁଚି ବୋଲି ଘେନିବା ଉଚିତ ବୋଧକରୁ ନାହୁଁ । ଭବିଷ୍ୟତ୍‌କୁ ତହିଁର ଅପବ୍ୟବହାର ନିବାରଣ କରଣାର୍ଥ ଏତେ କଥା ଆମ୍ଭେମାନେ ଲେଖିଲୁଁ । ଭରସା କରୁଁ ଲେଖକ ଦିବ୍ୟଚିତ୍ତରେ ତାହାକୁ ବିଚାର କରି ଚାଲି ଦେଶର ମୁଖୋଜ୍ଜ୍ୱଳ କରିବେ। ଆଉ ଏକ କଥା ଏହି କି ରାଜକୁମାରଙ୍କ ସହିତ ପୁଷ୍ପପୁରହେମାଙ୍କ ଗୋପନୀୟ ପ୍ରଣୟ ବଦ୍ଧମୂଳ ହେଲାପରେ ହେମାଙ୍କ ଅନ୍ୟତ୍ର ବିବାହ ସ୍ଥିର ହେବାରୁ ରାଜକୁମାର ହେମାଙ୍କୁ ଘେନି ପୁଷ୍ପପୁରରୁ ପଳାୟନ କଲେ ଏବଂ ବନରେ ପହୁଞ୍ଚିଲାରୁ "ଦୁର୍ଭେଦ୍ୟ କାନ୍ତାରେ ଶ୍ରୀ ରାମଠାକୁର ତେଜି ଅଯୋଧ୍ୟା ଗାରିମା" ଲେଖା ଯାଇଅଛି ।ଏଭଳି ଉପମା ସର୍ବଥା ପରିହାର୍ଯ୍ୟ ।

*ଭାଗ୩୬ଗ, ସଂ୩୩ଖ୍ୟା, ୧୭।୮।୧୯୦୧*

## [ଓଡିୟାଭାଷା ଉଠିଯିବାପରେ]

ଗତ ସମ୍ବଲପୁରହିତୈଷିଣୀରେ ଦେଖିଲୁଁ ଯେ ଅଦାଲତର ଭାଷା ବିଷୟକ ଅନୁସନ୍ଧାନ ଘେନି ସେଠାର ଓଡିୟା ଏବଂ ବିଦେଶୀ ଅର୍ଥାତ୍ ସ୍ଥାନାନ୍ତରରୁ ରାଜକାର୍ଯ୍ୟରେ ଆସିଥିବା ହିଂଦୋସ୍ଥାନୀଙ୍କ ମଧ୍ୟରେ ବିବାଦର ସୂତ୍ରପାତ ହୋଇଅଛି । ଏ ସମୟରେ ଏପରି ହେବା ଭଲ ନୁହେ । ଓଡିୟାମାନେ ସ୍ୱଦେଶୀୟ ଜନସାଧାରଣଙ୍କ ହିତ ନିମନ୍ତେ ଗବର୍ଣ୍ଣମେଣ୍ଟରେ ଆବେଦନ କରିଅଛନ୍ତି, ବିଦେଶୀ ଭାଇଙ୍କ ଅନ୍ନରେ ଧୂଳି ଦେବା ନିମନ୍ତେ ନୁହେ । ଯେଉଁ ୧୦/୫୦ ଜଣ ବିଦେଶୀ ଭାଇ ସମ୍ବଲପୁରରୁ ଓଡିୟା ଭାଷା ଉଠି ଯିବାରୁ ଚାକରୀ ପାଇଅଛନ୍ତି ତାହାବିନା ସେମାନେ କି ଦାନା ପାନ୍ତେ ନାହିଁ। ସେମାନଙ୍କର ଏତିକି ବିବେଚନା କରିବା ଉଚିତ ଯେବେ ସେମାନଙ୍କ ଦେଶରେ ଏହିପରି ମାତୃଭାଷା ବଦଳରେ ସରକାର ଅନ୍ୟ ଭାଷା ଚଳାଇବାର ଆଦେଶ ଦିଅନ୍ତେ ତେବେ ସେମାନଙ୍କର କେତେ କଷ୍ଟ ହୁଅନ୍ତା ଏବଂ ଆଉ ଲକ୍ଷ ଲକ୍ଷ ଲୋକର କଷ୍ଟ ତୁଳନାରେ ଜ୧୦/୧୫ଣର ବଡ଼ ଚାକରୀରୁ ବଞ୍ଚିତ ହେବା ନିତାନ୍ତ ସାମାନ୍ୟ କଥା । ସ୍ୱଦେଶୀୟଙ୍କର ବିପଦ ସମୟରେ ବିଦେଶୀ ଭାଇଙ୍କର ସାହାଯ୍ୟ ଓ ସହାନୁଭୂତି ପ୍ରଦର୍ଶନ ଆବଶ୍ୟକ ତାହାଇ ମହତର କାର୍ଯ୍ୟ ଅଟେ।

*ଭାଗ୩୬ଗ, ସଂ୩୪ଖ୍ୟା, ୨୪।୮।୧୯୦୧*

## ସମ୍ବଲପୁରରେ ଓଡିୟାଭାଷା ।

ସମ୍ବଲପୁରର ସରକାରୀ କାର୍ଯ୍ୟାଳୟ ଏବଂ ବିଚାରାଳୟ ମାନଙ୍କରେ ଓଡିୟାଭାଷା ପୁନର୍ବାର ପ୍ରଚଳିତ ହେବା ବିଷୟରେ ସମ୍ବଲପୁରବାସିମାନେ ଗବର୍ଣ୍ଣମେଣ୍ଟରେ ଆବେଦନ କରିଥିବାର ଏବଂ ତହିଁର ଅନୁସନ୍ଧାନ ହେଉଥିବାର ପାଠକମାନଙ୍କୁ ଜଣା ଅଛି । ସମ୍ବଲପୁର ଗୋଟିଏ ଓଡିୟା ଜିଲା ଅର୍ଥାତ୍ ସେ ଜିଲାର ୧୩/୧୪ ପଣ ଲୋକଙ୍କର ମାତୃଭାଷା ଓଡିୟା । ସରକାରୀ କଚେରୀ ଏବଂ ଅଦାଲତମାନଙ୍କରେ ହିନ୍ଦୀ ଭାଷା ପ୍ରଚଳିତ ହେବାରୁ କାର୍ଯ୍ୟ ଓ ବିଚାର ପାଇବାପକ୍ଷରେ ସେମାନଙ୍କର ଅଶେଷ ଅସୁବିଧା ଘଟିଅଛି ଏବଂ ସେଥିପାଇଁ ସେମାନଙ୍କ ସହିତ ଭାରତର ସମସ୍ତ ଓଡିୟା ରାଜ୍ୟର ଲୋକମାନେ ଅତ୍ୟନ୍ତ କାତର ଅଛନ୍ତି । ଏହି ଦୁଃଖ ମହାମାନ୍ୟ ଗବର୍ଣ୍ଣର ଜେନରଲ ବାହାଦୁରଙ୍କୁ ଜଣାଇବା ସମସ୍ତ ଉତ୍କଳବାସିଙ୍କର କର୍ତ୍ତବ୍ୟ ଅଟେ। ଉତ୍କଳ ସଭାର ସଭାପତି ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ଏ ବିଷୟରେ ଯେଉଁ ତାରସମ୍ବାଦମାନ ମହାମାନ୍ୟ ମହୋଦୟଙ୍କ ସମୀପକୁ ତାହାଙ୍କର ପ୍ରାଇଭେଟ ସେକ୍ରଟରୀ ଯୋଗେ ପଠାଇଅଛନ୍ତି ଏବଂ ତହିଁର ଯେ ଉତ୍ତର ପାଇଅଛନ୍ତି ତାହା ନିମ୍ନରେ ପ୍ରକାଶ କଲୁଁ । ଯଥା –

## TELEGRAMS

From M.S, Das, Cuttack Dated 2.9.1901.

To Private Secretary to the Viceroy, Simla.

The Uriyas of Sambalpur have submitted memorial to His Excellency against

order of Chief Commissioner of Central Provinces dated January 1895 abolishing uriya as court and official language. I am informed present Chief Commissioner has gone to Simla and may discuss the subject matter of memorial. The Orissa Association submitted memorial on 20th June 1895 complaining against Chief Commissioner's order pointing out that the order was impolitic impracticable and opposed to recognised policy of Govt. Kindly lay Orissa Association memorial before His Excellency. The people of Orissa fully support the memorial now submitted by Sambalpur people. The Orissa Association and Uriyas generally sincerely hope His Excellency Lord Curzon being the first Viceroy to visit Orissa will vouchsafe personal attention to this grievance. About the time the Chief Commissioner passed order, Mr. Cooke,Commissioner of Orissa Division suggested to Bengal Government to include Sambalpur in Orissa as it was before. Please draw His Excellency's attention to this correspondence also.

From

M.S.Das, Cuttack. Dated: 3-9-1901.

To

Private Secretary to the Viceroy, Simla.

In continuation of yesterday's telegram please refer to Calcutta Gazette twenty-third October 1895 Supplement pages 2357 to 2359 for Mr. Cooke's proposal to include Sambalpur in Orissa. Copy of Orissa Association's memorial is posted for facility of reference.

**Reply**

From P.S.V. Simla Chaura Maidan.

To Calcutta Hon'ble Mr. M.S. Das.

Your telegrams of the 2nd and 3rd just have been laid before His Excellency the Viceroy, Dated 9-9-1901.

*ଭାଗ ୩୬, ସଂଖ୍ୟା ୩୭, ୧୪/୯/୧୯୦୧*

## କଟକ ଟ୍ରେନିଂସ୍କୁଲ।

ଗତ ମଙ୍ଗଳବାର ସକାଳ ୮ ଘଣ୍ଟା ବେଳେ କଟକ ଟ୍ରେନିଂସ୍କୁଲର ଅନ୍ତର୍ଗତ ମଧ୍ୟରେ ଇଂରାଜୀ ସ୍କୁଲ ଏବଂ ଡ୍ରଇଂ ଶ୍ରେଣୀର ଛାତ୍ରମାନଙ୍କୁ ବାର୍ଷିକ ପୁରସ୍କାର ଦାନ ଉପଲକ୍ଷରେ ସେହି ସ୍କୁଲ ଗୃହରେ ଗୋଟିଏ ବୃହତ୍ ସଭା ହୋଇଥିଲା। ସେହି ଗୃହ ଏବଂ ଅଗଣା ଫୁଲ ପତ୍ର ପତାକାଦିଦ୍ୱାରା ସୁସଜ୍ଜିତ ହୋଇଥିଲା ଏବଂ ଆମନ୍ତ୍ରିତ ବ୍ୟକ୍ତିମାନଙ୍କର ଆଦର ଅଭ୍ୟର୍ଥନାର କୌଣସି ତ୍ରୁଟି ନ ଥିଲା। ଇଉରୋପୀୟ ଭଦ୍ରଲୋକଙ୍କ ମଧ୍ୟରେ କେବଳ ଜଣେ ପାଦରି ସାହେବ ଏବଂ ଦେଶୀୟ ଭଦ୍ରଲୋକଙ୍କ ମଧ୍ୟରେ କନିକା ଓ ଢେଙ୍କାନାଳର ରାଜାଙ୍କ ସହିତ ଏଠାର ନୂତନ ଜିଲା ଜଜ ଓ ଜମିଦାର ଉକିଲ ମହାଜନ ଡେପୁଟୀ ଶିକ୍ଷକ ପରିଦର୍ଶକ ପ୍ରଭୃତି ନାନା ଶ୍ରେଣୀର ସରକାରୀ ଓ ବେସରକାରୀ

ଲୋକ ସମାଗତ ହୋଇଥିଲେ । ସଭା ଗୃହଟୀ ପୂର୍ଣ୍ଣ ହୋଇଥିଲା ଅଥଚ ସ୍ଥାନର ଅଭାବ ନ ଥିଲା। ମାନନୀୟ କମିଶନର ଶ୍ରୀଯୁକ୍ତ ଗୁପ୍ତ ସାହେବ ସଭାପତିର ଆସନ ଗ୍ରହଣ କରନ୍ତେ ପ୍ରଧାନ ଶିକ୍ଷକ ବାବୁ ମଧୁସୂଦନ ରାଓ ବାର୍ଷିକ ରିପୋର୍ଟ ପାଠ କଲେ। ତଦନ୍ତେ ଏକ ଏକ ଯୋଡି ଛାତ୍ର ଯଥାକ୍ରମେ ଓଡିୟା ଇଂରାଜୀ ଏବଂ ଉର୍ଦ୍ଦୁ ଅଭ୍ୟସ୍ଥ କବିତାମାନ ଗାୟନ କରି ସଭ୍ୟ ବୃନ୍ଦର ଆନନ୍ଦ ବର୍ଦ୍ଧନ କରିଥିଲେ। ଏଥିଉତ୍ତାରୁ ସଭାପତି ମହୋଦୟ ପୁରସ୍କାର ବିତରଣ କଲେ ଏବଂ ଏକ ଜଣ ଭାଗ୍ୟବାନ୍ ମୁସଲମାନ ସୁନ୍ଦର ଛାତ୍ର ଏତେ ଗୁଡିଏ ପୁସ୍ତକାଦି ପୁରସ୍କାର ପାଇଥିଲା ଯେ ତାହା ବଡ କୌତୁକଜନକ ହୋଇଥିଲା। ପୁରସ୍କାର ପ୍ରଦାନାନ୍ତେ ସଭାପତି ମହୋଦୟ ଗୋଟିଏ ସୁନ୍ଦର ଏବଂ ସଦୁପଦେଶ ପୂର୍ଣ୍ଣ ବକ୍ତୃତା ପ୍ରଦାନ କଲେ। ପରିଶେଷରେ ତାହାଙ୍କୁ ଧନ୍ୟବାଦ ଦିଆଯାଇ ସଭା ଭଙ୍ଗ ହେଲା। ସରକାରୀ ପ୍ରାଇଜ ଉପରେ କନିକା ଓ ଢେଙ୍କାନାଳର ରାଜାମାନେ , ରାୟ ଯଜ୍ଞେଶ୍ୱର ଚନ୍ଦ୍ର ବାହାଦୁର , ବାବୁ ଶଶୀଭୂଷଣ ରାୟ, ବାବୁ ଯୋଗେନ୍ଦ୍ରଷ୍ଣ ରାୟ, ବାବୁ ଉମେଶନ୍ଦ୍ର ବୋଷ, ମୌଲବି ମହମ୍ମଦ ଅକବର ଏବଂ ମୌଲବି ସୟଦ ନୁରଲହକ ଅଧିକ ପ୍ରାଇଜ ଦେବାର ଦେଖି ବଡ଼ ଆନନ୍ଦିତ ହେଲୁଁ। ଅନେକ ବର୍ଷ ହେଲା ଏ ନଗରର ଅନ୍ୟ କୌଣସି ବିଦ୍ୟାଳୟ ଏପରି ଉତ୍ସାହ ପାଇବାର ଦେଖା ନ ଥିଲା। ସଭାରେ ପଠିତ ହେବା ଇଂରାଜୀ ରିପୋର୍ଟ ଏବଂ ସଭାପତିଙ୍କର ବକ୍ତୃତା ନିମ୍ନେ ପ୍ରକାଶ କଲୁଁ। ରିପୋର୍ଟର ସଂକ୍ଷେପ ମର୍ମ ଏହି କି ଏହି ବିଦ୍ୟାଳୟ ସନ ୧୮୬୯ ସାଲରେ ପ୍ରଥମେ ଫିଟିଲାବେଳେ ପଣ୍ଡିତ ଓ ଗୁରୁ ଏହି ଦୁଇଭାଗ ଥିଲା ମାତ୍ର ସନ ୧୮୯୬ ସାଲରେ ତିନି ବିଭାଗ ହୋଇଅଛି। ଯଥା ୧ମ; ଇଂରାଜୀ ଶିକ୍ଷକଶ୍ରେଣୀ, ୨ୟ ଭାଷା ମଧ୍ୟବିଦ୍ୟାଳୟର ଶିକ୍ଷକ ଶ୍ରେଣୀ, ଏବଂ ୩ୟ ଅପରପ୍ରାଇମେରୀ ଶିକ୍ଷକଶ୍ରେଣୀ । ଏଥି ମଧ୍ୟରେ ଇଂରାଜୀ ଶିକ୍ଷକଶ୍ରେଣୀ ଛାତ୍ରାଭାବରୁ ଉଠିଯିବା ଉପରେ ଅଛି ଏବଂ ଅପର ଦୁଇ ଶ୍ରେଣୀରେ ଆରମ୍ଭରୁ ଏ ପର୍ଯ୍ୟନ୍ତ ଯଥାକ୍ରମେ ୨୬୫ଏବଂ ୮୦୮ ଶିକ୍ଷକ ସାରଟିଫିକଟ ପାଇ ଥିଲେହେଁ ଏଣିକି ଛାତ୍ରସଂଖ୍ୟା ବୃଦ୍ଧି ହେବାର ଦେଖା ଯାଉ ନାହିଁ କାରଣ ଗତବର୍ଷ ଛାତ୍ରସଂଖ୍ୟା ୬୫ ଥିବା ସ୍ଥଳେ ଏ ବର୍ଷ ୬୨ ହୋଇଅଛି। ସମ୍ଭବତଃ ଯେତେଲୋକ ଶିକ୍ଷକ ହୋଇ ବାହାରୁଅଛନ୍ତି ତେତେ ଚାକରି ମିଳୁ ନାହିଁ ବୋଲି ଅଧିକ ଲୋକ ଏ ବିଦ୍ୟାଳୟକୁ ପଢିବାକୁ ଆସୁ ନାହାନ୍ତି। ସଭାପତି ମହୋଦୟ ଏ ବିଦ୍ୟାଳୟ କାର୍ଯ୍ୟରେ ସନ୍ତୋଷ ଏବଂ ହେଡମାଷ୍ଟର ବାବୁ ମଧୁସୂଦନ ରାଓଙ୍କର ଯଥୋଚିତ ପ୍ରଶଂସା ପ୍ରକାଶପୂର୍ବକ ଗୁରୁ ଏବଂ ଶିଷ୍ୟର ସମ୍ବନ୍ଧ ଏବଂ ପରସ୍ପରର କର୍ତ୍ତବ୍ୟ ବିଷୟରେ ଯେଉଁ ସଦୁପଦେଶ ପୂର୍ଣ୍ଣ କଥାମାନ କହିଅଛନ୍ତି ତାହା ଏ ବିଦ୍ୟାଳୟକୁ ଲକ୍ଷ୍ୟ କରି କହିଥିଲେହେଁ ତାହା ଦିନକର କଥା ନୁହେ ମାତ୍ର ସ୍ଥାୟୀ ଉପଦେଶ ଏବଂ ସକଳ ବିଦ୍ୟାଳୟର ଶିକ୍ଷକ ଏବଂ ଛାତ୍ରମାନଙ୍କର ମନୋଯୋଗ ପୂର୍ବକ ହୃଦୟଙ୍ଗମ କରିବାର ଯୋଗ୍ୟ ଅଟେ। ଭରସା କରୁଁ ଶିକ୍ଷକମାନେ ସର୍ବଦା ତାହା ମନରେ ରଖି କର୍ତ୍ତବ୍ୟ କାର୍ଯ୍ୟ ନିର୍ବାହ କରିବେ।

*ଭା୩୬ଗ,ସଂ୩୮ଖ୍ୟା, ୨୧।୯।୧୯୦୧*

## ରେବନସା କଲେଜ-୨

ଏହି କଲେଜର ଏକଟିଂ ପ୍ରିନସିପଲ ବାବୁ କ୍ଷିରୋଦନାଥ ରାୟ ଚୌଧୁରୀଙ୍କର ଯେଉଁ ରିପୋଟର ମର୍ମ୍ମଗତ ସପ୍ତାହରେ ପ୍ରକାଶ କରିଅଛୁଁ ତାହା ପାଠ କରି ସର୍ବ ସାଧାରଣ ଅବଶ୍ୟ ହୃଦୟଙ୍ଗମ କରି ଅଛନ୍ତି ଯେ ଗତ ବ୨୫ର୍ଷରେ ଓଡିଶାର ଏହି ସର୍ବୋଚ୍ଚ ବିଦ୍ୟାଳୟ ଯେଉଁ ସୁଫଳ ପ୍ରଦାନ କରିଅଛି ତାହା ସନ୍ତୋଷ ଜନକ ଅଟେ। ଛାତ୍ରମାନେ ଅଥବା ସେମାନଙ୍କର ଅଭିଭାବକମାନେ ସାଂସାରିକ ଅବସ୍ଥା ଉନ୍ନତି ସକାଶେ ଉଚ୍ଚ ଶିକ୍ଷାର ଆଦର କରନ୍ତି ଏହା ସର୍ବତ୍ରରେ ପ୍ରଚାର , ଏକା ଓଡିଶା ବୋଲି ନୁହେ। ରାୟ ଚୌଧୁରୀ ମହାଶୟ ଅନେକ ଅନୁସନ୍ଧାନ କରି ଦେଖାଇଅଛନ୍ତି ଯେ ଏ ପର୍ଯ୍ୟନ୍ତ ଏକଶତରୁ କିଞ୍ଚିତ ଊଣା ବି,ଏ, ପାସ କରିଥିବା ବ୍ୟକ୍ତିଙ୍କ ମଧ୍ୟରୁ କେବଳ ଜ୫ଣ ଛଡ଼ା ଆଉ ସମସ୍ତେ ଭଲ ସରକାରୀ ଚାକିରୀ ଏବଂ ଉକାଲତୀ କରି ଭଲ ରୋଜଗାର କରୁଅଛନ୍ତି ଏବଂ ଏହାଦ୍ୱାରା ଓଡିଶାରେ କଲେଜ ସ୍ଥାପନ ହେବାର ସାର୍ଥକତା ଏବଂ ତହିଁପ୍ରତି ଜନ ସାଧାରଣଙ୍କର ସମଧିକ ସହାନୁଭୂତି ଏବଂ ଆଦର ବଢାଇବାର ଉତ୍ତମରୂପେ ପ୍ରତିପନ୍ନ କରିଅଛନ୍ତି। ଯେବେ ଅପର ଲୋକଙ୍କଠାରୁ କିଛି ଅଧିକ ରୋଜଗାର କରିବା

ଅଥବା ବଡ଼ ଚାକରୀ ପାଇବା ଉଚ୍ଚ ଶିକ୍ଷାର ଏକମାତ୍ର ଫଳ ହୁଅନ୍ତା ତେବେ ଆଉ କିଛି ବୋଲିବାର ନ ଥିଲା । ମାତ୍ର ଉଚ୍ଚଶିକ୍ଷା ପ୍ରାପ୍ତ ଛାତ୍ରମାନେ ଉତ୍ତମ ରୂପେ ଜାଣନ୍ତି ଏବଂ ପୁନଃ ପୁନଃ ଉପଦେଶ ପାଇ ଅଛନ୍ତି ଯେ ଆଧ୍ୟାତ୍ମିକ, ସାମାଜିକ ପ୍ରଭୃତି ଉନ୍ନତି ସାଧନ ଉଚ୍ଚ ଶିକ୍ଷାର ମୂଳ ଉଦ୍ଦେଶ୍ୟ, ଧନ ଉପାର୍ଜନ ଗୋଟିଏ ଉପାୟ ସ୍ୱରୂପ ଯଥା "ଧନାତ୍ ଧର୍ମ୍ମଂ ତତଃ ସୁଖଂ " । ଅତଏବ ଯେଉଁମାନେ ଏ ପର୍ଯ୍ୟନ୍ତ ଏ କଲେଜରୁ ଉତ୍ତୀର୍ଣ୍ଣ ହୋଇ ବାହାରି ସାଂସାରିକ ଭଲ ଅବସ୍ଥାରେ ଅଛନ୍ତି ସେମାନେ ଆପଣା ଆପଣା ଦାୟିତ୍ୱ ଓ କର୍ତ୍ତବ୍ୟ ଜ୍ଞାନର କି ପରିଚୟ ଦେଇଅଛନ୍ତି ଅର୍ଥାତ୍ କେତେଜଣ ସୁଲେଖକ, ସୁପାଠକ , ସୁବକ୍ତା ବା ସଦୁପଦେଷ୍ଟା ହୋଇ ଅଛନ୍ତି, କେତେଜଣ ସାଧାରଣ ଅଭାବ ପୂରଣ ବା ସ୍ୱଦେଶର ମଙ୍ଗଳ କାମନାରେ ଅଧିକତର ରତ ହୋଇଅଛନ୍ତି ଏଥିର କିଛି ପରିଚୟ ଦେଇଥିଲେ ଅଧିକ ଭଲ ହୋଇଥାନ୍ତା । ସମ୍ଭବତଃ ଏ ପ୍ରକାର ଅନୁସନ୍ଧାନ କରି ତହିଁର ଫଳ ପ୍ରକାଶ କରିବା ବଡ଼ ସହଜ ବା ପ୍ରୀତିକର ନ ହେବାର ମନେ କରି ତହିଁରୁ କ୍ଷାନ୍ତ ହୋଇଅଛନ୍ତି । ମାତ୍ର ଛାତ୍ରମାନଙ୍କୁ ପୁରସ୍କାରଦ୍ୱାରା ଉତ୍ସାହ ଦାନ ସମ୍ବନ୍ଧରେ ଜଣା/ ୪ଣ ପୁରୁଣାଲୋକ ବିନା ଆଉ କାହାରି ନାମ କରିବାକୁ ସକ୍ଷମ ନ ହେବାଦ୍ୱାରା X X X X X X X X X କଲେଜ ଗୃହ ବଢାଇବା ନିମନ୍ତେ ଟ୧୦,୦୦୦ ଙ୍କା ପ୍ରୟୋଜନ ଥିବା ସମ୍ବନ୍ଧରେ ଏକଟିଂ ପ୍ରିନସିପଲ ମହାଶୟ କଲେଜଗୃହ ଓ ଛାତ୍ରାବାସ ନିର୍ମାଣ ସମୟରେ ମୟୂରଭଞ୍ଜ ଓ କେଉଁଝଡ଼ି ମହାରାଜାମାନଙ୍କର ବଦାନ୍ୟତାର ଉଲ୍ଲେଖ କରି କହିଅଛନ୍ତି କି ଏ ବିଷୟରେ କେହି ବଦାନ୍ୟ ସମ୍ଭ୍ରାନ୍ତ ମହାଶୟ ଅଗ୍ରସର ହେବେ ଏମନ୍ତ ଆଶା କରିଅଛନ୍ତି ଏବଂ ସଭାପତି ମାନ୍ୟବର କମିଶନର ସାହେବ ତହିଁର ପୋଷକତାରେ ବ୍ୟକ୍ତ କରିଅଛନ୍ତି କି ଉକ୍ତ ରାଜାମାନେ ଏବଂ ଅପର ଭଦ୍ରମାନେ ସମୟ ସମୟରେ କଲେଜର ଅଭାବ ଦୂର କରିବାରେ ଅଗ୍ରସର ହେବାଦ୍ୱାରା ଦେଖାଇଅଛନ୍ତି ଯେ ଦାନର ସ୍ରୋତ ଶୁଷ୍କ ହୋଇ ନାହିଁ ଏବଂ ସେମାନେ ବର୍ତ୍ତମାନ ଅଭାବ ମଧ ଦୂର କରିବେ । ବାସ୍ତବରେ ଆମ୍ଭେମାନେ ଦେଖି ଆସୁଅଛୁଁ ଯେ ଓଡିଶାର ଅଭାବ ଦୂର କରିବା ବିଷୟରେ ରାଜା ଓ ଜମିଦାରମାନେ ସର୍ବଦା ମୁକ୍ତହସ୍ତ ଏବଂ ଓଡିଶାର ଯାହା କିଛି ଉନ୍ନତି ସେମାନଙ୍କ ସାହାଯ୍ୟରେ ହୋଇଅଛି । ରାଜାମାନଙ୍କର ସମ୍ପତ୍ତି ଯେମନ୍ତ ଅକ୍ଷୟ ସେମାନଙ୍କର ବଦାନ୍ୟତା ତେମନ୍ତ ହେବାର ଆଶା କରାଯାଏ । ମାତ୍ର ଓଡିଶାର ଜମିଦାରମାନଙ୍କର ଅବସ୍ଥାର ଯେ ପରିବର୍ତ୍ତନ ଘଟିଅଛି ସେମାନଙ୍କଠାରୁ ପୂର୍ବପରି ସାହାଯ୍ୟ ପାଇବାର ଆଶା ଅଳ୍ପ ବୋଲିବାକୁ ହେବ । ଓଡିଶାର ବଡ ବଡ ଜମିଦାରିମାନ କ୍ରମାଗତ ବିଦେଶୀୟ ଲୋକଙ୍କ ହସ୍ତକୁ ଯାଉଅଛି । ସେମାନେ ସ୍ୱଦେଶରେ ଥାଇ ନାଏବଦ୍ୱାରା ଜମିଦାରୀ ବୁଝନ୍ତି । ଓଡିଶାର ଅଭାବ ସେମାନଙ୍କୁ ଉତ୍ତମରୂପେ ଜଣାଇବାର ସୁବିଧା ନାହିଁ ଏବଂ ସେମାନଙ୍କର ସହାନୁଭୂତି ଲାଭ କରିବା ଆହୁରି କଷ୍ଟକର । ସ୍ଥାନୀୟ ଖାନଦାନି ଜମିଦାରମାନଙ୍କର ସଂଖ୍ୟା ଓ ଆୟ ପୂର୍ବଠାରୁ ବିଶେଷ ଊଣା ହୋଇଅଛି । କେବଳ କେତୋଟି ସ୍ୱଦେଶୀୟ ଚିରସ୍ଥାୟୀ ବନ୍ଦୋବସ୍ତ ଜମିଦାରଙ୍କର ଅବସ୍ଥା ଭଲ ଅଛି ଏବଂ ସେମାନେ ବଦାନ୍ୟତା ପ୍ରକାଶ କରିବାକୁ ସକ୍ଷମ । ଆମ୍ଭେମାନେ ମନେ କରୁଁ କି ଉଚ୍ଚଶିକ୍ଷା ଲାଭଦ୍ୱାରା ଯେଉଁମାନେ ବଡ଼ ବଡ଼ ଚାକରୀ ପାଇଅଛନ୍ତି ସାଧାରଣ ହିତକର କାର୍ଯ୍ୟରେ ବିଶେଷତଃ ଏଠା କଲେଜର ଅଭାବ ମୋଚନ ଏବଂ ଉନ୍ନତି ସାଧନରେ ସେମାନଙ୍କର ଅଗ୍ରସର ହେବା ଏକାନ୍ତ କର୍ତ୍ତବ୍ୟ ସେମାନଙ୍କର ବିଚାର କରିବା ଆବଶ୍ୟକ ଯେ କଲେଜର ବ୍ୟୟ ନିର୍ବାହ ଏବଂ ସେମାନଙ୍କ ମଧ୍ୟରୁ ଅନେକଙ୍କର ବୃତ୍ତିରେ ଯେତେ ସାଧାରଣ ଅର୍ଥ ବ୍ୟୟ ହୋଇଅଛି ତାହା ଯଥାସାଧ ପରିଶୋଧ କରିବା ଗୋଟିଏ ଦାୟ ଅଟେ । ଗତ ବ୨୫ର୍ଷରେ ଏକା ଛାତ୍ରବୃତ୍ତି ବାର୍ଷିକ ୨୦/୨୨ ଟଙ୍କା ଲେଖାଏଁ X X X X X କଲେଜର ଛାତ୍ରମାନଙ୍କ ପଛରେ ଖରଚ ହୋଇ ଅଛି । ଏହି କଥାକୁ ସ୍ମରଣ କରି ଏହି କଲେଜରେ ସୁଶିକ୍ଷିତ ହୋଇଥିବା ସଙ୍ଗତିପନ୍ନ ବ୍ୟକ୍ତିମାନେ ସମୟ ସମୟରେ ତହିଁର କିୟଦଂଶ ଦାନ କରନ୍ତି ଏବଂ ତହିଁରେ ଗୋଟିଏ ପାଣ୍ଠି ଗଠିତ ହୁଅଇ ଏବଂ ଅପରଲୋକଙ୍କର ସାହାଯ୍ୟ ତହିଁରେ ଯୋଗ ହୁଅଇ ତେବେ କଲେଜର ଅଭାବ ମେଣ୍ଟିଯାଇ ଅଧିକା ବୃତ୍ତିଦାନର ଉପାୟ ହୋଇପାରିବ ।

*ଭା୩୬ଗ, ସଂ୩୮ଖ୍ୟା, ୨୧/୯/୧୯୦୧*

# REPORT

The Cuttack Training School, generally known as the Cuttack Normal School was founded on the 20th January 1869. During the first 27 years of its existence it had two training departments viz, the Pandit Department for training Vernacular masters for Middle Schools and the Guru Department for training Gurus or Abadhans for Pathasala. Since 1896 it has got three departments, viz, (1) the English Teachership classes for training English teachers, (2) the Pandit Department for training Vernacular masters for Middle Schools and (3) the central class for training teachers for Upper Primary Schools. The Middle School attached to the Cuttack Training School as a practising institution has always been treated as a separate institution.

The Guru Department which was abolished in 1896 and the Central Class which it has replaced have altogether turned out 808 certificated teachers for primary schools. The total number of teachers who have passed the final examination of the Pandit Department during the last 32 years of its existence is 265. The English Teachership Classes have sent out only 7 certificated teachers since their establishment in 1896. These classes have no where proved successful and it is likely that they will have to be closed.

On the 31st March last, the number of students on the rolls was 62 against 65 on the corresponding date in the preceding year. The percentage of average daily attendance was 94.9 – a figure which will be deemed satisfactory.

The Mahammadan and Christians creeds are altogether unrepresented on the rolls of the schools. The Bramhin students continue to preponderate. The Cuttack District sent 27, the Puri District 22, the Balasore District 9, and the Orissa Tributary Mahals only 4. The Angul District was altogether unrepresented as in the preceeding 3 years.

Receipts from fees and fines amounted, to Rs.51 against Rs. 69 in the preceeding year and the total expenditure was Rs. 9489 against Rs. 10,023, thus resulting in a decrease of Rs.534 which was mainly due to X X X X X X ·

The results of the several examination in the Cuttack Training School during the past year were fair. The single student in the English class passed, while 7 out of 8 passed the final examination of the Pandit Department and 16 out of 20, the examination of the Central Class.Two obtained certificates of fitness for employment as teachers of drawing.

The boarding house has at present 47 inmates.Its sanitary conditions are fair, except during rains when the adjoining plots of land become water-logged and unhealthy. A proposition for the acquisition of these plots with a view to the sanitary improvement of the surroundings of the boarding house has long been submitted and the Inspector of Schools has lately invited the attention of the Director of Public Instruction to the question.

The library is in good order. It now contains 1636 volumes. Some scientific instruments and appliances were purchased during the last year at a cost of Rs. 303.

We have drill and gymnastic classes. Attendance at the drill class is compulsory. There are no clubs for foot ball, Lawn-tennis or Cricket.

**The Cuttack Middle School.**

The school had 90 pupils on its rolls on the 31st March last against 100 on the Corresponding date of the year before. It has sustained a loss of 25 pupils during the last 3 years and the fact that the decline has been steady is noteworthy as an indication of a growing tendency amongst the comparatively poorer classes of people to seek a higher level of education than what is reached in a Middle School. Most of the pupils who have left the school have joined High Schools.

Receipts from fees and fines amounted to Rs. 693 against Rs. 794 of the preceding year. The total expenditure during the past year was Rs.1016 against Rs.994 of the preceding year, the increase Rs. 22 being due to the fact that no prize allowance had been drawn in the latter year.

The results of the Middle Scholarship Examination were very satisfactory, 9 having passed out of 10 sent and 3 having been placed in the 1st and 6 in the 2nd division.

The report is satisfactory on the whole, though it is to be regretted that the English class has not proved a success, for I am sure young men fresh from College would be all the better for a systematic course of training before they took to teaching themselves.

The attendance is very good and the results of the examination are creditable.

Altogether 1080 certificates have been granted since the school was opened.

*ଭା୩୬ଗ, ସଂ୩୮ଖ୍ୟା, ୨୧/୯/୧୯୦୧*

## [ପ୍ରେଜର ସାହେବଙ୍କ ପ୍ରତ୍ୟାବର୍ତ୍ତନ]

ମଧ୍ୟପ୍ରଦେଶର ଚୀପ୍ କମିଶନର ମାନ୍ୟବର ଶ୍ରୀଯୁକ୍ତ ପ୍ରେଜର ସାହେବ ଗତ ତା୨୦ରିଖରେ ସିମଳାଠାରୁ ସ୍ୱ ରାଜଧାନୀକୁ ଫେରି ଆସିଅଛନ୍ତି। ସେ ଏଥିମଧ୍ୟରେ କଟନି ବିଳାସପୁର ଶାଖା ରେଳବାଟେ ଭ୍ରମଣ କରି ସମ୍ବଲପୁରରେ ବିରାଜମାନ ହେବାର ଶୁଣାଯାଏ। ଆମ୍ଭେମାନେ ଏକାନ୍ତ ଆଶା କରୁଁ କି ସମ୍ବଲପୁରବାସିମାନେ ଓଡିୟାଭାଷା ସମ୍ବନ୍ଧୀୟ ଦୁଃଖ ମାନ୍ୟବର ମହୋଦୟଙ୍କ ଛାମୁରେ ଯଥୋଚିତରୂପେ ଜଣାଇବେ X X X X X ଜଣ କ୍ଷୁଦ୍ରମନା ବିଦେଶୀୟ ସରକାରୀ କର୍ମଚାରୀ ନିଜର ସ୍ୱାର୍ଥନିମିତ୍ତ ଗୋଟିଏ ଜିଲାର ଅନିଷ୍ଟ ସାଧନରେ କୁଣ୍ଠିତ ନୁହନ୍ତି ସେମାନଙ୍କର ଅସାର ଯୁକ୍ତି ଚିହ୍ନାଇ ଦେବାକୁ ଛାଡିବେ ନାହିଁ। ମଧ୍ୟପ୍ରଦେଶର ଓଡିୟା ରାଜାମାନଙ୍କୁ ମଧ୍ୟ ଅନୁରୋଧ ଯେ ସେମାନେ ଚୀଫ୍ କମିଶନର ମହୋଦୟଙ୍କୁ ଉଚିତ କଥା ଜଣାଇଁ ସ୍ୱଦେଶର ହିତ ସାଧନରେ ସାହାଯ୍ୟ କରିବେ।

*ଭା୩୬ଗ, ସଂ୩୯ଖ୍ୟା, ୨୮/୯/୧୯୦୧*

# ପ୍ୟାରୀମୋହନ ଏକାଡେମୀ ।

ଏ ନଗରର ପ୍ୟାରୀମୋହନ ଏକାଡେମୀ X X X X X ପୁରସ୍କାର ଦାନ ଉପଲକ୍ଷରେ ଗତ ଶନିବାର ସକାଳ ଘ ୮ଷ୍ଟାବେଳେ ସେହି ବିଦ୍ୟାଳୟରେ ଗୋଟିଏ ସଭା ହୋଇଥିଲା । ସେ ସମୟରେ ଘୋର ମେଘାଚ୍ଛନ୍ନ ଏବଂ ଅଳ୍ପ ଅଳ୍ପ ବୃଷ୍ଟି ହେଉଥିଲେହେଁ ଜ ୪/୫ ଣ ରାଜକୁମାର ସହିତ ଅନ୍ୟାନ୍ୟ ଅନେକ ଭଦ୍ରଲୋକ ସମାଗମଦ୍ୱାରା ସଭାର ଶୋଭା ବର୍ଦ୍ଧନ କରିଥିଲେ । ସଭା ଗୃହକୁ ସୁସଜ୍ଜିତ କରିବା ବିଷୟରେ କୌଣସି ଯତ୍ନର ତ୍ରୁଟି ନ ଥିଲା ଏବଂ ତହିଁର ଦୃଶ୍ୟ ମନୋହର ହୋଇଥିଲା । ମାନନୀୟ ଶ୍ରୀଯୁକ୍ତ ଗୁପ୍ତସାହେବ କମିଶନର ସଭାପତିର ଆସନ ଗ୍ରହଣ କରି ଆଦେଶ ଦିଅନ୍ତେ ସେହି ବିଦ୍ୟାଳୟର କମିଟିର ସୁଯୋଗ୍ୟ ସେକ୍ରଟରୀ ବାବୁ ବୈକୁଣ୍ଠ ନାଥ ଦତ୍ତ (ଯାହାଙ୍କର ଦୀର୍ଘକାଳର ସ୍ଥିର ଯତ୍ନ ଅଧ୍ୟବସାୟ ଓ ମନୋଯୋଗରେ ବିଦ୍ୟାଳୟର କ୍ରମଶଃ ଉନ୍ନତି ହେଉଅଛି) ବାର୍ଷିକ ବିବରଣୀ ପାଠ କଲେ । ତଦନ୍ତେ ଯୋଡି ଯୋଡି ଛାତ୍ର ଯଥାକ୍ରମେ ଇଂରାଜୀ , ସଂସ୍କୃତ, ବଙ୍ଗଳା ଏବଂ ଓଡିୟା ପଦ୍ୟମାନ ଆବର୍ତ୍ତନଦ୍ୱାରା "ଅମୃତଂ ବାଳଭାଷିତଂ" ବାକ୍ୟର ସାର୍ଥକତା ଦେଖାଇଥିଲେ । ପରେ ସଭାପତି ମହୋଦୟ ଯୋଗ୍ୟ ଛାତ୍ରମାନଙ୍କୁ ସ୍ୱହସ୍ତରେ ପୁରସ୍କାର ବାଣ୍ଟି ଦେଇ ଗୋଟିଏ ଅତ୍ୟନ୍ତ ଚିନ୍ତାଶୀଳ ଶିକ୍ଷାପ୍ରଦ ବକ୍ତୃତା ପ୍ରଦାନ କରି ସଭାସ୍ଥମାନଙ୍କୁ ବିମୋହିତ କରିଥିଲେ । ବକ୍ତୃତା ଶେଷରେ ରାୟ ରାମାକ୍ଷୟ ଚାଟୁର୍ଯ୍ୟା ବାହାଦୁର ବକ୍ତୃତାର ଉତ୍କୃଷ୍ଟତା ଉଲ୍ଲେଖ ପୂର୍ବକ ସଭାପତିଙ୍କୁ ଧନ୍ୟବାଦ ଦେବାର ପ୍ରସ୍ତାବ କରନ୍ତେ ସଭ୍ୟବୃନ୍ଦ ଆନନ୍ଦସୂଚକ କରତାଳି ସହିତ ଏକ ବାକ୍ୟରେ ଅବଧାରିତ ହେଲା ଏବଂ ସେହି ବକ୍ତୃତା ଏବଂ ତହିଁର ଓଡିୟା ଅନୁବାଦ ପୁସ୍ତକାକାରରେ ମୁଦ୍ରିତ ଓ ବିତରିତ ହେବାର ପ୍ରସ୍ତାବ ଶ୍ରୀଯୁକ୍ତ ପାଦରି ହବେଲ ସାହେବଙ୍କ ପ୍ରସ୍ତାବମତେ ତଦ୍ରୂପ ଅବଧାରିତ ହୋଇ ସଭା ଭଙ୍ଗ ହେଲା ।

ସ୍କୁଲର ସେକ୍ରଟରୀଙ୍କର ଇଂରାଜୀ ରିପୋଟ ଏବଂ ସଭାପତି ମହୋଦୟଙ୍କର ବକ୍ତୃତା ଏହି ପ୍ରବନ୍ଧ ଶେଷରେ ପ୍ରକାଶ କଲୁଁ । ରିପୋଟର ସଂକ୍ଷେପ ମର୍ମ ଏହି କି ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ ସନ ୧୮୭୫ ସାଲରେ ଏହି ବିଦ୍ୟାଳୟକୁ ମଧ୍ୟ ଇଂରାଜୀ ସ୍କୁଲ ସ୍ୱରୂପ ସ୍ଥାପନ କରି ସନ ୧୮୭୯ ସାଲରେ ଉଚ୍ଚ ବା ହାଇ ଇଂରାଜୀ ସ୍କୁଲରେ ପରିଣତ କଲେ ଏବଂ ନିଜ ବ୍ୟୟରେ ଚଳାଉଥିଲେ । ସନ ୧୮୮୨ ସାଲ ଶେଷରେ ତାହାଙ୍କର ମୃତ୍ୟୁ ହେବାରୁ ତାହାଙ୍କର ବନ୍ଧୁ ଏବଂ ସମଦୁଃଖୀ ଲୋକମାନେ ଗୋଟିଏ କମିଟି କରି ସାଧାରଣ ଭେଦା ଓ ଦାନ ସଂଗ୍ରହରେ ସରକାରୀ ସାହାଯ୍ୟ ଏବଂ ଛାତ୍ରବେତନଦ୍ୱାରା ଏ ପର୍ଯ୍ୟନ୍ତ ଚଳାଇ ଆସୁଅଛନ୍ତି । ପ୍ରଥମେ କିଛିଦିନ ଭଡ଼ା ଘରେ ସ୍କୁଲ ହେଉଥିଲା । ସନ ୧୮୮୭ ସାଲରେ ମାନନୀୟ ଓରସଲି ସାହେବ କମିଶନର ବିଶେଷ ଅନୁରାଗ ପୂର୍ବକ ରାଜା ଜମିଦାର ପ୍ରଭୃତିଙ୍କଠାରୁ ଭେଦା ସଂଗ୍ରହରେ ମନୋଯୋଗୀ ହେବା ଏବଂ କେଉଁଝଡ଼ର ମହାରାଜା ସର୍ବାପେକ୍ଷା ଅଧିକ ଦାନ ଅର୍ଥାତ୍ ଟ୧୦୦୦ଙ୍କା ଦେବାରୁ ଟ୫,୧୦୭ଙ୍କାରେ ବର୍ତ୍ତମାନ ସ୍କୁଲଘରଟି ନିର୍ମାଣ ହୋଇଅଛି । କେବଳ ଛାତରେ ଖମିରା ପଡିବା ଏବଂ ବୋଡ଼ା ପାଚେରୀ ନିର୍ମାଣ ହେବାକୁ ବାକୀ ଅଛି ଆଉ ଟ୭୦୦ଙ୍କା ହେଲେ ଏ କାର୍ଯ୍ୟମାନ ଶେଷ ହେବ ଏବଂ ଆଶା ହୁଅଇ ବଦାନ୍ୟ ଓଡିଶାବାସିମାନେ ଏହି ଅଭାବ ପୂର୍ଣ୍ଣ କରିଦେବେ । ଏ ବିଦ୍ୟାଳୟର ଅବସ୍ଥା ଭଲ । ଗତ ମାରଚମାସ ଶେଷରେ ଜ୨୦୧ ଣ ଛାତ୍ର ପଢୁଥିଲେ ।ଏ ବର୍ଷର ହାରାହାରି ଛାତ୍ର ସଂଖ୍ୟା ୧୮୯ ଏବଂ ତହିଁ ପୂର୍ବ ବର୍ଷର ୧୮୭ ପଡିଅଛି । ଶିକ୍ଷକ ଦଳରେ ଜ୬ଣ ଇଂରାଜୀ ଶିକ୍ଷକ ଏକଜଣ ପଣ୍ଡିତ ଏବଂ ଏକଜଣ ମଉଲଭି ଅଛନ୍ତି । ଏ ପର ଜଣେ ଡ୍ରଇଂ ମାଷ୍ଟର ଏବଂ ଜଣେ ଡ୍ରିଲ୍ ମାଷ୍ଟର ଅଛନ୍ତି । ଏହି ବର୍ଷରେ ସ୍କୁଲର ଆୟ ଟ ୩,୧୬୫ଙ୍କା ଏବଂ ବ୍ୟୟ ଟ୨,୯୭୩ଙ୍କା ଥିଲା ତହିଁ ପୂର୍ବ ବର୍ଷର ଆୟ ବ୍ୟୟ ଯଥାକ୍ରମେ ଟ୨,୯୭୭ ଙ୍କା ଏବଂ ଟ୨୯୫୧ ଙ୍କା ଥିଲା । ବିଦ୍ୟାଳୟର ଆର୍ଥିକ ଅବସ୍ଥା ଯେମନ୍ତ ସନ୍ତୋଷଜନକ ପରୀକ୍ଷାର ଫଳ ତେମନ୍ତ ଅଟେ । ଗତ ବର୍ଷ ଜ୫ଣ ଛାତ୍ର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ସେମାନଙ୍କ ମଧ୍ୟରୁ ଏକଜଣ ସରକାରୀ ଟ୧୦ଙ୍କା ବୃତ୍ତି ପାଇଥିଲା । ଏବର୍ଷ ଜ୬ଣ ସେହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଏବଂ ସେମାନଙ୍କ ମଧ୍ୟରୁ ଏକଜଣ ଟ୧୫ଙ୍କାର ଓ ଜ୨ଣ ଟ୧୦ଙ୍କାର ସରକାରୀ ବୃତ୍ତି ଏବଂ ଜ୧ଣ ଜିଲା ବୋରଡର ଟ୭ଙ୍କାର ବୃତ୍ତି ପାଇ ଅଛନ୍ତି । ଏଥିରୁ ବଳି ସୁନ୍ଦର ଫଳ ଆଉ କି ହୋଇ ପାରେ ? ରାୟ ଯଜ୍ଞେଶ୍ୱର ଚନ୍ଦ୍ର ବାହାଦୂର

ବାବୁ ଜାନକୀନାଥ ବୋଷ ଓ ଢେଙ୍କାନାଳ ଓ କନିକାର ରାଜାମାନେ ଅଧିକା ପୁରସ୍କାର ଦେଇଥିବାର ସେକ୍ରଟରୀ ସଭାରେ ପ୍ରକାଶ କଲେ ।

ସଭାପତି ମହୋଦୟଙ୍କର ବକ୍ତୃତାର ଭାବ ଏହି କି ସମ୍ପାଦକଙ୍କର ସନ୍ତୋଷଜନକ ରିପୋଟ ଶ୍ରବଣରେ ସେ ବଡ଼ ଆନନ୍ଦିତ ହୋଇଅଛନ୍ତି । ବଙ୍ଗଳାର ବିଖ୍ୟାତ ସ୍ୱର୍ଗୀୟ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କର ଆଦର୍ଶର ଯେଉଁମାନେ ସ୍ୱଦେଶୀୟଙ୍କର ଶିକ୍ଷା ନିମିତ୍ତ ଆତ୍ମତ୍ୟାଗ ପୂର୍ବକ ଅଗ୍ରସର ହୋଇଅଛନ୍ତି ସେହି ଦଳର ଏକ ବ୍ୟକ୍ତିଦ୍ୱାରା ଏହି ବିଦ୍ୟାଳୟ ସାମାନ୍ୟ ଆରମ୍ଭ ହୋଇ ତାହାଙ୍କର ଅକାଳ ମୃତ୍ୟୁରେ ସ୍ଥାନୀୟ କେତେଜଣ ଭଦ୍ରଲୋକଙ୍କ ଗଠିତ କମିଟି ଯତ୍ନ ଏବଂ ଚେଷ୍ଟାରେ ବର୍ତ୍ତମାନ୍ ସୌଭାଗ୍ୟଶାଳୀ ଅବସ୍ଥାକୁ ପ୍ରାପ୍ତ ହୋଇଅଛି ।

*ଭା୩୬ଗ, ସଂ୩୯ଖ୍ୟା, ୨୮/୯/୧୯୦୧*

## REPORT

The school, so called after the name of its founder the late lamented Babu Peary Mohan Acharya of this town, has passed its twenty-fifth year since it was opened, as a Middle English School in 1875, to poor and helpless boys of the town. It was next raised to the status of a High English School in 1879. On the death of its founder on the 28th December 1882, the institution came under the management of a Committee formed by his friends and sympathisers who opened public subscriptions to meet the expenses which had so long been defrayed by the founder from his own pocket. The Committee has since consisted of some of the leading gentlemen of the town who have maintained the school partly with its fee receipts, partly with the aid given by Government and partly with donations and subscriptions contributed by the generous public of Orissa. The present Managing Committee consists of the following gentlemen:—

Babu Gowri Sankar Roy, Pensioner, President.
Babu Bhuban Mohan Acharya, Pleader.
Babu Madhu Sudan Rao, Head Master, Training School.
Babu Sudam Charan Naik, Asstt. Supdt. Try. Mahals Orissa.
Babu Gopal Ballav Das, M.A. Dy. Magistrate.
Babu Raj Kishore Das B.L. Dy. Magistrate.
Rai Joggeswar Chandra Chander Bahadur, M.A. B.L Law Lecturer
Rai Radhanath Rai Bahadur, Inspector of Schools.
Babu Jagga Mohan Lall, Pensioner.
Babu Umes Chandra Basu, Head master, Survey School.
Babu Akshoy Kumar Ghose, Clerk Commr's Office.
Babu Nilmoni Chand Dey, B.A., Head master of the School.
Babu Baikuntha Nath Dutt, B.L. Pleader, Secretary.

The school was all along held in rented houses, when in 1887, Mr. WORSLEY, then Superintendent of the Tributary Mahals, Orissa came to its relief by himself taking a warm interest in it. An appeal was made with his permission to the Rajas and

Zamindars of Orissa, and a decent amount was raised – the Maharaja of Keonjhar among others, contributing Rs. 1,000 for the purpose. The amount so raised together with the surplus balance at the credit of the school sufficed to cover the money spent in purchasing the site and constructing the present building which came up to Rs. 5,107—4—3. The wants of furniture have been removed by a special grant of Rs. 250 from the Director of Public Instruction, Bengal. All that it now stands in need of, is the consolidation of the roof of the building and a compound wall –a question of about Rs. 700 which the Committee can reasonably hope at the hands of the generous public.

The year under report appears to have been a fortunate one to the interests of the institution. There was no change of any importance in its teaching staff and the school appears to have worked smoothly in its own way. The staff consisted of six English knowing teachers, one Pandit,one drawing master and one Moulavi. Of the English knowing teachers one was a graduate and four were almost as good as graduates by qualification and experience.

The school consists of eight classes and the average number of boys that it had on it rolls during the year was 189 against 187 in the year before.The average percentage of daily attendance may be looked upon as satisfactory in as much as it remained steady for the last two years—being 82. The number of boys that the school enrolled on the 31st of March last was 201, of whom about 84 percent were Hindus, 14 percent Mahomedans and 2 per cent native Christians, and this classed again according to their respective mother tongue shewed about 47 per cent to be Uriyas, 36 percent to be Bengalees, 14 per cent to be Mahamedans and 3 percent to be Telugus of the entire population of the school. The percentage of boys reading wholly or partly free on the above data was about 6.6 against 7.5 on the corresponding date of the year before excluding of course, the scholarship holders time—expired scholars and Mahomedan students reading free in the institution. There were 9 scholarship holders reading on the date against 13, of whom 2 were Middle English and the rest Vernacular Schools.

The income of the school from its three different sources, namely fee receipts, Government grant and private contributions amounted to Rs. 3165 in the year under report, against Rs 2977 in the year preceding, and its total expenditure amounted to Rs 2973 against Rs 2951.

Not only was the school well off in point of finance during the year under report, but it was well off in point of success too. 9 boys out of 15 on the rolls of the First class on the 31st December 1899 appeared at the Entrance Examination of 1900 and 5 came out successful, 2 being placed in the First Division, 2 in the Second and 1 in the Third and 1 obtained a Third-Grade Government scholarship of Rs.10 a month.

ବାବୁ ଜାନକୀନାଥ ବୋଷ ଓ ଢେଙ୍କାନାଳ ଓ କନିକାର ରାଜାମାନେ ଅଧିକା ପୁରସ୍କାର ଦେଇଥିବାର ସେକ୍ରେଟରୀ ସଭାରେ ପ୍ରକାଶ କଲେ ।

ସଭାପତି ମହୋଦୟଙ୍କର ବକ୍ତୃତାର ଭାବ ଏହି କି ସମ୍ପାଦକଙ୍କର ସନ୍ତୋଷଜନକ ରିପୋଟ ଶ୍ରବଣରେ ସେ ବଡ଼ ଆନନ୍ଦିତ ହୋଇଅଛନ୍ତି । ବଙ୍ଗଳାର ବିଖ୍ୟାତ ସ୍ୱର୍ଗୀୟ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କର ଆଦର୍ଶର ଯେଉଁମାନେ ସ୍ୱଦେଶୀୟଙ୍କର ଶିକ୍ଷା ନିମିତ୍ତ ଆତ୍ମତ୍ୟାଗ ପୂର୍ବକ ଅଗ୍ରସର ହୋଇଅଛନ୍ତି ସେହି ଦଳର ଏକ ବ୍ୟକ୍ତିଦ୍ୱାରା ଏହି ବିଦ୍ୟାଳୟ ସାମାନ୍ୟ ଆରମ୍ଭ ହୋଇ ତାହାଙ୍କର ଅକାଳ ମୃତ୍ୟୁରେ ସ୍ଥାନୀୟ କେତେଜଣ ଭଦ୍ରଲୋକଙ୍କ ଗଠିତ କମିଟି ଯତ୍ନ ଏବଂ ଚେଷ୍ଟାରେ ବର୍ତ୍ତମାନ୍ ସୌଭାଗ୍ୟଶାଳୀ ଅବସ୍ଥାକୁ ପ୍ରାପ୍ତ ହୋଇଅଛି ।

*ଭାଗ ୬ଗ, ସଂଖ୍ୟା ୩୯, ୨୮/୯/୧୯୦୧*

# REPORT

The school, so called after the name of its founder the late lamented Babu Peary Mohan Acharya of this town, has passed its twenty-fifth year since it was opened, as a Middle English School in 1875, to poor and helpless boys of the town. It was next raised to the status of a High English School in 1879. On the death of its founder on the 28th December 1882, the institution came under the management of a Committee formed by his friends and sympathisers who opened public subscriptions to meet the expenses which had so long been defrayed by the founder from his own pocket. The Committee has since consisted of some of the leading gentlemen of the town who have maintained the school partly with its fee receipts, partly with the aid given by Government and partly with donations and subscriptions contributed by the generous public of Orissa. The present Managing Committee consists of the following gentlemen:—

Babu Gowri Sankar Roy, Pensioner, President.
Babu Bhuban Mohan Acharya, Pleader.
Babu Madhu Sudan Rao, Head Master, Training School.
Babu Sudam Charan Naik, Asstt. Supdt. Try. Mahals Orissa.
Babu Gopal Ballav Das, M.A. Dy. Magistrate.
Babu Raj Kishore Das B.L. Dy. Magistrate.
Rai Joggeswar Chandra Chander Bahadur, M.A. B.L Law Lecturer
Rai Radhanath Rai Bahadur, Inspector of Schools.
Babu Jagga Mohan Lall, Pensioner.
Babu Umes Chandra Basu, Head master, Survey School.
Babu Akshoy Kumar Ghose, Clerk Commr's Office.
Babu Nilmoni Chand Dey, B.A., Head master of the School.
Babu Baikuntha Nath Dutt, B.L. Pleader, Secretary.

The school was all along held in rented houses, when in 1887, Mr. WORSLEY, then Superintendent of the Tributary Mahals, Orissa came to its relief by himself taking a warm interest in it. An appeal was made with his permission to the Rajas and

Zamindars of Orissa, and a decent amount was raised – the Maharaja of Keonjhar among others, contributing Rs. 1,000 for the purpose. The amount so raised together with the surplus balance at the credit of the school sufficed to cover the money spent in purchasing the site and constructing the present building which came up to Rs. 5,107—4—3. The wants of furniture have been removed by a special grant of Rs. 250 from the Director of Public Instruction, Bengal. All that it now stands in need of, is the consolidation of the roof of the building and a compound wall –a question of about Rs. 700 which the Committee can reasonably hope at the hands of the generous public.

The year under report appears to have been a fortunate one to the interests of the institution. There was no change of any importance in its teaching staff and the school appears to have worked smoothly in its own way. The staff consisted of six English knowing teachers, one Pandit,one drawing master and one Moulavi. Of the English knowing teachers one was a graduate and four were almost as good as graduates by qualification and experience.

The school consists of eight classes and the average number of boys that it had on it rolls during the year was 189 against 187 in the year before.The average percentage of daily attendance may be looked upon as satisfactory in as much as it remained steady for the last two years—being 82. The number of boys that the school enrolled on the 31st of March last was 201, of whom about 84 percent were Hindus, 14 percent Mahomedans and 2 per cent native Christians, and this classed again according to their respective mother tongue shewed about 47 per cent to be Uriyas, 36 percent to be Bengalees, 14 per cent to be Mahamedans and 3 percent to be Telugus of the entire population of the school. The percentage of boys reading wholly or partly free on the above data was about 6.6 against 7.5 on the corresponding date of the year before excluding of course, the scholarship holders time—expired scholars and Mahomedan students reading free in the institution. There were 9 scholarship holders reading on the date against 13, of whom 2 were Middle English and the rest Vernacular Schools.

The income of the school from its three different sources, namely fee receipts, Government grant and private contributions amounted to Rs. 3165 in the year under report, against Rs 2977 in the year preceding, and its total expenditure amounted to Rs 2973 against Rs 2951.

Not only was the school well off in point of finance during the year under report, but it was well off in point of success too. 9 boys out of 15 on the rolls of the First class on the 31st December 1899 appeared at the Entrance Examination of 1900 and 5 came out successful, 2 being placed in the First Division, 2 in the Second and 1 in the Third and 1 obtained a Third-Grade Government scholarship of Rs.10 a month.

The class had 7 boys on its rolls on the 31st December 1900 and all these 7 appeared at the last Entrance Examination and 6 came out successful, 3 being placed in the First Division and 1 in the Second and 2 in the Third; 1 of whom obtained a Second-Grade Government scholarship of Rs 15 a month; 2 Third-Grade Government Scholarship of Rs 10 each and 1 a local scholarship of Rs.7 in the gift of the District Board of Cuttack. The examination of the lower classes was conducted this year, too, by the members of the Local Bar and the results, on the whole, were satisfactory.

In absence of a suitable play ground within the precinets of the school some of the elderly boys played cricket and foot-ball along with boys from other schools, the rest engaged themselves in native indigenous games. Drill has but lately been introduced into the school under the supervision of a non-commissioned officer of the Madras native Infantry now on pension and it is practically compulsory on almost all the boys of the school.

*ଭାଗ୬ଗ, ସଂଖ୍ୟା୯, ୨୮।୯।୧୯୦୧*

## ପୁସ୍ତକପ୍ରାପ୍ତି ସ୍ୱୀକାର।

ରାମଚନ୍ଦ୍ର ନାଟକ ।- ଶ୍ରୀ ହରିହର ରଥଙ୍କ ଦ୍ୱାରା ପ୍ରଣୀତ । ଏ ପୁସ୍ତକ ପେ ୧ ୨ଙ୍କୀ ଫର୍ମାର ପୃ୭୦ଷ୍ଠା ଅଧିକାର କରିଅଛି ମୂଲ୍ୟ ଟ୦.। । ପୁସ୍ତକ ଖଣ୍ଡିକ ଆମ୍ଭେମାନେ ଯେତେ ଆନନ୍ଦିତ ହୋଇ ପାଠ କରିବାକୁ ବସିଲୁଁ ନାଟକଗତ ବିଷୟଟି ପାଠ କରି ତାହା ହୋଇ ପାରିଲୁ ନାହିଁ। ମହର୍ଷି ବାଲ୍ମୀକିଙ୍କ ରାମାୟଣର ଆମ୍ଭେମାନେ ପକ୍ଷପାତୀ ତହିଁରୁ ଅତିରିକ୍ତ ବିଷୟ ଅଧିକ ପ୍ରୀତିକର ହେବ ଏହା ଠିକ୍ ନୁହେ କାରଣ ମୂଳଗ୍ରନ୍ଥ ପ୍ରତି ଆଜି ସମସ୍ତଙ୍କର ମନ ଧାବିତ ହେଉଅଛି। କୃତ୍ତିବାସ କଥକ ଥିଲେ ଏବଂ ତାଙ୍କର ବ୍ୟବସାୟ ଅନୁରୋଧରେ ସେ ଇଚ୍ଛାମତ ଲେଖି ଯାଇଅଛନ୍ତି ଏମନ୍ତ କି ଅନେକ ବିଷୟ ତାଙ୍କର ସ୍ୱକପୋଳକଳ୍ପିତ ଅଟେ। ଉତ୍ତରାକାଣ୍ଡରେ ଯେ ଲବ କୁଶଙ୍କ ସଙ୍ଗେ ରାମ ଲକ୍ଷ୍ମଣାଦିର ଯୁଦ୍ଧ ବୃତ୍ତାନ୍ତ କୃତ୍ତିବାସ ଲେଖି ଯାଇଅଛନ୍ତି ତାହା ବାଲ୍ମୀକି ରାମାୟଣରେ ନାହିଁ । ସେହିପରି ବାଲ୍ମୀକି ରାମାୟଣରେ ଦଶରଥ କର୍ତ୍ତୃକ ଋଷିକୁମାର ବଧର ଯେଉଁ ବୃତ୍ତାନ୍ତ ଦିଆ ଯାଇଅଛି କୃତ୍ତିବାସ ତଦନୁରୂପେ ଲେଖି ନାହାନ୍ତି । ବାଲ୍ମୀକି ରାମାୟଣର ଅଯୋଧ୍ୟାକାଣ୍ଡର ୬୩ ଓ ୬୪ ସର୍ଗ ଦେଖିଲେ XXXXXX ରାମାୟଣ ମଧ ବାଲ୍ମୀକି ରାମାୟଣ ସଙ୍ଗେ ମିଶି ନାହିଁ । ନାଟକର ଅଭିନୟ ଦେଖି ପଢ଼ି ନ ଜାଣିବା ଲୋକର ଜ୍ଞାନ ହୁଏ। ସେମାନଙ୍କୁ ପୌରାଣିକ ବିଷୟର ବିରୁଦ୍ଧ କଥା ଜଣାଇବା ଭଲ। ଆଜିକାଲି ଦେଶରେ ଯେପରି ରାମଲୀଳା ଯାତ୍ରା ଦେଖାଯାଏ ବୋଧ ହୁଏ ଗ୍ରନ୍ଥକାର ତାହାକୁ ମୂଳକରି ଏହା ଲେଖିଅଛନ୍ତି ଏବଂ ସେହି କାରଣରୁ ବୋଧ ହୁଏ ଆରମ୍ଭରେ ନାଟ୍ୟୋଲ୍ଲିଖିତ ବ୍ୟକ୍ତିମାନଙ୍କର ତାଲିକା ଦିଆ ଯାଇ ନାହିଁ। ନାଟକର ପ୍ରଥମରେ ନାନ୍ଦୀ ହୋଇ ପରେ 'ପ୍ରଥମ ଅଭିନୟ' ଲେଖାଗଲା। ମାତ୍ର ଦ୍ୱିତୀୟ ଅଭିନୟ ବେଳକୁ ଅଭିନୟ ପରିବର୍ତ୍ତରେ 'ଅଙ୍କ' ଲେଖା ହୋଇଅଛି। ନାଟକରେ "ଅଙ୍କ" ଅପେକ୍ଷା "ଅଭିନୟ" ଶବ୍ଦଟି ଅଧିକ ଉପଯୋଗୀ। "ବିଷ୍କମ୍ଭକ" ନାଟକର ନୀରସ ଅଂଶ ଏବଂ ତାହା ଅପ୍ରଧାନ ଲୋକ ମୁଖରୁ ନିର୍ଗତ ହୁଅଇ ମାତ୍ର ଆମ୍ଭମାନଙ୍କର ନାଟକକାର ନାଟକରେ କେତେକ ପ୍ରଧାନ ଭାଗ ଦେବ ଚରିତ୍ରରେ ତାହା ପୂରଣ କରିଅଛନ୍ତି। ଆଜି କାଲି ବିଷ୍କମ୍ଭକର ସମୟ ନୁହେ। ସଂସ୍କୃତ ଭାଷାର ସମୟ ଓ ସେ କାଳର ରଙ୍ଗମଞ୍ଚ ବିଲୁପ୍ତ ହୋଇଅଛି। ଆଜି କାଲିର ରୁଚି ଏବଂ ରଙ୍ଗମଞ୍ଚ ପ୍ରତି ଦୃଷ୍ଟିରଖି ନାଟକ ଲେଖିବା ଉଚିତ। ସ୍ଥୂଳରେ ପୁସ୍ତକ ଖଣ୍ଡିକ ମନ୍ଦ ହୋଇ ନାହିଁ। ଭରସା କରୁଁ ଉତ୍କଳରେ ଅତି ଅଳ୍ପ ନାଟକ ଥିବାରୁ ଲୋକେ ଏହା ପଢ଼ିବାଦ୍ୱାରା ଗ୍ରନ୍ଥକାରଙ୍କର ଉତ୍ସାହ ବଢ଼ାଇବେ ଏବଂ ଆମ୍ଭେମାନେ ଯେସବୁ ତ୍ରୁଟି ଦେଖାଇଅଛୁଁ ଅନ୍ୟ ନାଟକ ଲେଖିବା ବେଳେ ସେ ସବୁର ବିଚାର କରିବେ।

ଉତ୍କଳର କାହାଣୀ (ପ୍ରଥମଭାଗ) ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜ ବି, ଏ କର୍ତ୍ତୃକ ସଂଗୃହୀତ ଏବଂ ଶ୍ରୀ ବିଶ୍ୱନାଥ କରଙ୍କଦ୍ୱାରା ପ୍ରକାଶିତ । ଏହା ପେ ୧୨ ଜୀ ଫର୍ମାରେ ପୃ ୮୨ ଷ୍ଠା ଅଧିକାର କରିଅଛି । ମୂଲ୍ୟ ଟ. ୦ । ଚାରିଅଣା ମାତ୍ର । ଉତ୍କଳର ପ୍ରଚଳିତ କାହାଣୀମାନ ସଂଗ୍ରହ କରି ପ୍ରକାଶ କରିବା ଲେଖକଙ୍କର ଉଦ୍ଦେଶ୍ୟ ଅଟେ ଏବଂ ଏ ଉଦ୍ଦେଶ୍ୟ ଯେ ସାଧୁ ଏଥିରେ ଦ୍ୱିରୁକ୍ତି ନାହିଁ । ପୁସ୍ତକର ଆରମ୍ଭରେ ଗୋଟିଏ ଅବତରଣିକା ଦିଆ ଯାଇଅଛି ଏବଂ ତହିଁରେ ଲେଖକଙ୍କର ଚିନ୍ତାଶୀଳତାର ଯଥେଷ୍ଟ ପରିଚୟ ମିଳୁଅଛି । ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ବୃଦ୍ଧି ସଙ୍ଗେ ସଙ୍ଗେ ଆମ୍ଭମାନଙ୍କ ଦେଶ ପ୍ରଚଳିତ କାହାଣୀମାନ ଲୋପ ପାଇଯିବାର ଯେ ଲେଖକ ଆଶଙ୍କା କରିଅଛନ୍ତି ତାହା ସୁସଙ୍ଗତ ନୁହେ । ତେବେ ଆଧୁନିକ ଶିକ୍ଷା ପ୍ରଣାଳୀ ସ୍ତ୍ରୀଲୋକଙ୍କ ମଧ୍ୟରେ ବିଶେଷରୂପେ ପରିଚାଳିତ ହେଲେ ପାଶ୍ଚାତ୍ୟ ଦେଶପ୍ରଚଳିତ କେତେକ କାହାଣୀମାନ ତହିଁର ସ୍ଥାନ ଅଧିକାର କରିପାରେ ମାତ୍ର ତାହା ହେବାକୁ ଆହୁରି ଅନେକ କାଳ ବିଳମ୍ବ ଅଛି । ବାଳକମାନଙ୍କର କାହାଣୀ ଶୁଣିବାର ଲିପ୍ସା କଦାପି ଲୁପ୍ତ ହେବାର ନୁହଇ ଏବଂ ସେମାନଙ୍କୁ ଖୁଆଇବା ଏବଂ ସୁଶାସନରେ ରଖିବା କାରଣ ବୃଦ୍ଧାମାନେ ଯେ ଚିରକାଳ ମନୋହର କାହାଣୀ କହି ସେମାନଙ୍କୁ ଭୁଲାଉଥିବେ ଏଥିରେ ସନ୍ଦେହ କି ଅଛି ? ଲେଖକ ଯେଉଁ କାହାଣୀମାନ ଏ ପୁସ୍ତକରେ ପ୍ରଗ୍ରଥିତ କରିଅଛନ୍ତି ସେମାନ ସୁନ୍ଦର ଅଟଇ ଏବଂ କେତେକ ଗଳ୍ପର ପ୍ରାରମ୍ଭରେ ବାଳୋଚିତ ଖେଳ କୌତୁକର ଯେ ମୁଖବନ୍ଧ ଦେଇଅଛନ୍ତି ତାହା ନିତାନ୍ତ ସ୍ୱାଭାବିକ । ପୁସ୍ତକର ଭାଷା ସରଳ ଏବଂ ହାଟ ବାଟର ବାଳକମାନେ ସହଜରେ ପଢ଼ି ବୁଝିପାରିବାରେ କୌଣସି କଷ୍ଟ ନାହିଁ । ମାତ୍ର ଲେଖକ ଭାଷାକୁ ସମସ୍ତ ବାଳକଙ୍କର ସହଜବୋଧ୍ୟ କରିବାକୁ ଯାଇ ପୁସ୍ତକର ଭାଷାର ଆକାର ଛାଡ଼ି ଯେ ଛୋଟଲୋକଙ୍କ ପ୍ରଚଳିତ କଥାବାର୍ତ୍ତାର ଭାଷା ପ୍ରଚାର କରିଅଛନ୍ତି ତାହା ଆମ୍ଭମାନଙ୍କୁ ଭଲ ଲାଗିଲା ନାହିଁ । କଥା ଛଳରେ ବାଳକମାନଙ୍କୁ ପ୍ରକୃତ ଭାଷା ଶିକ୍ଷା ଦେବାରେ କି ଏକାର୍ଥରେ ଦୁଇକ୍ରିୟା ସାଧିତ ହେବାଦ୍ୱାରା ଅଧିକ ଫଳଲାଭର ଆଶା ନାହିଁ ? ଲେଖକ "ହେଉ" କୁ "ହଉ" , "ମୋତେ" କୁ "ମତେ" "ଘେନି" କୁ "ଘିନି" "ଏମନ୍ତ" କୁ "ଇମିତି", "ଅର୍କ"କୁ "ଅର୍ଖ" "ଶୁଦ୍ଧ" କୁ "ଶୁଧ" "ତେଲାଉଣି" କୁ "ତେଲଉଣି", "ରାଜା" କୁ "ରଜା", "ଗୁଣ୍ଡାଇ" କୁ "ଲୁଣ୍ଡେଇ", "ଅପ୍ସରା" କୁ "ଅପ୍ସରୀ" "ଉଲଘୁଣା" କୁ "ଉଲୁଗୁଣା" ଇତ୍ୟାଦି ପୁସ୍ତକର ଆଦ୍ୟପ୍ରାନ୍ତ ବ୍ୟବହାର କରି ତାହାର ଅବୟବକୁ ଦୂଷିତ କରିଅଛନ୍ତି । "ଗର" କୁ "ଗଡ" ଏବଂ "ମଣିଆନ୍ନା" ପ୍ରଭୃତି ବ୍ରାହ୍ମଣିଆ କଥାମାନଙ୍କର ମଧ୍ୟ ଅଭାବ ନାହିଁ । "ନେହୁରା କଲା" କୁ ଲେଖକ "ନେହୁର ହେଲା" ଲେଖିଅଛନ୍ତି । ଓଡିଆରେ "ନେହୁରା କଲା" ଏବଂ "ନେହୁରା ହେଲା" ବ୍ୟବହାର ହୁଏ । ଏ ସବୁ ଦୋଷ ନ ଥିଲେ ପୁସ୍ତକଟି ଅତୀବ ଉପାଦେୟ ହୋଇଥାନ୍ତା । ସ୍ତ୍ରୀ ଶିକ୍ଷା ଓଡିଶାରେ ପୂର୍ବାପର ପ୍ରଚଳିତ ଅଛି ଏବଂ ଓଡିଶାର ଉଚ୍ଚଜାତୀୟା ସ୍ତ୍ରୀଲୋକମାନେ ପ୍ରାୟ ସମସ୍ତେ ଶିକ୍ଷିତା । ଏମନ୍ତ ସ୍ଥଳେ ଅଶିକ୍ଷିତା ରମଣୀଙ୍କ ପ୍ରାୟ ଉଚ୍ଚଜାତୀୟା ବର୍ଷୀୟସୀମାନଙ୍କଠାରୁ କଥା ଶୁଣିବା ବିରଳ । ଆମ୍ଭେମାନେ ଭରସା କରୁଁ ଲେଖକ ଭବିଷ୍ୟତ୍ ସଂସ୍କରଣରେ ଏ ସବୁ ଦୋଷ ପରିହାର କରିବାକୁ ଯତ୍ନ କରିବେ ।

କଥାଲହରୀ ବା ଉତ୍କଳକାହାଣୀ ସଂଗ୍ରହ ୧ମ ଭାଗ- ଶ୍ରୀ ରାଘବାନନ୍ଦ ଦାସ ବି,ଏ, ଙ୍କଦ୍ୱାରା ପ୍ରକାଶିତ, ଓଡିଶା ମିଶନ ପ୍ରେସରେ ମୁଦ୍ରିତ କଳେବର ପୃ ୧୪୫ ଷ୍ଠା । ଏହା ଉପରଲିଖିତ ପୁସ୍ତକର ସମଶ୍ରେଣୀୟ ଏବଂ ସେ ସମ୍ବନ୍ଧରେ ଯେଉଁ ମନ୍ତବ୍ୟ ବ୍ୟକ୍ତ ହୋଇଅଛି ନ୍ୟୂନାଧିକରେ ଏ ପୁସ୍ତକ ପ୍ରତି ଅଟଇ । ବିଶେଷ ଏହି କି ଏହାର ଆକାର ବଡ଼ ଛାପା ଓ କାଗଜ ଭଲ ଏବଂ ଏହା ଜଣେ କରଣ ମହିଳାଙ୍କଦ୍ୱାରା ଲିଖିତ । ସୁତରାଂ ଅଧିକତର ଆଦରଣୀୟ ଏବଂ ତଦନୁସାରେ ମୂଲ୍ୟ ୦ ୫ ।

*ଭାଗ୬ଗ, ସଂ୪୯ଖ୍ୟା, ୨୧/୧୨/୧୯୦୧*

## ୧୯୦୨

## ପୁସ୍ତକପ୍ରାପ୍ତି ସ୍ୱୀକାର ।
## [ପ୍ରହ୍ଲାଦ ଓ ଅନ୍ୟାନ୍ୟ ନାଟକ ରଚନା]

**ସଙ୍ଗୀତ ପ୍ରହ୍ଲାଦ ନାଟକ ।** ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କଦ୍ୱାରା ବିରଚିତ ଏବଂ ପାରଳାଖେମଣ୍ଡିର ଗଜପତି ଯନ୍ତ୍ରାଳୟରେ ମୁଦ୍ରିତ । ଏହା ବଡ ଅଡାର ପୃ୧୦୨ଷ୍ଠା । ରାଜବଂଶୀୟଙ୍କ ମଧ୍ୟରେ ନାଟକ କ୍ଷେତ୍ରରେ ଆମ୍ଭେମାନେ ପ୍ରଥମେ ଖଡିଆଳ ରାଜକୁମାରଙ୍କୁ ସେଦିନ ଦେଖିଥିଲୁଁ । ତାଙ୍କ ପ୍ରଣୀତ "ପ୍ରେମଲତା" ନାଟକ ପାଠ କରି ପ୍ରୀତି ଲାଭ କରିଅଛୁଁ । ବର୍ତ୍ତମାନ୍ ପାରଳାଖେମଣ୍ଡିର ରାଜକୁମାରଙ୍କୁ ସମାଲୋଚ୍ୟ ନାଟକ ସହିତ ଉପସ୍ଥିତ ହେବାର ଦେଖିଲୁଁ ବଡ ଆନନ୍ଦର ବିଷୟ । ରାଜକୁମାରମାନେ ନାଟକ ରଚନା କରିବାରେ ପ୍ରବୃତ୍ତ ହୋଇଥିବା ସ୍ଥଳେ ଅଚିରେ ଦେଶରେ ସ୍ଥାୟୀ ନାଟ୍ୟଶାଳା ସ୍ଥାପିତ ହେବାର ସମ୍ଭବ । ନାଟକ ଦୃଶ୍ୟ କାବ୍ୟ ଏବଂ ତହିଁର ଅଭିନୟ ନ ହେଲେ ତାହା ଅକର୍ମଣ୍ୟ କାରଣ ଅଭିନୟଦ୍ୱାରାହିଁ ନାଟକର ଭାବ ସମ୍ୟକ୍‌ରୂପେ ପ୍ରତ୍ୟକ୍ଷ ହୁଏ । ଓଡିଶା ପରି ଗରୀବ ଦେଶରେ ରାଜକୁମାରମାନେ କୃତସଂକଳ୍ପ ହୋଇ ସ୍ଥାୟୀ ନାଟ୍ୟଶାଳାର ସୂତ୍ରପାତ କରି ନିଜର ଏବଂ ଅନ୍ୟର ରଚିତ ନାଟକାଭିନୟ ଦେଖାଇବାର ଚେଷ୍ଟା ନ କଲେ ଆଉ କିଏ ତାହା କରିବାକୁ ସମର୍ଥ ହେବ ? ସମାଲୋଚ୍ୟ ନାଟକଟି ଗୀତିନାଟ୍ୟ ଏବଂ ଅନେକ ରାଗ ରାଗିଣୀ ଓ ତାଳ ଦକ୍ଷିଣୀ ଅଥବା ପ୍ରକୃତ ଓଡିୟା ରୀତିରେ ଖଞ୍ଜା ହୋଇଅଛି । ଦୁଃଖର ବିଷୟ ଯେ ଓଡିୟା ସଙ୍ଗୀତର ଜ୍ଞାନ ଏ ଅଞ୍ଚଳରେ ଊଣା ପଡୁଅଛି ଏବଂ ସାଧାରଣ ରୁଚି ଉତ୍ତର ପଶ୍ଚିମ ବା ବଙ୍ଗଳା ଦିଗକୁ ଧାଉଁଅଛି । ନାଟକଗତ ବିଷୟଟି ଭକ୍ତିରସାତ୍ମକ ଏବଂ ସେହି ରସ ଉଦ୍ଦୀପନ ଅପେକ୍ଷା ସଙ୍ଗୀତ ପ୍ରତି ଅଧିକ ଢଳିବାରୁ ସମ୍ଭବତଃ ନାଟକର ଚରିତ୍ର ଚିତ୍ରରେ କିଛି ତ୍ରୁଟି ଲକ୍ଷିତ ହେଉଅଛି । ପୌରାଣିକ ବୃତ୍ତାନ୍ତ ମଧ୍ୟ ଠିକ ରକ୍ଷା ହୋଇ ନାହିଁ ଏବଂ ଦକ୍ଷିଣୀ ଭାଷାଦୋଷ ଅନେକ ସ୍ଥଳେ ରହି ଯାଇଅଛି । ବିଷ୍ଣୁପୁରାଣରୁ ଲେଖକ ବୃତ୍ତାନ୍ତଟି ଘେନି ଥିବାର ପ୍ରକାଶ କରିଅଛନ୍ତି ମାତ୍ର ବିଷ୍ଣୁପୁରାଣର ବର୍ଣ୍ଣନାନୁସାରେ ଗ୍ରନ୍ଥ ଲେଖା ହୋଇ ନାହିଁ । ବିଷ୍ଣୁପୁରାଣରେ ସ୍ତମ୍ଭରୁ ନୃସିଂହ ବାହାରିବାର କଥା ନାହିଁ । ତହିଁର ପ୍ରଥମାଂଶ ବିଂଶାଧ୍ୟାୟରେ ସମୁଦ୍ର ଗର୍ଭରୁ ପ୍ରହ୍ଲାଦ ଉଠି ଆସିଲା ପରେ ହିରଣ୍ୟକଶିପୁ ଆପଣା ଅସଦ୍‌ବ୍ୟବହାର ମନେକରି ପ୍ରହ୍ଲାଦଙ୍କ ପ୍ରତି ଉତ୍ପୀଡନ ଛାଡି ଦେଇ ପ୍ରୀତିମାନ୍ ହୋଇ ଅନୁତାପ କଲେ । ପରେ ନୃସିଂହସ୍ୱରୂପ ହରି ତାଙ୍କୁ ନାଶ କଲେ ଏବଂ ଟୀକାକାର ଲେଖିଲେ "କାଳାନ୍ତରେ" ହରି ନାଶ କଲେ । ତେବେ ଶ୍ରୀମଦ୍‌ଭାଗବତର ସପ୍ତମ ସ୍କନ୍ଧରେ ଏ ବର୍ଣ୍ଣନା ଅଛି ଏବଂ ସମ୍ଭବତଃ ତାହାକୁ ଅବଲମ୍ବନ କରି ଲେଖକ ଲେଖିଅଛନ୍ତି । ଶ୍ରୀମଦ୍‌ଭାଗବତରେ ହିରଣ୍ୟକଶିପୁ ସ୍ତମ୍ଭରେ ମୁଷ୍ଟି ପ୍ରହାର କରିଥିବାର ଲେଖା ଅଛି (୭ମ ସ୍କନ୍ଧ, ୮ମ ଅଧ୍ୟାୟ) ସ୍ଥୂଳରେ ନାଟକ ଖଣ୍ଡିକ ପାଇ ଯେତେ ଆନନ୍ଦ ଲାଭର ଆଶା କରିଥିଲୁଁ ପାଠ କରି ତେତେ ପାଇଲୁଁ ନାହିଁ । ଭରସା କରୁଁ ଗ୍ରନ୍ଥକାର ଆମ୍ଭମାନଙ୍କ କଥାରେ ବିରକ୍ତ ନ ହୋଇ ଆପଣାର ରଚନାର ଉନ୍ନତି କରିବାରେ ଯତ୍ନଶୀଳ ହେବେ ।

**ବାଣ ଦର୍ପଦଳନ ଏବଂ ଧ୍ରୁବ ନାଟକ ।**–ଏହି ଦୁଇ ନାଟକ ମଧ୍ୟରୁ ପ୍ରଥମଟି ଉପରଲିଖିତ ଶ୍ରୀ ପଦ୍ମନାଭ ନାରାୟଣ ଦେବ ଏବଂ ୨ୟଟି ତାହାଙ୍କର ଅଗ୍ରଜ ଓ ପାରଳାଖେମଣ୍ଡିର ଅଧୀଶ୍ୱର ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କଦ୍ୱାରା ରଚିତ ଏବଂ ସେଠାର ଗଜପତି ଯନ୍ତ୍ରାଳୟରେ ମୁଦ୍ରିତ । ଏ ଦୁଇ ପୁସ୍ତକର ଆକାର ମୁଦ୍ରାଙ୍କନ କାର୍ଯ୍ୟ ଭାଷା ଇତ୍ୟାଦି ପ୍ରାୟ ସମାନ ଏବଂ ପ୍ରହ୍ଲାଦ ନାଟକ ସମ୍ବନ୍ଧରେ ଯେ ମନ୍ତବ୍ୟ ଉପରେ ବ୍ୟକ୍ତ ହୋଇଅଛି ଏହି ପୁସ୍ତକ ଦ୍ୱୟ ପ୍ରତି ନ୍ୟୂନାଧିକ୍ୟରେ ଖଟୁ ଥିବାରୁ ଅଧିକ କିଛି କହିବା ଅନାବଶ୍ୟକ । ଉତ୍କଳସାହିତ୍ୟର ପୁଷ୍ଟି ବିଷୟରେ

ଏମାନଙ୍କର ଯତ୍ନ ଓ ଅଧ୍ୟବସାୟ ଦେଖି ଆମ୍ଭେମାନେ ଏକାନ୍ତ ପ୍ରୀତ ହୋଇଅଛୁଁ ଏବଂ ଯଦ୍ୟପି କି ତାହା ଆଶାନୁରୂପ ସଫଳ ହେବାର କହି ପାରୁ ନାହୁଁ ତହିଁର କାରଣ ବୋଧ କରୁଁ ଏ ଅଞ୍ଚଳର କୃତବିଦ୍ୟ ମଣ୍ଡଳୀ ସହିତ ସଦାଳାପର ଅଭାବ ବିନା ଆଉ କିଛି ନୁହେ । ଯେସ୍ଥଳେ ଗ୍ରନ୍ଥକାରମାନଙ୍କର ଇଚ୍ଛା ଓ ସଙ୍ଗତି ଅଛି ସେସ୍ଥଳେ ଅନାୟାସରେ ସେମାନେ ସେ ଅଭାବ ମୋଚନ କରିପାରନ୍ତି ।

*ଭାଗ୩୭ଗ,ସଂ୭ଖ୍ୟା, ୧୫।୨।୧୯୦୨*

## କୋଠପଦାରେ ନାଟକାଭିନୟ ।

ଶ୍ରୀପଞ୍ଚମୀ ଉପଲକ୍ଷେ ଏ ଜିଲାର କୋଠପଦା ମଠଠାରେ ଯେପରି ମୃଣ୍ମୟୀ ସରସ୍ୱତୀ ଦେବୀଙ୍କ ପୂଜା ଓ ନାଟକାଭିନୟ ଅନ୍ୟାନ୍ୟ ବର୍ଷପରି ଏ ବର୍ଷ ମଧ ହୋଇଥିଲା । ସେଠାରେ ଶ୍ରୀପଞ୍ଚମୀ ଦିନଠାରୁ ଦଶମୀ ପର୍ଯ୍ୟନ୍ତ ମୃଣ୍ମୟୀ ଦେବୀଙ୍କ ପୂଜା ହୁଅଇ । ଏ ବର୍ଷ ପ୍ରତ୍ୟେକ ରାତ୍ରରେ ଭିନ୍ନ ଭିନ୍ନ ନାଟକର ଅଭିନୟ ହୋଇଥିଲା । ଓଡିୟା ନାଟକମାନଙ୍କ ମଧ୍ୟରୁ ବନବାଳା ନାଟକର ଅଭିନୟ ଏକରାତ୍ରରେ ହୋଇଥିଲା । ଅନ୍ୟ ସକଳ ରାତ୍ରରେ ବଙ୍ଗଳାରୁ ଅନୁବାଦିତ ହରି ଅନ୍ୱେଷଣ, ବିକ୍ରମାଦିତ୍ୟ, ଯଦୁବଂଶ ଧ୍ୱଂସ ଏବଂ ପାଣ୍ଡବଙ୍କ ଅଜ୍ଞାତବାସ ନାଟକ ମାନଙ୍କର ଅଭିନୟ ହୋଇଥିଲା । କେବଳ ବିକ୍ରମାଦିତ୍ୟ  ଛଡା ଅନ୍ୟ ନାଟକମାନଙ୍କର ଅଭିନୟ ସେଠାରେ ପୂର୍ବେ ହୋଇଥିବାରୁ ତହିଁର ଉଲ୍ଲେଖ ଅନାବଶ୍ୟକ । ନୂତନ ନାଟକ ବିକ୍ରମାଦିତ୍ୟର ଅଭିନୟ ଭଲ ହୋଇଥିଲା । ଅଭିନୟ ଓ କଥାବାର୍ତ୍ତା ଦେଖି ନ ଜାଣିଲା ଲୋକେ ଅନୁବାଦ ବୋଲି ସହଜରେ ବୁଝି ପାରିବେ ନାହିଁ । ପ୍ରକୃତରେ ଅନୁବାଦ ଅତି ସୁନ୍ଦର ଓଡିୟାରେ ହୋଇଥିଲା  ଏବଂ କେତେକ ଓଡିୟା ରାଗିଣୀର ଗୀତମାନ ସନ୍ନିବିଷ୍ଟ ହୋଇଥିବାରୁ ସାଧାରଣ ଲୋକଙ୍କର ତାହା ବିଶେଷ ପ୍ରୀତିକର ହୋଇଥିଲା । ବିଶେଷତଃ ଉଦରେଶ୍ୱରର ଅଭିନୟ ଅତି ସୁନ୍ଦର ହୋଇଥିଲା  ଓ ଦର୍ଶକମାନେ ସେ ଭଣ୍ଡ ବ୍ରାହ୍ମଣକୁ ଭଲରୂପେ ଚିହ୍ନି ରଙ୍ଗମଞ୍ଚରେ ତାହାର ପ୍ରବେଶ ମାତ୍ରକେ ଆନନ୍ଦିତ ହେଉଥିଲେ । କୋଠପଦା ମଠର  ମହନ୍ତ ତପୋନିଧି ରଘୁନାଥପୁରୀ ଗୋସାଇଁଙ୍କର ନାଟକାଭିନୟ ପ୍ରତି ଶ୍ରଦ୍ଧା ପୂର୍ବପ୍ରାୟ ବଳବତୀ ରହିଅଛି ଏବଂ ଏବର୍ଷ କଲିକତାରୁ ଅମ୍ଳଜାନ ଗେସ ଆଲୋକ ଅଣାଇ ରଙ୍ଗମଞ୍ଚ ଓ ସଭା ସ୍ଥଳକୁ ଆଲୋକରେ ଭସାଇ ଦେଇଥିବାରୁ ଲୋକେ ବିଶେଷ ଆନନ୍ଦିତ ହୋଇଥିଲେ । ଲୋକରଞ୍ଜନ ଉଦ୍ଦେଶ୍ୟରେ ଏତାଦୃଶ ପରିଶ୍ରମ କରି ବଙ୍ଗଳାର ଭଲ ଭଲ ନାଟକର ଅଭିନୟ ଦେଖାଇବାକୁ ଯତ୍ନ ପୂର୍ବକ ଅନୁବାଦ କରିବାର ପରିଶ୍ରମ ଓ ଅଭିନୟ ଦେଖାଇବାର ବ୍ୟୟ ଆନନ୍ଦ ମନରେ ସ୍ୱୀକାର କରି ଅଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ଭରସା କରୁଁ ଏ ଦେଶର ଅନ୍ୟାନ୍ୟ ଧନୀ ମହନ୍ତ  ଓ ଜମିଦାରମାନେ ମହନ୍ତଙ୍କର ଅନୁକରଣ କରିବାଦ୍ୱାରା ଲୋକମାନଙ୍କର ରୁଚି ଓ ଚରିତ୍ରର ଉନ୍ନତି ସଙ୍ଗେ ସଙ୍ଗେ ଉତ୍କଳ ସାହିତ୍ୟର ଅଙ୍ଗ ପୁଷ୍ଟ କରିବେ ।

*ଭାଗ୩୭ଗ,ସଂ୮ଖ୍ୟା, ୨୨।୨।୧୯୦୨*

## [ଓଡିୟା ଓ ନବସମ୍ବାଦ]

ଗତ ତା ୧୨ ରିଖର 'ଓଡିୟା ଓ ନବସମ୍ବାଦ' ରେ ଭଦ୍ରଖର ଖାସମାହାଲ ତହସିଲଦାର ବାବୁ ଦ୍ୱାରିକାନାଥ ଦାସଙ୍କର ଖଣ୍ଡିଏ ପତ୍ର ପ୍ରକାଶିତ ହୋଇଅଛି । ଲେଖକ ଛାନ୍ଦମାଳା ପୁସ୍ତକର ଏକ ଏକ ଛାନ୍ଦର ଶିରୋଭାଗରେ କାମୋଦୀ ବୃତ୍ତ ବଙ୍ଗଳାଶ୍ରୀ ବୃତ୍ତ ଇତ୍ୟାଦି ବୃତ୍ତ ଓ ତହିଁର ଟୀକା ପୁସ୍ତକରେ ସେ ସବୁ ବୃତ୍ତର ପଦବିଭାଗ, ଅକ୍ଷର ସଂଖ୍ୟା ପୁଣି ଯତିପାତର ନିୟମ ଲେଖିଥିବାର ଦେଖି କହି ଅଛନ୍ତି କି "ଛନ୍ଦ, ଗୀତିଛନ୍ଦ, ଗାଥା ଓ ଗୀତଛାନ୍ଦ ଭିନ୍ନ ଭିନ୍ନ ପଦାର୍ଥ । କାମୋଦୀ, ଶଙ୍କରାଭରଣ ପ୍ରଭୃତି ବୃତ୍ତ ବା ବାଣୀ ନୁହେ । ସେମାନେ ରାଗ ବା ରାଗିଣୀ ଅଟନ୍ତି । ଅକ୍ଷର ବା ଯତିପାତ ସହିତ ତାହାର କିଛି  ସମ୍ପର୍କ ନାହିଁ । ଶ୍ରୁତି, ସ୍ୱର, ମୂର୍ଚ୍ଛନା ପ୍ରଭୃତି ଘେନି ରାଗର ଭେଦ ହୋଇଥାଏ । କାମୋଦୀ ୫ ପାଦ ନ ହୋଇ ୭ ପାଦ ହୋଇପାରେ । ଅଳ୍ପାଧିକ ଅକ୍ଷର ରହିପାରେ, ଭିନ୍ନ ଭିନ୍ନ ଯତି ସଂଯୋଗ କରା ଯାଇପାରେ । ଏପରି ନିୟମ ବନ୍ଧନ ଭୁଲ ଅଟେ , ଛାନ୍ଦମାଳାର

ସମସ୍ତ ଛାନ୍ଦକୁ କାମୋଦୀରେ ଗାୟନ କରି ପାରାଯାଏ । ଏପରି ଭୁଲ ପୁସ୍ତକରେ ରହିବା ଉଚିତ ନୁହେ" । ପରିଶେଷରେ ଲେଖିଅଛନ୍ତି କି ପ୍ରଧାନ ଶିକ୍ଷକ ମହାଶୟ ସେହି ଛାନ୍ଦମାଳା ପୁସ୍ତକର ଏକଖଣ୍ଡ ଡି,ଇ,ଙ୍କ ଠାକୁ ଏବଂ ଏକଖଣ୍ଡ 'ଓଡିୟା ଓ ନବସମ୍ବାଦ' ନିକଟକୁ ପଠାଇ ଦେବେ କାରଣ ସବିଶେଷ ଆଲୋଚନା ହେବା ଆବଶ୍ୟକ । ଆମ୍ଭେମାନେ ଏକାନ୍ତ ଆଶା କରୁଁ ପ୍ରଧାନ ଶିକ୍ଷକ ମହାଶୟ ପତ୍ରପ୍ରେରକଙ୍କର ଅନୁରୋଧ କରିବାକୁ ମନୋଯୋଗୀ ହେବେ ଏବଂ ପତ୍ରପ୍ରେରକ ଏବଂ ଓଡିଶାର ନାନା ସାହିତ୍ୟ ସଭା ପତ୍ରିକା ଏବଂ ସାହିତ୍ୟ ଚର୍ଚ୍ଚା କରିବା ବ୍ୟକ୍ତିମାନେ ଏ ବିଷୟ ଉତ୍ତମରୂପେ ଆଲୋଚନା କରି ତହିଁର ଫଳ ପ୍ରକାଶ କରିବେ । ଉତ୍କଳରେ ଛାନ୍ଦବନ୍ଧିର ସୀମା ନାହିଁ । ମାତ୍ର ସେ ଛାନ୍ଦମାନ ଛନ୍ଦଗ୍ରନ୍ଥର ନିୟମାନୁସାରେ ଗଠିତ ହୋଇଅଛି କି ନା ଏବଂ ଯେବେ ହୋଇଥାଏ ତେବେ ସେ ଯେଉଁ ଛନ୍ଦରେ ଗଠିତ ହୋଇଅଛି ତାହାର ସେହି ନାମ ଦିୟା ନ ଯାଇ ରାଗ ରାଗିଣୀର ନାମ ଦିୟାଯିବାର ହେତୁ କି ତାହା ଏପର୍ଯ୍ୟନ୍ତ ପ୍ରକାଶ ହେବାର ଦେଖି ନାହୁଁ । ଏହି ପ୍ରଶ୍ନମାନଙ୍କର ଗୋଟିଏ ମୀମାଂସା ହେବା ବାଞ୍ଛନୀୟ ଏବଂ ବିଦ୍ୱାନ୍‌ମଣ୍ଡଳୀ ମନୋଯୋଗୀ ହେଲେ ଅବଶ୍ୟ ହୋଇପାରିବ ।

*ଭାଗ୭ଗ, ସଂ୯ଖ୍ୟା, ୧।୩।୧୯୦୨*

## ଭାଷା ବିଚାର ।

ପାରଳା ଖେମଣ୍ଡିର ଦ୍ୱିତୀୟ ରାଜକୁମାର ଶ୍ରୀ ପଦ୍ମନାଭ ନାରାୟଣ ଭଞ୍ଜ ଦେବଙ୍କକୃତ ସଙ୍ଗୀତ-ପ୍ରହ୍ଲାଦ ନାଟକର ଆମ୍ଭେମାନେ ଯେଉଁ ସମାଲୋଚନା କରିଥିଲୁଁ ତହିଁରେ ସେଠାର ଶ୍ରୀ ଶ୍ୟାମସୁନ୍ଦର ରାୟଗୁରୁ ବିରକ୍ତ ହୋଇ ଖଣ୍ଡିଏ ପତ୍ର ପଠାଇଥିବାରୁ ଆମ୍ଭେମାନେ ତାହା ସାଧାରଣଙ୍କର ଅବଗତି ନିମିତ୍ତ ସ୍ଥାନାନ୍ତରେ ପ୍ରକାଶ କଲୁଁ । ସଙ୍ଗୀତ ଭକ୍ତିରସର ବିରୋଧୀ ବୋଲି ଆମ୍ଭେମାନେ କହି ନାହୁଁ ମାତ୍ର ଚରିତ୍ରଚିତ୍ର କରିବାଠାରୁ ସଙ୍ଗୀତ ରଚନାରେ ଅଧିକ ମନୋଯୋଗୀ ହେବାରୁ ନାଟକଟିରେ ଚରିତ୍ରଚିତ୍ରଣରେ ତ୍ରୁଟି ଘଟିଥିବାର ଲେଖିଥିଲୁଁ । ଏ ଅଞ୍ଚଳରେ ସଙ୍ଗୀତ ଚର୍ଚ୍ଚାର ଆଦର ଊଣା ଥିଲେହେଁ ବୁଝିବା ଲୋକଙ୍କର ନିତାନ୍ତ ଅଭାବ ନାହିଁ । ନାଟକରେ ସଙ୍ଗୀତର ଉତ୍କର୍ଷ ଦେଖାଇବା ଅବଶ୍ୟ ନାଟକର ବଳ ମାତ୍ର ନାଟକର ପ୍ରଧାନ ଅଙ୍ଗ ଚରିତ୍ରଚିତ୍ର ଏବଂ ସେଥିରେ ତ୍ରୁଟି କରିବା ଏକାନ୍ତ ଦୋଷଜନକ ଅଟେ । ପ୍ରାଦେଶିକ ବ୍ୟବହାର ସମ୍ବନ୍ଧରେ ଆମ୍ଭେମାନେ ଏତିକି କହିପାରୁଁ ଯେ ସବୁ ଭାଷାରେ ପ୍ରାଦେଶିକ ବ୍ୟବହାର ଅଛି ଏବଂ ପୁସ୍ତକମାନଙ୍କରେ ତାହା ଯେତେ ଅଳ୍ପ ପରିମାଣରେ ବ୍ୟବହୃତ ହୁଏ ତେତେ ଭଲ । ଦକ୍ଷିଣୀ ଓଡିଆ ଯେ ପ୍ରକୃତ ଓଡିଆଭାଷା ନୁହେ ତାହା ଆଉ କାହାରିକି କହିଦେବାକୁ ହେବ ନାହିଁ । ପତ୍ରପ୍ରେରକ ଯେବେ ଭଲ ଓଡିଆ ଭାଷା କେଉଁଠାରେ ଅଛି ଜାଣିବାକୁ ଚାହାନ୍ତି ତେବେ ଆମ୍ଭେମାନେ ତାଙ୍କୁ ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ ଦାସ ଏବଂ ଅଭିମନ୍ୟୁ ସାମନ୍ତସିଂହାର ପ୍ରଭୃତି ପୁରାତନ କବିମାନଙ୍କର ଗ୍ରନ୍ଥ ଆଲୋଚନା କରିବାକୁ ଅନୁରୋଧ କରୁଅଛୁଁ । କଟକର ଓଡିଆରେ କିଛି କିଛି ପ୍ରାଦେଶିକତା ଥିଲେହେଁ ତାହା ପ୍ରକୃତ ଓଡିଆ ନୁହେ ବୋଲି ଆମ୍ଭେମାନେ କହି ନ ପାରୁଁ । ପୁରାତନ କବିମାନଙ୍କର ଗ୍ରନ୍ଥ ପଦ୍ୟରେ ରଚିତ ଏବଂ ଓଡିଆ ଗଦ୍ୟ ଆଧୁନିକ ଶିକ୍ଷାପ୍ରଣାଳୀ ପ୍ରଚଳିତ ହେବା ସମୟରୁ ରଚିତ ହେଉଥିବାରୁ ଅବଧି ତହିଁରେ ଅନେକ ଉନ୍ନତି ସାଧନ ହେବାକୁ ବାକୀ ଅଛି । ଯେଉଁ ବ୍ୟକ୍ତି ଉଲ୍ଲିଖିତ ପୁରାତନ କବିମାନଙ୍କର ଗ୍ରନ୍ଥ ସମ୍ୟକ୍‌ରୂପେ ଆଲୋଚନା କରି ଓଡିୟା ଗଦ୍ୟ ଲେଖିବାକୁ ଯତ୍ନବାନ୍ ହେବେ ସେ ଯେ ଭଲ ଏବଂ ବିଶୁଦ୍ଧ ଓଡିୟା ଲେଖି ପାରିବେ ଏଥିରେ ସନ୍ଦେହ ନାହିଁ ।

*ଭାଗ୭ଗ,ସଂ୧୭ଖ୍ୟା,୨୬।୪।୧୯୦୨*

## [ଓଡିଆ ଭାଷା]

ମହାଶୟ !

ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କଦ୍ୱାରା ବିରଚିତ ସଙ୍ଗୀତପ୍ରହ୍ଲାଦ ନାଟକ ସମାଲୋଚନା କରି ଆପଣ ଲେଖିଅଛନ୍ତି ।–"ନାଟକଗତ ବିଷୟଟି ଭକ୍ତିରସାତ୍ମକ ଏବଂ ସେହି ରସଉଦ୍ଦୀପନ ଅପେକ୍ଷା ସଙ୍ଗୀତ ପ୍ରତି ଅଧିକ

ଢଳିବାରୁ ସମ୍ଭବତଃ ନାଟକର ଚରିତ୍ରଚିତ୍ରରେ କିଛି ତୃଟି ଲକ୍ଷିତ ହେଉଅଛି "ସଙ୍ଗୀତ ଭକ୍ତିରସ ଉଦ୍ଦୀପନର ପ୍ରତିବନ୍ଧକ ବୋଲି ଆମ୍ଭେ ଆଜି ପର୍ଯ୍ୟନ୍ତ କାହାଠାରୁ ଶୁଣି ନ ଥିଲୁଁ। ସଙ୍ଗୀତଶାସ୍ତ୍ରବେତ୍ତାମାନେ କହିଅଛନ୍ତି ଓ ଅନେକ ଲୋକ ସ୍ୱୀକାର କରିଅଛନ୍ତି ସଙ୍ଗୀତ ସମସ୍ତ ପ୍ରକାର ଭାବର ପ୍ରଧାନ ଉତ୍ତେଜକ। ଯଦି ସଙ୍ଗୀତର ଏହି ଗୁଣ ନ ଥାନ୍ତା, ତେବେ ନାନା ଧର୍ମାବଲମ୍ବିମାନେ ସଙ୍ଗୀତକୁ ନିଜ ନିଜ ଦୈବ ପ୍ରାର୍ଥନାର ପ୍ରଧାନ ଅଙ୍ଗ କରି କାହିଁକି ନେଇ ଥାନ୍ତେ ? ଅନ୍ୟାନ୍ୟ ଭାଷାରେ ଏପରି ଭକ୍ତିରସାତ୍ମକ ନାଟକ ରାଗ ରାଗିଣୀରେ କାହିଁକି ଲେଖା ହେଉଥାନ୍ତା ? ବୋଧକରୁଁ ଆପଣଙ୍କ ଅଞ୍ଚଳରେ ସଙ୍ଗୀତର ଜ୍ଞାନ ଊଣା ପଡୁଥିବାରୁ ଆପଣ ଏପରି ଲେଖିଅଛନ୍ତି। ନୋହିଲେ କି ଯେଉଁ ସଙ୍ଗୀତ ଶିଶୁଫଣିମୋଦୀ ଓ ଯାହାର ଅଭାବରେ ମନୁଷ୍ୟ ପଶୁ ସମାନ ବୋଲାଯାଏ ସେହି ସଙ୍ଗୀତ ପ୍ରତି ଅଧିକ ଢଳିବାରୁ ଭକ୍ତିରସ ଉଦ୍ଦୀପନରେ ତୃଟି ଦେଖା ଯିବାର ଆପଣ କହନ୍ତେ ?

ଆପଣ ଅନ୍ୟତ୍ର ଲେଖିଅଛନ୍ତି।-" ଦକ୍ଷିଣୀ ଭାଷା ଦୋଷ ଅନେକ ସ୍ଥଳେ ରହି ଯାଇଅଛି" ଏପରି ଲେଖିବାର ଉଦ୍ଦେଶ କଣ ? ଅମୁକ ଭାଷା ଦୋଷସଂଲଗ୍ନ, ଅମୁକ ଭାଷା ଦୋଷରହିତ ଏହା ଜାଣିବା ସକାଶେ ଆପଣମାନେ କି ନିୟମ କରିଅଛନ୍ତି ? ନା ଆପଣ ମନେ କରିଅଛନ୍ତି କଟକ ଓଡିଆ ମାତ୍ର ବିଶୁଦ୍ଧ ଓଡିଆ ଓ ଅନ୍ୟାନ୍ୟ ଅଞ୍ଚଳର ଓଡିଆ ଓଡିଆ ନୁହେ ? ନା ପ୍ରାଦେଶିକ ବିଭିନ୍ନତା ଦେଖି ଆପଣ ଏପରି ଲେଖିଅଛନ୍ତି ? ଯଦି "ଦକ୍ଷିଣୀ ଭାଷା ଦୋଷ" ର ଅର୍ଥ ପ୍ରାଦେଶିକ ବିଭିନ୍ନତା ହୋଇଥାଏ, ତେବେ ଆମ୍ଭର କୌଣସି ଆପତ୍ତି ନାହିଁ କାରଣ ପ୍ରାଦେଶିକ ବିଭିନ୍ନତା ପ୍ରାୟ ସମସ୍ତ ଭାଷାରେ ଦେଖାଯାଏ। ବିଶେଷତଃ ଯେଉଁ ଭାଷା ଆଜି ପର୍ଯ୍ୟନ୍ତ କୌଣସି ପ୍ରକାର ନିୟମବଦ୍ଧ ହୋଇ ନାହିଁ, ସେହି ଭାଷାରେ ପ୍ରାଦେଶିକ ବିଭିନ୍ନତା ବାକ୍ୟ ନୁହେ। ଏ ଅଞ୍ଚଳରେ ପ୍ରଚଳିତ କେତେକ କଥା ଆପଣମାନଙ୍କୁ ପ୍ରାଦେଶିକ ବୋଧ ହେଲେ, ଆପଣଙ୍କ ଅଞ୍ଚଳରେ ବ୍ୟବହୃତ କେତେକ କଥା ଆପଣମାନଙ୍କୁ ସେହିପରି ବୋଧ ହୁଏ। ଯଦି ଆପଣ କଟକ ଓଡିଆକୁ ଆଦର୍ଶ ଓଡିଆ ମନେ କରି ଦକ୍ଷିଣୀ ଓଡିଆକୁ ଦୋଷ ତଳେ ଗଣନା କରିଅଛନ୍ତି,ତେବେ ଏହା କେବଳ ଭ୍ରମ। ଆମ୍ଭେ ଅନେକ ଦୂର ପରିଶୀଳନ କରି ଦେଖିଅଛୁଁ ଯେଉଁ ଭାଷାରେ ଆପଣମାନେ ପୁସ୍ତକାଦି ଲେଖିଅଛନ୍ତି ଓ ଲେଖନ୍ତି ତାହା ସାଧାରଣତଃ ପ୍ରକୃତ ଓଡିଆ ନୁହେ, ଓଡିଆଭାଷା କେବଳ ସଂସ୍କୃତର ଅପଭ୍ରଂଶ ଏହି ଭ୍ରମରେ ପଡି ଆପଣମାନଙ୍କ ଲେଖନୀ ସନ୍ତତ ସଂସ୍କୃତ ଆଡେ ପ୍ରଧାବିତ। ଆପଣମାନଙ୍କ ବର୍ଣ୍ଣଶୁଦ୍ଧି(Orthography) ସଂସ୍କୃତ ବର୍ଣ୍ଣଶୁଦ୍ଧିର ପ୍ରତିଲିପି, ବ୍ୟାକରଣ ସଂସ୍କୃତ ବ୍ୟାକରଣର ଅବିକଳ ଅନୁବାଦ, ରଚନା ସଂସ୍କୃତ ଧାରାନୁଯାୟୀ,ଅଭିଧାନ ସଂସ୍କୃତ। ଅନ୍ତତଃ ମାତୃଭାଷା ପ୍ରତି ଆପଣମାନଙ୍କର ଏତେ ହୀନଦୃଷ୍ଟି ଯେ ଯଦି କେତେକ କ୍ରିୟା ଓ କାରକର ପ୍ରତିବନ୍ଧକ ନ ଥାନ୍ତା, ଆଜିକାଲି ଆପଣଙ୍କ କୃତବିଦ୍ୟ ମଣ୍ଡଳିରେ ଓଡିଆ ଭାଷା ଶୁଣିବାକୁ ମଧ୍ୟ ଥାନ୍ତା କି ନାହିଁ ସନ୍ଦେହ। ଏହା କେତେ ଦୂର ସତ୍ୟ ବିମ୍ସ (Beams) ସାହେବ କଟକର ଓଡିଆ ଭାଷା ବିଷୟରେ ଯାହା ଲେଖିଅଛନ୍ତି ତାହା ଆପଣ ଥରେ ପଢିଲେ ବୁଝି ପାରିବେ। ଏଥିର କାରଣ ସାଧାରଣ ବ୍ୟବହୃତ ଓଡିଆ ଭାଷା ପ୍ରତି ଦୃଷ୍ଟିପାତ ନ କରି ପ୍ରାୟ ସମସ୍ତ ବିଷୟ ବଙ୍ଗଳା ଭାଷାରୁ ଅନୁବାଦ କରି ଆଣିବା ଛାଡି ଆଉ କିଛି ନୁହେଁ।

ପାରଳାଖିମଣ୍ଡି ଆପଣଙ୍କର

୧୧.୩.୦୨ ବଶମ୍ବଦ

ଶ୍ରୀ ଶ୍ୟାମସୁନ୍ଦର ରାୟଗୁରୁ

*ଭାଗ୩୭, ସଂ୧୭ଖ୍ୟା, ୨୬।୪।୧୯୦୨*

## ପୁସ୍ତକ ପ୍ରାପ୍ତି ସ୍ୱୀକାର ।

**ପ୍ରବନ୍ଧ ଅଖଣ୍ଡଚନ୍ଦ୍ର**- କିଲ୍ଲା ଖୋର୍ଦ୍ଧାଇଲାକା ଦାଣ୍ଡିମାଳ ଜିଲା ଯଦୁପୁର ନିବାସୀ ଉମରଅଲିଙ୍କ କର୍ତ୍ତୃକ ବିରଚିତ ହୋଇ ଶ୍ରୀଭାଗୀରଥୀ ସାଠିୟାଙ୍କ ଦ୍ୱାରା ପ୍ରକାଶିତ ହୋଇଅଛି। ପୁସ୍ତକଟି ଆଦ୍ୟୋପାନ୍ତ ଉତ୍କଳର ପୁରାତନ ଛାନ୍ଦୋବନ୍ଧରେ ରଚିତ ହୋଇ ଆଠପେଜି ଫର୍ମାର ପୃ ୧୧୪ଷ୍ଠା ଅଧିକାର କରିଅଛି। ସଂସ୍କୃତ କାଦମ୍ବରୀ ସରଳ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଓଡିଆ ଛାନ୍ଦରେ ପରିଣତ ହୋଇ ଏ ପୁସ୍ତକ ରଚିତ ହୋଇଥିବାରୁ ଆମ୍ଭେମାନେ ଏହାକୁ ଅତ୍ୟନ୍ତ ଆଗ୍ରହ ସହିତରେ ପାଠକଲୁଁ। କାଦମ୍ବରୀ ସଂସ୍କୃତରେ ଗୋଟିଏ ଅପୂର୍ବ ଗ୍ରନ୍ଥ। ତେମନ୍ତ ମନୋହର କାହିଣୀ ଅନ୍ୟ କୋଣସିଠାରେ ଦୃଷ୍ଟ ହୁଏ ନାହିଁ। ମାତ୍ର ଗ୍ରନ୍ଥଟି ଦୀର୍ଘସମାସ ଓ କଠିନ ଶବ୍ଦରେ ପରିପୂର୍ଣ୍ଣ ଥିବାରୁ ସଂସ୍କୃତ ଭାଷାରେ ବିଶେଷ ପାଣ୍ଡିତ୍ୟ ନ ଥିଲେ ପଢ଼ିବା ସୁକଠିନ। ତେମନ୍ତ ଗ୍ରନ୍ଥକୁ ଉମରଅଲି ମହାଶୟ ଅତି ସରଳ ଓଡିଆଭାଷାରେ ପ୍ରକାଶିତ କରିବାର ଦେଖି ପାଠକେ ଅବଶ୍ୟ ଆଶ୍ଚର୍ଯ୍ୟ ହେବେ। ସହଜ ଓଡିଆରେ ଲେଖା ହୋଇଥିବାରୁ ହାଟ ବାଟର ଲୋକେ ଏହାକୁ ବୁଝିବାକୁ ଯେମନ୍ତ ସମର୍ଥ ହେବେ ତେମନ୍ତ ଛାନ୍ଦମାନ ପଢିବାକୁ ଆଗ୍ରହାନ୍ୱିତ ହେବେ। ଉମରଅଲିଙ୍କର ଛାନ୍ଦ ଲେଖିବାରେ ଯେ ବିଲକ୍ଷଣ ନିପୁଣତା ଅଛି ଏ ପୁସ୍ତକ ପାଠକରି କାହାରି ମନରେ ଆଉ ସନ୍ଦେହ ରହିବ ନାହିଁ। ଚନ୍ଦ୍ରରେ କଳଙ୍କ ପରି ଠାବେ ଠାବେ ଯେ ବର୍ଣ୍ଣାଶୁଦ୍ଧି ଏବଂ ଭାଷାଦୋଷ ରହିଅଛି ଭରସାକରୁଁ ପ୍ରକାଶକ ଦ୍ୱିତୀୟ ସଂସ୍କରଣ ବେଳେ ସେ ସବୁ ଶୁଦ୍ଧକରି ଛାପା କରିବାକୁ ଯତ୍ନ କରିବେ। ଓଡିଆଭାଷାଜ୍ଞ ମାତ୍ରକେ ଏ ପୁସ୍ତକ ପାଠ କରନ୍ତୁ ଏହା ଆମ୍ଭମାନଙ୍କର ଏକାନ୍ତ ଅନୁରୋଧ।

**ଉପଦେଶ ସୁଧାନିଧି ।**–ଶ୍ରୀ ବ୍ରଜବନ୍ଧୁ ମିଶ୍ରଙ୍କଦ୍ୱାରା ବିରଚିତ ଓ ବାମଣ୍ଡା ସୁତଳଯନ୍ତ୍ରରେ ମୁଦ୍ରିତ। ଏ ପୁସ୍ତକ ପେ ୧ ୨ଟୀ ଫର୍ମାରେ ପୃ୪୯ଷ୍ଠା ଅଧିକାର କରିଅଛି।ଏଥିରେ ପ୍ରଥମେ ଉତ୍କଳର ପର୍ବ ଏବଂ ଆଧୁନିକ ଖ୍ୟାତନାମା ଲୋକଙ୍କର ଗୁଣାବଳୀ ବର୍ଣ୍ଣନା ଏବଂ ଶେଷଭାଗରେ ପୌରାଣିକ ବୃତ୍ତାନ୍ତରୁ ସଂଗୃହୀତ ଉପଦେଶମାନ ଦିଆଯାଇଅଛି। ପୁସ୍ତକଖଣ୍ଡିକ ଆଦ୍ୟୋପାନ୍ତ ପଦ୍ୟରେ ଲିଖିତ। ଭାଷା ସରଳ ଏବଂ ପଢ଼ିବାକୁ ସୁପାଠ୍ୟ ହୋଇଅଛି। ବ୍ରଜବନ୍ଧୁ ମିଶ୍ରଙ୍କର କବିତା ଲେଖିବାର ଶକ୍ତି ଅଛି ଏବଂ ଉତ୍ତରୋତ୍ତର ସେଥିର ପରିଚୟ ଆମ୍ଭେମାନେ ପାଇ ଆସୁଅଛୁଁ। ଏହିପରି ପରିଶ୍ରମ ରଖିଥିଲେ କାଳେ ସେ ସୁକବି ହୋଇପାରିବାର ଆଶା ହେଉଅଛି।

**ନିର୍ଝରିଣୀ।** - ଶ୍ରୀ ନବକିଶୋର ବଳ ବି,ଏ, ପ୍ରଣୀତ। ଏ ପୁସ୍ତକ ପେ ୧୬ଟୀ ଫର୍ମାରେ ପୃ ୬୪ଷ୍ଠା ଅଧିକାର କରିଅଛି ଏବଂ ନାନା ବିଷୟକ କବିତା ଏଥିରେ ସନ୍ନିବିଷ୍ଟ ଅଛି। କବିତା ଗୁଡିକ ସରଳ,ମନୋହର ଏବଂ ନୈସର୍ଗିକ ଭାବସମ୍ପନ୍ନ। ଆମ୍ଭେମାନେ ଆଦ୍ୟୋପାନ୍ତ ପାଠକରି ବଳ ମହାଶୟଙ୍କର କବିତା ଲେଖିବାର ବଳ ଦେଖି ଅତ୍ୟନ୍ତ ସୁଖୀ ହୋଇଅଛୁଁ। 'ନବବର୍ଷ ଭାବନା'ରେ ପିଲାଦିନର କଥା ଏବଂ 'କାକ ବାରତା'ରେ ଭାବଭୋଗ ସମସ୍ତଙ୍କ ମନରେ ଉଦ୍ରେକ ହେବ। ଏପରି କବିତା ଲେଖିବା ଯେ ସାର୍ଥକ ତହିଁରେ ଦ୍ୱିରୁକ୍ତି ନାହିଁ ଏବଂ ଉକ୍ତ ରୀତିର ଆଧୁନିକ ଶିକ୍ଷିତ ସମ୍ପ୍ରଦାୟ କଲେଜରୁ ବାହାରି ମାତୃଭାଷା ପ୍ରତି ଏକାନ୍ତ ଅଶ୍ରଦ୍ଧା ଦେଖାଉଥିବାସ୍ଥଳେ ବଳ ମହାଶୟଙ୍କ ପରି ଜଣେ ଜଣେ ବାହାରିବା ବଡ଼ ସୁଖର ବିଷୟ। ନିର୍ଝରିଣୀ ରେ କବିଙ୍କର ମାନସୋତ୍ସାହରୁ ଭାବପ୍ରବାହ 'ନିର୍ଝରିତ' ହୋଇଅଛି। ଉତ୍କଳର ସର୍ବତ୍ର ଏହା ସ୍ଥାନ ପାଇବା ଉଚିତ।

**କୃଷ୍ଣକୁମାରୀ।** - ଏହା ଉପରୋକ୍ତ ଲେଖକଙ୍କ ରଚିତ ଆଉ ଖଣ୍ଡିଏ କ୍ଷୁଦ୍ର କବିତା ପୁସ୍ତକ। ଏହା ପେ ୧୬ ଟୀ ଫର୍ମାର ପୃ୩୨ଷ୍ଠା । ବିଷୟଟି ରାଜା ସ୍ଥାନର ଖ୍ୟାତନାମ୍ନୀ କୃଷ୍ଣକୁମାରୀଙ୍କର ଜୀବନୀ। ମୂଳରୁ ଶେଷପର୍ଯ୍ୟନ୍ତ ଏଥିରେ ବୀରରସର ସୂଚନା ଅଛି ଏବଂ ପଢ଼ିଲେ ଦେଶହିତୈଷୀ ମାତ୍ରକେ ବୀରରସରେ ଅନୁପ୍ରାଣିତ ହେବେ।ଏହା ସରଳ ଓ ସୁପାଠ୍ୟ ହୋଇଅଛି।

**ବସନ୍ତ-ଗାଥା-** ଶ୍ରୀ ବାବୁ ମଧୁସୂଦନ ରାଓ କର୍ତ୍ତୃକ ବିରଚିତ। ଏହା ପେ ୧୬ ଟୀ ଫର୍ମାରେ ପୃ୪୦ଷ୍ଠା ଏବଂ ପ୍ରତିପୃଷ୍ଠାରେ ନାନା ବିଷୟରେ ଚତୁର୍ଦ୍ଦଶ ପଦ୍ୟ କବିତା ସଂଯୋଜିତ ଅଛି। ରାଓ ମହାଶୟ ଉତ୍କଳର ସାହିତ୍ୟକ୍ଷେତ୍ରରେ କବି ବୋଲି ପରିଚିତ। ତାଙ୍କର କବିତାମାନ ଯେମନ୍ତ ସୁପାଠ୍ୟ ତେମନ୍ତ ଆଧ୍ୟାତ୍ମିକଭାବସମ୍ପନ୍ନ। କବି ସ୍ୱୟଂ ଚରିତ୍ରବାନ୍ ଥିବାରୁ ଏଥିର ପ୍ରତ୍ୟେକ କବିତାରେ ଚରିତ୍ରୋତ୍କର୍ଷର ପରିଚୟ ମିଳୁଅଛି। ଆମ୍ଭେମାନେ ଆଶା କରୁଁ ଏହା ସର୍ବତ୍ରେ ଆଦରଣୀୟ ହେବ।

*ଭା୩୭ଗ,ସଂ୧୯ଖ୍ୟା, ୧୦।୫।୧୯୦୨*

## ପୁସ୍ତକ ପ୍ରାପ୍ତି ସ୍ୱୀକାର ।

**ପ୍ରସୂତି ପରିଚର୍ଯ୍ୟା ।**-ଡାକ୍ତର ରାମକୃଷ୍ଣ ସାହୁଙ୍କଦ୍ୱାରା ପ୍ରଣୀତ । ପ୍ରସବ କାଳରେ ପ୍ରସୂତିର କି ପ୍ରକାର ସେବା କରିବାକୁ ହେବ ଓ ପ୍ରସବ ପରେ ପ୍ରସୂତିର କି କି ରୋଗ ଉତ୍ପନ୍ନ ହୁଏ XXXXX. । ଏହା ଗୃହସ୍ଥ ମାତ୍ରକର ଥରେ ପଢ଼ି ରଖିବା ଉଚିତ ।

**ମୁକ୍ତିଚିନ୍ତାମଣି ।** - ପୁରୁଷୋତ୍ତମ ତାପନୀ ସହିତ ଏହା ସଂଶୋଧିତରୂପେ ପଣ୍ଡିତ ଶ୍ରୀ ସଦାଶିବ କାବ୍ୟକଣ୍ଠଙ୍କଦ୍ୱାରା ପ୍ରକାଶିତ । ଦେବନାଗର ଅକ୍ଷରରେ ଏହା କଲିକତା ଯନ୍ତ୍ରାଳୟରେ ମୁଦ୍ରିତ ହୋଇଅଛି । ଏକା ଉତ୍କଳ କାହିଁକି ଭାରତର ପରମାରାଧ ଶ୍ରୀ ଜଗନ୍ନାଥ ଦେବଙ୍କର ସ୍ଥିତି,ଶ୍ରୀକ୍ଷେତ୍ର ମାହାତ୍ମ୍ୟ, ପ୍ରଭୁଙ୍କ ଦର୍ଶନ ଏବଂ ନିର୍ମାଲ୍ୟ ଭକ୍ଷଣ ଫଳ ଇତ୍ୟାଦି ସମସ୍ତ ଏଥିରେ ସ୍ଥାନ ପାଇଅଛି । ଏ ପୁସ୍ତକ ହିନ୍ଦୁମାନଙ୍କର ଆଦରଣୀୟ ଏବଂ ଯେଉଁମାନେ ସଂସ୍କୃତ ନ ଜାଣନ୍ତି ପଣ୍ଡିତଙ୍କ ସାହାଯ୍ୟରେ ଏହାର ମର୍ମ ବୁଝିଲେ ଉପକାର ପାଇବେ ।

**ଯଜୁର୍ବେଦୀୟ ନିତ୍ୟକର୍ମ ପଦ୍ଧତି ପରିଶିଷ୍ଟ ସହିତ ୨ୟ ଭାଗ ।** –ଶ୍ରୀ ବାବୁ ବିହାରିଲାଲ କାଶ୍ମୀରୀ ପଣ୍ଡିତଙ୍କଦ୍ୱାରା ସମ୍ପାଦିତ । ଏ ଖଣ୍ଡିଏ ବୃହତ୍ ପୁସ୍ତକ । ସାଧାରଣ ଆକୃତିର ପୃ୨୮୪ଷ୍ଟା । ଭୂମିକାରୁ ପ୍ରକାଶ ଯେ ସମସ୍ତ ବେଦୋକ୍ତ ସନ୍ଧ୍ୟା,ତର୍ପଣ, ପୂଜାଦିର ଆବଶ୍ୟକୀୟ ମନ୍ତ୍ର ଗୁଡ଼ିକ ଏକତ୍ରିତ ପୁସ୍ତକାକାରରେ ପ୍ରକାଶିତ ହୋଇ ନ ଥିବାରୁ ଆର୍ଯ୍ୟଜାତିର ମଙ୍ଗଳ ଅଭିପ୍ରାୟରେ ଗ୍ରନ୍ଥକାର ଏହି ପୁସ୍ତକର ଏକ ସଂସ୍କରଣ ଦେବନାଗରାକ୍ଷରରେ ପ୍ରଚାର କରିଅଛନ୍ତି ଏବଂ ଉତ୍କଳୀୟ ବ୍ରାହ୍ମଣମାନଙ୍କର ବିଶେଷ ସୁବିଧା ନିମନ୍ତେ ଏହି ଉତ୍କଳ ସଂସ୍କରଣ ପ୍ରକାଶପୂର୍ବକ ବିନା ମୂଲ୍ୟରେ ବିତରଣ କରୁଅଛନ୍ତି । ଏ ପୁସ୍ତକ ଲୋଡ଼ିବା ବ୍ୟକ୍ତିମାନେ ସ୍ୱୟଂ ତାହାଙ୍କ ନିକଟରେ ଉପସ୍ଥିତ ହେଲେ ଅଥବା ଡାକରେ ଟ୦। ଅଣା ସହିତ ପତ୍ର ପଠାଇ ଲେଖିଲେ ପାଇପାରିବେ । ସ୍ୱଜାତିର ହିତାର୍ଥେ ପଣ୍ଡିତ ମହାଶୟ ବହୁପରିଶ୍ରମ ଓ ବ୍ୟୟ ସ୍ୱୀକାର କରିଅଛନ୍ତି ଏବଂ ତହିଁ ପାଇଁ ସେ ଅଶେଷ ଧନ୍ୟବାଦର ପାତ୍ର ଅଟନ୍ତି ।

*ଭାଗ୩୭, ସଂ୨୧ଖ୍ୟା, ୨୪/୫/୧୯୦୨*

## [ ବି.ଏ.ପରୀକ୍ଷାଫଳ]

**ଓଡ଼ିଶା ରେଭନସା କଲେଜରୁ ନିମ୍ନଲିଖିତ ଛାତ୍ରମାନେ ବି,ଏ, ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।**

ଅନର ତାଲିକା ।

**୨ୟ ଶ୍ରେଣୀ ।**

ଜ୍ଞାନେନ୍ଦ୍ରନାଥ ବ୍ରହ୍ମ — ଇଂରାଜୀଭାଷାରେ

ପାସ ତାଲିକା ।

ସଚ୍ଚିନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ
ହରମୋହନ ପଟ୍ଟନାୟକ
ଗୋପୀନାଥ ଦାସ
ମୋହିନୀମୋହନ ସେନାପତି
ନିମାଇଚରଣ ଚୌପଟ୍ଟନାୟକ

**ଓଡ଼ିଶାର କେତେକ ଛାତ୍ର ଅନ୍ୟ କଲେଜରୁ ଉତ୍ତୀର୍ଣ୍ଣ ହୋଇଅଛନ୍ତି ଯଥା;-**

ଅନର ତାଲିକା ।

**୨ୟ ଶ୍ରେଣୀ ।**

ବୈଦ୍ୟନାଥ ମିଶ୍ର — ପ୍ରେସିଡେନ୍‌ସିକଲେଜ
ଇଂରାଜୀ ଓ ଇତିହାସ

ପାସ ତାଲିକା ।

ବାମଦେବ ଦାସ — ଡଫ୍‌କଲେଜ
ବ୍ରଜସୁନ୍ଦର ଦାସ — ପ୍ରେସିଡେନ୍‌ସି କଲେଜ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଓଡିଶାରୁ ନିମ୍ନଲିଖିତ ଛାତ୍ରବୃନ୍ଦ ଗତ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି।

୧ ମ ଶ୍ରେଣୀ।

| | | |
|---|---|---|
| ୧ | ଅବଦୁଲ ସାକୁର | ରେଭନ୍ସା କଲେଜ |
| ୨ | ସତୀଶଚନ୍ଦ୍ର ବସୁ | ରେଭନ୍ସା କଲେଜ |
| ୩ | ସୁରେନ୍ଦ୍ରନାଥ ମୁଖୋପାଧ୍ୟା | ରେଭନ୍ସା କଲେଜ |
| ୪ | ସଦାନନ୍ଦ ପଟ୍ଟନାୟକ | ରେଭନ୍ସା କଲେଜ |
| ୫ | ହରିହର ଦାସ | ପୁରୀ ଜିଲାସ୍କୁଲ |
| ୬ | ଶ୍ୟାମଚରଣ ଦାସ୍ୟାଧିକାରୀ | ବାଲେଶ୍ୱର ଜିଲାସ୍କୁଲ |
| ୭ | ବିନୋଦେଶ୍ୱର ଦାସ ଗୁପ୍ତ | ବାଲେଶ୍ୱର ଜିଲାସ୍କୁଲ |
| ୮ | କାମାରୁଦ୍ଦିନ ଖାଁ | ପ୍ୟାରୀମୋହନ ଏକାଡେମୀ |

୨ୟ ଶ୍ରେଣୀ।

| | | |
|---|---|---|
| ୯ | ଭରତଚନ୍ଦ୍ର ବସୁ | ରେଭନ୍ସା କଲେଜ |
| ୧୦ | ସୁରେନ୍ଦ୍ରନାଥ ଦାସ | ରେଭନ୍ସା କଲେଜ |
| ୧୧ | ବୀରେନ୍ଦ୍ରନାଥ ଦତ୍ତ | ରେଭନ୍ସା କଲେଜ |
| ୧୨ | ସତ୍ୟେନ୍ଦ୍ରନାଥ ଗୁପ୍ତ | ରେଭନ୍ସା କଲେଜ |
| ୧୩ | କାଶୀନାଥ ମହାନ୍ତି | ରେଭନ୍ସା କଲେଜ |
| ୧୪ | ସତ୍ୟେନ୍ଦ୍ରନାଥ ମିତ୍ର | ରେଭନ୍ସା କଲେଜ |
| ୧୫ | ମହମ୍ମଦ ଅତହର | ରେଭନ୍ସା କଲେଜ |
| ୧୬ | ହେମଚନ୍ଦ୍ର ମୁଖୋପାଧ୍ୟାୟ | ରେଭନ୍ସା କଲେଜ |
| ୧୭ | ଚିନ୍ତାମଣି ସାମନ୍ତରା | ରେଭନ୍ସା କଲେଜ |
| ୧୮ | ଆନନ୍ଦକିଶୋର ଦାସ | ବାଲେଶ୍ୱର ଜିଲାସ୍କୁଲ |
| ୧୯ | ମୁକୁନ୍ଦପ୍ରସାଦ ଦାସ | ବାଲେଶ୍ୱର ଜିଲାସ୍କୁଲ |
| ୨୦ | ଗଣେଶ ପ୍ରସାଦ ପଟ୍ଟନାୟକ | ବାଲେଶ୍ୱର ଜିଲାସ୍କୁଲ |
| ୨୧ | ହରିପ୍ରସାଦ ମହାପାତ୍ର | ବାଲେଶ୍ୱର ଜିଲାସ୍କୁଲ ଖ୍ରୀଷ୍ଟିୟାନ |
| ୨୨ | ଗୋଲକନାଥ ନାୟକ | ପୁରୀ ଜିଲା |
| ୨୩ | ରଘୁନାଥ ପଟ୍ଟନାୟକ | ପି,ଏମ, ଏକାଡେମୀ |
| ୨୪ | ସାମସୁଦ୍ଦିନ ଖାଁ | ପି,ଏମ, ଏକାଡେମୀ |
| ୨୫ | ଗୋକୁଳାନନ୍ଦ ଦାସ | କଟକ ମିଶନ |
| ୨୬ | ପ୍ରମୋଦନାଥ ଦତ୍ତ | କଟକ ମିଶନ |
| ୨୭ | ସୁରେଶ କୁମାର ରାଉତ | କଟକ ମିଶନ |
| ୨୮ | ଉମାକାନ୍ତ ମହାପାତ୍ର | କଟକ ଟାଉନ ଭିକ୍ଟୋରିୟା |
| ୨୯ | ପ୍ରଶାନ୍ତ ରାଓ | କଟକ ଟାଉନ ଭିକ୍ଟୋରିୟା |
| ୩୦ | ନଗେନ୍ଦ୍ରନାଥ ସିଲ | କଟକ ଟାଉନ ଭିକ୍ଟୋରିୟା |
| ୩୧ | ବିନୋଦବିହାରୀ ଦାସ | କେନ୍ଦ୍ରାପଡା |
| ୩୨ | ପଦ୍ମଚରଣ ଜଗତୀ | କେନ୍ଦ୍ରାପଡା |
| ୩୩ | ସୟଦ ମହମ୍ମଦ ଇସୁଫ | କେନ୍ଦ୍ରାପଡା |

| | | |
|---|---|---|
| ୩୪ | ନାରାୟଣ ବାରିକ | ଯାଜପୁର |
| ୩୫ | ପୂର୍ଣ୍ଣେନ୍ଦୁମୋହନ ଚକ୍ରବର୍ତ୍ତୀ | ମୟୂରଭଞ୍ଜ |
| ୩୬ | ଲାଲମୋହନ ପତି | ମୟୂରଭଞ୍ଜ |
| ୩୭ | ଦୀନାନାଥ କର | ମୟୂରଭଞ୍ଜ |
| ୩୮ | ମହେନ୍ଦ୍ରପ୍ରସାଦ ଦତ୍ତ | ଭଦ୍ରଖ |
| ୩୯ | ଭୋଳାନାଥ ସାହା | ଲକ୍ଷଣନାଥ |
| ୪୦ | ସତ୍ୟାନନ୍ଦ ପ୍ରଧାନ | ଢେଙ୍କାନାଳ |

### ୩ୟ ଶ୍ରେଣୀ ।

| | | |
|---|---|---|
| ୪୧ | ସୁରପତି ବସୁ | ରେଭନ୍ସା କଲେଜ |
| ୪୨ | ମହମ୍ମଦ ଅବଦୁଲ ଆହାଦ | ରେଭନ୍ସା କଲେଜ |
| ୪୩ | ଜ୍ୟୋତୀନ୍ଦ୍ରନାଥ ମୁଖୋପାଧ୍ୟାୟ | ରେଭନ୍ସା କଲେଜ |
| ୪୪ | ଲଳିତମୋହନ ପାଲିତ | ରେଭନ୍ସା କଲେଜ |
| ୪୫ | ବାଳକୃଷ୍ଣ ପଟ୍ଟନାୟକ | ରେଭନ୍ସା କଲେଜ |
| ୪୬ | କୃଷ୍ଣଶଙ୍କର ରାୟ | ରେଭନ୍ସା କଲେଜ |
| ୪୭ | ନଗେନ୍ଦ୍ରନାଥ ସେନ ଗୁପ୍ତ | ରେଭନ୍ସା କଲେଜ |
| ୪୮ | ଗୋପାଳଚନ୍ଦ୍ର ମହାନ୍ତି | ରେଭନ୍ସା କଲେଜ |
| ୪୯ | ଚନ୍ଦ୍ରକାନ୍ତି ବସୁ | ପୁରୀ ଜିଲା ସ୍କୁଲ |
| ୫୦ | ଗୋପୀନାଥ ମିଶ୍ର | ପୁରୀ ଜିଲା ସ୍କୁଲ |
| ୫୧ | ସତ୍ୟବାଦୀ ପାତ୍ର | ପୁରୀ ଜିଲା ସ୍କୁଲ |
| ୫୨ | ଶୂରପତି ବସୁ | ବାଲେଶ୍ୱର ଜିଲା ସ୍କୁଲ |
| ୫୩ | ଶ୍ୟାମସୁନ୍ଦର ବିଶ୍ୱାଳ | ବାଲେଶ୍ୱର ଜିଲା ସ୍କୁଲ |
| ୫୪ | ଆନନ୍ଦପ୍ରସାଦ ଦାସ | ବାଲେଶ୍ୱର ଜିଲା ସ୍କୁଲ |
| ୫୫ | ନାରାୟଣପ୍ରସାଦ ଦ୍ୱିବେଦୀ | ବାଲେଶ୍ୱର ଜିଲା ସ୍କୁଲ |
| ୫୬ | ତରଣଚନ୍ଦ୍ର ଘୋଷ | ବାଲେଶ୍ୱର ଜିଲା ସ୍କୁଲ |
| ୫୭ | ଯୋଗୀନ୍ଦ୍ରନାଥ ମହାନ୍ତି | ପ୍ୟାରୀମୋହନ କଟକ |
| ୫୮ | ମହମ୍ମଦ ଅବଦୁଲ କରିମ | ପ୍ୟାରୀମୋହନ କଟକ |
| ୫୯ | ଅପଲା ନଇୟା ନିସିତ୍ତଲା | ପ୍ୟାରୀମୋହନ କଟକ |
| ୬୦ | ଆର୍ତ୍ତବନ୍ଧୁ ମହାନ୍ତି | କଟକ ଟାଉନ ଭିକ୍ଟୋରିୟା |
| ୬୧ | ଜଗନ୍ନାଥ ମହାନ୍ତି | କଟକ ଟାଉନ ଭିକ୍ଟୋରିୟା |
| ୬୨ | ବୈଦ୍ୟନାଥ ପଟ୍ଟନାୟକ | କଟକ ଟାଉନ ଭିକ୍ଟୋରିୟା |
| ୬୩ | ଈ ମହାନ୍ତି | କଟକ ମିଶନ |
| ୬୪ | ଯଦୁମଣି ପଟ୍ଟନାୟକ | କଟକ ମିଶନ |
| ୬୫ | ଇ, ଏଲ, ରାଉତ | କଟକ ମିଶନ |
| ୬୬ | ରାଧାମୋହନ ଦାସ | କେନ୍ଦ୍ରାପଡା |
| ୬୭ | ସୟଦ ସର୍ଫରାଜ ହୋସେନ | କେନ୍ଦ୍ରାପଡା |
| ୬୮ | ଗୋପୀନାଥ ଦାସ | ଖୋର୍ଦ୍ଧା |

| | | |
|---|---|---|
| ୬୯ | ତ୍ରିଲୋଚନ ଖଟୁଆ | ଲକ୍ଷଣନାଥ |
| ୭୦ | ହରିଦାନନ୍ଦ ରାୟ | ଭଦ୍ରଖ |
| ୭୧ | ଜୀବନକୁମାର ଦାସ ଗୁପ୍ତ | କଟକ ବାହାର ଛାତ୍ର |
| ୭୨ | ସୁନ୍ଦର ରାମଚନ୍ଦ୍ର ଗୋରକ୍ଷକର | କଟକ ବାହାର ଛାତ୍ର |

ସମ୍ବଲପୁର ସ୍କୁଲରୁ ଦୁଇଜଣ ଛାତ୍ର ଯଥା-

ସଯୂବାଦୀ ପଣ୍ଡା — ତୃତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

ବରାସୁରାମ ଗୁରୁ

*ଭା୩୭ଗ,ସଂ୨୧ଖ୍ୟା, ୨୪/୫/୧୯୦୨*

## ପ୍ରେରିତପତ୍ର ।

## [ଭକ୍ତି ସଙ୍ଗୀତ]

ପରମପୂଜନୀୟ ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ ।

ମହାଶୟ !

କାର୍ଯ୍ୟାନୁରୋଧରେ ବଙ୍ଗଦେଶରେ ଅବସ୍ଥାନ ହେତୁରୁ ଆବାଲ୍ୟ ପ୍ରିୟ ଓଡିଆ ସଙ୍ଗୀତ ଶ୍ରବଣ ଜନିତ ସୁଖରୁ ଆମ୍ଭେମାନେ ବହୁକାଳ ହେଲା ବଞ୍ଚିତ । ଅନେକ ଦିନ ପରେ ଶ୍ରଦ୍ଧାସ୍ପଦ ଶ୍ରୀଯୁକ୍ତ ବାବୁ ଭାଗୀରଥୀ ସାଠିଯାଙ୍କ କୃତ ଓ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ " ଭକ୍ତି ସଙ୍ଗୀତ" ନାମକ ଖଣ୍ଡିଏ ପୁସ୍ତକ ପାଇ ସୁଖୀ ହେଲୁଁ । କବିକୁଳଚୂଡାମଣି ଉପେନ୍ଦ୍ର ଭଞ୍ଜ ଭାବ ଅପେକ୍ଷା ଶବ୍ଦ ଚାତୁର୍ଯ୍ୟର ଅଧିକ ପ୍ରିୟ ଥିଲେ । ପ୍ରାଚୀନ ଓ ଆଧୁନିକ ଅଧିକାଂଶ ସଙ୍ଗୀତ ରଚୟିତାମାନେ ତାହାଙ୍କ ପଦାଙ୍କାନୁସରଣ କରିବାକୁ ଯାଇ ଭାବ ଅପେକ୍ଷା ଶବ୍ଦାଡ଼ମ୍ବରର ଅଧିକ ପକ୍ଷପାତୀ ହୋଇଥିବାର ଦୃଷ୍ଟ ହୁଅନ୍ତି । ସଙ୍ଗୀତ ଭାବର ଅଭିବ୍ୟକ୍ତି ମାତ୍ର । ଭାବପୂର୍ଣ୍ଣ ସଙ୍ଗୀତସମୂହ ବର୍ତ୍ତମାନ୍ ଓ ଭାବୀ ସମାଜର ଜୀବନୋପାୟସ୍ୱରୂପ । ସରଳଭାଷାରେ ରଚିତ ଓ ସୁରୁଚିପୂର୍ଣ୍ଣ ଭାବ ସମ୍ବଳିତ ସଙ୍ଗୀତମାନ ମନୁଷ୍ୟର ଜୀବନଗତିକୁ ପରିବର୍ତ୍ତିତ କରିଦିଏ- ସମାଜରେ ଭାବାନ୍ତର ଉପସ୍ଥିତ କରେ । ସମାଜର ରୁଚିକୁ ଚାହିଁ ଭାଗୀରଥୀ ବାବୁଙ୍କ "ଭକ୍ତି ସଙ୍ଗୀତ" ରଚିତ ହୋଇ ନାହିଁ । ସୁତରାଂ ଆଶାନୁରୂପ ବିକ୍ରୟର ସମ୍ଭାବନା ନ ଥିଲେହେଁ ଏହି ପୁସ୍ତକ ଖଣ୍ଡି ପ୍ରକାଶିତ କରି ସେ ଜନସାଧାରଣର ଯେଉଁ ଉପକାର କରିଅଛନ୍ତି, ସେଥି ନିମନ୍ତେ ସେ ଆମ୍ଭମାନଙ୍କର ଆନ୍ତରିକ ଧନ୍ୟବାଦର ପାତ୍ର । ଭକ୍ତିରସର ବିମଳ ମଧୁ ମୁଗ୍ଧ ବିଖ୍ୟାତ କବି ପରମ ଭକ୍ତିଭାଜନ ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓଙ୍କର "ସଙ୍ଗୀତମାଳା" ପରେ ଏଭଳି ଗ୍ରନ୍ଥ ଆଉ ପ୍ରକାଶିତ ହୋଇଥିବାର ଆମ୍ଭମାନଙ୍କୁ ଜଣା ନାହିଁ । "ସଙ୍ଗୀତମାଳା" ଓ "ଭକ୍ତିସଙ୍ଗୀତ" ର ଆଦର୍ଶରେ ଏଣିକି ଭକ୍ତି ଓ ଭାବପୂର୍ଣ୍ଣ ଓଡିୟା ସଙ୍ଗୀତମାନ ରଚିତ ହେଲେ ଦେଶର ପ୍ରଭୂତ ମଙ୍ଗଳ ସାଧିତ ହେବାର ସମ୍ଭାବନା । ସଙ୍ଗୀତ ରଚୟିତାମାନେ ଆମ୍ଭମାନଙ୍କର ଏହି ନିବେଦନ ପ୍ରତି ଦୃଷ୍ଟିପାତ କରିବେ କି ?

ବାଖରାବାଦ, — ନିବେଦକ

କଟକ — ଶ୍ରୀ ଅନଙ୍ଗମୋହନ ଚକ୍ରବର୍ତ୍ତୀ

୨୨-୫-୧୯୦୨

*ଅତିରିକ୍ତ, ୨୪/୫/୧୯୦୨*

## [ବନ୍ଦୋବସ୍ତ ରିପୋର୍ଟ]

ଓଡିଶାର ଗତ ବନ୍ଦୋବସ୍ତ ସମ୍ବନ୍ଧୀୟ ଶ୍ରୀଯୁକ୍ତ ମାଡକ୍ସ ସାହେବଙ୍କ ଲିଖିତ ରିପୋର୍ଟ ବା ବିବରଣ ୧ମ ଓ ୨ୟ ଭାଗ ନାମକ ବୃହତ୍ ଦୁଇଖଣ୍ଡ ପୁସ୍ତକ ଗବର୍ଣ୍ଣମେଣ୍ଟରୁ ଉପହାର ପାଇବାର କୃତଜ୍ଞତା ସହିତ ସ୍ୱୀକାର

କରୁଅଛୁଁ। ଏହି ପୁସ୍ତକ ପ୍ରାପ୍ତି ନିମନ୍ତେ ଆମ୍ଭେମାନେ ଓଡିଶାର ବର୍ତ୍ତମାନ କମିଶନର ଶ୍ରୀଯୁକ୍ତ କେ,ଜି, ଗୁପ୍ତଙ୍କଦ୍ୱାରା ପ୍ରାର୍ଥନା କରିଥିଲୁଁ । ସାହେବ ମହୋଦୟଙ୍କର ଅନୁରୋଧପତ୍ରର ପ୍ରତିଲିପି ନିମ୍ନେ ପ୍ରକାଶ କଲୁଁ।ଏଥିରେ ସାହେବ ମହୋଦୟ ନିଜ ଉଦାରଗୁଣରେ ଏ ପତ୍ରିକା କ୍ଷୁଦ୍ର କାର୍ଯ୍ୟକୁ ସୁପ୍ରସନ୍ନ ଭାବରେ ଗ୍ରହଣ କରିଥିବାରୁ ତାହାଙ୍କଠାରେ ଅତ୍ୟନ୍ତ ଆନ୍ତରିକ ଧନ୍ୟବାଦ ଓ କୃତଜ୍ଞତା ପ୍ରକାଶ କରୁଅଛୁଁ।

No. 109 O. S. FROM K. G. Gupta,Esquire, I.C.S. Commissioner of the Orissa Division. To The Director of the Department of Land Records & Agriculture Bengal. Dated Cuttack the 17th. April 1902.

Sir,

In forwarding herewith a copy of a letter from the Editor of the Utkal-Dipika newspaper asking for the supply of a copy of the Orissa Settlement Report. I have the honour to support his request as the paper he represents is the leading vernacular weekly paper in this Province where it commends considerable respect on account of the general moderation of its views. The supply of the report asked for will put the editor in possession of correct facts and statistics about the settlement and will thus tend to the formation of an well- informed public opinion through the medium of the paper. I therefore, request that a presentation copy be sent to the Editor Babu Gouri Sankar Ray.

I have & C.

Sd.K. G. Gupta, Commissioner.

*ଭାଗ୩୭ଗ, ସଂ୨୨ଖ୍ୟା, ୩୧।୫।୧୯୦୨*

## [ଜନ୍ ବୀମସ୍‌ଙ୍କ ଦେହାନ୍ତ]

ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଅବଗତ ହେଲୁଁ ଯେ ଶ୍ରୀଯୁକ୍ତ ଜନ୍ ବୀମସ ସାହେବଙ୍କ ଦେହାନ୍ତ ଘଟିଅଛି। ବୀମସ ସାହେବ ସିଭିଲିୟାନ ଶ୍ରେଣୀରେ ଭରତି ହୋଇ ପ୍ରଥମେ ସନ ୧୮୫୮ ସାଲରେ ବିଲାତରୁ ଆସି ବର୍ଷାର୍ଷ ପଞ୍ଜାବରେ ରହି ବଙ୍ଗପ୍ରଦେଶକୁ ବଦଳ ହୋଇ ଥିଲେ ଏବଂ ସନ ୧୮୮୧ ସାଲରେ ବର୍ଦ୍ଧମାନ ଓ ତହିଁଉତ୍ତାରୁ ଭାଗଲପୁରର କମିଶନର ହୋଇ ଶେଷରେ ପ୍ରେସିଡେନ୍ସି ବିଭାଗର କମିଶନର ପଦରେ ଥାଇ ସନ ୧୮୯୩ ସାଲରେ ପେନସନ ନେଇ ବିଲାତରକୁ ଫେରିଗଲେ। ସୁତରାଂ ତାହାଙ୍କର ବୟସ ପ୍ରାୟ ବ ୬୮ର୍ଷ ହୋଇଥିଲା। ସେ ସନ ୧୮୬୭ ସାଲଠାରୁ ସନ ୧୮୭୮ ସାଲ ପର୍ଯ୍ୟନ୍ତ ବ୧୦ର୍ଷ ବାଲେଶ୍ୱର ଓ କଟକର କଲେକ୍ଟର ଏବଂ ଏକଟିଂ କମିଶନର ସ୍ୱରୂପ ଓଡିଶାରେ ଥିବାରୁ ଏ ପ୍ରଦେଶୀୟ ଲୋକଙ୍କଠାରେ ସୁପରିଚିତ ଥିଲେ। ସେ ଜଣେ ତୀକ୍ଷ୍ଣବୁଦ୍ଧି ଏବଂ ବିଦ୍ୱାନ୍ ବ୍ୟକ୍ତି ଥିଲେ ଏବଂ ତାହାଙ୍କ ରଚିତ କେତେଖଣ୍ଡ ପୁସ୍ତକ ବର୍ତ୍ତମାନ ରହିଅଛି। ମାତ୍ର କ୍ଷଣେ ତୁଷ୍ଟ କ୍ଷଣେ ରଷ୍ଟ ନବାବୀ ମିଜାଜ ହେତୁ ସେ ସରକାରୀ କାର୍ଯ୍ୟରେ ତାହାଙ୍କର ଅସାଧାରଣ ଯୋଗ୍ୟତାନୁରୂପ ପ୍ରଶଂସା ଲାଭ କରିପାରିଲେ ନାହିଁ। ଏ ନଗରର ମିଉନିସିପଲ ମାରକଟ ତାହାଙ୍କର ପ୍ରଧାନ କୀର୍ତ୍ତି ଅଟେ।

*ଭାଗ୩୭ଗ,ସଂ୨୩ଖ୍ୟା, ୭।୬।୧୯୦୨*

[ପଣ୍ଡିତ ଚନ୍ଦ୍ରଶେଖର ସିଂହ ସାମନ୍ତ]

ଓଡିଶାର ପଣ୍ଡିତ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କ ସକାଶେ ଗବର୍ଣ୍ଣମେଣ୍ଟଙ୍କର ଗୋଟିଏ ମାନମନ୍ଦିର ପ୍ରସ୍ତୁତ କରିଦେବା ଉଚିତ ବୋଲି ଅମୃତବଜାର ପତ୍ରିକାରେ ଲେଖା ଥିବାରୁ ତହିଁକି ଇଣ୍ଡିୟାନ ନେସନ କହିଅଛନ୍ତି ଗୋଟିଏ ରାଜ୍ୟର ଜନ ସାଧାରଣଙ୍କର ବ୍ୟବହାର କାରଣ ଗବର୍ଣ୍ଣମେଣ୍ଟ ଗୋଟିଏ ମାନମନ୍ଦିର ଯୋଗାଇବାକୁ ପ୍ରସ୍ତୁତ ନ ଥିବା ସ୍ଥଳେ ବ୍ୟକ୍ତି ବିଶେଷ ସକାଶେ ତାହା ନିର୍ମାଣ କରିଦେବାର ଆଶା କରାଯାଇ ନ ପାରେ। ମାତ୍ର ପଣ୍ଡିତ ଚନ୍ଦ୍ରଶେଖର ଅତ୍ୟନ୍ତ ବିଚକ୍ଷଣ ବ୍ୟକ୍ତି ଏବଂ ଅର୍ଥ ଓ ଯନ୍ତ୍ର ସାହାଯ୍ୟ ବିନା କେବଳ ବୁଦ୍ଧି ବଳରେ ଜ୍ୟୋତିଷ ଶାସ୍ତ୍ରର କେତେ ଉନ୍ନତି ହୋଇ ପାରେ ତାହା ସେ ପ୍ରଶଂସନୀୟରୂପେ ଦେଖାଇଅଛନ୍ତି। ସେ କାର୍ଯ୍ୟକ୍ଷମ ଅବସ୍ଥାରେ ଗୋଟିଏ ମାନମନ୍ଦିରରେ ପ୍ରବେଶ କରିଥିଲେ ତହିଁର ଭଲ ବ୍ୟବହାରଦ୍ୱାରା ଆମ୍ଭମାନଙ୍କର ଜ୍ଞାନଭଣ୍ଡାରକୁ ଆହୁରି ବଢାଇଥାନ୍ତେ। ବର୍ତ୍ତମାନ୍ ଅଧିକ ବୟସ, ଦୁର୍ବଳ ଅବସ୍ଥା,ଏବଂ ଦିନ ଦିନ କ୍ଷୟ ହେଉଥିବା ଦୃଷ୍ଟିରେ ଘର ଛାଡି ପ୍ରବାସରେ ରହି ସରକାରୀ ଇଉରୋପୀୟ କର୍ମଚାରୀଙ୍କ ଅଧୀନରେ ମାନମନ୍ଦିରର ଯନ୍ତ୍ରମାନ ବ୍ୟବହାର କରିପାରିବେ ଏହା ସମ୍ଭବ ବୋଧ ହେଉ ନାହିଁ। ଜ୍ୟୋତିଷ ସମ୍ବନ୍ଧରେ ସେ ଯାହା ଲେଖିଅଛନ୍ତି ସେ ସମସ୍ତ ସର୍ବସାଧାରଣଙ୍କ ବୁଝିବା ପ୍ରକାରେ ସଜାଡି ଛାପା କରିବା କାରଣ ଗବର୍ଣ୍ଣମେଣ୍ଟ ତାହାଙ୍କୁ ଅର୍ଥ ସାହାଯ୍ୟ ଦେଲେ ତହିଁରେ ସରକାରଙ୍କର ଅଧିକ ବ୍ୟୟ ବିନା ଲୋକଙ୍କର ଅନେକ ଉପକାର ହେବ। ତାହାଙ୍କ ରଚିତ ସିଦ୍ଧାନ୍ତ ଦର୍ପଣ କେବଳ ତହିଁର ସମ୍ପାଦକ ବାବୁ ଯୋଗେଶଚନ୍ଦ୍ର ରାୟଙ୍କର ପ୍ରଗାଢ ଯତ୍ନ, ସାଧାରଣ ହିତ କାମନା ଓ ବଦାନ୍ୟତା ଯୋଗେ ଦାଣ୍ଡକୁ ବାହାରିଅଛି। ବାବୁ ମହୋଦୟଙ୍କର ଉଜ୍ଜ୍ୱଳ ଏବଂ ବିଜ୍ଞ ଇଂରାଜି ଉପକ୍ରମଣିକା ବିନା ସେହି ପୁସ୍ତକର ମର୍ମ ଓ ଅଭିପ୍ରାୟ ଇଂରାଜି ପଢ଼ିବା ଲୋକଙ୍କର ଜ୍ଞାତସାରରେ ଆସି ନ ଥାନ୍ତା ଏବଂ ସେହି କାରଣରୁ ସେ ମଧ ସରକାରଙ୍କଠାରୁ ଉତ୍ସାହ ପାଇବାର ଯୋଗ୍ୟ ଅଟନ୍ତି। ଆମ୍ଭେମାନେ ସହଯୋଗିଙ୍କର ଉପରଲିଖିତ ମନ୍ତବ୍ୟରେ ସମ୍ପୂର୍ଣ୍ଣରୂପେ ଐକ୍ୟ ହୋଇ ଗବର୍ଣ୍ଣମେଣ୍ଟଙ୍କୁ ଏକାନ୍ତ ଅନୁରୋଧ କରୁଅଛୁଁ କି ମହାମହୋପାଧାୟ ଚନ୍ଦ୍ରଶେଖର ସାମନ୍ତଙ୍କୁ ତାହାଙ୍କ ରଚିତ ଜ୍ୟୋତିଷ ସମ୍ବନ୍ଧୀୟ ବିଷୟମାନ ପ୍ରକାଶ କରିବା କାରଣ ଅର୍ଥ ସାହାଯ୍ୟ କରନ୍ତୁ ଏବଂ ଏଠା କଲେଜର ଅଧକ୍ଷ ବାବୁ ଯୋଗେଶଚନ୍ଦ୍ର ରାୟଙ୍କର ଶୀଘ୍ର ପଦୋନ୍ନତି କରନ୍ତୁ।

*ଭା୩୭ଗ, ସଂ୨୪ଖ୍ୟା, ୧୪।୬।୧୯୦୨*

## ଡେପୁଟି ପରୀକ୍ଷାର ଫଳ।

ଗତ ଡେପୁଟି କଲେକ୍‌ଟରୀ ପରୀକ୍ଷାର ଫଳ ବାହାରିଅଛି। ଜ୧୭୨ଣ ପରୀକ୍ଷା ଦେବାକୁ ଅନୁମତି ପାଇଥିଲେ। ମାତ୍ର ଜ୧୬୧ଣ ଉପସ୍ଥିତ ହୋଇଥିଲେ। ସେମାନଙ୍କ ମଧରେ ଜ୧୫ଣ ମୁସଲମାନ ଜ୭ଣ ବିହାରୀ ହିନ୍ଦୁ, ଜ୫ଣ ଓଡିୟା ଜ୨ଣ ଫିରିଙ୍ଗି ଏବଂ ଏକଜଣ ଦେଶୀୟ ଖ୍ରୀଷ୍ଟିୟାନ ଥିଲେ। ଜ୧୨୮ଣ ଏକ ତୃତୀୟାଂଶ ଅଥବା ତହିଁରୁ ଅଧିକ ନମ୍ବର ପାଇଥିଲେ। ନିମ୍ନଲିଖିତ ଜ୫ଣ ସର୍ବୋଚ୍ଚ ଅଙ୍କ ପାଇବାରୁ ଗତ ଦିସେମ୍ବରମାସର ବିଜ୍ଞାପନାନୁସାରେ ଶିକ୍ଷାନବିସ ଡେପୁଟି କଲେକ୍‌ଟରୀ ପଦ ପାଇବାର ଯୋଗ୍ୟ ହେଲେ, ଯଥା-

| ନାମ | | ନମ୍ବର |
|---|---|---|
| ବାବୁ ସୁରେଣ୍ଦ୍ର ଘଟକ, | ଏମ,ଏ, | ୬୦୮ |
| ବାବୁ ମନ୍ମଥନାଥ ସେନ | ବି,ଏ, | ୫୫୬ |
| ବାବୁ ଭୁଜେନ୍ଦ୍ରନାଥ ମୁଖୁର୍ଯ୍ୟା | ବି,ଏ, | ୫୦୯ |
| ବାବୁ ଯତୀନ୍ଦ୍ରମୋହନ ବାନୁର୍ଯ୍ୟା | ବି,ଏ, | ୫୦୩ |
| ବାବୁ ଗୁନିଲାଲ ରାୟ | ବି,ଏ, | ୪୯୭ |

ଏପର ବାବୁ ତ ରକଚନ୍ଦ୍ର ରାୟ ବି,ଏ,ବାବୁ ଦୁର୍ଗାପ୍ରସାଦ ଏମ, ଏ,ଏବଂ ମଉଲଭିଆନି ମୁଜମାନଖାନ ଏମ,ଏ, ମାନ୍ୟବର ଛୋଟଲାଟ ବାହାଦୁରଙ୍କର ପସନ୍ଦଅନୁସାରେ ଉକ୍ତ ପଦ ପାଇବାର ଯୋଗ୍ୟ ହେଲେ। ଶେଷଲିଖିତ

ଦୁଇଜଣ ବିହାରୀ ଅଟନ୍ତି ।

ବାବୁ ହରିଦାସ ରାୟ, ବାବୁ ନରେନ୍ଦ୍ରନାଥ ଚକ୍ରବର୍ତ୍ତୀ ବି, ଏଲ ଓ ବାବୁ ନରେନ୍ଦ୍ରକୁମାର ସେନ ଗୁପ୍ତ ବି,ଏ,ଏହି ତିଂଣ ସବଡେପୁଟି ପଦ ପାଇବାର ଯୋଗ୍ୟ ବୋଲି ମାନ୍ୟବର ଲେପ୍ଟନଣ୍ଟ ଗବର୍ଣ୍ଣର ବାଛିନେଲେ । ଏମାନେ ସମସ୍ତେ ବର୍ତ୍ତମାନ ଶିକ୍ଷାନବୀସ ସ୍ୱରୂପ କାର୍ଯ୍ୟ ଶିଖିବେ ଏବଂ ଯଥାସମୟରେ କାର୍ଯ୍ୟ ପାଇବେ ।

ଜ୫ଣ ଓଡିୟା ପରୀକ୍ଷା ଦେଇ ଜଣେ ଶୁଦ୍ଧା ସଫଳକାମ ହେଲେ ନାହିଁ ବଡ ଦୁଃଖର ବିଷୟ ଅଟେ । ଏଥିପାଇଁ ଆମ୍ଭେମାନେ ଗବର୍ଣ୍ଣମେଣ୍ଟଙ୍କର ଦୋଷ ଦେଇ ନ ପାରୁଁ । ଗବର୍ଣ୍ଣମେଣ୍ଟଙ୍କର ଅନୁଗ୍ରହର ତ୍ରୁଟି ନାହିଁ । ଆମ୍ଭମାନଙ୍କର ଭୟ ହେଉଅଛି କି ଯେ ପରିମାଣ ଗାଢ଼ ପରିଶ୍ରମ ଓ ଯତ୍ନ କଲେ ସଫଳ ହେବେ ଏପ୍ରଦେଶର ଲୋକମାନେ ତାହା କରୁନାହାନ୍ତି ଏବଂ ଆଶାନୁରୂପ ଯୋଗ୍ୟତା ଦେଖାଇ ନ ପାରି ଗବର୍ଣ୍ଣମେଣ୍ଟଙ୍କୁ ହତାଶ କରୁଅଛନ୍ତି ଓ ନିଜେ ନିଜେ ବିଡମ୍ବିତ ହେଉଅଛନ୍ତି । କୌଣସି ପରୀକ୍ଷାରେ ଏମାନଙ୍କର ଟେକ ଦେଖାଯାଉ ନାହିଁ । ଭରସାକରୁଁ ଏଥରର ମନ୍ଦ ଫଳରେ ଉତ୍ତେଜିତ ହୋଇ ଆଗାମୀ ବର୍ଷ ଭଲ ଫଳ ଦେଖାଇବାର ଚେଷ୍ଟା କରିବେ ।

*ଭାଗ୩୭,ସଂ୨୪ଖ୍ୟା, ୧୪/୬/୧୯୦୨*

## [ସମ୍ବଲପୁରରେ ଓଡିଆ ଭାଷା ପ୍ରଚଳନ]

ଅତ୍ୟନ୍ତ ଆନନ୍ଦ ସହିତ ଅବଗତ ହେଲୁ ଯେ ସମ୍ବଲପୁରର ଅଦାଲତ କଚେରୀରେ ଓଡିୟା ଭାଷା ପ୍ରଚଳିତ ହେବା ବିଷୟରେ ସମ୍ବଲପୁରବାସିମାନେ ଇଣ୍ଡିୟା ଗବର୍ଣ୍ଣମେଣ୍ଟଙ୍କ ଛାମୁକୁ ପଠାଇଥିଲେ ତାହା ସଫଳ ହୋଇଅଛି ଏବଂ ଆବେଦନକାରିମାନଙ୍କୁ ଜଣାଇ ଦିଆ ଯାଇଅଛି କି ସନ ୧୯୦୩ ସାଲ ଜାନୁଆରୀ ମାସ ପ୍ରଥମ ତାରିଖରୁ ଓଡିୟାଭାଷା ପ୍ରଚଳିତ ହେବ । ଏଥି ମଧ୍ୟରେ ବନ୍ଦୋବସ୍ତ ବିଭାଗର କାଗଜପତ୍ର ଓଡିୟାରେ ଲେଖା ହେବାର ଆରମ୍ଭ ହୋଇଅଛି । ସମ୍ବଲପୁରବାସିମାନେ ଏହି ଆନନ୍ଦକର ସମ୍ବାଦ ପାଇ ତାରଡାକଯୋଗେ ମହାମାନ୍ୟ ଗବର୍ଣ୍ଣର ଜେନରଲ ଏବଂ ମଧ୍ୟପ୍ରଦେଶର ଚିଫ୍ କମିଶନରଙ୍କ ନିକଟରେ ଧନ୍ୟବାଦ ପ୍ରଦାନ କରିଅଛନ୍ତି । ମହାମତି ଲର୍ଡ କର୍ଜନ ବାହାଦୁର ଏହି ସୁବିଚାରଦ୍ୱାରା ଏକା ସମ୍ବଲପୁର କାହିଁକି ସମସ୍ତ ଉତ୍କଳବାସିଙ୍କର ଅଶେଷ କୃତଜ୍ଞତାର ଭାଜନ ହୋଇଅଛନ୍ତି ଏବଂ ଏଥିପାଇଁ ତାହାଙ୍କର ନାମ ଓଡିଶାରେ ଚିରସ୍ମରଣୀୟ ହେବ । ସେ ସମ୍ବଲପୁରରୁ ଗୋଟାଏ ଅନ୍ୟାୟ ବ୍ୟବସ୍ଥା ଉଠାଇ ଦେଇ ଏହାଇ ପ୍ରଚାର କରିଅଛନ୍ତି କି ଯେଉଁ ରାଜ୍ୟଖଣ୍ଡର ଅଧିକାଂଶ ଲୋକଙ୍କର ଯେ ମାତୃଭାଷା ତାହାଇ ସେଠାର ଅଦାଲତର ଭାଷା ହେବ ଏବଂ ଭିନ୍ନ ଦେଶୀୟ କର୍ମଚାରିଙ୍କ ସୁବିଧା ନିମନ୍ତେ ତହିଁର ଅନ୍ୟଥା ହେବ ନାହିଁ ।

*ଭାଗ୩୭,ସଂ୨୮ଖ୍ୟା, ୧୨/୭/୧୯୦୨*

## [ପ୍ରଜାବନ୍ଧୁ ସମ୍ବାଦପତ୍ର]

" ପ୍ରଜାବନ୍ଧୁ" ନାମରେ ଖଣ୍ଡିଏ ଓଡିୟା ସାପ୍ତାହିକ ସମ୍ବାଦପତ୍ର ଗଞ୍ଜାମ ଜିଲା ରମ୍ଭା ନଗରରୁ ବାହାରିବାର ଆରମ୍ଭ ହୋଇଅଛି ଏବଂ ଆମ୍ଭେମାନେ ତହିଁର ଦୁଇ ସଂଖ୍ୟା ପାଇବାର କୃତଜ୍ଞତାସହିତ ସ୍ୱୀକାର କରୁଅଛୁଁ । ଏହା ସୁପର ରଏଲ ୪ ପୃଷ୍ଠା ଅର୍ଥାତ୍ ଓଡିୟା ଓ ନବସମ୍ବାଦର ଆକାରରେ ଖଲିକୋଟ ରାଜପ୍ରେସରେ ମୁଦ୍ରିତ ହୋଇଅଛି ଏବଂ ବାର୍ଷିକ ମୂଲ୍ୟ ଡାକମାସୁଲ ସହିତ ଟ ୧୪ ଧାର୍ଯ୍ୟ ହୋଇଅଛି ମାତ୍ର ଆଗାମୀ ଜୁଲାଇ ମାସ ତା ୨୫ ରିଖ ସୁଦ୍ଧା ଯେଉଁମାନେ ଟଙ୍କା ପଠାଇ ଗ୍ରାହକ ହେବେ ସେମାନେ ପ୍ରତିବର୍ଷ ଉକ୍ତ ସୁବିଧା ଭୋଗ କରିବେ । ସମ୍ବଲପୁର ହିତୈଷିଣୀର ଭୂତପୂର୍ବ ସମ୍ପାଦକ ସୁପରିଚିତ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଏହାର ସମ୍ପାଦକ ଅଟନ୍ତି । ସୁତରାଂ ଏହାର ଭାଷା ଓ ବିଷୟ ସମ୍ବନ୍ଧରେ ଅଧିକ ପରିଚୟଦେବାର ଆବଶ୍ୟକ ନାହିଁ । ଗଞ୍ଜାମ ଜିଲା ଓଡିୟା ରାଜ୍ୟ ହେଲେହେଁ ମାତୃଭାଷାର ସମ୍ବାଦପତ୍ର ସେଠାରେ ଆଦୌ ନ ଥିବାରୁ ପ୍ରାୟ ବର୍ଷେ ହେଲା ଶ୍ରୀଯୁକ୍ତ ଗୁନ୍ନେୟା ମହାଶୟ ଗଞ୍ଜାମ ଓଡିୟା ହିତବାଦିନୀ ସଭା କରି ସେ ଅଭାବ ଆଂଶିକ ଦୂର କରିଛନ୍ତି । ସମ୍ପ୍ରତି ତହିଁରୁ ଅଳ୍ପ ମୂଲ୍ୟ ଓ XXXX

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଏହି ପ୍ରଜାବନ୍ଧୁ ପତ୍ରିକା XXXX ଆନନ୍ଦିତ ହୋଇଅଛୁଁ । ଉଭୟ ପତ୍ରିକା ରାଜ ପ୍ରତିପାଳିତ ସୁତରାଂ ସେମାନଙ୍କର ସ୍ଥାୟିତ୍ୱ ବିଷୟରେ ସନ୍ଦେହ ନାହିଁ। ଆଶା କରୁଁ ଓଡିୟା ସମ୍ବାଦପତ୍ରର ଅଧିକ ପ୍ରଚାରଦ୍ୱାରା ଗଞ୍ଜାମବାସିଙ୍କର ଉପକାର ହେବ ଏବଂ ସେମାନଙ୍କର ଅବସ୍ଥା ଓ ଅଭାବ ଅନ୍ୟାନ୍ୟ ସ୍ଥାନର ଲୋକମାନେ ଜାଣିବାକୁ ଅଧିକତର ସମର୍ଥ ହେବେ।

*ଭା୩୭ଗ, ସଂ୨୮ଖ୍ୟା, ୧୨।୬।୧୯୦୨*

## [ବିଷମୋଦକ]

ମହାଶୟ

ଉତ୍କଳ ସାହିତ୍ୟରେ ବିଶେଷତଃ ଦୃଶ୍ୟ କାବ୍ୟରେ ଶ୍ରୀବାବୁ ରାମଶଙ୍କର ରାୟଙ୍କର ନାମ ଆପଣଙ୍କ ନିକଟରେ ନିତାନ୍ତ ଅବିଦିତ ନୁହେ । ଆମ୍ଭେମାନେ ମଧ ତାହାଙ୍କର ରଚିତ ଏହି ଜାତୀୟ କାବ୍ୟାବଳି ଅତ୍ୟନ୍ତ ଯତ୍ନ ଓ ଆନନ୍ଦ ସହକାରେ ସମୟ ସମୟରେ ପଢ଼ିଥାଉଁ। କିନ୍ତୁ ଆଧୁନିକ ମାର୍ଜ୍ଜିତରୁଚି ପାଠକ ବା ସମାଲୋଚକ କିମ୍ବା ଯଶୋଲିପ୍ସୁ ଲେଖକଙ୍କଠାରେ ସେ ସବୁ କେତେ ଆଦୃତ ଆମ୍ଭେମାନେ କହି ନ ପାରୁଁ, ତେବେ ନିତାନ୍ତ ଯେ ଅନାଦୃତ ଏହା ଆମ୍ଭମାନଙ୍କର ବିଶ୍ୱାସ ନୁହେ।

ଆମ୍ଭମାନଙ୍କର ସାମାନ୍ୟ ବୁଦ୍ଧିରେ ଯଦି ସାମୟିକ ରୀତି ନୀତି ବା ଚରିତ୍ର ଅଙ୍କନ ଏହି ଜାତୀୟ କାବ୍ୟର ପ୍ରଧାନ ଉଦ୍ଦେଶ୍ୟ ହୁଏ,ତାହା ହେଲେ ଶ୍ରୀବାବୁ ରାମଶଙ୍କର ରାୟ ତାହାଙ୍କର ଶେଷ ରଚିତ "ବିଷମୋଦକ" ରେ ଯେପରି କୃତିତ୍ୱ ଦେଖାଇଅଛନ୍ତି ତାହା ଆମ୍ଭେମାନେ ଅନ୍ୟତ୍ର କ୍ୱଚିତ୍ ଦେଖିଅଛୁଁ। ସାମାନ୍ୟରେ କହିବାକୁ ଗଲେ ଏହି କାବ୍ୟ ଖଣ୍ଡି ଆଧୁନିକ ଉତ୍କଳ ସମାଜର ନାମାନୁରୂପ ଖଣ୍ଡିଏ ବିଷମୟ ଚିତ୍ର। ଏଥିରେ ଅବଶ୍ୟ ନନ୍ଦନର ଶୋଭା, ବସନ୍ତର ଲୀଳା,କୋକିଳର ପଞ୍ଚମ ବା ପ୍ରଣୟୀର ଉଲ୍ଲାସ କିଛିହିଁ ନାହିଁ, ଯାହା ଅଛି ତାହା କେବଳ ଆଧୁନିକ ସମାଜର ଦୈନନ୍ଦିନ ଘଟନା। ଚୌଧୁରୀ ସଦାନନ୍ଦ ପଟ୍ଟନାୟକ ଜଣେ ସମ୍ଭ୍ରାନ୍ତ ଜମିଦାର ନିଜ ଦୋଷରୁ ଆପଣା ଗୁମାସ୍ତାଙ୍କ ଉପରେ ସମସ୍ତ ବିଷୟ ଭାର ଦେଇ, ସଙ୍ଗ ମେଳେ ବିଳାସ ହୋଇ ଶେଷରେ ଋଣରୂପ ବିଷମୋଦକ ସେବନ କଲାରୁ କିରୂପ ସର୍ବସ୍ୱାନ୍ତ ଓ ପଥର ଭିଖାରୀ ହେଲେ ଏହାହିଁ ଏଥିର ସ୍ଥୁଳ ମର୍ମ। ବିଷୟ ସାମାନ୍ୟ କିନ୍ତୁ ଏଥିରେ କବି ଉତ୍କଳଗୃହର ବିଶେଷତଃ ଅନ୍ତଃପୁରର ଯେଉଁ ଦୁଇ ଗୋଟି ଚିତ୍ର ଆଙ୍କିଅଛନ୍ତି ତାହା ଅନିନ୍ଦ୍ୟ। ଅବିଶ୍ୱାସୀ ଗୁମାସ୍ତା, ଅର୍ଥଲୋଲୁପ ମହାଜନ, ଶଠଶିରୋମଣି ଟରଣୀ, ଉତ୍କଳଭାଷାନୁରାଗୀ ହାକିମ ଓ ହୁକୁମ ସର୍ବସ୍ୱ ପିୟାଦୀ , ଏମାନଙ୍କର ପ୍ରତ୍ୟେକର ଚରିତ୍ରରେ ଆମ୍ଭେମାନେ କାହିଁ ବ୍ୟଭିଚାର ଦୋଷ ଦେଖିଲୁଁ ନାହିଁ।

ପରିଶେଷରେ ଏଥିରେ ସଙ୍ଗୀତ ଗୁଡିକ ଅତ୍ୟନ୍ତ ସୁମଧୁର ଓ ମର୍ମଗ୍ରାହୀ ହୋଇଅଛି। ଉତ୍କଳ ସାହିତ୍ୟରେ ଢଗ ଢମାଳିର ଅଭାବ ନାହିଁ କିନ୍ତୁ " ଯହିଁକି ଯେ ନା ବୀରିକି ଚାଉଳ ତିନ୍ତେଇ ଦେ" କେତେ ଲୋକେ ପାରିଥାନ୍ତି ? ରାମଶଙ୍କର ବାବୁ ଏ ସମ୍ବନ୍ଧରେ ମଧ ବିଲକ୍ଷଣ କୃତିତ୍ୱ ଦେଖାଇଅଛନ୍ତି। ଏହି ସମସ୍ତ କାରଣରୁ ରଙ୍ଗମଞ୍ଚରେ ଏହି କାବ୍ୟ ଖଣ୍ଡିର ପ୍ରତ୍ୟେକ ଦୃଶ୍ୟ ଯେ ସମଧିକ ଚିତ୍ତାକର୍ଷକ ହେବ ଏଥିରେ ଆମ୍ଭମାନଙ୍କର ଲେଶ ମାତ୍ର ସନ୍ଦେହ ନାହିଁ । ଇତି ।

୯।୬।୦୨

କେହି କେହି ପାଠକ

*ଅତିରିକ୍ତ, ୧୯।୬।୧୯୦୨*

## ସମ୍ବଲପୁରରେ ଓଡିୟା ଭାଷା।

ସମ୍ବଲପୁରର କଚେରୀମାନଙ୍କରେ ଓଡିୟାଭାଷା ପୁନଃ ପ୍ରଚଳିତ ହେବାର ସୁସମ୍ବାଦ ପାଠକମାନଙ୍କୁ ଜଣାଇଅଛୁଁ। ସେହି ଭାଷା ପରିବର୍ତ୍ତନ ଆଗାମୀ ଜାନୁୟାରୀ ମାସ ତା୧ରିଖଠାରୁ ହେବ ଏବଂ ତହିଁର ବିଜ୍ଞାପନ ଯଥାସମୟରେ ପ୍ରଚାର ହେବ। ଏ ବିଷୟରେ ମଧ୍ୟପ୍ରଦେଶର ମାନ୍ୟବର ଚିଫ୍ କମିଶନର ଛତିଶଗଡ଼ର କମିଶନର

ସାହେବଙ୍କୁ ଯେଉଁ ଇଂରାଜୀପତ୍ର ଲେଖିଅଛନ୍ତି ତାହା ପାଠକମାନଙ୍କ ଜାଣିବା ସକାଶେ ନିମ୍ନେ ପ୍ରକାଶ କଲୁଁ ଯଥା ।-

Extract from Camp No. 207 dated Pachmarhi the 18th June 1902 from the second Secretary to the Chief Commissioner C. P. to the Commissioner Chhattis Gurh Division.

With reference to previous correspondence on the subject of the substitution of Hindi for Uriya as the Court language of the Sambalpur district, I am directed to inform you that the Government of India have accepted the conclusions arrived at by the Chief Commissioner that Uriya should be restored as the Court language in Sambalpur, effect will be given to the change from the 1st January 1903 and the necessary notification will issue in due course.

2. I am to request that the decision of the Government of India may be communicated through Madan Mohan Misra a principal signatory, to those who presented a memorial to the Government of India on the subject. It should also be explained to them that the closing of 82 schools in the Sambalpur district (many of which have since been reopened) was unconnected with the substitution of Hindi for Uriya in that district.

x x x x x x x x x x x x x x

ଏଥିର ମର୍ମ ଏହି କି ସମ୍ବଲପୁର ଜିଲାର ଅଦାଲତ ସମୂହରେ ହିନ୍ଦି ପରିବର୍ତ୍ତେ ଓଡିୟା ପ୍ରଚଳିତ ହେବା ବିଷୟରେ ମାନ୍ୟବର ଚିଫ୍ କମିଶନରଙ୍କର ଅନୁରୋଧ ଇଣ୍ଡିୟା ଗବର୍ଣ୍ଣମେଣ୍ଟ ଗ୍ରହଣ କଲେ ଏବଂ ଆଗାମୀ ଜାନୁଆରୀଠାରୁ ତଦନୁସାରେ କାର୍ଯ୍ୟ ହେବ । ଏ ବିଷୟରେ ଯେଉଁମାନେ ଇଣ୍ଡିୟା ଗବର୍ଣ୍ଣମେଣ୍ଟଙ୍କୁ ଆବେଦନ ପତ୍ର ପଠାଇଥିଲେ ସେମାନଙ୍କ ଅବଗତି କାରଣ ପ୍ରଧାନ ସ୍ୱାକ୍ଷରକାରୀ ମଦନମୋହନ ମିଶ୍ରଙ୍କୁ ଇଣ୍ଡିୟା ଗବର୍ଣ୍ଣମେଣ୍ଟଙ୍କର ନିଷ୍ପତ୍ତି ଜଣାଇଦେବ ଏବଂ ତାହାଙ୍କୁ ବୁଝାଇଦେବ ଯେ ଓଡିୟା ପରିବର୍ତ୍ତରେ ହିନ୍ଦି ପ୍ରଚଳିତ ହେବା ପ୍ରସଙ୍ଗ ସଙ୍ଗେ ସମ୍ବଲପୁରର ଗୋ ୮୨ଟା ସ୍କୁଲ ଉଠି ଯିବାର ସମ୍ବନ୍ଧ ନାହିଁ । ତହିଁ ମଧ୍ୟରୁ କେତେଟା ସ୍କୁଲ ଏଥି ମଧ୍ୟରେ ପୁଣି ଫିଟିଅଛି ।

*ଭା୩୭ଗ,ସଂ୩୧ଖ୍ୟା, ୨/୮/୧୯୦୨*

## ଭାଷା ବିଚାର ।

ଆମ୍ଭେମାନେ ପାରଲାର ଶ୍ରୀ ପଦ୍ମନାଭ ଦେବଙ୍କ " ସଂଗୀତ-ପ୍ରହ୍ଲାଦ ନାଟକ"ର ସମାଲୋଚନା କରିବାରୁ ତତ୍ସମ୍ବନ୍ଧେ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଯେ ମତାମତ ବ୍ୟକ୍ତ କରିଥିଲେ ତାହା ଆମ୍ଭେମାନେ ପାଠକମାନଙ୍କୁ ଜଣାଇ ତତ୍ସମ୍ବନ୍ଧେ ଆମ୍ଭମାନଙ୍କର ବକ୍ତବ୍ୟ ପ୍ରକାଶ କରିଅଛୁଁ । ରାଜଗୁରୁ ମହାଶୟ ତହିଁରେ ସନ୍ତୁଷ୍ଟ ନ ହୋଇ ପୁନର୍ବାର ଏକ ଦୀର୍ଘପତ୍ର ଆମ୍ଭମାନଙ୍କ ନିକଟକୁ ପଠାଇଥିବାରୁ ଭାଷା ସମ୍ବନ୍ଧୀୟ ବିଚାର ସଂଶ୍ଲିଷ୍ଟ ଓ ରାଜଗୁରୁ ମହାଶୟ ବିଶେଷ ଭ୍ରମରେ ପଡିଥିବା ହେତୁ ଆମ୍ଭେମାନେ ସର୍ବସାଧାରଣଙ୍କ ଅବଗତି ନିମିତ୍ତ ତାହା ପ୍ରକାଶ କଲୁଁ । ଆମ୍ଭେମାନେ କହିଅଛୁଁ ସଂଗୀତର ଉତ୍କର୍ଷ ଦେଖାଇବା ନାଟକର ବଳ ଏବଂ ତାହା ଯଥାସ୍ଥାନରେ ସନ୍ନିବିଷ୍ଟ ହେବା ଉଚିତ । ତାହା ନ ହେଲେ ଯାତ୍ରା ଏବଂ ନାଟକରେ କୌଣସି ପ୍ରଭେଦ ରହଇ ନାହିଁ । ଗୀତ ବାହୁଲ୍ୟ ହେତୁ ଗୀତି ନାଟ୍ୟର ସୃଷ୍ଟି ହୋଇଥିଲେହେଁ ତହିଁରେ ଚରିତ୍ରଚିତ୍ରଣ ପ୍ରତି ଦୃଷ୍ଟି ରଖାଯାଇ ଅଧିକ ଗୀତ ସଂଯୋଜିତ ହୁଏ । ତାହା ନ ହେଲେ ସାଧାରଣ ଯାତ୍ରା ଏବଂ ରଙ୍ଗମଞ୍ଚରେ କୌଣସି ପାର୍ଥକ୍ୟ ରହିବ ନାହିଁ । ପ୍ରହ୍ଲାଦଚରିତ୍ର ଭକ୍ତିରସମୂଳକ । ଯହିଁରେ

ଭକ୍ତିରସ ହୃଦୟରେ ଉଦ୍ରେକ ହେବ ସେପରି ଭାବରେ ନ ଲେଖି ସ୍ୱର ଲାଳିତ୍ୟ ଏବଂ ରାଗ ରାଗିଣୀର ଆଡ଼ମ୍ବର ଦେଖାଇଲେ କି ଫଳ ଲାଭ ହେବ ? ଉଦାହରଣ ସ୍ୱରୂପ ଆମ୍ଭେମାନେ ଚତୁର୍ଥ ଅଙ୍କର ତୃତୀୟ ଦୃଶ୍ୟ ଏବଂ ଚତୁର୍ଥ ଦୃଶ୍ୟ ନିର୍ଦ୍ଦେଶ କଲୁଁ। ଆମ୍ଭମାନଙ୍କର କ୍ଷୁଦ୍ର ବୁଦ୍ଧିରେ ଏ ଦୃଶ୍ୟମାନଙ୍କରେ କେବଳ ଗୀତାଧିକ୍ୟ ହେତୁ ଭକ୍ତିରସର ଉଦ୍ରେକ ହେବାରେ ତୃଟି ଘଟିଅଛି। ଏହିପରି ପୁସ୍ତକର ଅନେକାଂଶ ଅଛି । ତାହା ବାହୁଲ୍ୟ ଭୟରୁ ଉଲ୍ଲେଖ ନ କଲୁଁ। ଅତଃପର ପ୍ରାଦେଶିକତା ବ୍ୟବହାର ବିଷୟରେ ରାଜଗୁରୁ ମହାଶୟ ଯାହା ଲେଖିଅଛନ୍ତି ସେଥିରେ ତ ଭାଷାର ଉନ୍ନତି ହେବାର କଥା ନାହିଁ। ତାଙ୍କ ମତରେ ହାଟରେ ବାଟରେ ଅଜ୍ଞ ଲୋକମାନେ ଯେପରି କଥାଭାଷା ହୁଅନ୍ତି ତାହାକୁ ପୁସ୍ତକରେ ସ୍ଥାନ ଦେଲେ ଭାଷା ଭଲ ହେବ। ତେବେ ଆଉ ଭାଷାର ପାରିପାଟ୍ୟ ଏବଂ ମର୍ଯ୍ୟାଦା ହେତୁ ଏତେ ଟଣା ଓଟରା କାହିଁକି ଲାଗିଅଛି ? ଦକ୍ଷିଣୀମାନେ ଯେପରି କଥାବାର୍ତ୍ତା ହୁଅନ୍ତି ତାଙ୍କଆଡ଼େ ସେପରି ପୁସ୍ତକର ଭାଷା ହେଉ ଏବଂ କନ୍ଧ ଅବା କେଳାମାନେ ଯେପରି କଥାଭାଷା ହୁଅନ୍ତି ତାଙ୍କ ମଧ୍ୟରେ ସେପରି ଭାଷାରେ ପୁସ୍ତକ ହେଉ ! ପ୍ରକୃତ କଥା ଏହିକି ରାଜଗୁରୁଙ୍କ ମତ ଯଥାର୍ଥ ଥିଲେ କବିବର ଉପେନ୍ଦ୍ର ଭଞ୍ଜ ଦକ୍ଷିଣୀ ଓଡିୟାରେ ଛାନ୍ଦ ନ ଗାଇ ବିଶୁଦ୍ଧ ଓଡିୟାରେ ଗାଇ ନ ଥାନ୍ତେ। ସେ ପଣ୍ଡିତ ଏବଂ ତାଙ୍କୁ ଓଡିୟା ଭାଷା ଉତ୍ତମ ଜଣାଥିଲା। କବି ଦୀନକୃଷ୍ଣ ଅବା ଅଭିମନ୍ୟୁ ସାମନ୍ତସିଂହାର ଦକ୍ଷିଣର ନୁହନ୍ତି ଅଥଚ ଏମାନଙ୍କର ଭାଷା ଓ ଉପେନ୍ଦ୍ରଭଞ୍ଜଙ୍କର ଭାଷାରେ ଓଡିୟା ଭିନ୍ନ ଅନ୍ୟ କିଛି ନାହିଁ। ସବୁ ଭାଷାରେ ପ୍ରାଦେଶିକତା ଅଛି ଏବଂ ତାହା ପୁସ୍ତକର ଭାଷା ନ ଥିବାରୁ ସର୍ବତ୍ର ତ୍ୟକ୍ତ ହୋଇଅଛି। ଏମାନଙ୍କୁ ଛାଡି ଅଧିକ ଦୂର ଯିବାର ପ୍ରୟୋଜନ ନ ଥିଲେହେଁ ପ୍ରାଦେଶିକତା ସମ୍ବନ୍ଧରେ ଆପଣାର ମତ ଦୃଢ଼ୀକରଣାର୍ଥ ରାଜଗୁରୁ ମହାଶୟ ମୋକ୍ଷ ମୂଲର ଓ ବିମସ ସାହେବଙ୍କର ଆଶ୍ରୟ ଘେନିଅଛନ୍ତି ମାତ୍ର ସେମାନଙ୍କର କଥାଗୁଡିକ ଅନୁଧାବନ କରି ପାରି ନାହାନ୍ତି। ଆମ୍ଭେମାନେ କ୍ଷୁଦ୍ରବୁଦ୍ଧିର ଲୋକ । ବଡ଼ଲୋକଙ୍କ କଥାକୁ ଉତ୍ତର ଦେବା ଆମ୍ଭମାନଙ୍କର ସାଧ୍ୟାତୀତ । ତେବେ ଆମ୍ଭେମାନେ ଏତକ ବୁଝିଅଛୁଁ ଯେ ଜନସାଧାରଣଙ୍କ ଗ୍ରହଣୀୟ ଭାଷା ଭାଷାପଦବାଚ୍ୟ ଏବଂ ତାହା କରିବାକୁ ଯାଇ କୌଣସି କୌଣସି ବିଶୁଦ୍ଧ ଦୃଦୟ ତାହା ପ୍ରାଦେଶିକ ବ୍ୟବହାର ଗ୍ରହଣ କରାଯାଇ ପାରେ । ମାତ୍ର ତାହା ବୋଲି ନିତାନ୍ତ ବ୍ୟାକରଣଦୁଷ୍ଟ ଅଜ୍ଞଜନୋଚିତ କଥାଗୁଡିକ ପୁସ୍ତକରେ ସ୍ଥାନ ପାଇବାର ଯୋଗ୍ୟ ନୁହେ। ବାଲେଶ୍ୱରରେ 'ଗୋଡ' କୁ 'ଗୁଡ' କହନ୍ତି ଏବଂ ଦକ୍ଷିଣରେ 'ଏଠି' କୁ 'ହେଟି' କହନ୍ତି । ଏସବୁ ବ୍ୟବହାର କଲେ ଯଦି ଓଡିୟା ଭାଷାର ଅଙ୍ଗ ସୌଷ୍ଟବ ହେବ ତେବେ ଯେତେ ଶୀଘ୍ର ଓଡିୟା ଭାଷାକୁ ସ୍ଥାନାନ୍ତରିତ କରାଯାଇ ପାରେ ତେତେ ଭଲ । ରାଜଗୁରୁ ମହାଶୟ ଦକ୍ଷିଣର ଲୋକ ଏବଂ ଦକ୍ଷିଣୀ କଥା ତାଙ୍କୁ ସ୍ୱଭାବତଃ ଭଲ ଲାଗିବ । ତଥାପି ଭଲ ମନ୍ଦ ବିଚାର କରିବାର ତାଙ୍କର ଶକ୍ତି ଅଛି । ସେ ବୃଥା କଳହ ପରିତ୍ୟାଗ ପୂର୍ବକ ଦକ୍ଷିଣରେ ଅଶୁଦ୍ଧ ପ୍ରୟୋଗମାନ ଦେଖାଇ ଦେଇ ସେଠା ପ୍ରଚଳିତ ଓଡିୟା କଥାର ସୌଷ୍ଟବ ସାଧନ କରନ୍ତୁ ଏତିକି ଆମ୍ଭମାନଙ୍କର ଅନୁରୋଧ ।

*ଭାଗ୭୮,ସଂଖ୍ୟା୧, ୨।୮।୧୯୦୨*

## ପ୍ରେରିତପତ୍ର।

## [ଦକ୍ଷିଣୀ ଓଡିଆ]

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ ।

ମହାଶୟ !

ଶ୍ରୀ ପଦ୍ମନାଭ ନାରାୟଣ ଦେବ କର୍ତ୍ତୃକ ବିରଚିତ ସଙ୍ଗୀତପ୍ରହ୍ଲାଦ ନାଟକର ସମାଲୋଚନା ସମ୍ବନ୍ଧେ ଆମ୍ଭେ ଯେଉଁ ପତ୍ର ପଠାଇଥିଲୁଁ ତାହା ଆପଣ ଦୟାପୂର୍ବକ ଆପଣଙ୍କ ପତ୍ରିକାରେ ପ୍ରକାଶ କରି ଲେଖିଅଛନ୍ତି :- "ସଙ୍ଗୀତ ଭକ୍ତିରସର ବିରୋଧୀ ବୋଲି ଆମ୍ଭେମାନେ କହି ନାହୁଁ। ମାତ୍ର ଚରିତ୍ର ଚିତ୍ର କରିବାଠାରୁ ସଙ୍ଗୀତ ରଚନାରେ ଅଧିକ ମନୋଯୋଗୀ ହେବାରୁ ନାଟକଟିରେ ଚରିତ୍ର ଚିତ୍ରତାରେ ତ୍ରୁଟି ଘଟିଥିବାର ଆମ୍ଭେମାନେ ଲେଖିଥିଲୁଁ। ଯଦି ସଙ୍ଗୀତ ରସ, ବା ଭାବର ବିରୋଧୀ ନୁହେ ତେବେ ସଙ୍ଗୀତ ରଚନାରେ ଅଧିକ ମନୋଯୋଗୀ ହେଲେ ଚରିତ୍ର

ଚିତ୍ରତାରେ କାହିଁକି ତ୍ରୁଟି ଘଟିବ ? ସଙ୍ଗୀତରେ କି ଚରିତ୍ର ଚିତ୍ରିତ ହୋଇ ନ ପାରେ ? ଯଦି ହୋଇ ପାରୁ ନ ଥାନ୍ତା, ତେବେ ସଙ୍ଗୀତ ନାଟକର ଗୋଟିଏ ପ୍ରଧାନ ଅଙ୍ଗ କିପରି ହୁଅନ୍ତା" ? ନାଟକରେ ସଙ୍ଗୀତର ଉତ୍କର୍ଷ ଦେଖାଇବା ଅବଶ୍ୟ ନାଟକର ବଳ ଏହା ଆପଣ କିପରି କହି ପାରନ୍ତେ ? ସେ ଯାହା ହେଉ, ଆପଣ ସମାଲୋଚିତ ନାଟକରୁ କେତେକାଂଶ ଉଦ୍ଧୃତ କରି ଆପଣଙ୍କ କଥାଟା ସମର୍ଥନ କରିବା ପର୍ଯ୍ୟନ୍ତେ ଆମ୍ଭେ କହି ପାରିବୁଁ ଯେ ଚରିତ୍ର ଚିତ୍ରତାରେ ଯାହା କିଛି ତ୍ରୁଟି ଦେଖାଯାଏ ତାହା ଅନ୍ୟ କାରଣରୁ ଘଟିଥାଇପାରେ, ମାତ୍ର ସଙ୍ଗୀତ ଆଡ଼େ ଅଧିକ ଢଳିବାରୁ ନୁହେ ।

ପ୍ରାଦେଶିକ ବ୍ୟବହାର ବିଷୟରେ ଆପଣ କହିଅଛନ୍ତି :-"ପୁସ୍ତକମାନଙ୍କରେ ତାହା ଯେତେ ଅଳ୍ପ ପରିମାଣରେ ବ୍ୟବହୃତ ହୁଏ ତେତେ ଭଲ" । ମାତ୍ର ଭାଷାବିଜ୍ଞାନବେତ୍ତା ମାକ୍ ସମୂଲର କହିଅଛନ୍ତି :- "And unless the literary and courtly languages invigorate themselves by a constantly renowed under course with their former companions, the popular dialects will, sonner or later, assert their ascendency." ( Vide Maxmular's Science of Language Vol-II, page- 61) ପ୍ରାଦେଶିକ ଭାଷା ସହିତ ପୁସ୍ତକଗତ ଭାଷାର ସମ୍ପର୍କ ନ ରହିଲେ କାଳକେ ପ୍ରାଦେଶିକ ଭାଷା ଆଧିପତ୍ୟ ସ୍ଥାପନ କରିଯିବ । ସେ ଅନ୍ୟତ୍ର କହିଅଛନ୍ତି :- " What we are accustomed to call languages, the literary idioms of Greece and Rome and India, of Italy, France and Spain, must be considered as artificial rather than as natural forms of speech, The real and natural life of language is in its dialects. a name which, in its widest Sense, comprises provincialism, brogue, patois, Jargon or any other variety that affects the general progress of languages down to the Idiom of families and individuals." (Vide the Same pp-55). ଗ୍ରୀସ୍ , ରୋମ୍ , ଭାରତବର୍ଷ, ଇଟାଲୀ, ଫ୍ରାନ୍ସ ଓ ସ୍ପେନ ଇତ୍ୟାଦି ଦେଶମାନଙ୍କରେ, ଆମ୍ଭେମାନେ ଯାହାକୁ ଭାଷା କହୁ,ତାହା କୃତ୍ରିମ ଭାଷା ବୋଲି ଆଲୋଚନା କରିବାକୁ ହେବ । ଭାଷାର ପ୍ରକୃତ ପ୍ରାଣ କେବଳ ପ୍ରାଦେଶିକତାରେ । ବୀମସ୍ ସାହେବ କହିଅଛନ୍ତି :- "It is to be hoped that this sort of nonsense has had its day, and that in all the seven languages, literature will, by degrees, become national, and that men will begin to see that there is no disgrace in writing as they talk."(Vide Beams' Comparative Grammar of Modern Aryan languages of India Vol –II PP-251) ଆଶା ହୁଏ ଏପରି ନିର୍ବୋଧତାର ସମୟ ଶେଷ ହୋଇ ଯାଇଅଛି, ସବୁ ଭାଷାର ସାହିତ୍ୟ କ୍ରମଶଃ ସ୍ୱାଭାବିକ ହୋଇ ଉଠିବ , ଓ ଜନସାଧାରଣ ଯେପରି କଥାବାର୍ତ୍ତା କରନ୍ତି ସେହିପରି ଲେଖିବାର ଲଜ୍ଜାଜନକ ନୁହେ ବୋଲି ଲୋକେ ଜାଣିବେ । ଏଥିରୁ ଆପଣ ସ୍ପଷ୍ଟ ବୁଝିପାରିବେ ଯେ ପ୍ରାଦେଶିକ ଭାଷା ପୁସ୍ତକମାନଙ୍କରେ ଯେତେ ଅଧିକ ପରିମାଣରେ ବ୍ୟବହୃତ ହୋଇପାରିବ ତେତେ ଭଲ । କାରଣ ସାଧାରଣ ଲୋକେ ପଢ଼ି ବୁଝି ପାରିବେ ଓ ଦେଶର ମଙ୍ଗଳ ହେବ ।

ଆପଣ ଲେଖିଅଛନ୍ତି :- "ଦକ୍ଷିଣୀ ଓଡିଆ ଯେ ପ୍ରକୃତ ଓଡିଆ ନୁହେ ତାହା ଆଉ କାହାରିକି କହି ଦେବାକୁ ହେବ ନାହିଁ" ଏ କଣ ନିପାତନସିଦ୍ଧ ? ନା କୌଣସି ନିୟମଦ୍ୱାରା ପ୍ରମାଣିତ ? ନା ଆପଣଙ୍କର ବ୍ୟକ୍ତିଗତ ଅଭିପ୍ରାୟ ? ଏହି ଦକ୍ଷିଣୀ ଭାଷାରେ ପରା ଉପେନ୍ଦ୍ର ଭଞ୍ଜ , କୃଷ୍ଣସିଂହ, କବିସୂର୍ଯ୍ୟ , ଗୋପାଳକୃଷ୍ଣ ପ୍ରଭୃତି କବିମାନେ ଗ୍ରନ୍ଥ ରଚନା କରି ଓଡିଆ ଭାଷାକୁ ରଖି ଦେଇ ଯାଇଅଛନ୍ତି ।" "ଭଲ ଓଡିଆ ଭାଷା" ଜାଣିବା ସକାଶେ ଏହି ଦକ୍ଷିଣୀ କବିମାନେ ଗ୍ରନ୍ଥ ଆଲୋଚନା କରିବାକୁ ପରା ଆପଣ ଆମ୍ଭଙ୍କୁ ଅନୁରୋଧ କରିଅଛନ୍ତି ? ତେବେ ଦକ୍ଷିଣୀ ଓଡିଆ ପ୍ରକୃତ ଓଡିଆ ନ ହେଲା କିପରି ? ନାଟକର ଓଡିଆ ବିଷୟରେ ଆପଣ ଲେଖିଅଛନ୍ତି: - "କିଛି କିଛି ପ୍ରାଦେଶିକତା ଥିଲେହେଁ ତାହା ପ୍ରକୃତ ଓଡିଆ ନୁହେ ବୋଲି ଆମ୍ଭେମାନେ କହି ନ ପାରୁ" । ପ୍ରାଦେଶିକତା ଥିବା ଯୋଗୁଁ ନାଟକର

ଓଡିଆ ପ୍ରକୃତ ଓଡିଆ ନୁହେ ବୋଲି ଆମ୍ଭେ କହି ନାହୁଁ । ତାହା ସାଧାରଣ ବ୍ୟବହୃତ ଭାଷା ନ ହେବାରୁ ଅର୍ଥାତ୍ ବର୍ଣ୍ଣଶୁଦ୍ଧି, ବ୍ୟାକରଣ ରଚନା ଇତ୍ୟାଦି କେବଳ ସଂସ୍କୃତାନୁଯାୟୀ ଥିବାରୁ, ପ୍ରକୃତ ଓଡିଆ ନୁହେ ବୋଲି କହିଥିଲୁଁ । ବୀମସ୍ ସାହେବ ମଧ କହିଅଛନ୍ତି : – "Orissa at a later period followed the lead of Bengal and from the causes above mentioned, it has resulted that in both provinces the national speech has been banished from books and now lives only in the mouths of the people."(Vide Beams' Comparative Grammar Vol-I pp 38). ଓଡିଶା ବଙ୍ଗଦେଶର ପଶ୍ଚାତ୍‌ଗାମୀ ହୋଇ ନିଜ ଜାତୀୟ ଭାଷାକୁ ପୁସ୍ତକରୁ ଏକାବେଳକେ ଦୂର କରି ଦେଇଅଛି । ବର୍ତ୍ତମାନ୍ ଜାତୀୟ ଭାଷା ଜନସାଧାରଣ ମୁଖରେ ମାତ୍ର ଶୁଣିବା ମିଳେ । ଆପଣ ଉପଦେଶ ଦେଇ ଅଛନ୍ତି : –"ଯେଉଁ ବ୍ୟକ୍ତି ଉଲ୍ଲିଖିତ ପୁରାତନ କବିମାନଙ୍କ ଗ୍ରନ୍ଥ ସମ୍ୟକ୍‌ରୂପେ ଆଲୋଚନା କରି ଓଡିଆ ଗଦ୍ୟ ଲେଖିବାକୁ ଯତ୍ନବାନ୍ ହେବେ ସେ ଯେ ଭଲ ଏବଂ ବିଶୁଦ୍ଧ ଓଡିଆ ଲେଖି ପାରିବେ ଏଥିରେ ସନ୍ଦେହ ନାହିଁ । ପୁରାତନ ଗ୍ରନ୍ଥ ସବୁ ପଦ୍ୟରେ ରଚିତ । ପଦ୍ୟ କାବ୍ୟରେ ଯେ ଭାଷାର କୌଣସି ନିୟମ ରହେ ନାହିଁ ଏହା ଆଉ କାହାରିକି କହିଦେବାକୁ ହେବ ନାହିଁ । ବିଶେଷତଃ ଯେଉଁ କାବ୍ୟମାନଙ୍କରେ ଶବ୍ଦାଡ଼ମ୍ବର ବିନା ("Childish quiblings about words, endless repetitions and all sorts of far fetched rhetorical puzzles.") ଆଉ କିଛି ଦେଖାଯାଏ ନାହିଁ , ସେଥିରୁ ଭଲ ଓ ବିଶୁଦ୍ଧ ଓଡିଆ ଶିଖିବା ନିତାନ୍ତ ଅସମ୍ଭବ । ଗଦ୍ୟରୁ ପଦ୍ୟ ଲେଖା ଯାଇ ପାରେ ଏହା ଅନେକ କୃତବିଦ୍ୟ ଲୋକ କହିଅଛନ୍ତି । କିନ୍ତୁ ପଦ୍ୟରୁ ବିଶୁଦ୍ଧ ଗଦ୍ୟ ଲେଖିବାର ଆମ୍ଭେ ଆଜି ପର୍ଯ୍ୟନ୍ତ କାହାଠାରୁ ଶୁଣି ନ ଥିଲୁଁ । ଏତେ କଥା କାହିଁକି ? ଉପେନ୍ଦ୍ରଭଞ୍ଜ, ସାମନ୍ତସିଂହାର, କୃଷ୍ଣଦାସ ପ୍ରଭୃତି ପୁରାତନ କବିମାନଙ୍କ ଗ୍ରନ୍ଥ ସମ୍ୟକ୍‌ରୂପେ ଆଲୋଚନା କରାଯାଇ ଲେଖା ହୋଇଥିବା ଦୁଇ ଚାରିଖଣ୍ଡ ଗଦ୍ୟ କାବ୍ୟ ଦେଖାଇଦିଅନ୍ତୁ । ଏଣିକି ଲୋକେ ଆପଣଙ୍କ ଉପଦେଶାନୁସାରେ ପୁସ୍ତକାଦି ଲେଖିବାରେ ପ୍ରବୃତ୍ତ ହେବେ ।

Parlakhemidy

18-5-02 ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ

*ଅତିରିକ୍ତ, ୨।୮।୧୯୦୨*

## [ଦିଲ୍ଲୀ ଦରବାରରେ ଓଡିଆ ପ୍ରତିନିଧି]

ଆମ୍ଭେମାନେ ଆନନ୍ଦର ସହିତ ଅବଗତ ହେଲୁଁ ଯେ ଓଡିଶାରୁ ମୟୂରଭଞ୍ଜର ରାଜା ଏବଂ ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ଦିଲ୍ଲୀ ଦରବାରରେ ଉପସ୍ଥିତ ହେବାର ଆମନ୍ତ୍ରଣପତ୍ର ମହାମାନ୍ୟ ଗବର୍ଣ୍ଣର ଜେନରଲଙ୍କ ଠାରୁ ପାଇଅଛନ୍ତି । ଓଡିଶାର ରାଜଗି ମଧ୍ୟରେ ମୟୂରଭଞ୍ଜ ସର୍ବାପେକ୍ଷା ବଡ଼ ଏବଂ ଓଡିଶା ବାସିଙ୍କର ପ୍ରତିନିଧି ସ୍ୱରୂପ ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ଦୁଇଥର ବଙ୍ଗୀୟ ବ୍ୟବସ୍ଥାପକ ସଭାର ସଭ୍ୟ ହୋଇଅଛି । ଅତଃପର ମାନ୍ୟବର ବଙ୍ଗେଶ୍ୱର ଙ୍କ ୨ ।୩ ଣ ନିମନ୍ତ୍ରଣ କରି ସଙ୍ଗେ ନେବାର କଥା ଅଛି । ମୟୂରଭଞ୍ଜର ରାଜା ଏ ପର୍ଯ୍ୟନ୍ତ ବିଶେଷ ଉପାଧି ପାଇ ନାହାନ୍ତି । ଆଶା କରୁଁ ଏଥର ସେ ତାହା ଲାଭ କରିବେ ।

*ଭାଗ୭ଗ, ସଂଖ୍ୟା୨ଖ୍ୟା, ୯।୮।୧୯୦୨*

## ପ୍ରେରିତପତ୍ର ।

## [ଓଡିଶାରେ ବଙ୍ଗଳା ନାଟକ]

ଶ୍ରୀଯୁକ୍ତ "ଉତ୍କଳଦୀପିକା" ସମ୍ପାଦକ ମହୋଦୟ

ସମୀପେଷୁ ।

ମହାଶୟ !

ପ୍ରବଳ ପ୍ରତାପ ସମ୍ରାଟ ଏଡୱାର୍ଡଙ୍କ ରାଜ୍ୟାଭିଷେକ ଉପଲକ୍ଷରେ ଭାରତବ୍ୟାପି ଗଭୀର ରାଜ

ଭକ୍ତିସୂଚକ ଯେଉଁ ଉତ୍ସବମାନ ଅନୁଷ୍ଠିତ ହୋଇଥିଲା କ୍ରମେ କ୍ରମେ ଆମ୍ଭେମାନେ ସେସବୁର ବିବରଣ ପାଉଅଛୁଁ। ଅନ୍ୟାନ୍ୟ ଅନୁଷ୍ଠାନ ମଧ୍ୟରେ ଏ ନଗରର ସାଠିଯା କୋମ୍ପାନୀଙ୍କର ନାଟକାଭିନୟ ଅନ୍ୟତମ ଥିଲା। ଆନ୍ତରିକ ରାଜଭକ୍ତିଦ୍ୱାରା ପ୍ରଣୋଦିତ ହୋଇ ଏହି ଦଳର ଯୁବକବୃନ୍ଦ ଅର୍ଥ ବ୍ୟୟ କରି "ବର୍ଦ୍ଧମାନ କୋଠା"ରେ ସୁଦୃଶ୍ୟ ଅଭିନୟ ମଣ୍ଡପ ରଚନା କରିଥିଲେ। ଅଭିଷେକ ରାତ୍ରରେ ମେଘ ବାଦ ସାଧିବାରୁ ତହିଁ ପର ରାତ୍ରରେ ଖଣ୍ଡିଏ ଓଡିଆ ନାଟକର ଏବଂ ଦୁଇ ଦିନ ପରେ ବଙ୍ଗଳାର ପ୍ରସିଦ୍ଧ କବି ଓ ନାଟକକାର ସ୍ୱର୍ଗୀୟ ରାଜକୃଷ୍ଣ ରାୟଙ୍କ ବିଖ୍ୟାତ ବଙ୍ଗଳା ନାଟକ "ତରଣୀସେନ ବଧ" ର ଅଭିନୟ କରିଥିଲେ। ଏ ଦିନ ଆମ୍ଭେମାନେ ଆହୂତ ହୋଇ ଅଭିନୟ ଦେଖିବାକୁ ଯାଇଥିଲୁଁ। ସୌଖିନ ଦଳ ପ୍ରତି ମୋଟାମୋଟି ଅଭିନୟ କ୍ରିୟା ନିତାନ୍ତ ମନ୍ଦ ବୋଲାଯାଇ ନ ପାରେ। ବରଂ କୋମ୍ପାନୀର ସଭ୍ୟମାନଙ୍କୁ ସର୍ବବିଧ ଉତ୍ସାହ ପ୍ରଦାନ କରିବା ସାଧାରଣର କର୍ତ୍ତବ୍ୟ। ସେ ଦିନ ବାହାଦୁରୀ ନେଇଥିଲେ ଭାଇ ଭଉଣୀ – ତରଣୀ ଓ କଳା। ଇନ୍ଦ୍ରଜିତ, ରାମ ଲକ୍ଷ୍ମଣ ପ୍ରଭୃତିଙ୍କର ଅଭିନୟ ମଧ ଉଲ୍ଲେଖଯୋଗ୍ୟ। କେବଳ ସରମାଙ୍କର ପାନଖିଲଦ୍ୱାରା ସୁଉଚ୍ଚ ଗାଲ ଏବଂ ଗର୍ଦ୍ଦଭ ବିନିନ୍ଦିତ ସୁକଣ୍ଠ ସରମକୁ ଧିକ୍କାର ଦେଉଥିଲା। ସ୍ଥୁଳତଃ ଅଭିନୟ ଦେଖି ଦର୍ଶକମଣ୍ଡଳୀ ପ୍ରୀତ ହୋଇଥିବାର ବୁଝା ଗଲା। ସେଥି ନିମିତ୍ତ ଆମ୍ଭେମାନେ ସାଠିଯା କୋମ୍ପାନୀଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛୁଁ। ମାତ୍ର ଓଡିଆ ଭଲ ନାଟକ ଥାଉଁ ଥାଉଁ ସାଠିଯା କୋମ୍ପାନୀ କାହିଁକି ବଙ୍ଗଳା ନାଟକର ଆଶ୍ରୟ ନେଲେ ବୁଝାଗଲା ନାହିଁ। ଏ ବିଷୟରେ କୋମ୍ପାନୀଙ୍କର କୈଫିୟତ୍ ଶୁଣିବାକୁ ଇଚ୍ଛା ହୁଏ। ପରନ୍ତୁ ଦେଖିଲୁଁ ଅଭିନେତାମାନଙ୍କର ଅଧିକାଂଶ ବିଦ୍ୟାଳୟର ଛାତ୍ର। ଛାତ୍ରମଣ୍ଡଳ ଏପ୍ରକାର ଆମୋଦ ପ୍ରମୋଦରେ ଯୋଗ ଦେବାର ଦେଖିଲେ ଆମ୍ଭେମାନେ ଅତ୍ୟନ୍ତ ବ୍ୟଥିତ ହୋଇଥାଉଁ। କେତେଗୁଡିଏ ବିଦ୍ୟାର୍ଥୀ ବାଳକମାନଙ୍କୁ ଆପଣା ଦଳଭୁକ୍ତ କରିଥିବାରୁ କୋମ୍ପାନୀର ମେନେଜର ମହାଶୟଙ୍କୁ ପ୍ରଶଂସା କରି ପାରିଲୁ ନାହିଁ। ଭବିଷ୍ୟତରେ ଏ ବିଷୟରେ ସୁବିବେଚନାପୂର୍ବକ କାର୍ଯ୍ୟ କରିବାକୁ ତାଙ୍କୁ ବିଶେଷଭାବରେ ଅନୁରୋଧ କରୁଅଛୁଁ।

କଟକ                                                  ଜଣେ ବନ୍ଧୁ

୨୦।୮।୦୨

*ଭାଗ୩୭ଗ, ସଂ୩୪ଖ୍ୟା, ୨୩।୮।୧୯୦୨*

## ପୁସ୍ତକ ପ୍ରାପ୍ତି ସ୍ୱୀକାର।
## [କଳାବତୀର ଭ୍ରମଣ ବୃତ୍ତାନ୍ତ]

**କଳାବତୀ:-** ଶ୍ରୀ ଅପନ୍ନାପଣ୍ଡାଙ୍କଦ୍ୱାରା ବିରଚିତ ଏବଂ ପାରଳାକ୍ଷମଟିର ଯନ୍ତ୍ରାଳୟରେ ମୁଦ୍ରିତ। ଏ ପୁସ୍ତକ ପେ ୧୬ ଜୀ ଫର୍ମାର ପୃ ୯୪ଷ୍ଠା ଅଧିକାର କରିଅଛି। କଳାବତୀ ନାମ୍ନୀ ଗୋଟିଏ ପଣ୍ଡିତା ଏବଂ ସ୍ୱାଧୀନା ରମଣୀର ଦକ୍ଷିଣଠାରୁ ହରିଦ୍ୱାର ପର୍ଯ୍ୟନ୍ତ ଭ୍ରମଣ ବୃତ୍ତାନ୍ତ ଏବଂ ବିବାହ ଉତ୍ତାରୁ ପତି ବିଯୋଗ ପରେ ହିମାଳୟ ପର୍ବତରେ ଯୋଗାଭ୍ୟାସରେ ନିରତା ହେବାର ବର୍ଣ୍ଣନା ଏଥିରେ ସନ୍ନିବେଶିତ ହୋଇଅଛି। ଏଥିର ଭାଷା ସରଳ ଏବଂ ଦକ୍ଷିଣରେ ଛାପା ହୋଇଥିଲେହେଁ ଦକ୍ଷିଣୀ ଭାଷାଦୁଷ୍ଟ ନୁହଇ । ବିଶେଷତଃ ଶ୍ରୀଯୁକ୍ତ ମଧୁସୂଦନ ରାଓ ଶ୍ରୀଯୁକ୍ତ ଫକୀରମୋହନ ସେନାପତି ଏହାକୁ ସଂଶୋଧନ କରିଅଛନ୍ତି। ଏ ପୁସ୍ତକ ପ୍ରକାଶ କରିବାର ଉଦ୍ଦେଶ୍ୟ ଗ୍ରନ୍ଥକାର ଭୂମିକାରେ ଏହିପରି ଲେଖିଅଛନ୍ତି କି "ଭାରତବାସୀ ବିଶେଷତଃ ଓଡିୟାମାନେ ଅଧୁନା ସଂସ୍କୃତ ହିନ୍ଦୁ ମତାବଲମ୍ବନ ପୂର୍ବକ କାଳ ଯାପନ କଲେ ସଭ୍ୟ ଜଗତରେ ଉଚ୍ଚ ସ୍ଥାନ ପ୍ରାପ୍ତ ହେବେ।"

ଦକ୍ଷିଣରେ ସ୍ତ୍ରୀମାନଙ୍କର ସ୍ୱାଧୀନତା ଥିଲେହେଁ ଲେଖକଙ୍କର ବର୍ଣ୍ଣନାନୁରୂପ ସ୍ୱାଧୀନତା ଦେଖିବା ଅନେକ ବିଳମ୍ବ ଅଛି। ବର୍ତ୍ତମାନ ସମୟରେ ଲେଖକଙ୍କ ସମ୍ମୁଖରେ ଏଭଳି ସ୍ୱାଧୀନା ରମଣୀର ଚିତ୍ର ରଖିଦେବା ବରଂ ଅନର୍ଥ ଜାତିର ଭୟ ହେଉଅଛି। କଥାପ୍ରସଙ୍ଗରେ ଲେଖକ ତୀର୍ଥ ସ୍ଥାନମାନଙ୍କର ଦୁଷ୍ଟ ପଣ୍ଡା ଓ ଅଧିକାରିମାନଙ୍କର

ପାଶବ ଚରିତ୍ର ଦେଖାଇ ଦେଇ ଭଲ କରିଅଛନ୍ତି ଏବଂ ଜାତୀୟ ସମିତି ଓ ମହାମାରୀଠାରୁ ଚନ୍ଦ୍ରଧନୁ ଏବଂ ବିଜୁଳିର ବାର୍ତ୍ତା ଲିପିବଦ୍ଧ କରିବାକୁ ଛାଡ଼ି ନାହାନ୍ତି। ସ୍ଥୂଳରେ ପୁସ୍ତକଟି ମନ୍ଦ ହୋଇ ନାହିଁ । ଏବଂ ଯେଉଁମାନେ ପଢ଼ିବେ ସେମାନଙ୍କର ଶ୍ରମ ବିଫଳ ହେବ ନାହିଁ ଓ ଅନେକ ସ୍ଥାନର ଅନେକ ଚିତ୍ର ଦେଖିବେ।

**ସାଥୀ ।-** ଶ୍ରୀ ଅନଙ୍ଗମୋହନ ଚକ୍ରବର୍ତ୍ତିଙ୍କ କର୍ତ୍ତୃକ ବିରଚିତ ଏବଂ କଟକ ରାୟ ପ୍ରେସ୍‌ରେ ମୁଦ୍ରିତ। ଏ ପୁସ୍ତକ ପେ ୧୬ଟୀ ଫର୍ମାର ପୃ ୧୦୬ଷ୍ଠା ଅଧିକାର କରିଅଛି। ଗ୍ରନ୍ଥକାର ଏଥିରେ ବିଲ୍ୱମଙ୍ଗଳ ଶଙ୍କରାଚାର୍ଯ୍ୟ, ରଘୁନାଥ ଗୋସ୍ୱାମୀ ପ୍ରଭୃତି କେତେକ ବିଖ୍ୟାତ ଭକ୍ତଙ୍କର ସଂକ୍ଷିପ୍ତ ଜୀବନୀ ଦେଇଅଛନ୍ତି। ଏଥିର ଭାଷା ମନ୍ଦ ନୁହେ ମାତ୍ର ସ୍ଥାନେ ସ୍ଥାନେ ବଙ୍ଗଳା ବାକ୍ୟ ବିନ୍ୟାସ ରହିଥିବାର ଦେଖା ଯାଏ। ପୁସ୍ତକଟି ପାଠ କଲେ ଭକ୍ତି ରସର ଉଦ୍ରେକ ହେବା ପ୍ରତି ସନ୍ଦେହ ନାହିଁ। ଭରସା କରୁଁ ଏ ପୁସ୍ତକ ସର୍ବସାଧାରଣରେ ଆଦୃତ ହେବ ଏବଂ ଲେଖକ ଉତ୍ସାହାନ୍ୱିତ ହେବେ।

**ଋତୁଚିତ୍ର ।-**ବାବୁ ନନ୍ଦକିଶୋର ବଳ ବି,ଏ, ଙ୍କ ପ୍ରଣୀତ ଏହା ଖଣ୍ଡିଏ କବିତା ପୁସ୍ତକ। ପେ ୧୬ ଟୀ ଫର୍ମାର ଏହା ପୃ୬୦ ଷ୍ଠା ଅଧିକାର କରିଅଛି। କବିତା କ୍ଷେତ୍ରରେ ନନ୍ଦକିଶୋର ବାବୁ ସୁପରିଚିତ ଏବଂ ଏଥିରେ ତାଙ୍କର ପୂର୍ବରୁ କବିତା ଲେଖିବାର ଖ୍ୟାତି ଅକ୍ଷୁଣ୍ଣ ରହିଅଛି। ସବୁ କବିତା ମଧ୍ୟରୁ ଆମ୍ଭମାନଙ୍କୁ 'ଆକାଶ' ବିଷୟକ କବିତାଟି ଭଲ ଲାଗିଲା। କବିତାମାନଙ୍କରେ ପ୍ରକୃତ କବିତା ଥିବାର ଦୃଷ୍ଟ ହେଉଅଛି ଏବଂ ଲେଖକ ଯେ କାଳେ ସୁକବି ହେବେ ତହିଁରେ ସନ୍ଦେହ ନାହିଁ।

**ସମ୍ରାଟ ଚରିତ ।-** ଶ୍ରୀ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ସମ୍ପାଦିତ ଏବଂ ଖଲିକୋଟ ଯନ୍ତ୍ରାଳୟରେ ମୁଦ୍ରିତ। ଏ ପୁସ୍ତକର କଳେବର ପୃ ୧୬ଷ୍ଠା ଏଥିରେ ସମ୍ରାଟଙ୍କର ଖଣ୍ଡିଏ ଚିତ୍ର ଦିଆ ଯାଇ ଅଛି ଏବଂ ତାହାଙ୍କର ଜନ୍ମ ସମୟରୁ ଅଭିଷେକ ପର୍ଯ୍ୟନ୍ତ ଜୀବନର ସଂକ୍ଷିପ୍ତ ଘଟନା ବର୍ଣ୍ଣିତ ହୋଇଅଛି। ସେହି ଅଭିଷେକ ଉତ୍ସବ ଉପଲକ୍ଷରେ ଏହା ଉପହାର ସ୍ୱରୂପ ପ୍ରଚାର ହେବାର ଜଣା ଯାଏ।

**ସଂସ୍କୃତ ବ୍ୟାକରଣ ୧ମ ଭାଗ -**ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଶର୍ମାଙ୍କଦ୍ୱାରା ପ୍ରଣୀତ ଏବଂ ମୟୂରଭଞ୍ଜର ଯନ୍ତ୍ରାଳୟରେ ମୁଦ୍ରିତ, ମୂଲ୍ୟ ଟ।/ ଗ୍ରନ୍ଥକାରକଙ୍କର ବିଜ୍ଞାପନରୁ ପ୍ରକାଶ ଯେ ସ୍ୱର୍ଗୀୟ ବିଦ୍ୟାସାଗର ମହାଶୟଙ୍କର ଉପକ୍ରମଣିକାର ଉତ୍କଳ ଅନୁବାଦ ଅପ୍ରାପ୍ତ ହେବାରୁ ସତ୍ୱାଧିକାରୀଙ୍କର ଅନୁମତିସହିତ ଏହା ସଂକଳିତ ହୋଇଅଛି। ସୁତରାଂ ଏଥିର ଅଧିକ ପରିଚୟ ଆବଶ୍ୟକ ନାହିଁ, ଏହାର କାଗଜ ଓ ଛାପା ଭଲ ଏବଂ ଅଳ୍ପ ସ୍ଥାନରେ ସାମାନ୍ୟ ମୁଦ୍ରାଭ୍ରମ ଛଡ଼ା ଅନ୍ୟ କିଛି ତ୍ରୁଟି ଦେଖିଲୁଁ ନାହିଁ। ଏହାଦ୍ୱାରା ବାସ୍ତବରେ ଗୋଟିଏ ଅଭାବ ଦୂର ହୋଇଅଛି ଏବଂ ଆମ୍ଭେମାନେ ଆଶାକରୁଁ ଯେଉଁମାନେ ସଂସ୍କୃତ ପଢ଼ିବାକୁ ଇଚ୍ଛା କରନ୍ତି ସେମାନେ ଏହା ଅଗ୍ରେ ପାଠ କରିବେ।

*ଭା୩୭ଭ,ସଂ୪୦ଖ୍ୟା, ୪।୧୦।୧୯୦୨*

## ରେବନସା କଲେଜରେ ପୁରସ୍କାର ବିତରଣ।

ଏ ନଗରସ୍ଥ ରେବନସା କଲେଜ ଏବଂ କଲିଜିଏଟ ସ୍କୁଲର ବାର୍ଷିକ ପୁରସ୍କାର ସଭା ଗତ ସୋମବାର ସକାଳ ଘ୮ଣ୍ଟା ସମୟରେ ହୋଇଥିଲା। ସଭା ଗୃହ ଏବଂ ହତା ଅନ୍ୟାନ୍ୟ ବର୍ଷ ପରି ବରଂ ତହିଁରୁ ଅଧିକ ସୁସଜ୍ଜିତ ହୋଇଥିଲା। ଇଉରୋପୀୟଙ୍କ ମଧ୍ୟରୁ କେବଳ ଶ୍ରୀଯୁକ୍ତ ଇୟଙ୍ଗ ହବେଲସ୍ ପାଦରି ସାହେବମାନେ ଏବଂ ଦେଶୀୟ ହିନ୍ଦୁ ମୁସଲମାନ ଭଦ୍ରଲୋକ ପ୍ରାୟ ଜ୪୦ଣ ଉପସ୍ଥିତ ହୋଇଥିଲେ। ଓଡିଶାର ଶ୍ରଦ୍ଧାସ୍ପଦ କମିଶନର ଶ୍ରୀଯୁକ୍ତ ଗୁପ୍ତ ସାହେବ ସଭାପତିର ଆସନ ଅଧିକାର କରିଥିଲେ। ପ୍ରଥମେ କଲେଜର ପ୍ରିନ୍ସପଲ ମହାଶୟ ଭୂତପୂର୍ବ ପ୍ରିନସିପଲ ବାବୁ ନୀଳକଣ୍ଠ ମଜୁମଦାରଙ୍କର ଅକାଳମୃତ୍ୟୁ ଏବଂ ତହିଁରେ କଲେଜର କ୍ଷତି ହୋଇଥିବାର ଦୁଃଖର ସହିତ ପ୍ରକାଶ କରି ସ୍ନ ୧୯୦୧/୦୨ ସାଲର ବାର୍ଷିକ ବିବରଣୀ ପାଠକଲେ। ତହିଁର ସଂକ୍ଷେପ ମର୍ମ ଏହିକି କଲେଜର ଛାତ୍ର ୧୩୧ ଠାରୁ ୧୫୩ କୁ ଏବଂ ଆୟ ଟ୬,୨୮୬ ଠାରୁ ଟ୬,୭୩୫ଙ୍କା କୁ ବୃଦ୍ଧି ହୋଇଅଛି ସୁତରାଂ ସରକାରୀ ବ୍ୟୟ ଗତବର୍ଷ ଟ୧୪,୨୩୦ ଙ୍କା ସ୍ଥଳେ ଏ ବର୍ଷ ଟ୧୩,୪୩୫ ଙ୍କା ହୋଇଅଛି।

ଏଫ,ଏ, ପରୀକ୍ଷାରେ ଜଣ୩୬ଣ ଏବଂ ବି,ଏ, ରେ ଜ୭ଣ ପାସ କରିଅଛନ୍ତି। ଗତବର୍ଷର ଅଙ୍କ ଯଥାକ୍ରମେ ୧୪ ଓ ୫ ଥିଲା। ମୁସଲମାନ ଛାତ୍ର ଜ୧୦ଣ ମଧ୍ୟରୁ ଏକଜଣ ବି,ଏ, ଏବଂ ଜ୨ଣ ଏଫ,ଏ, ପାସ କରିଅଛନ୍ତି। କଲେଜର ଗୃହରେ ବର୍ତ୍ତମାନ ସ୍ଥାନ ହେଉ ନାହିଁ। ଘର ବଢ଼ାଇବା କାରଣ ଗବର୍ଣ୍ଣମେଣ୍ଟ ଏଥର ଦଶହଜାର ଟଙ୍କା ମଞ୍ଜୁର ଏବଂ ଆଉ ଟ୧୮,୦୦୦ ଙ୍କା ଦେବାକୁ ଅଙ୍ଗୀକାର କରିଅଛନ୍ତି ମାତ୍ର ଭେଦା ଦ୍ୱାରା ଅନ୍ତତଃ ଆଉ ଟ୩୦,୦୦୦ ଙ୍କା ସଂଗ୍ରହ ହେବା ଆବଶ୍ୟକ। ଏହି କଲେଜ ଓଡିଶାରେ ଉଚ୍ଚଶିକ୍ଷାର ଏକମାତ୍ର ଉପାୟ ଥିବାରୁ ରାଜା, ଜମିଦାର ଏବଂ ଅପର ବଦାନ୍ୟ ବ୍ୟକ୍ତିମାନେ ମନୋଯୋଗୀ ହେଲେ ଏହି ଅଭାବ ପୂର୍ଣ୍ଣ ହେବା ବଡ଼ କଥା ନୁହେ। ମୁସଲମାନ ଛାତ୍ରାବାସ ଆଦୌ ନାହିଁ ଏବଂ ଏଠା ମୁସଲମାନ ସମାଜ ଭେଦାଦ୍ୱାରା ଦୁଇହଜାର ଟଙ୍କା ସଂଗ୍ରହ କରିବା ଯତ୍ନବାନ୍ ଥିବାର ଅବଗତ ହୋଇ ଶିକ୍ଷା ବିଭାଗର ଡାଇରେକ୍ଟର ସାହେବ ତହିଁର ଅଧେ ଅର୍ଥାତ୍ ଏକହଜାର ଟଙ୍କା ଦେବାକୁ ସମ୍ମତ ହୋଇଅଛନ୍ତି। ମାତ୍ର ତେତିକି ଯଥେଷ୍ଟ ନୁହେ। ଅଧିକ ଟଙ୍କା ସଂଗ୍ରହର ଚେଷ୍ଟା କରିବା ସମାଜର ଉଚିତ ହେଉଅଛି। ସରକାର ମଧ ତଦନୁସାରେ ଅଧିକ ଦାନ ଦେବେ। ହିନ୍ଦୁ ଛାତ୍ରାବାସରେ ମଧ ସ୍ଥାନ ନଅଣ୍ଟ ହୋଇଅଛି। ବର୍ତ୍ତମାନ୍ ଜ୬୦ଣ ଛାତ୍ରର ସ୍ଥାନ ଅଛି ମାତ୍ର ଶତାଧିକ ପ୍ରାର୍ଥୀ ଅଛନ୍ତି। ବର୍ତ୍ତମାନ ଛାତ୍ରାବାସ କେଉଁଝଡ଼ ମହାରାଜାଙ୍କର ପ୍ରଧାନ ଏବଂ ଅନ୍ୟ ଭଦ୍ର ଲୋକଙ୍କର ସାମାନ୍ୟ ସାହାଯ୍ୟରେ ପ୍ରସ୍ତୁତ ହୋଇଅଛି। ଅନ୍ୟାନ୍ୟ ରାଜାମାନେ ତାହାଙ୍କର ସାଧୁ ଉଦାହରଣର ଅନୁସରଣ କଲେ ଏ ଅଭାବ ମେଣ୍ଟିଯିବ। ପରିଶେଷରେ ମୁନସି ମହମ୍ମଦ ମଜହର ଗୋଟାଏ ପଦକ ରାୟ ଯଜ୍ଞେଶ୍ୱରଚନ୍ଦ୍ର ବାହାଦୁର ଅନେକ ଗୁଡିଏ ପୁସ୍ତକ ଆଉ ଜଣେ ନାମ ଅପ୍ରକାଶ୍ୟ ଭଦ୍ରଲୋକ ବ୍ୟାୟାମ ଶିକ୍ଷାର ଉତ୍ସାହାର୍ଥେ କେତେକ ପୁସ୍ତକ ପୁରସ୍କାର ଦେବାର ଏବଂ ଶ୍ରୀଯୁକ୍ତ ଗୁପ୍ତ ସାହେବ ଆଗାମୀ ବର୍ଷ ନିମନ୍ତେ ଟ୨୦ଙ୍କା ପୁରସ୍କାର ଦେବାର କୃତଜ୍ଞତା ସହିତ ସ୍ୱୀକାର କରି ରିପୋଟ ପାଠ ଶେଷ କଲେ। ତହୁଁ ଶ୍ରୀଯୁକ୍ତ ହେଡ଼ମାଷ୍ଟର ମହାଶୟ କଲେଜ ଅନ୍ତର୍ଗତ ସ୍କୁଲର ବାର୍ଷିକ ରିପୋଟ ପାଠ କଲେ। ତହିଁର ସଂକ୍ଷେପ ମର୍ମ ଏହି କି ଛାତ୍ରସଂଖ୍ୟା ୩୧୪ରୁ ୩୬୦କୁ ଉଠିଅଛି ଏବଂ ତହିଁ ମଧ୍ୟରେ ମୁସଲମାନ ସଂଖ୍ୟା ୨୬କୁ ୩୯ ହୋଇଅଛି। ଜ ୩୩ ଣ ପରୀକ୍ଷାର୍ଥୀ ମଧ୍ୟରୁ ଜ୨୧ଣ ଏଣ୍ଟ୍ରାନ୍ସ ପାସ କରିଅଛନ୍ତି ଏବଂ ସେମାନଙ୍କ ମଧ୍ୟରେ ଜ ୩ ଣ ମୁସଲମାନ ଅଟନ୍ତି।

ତଦନ୍ତର ଏକ ଏକ ଜଣ ଛାତ୍ରଙ୍କୁ ଡାକି ସଭାପତି ମହୋଦୟ ପୁରସ୍କାର ଦାନ କଲେ। ମାତ୍ର କାହାକୁ କି ବିଷୟରେ ପୁରସ୍କାର ଦିଆଗଲା ପ୍ରକାଶ ହେଲା ନାହିଁ। ଏ କାର୍ଯ୍ୟ ଶେଷକରି ସଭାପତି ମହାଶୟ ଏକ ଦୀର୍ଘ ବକ୍ତୃତା ପ୍ରଦାନ କଲେ ତାହା ତାହାଙ୍କର ଅନ୍ୟାନ୍ୟ ବକ୍ତୃତା ପରି ଅତି ମନୋହର ପାଣ୍ଡିତ୍ୟପୂର୍ଣ୍ଣ ଓ ଶିକ୍ଷାପ୍ରଦ ହୋଇଥିଲା। ସେହି ଇଂରାଜୀ ବକ୍ତୃତା ଅବିକଳ ଏହି ପ୍ରବନ୍ଧ ତଳେ ପ୍ରକାଶ କଲୁଁ। ସଂକ୍ଷେପରେ ତାହା ଏହି କି ସେ ଉଚ୍ଚଶିକ୍ଷାର ଉନ୍ନତି କରି ଏବଂ ଓଡିଶାର ମୁସଲମାନମାନଙ୍କର ସଂଖ୍ୟା ଅଳ୍ପ ହେଲେହେଁ ସେମାନଙ୍କୁ ଯଥୋଚିତ ଉତ୍ସାହ ଓ ଅଧ୍ୟବସାୟ ସହିତ ଉଚ୍ଚଶିକ୍ଷା ଲାଭରେ ଯତ୍ନବାନ୍ ଦେଖି ଅତ୍ୟନ୍ତ ସନ୍ତୋଷ ପ୍ରକାଶ କରି କହିଲେ କି ଶିକ୍ଷା ଓ ସାମାଜିକତା ସଭ୍ୟତାର ପ୍ରଧାନ ଅଙ୍ଗ ଅଟେ। ଏହି ଦୁଇର ପରସ୍ପର ସମ୍ବନ୍ଧ ଅର୍ଥାତ୍ ଏକର ଉନ୍ନତିରେ ଅନ୍ୟର ଉନ୍ନତି ଏବଂ ଉଭୟର ପରିବର୍ଦ୍ଧନରେ ସଭ୍ୟତାର ବୃଦ୍ଧି। ମନୁଷ୍ୟର ଆଦିମ ଅବସ୍ଥାରେ କ୍ଷୁଦ୍ର କ୍ଷୁଦ୍ର ଦଳର ପ୍ରାଦୁର୍ଭାବ ଥିଲା। କ୍ରମେ ସେ କ୍ଷୁଦ୍ରତା ବୃହତ୍ ଦଳରେ ପରିଣତ ହୋଇ ଆସୁଅଛି ଏବଂ ବାଷ୍ପ ଓ ବିଜୁଳି କଳ ସାହାଯ୍ୟରେ ସଭ୍ୟତାର ବୃଦ୍ଧି ସଙ୍ଗେ ଐକ୍ୟତାର ବାଟ ବିଶେଷ ପ୍ରସାର ହେଉଅଛି। ଏଥିର ପୋଷକତାରେ କେତେଗୁଡିଏ ସୁନ୍ଦର ଐତିହାସିକ ଉଦାହରଣ ଦେଖାଇ ସେ କହିଲେ ପାଣ୍ଡିତ୍ୟ ପ୍ରକାଶ କରିବା ଅଭିପ୍ରାୟରେ ଏ ପ୍ରସଙ୍ଗର ଅବତାରଣା କରି ନାହାନ୍ତି। ମାତ୍ର ଓଡିୟା ଓ ବଙ୍ଗାଳିଙ୍କ ମଧ୍ୟରେ ମନାନ୍ତର ଥିବାର ଅବଗତ ହୋଇ ଏ କଥା କହିବାକୁ ପ୍ରବୃତ ହୋଇଅଛନ୍ତି। ବଙ୍ଗାଳିମାନେ ଓଡିୟାଙ୍କୁ ତୁଚ୍ଛ ମନେ କରନ୍ତି ଏବଂ ଓଡିୟାମାନେ ବଙ୍ଗାଳିଙ୍କ ପ୍ରତି ଈର୍ଷାଭାବାନ୍ୱେଷଣ କରନ୍ତି। ଏମନ୍ତ ଭାବ ରହିବା ଉଚିତ ନୁହେ ଏବଂ ତାହା ଦୂର କରିବା ସକାଶେ ଉଭୟ ଦଳର ଜମିଦାର , ମହାଜନ, ବ୍ୟବହାରଜୀବୀ ସରକାରୀ କର୍ମଚାରୀ ବିଶେଷତଃ ସ୍କୁଲ ଶିକ୍ଷକମାନଙ୍କୁ ଦୃଢ଼ରୂପେ ଅନୁରୋଧ କରି ସର୍ବଶେଷରେ ନିମ୍ନଲିଖିତ ଶ୍ଳୋକ ପାଠ ପୂର୍ବକ ବକ୍ତୃତା ଶେଷ କଲେ। ଯଥା-

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଅୟଂ ନିଜଃ ପରୋ ବେତି ଗଣାନା ଲଘୁଚେତସାଂ
ଉଦାରଚରିତାନାନ୍ତୁ ବସୁଧୈବ କୁଟୁମ୍ବକଂ ।

ଅତଃପର ସଭାପତିଙ୍କୁ ଧନ୍ୟବାଦ ଦିଆଯାଇ ସଭା ଭଙ୍ଗ ହେଲା ।

ଓଡ଼ିଆ ଓ ବଙ୍ଗାଳିଙ୍କ ମଧ୍ୟରେ ଅମେଳର କଥା ଶୁଣି ଉଭୟ ପକ୍ଷର ଅନେକ ଲୋକ ମହା ବ୍ୟସ୍ତରେ ପଡ଼ିଅଛନ୍ତି ଏବଂ ଖୋଜି ଖୋଜି ତହିଁର ମୂଳ ନ ପାଇ ଏହି ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ଯେ କମିଶନର ସାହେବ ମହୋଦୟ ଯେ ସମ୍ବାଦ ଉପରେ ନିର୍ଭର କରି ଏତେବଡ ସାଧାରଣ ସଭାରେ ଏ କଥା ପ୍ରକାଶ କରିଅଛନ୍ତି ସେ ସମ୍ବାଦ ଅସମ୍ପୂର୍ଣ୍ଣ ଏବଂ ଉପଯୁକ୍ତ ତଦନ୍ତ ବିନା ସେ ତହିଁରେ ଆସ୍ଥାକରି ଭ୍ରମରେ ପଡ଼ିଅଛନ୍ତି । ବାସ୍ତବରେ ଉକ୍ତ ଅମେଳଟା ସାଧାରଣ ଭାବ ଧାରଣ କରିଥିଲେ ସମ୍ବାଦପତ୍ରରେ ତହିଁର ଚର୍ଚ୍ଚା ଲାଗିଥାନ୍ତା । ବର୍ତ୍ତମାନ ସ୍ଥାନ ଓ ସମୟର ଅଭାବ ହେତୁ ଏଥିର ଆଲୋଚନା କରିବାକୁ ଆମ୍ଭେମାନେ ଅକ୍ଷମ ହେଲୁଁ । ପାଠକମାନେ ବକ୍ତୃତା ପାଠ ଏବଂ ଉତ୍ତମରୂପେ ଚିନ୍ତା କରିବେ ଏବଂ ତହିଁରୁ ସଦୁପଦେଶ ଗ୍ରହଣ କରିବେ ।

We are met here again after a year to take note of the progress of high education in Orissa during the past twelve months. We have to deplore the sad death of the late Principal Babu Nilakantha Mazumdar, who by his ripe scholarship and devotion to duty did much to promote the interests of the College.

The report which the present worthy Principal has read to us shows that the number on the rolls has risen by 22, a very satisfactory increase, and the receipts also show a corresponding advance. The results of the University Examinations were eminently satisfactory, and it is gratifying to note that after an interval of 4 years two candidates succeeded in passing the law examination. The number of Mahomedan students is still low, though in the school Department there is a very perceptible increase. I may add that at Balasore, at Bhadrak and especially at Kendrapara I was pleased to observe the eagerness of Mahommedans to secure to themselves the benefits of English education. Having regard to the smallness of the Mahommedan element in Orissa, I am disposed to think that the number attending the schools and college is by no means discouraging and would compare favourably with that of many a Bengal District.

The four wants enumerated by the Principal are a satisfactory indication of the growing requirements of a progressive institution. The extension of the buildings has become an absolute necessity. The Principal is engaged in getting plans and estimates prepared, and when they are ready an appeal will be made for subscriptions, which together with the generous contribution from Government will it is hoped be adequate for our purpose.

As for the Mahommedan Hostel, it is time for the Mahommedan community to bestir itself and make a vigorous effort for raising funds, the Government, I understand, having promised to contribute half as much as is raised by private subscriptions. The generous public should bear in mind that every 100 Rs. now given would raise the funds by Rs. 150, and the opportunity should not be lost to secure what is wanted.

The School also shows a large increase in the number of boys, though the monthly average and the daily attendance fell off, which is to be regretted. A very important measure has been introduced in placing the Lower Classes on a vernacular basis and the experiment will be watched with interest, not unmixed with anxiety. The reports show that physical exercise and discipline have received due attention.

Following my usual practice on such occasions, I propose, with your permission to address you a few words of general interest.

What is known as civilization is marked by two essential features viz- Education and perception of corporate ideas.

The progress of civilization means the extension of education and growth of society. These two are most intimately connected with each other and are mutually interdependent. The savage man is a stranger to both. Like the brute creation from which he is but slightly removed, he lives solely for himself, regards every other human being as his foe, and is impelled only by those overpowering instincts which lie at the root of existence. He recognises no domestic tie and the sacred relations of family life are yet unknown to him. In short, each one lives as if he were a separate and independent unit: The next stage is the growth of domestic feelings and formation of families, with the senior member at the head, to whom the others render unquestioning obedience and who is well exemplified in the Hebrew patriarch and the Vedic Rishi.

With the further advance of civilization, groups of these enlarged units or families combine themselves into clans or tribes, living and prominent instances of which are to be found on the Afghan frontier, and relics of which still exist in the Mackenzies and Macphersons of the Scottish Highlands and the Rahtores and Chohans of Rajputana . Many were the bloody and mortal strifes that were fought by these clans and the Massacre of Glencoe is only one of the many cruel incidents of such internecine dissensions. But with the further march of civilization man soon throws off this circumscribed form of existence, and the clans and tribes are merged into races or nations on the basis of descent from common ancestors, real or supposed, but oftener on that of the fact of dwelling within certain geographical limits or owning the same Government. In early times the number of such political divisions was very large. Observe the multiplicity of races that once inhabited the British Isles, - Picts, Scots, Angles, Saxons, Celts & c. In India the number of small principalities used to be legion. Alexander the great found several hundred Chiefs in the Panjab alone. In backward countries such as Arabia and parts of Africa petty independent States still abound. Coming nearer home, the twenty Garjat States used to be constantly fighting with one another. But civilization which fused individuals

into families, family groups into clans and clans into races, is still doing its old work, and every step of its advance is ranked by further amalgamation. The history of nearly every country furnishes a clear record of the process. Great Britain is no longer distracted by tribal feuds nor divided into small kingdoms, as was the case before .The people are now proud to be the subjects of one sovereign and to be regarded as one nation. There is only one recognized language in the whole island, instead of a variety of dialects, and although enthusiasts occasionally appear who, as in Wales, fancy themselves the descendants of the ancient Druids and would perpetuate their unpronounceable speech, or as in Scotland, preserve the Gaelic if they could, the people as a whole have learnt to how to the inevitable and to accept the English as the dominant tongue, merely retaining in some cases their national brogues as a mild protest against the innovation.

In recent times immense strides have been made in the direction of unification concurrently with the spread of education and the development of Physical Science, for steam and electricity have done much to annihilate distance and time and to bring the peoples and countries together, and distinctions based on birth, creed, language or even on geographical reasons are fast disappearing. In Europe the numerous German principalities have combined under one Government since the Franco- Prussian war a little over thirty years ago, and their scattered peoples now constitute the great German nation. In America the Stars and Stripes give shelter to comers from all parts of the world. Russia has got the whole of Northern and Central Asia in her grasp. But the country which has done most, because she is the most civilized, to advance cosmopolitanism is, as you all know, England, for has she not got within her embrace, French Canada, Equatorial Africa, the whole of Australasia and last though not least, the great Continent of India. Within her enormorous area, extending over all parts of the globe are various nations and peoples of diverse creeds and languages, and whom the fostering care and the puissant civilization of the mother country is gradually moulding into .

It is needless to multiply examples. To the thoughtful student what do these facts and phenomena indicate ? Do they not conclusively demonstrate that the destiny of man is towards a common humanity, and that he is working surely, if slowly, to attain that ideal. Individuals form into a family,families combine into a tribe, tribes go to constitute races and nations, the number of which last has a constant tendency to diminish; even as the springs unite into a stream, streams into a rivulet, rivulets into larger rivers which again ultimately disappear in the all embracing ocean. Viewed in this light universal brotherhood is not a mere dream of the visionary but is the ultimate goal of civilization.

I have made these few observations, gentlemen, not with a view to inflict an academic discourse upon you but for introducing what I have now to say

in regard to the state of tension which, I am sorry to understand, exists between the people of Orissa and immigrants from other places, especially Bengalis. The complaint is that the Bengali treats the Uriya with superciliousness, or at best, with condenscension, which is naturally resented by the latter. I am not prepared to say that the charge is altogether groundless. I have lived in Orissa for many years and may fairly lay claim to an intimate knowledge of the country and the people, whom I love so well. I appreciate the virtues of the Urya and am not also blind to his weaknesses. I can say honestly that the attitude of superiority so often assumed by the Bengali is altogether wrong. Orissa has every reason to be proud of her exquisite scenery, of her hills, rivers lakes and sea, of her past glories the remains of which still excites the admiration of the beholder, of her celebrated fanes which are the most venerated in all India, and of her history which is a record of no mean achievements. In all these respects Bengal would come off a very poor second. In manners, customs and physiognomy the Bengali and the Urya approach each other most closely. The language of each is derived from the same stock, and if the excellence of a dialect is judged by the degree of its affinity **xxxx** will unquestionably carry the palm. In one matter Bengal has had an advantage, for it came into contact with English civilization half a century earlier. But this adventitious circumstance should not make the Bengali look down upon the Urya. The points of difference between the Urya and the Bengali are not greater nor more diverse than those between the English and the Scotch, and yet the two latter, notwithstanding previous quarrels, are now one nation and respect one another. There is no reason therefore, prima facie whyhe Urya and the Bengali should not get on together. Their good relations should not be disturbed by conceit on the one side and petty jealousy and suspicion on the other. They should receive fair and equal treatment and they should join hand in hand for the amelior a on of their common country and working out their common destiny. If in the one matter of western progress the Urya, through no fault of his, is some what backward and therefore temporarily needs a helping hand and receives it, the Bengali should not call it partiality.Equal treatment of one's own sons does not mean that the younger boy who is not yet out of his teens should be dealt with in the same way as his elder brother who has attained majority, completed his education and is out in the world ? On the contrary, it is simple fairness that the younger son should be trained and brought up with care until he is fit to look after himself. It is thus that the Urya must for sometime to come receive a certain amount of differential treatment which his state of pupilage demands. In this noble work of reconciliation we have a right to count upon the cordial and active co-operation of the educated members of both communities, whether they be traders or landed proprietors, members of learned professions or servants of Government. In this matter the teachers of the various schools occupy

an unique position, as from the nature of their duties they can do much to make or mar it . It behoves them, therefore, to rise to a due sense of their responsibility and by both precept and example do all they can to cultivate good feeling between Urya and Bengali boys. In the exercise of honest emulation in the class room or the play- ground, they will learn to forget their differences and to appreciate one another's good qualities, especially if they are properly guided by their masters. That the task is not inherently difficult is clear from the fact that the earlier Bengali immigrants who are settled in the country have made common cause with the people of the land, and the most influential organ of public opinion in Orissa is conducted by a domiciled Bengali. Gentlemen, I have now done. The spectacle of two peoples who ought to live as friends and brothers, engaged in mutual squabble and recrimination is not an edifying one. The existence of this ill feeling between them has been a source of much pain to me, and nothing will give me gratification than to see the younger generations brought up under a purer atmosphere and with a truer perception of their mutual relationship. To the descendants of Aryan fathers I cannot present a nobler sentiment than what is contained in the following couplet.

ଅୟଂ ନିଜଃ ପରୋବେତି

ଗଣନା ଲଘୁଚେତସାଂ ।

ଉଦାର ଚରିତାନାଂ ତୁ

ବସୁଧୈବ କୁଟୁମ୍ବକଂ ।

"This one is of us, that one is a stranger, so think the low minded ; but he who is of generous disposition claims kinship with the world."

*ଭା୍ଗ୭ଗ, ସଂ୪୦ଖ୍ୟା, ୪/୧୦/୧୯୦୨*

## [ସମ୍ବଲପୁରରେ ଓଡିୟା ଭାଷା]

ସମ୍ବଲପୁରରେ ଫ୍ରେଜର ପ୍ରିଣ୍ଟିଂ କମ୍ପାନିନାମରେ ଗୋଟିଏ ଯୌଥ ବ୍ୟବସାୟୀ ଦଳ ଗଠିତ ହୋଇଅଛି ଏବଂ ସେହି ଦଳ ବା କମ୍ପାନିଦ୍ୱାରା ମୁଦ୍ରାଯନ୍ତ୍ର ସ୍ଥାପିତ ହୋଇ ପୁସ୍ତକ ଫାରମ ଇତ୍ୟାଦି ଛାପାହେବାର ଆରମ୍ଭ ହୋଇଅଛି । ସମ୍ବଲପୁରର ଅଦାଲତ ସମୂହରେ ଓଡିୟା ଭାଷା ପୁନଃ ପ୍ରଚଳିତ ହେବା ମଧ୍ୟପ୍ରଦେଶର ଚୀଫ କମିସନର ମାନ୍ୟବର ଫ୍ରେଜର ସାହେବଙ୍କ ବିଶେଷ ଆନୁକୂଲ୍ୟତାରେ ସାଧିତ ହୋଇଥିବାରୁ ତାହା ଚିରସ୍ମରଣୀୟ ରହିବା ଉଦ୍ଦେଶରେ କମ୍ପାନୀ ଉକ୍ତ ନାମ ଧାରଣ କରିଅଛନ୍ତି । ସମ୍ବଲପୁରର ଏହି ଉନ୍ନତିସୂଚକ ବିଜ୍ଞାପନ ପାଇ ଆମ୍ଭେମାନେ ଆନନ୍ଦିତ ହୋଇ କମ୍ପାନୀର ସୁଖ ସମୃଦ୍ଧି କାମନା କରୁଁ । ମୁଦ୍ରାଯନ୍ତର ଉପକାରିତା ସାଧାରଣ ଶିକ୍ଷାର ବିସ୍ତାର ଉପରେ ନିର୍ଭର କରେ । ଶିକ୍ଷିତ ଲୋକର ସଂଖ୍ୟା ଯେତେ ବଢ଼ିବ ଏବଂ ଶିକ୍ଷା ଓ ବ୍ୟବସାୟରେ ଯେତେ ରତ ହେବେ ଯନ୍ତାଳୟର ପ୍ରୟୋଜନ ତେତେ ଅଧିକ ହେବ । ସ୍ୱଦେଶାନୁରାଗିଙ୍କର ଏହି ଦୁଇ ବିଷୟରେ ସମାନ ଦୃଷ୍ଟି ରହିବା ବାଞ୍ଛନୀୟ ।

*ଭା୍ଗ୭ଗ, ସଂ୪୨ଖ୍ୟା, ୧/୧୧/୧୯୦୨*

# ଓଡିୟା ଓ ବଙ୍ଗାଳିଙ୍କର ଅମେଳ।

ବହୁକାଳ ଅର୍ଥାତ୍ ବ ୪୦/୪୫ ର୍ଷ ପୂର୍ବେ ଏଠାରେ ଓଡିୟା ଓ ବଙ୍ଗାଳିଙ୍କ ମଧ୍ୟରେ ଭାରୀ ମନନ୍ତାର ଘଟିଥିଲା ଏବଂ କେତେଜଣ ନବାଗତ ଶିକ୍ଷା ବିଭାଗୀୟ ବଙ୍ଗାଳୀ କର୍ମଚାରିଙ୍କଦ୍ୱାରା ଉଦୟ ହୋଇଥିଲା। ସେମାନେ ଓଡିଶାରୁ ଉତ୍କଳଭାଷା ଉଠାଇ ଦେଇ ବଙ୍ଗଭାଷା ଚଳାଇବାର ଚେଷ୍ଟା କରିଥିଲେ। ସୁତରାଂ ଓଡିୟାମାନେ ନିଜଭାଷା ରକ୍ଷାର୍ଥେ ପ୍ରାଣପଣେ ତହିଁର ପ୍ରତିବାଦ କରିଥିଲେ। ପରିଶେଷରେ ଓଡିଶାର ପରମବନ୍ଧୁ ସେ ସମୟର କମିଶନର ଶ୍ରୀଯୁକ୍ତ ରେଭେନସା ସାହେବଙ୍କର ସୁମନ୍ତ୍ରଣା ଅନୁସାରେ ଗବର୍ଣ୍ଣମେଣ୍ଟ ନ୍ୟାୟ ବିଚାର କରି ଓଡିଶାର ସ୍କୁଲରେ ଓଡିୟାଭାଷା ସ୍ଥିର ରହିବା ଏବଂ ସ୍କୁଲମାନଙ୍କରେ କେବଳ ଓଡିୟାଭାଷା ଦେଶୀୟଭାଷା ସ୍ୱରୂପ ପ୍ରଚଳିତ ହେବାର ଆଦେଶ ଦେଲେ। ଏହି ଚୂଡାନ୍ତ ଆଦେଶଦ୍ୱାରା ବିବାଦର କାରଣଟି ଘୁଞ୍ଚି ଯିବାରୁ ଯାହା କିଛି ମନାନ୍ତର ଘଟିଥିଲା ତାହା ଘୁଞ୍ଚି ଯାଇଅଛି। ଓଡିୟା ଛାତ୍ରମାନେ ବଙ୍ଗାଳୀ ଶିକ୍ଷକଙ୍କୁ ଭକ୍ତି କରି ଶିକ୍ଷା ଲଭୁଅଛନ୍ତି, ଓଡିୟା ମଉକିଲମାନେ ବଙ୍ଗାଳୀ ଉକିଲଙ୍କୁ ବିଶ୍ୱାସ କରି ନିଯୁକ୍ତ କରୁଅଛନ୍ତି, ରୟତମାନେ ବଙ୍ଗାଳୀ ଜମିଦାର ବା ମାନେଜର ପ୍ରତି ଅଶ୍ରଦ୍ଧା ଦେଖାଉ ନାହାନ୍ତି ଏବଂ ଓଡିୟା ଓ ବଙ୍ଗାଳୀ ହାକିମ, ଉକିଲ, ଜମିଦାର ଓ ଅନ୍ୟାନ୍ୟ ଭଦ୍ରଲୋକ ପରସ୍ପରର ସାମାଜିକ କ୍ରିୟା ଏବଂ ଆମୋଦ ପ୍ରମୋଦରେ ଆନନ୍ଦରେ ଯୋଗ ଦେଉଅଛନ୍ତି। ବଙ୍ଗଳାର ବେଶଭୂଷାଦି ଅଳଙ୍କାର ଗୀତ ବାଦ୍ୟ ଯାତ୍ରା ପ୍ରଭୃତି ଓଡିୟାମାନେ ଆଗ୍ରହ ସହିତ ଗ୍ରହଣ କରୁଅଛନ୍ତି ଏବଂ ଓଡିୟା ଓ ବଙ୍ଗାଳୀ ପରସ୍ପରର ଅଧୀନରେ ଚାକରି କରିବାକୁ ଅସମ୍ମତ ହେବାର ତେଣିକି ଥାଉ ବରଂ ଖୋଜି ବୁଲୁଅଛନ୍ତି ଓ ପାଇଲେ ସନ୍ତୁଷ୍ଟ ହେଉଅଛନ୍ତି। ଯେବେ କି ବଙ୍ଗାଳିମାନେ ଅନେକ ପୂର୍ବରୁ ଉଚ୍ଚ ଶିକ୍ଷାର ସୁଯୋଗ ହେତୁ ଓଡିଆଙ୍କଠାରୁ ଅଧିକ ଯୋଗ୍ୟ ହୋଇ ବଡ ବଡ ଚାକରିରେ ଏ ଦେଶକୁ ଆସିଥିଲେ ଏବଂ ଅବଧି ଆସୁଅଛନ୍ତି। ମାତ୍ର ଓଡିଶାରେ ଯେତେ ଯୋଗ୍ୟଲୋକ ବାହାରୁଅଛନ୍ତି ତେତେ ସେମାନଙ୍କର ସଂଖ୍ୟା ଉଣା ପଡୁଅଛି। ତଥାଚ ବର୍ତ୍ତମାନ୍ ଜ୧୦/୨୫ ଣ ବଙ୍ଗାଳୀ ଓଡିଶାରେ ଚାକରି କରି ଯେତେ ରୋଜଗାର କରି ଘରକୁ ନେଇ ଯାଉଅଛନ୍ତି ତହିଁରୁ ଅନେକଗୁଣ ଅଧିକ ଧନ ଓଡିଶାର ସହସ୍ର ସହସ୍ର ଲୋକ ବଙ୍ଗଳାରୁ ରୋଜଗାର କରି ଆଣୁଅଛନ୍ତି । ଫଳତଃ ଯେଉଁଆଡ଼ ଦେଖ ଓଡିଶା ବଙ୍ଗଳା ମଧ୍ୟରେ ଏମନ୍ତ ଘନିଷ୍ଟ ସମ୍ବନ୍ଧ ହୋଇଅଛି ଯେ ଏକ ବିନା ଅନ୍ୟର ନିର୍ବାହ ହେବା କଠିନ ଏବଂ ଏହି ଘନିଷ୍ଟତା କ୍ରମାଗତ ବୃଦ୍ଧି ହେବାର ଲକ୍ଷଣ ଦେଖାଯାଉଅଛି। ବାସ୍ତବରେ ଓଡିଶାର ବଙ୍ଗଳା ସହିତ ଯେପରି ସମ୍ବନ୍ଧ ଦକ୍ଷିଣ ବା ପଶ୍ଚିମ ସହିତ ସେପରି ନାହିଁ। ଏ ସମସ୍ତ କଥା ବିଚାର କଲେ କିଏ ବୋଲିବ ଯେ ଓଡିୟା ଓ ବଙ୍ଗାଳିଙ୍କ ମଧ୍ୟରେ ମନାନ୍ତର ରହିଅଛି ଏବଂ ତାହା ଘୁଞ୍ଚାଇଦେବା ବିହିତ ଉପାୟ କରିବା ଉଚିତ। ଆମ୍ଭମାନଙ୍କର ଧାରଣା ଯେ ସେପରି ରୋଗ ନାହିଁ ଅଥବା ଜନ୍ମିବାର କାରଣ ନାହିଁ। ମାତ୍ର ଯେ ସ୍ଥଳେ ବିଭାଗୀୟ ଶାସନକର୍ତ୍ତା ତାହା ଥିବାର ଶୁଣିଅଛନ୍ତି ଏବଂ ନିଜର ସାଧୁଭାବ ଓ ଦାୟିତ୍ୱଦ୍ୱାରା ଚାଳିତ ହୋଇ ସାଧାରଣ ହିତାର୍ଥେ ତହିଁର ପ୍ରତିକାର ସକାଶେ ସକଳ ଶ୍ରେଣୀର ଲୋକଙ୍କୁ ଅନୁରୋଧ କରିଅଛନ୍ତି ସେ ସ୍ଥଳେ ସେ କଥାକୁ ଆଦୌ ଉଡାଇ ଦେଲେ ଚଳିବ ନାହିଁ। କେହି କେହି କହନ୍ତି କି ଏ କଥାର ପ୍ରକାଶ୍ୟ ଚର୍ଚ୍ଚା ଆଦୌ ଉଚିତ ହୋଇ ନାହିଁ ଯେହେତୁ ତଦ୍ୱାରା ଗୁପ୍ତ ରୋଗ ବୃଦ୍ଧି ହେବାର ଆଶଙ୍କା ଅଛି। ମାତ୍ର ଆମ୍ଭମାନଙ୍କର କ୍ଷୁଦ୍ର ବିବେଚନାରେ ଗୁପ୍ତ ରୋଗକୁ ପ୍ରକାଶ କରି ତହିଁର ଚିକିତ୍ସା କରିବା ସୁଚିକିତ୍ସକର କାର୍ଯ୍ୟ ଅଟେ, ହେଳା କଲେ ପଶ୍ଚାତକୁ ଅସାଧ ହୋଇ ପାରେ। ଯାହା ହେଉ ଯେତେବେଳେ ସବୁଠାରେ ଭଲ ଓ ମନ୍ଦ ଉଭୟ ଶ୍ରେଣୀର ଲୋକ ଅଛନ୍ତି ଏବଂ ଭାଇ ଭାଇ ମଧ୍ୟରେ ବେଳେ ବେଳେ ଅମେଳ ହେଉଅଛି ତେତେବେଳେ ଆମ୍ଭେମାନେ ଅନୁମାନ କରୁଅଛୁଁ କି କେହି କେହି କ୍ୱଚିତ୍ କେଉଁଠାରେ ଅମେଳ ହେବା ଅଥବା ଏକ ଶ୍ରେଣୀର କେହି ଲୋକ ଅପରଶ୍ରେଣୀର ଏକ ବ୍ୟକ୍ତିକୁ ଦେଖି ନ ପାରିବା କିମ୍ବା ମନରୁ ବା ହେଳାରେ କିଛି କଟୁ ପ୍ରୟୋଗ କରିବା ବିଚିତ୍ର ନୁହେ। ସୁଖର ବିଷୟ ଯେ ଏହା ସାଧାରଣ ନୁହେ ସୁତରାଂ ଧର୍ତ୍ତବ୍ୟ ନୁହେ । ଅନୁମାନ ହୁଅଇ କେହି କେହି ସ୍ୱାର୍ଥପର ଚତୁର ବ୍ୟକ୍ତି ଯୋଗ୍ୟତାଦ୍ୱାରା ନିଜର ବା ଭାଇ ବନ୍ଧୁର ଚାକରି ଲାଭର ଉପାୟ ନ ଦେଖି ଉକ୍ତ ସାମାନ୍ୟ କଥାକୁ ଯତ୍ନପୂର୍ବକ ସଜାଡି ହାକିମଙ୍କ କାନରେ ଗୋପନରେ ଢାଳି ଦେଇଅଛନ୍ତି। ଏ କାଣ୍ଡ ନିତାନ୍ତ ନୂତନ ନୁହେ। ବେଳେ ବେଳେ ସ୍ଥାନୀୟ ହାକିମ ବିଶେଷ କାହିଁକି ଗବର୍ଣ୍ଣମେଣ୍ଟଙ୍କର ଏମନ୍ତ ଭ୍ରମରେ

ପଡିବାକୁ ହୋଇଥିଲା ଯେ ଏ ଦେଶରେ ବହୁପୁରୁଷରୁ ସ୍ଥାୟୀରୂପେ ରହିଥିବା ବଙ୍ଗାଳିଙ୍କୁ ସୁଦ୍ଧା ବାରି ଦିଆ ଯାଇଥିଲା ଏବଂ ସେହି କାରଣରୁ କେତେଜଣ ଓଡ଼ିଆ ସବଡେପୁଟି ଓ ଡେପୁଟି ନିଯୁକ୍ତ ହୋଇଥିବା ସ୍ଥଳେ ସମାନ ଯୋଗ୍ୟ ଜଣେ ଏ ଦେଶୀୟ ବଙ୍ଗାଳିର ଭାଗ୍ୟରେ ତାହା ଘଟି ନ ଥିଲା । ଅତ୍ୟନ୍ତ ଭାଗ୍ୟର ବିଷୟ ଯେ ଓଡିଶାର ବର୍ତ୍ତମାନ୍ ପ୍ରଧାନ କର୍ମଚାରୀ ସୁବିଜ୍ଞ ମାନ୍ୟବର ଗୁପ୍ତ ସାହେବ ଭିନ୍ନ ପ୍ରକୃତିର ଲୋକ। ସେ ଅମେଳର କଥା ଶୁଣି ଲୁଚାଇ ନ ରଖି ସୁଯୋଗ ଦେଖି ପ୍ରକାଶ କରିଦେଇ ପ୍ରକୃତ ବନ୍ଧୁର କାର୍ଯ୍ୟ କରି ଅଛନ୍ତି। ଯଥା କେହି ପାରସ୍ୟ କବି କହିଅଛନ୍ତି କି ବନ୍ଧୁ ଆର୍ଶିପରି ହେବା ଉଚିତ ଯେ କି ସମ୍ମୁଖରେ ଦୋଷ କହି ଦିଏ ନତୁବା ସହସ୍ରମୁଖୀ ପାନିୟା ପରି ହେବା ଉଚିତ ନୁହେଁ ଯେ କି ପଛଆଡ଼ ଦୋଷ ସବୁ କହି ବୁଲେ।

*ଭା୩୭ଗ, ସଂ୪୨ଖ୍ୟା, ୮/୧୧/୧୯୦୨*

## [ଯୁଗଧର୍ମ ନାଟକ]

ଉତ୍କଳ ଭାଷାରେ କ୍ରମାଗତ କେତେ ଖଣ୍ଡ ନାଟକ ରଚନା କରିଥିବା ବାବୁ ରାମଶଙ୍କର ରାୟଙ୍କର ଆଉ ଖଣ୍ଡିଏ ନୂତନ ନାଟକ ଉପସ୍ଥାପନ କରୁଅଛୁଁ। ଏହାର ନାମ ଯୁଗଧର୍ମ ନାଟକ। ବିଜ୍ଞାପନ ସ୍ତମ୍ଭରେ ପ୍ରକାଶିତ ବିଖ୍ୟାତ ଓକିଲ ଶ୍ରୀଯୁକ୍ତ ମଧୁସୂଦନ ଦାସଙ୍କର ଇଂରାଜ ମନ୍ତବ୍ୟ ଏବଂ ପ୍ରେରିତପତ୍ର ସ୍ତମ୍ଭରେ ପ୍ରକାଶିତ 'କେହି ଜଣେ ପାଠକ' ସ୍ୱାକ୍ଷରିତ ଜଣେ ବନ୍ଧୁଙ୍କ ପତ୍ର ପାଠ କଲେ ପାଠକମାନେ ଏ ପୁସ୍ତକର ଯଥେଷ୍ଟ ପରିଚୟ ପାଇବେ। ସେ ସମ୍ବନ୍ଧରେ ଅଧିକ କିଛି ବୋଲିବାର ନାହିଁ। ଉତ୍କଳର କେତେଗୁଡିଏ ସମ୍ବାଦପତ୍ରରେ ଏହାର ଅନୁକୂଳ ସମାଲୋଚନା ବାହାରିଅଛି। ପ୍ରକୃତରେ ଏହା ଖଣ୍ଡିଏ ମନୋହର ପୁସ୍ତକ ଅଟେ ଏବଂ ଆମ୍ଭେମାନେ ଏହା ପାଠ କରିବା କାରଣ ସର୍ବସାଧାରଣଙ୍କୁ ବିଶେଷ ଅନୁରୋଧ କରୁଅଛୁଁ। ଏହାକୁ ପଢ଼ିଲେ କେବଳ ସାହିତ୍ୟ ପିପାସା ତୃପ୍ତି ହେବ ଏତିକି ନୁହେ ତହିଁ ମଧ୍ୟରେ ବର୍ତ୍ତମାନ କାଳର ଧର୍ମସମାଜ ଓ ରାଜକାର୍ଯ୍ୟ ସଂକ୍ରାନ୍ତ ଯେ ସମସ୍ତ ଭଲ ମନ୍ଦ ଚିତ୍ର ଯଥାର୍ଥ ଓ ସତେଜ ଭାବରେ ଅଙ୍କିତ ହୋଇଅଛି ତାହା ଦେଖି ଚିନ୍ତାଶୀଳ ସ୍ୱଦେଶାନୁରାଗୀ ମହାଶୟଙ୍କର ଭାବିବାର ଅନେକ ବିଷୟ ଅଛି।

*ଭା୩୭ଗ, ସଂ୪୫ଖ୍ୟା, ୨୨/୧୧/୧୯୦୨*

## ସନ ୧୯୦୨ ମସିହା ମଧ୍ୟଇଂରାଜୀ
## ବୃତ୍ତି ପରୀକ୍ଷାର ଫଳ।

| ନମ୍ବର | ଛାତ୍ରର ନାମ | ସ୍କୁଲର ନାମ | ଜିଲା ବା. କିଲା |
|---|---|---|---|
| | | ୧ମ ଶ୍ରେଣୀ ପାରଦର୍ଶିତାନୁସାରେ | |
| ୧ | ହରେକୃଷ୍ଣ ସାମନ୍ତ | ଚର୍ଛିକା | କଟକ |
| ୨ | ଅଟଳ ବିହାରୀ ଆଚାର୍ଯ୍ୟ | ନୀଳଗିରି | ଗଡଜାତ |
| ୩ | ରାଧାଶ୍ୟାମ ମହାନ୍ତି | ଚର୍ଛିକା | କଟକ |
| ୪ | ଗୁରୁପ୍ରସାଦ ଦାସ | ନୀଳଗିରି | ଗଡଜାତ |
| ୫ | ନିତ୍ୟାନନ୍ଦ ଦାସ | ଦେହୁଡ଼ା | ବାଲେଶ୍ୱର |
| ୬ | ରସୁଲବକ୍ସ | ପଟାମୁଣ୍ଡେଇ | କଟକ |
| ୭ | ସୁଦର୍ଶନ ମହାନ୍ତି | ନିମାପଡ଼ା | ପୁରୀ |
| ୮ | ଦୀନକୃଷ୍ଣ ପାଳ | ବାରବାଟି | ବାଲେଶ୍ୱର |
| ୯ | ମାକଣ୍ଡେୟ ମିଶ୍ର | ଡେଲାଙ୍ଗ | ପୁରୀ |
| | | ୨ୟ ଶ୍ରେଣୀ ପାରଦର୍ଶିତାନୁସାରେ ନୁହେ: – | |
| ୧ | ମଧୁସୂଦନ ଷଡ଼ଙ୍ଗୀ | ବଡ଼ଚଣା | କଟକ |

| | | | |
|---|---|---|---|
| ୨ | କୃଷ୍ଣଚନ୍ଦ୍ର ବଳ | ବଡ଼ଚଣା | କଟକ |
| ୩ | ମହେନ୍ଦ୍ର ବଲ୍ଲଭ ରାୟ | କୋଠପଦା | କଟକ |
| ୪ | ଚୌଧୁରୀ ଗୋପୀନାଥ ନନ୍ଦ | କାନପୁରମେଟକାପ୍ | କଟକ |
| ୫ | ହାଡିବନ୍ଧୁ ପଣ୍ଡା | ମୌଦା | କଟକ |
| ୬ | କିଶୋର ଚନ୍ଦ୍ର ପଟ୍ଟନାୟକ | କଟକମିଡ଼ଲ | କଟକ |
| ୭ | ଶ୍ୟାମବଲ୍ଲଭ ନନ୍ଦୀ | କଟକମିଡ଼ଲ | କଟକ |
| ୮ | କିଶୋରିଚରଣ କାନୁନ୍‌ଗୋ | ରୋମାନକାଥଲିକ | କଟକ |
| ୯ | କୃଷ୍ଣଚନ୍ଦ୍ର ମହାପାତ୍ର | ରୋମାନକାଥଲିକ | କଟକ |
| ୧୦ | ରସାନନ୍ଦ ସାହୁ | ବଳଦେବ | କଟକ |
| ୧୧ | ପ୍ରିୟନାଥ ଦାସ | ବଳଦେବ | କଟକ |
| ୧୨ | ଲୋକନାଥ ରାଉତ | ବଳଦେବ | କଟକ |
| ୧୩ | ଜଗନ୍ନାଥ ଶତପଥୀ | ଗଞ୍ଜା | କଟକ |
| ୧୪ | ଜଗବନ୍ଧୁ ଚୌଧୁରୀ | ପଟାମୁଣ୍ଡେଇ | କଟକ |
| ୧୫ | ବୃନ୍ଦାବନ ମହାନ୍ତି | ପଟାମୁଣ୍ଡେଇ | କଟକ |
| ୧୬ | ନିତ୍ୟାନନ୍ଦ ତ୍ରିପାଠୀ | ପଟାମୁଣ୍ଡେଇ | କଟକ |
| ୧୭ | ରାମଚନ୍ଦ୍ର ଦାସ | ଫକୀରାବାଦ | କଟକ |
| ୧୮ | ଜଗତବନ୍ଧୁ ଦାସ | ତେଣ୍ଡାକୋଡ଼ା | କଟକ |
| ୧୯ | ନିଶାକର ପଟ୍ଟନାୟକ | ତେଣ୍ଡାକୋଡ଼ା | କଟକ |
| ୨୦ | ରାମଚନ୍ଦ୍ର ମହାନ୍ତି | ତେଣ୍ଡାକୋଡ଼ା | କଟକ |
| ୨୧ | ବାଳକୃଷ୍ଣ କାନୁନ୍‌ଗୋ | ବାଲିକୁଦା | କଟକ |
| ୨୨ | କେଶବଚନ୍ଦ୍ର ଦାସ | କନକପୁର | କଟକ |
| ୨୩ | ମଧୁସୂଦନ ବିଶ୍ୱାଳ | ନୂଆଗାଁ | କଟକ |
| ୨୪ | ଭାଗୀରଥୀ ଦାସ | ନିମାପଡା | ପୁରୀ |
| ୨୫ | ନାରାୟଣ ମିଶ୍ର | ହରଚଣ୍ଡୀସାହୀ | ପୁରୀ |
| ୨୬ | ବଳଭଦ୍ର ମିଶ୍ର | ହରଚଣ୍ଡୀସାହୀ | ପୁରୀ |
| ୨୭ | ମହାଦେବ ରଥ | ହରଚଣ୍ଡୀସାହୀ | ପୁରୀ |
| ୨୮ | ଗୌରାଙ୍ଗ ଦତ୍ତ | ଡେଲାଙ୍ଗ | ପୁରୀ |

*ଭା୩୭ଗ, ସଂ୪୭ଖ୍ୟା, ୬।୧୨।୧୯୦୨*

## ପୁସ୍ତକପ୍ରାପ୍ତି ସ୍ୱୀକାର ।

**ଶତଦଳ ।–** କାଉପୁର ମଧ୍ୟୋତ୍କଳ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀ ଚିନ୍ତାମଣି ମହାନ୍ତି ପ୍ରଣୀତ। ମୂଲ୍ୟ ଦୁଇଅଣା। ଏଥିରେ ଭାରତୀ, ବସନ୍ତ ଏବଂ ଗ୍ରୀଷ୍ମ ଏହି ତିନିଗୋଟି ବିଷୟର କବିତା ଦିଆଯାଇ ପଛରୁ କେତେଗୁଡିଏ ଉପଦେଶ ମାଳା ସଂକଳିତ ହୋଇଅଛି। କବିତା ଗୁଡିକ ମନ୍ଦ ହୋଇ ନାହିଁ ଏବଂ ସରଳଭାଷାରେ ଲିଖିତ ହୋଇଥିବାରୁ ବାଳକଂାନଙ୍କର ପଢ଼ିବା ପକ୍ଷେ କୌଣସି ଅସୁବିଧା ନାହିଁ। କେତେକ ସ୍ଥଳରେ ଉପମାମାନ ଟଣାଟଣି କରି ଲଗାଇଥିଲେ ସୁଦ୍ଧା ନିତ୍ୟ ପ୍ରତ୍ୟକ୍ଷ ଘଟନା ଏବଂ ଦେଶପ୍ରଚଳିତ ସୁନୀତିମାନଙ୍କରୁ ଉପମା ସଂଗ୍ରହ କରିବାରେ ଲେଖକ ଯେ ପରିଶ୍ରମ କରିଅଛନ୍ତି ତାହା ବିଫଳ ହୋଇ ନାହିଁ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

**ପଣକିଆ ପରିଚୟ ।-** ଏହା ଅଗଣିରାଉତଙ୍କ ଦ୍ୱାରା ପ୍ରକାଶିତ। ଏଥିରେ କଡ଼ାର ଅଂଶ ଏବଂ ଛଟାଙ୍କି ସେର ମହଣ ଇତ୍ୟାଦିର ଧାରା ଦିଆଯାଇ ପଣକିଆରୁ ତହିଁର କି ରୂପେ ସାଧନ ହୋଇପାରେ ସେଥିର ଏକ ଦୀର୍ଘଗୀତ ଦିଆଯାଇଅଛି। ଏଥିରେ ପ୍ରକୃତରେ ଆମ୍ଭେମାନେ କୌଣସି ଗୁଣବତ୍ତାର ପରିଚୟ ପାଇପାରିଲୁଁ ନାହିଁ ଏବଂ ପିଲାମାନେ ସହଜରେ ବୁଝିପାରିବେ ବୋଲି ଗ୍ରନ୍ଥକର୍ତ୍ତା ଉତ୍ତରୋତ୍ତର ବହୁ ପରିଶ୍ରମ କରିଥିବାର କହିଥିଲେ ସୁଦ୍ଧା ପିଲାମାନେ ତହିଁରୁ କିଛି ଯେ ହୃଦୟଙ୍ଗମ କରିପାରିବେ ଏହା ଆମ୍ଭମାନଙ୍କର ବିଶ୍ୱାସ ନୁହେ। ତେବେ ଦୋକାନିମାନେ କିଛି ଉପକାର ପାଇଲେ ପାଇପାରନ୍ତି। ଏ ପୁସ୍ତକ ଶିକ୍ଷାବିଭାଗରେ ଚଳାଇବା ଲେଖକଙ୍କର ଉଦ୍ଦେଶ୍ୟ ଥିଲେ ତାହା ବୃଥା ଏବଂ ସେପରି ପରାମର୍ଶ ଆମ୍ଭେମାନେ ଦେଇ ନ ପାରୁଁ।

*ଭା୩୭ଗ, ସଂ୪୮ଖ୍ୟା, ୧୩।୧୨।୧୯୦୨*

## ପୁସ୍ତକପ୍ରାପ୍ତି ସ୍ୱୀକାର।

**ଖିଳହରିବଂଶ ।-** ଏହା ମୂଳ ହରିବଂଶରୁ ବାବୁ ଫକୀରମୋହନ ସେନାପତି ସରଳ ଓଡିଯାଭାଷାରେ ଅନୁବାଦ କରି ପ୍ରକାଶ କରିଅଛନ୍ତି । ଏଥିରେ କେବଳ ହରିବଂଶପର୍ବ ଅଛି ଏବଂ ବିଷ୍ଣୁପର୍ବ ଓ ଭବିଷ୍ୟପର୍ବ ପରେ ପ୍ରକାଶିତ ହେବାର ଲେଖିଅଛନ୍ତି। ବାରପେଜୀ ଫର୍ମାରେ ଏହା ପୃ ୨୫୬ଷ୍ଠା ଅଧିକାର କରିଅଛି ଏବଂ ମୂଲ୍ୟ ଏକଟଙ୍କା ମାତ୍ର। ଆମ୍ଭେମାନେ ଏହାକୁ ମୂଳରୁ ପ୍ରାନ୍ତପର୍ଯ୍ୟନ୍ତ ସ୍ଥିର ଭାବରେ ପାଠ କରିଅଛୁଁ। ଓଡିୟା ଜଗନ୍ନାଥଦାସଙ୍କ ଭାଗବତରୁ ଏହା ନଅ ଅକ୍ଷରିଆ ଛାନ୍ଦରେ ଲେଖାହୋଇ, ପଢ଼ିବାକୁ ଯେମନ୍ତ ଉପାଦେୟ ଭାଷା ମଧ୍ୟ ତଦନୁରୂପ ସରଳ ଏବଂ ପ୍ରାଞ୍ଜଳ ହୋଇଅଛି। ଫକୀରମୋହନ ବାବୁ ଉତ୍କଳସାହିତ୍ୟ କ୍ଷେତ୍ରରେ ଅପରିଚିତ ନୁହନ୍ତି। ତାଙ୍କର ମୂଳ ରାମାୟଣ ଓ ମହାଭାରତର ସରଳ ଅନୁବାଦ ଚିରକାଳ ତାଙ୍କର ନାମ ଅକ୍ଷୟରୂପେ ରଖିଥିଲେହେଁ ହରିବଂଶର ଅନୁବାଦ ସେ ନାମକୁ ସମୁଜ୍ଜ୍ୱଳ କରିଅଛି। ଭାଷା ଏମନ୍ତ ଚମତ୍କାର ହୋଇଅଛି ଯେ ଅନୁବାଦକଙ୍କର ନାମ ଲେଖା ନ ଥିଲେ ସହଜରେ ଜଗନ୍ନାଥଦାସଙ୍କର ଭାଷା ବୋଲି ଭ୍ରମ ଜନ୍ମିବାରେ କିଛି ମାତ୍ର ସନ୍ଦେହ ନାହିଁ। ଏହା ନିଃସନ୍ଦେହ ଉତ୍କଳରେ ସର୍ବତ୍ର ସମାଦୃତ ହେବ ଏବଂ ବଙ୍ଗଳା ମହାଭାରତର ଭଣିତାପଦ ପ୍ରାୟ ସମସ୍ତ ଓଡିୟାଙ୍କ ମନରେ "ସୁମରି ଶ୍ରୀହରି ଚରଣ । ଭଣଇ ଫକୀରମୋହନ" ଯୁଗେ ଯୁଗେ ଜାଗରୁକ ରହିବ।

**ପ୍ରକ୍ରିୟାକୌମୁଦୀ ବ୍ୟାକରଣ ୧ମ ଖଣ୍ଡ-** ଏହି ସଂସ୍କୃତ ଗ୍ରନ୍ଥ ତହିଁର ଟୀକା ଏବଂ ଉତ୍କଳ ଅନୁବାଦ ସହିତ ପଣ୍ଡିତ ଶ୍ରୀ ପୁରୁଷୋତ୍ତମ ତର୍କାଳଙ୍କାର ପ୍ରକାଶ କରିଅଛନ୍ତି । ଏହାର କଳେବର ପୃ୮୩ ଷ୍ଠା ଏ ନଗରର ଉତ୍କଳସାହିତ୍ୟ ଯନ୍ତ୍ରାଳୟରେ ମୁଦ୍ରିତ ମୂଲ୍ୟ ଟ ୦ ।୯ । ଏଥିର ୨ୟ ଖଣ୍ଡ ଯନ୍ତ୍ରସ୍ଥ ବୋଲି ବିଜ୍ଞାପନରୁ ପ୍ରକାଶ। ସଂସ୍କୃତ ଶିକ୍ଷାର୍ଥିମାନଙ୍କ ସାହାଯ୍ୟ ନିମନ୍ତେ ପଣ୍ଡିତ ମହାଶୟ ଏ ପୁସ୍ତକ ପ୍ରକାଶ କରିଅଛନ୍ତି ଏବଂ ଆଶା ହୁଅଇ ଯେଉଁମାନେ ଏହା ପାଠ କରିବେ ସେମାନେ ଉପକାର ପାଇବେ।

**ବସନ୍ତ କୋକିଳ**

**ସୀତାବନବାସ** -ଏହି ଦୁଇ ପଦ୍ୟପୁସ୍ତକ ବାବୁ ନନ୍ଦକିଶୋର ବଳ ବି ଏ ଙ୍କ ଦ୍ୱାରା ରଚିତ ଏବଂ ଏ ନଗରର ଉତ୍କଳସାହିତ୍ୟ ଯନ୍ତ୍ରାଳୟରେ ମୁଦ୍ରିତ। ପ୍ରଥମଟିର କଳେବର ପୃ୬୪ ଷ୍ଠା ଏଥିରେ ନାନାବିଷୟର କ୍ଷୁଦ୍ର କ୍ଷୁଦ୍ର କବିତା ଅଛି ଏବଂ ମୂଲ୍ୟ ଟ ୦ । । ଅନ୍ୟଟିର ଆକାର ପୃ ୫୨ ଷ୍ଠା ମୂଲ୍ୟ ଟ୦୵ ଏବଂ ନାମରୁ ବିଷୟର ପରିଚୟ ମିଳୁଅଛି। ଗ୍ରନ୍ଥକାର ବାବୁ ନନ୍ଦକିଶୋର ବଳ ସାହିତ୍ୟଗଗନର ଗୋଟିଏ ଉର୍ଦ୍ଧ୍ୱଗାମୀ ନକ୍ଷତ୍ର ଅଟନ୍ତି। ଉତ୍କଳସାହିତ୍ୟ ସେବାରେ ସେ କ୍ରମାଗତ ନିଯୁକ୍ତ ଥିବାର ଏବଂ ଉତ୍ତରୋତ୍ତର ପ୍ରଶଂସା ଲାଭ କରିବାର ଦେଖି ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ । ସମାଲୋଚିତ ଗ୍ରନ୍ଥମାନ ବହୁକାଳରୁ ଜନସାଧାରଣଙ୍କ ନିକଟରେ ଉପସ୍ଥିତ ହୋଇଥିବାରୁ ବର୍ତ୍ତମାନ ସେ ସମ୍ବନ୍ଧରେ ଆଉ କିଛି ବୋଲିବାର ପ୍ରୟୋଜନ ନାହିଁ। ଏହାକୁ ଉତ୍ସାହ ଦେବା କାରଣ ଆମ୍ଭେମାନେ ସର୍ବସାଧାରଣଙ୍କ ଏକାନ୍ତ ଅନୁରୋଧ କରୁଁ ।

*ଭା୩୭ଗ, ସଂ୪୯ଖ୍ୟା, ୨୦।୧୨।୧୯୦୨*

# ୧୮୮୯

## ଗଞ୍ଜାମ ଜିଲ୍ଲା କଚେରୀରେ ଓଡ଼ିଆ ଭାଷା ବ୍ୟବହାର ନିମନ୍ତେ ହରିହର ପଣ୍ଡାଙ୍କ ଅଭିମତ ।

ବହରମପୁର ସଦ୍ବିଷୟ ସାଧିନୀ ସମାଜର ସେକ୍ରେଟରୀ ଶ୍ରୀ ହରିହର ପଣ୍ଡା ଲେଖିଅଛନ୍ତି ଯେ ଚିରକାଳର ଗଞ୍ଜାମଜିଲ୍ଲାର ସମସ୍ତ କଚେରୀରେ ଲିଖନ ପଠନ କାର୍ଯ୍ୟ ଇଂରେଜି ଏବଂ ତେଲୁଗୁ ଅକ୍ଷରରେ ଚଳିଆସୁଅଛି , ଏଥିରେ ଜିଲ୍ଲାବାସୀ ଓଡ଼ିୟାମାନଙ୍କର ବିଶେଷ ଅସୁବିଧା ହେବାର ଓଡ଼ିୟାଭାଷା ଚଳାଇବା ନିମନ୍ତେ ଉତ୍କଳୀୟମାନେ ୧୮୭୧ ସାଲରେ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କରି ଆଦେଶ ପାଇଲେ ଯେ ଫୌଜଦାରୀ କାର୍ଯ୍ୟରେ ଓଡ଼ିୟାଭାଷା ଚଳିପାରିବ କିନ୍ତୁ ଏ ଦେଶର ହାକିମମାନେ ତ୍ରୈଲଙ୍ଗ ଥିବା ହେତୁ ସେମାନେ ନିଜର ସୁବିଧା ଆଡ଼କୁ ଦୃଷ୍ଟି ରଖି ଉକ୍ତ ଆଜ୍ଞା ପାଳନ ନ କରିବାର ଦେଶବାସୀ ଓଡ଼ିୟାମାନେ ନିରବ ହୋଇ ରହିଥିଲେ । ଗତ୍ତ ଜୁନ ମାସରେ ମାନ୍ଦ୍ରାଜର ପ୍ରଜାବତ୍ସଳ ଗବର୍ଣ୍ଣର ଲର୍ଡ କୋନେମାର୍ ଏ ଅଞ୍ଚଳକୁ ଆସିଥିଲା ସମୟରେ ବରହମପୁର ସଦ୍ବିଷୟ ସାଧିନୀ ଓ ପାରଳାଖିମିଣ୍ଡି ହିତୈଷିଣୀ ସଭାଦ୍ୱୟ ଉତ୍କଳୀମାନଙ୍କ ଉପରୋକ୍ତ ଅସୁବିଧା ମୋଚନାର୍ଥେ ଆବେଦନ କରିବାର ଗବର୍ଣ୍ଣର ମୋହଦୟ ତାହା ଜିଲ୍ଲା କଲେକ୍ଟରଙ୍କ ନିକଟ ମନ୍ତବ୍ୟ ଦେବା ନିମନ୍ତେ ପ୍ରେରଣ କରନ୍ତି, କଲେକ୍ଟର ମହୋଦୟ ମନ୍ତବ୍ୟ ଦେଲେ କି "ଯେଉଁ କାର୍ଯ୍ୟରେ ଓଡ଼ିୟା ଲେଖାପଢା ଆବଶ୍ୟକ ହୁଏ ସେ କାର୍ଯ୍ୟରେ ଓଡ଼ିୟା ବ୍ୟବହାର ହେଉ ଅଛି ।" ୨୬।୯।୮୯ ଖ୍ରୀଷ୍ଟାବ୍ଦରେ ବରହମପୁର ସଭାର ତତ୍ରତ୍ୟ ଜଜ ସାହେବଙ୍କଠାରୁ ଉକ୍ତ ବିଷୟରେ ଆବେଦନ ପତ୍ର ପଠାଇବାର ଉକ୍ତ ମହୋଦୟ ହାଇକୋର୍ଟକୁ ଲେଖି ସିଭିଲ କୋର୍ଟମାନଙ୍କରେ ପ୍ରଚୁର ପରିମାଣରେ ଓଡ଼ିୟାଭାଷା ବ୍ୟବହାର କରିବାକୁ ଆଦେଶ ପାଇଅଛନ୍ତି ବର୍ତ୍ତମାନ ଜଜସାହେବ ମହୋଦୟ ଦେଶବାସୀ ସମଗ୍ର ଓଡ଼ିୟାମାନଙ୍କର କଲ୍ୟାଣ ଭାଜନ ହୋଇଅଛନ୍ତି ମାତ୍ର କଲେକ୍ଟର ମହୋଦୟ ଯାହା ଅଧୀନସ୍ଥ କତିପୟ ତ୍ରୈଲଙ୍ଗ କର୍ମଚାରୀଙ୍କ ସୁବିଧା ନିମନ୍ତେ ସହସ୍ର ସହସ୍ର ଉତ୍କଳ ପ୍ରଜାଙ୍କ ସୁବିଧା ଆଡ଼କୁ ଦୃଷ୍ଟି ନ କଲେ ଏହା ତତ୍ରତ୍ୟ ଉତ୍କଳୀୟମାନେ ଭାବି ଅତ୍ୟନ୍ତ ଦୁଃଖିତ ଅଛନ୍ତି ।

*ଭା୧ଗ,ସଂ୨୪ଖ୍ୟା, ୧୧।୧୨।୧୮୮୯*

# ୧୮୯୦

## ଅନୁସନ୍ଧାନ ।
## ଓଡ଼ିଶାର ପାଠ୍ୟପୁସ୍ତକ ସମ୍ବନ୍ଧରେ ।

ଓଡ଼ିଶ୍ୟା ପାଠ୍ୟପୁସ୍ତକ ସମ୍ବନ୍ଧରେ କି କି ଆପତ୍ତି ଉତ୍ଥାପିତ ହୋଇଥିଲା ତାହା ଓଡ଼ିଶ୍ୟାର କୌଣସି ସମ୍ବାଦପତ୍ରର ବିଶଦ ରୂପେ ଜଣାଯାଉନାହିଁ ମାତ୍ର କଟକର ତାର ସମ୍ବାଦର ଜଣାଯାଉଅଛି ଯେ ଓଡିଶ୍ୟା-ସ୍କୁଲ ଜଏଣ୍ଟ ଇନ୍‌ସପେକ୍ଟର ବାବୁ ରାଧାନାଥ ରାୟ ଏବଂ କଟକ ଜିଲ୍ଲାର ଡେପୁଟୀ ଇନ୍‌ସପେକ୍ଟର ବାବୁ ମଧୁସୂଦନ ରାଓ ଆପଣାର ପ୍ରଣୀତ ଓଡ଼ିୟା ପୁସ୍ତକମାନ ସ୍କୁଲରେ ଚଳାନ୍ତି, ପାଠଶାଳାରେ ଆପଣା ଆପଣା ପୁସ୍ତକ ପାରିତୋଷିକ ରୂପେ ପ୍ରଦାନ କରନ୍ତି । ପୁସ୍ତକ ମୂଲ୍ୟ ଅବଧାନମାନଙ୍କ ପ୍ରାପ୍ୟ ଟଙ୍କାର ଆଗତୁରା କାଟି ନିଅନ୍ତି, ଏମାନଙ୍କ ପ୍ରଣୀତ ପୁସ୍ତକମାନଙ୍କର ମୂଲ୍ୟ ଅଧିକ, ଅନ୍ୟ ପ୍ରଣୀତ ଉପଯୁକ୍ତ ପୁସ୍ତକ ଏମାନଙ୍କ ଯୋଗୁଁ ଅନାଦୃତ ହେଉଅଛି, ଏହିସବୁ ବିଷୟ ପଣ୍ଡିତ ଗୋବିନ୍ଦ ରଥ ଡାଇରେକ୍ଟରଙ୍କୁ ଜଣାଇବାର ସେ ତଦନ୍ତ ନିମିତ୍ତ ବ୍ରହ୍ମମୋହନ ବାବୁଙ୍କ ଠାରେ ଭାର ଅର୍ପଣ କରିଅଛନ୍ତି ମାତ୍ର ବ୍ରହ୍ମମୋହନ ବାବୁଙ୍କ ତଦନ୍ତ ପ୍ରଣାଳୀ ପ୍ରକୃତ ନିର୍ଣ୍ଣୟ ପକ୍ଷେ ଅନୁପଯୋଗୀ ବୋଲି ବୋଧହୁଏ, ଆଉ ରଥ ମହାଶୟ ଯେତେବେଳେ ଏହି ବିଷୟମାନ ଡାଇରେକ୍ଟରଙ୍କ ଶ୍ରୁତିଗୋଚର କରାଇ ଅଛନ୍ତି, ତେତେବେଳେ ଲିଖିତ ବିଷୟର ସତ୍ୟତା ପ୍ରତିପନ୍ନ ବିଷୟରେ ଯତ୍ନବାନ ହେବା ତାଙ୍କର କର୍ତ୍ତବ୍ୟ ଅଟଇ ।

ପୂର୍ବେ ବ୍ରହ୍ମମୋହନ ବାବୁ ମଧ ବର୍ଦ୍ଧମାନ ବିଭାଗର ପାଠ୍ୟପୁସ୍ତକର ଲିଷ୍ଟରେ ଲେଖିଥିଲେ ଯେ କେବଳ ବ୍ରହ୍ମମୋହନ ମଲ୍ଲିକଙ୍କ କ୍ଷେତ୍ରତତ୍ୱ ପଢ଼ାଇବାକୁ ହେବ, ଏକଥା ଯଥା କାଳରେ ପ୍ରକାଶ କରିଅଛୁଁ । ତଥାପି ତଦନ୍ତଭାର ଗ୍ରହଣ କରିଥିବାର ନିରପେକ୍ଷ ଭାବରେ ତାହା ସମ୍ପନ୍ନ କରିବା ଉଚିତ୍ ।

*ଭା।୧ଗ,ସଂ୪୨ଖ୍ୟା, ୧୬।୪।୧୮୯୦*

# ୧୮୯୧

## ଆମ୍ଭ ମାନଙ୍କ ଉନ୍ନତିର ଅନ୍ତରାୟ ।

ବିଶାଳ ଭାରତର ଗୋଟିଏ ସାମାନ୍ୟ ନଗଣ୍ୟ ପ୍ରଦେଶ । କେବଳ ଜଗନ୍ନାଥ ଦେବଙ୍କ ମନ୍ଦିରର ବିଦ୍ୟମାନତା ହେତୁ ଭାରତର ବିଭିନ୍ନ ଦେଶର ଲୋକମାନେ ଉତ୍କଳର ନାମ ଜାଣନ୍ତି । ଆମ୍ଭମାନଙ୍କର ଜାତୀୟଭାଷା ଓଡ଼ିଆ ଅଟଇ,ଏହି ଭାଷା ଉତ୍କଳର ସୀମା ପାର ହେବା ତେଣିକି ଥାଉ ସମଗ୍ର ଉତ୍କଳରେ ମଧ ସମ୍ୟକରୂପେ ଆଦୃତ ବା ପ୍ରଚାରିତ ହେଉ ନାହିଁ । ବର୍ତ୍ତମାନ ଉତ୍କଳଭାଷା କେବଳ ଉତ୍କଳର ରାଜକୀୟ ସୀମା ମଧରେ ଆବଦ୍ଧ । ଉତ୍କଳର ଏକ ଅଂଶ ବଙ୍ଗରେ, ଏକ ଅଂଶ ଛୋଟନାଗପୁରରେ, ଏକ ଅଂଶ ମଧ୍ୟପ୍ରଦେଶରେ, ଏକାଂଶ ମାନ୍ଦ୍ରାଜରେ ମିଶିଥିବାରୁ ରାଜକୀୟ ଅଂଶାନୁସାରେ ସେମାନେ ଉତ୍କଳର ପୃଥକ ଅଟନ୍ତି । ବିଭକ୍ତ ପ୍ରଦେଶରେ ମିଶିଥିବା ଉତ୍କଳାଂଶର ଲୋକମାନେ ରାଜକୀୟ ଉତ୍ସାହ ନ ପାଇବାର ସେମାନେ ନିଜର ମାତୃଭାଷା ତ୍ୟାଗ କରି ହିନ୍ଦି, ତେଲିଙ୍ଗୀ, ବଙ୍ଗଳାକୁ ନିଜର ମାତୃଭାଷା ପରିବର୍ତ୍ତେ ବ୍ୟବହାର କରିବାକୁ ବାଧ ହୋଇଅଛନ୍ତି । ସମ୍ବଲପୁର ଜିଲ୍ଲା ଉତ୍କଳର ଗୋଟିଏ ଅଂଶ ଥିବା ଏବଂ ତହିଁରେ ପ୍ରଚୁର ପରିମାଣରେ ଓଡ଼ିୟା ବାସ କରଥିବାର ସମ୍ବଲପୁର ଶିକ୍ଷା ବିଭାଗରେ ଓଡ଼ିୟା ପାଠ୍ୟ ପୁସ୍ତକ ଚଳୁଅଛି, ତଥାପି ବିଭିନ୍ନ ଭାଷୀ ଲୋକଙ୍କ ସହିତ ରାଜନୈତିକ ସମ୍ବନ୍ଧ ରହିଥିବାରୁ ସେମାନଙ୍କ ମାତୃଭାଷା ଶ୍ରୀସମ୍ପନ୍ନା ହୋଇ ପାର ନାହିଁ **XXXX** ଓଡ଼ିୟାମାନଙ୍କର ଅବସ୍ଥାକୁ **XXXX** ଭଲ ବିଚାର କରିଅଛନ୍ତି । ଶୁଣିଅଛୁଁ ଗଞ୍ଜାମ **XXXX** ଓଡ଼ିଆମାନଙ୍କର ଉତ୍କଳଭାଷା ପଢିବାର ସୁବିଧା **XXXX** ଅଦାଲତର କାଗଜପତ୍ର ଇଂରେଜୀ ତେଲିଙ୍ଗ ଭାଷାରେ ବ୍ୟବହାର ହୁଏ । ବଣାଇ ପ୍ରଭୃତି **XXXX** ଭୁକ୍ତ ଉତ୍କଳାଂଶରେ ହିନ୍ଦୀ ଚଳଇ, **XXXX** ପ୍ରଦେଶାଂଶରେ ବଙ୍ଗଳା ଚଳଇ । ଏଥିରୁ **XXXX** ଓଡ଼ିଆ-ଭାଷାର ବ୍ୟବହାର **XXXX** ପୁଣି ଅନେକ ଉତ୍କଳୀ ଅସୁବିଧା **XXXX** ହେତୁର ନିଜର ମାତୃଭାଷାର ଉନ୍ନତି ଏବଂ ପ୍ରତିବାଦ **XXXX** ବର୍ତ୍ତମାନ ଯାହା ଅଛି ତାହା **XXXX** ।

ଓଡ଼ିଆ ଅଶିକ୍ଷିତ ଥିବା କାରଣରୁ ଓଡ଼ିଆ-ଭାଷାର ଶ୍ରୀବୃଦ୍ଧିସାଧନରେ ବିଘ୍ନ ଘଟୁଅଛି , ଉତ୍ସାହି ଅଭାବରେ, କାଟତି ଅଭାବରେ ସୁଲେଖକମାନେ ଲେଖନୀ ତ୍ୟାଗ କର ଅଛନ୍ତି । କିନ୍ତୁ ଭାଷା ଗ୍ରନ୍ଥ ବିସ୍ତୃତିରେ ଜାତୀୟଭାଷା, ଜାତୀୟ ସାହିତ୍ୟର ଉନ୍ନତି ହୋଇଥାଏ । ଅତଏବ ଜାତୀୟଭାଷାର ଉନ୍ନତି ନିମନ୍ତେ ବିଭିନ୍ନ ପ୍ରଦେଶ ବାସି ଓଡିଆଙ୍କର ଅସୁବିଧା ଏବଂ ମନୋକଷ୍ଟ ଦୂର କରିବା ସକାଶେ ସେହି ସେହି ସ୍ଥଳରେ ଓଡ଼ିଆ ଭାଷାର ବ୍ୟବହାର ବୃଦ୍ଧି କରିବା ପ୍ରୟୋଜନ ବୋଧକରି ରାଜାଙ୍କ ପ୍ରବୃତି ଆକର୍ଷଣ କରିବା ଉଚିତ । ତାହା ନ ହେବାର ଆମ୍ଭମାନଙ୍କର ଉନ୍ନତିରେ ବିଘ୍ନ ଘଟୁ ଅଛି । ସେହି ଉନ୍ନତି ପଥକୁ ନିଷ୍କଣ୍ଟକ କରିବା ସ୍ୱଦେଶାନୁରାଗୀ ମହାତ୍ମାମାନଙ୍କର ପ୍ରଧାନ କର୍ତ୍ତବ୍ୟ ।

*ଭା୨ଗ, ସଂ୫୨ଖ୍ୟା, ୧୭/୬/୧୮୯୧*

## ମାନ୍ଦ୍ରାଜ ଓଡ଼ିୟାଶିକ୍ଷା ସମାଜ।

ମାନ୍ଦ୍ରାଜ ପ୍ରଦେଶର ଓଡ଼ିଆମାନଙ୍କର ମାତୃଭାଷା ଶିକ୍ଷାର ପ୍ରକୃଷ୍ଟ ଉପାୟ ନଥିବା କଥା 'ଉନ୍ନତିର ଅନ୍ତରାୟ' ନାମକ ପ୍ରବନ୍ଧରେ ଉଲ୍ଲେଖ କରାଯାଇଥିଲା । ବର୍ତ୍ତମାନ ଉତ୍‌କଳଦୀପିକାର ଅବଗତ ହେଲୁ ଯେ ଗତ ଜୁନ ମାସ ତା ୨ ୨ ରିଖରେ ଗଞ୍ଜାମ ଅନ୍ତର୍ଗତ ପାରଳାଖେମୁଣ୍ଡିଠାରେ ଶୀର୍ଷବିନ୍ୟସ୍ତ ନାମରେ ଗୋଟିଏ ସଭା ହୋଇ ଧାର୍ଯ୍ୟ ହେଲା ଯେ ଓଡ଼ିଆ ପିଲାମାନଙ୍କର ମାତୃଭାଷା ଶିକ୍ଷାର ବ୍ୟୟ ନିର୍ବାହ ନିମିତ୍ତ ଅର୍ଥ ସଂଗୃହିତ ହୋଇ "ମାନ୍ଦ୍ରାଜ ଓଡିଆଶିକ୍ଷା ଫଣ୍ଡ" ନାମକ ଗୋଟିଏ ଫଣ୍ଡ ରଖାଯିବ । ଗଞ୍ଜାମର ବରହମପୁରଠାରେ ୧୮୯୨ ସାଲରେ ଓଡ଼ିଆ ଶିକ୍ଷା ସମିତିର ପ୍ରଥମାଧିବେଶନରେ ସଂଗୃହିତ ଅର୍ଥ ଅର୍ପିତ ହେବ । ଏହି ନୂତନ ସଭାର ଅଧିବେଶନ, ମାସରେ ଥରେ ହେବା କଥା ସେହିମାସ ତା ୨୬ରିଖ ସଭାଧିବେଶନରେ ନିଷ୍ପିତ ହେଲା । କେତେକ ତୈଲଙ୍ଗୀ ଏହି ସଭାରେ ଯୋଗଦେଇଥିବା ଅଧିକ ଆନନ୍ଦର ବିଷୟ । ସଭାର ସଦୁଦ୍ଦେଶ୍ୟ ନିର୍ବିଘ୍ନରେ ସିଦ୍ଧହେବା କାମନା କରଅଛୁଁ । ଉଦ୍ଦେଶ୍ୟ ସାଧନ ବିଷୟରେ ସମଗ୍ର ଓଡ଼ିଆ ମାନଙ୍କର ସାହାଯ୍ୟ ଓ ଯତ୍ନକରିବା ବାଞ୍ଛନୀୟ ।

*ଭା୩ଗ, ସଂ୬ଖ୍ୟା, ୨୯।୭।୧୮୯୧*

# ୧୮୯୨

## ଓଡ଼ିଶ୍ୟାର ସମ୍ବାଦପତ୍ର

ଅନେକଙ୍କ ଆକ୍ଷେପ "ଉତ୍କଳରେ ଉପଯୁକ୍ତ ସମ୍ବାଦପତ୍ର ନାହିଁ-ଏହି କାରଣରୁ ପରା ସେମାନେ ଉତ୍କଳୀୟ ସମ୍ବାଦପତ୍ର ସହିତ ସମ୍ବନ୍ଧ ରଖନ୍ତି ନାହିଁ ।" ଏପରି ଯେଉଁମାନେ ସମ୍ମୁଖରେ କହନ୍ତି ସେମାନଙ୍କୁ ସମ୍ମୁଖରେ ତହିଁର ଉତ୍ତର ଦିଆଯାଇଥାଏ । ଦେଶର ଲୋକମାନଙ୍କର ସମ୍ବାଦପତ୍ର ପ୍ରତି ଯେତେ ଅଧିକ ଶ୍ରଦ୍ଧା ବଢ଼ିବ ସମ୍ବାଦପତ୍ରର ଉନ୍ନତି ତେତେ ଅଧିକ ହେବ । ସମ୍ବାଦପତ୍ରକୁ ଉପଯୁକ୍ତ କରିବା ପତ୍ରପରିଚାଳକମାନଙ୍କର କର୍ତ୍ତବ୍ୟ- କିନ୍ତୁ ତାହା ସାଧାରଣଙ୍କ ସହାନୁଭୂତି ବଳରେ । ଯେବେ ଅନୁପଯୁକ୍ତ ବୋଧ କରି ସମ୍ବାଦପତ୍ର ସମ୍ପର୍କ ବିହିନ ହୋଇ ସମସ୍ତେ ରହିବେ, ତେବେ ପତ୍ର କିପରି ଉନ୍ନତି ଲାଭ କରିବ ? ଓଡ଼ିଶ୍ୟାରେ ବର୍ତ୍ତମାନ ଯେଉଁ କେତେକ ଖଣ୍ଡ ସମ୍ବାଦପତ୍ର ଚଳୁଅଛି ତନ୍ମଧ୍ୟର କାହାରି ଅଧିକ ଆୟ ହେବାକୁ ନାହିଁ । ସ୍ଥଳ ଓ ସମୟ ବିଶେଷରେ ପତ୍ର ପ୍ରଚାରରେ ବ୍ୟୟିତ ହେଉଥିବା ଅର୍ଥ ମିଳିବା ଅସମ୍ଭବ । ଏପରି ଦଶାରେ ବାହିକା, ଦୀପିକା ବ ୨ ୫ ର୍ଷ କାଳ ଯେ ଉତ୍କଳରେ ଜୀବନ ଘେନି ରହିଅଛନ୍ତି ଏହାକୁ ସୌଭାଗ୍ୟର ବିଷୟ ବୋଲିବାକୁ ହେବ । ଏ ଦେଶର ଲୋକମାନେ ଯଦ୍ୟପି ସମ୍ବାଦପତ୍ରରୁ ବିଶେଷତଃ ସ୍ୱଦେଶୀୟ ସମ୍ବାଦପତ୍ରର ଆବଶ୍ୟକତା ଅନୁଭବ କରିପାରୁଥାନ୍ତେ ତାହା ହେଲେ ଆଜି ଉପଯୁକ୍ତ ସମ୍ବାଦପତ୍ରର ଅଭାବ ନ ଥାନ୍ତା । ଉପରେ କହିଅଛୁ ଯେ ସମ୍ବାଦପତ୍ରର ଉନ୍ନତି କରିବାକୁ ଗଲେ ସାଧାରଣଙ୍କର ସହାନୁଭୂତି ଆବଶ୍ୟକ ସାଧାରଣ ଲୋକ ପରୋପକାର ଜନକ ଓ ଦେଶ ହିତକର ଅନୁଷ୍ଠାନ ବେଳକୁ ଏତେ ଅଳସ ଓ କୁଣ୍ଠିତ ଯେ ଦୁଇଟା, ଗୋଟିଏ ପଇସା ଖର୍ଚ୍ଚକରି ସ୍ଥାନିୟ ଭଲମନ୍ଦ ବାର୍ତ୍ତା ସମ୍ବାଦପତ୍ରକୁ ଉପହାର ଦେବାକୁ ଅନିଚ୍ଛୁକ । ଦେଶୀୟ ସମ୍ବାଦପତ୍ରର ପ୍ରଧାନ କର୍ତ୍ତବ୍ୟ ଦେଶର ନୂତନ ନୂତନ ବାର୍ତ୍ତା ପ୍ରଚାର କରିବା, ସମ୍ପାଦକ ଯେବେ ନାନା ସ୍ଥାନର ସମ୍ବାଦ ସଂଗ୍ରହ କରିବା ସକାଶେ ବେତନଭୋଗୀ ଲୋକ ନିଯୁକ୍ତ କରନ୍ତି, ତେବେ ତହିଁ ସକାଶେ କେତେ ବ୍ୟୟ ନ ହେବ ? ଯେତେବେଳେ କାଗଜ ମୂଲ୍ୟ ଓ ଛାପାଖର୍ଚ୍ଚ, ଡାକଖର୍ଚ୍ଚା ଉଠୁନାହିଁ କେତେବେଳେ ପଇସା ଖର୍ଚ୍ଚ କରି ସମ୍ବାଦଦାତା ନିଯୁକ୍ତିର ପରାମର୍ଶ ଦିଆଯାଇ ନ ପାରେ । ସହଯୋଗୀ ସମ୍ବାଦବାହିକା କହନ୍ତି -

"ଓଡ଼ିଶ୍ୟାର ଅନେକ ଗ୍ରାହକ ମୂଲ୍ୟ ଦେବାକୁ ସୁଖ ମଣନ୍ତି ନାହିଁ । ଅଶିକ୍ଷିତ ଲୋକଙ୍କ କଥା ଅବା କି କହିବୁ ? ଶିକ୍ଷିତ ଲୋକେ ମଧ୍ୟ ପତ୍ରିକାର ମୂଲ୍ୟ ଦେବା ବିଷୟରେ ନିତାନ୍ତ କୁଣ୍ଠିତ । ଜଣେ ଜଣେ ଗ୍ରାହକଙ୍କଠାରେ ଟ୩୦/୪୦ ଙ୍କା ବାକି ପଡିରହିଅଛି ଅନେକ କଥାର ମୁଦ୍ରିତ କାର୍ଡ ପ୍ରେରିତ ହେଉଅଛି ଅବା ହେଉଥିବା ଗ୍ରାହକ ମହାଶୟମାନେ ତାହାପାଇଁ ମୂଲ୍ୟ ଦେବା ଭୟରେ ସେମାନେ ଥରେ ସୁଦ୍ଧା ପଢୁ ନଥିବେ । ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ହୋଇ ସେପରି ଗ୍ରାହକମାନଙ୍କ ନାମ ପ୍ରକାଶ କରିବାକୁ ଇଚ୍ଛା କରିଅଛୁ ।"

୩୦/୪୦ ଟଙ୍କା ବାକୀ- ସାମାନ୍ୟ କଥା ନୁହେ । ପଣ୍ଚାଦେୟ ରୀତିରେ ବାହିକାର ୧୩ ବର୍ଷର ମୂଲ୍ୟ, ଯେଉଁ ଗ୍ରାହକମାନେ ୧ ୨/୧ ୪ ବର୍ଷର ସମ୍ବାଦପତ୍ର ମୂଲ୍ୟ ବାକୀ ପକାଇ ଅଛନ୍ତି ସେମାନେ କିପରି ସ୍ୱଦେଶାନୁରାଗୀ ଭଦ୍ରଲୋକ ପାଠକମାନେ ତାହା ବୁଝନ୍ତି । ଏପରି ଲୋକମାନେ ସ୍ଥିତିରେ କେଉଁ ସମ୍ବାଦପତ୍ର ଉନ୍ନତି ଲଭିବ ? ଏପରି ପଢୁଆ ପାଠକ ଆଉ ପ୍ରସ୍ତର ଏ ଉଭୟ ମଧ୍ୟରେ ବିଶେଷ ପାର୍ଥକ୍ୟ କଅଣ ? ଦେଶର ଯେଉଁମାନେ ମାନ୍ୟଗଣ୍ୟ, ଆଶା ଭରଷାର ସ୍ଥଳ, ସେହି ସେହି ସ୍ଥାନରେ ଏହିପରି ଘଟଣା ଅଧିକାଂଶ ଘଟୁଥାଏ । ଅନେକ ଲୋକ କାଗଜଆଡୁ ଫିଟାଇ ଦେଖନ୍ତି ନାହିଁ । ପତ୍ର ଲେଖିଲେ ଉତ୍ତର ଦିଅନ୍ତି ନାହିଁ, ଟଙ୍କା ଦେବା କଥା ଏକାବେଳକେ

ପାଶୋରି ଦିଅନ୍ତି । ଏପରି ଆବିଆପାଠକ ଅଛନ୍ତି ଯେଉଁମାନେ କି ଇଚ୍ଛା କରନ୍ତି ବିନା ମୂଲ୍ୟରେ କାଗଜ ଦେଇ ସଂପାଦକ ଟାଙ୍କର (ଗ୍ରାହକଙ୍କର)ଅବସରବେଳେ ସମ୍ବାଦପତ୍ରର ସାରକଥା ଶୁଣାଇ ଆସୁଥାନ୍ତେ !! ଆମ୍ଭମାନଙ୍କର ବିବେଚନାରେ ରୀତିମତ ମୂଲ୍ୟ ନ ପାଇଲେ କାଗଜ ବନ୍ଦକରି ସେପରି ଗ୍ରାହକମାନଙ୍କର ନାମ ଧାମ ପ୍ରକାଶ କରିଦେବା ବର୍ତ୍ତମାନ ଅବସ୍ଥାରେ ଉତ୍ତମ ଉପାୟ । ନଚେତ୍ ପଛକୁ ଲାଞ୍ଛନା ସହିବାକୁ ପଡ଼ିବା ଅସମ୍ଭବ ନୁହଇ ।

*ଭା୩ଗ, ସଂ୩୩ଖ୍ୟା, ୨୭।୧।୧୮୯୨*

## ଓଡ଼ିଆ ଓ ନବସମ୍ବାଦ ।

ବାଲେଶ୍ୱର ଦେ'ଙ୍କ ଉତ୍କଳ ପ୍ରେସର ଓଡ଼ିଆ ନାମକ ଖଣ୍ଡିଏ କାଗଜ ଆଜକୁ ପ୍ରାୟ ୪ ବର୍ଷ ହେଲା ବାହାରୁଅଛି, ପରେ ତାହା ସହିତ କଟକର 'ନବସମ୍ବାଦ' ମିଳିତ ହେବାରୁ ତାହା "ଓଡ଼ିଆ ଓ ନବସମ୍ବାଦ" ନାମରେ ପରିଚିତ ହେଉଅଛି । ଉକ୍ତ କାଗଜର ଅଧକ୍ଷ ପଦରେ ବାବୁ ରାମତାରକ ସେନ ନିଯୁକ୍ତ ହୋଇ କାର୍ଯ୍ୟ କରୁଥିଲେ। ଓଡ଼ିଶ୍ୟା ପରି ଦେଶରେ ଓଡ଼ିଆ ନବସମ୍ବାଦ ଏତେ ଦୀର୍ଘକାଳଯାଏ ଜୀବଦ୍ଦଶାରେ ଥିବା କଥାର ରାମତାରକ ବାବୁଙ୍କ କାର୍ଯ୍ୟଦକ୍ଷତାର ପରିଚୟ ମିଳିଅଛି । ଏହି ପତ୍ରିକା ନୂତନ ବର୍ଷରେ ପଦାର୍ପଣ କଲାବେଳେ ଆମ୍ଭେମାନେ କହିଅଛୁ ଯେ କାଗଜର କଳେବର କ୍ଷୁଦ୍ର ହେଲେହେଁ ବିଷୟ ତୁଳନାରେ ତାହା ଅନେକ ବଡ଼ କାଗଜର ସମକକ୍ଷ ହୋଇପାରେ । ଏହା ଅବଶ୍ୟ ରାମତାରକ ବାବୁଙ୍କର ଶ୍ରମଶୀଳତାର ଘଟିଅଛି । ବର୍ତ୍ତମାନ ଉକ୍ତ ମହାଶୟ ଅବସର ଗ୍ରହଣ କରିଥିବାର ଆମ୍ଭେମାନେ ଦୁଃଖିତ ହୋଇଅଛୁଁ । ବାବୁ କାଳୀପ୍ରସାଦ ଦାସ ଏବେ ରାମତାରକ ବାବୁଙ୍କ ବଦଳରେ କାର୍ଯ୍ୟ କରଅଛନ୍ତି । ଆଶା ଅଛି ଉକ୍ତ ମହାଶୟଙ୍କ ଯତ୍ନରେ ପତ୍ରିକାର ଅବନତି ନ ହୋଇ ଉନ୍ନତି ହୋଇପାରିବ । ଓଡିଆ ଓ ନବସମ୍ବାଦର କି ଆଉ କିଛି କଳେବର ବୃଦ୍ଧି ହେବ ନାହିଁ ?

*ଭା୩ଗ, ସଂ୪୬ଖ୍ୟା, ୨୭।୪।୧୮୯୨*

## ସଜ୍ଜନ ତୋଷିଣୀ

'ସଜ୍ଜନ ତୋଷିଣୀ' ନାମି ଖଣ୍ଡିଏ ମାସିକ ପତ୍ରିକାର ୪ର୍ଥ ଖଣ୍ଡ ଏକମ ସଂଖ୍ୟା ବିନିମୟ ନିମନ୍ତେ ପାଇ କୃତଜ୍ଞତା ସ୍ୱୀକାର କରଅଛୁଁ । ଏହି ପତ୍ରିକା ୩ ବର୍ଷ କାଳ ଏକାଧିକ୍ରମେ ପ୍ରଚାରିତ ହୋଇ ବନ୍ଦ ହୋଇ ଯାଇଥିଲା । ବର୍ତ୍ତମାନ ନବୋଦ୍ୟମରେ ୪ର୍ଥ ଖଣ୍ଡକୁ ପ୍ରଚାର ଆରମ୍ଭ ହୋଇଅଛି । ଏହା ପରମାର୍ଥ ସାଧକ ସମସ୍ତ ବିଷୟକ ଖଣ୍ଡିଏ ସମାଲୋଚନୀ ପତ୍ରିକା । କାର୍ଯ୍ୟାଳୟର ଠିକଣା ୧୮୧ ନମ୍ବର ମାଣିକତଲା ଷ୍ଟ୍ରିଟ, ରାମବାଦାନ, କଲିକତା । ଡାକମାଶୁଲ ସମେତ ବାର୍ଷୀକ ମୂଲ୍ୟ ୧ଟଙ୍କା । ଧର୍ମାନୁରାଗୀ ବ୍ୟକ୍ତିମାନଙ୍କର ଏ ପତ୍ରିକାର ଉନ୍ନତି ସମ୍ବନ୍ଧେ ଯତ୍ନ କରିବା ଉଚିତ ।

*ଭା୩ଗ, ସଂ୪୬ଖ୍ୟା, ୨୭।୪।୧୮୯୨*

## ଓଡ଼ିଆ ପାଠ୍ୟପୁସ୍ତକ ନିର୍ବାଚକ ନିୟୋଗ ।

ମାନ୍ୟବର ଚିଫ୍‌କମିଶନର ସାହେବ ବାହାଦୂର ଓଡ଼ିଆ ପାଠ୍ୟପୁସ୍ତକ ନିର୍ବାଚନ କମିଟୀର ମେମ୍ବର ପଦରେ ନିମ୍ନୋକ୍ତ ବ୍ୟକ୍ତିମାନଙ୍କୁ ନିର୍ବାଚନ କରି ଅଛନ୍ତି ଯଥା – ୧- ଶ୍ରୀଯୁକ୍ତ କମିଶ୍ନର ଛତିଶଗଡ଼। ୨ – ଶ୍ରୀଯୁକ୍ତ ଡେପୁଟୀ କମିଶ୍ନର ସମ୍ବଲପୁର । ୩ – ଶ୍ରୀଯୁକ୍ତ ପୋଲଟିକେଲ ଏଜେଣ୍ଟ ଛତିଶଗଡ଼ ଫିଟ ୪ – ଶ୍ରୀଯୁକ୍ତ ସ୍କୁଲ ଇନ୍ସପେକ୍ଟର ପୂର୍ବ ବିଭାଗ । ୫ – ଶ୍ରୀଯୁକ୍ତ ହେଡ୍‌ମାଷ୍ଟର ସମ୍ବଲପୁର ହାଇସ୍କୁଲ ।

ଉପରୋକ୍ତ ମେମ୍ବର ମହୋଦୟମାନେ ଅତି ସମ୍ଭ୍ରାନ୍ତ ଏବଂ ପଦାରୂଢ଼ ବ୍ୟକ୍ତି ଅଟନ୍ତି ଏହା ଅବଶ୍ୟ ସମସ୍ତେ ସ୍ୱୀକାର କରିବେ ସତ୍ୟ କିନ୍ତୁ ଏପରି ବ୍ୟକ୍ତିମାନଙ୍କ ହସ୍ତରେ ଓଡ଼ିଆ ପାଠ୍ୟପୁସ୍ତକ ନିର୍ବାଚନ ଭାର ଦେବା ସର୍ବବାଦୀ ସମ୍ମତ ହୋଇ ନ ପାରେ, ଯଦି ଏମାନଙ୍କୁ ସେହି କମିଟୀର ମେମ୍ବର କରିବା ଅତ୍ୟାବଶ୍ୟକ ବୋଧ ହୋଇଥାଏ ତେବେ ସେମାନଙ୍କ ସହିତ ଉତ୍କଳଭାଷା ପାରଦର୍ଶୀ ଜଣକେତେ ଦେଶୀୟ ବ୍ୟକ୍ତିଙ୍କୁ ନିୟୋଗ

କରିବା ଉଚିତ । ଶ୍ରୀଯୁକ୍ତ ପଣ୍ଡିତ ତ୍ରିଲୋଚନ ମିଶ୍ର, ପଣ୍ଡିତ ଧରଣୀଧର ମିଶ୍ର ଏବଂ ଉପଯୁକ୍ତ ଶିକ୍ଷକ ପ୍ରଭୃତିଙ୍କୁ ମେମ୍ବର ପଦରେ ନିଯୋଗ କରିବା ଉଚିତ । ବର୍ତ୍ତମାନ ପ୍ରଚଳିତ ଓଡ଼ିଆ ପାଠ୍ୟପୁସ୍ତକ ସବୁ ବିବିଧ ଦୋଷାଶ୍ରୀତ ହେବାର ପ୍ରଧାନ କାରଣ ପୁସ୍ତକ ନିର୍ବାଚକ ମାନଙ୍କର ଅନଭିଜ୍ଞତା ନ କରି ଆଉ କି କହିବୁଁ ? ଏପରି ସ୍ଥଳେ ଏ ଅଞ୍ଚଳର ଉତ୍କଳଭାଷା ପାରଦର୍ଶି ବ୍ୟକ୍ତିମାନଙ୍କ ଦ୍ୱାରା ପାଠ୍ୟପୁସ୍ତକ ନିର୍ବାଚନ କରାଇବା ବା ଓଡ଼ିଶ୍ୟା ପ୍ରଚଳିତ ପାଠ୍ୟପୁସ୍ତକ ଏ ପ୍ରଦେଶର ଓଡ଼ିଆ ବିଭାଗରେ ଚଳାଇବା ଶ୍ରେୟସ୍କର ବୋଧ କରୁଁ । ଭରଶା କରୁଁ କର୍ତ୍ତୃପକ୍ଷମାନେ ଏ ବିଷୟ ପ୍ରତି ପୁନର୍ବିଚାର କରିବେ ।

*ଭା/୪ଗ, ସଂ୧୬ଖ୍ୟା, ୨୧/୯/୧୮୯୨*

## ସମ୍ବଲପୁର ହାଇସ୍କୁଲର ଶିକ୍ଷକ ।

(ଯେଉଁ ଦେଶର ପ୍ରଧାନ ମାତୃଭାଷା ଓଡ଼ିଆ)।

ସେହି ଦେଶର ଶିକ୍ଷକ ଯେ ଓଡ଼ିଆ ଭାଷା ପାରଦର୍ଶୀ ଥିବା ଏକାନ୍ତ ଆବଶ୍ୟକ । ଏହା ପାଞ୍ଚବର୍ଷୀୟା ପିଲା ପର୍ଯ୍ୟନ୍ତ ସ୍ୱୀକାର କରିବେ । ନିରପେକ୍ଷ ଭାବରେ ଏକଥା କେହି ଅସ୍ୱୀକାର କରିପାରିବେ ନାହିଁ । ଯଦ୍ୟପି ସମ୍ବଲପୁରରେ ହାଇସ୍କୁଲ ଛଡ଼ା ଆଉ କୌଣସୀ ଉଚ ଇଂରାଜୀ ବିଦ୍ୟାଳୟ ଥାଆନ୍ତା ଏବଂ ମାତୃଭାଷା ଶିକ୍ଷାର୍ଥି ନର୍ମାଲ ବିଦ୍ୟାଳୟ ପ୍ରତିଷ୍ଠିତ ଥାଆନ୍ତା । ତଥାପି ଆମ୍ଭେମାନେ ମରହଟ୍ଟା ଶିକ୍ଷକ ହସ୍ତରେ କୋମଳମତି ଉତ୍କଳ ତନୟ ମାନଙ୍କ ଶିକ୍ଷା ଭାର ଦେବାକୁ କେବେହେଁ ମତ ଦିଅନ୍ତୁ ନାହିଁ । ବର୍ତ୍ତମାନ ଏସବୁର ପୂର୍ଣ୍ଣ ଅଭାବ ଥିବା ସ୍ଥଳେ ଆମ୍ଭେମାନେ ଚକ୍ଷୁଲଜ୍ଜା ବା ଅନୁରୋଧ ଉପରୋଧରେ ପଡ଼ି ଗୋଟା ଦେଶର ଅନିଷ୍ଟ କାମନା କରି କଦାପି ମରହଟ୍ଟାମାନଙ୍କ ପକ୍ଷାବଲମ୍ବନ କରିପାରିବୁଁ ନାହିଁ । ଯେଉଁମାନେ ଜାଣିଶୁଣି ପକ୍ଷାବଲମ୍ବନ କରିବେ ସେମାନେ ଦେଶଦ୍ରୋହୀ କୁସନ୍ତାନ ବୋଲି କଥିତ ହେବେ । ମରହଟ୍ଟା ଶିକ୍ଷକମାନେ ଯେ ଅଯୋଗ୍ୟ, ନିର୍ବୋଧ ଏ କଥା ଆମ୍ଭେମାନେ କହୁ ନାହୁଁ ବରଂ ସେମାନେ ଶିକ୍ଷିତ କର୍ମଠ ବ୍ୟକ୍ତି ବୋଲି ସ୍ୱୀକାର କରଅଛୁଁ ଏବଂ ସେମାନେ ନିଜ ଦେଶୀୟ ବିଦ୍ୟାଳୟମାନଙ୍କ ଶିକ୍ଷକ ପଦର ଯେ ଏକାନ୍ତ ଉପଯୁକ୍ତ ଏ ବିଷୟରେ ଆମ୍ଭେମାନେ ଆପତ୍ତି କରୁ ନାହୁଁ କିନ୍ତୁ ସେମାନେ ଉତ୍କଳ ଦେଶର ଉପଯୁକ୍ତ ଶିକ୍ଷକ ବୋଲି ଆମ୍ଭେମାନେ କଦାପି କହି ନ ପାରୁଁ।

ଇଂରାଜୀ ପୁସ୍ତକର ମର୍ମ ଯେଉଁ ଉତ୍କଳଭାଷା ସାହାଯ୍ୟରେ ଛାତ୍ରମାନଙ୍କର ହୃଦୟଙ୍ଗମ କରାଇବାକୁ ହେବ, ମରହଟ୍ଟା ଶିକ୍ଷକମାନେ ସେହି ଭାଷାରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଏପରି ସ୍ଥଳେ ମରହଟ୍ଟା ଶିକ୍ଷକମାନଙ୍କ ଅଧିନରେ ରହି ଆମ୍ଭମାନଙ୍କର ସନ୍ତାନ ସନ୍ତତିମାନେ ବ୍ୟୁତ୍ପନ୍ନ ହେବା ଆଶା ଆକାଶ କୁସୁମବତ୍ ଅଳୀକ ଅଟଇ; ଫଳରେ ମଧ ତାହା ଘଟୁଅଛି । ପରୀକ୍ଷୋତ୍ତୀର୍ଣ୍ଣ ହେବା ବ୍ୟୁତ୍ପତ୍ତି ଲାଭ କରିବା ମଧରେ ଯେ ବିସ୍ତର ପ୍ରଭେଦ ଅଛି । 'ପାସ' ନିଦିକାରୀମାନଙ୍କର ଏକଥା ବୁଝିବା ଉଚିତ ।

ସ୍ଥାନାନ୍ତରେ "ଜଣେ ଉତ୍କଳ ବାସୀ" ସ୍ୱାକ୍ଷରିତ ଖଣ୍ଡିଏ ପତ୍ର ପ୍ରକାଶିତ ହେଲା । ଲେଖକ ସମ୍ବଲପୁରର ଜଣେ ଶିକ୍ଷିତ, ବହୁଦର୍ଶୀ ବ୍ୟକ୍ତି, ତାହାଙ୍କ ପତ୍ର ପ୍ରତି ପାଠକମାନଙ୍କର ମନୋଯୋଗ ଆକର୍ଷଣ କରୁଅଛୁଁ । ପତ୍ରଲେଖକ ମହାଶୟ ସମ୍ବଲପୁରର ମରହଟ୍ଟା ଶିକ୍ଷକ ଏବଂ ସହର ନିବାସୀ ଦିବାକର ସୁଆରଙ୍କ ନାମରେ ଗୁରତର ଅଭିଯୋଗ ଆଣିଅଛନ୍ତି । ପ୍ରକୃତରେ ଯେବେ ଦିବାକର ସୁଆର ସାମାନ୍ୟ ପ୍ରଲୋଭନର ବସବର୍ତ୍ତୀ ହୋଇ ଏପରି କହିଥାନ୍ତି ତେବେ ତାହା ଅତ୍ୟନ୍ତ ନିନ୍ଦାର ବିଷୟ ଆଉ ଶିକ୍ଷିତ ଶିକ୍ଷକମାନେ ପତ୍ରୋକ୍ତ କାରଣରୁ ବୈର ନିର୍ଯ୍ୟାତକ ଚେଷ୍ଟା କରଥିଲେ । ଏବଂ ସେହି କାରଣର ଦିବାକରଙ୍କ ପୁତ୍ରର ବୃତ୍ତି ବନ୍ଦୋବସ୍ତ କରିଥିଲେ ସେମାନଙ୍କ କଳଙ୍କ ରଖିବା ସ୍ଥାନ ହେବନାହିଁ । ଆମ୍ଭେମାନେ ଭରସା କରୁଁ ଉକ୍ତ ପତ୍ରୋକ୍ତ ବିଷୟ ବିରୁଦ୍ଧରେ ଯୁକ୍ତିଯୁକ୍ତ ପ୍ରତିବାଦ ପତ୍ର ଆମ୍ଭେମାନେ ପାଇପାରିବୁଁ ।

ମହାମାନ୍ୟ ଇନ୍ସପେକ୍ଟର କଲେକ୍ଟର ସାହେବ ସମ୍ବଲପୁର ନିବାସୀ ମାନଙ୍କ ଆବେଦନ ପତ୍ର ଗ୍ରହଣ କରି ନିଜର ପ୍ରସ୍ତାବାନୁରୂପ ସମ୍ବଲପୁର ହାଇସ୍କୁଲ ସକାଶେ ଓଡ଼ିଆ ଓ ଇଂରାଜୀ ଜାଣୁଥିବା ଜଣେ ଉପଯୁକ୍ତ ଶିକ୍ଷକ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ପାଇବା ଆଶାରେ ବିଜ୍ଞାପନ ଦେଇ ଆମ୍ଭମାନଙ୍କ ବିଶେଷ ଧନ୍ୟବାଦର ପାତ୍ର ହୋଇ ଅଛନ୍ତି । ଆମ୍ଭେମାନେ କହୁଁ ଉତ୍କଳ ଦେଶରେ ଉକ୍ତ ପ୍ରକାର ଶିକ୍ଷକର ଅଭାବ ହେବ ନାହିଁ । ଉତ୍କଳ ସମ୍ବାଦ ପତ୍ରରେ ବିଜ୍ଞାପନ ଦେଲେ ବା ଓଡ଼ିଶ୍ୟା ଶିକ୍ଷା ବିଭାଗର ଇନ୍ସପେକ୍ଟର ମହୋଦୟଙ୍କୁ ଜଣାଇଲେ ଉତ୍କଳ ଦେଶ ଜାତ ଉପଯୁକ୍ତ ଶିକ୍ଷକ ସହଜରେ ମିଳିପାରିବ ।

ଦେଶର ସକଳ ପ୍ରକାର ଉନ୍ନତିର ମୂଳ "ଶିକ୍ଷା" । ସେହି ଶିକ୍ଷାକାର୍ଯ୍ୟ ନିର୍ଦ୍ଦୋଷ ଭାବରେ ସମ୍ପାଦିତ ହେବା ବିଷୟରେ ପ୍ରତ୍ୟେକ ବୁଦ୍ଧିମାନ ଲୋକର ଯତ୍ନ ପରିଶ୍ରମ କରିବା ଉଚିତ । ଯତ୍ନ ପରିଶ୍ରମ ବଦଳରେ ଯେଉଁମାନେ ତହିଁର ବିଘ୍ନୋତ୍ପାଦକ ହୁଅନ୍ତି ସେମାନେ ଦେଶର ପରମ ଶତ୍ରୁ ଉପାଧି ପାଇବାର ଏକାନ୍ତ ଯୋଗ୍ୟ ।

ଇନ୍ସପେକ୍ଟର ଜେନେରାଲ ସାହେବ ମହୋଦୟଙ୍କର ଉପରୋକ୍ତ ବିଜ୍ଞାପନ ପାଠକରି ଉକ୍ତ ସୁବିବେଚକ ମହାତ୍ମାଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ପ୍ରକାଶ କରିବା ଯେ ସମ୍ବଲପୁର କମିସନଙ୍କର ଏକାନ୍ତ ଉଚିତ ଏଥିରେ ସନ୍ଦେହ ନାହିଁ ।

ସମ୍ବଲପୁର ଅଧିବାସୀମାନେ ଶିକ୍ଷକ ନିଯୋଗ ସମ୍ବନ୍ଧେ କର୍ତ୍ତବ୍ୟ ପରାୟଣତା ଏବଂ ସତ୍ସାହସର ପରିଚୟ ଦେଇ ଅଶେଷ ଧନ୍ୟବାଦର ପାତ୍ର ହୋଇ ଅଛନ୍ତି । କିନ୍ତୁ ଏତିକିରେ ସେମାନଙ୍କର ଶିକ୍ଷା ସମ୍ବନ୍ଧୀୟ କର୍ତ୍ତବ୍ୟ ଇତି ହେଲା ନାହିଁ । ସମ୍ବଲପୁର ଶିକ୍ଷା ବିଭାଗ ସମୂହରେ ଓଡ଼ିଶ୍ୟାର ପାଠ୍ୟପୁସ୍ତକ ପ୍ରବର୍ତ୍ତିତ ହେବା ଏବଂ ଉପଯୁକ୍ତ ଶିକ୍ଷକ ପ୍ରସ୍ତୁତ କରିବା ନିମନ୍ତେ ସମ୍ବଲପୁର ସହରରେ (କଟକ ନର୍ମାଲ ସ୍କୁଲ ପରି) ଗୋଟିଏ ନର୍ମାଲ ବିଦ୍ୟାଳୟ ପ୍ରତିଷ୍ଠିତ ହେବାପ୍ରତି ଯତ୍ନ ପରିଶ୍ରମ କରି ସ୍ୱଦେଶାନୁରଣିତା – ମନୁଷ୍ୟତାର ପରିଚୟ ହେବାକୁ ପଶ୍ଚାତ୍ପଦ ନ ହେଉନ୍ତୁ , ଆମ୍ଭେମାନେ ସେମାନଙ୍କର ସହକାରିତା କରିବା ସକାଶେ ସ୍ୱୀକାର କରୁଅଛୁଁ । ଉପରୋକ୍ତ ଅଭାବ ଦ୍ୱୟ ଅନ୍ତରିତ ନ ହେଲେ ଏ ଦେଶର ପ୍ରକୃତ ଶିକ୍ଷୋନ୍ନତିର ଆଶା ଦୁରାଶା ମାତ୍ର ।

*ଭା/୪ଗ, ସଂ୧୯ଖ୍ୟା, ୧୨/୧୦/୧୮୯୨*

## କଟକ ନର୍ମାଲ ବିଦ୍ୟାଳୟ !

ଉତ୍କଳ ଦେଶରେ ଓଡିଆ ଭାଷା ଶିକ୍ଷାର ଏକମାତ୍ର ଉଚ୍ଚ ବିଦ୍ୟାଳୟ କଟକ ନର୍ମାଲ ସ୍କୁଲର ଅବସ୍ଥା ଅତି ଶୋଚନୀୟ । ଏହି ବିଦ୍ୟାଳୟରେ ଉପଯୁକ୍ତ ପାଠ୍ୟପୁସ୍ତକର ଅଭାବ, ଉପଯୁକ୍ତ ତତ୍ତ୍ୱାବଧାରଣର ଅଭାବ, ଉପଯୁକ୍ତ ଶିକ୍ଷାଦାନ ପ୍ରଣାଳୀର ଅଭାବ ; ଏପରିସ୍ଥଳେ ସେହି ବିଦ୍ୟାଳୟର ଛାତ୍ରମାନେ ଆଶାନୁରୂପ ବ୍ୟୁତ୍ପନ୍ନ ହେବା ଆଶା କିପରି ସଫଳ ହେବ ? ନର୍ମାଲ ସ୍କୁଲର ଶିକ୍ଷା ସୁପ୍ରଣାଳୀରେ- ନିର୍ଦ୍ଦୋଷ ଭାବରେ ସମ୍ପାଦିତ ନ ହେଲେ ସମଗ୍ର ଉତ୍କଳର ଶିକ୍ଷାପ୍ରଣାଳୀ ଦୂଷିତ ହେବ, ପ୍ରକୃତ ଯୋଗ୍ୟଲୋକର ଅଭାବ କେବେ ଅନ୍ତରିତ ହେବନାହିଁ । ନର୍ମାଲ ସ୍କୁଲର ଏହିସବୁ ବିଶୃଙ୍ଖଳାର କଥା କେବଳ ଯେ ବାବୁ ବିଶ୍ୱନାଥ କର ଜାଣନ୍ତି ଆଉ କେହି ଜାଣନ୍ତି ନାହିଁ ଏପରି ନୁହେଁ ମାତ୍ର ଆଜ ସୁଦ୍ଧା ସେହି ଅଭାବ, ବିଶୃଙ୍ଖଳାର ବିଷୟ ଦେଶର ମଙ୍ଗଳ ନିମନ୍ତେ- ସାଧାରଣରେ ପ୍ରକାଶ କରିବାକୁ କେହି ସାହସୀ ହୋଇପାରୁ ନ ଥିଲେ । ବାବୁ ବିଶ୍ୱନାଥ କର ଅକୁତୋ-ଭୟରେ ସେହି ସବୁ ବିଷୟ ପ୍ରକାଶ କରି ଏଥି ସକାଶେ ସମଗ୍ର ଉତ୍କଳବାସୀଙ୍କର ବିଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ସତ୍ୟକଥା ସ୍ୱାଧୀନ ଭାବରେ କହିବା ପ୍ରକୃତ ପୁରୁଷୋଚିତ କାର୍ଯ୍ୟ ଅଟଇ । ଛପି ଛପି ଡରି ଡରି କହିବା ବା ଚକ୍ଷୁଲଜ୍ଜା ବା ଅନୁରୋଧ ଉପରୋଧରେ ପଡ଼ି ପ୍ରକୃତ କଥା ନ କହିବା କାପୁରୁଷର କାର୍ଯ୍ୟ । ଆମ୍ଭେମାନେ ଉପରୋକ୍ତ ଘଟଣାର ବିଶ୍ୱନାଥ ବାବୁଙ୍କର ସତ୍ସାହସ ଓ ଦେଶାନୁରାଗିତା ଏବଂ ନିରପେକ୍ଷବାଦୀତାର ପରିଚୟ ପାଇ ଅତ୍ୟନ୍ତ ସୁଖୀ ହୋଇ ଅଛୁଁ, ପ୍ରକୃତ ଦେଶୋନ୍ନତି ସାଧନ କରିବାକୁ ହେଲେ ପ୍ରତ୍ୟେକ ଲୋକଠାରେ ଉପରୋକ୍ତ ସଦ୍ଗୁଣସବୁ ରହିବା ଏକାନ୍ତ ବାଞ୍ଛନୀୟ । ଓଡ଼ିଶ୍ୟା ଶିକ୍ଷା ବିଭାଗର ଇନ୍ସପେକ୍ଟର ମହୋଦୟଙ୍କ ନିକଟରେ ଆମ୍ଭେମାନେ ବିନୀତ ଭାବରେ ବାରମ୍ବାର ଏହି ପ୍ରାର୍ଥନା କରଅଛୁଁ ଯେ ଉକ୍ତ ମହୋଦୟ ନର୍ମାଲ ସ୍କୁଲର ଶିକ୍ଷାପ୍ରଣାଳୀ ପ୍ରଭୃତିର ବିରୁଦ୍ଧରେ ପ୍ରକାଶିତପତ୍ର ପାଠ କରି ପ୍ରକୃତ ଘଟଣା ତଦନ୍ତରେ ମନୋଯୋଗୀ ହୁଅନ୍ତୁ ଏବଂ ଭବିଷ୍ୟତରେ ଏପରି ନ ହେବା ସମ୍ବନ୍ଧେ ବିହିତ ବିଧାନ କରି

ଉତ୍କଳବାସିମାନଙ୍କର ଅଶେଷ କଲ୍ୟାଣ ଭାଜନ ହେଉନ୍ତୁ । ସମ୍ବାଦପତ୍ରର ଲେଖା ବୋଲି ସେଥିପ୍ରତି ଆସ୍ଥା ସ୍ଥାପନ କଲେ ଯେ ତାହା ସମଗ୍ର ଉତ୍କଳବାସିଙ୍କର ଅସନ୍ତୋଷର କାରଣ ହେବ ତାହା ନିଃସନ୍ଦେହ ।

*ଭା୪ଗ,ସଂ୨୦ଖ୍ୟା, ୧୯।୧୦।୧୮୯୨*

## ଉପଯୁକ୍ତ ପାଠ୍ୟ ପୁସ୍ତକର ଅଭାବ।

ସମ୍ବଲପୁର ଓଡ଼ିଆଭାଷାର ବିଦ୍ୟାଳୟମାନଙ୍କରେ ଉପଯୁକ୍ତ ପାଠ୍ୟପୁସ୍ତକ ପ୍ରବର୍ତ୍ତିତ ହୋଇନଥିବା କଥା "ହିତୈଷିଣୀ" ର ଜନ୍ମଦିନ ଠାରୁ ଆମ୍ଭେମାନେ କହିଆସୁଅଛୁ । ମାତ୍ର ଆମ୍ଭମାନଙ୍କର ସେହି ସବୁ ଉକ୍ତି ଅରଣ୍ୟରୋଦନ ତୁଲ୍ୟ ହେଉଅଛି । ଏହି ବିଷୟରେ କର୍ତ୍ତୃପକ୍ଷମାନେ ଯେପରି ଉଦାସୀନ ; ଦେଶର ଲୋକମାନେ ସେହିପରି ଉଦାସୀନ । ଏପରି ସ୍ଥଳେ ସୁଫଳ ପ୍ରାପ୍ତିର ଆଶା ବିଡ଼ମ୍ବନା ମାତ୍ର । ବର୍ତ୍ତମାନ ପ୍ରଚଳିତ ପାଠ୍ୟପୁସ୍ତକର ଅଧିକାଂଶ ଯେ ଭ୍ରମପୂର୍ଣ୍ଣ ଓ ଅନୁପଯୋଗୀ ଏକଥା ଆମ୍ଭେମାନେ ଦୃଢ଼ତାର ସହିତ କହିପାରିବୁ । ସ୍କୁଲପାଠ୍ୟ "ତୃତୀୟ ପାଠ୍ୟ" ପୁସ୍ତକ ଖଣ୍ଡି ଭ୍ରମପୂର୍ଣ୍ଣ ଥିବାର ଜଣେ ଲେଖକ ଯେପରି ପ୍ରତିପନ୍ନ କରିଅଛନ୍ତି ସେହିପରି ସମାଲୋଚନା ପ୍ରବୃତ୍ତ ହେଲେ ଅନ୍ୟାନ୍ୟ ପୁସ୍ତକର ଭ୍ରମ ପ୍ରଦର୍ଶନ କରାଯାଇପାରେ । କୃଷି ପାଠ୍ୟପୁସ୍ତକ ଖଣ୍ଡି କୋମଳମତି ବାଳକମାନଙ୍କ ପକ୍ଷେ ଯେ ଏକାନ୍ତ ଦୁର୍ବୋଧ ଏକଥା ଦୃଢ଼ତାର ସହିତ ବୋଲାଯାଇ ପାରେ । ଏପରି ପୁସ୍ତକ ଅଧ୍ୟୟନ କରାଇ ଦେଶର ଶିକ୍ଷୋନ୍ନତି କରାଇବା ଚେଷ୍ଟା ଯେ ସମ୍ପୂର୍ଣ୍ଣ ଫଳପ୍ରଦ ହେବନାହିଁ ଏହା ନିଶ୍ଚିତ ବାକ୍ୟ ଅଟଇ । ଏପରି ପୁସ୍ତକ ଅବାଧେ ପ୍ରଚଳିତ ହେବାର କାରଣ ପାଠ୍ୟପୁସ୍ତକ ନିର୍ବାଚନ କମେଟୀ ଏବଂ ପରିଦର୍ଶକ କର୍ମଚାରୀ ଏବଂ ଦେଶୀୟ ଲୋକଙ୍କ ଉଦାସୀନତା ବ୍ୟତିତ ଆଉ କି ବୋଲାଯିବ ?

ଆମ୍ଭେମାନେ କହୁଁ ମଧ୍ୟପ୍ରଦେଶ ଯେଉଁ ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ ରାଜ୍ୟ, ଓଡ଼ିଶ୍ୟା ସେହି ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ ରାଜ୍ୟ, ଅତଏବ ଏ ପ୍ରଦେଶର ଓଡ଼ିଆ ପ୍ରଚଳିତ ସ୍ଥାନର ବିଦ୍ୟାଳୟରେ ଓଡିଶ୍ୟା ସ୍କୁଲର ପାଠ୍ୟପୁସ୍ତକ ଚଳାଇବାରେ ଆପତ୍ତିଯୋଗ୍ୟ କାରଣ ଦେଖାଯାଉନାହିଁ । କର୍ତ୍ତୃପକ୍ଷମାନଙ୍କର ଏହି ପ୍ରସ୍ତାବ ପ୍ରତି ସୁବିଚାର କରିବା ଉଚିତ । ଦେଶବାସିମାନଙ୍କର ଏ ବିଷୟ ପ୍ରତି ବିଭାଗୀୟ କର୍ତ୍ତୃପକ୍ଷମାନଙ୍କର ମନୋଯୋଗ ଆକର୍ଷଣର ଚେଷ୍ଟା କରିବା କର୍ତ୍ତବ୍ୟ ଅଟଇ ।

*ଭା୪ଗ, ସଂ୨୦ଖ୍ୟା, ୧୯।୧୦।୧୮୯୨*

# ୧୮୯୩

## ଓଡ଼ିୟା ଗେଜେଟ ।

ବଙ୍ଗ ପ୍ରଦେଶରେ ଇଂରାଜୀ ଭାଷାର କଲିକତା ଗେଜେଟ ଛଡ଼ା, ହିନ୍ଦି, ଓଡ଼ିଆଭାଷାର ଗେଜେଟ ମାନ ଅଛି । ଓଡ଼ିୟା ଭାଷାର ଗବର୍ଣ୍ଣମେଣ୍ଟ ଗେଜେଟ ପ୍ରାୟ ୪୦ ବର୍ଷ ହେବ ପ୍ରତି ସପ୍ତାହରେ କଟକ ନଗରରେ ପ୍ରକାଶିତ ହୁଏ । ଏହି ଗେଜେଟରେ ଓଡିଶ୍ୟା ପ୍ରତି ଘଟୁଥିବା ଆଇନ, ଆଇନର ପାଣ୍ଡୁଲିପି ଆଇନାନ୍ତର୍ଗତ ଉପବିଧି, ହାଇକୋର୍ଟ ଓ ରେଭିନ୍ୟୁ ବୋର୍ଡଙ୍କ ଦସ୍ତୁର ଅମଲ, ହାକିମମାନଙ୍କ ନିୟୋଗ ବଦଳି ଇତ୍ୟାଦି ନାନା ବିଷୟର ଉଲ୍ଲେଖ ହୁଅଇ । ଏହି ଗେଜେଟ ପ୍ରକାଶ ଉପଲକ୍ଷେ ଗବର୍ଣ୍ଣମେଣ୍ଟଙ୍କର ଅନେକ ଅର୍ଥବ୍ୟୟ ହେଉଅଛି କିନ୍ତୁ ଏହା ଯେଉଁମାନଙ୍କ ମଙ୍ଗଳ ସକାଶେ ମୁଦ୍ରିତ, ସେମାନେ ଏହାର ଆଦର କରିବାକୁ ନାହିଁ ଓଡ଼ିୟା ଗେଜେଟ ସପ୍ତାହରେ ପ୍ରାୟ ·୧୫୦ ଖଣ୍ଡ ମୁଦ୍ରିତ ହୋଇ ସରକାରୀ ଅଫିସ-ମାନଙ୍କରେ ବଣ୍ଟାଯାଏ । କେହି ମୂଲ୍ୟଦେଇ ଏ ଗେଜେଟ ପ୍ରାୟ ଗ୍ରହଣ କରନ୍ତି ନାହିଁ । ଦୀପିକା କହନ୍ତି ଏହିସବୁ କାରଣରୁ ଉକ୍ତ ଗେଜେଟର ପ୍ରଚାର ବନ୍ଦ କରିବା ପ୍ରସ୍ତାବ ହୋଇଅଛି । ଅବଧି ତହିଁର ମୀମାଂସା ହୋଇନାହିଁ । ବର୍ତ୍ତମାନ ଓଡ଼ିଶ୍ୟା କମିଶ୍ନରଙ୍କ ଆଦେଶ କ୍ରମେ ଗୋଟିଏ କମେଟି ଗଠିତ ହୋଇ ଗେଜେଟର ଉନ୍ନତି ଓ ଆଦର ବୃଦ୍ଧି ବିଷୟରେ ବିଚାର କରା ହେଉଅଛି । ସହଯୋଗିନୀ ଯଥାର୍ଥ କହିଅଛନ୍ତି ଯେ ଗେଜେଟ ପ୍ରଚାର ଥରେ ବନ୍ଦ ହେଲେ ଆଉ ତାର ପୁନର୍ଜନ୍ମର ଆଶା ବୃଥା । ଆଉ ଏପରି ସମୟ ହୋଇଅଛି ଯେ ପ୍ରାୟ ପ୍ରତି ସପ୍ତାହରେ ଗବର୍ଣ୍ଣମେଣ୍ଟଙ୍କର ଗୋଟିଏ ଗୋଟିଏ ନୂତନ ବିଧି ପ୍ରଚଳିତ ହୋଇଅଛି । ଯାହା ନ ଜାଣିଲେ ଜମିଦାର, ପ୍ରଜା, ବ୍ୟବସାୟଦାର ପ୍ରଭୃତି ନାନା ଶ୍ରେଣୀର ବିଷୟୀ ଲୋକଙ୍କର ଚଳିବା କଠିନ । ଏ-ହେତୁ ଗେଜେଟ ରକ୍ଷିତ ହୋଇ ଅଦୃତ ହେବା ବିଷୟରେ ସମସ୍ତ ଓଡ଼ିଶ୍ୟାବାସୀଙ୍କର ଚେଷ୍ଟା କରିବା ବିହିତ । ଗେଜେଟ ବିଷୟରେ ମଧ ପ୍ରଦେଶ ବାସିଙ୍କ ଅପେକ୍ଷା ଓଡ଼ିଶାବାସୀ ମାନେ ଯଥେଷ୍ଟ ସୁବିଧା ଲାଭ କରି ମଧ ତାହା ଛାଡ଼ିଦେଲେ ଅତ୍ୟନ୍ତ ଦୁଃଖର ବିଷୟ ହେବ ।

*ଭା୪ଗ, ସଂ୪୮ଖ୍ୟା, ୩।୫।୧୮୯୩*

## ହିତୈଷିଣୀର ୫ମ ବର୍ଷ

ମଙ୍ଗଳମୟ ପରମେଶ୍ୱରଙ୍କ କୃପାରୁ ହିତୈଷିଣୀର ଆଜି ୫ମ ବର୍ଷ ପୂର୍ଣ୍ଣ ହୋଇ ଅଛି । କ୍ଷୁଦ୍ରାବୟବର ଗୋଟିଏ ରାଜ୍ୟରୁ ବୃହଦାବୟବର ଏକ ସାପ୍ତାହିକ ପତ୍ରିକା ନିର୍ବିଘ୍ନରେ ଏତେ ଅଧିକକାଳ ଚାଲିପାରିବ ବୋଲି ଆମ୍ଭମାନଙ୍କର ଭରଶା ନଥିଲା କିନ୍ତୁ ପାଠକ, ଲେଖକ ଓ ଅଧକ୍ଷ ମାନଙ୍କ ଯତ୍ନାନୁରାଗରୁ ଆମ୍ଭମାନଙ୍କ ହତାଶ ହୃଦୟରେ କ୍ରମରେ ଆଶା ସଞ୍ଚାର ହେଉଛି । ଗ୍ରାହକ ବର୍ଗ ଦେୟଦାନ ବିଷୟରେ କୁଣ୍ଠିତ ନ ହେଲେ ବା ଅଯଥା ଅବହେଳା ନ କଲେ ହିତୈଷିଣୀ ଶୈଶବ ଦଶାରେ ମୃତ୍ୟୁ ମୁଖରେ ଯେ କଦାପି ପତିତ ହେବ ନାହିଁ । ଏ କଥା ଦୃଢ଼ତାର ସହିତ ବୋଲା ଯାଇପାରେ ।

ଏ ବର୍ଷ ଉତ୍କଳର ନିମ୍ନଲିଖିତ ସୁଲେଖକମାନେ ଗଦ୍ୟ ପଦ୍ୟ ପ୍ରବନ୍ଧ ପଠାଇ ହିତୈଷିଣୀର ଅଙ୍ଗ ସୌଷ୍ଠବ ବୃଦ୍ଧି ବିଷୟରେ ଯଥେଷ୍ଟ ସାହାଯ୍ୟ କରିଅଛନ୍ତି ।

| | |
|---|---|
| ଶ୍ରୀଯୁକ୍ତ ରାଜା ସୁଡଳଦେବ ସି.ଆଇ.ଇ | ବାମଣ୍ଡା । |
| ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ଦେବ ରାଜକୁମାର | ବାମଣ୍ଡା । |
| ଶ୍ରୀଯୁକ୍ତ କବିବର ରାଧାନାଥ ରାୟ | କଟକ । |
| ଶ୍ରୀଯୁକ୍ତ ଚତୁର୍ଭୁଜ ପଟ୍ଟନାୟକ ବି.ଏ. | କଟକ । |
| ଶ୍ରୀଯୁକ୍ତ ବିଶ୍ୱନାଥ କର | କଟକ । |
| ଶ୍ରୀଯୁକ୍ତ ଲାଲ ରାମନାରାୟଣ ରାୟ | କଟକ । |
| ଶ୍ରୀଯୁକ୍ତ ରାମକୃଷ୍ଣ ସାହ 'କବିଭୂଷଣ' | କଟକ । |
| ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣା ବି.ଏ. | କଟକ । |
| ଶ୍ରୀଯୁକ୍ତ ସାଧୁଚରଣ ରାୟ | କଟକ । |
| ଶ୍ରୀଯୁକ୍ତ ଦୈତାରୀ ପ୍ରସାଦ ଶଙ୍ଖୁଆ ବି.ଏଲ. | କଟକ । |
| ଶ୍ରୀଯୁକ୍ତ ଫକୀର ମୋହନ ସେନାପତି | ଡୋମପଡ଼ା । |
| ଶ୍ରୀଯୁକ୍ତ ଦାମୋଦର ମିଶ୍ର ପଦ୍ୟାଳଙ୍କାର | ବାମଣ୍ଡା । |
| ଶ୍ରୀଯୁକ୍ତ ଶଶିଭୂଷଣ ରାୟ | କଟକ । |
| ଶ୍ରୀଯୁକ୍ତ ଶିବନାରାୟଣ ନାୟକ | ବାଲେଶ୍ୱର । |
| ଶ୍ରୀଯୁକ୍ତ ଆର୍ତ୍ତତ୍ରାଣ ଶତପଥୀ | କଟକ । |
| ଶ୍ରୀଯୁକ୍ତ ମହମ୍ମଦ ଅଲି ଆଃ ମେନେଜର | ଢେଙ୍କାନାଳ । |
| ଶ୍ରୀଯୁକ୍ତ ଧରଣୀଧର ମିଶ୍ର | ସମ୍ବଲପୁର । |
| ଶ୍ରୀଯୁକ୍ତ ଦାମୋଦର ପଟ୍ଟନାୟକ | ଢେଙ୍କାନାଳ । ପ୍ରଭୃତି |

ବର୍ତ୍ତମାନ ଆମ୍ଭେମାନେ ଆମ୍ଭମାନଙ୍କ ଏଥାନନ୍ଦ ସମୟରେ ସର୍ବବିଘ୍ନକାରୀ ହରିଙ୍କୁ ଭକ୍ତିପୂର୍ଣ୍ଣ ନମସ୍କାର କରୁଅଛୁ । ଏବଂ ସହଯୋଗୀ, ପ୍ରବନ୍ଧ ଲେଖକ, ସମ୍ବାଦଦାତା ଗ୍ରାହକ ଓ ପାଠକ ପ୍ରଭୃତି ହିତୈଷିବର୍ଗଙ୍କୁ ସସ୍ନେହ ସମ୍ଭାଷଣ କରି ଚିରଦିନ ସକାଶେ ସେମାନଙ୍କର ଇଦୃଶ ଅନୁରାଗ କାମନା କରୁଅଛୁଁ ।

*ଭା୫ଗ, ସଂ୫୨ଖ୍ୟା, ୩୦।୫।୧୮୯୩*

# ୧୮୯୪

## ବିଶ୍ୱନାଥ କରଙ୍କ ଦ୍ୱାରା ପ୍ରକାଶିତ 'ବ୍ରାହ୍ମ ପତ୍ରିକା'

"ବ୍ରାହ୍ମ" ପତ୍ରିକା – କଟକ ଭିକ୍ଟୋରିୟା ପ୍ରେସରେ ମୁଦ୍ରିତ, କଟକ ଟାଉନ ସ୍କୁଲର ହେଡମାଷ୍ଟର ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କ ଦ୍ୱାରା ପ୍ରକାଶିତ "ବ୍ରାହ୍ମ" ନାମକ ଖଣ୍ଡିଏ ନୂତନ ମାସିକ ପତ୍ରିକାର ୧ମ ସଂଖ୍ୟା ଅନେକ ଦିନୁ ଆମ୍ଭମାନଙ୍କର କରଗତ ହୋଇଅଛି । ପତ୍ରିକାର କଳେବର ହିତୈଷିଣୀର ଅର୍ଦ୍ଧାଂଶ ହେବ । ଉକ୍ତ ପତ୍ରିକାର ଅର୍ଦ୍ଧାଂଶ ଇଂରାଜୀରେ ଅପର ଅର୍ଦ୍ଧାଂଶ ଓଡିଆ ଭାଷାରେ ଲିଖିତ ବୋଧହୁଏ ସର୍ବଦା ଏହିପରି ରହିବ । ବ୍ରହ୍ମସମାଜର ସମ୍ବାଦ ଏବଂ ଧର୍ମୋପଦେଶ ପ୍ରକାଶ ଏହି ପତ୍ରିକାର ପ୍ରଧାନ ଉଦ୍ଦେଶ୍ୟ । ଉତ୍କଳର ବ୍ରହ୍ମମାନଙ୍କ ପକ୍ଷେ ଏ ଅନୁଷ୍ଠାନ ଅବଶ୍ୟ ମଙ୍ଗଳ ଜନକ । ଭରଶାକରୁଁ ଉତ୍କଳର ବ୍ରାହ୍ମ ଭ୍ରାତାମାନେ ଏ ପତ୍ରିକା ପ୍ରତି ଯଥେଷ୍ଟ ସହାନୁଭୂତି ପ୍ରଦର୍ଶନ କରିବାକୁ କୁଣ୍ଠିତ ହେବେ ନାହିଁ । ପତ୍ରିକାର ଅର୍ଦ୍ଧାଂଶ ଇଂରାଜୀରେ ଲିଖିତ ହେଉଥିବାରୁ ତାହା ଅପର ପ୍ରଦେଶର ବ୍ରାହ୍ମ ଭ୍ରାତାମାନଙ୍କର ସହାନୁଭୂତି ଆକର୍ଷଣ କରିବା ସମ୍ଭବପର । ଏ ପତ୍ରିକାରେ ଅସାମ୍ପ୍ରଦାୟିକ ଭାବରେ ଧର୍ମାଲୋଚନା ହେଲେ ଅନ୍ୟାନ୍ୟ ସଂପ୍ରଦାୟରେ ଏ ପତ୍ରିକା ଆଦୃତ ହେବା ସମ୍ଭବ ନୁହଇ । ପତ୍ରିକାର କଳେବର ଯେପରି କ୍ଷୁଦ୍ର ମୂଲ୍ୟ ମଧ୍ୟ ସେହିପରି ସୁଲଭ ଅଟଇ । "ବ୍ରାହ୍ମ" ର ବାର୍ଷିକ ମୂଲ୍ୟ ମାଶୁଲ ସମେତ ଆଠଅଣା ମାତ୍ର ।

*ଭା୫ଗ, ସଂ୩୮ଖ୍ୟା, ୨୧/୨/୧୮୯୪*

## ସମ୍ବଲପୁରରୁ ଓଡ଼ିଆ ଭାଷା ବିଲୋପକରଣ ଚେଷ୍ଟା ।

ସମ୍ବଲପୁର ବିଭାଗର ପୋଲିଷ ସଂକ୍ରାନ୍ତ କାଗଜପତ୍ର ଓଡ଼ିଆ ଭାଷାରେ ଲିଖିତ ନ ହୋଇ ହିନ୍ଦୀଭାଷାରେ ଲିଖିତ ହେବା ବିଷୟରେ କମିଶ୍ନର ସାହେବ ଏକ ପ୍ରସ୍ତାବ କରି ଚିଫ୍ କମିଶ୍ନରଙ୍କ ପାଖକୁ ପଠାଇଥିଲେ । ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଜଣାଉ ଅଛୁଁ ଯେ ମାନ୍ୟବର ଚିଫ୍ କମିଶ୍ନର ସାହେବ ଉକ୍ତ ପ୍ରସ୍ତାବ ଅନୁମୋଦନ କରିଅଛନ୍ତି , ପୁଣି ସମ୍ବଲପୁର ଜିଲ୍ଲାରେ ହିନ୍ଦୀ ମାତୃଭାଷା ରୂପେ ବ୍ୟବହାର ହୋଇପାରେ କି ନା ଏବଂ ଅଦାଲତରେ ହିନ୍ଦୀ ଅକ୍ଷରରେ ଲେଖାପଢା ଚଳି ପାରେ କି ନା ଏ ସମ୍ବନ୍ଧେ ଡେପୁଟୀ କମିଶ୍ନରଙ୍କୁ ମତ ମଗାଯାଇଥିବାର ଶୁଣୁଅଛୁଁ । ଯଦି ଏକଥା ସତ୍ୟ ହୁଏ ତେବେ ଓଡ଼ିଆମାନଙ୍କ ପକ୍ଷେ ଏଥୁ ବଳି ଅନିଷ୍ଟକର ପ୍ରସ୍ତାବ ଆଉ କି ହୋଇପାରେ ? ସମ୍ବଲପୁର ବାସିନ୍ଦାମାନେ ଓଡ଼ିଆ, ସେମାନଙ୍କ ମାତୃଭାଷା ଓଡ଼ିଆ, ଏହେତୁ ଏ ଜିଲ୍ଲା ଓଡ଼ିଶାର ଅନ୍ତର୍ଗତ ହେବା ଉଚିତ ଥିଲେହେଁ ଶାସନ ବିଭାଗରେ ମଧ୍ୟପ୍ରଦେଶର ଅନ୍ତର୍ଗତ ହୋଇ ଓଡିୟାଭାଷା ଅନୁନ୍ନତର ଏକତର କାରଣ ହୋଇଅଛି । ଏହି ହେତୁ ଆମ୍ଭେମାନେ ଅନେକବାର ଲେଖନୀ ଚାଳନ କରି ଅକୃତକାର୍ଯ୍ୟ ହୋଇଅଛୁଁ । କିନ୍ତୁ ବର୍ତ୍ତମାନ ପ୍ରସ୍ତାବ କାର୍ଯ୍ୟ ପରିଣତ କରାହେଲେ ଏକାବେଳେକେ ଓଡ଼ିଆ ଭାଷା ଏ ଜିଲ୍ଲାରୁ ବିଲୁପ୍ତ ହେବ ଓଡ଼ିୟାମାନଙ୍କର ସର୍ବନାସ କରାହେବ । ଚତୁର୍ଦ୍ଦିଗରେ ହିନ୍ଦୀ ଭାଷାର ବିଦ୍ୟାଳୟ ପ୍ରତିଷ୍ଠିତ ହେବ; ଓଡ଼ିଆ ଅକ୍ଷର, ଓଡ଼ିଆ ଭାଷାର ଚିହ୍ନ ଲୋପ ହେବ ଏଥୁ ବଳି ଆମ୍ଭମାନଙ୍କ ପକ୍ଷେ ଅଧିକ ଆକ୍ଷେପର ବିଷୟ ଆଉ କି ଅଛି ?

ଡେପୁଟୀ କମିଶ୍ନର ସାହେବ ଏ ସମ୍ବନ୍ଧେ ମତାମତ ଜଣାଇବା ସକାଶେ ଯଦ୍ୟପି ଆଦିଷ୍ଟ ହୋଇଥାନ୍ତି ତେବେ ତାଙ୍କର ଭଲରୂପେ ଭାବିଚିନ୍ତି ଅଭିଜ୍ଞମାନଙ୍କର ପରାମର୍ଶ ନେଇ ଏ ଗୁରୁତର ପ୍ରସ୍ତାବ ସମ୍ବନ୍ଧେ ମତ ଦେବା ଉଚିତ ।

ଯେତେ ବେଳେ ଏ ଜିଲ୍ଲା ପ୍ରଥମେ ଇଂରେଜମାନଙ୍କର ହସ୍ତଗତ ହୁଏ ସେତେବେଳେ କର୍ତ୍ତୃପକ୍ଷମାନେ ଏ ଜିଲ୍ଲାରେ ଉର୍ଦ୍ଦୁଭାଷା ଚଳାଇଥିଲେ, ତହିଁରେ କାର୍ଯ୍ୟ ନ ଚଳିବାରୁ ହିନ୍ଦୀଭାଷା ଚଳାଇଲେ, ମାତ୍ର ତାହା ଅସୁବିଧା ଓ ଅନିଷ୍ଟ ଜନକ ହେବାରୁ ଅଗତ୍ୟା ଓଡ଼ିଆ ଭାଷା ଚଳାଇବାକୁ ବାଧ ହେଲେ । ତଦବଧି ଓଡିଆ ଭାଷା ଅବ୍ୟାହତ ରୂପେ ଚଳି ଆସୁଅଛି । ଗୋଟା ଜିଲ୍ଲାର ମାତୃଭାଷା ବିରୁଦ୍ଧରେ ବହୁଦିନରୁ ଚଳି ଆସୁଥିବା ରୀତି ବିରୁଦ୍ଧରେ ବର୍ତ୍ତମାନ କାର୍ଯ୍ୟକରା କେବେହେଁ ଉଚିତ ନୁହେଁ । ଯେବେ ମଧ୍ୟ ପ୍ରଦେଶା-ଧୀନରେ ରହିବାରୁ ସମ୍ବଲପୁର ଜିଲ୍ଲାରେ ଓଡ଼ିଆ ଭାଷା ଚଳାଇବାର ଅସୁବିଧା ହୁଏ ତେବେ ସମ୍ବଲପୁରକୁ ଓଡ଼ିଶ୍ୟା ସଙ୍ଗେ ମିଶାଇ ଦିଆଯାଉ । ନିକଟରେ ରେଳପଥ ଦ୍ୱାରା ଓଡ଼ିଶ୍ୟା ସହିତ ସମ୍ମିଳିତ ହେବାର କଥା ଥିବା ଏବଂ ମହାନଦୀ ଓ ରାଜପଥ ରହିଥିବା ହେତୁ ସମ୍ବଲପୁରକୁ ଓଡ଼ିଶ୍ୟା ସଙ୍ଗେ ମିଳାଇଦେଲେ ଆମ୍ଭେମାନେ ଦୁଃଖିତ ହେବୁଁ ନାହିଁ କିନ୍ତୁ ମଧ୍ୟ ପ୍ରଦେଶରେ ରହି ମାତୃଭାଷା ପରିତ୍ୟାଗ କରିବା ଆମ୍ଭମାନଙ୍କ ପକ୍ଷେ ବଡ଼ ଦୁଃଖ ଓ କଷ୍ଟର ବିଷୟ ହେବ ।

ଭରଶାକରଁ ଡେପୁଟୀ କମିଶ୍ନର ସାହେବ କଦାପି ଓଡ଼ିଆ ଭାଷାର ବ୍ୟବହାର ବିରୁଦ୍ଧରେ ଲେଖନୀ ଋଳନା କରିବେ ନାହିଁ । ମହାମାନ୍ୟ ଚିଫ୍ କମିଶ୍ନର ମହୋଦୟ ମଧ୍ୟ ତଦ୍ରୂପ କାର୍ଯ୍ୟ କରିବାକୁ ଆଉ ମନ ବଳାଇବେ ନାହିଁ , ଦେଶର ଭାଷା ଅଦାଲତର ଭାଷା ବଦଳୀ ନ ଗଲେ, ପୋଲିଷ ସିରସ୍ତାରେ ଅନ୍ୟ ଭାଷାରେ ଲେଖାପଢି ଚଳିବା ଆଦେଶ ସୁବିଧା ଜନକ ବୋଧ ହେଉ ନାହିଁ । ସକଳ ସ୍ଥାନରେ ସକଳ ସିରସ୍ତାରେ ଏକ ଭାଷା ନ ଚଳିଲେ ନିଶ୍ଚୟ କାର୍ଯ୍ୟପ୍ରତି ବାଧା ଘଟିବ । ଏ ସମ୍ବନ୍ଧେ ଡେପୁଟୀ କମିଶ୍ନର ସାହେବଙ୍କର ରିପୋର୍ଟ କରିବା ଉଚିତ ବୋଧକରୁଁ ।

ପୋଲିଷ ବିଭାଗରେ ହିନ୍ଦୀଭାଷା ନ ଚଳିବା ଏବଂ ପ୍ରତି ବିଭାଗରେ ବର୍ତ୍ତମାନ ପରି ଓଡ଼ିଆ ଭାଷା ପ୍ରଚଳିତ ଥିବା ସମ୍ବନ୍ଧେ ସମ୍ବଲପୁର ବାସିନ୍ଦାମାନଙ୍କର ଆନ୍ଦୋଳନ ଆବେଦନ କରିବା ଉଚିତ । ଆଜି ପୋଲିଷ ବିଭାଗରେ ହିନ୍ଦୀଭାଷା ଚଳିଲେ, କାଲି କଚେରୀ ବିଭାଗରେ, ଶିକ୍ଷା ବିଭାଗରେ ହିନ୍ଦୀଭାଷା ଚଳିବା ଅସମ୍ଭବ ନୁହେଁ । ବେଳ ଥାଉ ଥାଉ ପ୍ରତିକାର କରିବା ଉଚିତ , ନଚେତ୍ ପଛକୁ ପଶ୍ଚାତାପ ମାତ୍ର ସାର ହେବ ।

ଓଡ଼ିଶ୍ୟାର ସହଯୋଗିମାନେ, ଉତ୍କଳ ଭାଷାନୁରାଗି ବ୍ୟକ୍ତିମାନେ ଏକ ସର୍ବନାଶୀ ପ୍ରସ୍ତାବ ସମ୍ବନ୍ଧେ ନିଜ ନିଜ ମତ ବିଷଦରୂପେ ବ୍ୟକ୍ତ କଲେ ତାହା କର୍ତ୍ତୃପକ୍ଷଙ୍କୁ ଜଣାଇବା ପ୍ରତି ଆମ୍ଭେମାନେ ବିହିତ କାର୍ଯ୍ୟ କରିବାକୁ ପ୍ରସ୍ତୁତ ଅଛୁଁ ।

*ଭା୬ଗ,ସଂ୧୪୍ୟା, ୬।୬।୧୮୯୪*

## ଓଡ଼ିଆ ଭାଷାର ବିଲୋପ ଚେଷ୍ଟା

ସମ୍ବଲପୁର ପୋଲିଷ ବିଭାଗର କାଗଜପତ୍ର ଓଡ଼ିଆ ଭାଷାରେ ଲେଖା ହୋଇ ଆସୁଥିବା ସ୍ଥଳେ ବର୍ତ୍ତମାନ ହିନ୍ଦିଭାଷାରେ ଲେଖାପଢି ହେବାର ଆଦେଶ ହୋଇଅଛି । ଏବଂ ଅନ୍ୟାନ୍ୟ ଅଫିସରେ ସେହି ହିନ୍ଦିଭାଷା ଚଳାଇବା ବିଷୟରେ ପ୍ରସ୍ତାବ ହେଉଅଛି ଏଥିରେ ଗବର୍ଣ୍ଣମେଣ୍ଟଙ୍କର ଯେ ବିଶେଷ କିଛି ଉପକାର ହେବ ଏହା ନୁହେଁ, ବରଂ ରାଜକାର୍ଯ୍ୟରେ ନାନାଦି ଅସୁବିଧା ଘଟିବାର ଆଶଙ୍କା ରହିଅଛି । ଅନେକ ଦିନ ପୂର୍ବେ ସମ୍ବଲପୁର ଜିଲ୍ଲାରେ ହିନ୍ଦି ଅଦାଲତ ଭାଷାରୂପେ ବ୍ୟବହୃତ ହେଉଥିଲା, ମାତ୍ର ତହିଁରେ କାର୍ଯ୍ୟ ଭଲ ନ ଚଳିବାରୁ ତଦବଧି ଅବ୍ୟାହତ ରୂପେ ଓଡ଼ିଆଭାଷା ଚଳିଆସୁଅଛି । ବର୍ତ୍ତମାନ ଓଡିଆ ଭାଷାକୁ ଉଠାଇ ଦେଇ ହିନ୍ଦିଭାଷା ଚଳାଇବା କଦାପି ବାଞ୍ଛନୀୟ ନୁହେଁ , ସମ୍ବଲପୁର ବାସିଙ୍କର ଏ ପ୍ରସ୍ତାବ ବିରୋଧରେ ଶିଘ୍ର ପ୍ରତିବାଦ କରିବା ଉଚିତ । ଉତ୍କଳ ଦୀପିକା ଲେଖିଅଛନ୍ତି ,-

ସମ୍ବଲପୁରରେ ପୁଲିସ କାଗଜମାନ ଏଣିକି ଓଡ଼ିଆ ଭାଷାରେ ଲେଖା ନ ଯାଇ ହିନ୍ଦି ଭାଷାରେ ଲଖାଯିବାର ପ୍ରସ୍ତାବ ହେବାରୁ ସମ୍ବଲପୁର ହିତୈଷିଣୀ ଯଥାର୍ଥ କହିଅଛନ୍ତି କି ଏ ପ୍ରସ୍ତାବ ସମ୍ବଲପୁରରୁ ଓଡ଼ିୟାଭାଷା ଉଠାଇ ଦେବାର ଚେଷ୍ଟା ଭିନ୍ନ ଅନ୍ୟ କିଛି ନୁହେଁ । ବାସ୍ତବରେ ପୁଲିସ କାଗଜମାନ ଦେଶୀୟ ଭାଷାରେ ଲେଖାହେବାର ନିୟମ ସର୍ବତ୍ରରେ ପ୍ରଚଳିତ

ଏବଂ ତାହା ହେବା ଉଚିତ । ସମ୍ବଲପୁର ଭାଷା ଯେ ସ୍ଥଳେ ଓଡ଼ିଆ ଅଟେ ସେ ସ୍ଥଳେ ହିନ୍ଦିଭାଷାରେ ପୁଲିସ ତଦାରଖି କାଗଜମାନ ଲେଖାଯିବ ଅନ୍ୟାୟ ଏବଂ ତହିଁରେ ନାନା ଭ୍ରମ ଓ ଅସୁବିଧା ଘଟିବାର ସନ୍ଦେହ ନାହିଁ । ସମ୍ବଲପୁରବାସିଙ୍କର ଏହି ସମୟର ଏ ପ୍ରସ୍ତାବର ପ୍ରତିବାଦ କରିବା ଉଚିତ ।

*ଭା୬ଗ, ସଂ୫ଖ୍ୟା, ୪/୭/୧୮୯୪*

## ସମାଲୋଚନା ।

ମଧ ପ୍ରଦେଶର "ସରଳ ଭୂଗୋଳ ପାଠ" ନାମକ ଡିମାଇ ଷୋଳପେଜି ଆଡ଼ର ୨୯ ପୃଷ୍ଠା ପୂର୍ଣ୍ଣ ଖଣ୍ଡିଏ ପୁସ୍ତକ ସମାଲୋଚନା ସକାଶେ ପାଇଅଛୁଁ । ଏ ପୁସ୍ତକ ବାବୁ ଜଗନ୍ନାଥ ପଟ୍ଟନାୟକଙ୍କ ଦ୍ୱାରା ସଙ୍କଳିତ ଓ ପ୍ରକାଶିତ ଏବଂ ବାମଣ୍ଡା ସୁଢଳ ଯନ୍ତ୍ରରେ ମୁଦ୍ରିତ । ସଙ୍କଳନ କର୍ତ୍ତା ଗତ ସେନସେସ୍ ଏବଂ ପ୍ରାଦେଶିକ ନାନାବିଧ ବାର୍ଷିକ ରିପୋର୍ଟାଦିରୁ ସମସ୍ତ ଜ୍ଞାତବ୍ୟ ବିଷୟ ସଂଗ୍ରହ କରି ଓଡ଼ିଆ ସ୍କୁଲ ଛାତ୍ର ମାନଙ୍କ ଶିକ୍ଷା ସକାଶେ ଏ ପୁସ୍ତକ ଲେଖିଅଛନ୍ତି । ଏ ପ୍ରଦେଶରେ ବର୍ତ୍ତମାନ ପ୍ରଚଳିତ ଥିବା ଦୁଇଖଣ୍ଡି ଭୂଗୋଳ ଦେଖିଅଛୁଁ । ଆମ୍ଭମାନଙ୍କ ସ୍ଥୁଳ ବିବେଚନାରେ ଏ ଭୂଗୋଳ ଜ୍ଞାତବ୍ୟ ବିଷୟ ଦୃଷ୍ଟିରେ ୨ୟ ସ୍ଥାନ ପାଇବାର ଯୋଗ୍ୟ । ସଂଗ୍ରାହକ ଜଣେ ଯୋଗ୍ୟ ଏବଂ ବାମଣ୍ଡା ଶିକ୍ଷା ବିଭାଗର ତତ୍ତ୍ୱାବଧାରକ । ବୋଧକରୁଁ ସେ ଏ ପୁସ୍ତକର ସଂଗ୍ରହ କାର୍ଯ୍ୟ ନିର୍ଭୁଲ ରୂପେ କରିଥିବେ ତାହା ହୋଇଥିଲେ ପୁସ୍ତକ ଖଣ୍ଡି ଏ ପ୍ରଦେଶର ଓଡ଼ିଆ ସ୍କୁଲ ସମୂହରେ ପାଠ୍ୟରୂପେ ପ୍ରବର୍ତ୍ତିତ ହେବା ଉଚିତ । ପୁସ୍ତକର ମୂଲ୍ୟ ଛଅପଇସା ନିର୍ଦ୍ଦିଷ୍ଟ ଅଛି, ଏହା କିଞ୍ଚିତ ଅଧିକ ବୋଧ ହେଲା , ମୁଦ୍ରଣ କାର୍ଯ୍ୟ ଆଉ ଟିକିଏ ପରିପାଟୀର ସହିତ ହେବାଉଚିତ ଥିଲା । ଏ ପୁସ୍ତକ ପ୍ରତି "ବାମଣ୍ଡା ଶିକ୍ଷା ତତ୍ତ୍ୱ ସମିତି"ର ମନୋଯୋଗ ଆକର୍ଷଣ କରୁଅଛୁଁ ।

*ଭା୬ଗ, ସଂ୬ଖ୍ୟା, ୧୧/୭/୧୮୯୪*

## ଓଡ଼ିୟାଭାଷା ବିଲୋପ ଚେଷ୍ଟା

ସମ୍ବଲପୁର ଜିଲ୍ଲାର ପୋଲିଷ ସିରସ୍ତାର ଲେଖା ପଢି ଓଡ଼ିୟା ଭାଷାରେ ନ ହୋଇ ହିନ୍ଦି ଭାଷାରେ ହେବା ଏବଂ ଅଦାଲତର ଲେଖାପଢି ଓଡ଼ିୟାରେ ନ ହୋଇ ହିନ୍ଦିରେ ହେବାର ପରାମର୍ଶ ଲାଗିଥିବା ସମ୍ବାଦ ପାଇ ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ହୋଇଅଛୁ । ମାତୃଭାଷାକୁ ହରାଇ ବସିବା କି ଉଣା ଦୁଃଖର କଥା ? କଚେରୀର କାଗଜ ପତ୍ର ହିନ୍ଦିରେ ଲେଖାଗଲେ ସ୍କୁଲମାନଙ୍କରେ ଅଗତ୍ୟା ହିନ୍ଦି ପାଠ ପଢିବାକୁ ହେବ । ସର୍ବଦା ହିନ୍ଦିର କାରବାର ହେଲାରୁ ମାତୃଭାଷା ଓଡ଼ିୟାକୁ ଛାଡ଼ି ହିନ୍ଦିରେ କଥାବାର୍ତ୍ତା କରିବାକୁ ହେବ । ଓଡ଼ିୟା ଭାଷା ଚର୍ଚ୍ଚା ଅଭାବରୁ ଏକାବେଳକେ ଲୋପ ପାଇବ । ଏହା କି ଆମ୍ଭମାନଙ୍କ ପକ୍ଷେ ଶୁଭ ସମ୍ବାଦ ? ମାତୃଭାଷାକୁ ବିସର୍ଜନ ଦେବା କି ବାଞ୍ଛନୀୟ ? ନା, କଦାପି ନୁହେଁ । ତେବେ ଏଥିର ପ୍ରତିକାର କି ? ଏଥିର ଅବଶ୍ୟ ପ୍ରତିକାର ଅଛି । ଏ ବିଷୟ ନେଇ ଗ୍ରାମେ ଗ୍ରାମେ ସଭା ସମିତି ହେଉ । ଏ ପ୍ରସ୍ତାବ ସମ୍ବନ୍ଧେ ଆଲୋଚନା ହେଉ , ଏ ପ୍ରସ୍ତାବର ଅପକାରିତା ପ୍ରତିପନ୍ନ କରାଯାଇ ଓଡ଼ିୟା ଭାଷାର ଆବଶ୍ୟକତା ପ୍ରକାଶ କରାଯାଉ ଏବଂ ଦରଖାସ୍ତ ଯୋଗେ ସେ ସବୁ ବିଷୟ ଡେପୁଟୀ କମିଶ୍ନରଙ୍କ ନିକଟକୁ ଏବଂ ଚିଫ କମିଶ୍ନରଙ୍କ ନିକଟକୁ ପଠାଯାଉ । ସୁବିବେଚକ କର୍ତ୍ତୃପକ୍ଷମାନେ ସହସ୍ର ସହସ୍ର ପ୍ରଜାଙ୍କ ଯୁକ୍ତିଯୁକ୍ତ ଆବେଦନ କଦାପି ଉପେକ୍ଷା କରିପାରିବେ ନାହିଁ । ଓଡ଼ିୟାମାନଙ୍କର ଏ ଦୁଃସମୟରେ କଦାପି ଉଦାସୀନ ହେବା ଉଚିତ୍ ନୁହେଁ ।

ଆମ୍ଭେମାନେ ଆନନ୍ଦର ସହିତ ଜଣାଉ ଅଛୁଁ ଯେ ସମ୍ବଲପୁରର ସୁପ୍ରଥିତନାମା ଶ୍ରୀଯୁକ୍ତ ପଣ୍ଡିତ ଧରଣୀଧର ମିଶ୍ର ମହାଶୟ ଏ ଦୁଃସମ୍ବାଦରେ ବ୍ୟଥିତ ହୋଇ ଗତ ମାସ ତା୧୩ ରିଖ ଦିନ ନଗରର ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କୁ ନେଇ ଏକ ସଭା ସ୍ଥାପନ କରିଥିଲେ ଏବଂ ସେହି ସଭାରେ ଏ ସମ୍ବନ୍ଧରେ ଏକ ବକ୍ତୃତା ଦେଇଅଛନ୍ତି । ଉକ୍ତ ସଭାର ବିସ୍ତାରିତ କାର୍ଯ୍ୟ ବିବରଣୀ ପ୍ରାପ୍ତ ସ୍ତମ୍ଭରେ ପ୍ରକାଶିତ ହେଲା । ଧରଣୀଧର ବାବୁ ଉକ୍ତ କାର୍ଯ୍ୟ କରିବା ଦ୍ୱାରା ଯଥେଷ୍ଟ ପରିମାଣରେ କର୍ତ୍ତବ୍ୟ ପରାୟଣତା ଓ ସ୍ୱଦେଶାନୁରାଗି ପରିଚୟ ଦେଇଅଛନ୍ତି । ଓଡ଼ିୟା ଭାଷାର

ବ୍ୟବହାର ସ୍ଥିର ରଖିବା ସକାଶେ ଉକ୍ତ ସଭା ଆବେଦନ କରିବାର ପ୍ରସ୍ତାବ କରି ଅଛନ୍ତି । ଆମ୍ଭେମାନେ ତାହା ଅନ୍ତରର ସହିତ ଅନୁମୋଦନ କରୁ ଅଛୁଁ ।

ଆମ୍ଭମାନଙ୍କ ମତରେ ଉକ୍ତ ଦରଖାସ୍ତ ଓଡ଼ିୟା ଓ ଇଂରେଜି ଉକ୍ତ ଉଭୟ ଭାଷାରେ ଲିଖିତ ହୋଇ ମୁଦ୍ରିତ ହେଉ ଏବଂ ତାହା ମୋଫସଲକୁ ପଠାଯାଇ ସମସ୍ତଙ୍କର ସ୍ୱାକ୍ଷର ସଂଗ୍ରହ କରାଯାଉ ଏବଂ ତାହା ଡେପୁଟି କମିଶ୍ନର, ଏବଂ ଚିଫ୍ କମିଶ୍ନରଙ୍କ ନିକଟକୁ ପଠାଯାଉ ଏବଂ ଏକ ଏକ ପ୍ରସ୍ତ ଦରଖାସ୍ତ ଆଲୋଚନା ନିମନ୍ତେ ବିଖ୍ୟାତ ସମ୍ବାଦପତ୍ର ସମ୍ପାଦକମାନଙ୍କ ନିକଟକୁ ପଠାଯାଉ । ଓଡ଼ିୟାଭାଷା ପ୍ରଚଳନରେ ବାଧା ନ ଘଟାଇବା ସକାଶେ , କଳାହାଣ୍ଡି, ପାଟଣା, ସୋନପୁର, ରେଢାଖୋଲ, ବାମଣ୍ଡାର ଚିଫ୍‌ମାନେ କମିଶ୍ନର ଓ ଚିଫ୍ କମିଶ୍ନରଙ୍କୁ ପତ୍ର ଲେଖନ୍ତୁ । ସେମାନେ ଜାତିରେ ଓଡ଼ିଆ ଓ ସେମାନଙ୍କ ମାତୃଭାଷା ଓଡ଼ିୟା ଥିବାସ୍ଥଳେ ସେମାନଙ୍କର ଏ ସମ୍ବନ୍ଧେ ଆପତ୍ତି କରିବା ଅନୁଚିତ ହେବ ନାହିଁ । ବିଶେଷତଃ ବନ୍ଧୁଭାବରେ ଗଭର୍ଣ୍ଣମେଣ୍ଟଙ୍କୁ ସତ୍ ପରାମର୍ଶ ଦେଲେ ସୁଖ୍ୟାତିର ଅଧିକାରୀ ହବାର ବିଶେଷ ସମ୍ଭାବନା । ସମ୍ବଲପୁରରେ ହିନ୍ଦି ଭାଷା ପ୍ରଚଳିତ ହେଲେ ଉକ୍ତ ଗଡ଼ଜାତର ରାଜାମାନଙ୍କୁ ଅବଶ୍ୟ ଅସୁବିଧା ଭୋଗ କରିବାକୁ ପଡ଼ିବ । ହିନ୍ଦି ଅକ୍ଷର ଓ ଭାଷାର ସମନ, ଉଆରଣ୍ଟ ତରବକାରୀ ଆଦି ସେହି ସେହି ରାଜ୍ୟକୁ ସର୍ବଦା ଯିବା ଆସିବା କରିବାରୁ ରାଜାମାନଙ୍କ ହିନ୍ଦି ଭାଷା ଜାଣିଥିବା ଜଣେ ଜଣେ ମୋହରିର ରଖିବାକୁ ହେବ । ଏ ସବୁ କଥା ପରିତ୍ୟାଗ କଲେ ମଧ୍ୟ ନିଜର ମାତୃଭାଷାର ପ୍ରଚଳନ ସ୍ଥିର ରଖିବା ସକାଶେ ସେମାନଙ୍କର ବିହିତ ଚେଷ୍ଟା କରିବା ସର୍ବତୋଭାବରେ ବିଧେୟ ।

ସମ୍ବଲପୁରର ରାଜକୀୟ କାର୍ଯ୍ୟାଳୟରେ ହିନ୍ଦିଭାଷା ନ ଚଳାଇଲେ ଯେବେ ଅସୁବିଧା ଘଟିବା କଥା କର୍ତ୍ତୃପକ୍ଷମାନେ ବିଶ୍ୱାସ କରନ୍ତି ତେବେ ସେମାନେ ସମ୍ବଲପୁର ଜିଲ୍ଲାକୁ ଓଡ଼ିଶ୍ୟାର ଅନ୍ତର୍ଗତ କରି ଦେଉନ୍ତୁ । ତାହା ହେଲେ ରାଜା ପ୍ରଜା କାହାରି ସ୍ୱାର୍ଥରେ ବାଧା ନ ଘଟି ସୁଚାର ରୂପେ କାର୍ଯ୍ୟ ଚଳିପାରେ ।

ସମ୍ବଲପୁରବାସୀଙ୍କର ଓ ଆମ୍ଭମାନଙ୍କର ଏ ସମ୍ବନ୍ଧୀୟ ମନ୍ତବ୍ୟ ସବୁ ଡେପୁଟୀ କମିଶ୍ନର ଏବଂ କମିଶ୍ନରଙ୍କ ଗୋଚରରେ ଆଣିବା ସକାଶେ ଆମ୍ଭେମାନେ ଉକ୍ତ ଉଭୟଙ୍କ ଅଫିସସ୍ଥ ଟ୍ରାନ୍ସଲେଟର ମହାଶୟ ମାନଙ୍କୁ ବିଶେଷ ଭାବରେ ଅନୁରୋଧ କରୁ ଅଛୁଁ ।

*ଭା୬ଗ, ସଂ୮ଖ୍ୟା, ୨୫।୭।୧୮୯୪*

## ଭାଷା ପରିବର୍ତ୍ତନର ପ୍ରତିବାଦ

ତା ୧୩।୭।୯୪ ରେ ପାଦ୍ରିସାହେବଙ୍କ ବୁକ୍ ରମରେ ଅତ୍ରତ୍ୟ ଅଦାଲତର ଭାଷା ସମ୍ବନ୍ଧେ ବାଦାନୁବାଦ କରିବା ଉଦ୍ଦେଶ୍ୟରେ ଏକ ସଭା ହୋଇଥିଲା ଲୋକର ଜନତା ପ୍ରଯୁକ୍ତ ହଲରେ ସ୍ଥାନ ନ ହେବାରୁ ଅନେକ ଲୋକ ବାହାର ବରନ୍ଦାରେ ଦଣ୍ଡାୟମାନ ଥିଲେ । ଶ୍ରୀଯୁକ୍ତ ପଣ୍ଡିତବର ଶ୍ରୀକୃଷ୍ଣ ମିଶ୍ରଙ୍କୁ ସଭାପତି କରାଯାଇଥିଲା । ବାବୁ ଧରଣୀଧର ମିଶ୍ର ନିମ୍ନ ଲେଖାମତେ ଏକ ବକ୍ତୃତା ଦେଲେ ।

ସଭାପତି ମହାଶୟ ! ସଭାସଦ ମହାଶୟମାନେ ସମ୍ବଲପୁର ହିତୈଷିଣୀର ତା ୬।୬।୯୪ ବର୍ଷ, ଲିଖିତ "ସମ୍ବଲପୁରର ଓଡିଆଭାଷା ବିଲୋପ କରଣ ଚେଷ୍ଟା" ତା ୨୭।୬।୯୪ ବର୍ଷ ଲିଖିତ "ହିନ୍ଦିଭାଷାର ଶିକ୍ଷକ"ଓ ତା ୪।୭।୯୪ ବର୍ଷ ଲିଖିତ ଓଡ଼ିଆଭାଷାର ବିଲୋପ ଚେଷ୍ଟା ପ୍ରବନ୍ଧମାନ ବୋଧ କରୁଁ ଆପଣମାନେ ପାଠକରି ଅଛନ୍ତି । ଆପଣମାନଙ୍କୁ ସ୍ମରଣ କରାଇବା ସକାଶେ ସେସବୁ ପାଠକରୁ ଅଛୁଁ ଉକ୍ତ ପ୍ରବନ୍ଧମାନ ପାଠର ଓ ଅନ୍ୟାନ୍ୟ ସୁତ୍ରର ଅବଗତ ହୋଇଅଛୁଁ । ଯେ ଅତ୍ରତ୍ୟ କଚେରୀରେ ଓଡିଆଭାଷା ପରିବର୍ତ୍ତରେ ହିନ୍ଦିଭାଷା ଚଳାଇବାର ଅନୁସନ୍ଧାନ ଲାଗିଅଛି ଏ ବିଷୟରେ ଆମ୍ଭେ ଯତ୍‌ପରୋନାସ୍ତି ଦୁଃଖିତ ହୋଇ ଏ ସଭାରେ ଉପସ୍ଥିତ ହେବାପାଇଁ ଆପଣମାନଙ୍କୁ ଅନୁରୋଧ କରିଥିଲୁଁ ଆପଣମାନେ ଅନୁଗ୍ରହ ପୂର୍ବକ ଉପସ୍ଥିତ ହୋଇ ଆମ୍ଭମାନଙ୍କୁ କୃତାର୍ଥ କରିଅଛନ୍ତି । ଏ ଭାଷା ପରିବର୍ତ୍ତନ ସମ୍ବନ୍ଧରେ ଆମ୍ଭର ଦୁଇ ଏକ କଥା ହେବାର ଅଛି ତାହା ଆପଣମାନେ ଶ୍ରବଣ କଲାପରେ ବିହିତ କାର୍ଯ୍ୟାନୁଷ୍ଠାନ ସମ୍ବନ୍ଧେ ଆପଣା ଆପଣାମତ ପ୍ରକାଶ କରି ବାଧିତ କରିବେ ।

## ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଆମ୍ଭର ବକ୍ତବ୍ୟ ଏହି ଯେ ସମ୍ବଲପୁର ଗୋଟିଏ ଓଡ଼ିଆ ଜିଲ୍ଲା ଅଟେ । ଆମ୍ଭେମାନେ ଜାତିରେ ଓଡିଆ ଏହି ଓଡ଼ିଆ ଜିଲ୍ଲାରେ ଆମ୍ଭମାନଙ୍କର ଜନ୍ମ, ଏଠାରେ ଆମ୍ଭେମାନେ ପାଳିତ ବର୍ଦ୍ଧିତ ହୋଇଅଛୁଁ । ଓଡିଆ ଆମ୍ଭର ମାତୃଭାଷା ଅଟେ । ଉକ୍ତ ଭାଷାର କିଛି ଶିକ୍ଷାଲାଭ କରି କଷ୍ଟ ସୃଷ୍ଟରେ ଜୀବିକା ନିର୍ବାହ କରୁଅଛୁଁ । ଆମ୍ଭମାନଙ୍କ ମଧ୍ୟରୁ ଅନେକେ କେବଳ ଓଡିଆଭାଷା ଲେଖିପଢିପାରୀ ସେମାନେ ସୁଦ୍ଧା ଉକ୍ତ ଭାଷାରେ ବ୍ୟୁତ୍ପନ୍ନ ନୁହଁନ୍ତି ଆପଣା କାର୍ଯ୍ୟ ଚଳାଇବା ଭଳି ଶିକ୍ଷା ପ୍ରାପ୍ତ ହୋଇଅଛନ୍ତି । ସମ୍ବଲପୁରରେ ଏପରି ଲୋକ କେହି ନାହିଁ ଯାହାକି ଜ୍ଞାନୋପାର୍ଜନ ଉଦ୍ଦେଶ୍ୟରେ ବିଦ୍ୟାଭ୍ୟାସ କରାଇ ଏହା ଗୋଟିଏ ନିର୍ଧନ୍ୟ ଦେଶ ଅଟେ । ସମସ୍ତ ବିଦ୍ୟାଭାସିମାନଙ୍କୁ ନୌକରି ଉପରେ ନିର୍ଭର କରିବାକୁ ପଡ଼େ । ଇଂରାଜୀ ରାଜବିଦ୍ୟା ହେଉଅଛି ଇଂରାଜୀ ନ ପଢିଲେ ଭଲକର୍ମ୍ମ କିମ୍ବା ଉନ୍ନତି ମିଳିବାର ସମ୍ଭାବନା ନ ଥିବାରୁ ସମସ୍ତ ଉଚ୍ଚାଭିଳାଷୀମାନଙ୍କୁ ଇଂରାଜୀ ପଢିବାକୁ ହୁଏ । ଇଂରାଜୀ ବିଦେଶୀୟ ଭାଷା ଥିବାରୁ ତାହା ଶିକ୍ଷା କରିବାର ଆମ୍ଭମାନଙ୍କ ପକ୍ଷରେ ସୁକଠିଣ ହୁଏ, କୌଣସି ଲୋକକୁ କ୍ରମାଗତ ୭/୮/୧୦ବର୍ଷ ଉକ୍ତ ଭାଷା ଶିକ୍ଷା କଲାପରେ ମଧ ଉକ୍ତ ଭାଷା ନିର୍ଦ୍ଦୋଷରୂପେ କହିବା କି ଲେଖିବା ତାହା ପକ୍ଷରେ କଠିନ ହୋଇଥାଏ । ସମ୍ବଲପୁର ସ୍ୱାଭାବିକ ବିଭାଗରେ ଓଡିଶାର ଏକ ଅଂଶ ଅଟେ । ମାତ୍ରକ ଶାସନ ବିଭାଗ ସକାଶେ ଓଡିଶାର ପୃଥକ୍ କରାଯାଇ ମଧ୍ୟପ୍ରଦେଶାନ୍ତର୍ଗତ କରାଯିବାର ବିଦ୍ୟୋନ୍ନତି ବିଷୟରେ ବିଶେଷ ବାଧା ପାଇଅଛି ଅତ୍ରତ୍ୟ ଲୋକମାନେ କଟକ କିମ୍ବା ଅନ୍ୟାନ୍ୟ ଉନ୍ନତ ପ୍ରଦେଶ ଅପେକ୍ଷା ବିଦ୍ୟାଶିକ୍ଷା ସମ୍ବନ୍ଧରେ ଅଧିକ ପଛରେ ପଡ଼ିଅଛନ୍ତି ଉଚ୍ଚଶିକ୍ଷା ପାଇବାର ସୁବିଧା ନାହିଁ ଏ କାରଣରୁ ଏଠାର ଲୋକମାନେ ଲେଖାପଢା ଊଣା ଜାଣନ୍ତି । ସେମାନଙ୍କର ଧୀଶକ୍ତି ଓ ଲେଖାପଢା ଶକ୍ତି ପ୍ରସ୍ଫୁଟିତ ହୋଇପାରେ ନାହିଁ । ଏ ଅବସ୍ଥାରେ ଏଠାର ଲୋକମାନଙ୍କୁ ଆଉ ଗୋଟିଏ ବିଦେଶୀୟ ଭାଷା ଶିକ୍ଷା କରିବାକୁ ବାଧକରିବା ଉଚିତ ବୋଧ ହେଉନାହିଁ । ହିନ୍ଦୀଭାଷା ଏଠାର ଅନେକ ଲୋକ ବୁଝିପାରନ୍ତି ଓ କହିପାରନ୍ତି ଏହା କୁହାଯାଇ ପାରେ ମାତ୍ର କଥିତଭାଷା ଓ ଲିଖିତ ଭାଷାରେ ବିଶେଷ ପ୍ରଭେଦ ଅଛି ପୁନଶ୍ଚ ହିନ୍ଦୀ ଭାଷାରେ ଆମ୍ଭେମାନେ ଯେଉଁ କଥୋପକଥନ କରୁଁ ତାହା ସର୍ବଦା ଅଶୁଦ୍ଧ ଥିବାର ଦେଖାଯାଏ । ହିନ୍ଦୀଭାଷାକୁ ଏପରି ଶିକ୍ଷା କରିବାକୁ ହେବ ଯେପରି କି ବହି ରେଜିଷ୍ଟର ହୁକୁମନାମା ପରୱାନା ରୋବକାରୀ ନୋଟିସ ସମନ ୱାରଣ୍ଟ ଓ ଅନ୍ୟାନ୍ୟ କାଗଜ ଲେଖିପଢିପାରିବା, ଏହା ସହଜ କର୍ମ୍ମ ନୁହେଁ ଦୁଇ ଏକ ଜଣ ବଡ଼ କଷ୍ଟରେ ହିନ୍ଦୀ ଭାଷାରେ ତଦ୍ରୂପ ଯୋଗ୍ୟତା ଲାଭକଲେ ମଧ ଅନେକେ ଯେ ପାରିବେ ନାହିଁ ଏଥିରେ ସନ୍ଦେହ ନାହିଁ, ସୁତରାଂ ଆପଣା ଆପଣା କର୍ମ୍ମରୁ ବଞ୍ଚିତ ହେବେ ଏହା ସାମାନ୍ୟ ଦୁଃଖର ବିଷୟ ନୁହେଁ । ଉପସ୍ଥିତ ଅମଲା କର୍ମଚାରୀମାନଙ୍କୁ ତହିପାଇଁ କର୍ମଚ୍ୟୁତ କରାଯିବ ନାହିଁ ବୋଲି ନିୟମ କରାଯାଇପାରେ, ମାତ୍ରକ ତହିଁପାଇଁ ସେମାନଙ୍କର ଉନ୍ନତି ପାଇବାର ସ୍ଥଗିତ ରଖିଲେ ସେମାନଙ୍କ ପକ୍ଷରେ କି ଅବିଚାର ନ - ହେଲା ?

ଏଜିଲ୍ଲାର ଲୋକମାନେ ଭାଷାଶିକ୍ଷା ବିଷୟରେ ଏପରି ପାରଗତା ଦେଖାଇ ନାହାଁନ୍ତି ଯହିଁରେ ସେମାନେ ଗୋ୨ଟି ବିଦେଶୀୟ ଭାଷାଶିକ୍ଷା କରିବାର ଉପଯୋଗୀ ବିଚାର କରାଯିବ । ଆଜିକାଲି ସର୍ବତ୍ର ମାତୃଭାଷା ଓ ରାଜଭାଷା ପ୍ରଚଳିତ ଥିବାର ଦେଖାଯାଏ । ମାତ୍ରକ ଏକ ତୃତୀୟ ବିଦେଶୀୟ ଭାଷାଶିକ୍ଷା କରିବାକୁ ଲୋକଙ୍କୁ ବାଧ କରିବା କଥା ଆମ୍ଭେମାନେ ଦେଖିନାହୁଁ କି ଶୁଣିନାହୁଁ । ଏ ଜିଲ୍ଲା ସନ ୧୮୪୯ ସାଲରେ ଇଂରେଜୀ ଶାସନାଧୀନରେ ଆସିଲା ସମୟରେ ଓଡିଆ ଲେଖାପଢା ଜାଣିବାଲୋକ ଯଥେଷ୍ଟ ସଂଖ୍ୟକରେ ମିଳୁନଥିବାରୁ ଅଦାଲତରେ ଉର୍ଦ୍ଦୂଭାଷାରେ କାର୍ଯ୍ୟାନୁଷ୍ଠାନ ହେଉଥିଲା ତାହା ଲୋକମାନଙ୍କର ବୋଧଗମ୍ୟ ନ ହେବାରୁ ଉକ୍ତ ଭାଷା ପରିବର୍ତ୍ତିତ କରାଯାଇ ହିନ୍ଦିଭାଷା ବ୍ୟବହାର ହେବାକୁ ଲାଗିଲା । କେତେକ ବର୍ଷପରେ ଦେଖାଗଲା ଯେ ହିନ୍ଦିଭାଷାରେ କାର୍ଯ୍ୟାନୁଷ୍ଠାନ ହେତୁ ଏଠାର ଲୋକମାନଙ୍କର ବିଶେଷ ଅସୁବିଧା ହେଉଅଛି ଏଣୁ ହିନ୍ଦି ପରିବର୍ତ୍ତନରେ ଏଠାର ମାତୃଭାଷା ଓଡିଆଭାଷା ବ୍ୟବହୃତ ହେଲା ଆଜକୁ ପ୍ରାୟ ବତୀଶବର୍ଷ ହେବ । ଏହି ଓଡିଆ ଭାଷା ନିରନ୍ତର ବ୍ୟବହାର ହୋଇ ଆସୁଅଛି । ଇତି ମଧ୍ୟରେ ବହୁସଂଖ୍ୟକ ଓଡିଆ ସ୍କୁଲ ସଂସ୍ଥାପିତ ହୋଇଥିବାରୁ ସହସ୍ର ସହସ୍ର ଲୋକ ବିଦ୍ୟାଶିକ୍ଷା କରିଅଛନ୍ତି କୌଣସି ମହକୁମାରେ କୌଣସି କର୍ମ ଖାଲି ହେଲେ ସୁଲଭ ବେତନରେ ଅନାୟାସରେ ଲୋକ ମିଳୁଅଛନ୍ତି । ଏହି ଜିଲ୍ଲାର ପ୍ରାୟ ସମସ୍ତ କର୍ମ ଆଜିପର୍ଯ୍ୟନ୍ତ ଏଠାର ଲୋକମାନେ କରିଆସୁଥିଲେ ଏବେ ସେମାନଙ୍କର ବୃତ୍ତିଚ୍ଛେଦର ସୂତ୍ରପାତ ହେଉଅଛି ।

ଓଡିଆ ବଦଳରେ ଏହି ଜିଲ୍ଲାରେ ହିନ୍ଦୀଭାଷା ବ୍ୟବହାର କରାଯିବା କଥା କିପରି ଉତ୍ପତ୍ତି ହେଲା ଓ କି କାରଣରୁ ହେଲା ଆମ୍ଭମାନଙ୍କୁ ଜଣାନାହିଁ । ହିନ୍ଦୀଶିକ୍ଷା କରିବା ନିମନ୍ତେ ପୋଲିସ କର୍ମଚାରୀମାନଙ୍କୁ ଆଦେଶ ଦିଆଯାଇଅଛି ଓ ହିନ୍ଦୀ ପରିକ୍ଷାରେ ପାସ ନ କରିବା ପର୍ଯ୍ୟନ୍ତ ସେମାନଙ୍କ ଉନ୍ନତି ବନ୍ଦ କରାଯିବ ବୋଲି ଆମ୍ଭେ ଶୁଣୁଅଛୁଁ । କେତେକ ବର୍ଷ ହେଲା ସମ୍ବଲପୁରରୁ ଅନ୍ୟ ଜିଲ୍ଲାକୁ ଓ ଅନ୍ୟଜିଲ୍ଲାରୁ ସମ୍ବଲପୁରକୁ ପୋଲିସ ଅଫିସରମାନଙ୍କ ପରିବର୍ତ୍ତନ ହେଉଅଛି , ଅଳ୍ପଦିନ ପୂର୍ବରେ ରାୟବାହାଦୁର ରତନ ସିଂହ ଡିଷ୍ଟ୍ରିକ୍ଟ ସୁପ୍ରେଣ୍ଟେଣ୍ଡେଣ୍ଟ ପୋଲିସ ସାହେବ ଥିଲେ । ସେ ଦେଶୀୟ ଲୋକ ଥିଲେ ଉର୍ଦ୍ଦୁ ଓ ହିନ୍ଦୀଭାଷା ଜାଣୁଥିଲେ । ଓଡ଼ିଆଭାଷା ଜାଣୁ ନଥିବାରୁ ତାଙ୍କୁ ବିଶେଷ ଅସୁବିଧା ଭୋଗୀବାକୁ ପଡୁଥିଲା ଏହି ପରିବର୍ତ୍ତନ ପୋଲିସ କର୍ମଚାରିମାନେ ଏଠାରୁ ଅନ୍ୟ ଜିଲ୍ଲାକୁ ଯାଇ ସହଜରେ ହିନ୍ଦୀରେ କାମ କରିପାରିବେ ଓ ଅନ୍ୟ ଜିଲ୍ଲାରୁ ଯେଉଁମାନେ ଏ କିଲ୍ଲାକୁ ଆସିବେ ସେମାନଙ୍କ ସୁବିଧା ସକାଶେ ସେ ଅବା ଏପରି ନିସ୍ତବ କରିଥିବେ ଯଦି ତାହା ହୁଏ ତେବେ ଭାଷା ପରିବର୍ତ୍ତନର ଯଥେଷ୍ଟ କାରଣ ଦେଖାଯାଉ ନାହିଁ । ଏଠାରୁ ଅନ୍ୟ ଜିଲ୍ଲାକୁ ଯେଉଁ ଦୁଇଚାରି ଜଣ ପରିବର୍ତ୍ତିତ ହେବେ କିମ୍ବା ଅନ୍ୟଜିଲ୍ଲାରୁ ଏଠାକୁ ଯେଉଁ ଦୁଇଜଣ ପରିବର୍ତ୍ତିତ ହୋଇ ଆସିବେ ସେମାନଙ୍କ ସକାଶେ ଗୋଟିଏ ଭାଷା ପରିବର୍ତ୍ତନ କରିବା ଓ ତଦ୍ୱାରା ଏଠାର ମାତୃଭାଷାକୁ ଉଚ୍ଛନ୍ନ ଦେବା କଦାପି ଉଚିତ୍ ନୁହେଁ । ଆଜି ପୋଲିସ ବିଭାଗରେ ହିନ୍ଦୀଭାଷା ବ୍ୟବହାର ହେବାର ଆଦେଶ ହେଲା କାଲି କଚେରୀରେ ହିନ୍ଦୀଭାଷା ବ୍ୟବହାର ହେବାର ଆଦେଶ ହେବ ତତ୍ପରେ ବନ୍ଦୋବସ୍ତ ମହକୁମାରେ ପଟୁଆରୀ ଇନ୍ସପେକ୍ଟର ମାନଙ୍କ କାର୍ଯ୍ୟ ହିନ୍ଦୀରେ କରାଯିବ, ସର୍ବଶେଷରେ ଓଡିଆସ୍କୁଲ ପରିବର୍ତ୍ତନରେ ହିନ୍ଦୀ ସ୍କୁଲମାନ ସଂସ୍ଥାପିତ ହେବ ଏତଦ୍ୱାରା ଓଡିଆଭାଷା ଉଚ୍ଛନ୍ନ ଯିବ କି ନାହିଁ ଆପଣମାନେ ବିଚାର କରନ୍ତୁ । ସମସ୍ତେ ଜୀବିକା ନିର୍ବାହ ସକାଶେ ଲେଖାପଢା ଶିଖନ୍ତି ଯେତେବେଳେ ଲୋକମାନେ ଦେଖିବେ ଯେ ଓଡିଆ ପଢିଲେ ଚାକରୀ ମିଳଇ ନାହିଁ । ହିନ୍ଦୀ ପଢିଲେ ମିଳୁଅଛି । ତେତେବେଳେ କର୍ତ୍ତାମାନେ ଆପଣା ଆପଣା ବାଳକମାନଙ୍କୁ ବାଳକାଳରୁ ହିନ୍ଦୀ ନ ପଢାଇ ଓଡିଆ କାହିଁକି ପଢାଇବେ ? ଅଚିରାତ୍ ସୁତରାଂ ହିନ୍ଦୀସ୍କୁଲର ସଂଖ୍ୟା ବୃଦ୍ଧି ଓ ଓଡିଆ ସ୍କୁଲର ସଂଖ୍ୟା ହ୍ରାସପାଇବ ଏବଂ ଓଡିଆଭାଷା ଅଧୋଗତିକି ଲଭିବ । ରାଜାମାନଙ୍କ ରାଜତ୍ୱକାଳରେ ବ୍ରାହ୍ମଣମାନେ ସଂସ୍କୃତ ପଢି, ବ୍ରାହ୍ମଣ କର୍ମ୍ମ ଓ ପୁରୋହିତ କର୍ମ୍ମ କରି ସ୍ୱଚ୍ଛନ୍ଦରେ ବୃତ୍ତି ଉପାର୍ଜନ କରୁଥିଲେ । ଏବେ ଉକ୍ତ ବିଦ୍ୱାନ ଓ କର୍ମ୍ମଚାରୀମାନଙ୍କର ଯଥେଷ୍ଟ ପୁରସ୍କାର ମିଳୁନଥିବାରୁ ସଂସ୍କୃତ ପଢି, ବ୍ରାହ୍ମଣ କର୍ମ୍ମ ଓ ପୁରୋହିତ କର୍ମ୍ମ ଲୋପପାଇ ସାରିଅଛି । ଯହିଁରେ ଲୋକଙ୍କର ବୃତ୍ତି ଉପାର୍ଜନ ଚଳୁଅଛି ତାହାଇ କରୁଅଛନ୍ତି । ସେହିପରି ଓଡିଆକୁ ସମସ୍ତେ ହେଳା ଓ ପରିତ୍ୟାଗ କରିବେ । ଓଡିଆ ଭାଷା ଅଳ୍ପ ଦିନରେ ବିଲୁପ୍ତ ହେବ ଏହା ଦ୍ୱାରା ଆମ୍ଭମାନଙ୍କ ଉପରେ ବଡ଼ କଠିଣ ଆଘାତ ହେଉଅଛି ।

ଯଦି ମଧ୍ୟପ୍ରଦେଶରେ ସମ୍ବଲପୁର ଏକମାତ୍ର ଓଡିଆ ଜିଲ୍ଲା ଥିବାରୁ ଶାସନ ସମ୍ବନ୍ଧରେ କୌଣସି ପ୍ରକାର ଅସୁବିଧା ଘଟୁଅଛି ତେବେ ଏ ଜିଲ୍ଲାକୁ ମଧ୍ୟପ୍ରଦେଶରୁ ବହିର୍ଭୁତ କରାଯାଇ ଓଡିଶାର ଅନ୍ତର୍ଗତ କରାଯାଉ । ଏ ଜିଲ୍ଲା ଓଡିଶାର ଅନ୍ତର୍ଗତ କରାଯିବା ବିଷୟରେ ପୂର୍ବରେ ଦୁଇ ତିନିଥର ଜନରବ ହୋଇଥିଲା, ମାତ୍ର ତାହା ଫଳରେ ଦେଖାଗଲା ନାହିଁ ଏବେ ମହାମାନ୍ୟବର ଶ୍ରୀଯୁକ୍ତ ଉତବର୍ଣ୍ଣ ଚିଫ୍ କମିଶ୍ନର ସାହେବ ବାହାଦୁର ସୁବିଚାର ପୂର୍ବକ ଯଦି ସମ୍ବଲପୁରକୁ ଓଡିଶାର ଅନ୍ତର୍ଗତ କରାଯିବାର ପ୍ରସ୍ତାବ କରି ଆମ୍ଭମାନଙ୍କୁ ଆସନ୍ନ ବିପଦରୁ ରକ୍ଷାକରାନ୍ତି ତେବେ ସେ ବିଶେଷ ଧନ୍ୟବାଦର ପାତ୍ର ହେବେ ।

କଚେରିରେ ହିନ୍ଦୀଭାଷା ପ୍ରଚଳିତ କରିବାର ଉଦ୍ଦେଶ୍ୟ କିଛିମାତ୍ର ଜଣାଯାଉ ନାହିଁ ଯଦିବା ଅମଲାମାନଙ୍କୁ ଏକ ଯିଲ୍ଲାରୁ ଅନ୍ୟ ଯିଲ୍ଲାକୁ ପରିବର୍ତ୍ତନ କରିବାର ସୁବିଧା ହେବା ବିଚାରରେ ପ୍ରସ୍ତାବ ହୋଇଅଛି ତେବେ ଆମ୍ଭର ବକ୍ତବ୍ୟ ଏହି ଯେ ଅଳ୍ପ ବେତନ ଭୋଗୀ ଅମଲାମାନଙ୍କୁ ଏକ ଜିଲ୍ଲାରୁ ଅନ୍ୟ ଜିଲ୍ଲାକୁ ପରିବର୍ତ୍ତନ କରାବାର ପ୍ରଥା କଟକ କିମ୍ବା ଅନ୍ୟାନ୍ୟ ଅନେକ ଜିଲ୍ଲାରେ ନାହିଁ ଗୁରତର ଭାରର୍ପିତ କର୍ମ୍ମଚରୀମାନଙ୍କ କଥା ଭିନ୍ନ ଭିନ୍ନ ସେମାନେ କୃତ ବିଦ୍ୟାଲୋକ, ଉନ୍ନତି ପାଇବା ସକାଶେ ଉଚ୍ଚାଭିଳାଷୀ ଏକ ଭାଷାରେ ବ୍ୟୁତ୍ପନ୍ନଥିବାର ଆଉ ଗୋଟିଏ ଭାଷା

ସହଜରେ ଶିଖିପାରନ୍ତି ଓ ସେପରି କର୍ମଚାରୀମାନଙ୍କ ବିଷୟରେ ଆମ୍ଭେ କହୁନାହୁଁ । ଦେଖାଯାଉ ଅଛି ଯେ ଟ ୧୫ଙ୍କା ରୁ ଟ ୨୦ ଙ୍କା ବେତନରେ ଜ ୨/୩ ଣ ଅମଲା ବିଳାସପୁରରୁ ଏ ଯିଲ୍ଲାକୁ ଅଣାଯାଇଥିଲେ ସେମାନେ ଓଡିଆ ଭାଷାରେ ଅଧିକାର ଲାଭ କରିବାକୁ ଅପାରଗ ହୋଇ ଆପଣା ଆପଣା କର୍ମକୁ ଫେରିଯାଇଅଛନ୍ତି । ଶ୍ରୀଯୁକ୍ତ ବୈକୁଣ୍ଠନାଥ ପାଢି ଯୁଡିଶିୟାଲ ମହାଫିସଙ୍କୁ ପରିବର୍ତ୍ତନ କରିବାରୁ ସେ ପାଉଥିବା ବେତନରେ ଅନ୍ୟ ଯିଲ୍ଲାରେ ନିର୍ବାହ ହେବା ଅସମ୍ଭବ ଜାଣି ବ ୧ ୨/୧୪ ର୍ଷର ସରଭିସ ଥିଲେ ମଧ ଇସ୍ତଫା ପଛକୁ ଦେଲେ ଯାଇପାରିଲେ ନାହିଁ ବର୍ତ୍ତମାନ ବେକାର ଅଛନ୍ତି । ପେନଶନାର ବାବୁ ସଯୁବାଦୀ ପାଢି ଅନରେରି ମାଜିଷ୍ଟ୍ରେଟଙ୍କର ସୌପୁତ୍ର, ଇଂରାଜୀ ଓଡିଆ-ଅକ୍ଷର ଆଦର୍ଶ ସ୍ୱରୂପରେ ଲେଖିପାରନ୍ତି । ଚରିତ୍ର ମଧ ଭଲ ମାତ୍ରକ ଦୁଃଖର ବିଷୟ ଯେ ସାମାନ୍ୟ କଥାରେ ଚାକେରି ହରାଇ ବସିଅଛନ୍ତି । ଯଦିବା ପ୍ରଦେଶୀୟ ଯେଉଁ ଯୁଡିଶିୟାଲ ଅଫିସରମାନେ ଅର୍ଥାତ୍ ହାକିମମାନେ ଏ ଯିଲ୍ଲାକୁ ପ୍ରେରିତ ହୁଅନ୍ତି ସେମାନେ ଓଡିଆ ଜାଣୁନଥିବାରୁ ସେମାନଙ୍କୁ ସୁବିଧା ସକାଶେ ହିନ୍ଦୀ ପ୍ରଚଳିତ ହେବାର ପ୍ରସ୍ତାବ ହୋଇଥାଏ ତେବେ ସର୍ବତ୍ର ଦେଖାଯାଏ ଯେ ଏପରି ହାକିମମାନେ ଯେଉଁ ଯିଲ୍ଲାକୁ ପଠାଯାନ୍ତି ସେଠାର ଭାଷା ଶିଖିବା ଓ ସେଠାର ଲୋକମାନଙ୍କର କଥା ବୁଝିବା ଉକ୍ତ ହାକିମମାନଙ୍କ କର୍ତ୍ତବ୍ୟ କର୍ମ ଅଟେ ଏ ଯିଲ୍ଲାକୁ ଯେଉଁ ହାକିମମାନେ ଆସିଅଛନ୍ତି କି ଆସିବେ ସେମାନେ ଯଦି ଓଡିଆ ଭାଷା ନ ଶିଖନ୍ତି କିମ୍ୱା ଓଡିଆ ଭାଷା ନ ବୁଝନ୍ତି ସେହି ତୃଟୀ ନିମନ୍ତେ ଅତ୍ରତ୍ୟ ଲୋକଙ୍କ ଉପରେ ଏପରି ଗୁରୁଦଣ୍ଡ ହେବାର ଉଚିତ ବୋଧ ହେଉ ନାହିଁ । ଦୁଇ ଚାରିଜଣ ଲୋକଙ୍କ ସୁବିଧା ସକାଶେ ଏହି ଯିଲ୍ଲାର ସହସ୍ର ଲୋକଙ୍କର ବୃତ୍ତିଛେଦନ କରିବା କି ଉଚିତ ?

ଏହା ପାଠ ସରିଲାପରେ ଧରଣୀଧର ବାବୁ ପ୍ରସ୍ତାବ କଲେ ଯେ -

୧. ଅତ୍ରତ୍ୟ ଅଦାଲତମାନଙ୍କରେ ହିନ୍ଦୀଭାଷା ପ୍ରଚଳିତ ହେବାର କଥା ଶୁଣି ସମ୍ବଲପୁର ବାସୀମାନେ ଅତ୍ୟନ୍ତ ସଙ୍କିତ ହୋଇ ସର୍ବାନ୍ତଃକରଣର ସହିତ ପ୍ରାର୍ଥନା କରୁଅଛନ୍ତି ଯେ ହିନ୍ଦୀଭାଷା ବ୍ୟବହାର କରିବାର କଥା ରହିତ କରି ଚିରପ୍ରଚଳିତ ଓଡିଆ ଭାଷା ରକ୍ଷିତ ହେବାକୁ ମହିମାବର ଚିଫ୍ କମିଶ୍ନର ସାହେବ ବାହାଦୁର ଆଦେଶ ଦେବେ

ଶ୍ରୀଯୁକ୍ତ ମଧୁସୂଦନ ଗୁରୁ ଏ ପ୍ରସ୍ତାବକୁ ସମର୍ଥନ କଲେ

ଶ୍ରୀଯୁକ୍ତ କୃପାସିନ୍ଧୁ ମିଶ୍ର ପ୍ରସ୍ତାବ କଲେ ଯେ

୨. ୧ମ ସିଦ୍ଧାନ୍ତକୁ ଚିଫ୍ କମିଶ୍ନର ସାହେବ ଅନୁମୋଦନ ନ କଲେ ସମ୍ବଲପୁର ଯିଲ୍ଲାକୁ ମଧ୍ୟପ୍ରଦେଶରୁ ଅନ୍ତର କରି ଓଡିଶାର ଅନ୍ତର୍ଗତ କରାଯିବାକୁ ଚିଫ୍ କମିଶ୍ନର ସାହେବ ବାହାଦୁର ଯତ୍ନ କରିବା ସକାଶେ ପ୍ରାର୍ଥନା କରାଯାଉ

ଶ୍ରୀଯୁକ୍ତ ପ୍ରଭାକର ମିଶ୍ର ପ୍ରସ୍ତାବ କଲେ ଯେ

୩. ଉପଯୁକ୍ତ କାରଣ ସହିତ ଉପରୋକ୍ତ ଦୁଇଗୋଟି ସିଦ୍ଧାନ୍ତ ଯୋଗ ପୂର୍ବକ ଖଣ୍ଡେ ପ୍ରାର୍ଥନା ପତ୍ର ଲେଖାଯାଇ ଲୋକମାନଙ୍କର ସ୍ୱାକ୍ଷର ନିଆଯାଉ ଓ ତାହା ଚିଫ୍ କମିଶ୍ନର ସାହେବ ବାହାଦୁରଙ୍କ ସୁବିଚାର ନିମନ୍ତେ ଡିପୋଟି କମିଶ୍ନର ସାହେବଙ୍କ ଦ୍ୱାରା ପଠାଯାଉ

ଶ୍ରୀଯୁକ୍ତ କାଲାନନ୍ଦ ଏ ପ୍ରସ୍ତାବକୁ ସମର୍ଥନ କଲେ

ଶ୍ରୀଯୁକ୍ତ ଦିବାକର ସୁଆର ପ୍ରସ୍ତାବ କଲେ ଯେ

୪. ଉପରୋକ୍ତ ପ୍ରାର୍ଥନାପତ୍ର ଲେଖି ସ୍ୱାକ୍ଷର ଗ୍ରହଣ କରିବାକୁ ଓ ଆଜ ଦିନର ସିଦ୍ଧାନ୍ତ ସବୁ ହିତୈଷିଣୀ ପତ୍ରିକାରେ ପ୍ରକାଶ କରିବାକୁ ଧରଣୀଧର ବାବୁଙ୍କୁ ସେକ୍ରେଟରୀ ଓ ଶ୍ରୀଯୁକ୍ତ ସୋମନାଥ ବାବୁ ଓ କୃପାସିନ୍ଧୁ ମିଶ୍ରଙ୍କୁ ମେମ୍ବର ନିଯୁକ୍ତ କରି ଗୋଟିଏ ସବ୍‌କମିଟୀ ଗଠିତ ହେଉ ।

ସମସ୍ତେ ଏକ ବାକ୍ୟରେ ଏ ପ୍ରସ୍ତାବକୁ ସମର୍ଥନ କଲେ ତତ୍ପରେ ଶ୍ରୀଯୁକ୍ତ ହେବାରଲେଟ ସାହେବ ଗୋଟି କେତେ ଉହାହରଣ ଉପଦେଶ ଦ୍ୱାରା ଲୋକମାନଙ୍କ ମନୋରଞ୍ଜନ କଲେ ତତ୍ପରେ ସଭାଭଙ୍ଗ ହେଲା ।

ଶ୍ରୀ ଧରଣୀଧର ମିଶ୍ର

*ଭାରତୀ, ସଂଖ୍ୟା, ୨୫/୭/୧୮୯୪*

# ଦରଖାସ୍ତର ପ୍ରତିଲିପି ।

ମହିମାବର ଶ୍ରୀଯୁକ୍ତ ଚିଫ୍ କମିଶନର ସାହେବ ବାହାଦୁର ମଧ୍ୟପ୍ରଦେଶ ମୁକାମ ନାଗପୁର ସମୀପେଷୁ

ସମ୍ବଲପୁର ଜିଲ୍ଲା ଓ ନଗରର ବାସୀମାନେ ଅତିମାନ୍ୟ ପୂର୍ବକ ଏହି ବିନୟ ଦରଖାସ୍ତରେ ଜଣାଉଛନ୍ତି .....ଯେ ଅତ୍ରତ୍ୟ ପୁଲିଷ ବିଭାଗରେ ଓଡିଆ ଭାଷା ବଦଳରେ ହିନ୍ଦୀଭାଷା ବ୍ୟବହାର ହେବାର ଆଦେଶ ପ୍ରଚାର ହୋଇଥିବାର କଥା ଏବଂ ହିନ୍ଦୀଭାଷା ଏ ଜିଲ୍ଲାର ଅଦାଲତ ଭାଷା ସ୍ୱରୂପ ବ୍ୟବହାର କରାଗଲେ କି ସୁବିଧା ଅସୁବିଧା ଘଟିବ ତଦ୍ ବିଷୟ ବର୍ତ୍ତମାନ ଅନୁସନ୍ଧାନ ହୋଇଥିବା କଥା ନିମ୍ନ ସ୍ୱାକ୍ଷରକାରୀମାନେ ଶୁଣି ଅତ୍ୟନ୍ତ ଦୁଃଖିତ ହୋଇଅଛନ୍ତି ।

ତା ୧୦ ରିଖ ଯୁଲାଇ ସ୍ନ ୧୮୯୪ ସାଲରେ ଅତ୍ରତ୍ୟ ମିସନାରି ବୁକ୍ ରୁମ୍‌ରେ ଏ ଜିଲ୍ଲାର ଅଦାଲତ ଭାଷା ବିଷୟରେ ବାଦାନୁବାଦ କରିବାକୁ ଏକ ସଭା ହୋଇଥିଲା । ପଣ୍ଡିତ ଶ୍ରୀକୃଷ୍ଣ ମିଶ୍ର ସଭାପତି ମନୋନିତ ହୋଇଥିଲେ । ମଝିଘରରେ ସ୍ଥାନ ଅଣ୍ଟିଲା ନାହିଁ, ବାରଣ୍ଡାରେ ଅନେକ ଲୋକ ଦଣ୍ଡାୟମାନ ହୋଇଥିଲେ ଏହି ପ୍ରତିନିଧି ସଭାରେ ବିଶେଷତଃ ଓଡିଆ ଏବଂ ଝାଡୁଆ ବ୍ରାହ୍ମଣମାନେ ଏବଂ ମହାନ୍ତିମାନେ ଉପସ୍ଥିତ ଥିଲେ । ଉକ୍ତ ସଭାରେ ଯେଉଁ ଯେଉଁ ସିଦ୍ଧାନ୍ତ ହେଲା ତହିଁର ନକଲ ଏଥି ସହିତ ନଥିଅଛି ।

ପ୍ରଥମ ଦ୍ୱିତୀୟ ସିଦ୍ଧାନ୍ତର ପୋଷକତାରେ ପାର୍ଥୀମାନେ ନିମ୍ନଲିଖିତ ବିଷୟ ଜଣାଇ ଅଛନ୍ତି ।

ଏହା ଗୋଟିଏ ଓଡ଼ିଆ ଜିଲ୍ଲା ଅଟେ ପ୍ରାର୍ଥୀମାନେ ଜାତିରେ ଓଡ଼ିଆ ସୁତରାଂ ଓଡ଼ିଆ ସେମାନଙ୍କର ମାତୃଭାଷା ଅଟେ । ପ୍ରାଏମାରି ସ୍କୁଲମାନଙ୍କରେ ଏ ଭାଷାରେ ବିଦ୍ୟାଶିକ୍ଷା କରି ଅନେକ ଲୋକ କଷ୍ଟରେ ଆପଣା ଜୀବିକା ଉପାର୍ଜନ କରିବାକୁ ଆରମ୍ଭ କରନ୍ତି । ପ୍ରାର୍ଥୀମାନଙ୍କ ମଧ୍ୟରୁ ଅନେକେ କେବଳ ଲେଖିପଢିପାରନ୍ତି ଯାହା ସେମାନଙ୍କ ନିକୃଷ୍ଟ କର୍ମ ଚଳାଇବା ପକ୍ଷରେ ଯଥେଷ୍ଟ ମାତ୍ର ଅଟେ ।

ସମ୍ବଲପୁରରେ ଏପରି ଲୋକ କେହି ନାହିଁ ଯେ କେବଳ ଜ୍ଞାନୋପାର୍ଜନ ସକାଶେ ବିଦ୍ୟାଭ୍ୟାସ କରୁଥିବାର କୁହାଯିବ । ଏହା ଏକ ନିର୍ଦ୍ଧନୀ ଜିଲ୍ଲା ଅଟେ ଅତଏବ ଚାକରି ଉପରେ ସମସ୍ତ ବିଦ୍ୟାଭାଷିମାନଙ୍କୁ ନିର୍ଭର କରିବାକୁ ହୁଏ ।

ଇଂରାଜୀ ରାଜଭାଷା ଅଟେ , ଏବଂ ସରକାରି କର୍ମ୍ମରେ ପ୍ରବେଶ କରିବା ଦ୍ୱାରା ଉତ୍ତମ ଜୀବିକା ପ୍ରାପ୍ତ ହେବାପାଇଁ ତହିଁର କିଛି ଶିକ୍ଷା ଆବଶ୍ୟକ ହେତୁ ଲୋକମାନେ ତାହା ଶିଖିଥାନ୍ତି, ମାତ୍ର ଏହା ଖ୍ୟାତ ଅଛି ଯେ ଉକ୍ତ ଭାଷାରେ ଆଠ ଦଶବର୍ଷ ଶିକ୍ଷା କରି ମଧ ଉକ୍ତ ଭାଷା ଶୁଦ୍ଧକରି କହିବା କିମ୍ବା ଲେଖିବାର କୌଣସି ଦେଶୀୟ ଲୋକ ପକ୍ଷେ କଷ୍ଟ ହୋଇଥାଏ ।

ଭୂଗୋଳ ଅନୁଯାୟୀ ସମ୍ବଲପୁର ତହିଁର ଭାଷା ଓ ଇତିହାସ ସହିତ, ଓଡ଼ିଶାର ଏକ ଅଂଶ କୁହାଯିବ ମାତ୍ରକ ଶାସନାନୁଯାୟୀ ତାହା ମଧ୍ୟପ୍ରଦେଶର ଏକ ଜିଲ୍ଲା ଅଧୁନା ହୋଇଅଛି । ଶରୀରରୁ ଏକଅଙ୍ଗ କାଟିଲା ପରି ଓଡ଼ିଶାର ଏହିରୂପେ ଅନ୍ତରିତ ହୋଇ ଏ ଜିଲ୍ଲାର ଶିକ୍ଷୋନ୍ନତି କ୍ଷୟ ପାଇଅଛି ଅତଏବ ଶିକ୍ଷା ବିଷୟରେ କଟକ ଏବଂ ଅନ୍ୟାନ୍ୟ ଉନ୍ନତ ଜିଲ୍ଲାମାନଙ୍କ ପଛରେ ଏଠାର ଲୋକମାନେ ପଡ଼ିଅଛନ୍ତି । ସୁତରାଂ ଏ ଲୋକମାନଙ୍କର ଧୀଶକ୍ତି ଓ କାର୍ଯ୍ୟଶକ୍ତି ସମ୍ୟକ ପ୍ରକାରେ ହେଉ ବା ଆଂଶିକ ପ୍ରକାରେ ହେଉ ପ୍ରସ୍ଫୁଟିତ ହୁଅଇ ନାହିଁ । ଏ ଅବସ୍ଥାରେ ଅନ୍ୟ ଏକ ବିଦେଶୀୟ ଭାଷାଶିକ୍ଷା କରିବାକୁ ଏଠାର ଲୋକମାନଙ୍କୁ ବାଧ କରିବା ଉଚିତ ବୋଧ ହେଉନାହିଁ । ଏହା କୁହାଯାଇପାରେ ଯେ ଏଠାରେ ଅନେକ ଲୋକ ହିନ୍ଦି ଭାଷା ବୁଝିପାରନ୍ତି ଓ କହିପାରନ୍ତି ମାତ୍ରକ କଥନ ଓ ଲିଖନ ଭାଷାରେ ଅଧିକ ପ୍ରଭେଦ ଅଛି ପୁନଶ୍ଚ ପ୍ରାର୍ଥୀମାନେ ହିନ୍ଦିଭାଷାରେ ଯେଉଁ କଥୋପକଥନ କରନ୍ତି ତାହା ସର୍ବଦା ଅଶୁଦ୍ଧ ଥିବାର ଦେଖାଯାଏ । ହିନ୍ଦିଭାଷାକୁ ଏପରି ଶିକ୍ଷା କରିବା ଯଦ୍ୱାରାକି ଯେଉଁ ଲୋକମାନଙ୍କର ମାତୃଭାଷା ହିନ୍ଦି ଅଟେ ସେମାନଙ୍କଠାରୁ ଜିଣିବା ସହଜ କର୍ମ ନୁହେଁ । ଜଣେ କିମ୍ବା ଦୁଇଜଣ ଉକ୍ତ ଭାଷାରେ ପାରଗତା ଦେଖାଇ ପାରନ୍ତି, ମାତ୍ର ପ୍ରାଏ ସମସ୍ତେ ଯେ ଅକୃତକାର୍ଯ୍ୟ ହେବେ ଏବଂ ସେମାନଙ୍କର ନୌକରୀରୁ ବଞ୍ଚିତ ହେବାକୁ ହେବ ଏଥିରେ କୌଣସି ସନ୍ଦେହ ନାହିଁ । ଏହା ସାମାନ୍ୟ ଦୁଃଖର ବିଷୟ ନୁହେଁ । ନିୟମ କରାଯାଇପାରେ ଯେ ଉପସ୍ଥିତ

ଅମଲାମାନଙ୍କୁ ହିନ୍ଦୀଭାଷାରେ ସେମାନଙ୍କ ଅଯୋଗ୍ୟତା ନିମନ୍ତେ କର୍ମଚ୍ୟୁତ କରିବେ ନାହିଁ ମାତ୍ରକ ତହିଁପାଇଁ ଯଦି ସେମାନଙ୍କର ଉନ୍ନତି ବନ୍ଦ କରାଯିବ, କିମ୍ବା ନୂତନ ଲୋକ ନୌକରିରେ ଗ୍ରହିତ ନ ହେବେ ତେବେ ତାହା ଲୋକଙ୍କ ପକ୍ଷରେ କି ଅଧିକ ଅନ୍ୟାୟ ନ ହେବ ?

ଭାଷା ଶିକ୍ଷା ବିଷୟରେ ଏ ଜିଲ୍ଲାର ଲୋକମାନେ ଏପରି ଯୋଗ୍ୟତା ଦେଖାଇ ନାହାଁନ୍ତି ଯହିଁରୁ ସେମାନେ ଦୁଇଗୋଟି ବିଦେଶୀୟ ଭାଷା ଶିକ୍ଷାକରିବାର ଉପଯୋଗୀ ବିଚାର କରାଯିବେ । ପ୍ରତ୍ୟେକ ସ୍ଥଳରେ ମାତୃଭାଷା ଏବଂ ରାଜଭାଷା ପ୍ରଚଳିତ ଥାଏ ମାତ୍ରକ ଲୋକଙ୍କୁ ଏକ ତୃତୀୟ ବିଦେଶୀୟ ଭାଷା ଶିକ୍ଷା କରିବାକୁ ବାଧ କରିବା କଥା ପ୍ରାର୍ଥିମାନେ କେବେ ଶୁଣିନାହାଁନ୍ତି କି ଦେଖି ନାହାଁନ୍ତି ।

ଏହି ଜିଲ୍ଲା ଇଂରେଜ ଗଭର୍ଣ୍ଣମେଣ୍ଟଙ୍କ ଶାସନାଧୀନ ହେଲା ସମୟରେ ଉର୍ଦ୍ଦୁ ଏବଂ ତହିଁର କେତେକ ବର୍ଷ ଉତ୍ତାରେ ହିନ୍ଦୀ ଏଠାରେ ଅଦାଲତ ଭାଷା ଥିଲା ମାତ୍ରକ ପ୍ରାର୍ଥୀମାନଙ୍କ ଜାତୀୟ ଓଡ଼ିଆ ଭାଷା ସେମାନଙ୍କ ପରିବର୍ତ୍ତରେ ବ୍ୟବହାର କରାଯିବାର ପ୍ରାୟ ସନ ୧୮୫୯ ଇସବୀରେ ଉପଯୁକ୍ତ ବିଚାର କରାଗଲା ଏବଂ ତଦବଧି ଅବ୍ୟାହତ ରୂପେ ଉକ୍ତ ଭାଷା ଏଠାରେ ଜିଲ୍ଲାଭାଷା ହୋଇଅଛି ।

ପ୍ରାୟ ୧୯୬୨ ଇସବୀରେ ଏ ଜିଲ୍ଲାର ଅଦାଲତ ଭାଷା ହିନ୍ଦୀ କି ଓଡ଼ିଆ ହେବ ଏକଥା ଉତ୍ଥାପିତ ହୋଇଥିଲା ଆଉ ମେଜର ଇମ୍ପି ତତ୍‌କାଳୀନ ଡିପୁଟୀ କମିଶ୍ନର ସାହେବଙ୍କ ବିପରିତ ମତ ଥିଲେ ମଧ ଲୋକେଲ ଗଭର୍ଣ୍ଣମେଣ୍ଟ ଓଡିଆ ଭାଷା ସପକ୍ଷରେ ନିଷ୍ପତି କରିଥିଲେ ।

ଏ ଜିଲ୍ଲାରେ ବହୁସଂଖ୍ୟକ ଓଡ଼ିଆ ସ୍କୁଲ ସଂସ୍ଥାପିତ ହୋଇଥିଲା ଆଉ ସହସ୍ର ସହସ୍ର ଲୋକ ତହିଁରେ ଶିକ୍ଷା କରିଥିଲେ କୌଣସି ମହକୁମାରେ ଯେତେବେଳେ କର୍ମ୍ମ ଖାଲି ହୁଏ, ବେତନ ଯେତେ ସାମାନ୍ୟ ହେଉନା କାହିଁକି ଓଡ଼ିଆ ଜାଣିବା ଲୋକ ସର୍ବଦା ମିଳନ୍ତି । ଆଜି ପର୍ଯ୍ୟନ୍ତ ସମସ୍ତ ଚାକରି ସ୍ଥାନୀୟ ଲୋକମାନେ କରି ଆସୁଥିଲେ, ମାତ୍ରକ ଯଦି ହିନ୍ଦୀ ପ୍ରଚାର କରାଯିବ ତେବେ ଲେଖକମାନେ ନୌକରିରୁ ବଞ୍ଚିତ ହେବେ କିମ୍ବା ନୌକରି ପାଇପାରିବେ ନାହିଁ ।

ଭାଷା ପରିବର୍ତ୍ତନର କୌଣସି କାରଣ ପ୍ରାର୍ଥୀମାନେ ଦେଖୁନାହାଁନ୍ତି ଯେଉଁ କେତେକ ପୁଲିଷ କର୍ମଚାରୀ ଏଠାରୁ ଅନ୍ୟ ଜିଲ୍ଲାକୁ କିମ୍ବା ଅନ୍ୟ ଜିଲ୍ଲାରୁ ଏଠାକୁ ପରିବର୍ତ୍ତିତ ହୁଅନ୍ତି , ଯଦି ସେମାନଙ୍କର ନିମନ୍ତେ ଏହା ହୋଇଥାଏ ତେବେ ତାହା ଗୃହିତ ପ୍ରଣାଳୀର ଉପଯୁକ୍ତ କାରଣ ନୁହେ, ହେତୁକି ତଦ୍ୱାରା ଜାତୀୟ ଭାଷାର ଅଧଃପତନ ସାଧିତ ହେବ ।

ଆଜି ପୁଲିଷ ବିଭାଗରେ ହିନ୍ଦୀଭାଷା ବ୍ୟବହାର ହେବାର ଆଦେଶ ପ୍ରଚାର ହେଲା, କାଲି କଚେରୀରେ ତାହା ପ୍ରଚଳିତ ହେବ, ତତ୍‌ପରେ ବନ୍ଦୋବସ୍ତ ମହକୁମାରେ ତାହା ଗୃହିତ ହେବ ଏବଂ ଅବଶେଷରେ ଓଡିଆ ସ୍କୁଲମାନଙ୍କ ପରିବର୍ତ୍ତନରେ ହିନ୍ଦୀ ସ୍କୁଲମାନ ସଂସ୍ଥାପିତ ହେବ । ଜୀବିକା ଉପାର୍ଜନ କରିବା ମାନସରେ ଲୋକମାନେ ବିଦ୍ୟାଶିକ୍ଷା କରନ୍ତି ଯେତେବେଳେ ଲୋକମାନେ ଦେଖିବେ ଯେ ଓଡ଼ିଆ ପଢିଲେ ନୌକରି ମିଳୁନାହିଁ, ହିନ୍ଦୀ ଜାଣିବାର ଆବଶ୍ୟକ ଅଛି ତେତେବେଳେ ରକ୍ଷକମାନେ ଆପଣା ଆପଣା ସନ୍ତାନମାନଙ୍କୁ ବାଲ୍ୟକାଳରୁ ହିନ୍ଦୀଶିକ୍ଷା ଦେବାକୁ ଭଲ ନ ମଣିବାର କୌଣସି କାରଣ ନାହିଁ । ଏକଥାରେ ବିଦ୍ୟାନଷ୍ଟ ହେବ ଏଥିର କାରଣ ପୁନର୍ବାର ଦେଖାଇବାର ପ୍ରୟୋଜନ ନାହିଁ । କେତେକ ବର୍ଷ ମଧରେ ହିନ୍ଦୀ ସ୍କୁଲ ସଂଖ୍ୟା ବୃଦ୍ଧି ଓ ଓଡ଼ିଆ ସ୍କୁଲର ସଂଖ୍ୟା ହ୍ରାସହେବ ଏବଂ ଓଡ଼ିଆଭାଷା ବିଲୁପ୍ତ ହେବ । ପ୍ରାର୍ଥୀମାନଙ୍କ ପକ୍ଷରେ ଏହା ଏକ କଠିଣ ଆଘାତ ହେଉଅଛି ଯାଦ୍ୱାରା ସେମାନେ ଚୂର୍ଣ୍ଣ ଓ ବିଦିର୍ଣ୍ଣ ହେବେ ।

ଏ ଜିଲ୍ଲାର ଅଦାଲତ ଭାଷା ସ୍ୱରୁପ ହିନ୍ଦୀ ପ୍ରଚଳିତ କରିବାର ଉଦ୍ଦେଶ୍ୟ ଜଣାପଡୁ ନାହିଁ । ଯେଉଁ ଅମଲାମାନେ ଏକ ଜିଲ୍ଲାରୁ ଅନ୍ୟ ଜିଲ୍ଲାକୁ ପରିବର୍ତ୍ତିତ ହେବେ, ଯଦି ସେମାନଙ୍କ ସୁବିଧା ନିମନ୍ତେ ଏହା ହୋଇଥାଏ, ତେବେ ପ୍ରାର୍ଥୀମାନେ ବିନୟପୂର୍ବକ ଦର୍ଶାଉଅଛନ୍ତି ଯେ ଦେଖାଗଲାକି ବିଲାସପୁର ଜିଲ୍ଲାରୁ ଏ ଜିଲ୍ଲାକୁ ଦୁଇତିନି ଜଣ ଅମଲା ପରିବର୍ତ୍ତିତ ହୋଇ ଆସିଥିଲେ, ସେମାନେ ସାଧ୍ୟାନୁସାରେ ଚେଷ୍ଟାକଲେ ମଧ ଓଡ଼ିଶାରେ କାର୍ଯ୍ୟକରିବାକୁ

ଅତି କଠିଣ ଦେଖି ଆପଣା ଆପଣା କର୍ମକୁ ଫେରିଗଲେ ଏଠାରୁ କୌଣସି ହିନ୍ଦୀ ଯିଲ୍ଲାକୁ ଯେଉଁ ଅମଲାମାନେ ପରିବର୍ତ୍ତିତ ହେବେ ସେମାନଙ୍କର ତଦ୍ରୂପଦଶା ଘଟିବ । କଟକ ଏବଂ ଅନ୍ୟାନ୍ୟ ଜିଲ୍ଲାମାନଙ୍କରେ ଅଳ୍ପ ବେତନଭୋଗୀ ଅମଲାମାନଙ୍କୁ ପରିବର୍ତ୍ତନ କରିବାର ପ୍ରଥା ପ୍ରଚଳିତ ନାହିଁ ଏବଂ ଏପରି ଅଳ୍ପ ବେତନଭୋଗୀ ଅମଲାମାନଙ୍କ ପକ୍ଷରେ ଆପଣ ସ୍ୱଦେଶରୁ ଓ ସ୍ୱଦେଶକୁ ଗତାୟତ ଖର୍ଚ୍ଚ କରିବା ସର୍ବଦା କଠିଣ ହୋଇଥାଏ, ଯେଉଁ ସ୍ଥାନକୁ ସେମାନଙ୍କର ବିବାହାଦି ମଙ୍ଗଳ କାର୍ଯ୍ୟ କରିବା କିମ୍ବା ସେମାନଙ୍କର ଶକ୍ତ ପୀଡ଼ିତ ବନ୍ଧୁମାନଙ୍କୁ ଦେଖିବା କିମ୍ବା ମୃତ ବନ୍ଧୁମାନଙ୍କର ଅନ୍ତ୍ୟେଷ୍ଟି କ୍ରିୟାରେ ଉପସ୍ଥିତ ହେବାପାଇଁ ଯିବାକୁ ପଡ଼େ ! କିମ୍ବା ଯେଉଁ କେତେକ ଯୁଡିଶିଏଲ ଅଫିସର ଏଠାକୁ ବର୍ତ୍ତମାନ ପ୍ରେରିତ ହୋଇ ଅଛନ୍ତି କିମ୍ବା ଭବିଷ୍ୟତରେ ପ୍ରେରିତ ହେବେ ଯଦି ସେମାନଙ୍କର ସୁବିଧା ନିମନ୍ତେ ଏହା ହୋଇଥାଏ, ତେବେ ଏଠାର ଭାଷା ଶିକ୍ଷା କରିବା ଏବଂ ଯେଉଁ ଲୋକମାନେ ସେମାନଙ୍କ ଆଗରେ ଉପସ୍ଥିତ ହୁଅନ୍ତି ସେମାନଙ୍କର କଥା ବୁଝିବା ସେମାନଙ୍କର କର୍ତ୍ତବ୍ୟ କର୍ମ ଅଟେ ଉପରୋକ୍ତ ଉଭୟ କାରଣରେ ଭାଷା ପରିବର୍ତ୍ତନର ଯୁକ୍ତି ଦେଖାଯାଉ ନାହିଁ ଯାହା ପ୍ରାର୍ଥୀମାନେ ଅଧିକ ଶଙ୍କାର ସହିତ ଶୁଣି ଅଛନ୍ତି ।

ଏଠାର ଲୋକମାନଙ୍କର ଭାଷା ରୀତିନୀତି ଏବଂ ଆଚାର ବ୍ୟବହାର ବିବେଚନାରେ ଆଜିପର୍ଯ୍ୟନ୍ତ ସମ୍ବଲପୁର ପକ୍ଷରେ ବିଶେଷ ବିଚାର କରାଯାଉ ଥିଲା । ଯେବେ ମଧ୍ୟ ପ୍ରଦେଶ ମଧ୍ୟରେ ଏହା ଏକମାତ୍ର ଓଡ଼ିଆ ଜିଲ୍ଲା ହେବାରୁ ଶାସନ ସମ୍ବନ୍ଧରେ କୌଣସି ଅସୁବିଧା ଘଟୁଅଛି , ତେବେ ମଧ୍ୟପ୍ରଦେଶରୁ ଏହାକୁ ବହିର୍ଗତ କରି ଓଡିଶାର ଅନ୍ତର୍ଗତ କରାଯାଉ । ଦୁଇ ତିନିଥର ଜନରବ ଉଠିଥିଲା ଯେ ମଧ୍ୟ ପ୍ରଦେଶ ଭାଙ୍ଗିଗଲେ ସମ୍ବଲପୁର ଓଡ଼ିଶା ଅନ୍ତର୍ଗତ କରାଯିବ ମାତ୍ର ତାହା ଫଳରେ ଦେଖାଗଲା ନାହିଁ ।

ଅତଏବ ପ୍ରାର୍ଥୀମାନେ ବିନୟ ପୂର୍ବକ ପ୍ରାର୍ଥନା କରୁଅଛନ୍ତି ଯେ ହଯୁର ୧ମ ଓ ୨ୟ ସିଦ୍ଧାନ୍ତ ମାନଙ୍କ ପ୍ରତି ସୁବିଚାର କରିବେ ଏବଂ ଏ ଜିଲ୍ଲାର ଅଦାଲତ ଭାଷା ସ୍ୱରୂପ ଓଡ଼ିଆ ଭାଷା ରକ୍ଷିତ ହେବାକୁ ଅନୁଗ୍ରହ ପୂର୍ବକ ଆଦେଶ ଦେବେ । ମାତ୍ର ଯଦି ଉପରୋକ୍ତ ଅନୁମୋଦନ ଦିଆଯାଏ ତେବେ ଏହା ପ୍ରାର୍ଥନା କରାଯାଉ ଅଛି ଯେ ସମ୍ବଲପୁରକୁ ମଧ୍ୟ ପ୍ରଦେଶରୁ ଫିଟାଇ କଟକ ଅନ୍ତର୍ଗତ କରାଯାଉ ଏହି ଦୟାର କାର୍ଯ୍ୟ ନିମନ୍ତେ ପ୍ରାର୍ଥୀମାନେ ଚିର ପ୍ରାର୍ଥନା କରିବେ ।

ସମ୍ବଲପୁର ପ୍ରାର୍ଥୀମାନେ

ତା ୨୪ ରିକ ଯୁଲାଇ

ମୁ ୧୮୯୪ ଇସବୀ }

*ଭା୬ଗ,ସଂ୯ଖ୍ୟା, ୧।୮।୧୮୯୪*

## ମାତୃଭାଷାର ରକ୍ଷା ଚେଷ୍ଟା ।

ସମ୍ବଲପୁରର ମାତୃଭାଷା ଓଡ଼ିଆ ଥିବାରୁ ଅଦାଲତରେ ଲେଖାପଢ଼ା କାର୍ଯ୍ୟ ଅନେକ କାଳ ହେଲା ଓଡ଼ିଆରେ ହୋଇ ଆସୁଥିଲା । ବର୍ତ୍ତମାନ ପୋଲିଷ ସିରସ୍ତାର କାଗଜ ହିନ୍ଦୀରେ ଲେଖା ହେବାର ସ୍ଥିର ହୋଇଥିବା ଏବଂ କଚେରୀର କାଗଜ ହିନ୍ଦୀରେ ଲେଖା ହେବାର ପରାମର୍ଶ ହୋଇଥିବାରୁ ସମ୍ବଲପୁରର ଓଡ଼ିଆମାନେ ମାତୃଭାଷାର ବିଲୋପ ଆଶଙ୍କା କରି ଉକ୍ତ ପ୍ରସ୍ତାବ ପରିତ୍ୟକ୍ତ ହେବା ସକାଶେ ମହିମାବର ଚିଫ୍ କମିଶ୍ନରଙ୍କ ନିକଟକୁ ପଠାଇବା ସକାଶେ ଏକ ଦରଖାସ୍ତ ମାନ୍ୟବର ଡେପୁଟୀ କମିଶ୍ନରଙ୍କ ନିକଟରେ ଦାଖଲ କରିଅଛନ୍ତି । ତହିଁର ପ୍ରତିଲିପି ଗତ ସଂଖ୍ୟା ହିତୈଷିଣୀର ପ୍ରାପ୍ତ ସ୍ତମ୍ଭରେ ମୁଦ୍ରିତ ହୋଇଅଛି । ଆଉ ଖଣ୍ଡିଏ ଦରଖାସ୍ତ ଇଂରେଜିରେ ଲିଖିତ ହୋଇ ସ୍ୱତନ୍ତ୍ର ରୂପେ ଚିଫ୍ କମିଶ୍ନରଙ୍କ ନିକଟକୁ ପଠା ହୋଇ ଅଛି । ବରଗଡ଼ର ବାସିନ୍ଦାମାନେ ସେହି ମର୍ମରେ ଆଉ ଗୋଟିଏ ଦରଖାସ୍ତ ପଠାଇ ଅଛନ୍ତି । ଭରଶାକରୁଁ ସଦାଶୟ ଉଦ୍‌ବରନ ମହୋଦୟ ପ୍ରଜାମାନଙ୍କ ଯୁକ୍ତିଯୁକ୍ତ ଆବେଦନ ଗ୍ରହଣ କରିବେ ଏବଂ ତହିଁ ସକାଶେ ତାଙ୍କର ସୁଦକ୍ଷ ପ୍ରଧାନ ସେକ୍ରେଟରୀ ପ୍ରିଷ୍ଟ ସାହେବ ଏବଂ ସମ୍ବଲପୁରର ସୁବିବେଚକ ଡେପୁଟୀ କମିଶ୍ନର ଚ୍ୟାପମେନ ସାହେବ ସୁପାରିଶ କରିବାର ସମ୍ପୂର୍ଣ୍ଣ ଆଶା ରଖିଅଛୁ ।

*ଭା୬ଗ,ସଂ୧୦ଖ୍ୟା, ୮।୮।୧୮୯୪*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## ଓଡ଼ିଆ-ଭାଷାର ବିଲୋପ ଚେଷ୍ଟା

ଶ୍ରୀଯୁକ୍ତ ଗଣପତ୍‌ଗୀର ସମ୍ବଲପୁର କଚେରୀ ଇଂରାଜୀ ଦପ୍ତରର ହେଡ କ୍ଲାର୍କ ଅଟନ୍ତି । ସେ ମୁନ୍‌ସରିମ କାର୍ଯ୍ୟ ପାଇବା ସକାଶେ ଚେଷ୍ଟା କରିଥିଲେ । ଏବଂ ତାଙ୍କର ସେ ଚେଷ୍ଟା ମଧ ଅନୁଚିତ ନୁହଇ, ମାତ୍ର ସେ ଅନ୍ୟ ଜିଲ୍ଲାରେ ଉଚତର କର୍ମରୁ ଅବନତ ହୋଇଥିବାରୁ ଏବଂ ତାଙ୍କର ଚରିତ୍ରାଦି ବିଷୟ ବର୍ତ୍ତମାନ କମିଶ୍ନର ସାହେବଙ୍କୁ ଜଣାଥିବାରୁ ସେ ତାଙ୍କର ପ୍ରାର୍ଥନା ପୁରଣ କରିବାକୁ ଅସ୍ୱୀକାର କରନ୍ତି । ଯାହାହେଉ କମିଶ୍ନରଙ୍କ ସୁବିଚାରରୁ ଜଣେ ଉପଯୁକ୍ତ ଓଡ଼ିଆ ହାତରେ ବର୍ତ୍ତମାନ ଉକ୍ତ କାର୍ଯ୍ୟଭାର ଅର୍ପିତ ହୋଇଅଛି । ପଛକୁ କି ହେବ ବୋଲାଯାଇ ନ ପାରେ । ଏ ଜିଲ୍ଲାରେ ହିନ୍ଦୀଭାଷୀ ଚଳାଇବା ବିଷୟରେ ଉକ୍ତ ବ୍ୟକ୍ତି ଭାରି ପ୍ରୟାସୀ ଥିବାର ଜଣାଯାଏ ।

ସମ୍ବଲପୁରର ଅଧିକାଂଶ ଏକଷ୍ଟ୍ରା ଆଶିଷ୍ଟାଣ୍ଟ କମିଶ୍ନର, ମିଉନ୍ସିପଲ ଏବଂ ଡିଷ୍ଟ୍ରିକ୍ଟ କାଉନ୍‌ସିଲର, ସେକ୍ରେଟରୀ, ହେଡ କ୍ଲାର୍କ, ସୁପରିଣ୍ଟେଣ୍ଡେଣ୍ଟ, ଜଙ୍ଗଲ ଅଫିସର, ସର୍କଲ ଇନ୍ସପେକ୍ଟର, ବରଗଡ଼ ତହସିଲଦାରମାନେ ବିଦେଶୀ, ସେମାନଙ୍କର ମାତୃଭାଷା ହିନ୍ଦୀ, ଏ ସମସ୍ତ ହିନ୍ଦୀଭାଷା ଚଳାଇବାର ପକ୍ଷପାତୀ, ଓଡ଼ିଆ ଭାଷା ପ୍ରତି କାହାରି ସହାନୁଭୂତି ନାହିଁ ।

ଉପରୋକ୍ତ ମହକୁମାର ଅମଲାମାନେ ହିନ୍ଦୀଭାଷା କି ପରିମାଣରେ ଜାଣନ୍ତି ଏଥିଉ ଷ୍ଟେଟମେଣ୍ଟ ତଲବ ହୋଇଥିଲା । ସମସ୍ତ ଅମଲାମାନେ ଅନ୍ତତଃ କାର୍ଯ୍ୟ ଚଳାଇବା ଭଳି ହିନ୍ଦୀ ଜାଣନ୍ତି ବୋଲି ନକ୍ସା ଆସିଥିବାର ସମ୍ବାଦ ପାଇଅଛୁଁ । ଏ ନକ୍‌ସ ଦେଖି ଡେପୁଟୀ କମିଶ୍ନରଂ ସାହେବ ମନେକରିବେ ଯେ ସମସ୍ତ ଅମଲାମାନେ ହିନ୍ଦୀ ଭଲ ଜାଣୁଥିବାରୁ ହିନ୍ଦୀଭାଷା ଚଳାଇଲେ କାର୍ଯ୍ୟରେ କିଛି ବିଶୃଙ୍ଖଳା ଘଟିବ ନାହିଁ । କିନ୍ତୁ ତାଙ୍କର ଏହି ସିଦ୍ଧାନ୍ତ ଯେ ଭ୍ରମଭିତ୍ତିରେ ସ୍ଥାପିତ ହେବ ଏଥିରେ ସନ୍ଦେହ ନାହିଁ । ତହିଁର ଫଳସ୍ୱରୂପ ବର୍ତ୍ତମାନ ଏଦେଶୀ ଅମଲାମାନେ ଅକ୍ଷମ ଅନୁପଯୁକ୍ତ ଜ୍ଞାନରେ ବିତାଡ଼ିତ ହୋଇ ପଶ୍ଚିମା ଅମଲାମାନେ ଆମନ୍ତିତ ହେବେ । ତେତେବେଳେ ନକ୍ସା ପ୍ରସ୍ତୁତକାରିମାନଙ୍କୁ ଦାୟୀ କରୁଚି କିଏ ? ନକ୍ସା ଉପରେ ବିଶ୍ୱାସ ସ୍ଥାପନ କରିବା ଆଗରୁ ଅମଲାମାନଙ୍କ ହିନ୍ଦୀଜ୍ଞାନ ସମ୍ବନ୍ଧେ ଥରେ ପରିକ୍ଷା ହେବା ଉଚିତ।

ଆମ୍ଭେମାନେ ପୂର୍ବରେ କହିଅଛୁଁ ଏବଂ ବର୍ତ୍ତମାନ ମଧ କହୁଅଛୁଁ ଯେ ଓଡ଼ିଆ ଦେଶରେ ହିନ୍ଦୀଭାଷା ଚଳାଇବା କଦାପି ନିରାପଦ ନୁହେଁ । ତଦ୍ୱାରା ଓଡ଼ିଆ ଭାଷା ଲୋପ ହେବ । ଓଡ଼ିଆମାନଙ୍କ ପ୍ରତି ଅବିଚାର ହେବ ଏବଂ କଚେରୀ କାର୍ଯ୍ୟରେ ଭୟାନକ ବିଶୃଙ୍ଖଳା ଘଟିବ ଅଧିକ ଅମଲା ରଖିବା ଆବଶ୍ୟକ ହେବ ବର୍ତ୍ତମାନ ଅମଲାମାନେ ଓଡ଼ିଆ ଅକ୍ଷର ଯେତେଶୀଘ୍ର ଲେଖୁଅଛନ୍ତି ହିନ୍ଦୀଅକ୍ଷର ତେତେ ଶିଘ୍ର ଲେଖିପାରିବେ ନାହିଁ , ଅଗତ୍ୟା ଅଧିକ ଅମଲା ରଖିବା ଆବଶ୍ୟକ ହେବ ।

ସାରକଲ ଇନ୍ସପେକ୍ଟର ଶ୍ରୀଯୁକ୍ତ କୃପାଶଙ୍କର, ହିନ୍ଦୀ ଶିଖିବା ସକାଶେ ସମସ୍ତ ଶିକ୍ଷକମାନଙ୍କୁ ଉପଦେଶ ବା ଆଦେଶ ଦେଇଯାଇ ଅଛନ୍ତି । ସେ ହିନ୍ଦୀ ବିଦ୍ୟାଳୟ ସଂସ୍ଥାପନର ପକ୍ଷପାତୀ ।

ଅନ୍ୟାନ୍ୟ ମହକୁମାର ଅଧକ୍ଷମାନେ ଆପଣା ଆପଣା ଅଧସ୍ତନ କର୍ମଚାରିମାନଙ୍କୁ ହିନ୍ଦୀଶିକ୍ଷା ସକାଶେ ଆଦେଶ ଦେଉଅଛନ୍ତି , ନ ଶିଖିଲେ ସେମାନଙ୍କ ଉନ୍ନତି ନ ହେବା ଏବଂ ସେମାନେ ପଦଚ୍ୟୁତ ହେବାର ଭୟ ଦେଖାଉଅଛନ୍ତି । ଏ ଭୂମିକୁ ଦେଖି ଅତ୍ୟନ୍ତ ଆଶଙ୍କିତ ହୋଇଅଛନ୍ତି ।

ଏ ଭାଷା ପରିବର୍ତ୍ତନ ସମ୍ବନ୍ଧେ ଆମ୍ଭମାନଙ୍କର ମାନନୀୟ କମିଶ୍ନର ଏବଂ ଡେପୁଟୀ କମିଶ୍ନର ମହୋଦୟକି ରାଜା ଜମିଦାରମାନଙ୍କଠାରୁ ଏବଂ ଅନ୍ୟାନ୍ୟ ବେସରକାରୀ ଲୋକମାନଙ୍କଠାରୁ ମତ ନେବା ଉଚିତ ବୋଧ କରିବେ ନାହିଁ ?

ଆମ୍ଭେମାନେ ପୁନଃ ପୁନଃ କହୁଅଛୁଁ ସମ୍ବଲପୁରରେ ହିନ୍ଦୀଭାଷା ଚଳାଇବା କେବେହେଁ ଉଚିତ ନୁହେଁ । ଯେବେ ଓଡ଼ିଆଭାଷା ପ୍ରଚଳନରେ ଅସୁବିଧା ଅନୁଭୂତ ହୁଏ ତେବେ ଏ ଜିଲ୍ଲାକୁ ମଧପ୍ରଦେଶର ଅଧିନରେ ନ ରଖି ଓଡ଼ିଶ୍ୟା ସାମିଲ କରାଯାଉ । ସମ୍ବଲପୁରର ଲୋକମାନେ ମଧ ଏହି ପ୍ରାର୍ଥନା କରୁ ଅଛନ୍ତି ।

*ଭା୬ଗ,ସଂ୧୨ଖ୍ୟା, ୨୨।୮।୧୮୯୪*

## ୧୮୯୪

## ଶିକ୍ଷିତ ଓଡ଼ିଆଙ୍କ ଉପରେ ଶ୍ରୀଯୁକ୍ତ କୁକ୍ ସାହେବଙ୍କ ମନ୍ତବ୍ୟ ।

ଆଜିକାଲି ବଙ୍ଗଳାରୁ ନାନା ବିଭାଗସ୍ଥ କମିଶନର ସାହେବ ମାନଙ୍କର ଯେଉଁ ବାର୍ଷିକ ରିପୋର୍ଟମାନ ପ୍ରକାଶିତ ହୋଇଥାଏ ତାହା ଅତ୍ୟନ୍ତ ଦୀର୍ଘ ଅଥଚ ଅନେକ ସ୍ଥଳରେ ଖୁବ୍ ସାରବାନ । ସେଥିରେ ରାଜନୈତିକ, ସାମାଜିକ ବିଷୟମାନ - ଦେଶର ଅବସ୍ଥା-ପ୍ରଜାମଣ୍ଡଳୀର ଅବସ୍ଥା-ଇତ୍ୟାଦି ନାନା ପ୍ରକାର ବିଷୟ ପୁଙ୍ଖାନୁପୁଙ୍ଖରୂପେ ଆଲୋଚିତ ହୋଇଥାଏ । ଦେଶର ପ୍ରଧାନ ରାଜପୁରୁଷ ଦେଶ ଓ ଦେଶବାସିମାନଙ୍କ ସପକ୍ଷ ବା ବିପକ୍ଷରେ କି କହିଲେ ତାହା ଆଲୋଚନା କରି ଦେଖିବା ପ୍ରତ୍ୟେକ ଦେଶ ହିତୈଷୀ ବ୍ୟକ୍ତିର ପ୍ରଧାନତମ କର୍ତ୍ତବ୍ୟ । ସେଥିଦ୍ୱାରା ଯେ ଦେଶର ଅଶେଷ କଲ୍ୟାଣ ସାଧିତ ହୁଏ ତାହା ବୋଲିବା ବାହୁଲ୍ୟମାତ୍ର । ବଙ୍ଗଳା ଅନେକ ପରିମାଣରେ ତାହା କରିବାକୁ ଶିଖିଅଛି – କିନ୍ତୁ ହତଭାଗ୍ୟ ଉତ୍କଳ ସବୁ ବିଷୟରେ ନୀରବ -ନିର୍ଜୀବ ।

ଶ୍ରୀଯୁକ୍ତ କୁକ୍ ସାହେବ ଉତ୍କଳର ରାଜକୀୟତ ସାମାଜିକ ସଭା ସମିତି ମାନଙ୍କ Social and political institutions ସମ୍ବନ୍ଧରେ ଯେଉଁ ମର୍ମ୍ମାନ୍ତିକ ମନ୍ତବ୍ୟ ପ୍ରକାଶ କରିଅଛନ୍ତି କେବଳ ତାହାହିଁ ଆଲୋଚନା କରି ଦେଖିବା ଆମ୍ଭମାନଙ୍କର ଅଦ୍ୟକାର ପ୍ରଧାନ ଉଦ୍ଦେଶ୍ୟ । ସାହେବ ମହୋଦୟ ଲେଖିଅଛନ୍ତି ଯେ ବର୍ଣ୍ଣିତ ବର୍ଷ ମଧ୍ୟରେ କେବଳ "ଓଡ଼ିଶା ଏସୋସିଏଶନ୍" "ପୁରୀ ଟେମ୍ପଲ ରିପେୟାର କମିଟୀ" ବ୍ୟତୀତ ଆଉ କୌଣସି ସମିତିର ଅସ୍ତିତ୍ୱ ଥିଲାପରି ବୋଧ ହେଲା ନାହିଁ । ବାସ୍ତବିକ ସାହେବ ମହୋଦୟଙ୍କ ମନ୍ତବ୍ୟ ଯେ ଅକ୍ଷରେ ଅକ୍ଷରେ ସତ୍ୟ ତହିଁରେ ସନ୍ଦେହ କି ଅଛି ? ସଭାସମିତିର ଉପଯୋଗିତା ଶିକ୍ଷିତ ଓଡ଼ିଆ ପୁଏ କେବେ ସମ୍ୟକ୍ ହୃଦୟଙ୍ଗମ କରିବେ ? ସାହେବ ମହୋଦୟଙ୍କର ଭିତର କଥାଗୁଡ଼ିକ ଏହି :-

Of the institutions named in my last, report none but the Orissa Association and the Puri Temple Repair Committee showed signs of this existence.

ଆଶ୍ଚର୍ଯ୍ୟର ବିଷୟ ଯେ ସାହେବ ମହୋଦୟ ପୃଥିବୀର ସର୍ବଶ୍ରେଷ୍ଠ ଉଦାରନୈତିକ ଦେଶର ଅଧିବାସୀ ହୋଇ ସୁଦ୍ଧା ଏପ୍ରକାର ସଭାସମିତି ମାନଙ୍କର ଆବଶ୍ୟକତା ଅନୁଭବ କରନ୍ତି ନାହିଁ । ସେ କହନ୍ତି :-

The Uriya is not addicted to forming institutions with political and social objects. ଠିକ୍ ଏହାର ପରେ ସାହେବ ମହୋଦୟ କହୁଅଛନ୍ତି :-

Institutions like the Gorakshyani Sabha, the Landlord's Association, and the Sanatana Dharmarakshini Sabha were started more or less under foreign influence.

ଅହେ ! କି ମର୍ମ୍ମାନ୍ତିକ ମନ୍ତବ୍ୟ !! ଶିକ୍ଷିତ ଓଡ଼ିଆମଣ୍ଡଳିଙ୍କ ପକ୍ଷରେ କି ଘୋର ଲଜ୍ଜାର ବିଷୟ !! ଉତ୍କଳର ସାମାଜିକ, ରାଜନୈତିକ ଓ ଧର୍ମ୍ମ ସମ୍ବନ୍ଧୀୟ ସଭାସମିତି ପ୍ରତିଷ୍ଠାରେ ସୁଦ୍ଧା ବୈଦେଶିକ ଆଧିପତ୍ୟର ଆବଶ୍ୟକ !!! କିନ୍ତୁ ପାଠକେ ! ଠିକ୍ ପରେ ସାହେବ ମହୋଦୟ ପୁଣି କି ଘୋର ମର୍ମ୍ମଭେଦୀ ମନ୍ତବ୍ୟ ପ୍ରକାଶ କରି ଅଛନ୍ତି ଶୁଣନ୍ତୁ । ସେ କହୁଅଛନ୍ତି :- The people soon tired of what was found to be a somewhat silly form of recreation, and they died of inanition କି ମର୍ମ୍ମଭେଦୀ ଯଥାର୍ଥ କଥା !! ଶିକ୍ଷିତ ଓଡିଆ ପୁଏକି ଏଥିରୁ କିଛି ଶିକ୍ଷା କରିବେ ନାହିଁ ? ଚୀରକାଳ କି ଜନ୍ମଭୂମି ଉତ୍କଳ ଘୋର ତିମୀରରେ ଆଚ୍ଛନ୍ନ ରହିଥିବ !

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଆଉ ଗୋଟିଏ କଥା କହି ଆଜି ଆମ୍ଭେମାନେ ପାଠକ ମଣ୍ଡଳିଙ୍କଠାରୁ ବିଦାୟ ଗ୍ରହଣ କରିବୁଁ । ଉତ୍କଳର ରାଜନୈତିକ ଗଗନରେ ଆଜିକାଲି ଓଡିଶା ବନ୍ଦୋବସ୍ତ ଗୋଟିଏ ପ୍ରଧାନ ଆଲୋଚ୍ୟ ବିଷୟ । ଏଥିରେ ଉତ୍କଳବାସି ମାନଙ୍କର ଭବିଷ୍ୟତ ସମ୍ପୂର୍ଣ୍ଣ ନିର୍ଭର କରୁଅଛି । ଏହା ଘେନି ଦେଶରେ ତୁମୁଳ ଆନ୍ଦୋଳନ ଉପସ୍ଥିତ ହେବା ବାଞ୍ଛନୀୟ । କିନ୍ତୁ ଏହି ବନ୍ଦୋବସ୍ତର କାର୍ଯ୍ୟ ଆଜକୁ ପ୍ରାୟ ବର୍ଷାର୍ଦ୍ଧ ହେବ ଆରମ୍ଭ ହୋଇଥିବା ସ୍ଥଳେ ଉତ୍କଳବାସୀମାନେ ସେ ବିଷୟରେ କିରୂପ ଆଶ୍ଚର୍ଯ୍ୟଭାବରେ ନୀରବ ଅଛନ୍ତି ତାହା ସାହେବ ମହୋଦୟଙ୍କ ନିଜ ମୁଖରେ ଶୁଣନ୍ତୁ । କମିଶନର ସାହେବ ମହୋଦୟ କହୁ ଅଛନ୍ତି : -

It would not be surprising to find the Landlords of Orissa exercising themselves greatly as to how the settlement will effect them but for over two and a half years, during which I have been here, and throughout which period settlement has been progressing,I have heard nothing but the name of the Landlord's Association.

କଥାଟି ସମ୍ପୂର୍ଣ୍ଣ ସତ୍ୟ । ଆମ୍ଭେମାନେ ଏଥି ମଧ୍ୟରେ କେବଳ ଥରେମାତ୍ର ଏହି ସଭାର ନାମ ଶୁଣିଥିଲୁଁ । ଚଳିତ ବନ୍ଦୋବସ୍ତ ସମ୍ବନ୍ଧରେ ଉତ୍କଳର ଭୂସ୍ୱାମୀମାନଙ୍କର କି କରିବା କର୍ତ୍ତବ୍ୟ ଏହା ନିର୍ଦ୍ଧାରଣ କରିବା ନିମିତ୍ତ କଟକ ପ୍ରିଣ୍ଟିଂ କୋମ୍ପାନୀଙ୍କ ଦ୍ୱିତଳ ଗୃହରେ କଟକର ପ୍ରଧାନ ପ୍ରଧାନ ଜମିଦାର ମାନଙ୍କର ଏକ ସଭା ଆହୂତ ହେବାର ବିଜ୍ଞାପନ ପ୍ରଚାରିତ ହୋଇଥିଲା । ମାତ୍ର ନିର୍ଦ୍ଦିଷ୍ଟ ସମୟରେ ୩।୪ ଜଣରୁ ଅଧିକ ସଭ୍ୟ ଉପସ୍ଥିତ ନ ହେବାରୁ ଅଧିବେଶନ ହେଲା ନାହିଁ । କି ଘୋର କଳଙ୍କ !! ବର୍ତ୍ତମାନ ସୁଦ୍ଧା କି ଉତ୍କଳବାସିମାନେ ଏପ୍ରକାର ଗୋଟିଏ ମହତ୍ ବିଷୟରେ ଉଦାସୀନ ରହିବେ ? ଦେଶର ପ୍ରଧାନ ରାଜକର୍ମଚାରୀଙ୍କର ଏହି କଟୁ ମନ୍ତବ୍ୟ କି ଅମ୍ଳାନ ବଦନରେ ଗଳାଧଃକରଣ କରିବେ ? (ପ୍ରକାଶ ଥାଉକି ଉପରୋକ୍ତ ରେଖାରୂଢ଼ ଶବ୍ଦ ଓ ବାକ୍ୟାଂଶମାନ ଆମ୍ଭମାନଙ୍କ ଦ୍ୱାରା ରେଖାରୂଢ଼)

ପ୍ରସଙ୍ଗକ୍ରମେ ଆଉ ଗୋଟିଏ କଥା କହି ଆମ୍ଭେମାନେ ପ୍ରବନ୍ଧର ଉପସଂହାର କରିବୁଁ । ଶ୍ରୀଯୁକ୍ତ କୁକ୍ ସାହେବ ସମ୍ବଲପୁରର ଭାଷା ପରିବର୍ତ୍ତନ ସମ୍ବନ୍ଧରେ ଯେଉଁ ସୁଯୁକ୍ତିପୂର୍ଣ୍ଣ ମନ୍ତବ୍ୟ ପ୍ରକାଶକରି ସମ୍ବଲପୁର ଓ ତତ୍ ସଂଲଗ୍ନ ଫିଉଡେଟେରୀ ରାଜ୍ୟ ମାନଙ୍କୁ ପରାମର୍ଶ ଦେଇ ଅଛନ୍ତି, ତାହା ଦୀପିକାର ପ୍ରବୀଣ ସମ୍ପାଦକଙ୍କ ଦ୍ୱାରା ସମ୍ୟକ୍ ଆଲୋଚିତ ହୋଇ ଅଛି । କମିଶନର୍ ସାହେବଙ୍କର ରିପୋର୍ଟରେ ଏହି ଅଂଶ ଉପରେ ଗଭର୍ଣ୍ଣମେଣ୍ଟଙ୍କର କୌଣସି ମନ୍ତବ୍ୟ ପ୍ରକାଶିତ ହୋଇ ନ ଥିଲେ ମଧ୍ୟ ତାହା ଯେ ଗବର୍ଣ୍ଣମେଣ୍ଟ ଏକାବେଳକେ ପରିତ୍ୟାଗ କରି ଅଛନ୍ତି ଏମନ୍ତ ଅନୁମାନ କରାଯାଇନପାରେ କୁକ୍ ସାହେବ ବର୍ତ୍ତମାନ ଚାଲିଯାଇ ଅଛନ୍ତି । କିନ୍ତୁ ସେ ଆମ୍ଭମାନଙ୍କୁ ତାଙ୍କ ସ୍ଥାନରେ ଯେଉଁ ସୁଯୋଗ୍ୟ ଓ ସ୍ୱଦେଶର "ମୁଖୋଜ୍ଜ୍ୱଳକାରୀ" ଦେଶୀୟ ହାକିମ ଦେଇଯାଇ ଅଛନ୍ତି ବର୍ତ୍ତମାନ ଯଦି ଶିକ୍ଷିତ ଉତ୍କଳବାସୀମାନେ ତାଙ୍କରି ସାହାଯ୍ୟ ଘେନି ଏ ବିଷୟରେ ଭାରତ ଗବର୍ଣ୍ଣମେଣ୍ଟଙ୍କ ହଜୁରରେ ଦୁଃଖ ଜଣାନ୍ତି ତେବେ ଅବଶ୍ୟ ଶିଘ୍ର ବା ବିଳମ୍ବରେ ଶୁଭଫଳ ଫଳିବାର ସମ୍ଭାବନା । ଆମ୍ଭେମାନେ ଏ ବିଷୟରେ ଉତ୍କଳ ଓ ସମ୍ବଲପୁରବାସୀଙ୍କୁ ପୁନରାୟ ଆନ୍ଦୋଳନ କରିବାକୁ ଅନୁରୋଧ କରୁଅଛୁଁ । ହିତୈଷିଣୀର ସମ୍ପାଦକଙ୍କୁ ଉଚିତ କି ସେ କଲିକତା ଗେଜେଟରୁ ଏତତ୍ ସଂକ୍ରାନ୍ତ ଶ୍ରୀଯୁକ୍ତ କୁକ୍ ସାହେବଙ୍କର ମନ୍ତବ୍ୟ ଆମୂଳ ଆପଣା ପତ୍ରିକାରେ ପ୍ରକାଶ କରିବାକୁ ଯତ୍ନବାନ ହେବେ ।

ଶ୍ରୀକୃଷ୍ଣ ପ୍ରସାଦ ଚୌଧୁରୀ ।

*ଭା୭ଗ,ସଂ୩୧ଖ୍ୟା, ୧।୧।୧୮୯୫*

# [କବିତା ମଞ୍ଜରୀ ପୁସ୍ତକ ଆଲୋଚନା]

ମହାଶୟ,

ଆଜିରେ ହଠାତ୍ ଖଣ୍ଡିଏ "କବିତାମଞ୍ଜରୀ" ହସ୍ତଗତ ହେଲା, ଜାଣିଲି ଏହା ବାବୁ ଗୋପାଳ ବଲ୍ଲଭ ଦାସ ଏମ୍,ଏ,ଙ୍କ କର୍ତ୍ତୃକ ବିରଚିତ ଏବଂ ପ୍ରକାଶିତ । ଉକ୍ତ ମହୋଦୟଙ୍କ ନାମ ଦେଖି ପଢ଼ିବା ସକାଶ କୌତୂକ ବଢ଼ିଲା, ଆଦ୍ୟୋପାନ୍ତ ପାଠକଲି ଦେଖିଲି ଏହା ଅବସର ପ୍ରାପ୍ତ ମହାମତି ଶ୍ରୀଲଶ୍ରୀଯୁକ୍ତ ହେନରି ଜିରଡ କୁକ କମିଶନରଙ୍କ ନାମରେ ଉତ୍ସର୍ଗୀକୃତ ହୋଇଅଛି । ଭୂତପୂର୍ବ କମିଶ୍ନର ରେଭେନସା ସାହେବ ଯେରୂପ ଉତ୍କଳର ବନ୍ଧୁ ଥିଲେ, ଆଜିରେ ମହାମତି କୁକ୍ ମହୋଦୟ ମଧ୍ୟ ସେହିଭଳି ଉତ୍କଳୀୟ ମାନଙ୍କର ବନ୍ଧୁ ହୋଇ ଉତ୍କଳର ଦୁଃଖରେ ଦୁଃଖିତ ହେବାର ଅନେକ ପ୍ରମାଣ ମିଳୁଅଛି । ଉପଯୁକ୍ତ ପାତ୍ରରେ ପୁସ୍ତକ ଖଣ୍ଡିକ ଉତ୍ସର୍ଗୀକୃତ ହେବାରୁ ଆମ୍ଭେମାନେ ଗୋପାଳବାବୁଙ୍କ ରୁଚିକୁ ଧନ୍ୟବାଦ ଦେଉଅଛୁଁ ।

କବିତା ମଞ୍ଜରୀରେ ଯେତେଗୁଡ଼ିଏ ପଦ୍ୟ ପ୍ରବନ୍ଧ ସନ୍ନିବେଶିତ ହୋଇ ଅଛି, ସେ ସବୁ ଗୁଡ଼ିକ କବିତା । ବାବୁ ମହୋଦୟ ଯେ ଜଣେ ନୈସର୍ଗିକ ପ୍ରତିଭା ସମ୍ପନ୍ନ ସୁକବି ହେବେ, ସେଥିର ପ୍ରଭୁତ ପରିଚୟ ଏହି କ୍ଷୁଦ୍ର କବିତା ଗ୍ରନ୍ଥରୁ ସୁନ୍ଦରରୂପେ ପ୍ରତୀୟମାନ ହେଉଅଛି । ଆମ୍ଭମାନଙ୍କ ନବୀନ କବିଙ୍କର "କାର୍ତ୍ତିକସ୍ନାନ, ଦୁଃଖ, ଉପେନ୍ଦ୍ର ଭଞ୍ଜ, ବନମଲ୍ଲି, ଏବଂ ଗୋଲାପ" ପ୍ରଭୃତି କବିତା ଗୁଡ଼ିକ ସ୍ୱଭାବ ସଙ୍ଗତ, ଗଭୀର – ଭାବପୂର୍ଣ୍ଣ ପୁଣି ସୁରୁଚି ପରିଚାୟକ ; କାର୍ତ୍ତିକ ସ୍ନାନରେ କବି ଯଥାର୍ଥ କହି ଅଛନ୍ତି –

"ଅବଳାର ମନ ରମ୍ୟ ଉପବନ,
ଯତ୍ନେ ହେଲେ ସୁରକ୍ଷିତ ।
ନତୁବା ବଢ଼ଇ, ସାନବଡ଼ ତହିଁ
ନୀଚଗୁଲ୍ମ ଅଗଣିତ ।" ଇତ୍ୟାଦି

ମାତ୍ର ଓଡ଼ିଶାର ଭାଗ୍ୟ ଦୋଷରୁ ଆପଣା କବିତାକୁ ସ୍ୱଭାବସଂଗତ କରିବାକୁ ଯାଇ ଆମ୍ଭମାନଙ୍କର ନବୀନ କବି ବର୍ତ୍ତମାନ ଦୂରବସ୍ଥାପନ୍ନ ଓଡିଆ ସ୍ତ୍ରୀ ସମାଜ ବର୍ଣ୍ଣନରେ କେବଳ "ନୀଚଗୁଲ୍ମମାନ" ଚିତ୍ରିତ କରାଇବାକୁ ବାଧ୍ୟ ହୋଇ ଅଛନ୍ତି । ଆମ୍ଭମାନଙ୍କ ନବୀନ କବି ଯେଉଁ ଯେଉଁ ସ୍ଥଳରେ ଧୀରତା, ସୁରୁଚି ଓ ଧର୍ମଭାବ ସହିତ ପ୍ରମଦାଙ୍କ ରୂପ ବର୍ଣ୍ଣନା କରିଅଛନ୍ତି, ସେହି ସବୁ ସ୍ଥଳରେ ଅନେକାନେକ ପ୍ରବୀଣ କବିଙ୍କର ମଧ୍ୟ ଧୈର୍ଯ୍ୟଚ୍ୟୁତ, କୁରୁଚି ପ୍ରବଣତା ପୁଣି ଦୁଷ୍ଟରସିକତାର ତରଙ୍ଗ ଛୁଟିଯାଏ, ପ୍ରବନ୍ଧ ବୃଦ୍ଧି ଭୟରେ ଉକ୍ତ ସୁଲଳିତ ରଚନାମାନ ଉଦ୍ଧୃତନକରି ପାଠକମାନଙ୍କୁ ଅନୁରୋଧ ଯେ, ସେମାନେ ଥରେ ସମାଲୋଚ୍ୟ ବିଷୟଟି ପାଠକରି ଆମ୍ଭମାନଙ୍କ ଉକ୍ତିର ସତ୍ୟାସତ୍ୟ ପ୍ରତିପାଦନ କରିବେ ।

ଗୋପାଳବାବୁ ଜଣେ ଶାସନ ବିଭାଗୀୟ ରାଜ କର୍ମଚାରୀ, ଓଡ଼ିଶାରେ ଏହି ଶ୍ରେଣୀର ବ୍ୟକ୍ତିମାନଙ୍କର ସାହିତ୍ୟ (ଉତ୍କଳ) ଚର୍ଚ୍ଚା କରିବା ଦୃଷ୍ଟାନ୍ତ ଅତି ବିରଳ, ଆଉ ଦ୍ୱିତୀୟ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଇଦୃଶ କଠିଣ ଏବଂ କଠୋର ବ୍ରତରେ ବ୍ରତୀ ହୋଇ ମଧ୍ୟ ସେ ବାଗ୍‌ଦେବୀଙ୍କ ଉପାସନା ନିମନ୍ତେ ସୁକୋମଳ ମାନସ କୁସୁମ ମଞ୍ଜରୀ ଅଙ୍କୁରିତ କରାଇବା ପକ୍ଷରେ ସମର୍ଥ ହୋଇ ଅଛନ୍ତି, ଏହା ଆମ୍ଭମାନଙ୍କ ପକ୍ଷରେ ଯଥେଷ୍ଟ ଶ୍ଳାଘାର ବିଷୟ ନୋହେ କି ? ସେ ପ୍ରଥମୋଦ୍ୟମରେ ନାନା ସ୍ଥଳରେ ଯେଉଁ କଳ୍ପନା ଚାତୁର୍ଯ୍ୟ ପୁଣି ଚିତ୍ରାଙ୍କନ ପାଟବ ଦେଖାଇଅଛନ୍ତି, ତାହା ଅନେକାନେକ ଲବ୍ଧପ୍ରତିଷ୍ଠ କବିଙ୍କ ପକ୍ଷରେ ମଧ୍ୟ ଗୌରବର ବିଷୟ ହୁଅନ୍ତା ଏକଥା ସମସ୍ତେ ନିରପେକ୍ଷ ଭାବରେ ସ୍ୱୀକାର କରିବେ ।

ଆମ୍ଭେମାନେ ଗୋପାଳ ବାବୁଙ୍କ କବିତାକୁ ସଂପୂର୍ଣ୍ଣ ନିର୍ଦ୍ଦୋଷ ବୋଲୁଅଛୁଁ ଏମନ୍ତ ନୋହେଁ । ରୂପ ରସ ଓ ଗନ୍ଧ ଏକଧାରେ ଥାଏ ନାହିଁ ସତ୍ୟ  ମାତ୍ର ସେଥିଯୋଗୁଁ ଯେ ଜଗତରେ ସେଭଳି ପଦାର୍ଥ ନାହିଁ ଏ କଥା ଅବା କିଏ କହିବ ? ତେବେ ବାବୁ ମହୋଦୟ ପ୍ରଥମୋଦ୍ୟମରେ କବିତା ଉଦ୍ୟାନରେ ପ୍ରବେଶ ପୂର୍ବକ ସୁନ୍ଦର ସୁରୁଚିସମ୍ପନ୍ନ ଯେଉଁ ସମସ୍ତ ମଞ୍ଜରୀମାନ ସଂକଳନ କରିଅଛନ୍ତି ସେଥିରୁ ତାଙ୍କର ଉଚ୍ଚଭାବର ଏବଂ ସୁରୁଚିର ସୁନ୍ଦର ପ୍ରମାଣ

ମିଳୁଅଛି । ସମାଲୋଚ୍ୟ ଗ୍ରନ୍ଥରେ ମଧ୍ୟ ଭାବ ଏବଂ ଭାଷାଗତ ଦୋଷ ରହିଅଛି, ମୁଦ୍ରା ପ୍ରମାଦ ମଧ୍ୟ ବିରଳ ନୋହେ । "କୋଣାର୍କେ ଉଷା" କବିତାଟି ଯେପରି କବିଙ୍କର ଚିତ୍ରାଙ୍କନ ଶକ୍ତିର ପୁଣି ଅସାଧାରଣ ପ୍ରତିଭାର ପରିଚାୟକ ; ସେହିପରି ତାହାଙ୍କର ସ୍ୱଦେଶାନୁରାଗ ଓ ସ୍ୱଜାତି ପ୍ରେମିକବ୍ୟଞ୍ଜକ ମଧ୍ୟ ଅଟଇ । ମାତ୍ର ଏହି କବିତାଟି ଅପେକ୍ଷାକୃତ ଦୀର୍ଘ ହେବାରୁ ନବଲେଖକ ସୁଲଭ ଲକ୍ଷ୍ୟ ହୁଡ଼ିବା ଦୋଷ ମଧ୍ୟ ଘଟିବାର ଦେଖାଯାଏ । କବି ଉକ୍ତ କବିତାରେ ଏକ ସ୍ଥଳରେ ଆକ୍ଷେପ କରି କହିଅଛନ୍ତି -

"ଅତୀତର ସାକ୍ଷି, ଉଷେ ବିଶାଳାକ୍ଷି,
କିପାଁ ଏହା ଦରଶନେ
ଅତୀତ ଗୌରବ, ଅତୀତ ବିଭବ,
ପଡ଼ୁ ନାହିଁ କାହାମନେ ।
ବଦନ ଫେରାଇ, କେହି ଦେଖୁ ନାହିଁ,
କାଳଚିତ୍ର ପଟାଙ୍କିତ ।
ଉଜ୍ଜ୍ୱଳ ବରଣ, ବିଶଦ ବଚନେ
ଉତ୍କଳର ଇତିବୃତ୍ତ ।
ଏଡ଼େ ଉଦାସୀନ ବଳବୀର୍ଯ୍ୟ ହୀନ,
ସଦାପର ମୁଖା ପେକ୍ଷୀ ।" ଇତ୍ୟାଦି -

ପୁଣି ସ୍ୱୟଂ ସେହି ଅତୀତ ଗୌରବ ବିଷୟମାନ ବିସ୍ମୃତ ହୋଇ କହି ଅଛନ୍ତି -

"ଫେଡି ବାବୁ ଦଶା କେବଳ ଭରସା
ବ୍ରିଟିଶ କେଶରୀ କର ।
ଯାହା କୃପାବଳେ, ହୋଲେ ଲେଣିହେଲେ,
କେତେ ଜାତି ଅଗ୍ରସର ।"

ଉତ୍କଳୀୟମାନଙ୍କର ଉଦ୍ୟମହୀନତା ଏବଂ ନିରୁତ୍ସାହ ଦେଖି ସେମାନଙ୍କୁ ଉତ୍ସାହିତ ଓ ଯତ୍ନଶୀଳ କରାଇବା ଐକାନ୍ତିକ କାମନାରେ କବି ବ୍ୟଥିତ ହୃଦୟରେ କହି ଅଛନ୍ତି –

"ନିଦ୍ରା ପରିହରି, ବଳବୀର୍ଯ୍ୟ ଧରି,
ଉତ୍ସାହ ଉତ୍ଫୁଲ୍ଲ ନେତ୍ରେ ।
ଉତ୍କଳ ନନ୍ଦନେ, ପ୍ରଫୁଲ୍ଲ ବଦନେ
ପଶିବେକି କାର୍ଯ୍ୟ କ୍ଷେତ୍ରେ ।"

ପୁଣି ସ୍ୱୟଂ ହତାଶ ହୋଇ ଅଦୃଷ୍ଟବାଦୀତାର ଆଶ୍ରୟ ଗ୍ରହଣ କରି କହି ଅଛନ୍ତି –

"ଏକେତ ଆଶା, କେବଳ ଦୁରାଶା
ଆକାଶ କୁସୁମପରି ।
ଥିବ ମନେ ମନେ ନ ଘଟିବ ଦିନେ,
ସଦୟ ନୋହିଲେ ହରି ।"

ସୁତରାଂ ଏଥିରୁ ଏହା ପ୍ରତୀୟମାନ ହେଉ ଅଛି ଯେ ପୂର୍ବାପର ଉକ୍ତିରେ ସଙ୍ଗତି ନାହିଁ । ଏତ ଗଲା ଭାବଗତ ଦୋଷର କଥା । ଭାଷାଗତ ଦୋଷ ମଧ୍ୟ ବିରଳ ଭାବରେ ଲକ୍ଷିତ ହୁଅଇ : -

"ସ୍ୱାର୍ଥପର ଜଗତରେ ଆଦୃତ ସେ ଜନ
ନିଜସ୍ୱାର୍ଥ କରିଅଛି ଯେହୁ ବିସର୍ଜନ ।"

ଭାବମାନ ଅତି ଉଚ୍ଚ ମାତ୍ର ଭାଷା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ନୁହେଁ । "ନିଜ ସ୍ୱାର୍ଥ" ପଦରେ ନିଜ ଶବ୍ଦର ଅତ୍ୟୁକ୍ତିର ହୋଇ ଅଛି । କବିଙ୍କର ସୂର୍ଯ୍ୟାସ୍ତ କବିତା ଗୋଟିକ ଅମିତ୍ରାକ୍ଷର ଛନ୍ଦରେ ରଚିତ ଏବଂ ଗଭୀର କଳ୍ପନାଶକ୍ତିର ପରିଚାୟକ ଅଟେ । ମାତ୍ର ଭାଷା ପ୍ରାଞ୍ଜଳ ନୋହେ । ଆମ୍ଭେମାନେ ଏହି କବିତା ପାଠ କରିବା ସମୟରେ ପାଖରେ କେତେଜଣ ଶିକ୍ଷିତ ବନ୍ଧୁ ଶୁଣୁଥିଲେ , କେତେକ ପଙ୍କ୍ତି ଶୁଣି ଜଣେ ସନ୍ଦିଗ୍ଧ ହୋଇ କହିଲେ "ଆପଣ କଅଣ ପାଠ କରୁ ଅଛନ୍ତି ବଙ୍ଗଳା ନା ଓଡ଼ିଆ ? ପଢ଼ିବାର କଥା, ଅମିତ୍ରାକ୍ଷର କବିତା ଅଧିକତର ପ୍ରସାଦ ଗୁଣ ବିଶିଷ୍ଟ ନ ହେଲେ, ଓଡ଼ିଆ ଭାଷାରେ ହୃଦୟଗ୍ରାହ୍ୟ ହେବ ନାହିଁ । ଏ ବିଷୟରେ କବିବର ଶ୍ରୀଯୁକ୍ତ ରାଧାନାଥ ରାୟ ମହାଶୟଙ୍କ ରଚନା ଅପ୍ରଚୁର ହେଲେହେଁ ଏକମାତ୍ର ଅନୁକରଣୀୟ ଅଟେ ।

ସ୍ଥୂଳତଃ ଏହା କୁହାଯାଇପାରେ ଯେ, ଆମ୍ଭମାନଙ୍କର ନବୀନ କବି ଜଣେ ମାର୍ଜିତ ରୁଚି ସମ୍ପନ୍ନ ଗଭୀର ଧର୍ମ୍ମଭାବ ଓ ନୀତି ବିଷୟକ ସୁଲେଖକ ଓ ସୁକବି ହେବେ, ସମାଲୋଚ୍ୟ ଗ୍ରନ୍ଥରୁ ସେଥିର ପ୍ରଭୂତ ପରିଚୟ ମିଳୁଅଛି । ସେ ଜଣେ ସୁରୁଚିବାନ, ଉତ୍ସାହୀ ଓ ଯତ୍ନଶୀଳ, ଦେଶହିତୈଷୀ ସ୍ୱଜାତି ପ୍ରେମିକ ଅଟନ୍ତି । ଓଡ଼ିଆମାନେ ତାହାଙ୍କଠାରୁ ଅନେକ ଆଶା କରନ୍ତି ; ଆମ୍ଭେମାନେ ଇଦୃଶ ବ୍ୟକ୍ତିଙ୍କର ଦୀର୍ଘଜୀବନ କାମନା କରି ଈଶ୍ୱରଙ୍କଠାରେ ସର୍ବଦା ମଙ୍ଗଳ କାମନା କରୁଅଛୁଁ, ଏ ମହାଶୟ ଦୀର୍ଘଜୀବୀ ହୋଇ ଉତ୍କଳର ବାହ୍ୟିକ ଓ ଆନ୍ତରିକ ଅବସ୍ଥାର ଉନ୍ନତି କରନ୍ତୁ –

ବାଲେଶ୍ୱର
ସୁହେଲପୁର — ଶ୍ରୀ ଶିବନାରାୟଣ ନାୟକ

*ଭା୬ଗ, ସଂ୩୨ଖ୍ୟା, ୮।୧।୧୮୯୫*

## ଉପାଧିଲାଭ ।

## [ବାମଣ୍ଡାର ରାଜା ସୁଢଳ ଦେବଙ୍କ ଉପାଧିଲାଭ]

ପାଠକମାନେ ଶୁଣି ସୁଖୀ ହେବେ ଯେ ନବବର୍ଷ ଉପଲକ୍ଷେ ବାମଣ୍ଡାର ରାଜା ସୁଢଳ ଦେବ ସି,ଆଇ,ଇ, "ନାଇଟ କମାଣ୍ଡର ଅବଦି ଇଣ୍ଡିୟାନ୍ ଏମ୍ପାୟାର" ଅର୍ଥାତ୍ କେସି, ଆଇ, ଇ ଉପାଧି ପାଇ ଅଛନ୍ତି । ବାମଣ୍ଡାର ପ୍ରାୟ ୩ ଶତ ପ୍ରଜା, ପ୍ରଧାନ ଏବଂ ଅମଲା ଏ ସମ୍ବାଦରେ ଆନନ୍ଦିତ ହୋଇ ସ୍କୁଲ ଗୃହରେ ଏକ ସଭାକରି ଉପାଧି ଦାନ କରିଥିବା ଏବଂ ତହିଁରେ ସହାୟତା କରିଥିବା ହେତୁ ମହାରାଣୀ, ବଡ଼ଲାଟ, ଚିଫ୍ କମିଶ୍ନର ଏବଂ ପୋଲଟିକେଲ ଏଜେଣ୍ଟଙ୍କୁ ଧନ୍ୟବାଦ ଦେଇ ଥିଲେ ଏବଂ ବାମଣ୍ଡାଧିପତି ଉକ୍ତ ସମ୍ମାନ ଲାଭ କରିବାକୁ ଉପଯୁକ୍ତ ହୋଇଥିବାରୁ ତାହାଙ୍କୁ ମଧ ଧନ୍ୟବାଦ ଦେଇ ଥିଲେ । ବାମଣ୍ଡାର ସାଧାରଣ ସଭାସମିତିରେ ଏପରି ଜନତା ଏବଂ ଉତ୍ସାହ ଆଉ କେବେ ଦେଖାଯାଇ ନ ଥିଲା । ରାଜା ସୁଢଳ ଦେବ ସି,ଆଇ,ଇ ଙ୍କ ନାମ ନବ ଉପାଧି ସଂଯୋଗରେ ନିମ୍ନୋକ୍ତ ଆକାର ଧାରଣ କରି ଅଛି । ଯଥା –

ରାଜାସ୍ୟାର ସୁଢ଼ଳ ଦେବ କେ, ସି, ଆଇ, ଇ
ଫିଉଡେଟରୀ ଚିଫ୍ । କି ।ବାମଣ୍ଡା ।

ବାମଣ୍ଡାଧିପତିଙ୍କର ଏ ସମ୍ମାନ ବୃଦ୍ଧିରେ ଆମ୍ଭେମାନେ ସୁଖୀ ହୋଇଅଛୁଁ । ବାମଣ୍ଡାର ରାଜାଙ୍କ ତୁଲ୍ୟ ସୁଚତୁର, ବୁଦ୍ଧିମାନ, ବହୁଦର୍ଶୀ ନରପତି ଏ ଦେଶରେ ଅତି ବିରଳ । ଏହାଙ୍କ ଶାସନ କାଳରେ ବାମଣ୍ଡାର ଆଶାତୀତ ଉନ୍ନତି ହୋଇଅଛି । ଅନ୍ୟାନ୍ୟ ପ୍ରତିବେଶୀ ରାଜାମାନେ ବାମଣ୍ଡାଧିପତିଙ୍କ ଅନୁକରଣରେ କାର୍ଯ୍ୟକରି ସ୍ୱଦେଶର ଉନ୍ନତି ଏବଂ ଆପଣାର ସମ୍ମାନବୃଦ୍ଧି କରନ୍ତୁ ଆମ୍ଭମାନଙ୍କ ପରି ସ୍ୱୟଂ ଚିଫ୍ କମିଶ୍ନର ବାହାଦୁର ମଧ ଏହି କାମନା କରନ୍ତି । ଆମ୍ଭେମାନେ ହୃଦୟର ସହିତ ବାମଣ୍ଡାଧିପତିଙ୍କ ସର୍ବାଙ୍ଗୀନ ମଙ୍ଗଳ ପ୍ରାର୍ଥନା କରୁ ଅଛୁଁ ।

*ଭା୬ଗ,ସଂ୩୩ଖ୍ୟା, ୧୬।୧।୧୮୯୫*

## ହିନ୍ଦି ଭାଷାର ଆଦର ।

ସମ୍ବଲପୁରରେ ମାତୃଭାଷାର ଉଚ୍ଛେଦ ସାଧନ କରି ହିନ୍ଦି ଭାଷା ଚଳାଇବା ସକାଶେ କର୍ତ୍ତୃପକ୍ଷମାନେ ଆଗ୍ରହାନ୍ୱିତ, ଯେହେତୁ ଏଥିରେ ଏକମାତ୍ର ଓଡ଼ିଆମାନଙ୍କର କ୍ଷତି ଓ ଅସୁବିଧା ଛଡ଼ା ଆମ୍ଭମାନଙ୍କର କିଛି କ୍ଷତି ବା ଅସୁବିଧା ନାହିଁ । ସୁତରାଂ ସେମାନେ ଓଡ଼ିଆ ସ୍ଥାନରେ ହିନ୍ଦି ଚଳାଇପାରିଲେ ସେମାନଙ୍କର ଅସୁବିଧା ଦୂର ହେବ । ସମ୍ବଲପୁରର ଅମଲାମାନଙ୍କ ହିନ୍ଦି ଶିଖାଇବାପାଇଁ ଜଣେ ଶିକ୍ଷକ ନିଯୁକ୍ତ ହୋଇଥିଲେ ବର୍ତ୍ତମାନ ବରଗଡ଼ର ଅମଲା ଏବଂ ଛାତ୍ରମାନଙ୍କ ପାଇଁ ଜଣେ ହିନ୍ଦି ଶିକ୍ଷକ ନିଯୁକ୍ତ ହୋଇ ପ୍ରେରିତ ହୋଇ ଅଛନ୍ତି । ଏଥିରୁ କି ହିନ୍ଦିଭାଷା ଚଳାଇବାର ସରକାରଙ୍କର ଉଦ୍ଦେଶ୍ୟ ଥିବାର ଜଣାଯାଉ ନାହିଁ ? ଆମ୍ଭେମାନେ ବିଶ୍ୱସ୍ତ ସୂତ୍ରେ ସମ୍ବାଦ ପାଇଅଛୁ ଯେ ଧୀରେ ଧୀରେ ଏ ଜିଲ୍ଲାରେ ହିନ୍ଦିଭାଷା ଚଳାଇବା ସରକାରଙ୍କର ଏକାନ୍ତ ଅଭିପ୍ରେତ । ଆପଣା ମାତୃଭାଷାର ବ୍ୟବହାର ରକ୍ଷା କରିବାର ଅଭିଳାଷ ଥିଲେ ଆଜହୁଁ ତହିଁର ଉପାୟ କରିବା ଉଚିତ, ନଚେତ୍ କ୍ରମେ କ୍ରମେ ଏ ଦେଶରୁ ଓଡ଼ିଆ ଭାଷା ବିଲୁପ୍ତ ହେବା ବିଷୟରେ ଆମ୍ଭମାନଙ୍କର କିଛି ମାତ୍ର ସନ୍ଦେହ ନାହିଁ । ଯଦି ଭାଷା ପରିବର୍ତ୍ତନ ନ କଲେ ମଧ୍ୟପ୍ରଦେଶ ଅଧୀନରେ ଏ ଜିଲ୍ଲାର ଶାସନ ବିଚାର କାର୍ଯ୍ୟ ଚଳି ନ ପାରେ ତେବେ ଏ ଜିଲ୍ଲାକୁ ମଧ୍ୟପ୍ରଦେଶରୁ ବାହାର କରି ଓଡ଼ିଶ୍ୟା ସହିତ ମିଶାଇ ଦେଲେ ଭାଷା ପରିବର୍ତ୍ତନ ନ କଲେ ମଧ କାର୍ଯ୍ୟ ଚଳିପାରେ, ଏହାହିଁ ଆମ୍ଭମାନଙ୍କର ପ୍ରାର୍ଥିତ ବିଷୟ ହେବା ଉଚିତ ।

*ଭା୬୮, ସଂ୩୪ଖ୍ୟା, ୨୩।୧।୧୮୯୫*

## ମାତୃଭାଷାର ବିଲୋପ ।

ଆଜି ଆମ୍ଭେମାନେ ଏକ ନିଦାରୁଣ ସମ୍ବାଦ ଘେନି ପାଠକ ମୋହଦୟମାନଙ୍କ ନିକଟରେ ଉପସ୍ଥିତ ହେବାକୁ ବାଧ ହେଉଅଛୁଁ । ଏ ଦୁଃସମ୍ବାଦରେ ସ୍ୱଦେଶାନୁରାଗୀ ପାଠକ ମହୋଦୟମାନେ ଯେ ଆମ୍ଭମାନଙ୍କ ପରି ଦୁଃଖିତ ହେବେ ଏଥିରେ ଆମ୍ଭମାନଙ୍କର କିଛି ମାତ୍ର ସନ୍ଦେହ ନାହିଁ । କିନ୍ତୁ ଆମ୍ଭମାନଙ୍କ ପରି ପରିକ୍ଷଦ ଦଳିତ ଜାତିର ଦୁଃଖ ଦୀର୍ଘ ନିଶ୍ୱାସ ମାତ୍ର ସାର ।

ପାଠକ ମହୋଦୟ-ମାନଙ୍କୁ ପୂର୍ବ ସପ୍ତାହରେ କହିଅଛୁ ଯେ ସମ୍ବଲପୁର ଜିଲ୍ଲାରୁ ଓଡିଆ ଭାଷା ଉଠାଇ ଦେଇ ହିନ୍ଦିଭାଷା ଚଳାଇବା ସକାଶେ ଉଚ୍ଚରାଜ କର୍ମଚାରିମାନେ ଚେଷ୍ଟାନ୍ୱିତ ଥିବାର ଆମ୍ଭେମାନେ ବିଶ୍ୱସ୍ତସୂତ୍ରେ ସମ୍ବାଦ ପାଇଅଛୁଁ । ଶୁଣା କଥା ସବୁବେଳେ ସତ୍ୟ ହୁଏ ନାହିଁ ଏହା ସତ୍ୟ ହେଲେ ମଧ ଦୁଃସମ୍ବାଦ ବେଳକୁ ଅନେକ ସମୟରେ ଶୁଣାକଥା ସତ୍ୟ ଥିବାର ଦେଖାଯାଏ । ଆମ୍ଭେମାନେ ଯାହା ଶୁଣିଥିଲୁଁ ତାହାର ସତ୍ୟତା ଉପଲବ୍ଧି କରି ପାରିଅଛୁଁ । ୧୮୯୬ ସାଲ ଜାନୁଏରୀ ମାସ ୧ ତାରିଖଠାରୁ ସମ୍ବଲପୁର ଜିଲ୍ଲାର ଅଦାଲତରେ ଓଡିୟା ଭାଷା ବଦଳରେ ହିନ୍ଦିଭାଷା ବ୍ୟବହୃତ ହେବାର ବିଜ୍ଞାପନ ପ୍ରାଦେଶିକ ଗେଜେଟରେ ପ୍ରକାଶିତ ହୋଇଅଛି ।

ଓଡିୟା ଭାଷାର ବ୍ୟବହାର ସ୍ଥିରତର ରଖିବା ସକାଶେ ଇତିପୂର୍ବେ ଉଭୟ ତହସିଲର ଲୋକମାନେ କର୍ତ୍ତୃପକ୍ଷଙ୍କୁ ପ୍ରାର୍ଥନା କରିଥିଲେ । ସେମାନଙ୍କର ଆବେଦନ ଅତି ଯଥାର୍ଥ ଥିବା ବିଷୟ ସେହି ସମୟରେ ବ୍ୟକ୍ତ କରିଅଛୁଁ । ଆମ୍ଭମାନଙ୍କର ଆଶାଥିଲା ଯେ ମହାଶୟ ଉଡବରଣ ବାହାଦୁରଙ୍କ ଅମଳରେ ଲକ୍ଷ ଲକ୍ଷ ଲୋକଙ୍କୁ ମାତୃଭାଷାର ବିରହ ବେଦନା ସହିବାକୁ ହେବ ନାହିଁ । ଉଡବରଣ ମହୋଦୟ ଏ ବିଭାଗର ବିଖ୍ୟାତ ନାମ ରାଜା ଜମିଦାର ଏବଂ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କର ମତାମତ ଅନେକ, ଏ ବିଷୟରେ ଗଭୀର ଅନୁସନ୍ଧାନ ଆଲୋଚନା ନ କରି ଏ କାର୍ଯ୍ୟରେ କଦାପି ହସ୍ତକ୍ଷେପ କରିବେ ନାହିଁ କିନ୍ତୁ ଆମ୍ଭମାନଙ୍କର ଆଶା ଦୁରାଶାରେ ପରିଣତ ହୋଇଅଛି । "ଯେ ଯାହା ହେବାର ହୋଇଅଛି" କହି ନୀରବ ହେବା ଉଚିତ ନୁହେଁ । ସମ୍ବଲପୁର ଜିଲ୍ଲାର ଲୋକମାନଙ୍କର ଏ ଆଦେଶ ସମ୍ବନ୍ଧେ ଆନ୍ଦୋଳନ କରିବା ଉଚିତ ।

ଆମ୍ଭମାନଙ୍କର ବିଶ୍ୱାସ ମହାମାନ୍ୟ ଚିଫ୍ କମିଶ୍ନର ମୋହଦୟ ପ୍ରଧାନ ପଦସ୍ଥ କର୍ମଚାରିମାନଙ୍କ

କଥାରେ ପଡ଼ି ଏପରି ଆଦେଶ ଦେଇଅଛନ୍ତି । ତାଙ୍କୁ ପ୍ରକୃତ କଥା ବୁଝାଇ କହିଲେ ସେ ଆପଣାର ଉକ୍ତ ଆଦେଶ ପ୍ରତ୍ୟାହାର କରି ପାରନ୍ତି । ଏ ବିଷୟରେ ଆନ୍ଦୋଳନ ନ କଲେ ଏ ଜିଲ୍ଲାର ଓଡ଼ିଆମାନଙ୍କର କାପୁରୁଷତା କଳଙ୍କ ଚିରସ୍ଥିର ହୋଇ ରହିବ ଏବଂ ସେମାନେ କ୍ଷମତାପନ୍ନ ଅପର ଅପାର ଜାତୀୟ ଲୋକଙ୍କ ନିକଟରେ ଅସାର, ଅପଦାର୍ଥ ବୋଲି ବିବେଚିତ ହେବ ।

*ଭାଗ୬ଗ, ସଂ୩୫ଖ୍ୟା, ୩୦ । ୧ । ୧୮୯୫*

## ସମ୍ବଲପୁରର ଭାଷା ସଙ୍କଟ ।

ଗତ ୧୯ ତାରିଖ ଜାନୁଆରୀର ମଧ୍ୟପ୍ରଦେଶର ଗେଜେଟରେ ପ୍ରକାଶିତ ହୋଇଅଛି ଯେ ସନ ୧୮୯୬ ସାଲର ପହିଲା ଜାନୁଆରୀଠାରୁ ସମ୍ବଲପୁରର ସମଗ୍ର ରାଜକୀୟ କାର୍ଯ୍ୟରେ ଉତ୍କଳଭାଷା ପରିବର୍ତ୍ତନରେ ହିନ୍ଦିଭାଷା ପ୍ରବର୍ତ୍ତିତ ଓ ପ୍ରଚଳିତ ହେବ । ସମ୍ବଲପୁର ଭାଗ୍ୟରେ ଏହାଠାରୁ ଅଧିକ ଦୁର୍ଭାଗ୍ୟର କଥା ଆଉ କିଛି କଳ୍ପନା କରାଯାଇପାରିବ ନାହିଁ । କି ପାପରୁ ଏହି ଦଣ୍ଡ ଘଟି ଅଛି ତାହା ସର୍ବନିୟନ୍ତା ଭଗବାନଙ୍କ ଛଡ଼ା ଆଉ କାହାରିକୁ ଅବଗତ ନାହିଁ । ଇଂରାଜର ଅପକ୍ଷପାତ ବିଚାର ନିର୍ଦୋଷ ବ୍ୟବସ୍ଥା ପ୍ରଣାଳୀ ଭାବକରି ସମ୍ବଲପୁରବାସୀ ଲୋକମାନେ ପରମ ସୁଖରେ କାଳଯାପନକରି ଆସୁଥିଲେ । ସହସା ଏ ଦୁର୍ଭାଗ୍ୟ କିପରି ଉପସ୍ଥିତ ହେଲା ତାହା ବୁଝିବା ମଧ ଦୁଃସାଧ । ମଧ୍ୟପ୍ରଦେଶର ଚିଫ୍ କମିଶନର ଅତିବ ସଦୟ ହୃଦୟ ଏବଂ ନ୍ୟାୟପରାୟଣ କିନ୍ତୁ କେତେଗୁଡ଼ିଏ ମହାରାଷ୍ଟ୍ରୀୟ ଏବଂ ହିନ୍ଦିଭାଷାବଲମ୍ବୀ ଉଚ୍ଚ କର୍ମ୍ମଚାରିଗଣ ଆତ୍ମସୁବିଧା ସାଧନ ନିମନ୍ତେ ଓଡିଆ ଭାଷାର ଅକିଞ୍ଚିତ୍ କାରିତା ଏବଂ ହିନ୍ଦିଭାଷାର ସହିତ ଏହାର ନୈକଟ୍ୟ ଛଳପୂର୍ବକ ଚିଫ୍ କମିଶନର ମହୋଦୟଙ୍କୁ ବୁଝାଇଦେଇ ଏହିପରି କାର୍ଯ୍ୟ ସଂଘଟନ କରାଇ ଦେଇ ଅଛନ୍ତି ବୋଲି ବୋଧହୁଏ । ଯେଉଁମାନେ ପଦସ୍ଥ ସେମାନଙ୍କର କଥା ସହଜରେ ବିଶ୍ୱାସ ହୁଏ । ସୁତରାଂ ଏ ବିଷୟରେ ମହାମାନ୍ୟ ଚିଫ୍ କମିଶନଙ୍କର କିଛି ଦୋଷ ନାହିଁ । ସମ୍ବଲପୁରର ଦୁର୍ଭାଗ୍ୟ ଯେ ସମ୍ବଲପୁରରେ ଏପରି ସୁରକ୍ଷିତ ଓ ପଦସ୍ଥ ଲୋକଙ୍କ ଯେ କି ଅନାୟାସରେ ଚିଫ୍ କମିଶନଙ୍କର ବିଶ୍ୱାସ ଭାଜନ ହୋଇ ଏ ଦେଶର ଅବସ୍ଥା ଜ୍ଞାପନ କରିପାରିବେ । ସମ୍ବଲପୁର ବିଷୟରେ ଅଳ୍ପଦିନ ପୂର୍ବେ ବଙ୍ଗଦେଶର ଏଡୁକେଶନ ପତ୍ରିକାରେ ଯେଉଁ ପ୍ରବନ୍ଧ ପ୍ରକାଶିତ ହୋଇଅଛି ଆମ୍ଭେମାନେ ତାହା ନିମ୍ନରେ ଉଦ୍ଧୃତ କରି ସ୍ୱୀୟ ମନ୍ତବ୍ୟ ବ୍ୟକ୍ତ କରୁଅଛୁଁ ।

ସମ୍ବଲପୁର ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ; କିନ୍ତୁ ମଧ୍ୟପ୍ରଦେଶର ସହିତ ତାହାର କୌଣସି ବିଷୟରେ ମେଳ ନାହିଁ । ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟର ମଧ୍ୟସ୍ଥଳରେ ଯେଉଁ ଭୂଭାଗର ବିନ୍ଧ୍ୟ ସମ୍ପର୍କିତ ଶୈଳ ମାଳାରେ ପରିବେଷ୍ଟିତ ସମ୍ବଲପୁର ସେ ଭୁଭାଗର ବହିର୍ଭୁତ । ଯେଉଁ ଭୂଭାଗର ଗଣ୍ଡ ପରିପ୍ଲୁତ ବୋଲି ଗଣ୍ଡୋୟାନ ନାମରେ ପ୍ରସିଦ୍ଧିଲାଭ କରିଥିଲା ସମ୍ବଲପୁରର ସହିତ ତାହାର କୌଣସି ସମ୍ପର୍କ ନାହିଁ । ସମ୍ବଲପୁରର ରାଜା ଓ ରାଜବଂଶ ସହିତ ମଧ୍ୟପ୍ରଦେଶର ଅନ୍ୟ ଦିଗବର୍ତ୍ତୀ କୌଣସି ରାଜବଂଶର ସଂସ୍ରବ ମଧ ନ ଥିଲା, ତତ୍ରାଚ ସମ୍ବଲପୁର ମଧ୍ୟପ୍ରଦେଶରେ ପ୍ରଥମ ଯେଉଁ ସମୟରେ ସମ୍ବଲପୁର ଛୋଟନାଗପୁରରୁ ବିଛିନ୍ନ ହୋଇ ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ହେଲା ତେତେବେଳେ ସୁଦ୍ଧା ଇଂରାଜ ଗବର୍ଣ୍ଣମେଣ୍ଟଙ୍କର ଜଣାଥିଲା ଏହି ଜିଲ୍ଲାଟି ମଧ୍ୟପ୍ରଦେଶର ସହିତ ସମ୍ପର୍କ ଶୂନ୍ୟ । କିନ୍ତୁ ଶାସନ କାର୍ଯ୍ୟ ସୁବିଧା ନିମନ୍ତେ ଏହିପରି ବନ୍ଦୋବସ୍ତ ପ୍ରୟୋଜନ ହୋଇଥିଲା । ୧୮୬୭ ଖ୍ରୀ.ର ଲିଖିତ ମଧ୍ୟପ୍ରଦେଶର ଗେଜେଟିଅରରେ ଭିନ୍ନ ଭିନ୍ନ ପ୍ରଦେଶର ବର୍ଣ୍ଣନାର ଅବସାନରେ ଯେଉଁଠାରେ ଛତିଶଗଡ଼ ବର୍ଣ୍ଣିତ ହୋଇଅଛି ସେଠାରେ ଉଲ୍ଲିଖିତ ଅଛି ଯେ ଛତିଶଗଡ଼ ବିଭାଗରେ ସମ୍ବଲପୁର ଅନ୍ତର୍ଭୁକ୍ତ ହେଲେହେଁ ; ଛତିଶଗଡ଼ରେ ଅନ୍ୟାନ୍ୟ ସ୍ଥାନର ସହିତ ସମ୍ବଲପୁରର କୌଣସି ପ୍ରାକୃତିକ ବା ଐତିହାସିକ ସଂଶ୍ରବ ନାହିଁ । "In the Chattisgarh Division is also included the district of Sambalpur which is not, however a part of Chattisgarh proper, either geographically or historically" ଯେଉଁ ସମୟରେ ପ୍ରାଚୀନ କାଳରେ ଗଣ୍ଡ, ଭାଲ, ଏବଂ ନାଗ ପ୍ରଭୃତି ଜାତି କର୍ତ୍ତୃକ ଅଧ୍ୟୁଷିତ ମଧ ପ୍ରଦେଶରେ ବିରାର ଓ ମାଳବର କ୍ଷତ୍ରିୟମାନେ ଏବଂ ଦାକ୍ଷିଣାତ୍ୟର କୌଣସି କୌଣସି ଆର୍ଯ୍ୟ ଜାତି ଆସି ଶାସନ ବିସ୍ତାର କରିଥିଲେ; ସେହି ସମୟରେ ଜଙ୍ଗଲ ପରିବ୍ୟାପ୍ତ ସମ୍ବଲପୁର, ଉତ୍କଳିଙ୍ଗ ବା

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଉତ୍କଳର ଆରଣ୍ୟ ପ୍ରଦେଶ ମଧ୍ୟରେ ପରିଗଣିତ ଥିଲା । ବଙ୍ଗଦେଶୀୟ ସେନରାଜମାନେ ଯେଉଁ ସମୟରେ ଓଡ଼ିଶ୍ୟା ଅଧିକାର କରିଥିଲେ ତେତେବେଳେ ସୋନପୁର ଘଟଣା ପ୍ରଭୃତି ସ୍ଥାନ ମଧ ସେମାନଙ୍କର କରାୟତ ହୋଇଥିଲା । ସୋନପୁରର ପ୍ରାଚୀନ ତାମ୍ରଲିପି ପାଟଣାର ପ୍ରାଚୀନ ମନ୍ଦିର ଏତେବେଳ ପର୍ଯ୍ୟନ୍ତ ଏକଥାର ସାକ୍ଷ୍ୟ ଦେଉଅଛି । ସୋନପୁରର ଖଣ୍ଡିଏ ତାମ୍ରଲିପି ଜନ୍ମେଜୟଙ୍କ ନାମାଙ୍କିତ ଦେଖିଥିଲା । ଏହି ଜନ୍ମେଜୟ କଟକ ସହରର ଅପର ତୀରବର୍ତ୍ତୀ ଚଉଦୁଆରରେ ସେନ-ରାଜାମାନଙ୍କର ଓଡିଶା ରାଜ୍ୟର ଶାସନ କର୍ତ୍ତା ଥିଲେ । ପରେ ସ୍ଥାନେ ସ୍ଥାନେ ଅବଲମ୍ବନ କରି ନିଜେ ରାଜା ହୋଇଥିଲେ । କେବଳ ସେନବଂଶୀୟ ନୁହେଁ । ତତ୍ପୂର୍ବବର୍ତ୍ତୀ ସମୟର ତାମ୍ରଲିପି ମଧ ସୋନପୁର ରାଜାଙ୍କ ଗୃହରେ ଅଛି । ଏଗୁଡ଼ିକ ସଂସ୍କୃତ ଭାଷାରେ ଏବଂ ପ୍ରାଚୀନ ବଙ୍ଗାଳ ଅକ୍ଷରରେ ଲିଖିତ । ଏହି ଅକ୍ଷର କୁଟୀଳ ଅକ୍ଷର ନାମରେ ପରିଚିତ । ସେନ ରାଜାମାନଙ୍କର ପ୍ରାଧାନ୍ୟ ଉତ୍ତାରୁ କେଶରି ରାଜାମାନେ ଏବଂ ତହିଁ ଉତ୍ତାରୁ ବଙ୍ଗବଂଶିୟ ରାଜାମାନେ ଉତ୍କଳରେ ରାଜତ୍ୱ କରି ଥିଲେ । ପର୍ଯ୍ୟାୟ କ୍ରମରେ ସମ୍ବଲପୁର ଅଞ୍ଚଳରେ ସେହି ରାଜାମାନଙ୍କର କ୍ଷମତା ବିସ୍ତୃତ ହୋଇଥିଲା । ସେହି ସମସ୍ତ କଥା ସବିସ୍ତର ଲେଖିବାକୁ ଗଲେ ବିସ୍ତୃତ ଗ୍ରନ୍ଥ ଲେଖିବାକୁ ହୁଏ । ଓଡିଶାର ବହିର୍ଭୂତ ବୋଲି ଏବଂ ପ୍ରାଚୀନ କୀର୍ତ୍ତୀ ପରିଶୂନ୍ୟ ମନେକରି ହଣ୍ଟର ରାଜେନ୍ଦ୍ର ଲାଲ ଏବଂ ଫରଗୁଶନ ଏହି ଅଞ୍ଚଳର କୌଣସି ତତ୍ୱ ନେଇନାହାଁନ୍ତି । ପକ୍ଷାନ୍ତରରେ ମଧ୍ୟପ୍ରଦେଶର ସହିତ ସମ୍ପର୍କ ଶୂନ୍ୟ ବୋଲି ମଧ୍ୟପ୍ରଦେଶର ଇତିହାସରେ ସମ୍ବଲପୁର ଉପେକ୍ଷିତ ହୋଇଅଛି । କିନ୍ତୁ ପାଟଣା ଓ ସୋନପୁର ଅଞ୍ଚଳର ପ୍ରାଚୀନକୀର୍ତ୍ତୀ ଅନୁଶୀଳନ କଲେ ଓଡିଶାର ପୁରାତତ୍ତ୍ୱର ଅନେକ ଅଂଶ ଉଜ୍ଜ୍ୱଳୀକୃତ ହୋଇପାରେ ।

ଆଉ ଗୋଟିଏ କଥା ସମ୍ବଲପୁର ଓଡିଶାରୁ ବିଚ୍ଛିନ୍ନ ହୋଇ ଛିନ୍ନ ଶାଖା ପରି ଦିନକୁ ଦିନ ବିଶୀର୍ଣ୍ଣ ହୋଇପଡୁ ଅଛି । ଯେଉଁସବୁ ଉତ୍କଳ ବ୍ରାହ୍ମଣ ଏବଂ କରଣ ସମ୍ବଲପୁର ବିଭାଗରେ ଉପନିବେଶ ସ୍ଥାପନ କରିଥିଲେ ସେମାନେ ଏତେବେଳକୁ ମୂଳ ସମାଜରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ । ଶାସନ ବିଷୟରେ ଏକତା ନ ଥିବାରୁ ଗତାୟତ ସୁଦ୍ଧା ବନ୍ଦ ହେଲା ଏଣୁ ପରସ୍ପର ମଧ୍ୟରେ ସାମାଜିକ ସମ୍ପର୍କ ମଧ ତିରୋହିତ ହେଲା । ଅନାର୍ଯ୍ୟ ପରିପ୍ଲୁତ କ୍ଷୁଦ୍ର ଗୋଟିଏ ସମ୍ବଲପୁର ଜିଲ୍ଲାରେ ବିକ୍ଷିପ୍ତ ହୋଇ xxxx ବ୍ରାହ୍ମଣ ଏବଂ କରଣମାନେ କିଞ୍ଚିତ ହତଶ୍ରୀ ହୋଇଅଛନ୍ତି ଦେଖି ଦୁଃଖ ହୁଏ । ପୁଣି ମଧ୍ୟପ୍ରଦେଶରେ ହିନ୍ଦି ଓ ମରହଟ୍ଟା ଭାଷା ଅତି ପ୍ରବଳ । କେବଳ ସେହି ପ୍ରଦେଶର ଏକ କୋଣରେ ସମ୍ବଲପୁରରେ ଓଡିଆ ଭାଷା ପ୍ରଚଳିତ ସୁତରାଂ ଭାଷା ଦିନକୁ ଦିନ ମଳିନତା ଲାଭ କରୁଅଛି । ସମ୍ବଲପୁର ଅଞ୍ଚଳର ବିଦ୍ୟାଳୟରେ ଯେଉଁ ସବୁ ଓଡିଆ ପୁସ୍ତକ ପ୍ରଚଳିତ ଅଛି ସେଗୁଡ଼ିକ ଅତି ହୃଦର୍ଯ୍ୟ ଓଡିଆରେ ଲିଖିତ ଏଣୁ ବିଦ୍ୟାଳୟରେ ମଧ ଭାଷାର ଶିକ୍ଷା ସୁଚାରୁରୂପରେ ହେବାକୁ ନାହିଁ । ଏବେ ବାମଣ୍ଡା ରାଜାଙ୍କ ଅନୁକୂଳ୍ୟରେ ସମ୍ବଲପୁର ହିତୈଷିଣୀ ପତ୍ରିକା ଏ ଅଞ୍ଚଳରେ ବିଶୁଦ୍ଧ ଓଡିଆ ରକ୍ଷା କରିବାକୁ ବିଶେଷ ଯତ୍ନ କରୁଅଛି । କିନ୍ତୁ ଅଳ୍ପସଂଖ୍ୟକ ଲୋକର ଭାଷାବୋଲି ଗବର୍ଣ୍ଣମେଣ୍ଟ ଉତ୍କଳ ଭାଷାପ୍ରତି ଆସ୍ଥାଶୂନ୍ୟ । ଯେଉଁସବୁ ମରହଟ୍ଟା ଓ ହିନ୍ଦିଭାଷାବଲମ୍ବୀ କର୍ମଚାରୀମାନେ ସମ୍ବଲପୁରକୁ ପ୍ରେରିତ ହୁଅନ୍ତି, କ୍ଷୁଦ୍ର ଗୋଟିଏ ଜିଲ୍ଲାରେ ସୁବିଧା ନିମନ୍ତେ ସେମାନଙ୍କୁ ଓଡିଆ ଶିକ୍ଷା କରିବାକୁ ଗବର୍ଣ୍ଣମେଣ୍ଟ ବାଧ କରନ୍ତି ନାହିଁ । ବରଂ ଯହିଁରେ ସମ୍ବଲପୁରରେ ଦିନକୁ ଦିନ ବିଦେଶୀୟ ଭାଷା ଜୟଲାଭ କଲେ ତହିଁର ଆୟୋଜନ ହେଉଅଛି । ଆପଣାର ନିଜଭାଷାରେ କଥାକହି ନ ପାରିଲେ ଭାବ ପରିସ୍ଫୁଟ ହୁଏ ନାହିଁ ଏବଂ ଦିନକୁ ଦିନ ମାନସିକ ଜଡ଼ତା ଉପସ୍ଥିତ ହୁଏ । ସମ୍ବଲପୁରର ଭାଗ୍ୟରେ ଠିକ୍ ଏହା ଘଟୁଅଛି ।

ବର୍ତ୍ତମାନ ସମ୍ବଲପୁର ପୂର୍ବପରି ଦୁର୍ଗମ ନୁହେଁ । ଅନାୟାସରେ ଏ ଜିଲ୍ଲାକୁ ଓଡିଶା ସଙ୍ଗରେ ସଂଯୁକ୍ତ କରାଯାଇ ପାରେ । ଗବର୍ଣ୍ଣମେଣ୍ଟ ଏ କାର୍ଯ୍ୟ କଲେ ସହସ୍ର ସହସ୍ର ଉତ୍କଳବାସୀ ଉପକୃତ ହୋଇ ପାରିବେ । କିଛି ଦିନ ପୂର୍ବରେ ସମ୍ବଲପୁରବାସିମାନେ ଏହି ଉଦ୍ଦେଶ୍ୟରେ ଚିଫ୍ କମିଶ୍ନରଙ୍କ ନିକଟକୁ ଆବେଦନ କରିଥିଲେ, କିନ୍ତୁ କୌଣସି ଫଳ ଦର୍ଶିଲା ନାହିଁ ।

ପ୍ରବନ୍ଧ ଦୀର୍ଘ ହେବାରୁ ଏ ସମ୍ବନ୍ଧରେ ଆମ୍ଭମାନଙ୍କର ବିଶେଷ ମନ୍ତବ୍ୟ ଏ ସପ୍ତାହରେ ସ୍ଥଗିତ ରଖାଗଲା ।

*ଭା୬ଗ, ସଂ୩୫ଖ୍ୟା, ୩୦ । ୧ । ୧୮୯୫*

# "ବର୍ତ୍ତମାନ କବି।"

"ବର୍ତ୍ତମାନ କବି" ପ୍ରତି ସବୁ ଦେଶରେ ଏବଂ ସବୁକାଳରେ ଆକ୍ରମଣ ହୋଇଥାଏ । ଅଳ୍ପଦିନ ପୂର୍ବେ ଏହି ନିର୍ଜ୍ଜୀବ ଓଡ଼ିଶ୍ୟାରେ ସୁଦ୍ଧା ଏ ବିଷୟରେ ବିଶେଷ ସଜୀବତା ଦେଖାଗଲା ।

ଇଉରୋପର ଅନେକ ସଭ୍ୟ ଦେଶରେ ଏହିପରି ଦ୍ବନ୍ଦ୍ବଦଳ ହୋଇ ବାଦ ପ୍ରତିବାଦ ଲାଗିବାର ଉଦାହରଣ ଇତିହାସରେ ସୁଲଭ । ଅବଶ୍ୟ ସେମାନଙ୍କର ଆନ୍ଦୋଳନର ଭାବ ଓ ଭାଷା ଅପେକ୍ଷାକୃତ ମାର୍ଜିତ ଏବଂ ସୁରୁଚି ସମ୍ମତ । ଓଡିଶ୍ୟା ସହିତ ତହିଁର ତୁଳନା ହୋଇ ନ ପାରେ । ସଭ୍ୟତମ ଫ୍ରାନ୍ସ ଦେଶରେ ମଧ୍ୟ ଏହିପରି ଏକଦଳ ହ୍ୟୁଗୋବାଦୀ ଏବଂ ଅନ୍ୟଦଳ ମୋଲିଏର ବାଦୀ ହୋଇଥିଲେ । ହ୍ୟୁଗୋ ଏବଂ ମୋଲିଏର ଉଭୟେ ଉଚ୍ଚ ଶ୍ରେଣୀର କବି, କେହି କାହାରିକି ଊଣା ହୋଇ ନ ଥିଲେ ମାତ୍ର ଆନ୍ଦୋଳନ ସମୟରେ ହ୍ୟୁଗୋ ଜୀବିତ ଥିଲେ ଏବଂ ତାହାଙ୍କର ପ୍ରତିଷ୍ଠା ବୃଦ୍ଧି ବଶତଃ ତାହାଙ୍କର ବିପକ୍ଷ ଏବଂ ସପକ୍ଷ ଦଳର ସୃଷ୍ଟି ହେଲା । ଇଟାଲିରେ ଏହିପରି ବହୁ "ଅଦ୍ୟବ୍ୟାପି ଶବ୍ଦମୟ" ସଂଗ୍ରାମ ଅନେକ ହୋଇ ଯାଇଅଛି । ସେଥିମଧ୍ୟର ଯୋଡ଼ିଏ ଯୁଦ୍ଧ ସ୍ମରଣାର୍ହ । ପ୍ରଥମ ସଂଗ୍ରାମରେ ଏକଦଳ ପିତ୍ରାର୍କବାଦୀ ଏବଂ ଅନ୍ୟଦଳ ଦାନ୍ତେବାଦୀ ଏବଂ ୨ୟ ସଂଗ୍ରାମରେ ଏକଦଳ ଟେକସାବାଦୀ ଏବଂ ଅନ୍ୟଦଳ ଏପରି ଅଷ୍ଟବାଦୀ ହୋଇଥିଲେ । ସେହି ସେହି ସମୟର "ବର୍ତ୍ତମାନ କବି"ଅର୍ଥାତ୍ ପିତ୍ରାକି ଏବଂ ଟେସୋଙ୍କ ପ୍ରତିଷ୍ଠା ବୃଦ୍ଧି ଏହି ଦଳ ସୃଷ୍ଟିର ମୂଳହେତୁ ଅଟେ ।

କେତେକ ବର୍ଷ ପୂର୍ବେ ବଙ୍ଗଦେଶରେ ମଧ୍ୟ ଭାରତଚନ୍ଦ୍ର ଏବଂ ମଧୁସୂଦନଙ୍କ ସମ୍ବନ୍ଧରେ ଏହିପରି କଳହ ଲାଗିଥିଲା । କବିବର ହେମଚନ୍ଦ୍ର,ଯେ କି ପଛକୁ ମାଇକେଲଙ୍କର ଶିଷ୍ୟ ହେଲେ,ସେହି ହେମଚନ୍ଦ୍ର ପ୍ରଥମେ ତାହାଙ୍କର ବିରୋଧୀ ଥିବାର ଅନୁମିତ ହୁଅଇ । ହେମଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟଙ୍କ ରଚିତ ମେଘନାଦ ବଧର ପୂର୍ବତନ ସଂସ୍କରଣର ଭୂମିକା ଏବଂ ପରବର୍ତ୍ତୀ ସଂସ୍କରଣରେ ଭୂମିକା ଏ ଉଭୟ ମଧ୍ୟରେ କେତେ ପ୍ରଭେଦ । ଯେଉଁ ହେମଚନ୍ଦ୍ର ପୂର୍ବତନ ଭୂମିକାରେ କବିତାର ଉଚ୍ଚଅଙ୍ଗ ସମ୍ବନ୍ଧରେ ମାଇକେଲଙ୍କୁ ଉଚ୍ଚାସନ ଦେଇ ଭାଷା ସମ୍ବନ୍ଧରେ ଭାରତଚନ୍ଦ୍ରଙ୍କୁ ଶ୍ରେଷ୍ଠତର ଆସନ ଦେଇଥିଲେ ସେଇ ହେମଚନ୍ଦ୍ର ପୁଣି କେତେକ ବର୍ଷ ପରେ ସେହି ମେଘନାଦ ବଧର ଭୂମିକା ପୁନର୍ବାର ଲେଖି ଭାଷା ସମ୍ବନ୍ଧରେ ନିଜର ପୂର୍ବମତ ପ୍ରତି ସଂହାର କରି ନେଲେ । ଏଥିରୁ ଏହି ଅନୁମାନ ହୁଏ ଯେ ପ୍ରଥମତଃ ଭାରତଚନ୍ଦ୍ର ବାଦି ଦଳ ପ୍ରତି ତାହାଙ୍କର ଅଧିକତର ସହାନୁଭୂତି ଥିଲା ଏବଂ ପଛକୁ ପରିବର୍ଦ୍ଧିତ ଶିକ୍ଷା ଏବଂ ଜ୍ଞାନ ବଶତଃ ସେ ସ୍ୱକୀୟ ପୂର୍ବକୃତ ଭ୍ରାନ୍ତବୋଲି ଜାଣିପାରିଥିଲେ ଫଳତଃ ଜୀବଦ୍ଦଶାରେ ମାଇକେଲଙ୍କର ଯେଉଁ ପରିମାଣରେ ସୁଖ୍ୟାତି ହୋଇଥିଲା ସେହି ପରିମାଣରେ ତାହାଙ୍କୁ ଆକ୍ରମଣ ମଧ୍ୟ ସହ୍ୟ କରିବାକୁ ହୋଇଥିଲା ।

ଓଡ଼ିଶ୍ୟାର ପ୍ରଧାନ କବି ଉପେନ୍ଦ୍ରଭଞ୍ଜ ମଧ୍ୟ ତାହାଙ୍କ ଜୀବଦ୍ଦଶାରେ ଆକ୍ରାନ୍ତ ହୋଇଥିବାର ଆଭାସ ତାହାଙ୍କ ରଚନାରୁ ମିଳଇ ।

ସଂସ୍କୃତ ଭାଷାର ଯେତେବେଳେ ଚୂଡାନ୍ତ ଉନ୍ନତି ସେତେବେଳେ ସୁଦ୍ଧା ସେହି ସମୟର "ବର୍ତ୍ତମାନ କବି"ମାନେ ତୀବ୍ର ଆକ୍ରମଣରୁ ରକ୍ଷା ପାଇ ନ ଥିଲେ । ସଂସ୍କୃତ ସାହିତ୍ୟାକାଶରେ କାଳିଦାସ ଏବଂ ଭବଭୂତି ଉଜ୍ଜ୍ୱଳତମ ନକ୍ଷେତ୍ର ଅଟନ୍ତି । ପୃଥିବୀରୁ ମାନବଜାତି ଲୋପ ହେଲେ ଏମାନଙ୍କର ନାମ ବୁଡ଼ିପାରେ ଅନ୍ୟଥା ନୁହେଁ । ଏମାନେ ଗ୍ରାମ୍ୟ କବି ନୁହଁନ୍ତି ,ପ୍ରାଦେଶିକ କବି ନୁହନ୍ତି, ଭାରତ ବର୍ଷର କବି ନୁହନ୍ତି,ଏମାନେ ପୃଥିବୀର କବି । ମାତ୍ର ଏମାନଙ୍କ ଜୀବଦ୍ଦଶା ଲୋକେ ଏମାନଙ୍କୁ ଆକ୍ରମଣ କରିବାକୁ ଛାଡ଼ି ନାହାଁନ୍ତି । ଏହାର କାରଣ ଏହି ଯେ ସେ ସମୟରେ ଏମାନେ "ବର୍ତ୍ତମାନ କବି" ଥିଲେ ।

ଭବଭୂତିଙ୍କୁ ଲୋକେ ଆକ୍ରମଣ କରିବାରୁ ସେ ବିରକ୍ତ ହୋଇ କହିଥିଲେ –

"ଯେଉଁମାନେ ମୋହର ରଚନାକୁ ଉପହାସ
କରୁଅଛନ୍ତି ମୁଁ ସେମାନଙ୍କ ପାଇଁ କାବ୍ୟ
ରଚନା କରିନାହିଁ । ମୋହ ରଚନାର ମର୍ଯ୍ୟାଦା
ବୁଝିବାର ଲୋକେ ହେବେ କିମ୍ବା ଅଛନ୍ତି;
କାଳ ବଡ଼, ପୃଥିବୀ ବଡ଼ ।"

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ଭାରତବର୍ଷ ସର୍ବୋତ୍-କୃଷ୍ଟ କବି କାଳିଦାସଙ୍କୁ ସମ୍ଭବତଃ ସର୍ବାପେକ୍ଷା ଅଧିକ ଆକ୍ରମଣ ସହ୍ୟ କରିବାକୁ ହୋଇଥିଲା । ତାଙ୍କ ପ୍ରଶଂସା ଅନେକ ଲୋକ ସହ୍ୟ କରି ପାରୁ ନ ଥିଲେ । ଏହାର ପ୍ରମାଣ ସଂସ୍କୃତ ସାହିତ୍ୟ ଫଳକରେ ଅମରାକ୍ଷରରେ ଖୋଦିତ ହୋଇ ରହିଅଛି । କାଳିଦାସଙ୍କ ସମୟରେ ତାହାଙ୍କ ପ୍ରଶଂସାରେ ଲୋକେ ବିରକ୍ତ ହୋଇ କହୁଥିଲେ -

"ମାତାବତ୍, ପ୍ରଥିତ ଯଶସାଂ ଭାଙ୍ .ସୌମଲ୍ଲିକ,
କବି ପୁତ୍ରାଦୀନାଂ ପ୍ରବନ୍ଧାନ ଅତିକ୍ରମ୍ୟ
"ବର୍ତ୍ତମାନ କବେଃ" କାଳିଦାସସ୍ୟ କ୍ରିୟାୟାଂ
କଥଂ ପରିଷଦୋ ବହୁମାନଃ !"

ଅର୍ଥ ।

ଏକଣମ ? ଭାସ, ସୌମଲ୍ଲିକ,କବିପୁତ୍ର ପ୍ରଭୃତି ବଡ଼ ବଡ଼ କବିଙ୍କର ରଚନା ଥାଉଁ ଥାଉଁ "ବର୍ତ୍ତମାନ କବି" କାଳିଦାସଙ୍କୁ ଆମ୍ଭେମାନେ ଏଡ଼େ ସମ୍ମାନ କାହିଁକି ଦେବୁଁ ?

କାଳିଦାସ ସେ ସମୟରେ "ବର୍ତ୍ତମାନ କବି" ହେବାର ମହାପରାଧରେ ଅପରାଧୀ ହୋଇଥିଲେ ।

ଭାସ, ସୌମଲ୍ଲିକ, କବିପୁତ୍ର ସମ୍ଭବତଃ ଉତ୍କୃଷ୍ଟ କବି ଥିଲେ ମାତ୍ର ସେମାନଙ୍କର କୌଣସି ରଚନା ବର୍ତ୍ତମାନ ଜୀବିତ ନାହିଁ, କେବଳ କାଳିଦାସଙ୍କ ନାମ ସହିତ ସେମାନଙ୍କର ନାମ ଜଡ଼ିତ ହୋଇ କାଳ ସ୍ରୋତରେ ଭାସି ଆସିଅଛି ।

ଲୋକଙ୍କର ଏହି ଆକ୍ଷେପକୁ ଲକ୍ଷ୍ୟ କରି କାଳିଦାସ କହିଅଛନ୍ତି,-

"ପୁରାଣମିତ୍ୟେବ ନ ସାଧୁ ସର୍ବଂ
ନ ଚାପି କାବ୍ୟଂ ନବମିତ୍ୟ ବଦ୍ୟଂ
ସନ୍ତଃ ପରୀକ୍ଷାନ୍ୟତରତ୍ ଭଜନ୍ତେ
ମୂଢ଼ଃ ପର- ପ୍ରତ୍ୟୟ-ନେୟବୁଦ୍ଧିଃ ।"

ଏହାର ଅର୍ଥ ଏହି ଯେ ପୁରାତନ ହେଲେ ଯେ ସବୁ ଭଲ ହୋଇଯିବ ତାହାନୁହେଁ, କିମ୍ୱା ନୂତନ ହେଲା ବୋଲି କାବ୍ୟ ମନ୍ଦ ଏହା ଠିକ୍ ନୁହେଁ । ସାଧୁମାନେ ପୁରାତନ ନୂତନ ଉଭୟଙ୍କୁ ସ୍ୱୟଂ ପରିକ୍ଷା କରି ଭଲମନ୍ଦ ବିଚାର କରନ୍ତି । ମୂର୍ଖମାନେ କେବଳ ପର ବୁଦ୍ଧିରେ ଚାଳନ୍ତି ।

"ବର୍ତ୍ତମାନ କବି" ବୋଲି ସ୍ୱୟଂ କାଳିଦାସ ସୁଦ୍ଧା ଆକ୍ରମଣରୁ ଅବ୍ୟାହତି ପାଇଲେ ନାହିଁ। ଯାହାଙ୍କର ରଚନାର ଗୋଟିଏ ଗୋଟିଏ ପଦ ସହିତ ସମ୍ରାଟ ମାନଙ୍କର କିରୀଟ ଲଗ୍ନ ଉଜ୍ଜ୍ୱଳତମ ହୀରକ ଉପମିତ ହେବାର ଯୋଗ୍ୟ ନୁହେ,ତାହାଙ୍କର ତ ଏ ଦଶା,ଇତର ଲେଖକଙ୍କୁ କିଏ ପଚାରେ ?

"ବର୍ତ୍ତମାନ କବି"ମାନଙ୍କୁ କାହିଁକି ଲୋକେ ଏପରି ଆକ୍ରମଣ କରନ୍ତି ? କବିମାନେ ନିତାନ୍ତ ନିରୀହ ଜୀବ । ସେମାନେ ନିର୍ଜ୍ଜନ ପ୍ରାୟ XXXXX ସେମାନଙ୍କ ହୃଦୟରେ ପ୍ରାୟ ସ୍ଥାନ ପାଏ ନାହିଁ । ରାଜନୈତିକ ଆନ୍ଦୋଳନରୁ ସେମାନେ ସର୍ବଦା ନିର୍ଲିପ୍ତ ଥାନ୍ତି । ସଂସାରର ଯାହା ସାର ଧନ,ମାନ, ଉଚ୍ଚପଦ ସମାଜନେତୃତ୍ୟ, ରାଜୋପାଧି, ରାଜମର୍ଯ୍ୟାଦା ପ୍ରଭୃତି ପ୍ରତି ସେମାନଙ୍କର ଅଧିକ ଲକ୍ଷ୍ୟ ନ ଥାଏ । କାହାରି ଉନ୍ନତି ମାର୍ଗରେ ସେମାନେ ଅନ୍ତରାୟ ହୁଅନ୍ତି ନାହିଁ,ଧର୍ମ୍ମ ସଂସ୍କାରକ ମାନଙ୍କ ପରି ସେମାନେ ଚିରବଦ୍ଧ ମୂଳକୁ ସଂସ୍କାରର ବିରୁଦ୍ଧିବସାକୁ ଟେକା ଫୋପାଡନ୍ତି ନାହିଁ । କାହାରି ବୃତ୍ତି ଲୋପର କିମ୍ୱା ରାଷ୍ଟ୍ର ବିପ୍ଳବର ଆଶଙ୍କା ଜନ୍ମାନ୍ତି ନାହିଁ, କେବଳ ମାତ୍ର ଅନ୍ନଚିନ୍ତାରୁ ମୁକ୍ତିପାଇ ପାରିଲେ ସାଂସାରିକ ବିଷୟରେ ସେମାନେ ଆପଣାକୁ କୃତାର୍ଥ ମଣନ୍ତି । ଅଥଚ ଏହା ପ୍ରାୟ ସର୍ବଦା ଏବଂ ସର୍ବତ୍ର ଦେଖାଯାଏ ଯେ "ବର୍ତ୍ତମାନ କବି" ମାନଙ୍କୁ ଲୋକେ ଆକ୍ରମଣ କରନ୍ତି । ଏପରି ଆକ୍ରମଣ କାହିଁକି ହୁଏ ଏହାର ସଦୁତ୍ତର କେହି ଦେଇ ପାରିବେ କି ?

*ଭା୬୫,ସଂ୩୫ଖ୍ୟା,୩୦ । ୧ । ୧୮୯୫*

## ସମ୍ବଲପୁର ଜିଲ୍ଲାରୁ ଉତ୍କଳ ଭାଷା ଉଠିଯାଇ ହିନ୍ଦିଭାଷା ପ୍ରଚଳିତ ହେବା ସମ୍ବାଦରେ ଉତ୍କଳ ଭାରତୀଙ୍କର କ୍ଷୋଭ ।

### ରାଗ ବଙ୍ଗାଳାଶ୍ରୀ ।

କାନ୍ଦଇ ଉତ୍କଳା ପାଇ ଅବହେଳା
ହସନ୍ତି ଦେଖି ଭଗାରି ।
ରାଜ ରାଜେଶ୍ୱରୀ ପ୍ରତିନିଧି ମାନେ
ଶୁଣନ୍ତି ନାହିଁ ଗୁହାରି ।
ଭାରତ ରାଜ୍ୟରେ ଭାରତୀଙ୍କ ମେଳା
ସର୍ବେ ଆଜି ଭାଗ୍ୟଶାଳୀ ।
ସମସ୍ତେ ଉନ୍ନତା ଗର୍ବେ ମଦମତ୍ତା
ସବୁରି ଜୟ କାହାଳି ।
ବଙ୍ଗଳା ତେଲଙ୍ଗୀ ହିନ୍ଦି ମହାରାଷ୍ଟ୍ରୀ
ଦ୍ରାବିଡ଼ ଆଦି ଶୁଭରେ
ପରମାୟୁ ଘେନି ବଢ଼ୁଛନ୍ତି ସର୍ବେ
ସବୁରି ଆଶା ଉର୍ଦ୍ଧ୍ୱରେ ।
ମୁଯେ ଦୀନହୀନା ଆଦର ବିହୀନା
ଅଙ୍ଗୁ କ୍ଷତ ଯାଇ ନାହିଁ,
ଯାଇନାହିଁ ପ୍ରାଣ ପୁଣି ଖଣ୍ଡେ ଗ୍ରାସ
ଦେଖିଥିଲେ କିଏ କାହିଁ ।
ମୋର କଳେବର ଦକ୍ଷିଣୁ ଉତ୍ତର
ପୂର୍ବ ପଶ୍ଚିମକୁ ଲାଗି ।
ଥିଲା ଯେତେବେଳେ ଏହି ରବିତଳେ
ମୋ ସନ୍ତାନେ ଥିଲେ ଜାଗି ।
ଉତ୍ତର ଦକ୍ଷିଣେ ଗଙ୍ଗା ଗୋଦାବରୀ
ବେନି ସହେ ବରା ମୋର
ଲାଗିରହି ଥିଲେ ଅଙ୍ଗେ ଅଙ୍ଗେ ମିଶି
କାଳକୁ ହେଲେ ଅନ୍ତର ।
ତାଙ୍କର ବିଚ୍ଛେଦ ପାଦ ଶିର ତେଜ
ଗଣ୍ଡି ଖଣ୍ଡ ଅଛି ରହି
ତେଣା କାଟୁଅଛି ହିନ୍ଦି ସପତଣୀ
ରଖିପାରିବ କି କେହି ।
କିଛି ଦିନ ପୂର୍ବେ ବଙ୍ଗ ବିହାରିଣୀ
ଗ୍ରାସୁଥିଲା କଳେବର
ଆଁ ଆଁ କରିଥିଲା ଉଦ୍ଧାରି ରଖିଲେ
ଥିଲେ ମୋ ଯୋଗ୍ୟ କୁମର ।

ବିଚିତ୍ର, ଗଉରୀ,ସାଙ୍ଗ ଥିଲା ହରି
ଘେନି ମୋ ପୂର୍ବ ଆୟୁଧ
ଦେଖାଇ ଶତ୍ରୁକୁ ଘଉଡାଇ ଦେଲେ
କରିଥିଲେ କେତେ ଯୁଦ୍ଧ ।
ଆଜି ସେ କୁମରେ ଥିଲେ ମୋ କୋଳରେ
ହିନ୍ଦି ପଶନ୍ତା କି ପୁରେ
ଦେଖାଇ ମୋହର ଉତ୍କଳ ସମ୍ପତ୍ତି
ପକାଇ ଦିଅନ୍ତେ ଦୂରେ ।
ଗଲା ଦିନୁ ନନ୍ଦ ହୋଇ ମୁହିଁ ଅନ୍ଧ
ବିଧାତା ହେଲା ମୋ ବାମ
ଏ ସଙ୍କଟୁ ମୋତେ ରଖିପାରିବେ କି ?
ଗୋପାଳ ରାଜୁ ସୁଦାମ ।
ହେବ ବା ସୁଫଳ କଲେ କଉଶଳ
ସୁଜଳ ରତନ ମଣି ।
ଝାଡ଼ ବିନୋଦିଆ ନୃପକୁଳଚନ୍ଦ୍ର
ପଣ୍ଡିତରେ ଅଗ୍ରେ ଗଣି ।
ଉତ୍କଳ ତୁମ୍ଭର ପୈତୃକ ସମ୍ପତ୍ତି
ହେଉଅଛି ଛାର ଖାର ।
ଯୋଗ୍ୟ ପୁତ୍ର ହୋଇ ସମ୍ପାଦି ରଖିବା
ନୁହେ କି ? କୁଳ ବେଭାର
ନୁହଇ ସୁହୀନା ସମ୍ପତ୍ତି ବିହୀନା
ଅଛି ମୋ ଭଣ୍ଡାରେ ବିତ୍ତ
ଦେଖାଇ ସମ୍ରାଜ୍ଞୀ ସମୁଝାଇ ନିଅ
ସନ୍ତୋଷ କରାଇ ଚିତ୍ତ ।
ବ୍ରିଟିଶ ରାଜ୍ୟରେ ପରାପର ନାହିଁ
ନ୍ୟାୟର ଅଧିନ ସର୍ବେ
ଏ କି ବିପରୀତ ମୋହର ଭାଗ୍ୟକୁ
ଅନ୍ୟାୟର ବଶ ସର୍ବେ ।
ମାତୃଭାଷା ଯାର କେତେ ଆଦର
ହେବାର ତ ଦେଖା ନାହିଁ
ଚରଣରେ ଏବେ ଠେଲି ଦେଉଛନ୍ତି
ଦେଖିଥିଲ କିଏ କାହିଁ ।
ରାଜାଙ୍କୁ ବିଧାନ ସମସ୍ତେ ସମାନ
ବିଚାରର ଅନ୍ତଃ ପାତି
ପକ୍ଷପାତ କରି ବିଷମେ ଦେଖିଲେ
ରାଜାର ସିନା ଅଖ୍ୟାତି ।

ସମ୍ବଲପୁରରୁ ଉତ୍କଳ ନିର୍ମୂଳ
 ହେବାର କାରଣ ଏହି
ରାଜକର୍ମଚାରୀ ହିନ୍ଦି ବାନା ଧରି
 ମହାରାଷ୍ଟ୍ରୀ ଛନ୍ତି ରହି ।
ସେମାନଙ୍କ ଜ୍ଞାନ ଉତ୍କଳରେ ଶୂନ୍ୟ
 ହେବାରୁ ହେଲା ସଙ୍କଟ
ଏଥିପାଇଁ ଏବେ ଉତ୍କଳ ନିର୍ମୂଳ
 ହିନ୍ଦି ହୋଇବ ପ୍ରକଟ ।
ସମ୍ବଲପୁରର ଅଧିବାସୀମାନେ
 ଉତ୍କଳ ଚିର ସନ୍ତାନ
ହିନ୍ଦି ଆଧିପତ୍ୟ ହୋଇବ ସେଠାରେ
 ଶୁଣି ସର୍ବେ ହତ ଜ୍ଞାନ ।
ଉତ୍କଳ ସମ୍ପତ୍ତି ସଦା ଆଶ୍ରେ କରି
 ନେଉଥିଲେ ସୁଖେ ଦିନ ।
କେମନ୍ତେ ବଞ୍ଚିବେ ଉପାୟେ ରଚିବେ
 ଭାଳୁଙ୍କ ନ ସରଇ ଦିନ ।
ଦେଖ ଆର୍ଯ୍ୟାବର୍ତ୍ତ ଭାଷା ବିମଣ୍ଡିତ
 ଯେଝା ସ୍ଥାନେ ଛନ୍ତି ରହି
 ନାହିଁ ପରିହାର କରନ୍ତି ବିହାର
 ପରିବର୍ତ୍ତ ମୋହ ପାଇଁ ।
ଚୁହାଣ ବଂଶଜ ଶୋନପୁର ରାଜ
 ବରପଲ୍ଲି ଅଧୀଶ୍ୱର ।
ପାଟଣା ନରେନ୍ଦ୍ରଦେବ ରାମଚନ୍ଦ୍ର
 ପୃଥିରାୟ ବଂଶଧର ।
ଯେ ବଂଶର ଖ୍ୟାତ ଅଗ୍ନିଠାର ଜାତ
 ଗୌରବର ଆଦରଣ ।
କର ପ୍ରତିକାର ହେବଟି ସତ୍ୱର
 ରହିବ ନାହିଁକି ଯଶ ।
ପର ଉପକାର ବ୍ରତ ଯେ ତୁମ୍ଭର
 କଳାହାଣ୍ଡୀ ଅଧୀଶ୍ୱର ।
କୁଲା ବିର ଆଦି ଯମିଦାର ସଙ୍ଗେ
 ମୋ କାର୍ଯ୍ୟେ ହୁଅ ତତ୍ପର ।
ବାବୁ ଶ୍ରୀ ଧରଣୀ ଘେନ ଚିନ୍ତାମଣି
 ବିଦ୍ୟାଭୂଷଣକୁ ମୋର ।
କୃଷ୍ଣ ନୀଳାମ୍ବର ଲକ୍ଷ୍ମଣକୁ ନେଇ
 ସମ୍ମୁଖେ କର ସମର ।

ରାମ ବନମାଳୀ , ଦାଶ ଦୀନବନ୍ଧୁ
ତୁମ୍ଭେ ତ ଯୋଗ୍ୟ ନନ୍ଦନ ।
ପଣ୍ଡା ଜନାର୍ଦ୍ଦନ ହେ ବ୍ରଜ ମୋହନ
କର ଶତ୍ରୁ ବିମର୍ଦ୍ଦନ ।
ନ କରରେ ହେଳା କରରେ ଯତନ
ନ ହରାଅ ପିତୃଧନ ।
ପାହିଯିବ, ବାବୁ ! ତାମସୀ ରଜନୀ
ପୋଡି ବସନା ବଦନ ।
ରାୟ ରାଧାନାଥ ଉତ୍କଳରେ ଖ୍ୟାତ
ସମ୍ପାଦୁଛ ମୋର ଧନ
ଅନ୍ତର ନୋହିବି ସମ୍ବଲପୁରରୁ
କରିପାରକି ? ଯତନ ।
ଯୁଦ୍ଧ ଜୟୀବୀର ଗଉରୀ ଶଙ୍କର
ପାରିବକି ? କିଛି କରି
ବଙ୍ଗଳା ଯୁଦ୍ଧରେ ଜାଣିଛୁ ତୁମ୍ଭଙ୍କୁ
ଥିଲ ତୁମ୍ଭେ ଶାସ୍ତ୍ର ଧାରୀ ।
ବାବୁ ନୀଳମଣି ତୋଠାରେ ମୁରୁଣୀ
ଉପାୟେ କରୁଛୁ ଯେତେ ।
ତୋହଠାରୁ ବଳି ସନ୍ତାନେ ଅଛନ୍ତି
ଭାଳୁଛନ୍ତି କିଏ ?କେତେ ।
ହେଇ ଡବରନ ମୋ ବିନତି ଘେନ
ବିଚାର ଥରେ ମନରେ ।
କରୁଛି ଗୁହାରି କର ଯୋଡ଼ି କରି
ଶୁଣ ମୋ ଦୁଃଖ କର୍ଣ୍ଣରେ ।

ଶ୍ରୀ ଜ..........

*ଭା୬ଗ,ସଂ୩୬ଖ୍ୟା,୬।୨।୧୮୯୫*

## ଓଡ଼ିଆ ଭାଷାର ଅନାଦର ।

ଓଡ଼ିଆ ଭାଷାର ଅନାଦର ଓ ଲାଞ୍ଛନା କେବେ ଦୂର ହେବାକୁ ନାହିଁ । ଗଞ୍ଜାମ, ମେଦିନାପୁର,ସିଂହଭୂମ ଜିଲ୍ଲାର ଅସଂଖ୍ୟ ଓଡ଼ିଆ ମାତୃଭାଷା ହରାଇ ବସିଅଛନ୍ତି ବର୍ତ୍ତମାନ ସମ୍ବଲପୁରର ଓଡ଼ିଆ ଭାଇମାନେ ଓଡ଼ିଆଭାଷା ହରାଇବାକୁ ବସିଅଛନ୍ତି । ଏ ସମ୍ବାଦରେ ଓଡ଼ିଆପୁଅମାନେ କେତେଦୂର ଦୁଃଖିତ ଏବଂ ମର୍ମ୍ମାହତ ତାହା ବଚନ ଦ୍ୱାରା ବ୍ୟକ୍ତ କରିହେବ ନାହିଁ । ୧୮୬୯ ଖ୍ରୀଷ୍ଟାବ୍ଦରେ ସମଗ୍ର ଓଡ଼ିଆ ପୁଅମାନଙ୍କୁ ଏହିପରି ମନଃ କଷ୍ଟ ଭୋଗ କରିବାକୁ ପଡ଼ିଥିଲା ତହିଁର ବିବରଣ "ଇନ୍ଦ୍ରଧନୁ"ରୁ ଉଦ୍ଧୃତ କରି ଦେଉଅଛୁଁ ।

"ଓଡ଼ିଆ ଓ ବଙ୍ଗଳାଭାଷା ମଧ୍ୟରେ ଏତେଦୂର ସୌସାଦୃଶ୍ୟ ଅଛି ଯେ ପ୍ରଥମ ଦୃଷ୍ଟିରେ ଗୋଟିଏ ଅପରଟିର ସାମାନ୍ୟ ରୂପାନ୍ତର ବୋଲି ବୋଧ ହୋଇଥାଏ; ମଧ୍ୟ ଏହା କାହାରି କାହାରି ବିଶ୍ୱାସ ପୂର୍ବ ବଙ୍ଗଳାରେ ବ୍ୟବହୃତ ଶବ୍ଦମାନ ଏବଂ ଚୈତନ୍ୟ ଚରିତାମୃତ ପ୍ରଭୃତି ପୁରାତନ ଗ୍ରନ୍ଥମାନଙ୍କର ଭାଷା ଦେଖିଲେ ଏକ ସମୟରେ ଓଡ଼ିଶ୍ୟା ଓ ବଙ୍ଗଳାରେ ଏକ ଭାଷା ପ୍ରଚଳିତ ଥିଲାପରି ଅନୁମାନ ହୁଏ,ପୁଣି ଓଡ଼ିଶ୍ୟାରେ ପ୍ରଚଳିତ ସତ୍ୟନାରାୟଣ

ପାଲା ପ୍ରଭୃତି ବଙ୍ଗଳା ମିଶ୍ରିତ ଓଡ଼ିଆ ଭାଷାରେ ବର୍ଣ୍ଣିତ ଏବଂ ଅନ୍ତତଃ ଲକ୍ଷ୍ମଣ ସେନଙ୍କ ସମୟରୁ ଓଡ଼ିଶ୍ୟା XXXX ଉପନିବେଶ ହୋଇଅଛି । ବଙ୍ଗ ଦେଶବାସିମାନେ ଯାହା କହନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ବଙ୍ଗଳା ଓଡ଼ିଆ ଓ ବଙ୍ଗଭାଷା ଏବଂ ଓଡ଼ିଆଭାଷା ମଧ୍ୟରେ ଏତେ ଘନିଷ୍ଠତା ଅଛି ଯେ ତାହା ଅନ୍ୟ କୌଣସି ଦୁଇଜାତି ବା ଦୁଇଭାଷା ମଧ୍ୟରେ ଅଛି କି ନାହିଁ ସନ୍ଦେହ । ବୋଧହୁଏ ଏହି ହେତୁରୁ ଯେଉଁ ଉଚ୍ଚଶିକ୍ଷା ପ୍ରାପ୍ତ ବଙ୍ଗୀୟ ଯୁବକମାନେ ଶିକ୍ଷାର ଉନ୍ନତି ପାଇଁ ଓଡ଼ିଶ୍ୟାକୁ ଆନିତ ହୋଇଥିଲେ ସେମାନେ ଭାବିଲେ ଯେ ଏତେ ସୌସାଦୃଶ୍ୟ ଥିବା ସ୍ଥଳେ ଦୁଇ ଭାଷାକୁ ଦୁଇ ପ୍ରକାର ବର୍ଣ୍ଣରେ ଲେଖିଲେ ଅନିଷ୍ଟ ବ୍ୟତିତ ଇଷ୍ଟ ନାହିଁ । କେବଳ ଏହିମାନେ ଯେ ଏପରି ଭାବିଥିଲେ ତାହା ନୁହେଁ ଇଉରୋପପରି ସମୁଦାୟ ଭାରତ ବର୍ଷରେ ଏକ ପ୍ରକାର ଅକ୍ଷର ପ୍ରଚଳନ କରିବା ପାଇଁ ପ୍ରୟାସୀ ହୋଇ କୌଣସି କୌଣସି ଇଉରୋପୀୟ ପଣ୍ଡିତମାନେ କେତେ କେତେ ଶ୍ରମ ସ୍ୱୀକାର ଓ ଯତ୍ନ କରିଯାଇଅଛନ୍ତି । ଏହାର ଉପକାରିତା ଓ ଅପକାରିତାର ଆଲୋଚନା କରିବା ଏ ସ୍ଥଳରେ ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ; କାରଣ ଯାହା ଘଟିଯାଇଅଛି କେବଳ ତାହା ଲିପିବଦ୍ଧ କରିବା ଆମ୍ଭମାନଙ୍କ ଉଦ୍ଦେଶ୍ୟ ।୧୮୬୯ ଖ୍ରୀଷ୍ଟାବ୍ଦ ମଧଭାଗରେ ଓଡ଼ିଆ ଅକ୍ଷର ପରିବର୍ତ୍ତେ ବଙ୍ଗଳା ଅକ୍ଷର ବ୍ୟବହାର କରିବା ପାଇଁ ପ୍ରଥମେ ବାବୁ ଉମାଚରଣ ହାଲଦାର କଟକ ଷ୍ଟାର ନାମକ ପତ୍ରିକାରେ ପ୍ରସ୍ତାବ କଲେ । ଏହା ନବାଗତ ବଙ୍ଗାଳିମାନଙ୍କ ମନକୁ ଯେପରି ଘେନିଲା ଓଡ଼ିଶ୍ୟାବାସିଙ୍କୁ ସେହିପରି ଶ୍ରୁତିକଟୁ ହେଲା । ସୁତରାଂ ସାମାନ୍ୟ ଆନ୍ଦୋଳନ ମଧ୍ୟ ଉପସ୍ଥିତ ହେଲା । ଉପରୋକ୍ତ ପ୍ରସ୍ତାବକୁ ସମର୍ଥନ କରି ବାବୁ ରାଜକୃଷ୍ଣ ମୁଖୋପାଧ୍ୟାୟ ଏମ,ଏ କଟକ ଡିବେଟିଂ କ୍ଲବ ନାମକ ସଭାରେ ଏକ ବକ୍ତୃତା ଦେଲେ । ସେହି ବକ୍ତୃତାକୁ ଲକ୍ଷ୍ୟ କରି ଉତ୍କଳ ଦୀପିକାରେ ଗୋଟିଏ ବ୍ୟଙ୍ଗାତ୍ମକ ପ୍ରବନ୍ଧ ପ୍ରକାଶିତ ହେବାର ଦେଖି ବାବୁ ମହୋଦୟ ଆପଣାକୁ ଅପମାନିତ ମନେ କଲେ,ପତ୍ରିକାର ସମ୍ପାଦକଙ୍କ ଠାରୁ ପ୍ରତିକାର ଲୋଡ଼ିଲେ;ଏଥିପାଇଁ କଟକ ପ୍ରିଣ୍ଟିଂ କମ୍ପାନୀର ଡାଇରେକ୍ଟରମାନଙ୍କର ଏକ ସଭା ହେଲା; ସଭାରେ ସ୍ଥିର ହେଲା ଯେ ପ୍ରକାଶିତ ପ୍ରବନ୍ଧ ଦ୍ୱାରା ମାନହାନି ହେଉ ନାହିଁ, ସୁତରାଂ କୌଣସି ପ୍ରତୀକାରର ପ୍ରୟୋଜନ ନାହିଁ । ଏପରି ଉତ୍ତରରେ ସନ୍ତୁଷ୍ଟ ନ ହୋଇ ତ୍ରୟୋବିଂଶ ବୟସର ଅପରିପକ୍ୱ ଯୁବକ ରାଜକୃଷ୍ଣବାବୁ ଆମ୍ଭମାନଙ୍କର ଭକ୍ତିଭାଜନ ଶ୍ରଦ୍ଧାସ୍ପଦ ଓଡ଼ିଶାର ପରମହିତାକାଂକ୍ଷୀ ବାବୁ ଗୌରୀଶଙ୍କର ରାୟଙ୍କ ନାମରେ ଅଭିଯୋଗ ଉପସ୍ଥିତ କଲେ । ବିଚାରରେ ଗୌରୀଶଙ୍କର ବାବୁ ନିଷ୍କଳଙ୍କ ଅବ୍ୟାହତି ପାଇଲେ । କିନ୍ତୁ ଦୁଃଖର ବିଷୟ ଯେ ଏହିଠାରେ ଯବନିକା ପତନ ହେଲା ନାହିଁ ;ବରଂ ବିବାଦ କ୍ରମଶଃ ବୃଦ୍ଧି ପାଇଲା ; ଓଡ଼ିଆ ଅକ୍ଷର ଛାଡ଼ି ଓଡ଼ିଆ ଭାଷାକୁ ବିଦ୍ୟାଳୟମାନଙ୍କରୁ ଉଠାଇ ଦେବାପାଇଁ ପ୍ରସ୍ତାବ ହେଲା ; କ୍ରମଶଃ ବିବାଦ ଓଡ଼ିଶାର ସୀମା ଅତିକ୍ରମ ହେଲା;ଏକ ପକ୍ଷରେ କଲିକତାର ଇଣ୍ଡିଆନ ମିରର ପତ୍ରିକା ବଙ୍ଗଳା ହସ୍ତେ ଚଳିବା ପକ୍ଷରେ ପ୍ରବନ୍ଧ ପ୍ରକାଶ କଲେ;ପକ୍ଷାନ୍ତରେ ବଙ୍ଗଳାର ବିଖ୍ୟାତ କବି ସ୍ୱର୍ଗୀୟ ରଙ୍ଗଲାଲ ବନ୍ଦୋପାଧ୍ୟାୟ ହୁଗୁଲିରେ ଥାଇ ଓଡ଼ିଆଭାଷା ରହିବା ପକ୍ଷରେ ପ୍ରବନ୍ଧ ଲେଖିଲେ; ଏଣେ ଓଡ଼ିଆଭାଷା ପ୍ରଚଳିତ ରହିବା ପାଇଁ ଓଡ଼ିଶାବାସିମାନେ ଯେଉଁ ଆବେଦନ କଲେ ତାହାକୁ ସମର୍ଥନ କରିବାପାଇଁ ଆମ୍ଭମାନଙ୍କର ପ୍ରାତଃ ସ୍ମରଣୀୟ ରେଭନ୍ସା ସାହେବ କମିଶ୍ନର ଓ ଶିକ୍ଷା ବିଭାଗର ଇନ୍ସପେକ୍ଟର ଆର,ଏଲ, ମାର୍ଟିନ ସାହେବ ଲେଖନି ଧାରଣ କଲେ ; ତେଣେ ଅପରପକ୍ଷ ସମର୍ଥନ କରିବା ପାଇଁ ଶିକ୍ଷା ବିଭାଗର ହର୍ତ୍ତାକର୍ତ୍ତା ଡାଇରେକ୍ଟର ସାହେବ ଯଥାସାଧ୍ୟ ଚେଷ୍ଟା କରିବାକୁ ଲାଗିଲେ ।୧୮୬୯ ଖ୍ରୀଷ୍ଟାବ୍ଦ ଶେଷ ହେଲା ବେଳକୁ ବଙ୍ଗୀୟ ଗବର୍ଣ୍ଣମେଣ୍ଟଙ୍କ ସୁବିଚାରରେ ଓଡ଼ିଆଭାଷା ପାଠ୍ୟ ବୋଲି ସ୍ଥିରୀକୃତ ହୋଇ ବିବାଦଭଞ୍ଜନ ହେଲା ।”

ଓଡ଼ିଆମାନଙ୍କର ଉପରୋକ୍ତ ସଙ୍କଟ କାଳରେ ବାବୁ ଗୌରୀଶଙ୍କର ରାୟ, ବାବୁ ରଙ୍ଗଲାଲ ବନ୍ଦୋପାଧ୍ୟାୟ ମହାମାନ୍ୟ ରେଭେନ୍ସା ସାହେବ ଏବଂ ମାନନୀୟ ମାର୍ଟିନ ସାହେବ ଓଡ଼ିଆ ଭାଷା ରକ୍ଷା କଳ୍ପେ ବିଶେଷ ଯତ୍ନ କରିଥିଲେ । ବର୍ତ୍ତମାନ କ୍ଷେତ୍ରରେ ସମ୍ବଲପୁରରେ ଓଡ଼ିଆ ଭାଷାର ବ୍ୟବହାର ସ୍ଥିରତର ରଖିବା ସକାଶେ କେହିକି ପ୍ରାଣପଣରେ ଯତ୍ନ କରିବେ ନାହିଁ ? ଶୁଣିଥିଲୁ ଆମ୍ଭମାନଙ୍କର ଶ୍ରଦ୍ଧେୟ ଡେପୁଟୀ କମିଶନର ସାହେବ ଓଡ଼ିଆଭାଷା ସପକ୍ଷରେ ମତ ଦେଇଥିଲେ,ସେ କି ଆମ୍ଭମାନଙ୍କୁ ଏ ସଙ୍କଟରୁ ଉଦ୍ଧାର କରି ଆମ୍ଭମାନଙ୍କର ଚିରସ୍ମରଣୀୟ ହୋଇପାରିବେ ନାହିଁ ? ସମ୍ବଲପୁରର ସ୍ୱାଧୀନଚେତା ସୁପଣ୍ଡିତ ଓକୀଲ ଶ୍ରୀଯୁକ୍ତ ବାବୁ ଯୋଗେନ୍ଦ୍ର ନାଥ ସେନ ଏବଂ ଶ୍ରୀଯୁକ୍ତ ବାବୁ କାଳୀପ୍ରସନ୍ନ ମିତ୍ର ବର୍ତ୍ତମାନ ବିପଦଗ୍ରସ୍ତ ଲକ୍ଷ ଲକ୍ଷ ଓଡ଼ିଆଙ୍କ ମନୋବେଦନ ଦୂର କରିବା ସକାଶେ କି ଶ୍ରଦ୍ଧାସ୍ପଦ ରଙ୍ଗଲାଲଙ୍କ ପରି କିଛି କରି ପାରିବେ ନାହିଁ ?

*ଭା୬ଗ,ସଂ୩୭ଖ୍ୟା, ୧୩/୨/୧୮୯୫*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## ଭାଷା ପରିବର୍ତ୍ତନର ଆଲୋଚନା ।

"ସମ୍ବଲପୁରସ୍ଥ ଅଦାଲତ, ମାଲ ଏବଂ ଅମଲାମାନଙ୍କର ଭାଷା ଓଡ଼ିଆ ପରିବର୍ତ୍ତେ ହିନ୍ଦି ବ୍ୟବହାର କରାଯିବା ବିଷୟକ ଚିଫ୍ କମିଶ୍ନର ବାହାଦୁରଙ୍କର ନିମ୍ନଲିଖିତ ନିଷ୍ପତ୍ତି ସର୍ବସାଧାରଣଙ୍କର ଜ୍ଞାତ ସକାଶେ ପ୍ରଚାର କରାଯାଉ ଅଛି ।

(ସ୍ୱା) ଏ,ଏଲ, ସଣ୍ଡାର୍ସ

ଏକ୍ଟିଂ ପ୍ରଧାନ ସେକ୍ରେଟରୀ ।

ନଂ ୨୩୭ମର

"ମଧ୍ୟ ପ୍ରଦେଶୀୟ ଚିଫ୍ କମିଶ୍ନର ସାହେବ ବାହାଦୁରଙ୍କ ଜେନେରଲ ଡିପାର୍ଟମେଣ୍ଟର **XXXXX** ଅନୁଷ୍ଠାନ ନକଲ । ଦୌରା ୧୫ ତାରିଖ ଯାନୁଏରୀ ୯୫ ଖ୍ରୀଷ୍ଟାବ୍ଦ ।

ସମ୍ବଲପୁରସ୍ଥ ଅଦାଲତ ସାଲ ଏବଂ ଅମଲାମାନଙ୍କ ଭାଷା ଓଡ଼ିଆ ପରିବର୍ତ୍ତରେ ହିନ୍ଦି ବ୍ୟବହାର ହେବା ସମ୍ବନ୍ଧରେ ଇନ୍ସପେକ୍ଟର ଜେନେରଲ ପୋଲିସ, ଛତିଶଗଡ଼ କମିଶ୍ନର ଓ ଯୁଡିଶିୟାଲ କମିଶ୍ନର ସାହେବଙ୍କ ରେଜିଷ୍ଟ୍ରାର ସାହେବଙ୍କ ସଙ୍ଗରେ ଯେଉଁ ଚିଠିପତ୍ର ଚଳିଥିଲା ତାହା ପାଠ କରାଗଲା ।

*ଭା୬ଗ, ସଂ୩୭ଖ୍ୟା, ୧୩।୨।୧୮୯୫*

## ମୀମାଂସା ।

"ସମ୍ବଲପୁର ଜିଲ୍ଲାର ଅବସ୍ଥା -ଅମଲାଭାଷା ଓଡ଼ିଆ ଥିବାରୁ ଓ ମଧ୍ୟପ୍ରଦେଶୀୟ ଅନ୍ୟ କୌଣସି ଜିଲ୍ଲାରୁ ପୃଥକ ଥିବାରୁ ଅନେକ ଅସୁବିଧା ଜନ୍ମାଏ—ଜହିଁରେ ଶାସନକର୍ତ୍ତା ମାନଙ୍କର ଏକାଧିକବାର ଦୃଷ୍ଟି ନିକ୍ଷେପ ହୋଇଅଛି, ଆଉ ଯାହା ଆଧୁନିକ ଅବସ୍ଥା ବିଚାରରେ ଅଧିକ ଅନୁଭୂତ ହୋଇଅଛି । ସାଧାରଣ ବିଧାନାନୁସାରେ କାର୍ଯ୍ୟ ଚଳାଇବା ସକାଶେ ଦଳବଦ୍ଧ ହେବା ଏବଂ ବଂଶଜ ସମ୍ବନ୍ଧ ନିବାରିତ ହେବା ସକାଶେ ଏବଂ ଯେଉଁଠାରେ କାର୍ଯ୍ୟ ପଶ୍ଚାତ୍ପଦ ଅଛି କିମ୍ୱା ସ୍ଥିର ରହିଅଛି ସେଠାରେ ସତେଜଲୋକ ପ୍ରବେଶ କରିବା ସକାଶେ ଅମଲାମାନଙ୍କର ପରିବର୍ତ୍ତନର ଆବଶ୍ୟକତା ସମସ୍ତ ମହକୁମାମାନେ ସ୍ୱୀକାର କରି ଅଛନ୍ତି, ମାତ୍ର ସମ୍ବଲପୁରର ଭାଷା ଭିନ୍ନ ପ୍ରକାରର ଥିବାରୁ ଏରୂପ ପରିବର୍ତ୍ତନ ଅସମ୍ଭବ ଅଟେ । ଏହି ଅସୁବିଧା ସ୍ଥାନୀୟ ମହାପ୍ରସାଦ ବସିବା ରୀତିଦ୍ୱାରା ବୃଦ୍ଧିଲାଭ କରିଅଛି ।୧୮୭୭ ସାଲର ୨୧ ତାରିଖ ଜୁଲାଇ ଲିଖିତ ମଧ୍ୟପ୍ରଦେଶୀୟ ଗେଜେଟରେ ପ୍ରକାଶ କରାଯାଇଥିବାର ଯେଉଁ ନୋଟ ଶ୍ରୀଯୁକ୍ତ କପ୍ତାନ ସରିନ୍ ବୁକ୍ ସାହେବ ଲେଖିଥିଲେ ତହିଁରେ ଉକ୍ତ ରୀତି ବର୍ଣ୍ଣିତ ହୋଇଅଛି । ଏ ରୀତିଦ୍ୱାରା ଓଡ଼ିଶାରେ ଆକ୍ରମଣ କିମ୍ୱା ରକ୍ଷା ଉଦ୍ଦେଶ୍ୟରେ ଭିନ୍ନ ଭିନ୍ନ ଜାତିର ଲୋକମାନେ ପରସ୍ପର ଦଳବଦ୍ଧ ହୁଅନ୍ତି । ଆଉ ଯଦି ବନ୍ଧୁତା ବୃଦ୍ଧିନିମନ୍ତେ ପୂର୍ବରୁ ବସିଥାନ୍ତି ତେବେ ସୁଦ୍ଧା ଶାସନ ବିଭାଗର ଦୁରାଚାର ପ୍ରକାଶ କି ପ୍ରତିକାର ହେବା ବିଷୟରେ ନିଃସନ୍ଦେହ ଯଥାର୍ଥ ପ୍ରତିବନ୍ଧକ ହୁଏ । ସମ୍ବଲପୁର ପୋଲିଷର ଅସନ୍ତୋଷ ଜନକ ଅବସ୍ଥା ଏବଂ କାର୍ଯ୍ୟକଳାପ ଚକ୍ରାନ୍ତରେ ଇନ୍ସପେକ୍ଟର ଜେନେରଲ ପୋଲିଷ ଆଧୁନିକ ଅନୁସନ୍ଧାନ ଦ୍ୱାରା ସମ୍ବଲପୁରରେ ପୋଲିଷ କର୍ମ୍ମ ନିମନ୍ତେ ହିନ୍ଦିଭାଷା ଗୃହିତ ହେବାର ଆବଶ୍ୟକତା ଦେଖାଇ ଚିଫ୍ କମିଶ୍ନର ବାହାଦୁରଙ୍କୁ ଏହି ଅଭିପ୍ରାୟରେ ଅନୁରୋଧ କରିଥିଲେ ଯେ ଅନ୍ୟାନ୍ୟ ଜିଲ୍ଲାର କର୍ମଚାରି ମାନଙ୍କ ସଙ୍ଗରେ ପରିବର୍ତ୍ତନର ସମ୍ଭବ ହେବ-ଯେଉଁ କଥାର କି ନିତାନ୍ତ ପ୍ରୟୋଜନ ଅଛି । ଯାହାହେଉ ଅଦାଲତ ନାମାଙ୍କନରେ ଓ ଅନ୍ୟାନ୍ୟ ମହକୁମାମାନଙ୍କରେ ଯେଉଁ ଭାଷା ପ୍ରଚଳିତ ଥିବ ତହିଁରୁ ପୋଲିଷର ଭାଷା ଭିନ୍ନ କରିବାର ସମ୍ଭବ ନୁହେଁ, ଆଉ ସମ୍ବଲପୁରର ଭିନ୍ନ ଭାଷା କେବଳ ପୋଲିଷ ପାଖରେ ଅସୁବିଧା ହେଉଅଛି ଏମନ୍ତ ନୁହେଁ । ପକ୍ଷାନ୍ତରେ ସମ୍ବଲପୁର ଓ ମଧ୍ୟପ୍ରଦେଶର ତନ୍ନିକଟବର୍ତ୍ତୀ ଜିଲ୍ଲାମାନ ଦେଇ ରେଳ ଗତାୟତ କରୁଥିବାରୁ ଯିବା ଆସିବା ପକ୍ଷେ ସୁଗମ ହୋଇଅଛି, ଅତଏବ ଦେଶର ଅନ୍ୟାନ୍ୟ ସ୍ଥାନମାନଙ୍କରେ ଯେଉଁ ଭାଷା ପ୍ରଚଳିତ ଅଛି ତାହା ସମ୍ବଲପୁରରେ ଚଳାଇବାର ଏକ ବିଶେଷ କାରଣ ହୋଇଅଛି । ଆଉ ସମ୍ବଲପୁରର ଅମଲାମାନେ ହିନ୍ଦି ଶିକ୍ଷା କଲେ ଯେଉଁ ଉନ୍ନତିର ମାର୍ଗ ସେମାନଙ୍କ ପ୍ରତି ବର୍ତ୍ତମାନ ରୁଦ୍ଧ ଅଛି, ନିକଟବର୍ତ୍ତୀ ଜିଲ୍ଲାମାନଙ୍କରେ ସେହି ଉନ୍ନତିକ୍ଷେତ୍ର ସେମାନଙ୍କ ପକ୍ଷରେ ମୁକ୍ତ ରହିବ ।

୨- ସମ୍ବଲପୁରରେ ଦେଶୀୟରାଜ୍ୟ ଥିବା ପର୍ଯ୍ୟନ୍ତ ଏବଂ ବ୍ରିଟିଶ ଗବର୍ଣ୍ଣମେଣ୍ଟ ତହିଁର ଅଧିକାରୀ ହେବାପରେ କିଛି କାଳ ପର୍ଯ୍ୟନ୍ତ ସମ୍ବଲପୁରସ୍ଥ ବ୍ରିଟିଶ ରେସିଡେଣ୍ଟଙ୍କ ଅଦାଲତରେ ଏବଂ ଛୋଟନାଗପୁର କମିଶ୍ନର ସାହେବଙ୍କ କାର୍ଯ୍ୟାଳୟରେ ଉର୍ଦ୍ଦୁ, ପାର୍ଶି ଏବଂ ହିନ୍ଦି ଅଦାଲତ ଭାଷା ଥିଲା । ସେହି ସମୟରେ ବାହାର ଲୋକମାନେ ନିଦର୍ଶନ ରୂପେ ଯେଉଁ ଦଲୀଲମାନ ଦାଖଲ କରିଥିଲେ ତାହା ଓଡ଼ିଆ ଥିବାର ନଥିମାନଙ୍କରେ ଦେଖାଯାଏ । କଟକରେ ଓଡ଼ିଆଭାଷା ଚଳୁଥିଲା,ଆଉ ଏ ଜିଲ୍ଲା କଟକ ସଂଲଗ୍ନ ହେଲାରୁ କମିଶ୍ନର ସାହେବ ଆଦେଶ ଦେଲେ ଯେ କେବଳ ଓଡ଼ିଆ ବ୍ୟବହାର ହେବ,ଏହି ଉଦେଶ୍ୟ ପାଳନ ସକାଶେ କଟକରୁ ଅମଲାମାନ ପଠାଇଲେ , ଏ ପ୍ରଣାଳୀ ଅନାଧିକ ଏକ ବର୍ଷ ଚଳିଲା, ତତ୍ପରେ ସମ୍ବଲପୁର ମଧ୍ୟପ୍ରଦେଶ ଭୁକ୍ତ କରାଗଲାରୁ ପୂର୍ବପ୍ରଣାଳୀ ପୁନର୍ଗୃହୀତ ହେଲା,ପ୍ରକାଶ୍ୟରେ ଏ ଆଦେଶ ଦ୍ୱାରା ଲୋକମାନଙ୍କର ଅସୁବିଧା ଜନ୍ମିନଥିଲା ମାତ୍ରକ ଚିଫ୍‌କମିଶ୍ନର ସାହେବଙ୍କ ଛାମୁକୁ ଅର୍ଜିକରାଯିବାରୁ ସେ ନିଷ୍ପତିକରି ଥିଲେ ଯେ ସ୍ଥାନୀୟ ଓଡ଼ିଆଭାଷା ଉଠିଯିବା ଆପତ୍ତିଜନକ ଅଟେ,ଆଉ ୧୮୬୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଉର୍ଦ୍ଦୁ ଏବଂ ଓଡ଼ିଆ ଏ ଦୁଇ ଭାଷା ଏକ ସଙ୍ଗରେ ପ୍ରଚଳିତ ରହିଲା, ପରେ ଓଡ଼ିଆ, ଅଦାଲତ ଭାଷା ବୋଲି ଶେଷରେ ପ୍ରକାଶିତ ହେଲା ।

୩- ଯାହାହେଉ ଏହିପ୍ରକାରେ ସୁଦୀର୍ଘକାଳ ପ୍ରଚଳିତ ହେଲେ ମଧ୍ୟ ସମ୍ବଲପୁରରେ କେବଳ ଓଡ଼ିଆ ଭାଷାର ବ୍ୟବହାର ନାହିଁ । ନ୍ୟୁନପକ୍ଷରେ ୧/୫ ଲୋକର ହିନ୍ଦି ମାତୃଭାଷା ଅଟେ । ଅନେକ ପରିମାଣରେ ସରକାରୀ କାର୍ଯ୍ୟରେ ଏବଂ କଥୋପକଥନରେ ଏହା ବ୍ୟବହୃତ ହୁଏ , ଆଉ ତହିଁରୁ ଅଧିକ ସଂଖ୍ୟାରେ ଉଭୟ ଅମଲାମାନେ ଓ ଲୋକମାନେ ସାଧାରଣ କଥାବାର୍ତ୍ତା ନିମନ୍ତେ ଯଥେଷ୍ଟ ରୂପେ ଜାଣନ୍ତି । ରେଲଓୟେ ଲାଇନରେ ତହିଁର ବ୍ୟବହାର ବଢ଼ୁଅଛି । ଅଧିକନ୍ତୁ ସମ୍ବଲପୁରର ଓଡ଼ିଆ ଏବଂ ଓଡ଼ିଶ୍ୟାର ଭାଷା ଏକପ୍ରକାର ନୁହେଁ ; ଏହା କେବଳ XXXX ଭାଷା ଅଟେ ଯହିଁରେ ହିନ୍ଦି କିମ୍ବା ଛତିଶଗଡ଼ ଭାଷା ବିଶେଷ ମିଶ୍ରିତ ହୋଇଅଛି । ଆଉ ସାଧାରଣ ଲୋକମାନେ ଶେଷୋକ୍ତ ଭାଷା ବ୍ୟବହାର କରିବାରେ କୌଣସି କଷ୍ଟ ଅନୁଭବ କରନ୍ତି ନାହିଁ ।

୪- ଚିଫ୍ କମିଶ୍ନର ବାହାଦୁର ସମ୍ବଲପୁରରୁ ଦରଖାସ୍ତମାନ ପାଇଅଛନ୍ତି ଯହିଁରେ ଅଦାଲତ ଓ ଅମଲାଭାଷା ସମ୍ବନ୍ଧରେ କୌଣସି ପରିବର୍ତ୍ତନ କରାଯିବା ବିଷୟକ ପ୍ରତିବାଦ କରାଯାଇଅଛି । ଏହି ଦରଖାସ୍ତ ମାନଙ୍କରେ ଯେଉଁ ଭାବଯୁକ୍ତ କଥାମାନ ପ୍ରକାଶ ହୋଇଅଛି ତାହା ସେ ବୁଝୁଅଛନ୍ତି । ଆଉ ବାସ୍ତବରେ ତହିଁ ସଙ୍ଗରେ ସହାନୁଭୂତି ପ୍ରକାଶ କରୁଅଛନ୍ତି,ଆଉ ସେ ଏହା ମଧ୍ୟ ଜାଣୁଅଛନ୍ତି ଯେ ଉକ୍ତ ପରିବର୍ତ୍ତନ ପ୍ରଥମରୁ କିଛି ସାଧାରଣ ଅସୁବିଧା ଘଟାଇବ, ମାତ୍ରକ ଯେଉଁ ଅଫିସର ମାନଙ୍କର ମତ ନିଆଯାଇଅଛି ସେମାନଙ୍କ ମଧ୍ୟରୁ କେତେକଜଣର ସମ୍ବଲପୁରର ଲୋକ ଓ ଅବସ୍ଥା ସମ୍ବନ୍ଧରେ ସୁଦୀର୍ଘ ଏବଂ ଘନିଷ୍ଠ ଅଭିଜ୍ଞତା ଅଛି,ସେମାନଙ୍କର ପ୍ରତ୍ୟେକଙ୍କର ମତ ଯେ ଅବଶେଷରେ ହିନ୍ଦିଭାଷା ଅବଶ୍ୟ ପ୍ରଚଳିତ କରିବାକୁ ହେବ, ଆଉ ତହିଁରୁ ଯେଉଁ ଅସୁବିଧା ଜନ୍ମିବ ତାହା ମଧ୍ୟପ୍ରଦେଶର ଅନ୍ୟାନ୍ୟ ସ୍ଥାନର ଭାଷାର ସମାନତାରୁ ଯେଉଁ ଉପକାର ଜନ୍ମିବ ସେହି ଉପକାରର ସମାନ ହୋଇ ନ ପାରେ, ଅତଏବ ଯୁଡିଶିୟଲ କମିଶ୍ନର ସାହେବଙ୍କ ସଙ୍ଗେ ଐକ୍ୟ ହୋଇ ଚିଫ୍ କମିଶ୍ନର ସାହେବ ପରିବର୍ତ୍ତନ କରିବାର ନିଷ୍ପତ୍ତି କରୁଅଛନ୍ତି ଯାହା ଜିଲ୍ଲାର ସୁଶାସନ ସକାଶେ ନିତାନ୍ତ ଆବଶ୍ୟକ ବୋଲି ଦର୍ଶାଯାଇଅଛି , ମାତ୍ର ତାହା ପ୍ରଚଳିତ କରିବା ବିଷୟରେ ସରକାରୀ କର୍ମଚାରୀମାନଙ୍କୁ ଓ ସର୍ବସାଧାରଣଙ୍କୁ ଯେତେ ଊଣା ଅସୁବିଧା ହୋଇପାରେ ସେ ତାହାର ଚେଷ୍ଟା କରିବେ ।

୫- ସମ୍ବଲପୁରର ଅଦାଲତ ଓ ଅମଲାଭାଷା ସ୍ୱରୂପ ହିନ୍ଦି, ୧ତାରିଖ ଜାନୁଏରୀ ୧୮୯୬ ଖ୍ରୀଷ୍ଟାବ୍ଦ ଠାରୁ ପ୍ରଚଳିତ ହେବ । ଯଦି ଅଧିକ କାଳର ଏକ ତାରିଖ ନିର୍ଦ୍ଦିଷ୍ଟ ହୋଇଥାନ୍ତା କିନ୍ତୁ ତତ୍କାଳିକ କାର୍ଯ୍ୟ ବିଳମ୍ବ ହେବ । ଚିଫ୍ କମିଶ୍ନର ସାହେବଙ୍କ ମତରେ ଯେଉଁ ସମୟ ଦିଆଯାଇ ଅଛି ତାକୁ ଯଥେଷ୍ଟ ନୋଟିସ ବିଚାର

କରାଯିବ । ସେହି ତାରିଖ ପୂର୍ବରୁ ୧୦ ଟଙ୍କାରୁ ଅନ୍ୟୁନ ବେତନ ପ୍ରାପ୍ତ ସମସ୍ତ ଅମଲାମାନଙ୍କୁ ବିଶେଷରୂପେ ମାଫ ପାଇ ନ ଥିଲେ ପାଶ କରିବାକୁ ହେବ । ଏହି ଉଦ୍ଦେଶ୍ୟରେ ଏକ ବୋର୍ଡ ଷାଣ୍ମାସିକ ପରିକ୍ଷା ଗ୍ରହଣ କରିବେ । ଏହି ପରୀକ୍ଷା ସମ୍ବନ୍ଧରେ ଯେଉଁ ଯେଉଁ ବିଷୟର ପରୀକ୍ଷା ହେବ ଏବଂ ଯେଉଁ ନିୟମରେ ହେବ, ତାହା କମିଶ୍ନର ସାହେବ ଉଲ୍ଲେଖ କରି ଚିଫ୍ କମିଶ୍ନର ସାହେବଙ୍କ ମଞ୍ଜୁରୀ ସକାଶେ ପଠାଇବେ । ସମ୍ବଲପୁରକୁ ହିନ୍ଦି ଅମଲାମାନଙ୍କୁ ପରିବର୍ତ୍ତନ କରିବା ଦ୍ୱାରା ଆଉ ଯେଉଁ ଅମଲାମାନେ ପୂର୍ବରୁ ହିନ୍ଦି ଜାଣନ୍ତି ସେମାନେ ହିନ୍ଦିରେ ରେଜିଷ୍ଟରୀ ଓ ନକ୍ସା ଲେଖିବାର ଆରମ୍ଭ କରିବାଦ୍ୱାରା ଉକ୍ତ ପରିବର୍ତ୍ତନ ସୁଗମ ହୋଇପାରେ । ଯେଉଁ ଅମଲାମାନେ ଅନ୍ୟ ଜିଲ୍ଲାରୁ ପରିବର୍ତ୍ତିତ ହେବେ ସେମାନେ ନିର୍ଦ୍ଦିଷ୍ଟ କାଳ ମଧ୍ୟରେ ଓଡ଼ିଆରେ କଥୋପକଥନ କରିବା ଶିକ୍ଷା କରିବେ, କେତେକ ମହକୁମାର ନିମ୍ନ ଶ୍ରେଣୀସ୍ଥ କର୍ମଚାରି ମାନଙ୍କ ବିଷୟରେ, ଯଥା ପୋଲିଷ ଏବଂ ଜଙ୍ଗଲ- ଯେଉଁମାନଙ୍କୁ ଲେଖାପଢ଼ା କର୍ମ୍ମ କରିବାକୁ ହୁଏ ନାହିଁ ଉପରୋକ୍ତ ନିୟମ ଶକ୍ତ ରୂପେ ଜାରି କରିବାର ଆବଶ୍ୟକ ହୋଇ ନ ପାରେ । ମହକୁମାର ପ୍ରଧାନ କର୍ମ୍ମଚାରୀମାନେ ଆପଣା ଆପଣା ମହକୁମାରେ ଏକଥାର ବିଚାର କରିପାରିବେ । ଯେଉଁମାନଙ୍କୁ ହିନ୍ଦିରେ ପାଶ୍ କରିବାକୁ ହେବ ସେମାନଙ୍କୁ ଅବକାଶ, ପରିବର୍ତ୍ତନ ଆଦି ଦିଆଯାଇ ଯଥାସମ୍ଭବ ସୁଗମତ ଦିଆଯିବ ।

୬- ଏସବୁ ସହଜରେ ତାମିଲ ହେବା ଉଦ୍ଦେଶ୍ୟରେ ହିନ୍ଦିରେ ଅମଲାମାନଙ୍କୁ ଶିକ୍ଷା ଦେବାର ବନ୍ଦୋବସ୍ତ କରିବାର ଆବଶ୍ୟକ । ଚିଫ୍ କମିଶ୍ନର ସାହେବଙ୍କ ବିବେଚନାରେ ଏ ଜିଲ୍ଲାର ସ୍କୁଲମାନଙ୍କରେ ହିନ୍ଦି ଶିକ୍ଷା ବିସ୍ତାର କରିବା ମଧ୍ୟ ବାଞ୍ଛନୀୟ ଅଟେ ଏବଂ ଲୋକମାନେ ଆନନ୍ଦର ସହିତ ତାହା ଗ୍ରହଣ କରିବେ । ବର୍ତ୍ତମାନ ୧୨୩ ଗୋଟା ମଧ୍ୟରୁ ୩ ଗୋଟା ସ୍କୁଲରେ ହିନ୍ଦିଶିକ୍ଷା ହୁଏ, ଗୋଟିଏ ହିନ୍ଦି ସ୍କୁଲ ସମ୍ବଲପୁରରେ ଅଛି । ଶିକ୍ଷା ବିଭାଗର ଇନ୍ସପେକ୍ଟର ଜେନେରାଲଙ୍କର ମତନେବାରେ ସେ ପ୍ରସ୍ତାବ କରନ୍ତି ଯେ ,-

(୧) ତହସିଲ ହେଡ଼କ୍ୱାଟର ବରଗଡ଼ ସ୍କୁଲରେ ୧୫ ଟଙ୍କା ବେତନରେ ଏକ ଶିକ୍ଷକ ରଖାଯିବ ଯେ ଅମଲାମାନଙ୍କୁ ଓ ସେହି ପିଲାମାନଙ୍କୁ (ଯେଉଁମାନେ ଲୋଏର ପ୍ରାଇମେରୀ ଶ୍ରେଣୀରେ ପାଶ କଲାପରେ ହିନ୍ଦି ଶିକ୍ଷା କରି ବାବୁ ଲୋଡ଼ିବେ ସେମାନଙ୍କୁ ) ହିନ୍ଦି ଶିକ୍ଷା ଦେବେ ।

(୨) ତେତିକି ବେତନରେ ଆଉ ଜଣେ ଶିକ୍ଷକ ରଖାଯିବ ଯେ ସେ ପୋଲିଷ କର୍ମଚାରୀମାନଙ୍କୁ ହିନ୍ଦି ଶିକ୍ଷା ଦେବେ ।

(୩) ହିନ୍ଦିଶିକ୍ଷାର ସୁଗମତା ବିସ୍ତାର ଉଦ୍ଦେଶ୍ୟରେ ଉପସ୍ଥିତ ସ୍କୁଲମାନଙ୍କର ପ୍ରତ୍ୟେକ ଶିକ୍ଷକକୁ ଉପରୋକ୍ତ ପ୍ରଦେଶ ଅନୁସାରେ ପରିକ୍ଷାରେ ପାଶ କରିବା ନିମନ୍ତେ ୨୫ ଟଙ୍କା ଲେଖାଏଁ ପୁରସ୍କାର ଦିଆଯିବ ଏବଂ ପାଶ କଲାପରେ ମନୋନୀତ ସ୍କୁଲ ମାନଙ୍କରେ ଯେଉଁ ପିଲାମାନେ ଲୋଏର ପ୍ରାଇମେରୀ ଶ୍ରେଣୀ ପରୀକ୍ଷାରେ ପାଶ କରିବେ ସେମାନଙ୍କୁ ହିନ୍ଦିଶିକ୍ଷା ଦେବା ସକାଶେ ଶ୍ରେଣୀ ଖୋଲିବେ ।

(୪) ହିନ୍ଦି ଜ୍ଞାନ ବୃଦ୍ଧିକରିବା ସକାଶେ ୫ ଜଣ ସାର୍ଟିଫିକଟପ୍ରାପ୍ତ ଶିକ୍ଷକଙ୍କୁ ୬ ମାସ ନିମନ୍ତେ ରାୟପୁର ପଠାଯିବ । ମାସିକ ୩୦ଟଙ୍କା ବ୍ୟୟରେ ପ୍ରତିବର୍ଷ ୧୦ ଜଣ ପଠାଯାଉଥିବେ । ଏହି ପ୍ରସ୍ତାବ ମଧ୍ୟରୁ ପ୍ରଥମ ଦୁଇ ପ୍ରସ୍ତାବ ମଞ୍ଜୁର ହୋଇ ଯାଇଅଛି । ଶେଷ ଦୁଇ ପ୍ରସ୍ତାବ କାର୍ଯ୍ୟ ପରିଣତ କରିବା ସକାଶେ ବର୍ତ୍ତମାନ ବନ୍ଦୋବସ୍ତ କରାଯିବା ଉଚିତ ।

୭- ଦେଓ୍ୱାନି ଓ ଫୌଜଦାରୀ କାର୍ଯ୍ୟବିଧି ଅନୁସାରେ ଆବଶ୍ୟକୀୟ ବିଜ୍ଞାପନ ଗେଜେଟରେ ପ୍ରକାଶ କରାଯାଇଅଛି ।"

ସମ୍ବଲପୁରର ଭାଷା ପରିବର୍ତ୍ତନ ସମ୍ବନ୍ଧେ ମଧ୍ୟ ପ୍ରଦେଶର ମହାମାନ୍ୟ ଚିଫ୍ କମିଶ୍ନର ସାହେବ ବାହାଦୁର ଯେଉଁ ନିଷ୍ପତି କରିଅଛନ୍ତି ପାଠକମାନଙ୍କ ଗୋଚର ସକାଶେ ତହିଁର ଉତ୍କଳାନୁବାଦ ଉପରେ ପ୍ରକାଶିତ ହେଲା ।.ସେ ସମ୍ବନ୍ଧେ ଆମ୍ଭମାନଙ୍କର ବକ୍ତବ୍ୟ ନିମ୍ନରେ ପ୍ରକାଶିତ ହେଲା.।

ଆମ୍ଭେମାନେ ଶାନ୍ତ ବିନୀତ ଭାବରେ ମନର ଦୁଃଖ ଅଭାବ ଅସୁବିଧାର କଥା ରାଜଦ୍ୱାରେ ଜଣାଇଲେ ପ୍ରଜାବତ୍ସଳ ଗବର୍ଣ୍ଣମେଣ୍ଟଙ୍କ ଛାମୁରେ ଆମ୍ଭମାନଙ୍କର ଦୁଃଖ ଯେ ଘେନା ହେବ ନାହିଁ ଏପରି ନୁହେଁ । ଗବର୍ଣ୍ଣମେଣ୍ଟ ଆମ୍ଭମାନଙ୍କର ଶୁଭାକାଂକ୍ଷୀ, ଯହିଁରେ ଆମ୍ଭେମାନେ ସୁଖୀ, ନିରାପଦ ହେବୁଁ ଗବର୍ଣ୍ଣମେଣ୍ଟ ସେ ବିଷୟରେ ସତତ ଚିନ୍ତାନ୍ୱିତ,ଏ ଭାଷା ପରିବର୍ତ୍ତନ ତାଙ୍କର ସେହି ସଦିଚ୍ଛାର ଫଳ । ସେ ଆପଣାର ମନ୍ତବ୍ୟର ଏକ ସ୍ଥାନରେ ଲେଖିଅଛନ୍ତି ଯେ "ହିନ୍ଦିଭାଷା ପ୍ରଚଳନ ହେତୁରୁ ଯେଉଁ ଅସୁବିଧା ଜନ୍ମିବ ତାହା ମଧ୍ୟପ୍ରଦେଶର ଅନ୍ୟସ୍ଥାନର ଭାଷା ସମାନତାରୁ ଯେଉଁ ଉପକାର ଜନ୍ମିବ ସେହି ଉପକାରର ସମାନ ହୋଇ ନ ପାରେ" । ପୁନଶ୍ଚ କହିଅଛନ୍ତି "ସମ୍ବଲପୁରର ଅମଲାମାନେ ହିନ୍ଦି ଶିକ୍ଷା କଲେ ଯେଉଁ ଉନ୍ନତିର ମାର୍ଗ ସେମାନଙ୍କ ପ୍ରତି ରୁଦ୍ଧ ଅଛି , ନିକଟବର୍ତ୍ତୀ ଜିଲ୍ଲା ମାନଙ୍କରେ ସେହି ଉନ୍ନତି କ୍ଷେତ୍ର ସେମାନଙ୍କ ପକ୍ଷରେ ମୁକ୍ତ ରହିବ" । ମହାମାନ୍ୟଙ୍କର ଏହିସବୁ ଉକ୍ତିରୁ ଜଣାଯାଏ ଯେ ସେ ଆମ୍ଭମାନଙ୍କର ଭଲ ପାଇଁ ଏବଂ ରାଜକାର୍ଯ୍ୟର ସୁବିଧା ସକାଶେ ଏ ନବ ବିଧାନର ସୃଷ୍ଟି କରିଅଛନ୍ତି, ସେ ଯଦି ଜାଣିପାରନ୍ତି ଯେ ଏତଦ୍ୱାରା ତାଙ୍କର ପୁତ୍ର ସ୍ଥାନୀୟ ଲକ୍ଷ ଲକ୍ଷ ପ୍ରଜାଏ ଆଦେଶରେ ଆନ୍ତରିକ ମନୋବେଦନା ଭୋଗ କରୁଅଛନ୍ତି ଏବଂ ଆଦେଶ ପ୍ରଚଳନ ଦ୍ୱାରା ପ୍ରଜାସମୂହର ଉପକାର ବଦଳରେ ଅପକାର ସାଧିତ ହେବ ତାହା ହେଲେ ସେ ଆପଣାର ଆଦେଶ ପ୍ରତ୍ୟାହାର କରିନେବାକୁ ତିଳମାତ୍ର କୁଣ୍ଠିତ ହେବେ ନାହିଁ । ଯେହେତୁ ପ୍ରଜାଙ୍କର ମଙ୍ଗଳ ହେଉ ଏହା ତାଙ୍କର ଆନ୍ତରିକ ଇଚ୍ଛା । ଏହି ହେତୁରୁ ଏ ଭାଷା ପରିବର୍ତ୍ତନ ସମ୍ବନ୍ଧେ ଆମ୍ଭମାନଙ୍କର ଯେଉଁ ଆପତ୍ତି, ଯେଉଁ ସନ୍ଦେହ ଅଛି ତାହା ସରଳ ଭାବରେ ବ୍ୟକ୍ତ କରୁଅଛୁଁ । ଏହି କ୍ଷୀଣକଣ୍ଠ ଶିଶୁ ହିତୈଷିଣୀର ଅସ୍ଫୁଟକରଣ କ୍ରନ୍ଦଧ୍ୱନି ବହୁ ଦୂରବର୍ତ୍ତୀ ରାଜସିଂହାସନ ନିକଟକୁ ଯାଇ ପାରିବ କି ନା ସେ ବିଷୟରେ ଆମ୍ଭମାନଙ୍କର ସନ୍ଦେହ ଥିଲେ ମଧ୍ୟ ଆମ୍ଭେମାନେ ଆପଣାର ବକ୍ତବ୍ୟ ପ୍ରକାଶ କରିବାରୁ କ୍ଷାନ୍ତହୋଇ ପାରିଲୁ ନାହିଁ । ଗବର୍ଣ୍ଣମେଣ୍ଟ ପ୍ରକୃତ ସଦୁପାୟ ଅବଲମ୍ବନ କରିଥିଲେ ଅବଶ୍ୟ ଏ କ୍ଷୁଦ୍ର କଣ୍ଠୋତ୍ଥିତ କ୍ଷୁଦ୍ର କଥା ମହାମାନ୍ୟଙ୍କ ଶ୍ରୁତିଗୋଚର ହୋଇ ପୁନର୍ବିଚାର ପ୍ରବୃତ୍ତିର ଉଦ୍ରେକ କରାଇପାରେ ।

ମାନ୍ୟବର ଚିଫ୍ କମିଶ୍ନର ବାହାଦୁର ସ୍ୱୀୟମନ୍ତବ୍ୟର ୨ୟ ପରିଚ୍ଛେଦରେ ଲେଖିଅଛନ୍ତି ଯେ ସମ୍ବଲପୁରରେ ବ୍ରିଟିଶରେସିଡେଣ୍ଟ ରହିବା ସମୟରେ ଏବଂ ତତ୍ପୂର୍ବେ ଉର୍ଦ୍ଦୁ, ପାର୍ଶୀ ଏବଂ ହିନ୍ଦି ଅଦାଲତ ଭାଷା ଥିବାର ପ୍ରମାଣ ଅଛି । ଆମ୍ଭେମାନେ ତାଙ୍କର ଏହି ଉକ୍ତି ସମର୍ଥନ କଲେ ମଧ୍ୟ ଏହା କହିବୁଁ ଯେ ତେତେବେଳେ ଏ ଦେଶର ଲୋକମାନେ ଅତ୍ୟନ୍ତ ମୂର୍ଖ ଏବଂ ବନ୍ୟଭାବାପନ୍ନ ଥିଲେ ସୁତରାଂ ସ୍ଥାନାନ୍ତରରୁ ଲୋକ ଆଣି ରାଜକାର୍ଯ୍ୟ ଚଳାଇବାକୁ ପଡୁଥିଲା; ଓଡ଼ିଶ୍ୟାରୁ ଲୋକଆଣିବାର ପ୍ରଶସ୍ତ ପନ୍ଥା ନ ଥିଲା , ଏତଦ୍ୱାରା ପ୍ରଜାସାଧାରଣଙ୍କର କୌଣସି ଅସୁବିଧା ହେଉନଥିଲା । ଏକଥା ଅନୁମାନ କରାଯାଇ ନ ପାରେ , ବରଂ ଏକଥା ବୋଲାଯାଇ ପାରେ ଯେ ଯେଉଁ ଯେଉଁ କାରଣରୁ ସମ୍ବଲପୁର ଓଡ଼ିଶ୍ୟାର ଅନ୍ତର୍ଗତ ହୋଇଥିଲା, ଭାଷା ବିଭ୍ରାଟ ତହିଁର ଅନ୍ୟତର କାରଣ । ଯେହେତୁ ସମ୍ବଲପୁର ଓଡ଼ିଶ୍ୟାନ୍ତର୍ଗତ ହେବା ସଙ୍ଗେ ସଙ୍ଗେ ସମ୍ବଲପୁରର ଅଦାଲତ ଭାଷା ଓଡ଼ିଆ ହୋଇଥିଲା । ତତ୍ପରେ ସମ୍ବଲପୁର ମଧ୍ୟପ୍ରଦେଶଭୁକ୍ତ ହେବାରୁ ସମ୍ବଲପୁରରେ ହିନ୍ଦିଭାଷା ପୁନଃ ପ୍ରଚଳିତ ହେଲା, ସେଥିହେତୁରୁ ପ୍ରଜାମାନଙ୍କର ଅସୁବିଧା ହୋଇଥିବା ଅବଶ୍ୟମ୍ଭାବୀ । ଯେହେତୁ ହିନ୍ଦି ଏକମାତ୍ର ଅଦାଲତ ଭାଷା ଥିଲା, ପ୍ରଜାମାନେ ହିନ୍ଦିର ଚର୍ଚ୍ଚା ନ କରି ଓଡ଼ିଆ ବ୍ୟବହାର କରୁଥିଲେ । ମହାମାନ୍ୟ ଚିଫ୍ କମିଶ୍ନର ବାହାଦୁରଙ୍କ କଥିତ ଦଲୀଲମାନ ତହିଁର ଜ୍ୱଳନ୍ତ ନିଦର୍ଶନ । ପରେ ହିନ୍ଦି ବ୍ୟବହାର ବିରୁଦ୍ଧରେ ଆବେଦନ ହୋଇଥିବା ଏବଂ ସ୍ଥାନୀୟ ଓଡ଼ିଆ ଭାଷା ଉଠିଯିବା ଆପତ୍ତି ଜନକ ଥିବାର ନିଷ୍ପତ୍ତି ହୋଇ କିଛି ଦିନ ପରେ ଓଡ଼ିଆ ଅଦାଲତ ଭାଷାରେ ପରିଣତ ହୋଇଥିବାର ମାନ୍ୟବରଙ୍କର ମନ୍ତବ୍ୟରୁ ଜଣାଯାଉଅଛି । ଯେତେବେଳେ ସମ୍ବଲପୁରର ଶିକ୍ଷିତ ସଂଖ୍ୟା ମୁଷ୍ଟିମେୟ ଥିଲା ତେତେବେଳେ ଓଡ଼ିଆ ଭାଷାର ଜୟ ହୋଇଥିଲା ବର୍ତ୍ତମାନ ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ ସୁପ୍ରସାଦରୁ ସର୍ବତ୍ର ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିବା ଏବଂ ଗ୍ରାମେ ଗ୍ରାମେ ଶିକ୍ଷିତ ଲୋକ ରହିଥିବା, ଓଡ଼ିଆଭାଷାର ଚର୍ଚ୍ଚା ବୃଦ୍ଧି ହୋଇ ଆସୁଥିବା ସମୟରେ ଉନ୍ନତ ସ୍ରୋତକୁ ଫେରାଇନେଲେ ଗଭର୍ଣ୍ଣମେଣ୍ଟଙ୍କର ବହୁକାଳର ଯତ୍ନ ପରିଶ୍ରମ ଏବଂ ବିପୁଳ ବ୍ୟୟର ଫଳ ବିଫଳ ହେବ ଅଥଚ ପ୍ରଜାମାନଙ୍କୁ ବିଶେଷ ଅସୁବିଧା ଭୋଗ କରିବାକୁ ପଡ଼ିବ ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଆମ୍ଭେମାନେ ପୂର୍ବରେ କହିଅଛୁ ଯେ ଗବର୍ଣ୍ଣମେଣ୍ଟ ଆମ୍ଭମାନଙ୍କ ମଙ୍ଗଳ ସକାଶେ ଏ ବିଧାନକରି ଅଛନ୍ତି ସତ୍ୟ କିନ୍ତୁ ଆମ୍ଭେମାନେ ହିନ୍ଦି ପଢ଼ି, ହିନ୍ଦିଭାଷାରେ ଲେଖାପଢ଼ି କରି ଯୋଗ୍ୟତାର ପରିଚୟ ଦେଇ ପଶ୍ଚିମମାନଙ୍କୁ ପଶ୍ଚାତ୍ପଦ କରି ଉନ୍ନତି ମାର୍ଗରେ ଅଗ୍ରସର ହେବା ବଡ଼ ସହଜ କଥା ନୁହେଁ ଯେତେବେଳେ ଆମ୍ଭେମାନେ ଚିରାଭ୍ୟସ୍ତ ମାତୃଭାଷାରେ ସମୁଚିତ ଉନ୍ନତ ଲାଭ କରିବାକୁ ସମର୍ଥନ ହୋଇପାରିନାହୁଁ ତେତେବେଳେ ଓଡ଼ିଆଭାଷା ସଂପୂର୍ଣ୍ଣ ପୃଥକ ଗୋଟାଏ ଭାଷାରେ ବ୍ୟୁତ୍ପତ୍ତିଲାଭ କରି ଉନ୍ନତି ମାର୍ଗରେ ଅଗ୍ରସର ହେବା କିପରି ସହଜ ବୋଧ କରିବୁଁ? ଇଂରେଜୀ ବିଦ୍ୟାଳୟର ସମପାଠୀ ଜଣେ ଇଂରେଜ ସନ୍ତାନ ସହିତ ଜଣେ ଭାରତସନ୍ତାନର ଇଂରେଜୀ ଜ୍ଞାନ ସମାନ ହେବା ଯେପରି ଅସମ୍ଭବ ପଶ୍ଚିମମାନଙ୍କ ସହିତ ପ୍ରତିଯୋଗୀତା ସ୍ଥାପନ କରି ଉନ୍ନତି ପାଇବା ଆମ୍ଭମାନଙ୍କ ପକ୍ଷେ ସେହିପରି ଅସମ୍ଭବବତ୍ ପ୍ରତୀୟମାନ ହୁଏ । ବଙ୍ଗଭାଷା ସହିତ ଓଡ଼ିଆ ଭାଷାର ଅତି ନିକଟ ସମ୍ବନ୍ଧ,ଏମନ୍ତ କି ସାମାନ୍ୟ କ୍ରିୟା ପରିବର୍ତ୍ତନରେ ଓଡ଼ିଆକୁ ବଙ୍ଗଳାରେ ବଙ୍ଗଳାକୁ ଓଡ଼ିଆରେ ପରିଣତ କରାଯାଏ । ଏପରି ବଙ୍ଗଳା ଭାଷାର ପୁସ୍ତକ ପତ୍ରିକା ଆମ୍ଭେମାନେ ପ୍ରତିନିୟତ ପାଠ କରି ମଧ୍ୟ ବଙ୍ଗଭାଷାରେ ଶୁଦ୍ଧ ରୂପେ ଲେଖାପଢ଼ା କରିବାକୁ ଅକ୍ଷମ ହେଉଅଛୁଁ , ହିନ୍ଦିତ ଓଡ଼ିଆଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର ଭାଷା ।

ମହିମାବର ଚିଫ୍ କମିଶନର XXXX ସ୍ୱୀୟମନ୍ତବ୍ୟର ୩ୟ ପରିଚ୍ଛେଦରେ ଲେଖିଅଛନ୍ତି ଯେ- ସମ୍ବଲପୁରରେ ପ୍ରଚଳିତ ଥିବା ଭାଷା, ଓଡ଼ିଶ୍ୟାର ଭାଷା ଏକ ନୁହଇ, ଏହା ଗୋଟିଏ ସ୍ଥାନୀୟ ଭାଷା ଯହିଁରେ କି ହିନ୍ଦି କିମ୍ବା ଛତିଶଗଡ଼ିଭାଷା ବିଶେଷ ମିଶ୍ରିତ ହୋଇଅଛି । ରେଲଓୟେ ହେତୁରୁ ହିନ୍ଦି ବ୍ୟବହାର ବଢ଼ୁଅଛି ।" ଏ ସମ୍ବନ୍ଧେ ଆମ୍ଭମାନଙ୍କ ବକ୍ତବ୍ୟ ଏହି ଯେ ଆମ୍ଭମାନଙ୍କର ମାନ୍ୟବର ଚିଫ୍ କମିଶନର ବାହାଦୂର ଓଡ଼ିଆ ଭାଷା ଆଦୌ ଜାଣନ୍ତି ନାହିଁ । ଆଉ ଉକ୍ତ ଭାଷା ଶିଖିବାକୁ ଆଉ ବୟସ ନାହିଁ ବୋଲି ଗତବର୍ଷ ଏହି ସମୟରେ ବାମଣ୍ଡାର ଦରବାରରେ ଶତଶତ ଲୋକଙ୍କ ସମକ୍ଷରେ ଦୁଃଖ ପ୍ରକାଶ କରିଥିଲେ । ତାଙ୍କର ଓଡ଼ିଆ ଭାଷା ସମ୍ବନ୍ଧୀୟ ବର୍ତ୍ତମାନ ମତବାଦ ପାଠକଲେ ଜଣାଯାଏ ଯେ ତାହାଙ୍କୁ ଅପରର କଥାରେ ନିର୍ଭର କରିବାକୁ ହୋଇଅଛି । ସେ ମଧ୍ୟ ମନ୍ତବ୍ୟର ୪ର୍ଥ ପରିଚ୍ଛେଦରେ ସେ କଥା ସ୍ୱୀକାର କରିଅଛନ୍ତି କିନ୍ତୁ ସମ୍ବଲପୁରର ଓଡ଼ିଆ ଭାଷା ବାସ୍ତବରେ ଗୋଟିଏ ସ୍ଥାନୀୟ ଭାଷା ନୁହଇ । ତେବେ ଓଡ଼ିଶାର ବିଶୁଦ୍ଧ ଭାଷା ଦୃଷ୍ଟିରେ ଏ ଜିଲ୍ଲାର ଓଡ଼ିଆ ଯାହା ସାମାନ୍ୟ ବିକୃତ ହୋଇଅଛି ତହିଁର କାରଣ ସମ୍ବଲପୁର ଓ ଓଡ଼ିଶ୍ୟାରୁ ବିଚ୍ଛିନ୍ନ ହୋଇ ରହିବା, ଭିନ୍ନଭାଷୀ ଲୋକଙ୍କ ସହବାସ ଲାଭ କରିବା ଏବଂ ବିଶୁଦ୍ଧ ଓଡ଼ିଆରେ ଉଚ୍ଚଶିକ୍ଷା ଲାଭ ନ କରିବା । ଗବର୍ଣ୍ଣମେଣ୍ଟ ଯଦ୍ୟପି ସମ୍ବଲପୁରକୁ ଓଡ଼ିଶ୍ୟାରୁ ପୃଥକ କରି ନ ଥାନ୍ତେ ଏବଂ ଏ ଜିଲ୍ଲାରେ ଉଚ୍ଚ ଶ୍ରେଣୀର ଓଡ଼ିଆ ବିଦ୍ୟାଳୟ ସ୍ଥାପନ କରି ଉପଯୁକ୍ତ ଶିକ୍ଷକ ଦ୍ୱାରା ଓଡ଼ିଶ୍ୟା ରୀତିରେ ବିଶୁଦ୍ଧ ଓଡ଼ିଆ ଭାଷାରେ ଲିଖିତ ପାଠ୍ୟପୁସ୍ତକ ଚଳାଉଥାନ୍ତେ ତେବେ ଏ ଅଞ୍ଚଳର ଭାଷା କଦାପି ମଳିନତା ପ୍ରାପ୍ତ ହୋଇନଥାନ୍ତା । ଏତେ ପ୍ରବଳ ପ୍ରତିବନ୍ଧକର ବିଦ୍ୟମାନତା ସ୍ଥଳ ଏ ଜିଲ୍ଲାର ଶିକ୍ଷିତ ଭଦ୍ର ଲୋକମାନେ ବିଶୁଦ୍ଧ ଓଡ଼ିଆଭାଷାରେ ଲେଖାପଢ଼ା କରୁଥିବାର ଦେଖାଯାଏ । ଶ୍ରୀଯୁକ୍ତ ଧରଣୀଧର ମିଶ୍ର , ଶ୍ରୀଯୁକ୍ତ ତ୍ରିଲୋଚନ ମିଶ୍ର , ଶ୍ରୀଯୁକ୍ତ ଲକ୍ଷ୍ମଣ ମିଶ୍ର ବିଦ୍ୟାରତ୍ନ ଶ୍ରୀଯୁକ୍ତ ଲକ୍ଷ୍ମଣ ମିଶ୍ର ଜ୍ୟୋତିଷାଳଙ୍କାର,ଶ୍ରୀଯୁକ୍ତ ରାମକୃଷ୍ଣ ମିଶ୍ର ପ୍ରଭୃତି ଏ ଜିଲ୍ଲାର ଅନେକ ଶିକ୍ଷିତ ଲୋକଙ୍କର ଲେଖା ଦେଖିଲେ କଥୋପକଥନ ଶୁଣିଲେ ସମ୍ବଲପୁରର ଓଡ଼ିଆକୁ ଗୋଟିଏ ସ୍ଥାନୀୟ ଭାଷା ବୋଲି କୁହାଯାଇ ନ ପାରେ । ବରପାଲି ନିବାସୀ ବାବୁ ଗଙ୍ଗାଧର ମେହେରଙ୍କ ରଚିତ 'ଇନ୍ଦୁମତୀ' ପାଠକଲେ ସମ୍ବଲପୁର ଭାଷା ଓଡ଼ିଶ୍ୟା ଭାଷା ମଧ୍ୟରେ କିଞ୍ଚିନ୍ମାତ୍ର ପାର୍ଥକ୍ୟ ଥିବାର ଜଣାଯିବ ନାହିଁ । ତେବେ ଏ କଥା ସତ୍ୟ ଯେ ସମ୍ବଲପୁର ବିଭାଗର କେତେଗୁଡ଼ିଏ ଲୋକ "ଲରିୟା" ନାମକ ଭାଷା ବ୍ୟବହାର କରନ୍ତି , ତାହା ସେମାନଙ୍କର ମାତୃଭାଷା । ଲରିୟା ଭାଷା ଓଡ଼ିଆ ଓ ହିନ୍ଦି ଭାଷାର ମିଶ୍ରଣରେ ଗଠିତ । କିନ୍ତୁ ଏମାନଙ୍କର ଅସଂଖ୍ୟ ପ୍ରତିବେଶୀ ଓଡ଼ିଆ ଥିବାରୁ, ସର୍ବଦା ଓଡ଼ିଆ ଭାଷା ଶୁଣୁଥିବାରୁ ଓଡ଼ିଆ ଭାଷା ସେମାନଙ୍କର ଅବୋଧ୍ୟ ନୁହଇ , କିନ୍ତୁ ପଶ୍ଚିମା ପ୍ରତିବେଶୀ ଅଭାବରୁ , ହିନ୍ଦି ସର୍ବତ୍ର ସର୍ବଦା ଶୁଣୁ ନଥିବାରୁ ସେମାନଙ୍କ ପକ୍ଷେ ହିନ୍ଦିଭାଷା ସର୍ବତ୍ର ଦୁର୍ବୋଧ୍ୟ ଅଟଇ । ରେଲଓୟେ ହେତୁ ଏ ଜିଲ୍ଲାରେ ହିନ୍ଦି ବ୍ୟବହାର ବଢ଼ୁଥିବାର ହେତୁ ପ୍ରଦର୍ଶନ କରି ଓଡ଼ିଆଭାଷାର ତିରୋଭାବ କରିବା ସୁସଙ୍ଗତ ହେଉନାହିଁ । ତାହାହେଲେ ଏହି ହେତୁ ପ୍ରଦର୍ଶନ କରି ଓଡ଼ିଶାରେ ମଧ୍ୟ ହିନ୍ଦିଭାଷା ପ୍ରଚଳନ

କରାଯାଇ ପାରେ ଯେହେତୁ ପ୍ରତିଦିନ ଜଗନ୍ନାଥ ଦର୍ଶନାର୍ଥୀ ଶତଶତ ପଶ୍ଚିମା ଓଡ଼ିଶା ମଧ୍ୟ ଦେଇ ଯାତାୟତ କରି ହିନ୍ଦିଭାଷାର ବ୍ୟବହାର ବୃଦ୍ଧିକରୁଅଛନ୍ତି, କିନ୍ତୁ ଆମ୍ଭେମାନେ ଯେତେଦୂର ଜାଣୁଁ ତହିଁରେ ନିର୍ଭର କରି କହିପାରୁଁ ଯେ ତଦ୍ୱାରା ହିନ୍ଦିଭାଷାର ବ୍ୟବହାର ବୃଦ୍ଧି ନ ହୋଇ ହାସ୍ୟରସୋଦ୍ଦୀପକ ଏକ ନୂତନ ଭାଷାର ସୃଷ୍ଟି ହେଉଅଛି । ଅନେକ ଶିକ୍ଷିତ ଲୋକ ମଧ୍ୟ ହିନ୍ଦିଭାଷାରେ ଶୁଦ୍ଧରୂପେ କହିବା ଏବଂ ମନର ଭାବ ସ୍ପଷ୍ଟ ରୂପେ ବ୍ୟକ୍ତ କରିବାକୁ ଅପାରଗ ହୋଇଥାନ୍ତି । ଏପରି ସ୍ଥଳେ ହିନ୍ଦିଭାଷା ବ୍ୟବହାର ବଳବତର ରଖିଲେ ଲୋକମାନେ ବିଶଦ ରୂପେ ମନୋଭାବ ବ୍ୟକ୍ତ କରିବାକୁ ଅପାରଗ ହେବେ । ସୁତରାଂ ଉନ୍ନତିରେ ଆଘାତ ପଡ଼ିବ ।

ଚିଫ୍ କମିଶ୍ନର ବାହାଦୁରଙ୍କ ମନ୍ତବ୍ୟରେ ୪ର୍ଥ ପରିଚ୍ଛେଦରୁ ଜଣାଯାଏ ଯେ "ସେ ଭାଷା ପରିବର୍ତ୍ତନ ବିରୁଦ୍ଧରେ ଦରଖାସ୍ତମାନ ପାଇଅଛନ୍ତି ଏବଂ ସମ୍ବଲପୁରର ଅବସ୍ଥାଭିଜ୍ଞ କେତେକ ଅଫିସରଙ୍କ ଠାରୁ ଅବଗତ ହୋଇଅଛନ୍ତି ଯେ ସମ୍ବଲପୁରରେ ଯେତେବେଳେ ହେଲେ ହିନ୍ଦି ଚଳାଇ ହେବ ଏବଂ ଉକ୍ତଭାଷା ପ୍ରଚଳନ ହେତୁ ଅସୁବିଧା ମଧ୍ୟ ଜନ୍ମିବ କିନ୍ତୁ ଉପକାର ଦୃଷ୍ଟିରେ ତାହା ଅତି ସାମାନ୍ୟ" ଆମ୍ଭେମାନେ ଏ ସ୍ଥଳେ ଏହି ଆପତ୍ତି କରୁଅଛୁଁ ଯେ ଭାଷା ପରିବର୍ତ୍ତନ ସକାଶେ କେତେକ ଅଫିସରଙ୍କ ମତନେବା ସଙ୍ଗେ ସଙ୍ଗେ ଏ ଜିଲ୍ଲାର ପ୍ରସିଦ୍ଧ ବ୍ୟକ୍ତିମାନଙ୍କର ଏବଂ ଓଡ଼ିଶାବାସୀ ଓଡ଼ିଆ ଭାଷା ବ୍ୟୁତ୍ପନ୍ନ, ବହୁଦର୍ଶୀ ବ୍ୟକ୍ତିମାନଙ୍କର ମତ ନେଇଥିଲେ ଆଲୋଚ୍ୟ ପ୍ରସ୍ତାବର ନିରପେକ୍ଷ ନିଷ୍ପତ୍ତିପକ୍ଷେ ଯଥେଷ୍ଟ ସାହାଯ୍ୟ ମିଳିଥାନ୍ତା ଏବଂ ଆମ୍ଭମାନଙ୍କର ମନ ମାନିଥାନ୍ତା । ପରାମର୍ଶ ଦାତା ଅଫିସରମାନେ ମଧ୍ୟ ଭାଷା ପରିବର୍ତ୍ତନ ହେତୁ ଅସୁବିଧା ଘଟିବା କଥା ଅଙ୍ଗୀକାର କରିଅଛନ୍ତି କିନ୍ତୁ ସେମାନେ ଭବିଷ୍ୟତ୍‌କୁ ଭଲହେବାର କହି ଆମ୍ଭମାନଙ୍କର ମଙ୍ଗଳ ନିମନ୍ତେ ହିନ୍ଦିଭାଷା ଚଳାଇବାକୁ ମତବ୍ୟକ୍ତ କରିଅଛନ୍ତି । ସେମାନେ ଆମ୍ଭମାନଙ୍କର ମଙ୍ଗଳ କାମନାକୁ ମନରେ ସ୍ଥାନ ଦେଇଥିବା ହେତୁ ସେମାନଙ୍କୁ ମୁକ୍ତ କଣ୍ଠରେ ଧନ୍ୟବାଦ ଦେଉଅଛୁଁ କିନ୍ତୁ ହିନ୍ଦି ଭାଷାରେ ପାରଦର୍ଶୀତା ଲାଭ କରି ପଶ୍ଚିମାମାନଙ୍କ ସମକକ୍ଷ ହୋଇ ଉନ୍ନତି ଲାଭ କରିବାର ବିଶ୍ୱାସ ଆମ୍ଭମାନଙ୍କ ମନରେ ସ୍ଥାନ ପାଉ ନାହିଁ ଅଧିକନ୍ତୁ ଏ ଭାଷା ପରିବର୍ତ୍ତନ ହେତୁ ଆମ୍ଭମାନଙ୍କର ଅସୁବିଧା ହେବାକଥା ଅଭ୍ରାନ୍ତ ସତ୍ୟ । ଓଡ଼ିଆ ଭାଷା ପ୍ରଚଳନ ହେତୁ ରାଜକାର୍ଯ୍ୟରେ ଯେଉଁ ଅସୁବିଧା ଘଟୁଅଛି ଗବର୍ଣ୍ଣମେଣ୍ଟ ଭାଷା ପରିବର୍ତ୍ତନ ନ କରି ମଧ୍ୟ ତହିଁର ପ୍ରତିକାର କରିପାରନ୍ତି,ତାହାଙ୍କ ପକ୍ଷେ ଏହା କିଛି ବଡ଼କଥା ନୁହଇ କିନ୍ତୁ ତଦ୍ରୂପ କୌଣସି ଉପାୟ ଅବଲମ୍ବିତ ହୋଇ ଥିବାର ଜଣାଯାଉ ନାହିଁ । ଯାହାକି ଭାଷା ପରିବର୍ତ୍ତନ ପୂର୍ବରୁ ପରିକ୍ଷିତ ହେବାର ଉଚିତ ବୋଧ ହେଉଅଛି । ସମ୍ବଲପୁର ଦରଖାସ୍ତକାରିମାନେ ଓଡ଼ିଆ ଭାଷା ବ୍ୟବହାର ସ୍ଥିରତର ରହିବା ସକାଶେ ଆବେଦନ କରିଥିଲେ । ଏଥିରେ ଏ ପ୍ରଦେଶର ରାଜକାର୍ଯ୍ୟରେ ବିଘ୍ନ ଘଟିବାର ଆଶଙ୍କା ହେଲେ ଏ ଜିଲ୍ଲାକୁ ଓଡ଼ିଶ୍ୟା ହାତରେ ଦେବାର ଅଭିପ୍ରାୟ ମଧ୍ୟ ବ୍ୟକ୍ତ କରିଥିଲେ । ଏତଦ୍ୱାରା ଜିଲ୍ଲାର ମାତୃଭାଷା ସ୍ଥିର ରହନ୍ତା ରାଜକାର୍ଯ୍ୟର ଅସୁବିଧା ଅନ୍ତରିତ ହୁଅନ୍ତା ଏବଂ ଓଡ଼ିଆମାନଙ୍କର ଓ ଓଡ଼ିଆଭାଷାର ଉନ୍ନତି ସାଧିତ ହୁଅନ୍ତା ଏବଂ ଗବର୍ଣ୍ଣମେଣ୍ଟ କର୍ମଚାରୀମାନଙ୍କର ଆମ୍ଭମାନଙ୍କ ହିତସାଧନ ସଂକଳ୍ପ ବିଫଳ ହୁଅନ୍ତା । ମଧ୍ୟ ପ୍ରଦେଶ ଯେଉଁ ମହାରାଣୀଙ୍କର ରାଜ୍ୟ, ଓଡ଼ିଶା ମଧ ସେହି ମହାରାଣୀଙ୍କ ରାଜ୍ୟ, ସୁତରାଂ ପ୍ରଜାମାନଙ୍କର ମଙ୍ଗଳ ଏବଂ ରାଜକାର୍ଯ୍ୟରେ ସୁବିଧା ସକାଶେ ଏ ଖାରଜ ଦାଖଲ ପ୍ରସ୍ତାବ ଆପତ୍ତିଯୋଗ୍ୟ ବିବେଚିତ ହେଉନାହିଁ । ଓଡ଼ିଶ୍ୟା ଓ ମଧ୍ୟପ୍ରଦେଶ ରେଳପଥଦ୍ୱାରା ସଂଯୁକ୍ତ ହେବାର ଆୟୋଜନ ଲାଗିଥିବା ଏବଂ ଓଡ଼ିଶ୍ୟା ଓ ମଧ୍ୟ ପ୍ରଦେଶ ମଧ୍ୟରେ ଦୁଇଟି ପ୍ରଶସ୍ତ ରାଜପଥ ଓ ସଦାନାବ୍ୟ ମହାନଦୀ ରହିଥିବା ସ୍ଥଳ ଏ ଜିଲ୍ଲା ଓଡ଼ିଶ୍ୟାଭୁକ୍ତ ହେଲେ ଆପତ୍ତି ଅସୁବିଧାର ସମ୍ଭାବନା ନାହିଁ , ପ୍ରଜାମାନେ ମଧ୍ୟ ଏହି ପ୍ରାର୍ଥନା କରୁଅଛନ୍ତି ।

୫,୬,୭ ପରିଚ୍ଛେଦ ସମ୍ବନ୍ଧେ ବର୍ତ୍ତମାନ କୌଣସି ମନ୍ତବ୍ୟ ଦେବାରୁ କ୍ଷାନ୍ତ ହେଲୁଁ ।

ଉପସଂହାର ସ୍ଥଳେ ବକ୍ତବ୍ୟ ଏହି ଯେ ଏହି ମାତୃଭାଷାର ତିରୋଭାବ ସମ୍ବାଦରେ ଆମ୍ଭେମାନେ xxxx ଦୁଃଖିତ ହୋଇଅଛୁଁ । ଜଗତରେ ଏପରି xxxx ଜାତି ନାହିଁ ଯେଉଁଥିରେ ଆପଣାର ମାତୃଭାଷା ତିରୋଭାବ ସମ୍ବାଦରେ ଆନ୍ତରିକ ଦୁଃଖିତ ନ ହେବେ । ମାତୃଭାଷା ପ୍ରତି ଲୋକମାନଙ୍କର ଭାରି ମମତା, ବିନା ଶିକ୍ଷାରେ ମାତୃଭାଷା ସାହାଯ୍ୟରେ ଯେପରି ମନୋଭାବ ବ୍ୟକ୍ତ କରିହେବ ବହୁ ଶିକ୍ଷାରେ ମଧ୍ୟ ଭିନ୍ନଭାଷାର ସାହାଯ୍ୟ ନେଇ

ତଦ୍ରୂପ ବ୍ୟକ୍ତ କରିହେବ ନାହିଁ; ଇତ୍ୟାଦି କାରଣରୁ ଲୋକମାନେ ମାତୃଭାଷା ବିନିମୟରେ ବିପୁଳ ସମ୍ପତ୍ତି; ଅପାର ସମ୍ମାନ ଲାଭ କରିବାକୁ ମଧ୍ୟ ଅଭିଳାଷ କରନ୍ତି ନାହିଁ । ଏପରି ସ୍ଥଳେ ଓଡ଼ିଆ ଭାଷା ବିଲୋପ ସମ୍ବାଦରେ ଆମ୍ଭେମାନେ ବ୍ୟଥିତ ପ୍ରାଣ ହୋଇଥିବା କଥା ବିଚିତ୍ର ନୁହଇ , କିନ୍ତୁ ରାଜଆଜ୍ଞା ଶିରୋଧାର୍ଯ୍ୟ । ମହାମାନ୍ୟ ଚିଫ୍ କମିଶନର ବାହାଦୁର ଆମ୍ଭମାନଙ୍କର ଏ ପ୍ରଦେଶର ଲାଟ,-ଆମ୍ଭମାନଙ୍କର ରକ୍ଷକ, ଅବନତ ମସ୍ତକରେ ତାଙ୍କର ଆଜ୍ଞାପାଳନ କରି ଆସୁଅଛୁଁ ଏବଂ ଚିରଦିନ କରିବୁଁ । ପୁଣି ମନର ଭାବ ଗୋପନ ନ କରି ଶାନ୍ତ ବିନିତ ଭାବରେ ଆପଣା ଆପଣାର ଅଭାବ ଅସୁବିଧାର କଥା ତାହାଙ୍କୁ ଜଣାଇବୁଁ ଏବଂ ଜଣାଉଅଛୁଁ । ଏପରି ବିଷୟ ଜ୍ଞାପନ କରିବା ସକାଶେ ନ୍ୟାୟପରାୟଣ ବ୍ରିଟିଶ ଗବର୍ଣ୍ଣମେଣ୍ଟ ଆପଣାର ପ୍ରଜାମଣ୍ଡଳୀଙ୍କୁ ସ୍ୱାଧୀନତା ପ୍ରଦାନ କରିଅଛନ୍ତି, ସେହି ସ୍ୱାଧୀନତା ଲାଭ କରିଥିବା ହେତୁ ଆମ୍ଭେମାନେ କ୍ଷୁଦ୍ର ପ୍ରାଣୀ ହୋଇ ମଧ୍ୟ ଯେଉଁ ମହାନୁଭବ ପ୍ରାୟ ୮୭ ହଜାର ବର୍ଗମାଇଲ ଭୂମିର ଅଧିପତି, ଏବଂ ପ୍ରାୟ ଏକ କୋଟୀ ୩୦ଲକ୍ଷ ପ୍ରଜା ଯାହାଙ୍କର ଇଙ୍ଗିତରେ ଚାଳିତ ହେଉଅଛନ୍ତି ସେହି ପ୍ରବଳ ପ୍ରତାପଶାଳୀ ମହାମହିମ ଚିଫ୍‌କମିଶନର ବାହାଦୁରଙ୍କ ଆଦେଶ ସମ୍ବନ୍ଧେ ଆଜି ଆପଣାର ମନୋଭାବ ଅସଙ୍କୁଚିତ ଚିତ୍ତରେ ପ୍ରକାଶ କରିବାକୁ ସାହାସୀ ହେଲୁଁ । ଏହି ଗୁଣ ହେତୁ ପ୍ରଜା ସାଧାରଣ ବ୍ରିଟିଶ ଶାସନ ପ୍ରତି ଅନୁରକ୍ତ ଏ କଥା କହିବା ବାହୁଲ୍ୟ ମାତ୍ର । ଆମ୍ଭେମାନେ ମହାମାନ୍ୟ ଚିଫ୍ କମିଶନର ବାହାଦୁରଙ୍କ ନ୍ୟାୟପରାୟଣତା ଏବଂ ପ୍ରଜାବତ୍ସଳତା ସ୍ମରଣ କରି ଆଶା କରୁଅଛୁଁ ଯେ ସେ ଆପଣାର ଅନୁନ୍ନତ ଅବସ୍ଥାପନ୍ନ ପୁତ୍ର ସ୍ଥାନୀୟ ଓଡ଼ିଆ ପ୍ରଜାମାନଙ୍କୁ ମାତୃ ବିଚ୍ଛେଦ ସହ୍ୟ କରିବାକୁ ନ ଦେଇ ପ୍ରାଚୀନ ନିଷ୍ପତ୍ତିର ପୁନରାବୃତ୍ତି କରି କହନ୍ତୁ ଯେ "ସ୍ଥାନୀୟ ଓଡ଼ିଆ ଭାଷା ଉଠିଯିବା ଆପତ୍ତିଜନକ ଅଟେ ।" ବା "ସମ୍ବଲପୁରକୁ ଓଡ଼ିଶ୍ୟାଭୁକ୍ତ କରାଯାଉ ।" ଆମ୍ଭେମାନେ ନୀତିନିପୁଣ, ଦୟାଶୀଳ ଚିଫ୍ କମିଶନର ଉଡବର୍ଣ୍ଣ ବାହାଦୁରଙ୍କୁ ଆପଣାର ରକ୍ଷକ ରୂପେ ପାଇ ମନରେ ଅନେକ ଉଚ୍ଚ ଆଶା ପୋଷଣ କରିଅଛୁଁ । ତାଙ୍କର ଶାସନ କାଳରେ ଆମ୍ଭମାନଙ୍କୁ ମନୋକଷ୍ଟ ମାତୃ-ବିଚ୍ଛେଦ, ସହ୍ୟ କରିବାକୁ ନ ହେଉ ଏବଂ ସଦାଶୟ ଉଡବର୍ଣ୍ଣ ଦୀର୍ଘଜୀବୀ ଏବଂ ଯଶସ୍ୱୀ ହେଉନ୍ତୁ, ତାଙ୍କ ପରି ରକ୍ଷକ ଆମ୍ଭେମାନେ ସର୍ବଦା ଲାଭକରୁଁ ଏଥି ସକାଶେ ଆମ୍ଭେମାନେ କାୟ ମନୋବାକ୍ୟରେ ଜଗଦୀଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛୁଁ ।

*ଭା୬ଗ, ସଂ୩୭ଖ୍ୟା, ୧୩।୨।୧୮୯୫*

## ଭାଷା ବିଭ୍ରାଟ

ଉତ୍କଳ ଭାରତି ମାଗୋ ତୋର କଳେବର ।
ବାସନ୍ତି ପର୍ବରେ ଆଜି କାହିଁକି କାତର । ୧।।
ଦଶଭାଷୀ ଶିଶୁ ତୋର ଆଦରରେ ଆସି ।
ତୋଷୁଛନ୍ତି ସଭ୍ୟଙ୍କୁ ଗୋ ଗାଇ ଗୀତ ରାଶି । ୨।।
ଶୁଣିଛି ଶୁଣିଛି ମାତଃ ତୋ ସମ୍ବଳ କଥା !
ସମ୍ବଲ ପୁରେକି ନାହିଁ ତୋ ସମ୍ବଳ ମଥା । ୩।।
ଉତ୍କଳ ଭାରତ ତୋତେ ଉତ୍କଳୁଁ ଅନ୍ତର ।
କରିବାକୁ ଭାଳୁଥିଲେ ବଙ୍ଗାଳୀ ମନ୍ତର ।୪।।
ବାବୁଶ୍ରୀ ବିଚିତ୍ରାନନ୍ଦ ବିଚିତ୍ର ବିଚାର ।
କଲେ ଉତ୍କଳରେ ଥାପି ତୋର ମୁଦ୍ରା ଗାର । ୫।।
ଢେଙ୍କାନାଳ କଳାକାର ବାବୁ ବନମାଳୀ ।
ଆଦି ଯେତେ ସଭ୍ୟବୃନ୍ଦ ପାଠକଲେ ଭାଳି । ୬।।
ସେ-ଶୁକ୍ଳ ପ୍ରତିପତ୍ତିଥି ତୋର ରୂପ ରାଶି ।
ବଢ଼ାଇ ଉତ୍କଳେ ଆଜି ହେଲା ପୂର୍ଣ୍ଣମାସୀ । ୭।।

ପୁଣିକି ଆସିବ ସେହି ନିଦାରଣ କୁହୁ।
କାକ କୁଳ ବୁଡ଼ୀ ପିକଡାକେ କୁହୁକୁହୁ । ୮॥
କୃଷ୍ଣପକ୍ଷ କୋକିଳର କୃଷ୍ଣପକ୍ଷେ ଶ୍ରଦ୍ଧା ।
ହିନ୍ଦିଏ ଲୋଡନ୍ତି ମାଗୋ! ଓଡ଼ିୟାକି ଅଦ୍ଧା । ୯॥
ସମ୍ବଳ ବିହୀନ କାଳେ ସପତ୍ନୀ ବଙ୍ଗଳା ।
ପଳାଇଛି ଉତ୍କଳରୁ ମୁଖକରି କଳା । ୧୦॥
ଆଜିକି ସମ୍ବଲପୁରେ କମ୍ବଳ ଘୋଡ଼ାଇ ।
ପକାଇଛି ଅଳସୁଆ ପୁଅଙ୍କୁ ସୁଆଇ । ୧୧॥
ବଜା ବଜା ବୀଣାତୋର ଜାଗନ୍ତୁ ସନ୍ତାନ ।
ଉତ୍କଳଜନ ରଖିବେ ଗୋ ନିଶ୍ଚେ ତୋର ମାନ ।୧୨ ॥
ବାମଣ୍ଡାର ଦରବାରେ ଉତ୍କଳଜନ ବୀର ।
ଓଡ଼ିୟାରେ ନ ଦେବାରୁ ଉତ୍ତର ଅଧୀର । ୧୩॥
ମୁକ୍ତ କଣ୍ଠେ ରହିଥିଲେ ମୁଁ ହେଲିଣି ବୃଦ୍ଧ ।
ନୋହିଲେ ଓଡ଼ିୟା ପଢିବାକୁ ମୋର ହୃଦ । ୧୪॥
ସେ ଉଦାର-ଚରିତଙ୍କ ଶାସନ ସମୟ ।
ନୁହଇ ସମ୍ଭବ ମାଗୋ ତୋର ହେବା କ୍ଷୟ । ୧୫॥
ନୁହନ୍ତି ଜଟିଳ ସେତ ଭାରତର ନର ।
ତାଙ୍କ- ମୁଖୁଁ ନିର୍ଗତକି କୁଟିଳ ଉତ୍ତର । ୧୬॥
ଭାଷା ସଙ୍କୋଚନ ନୁହେ ସାଧାରଣ ନୀତି ।
ଇତିହାସେ ରହିଯିବ କଳଙ୍କର ଭିତ୍ତି । ୧୭॥
ବାରେ ମାତ୍ର ତୋର ପୁତ୍ର କରନ୍ତୁ ପ୍ରାର୍ଥନା ।
ଦେଖିବୁ ଉତକଳଜନ କେଡ଼େ ମହାମନା ।୧୮॥
ପରିଶେଷେ ଏକକଥା ଉତ୍କଳ ଭାରତି ।
ସମ୍ବଲପୁରରେ ନାହିଁ ତୋହର ଭକତି । ୧୯॥

ପଣ୍ଡିତ ଶ୍ରୀ ଭାଗୀରଥି ରଥ

*ଭା୬ଗ, ସଂ୩୭ଖ୍ୟା, ୧୩/୨/୧୮୯୫*

## ସମ୍ବଲପୁରରୁ ଓଡ଼ିଆ ଭାଷାର ଆଦର ଲୋପ ହେବା ସମ୍ବାଦରେ ଜନ୍ମଭୂମିର ଉକ୍ତି ।

(୧)

ଯାଇଅଛି କେତେ ଦିନ ଅବ୍ଦମାସ
ସହିଅଛି କେତେ ବିପଦର ତ୍ରାସ
ମହାରାଷ୍ଟ୍ର କରେ ଲାଞ୍ଛନା ଅଶେଷ
ଯା ସ୍ମରଣେ ହୃଦ ହୁଅଇ ଘାରି ।
ମାନ ଅପମାନ ନ କରି ଭାବନା
ଯାର ଲାଗି ମୋର ଲାଞ୍ଛନା ଗଞ୍ଜନା
ଯାର ହେତୁ ମୋର ବ୍ରିଟିସ ଅର୍ଚ୍ଚନା
ଜଗିଥିଲି ତାଙ୍କୁ ସର୍ବସ୍ୱ ହାରି ॥

(୨)

ଥିଲି ସହି ଦବୁ କପାଳ ଆଦରି
ଆଶା କେବେ ଦୟା କରିବେ ବା ହରି
ହେବେ ପୁତ୍ରେ ମୋର ସ୍ୱାଧୀନ ବିହାରି
ହୋଇବେ ବା ଖ୍ୟାତି ଶୀଳ ଜଗତେ ।
ପଢ଼ିପାଠଶାଠ ମୋର ପୁତ୍ରଗଣ
କରିବେ ବା ଦେଶ ଦୁର୍ଗତି ମୋଚନ
ରାଜଦ୍ୱାରେ ଲଭି ଆତୁଳ ସମ୍ମାନ
ହେବେ ବା ପୂଜିତ ଏଭୂ-ଭାରତେ ।

(୩)

ବାଞ୍ଛା ଅନୁକୂଳେ ଦେଖି ସୁଲକ୍ଷଣ
କରୁଥିଲି ପୂର୍ବ ଦୁଃଖ ବିସ୍ମରଣ
ଭାବିଥିଲି ଦୁଃଖ ତମ ଅଳ୍ପ କ୍ଷଣ-
ପରେ ପଳାଇବ ଅତିତ କେତେ ।
ଦରିଦ୍ରର ବାଞ୍ଛା ନୁହେଁ ପୁରିବାର
କରୁଥିଲେ ମନେ ଜଗତି ବିହାର
କର୍ମନେଇ କ୍ଷେତ୍ରେ ବଢ଼ାଏ ନୀବାର
ଦୁଃଖୀ ଭାଗ୍ୟେ ସୁଖନାହିଁ କିଛିତେ ।

(୪)

ଆଶାର ଆଶ୍ୱାସେ ହୋଇ ପ୍ରତାରିତ
ଭାବି ଭବିଷ୍ୟତ ମୋର ଉଜ୍ଜ୍ୱଳିତ
ହୋଇଥିଲା ପ୍ରେମେ ତନୁ ପୁଲକିତ
ଭାଙ୍ଗିଗଲା ଏବେ ସୁଖ ସ୍ୱପନ ।
ମୋତେ ଦୁଃଖ ଦେବା ଲାଗି ତୀବ୍ର ଭାବେ
ଦେଖକି ଦେଇଛି ଏ ଭାରତ ଭବେ
ଖ୍ରୀଷ୍ଟାବ୍ଦ ଅଠରଶ ପଞ୍ଚାନବେ
ମୋ ପାଇଁ କି ଏହି ଅବ୍ଦ ସୃଜନ ?

(୫)

ମୋର ଯୋଗ୍ୟତମ ସୁତ ବାସୁଦେବ-
ଶ୍ରୀ ସୁଢଳ ଦେବ ଉତ୍କଳ ଗୌରବ
ଲାଭ କଲେ ନବ ସମ୍ମାନ ବିଭବ
ଭାବିଲି ଏ ଅବ୍ଦ ହେବ ଶୁଭଦ ।
ଏ ଭାବନା ମୋର ହୋଇଲା ବିଫଳ
ନବ ଅବ୍ଦ ହେଲା ମୋହ ପକ୍ଷେ କାଳ
ମଣିଶିର ଫଣୀପରି ଏ ଗରଳ-
ଉଗାରି ଘାରୁଛି, ହେଲା ଦୁଃଖଦ ।

(୬)

ଅଦ୍ଧ.ଧରି ଥିଲା ମୁଖରେ ପିୟୁଷ
ପେଟେଭରା ତାର କାଳକୁଟ ବିଷ
କରିଦେଲାଣି ସେ ମୋତେ ହତ ଶ୍ୱାସ
ଏହା ହେତୁ ହେଲା ପ୍ରାଣ ସଙ୍କଟ ।
ଜନନୀ ବତ୍ସଳ ସର୍ବଯୋଗ୍ୟ ସୁତ
ବାଦବିସମ୍ବାଦ ହୋଇଣ ବିସ୍ମୃତ
ସର୍ବେ ମିଳି ଶୀଘ୍ର ହୋଇ ଏକ ମତ
ରକ୍ଷା କର କାଳ ଅତି ବିକଟ ।

(୭)

ପରଛିଦ୍ରାନ୍ୱେଷୀ- ନିପଟ ଲମ୍ପଟ
ସପତଣୀସୁତେ କରିଣ କପଟ
ଘଟାଇଲେ ଆଣି ଏ ବ୍ୟାଧି ଉତ୍କଟ
କରକର ସୁଚିକିତ୍ସା ସତ୍ୱର ।
ନୁହେଁ ପ୍ରାଣ ରଙ୍କ ନାହିଁ ମୋର ଡର
ତୁମ୍ଭ ଲାଗି ସିନା ଶଙ୍କା ଗୁରୁତର
ସପତଣୀ ସୁତେ ଦେବେଟିକାର
ଲାଜେ ଦୁଃଖେ ହେବ ବୋଲି କାତର ।

(୮)

ବାସୁଦେବ ନୃପ ଉତ୍କଳ ମଣ୍ଡନ
ତୁମ୍ଭେପରା ବିଶ୍ୱ କଲ୍ୟାଣ ଭାଜନ
ମୋ ଦୁଃଖରେ କିପାଁ ନୁହ ମ୍ରିୟମାଣ
କହକହ ମୋର ଅଞ୍ଚଳ ନିଧି ।
କି କର ସଚ୍ଚିଦାନନ୍ଦ ନୃପସୁତ
ତୁମ୍ଭେ ପରା ଜଣେ ଭାରତି ଭକତ
ଗାଥ ଦେଖି ଥରେ ମୋ ଦୁଃଖ ଚରିତ
ଯହିଁରେ ବାସନା ହେବ ମୋ ସିଦ୍ଧି ।

(୯)

ଗାଥ ଗାଥ, ଦୁଃଖେ, ଦେବୀ ହିତୈଷିଣୀ
ଯେ ଲାଞ୍ଛନା ଦେଉଅଛି ସପତଣୀ
ମୋ ସୁତେ ଶୁଣନ୍ତୁ ସେ ଦୁଃଖ କାହାଣୀ
ପିତା ପାଦେ ଯାଇଁ କରନ୍ତୁ ଅଳି ।
ଶୁଣ ବାଲ୍ୟ କବି ବାବୁ ଦାମୋଦର
ଯା ପ୍ରସାଦେ ଆଜି କବି ଆଖ୍ୟା ତୋର
ତା ବିପଦେ ତୁହି ନୋହୁକି କାତର
କି- ବିପଦ ଅଛି ଏଥିରୁ ବଳି ?

(୧୦)

ଗାଅ ଗାଅ ଆଉଥରେ ଗଙ୍ଗାଧର
ନାହିଁ ବଳି ଏଥୁଁ ଦୁଃଖ ଗୁରୁତର
ପଶୁ ସେ ବାରତା କର୍ତ୍ତାଙ୍କ କର୍ଣ୍ଣରେ
ତହିଁରେ ସୁଫଳ ଫଳିବା ପାରେ
କି କରୁଅଛ ବସି ଜ୍ୟୋତିଷାଳଙ୍କାର
ଫିଟାଇଣ ପୋଥି କରତ ବିଚାର
ଏ ବିପଦୁ ମିଳିପାରେ କି ଉଦ୍ଧାର
ଜ୍ୟୋତିଷି- ଯୋଗ୍ୟତା-ଦେଖାଅବାରେ।

(୧୧)

ହେ ପଣ୍ଡିତ ମଣି କୃଷ୍ଣ ଚିନ୍ତାମଣି
ମିଶ୍ର ତ୍ରିଲୋଚନ ଶିକ୍ଷିତ ଅଗ୍ରଣୀ
ସ୍ୱଦେଶ ହିତୈଷୁ ଲକ୍ଷ୍ମଣ ଧରଣୀ
ଶ୍ରୀ ଗୋବିନ୍ଦ ବାସୁଦେବ ମୋହନ
ନୀଳାମ୍ବର ମଧୁ–ସୁଦନ ଶ୍ରୀରାମ
ବଳଭଦ୍ର ସତ୍ୟବାଦୀ ପ୍ରଶୁରାମ
ଦାଶରଥି ବଇ-କୁଣ୍ଠ ଡୃପାରାମ
ଅଗ୍ରସର ହୁଅ ବ୍ରଜମୋହନ ।

(୧୨)

ଜନାର୍ଦ୍ଦନ ବାଳକୃଷ୍ଣ ଆଦି ମୋର
ଅଛରେ ଯେତେକ ସୁଯୋଗ୍ୟ କୁମର
ଛାଡ଼ିସବୁ କାର୍ଯ୍ୟ ହୁଅ ଅଗ୍ରସର
କର ମାତୃଦେବୀ ମୁଖ ଉଜ୍ଜ୍ୱଳ।
ରାଜା ରାମଚନ୍ଦ୍ର ଶ୍ରୀ ରଘୁ କିଶୋର
ରାୟଗଡ଼ନୃପ ଭୂମ ବାହାଦୁର
ଚିହ୍ନନ୍ତି ତୁମ୍ଭଙ୍କୁ ପ୍ରଦେଶ ଈଶ୍ୱର
x x x x x x x x ।

(୧୩)

ପଦ୍ମପୁର ପତି ସିଂହ ହରିହର
ପୁତ୍ର ମଧ୍ୟେ ତୁହିଁ ରାୟବାହାଦୁର
ମାତା ଲାଗି କରି ଯତ୍ନ ଏକ ବାର
କର ବାହାଦୁର ଆଖ୍ୟା ସଫଳ।
କୁଳାବିରା ପତି କର କଉଶଳ
ସଙ୍ଗେ ଘେନି ସମ ଭୂମିପତି ଦଳ
ଜାତୀୟ ପ୍ରତିଜ୍ଞା ତୁମ୍ଭର ଅଟଳ
ଦେଖିବା ତୁମ୍ଭର ବୁଦ୍ଧିର ବଳ।

(୧୪)

ରାଜପୁର ପତି ସାହ୍ର ମଧୁକର
ଏ ବିପଦେ ତୁମ୍ଭେ ନୁହ କି କାତର
ନମଣ କି ଏହା ଦୁଃଖ ଗୁରୁତର
ତେଜ ତେଜ ମନୁ ଚିର ଜଡ଼ତା
କହ ପ୍ରଦେଶର ପତୀଙ୍କୁ ସଧୀରେ
"ଦୁଃଖିତ ସକଳେ ଏ ରାଜ ବିଧିରେ
ଚଳୁ ଉତ୍କଳଭାଷା ପ୍ରାଚୀନ ରୀତିରେ"
ତେବେ ଜଣାଯିବ ତବ କ୍ଷମତା ।

(୧୫)

ଚୌହାନ କୁଳର ଉଜ୍ଜ୍ୱଳ ଭୂଷଣ
ବରପଲ୍ଲି ପତି ନରେଶ ରତନ
ନୃପରାଜ ସିଂହ କରି ସଯତନ
ରଖହେ ଓଡିଆ ପୁଅଙ୍କ ମାନ ।
ପ୍ରଦେଶର ପତି ଅତି ସୁ ବିବେକ
ରାଜଦ୍ୱାରେ ରଖି ଅଛ ତୁମ୍ଭେ ଟେକ
ତାଙ୍କ ପାଶେ ଯାଇ କହିଲେ ଅନେକ
ରହିପାରେ ଆମ୍ଭମାନଙ୍କ ଟାଣ ।

(୧୬)

ଶୁଣ ମୋ ବିନୟ ସ୍ୱର୍ଣ୍ଣପୁର ପତି
ରେଢ଼ାଖୋଲ ନୃପେ ଘେନିଣ ସଂଘତି
ଭୋଗ ବିଳାସରେ ନ ରଖିଣ ମତି
ନାଗପୁରେ ଆଗେ କର ଗମନ ।
କହିବ କର୍ତ୍ତାଙ୍କୁ ବିନୟ ଗାରରେ
"ମାତୃ ବିବାସନ ଆଜ୍ଞା ଶ୍ରବଣରେ
କାନ୍ଦୁଛନ୍ତି ତବ ଉତ୍କଳ କୁମରେ
କର ଆଜ୍ଞା ଏବେ ପ୍ରତିହରଣ" ।

(୧୭)

ଅତି ସଦାଶୟ ଅଟନ୍ତି ସେଜନ
ଏ ବଚନ ଶୁଣି ହେବେ ଦୁଃଖମନ
କରି ରୀତିମତ ସେ ଅନୁସନ୍ଧାନ
ଶତ୍ରୁ ଷଡ଼ ଯନ୍ତ୍ର ପାଦରେ ଠେଲ ।
ସସ୍ମିତ ଆନନେ କରିବେ ଆଦେଶ
"ହୁଅ ହର୍ଷମନା ତେଜରେ ବିରଷ
ପୂଜ ଯାଇ ମାତା ଚରଣ ସାରସ
"ମୋ ଆଦେଶ ମୁହିଁ ଉଠାଇନେଲି ।"

(୧୮)

କରି ପ୍ରାଣପଣ କରରେ ଯତନ
ନ ଘଟେ ଯେସନ ମାତୃ ନିର୍ବାସନ
ରହିବ ଓଡ଼ିଆ ପୁଅଙ୍କ ସମ୍ମାନ
ଶତ୍ରୁଙ୍କର ଦର୍ପ ହୋଇବ ଚୂନା
ଉଦୋଗୀରି ପତି ଭାଗ୍ୟ ଅନୁକୂଳ
ଯତ୍ନକଲେ ନିଷ୍ଟେ ଫଳିବ ସୁଫଳ.
ଏ ଆଶାକୁ ହୃଦେ କର ବଦ୍ଧମୂଳ
କର ନିବୋତ୍ସାହେ କାର୍ଯ୍ୟ ସୂଚନା

ଶ୍ରୀନୀ ......

*ଭା୬ଗ, ସଂ୩୭ଖ୍ୟା, ୧୩/୨/୧୮୯୫*

## ବିବିଧ ପ୍ରସଙ୍ଗ ।

x x x x x x

x x x x x x

"ଓଡ଼ିଆ"ଙ୍କର "ଓଡ଼ିଆ"- ଓଡ଼ିଆ ଓ ନବସମ୍ବାଦରେ "ଓଡ଼ିଆ" ଶୀର୍ଷକ ଗୋଟିଏ ପ୍ରବନ୍ଧ ପ୍ରକାଶିତ ହୋଇଅଛି,ପ୍ରବନ୍ଧର ଲେଖକ ଜଣେ ବଙ୍ଗାଳୀ, ଓଡ଼ିଆମାନଙ୍କ ସମ୍ବନ୍ଧେ ସେ ଯେଉଁ ସତ୍ୟପୂର୍ଣ୍ଣ ମତବ୍ୟକ୍ତ କରିଅଛନ୍ତି ତହିଁ ସକାଶେ ଲେଖକ ପ୍ରଶଂସାର୍ହ ।"ବାଛୁରୀବ୍ରତ"ର ମର୍ମ୍ମ ଭଲ ବୁଝି ପାରିଲୁଁ ନାହିଁ । ଏ ବ୍ରତ କି ଏକା ଓଡ଼ିଶ୍ୟାରେ ପାଳିତ ହୋଇଥିବାର ଲେଖକ ବିଶ୍ୱାସ କରନ୍ତି ? ଏପରି ପ୍ରବନ୍ଧ ଓଡ଼ିଆ କାଗଜରେ ନ ଦେଇ ବଙ୍ଗଳା କାଗଜରେ ଦେବା ଉଚିତ ଥିଲା ।

x x x x x x

x x x x x x

*ଭା୬ଗ, ସଂ୩୮ଖ୍ୟା, ୨୦/୨/୧୮୯୫*

## ସମ୍ବଲପୁରର ଭାଷା ସଂଙ୍କଟ ।

"ସମ୍ବଲପୁରରେ ହିନ୍ଦିଭାଷା ପ୍ରଚଳିତ ହେବ" ଏହି ଆଦେଶର କଥା ଏ ଜିଲ୍ଲାର ସର୍ବତ୍ର ପ୍ରଚାରିତ ହୋଇଅଛି । ଯଦ୍ୟପି ଏ କାର୍ଯ୍ୟ ପ୍ରଜା ସାଧାରଣଙ୍କ ପକ୍ଷରେ ଅନିଷ୍ଟ କର ବା ଆପତ୍ତି ଜନକ ହୁଅନ୍ତା ତେବେତ ଏତେ ବେଳକୁ କେତେ ସଭା ସମିତି, କେତେ ଆନ୍ଦୋଳନ ଆବେଦନ ପ୍ରଭୃତି ହୋଇଥାନ୍ତା,ଯେତେବେଳେ ଏପରି କିଛି ଦେଖାଯାଉ ନାହିଁ ତେତେବେଳେ ଅନୁମାନ କରାଯାଇ ପାରେ ଯେ ଏଥିରେ ଲୋକମାନଙ୍କର କୌଣସି ଆପତ୍ତି ନାହିଁ । ଏପରି ଅନୁମାନ ସ୍ୱଭାବିକ ହେଲେ ମଧ୍ୟ ସମ୍ବଲପୁର ଜିଲ୍ଲାର ନୀରବତା ଦର୍ଶନରେ ସେପରି ଅନୁମାନ କରି ନିଜମତ ଗଠନ କଲେ ସେମାନଙ୍କୁ ଭ୍ରାନ୍ତ ହେବାକୁ ପଡିବ, ସେମାନଙ୍କର ଗଭିର ଦର୍ଶନ କରିବାର ଶକ୍ତି ନ ଥିବାର ଜଣାଯିବ । ଏହି ଦେଶବ୍ୟାପୀ ନୀରବତାର କାରଣ ବୁଝାଇବାକୁ ଚେଷ୍ଟା କରୁଅଛୁଁ । ଏ କଥା ସମସ୍ତେ ସ୍ୱୀକାର କରିବେ ଯେ ଇଂଲଣ୍ଡୀୟ ସମାଜର ଗଠନ ପ୍ରଣାଳୀ ସହିତ ଭାରତ ସମାଜର ଗଠନ ପ୍ରଣାଳୀର ଏକତା ନାହିଁ । କୌଣସି ବ୍ୟବସ୍ଥା ଆପତ୍ତିଜନକ ହେଲେ ଇଂଲଣ୍ଡର ପ୍ରଜାମାନେ ପ୍ରତିବାଦ କରି ତାହା ଦୂରିଭୂତ କରିବାକୁ ଚେଷ୍ଟା କରନ୍ତି,ଏବଂ ଶାସନକର୍ତ୍ତାମାନେ ମଧ୍ୟ ଏହି ପ୍ରକାର ଆପତ୍ତି ଉଥାପିତ ହେବାର ଦେଖି ବ୍ୟବସ୍ଥାର ଉପଯୋଗୀତା ଅନୁପଯୋଗିତାର ବିଚାର କରନ୍ତି । କିନ୍ତୁ ରାଜବିଧିର ପ୍ରତିବାଦ କରିବାର ପ୍ରଥା ଏ ଦେଶରେ କେବେହେଁ ନ ଥିଲା । ଏ ପ୍ରକାର

ପ୍ରତିବାଦ ରାଜଦ୍ରୋହିତା ବୋଲି ସାଧାରଣ ଲୋକଙ୍କର ଦୃଢ଼ ବିଶ୍ୱାସ । ନବ୍ୟଶିକ୍ଷିତମାନେ ଇଂଲଣ୍ଡିୟମାନଙ୍କ ନିକଟରୁ ଏହି ପ୍ରକାର ପ୍ରତିବାଦ କରିବାକୁ ଶିକ୍ଷା କରିଅଛନ୍ତି । ସମ୍ବଲପୁରରେ ପ୍ରାଚୀନ ଭାବ ଏତେ ଦୃଢ଼ଭାବ ଏବଂ ନୂଆଭାବ ଏତେ ଅଳ୍ପ ପ୍ରବେଶ କରିଅଛି ଯେ କୌଣସୀ ପ୍ରକାର ରାଜକାର୍ଯ୍ୟ ସମାଲୋଚନା ନିମନ୍ତେ ଲୋକମାନଙ୍କର ଏକତ୍ରିଭୁତ ନେବା ବହୁଳପରିମାଣରେ ସମ୍ଭବନୀୟ ନୁହେଁ ; କିନ୍ତୁ ଏହି ବ୍ୟବସ୍ଥାର କଠୋରତା ନିମନ୍ତେ ସମ୍ବଲପୁରବାସିମାନେ ନିରବରେ ଅଶ୍ରୁପାତ କରୁଅଛନ୍ତି । ଯେଉଁମାନେ ଏପରି ରାଜଭକ୍ତ ଅଥଚ ମୂକ, ଯେଉଁମାନଙ୍କର ହୃଦୟରେ ଅତ୍ୟନ୍ତ ବ୍ୟଥା ଜାତହେଲେ ସୁଦ୍ଧା ରାଜା ଦେଖବୋଲି ନିର୍ବିବାଦରେ ସହ୍ୟ କରୁ ଅଛନ୍ତି ? ଏବଂ ଯେଉଁମାନେ ଅଦୃଷ୍ଟର ଦୋଷବୋଲି ଏହି ପ୍ରକାର ଦୁର୍ଦ୍ଦଶା ଶିରୋଧାର୍ଯ୍ୟ କରୁଅଛନ୍ତି, ଆଶାକରୁଁ ସଦୟହୃଦୟ ଚିଫ୍ କମିଶ୍ନର ବାହାଦୁର ସର୍ବତ୍ର ଯତ୍ନରେ ସେମାନଙ୍କର ମନୋବାଞ୍ଛା ପୂର୍ଣ୍ଣ କରିବେ ।

ଆମ୍ଭେମାନେ ଇତିପୂର୍ବରେ ସମ୍ବଲପୁରରେ ଓଡ଼ିଆ ଭାଷା ରକ୍ଷା କରିବାର ଯୁକ୍ତିଯୁକ୍ତତା ଏବଂ ବିରୋଧିମାନଙ୍କର ଯୁକ୍ତିର ଅଯୌକ୍ତିକତା ପ୍ରଦର୍ଶନ କରିଅଛୁଁ । ବର୍ତ୍ତମାନ ସମ୍ବଲପୁରର ଲୋକମାନଙ୍କର ନୀରବତାର କାରଣ ପ୍ରଦର୍ଶନ କଲୁଁ । ଆମ୍ଭମାନ କଥାଠିକ କି ନାହିଁ ତାହା ବିଦେଶୀମାନଙ୍କର ମତ ନେଇ – ସ୍ଥିର କରି ଯଦ୍ୟପି ଚିଫ୍‌କମିଶ୍ନର ବାହାଦୁର, ଏତଦ୍ଦେଶୀୟ ରାଜା ଜମିଦାର, ଶିକ୍ଷିତ ଏବଂ ଅର୍ଦ୍ଧଶିକ୍ଷିତ ଲୋକମାନଙ୍କର ମତ ଗ୍ରହଣ କରନ୍ତି ତାହା ହେଲେ ବୁଝିପାରିବେ ଯେ ଏ ପ୍ରବନ୍ଧମାନଙ୍କରେ କୌଣସି କଥା ଅତିରଞ୍ଜିତ ହୋଇନାହିଁ । ଅନ୍ୟ ଲୋକର କଥା ବିଶ୍ୱାସ ନକରି ଯଦ୍ୟପି ଚିଫ୍‌କମିଶ୍ନର ବାହାଦୁର ସମ୍ବଲପୁର ଛାଡ଼ି ଏ ଜିଲ୍ଲାର ଅନ୍ୟ ଯେ କୌଣସି ସ୍ଥାନକୁ ନିଜେ ଯାଇ ଦେଖନ୍ତେ ତାହା ହେଲେ ବୁଝି ପାରନ୍ତେ ଯେ ଏ ଦେଶୀୟ ଲୋକମାନେ ଯେ ହିନ୍ଦି କଥାବାର୍ତ୍ତା କରିପାରନ୍ତି ବୋଲି ପ୍ରଚାରିତ ହୋଇଅଛି ତାହା ସମ୍ପୂର୍ଣ୍ଣ ମିଥ୍ୟା । ଏ ଦେଶ ସମ୍ବନ୍ଧରେ ଏହା ଅପେକ୍ଷା ଆଉ ଅଧିକ ଦୁର୍ଭାଗ୍ୟର ବିଷୟ ନାହିଁ ବୋଲି ଆମ୍ଭେମାନେ କୃତାଞ୍ଜଳୀପୁଟରେ ଚିଫ୍ କମିଶ୍ନର ବାହାଦୁରଙ୍କୁ ଅନୁନୟ କରୁଅଛୁଁ ଯେ ସେ ସ୍ୱୀୟ ଆଦେଶ ସ୍ଥଗିତ ରଖି ଆଉ ଥରେ ସମ୍ବଲପୁରର ପ୍ରକୃତ ଅବସ୍ଥା ଜ୍ଞାତ ହେବା ନିମନ୍ତେ ଅନୁସନ୍ଧାନ ଆରମ୍ଭ କରନ୍ତୁ ।

ଭାଷା ପରିବର୍ତ୍ତନ ବିରୁଦ୍ଧରେ ପଠାଯାଇଥିବା ଦରଖାସ୍ତରେ ଉଲ୍ଲେଖ ଅଛି ଯେ "ବିଳାସପୁର ଜିଲ୍ଲାରୁ ତିନିଜଣ ଅମଲା ପରିବର୍ତ୍ତିତ ହୋଇ ଆସିଥିଲେ , ସେମାନେ ସାଧ୍ୟାନୁସାରେ ଚେଷ୍ଟା କଲେ ମଧ୍ୟ ଓଡ଼ିଆରେ କାର୍ଯ୍ୟ କରିବା ଅତି-କଠିଣ ଦେଖି ଆପଣା ଆପଣା କର୍ମ୍ମକୁ ଫେରିଗଲେ । ଏଠାରୁ କୌଣସି ହିନ୍ଦି ଜିଲ୍ଲାକୁ ଯେଉଁ ଅମଲାମାନେ ପରିବର୍ତ୍ତିତ ହେବେ ସେମାନଙ୍କ ତଦ୍ରୂପ ଦଶା ଘଟିବ । କଟକ ଅନ୍ୟାନ୍ୟ ଜିଲ୍ଲାମାନଙ୍କରେ ଅଳ୍ପ ବେତନଭୋଗୀ ଅମଲାମାନଙ୍କୁ ପରିବର୍ତ୍ତନ କରିବାର ପ୍ରଥା ପ୍ରଚଳିତ ନାହିଁ ।"

ଆବେଦନକାରିମାନଙ୍କ ଉପରୋକ୍ତ ଉକ୍ତି ଅଯଥାର୍ଥ ବୋଧହେଉ ନାହିଁ । ଆମ୍ଭମାନଙ୍କ ପକ୍ଷେ ହିନ୍ଦିଭାଷା ଆୟତ୍ତ କରିବା ଯେପରି ସୁକଠିନ, ପଶ୍ଚିମାମାନଙ୍କର ଓଡ଼ିଆ ଭାଷାରେ ବ୍ୟୁତ୍ପନ୍ନହେବା ତଦ୍ରୂପ ସୁକଠିନ ୨ ।୪ଦିନ ବା ୨ ।୪ ମାସରେ ଶିକ୍ଷାରେ ଗୋଟିଏ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଭାଷାରେ ଦକ୍ଷତା ଲାଭକରି ତଦ୍ୱାରା ନିର୍ବିଘ୍ନରେ କାର୍ଯ୍ୟ ଚଳାଇବା ଅସମ୍ଭବ ବିଶେଷତଃ ଅଳ୍ପଜ୍ଞ ଅମଲାମାନଙ୍କ ପକ୍ଷରେ ସେମାନେ ହିନ୍ଦି ପଢ଼ି ହିନ୍ଦିରେ କର୍ମ୍ମକରି ଉନ୍ନତି ପାଇବା ତେଣେ ଥାଉ ସେମାନେ ନିଯୁକ୍ତ ଥିବା କାର୍ଯ୍ୟରେ ବାହେଲ ରହି-ପାରିବା ଅସମ୍ଭବ ।

ଅଳ୍ପ ବେତନଭୋଗୀ କର୍ମ୍ମଚାରୀମାନଙ୍କୁ ଏକ ଜିଲ୍ଲାରୁ ଅନ୍ୟ ଜିଲ୍ଲାକୁ ପରିବର୍ତ୍ତନ କଲେ ସେମାନଙ୍କ ଚଳିବା ପକ୍ଷରେ ଭୟାନକ କଷ୍ଟ ଏବଂ ଅସୁବିଧା ଘଟେ । ଏ ଜିଲ୍ଲାର ଯୁଡିଶିୟାଲ ମହାଫିସ୍ ଶ୍ରୀଯୁକ୍ତ ବୈକୁଣ୍ଠନାଥ ପାଡିଙ୍କୁ ଅନ୍ୟ ଜିଲ୍ଲାକୁ ବଦଳୀ କରାଯାଇଥିଲା । ସେ ପ୍ରାପ୍ତ ବେତନରେ ବନ୍ଧୁ ବାନ୍ଧବ ସମ୍ପର୍କ ବିହୀନ ଅବସ୍ଥାରେ ବିଦେଶରେ ଚଳିପାରିବା ଅସମ୍ଭବ ବୋଧ କରି ଅନନ୍ୟୋପାୟ ହୋଇ ୧୨।୧୪ ବର୍ଷର ସରଭିସ୍ ଥିଲେ ମଧ୍ୟ କାର୍ଯ୍ୟ ତ୍ୟାଗକରି ବର୍ତ୍ତମାନ ବେକାର ଦଶାରେ ରହି ଅଛନ୍ତି !ଏପରି ସ୍ଥଳେ ଅଳ୍ପବେତନ ଭୋଗୀ ଅମଲାମାନଙ୍କୁ ହିନ୍ଦିଭାଷା ଶିକ୍ଷା କରାଇ-ସେମାନଙ୍କୁ ଭିନ୍ନ ଜିଲ୍ଲାକୁ ପଠାଇ କାର୍ଯ୍ୟ କରାଇବା ଅସମ୍ଭବ ଏବଂ କଷ୍ଟକର ବୋଧ ହୁଏ । ଯଦି ସେମାନଙ୍କୁ ଜିଲ୍ଲାନ୍ତରକୁ ବଦଳୀ କରିବା ଅସଙ୍ଗତ ଓ ଅସୁବିଧା ଜନକ ବିବେଚିତ ହୁଏ ତାହା ହେଲେ ଏ ଜିଲ୍ଲା

ଲୋକଙ୍କୁ ହିନ୍ଦି ଶିଖାଇବାକୁ ବାଧ୍ୟ କରିବା ନିଷ୍ପ୍ରୟୋଜନ ଯେଉଁମାନେ ବିଦ୍ୱାନ, ଯେଉଁମାନେ ଉଚ୍ଚାଭିଳାଷୀ ସେମାନେ ନିଜର ଉନ୍ନତି ସକାଶେ ନାନା ପ୍ରକାର ଭାଷା ଶିକ୍ଷା କରିପାରନ୍ତି ସେମାନଙ୍କ ସୁବିଧା ସକାଶେ ଲକ୍ଷ ଲକ୍ଷ ଲୋକଙ୍କର ମାତୃଭାଷାର ଉଚ୍ଛେଦ ସାଧନ କରିବା ଉଚିତ ବୋଧ ହେଉନାହିଁ । ଯେଉଁ ହାକିମମାନେ ଏଇ ଜିଲ୍ଲାକୁ କାର୍ଯ୍ୟ କରିବାକୁ ଆସନ୍ତି ସେମାନଙ୍କର ସ୍ଥାନୀୟ ଭାଷା ବୁଝିବା କର୍ତ୍ତବ୍ୟ । ସେମାନେ କୃତ ବିଦ୍ୟ ଲୋକ , ଅଳ୍ପ ଚେଷ୍ଟାରେ ଗୋଟିଏ ଭାଷା ଆୟତ୍ତ କରିପାରନ୍ତି, ଚାକେରି ରଖିବା ସକାଶେ ସେମାନେ ତାହା ଶିଖିବାକୁ ବାଧ୍ୟ । ସେପରୀ ଉଚ୍ଚ ବେତନ ଭୋଗୀ କୃତବିଦ୍ୟ ଲୋକମାନଙ୍କୁ ଓଡ଼ିଆ ଶିଖିବାକୁ ବାଧ୍ୟ ନ କରି ଲକ୍ଷ ଲକ୍ଷ ଓଡ଼ିଆଙ୍କୁ ହିନ୍ଦି ଶିଖିବାପାଇଁ ବାଧ୍ୟ କରିବା କି ଉଚିତ ବିବେଚିତ ହେଉ ଅଛି ?

ସମ୍ବଲପୁର, ରାଜନୈତିକ ବିଭାଗ ଅନୁସାରେ ମଧ୍ୟ ପ୍ରଦେଶର ଅନ୍ତର୍ଗତ ହେଲେ ମଧ୍ୟ ତାହା ପ୍ରାକୃତିକ ବିଭାଗ ଅନୁସାରେ ଓଡ଼ିଶ୍ୟାର ଅନ୍ତର୍ଗତ । (ଦୀପିକା କହନ୍ତି) "ଗବର୍ଣ୍ଣମେଣ୍ଟ ପୁନଃ ପୁନଃ ଏ କଥା ସ୍ୱୀକାର କରି ଏକ ସମୟରେ ସମ୍ବଲପୁରକୁ ଓଡ଼ିଶ୍ୟା କମିଶ୍ନରଙ୍କ ଅଧିନରେ ରଖିଥିଲେ ଏବଂ ଆହୁରି କେତେକ ସମୟରେ ସମ୍ବଲପୁର,ଗଞ୍ଜାମ ପ୍ରଭୃତି ଓଡ଼ିଶ୍ୟା ସଙ୍ଗେ ଏକ ଯୋଗରେ ଜଣେ ଚିଫ୍ କମିଶ୍ନରଙ୍କ ଅଧିନରେ ରଖିବାର ପ୍ରସ୍ତାବ ହେଲା । ଆର୍ଥିକ ଏବଂ ଅନ୍ୟାନ୍ୟ ବିବେଚନାରେ ସେ ପ୍ରସ୍ତାବ ଅବଧି କାର୍ଯ୍ୟ ପରିଣତ ନ ହେଲେ ମଧ୍ୟ ଏକାବେଳେ ଅଗ୍ରାହ୍ୟ ହୋଇପଡ଼ି ନାହିଁ । "ଚିଫ୍ କମିଶ୍ନର ବାହାଦୁର ଯେବେ ସମ୍ବଲପୁରର ପ୍ରଜାବର୍ଗର ପ୍ରକୃତ ଉନ୍ନତି କାମନାରେ ଏପରି ଭାଷା-ପରିବର୍ତ୍ତନର ଆଦେଶ ଦେଇଥାନ୍ତି ତେବେ ତାଙ୍କର ଏ ଆଦେଶ ପ୍ରତ୍ୟାହାର କରିନେଇ ଦୀପିକାଙ୍କ କଥିତ ପ୍ରସ୍ତାବର ସଫଳତା ଚେଷ୍ଟା କରନ୍ତୁ ତାହା ହେଲେ ତାଙ୍କର ଶୁଭ କାମନା ସିଦ୍ଧ ହୋଇପାରିବ ।

ସମ୍ବଲପୁର ବାସିମାନଙ୍କର ନୀରବତା ବର୍ତ୍ତମାନ କାଳୋପଯୋଗୀ ବିବେଚିତ ହେଉନାହିଁ । ସେମାନଙ୍କର ନୀରବତା ଦର୍ଶନ କରି ଭିନ୍ନ ପ୍ରଦେଶର ଲୋକମାନେ ମନେକରୁ ଅଛନ୍ତି ଯେ ସମ୍ବଲପୁରର ଲୋକମାନେ ନିତାନ୍ତ କାପୁରୁଷ ଏବଂ ଅପରିଣାମଦର୍ଶୀ ନିଶ୍ଚେଷ୍ଟ ଲୋକ । ଆମ୍ଭମାନଙ୍କର ଜଣେ ବନ୍ଧୁ ଏ ଦୁଃସମ୍ବାଦ ଶ୍ରବଣ କରି ଏବଂ ଏ ଜିଲ୍ଲାର ଲୋକମାନଙ୍କର ନୀରବତା ଦର୍ଶନ କରି ଖେଦ ପ୍ରକାଶ ପୂର୍ବକ ଲେଖିଅଛନ୍ତି "ଓଡ଼ିଆମାନଙ୍କର ଯେବେ ଚେତନା ହେବ ତେବେ କିଏ ଦୁର୍ଦ୍ଦଶା ଭୋଗ କରିବ ?" ପୁନଶ୍ଚ ଲେଖିଅଛନ୍ତି "ଆପଣମାନେ ଯଦି ଉପସ୍ଥିତ କ୍ଷେତ୍ରରେ ନିରୁତ୍ତର ରହନ୍ତି ଆମ୍ଭେମାନେ ସାହାସ କରି କହିବୁଁ ମାତୃଭୂମି ପ୍ରତି ଆପଣମାନଙ୍କର ଆସ୍ଥା ନାହିଁ । ଖାଲି କାଗଜରେ ଲେଖିଲେ ହେବ ନାହିଁ, ଘୋରତର ଆନ୍ଦୋଳନ କରନ୍ତୁ, ସ୍ଥାନେ ସ୍ଥାନେ ସଭାସମିତି ସ୍ଥାପନ କରି ହାକିମ ମାନଙ୍କର କୃପା ଆକର୍ଷଣର ଚେଷ୍ଟା କରନ୍ତୁ ।" ଆମ୍ଭମାନଙ୍କ ବିବେଚନାରେ ମନର ଭାବ ଗୋପନ ରଖି ବିରକ୍ତକୁ ବ୍ୟକ୍ତ ନ କରିବା ଅନୁଚିତ କାର୍ଯ୍ୟ । ମନୋଭାବ ସ୍ପଷ୍ଟରୂପେ ବ୍ୟକ୍ତ ନକଲେ ସେସବୁ ଭାବ ବଦ୍ଧମୂଳ ହୋଇ ବିଷାକ୍ତ ହୋଇପଡ଼େ । ଏବଂ ତାହା ରାଜ୍ୟ ସୁଶାସନର ଅନ୍ତରାୟ ହୁଅଇ ଯେଉଁମାନେ ମନର ଭାବ ପ୍ରକାଶ କରିବା – ରାଜବିଧିର ତୃଟି ପ୍ରଦର୍ଶନ କରିବା ରାଜଦ୍ରୋହିତା ବୋଲି ମନେ କରନ୍ତି । ଏବଂ ତଦ୍ୱାରା ରାଜକର୍ମ୍ମଚାରିମାନଙ୍କର ବିଷ ନୟନରେ ପଡ଼ିବାର ବିଶ୍ୱାସ କରନ୍ତି, ସେମାନେ ଘୋର ଭ୍ରାନ୍ତ । ଆମ୍ଭମାନଙ୍କ ବିବେଚନାରେ ମନୋଭାବ ଗୋପନ ରଖିବା ବରଂ ରାଜଦ୍ରୋହିତାର କାର୍ଯ୍ୟ ଆପଣାର ସୁଖଦୁଃଖ,ସୁବିଧା ଅସୁବିଧା କଥାର ସରଳଭାବରେ ଜଣାଇଲେ କର୍ତ୍ତୃପକ୍ଷମାନଙ୍କୁ ସୁଶାସନ ବିଷୟରେ ସାହାଯ୍ୟ କରାହୁଏ ସୁତରାଂ ଏପରି ଯେଉଁମାନେ କରନ୍ତି ସେମାନେ ସୁଶାସନର ଏବଂ ସରକାରଙ୍କର ବନ୍ଧୁ । ଯେଉଁମାନେ ଭ୍ରମ ଦେଖାଇ ନ ଦିଅନ୍ତି ଗୁଣର ଆଦର ନ କରନ୍ତି ଯେଉଁ ସେମାନଙ୍କର ଅଭିସନ୍ଧି ଉପରେ ବରଂ କଳଙ୍କ ଆରୋପ କରାଯାଇପାରେ । ରାଜନୀତି ସମ୍ବନ୍ଧେ ଆଲୋଚନା ଆନ୍ଦୋଳନ କରିବା- ପ୍ରତିବାଦ କରିବା ଇଂଲଣ୍ଡୀୟ ପ୍ରଥା,ସଭ୍ୟଜନାନୁମୋଦିତ ପ୍ରଥା । ସେହି ନ୍ୟାୟ ସଙ୍ଗତ ଏବଂ ସର୍ବତ୍ର ପ୍ରଚଳନ ପଦ୍ଧତିର ଅନୁକରଣ କରିବାରେ ଦୋଷ କି ? ଯଦି ମନରେ ଭୟରଖି ଆନ୍ଦୋଳନରୁ କ୍ଷାନ୍ତ ରହୁଁ ତାହାହେଲେ ଏତଦ୍ୱାରା ନ୍ୟାୟବାନ ଗବର୍ଣ୍ଣମେଣ୍ଟଙ୍କର କଳଙ୍କ ହୋଇ ପାରେ, ଭିନ୍ନ ପ୍ରଦେଶର ଲୋକମାନେ ମନେକରିବେ ଯେ ମଧ୍ୟପ୍ରଦେଶରେ ଯଥେଚ୍ଛଚାର ଶାସନ ପ୍ରଣାଳୀ ପ୍ରତିଷ୍ଠିତ ନଚେତ ପ୍ରଜାମାନେ ମନୋଭାବ ବାକ୍ୟରେ ବ୍ୟକ୍ତ କରିବାକୁ କୁଣ୍ଠିତ ହେବେ କାହିଁକି ? ଆମ୍ଭମାନଙ୍କର କାର୍ଯ୍ୟରେ କର୍ତ୍ତୃପକ୍ଷମାନେ କଳଙ୍କିତ ହେଉନ୍ତୁ

ଏହା ଆମ୍ଭମାନଙ୍କର ଇଚ୍ଛା ନୁହଁ । ଈଶ୍ୱରଙ୍କ ଅନୁଗ୍ରହରୁ ବ୍ରିଟିଶ ଶାସନରେ ଆମ୍ଭେମାନେ ନିରୁପଦ୍ରବରେ ସୁଶାସିତ ହେଉଅଛୁଁ । ଆମ୍ଭମାନଙ୍କର ଆନ୍ଦୋଳନ ଆଲୋଚନା ଦର୍ଶନରେ ବିରକ୍ତ ହେବାର ବିଶ୍ୱାସ ବ୍ୟାକୁଳତା ମାତ୍ର । ଶାନ୍ତ ବିନିତ ଭାବରେ ଆତ୍ମମତ ବ୍ୟକ୍ତ କଲେ ନ୍ୟାୟଶୀଳ କର୍ତ୍ତୃପକ୍ଷମାନେ ବିରକ୍ତ ହେବା ଅସମ୍ଭବ । ଅସନ୍ତୋଷର ଆଶଙ୍କା ଥିଲେ ସହବାସସମ୍ମତି ଆଇନ ସମ୍ବନ୍ଧେ ଦେଶବ୍ୟାପୀ ଆନ୍ଦୋଳନ ହୋଇପାରି ନ ଥାନ୍ତା, କଂଗ୍ରେସ ବା ଜାତୀୟ ମହାସମିତି ଆଜି ଏକାଦଶ ବର୍ଷରେ ପଦାର୍ପଣ କରି ନ ଥାନ୍ତା, ଆନ୍ଦୋଳନକାରୀମାନେ ରାଜଦ୍ରୋହିତା ଦୋଷରେ ଦୋଷୀ ହେଉଥିଲେ ସେହି ଅପରାଧରେ ଆଜି ପ୍ରାୟ ସମସ୍ତ ଭାରତ ବାସୀ କାରାବାସୀ ହୋଇଥାନ୍ତେ । ଫଳକଥା ଏପରି ଆନ୍ଦୋଳନ ଆଲୋଚନା ରାଜଦ୍ରୋହିତା ନୁହେଁ-ବନ୍ଧୁତା ହିତୈଷିତାର କାର୍ଯ୍ୟ । ଅତଏବ ହେ ସମ୍ବଲପୁରବାସୀ! ମନର ଦୁଃଖ ଏବଂ ଅସନ୍ତୋଷ, ଅଭାବ ଏବଂ ଅସୁବିଧା ସରଳଭାବରେ ସଦାଶୟ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବାକୁ ଶିକ୍ଷାକର ସେ ସନ୍ତୁଷ୍ଟ ଚିତ୍ତରେ ତୁମ୍ଭମାନଙ୍କର କଥା ଶୁଣି ବିହିତ ପ୍ରତିକାର କରିବାକୁ ତିଳମାତ୍ର ବିମୁଖ ହେବେ ନାହିଁ, ଅଧିକନ୍ତୁ ପୁତ୍ରସ୍ଥାନୀୟ ପ୍ରଜାମାନଙ୍କର କର୍ତ୍ତବ୍ୟ ପରାୟଣତା, ଆତ୍ମନ୍ନୋତିଚେଷ୍ଟା ଏବଂ ପରିମାଣଦର୍ଶୀତା ଦର୍ଷନ କରି ରାଜକୀୟ ଚେଷ୍ଟା ଏବଂ ବ୍ୟୟର ସଫଳତା ଅନୁଭବ କରି ଆପ୍ୟାୟିତ ହେବେ । କର୍ତ୍ତୃପକ୍ଷମାନେ ସୁପଣ୍ଡିତ ଏବଂ ବହୁ ଦର୍ଶୀ, ସେମାନେ ଆମ୍ଭମାନଙ୍କର ଉନ୍ନତିର ଆଶା ପୋଷଣ କରି ଯେଉଁ ବିଧାନ କରିଅଛନ୍ତି ସେହି ବିଧାନରେ ଭ୍ରମଥିବାର ତାହାଙ୍କୁ ବୁଝାଇ ଦେଲେ ସେମାନେ ଆନନ୍ଦର ସହିତ ଆମ୍ଭମାନଙ୍କର ପରାମର୍ଶ ଗ୍ରହଣ କରି କାର୍ଯ୍ୟ କରିବେ ଏହା ଆମ୍ଭମାନଙ୍କର ଦୃଢ ସଂସ୍କାର ।

"ରାଜକାର୍ଯ୍ୟରେ ସୁବିଧା ହେବ ଅଥଚ ଓଡ଼ିଆମାନଙ୍କର ଉନ୍ନତିମାର୍ଗ ମୁକ୍ତ ହେବ"। ଖାସ x x x ସଦାଶୟ ଚିଫ୍ କମିଶ୍ନର x x x x ଭାଷା ଉଠାଇ x x x x ଯଦି ତାଙ୍କର ସେହି ସାଧୁସଂକଳ୍ପ ସିଦ୍ଧ ହେବାର ଦେଖାଇ ଦିଆଯାଏ ତେବେ ଅବଶ୍ୟ ସେହି ଉପାୟ ଗ୍ରହଣ କରିବାକୁ ବିମୁଖ ହେବେ ନାହିଁ । ଆମ୍ଭମାନଙ୍କର ଏପରି ବିଶ୍ୱାସ ଥିବାରୁ କହୁଅଛି ଯେ ସମ୍ବଲପୁର, ଗଞ୍ଜାମ ଏବଂ ଓଡ଼ିଶ୍ୟାକୁ ଏକତ୍ରରେ ଏକ ଚିଫ୍ କମିଶ୍ନରଙ୍କ ଅଧିନରେ ରଖିବା ବିଷୟକ ପୂର୍ବପ୍ରସ୍ତାବର ସଫଳତା ଚେଷ୍ଟା କଲେ ସେହି ସାଧୁ ସଂକଳ୍ପସିଦ୍ଧ ହୋଇପାରେ ନିତାନ୍ତ ପକ୍ଷେ ସମ୍ବଲପୁରରେ କେତେଜଣ (interpreter) ଦୋଭାଷୀ ଏବଂ(translator) ଅନୁବାଦକ ରଖିଲେ ରାଜକାର୍ଯ୍ୟର ଅସୁବିଧା ଅନ୍ତରିତ ହୋଇପାରେ । ପ୍ରଜାମାନଙ୍କ ମଙ୍ଗଳ ସକାଶେ ଏ ଜିଲ୍ଲାର ସ୍କୁଲମାନଙ୍କରେ ଓଡ଼ିଶ୍ୟା ପ୍ରଚଳିତ ପାଠ୍ୟ ପୁସ୍ତକମାନ ପ୍ରବର୍ତ୍ତିତ ହେଉ ଏବଂ ସମ୍ବଲପୁରରେ ଗୋଟିଏ ନର୍ମ୍ମାଲ ବିଦ୍ୟାଳୟ ଗୋଟିଏ,ଗୋଟିଏ ହିନ୍ଦି ବିଦ୍ୟାଳୟ ସ୍ଥାପିତ ହେଉ । ଯେଉଁମାନେ ଚାକେରୀ କରି ଭିନ୍ନ ପ୍ରଦେଶରେ କାର୍ଯ୍ୟ କରି ଉନ୍ନତି ପାଇବାକୁ ଇଚ୍ଛାକରିବେ ସେମାନେ ହିନ୍ଦି ବିଦ୍ୟାଳୟରେ ପଢ଼ିପାରିବେ । ଏଇ ସକାଶେ ଗୋଟା ଜିଲ୍ଲାର ମାତୃଭାଷା ଉଠାଇ ହେବାର ପ୍ରୟୋଜନ ନାହିଁ । ଅତଏବ ମହାମାନ୍ୟ ଚିଫ୍ କମିଶ୍ନର ବାହାଦୁରଙ୍କ ଉଦ୍ଦେଶ୍ୟରେ ବଦ୍ଧକରପୁଟରେ ଏହି ନିବେଦନ କରୁଅଛୁଁ ଯେ ସେ ଉପରୋକ୍ତ ପ୍ରକାରର କୌଣସି ପନ୍ଥା ଅବଲମ୍ବନ କରି ଆପଣାର ସଂକଳ୍ପର ସଫଳତା ସାଧନ କରନ୍ତୁ ଏବଂ ଆମ୍ଭମାନଙ୍କର ମାତୃଭାଷାର ବ୍ୟବହାର ବର୍ତ୍ତମାନବତ୍ ବଳବତ୍ତର ରହିବାର ଆଜ୍ଞା ପ୍ରଚାର କରି ଆପଣାର ପ୍ରାୟ ଶୋଡ଼ଶ ଲକ୍ଷାଧିକ ପ୍ରଜାଙ୍କର ସନ୍ତପ୍ତ ଚିତ୍ତରେ ଶାନ୍ତିବାରି ସେଚନ କରି ସ୍ମରଣୀୟ ହୋଇ ରହନ୍ତୁ ବୋଲାବାହୁଲ୍ୟ ଓଡ଼ିଆ ଭାଷାରେ କଥୋପକଥନ କରୁଥିବା ଲୋକସଂଖ୍ୟା ମଧ୍ୟପ୍ରଦେଶରେ ଷୋଡ଼ଶ ଲକ୍ଷରୁ ଅଧିକ ।

*ଭା୬ଗ, ସଂ୩୮ଖ୍ୟା, ୨୦।୨।୧୮୯୫*

## ସମ୍ବଲପୁର ଭାଷାପରିବର୍ତ୍ତନ ସମ୍ବନ୍ଧେ ନିବେଦନ ।

ମହିମାବର ଚିଫ୍ କମିଶ୍ନର ବାହାଦୁର ଭାଷା ପରିବର୍ତ୍ତନ ସମ୍ବନ୍ଧେ ଯେ ଆଦେଶ ପ୍ରଚାର କରି ଅଛନ୍ତି ତସମ୍ବନ୍ଧେ ସହୃଦୟ ପାଠକ ମାନଙ୍କର ଅବଶ୍ୟଜ୍ଞାତବ୍ୟ ବିଷୟମାନ ଯେତେଶିଘ୍ର ହୁଏ ପ୍ରକାଶ କରିବାରେ ଲେଶମାତ୍ର ଅବହେଳା କରୁନାହୁଁ, ତେବେ ସଂଗ୍ରହ ଚେଷ୍ଟାରେ ରହିଅଛୁଁ, ତନ୍ନିମିତ୍ତ ପ୍ରକାଶରେ ବିଳମ୍ବ ହେଲେ ପାଠକ, ଅନୁପାଠକ, ସହଯୋଗୀ, ଓ ସହଯୋଗିନୀମାନେ କୃପାକରି ମାର୍ଜ୍ଜନା କରିବେ ।

ସମ୍ବଲପୁରର ଆଜି ଯେପରି ବିପନ୍ନ ସମୟ, ଯେତେବେଳେ ରାଜା ଜମିଦାର ଓ ସ୍ୱଦେଶ ହିତୈଷୀ ବିବିଦ୍ୟ ସନ୍ତାନ ସକଳେ ସମବେତ ହୋଇ ଶାନ୍ତ x x x x କର୍ତ୍ତାଙ୍କ ନିକଟରେ ଆବେଦନ କରିବା ଉଚିତ୍ । ଯେତେବେଳେ ମାତାର ଜିହ୍ୱା (mother tongue)ଉତ୍ପାଟନ କରି ଦିଆଯାଉଅଛି ତେତେବେଳେ ମାତୃଭକ୍ତ ସନ୍ତାନମାନଙ୍କର ନୀରବତା x x x x ହେଉନାହିଁ । ସକଳ ସମବେତ ହୋଇ ଆବେଦନପତ୍ର ବିନୀତଭାବରେ ପ୍ରେରଣ x x x x ଅଧିକାଂଶ ରାଜା ଏବଂ ଜମିଦାର ମାନଙ୍କର x x x x ନାଗପୁର ଯାଇ ମହାମତ ଚିଫ୍‌କମିଶ୍ନର ମହୋଦୟଙ୍କ ସମ୍ମୁଖରେ ଦୁଃଖ ଜଣାଇବାର ବାଞ୍ଛନୀୟ । x x x xକରି ଗଭର୍ଣ୍ଣମେଣ୍ଟ ସର୍ଭେସ୍କୁଲ ସମୂହଦ୍ୱାରା ଦେଶର ଓ ଗଭର୍ଣ୍ଣମେଣ୍ଟଙ୍କର ବହୁ ଉପକାର ସାଧିତ ହେଉଥିବା ସମ୍ବାଦ ଅବଗତ ହୋଇ ଅନୁଗ୍ରହ ପୂର୍ବକ ସମ୍ପ୍ରତି ଏକ ମନ୍ତବ୍ୟ ପ୍ରେରଣ କରିଅଛନ୍ତି ଉକ୍ତ ମନ୍ତବ୍ୟ ପାଠକରି ଜଣାଯାଉଅଛି ଯେ ସର୍ଭେ ସ୍କୁଲ ଉଠାଇ ଦେବାର କଥା ତେଣିକି ଥାଉ ବରଂ ଯହିଁରେ ଉକ୍ତ ସ୍କୁଲର କାର୍ଯ୍ୟକାରିତା ଉତ୍ତୋରୋତ୍ତର ବୃଦ୍ଧିପ୍ରାପ୍ତ ହେବ ଏବଂ ପରୀକ୍ଷୋତ୍ତର ଛାତ୍ରମାନେ ନାନା ବିଭାଗରେ ସୁବିଧାନୁସାରେ କାର୍ଯ୍ୟପ୍ରାପ୍ତ ହେବେ ଏଣିକି ସେ ସମ୍ବନ୍ଧରେ ଗଭର୍ଣ୍ଣମେଣ୍ଟ ସ୍ୱୟଂଚେଷ୍ଟିତ ହେବେବୋଲି ଆଶ୍ୱାସ ପ୍ରଦାନ କରିଅଛନ୍ତି । ମାତ୍ର ଏହି ସ୍କୁଲର ଉତ୍ତୀର୍ଣ୍ଣ ଛାତ୍ରମାନେ ପ୍ରାୟ କେହି ବସିନାହାନ୍ତି ସେମାନେ ଏହି ଉତ୍କଳର ନାନା ଉଚ୍ଚ ବିଭାଗ ଅର୍ଥାତ୍ ଓଭରସିଅର, ସବଓଭରସିଅର, ଡ୍ରାଫ୍‌ସ୍‌ମ୍ୟାନ, ସିଭିଲକୋଟ ଅମୀନ ପ୍ରଭୃତି ହୋଇ ସୁଖରେ କାଳଯାପନ ଓ ସାଧାରଣର ସମ୍ମାନଭାଜନ ହୋଇ ଅଛନ୍ତି । ତଭିନ୍ନ ଆହୁରି ଅନେକେ ଡିଷ୍ଟ୍ରିକ୍ଟବୋର୍ଡ ଲୋକେଲ ବୋର୍ଡ ଏବଂ ରାଜା ମହାରାଜାମାନଙ୍କର ଅଧିନରେ କାମକରି ଓଡିଶାର ଏକପକ୍ଷରେ ଅଭାବମୋଚନ କରୁଅଛନ୍ତି, ମାତ୍ର କେହି ଦେଶୀୟ ଅମିନୀ କାର୍ଯ୍ୟ କରିବା ପାଇଁ ମନ ବଳାଉ ନାହାନ୍ତି । ମାତ୍ର ଗବର୍ଣ୍ଣମେଣ୍ଟ ଇଚ୍ଛା କରନ୍ତି ଯେ ଏଣିକି ଉକ୍ତ ଉଚ୍ଚଶିକ୍ଷିତ ଛାତ୍ରମାନଙ୍କ ବ୍ୟତିତ ଆହୁରି ଏକଦଳ ଛାତ୍ର ଏପରି ଭାବରେ ଶିକ୍ଷା ପ୍ରାପ୍ତ x x x x ଯେ, ଯେଉଁମାନେ ଭବିଷ୍ୟତକୁ ଗଭର୍ଣ୍ଣମେଣ୍ଟ x x x x ବିଭାଗରେ ଅମିନୀ କାର୍ଯ୍ୟ x x x x କହିଅଛୁଁ ଉଚ୍ଚଶିକ୍ଷିତ x x x x ଇଂରାଜୀ ସ୍କୁଲର ୩ୟ କିମ୍ବା ୪ର୍ଥ ଶ୍ରେଣୀରେ ଅଧ୍ୟୟନ କରୁଅଛନ୍ତି ଭବିଷ୍ୟତରେ ଯଦି ସେମାନେ ଏଣ୍ଟ୍ରାନସ ଏଲ ଏ ଓ ବି ଏ ପ୍ରଭୃତି ଉଚ୍ଚତର ପରୀକ୍ଷା ଦେବାକୁ ଅସମର୍ଥ ହୁଅନ୍ତି ତେବେ ସେମାନେ ସମୟର ବୃଥା ଅପବ୍ୟବହାର ନ କରି କଟକ ସର୍ଭେ ସ୍କୁଲରେ ଅଧ୍ୟୟନ କଲେ ସେମାନଙ୍କର ଜୀବନର ଓ ଅର୍ଥର କଦାପି ଅପବ୍ୟୟ ହେବ ନାହିଁ । ଅତଏବ ହେ ଉତ୍କଳବାସୀ ବନ୍ଧୁଗଣ ! ଏହି ଅମୂଲ୍ୟ ସୁବିଧା ତ୍ୟାଗ ନକରି ସଦାଶୟ ଗଭର୍ଣ୍ଣମେଣ୍ଟଙ୍କ ସାଧୁଇଚ୍ଛାକୁ ସ୍ୱଦେଶସ୍ଥ ବାଳକମାନଙ୍କଦ୍ୱାରା କାର୍ଯ୍ୟରେ ପରିଣତ କରିବାକୁ ଯତ୍ନଶୀଳ ହେଉନ୍ତୁ ।

ଗଭର୍ଣ୍ଣମେଣ୍ଟଙ୍କର ଦୟାର ସୀମା ନାହିଁ ମାତ୍ର ଯେବେ ଆମ୍ଭେମାନେ ସ୍ୱୀୟ ଅଯୋଗ୍ୟପଣରୁ ଦେଶର ଏତେ ଗୋଟିଏ ମହୋପକାରୀ ବିଷୟକୁ କେବଳ ଔଦାସୀନ୍ୟ ହେତୁ ନଷ୍ଟ କରିଦେବୁଁ ତେବେ ଆମ୍ଭମାନଙ୍କର ଉନ୍ନତି ଯେ ସୁଦୂରପରାହତ ତାହା କହିବା ଅତ୍ୟୁକ୍ତି ମାତ୍ର । ଏହି ସମସ୍ତ ବିଷୟ ଚିନ୍ତା କରିବା ଆମ୍ଭେମାନେ ସମଗ୍ର ଓଡିଶାର କର୍ତ୍ତୃପକ୍ଷମାନଙ୍କୁ ସବିନୟ ଜଣାଉଅଛୁଁ ଯେପରି ସ୍ୱୀୟ ସ୍ୱୀୟ, ସନ୍ତାନମାନଙ୍କୁ ଏ ସ୍କୁଲର ପଠନରେ ନିଯୁକ୍ତ କରାଇ ସେମାନଙ୍କର ଭବିଷ୍ୟତ ଜୀବନପଥକୁ ମୁକ୍ତ କରନ୍ତୁ ।"

*ଭା୬ଗ, ସଂ୪୦ଖ୍ୟା, ୬।୩।୧୮୯୫*

## ସମ୍ବଲପୁରର ଭାଷା ପରିବର୍ତ୍ତନ ବିରୁଦ୍ଧରେ ଆବେଦନପତ୍ର ।

ମହାମହିମାବର ଶ୍ରୀଯୁକ୍ତ ଗବର୍ଣ୍ଣର ଜେନାରଲ ଓ ରାଜପ୍ରତିନିଧି ଭାରତବର୍ଷ ସମୀପେଷୁ ।

ମହିମାବର !

ଆବେଦନ କରିବାର କାରଣ ଶ୍ରୀଯୁକ୍ତ ମଧ୍ୟପ୍ରଦେଶ ଚିଫ୍ କମିଶ୍ନର ସାହେବ ବାହାଦୁରଙ୍କ ଯେଉଁ ଆଦେଶ ପ୍ରାଦେଶିକ ଗେଜଟର ତା ୨୬-୧-୯୫ ର ଅତିରିକ୍ତ ଅଂଶରେ ପ୍ରକାଶିତ ହୋଇଅଛି ଏବଂ ଯହିଁରେ ବି ଓଡ଼ିୟା ପରିବର୍ତ୍ତନରେ ହିନ୍ଦି ଅଦାଲତି ଭାଷା ରୂପରେ ବ୍ୟବହୃତ ହେବାର ଆଦେଶ ହୋଇଅଛି ତଦ୍ବିରୁଦ୍ଧରେ ଏହି ଅପିଲ ବିନୀତ ଭାବରେ ପେଶକରି ଏହିଆଶା କରୁଅଛନ୍ତି ଯେ ଯେଉଁ ସମସ୍ତ ଘଟଣା ଓ ଅବସ୍ଥା ଅଯଥା ବର୍ଣ୍ଣିତ ହେବାରୁ

ଚିଫ୍ କମିଶନର ସାହେବ ବାହାଦୂର ସମ୍ବଲପୁରବାସୀମାନଙ୍କର ମଙ୍ଗଳ ସଙ୍କଟରେ ଏବଂ ରାଜ୍ୟଶାସନର ସୁବିଧା ନିମନ୍ତେ ଏ ଜିଲ୍ଲାରେ ଅଦାଲତମାନଙ୍କରେ ଓଡ଼ିଆଭାଷା ରହିତ ହେବାର ଆଦେଶ ପ୍ରଚାର କରିଅଛନ୍ତି ସେହିସବୁ ଘଟଣା ଓ ଅବସ୍ଥାର ଯଥାଯଥ ବର୍ଣ୍ଣନା ଦୃଷ୍ଟିକରି ସେହି ଆଦେଶ ରଦ କରିବାକୁ ଅନୁମତି ଦେବାହେବେ । ମଧ୍ୟପ୍ରଦେଶର ଅନ୍ୟାନ୍ୟ ଜିଲ୍ଲାରେ ପ୍ରଚଳିତ ଥିବା ଭାଷାରୁ ସ୍ୱତନ୍ତ୍ର ଗୋଟିଏ ଭାଷା ଅର୍ଥାତ୍ ଓଡ଼ିଆ ସମ୍ବଲପୁରରେ ଅଦାଲତି ଭାଷା ଥିବାରୁ ଅନେକ ଅସୁବିଧା ଘଟୁଅଛି ସତ୍ୟ ; କିନ୍ତୁ ଏହା ମଧ୍ୟ ସତ୍ୟ ଯେ ଏହି ସବୁ ଅସୁବିଧା ଅତିରଞ୍ଜିତ ହୋଇଅଛି । ଯେବେ ସରକାର କାର୍ଯ୍ୟର ସୁବିଧା ନିମନ୍ତେ ଅମଲାମାନଙ୍କୁ ବଦଳି କରିବାର କାରଣ ହୁଏ ତେବେ ସମ୍ବଲପୁରସ୍ଥ ବହୁବିଧ ରାଜ କାର୍ଯ୍ୟାଳୟର ଏକ କାର୍ଯ୍ୟାଳୟରୁ ଅନ୍ୟ କାର୍ଯ୍ୟାଳୟକୁ ସେମାନଙ୍କ ବଦଳି କରାଯାଇପାରେ ; ଆଜିପର୍ଯ୍ୟନ୍ତ ମଧ୍ୟ ଏହି ପ୍ରଥାରେ କାର୍ଯ୍ୟ ହୋଇ ଆସୁଥିଲା – ବୋଲା ବାହୁଲ୍ୟ ଯେ ପୋଲିଟିକେଲ ଏଜେଣ୍ଟଙ୍କ ଅଧିନସ୍ଥ କାର୍ଯ୍ୟାଳୟମାନ ମଧ୍ୟ ଆବେଦନକାରିମାନେ ଗଣନା କରୁଅଛନ୍ତି ଯେବେ ସମ୍ବଲପୁର ଅମଲାମାନଙ୍କ ଅନ୍ୟ କୌଣସି ଜିଲ୍ଲାକୁ ପରିବର୍ତ୍ତନ କରିବାର ବାଞ୍ଛନୀୟ ହୁଏ ତେବେ ସେମାନଙ୍କୁ ହିନ୍ଦିଭାଷା ଶିକ୍ଷା କରିବା ନିମନ୍ତେ ଏହି କଠୋର ଆଦେଶ ଦେଲେ କ୍ଷତି ନାହିଁ ଯେ ସେମାନେ ହିନ୍ଦିଶିକ୍ଷା କରିବାକୁ ଅବନତି ଅନ୍ୟ କୌଣସି ଶାସ୍ତିଲାଭ କରିବେ – ଅନ୍ୟ କୌଣସି ଜିଲ୍ଲାରୁ ଏ ଜିଲ୍ଲାକୁ ଅମଲା ପରିବର୍ତ୍ତନ କରିବାକୁ ହେଲେ ସେମାନଙ୍କୁ ମଧ୍ୟ ଓଡ଼ିଆ ଭାଷା ଶିକ୍ଷା କରିବାକୁ ବାଧ୍ୟ କରିବା ଉଚିତ୍; ଏହି ପ୍ରକାର ବନ୍ଦୋବସ୍ତ ହେଲେ ଯେଉଁ କ୍ଳେଶ ଉପସ୍ଥିତ ହେବ ତାହା ବ୍ୟକ୍ତିବିଶେଷ ଭାଗ୍ୟରେ ଘଟିବ ମାତ୍ର, କିନ୍ତୁ ଏହିପରି ଜାତୀୟ ହାନୀ ବା ଦୁଃଖ ଉପସ୍ଥିତ ହେବନାହିଁ । ଏଥିରେ ରାଜକାର୍ଯ୍ୟ ସୁଚାରୁ ରୁପରେ ନିର୍ବାହିତ ହେବ ଏବଂ କୌଣସି ପାରିବାରିକ ବା ଆତ୍ମବର୍ଗୀୟଲୋକ ଅନିଷ୍ଟପ୍ରଦ ଦଳ ସଂଘଟନ ଭଗ୍ନକରି ଦିଆଯାଇ ପାରିବ ଆହୁରି ମଧ୍ୟ ସରକାର ବାହାଦୂର ଏ ଉଲଟା ବ୍ୟବସ୍ଥା କରିବାରୁ ଅବ୍ୟାହତି ପାଇବେ ଯେ ବିଦେଶୀୟଲୋକ ଏଠାରେ ଆବାଧେ କାର୍ଯ୍ୟ କରି ପାରିବେ ବୋଲି ଏ ଦେଶୀୟ ଲୋକମାନେ ବିଦେଶୀୟ ଭାଷା ଶିକ୍ଷା କରିବେ । ହିନ୍ଦି ଅଦାଲତ ଭାଷା ହେଲେ ଅବଶେଷରେ ଓଡ଼ିଆ ଲୋପପାଇବ ଏକଥା ଏତତ୍‌ପଶ୍ଚାତ୍ ପ୍ରଦର୍ଶିତ ହେବ ; ଏଠାରେ ଏହିମାତ୍ର ପ୍ରଦର୍ଶନ କରାଯାଉଅଛି ଯେ ଏତ୍ ବତ କାଳ ପର୍ଯ୍ୟନ୍ତ ସରକାରୀ କର୍ମରେ କୌଣସି ନିୟୋଗ କରିବା ସମୟରେ ନିୟୋଗକାରିମାନେ ବିଶେଷ ସତର୍କତା ସହିତ ଦେଖିଆସୁଥିଲେ ଯେ ସମ୍ପର୍କିତ ଲୋକମାନେ ଏକକାର୍ଯ୍ୟାଳୟରେ ନିଯୁକ୍ତ ହେଉ ଅଛନ୍ତି କି ନାହିଁ । ବର୍ତ୍ତମାନ ଏହି ସତର୍କତା ଅଧିକ ଅବଲମ୍ବିତ ହେଲେ ସୁଦ୍ଧା କ୍ଷତି ନାହିଁ । ଆହୁରିମଧ୍ୟ ପ୍ରାର୍ଥନା କରାଯାଉଅଛି ଯେ ଏପରି କୌଣସି ବନ୍ଦୋବସ୍ତ ସୁଦ୍ଧା ହୋଇପାରେ ଯେଥିରେକି ଓଡ଼ିଶା ବିଭାଗର କର୍ମଚାରିମାନଙ୍କର ସହିତରେ ସମ୍ବଲପୁର ଅମଲାମାନଙ୍କ ପରିବର୍ତ୍ତନ କରାଯାଏ ଏତଦ୍ରୂପ ଲକ୍ଷ୍ୟରେ କପ୍ତାନ ବୃକ ସାହେବଙ୍କ ମହାପ୍ରସାଦ ବିଷୟକ ଗୋଟିଏ ମନ୍ତବ୍ୟ ଅବଲମ୍ବନ କରି ଶ୍ରୀଯୁକ୍ତ ଚିଫ୍‌କମିଶ୍ନର ବାହାଦୂର ଯାହା ଲେଖି ଅଛନ୍ତି ତତ୍ ସମ୍ବନ୍ଧରେ ଇହା ନିବେଦନ କରାଯାଇଅଛି କି ଯଦ୍ୟପି ସମ୍ବଲପୁରବାସି ଓଡ଼ିଆମାନେ ଆତ୍ମଦୂରଭିସନ୍ଧି ସାଧନ ନିମନ୍ତେ ଏବଂ ସରକାରୀ କାର୍ଯ୍ୟ ବ୍ୟାଘାତ ଘଟାଇବା ନିମନ୍ତେ ମହାପ୍ରସାଦ ବସିଥାନ୍ତି ତାହାହେଲେ ଓଡ଼ିଆମାନେ ନୀତି ବିଷୟରେ ଏପରି ହୀନ ଜଣାପଡ଼େ ଯେ ସେମାନେ କୌଣସି ସରକାରି ନୌକରି ପାଇବାର ଅଯୋଗ୍ୟ । କପ୍ତାନ ବୃକ୍ ସାହେବ ଯାହା କହିଅଛନ୍ତି ତାହା ସ୍ୱୀକାର କଲେ ଦେଖାଯିବ ଯେ ଦୁଇଜଣ ଓଡ଼ିଆ ମଧ  ନିର୍ବିଘ୍ନରେ କୌଣସି କାର୍ଯ୍ୟାଳୟରେ ନିଯୁକ୍ତ ରହିପାରିବେ ନାହିଁ ଏ ପ୍ରକାର ଅବସ୍ଥାର ଉପଯୁକ୍ତ ପ୍ରତିକାର ଏହିକି କୌଣସି ଓଡ଼ିଆକୁ ସରକାରୀ କାର୍ଯ୍ୟରେ ନିଯୁକ୍ତି କରିବାର ଉଚିତ୍ ନୁହେଁ ଅତଏବ ନିୟୋଜିତ ଅମଲାମାନଙ୍କୁ ଏ ପ୍ରଦେଶର ଚତୁର୍ଦ୍ଦିଗରେ ବିକ୍ଷିପ୍ତ କରିବା କର୍ତ୍ତବ୍ୟ କପ୍ତାନ ବୃକ୍‌ସାହେବଙ୍କ ଅନେକକଥା ପରସ୍ପରର ବିରୋଧୀ ଏବଂ ଯେଉଁସବୁ ମାନସିକ ଭାବ ବନ୍ଧୁତ୍ୱ ସଂଘଟନର ମୂଳରେ ଅବସ୍ଥିତ ସେଥିରେ ତାହାଙ୍କର ଅଜ୍ଞତା ସୂଚିତ ହେଉଅଛି; କିନ୍ତୁ ଏପ୍ରକାର ସମାଲୋଚନା ଆବେଦନକାରିମାନଙ୍କ ପକ୍ଷରେ ଉପଯୁକ୍ତ ନୁହେଁ କେବଳ ଏତିକିମାତ୍ର ଉଲ୍ଲେଖ କଲେ ଯଥେଷ୍ଟ ହେବଯେ ବୃକ୍ ସାହେବ ସମ୍ବଲପୁରରେ ମହାପ୍ରସାଦ ପ୍ରଥାର ଅବନତି ବିଷୟରେ ଯେଉଁସବୁ କଥା ଲିପିବଦ୍ଧ କରିଅଛନ୍ତି ତାହା ବିଶେଷ ଦୃଷ୍ଟାନ୍ତଦ୍ୱାରା ସମର୍ଥିତ ନହେବାରୁ ଏହା ଦେଶବାସୀମାନଙ୍କ ବିରୁଦ୍ଧରେ ପ୍ରମାଣ ସ୍ୱରୂପରେ ବ୍ୟବହୃତ ହୋଇ ନ ପାରେ ଏହା ଅତ୍ୟନ୍ତ ଦୁର୍ଭାଗ୍ୟର କଥା ଯେ ଚିଫ୍ କମିଶ୍ନର ବାହାଦୂର ସମ୍ବଲପୁରର ଅବସ୍ଥା ସମ୍ବନ୍ଧରେ ଯାହା କିଛି

ଜ୍ଞାତହୋଇ ଅଛନ୍ତି ଅଞ୍ଚ ମଧ୍ୟବର୍ତ୍ତୀ ଲୋକମାନଙ୍କଠାରୁ, କିନ୍ତୁ ସାକ୍ଷାତ ସମ୍ବନ୍ଧରେ ନୁହେଁ । ଯେଉଁଠାରେ ବୃକ ସାହେବ ସ୍ୱୀୟ କଳ୍ପନା ପ୍ରଭାବରେ ମହାପ୍ରସାଦ ବନ୍ଧୁତାର ଅନୁଷ୍ଠାବାଦୀର ବର୍ଣ୍ଣନା କରିଅଛନ୍ତି ସେଠାରେ ସେ ସ୍ୱୟଂ ସ୍ୱୀକାର କରିଅଛନ୍ତି ଯେ ଦୁଇ ବ୍ୟକ୍ତି ମଧ୍ୟରେ ମହାପ୍ରସାଦ ବସିବା ସମୟରେ ଭକ୍ତସମ୍ବନ୍ଧ ବିଶେଷରୂପେ ପ୍ରକାଶିତ ହୋଇଥାଏ । ଏବଂ ଆହୁରି ମଧ୍ୟ ଉଲ୍ଲେଖ କରିଅଛନ୍ତି ଯେ ଯେଉଁ ଦୁଇ ବ୍ୟକ୍ତି ମଧ୍ୟରେ ମହାପ୍ରସାଦ ସମ୍ବନ୍ଧ ହୁଏ ସେମାନେ ପରସ୍ପର ନାମ ଧରି ନଡାକି ମହାପ୍ରସାଦ ବୋଲି ଡାକନ୍ତି । ସୁତରାଂ ଏପରି ସ୍ଥଳରେ ଅନାୟାସରେ ଏହି ଆପଦଜନକ ମହାପ୍ରସାଦ ବସିଥିବା ଲୋକମାନଙ୍କ ସରକାରି କାର୍ଯ୍ୟ ନିୟୋଗର ବଞ୍ଚିତ କରାଯାଇପାରେ । ସମ୍ବଲପୁରରେ ଅତ୍ୟଳ୍ପ ସମୟ ଅର୍ଥାତ୍ ଦଶମାସ ମାତ୍ର ଅବସ୍ଥାନକରି ଜିଲ୍ଲାର କୌଣସି ଅଭିଜ୍ଞତା ଲାଭ ନକରି ଥିଲେ ଯେଉଁ କଥା ଜଣେ କର୍ମଚାରୀ ସ୍ୱୀୟ ପ୍ରତ୍ନତତ୍ତ୍ୱର ଜ୍ଞାନଦେଖାଇବା ନିମନ୍ତେ ଲେଖିଥିଲେ ତାହାହିଁ ଓଡ଼ିଆ ମାନଙ୍କ ବିରୁଦ୍ଧରେ ଚିଫ୍ କମିଶ୍ନର ବାହାଦୁରଙ୍କ ସମକ୍ଷରେ ଉପସ୍ଥାପିତ ହୋଇଥିଲା ଯାହା ଏକ ସମୟରେ ଜଣକର ସାହିତ୍ୟ ସମ୍ବନ୍ଧୀୟ କ୍ରୀଡ଼ାମାତ୍ର ଥିଲା, ବର୍ତ୍ତମାନ ତାହା ସମ୍ବଲପୁର ବାସିମାନଙ୍କର ବିନାଶର କାରଣ ହୋଇଅଛି ।

ପୋଲିଷ ଇନିସ୍ପେକ୍ଟର ଯେନାରଲ ସାହେବ ସମ୍ବଲପୁର ପୋଲିଷ କାର୍ଯ୍ୟର ଭାଷା ହିନ୍ଦିହେବା ଉଚିତ ବୋଲି ଚିଫ୍ କମିଶ୍ନର ବାହାଦୁରଙ୍କୁ ବୁଝାଇ ଅଛନ୍ତି; ଏକଥା ଚିଫ୍‌କମିଶନର ବାହାଦୂରଙ୍କ ରିଯୋଲ୍ୟୁସନରେ ପାଠକରି ଆବେଦନକାରୀମାନେ ଭୀତ ହୋଇଅଛନ୍ତି, ଯଦି ପୋଲିସ ମହାକୁମାରେ ଓଡ଼ିଆ ପରିବର୍ତ୍ତନରେ ହିନ୍ଦି ବ୍ୟବହୃତ ତାହା କଲେ କିଯେ ମହା ଅପ୍ରତିକରଣୀୟ ଅନିଷ୍ଟ ସାଧିତ ହେବ ତାହା ବୋଲା ଯାଇ ନପାରେ କାରଣ ସହସ୍ରବ୍ୟକ୍ତି ସମ୍ଭବତଃ ଓଡ଼ିଆଭାଷା ଅନଭିଜ୍ଞ ପୋଲିସ କର୍ମଚାରି ମାନଙ୍କର ମୋକଦମା ତଦନ୍ତ ସମୟରେ ବହୁବିଧ କଷ୍ଟପ୍ରାପ୍ତ ହେବେ । ପୋଲିସ କର୍ମଚାରିମାନଙ୍କ ପକ୍ଷରେ ସ୍ଥାନୀୟଭାଷାର ଅଜ୍ଞତା ଯେତେ ଅନିଷ୍ଟର କାରଣ ଏପରି ଆଉକିଛି ହୋଇ ନପାରେ, ଅଦାଲତର ଭାଷା ପରିବର୍ତ୍ତିତ ହେଲେହେଁ ପୋଲିଷର ଭାଷା ପରିବର୍ତ୍ତନ କରିବାର ବାଞ୍ଛନୀୟ ନୁହେଁ, ପୋଲିସର ଅସନ୍ତୋଷଜନକ ଅବସ୍ଥାର ପ୍ରତିକାର ନିମନ୍ତେ ପୋଲିସ କର୍ମଚାରିମାନଙ୍କୁ ଉତ୍କଳଭାଷା ଅନଭିଜ୍ଞ କରାଇବା ବ୍ୟବସ୍ଥା ସୁଫଳପ୍ରଦ ହେବନାହିଁ । ବରଂ କର୍ମଚାରୀମାନେ ଅନୁସନ୍ଧାନ କାର୍ଯ୍ୟାଦିରେ ଅପଟୁ ହୋଇ ପଡ଼ିବେ ।-

ପୂର୍ବ ପୂର୍ବ ସମୟରେ ସମ୍ବଲପୁରର ଅଦାଲତର ଭାଷା ପରିବର୍ତ୍ତନ ସମ୍ବନ୍ଧରେ ଚିଫ୍ କମିଶ୍ନର ସାହେବଙ୍କର ରିଜୋଲ୍ୟୁସନ ୨ୟ ପରିଚ୍ଛେଦରେ ଯାହା ଲିଖିତ ହୋଇଅଛି ତାହା ଭ୍ରମାତ୍ମକ ଅଟେ, ~~ସମ୍ବଲପୁର~~ ଇଂରାଜ୍ୟ ରାଜ୍ୟ ଭୁକ୍ତହେଲାଦିନରୁ ୧୮୬୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସୁରେନ୍ଦ୍ର ସାହା ପ୍ରଭୃତିଙ୍କ ବିଦ୍ରୋହ ନିମନ୍ତେ ଏ ପ୍ରଦେଶ ଶାନ୍ତିହୀନ ଥିଲା । ଏହି ସମୟ ମଧ୍ୟରେ ଏହି ପ୍ରଦେଶ କିଛି ଦିନ ରାଞ୍ଚି ଓ କିଛି ଦିନ କଟକର ଅଧୀନରେ ଥିଲା । ରାଞ୍ଚି ଅନ୍ତର୍ଭୁକ୍ତ ଥିବା ସମୟରେ ମୁନସି ପ୍ରସନ୍ନ ଲାଲ ପ୍ରଭୃତି ବିଦେଶୀୟ ଲୋକମାନେ ଶାସନ କାର୍ଯ୍ୟରେ ନିଯୁକ୍ତ ଥିଲେ ଏବଂ ସେମାନେ ସ୍ୱୀୟ ସ୍ୱୀୟ ଭାଷା ହିନ୍ଦୀ ବା ଉର୍ଦ୍ଦୁରେ ଆପଣାକାର୍ଯ୍ୟ ଚଳାଇ ନେଉଥିଲେ କିନ୍ତୁ ଯେଉଁ ଦିନର ଶାନ୍ତି ସ୍ଥାପିତ ହେଲା ଏବଂ ଶାସନ କାର୍ଯ୍ୟ ଯଥାରୀତି ଆରମ୍ଭ ହେଲା ସେହିଦିନରୁ ମେଜର ଇମ୍ପି ପ୍ରମୁଖ ବିଦେଶୀୟ କର୍ମଚାରିମାନଙ୍କର ପ୍ରତିବାଦସତ୍ୱେ ଓଡ଼ିୟା ଅଦାଲତରେ ଭାଷାବୋଲି ନିର୍ଦ୍ଦିଷ୍ଟ ହୋଇ ଗଲା । ଏହିସବୁ କଥା ସେଣ୍ଟ୍ରାଲ ପ୍ରଭିନ୍ସ ଗେଜେଟିୟାରରେ ବିଶେଷ ରୂପେ ବର୍ଣ୍ଣିତ ଅଛି ।

ଓଡ଼ିଆ ସମ୍ବଲପୁରର ଏକମାତ୍ର ଭାଷା ନୁହେଁ ସତ୍ୟମାତ୍ର ତାହା ଯେ ଏଠାକାର ମୁଖ୍ୟଭାଷା ତାହା ସର୍ବବାଦୀ ସମ୍ମତ । ହିନ୍ଦୀ ଏଠାକାର ୧/୫ ପଞ୍ଚମାଂଶ ଲୋକର ଭାଷା ବୋଲି କଥିତ ହୋଇଅଛି, କିନ୍ତୁ ଏକଥା ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏହି ପଞ୍ଚମାଂଶ ଲୋକଙ୍କର ଭାଷା ଗୋଟିଏ ଅଚିହ୍ନିତ ଲରିଆ ନାମକ ସ୍ଥାନୀୟ ଭାଷା । ଏହି ଲରିଆ ଭାଷା ଯେ ହିନ୍ଦୀ ଓ ଓଡ଼ିଆ ଭାଷାର ମିଶ୍ରଣରେ ଉତ୍ପନ୍ନ ତାହା ସମସ୍ତଙ୍କୁ ଜଣାଅଛି । ହିନ୍ଦୀଭାଷୀ ଲୋକମାନେ ଏଠାକୁ ବହୁଳ ପରିମାଣରେ ଆସି ବାସକରି ସ୍ୱୀୟ ଭାଷା ଅକ୍ଷୁର୍ଣ୍ଣ ରଖି ପାରିନାହାନ୍ତି ବରଂ ଓଡ଼ିୟା ଶବ୍ଦ ଓ କଥନ ପ୍ରଣାଳୀ ଗ୍ରହଣ କରି ଅଛନ୍ତି ଏଥିର ଓଡ଼ିଆ ଭାଷାର ପ୍ରାଧାନ୍ୟ ଅନାୟାସରେ ବୁଝି ପାରାଯାଏ । ଯାହାହେଉ ଅଳ୍ପ ସଂଖ୍ୟକ ଲୋକ ହିନ୍ଦୀପରି ଗୋଟିଏ ଭାଷା ବ୍ୟବହାର କରନ୍ତି ବୋଲି ଅଧିକାଂଶ ଲୋକର ଭାଷା ପରିବର୍ତ୍ତିତ

ହୋଇନପାରେ । ଆସାମ ପ୍ରଦେଶରେ ୧୪୩୫୮୨୦ ସଂଖ୍ୟକ ଲୋକ ଆସାମି ଭାଷା ବ୍ୟବହାର କରନ୍ତି ଏବଂ ସେହି ଦେଶରେ ୨୭୪୧୯୪୭ ସଂଖ୍ୟକ ଲୋକ ବଙ୍ଗଭାଷା ବ୍ୟବହାର କରନ୍ତି ତଥାପି ସରକାର ବାହାଦୁର ଆସାମରେ ଆସାମିଭାଷା ରକ୍ଷାକରି ସୁବିଚାର କରି ଅଛନ୍ତି । ଏହା ମଧ୍ୟ ଉଲ୍ଲେଖଯୋଗ୍ୟ ଯେ ଆସାମରେ ସମ୍ପୂର୍ଣ୍ଣ ରୂପରେ ବଙ୍ଗାକ୍ଷର, ବହୁଳ ପରିମାଣରେ ବଙ୍ଗ ଶବ୍ଦ ବ୍ୟବହୃତ ହୁଏ ତଥାପି ବଙ୍ଗଭାଷା ପ୍ରଚଳିତ କରିବାର ଉଚିତ ବିଚାର କରାଯାଇ ନାହିଁ । କିନ୍ତୁ ସମ୍ବଲପୁରରେ ଓଡ଼ିୟା ଭାଷୀ ୧୬୦୨୭୩୨ ଲୋକ ଅର୍ଥାତ୍ ସମଗ୍ର ଆସାମ ପ୍ରଦେଶର ଆସାମଭାଷି ଲୋକଠାରୁ ପ୍ରାୟ ଦୁଇଲକ୍ଷ ଲୋକ ଅଧିକ । ଏହି ସମସ୍ତ ସଂକ୍ଷା ୧୮୯୧ ମଶିହାର ଜନସଂଖ୍ୟାରିପୋର୍ଟର ଗୃହୀତ ହୋଇଅଛି । ନିବେଦନକାରିମାନେ ମଧ୍ୟ କଲିକତା ଷ୍ଟେଟ୍ସମେନ୍ ଦେଇଥିବା ତା ୧୪-୫-୧୮୯୫ ଇଶବୀର ମନ୍ତବ୍ୟର ତାତ୍ପର୍ଯ୍ୟ ଏଠାରେ ଉଲ୍ଲେଖ କରାଉଅଛନ୍ତି "ଏତାବତକାଳ ଭାରତଶାସନ ବିଷୟରେ ସରକାର ବାହାଦୁର ଯେଉଁ ରୀତି ଅବଲମ୍ବନ କରି ଅଛନ୍ତି ଏହି ରୀତି ତାହାର ସଂପୂର୍ଣ୍ଣ ବିରୋଧି । ଅଧିକାଂଶ ଲୋକର ଯେଉଁ ଭାଷା, ସେହି ଭାଷାରେ ସରକାରି କାର୍ଯ୍ୟଚଳାଇବାର ରୀତି ଶାସନକର୍ତ୍ତା ଏବଂ ଶାସିତମାନଙ୍କ ଉଭୟର ପକ୍ଷରେ ସୁବିଧାଜନକ ଏକଥା ବହୁଦର୍ଶନରେ ପ୍ରମାଣିକୃତ ହୋଇଅଛି" ରେଲଓଏ ବିସ୍ତାର ସଙ୍ଗରେ ସମ୍ବଲପୁରରେ କାହିଁକି ସୁଦୂର ବଙ୍ଗଦେଶରେ ମଧ୍ୟ ହିନ୍ଦୀ ବ୍ୟବହୃତ ହେଉଅଛି । ବଙ୍ଗଦେଶର ପ୍ରଧାନ ପ୍ରଧାନ ନଗରୀର ଲୋକମାନେ ସମ୍ବଲପୁର ସହରବାସିମାନଙ୍କ ପରି ହିନ୍ଦୀ ଜାଣନ୍ତି ସମ୍ବଲପୁରର ମଫସଲର ଲୋକମାନଙ୍କ କଥା ତେଣିକିଥାଉ ସହରର ଭଦ୍ର ସନ୍ତାନମାନେ ହିନ୍ଦୀ ଭଲ ବୁଝନ୍ତି ନାହିଁ; ଏହାର ବିଶିଷ୍ଟ ପ୍ରମାଣ ଅଛି ।

ରେଲଓଏ ସମ୍ବଲପୁରକୁ ଆସିଲା ଉତ୍ତାରେ ୧୮୯୨ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଓଡ଼ିଆଭାଷାଭିଜ୍ଞ ହୋଇ ସ୍କୁଲର ହେଡମାଷ୍ଟର ସ୍ଥାନାନ୍ତରିତ ହୋଇଥିଲେ ତେତେବେଳେ ଅତ୍ରତ୍ୟ ହାଇ-ସ୍କୁଲର ସମଗ୍ର ବାଳକମାନେ ଶିକ୍ଷାବିଭାଗର ଇନିସ୍ପେକ୍ଟର ଜେନେରାଲ ସାହେବ ବାହାଦୁରଙ୍କ ନିକଟକୁ ଏହି ବୋଲି ଆବେଦନ କରି କୃତକାର୍ଯ୍ୟ ହୋଇଥିଲେ ବି ସେମାନେ ହିନ୍ଦୀ ବୁଝିପାରନ୍ତି ନାହିଁ ଅତଏବ ଉତ୍କଳ ଭାଷାଭିଜ୍ଞ ଜଣେ ପ୍ରଧାନ ଶିକ୍ଷକ ନିଯୁକ୍ତ ହେବାର ପ୍ରୟୋଜନ ।"

ସମ୍ବଲପୁର ଭାଷା ଓଡ଼ିଶାର ଓଡ଼ିୟା ନୁହେଁ ଏକଥା ସତ୍ୟ ନୁହେଁ । ଓଡ଼ିଶାର ସ୍କୁଲ ଇନିସ୍ପେକ୍ଟର କିମ୍ୱା ଓଡ଼ିଆ ଉପେଦସ୍ଥ ବିଦ୍ୱାନ ବ୍ୟକ୍ତିମାନଙ୍କର ନିକଟରେ ଜିଜ୍ଞାସାକଲେ ସରକାର ଏହାର ପ୍ରକୃତ ତତ୍ତ୍ୱ ଜାଣି ପାରନ୍ତି । ଦୂରତ୍ୱ ଯୋଗୁଁ ପ୍ରତ୍ୟେକ ଭାଷାର ପ୍ରାଦେଶିକ ଭେଦ ଦେଖାଯାଏ । କଲିକତା ବଙ୍ଗଳା ସହିତ ନଦିୟାର ବଙ୍ଗଭାଷାରେ ପ୍ରଭେଦ ଅଛି ; ଢାକାର ବଙ୍ଗଭାଷାର ଅଧିକ ପ୍ରଭେଦ ଦୃଷ୍ଟ ହୁଏ । ଇଂଲଣ୍ଡରେ ମଧ ୟର୍କସାୟାରରେ ପ୍ରଚଳିତ ଭାଷା ଲଣ୍ଡନରୁ ଭିନ୍ନ ହେଲେହେଁ ତାହା ଇଂରେଜୀ ଅଟେ । ଗତ ଯୁଲାଇ ମାସରେ ଚିଫ୍ କମିଶ୍ନର ସାହେବ ବାହାଦୁର ହିନ୍ଦୀ ପ୍ରଚଳିତ ହେବାର ବିରୁଦ୍ଧରେ ଯେଉଁ ସବୁ ଦରଖାସ୍ତ ପ୍ରାପ୍ତ ହୋଇଥିଲେ ତାହା କେବଳ ଭାବୋଚ୍ଛ୍ୱାସ ପ୍ରଣୋଦିତ ମନେକରି ଅଗ୍ରାହ୍ୟ କରି ଅଛନ୍ତି ଜାଣି ଆବେଦନକାରିମାନେ ଦୁଃଖିତ ହେଲେ- । ଆବେଦନ କାରିମାନେ ପ୍ରଦର୍ଶନ କରିବାକୁ ବାଧ୍ୟ ହେଉଅଛନ୍ତି ଯେ ଓଡ଼ିଆ ଭାଷା ସୁପାଠ୍ୟ ପ୍ରାଚୀନ ଓ ଆଧୁନିକ ସାହିତ୍ୟରେ ପରିପୂର୍ଣ୍ଣ ଏବଂ ଓଡ଼ିଆଭାଷାରେ ସେହି ସମସ୍ତ ଚିହ୍ନ ସଂପୂର୍ଣ୍ଣ ବର୍ତ୍ତମାନ ଅଛି ଯହିଁରୁ ଯଣାଯାଏ ଯେ ଏ ଭାଷା ସ୍ୱାଧୀନ ଏବଂ କେବଳ ବିନାଶପ୍ରାପ୍ତ ହେବ ନାହିଁ, ଶ୍ରୀଯୁକ୍ତ ବିମ୍ସ ସାହେବଙ୍କ ଓଡିଆ ଭାଷା ବିଷୟକ ପ୍ରସିଦ୍ଧ ଗ୍ରନ୍ଥ ପାଠ କଲେ ଏକଥା ସ୍ପଷ୍ଟ ଜଣାପଡ଼ିବ - ସମ୍ବଲପୁରର ଅବସ୍ଥା ଓ ଭାଷାର ବିଶେଷ ଜ୍ଞାନସମ୍ପନ୍ନ ଯେଉଁ କର୍ମଚାରିମାନଙ୍କ କଥା ରିଯୋଲ୍ୟୁଶନରେ ଉଲ୍ଲିଖିତ ହୋଇଅଛି । ଏବଂ ଯେଉଁମାନେକି କହିଅଛନ୍ତି ଯେ ଅବଶେଷରେ ହିନ୍ଦୀ ଏ ଜିଲ୍ଲାର ଲୋକମାନଙ୍କଦ୍ୱାରା ସ୍ୱେଚ୍ଛାରେ ଓଡ଼ିଆ ପରିବର୍ତ୍ତନରେ ଅବଲମ୍ବିତ ହେବ ସେହି ଲୋକମାନଙ୍କର ଭାଷାବିଜ୍ଞାନରେ କିଞ୍ଚିତ୍ ମାତ୍ର ଅଧିକାର ନାହିଁ, ଉଏଲ୍ସ ଭାଷା ପରି ଗୋଟିଏ ଭାଷା ମଧ୍ୟ ରେଳପଥ ପରିବ୍ୟାପ୍ତ ଇଂଲଣ୍ଡର କ୍ଷୁଦ୍ର ଦେଶରେ ସ୍ୱାତନ୍ତ୍ୟ ରକ୍ଷା କରି ଆସୁଅଛି । ଏହା ମଧ୍ୟ ବିବେଚନାର ଯୋଗ୍ୟ । ଯେଉଁମାନେ ଓଡ଼ିଆଭାଷା ଜାଣନ୍ତି ସେମାନେ ନିଶ୍ଚୟ ସ୍ୱୀକାର କରିବେ ଯେ ହିନ୍ଦୀ ଅପେକ୍ଷା ଏ ଭାଷାହୀନ ହୁଏ ; ତେବେ କିଛି ନ ଜାଣି ଏ ଭାଷାପ୍ରତି ଅବଜ୍ଞା ପ୍ରଦର୍ଶନ ବିଦେଶୀୟ ମାନଙ୍କର ଅଭ୍ୟାସ ଅଟେ ଏହି ସମସ୍ତ ଅବସ୍ଥାରୁ ଜଣାପଡ଼ିବ ଯେ ଆବେଦନକାରିମାନେ କି ଭାବଦ୍ୱାରା ପରିଚାଳିତ

ହୋଇ ଆବେଦନ କରିଥିଲେ । ହିନ୍ଦୀ ଅଦାଲତର ଭାଷାରୂପେ ପ୍ରଚଳିତ ହେଲେ ଦେଶୀୟ ଭାଷାର ସମୂହୟ ଅନିଷ୍ଟ ହେବ ବାଳକମାନେ ଓଡ଼ିଆ ପଢ଼ିବାକୁ ଇଚ୍ଛାକରିବେ ନାହିଁ କାରଣ ସେଥିରେ ଅର୍ଥାଗମ ଦୁଃସାଧ୍ୟ । ଅନ୍ୟ ପକ୍ଷରେ ଏହି ବାଳକମାନେ ପରକୀୟ ଭାଷା ଶିକ୍ଷାରେ ବହୁ ଯତ୍ନ କରି ସୁଦ୍ଧା ଭଲ କୃତାର୍ଥତା ଲାଭ କରିପାରିବେ ନାହିଁ କାରଣ ଯାହା ନିଜର ଭାଷା ନୁହେଁ ତାହା ନେଇ ବିଦେଶୀୟମାନଙ୍କ ସଙ୍ଗରେ ପରୀକ୍ଷାରେ ପ୍ରତିଯୋଗ କରିବା ଦୁଃସାଧ୍ୟ ଦୁଇଗୋଟି ବିଦେଶୀୟ ଭାଷା ଇଂରେଜୀ ଓ ହିନ୍ଦୀ ଶିକ୍ଷାକରିବାକୁ ଯାଇ ଏହି ଅନୁନ୍ନତ ପ୍ରଦେଶର ଲୋକମାନଙ୍କର ବୃଦ୍ଧିର ଜଡ଼ତା ମାତ୍ର ଲାଭ ହେବ ଏବଂ ଉନ୍ନତ ସୁଦୂରେ ପରାହତ ହେବ । ଚିଫ୍ କମିଶ୍ନର ସାହେବ ବାହାଦୁରଙ୍କର ରିଯୋଲ୍ୟୁସନ ଯେ ଓଡ଼ିଆର ଉଚ୍ଛେଦ ସାଧନର ଅନୁକୂଳରେ ତାହା ୬ଷ୍ଠ ପରିଚ୍ଛେଦରେ ପରିସ୍ଫୁଟ ହୋଇଅଛି । ଯେବେ ସମ୍ବଲପୁର ମଧ୍ୟପ୍ରଦେଶର ଅନ୍ୟ କୌଣସି ସ୍ଥାନର ସହିତ ଐତିହାସିକ ସୂତ୍ରରେ ଯୁକ୍ତ ଥାନ୍ତା ଅବା ଓଡ଼ିଆଭାଷା ହିନ୍ଦୀ ଭାଷାର କଥଞ୍ଚିତ ଅନୁରୂପ ହୁଅନ୍ତା ତେବେ ସମ୍ବଲପୁରର ଭାଷା ମଧ୍ୟପ୍ରଦେଶର ଅନ୍ୟାନ୍ୟ ଭାଷାର ସହିତ ଏକ କରାଯାଇ ପାରନ୍ତା । ଶ୍ରୀଯୁକ୍ତ ଚାର୍ଲ୍ସ ଗ୍ରେଣ୍ଟ ସାହେବ ମଧ୍ୟପ୍ରଦେଶ ଗେଜେଟିଆରର ଭୂମିକାରେ ଲେଖି ଅଛନ୍ତି ଯେ ସମ୍ବଲପୁର ଏବଂ ତାହାର ଗଡ଼ଜାତ ମହାଲର ସହିତ ଛତ୍ରିଶଗଡ଼ର ଅନ୍ୟାଂଶର କୌଣସି ଭୌଗଳିକ ବା ଐତିହାସିକ ସଂସ୍ରବ ନାହିଁ । ଗତ ଲୋକସଂଖ୍ୟା ରିପୋର୍ଟରେ ମଧ୍ୟ ଏକଥା ସ୍ୱୀକୃତ ହୋଇଅଛି ଏବଂ ଉକ୍ତ ରିପୋର୍ଟର ୧୧ଶ ପୃଷ୍ଠାରେ ଛତ୍ରୀଶଗଡ଼ର ବିବରଣ ଶେଷକରି ଓଡ଼ିଆଦେଶ ବୋଲି ସ୍ୱତନ୍ତ୍ର ଭାଗ କରି ସମ୍ବଲପୁର ଅଞ୍ଚଳର କଥା ଲିପିବଦ୍ଧ ହୋଇଅଛି । କେତେଗୁଡ଼ିଏ ହିନ୍ଦୀ ଶବ୍ଦ ଓଡ଼ିଆଭାଷାରେ ପ୍ରଚଳିତ ଅଛି ବୋଲି ଯେ ଦୁଇଭାଷାର ସୌସାଦୃଶ୍ୟ ଅଛି–ଏକଥା ଠିକ୍ ନୁହେଁ । ଏ କଥା ବିଶେଷ କରି ବୁଝାଇବାକୁ ଗଲେ ବିଶେଷ ଗ୍ରନ୍ଥ ଲେଖିବାକୁ ହୁଏ । ଭାରତବର୍ଷୀୟ ଭାଷାର ବିଶେଷଜ୍ଞ ଲୋକମାନେ ଜାଣନ୍ତି ଯେ ଓଡ଼ିଆ ଭାଷାର ସହିତ ବଙ୍ଗଭାଷାର ବିଶେଷ ନୈକଟ୍ୟ ଅଛି ଏପରି କି ଯେ କ୍ରିୟାରେ କିଞ୍ଚିତ୍ ପରିବର୍ତ୍ତନ କରି ପାଠକଲେ କେଉଁଟା ବଙ୍ଗଳା ଓ କେଉଁଟା ଓଡ଼ିଆ ବାଛିବା ଦୁଷ୍କର ହୋଇଉଠେ । ତଥାଚ କେତେକବର୍ଷ ପୂର୍ବେ ଯେତେବେଳେ ଓଡିଶ୍ୟାରେ ବଙ୍ଗଭାଷା ପ୍ରଚଳିତ ହେବାର ବଙ୍ଗଦେଶର ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସାହେବ ବାହାଦୁର ଆଦେଶ କରିଥିଲେ ତେତେବେଳେ ସ୍ଥାନୀୟ ଲୋକମାନଙ୍କର ସୁବିଚାରିତ ପ୍ରତିବାଦ ପ୍ରାପ୍ତହୋଇ ସରକାର ବାହାଦୁର ସେହି ଆଜ୍ଞା ରହିତ କରିଦେଇଥିଲେ । ଆବେଦନକାରିମାନେ ସ୍ପଷ୍ଟରୂପେ ପ୍ରଦର୍ଶନ କରିଅଛନ୍ତି ଯେ ଭାଷାଦି ଶିକ୍ଷାର ସୁବିଧାର ନିମିତ୍ତ ହେଉ ଅଥବା ଐତିହାସିକ କାରଣରୁ ହେଉ ସମ୍ବଲପୁରରେ ଓଡିଆ ଅକ୍ଷୁର୍ଣ୍ଣ ରଖିବା ଉଚିତ୍ କିନ୍ତୁ ଏହା ମଧ୍ୟ ପ୍ରଦର୍ଶିତ ହୋଇଅଛି ଯେ ଶାସନକାର୍ଯ୍ୟରେ ସୁଦ୍ଧା ତେତେ ଅଧିକ କିଛି ବିଘ୍ନ ହେବାକୁ ନାହିଁ, ତଥାପି ଯଦି କାର୍ଯ୍ୟର ସୁକରଣ ନିମନ୍ତେ ଭାଷା ପରିବର୍ତ୍ତନ ବାଞ୍ଛନୀୟ ହୁଏ ତେବେ ସମ୍ବଲପୁର ଓ ତାହାର ଗଡ଼ଜାତ ମହାଲମାନ ବଙ୍ଗ ଗବର୍ଣ୍ଣମେଣ୍ଟଙ୍କ ହସ୍ତରେ ସମର୍ପଣ କରି ଦିଆଯାଉ, କାରଣ ଓଡ଼ିଶାର ଲୋକମାନଙ୍କ ସହିତ ଏସ୍ଥାନ ଲୋକମାନଙ୍କର ଭୌଗଳିକ ; ଐତିହାସିକ ଓ ସାମାଜିକ ସଂସ୍ରବ ଥିବାରୁ ଏହିପ୍ରକାର ପରିବର୍ତ୍ତନ ସମ୍ବଲପୁର ପକ୍ଷରେ ମଙ୍ଗଳକର ହେବ ।

ସମ୍ବଲପୁରଠାରୁ କଟକର ଦୂରତ୍ୱ ରାଏପୁରର ଦୂରତ୍ୱରୁ ଅଧିକ ନୁହେ । ପୂର୍ବେ ସମ୍ବଲପୁରରୁ କଟକ ପର୍ଯ୍ୟନ୍ତ ପଥ ବିପଦ ସଙ୍କୁଳ ଥିଲାମାତ୍ର ବର୍ତ୍ତମାନ ସେ ସମସ୍ତ ଅଧିକ ପରିମାଣରେ ତିରୋହିତ ହୋଇଅଛି । ଆହୁରି ମଧ୍ୟ ଓଡ଼ିଶ୍ୟାର ସହିତ ଏଦେଶ ରେଳପଥ ଦ୍ୱାରା ସଂଯୁକ୍ତ ହେବାର ପ୍ରସ୍ତାବ ଧାର୍ଯ୍ୟ ହୋଇଯାଇ ଅଛି । ଏପରି ଅବସ୍ଥାରେ ୧୬୦୨୭୩୨ ସଂଖ୍ୟକ ଲୋକଙ୍କୁ ଭାଷା ପରିବର୍ତ୍ତନଜନିତ କଷ୍ଟ ନଦେଇ ଯେଉଁମାନଙ୍କ ସଙ୍ଗରେ ସେମାନଙ୍କର ସ୍ୱଭାବିକ ସଂଯୋଗ ସେମାନଙ୍କ ସହିତ ଯୁକ୍ତି କରିବା ପ୍ରାର୍ଥନୀୟ । ଅତ୍ୟନ୍ତ ବିନୀତ ଭାବରେ ଆବେଦନକାରିମାନେ ପ୍ରାର୍ଥନା କରିଅଛନ୍ତି ଯେ ଶ୍ରୀଛାମୁ ଅନୁକମ୍ପାପୂର୍ବକ ଚିଫ୍ କମିଶ୍ନର ବାହାଦୁରଙ୍କ ଭାଷା ପରିବର୍ତ୍ତନର ଆଦେଶ ରହିତ କରି ପୂର୍ବବତ୍ ଓଡ଼ିଆପ୍ରଚଳିତ ହେବାର ଆଦେଶଦାନ କରନ୍ତୁ ଅଥବା ସମ୍ବଲପୁର ଏବଂ ତାହାର ଗଡ଼ଜାତ ମହାଲମାନଙ୍କୁ ଓଡ଼ିଶ୍ୟାର ସହିତ ସଂଯୁକ୍ତକରି ଦେଉନ୍ତୁ । ଶ୍ରୀଛାମୁଙ୍କ ଦାୟ ନିମନ୍ତେ ଆବେଦନକାରୀମାନେ ଚିରପ୍ରାର୍ଥନା କରିବେ ।

*ଭା୭ଗ, ସଂ୨ ଓ୩ ସଂଖ୍ୟା, ୧୨-୧୯।୬।୧୮୯୫*

## ଇଲାକାବୃଦ୍ଧିର ପ୍ରସ୍ତାବ ।

ଗତବର୍ଷର ସାଲତମାମୀ ରିପୋର୍ଟରେ ଓଡ଼ିଶ୍ୟା ବିଭାଗର ମାନ୍ୟବର କମିଶ୍ନର ସାହେବ ଆପଣାର ଇଲାକା ବୃଦ୍ଧିର ପ୍ରସ୍ତାବ କରିଥିଲେ । ତାଙ୍କର ଅଭିପ୍ରାୟ ଏହି ଯେ ଓଡ଼ିଆ ପ୍ରଜାମାନେ ବାସକରୁଥିବା ସ୍ଥାନମାନ ଓଡ଼ିଶ୍ୟାର ଅନ୍ତର୍ଗତ ହେବା ଶ୍ରେୟସ୍କର । ଏହି ପ୍ରସ୍ତାବ ଅନୁମୋଦିତ ହେଲେ ସମ୍ବଲପୁର, ରେଢ଼ାଖୋଲ, ପାଟଣା, ସୋନପୁର, କଳାହାଣ୍ଡି, ଖିମିଡ଼ି, ଘୁମୁସର ପ୍ରଭୃତି ବଣେଇଁ, ସଢ଼େଇକଳା, ଖରସୁଆଁ ପ୍ରଭୃତି ରାଜ୍ୟମାନ ଓଡ଼ିଶାର ଅନ୍ତର୍ଗତ ହେବ । ଏତଦ୍ୱାରା ଓଡ଼ିଆମାନଙ୍କର ଯେ ସମୂହ ଉପକାର ସାଧିତ ହେବ ଏଥିରେ କିଛିମାତ୍ର ସନ୍ଦେହ ନାହିଁ । କିନ୍ତୁ କମିଶ୍ନର ବାହାଦୁରଙ୍କର ଏହି ପ୍ରସ୍ତାବ ସମ୍ବନ୍ଧରେ ଛୋଟଲାଟ ବାହାଦୂରଙ୍କ ମତ କଣ ଜାଣି ପାରି ନାହୁଁ , କିନ୍ତୁ ଏହି ପ୍ରସ୍ତାବ ବିରୁଦ୍ଧରେ କୌଣସି ସ୍ନେହ ଦେଖାଯାଇନାହିଁ । ସମ୍ବଲପୁର ପ୍ରଜାମାନେ ଏବଂ ଓଡିଶ୍ୟା ଏସୋସିୟେସନ ଭାରତର ବଡ଼ଲାଟ ଏବଂ ରାଜପ୍ରତିନିଧିଙ୍କ ଛାମୁରେ ଉପରୋକ୍ତ ପ୍ରକାରର ଆବେଦନକରି ଥିଲେ କିନ୍ତୁ ଉକ୍ତ ପ୍ରସ୍ତାବ ଅଗ୍ରାହ୍ୟ ହୋଇଅଛି । ଓଡ଼ିଆମାନଙ୍କ ପକ୍ଷରେ ଏହା ସମୂହ ଦୁଃଖର ବିଷୟ ।

*ଭା୭ଗ, ସଂ୨୨ଖ୍ୟା, ୩।୧୦।୧୮୯୫*

## ମାନ୍ୟବର ମନରୋ ଏବଂ ଓଡ଼ିୟା ଶିକ୍ଷାବିଭାଗ ।

ଅବସରପ୍ରାପ୍ତ ଇନ୍ସପେକ୍ଟର ଯେନେରଲ ଆଲେକଜାଣ୍ଡର ମନରୋ ବାରିଷ୍ଟର, ଏଟ,ଲ ମହୋଦୟ ନାଗପୁରକୁ ଆଗମନକରି କାର୍ଯ୍ୟଭାର ଗ୍ରହଣ କରି ନଥିବା ଏବଂ ଚଳିତମାସ ମଧ୍ୟରେ ଶୁଭାଗମନ କରିବାର ସମ୍ବାଦ ପାଇଅଛୁଁ । ମନରୋ ମହୋଦୟ ଆମ୍ଭମାନଙ୍କ ନିକଟରେ ଏକପ୍ରକାର ପ୍ରତିଶ୍ରୁତ ହୋଇ ଥିଲେ ଯେ ଏଣିକି ସମ୍ବଲପୁରର ଶିକ୍ଷାବିଭାଗରେ ଉତ୍କଳ ଭାଷା  ପାରଦର୍ଶୀ ଓଡ଼ିଆ ମାନଙ୍କୁ ନିଯୁକ୍ତ କରିବେ ବର୍ତ୍ତମାନ ଦେଖିବେ ଯେ ଓଡ଼ିଆ ସ୍କୁଲ ସମୂହର ପରିଦର୍ଶକ ପଦରେ ନିୟୋଜିତ ତ୍ରିଲୋଚନଙ୍କ ସ୍ଥାନରେ ହନୁମାନ ନିଯୁକ୍ତ; ଓଡ଼ିୟା ଅଧ୍ୟକ୍ଷଙ୍କ ବଦଳରେ ପଶ୍ଚିମା ଅଧ୍ୟକ୍ଷଙ୍କ ହସ୍ତରେ ଓଡ଼ିଆସ୍କୁଲ ମାନଙ୍କର ତତ୍ତ୍ୱାବଧାନ ଭାର ନ୍ୟସ୍ତ । କର୍ତ୍ତୃପକ୍ଷମାନଙ୍କ ମତରେ ହନୁମାନ ପ୍ରସାଦ ଓଡିଆ ଜାଣନ୍ତି, ଶୁଣିବାରେ ହନୁମାନ ପ୍ରସାଦ ସୁଦ୍ଧା ସେହିକଥା କହନ୍ତି । ସେହି ରୀତିରେ ଆମ୍ଭେମାନେ ହିନ୍ଦିଭାଷା ଜାଣୁଥିବାର ଅଭିମାନ କରିପାରୁଁ କିନ୍ତୁ ଭାଷା ଜାଣୁବୋଲି କହିଲେ ହେବନାହିଁ, ଭାଷା ଶାସ୍ତ୍ରରେ ବ୍ୟୁତ୍ପନ୍ନ ଥିବାର ଆବଶ୍ୟକ, ଯାହା ହେବାର ହୋଇଯାଇଅଛି ମନରୋ ବାହାଦୁରଙ୍କ ସମୟରେ ଏପରି ଘଟଣା ଆଉ ନ ଘଟୁ ; ଈଶ୍ୱରଙ୍କ ନିକଟରେ ଏହି ପ୍ରାର୍ଥନା କରୁଅଛୁଁ ।

*ଭା୭ଗ, ସଂ୧୯ଖ୍ୟା, ୯।୧୦।୧୮୯୫*

## ମାତୃଭାଷାର ଉଚ୍ଛେଦ ସାଧନ ।

ସମ୍ବଲପୁରର ମାତୃଭାଷା ଓଡ଼ିଆ । ମଧ୍ୟ ପ୍ରଦେଶର ଚିଫ୍ କମିଶ୍ନର ଶ୍ରୀଯୁକ୍ତ ଉଡବରନ ବାହାଦୁର ଏଜିଲ୍ଲାର ଅଦାଲତ ସମୂହରେ ଓଡ଼ିଆଭାଷା ବଦଳରେ ହିନ୍ଦିଭାଷା ବ୍ୟବହୃତ ହେବାର ଆଦେଶ ଦେବାରୁ ସମ୍ବଲପୁରର ଅଧିବାସିମାନେ ଏବଂ କଟକର "ଓଡ଼ିଶ୍ୟା ଏସୋସିୟେସନ" ତଦ୍ଦିରୁଦ୍ଧରେ ବଡ଼ଲାଟଙ୍କ ସମୀପକୁ ଆବେଦନପତ୍ର ପଠାଇଥିଲେ । ବଡ଼ଲାଟ ଲର୍ଡ ଏ ଗିନ ବାହାଦୁର ଉପରୋକ୍ତ ଯୁକ୍ତିପୂର୍ଣ୍ଣ ଆବେଦନ ଅଗ୍ରାହ୍ୟକରି ଚିଫ୍ କମିଶ୍ନର ବାହାଦୁରଙ୍କ ନିଷ୍ପତ୍ତିକୁ ଅନୁମୋଦନ କରିଅଛନ୍ତି । ଆଗାମୀ ଜାନୁଏରୀ ମାସ ୧ ତାରିଖଠାରୁ ଏ ଜିଲ୍ଲାରେ ହିନ୍ଦିଭାଷା ପ୍ରଚଳିତ ହେବ – ଓଡ଼ିଆ ମାନଙ୍କର ଉନ୍ନତିର ଗୋଟିଏ ଦ୍ୱାର ବନ୍ଦହେବ । ଏତଦ୍ୱାରା ଯେତିକି ଅପକାର ସାଧିତ ହେବ ଆମ୍ଭେମାନେ ଇତିପୂର୍ବେ ପ୍ରକାଶ କରିଅଛୁଁ ବର୍ତ୍ତମାନ ସେ ସବୁର ଉଲ୍ଲେଖ ଅନାବଶ୍ୟକ । ସହୃଦୟ ଉଡବରନ ବାହାଦୁରଙ୍କ ଦ୍ୱାରା ଆମ୍ଭେମାନେ ବିଶେଷ ଉପକୃତ ହେବାର ଆଶା ରଖିଥିଲୁଁ, ବର୍ତ୍ତମାନ ତାଙ୍କରିଦ୍ୱାରା ମାତୃସମା ମାତୃଭାଷାକୁ ହରାଇ ବସିଲୁଁ । ଏଥିବଳି ଆକ୍ଷେପର ବିଷୟ ଆଉ କି ଅଛି !

*ଭା୭ଗ,ସଂ୨୦ଖ୍ୟା, ୧୬।୧୦।୧୮୯୫*

## ଭାଷା ପରିବର୍ତ୍ତନ ।

ସମ୍ବଲପୁରରେ ହିନ୍ଦିଭାଷା ବ୍ୟବହୃତ ନ ହୋଇ ଓଡିଆଭାଷା ବ୍ୟବହୃତ ହେବାର ଆଦେଶ ଦେବା ନିମନ୍ତେ କଟକ ଏବଂ ସମ୍ବଲପୁରର ଲୋକମାନେ ଭାରତର ଗବର୍ଣ୍ଣର ଜେନେରାଲଙ୍କ ନିକଟକୁ ଆବେଦନପତ୍ର ପଠାଇଥିଲେ । କଟକର ଆବେଦନକାରିମାନେ କୌଣସି ଆଦେଶ ପାଇ ଅଛନ୍ତି କି ନା ଆମ୍ଭମାନଙ୍କୁ ଜଣାନାହିଁ, କିନ୍ତୁ ସମ୍ବଲପୁରର ଆବେଦନକାରିମାନେ ସରକାରୀ ସମ୍ବାଦପାଇ ଅଛନ୍ତି ଯେ ମହାମାନ୍ୟ ଗବର୍ଣ୍ଣର ଜେନେରାଲ ସେମାନଙ୍କର ଆବେଦନ ଅଗ୍ରାହ୍ୟ କରିଅଛନ୍ତି, କିନ୍ତୁ ସେତିକି କାରଣରୁ ଓଡ଼ିଆ ପ୍ରଜାମାନଙ୍କର ଆବେଦନ ଅଗ୍ରାହ୍ୟକଲେ ତାହା ଜଣାଇଦିଆଯାଇନାହିଁ । ଭବିଷ୍ୟତରେ ଯେ ଜଣାଇଦିଆଯିବ ଏଥିରେ ସ୍ଥିରତା ନାହିଁ । ସମସ୍ତ ଓଡ଼ିଆମାନେ ଆଶାକରିଥିଲେ ଯେ ଗବର୍ଣ୍ଣର ଜେନେରାଲ ମହୋଦୟ ପ୍ରଜାମାନଙ୍କର ଯୁକ୍ତିଯୁକ୍ତ ଆବେଦନ ଅଗ୍ରାହ୍ୟ କରିବେନାହିଁ । ବର୍ତ୍ତମାନ ସେମାନେ ନିରାଶ ହୋଇ ଦୀର୍ଘନିଶ୍ୱାସ ତ୍ୟାଗ କରୁ ଅଛନ୍ତି, ଏଥିମଧ୍ୟରେ xxxx କଳର କୌଣସି କୌଣସି ସୁସନ୍ତାନ ପାର୍ଲିୟାମେଣ୍ଟରେ ଆବେଦନ କରିବାର ପରାମର୍ଶ ଦେଇ ତଦୁପଲକ୍ଷେ ଅର୍ଥ ସାହାଯ୍ୟ କରିବାକୁ ସମ୍ମତି ପ୍ରକାଶ କରିଅଛନ୍ତି । ମାତୃଭାଷାପ୍ରତି ଲୋକ ମାନଙ୍କର ଗଭୀର ଅନୁରାଗଥିବାର ପରିଚୟପାଇ ଆମ୍ଭେମାନେ ଚମତ୍କୃତ ହୋଇ ଅଛୁଁ । ଲୋକମାନେ ସାମାନ୍ୟ ସ୍ୱାର୍ଥରକ୍ଷା ସକାଶେ ପାର୍ଲିୟାମେଣ୍ଟପର୍ଯ୍ୟନ୍ତ ଆବେଦନ କରୁଥିବାସ୍ଥଳେ ମାତୃଭାଷା ନିମନ୍ତେ ସେପର୍ଯ୍ୟନ୍ତ ଯିବା ଅବଶ୍ୟ କର୍ତ୍ତବ୍ୟ, ନଚେତ୍ ଓଡ଼ିଆମାନଙ୍କୁ ଅନ୍ୟ ପ୍ରଦେଶର ଲୋକମାନେ ନିନ୍ଦା କରିବେ । ନିନ୍ଦାକରନ୍ତୁ ବା ନକରନ୍ତୁ ଆମ୍ଭେମାନେ ସ୍ପଷ୍ଟ ଜାଣିପାରୁଅଛୁଁ ଯେ ହିନ୍ଦିଭାଷା ପ୍ରଚଳିତ ହେଲେ ଓଡ଼ିଆମାନଙ୍କର ସମୂହକ୍ଷତି ହେବ, ଏପରି ସ୍ଥଳେ ମାତୃଭାଷାର ବ୍ୟବହାର ବଳବତ୍ତର ରଖିବା ପାଇଁ ଆଉଥରେ ଚେଷ୍ଟା କରିବା ଅବଶ୍ୟ କର୍ତ୍ତବ୍ୟ ।

*ଭା୭ଗ, ସଂ୨୧ଖ୍ୟା, ୨୩/୧୦/୧୮୯୪*

## ସମ୍ବଲପୁରର ଡେପୁଟି ଇନ୍ସପେକ୍ଟର ।

ସମ୍ବଲପୁରର ସ୍କୁଲ ସମୂହର ନବୀନ ଡେପୁଟୀ ଇନ୍ସପେକ୍ଟର ବିଦେଶୀ ଥିବା ଏବଂ ଓଡ଼ିଆ ତାଙ୍କର ମାତୃଭାଷା ନଥିବା କଥା ଆମ୍ଭେମାନେ ଏକାଧିକବାର ଉଲ୍ଲେଖ କରିଥିବାରୁ ତାଙ୍କର ଅଧୀନସ୍ଥ କର୍ମଚାରୀ – ବରଗଡ଼ ବିଦ୍ୟାଳୟର ଅଧ୍ୟାପକ ବାବୁ ଭଗବାନ ନନ୍ଦ ତହିଁର ପ୍ରତିବାଦ କରିଅଛନ୍ତି । ସେ କହନ୍ତି "ଉକ୍ତ ମହାଶୟ ୨/୩ ବର୍ଷ ବୟସରୁ ସମ୍ବଲପୁର ସହରରେ ୧ମ ଶ୍ରେଣୀରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନକରି ପରେ ଏଣ୍ଟ୍ରାନ୍ସ ପାଶ କରିଅଛନ୍ତି । ପୁଣି ସମ୍ବଲପୁର ହାଇସ୍କୁଲର ଏଣ୍ଟ୍ରାନ୍ସ ପରୀକ୍ଷୋତ୍ତୀର୍ଣ୍ଣ ଅନ୍ୟାନ୍ୟବ୍ୟକ୍ତିଙ୍କ ପରି ବା ତହିଁରୁ ଅଧିକ ବିଦ୍ୟା ଲାଭ କରିଅଛନ୍ତି, ତାଙ୍କ ସଙ୍ଗରେ କଥୋପକଥନକଲେ ସମସ୍ତେ ସହଜରେ ଜାଣି ପାରିବେ ଯେ ଏ ଜଣେ ଉତ୍କଳ ସନ୍ତାନ । ସେ ଓଡ଼ିଆ, ହିନ୍ଦି ଏବଂ ଇଂରେଜୀ ଏହି ତିନି ବିଦ୍ୟାରେ ପୂର୍ଣ୍ଣ ରୂପେ ପାରଗ ଅଟନ୍ତି ।"ଇତ୍ୟାଦି" । ଶ୍ରୀମାନ ହନୁମାନ ପ୍ରସାଦ ସମ୍ବଲପୁରର ବାସିନ୍ଦା ସ୍ୱୀକାର କଲୁଁ କିନ୍ତୁ ଓଡ଼ିଆ ତାଙ୍କର ଉପଭାଷା, ତାଙ୍କର ପାରିବାରିକ ଭାଷା – ମାତୃଭାଷା ହିନ୍ଦି, ସେ ଓଡ଼ିଆ ସ୍କୁଲର ୫ମ ଶ୍ରେଣୀଯାଏ ଏବଂ ଇଂରେଜୀରେ ଏଣ୍ଟ୍ରାନ୍ସ ପର୍ଯ୍ୟନ୍ତ ପାସ କରି ହିନ୍ଦି ଭାଷାରେ କଥୋପକଥନ କରୁଥିବା ହେତୁବାଦରେ ସେତିକି ବିଦ୍ୟାରେ ପୂର୍ଣ୍ଣରୂପେ ପାରଗ ଥିବାର ବିଶ୍ୱାସ ପ୍ରତିବାଦକ ଭଗବାନବାବୁଙ୍କର ଥିବା ସ୍ୱଭାବିକ ହୋଇପାରେ କିନ୍ତୁ ଆମ୍ଭମାନଙ୍କର ବିଶ୍ୱାସ ନାହିଁ । ହନୁମାନ ପ୍ରସାଦ ମହାଶୟ ପ୍ରବେଶିକା ପରୀକ୍ଷୋତ୍ତୀର୍ଣ୍ଣ କୌଣସି କୌଣସି ବ୍ୟକ୍ତିଙ୍କ ଅପେକ୍ଷା ଅଧିକ ଯୋଗ୍ୟତାଲାଭ କରିପାରିଥିବେ କିନ୍ତୁ ତାଙ୍କ ତୁଲ୍ୟ ବା ତାଙ୍କ ଅପେକ୍ଷା ଅଧିକ ଯୋଗ୍ୟ ଓଡ଼ିଆର ଅଭାବ ନାହିଁ । ଫଳକଥା ତ୍ରିଲୋଚନବାବୁଙ୍କର ଯୋଗ୍ୟତା ପ୍ରବୀଣତାପ୍ରତି ଲକ୍ଷକଲେ ତାଙ୍କ ସ୍ଥାନରେ ଶ୍ରୀମାନ ହନୁମାନ ପ୍ରସାଦଙ୍କୁ ନିଯୁକ୍ତ କରିବା ଉଚିତ୍ ହୋଇନାହିଁ । ନନ୍ଦମହାଶୟଙ୍କର ଏହା ମଧ୍ୟ ସ୍ମରଣ ଥିବ ଯେ ବର୍ତ୍ତମାନ ଆମ୍ଭେମାନେ ଯେଉଁ ତ୍ରିଲୋଚନବାବୁଙ୍କର ଯୋଗ୍ୟତା ଏବଂ ପ୍ରବୀଣତାର ଉଲ୍ଲେଖ କରୁଅଛୁଁ, ତାଙ୍କ ସ୍ଥାନରେ ତତୋଧିକ ଯୋଗ୍ୟଲୋକ ନିୟୋଗ କରିବା ପାଇଁ ଆମ୍ଭେମାନେ ମତଦେଇ ଅଛୁଁ, ଏପରି ସ୍ଥଳେ ଶ୍ରୀଯୁକ୍ତ ହନୁମାନ ପ୍ରସାଦଙ୍କ କାର୍ଯ୍ୟଲାଭରେ ଆମ୍ଭେମାନେ ପରିତୁଷ୍ଟ ହୋଇ ନପାରୁଁ । କର୍ତ୍ତୃପକ୍ଷ

ଚେଷ୍ଟାକରିଥଲେ ଉକ୍ତ ପଦରେ ସେହି ବେତନରେ ଅଧିକ ଓଡ଼ିଆ ଓ ଇଂରେଜୀ ଜାଣିଥିବା ଲୋକ ନିଯୁକ୍ତ କରି ପାରିଥାନ୍ତେ । ଶିକ୍ଷା ବିଭାଗର ତତ୍ୱାବଧାୟକ ପଦରେ ନିୟୋଜିତ ବ୍ୟକ୍ତିଙ୍କର ଯୋଗ୍ୟତା ଯେତେ ଅଧିକ, ସୁଫଳ, ଲାଭର ସମ୍ଭାବନା ତେତେବେଶୀ । ଯାହାହେବାର ହୋଇଯାଇ ଅଛି । କର୍ତ୍ତୃପକ୍ଷମାନେ ମନୋମତ ବ୍ୟକ୍ତିକୁ ନିଯୁକ୍ତ କରି ପାରନ୍ତି – ସେମାନଙ୍କର ସେ ଅଧିକାର ଅଛି କିନ୍ତୁ ସରକାରୀ କାର୍ଯ୍ୟ ସମ୍ବନ୍ଧରେ ସ୍ୱାଧୀନମତ ଦେବାର ଅଧିକାର ଆମ୍ଭମାନଙ୍କର ଥିବାରୁ ସେସମ୍ବନ୍ଧରେ ଦୁଇଚାରି କଥା କହିଅଛୁଁ । ନଚେତ୍ ହନୁମାନ ବାବୁଙ୍କର ଉନ୍ନତି ନହେଉ ଏହା ଆମ୍ଭମାନଙ୍କର ଅଭିପ୍ରେତ ନୁହଇ ।

*ଭା୭ଗ,ସଂ୨୫ଖ୍ୟା, ୨୦।୧୧।୧୮୯୫*

## ଓଡ଼ିଆଭାଷା ଏବଂ ବଡ଼ଲାଟ ।

ଓଡ଼ିଆଭାଷା ସମ୍ବଲପୁରରୁ ଉଠିନଯାଉ ଏଥିସକାଶେ କଟକ ଏବଂ ସମ୍ବଲପୁରରୁ ଦୁଇଖଣ୍ଡ ଆବେଦନପତ୍ର ବଡ଼ଲାଟ ବାହାଦୂରଙ୍କ ନିକଟକୁ ପ୍ରେରିତ ହୋଇଥିଲା ଉକ୍ତ ଉଭୟ ଆବେଦନପତ୍ର ବଡ଼ଲାଟଙ୍କ ଦରବାରରେ ଏକତ୍ରିତ ହୋଇ ଆଲୋଚନା କରାଯାଇଥିବାର ସମ୍ପୂର୍ଣ୍ଣ ସମ୍ଭାବନା, ଏପରିସ୍ଥଳେ ସମ୍ବଲପୁରରେ ଲୋକମାନଙ୍କୁ ଶେଷାଦେଶ ନ ଜଣାଇ କଟକର ଆବେଦନକାରିମାନଙ୍କ କୌଣସି କଥା ଜଣାଇ ନଦବାର କାରଣ ଜଣାପଡୁନାହିଁ ବରଂ ଏ ବିଷୟରେ ଆଲୋଚନା କଲେ ମନରେ ସନ୍ଦେହ ଜାତ ହୋଉ ଅଛି । ସେ ଯାହାହେଉ ବଡ଼ଲାଟବାହାଦୂରଙ୍କ ମନ୍ତବ୍ୟର ପ୍ରତିଲିପି ହସ୍ତଗତ ହେବାର ଚେଷ୍ଟା କରିବା ଉଚିତ । ଉକ୍ତ ମନ୍ତବ୍ୟ ସମ୍ପୂର୍ଣ୍ଣ ପାଠ ନ କଲେ ତାଙ୍କର ଅଭିପ୍ରାୟ ଜଣାପଡ଼ିବନାହିଁ ସୁତରାଂ ପ୍ରତିକାରର ସଦୁପାୟ ଆବିଷ୍କାର କରାଯାଇ ପାରିବ ନାହିଁ । ଭରଶା କରୁଁ ସମ୍ବଲପୁର ଅଧିବାସିମାନେ ଏ ବିଷୟରେ ଶିଘ୍ର ଯତ୍ନବାନ ହେବେ ଏବଂ ହିନ୍ଦିଭାଷା ପ୍ରଚଳନ ଆଉକିଛିକାଳ ସ୍ଥଗିତ ରଖିବା ସକାଶେ ଚିଫ୍ କମିଶ୍ନର ବାହାଦୂରଙ୍କୁ ପ୍ରାର୍ଥନା କରିବେ । ବାସ୍ତବରେ ସହସା ହିନ୍ଦି ଚଳାଇଲେ କି ଅମଲା କି ମାମଲତକାର କି ସାକ୍ଷ୍ୟ ସମସ୍ତଙ୍କୁ ମହାହରବରରେ ପଡ଼ିବାକୁ ହେବ । ମନ୍ତବ୍ୟ ହସ୍ତଗତ ଏବଂ ହିନ୍ଦି ପ୍ରଚଳନ ସ୍ଥଗିତ ରଖିବା ବିଷୟରେ ଆଉ କାଳବିଳମ୍ବ ନକରି ଶିଘ୍ର ଉଦ୍ୟୋଗ ହେବାର ବିଧେୟ ବୋଧ କରୁଅଛୁଁ । ଜାତୀୟ ଭାଷାପ୍ରତି ଲୋକମାନଙ୍କର କିପରି ମମତା ଅଛି ତାହା କାର୍ଯ୍ୟତଃ ଜଣାପଡ଼ିବ ।

*ଭା୭ଗ,ସଂ୨୭ଖ୍ୟା, ୪।୧୨।୧୮୯୫*

# ୧୮୯୬

## ପ୍ରେରିତ ପତ୍ର ।

ସମ୍ବଲପୁରର ହିନ୍ଦିଭାଷାର ଉପକାରିତା ଶ୍ରୀ ସମ୍ବଲପୁର ହିତୈଷିଣୀ ସମ୍ପାଦକ ମହାଶୟ ସମୀପେଷୁ ।

ମହାଶୟ,

ଅନୁଗ୍ରହ ପୂର୍ବକ ଏ ପ୍ରବନ୍ଧଟିକୁ ଆପଣଙ୍କର ପତ୍ରିକାରେ ସ୍ଥାନ ଦାନ ଦେଇ ବାଧିତ କରିବେ ।

ସମ୍ବଲପୁରରେ ହିନ୍ଦିଭାଷା ପ୍ରଚଳିତ ହୋଇଥିବାରୁ ଧାଜକୁ ପ୍ରାୟ ଅନେକ ଦିନ ହେଲା ସମ୍ବଲପୁର ହିତୈଷିଣୀ ଓ ଉକ୍ରଳ ଦୀପିକା, ତାର ବିରୁଦ୍ଧରେ ଖଡ୍ଗହସ୍ତ ହୋଇ ନାନା ପ୍ରକାର ବୃଥା ଅନଭିଜ୍ଞ ପ୍ରବାଦରେ ଉତ୍ତେଜନାର ସହିତ ପ୍ରବନ୍ଧମାନ ଲେଖି ଆପଣା ପତ୍ରିକାର କଳେବର ପୂର୍ଣ୍ଣ କରୁଅଛନ୍ତି ।

ଶିକ୍ଷିତ ଲୋକ କଥା କହିବାକୁ ଗଲେ ଗଭୀର ଭାବ ଅନୁସନ୍ଧାନ କରା ଉଚିତ । ବନ୍ଧୁବାନ୍ଧବର ଉତ୍ତେଜନାରେ ପଡ଼ି ଅନୁରୋଧ ରକ୍ଷା କରିବାକୁ ଗଲେ ନିଜର ଯୋଗ୍ୟତାଟିକ ମାରାପଡ଼େ ।

ମହିମାବର ଚିଫ୍‌କମିଶ୍ନର ଉଡ଼ବାର୍ଣ୍ଣ ସାହେବ ସମ୍ବଲପୁରରେ ଯେଉଁ ହିନ୍ଦିଭାଷା ପ୍ରଚଳିତକଲେ ତଦ୍ୱାରା ଯେ ଓଡ଼ିୟା ଭାଷା ନଷ୍ଟ କରାଗଲା ବା ଉଠାଇ ଦିଆଗଲା ତାହା କିଛି ନୁହେଁ, କେବଳ ଅଦାଲତର ସୁବିଧା ପାଇଁ ଓ ରାଜକାର୍ଯ୍ୟରେ ସୁଚାରୁତା ସଂପାଦନାର୍ଥ ଅଦାଲତରେ ହିନ୍ଦିଭାଷା ଓ ଅକ୍ଷର ପ୍ରଚଳିତ କରାଗଲା ତହିଁପାଇଁ ସ୍କୁଲର ଏକ ଶ୍ରେଣୀରେ ହିନ୍ଦୀଭାଷା ପଢ଼ାଯିବାର ବ୍ୟବସ୍ଥା କରାଗଲା । ସ୍ପଷ୍ଟରୂପେ କହିବାକୁ ଗଲେ ଏହାଦ୍ୱାରା ସମ୍ବଲପୁର ଓଡ଼ିଆମାନଙ୍କୁ ଗୋଟିଏ ଉପକାର କରାଗଲା ଏବଂ ଏହି ଉପକାରକୁ ଲକ୍ଷ୍ୟ କଲେ ଉଡ଼ବର୍ଣ୍ଣ ସାହେବଙ୍କଠାରେ କୃତଜ୍ଞତା ସ୍ୱୀକାର କରା ଉଚିତ । ଅଛି ଓ ଓଡ଼ିଆମାନଙ୍କଠାରେ ତହିଁର ବିପରୀତ ଫଳ, କାହିଁକି ନୋହିବ ?

ଜଣେ ପ୍ରସିଦ୍ଧ ସଂପାଦକ ଲେଖି ଅଛନ୍ତି ଯେ ଭାରତ ବାସିମାନେ ଭବିଷ୍ୟତକୁ ଲକ୍ଷ୍ୟ ନକରି ତାତ୍କାଳିକ ପ୍ରାଥମିକ ଫଳକୁ ଲକ୍ଷ୍ୟ କରନ୍ତି । "The people of India are given to looking backward rather than forward."

ଏହି କଥାଟି ଠିକ୍ ଓଡ଼ିଆମାନଙ୍କଠାରେ ଘଟିଅଛି କାରଣ ହିନ୍ଦିଭାଷା ଜାଣିବା ଦ୍ୱାରା ସମ୍ବଲପୁରବାସି ଓଡ଼ିଆମାନଙ୍କର ଭବିଷ୍ୟତରେ ଯେ ସବୁ ଦେଶରେ ଅନିବାର୍ଯ୍ୟ ରୂପେ ଚାକରି କରିବାର ପଥପ୍ରଦର୍ଶିତ ହେଲା ଏବଂ ଏହାଦ୍ୱାରା ଭବିଷ୍ୟତର ଉନ୍ନତିମାର୍ଗ ଉଦ୍ଘାଟିତ କରିଦିଆଗଲା ତହିଁ ଆଡ଼କୁ ଦୃଷ୍ଟି ନକରି ବର୍ତ୍ତମାନ ୧୦/୨୦ ଜଣର ସାମାନ୍ୟ ସୁବିଧା ପାଇଁ ଏପରି ବ୍ୟସ୍ତ ହୋଇ ବୃଥା ବାଗ ଜାଲ୍‌ରେ ବିପରିତ ଫଳ ଦର୍ଶାଇବା ପୁରୁଷାର୍ଥର କାର୍ଯ୍ୟ ନୁହେଁ ।

ଆମ୍ଭେମାନେ ଛାତିରେ ହାତଦେଇ କହୁଅଛୁଁ ହିନ୍ଦୀ ଅକ୍ଷର ଓ ଭାଷାର ପରିଚୟ ଦ୍ୱାରା ହିନ୍ଦୁ ଜାତିର ଏତେ ଜ୍ଞାନ ଲାଭ ହେବ ଓ ଏତେ ଜାତୀୟ ଭାଷାର ଉନ୍ନତି ହେବ ଏବଂ ଏତେ ଜାତୀୟ ମମତା ହେବ ତାହା ଅନ୍ୟଦ୍ୱାରା କଦାଚ ସମ୍ଭବପର ନୁହେ । ଇଂରେଜି ଭାଷା ଅର୍ଥକରୀ ଓ ବିଜାତୀୟ ଉନ୍ନତିଶାଳୀ ହୋଇପାରେ କିନ୍ତୁ ପରାର୍ଥକରୀ ଅର୍ଥାତ୍ ପରକାଳର ପ୍ରୟୋଜନାନୁସଙ୍ଗୀ ହେବାର ହିନ୍ଦୁଧର୍ମାଭିଳାଷୀର ପକ୍ଷେ ଦ୍ୱିତୀୟ ନାହିଁ । କାରଣ ଆଜିକାଲି ଯେତେ ଭଲ ଭଲ ଉପାଦେୟ (ଇତିହାସ, ନୀତି, ସାହିତ୍ୟ, ଧର୍ମ ବିଷୟକ, ଈଶ୍ୱର ସମ୍ବନ୍ଧୀୟ ପୁସ୍ତକସବୁ ଦେଖାଯାଉ ଅଛି ସେସବୁ ହିନ୍ଦି ଅକ୍ଷର ଘଟିତ ତାହା ଓଡ଼ିଆ ଭାଷାରେ ବିନ୍ଦୁ ବିସର୍ଗ ନାହିଁ । ହିନ୍ଦି ଅକ୍ଷର

ପରିଚୟାଭାବରୁଁ ଏହିସବୁ ଅମୂଲ୍ୟରତ୍ନରେ ଭୂଷିତ ହେବ କିପରି ? ଏତାଦୃଶୀ ଭୂଷା ସମ୍ବଲପୁର ଓଡ଼ିୟା ମାନଙ୍କର କପାଳରେ ଘଟିଲା ବୋଇଲେ କାହିଁକି ଅତ୍ୟୁକ୍ତି ହେବ ? ଏହାକି ଉନ୍ନତିର କାର୍ଯ୍ୟ ନୁହେଁ ? କାନରେ କଲମମାରି ବେଞ୍ଚ ଉପରେ ବସି ମୋହରିରଗିରି କଲେ କି ଭାଷାର ଉନ୍ନତି ହେବ ?

ଆଜକୁ ତ ପ୍ରାୟ ୩୦/୪୦ ବର୍ଷ ହେବ ସମ୍ବଲପୁରିଏ କାନରେ କଲମମାରି ମୋହରିରଗିରି କଲେଣି ତାଙ୍କ ମଧ୍ୟରେ ଜ୍ଞାନବାନ ଓ ଚରିତ୍ରବାନ ଉନ୍ନତିଶାଳୀ ଜଣେ କାହିଁ ?

ସ୍ୱଦେଶୀୟ ଭାଷାର ବା ନିଜ ବିଦ୍ୱତାର ଉନ୍ନତି କରିବାକୁ ହେଲେ ଅଦାଲତ ସହିତରେ କିବା ଚାକରି ବା ମୋହରିର ଗିରିରେ କୌଣସି ସଂପର୍କ ରଖେନାହିଁ, ନିଜର ଉନ୍ନତି ନିଜର ଜ୍ଞାନ ନିଜର ଅଧ୍ୟବସାୟ ଏହାହି ପୁରୁଷାର୍ଥ ସହିତ ଅସାଧାରଣ କାରଣ ।

ନାନା ଭାଷା, ନାନା ଅକ୍ଷର, ନାନା ସାହିତ୍ୟ, ନାନା ଭୂତ୍ୟ ନଦେଖିଲେ କୌଣସି ପ୍ରକାର ଆତ୍ମୋଋଚି ବା ନିଜଭାଷାର ଉନ୍ନତି ହେବାର ସନ୍ଦେହାପନ୍ନ ।

କଲିକତା, ବମ୍ବେ ପ୍ରଭୃତି ମହାନଗରମାନଙ୍କରେ ଅଦାଲତ ସବୁ ଇଂଗରାଜୀରେ ପ୍ରଚଳିତ ତହିଁରେ କି ସ୍ୱଦେଶୀୟ ଭାଷାର ଉନ୍ନତି ନାହିଁ ? ସେହି ଉନ୍ନତିର କାରଣ କିଏ ? ଅଦାଲତ ବା ଚାକରି ? ପୃଥିବୀରେ ଯେ କେତେଜଣ ଉନ୍ନତିଶାଳୀ ଲୋକ ଅଛନ୍ତି ସେମାନେ କି ନିଜର ଭାଷାଦ୍ୱାରା ଆତ୍ମୋନ୍ନତି ସମ୍ପାଦନକରି ଅଛନ୍ତି ? ପାଠକେ ! ତୁମ୍ଭେମାନେ ଦେଖୁଅଛ ମୋକ୍ଷ୍ୟ ମୁଲାର ପ୍ରଭୃତି ପଣ୍ଡିତମାନେ କିପରି ସଂସ୍କୃତ ପ୍ରଭୃତି ଭିନ୍ନ ଭିନ୍ନ ଭାଷା ଶିକ୍ଷାକରି କିପରି ପୃଥିବୀରେ ଉନ୍ନତିଶାଳୀ ହୋଇ ଅଛନ୍ତି ଏବଂ ମୋକ୍ଷମୁଲାର ଯେଉଁ ଦୁଇଖଣ୍ଡି ପୁସ୍ତକ "India what can it teaches, "Lectures on the origine of Religion." ଲେଖି ତୁମ୍ଭମାନଙ୍କର ବେଦ ଓ ଆଦିଧର୍ମକୁ ସମାଲୋଚନା କରି ଅଛନ୍ତି ଓ ତତ୍‌ସମ୍ବନ୍ଧେ ଯାହା ଯାହା କହି ଅଛନ୍ତି ତୁମ୍ଭମାନଙ୍କର ଗୁରୁଦେବ ନିଜ ଶ୍ରେଷ୍ଠମାନେ ଜାଣନ୍ତି କି ନା ସନ୍ଦେହ ।

ଭାରତ ବର୍ଷରେ ଜନ୍ମଗ୍ରହଣ କରି ହିନ୍ଦିଭାଷା ନଜାଣିବାର ଗୋଟିଏ ବିଡ଼ମ୍ବନାର କାର୍ଯ୍ୟ ତଥାପି ହିନ୍ଦିଭାଷାଟା ଓଡ଼ିଆଙ୍କପକ୍ଷେ ନୂତନ ନୁହେ । କିଛି ନ ଜାଣିବା ଅବସ୍ଥାରେ ମଧ୍ୟ ଓଡ଼ିଆମାନେ କହୁଥାନ୍ତି "କଟକ..ଯାତେଥେ.. ବାଟରୁ ଫେରି ଆସିଲି ।'' ଏପରିସ୍ଥଳେ ଓଡ଼ିଆମାନେ ଯେ ହିନ୍ଦୀଭାଷାର ଅପକ୍ଷପାତୀ ତାହା ନୁହେଁ । ପାଠକେ ! ଘରୁ ବାହାରିଲେ ହିନ୍ଦିଭାଷା ନ କହିଲେ ତୁମ୍ଭର ଗତି ନାହିଁ । ଦେଖ ତୁମ୍ଭମାନଙ୍କ ସହିତ ସହାନୁଭୂତି ପ୍ରକାଶ କରିବାପାଇଁ ମହାରାଣୀ ଭାରତେଶ୍ୱରୀ ହିନ୍ଦିଭାଷା ଶିକ୍ଷା କରୁ ଅଛନ୍ତି । ଏଥିରୁ ଆଉ ଉପକାରିତା ବି ଦର୍ଶାଯାଇପାରେ ?

ଯେଉଁମାନେ କହନ୍ତି ସମ୍ବଲପୁରରୁ ମାତୃଭାଷା ଉଠିଗଲା ସେମାନେ ମନୁଷ୍ୟ ତ ? ଅଦାଲତରେ ହିନ୍ଦିଭାଷା ଚଳିତା ବୋଲି ଦେଶରୁ ମାତୃଭାଷାଟା ଉଠିଗଲା ? କି ଦୁର୍ଦ୍ଦାନ୍ତ କଥା ! ପାଠକେ ତୁମ୍ଭେମାନେ କୌଣସିଠାରେ ଦେଖିଅଛ କି ? ଅଦାଲତରେ ହିନ୍ଦିଭାଷା ଚଳିବାରୁ ଦେଶରୁ ମାତୃଭାଷା ଉଠିଗଲା ଗୋଟେ ଦୁଇଟା ପ୍ରମାଣ କିଏ ଦେଇପାରିବ କି ?

ଆମ୍ଭେ ପ୍ରମାଣ ଦେଇପାରୁ ଯେ ଛୋଟନାଗପୁର ଅଦାଲତ ମାନଙ୍କରେ ହିନ୍ଦୀଭାଷା ପ୍ରଚଳିତ ଅଛି, ସିଂହଭୂମିରୁ ଓଡ଼ିଆ ମାତୃଭାଷା ଉଠିଯାଇ ନାହିଁ ଏବଂ କଲିକତାରେ ଇଂରେଜି, ଅଦାଲତମାନଙ୍କରେ ପ୍ରଚଳିତ ଅଛି ତହିଁରୁ ବଙ୍ଗଳା ମାତୃଭାଷାତ ଉଠିଯାଇ ନାହିଁ । ଏହିପରି ଅନେକ ସ୍ଥାନରେ ଘଟିଅଛି କୌଣସିଠାରେ କିଛି ହୋଇନାହିଁ ବରଂ ଦିନ ଦିନ ଉନ୍ନତି ହୋଇ ଆସୁଅଛି ।

ଶୁଣି ଶୁଣାଯାଉ ଅଛି ଯେ ଓଡ଼ିଆମାନେ ଭେଦା ସଂଗ୍ରହ କରୁ ଅଛନ୍ତି, ବିଲାତରେ ଆପତ୍ତି କରିବେ କି ଦୁର୍ବୁଦ୍ଧି !!! ଏବେ ବିଲାତରେ ଆପଣାର ଅଜ୍ଞତା ପ୍ରକାଶ କର । ଏହିପରି ଆପତ୍ତି ଗୟାପ୍ରଭୃତି ସ୍ଥାନରେ ଘଟିଯାଇଅଛି, ତହିଁରେତ କିଛି ହେଲା ନାହିଁ ? ଏବେ ଓଡ଼ିଆମାନଙ୍କ କଥାଟା ବିଲାତରେ ବହୁମୂଲ୍ୟ ହୋଇ ପଡ଼ିବ ।

ଆମ୍ଭେ ଅନୁମାନକରୁଁ ସମ୍ବଲପୁରରେ ଜଣକ କେତେ ଅଳସୁଆ ଏପରି ଡକାଛାଡ଼ିବାରୁ କଟକରେ ଉତ୍କଳ

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଦୀପିକାର ସଖା ଜଣାକେତେ ମାଣବକ ଯେଉଁ ମାନେକି ବର୍ଷେକାଳ ଜାତୀୟ ସାହିତ୍ୟର ଉନ୍ନତି ଇଚ୍ଛାରେ ଉତ୍କଳଭୂମିକୁ ଅଶ୍ଳୀଳ ଶ୍ରୋତରେ ଅପ୍ଲାବିତ କରିଥିଲେ ଓ ଅଶ୍ଳୀଳକୁ ଆପଣା ସାହିତ୍ୟର ପବିତ୍ରସ୍ଥାନ ବୋଲି ମଣୁଥିଲେ ପୁଣି ସେହି ଶ୍ରୋତରେ ମଗ୍ନ ହୋଇ ସମ୍ବଲପୁର ହିତୈଷିଣୀ ସ୍ୱକୀୟ କଳେବରକୁ ଅଶ୍ଳୀଳ ପଙ୍କ ଲେପନ କରି ଜାତୀୟ ସାହିତ୍ୟର ଅସମର୍ଥତା ସମ୍ପାଦନ କରୁଥିଲେ । ସେମାନଙ୍କର ଏହି ଅସାଧାରଣ ମାତୃଭାଷାର ଚୀରସ୍ଥାୟୀ ପଟା ତମସୁକନେଇ ନାଲିଶ ଆପତ୍ତି କରିବାର ଆଶ୍ଚର୍ଯ୍ୟ କି ? ଯେ ହେଉ ଏଣିକି ନିବୃତ୍ତି ହେବା ଶ୍ରେୟସ୍କର ।

କଲିକତା — ଶ୍ରୀ ସତ୍ୟବାଦୀ ।

*ଭା୭ଗ, ସଂ୪୧ଖ୍ୟା, ୧୧।୩।୧୮୯୬*

## କଟକ ନର୍ମ୍ମାଲ ସ୍କୁଲ ।

ଏହାହିଁ ଓଡ଼ିଶ୍ୟାରେ ଓଡ଼ିଆଭାଷା ଶିକ୍ଷା କରିବାର ଏକମାତ୍ର ସର୍ବୋଚ୍ଚ ବିଦ୍ୟାଳୟ । ଏହିଠାରେ ଶିକ୍ଷା ସାଙ୍ଗ କରି ଉତ୍କଳୀୟ ଯୁବକମାନେ ଉତ୍କଳର ବିଦ୍ୟାଳୟମାନଙ୍କରେ ଶିକ୍ଷକତା କରନ୍ତି । ଏଥିନିମିତ୍ତ ଏହାର ଅନ୍ୟନାମ "ଟ୍ରେନିଂସ୍କୁଲ" ଏଥିପୂର୍ବେ "ଗୁରୁ" ମାନଙ୍କ ଶିକ୍ଷାନିମିତ୍ତ ପୁରୀ ଓ ବାଲେଶ୍ୱର ନଗରରେ ଆଉ ଦୁଇଗୋଟି ଟ୍ରେନିଂସ୍କୁଲରେ ମା୬ ସ ଅଧୟନ କରି ପାଠଶାଳା ଓ ଅପର ପ୍ରାଇମେରୀ ବିଦ୍ୟାଳୟମାନଙ୍କରେ ଶିକ୍ଷକତା କାର୍ଯ୍ୟ କରୁଥିଲେ । ବର୍ତ୍ତମାନ ଉକ୍ତ ଉକ୍ତ ବିଦ୍ୟାଳୟକୁ ଉଠାଇ ଦିଆଯାଇ ଏହି ସ୍କୁଲ ସହିତରେ ମିଶାଇ ଦିଆଗଲା, ଏବଂ ଏଣିକି ନିୟମ କରାହେଲା ଯେ ଯେଉଁମାନେ ଅପର ପ୍ରାଇମେରୀ ବିଦ୍ୟାଳୟମାନଙ୍କରେ ଶିକ୍ଷକତା କାର୍ଯ୍ୟ କରିବାକୁ ଇଚ୍ଛା କରିବେ ସେମାନେ ଭର୍ଣ୍ଣାକ୍ୟୁଲର ବା ମାଇନର ପାଶ୍‌କରି ଏଠାରେ ମା୬ ସ ପରିବର୍ତ୍ତରେ ପୂର୍ଣ୍ଣ ଏକବର୍ଷକାଳ ଅଧୟନ କରିବେ । ସେମାନେ ମାସିକ ଟ୪ଙ୍କା ଲେଖାଏଁ ବୃତ୍ତି ପାଇବେ ।

ଓଡ଼ିଶ୍ୟାର ଏଣ୍ଟ୍ରାନ୍ସ ପ୍ରଭୃତି ଉଚ୍ଚ ବିଦ୍ୟାଳୟ ମାନଙ୍କ ନିମନ୍ତେ ମଧ ଏଣିକି ଏଠାରେ ଶିକ୍ଷକ ପ୍ରସ୍ତୁତ ହେବେ । ସେଥି ନିମିତ୍ତ ଏହି ନିୟମ କରା ଯାଇଅଛି କି ଯେଉଁମାନେ ଏଣ୍ଟ୍ରାନ୍ସ ପାଶ୍ କରିଥିବେ ସେମାନେ ମାସିକ ଟ୬ ଙ୍କା ଓ ଯେଉଁମାନେ ଏଫ୍.ଏ. ପାଶ୍ କରିଥିବେ ସେମାନେ ଟ୧୦ଙ୍କା ବୃତ୍ତିପାଇ ଏକବର୍ଷକାଳ ଏଠାରେ ଶିକ୍ଷା କରିବେ । ସେମାନଙ୍କୁ ଶିକ୍ଷାଦେବା ନିମିତ୍ତ ମାସିକ ଟ ୧୦୦ଙ୍କା ବେତନରେ ଶୀଘ୍ର ଜଣେ ଅଧାପକ ନିଯୁକ୍ତ ହେବାର ସ୍ଥିର ହୋଇଅଛି ।

ଭାବୀ ଶିକ୍ଷକମାନଙ୍କ ବ୍ୟାୟାମ । କ୍ରିକେଟ ଓ ସର୍ଭେ ଶିକ୍ଷା ଦେବା ନିମିତ୍ତ ଏକ ଏକ ଜଣ ଶିକ୍ଷକ ନିଯୁକ୍ତ ହୋଇ ଅଛନ୍ତି, ଏଣିକି ଏହି ବିଦ୍ୟାଳୟରୁ ଯେ ଯୋଗ୍ୟତାରେ ଶିକ୍ଷକମାନେ ବାହାରିବେ ସେଥିରେ ଆଉ ସନ୍ଦେହ ନାହିଁ । ଆମ୍ଭେମାନେ ମାତୃଭାଷାରେ ଏହି ଏକମାତ୍ର ବିଦ୍ୟାଳୟଟିର ପୁଷ୍ଟିସାଧନ ହେବାର ଦେଖି ଆନନ୍ଦିତ ହୋଇଅଛୁଁ । ଏହି ବିଦ୍ୟାଳୟର ସୁଯୋଗ୍ୟ ପ୍ରିନ୍ସିପାଲ ଓ ସୁପରିନ୍‌ଟେନ୍‌ଡେଣ୍ଟ ଶ୍ରୀଯୁକ୍ତ ମଧୁସୂଦନ ରାଓଙ୍କ ତତ୍ତ୍ୱାବଧାନରେ ଏହାର ଦିନୁ ଦିନୁ ଉନ୍ନତି ସାଧିତ ହେଉ, ଈଶ୍ୱରଙ୍କଠାରେ ସର୍ବାନ୍ତକରଣରେ ଏହିପ୍ରାର୍ଥନା କରୁଅଛୁଁ । ସ୍ଥାନୀୟ ସମ୍ବାଦରେ ନର୍ମାଲ ବିଦ୍ୟାଳୟର ଏହି ପରିବର୍ତ୍ତନର ସମ୍ବାଦ ଆଜିସୁଦ୍ଧା ପ୍ରକାଶିତ ନହେବାର ଦେଖି ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ହୋଇଅଛୁଁ ।

*ଭା୭ଗ, ସଂ୪୩ଖ୍ୟା, ୨୫।୩।୧୮୯୬*

## ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଉତ୍କଳଭାଷା ବିଭାଗ ।

ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ବି.ଏ. ପରୀକ୍ଷାର ଉତ୍କଳଭାଷା ବିଭାଗ ସକ୍ରାନ୍ତ ବିଷୟ କିଞ୍ଚିତ ପର୍ଯ୍ୟାଲୋଚନା କଲେ ବୋଧହେବ ଯେ କୌଣସି ପ୍ରହସନ ଲେଖକ ଏଥିରୁ ଯଥେଷ୍ଟ ସାମଗ୍ରୀ ପାଇ ପାରିବେ, ଏହି ୟୁନିଭେରସିଟିରେ ପ୍ରତିଷ୍ଠିତ ଥିବା ପାଠ୍ୟ ପୁସ୍ତକ ନିର୍ବାଚକ ଦଳର ସମସ୍ତ ଉତ୍କଳଭାଷାନଭିଜ୍ଞ ଅକ୍ଷର ବିବର୍ଜ୍ଜିତ । ଏହି ନିର୍ବାଚକ ଦଳ ସମୟେ ସମୟେ ନିମ୍ନତମ ଶ୍ରେଣୀରେ ବ୍ୟବହୃତ ଥିବା ପୁସ୍ତକମାନେ ବି.ଏ. ପରୀକ୍ଷାରେ ପାଠ୍ୟପୁସ୍ତକ କରିଥାନ୍ତି ।

ଏମାନେ ନିର୍ବାଚନ କରିବା ରୀତି କିପରି ବୋଲତେ ଏମାନଙ୍କ ନିକଟରେ ପ୍ରାୟ ବିଦ୍ୟାଳୟ ସ୍ଥାପନ କାଳରୁ କେତେଖଣ୍ଡି ଓଡ଼ିଆ ପୁସ୍ତକର ତାଲିକା ଅଛି । ତାଲିକାଟିର କ୍ଷୟବୃଦ୍ଧି ନାହିଁ ପରା ବୋଧହୁଏ ଯେହେତୁ ଉତ୍କଳସାହିତ୍ୟ ବୃଦ୍ଧି ସଙ୍ଗେ ସଙ୍ଗେ ଏହାର କଳେବର ବୃଦ୍ଧି ହୁଏନାହିଁ । ଉକ୍ତ ନିର୍ବାଚକ ବ୍ୟକ୍ତିମାନେ ଚକ୍ଷୁହୀନ ଲୋକର ନ୍ୟାୟ ଅଣ୍ଡାଳି କେତେ ପୁସ୍ତକ ପ୍ରତିବର୍ଷ ବାଛନ୍ତି । ଏହି ନିର୍ବାଚନରେ ସ୍ୱଭାବତଃ ଭଲଥାଏ ମନ୍ଦଥାଏ । ଉପଯୁକ୍ତ ପୁସ୍ତକ ଯେବେ ଦୈବାତ୍ ନିର୍ବାଚିତ ହୋଇଥାଏ ତାହାହେଲେ ଉତ୍କଳ ଛାତ୍ରଙ୍କ ଅଦୃଷ୍ଟୋପଲବ୍ଧ ଫଳବୋଲିବାକୁ ହେବ । ସର୍ବସାଧାରଣ ଯେବେ କିଞ୍ଚିତ୍ ଶ୍ରମ ସହକାରେ ୯୭ ଶକାବ୍ଦୀର ବି.ଏ. ପରୀକ୍ଷାର ପାଠ୍ୟପୁସ୍ତକ ଦେଖିବେ ତାହାହେଲେ ଉପରୋକ୍ତ ମନ୍ତବ୍ୟ, ଅନାୟାସରେ ସ୍ଥିରୀକୃତ ହେବ,-ନୀତିବୋଧ, ଇଉରୋପୀୟ ଇତିହାସର ସଂକ୍ଷେପ ବିବରଣ, ରାମାୟଣ ଅଯୋଧ୍ୟାକାଣ୍ଡ; ଟର୍ ସାନ ବି.ଏ.ର ପାଠ୍ୟପୁସ୍ତକ, ଶ୍ରୀମାନ ଲେସି ସାହେବ ନୀତିବୋଧର ଅନୁବାଦକ ଗୌରାଙ୍ଗ ଅନୁବାଦିତ ବୋଲି ପରା ପୁସ୍ତକଟି ବିଶ୍ୱବିଦ୍ୟାଳୟର ପାଠ୍ୟପୁସ୍ତକହେବା ଗୌରବଭାଜନ ହେଲା । ଏହା ବ୍ୟତିତ ପୁସ୍ତକଟିର ଅନ୍ୟକିଛି ଯୋଗ୍ୟତା ନାହିଁ । ପୁସ୍ତକଟିରେ ସ୍ଥାନେ ସ୍ଥାନେ ପାଶ୍ଚାତ୍ୟ ଅନ୍ୱୟ ନିୟମ ଲକ୍ଷିତ ହୋଇଥାଏ । ଏବଂ ବଙ୍ଗଳା ଓଡ଼ିଆ, ତେଲିଙ୍ଗି ଦେଖା ଯାଇଥାଏ, ଏହି ରକମ ପୁସ୍ତକଗୁଡ଼ିକ ପାଠ୍ୟପୁସ୍ତକ କରିବାଲାଗି ବି.ଏ. ଛାତ୍ରମାନଙ୍କୁ ଅପମାନ ଭୋଗ କରିବାକୁ ପଡୁଥିବ । ଛାତ୍ରମାନେ ଆଜି ପର୍ଯ୍ୟନ୍ତ ଇଉରୋପୀୟ ଇତିହାସର ସଂକ୍ଷିପ୍ତ ବିବରଣ ପାଇନାହାନ୍ତି । ସେ ପୁସ୍ତକଟି କିମାକାର କିଂଭୂତ ହୋଇଥିବଟି ତାହା ନିର୍ବାଚକ ଦଳ ବ୍ୟତିରେକେ ସାମାନ୍ୟ ଲୋକ ଜ୍ଞାତସାର ହେବ । ଅତ୍ୟନ୍ତ ଦୁଃଖର ବିଷୟ ।

ପୂର୍ବରେ ପଟ୍ଟନାୟକ କୃତ ରାମାୟଣ ସ୍କୁଲମାନଙ୍କରେ ବ୍ୟବହୃତ ହେଉଥିଲା । ଏବେ ଫକୀରମୋହନ ବାବୁ କର୍ତ୍ତୃକ ରାମାୟଣ ତାହା ସ୍ଥାନ ଆକ୍ରମଣ କରିଅଛି ଆମ୍ଭେ ଏହି ପରିବର୍ତ୍ତନର କିଛି ଉପଯୁକ୍ତ କାରଣ ଦେଖି ପାରୁନାହୁଁ । ଏତଦ୍ୱାରା ଫକୀରବାବୁଙ୍କ ରାମାୟଣର ଶାସ୍ତ୍ରୀୟ ଯୋଗ୍ୟତା ବିଷୟରେ ଆମ୍ଭର ଅଣୁମାତ୍ର ତୁଚ୍ଛ ଜ୍ଞାନନାହିଁ ।

ଏହି ସ୍ଥାନରେ ଏହା ବକ୍ତବ୍ୟ ଯେ ବିଶ୍ୱବିଦ୍ୟାଳୟ କର୍ମଚାରୀମାନେ ଉତ୍କଳ ପରୀକ୍ଷକ ମାନଙ୍କ ପରାମର୍ଶ ଗ୍ରହଣ କରନ୍ତି ନାହିଁ । କିବା ପରୀକ୍ଷକ ମହାଶୟମାନେ ଏ ବିଷୟରେ ନିତାନ୍ତ ଉଦାସୀନତା । ଏହି ଅନିଷ୍ଟ ଉପହାସ ଜନକ ନିର୍ବାଚନ ପ୍ରଥାର କୌଣସି ପ୍ରକାରେ ଅବା କାରଣ ହୋଇଥାଏ ତାହାହେଲେ ସେମାନଙ୍କୁ ଭାଗୀଦାୟିତ୍ୱ ଭୋଗ କରିବାକୁ ହେବ ଯେହେତୁ ସେମାନେ ଉତ୍କଳ ରାଜ୍ୟ ଓ ଉତ୍କଳ ସାହିତ୍ୟ ପାଶରେ କୃତଜ୍ଞତା ସୂତ୍ରରେ ବନ୍ଧା ଅଛନ୍ତି । ସେମାନେ ଯେବେ ଉତ୍କଳ ସାହିତ୍ୟ ଅତିବୃଦ୍ଧି କାର୍ଯ୍ୟାନୁଷ୍ଠାନରେ ତୃଟି କରନ୍ତି ତେବେ ସେମାନେ ସଚରାଚର ନିନ୍ଦାର ପାତ୍ରହେବେ ।

ଉତ୍କଳ କବିକୁଳ ତିଳକ ଉପେନ୍ଦ୍ରଭଞ୍ଜ କର୍ତ୍ତୃକ କାବ୍ୟାବଳୀ ନିର୍ବାଚକ ଦଳର ଆକସ୍ମିକ ଚଳଚିତ୍ତୋଭାବଙ୍କୁ ପରିତୃପ୍ତିକର ହେଲାନାହିଁ ବୋଲି ପରାପାଠ୍ୟ ପୁସ୍ତକମାଳାରେ ସ୍ଥାନଦାନ ପାଇପାରିଲା ନାହିଁ । କାବ୍ୟ ହୋଇ କ୍ଳିଷ୍ଟ ଏବଂ ଅଶ୍ଳିଳ ଦୋଷ ଯୁଗପତଶୂନ୍ୟ ହେବା ନିତାନ୍ତ ବିରଳ । ଅତଏବ ଭଞ୍ଜକୃତ ମହାକାବ୍ୟମାନଙ୍କର କେତେକ ଅଂଶମାନ ଏବଂ ସୁଲଭ ଉପକାବ୍ୟମାନ ପାଠ୍ୟପୁସ୍ତକ ହେଲେ ଉତ୍କଳ ସାହିତ୍ୟର ବି ଉତ୍କଳାକାଶରେ ପୁନରପି ଜାଜୁଲ୍ୟମାନ ହୋଇ ଉଦିତ ହେବେ ଏଥିରେ ସନ୍ଦେହନାହିଁ । ଉତ୍କଳ ସାହିତ୍ୟ ରାଜ୍ୟର ମିଲ୍ଟନ୍ ସ୍ୱରୂପ ଅଭିମନ୍ୟୁ ସାମନ୍ତ ସିଂହାର ଓ ଇତର ଲବ୍ଧପ୍ରତିଷ୍ଠ ଉତ୍କଳ କବି ବିରଚିତ କାବ୍ୟଗୁଡ଼ିକ ପାଠ୍ୟପୁସ୍ତକ ହେଲେ ତମୋମୟ ଉତ୍କଳ ସାହିତ୍ୟାକାଶ ତାରକିତହୋଇ ମନୋରଞ୍ଜନ କରନ୍ତା । ଅବଶେଷରେ (କିନ୍ତୁ ଗୁରୁତ୍ୱ ବିଷୟରେ ସର୍ବପ୍ରଥମେ) ଆଧୁନିକ କବି ପୁଙ୍ଗବ ଶ୍ରୀଯୁକ୍ତ ରାଧାନାଥ ରାୟ ଆଦି ପ୍ରଧାନ ରଚୟିତା ବିରଚିତ କାବ୍ୟ, ନାଟକ, ଉପନ୍ୟାସାଦି, ପାଠ୍ୟପୁସ୍ତକରୂପେ ପରିଗଣିତ ହେଲେ ଉତ୍କଳ ସାହିତ୍ୟବନ ଆହା ! କି ମନୋମୁଗ୍ଧକର ହୁଅନ୍ତା, ତାହାର ସ୍ୱର୍ଗୀୟ ଶୋଭା ଅଚିରେ ସମ୍ପାଦିତ ହୋଇ ଅତ୍ୟନ୍ତ ଚିତ୍ତାକର୍ଷଣ କାରିଣୀ ହୁଅନ୍ତା । ଆବର ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଗୌରବ ସମ୍ପାଦିତ ହୁଅନ୍ତା । ଉତ୍କଳର ଭାଗ୍ୟରେ ଏ ଭୋଗ ଥିଲେ ଅବଶ୍ୟକାଳେ ପ୍ରାପ୍ତ ହେବ ।

*ଭା୭ଗ, ସଂ୪୩ଖ୍ୟା, ୨୫।୩।୧୮୯୬*

## ନୂତନ ପୁସ୍ତକ ।

ବର୍ତ୍ତମାନ ନିମ୍ନଲିଖିତ ନୂତନ ପୁସ୍ତକମାନ ପ୍ରକାଶିତ ହୋଇ ଅଛି ।

ମହାଯାତ୍ରା- କବିବର ଶ୍ରୀଯୁକ୍ତ ରାଧାନାଥ ରାୟଙ୍କ ପ୍ରଣୀତ ପାଣ୍ଡବଙ୍କ ମହାଯାତ୍ରା କାବ୍ୟର ପ୍ରଥମାର୍ଦ୍ଧ କନିକାର ଶ୍ରୀମତି ପାଟମହାଦେବୀଙ୍କ କର୍ତ୍ତୃକ ପ୍ରକାଶିତ ହୋଇଅଛି ।

ସଙ୍ଗୀତମାଳା- ସୁକବି ଶ୍ରୀଯୁକ୍ତ ମଧୁସୂଦନରାଓ ମହୋଦୟଙ୍କ ପ୍ରଣୀତ ସଙ୍ଗୀତମାଳା ପ୍ରକାଶିତ ହୋଇଅଛି । ଏଥିରେ ଧର୍ମ୍ମ ବିଷୟକ ଏକଶତ ଗୋଟି ସରସ ସଂଗୀତ ସନ୍ନିବେଶିତ ହୋଇ ଚାରିଅଣାମୂଲ୍ୟରେ ବିକ୍ରୟ ହୋଇଅଛି ।

ରାସରହସ୍ୟ-ବାମଣ୍ଡାର ଯୁବରାଜ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦଦେବଙ୍କ ପ୍ରଣୀତ "ରାସ-ରହସ୍ୟ" ପ୍ରକାଶିତ ହୋଇଅଛି । ଶ୍ରୀକୃଷ୍ଣ କାମୁକ ନଥିବା ବିଷୟ ଏ ପୁସ୍ତକରେ ପ୍ରତିପନ୍ନ କରାଯାଇଅଛି ।

ମଥୁରାପ୍ରସାଦ- ବାବୁ ଦୀନବନ୍ଧୁ ଗଡ଼ନାୟକଙ୍କ ପ୍ରଣୀତ ତାଙ୍କର ଅନୁଜ ମଥୁରାପ୍ରସାଦଙ୍କର ଜୀବନଚରିତ ଏହି କ୍ଷୁଦ୍ର ପୁସ୍ତିକାର ବିବୃତି ହୋଇ ବିତରଣ କରାଯାଉ ଅଛି ।

*ଭା୭ଗ, ସଂ୪୫ଖ୍ୟା, ୮।୪।୧୮୯୬*

## ଭାଷାରକ୍ଷାଚେଷ୍ଟା ।

ସମ୍ବଲପୁର ଜିଲ୍ଲାରେ ଓଡ଼ିଶ୍ୟା ଭାଷା X X X ହିନ୍ଦିଭାଷା ବ୍ୟବହୃତ ନହେବା ସକାଶେ ବିଲାତରେ ଆବେଦନ କରିବାର ଚେଷ୍ଟା ହେଉଅଛି । ଆବେଦନ କରିବାକୁ ହେଲେ ସହସ୍ରାଧିକ ଟଙ୍କା ବ୍ୟୟିତ ହେବ । ଉକ୍ତଟଙ୍କା ସକାଶେ ଉତ୍କଳ ନିନୟ ମାନଙ୍କ ନିକଟରେ ଅର୍ଥପ୍ରାର୍ଥନା କରାଯାଇଅଛି ପାଲଲହଡ଼ାର ମେନେଜର ଶ୍ରୀଯୁକ୍ତ ବାବୁ ଦାମୋଦର ପଟ୍ଟନାୟକ ସାହାଯ୍ୟ ଦାନ ବିଷୟରେ ସର୍ବପ୍ରଥମେ ଅଗ୍ରସର ହୋଇ ଅଛନ୍ତି । ସେ ନିଜେ ପାଞ୍ଚଟଙ୍କା ଦେବାକୁ ଅଙ୍ଗୀକାର କରିଅଛନ୍ତି, ଏବଂ ଦେଇ ଅଛନ୍ତି ଏବଂ ଅପର କେତେକ ବ୍ୟକ୍ତିଙ୍କ ନିକଟରୁ ପାଞ୍ଚଟଙ୍କା ସଂଗ୍ରହ କରି ଅଛନ୍ତି । ଦାମୋଦରବାବୁ ଉପରୋକ୍ତ ଦଶଟଙ୍କା ଉତ୍କଳ ଦୀପିକାର ସମ୍ପାଦକ ମହାଶୟଙ୍କ ନିକଟକୁ ପଠାଇଦେଇ ଅଛନ୍ତି । ଦାମୋଦରବାବୁ କେବଳ ଯେ ଏତିକିକର କ୍ଷାନ୍ତ ଅଛନ୍ତି ଏପରି ନୁହନ୍ତ । ସେ ଗୋଟିଏ ଉତ୍ତେଜକ ସଙ୍ଗୀତ ରଚନାକରି ପ୍ରକାଶକରି ଅଛନ୍ତି । ସେହି ସରସ ସଙ୍ଗୀତଟି ନିମ୍ନରେ ପ୍ରକାଶିତ ହେଲା ।

ରାଗଭୈରବି ! ଆଦିତାଳ ।
("ମନା କରୁଥିଲି ରାଧେ" ବୃତ୍ତରେ ।)
"ରହନା, ରହନା ଆଉ ଅଚିନ୍ତାରେ ମନ
[ଅଚିନ୍ତାରେ ଆଉ ମନ ଅଚିନ୍ତାରେ ମନ]
ଦେଖୁ ଦେଖୁ ମାତୃଭାଷା ଅଙ୍ଗର ଛେଦନ । ଘୋଷା
ସ୍ୱର୍ଗରୁ ବଳି ଜନନୀ ସଂସାରରେ ସୁଖମଣି
ତାର ଦୁରଦଶା ଶୁଣି ସହେକି ଜୀବନ
[ଭାଇ ସହେକି ଜୀବନ] । ୧ ।
ସମ୍ବଲପୁର ଜନନୀ ହୁଏ ଆଜି ନିର୍ବାସନୀ
କାଲି କି ହେବ ଭାବନା ନକର ଭାବନ ?
[କିଛି ନକର ଭାବନ ?] । ୨ ।
ଯାଉ ଏ ଜୀବନଧନ ହେଉ ଏକ ପ୍ରାଣମନ
ହେଉ ଶରୀର ପତନ ରଖ ଏବେ ପଣ
[ସର୍ବେ ରଖ ଏବେ ପଣ] । ୩ ।

ଜନନୀ ରସନା, ହିନ୍ଦି କାଟଇ କାଟିକି ନିନ୍ଦି
ଉଠାରେ ଉତ୍କଳଭାର ଘେନି ନିବେଦନ
[ଭାଇ ସହେକି ଜୀବନ] । ୪ ।

ଦାମୋଦର ବାବୁଙ୍କ କାର୍ଯ୍ୟରେ ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ । ଅପର ଉତ୍କଳ ଭ୍ରାତାମାନେ ଦାମୋଦର ବାବୁଙ୍କର ଅନୁକରଣକରି ଅଗ୍ରସର ହେଲେ ଅନତି ବିଳମ୍ବରେ ପ୍ରୟୋଜନୀୟ ଅର୍ଥ ସଂଗୃହୀତ ହୋଇ ପାରିବ । ଏ ବିଷୟରେ କାହାର କିଛିମାତ୍ର ଅବହେଳା କରିବା ଉଚିତ୍ ନୁହଇ । ଭାଷାରକ୍ଷାର୍ଥ ଏହି ପତ୍ରିକାର ସମ୍ପାଦକ ସ୍ୱହସ୍ତରୁ ପାଞ୍ଚଟଙ୍କା ଅର୍ଥ ସାହାଯ୍ୟ କରିବାକୁ ପ୍ରତିଶ୍ରୁତ ହୋଇ ଅଛନ୍ତି ।

*ଭା/୭ଗ, ସଂ୪୫ଖ୍ୟା, ୮/୪/୧୮୯୬*

## ଡେପୁଟୀ କମିଶ୍ନରଙ୍କର ଦୟା ।

ସମ୍ବଲପୁରର ମୁନସରମ କର୍ମ୍ମ ସକାଶେ ରାୟପୁର ବିଲାସପୁରର ଅନେକଲୋକ ଦରଖାସ୍ତ କରିଅଛନ୍ତି । ସମ୍ବଲପୁରର ଅଦାଲତର ଭାଷା ହିନ୍ଦିହେବାରୁ ହିନ୍ଦି ପ୍ରଚଳିତ ଜିଲ୍ଲାର ଲୋକମାନଙ୍କର କାର୍ଯ୍ୟକ୍ଷେତ୍ରର ପରିସର ବଢ଼ିଅଛି ଭାଷାଜ୍ଞାନ ଦୃଷ୍ଟିରେ ସମ୍ବଲପୁରିୟାଙ୍କ ଅପେକ୍ଷା ସେମାନଙ୍କର ଦାବୀ ବଳବତ୍ତର ହେଉଅଛି କିନ୍ତୁ ଆମ୍ଭମାନଙ୍କର ଡେପୁଟି କମିଶ୍ନର ସାହେବ ଉକ୍ତ ପଦରେ ସ୍ଥାନୀୟ ଲୋକ ରଖିବାର ଅଭିଳାଷୀ, ତାଙ୍କ ମତରେ ଭୂତପୂର୍ବ ମୁନସରମ ବାବୁ ଦାମୋଦର ମିଶ୍ର ଚାନ୍ଦା ଜିଲ୍ଲାରୁ ଫେରି ଆସି ଉକ୍ତ ପଦରେ ନିଯୁକ୍ତ ହେଉନ୍ତୁ ଅବା ଟ୍ରାନ୍ସଲେଟାର ବାବୁ ମଦନମୋହନ ପଟ୍ଟନାୟକ ଉକ୍ତ ପଦରେ ବରିତ ହେଉନ୍ତୁ । ଡେଃ କଃଙ୍କର ଏହି ଦୟାଯୁକ୍ତ ନ୍ୟାୟ ବିଚାରରେ ଆମ୍ଭେମାନେ ତୁଷ୍ଟହୋଇ ମୁକ୍ତ କଣ୍ଠରେ ତାହାଙ୍କୁ ଧନ୍ୟବାଦ ଦେଉଅଛୁ । କିନ୍ତୁ ଭବିଷ୍ୟତ ଭାବନା କରି ଆଶଙ୍କିତ ହୋଇ ରହିଅଛୁଁ । ଭବିଷ୍ୟତରେ ଓଡ଼ିଆମାନଙ୍କ ସ୍ଥାନରେ ପଶ୍ଚିମା ଲୋକମାନେ ଅଦାଲତରେ ଭର୍ତ୍ତିହେବାରେ କିଛିମାତ୍ର ସନ୍ଦେହ ନାହିଁ । ଗଭୀର ଦୁଃଖର ବିଷୟ ମାତୃଭାଷାର ରକ୍ଷାର୍ଥ ଓଡ଼ିଆମାନେ ଉଦାସୀନରହି ଶୁକଦେବଙ୍କ ମୂର୍ତ୍ତି ପ୍ରତିଷ୍ଠା କରି ଭାଗବତ ଶୁଣିବା ପାଇଁ ବ୍ୟସ୍ତ ହୋଇ ଅଛନ୍ତି ।

*ଭା/୭ଗ, ସଂ୪୯ଖ୍ୟା, ୬/୫/୧୮୯୬*

## ଉତ୍କଳଭାରତୀ ଓ ଉତ୍କଳବାଳିକା

ଉତ୍କଳବାଳିକା-  ନମଇ ଶ୍ରୀପଦେ ଉତ୍କଳ ଭାରତି;
ଚିଦାନନ୍ଦମୟି, ଅନନ୍ତ ଶକତି
ବରାଭୟଦାତ୍ରି, ଅବିଦ୍ୟାନାଶିନି,
ଶ୍ୱେତଭୁଜେ, ଶିତପଙ୍କଜବାସିନୀ,
ଆସିଛି ତୋହର ଜନମ ଦୁଃଖିନୀ
ଅବୋଧ ତନୟା ହେ ବିଶ୍ୱ ଜନନି,
ଘେନି ଏ ତାପିତ ଅନ୍ଧାର ଜୀବନ,
ତୋ ସ୍ନେହୁ ବଞ୍ଚିତ; ବଞ୍ଚିବି କେସନ
ଚାହଁମା, ନୈରାଶ୍ୟ-ଦହନ ହୃଦୟ
ନାରଖାର ହୋଇ ଦିଶେ ମରୁମୟ,
କାଢ଼ମା ତୋହର ମୃତ୍ୟୁ-ଭୟ-ଜିଣା
ସୁଧା ନିସ୍ୟନ୍ଦିନୀ ସେ ପବିତ୍ର ବିଣା,
ବଜାମା କ୍ଷଣକ କ୍ଷରୁ ଅମୃତ,
ହେଉ ମା ପାଷାଣ ଆଜ ଦ୍ରବୀଭୂତ ।

ଭାରତୀ- ଡାକିଲୁ ମାବୋଲି କେମାକୁ ସରଳେ
ଜଡ଼ତା-ନୈରାଶ୍ୟ-ପୂର୍ଣ୍ଣ ଏ ଉତ୍କଳେ
ଅମିୟାମ୍ରକ୍ଷିତ କରୁଣ ନିସ୍ୱନେ
ଦୁଃଖିନୀ ମାତାକୁ, କେମାତୁ ଶୋଭନେ ।
ସଦା କାନ୍ଦୁଅଛି, ନାହିଁ ମା ବିରତି,
ବିଣା ବେନିକରେ ଅଛିକି ଶକତି ?
ତୋର ବିଣାଜିଣା ସୁଧାସିକ୍ତ କଥା,
ଶୋକ-ତପ୍ତ ହୃଦେ ଦେଲସିନା ବ୍ୟଥା
ବାଳିକା- କେଉଁ ଶୋକେ ମାଗୋ ଏଡ଼େ ତୁ କାତରା
ନେତ୍ରନୀରେ ଆହା ଚିନ୍ତାଉଛି ଧରା,
ତୋନୟନେ ଅଶ୍ରୁ ଦେଖିଗୋ ଜନନୀ
ଫାଟୁଛି ଅନ୍ତର, ହଁ ଲୋମା କହନି,
ଚିରଶାନ୍ତିମୟ ତୋର ଦିବ୍ୟ ଚିତ୍ତେ ?
ପସିଛି ପାର୍ଥିବ ଶୋକକି ନିମିତ୍ତେ,
ଭାରତୀ- ବସେତୁ ବାଳିକା କୋମଳ ତୋ ଚିତ
କୋମଳ ଯେସନ ସଦ୍ୟନବନୀତ,
ଦୋଳାୟିତମୁଖ-ଦୋଳାରେ ତୋ ମନ
ବାୟୁକୋଳେ ଫୁଲ୍ଲ କୁସୁମ ଯେସନ,
ଦେବି ସିନା ରୁକ୍ଷ ଶୋକ ତହିଁ ଢାଳି
ତାପରସେ ବସେ ଯିବୁଲୋ ମଉଳି,
ସେ ଦୁଃଖ କାହାଣି ଶୁଣିବାକୁ ମନ,
ବଳାଇଲୁ ଯେବେ ସରୁଛି କୀର୍ତ୍ତନ,
ଶୁଣ ମନଦେଇ, ସନ୍ତାନ ଭାବନା,
ମାତା ମନ ସିନା କରଇ ଉନ୍ମନା;
କୃତିମନ୍ତ, ଧନ ମାନ ଗୁଣଯୁତ,
ଅଛନ୍ତି ମୋହର ସନ୍ତାନ ବହୁତ,
ଏକଚନ୍ଦ୍ରେ ହୁଏ ଉଜ୍ଜ୍ୱଳ ଧରଣୀ,
ବହୁ ଚନ୍ଦ୍ରର ମୁଁ ଅଟଇ ଜନନୀ ।
କହିବାକୁ ବିଦ୍ଧ ହୁଏ ଅନ୍ତଃସ୍ଥଳ
କେହିତ ମୋମୁଖ ନକଲା ଉଜ୍ଜ୍ୱଳ ?
ବାଳିକା- କିକଥା ମାଆଲୋ କହୁଛୁ ଅଦ୍ଭୁତ
ତୋହରି ସେବାରେ ଆଜି କେତେ ସୁତ
କାୟ-ମନପ୍ରାଣ ସମର୍ପି ସତତ,
ତୋକୁଞ୍ଜେ ବସି ତୋ ସାଧନେ ନିରତ
ଉଲ୍ଲାସେ ମଞ୍ଜୁଳ ସଙ୍ଗୀତ ତାଙ୍କର
ତୋ ଆଶ୍ରମ କୁଞ୍ଜୁ ଭ୍ରମୁଛି ଅମ୍ବର

ଛାଡ଼ିପୁଣି ତୋର ଏହାଙ୍କୁ ବହୁତ
ଅଛନ୍ତି ଆହୁରି କୃତବିଦ୍ୟସୁତ;
ଉଚ୍ଚପଦେ କେହି କରନ୍ତି ବିରାଜ,
କେହି ରାଜା ରାଜାପୁତ୍ର ମହାରାଜ
ଏତେ ସୁତ ଥାଉଁ ଯେବେ ତୁ ଦୁଃଖିନୀ
କହିବେ ଦମତଃ ସେ ଦୁଃଖ-ଯାମିନୀ
ପାଇବ କିପରି ? ତୋ ହୃଦ-ଗଗନେ
ସୁଖର ବିପୁଣି ଉଇଁବ କେସନେ ?
ମୁଖ-ରବିପୁଣି ଉଇଁବ କେସନେ ?

ଭାରତୀ- ଆହାବଯେ ତୋର ବାଳିକା ହୃଦୟ
ବାଳଭାବ ସିନା କରିଛି ଆଶ୍ରୟ
କୋଟିରୁ ଅଧିକ ସନ୍ତାନ ଜନନୀ
ଅଟେ ମୁଁ ଧରାରେ, କହିଲୁ ଯା ମଣି,
ଅଟନ୍ତି ସେକେତେ ? ସାଗର ବାଲିକି
ଉପମାରେ ମୁଷ୍ଟମେୟ ନୁହନ୍ତି କି ?
ଗୋଟିକେତେମାତ୍ର କାତର ମୋପାଇଁ
ମୋହରି ସେବାରେ ସଦା ରତଥାଇ
କରିଛନ୍ତି ଯାହା ଦେଖିଛୁ ନୟନେ,
ସେ କୀର୍ତ୍ତି ତାଙ୍କର ବିଦିତ ଭୁବନେ
କିନ୍ତୁ ଆଶାସମ- ତୁଳକିସେ ଫଳ ?
ନହେବ ତହିଁରେ ମୋ ମୁଖ ଉଜ୍ଜ୍ୱଳ,
ଦେଖବଯେ ବଙ୍ଗ ନାମେମୋ ଭଗିନୀ
ତାର ସୁତଚୟ କମ୍ପାଇ ମେଦିନୀ,
ମାତୃନାମେ ଯଶ- ଦୁନ୍ଦୁଭି ବଜାଇ
ବିଶ୍ୱବାସୀ ଚିତ୍ତ ଦେଲେ ଚମକାଇ

ବାଳିକା- ସେପରି କିମାତଃ ଆମ୍ଭର ଏଦେଶେ
ହେବ ନାହିଁ ଜଣେ ଥିବୁ ଚିରକ୍ଲେଶେ ?

ଭାରତୀ- କାହୁଁ ହେବ ବଯେ, ମୋ ସୁତେ ନିର୍ଦ୍ଧନ
ନାହିଁ ପୁଣି ଚିତ୍ତେ ଉତ୍ସାହ ଯତନ,
ହେଲେ ସର୍ବେ ଏକପ୍ରାଣ ଏକମନ
କି ଅଛି ଅସାଧ ନହେବ ସାଧନ ?

ବାଳିକା- ତେବେ କି ମୁକତି ଆଉ ନହେବ ମା
ଶୋକରାହୁଗ୍ରାସୁଁ ତୋ ମୁଖ ଚନ୍ଦ୍ରମା ?

ଭାରତୀ- ହେବମା ସେହି ଯେ ସମ୍ମୁଖେ ତୋହର
ତୁସାର- ଧବଳ ଅମଳ ଅମ୍ବର
ପ୍ରଶାନ୍ତ ବଦନ ଋଷିତୁଲ୍ୟ ନର,

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

-ଅମର ବୃନ୍ଦରେ ଯଥାପୁରନ୍ଦର
ରମେଶ ସୁକବି ପଣ୍ଡିତ ପ୍ରବର
ଯଥାନାମେ ତଥା କର୍ମ୍ମ ଧୁରନ୍ଧର
ବସିଛି ଆସନେ, ଆହା ସ୍ନେହ ବୋଳା
ନୟନ ଯୁଗଳେ କରୁଅଛି, ଖେଳା
ସ୍ନିଗ୍ଧଜ୍ୟୋତି, ସେମୋ ଭଗିନୀ କୁମର
ଭାଗ୍ୟବଶେ ଭାଗ୍ୟଚକ୍ରେ ଉତ୍କଳର,
ଅଧିଦେବରୂପେ ଆସିଛି ଏଦେଶେ,
ଯାଅମା ତୋ ପାଶେ ମୋହରି ଆଦେଶେ
କହିବୁ ବିନୟ ବିନମ୍ର ବଦନେ
ମୋ ଦୁଃଖ କାହାଣୀ ସେ ଚାହିଁଲେ କ୍ଷଣେ
- "ପାହିଯିବ ଘୋର ତାମସୀ ଯାମିନୀ
ଫାଟିବ ଉତ୍କଳଭାଷୀ କମଳିନୀ"

ବାଳିକା- କାତରେ ଡାକଇ ଉତ୍କଳ କୁମାରୀ
ହେବଙ୍ଗ ତିଳକ, କ୍ଷୁଦ୍ର ମୋ ଗୁହାରୀ
ଅବଧାନେ ଆସୁ ଛାମୁରେ ବିନତି;
ସୁପ୍ରସନ୍ନ ବିଧି ହୋଇ ଆମ୍ଭପ୍ରତି
ପଠାଇ ଅଛନ୍ତି ତୁମ୍ଭଙ୍କୁ ଏଦେଶେ
ଅନୋରସ ପିତୃ ଦେବତାର ବେଶେ ।
କୋଟିରୁ ଅଧିକ ତୁମ୍ଭର ସନ୍ତତି
ଅଟୁଁ ଆମ୍ଭେ, ତୁମ୍ଭ ଶ୍ରୀପଦେ ସମ୍ପ୍ରତି,
କରୁଅଛୁ ଅଳି ହେପିତଃ ବହନ,
କର ଆମ୍ଭ ମନସ୍କାମନା ପୂରଣ ।
ହେଦେବ ଉତ୍କଳ ଭାଗ୍ୟ ନଭେ ଆଜ
ମୁଖର ବିରୁପେ କରୁଛ ବିରାଜ,
ତୁମ୍ଭ ଜ୍ଞାନ ଜ୍ୟୋତି ଛନ୍ଦ ମନୋହର
ଦୀପଇ ନିଖିଳ ଉତ୍କଳ ଅମ୍ବର,
ପଳାଉଛି ଆଜ ଅଜ୍ଞାନ ତମସ
ଉତ୍କଳ ଆକାଶ ଦିଶେ ହସହସ,
ତୁମ୍ଭକରେ ଏବେ ଉତ୍କଳ-ପଦ୍ମିନୀ
ଫୁଟିବେ ଆହା ସେ ଚିର ବିଷାଦିନୀ,
ଆମ୍ଭେ ସର୍ବେ ତବ ଦୁହିତାର ତୁଳ,
ଏହି କୁଳ ତୁମ୍ଭ ପ୍ରଭାରେ ମଞ୍ଜୁଳ
ରୂପଧରୁ, ଦେଖୁ ନିଖିଳ ଭୁବନ
ଶ୍ରୀଚରଣେ ଦୁଃଖେ କଲୁଁ ନିବେଦନ ।

*ଭା୨ଗ, ସଂ୪୯ଖ୍ୟା, ୭।୫।୧୮୯୬*

## ସାହିତ୍ୟିକ ଇତିବୃତ୍ତ ।

ଆମ୍ଭମାନଙ୍କର ବନ୍ଧୁ ଶ୍ରୀଯୁକ୍ତ ବାବୁ କୃଷ୍ଣପ୍ରସାଦ ଚୌଧୁରୀ ମହାଶୟଙ୍କର ଖଣ୍ଡିଏ ପତ୍ର ଜୁନ୍ ୨ ତାରିଖର ଦୀପିକାରେ ପ୍ରକାଶିତ ହୋଇଅଛି, ସେ ଉକ୍ତ ପତ୍ରରେ ଲେଖିଅଛନ୍ତି "ଭଞ୍ଜକବି, ଦୀନକୃଷ୍ଣ ଦାସ ପ୍ରଭୃତିଙ୍କଠାରୁ ରାଧାନାଥ ମଧୁସୂଦନ ପର୍ଯ୍ୟନ୍ତ ଆମ୍ଭେମାନେ ଏହିପରି ଗୋଟିଏ ଧାରାବାହିକ ଇତିହାସ ଦେଖିବାକୁ ଏକାନ୍ତ ଅଭିଳାଷୀ" ପ୍ରସ୍ତାବଟି ଅତି ଉପାଦେୟ, ଏପରି ସତ୍‌ପ୍ରସ୍ତାବ ଉପସ୍ଥିତ କରିଥିବା ହେତୁ ଚୌଧୁରୀ ମହାଶୟ ଧନ୍ୟବାଦର ପାତ୍ର କିନ୍ତୁ ତାଙ୍କର ଏ ଅଭିଳାଷ ସଫଳ ହେବାର ସମ୍ଭାବନା ଅଳ୍ପ । ଏସବୁ କାର୍ଯ୍ୟରେ ଶକ୍ତି ସାମର୍ଥ୍ୟ ବ୍ୟୟ କରିବାକୁ ପ୍ରାୟ ସମସ୍ତେ ବୀତସ୍ପୃହ, ଅଥଚ ସାହିତ୍ୟିକ ଇତିବୃତ୍ତ ଲିଖିତ ହେବାର ଯେ ନିତାନ୍ତ ଆବଶ୍ୟକ ଏକଥା କେହି ଅସ୍ୱୀକାର କରିପାରିବେ ନାହିଁ । ପତ୍ରପ୍ରେରକ ମହାଶୟ ସ୍ୱୀୟ ପତ୍ରର ଉପସଂହାରରେ ଲେଖିଅଛନ୍ତି "ଦେଶର ସମ୍ପାଦକମାନେ ଏହି ବିଷୟରେ ଅଗ୍ରଣୀ ହେବେ କି ?" ଏ ବିଷୟରେ ଅଗ୍ରଣୀ ହେବା ସୌଭାଗ୍ୟର କଥା କିନ୍ତୁ ଉତ୍କଳ ଲେଖକମାନଙ୍କ ସାହାଯ୍ୟ ବ୍ୟତିରେକେ ଏ କାର୍ଯ୍ୟ ନିଷ୍ପନ୍ନ ହୋଇନପାରେ ଦୀପିକାର ବୃଦ୍ଧ ସମ୍ପାଦକ ଏ ବିଷୟରେ ଅଗ୍ରଣୀ ହେଲେ ଅନ୍ତତଃ ବହୁ ପରିମାଣରେ କୃତକାର୍ଯ୍ୟ ହେବାର ସମ୍ଭାବନା । ବର୍ତ୍ତମାନ ଆମ୍ଭେମାନେ ଉତ୍କଳ ଲେଖକମାନଙ୍କର ସଂକ୍ଷିପ୍ତ ପରିଚୟ ପ୍ରକାଶ କରିବାର ଅଭିଳାଷ ରଖିଅଛୁଁ, ଆମ୍ଭମାନଙ୍କର ପାଠକ ଏବଂ ଲେଖକ ମହୋଦୟମାନେ ସ୍ୱୀୟ ପରିଚିତ ଲେଖକମାନଙ୍କର ସଂକ୍ଷିପ୍ତ ପରିଚୟ ଲେଖି ପଠାଇଲେ ଅତ୍ୟନ୍ତ ଆହ୍ଲାଦିତହେବୁଁ । ପାଠକ ମହୋଦୟମାନଙ୍କ ଜ୍ଞାପନାର୍ଥ ଚୌଧୁରୀ ମହାଶୟଙ୍କର ଉକ୍ତ ପତ୍ରଖଣ୍ଡି ପ୍ରାପ୍ତ ସ୍ଥମରେ ପ୍ରକାଶ କରୁଅଛୁଁ ।

*ଭା।୮ଗ, ସଂ୭ଖ୍ୟା, ୧୫।୭।୧୮୯୬*

## ଓଡ଼ିଆଙ୍କ ଅଭାଗ୍ୟ

ସମ୍ବଲପୁରରେ ହିନ୍ଦୀଭାଷା ନଚଳାଇବା ତନ୍ନିମିତ୍ତ ରାଜକାର୍ଯ୍ୟର ଅସୁବିଧା ହେଲେ ସମ୍ବଲପୁରକୁ ଓଡ଼ିଶ୍ୟାର ଅନ୍ତର୍ଗତ କରିଦେବା ବିଷୟକ ଯୁକ୍ତିସଙ୍ଗତ ଆବେଦନ ଭାରତର ଭାଗ୍ୟବିଧାତା ବଡ଼ଲାଟ ବାହାଦୂର ଶୁଣିଲେ ନାହିଁ । ଓଡ଼ିଶ୍ୟାର ଲୋକମାନେ ଉପରୋକ୍ତ ମର୍ମ୍ମର ଆବେଦନଃ କରି ଉତ୍ତର ପାଇଲେ ନାହିଁ । ସେହିଦିନଠାରୁ ଜାଣି ଅଛୁଁ ସମ୍ବଲପୁରର ଓଡ଼ିଆମାନଙ୍କୁ ଅଭାଗ୍ୟ ଘୋଟିଲା । ବର୍ତ୍ତମାନ ଦେଖୁଅଛୁଁ ସମ୍ବଲପୁରର ଉଚ୍ଚପଦସ୍ଥ ରାଜକର୍ମ୍ମଚାରୀ ମାତ୍ରେ ହିନ୍ଦୁସ୍ଥାନୀ ଏବଂ ମରହଟ୍ଟା । ଓଡ଼ିଆମାନଙ୍କ ଭାଗ୍ୟରେ ଚପରାଶି ଏବଂ ମୋହରିର କାର୍ଯ୍ୟ । ହିନ୍ଦିଭାଷାର ବ୍ୟବହାର ବୃଦ୍ଧିସଙ୍ଗେ ଓଡ଼ିଆ ମାନଙ୍କୁ ଉକ୍ତ ନୀଚ କାର୍ଯ୍ୟସୁଦ୍ଧା ମିଳିବାର ଆଶାନାହିଁ । ଉଚ୍ଚ ରାଜକର୍ମ୍ମଚାରୀ ମଧ୍ୟରେ ବର୍ତ୍ତମାନ ଦୁଇଜଣ ଓଡ଼ିଆଙ୍କୁ ଦେଖୁଅଛୁଁ । ଜଣେ ଡେପୁଟୀ କମିଶନରଙ୍କର ମୁନସରିମ, ନାମ, ଦାମୋଦର ମିଶ୍ର । ଅପରଜଣକ ହାଇସ୍କୁଲର ହେଡ଼ମାଷ୍ଟର ସେ ପୁଣି ଅସ୍ଥାୟୀ, ନାମ ଦାଶରଥି ପାଣିଗ୍ରାହୀ, ବି.ଏ ହିନ୍ଦୁସ୍ଥାନୀ ଏବଂ ମରହଟ୍ଟାମାନେ ସକଳ ଉଚ୍ଚପଦ ଅଧିକାର କରିଥିଲେ ସୁଦ୍ଧା ତୃପ୍ତିଲାଭ କରି ନାହାନ୍ତି । ଶୁଣିବାରେ ଉକ୍ତ ଦୁଇପଦରେ ଆପଣା ଆପଣାର ଜାତୀୟଲୋକ ନିଯୁକ୍ତ ହେବାର ସେମାନେ ଇଚ୍ଛା କରନ୍ତି । ଆଶା ବୈତରଣୀ ନଦୀ । ପ୍ରବଳର ଜୟ ଦୁର୍ବଳର ପରାଜୟ ଏହା ଅବଶମ୍ଭାବୀ ଥିବାରୁ ସେମାନଙ୍କର ଇଚ୍ଛା ପୂରଣ ହେବାର ଅସମ୍ଭବ ନୁହେଁ । ଏହା ବୋଲି ଧର୍ମ୍ମାଧର୍ମ୍ମ ବିଚାର ଆବଶ୍ୟକ, ନଚେତ୍ ଈଶ୍ୱରଙ୍କ ନିକଟରେ ଦୋଷୀ ହେବାକୁ ହେବ, ଆମ୍ଭମାନଙ୍କର ବିବେଚନାରେ ଉକ୍ତଦୁଇ କାର୍ଯ୍ୟରୁ ଓଡ଼ିଆମାନଙ୍କୁ ବଞ୍ଚିତ କରିବା କେବେହେଁ ଉଚିତ୍ ନୁହେଁ, ତାହାହେଲେ ଓଡ଼ିଆମାନଙ୍କ ପ୍ରତି ଅବିଚାର ହେବ ଏବଂ କାର୍ଯ୍ୟରେ ବିବିଧ ବିଶୃଙ୍ଖଳା ଉପସ୍ଥିତ ହେବ ।

*ଭା।୮ଗ, ସଂ୨୭ଖ୍ୟା, ୨।୧୨।୧୮୯୬*

# ୧୮୯୭

## ପ୍ରାପ୍ତ ।

## ଦୁଇଖଣ୍ଡି ପୁସ୍ତକ ।

ଓଡ଼ିଆ ସାହିତ୍ୟର ବର୍ତ୍ତମାନ ଶୋଚନୀୟ ଦରିଦ୍ରାବସ୍ଥାରେ ତାହାର ପୁଷ୍ଟିସାଧନର ଚେଷ୍ଟା ଦେଖିଲେ ବାସ୍ତବିକ ହୃଦୟ ଆନନ୍ଦରେ ପରିପ୍ଲୁତ ହୁଏ ଏବଂ ଚେଷ୍ଟାକାରୀ ମହାତ୍ମାମାନଙ୍କ ପ୍ରତି ହୃଦୟର କୃତଜ୍ଞତା ସ୍ୱତଃ ଧାବିତ ହୁଏ । ବାମଣ୍ଡା ଦେବଗଡ଼ ରାଜଧାନୀରେ "ହିତୈଷିଣୀ"ର ଆବିର୍ଭାବ ସଙ୍ଗେ ସଙ୍ଗେ ଉତ୍କଳ ସାହିତ୍ୟର ବହୁ ପରିମାଣରେ ପୁଷ୍ଟି ସାଧିତ ହୋଇ ଅଛି । ଏହା ଉତ୍କଳ ସାହିତ୍ୟ ସେବକ ମାତ୍ରେହିଁ ସ୍ୱୀକାର କରିବେ । ଏହି ଅଳ୍ପକାଳ ମଧ୍ୟରେ ବାମଣ୍ଡା ଜଗନ୍ନାଥବଲ୍ଲଭ ପ୍ରେସ୍‌ରୁ ଅନେକଗୁଡ଼ିଏ ପୁସ୍ତକ-ପୁସ୍ତିକା ପ୍ରଚାରିତ ହୋଇ ଉତ୍କଳସାହିତ୍ୟ ତଥା ଉତ୍କଳର ଅନେକ ଉପକାର କରିଅଛି ଓ କରୁଅଛି ଏବଂ ଆମ୍ଭେମାନେ ଆଶାକରୁଁ ଭବିଷ୍ୟତରେ ଏଥିରୁ ଅଧିକ ପରିମାଣରେ ସାରବାନ ପୁସ୍ତକ-ପୁସ୍ତିକାମାନ ବାହାରି ଦରିଦ୍ର ଉତ୍କଳର ପ୍ରଭୂତ ଉନ୍ନତି ସାଧନ କରିବ ।

ଉତ୍କଳର ଅନ୍ୟାନ୍ୟ ପ୍ରେସ୍‌ରୁ (ବିଶେଷତଃ କଟକ ନଗରସ୍ଥ ପ୍ରେସମାନଙ୍କରୁ) ମଧ ଆଜିକାଲି ଆଶାନୁରୂପ ପୁସ୍ତକ-ପୁସ୍ତିକା ବାହାରୁ ଅଛି । ମାତ୍ର ଦୁଃଖର ବିଷୟ ଯେ ସେମାନଙ୍କର ଅଧିକାଂଶହିଁ (ସ୍କୁଲପାଠ୍ୟ ପୁସ୍ତକ ଛଡ଼ା) ଶିକ୍ଷିତ ସମ୍ପ୍ରଦାୟର ଅପାଠ୍ୟ ବା ଅନୁପକାରୀ । ବୁଧନାଥବାବୁ, ମଧୁବାବୁ, ଗୋପାଳବାବୁ ପ୍ରଭୃତିଙ୍କର କେତେକଖଣ୍ଡ କାବ୍ୟଗ୍ରନ୍ଥ ଓ ଅନ୍ୟାନ୍ୟ କେତେକ ସାହିତ୍ୟ ସେବକ ମହାତ୍ମାଙ୍କର କେତେକ ଅନୁବାଦିତ ବା ସଙ୍କଳିତ ଗଦ୍ୟ ଗ୍ରନ୍ଥ ଓ ଦୁଇଏକଖଣ୍ଡି ନାଟକ ଉପନ୍ୟାସ ବ୍ୟତୀତ ଓଡ଼ିଶାରେ ସାଧାରଣ ପାଠୋପଯୋଗୀ ପୁସ୍ତକ ଅତୀବ ଅଭାବ ଥିଲା । ସୁଖର ବିଷୟ ବର୍ତ୍ତମାନ ସମାଲୋଚ୍ୟ ଗ୍ରନ୍ଥ ଦୁଇଖଣ୍ଡି ବାହାରି ଉକ୍ତ ଅଭାବ ବହୁପରିମାଣରେ ଦୂରକରିଅଛି । ଯଦ୍ୟପି ଏହି ଦୁଇ ଉତ୍ସାହୀ ଗ୍ରନ୍ଥକାର ଉତ୍କଳର ଅନ୍ୟାନ୍ୟ ଚିନ୍ତାଶୀଳ ଲେଖକମାନଙ୍କର ସୁଗ୍ରନ୍ଥ ପ୍ରଣୟନ ଓ ପ୍ରଚାରର ପ୍ରବର୍ତ୍ତକ ହୁଅନ୍ତି ତାହାହେଲେ ଅଚିରେ ଉତ୍‌କଳ ସାହିତ୍ୟର ଯେ ପ୍ରଭୂତ ଉନ୍ନତି ସାଧିତ ହେବ ଏଥିରେ ଆଉ ସନ୍ଦେହ କି ଅଛି ? ଉତ୍କଳର ସୁଲେଖକଗଣ ଟିକିଏ ନିଶ୍ଚେଷ୍ଟତାର କୋମଳ କ୍ରୋଡ଼ରୁ ଗାତ୍ରୋତ୍ଥାନ କରି କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହେଉନ୍ତୁ ! ଉତ୍କଳ ସାହିତ୍ୟର ଦାରିଦ୍ର୍ୟ ଦୂରହେଉ ।

ସମାଲୋଚ୍ୟ ଗ୍ରନ୍ଥଦ୍ୱୟର ପ୍ରଣୟନରୁ ଦୁଇଟି କଥା ସ୍ପଷ୍ଟ ପ୍ରମାଣିତ ହୋଇଅଛି । ୧ମ ଉତ୍କଳରେ ସୁଲେଖକର ବିରଳତା । ୨ୟ ଅଙ୍ଗୁଷ୍ଠିରେଖା ପରିମିତ ଯେଉଁ କେତେଜଣ ସୁଲେଖକ ଅଛନ୍ତି ସେମାନଙ୍କର ଦାରିଦ୍ର୍ୟ । କେବଳ ଏହି ଦୁଇ କାରଣରୁହିଁ ଉତ୍‌କଳ ଗୌରବ ସଦାଶୟ ବାମଣ୍ଡାର ମହାରାଜା ଉତ୍କଳର ରାଜା ରାଜୁଡ଼ାମାନଙ୍କ ସାହାଯ୍ୟରେ ଗୋଟିଏ ସଦ୍‌ଗ୍ରନ୍ଥ ପ୍ରଣୟନ ସମିତି ସଂଗଠନର ଚେଷ୍ଟା କରିଥିଲେ । କିନ୍ତୁ ନିର୍ଜୀବ ଉତ୍କଳ ତାହାଙ୍କର ଅନୁରୋଧ ରକ୍ଷା କଲାନାହିଁ । ସେ ଯାହାହେଉ ବର୍ତ୍ତମାନ ପୁନରାୟ ଉକ୍ତସମିତି ସ୍ଥାପନ ଚେଷ୍ଟା ପୁନର୍ଜୀବିତ କରିବାପାଇଁ ଆମ୍ଭେମାନେ ଉତ୍କଳର ବିଜ୍ଞ ଓ ଧନୀ ସନ୍ତାନ ମାନଙ୍କୁ ବିନୀତଭାବରେ ଅନୁରୋଧ କରୁଅଛୁଁ ।

ସାଥୀ- ଶ୍ରୀ ଅନଙ୍ଗମୋହନ ଚକ୍ରବର୍ତ୍ତୀ କର୍ତ୍ତୃକପ୍ରଣୀତ ଓ ପ୍ରକାଶିତ । କଟକ ରାୟପ୍ରେସରେ ମୁଦ୍ରିତ । ମୂଲ୍ୟ ଚାରିଅଣା ମାତ୍ର । "କବିବର ଶ୍ରୀଯୁକ୍ତ ରାଧାନାଥରାୟ ଓ ଭକ୍ତକବି ଶ୍ରୀଯୁକ୍ତ ମଧୁସୂଦନରାଓଙ୍କ ଗୌରବାନ୍ୱିତ ନାମରେ ଉପାୟନୀକୃତ ।'' "ଲବ୍ଧପ୍ରତିଷ୍ଠ ରାୟପ୍ରେସର ଅଧ୍ୟକ୍ଷ ଶ୍ରୀଯୁକ୍ତ ବାବୁ ସୀତାନାଥରାୟ ମହାଶୟଙ୍କ ସ୍ନେହ ଉତ୍ତେଜନା ଓ ସାହାଯ୍ୟରେ ପ୍ରକାଶିତ ।''

ଏହି ପୁସ୍ତକରେ ୬୧ ୧ଣ ଭକ୍ତଙ୍କର ସଂକ୍ଷିପ୍ତ ଜୀବନୀ ସଂଗୃହିତ ହୋଇଅଛି । ସେଥିମଧ୍ୟରୁ ଗୋ୪ଟି ସ୍ୱୟଂ ଗ୍ରନ୍ଥକାରଙ୍କ ଦ୍ୱାରା ଓ ଗୋ୨ଟି ତାଙ୍କର ପରଲୋକ ଗତ ସହୋଦର ଶ୍ରୀଯୁକ୍ତ ଲଳିତମୋହନ ଚକ୍ରବର୍ତ୍ତୀ ମହାଶୟଙ୍କଦ୍ୱାରା ଲିଖିତ । ଗ୍ରନ୍ଥକାର ବଙ୍ଗାଳୀ ହେଲେ ହେଁ ଓଡ଼ିଶାରେ ଜନ୍ମଗ୍ରହଣ କରି ସେହିଠାରେ ଶିକ୍ଷିତ । ଗ୍ରନ୍ଥକାରଙ୍କ ପୂଜନୀୟ ପିତା ଶ୍ରୀଯୁକ୍ତ **xxxx** ବର୍ତ୍ତୀ ପ୍ରାୟ ଅର୍ଦ୍ଧଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶା ଶିକ୍ଷାବିଭାଗରେ ସୁଖ୍ୟାତିର ସହିତ କାର୍ଯ୍ୟକରି ଅଳ୍ପଦିନପୂର୍ବେ ଅବସର ଗ୍ରହଣ କରି ଅଛନ୍ତି । ସେ "ଜଡ଼ବିଜ୍ଞାନ", "ଅବଧାନ ବନ୍ଧୁ" ପ୍ରଭୃତି କେତେକଖଣ୍ଡି ଶିକ୍ଷାସମ୍ବନ୍ଧୀୟ ଅତିଉପାଦେୟ ପୁସ୍ତକ ପ୍ରଣୟନ କରି ଉତ୍କଳସାହିତ୍ୟ କ୍ଷେତ୍ରରେ ସୁପରିଚିତ ହୋଇଅଛନ୍ତି । ପରଲୋକଗତ ପ୍ରୋକ୍ତ ଲଳିତବାବୁ ଅନେକ ବର୍ଷ ପର୍ଯ୍ୟନ୍ତ ଉତ୍କଳବ୍ରାହ୍ମ ସମାଜ ସହିତରେ ସଂସୃଷ୍ଟ ଥାଇ ଉତ୍କଳ-ସାହିତ୍ୟର ଅନେକ ଉପକାର କରିଯାଇ ଅଛନ୍ତି । ଅତଏବ ଦେଖାଯାଉ ଅଛି ଯେ ଓଡ଼ିଆ ଭାଷା ପ୍ରତି ଅତି ଅନୁରାଗ କେବଳ ଗ୍ରନ୍ଥକାରଙ୍କଠାରେ ଆବଦ୍ଧ ନଥାଇ ତାହା ତାହାଙ୍କର ପରିବାରର ଅନ୍ୟାନ୍ୟ ସଭ୍ୟମାନଙ୍କଠାରେ ମଧ୍ୟ ସଂକ୍ରମିତ ହୋଇ ଅଛି । ଗ୍ରନ୍ଥକାର ଯେ ଜଣେ ସୁଲେଖକ ତାହା ତାହାଙ୍କର ଅନ୍ୟାନ୍ୟ ସାମୟିକ ପତ୍ରିକାଦିରେ ପ୍ରକାଶିତ ପ୍ରବନ୍ଧାଦିରୁ ସୁସ୍ପଷ୍ଟ ଜଣାଇଅଛି । ଆଲୋଚ୍ୟ ଗ୍ରନ୍ଥର ଭାଷା ମଧ୍ୟ ତାହାର ଜାଜ୍ୱଲ୍ୟମାନ ଦୃଷ୍ଟାନ୍ତସ୍ଥଳ । କିନ୍ତୁ ଦୁଃଖରବିଷୟ ଯେ ସେ ଭାଷା ଆଦୌ ବିଷୟୋପଯୋଗୀ ହୋଇନାହିଁ । ଧର୍ମଶାସ୍ତ୍ର, ନୀତିଶାସ୍ତ୍ର, ଭକ୍ତଜୀବନୀ ପ୍ରଭୃତିରେ ଏତେ ଦୁରୁହଭାଷା ବ୍ୟବହାର କରିବାର ପ୍ରୟୋଜନ କଅଣ ଆମ୍ଭେମାନେ ବୁଝିପାରିଲୁଁ ନାହିଁ । ଗ୍ରନ୍ଥକାର ଯେଉଁ "ଭକ୍ତମାଳା" ଗ୍ରନ୍ଥରୁ ତାହାଙ୍କର ଏହି ଉପାଦାନଗୁଡ଼ିକ ସଂଗ୍ରହ କରିଅଛନ୍ତି ତହିଁରେ କେତେ ଅଳଂକାର କେତେ ଭାଷାରଛଟା ଦେଖିଅଛନ୍ତି ? ପୁଣି ଗ୍ରନ୍ଥକାର ମହାଶୟ ଯେଉଁ ଆଧୁନିକ ବଙ୍ଗଳା ଭକ୍ତଜୀବନୀ ମାନଙ୍କ ଆଦର୍ଶରେ ଆପଣାର ଗ୍ରନ୍ଥପ୍ରଣୟନ କରିଅଛନ୍ତି ସେମାନଙ୍କର କେତେଖଣ୍ଡର ଭାଷା ଏପରି ଦୁରୁହ ? ଭକ୍ତ ଜୀବନୀ ଲେଖିବାରେ ଏତେ ଔପନ୍ୟାସିକ ହେବାର ପ୍ରୟୋଜନ କିସ ? ଓଡ଼ିଶା ଭକ୍ତି ପ୍ରଧାନଦେଶ । ଅତିପ୍ରାଚୀନ କାଳରୁ ଆମ୍ଭମାନଙ୍କ ଦେଶରେ ଅନେକ ଭକ୍ତିଗ୍ରନ୍ଥ ପ୍ରଚାରିତ ହୋଇଆସିଅଛି । ସେସବୁର ଭାଷା ଏଡ଼େ ସରଳ ଓ ମଧୁର ଯେ ଉତ୍କଳର ନିରକ୍ଷର ଚଷାପୁଏ ମଧ୍ୟ ତାହା ଶ୍ରବଣକରି ଭକ୍ତିରେ ଗଦ୍‌ଗଦ୍ ହୁଅନ୍ତି । ଗ୍ରନ୍ଥକାର କି ମନେକରନ୍ତି ତାଙ୍କର ଭାଷା ଏଭାଷା ସହିତରେ ସମକକ୍ଷତା କରିପାରିବ ? ସେ ପରା ନିଜେ କହିଅଛନ୍ତି "ଭକ୍ତମାନଙ୍କ ଜୀବନୀପାଠ ମାନବାତ୍ମାର ଅଶେଷ କଲ୍ୟାଣକର । ସେମାନଙ୍କ ସଦ୍‌ଦୃଷ୍ଟାନ୍ତପୂର୍ଣ୍ଣ ଚରିତ ଆଲୋଚନା କଲେ ଜାଗ୍ରତ ହୃଦୟରେ ସତ୍‌ପ୍ରବୃତ୍ତି ଭାବକୁସୁମ ବିକଶିତ ଏବଂ ଶାନ୍ତିର ସମୀରଣ ପ୍ରବାହିତ ହୁଏ ।" ଭଲା, ପଚାରୁଁ ତାଙ୍କର ଭାଷା ଏସବୁ କରି ପାରିବଟିକି ? ରାମପରିଡ଼ା, ମଧୁସ୍ୱାଇଁ ପ୍ରଭୃତି ଭକ୍ତମାନେ ଏ ଗ୍ରନ୍ଥପଢ଼ି ବ୍ୟାକରଣର ସମାସ ପ୍ରକରଣ, ଅଳଂକାର ପ୍ରକରଣ ପ୍ରଭୃତି ଶିକ୍ଷାକରିବେ, ନା, ଭକ୍ତଜୀବନୀ ପାଠକରି ପ୍ରେମରେ ଗଦ୍‌ଗଦ ହେବେ ? ଆମ୍ଭମାନଙ୍କର କଦାପି ବିଶ୍ୱାସ ହେଉନାହିଁ ଯେ "ଏହି ପୁସ୍ତକ ପ୍ରଣୟନ ସୂତ୍ରରେ ଗ୍ରନ୍ଥକାର ଭକ୍ତ ଚୂଡ଼ାମଣି "ଭକ୍ତମାଳା" କାରଙ୍କ ଉଚ୍ଛିଷ୍ଟ ଭକ୍ଷଣ କରି କୃତାର୍ଥ ହୋଇଅଛନ୍ତି ।" ଏଠାରେ ପରଲୋକଗତ ମହାତ୍ମା ବଙ୍କିମଚନ୍ଦ୍ରଙ୍କର ଗୋଟିଏକଥା ମନେପଡ଼ିଲା । ତାହା ଏହି ବରହମପୁରରେ ଅବସ୍ଥାନକାଳରେ ତତ୍ରତ୍ୟ ଖାଗଡ଼ାନାମକ ସ୍ଥାନକୁ ନିର୍ଦ୍ଦେଶକରି ଦିନେ ତାଙ୍କର ଜଣେ ବନ୍ଧୁ ତାହାଙ୍କୁ ପ୍ରଶ୍ନ କରିଥିଲେ, "ଏହି ଯେ ରାଜବର୍ତ୍ମର ଉପରେ ଦୋକାନସବୁ ରହିଅଛି ସେମାନଙ୍କ ବିଷୟ ଲେଖିବାକୁ ହେଲେ ଆପଣ "ଶ୍ରେଣୀବଦ୍ଧ ବଣିକ ବିପଣି ସମୂହ" ଲେଖିବି । କିନ୍ତୁ ଯଦି ଅନ୍ୟକୌଣସି ଲୋକଦ୍ୱାରା କୁହାଇବାକୁ ହୁଏ ତେବେ "ସାରିସାରି ବଣିଆର ଦୋକାନଗୁଡ଼ିକ" ବୋଲି ଲେଖିବି । ମତେ ନିଜେ କହିବାକୁ ହେଲେମଧ୍ୟ ମୁଁ ଶେଷୋକ୍ତ ପ୍ରକାରରେ କହିବି । ବନ୍ଧୁଟି ଏହାର କାରଣ ପଚାରିବାରେ ସେ ହସିକହିଲେ, "ସାଧାରଣଲୋକେ କେଉଁଭାଷା ଦ୍ୱାରା ସେହିଭାବ ପ୍ରକାଶ କରିଥାନ୍ତି ? ସେହିବସ୍ତୁ ପ୍ରକାଶ କରିବା ନିମିତ୍ତ ଲୋକେ କେଉଁ କଥା ଅଧିକବାର ବ୍ୟବହାର କରନ୍ତି ଏବଂ କେଉଁ କଥା କହିଲେ, ବର୍ଣ୍ଣିତ ବିଷୟଟିର ଚିତ୍ରମନ ମଧ୍ୟରେ ସହଜରେ ଅଙ୍କିତ ହୁଏ ?" ଏଥିଉପରେ ଆମ୍ଭମାନଙ୍କର ଆଉ ମନ୍ତବ୍ୟ ପ୍ରକାଶ କରିବା ନିଷ୍ପ୍ରୟୋଜନ । ଯାହାହେଉ ଆମ୍ଭେମାନେ ଗ୍ରନ୍ଥକାରଙ୍କର ଭାଷାର ଆଦୌ ପକ୍ଷପାତି ନୋହୁଁ ।

ସାଧାରଣ ବୋଧଗମ୍ୟ ନହେଲେ ଏ ପ୍ରକାର ଗ୍ରନ୍ଥଦ୍ୱାରା ଯେକି ଉପକାର ହେବ ତାହା ଆମ୍ଭମାନଙ୍କ କ୍ଷୁଦ୍ରବୁଦ୍ଧିକୁ ଅଗୋଚର ।

ଏହି ଗ୍ରନ୍ଥର ଦ୍ୱିତୀୟ ଦୋଷ ଏହିକି ସେଥିରେ ଗ୍ରନ୍ଥକାର ଯେତେ ନୀତିବାକ୍ୟର ଅବତାରଣା କରିଅଛନ୍ତି ସେଗୁଡ଼ିକ ଅନେକସ୍ଥଳରେ ଆଦୌ ବିଷୟୀଭୂତ ଚରିତ୍ରମାନଙ୍କରେ ସଂଶ୍ଳିଷ୍ଟ ହୋଇ ନାହିଁ । ତାହା ହୋଇ ନଥିବାରୁ ତାହା ପାଠକର ହୃଦୟ ସ୍ପର୍ଶ କରିବାକୁ ଆଦୌ ସମ୍ଭବ ହେବକିନାହିଁ ସନ୍ଦେହର ସ୍ଥଳ । ଚରିତ୍ର ବିଶ୍ଳେଷଣ କରି ନୀତିବାକ୍ୟ ଗୁଡ଼ିକୁ ସ୍ପଷ୍ଟରୂପେ ବୁଝାଇନଦେଲେ ସେମାନେ ଆଦୌ କାର୍ଯ୍ୟକାରୀ ହୁଅନ୍ତି ନାହିଁ । ସମାଲୋଚ୍ୟ ଗ୍ରନ୍ଥରେ ଅଳଂକାର ଛଡ଼ାଛଡ଼ି, ଭାଷାର ବିଭବ ପ୍ରଦର୍ଶନର ଯେତେ ଚେଷ୍ଟା କରାଯାଇ ଅଛି ସାରସଂଗ୍ରହ ବିଷୟରେ ସେତେଚେଷ୍ଟା ହୋଇନାହିଁ । ତାହା ହୋଇ ଥିଲେ କିନ୍ତୁ ଗ୍ରନ୍ଥଖଣ୍ଡିକ ଅଧିକତର ଉପାଦେୟ ହୋଇଥାନ୍ତା । ତଥାପି ଯେଉଁମାନେ ଭାଷାର ଅଳଂକାର ଓ ଅନୁପ୍ରାସ ଭେଦକରି ଗ୍ରନ୍ଥ ବର୍ଣ୍ଣିତ ବିଷୟଗୁଡ଼ିକୁ ଉପଭୋଗ କରିପାରିବେ ସେମାନେ ଯେ ବାସ୍ତବିକ ଭବାର୍ଣ୍ଣବ ପାରି ହେବାକୁ ସକ୍ଷମ ହେବେ ସେଥିରେ ଆଉ ସନ୍ଦେହ କି ଅଛି ?

ଗ୍ରନ୍ଥକାର ବଙ୍ଗାଳୀଥିବାରୁ ଯେ ଭାଷାର ଏ ପ୍ରକାର ଦୁରୁହତା ଘଟିଅଛି ତାହା ହୋଇନପାରେ । କାରଣ ଆମ୍ଭେମାନେ ଲଳିତବାବୁଙ୍କର ଲିଖିତ "ବିଲ୍ୱମଙ୍ଗଳ" ଓ "ରଘୁନାଥ" ପାଠକରି ଆଶାତୀତ ଆନନ୍ଦିତ ହୋଇଅଛୁଁ । ଗ୍ରନ୍ଥକାର ଏହିଦୁଇ ପ୍ରବନ୍ଧର ଭାଷାର ଅନୁକରଣରେ ସମସ୍ତ ଉକ୍ତ ଚରିତକୁ ଲେଖିଥିଲେ ପୁସ୍ତକ ଖଣ୍ଡିକ ସର୍ବାଙ୍ଗସୁନ୍ଦର ହୋଇଥାନ୍ତା, ଆଶାକରୁଁ ଦ୍ୱିତୀୟ ଉଦ୍ୟମରେ ଗ୍ରନ୍ଥକାର ସରଳତର ହେବାକୁ ଚେଷ୍ଟା କରିବେ । ସବିଶେଷରେ ଏହାନକହି ରହିହେବନାହିଁ ଯେ ଗ୍ରନ୍ଥକାରଙ୍କର ଓଡ଼ିଆଭାଷା ପ୍ରତି ନିଃସ୍ୱାର୍ଥ ଅନୁରାଗ ତାହାଙ୍କୁ ଚୀରକାଳ ଉତ୍କଳ ସାହିତ୍ୟ କ୍ଷେତ୍ରରେ ସ୍ମରଣୀୟ କରାଇ ରଖିବ । ଈଶ୍ୱର ତାହାଙ୍କୁ ଦୀର୍ଘାୟୁ ପ୍ରଦାନ କରନ୍ତୁ । କ୍ରମଶଃ

*୭/୮ଗ, ସଂ୩୬ଖ୍ୟା, ୩/୨/୧୮୯୭*

## "ଉତ୍କଳ ସାହିତ୍ୟ" ।

ଉତ୍କଳ ସାହିତ୍ୟର ପ୍ରଥମ ସଂଖ୍ୟା ଆମ୍ଭମାନଙ୍କର ହସ୍ତଗତ ହୋଇ ଅଛି । ବର୍ତ୍ତମାନ ସଂଖ୍ୟାରେ ଉତ୍କଳର ବିଖ୍ୟାତ କେତେକ ସୁଲେଖକଙ୍କର ପ୍ରବନ୍ଧ ସନ୍ନିବେଶିତ ହୋଇଅଛି । ପ୍ରବନ୍ଧଗୁଡ଼ିକ ପାଠକରି ସୁଖୀ ହୋଇଅଛୁଁ । 'ଅପଚୟ' ଏବଂ 'ହିନ୍ଦୁଧର୍ମ୍ମର ପୁନରୁତ୍ଥାନ' ପ୍ରବନ୍ଧଦ୍ୱୟ, ପତ୍ରିକା ପ୍ରତି ଅନେକଙ୍କର ବିରାଗ ଆକର୍ଷଣ କରିବାର ସମ୍ଭାବନା । ନବୀନ ସହଯୋଗୀ ଦୀର୍ଘଜୀବି ହୋଇ ଆପଣାର ସଦୁଦ୍ଦେଶ୍ୟସାଧନରେ ସକ୍ଷମ ହେଉନ୍ତୁ । ଈଶ୍ୱରଙ୍କ ନିକଟରେ ଏହି ପ୍ରାର୍ଥନା କରୁଅଛୁଁ । ପତ୍ରିକାର ସମ୍ପାଦକ ଏବଂ କାର୍ଯ୍ୟାଧ୍ୟକ୍ଷ ଉଭୟେ ଉତ୍ସାହୀ କୃତବିଦ୍ୟ ଏବଂ ସ୍ୱଦେଶାନୁରାଗୀଥିବାରୁ ସେମାନଙ୍କଦ୍ୱାରା 'ଉତ୍କଳ ସାହିତ୍ୟ' ସୁପରିଚାଳିତ ହେବାର ଆଶା କରିଅଛୁଁ ।

*୭/୮ଗ, ସଂ୩୭ଖ୍ୟା, ୧୦/୨/୧୮୯୭*

## ସଂପାଦକଙ୍କୁ ପତ୍ର

ମାନ୍ୟବର ଶ୍ରୀଲଶ୍ରୀଯୁକ୍ତ ସମ୍ବଲପୁର ହିତୈଷିଣୀ

ସଂପାଦକ ମହାଶୟ..........................................................ସମୀପେଷୁ ।

ମହାଶୟ !

ଆପଣଙ୍କର ଜଗତ୍‌ବିଖ୍ୟାତ ପତ୍ରିକାରେ ମୋହର ନିମ୍ନଲିଖିତ ବିଷୟଟିକୁ ସ୍ଥାନଦାନ କରି ଆପ୍ୟାୟିତ କରିବାହେବ ।

ବର୍ତ୍ତମାନ କଟକ ନଗରୀରେ "ଉତ୍କଳ ସାହିତ୍ୟ" ଶୀର୍ଷକ ଏକମାସିକ ପତ୍ରିକା ଆବିର୍ଭୂତ ହୋଇଅଛି । ତହିଁରେ ଉତ୍କଳର ଲବ୍ଧ ପ୍ରତିଷ୍ଠ ଭକ୍ତିଭାଜନ ଶ୍ରୀ ମଧୁସୂଦନ ରାଓ ଓ ଶ୍ରୀ ଚନ୍ଦ୍ରମୋହନ ମହାରଣା ପ୍ରଭୃତି ଲେଖକ ଅଟନ୍ତି । ଏହି ନବଜାତ ପତ୍ରିକା ଉତ୍କଳରେ ଚିରଜୀବନୀ ହୋଇ ଉତ୍କଳସ୍ଥ ସନ୍ତାନ ମାନଙ୍କର ମଙ୍ଗଳ ସାଧନ କରୁ

ଏହା ମୋହର ବାଞ୍ଛନୀୟ । ମୁଁ ଉକ୍ତ ପତ୍ରିକାର ୧ମ ଖଣ୍ଡ ପ୍ରାପ୍ତ ହୋଇ ଆଦ୍ୟୋପାନ୍ତ ପାଠ କରି ଅଛି । କିନ୍ତୁ ଶ୍ରୀ ଭୋଳାନାଥ ସାମନ୍ତରାୟଙ୍କର "ଅପଚୟ" ପ୍ରବନ୍ଧ ସମ୍ବନ୍ଧରେ ମୋହର କିଛି ବକ୍ତବ୍ୟ ନିମ୍ନରେ ପ୍ରକଟିତ ହେଲା ।

ଭୋଳାନାଥ ବାବୁ ଲେଖିଅଛନ୍ତି "ଏପରି ନିର୍ଲ୍ଲଜ ପତ୍ରିକା ଅଛି ଯେ ଏ ସକଳ ପ୍ରସ୍ତାବକୁ କ୍ରୋଡ଼ରେ ସ୍ଥାନ ଦେଉଅଛି । ଆହୁରି ବିଚିତ୍ର ପଣ୍ଡିତ କିଏ ? ଏହି ତର୍କରେ ମୂର୍ଖତାର ପରାକାଷ୍ଠା ପ୍ରକାଶ ପାଉଅଛି "ଭୋଳାନାଥ ବାବୁଙ୍କର ଏପରି ଲେଖିବା ଅନୁଚିତ । ପ୍ରକୃତ କହିବାକୁ ଗଲେ ପ୍ରତ୍ୟେକ ପତ୍ରିକାର ସକଳ ପ୍ରସ୍ତାବକୁ କ୍ରୋଡ଼ରେ ସ୍ଥାନଦେବା ଉଚିତ୍, ପ୍ରସ୍ଥାବର ଅର୍ଥ ପ୍ରସଙ୍ଗ ଅର୍ଥାତ୍ ଏକର ସହିତ ଅନ୍ୟର ସମ୍ବନ୍ଧ । ଏହି ସମ୍ବନ୍ଧ ଥିଲେ ମଧ ଗୋଟିଏ କାର୍ଯ୍ୟରେ ନିଯୁକ୍ତହେଲେ ଅନ୍ୟକାର୍ଯ୍ୟ ଅନାୟାସରେ ସିଦ୍ଧହୁଏ । ଯଥା-

ଦୃଷ୍ଟ୍ୱାତୁ ହରତେ ପାପଂ ସ୍ପଷ୍ଟାତୁ ତ୍ରିଦିବଂ ନୟେତ୍ତ
ପ୍ରସଙ୍ଗେନାପିଯାଗଙ୍ଗା ମୋକ୍ଷଦାହ୍ୟ ବଗାହିତା ।

କୌଣସି ପ୍ରସ୍ତାବ ଆଲୋଚନା କଲେ ତାହାର ପ୍ରକୃତ ତତ୍ତ୍ୱମିଳେ, ଏବଂ ଫଳାଫଳ ବିବେଚନା କରିବାକୁ ଯାଇ ମଧ ବହୁ ଜ୍ଞାନୋପାର୍ଜନ କରିବାକୁ ହୁଏ । ତାହାହେଲେ ପତ୍ରିକା ଜାବତୀୟ ପ୍ରସ୍ତାବକୁ କ୍ରୋଡ଼ରେ ସ୍ଥାନ ନଦେବ କାହିଁକି ?

ପ୍ରସ୍ତାବ ଦ୍ୱିବିଧ; ସତ୍‌ପ୍ରସ୍ତାବ ଓ ଅସତ୍ ପ୍ରସ୍ତାବ କୌଣସି ପ୍ରସ୍ତାବ ସତ୍ କି ଅସତ୍ ତାହା ବିବେଚ୍ୟ । "ପଣ୍ଡିତ କିଏ" ଏହିପ୍ରଶ୍ନ ବୋଧହୁଏ ରାୟ ମହାଶୟଙ୍କୁ ଅସତ୍ ବୋଧହେଲା । ଯେବେ ଏହା ଅସତ୍ ତାହାହେଲେ ସତ୍ କିଏ ? ବୋଧହୁଏ ଲେଖିବା ସମୟରେ ଉକ୍ତ ମହାଶୟଙ୍କର ମସ୍ତିଷ୍କ ଅସତ୍ ସ୍ରୋତରେ ଧାବିତ ହୋଇ ଥିଲା ! ପତ୍ରିକାପରି ସୁଲଭ ମୂଲ୍ୟରେ ବହୁଜ୍ଞାନଲାଭ କରିବାର କ୍ଷମତା ପୃଥିବୀରେ ଅନ୍ୟ କାହିଁରେ ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ତେବେ ବହୁଜ୍ଞାନ ବିଧାୟିନୀ ମଙ୍ଗଳକାରିଣୀ ଯେଉଁ ପତ୍ରିକା ତହିଁରେ "ପଣ୍ଡିତ କିଏ" ? ଏହି ପ୍ରଶ୍ନର ତର୍କ ନୋହିବ କାହିଁକି ? ଯାହାହେଉ କଳିଯୁଗର ଏହି ଧର୍ମ୍ମ ।

ପରିଶେଷରେ ଆଉ ଗୋଟିଏ କଥା ଉଲ୍ଲେଖ ନକରି ରହି ପାରିଲି ନାହିଁ । ତାହା ଏହି କେହି ଧନମଦରେ ମତ୍ତ କେହି ପଦମତ୍ତରେ ମତ୍ତ ଇତ୍ୟାଦି । କିନ୍ତୁ ଏହି ମଦରେ ମତ୍ତ ହେଲେ ନିଜର ଅନିଷ୍ଟ ସଂଘଟିତ ହୁଏ । ଆଉ ଯେବେ ପତ୍ରିକା ମଦରେ ମତ୍ତ ହେବାକୁ ହୁଏ ତେତେ ସମୟରେ ସର୍ବ ମଙ୍ଗଳକାରିଣୀ ପତ୍ରିକା ଲୁପ୍ତ ହୋଇ କେତେ କେତେ ପ୍ରାଣୀଙ୍କର ଅନିଷ୍ଟ ଘଟାଇବ ଏହା କେହି ଥରେ ଭାବି ଦେଖନ୍ତି ନାହିଁ । ଆହା ! କି ପରିତାପର ବିଷୟ । ପତ୍ରିକା ମଦରେ ମତ୍ତ ନହୋଇ ବନ୍ଧୁତା ସୂତ୍ରରେ ଆବଦ୍ଧ ହୋଇ କାର୍ଯ୍ୟ କଲେ କି ମଙ୍ଗଳ ସାଧିତ ନହେବ ? ସହାନୁଭୂତି ଉତ୍କଳରୁ ପଳାୟନ କଲାକି ? ଯେବେ ନୂତନ ପତ୍ରିକା ଖଡ୍ଗୋତ୍ତୋଳନ କରି ଦଣ୍ଡାୟମାନ ହୁଏ ତେବେ ଉତ୍କଳଭୂମିରେ ସଂଗ୍ରାମ ନୋହିବ ଏହା ବିଶ୍ୱାସ କରିବ କିଏ ? ଏଥି ନିମିତ୍ତ ଲେଖକଙ୍କର ଲେଖନୀ ସାବଧାନରେ ଓ ସରଳ ମାର୍ଗରେ ଯିବା ବିଧେୟ । ଇତି ।

ଶ୍ରୀ ବୈଦ୍ୟନାଥ ଦାସ ।

*ଭା୮ଗ, ସଂ୩୯ଖ୍ୟା, ୨୪।୨।୧୮୯୭*

## 'ବ' ଭେଦ ।

ସଂସ୍କୃତ ଭାଷାରୁ ଉତ୍କଳ ଭାଷାର ଜନ୍ମ । ସଂସ୍କୃତ ଭାଷାର ଅକ୍ଷର ଦେବନାଗର, ଦେବନାଗର ଅକ୍ଷରରୁ ଉତ୍କଳ ହୋଇଥିବା କଥା ବୋଧହୁଏ କେହି ଅସ୍ୱୀକାର କରିବେ ନାହିଁ । ଦେବନାଗର ଅକ୍ଷର ସହିତ ଉତ୍କଳ ଅକ୍ଷରର ବିଶେଷ ସୌସାଦୃଶ୍ୟ ଅଛି ଏହା କହିବା ବାହୁଲ୍ୟମାତ୍ର । ସଂସ୍କୃତ ବ୍ୟାକରଣାନୁସାରେ ଉତ୍କଳ ବ୍ୟାକରଣ ଏବଂ ଦେବନାଗର ଅକ୍ଷର ଅନୁସାରେ ଉତ୍କଳ ଅକ୍ଷର ଯେତେ ପରିମାର୍ଜିତ ହେବ ଉତ୍କଳଭାଷା ତେତେ ଉନ୍ନତ ହେବ, ଉତ୍କଳ ପଣ୍ଡିତମାନେ ତାହା କରିଅଛନ୍ତି ଓ କରୁଅଛନ୍ତି । ଆମ୍ଭମାନଙ୍କ ପରି ଅଜ୍ଞ ଲୋକ ମାନଙ୍କ ଜ୍ଞାନନିମନ୍ତେ କେବଳ ଗୋଟିଏ ଅକ୍ଷରର ଭେଦ ଚିହ୍ନାଇ ନଥିବାର ବୋଧହୁଏ । ସେହି ଭେଦ ପଣ୍ଡିତମାନେ ଜାଣୁଅଛନ୍ତି ପୁଣି ଶିଷ୍ୟମାନଙ୍କୁ ବୁଝାଇଥାନ୍ତି । କିନ୍ତୁ ଲେଖାରେ କିଛି ବିଭିନ୍ନତା ନଥିବାରୁ ଆମ୍ଭମାନଙ୍କ ପଠନ ସମୟରେ ଉଚ୍ଚାରଣରେ

ଦୋଷ ହେଉଅଛି । ତାହା ନିରାକରଣ କରିବା ଆବଶ୍ୟକ ବୋଧକରି ମୁଁ ଅଦ୍ୟ ଗୋଟିଏ ଅଭିନବ ପ୍ରସ୍ତାବ କରୁଅଛି । ଏପରି ପ୍ରସ୍ତାବ ମୋହପରି ଲୋକ ପକ୍ଷରେ ଅବଶ୍ୟ ଅଶୋଭନୀୟ ତଥାପି ମୋହୋର କ୍ଷୁଦ୍ର ବୁଦ୍ଧିରେ ସଙ୍ଗତ ବୋଧକରି ପ୍ରକଟ କରିବାରେ ସାହସୀ ହେଲି ।

ପ୍ରସ୍ତାବଟି ଏହି

ବର୍ଗ୍ୟ "ବ" ଓ ଅନ୍ତସ୍ଥ 'ବ' ଏହି ଉଭୟର ମଧରେ ଅବଶ୍ୟ ପାର୍ଥକ୍ୟ ଅଛି । ବର୍ଗ୍ୟ "ବ" ର ଉଚ୍ଚାରଣ ସ୍ଥାନ ଓଷ୍ଠ; ଅନ୍ତଃସ୍ଥ "ବ"ର ଉଚ୍ଚାରଣ ସ୍ଥାନ ଦନ୍ତ ଓ ଓଷ୍ଠ "ଉ" ର ସହିତ ଭିନ୍ନସ୍ୱର ଯୋଗହେଲେ ଯେ ଉ "ବ" ହୁଏ ତାହା ଅନ୍ତଃସ୍ଥ "ବ" ଯେଉଁ ଉଚ୍ଚାରଣ ହେଉଅଛି ତାହା ଠିକ୍ ଅନ୍ତସ୍ଥ "ବ" ର ଉଚ୍ଚାରଣ କିନ୍ତୁ ରାଘବଠାରେ "ବ"ର ଉଚ୍ଚାରଣ ସେପରି ନକରି ସଂପୂର୍ଣ୍ଣରୂପେ ବର୍ଗ୍ୟ "ବ" ପରି ଉଚ୍ଚାରଣ କରିଥାଉଁ । ଏଥିର କାରଣ ଏହିକି ଲେଖାରେ ଉଭୟ 'ବ'ର କିଛି ଭେଦ ନାହିଁ ।

ଦେବନାଗରରେ ଏହି ଦୁଇ ଅକ୍ଷରର ପ୍ରଭେଦ ଅଛି ଯଥା ବର୍ଗ୍ୟ ବ ଅନ୍ତ୍ୟସ୍ଥ ବ ଏହିପରି ଉତ୍କଳ ଅକ୍ଷରରେ କିଞ୍ଚିନ୍ମାତ୍ର ଭେଦଥିଲେ ଆମ୍ଭମାନଙ୍କୁ ଉଚ୍ଚାରଣ ଦୋଷରେ ଲିପ୍ତ ହେବାକୁ ହୁଅନ୍ତା ନାହିଁ । ଶିକ୍ଷିତ ବ୍ୟକ୍ତିମାନେ ଏ ବିଷୟରେ କିଞ୍ଚିତ୍ ଦୃଷ୍ଟିଦେଲେ ଅଳ୍ପାୟାସରେ ଏହି ଅଭାବ ମୋଚନ ହୋଇପାରିବ । ଦେବନାଗରରେ ବର୍ଗ୍ୟ 'ବ'ର ପେଟରେ ଯେପରି ଗୋଟିଏ ରେଖା ଅଛି ସେହିପରି ଉତ୍କଳ ଅକ୍ଷରରେ ବର୍ଗ୍ୟ 'ବ' ରେ କିଛି ଟିକିଏ ଚିହ୍ନ ଦେଲେ ଆମ୍ଭେମାନେ ତାହା ଜାଣିପାରି ପାଠ ସମୟରେ ସତର୍କତା ଅବଲମ୍ବନ କରି ଉଚ୍ଚାରଣ କରନ୍ତୁ ତାହାହେଲେ ଦୋଷରହି ପାରନ୍ତା ନାହିଁ ।

କିପରି ଚିହ୍ନଦେଲେ ଭଲହେବ ତାହା ମୋପରି ସାମାନ୍ୟ ଲୋକର ମୁଖରୁ ବାହାରିବା ଅନୁଚିତ ଓ ଅଶୋଭନୀୟ ଯଦି ମୋହର ପ୍ରସ୍ତାବ ଅସଙ୍ଗତ ବୋଧ ନହୁଏ ତେବେ ଉତ୍କଳର ମୁଖ୍ୟ ମୁଖ୍ୟ ପଣ୍ଡିତ ମହୋଦୟ ମାନେ ଯେପରି ବିଚାର କରିବେ ସେପରି ଚିହ୍ନ ପ୍ରୟୋଗ କରାଗଲେ ସର୍ବତ୍ର ଗୃହୀତ ହୋଇପାରିବ ।

କେହି କେହି କହିପାରନ୍ତି କି ଉତ୍କଳ ଭାଷାରେ ଉଭୟ "ବ" କୁ ବିଭିନ୍ନ ରୂପେ ଉଚ୍ଚାରଣ କରିବା ଆବଶ୍ୟକତା ନାହିଁ । ତହିଁକି ମୋର ବକ୍ତବ୍ୟ ଏହିକି କେତେଗୁଡ଼ିଏ ଉର୍ଦ୍ଦୁଶବ୍ଦ ଯାହା ଉତ୍କଳ ଭାଷାର ଅଙ୍ଗୀଭୂତ ହୋଇଅଛି । ସେ ସ୍ଥଳରେ ଅନ୍ତଃସ୍ଥ "ବ"କୁ ଠିକ୍ ଉଚ୍ଚାରଣ ନକଲେ ସୁନ୍ଦର ହୁଏନାହିଁ ଏହା କିପରି କରାଯିବ ? ଅନେକେ ସେପରି ସ୍ଥଳରେ 'ଓ' ତଳେ 'ବ' ଫଳା ଦେଇ ଉଚ୍ଚାରଣର ଅନୁରୋଧ ରକ୍ଷା କରିଥାନ୍ତି ଯଥା ଓ୍ୱ କିବୁଲାଅର୍ଜି ଓ୍ୱାରଣ୍ଟ ଇତ୍ୟାଦି । ସ୍ୱରବର୍ଣ୍ଣରେ ବ୍ୟଞ୍ଜନ ଫଳା ଲଗାଇବା କଦାପି ଯୁକ୍ତିସଙ୍ଗତ ନୁହେ । ଏ ହେତୁରୁ ପଣ୍ଡିତ ମହୋଦୟ ବର୍ଗଙ୍କ ନିକଟରେ ଏତଦ୍ୱାରା ବିନୟ ସହିତ ପ୍ରାର୍ଥନା ଯେ ସାଧାରଣଙ୍କର ସୁବିଧା ନିମନ୍ତେ ଏବିଷୟରେ ଥରେ ଆଲୋଚନା କରି ଆମ୍ଭମାନଙ୍କର ଉପକାର ସାଧନ କରନ୍ତୁ । ଇତି ।

ଶ୍ରୀ ଗଙ୍ଗାଧର ମେହେର।

*ଭାଗ, ସଂ୪୨ଖ୍ୟା, ୧୭।୩।୧୮୯୭*

## ପ୍ରାପ୍ତ।

## ଥରେ ପାଠ କର।

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ".

ଏକଥା ପ୍ରାୟ ସମସ୍ତେ ଜାଣନ୍ତି, ଏବଂ ସୁସନ୍ତାନ ମାତ୍ରେ ଏହି ପ୍ରାଚୀନ ବଚନକୁ କାର୍ଯ୍ୟରେ ପାଳନ କରିଥାନ୍ତି । ଜନ୍ମଭୂମି ବା ସ୍ୱଦେଶ ବୋଇଲେ କେବଳ ଯେ ମାଟିଟିକ ବୁଝାଏ, ଏମନ୍ତ ନୁହେ, ସ୍ୱଦେଶବାସୀ ଲୋକ, ସ୍ୱଦେଶୀମାନଙ୍କ କର୍ତ୍ତୃକ କଥିତ ମାତୃଭାଷା ଏବଂ ସ୍ୱଦେଶୀମାନଙ୍କ କର୍ତ୍ତୃକ ଅନୁଷ୍ଠିତ ଶିକ୍ଷାଦି ମଧ ବୁଝାଏ । ମାତା ଓ ମାତୃଭାଷାପ୍ରତି ସ୍ନେହ ସୁପୁତ୍ରମାନଙ୍କ ପକ୍ଷରେ ସ୍ୱାଭାବିକ । ଏହି ସ୍ନେହ ଯେଉଁମାନଙ୍କଠାରେ ଲକ୍ଷିତ ନହୁଏ ସେମାନେ କଅଣ ଆପଣଙ୍କର ପାଠକ ମାନେ ବିଚାର କରିବେ । ମାତୃଭାଷା ସମସ୍ତଙ୍କ ତ ଆଦରର ବସ୍ତୁ ।

ମାତୃଭାଷାର ଉନ୍ନତି ମନୁଷ୍ୟ ସମାଜର ଅନ୍ୟାନ୍ୟ ନାନାବିଧ ଉନ୍ନତିର ସହକାରୀ ଓ ଜନନୀ । ଏଣୁ ମାତୃଭାଷାର ଉନ୍ନତିପାଇଁ ଯଥାସାଧ୍ୟ ଯତ୍ନ କରିବା ପ୍ରତ୍ୟେକ ବ୍ୟକ୍ତିର ବିଶେଷତଃ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିର କର୍ତ୍ତବ୍ୟ । ଯେକୌଣସି ଭାଷା ହେଉ ତାହାର ପ୍ରଚାର ଯେତେ ବିସ୍ତୃତ ହୁଏ ସେହି ଭାଷାରେ ଯେଉଁମାନେ ସାଧାରଣତଃ କଥାବାର୍ତ୍ତା କହନ୍ତି ସେମାନେ ଯେତେ ଶିଳ୍ପ ବାଣିଜ୍ୟ ଆବିଷ୍କାର ଓ ଗବେଷଣାରେ ନିଯୁକ୍ତ ହୁଅନ୍ତି ତେତେ ଭାଷାର ଉନ୍ନତି ହୁଏ । ପ୍ରମାଣ ଲୋଡ଼ା ହେଲେ ପାଠକମାନେ ଆଧୁନିକ ଇୟୁରୋପ ଓ ପ୍ରାଚୀନ ଭାରତ ବର୍ଷପ୍ରତି ଦୃଷ୍ଟିପାତ କରନ୍ତୁ ।

ଆମ୍ଭମାନଙ୍କର ମାତୃଭାଷା ଓଡ଼ିଆ । ଏହି ଭାଷାର ଉନ୍ନତି ପାଇଁ ସର୍ବଥା ଯତ୍ନକରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଓଡ଼ିଆମାନଙ୍କ ଏବଂ ଓଡ଼ିଆ ଭାଷାର ଅଭାଗ୍ୟ କଥା କହିଲେ ସରିବ ନାହିଁ । ଅନ୍ୟାନ୍ୟ କାରଣ ସଙ୍ଗେ ସଙ୍ଗେ ଆମ୍ଭମାନଙ୍କର ଯତ୍ନର ଅଭାବ ଏହା ଆଭାଗ୍ୟର ଗୋଟିଏ ମୁଖ୍ୟକାରଣ । "ଶୋଇଲା ପୁଅର ଭାଗ ନାହିଁ" ଏକଥାଟି ଆମ୍ଭ ଦେଶରେ ପ୍ରଚଳିତ ଅଛି ଓ ଆମ୍ଭେମାନେ ଅନେକ ଲୋକ ମୁଖରୁ ଶୁଣୁଥାଇଁ । ତେଣୁ ଆମ୍ଭମାନଙ୍କର ଉଚିତ୍ ଯେ ନିଦ୍ରିତ ନରହି ଲାଗିପଡ଼ିବା । ଶିକ୍ଷିତ ଓଡ଼ିଆ ମାତ୍ରେ ବିଶେଷତଃ "ହିତୈଷିଣୀ" ର ପାଠକ ମାନେ ସମ୍ବଲପୁର ଅଞ୍ଚଳର ସରକାରୀ ଅଫିସ ମାନଙ୍କରୁ ଓଡ଼ିଆଭାଷା ଉଠିଯିବାର ଦାରୁଣ ସମ୍ବାଦ ଅବଗତ ହୋଇଥିବେ । ଓଡ଼ିଆମାନଙ୍କୁ ଅମୃତଧାରା ସ୍ୱରୂପ ଏହି ଭାଷା ଯେପରି ପୁଣି ପୂର୍ବବତ୍ ସମ୍ବଲପୁର ଅଞ୍ଚଳର ଅଫିସମାନଙ୍କରେ ଚଳେ ଏଥିପାଇଁ ସମ୍ବଲପୁର ଓ କଟକ ଉଭୟ ସ୍ଥାନର ଓଡ଼ିଆମାନେ ଥରେ ଯତ୍ନ କରିଥିଲେ । କିନ୍ତୁ ଆମ୍ଭମାନଙ୍କ ଅଭାଗ୍ୟରୁ ସେ ଯତ୍ନ ସଫଳ ହୋଇନାହିଁ କିନ୍ତୁ ଯତ୍ନ ସଫଳ ହୋଇନାହିଁ ବୋଲି ଯେ କେବେହେଁ ହେବନାହିଁ ଏପରି ମନେକରି ସ୍ଥିରହୋଇ ରହିବା କେବେହେଁ ଆମ୍ଭମାନଙ୍କର ଉଚିତ ନୁହେଁ । ଏହି ଶରୀର ଧମନୀରେ ଯେପର୍ଯ୍ୟନ୍ତ ଓଡ଼ିଆ ରକ୍ତ ପ୍ରବାହିତ ହେଉଅଛି ସେପର୍ଯ୍ୟନ୍ତ ପୁନଃପୁନଃ ଯତ୍ନ କରିବା ଆମ୍ଭମାନଙ୍କର ଉଚିତ । ଏହିପରି ଯତ୍ନ କରୁଁ କରୁଁ ଈଶ୍ୱରଙ୍କ କୃପାରୁ ଏବଂ ଇଂରେଜ ଜାତିର ଚିର ପ୍ରସିଦ୍ଧ ନ୍ୟାୟ ବିଚାରରୁ ସମ୍ବଲପୁର ଅଞ୍ଚଳ ସରକାରୀ ଅଫିସ ମାନଙ୍କରେ ପୁଣି ଓଡ଼ିଆଭାଷା ପ୍ରଚଳିତ ହୋଇପାରେ ।

ଓଡ଼ିଆମାନଙ୍କୁ ବିଶେଷତଃ ସମ୍ବଲପୁରବାସୀ ଓ ହିତୈଷିଣୀର ପାଠକ ମହୋଦୟ ମାନଙ୍କୁ ଆଜି ଏହି ଯତ୍ନର ଅନୁକୂଳ ସମ୍ବାଦଟିଏ ଦେଉଅଛୁଁ । ଉତ୍କଳ ଗୌରବ ଖ୍ୟାତନାମା ସୁବକ୍ତା ଅନରେବଲ ମଧୁସୂଦନ ଦାସ ମହୋଦୟ ଅତିଅଳ୍ପକାଳ ମଧ୍ୟରେ ବିଲାତ ଯିବେ । ଅନରେବଲ ମହୋଦୟଙ୍କୁ ଓଡ଼ିଆମାତ୍ରେ ଭଲରୂପେ ଜାଣନ୍ତି । ଓଡ଼ିଆ ଭାଷାପ୍ରତି ଓ ସ୍ୱଦେଶପ୍ରତି ତାଙ୍କର ଯେ ପ୍ରଗାଢ଼ ଅନୁରାଗ ଅଛି ଏକଥା ବୋଲିବା ବାହୁଲ୍ୟ ମାତ୍ର । ଏହି ସମୟରେ ଏହି ସୁଯୋଗରେ ସମ୍ବଲପୁର ବାସିମାନେ ଯଥାବିଧି ସଭାସ୍ଥଳରେ ମିଳିତହୋଇ ତାହାଙ୍କୁ ଆପଣାର ପ୍ରତିନିଧି ନିଯୁକ୍ତକରି ତାଙ୍କଦ୍ୱାରା ଆପଣାର ଦୁଃଖ "ନ୍ୟାୟେ ବୃହସ୍ପତି ପାଳନେ ଶ୍ରୀପ 'ତି' ଇଂରେଜମାନଙ୍କଠାରେ- ସେମାନଙ୍କ ସ୍ୱଦେଶରେ ଜଣାଇପାରିଲେ ସୁଫଳ ଫଳିବାର ସମ୍ଭାବନା ଅଛି, ଏଣୁ ସମ୍ବଲପୁରବାସୀମାନଙ୍କୁ ଏବଂ ହିତୈଷିଣୀର ପାଠକମାନଙ୍କୁ ଆମ୍ଭର ବିନୀତ ନିବେଦନ ଏହି ଯେ ସେମାନେ ଆଉ କାଳବିଳମ୍ବ ନକରି ଏ ବିଷୟରେ ଯତ୍ନବାନ ହେଉନ୍ତୁ । ଏ ସୁଯୋଗ ଆଉ ଓଡ଼ିଆପୁଅଙ୍କୁ ମିଳିବନାହିଁ । ଆଉ ହିତୈଷିଣୀ ! ଆପଣଙ୍କୁ ମଧ ନିବେଦନ ଯେ ଏ ସମୟରେ ଆପଣା କଳେବରରେ ଓଡ଼ିଆ ପୁଅମାନଙ୍କୁ ଉତ୍ସାହବାକ୍ୟରେ ଏହି ପବିତ୍ର କାର୍ଯ୍ୟରେ ଯୋଗଦେବାକୁ ଆହ୍ୱାନକରି ଆପଣାର ନାମଟି ସାର୍ଥକ କରନ୍ତୁ । ଏ ବକ୍ତୃତାର ସମୟ ନୁହେଁ କାର୍ଯ୍ୟର ସମୟ । ପବିତ୍ର ଅପରିହାର୍ଯ୍ୟ କର୍ତ୍ତବ୍ୟ ପାଳନର ସମୟ । ଏଣୁ ଏହିଠାରେ ବର୍ତ୍ତମାନ ହିତୈଷିଣୀର ପାଠକ ମହୋଦୟ ମାନଙ୍କଠାରୁ ମେଲାଣି ଘେନିଲି ।

ଶ୍ରୀ-----

*ଭା୮ଗ, ସଂ୪୩ଖ୍ୟା, ୨୪।୩।୧୮୯୭*

## ସମ୍ବଲପୁରର ସୁଯୋଗ ।

ଗବର୍ଣ୍ଣମେଣ୍ଟ ଲକ୍ଷ ଲକ୍ଷ କୋଟି କୋଟି ଓଡ଼ିୟାଙ୍କର ସୁବିଧା ପ୍ରତି ଲକ୍ଷ ନରଖି ସେମାନଙ୍କର କାତରୋକ୍ତିରେ କର୍ଣ୍ଣପାତ ନକରି ସଂମ୍ବଲପୁର ଜିଲ୍ଲାର ଲୋକମାନଙ୍କୁ ମାତୃଭାଷାରୁ ବଞ୍ଚିତକରି ଅଛନ୍ତି । ଓଡ଼ିଆମାନଙ୍କ ପକ୍ଷରେ

ଏହି ବ୍ୟବସ୍ଥା କିପରି ଅସୁବିଧାପ୍ରଦ ଓ କ୍ଷତିକର ତାହା ସୁବିଜ୍ଞ ପାଠକମାନଙ୍କ ନିକଟରେ ବ୍ୟାଖ୍ୟାକରିବା ବାହୁଲ୍ୟମାତ୍ର । ଗବର୍ଣ୍ଣମେଣ୍ଟଙ୍କର ଉପରୋକ୍ତ ଆଦେଶ ବିରୁଦ୍ଧରେ ବିଲାତରେ ଆଲୋଚନା ଆନ୍ଦୋଳନ ଉପସ୍ଥିତ କରିବା ସକାଶେ ଯଥାକାଳରେ ପ୍ରସ୍ତାବ କରିଥିଲୁଁ ଏବଂ ତଦୁପଲକ୍ଷେ ଏକସହସ୍ର ଟଙ୍କା ଏକତ୍ରିତ କରିବାର ପରାମର୍ଶ ଦେଇଥିଲୁଁ କିନ୍ତୁ ଅର୍ଥାଭାବରୁ ଆମ୍ଭମାନଙ୍କର ପ୍ରାର୍ଥନା ସଫଳ ହୋଇ ପାରିନଥିଲା । ବର୍ତ୍ତମାନ ବିଲାତୀ ଆନ୍ଦୋଳନର ଏକ ଉତ୍ତମ ସୁଯୋଗ ଉପସ୍ଥିତ ହୋଇଅଛି । ଗତବାର ପ୍ରକାଶିତ 'ଶ୍ରୀ'- ସ୍ୱାକ୍ଷରିତ ପ୍ରେରିତ ପତ୍ର ପାଠକଲେ ଜଣାଯିବଯେ ଉତ୍କଳର ଲବ୍ଧପ୍ରତିଷ୍ଠ ଓକୀଲ ଏବଂ ବଙ୍ଗୀୟ ବ୍ୟବସ୍ଥାପକ ସଭାର ସଦସ୍ୟ ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ବିଲାତଯାତ୍ରା କରିବେ । ସମ୍ବଲପୁର ବାସିମାନେ ଆପଣାର ଦୁଃଖ ବିଲାତର ଉଦାରଚେତା ଇଂରେଜମାନଙ୍କ ନିକଟରେ ଜଣାଇବା ସକାଶେ ମାନ୍ୟବର ଦାସ ମହୋଦୟଙ୍କ ଆପଣାର ପ୍ରତିନିଧି ନିର୍ବାଚନ କଲେ ତାଙ୍କର ଅଦମ୍ୟ ଚେଷ୍ଟାରେ ସମ୍ବଲପୁର ଓଡ଼ିଆମାନଙ୍କର ଦୁଃଖ ଦୂରହୋଇ ସେମାନଙ୍କର ଆକାଙ୍କ୍ଷା ପୂର୍ଣ୍ଣହେବାର ସମ୍ଭାବନା । ସମ୍ବଲପୁରର ଓଡ଼ିଆମାନଙ୍କର ଯେବେ ମାତୃଭାଷା ପ୍ରତି ଅନୁରକ୍ତି ଥାଏ ଏବଂ ସେମାନେ ସୁସନ୍ତାନର କାର୍ଯ୍ୟ କରିବାକୁ ଇଚ୍ଛୁକ ଥାଆନ୍ତି ତେବେ ସେମାନଙ୍କର ବର୍ତ୍ତମାନ ସୁଯୋଗ ପରିତ୍ୟାଗ କରିବା ଉଚିତ ନୁହେ ସମ୍ବଲପୁର ଜିଲ୍ଲାର ଲୋକମାନେ ଶୀଘ୍ର ସଭା କରି ବିଲାତୀ ଆନ୍ଦୋଳନ ସକାଶେ ମାନ୍ୟବର ଦାସ ମହୋଦୟଙ୍କୁ ଆପଣାର ପ୍ରତିନିଧି ନିର୍ବାଚନ କରନ୍ତୁ ନଚେତ୍ ସେମାନେ ଭବିଷ୍ୟତ ବଂଶଧର ମାନଙ୍କର ଚିର ତିରସ୍କାର ଭାଜନ ହେବେ, ସେମାନଙ୍କର କଳଙ୍କ ଦେଶବିଦେଶରେ ବ୍ୟାପ୍ତ ହେବ ସନ୍ଦେହନାହିଁ । ଦାସ ମହାଶୟଙ୍କ ବର୍ତ୍ତମାନ ଠିକଣା ୨୮ ନଂ ବାଲିଗଞ୍ଜ, କଲିକତା ।

*ଭା୮ଗ, ସଂ୪୫ଖ୍ୟା, ୭।୪।୧୮୯୭*

## ଓଡ଼ିଆଙ୍କ ପ୍ରତି ଅବିଚାର ।

ସମ୍ବଲପୁର ସରକାରୀ କାର୍ଯ୍ୟାଳୟ ସକାଶେ ୩୦ଟଙ୍କା ବେତନର ଜଣେ ମୋହରିର ଆବଶ୍ୟକ । ବର୍ତ୍ତମାନ ସେହିପଦର କାର୍ଯ୍ୟ ବାବୁ ଜୟବିହାରୀ ବହିଦାରଙ୍କ ଦ୍ୱାରା ସୁନିର୍ବାହିତ ହେଉଅଛି । ତାହାଙ୍କୁ ଉକ୍ତ ପଦରେ ସ୍ଥାୟୀ କରା ନଯାଇ ରାୟପୁରରୁ ଏକଜଣ ଲୋକ ଅଣାମକାଳ ଉପସ୍ଥିତ । ଦାମୋଦର ବାବୁଙ୍କ ପେଟରେ ଯାଇଅଛି । ଜୟ ବିହାରୀଙ୍କୁ ସେ ପଦରେ ବାହେଲ ନକରିବାର କାରଣ କି ? ଉକ୍ତ କାର୍ଯ୍ୟ ଚଳାଇବାର ଉପଯୁକ୍ତ ଲୋକ କି ସମ୍ବଲପୁର ଜିଲ୍ଲାରେ ନାହାନ୍ତି ? ହିନ୍ଦିଭାଷା ପ୍ରଚଳନ ହେତୁ ଓଡ଼ିଆମାନେ ଏହିପରି ଉପେକ୍ଷିତ ଏବଂ ନାନା ପ୍ରକାରରେ ବିଡ଼ମ୍ବିତ ହେବେ ସନ୍ଦେହ ନାହିଁ । ବର୍ତ୍ତମାନ ଓଡ଼ିଆ ଭାଷା ପୁନଃ ପ୍ରଚଳନ ବିଷୟରେ ଲୋକମାନଙ୍କର ଆନ୍ଦୋଳନ ଆବେଦନ କରିବା ଉଚିତ ।

*ଭା୮ଗ, ସଂ୪୬ଖ୍ୟା, ୧୪।୪।୧୮୯୭*

## ଭାଷା ବିଭ୍ରାଟ ।

ସମ୍ବଲପୁର ହିତୈଷିଣୀରୁ ଦୁଃଖର ସହିତ ଅବଗତ ହେଲୁଁ ଯେ ଗତବର୍ଷ ସମ୍ବଲପୁରର ସରକାରୀ କାର୍ଯ୍ୟାଳୟ ମାନଙ୍କରୁ ଓଡ଼ିଆ ଭାଷା ଉଠାଇ ଦେଇ ପ୍ରଧାନ ରାଜକର୍ମଚାରିମାନେ ନିଶ୍ଚିନ୍ତ ବସି ନାହାନ୍ତି । ଏକବର୍ଷ ଗତହେବା ମାତ୍ରକେ ଗତ ଫେବୃୟାରୀ ମାସ ତା ୧୫ରିଖରେ ସରକାରୀ ଆଦେଶ ପ୍ରଚାର ହୋଇଅଛି ଯେ ଓଡ଼ିଆ ଭାଷାରେ ଲିଖିତ ଦସ୍ତାବିଜ ଏଣିକି ରେଜିଷ୍ଟରି କରାଯିବ ନାହିଁ । ଏପରି ଆଦେଶର ତୁଳନା ଅଛିକି ? ସହଯୋଗୀ ଯଥାର୍ଥ କହିଅଛନ୍ତି ଯେ ଓଡ଼ିଆମାନଙ୍କର ଦଲିଲ ଦସ୍ତାବିଜ ସେମାନେ ଜାଣୁଥିବା ବୁଝୁଥିବା ଭାଷାରେ ଲିଖିତ ନହୋଇ ସେମାନଙ୍କ ଅବୋଧ ଭାଷାରେ ହେବା ନିମନ୍ତେ ଅନିଷ୍ଟକର ତାହା କହିଦେବାକୁ ହେବନାହିଁ । ଆମ୍ଭେମାନେ ପୂର୍ବେ ଏସମ୍ବନ୍ଧରେ ଯାହା କହିଅଛୁଁ ତହିଁରୁ ଅଧିକ କିଛି ବୋଲିବାର ନାହିଁ । ସମ୍ବଲପୁରିଆ ହାକିମଙ୍କ କାଣ୍ଡ ଦେଖି ମନେହେଉଅଛି ଯେମନ୍ତ ସେ ଭୂମିଖଣ୍ଡ ନ୍ୟାୟବାନ୍ ଇଂରାଜ ଗବର୍ଣ୍ଣମେଣ୍ଟଙ୍କ ଶାସନର ବହିର୍ଭୁତ । ଧର୍ମ୍ମ ଓ

ଜାତିପରି ମାତୃଭାଷା ପ୍ରତି ପ୍ରତ୍ୟେକ ଲୋକର ପ୍ରଗାଢ଼ ମମତା ଓ ମାତୃଭାଷା ଜାତିର ପ୍ରଧାନ ଅଙ୍ଗ । ଗବର୍ଣ୍ଣମେଣ୍ଟ ଧର୍ମ ଓ ଜାତିରେ ହସ୍ତକ୍ଷେପ କରିବେ ନାହିଁ ବୋଲି ପୁନଃ ପୁନଃ ଅଭୟ ପ୍ରଦାନ କରିବା ପ୍ରତ୍ୟକ୍ଷେ କେଉଁ ବିଚାରରେ ସମ୍ବଲପୁର ଓଡ଼ିଆଙ୍କର ମାତୃଭାଷାର ଲୋପ ସାଧନ କରିବା ବିଷୟରେ ସେ ପ୍ରଦେଶର ବିକୃତମନା ରାଜକର୍ମଚାରିଙ୍କର ଅନ୍ୟାୟ ଅବିଚାରର ସହାୟତା କରୁଅଛନ୍ତି ଆମ୍ଭମାନଙ୍କ ବୁଦ୍ଧିର ଅଗୋଚର ଆଜି ଓଡ଼ିଆ ଭାଷାର ଦସ୍ତାବିଜ ଗୋଟିଏ ଆଦେଶଦ୍ୱାରା ଉଠାଇ ଦିଆଗଲା । କାଲି ସେହି ନ୍ୟାୟରେ ଆଦେଶ ବାହାରିବ ଯେ ଓଡ଼ିଆ ଭାଷାରେ ଜମିଦାରୀ ଓ ମହାଜନୀ ହିସାବ ଖାତାପତ୍ର ଇତ୍ୟାଦି କେହି ଲେଖି ପାରିବ ନାହିଁ ଅଥବା ସେସବୁ ପ୍ରମାଣ ସ୍ୱରୂପ ଅଦାଲତ ବା ଅପର ସରକାରୀ କଚେରିରେ ଗୃହୀତ ହେବନାହିଁ ଏବଂ ଆଉ ଏକଦିନ ଏମନ୍ତ ସୁଦ୍ଧା ଆଦେଶ ହେବା ଅସମ୍ଭବ ନୁହେଁ ଯେ କେହି ଓଡ଼ିଆ ଭାଷାରେ ସାକ୍ଷ ଦେଇପାରିବ ନାହିଁ । ଜ୍ଞାନାନ୍ଧତାର ସୀମା ଏଥିରୁ ବଳିଯାଇପାରେ କି ? ପୃଥିବୀରେ ସର୍ବଶ୍ରେଷ୍ଠ ବିଚକ୍ଷଣ ଏବଂ ଉଦାର ଇଂରାଜ ରାଜତ୍ୱରେ ଏହା ଦେଖାଗଲା ଏ ଦୁଃଖ କାହାକୁ କହିବା ସମ୍ବଲପୁରର ଓଡ଼ିଆମାନେ ଯେବେ ନିତାନ୍ତ ଚକ୍ଷୁଶୂଳ ହୋଇ ଅଛନ୍ତି ତେବେ ସେମାନଙ୍କୁ ବିଚାର ଓ କାର୍ଯ୍ୟାଳୟ ମନାକରିବା ଅପେକ୍ଷା ସେ ରାଜ୍ୟରୁ ବାହାରିଯିବା ପାଇଁ ସ୍ପଷ୍ଟ କହିଦେବା ଭଲ । ଆମ୍ଭେମାନେ ସମ୍ବଲପୁରବାସୀଙ୍କୁ ଏହି ପରାମର୍ଶ ଦେଉଅଛୁଁ ଯେ ଏହି ଘୋର ଅବିଚାରର ପ୍ରତୀକାର ନିମନ୍ତେ ଆଉଥରେ ଗବର୍ଣ୍ଣମେଣ୍ଟରେ ଆବେଦନ କରନ୍ତୁ । ସ୍ଥାନୀୟ ହାକିମଙ୍କ ଜିଦି ଭାଙ୍ଗିବା ବଡ଼ କଠିନ ବ୍ୟାପାର ସନ୍ଦେହ ନାହିଁ । ତଥାଚ ଅବିଚାରର ପ୍ରତିବାଦ ପୁନଃ ପୁନଃ କରିବାରେ ଦୋଷ ନାହିଁ ଏବଂ ପରିଶେଷରେ ଧର୍ମର ଜୟ ଅବଶ୍ୟ ହେବ । ଦୀପିକା

*୭ଭାଗ, ସଂ୪୬ଖ୍ୟା, ୧୪।୪।୧୮୯୭*

## ପ୍ରତିନିଧି ନିୟୋଗ ।

ସମ୍ବଲପୁରର ମାତୃଭାଷା ଓଡ଼ିଆ । ସେହି ଓଡ଼ିଆ ଭାଷା ଗବର୍ଣ୍ଣମେଣ୍ଟଙ୍କ ଦ୍ୱାରା ଅନାଦୃତ ହେବାରୁ ଓଡ଼ିଆମାନେ କିପରି ଅସୁବିଧା ଭୋଗ କରୁଅଛନ୍ତି ଏବଂ ଭବିଷ୍ୟତ୍‌ରେ ଭୋଗ କରିବେ ଇତିପୂର୍ବେ ବହୁବାର ତହିଁର ଆଲୋଚନା କରିଅଛୁଁ । ଗତବାର ପ୍ରକାଶିତ "ଭାଷା ବିଭ୍ରାଟ ପ୍ରବନ୍ଧରୁ ପାଠକମାନେ ତଦ୍‌ବିଷୟକ ଜ୍ଞାନ ଲାଭ କରିପାରିଥିବେ । ତଥାକଥିତ ଅସୁବିଧା ହସ୍ତରୁ ରକ୍ଷାପାଇବା ସକାଶେ ଓଡ଼ିଆ ଭାଷାର ପୁନଃ ପ୍ରବର୍ତ୍ତନ ଚେଷ୍ଟା କରିବା ସମ୍ବଲପୁରବାସି ମାନଙ୍କର ଏକାନ୍ତ କର୍ତ୍ତବ୍ୟ । ବର୍ତ୍ତମାନ ଅନରେବଲ ମଧୁସୂଦନ ଦାସ ମହୋଦୟ ବିଲାତ ଯାତ୍ରା କରୁଥିବାରୁ ତାହାଙ୍କୁ ଆପଣାର ପ୍ରତିନିଧି ମନୋନୀତ କରି ତାଙ୍କଦ୍ୱାରା ବିଲାତରେ ଓଡ଼ିଆଭାଷା ପୁନଃ ପ୍ରବର୍ତ୍ତନର ଚେଷ୍ଟା କରିବା ସକାଶେ ଆମ୍ଭମାନଙ୍କର ପତ୍ରପ୍ରେରକଙ୍କ ସହିତ ଆମ୍ଭେମାନେ ଯେଉଁ ପ୍ରସ୍ତାବ ଉପସ୍ଥିତ କରିଥିଲୁଁ ସମ୍ବଲପୁରବାସିମାନେ ତାହା କାର୍ଯ୍ୟ ପରିଣତ କରିଥିବାର ଶୁଣି ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ । ସମ୍ବଲପୁର ସୁସନ୍ତାନ ମାନନୀୟ ଶ୍ରୀଯୁକ୍ତ ଧରଣୀଧର ମିଶ୍ର ମହୋଦୟ ଆମ୍ଭମାନଙ୍କ ପ୍ରସ୍ତାବ ଅନୁସାରେ ଗୋଟିଏ ସଭା ଆହ୍ୱାନ କରିଥିଲେ । ସଭାରେ ଛୋଟବଡ଼ ସମସ୍ତ ଶ୍ରେଣୀର ଲୋକ ସମବେତ ହେଲାରୁ ସର୍ବସମ୍ମତିରେ ମାନନୀୟ ଶ୍ରୀଯୁକ୍ତ ଅନରେବଲ ମଧୁସୂଦନ ଦାସ ମହୋଦୟ ପ୍ରତିନିଧି ସ୍ୱରୂପ ମନୋନୀତ ହେଲେ । ଧରଣୀଧର ବାବୁ ଓଡ଼ିଆ ଭାଷା ସପକ୍ଷରେ ପୂର୍ବେ ଏବଂ ବର୍ତ୍ତମାନ ଅନେକ ଯତ୍ନ ପରିଶ୍ରମ ଏବଂ ବ୍ୟୟ ସ୍ୱୀକାର କରିଥିବା ଓ କରୁଥିବାର ଦେଖି ଆମ୍ଭେମାନେ ଦୃଷ୍ଟାନ୍ତଃକରଣରେ ତାହାଙ୍କୁ ଶତ ଶତ ଧନ୍ୟବାଦ ପ୍ରଦାନ କରୁଅଛୁଁ । ଦେଶର ଦଶର ହିତ ସକାଶେ ଧରଣୀଧର ବାବୁଙ୍କ ପରି ଯେମାନେ ସମୟ ଏବଂ ଅର୍ଥର ତ୍ୟାଗସ୍ୱୀକାର କରିପାରନ୍ତି । ସେମାନେ ନିଃସନ୍ଦେହ ମାନବ ସମାଜର ବନ୍ଦନୀୟ । ବର୍ତ୍ତମାନ ଅନରେବଲ ଦାସ ମହୋଦୟ ସମ୍ବଲପୁର ବାସିମାନଙ୍କର ପ୍ରତିନିଧିତ୍ୱ ଗ୍ରହଣ କରି ସେମାନଙ୍କର ଏବଂ ଆପଣାର ମାତୃଭାଷା ସପକ୍ଷରେ ଆନ୍ଦୋଳନ କରିବା

ସକାଶେ ସ୍ୱୀକୃତ ହେବାର ଶୁଣିଲେ ବହୁ ପରିମାଣରେ ନିଶ୍ଚିନ୍ତ ହେବୁଁ । ଅନରେବଲ ଦାସ ମହୋଦୟ ଜାତିରେ ଓଡ଼ିଆ ଉତ୍କଳର ଗୌରବ ନିକେତନ ତାହାଙ୍କର ସହାନୁଭୂତି ଓଡ଼ିଆ ଭାଷାର ସଂପୂର୍ଣ୍ଣ ଅନୁକୂଳ ଆଶାକରୁଁ ଓଡ଼ିଆଭାଷା ପୁନଃ ପ୍ରଚଳନ ସକାଶେ ସେ ଅନ୍ତରର ସହିତ ଚେଷ୍ଟା କରିବା ବିଷୟରେ କଦାପି ଭିନ୍ନମତ ହେବେ ନାହିଁ ।

*ଭା୮ଗ, ସଂ୪୭ଖ୍ୟା, ୨୧।୪।୧୮୯୭*

## ରାୟ କବିଙ୍କର ଉପାଧି ଲାଭ ।

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ଜଣାଇ ଅଛୁ ଯେ ଓଡ଼ିଶା ଶିକ୍ଷା ବିଭାଗର ସୁଯୋଗ୍ୟ ଇନ୍ସପେକ୍ଟର, ଉତ୍କଳ ଗୌରବ, କବିବର ଶ୍ରୀଯୁକ୍ତ ରାଧାନାଥ ରାୟ ମହୋଦୟ ମହାରାଣୀ ଭାରତେଶ୍ୱରୀଙ୍କ ହୀରକ ଜୁବଲି ଉପଲକ୍ଷେ "ରାୟବାହାଦୁର" ଉପାଧିପାଇ ଅଛନ୍ତି । ରାୟ କବିଙ୍କର ଏରାଜସମ୍ମାନ ଲାଭରେ ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ ସତ୍ୟକିନ୍ତୁ ରାୟ କବିଙ୍କପକ୍ଷରେ ରାୟବାହାଦୁର ଉପାଧି କିଛି ନୁହେ କହିଲେ ଚଳେ । ରାୟବାହାଦୁର ଉପାଧିଦ୍ୱାରା ରାୟ କବିଙ୍କର ସମ୍ମାନ ବଢ଼ିନାହିଁ ବରଂ ରାୟକବିଙ୍କର ସଂସ୍ପର୍ଶରେ ରାୟ ବାହାଦୁର ଉପାଧିର ସମ୍ମାନ ବଢ଼ିଅଛି । ରାୟକବି ଯେ ରାଜଦ୍ୱାରରେ ସମ୍ମାନାର୍ହ ବିବେଚିତ ହୋଇ ଅଛନ୍ତି ଏହାହିଁ ଆମ୍ଭମାନଙ୍କର ଆନନ୍ଦର କାରଣ । ଆମ୍ଭମାନଙ୍କର ଭକ୍ତିଭାଜନ ରାୟକବି ଦୀର୍ଘଜୀବୀ ହୋଇ ଉଚ୍ଚତର ରାଜସମ୍ମାନ ଲାଭ କରନ୍ତୁ ଈଶ୍ୱରଙ୍କ ନିକଟରେ ଏହି ପ୍ରାର୍ଥନା କରୁଅଛୁଁ ।

*ଭା୯ଗ, ସଂ୪ଖ୍ୟା, ୨୩।୬।୧୮୯୭*

## "ଉତ୍କଳ ସାହିତ୍ୟ ।"

"ଉତ୍କଳ ସାହିତ୍ୟ" ଉତ୍କଳର ନୂତନ ପ୍ରକାଶିତ ମାସିକ ପତ୍ରିକା । ଉକ୍ତ ପତ୍ରିକା ନିର୍ବିଘ୍ନରେ ୬ଷ୍ଠ ମାସ ଅତିକ୍ରମକରି ୭ମ ମାସରେ ପଦାର୍ପଣ କରିଅଛି । ପତ୍ରିକାକୁ ନିୟମିତ ସମୟରେ ପ୍ରକାଶକରିବା ଏବଂ ଉତ୍କଳବିଖ୍ୟାତ ସମସ୍ତ ସୁଲେଖକମାନଙ୍କର ପ୍ରବନ୍ଧ ସଂଗ୍ରହ କରି ପାଠକମାନଙ୍କର ମନୋରଞ୍ଜନ କରିବା ବିଷୟରେ ସୁଯୋଗ୍ୟ ସମ୍ପାଦକ ଏବଂ କାର୍ଯ୍ୟାଧ୍ୟକ୍ଷ ମହୋଦୟ ଦ୍ୱୟ ବିଶେଷ ଯତ୍ନବାନ ଥିବାର ପରିଚୟ ପାଇଅଛୁ । ଆମ୍ଭେମାନେ "ଉତ୍କଳ ସାହିତ୍ୟ"ର ପ୍ରତ୍ୟେକ ସଂଖ୍ୟା ପ୍ରତ୍ୟେକ ପ୍ରବନ୍ଧ ପାଠ କରିଅଛୁଁ । ପ୍ରାୟ ସକଳ ପ୍ରବନ୍ଧଗୁଡ଼ିକ ଶିକ୍ଷାପ୍ରଦ ଏବଂ ଚିନ୍ତାଶୀଳତାର ପରିଚାୟକ । ପତ୍ରିକାର ଗ୍ରାହକସଂଖ୍ୟା ଉତ୍କଳର ଶିକ୍ଷା ଏବଂ ଗ୍ରାହକ ତା ଦୃଷ୍ଟିରେ ଆଶାନୁରୂପ ହୋଇଅଛି ଏବଂ ଅଧିକାଂଶ ଗ୍ରାହକଙ୍କ ନିକଟରୁ ମୂଲ୍ୟ ଆଦାୟ ହୋଇଅଛି । ଏହାଛଡ଼ା ଦେଶର ଜଣକେତେ ସମ୍ପନ୍ନବ୍ୟକ୍ତି ପତ୍ରିକାର ସ୍ଥିତି ଏବଂ ଉନ୍ନତି କଳ୍ପେ କିଛି କିଛି ଅର୍ଥ ସାହାଯ୍ୟ କରିଅଛନ୍ତି । ଏହି ସବୁକାରଣରୁ "ଉତ୍କଳ ସାହିତ୍ୟର" ସ୍ଥାୟିତ୍ୱ ବିଷୟରେ ଆଶାର ସଞ୍ଚାର ହୋଇଅଛି । କାର୍ଯ୍ୟାଧ୍ୟକ୍ଷ ମହାଶୟ ପ୍ରକୃତ କହିଅଛନ୍ତି "ପତ୍ରିକାର ଜୀବନ ମରଣ ଗ୍ରାହକ ମାନଙ୍କ ହାତରେ" ସେମାନଙ୍କ ଦୋଷରୁ ଉତ୍କଳର କେତେଗୁଡ଼ିଏ ପତ୍ରିକା ଅସମୟରେ ବିଲୁପ୍ତ ହୋଇଅଛି । ସେମାନେ ସ୍ୱ ସ୍ୱ ଦେୟ ଦାନ ବିଷୟରେ ଅଯଥା ଅବହେଳା ଓ କୃପଣତା ନକଲେ ଏବଂ ପତ୍ରିକାର ଗ୍ରାହକ ବୃଦ୍ଧି ବିଷୟରେ ଚେଷ୍ଟାକଲେ "ଉତ୍କଳ ସାହିତ୍ୟ" ଅକାଳରେ ବନ୍ଦହେବାର ଆଶଙ୍କା ରହିବ ନାହିଁ । "ଉତ୍କଳ ସାହିତ୍ୟ"ର ମଙ୍ଗଳ ସକାଶେ କେତେକବ୍ୟକ୍ତି ଅର୍ଥ ସାହାଯ୍ୟ କରିଥିବା ବିଷୟ ପାଠକମାନଙ୍କୁ ବିଦିତ ଅଛି । ବର୍ତ୍ତମାନ ଆନନ୍ଦର ସହିତ ଜଣାଉଅଛୁଁ ଯେ ଆଠମଲ୍ଲିକର ଯୁବରାଜ ଶ୍ରୀଯୁକ୍ତ ବିବୁଧେନ୍ଦ୍ର ଦେବ ମହୋଦୟ "ଉତ୍କଳ ସାହିତ୍ୟର" ସାହାଯ୍ୟାର୍ଥେ ୩୦ ଟଙ୍କା ପ୍ରଦାନ କରିଅଛନ୍ତି । ଏହେତୁ ତାହାଙ୍କୁ ଶତ ଶତ ଧନ୍ୟବାଦ ଦେଉଅଛୁଁ । ଦେଶରେ ତାଙ୍କପରି ଅନେକ ସମ୍ପନ୍ନବ୍ୟକ୍ତି ଅଛନ୍ତି ଯେଉଁମାନେ ଇଚ୍ଛାକଲେ ପ୍ରତ୍ୟେକରେ "ଉତ୍କଳ ସାହିତ୍ୟ" ପରି ଦଶଖଣ୍ଡ ପତ୍ରିକାର ବ୍ୟୟଭାର ଅକ୍ଲେଶରେ ବହନ କରିପାରନ୍ତି । ସେମାନଙ୍କ ବିଦ୍ୟମାନରେ ଉତ୍କଳରେ ଖଣ୍ଡିଏ ଉଚ୍ଚଦରର ମାସିକ ପତ୍ରିକା ନଥିବା ନିତାନ୍ତ

ଲଜ୍ଜାର ବିଷୟ । ଭରଷାକରୁଁ ସେମାନେ ସେହି ଲଜ୍ଜା ନିବାରଣ ଏବଂ ସାହିତ୍ୟିକ ଉନ୍ନତି ସାଧନାର୍ଥ ପ୍ରଚଳିତ ପତ୍ରିକାମାନଙ୍କ ସ୍ଥିତି ଏବଂ ଉନ୍ନତି ବିଷୟରେ ମୁକ୍ତହସ୍ତ ହେବ ।

*ଭା୯ଗ, ସଂ୮ଖ୍ୟା, ୨୧।୭।୧୮୯୭*

## 'ଉତ୍କଳ ସାହିତ୍ୟ' ର 'ମହିମା' ।

'ଉତ୍କଳ ସାହିତ୍ୟ' ସୁଲିଖିତ ପ୍ରବନ୍ଧରେ ପୂର୍ଣ୍ଣ । ପ୍ରବନ୍ଧଗୁଡ଼ିକ ପାଠକଲେ ଦୃଷ୍ଟି ପ୍ରସାରିତ, ଜ୍ଞାନବର୍ଦ୍ଧିତ ହେବ କାରଣ ପ୍ରାଣ ପ୍ରତ୍ୟେକ ପ୍ରବନ୍ଧ ଭାବୁକତା ଏବଂ ଚିନ୍ତାଶୀଳତାର ପରିଚାୟକ ୭ମ ସଂଖ୍ୟା ସାହିତ୍ୟ ହସ୍ତଗତ ହୋଇଛି । 'ଯୋଗ' ସମ୍ବନ୍ଧୀୟ ପ୍ରବନ୍ଧଟି ପାଠକମାନଙ୍କର ନିଃସନ୍ଦେହ ପ୍ରାତ୍ୟୁତ୍ପାଦକ ହେବ । 'ପର୍ଯ୍ୟଟନ' ପ୍ରବନ୍ଧରେ ଦେଶାଟନର ଉପକାରିତା ସଂକ୍ଷିପ୍ତ ଅଥଚ ବିଶଦଭାବରେ ଲିଖିତ ହୋଇ ଅଛି । ଦେଶ ଭ୍ରମଣ ବିମୁଖ ପାଠକମାନେ ପ୍ରବନ୍ଧଟି ପାଠକଲେ ସେମାନଙ୍କ ଭ୍ରମଣାନୁରାଗ ବୃଦ୍ଧି ହୋଇପାରେ । 'ପରମାତ୍ମାଙ୍କ ପ୍ରକାଶ' ପ୍ରବନ୍ଧଟି ଅତ୍ୟୁପାଦେୟ ହୋଇଅଛି । ପ୍ରବନ୍ଧଟି, ସୁବକ୍ତା ବିଶ୍ୱନାଥ ବାବୁଙ୍କ ବକ୍ତୃତାର ସାରାଂଶ । ମଧୁବାବୁଙ୍କ ପ୍ରଣୀତ ସଙ୍ଗୀତଦ୍ୱୟ ଯେପରି ସୁଲଳିତ ଶ୍ରୁତିମଧୁର, ସେହିପରି ଭାବପୂର୍ଣ୍ଣ । ଫଳତଃ, ଉତ୍କଳ ସାହିତ୍ୟ, ଉତ୍କଳର ଖଣ୍ଡିଏ ଉଚ୍ଚଦରର ମାସିକ ପତ୍ରିକା । ଏହାର ଦୀର୍ଘଜୀବନ ପ୍ରାର୍ଥନୀୟ । ଏହି ପତ୍ରିକାରେ ସମ୍ବଲପୁରଜିଲ୍ଲାର ବରଗପାଲିରୁ ପ୍ରେରିତ ଦୁଇଟି କବିତା ସନ୍ନିବେଶିତ ହୋଇଥିବାର ଦେଖି ସୁଖୀ ହୋଇଅଛୁଁ । ଗୋଟିଏ ତତ୍ରତ୍ୟ ଅଧୀଶ୍ୱରଙ୍କର, ଅପରଟି ସୁଲେଖକ ଶ୍ରୀବାବୁ ଗଙ୍ଗାଧର ମେହେରଙ୍କ ରଚିତ । ମେହେର ମହାଶୟଙ୍କ ରଚିତ ଅମୂଲ୍ୟ ଉପଦେଶପୂର୍ଣ୍ଣ ସେହି ସୁକବିତାଟିକୁ ପାଠକମାନଙ୍କୁ ଉପହାର ଦେଇଅଛୁଁ । ଏ ଜିଲ୍ଲାର ଶିକ୍ଷିତ ଯୁବକ ମାନଙ୍କର ସାହିତ୍ୟ ଚର୍ଚ୍ଚା ପ୍ରତି ଶ୍ରଦ୍ଧାର ଉଦ୍ରେକ କରିବା କବିତା ପ୍ରକାଶର ଅନ୍ୟତମ ଉଦ୍ଦେଶ୍ୟ । ମେହେରଙ୍କର ସେହି 'ମହିମା' ଶୀର୍ଷକ ପ୍ରବନ୍ଧଟି ସ୍ଥାନାନ୍ତରରେ ମୁଦ୍ରିତ ହେଲା ।

*ଭା୯ଗ, ସଂ୧୨ଖ୍ୟା, ୧୮।୮।୧୮୯୭*

## ପ୍ରାପ୍ତ ।

## "ବିଜାତୀୟ ମୁଖା" ।

ଶ୍ରୀଯୁକ୍ତ "ସମ୍ବଲପୁର ହିତୈଷିଣୀ" ସମ୍ପାଦକ ମହୋଦୟ ସମୀପେଷୁ ।

ମହାଶୟ,

ଗତ ଜୁଲାଇମାସ ତା୭ରିଖ ପତ୍ରିକାରେ "ଶ୍ରୀ ରାନାଡ଼େ" ସ୍ୱାକ୍ଷରିତ "ଦାନ", ତା୨୧ରିଖ ପତ୍ରିକାରେ "ଶ୍ରୀ ରାନାଡ଼େକଟକ" ସ୍ୱାକ୍ଷରିତ "ଅମର ଗୀତି" ଏବଂ ତା ୨୮ ରିଖ ପତ୍ରିକାରେ "ଶ୍ରୀରଙ୍ଗୟା ନାଇଡୁ - କାକନାଡ଼ା" ସ୍ୱାକ୍ଷରିତ "ଦୀପିକାଙ୍କର ଅଯଥା ଔଦାସିନ୍ୟ" ପ୍ରବନ୍ଧତ୍ରୟ ପାଠକରି ଘୋର ସନ୍ଦେହରେ ପଡ଼ିଅଛୁଁ । ପ୍ରବନ୍ଧମାନଙ୍କର ଭାଷା ବିଶୁଦ୍ଧ ଓଡ଼ିଆ । ପ୍ରବନ୍ଧଲେଖକମାନେ ସୁଦୂର ମାନ୍ଦ୍ରାଜପ୍ରଦେଶ ବାସୀ ତେଲିଙ୍ଗୀ ଅଟନ୍ତି । ଏଥକୁ ଆମ୍ଭମାନଙ୍କର ଜିଜ୍ଞାସ୍ୟ ଏହିକି ବାସ୍ତବିକ ସୁଦୂର ମାନ୍ଦ୍ରାଜ ପ୍ରଦେଶରେ ଓଡ଼ିଆ ଭାଷାଭିଜ୍ଞ ଲୋକ ଅଛନ୍ତି ? ସେମାନେକି ଏପ୍ରକାର ଚମତ୍କାର ବିଶୁଦ୍ଧ ଓଡ଼ିଆଭାଷାରେ ପ୍ରବନ୍ଧ ଲେଖି ପାରନ୍ତି ? ପୁଣି ସେମାନେକି ବାସ୍ତବିକ ଆମ୍ଭମାନଙ୍କର ରାଧାନାଥ, ମଧୁସୂଦନ, ବୈକୁଣ୍ଠନାଥ, ମହେନ୍ଦ୍ରଦେବ ପ୍ରଭୃତିଙ୍କୁ ଚିହ୍ନନ୍ତି ? "ଦୀପିକା" "ହିତୈଷିଣୀ", "ଓଡ଼ିଆ" ପ୍ରଭୃତି ସମ୍ବାଦପତ୍ରିକାମାନ ନିୟମିତରୂପେ ପାଠ କରନ୍ତି. ? ଯଦ୍ୟପି ପ୍ରକୃତ ତାହା ହୋଇଥାଏ ତାହାହେଲେ ରାଧାନାଥ ବାବୁଙ୍କର "ରାୟବାହାଦୂର" ହୋଇଥିବା ସମ୍ବାଦରେ "ଦୀପିକା" ଆନନ୍ଦ ପ୍ରକାଶ କରି ନଥିବାରୁ ଆମ୍ଭେମାନେ ଯେତେଦୂର ଦୁଃଖିତ ନୋହୁଁ, ଏହି ମାନ୍ଦ୍ରାଜୀ ଉତ୍କଳ ଭାଷାଭିଜ୍ଞ ମହାତ୍ମାମାନଙ୍କ ସମ୍ବନ୍ଧରେ ଆପଣଙ୍କ ପତ୍ରିକାରେ କୌଣସି ଆଲୋଚନା ହୋଇନଥିବାରୁ ଆମ୍ଭେମାନେ ତତୋଧିକ ଦୁଃଖିତ ଆପଣଙ୍କର ଏକାନ୍ତ ଉଚିତକି

ଆପଣଙ୍କର ପତ୍ରପ୍ରେରକ ଓ ଉତ୍କଳ ସାହିତ୍ୟର ଏପ୍ରକାର ହିତୈଷୀ ବନ୍ଧୁତ୍ରୟଙ୍କ ସମ୍ବନ୍ଧରେ ବିଶେଷ ସମ୍ବାଦ ସଂଗ୍ରହକରି ସେମାନଙ୍କୁ ଉତ୍କଳରେ ସୁପରିଚିତ କରିଦେବା । ତଦ୍ୱାରାଯେ ଉତ୍କଳ ସାହିତ୍ୟର ପ୍ରଭୂତ ଉନ୍ନତି ସାଧିତହେବ ତାହା, ଆଶା କରୁଁ, ଆପଣ ସମ୍ୟକ୍ ଉପଲବ୍ଧି କରିପାରିବେ । "ଗଞ୍ଜାମ୍ ନିଉଯ୍" ଏବଂ "ଦାକ୍ଷିଣାତ୍ୟ ଭ୍ରମଣ" ରୁ ଆମ୍ଭେମାନେ ଅବଗତ ହୋଇଥିଲୁଁ ଯେ ପାରଳାଖେମଣ୍ଡି ପର୍ଯ୍ୟନ୍ତ ଓଡ଼ିଆ ଭାଷାର ଏକପ୍ରକାର ପ୍ରଚଳନ ଅଛି; ମାତ୍ର ବର୍ତ୍ତମାନ ସୁଦୂରବର୍ତ୍ତୀ କାକନାଡ଼ା ପର୍ଯ୍ୟନ୍ତ ଏହି ଭାଷାର ପ୍ରଚଳନ ଥିବାର ଅବଗତହୋଇ ଆଶ୍ଚର୍ଯ୍ୟାନ୍ୱିତ ହେଲୁଁ ଗଞ୍ଜାମ ପ୍ରଦେଶର ଓଡ଼ିଆ ନିତାନ୍ତ କଦର୍ଯ୍ୟ ଏବଂ କ୍ଲିଷ୍ଟ କିନ୍ତୁ କାକନାଡ଼ାର ଓଡ଼ିଆ ଏକପ୍ରକାର ବିଶୁଦ୍ଧଥିବାର ଦେଖି ଅବାକ ହୋଇଅଛୁଁ । ପ୍ରିୟ ସମ୍ପାଦକ ମହାଶୟ, ଏ ବିଷୟ ଘେନି ଆମ୍ଭମାନଙ୍କର କୌଣସି କୌଣସି ବନ୍ଧୁଙ୍କ ସହିତ ଆମ୍ଭମାନଙ୍କର କଥୋପକଥନ ହୋଇଥିଲା । ସେମାନେ ଆମ୍ଭମାନଙ୍କୁ ବୁଝାଇଦେଲେକି ଆଲୋଚ୍ୟ ପ୍ରବନ୍ଧ ଲେଖକମାନେ ବାସ୍ତବିକ ମାନ୍ଦ୍ରାଜୀ ନୁହନ୍ତି- "ରାମଲୀଳା" ର ମୁଖପିନ୍ଧା ଅସୁରମାତ୍ର । କିନ୍ତୁ ସେଥିରେ ଆମ୍ଭମାନଙ୍କର ମନମାନିଲା ନାହିଁ, ଅଚ୍ଛା, ବିଜ୍ଞ ସମ୍ପାଦକ ମହାଶୟ, ତାହାକି ପ୍ରକୃତକଥା ? ହଁ, ଆମ୍ଭେମାନେ ଏକଥା ମାନୁଁ ଯେ କୌଣସି କୌଣସି ସ୍ଥଳରେ ମୁଖାପିନ୍ଧି ବାହାରିବାର ଆବଶ୍ୟକହୁଏ । ମାତ୍ର ତାହାବୋଲି ସଂପୂର୍ଣ୍ଣ ଜାତୀୟତାବିହୀନ ହେବାର ଆବଶ୍ୟକ କ'ଣ ? "ରାମଲୀଳା"ରେ ରାମାୟଣ ବର୍ଣ୍ଣିତ ଅସୁର ପରିବର୍ତ୍ତନରେ ଇଲିଅଡ୍ ବର୍ଣ୍ଣିତ ଅସୁରମାନଙ୍କୁ ଆଣି ଛିଡ଼ା କରିଦେଲେ କିପରିହେବ କୁହନ୍ତୁ ଦେଖି ? ମୁଁ ଯଦ୍ୟପି ଆପଣାଙ୍କୁ Georgo Hamilton, Manchester, England ବା ହୁଏନ୍‌ସାଂ Canton, John x x Phillips, X X X ପ୍ରଭୃତି ମୁଖାରେ ତାଙ୍କପରି ବିଶୁଦ୍ଧ ଓଡ଼ିଆ ଭାଷାରେ ପ୍ରବନ୍ଧ ନେଇ ଆପଣଙ୍କ ଟେବଲ ନିକଟରେ ଦଣ୍ଡାୟମାନ ହୁଏ ତେବେ ଆପଣ କଅଣ ମନେକରିବେ ? "ରାନାଡ଼େ" ପର୍ଯ୍ୟନ୍ତ ମୁଖାପିନ୍ଧିବାରେ ଏକପ୍ରକାର ଚଳନୀୟ ହୋଇଥିଲା- "ରାନାଡ଼େ କଟକ" ପର୍ଯ୍ୟନ୍ତ ମଧ୍ୟ ନିତାନ୍ତ ଅଚଳନୀୟ ହୋଇ ନଥିଲା । ମାତ୍ର ଏକାବେଳକେ "ରଙ୍ଗୟାନାଇଡୁ-କାକନାଡ଼ା" ପର୍ଯ୍ୟନ୍ତ ଅଗ୍ରସର ହେବା କେତେଦୂର ସାହସ ଓ ଦୁର୍ବୁଦ୍ଧିତାର କାର୍ଯ୍ୟ ତାହା ଥରେ ଆପଣ ଓ ଆପଣଙ୍କ ପାଠକମାନଙ୍କୁ ବିଚାର କରି ଦେଖିବାକୁ ଅନୁରୋଧ କରୁଅଛୁଁ । ଏକାବେଳକେ ଜାତୀୟତା ବିହୀନ ହୋଇ ସାଧାରଣଙ୍କୁ ସନ୍ଦେହ ଦୋଳାରେ ଦୋଳାୟମାନ କରିବା କି ଉଚିତ ? ମୁଖା ପିନ୍ଧାଟା କ'ଣ ଆଦୌ ନିୟମାଧୀନନୁହେଁ ? ଅବାଧ ବାଣିଜ୍ୟ ନୀତିର ପ୍ରଚଳନ ହେଲା ବୋଲି କ'ଣ "ଦୁର୍ଗା"ଙ୍କ ଦେହରେ 'Mary' ଙ୍କ ମୁଖା ଆଣି ବସାଇଦେବାକୁ ହେବ ? କାହିଁ ଏପରି ରୀତିହିଁ ଅନ୍ୟକୌଣସି ଦେଶର ପ୍ରଚଳିତ ଥିବାର ଆମ୍ଭମାନଙ୍କୁ ଜଣାନାହିଁ । ପୁଣି, ସାହିତ୍ୟ ଚର୍ଚ୍ଚା କରିବାକୁ ଯାଇ ଏତେ ଅଯଥା ରଙ୍ଗରସର ପ୍ରୟୋଜନ କ'ଣ ? ସାମାନ୍ୟ ସ୍ୱାକ୍ଷରରେ ସୁଦ୍ଧା ଏତେ ରହସ୍ୟ ।

ସମ୍ପାଦକ ମହାଶୟ ଆମ୍ଭମାନଙ୍କର ବିଶେଷ ଅନୁରୋଧଯେ ଆପଣଙ୍କ ମନ୍ତବ୍ୟ ସହ ଆମ୍ଭମାନଙ୍କର ଏହି ପତ୍ର ଖଣ୍ଡି ପତ୍ରିକାସ୍ଥ କରି ପାଠକ ମଣ୍ଡଳୀଙ୍କ ଦ୍ୱାରା ଏହାର ସମ୍ୟକ ଆଲୋଚନା କରାଇନେବା ହେବେ ।

ଇତି

ଶ୍ରୀ କୃଷ୍ଣପ୍ରସାଦ ଚୌଧୁରୀ

ଏହି ପତ୍ର ସମ୍ବନ୍ଧେ ସ୍ୱ ସ୍ୱ ମତ ବ୍ୟକ୍ତକରିବା ସକାଶେ ପତ୍ରୋକ୍ତ 'ରାନାଡ଼େ' ପ୍ରଭୃତିଙ୍କୁ ଓ ପାଠକମାନଙ୍କୁ ଅନୁରୋଧ କରୁଅଛୁଁ ।

ସମ୍ପାଦକ ।

*ଭା୯ଗ, ସଂ୧୩ଖ୍ୟା, ୨୫।୮।୧୮୯୭*

## ପ୍ରାପ୍ତ ।

## ବିଜାତୀୟ ମୁଖା ।

"ହିତୈଷିଣୀ"ର ଗତସଂଖ୍ୟାରେ ପ୍ରକାଶିତ ଶୀର୍ଷାଙ୍କିତ ପ୍ରବନ୍ଧପ୍ରତି ପାଠକମାନଙ୍କର ଦୃଷ୍ଟି ପତିତ

ହୋଇଥିବ । ତତ୍‌ସମ୍ବନ୍ଧେ ଆଲୋଚନା କରିବା ସକାଶେ ଲେଖକ ଏବଂ ସମ୍ପାଦକ ମହୋଦୟମାନେ ଅଧିକାର ପ୍ରଦାନ କରିଥିବାରୁ ଆମ୍ଭେ ଆପଣାର ଅଭିମତ ବ୍ୟକ୍ତ କରିଅଛୁଁ ।

ଲେଖକ [କୃଷ୍ଣପ୍ରସାଦ ବାବୁ] ହିତୈଷିଣୀର ରାନାଡ଼େଦ୍ୱୟ ଏବଂ ନାଇଡୁଙ୍କର ପରିଚୟ ପାଇନାହାନ୍ତି ଏବଂ ତାହା ଲେଖକମାନଙ୍କର ପ୍ରକୃତ କି କଳ୍ପିତନାମ ତାହା ମଧ ଜାଣନ୍ତି ନାହିଁ ଅଥଚ ତଦ୍‌ବିଷୟରେ ତୀବ୍ର ଆଲୋଚନା କରିବାକୁ ଛାଡ଼ିନାହାନ୍ତି । ବୋଧହୁଏ ଚୌଧୁରୀଙ୍କ ହାତରେ ବର୍ତ୍ତମାନ କିଛି କାର୍ଯ୍ୟ ନାହିଁ ।

ଲେଖକ, ପତ୍ରପ୍ରେରକ ମାନଙ୍କର ପ୍ରକୃତ ପରିଚୟ ନପାଇ ସୁଦୂର ମାନ୍ଦ୍ରାଜରେ ସେମାନଙ୍କପାଇଁ ଘର ତୋଳିଦେଇ ଅଛନ୍ତି ! ଅଥଚ ସନ୍ଦେହ କରି କହିଅଛନ୍ତି, "ସେମାନେ ବି ଏପ୍ରକାର ଚମତ୍କାର ବିଶୁଦ୍ଧ ଓଡ଼ିଆ ଭାଷାରେ ପ୍ରବନ୍ଧ ଲେଖି ପାରନ୍ତି ?" ତାଙ୍କର ଅଭିପ୍ରାୟ ପାରନ୍ତି ନାହିଁ, ତେବେ ସେମାନଙ୍କ ଘର ମାନ୍ଦ୍ରାଜରେ ବୋଲି କହିବା ଠିକ୍ ହୋଇଅଛି କି ?

"ଶ୍ରୀରାନାଡ଼େ-କଟକ" ଲେଖାଥାଉଁ ଥାଉଁ ତାଙ୍କୁ ମାନ୍ଦ୍ରାଜୀ ବୋଲି ଭାବିବାର କାରଣ ନାହିଁ । ଉକ୍ତନାମଧାରୀ କଟକବାସୀ ବ୍ୟକ୍ତିଙ୍କ ସହିତ ଚୌଧୁରୀ ବା ଚୌଧୁରୀ ବନ୍ଧୁଙ୍କର ପରିଚୟ ଥାଇ ନପାରେ । ଏହାବୋଲି କଟକପରି ବଡ଼ ସହରରେ ସେପରି ଲୋକଥିବା କି ଅସମ୍ଭବ ? ରାନାଡ଼େଙ୍କପରି ଲେଖିପଢ଼ି ପାରୁଥିବା ସମସ୍ତ ଲୋକଙ୍କୁକି ସେମାନେ ଜାଣନ୍ତି ? କଦାପି ନୁହେଁ । ଜାଣିଲେ ସୁଦ୍ଧା ସହରକୁ ମାନ୍ଦ୍ରାଜ ଓ ଉତ୍କଳର ସକଳ ଅଂଶର ଶିକ୍ଷିତ ଲୋକମାନଙ୍କର ଗମନାଗମନ ଥିବା ସ୍ଥଳେ ରାନାଡ଼େ ସେମାନଙ୍କ ମଧ୍ୟରେ ଜଣେ ହୋଇ ପାରନ୍ତି ସୁତରାଂ ଚୌଧୁରୀଙ୍କର ଅପରିଚିତଥିବା ସମ୍ଭବପର ।

ପତ୍ରଲେଖକତ୍ରୟଙ୍କ ଭାଷା "ଚମତ୍କାର ବିଶୁଦ୍ଧ ଓଡ଼ିଆ" ଏହାକି ସତ୍ୟକଥା, କି ତେଲଙ୍ଗା ଲେଖକ ଲେଖନୀ ପ୍ରସୂତବୋଲି ଶ୍ରଦ୍ଧାରେ ବା ଆକ୍ରମଣ କାମନାରେ ସେପରି ଲେଖି ଅଛନ୍ତି ? ସେହି "ଚମତ୍କାର ବିଶୁଦ୍ଧ ଓଡ଼ିଆ ପ୍ରବନ୍ଧ", 'ଉତ୍କଳପ୍ରଭା' ରେ ପ୍ରକାଶିତ ହୋଇଥିଲେ ଚୌଧୁରୀଙ୍କ ମତରେ ସେମାନେ ରାଜଦତ୍ତ ଯୋଗ୍ୟତାର ପୁରସ୍କାର ପାଇଥାନ୍ତେକି ? ଚୌଧୁରୀ ଚାଳିତ "ଉତ୍କଳ ସାହିତ୍ୟରେ" କି ସେହି ପ୍ରବନ୍ଧମାନ "ଚମତ୍କାରିତା ଏବଂ ବିଶୁଦ୍ଧତା" ଗୁଣରେ ସ୍ଥାନଲାଭ କରିପାରିଥାନ୍ତା ? ଫଳତଃ ଆମ୍ଭମତରେ ସେମାନଙ୍କର ପ୍ରବନ୍ଧ ମାନଙ୍କର ଭାଷାରେ ବିଶେଷତ୍ୱ କିଛିନାହିଁ ! "ଗଂଜାମନିଉଜ" ଏବଂ "ଦାକ୍ଷିଣାତ୍ୟ ଭ୍ରମଣ" ସମ୍ପାଦକ ମାନଙ୍କ କଥାରେ ବିଶ୍ୱାସକରି ଲେଖକ ବୁଝି ଅଛନ୍ତି "ପାରଳାଖେମୁଣ୍ଡି" ପର୍ଯ୍ୟନ୍ତ ଓଡ଼ିଆଭାଷାର ଏକପ୍ରକାର ପ୍ରଚଳନ ଅଛି ।" ତାହାହିଁ ସ୍ୱୀକାର୍ଯ୍ୟ କିନ୍ତୁ ଏହା ବୋଲି "ମାନ୍ଦ୍ରାଜ ପ୍ରେସିଡେନ୍ସିର ଆଉ କେଉଁଠାରେ ଓଡ଼ିଆଭାଷା ଜାଣୁଥିବା ଲୋକ କେହି ନାହାନ୍ତି" ଏହାକି ସ୍ୱୀକାର କରିବାକୁ ହେବ ? ଉପରୋକ୍ତ ସମ୍ପାଦକ ଦ୍ୱୟକି ଗ୍ରାମ ଗ୍ରାମ ଘର ଘର ବୁଲି ଆଉ କେହି ଓଡ଼ିଆଜ୍ଞ ନଥିବାର ବୁଝିଅଛନ୍ତି ? ପାରଳାଖେମୁଣ୍ଡି ଆଗକୁ ଯେବେ ଓଡ଼ିଆ ଭାଷାଜ୍ଞ କେହି ନାହାନ୍ତି ତେବେ ବିଶାଖାପଟ୍ଟନର "ଶ୍ରୀ ସଙ୍ଗୀତରାଧାମାଧବ ନାଟକ" ପ୍ରଣେତା ଶ୍ରୀଯୁକ୍ତ ବୀରବର ବିକ୍ରମଦେବ କାହୁଁ ଆସିଲେ ? ବିକ୍ରମଦେବକି ଉକ୍ତ ସମ୍ପାଦକଦ୍ୱୟଙ୍କ ଅନୁସନ୍ଧାନ ପରେ ସେଠାରେ ଆବିର୍ଭୁତ ହେଲେ ? ଫଳତଃ ପାରଳାଖେମୁଣ୍ଡି ପର୍ଯ୍ୟନ୍ତ ଓଡ଼ିଆ ଭାଷାର କାରବାର ଏକପ୍ରକାର ଥିଲେ ସୁଦ୍ଧା ଓଡ଼ିଆଭାଷାଜ୍ଞ ଅନ୍ତତଃ କେତେକଲୋକ ମାନ୍ଦ୍ରାଜର ନାନାସ୍ଥାନରେ ବାସକରୁଥିବା ସମ୍ଭବପର ଏବଂ କାମସୁଦ୍ଧା କରୁ ଅଛନ୍ତି ।

ଗଞ୍ଜାମ ପ୍ରଦେଶର ଓଡ଼ିଆ କ୍ଲିଷ୍ଟ ଓ କଦର୍ଯ୍ୟ ହୋଇପାରେ କିନ୍ତୁ ଯେଉଁମାନଙ୍କର ଜ୍ଞାନବୃଦ୍ଧିର ପିପାସା ଅଛି, ଉତ୍କଳ ସାହିତ୍ୟପ୍ରତି ଶ୍ରଦ୍ଧା ରଖି ଆଲୋଚନା କରୁଅଛନ୍ତି ସେମାନଙ୍କର ଭାଷା ଦୋଷଶୂନ୍ୟ ହେବା-ଦୋଷଯୁକ୍ତ ହେଲେ ଉତ୍କଳୀ ବନ୍ଧୁଦ୍ୱାରା ସଂଶୋଧନ କରାଇନେବା ଅସମ୍ଭବ ନୁହେଁ । ଓଡ଼ିଆମାନେ ବଙ୍ଗଳା, ହିନ୍ଦି ପ୍ରଭୃତି ଭାଷା ଏପରି ଆୟତ୍ତ କରି ଅଛନ୍ତି ଯେ ତାହା ସେମାନଙ୍କର ମାତୃଭାଷା ବୋଲି ଅନୁମାନ କରା ଯାଇପାରେ ଏପରି ସ୍ଥଳେ ପୂର୍ବୋକ୍ତ ପତ୍ରଲେଖକମାନେ ବା ପତ୍ରଲେଖକ ମାନ୍ଦ୍ରାଜବାସୀ ହେଲେ ସୁଦ୍ଧା ସେମାନଙ୍କର ଭାଷାଦେଖି ଅବିଶ୍ୱାସ କରାଯାଇ ନପାରେ ।

ସେମାନେ ମାନ୍ଦ୍ରାଜବାସୀହୋଇ ସେପରି ଓଡ଼ିଆ ଲେଖିଥିବାହେତୁ ସମ୍ପାଦକ ସେମାନଙ୍କ ପରିଚୟାଦି

ପ୍ରକାଶକରି ନଥିବା, ଚୌଧୁରୀଙ୍କ ବିବେଚନାରେ ଅନ୍ୟାୟ ହୋଇଅଛି । ଓଡ଼ିଆମାନେ ବଙ୍ଗଳା ବା ହିନ୍ଦି ବା ଇଂରେଜୀରେ ବିଶୁଦ୍ଧରୂପେ ପ୍ରବନ୍ଧ ଲେଖିପାରିଲେ ସେହି ସେହି ଭାଷାର ପତ୍ରସମ୍ପାଦକମାନେକି ତନ୍ନିମିତ୍ତ ସେମାନଙ୍କର ଜୀବନୀ ପ୍ରକାଶ କରିଥାନ୍ତି ? କର୍ତ୍ତବ୍ୟ ହେଲେସୁଦ୍ଧା ସମସ୍ତେ କି ସ୍ୱ ସ୍ୱ ପରିଚୟ ସାଧାରଣରେ ପ୍ରକାଶ କରିବାକୁ ସମ୍ମତ ? ଯେବେ ସମ୍ମତ ତେବେ ଚୌଧୁରୀଙ୍କ ପ୍ରସ୍ତାବିତ ଉତ୍‌କଳଲେଖକ ମାନଙ୍କର ପରିଚୟ ପ୍ରକାଶକାର୍ଯ୍ୟ ନହେଲା କାହିଁକି ?

ଚୌଧୁରୀ ମହାଶୟ କୌଣସି କୌଣସି ବନ୍ଧୁଙ୍କଠାରୁ ବୁଝିଅଛନ୍ତି "ଲେଖକତ୍ରୟ ମାନ୍ଦ୍ରାଜୀ ନୁହନ୍ତି, 'ରାମଲୀଳା'ର ମୁଖାପିନ୍ଧା ଅସୁର ମାତ୍ର ।" "ଚମତ୍କାର ବିଶୁଦ୍ଧ ଓଡ଼ିଆ ପ୍ରବନ୍ଧ" ଲେଖକ ଏବଂ "ଉତ୍‌କଳ ସାହିତ୍ୟଙ୍କ ହିତୈଷୀ" ବ୍ୟକ୍ତିମାନେ 'ଉତ୍‌କଳ ସାହିତ୍ୟ'ର କାର୍ଯ୍ୟାଧ୍ୟକ୍ଷଙ୍କ ବନ୍ଧୁମାନଙ୍କ ମତରେ 'ଅସୁର' ଆଖ୍ୟା ଲାଭକଲେ କାହିଁକି ? ମୁଖାପିନ୍ଧିଲେ କି 'ଅସୁର' ଆଖ୍ୟାଲାଭ କରିବାକୁ ହୁଏ ? ତାହାହେଲେ ଉତ୍‌କଳର ପ୍ରାୟ ସମସ୍ତ ଲେଖକମାନେ 'ଅସୁର' ଆଖ୍ୟାଲାଭର ଉପଯୁକ୍ତ ।

ଶୁଣିଅଛୁଁ କେବଳ ଉତ୍‌କଳର ନୁହେଁ ଅନ୍ୟାନ୍ୟ ସ୍ଥାନର ଲେଖକମାନେ ପ୍ରୟୋଜନ ପଡ଼ିଲେ ମୁଖା ପିନ୍ଧିଥାନ୍ତି । ଜଗଦ୍‌ବିଖ୍ୟାତ ମହାତ୍ମା ରାଜା ରାମମୋହନରାୟ ମୁଖା ପିନ୍ଧିବାକୁ ଅତ୍ୟନ୍ତ ଭଲ ପାଉଥିଲେ, ସେ କଳ୍ପିତ ନାମଦେଇ ପୁସ୍ତକ, ପ୍ରବନ୍ଧ ଲେଖୁଥିଲେ । ସେହି ସମୟରେ ଜଣେ ଇଂରେଜ 'ଶଙ୍କରଶାସ୍ତ୍ରୀ' ନାମଧାରଣ କରି ରାମମୋହନଙ୍କ ବିରୁଦ୍ଧରେ ପୁସ୍ତକ ପ୍ରକାଶ କରିଥିଲେ । ପୁନଶ୍ଚ "ହିନ୍ଦୁଇନ୍‌ଟେଲିଜେନ୍ସ" ନାମକ ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ଗିରିଶଚନ୍ଦ୍ର ବସୁ "ମ୍ୟାକବାମ୍ଭ" ନାମ ଧାରଣ କରି "ହରାକରା" ନାମକ ତତ୍କାଳିକ ସର୍ବପ୍ରଧାନ ଇଂରେଜୀ ସମ୍ବାଦପତ୍ରରେ ପ୍ରବନ୍ଧ ଲେଖୁଥିଲେ । ବୋଧକରୁଁ କୃଷ୍ଣପ୍ରସାଦ ବାବୁ ଏସବୁ ବିଷୟ ଅନବଗତ ନୁହନ୍ତି । ଜଣେ ଦୁଇଜଣ ନୁହନ୍ତି ଅନୁସନ୍ଧାନ କଲେ ଅନେକ ବିଖ୍ୟାତ ବ୍ୟକ୍ତିଙ୍କର ବିଜାତୀୟ ମୁଖା ଧାରଣର ଦୃଷ୍ଟାନ୍ତ ମିଳିପାରେ, ସୁତରାଂ "ମହାଜନୋ ଯେନ 'ଗତଃସପନ୍ଥାଃ ।"

ଲେଖକମାନେ 'ରାମଲୀଳା' ର ମୁଖାପିନ୍ଧା ଅସୁର, ସ୍ୱୀକାର କଲୁଁ, କିନ୍ତୁ ତନ୍ନିମିତ୍ତ କି ସେମାନେ ହେୟ ? ପ୍ରକୃତ ହେଲେ 'ରାମଲୀଳା'ର ଆଦରର ଅନ୍ୟତମ କାରଣ ମୁଖାପିନ୍ଧା ଅସୁର ।

ମୁଖାପିନ୍ଧାର ପ୍ରଧାନତମ ଉଦ୍ଦେଶ୍ୟ ଆତ୍ମଗୋପନ । ମୁଖା ନପିନ୍ଧି ତାହା କରାଯାଇଥାଏ । ଯେଉଁମାନେ ବହୁରୂପୀ ମନୁଷ୍ୟ ଦେଖିଅଛନ୍ତି ସେମାନେ ଏଉକ୍ତିର ସତ୍ୟତା ଭଲରୂପେ ବୁଝିପାରିବେ । ପାଉଁଶ କୌପୀନ ଜଟା ପ୍ରଭୃତି ସାହାଯ୍ୟରେ କେତେଲୋକ ଆତ୍ମଗୋପନ କରିଥାନ୍ତି । ସେ ଯାହାହେଉ ଚୌଧୁରୀ ମହାଶୟ ସ୍ୱୀକାର କରି ଅଛନ୍ତି "କୌଣସି କୌଣସି ସ୍ଥଳରେ ମୁଖାପିନ୍ଧି ବାହାରିବାର ଆବଶ୍ୟକ ହୋଇଥାଏ ।" ମୁଖାପିନ୍ଧି ସେଥିରେ କୌଣସି କ୍ଷତି ନାହିଁ ।" ସୁତରାଂ ତାଙ୍କୁ ଧନ୍ୟବାଦ ଦେଉଅଛୁଁ ।

ଚୌଧୁରୀ ମହାଶୟ ମୁଖାପିନ୍ଧାର ପକ୍ଷପାତୀ ହୋଇ ସୁଦ୍ଧା ବିଜାତୀୟ ମୁଖାଧାରଣର ବିରୋଧୀ ଅଟନ୍ତି । ଏହା ଜାତୀୟତା ପରିଚାୟକ ହେଲେ ସୁଦ୍ଧା ବର୍ତ୍ତମାନ ସକଳ ବିଷୟରେ ବିଜାତୀୟ ପଦାର୍ଥ ବ୍ୟବହୃତ-ଆଦୃତ । ନାମବେଳକୁ ହେବା ବିଚିତ୍ର ନୁହେଁ । ଦେଶର ଉଚ୍ଚଶିକ୍ଷିତ ଲୋକମାନେ- ଉଚ୍ଚପଦସ୍ଥମାନେ ବିଜାତୀୟ ଧରଣର ନାମ ସ୍ୱାକ୍ଷରର ଏପରି ଅନୁରାଗୀ ଯେ ତନ୍ନିମିତ୍ତ ଗବର୍ଣ୍ଣମେଣ୍ଟଙ୍କୁ ବାଧ୍ୟ ହୋଇ ନିଷେଧବିଧି କରିବାକୁ ପଡ଼ିଲା । ବିଜାତୀୟ ଔଷଧ, ବିଜାତୀୟ ମିଷ୍ଟାନ୍ନ, ବିଜାତୀୟ ପାନୀୟ, ସର୍ବୋପରି ଅଷ୍ଟପ୍ରହର ବିଜାତୀୟ ହ୍ୟାଟ କୋଟ ମହାଜନ ମାନଙ୍କ ନିକଟରେ ଆଦୃତ । ଏପରି ସ୍ଥଳେ ଯଦି କୌଣସି ଉତ୍‌କଳବାସୀ କ୍ଷଣକ ସକାଶେ କୌତୂହଳ ନିବୃତ୍ତି ନିମନ୍ତେ ନାମମାତ୍ର-କେବଳ କଥାରେ ଟିକିଏ ବିଜାତୀୟ ମୁଖା ପିନ୍ଧନ୍ତି ତନ୍ନିମିତ୍ତ ତାଙ୍କୁକି ଆକ୍ରମଣ କରିବା ଉଚିତ କି ମୂଳ ଦୂଆକୁ ଦୋଷଦେବା ବିହିତ ? କ୍ଷଣିକ ମୁଖାଧାରୀ ପୂର୍ବ ପରିଚିତ ଲୋକ ବିଜାତୀୟ ମୁଖାପିନ୍ଧି ସମ୍ପାଦକଙ୍କ ଟେବୁଲ ପାଖରେ ଠିଆହେଲେ-ସମ୍ପାଦକ ସ୍ୱୀକାର୍ଯ୍ୟରେ ତଦ୍‌ଗତମନା ନଥିଲେ ତାଙ୍କୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇପାରନ୍ତି କିନ୍ତୁ ଟେବୁଲ ପାଖକୁ ନଯାଇ ଡାକବେହେରା ହାତରେ ପଠାଇଦେଲେ କଅଣ କରିବେ ? ସାଧାରଣ କଥାରେ ନାମର ଚର୍ଚ୍ଚାକରିବାକୁ ପ୍ରବୃତ୍ତ ହେବେ କି ବିଷୟ ବିବେଚନା କରିବେ ?

ଚୌଧୁରୀ ମହାଶୟ ବିସ୍ମିତହୋଇ କହିଅଛନ୍ତି ନାମ ସ୍ୱାକ୍ଷରରେ ସୁଦ୍ଧା ଏତେ ରହସ୍ୟ !!" ବିନା ଆୟାସରେ ଯେବେ ଟିକିଏ ରହସ୍ୟ କରାଯାଇପାରେ ଅନ୍ନକ୍ଲିଷ୍ଟ, ନାନା କାରଣରେ ବିଷର୍ଣ୍ଣ ପାଠକମାନଙ୍କର କ୍ଷଣିକ ଉଲ୍ଲାସ ଜନ୍ମାଇ ଦିଆଯାଇପାରେ- ଏକ କ୍ରିୟାରେ ଦୁଇଟି ସୁଫଳ ଲାଭ ହୁଏ ତେବେ ତହିଁର ବିରୋଧୀ ହେବାର ପ୍ରୟୋଜନ ନାହିଁ । ତେବେ ଚୌଧୁରୀଙ୍କ ମତରେ "ଅଯଥା ରଙ୍ଗରସଦୂଷ୍ୟ" । ହୋଇପାରେ, କିନ୍ତୁ ବିଭିନ୍ନ ରୁଚିର ଲୋକେ ଅଛନ୍ତି । ଜଣକ ମତରେ ଯାହା ଅଯଥା, ଅନ୍ୟ ମତରେ ତାହା ଅଯଥା ନୁହେଁ । ଚୌଧୁରୀଙ୍କ କଥିତ କାର୍ଯ୍ୟେଯେ ଅଯଥା ସେ ଏହା ଅବଧି ପ୍ରତିପନ୍ନ କରିପାରି ନାହାନ୍ତି ସୁତରାଂ ତାଙ୍କର ନିଷ୍ପତ୍ତି ଗ୍ରହଣ କରିବାକୁ ସକ୍ଷମ ହୋଇଅଛୁଁ ।

ରାନାଡ଼େଦ୍ୱୟ ଏବଂ ରଙ୍ଗୟାନାଇଡୁ ଓଡ଼ିଆ କି ତେଲଙ୍ଗୀ ସେ ତାହା ନିଶ୍ଚୟ କହିପାରିନାହାନ୍ତି ଅଥଚ କହିଅଛନ୍ତି "ଏପରି ମୁଖାପିନ୍ଧିବା ଦୁଃସାହସ ଓ ଦୁର୍ବୁଦ୍ଧିର କାର୍ଯ୍ୟ" ମୋକଦ୍ଦମା ତଦନ୍ତ କରିବା ଆଗରୁ ରାୟ ବ୍ୟକ୍ତ କଲାପରି ଚୌଧୁରୀଙ୍କର କାର୍ଯ୍ୟ ଅସଙ୍ଗତ ହେଉନାହିଁ କି ? ଦେଶର ସୁସନ୍ତାନ ଚୌଧୁରୀଙ୍କର ଏପରି ମତବ୍ୟକ୍ତ କରିବା ଉଚିତ ବୋଧକଲୁ ନାହିଁ । ସୁତରାଂ ଦୁଃଖିତ ହୋଇଅଛୁଁ ।

ଏକା ଦୁର୍ଗା କାହିଁକି ହିନ୍ଦୁଶାସ୍ତ୍ରୋକ୍ତ ଦେବଦେବୀମାନେ ଅନେକ ସମୟରେ ଆତ୍ମଗୋପନ କରିଥାନ୍ତି- ନାନାପ୍ରକାର ମୂର୍ତ୍ତି ଧାରଣ କରି ଲୋକମାନଙ୍କୁ ବିଡ଼ମ୍ବିତ, ପ୍ରତାରିତ କରିଥାନ୍ତି ଦେବତା ହୋଇ ମାନବ ଓ ଅସୁର ବି ରୂପଧାରଣ କରିଥାନ୍ତି । ଅସୁରମାନେ ମାନବ ଓ ଦେବତାଦି ରୂପଧାରଣ କରିଥାନ୍ତି । ପ୍ରମାଣସ୍ଥଳ ପୁରାଣ ନିଚୟ, ସୁତରାଂ ବିଜାତୀୟ ମୁଖାଧାରଣ ପରମ୍ପରାଗତ ଶିଷ୍ଟାଚାର ସମ୍ମତ ପ୍ରଥା ବୋଲା ଯାଇପାରେ ।

ଓଡ଼ିଆ ହୋଇ ଅନ୍ୟଜାତିର ନାମଧାରଣ କରିବା ଦୂଷ୍ୟ ହେଲେ ଓଡ଼ିଆହୋଇ ଅନ୍ୟଭାଷାକୁ ମାତୃଭାଷା ରୂପେ ବ୍ୟବହାର କରିବା, ଓଡ଼ିଆ କାଗଜରେ ଓଡ଼ିଆ ହୋଇ ଇଂରେଜୀ ପ୍ରବନ୍ଧ ଲେଖିବା ଦୋଷ ନହେବ କାହିଁକି ? ବିଜାତୀୟ ମୁଖାଧାରଣଠାରୁ ବିଜାତୀୟ ଭାଷା ବ୍ୟବହାର କି ଲଘୁତର ଦୋଷ ? କେଉଁ କାର୍ଯ୍ୟଦ୍ୱାରା ଜାତୀୟତାରେ ବିଶେଷ ଆଘାତ ଲାଗୁଅଛି ?

ଶ୍ରୀ ସହୃଦାନନ୍ଦ ସ୍ୱାମୀ ।

ସଦାନନ୍ଦପୁର ।

*ଭା୯ଗ, ସଂ୧୩ଖ୍ୟା, ୧।୯।୧୮୯୭*

## ଓଡ଼ିଆ ସମ୍ବାଦ ପତ୍ର ।

ସ୍ଥାନାନ୍ତରରେ ମୁଦ୍ରିତ ଖଣ୍ଡିଏ ପ୍ରେରିତପତ୍ରରୁ ଆନନ୍ଦର ସହିତ ଅବଗତ ହେଲୁଁ ଯେ ପାରଳା ଖେମୁଣ୍ଡି ଗଜପତି ପ୍ରେସରୁ ଖଣ୍ଡିଏ ଓଡ଼ିଆ ସମ୍ବାଦପତ୍ର ବାହାରିବାର ଚେଷ୍ଟା ହେଉଅଛି । ପାରଳାଖେମୁଣ୍ଡିର ରାଜାପ୍ରଜା ଉଭୟ ଜାତିରେ ଓଡ଼ିଆ, ସେମାନଙ୍କର ମାତୃଭାଷା ଓଡ଼ିଆ, ଏପରି ସ୍ଥଳେ ସେଠାରେ ଇଂରେଜୀ ଭାଷାର ସମ୍ବାଦପତ୍ର ଅପେକ୍ଷା ଓଡ଼ିଆ ଭାଷାର ସମ୍ବାଦପତ୍ର ପ୍ରକାଶ କରିବା ଯେ ଶ୍ରେୟସ୍କର ଏଥିରେ କିଛିମାତ୍ର ସନ୍ଦେହ ନାହିଁ । ଶେଷୋକ୍ତ ଚେଷ୍ଟା ସଫଳ ହେବାର ଦେଖିଲେ ଅତ୍ୟନ୍ତ ଆନନ୍ଦିତ ହେବୁଁ ।

*ଭା୯ଗ, ସଂ୧୬ଖ୍ୟା, ୧୫।୯।୧୮୯୭*

## ରାଧାନାଥ ପୁସ୍ତକାଳୟ ।

କବିବରରାୟ ରାଧାନାଥରାୟ ବାହାଦୁର ବାଲେଶ୍ୱର ଜିଲ୍ଲାନ୍ତର୍ଗତ କେଦାରପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କଦ୍ୱାରା ଉତ୍କଳ ଭାଷା ବିଶେଷ ଉନ୍ନତିଲାଭ ଥିବାରୁ ତହିଁର ସ୍ମୃତିସ୍ୱରୂପ ଉକ୍ତ କେଦାରପୁର ଗ୍ରାମରେ ଉତ୍କଳ ଭାଷାରେ ମୁଦ୍ରିତ ପୁସ୍ତକର ଗୋଟିଏ ପୁସ୍ତକାଳୟ ପ୍ରତିଷ୍ଠିତ ହୋଇଅଛି । ପୁସ୍ତକାଳୟରେ ବର୍ତ୍ତମାନ ଉତ୍କଳ ଭାଷାରେ ମୁଦ୍ରିତ ୯୩୯ ଖଣ୍ଡି ପୁସ୍ତକ ଏବଂ ୧୨ ଖଣ୍ଡି ମାନଚିତ୍ର ଏକତ୍ରିତ ହୋଇଅଛି ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ରାଧାନାଥଙ୍କ ଜନ୍ମସ୍ଥାନରେ ଉତ୍କଳ ଭାଷା ପୁସ୍ତକର ଗୋଟିଏ ପୁସ୍ତକାଳୟ ପ୍ରତିଷ୍ଠିତହେବାର ଅବଗତ ହୋଇ ଆନନ୍ଦିତ ହୋଇଅଛୁଁ । ଉକ୍ତ ପୁସ୍ତକାଳୟ ନିମନ୍ତେ ବର୍ତ୍ତମାନ ଅମୁଦ୍ରିତ ତାଳପତ୍ର ପୁସ୍ତକମାନ ଏକତ୍ରିତ ହେବାର ଚେଷ୍ଟା ହେଉଅଛି । ସମଗ୍ର ଉତ୍କଳର କୌଣସି ସ୍ଥାନରେ ଉତ୍କଳଭାଷାରେ ମୁଦ୍ରିତ ସମସ୍ତ ପୁସ୍ତକ ଏକତ୍ରିତ ହୋଇନାହିଁ ବା କେହି ତନ୍ନିମିତ୍ତ ଚେଷ୍ଟିତ ଥିବାର ଶୁଣାଯାଇନାହିଁ କିନ୍ତୁ ଏପରିଚେଷ୍ଟା ଅତ୍ୟନ୍ତ ଫଳୋପାଧାୟକ ।

*ଭା।୯ଗ, ସଂ୧୮ଖ୍ୟା, ୨୯।୯।୧୮୯୭*

## ଓଡ଼ିଆ ଭାଗବତର ଆଦର ।

ଅତ୍ୟନ୍ତ ଆନନ୍ଦର ସହିତ ଅବଗତ ହେଲୁ ଯେ ଉତ୍କଳ ଦେଶରେ ପ୍ରଚଳିତ ସ୍ୱର୍ଗୀୟ ଜଗନ୍ନାଥ ଦାସଙ୍କ ପ୍ରଣୀତ ପଦ୍ୟ ଭାଗବତ ବଙ୍ଗଭାଷାରେ ମୁଦ୍ରିତ କରିବାର ଚେଷ୍ଟା ହେଉଅଛି । ବର୍ତ୍ତମାନ କଲିକତାର ଅହିରିଟୋଲା ନିବାସୀ ଶ୍ରୀଯୁକ୍ତ କାଳୀପ୍ରସନ୍ନ ସେନଗୁପ୍ତ ଉକ୍ତ ପଦ୍ୟ ଭାଗବତକୁ ବଙ୍ଗଭାଷାରେ ପରିବର୍ତ୍ତିତ କରୁ ଅଛନ୍ତି । ଉକ୍ତ ଗ୍ରନ୍ଥ ଖଣ୍ଡାକାରରେ ପ୍ରକାଶିତ ହୋଇ ୬ ମାସରେ ସଂପୂର୍ଣ୍ଣ ହେବବୋଲି ଅନୁଷ୍ଠାନପତ୍ର ବାହାରି ଅଛି, ଆମ୍ଭେମାନେ କେତେକ ମାସ ପୂର୍ବେ ଶୁଣିଥିଲୁଁ କନିକାର ଶ୍ରୀମତି ରାଣୀ ମହୋଦୟା ଜଗନ୍ନାଥଦାସଙ୍କ ଭାଗବତ ସଂଶୋଧନ କରି ପ୍ରକାଶ କରିବାର ସଂକଳ୍ପ କରିଥିଲେ । ତତ୍ପରେ ଅନ୍ୟକୌଣସି ସମ୍ବାଦ ପାଇନାହୁଁ । ରାଣୀମହୋଦୟାକି ପୁତ୍ରଶୋକରେ ବିହ୍ୱଳ ହୋଇ ଉକ୍ତ ସାଧୁ ସଂକଳ୍ପ ପରିତ୍ୟାଗ କରିଅଛନ୍ତି ? ଭାଗବତର ପଦ୍ୟାନୁବାଦ ପ୍ରକାଶକରି ଜଗନ୍ନାଥ ଦାସ ନିଜନାମକୁ ଅମର କରିଯାଇ ଅଛନ୍ତି । ଅକ୍ଷର ସମ୍ବନ୍ଧିପ୍ରାପ୍ତ କୀର୍ତ୍ତି ଜଗତରେ ଅକ୍ଷୟ । କ୍ଷମତାଶାଳୀ ବ୍ୟକ୍ତି ମାନଙ୍କର ଏପରି କୀର୍ତ୍ତିକର କାର୍ଯ୍ୟରେ ବୀତରାଗ ହେବା ବାଞ୍ଛନୀୟ ନୁହେ ।

*ଭା।୯ଗ, ସଂ୨୫ଖ୍ୟା, ୧୭।୧୧।୧୮୯୭*

## ଓଡ଼ିଆମାନଙ୍କ ପ୍ରତି ଅବିଚାର ।

ସହଯୋଗିନୀ 'ଉତ୍କଳ ଦୀପିକା' ଲେଖିଅଛନ୍ତି ଗଞ୍ଜାମନିୟସ୍ୱରୁ ଆନନ୍ଦର ସହିତ ଅବଗତ ହେଲୁଁ ଯେ ସେ ଜିଲ୍ଲାର ଓଡ଼ିଆମାନଙ୍କ ଅସୁବିଧା ନିବାରଣ ଅଭିପ୍ରାୟରେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଆଦେଶ ଦେଇଅଛନ୍ତି, ଦେବାନୀ କାର୍ଯ୍ୟବିଧିର ଅଭିପ୍ରାୟ ସିଦ୍ଧ କରିବା ସକାଶେ ଆସିକା ଜିଲ୍ଲା ମୁନସଫିର ଅମଲାଙ୍କର ମଧ୍ୟରୁ ଶତକରା ୭୫ ଜଣ ବରହମପୁରର ଅଦାଲତ କଚେରି ସମୂହର ଅମଲାମାନଙ୍କ ମଧ୍ୟରୁ ଶତକରା ୫୦ ଜଣ ଏବଂ ସକାକୋଲିର ଅଦାଲତରେ ଶତକରା ୭୫ ଜଣ ଓଡ଼ିଆ ଭାଷା ଜାଣିବା ଲୋକ ନିଯୁକ୍ତ ହେବେ । ଅର୍ଥାତ୍ ଯେଉଁ ଇଲାକାରେ ଯେତେ ଓଡ଼ିଆଙ୍କର ବାସ, ସେଠା ଦେବାନ କଚେରୀରେ ତହିଁ ଅନୁପାତରେ ଓଡ଼ିଆ ଜାଣିବା ଅମଲା ନିଯୁକ୍ତ ହେବେ । ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କର ଏହି ଆଦେଶ ଅତ୍ୟନ୍ତ ନ୍ୟାୟସଙ୍ଗତ ଏଥିରେ ସନ୍ଦେହ ନାହିଁ । ଏହି ଆଦେଶ ସଙ୍ଗେ ସମ୍ବଲପୁରରୁ ଓଡ଼ିଆଭାଷା ଉଠାଇଦେବାର ଆଦେଶ ମିଶାଇ ଦେଖି କି ଏ ନ ବୋଲିବ ଯେ ଏହି ଦୁଇ ଆଦେଶମଧରେ ସ୍ୱର୍ଗ ମର୍ତ୍ତ୍ୟର ପ୍ରଭେଦ ।

*ଭା।୯ଗ, ସଂ୩୦ଖ୍ୟା, ୧୫।୧୨।୧୮୯୭*

# ୧୮୯୮

## ସମ୍ବଲପୁରରେ ଓଡ଼ିଆଶିକ୍ଷକ ।

ଅନେକ ଆବେଦନ ଆନ୍ଦୋଳନ ଫଳରେ ବିଜୟ ବାବୁ ଏବଂ ଦାଶରଥିବାବୁ ସମ୍ବଲପୁର ହାଇସ୍କୁଲର ଶିକ୍ଷକପଦରେ ନିଯୁକ୍ତ ହୋଇଥିଲେ; କାଳକ୍ରମେ ବିଜୟ ବାବୁ ହେଡ଼ମାଷ୍ଟରପଦ ତ୍ୟାଗ କରିବାରୁ ଦାଶରଥିବାବୁ ସେହି ଦିନଠାରୁ ଉକ୍ତ ପଦର କାର୍ଯ୍ୟ ଚଳାଇ ଆସୁଛନ୍ତି ଏବଂ ଚଳାଉଥିବେ । କିନ୍ତୁ ଦାଶରଥିବାବୁଙ୍କ ସ୍ଥାନରେ ଜଣେ ଉତ୍କଳବାସୀ ଶିକ୍ଷକ ନିଯୁକ୍ତ ନହେବାରୁ ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତଅଛୁଁ । ଆମ୍ଭେମାନେ ଯେ କେବଳ ବିଦ୍ୱେଷବୁଦ୍ଧିର ଅଧୀନହୋଇ ଏପରି କହୁ ଅଛୁ ଏହା ଯେଉଁମାନେ ମନେକରନ୍ତି ସେମାନେ ଘୋର ଭ୍ରାନ୍ତି । ତେବେ ଆମ୍ଭମାନଙ୍କର ସେପରି ମତ ବ୍ୟକ୍ତର କାରଣ ଏହି ଯେ ଓଡ଼ିଆ ପିଲାମାନଙ୍କୁ ଶିକ୍ଷାଦେବା ସକାଶେ ଓଡ଼ିଆ ଶିକ୍ଷକମାନେ ଯେପରି ସର୍ବାଂଶରେ ଉପଯୁକ୍ତ ଅନ୍ୟଜାତିର ଶିକ୍ଷକମାନେ ସେପରି ନୁହନ୍ତି । ବର୍ତ୍ତମାନ ଦାଶରଥିବାବୁ ହେଡ଼ମାଷ୍ଟର ପଦରେ ବାହେଲ ହେବାର ସମୟ ଉପସ୍ଥିତ ହେବାରୁ ଆଶାକରୁଁ ଯେ ତାହାଙ୍କ ସ୍ଥାନରେ ସ୍ଥାୟୀରୂପେ ଜଣେ ଉତ୍କଳବାସୀଙ୍କୁ ନିଯୁକ୍ତ କରିବା ବିଷୟରେ ଶିକ୍ଷାବିଭାଗର ଇନ୍ସପେକ୍ଟର ଜେନେରଲ ବାହାଦୂର ଆଜ୍ଞା ପ୍ରଦାନକରି ଧନ୍ୟବାଦର ପାତ୍ର ହେବେ ।

*ଭା/୯ଗ, ସଂ୩/୮ଖ୍ୟା, ୯/୨/୧୮୯୮*

## କଂଗ୍ରେସ ଏବଂ କୃଷ୍ଣପ୍ରସାଦବାବୁ ।

"ଉତ୍କଳ ସାହିତ୍ୟ" ଯେ ଉତ୍କଳର ଏକମାତ୍ର ମାସିକପତ୍ରିକା ଏବଂ ତହିଁରେ ଯେ ବିବିଧ ଶିକ୍ଷଣୀୟ ବିଷୟର ଆଲୋଚନା ହୁଏ ଏବଂ ସେହି କାରଣରୁ ଯେ ଉକ୍ତପତ୍ରିକାର ଆଦର ଦିନକୁଦିନ ବୃଦ୍ଧିଲାଭ କରୁଅଛି ଏକଥା ଆମ୍ଭମାନଙ୍କର ପାଠକମାନଙ୍କୁ ଅବିଦିତନାହିଁ ବର୍ତ୍ତମାନ ଉକ୍ତ ପତ୍ରିକାର ୨ୟ ଖଣ୍ଡ ୧ମ ସଂଖ୍ୟା ଆମ୍ଭମାନଙ୍କର ହସ୍ତଗତ ହୋଇଅଛି । ପତ୍ରିକାଲିଖିତ ସକଳ ପ୍ରବନ୍ଧର ଆଲୋଚନା ବା ଉଲ୍ଲେଖ କରିବା ସକାଶେ ଆମ୍ଭମାନଙ୍କର ସମୟ ଏବଂ ସ୍ଥାନର ଅଭାବ ତଥାପି ଉତ୍କଳର ଜନୈକ ଉଦୀୟମାନ ସୁଲେଖକ ପ୍ରେମାସ୍ପଦ ଶ୍ରୀଯୁକ୍ତ ବାବୁ କୃଷ୍ଣପ୍ରସାଦ ଚୌଧୁରୀ ମହାଶୟଙ୍କ ଲିଖିତ "କଂଗ୍ରେସ" ଶୀର୍ଷକ ପ୍ରବନ୍ଧର କିୟଦଂଶ ପାଠକମାନଙ୍କୁ ଉପହାର ନଦେଇ ରହିପାରିଲୁଁ ନାହିଁ ।

ଆମ୍ଭମାନଙ୍କର ପାଠକ ମହୋଦୟମାନଙ୍କ ନିକଟରେ ଭାରତର କଂଗ୍ରେସ ବା ଜାତୀୟ ମହାସମିତି ଅପରିଚିତ ନୁହେ । ଆମ୍ଭେମାନେ କଂଗ୍ରେସର ଏକାନ୍ତ ପକ୍ଷପାତୀ ଏବଂ ତାହାର ଯେ ଦେଶର ହିତହେଉଅଛି ଏବଂ ହେବ ଏ ବିଷୟରେ ଆମ୍ଭମାନଙ୍କର କିଛି ମାତ୍ର ସନ୍ଦେହନାହିଁ- ସନ୍ଦେହନାହିଁ ବୋଲି ତହିଁରେ ହୃଦୟର ସହିତ ଯୋଗଦେବା ସକାଶେ ଉତ୍କଳବାସୀମାନଙ୍କୁ ବାରମ୍ବାର ଅନୁରୋଧ କରିଥାଉ ଏବଂ କଂଗ୍ରେସର ଆଲୋଚ୍ୟ ବିଷୟ ଗୁଡ଼ିକର ଉଲ୍ଲେଖ କରି ତତ୍ପ୍ରତି ଦେଶବାସୀଙ୍କର ମନଯୋଗ ଆକର୍ଷଣ କରିଥାଉଁ । ପାରମ୍ପରିକ ରୀତ୍ୟନୁସାରେ କଂଗ୍ରେସର ଅମରାବତୀ ଅଧିବେଶନର ବିବରଣ ଯଥାକାଳରେ ପ୍ରକାଶ କରିଅଛୁଁ ଏବଂ ସଭାପତିଙ୍କ ସାରଗର୍ଭ ବକ୍ତୃତାର ସାରାଂଶ ପାଠକବର୍ଗଙ୍କୁ ଉପହାର ପ୍ରଦାନ କରିଅଛୁଁ । କେବଳ ଆମ୍ଭରି ମାନଙ୍କ ଉତ୍ତେଜନାରେ ସମ୍ବଲପୁର ବାସୀମାନେ

ରାଜନୈତିକ ଆଲୋଚନାପ୍ରତି ବିତସ୍ପୃହ ହୋଇସୁଦ୍ଧା କଲିକତା ଅଧିବେଶନକୁ ପ୍ରତିନିଧି ପ୍ରେରଣ କରିଥିଲେ । ଭାରତବାସୀମାନଙ୍କ ହିତୋଦ୍ଦେଶ୍ୟରେ ସୃଷ୍ଟ କଂଗ୍ରେସପ୍ରତି ଉତ୍କଳବାସୀମାନେ ଆସ୍ଥା ପ୍ରଦର୍ଶନ କରୁ ନଥିବାରୁ ଚୌଧୁରୀ ମହାଶୟ ଉକ୍ତ ପ୍ରବନ୍ଧରେ ଦୁଃଖପ୍ରକାଶ କରି ଯାହା ଲେଖିଅଛନ୍ତି । ତାହା ଏତନ୍ନିମ୍ନରେ ପ୍ରକାଶ କରୁଅଛୁଁ ।

"କଂଗ୍ରେସ ସମ୍ବନ୍ଧରେ ଆମ୍ଭମାନଙ୍କ ଦେଶବାସୀ-ଉତ୍କଳୀୟ ଭ୍ରାତାମାନଙ୍କୁ ଦିଓଟି ଗୋଟିଏ କଥା କହିବା ହିଁ ଆମ୍ଭମାନଙ୍କର ଉଦ୍ଦେଶ୍ୟ । ଏ ପର୍ଯ୍ୟନ୍ତ କଂଗ୍ରେସର ମହଦୁଦ୍ଦେଶ୍ୟ ଯଦି କୌଣସି ଅଞ୍ଚଳ ବା ଜାତି ନିକଟରେ ସଂପୂର୍ଣ୍ଣ ବିଫଳୀକୃତ ହୋଇଥାଏ ତାହାହେଲେ ସେ ଅଞ୍ଚଳ ଉତ୍କଳ ଏବଂ ସେ ଜାତି-ଓଡ଼ିଆ । ଯୁଗାଧିକକାଳ ଏହି ମହା ଆନ୍ଦୋଳନର ଆବିର୍ଭାବ ହୋଇଥିଲେ ସୁଦ୍ଧା ଦିଓଟି ଅଧିବେଶନ ଛଡ଼ା ଆଉ କୌଣସି ଅଧିବେଶନରେ ଓଡ଼ିଶାର ନାମରେ ଗଡ଼ି ପଡ଼ିନାହିଁ ! କି ଲଜ୍ଜା ଏବଂ ଦୁଃଖର ବିଷୟ ? କଂଗ୍ରେସ କର୍ତ୍ତୃପକ୍ଷମାନେ ବର୍ଷକୁ ବର୍ଷ ଆପଣା ଆପଣା କାର୍ଯ୍ୟ ସଂପନ୍ନ କରୁଅଛନ୍ତି- ସମସ୍ତ ଦେଶବାସୀ ମାନଙ୍କୁ ମନପ୍ରାଣର ସହିତ ଏହି ଜାତୀୟ ମହାସମିତିରେ ଯୋଗଦେବା କାରଣ ସାଦରେ ଆହ୍ୱାନ କରୁଅଛନ୍ତି- ମାତ୍ର କାହିଁ ? ଉତ୍କଳବାସୀତ ତହିଁରେ କର୍ଣ୍ଣପାତ କରୁନାହିଁ । ଏହାର କାରଣ କିସ ? ଉତ୍କଳ ବାସୀର ସ୍ୱାଭାବିକ ନିର୍ଜ୍ଜୀବତା ଏଥିର ମୁଖ୍ୟ କାରଣ ବୋଲି ପ୍ରତୀୟମାନ ହେଲେସୁଦ୍ଧା ଅନ୍ୟାନ୍ୟ କେତେଗୁଡ଼ିଏ ଗୌଣ କାରଣ ରହିଅଛି । ଆମ୍ଭେମାନେ ସେଗୁଡ଼ିକ କ୍ରମେ କ୍ରମେ ପ୍ରଦର୍ଶନ କରୁଅଛୁଁ ।

ଉତ୍କଳୀୟ ସଂପାଦକ ମଣ୍ଡଳୀଙ୍କୁ ଆମ୍ଭେମାନେ ଏବିଷୟରେ ପ୍ରଧାନ ଓ ପ୍ରଥମ ଦୋଷୀ ବୋଲି ମନେକରୁଁ । କଂଗ୍ରେସ ଅଧିବେଶନର ଦୁଇ ଏକ ସପ୍ତାହ ପୂର୍ବବ୍ୟତୀତ ସେମାନେ ଅନ୍ୟକୌଣସି ସମୟରେ ଏହି ସମିତିର ବିଷୟ ସାଧାରଣ ଲୋକଙ୍କୁ ବୁଝାଇ ଦିଅନ୍ତି ନାହିଁ । ଏହି ମହଦୁପକାରୀ ସମିତିରେ ପ୍ରାଣ ମନ ଢାଳି ଯୋଗଦେବା କାରଣ ସାଧାରଣ ଲୋକଙ୍କୁ ଉପଯୁକ୍ତ ଭାଷାରେ ଉଦ୍ବୋଧିତ କରିବାକୁ ବା କଂଗ୍ରେସର ପୂର୍ଣ୍ଣ ବିବରଣ ଆପଣା ଆପଣା ପତ୍ରିକାରେ ପ୍ରକାଶ କରିବାକୁ ସେମାନେ ସତତ ପରାଙ୍ମୁଖ କଂଗ୍ରେସ ଦ୍ୱାରା ପ୍ରକୃତ କୌଣସି ଫଳଲାଭ ହେଉଅଛି କି ନାହିଁ ତାହା ସ୍ପଷ୍ଟରୂପେ ବୁଝାଇ ଦେବାରେ ସେମାନଙ୍କର ଶୀଥିଳତା ଦୁଃଖଜନକ ଅଟେ ।

ଦ୍ୱିତୀୟତଃ-ଉତ୍କଳର ସଭା ସମିତି । ଆମ୍ଭମାନଙ୍କର ସ୍ମରଣ ହୁଏ ଥରେ ଆମ୍ଭମାନଙ୍କର ମାନନୀୟ କମିଶ୍ନର ସାହେବ ଏହି ସଭାସମିତି ମାନଙ୍କୁ ଉଦ୍ଦେଶ୍ୟ କରି ଆପଣାର ବାର୍ଷିକ ରିପୋର୍ଟରେ ଲେଖିଥିଲେ "ଏମାନେ ବର୍ଷର ପ୍ରାୟ ସମସ୍ତ ଦିନ ମୃତାବସ୍ଥାରେ ପଡ଼ିଥାନ୍ତି । କୌଣସି କାର୍ଯ୍ୟ କରନ୍ତି ନାହିଁ । କେବଳ ନାମରେମାତ୍ର ଜୀବିତ ଥାନ୍ତି ।" କଥାଗୁଡ଼ିକ ଅକ୍ଷରେ ଅକ୍ଷରେ ସତ୍ୟ । ସେମାନେ ଯଦ୍ୟପି ଯାଗରୁକ ଥାଇ ଆପଣା ଆପଣା ସଭ୍ୟମାନଙ୍କ ଦ୍ୱାରା ସ୍ଥାନୀୟ ଅଞ୍ଚଳମାନଙ୍କରେ କଂଗ୍ରେସର ପ୍ରକୃତ ଉଦ୍ଦେଶ୍ୟ ପ୍ରଚାର କରୁଥାନ୍ତେ ତାହାହେଲେ ଅନେକ ଫଳର ଆଶା କରାଯାନ୍ତା । ତୃତୀୟତଃ-ଦେଶ ହିତୈଷୀ ମହାତ୍ମା ମାନଙ୍କର ଉତ୍ସାହ ଓ ଉଦ୍ୟମର ଅଭାବ । ଉତ୍କଳରେ ପ୍ରକୃତ ଦେଶହିତୈଷୀ ମହାତ୍ମାର ସଂଖ୍ୟା ଖୁବ୍ ଅଳ୍ପ । ସେମାନେ ଜାତୀୟ ଜଡତା ବିରୁଦ୍ଧରେ ସଂଗ୍ରାମ କରିବାକୁ ନିପୁଣ ନୁହନ୍ତି ।

ଚତୁର୍ଥତଃ- ଉତ୍କଳବାସୀ ରାଜା ଜମିଦାରମାନଙ୍କର ଗବର୍ଣ୍ଣମେଣ୍ଟ ଭୀତି ଏବଂ କୃପଣତା । ଅନେକ ରାଜା ଜମିଦାର ମନେକରନ୍ତି କଂଗ୍ରେସ ସହିତ ସଂସ୍ରବ ରଖିଲେ ରାଜପୁରୁଷମାନଙ୍କର ବିଷ ନୟନରେ ପଡ଼ିବା ଅବଶ୍ୟମ୍ଭାବୀ । ଏହା ଗୋଟିଏ କୁସଂସ୍କାର । ଅବଶ୍ୟ ଦୁଇ ଏକ ସ୍ଥଳରେ ଯେ ସେପ୍ରକାର ଉଦାହରଣ ଘଟିନାହିଁ ଏମନ୍ତ ନୁହେଁ । ମାତ୍ର ତାହା ସ୍ଥାନୀୟ କର୍ମଚାରୀମାନଙ୍କର ଅତ୍ୟାଚାର ବ୍ୟତୀତ ଆଉକିଛି ନୁହେଁ । ଅନେକ ରାଜା ବା ଜମିଦାର ପୁଣି ମନେକରନ୍ତି ଯେ ଆଶୁଫଳ ବିହିନ ଆନ୍ଦୋଳନରେ ଅର୍ଥବ୍ୟୟ କରିବା ଗୋଟିଏ ଅପବ୍ୟୟ ମାତ୍ର । କିନ୍ତୁ ଥରେ ସୁଦ୍ଧା ସେମାନେ ଭାବି ଦେଖନ୍ତି ନାହିଁ ଯେ ଜଣେ ଜଣେ ଦେଶହିତୈଷୀ ରାଜା ବା ଜମିଦାର ଏହିପରି ଅପବ୍ୟୟରେ ସର୍ବସ୍ୱାନ୍ତ ହେବାକୁ ମଧ୍ୟ କୁଣ୍ଠିତ ନୁହନ୍ତି ।

ପଞ୍ଚମତଃ- ଉତ୍କଳବାସୀର ରାଜନୀତି ଶିକ୍ଷାର ଅଭାବ ଏବଂ ରକ୍ଷଣଶୀଳତା । ରାଜନୀତିର ଚର୍ଚ୍ଚା ବା ଶିକ୍ଷାରେ

ଓଡ଼ିଆପୁଅ ବଡ଼ ଅମନୋଯୋଗୀ । ତାହାର ରକ୍ଷଣଶୀଳତା ଦେଶପ୍ରସିଦ୍ଧ । "ପୂର୍ବେ ଯାହା ଥିଲା ତାହା ନହେବ କାହିଁକି ?" ସେ ପ୍ରଶ୍ନ ମୀମାଂଶା କରିବାରେ ସେ ବଡ଼ ଆଗ୍ରହାନ୍ୱିତ ଓ ତତ୍ପର । ମାତ୍ର ବର୍ତ୍ତମାନ ଯାହା ନାହିଁ ତାହା ନହେବ କାହିଁକି ?'' ଏ ପ୍ରଶ୍ନ ବେଳକୁ ସେ ବିଚାରା କାନମୁଣ୍ଡ ଆଉଁସି ଆଉଁସି ଚୁପ୍ ହୋଇ ରହେ ।

ଉତ୍କଳବାସୀମାନେ କଂଗ୍ରେସରେ ଯୋଗ ଦେଉ ନଥିବାର ପ୍ରଥମ ଓ ପ୍ରଧାନ କାରଣ ପତ୍ର ସମ୍ପାଦକ ମାନଙ୍କର କର୍ତ୍ତବ୍ୟ ବିମୁଖତା ବୋଲି ଚୌଧୁରୀ ମହାଶୟ ବ୍ୟକ୍ତ କରିଅଛନ୍ତି । ସକଳପତ୍ର ସଂପାଦକ ଉକ୍ତ ଦୋଷରେ ଦୋଷୀ ନହେଲେ ସୁଦ୍ଧା ଲେଖକଙ୍କ ଆରୋପିତ ଦୋଷ ଅଯଥାର୍ଥ ନୁହେଁ କିନ୍ତୁ ଏ ଦେଶର ଅଗ୍ରଣୀ ମାନଙ୍କ ନିକଟରେ ଦେଶୀୟ ସମ୍ବାଦପତ୍ରର କିଛିମାତ୍ର ଆଦର ନଥିବାରୁ ଏବଂ ଏପରିସ୍ଥଳେ ତନ୍ନିମ୍ନ ଶ୍ରେଣୀର ଲୋକଙ୍କୁ ଉତ୍ତେଜନା କରିବା ଫଳାପଧାୟକ ନଥିବାରୁ ସମ୍ଭବତଃ ପତ୍ର ସଂପାଦକ ମାନେ ସେ ବିଷୟରେ ଉଦାସୀନ । ଅପର କାରଣଗୁଡ଼ିକ ଯେ ଅତି ଯଥାର୍ଥ ଏଥିରେ ସନ୍ଦେହ ନାହିଁ । ସର୍ବୋପରି ଗବର୍ଣ୍ଣମେଣ୍ଟ ଭୀତି ଏବଂ ରାଜନୀତି ଚର୍ଚ୍ଚାରେ ଅମନୋଯୋଗିତା ହେତୁ ଓଡ଼ିଆପୁତ୍ରମାନେ କ୍ରମଶଃ ମହା ସମିତିର ଦୂରବର୍ତ୍ତୀ ହୋଇ ପଡୁଛନ୍ତି । ଏହା ଅତ୍ୟନ୍ତ ପରିତାପର ବିଷୟ । ଚୌଧୁରୀ ମହାଶୟଙ୍କ ସହିତ ଏକମତ ହୋଇ କହୁ ଅଛୁଁ ଯେ "କଂଗ୍ରେସ ଦେଶର ଓ ଗବର୍ଣ୍ଣମେଣ୍ଟଙ୍କର ପରମମିତ୍ର ।" ସରଳ ଭାବରେ ରାଜାଙ୍କ ଭ୍ରମ ଏବଂ ନିଜର ଭ୍ରମ ଏବଂ ନିଜର ଅଭାବ ଜ୍ଞାପନ କରିବା ପ୍ରକୃତ ରାଜଭକ୍ତ ପ୍ରଜାର କାର୍ଯ୍ୟ...ତଦ୍ୱାରା ରାଜାପ୍ରଜା ଉଭୟଙ୍କର ମଙ୍ଗଳ ସାଧିତ ହେବ । ଏପରି କାର୍ଯ୍ୟରେ ଆଗ୍ରହର ସହିତ ଯୋଗଦାନ କରିବା ସକାଶେ ଉତ୍କଳବାସୀମାନଙ୍କୁ ଅନୁରୋଧ କରୁଅଛୁଁ ।

*ଭା୯ଗ, ସଂ୩୯ଖ୍ୟା, ୧୬।୨। ୧୮୯୮*

## ହୀରକଜୁବଲି ପୁସ୍ତକାଳୟ ।

କେନ୍ଦ୍ରାପଡ଼ା ହୀରକଜୁବଲି ପୁସ୍ତକାଳୟର ଭିତ୍ତି ସ୍ଥାପନ କାର୍ଯ୍ୟ ମହା ସମାରୋହ ସହିତ ସଂପନ୍ନ ହୋଇଯାଇଅଛି । ତଦୁପଲକ୍ଷେ ଏକ ସଭା ହୋଇଥିଲା । ଶ୍ରୀଯୁକ୍ତ ରାଜା ବୈକୁଣ୍ଠନାଥ ଦେ ବାହାଦୂରଙ୍କ ପ୍ରସ୍ତାବମତେ କଟକ ଜିଲ୍ଲାର ମାଜିଷ୍ଟ୍ରେଟ୍ ଓ କଲେକ୍ଟର ଶ୍ରୀଯୁକ୍ତ ଗ୍ରାରସସାହେବ ସଭାପତିର ଆସନ ଗ୍ରହଣ କରିଥିଲେ । ପୁସ୍ତକାଳୟର ରିପୋର୍ଟରୁ ଜଣାଗଲା ଲାଇବ୍ରେରୀ ପ୍ରତି ରବିବାର ସକାଳ ୭ ଘଣ୍ଟା ଠାରୁ ୯ ଘଣ୍ଟା ପର୍ଯ୍ୟନ୍ତ ଓ ଗୁରୁବାର ଦିନଛଡ଼ା ଅନ୍ୟ ଦିନମାନଙ୍କରେ ୬ ଘଣ୍ଟାଠାରୁ ୯ଘଣ୍ଟା ପର୍ଯ୍ୟନ୍ତ ଖୋଲା ରହୁଅଛି । ଗ୍ରାହକ ସଂଖ୍ୟା ବର୍ତ୍ତମାନ ୬୨ ଜଣ ଏବଂ ଲାଇବ୍ରେରୀର ମାସିକ ଆୟ ପ୍ରାୟ ୪୦ ଟଙ୍କା ଅଟେ । ପୁସ୍ତକର ସଂଖ୍ୟା ୭୭୧, ଏଥି ମଧ୍ୟରେ ୧୦୦ ଖଣ୍ଡ ଜମିଦାର ଶ୍ରୀଯୁକ୍ତ ବ୍ରଜସୁନ୍ଦର ମର୍ଦ୍ଦରାଜଙ୍କ ପ୍ରଦତ୍ତ । ଲାଇବ୍ରେରୀ ଗୃହସକାଶେ ବାବୁ ବଳରାମ ଭ୍ରମରବର ରାୟ ଓ ତାହାଙ୍କ ଭ୍ରାତାମାନେ ବିନା ମୂଲ୍ୟରେ ଭୂମି ପ୍ରଦାନ କରିଅଛନ୍ତି । ଲାଇବ୍ରେରୀ ନିମନ୍ତେ ପକ୍କାଗୃହ ନିର୍ମାଣ କରାଇଦେବା ସକାଶେ ରାଜା ବୈକୁଣ୍ଠନାଥ ଦେ ବାହାଦୁର ଏବଂ ତାହାଙ୍କର ଭ୍ରାତ ଅଙ୍ଗୀକାରକରି ଅଛନ୍ତି । ସଭାପତି ମହୋଦୟ ରିପୋର୍ଟ ଲିଖିତ ବିବରଣ ଜ୍ଞାତହୋଇ ଉଦ୍ୟୋଗୀ ଏବଂ ଦାତାମାନଙ୍କୁ ଧନ୍ୟବାଦ ଦେବାପରେ କହିଥିଲେ କଟକ ଏହା ଅପେକ୍ଷା ବଡ଼ ସହର ହେଲେହେଁ ମଧ୍ୟ ସେଠାରେ ହୀରକଜୁବଲୀର କୌଣସୀ ସ୍ଥାୟୀଚିହ୍ନ ରଖିବା ସକାଶେ କୌଣସି କାର୍ଯ୍ୟ ଅବଧି ହୋଇନାହିଁ କିନ୍ତୁ ରାଜା ବୈକୁଣ୍ଠନାଥ ଦେ ବାହାଦୂରଙ୍କ ପରି ଲୋକ ଯେବେ କଟକରେ ଥାନ୍ତେ ତେବେ ଉକ୍ତ କାର୍ଯ୍ୟ ଅନାୟାସରେ ହୋଇଥାନ୍ତା । ଏଠାରେ ଲାଇବ୍ରେରୀ ଗୃହ ନିର୍ମାଣ ହୋଇଗଲେ ଯେ ଲାଇବ୍ରେରୀ କାର୍ଯ୍ୟ ସଂପୂର୍ଣ୍ଣ ହୋଇଗଲା ଏପରି ମନେ କରିବାକୁ ହେବନାହିଁ । ସ୍ଥାନୀୟ ଜମିଦାର ପ୍ରଭୃତି ଭଦ୍ରବ୍ୟକ୍ତିମାନେ ଏହାର ଉନ୍ନତି ସକାଶେ ଅଧିକତର ଦୟାବାନ୍ ହେବାର ଆଶାକରୁଁ ।'' ଏହି ସଭାରେ ଆଳିର ମେନେଜର, ଆଳିରାଜାଙ୍କ ପ୍ରତିନିଧି ସ୍ୱରୂପ ୫୦୦ ଟଙ୍କା ଦାନ ସ୍ୱୀକାର କରି ପ୍ରଶଂଶା ଲାଭ କରିଥିଲେ । ଏହିସବୁ ବୃତ୍ତାନ୍ତ ଉତ୍କଳଦୀପିକାରେ ବିସ୍ତୃତ ରୂପେ ଉଲ୍ଲେଖ ଅଛି । ଆଳିରାଜା ଏବଂ ରାଜା ବୈକୁଣ୍ଠନାଥ ଦେ ବାହାଦୂର କେନ୍ଦ୍ରାପଡ଼ା ପୁସ୍ତକାଳୟ ନିମନ୍ତେ ଯଥେଷ୍ଟ ଦାନସ୍ୱୀକାର କରିଥିବାରୁ ସେମାନଙ୍କୁ ମୁକ୍ତକଣ୍ଠରେ ଧନ୍ୟବାଦ ପ୍ରଦାନ କରୁଅଛୁଁ ।

*ଭା୯ଗ, ସଂ୪୧ଖ୍ୟା, ୨।୩।୧୮୯୮*

## "ଉତ୍କଳ ସାହିତ୍ୟ।"

ଅତ୍ୟନ୍ତ ଆନନ୍ଦର ସହିତ ଜଣାଉଅଛୁଁ ଯେ ନବ ପ୍ରକାଶିତ "ଉତ୍‌କଳସାହିତ୍ୟ'' ପ୍ରଥମ ବର୍ଷ ଅତିକ୍ରମ କରି ଦ୍ୱିତୀୟ ବର୍ଷରେ ପଦାର୍ପଣ କରିଅଛି, ପ୍ରଥମବର୍ଷରେ ଶ୍ରୀଯୁକ୍ତ ମଧୁସୂଦନ ରାଓ, ଶ୍ରୀଯୁକ୍ତ ରାଧାନାଥରାୟ, ଶ୍ରୀଯୁକ୍ତ ସାଧୁଚରଣ ରାୟ, ଶ୍ରୀଯୁକ୍ତ ରାଜନାରାୟଣ ଦାସ, ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ନନ୍ଦ, ଶ୍ରୀଯୁକ୍ତ ଭୋଳାନାଥ ସାମନ୍ତରାୟ, ଶ୍ରୀଯୁକ୍ତ ଫକୀର ମୋହନ ସେନାପତି, ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣା ବି.ଏ., ଶ୍ରୀଯୁକ୍ତ ଗଙ୍ଗାଧର ମେହେର, ଶ୍ରୀଯୁକ୍ତ ବିଶ୍ୱନାଥ କର ଏବଂ ଶ୍ରୀଯୁକ୍ତ କୃଷ୍ଣ ପ୍ରସାଦ ଚୌଧୁରୀ ପ୍ରଭୃତି ଉତ୍କଳବିଖ୍ୟାତ ଲେଖକମାନଙ୍କ ଚିନ୍ତାପ୍ରସୂତ ପ୍ରବନ୍ଧମାନ ଉତ୍କଳ ସାହିତ୍ୟରେ ସନ୍ନିବେଶିତ ହୋଇଥିବାରୁ ପତ୍ରିକାଖଣ୍ଡି ସାଧାରଣରେ ସମାଦୃତ ହୋଇଅଛି । ପ୍ରଥମବର୍ଷରେ ପ୍ରକାଶିତ ୭୬ ଗୋଟି ଗଦ୍ୟପଦ୍ୟ ପ୍ରବନ୍ଧ ନାନା ବିଷୟକ ଥିବାରୁ ସକଳଶ୍ରେଣୀର ପାଠକମାନେ ତତ୍‌ପାଠେ ପରିତୁଷ୍ଟହୋଇ ପାରିବେ ଏବଂ ହୋଇଅଛନ୍ତି । ପତ୍ରିକାରେ ସାରବାନ୍ ପ୍ରବନ୍ଧ ସନ୍ନିବେଶିତ ହେବା ଏବଂ ନିୟମିତ ସମୟରେ ପ୍ରକାଶିତ ହେବା ସକାଶେ ସମ୍ପାଦକ ଏବଂ କାର୍ଯ୍ୟାଧକ୍ଷ ମହୋଦୟମାନେ ଯଥାସାଧ ଯତ୍ନ ପରିଶ୍ରମକରି ଅଛନ୍ତି । କେତେକବାର ଛାପାଖାନା ଦୋଷରୁ ପତ୍ରିକା ପ୍ରକାଶରେ କିଞ୍ଚିତ୍ ବିଳମ୍ବ ହେବାରୁ ଦ୍ୱାଦଶସଂଖ୍ୟା ଅନ୍ୟପ୍ରେସ୍‌ରେ ମୁଦ୍ରିତ କରାଇ କାର୍ଯ୍ୟାଧକ୍ଷ ମହାଶୟ ବିଶେଷ କର୍ତ୍ତବ୍ୟନିଷ୍ଠା ଏବଂ ତତ୍‌ପରତାର ପରିଚୟ ପ୍ରଦାନ କରିଅଛନ୍ତି । ପତ୍ରିକା ପରିଚାଳନ ସମ୍ବନ୍ଧେ ସମ୍ପାଦକ ଏବଂ କାର୍ଯ୍ୟାଧକ୍ଷମାନେ ଆପଣାର କର୍ତ୍ତବ୍ୟ ଯଥାଯଥ, ରୂପେ ପାଳନ କରି ଧନ୍ୟବାଦର ପାତ୍ର ହୋଇଅଛନ୍ତି । କିନ୍ତୁ ଅନେକ ଗ୍ରାହକ ମୂଲ୍ୟପ୍ରଦାନ ବିଷୟରେ କୃପଣତା ପ୍ରକାଶ କରୁଥିବାର ଦେଖି ଦୁଃଖିତ ହୋଇଅଛୁଁ । କାର୍ଯ୍ୟାଧକ୍ଷଙ୍କ ସହିତ ଏକବାକ୍ୟରେ କହୁଅଛୁଁ "ପତ୍ରିକା ଖଣ୍ଡି ସ୍ଥାୟୀ ନହେବା ଉତ୍‌କଳଭୂମି ପକ୍ଷରେ କଳଙ୍କର କଥା, ଏକଥା ପ୍ରତ୍ୟେକ ଉତ୍‌କଳ ସନ୍ତାନର ସ୍ମରଣ ରଖିବା ଉଚିତ୍ ।" ଗ୍ରାହକ ପ୍ରଦତ୍ତ ମୂଲ୍ୟ ପତ୍ରିକାର ଜୀବନ, ଏବଂ ଗ୍ରାହକମାନଙ୍କ ଅଯଥା କୃପଣତା ପତ୍ରିକାବନ୍ଦର ପ୍ରଧାନତମ କାରଣ । ଶେଷୋକ୍ତ କାରଣରୁ ଦେଶ ବିଦେଶର ସୁପରିଚାଳିତ ଅନେକ ପତ୍ରିକା ଅକାଳରେ ବିଲୁପ୍ତ ହୋଇଅଛି । ଏହି ବିଷୟ ବିବେଚନାକରି ଗ୍ରାହକ ମାନଙ୍କର ମୂଲ୍ୟ ପ୍ରଦାନ ବିଷୟରେ କାଳବିଳମ୍ବ କରିବା ଉଚିତ ନୁହେ । ଗ୍ରାହକମାନେ ସ୍ୱୀୟ କର୍ତ୍ତବ୍ୟପାଳନରେ ବିମୁଖ ନହେଲେ 'ଉତ୍କଳ ସାହିତ୍ୟ'ର ଅକାଳମୃତ୍ୟୁ ହେବ ନାହିଁ ଏବଂ ତହିଁରେ ରଙ୍ଗରସଠାରୁ ଅଧ୍ୟାତ୍ମତତ୍ତ୍ୱ ଚିନ୍ତା ପର୍ଯ୍ୟନ୍ତ ପ୍ରକାଶିତ ହେଉଥିବାରୁ "ଉତ୍‌କଳସାହିତ୍ୟ" ଯେ ଉତ୍‌କଳରେ ସର୍ବଜନ ସମାଦୃତ ପତ୍ରିକା ହେବ ଏଥିରେ ସନ୍ଦେହ ନାହିଁ । ଏହି ପତ୍ରିକାରେ ଧାରାବାହିକ ରୂପେ ପ୍ରକାଶିତ ହେଉଥିବା 'ଛମାଣ ଆଠଗୁଣ୍ଠ' ପ୍ରବନ୍ଧ ପତ୍ରିକା ପ୍ରତି ଅନେକଙ୍କର ପ୍ରୀତି ଆକର୍ଷଣ କରୁଅଛି, ତହିଁର ପରବର୍ତ୍ତୀ ଅଂଶ ଏବଂ ଅନ୍ୟାନ୍ୟ ଉତ୍‌କୃଷ୍ଟ ଅସମ୍ପୂର୍ଣ୍ଣ ପ୍ରବନ୍ଧମାନ ୨ୟ ବର୍ଷରେ ପ୍ରକାଶିତ ହେବ । ଆଶାକରୁଁ ୨ୟ ବର୍ଷରେ 'ଉତ୍‌କଳସାହିତ୍ୟ' ର ଗ୍ରାହକ ସଂଖ୍ୟା ବିଶେଷବୃଦ୍ଧି ଲାଭ କରିବ । "ଉତ୍କଳସାହିତ୍ୟ"ର ସ୍ଥିତି ଏବଂ ଉନ୍ନତି ସକାଶେ କାୟମନୋବାକ୍ୟରେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛୁଁ ।

"ଉତ୍କଳସାହିତ୍ୟ"ର ପ୍ରକାଶ ଅତୀତବର୍ଷର ଗୋଟିଏ ପ୍ରଧାନ ଘଟଣା । ସହଯୋଗିନୀ ଉତ୍କଳଦୀପିକାଙ୍କ ବର୍ଷ ସମାଲୋଚନାରେ "ଉତ୍କଳ ସାହିତ୍ୟ"ର ପ୍ରଚାରବାର୍ତ୍ତା ସନ୍ନିବେଶିତ ନହେବାର ଦେଖି ବିସ୍ମିତ ହୋଇଅଛୁଁ । ସହଯୋଗିନୀଙ୍କ ସହିତ "ଉତ୍କଳସାହିତ୍ୟ" କି ସୁପରିଚିତ ନୁହେଁ ?

*ଭା୯ଗ, ସଂ୩୪ଖ୍ୟା, ୧୨।୭।୧୮୯୮*

# ୧୮୯୯

## ପ୍ରାଇଜ୍ ଓ ଲାଇବ୍ରେରୀ ପୁସ୍ତକ ।

ମଧ୍ୟପ୍ରଦେଶର ଶିକ୍ଷାବିଭାଗରେ ନିମ୍ନଲିଖିତ ପୁସ୍ତକ ମାନ ପ୍ରାଇଜ ଏବଂ ଲାଇବ୍ରେରୀ ପୁସ୍ତକରୂପେ ବ୍ୟବହୃତ ହେବା ସକାଶେ ଶିକ୍ଷାବିଭାଗର ଇନ୍ସପେକ୍ଟର ଜେନରଲ ମହୋଦୟ ଆଦେଶ ପ୍ରଦାନ କରି ଅଛନ୍ତି ।

ତୁଳସୀ ସ୍ତବକ - ରାୟ ରାଧାନାଥରାୟ ବାହାଦୁର
କେଦାରଗୌରୀ - ରାୟ ରାଧାନାଥରାୟ ବାହାଦୁର
ଉତ୍କଳ ଲକ୍ଷ୍ମୀ - ଗଙ୍ଗାଧର ମେହେର
ଛାନ୍ଦମାଳା - ମଧୁସୂଦନ ରାଓ
କବିତା ସଂଗ୍ରହ - ଲାଲାରାମନାରାୟଣ ରାୟ
ଅଳଙ୍କାର ବୋଧୋଦୟ-ସାର୍ ସୁଢଳଦେବ କେ. ସି. ଆଇ. ଇ
ଶ୍ରୀମଦ୍ଭଗବଦ୍ଗୀତା - ତ୍ରିଲୋଚନ ମିଶ୍ର
ରଘୁବଂଶ - ବିଚ୍ଛନ୍ଦ ପଟ୍ଟନାୟକ
ଚତୁର୍ଥପାଠ - ସୀତାନାଥ ରାୟ
ଭିକ୍ଟୋରିୟା ଚରିତ - ନୀଳମଣି ବିଦ୍ୟାରତ୍ନ
ସର୍ବସାର ବ୍ୟାକରଣ - ନିମାଇଚରଣ ଭଟ୍ଟାଚାର୍ଯ୍ୟ
ଭାଷାଦର୍ଶ - ପ୍ରଭାକର ବିଦ୍ୟାରତ୍ନ
ଭାରତ ଇତିହାସ - ତାଳଚେର ରାଜା
ଅବଧାନ ବନ୍ଧୁ - ମଧୁସୂଦନ ରାଓ
ଭୂଗୋଳ ପାଠ - ସୀତାନାଥ ରାୟ
ଶରୀର ରକ୍ଷା - ସୀତାନାଥ ରାୟ
ପାଟୀଗଣିତ - ଉମେଶଚନ୍ଦ୍ର ବସୁ
ସୁଲଭପରିମିତି - ସୀତାନାଥ ରାୟ
ବିବିଧ ପ୍ରବନ୍ଧ - ବିଶ୍ୱନାଥ କର
ଓଡିଶ୍ୟାର ଇତିହାସ - ପ୍ୟାରୀମୋହନ ଆଚାର୍ଯ୍ୟ
ପଦାର୍ଥ ବିଜ୍ଞାନ - ଯୋଗେଶଚନ୍ଦ୍ର ରାୟ
ଉତ୍କଳ ଅଭିଧାନ - ଜଗନ୍ନାଥ ରାଓ
ପକେଟ ଅଭିଧାନ - ଜଗନ୍ନାଥ ରାଓ
ପ୍ରାକୃତିକ ଭୂଗୋଳ - ସୀତାନାଥ ରାୟ

ଉତ୍କଳ ଭାଷାରେ ଏଦେଶର ଲାଇବ୍ରେରୀ ଏବଂ ପୁରସ୍କାରଯୋଗ୍ୟ ଆହୁରି ଅନେକ ପୁସ୍ତକର ତାଲିକା ଆମ୍ଭେମାନେ ଦେଇଥିଲୁଁ । ତନ୍ମଧ୍ୟରେ ଅଧିକାଂଶ ପରିତ୍ୟକ୍ତ ହୋଇଥିବାର ଦେଖି ଦୁଃଖିତ ହେଲୁଁ । ଓଡିଶ୍ୟାର ଗ୍ରନ୍ଥକାରମାନେ ଶିକ୍ଷାବିଭାଗର ଉପଯୋଗୀ ଭଲପୁସ୍ତକ ପ୍ରକାଶ କଲେ ତହିଁର ଏକଖଣ୍ଡ ଛତିଶଗଡ

ବିଭାଗର ସ୍କୁଲ ଇନ୍‌ସ୍ପେକ୍ଟରଙ୍କ ନିକଟକୁ ପଠାଇ ଦେଉଥିବେ ତାହାହେଲେ ଉପକାରର ସମ୍ଭାବନା । ଓଡ଼ିଶ୍ୟାରେ କି କି ଭଲ ପୁସ୍ତକ ଅଛି ତାହା ଏ ପ୍ରଦେଶର କର୍ତ୍ତୃପକ୍ଷ ମାନଙ୍କୁ ଜଣାନାହିଁ କହିଲେ ଚଳେ ।

*ଭା୧୧ଗ, ସଂ୧୬ଖ୍ୟା, ୨୩।୮।୧୮୯୯*

## ଉତ୍କଳ ସାହିତ୍ୟ

"ଉତ୍କଳ ସାହିତ୍ୟ" ର ୩ୟ ଭାଗର ୫ମ ଓ ୬ଷ୍ଠ ସଂଖ୍ୟା ଏକତ୍ର ପ୍ରକାଶିତ ହୋଇଅଛି । "କାର୍ଯ୍ୟାଧ୍ୟକ୍ଷର ନିବେଦନ"ରେ ଲେଖାଅଛି , - "ପ୍ରତିମାସରେ ଆୟ ବ୍ୟୟର ହିସାବ ଦେଖିଲାବେଳେ ଆମ୍ଭମାନଙ୍କର ପ୍ରାଣ ଶୁଖିଯାଏ - ଆଶଙ୍କା ହୁଏ 'ଉତ୍କଳ ସାହିତ୍ୟ' ର ଅପମୃତ୍ୟୁ ଅନିବାର୍ଯ୍ୟ ହୋଇ ପଡ଼ିବପରା !" ଦ୍ୱିତୀୟ ତୃତୀୟ ବର୍ଷର କଥାଛାଡ଼ । ପ୍ରଥମବର୍ଷର ଦେୟ ଯେ କେତେକ ଗ୍ରାହକ ଏପର୍ଯ୍ୟନ୍ତ ପ୍ରେରଣ କରିନାହାନ୍ତି ତାହାକି ଆଉଥରେ କହିବୁଁ?" କାର୍ଯ୍ୟାଧ୍ୟକ୍ଷଙ୍କର ଉପରୋକ୍ତ ଉକ୍ତିମାନ ପାଠକରି ଆମ୍ଭେମାନେ ନିତାନ୍ତ ଦୁଃଖାଭିଭୂତ ହୋଇଅଛୁଁ । "ଉତ୍କଳ ସାହିତ୍ୟ"ର ସମସ୍ତ ଗ୍ରାହକ ମଣ୍ଡଳୀ ଧନ ଓ ଜ୍ଞାନ ଉଭୟ ବିଭବ ଦ୍ୱାରା ଅତ୍ୟାଧିକ ପରିମାଣ ବିଭୂଷିତ ଥାଉ ଥାଉ" ଅପମୃତ୍ୟୁ ହେବା ଦୂରେଥାଉ ଅପମୃତ୍ୟୁର ଆଶଙ୍କାହେବା ସେମାନଙ୍କ ପକ୍ଷରେ ଘୋର ନିନ୍ଦାର ବିଷୟ । 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବା କାର୍ଯ୍ୟାଧ୍ୟକ୍ଷଙ୍କର ଆର୍ଥିକ ଅବସ୍ଥା ଏପରି ନୁହେ ଯେ ଗ୍ରାହକମାନେ ଉଦାସୀନ ହେଲେ ସେମାନେ କିଛିକାଳ ପତ୍ରିକା ଚଳାଇ ପାରିବେ ସୁତରାଂ ଗ୍ରାହକମାନେ ମୂଲ୍ୟଦାନପ୍ରତି ଉଦାସୀନ ହେଲେ ଉତ୍କଳ ସାହିତ୍ୟର ଅପମୃତ୍ୟୁ ଅନିବାର୍ଯ୍ୟ ହୋଇ ଉଠିବ । ଉଃ ସାଃର ଜଣେ ଲେଖକ ଲେଖିଅଛନ୍ତି, "ମଧୁପ" ଓ "ଦର୍ପଣ" ଛାଡ଼ି ଏପରି ସୁନ୍ଦର ପତ୍ରିକା ଓଡିଶାରେ ଆଉ କେଭେ ପ୍ରଚରିତ ହୋଇନାହିଁ ।" ଅର୍ଥାଭାବରୁ ଏହି ଉତ୍କୃଷ୍ଟ ପତ୍ରିକାଖଣ୍ଡି ବନ୍ଦ ହୋଇଗଲେ କୌଣସି ଦୂରଦର୍ଶୀ ବ୍ୟକ୍ତି ଆଉ ଏପରି କାର୍ଯ୍ୟରେ ବ୍ରତୀ ହେବେ ନାହିଁ ସୁତରାଂ ଉତ୍କଳ, ମାସିକପତ୍ର ଶୂନ୍ୟ ହେବ । ସାମାନ୍ୟ ଔଦାସୀନ୍ୟହେତୁ ଉତ୍କଳର କି ଭୟାନକ କ୍ଷତିର ସମ୍ଭାବନା ଗ୍ରାହକମାନେ ଥରେ ଅବହିତ ଚିତ୍ତରେ ଏ ବିଷୟରେ ଆଲୋଚନା କରି ଦେଖିବେ ଏହି ମାତ୍ର ଅନୁରୋଧ । ଉତ୍କଳ ଦେଶରେ ଅନେକ ଶିକ୍ଷିତ ଅଥଚ ଧନାଢ୍ୟ ରାଜା ଜମିଦାର ଅଛନ୍ତି, ସେମାନଙ୍କର ଏପରି କାର୍ଯ୍ୟରେ କିଛି କିଛି ବ୍ୟୟ କରିବା ଉଚିତ୍ । ଉତ୍କଳ ସାହିତ୍ୟର ଜନୈକ ଯୋଗ୍ୟ ଲେଖକ ଯଥାର୍ଥ କହିଅଛନ୍ତି "ପ୍ରତ୍ୟେକ ଜାତିରେ ଏପରି ଏକସମୟ ଘଟିଥାଏ ଯେବେ ଜନସାଧାରଣ ଲେଖକମାନଙ୍କୁ ପରିପୋଷଣ କରି ପାରେ ନାହିଁ । ଏ ରୂପ ସମୟରେ ଲେଖକଗଣ ବିଶେଷ ବିଶେଷ ଧନୀବ୍ୟକ୍ତିଙ୍କ ଆନୁକୂଲ୍ୟରେ ଉତ୍ସାହିତ ଓ ପରିପୋଷିତ ହୋଇ ମାତୃଭାଷାର ଉନ୍ନତି କରି ଥାନ୍ତି । କବି ଜନ୍‌ସନ୍‌ଙ୍କ ପୂର୍ବେ ଇଂଲଣ୍ଡରେ ଏହିରୀତି ଅବ୍ୟାହତ ରୂପେ ଚଳୁଥିଲା । ଆମ୍ଭମାନଙ୍କ ଦେଶର ରାଜା ଜମିଦାରମାନେ ଆନୁକୂଲ୍ୟ ପ୍ରଦର୍ଶନ କଲେ ଉତ୍କଳ ସାହିତ୍ୟୋନ୍ନତିର ବିଶେଷ ସୁବିଧା ହେବ । ତାହାନହେଲେ ଘରୁ ଭାତଖାଇ ବଣିଜ ଶିଖିବ କିଏ ?" ଏହି ଉକ୍ତିରୁ ରାଜା ଜମିଦାରମାନେ ନିଜ ନିଜ ଦାୟିତ୍ୱ ବୁଝିପାରିବେ ।

"ଘରୁ ଭାତଖାଇ ବଣିଜ ଶିଖିବ କିଏ" ବୋଲି ଉପରୋକ୍ତ ଲେଖକ ଲେଖି ଅଛନ୍ତି , ବାସ୍ତବରେ ସେପରି ଲୋକ ବିରଳ । ଉତ୍କଳ ସାହିତ୍ୟର ସମ୍ପାଦକ ଏବଂ କାର୍ଯ୍ୟାଧ୍ୟକ୍ଷ ସେହି ଶ୍ରେଣୀର । ସେମାନେ ମାତୃଭାଷାର – ଜନ୍ମଭୂମିର ମଙ୍ଗଳ କାମନାରେ ନିଃସ୍ୱାର୍ଥଭାବରେ ଉକ୍ତ ଦୁରୁହ କାର୍ଯ୍ୟରେ ହସ୍ତକ୍ଷେପ କରି ଅଛନ୍ତି । ସାଧାରଣର ସାହାଯ୍ୟ ସହାନୁଭୂତିରୁ ବଞ୍ଚିତନହେଲେ ସେମାନେ ଯେ ଅନ୍ତତଃ ବହୁପରିମାଣରେ କୃତକାର୍ଯ୍ୟ ହେବେ ଏଥିରେ ସନ୍ଦେହ ନାହିଁ କିନ୍ତୁ ସେମାନେ ତହିଁରୁ ବଞ୍ଚିତ ହୋଇ କିଛି କରିପାରିବେ ନାହିଁ । ଏପରି ସ୍ଥଳେ ଦେଶାନୁରାଗୀ ପ୍ରତ୍ୟେକ ଉତ୍କଳସନ୍ତାନଙ୍କର ସେମାନଙ୍କୁ ସାଧୁଉଦ୍ଦେଶ୍ୟ ସାଧନରେ ସହାୟତା କରିବା ଉଚିତ୍ । ସେମାନେ ସହାୟକ ହେଲେ ସମ୍ପାଦକ-କାର୍ଯ୍ୟାଧ୍ୟକ୍ଷ ଋଣଗ୍ରସ୍ତ ହୋଇ କେତେଦିନ ଆଉ ବଣିଜ ଶିଖିବେ ? ଭରଶାକରୁଁ ଉତ୍କଳବାସିମାନେ ଶିଘ୍ର ଉତ୍କଳ ସାହିତ୍ୟର ଅପମୃତ୍ୟୁର ଆଶଙ୍କା ଦୂରିକରଣର ଚେଷ୍ଟା କରିବେ ।

*ଭା୧୧ଗ, ସଂ୧୬ଖ୍ୟା, ୨୩।୮।୧୮୯୯*

## ପୁସ୍ତକ ନିର୍ବାଚନ କମେଟୀର ମେମ୍ବର

ମଧ୍ୟପ୍ରଦେଶର ଓଡିଆ ପାଠ୍ୟପୁସ୍ତକ ନିର୍ବାଚନ କମେଟୀର ସଭାପତି ପଦରେ ଛତିଶଗଡ ବିଭାଗର ଶ୍ରୀଯୁକ୍ତ କମିଶନର ସାହେବ, ଅବୈତନିକ ସମ୍ପାଦକ ପଦରେ ଶିକ୍ଷା ବିଭାଗକର ସାର୍କୁଲର ଇନ୍ସପେକ୍ଟର ମହୋଦୟ, ମେମ୍ବର ପଦରେ ରାଜାସାର ସୁଢଳଦେବ କେ,ସି,ଆଇ,ଇ ଏବଂ ଫିଉଡେଟରୀ ସ୍କୁଲ ସମୂହର ଇନ୍ସପେକ୍ଟର, ସମ୍ବଲପୁର ମରିସ୍ ହାଇସ୍କୁଲର ହେଡମାଷ୍ଟର ମହୋଦୟ ନିଯୁକ୍ତ ହୋଇଥିବା ସମ୍ବାଦ ଗବର୍ଣମେଣ୍ଟ ଗେଜେଟରେ ପ୍ରକାଶିତ ହୋଇଅଛି । ଉପରୋକ୍ତ ୫ ଜଣ ମେମ୍ବର ମଧ୍ୟରେ ୨ ଜଣ ମାତ୍ର ଉତ୍କଳବାସୀ । ବର୍ତ୍ତମାନ ନବନିର୍ବାଚିତ ମେମ୍ବରମାନଙ୍କ ଦ୍ୱାରା ସମ୍ବଲପୁର ଜିଲ୍ଲାରେ ଓଡିଆ ସ୍କୁଲମାନଙ୍କରେ ଉପଯୁକ୍ତ ପାଠ୍ୟପୁସ୍ତକ ପ୍ରବର୍ତ୍ତିତ ହେବାର ଦେଖିଲେ ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହେବୁଁ । ଓଡିଶାର ପାଠ୍ୟପୁସ୍ତକ ପ୍ରଣେତାମାନେ ରାୟପୁର ଠିକଣାରେ ଇଷ୍ଟାର୍ଣସର କ୍ୟୁଲସ୍କୁଲ ସମୁହର ଇନ୍ସପେକ୍ଟରଙ୍କ ନିକଟକୁ, ପ୍ରଣୀତ ପୁସ୍ତକମାନ ପ୍ରେରଣ କଲେ ସେ ତାହା କମେଟୀର ମେମ୍ବରମାନଙ୍କ ନିକଟକୁ ପଠାଇ ସମତା ଗ୍ରହଣ କରିବେ । ଆଶାକରୁଁ ଓଡିଶାର ଗ୍ରନ୍ଥକାରମାନେ ସୁଯୋଗ ପରିତ୍ୟାଗ କରିବେ ନାହିଁ ।

*ଭା/୧୧ଗ, ସଂ୨୧ଖ୍ୟା, ୨୭/୯/୧୮୯୯*

## ଜମିଦାର ମାନଙ୍କର ଆଦର୍ଶନ

"ଗଞ୍ଜାମ ଓଡିଆ ହିତବାଦିନୀ" ପତ୍ରିକାର ଅଧିକାରୀ ମହାଶୟ ଉକ୍ତ ପତ୍ରିକାରେ ଲେଖିଅଛନ୍ତି ସେ ସମୟେ ସମୟେ ଓଡିଆମାନଙ୍କର ଶ୍ରେୟସ୍କାମନାରେ କେତେକ ଜମିଦାରଙ୍କ ନିକଟକୁ ଯାଇ ସେମାନଙ୍କ ଦର୍ଶନ ସୁଦ୍ଧା ନପାଇ ଫେରି ଆସି ଅଛନ୍ତି । ବାସ୍ତବରେ ଅନେକ ରାଜା ଜମିଦାରଙ୍କ ଦର୍ଶନ ଲାଭ କରିବା ଏକାନ୍ତ ଅସମ୍ଭବ । ଦୁଃଖରବିଷୟ ଏଦ୍ୱାରା ସେମାନଙ୍କର ନିନ୍ଦାବୃଦ୍ଧି ହେଉଥିବା କଥା ସେମାନେ ବୁଝିପାରନ୍ତି ନାହିଁ , ଅଥଚ ସେପରି ଲୋକମାନେ ଲକ୍ଷ ଲକ୍ଷ ଅଯୁତ ଅଯୁତ ଲୋକଙ୍କର ଭାଗ୍ୟବିଧାତା ! ଗଞ୍ଜାମ ଅଞ୍ଚଳର ଅନ୍ତତଃ ଅଧିକାଂଶ ରାଜା ଜମିଦାର ଅଳ୍ପାଧିକ ପରିମାଣରେ ଶିକ୍ଷାଲାଭ କରିଥିବା ସ୍ଥଳେ ସେଅଞ୍ଚଳରୁ ଅଶିଷ୍ଟତା ବ୍ୟଞ୍ଜକ କୁରୀତିମାନ ଅବଧି ବିଦୂରିତ ନହେବା ବଡ ଦୁଃଖର ବିଷୟ ନୁହେକି ? ଜଣେ ତୈଲଙ୍ଗ, ଓଡିଆମାନଙ୍କ ମଙ୍ଗଳ ସାଧନ ସକାଶେ ଧନପ୍ରାଣ ସମର୍ପଣ କରି ଥିବାର ଦେଖି ସେମାନେକି କିଛି ଶିକ୍ଷାଲାଭ କରିବେ ନାହିଁ ? ଉତ୍କଳ ବନ୍ଧୁ ଶ୍ରୀମାନ ରାଙ୍ଗାଭାଟା ଗୁନ୍ନେୟାଶାସ୍ତ୍ରୀ ଯେ ଉତ୍କଳ ବାସିମାନଙ୍କର ଅତୁଳ ଶ୍ରଦ୍ଧାଭାଜନ ଏକଥା ମୁକ୍ତ କଣ୍ଠରେ ସମସ୍ତଙ୍କୁ ସ୍ୱୀକାର କରିବାକୁ ହେବ ।

*ଭା/୧୧ଗ, ସଂ୨୪ଖ୍ୟା, ୧୧/୧୦/୧୮୯୯*

## ଖଲ୍ଲିକୋଟ ରାଜାଙ୍କ ସାହାଯ୍ୟ।

"ଉତ୍କଳସାହିତ୍ୟ" ର ଅପମୃତ୍ୟୁର ଆଶଙ୍କା ହୋଇଥିବାରୁ ଆମ୍ଭେ ମାନେ କହିଥିଲୁ "ଏ ଉତ୍କଳ ଦେଶରେ ଅନେକ ଶିକ୍ଷିତ ଅଥଚ ଧନାଢ୍ୟ ରାଜା ଜମିଦାର ଅଛନ୍ତି, ସେମାନଙ୍କର ଏପରି କାର୍ଯ୍ୟରେ କିଛି କିଛି ବ୍ୟୟ କରିବା ଉଚିତ୍ ।" ବର୍ତ୍ତମାନ ଆନନ୍ଦର ସହିତ ଅବଗତ ହେଲୁଁ ଯେ ଖଲ୍ଲିକୋଟ ଏବଂ ଅଷ୍ଟଦୁର୍ଗାଧୀଶ୍ୱର ଶ୍ରୀଯୁକ୍ତ ରାଜା ହରିହର ମର୍ଦ୍ଦରାଜ ଦେବ ବାହାଦୂର 'ଉତ୍କଳ ସାହିତ୍ୟର' ସାହାଯ୍ୟ ସକାଶେ ସମ୍ପାଦକ ମହାଶୟଙ୍କ ନିକଟକୁ ନଗଦ ୨୫ ଟଙ୍କା ପଠାଇ ଦେଇଅଛନ୍ତି । ରାଜାବାହାଦୁର ସାହିତ୍ୟୋନ୍ନତି ସକାଶେ ଉପଯୁକ୍ତ ସମୟରେ ଉକ୍ତ ଟଙ୍କା ପ୍ରଦାନକରି ଉତ୍କଳବାସିମାନଙ୍କର ଅଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ଆମ୍ଭେମାନେ ରାଜା ବାହାଦୂରଙ୍କ କାର୍ଯ୍ୟରେ ପ୍ରୀତହୋଇ ଈଶ୍ୱରଙ୍କ ନିକଟରେ ତାଙ୍କର ମଙ୍ଗଳକାମନା କରୁଅଛୁଁ । ଦେଶର ଅନ୍ୟାନ୍ୟ

ରାଜା, ଜମିଦାରମାନେ ସାହିତ୍ୟର ଶ୍ରୀବୃଦ୍ଧି ସକାଶେ ଏହିପରି କିଛି କିଛି ପ୍ରଦାନକଲେ "ଉତ୍କଳସାହିତ୍ୟ" ଅପମୃତ୍ୟୁକୁ ଅତିକ୍ରମ କରି କ୍ରମୋନ୍ନତି ଲାଭ କରିପାରିବ ।

*ଭା/୧୧ଗ, ସଂ୨୬ଖ୍ୟା, ୧/୧୧/୧୮୯୯*

## ନୂତନ ପୁସ୍ତକ

ମୟୂରଭଞ୍ଜ ହାଇ ଇଂ ସ୍କୁଲର ଦ୍ୱିତୀୟ ପଣ୍ଡିତ ଶ୍ରୀଯୁକ୍ତ ବୈଦ୍ୟନାଥ ଦାଶଙ୍କ କର୍ତ୍ତୃକ ସଙ୍କଳିତ ଏବଂ ପ୍ରକାଶିତ 'ବିପରୀତାର୍ଥବୋଧ' ଏକଖଣ୍ଡ ପାଇଥିବାର କୃତଜ୍ଞତାସହିତ ସ୍ୱୀକାର କରୁଅଛୁଁ । ଏହି ପୁସ୍ତକରେ ଅକାରାଦି ବର୍ଣ୍ଣମାଳାନୁସାରେ-ଅଭିଧାନ ପରି ପ୍ରଚଳିତ ଶବ୍ଦ ମାନଙ୍କର ବିପରୀତାର୍ଥ ଲିଖିତଅଛି । "ପ୍ରତିବର୍ଷ ବାର୍ଷିକ ପରୀକ୍ଷା ସମୟରେ କେତେକ ଶବ୍ଦର ବିପରୀତାର୍ଥ ଲେଖିବା ସକାଶେ ପ୍ରଶ୍ନକରାଯାଉଥିବା ଏବଂ ପରୀକ୍ଷାର୍ଥୀମାନେ ସେ ସମସ୍ତ ପ୍ରଶ୍ନର ଉତ୍ତର ଦାନରେ ପରାଙ୍ମୁଖ ହେଉଥିବାରୁ" ଉକ୍ତ ଦୋଷଦୂରୀକରଣାର୍ଥ ଶ୍ରୀମାନ ଦାଶ ମହାଶୟ "ଶିକ୍ଷାବିଭାଗର କେତେକ ଉଚ୍ଚ କର୍ମ୍ମଚାରୀଙ୍କ ଦ୍ୱାରା ଆଦିଷ୍ଟ ହୋଇ" ଏହି ପୁସ୍ତକଲେଖି ପ୍ରକାଶକରି ଅଛନ୍ତି । ସଙ୍କଳନ କାର୍ଯ୍ୟ ସନ୍ତୋଷଜନକ ହୋଇଥିବାରୁ ଦାଶମହାଶୟ ଧନ୍ୟବାଦର ପାତ୍ର । ଶିକ୍ଷାବିଭାଗର ଉଚ୍ଚ କର୍ମ୍ମଚାରୀମାନେ ଏପରି ପୁସ୍ତକ ପ୍ରବର୍ତ୍ତନରେ ଶୁଭଫଳର ଆଶା କରିଥିବା ସ୍ଥଳେ ଏପୁସ୍ତକ ଶିକ୍ଷା ବିଭାଗରେ ସମାଦୃତ ହେବାର ସମ୍ଭାବନା । ଆମ୍ଭମାନଙ୍କ ବିବେଚନାରେ ବିପରୀତାର୍ଥ ଶିକ୍ଷାଦେବା ସକାଶେ ପୁସ୍ତକ ପୁସ୍ତିକା ପ୍ରବର୍ତ୍ତନକରି ବାଳକମାନେ ନିଜବୁଦ୍ଧିରେ ଶବ୍ଦମାନଙ୍କର ବିପରୀତାର୍ଥ ସ୍ଥିର କରି ପାରିବାର ଉପାୟ କରିବା ସର୍ବତୋଭାବେ ଶ୍ରେୟସ୍କର ଦାଶ ମହାଶୟ ଜଣେ ନର୍ମାଲ ସ୍କୁଲର ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ର ଏବଂ ୨/୧ ବର୍ଷହେଲା ସ୍କୁଲ ତ୍ୟାଗକରି ଅଛନ୍ତି ଶ୍ରୀଯୁକ୍ତ ମଧୁସୂଦନ ରାଓ ମହୋଦୟଙ୍କ ଉତ୍ସାହ ଏବଂ ଉପଦେଶରେ ସେ ଯୋଗ୍ୟତା ଉପାର୍ଜ୍ଜନ କରିଥିବାରୁ ଏବଂ ରିକ୍ତ ହସ୍ତରେ ଗୁରୁ ଦର୍ଶନ କରିବା ନିଷିଦ୍ଧଥିବାରୁ ସେ ଏହି "ବିପରୀତାର୍ଥ ବୋଧ" ଗୁରୁଦର୍ଶନୀରୂପେ ରାଓ ମହାଶୟଙ୍କୁ ଅର୍ପଣକରି ଅଛନ୍ତି । ନର୍ମାଲ ସ୍କୁଲର ଅନେକଛାତ୍ର ଦାଶମହାଶୟଙ୍କ ପରି ରାଓ ମହାଶୟଙ୍କ ନିକଟରେ ଋଣୀ କିନ୍ତୁ ସମସ୍ତେ ରିକ୍ତପାଣିରେ ଗୁରୁଦର୍ଶନ କରିଥାନ୍ତି , ଦାଶମହାଶୟ ଶାସ୍ତ୍ରମର୍ଯ୍ୟାଦା ରକ୍ଷା ସଂଗେ ଗୁରୁଦେବଙ୍କ ନିକଟରେ କୃତଜ୍ଞତା ପ୍ରକାଶକରି ଧନ୍ୟବାଦର ପାତ୍ର ହୋଇଅଛନ୍ତି । କିନ୍ତୁ ନର୍ମାଲ ସ୍କୁଲ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନେ ଗୁରୁଦର୍ଶନୀରୂପେ ଏପରି ପୁସ୍ତକ ବ୍ୟବହାର ନକରି ଯୋଗ୍ୟତା ପରିଚାୟକ ପୁସ୍ତକ ରଚନା କରି, ବ୍ୟବହାର କଲେ ଅଧିକତର ଆନନ୍ଦିତ ହେବୁଁ ।

*ଭା/୧୧ଗ, ସଂ୩୩ଖ୍ୟା, ୨୦/୧୨/୧୮୯୯*

# ୧୯୦୦

## କିଶୋରଚନ୍ଦ୍ର ଉତ୍କଳସାହିତ୍ୟ ସମାଲୋଚନା ସମାଜ ଏବଂ ଓଡ଼ିଶ୍ୟାର ମାନନୀୟ କମିଶ୍ନର ବାହାଦୂର।

ଅଦ୍ୟ କିଶୋର ଚନ୍ଦ୍ର ଉତ୍କଳସାହିତ୍ୟ ସମାଲୋଚନା ସଭାର ଉନତ୍ରିଂଶ ସଂଖ୍ୟକ ଅଧିବେଶନରେ ମାନ୍ୟବର ଓଡ଼ିଶ୍ୟାର କମିଶନର ସାହେବ ବାହାଦୂର, ଜିଲ୍ଲା ଅନୁଗୁଳର ଶ୍ରୀଯୁକ୍ତ ଡିପୋଟୀ କମିଶନର ସାହେବ; ଡିଷ୍ଟ୍ରିକ୍ଟ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ସାହେବ, ଡିପୋଟୀ କଲେକ୍ଟର ରାଜବିରାଦର ସାମନ୍ତଗଣ ଓ ଭଦ୍ରଲୋକ ପ୍ରଭୃତି ୫୭ ଜଣ ସଭ୍ୟ ସଭାସ୍ଥାନରେ ଉପସ୍ଥିତ ଥିଲେ । ମାନ୍ୟବର କମିଶନର ସାହେବ ବାହାଦୂର ଅନୁଗ୍ରହ ପୂର୍ବକ ସାହିତ୍ୟ ସଭାରେ ବିରାଜନ ମାନ ହୋଇ ଓଡିୟା ଭାଷା ପ୍ରତି ପ୍ରଗାଢ଼ ଅନୁରାଗ ଦେଖାଇଥିବା ବିଷୟେ ପ୍ରଶଂସିତ ରାଜା ମହୋଦୟ କୃତଜ୍ଞତା ପ୍ରକାଶକରି ସଭାପତି ହେବାକୁ ଅନୁରୋଧ କରିବାରେ ସେ ତହିଁରେ ସମ୍ମତ ହୋଇ ସଭାପତିର ଆସନ ଗ୍ରହଣ କଲେ । ତାହାଙ୍କ ଆଦେଶମତେ ସମ୍ପାଦକ ଗତ ଅଧିବେଶନ ବିବରଣ ପାଠକଲା ଉତ୍ତାରୁ ପରମ ପୂଜନୀୟା ରାଜ ରାଜେଶ୍ୱରୀ ଭିକ୍ଟୋରିୟାଙ୍କ ଜୟକାମନା ଏବଂ ମାନ୍ୟବର କମିଶନର ସାହେବ ବାହାଦୂରଙ୍କ ଶୁଭାଗମନ ସମ୍ବନ୍ଧେ ରଚିତ କବିତା ମାନ ପଠିତହୋଇ ଉପହାର ସ୍ୱରୂପ ସାହେବ ମହୋଦୟଙ୍କୁ ପ୍ରଦତ୍ତ ହେଲାପରେ ଅନ୍ୟାନ୍ୟ ରଚନାପାଠ ଏବଂ ବାକ୍ୟାଳାପଉତ୍ତାରୁ ସଭାପତି ମହୋଦୟ ଇଂରାଜୀ ଭାଷାରେ ଯେଉଁ ବକ୍ତୃତା ପ୍ରଦାନ କରିଥିଲେ ତହିଁର ସାରମର୍ମ୍ମ ନିମ୍ନରେ ପ୍ରକଟିତ ହେଲା ।

"ଆମ୍ଭେ ଇଂରେଜୀ ଭାଷାରେ ଯାହାକିଛି ବ୍ୟକ୍ତ କରିବୁ ତହିଁର ଅଭିପ୍ରାୟ ତୁମ୍ଭମାନଙ୍କର ମେନେଜର ବାବୁ ଓଡ଼ିୟାରେ ବୁଝାଇଦେବେ ଆମ୍ଭେ ପ୍ରଶଂସିତ ରାଜା ସାହେବଙ୍କ ଅନୁରୋଧକ୍ରମେ ଏହି ସାହିତ୍ୟ ସଭାର ସଭାପତି ଆସନ ଗ୍ରହଣ କରି ଆଜି ରାତ୍ରରେ ଅତ୍ୟନ୍ତ ଆନନ୍ଦ ଭୋଗ କରୁଅଛୁଁ । ଆମ୍ଭେ ନାନାସ୍ଥାନ ଭ୍ରମଣ କରି କେବଳ ନାଚ ତମାସା ଦେଖିଅଛୁଁ କିନ୍ତୁ ଏ ସ୍ଥାନରେ ପ୍ରଶଂସିତ ରାଜା ସାହେବଙ୍କ ଯତ୍ନ ଏବଂ ଉତ୍ସାହରୁ ଓଡ଼ିୟା ସାହିତ୍ୟର ଚର୍ଚ୍ଚା ନିମନ୍ତେ ସ୍ଥାପିତ ହୋଇଥିବା ସଭାରେ ମାନସିକ ଉନ୍ନତିଲବ୍ଧ ଆମୋଦ ଉପଭୋଗକରି ଅତ୍ୟନ୍ତ ପ୍ରୀତହେଲୁଁ । ଆପଣମାନେ ପରମ ପୂଜନୀୟା, ରାଜା ରାଜେଶ୍ୱରୀ ଭିକ୍ଟୋରିୟାଙ୍କ ଜୟ କାମନାରେ ଏବଂ ଆମ୍ଭ ନାମରେ ଭକ୍ତିର ଉପହାର ସ୍ୱରୂପ ଦେଇଥିବା କବିତାମାନ ପ୍ରକାଶ କରି ଅତ୍ୟନ୍ତ ସନ୍ତୋଷ ଅଛୁଁ । ସେସବୁ କବିତାର ଭାବ ଇଂରେଜୀରେ ଅନୁବାଦ କରେଇନେବାକୁ ଇଚ୍ଛା କରିଅଛୁଁ । ଇଂରେଜଙ୍କର ଆଫେରିକା ଯୁଦ୍ଧରେ ସମୁଦାୟ ଇଂଲଣ୍ଡ ଯେପରି ଜୟକାମନା କରୁଛି ତାଳଚେର ରାଜା ଓ ପ୍ରଜା ସେପରି ଜୟକାମନା କରୁଥିବା ବଡ଼ ଆନନ୍ଦର ବିଷୟ ଅଟେ । ମାନ୍ଦ୍ରାଜ, ମହିଶୂର ପ୍ରଭୃତି ବ୍ରିଟିଶଙ୍କ ସହିତ ଯେପରି ରାଜଭକ୍ତି ଦେଖାଇ ଅଛନ୍ତି ତାଳଚେର ତହିଁରୁ ଊଣା ନୁହେଁ । ଆମ୍ଭେ ଏକ ସପ୍ତାହକାଳ ତାଳଚେର ରାଜ୍ୟମଧରେ ଅତିବାହିତ କରି ଦେଖିଲୁଁ ପ୍ରଶଂସିତ ରାଜା ସାହେବ ମୃଗୟା, କ୍ରିକେଟ, ଫୁଟବଲ ପ୍ରଭୃତି ବିବିଧ ପ୍ରକାର ଖେଳ ଓ ସାହିତ୍ୟଚର୍ଚ୍ଚା ଆଦି କାର୍ଯ୍ୟରେ ଯେପରି ପରିଶ୍ରମ ସହ ମାନସନିଧାନ କରୁଅଛନ୍ତି , ରାଜ୍ୟ ଶାସନ କାର୍ଯ୍ୟରେ ସେପରି ମଧ୍ୟ ମନଯୋଗୀ ହେବେ। ରାଜାସାହେବ ଭଲକାର୍ଯ୍ୟ କରୁଅଛନ୍ତି ସେ ମଧ୍ୟ ଶାସନ କାର୍ଯ୍ୟରେ ଅତ୍ୟନ୍ତ ପ୍ରଶଂସ୍ୟ ହେବେ । ଆଉ ଏକବର୍ଷବାଦ ସେ ଆପଣମାନଙ୍କର ରାଜ୍ୟର ରାଜଗାଦି ପାଇବେ । ଆମ୍ଭେ ଆଶାକରୁଁ ; ଆପଣମାନେ ଓ ରାଜବିରାଦର ମାନେ ରାଜାଙ୍କ ଶାସନକାର୍ଯ୍ୟକୁ ସାହାଯ୍ୟ ଦେବା ଏବଂ ମନ୍ଦଲୋକମାନେ ଯେପରି ରାଜାଙ୍କ ନିକଟରେ ପ୍ରବେଶ କରି ନପାରନ୍ତି ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଦୁଃଖର ବିଷୟ ଏହି ଯେ ରାଜା ରାଜଗାଦି ପାଇବା ସମୟକୁ ଆମ୍ଭେ ବଦଳି ହୋଇଯାଇଥିବୁ କିନ୍ତୁ ବଦଳି ହେଲେସୁଦ୍ଧା ସମଗ୍ର ଓଡ଼ିଶ୍ୟାକୁ ଯେପରି ଭୁଲିବୁଁ ନାହିଁ । ବିଶେଷତଃ ତାଳଚେରକୁ ସେପରି ସ୍ମରଣ ରଖିବୁଁ ।"

ମାନ୍ୟବର ସାହେବ ବାହାଦୂରଙ୍କ ଉପର ଲେଖିତ ମଧୁମୟ ଉପଦେଶ ଗର୍ଭକ ବକ୍ତୃତା ଶେଷ ହେଲା । ଉତ୍ତାରୁ ଆଜିଦିନ ସଭାନିମନ୍ତେ ସେ ମହୋଦୟଙ୍କୁ ଆନ୍ତରିକ ଭକ୍ତିର ସହିତ ଧନ୍ୟବାଦ ଦେଇ ସଭାଭଙ୍ଗ ହେଲା । ଇତି ।

ଶ୍ରୀ ଭାଗୀରଥୀ ମିଶ୍ର

ସଃ ସମ୍ପାଦକ, ତାଳଚେର ।

*ଭା୧୧ଗ, ସଂ୪୪ଖ୍ୟା, ୭।୩।୧୯୦୦*

## ପୁରସ୍କାର ଘୋଷଣା ।

ଆମ୍ଭମାନଙ୍କର କତିପୟବନ୍ଧୁ ନିମ୍ନଲିଖିତ ବିଷୟ ମାନଙ୍କରେ ସର୍ବୋତ୍କୃଷ୍ଟ ପ୍ରବନ୍ଧ ଲେଖକମାନଙ୍କୁ ନିମ୍ନୋକ୍ତ ପୁରସ୍କାର ପ୍ରଦାନର ଅଙ୍ଗୀକାର କରିଅଛନ୍ତି । ପ୍ରବନ୍ଧଗୁଡିକର କଳେବର ଅତିବୃହତ୍ ବା ଅତିକ୍ଷୁଦ୍ର ହେବ ନାହିଁ । ଏବଂ ସେସବୁ ମାର୍ଚ୍ଚମାସ ୩୧ ତାରିଖ ବା ତତ୍ପୂର୍ବେ "ସମ୍ବଲପୁର ହିତୈଷିଣୀ" ସମ୍ପାଦକଙ୍କର ହସ୍ତଗତ ହେବା ବିଷୟରେ ଲେଖକମାନେ ଚେଷ୍ଟା କରିବେ । ପୁରସ୍କୃତ ପ୍ରବନ୍ଧ, ପୁରସ୍କାର ଦାତା ଯେକୌଣସି ପତ୍ରିକାରେ ଛପାଇ ପାରିବେ ଏବଂ ଇଚ୍ଛାକଲେ ପୁସ୍ତକାକାରରେ ପ୍ରକାଶକରି ବିକ୍ରୟ ବା ବିତରଣ କରିପାରିବେ । ତେବେ ପ୍ରବନ୍ଧ ସଙ୍ଗେ ସଙ୍ଗେ ଲେଖକଙ୍କର ନାମ ରହିବ ।

୧- "ପ୍ରଦର୍ଶନୀର ଉପକାରିତା" ବିଷୟକ ସର୍ବୋତ୍କୃଷ୍ଟ ପ୍ରବନ୍ଧ ଲେଖକଙ୍କୁ ଦୁଇଟଙ୍କା ମୂଲ୍ୟର କୃଷିବିଷୟକ ଉତ୍କୃଷ୍ଟ ପୁସ୍ତକ ବା ନଗଦ ଟଙ୍କା ପୁରସ୍କାର ଦିଆଯିବ ।

୨- "ବିଦ୍ୟାଳୟ ଶାସନ" ସମ୍ବନ୍ଧେ ସର୍ବୋତ୍କୃଷ୍ଟ ପ୍ରବନ୍ଧ ଲେଖକଙ୍କୁ ନଗଦ ପାଞ୍ଚଟଙ୍କା ବା ଉକ୍ତ ମୂଲ୍ୟର ପୁସ୍ତକ ଦିଆଯିବ ।

୩- ଉତ୍କଳ ସାହିତ୍ୟର ଉନ୍ନତିର ଉପାୟ ସମ୍ବନ୍ଧରେ ସର୍ବୋତ୍କୃଷ୍ଟ ପ୍ରବନ୍ଧ ଲେଖକଙ୍କୁ ସାନୁବାଦ କାଳିଦାସ – ଗ୍ରନ୍ଥାବଳୀ ପୁରସ୍କାର ଦିଆଯିବ ।

୪- "ବର୍ତ୍ତମାନ ସମୟରେ ସମାଜ ସଂସ୍କାର କରିବା ଉଚିତ୍ କି ନା" ଏ ସମ୍ବନ୍ଧରେ ସର୍ବୋତ୍କୃଷ୍ଟ ପ୍ରବନ୍ଧ ଲେଖକଙ୍କୁ 'ସ୍ୱର୍ଗୀୟ ରାମମୋହନ ରାୟଙ୍କ ଜୀବନୀ' ପୁରସ୍କାର ଦିଆଯିବ ।

ପୁରସ୍କାର ଦାନର ଅଙ୍ଗୀକାର କରିଥିବା ବ୍ୟକ୍ତିମାନେ ଅବଶ୍ୟ ଧନ୍ୟବାଦର ପାତ୍ର । "ମୋର ପ୍ରବନ୍ଧ କାଳେ ଉତ୍କୃଷ୍ଟ ନହେବ" ଏପରି ଆଶଙ୍କା କରି ଲେଖକମାନଙ୍କର ପଶ୍ଚାତପଦ ହେବା ଉଚିତ ନୁହେଁ । ଲେଖକମାନେ ଅନୁରୋଧ କଲେ ସେମାନଙ୍କ ନାମ ଗୋପନ କରିବାକୁ ପ୍ରସ୍ତୁତ ଅଛୁଁ । ଉପରୋକ୍ତ ବିଷୟକ ସୁଲିଖିତ ପ୍ରବନ୍ଧମାନ ପାଠ କଲେ ପାଠକମାନଙ୍କର ଅଭିଜ୍ଞତା ବୃଦ୍ଧିର ସମ୍ଭାବନା । କେବଳ ପୁରସ୍କାର ପ୍ରଲୋଭନରେ ନହେଉ ସାଧାରଣ ପାଠକମାନଙ୍କ ଅଭିଜ୍ଞତା ବୃଦ୍ଧିକାମନାରେ ନିର୍ଦ୍ଦିଷ୍ଟ ବିଷୟରେ ପ୍ରବନ୍ଧ ଲେଖିବା ସକାଶେ ଉତ୍କଳର ଲେଖକ ମହୋଦୟ ମାନଙ୍କୁ ଅନୁରୋଧ କରୁଅଛୁଁ ।

*ଭା୧୧ଗ, ସଂ୪୫ଖ୍ୟା, ୧୪।୩।୧୯୦୦*

## ସମାଲୋଚନା ।

କଟକର ଡେପୁଟୀ କଲେକ୍ଟର ଶ୍ରୀଯୁକ୍ତ ବାବୁ ମାଧବ ଲାଲଙ୍କ ଦ୍ୱାରା ଉତ୍କଳଭାଷାରେ ଲିଖିତ "ବିବିଧ ସଂଗ୍ରହ"

ନାମକ ଖଣ୍ଡିଏ ପୁସ୍ତକ ଗତ ୯୯ ସାଲରେ ପ୍ରକାଶିତ ହୋଇଅଛି । ବାମଣ୍ଡାର ଶ୍ରୀଯୁକ୍ତ ଯୁବରାଜ ସଚ୍ଚିଦାନନ୍ଦଦେବ ମହୋଦୟଙ୍କ ପୁସ୍ତକାଳୟରେ ଉକ୍ତ ପୁସ୍ତକର ପ୍ରଥମ ସାକ୍ଷାତ ପାଇ, ଆବଶ୍ୟକ ବୋଧ ହେବାରୁ ତତ୍ ସମ୍ବନ୍ଧରେ ଆମ୍ଭେମାନେ ସ୍ୱୀୟମତ ବ୍ୟକ୍ତ କରୁ ଅଛୁଁ । ଗ୍ରନ୍ଥକାର ଭୂମିକାରେ ଲେଖିଅଛନ୍ତି , "ଏହି ପୁସ୍ତକର ନାମ ଏବଂ ସୂଚୀପତ୍ରପ୍ରତି ଥରେମାତ୍ର ଦୃଷ୍ଟି ନିକ୍ଷେପ କଲେ ଏଥିରେ କି କି ବିଷୟ ସଂଯୋଜିତ ହୋଇଅଛି ଓ ତାହା ସାଧାରଣ ଲୋକଙ୍କର ତେତେ ଦୂର ଆବଶ୍ୟକ ଅନାୟାସରେ ବୁଝାଯାଇ ପାରିବ । ସାଧାରଣ ଲୋକଙ୍କର ଅର୍ଥାଭାବରୁ ପୁସ୍ତକାଦି ସଂଗ୍ରହ ଏବଂ ଉତ୍ତମରୂପେ ବିଦ୍ୟାଲାଭ କରିବା ଦ୍ୱାରା ନିଜର ଜ୍ଞାନ ପିପାସାକୁ ନିବୃତ୍ତ କରିବା ପକ୍ଷରେ ସେମାନେ ଅସମର୍ଥ ଏବଂ ବିଦ୍ୟା ବିଶେଷତଃ ବିଦ୍ୟାନୁରାଗୀ ମୋଫସଲ ବାସୀମାନଙ୍କ କପାଳରେ ଏହା ଘଟିଥାଏ, ଅତଏବ ସେହି ଅଭାବ କିୟତ୍ ପରିମାଣରେ ଦୂର କରିବା ଆଶାରେ ବହୁଦିନରୁ ଅନେକ ଅନେକ ଗ୍ରନ୍ଥ ଏବଂ ବିଜ୍ଞମାନଙ୍କ ସଂଗେ ପରାମର୍ଶକରି ଏହି ପୁସ୍ତକଖଣ୍ଡି ପ୍ରଣୟନ କଲି ।"

ପୁସ୍ତକର ନାମ ଏବଂ ସୂଚୀପତ୍ରପାଠକଲେ ପୁସ୍ତକଖଣ୍ଡି ବାସ୍ତବରେ ଅତ୍ୟୁପାଦେୟ ବିବେଚିତ ହେବ ଏଥିରେ କିଛି ମାତ୍ର ସନ୍ଦେହ ନାହିଁ , କିନ୍ତୁ ପୁସ୍ତକଖଣ୍ଡି କାର୍ଯ୍ୟତଃ ସେପରି ଉପଯୋଗୀ ହୋଇଥିବାର ବୋଧ ହେଉ ନାହିଁ । ଗ୍ରନ୍ଥକାର ଏ ପୁସ୍ତକର କଳେବର ବୃଦ୍ଧି ନହେବା ପ୍ରତି ବିଶେଷ ସାବଧାନ ଥାଇ ନାନାବିଧ ବିଷୟ ସନ୍ନିବେଶର ଚେଷ୍ଟାକରିଥିବାରୁ ପ୍ରତ୍ୟେକ ବିଷୟ ହୋମିଓପ୍ୟାଥିକ ମାତ୍ରାପରି ଅତିଅଳ୍ପ ପରିମାଣରେ ପ୍ରଦତ୍ତ ହୋଇଅଛି -ଯାହା ପାଠକଲେ ଚଳନୋପଯୋଗୀ ଜ୍ଞାନଲାଭର ସମ୍ଭାବନା ଅଳ୍ପ । ଓଡ଼ିଶ୍ୟାର ଭୌଗଳିକ ବିବରଣ, ଚାଣକ୍ୟ, ପଞ୍ଜିକାରେ ଲିଖିତଥିବା ବିଷୟ ପ୍ରଭୃତି କେତେକ ବିଷୟ ପରିତ୍ୟାଗକରି ତତ୍‌ପରିବର୍ତ୍ତରେ ଅନ୍ୟାନ୍ୟ ଜ୍ଞାତବ୍ୟ ବିଷୟର ପରିମାଣ ବୃଦ୍ଧି କରିଥିଲେ ଭଲ ହୋଇଥାନ୍ତା ।

ଓଡ଼ିଶ୍ୟାର ପର୍ବତ ଓ ଘାଟିମାନଙ୍କର ନାମମାତ୍ର ଲେଖାଅଛି, ଅବସ୍ଥିତି ସ୍ଥାନରେ ଉଲ୍ଲେଖନାହିଁ । ଉତ୍କଳର ଶଡ଼କ, ଶିକ୍ଷା, ଚିକିତ୍ସା, ପ୍ରଧାନତମ ଦେବାଳୟ ମାନଙ୍କର ସେବା ଖଞ୍ଜାଦି ବିବରଣ, ଗଡଜାତରେ ବାସ କରୁଥିବା ବିଭିନ୍ନ ଜାତୀୟ ଲୋକର ପରିମାଣ ଯାହାକି ଅନ୍ୟ ପୁସ୍ତକ ପତ୍ରିକାରୁ ସାଧାରଣ ପାଠକ ମାନଙ୍କର ଜାଣିବାର ସୁବିଧା ନାହିଁ ଏ ପୁସ୍ତକରେ ତାହାମଧ୍ୟ ଉଲ୍ଲେଖ ନାହିଁ ।

ଓଡ଼ିଶ୍ୟାର ମୃତ ସୁସନ୍ତାନ ମାନଙ୍କର ନାହିଁ ଏବଂ ଜୀବିତ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ନାମ ତାଲିକା ଅସମ୍ପୂର୍ଣ୍ଣ, ଓଡ଼ିଶ୍ୟାର ବର୍ତ୍ତମାନ କବିମାନଙ୍କର ନାମ, ମୃତ ଓ ଜୀବିତ ସମ୍ବାଦପତ୍ରାଦିର ବିବରଣ ପ୍ରଦତ୍ତ ହୋଇନାହିଁ, କଲମ୍ବୋ ପ୍ରଭୃତି ନଗରର ଲୋକସଂଖ୍ୟା ସଙ୍ଗେ ସଙ୍ଗେ ବା ତତ୍ ପରିବର୍ତ୍ତେ ଓଡ଼ିଶ୍ୟାର ପ୍ରଧାନ ପ୍ରଧାନ ନଗର ମାନଙ୍କର ଲୋକ ସଂଖ୍ୟା ଦେଇଥିଲେ ଭଲ ହୋଇଥାନ୍ତା । ସ୍ୱାସ୍ଥ୍ୟ ସାଧାନା ଏବଂ ଗୃହଚର୍ଚ୍ଚା ପ୍ରକରଣରେ ଅନ୍ୟାନ୍ୟ ପୁସ୍ତକରେ ନଥିବା ବିଷୟମାନ ଯଥା :- ସଂକ୍ରାମକ ରୋଗରୁ ରକ୍ଷାପାଇବା ବିଷୟକ ବିସ୍ତୃତ ଉପଦେଶ ସନ୍ନିବେଶିତ ହୋଇଥିଲେ ଗୃହସ୍ଥମାନଙ୍କର ଅପେକ୍ଷାକୃତ ଅଧିକ ଉପକାର ସାଧିତ ହୋଇଥାନ୍ତା ।

ଦ୍ରବ୍ୟଗୁଣ ପ୍ରକରଣରେ ନିତ୍ୟ ପ୍ରୟୋଜନୀୟ କେତେକ ଦ୍ରବ୍ୟର ନାମସୁଦ୍ଧା ନାହିଁ ଯଥା – ତେଲ, ଘୃତ, ତାମ୍ବୁଳ, ତମାଖୁ ପ୍ରଭୃତି । ପ୍ଲୀହାରୋଗରେ ଅଭୟା ଲବଣ ଖାଇବ ବୋଲି ଲେଖାଅଛି । ଚିକିତ୍ସା ଜ୍ଞାନ ବିହୀନ ପାଠକମାନେ "ଅଭୟା ଲବଣ" କହିଲେ କଣ ବୁଝିବେ ?

"ଗଞ୍ଜାମ ଅନ୍ତର୍ଗତ ଗଡ଼ଜାତ ଓ ରାଜାଙ୍କ ନାମ" ପ୍ରକରଣରେ କେବଳ ୫ ଗୋଟି ରାଜ୍ୟର ଉଲ୍ଲେଖ ଅଛି । ଏହାଦ୍ୱାରା ଅନଭିଜ୍ଞ ପାଠକ ମାନଙ୍କର ଧାରଣା ଜନ୍ମିପାରେ ଯେ ଗଞ୍ଜାମରେ ଏହାଛଡା ଆଉ ଦେଶୀୟ ରାଜ୍ୟ ନାହିଁ କିନ୍ତୁ ବାସ୍ତବରେ ତାହା ନୁହେଁ । ଖଲ୍ଲିକୋଟ, ଆଠଗଡ଼, ବଡଖେମୁଣ୍ଡି, ସୁରଙ୍ଗୀ ପ୍ରଭୃତି ଆଉ କେତେଗୁଡ଼ିଏ ଦେଶୀୟ ରାଜ୍ୟ ଗଞ୍ଜାମ ଜିଲ୍ଲାରେ ଅଛି । ସମ୍ବଲପୁର ଏବଂ ଗଞ୍ଜାମ ଜିଲ୍ଲା ସମ୍ବନ୍ଧେ ଅନ୍ୟାନ୍ୟ ଜିଲ୍ଲାପରି ବିବିଧ ଜ୍ଞାତବ୍ୟ ବିଷୟ ଉଲ୍ଲେଖ ହେବା ଆବଶ୍ୟକ ଥିଲେ ହେଁ ତାହା ହୋଇନାହିଁ । ଗ୍ରନ୍ଥକାର ଇଚ୍ଛା କରିଥିଲେ "ମଧ୍ୟପ୍ରଦେଶସ୍ଥ ଗଡ଼ଜାତ" ବିବରଣ ସମ୍ବଲପୁର ବିବରଣ ଆମ୍ଭମାନଙ୍କଠାରୁ ବହୁପରିମାଣରେ ଅବଗତ ହୋଇ ପାରିଥାନ୍ତେ । ବୋଲିବା ବାହୁଲ୍ୟ, ଗ୍ରନ୍ଥକାର ଭୂମିକାରେ ସ୍ୱୀକାର କରିନଥିଲେ ମଧ୍ୟ ମଧ୍ୟପ୍ରଦେଶୀୟ

ଗଡ଼ଜାତ ବିବରଣ ଯାହା ପ୍ରକାଶ କରି ଅଛନ୍ତି ତାହା ଆମ୍ଭମାନଙ୍କଠାରୁ ଅବଗତ ହୋଇ ଅଛନ୍ତି ।

ଗଣିତ ପ୍ରକରଣରେ ନାନା ପ୍ରକାର ଓଜନ ଓ ମାପର ବିବରଣ ଅଛି ଯାହାକି ଛାତ୍ରମାନେ "ପଣକିଆ ମାଳିକା" ପାଠକରି ଅବଗତ ହୋଇଥାନ୍ତି , ତାହା ନଦେଇ ତତ୍ ପରିବର୍ତ୍ତେ ଅନ୍ୟ ବିଷୟ ସନ୍ନିବେଶ କରାଯାଇ ପାରିଥାନ୍ତା । ଗୋଚିକିତ୍ସା, ପାରିବାରିକ ଚିକିତ୍ସା, ଠୁଣୁଠୁଣୁକିଆ, ଉତ୍କଳଚିକିତ୍ସକ, ଢଗମାଳିକା, ପ୍ରହେଳିକା, ଆତସବାଜି, ନାନାବିଧ ମନସା ପ୍ରଭୃତି ଏକ ଏକ ବିଷୟର ଭିନ୍ନ ଭିନ୍ନ ପୁସ୍ତକ ମୁଦ୍ରିତ ହୋଇ ଯଥା ସମ୍ଭବ ସୁଲଭ ମୂଲ୍ୟରେ ମିଳିଥିବା ସ୍ଥଳେ ସେସବୁ ବିଷୟର କିଛି କିଛି ସନ୍ନିବେଶ କରିବାଦ୍ୱାରା ବିଶେଷ ଉପକାରର ଆଶାନାହିଁ । ଏପରି ଅନେକ ଜ୍ଞାତବ୍ୟ ବିଷୟ ଅଛି ଯାହାକି ଉତ୍କଳର କୌଣସି ପୁସ୍ତକ ସାହାଯ୍ୟରେ ଅବଗତ ହେବାର ସମ୍ଭାବନା ନାହିଁ । ଉତ୍କଳ ବନ୍ଧୁ ଗ୍ରନ୍ଥକାର ମହାଶୟ ଆଉକିଛି ଅଧିକ ପରିଶ୍ରମ କରି ତଦ୍ରୂପ ବିବରଣ ସଂକଳନ କରିଥିଲେ ଉତ୍କଳର ଅପେକ୍ଷାକୃତ ଅଧିକ ଉପକାର ସାଧିତ ହୋଇ ପାରିଥାନ୍ତା ।

ତିନିଗୋଟି ଗଡ଼ ଏକତ୍ର ହୋଇ ରାଜ୍ୟ ହୋଇଥିବାର ତାହାର ନାମ ତିଗିରିୟା ହୋଇଥିବାର ମାଧବଲାଲ ବାବୁ ଲେଖିଅଛନ୍ତି । ତିଗିରିୟା ଅପେକ୍ଷାକୃତ କ୍ଷୁଦ୍ର ରାଜ୍ୟ ଥିବାର ଏକଥା ସତ୍ୟ ବୋଲି ବୋଧ ହେଉନାହିଁ, ଗ୍ରନ୍ଥକାର ଏକଥା କେଉଁଠାରୁ ଅବଗତ ହୋଇଅଛନ୍ତି ତାହା ପ୍ରକାଶ ନାହିଁ । ଆମ୍ଭେମାନେ ଅନେକଙ୍କ ମୁଖରୁ ଶୁଣି ଏବଂ ଖଣ୍ଡିଏ ପୁସ୍ତକରେ ସୁଦ୍ଧା ପାଠକରି ଅବଗତ ହୋଇଅଛୁଁ ଯେ ଆଦିରାଜାଙ୍କ ରାଜ୍ୟାରମ୍ଭ କାଳରେ ଉକ୍ତ ରାଜ୍ୟ ଜନାକୀର୍ଣ୍ଣ ଥିଲା । ତିନିଘର ପ୍ରଜାଘେନି ସେ ରାଜତ୍ୱ ଆରମ୍ଭ କରିବାର ତହିଁର ସ୍ମୃତି ସ୍ୱରୂପ ରାଜ୍ୟର ନାମ ତ୍ରିଘରିୟା ହେଲା, ତିଗିରିୟା, ତ୍ରିଘରିଆର ଅପଭ୍ରଂଶ ମାତ୍ର ।

ସମାଲୋଚ୍ୟ ପୁସ୍ତକରେ, ତତ୍ସମ୍ବନ୍ଧରେ ଉତ୍କଳର କତିପୟ ବିଖ୍ୟାତନାମା ବ୍ୟକ୍ତିମାନଙ୍କ ପ୍ରଦତ୍ତ ପ୍ରଶଂସାପତ୍ର ସନ୍ନିବେଶିତ ହୋଇଅଛି । ତାହା ପାଠକଲେ ପୁସ୍ତକଖଣ୍ଡି ଅତିଉପାଦେୟ ହୋଇଥିବାର ପାଠକମାନଙ୍କ ବିଶ୍ୱାସ ଜନ୍ମିପାରେ କିନ୍ତୁ ସେମାନେ ଏବଂ ସ୍ୱୟଂ ଗ୍ରନ୍ଥକାର ବୋଧକରୁଁ ଆମ୍ଭମାନଙ୍କ ମତ ଅସଙ୍ଗତ ଥିବାର କହିପାରିବେ ନାହିଁ । "ବିବଧ ସଂଗ୍ରହରେ" ଏପରି ଅନେକ ହିତକର ବିଷୟ ଅଛି ଯାହା ପାଠକଲେ ଗୃହସ୍ଥମାନେ କେତେକାଂଶରେ ଉପକୃତ ହୋଇପାରିବେ ସତ୍ୟ, କିନ୍ତୁ ଆମ୍ଭମାନଙ୍କ କଥିତାନୁସାରେ ପୁସ୍ତକଖଣ୍ଡି ପ୍ରଣୀତ ହୋଇଥିଲେ ଅଧିକତର ଉପଯୋଗୀ ହୋଇଥାନ୍ତା ।

ଗ୍ରନ୍ଥକାର ଜଣେ ବିହାର ପ୍ରଦେଶବାସୀ, ସେ ସରଳ ନିର୍ଦ୍ଦୋଷ ଉତ୍କଳ ଭାଷାରେ ଏହି ବୃହତ୍ ପୁସ୍ତକ ଖଣ୍ଡି ପ୍ରଣୟନକରି ଉତ୍କଳବାସି ମାନଙ୍କର ଅଶେଷ ଧନ୍ୟବାଦର ପାତ୍ର ହୋଇଛନ୍ତି ।

ପୁସ୍ତକଛାପା ଏବଂ କାଗଜ ଉତ୍କୃଷ୍ଟ, କଳେବର ଏବଂ ବିଷୟ ଦୃଷ୍ଟିରେ ମୂଲ୍ୟ ମଧ୍ୟ ସୁଲଭ ହୋଇଅଛି । ନାନା ବିଷୟ ସନ୍ନିବେଶିତ ଏପରି ପୁସ୍ତକ ପ୍ରତ୍ୟେକ ଗୃହରେ ସ୍ଥାନ ପାଇବା ଶ୍ରେୟସ୍କର ।

*ଭା/୧୧ଗ, ସଂ୪୬ଖ୍ୟା, ୨୧/୩/୧୯୦୦*

## ଓଡ଼ିଶାର ସଦସ୍ୟ ନିର୍ବାଚନ ।

ବଙ୍ଗୀୟ ବ୍ୟବସ୍ଥାପକ ସଭା ସକାଶେ ଓଡ଼ିଶାର ଜିଲ୍ଲାବୋର୍ଡ ସମୂହର ପ୍ରତିନିଧିସ୍ୱରୂପ ଜଣେ ସଦସ୍ୟର ଆବଶ୍ୟକ ଥିବାରୁ ଉକ୍ତ ସମ୍ମାନିତ ପଦ ଲାଭ କରିବା ସକାଶେ କଟକର ବାବୁ ମଧୁସୂଦନ ଦାସ, ବାବୁ ହରିବଲ୍ଲଭ ବସୁ ରାୟବାହାଦୂର ଏବଂ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ବାହାଦୂର ଅଭିପ୍ରାୟ ବ୍ୟକ୍ତ କରିଅଛନ୍ତି । ଏଥିମଧ୍ୟରେ ବାଲେଶ୍ୱର ଜିଲ୍ଲା ବୋର୍ଡ ରାଜାବାହାଦୂରଙ୍କୁ, ପୁରୀଜିଲ୍ଲା ବୋର୍ଡ ମଧୁବାବୁଙ୍କୁ ମନୋନୀତ କରିଥିବାର ଉତ୍କଳ ଦୀପିକାରୁ ଅବଗତ ହେଲୁଁ । କଟକ ଜିଲ୍ଲା ବୋର୍ଡ କାହାକୁ ମନୋନୀତ କରିବେ ଦେଖାଯିବ । ସଭ୍ୟ ନିର୍ବାଚନ ବିଷୟରେ ମୁଖାପେକ୍ଷୀ ହେବା ଉଚିତ୍ ନୁହେଁ । ପ୍ରାର୍ଥୀ ତିନିଜଣ ମଧ୍ୟରୁ ଯୋଗ୍ୟତମ ବ୍ୟକ୍ତିଙ୍କୁ ବାଛି ନପାରିଲେ ସଭ୍ୟ ମାନଙ୍କର ନିନ୍ଦା ଏବଂ ପର୍ଯ୍ୟମାଣରେ ଦେଶର କ୍ଷତି ହେବ ସନ୍ଦେହ ନାହିଁ ସୁତରାଂ ଏସ୍ଥଳରେ ସଭ୍ୟମାନଙ୍କର ସଂପୂର୍ଣ୍ଣ ନିରପେକ୍ଷ ଭାବରେ କାର୍ଯ୍ୟକରିବା ଉଚିତ, ନଚେତ ପ୍ରତ୍ୟବାୟଗ୍ରସ୍ତ ହେବେ ।

*ଭା/୧୨ଗ, ସଂ୩ଖ୍ୟା, ୨୩/୫/୧୯୦୦*

# ଓଡ଼ିଶାର ସ୍କୁଲ ଇନ୍ସପେକ୍ଟର ପଦ ।

"ଅଯତ୍ନଲବ୍ଧ ଦୁର୍ମୂଲ୍ୟ ବସ୍ତୁ ପାଖରେ ଥିବା ପର୍ଯ୍ୟନ୍ତ ମନୁଷ୍ୟ ଅନେକ ସମୟରେ ତାହାର ମୂଲ୍ୟ ବୁଝିପାରେ ନାହିଁ, ବସ୍ତୁଟି ଅନ୍ତରିତ ହେଲେ ସେ ହାହାକାର କରେ ଚତୁର୍ଦ୍ଦିଗ ଶୂନ୍ୟ ଦେଖେ । ବର୍ତ୍ତମାନ ଓଡ଼ିଶାର ଶିକ୍ଷା ବିଭାଗରେ ଏହି ଦଶା ଘଟିଅଛି । ମାନନୀୟ ରାୟ ରାଧାନାଥ ରାୟ ବାହାଦୂର ମହୋଦୟଙ୍କ ବଦଳୀରେ ଓଡ଼ିଶାର ଶିକ୍ଷାବିଭାଗ ଯେ ଅତ୍ୟନ୍ତ କ୍ଷତିଗ୍ରସ୍ତ ହୋଇଅଛି , ଏହା ସମସ୍ତେ ସ୍ୱୀକାର କରିବେ । କେବଳ ତାହା ନୁହେ, ଆପଣାର ପ୍ରକୃତି ଗୁଣରେ ରାୟବାହାଦୂର ସକଳ ଶ୍ରେଣୀର ଲୋକଙ୍କ ମଧ୍ୟରେ ପ୍ରତିଷ୍ଠାଭାଜନ ହୋଇଥିଲେ । ତାଙ୍କର ନିରୀହ ମଧୁର ପ୍ରକୃତି, ତାଙ୍କର ଅସାଧାରଣ ପାଣ୍ଡିତ୍ୟ, ତାଙ୍କର କରୁଣାକୋମଳ ଶାସନ ଶିକ୍ଷାବିଭାଗର ସର୍ବଥା ଉପଯୁକ୍ତ । ଏହି ହେତୁରୁ ତାଙ୍କ ସମୟରେ ତାଙ୍କର ଅଧୀନସ୍ଥ କର୍ମଚାରୀମାନେ ପରମ ସୁଖରେ କାଳ କଟାଉଥିଲେ । ସେ କେବଳ ଶିକ୍ଷାବିଭାଗର ଗୌରବ ନୁହନ୍ତି , ସମଗ୍ର ଉତ୍କଳଭୂମିର ଗୌରବ । ଅବଶ୍ୟ ବର୍ତ୍ତମାନ ସେ ବଙ୍ଗପ୍ରଦେଶର ଗୋଟିଏ ଉନ୍ନତି ବିଭାଗରେ ଅବସ୍ଥାପିତ ହେବାରୁ ତାଙ୍କର ଗୁଣ ଗାରିମା ସମଧିକ ରୂପେ ପ୍ରକାଶିତ ହେବ ଏବଂ ତାଙ୍କର ଗୌରବରେ ଉତ୍କଳ ଗୌରାବନ୍ୱିତ ହେବ, କିନ୍ତୁ ଆମ୍ଭମାନଙ୍କର ଯେଉଁ କ୍ଷତି ହେଲା, ତାହା ସହଜରେ ପୂର୍ଣ୍ଣ ହେବ ନାହିଁ ବର୍ତ୍ତମାନ ତାଙ୍କ ସ୍ଥାନରେ ଜଣେ ଇୟୁରୋପୀୟ ନିଯୁକ୍ତ ହୋଇଅଛନ୍ତି । ଏହି ନିଯୁକ୍ତି ସମ୍ବନ୍ଧରେ ଉତ୍କଳବାସୀଙ୍କର ଘୋର ଆପତ୍ତି ରହିଅଛି । ସେ ଆପତ୍ତି ସର୍ବତୋଭାବେ ଯୁକ୍ତିସଙ୍ଗତ । ଓଡ଼ିଶାର ଅବସ୍ଥା ଏବଂ ଓଡ଼ିଆ ଭାଷାର ସ୍ୱାତନ୍ତ୍ୟ ପ୍ରତି ଦୃଷ୍ଟିକରି ଗବର୍ଣ୍ଣମେଣ୍ଟ ଏହି କାର୍ଯ୍ୟରେ ଜଣେ ଉତ୍କଳବାସୀଙ୍କୁ ନିଯୁକ୍ତ କରିବାର ବ୍ୟବସ୍ଥା କରିଥିଲେ । ଯେତେବେଳେ ଶ୍ରୀଯୁକ୍ତ ଏଜର ସାହେବ ଜଏଣ୍ଟ ଇନ୍ସପେକ୍ଟର ପଦରୁ ଅପସାରିତ ହେଲେ, ତେତେବେଳେ ଓଡ଼ିଶାର ଶିକ୍ଷା ବିଭାଗରେ ଉପଯୁକ୍ତ ବ୍ୟକ୍ତିର ଅଭାବ ଲକ୍ଷିତ ହେବାରୁ ପରଲୋକଗତ ରାୟ ନନ୍ଦକିଶୋର ଦାସ ବାହାଦୁରଙ୍କୁ ଅନ୍ୟ ବିଭାଗରୁ ଆଣି ଉକ୍ତ ପଦରେ ନିଯୁକ୍ତ କରିବାକୁ ହୋଇଥିଲା । ସେତେବେଳେ କଣ ବଙ୍ଗପ୍ରଦେଶରେ ଶିକ୍ଷାବିଭାଗରେ ସାହେବ ବା ବଙ୍ଗାଳୀ ନଥିଲେ ? ସେମାନଙ୍କ ମଧ୍ୟରୁ କାହାରିକି ଆଣିଥିଲେ ଚଳିନଥାନ୍ତା ? ନା, ଗବର୍ଣ୍ଣମେଣ୍ଟ ଓଡିଶା ପ୍ରତି ଗୋଟିଏ ବିଶେଷ ବିଧି ନିର୍ଦ୍ଦେଷ କରିଥିବାରୁ ତାହା କଲେ ନାହିଁ । ରାୟ ରାଧାନାଥଙ୍କ ନିଯୁକ୍ତି ସମୟରେ ମଧ ସେହି ବିଧିପ୍ରତି ଲକ୍ଷ୍ୟରଖି କାର୍ଯ୍ୟ କରାଯାଇଥିଲା । ସମସ୍ତଙ୍କର ଧାରଣା ଥିଲା ଯେ ରାଧାନାଥବାବୁ ଅବସର ଗ୍ରହଣକଲେ ଜଣେ ଉପଯୁକ୍ତ ଉତ୍କଳବାସୀ ତାଙ୍କର ସ୍ଥାନପୂରଣ କରିବେ । ଉତ୍କଳର ଦୁରଦୃଷ୍ଟ ଯେ ସେ ଅବସର ଗ୍ରହଣ ପର୍ଯ୍ୟନ୍ତ ଏଠାରେ ରହିପାରିଲେ ନାହିଁ । ବିଶେଷ କାରଣବଶତଃ ତାଙ୍କୁ ସ୍ଥାନାନ୍ତରିତ ହେବାକୁ ପଡିଲା । ବର୍ତ୍ତମାନ ତାଙ୍କୁ ଫେରିପାଇବା ଆଶା କରିବା ବୃଥା । ମାତ୍ର ତାଙ୍କ ସ୍ଥାନରେ ଜଣେ ଉତ୍କଳବାସୀ ନିଯୁକ୍ତ ନହେବ କାହିଁକି ? ଗବର୍ଣ୍ଣମେଣ୍ଟ. ଯେଉଁ କାରଣରୁ ରାୟ ନନ୍ଦକିଶୋର ଏବଂ ରାୟ ରାଧାନାଥଙ୍କ ନିଯୁକ୍ତି ସମୟରେ ବିଶେଷବିଧି ଅନୁସରଣ କରିଥିଲେ, ବର୍ତ୍ତମାନ ମଧ ସେହି କାରଣମାନ ବିଦ୍ୟମାନ। ତେବେ ସେହି ବିଶେଷ ବିଧି ଅନୁସରଣ ନକରିବେ କାହିଁକି ? ଓଡ଼ିଆ ଅତି ପ୍ରାଚୀନ ଭାଷା, ଏହାର ସ୍ୱାତନ୍ତ୍ୟ ସମ୍ବନ୍ଧରେ ଆଉ କାହାରି କିଛି ସନ୍ଦେହ ଥାଇ ନପାରେ । (ଅବଶ୍ୟ ଆଜିସୁଦ୍ଧା କୌଣସି କୌଣସି ବଙ୍ଗଦେଶୀୟ ବ୍ୟକ୍ତି ଓଡ଼ିଆକୁ ବଙ୍ଗଳାର ଶାଖାବୋଲି ନିର୍ଦ୍ଦେଶ କରିବାକୁ ବୃଥା ପ୍ରୟାସ କରିଥାନ୍ତି -ମାତ୍ର କାର୍ଯ୍ୟକ୍ଷେତ୍ରରେ ସେମାନଙ୍କର ଏହି ଭ୍ରାନ୍ତ ମତ ସହଜରେ ଖଣ୍ଡିତ ହୋଇଯାଏ ।) ଏହାର ବିଶେଷତ୍ୱ ନ ବୁଝିଲେ ଓଡ଼ିଆ ବିଦ୍ୟାଳୟ ମାନ ପରିଦର୍ଶନ କରିବା କିପରି ସମ୍ଭବ ହେବ ? ପ୍ରସଙ୍ଗକ୍ରମେ ଆଉ ଗୋଟିଏ କଥା ଏଠାରେ ଉଲ୍ଲେଖ କରାଯାଇପାରେ । କଟକ ଟ୍ରେନିଂ ସ୍କୁଲରେ ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓ ଏବଂ ଶ୍ରୀଯୁକ୍ତ ବାବୁ ଚନ୍ଦ୍ରମୋହନ ମହାରଣା ମହୋଦୟଙ୍କ ନିଯୁକ୍ତି କାଳରେ ମଧ ଏହି କାରଣ ବଳବତ୍ତର ବୋଲି ବିବେଚିତ ହୋଇଥିଲା । ସୁତରାଂ ଇନ୍ସପେକ୍ଟର ନିଯୁକ୍ତିରେ ଏହି କାରଣ ତଦପେକ୍ଷା ଆହୁରି ବଳବତ୍ତର, ଏଥିରେ ସନ୍ଦେହ ନାହିଁ । ଓଡ଼ିଶା ପକ୍ଷରେ ସାହେବ ଇନ୍ସପେକ୍ଟର ନିଯୁକ୍ତି ତ ଆଦୌ ଯୁକ୍ତିସଙ୍ଗତ ହୋଇ ନପାରେ । ଶ୍ରୀଯୁକ୍ତ ଏଜର ସାହେବଙ୍କ ଅମଳରେ ଓଡ଼ିଆ ସ୍କୁଲମାନଙ୍କର ପରୀକ୍ଷାର ବିବରଣ ଆମ୍ଭେମାନେ ଯାହା ଶୁଣି ଅଛୁଁ ,

ତାହା ନିତାନ୍ତ ହାସ୍ୟାସ୍ପଦ । ସେ ସମସ୍ତ କଥା ଉଲ୍ଲେଖ କରିବାର ପ୍ରୟୋଜନ ନାହିଁ । ସହରମାନଙ୍କର କଥା ଛାଡିଦେଲେ ମଫସଲର ଅଧିକାଂଶ ସ୍ଥାନ ପ୍ରାୟ ସେହିପରି ଅନୁନ୍ନତ ଅବସ୍ଥାରେ ରହିଅଛି । ଓଡ଼ିଶାର ଶିକ୍ଷାବିଭାଗ ଏପର୍ଯ୍ୟନ୍ତ ବାଲ୍ୟାବସ୍ଥା ଅତିକ୍ରମ କରିନାହିଁ । ଏ ଅବସ୍ଥାରେ ଜଣେ ଉତ୍କଳଭାଷା ଓ ଓଡ଼ିଆ ଚରିତ୍ରରେ ଅଭିଜ୍ଞ ବ୍ୟକ୍ତିଙ୍କୁ ଓଡ଼ିଶାର ଶିକ୍ଷାବିଭାଗର ଶୀର୍ଷସ୍ଥାନରେ ନିଯୁକ୍ତି କରିବା ଏକାନ୍ତ ବାଞ୍ଛନୀୟ । କିଛିଦିନପୂର୍ବେ ଉତ୍କଳ ଦୀପିକାର ପ୍ରବୀଣ ସମ୍ପାଦକ ମହାଶୟ ଉପଯୁକ୍ତ କାରଣ ଦର୍ଶାଇ ଜଣେ ଓଡ଼ିଆ ଇନ୍ସପେକ୍ଟରଙ୍କ ନିଯୁକ୍ତି ସମର୍ଥନ କରିଥିଲେ । ଆମ୍ଭେମାନେ ଆଶା କରିଥିଲୁଁ ଯେ ଏ ସମ୍ବନ୍ଧରେ ଓଡ଼ିଶାବାସୀ ବିଶେଷ ଚେଷ୍ଟାନ୍ୱିତ ହେବେ । ମାତ୍ର ଏପର୍ଯ୍ୟନ୍ତ ତାହାର କିଛି ଲକ୍ଷଣ ଦେଖାଗଲା ନାହିଁ । ଆମ୍ଭମାନଙ୍କର ସଂପୂର୍ଣ୍ଣ ବିଶ୍ୱାସ ଯେ ସରଜନ ଉଡବର୍ଣ୍ଣ ମହୋଦୟଙ୍କ ତୁଲ୍ୟ ସହୃଦୟ ଶାସନକର୍ତ୍ତାଙ୍କ ନିକଟରେ ଉତ୍କଳବାସୀଙ୍କ ଯୁକ୍ତି ଯୁକ୍ତ ପ୍ରାର୍ଥନା କଦାପି ଅଗ୍ରାହ୍ୟ ହେବ ନାହିଁ । ଏତେବେଳେ ସୁଦ୍ଧା ସମୟ ଅତୀତ ହୋଇନାହିଁ । ଆମ୍ଭେମାନେ ଉତ୍କଳର ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କ ଦୃଷ୍ଟି ଏହି ଗୁରୁତର ବିଷୟଟିପ୍ରତି ଆକର୍ଷଣ କରୁଅଛୁଁ । ଓଡ଼ିଶାର ଶିକ୍ଷାବିଭାଗରେ ଯେ ଇନ୍ସପେକ୍ଟର ପଦର ଯୋଗ୍ୟ ବ୍ୟକ୍ତିଙ୍କ ଏକାନ୍ତ ଅଭାବ ଅଛି, ତାହାନୁହେ । ମାନନୀୟ ଶ୍ରୀଯୁକ୍ତ ମଧୁସୂଦନ ରାଓ ମହାଶୟ ଯେ ସେ ପଦର ସର୍ବଥା ଉପଯୁକ୍ତ, ଏକଥା ସମସ୍ତେ ଏକବାକ୍ୟରେ ସ୍ୱୀକାର କରିବେ । ଏଥିପୂର୍ବେ ସେ ଅନେକଥର ଉକ୍ତ ପଦରେ ନିଯୁକ୍ତ ହୋଇ ଅତ୍ୟନ୍ତ ସୁଖ୍ୟାତିର ସହିତ ତାହା ନିର୍ବାହ କରୁଅଛନ୍ତି । ଭୂତପୂର୍ବ ଡିରେକ୍ଟର କ୍ରଫ୍ ଏବଂ ମାର୍ଟିନ ସାହେବ ମହୋଦୟ ତାଙ୍କୁ ଉକ୍ତପଦର ସର୍ବଥା ଯୋଗ୍ୟବୋଲି ସ୍ୱୀକାର କରି ଯାଇଥିବାର ଆମ୍ଭେମାନେ ଅବଗତ ହୋଇଅଛୁଁ । ଆମ୍ଭମାନଙ୍କ ମୁଖରେ ତାଙ୍କର ଗୁଣକୀର୍ତ୍ତନ ଉଜ୍ଜ୍ୱଳ ଦୀବାଲୋକରେ ପ୍ରଦୀପ ଜାଳିବା ତୁଲ୍ୟ । ସେ ଯାହା ହେଉ, ଆମ୍ଭେମାନେ ବ୍ୟକ୍ତି ବିଶେଷଙ୍କ ପ୍ରତି ଲକ୍ଷ୍ୟ ରଖି କିଛି କହୁନାହୁଁ । ଓଡ଼ିଶାର ଗୋଟିଏ ଅଧିକାର ଲୋପ ହେବାକୁ ବସିଅଛି ବୋଲି ଆମ୍ଭେମାନେ ଅତ୍ୟନ୍ତ କ୍ଷୁର୍ଣ୍ଣ ହୋଇଅଛୁଁ । ଆଶାକରୁଁ ଏବିଷୟରେ ଉତ୍କଳବାସିମାନେ ସତ୍ୱର ପ୍ରତୀକାର ଲୋଡ଼ିବାକୁ ବିମୁଖ ହେବେ ନାହିଁ ।" ଉତ୍କଳସାହିତ୍ୟ ।

*ଭା୧୨ଗ, ସଂ୩ଖ୍ୟା, ୨୩।୫।୧୯୦୦*

## ବିଜ୍ଞାପନ।

## ଉତ୍କଳ ମଧୁପ।

ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନ କର୍ତ୍ତୃକ ସମ୍ପାଦିତ 'ଉତ୍କଳ ମଧୁପ' ନାମକ ମାସିକ ପତ୍ରିକାର ପ୍ରଥମ ସଂଖ୍ୟା ପ୍ରକାଶିତ ହୋଇଅଛି । ଉକ୍ତ ପତ୍ରିକାରେ ନୀତିବାକ୍ୟ, ସଦୁପଦେଶ, ଦ୍ରବ୍ୟଗୁଣ, ବିଚିତ୍ର ବାର୍ତ୍ତା, ସାଧୁ ଦୃଷ୍ଟାନ୍ତ, ମହାଜନ ଚରିତ, ସ୍ୱାସ୍ଥ୍ୟତତ୍ତ୍ୱ, କୃଷି ପ୍ରଣାଳୀ, ରାସାୟନିକ ପ୍ରକରଣ, ସରଳ ଜ୍ୟୋତିଷ, ସହଜ ଚିକିତ୍ସା, ସ୍ମରଣୀୟ ଘଟନାବଳୀ, ବ୍ୟବସାୟ ସଙ୍କ୍ରାନ୍ତ ନାନାକଥା, ରନ୍ଧନ ବିବରଣ, କୌତୁକ ପ୍ରସଙ୍ଗ, ଶାସ୍ତ୍ରୀୟ ଅନୁଶାସନ, ଉଦାହରଣ ଉପଯୋଗୀ ଶ୍ଳୋକମାଳା, ସଙ୍ଗୀତ, ଦେଶାନ୍ତର, ପ୍ରବାଦ୍ୟ ବାକ୍ୟ, ପ୍ରଭୃତି ବିବିଧ ଜ୍ଞାତବ୍ୟ ବିଷୟ ପ୍ରକାଶିତ ହେବ । ବିଷୟଦୃଷ୍ଟିରେ "ଉତ୍କଳ ମଧୁପ" କୁ ବିବିଧ ସଂଗ୍ରହ ବା କ୍ଷୁଦ୍ର ଜ୍ଞାନଭଣ୍ଡାର ବୋଲାଯାଇପାରେ । ଅଳ୍ପବ୍ୟୟରେ ଏବଂ ଅତିଶିଘ୍ର ନାନା ବିଷୟରେ ଅଭିଜ୍ଞତା ଲାଭ କରିବାକୁ ଯେଉଁମାନେ ଅଭିଳାଷୀ ସେମାନେ "ଉତ୍କଳ ମଧୁପ" ଗ୍ରହଣ କରନ୍ତୁ , ସଫଳ ମନୋରଥ ହେବେ ।

"ଉତ୍କଳ ମଧୁପର" ବାର୍ଷିକ ମୂଲ୍ୟ ଆଠଅଣା, ଡାକମାଶୁଲ ତିନିଅଣା, ଏକନାମରେ ଅଧିକ ଖଣ୍ଡ ଗଲେ ଡାକମାଶୁଲ ଜଣାପଡିବ । ପ୍ରତି ସଂଖ୍ୟାର ମୂଲ୍ୟ ଏକଅଣା, ପତ୍ରିକା ସକାଶେ ଆମ୍ଭ ନାମରେ ପତ୍ର ଏବଂ ମୂଲ୍ୟ ପଠାଇବାକୁ ହେବ ।

ଉଃ ମଧୁପ କାର୍ଯ୍ୟାଳୟ
ଦେବଗଡ ପୋଃ

ଶ୍ରୀ ରସାନନ୍ଦ ପ୍ରଧାନ
କାର୍ଯ୍ୟାଧ୍ୟକ୍ଷ।

*ଭା୧୨ଗ,ସଂ୪ଖ୍ୟା, ୬।୬।୧୯୦୦*

## ପ୍ରାପ୍ତ ।

## ଉତ୍‌କଳ ମଧୁପ ସମ୍ବନ୍ଧେ ମନ୍ତବ୍ୟ ।

ବରଂ ଉଚ୍ଛୃଙ୍ଖଳତା ଭଲ, ତଥାପି ସ୍ଥିରତା ଭଲନୁହେ । ସମ୍ପ୍ରତି ଉତ୍କଳ ଦେଶରେ ଯେପରି ନିଶ୍ଚେଷ୍ଟତା ପରିଲକ୍ଷିତ ହୁଏ ସେଥିରେ ଯେ କୌଣସି ସତ୍ ଚେଷ୍ଟାକୁ ପ୍ରଶଂସା କରିବାକୁ ପ୍ରବୃତ୍ତି ହୁଏ । ଜାତୀୟ ସାହିତ୍ୟାନୁଶୀଳନ ଜାତୀୟ ଉନ୍ନତ ଜୀବନର ବିଶିଷ୍ଟ ଲକ୍ଷଣ ଏବଂ ମାସିକ ସାହିତ୍ୟ ପତ୍ରିକା ସାହିତ୍ୟୋନ୍ନତିର ପ୍ରକୃଷ୍ଟ ଉପାୟ । 'ଉତ୍କଳମଧୁପ' କୁ ଆମ୍ଭେମାନେ ସାଦର ସମ୍ଭାଷଣ କରୁଁ । 'ମଧୁପର' ସଂପାଦକ ଅଧ୍ୟବସାୟ, ବୁଦ୍ଧିମତ୍ତା ଏବଂ ସ୍ୱଦେଶ ହିତୈଷିତାଦ୍ୱାରା ଯଉ ଚିରାର୍ଜିତ ଏବଂ ଦେଶବ୍ୟାପୀ ପ୍ରତିଷ୍ଠାଲାଭକରି ଅଛନ୍ତି, ତାହା ମଧୁପକୁ ଆଦୃତ ଏବଂ ଚିରାୟ କରି ପାରିବ । ପ୍ରଥମସଂଖ୍ୟା ଆମ୍ଭେମାନେ ଆଗ୍ରହର ସହିତ ପଢ଼ିଅଛୁଁ । ଗୃହମଧ୍ୟରେ ସିନ୍ଧୁକ, ପେଟରାର ଅସ୍ତିତ୍ୱ ସତ୍ତ୍ୱେ ଯେବେ ଗୋଟିଏ "ଆଲିମାଲିକା" ଟୋକେଇର ପ୍ରୟୋଜନ ନଥାଏ, ତେବେ ଉତ୍କଳସାହିତ୍ୟ ଉପବନରେ ମଧ୍ୟ ଗୋଟିଏ "ମଧୁପ" ର ଆବଶ୍ୟକତା ଅଛି ।

ଶ୍ରୀ ନନ୍ଦକିଶୋର ବଳ
କଟକ ।

*ଭା୧୨ଗ, ସଂ୧୦ଖ୍ୟା, ୧୧।୭।୧୯୦୦*

## ମାତୃଭାଷା ବ୍ୟବହାର ।

ସରକାରୀ ଅଫିସମାନଙ୍କରେ ହିନ୍ଦିଭାଷା ପ୍ରଚଳନ ସପକ୍ଷରେ ଉତ୍ତର ପଶ୍ଚିମ ପ୍ରଦେଶର କର୍ତ୍ତାମହୋଦୟ ଆଦେଶଦେବାରୁ ବର୍ତ୍ତମାନ ଅଯୋଧ୍ୟାର ମହାରାଜା ଏବଂ ଜଣ କେତେ ତାଲୁକଦାର ଆପଣା ଆପଣା ସିରସ୍ତାରେ ମାତୃଭାଷା- ହିନ୍ଦି ଚଳାଇବାର ବ୍ୟବସ୍ଥା କରି ଅଛନ୍ତି । କିନ୍ତୁ ଏଥିସକାଶେ ସେମାନଙ୍କୁ ପ୍ରଶଂସା କରାଯାଇ ନପାରେ ବରଂ ସେମାନେ ଏପର୍ଯ୍ୟନ୍ତ ଉକ୍ତଭାଷା ବ୍ୟବହାର କରୁନଥିବାରୁ ନିନ୍ଦାଭାଜନ ଅଟନ୍ତି । ପ୍ରାକୃତିକ ଉତ୍କଳର ଅନେକ ରାଜା, ଜମିଦାର ମଧ୍ୟ ନିଜ ନିଜ ସିରସ୍ତାରେ ବଙ୍ଗଳା, ହିନ୍ଦୀ, ତେଲଗୁ, ଭାଷାଚଳାଇ ମାତୃଭାଷାର ଅନାଦର କରୁଥିବାହେତୁ ଦେଶ ବିଦେଶରେ ନିନ୍ଦିତ ହେଉଅଛନ୍ତି । ଜାତୀୟ ସାହିତ୍ୟର ଉନ୍ନତି କାମନା ନ କରିବା, ଜାତୀୟ ଭାଷାର ଅନାଦର କରିବା ଅବଶ୍ୟ ନିନ୍ଦାର ବିଷୟ ।

*ଭା୧୨ଗ, ସଂ୧୨ଖ୍ୟା, ୨୫।୭।୧୯୦୦*

## ଭାରତର ଭବିଷ୍ୟତ୍ ଭାଷା ।

"ଉତ୍‌କଳ ସାହିତ୍ୟ" ର ନୂତନ ପ୍ରକାଶିତ ସଂଖ୍ୟାରେ "ଭାରତର ଭବିଷ୍ୟତ୍ ଭାଷା" ଶୀର୍ଷକ ଗୋଟିଏ ସୁନ୍ଦର ପ୍ରବନ୍ଧ ସନ୍ନିବେଶିତ ହୋଇଅଛି । ପ୍ରବନ୍ଧର ଲେଖକ ଉତ୍‌କଳର ଉତ୍ସାହୀ ଯୁବକ ଶ୍ରୀଯୁକ୍ତ ବାବୁ ନନ୍ଦକିଶୋର ବଳ ବି,ଏ । ଉତ୍କଳରେ ବର୍ତ୍ତମାନ ନବ୍ୟ, ପ୍ରାଚୀନ ରୀତିର ଉପାଧିଧାରୀ ପଣ୍ଡିତ ଅନେକେ କିନ୍ତୁ ପ୍ରାୟ ସମସ୍ତେ ନିଜ ନିଜର ସ୍ୱାର୍ଥ ଚିନ୍ତାରେ ନିମଗ୍ନ, ଦେଶର ଦଶର ହିତ ସକାଶେ କିଛି କରିବା ବିଷୟରେ ସେମାନଙ୍କର ଆଗ୍ରହ ଦେଖାଯାଏ ନାହିଁ , ବଡଦୁଃଖର ବିଷୟ । ଏ ବିଷୟରେ ନବୀନ ପଣ୍ଡିତ ନନ୍ଦକିଶୋରଙ୍କର ଅଧ୍ୟବସାୟ ଅତ୍ୟନ୍ତ ପ୍ରଶଂସାର୍ହ । ପ୍ରାଯୁକ୍ତ ପ୍ରବନ୍ଧରେ ସେ ଲେଖିଅଛନ୍ତି - "ତିନିଗୋଟି ଉପାୟରେ ମନୁଷ୍ୟ ମନୁଷ୍ୟ ମଧ୍ୟରେ ଏକତା ହୁଏ ଏବଂ ସେମାନେ ଏକ ଜାତିଭୁକ୍ତ ହୁଅନ୍ତି । ଯଥା, –

୧ମ – ବିଷୟରେ ଏକତା ।
୨ – ଶାସନ ବିଷୟରେ ଏକତା ଏବଂ
୩ – ଭାଷା ବିଷୟରେ ଏକତ୍ୱ ।"

ଧର୍ମ ଏବଂ ଶାସନ ବିଷୟରେ କେତେକ ପରିମାଣରେ ଏକତାଥିବା ଏକତାବୃଦ୍ଧିର ଚେଷ୍ଟା ହେଉଥିବାର

ସେ ବିଶଦରୂପେ ବ୍ୟକ୍ତ କରିଅଛନ୍ତି । କିନ୍ତୁ ଭାଷା ବିଷୟରେ ଏକତାର ଅଭାବ ପରିଦୃଷ୍ଟ ହୁଏ । ତାଙ୍କ ମତରେ ହିନ୍ଦୀ ଭାଷାହିଁ ଭାରତର ଭବିଷ୍ୟତ ହେବା ଉଚିତ୍ । ଆମ୍ଭେମାନେ ମଧ୍ୟ କାରଣ ଦୃଷ୍ଟିରେ ତାହାଙ୍କର ମତକୁ ଯଥାର୍ଥ ଥିବାର ସ୍ୱୀକାର କରୁଅଛୁଁ । ସମଗ୍ର ଭାରତ ବ୍ୟାପୀ ଗୋଟିଏ ଦେଶୀୟଭାଷା ପ୍ରଧାନହେବା ଯେ ନିତାନ୍ତ ଆବଶ୍ୟକ ଏଥିରେ ସନ୍ଦେହ ନାହିଁ , ତାହାର ଅଭାବରେ ବର୍ତ୍ତମାନ ଜାତୀୟ ମହା ସମିତିର କାର୍ଯ୍ୟ ବିଜାତୀୟ ଭାଷାରେ ସମ୍ପାଦିତ ହେଉ ଅଛି, ଏଥିବଳି ଦୁଃଖ ଏବଂ ଲଜ୍ଜାର ବିଷୟ ଆଉ କି ଅଛି ? ଭାରତର ଭବିଷ୍ୟତ୍‌ଭାଷା ସମ୍ବନ୍ଧରେ ଜାତୀୟ ମହାସମିତିରେ ଆଲୋଚନା ହେବା ଉଚିତ ।

*ଭା୧୨ଗ,ସଂ୧୭ଖ୍ୟା, ୨୯।୮।୧୯୦୦*

## କଚେରିଆ ଭାଷା ।

'କଚେରିଆ ଭାଷା' ସାଧାରଣତଃ କଦର୍ଯ୍ୟ ଅବିଶୁଦ୍ଧ ଭାଷା ରୂପେ ପରିଚିତ, ଅଥଚ ଶିକ୍ଷାବିଭାଗ ବ୍ୟତୀତ ସବୁଠାରେ ଏହିଭାଷା ବ୍ୟବହୃତ ହୋଇଆସୁଅଛି । ସରକାରୀ କାର୍ଯ୍ୟାଳୟମାନଙ୍କରେ ଉକ୍ତଭାଷା ବ୍ୟବହୃତ ହେବାରୁ ଶୁଦ୍ଧରୂପେ ଲେଖାପଢ଼ା କରିବା ପ୍ରତି ଲୋକମାନଙ୍କର ଆଗ୍ରହ ଦେଖାଯାଏ ନାହିଁ । କଚେରୀ ବିଭାଗରେ କାର୍ଯ୍ୟ କରିବା ପୂର୍ବେ ଯେଉଁମାନେ ଶୁଦ୍ଧରୂପେ ଲେଖାପଢ଼ା କରୁଥିଲେ ସେମାନେ ସ୍ଥାନ ମହାତ୍ମ୍ୟରେ ଅବିଶୁଦ୍ଧ ଲେଖାରେ ନିପୁଣତା ଲାଭ କରିବାର ଦେଖାଯାଏ । ସରକାରୀ କାଗଜପତ୍ର ଅବିଶୁଦ୍ଧ ଇଂରେଜୀରେ ଲେଖାଯାଉନଥିବା ସ୍ଥଳେ ଅବିଶୁଦ୍ଧ ଓଡ଼ିଆରେ କାହିଁକି ଲେଖାଯିବ ଏ ବିଷୟ କେହି ବୁଝିବାକୁ ନାହିଁ, ସମ୍ଭବତଃ ହାକିମମାନଙ୍କର ଓଡ଼ିଆ ଭାଷାରେ ଜ୍ଞାନ ନଥିବାରୁ ଭାଷା ସଂଶୋଧନର ଉପାୟ ଅବଲମ୍ବିତ ହୋଇନାହିଁ । ବହୁଦିନ ପୂର୍ବେ ହିତୈଷିଣୀରେ କଚେରିଆ ଭାଷା ସମ୍ବନ୍ଧରେ ଆଲୋଚନା କରାଯାଇଥିଲା କିନ୍ତୁ ଦୁଃଖର ବିଷୟ ତାହାଦ୍ୱାରା କୌଣସି ଫଳ ହୋଇ ନ ଥିଲା । ଅଳ୍ପଦିନ ପୂର୍ବେ କମିଶନରୀ ଅଫିସରୁ ଭାଷାର ଶୁଦ୍ଧତା ରକ୍ଷା ସପକ୍ଷରେ ଖଣ୍ଡିଏ ଘୋଷଣାପତ୍ର ବାହାରିଅଛି । ତହିଁରୁ ଜଣାଯାଏ, 'ସ୍ପଷ୍ଟାକ୍ଷରରେ ଶୁଦ୍ଧରୂପେ ଲିଖିତହୋଇ ନଥିବା ଓଡ଼ିଆ ଭାଷାର ଆବେଦନ ପତ୍ରାଦି ଗୃହୀତ ହେବନାହିଁ । "ଏହା ଅତିଉତ୍ତମ ଆଦେଶ, କିନ୍ତୁ ଏ ଆଦେଶ ବଳରେ ବିଶେଷ କିଛି ଫଳଲାଭ ହେବାପରି ବୋଧହେଉ ନାହିଁ । ବାହାରି ଲେଖକମାନେ ଶୁଦ୍ଧରୂପେ ନ ଲେଖିଲେ ସେମାନଙ୍କ ଲିଖିତ କାଗଜ ଅଗ୍ରାହ୍ୟ କରିବା ସହଜ କଥା କିନ୍ତୁ ଶୁଦ୍ଧାଶୁଦ୍ଧ ବିଚାର କରିବ କିଏ ? ସାଧାରଣତଃ କଚେରୀ ଅମଲାମାନଙ୍କର ଭାଷା ଜ୍ଞାନ ତଥୈବଚ । ସେମାନଙ୍କର ଅବିଶୁଦ୍ଧ ଭାଷାରେ ଲିଖିତ କାଗଜ ପତ୍ର କି ଅଗ୍ରାହ୍ୟ ହେବ ? ଉତ୍କଳ ଭାଷାର ବିଶୁଦ୍ଧତା ରକ୍ଷା କରିବା, ଅମଲା ପଦରେ ନର୍ମାଲ ସ୍କୁଲର ଛାତ୍ରମାନଙ୍କୁ ଗ୍ରହଣ କରିବା, କାର୍ଯ୍ୟ ପରିଦର୍ଶକ ମାନେ ଭାଷା ପ୍ରତି ଦୃଷ୍ଟି ଦେବା, ଇଂରେଜୀ ସ୍କୁଲମାନଙ୍କରେ ଯେତେଦୂର ସମ୍ଭବ ଓଡ଼ିଆଭାଷା ବ୍ୟବହୃତ ହେବାର ଉପାୟ ନକଲେ କଚେରୀରୁ କଦର୍ଯ୍ୟ ଭାଷାର ବ୍ୟବହାର ଲୋପ ପାଇବା ସମ୍ଭବପର ବୋଧ ହେଉ ନାହିଁ । ମାନନୀୟ କମିଶନର ମହୋଦୟ କେବଳ ଉକ୍ତ ଘୋଷଣାପତ୍ର ପ୍ରକାଶ କରି ଯେପରି ନିଶ୍ଚିନ୍ତ ନହୁଅନ୍ତି, ସମଗ୍ର ଓଡ଼ିଶ୍ୟାର ସରକାରୀ କାର୍ଯ୍ୟାଳୟମାନଙ୍କରେ ତାହାଙ୍କ ଅଭିପ୍ରାୟାନୁସାରେ ବିଶୁଦ୍ଧଭାଷା ବ୍ୟବହୃତ ହେବାର ବ୍ୟବସ୍ଥା କରିବାଦ୍ୱାରା ନିଜ ନାମକୁ ଏଦେଶରେ ଚିରସ୍ମରଣୀୟ କରି ରଖିବାର ଚେଷ୍ଟା କରନ୍ତୁ ଏହି ପ୍ରାର୍ଥନା କରୁଅଛୁଁ ।

*ଭା୧୨ଗ, ସଂ୧୭ଖ୍ୟା, ୨୯।୮।୧୯୦୦*

## ଓଡ଼ିଆଭାଷାର ରଚନା ।

କଲିକତା ବିଶ୍ୱବିଦ୍ୟାଳୟ ଏଫ୍,ଏ, ଏବଂ ବି, ଏ, ପରୀକ୍ଷାରେ ବଙ୍ଗଳା, ହିନ୍ଦୀ ଏବଂ ଉର୍ଦ୍ଦୁଭାଷାରେ ରଚନାର ପ୍ରଶ୍ନ ହେବାର ସ୍ଥିରକରି ଅଛନ୍ତି, କିନ୍ତୁ ଓଡ଼ିଆ ପ୍ରତି ଅନାସ୍ଥା ପ୍ରଦର୍ଶନକରି ଅଛନ୍ତି । କଟକ କଲେଜର ଛାତ୍ରମାନେ ଏ ବିଷୟ ସିଣ୍ଡିକେଟଙ୍କୁ ଜଣାଇଥିଲେ । ତଦୁତ୍ତରରେ ସିଣ୍ଡିକେଟ କହିଅଛନ୍ତି ସେ "ଓଡ଼ିଆଭାଷାକୁ ଦେଶୀୟ ଭାଷାର

ତାଲିକା ଭୁକ୍ତ କରିବାକୁ ଅନିଚ୍ଛୁକ ।" ମାନ୍ଦ୍ରାଜ ପ୍ରଦେଶରେ ଓଡ଼ିଆ ଭାଷା ସାମାନ୍ୟ ପରିମାଣରେ ବ୍ୟବହୃତ ହେଉଥିଲେ ମଧ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ଉକ୍ତ ଭାଷାକୁ ଦ୍ୱିତୀୟ ଭାଷାରୂପେ ଗ୍ରହଣ କରି ଏଫ, ଏ, ବି, ଏ, ପରୀକ୍ଷାକାଳରେ ଉକ୍ତ ଭାଷାର ପ୍ରଶ୍ନ ପ୍ରଦାନକରୁ ଅଛନ୍ତି । ଓଡ଼ିଶ୍ୟାରେ ଓଡ଼ିଆ ଭାଷାର ବହୁଳ ପ୍ରଚାର ଏବଂ ତାହାହିଁ ଏଦେଶର ଅଦାଲତର ଭାଷାଥିବାସ୍ଥଳେ ଉକ୍ତଭାଷା ପ୍ରତି ଅନାସ୍ଥା ପ୍ରଦର୍ଶନ କରିବା ବିଶ୍ୱବିଦ୍ୟାଳୟ ପକ୍ଷେ ଉଚିତ ବୋଧହେଉ ନାହିଁ । ଉଚ୍ଚ ପରୀକ୍ଷା କାଳରେ ଓଡ଼ିଆଭାଷା ଆଦୃତ ହେଲେ ପରିକ୍ଷାର୍ଥିମାନେ ମାତୃଭାଷାରେ ସର୍ବାଧିକ ଜ୍ଞାନଲାଭ କରିପାରିବେ । କଟକ ରେଭେନ୍ସା କଲେଜର ଛାତ୍ରମାନେ ସିଣ୍ଡିକେଟଙ୍କ ଉତ୍ତରରେ ସନ୍ତୁଷ୍ଟ ନହୋଇ ଉକ୍ତ ପରୀକ୍ଷାମାନଙ୍କରେ ଓଡ଼ିଆ ଭାଷା ବ୍ୟବହୃତ ହେବାର ଆଦେଶହେବା ଆଶାରେ ବେଙ୍ଗଲ ଗବର୍ଣ୍ଣମେଣ୍ଟଙ୍କ ନିକଟକୁ ଆବେଦନପତ୍ର ପଠାଇ ଅଛନ୍ତି । ଉକ୍ତ ଆବେଦନ ପତ୍ରର ପ୍ରତିଲିପି ଗତ ସଂଖ୍ୟା ହିତୈଷିଣୀରେ ମୁଦ୍ରିତ ହୋଇଅଛି । ଉକ୍ତ ଆବେଦନ ଯୁକ୍ତିପୂର୍ଣ୍ଣ । ଆମ୍ଭେମାନେ ଆଶାକରୁଁ ବଙ୍ଗେଶ୍ୱର ସାରଜନ ଉଡବର୍ଣ୍ଣ ବାହାଦୁର ଛାତ୍ରମାନଙ୍କ ନ୍ୟାୟସଙ୍ଗତ ପ୍ରାର୍ଥନା ସଫଳ କରିବେ। କଟକ କଲେଜରେ ଓଡ଼ିଆ ଛାତ୍ରମାନେ ମାତୃଭାଷାର ଗୌରବ-ଉନ୍ନତି କାମନାରେ ସାଧମତେ ଚେଷ୍ଟାକରୁ ଥିବାରୁ ସେମାନଙ୍କୁ ଶତଶତ ଧନ୍ୟବାଦ ପ୍ରଦାନ କରୁଅଛୁଁ । ଓଡ଼ିଶ୍ୟାର ବିଖ୍ୟାତ ସଭା ସମିତି ସମୂହ ଛାତ୍ରମାନଙ୍କ ଆବେଦନର ପୋଷକତାକରି ସେମାନଙ୍କ ପ୍ରାର୍ଥନା ପୂରଣ କରିବା ସକାଶେ ବେଙ୍ଗଲ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କରିବାର ଆଶାକରୁଁ ।

*ଭା୧୨ଗ, ସଂ୧୭ଖ୍ୟା, ୨୯।୮।୧୯୦୦*

## ଓଡ଼ିୟା ଶିକ୍ଷକ ସପକ୍ଷରେ ଆବେଦନ ।

ସମ୍ବଲପୁରର ଭଦ୍ରବ୍ୟକ୍ତିମାନେ ସମ୍ବଲପୁର ଶିକ୍ଷା ବିଭାଗରେ ମରହଟ୍ଟା ପ୍ରଭୃତି ଶିକ୍ଷକ ନିଯୁକ୍ତ ନହୋଇ ଓଡ଼ିଆ ଶିକ୍ଷକ ନିୟୋଗ ହେବା ପ୍ରାର୍ଥନାକରି ମହିମବର ଚିଫ୍ କମିଶନର ବାହାଦୂରଙ୍କ ନିକଟକୁ ଖଣ୍ଡିଏ ଆବେଦନ ପତ୍ର ପଠାଇ ଅଛନ୍ତି, ସେମାନେ ଉକ୍ତ ଆବେଦନ ପତ୍ରରେ ଯାହା ଲେଖିଅଛନ୍ତି ତହିଁର ସାରମର୍ମ ଏହି ଯେ ପଶ୍ଚିମା ଶିକ୍ଷକମାନେ ଓଡ଼ିଆଭାଷାରେ ସମୁଚିତ ଜ୍ଞାନଲାଭ କରିବା ସକାଶେ ଯତ୍ନକରନ୍ତି ନାହିଁ, ସୁତରାଂ ଛାତ୍ରମାନଙ୍କୁ ଉତ୍ତମରୂପେ ଶିକ୍ଷାଦାନ କରିପାରନ୍ତି ନାହିଁ । ଛାତ୍ରମାନଙ୍କର ଭାବ ହୃଦୟଙ୍ଗମ କରି ସେମାନଙ୍କ ମନରେ ବିଶୁଦ୍ଧ ଏବଂ ସରଳ ଓଡ଼ିୟା ଭାଷାରେ ନୂତନ ନୂତନ ଭାବପ୍ରବେଶ କରାଇବା ପଶ୍ଚିମା ଶିକ୍ଷକ ମାନଙ୍କ ପକ୍ଷରେ ସହଜ ନୁହେଁ । ଇଂରେଜୀ ଭାଷା ଶିକ୍ଷାଦେବା ସକାଶେ ସୁଦ୍ଧା ଓଡ଼ିୟା ଭାଷାରେ ଉଜ୍ଜ୍ୱଳ ଜ୍ଞାନ ଥିବା ଆବଶ୍ୟକ, ତାହା ନହେଲେ ଇଂରେଜୀ ଭାଷାଶିକ୍ଷା ଯେ ଅସଂପୂର୍ଣ୍ଣ ହେବ ଏଥିରେ ସନ୍ଦେହ ନାହିଁ । ଏହିସବୁ କାରଣରୁ ବିଗତ ୧୨ ବର୍ଷ ହେଲା ସମ୍ବଲପୁର ଶିକ୍ଷାବିଭାଗ ଅନୁନ୍ନତାବସ୍ଥାରେ ଅଛି । ଶିକ୍ଷାବିଭାଗର ପରିଦର୍ଶକମାନେ ସମ୍ବଲପୁରର ଶିକ୍ଷା ବିଷୟରେ ବାରମ୍ବାର ପ୍ରତିକୁଳ ମନ୍ତବ୍ୟ ପ୍ରଦାନ କରୁଅଛନ୍ତି । ଉପଯୁକ୍ତ ପ୍ରତିକାରରେ ଚେଷ୍ଟା କେହି କରିବାକୁ ନାହିଁ । ୫।୬ ବର୍ଷ ପୂର୍ବେ ସମ୍ବଲପୁରରେ ଏଫ, ଏ, ବି, ଏ, ଇତ୍ୟାଦି ଉପାଧିଧାରୀ ସ୍ଥାନୀୟ ଲୋକେ ନଥିଲେ, ବର୍ତ୍ତମାନ ଜଣକେତେ ଉପାଧିଧାରୀ ହୋଇଅଛନ୍ତି । ସମ୍ବଲପୁର ହାଇସ୍କୁଲର ଜଣେ ଓଡ଼ିୟା ସରକାରୀ ଶିକ୍ଷକ ପରୀକ୍ଷାରେ ପାଶ କରିବା ପରେ ଉକ୍ତ ସ୍କୁଲରେ ଉଚ୍ଚବେତନରେ ଗୋଟିଏ କାର୍ଯ୍ୟ ଖାଲୀ ହୋଇଥିଲା କିନ୍ତୁ ତାଙ୍କୁ ଉକ୍ତ କାର୍ଯ୍ୟ ଦିଆ ନଯାଇ ଏଫ୍,ଏ, ପରୀକ୍ଷାରେ ଉତ୍ତୀର୍ଣ୍ଣ ଜଣେ ମରହଟ୍ଟୀକୁ ନିଯୁକ୍ତ କରାଗଲା । ପରେ ଉକ୍ତ ସ୍କୁଲରେ ଗୋଟିଏ ଉଚ୍ଚବେତନର କାର୍ଯ୍ୟରେ ପକ୍କା ବନ୍ଦୋବସ୍ତ ହେବାର ସ୍ଥିର ହୋଇ ଉକ୍ତ ଓଡ଼ିୟା ଉପାଧିଧାରୀଙ୍କୁ ଉପେକ୍ଷା କରାଯାଇ ଆଉ ଜଣେ ପଶ୍ଚିମ ଏଫ୍,ଏ, ଶିକ୍ଷିତ ବ୍ୟକ୍ତିଙ୍କୁ ନିଯୁକ୍ତ କରାଗଲା । ଓଡ଼ିୟା ଉପାଧିଧାରୀ ପ୍ରଥମ କାର୍ଯ୍ୟ ବେଳେ ବଞ୍ଚିତ ହେବା ଦେଖି ସ୍ଥାନୀୟ ଭଦ୍ରଲୋକମାନେ ତାହା ଶିକ୍ଷାବିଭାଗର ଇନସପେକ୍ଟର ଜେନେରଲଙ୍କୁ ଜଣାଇଥିଲେ । ତହିଁର ଉତ୍ତରରେ ସେ କହିଥିଲେ- "ଆମ୍ଭେ ଯେଉଁ ବନ୍ଦୋବସ୍ତ କରିସାରିଅଛୁଁ, ତହିଁର ପରିବର୍ତ୍ତନ କରିବୁଁ ନାହିଁ , କିନ୍ତୁ ଭବିଷ୍ୟତ୍‌ରେ ସମ୍ବଲପୁର ହାଇସ୍କୁଲରେ କାର୍ଯ୍ୟ ଖାଲିହେଲେ ଆମ୍ଭେ ସମ୍ବଲପୁରର ଲୋକମାନଙ୍କୁ ନିଯୁକ୍ତ କରିବୁଁ ।" ପରେ କାର୍ଯ୍ୟଖାଲି ହେବାରୁ ସେ ତାଙ୍କର ପୂର୍ବ ଆଦେଶ ଉପେକ୍ଷା କଲେ । ବର୍ତ୍ତମାନ ପ୍ରାର୍ଥନା

ଏହି ଯେ ଯେଉଁ କାର୍ଯ୍ୟରେ ପକ୍କା ବନ୍ଦୋବସ୍ତ ହୋଇଅଛି, ସେହି କାର୍ଯ୍ୟରେ ଉକ୍ତ ଓଡ଼ିଆ ସହକାରୀ ଶିକ୍ଷକଙ୍କ ନିଯୁକ୍ତ କରାଯାଉ ଏବଂ ଭବିଷ୍ୟତରେ ସମ୍ବଲପୁର ସ୍କୁଲବିଭାଗରେ କୌଣସି କାର୍ଯ୍ୟ ଖାଲିହେଲେ ତହିଁରେ ସମ୍ବଲପୁରର ଓଡିଆମାନଙ୍କୁ ତଦଭାବରେ କଟକର ଓଡ଼ିଆମାନଙ୍କୁ ନିଯୁକ୍ତ କରାଯିବାକୁ ଆଦେଶହେଉ ।"

ଆବେଦନ ଯେ ଯୁକ୍ତିଯୁକ୍ତ ଏବଂ ଚିଫ୍ କିମଶନର ବାହାଦୁର ଯେ ପ୍ରାର୍ଥନା ସଫଳ କରିବେ ଏ ବିଷୟରେ ଆମ୍ଭମାନଙ୍କର ସନ୍ଦେହନାହିଁ । ମାନନୀୟ ମନରୋ ସାହେବ, ଇନସପେକ୍ଟର ଜେନରେଲଥିବା ବେଳେ ପ୍ରାୟ ୧୦ ବର୍ଷ ହେବ ସମ୍ବଲପୁରର ହାଇସ୍କୁଲରେ ଓଡ଼ିଆ ଶିକ୍ଷକ ନିଯୁକ୍ତ କରିବା ସମ୍ବନ୍ଧେ ତାଙ୍କ ନିକଟକୁ ଆମ୍ଭେମାନେ ପତ୍ର ଲେଖି ଥିଲୁଁ । ତେତେବେଳେ ସେ ଆମ୍ଭମାନଙ୍କୁ ଜଣାଇଥିଲେ ଯେ ଅଳ୍ପବେତନରେ ଓଡ଼ିଆ ଶିକ୍ଷକ ମିଳିବ ନାହିଁ ବୋଲି ତାଙ୍କର ବିଶ୍ୱାସ, ତଥାପି ସେ ଭବିଷ୍ୟତରେ ଆମ୍ଭମାନଙ୍କଦ୍ୱାରା ଓଡ଼ିଆ ଶିକ୍ଷକ ସଂଗ୍ରହର ଚେଷ୍ଟାକରିବେ । କିନ୍ତୁ ଦୁଃଖର ବିଷୟ ତାଙ୍କର କଥା କାର୍ଯ୍ୟ ପରିଣତ ହେଲାନାହିଁ । ପଶ୍ଚିମା ଶିକ୍ଷକ ନିଯୋଗରେ ଗବର୍ଣ୍ଣମେଣ୍ଟଙ୍କର କିଛିମାତ୍ର ସ୍ୱାର୍ଥନାହିଁ ବରଂ କାର୍ଯ୍ୟରେ କ୍ଷତି, ତଥାପି ଗବର୍ଣ୍ଣମେଣ୍ଟ କାହିଁକି ଯେ ପଶ୍ଚିମାଶିକ୍ଷକର ପକ୍ଷପାତୀ, ଆମ୍ଭେମାନେ ବୁଝିବାକୁ ଅକ୍ଷମ । ବର୍ତ୍ତମାନ ରେଳପଥ ଯୋଗୁଁ ଓଡ଼ିଶା ଏବଂ ସମ୍ବଲପୁରର ଦୂରତ୍ୱ ହ୍ରାସ ହୋଇଅଛି ଗବର୍ଣ୍ଣମେଣ୍ଟ ଇଚ୍ଛାକଲେ ଅଳ୍ପ ବେତନରେ ମଧ୍ୟ ଅନେକ ଶିକ୍ଷିତ ଓଡ଼ିଆ ପାଇପାରିବେ ସନ୍ଦେହ ନାହିଁ ।

*ଭା୧୨ଗ, ସଂ୨୧ଖ୍ୟା, ୨୬/୯/୧୯୦୦*

## ଶିକ୍ଷିତ ମାନଙ୍କର ସାହିତ୍ୟଚର୍ଚ୍ଚା ।

ଉତ୍କଳଦେଶରେ ଶିକ୍ଷିତ ବ୍ୟକ୍ତିଙ୍କର ସଂଖ୍ୟା ବର୍ଷକୁ ବର୍ଷ ବୃଦ୍ଧିଲାଭ କରୁଅଛି, ବଡସୁଖର ବିଷୟ । କିନ୍ତୁ ବଡସୁଖ ସଂଗରେ ବଡଦୁଃଖର ବିଷୟ ଏହି ଯେ ଦେଶରେ ସୁଶିକ୍ଷିତ ସଂଖ୍ୟା ବୃଦ୍ଧିର ଫଳ ସ୍ୱରୂପ ଦେଶୋନ୍ନତିର ସୁଲକ୍ଷଣମାନ ସୁସ୍ପଷ୍ଟ ଦୃଷ୍ଟି ଗୋଚର ହେବାକୁ ନାହିଁ । ଶିକ୍ଷିତ ବ୍ୟକ୍ତିମାନେ ଶିକ୍ଷକ, ହାକିମ, ବ୍ୟବହାରଜୀବ, ପରିଦର୍ଶକ ପ୍ରଭୃତି ସମ୍ମାନିତ କାର୍ଯ୍ୟକରି ସୁଖରେ କାଳଯାପନ କରୁଅଛନ୍ତି , ନିଜ ନିଜର ପାରିବାରିକ ଉନ୍ନତିର ଚେଷ୍ଟା କରୁଅଛନ୍ତି ସତ୍ୟ, କିନ୍ତୁ ସେମାନଙ୍କର ଦେଶସେବା ପ୍ରତି ସମୁଚିତ ଅନୁରାଗ ଥିବାର ଦେଖାଯାଉ ନାହିଁ । ବଙ୍ଗଦେଶର ଶିକ୍ଷିତ ବ୍ୟକ୍ତିମାନେ ନାନା ଉପାୟରେ ଦେଶ ସେବାରୂପ ମହାବ୍ରତ ପାଳନ କରୁଅଛନ୍ତି, ଉତ୍କଳଦେଶର କେତେଜଣ ଶିକ୍ଷିତବ୍ୟକ୍ତି ସ୍ୱଦେଶର ହିତଚିନ୍ତାରେ ମସ୍ତିଷ୍କ ନିଯୋଗ କରିଥାନ୍ତି ? ଉତ୍କଳ ସକଳ ବିଷୟରେ ଦରିଦ୍ର । ଏ ଦେଶର ଅଳ୍ପଶିକ୍ଷିତ ମାନଙ୍କର ଜ୍ଞାନୋନ୍ନତି ବିଷୟରେ ଶିକ୍ଷିତ ମାନଙ୍କର ସର୍ବପ୍ରଥମ ଚେଷ୍ଟା କରିବା ଉଚିତ୍ । ବଙ୍ଗଦେଶରେ ଶିକ୍ଷିତ ବ୍ୟକ୍ତି ମାନଙ୍କଦ୍ୱାରା ନିତ୍ୟ ନୂତନ ପୁସ୍ତକ ପତ୍ରିକା ପ୍ରକାଶିତ ହେଉଅଛି, ତାହା ପାଠକରି ଅନେକଲୋକ ନିଜ ନିଜର ଜ୍ଞାନର ଉନ୍ନତି କରୁଅଛନ୍ତି । ଉତ୍କଳ ଦେଶରେ ପାଠକରି ଜ୍ଞାନୋନ୍ନତି ବିଧାନ କରିବା ଭଳି ପୁସ୍ତକ ପତ୍ରିକାର ନିତାନ୍ତ ଅଭାବ କହିଲେ ଅତ୍ୟୁକ୍ତି ହେବନାହିଁ । ଉତ୍କଳର ସମ୍ବାଦ ପତ୍ର, ସାମୟିକ ପତ୍ରିକା ଗୁଡିକ ନିୟମିତ ରୂପେ ପାଠକଲେ ଏଦେଶ ଶିକ୍ଷିତ ଶୂନ୍ୟପରି ପ୍ରତୀତ ହେବ, ବଙ୍ଗଦେଶର ପତ୍ରିକାମାନ ଦର୍ଶନ, ବିଜ୍ଞାନ, ଇତିହାସ ପ୍ରଭୃତି ହିତକର ଗୁରୁତର ବିଷୟମାନଙ୍କରେ ପୂର୍ଣ୍ଣ, ଚିନ୍ତାଶୀଳ ସୁଶିକ୍ଷିତ ବ୍ୟକ୍ତିମାନେ ତହିଁର ଲେଖକ, ଉତ୍କଳ ଦେଶରେ ଏପରି ଲେଖକ କେତେଜଣ ବାହାରିବେ ? ଅଥଚ ଶିକ୍ଷିତ ଏବଂ ଶିକ୍ଷିତାଭିମାନୀ ସଂଖ୍ୟା ଅଳ୍ପନୁହେଁ ।

ଶିକ୍ଷିତ ବ୍ୟକ୍ତି ମାନଙ୍କର ଜ୍ଞାନ ବିଜ୍ଞାନ ଚର୍ଚ୍ଚା ବିରୁଦ୍ଧରେ ପ୍ରଧାନ ଆପତ୍ତି ଅବକାଶ ଭାବ । ଯେଉଁମାନେ ଏପରି ଆପତ୍ତି କରନ୍ତି ସେହିମାନେ ତାସ ପାଶାକ୍ରୀଡ଼ା, ନାଚ, ତମାସା ଦର୍ଶନ, ବିବିଧ ଗାଳଗଳ୍ପ, ପରନିନ୍ଦା - ଆତ୍ମପ୍ରଂଶସାରେ ଅନେକ ସମୟ ନଷ୍ଟ କରୁଥିବାର ଦେଖି 'ଅବକାଶାଭାବ' ଆପତ୍ତି ଯଥାର୍ଥ ବୋଲି କିପରି ସ୍ୱୀକାର କରିବୁଁ ? ଆମ୍ଭମାନଙ୍କ ବିବେଚନାରେ ଏହା ସେମାନଙ୍କପକ୍ଷେ ଆପତ୍ତି ନୁହେ - ଆପତ୍ତି ନାମରେ ଆତ୍ମପ୍ରତାରଣା ମାତ୍ର ।

ଦ୍ୱିତୀୟ ଆପତ୍ତି – ଏ ଦେଶରେ ଗୁଣଗ୍ରାହୀ, ଉତ୍ସାହ ଦାତାର ଅଭାବ । ଏ ଆପତ୍ତିରେ କିଛି ସାରବତ୍ତା

ଥିଲେ ମଧ୍ୟ ଏହି କାରଣ ପ୍ରଦର୍ଶନକରି ଶକ୍ତି ସଂଯତ କରିବା ବୁଦ୍ଧି ମତ୍ତାର ପରିଚାୟକ ନୁହେଁ । ପ୍ରାଣରେ ପ୍ରବଳ ଅନୁରାଗ ପୋଷଣକରି କାର୍ଯ୍ୟପ୍ରବୃତ୍ତ ହେଲେ ଉପରୋକ୍ତ ପ୍ରତିବନ୍ଧକ ସତ୍ୱେ ଏକାବେଳକେ ଅକୃତ କାର୍ଯ୍ୟହେବାର ଆଶଙ୍କା ନାହିଁ । ଉତ୍କଳର ବିଖ୍ୟାତକବି ଉପେନ୍ଦ୍ରଭଞ୍ଜଙ୍କୁ କେତେ ଜଣ ଉତ୍ସାହ ଦେଇଥିଲେ କେତେଜଣ ତାଙ୍କର ଗୁଣର ସମାଦର କରିଥିଲେ । ତଥାପି ସେ ସ୍ୱୀୟ କାର୍ଯ୍ୟଦ୍ୱାରା ମରି ଅମରତ ଲାଭ କରିଅଛନ୍ତି । ଅନେକ ଦିନର କଥା ତେଣେଥାଉ ବର୍ତ୍ତମାନର ଘଟନା ଦେଖ, ପ୍ରବଳ ଅନୁରାଗ ଥିଲା ବୋଲି ଉତ୍କଳର ସୁସନ୍ତାନ ଶ୍ରୀମାନ କାମପାଳ ମିଶ୍ର, ଶ୍ରୀ ନନ୍ଦକିଶୋର ବଳ ଛାତ୍ରାବସ୍ଥାରେ କବି ସମାଜରେ ସ୍ଥାନଲାଭ କରିଥିଲେ, ବର୍ତ୍ତମାନ ସେମାନେ ଉପାଧିଧାରୀ ପଣ୍ଡିତ ହୋଇମଧ୍ୟ ସାହିତ୍ୟଚର୍ଚ୍ଚା ପ୍ରତି ଉଦାସୀନ ନୁହନ୍ତି , ବରଂ ସେମାନେ ଛାତ୍ରାବସ୍ଥାରେ ଉପାର୍ଜିତ ପ୍ରତିଷ୍ଠାର ବୃଦ୍ଧି ସାଧନ କରି ଗ୍ରନ୍ଥକାର ଶ୍ରେଣୀଭୁକ୍ତ ହୋଇ ଅଛନ୍ତି ଅଥଚ ବର୍ତ୍ତମାନ ସେମାନେ ବୃତ୍ତିହୀନ । ସେମାନଙ୍କର ସହପାଠି ସଂଖ୍ୟା ଅନେକ, ସେମାନେ ଶିକ୍ଷିତ ହୋଇ ସୁଦ୍ଧା ଅଶିକ୍ଷିତ ଲୋକଙ୍କ ପରି ସାଧାରଣଙ୍କ ନିକଟରେ ଅବଧି ଅପରିଚିତ ।

ଉତ୍କଳରେ ଓଡିଆ ଓକୀଲତ ଅନେକ ଅଛନ୍ତି, କିନ୍ତୁ କେତେଜଣ ଓକୀଲ ସାହିତ୍ୟ ଚର୍ଚ୍ଚା ବିଷୟରେ ଶ୍ରୀଯୁକ୍ତ ରାମଶଙ୍କର ରାୟଙ୍କର ଶିଷ୍ୟସ୍ଥାନୀୟ ହେବାର ଯୋଗ୍ୟ ? କେତେଜଣ ଶିକ୍ଷିତ ଲୋକ ଶ୍ରୀଯୁକ୍ତ ବିଶ୍ୱନାଥଙ୍କର, ଶ୍ରୀଯୁକ୍ତ କୃଷ୍ଣପ୍ରସାଦ ଚୌଧୁରୀଙ୍କପରି ସାହିତ୍ୟସେବାପ୍ରତି ନିଷ୍ଠାପର ? ଶ୍ରୀଯୁକ୍ତ ଦାମୋଦର ପଟ୍ଟନାୟକ ଜଣେ ଶକ୍ତିଶାଳୀ ଲେଖକ, ତାଙ୍କ ପ୍ରଣୀତ ଜୀବନଚମ୍ପୂ ଅନେକଙ୍କର ନବଜୀବନ ଲାଭରେ ସାହାଯ୍ୟ କରିଅଛି । ସେ ଜଣେ ଚକ୍ଷୁଷ୍ମାନ୍ ବ୍ୟକ୍ତିଥିବାର ପରିଚାୟକ ତାଙ୍କ ପ୍ରଣୀତ "କପିଳାସ ଦର୍ଶନ" ତାଙ୍କର ଅବସ୍ଥାର ଉନ୍ନତି ସଂଗେ ସଂଗେ ସାହିତ୍ୟାନୁରାଗ ବୃଦ୍ଧିର ଆଶା କରିଥିଲୁଁ କିନ୍ତୁ ସେ ଆମ୍ଭମାନଙ୍କୁ ନିରାଶ କରିଅଛନ୍ତି । ଏହିପରି ଆହୁରି କେତେକ ବ୍ୟକ୍ତିଙ୍କର ନାମୋଲ୍ଲେଖ କରାଯାଇପାରେ ।

ନବ୍ୟରୀତିରେ ଶିକ୍ଷିତ ବ୍ୟକ୍ତିମାନଙ୍କ ମଧ୍ୟରେ ହେଲେ ଜଣକେତେ ଅଳ୍ପାଧିକ ପରିମାଣରେ ସାହିତ ଚର୍ଚ୍ଚା କରି ଖ୍ୟାତି ଲାଭ କରି ଅଛନ୍ତି କିନ୍ତୁ ସଂସ୍କୃତଭାଷାରେ ଶିକ୍ଷିତ ବ୍ୟକ୍ତିମାନଙ୍କ ମଧ୍ୟରେ କେତେଜଣ ଏପରି ସୌଭାଗ୍ୟ ଲାଭକରି ଅଛନ୍ତି ? ସଂସ୍କୃତ ଶିକ୍ଷିତ ସଂଖ୍ୟା ବର୍ତ୍ତମାନ ଏ ଦେଶରେ ଅଳ୍ପ ନୁହେ କିନ୍ତୁ ସେମାନଙ୍କ ବିଦ୍ୟା ସେମାନଙ୍କ ଉଦରପୋଷଣର ସାହାଯ୍ୟ କରୁଅଛି ମାତ୍ର, ଦେଶୋପକାରରେ କିଞ୍ଚିନ୍ମାତ୍ର ବ୍ୟୟିତ ହେବାକୁ ନାହିଁ । ସେମାନେ ଇଚ୍ଛାକଲେ ସଂସ୍କୃତ ଭାଷାରେ କାଳୋଚିତଗ୍ରନ୍ଥ ରଚନା କରି, ସଂସ୍କୃତ ଗ୍ରନ୍ଥମାନଙ୍କରୁ ନାନାବିଧ ହିତକରି ଶିକ୍ଷାପ୍ରଦ ବିଷୟମାନ ସଙ୍କଳନ କରି ସ୍ୱଦେଶୀୟ ଲୋକ ମାନଙ୍କ ଜ୍ଞାନୋନ୍ନତି ସାଧନରେ ସାହାଯ୍ୟକରି ପାରନ୍ତେ । କିନ୍ତୁ ସେପରି କରିବା ବିଷୟରେ କେତେଜଣ ଯତ୍ନବାନ୍ ? ଜଣେକେତେ ଖଣ୍ଡିକେତେ ନୂତନଗ୍ରନ୍ଥ ରଚନାକରି ଅଛନ୍ତି ସତ୍ୟ, କିନ୍ତୁ ସେମାନଙ୍କ ନିକଟରେ ଯେତେଦୂର ଆଶା କରାଯାଏ ତାହା ପୂରଣ ହୋଇନାହିଁ ।

ଶିକ୍ଷିତ ବ୍ୟକ୍ତିମାନେ ଦେଶର ସୁସନ୍ତାନ, ସେମାନଙ୍କ ନିକଟରେ ଦେଶ ଅନେକ ଆଶାକରେ । ସେମାନେ ପରସ୍ପରରେ ପରସ୍ପରର ଗୁଣଗ୍ରହଣ, ଉତ୍ସାହବର୍ଦ୍ଧନ ଦେଶୋନ୍ନତି ସାଧନରୂପ ପବିତ୍ର କାର୍ଯ୍ୟ ମାନଙ୍କରେ ବ୍ରତୀ ହେଲେ ଦେଶର ଦଶା ବଦଳିଯିବ । କିନ୍ତୁ ଏପରି ହେବାର ଆଶା କରିବାକୁ ଅନେକ ସମୟରେ ପ୍ରବୃତ୍ତି ହୁଏନାହିଁ, କାରଣ ଶିକ୍ଷିତ ବ୍ୟକ୍ତିମାନେ ନିଜ ନିଜ ସ୍ୱାର୍ଥ ସାଧନାରେ ବିବ୍ରତ, ସେମାନଙ୍କ ମଧ୍ୟରେ କେତେକ ବ୍ୟକ୍ତି ଅଶିକ୍ଷିତ ବ୍ୟକ୍ତିପରି ରକ୍ଷିକାବୃତ୍ତି ଅବଲମ୍ବନରେ ଆଗ୍ରହାନ୍ୱିତଥିବାର ସମୟେ ସମୟେ ଦେଖାଯାଇଥାଏ । ଯେ ଦେଶରେ ଶିକ୍ଷିତ ବ୍ୟକ୍ତିଙ୍କ ଲେଖନୀ 'ସମାଲୋଚନା' ପରି ଆବର୍ଜନା ପ୍ରସବ କରିପାରେ ସେ ଦେଶରେ ସହାନୁଭୂତି, ଗୁଣଗ୍ରାହିତାର ଆଶା କରିବାକୁ କିପରି ପ୍ରବୃତ୍ତି ହେବ ? ସେ ଯାହାହେଉ ଦେଶରେ ଚିନ୍ତାଶୀଳ, ସ୍ୱଦେଶ ବତ୍ସଳ ଶିକ୍ଷିତ ବ୍ୟକ୍ତିର ନିତାନ୍ତ ଅଭାବ ନାହିଁ । ସେମାନେ ପରନିନ୍ଦା, ପର ପ୍ରଶଂସାରେ କର୍ଣ୍ଣପାତ ନକରି ଦେଶ ସମ୍ବନ୍ଧରେ ସ୍ୱସ୍ୱ ପବିତ୍ର କର୍ତ୍ତବ୍ୟ ପାଳନ କରି ମାନବଜୀବନ ଧାରଣ ସଫଳ କରିବାକୁ ସକ୍ଷମ ହେଉନ୍ତୁ , ଆମ୍ଭେମାନେ ଅନ୍ତରର ସହିତ ଏହି କାମନା କରୁଅଛୁଁ ।

*ଭା୧୨ଗ, ସଂ୨୧ଖ୍ୟା, ୨୬/୯/୧୯୦୦*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## "ଉତ୍କଳ ସାହିତ୍ୟ"ର ଆତ୍ମକଥା ।

"ଉତ୍କଳ ସାହିତ୍ୟ"ର ନିଜର ପ୍ରେସ୍ ନଥିବାରୁ ଏବଂ ଅନ୍ୟାନ୍ୟ ପ୍ରେସ୍‌ବାଲାମାନେ ଉକ୍ତପତ୍ରିକା ଛପାଇଦେବା ସକାଶେ ସମ୍ମତ ହେଉ ନଥିବାରୁ ତାହା ନିୟମିତରୂପେ ପ୍ରକାଶ ହୋଇ ପାରୁନାହିଁ । ସମ୍ପାଦକ ମହାଶୟ ଆପଣାର ଗ୍ରାହକମାନଙ୍କ ନିକଟରେ ବାରମ୍ବାର କହି ଆସୁଅଛନ୍ତି ଯେ ସେମାନେ ସ୍ୱ ସ୍ୱ ଦେୟ ଟଙ୍କା ଶିଘ୍ର ପ୍ରଦାନ କଲେ ସେ ଗୋଟିଏ ପ୍ରେସ ସ୍ଥାପନକରି "ଉତ୍କଳ ସାହିତ୍ୟ" ର ଅକାଲ ମୃତ୍ୟୁ ଆଶଙ୍କା ଦୂର କରିବେ । କିନ୍ତୁ ଅଧିକାଂଶ ଗ୍ରାହକ ତାହାଙ୍କ ନ୍ୟାୟସଂଗତ ପ୍ରାର୍ଥନା ଶ୍ରବଣରେ ବଧୀର ହେଲେ । ସମ୍ପାଦକ ଅନନ୍ୟୋପାୟ ହୋଇ ୮୦୦ ଜଣ ଗ୍ରାହକ ମଧ୍ୟରେ ୪୦୦ ଜଣଙ୍କ ନାମର କାଗଜ ବନ୍ଦକରି ଦେଇଅଛନ୍ତି । ଏହି ୪୦୦ ଜଣ ମଧ୍ୟରେ ଛାତ୍ର, ଶିକ୍ଷକ, ପଣ୍ଡିତ, ସ୍କୁଲ ସବ୍‌ଇନ୍ସପେକ୍ଟର, ମୁକ୍ତାର ଓକୀଲ, ସବ୍‌ଡିପୋଟୀ, ଡିପୋଟୀ, କିରାନୀ, ମୋହରିର, ସର୍ଭେୟର, ସବ୍‌ଓଭରସିୟର୍, ପୋଲିଷ ସବ୍‌ଇନ୍ସପେକ୍ଟର, ଲାଖରାଜଦାର, ଜମିଦାର, ମେନେଜର, ଦେଓ୍ୱାନ ସକଳ ଶ୍ରେଣୀର ଲୋକଅଛନ୍ତି । ସେମାନଙ୍କ ଦେୟ ପରିମାଣ ଏକଟଙ୍କାଠାରୁ ୬ ଟଙ୍କା ପର୍ଯ୍ୟନ୍ତ । ଦେଶର ହିତସାଧନା କରିବା ତେଣେ ଥାଉ ସେମାନେ ଦେଶସେବା କରି ଉଚିତ୍ ପ୍ରାପ୍ୟ ମାଡ଼ି ବସିବାକୁ କିଞ୍ଚିନ୍ମାତ୍ର ଲଜ୍ଜିତ ହେବାକୁ ନାହିଁ । ସେମାନଙ୍କ ମନୁଷ୍ୟତାକୁ ଶତ ଧିକ୍କାର । ଆମ୍ଭେମାନେ ମଧ ଗ୍ରାହକ ମଧ୍ୟରୁ ଅନେକ ଅଗ୍ରାହକଙ୍କୁ ବର୍ଷକୁ ବର୍ଷ ଚିହ୍ନି ସେମାନଙ୍କୁ ଘୃଣାର ସହିତ ବିଦାୟ ଦେଉଅଛୁଁ । ଅଳ୍ପଦିନପରେ ସେହି ଶ୍ରେଣୀର କେତେକ ବ୍ୟକ୍ତିଙ୍କ ନାମଧାମ ହିତୈଷିଣୀରେ ପ୍ରକାଶ କରାଯିବ । ଯେ ଦେଶରେ ଶିକ୍ଷିତ ଲୋକମାନେ ଏପରି ନୀଚମନା ସେ ଦେଶର ଉନ୍ନତିର ଆଶା ପୋଷଣ ବାତୁଳତା ମାତ୍ର । ସେମାନଙ୍କୁ ସାଧାରଣଙ୍କ ନିକଟରେ ପରିଚିତ କରାଇଦେବା ସକାଶେ ସମ୍ପାଦକ ମହାଶୟଙ୍କୁ ଅନୁରୋଧ କରୁଅଛୁଁ । ଏପରି ନକଲେ ଲୋକମାନଙ୍କର ଉକ୍ତ ପ୍ରକାର କୁ ପ୍ରବୃତ୍ତି ଦୂରହେବ ନାହିଁ ।

*ଭା।୧୨ଗ,ସଂ୨୩ଖ୍ୟା,୧୭।୧୦।୧୯୦୦*

# ୧୯୦୧

## ପାଠ୍ୟପୁସ୍ତକ ନିର୍ବାଚନ ସମିତି ।

ଓଡ଼ିଶ୍ୟାର ଟେକ୍ଷବୁକ୍ କମେଟୀର ସଦସ୍ୟ ପଦରେ ନିମ୍ନଲିଖିତ ବ୍ୟକ୍ତିମାନେ ନିଯୁକ୍ତ ହୋଇଅଛନ୍ତି ।

ଓଡ଼ିଶ୍ୟା ସ୍କୁଲ ଇନ୍‌ସ୍ପେକ୍ଟର –ସଭାପତି ।

କଟକ ସ୍କୁଲ ଡେଃ. ଇଃ ପେକ୍ଟର –ସମ୍ପାଦକ ।

ବାବୁ ହରିଷନ୍ଦ୍ର ଦତ୍ତ -ପ୍ରଫେସର ରେଭେନ୍ସା କଲେଜ କଟକ ।

ବାବୁ ଗୌରଶ୍ୟାମ ମହାନ୍ତି- ସବ୍ ଡେଃ କଲେକ୍ଟର କଟକ ।

ବାବୁ ସୁଦାମଚନ୍ଦ୍ର ନାୟକ- ଅଶିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଗଡଜାତ ମହାଲ ।

ବାବୁ ନୀଳମଣି ଋନ୍ଦ ଦେ -ହେଡମାଷ୍ଟର କଟକ ପ୍ୟାରୀମୋହନ ଏକାଡେମୀ

ବାବୁ ବ୍ରଜାନନ୍ଦ ଦାସ- ହେଡମାଷ୍ଟର କଟକ ମିଶନ ହାଇ ଇଂଲିଶ ସ୍କୁଲ ।

ନୂତନ ସଦ୍ୟସ୍ୟ ମାନଙ୍କର ଓଡିୟା ଭାଷାରେ କେତେ xxxx ଯୋଗ୍ୟତା କହି ନପାରୁଁ । ସେମାନଙ୍କର xxxx ସେମାନଙ୍କ ନାମ ସଭ୍ୟ ତାଲିକାରେ xxxx ହୋଇଅଛୁଁ ।

*ଭା୧୨ଗ, ସଂ୪୯ଖ୍ୟା, ୧୬।୪।୧୯୦୧*

## ଓଡିୟା ଭାଷାର ଅଧିକାର ବୃଦ୍ଧି ।

ଆମ୍ଭମାନଙ୍କର ପାଠକବର୍ଗ ଅବଗତ ଅଛନ୍ତି ଯେ ଏଫ୍,ଏ, ଓ ବି,ଏ, ପରୀକ୍ଷାରେ ଓଡ଼ିଆ ଭାଷାର ରଚନା ବିଷୟରେ ପ୍ରଶ୍ନ ପ୍ରଦାନ କରିବା ନିମିତ୍ତ କଟକ କଲେଜର ଓଡ଼ିଆ ଛାତ୍ରଗଣ ସିଣ୍ଡିକେଟ ନିକଟରେ ପ୍ରାର୍ଥନା କରି ବିଫଳ ମନୋରଥ ହୋଇଥିଲେ । ମାତ୍ର ସେମାନେ ଏଥିରେ ନିରାଶ ବା ହତୋତ୍ସାହ ନହୋଇ ବଙ୍ଗେଶ୍ୱରଙ୍କ ଛାମୁକୁ ଖଣ୍ଡିଏ ଆବେଦନ ପତ୍ର ପ୍ରେରଣ କରିଥିଲେ । ବର୍ତ୍ତମାନ "ଉତ୍କଳ ସାହିତ୍ୟ" ରେ ଆନନ୍ଦର ସହିତ ପାଠକଙ୍କୁ ଯେ ଛାତ୍ରମାନଙ୍କର ଚେଷ୍ଟା ଫଳବତୀ ହୋଇଅଛି । ବିଶ୍ୱବିଦ୍ୟାଳୟର ଏଫ୍, ଏ ଓ ବି,ଏ ପରୀକ୍ଷାରେ ଓଡ଼ିଆ ଭାଷାର ନ୍ୟାଯ୍ୟଦାବୀ ଗୃହୀତ ହୋଇଅଛି । ଛାତ୍ରମାନେ ନିଜ ଚେଷ୍ଟାରେ ଓଡ଼ିଆ ଭାଷାର ଅଧିକାର ବୃଦ୍ଧିକରି ଆମ୍ଭମାନଙ୍କର ଅଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ବର୍ତ୍ତମାନ ଛାତ୍ରମାନେ ଓଡ଼ିଆ ସାହିତ୍ୟରେ କିପରି ସମ୍ୟକ୍ ଜ୍ଞାନ ଲାଭକରି ଦେଶହିତୈଷିମାନଙ୍କର ତହିଁର ଉପାୟ ଚିନ୍ତା କରିବା ଉଚିତ୍ ।

*ଭା୧୩ଗ, ସଂ୨ଖ୍ୟା, ୨୨।୫।୧୯୦୧*

## ଓଡିଆ ଅନଭିଜ୍ଞ ଅମଲା ।

ପୁରୀର ସମ୍ବାଦଦାତା ଲେଖିଅଛନ୍ତି କି ସେଠାକୁ ରଙ୍ଗପୁରରୁ ଯେଉଁ ଅତିରିକ୍ତ ମୁନସଫ୍ ଆସିଅଛନ୍ତି, ସେ ଆପଣା ସଙ୍ଗେ ଅମଲା ହେଇ ଆସି ଅଛନ୍ତି । ଅମଲାମାନେ ସମସ୍ତେ ବଙ୍ଗାଳୀ, ଓଡିୟା ଭାଷା କେହି ଜାଣନ୍ତି ନାହିଁ । ସୁତରାଂ ସେମାନେ ଏକ ପ୍ରକାର ପେନସନ ଭୋଗ କରୁଅଛନ୍ତି ଓ ତାଇଦନବି ସମାନେ କାର୍ଯ୍ୟ ଚଲାଉ ଅଛନ୍ତି । ଏଥିରେ ସରକାରୀ କାର୍ଯ୍ୟରେ ମାମଲତକାର ମାନଙ୍କର ଯେସବୁ ଅସୁବିଧା ଓ ବ୍ୟାଘାତ ଘଟୁଅଛି ତାହା ତ କହିଲେ ମଧ୍ୟ ସର୍ବସାଧାରଣ ଅନାୟାସରେ ବୁଝିପାରିବେ । ଆମ୍ଭେମାନେ ଏ ବିଷୟ ଜିଲା ଜଜସାହେବଙ୍କୁ ଜଣାଇଁ ବିଶେଷ

ଅନୁରୋଧ କରୁଅଛୁଁ କି ସେ ଅବିଳମ୍ୱେ ବିହିତ ପ୍ରତୀକାର କରିବେ। ଅଦାଲତରୁ ବିଚାର ପାଇବାର ବିଳମ୍ୱ ଏବଂ ଖର୍ଚ୍ଚାନ୍ତ ଗୋଟିଏ ଡାକ ବଚନ ହୋଇଅଛି। ଅନିବାର୍ଯ୍ୟ କାରଣକୁ କାହାରି ବଳ ନାହିଁ ସତ୍ୟ ମାତ୍ର ଯେଉଁମାନେ ଅଦାଲତର ଭାଷା ନଜାଣନ୍ତି ସେମାନଙ୍କୁ ନିଯୁକ୍ତ କରି ବସାଇରଖି ବିନା ବେତନର ଲୋକଙ୍କ ଦ୍ୱାରା କାର୍ଯ୍ୟ ଚଳାଇବାର ଅନିଷ୍ଟକାରିତା ଜାଣି ଶୁଣି ତାହା ନିବାରଣର ଉପାୟ ନ କରିବା ଜ୍ଞାନକୃତ ତ୍ରୁଟି ଭିନ୍ନ ଆଉ କି ବୋଲା ଯିବ। ଦୀଃ

*ଭା/୧୩ଗ, ସଂ୫ଖ୍ୟା, ୧୨/୬/୧୯୦୧*

## ଭାଷାବିଷୟକ ଆବେଦନ ସମ୍ୱନ୍ଧେ ଅନୁସନ୍ଧାନ।

ଗତ କେତେକ ବର୍ଷହେଲା ହିନ୍ଦିଭାଷା ସମ୍ୱଲପୁର ଜିଲ୍ଲାର ଅଦାଦଲର ଭାଷା ହୋଇଅଛି, ହିନ୍ଦିଭାଷା ପ୍ରଚଳନ ହେତୁ ନାନା ପ୍ରକାରକ୍ଷତି ଏବଂ ଅସୁବିଧା ହେଉଥିବାରୁ ସମ୍ୱଲପୁର ଜିଲ୍ଲାର ଲୋକମାନେ ଓଡ଼ିଆଭାଷା ପୁନଃ ପ୍ରଚଳନ ସକାଶେ ଖଣ୍ଡିଏ ଯୁକ୍ତିପୂର୍ଣ୍ଣ ଆବେଦନ ପତ୍ର ମହିମବର ରାଜପ୍ରତିନିଧି ଏବଂ ଗବର୍ଣ୍ଣର ଜେନେରଲ ବାହାଦୂରଙ୍କ ଛାମୁକୁ ପ୍ରେରଣ କରିଥିଲେ। ଆମ୍ଭେମାନେ ସେହି ଆବେଦନପତ୍ରର ପ୍ରତିଲିପି ଯଥାକାଳରେ ଏହି ପତ୍ରିକାରେ ପ୍ରକାଶ କରିଅଛୁଁ। ବର୍ତ୍ତମାନ ଆନନ୍ଦରସହିତ ଅବଗତ ହେଲୁଁ ଯେ ମହାମାନ୍ୟ ବଡଲାଟ ବାହାଦୂର ସେହି ଆବେଦନପତ୍ର ଲିଖିତ ଗୁରୁତର କ୍ଷତି ଏବଂ ଅସୁବିଧା ପ୍ରଭୃତିବିଷୟର ସତ୍ୟାସତ୍ୟ ଭଲରୂପେ ଅନୁସନ୍ଧାନକରି ରିପୋର୍ଟ କରିବା ସକାଶେ ଉକ୍ତ ଆବେଦନପତ୍ର ସ୍ଥାନୀୟ ଡେପୁଟୀ କମିଶ୍ନରଙ୍କ ନିକଟକୁ ପଠାଇଦେଇ ଅଛନ୍ତି। ସାହେବ ମହୋଦୟ ଅନୁସନ୍ଧାନଭାର ବାବୁ ବୈକୁଣ୍ଠନାଥ ପୂଜାହାରୀ ଏବଂ ଶ୍ରୀଯୁକ୍ତ ଜାକରଅଲି ଏକଷ୍ଟ୍ରା ଅଶିଷ୍ଟଣ୍ଟ କମିଶନର ଦ୍ୱୟଙ୍କୁ ଅର୍ପଣକରି ଅଛନ୍ତି । ବୈକୁଣ୍ଠବାବୁ ଏ ଜିଲ୍ଲାର ଲୋକ , ସୁବିଧା ଅସୁବିଧାର କଥା ତାହାଙ୍କୁ ଉତ୍ତମରୂପେ ଜଣାଅଛି ସୁତରାଂ ଆଶାହେଉ ଅଛି ଯେ ସେମାନଙ୍କର ମନ୍ତବ୍ୟ ସତ୍ୟପୂର୍ଣ୍ଣ ହୋଇ ଆବେଦନପତ୍ର ଲିଖିତ ବିଷୟର ପୋଷକତା କରିବ। ଅଶିକ୍ଷିତ, ଅଳ୍ପଶିକ୍ଷିତ ଦେଶର ଲୋକମାନଙ୍କ ସକାଶେ ସ୍ଥାପିତ ବିଦ୍ୟାଳୟ ପ୍ରଭୃତିରେ ଅପ୍ରଚଳିତ ବିଜାତୀୟ ଭାଷା ପ୍ରଚଳନ ଯେ ନାନାପ୍ରକାରରେ କ୍ଷତି ଏବଂ ଅସୁବିଧା ଜନକ ଏକଥା ଶିକ୍ଷିତ ବ୍ୟକ୍ତିମାତ୍ରେ ବୁଝିପାରିବେ। ସମ୍ୱଲପୁରର ବର୍ତ୍ତମାନ ଡେପୁଟୀ କମିଶ୍ନର ବାହାଦୂର ଜଣେ ସହୃଦୟ,ନ୍ୟାୟ ପରାୟଣ ବ୍ୟକ୍ତି , ଓଡ଼ିଆଭାଷା ପ୍ରଚଳିତ· ଦେଶରେ ହିନ୍ଦିଭାଷା ପ୍ରଚଳନ ଯେ ଓଡିଆମାନଙ୍କ ପକ୍ଷେ କ୍ଷତିକର ଏକଥା ସେ ଅବଶ୍ୟ ସ୍ୱୀକାର କରିବେ। ସମଗ୍ର ଉତ୍‌କଳର ସଭାସମିତି ଏବଂ ସମ୍ୱାଦପତ୍ର ଏ ସମ୍ୱନ୍ଧେ ଆପଣ ଆପଣାର ମନ୍ତବ୍ୟ ସମ୍ୱଲପୁରର ଡେପୁଟୀ କମିଶନରଙ୍କ ନିକଟକୁ ଶିଘ୍ର ପଠାଇଲେ, ତାହା ତାଙ୍କର ମତଗଠନର ପୋଷକତା କରିବ। ଏ ବିଷୟରେ ଆଉ କାଳବିଳମ୍ୱ କରିବା ଉଚିତ୍ ନୁହେଁ। ଦୀଃ

*ଭା/୧୩ଗ, ସଂ୫ଖ୍ୟା, ୧୨/୬/୧୯୦୧*

## ସମ୍ୱଲପୁର ଜିଲ୍ଲାରେ ହିନ୍ଦୀଭାଷା ପ୍ରଚଳନହେତୁ କ୍ଷତି, ଏବଂ ରାଜକାର୍ଯ୍ୟରେ ବିଦେଶୀଙ୍କ ଆଧିପତ୍ୟ।

ପ୍ରତି ୬ ମାସରେ ୫ ଗୋଟି ଶିକ୍ଷକଙ୍କୁ ହିନ୍ଦି ପଢ଼ିବାପାଇଁ ରାୟପୁରକୁ ପଠାଯାଏ,ଏଥିରେ କିଛି ଉପକାର ନାହିଁ; ଶିକ୍ଷକମାନେ ଆଜିସୁଦ୍ଧା ହିନ୍ଦିରେ ଫଳ ଦେଖାଇ ନାହାନ୍ତି; ଅଳ୍ପ ବେତନଭୋଗୀ ଶିକ୍ଷକଙ୍କ ପକ୍ଷରେ ଘୋର ଦୁଃଖ।

ଓଡ଼ିୟା ବାଳକମାନଙ୍କ ପକ୍ଷରେ ହିନ୍ଦିଭାଷା ଶିକ୍ଷା କ୍ଷତି ଜନକ। କୋମଳ ମାତୃଭାଷା ଶିକ୍ଷା କରିବାରେ ସେମାନଙ୍କର ମସ୍ତିଷ୍କ କ୍ଳାନ୍ତ ହେଉଅଛି ଆଉ ଗୋଟିଏ ଭାଷା ଶିକ୍ଷାକଲେ ମସ୍ତିଷ୍କର ବଳ ଭାଙ୍ଗି ପଡିବା ସ୍ୱାଭାବିକ।

ଅର୍ଥାଭାବରୁ ୮୨ ଗୋଟି ସ୍କୁଲ ଉଠିଯାଇଅଛି। ହିନ୍ଦିଶିକ୍ଷାରେ ଯେଉଁ ଅର୍ଥ ବ୍ୟୟ ହେଉଅଛି ତାହା ଏଥିରେ ବ୍ୟୟ ହୋଇ ପାରନ୍ତା, ଶିକ୍ଷାବ୍ୟୟ ଊଣା କରାନଯାଇ ଅନ୍ୟବ୍ୟୟ ଊଣା କରାଯାଇ ପାରନ୍ତା । ଏଠାରେ ଆଜି

ପର୍ଯ୍ୟନ୍ତ ଅନେକେ ଶିକ୍ଷାର ମୂଲ୍ୟ ବୁଝିନଥିବାରୁ ସେମାନଙ୍କୁ ସମୟେ ସମୟେ ଭୟ ଦେଖାଇ କାର୍ଯ୍ୟ ନିର୍ବାହ ହୁଏ।

ଶିକ୍ଷାବିଭାଗର ଉଚ୍ଚ ଉଚ୍ଚ କାର୍ଯ୍ୟରେ ହିନ୍ଦିଭାଷୀ ଲୋକଙ୍କୁ ନିଯୁକ୍ତ କରାଯାଇଅଛି। ଯଥା— ୧ - ହାଇସ୍କୁଲର ଭାବି ହେଡମାଷ୍ଟର ବିଷ୍ଣୁପନ୍ଥ , ୨- ସହକାରୀ ଶିକ୍ଷକ ବାଳଗୋବିନ୍ଦ ଶୁକ୍‌ଳ, ୩-ସହକାରୀ ଶିକ୍ଷକ ଶାଖାରାମ ଗୋପାଳ ନିସାଲ, ୪-ସ୍କୁଲସମୂହର ଡିପୋଟୀ ଇନ୍‌ସ୍‌ପେକ୍ଟର ଗୋଲାବ ସିଂହ।

ହାଇସ୍କୁଲ ସମ୍ବନ୍ଧରେ ଇନ୍‌ସ୍‌ପେକ୍ଟର ଜେନେରଲ ଯେଉଁ ମନ୍ତବ୍ୟ ଦେଇଅଛନ୍ତି ତାହା ନିତାନ୍ତ ମନ୍ଦ। ସ୍କୁଲ ଭିଯିଟର ବହି ଅଣାଯାଉ। ଆଜକୁ ପ୍ରାୟ ୧୫ ବର୍ଷହେଲା ଓଡ଼ିଆ ଭାଷା ଜାଣୁ ନଥିବା ହେଡ୍‌ମାଷ୍ଟର ଓ ୧ମ ୨ୟ ସାହାଯ୍ୟକାରୀ ଶିକ୍ଷକ ନିଯୁକ୍ତ ହେଉ ଅଛନ୍ତି।

ହିନ୍ଦୀ ସ୍କୁଲ କମିଟୀ ଗୋଟିଏ ପୁସ୍ତକ କଲେ କି ହିନ୍ଦୀ ଭାଷା ଓଡିୟା ସ୍କୁଲମାନଙ୍କରେ ଶିକ୍ଷା ଦିଆଯାଉ। ଏ ବିଷୟରେ ହେଡମାଷ୍ଟର, ସ୍କୁଲଇନସ୍‌ପେକ୍ଟର ଜେନେରଲ ଅସ୍ୱୀକାର କଲେ ଏବଂ ଡିପୋଟି କମିଶ୍ନରଙ୍କ ଦ୍ୱାରା ମ୍ୟୁନିସିପଲ କମିଟିର ମତ ପଚାରିଲେ। କମିଟି ସୁଦ୍ଧା ଅସ୍ୱୀକାର କଲେ। ଜିଲ୍ଲା ସାହେବ ତାଙ୍କମତ ଓ କମିଟି ମତ ଜେନେରଲ ସାହେବଙ୍କ ଠାକୁ ପଠାଇଲେ, କାଗଜ ପତ୍ର ଅଫିସରେ ଥିବ।

ସମନ ନୋଟିସ, ଅର୍ଜିର ନକଲ କାର୍ଯ୍ୟଲିଷ୍ଟ ଇତ୍ୟାଦି ହିନ୍ଦି ଭାଷାରେ ଲେଖା ଯାଉଅଛି ପୁନଶ୍ଚ ଅର୍ଜିନବିସମାନେ ହିନ୍ଦିରେ ଭଲରୂପେ ଭାବ ପ୍ରକାଶ କରି ପାରନ୍ତି ନାହିଁ। ସମ୍ବଲପୁରର ହିନ୍ଦି ବିଦେଶୀମାନେ ବୁଝି ପାରନ୍ତି ନାହିଁ । ଏଥିରେ ପ୍ରମାଣ ସମସ୍ତେ ଦେଇ ପାରନ୍ତି। ଏଥିର ପ୍ରମାଣସ୍ୱରୂପ ବର୍ତ୍ତମାନ ସବ୍‌ରେଜିଷ୍ଟରଙ୍କ ଉଦାହରଣ ଦିଆଯାଇପାରେ। ସେ ଏଠାକାର ହିନ୍ଦି ବୁଝିନପାରିବାରୁ ଜଣେ ଓଡିୟାର ସାହାଯ୍ୟରେ କାର୍ଯ୍ୟ ଚଳାଉ ଅଛନ୍ତି।

ଭୂତପୂର୍ବ ଗଭର୍ଣ୍ଣର ଜେନେରଲ ଆଦେଶ ଦେଇ ଥିଲେ କି ପୁରୁଣା ଚାକରଙ୍କୁ ବଦଳୀ କରାଯିବ ନାହିଁ, ରାଜକାର୍ଯ୍ୟର ସୁବିଧା ନିମନ୍ତେ ଅତ୍ୟନ୍ତ ପ୍ରୟୋଜନ ହେଲେ ବିଦେଶୀ ନିଯୁକ୍ତ ହେବେ ଏବଂ ସମସ୍ତ ଶ୍ରେଣୀୟ ବିଦେଶୀ କର୍ମଚାରୀ ଓଡ଼ିଆ ଶିକ୍ଷା କରିବେ। ଏହି ଆଦେଶ ଆଦୌ ପ୍ରତିପାଳିତ ହୋଇନାହିଁ। ଅନିରୁଦ୍ଧ ବାବୁ, ସଦାଶିବ ମହାପାତ୍ର, ରତ୍ନା ପଧାନ, ମହାଦେବ ବକ୍‌ସି, ହରି ସାହାଣି, କୃଷ୍ଣ ରଥ,ଦାମୋଦର ମିଶ୍ର, ଗୋକୁଳେଶ୍ୱର ବହିଦାର, ବୈକୁଣ୍ଠ ପାଢି, ଦୈତାରୀ ମିଶ୍ର ଇତ୍ୟାଦି ସମସ୍ତେ ଅନ୍ୟ ଜିଲାକୁ ବଦଳିହୋଇ ଫେରି ଆସିଲେ। ଜିଲାର ସବୁ କର୍ମଚାରୀ, ଡାକଘର ଏବଂ ବାରିକ୍ ମାଷ୍ଟର ମହକୁମାର ସକଳ କର୍ମଚାରି, ପୋଲିଷର ଅର୍ଦ୍ଧେକ , ବନ୍ଦୋବସ୍ତର ପ୍ରାୟ୨୦ ଜଣ , ଜଙ୍ଗଲର ୨ କିରାନି ଏବଂ ତହସିଲଦାର, ନାୟବ ତହସିଲଦାର,ଜିଲ୍ଲା ସାହେବଙ୍କର କଚେରୀରେ ସବ୍ ରେଜିଷ୍ଟର, ଏକସାଇଯ ଦାରୋଗା ଇତ୍ୟାଦି ଏମାନଙ୍କ ମଧ୍ୟରେ ଅତ୍ୟଚ୍ଚ ୫୦ ଟଙ୍କାରୁ ୧୦୦ଟଙ୍କା ବେତନ ଭୋଗୀ ଏବଂ ବାକୀ ସମସ୍ତେ ୩୦ ଟଙ୍କା କିମ୍ବା ତହିଁରୁ କମ୍ ବେତନ ପାଇଥାନ୍ତି। ଏ କର୍ମ୍ମମାନଙ୍କ ନିମନ୍ତେ କି ଏ ଜିଲ୍ଲାରେ ଉପଯୁକ୍ତ ଲୋକ ନାହାନ୍ତି ?

ଏଠାରେ ଏମ୍ ,ଏ ପାସ୍ କରିଥିବା ଓଡ଼ିଆ ଦୁଇ ଜଣ,ବି,ଏ ୩ ଜଣ, ଏଫ,ଏ ୩ ଜଣ,ଏଣ୍ଟ୍ରାନ୍ସ ପ୍ରାୟ ୪୦ ବା୫୦ ଜଣ ଓ ମିଡିଲ ପ୍ରାୟ ୨୦୦କିମ୍ବା ୩୦୦ ଜଣ ଏବଂ ଅପର ପ୍ରାଇମେରୀ ଅନେକ। ଉଚ୍ଚଶିକ୍ଷା ପାଇଥିବା ଓଡ଼ିଆ ମଧ୍ୟରୁ ୧ ଜଣ ବ୍ୟତୀତ କେହି ଉପଯୁକ୍ତ କାର୍ଯ୍ୟ ପାଇନାହାନ୍ତି। ଏବଂ ଅବଶିଷ୍ଟ ଶିକ୍ଷିତ ବ୍ୟକ୍ତି ଉପଯୁକ୍ତ ଥିଲେହେଁ ସେମାନଙ୍କ ଦାବୀ ଅଗ୍ରାହ୍ୟ କରି ବିଦେଶୀମାନଙ୍କୁ ନିଯୁକ୍ତ କରାଯାଇଅଛି । ବିଦେଶୀ କର୍ମଚାରୀଙ୍କ ମଧ୍ୟରେ ଅତ୍ୟଚ୍ଚ ବ୍ୟକ୍ତି ବିଶ୍ୱବିଦ୍ୟାଳୟର ଉପାଧି ପାଇଅଛନ୍ତି। ସେମାନେ କାର୍ଯ୍ୟ ଶିକ୍ଷା କରି ସ୍ୱୀୟ ପଦର ରକ୍ଷା କରିଅଛନ୍ତି। ବୈଦେଶିକ ମାନେ କେହି ଓଡ଼ିଆ ଶିକ୍ଷାକରି ନାହାନ୍ତି ଏଥିରେ ପ୍ରମାଣ ସି.ପି. ଗେଜେଟ। ୧କିମ୍ବା ୨ ଜଣ ଓଡ଼ିଆ ପାସ୍ କରିଅଛନ୍ତି, କିନ୍ତୁ ସେମାନେ ଓଡ଼ିଆ ଭଲରୂପେ ଲେଖି କିମ୍ବା କହିପାରନ୍ତି ନାହିଁ ଏବଂ ଓଡ଼ିଶାରେ ଉତ୍କଳ ଭାଷାଭିଜ୍ଞ ବୋଲି ଚିହ୍ନିତ ହୋଇନାହାନ୍ତି। ପୋଲିଷର ଲୋକ ମାନେ ଓଡିୟା ଜାଣୁ ନଥିଲେ ଏବଂ ବର୍ତ୍ତମାନ ହିନ୍ଦି ଜାଣୁନାହାନ୍ତି। ଏଥିର ପ୍ରମାଣ , ଓଡ଼ିଆ ଲୋକେ ଲେଖିଥିବା ଡାଏରି, ପରୀକ୍ଷାହେଲେ ଜଣାପଡିବ।

ବନ୍ଦୋବସ୍ତର କାଗଜପତ୍ର ହିନ୍ଦିରେ ଲେଖାଯାଉ ଅଛି। ଏଥିର ପ୍ରମାଣ ସମସ୍ତେ ଦେଇ ପାରନ୍ତି।

ଖାନା ସୁମାରିର କାଗଜପତ୍ର ଓଡ଼ିଆରେ ଲେଖାଯାଏ। ହିନ୍ଦିରେ ଲେଖାଯିବାର ଅସୁବିଧା ହେବାରୁ ଉକ୍ତ ବିଭାଗରେ ଓଡ଼ିଆଭାଷା ସ୍ଥାନପାଇଅଛି। ପ୍ରମାଣ ଦରକାର ନାହିଁ। ସମସ୍ତେ ଜାଣନ୍ତି।

ଶ୍ରୀ-ସମ୍ୱଲପୁର

*ଭା ୧୩ଗ, ସଂ ୫ଖ୍ୟା, ୧୨/୬/୧୯୦୧*

## ଭାଷା ବିଷୟକ ମନ୍ତବ୍ୟ।

ଓଡ଼ିଆ ଭାଷା ବଦଳରେ ହିନ୍ଦୀଭାଷା ସମ୍ୱଲପୁରର ଅଦାଲତ ଭାଷା ହେବା ବିଷୟରେ ବଟଲାଟ ବାହାଦୁର ଗୋଟି କେତେ କଥା ପଚାରିଥିବାରୁ ମହିମବର ଡେପୁଟୀ କମିଶନର ସାହେବ ପ୍ରତେକ ମହକୁମାର ଅଫିସରମାନଙ୍କୁ ସେ ବିଷୟରେ ମନ୍ତବ୍ୟ ମାଗି ଅଛନ୍ତି। ଅଫିସରମାନେ ପ୍ରାୟ ସମସ୍ତେ ବିଦେଶୀ। ଓଡ଼ିଆ ଭାଷା ପ୍ରଚଳିତ ହେଲେ ସେମାନେ ନାନାପ୍ରକାର ଅସୁବିଧା ଭୋଗକରିବେ ଏବଂ ଓଡ଼ିଆ ମାନଙ୍କର ଜିଲ୍ଲାର ରାଜକାର୍ଯ୍ୟରେ ପ୍ରବେଶାଧିକାର ପ୍ରବଳହେବ ଏକଥା ସେମାନଙ୍କର ଅବିଦିତ ନାହିଁ । ଏପରି ସ୍ଥଳେ ସେମାନେ ଓଡ଼ିଆ ଭାଷା ସପକ୍ଷରେ ପ୍ରକୃତ ମନ୍ତବ୍ୟ ଦେବା ବିଷୟରେ ଲୋକମାନେ ସନ୍ଦିହାନ। ସେମାନେ ଯେ ନିଜର ସ୍ୱାର୍ଥ ସକାଶେ ଗୋଟିଏ ଜିଲ୍ଲାର ସ୍ୱାର୍ଥରେ ଅନୁଚିତରୂପେ ବାଧାଦେବେ ଏହା ସମ୍ଭବ ବୋଧ ହେଉନାହିଁ। ସେମାନେ ସେପରି କଲେ ମଧ ବିଚକ୍ଷଣ ଡେପୁଟୀ କମିଶନର ସାହେବ ତାହା ସହଜରେ ହୃଦୟଙ୍ଗମ କରି ପାରିବେ।

*ଭା ୧୩ଗ, ସଂ ୧୧ଖ୍ୟା, ୨୪/୭/୧୯୦୧*

## ଦେଶୀୟ ଭାଷା ଶିକ୍ଷା

ପଞ୍ଜାବ ଗବର୍ଣ୍ଣମେଣ୍ଟ ନିୟମ କରିଅଛନ୍ତି ଯେ ଶିକ୍ଷା ବିଭାଗର ଇଉରୋପୀୟ କର୍ମଚାରୀମାନଙ୍କୁ ହିନ୍ଦି ଭାଷା ଶିକ୍ଷା କରିବାକୁ ହେବ। କର୍ମ୍ମପ୍ରାପ୍ତି ପରେ ଦୁଇବର୍ଷ ମଧରେ ହିନ୍ଦୀଭାଷାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନପାରିଲେ ବେତନ କମିବ। ବିଦେଶୀ ଶିକ୍ଷକ ପରିଦର୍ଶକ ପକ୍ଷରେ ଛାତ୍ରର ଭାଷାଜ୍ଞାନ ଏକାନ୍ତ ଆବଶ୍ୟକ ଏକଥା କହିବା ବାହୁଲ୍ୟମାତ୍ର କିନ୍ତୁ ଓଡ଼ିଶ୍ୟା ଏବଂ ସମ୍ୱଲପୁରରେ ଶିକ୍ଷକ ପରିଦର୍ଶକମାନଙ୍କର ଛାତ୍ରର ଭାଷାଶିକ୍ଷା ବିଷୟରେ କର୍ତ୍ତୃପକ୍ଷ କୌଣସି ବିଧାନ ନକରିବା ବଡ ଦୁଃଖର ବିଷୟ।

*ଭା ୧୩ଗ, ସଂ ୧୨ଖ୍ୟା, ୩୧/୭/୧୯୦୧*

## ପ୍ରାପ୍ତ।

## ଓଡିୟା ଭାଷାର ବିରୋଧୀମାନଙ୍କ ମଧରେ ଗୋଟିଏ କଳ୍ପିତ ସଭା।

ଓଡିୟା ଭାଷାର ବିରୋଧୀମାନଙ୍କ ମଧରେ ଆଜି ମହାପ୍ରଳୟ ଉପସ୍ଥିତ। ନିର୍ବାସିତା ଓଡିୟା ଭାଷାକୁ ପୁନରାନୟନକରିବା ନିମନ୍ତେ ମାତୃବତ୍ସଳ ନିସନ୍ତାନମାନେ ପ୍ରୟାସୀ ହୋଇଅଛନ୍ତି। ଭାଷା ମହୋଦୟା ଚିର ନିର୍ବାସନ ଦଣ୍ଡରୁ ଅବ୍ୟାହତି ପାଇଲେ, ବିରୋଧୀମାନଙ୍କର ମାନମର୍ଯ୍ୟାଦାର ହାନିହେବ ଏବଂ ସେମାନେ ବାଧହୋଇ ତାଙ୍କର ଉପାସନା କରିବେ। ଏହା ବିରୋଧୀମାନଙ୍କ ପକ୍ଷରେ ନିତାନ୍ତ ଅସହ୍ୟ। ଯାହାକୁ ସେମାନେ ଅବଜ୍ଞା ଚକ୍ଷୁରେ ଦେଖୁଥିଲେ, ଏବଂ ଯେ ତାଙ୍କର ସ୍ୱାର୍ଥ ପରାୟଣତାର କଣ୍ଟକ ସ୍ୱରୂପ ହୋଇ ଥିଲେ, ଏବଂ ଯାହାକୁ ବିରୋଧୀ ମାନେ ସୁକୌଶଳରେ ନିର୍ବାସନ ଦଣ୍ଡରେ ଦଣ୍ଡିତ କରାଇଲେ ତାହାର ସମ୍ମୁଖରେ ସେମାନଙ୍କର ପରାଭବ। ଏଥିରୁ ବଳି ଆଉ ଲଜ୍ଜାର ବିଷୟ ଅଛି କି ? ଏହି ପରାଭବ-ଏହି ଲଜ୍ଜା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର। ଏହିପରି ଭାବନା କରି ସମସ୍ତେ ଗୋଟିଏ ସଭା ଆହ୍ୱାନ କରିବା ନିମନ୍ତେ କୃତସଂକଳ୍ପ ହେଲେ। କ,ଖ,ଗ,ଘ ଇତ୍ୟାଦି ସମସ୍ତେ ଙ, ଋ ଗୃହରେ ଏକତ୍ରିତ ହେଲେ। ସଭାର ଆବଶ୍ୟକତା ବିଷୟରେ ସମସ୍ତେ ଭଲରୂପେ ପ୍ରସ୍ତୁତ

ହୋଇଥିଲେ, ସୁତରାଂ ବାଗିଚାରେ ସଭା ଗୃହଟି ଆମୂଳ କମ୍ପିତ ହେଲା। ପ୍ରଥମେ ସଭାପତି ନିର୍ବାଚନ କରିବାର ପ୍ରସ୍ତାବ ଉପସ୍ଥିତ ହେଲା। କ ସଗର୍ବରେ ଦଣ୍ଡାୟମାନ ହୋଇ କହିଲେ ଏହି ସମିତିର ସଭାପତି ନିର୍ବାଚନ କରିବାରେ ବିଶେଷ ସାବଧାନ ହେବା ଉଚିତ। ସଭାପତି ପଦରେ ଏପରି ଜଣେ ପ୍ରବୀଣ ବ୍ୟକ୍ତିଙ୍କୁ ନିଯୁକ୍ତ କରିବା ଉଚିତ, ଯେ ଆମ୍ଭମାନଙ୍କର ସ୍ୱାର୍ଥରକ୍ଷା କରିବାରେ ବ୍ୟଗ୍ରହେବେ ଏବଂ ସୁକୌଶଳରେ ଓଡ଼ିଆମାନଙ୍କର ସ୍ୱତ୍ୱ ନଷ୍ଟକରି ଓଡ଼ିଆ ଭାଷାର ଉନ୍ନତିର ମୂଳରେ କୁଠାରଘାତ କରି ପାରିବେ। ତତ୍ପରେ ଖ,ଗ,ଘ ଇତ୍ୟାଦି ସମସ୍ତେ ଏକାଦି କ୍ରମରେ ଦଣ୍ଡାୟମାନ ନହୋଇ କହିଲେ ଏହି ସୁଯୁକ୍ତି ପୂର୍ଣ୍ଣ ବକ୍ତୃତା ନିମନ୍ତେ ବକ୍ତାଙ୍କୁ ଶତ ଧନ୍ୟବାଦ୍ୟ ସମ୍ବଲପୁରରେ ଯାବତ୍ ବୈଦେଶିକମାନଙ୍କର ଆଧିପତ୍ୟ ଥିବ, ତାବତ୍ ତାଙ୍କର ଏହି ହୃଦୟଗ୍ରାହୀ ବକ୍ତୃତାଟି ସକଳ ବୈଦେଶିକ ସ୍ମରଣ କରିବେ, ମୁଁ ଏହି ପ୍ରସ୍ତାବ ସମର୍ଥନ କରୁଅଛି। ତତ୍ପରେ ସର୍ବ ସମ୍ମତିକ୍ରମେ, ଚ ମହୋଦୟଙ୍କୁ ସଭାପତି ପଦରେ ବରଣ ଏବଂ ସେ ସଭାପତି ଆସନ ପରିଗ୍ରହ କଲେ। ସଭାପତି ମହୋଦୟ ଦଣ୍ଡାୟମାନ ହୋଇ କହିଲେ ଆଲୋଚ୍ୟ ବିଷୟରେ ସଭ୍ୟମାନଙ୍କର ଯାହା ବକ୍ତବ୍ୟ ତାହା କୁହନ୍ତୁ। ତତ୍ପରେ କ, ଆସନରୁ ଉତ୍ଥିତ ହୋଇ କହିଲେ ସମ୍ବଲପୁରର ଅଦାଲତରେ ହିନ୍ଦିଭାଷା ପ୍ରଚଳିତ ହେବାରୁ ଆମ୍ଭମାନଙ୍କର ଜାତିର ପରିପୋଷଣର ଗୋଟିଏ ପନ୍ଥା ଫିଟି ଯାଇଅଛି। କିପରି ଦଳ ଦଳ ହିନ୍ଦିଭାଷୀ ଲୋକ ସମ୍ବଲପୁର କାର୍ଯ୍ୟାଳୟମାନଙ୍କରେ ଉଚ୍ଚକାର୍ଯ୍ୟରେ ନିଯୁକ୍ତହୋଇ କ୍ଷମତାବାନ ହେଉଅଛନ୍ତି। ଏଣେ ନିର୍ବୋଧ ଓଡ଼ିଆମାନେ ଅନ୍ୟାନ୍ୟ ଜିଲ୍ଲାକୁ ପରିବର୍ତ୍ତିତ ହୋଇ ହିନ୍ଦିଭାଷାରେ ଅପାରଗ ହେବାରୁ, ବାହୁଡି ଆସୁଅଛନ୍ତି। କିଛି କାଳ ପରେ ସମ୍ବଲପୁରର ଅଦାଲତରେ ଓଡ଼ିଆମାନଙ୍କର ନାମଗନ୍ଧ ରହିବ ନାହିଁ। ଆମ୍ଭମାନଙ୍କର ହସ୍ତରେ ଅସୀମ କ୍ଷମତା ରହିବ। ଅସଂଖ୍ୟ ଓଡ଼ିଆଙ୍କର ମସ୍ତକର କେଶ ଆମ୍ଭମାନଙ୍କର ହସ୍ତରେ ରହିବ। ତତ୍ପରେ ଆମ୍ଭେମାନେ ଓଡ଼ିଆ ମାନଙ୍କୁ କ୍ରୀଡା ସାମଗ୍ରୀ ତୁଲ୍ୟ ବ୍ୟବହାର କରିପାରିବା, ଓଡ଼ିଆଭାଷା ବିତାଡ଼ିତ ହେବା ସମୟରୁ ଆଜି ପର୍ଯ୍ୟନ୍ତ ହିନ୍ଦିଭାଷା କର୍ମଚାରୀମାନଙ୍କର ସଂଖ୍ୟା ଅପେକ୍ଷାକୃତ ବେଶୀ। ଅନ୍ତତଃ କିଛିକାଳ ଏପରି କଠୋର ପରିଶ୍ରମକଲେ ଆମ୍ଭମାନଙ୍କର ଅଭିଷ୍ଟ ସିଦ୍ଧି ହେବ। ଓଡ଼ିଆମାନେ ଅକର୍ମଣ୍ୟ କୌଣସି କାର୍ଯ୍ୟର ଉପଯୁକ୍ତ ନୁହନ୍ତି। ସରକାରୀ କାର୍ଯ୍ୟାଳୟରେ ପ୍ରବେଶହେଲେ ସରକାରୀ ଟଙ୍କା ଆତ୍ମସାତ୍ କରନ୍ତି। ସୁଲତଃ ଓଡ଼ିଆମାନଙ୍କର ନୈତିକ ଚରିତ୍ର ନିତାନ୍ତ ମନ୍ଦ। ଓଡ଼ିଆ ଭାଷା ଗୋଟିଏ ଅସଭ୍ୟ ଭାଷା, ତହିଁରେ ସାହିତ୍ୟ ନାହିଁ, ବ୍ୟାକରଣ ଏବଂ ଅଳଙ୍କାର ଇତ୍ୟାଦି କିଛି ନାହିଁ। ଯଦି ଆଜି ଗବର୍ଣ୍ଣମେଣ୍ଟ ଓଡିଆ ଭାଷାକୁ ଅଦାଲତରେ ସ୍ଥାନଦେବେ ତେବେ ଗଣ୍ଡ, କନ୍ଧ ଇତ୍ୟାଦି ଦିନେ ସ୍ୱୀୟ ଭାଷା ଅଦାଲତରେ ପ୍ରଚଳନ କରିବା ସକାଶେ ଯତ୍ନ କରିବେ। ଧୀରେ ଧୀରେ ଆମ୍ଭମାନଙ୍କର ଅଭିଷ୍ଟ ସିଦ୍ଧ ହେବ। ଓଡ଼ିଆମାନେ ହିନ୍ଦିରେ ପାରଦର୍ଶୀ ହେଲେ ଆମ୍ଭ ମାନଙ୍କର ଲାଭ, ନଚେତ୍ ଦାସତ୍ୱ ବ୍ୟତୀତ କିଛି ତାଙ୍କର ଭାଗ୍ୟରେ ନାହିଁ।ଏତିକି କହି ବକ୍ତା ମହୋଦୟ ସ୍ୱୀୟ ଆସନ ପରିଗ୍ରହ କଲେ। ତତ୍ପରେ ଖ କହିଲେ 'ବକ୍ତା ମହୋଦୟ ବିଶଦ ଭାବରେ ଯେଉଁ ବିଷୟ ବୁଝାଇ ଅଛନ୍ତି ତାହା ତାଙ୍କର ପଦୋଚିତ। ତାଙ୍କର ତୁଲ୍ୟ ଆମ୍ଭେ ସୁବିସ୍ତୃତରୂପେ କହି ନପାରୁଁ । ସେ ଯାହା କହିଅଛନ୍ତି ତତ୍ ବ୍ୟତୀତ ଏତିକି କୁହାଯାଇପାରେ ଯେ ଆମ୍ଭମାନଙ୍କର ଅଭିଷ୍ଟ ସାଧନ କରିବା ନିମନ୍ତେ ଆମ୍ଭେମାନେ ଗୋଟାକେତେ ଉପାୟ ଅବଲମ୍ବନ କରିବା ଉଚିତ। ଓଡ଼ିଆମାନଙ୍କ ଉପରେ ଗୋଟାକେତେ ଦୋଷାରୋପ ନକଲେ ଆମ୍ଭେ ମାନେ କୃତକାର୍ଯ୍ୟ ହୋଇପାରିବା ନାହିଁ। ପ୍ରଥମତଃ ଓଡିଆମାନେ ଏଠାକାର କାର୍ଯ୍ୟାଳୟରେ କୁଟୁମ୍ବ ଦଳ ବାନ୍ଧି ଅଛନ୍ତି ଅର୍ଥାତ୍ ସେମାନଙ୍କର ବଂଶର ଅନେକ ବ୍ୟକ୍ତି ଗୋଟିଏ ଅଦାଲତରେ କାର୍ଯ୍ୟ କରୁଅଛନ୍ତି, ସରକାରୀ କାର୍ଯ୍ୟରେ ବାଧା ପ୍ରଦାନ କରୁଅଛନ୍ତି। ତତ୍ପରେ ଓଡ଼ିଆମାନେ ମୂର୍ଖ, ଅଳସୁଆ ଏବଂ ବିଦେଶ ଗମନରେ ବିମୁଖ। ଏମାନଙ୍କୁ ସ୍ୱୀୟ ଦେଶ ତ୍ୟାଗ କରାଇବା ସକାଶେ ସରକାରୀ ବିଧାନ ହେବା ଆବଶ୍ୟକ। ଓଡ଼ିଆଭାଷା ହିନ୍ଦିଭାଷୀ ଲୋକମାନେ ଶିକ୍ଷା କରି ପାରନ୍ତି ନାହିଁ, ସୁତରାଂ ହିନ୍ଦିଭାଷୀ ଲୋକଙ୍କ ସକାଶେ ଅଦାଲତରେ ହିନ୍ଦି ପ୍ରଚଳିତ ହେବା ବାଞ୍ଛନୀୟ ଅନୁନ୍ନତ, ସ୍ୱଳ୍ପ ସଭ୍ୟ ଅଳ୍ପବେତନ ଭୋଗୀ ଓଡ଼ିଆ କର୍ମଚାରୀମାନଙ୍କ ସୁବିଧା ପ୍ରତି ଲକ୍ଷ୍ୟ ରଖିବାର ଦରକାର ନାହିଁ; କିନ୍ତୁ ସୁଶିକ୍ଷିତ, ଉନ୍ନତ ଉଚ୍ଚବେତନଭୋଗୀ ହିନ୍ଦିଭାଷୀ କର୍ମଚାରୀଙ୍କର ସୁବିଧା ଦୃଷ୍ଟିରେ କାର୍ଯ୍ୟ କରିବାକୁ ହେବ। ତତ୍ପରେ ଗ

ଦଣ୍ଡାୟମାନ ହୋଇ କହିଲେ ବକ୍ତାଦ୍ୱୟ ଯାହା କହି ଅଛନ୍ତି ତାହା ପୁନର୍ବାର କହିବାର ପ୍ରୟୋଜନ ନାହିଁ। ଯାହାହେଉ ଆମ୍ଭେ ଟିକିଏ ନ କହି ରହି ନପାରୁଁ। ହିନ୍ଦିଭାଷୀ କର୍ମଚାରୀ ମାନଙ୍କର ଅଯୋଗ୍ୟତା ଦେଖାଇବାକୁ ହେବ ଓଡିଆମାନେ ମୂର୍ଖ, ଅଳସୁଆ, ଜୁଆଚୋର ଏବଂ ଦୁର୍ଗୁଣର ଆଧାର, ଏହି ବିଷୟ ସୁସ୍ପଷ୍ଟରୂପେ ବୁଝାଇବାକୁ ହେବ' ଅବଶିଷ୍ଟ ସଭ୍ୟମାନଙ୍କ ମଧ୍ୟରୁ ସମସ୍ତେ ଓଡ଼ିଆ ମାନଙ୍କର ନିନ୍ଦାବାଦକରି ସ୍ୱୀୟ ପ୍ରକୃତି ଚରିତାର୍ଥ କଲେ। ସଭ୍ୟମାନଙ୍କ ମଧ୍ୟରୁ ଜଣେ ଉଦାରତା ପ୍ରକାଶ କରି କହିଲେ କୌଣସି ଜାତି ଦୋଷରୁ ସଂପୂର୍ଣ୍ଣରୂପେ ବଞ୍ଚିତ ନୁହନ୍ତି। ହିନ୍ଦିଭାଷୀ ଲୋକ ମଧ୍ୟରେ ସମସ୍ତେ ଚରିତ୍ରବାନ୍ ନୁହନ୍ତି। ସମ୍ବଲପୁରକୁ ଯେଉଁ ହିନ୍ଦିଭାଷୀ ଲୋକମାନେ ଆଗମନ କରନ୍ତି ସେମାନଙ୍କ ମଧ୍ୟରୁ ଅନେକେ ଚରିତ୍ରହୀନ ଥିବାର ଜଣା ପଡିଅଛି। ହିନ୍ଦିଭାଷୀ ଲୋକ ମାନଙ୍କ ମଧ୍ୟରୁ କେହି କେହି ଏପରି ଜଘନ୍ୟ ଅପରାଧରେ ଅପରାଧୀ ହୋଇଅଛନ୍ତି ଯେ ତାହା ଓଡିଆମାନେ ସ୍ୱପ୍ନରେ ସୁଦ୍ଧା ଭାବି ପାରନ୍ତି ନାହିଁ। ବର୍ତ୍ତମାନ ଛୁଟିରେ ଥିବା ହେଡ କିରାଣୀ (ଭୂତପୂର୍ବ ତହସିଲଦାର) ଙ୍କର ପୁତ୍ର କର୍ଣ୍ଣାସ୍ୱାମିର ଉଦାହରଣ ଦିଆଯାଇପାରେ। ସେ ଖଜଣାର କିରାଣୀ ଥିଲେ, ଖଣ୍ଡିଏ ଚେକର ଟଙ୍କା ଆତ୍ମସାତ୍ କରି କାରାଦଣ୍ଡ ପ୍ରାପ୍ତହେଲେ । ପୁନଶ୍ଚ ଜଣେ ହିନ୍ଦିଭାଷୀ କନେଷ୍ଟବଲ, ଖଜଣାରେ ପହରା ଦେବା ସମୟରେ ଖଜଣା ଗୃହର ଗବାକ୍ଷର ଲୌହତାଲା ଭାଙ୍ଗି ତନ୍ମଧ୍ୟରେ ହସ୍ତ ପ୍ରବେଶ କରି ଗୋଟିଏ ପଇସା ଥଳି ଉଠାଇ ନେଲା । ଲୌହଜାଲକୁ ଏପରି କୌଶଳରେ ବାନ୍ଧିଦେଲା ଯେ ଅନେକ ଦିନ କଥାଟା ପ୍ରକାଶ ହେଲା ନାହିଁ। ପରେ ଧୃତହୋଇ କାରାଦଣ୍ଡରେ ଦଣ୍ଡିତ ହେଲା। ଏହା ଛଡା ଅନେକ ଦୃଷ୍ଟାନ୍ତ ଦିଆଯାଇପାରେ। ଯଦି ଅଳ୍ପ ସଂଖ୍ୟକ ହିନ୍ଦିଭାଷୀ ଲୋକଙ୍କ ମଧ୍ୟରେ ଏତେ ଅପରାଧୀ ତେବେ ଯେଉଁଠାରେ ଏମାନଙ୍କର ଗୃହ ସେଠାରେ ଅନେକ ଚରିତ୍ରହୀନ ହିନ୍ଦିଭାଷୀ ଲୋକଥିବାର କି ଅସମ୍ଭବ ? ଓଡ଼ିଆମାନେ ମୂର୍ଖ, ଅଳସୁଆ ଏବଂ ଅକର୍ମଣ୍ୟ ନୁହନ୍ତି। ପୂର୍ବତନ କର୍ମଚାରୀ ରାୟ ଗୋପୀନାଥ ଗୁରୁ, ସିଦ୍ଧେଶ୍ୱର ପଟ୍ଟନାୟକ ଏବଂ ବର୍ତ୍ତମାନ ସମୟରେ ଅନନ୍ତରାମ ସେଠ କିପରି ବିରୋଚୀତ କାର୍ଯ୍ୟ କରିଅଛନ୍ତି କି ? ଡକାୟତ ବଖରିଆକୁ ଧରିବା ସକାଶେ ଅନେକ ହିନ୍ଦିଭାଷୀ କର୍ମଚାରୀ ଥିଲେ ଏବଂ ସେମାନଙ୍କର ଅଧକ୍ଷ ମୈସ୍ତରହିଗିନ୍ସ ସାହେବ ଥିଲେ। କିନ୍ତୁ ବଖରିଆକୁ ଅନନ୍ତରାମ ବାବୁ ଗ୍ରେପ୍ତାର କଲେ, ସୁଖ୍ୟାତି ଉପାର୍ଜନ କଲେ ହିଗିନ୍ସ ସାହେବ। ଏହା କିପରି ଅନ୍ୟାୟ। ଆମ୍ଭମାନଙ୍କର ହିନ୍ଦିଭାଷୀ ଲୋକ ମାନଙ୍କ ମଧ୍ୟରେ ଅନେକ ଅକର୍ମଣ୍ୟ । ଆନନ୍ଦ ରାଓ ରେଢ଼ାଖୋଲରୁ ପରିବର୍ତ୍ତିତ ହୋଇଥିଲେ କିନ୍ତୁ ଅକର୍ମଣ୍ୟ ହୋଇ ବାହାରି ଆସିଲେ। ବିଷ୍ଣୁପନ୍ଥ ହେଡମାଷ୍ଟରଙ୍କ ବିରୁଦ୍ଧରେ ଛାତ୍ରମାନେ ୯୬ ସାଲରେ ଘୋର ଅଭିଯୋଗ କରିଥିଲେ ସେ ଶିକ୍ଷା ଦେବାର ଅନୁପଯୁକ୍ତ ହେବାରୁ ତାଙ୍କର ଦାବୀ ଅଗ୍ରାହ୍ୟ ହେଲା, ପୁଣି ସେ କଚେରୀକୁ ପରିବର୍ତ୍ତିତ ହୋଇଥିଲେ କିନ୍ତୁ ଓଡ଼ିଆ ଭାଷାରେ କାର୍ଯ୍ୟ ପରିଚାଳନା କରି ନପାରିବାରୁ ସ୍ୱୀୟ କାର୍ଯ୍ୟକୁ ବାହୁଡି ଆସିଲେ ଆଉଥରେ ସେ କାମଠି ମିଡିଲସ୍କୁଲର ହେଡମାଷ୍ଟର ପଦରେ ନିଯୁକ୍ତ ହେଲେ କିନ୍ତୁ ସେହି କାର୍ଯ୍ୟରୁ ସୁଦ୍ଧା ବାହୁଡ଼ି ଆସିଲେ । ତେବେ ବର୍ତ୍ତମାନ କେଉଁ ଯୋଗ୍ୟତା ହେତୁରୁ ସେ ହେଡମାଷ୍ଟର ପଦରେ ନିଯୁକ୍ତ ହେଲେ କିନ୍ତୁ ସେହି କାର୍ଯ୍ୟରୁ ସୁଦ୍ଧା ବାହୁଡ଼ି ଆସିଲେ। ତେବେ ବର୍ତ୍ତମାନ କେଉଁ ଯୋଗ୍ୟତା ହେତୁରୁ ସେ ହେଡମାଷ୍ଟର ପଦରେ ନିଯୁକ୍ତ ହେଲେ ? ଏପରି ଅନେକ ଦୃଷ୍ଟାନ୍ତ ଦିଆଯାଇ ପାରେ। ଯଦି ଆମ୍ଭେମାନେ ସୁଶିକ୍ଷିତ, ସଭ୍ୟ ଏବଂ ଉଚ୍ଚବେତନଭୋଗୀ କର୍ମଚାରୀ ହୋଇ ଓଡ଼ିଆଶିକ୍ଷା କରି ନପାରିବା ତେବେ ଅଶିକ୍ଷିତ ସ୍ୱଳ୍ପ ସଭ୍ୟ ଅଳ୍ପବେତନଭୋଗୀ ଓଡ଼ିଆମାନେ ଗୋଟିଏ ତୃତୀୟ ଭାଷା କିପରି ଶିକ୍ଷା କରିପାରିବେ ? ଓଡ଼ିଆ ଭାଷା ଅସଭ୍ୟ ଭାଷାନୋହେ। ବର୍ତ୍ତମାନ କଲିକତା ବିଶ୍ୱବିଦ୍ୟାଳୟ ସିନଡିକେଟ ଏଫ୍, ଏ ଏବଂ ବି.ଏ. ପରୀକ୍ଷାରେ ମୌଳିକ ରଚନା ନିମନ୍ତେ ଅନ୍ୟାନ୍ୟ ଭାଷାସହିତ ଓଡ଼ିଆଭାଷାକୁ ପାଠ୍ୟ ତାଲିକାଭୁକ୍ତ କରି ଅଛନ୍ତି। ଗୋଟିଏ ବଂଶର ଅନେକ ଲୋକ ଗୋଟିଏ ଜିଲ୍ଲାର କାର୍ଯ୍ୟାଳୟରେ ରହିଲେ କିଛି କ୍ଷତି ନାହିଁ। ସମ୍ବଲପୁରରେ ହିନ୍ଦିଭାଷୀ ଲୋକଙ୍କର କି ବଂଶଦଳ ନାହିଁ ? ଗଣେଶ ପ୍ରସାଦ ଡାକ୍ତର ଏବଂ ତାଙ୍କର ଦୂରଭାଇ ସମ୍ବଲପୁରରେ ଚାକେରି କରୁଅଛନ୍ତି। ଭୂତପୂର୍ବ ବନ୍ଦୋବସ୍ତ ସୁପରିଣ୍ଟେଣ୍ଡେଣ୍ଟ ତାଙ୍କର ଭାଇକୁ ସ୍ୱୀୟ ଅଧୀନସ୍ଥ କାର୍ଯ୍ୟରେ ନିଯୁକ୍ତ କରିଥିଲେ । ଓଡ଼ିଆମାନଙ୍କର ନିନ୍ଦାବାଦ କରିବା କୌଣସି ପ୍ରକାରରେ ଆମ୍ଭମାନଙ୍କର କର୍ତ୍ତବ୍ୟ ନୋହେ। ବଙ୍ଗାଳିଜାତିର ନିନ୍ଦାବାଦ କରିବା ହେତୁରୁ ମେକେଲ ମାର୍ଶମେନ ଇତ୍ୟାଦି ସାହେବମାନେ ବଙ୍ଗାଳିଦ୍ୱାରା ଏବଂ ସାହେବମାନଙ୍କ

ଦ୍ୱାରା ସୁଦ୍ଧା ଘୃଣିତ ହେଉ ଅଛନ୍ତି,ତଦ୍ରୂପ ଓଡ଼ିଆମାନଙ୍କର ଏବଂ ଆମ୍ଭ ମାନଙ୍କର ସୁଦ୍ଧା ଭାବୀ ବଂଶଧରମାନେ ଆମ୍ଭମାନଙ୍କୁ ଘୃଣା କରିବେ, ଏହା କହି ବକ୍ତା କ୍ଷାନ୍ତ ହେଲେ । ଏହା ଶ୍ରବଣ କରି ପୂର୍ବୋକ୍ତ ବକ୍ତାମାନେ ପଦାହତ ବିଷଧର ତୁଲ୍ୟ ଗର୍ଜନ କରି ଉଠିଲେ । ଏକଦା କ୍ରମେ ସମସ୍ତେ ଦଣ୍ଡାୟମାନ ହୋଇ ଉଦାରହୃଦୟ ବକ୍ତା ମହୋଦୟଙ୍କ ଉପରେ ଗାଳି ବର୍ଷଣକରି ସ୍ୱୀୟ ବୃତ୍ତି ଚରିତାର୍ଥ କଲେ , ପରିଶେଷରେ ସଭାପତି ଦଣ୍ଡାୟମାନ ହେଲେ । ସେ ଆବେଗମୟୀ ଏବଂ ଜ୍ୱଳନ୍ତ ଭାଷାରେ ପ୍ରଥମ ଏବଂ ଦ୍ୱିତୀୟ ବକ୍ତାର ମତ ସମର୍ଥନ କରି ଏବଂ ଉଦାର ହୃଦୟବକ୍ତାଙ୍କର ମତକୁ ଅବଜ୍ଞା ପ୍ରଦର୍ଶନ କରି କହିଲେ, ଆମ୍ଭମାନଙ୍କର ଅଭିଷ୍ଟସିଦ୍ଧି କରିବା ନିମନ୍ତେ ଆମ୍ଭମାନଙ୍କର କଠୋର ପରିଶ୍ରମ କରିବା ଉଚିତ । ବର୍ତ୍ତମାନ ଟିକିଏ ପ୍ରତିବନ୍ଧକ ଥିବାର ଅନୁମାନହୁଏ । ଭାରତବାସିକୁ ପ୍ରତାରଣା କରିବା ଯେପରି ସହଜ, ଇଂରାଜ ଜାତିକୁ ପ୍ରତାରଣା କରିବା ତଦ୍ରୂପ ସହଜ ବ୍ୟାପାର ନୋହେ । ଇଂରାଜଚକ୍ଷୁରେ ଭାରତର ସକଳଜାତି ସମାନ । ସେମାନେ କୌଣସି ବିଶେଷ ଜାତିପ୍ରତି ପକ୍ଷପାତିତା ପ୍ରଦର୍ଶନ କରନ୍ତି ନାହିଁ । ସେଦିନ ଓଡ଼ିଆମାନେ ମାନ୍ୟବର ରଜାର୍ସ ସାହେବଙ୍କଠାରେ କାତରଭାବରେ ସକଳ ଦୁଃଖ ଜଣାଇଲେ, ଏବଂ ସାହେବ ମହୋଦୟ ଧୀର ଭାବରେ ସବୁ ଶୁଣିଲେ । ସାହେବ ମହୋଦୟ ପରା ଦୟାଳୁ, ସହୃଦୟ, ସୁବିବେଚକ ଏବଂ ଶାନ୍ତ । ତେବେ ଆମ୍ଭେମାନେ କିପରି କୌଶଳଜାଲ ବିସ୍ତାର କରିବା । କିନ୍ତୁ ଗୋଟିଏ ସୁଯୋଗ ଅଛି । ସାହେବ ମହୋଦୟ ନୂତନ ଲୋକ, ସେ ଏଜିଲ୍ଲାର ବିଷୟରେ କିଛି ଜାଣନ୍ତି ନାହିଁ । ଆମ୍ଭମାନଙ୍କର ପରାମର୍ଶ ଅବଶ୍ୟଗ୍ରହଣ କରିବେ । ଯଦ୍ୟପି ରିଜାର୍ସ ସାହେବ ଆମ୍ଭମାନଙ୍କୁ ନିରାଶ କରିବେ, ତେବେ ରାୟପୁରରେ ଏବଂ ନାଗପୁରରେ କମିଶ୍ନର ଏବଂ ଚୀଫ୍ କମିଶ୍ନରଙ୍କଠାରେ ଆମ୍ଭର ଭ୍ରାତାମାନେ କୌଶଳଜାଲ ବିସ୍ତାର କରିବେ । ଯଦି ନାଗ୍‌ପୁରରେ ନହୁଏ, ତେବେ ଆଉ ଆଶାନାହିଁ । ଲର୍ଡ କର୍ଜନଙ୍କ ସମୀପରେତ ଆମ୍ଭର ଭାଇବିରାଦର ନାହାନ୍ତି, ଏବଂ ଦୁର୍ବଳତା ସଂକୀର୍ଣ୍ଣତାତ ତାଙ୍କ ଠାରେ ନାହିଁ । ଯେପରି ଦୀନଭାବରେ ଏଠାକୁ ଆସିଅଛୁଁ, ତଦ୍ରୂପ ଏଠାରୁ ଚାଲିଯିବା । ଏହା କହି ସଭାପତି ଆସନ ପରିଗ୍ରହ କଲେ, ସଭା ଭଙ୍ଗହେଲା ।

ଓଡ଼ିୟା
ସମ୍ବଲପୁର

*ଭା୧୩ ଗ,ସଂ୧୫ଖ୍ୟା,୨୧।୮।୧୯୦୧*

## ସମ୍ବଲପୁରର ଭାଷା ।

ସମ୍ବଲପୁରରୁ ଓଡ଼ିଆଭାଷା ଉଠିଯିବାରୁ ଓଡ଼ିଆମାନେ ନାନାପ୍ରକାର ଅସୁବିଧା ଭୋଗ କରି ଉକ୍ତ **XXXX** ନିକଟକୁ ଆବେଦନ ପତ୍ର ପଠାଇ ଅଛନ୍ତି । ତତ୍ପରେ କେତେଜଣ ବିଖ୍ୟାତ ବ୍ୟକ୍ତି ଓଡ଼ିଆମାନଙ୍କ ପ୍ରତିନିଧି ସ୍ୱରୂପ ନାଗପୁର ଯାଇ ଚିଫ୍ କମିଶନର ବାହାଦୁରଙ୍କୁ ଅସୁବିଧାର କଥା ଜ୍ଞାପନ କରିଅଛନ୍ତି । ବର୍ତ୍ତମାନ ଚୀଫ୍‌କମିଶନର ସାହେବ ବଡଲାଟ ବାହାଦୂରଙ୍କ ସହିତ ସାକ୍ଷାତ କରିବାକୁ ଯାଇ ଶିମିଲାରେ ଅବସ୍ଥାନ କରୁଅଛନ୍ତି । ଏହି ସମ୍ବାଦ କଟକସ୍ଥ ଉତ୍କଳସଭାର ସଭାପତି ମାନ୍ୟବର ବାବୁ ମଧୁସୂଦନ ଦାସ, ବଡଲାଟଙ୍କ ପ୍ରାଇଭେଟ ସେକ୍ରେଟରୀଙ୍କ ନିକଟକୁ ଏହି ମର୍ମରେ ସମ୍ବାଦ ପଠାଇଥିଲେ ଯେ ଓଡ଼ିଆଭାଷା ପୁନଃଚଳନ ସମ୍ବନ୍ଧେ ଉତ୍କଳସଭା ଇତିପୂର୍ବେ ଯେଉଁ ଆବେଦନ ପତ୍ର ପଠାଇଥିଲେ ଏବଂ ଉକ୍ତ ଭାଷା ସମ୍ବନ୍ଧେ ଓଡ଼ିଶ୍ୟାର ଭୂତପୂର୍ବ କମିଶନର କୁକ୍ ସାହେବ ଯେଉଁ ମନ୍ତବ୍ୟ ଦେଇ ଥିଲେ ଆପଣଙ୍କ ଅଫିସରେ ସେସବୁ କାର୍ଯ୍ୟ ଅଛି । ବର୍ତ୍ତମାନ ଚୀଫ୍ କମିଶନର ସାହେବ ସେଠାରେ ଥିବାରୁ ବଡଲାଟ ସାହେବ ଓଡ଼ିଆଭାଷା ସମ୍ବନ୍ଧେ ତାଙ୍କ ସହିତ ଅବଶ୍ୟ ପରାମର୍ଶ କରିବେ, ଅତଏବ୍ ଆପଣ ଅନୁଗ୍ରହପୂର୍ବକ ଉକ୍ତ କାଗଜ ବଡଲାଟ ବାହାଦୁରଙ୍କୁ ଅର୍ପଣ କରନ୍ତୁ ।" ଉକ୍ତ ଟେଲିଗ୍ରାମପାଇ ପ୍ରାଇଭେଟ ସେକ୍ରେଟାରୀ ଯେଉଁ ଉତ୍ତର ଦେଇଅଛନ୍ତି ତହିଁରୁ ଜଣାଯାଏ ଯେ ସେ ଓଡ଼ିଆଭାଷା ସମ୍ବନ୍ଧୀୟ ସମସ୍ତ କାଗଜ ବଡଲାଟବାହାଦୁରଙ୍କୁ ଅର୍ପଣ କରି ଅଛନ୍ତି । ବର୍ତ୍ତମାନ ଏ ଜିଲ୍ଲାର ଓଡ଼ିଆମାନଙ୍କ ପ୍ରତିନିଧିସ୍ୱରୂପ ପାଞ୍ଚଜଣ

ଭଦ୍ରଲୋକ ବଡଲାଟ ବାହାଦୁରଙ୍କ ସହିତ ସାକ୍ଷାତକରି ଅଶାନ୍ତି ଅସୁବିଧାର କଥା ଜଣାଇବା ସକାଶେ ଶିମଳା ଯାତ୍ରା କରିଅଛନ୍ତି । ମାତୃଭାଷା ସପକ୍ଷରେ ଓଡ଼ିଆମାନଙ୍କ ଦ୍ୱାରା ଯାହା ହେବାର କେବେ ଆଶା କରାଯାଇନଥିଲା ତାହା ହେବାର ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ ହିନ୍ଦିଭାଷା ଓଡ଼ିଆମାନଙ୍କୁ ବଡ ହରବର କରୁଅଛି । ମାତୃଭାଷାର ବିରହ ସାମାନ୍ୟ କଷ୍ଟକର ନୁହେଁ । ଲଡ଼ କାର୍ଜନଙ୍କ ପରି ସୁପଣ୍ଡିତ, ନ୍ୟାୟପରାୟଣ ଶାସନକର୍ତ୍ତାଙ୍କ ନିକଟରେ ଓଡ଼ିଆମାନଙ୍କର ନ୍ୟାୟସଙ୍ଗତ ପ୍ରାର୍ଥନା ସଂପୂର୍ଣ୍ଣ ଫଳ ହେବାର ଆଶା କରୁଁ ।

*ଭା/୧୩ ଗ,ସଂ୨୫ଖ୍ୟା,୨୫/୯/୧୯୦୧*

## ଓଡ଼ିଆ ଭାଷା ପୁନଃ ପ୍ରଚଳନର ଆଶା ।

ମଧ୍ୟ ପ୍ରଦେଶର ମାନନୀୟ ଚୀଫ୍ କମିଶନର ସାହେବ ବାହାଦୁର ସମ୍ବଲପୁରକୁ ୨୬ ତାରିଖ ଦିନ ଆସି ୩୦ ତାରିଖ ଦିନ ଫେରିଯାଇ ଅଛନ୍ତି । ସାହେବ ମହୋଦୟ ସେଠାରେ ଅବସ୍ଥାନ କାଳରେ ସହରର କେତେକ ଭଦ୍ରଲୋକ ଏବଂ କେତେକ ଗ୍ରାମୀୟ ଲୋକମାନଙ୍କୁ ହିନ୍ଦିଭାଷା ପ୍ରଚଳନରେ କିପରି ସୁବିଧା ଅସୁବିଧା ହେଉଅଛି ଏ ବିଷୟରେ ପ୍ରଶ୍ନ କରିଥିଲେ । ତହିଁର ଉତ୍ତରରେ ହିନ୍ଦିଭାଷା ପ୍ରଚଳନ ଅସୁବିଧା ଜନକ ଥିବାର ସେ ଉତ୍ତମରୂପେ ହୃଦୟଙ୍ଗମ କରି ପାରିଅଛନ୍ତି । ସମ୍ବଲପୁର ତ୍ୟାଗ କରିବାଦିନ ଭଦ୍ରଲୋକମାନଙ୍କୁ କହିଯାଇ ଅଛନ୍ତି –"ଆପଣମାନେ ନିଶ୍ଚିନ୍ତ ହେଉନ୍ତୁ ଓଡ଼ିଆ ଭାଷା ପୁନଃ ପ୍ରଚଳନ ସକାଶେ ଆମ୍ଭେ ସୁପାରିଶ କରିବୁଁ" । ସାହେବ ପ୍ରଶଂସିତ, ଓଡ଼ିଆମାନଙ୍କୁ ନିଶ୍ଚିନ୍ତ ହେବା ସକାଶେ କହିଥିବାରୁ ଏବଂ ଓଡ଼ିଆମାନଙ୍କ ପ୍ରାର୍ଥନାପତ୍ର ଲିଖିତ କଥାମାନ ସତ୍ୟପୂର୍ଣ୍ଣ ଏବଂ ଯୁକ୍ତିଯୁକ୍ତ ଥିବାରୁ ସଂପୂର୍ଣ୍ଣ ଭରସା ହେଉଅଛି ଯେ ଏ ଜିଲାରେ ଅଚିରେ ଉତ୍କଳଭାଷା ପୁନଃ ପ୍ରଚଳିତ ହେବ । ଆମ୍ଭେମାନେ ଆଶାପୂର୍ଣ୍ଣ ହୃଦୟରେ ସେହି ଶୁଭଦିନର ପ୍ରତୀକ୍ଷା କରୁଅଛୁଁ ।

ସମ୍ବଲପୁରରେ ଓଡ଼ିଆ ଭାଷା ଚଳିବାର ଆଦେଶ ଶ୍ରବଣ କରି ସମ୍ବଲପୁର ବାସିମାନେ ଆପଣାର କର୍ତ୍ତବ୍ୟ ଶେଷହେଲା ବୋଲି ମନେ କରିବେ ନାହିଁ । ଯାହାଙ୍କ କୃପାରେ ମାତୃସମା ମାତୃଭାଷାକୁ ଫେରି ପାଇଲେ ତାଙ୍କର ସ୍ଥାୟୀ ସ୍ମୃତିଚିହ୍ନ ସ୍ଥାପନର ଚେଷ୍ଟା କରିବେ ।

*ଭା/୧୩ ଗ,ସଂ୨୨ଖ୍ୟା,୯/୧୦/୧୯୦୧*

## ପ୍ରାପ୍ତ ।

## ଶ୍ରୀଯୁକ୍ତ ଚୀଫ୍ କମିଶନର ସାହେବ ଏବଂ ଓଡ଼ିଆ ଭାଷା ।

ସମ୍ବଲପୁରର ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଓ ଚୀଫକମିଶ୍ନର ସାହେବଙ୍କ ନିବାସରେ ଉପସ୍ଥିତ ହେଲାରୁ ଚୀଫ୍ କମିଶ୍ନର ସାହେବ ଭଦ୍ରବ୍ୟକ୍ତି ମାନଙ୍କୁ ସମ୍ବୋଧନ କରି କହିଲେ "ଆପଣାମାନଙ୍କର ଯାହା କହିବା, କହନ୍ତୁ" । ବାବୁ ବ୍ରଜମୋହନ ପଟ୍ଟନାୟକ ଦଣ୍ଡାୟମାନ ହୋଇ କହିଲେ 'ମୁଁ ଜଣେ ଭଦ୍ରବଂଶୋଦ୍ଭବ ସମ୍ବଲପୁର ଅଧିବାସୀ, ଡିଷ୍ଟ୍ରିକ୍ଟ କାଉନ୍ସିଲ ଏବଂ ଲୋକଲ ବୋର୍ଡର ମେମ୍ବର ମନୋନୀତ ହୋଇଅଛି । ପୂର୍ବେ ଥରେ ସମ୍ବଲପୁର ବାସିମାନେ ସମ୍ବଲପୁରର କଚେରି ଭାଷା ହିନ୍ଦି ନହୋଇ ଓଡ଼ିଆ ଚଳିବା ବିଷୟରେ ଆବେଦନ କରିଥିଲେ । ତାହା ନ ମଞ୍ଜୁର ହେବାରୁ ସମସ୍ତ ସମ୍ବଲପୁର ଅଧିବାସୀ ଦୁଃଖ ଏବଂ ଅସୁବିଧା ସହ୍ୟକରି ନପାରି ପୁନର୍ବାର ଆବେଦନ କରିଅଛନ୍ତି । ମୁଁ ସମ୍ବଲପୁର ଅଧିବାସିମାନଙ୍କ ଦ୍ୱାରା ନିର୍ବାଚିତ ମେମ୍ବର ଥିବା ପକ୍ଷେ, ସମସ୍ତ ସମ୍ବଲପୁର ଅଧିବାସୀ ଦୁଃଖିତ ହୋଇ ମତେ ତହିଁର ପ୍ରତିକାର କରିବା ନିମନ୍ତେ ବ୍ୟଗ୍ର ଭାବରେ ପ୍ରାର୍ଥନା କଲେ । ତଦନୁସାରେ ମୁଁ ୩ ଜଣ ଭଦ୍ରବ୍ୟକ୍ତିଙ୍କ ସହିତ ନାଗପୁରକୁ ଯାଇ ଆପଣଙ୍କୁ ସମ୍ବଲପୁରବାସୀଙ୍କର ହିନ୍ଦି ପ୍ରଚଳନ ଜନିତ ଅସୁବିଧାର ବିଷୟ ଜଣାଇ ଥିଲି । ଅସୁବିଧା ଯଥା- "ଯେଉଁ ଅର୍ଜିନକଲ ପ୍ରତିବାଦୀକୁ ଦିଆଯାଏ ତାହା ସେ ବୁଝି ପାରେ ନାହିଁ, ସମନ ନୋଟିସ ଇତ୍ୟାଦି ଯାହା ଅଦାଲତରୁ ପ୍ରେରିତ ହୁଏ, ତାହା ଲୋକମାନେ ପଢ଼ିନପାରିବାରୁ ଅତିରିକ୍ତ ଅର୍ଥ ବ୍ୟୟ କରି କ୍ଷତିଗ୍ରସ୍ତ ହୁଅନ୍ତି; ହିନ୍ଦିଭାଷାର ଲିଖିତ ଦସ୍ତାବିଜ କେବଳ ରେଜିଷ୍ଟରି ଅଫିସରେ ଗୃହିତ କରିବାରୁ ଋଣଦାତା

ଏବଂ ଗୃହୀତା ଦସ୍ତାବିଜର ମର୍ମ ବୁଝିପାରନ୍ତି ନାହିଁ । ସମ୍ବଲପୁରର ଅଦାଲତର ଅମଲାମାନେ ମଧ୍ୟପ୍ରଦେଶର ଅନ୍ୟାନ୍ୟ ଜିଲାକୁ ପରିବର୍ତ୍ତିତ ହୋଇ କାର୍ଯ୍ୟତ୍ୟାଗ କରିବାରୁ ଆପଣ ମନେ କରନ୍ତି ଯେ ସେମାନେ ଦେଶୋନ୍ନତିରେ ଏବଂ ବିଦେଶ ଗମନରେ ନିଷ୍ପୃହହୋଇ କାର୍ଯ୍ୟତ୍ୟାଗ କରନ୍ତି । ତାହା ନୋହୋ,ସମ୍ବଲପୁର ବାସୀଙ୍କର ଭାଷା କେବଳ ଯେ ଓଡ଼ିୟା, ଏପରି ନୋହେ, ସେମାନଙ୍କର ଆଚାର, ବ୍ୟବହାର, ରୀତି, ନୀତି ସବୁ ଓଡ଼ିୟା, ଓଡ଼ିଶାବାସୀ ଏବଂ ସେମାନଙ୍କର ସକଳ ବିଷୟରେ ସୌସାଦୃଶ ଅଛି । ଅଳ୍ପବେତନ ଭୋଗୀ ଅମଲାମାନେ ବଦଳୀହେଲେ ସେମାନଙ୍କର କାର୍ଯ୍ୟ ଚଳିପାରେ ନାହିଁ । ଆମ୍ଭେମାନେ ଯେଉଁ ପଦାର୍ଥକୁ ଇକ୍ଷୁକହୁଁ , ସେମାନେ ତାହାକୁ 'ସାଣ୍ଡା' କହନ୍ତି, ବାଲଗଣକୁ ସେମାନେ 'ଭାଣ୍ଡା' କହନ୍ତି । ଏହାରି ଅନ୍ୟାନ୍ୟ ପଦାର୍ଥର ଭିନ୍ନ ଭିନ୍ନ ନାମ ଅଛି । ଏହି ବିଭିନ୍ନତା ପରସ୍ପରର ଆଚାର ବ୍ୟବହାର ପ୍ରତି ଘୃଣା ଜନ୍ମାଏ । ସୁତରାଂ ପରିବର୍ତ୍ତିତ ଓଡ଼ିୟା ଅମଲାମାନେ ବାଧ ହୋଇ କାର୍ଯ୍ୟତ୍ୟାଗ କରନ୍ତି ଅବା ପେନଶନ ପ୍ରାପ୍ତହୋଇ ବିଦାୟ ଗ୍ରହଣ କରନ୍ତି । ଏହିସବୁ ଅସୁବିଧା ପ୍ରଦର୍ଶିତ ହେଲାପରେ ଆପଣ ପ୍ରତିଜ୍ଞା କଲେ ଯେ ଆପଣ ଏସବୁ ଗବର୍ଣ୍ଣର ଜେନେରଲଙ୍କୁ ସିମିଲାରେ କହିବେ ଏବଂ ଏତଦ୍‌ସମ୍ବନ୍ଧୀୟ କାଗଜପତ୍ର ଭଲରୂପେ ପଢ଼ି ଅକ୍ଟୋବର ମାସରେ ସମ୍ବଲପୁରରେ ଆଦେଶ ପ୍ରଚାର କରିବେ । ଚିକିତ୍ସକ ରୋଗୀକୁ ଫଳପ୍ରଦ ଔଷଧ ଦେଲେ ସୁଦ୍ଧା ଏବଂ ଆରୋଗ୍ୟ ହେବାର ଆଶାପ୍ରଦାନ କଲେ ସୁଦ୍ଧା, ତାହାର ମନରେ ଆରୋଗ୍ୟ ନହେବାଯାଏ ଆନନ୍ଦ ଜାତ ହୁଏ ନାହିଁ । ଇତିପୂର୍ବେ ଓଡ଼ିୟା ବିଷୟକ ଗୋଟିଏ ଆବେଦନ ନାମଞ୍ଜୁର ହୋଇଥିଲା । ବର୍ତ୍ତମାନ ଏହି ଆବେଦନ ତଦ୍ରୁପ ନାମଞ୍ଜୁର ହେବ ଏହି ଆଶଙ୍କାରେ ଆମ୍ଭେମାନେ (ପୂର୍ବୋକ୍ତ ୪ ଜଣ) ଆପଣଙ୍କର ସିମିଳାଯାତ୍ରା ସମ୍ବାଦଶୁଣି ବହୁକଷ୍ଟ ସ୍ୱୀକାର କରି ସିମଳାକୁ ଗଲୁଁ । ମନେ କରିଥିଲୁଁ ଯେ ଆପଣଙ୍କ ଅନୁମତି ଅନୁସାରେ ଗବନର ଜେନେରଲ ସେଠାରେ ଦୁଃଖ ଜଣାଇଲେ ଆମ୍ଭେମାନେ କୃତକାର୍ଯ୍ୟ ହେବୁଁ । ଆପଣଙ୍କର ପ୍ରଧାନ ସେକ୍ରେଟରୀ ମାନ୍ୟବର କ୍ରମ୍ପ ସାହେବଙ୍କ ସହିତ ସାକ୍ଷାତ ହେବାରୁ ସେ କହିଲେ ଚିଫ୍‌କମିଶ୍ନର ସାହେବ ଏବିଷୟରେ ସମ୍ବଲପୁରରେ ଆଦେଶ ଦେବାର ପ୍ରକାଶ କରିଥିବାପକ୍ଷେ ଆପଣମାନଙ୍କର ଅଞ୍ଚଳ ହେବା ଉଚିତ ନୁହେଁ । ଏଣୁ ତାଙ୍କର ଆଦେଶ ଶିରୋଧାର୍ଯ୍ୟ କରି ବାହୁଡି ଆସିଲୁଁ । ଆମ୍ଭେମାନେ ଯେତେବେଳେ ନାଗପୁରରେ ଆପଣଙ୍କ ସହିତ ସାକ୍ଷାତ କରିଥିଲୁଁ । ତେତେବେଳେ ଗବର୍ଣ୍ଣର ଜେନେରଲଙ୍କ ସହିତ ସାକ୍ଷାତ ହେବା ନିମନ୍ତେ ଆପଣଙ୍କୁ ଅନୁମତି ପ୍ରାର୍ଥନା କରିବା ଆମ୍ଭମାନଙ୍କର ଉଚିତ ଥିଲା । ତାହା ନକରି ଆମ୍ଭେମାନେ ସିମିଳାକୁ ଯାଇ ଥିବାରୁ ଆପଣଙ୍କଠାରେ କ୍ଷମାପ୍ରାର୍ଥନା କରୁଅଛୁଁ । ବର୍ତ୍ତମାନ ଆପଣଙ୍କ ସମ୍ମୁଖରେ ଯେଉଁ ଭଦ୍ରଲୋକମାନେ ଡିଷ୍ଟ୍ରିକ୍ଟ କାଉନ୍ସିଲ୍ ମେମ୍ବର ମ୍ୟୁନିସିପାଲ ମେମ୍ବର ଲୋକେଲବୋର୍ଡ ମେମ୍ବର ଏବଂ ଦରବାରି ଅଛନ୍ତି ସମସ୍ତଙ୍କୁ ଏଥିର ସତ୍ୟତା ବିଷୟରେ ଆପତ୍ତି ପଚାରି ପାରନ୍ତି । ଏଥିରେ ସମସ୍ତଙ୍କର ସହାନୁଭୂତି ଅଛି । ଆପଣ ଶାସନ ବିଭାଗର ଉଚ୍ଚତମ କର୍ମଚାରୀ ହୋଇ ଗ୍ରାମେ ଗ୍ରାମେ, ସ୍ଥାନେ ସ୍ଥାନେ ସହରରେ ଘାଟରେ ବାଟରେ ହିନ୍ଦି ପ୍ରଚଳନର ଅସୁବିଧା ବିଷୟରେ ଧୀରଭାବରେ ଅନୁସନ୍ଧାନ କଲେ । ଯଦି ପୂର୍ବେ କର୍ତ୍ତୃପକ୍ଷ ଏପରି ସୂକ୍ଷ୍ମାନୁସନ୍ଧାନ କରିଥାନ୍ତେ କିମ୍ବା ଏବିଷୟରେ ଦେଶୀୟ ଭଦ୍ରଲୋକକମିଟୀ ମେମ୍ବର ଏବଂ ପ୍ରଜାଗଣଙ୍କୁ ଜିଜ୍ଞାସା କରିଥାନ୍ତେ, ତେବେ ଆମ୍ଭେମାନେ ଏତେ କଷ୍ଟ ଭୋଗ କରିନଥାନ୍ତୁ । ଆପଣ ଏହି କାର୍ଯ୍ୟ ନିମନ୍ତେ ସିମଲାରୁ ପ୍ରତ୍ୟକ୍ଷଭାବରେ ସମ୍ବଲପୁରକୁ ଆସି ଆମ୍ଭମାନଙ୍କ ପାଁଇ ଅନେକ କଷ୍ଟସ୍ୱୀକାର କରିଥିବାରୁ , ଆମ୍ଭେମାନେ ଆପଣଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛୁଁ ଏବଂ ଈଶ୍ୱରଙ୍କଠାରେ କାୟମନୋବାକ୍ୟରେ ପ୍ରାର୍ଥନା କରୁଅଛୁଁ ଯେ ଈଶ୍ୱର ଆପଣଙ୍କୁ ଗବର୍ଣ୍ଣର, ବଡଲାଟ ପଦକୁ ଉନ୍ନୀତ କରୁନ୍ତୁ । ଦେଶୀୟ ରାଜ୍ୟରେ ପ୍ରଜାମାନେ ଦୁଃଖ ଜଣାଇ ପାରୁନଥିଲେ । ବର୍ତ୍ତମାନ ଇଂରେଜ ରାଜତ୍ୱରେ କେହି ଦୁଃଖ ଜଣାଇ ନପାରିଲେ, ସମ୍ବାଦପତ୍ର ଯୋଗେ କିମ୍ବା ସରକାରୀ କର୍ମଚାରିମାନଙ୍କ ସହିତ ସାକ୍ଷାତହୋଇ ଦୁଃଖନିବେଦନ କରନ୍ତି ଏବଂ ଗବର୍ଣ୍ଣମେଣ୍ଟ ଦୁଃଖ ଦୂରୀକରଣ କକ୍ଷେ ଉଦ୍ୟତ ହୁଅନ୍ତି । ଏପରି ଗବର୍ଣ୍ଣମେଣ୍ଟଙ୍କର କାର୍ଯ୍ୟ ପ୍ରଣାଳୀରେ ଉତ୍ସାହିତ ହୋଇ ଆମ୍ଭେମାନେ ଆପଣାର ଛାମୁରେ ଦୁଃଖ ଜଣାଇଲୁଁ ।"

ଚୀଫକମିଶ୍ନର ସାହେବ, ଏଥିରେ ସମସ୍ତଙ୍କର ସହାନୁଭୂତି ଅଛି କି ନାହିଁ ଏବଂ ବ୍ରଜମୋହନବାବୁ

ଖାଜଣାଟି ଯାହା କହିଅଛନ୍ତି ତହିଁରେ ସମସ୍ତେ ସମ୍ମତ କି ନାହିଁ ପଚାରିଲେ ସମସ୍ତେ ସଂମ୍ମତହେଲେ । ବାବୁ ସତ୍ୟବାଦୀପାତି କହିଲେ,

"ସମ୍ବଲପୁରରେ ହିନ୍ଦିଭାଷା ପ୍ରଚଳନ ହେବାରୁ ସମ୍ବଲପୁର ବାସୀ ସକଳଓଡ଼ିୟା ଦୁଃଖିତ ଅଛନ୍ତି । ଆପଣ କଷ୍ଟ ସ୍ୱୀକାର କରି ହିନ୍ଦିଭାଷା ପ୍ରଚଳନର ଅସୁବିଧା ବିଷୟରେ ତଦନ୍ତ କରିଥିବାରୁ ଆପଣଙ୍କୁ ପ୍ରାର୍ଥନା କରୁଅଛୁଁ ଯେ ଇଶ୍ୱର ଆପଣଙ୍କୁ ଗବର୍ଣ୍ଣର ଲାଟ କରନ୍ତୁ । ଆମ୍ଭେମାନେ ଆନନ୍ଦିତ ହେବୁଁ । ଓଡ଼ିଶାରେ ସମ୍ବଲପୁର ଭୁକ୍ତହେଲେ ସମ୍ବଲପୁର ବାସିମାନେ ଓଡ଼ିଶାର ଓଡ଼ିୟାଭ୍ରାତା ମାନଙ୍କ ସଂଗେ ରହି ଅନେକ ଉନ୍ନତି ସାଧନ କରିବେ"

ତତ୍ପରେ ଚୀଫ୍ କମିଶ୍ନର ସାହେବ ଉତ୍ତର ଦେଲେ "ଆମ୍ଭେ ଅନୁସନ୍ଧାନ କରି ଦେଖିଲୁ ଯେ ସମ୍ବଲପୁରରେ ହିନ୍ଦିଭାଷା ପ୍ରଚଳନ ହେତୁରୁ ସମ୍ବଲପୁରର ଲୋକମାନେ ବିଶେଷ ଅସୁବିଧା ଭୋଗ କରୁ ଅଛନ୍ତି । ଏଣୁ ଆସନ୍ତା ଜାନୁଆରୀ ମାସରୁ ସମ୍ବଲପୁରର ଅଦାଲତରେ ଓଡ଼ିୟାପ୍ରଚଳନ ହେବାନିମନ୍ତେ ଆମ୍ଭେ ଗବର୍ଣ୍ଣର ଜେନେରଲଙ୍କ ନିକଟକୁ ରିପୋର୍ଟ ପ୍ରେରଣ କରିବୁଁ ।

ଶ୍ରୋତା
ସମ୍ବଲପୁର

*ଭା୧୩ ଗ,ସଂ୨୫ଖ୍ୟା,୩୦।୧୦।୧୯୦୧*

## ସମ୍ବଲପୁର ଶିକ୍ଷାବିଭାଗ ।

ଅଳ୍ପଦିନ ପୂର୍ବେ ମଧ୍ୟପ୍ରଦେଶୀୟ ଶିକ୍ଷା ବିଭାଗର ଇନ୍‌ସ୍ପେକ୍ଟର ଜେନେରଲ ସାହେବ ସମ୍ବଲପୁରକୁ ଆଗମନ କରିଥିଲେ । ସମ୍ବଲପୁରର ଓଡ଼ିଆ ସ୍କୁଲ ସମୁହରେ ଓଡ଼ିଶ୍ୟା ପ୍ରଚଳିତ ପାଠ୍ୟପୁସ୍ତକ ଚଳାଇବା, ଶିକ୍ଷା ବିଭାଗରେ ଶିକ୍ଷିତ ଓଡ଼ିଆ ମାନଙ୍କୁ ନିଯୁକ୍ତ କରିବା ବିଷୟରେ ସହରର ଭଦ୍ରଲୋକମାନେ ତାଙ୍କଠାରେ ଆବେଦନ କରି ଅଛନ୍ତି । ସେମାନଙ୍କର ଯୁକ୍ତି ସଂଗତ ଆବେଦନ ସଫଳ ହେବା ଉଚିତ ।

ଉପରୋକ୍ତ ସାହେବ ମହୋଦୟ ସହରସ୍ଥ ପଟ୍ଟନାୟକ ପଡା ସ୍କୁଲରେ ୫ମ ଓ ୬ଷ୍ଠ ବର୍ଷୀୟ ଶ୍ରେଣୀ ସ୍ଥାପନର ଆଦେଶ ଦେଇ ଯାଇ ଅଛନ୍ତି ।

ଏ ଜିଲ୍ଲାର ଓଡ଼ିୟା ଭାଷାର ବିଦ୍ୟାଳୟ ମାନଙ୍କ ସକାଶେ ଉପଯୁକ୍ତ ଶିକ୍ଷକର ଏକାନ୍ତ ଆବଶ୍ୟକ । ତହିଁ ସକାଶେ ଓଡ଼ିଆଭାଷାର ଗୋଟିଏ ଉଚ୍ଚଶ୍ରେଣୀର ବିଦ୍ୟାଳୟ ସ୍ଥାପିତ ହେବା କିମ୍ୱା ସମ୍ବଲପୁରର ଛାତ୍ରମାନେ ବୃତ୍ତିପାଇ କଟକ ନର୍ମାଲ ସ୍କୁଲରେ ପଢ଼ିବାର ବ୍ୟବସ୍ଥା ହେବା ଉଚିତ । ତାହା ନ ହେଲେ ଏଜିଲ୍ଲାରେ ଓଡ଼ିଆଭାଷାର ସମ୍ୟକ୍ ଉନ୍ନତିର ସମ୍ଭାବନା ଅଳ୍ପ ସମ୍ବଲପୁରବାସିମାନେ ଓଡ଼ିଆଭାଷା ପୁନଃ ପ୍ରଚଳନ ସକାଶେ ଯେପରି ଅସାଧାରଣ ଯତ୍ନ ପରିଶ୍ରମ କରୁଅଛନ୍ତି ଓଡ଼ିଆଭାଷାର ବିଶୁଦ୍ଧତା ସମ୍ପାଦନ- ଉନ୍ନତି ସମ୍ପାଦନ ସକାଶେ ତତୋଧିକ ଯତ୍ନପରିଶ୍ରମର ଆବଶ୍ୟକ । ସ୍ୱଦେଶ, ସ୍ୱଭାଷାର ଉନ୍ନତି ସାଧନରେ ଯେଉଁମାନେ ଅନୁରକ୍ତ ସେମାନେ ଦେଶର ସୁସନ୍ତାନ ନାମର ଯୋଗ୍ୟ ।

*ଭା୧୩ ଗ,ସଂ୨୬ଖ୍ୟା,୧୩।୧୧।୧୯୦୧*

## ଓଡ଼ିଶ୍ୟାର ଉଚ୍ଚଶିକ୍ଷିତ ସଂଖ୍ୟା ।

କଟକ ରେଭେନ୍‌ସା କଲେଜର ରାଜପୁରସ୍କାରଦାନ ସଭାରେ କଲେଜର ଅଧ୍ୟକ୍ଷ ଯେଉଁ ରିପୋର୍ଟ ପେଠ କରିଥିଲେ ତହିଁରୁ ଉତ୍କଳର ଉଚ୍ଚଶିକ୍ଷିତ ସଂଖ୍ୟା ଏବଂ ସେମାନଙ୍କ କାର୍ଯ୍ୟବିବରଣ ସଙ୍କଳନ କରି ନିମ୍ନରେ ପ୍ରକାଶ କରୁଅଛୁଁ ।

କଟକରେ ଉଚ୍ଚଇଂରେଜୀସ୍କୁଲ ୧୮୪୧ ସାଲରେ ସ୍ଥାପିତ ହୋଇଥିଲା ।୧୮୬୮ ସାଲରେ ତାହା ୨ୟ ଶ୍ରେଣୀର କଲେଜ ଏବଂ ୧୮୭୬ ସାଲରେ ପ୍ରଥମ ଶ୍ରେଣୀ କଲେଜରେ ପରିଣତ ହେଲା । ଉକ୍ତ କଲେଜରୁ ଗତ ୨୫ ବର୍ଷ ମଧ୍ୟରେ ସର୍ବମୋଟ ୪ ଜଣ ଏମ୍, ଏ, ୯୪ ଜଣ ବି,ଏ,ଏବଂ ୨୩ ଜଣ ବି.ଏଲ୍ ପାଶକରି ଅଛନ୍ତି ।

ସେମାନଙ୍କ ମଧ୍ୟରେ ୧୪ ଜଣ ଓକୀଲ, ୧୩ଜଣ ଡେପୁଟୀ ଏବଂ ସବ୍ ଡେପୁଟୀ କଲେକ୍ଟର, ୨୧ ଜଣ ଶିକ୍ଷକ, ୧୩ ଜଣ ଅମଲା, ୧ ଜଣ କଲେକ୍ଟର, ୧ ଜଣ ମୁନସଫ, ୧ ଜଣ ସ୍କୁଲ ଡେପୁଟୀ ଇନିସ୍ପେକ୍ଟର ଏବଂ ୩ ଜଣ ସ୍କୁଲ ଇନିସ୍ପେକ୍ଟର ହୋଇଅଛନ୍ତି । ଅବଶିଷ୍ଟ ୯ ଜଣ ମଧ୍ୟରୁ ୫ ଜଣର ସନ୍ଧାନ ମିଳିନାହିଁ ଏବଂ ୪ ଜଣ ମିଳିଯାଇ ଅଛନ୍ତି । ଓଡିଶାର ଉଚ୍ଚଶିକ୍ଷା ବିଷୟରେ ଅନ୍ୟାନ୍ୟ ବିଭାଗ ଅପେକ୍ଷା ଅନେକ ପଛରେ ପଡିଅଛି । ଦରିଦ୍ର ଛାତ୍ରମାନେ ଅଭାବ ବଶରୁ ଉଚ୍ଚଶିକ୍ଷା କରିପାରି ନଥିବାର ଦେଖାଯାଏ । ତହିଁର ପ୍ରତିକାର ହେବା ଆବଶ୍ୟକ ।

*ଭା୧୩ ଗ,ସଂ୨୭ଖ୍ୟା, ୧୩।୧୧।୧୯୦୧*

## ମାତୃଭାଷା ।

ଆମ୍ଭମାନଙ୍କ ଦେଶରେ ଉଚ୍ଚ ଶିକ୍ଷିତ ସଂଖ୍ୟା ବର୍ଷକୁ ବର୍ଷ ଧୀରେ ଧୀରେ ବୃଦ୍ଧିଲାଭ କରୁଅଛି । ଉଚ୍ଚଶିକ୍ଷା ବୃଦ୍ଧି ଦେଶପକ୍ଷରେ ମଙ୍ଗଳ ଜନକ ଏକଥା ସମସ୍ତେ ସ୍ୱୀକାର କରନ୍ତି କିନ୍ତୁ ଏଦେଶର ଅଧିକାଂଶ ଲୋକ ଏକଥାର ସତ୍ୟତା ଉପଲଛି କରିପାରି ନାହାନ୍ତି । ସାଧାରଣଙ୍କ ଯୁକ୍ତି ଏହିଯେ ଯେଉଁମାନେ ଉଚ୍ଚଶିକ୍ଷା ଲାଭକଲେ ସେମାନେ ଉଚ୍ଚପଦରେ ନିଯୁକ୍ତ ହୋଇ ବଂଶଗୌରବ ବୃଦ୍ଧି କରିବେ, ଉଚ୍ଚବେତନ ପାଇ ପାରିବାରିକ ଅଭାବ ପୂରଣ କରିବେ ଏତଦ୍ୱାରା ଦେଶର କି ବିଶେଷ ଉପକାର ସାଧିତ ହେଲା ? ଭରଶାକରୁଁ ଉଚ୍ଚ ଶିକ୍ଷିତମାନଙ୍କ ମଧ୍ୟରୁ କେହି ସାଧାରଣର ଏହି ସନ୍ଦେହ ଭଞ୍ଜନର ଚେଷ୍ଟା କରିବେ ।

ଆମ୍ଭମାନଙ୍କ ବିବେଚନାରେ ଉଚ୍ଚ ଶିକ୍ଷିତମାନେ ଆପଣାର ଉଚ୍ଚ କର୍ତ୍ତବ୍ୟ ପାଳନରେ ବିମୁଖ । ସେମାନଙ୍କର ଦେଶହିତକର ସକଳ କାର୍ଯ୍ୟରେ ଅଗ୍ରଣୀ ହେବା ସର୍ବଦା ସ୍ୱଦେଶ ସ୍ୱଭାଷାର ଉନ୍ନତି ସାଧନ ସକାଶେ ଚିନ୍ତା – ଚେଷ୍ଟା କରିବା କର୍ତ୍ତବ୍ୟ ହେଲେ ହେଁ ତାହା ପାଳନ ନକରି ନିଜର-ନିଜ ପରିବାରର ମଙ୍ଗଳ ଚିନ୍ତାହିଁ ଜୀବନର ଏକମାତ୍ର ପ୍ରଧାନ ବ୍ରତ ମନେକରି ଥିବାର ଅନୁମାନ ହୁଏ ।

ମାତୃଭାଷା ମାତାପରି ପୂଜନୀୟା । ମାତୃଭାଷାର ପୂଜା କିପରି କରିବାକୁ ହୁଏ ତାହା ଆମ୍ଭମାନଙ୍କ ଦେଶର ଅଧିକାଂଶ ଉଚ୍ଚଶିକ୍ଷିତ ବ୍ୟକ୍ତି ମାନଙ୍କୁ ଜଣା ନାହିଁ। ଓଡ଼ିୟା ଭାଷାରେ ଯେ କେତେଖଣ୍ଡ ନୂତନ ପୁସ୍ତକ ବାହାରି ଅଛି ତନ୍ମଧ୍ୟରେ ଅତି ସାମାନ୍ୟ ଉଚ୍ଚ ଶିକ୍ଷିତମାନଙ୍କ ଲେଖନୀ ପ୍ରସୁତ। ଉତ୍କଳ ଦେଶରେ ଯେତେଖଣ୍ଡ ପତ୍ରିକା ଅଛି ତହିରେ ଉଚ୍ଚଶିକ୍ଷିତ ମାନଙ୍କ ଲିଖିତ ବିଷୟ ଅତି ଅଳ୍ପ ପ୍ରକାଶ ପାଏ। ସେହି ସାମାନ୍ୟ ଲେଖାର ଅଧିକାଂଶ ଅଳ୍ପଶିକ୍ଷିତଙ୍କ ଲେଖାଠାରୁ କୌଣସି ଅଂଶରେ ଉତ୍କୃଷ୍ଟ ନୁହେଁ କହିଲେ ଚଳେ। ଉଚ୍ଚଶିକ୍ଷିତ ମାନେ ଓଡ଼ିୟା ପୁସ୍ତକ ପ୍ରାୟ କ୍ରୟ କରନ୍ତି ନାହିଁ, କୌଣସି ପତ୍ରିକାର ଗ୍ରାହକ ହୁଅନ୍ତି ନାହିଁ,- ହେଲେ ମୂଲ୍ୟ ଦିଅନ୍ତି ନାହିଁ। ଯଦିବା ଦିଅନ୍ତି ତାହା ଭିକ୍ଷୁକକୁ ଦାନଦେଲା ପରି । ଅଳ୍ପ ଶିକ୍ଷିତମାନଙ୍କ ଯୋଗେ ଓଡ଼ିଶାରେ ଖଣ୍ଡେ ଖଣ୍ଡେ ପୁସ୍ତକ ପତ୍ରିକା ବାହାରୁଛି। ଓଡ଼ିଶ୍ୟାର ଉଚ୍ଚ ଶିକ୍ଷିତମାନଙ୍କର ମାତୃଭାଷା ପ୍ରତି ଏପରି ଅନାଦର ସେମାନଙ୍କ ପକ୍ଷରେ ନିନ୍ଦାର ବିଷୟ ସନ୍ଦେହ ନାହିଁ। ଅନେକ ଉଚ୍ଚ ଶିକ୍ଷିତ ବ୍ୟକ୍ତି କି କଥୋପକଥନ, କି ଲିଖନ ପଠନ ସକଳ ବିଷୟରେ ଇଂରେଜୀ ଭାଷାକୁ ମାତୃଭାଷା ରୂପେ ବ୍ୟବହାର କରିଥାନ୍ତି ସେମାନେ ଇଂରେଜୀ ଭାଷାରେ ଯେପରି ମନର ଭାବ ପ୍ରକାଶ କରିପାରନ୍ତି ଓଡ଼ିଆ ଭାଷାରେ ସେପରି କରିବାକୁ ଅକ୍ଷମ। ଏହାକି ସେମାନଙ୍କ ପକ୍ଷରେ ସାମାନ୍ୟ ଲଜ୍ଜାର ବିଷୟ ?

ଇଂରେଜୀ ଶିକ୍ଷିତ ବ୍ୟକ୍ତିମାତ୍ରେ ଅବଗତ ଅଛନ୍ତି ଯେ ଆୟରଲଣ୍ଡରେ କି ବିଦ୍ୟାଳୟରେ, କି ବିଚାରାଳୟରେ ସର୍ବତ୍ର ଇଂରେଜୀ ଭାଷା ପ୍ରଚଳିତ ଥିଲେ ମଧ ଆଇରିଷମାନେ ଆପଣାର ଅନାଦୃତା ମାତୃଭାଷା ବ୍ୟବହାର କରିବା ଏବଂ ତହିଁର ଉନ୍ନତି ସାଧନ କରିବା ବିଷୟରେ ବିନ୍ଦୁମାତ୍ର ଉଦାସୀନ ନୁହନ୍ତି। ସେମାନେ ବୁଝିଅଛନ୍ତି ଯେ ମାତୃଭାଷାର ଗୌରବ ପ୍ରତିପତ୍ତି ଯେତେ ଦିନ ନବଢ଼ିବ ତେତେଦିନ ଦେଶର କୌଣସି ପ୍ରକାର ଉନ୍ନତି ହେବନାହିଁ। ମାତୃଭାଷାର ଆଦର ଯେପରି ବଢ଼ିବ, ଦେଶର ମଙ୍ଗଳ ସେହିପରି ହେବ। ମାତୃଭାଷାରେ ଯାହାଙ୍କର ଅଟଳ ଅଚଳ ଅନୁରାଗ ନାହିଁ , ସେ ପ୍ରକୃତ ଦେଶଭକ୍ତ ବୋଲି ପରିଚୟ ଦେବାରେ ଉପଯୁକ୍ତ ନୁହନ୍ତି। ଯେ ମାତୃଭାଷାର ବିରାଗୀ ସେତ ଜନ୍ମଭୂମିର ସୁସନ୍ତାନ ବୋଲି ପରିଚୟ ଦେବାର ଅଧିକାରୀ ନୁହେଁ।"

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ପାର୍ଲେମେଣ୍ଟର ଆଇରିଷ ସଭ୍ୟମାନଙ୍କର ପ୍ରଧାନ ପରିଚାଳକ ରେଡମଣ୍ଡ ସାହେବ କହିଅଛନ୍ତି,- "ଆମ୍ଭମାନଙ୍କର ମାତୃଭାଷା ଗେଲିକ ଭାଷାହିଁ ଆମ୍ଭମାନଙ୍କର ଜାତୀୟତା ରକ୍ଷାରେ ସାର୍ଥକ ହେବ। ଆଇରିଷ ହୃଦୟର ଆଇରିଷ ଭାବ, ଆଇରିଷ ସଂସ୍କାର , ଆଇରିଷ ଚିନ୍ତା ଏବଂ ଆଇରିଷ ଭାଷା ହିଁ ସର୍ବତ୍ର ଉତ୍ତେଜିତ କରି ରଖିବ। ଅନ୍ୟଥା ଆମ୍ଭମାନଙ୍କର ଜାତୀୟତା ବିଲୁପ୍ତ ହୋଇଯିବ। ଆଇରିଷ ସଭାର ଗୌରବ ଥିଲେ ଆଇରିଷ ଜାତିର ଗୌରବ ଥିବ, ଆଇରିଷ ଜୀବନର ଗୌରବ ରହିବ"। ଆଇରିଷ ରାଜନୀତିକ ଓଡନେଲ କହିଅଛନ୍ତି- ଆଇରିଷ ଭାଷାହିଁ ଆଇରିଷଙ୍କ, ସ୍ୱାତନ୍ତ୍ୟ ଆଇରିଷଙ୍କ ଆଇରିଷତ୍ୱ ବଜାୟ ରଖିଅଛି। ଆଇରିଷ ଭାଷାର କଲ୍ୟାଣରେ ଆଇରିଷ, ଜଗତର ସର୍ବତ୍ର, ସୁଦୂର ଜଗତ ପ୍ରାନ୍ତରେ ମଟା ଆଇରିଷ ବୋଲି ପରିଚୟ ଦେବାକୁ ସକ୍ଷମ ହେଉଅଛି। ଆୟରଲାଣ୍ଡର ଜଣେ ମହାକବି କହିଅଛନ୍ତି –ମାତୃଭାଷା- ଶୈଶବର ଭାଷା ଯେ ଜାତିର ଭାଷା ସଜୀବ ନଥାଏ ସେଜାତି କେବେହେଁ ସଜୀବ ରହି ନପାରେ; ବାଳୀର ଭାଷା କବରକୁ ଗଲେ ଜାତିକୁ ମଧ କବରକୁ ଯିବାକୁ ହୁଏ। ଏସବୁ ସତ୍ୟପୂର୍ଣ୍ଣ ମନ୍ତବ୍ୟ କି ଶିକ୍ଷିତମାନଙ୍କର ଶ୍ରୁତିବାଚକ ହୋଇ ନାହିଁ ? ସେମାନେ କି ଜାଣନ୍ତି ନାହିଁ ଜନନୀ ମାତା ଜନ୍ମଭୂମି ମାତା ଏବଂ ଭାଷାମାତା; ଏହି ତିନି ମାତାହିଁ ଆମ୍ଭମାନଙ୍କର ପୂଜ୍ୟ ? ଏକ ମାତା ପ୍ରତି ଅଭକ୍ତି ହେଲେ ଆମ୍ଭମାନଙ୍କୁ ମାତୃ ଦ୍ୱେଷୀ ହେବାକୁ ପଡିବ ?

ଅବସ୍ଥା ବିବେଚନାରେ ଇଂରେଜୀଭାଷାରେ ପାରଦର୍ଶିତା ଲାଭ କରିବା ନିତାନ୍ତ ଆବଶ୍ୟକ ସତ୍ୟ କିନ୍ତୁ ମାତୃଭାଷା ପ୍ରତି ବିରାଗ ପ୍ରକାଶ କରିବା ଉଚିତ ନୁହେଁ ରାଜଭାଷାରେ ସ୍ୱାର୍ଥ ସମ୍ପାଦନ କର, ରାଜଭାଷାରେ ଜ୍ଞାନ ସମ୍ପାଦନ କର, ରାଜଭାଷାରେ ବିଦ୍ୟାବର୍ଦ୍ଧନ କର ଆପତ୍ତି ନାହିଁ , କିନ୍ତୁ ସକଳ ସ୍ୱାର୍ଥ ଯେପରି ମାତୃଭାଷା ସକାଶେ ନିଯୁକ୍ତ ହୁଏ, ସକଳ ବିଦ୍ୟା, ସକଳ ଜ୍ଞାନ ଯେପରି ମାତୃଭାଷାରେ ସଂଯୁକ୍ତ ହୁଏ ତହିଁ ସକାଶେ ସତର୍କହେବା ପ୍ରତ୍ୟେକ ଉଚ୍ଚଶିକ୍ଷିତ ବ୍ୟକ୍ତିମାନଙ୍କର ଏକାନ୍ତ କର୍ତ୍ତବ୍ୟ ଏହା ତୁମ୍ଭ ଆମ୍ଭର କଥା ନୁହେଁ - ଆୟରଲଣ୍ଡର ଜାତୀୟ ଶିକ୍ଷା ସମିତିର ଅଧକ୍ଷ ସାର୍‌ପେଟିକ କୀଲାନୀ ଆୟରଲଣ୍ଡର ସମସ୍ତ ଆଇରିଷଙ୍କୁ – ସମସ୍ତ ଶିକ୍ଷକ ଓ ପରିଦର୍ଶକଙ୍କୁ ଏହି ଅମୂଲ୍ୟ ଉପଦେଶ ପ୍ରଦାନ କରି ଅଛନ୍ତି ।

ବଙ୍ଗଦେଶ ବିଖ୍ୟାତ ନାମାଲେଖ ଶ୍ରୀଯୁକ୍ତ ବାବୁ କ୍ଷେତ୍ରମୋହନ ସେନଗୁପ୍ତ ମହାଶୟଙ୍କ ସହିତ ଏକ ବାକ୍ୟରେ କହୁଅଛୁଁ – ଯେ ଭାଷାରେ ଆମ୍ଭେମାନେ ଶୈଶବରେ 'ମା' କହିଅଛୁଁ , ଯେ ଭାଷାରେ ଏବେ ମଧ ଆମ୍ଭେମାନେ 'ମା'କୁ ଡାକୁଅଛୁଁ , ଯେ ଭାଷାରେ ଆମ୍ଭମାନଙ୍କର ପୁତ୍ରକନ୍ୟା ଏବେ 'ମା' ବୋଲୁଅଛନ୍ତି ଆମ୍ଭମାନଙ୍କୁ 'ବାପା' ବୋଲି ଡାକୁଅଛନ୍ତି ଯେ ଭାଷାରେ ଆମ୍ଭେମାନେ ସୁଖ ସମୃଦ୍ଧି ଉତ୍ସବ ସମୟରେ ଆନନ୍ଦ ଲାଭ କରୁ ଅଛୁଁ, ଯେ ଭାଷାରେ ଦୁଃଖ ସମୟରେ କାତରତା ପ୍ରକାଶ କରୁଅଛୁଁ, ଯେ ଭାଷାରେ ଆମ୍ଭେମାନେ ହସୁଅଛୁଁ, ଯେ ଭାଷାରେ କାନ୍ଦୁଅଛୁଁ, ଯେ ଭାଷାରେ ବିପତ୍କାଳରେ ଭଗବାନଙ୍କୁ ଡାକୁଅଛୁଁ, ଯେ ଭାଷାରେ ମରଣ କାଳରେ ହରିନାମ କରୁଅଛୁଁ ସେହିଭାଷା- ସେହି ଆମ୍ଭମାନଙ୍କର ମାତୃଭାଷା କିପରି ପୂଜନୀୟା - କିପରି ମାନନୀୟା - କିପରି ବରଣୀୟା କିପରି ସ୍ମରଣୀୟା ତାହାଯଦି ଆମ୍ଭେମାନେ ନବୁଝୁଁ ତାହାହେଲେ ଆମ୍ଭମାନଙ୍କପରି ନରାଧମ କି- ଆମ୍ଭମାନଙ୍କ ପରି ପଶୁର ଅଧମ ଜଗତରେ ଆଉନାହିଁ । ନରକର ଶୟତାନ ସନ୍ତାନମାନେ ମଧ ମାତୃଭାଷା ବିସ୍ମୃତ ହୋଇ ପାରନ୍ତିନାହିଁ ।

*ଭା/୧୩ ଗ,ସଂ୨୭ଖ୍ୟା,୧୩/୧୧/୧୯୦୧*

## ଓଡ଼ିଆଭାଷାର ପୁନଃ ପ୍ରଚଳନ ବିଷୟରେ ଜନରବ।

ଓଡ଼ିୟା ଭାଷାର ପୁନଃ ପ୍ରଚଳନ ବିଷୟକ ଶେଷ ଆଦେଶ ଆଜି ପର୍ଯ୍ୟନ୍ତ ନହେବାରୁ ସମସ୍ତେ ବ୍ୟାକୁଳ ହୋଇଅଛନ୍ତି । ଯଦ୍ୟପି ଜାନୁୟାରି ମାସର ପ୍ରଥମ ତାରିଖରେ କାର୍ଯ୍ୟାରମ୍ଭ ହେବ, ତେବେ ଅନ୍ତତଃ ୨ମାସ ପୂର୍ବେ ଅଦାଲତ ରେଜିଷ୍ଟି ଫର୍ମ ଇତ୍ୟାଦି ଓଡ଼ିୟାରେ ହେବାର ଉଚିତ । ପୁଣି ବୈଦେଶିକ କର୍ମଚାରୀ ମାନଙ୍କୁ ଓଡ଼ିୟା ଶିକ୍ଷାକରିବା ସକାଶେ ସୁଯୋଗ ଦେବା ଆବଶ୍ୟକ । ଇତିମଧ୍ୟରେ ବୈଦେଶିକମାନେ ଓଡ଼ିୟା ଭାଷାର ବିପକ୍ଷରେ ଖଣ୍ଡିଏ ଦରଖାସ୍ତ ପ୍ରେରଣ କରିବାର ଶୁଣାଯାଇଥିଲା । ପରେ ଖବର ହେଲାଯେ ତାହା ଅଗ୍ରାହ୍ୟ ହୋଇଛି । ପୁଣି

ବୈଦେଶିକ କର୍ମଚାରୀମାନେ କହନ୍ତି ଯେ ଅଦାଲତରେ ସଂପୂର୍ଣ୍ଣରୂପେ ଓଡ଼ିଆ ଚଳିବ ନାହିଁ । ହିନ୍ଦି ଏବଂ ଓଡ଼ିଆ ଉଭୟ ଭାଷା ଚଳିବ । ଯୁଡିଶିୟଲ କମିଶ୍ନରଙ୍କର ପ୍ରସ୍ତାବିତ ପତ୍ରାଦର୍ଶକୁ ଲକ୍ଷ୍ୟକରି କେହି କେହି କହୁ ଅଛନ୍ତି ଯେ ଗବର୍ଣ୍ଣର ଜେନେରଲଙ୍କ ଦ୍ୱାରା ସାହେବ ମହୋଦୟ ଅଦିଷ୍ଟ । ସମ୍ବଲପୁର ଅଦାଲତର ଦିବାନି ଏବଂ ଫୌଜଦାରୀ ମୋକଦ୍ଦମା ସମ୍ବନ୍ଧୀୟ କାଗଜପତ୍ର ଦେଖି ରିପୋଟ କରିବା ନିମନ୍ତେ ଆସୁଅଛନ୍ତି । ଏସବୁ ଦେଖି ସମସ୍ତେ ବିସ୍ମିତ ହେଉଅଛନ୍ତି । ଓଡ଼ିଆ ଭାଷାର ପୁନଃ ପ୍ରଚଳନ ବିଷୟରେ ରିପୋଟ କରିବା ନିମନ୍ତେ ପ୍ରଥମେ ଜିଲ୍ଲାସାହେବ ଆଦିଷ୍ଟହେଲେ, ତତ୍ପରେ ସ୍ୱୟଂ ଚୀଫ୍ କମିଶ୍ନର ସାହେବ ବିରାଜମାନ କରି ଅଭୂତପୂର୍ବ ଅନୁସନ୍ଧାନ ପରେ କର୍ତ୍ତୃପକ୍ଷଙ୍କର କି ସନ୍ଦେହ ରହିଲା ? ପୁଣି ଆଠ ଦଶଟା ସ୍ୱୟଂ ଚୀଫ୍ କମିଶ୍ନର ପ୍ରଚାର କରିବା ପରେ ଆହୁରି ଅନୁସନ୍ଧାନ ? ଏତେ ବିପଦରେ କି ଦୁର୍ବଳ ଓଡ଼ିଆଙ୍କର ଧୈର୍ଯ୍ୟ ରହେ ? ଓଡ଼ିଆ ଭାଷାର ପୁନଃ ପ୍ରଚଳନ ଜନିତ ମହୋତ୍ସବ ମଧ୍ୟରେ ଏହି ଦୁଃସମ୍ବାଦ । ଆମ୍ଭେମାନେ ଏହିସବୁ ସମ୍ବାଦ ଉପରେ ବିଶ୍ୱାସ ସ୍ଥାପନ କରିପାରୁ ନାହୁଁ । ଚୀଫ୍‌କମିଶ୍ନର ସ୍ୱଂୟ ଅନୁସନ୍ଧାନ କରିବାପକ୍ଷେ ସେ ଯେ କୌଣସି ବିଷୟରେ ଅନୁସନ୍ଧାନ ତ୍ୟାଗ କରିଥିବେ ଏହା ସମ୍ଭବବୋଧ ହେଉ ନାହିଁ । ସେ ସକଳ ବିଭାଗର କାଗଜପତ୍ର ଦେଖି ରିପୋଟ କରିଥିବେ । ପୁଣି ତାଙ୍କର ରିପୋଟ ମଞ୍ଜୁର ହେବାର ଏକାନ୍ତ ଭରଶା ଥିବାରୁ ସେ ଗ୍ରାମେ ଗ୍ରାମେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ବିଷୟକ ଆଦେଶ ପ୍ରଚାର କରିଯାଇ ଅଛନ୍ତି ।

*ଭା/୧୩ ଗ,ସଂ୩୦ଖ୍ୟା,୪/୧୨/୧୯୦୧*

## ୧୯୦୨

### ସମାଚାର ।
### ସମ୍ବଲପୁର ସମ୍ବାଦ ।

ଓଡ଼ିୟାଭାଷାର ପୁନଃ ପ୍ରଚଳନ ବିଷୟରେ ଆଜିପର୍ଯ୍ୟନ୍ତ ଆଦେଶ ନହେବାରୁ ଲୋକମାନେ ବଡବ୍ୟାକୁଳ ହୋଇଅଛନ୍ତି । ଏ ବିଷୟରେ ସମ୍ବଲପୁରରେ ବିବିଧପ୍ରକାରର ଖବର ପ୍ରଚାର ହେଉଅଛି । କିନ୍ତୁ କୌଣସି ଖବର ସତ୍ୟବୋଲି ବିବେଚିତ ହୋଇନପାରେ । ପ୍ରଶ୍ନଟି ବିଚାରାଧୀନରେ ଥିବାର ସମ୍ଭବପର । କାରଣ ଆଦେଶ ହୋଇଥିଲେ, ତାହା ଅବିଳମ୍ବରେ ପ୍ରଚାର ହୋଇଥାନ୍ତା ।

x x x x x x x x x x x x

*ଭା୧୩ ଗ,ସଂ୪୦ଖ୍ୟା,୧୨।୨।୧୯୦୨*

### (ଉତ୍କଳ)

### (ରାଗ ଶଙ୍କରାଭରଣ)

ଶୁଣହେ ଉତ୍କଳବାସୀ ! ନବ ଆଶାଗୀତ,
ଶୁଣି ଯାହା ଉଦ୍‌ବୋଧିତ ମୋର କ୍ଷୁଦ୍ରଚିତ୍ତ,
            ଦେଖୁଥିଲି ମୁଁ ସ୍ୱପନ ।
ଶୂନ୍ୟପଥୁଂ ଶୁଭିଲା ଏ ମଧୁର ଗାୟନ ।୧।
ଉଠହେ ଉତ୍କଳବାସୀ ! ବାନ୍ଧହେ ସାହସ,
ଚଢ଼ିବ ଯଶ ସୋପାନେ ଆଣ୍ଟେ ଅଣ୍ଟା କସ,
କେଭେ ନିରାଶ ନ ହୁଅ,
ଯୁଝ ଜୀବନ ସଂଗ୍ରାମ ହେ ଓଡ଼ିୟାପୁଅ ।୨।
ଫେଡିନେତ୍ର ଚାହାଁ ବାରେତୋ ପୂର୍ବ ଗୌରବେ
ନୁହେଁକି ଦୂର୍ଲ୍ଲଭ ତାହା ଏନିଖିଳ ଭବେ ?
ଦେଖ ଚିତ୍ରକର କବି,
କି ସୁନ୍ଦର ଚିତ୍ରିଛନ୍ତି ଉତ୍କଳର ଛବି ! ।୩।
ପବିତ୍ର ଉତ୍କଳଭୂମି ସୌନ୍ଦର୍ଯ୍ୟ ଶାଳିନୀ,
ପୁଣ୍ୟବତୀ ଆହା ଯଥା ରୂପସୀ କାମିନୀ,
            ଦକ୍ଷସ୍ୱର୍ଣ୍ଣକାର କର
ନିର୍ମିତ ଲଲାଟେ ତନୁ କେମନ୍ତ ସୁନ୍ଦର ।୪।
କୋଣାର୍କ ଏ ନାମ୍ ଚିତ୍ର ଅବା ଶ୍ରୀକ୍ଷେତ୍ରର
ସାରା ମେଦିନୀ ମଧରେ ନାହିଁ ପଟାନ୍ତର
            ଅଗଣିତ କୀର୍ତ୍ତି ରାଜି

ଶୋଭନ୍ତି ଉତ୍କଳ ଅଂଗେ ଚାରୁ ସାଜେ ସାନି ।୫।
ଉତ୍କଳର ସ୍ଥାନେ ସ୍ଥାନେ ମନ୍ଦିର ରାଜନ୍ତି,
କାଳ ସଂହାର ମୂରତି ଚାହିଁ ବି ହସନ୍ତି।
ପୂର୍ବ ଗୌରବର କଥା
ହେମବର୍ଣ୍ଣେ ମୁଦ୍ରିତ କି ମନ୍ଦିରାଙ୍କ ମଥା ।୬।
ଉତ୍କଳ ଙ୍କେ ଜନ୍ମି କେ ଭ୍ରଷ୍ଟ ବୀରବରେ
ସାହିତ୍ୟ ପଟେ ଲେଖିଲେ ଅମର ଅକ୍ଷରେ
xxxxxxx
xxxxxxx
xxxxxxx
କି ସୂର୍ଯ୍ୟବ୍ରହ୍ମା ପୁଣି କବି ଅଭିମନ୍ୟୁ
ତୋଳିଲେ କାବ୍ୟ କୁସୁମ କବିତା କାନନୁ
ଗୁନ୍ଥି ଉପମା ପୁଷ୍ପବାର
ଗଙ୍ଗାରୁ ଗୋଦାବରୀ ଯାଏ କଲେ ଦିବ୍ୟଧାମ
xxxxxxx
xxxxxxx ।୯।
କବି କୃଷ୍ଣସିଂହ ପୁଣି କବି ବଳରାମ
ଗାଇଲେ ଅର୍ଜୁନ କୃଷ୍ଣ ସୀତାରାମନାମ
xxxxxxx
xxxxxxx ।୧୦।
ଉତ୍କଳ ଜନନୀ ବହୁ ବୀର ପ୍ରସବିନୀ।
ଦିଗ୍‌ବିଜୟ ବଙ୍ଗ ଦାକ୍ଷିଣାତ୍ୟ ଥିଲେ ଜିଣି
ପଲ୍ଲୀ ମୋଗଲ ସମ୍ରାଟ
xxxxxxx ।୧୧।
xxxxxxx
xxxxxxx
xxxxxxx ।୧୨।
ଉତ୍କଳ ଗରଭୁଁ କେ ତ ସାଧୁଭକ୍ତ ସୁତ
ଜନମି କରିଲେ ପ୍ରିୟମାତୃ କଳପତ
ପଞ୍ଚଶଖା ଆଦି ଭକ୍ତ
ଘୋଷି ସାମ୍ୟ ମନ୍ତ୍ର କଲେ ଏଦେଶ ପବିତ୍ର
ଥିଲା ଯେ ଉତ୍କଳ କାଳେ ଗୌରବ ନିଦାନ
ହେଲା ତାହା ଘୋର ଅବସାନେ ମ୍ରିୟମାଣ,
xxxxxxx

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

xxxxxxx ।୧୫।
ବର୍ଗୀ ମୋଗଲ ପଠାଣ,
କରିଥିଲେ ଓଡ଼ିଶାକୁ ଶ୍ମଶାନ ସମାନ ।୧୬।
ଶ୍ୱେତଦିଗୁଁ ଆସିବାରେ ଦେବଦୂତ ସମ,
xxxxxxx
କହେ ପ୍ରଭାତ ପବନ
ଆଉ କଳହ ବିଷାଦ ନିଦ୍ର-ନିଗମନ ।୧୭।
କିଏ ଅଛି ଏଉତ୍କଳେ ଉକ୍ତ ଜ୍ଞାନୀ ବୀର
xxx ବିନାଶି ନିର ଦୁଃଖ ଜନନୀର
xxxxxxx
ହସୁ ଉତ୍କଳ–ମାତାଙ୍କ ପଙ୍କଜ ଆନନ ।୧୮।

ନନ୍ଦକିଶୋର ବଳ

*ଭା୧୩ ଗ,ସଂ୪୭ଖ୍ୟା,୨।୪।୧୯୦୨*

## ବିଜ୍ଞାପନ

## ରାଧାନାଥ ଲାଇବ୍ରେରୀ ।

ସାଧାରଣଙ୍କ ବିନାମୂଲ୍ୟେ ପଠନାର୍ଥେ
ଓଡ଼ିଆ ଭାଷାର ସର୍ବପ୍ରକାର ପୁସ୍ତକ
ଏଠାରେ ଗଚ୍ଛିତ ରହିଅଛି ।

ଉତ୍କଳୀୟ ଶିକ୍ଷିତ ଯୁବକ ବୃନ୍ଦଙ୍କ ନିକଟରେ ଏହାହିଁ ଜ୍ଞାପନୀୟ ଯେ "ନବୀନ ସମ୍ରାଟଙ୍କ ନିକଟରେ ଉତ୍କଳ ମାତାର ଗୁହାରି" ସମ୍ବନ୍ଧରେ ସର୍ବୋତ୍କୃଷ୍ଟ ପ୍ରବନ୍ଧ ଲେଖକଙ୍କୁ ଏହି ଲାଇବ୍ରେରୀ କୋଷରୁ ଦଶଟଙ୍କା ପାରିତୋଷିକ ପ୍ରଦତ୍ତ ହେବ । ପ୍ରବନ୍ଧମାନ ଜଣେ ପ୍ରବୀଣ ସାହିତ୍ୟସେବକଙ୍କ ଦ୍ୱାରା ପରୀକ୍ଷିତ ହୋଇ ଯେଉଁଟା ଶୀର୍ଷସ୍ଥାନ ଲାଭ କରିବ ତାହା ଏହି ପତ୍ରିକାସ୍ଥ ହେବ । ଲେଖକ ମହୋଦୟଗଣ ଆଜି ତାରିଖଠାରୁ ଆଗାମୀ ମେ ମାସ ପନ୍ଦର ତାରିଖ ମଧରେ ସ୍ୱ ସ୍ୱ ଠିକଣା ସହିତ ପ୍ରବନ୍ଧଗୁଡ଼ିକ ନିମ୍ନାଙ୍କିତ ବ୍ୟକ୍ତିଙ୍କଠାକୁ ପଠାଇବାକୁ ସଚେଷ୍ଟ ହେବେ ।

ଏହିପରି ପାରିତୋଷିକ ପ୍ରତିବର୍ଷ ପ୍ରଦାନ କରିବା ଲାଇବ୍ରେରୀର ଅଭିପ୍ରେତ ।

୧-୪-୧୯୦୨
କୋଦାର ପୁର
ସୋର ପୋଃ ଅଃ
ବାଲେଶ୍ୱର ଜିଲ୍ଲା

ଶ୍ରୀ ଶିରିଶ ଚନ୍ଦ୍ର ରାୟ ।
ସମ୍ପାଦକ

*ଭା୧୩ ଗ,ସଂ୪୮ଖ୍ୟା,୯।୪।୧୯୦୨*

## ହିନ୍ଦିଭାଷା ଶିକ୍ଷାର ଉଦ୍‌ଯୋଗ ।

ମହାମତି ଅନରେବଲ୍ ଫ୍ରେଜାର ସାହେବଙ୍କର ଯତ୍ନରେ ଓ ମହାମାନ୍ୟ ଗବର୍ଣ୍ଣର ଜେନେରଲଙ୍କ ସୁବିବେଚନାରେ ଓଡ଼ିଆ ଭାଷା ବର୍ତ୍ତମାନ ସମ୍ବଲପୁର ଅଦାଲତ ମାନଙ୍କରେ ପ୍ରଚଳିତ ହେବାର ପ୍ରସ୍ତାବ ଶୁଣି ଆମ୍ଭେମାନେ ପରମ ଆପ୍ୟାୟିତ ହୋଇଅଛୁଁ । ସମଗ୍ର ଉତ୍କଳଭାଷୀ ଏଣୁ କୃତଜ୍ଞ ପ୍ରାଣରେ ଇଂରାଜ ରାଜତ୍ୱର ନ୍ୟାୟ

ବିଚାର ମୁକ୍ତ କଣ୍ଠରେ ଘୋଷଣା କରୁଅଛନ୍ତି । ପ୍ରକୃତରେ ସମ୍ବଲପୁର ପରି ଓଡ଼ିଆ ସ୍ଥାନରେ ହିନ୍ଦିଭାଷାର ଅଧିକାର କୌଣସି ମତରେ ଶୋଭନୀୟ ନୁହେ । ସେପରି ଚେଷ୍ଟା କରିବା ମଧ୍ୟ ଅନୁଚିତ । ବୈଦେଶିକ ଭିନ୍ନ ଭାଷୀ ବ୍ୟକ୍ତିମାନେ ନିଜ ନିଜ ଉଦାର ଗୁଣରେ ବଶବର୍ତ୍ତୀ ହୋଇ ଥରେ ଭାବନା କଲେ ଆମ୍ଭମାନଙ୍କ କଥାର ଉପଯୁକ୍ତତା ଅନୁଭବ କରି ପାରିବେ ।

ବର୍ତ୍ତମାନ ସମ୍ବାଦଦାତାଙ୍କ ପତ୍ରରୁ ଅବଗତ ହେଲୁଁ ଯେ ସମ୍ବଲପୁରସ୍ଥ ବୈଦେଶିକ ହିନ୍ଦିଭାଷୀ କର୍ମ୍ମଚାରୀମାନଙ୍କ ମଧ୍ୟରୁ କେହି କେହି ହିନ୍ଦିଭାଷା ଶିକ୍ଷା କରାଇବା ନିମନ୍ତେ ଚେଷ୍ଟା କରୁଅଛନ୍ତି । ସେମାନେ ଇତିମଧ୍ୟରେ ସମିତି ଆଦି କରି ପ୍ରସ୍ତାବ କରୁଅଛନ୍ତି ଯେ ଓଡ଼ିଆ ବିଦ୍ୟାଳୟ ସମୂହର ଛାତ୍ରମାନଙ୍କୁ ହିନ୍ଦି ଶିକ୍ଷା କରିବା ନିମନ୍ତେ ଆଦେଶ ଦିଆଯିବ ।

ଓଡ଼ିଆ ଛାତ୍ରମାନେ ଇଚ୍ଛାନୁସାରେ ଏପରି ଆଦେଶ ପାଳନ କଲେ, କୌଣସି ଆପତ୍ତି ନାହିଁ । କାରଣ ନାନାପ୍ରକାର ଭାଷା ଜାଣି ଉନ୍ନତ ଭାଷାର ଗ୍ରନ୍ଥମାନଙ୍କରୁ ମାତୃଭାଷାର ଉପଯୋଗୀ ସାର ସଂଗ୍ରହ କରିବା ସର୍ବତୋଭାବେ ବିଧେୟ । ମାତ୍ର ସେମାନଙ୍କୁ ହିନ୍ଦିଶିକ୍ଷା ନିମନ୍ତେ ବାଧ କରିବା କୌଣସିମତେ ବାଞ୍ଛନୀୟ ନୁହେଁ ।

ଯେଉଁ ସମୟରେ ହିନ୍ଦିଭାଷା ଅଦାଲତମାନଙ୍କରେ ପ୍ରଚଳିତ ହେଲା, ତତ୍‌କାଳରେ ଓଡ଼ିଆ ସ୍କୁଲମାନଙ୍କରେ ହିନ୍ଦିଭାଷା ଶିକ୍ଷା ଦେବାର ପ୍ରସ୍ତାବ, ଶିକ୍ଷା ବିଭାଗର xxxxxxx ଅଗ୍ରାହ୍ୟ କରିଥିଲେ । ଓଡ଼ିଆ ଛାତ୍ରମାନେ ସେଥିରେ କିପରି ଫଳଲାଭ କରିବେ, ସେ ଅବଶ୍ୟ ତାହା ଉତ୍ତମ ରୂପରେ ହୃଦୟଙ୍ଗମ କରି ପାରିଥିଲେ ଆଜିକାଲି ଅଦାଲତ ସମୂହରୁ ହିନ୍ଦିଭାଷା ଉଠିଯାଉଥିବା ସ୍ଥଳେ ଓଡ଼ିଆ ଛାତ୍ରମାନଙ୍କୁ ହିନ୍ଦିଭାଷା ଶିକ୍ଷା କରାଇବା ନିମନ୍ତେ ଯତ୍ନ କରିବା କୌଣସିମତେ ଉତ୍ତମ ନୁହେଁ ।

କି ବିଦେଶୀ କି ସ୍ୱଦେଶୀ ଯେ ଯେଉଁ ସ୍ଥାନରେ ଥିବ, ସେ ସେହି ସ୍ଥାନର ମଙ୍ଗଳ ଇଚ୍ଛାକରି କାର୍ଯ୍ୟ କଲେ ଲୋକଙ୍କର ସ୍ମରଣୀୟ ହେବ । କାରଣ ଦେଶ କାଳ ପାତ୍ରନେଇ ଲୋକମାନଙ୍କର ଖ୍ୟାତି ହୋଇଯାଏ ।

*ଭା୧୪ ଗ, ସଂ୧୭ଖ୍ୟା, ୨୯।୧୦।୧୯୦୨*

## ପ୍ରେରିତ ପତ୍ର ।

ମହାଶୟ !

ନିମ୍ନଲିଖିତ ପ୍ରସ୍ତାବଟି ଆପଣଙ୍କ ପତ୍ରିକାରେ ପ୍ରକାଶ କରି ଚିରବାଧିତ କରିବେ ସମଗ୍ର ଉତ୍କଳ ଦେଶଟି ଭିନ୍ନ ଭିନ୍ନ ଗବର୍ଣ୍ଣମେଣ୍ଟଙ୍କ ଦ୍ୱାରା ପାଳନ ହେଉଥିବାରୁ ଆମ୍ଭେ ସମସ୍ତ ଉତ୍କଳ ନିବାସିମାନେ ଜିବନ୍ମୃତପ୍ରାୟ ହୋଇଅଛୁଁ । ଯେବେ "ନୂତନରାଜ୍ୟ ଗଠନ" ସମୟରେ ଗଞ୍ଜାମ ପ୍ରତି ବଡଲାଟ ମହୋଦୟ ସୁଦୃଷ୍ଟିପାତ କରନ୍ତି ତାହାହେଲେ ଗଞ୍ଜାମ ଓଡ଼ିଆ ମାନଙ୍କର ଅନେକ ଅଶୁବିଧା ଦୂର ହୋଇଯିବ ।

ଗଞ୍ଜାମର ସମସ୍ତ ରାଜାମାନେ ଓ ପ୍ରଜାମାନେ ଓଡ଼ିଆମାତ୍ର ଜିଲାଟି ତେଲଙ୍ଗା ରାଜ୍ୟାନ୍ତର୍ଗତ ହୋଇଥିବାଯୋଗୁଁ ସରକାର କଚେରିମାନଙ୍କରେ ତେଲଙ୍ଗାରେ କାର୍ଡ ହୋଇଅଛି । ଅତଏବ ପ୍ରଜାମାନଙ୍କ ପାଖକୁ ଦାବାଦରବାରରେ ତେଲଙ୍ଗାଭାଷାରେ, ସମନ, ନୋଟିସ ଇତ୍ୟାଦି ଆସୁଅଛି । ସୁତରାଂ ପ୍ରଜାମାନେ xxxx କୋଦିନ କଚେରିରେ ପ୍ରବେଶ ହେବାର ନିର୍ଦ୍ଦିଷ୍ଟ ତାରିଖ କି ତାହସମଞ୍ଜି ନପାରି ସମୟ ସମୟରେ ଅନ୍ୟାୟରେ "ରାଜାଜ୍ଞାଅମାନକ" ଦୋଷାର୍ପିତ ହୋଇ ଆଇନାନୁସାରେ ଦଣ୍ଡଭୋଗ କରୁଅଛନ୍ତି । ଏହାଛଡା ମାଜିଷ୍ଟେଟ୍ ଓ ମୁନସଫଙ୍କ ସାକ୍ଷାତରେ ଓଡ଼ିଆମାନେ ବାଦାନୁବାଦ ସକଳ ବିଷୟ ଓଡ଼ିଆ ଭାଷାରେ କହୁଥିଲାବେଳେ ତାହା ସବୁ ତେଲଙ୍ଗା ଭାଷାରେ ଦେଖାଯାଉଅଛି ଏହି କାରଣରୁ ମଧ୍ୟ ଆପାଲକୋର୍ଟ ସକାଶେ ବିଷୟ ଅବଗତ ହେବାକୁ ଆମ୍ଭମାନଙ୍କୁ ବହୁ ଅସୁବିଧା ଘଟୁଅଛି । ଡାକରେ ମଣିଅର୍ଡର ଦ୍ୱାରା ଆପଣା ଜିଲାର କୌଣସି ଲକୁଟଙ୍କା ପଠାଇବାକୁ ଥିଲେ ମଣିଅର୍ଡର ନରଖି ଫେରାଇ ଦେଉଅଛନ୍ତି । ଆଉ ଓଡ଼ିଆମାନେ ଆପଣା ମାତୃଭାଷାରେ କେତେକୃତବିଦ୍ୟ ଥିଲେ ମଧ୍ୟ କିପ୍ରୋଜନ,

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଓଡ଼ିଆ ଭାଷାକି ଏଡେ ନୀଚ ଭାଷା xxxx କି ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ 'ରିକଗ୍ନାଇଜ' କରି xxxx ମଣିଅର୍ଡର ଫରମ ଖଣ୍ଡିଏ xxxx ରେ ଲେଖାଇବାକୁ ବୃଥାରେ xxx ଡାକ୍ତରଖାନାକୁ ଔଷଧ xxxx ଅଭିଜ୍ଞ ଡାକ୍ତରମାନଙ୍କୁ ରୋଗର କାରଣ xxxx ଜଣାଇବାକୁ ବହୁଦୂସର xxxx । ବିଦ୍ୟାବିଭାଗରେ ତେଲିଙ୍ଗୀ ଶିକ୍ଷକଙ୍କ ଦ୍ୱାରା ବିଦ୍ୟାଶିକ୍ଷା ଓ ତେଲିଙ୍ଗୀୟ ତତ୍ତ୍ୱାବଧାରକଙ୍କ ଦ୍ୱାରା ଦ୍ୟୋନ୍ନତିର ତପରଖକରାଯାଇ ଥିବାରୁ ଗଞ୍ଜାମର ଓଡିଆ ଭାଷାମଧ ନାନା ଅପଭ୍ରଂଶ ଶବ୍ଦରେ ମିଶିଯାଇ ବିକଳାଙ୍ଗଧାରଣ କରିଅଛି ।

ଉପସଂହାର ସ୍ଥଳେ ଏତିକିମାତ୍ର ପ୍ରକାଶ ଥାଉକି – ଗଞ୍ଜାମର କେହି କେହି ଓଡିଆମାନେ କହିପାରିବେ ଯେ ଗଞ୍ଜାମ ମାନ୍ଦ୍ରାଜନ୍ତର୍ଗତ ହୋଇ ବର୍ତ୍ତମାନ ଓଡିଆମାନଙ୍କୁ ଗଭର୍ଣ୍ଣମେଣ୍ଟ ଯେଉଁ ଦୃଷ୍ଟିରେ ରଖି ଅଛନ୍ତି ସେପରି ଥାଉ ମାତ୍ର ବଙ୍ଗଳାରେ ନମିଶୁ ପୁଣି ଆଉ କୌଣସି ନୂତନ ରାଜ୍ୟପରି ଗଠନହେଉ "ଏପରି କହିଲେ ବିଷମଧ ସନିପାତରେହିତ" ବୋଲି ସନିପାତ ନହେଲାପରି କାହିଁକି ପଥ୍ୟରେ କହିବା ନାହିଁ ? ଆଉ ସନ୍ନିପାତକୁ ବିଷହିତବୋଲି ବିଷକିଣି କାହିଁକି ସାଇତି ରଖିଥିବା ? କେଜାଣି ଘରେ ବିଷଥିଲେ ଅନ୍ୟ କୌଣ କିପ୍ରକାର ଅନିଷ୍ଟ ହୋଇପାରେ ।

ଶ୍ରୀ ହରିହର ତ୍ରିପାଠୀ ଶର୍ମା
ଘୁମୁସର, ରସୂଲକୁଣ୍ଡା ।

*ଭା/୧୪ ଘ,ସଂ ୧୯ଖ୍ୟା, ୧୨/୧୧/୧୯୦୨*

# ୧୮୭୩

## ଉତ୍କଳପୁତ୍ର

### ଉତ୍କଳ ଭାଷା

ଏହି ଭାଷା ଯେ ପୁରାତନ, ସ୍ୱତନ୍ତ୍ର ପୁଣି ଗୋଟିଏ ମୂଳଭାଷାରୁ ଅର୍ଥାତ୍ ସଂସ୍କୃତରୁ ଉତ୍ପନ୍ନ, କେତେକ ଦିନହେଲା ନିଷ୍ପତ୍ତି ହୋଇଅଛି । ବର୍ତ୍ତମାନ ଏ ବିଷୟରେ ଆଉ କିଛି ତର୍କବିତର୍କ କରିବାର ଆବଶ୍ୟକ ନାହିଁ, ମାତ୍ର ଅଦ୍ୟାପି ଏହା ଯେ ଏଡ଼େ ଅନୁନ୍ନତାବସ୍ଥାରେ ରହିଅଛି ଏହି ବିଷୟରେ ଦୁଇ ଏକକଥା ଲେଖିବାକୁ ଆମ୍ଭେମାନେ ପ୍ରବୃତ୍ତ ହେଲୁଁ । ଏହା କାହାରିକୁ ଅବିଦିତ ନାହିଁ ଯେତେବେଳେ ଓଡ଼ିୟାଭଷା ଏକପ୍ରକାର ଉଠିଯିବ ଏତଦ୍ ପରିବର୍ତ୍ତେ ବଙ୍ଗଭାଷା ପ୍ରଚଳିତ ହେବବୋଲି ଘୋଷିତ ହେଲା ସେ ସମୟରେ ପ୍ରାୟ ଓଡ଼ିଶାବାସୀ ଅଧିକାଂଶ ସଭ୍ୟଲୋକେ ବଙ୍ଗାଳିଙ୍କ ଉପରେ ଏକାବେଳକେ ଖଡ୍ଗହସ୍ତ ହୋଇ ଉଠିଲେ, ଓଡ଼ିଶାର ନାନା ସ୍ଥାନରେ ଗୋଳମାଳ ପଡ଼ିଗଲା । ଯାହାହେଉ ଅବଶେଷରେ ଓଡ଼ିୟା ପ୍ରଚଳିତ ହେବବୋଲି ନିଶ୍ଚିତ ହୋଇ ରହିଲା ; ଏହି ଘଟନା ଓଡ଼ିୟା ଭାଷା ପକ୍ଷରେ ମଙ୍ଗଳକର ଘଟନା ବୋଲିବାକୁ ହେବ କାରଣ ସେହିଦିନଠାରୁ ଗବର୍ଣ୍ଣମେଣ୍ଟଙ୍କର ଏହାପ୍ରତି ଅଧିକାଂଶରେ ଦୃଷ୍ଟି ପଡିଅଛି ମାତ୍ର ଯେଉଁମାନେ ବଙ୍ଗାଳିଙ୍କ ଉପରେ ଖଡ୍ଗ ହସ୍ତ ହୋଇଥିଲେ ସେମାନଙ୍କ ମଧ୍ୟରୁ ଦୁଇ ଏକଜଣଙ୍କୁ ଛାଡି ଆଉ ସମସ୍ତେ ତୁନିହୋଇ ରହିଲେଣି ଓ ଏହାର ଉନ୍ନତି ପାଇଁ ଅଧିକ କିଛି କରୁନାହାନ୍ତି । ଓଡ଼ିଶାରେ ଓଡ଼ିୟା ଭାଷା ପ୍ରଚଳିତ ରହିଲା ଏତିକି ସେମାନଙ୍କ ପକ୍ଷରେ ଯଥେଷ୍ଟ ହୋଇଅଛି, ରାଜପୁରୁଷମାନେ ଯାହା ବିଚାର କରିବେ କରନ୍ତୁ । କି ଦୁଃଖର ବିଷୟ ! ବଙ୍ଗଭାଷାର ଯେତେଦୂର ଉନ୍ନତି ଲକ୍ଷିତ ହେଉଅଛି, ଏହାକି କେବଳ ରାଜପୁରୁଷଙ୍କ ଯତ୍ନରେ ନା ସେ ଦେଶବାସିମାନେ କିଛି ଚେଷ୍ଟା କରିଥିଲେ ? ସମସ୍ତଙ୍କୁ ଥରେ ବିଚାର କରିବାର ଉଚିତ, ଆମ୍ଭମାନଙ୍କ ଦେଖିବାରେ ଯେଉଁମାନେ ଓଡ଼ିୟା ଭାଷାର ଉନ୍ନତି ପକ୍ଷରେ କିଞ୍ଚିତ୍ ଯତ୍ନବାନ ଅଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ନିର୍ଦ୍ଧନୀ ସୁତରାଂ ସେମାନଙ୍କ ଚେଷ୍ଟା କାର୍ଯ୍ୟରେ ପରିଣତ ହୋଇ ପାରୁନାହିଁ, କେବଳ ରାଜପୁରୁଷଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ରହିଲେ ହେବନାହିଁ । କାର୍ଯ୍ୟରେ ଦେଶୀୟ ଧନୀ ଓ ସମ୍ଭ୍ରାନ୍ତ ଲୋକେ ଏହାକୁ କର୍ତ୍ତବ୍ୟ ମଣି ଏଥିରେ ଚେଷ୍ଟିତ ହେଲେ ନିଶ୍ଚୟ ଏହାର ଉନ୍ନତି ଅବିଳମ୍ବେ ହୋଇପାରିବ । ଆଜି ଯାଏ ଓଡ଼ିୟାରେ ଯେତେଗୁଡିଏ ପୁସ୍ତକ ହେଲାଣି ତହିଁରୁ ଦୁଇ ତିନିଖଣ୍ଡି ଛାଡି ସମୁଦାୟ ବଙ୍ଗଳାରୁ ଅନୁବାଦିତ ହୋଇଅଛି ଓ ବଙ୍ଗଳାର ରୀତିକି ଅନୁସରି ଅନୁବାଦକମାନେ ଚଳିଅଛନ୍ତି । ଏଥିରୁ ଓଡ଼ିୟା ଭାଷାର ଯେତେଦୂର ଉନ୍ନତି ହେବ ତାହା ସହଜରେ ଅନୁଭବ ହେଉଅଛି ମାତ୍ର ଯାହାହେଉ "ନାହିଁ ମାମୁଠାରୁ କଣା ମାମୁ ଭଲ" । ପୁସ୍ତକ ପ୍ରଚାର ପକ୍ଷରେ ଆହୁରି ଗୋଟିଏ ପ୍ରତିବନ୍ଧକ ଅତ୍ରତ୍ୟ ପୁସ୍ତକ ପରୀକ୍ଷକ କମିଟୀ, ତାହାଙ୍କୁ ପୁସ୍ତକ ପରୀକ୍ଷା ପାଇଁ ଦେଲେ ସେମାନେ ଅନେକ ଦିନ ପକାଇ ରଖନ୍ତି ସୁତରାଂ ଅନ୍ୟ ଲୋକଙ୍କର ପୁସ୍ତକ ରଚନା ବିଷୟରେ ଉତ୍ସାହ ବଳୁନାହିଁ । ଅତଏବ ଆମ୍ଭମାନଙ୍କ ବିବେଚନାରେ ନାହିଁ କି ହଁ ପଦେ ଉତ୍ତର ଦେବାକୁ ଯେତେଶୀଘ୍ର ହୋଇପାରେ ଯତ୍ନ କରିବାର ଉଚିତ ।

ଏ ସ୍ଥଳେ ଆହୁରି ଗୋଟିଏ ବିଷୟ ଆମ୍ଭମାନଙ୍କ ମନରେ ପଡିଲା ଏ ଦେଶରୁ ବଙ୍ଗଳା ଏକାବେଳକେ ଉଠିଯିବାରୁ କେହି କେହି ଦୁଃଖିତ ଅଛନ୍ତି ମାତ୍ର ସେମାନଙ୍କ ଦୁଃଖର ହେତୁ ତ ଆମ୍ଭେମାନେ କିଛି ଦେଖୁନାହୁଁ ।

ଯେସ୍ଥଳେ ବଙ୍ଗଳା ଉଠିବ ଓ ଓଡ଼ିଶାରେ ଓଡ଼ିଆ ଚଳିବାର ନିଷ୍ପତ୍ତି ହୋଇଗଲା ସେଠାରେ ବଙ୍ଗଭାଷା ନ ଚଳିବାର ଭଲ । ନୋହିଲେ ଉତ୍କଳ ଭାଷାର ଉନ୍ନତି ପକ୍ଷରେ ଏହା ଗୋଟିଏ ପ୍ରଧାନ ପ୍ରତିବନ୍ଧକ ହେବ । କାରଣ ବଙ୍ଗଳାରେ ପୁସ୍ତକ ଓ ସମ୍ବାଦପତ୍ର ଅନେକ ଓ ଅଳ୍ପ ମୂଲ୍ୟରେ ପ୍ରାପ୍ତ ହୁଅଇ ସୁତରାଂ ଲୋକେ ଓଡ଼ିଆ ପୁସ୍ତକ ପାଇଁ ତାଦୃଶ ଆଗ୍ରହ କରିବେ ନାହିଁ । ଯେଉଁମାନେ ଯଥାର୍ଥ ହିତୈଷୀ ହେବେ ସେମାନେ ମୁକ୍ତ କଣ୍ଠରେ ଏହା ସ୍ୱୀକାର କରିବେ ଓ ଦୁଃଖିତ ହେବେ ନାହିଁ ।

*ଭା୧୮, ସଂ୨୪୫୯, ୧୪।୧୮୭୩*

## ଛାତ୍ର ବୃତ୍ତି ପରୀକ୍ଷକ ।

ଆମ୍ଭେମାନେ ଶିରୋନାମାଙ୍କିତ ପ୍ରସ୍ତାବ ସମ୍ବନ୍ଧରେ ଦୁଇଖଣ୍ଡି ପତ୍ର ପ୍ରାପ୍ତହୋଇ ଏଥି ଉପରେ କିଛି ଲେଖିବାକୁ ବାଧ ହେଲୁଁ ।

ଯେତେଦିନୁ ଓଡ଼ିଶାରେ ପାଠଶାଳାଦି ସଂସ୍ଥାପିତ ଓ ପରୀକ୍ଷା କାର୍ଯ୍ୟ ଆରମ୍ଭ ହେଲାଣି ଓଡ଼ିଶାବାସିଙ୍କର ତହିଁରେ ଭାଗ ଥିବାର ପ୍ରତୀୟମାନ ହେଉନାହିଁ । ବଙ୍ଗାଳିମାନେ ସଂପୂର୍ଣ୍ଣ ରୂପେ କର୍ତ୍ତୃତ୍ତ୍ୱ ସଂସ୍ଥାପନ କରି ଆସୁଅଛନ୍ତି । ଆଜିକି ଦୁଇ ତିନିବର୍ଷ ତଳ ପର୍ଯ୍ୟନ୍ତ ଯେ ସେମାନଙ୍କର ଏକଛତ୍ରାଧିକାର ଥିଲା ତହିଁରେ ଆମ୍ଭମାନଙ୍କର କୌଣସି ଅସନ୍ତୋଷ ଜାତ ହେବାର କାରଣ ଥିଲା ନାହିଁ ଯେହେତୁ ଓଡ଼ିଶା ସ୍କୁଲମାନଙ୍କରେ ବଙ୍ଗ ଭାଷାର ସମଧିକ ପ୍ରାଦୁର୍ଭାବ ଓ ଓଡ଼ିଆ ନାମ ମାତ୍ରରେ ଅଧୀତ ହେଉଥିଲା ବର୍ତ୍ତମାନ ବଙ୍ଗଭାଷାର ପ୍ରଭୁତ୍ୱ କ୍ରମଶଃ ଲୀନପାଇ ସୌଭାଗ୍ୟ କ୍ରମେ ଏବର୍ଷ ଏକାବେଳକେ ଓଡ଼ିଶାରୁ ଲୋପପ୍ରାପ୍ତ ହୋଇଅଛି । ପୁଣି ଛାତ୍ର ବୃତ୍ତି ପରୀକ୍ଷାରେ ଉତ୍କଳ ଛଟା ହସ୍ତ ଲିଖନାଦିର ପର୍ଯ୍ୟନ୍ତ ପରୀକ୍ଷା ଗୃହୀତ ହେବ । ଏ ସ୍ଥଳରେ ଓଡ଼ିଆ ପରୀକ୍ଷକ ନିଯୁକ୍ତ ନକରି ବଙ୍ଗାଳୀ ପରୀକ୍ଷକ ନିଯୁକ୍ତ କରିବାର କି ଅଯୌକ୍ତିକ ନୁହେ ? ବଙ୍ଗ ଭାଷାରେ ବଙ୍ଗାଳିମାନେ ଯେତେଦୂର ପାରଦର୍ଶିତା ଲାଭ କରିବାକୁ ସମର୍ଥ ହେବେ ଓଡ଼ିଶାବାସିମାନେ କି ତେତେଦୂର ପାରିବେ ? ସେହିପରି ଓଡ଼ିଆରେ ଓଡ଼ିଶାବାସିଙ୍କ ପରି ବଙ୍ଗାଳିମାନେ ଉତ୍ତମରୂପେ ଶୀଘ୍ର ବ୍ୟୁତ୍ପନ୍ନ ହେବାର ସୁକଠିନ । ଆହୁରି ଯେତେବେଳେ ସାଧାରଣ ଓଡ଼ିଶାବାସିଙ୍କର ଏ କାର୍ଯ୍ୟ ମତବିରୁଦ୍ଧ ଓ ଓଡ଼ିଶାରେ ପରୀକ୍ଷକ ହେବାଭଳି ସୁଯୋଗ୍ୟ ଲୋକ ପ୍ରାପ୍ୟ, ତେଁତେବେଳେ ଓଡ଼ିଶାରେ ଓଡ଼ିଆ ପରୀକ୍ଷକ ନିଯୁକ୍ତ କରିବା ଗବର୍ଣ୍ଣମେଣ୍ଟଙ୍କର ସର୍ବତୋଭାବେ କର୍ତ୍ତବ୍ୟ । ପୁଣି ଓଡ଼ିଶାରେ ଏଠା ବାସିଙ୍କର ଯେତେଦୂର ଅଧିକାର ବଙ୍ଗ କି ତୈଲଙ୍ଗବାସିଙ୍କର ତେତେଦୂର ହେବା ଯୁକ୍ତିସିଦ୍ଧ ବା ନ୍ୟାୟାନୁମୋଦିତ ନୁହେ । ଉତ୍କଳବାସିମାନେ ଉନ୍ନତି ଦିଗକୁ ମୁଖ ଫେରାଇବାକୁ ଆରମ୍ଭ କରିଅଛନ୍ତି, ଏ ସମୟରେ ଓ ଏ ଅବସ୍ଥାରେ ସେମାନଙ୍କୁ ଉତ୍ସାହ ଦେବାର ଗବର୍ଣ୍ଣମେଣ୍ଟଙ୍କର ଦ୍ୱିତୀୟ କର୍ତ୍ତବ୍ୟ । ପ୍ରତି ବ୍ୟକ୍ତି ସମ୍ବନ୍ଧରେ ଉନ୍ନତିର ନିୟମ ଯେ ପ୍ରକାର ପ୍ରତି ଜାତି ସମ୍ବନ୍ଧରେ ମଧ ସେହି ପ୍ରକାର । ଧୀରେ ଧୀରେ ଉନ୍ନତି ସ୍ରୋତ ସବୁ ଦେଶରେ, ସବୁ ଜାତିରେ, ସବୁ କାଳରେ ପ୍ରବାହିତ ହେବାର ଦୃଷ୍ଟିଗୋଚର ହୁଏ, ଏଣୁକରି ଓଡ଼ିଶାରେ ମଧ ସେହି ପ୍ରକାରରେ ହେବ । ବଙ୍ଗଦେଶ ପ୍ରତି ନେତ୍ରପାତ କଲେ ସ୍ପଷ୍ଟ ଜଣାଯାଏ ଯେ ସେଠାରେ ଇଂରାଜଙ୍କ ଦ୍ୱାରା ପ୍ରଥମ ସେମାନଙ୍କର ଶିକ୍ଷା ଓ ପରୀକ୍ଷା କାର୍ଯ୍ୟର ସୂତ୍ରପାତ, ତହିଁ ଉତ୍ତାରୁ ସେମାନେ ଉପଯୁକ୍ତ ହୁଅନ୍ତେ, ଓଏଙ୍ଗର ସାହେବ ପ୍ରଭୃତି ଅଲଗା ହେଲେ, ଦେଶୀୟ ଲୋକମାନେ ନିଜ ଅଧିକାର ପ୍ରାପ୍ତ ହେଲେ । ଓଡ଼ିଶାରେ ସେହିପ୍ରକାର କାହିଁକି ନହେବ ? ଏବେତ ଓଡ଼ିଶାବାସିଙ୍କ ମଧରେ କେତେକ ଉପଯୁକ୍ତ ଲୋକ ଅକ୍ଲେଶରେ ମିଳୁଛନ୍ତି ତେବେ ସେମାନଙ୍କ ଉପରେ ସେମାନଙ୍କର ଭାର ଓ ଅଧିକାର କାହିଁକି ଅର୍ପିତ ନହେବ ? ଏ ବିଷୟରେ କମିଶ୍ନର ଓ ଇନସ୍ପେକ୍ଟର ସାହେବମାନେ ସୂକ୍ଷ୍ମ ବିଚାର କରନ୍ତୁ ଏହି ଆମ୍ଭମାନଙ୍କର ପ୍ରାର୍ଥନା ।

ଯେବେ କେହି ପ୍ରଶ୍ନ କରନ୍ତି ଓଡ଼ିଶାରେ ପରୀକ୍ଷକ ହେବାଭଳି ଲୋକ କିଏ ଅଛି ? ଆମ୍ଭେମାନେ କହୁଁ ଓଡ଼ିଶା ସ୍କୁଲମାନଙ୍କର ତିନି ଡେପୁଟୀ ଇନସ୍ପେକ୍ଟର ବାବୁ ଗୌରୀଶଙ୍କର ରାୟ, ବାବୁ ବିଚିତ୍ରାନନ୍ଦ ଦାସ, ବାବୁ ନନ୍ଦକିଶୋର ଦାସ, ଗବର୍ଣ୍ଣମେଣ୍ଟ ବିଦ୍ୟାଳୟମାନଙ୍କର କେତେକ ଏ ଦେଶୀୟ ପଣ୍ଡିତ, ନବ୍ୟ ସମ୍ପ୍ରଦାୟଙ୍କ

ମଧ୍ୟରେ କେତେକ ବିଦ୍ୟୋତ୍ସାହୀ ପ୍ରଭୃତିଙ୍କ ହସ୍ତରେ ପରୀକ୍ଷା ଭାର ପ୍ରଦତ୍ତ ହେଲେ ସେମାନେ କି ସୁଚାରୁରୂପେ ପରୀକ୍ଷା ନେଇପାରିବେ ନାହିଁ ? ଆମ୍ଭେମାନେ ନିଃଶଙ୍କୁଚିତ ଚିତ୍ତରେ କହିପାରୁଁ, ଏମାନେ ସୁନ୍ଦର ରୂପେ ସକ୍ଷମ ହେବେ । ଗବର୍ଣ୍ଣମେଣ୍ଟଙ୍କର ଶିକ୍ଷା ବିଭାଗର କର୍ତ୍ତୃପକ୍ଷମାନେ ଏ ବିଷୟରେ ଦୃଷ୍ଟିପାତ କଲେ ଓଡିଶାବାସିଙ୍କ ପକ୍ଷରେ ଯଥାର୍ଥ ନ୍ୟାୟ ବିଚାର ହେବ ।

*ଭା୧୯, ସଂ୪ଖ୍ୟା ,୧।୬।୧୮୭୩*

## ଗଡଜାତର ଅବସ୍ଥା, ଶିକ୍ଷା ଓ ଶାସନ

ଆମ୍ଭମାନଙ୍କର ଜଣେ ଗଡ଼ଜାତବାସୀ ବନ୍ଧୁ ଗଡ଼ଜାତ ସମ୍ବନ୍ଧରେ ଲେଖିଛନ୍ତି ଯେ, "ଗଡ଼ଜାତର ଅବସ୍ଥା ଅତି ଶୋଚନୀୟ,ଗଡ଼ଜାତ ସବୁ ବିଷୟରେ ଅନୁନ୍ନତା ହୋଇ ରହିଅଛି । ଉନ୍ନତି ଓ ସଭ୍ୟତାର ମୁଖ୍ୟ ସୋପାନ ସ୍ୱରୂପ ସ୍କୁଲ ସୁଦ୍ଧା ଖାସ ମହଲ ଓ ଗଡ଼ଜାତ ଓ କନ୍ଧମାଳ, ପୁଣି ଢେଙ୍କାନାଳ, କେନ୍ଦୁଝର ଓ ଆଠଗଡ଼ ଛଡ଼ା ଅନ୍ୟ କୌଣସିଠାରେ ସ୍ଥାପିତ ହେବାର ଦେଖାଯାଏ ନାହିଁ । ତେବେ ଅଳ୍ପଦିନ ହେଲା ଦଶପଲ୍ଲା ରାଜା ଗୋଟିଏ ପାଠଶାଳା ବସାଇ ଅଛନ୍ତି ଓ ମଧ୍ୟ ସ୍ୱୟଂ ଉତ୍ସାହିତ ହୋଇ ଖଣ୍ଡିଏ ବର୍ଣ୍ଣବୋଧକ ଘେନି ପଢା ଆରମ୍ଭ କରିଅଛନ୍ତି । ଏହା ଅତି ପ୍ରଶଂସନୀୟ ଅଟେ । ନୟାଗଡ଼ରେ ଗୋଟିଏ ସ୍କୁଲ ଅତି ଅଳ୍ପଦିନ ସକାଶେ ଥିଲା; କିନ୍ତୁ ବର୍ତ୍ତମାନ ଉଠିଯାଇ ତତ୍‌ପରିବର୍ତ୍ତରେ ରଣପୁର ରାଜ୍ୟପରି ସେଠାରେ ୫ଜଣ ୭ଜଣ ପଢ଼ିବା ଭଳି ଗୋଟିଏ କ୍ଷୁଦ୍ର ଟୋଲ ବସିଅଛି । ନୟାଗଡ଼ ରାଜା ଇଂରାଜୀ ପଢ଼ି ସୁଶିକ୍ଷିତ ହୋଇ ଶେଷକୁ ଏହା କରିଅଛନ୍ତି । ଏହାଠାରୁ ଅଧିକ ଦୁଃଖର କଥା ଆଉ କଣ ହୋଇପାରେ । ଏଠାରେ ମୋହର ଆଉକିଛି ବକ୍ତବ୍ୟ ଅଛି । ଗଡ଼ଜାତର ରାଜାମାନେ ଦୋଳ, ଗୁଣ୍ଡିଚାଯାତ୍ରା, ଚନ୍ଦନ ଓ ରାମନବମୀରେ ଶୀତଳଷଷ୍ଠି ଓ ଚମ୍ପକ ଦ୍ୱାଦଶୀ ବାଣରେ, ଆଖଡ଼ା ପିଲା ଓ ଅନ୍ୟାନ୍ୟ ବାଜେ ବିଷୟରେ ଯେତେ ଟଙ୍କା ଝଣ ଝଣ କରି ଗଣୁଛନ୍ତି , ତହିଁର ଅଷ୍ଟମାଂଶର ଏକ ଅଂଶ ଯେବେ ପାଠଶାଳା ସଂସ୍ଥାପନରେ, ଦେଶର ଉନ୍ନତିରେ ବ୍ୟୟ କରନ୍ତେ, ତେବେ କି ସୁଖର କଥା ହୁଅନ୍ତା । ଏସବୁ କେବଳ ନାମରେ ରାଜା, କାମରେ ରାଜା ନୁହନ୍ତି । ଢେଙ୍କାନାଳ ମହାରାଜା ଏଙ୍କମାନଙ୍କର ଯଥାର୍ଥ ଅନୁକରଣୀୟ ଅଟନ୍ତି । କିନ୍ତୁ ଏକଥା ନିଶ୍ଚୟ, କମିଶନର ସାହେବ ବାଟ ବତେଇ ପାଠ ନ ଧରାଇଲେ, ସ୍ୱମନରୁ କାଢ଼ି ଏମାନେ କିଛି କରିବେ ନାହିଁ । ଖଟଧରି ପଡ଼ିଥିବେ ।

ଆଉ ଦୁଇ ଏକ ରାଜାଙ୍କର ବ୍ୟବହାର କଥା ଶୁଣିବ । ରଣପୁର ରାଜାତ ରାଜାଙ୍କ ମଧ୍ୟରେ ଗଣ୍ୟ, ତାଙ୍କର ରାତିଦିନ ଓ ଦିନରାତି । ରାଜକାର୍ଯ୍ୟ ବୁଝିବା ବିଷୟରେ ତୁନିହୋଇ ବସିବା ମାତ୍ର ସାର । ବର୍ଷକ ମଧ୍ୟରେ ଦୁଇ ତିନି ଥର ଦାଣ୍ଡକୁ ବାହାରିବାର କଷ୍ଟ । କେବଳ ଗମ୍ଭୀରି ଦିଅଁପରି ଘରେ ବସି ଅଛନ୍ତି, ଆହୁରି ପଦେ ଶୁଣ ! ଦେଖିଅଛୁଁ, ବଡ଼ଲୋକମାନେ ହାତୀ ଘୋଡ଼ା ପାଲିଙ୍କି ଚଢ଼ି ବୁଲନ୍ତି, କିନ୍ତୁ ବଡ଼ମ୍ବା ରାଜାଙ୍କଠାରେ ଗୋଟିଏ ଆଶ୍ଚର୍ଯ୍ୟ କଥା ଦେଖିଲୁ ତାଙ୍କର ସଗଡ଼ ଚଢ଼ି, ସ୍ୱୟଂ ତିତି କରି ବଳଦ ଅଡ଼ାଇବାରେ ବଡ଼ ଆମୋଦ ଓ ବଡ଼ ପ୍ରେମ । ବୋଧହୁଏ ଚଷାମାନଙ୍କର ସନ୍ତୋଷ ଜନ୍ମାଇବା ସକାଶେ ପରା ରାଜା ଏପରି କରୁଅଛନ୍ତି । ଆଉ କିଛି ଦିନ ଉତାରୁ ହୁଏତରୁ କେଳାଙ୍କ ସୁଖ ଜନ୍ମାଇବା ସକାଶେ ରାଜା ଗଧ ଉପରେ ଚଢ଼ି ବୁଲି ପାରନ୍ତି ।

ଖଣ୍ଡପଡ଼ାର ରାଜନୀତି ବଡ଼ ବିଶୃଙ୍ଖଳ ଅବସ୍ଥାରେ ରହିଅଛି । ଏହାର ଓ ଅନ୍ୟାନ୍ୟ ଗଡ଼ଜାତ କଥା ବାରାନ୍ତରେ ବିସ୍ତୃତରୂପେ ଲେଖି ପଠାଇବି।"

ଆମ୍ଭମାନଙ୍କର ଏଠାରେ କମିଶ୍ନର ସାହେବଙ୍କ ପ୍ରତି ଏତିକି ମାତ୍ର ନିବେଦନ ଯେ ଗଡ଼ଜାତ ପ୍ରତି କିଛି ବିଶେଷ ଦୃଷ୍ଟିପାତ କରନ୍ତୁ ।

*ଭା୧୯, ସଂ୬ଖ୍ୟା ,୧।୭।୧୮୭୩*

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

## ଗଞ୍ଜାମ, ସମ୍ବଲପୁର ଓ ଉତ୍କଳପୁସ୍ତକ

ଓଡ଼ିଆଭାଷା ପରିବର୍ତ୍ତରେ ବଙ୍ଗଳାଭାଷା ଚଳାଇବାକୁ ଦେଶହିତୈଷୀ ବଙ୍ଗାଳୀମାନେ ଯେତେ ଯତ୍ନ କରିଥିଲେ ଏବଂ ବଙ୍ଗାଳୀ ଓ ଓଡ଼ିଆଙ୍କ ମଧ୍ୟରେ ଯେ କଳହ ଉପସ୍ଥିତ ହୋଇଥିଲା ତାହା ପାଠକମାନଙ୍କୁ ଅବିଦିତ ନାହିଁ । ଏମନ୍ତ କି ଉଭୟ ପକ୍ଷରେ "ଅଧିକାରୀ" ମାନେ ମାନ ମର୍ଯ୍ୟାଦା ଭୁଲିଯାଇ ନିତାନ୍ତ କଟୂକ୍ତି ଓ ଅସହ୍ୟ ଉପହାସ ବ୍ୟବହାର କଲେ । ସମ୍ବାଦପତ୍ରମାନ ଏହିକଥା ଘେନି ରାତିଦିନ ବ୍ୟସ୍ତ । ଏହି ଅବସରରେ କେହି କେହି ସାମାନ୍ୟ ବୁଦ୍ଧିଜୀବି ଗ୍ରନ୍ଥକାର ନାମ ପାଇଗଲେ । ଦୁଇ ଏକଜଣଙ୍କୁ ଫୌଜଦାରୀ ମଧ୍ୟ ଦେଖିବାକୁ ହୋଇଥିଲା । ସୁଖର ବିଷୟ ଯେ ନ୍ୟାୟବାନ୍ ଗବର୍ଣ୍ଣମେଣ୍ଟ ସେ କଳହ ଶୀଘ୍ର ନିଷ୍ପତ୍ତି କରିଦେଲେ । ଓଡ଼ିଆ ଭାଷା ରହିବାର ସ୍ଥିର ହେଲା; ଏବେ ବଙ୍ଗାଳିମାନେ ସେ ଆଶାରୁ ନିରାଶ ହେଲେଣି, ଯଦିଚ ମନରୁ କ୍ରୋଧାଗ୍ନି ସମ୍ପୂର୍ଣ୍ଣରୂପେ ନିର୍ବାପିତ ହୋଇନାହିଁ । ବଙ୍ଗାଳିମାନେ ତାଙ୍କର କି ଆମ୍ଭର ମଙ୍ଗଳ ନିମନ୍ତେ ଏପରି ଯତ୍ନ କରୁଥିଲେ ଏବଂ ଗବର୍ଣ୍ଣମେଣ୍ଟ ଯେ କି ଉଦ୍ଦେଶ୍ୟରେ ସେମାନଙ୍କୁ ସେ ଆଶାରୁ ବଞ୍ଚିତ କଲେ, ତାହା ଆମ୍ଭେମାନେ କହି ନପାରୁଁ ଅଥବା କହିବାକୁ ଆମ୍ଭମାନଙ୍କର ଇଚ୍ଛା ନାହିଁ । ମାତ୍ର ଆପାତତଃ ଯେ ଓଡ଼ିଶାର ମଙ୍ଗଳ ହୋଇଅଛି ଓ ଉତ୍କଳୀୟମାନେ ଗବର୍ଣ୍ଣମେଣ୍ଟଙ୍କ ନ୍ୟାୟରେ ସନ୍ତୁଷ୍ଟ ଅଛନ୍ତି ତହିଁରେ କିଛି ସନ୍ଦେହ ନାହିଁ ।

ବଙ୍ଗଳା ଉଠିଗଲା ଭଲ ହେଲା । ଭଲ ହେଲା ସତ, ମାତ୍ର ଓଡ଼ିଆର ଭାବୀ ଉନ୍ନତି ଓ ସ୍ଥାୟୀତ୍ୱ ସାଧନାରେ ଯେ ଯେ ଉପାୟ ଅବଲମ୍ବନ କରିବାର ବିହିତ (ଓ ସେ ଉପାୟରେ ଇଷ୍ଟସିଦ୍ଧ ହେବାର ସମ୍ଭାବନା) ତାହା ଯାହା ଗବର୍ଣ୍ଣମେଣ୍ଟ କରନାହାନ୍ତି ଏଥିରେ ଆମ୍ଭେମାନେ ତାଙ୍କୁ ପ୍ରଶଂସା କରି ନପାରୁଁ, ବରଂ ନକଲେ ଗବର୍ଣ୍ଣମେଣ୍ଟ ଦୋଷୀ ହେବେ । ଯେ ପୁରାତନ ପୁସ୍ତକମାନ ଅଛି ତହିଁରେ ଆମ୍ଭମାନଙ୍କର ଆସ୍ଥା ନାହିଁ । ଉପେନ୍ଦ୍ରଙ୍କ ଯମକ, ଦୀନକୃଷ୍ଣଙ୍କ ଅନୁପ୍ରାସ ଓ ଅଭିମନ୍ୟୁଙ୍କ ରାସକ୍ରୀଡ଼ା ଆମ୍ଭମାନଙ୍କ ରୀତିକୁ ଭଲ ଲାଗୁନାହିଁ । ବସ୍ତୁତଃ ଏପରି ରସାତ୍ମକ ପୁସ୍ତକମାନ ପାଠ୍ୟପୁସ୍ତକକରି ସୁକୁମାର ମତି ବାଳକମାନଙ୍କ ହସ୍ତରେ ଦେବାକୁ ଆମ୍ଭମାନଙ୍କୁ ଲଜ୍ଜା ହେଉଅଛି । ବର୍ତ୍ତମାନ ସରଳ ପଦ୍ୟ ଓ ପ୍ରଶସ୍ତ ଗଦ୍ୟ ପୁସ୍ତକ ନିତାନ୍ତ ପ୍ରୟୋଜନ ।

ପାଠକ ସଂଖ୍ୟାର ବୃଦ୍ଧି ଉପରେ ଗ୍ରନ୍ଥରଚନାର ଆଧିକ୍ୟ ଓ ଲେଖକଙ୍କ ଉତ୍ସାହ ନିର୍ଭର କରେ । ପାଠକେ ଯେ ପରିମାଣରେ ତାଙ୍କୁ ଉତ୍ସାହ ଦେବେ ସେହି ପରିମାଣରେ ଭଲ ଭଲ ପୁସ୍ତକ ପାଇପାରିବେ । ଅଧିକାଂଶ ଲେଖକ ମଧ୍ୟ ବା ନିମ୍ନ ଶ୍ରେଣୀର ଲୋକ; ସେମାନଙ୍କର ଏପରି ସଙ୍ଗତି ନାହିଁ ଯେ ଆପଣା ବ୍ୟୟରେ ପାଠ୍ୟ ପୁସ୍ତକ ଯୋଗାଇବେ । ବଡ଼ଲୋକଙ୍କ ଦ୍ୱାରା ତ ଏକାର୍ଯ୍ୟ ହେବାର ନୁହେ, ସେମାନେ ଆପଣା ବିଷୟ ଘେନି ବ୍ୟସ୍ତ ସେମାନଙ୍କୁ ଅବସର ନାହିଁ ଯେ ଏପରି ଅବକାଶ ସାପେକ୍ଷ କାର୍ଯ୍ୟରେ ହସ୍ତ ଦେବେ । ଓଡ଼ିଶା ପ୍ରଦେଶ ଅତି କ୍ଷୁଦ୍ର ଓ ବିଦ୍ୟା ଶିକ୍ଷାର ପ୍ରଥମାବସ୍ଥା । ଏ ପର୍ଯ୍ୟନ୍ତ ସମସ୍ତେ ଛାପା ଅକ୍ଷର ପଢ଼ିବାକୁ ଶିକ୍ଷା କରିନାହାନ୍ତି । ପୁଣି ଶିକ୍ଷାକାର୍ଯ୍ୟର ଭାର ଯେଉଁମାନଙ୍କଠାରେ ରହିଲା ଭାଷାର ଭଲମନ୍ଦ ବିଚାର କରିବାର ସେମାନଙ୍କର କ୍ଷମତା ନାହିଁ କିମ୍ବା କ୍ଷମତା ଥାଉଁ ଥାଉଁ ଆପଣା ସୁବିଧା ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରଅଛନ୍ତି । ଏମନ୍ତ ଅବସ୍ଥାରେ ଆମ୍ଭେମାନେ କିପରି କହିପାରୁଁ ଯେ କାହିଁକି ଓଡ଼ିଶାରେ ଭଲ ଭଲ ପାଠ୍ୟ ପୁସ୍ତକ ବାହାର ନାହିଁ ? ଯେଉଁମାନେ କିଛି କିଛି ଲେଖୁଅଛନ୍ତି (ଅଧିକାଂଶ ଅନୁବାଦ) ତାହା ପ୍ରକାଶ କରିବାକୁ ସାହସ କରନାହାନ୍ତି ।

ଆମ୍ଭେମାନେ ଏମନ୍ତ କହୁନାହୁଁ ଯେ ଗବର୍ଣ୍ଣମେଣ୍ଟ ଓଡ଼ିଶାକୁ ବଡ଼ କରିଦେଉନ୍ତୁ ବା ସୁବିଧା ହେଲେ ଏକାବେଳକେ ବଡ଼ ବଡ଼ ଲେଖକ ବାହାରି ପଡ଼ିବେ । ତେବେ ଯେଉଁ ଯେଉଁ ଉପକରଣ ଇତସ୍ତତଃ ରହିଅଛି ସେ ସବୁକୁ ଏକତ୍ର କରି ଆଣିଲେ ଯେ ଏହି ଉତ୍କଳ ଖଣ୍ଡରେ ଏକସମୟରେ ବିଦ୍ୟାସାଗର ଓ ଅକ୍ଷୟ କୁମାରଙ୍କ ପରି ଲେଖକ ବାହାରିବେ ଏହା ଅସମ୍ଭବ ନୁହେ । କେହି ଲେଖନୀ ଧାରଣା କଲାମାତ୍ରକେ ଉନ୍ନତି ସୋପାନର ଶିରୋଭାଗରେ ଆରୋହଣ କରଇ ନାହିଁ । ଅନ୍ୟାନ୍ୟ ମହତ୍ କାର୍ଯ୍ୟପରି ରଚନାର ଉନ୍ନତି ମଧ୍ୟ ସମୟ ଅପେକ୍ଷା କରେ । ଯାହା ମନୁଷ୍ୟ କରିଅଛି ତାହା ଅବଶ୍ୟ ମନୁଷ୍ୟ କରିପାରିବ । ଦିନକେ ନହେବ ସହସ୍ର ଦିନେ ହେବ; ସହସ୍ର ଦିନେ ନହୁଏ ସହସ୍ର ବର୍ଷରେ ହେବ । ଯତ୍ନ କର ଅବଶ୍ୟ ହେବ ।

ସମ୍ବଲପୁର ଓ ଗଞ୍ଜାମ ଯେବେ କଟକ ସଙ୍ଗେ ମିଶିଯାଏ ତେବେ ସମାଲୋଚିତ ଏ ଅଭାବ ଅବଶ୍ୟ ଦୂର ହୋଇଯିବ । ସମ୍ବଲପୁର ଓ ଗଞ୍ଜାମ ଓଡ଼ିଶାର ଅଂଶମାତ୍ର ଓ ସେ ଦୁହିଁଙ୍କୁ ଧଇଲେ ଓଡ଼ିଶା ବଙ୍ଗଳାର ଅର୍ଦ୍ଧାଂଶରୁ ଅଧିକ ହେବ । କି ଭାଷା, କି ଆଚାର ବ୍ୟବହାର, କି ଧର୍ମ ସବୁ ବିଷୟରେ ଉକ୍ତ ଦୁଇ ଜିଲାର କଟକ ସଙ୍ଗେ ଯେତେ ଐକ୍ୟତା ପ୍ରାୟ ଅନ୍ୟ କାହାରି ସଙ୍ଗେ ନାହିଁ । ବର୍ତ୍ତମାନ ଯେପରି ଅଛି ସେପରି ରହିଲେ କସ୍ମିନ୍ କାଳେ କାହାର ଭଲ ହେବାର ସମ୍ଭାବନା ନାହିଁ । ଗଞ୍ଜାମର ଲୋକେ ନା ତେଲଙ୍ଗୀ ଜାଣନ୍ତି ନା ଓଡ଼ିୟା ଜାଣନ୍ତି ଏବଂ କଟକ ସଙ୍ଗେ ତେତେ ସମ୍ପର୍କ ନାହିଁ ଯେ ସେମାନେ ଭବିଷ୍ୟତରେ ଶିକ୍ଷା କରିପାରିବେ । ଅତ୍ରତ୍ୟ ଲୋକେ ବଙ୍ଗଳାକୁ ଯିବାକୁ ଯେତେ ଅଗ୍ରସର ଗଞ୍ଜାମକୁ ଯିବାକୁ ତେତେ ନୁହନ୍ତି; ତହିଁର କାରଣ ଏହି ଯେ ଗଞ୍ଜାମ ଭିନ୍ନ ଗବର୍ଣ୍ଣମେଣ୍ଟର ଅଧୀନ, ସେଠାକୁ ଗଲେ ଆଉ କଟକକୁ ଫେରି ଆଶିବାର ଆଶା ନାହିଁ । ମଧ ଯେଉଁମାନେ ସେଠାକୁ ଯାଉଅଛନ୍ତି ସେମାନେ କଟକ ସଙ୍ଗେ କୌଣସି ସମ୍ପର୍କ ରଖୁନାହାନ୍ତି । ଗଞ୍ଜାମରେ ବିଦ୍ୟାଶିକ୍ଷାର କିପରି ଗତି ଓ କି କି ପୁସ୍ତକ ପ୍ରଚଳିତ ଅଛି ତାହା ଆମ୍ଭମାନଙ୍କୁ କିଛି ଜଣାନାହିଁ । ସୁତରାଂ ଏଠା ପୁସ୍ତକମାନ ଗଞ୍ଜାମକୁ ଯିବାର କୌଣସି ବାଟ ନାହିଁ ।

ସମ୍ବଲପୁର ଅବସ୍ଥା ତହୁଁ ଶୋଚନୀୟ । ଯେଉଁ ଶିକ୍ଷିତମାନେ ଯାଇ ସେଠାରେ ରହିଲେ ସେମାନେ ଆପଣା ଯଶଃ ଲୋପ ଭୟରେ ହେଉ ଅଥବା ଅନ୍ୟ କାରଣରୁ ହେଉ, କଟକ ସଙ୍ଗେ ସମ୍ବଲପୁରର ଯେପରି କୌଣସି ସମ୍ପର୍କ ନରହେ ତହିଁର ଚେଷ୍ଟା କରୁଅଛନ୍ତି । ଅନ୍ୟଥା ସେମାନେ ଆପଣା ଆପଣା ବ୍ୟବସାୟରେ ମାରା ପଡ଼ିବେ । କେତେକ ବଙ୍ଗଳା ପୁସ୍ତକକୁ ଓଡ଼ିୟା ଅକ୍ଷରରେ ଛପାଇ ବର୍ଷରେ ସହସ୍ର ଟଙ୍କା ଉପାର୍ଜନ କରଅଛନ୍ତି ତାହା ଆଉ ହୋଇପାରିବ ନାହିଁ । ଏଠାରେ ଆମ୍ଭେମାନେ ଭାଷାକୁ ବିଶଦ କରିବାକୁ ଚେଷ୍ଟା କରୁଅଛୁଁ ସେଠାରେ ସେମାନେ କଦର୍ଯ୍ୟ ଭାଷାରେ ବ୍ୟବସାୟ ଚଳାଉଅଛନ୍ତି । ସେମାନେ ଯେବେ ପ୍ରକୃତ ଦେଶହିତୈଷୀ ହୋଇଥାନ୍ତେ ତେବେ ଏଠାର ଭଲ ଭଲ ପୁସ୍ତକନେଇ ସେଠାରେ ଚଳାଇ ଲୋକମାନଙ୍କୁ ଉତ୍ସାହ ଦିଅନ୍ତେ ଓ ସମ୍ବଲପୁର ସଙ୍ଗେ କଟକର ମେଳ ହୁଅନ୍ତା ତହିଁରେ ଯତ୍ନବାନ ହୁଅନ୍ତେ । ତାହାହେଲେ ସମ୍ବଲପୁରୀଆମାନେ କଟକ ଲୋକଙ୍କୁ ଦେଖି ସାହେବ ବୋଲି ଡରନ୍ତେ ନାହିଁ ଏବଂ ସେମାନଙ୍କୁ ବିଶ୍ୱାସ କରନ୍ତେ । ଆମ୍ଭମାନଙ୍କ କହିବାର ତାତ୍ପର୍ଯ୍ୟ ଏହି ଯେ ଆମ୍ଭେମାନେ ସେମାନଙ୍କଠାର ଯେରପ ଆଶାକରୁଁ ସେମାନେ ସେପରି କାର୍ଯ୍ୟ କରନାହାନ୍ତି ।

ଶିକ୍ଷା ସମ୍ବନ୍ଧରେ ଯାହା କହିଲୁଁ ବାଣିଜ୍ୟ ସମ୍ବନ୍ଧରେ ମଧ ସେହିରପ । ବାଣିଜ୍ୟ କରିବାର ଅନ୍ୟାନ୍ୟ ସୁବିଧା ଥାଉଁ ଥାଉଁ ଭିନ୍ନ ଗବର୍ଣ୍ଣମେଣ୍ଟ ପ୍ରତ୍ୟକ୍ଷେ ଏ ତିନି ଜିଲା ମଧରେ ବାଣିଜ୍ୟ ଚଳି ପାରନାହିଁ । ଗତବର୍ଷ ସମ୍ବଲପୁରରେ ଲୁଣ ମହଣ ଟ୧୬ଙ୍କା ହେଲା ତଥାପି କେହି ସହସା ସେଠାକୁ ଲୁଣ ନେବାକୁ ସାହସ କଲେ ନାହିଁ ଏଥିଯୋଗୁଁ ଆମ୍ଭେମାନେ କହୁଅଛୁଁ ଯେ ଯେପର୍ଯ୍ୟନ୍ତ ଏ ତିନିଜିଲା ସାଧାରଣ ଗବର୍ଣ୍ଣମେଣ୍ଟ ଅଧୀନ ହୋଇନାହିଁ ସେ ପର୍ଯ୍ୟନ୍ତ କାହାରି ଉନ୍ନତି ହେବନାହିଁ । ଏଥିପୂର୍ବେ ଗବର୍ଣ୍ଣମେଣ୍ଟ ଏ ବିଷୟରେ ଦୁଇ ଏକଥର ପ୍ରସ୍ତାବ କରିଥିଲେ ମାତ୍ର କାହିଁକି ଯେ ତହିଁର କ୍ଷାନ୍ତ ରହିଲେ ତାହା ଆମ୍ଭମାନଙ୍କୁ ଜଣାନାହିଁ। ଅନୁମାନ କରୁଁ ଏଥିର ଆବଶ୍ୟକତା ଓ ଉପକାରିତା ଗବର୍ଣ୍ଣମେଣ୍ଟଙ୍କୁ ସମ୍ୟକ୍ ବୋଧ ହୋଇନାହିଁ । ଯେବେ ଏମନ୍ତ ହୋଇ ଥାଏ ତେବେ ଆମ୍ଭମାନଙ୍କ ବିବେଚନାରେ ଏଠା ଲୋକେ ଏ ବିଷୟରେ ଗବର୍ଣ୍ଣମେଣ୍ଟଙ୍କୁ ଆବେଦନ କଲେ ଅସଙ୍ଗତ ହେବ ନାହିଁ ।

ଯେତେବେଳେ ଗଞ୍ଜାମ, ସମ୍ବଲପୁର ଓ କଟକ ଏକତ୍ର ମିଳିଯିବ ସ୍କୁଲର ସଂଖ୍ୟା ପ୍ରାୟ ଦୁଇ ସହସ୍ର ହୋଇପଡ଼ିବ ଓ ଜଣେ ସ୍ୱତନ୍ତ୍ର ଇନସ୍ପେକ୍ଟର ଆବଶ୍ୟକ ହେବ ଗ୍ରନ୍ଥକର୍ତ୍ତାମାନଙ୍କର ଆଉ ଏ ଦୁର୍ଦ୍ଦଶା ରହିବ ନାହିଁ; ଅଳ୍ପଦିନ ମଧରେ ପ୍ରଚୁର ପାଠ୍ୟପୁସ୍ତକ ଦୃଷ୍ଟିଗୋଚର ହେବ ଏବଂ ତେତେବେଳେ ଆମ୍ଭେମାନେ ବିଶ୍ୱାସ କରିବୁଁ ଯେ ବଙ୍ଗଳା ଓଡିଶାର ଉଠିଗଲା ।

*ଭା୧ଗ, ସଂ୭ଖ୍ୟା , ୧୬।୭।୧୮୭୩*

# ନର୍ମାଲ ସ୍କୁଲ

ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ବାଲେଶ୍ୱର ଜିଲାର ନର୍ମାଲ ସ୍କୁଲର ପ୍ରଧାନ ଶିକ୍ଷକତା ପଦରେ ମନୋନୀତ ହେବାରୁ ଆମ୍ଭେମାନେ ଗତଥର ଯେ ରୂପ ଆନନ୍ଦ ପ୍ରକାଶ କରିଥିଲୁଁ , ପଣ୍ଡିତ ପ୍ରଭାକର ଚୂଡ଼ାମଣି ପୁରୀଜିଲା ନର୍ମାଲ ସ୍କୁଲର ପ୍ରଧାନ ଶିକ୍ଷକତା ପଦରେ ଶ୍ରୀଯୁକ୍ତ କମିଶନର ସାହେବଙ୍କ ଦ୍ୱାରା ମନୋନୀତ ହେବାର ଶୁଣି ବର୍ତ୍ତମାନ ତଦ୍ରୂପ ଆନନ୍ଦିତ ହୋଇଅଛୁଁ ;କିନ୍ତୁ ସାନଲାଟ ସାହେବଙ୍କ ଡ଼ିଷ୍ଟ୍ରିକ୍ଟ କମିଟୀର କ୍ଷମତା ବିଷୟରେ କିଛି କହିବାକୁ ମାନସ ରହିଲା । ଏତିକି ଦୁଃଖର ବିଷୟ ଯେ ସ୍ୱାର୍ଥପର ବଙ୍ଗାଳୀଭାଇମାନେ ଏ ଦୁହିଁଙ୍କର ବିପକ୍ଷରେ କିଛି କିଛି ମନ୍ଦଚେଷ୍ଟା କରୁଅଛନ୍ତି ବୋଲି ଜନରବ ହୋଇଅଛି । ତଥାପି ଏମନ୍ତ ଭରସା ହେଉଅଛି ଯେ ଆମ୍ଭମାନଙ୍କର ସ୍ୱାଧୀନ ବିଚାରକର୍ତ୍ତା ବିମ୍ସ୍ ମହୋଦୟ ନିକଟରେ ବଙ୍ଗାଳୀ ଭାଇଙ୍କର ସକଳ ଚେଷ୍ଟା ବିଫଳ ହେବ ଏବଂ ଉକ୍ତ ମହାପୁରୁଷଙ୍କର ଭଦ୍ରତା ମଧ ଧରା ପଡ଼ିବ, ପ୍ରବାଦ ଅଛି "ଧୋବାକୁ ମାଇପ ମିଳିଲା ମାତ୍ର କିମ୍ଭୀର କଥା ଚିହ୍ନା ପାଇଲା," ଶେଷେ ଏହି କଥା ଘଟିବ । ବଙ୍ଗାଳିମାନେ କେବଳ ଓଡ଼ିଆଙ୍କ ଅନ୍ନ ଧ୍ୱଂସ କରି ଲମ୍ବୋଦରଙ୍କ ପରି ଗଣ୍ଡି ଓ ଭୁଣ୍ଡି ବଢାଇବାକୁ ଏଠାକୁ ଆସିଛନ୍ତି, ଏତେଦିନ ଏଠାରେ ରହି ସୁଦ୍ଧା ଆପଣା ପ୍ରକୃତି ଛାଡୁ ନାହାଁନ୍ତି । କଥାରେ କହନ୍ତି "କୁକୁର ଲାଙ୍ଗୁଡ଼ କଇଁଆଁ ବାଙ୍କ, ବାର ବରଷରେ ନୁହେ ସଳଖ ।" ଏମାନେ ଓଡ଼ିଆଙ୍କ ଉନ୍ନତି ମାର୍ଗରେ ଗୋଟିଏ ଗୋଟିଏ କଣ୍ଟକସ୍ୱରୂପ ଏଠାରେ ଅବସ୍ଥିତି କରୁଅଛନ୍ତି । ଯେଉଁଠାରେ ଓଡ଼ିଆଙ୍କ ଉନ୍ନତି ଦେଖିଲେ ସେହିଠାରେ ବାଧା ଦେବାକୁ ଅଗ୍ରସର ହେଉଅଛନ୍ତି । ଯେଉଁ ବଙ୍ଗାଳୀଟି ନୂଆ ଏ ଦେଶକୁ ଆସିଲା ତାହା କାନରେ ଗୁରୁମନ୍ତ୍ର ଫୁଙ୍କି, ପୁଣି ତାହା ମନରେ ଓଡ଼ିଆଙ୍କ ପ୍ରତି ହିଂସାଭାବ ଜନ୍ମାଇ ଦେଇ ଆପଣା ଦଳଭୁକ୍ତ କରୁଅଛନ୍ତି। ଆପଣା ଆପଣା କର୍ମ ଖଣ୍ଡିକୁ ତ । ପୂର୍ବପୁରୁଷଙ୍କର ଜାୟଗୀର ମନରେ କରି କେତେ ସ୍ଥଳେ ଆପଣା ଇଚ୍ଛାନୁରୂପ କାର୍ଯ୍ୟ କରି ଯାଉଅଛନ୍ତି । ଓଡ଼ିଆଙ୍କୁ ଦେଖିଲେ ନାକଟେକି କଥା କହନ୍ତି । ଫଳେ ଏହିମାନେ ଓଡ଼ିଆ ଓ ବଙ୍ଗାଳିଙ୍କ ମଧରେ ପରମ୍ପରା ବିବାଦର ମଞ୍ଜୀ ।

*ଭା୧ଗ, ସଂ୧୨ଖ୍ୟା , ୧।୧୦।୧୮୭୩*

# ୧୮୭୪

## ଉତ୍କଳ ସାହିତ୍ୟ

ଉତ୍କଳ ସାହିତ୍ୟର ଅବସ୍ଥା ଯେ ଅଦ୍ୟାବଧି ଶୋଚନୀୟ ଏକଥା କିଏ ଅସ୍ୱୀକାର କରିବ ? ଆଜି ପର୍ଯ୍ୟନ୍ତ ସରସ, ସୁଲଳିତ, ଶୃଙ୍ଗାର ରସ ବିବର୍ଜିତ, ମନୋଦୁଃଖହର ଓ ପ୍ରୀତିପଦ ଖଣ୍ଡିଏ ଗଦ୍ୟ କି ପଦ୍ୟ ମୂଳଗ୍ରନ୍ଥ ଓଡ଼ିଆ ଭାଷାରେ ଦେଖିବାକୁ ପାଇବାର ଦୁଷ୍କର । ନାଟକ ଓ ନବନ୍ୟାସ ରୀତି ଓ ଅଦ୍ୟାବଧି ପ୍ରକୃଷ୍ଟରୂପେ ଏ ଭାଷାରେ ପ୍ରବେଶ କରି ପାରିନାହିଁ ସେନାପତି ରଚିତ ଭାରତବର୍ଷର ଇତିହାସ ଓ ଅମୁଦ୍ରିତ ବଙ୍ଗଳାର ଅନୁବାଦିତ ଦୁଇ ଏକଖଣ୍ଡ ଇଂଲଣ୍ଡ ଇତିହାସ ଛଡ଼ା ପ୍ରକୃତ ଇତିହାସ ଏ ଭାଷାରେ ଆଉ ଥିବାର ତ ଆମ୍ଭମାନଙ୍କୁ ଜଣାନାହିଁ । ଉପାଖ୍ୟାନ କି ଭ୍ରମଣ ବୃତ୍ତାନ୍ତ ବିଷୟକ ପୁସ୍ତକ ମୂଳର ଦୁଷ୍ପ୍ରାପ୍ୟ । ଏହିପରି ଗୋଟି ଗୋଟି କରି କହିଲେ ଅନେକ ହୋଇଯିବ । ଅଙ୍କ ବିଜ୍ଞାନାଦି ବିଷୟକ ପୁସ୍ତକମାନ ଛାଡି, ଯାହାର ମଧ୍ୟ ସଂଖ୍ୟା କି ୭।୮ ଖଣ୍ଡ ଅନୁବାଦ ଓ ସଙ୍କଳନକୁ ଅତିକ୍ରମ କରିନାହିଁ, ଶୁଦ୍ଧ ସାହିତ୍ୟର ଗତି, ସ୍ଥଳରେ ଆନନ୍ଦ ଦାୟକ ନୁହେ । ତେବେ ଏ ବିଭାଗରେ ପ୍ରକୃତ ଯାହାକିଛି ଅଛି ତାହା କେବଳ ପୂର୍ବକାଳୀୟ ଦୀର୍ଘ ଶବ୍ଦାଡ଼ମ୍ବର ବିଶିଷ୍ଟ, ସାତ୍ତ୍ୱିକଭାବପୂର୍ଣ୍ଣ, ଅଶିଳ ଭାଷା ମଣ୍ଡିତ ଓ ସ୍ଥାନ ସ୍ଥାନରେ ଅବଶ୍ୟ ହୃଦୟମୋହନକାରୀ ସରଳ ଭାଷାରେ ଲିଖିତ, ସୁଲଳିତ ଓ ସ୍ୱଭାବିକ ଭାବଯୁକ୍ତ, ଭଞ୍ଜ, ବ୍ରହ୍ମା ଦାସ, ସାମନ୍ତସିଂହାର ପ୍ରଭୃତି କବି କଦମ୍ବଙ୍କ ଲୌହ ଲେଖନୀ ସମ୍ଭୂତ ଖଣ୍ଡି କେତେ କାବ୍ୟ । କିନ୍ତୁ ଏ ଗ୍ରନ୍ଥାବଳୀର ଅବସ୍ଥା ଏରପ ନୁହେ, ଯେ ସୁକୁମାର ମତି ଶିଶୁ କି ଯୌବନୋନ୍ମୁଖୀ ବାଳକ ସମସ୍ତଙ୍କ ହସ୍ତରେ ଏ ସବୁକୁ ନିରାପଦରେ ଅର୍ପଣ କରାଯାଏ । ଆଜିକାଲି ଲୋକଙ୍କ ରଚି କ୍ରମଶଃ ପରିବର୍ତ୍ତିତ ହେଉଅଛି । ଓଡ଼ିଶାରେ ଏ ପରିବର୍ତ୍ତନ ଯଦି ବିଶେଷରୂପେ ପ୍ରତ୍ୟକ୍ଷୀଭୂତ ହୋଇନାହିଁ,ତଥାପି ଯେ ପରିବର୍ତ୍ତନର ସମୟ ଅଦୂରବର୍ତ୍ତୀ ଏ କଥା ସ୍ପଷ୍ଟ ଦେଖା ଯାଉଅଛି । ଦିନ ଦିନ ପାଶ୍ଚାତ୍ୟ ଜ୍ଞାନ ଓ ପାଶ୍ଚାତ୍ୟ ସଭ୍ୟତା ଯେପରି ଗତି ବିସ୍ତାର କରୁଅଛି, ସେଥିରେ ଏକ ନୂତନ ପ୍ରକାରର ରଚି ଶୀଘ୍ର ହେଉ ବିଳମ୍ବରେ ହେଉ ଯେ ଦିନେ ଭାରତବର୍ଷକୁ ଆକ୍ରମଣ ସୁତରାଂ ଓଡ଼ିଶାରେ ମଧ୍ୟ ଗତି ନିକ୍ଷେପ କରିବ ଏଥିରେ ଦ୍ୱିଧା ଉପସ୍ଥିତ ହେଉନାହିଁ । ଏହି ନୂତନ ରୁଚିକି ଅନୁସରି ଭାରତରେ ସ୍ଥାନ ସ୍ଥାନରେ ନ ନ ଏକ ସାହିତ୍ୟ ଭଣ୍ଡାର ସଂଗଠିତ ହେଉଅଛି, ଓଡ଼ିଶାରେ ମଧ୍ୟ ଏହିପରି ହେବାର ଉଚିତ, ଓ ହେବ, ହେବାର ସମୟ ସୁଦ୍ଧା ଆସି ଉପସ୍ଥିତ ହେଲାଣି ଓ ଉଦ୍‌ଯୋଗ ଲାଗିଲାଣି ।

ଓଡ଼ିଆ ଭାଷାରେ ଭଲ ଭଲ ପୁସ୍ତକମାନ ବାହାରି ଓଡ଼ିଆ ସାହିତ୍ୟ ପୁସ୍ତକାଳୟ ପୂର୍ଣ୍ଣ କରନାହିଁ ଏହାର ନାନା କାରଣଅଛି । ଆଦୌ ଅଦ୍ୟାବଧି ଉପଯୁକ୍ତ ଉପଯୁକ୍ତ ଲୋକଙ୍କର ଅଭ୍ୟୁଦୟ ହୋଇନାହିଁ । ଦ୍ୱିତୀୟତଃ ଯାହା ଉଣା ଅଧିକ ହୋଇ ଜଣ କେତେ ଅଛନ୍ତି, ସେମାନେ ସଙ୍ଗତି ଓ ଉତ୍ସାହ ପ୍ରାପ୍ତି ବିହୀନର କିଛି ଲେଖାଲେଖି କରି ଉଠି ପାରୁନାହାନ୍ତି, ଅନ୍ୟତଃ ଏ ସ୍ଥାନୀୟ ବିତ୍ତପନ୍ନ ଲୋକଙ୍କର ଏ ବିଷୟରେ ବିଶେଷ ଶ୍ରଦ୍ଧା ଓ ଉତ୍ସାହ ଦାନର ଚେଷ୍ଟା ନଥିବାରୁ ମଧ୍ୟ ଅନେକ ଅସୁବିଧା ଘଟୁଅଛି । ଆମ୍ଭମାନଙ୍କ ସରକାର ବାହାଦୂର ବରଂ ଏ ବିଷୟରେ ଅନେକ କରିଅଛନ୍ତି । ସେଦିନ ବଙ୍ଗାଳ ଗବର୍ଣ୍ଣମେଣ୍ଟ ଟ୩୦୦ଙ୍କା ଓଡ଼ିଆ ପୁସ୍ତକ ସକାଶେ ଦେଇଅଛନ୍ତି ଯଦ୍ୟପି ଏ ଟଙ୍କାର ଭଲ ବନ୍ଦୋବସ୍ତ ଅଦ୍ୟାବଧି ହୋଇନାହିଁ ତଥାପି ସରକାରଙ୍କର ଓ ଏ ବିଷୟରେ ଢେଙ୍କାନାଳ ମହାରାଜାଙ୍କର ଯେଉଁ ପ୍ରକାର ଉପାୟ ଅବଲମ୍ବନୀୟ ହୋଇଅଛି ତାହା ଅବଶ୍ୟ ସାଧାରଣ ହିତୈଷୀ ଓ ଧନୀଲୋକଙ୍କର ଅନୁକରଣୀୟ ।

ଏ ବିଷୟରେ ଏତିକି ଉପସଂହାରରେ କହି ତୁନି ହେବା ଯେ ସାଧାରଣ ସାହିତ୍ୟ, ବିଶେଷତଃ ପଦ୍ୟ ପ୍ରତି

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

ଆଧୁନିକ ରଚି ଯେ ପ୍ରକାର ପ୍ରତିକୂଳ, ସେଥିରେ ପୁଣି ଓଡ଼ିଆ ସାହିତ୍ୟ ଉନ୍ନତିର ସାଧାରଣ ଚେଷ୍ଟା ଯେପରି ଅପ୍ରୀତିପଦ, ଏଥିରେ ଶୀଘ୍ର ଅବଶ୍ୟ ଏହାର ଭଲ ଗତିର ଭରସା ନାହିଁ; ମାତ୍ର ଏଥି ସକାଶେ ଯେଉଁମାନଙ୍କର କିଛି ଶକ୍ତିଅଛି, ସେମାନଙ୍କର ସୁଦ୍ଧା ତୁନିହୋଇ ରହିବା ବଡ଼ ଉତ୍ତମ ଦିଶୁନାହିଁ । ସେମାନଙ୍କର ଉଚିତ ଲେଖନୀ ସଞ୍ଚାଳନ କରିବାର, ଆଜିକାଲି ନହେଉ ଭବିଷ୍ୟତରେ ଲୋକେ ଏଥିର ଉପକାର ଓ ସାରତ୍ୱ ବୁଝିବେ ଓ ଉତ୍ସାହ ଦେବାକୁ କୁଣ୍ଠିତ ହେବେ ନାହିଁ । ଆଜିକାଲି କାହାରି କାହାରି ମତ ଓଡ଼ିଆରେ ପଦ୍ୟ ଯଥେଷ୍ଟ ଅଛି ଆଉ ଆବଶ୍ୟକ ନାହିଁ । କିନ୍ତୁ ଆମ୍ଭମାନଙ୍କ ମତ ଏଥି ବିରୁଦ୍ଧରେ । ଆଜିକାଲି ଏକ ଦର୍ପଣର ଅଭ୍ୟୁଦୟ ସାହିତ୍ୟ ବିସ୍ତାର ବିଷୟରେ ବଡ଼ ଉପଯୋଗୀ ହୋଇଅଛି । ବର୍ତ୍ତମାନ ଓଡ଼ିଶାରେ ଯେଉଁମାନେ ଲେଖିବାକୁ କିଛି କିଛି ସମର୍ଥ, ସେମାନଙ୍କୁ ଆମ୍ଭମାନଙ୍କର ଆନ୍ତରିକ ଅନୁନୟ ଓଡ଼ିଶାର ଓ ଓଡ଼ିଆଭାଷାର ଦୁରବସ୍ଥା ଦୃଷ୍ଟେ ଉକ୍ତ ସତ୍କାର୍ଯ୍ୟରୁ ବିରତ ନ ହେଉନ୍ତୁ । ଯଦି ଲେଖି ଛପାଇବାର ସଙ୍ଗତି ନଥାଏ, ବାଲେଶ୍ୱରସ୍ଥ ଉତ୍କଳ ଦର୍ପଣ ଅଫିସକୁ ସେମାନଙ୍କର ଲେଖା ପଠାଇଲେ ସେଠାର ବୋଧକରଁ ଯଥେଷ୍ଟ ଉତ୍ସାହକ ସେମାନେ ପାଇପାରନ୍ତି ।

*ଭା୨ଗ, ସଂ୪ଖ୍ୟା, ୩।୬।୧୮୭୪*

## [ପରିକ୍ଷୋତ୍ତୀର୍ଣ୍ଣ ଛାତ୍ରଙ୍କ ଇଂରାଜୀ ପଢ଼ା]

ଦୁଇଜଣ ବଙ୍ଗଳା କ୍ଲାସରେ ପଢ଼ିବା ଛଡ଼ା, ଜନାର୍ଦ୍ଦନ ମହାପାତ୍ର ନାମକ ଗତବର୍ଷର ଜଣେ ପ୍ରବେଶିକା ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ର ଓଡ଼ିଶାର ପ୍ରଥମଥର ମେଡ଼ିକାଲ କଲେଜରେ ଇଂରାଜୀ ବିଭାଗରେ ପଢ଼ିବା ଆରମ୍ଭ କରିଅଛନ୍ତି । ଶୁଣିକରି ଦୁଃଖିତ ହେଲୁଁ କି କେତେ କୁସଂସ୍କାରୀ ଲୋକେ ଏଥିପାଇଁ ତାଙ୍କୁ ଘୃଣା କରଅଛନ୍ତି ଓ ମଡ଼ା ଛୁଇଁଲେ ଜାତି ଯିବାର ସନ୍ଦେହ କରଅଛନ୍ତି । ଧନ୍ୟ ସେମାନଙ୍କ ବୁଦ୍ଧି !!

*ଭା୨ଗ,ସଂ୭ଖ୍ୟା , ୧।୭।୧୮୭୪*

## ସମ୍ବାଦ

କେବଳ ଓଡ଼ିଶା ସକାଶେ ଜଣେ ସ୍କୁଲ ଇନସ୍ପେକ୍‌ଟର ନିଯୁକ୍ତ ହେବାର କଥା ଶୁଣା ଯାଉଅଛି । ସତ୍ୟ ହେଲେ ସୁଖର ବିଷୟ ।

କଲିକତାର ଆମ୍ଭମାନଙ୍କୁ ଜଣେ ଲେଖିଛନ୍ତି ଯେ ମେଡିକାଲ କଲେଜର ନୂଆ ଉତ୍କଳୀୟ ଛାତ୍ରେ ବଙ୍ଗାଳୀ ଛାତ୍ରମାନଙ୍କର ଉପହାସର ପଦାର୍ଥ ହୋଇଅଛନ୍ତି । ବଙ୍ଗାଳୀ ପିଲାଏ ସେମାନଙ୍କୁ କହୁଅଛନ୍ତି ଯେ "ଯେଉଁଦିନ ଉତ୍କଳୀୟ ଛାତ୍ରେ ଡିସେକ୍‌ଶନ ଅର୍ଥାତ୍ ମଡ଼ା କାଟିବେ ସେଦିନ ଛୋଟ ଲାଟ ନିଜେ ଆସି ତାଙ୍କ ହାତରେ ଛୁରୀ ଦେବେ ।" ବଙ୍ଗବାସିଏ କି ଓଡ଼ିଆମାନଙ୍କର ଜନ୍ମ ବିଦ୍ୱେଷୀ ?

*ଭା୨ଗ, ସଂ୭ଖ୍ୟା ,୧୫।୭।୧୮୭୪*

## କେହି ଶୁଣିବେ କି ?

ଆଜିକାଲି ଯେଉଁମାନଙ୍କୁ ଓଡ଼ିଶା ଉନ୍ନତି କି ଓଡ଼ିଶାର ବିଦ୍ୟାଶିକ୍ଷା କି ଓଡ଼ିଆ ଭାଷାର ଶ୍ରୀବୃଦ୍ଧିସାଧନ ପ୍ରଭୃତି କେତେକ ବିଷୟମାନଙ୍କର ଆଲୋଚନା ବା କଥାବର୍ତ୍ତା କରିବାର ମଧ୍ୟେ ମଧ୍ୟେ ଦେଖାଯାଏ ସେମାନେ ଆଉ କଥା ମଧ୍ୟରେ ଏହି କଥାଟିକି ମୂଳକରି କହନ୍ତି, ଯେ ଓଡ଼ିଶା, ସମ୍ବଲପୁର ଗଞ୍ଜାମ ଏ ତିନି ଦେଶ ଏକତ୍ରୀଭୂତ ନହେବାଯାଏ ଉତ୍କଳ ଦେଶ ପ୍ରକୃତ ଉନ୍ନତି ସୋପାନକୁ ଉତ୍‌ଥିତ ହୋଇ ପାରିବନାହିଁ । ମଧ୍ୟ ସେମାନଙ୍କର ଏ କଥାଟି ତୁଚ୍ଛ କି ସାମାନ୍ୟ କଥାନୁହେ । ଏଥିର ଓଜନ ଓ ଗୂଢ଼ତ୍ୱ ଅଛି । ଯେତେବେଳେ ତିନି ଦେଶୀୟ ଲୋକ ଏକ ଉତ୍କଳ ଅକ୍ଷରରେ ଯାବତୀୟ କଥାର ଲିଖନ ପଠନ କରୁଅଛନ୍ତି ଓ ଯେଉଁମାନେ କି ଏକ ପ୍ରକାର ରୀତିନୀତି ଦ୍ୱାରା ସମାଜରେ ଚଳବିଚଳ ହେଉଅଛନ୍ତି ସେମାନଙ୍କୁ ଯେ ତିନି ସ୍ଥାନରେ ତିନି ଗବର୍ଣ୍ଣମେଣ୍ଟର ତିନି ପ୍ରକାର ରଖିବା କେତେଦୂର ଅବିଧେୟ ତାହା ଜନସାଧାରଣ ବିବେଚନା କରନ୍ତୁ ।

XXXXXXXXXXXXXXXXXX

ଥରକୁ ଥର ସମ୍ବଲପୁର ଗଞ୍ଜାମ ଓଡ଼ିଶା ସଙ୍ଗେ ମିଳିବାର ପ୍ରସ୍ତାବ ଉଠୁଅଛି ମାତ୍ର ସେକଥା ନା ଦେଶୀୟ ଲୋକେ ଶୁଣୁଅଛନ୍ତି ନା ଗବର୍ଣ୍ଣମେଣ୍ଟ ଶୁଣୁଅଛନ୍ତି ? ଏଥର କେହି ଶୁଣିବେ କି ?

*ଭା୨ଗ, ସଂ୯୪୍ୟା , ୧୯।୮।୧୮୭୪*

## ଇଂରାଜଙ୍କ ଦ୍ୱାରା ଓଡ଼ିଶା ଶାସନ ।

ଭାରତବର୍ଷର ଯେଉଁଠାରେ ଇଂରାଜଧ୍ୱଜା ସ୍ଥାପିତ ହୋଇଅଛି ସେହିସ୍ଥାନ କ୍ରମଶଃ ବିଶାଳ ଉନ୍ନତିକି ଲଭିଅଛି । କି ରାଜନୈତିକ, କି ସାମାଜିକ ସବୁବିଷୟର ଉନ୍ନତି ଇଂରାଜାଧିକୃତ ସ୍ଥାନମାନଙ୍କରେ ପ୍ରତ୍ୟକ୍ଷୀଭୂତ ହେଉଅଛି ।

ଓଡ଼ିଶା ମଧ ପ୍ରାୟ ୭୧ ବର୍ଷହେଲା ଇଂରାଜଙ୍କ ହସ୍ତଗତ ହେଲାଣି, ବର୍ତ୍ତମାନ ପ୍ରଥମ ଦେଖାଯାଉ ଏମାନଙ୍କ ଶାସନର ଫଳ କି ପ୍ରକାର ଫଳିଅଛି ଓ ଏଠା ଶାସନକର୍ତ୍ତା କିଏ କିରପେ ସେମାନଙ୍କ କର୍ତ୍ତବ୍ୟ ସାଧନ କରି ଲବ୍ଧପ୍ରତିଷ୍ଠ ହୋଇଅଛନ୍ତି ।

ଇଂରାଜ ଶାସନ ପ୍ରଚଳିତ ହେଲାଦିନୁଁ ଓଡ଼ିଶାର ଲୁପ୍ତଶ୍ରୀ ପୁଣି ଆକାରାନ୍ତରରେ ଶନୈଃ ଶନୈଃ ଉଦିତ ହେବାକୁ ଆରମ୍ଭ ହୋଇଅଛି । ପ୍ରକାଣ୍ଡ ପୁରୀ ଜଗନ୍ନାଥ ରଥଚକ୍ର ତଳେ ପ୍ରାଣବିସର୍ଜନ, ମେରିୟା ନରବଳୀ, ସହମରଣ ପ୍ରଭୃତି ଏଦେଶୀୟ କେତେଗୁଡ଼ିଏ କୁପ୍ରଥା ଏକାବେଳକେ ଦୂରୀକୃତ ହୋଇଅଛି; ଆଧୁନିକ ପାଶ୍ଚାତ୍ୟ ସଭ୍ୟତା ଓ ପାଶ୍ଚାତ୍ୟ ବିଦ୍ୟାଚର୍ଚ୍ଚା ପ୍ରତି ଲୋକଙ୍କର ଆଗ୍ରହ ଦିନକୁ ଦିନ ବଢୁଅଛି; ନାନାବିଧ ଅସ୍ୱାସ୍ଥ୍ୟକର ଓ ଉନ୍ନତି ପ୍ରତିଷେଧକ କୁସଂସ୍କାରମାନଙ୍କର ତିରୋଭାବ କ୍ରମେ କ୍ରମେ ଦେଖା ଯାଉଅଛି; ମାତ୍ର ତଥାପି ସାଧାରଣତଃ ଲୋକଙ୍କୁ ଏହିପରି କହିବାର ଶୁଣାଯାଏ ଯେ ଭାରତର ଅନ୍ୟାନ୍ୟ ସ୍ଥାନୀୟ ଲୋକଙ୍କପ୍ରାୟ ଓଡ଼ିଶାବାସିଏ ତାଦୃକ୍ ଶାସନର ସୁଫଳ ଭୋଗକରି ପାରିନାହାନ୍ତି । ମଧ ଏକଥା ସମ୍ପୂର୍ଣ୍ଣ ଅସତ୍ୟ ନୁହେ । ଅନ୍ୟାନ୍ୟ ସ୍ଥାନୀୟ ଲୋକଙ୍କୁ ଇଂରାଜମାନେ ୫୦ ବର୍ଷ ଶାସନ କରି ଯେଉଁ ସବୁ ଉନ୍ନତିକର ବିଷୟମାନ ପ୍ରଦାନ କରିଅଛନ୍ତି ତଦଧିକକାଳ ଆମ୍ଭେମାନେ ସେମାନଙ୍କ ଆଜ୍ଞାବହ ପ୍ରଜା ରହି ମଧ ପାଇ ପାରିନାହୁଁ ।

ଆଜି ଆମ୍ଭେମାନେ ଇଂରାଜଙ୍କୁ ପ୍ରଶ୍ନ କରଅଛୁଁ, ବଙ୍ଗଳାରେ, ଉତ୍ତର ପଶ୍ଚିମରେ, ପଞ୍ଜାବରେ, ବିଦ୍ୟାଶିକ୍ଷାରେ ଯେଉଁ ମହତ୍ ମହତ୍ ଉପାୟମାନ ସେମାନେ ବିଧାନ କରିଅଛନ୍ତି, ତହିଁର ଅର୍ଦ୍ଧେକ କି ଆମ୍ଭମାନଙ୍କ ସକାଶେ ବିହିଅଛନ୍ତି ? ଉକ୍ତ ଦେଶମାନଙ୍କରେ ରେଳ ଇତ୍ୟାଦି ଦ୍ୱାରା, ପରସ୍ପର ଯିବା ଆସିବାର, ସମ୍ବନ୍ଧ ରଖିବାର ଯେଉଁସବୁ ସୌଗମ୍ୟ କରିଅଛନ୍ତି ତହିଁର ଷୋଡଶାଂଶ କି ଏ ଦୁଃଖୀ ଦେଶକୁ ଦେଇ ଅଛନ୍ତି ? -- କିରୂପେ ଏ ଦେଶୀୟ ଲୋକେ ଉନ୍ନତିଶୀଳ ହେବେ, କିରୂପେ ଏମାନେ ଉଚ୍ଚ ରାଜକୀୟ କର୍ମମାନଙ୍କରେ ଅଧିଷ୍ଠିତ ହେବେ, କିରୂପେ ଉଚ୍ଚଶିକ୍ଷା ଲଭିବେ ଓ ଲଭିବାକୁ ଉତ୍ସାହୀ ହେବେ, ଏ ବିଷୟମାନଙ୍କରେ କେତେଜଣ ଇଉରୋପୀୟ ଚିନ୍ତାଯୁକ୍ତ ଥିବାର ଦେଖାଯାନ୍ତି ? --କପୋତ ଚକ୍ଷୁରେ ଅନ୍ୱେଷଣ କଲେ ଦୁଇ ତିନିଜଣ ଅବା ବାହାରିଲେ ବାହାରି ପାରନ୍ତି ।

ଇଂରାଜମାନଙ୍କର ଓଡ଼ିଶା ଶାସନ ରୀତିର ଆହୁରି ଗୋଟିଏ କଥା ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ ଏମାନେ ଓଡ଼ିଶାବାସିଙ୍କ କ୍ଷତିଲାଭ ପ୍ରତି ତାଦୃଶ ଗୁରତ୍ୱ ପ୍ରଦାନ କରନ୍ତି ନାହିଁ । ଅନ୍ୟାନ୍ୟ ବିଷୟ ମଧରେ ଏକ ଭାଷା କଥିତ କଟକ, ଗଞ୍ଜାମ, ସମ୍ବଲପୁର ଏହି ତିନିସ୍ଥାନକୁ ତିନି ଭିନ୍ନ ଭିନ୍ନ ଗବର୍ଣ୍ଣମେଣ୍ଟ ଅଧୀନରେ ରଖିବାକୁ ଦେବା, ବଙ୍ଗ ବେହାର ପରି ଏଠା ଭୂମ୍ୟଧିକାରୀ ଓ ପ୍ରଜାଙ୍କୁ ଅନେକ ପରିମାଣରେ ଦାରିଦ୍ର୍ୟ ମୋଚକ ଭୂସମ୍ପତ୍ତିରୟର ଏକ ସ୍ଥିରତମ ବନ୍ଦୋବସ୍ତ ନକରିବା, ଏଥିର ଏକ ଏକ ପ୍ରକୃଷ୍ଟ ପ୍ରମାଣ । ଆଉ ଏକ ବିଷୟରେ ଅଧିକ ଲେଖିବା ବାହୁଲ୍ୟ ମାତ୍ର । ସ୍ଥୂଳରେ ନ୍ୟାୟର ସହିତ ବିବେଚନା କଲେ ଓଡିଶାବାସିଙ୍କର ଅବସ୍ଥା, ଇଂରାଜଙ୍କ ଆସିବା ପୂର୍ବ ଅବସ୍ଥା ଅପେକ୍ଷା ଯେ ଅନେକ ଅଂଶରେ ଉନ୍ନତ ଓ ଭୟଶୂନ୍ୟ ହୋଇଅଛି, ଏବିଷୟରେ ଦ୍ୱିଧା ଉପସ୍ଥିତ କରିବାକୁ କାହାରି ସାମର୍ଥ୍ୟ ନାହିଁ ।

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ଏଦେଶ ଅନେକ ଭଲ ଭଲ ଇଂରାଜଶାସକଙ୍କ ଦ୍ୱାରା ଶାସିତ ହୋଇ ଅଛି । ମାତ୍ର ସେମାନଙ୍କ ମଧ୍ୟର କଲେକ୍ଟର ଉଇଲକିନ୍‌ସନ ସାହେବ, କମିଶନର ମିଲ, ରିକେଟ୍‌ସ୍, ଶୋର ସାହେବତ୍ରୟ ଓଡ଼ିଶାରେ ଚିରସ୍ମରଣୀୟ ହୋଇ ଅଛନ୍ତି । ମିଲ ସାହେବ ପ୍ରଥମେ ଏ ଦେଶବାସିଙ୍କୁ ଇଂରାଜୀ ଶିକ୍ଷାଦେବା ଉଦ୍ଦେଶ୍ୟରେ କଟକ ଇଂରାଜୀସ୍କୁଲ ସ୍ଥାପନ କରାଇ ଅଛନ୍ତି, ରିକେଟ୍‌ସ୍ ସାହେବ ଏ ଦେଶବାସିଙ୍କୁ ଉଚ୍ଚକର୍ମରେ ନିଯୋଗ କରିବାର ଉପାୟମାନ ବିଧାନ କରିଅଛନ୍ତି ଓ ଅଦ୍ୟାବଧି ସେ ଓଡ଼ିଶାକଥା ବିସ୍ମୃତ ନହୋଇ ସମୟ ସମୟରେ ତାଙ୍କର ବୃଦ୍ଧ ବନ୍ଧୁମାନଙ୍କଠାକୁ ପତ୍ରାଦି ଲେଖିଥାନ୍ତି; ଶୋର ସାହେବ କି ବିଦ୍ୟାଶିକ୍ଷା, କି ଶାସନ, କି ଦେଶୋନ୍ନତି ସବୁ ଉଦ୍ଦେଶ୍ୟ ହୃଦୟରେ ରଖି ଓଡ଼ିଶାବାସିଙ୍କ ଉନ୍ନତି ବିଷୟରେ ଯଥାସାଧ୍ୟ ଚେଷ୍ଟା କରିଅଛନ୍ତି । ଖୋର୍ଦ୍ଧା ବନ୍ଦୋବସ୍ତ ଓ ତାଙ୍କର ଅନ୍ୟାନ୍ୟ କାର୍ଯ୍ୟଦ୍ୱାରା ଉଇଲକିନ୍‌ସନ ସାହେବ ଓଡ଼ିଶାବାସିଙ୍କ ସହିତ କେତେଦୂର ହୃଦ୍ୟତା ଦେଖାଇ ଯାଇଅଛନ୍ତି ତାହା ବଚନାତୀତ । ଏମାନେ ଏଠାର ଗୋଟି ଗୋଟି ହୋଇ ଅନ୍ତର୍ହିତ ହେଲେଣି, ମାତ୍ର ତଥାପି ଏମାନଙ୍କର ନାମ ଓଡ଼ିଶାର ଆବାଳବୃଦ୍ଧବନିତାଙ୍କ ନିକଟରେ ଚିରସ୍ମରଣୀୟ ହୋଇ ରହିଅଛି ।

ଏଠାରେ ମଧ୍ୟ କହିବାର ବିହିତ ଯେ ଆମ୍ଭମାନଙ୍କର ଆଧୁନିକ ଶାସନକର୍ତ୍ତା ଶ୍ରୀଯୁକ୍ତ କମିଶନର ରାଭେନ୍‌ସା ସାହେବ, ତାଙ୍କର ଓଡ଼ିଶାଧ୍ୱଂସକାରୀ ୬୬ ସାଲର ଦୁର୍ଭିକ୍ଷ ସମୟର କାର୍ଯ୍ୟ ଅପ୍ରୀତିକର ହେଲେସୁଦ୍ଧା, ଓଡ଼ିଶାର ହିତୈଷୀ ଅଟନ୍ତି । ତାଙ୍କ ଚେଷ୍ଟାରେ କଟକ ନର୍ମାଲ ସ୍କୁଲ, ଓ ହାଇସ୍କୁଲ ଏଠାରେ ସ୍ଥାପିତ ହୋଇଅଛି, ଓଡିୟାଭାଷା ଏ ଦେଶରେ ସ୍ଥିରୀକୃତ ରହିଅଛି । ମେଡିକାଲ ସ୍କୁଲରେ ଏଠା ବାସିଏ ପଢ଼ିପାରିବା ଉପଯୋଗୀ କେତୋଟି ଛାତ୍ରବୃତ୍ତି ସଂସ୍ଥାପନ କରାଇ ଅଛନ୍ତି; ପୁଣି ବର୍ଷକୁ ବର୍ଷ କେତେକ ବର୍ଷ ହେଲା ଓଡ଼ିୟା ଛାତ୍ରଙ୍କୁ ପଢ଼ିବା ବିଷୟରେ ଉତ୍ସାହ ଦେବା ସକାଶେ ଟ ୧୦୦ ଙ୍କା କରି ଦେଉଅଛନ୍ତି । ଉଚ୍ଚକର୍ମରେ ଏ ଦେଶବାସିଙ୍କୁ ନିଯୁକ୍ତ କରିବା ତାଙ୍କର ଇଚ୍ଛା ବୋଲି ପ୍ରକାଶ୍ୟ ସଭାରେ କହିଥାନ୍ତି ମଧ୍ୟ ତାଙ୍କର ପ୍ରିୟ ଦୁଇଏକ ଜଣଙ୍କୁ ଦେଇ ଅଛନ୍ତି । ମାତ୍ର ତାଙ୍କର ଏକ ମହତ୍ ଦୋଷ ଏହି ଯେ ସେକଥାରେ ଯେତେ କହନ୍ତି କାର୍ଯ୍ୟରେ ତେତେ କରନ୍ତି ନାହିଁ ଓ ମଧ୍ୟେ ମଧ୍ୟେ କାହାରି କାହାରି ଚକ୍ଷୁଲଜ୍ଜାରେ ପଡିଥାନ୍ତି ।

ଉପସଂହାରରେ ଏତିକି କହିବାର ଯେ ଇଂରାଜମାନେ ଯେମନ୍ତ ଏ ଦେଶକୁ ଶୁଭ କ୍ଷଣରେ ଈଶ୍ୱରଙ୍କ କୃପାରେ ଆସିଅଛନ୍ତି ସେହିପରି କ୍ରମଶୋନ୍ନତି ପ୍ରତି ଦୃଷ୍ଟି ରଖିବାକୁ ତ୍ରୁଟି ନକରନ୍ତୁ । ଓଡ଼ିଶା ତୁମ୍ଭମାନଙ୍କର କୃପାଦୃଷ୍ଟିର ଦୂରରେ ନରହୁ । ତୁମ୍ଭମାନଙ୍କ ଶାସନରେ ଯେପରି ଆମ୍ଭେମାନେ ଅନେକ ଅଂଶରେ ସୁସ୍ଥତାକୁ ଲଭିଅଛୁଁ । ସେହିପରି ଯେରପ ଉନ୍ନତିକି ଲାଭକରି ଭାରତର ସର୍ବୋନ୍ନତ ଜାତିମାନଙ୍କ ସଙ୍ଗେ ବିଦ୍ୟା, ଗୌରବ ମାନମର୍ଯ୍ୟାଦା ସବୁ ବିଷୟରେ ସମକକ୍ଷ ହେବାକୁ ସମର୍ଥ ହେଉଁ । ରାଜା ଚେଷ୍ଟାକଲେ କଣ ନ ହୋଇପାରେ ?

*ଭା୨ଗ, ସଂ ୧୧ଖ୍ୟା, ୧୬।୯।୧୮୭୪*

## [ରାଭେନଶା ସାହେବଙ୍କ ବଦାନ୍ୟତା ]

ପାଠକେ ! ଆପଣମାନେ ଅବଗତ ହୋଇ ଆନନ୍ଦିତ ହେବେ ଯେ ଆମ୍ଭମାନଙ୍କର ହିତୈଷୀ କମିଶନର ରାଭେନଶା ସାହେବ କଲିକତା ମେଡ଼ିକାଲ ସ୍କୁଲରେ ପଢୁଥିବା ଓଡ଼ିଶାବାସୀ ଜଣଣ ଓ ମେଡ଼ିକାଲ କଲେଜରେ ପଢୁଥିବା ଜନାର୍ଦ୍ଦନ ମହାପାତ୍ର ନାମକ ଜଣକୁ ପୁସ୍ତକ ଯନ୍ତ୍ରାଦି କ୍ରୟକରିବା ଉଦ୍ଦେଶ୍ୟରେ ଟ୨୫ଙ୍କା ଲେଖାଏଁ ପ୍ରତ୍ୟେକକୁ ପଠାଇଅଛନ୍ତି, ମଧ୍ୟ ଏହା ବଡ଼ ପ୍ରଶଂସାର ବିଷୟ । ସାଧାରଣଙ୍କର କମିଶନର ସାହେବଙ୍କୁ ଏ ବିଷୟରେ ଅନୁସରଣ କରିବା ବିଧେୟ । ବିଶେଷତଃ ଜନାର୍ଦ୍ଦନ ମହାପାତ୍ର ସକାଶେ ସାଧାରଣଙ୍କୁ ଅନୁରୋଧ କରୁଅଛୁଁ କିଛି କିଛି ତାକୁ ସମସ୍ତେ ସାହାଯ୍ୟ କରନ୍ତୁ । ଆମ୍ଭମାନଙ୍କଠାକୁ, କାହାରି କିଛି ଦେବାର ଥିଲେ ପଠାଇଲେ, ଆମ୍ଭେମାନେ ଯଥାସ୍ଥଳକୁ ପଠାଇଦେବୁଁ ।

*ଭା୨ଗ, ସଂ ୧୨ଖ୍ୟା ,୭।୧୦।୧୮୭୪*

# ଓଡ଼ିଶା ଶିକ୍ଷା ବିଭାଗୀୟ କେତୋଟି ପରିବର୍ତ୍ତନ ।

ଗତମାସ ମଧ୍ୟରେ ଓଡ଼ିଶା ଶିକ୍ଷା ବିଭାଗରେ କେତୋଟି ସୁଖ ଦୁଃଖଜନକ ପରିବର୍ତ୍ତନ ଘଟିଅଛି । ପ୍ରଥମତଃ ଓଡ଼ିଶା ସକାଶେ ଜଣେ ସ୍ୱତନ୍ତ୍ର ଇନସ୍ପେକ୍ଟର ନିଯୁକ୍ତି ସ୍ୱରପ ଆମ୍ଭମାନଙ୍କର ଗୋଟିଏ ବହୁକାଳର ପ୍ରାର୍ଥନା ପୂର୍ଣ୍ଣ ହୋଇଅଛି । ରବର୍ଟ ପ୍ୟୋରୀ ସାହେବ ନାମକ ହୁଗୁଳୀ କଲେଜର ଜଣେ ଅତି ବିଦ୍ୱାନ, ନମ୍ର ଓ ଶିଷ୍ଟାଚାରୀ ଅଧ୍ୟାପକ ଓଡ଼ିଶାର ପ୍ରଥମ ଇନସ୍ପେକ୍ଟର ନିଯୁକ୍ତ ହୋଇ ଆସିଅଛନ୍ତି । ଏ ଘଟଣା ଓଡ଼ିଶାବାସିଙ୍କ ପ୍ରତି ଯେ କେତେଦୂର ଆନନ୍ଦପ୍ରଦ ତାହା ଓଡ଼ିଶାବାସୀ ମାତ୍ର କେହିଁ ଅନୁଭବ କରଥିବେ ।

ଦ୍ୱିତୀୟତଃ ଜଣେ ସ୍ୱତନ୍ତ୍ର ଇନସ୍ପେକ୍ଟର ଓଡ଼ିଶା ସକାଶେ ନିଯୁକ୍ତ ହେଲାଗଁ ଓଡ଼ିଶା ସ୍କୁଲ ଜ୍ୱଏଣ୍ଟ ଇନସ୍ପେକ୍ଟରୀ କାର୍ଯ୍ୟ ଉଠିଗଲା ବୋଲି କହିବାକୁ ହେବ । ସୁତରାଂ ଏଜର ସାହେବଙ୍କୁ କାର୍ଯ୍ୟାନ୍ତରରେ ନିଯୁକ୍ତ କରିବାର ଆବଶ୍ୟକ ହେଲା ଓ ଗବର୍ଣ୍ଣମେଣ୍ଟ ତଦନୁସାରେ ତାଙ୍କୁ କଟକ ହାଇସ୍କୁଲର ପ୍ରଧାନ ଶିକ୍ଷକତା ପଦରେ ନିଯୁକ୍ତ କରିଅଛନ୍ତି । ଆମ୍ଭେମାନେ ମଧ୍ୟ ବୋଧକରଁ ଏଜର ସାହେବଙ୍କର ହାଇସ୍କୁଲରେ ପ୍ରବେଶ ହାଇସ୍କୁଲ ପ୍ରତି କୌଣସିରପେ ଅମଙ୍ଗଳପ୍ରଦ ନୁହେ । ତାଙ୍କ ନିଯୁକ୍ତିରେ କାହାରିକୁ ଅସନ୍ତୁଷ୍ଟ ହେବାର ଦେଖାଯାଉ ନାହିଁ । ଭରସା କରଁ ଏଜର ସାହେବଙ୍କ ସମୟରେ ହାଇସ୍କୁଲର ଅବଶିଷ୍ଟ ଉନ୍ନତିମାନ ସମ୍ୟକ୍ ପ୍ରକାରେ ସାଧିତ ହୋଇ ଏହା ଯେମନ୍ତ ଶେଷକୁ କଲେଜ ଗପରେ ପରିଣତ ହୁଏ ।

ତୃତୀୟତଃ ଆମ୍ଭମାନଙ୍କୁ ଗୋଟିଏ ଅତି ଦୁଃଖକର ସମ୍ୱାଦ ସାଧାରଣଙ୍କୁ ଦେବାକୁ ହେଉଅଛି । ହାଇସ୍କୁଲର ସୁଯୋଗ୍ୟ ବିଦ୍ୱାନ ପ୍ରଥମ ପ୍ରଧାନ ଶିକ୍ଷକ ବାବୁ ଚଣ୍ଡୀ ଚରଣ ବାନୁର୍ଯ୍ୟା ଓଡ଼ିଶାର ସ୍ଥାନାନ୍ତରିତ ହେଉଅଛନ୍ତି । ଅଦ୍ୟାବଧି ସେ କେଉଁଠାକୁ ବଦଳୀ ହୋଇଯିବେ ନିଶ୍ଚିତ ହୋଇନାହିଁ; ଅଥଚ ହାଇସ୍କୁଲର ପ୍ରଧାନ ଶିକ୍ଷକତା ପଦର ଅପସୃତ ହୋଇଅଛନ୍ତି । ବେଙ୍ଗଲ ଗବର୍ଣ୍ଣମେଣ୍ଟଙ୍କର ଏ ବିଷୟରେ କିଛି ତରତରିୟା ନୀତି ଅବଲମ୍ୱନ କରିଥିବାର, ସୁତରାଂ ଭ୍ରମାକ୍ରାନ୍ତ ହୋଇଥିବାର, ଜଣାଯାଏ । ଅଗ୍ରେ ଚଣ୍ଡୀ ବାବୁଙ୍କୁ କର୍ମାନ୍ତରେ ନିଯୁକ୍ତି କରି ତାଙ୍କ କାର୍ଯ୍ୟରେ ଅନ୍ୟ ବ୍ୟକ୍ତିଙ୍କୁ ନିଯୋଗ କରିବାର ଗବର୍ଣ୍ଣମେଣ୍ଟର ଉଚିତ ଥିଲା । ଯାହାହେଉ ଉଲ୍ଲିଖିତ ଶିକ୍ଷା ବିଭାଗୀୟ ଦୁଇ ଘଟଣା ଯେପରି ସନ୍ତୋଷଜନକ, ତଦପେକ୍ଷା ଚଣ୍ଡୀ ବାବୁଙ୍କ ବଦଳୀ ଯେ ଅଧିକତର ଶୋଚନୀୟ ଏଥିରେ ସନ୍ଦେହ ନାହିଁ । ବାବୁ ମହାଶୟ ହାଇସ୍କୁଲର କାର୍ଯ୍ୟ ଯଥାସାଧ୍ୟ ଉତ୍ତମରପେ ନିର୍ବାହ କରିଅଛନ୍ତି ଓ ପୂର୍ବାପେକ୍ଷା ଏଣିକି ଯେ ପ୍ରବେଶିକା ପରୀକ୍ଷାରେ ଅଧିକ ସଂଖ୍ୟକ ଛାତ୍ର ଉତ୍ତୀର୍ଣ୍ଣ ହେଉଥିଲେ, ଏହା ତାଙ୍କ ଯତ୍ନର ବୋଲିବାକୁ ହେବ । ସ୍ୱକୀୟ ଗୁଣ ମଧ୍ୟରେ ତାଙ୍କର ମିଷ୍ଟଭାଷା ଓ ଶିକ୍ଷାଚାରିତା ତାଙ୍କୁ ସର୍ବତ୍ର ଓ ସର୍ବସାଧାରଣରେ ଅଧିକ ଆଦରର ପଦାର୍ଥ କରିଥିଲା । ଅତି ଦୁଃଖର ସହିତ ତାଙ୍କଠାର ଆମ୍ଭମାନଙ୍କୁ ବର୍ତ୍ତମାନ ବିଦାୟ ଗ୍ରହଣ କରିବାକୁ ପଡ଼ିବ ।

*ଭା୨ଗ, ସଂ୧୪ଖ୍ୟା ,୪।୧୧।୧୮୭୪*

# ୧୮୭୮

## ଆମ୍ଭମାନଙ୍କ ମାତୃଭାଷା ।

ଆମ୍ଭମାନଙ୍କ ମାତୃଭାଷା ଓଡ଼ିଆ, ଏହା ଦୁଧଖିଆ ପିଲାମାନେ ସୁଦ୍ଧା ଜାଣନ୍ତି । ଯହିଁରେ ଏହି ଭାଷାର ଉନ୍ନତି ହେବ ସେଥିର ଚେଷ୍ଟା କରିବା ଆମ୍ଭମାନଙ୍କର ଉଚିତ । ପୃଥିବୀ ମଧ୍ୟରେ ଯେଉଁ ଯେଉଁ ଜାତି ସଭ୍ୟତା ସୋପାନରେ ଆରୋହଣ କରିଅଛନ୍ତି ସେମାନେ ଆପଣା ଆପଣା ମାତୃଭାଷାକୁ ବୃଦ୍ଧି କରିବା ନିମନ୍ତେ ସାଧ୍ୟାନୁସାରେ ଯତ୍ନ କରୁଅଛନ୍ତି ମାତ୍ର ଦୁଃଖର ବିଷୟ ଏହି ଯେ ଆମ୍ଭେମାନେ ତାହା ନକରି ସେଥିର ବିପରୀତ କରୁଅଛୁଁ । ଆମ୍ଭମାନଙ୍କର ମାତୃଭାଷା କିଛି ନୂତନ ଭାଷା ନୋହେ, ଏହା ବହୁଦିନର ଭାଷା । ଯେଉଁମାନେ ଏହା ଅବିଶ୍ୱାସ କରନ୍ତି, ସେମାନେ ପୁରୁଣା ପୋଥିମାନ ଫିଟାଇ ଦେଖନ୍ତୁ, ତାହାହେଲେ ଆମ୍ଭମାନଙ୍କର ଉକ୍ତିର ପ୍ରମାଣ ପାଇବେ । ଆମ୍ଭମାନଙ୍କର ମାତୃଭାଷା ଦୁଇଶଅ ବର୍ଷପୂର୍ବେ ଯେପରି ଅବସ୍ଥାରେ ଥିଲା, ଆଜି ବଙ୍ଗଳା ଭାଷା ଏତେ ଉନ୍ନତି ଲାଭକରି ସୁଦ୍ଧା ପ୍ରାୟ ସେହିରୂପ ଅବସ୍ଥାପନ୍ନ ହୋଇଅଛି । ଦୀନକୃଷ୍ଣ, ଉପେନ୍ଦ୍ରଭଞ୍ଜ ଓ ଅଭିମନ୍ୟୁ ପ୍ରଭୃତିଙ୍କ କାବ୍ୟ ଯେଉଁମାନେ ମନଦେଇ ପଢ଼ିଅଛନ୍ତି ସେହିମାନେ ସେଥିର ପ୍ରମାଣ ପାଇଅଛନ୍ତି ।

ପୂର୍ବେ ଆମ୍ଭମାନଙ୍କ ମାତୃଭାଷାରେ ଗଦ୍ୟମୟ କୌଣସି ପୁସ୍ତକ ପ୍ରକାଶିତ ହୋଇନଥିଲା । ମୁଦ୍ରାଯନ୍ତ୍ର ସ୍ଥାପିତ ହେଲା ଦିନଠାରୁ ଏଣିକି କ୍ରମେ କ୍ରମେ ଗଦ୍ୟମୟ ପୁସ୍ତକମାନ ପ୍ରକାଶିତ ହେଉଅଛି । କେବଳ ଆମ୍ଭମାନଙ୍କ ମାତୃଭାଷାରେ କିପାଇଁ ? ବଙ୍ଗଳା, ହିନ୍ଦୀ ପ୍ରଭୃତି ଭାଷାରେ ସୁଦ୍ଧା ଅଳ୍ପଦିନ ହେଲା ଗଦ୍ୟମୟ ପୁସ୍ତକ ପ୍ରକାଶିତ ହୋଇଅଛି । ବଙ୍ଗାଳିମାନେ ପଦ୍ୟମୟ ପୁସ୍ତକର ଭାଷାକୁ ଯେଉଁ ପରିମାଣରେ ଗଦ୍ୟମୟ ରୂପରେ ଉନ୍ନତ କରିଅଛନ୍ତି, ଆମ୍ଭେମାନେ ଆମ୍ଭମାନଙ୍କର ପଦ୍ୟମୟ ପୁସ୍ତକର ଭାଷାକୁ ସେହି ପରିମାଣରେ ଗଦ୍ୟମୟ ଭାଷାରୂପେ ଉନ୍ନତ କରି ପାରିନାହୁଁ । ଏଥିର ମୂଳକାରଣ ଏହିଯେ, ବଙ୍ଗାଳିମାନେ ମୁଦ୍ରାଯନ୍ତ୍ର ସାହାଯ୍ୟରେ ଭାଷାକୁ ଉନ୍ନତ କରିବା ବିଷୟରେ ପ୍ରାୟ ୩୦ । ୩୫ ବର୍ଷହେଲା ସାଧ୍ୟାନୁସାରେ ଚେଷ୍ଟା କରୁଅଛନ୍ତି । ଦୁଃଖର ବିଷୟ ଏହିଯେ, ଆମ୍ଭେମାନେ ଆମ୍ଭମାନଙ୍କ ମାତୃଭାଷାର ଉନ୍ନତି ବିଷୟରେ କିଛି କରି ପାରୁନାହୁଁ ।

X X X X X X X X X X X X X X X X X X X X X

*ଭା।୧୧ଗ,ସଂ୨୨ଖ୍ୟା , ୩୦।୫।୧୮୭୮*

# ୧୮୭୪

## ସଂବାଦବାହିକା

### ବିବିଧ ସଂବାଦ

"ଓଡ଼ିଶା ଭାଷାର ସ୍ୱାତନ୍ତ୍ୟ ନେଇ ଯେଉଁ ବିବାଦ ଲାଗିଥିଲା ତାହାର ପ୍ରତିକ୍ରିୟା ସ୍ୱରୂପ ଏଠାରେ ଉଦ୍ଧୃତ ସମ୍ବାଦଟି ଗୁରୁତ୍ୱପୂର୍ଣ୍ଣ। ଦୀପିକା ବୋଲନ୍ତି "ପଟାମୁଣ୍ଡେଇର ନାଏବ ସେଠା ସ୍କୁଲରେ ବଙ୍ଗଳା ଚଳାଇବାକୁ ଚେଷ୍ଟା କରୁଥିବାର ଜଣେ ପତ୍ର ପ୍ରେରକ ତାହାଙ୍କୁ ଲେଖିଅଛନ୍ତି ଓ ଏହି ଉଦ୍ଦେଶ୍ୟରେ ସେହି ସ୍କୁଲର ବିଲ୍ ବଙ୍ଗଳାରେ ଲେଖି ପଠାଇଥିଲେ, ମାତ୍ର ଜଏଣ୍ଟ ଇନ୍‌ସପେକ୍ଟର ତାହା ଫେରାଇ ଦେଲେ।"

ଆମ୍ଭେମାନେ ଶୁଣିଅଛୁଁ ପଟମୁଣ୍ଡାଇର ନାଏବ ଜଣେ ବଙ୍ଗାଳୀ; ଏଣୁ ତାହାଙ୍କର ସେ ରୋଗ ବାହାରିଅଛି। କେବଳ ପଟମୁଣ୍ଡାଇରେ ନୁହେଁ ଯେଉଁ ଯେଉଁ ଠାରେ ବଙ୍ଗାଳିମାନେ ସାହାଯ୍ୟ ପ୍ରାପତ ସ୍କୁଲର କର୍ତ୍ତା,ସେହି ସେହିଠାରେ ସେହିରୂପ ଘଟେ । ଅଧିକ ଦୂରକୁ ଯିବାର ପ୍ରୟୋଜନ କି ? ବାରବାଟୀ ବିଦ୍ୟାଳୟକୁ ଯାଇ ଦେଖ, ସେ ସ୍କୁଲରେ ଉଡ଼ିଆଭାଷା ଲୋପ ଭାଗ ପ୍ରାୟ ହୋଇ ପଡ଼ିଅଛି। ଗତବର୍ଷ ଛାତ୍ରବୃତ୍ତି ପରୀକ୍ଷାର ଫଳ ତାହାର ସାକ୍ଷୀ।

ଆମ୍ଭେମାନେ ଅବଗତ ହେଲୁଁ ଯେ, ଉକ୍ତ ବାରବାଟୀ ବିଦ୍ୟାଳୟରେ ବଙ୍ଗଳାଭାଷା ବଜାୟ ରଖିବା ନିମନ୍ତେ ଉକ୍ତ ବିଦ୍ୟାଳୟର କର୍ତ୍ତୃପକ୍ଷୀୟମାନେ ସ୍ଥାନୀୟ କମୀଟି ଦ୍ୱାରା କମିଶନର ମହୋଦୟଙ୍କ ନିକଟରେ ଦରଖାସ୍ତ ଦେଇଥିଲେ, କିନ୍ତୁ ଓଡ଼ିଆମାନଙ୍କ ବଂଧୁ ଓ ଉତ୍କଳ ଭାଷାର ରକ୍ଷକ କମିଶନର ମହୋଦୟ, ତାହା ଶୁଣିଲେ ନାହିଁ। ଏ ସମ୍ବନ୍ଧରେ କେତେକ କଥା ବୋଲିବାକୁ ମାନସ ବଳିଅଛି, ପରେ ପାଠକମାନଙ୍କୁ ବୋଲିବୁଁ।

*ଭା୭ଗ, ସଂ୫ଖ୍ୟା ,୧/୧୦/୧୮୭୪*

### ସ୍କୁଲର ନୂଆ ଇନସ୍ପେକ୍‌ଟର।

ଗତ ପତ୍ରିକାରେ ବୋଲିଅଛୁଁ ଯେ ହୁଗୁଲୀ କଲେଜର ପ୍ରଫେସର ରବର୍ଟ ପେରି ସାହେବ ଓଡ଼ିଶା ଡିଭିଜନର ସ୍କୁଲମାନଙ୍କ ନିମନ୍ତେ ସ୍ୱତନ୍ତ୍ର ଇନସ୍ପେକ୍‌ଟର ନିଯୁକ୍ତ ହେଲେ। ଓଡ଼ିଶା ସ୍ୱତନ୍ତ୍ର ଜଣେ ଇନସ୍ପେକ୍‌ଟର ପାଇବାର ଯେଉଁ ଆଶା କରିଥିଲା ଏବେ ତାହା ସମ୍ପୂର୍ଣ୍ଣ ରୂପେ ସଫଳ ହେଲା। ଇନସ୍ପେକ୍‌ଟର ସାହେବ ସମସ୍ତ ବର୍ଷ କିରୂପେ କଟାଇବେ ବର୍ତ୍ତମାନ ସେ ବିଷୟ ବିବେଚନା କରାଯାଉ।

ସାଧାରଣରୂପେ ବିବେଚନା କଲେ ଦେଖାଯାଏ ଯେ, ପୁରୀ, କଟକ ଓ ବାଲେଶ୍ୱର ଏହି ୩ ଜିଲାର ସ୍କୁଲ ଓ ଗ୍ରାମ୍ୟ ପାଠଶାଳାମାନ ଇନସ୍ପେକ୍‌ଟର ସାହେବଙ୍କ ଅଧୀନ ହେଉଅଛି। ସ୍କୁଲ ଓ ଗ୍ରାମ୍ୟ ପାଠଶାଳା ଏହି ଦୁଇ ମଧ୍ୟରୁ ଗ୍ରାମ୍ୟ ପାଠଶାଳାର ସଂଖ୍ୟା ଅଧିକ, ସ୍କୁଲର ସଂଖ୍ୟା ଅତି ଅଳ୍ପ ଅଟେ। ଗ୍ରାମ୍ୟ ପାଠଶାଳାମାନଙ୍କ ପ୍ରତି ଡେଃ ଇନସ୍ପେକ୍‌ଟର ଓ ସବ ଡେଃ ଇନସ୍ପେକ୍‌ଟରମାନଙ୍କର ଯେ ପ୍ରକାର ଦୃଷ୍ଟି ଥାଏ, ଇନସ୍ପେକ୍‌ଟର ସାହେବମାନଙ୍କର ସେ ପ୍ରକାର ଦୃଷ୍ଟି ପ୍ରାୟ ଥାଏ ନାହିଁ। କେବଳ ଉଚ୍ଚ ଓ ମଧ୍ୟମ ଶ୍ରେଣୀର ସ୍କୁଲମାନଙ୍କ ପ୍ରତି ଇନସ୍ପେକ୍‌ଟର ସାହେବମାନଙ୍କର ଅପେକ୍ଷାକୃତ ଦୃଷ୍ଟି ଅଧିକ। ଏଥକୁ ଉକ୍ତ ତିନି ଜିଲାରେ ଉଚ୍ଚଶିକ୍ଷାର ନିମନ୍ତେ ତିନିଗୋଟି, ଟ୍ରେନିଂ କ୍ଲାସର ଚରିଗୋଟି (ଜଳେଶ୍ୱର-ଶାନ୍ତିପୁରର ସାହାଯ୍ୟ ପ୍ରାପ୍ତ ନର୍ମାଲ ସ୍କୁଲ ଏଥିର ଅନ୍ତର୍ଗତ), ମାଇନର ଶ୍ରେଣୀର ସ୍କୁଲ ୧୩ଗୋଟି ଓ ମଧ୍ୟମ ଶ୍ରେଣୀର ସ୍କୁଲ ପ୍ରାୟ ୪୦ଗୋଟି, ସବୁ ସୁଦ୍ଧା ୬୦ଗୋଟି ସ୍କୁଲ ଅଛି।

**ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ**

ଜଣେ ଇନସ୍ପେକ୍‌ଟର ବାର ମାସରେ ଯେବେ ୬୦ଗୋଟି ସ୍କୁଲ ଦେଖିବେ ତେବେ ମାସ ପ୍ରତି ୫ଗୋଟି ଲେଖାଏଁ ସ୍କୁଲ ପଡ଼ୁଅଛି। ଜଣେ ଇନସ୍ପେକ୍‌ଟରଙ୍କୁ ପ୍ରତି ମାସରେ ୫ଗୋଟି ସ୍କୁଲ ଦେଖିବାକୁ ହେବ ଏହା ନିତାନ୍ତ ଶ୍ରୁତିକଟୁ ହେଉଅଛି, ଅନ୍ତତଃ ଜଣେ ଇନ୍‌ସ୍ପେକ୍‌ଟରଙ୍କ ଉପରେ ପ୍ରତିମାସରେ ୧୦ । ୧୫ ସ୍କୁଲ ଦେଖିବାର ଭାର ଥିବା ଅତି ଆବଶ୍ୟକ। ତାହା ନହୋଇ ଯେବେ କେବଳ ୬୦ ଗୋଟି ସ୍କୁଲ ଜଣେ ଇନସ୍ପେକ୍‌ଟରଙ୍କ ଅଧୀନରେ ରଖାଯାଏ ଓ ସେ ଯେବେ ପ୍ରତିମାସରେ ଅନ୍ତତଃ ୧୦ଗୋଟି ସ୍କୁଲ ଦେଖନ୍ତି ତେବେ ସେହି ୬୦ଗୋଟି ସ୍କୁଲ ଦେଖିବାକୁ ୬ ମାସ ଲାଗିବ। ବାକୀ ଛ ମାସ କିରୂପେ କଟାଇବେ ? ଆମ୍ଭେମାନେ ବିବେଚନା କରୁଁ ବାକୀ ଛଅମାସ ନିମନ୍ତେ ଓଡ଼ିଶା ଦେଶରେ (ଯେଉଁ ସ୍ଥାନରେ ଉତ୍କଳଭାଷା ଚଳୁଅଛି) ଅନେକ କାର୍ଯ୍ୟ ଅଛି, ସେହି କାର୍ଯ୍ୟମାନ ତାଙ୍କ ହସ୍ତରେ ଦେଲେ ହେଲା। ଗଞ୍ଜାମ, ବ୍ରହ୍ମପୁର, ସମ୍ବଲପୁର ଓ ଗଡ଼ଜାତର ଅଧୀନ ସ୍କୁଲମାନ ଯେବେ ତାଙ୍କ ହସ୍ତରେ ଦିଆଯାଏ ତେବେ ସେହି ସ୍କୁଲର କାର୍ଯ୍ୟମାନ ବାକୀ ଛଅମାସ ନିମନ୍ତେ ତାହାଙ୍କୁ ଅଣ୍ଟିବ । ଏଥିରେ ସରକାର ବାହାଦୂରଙ୍କର କି ଅସହଜ ହେବ ଓ ରାଜକୀୟ କାର୍ଯ୍ୟରେ କି ବିଶୃଙ୍ଖଳା ଘଟିବ ତାହା ଆମ୍ଭେମାନେ ବୁଝି ପାରୁନାହୁଁ । ଯେବେ ସରକାର ବାହାଦୂରଙ୍କର ଓଡ଼ିଆ ଜାତିପ୍ରତି ମମତ୍ୱ ଥାଏ ଓ ଏମାନଙ୍କୁ ଏମାନଙ୍କ ପ୍ରତିବାସି ବଙ୍ଗାଳୀମାନଙ୍କ ତୁଲ୍ୟ ଉନ୍ନତିଶୀଳ କରିବାକୁ ଯେବେ ଇଚ୍ଛା ଥାଏ ତେବେ ଓଡ଼ିଆ ଭାଷା ଯେଉଁ ଯେଉଁ ସ୍ଥଳରେ ଚଳୁଅଛି ବା ଉତ୍କଳ ଭାଷାର ବିଦ୍ୟାଳୟ ଯେଉଁ ଯେଉଁ ଠାରେ ଅଛି ସେହି ସେହି ସ୍ଥାନମାନ ଓଡ଼ିଶାର ଇନସ୍ପେକ୍‌ଟର ସାହେବଙ୍କୁ ଜିମା କରାଯାଉ। ଆମ୍ଭେମାନେ ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ମାନ୍ୟବର ରେଭନସା ସାହେବ ମହୋଦୟଙ୍କଠାରେ ପ୍ରାର୍ଥନା କରୁ ଅଛୁଁ ଯେ ଉକ୍ତ ମହୋଦୟ ଆପଣାର ଅଧିକାରସ୍ଥ ଗଡ଼ଜାତମାନଙ୍କରେ ଥିବା ସ୍କୁଲମାନ ତାହାଙ୍କ ଅଧୀନରେ ରଖାଇ ଦେଉନ୍ତୁ।

*ଭା୭ଗ,ସଂ୭ଖ୍ୟା , ୧୬/୧୧/୧୮୭୪*

# ୧୮୭୫

## ପୁସ୍ତକ ସମାଲୋଚନା

**ହିତପାଠ ।** ପୁରୀର ଭୂତପୂର୍ବ ଡେଃ ଇନ୍‌ସ୍ପେକ୍ଟର ଶ୍ରୀଯୁକ୍ତ ବାବୁ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ ଦ୍ୱାରା ଗଦ୍ୟ ଓ ପଦ୍ୟରେ ବିରଚିତ, କଟକ ପ୍ରିଣ୍ଟିଂକୋମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ । ଗ୍ରନ୍ଥକର୍ତ୍ତା ଅନୁଗ୍ରହକରି ତହିଁରୁ ଖଣ୍ଡିଏ ଆମ୍ଭମାନଙ୍କୁ ଉପହାର ଦେଇଅଛନ୍ତି; ଏଣୁ ଆମ୍ଭେମାନେ ତାହାଙ୍କଠାରେ କୃତଜ୍ଞତା ସ୍ୱୀକାର କରିବୁଁ । ଏହି ପୁସ୍ତକ ଖଣ୍ଡିକ କଟକର ପୁସ୍ତକ ନିର୍ବାଚନ କମୀଟିରେ ଗ୍ରାହ୍ୟ ହୋଇଥିବାରୁ ତାହା ଗତବର୍ଷରେ ବିଦ୍ୟାଳୟରେ ପାଠ୍ୟପୁସ୍ତକ ବୋଲି ନିର୍ଦ୍ଦେଶିତ ହୋଇଥିଲା; ମାତ୍ର ପୁସ୍ତକର ମୁଦ୍ରାଙ୍କନ କାର୍ଯ୍ୟ ଶେଷ ହୋଇ ନଥିବାରୁ ତାହା ଗତବର୍ଷର ବିଦ୍ୟାଳୟମାନଙ୍କରେ ଚଳିପାରିଲା ନାହିଁ । ଏହି ବର୍ଷରେ ଚଳିବାର ଆମ୍ଭେମାନେ ଆଶାକରୁଁ । ଗ୍ରନ୍ଥକର୍ତ୍ତା ବିଜ୍ଞାପନରେ ଲେଖିଅଛନ୍ତି ଯେ, "ଏହିଖଣ୍ଡି ପ୍ରଥମ ଭାଗ ଥିବାରୁ ଏଥିରେ ଯେତେଦୂର ସମ୍ଭବ ସରଳଶବ୍ଦ ବ୍ୟବହାର କରିଅଛୁଁ । ବାସ୍ତବରେ ସେ ତାହା କରିଅଛନ୍ତି । ଆମ୍ଭେମାନେ ସେହି ପୁସ୍ତକଖଣ୍ଡିକ ପଢ଼ି ବଡ଼ ପ୍ରୀତହେଲୁଁ; ମାତ୍ର ଆମ୍ଭମାନଙ୍କ ବିବେଚନାରେ ପଦ୍ୟ ଭାଗ ନ ଥିଲେ ଉତ୍ତମ ହୋଇଥାନ୍ତା । ବିଜ୍ଞାପନର ଭଙ୍ଗୀରୁ ଯଣାଯାଏ ଯେ, ଗ୍ରନ୍ଥକାର ହିତପାଠର ଦ୍ୱିତୀୟଭାଗ ପ୍ରକାଶ କରିବେ । ତାହାହେଲେ ବଡ଼ ଚିକ୍‌କଣ ହେବ । ସମ୍ପ୍ରତି ଓଡ଼ିଶ୍ୟା ବିଦ୍ୟାଳୟମାନ ଏହିଭଳି ପୁସ୍ତକ ପାଇବାର ଆଶାକରେ । ଗୋବିନ୍ଦ ବାବୁଙ୍କ ଦ୍ୱାରା ସେହି ଆଶା କେତେକ ପରିମାଣରେ ପୂର୍ଣ୍ଣ ହେବ । ହିତପାଠ ଖଣ୍ଡିକ ବୋଧୋଦୟ ଉପରେ ପାଠ୍ୟପୁସ୍ତକ ବୋଲି ଆମ୍ଭେମାନେ ବିବେଚନା କରୁଁ ।

ବଡ଼ ଦୁଃଖର ବିଷୟ ଯେ, ଗ୍ରନ୍ଥକାର ସାମାନ୍ୟ ଅପରାଧରେ ଅପଦସ୍ଥ ହୋଇଅଛନ୍ତି । ଯେବେ ସେ ସ୍ୱପଦରେ ଥାନ୍ତେ ତେବେ ଉତ୍କଳର ବିଦ୍ୟାଳୟମାନ ତାହାଙ୍କଠାରୁ ଆହୁରି ଉପକାର ପାଆନ୍ତେ ସନ୍ଦେହନାହିଁ । ଯାହାହେଉ ଗୁଣଗ୍ରାହୀ ଢେଙ୍କାନାଳର ମହାରାଜା ତାହାଙ୍କୁ ଆପଣା ଗଡ଼ରେ ଗୋଟିଏ ଭଲପଦ ଦେଇଅଛନ୍ତି । ଏହା ଅତ୍ୟନ୍ତ ଆନନ୍ଦର ବିଷୟ ଅଟଇ । ଏଣୁ ଆମ୍ଭେମାନେ ଢେଙ୍କାନାଳର ମହାରାଜାଙ୍କୁ ଅଶେଷ ଧନ୍ୟବାଦ ପ୍ରଦାନ କରୁଅଛୁଁ ।

*ଭା୭ଗ,ସଂ୧୦ଖ୍ୟା,୧/୧/୧୮୭୫*

## ଓଡ଼ିଶ୍ୟାର ଗ୍ରାମ୍ୟପାଠଶାଳା ଭିନ୍ନ ଅନ୍ୟାନ୍ୟ ପରୀକ୍ଷାର ବିଶେଷ ବିବରଣ

୧୮୭୪ ସାଲର ମାଇନର ଓ ଦେଶୀୟ ଭାଷାର ଛାତ୍ରବୃତ୍ତି ପରୀକ୍ଷାର ଫଳ ବଡ଼ ତୁଷ୍ଟିଜନକ ଅଟେ । ୧୮୭୩ ସାଲରେ ମାଇନର ପରୀକ୍ଷାସ୍ଥଳରେ ୨୬ଜଣ ଛାତ୍ର ଉପସ୍ଥିତ ହୋଇଥିଲେ, ତହିଁ ମଧ୍ୟରୁ ୧୯ଜଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଏବର୍ଷ ସେହି ପରୀକ୍ଷାରେ ୪୧ ଜଣ ମଧ୍ୟରୁ ୩୧ ଜଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଫଳେ ପୂର୍ବବର୍ଷ ଅପେକ୍ଷା ଏବର୍ଷ ୧୫ ଜଣ ଅଧିକା ପରୀକ୍ଷାର୍ଥୀ ହୋଇ ବାରଜଣ ଅଧିକା ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଏବର୍ଷ ଯେଉଁ ଦଶଜଣ ହାରି ଯାଇଅଛନ୍ତି ସେମାନେ କେଉଁ କେଉଁ ସ୍କୁଲର ଛାତ୍ର, ତାହା ଆମ୍ଭମାନଙ୍କୁ ଜଣାନାହିଁ ; ସୁତରାଂ ତାହା ବିଶେଷି ବୋଲି ନପାରୁଁ । ଏହି ପରୀକ୍ଷାରେ କଟକ ମିଶନସ୍କୁଲ ପ୍ରଥମ ଓ ଭଦରକ ସ୍କୁଲ ଦ୍ୱିତୀୟ ହୋଇଅଛି ।

ଦେଶୀୟ ଭାଷାର ଛାତ୍ରବୃତ୍ତି ପରୀକ୍ଷା ଦେବା ନିମନ୍ତେ ୧୮୭୩ ସାଲରେ ୯୧ଜଣ ଛାତ୍ର ପରୀକ୍ଷାର୍ଥୀ ହୋଇଥିଲେ, ତହିଁ ମଧ୍ୟରୁ ୫୨ଜଣ ଛାତ୍ର ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଏବର୍ଷ ସେହି ପରୀକ୍ଷା ଦେବା ନିମନ୍ତେ

୧୧୨ଜଣ ପରୀକ୍ଷାର୍ଥୀ ହୋଇ ୧୦୮ ଜଣ ପରୀକ୍ଷାସ୍ଥଳରେ ଉପସ୍ଥିତ ହୋଇଥିଲେ, ତହିଁ ମଧ୍ୟରୁ ୮୫ଜଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି; ଫଳେ ପୂର୍ବ ବର୍ଷ ଅପେକ୍ଷା ଏବର୍ଷ ଅଧିକା ୧୬ଜଣ ଛାତ୍ର ପରୀକ୍ଷା ଦେଇ ୩୩ ଜଣ ଅଧିକା ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଏ ବର୍ଷ ଏହି ପରୀକ୍ଷାରେ ଯେଉଁ ୨୩ଜଣ ହାରି ଯାଇଅଛନ୍ତି ସେମାନେ ଯେଉଁ ସ୍କୁଲର ଛାତ୍ର ତାହା ତଳେ ପ୍ରକାଶ କଲୁଁ ।

କଟକ ଜିଲ୍ଲାରୁ ୫୬ଜଣ ଛାତ୍ର (ଏଥିମଧ୍ୟରୁ ୩ଜଣ ବାହାରର ଛାତ୍ର ଓ ଜଣେ ଶିକ୍ଷକ) ପରୀକ୍ଷା ଦେଇଥିଲେ, ତହିଁ ମଧ୍ୟରୁ ୧୨ ଜଣ ( ଏଥି ମଧ୍ୟରୁ ଜଣେ ବାହାରର ଛାତ୍ର ) ହାରିଯାଇ ଅଛନ୍ତି । ବାଲେଶ୍ୱର ଜିଲ୍ଲାରୁ ୩୨ ଜଣ ଛାତ୍ର ପରୀକ୍ଷା ଦେଇଥିଲେ, ତହିଁ ମଧ୍ୟରୁ ୯ଜଣ ହାରି ଯାଇଅଛନ୍ତି ଓ ପୁରୀ ଜିଲ୍ଲାରୁ ୨୦ ଜଣ ଛାତ୍ର ପରୀକ୍ଷା ଦେଇଥିଲେ, ଏଥି ମଧ୍ୟରୁ କେବଳ ୨ଜଣ ( ବେଗୁନିଆ ସ୍କୁଲର ଦୁହେଁ )ଛାତ୍ର ହାରିଯାଇ ଅଛନ୍ତି। ଏଥିରୁ ତିନି ଜିଲ୍ଲା ମଧ୍ୟରେ ପୁରୀ ଜିଲ୍ଲା ସରସ ହୋଇଥିବାର ପ୍ରକାଶ ପାଉଅଛି । ଯଦିଚ ଅନ୍ୟ ଦୁଇ ଜିଲ୍ଲାରୁ ଅଧିକ ଛାତ୍ର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି; ତଥାଚ ପରୀକ୍ଷାର୍ଥୀ ଛାତ୍ରଙ୍କ ସଂଖ୍ୟା ଓ ହାରିଯାଇ ଥିବା ଛାତ୍ରଙ୍କ ସଂଖ୍ୟା ତୁଳନା କଲେ ପୁରୀ ଜିଲ୍ଲାକୁ ପ୍ରଶଂସା କରିବାକୁ ହେବ, ବିଶେଷରେ ଉକ୍ତ ଜିଲ୍ଲାରୁ ଉତ୍ତୀର୍ଣ୍ଣ ୧୮ଜଣ ଛାତ୍ରଙ୍କ ମଧ୍ୟରୁ ୧୦ଜଣ ୨ୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

ଏବର୍ଷ ସମସ୍ତ ଓଡ଼ିଶା ମଧ୍ୟରେ ଆଠଗଡ଼ ସ୍କୁଲ ପ୍ରଥମ ହୋଇଅଛି । ଦୁଇବର୍ଷ ହେଲା ଏହି ବିଦ୍ୟାଳୟଟି ସ୍ଥାପିତ ହୋଇଅଛି, ଏଡ଼େ ଶୀଘ୍ର ଯେ ତହିଁରୁ ଆଶାତିରିକ୍ତ ଫଳ ମିଳିଲା ବଡ଼ ଆନନ୍ଦର ବିଷୟ ଅଟଇ । ଏଥିରୁ ଉତ୍ତମରୂପେ ପ୍ରମାଣ ମିଳୁଅଛି ଯେ, ଗଡ଼ଜାତିୟା ପିଲାମାନେ ମୋଗଲବନ୍ଦିୟା ପିଲାଙ୍କ ଅପେକ୍ଷା ବୁଦ୍ଧିରେ ଊଣା ନୁହଁନ୍ତି ; କେବଳ ଗଡ଼ଜାତର ରାଜାମାନଙ୍କ ଦୋଷରୁ ଗଡ଼ଜାତସ୍ଥ ପିଲାମାନେ ବିଦ୍ୟାଲାଭ କରିପାରୁ ନାହାଁନ୍ତି !!!

ଏ ବର୍ଷରେ କଟକ ଆଦର୍ଶ ବିଦ୍ୟାଳୟଟି ଦ୍ୱିତୀୟ ହୋଇଅଛି । ସେହି ସ୍କୁଲରୁ ୧୨ଜଣ ଛାତ୍ର ପରୀକ୍ଷା ଦେଇଥିଲେ ସେମାନଙ୍କ ମଧ୍ୟରୁ ଗୋଟିଏ ପ୍ରଥମ ଶ୍ରେଣୀରେ, ତିନୋଟି ଦ୍ୱିତୀୟ ଶ୍ରେଣୀରେ ଓ ଛଅଟି ତୃତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

## କଟକ ଜିଲା

| ସ୍କୁଲ | ବାଳକ ସଂଖ୍ୟା | ୧ମ ଶ୍ରେଣୀ | ୨ୟ ଶ୍ରେଣୀ | ୩ୟ ଶ୍ରେଣୀ | ଶୂନ୍ୟ |
|---|---|---|---|---|---|
| ୧। ଆଠଗଡ଼ | ୨ | ୧ | ୦ | ୧ | ୦ |
| ୨। କଟକ ଆଦର୍ଶ | ୧୨ | ୧ | ୩ | ୬ | ୨ |
| ୩। ଅନୁଗୋଳ ପୁରୁଣାଗଡ଼ | ୩ | ୦ | ୧ | ୨ | ୦ |
| ୪। ଅସୁରେଶ୍ୱର | ୪ | ୦ | ୧ | ୨ | ୧ |
| ୫। ମହାସିଂପୁର | ୫ | ୦ | ୨ | ୨ | ୧ |
| ୬। ଢେଙ୍କାନାଳ | ୫ | ୦ | ୦ | ୫ | ୦ |
| ୭। ପହରାଜପୁର | ୫ | ୦ | ୦ | ୪ | ୧ |
| ୮। ପଟାମୁଣ୍ଡାଇ | ୨ | ୦ | ୦ | ୨ | ୦ |
| ୯। ବାଁକୀ ସୁବର୍ଣ୍ଣପୁର | ୨ | ୦ | ୦ | ୨ | ୦ |
| ୧୦। ବାଁକୀ ଚର୍ଚ୍ଚିକା | ୧ | ୦ | ୦ | ୧ | ୦ |
| ୧୧। ତାରାକୋଟ | ୫ | ୦ | ୦ | ୩ | ୨ |
| ୧୨। କୃଷ୍ଣାନନ୍ଦପୁର | ୪ | ୦ | ୦ | ୨ | ୨ |
| ୧୩। ମହାଗ୍ରାମ | ୨ | ୦ | ୦ | ୦ | ୨ |
| ୧୪। ବାହାରର ଛାତ୍ର | ୪ | ୦ | ୦ | ୩ | ୧ |

## ପୁରୀ ଜିଲା

| | | | | | |
|---|---|---|---|---|---|
| ୧ । ସଂସ୍କୃତ ବିଦ୍ୟାଳୟ | ୫ | ୦ | ୫ | ୦ | ୦ |
| ୨ । ଉତ୍କଳ ବିଦ୍ୟାଳୟ | ୪ | ୦ | ୩ | ୧ | ୦ |
| ୩ । ଜାଆଁଲା | ୨ | ୦ | ୧ | ୧ | ୦ |
| ୪ । ଭୁବନେଶ୍ୱର | ୨ | ୦ | ୧ | ୧ | ୦ |
| ୫ । ନିମାପଡ଼ା | ୪ | ୦ | ୦ | ୪ | ୦ |
| ୬ । ଉଦ୍ଭୋ | ୧ | ୦ | ୦ | ୧ | ୦ |
| ୭ । ବେଗୁନିଆ | ୨ | ୦ | ୦ | ୦ | ୨ |

## ବାଲେଶ୍ୱର

| | | | | | |
|---|---|---|---|---|---|
| ୧ । ବାଗୁରାଇ | ୨ | ୦ | ୨ | ୦ | ୦ |
| ୨ । ବାରବାଟୀ | ୬ | ୦ | ୨ | ୪ | ୦ |
| ୩ । ସୋର | ୫ | ୦ | ୧ | ୩ | ୧ |
| ୪ । ବାଲେଶ୍ୱର ମିଶନ | ୩ | ୦ | ୦ | ୩ | ୦ |
| ୫ । ବାଁଶଡ଼ିହା | ୪ | ୦ | ୦ | ୪ | ୦ |
| ୬ । ଦେହୁଡ଼ଦା | ୧ | ୦ | ୦ | ୧ | ୦ |
| ୭ । ଦୋଳସାହି | ୪ | ୦ | ୦ | ୨ | ୨ |
| ୮ । ରେମୁଣା | ୪ | ୦ | ୦ | ୧ | ୩ |
| ୯ । ବାଲିକୁଟି | ୩ | ୦ | ୦ | ୦ | ୩ |

କଟକ ଜିଲାରେ ମହାଗ୍ରାମ, ପୁରୀରେ ବେଗୁନିଆ, ବାଲେଶ୍ୱର ଜିଲାରେ ବାଲିକୁଟି ଓ ରେମୁଣା ଏହି ଚାରି ବିଦ୍ୟାଳୟର ଫଳ ବଡ଼ ମନ୍ଦ ହୋଇଅଛି । ରେମୁଣା ସ୍କୁଲ ନାମରେ ଯଥାକଥା ଖଡ଼ି ପଡିଅଛି; ମାତ୍ର ଅନ୍ୟ ତିନି ବିଦ୍ୟାଳୟ ନାମରେ ମୂଳରୁ ଖଡ଼ୀ ପଡିନାହିଁ !!!

ସାଧାରଣ ରୂପେ ବିବେଚନା କଲେ ୧୮୭୪ ମସିହାରେ ଓଡ଼ିଶ୍ୟାର ମଧମ ଶ୍ରେଣୀ ସ୍କୁଲମାନଙ୍କ ପରୀକ୍ଷାର ଫଳ ବଡ଼ ପ୍ରୀତିକର ଅଟଇ । ଉଚ୍ଚ ଶିକ୍ଷାର ଫଳ ଯେବେ ଏହିଭଳି ହୋଇଥାନ୍ତା, ତେବେ ଓଡ଼ିଶ୍ୟାର ଆନନ୍ଦର ସୀମା ରୁହନ୍ତା ନାହିଁ । ଉଚ୍ଚ ଶିକ୍ଷାର ଫଳ ନିମନ୍ତେ ଏତେବେଳେ ଅନୁତାପ ଭିନ୍ନ ଆଉ କିଛି ନାହିଁ । ଏ ବର୍ଷ ତ ଗଲା । ୧୮୭୫ ସାଲରେ ଦୁଇ ପରୀକ୍ଷାର ଫଳ ଉତ୍ତମ ହେଉ, ଈଶ୍ୱରଙ୍କଠାରେ ଆମ୍ଭମାନଙ୍କର ଏହି ପ୍ରାର୍ଥନା ।

ଗତ ଜୁନ ମାସରେ ଓଡ଼ିଶ୍ୟାର ୪ ନର୍ମାଲ ସ୍କୁଲର ଅବଧାନ-ମାନଙ୍କର ଯେଉଁ ପରୀକ୍ଷା ହୋଇଥିଲା ସେଥିର ଫଳ ଏହି-

| ସ୍କୁଲର ନାମ | ପରୀକ୍ଷାର୍ଥୀ | ୧ମ ଶ୍ରେଣୀ | ୨ୟ ଶ୍ରେଣୀ | ଫେଲ୍ |
|---|---|---|---|---|
| କଟକ | ୨୭ | ୩ | ୧୨ | ୧୨ |
| ପୁରୀ | ୨୭ | ୧ | ୯ | ୧୭ |
| ବାଲେଶ୍ୱର | ୨୧ | ୧୧ | ୮ | ୨ |
| ଶାନ୍ତିପୁର | ୬ | ୧ | ୨ | ୩ |

*ଭାଗ ୭ ,ସଂ ୧୦ଖ୍ୟା, ୧।୧।୧୮୭୫*

## ଗଡ଼ଜାତରେ ଶିକ୍ଷା ପ୍ରସାର

ଶୁଣି ବଡ଼ ଆନନ୍ଦିତ ହେଲୁଁ ଯେ, ଗଡ଼ଜାତ ଇଲାକାର ସୁପରିଣ୍ଟେଣ୍ଡେଣ୍ଟ ମାନ୍ୟବର ଶ୍ରୀଯୁକ୍ତ ରେଭେନ୍‌ସା ସାହେବ ଗଡ଼ଜାତ ଇଲାକାରେ ସ୍କୁଲମାନ ବସାଇବା ଓ ସଡ଼କ ବନ୍ଧାଇବା ବିଷୟରେ ବଡ଼ ଉଦ୍ୟମ କରୁଅଛନ୍ତି । ବାସ୍ତବରେ ଯେ ପର୍ଯ୍ୟନ୍ତ ଗଡ଼ଜାତ ମାହାଲରେ ବିଦ୍ୟାଳୟମାନ ସ୍ଥାପିତ ହୋଇନାହିଁ, ସେ ପର୍ଯ୍ୟନ୍ତ ଏ ଦେଶର ପ୍ରକୃତ ଉନ୍ନତି ହୋଇ ପାରୁନାହିଁ; କାରଣ ଉତ୍କଳ ଦେଶର ବାରଅଣା ସୀମା ଗଡ଼ଜାତ, କେବଳ ଚାରିଅଣା ସୀମା ମୋଗଲବନ୍ଦି ଅଟେ । କେବଳ ମୋଗଲବନ୍ଦିରେ ବିଦ୍ୟାର ଉନ୍ନତି ହେଲେ ସେ ସମସ୍ତ ଓଡ଼ିଶାର ଉନ୍ନତି ହେବ ଏହା କଦାଚ ସମ୍ଭବ ହୋଇ ନପାରେ ।

*ଭା୭ଗ ,ସଂ୧୦ଖ୍ୟା, ୧।୧।୧୮୭୪*

## ଉତ୍କଳ ପୁସ୍ତକମାନଙ୍କର ସହଜରେ ମିଳିବାର ଉପାୟ

ପାଠ୍ୟପୁସ୍ତକ ମାନଙ୍କର ଅଭାବ ବିଷୟ ପୂର୍ବେ ଆମ୍ଭେମାନେ ପ୍ରକାଶ କରିଥିଲୁଁ। ଏଥିରେ ଆମ୍ଭମାନଙ୍କ ସହଯୋଗୀ ଦୀପିକା କଟକ ପ୍ରିଣ୍ଟିଂ କୋମ୍ପାନୀଙ୍କର ପକ୍ଷହୋଇ ସେଥିରେ ପ୍ରତିବାଦ କରିଥିଲେ। ଆମ୍ଭମାନଙ୍କର ବୋଲିବା ଓ ଦୀପିକାଙ୍କର ପ୍ରତିବାଦ କରିବା ଅନ୍ୟାୟ ନୋହେ। କେବଳ କଟକୀ ପୁସ୍ତକ ମାନଙ୍କର ଏଠାରେ ଜଣେ ବୁକ୍ ଏଜେଣ୍ଟ ନଥିବାରୁ ଏତେ ବାଦ ପ୍ରତିବାଦ ହୋଇଥିଲା। ଏବେ କଟକୀ ପୁସ୍ତକମାନଙ୍କର ଆଉ ଅଭାବ ହେବନାହିଁ, କଟକ ପ୍ରିଣ୍ଟିଂ କୋମ୍ପାନୀଙ୍କର ସେକ୍ରେଟେରୀ ଆମ୍ଭମାନଙ୍କୁ (ଏହି ପତ୍ରିକା ଲେଖକକୁ) ଏଠାକାର ପୁସ୍ତକ ବିକ୍ରେତା ପଦରେ ନିଯୁକ୍ତ କରି ଅଛନ୍ତି। ଆମ୍ଭେମାନେ ଅତିଶୀଘ୍ର ସ୍କୁଲର ପାଠ୍ୟପୁସ୍ତକ,ପାଞ୍ଜି ଓ ଅନ୍ୟାନ୍ୟ ପୁସ୍ତକମାନ ଅଣାଇବୁଁ। ପ୍ରିଣ୍ଟିଂ କୋମ୍ପାନୀ ଯେଉଁ ସବୁ ପୁସ୍ତକ ଆମ୍ଭମାନଙ୍କଠାକୁ ପଠାଇବେ, ତହିଁର ମାସୁଲ ଆମ୍ଭେମାନେ ଦେବୁଁ ଓ ଆମ୍ଭେମାନେ ପୁସ୍ତକ ବିକ୍ରୀ ବାବତ ଯେଉଁ ଟଙ୍କା ପଠାଇବୁଁ ତହିଁର ହୁଣ୍ଡିୟାନ ବା ରେଜିଷ୍ଟର ଖରଚ ଦେବୁଁ, ଫଳେ ଦୁଇପ୍ରକାର ଖରଚ ଦେବାକୁ ପଡ଼ିବ; ଏଥକୁ ଆମ୍ଭେମାନେ ଯାହାକୁ ଯେଉଁ ପୁସ୍ତକ ବିକିବୁଁ ତହିଁର ମାସୁଲ କ୍ରେତାମାନଙ୍କଠାରୁ ଅସୁଲ କରିବୁଁ , ନଗଦ ମୂଲ୍ୟଛଡ଼ା କାଳିଦେଇ ପାରିବୁ ନାହିଁ। ଏଥିରେ ଛାତ୍ର ଓ ଗ୍ରାହକମାନଙ୍କର ଲାଭ ଏତିକି ଯେ, ସେମାନେ ନିକଟରୁ ପୁସ୍ତକମାନ ଅନାୟାସରେ ପାଇପାରିବେ। ସେହି ମାସୁଲ ଦେଇ କଟକରୁ ପୁସ୍ତକ ଅଣାଇବାରେ ଯାହା ବିଳମ୍ବ ଓ ଅଧିକ ଖରଚ ହୁଅନ୍ତା ତାହା ଆଉ ହୁଅନ୍ତା ନାହିଁ।

*ଭା୭ଗ, ସଂ୧୨ଖ୍ୟା, ୧।୨।୧୮୭୪*

## ବାଲେଶ୍ୱର ନର୍ମାଲ ସ୍କୁଲ

ଏହି ସ୍କୁଲ ୧୮୭୩ ମଶୀହା ଅକ୍‌ଟୋବର ମାସଠାରୁ ବାଲେଶ୍ୱରରେ ସ୍ଥାପିତ ହୋଇଅଛି; ମାତ୍ର ସ୍କୁଲ ନିମନ୍ତେ ସ୍ୱତନ୍ତ୍ର ଘର ନିର୍ମାଣ ହୋଇ ନ ଥିବାରୁ ଅଧ୍ୟାପନା କାର୍ଯ୍ୟ ଇଂରାଜି ସ୍କୁଲର ଏକ କାମରାରେ ନିର୍ବାହିତ ହୋଇ ଆସୁଅଛି । ବାଲେଶ୍ୱରର ନର୍ମାଲ ସ୍କୁଲ, ତୃତୀୟ ଶେଣୀର ନର୍ମାଲ ସ୍କୁଲ ଅଟେ; ଏଥି ନିମନ୍ତେ ସରକାର ବାହାଦୁର ସେହି ସ୍କୁଲ ପାଇଁ ମାସିକ ଘରଭଡ଼ା କୋଡ଼ିଏ ଟଙ୍କା କିମ୍ୱା ଏକାବେଳେ ଗୃହ ନିର୍ମାଣ କରିବା ପାଇଁ ପନ୍ଦରବର୍ଷର ଭଡ଼ାସ୍ୱରୂପ ଟ୩୬,୦୦୦ ମଞ୍ଜୁର କରିଅଛନ୍ତି ; ଏଥକୁ ଆମ୍ଭମାନଙ୍କ ମାଜିଷ୍ଟେଟ ଶ୍ରୀଯୁତ ନର୍ମାନ ସାହେବ, ବାରିକ ମାଷ୍ଟର ସାହେବଙ୍କଠାରୁ ସ୍କୁଲ ଘରର ନକ୍‌ସା ଓ ତାହାର ଏଷ୍ଟିମେଟ ଅଣାଇ ଗୃହ ନିର୍ମାଣ କରିବାର ସ୍ଥାନ ନିରୂପଣ କରିଅଛନ୍ତି। ପାଠକମାନଙ୍କର ମନରେ ଥାଇ ପାରେ; ଆମ୍ଭେମାନେ ପ୍ରାୟ ଛମାସ ହେବ ଏ ବିଷୟ ସମ୍ବାଦ ବାହିକାରେ ପ୍ରକାଶ କରିଅଛୁଁ; କିନ୍ତୁ ଡିରେକ୍‌ଟର ସାହେବ ଉକ୍ତ ଟଙ୍କା ଖରଚ କରିବା ବିଷୟରେ ମଞ୍ଜୁରୀ ନ ଦେବାର ଅଦ୍ୟାବଧି ସ୍ୱତନ୍ତ୍ର ଗୃହ ନିର୍ମାଣ ହୋଇପାରୁ ନାହିଁ । ଶୁଣିଲୁ ମାଜିଷ୍ଟ୍ରେଟ୍ ମହୋଦୟ ଏବିଷୟ ମହିମାବର କମିଶନର ସାହେବଙ୍କୁ ଜଣାଇଅଛନ୍ତି ; ମାତ୍ର ଅବଧି କୌଣସି ମୀମାଂସା ହୋଇ ନାହିଁ । ଯେ ସ୍ଥଳେ ସରକାର ବାହାଦୁର ଟଙ୍କା ମଞ୍ଜୁର କରିଅଛନ୍ତି, ଡିରେକ୍‌ଟର ମହୋଦୟ ଯେ କି ନିମନ୍ତେ ସେହି ଟଙ୍କା ଖରଚ କରିବାର

ମଞ୍ଜୁରୀ ଦେଉ ନାହାନ୍ତି ତାହା କିଛି ବୁଝାଯାଉ ନାହିଁ । ଆମ୍ଭେମାନେ ଏଥିପାଇଁ ମାଜିଷ୍ଟ୍ରେଟ ସାହେବଙ୍କୁ ଦୋଷ ଦେଇ ନ ପାରୁଁ ; କାରଣ ସେ ମହାଶୟଙ୍କ ଯତ୍ନରେ ତ୍ରୁଟି ନାହିଁ ; କେବଳ ଉପରିସ୍ଥ କର୍ମଚାରୀମାନଙ୍କ ଔଦାସ୍ୟ ହେତୁରୁ ଏ ପର୍ଯ୍ୟନ୍ତ ଗୃହ ନିର୍ମାଣ ହୋଇପାରୁ ନାହିଁ । ଯେ ସମୟ ବହି ଯିବାର ଥିଲା ତାହା ବହି ଗଲାଣି । ଏବେ ଉପରସ୍ଥିତ କର୍ମଚାରିମାନେ ଏ ବିଷୟରେ ସମ୍ମତ ହେଉନ୍ତୁ ଏହି ଆମ୍ଭମାନଙ୍କର ପ୍ରାର୍ଥନା ।

*ଭା୭ଗ, ସଂ୧୩ଖ୍ୟା, ୧୬।୨।୧୮୭୫*

## "ଓଡ଼ିଶ୍ୟାର ଅବସ୍ଥା ଓଡ଼ିଆଭାଷା ଏବଂ ଓଡ଼ିଶାର ବନ୍ଧୁ କମିଶନର ରେଭେନ୍‌ଶା" ?

କି ସ୍ୱଦେଶୀୟ କି ବିଦେଶୀୟ ରାଜପୁରୁଷମାନେ ସ୍ୱୀକାର କରିବେ ଯେ, ୪ ।୫ ବର୍ଷ ହେଲା ଉତ୍କଳଭାଷାର କ୍ରମଶଃ ଉନ୍ନତି ହେଉଛି ମଧ ଏହି କେତେକ ବର୍ଷ ମଧରେ ଅନେକଗୁଡ଼ିଏ ପୁସ୍ତକ (ଅନୁବାଦିତ ହେଉ ବା ନବପ୍ରଣୀତ ହେଉ) ମୁଦ୍ରିତ ଓ ପ୍ରଚରିତ ହୋଇଅଛି ଏବଂ ଭଲ ଭଲ ପୁସ୍ତକ ଉତ୍କଳ ଭାଷାରେ ବାହାରିବା ନିମନ୍ତେ ସରକାର ବାହାଦୁର ୩ ହଜାର ଟଙ୍କା ପ୍ରଦାନ କରିଅଛନ୍ତି। ଦିନକୁଦିନ ଓଡ଼ିଆମାନେ ଭଲ ଭଲ ପଦ ପାଉଅଛନ୍ତି। ଓଡ଼ିଆମାନେ ଯେଉଁ ପଦ ପାଇବାର ଭାଜନ ଅଟନ୍ତି, ସେହି ପଦ ବଙ୍ଗାଲୀମାନେ ଆଉ ପାଇପାରୁ ନାହାନ୍ତି। ଏହାର ହେତୁ କିସ ? ହେତୁ କେବଳ ରାଜପୁରୁଷଙ୍କର ସୁଦୃଷ୍ଟି ଓ ତାଙ୍କର କର୍ତ୍ତବ୍ୟ କର୍ମ। ପାଠକମାନେ ସେହି ଓଡ଼ିଶ୍ୟାର ବନ୍ଧୁ ଓଡ଼ିଶାସ୍ଥିତ ପ୍ରଧାନ ରାଜପୁରୁଷଙ୍କୁ ଜାଣନ୍ତି। ସେ ମହାତ୍ମା ଓଡ଼ିଆଙ୍କ ସ୍ୱତ୍ତ୍ୱ ବଜାଏ ରଖିବା ବିଷୟରେ ସର୍ବଦା ତତ୍ପର ଅଟନ୍ତି। ସେହି ମହୋଦୟ ବର୍ତ୍ତମାନର କମିଶନର ମିଷ୍ଟର ରେଭେନ୍‌ସା। ଏ ମହୋଦୟ ଓଡ଼ିଆଙ୍କ ସ୍ୱତ୍ତ୍ୱ କାଏମ ରଖିବା ବିଷୟରେ ଯତ୍ନଶୀଳ ବୋଲି କୌଣସି କୌଣସି ଦୁର୍ବଳମନା ବଙ୍ଗାଳୀଙ୍କ ବିଷ ଦୃଷ୍ଟିରେ ପଡୁଅଛନ୍ତି। ମାତ୍ର ସୁବିବେଚକ ବଂଗାଳୀମାନେ ତାଙ୍କ କାର୍ଯ୍ୟ ପ୍ରଣାଳୀକୁ ପ୍ରଶଂସ୍ୟ ବୋଲି ସ୍ୱୀକାର କରନ୍ତି। ଯେଉଁ ଦୁର୍ବଳମନାମାନେ ତାଙ୍କ ପ୍ରତି ଦୋଷାରୋପ କରନ୍ତି, ସେମାନଙ୍କୁ ଆମ୍ଭେମାନେ ପଚାରୁଁ, ଯେବେ ନଦିଆର କମିଶନର ଅଥବା ଢାକା ଅଞ୍ଚଳର କମିଶନର ଯହିଁରେ କି ବଙ୍ଗାଳିମାନଙ୍କର ସ୍ୱତ୍ୱ ଅଛି, ସେ ଯେବେ ତାହା କୌଣସି ପଣ୍ଟିମା ଓଡ଼ିଆଙ୍କୁ ଦିଅନ୍ତି ତେବେ ବଙ୍ଗାଳିମାନେ କି ସନ୍ତୁଷ୍ଟ ହୋଇ ରହିବେ ? ସେହି କମିଶନର କର୍ତ୍ତବ୍ୟ କର୍ମ କଲେ ବୋଲି କି କେହି କହିବ ? ନା, ନା, ନା, ସମସ୍ତ ବଙ୍ଗବାସୀ ଚମ୍ପେସାପ ପରି ଗର୍ଜି ଉଠିବେ, ସମ୍ବାଦପତ୍ରମାନ ଦନ୍ତାହାତି ପରି କାହାଳି ବୁଲିବେ ମଧ ସେହି କମିଶନର କର୍ତ୍ତବ୍ୟ କର୍ମ କରୁନାହାନ୍ତି ବୋଲି ଆପେ ଆପଣାକୁ ଧିକ୍‌କାର ଦେବେ, ଆମ୍ଭେମାନେ ସେହି ସ୍ୱତ୍ତ୍ୱାପହାରୀ କମିଶନରଙ୍କ କାର୍ଯ୍ୟପ୍ରଣାଳୀକୁ ଦୋଷ ଦେବୁଁ, ବିଶୁଦ୍ଧ ରାଜନୀତି ମଧ ତାହାଙ୍କୁ ଘୃଣା କରିବ। ବାସ୍ତବରେ ଯେଉଁ ମହୋଦୟ ଯେଉଁ ବିଭାଗର କମିଶନର ଅଟନ୍ତି, ସକଳ ବିଷୟରେ ତାଙ୍କର ସେହି ବିଭାଗସ୍ଥ ଲୋକମାନଙ୍କ ସୁଖ ସ୍ୱଚ୍ଛନ୍ଦତା ପ୍ରତି ଦୃଷ୍ଟି ରଖିବା ଅବଶ୍ୟ କର୍ତ୍ତବ୍ୟ ଅଟେ। ଏ ବିଷୟରେ ଜାତି ବିଶେଷର ଲୋକ ବିଶେଷଙ୍କୁ ଦୋଷ ଦେବା ନିତ୍ୟାନ୍ତ ଅନ୍ୟାୟ ଅଟେ। ଯେ ସ୍ଥଳେ ପଦର ଉପଯୁକ୍ତ ଦେଶୀୟ ବ୍ୟକ୍ତି ନ ମିଳନ୍ତି ସେ ସ୍ଥଳେ ବିଦେଶୀୟଙ୍କୁ ପଦାଭିଷିକ୍ତ କରିବା ଉଚିତ। ଆମ୍ଭେମାନେ ଯେଉଁ କମିଶନର ମହୋଦୟଙ୍କୁ ପାଇଅଛୁଁ ତାହାଙ୍କଠାରୁ ଆହୁରି ବିଶେଷ ବିଶେଷ ଉପକାର ପାଇବାର ସମ୍ପୂର୍ଣ୍ଣ ଆଶା ଅଛି ମଧ ଜଗଦୀଶ୍ୱର ଯାହାଙ୍କୁ ତାଙ୍କର ଉତ୍ତରାଧିକାରୀ କରିବେ ସେ ଓଡ଼ିଆଙ୍କ ଦୁଃଖର ଦୁଃଖୀ ହେବେ ବୋଲି ଆଶା କରୁଁ।

ପୂର୍ବେ ବୋଲି ଅଛୁଁ ଯେ, ଦିନକୁଦିନ ଆମ୍ଭମାନଙ୍କ ମାତୃଭାଷାର ଉନ୍ନତି ହେଉଅଛି; ଯେଉଁ କାରଣରୁ ଏହାର ଉନ୍ନତି ହେଉଅଛି ତାହା ପାଠକ ମହାଶୟମାନେ ସହଜରେ ବୁଝି ପାରୁଥିବେ। ଏଥିପୂର୍ବେ ବଙ୍ଗଳା ଓ ଓଡ଼ିଆ ଦୁଇଭାଷା ସ୍କୁଲମାନଙ୍କରେ ପଠିତ ହେଉଥିଲା। ଶିକ୍ଷକମାନେ ବଙ୍ଗଭାଷା ଶିକ୍ଷା ଦେବାରେ ଯେ ପ୍ରକାର ମନଯୋଗୀ ହେଉଥିଲେ ଉତ୍କଳଭାଷା ଶିକ୍ଷା ଦେବାର ସେ ପ୍ରକାର ମନୋଯୋଗୀ ନ ଥିଲେ; ସୁତରାଂ ଓଡ଼ିଆ ଭାଷାର ଉନ୍ନତି ଦେଖାଯାଉ ନ ଥିଲା। ଏବେ ବଙ୍ଗଳାଭାଷାକୁ ଉତ୍କଳଭାଷାର ଦେହରୁ ଛଡ଼ାଇ ଦିଆଯିବାରୁ ଓଡ଼ିଆ ଭାଷା ଦେହରେ ବାଆ ଲାଗିଲା, ସୁତରାଂ ଏହାଁ ତାଳ ପାଖୁଡ଼ା ମେଲୁଅଛି; ମାତ୍ର ବଙ୍ଗଭାଷା ଅଲକ୍ଷ୍ୟ ଭାବରେ

ଏହାର କଲିମାନ ଏମନ୍ତ କାଟୁଅଛି ଯେ ଭବିଷ୍ୟତକୁ ଲାଣ୍ଡିଆ କରି ପକାଇବାର ଆମ୍ଭେମାନେ ଆଶଙ୍କା କରୁ।

ଓଡ଼ିଶ୍ୟାରେ ଏମନ୍ତ ଗୋଟିଏ ପ୍ରବାଦ ଅଛି ଯେ, ଓଡ଼ିଶାର ୩ ଜିଲ୍ଲା ମଧ୍ୟରେ ବାଲେଶ୍ୱର ଜିଲ୍ଲାର ବିଶେଷତଃ କାଁଶ ବାଁଶ ନଦୀର ଉତ୍ତରାଞ୍ଚଳର ଭାଷା ବିଶୁଦ୍ଧ ନୋହେ। ଆମ୍ଭେମାନେ ଯେବେ କି ତାହା ସମ୍ପୂର୍ଣ୍ଣରୂପେ ସ୍ୱୀକାର କରି ନ ପାରୁଁ,ତଥାପି କେତେକ ପରିମାଣରେ ସ୍ୱୀକାର କରୁଁ। ଏଠା ଲୋକଙ୍କର ଗୋଟାଏ ପ୍ରଧାନ ଦୋଷ ଏହି ଯେ, ଏମାନେ ଓକାର ସ୍ଥାନରେ ଉକାର ବ୍ୟବହାର କରନ୍ତି, ଯଥା; ଗୋଡ଼ ସ୍ଥାନରେ ଗୁଡ଼, ଗୋରୁ ସ୍ଥାନରେ ଗୁରୁ, ଗୋଟିଏ ସ୍ଥାନରେ ଗୁଟେ ଇତ୍ୟାଦି। କ୍ରିୟା ସ୍ଥଳରେ ମଧ୍ୟ ସେହିପରି ଛି ସ୍ଥାନରେ ଚୁ ବ୍ୟବହାର କରନ୍ତି, ଯଥା:- ଯାଉଛି ସ୍ଥାନରେ ଯାଉଚୁ, ଆସୁଛି ସ୍ଥାନରେ ଆସୁଚୁ ଇତ୍ୟାଦି। ପକ୍ଷାନ୍ତରେ ଆମ୍ଭେମାନେ ଏହାକୁ ବଡ଼ ଦୋଷ ବୋଲି କହି ନ ପାରୁଁ, କାରଣ ଏହି ଯେ, ଗାର୍ହସ୍ଥ୍ୟ ଭାଷାରେ ସ୍ଥାନ ବିଶେଷରେ କିଛି କିଛି ଦୋଷ ଦେଖାଯାଏ, ଯଥା:- କଟକ ଅଞ୍ଚଳରେ "ହେଇତି ଆନ ଦୁଉଚି,ବାଲେଶ୍ୱର ଅଞ୍ଚଳରେ "ହେଇ ଦୁଶୁଚୁ, (ହେଇ ଦିଶୁଛି) ଇତ୍ୟାଦି। ତଥାଚ ବାଲେଶ୍ୱର ଅଞ୍ଚଳରେ ଗାର୍ହସ୍ଥ୍ୟ ଗତ ଭାଷାରେ ଯେତେ ଦୋଷ ଦେଖାଯାଏ, କଟକ ଅଞ୍ଚଳରେ ତେତେ ଦେଖାଯାଏ ନାହିଁ।

ସେ ଯାହାହେଉ କାଁଶ ନଦୀର ଉତ୍ତରାଂଶରେ ସ୍ଥାନ ଭେଦରେ ଗାର୍ହସ୍ଥ୍ୟ ଭାଷାର ଭେଦ ଦେଖାଯାଏ,ତହିଁ ମଧ୍ୟରୁ ବାଲେଶ୍ୱର ନିଜ ନଗରର ଭାଷା ବଡ଼ ବିଚିତ୍ର ଅଟେ। ଏଠାରେ ପୁଣି ସାଇ ଗୋଟିକେ ଭାଷାର ତାରତମ୍ୟ ଅଛି; ଯଥା: - ବାରବାଟୀ, ମୋତିଗଞ୍ଜ ଓ ମାଣିଖମ୍ବ ପ୍ରଭୃତି ସାଇରେ " ଲାରାଣକୁ ଧରିଲେଇ ଆଏ, କେନେ ସେ ଗୁପୀଲାଥ ଆଁଖିକି ବାଲି ଫିଙ୍କି ଦେଲା" ଇତ୍ୟାଦି ଭାଷା ଚଳୁଅଛି। ଏମାନେ ପୁଣି ଏହି ଭାଷା ଗର୍ବରେ ପଢ଼ା ଗ୍ରାମବାସୀମାନଙ୍କୁ ଉପହାସ କରନ୍ତି। ବଡ଼ ଆନନ୍ଦର ବିଷୟ ଯେ, ଏ ପ୍ରକାର ଦୂଷିତ ଭାଷା ଶିକ୍ଷିତ ଲୋକଙ୍କ ମୁହଁରୁ ବାହାରେ ନାହିଁ, ମଧ୍ୟ ବିଖ୍ୟାତ ସୁନହଟ ସାଇରେ ତାହା ପ୍ରଚଳିତ ନାହିଁ, କିନ୍ତୁ ଦୁଃଖର ବିଷୟ ଯେ, ସେହି ସୁନହଟ ସାଇରୁ ଶିକ୍ଷିତ କେତେକ ଜଣ ଯୁବାଙ୍କ ଦ୍ୱାରା ଆଉ ଗୋଟିଏ ସଙ୍କର ଭାଷା ୩।୪ ବର୍ଷ ତଳେ ଜାତ ହୋଇ କ୍ରମେ କ୍ରମେ ଡାଳ ପାଖୁଡ଼ା ମେଲୁଅଛି। ଏତେବେଳେ ଶିକ୍ଷିତ ପ୍ରାୟ ସମସ୍ତ ଯୁବା ଓ ସ୍କୁଲରେ ପଢୁଥିବା ପିଲାମାନେ ନବଜାତ ଖେଚଡ଼ା ଭାଷାର ଅଧୀନ ହୋଇଅଛନ୍ତି। ଆମ୍ଭେମାନେ ଯେ, ଆଜି ଏହି ଦୀର୍ଘ ପ୍ରବନ୍ଧ ଲେଖିଲୁଁ 'ସୁନହଟ ସାଇରୁ ନବଜାତ ସଙ୍କର ଭାଷା ଏକମାତ୍ର ଲକ୍ଷ୍ୟ ଅଟଇ। ନବଜାତ ଭାଷାଟି ଏହି: - ଆମ୍ଭେ ଯିବୁଁ "ସେ ଓ ଯିବ"ଏହାହେଲା "ତାହା ଓ ହେବ ବା ତାଓ ହେବ" ତୁ ଯିବୁ "ମୁ ଓ ଯିମି" "ଏ ଓ ଯିବ ସେ ଓ ଯିବ" ଇତ୍ୟାଦି। ଶବ୍ଦର ପରବର୍ତ୍ତୀ ଅବ୍ୟୟମାନ ବଙ୍ଗଳା ଭାଷାରୁ ଗ୍ରହଣ କରାଯାଇଅଛି। ଏହି ସଙ୍କର ଭାଷା ଯେ କେବଳ ମୁହଁରେ ବୋଲାଯାଏ ଏମନ୍ତ ନୋହେ, କେହି କେହି ଶିକ୍ଷିତ ଯୁବା ଲେଖିବାକୁ ଆରମ୍ଭ କଲେଣି। ଆମ୍ଭେମାନେ ଉପରେ ଯେଉଁ ଗାର୍ହସ୍ଥ୍ୟ ଭାଷାର କଥାମାନ ବୋଲିଅଛୁଁ, ତାହା ମୌଖିକ ଭାଷା; ମାତ୍ର ଲିଖିତ ନୋହେ କି ଅବା ଯାଜକ ଶ୍ରେଣୀର ବ୍ରାହ୍ମଣମାନଙ୍କ ମୁହଁରୁ ତାହା ଶୁଣାଯାଏ ନାହିଁ। ନବଜାତ ଖେଚଡ଼ା ଭାଷାଟି ଶିକ୍ଷିତ ଲୋକେ ବ୍ୟବହାର କରୁଥିବାରୁ ଆମ୍ଭେମାନେ ଆଶଙ୍କା କରୁଅଛୁଁ ଯେ, "ବଙ୍ଗଭାଷା ଅଲକ୍ଷ ଭାବରେ ରହି ଉତ୍କଳ ଭାଷାର କଲିମାନ କାଟି ପକାଉଅଛି" ଇତ୍ୟାଦି।

ବଡ଼ ସୁଖର ବିଷୟ ଯେ ଅଶିକ୍ଷିତ,ପ୍ରାଚୀନ ଲୋକମାନେ ବା ସ୍ତ୍ରୀଲୋକମାନେ କି ଅବା ଅମଲା ଓ ମୋଖ୍ତାରମାନେ (ଯେଉଁ ଅମଲା ଓ ମୋଖତାର ସ୍କୁଲରେ ପଢ଼ିନାହାନ୍ତି) ନବଜାତ ଖେଚଡ଼ା ଭାଷାର ଅଧୀନ ହୋଇ ନାହାନ୍ତି। ଆମ୍ଭେମାନେ ଉପହାସ ଛଳରେ ଦୁଇଚାରିଜଣ ବନ୍ଧୁଙ୍କୁ ସେହି ଭାଷାର ଦୋଷ ଦେଖାଇଲୁଁ, ମାତ୍ର ସେହି ଉପହାସ କେବଳ ଉପହାସରେ ପରିଣତ ହେଲା; ଏଣୁ ଆମ୍ଭେମାନେ ଅଗତ୍ୟା ଉକ୍ତ ଭାଷା ବିଷୟ ପତ୍ରସ୍ଥ କଲୁଁ । ଏତେବେଳେ ଆମ୍ଭେମାନେ ହାତଯୋଡ଼ି ବେକରେ ପଟୁକା ପକାଇ, ଦାନ୍ତରେ ତୃଣ ଦେଇ ନାଗରିକ ଶିକ୍ଷିତ ମହାଶୟମାନଙ୍କୁ ପ୍ରାର୍ଥନା କରୁଅଛୁଁ ଯେ, ଆପଣମାନେ ଆପଣା ମାତୃଭାଷା ପ୍ରତି ସ୍ନେହ ଓ ମାୟା ପ୍ରକାଶକରି ସେହି ନବଜାତ ସଙ୍କର ଭାଷାକୁ ପରିତ୍ୟାଗ କରିବା ହେଉନ୍ତୁ। ଆମ୍ଭମାନଙ୍କ ମାତୃଭାଷା ବର୍ତ୍ତମାନ ପ୍ରାୟ ଦୁର୍ବଳାବସ୍ଥାରେ ଅଛି, ଏ ସମୟରେ ତହିଁରେ ଆଘାତ ଲାଗିଲେ ଶେଷରେ ବଡ଼ ବିଷମ ଘଟିବ। ଦେଖିବା

ହେଉନ୍ତୁ ଯେଉଁମାନେ ସାତସମୁଦ୍ର ପାର ହୋଇ ଆମ୍ଭମାନଙ୍କ ଦେଶକୁ ଆସିଅଛନ୍ତି ସେମାନେ ଆମ୍ଭମାନଙ୍କ ମାତୃଭାଷାର ଉନ୍ନତି ସାଧିବା ନିମନ୍ତେ ସାଧ୍ୟାନୁସାରେ ଯତ୍ନ କରୁଅଛନ୍ତି ଏମନ୍ତ ସ୍ଥଳେ ଆମ୍ଭମାନଙ୍କର କି କର୍ତ୍ତବ୍ୟ ବିବେଚନା କରିବା ହେଉନ୍ତୁ ।

*ଭା୭ଗ, ସଂ୧୫ଖ୍ୟା, ୧୬।୩।୧୮୭୫*

## ପୁସ୍ତକ ପ୍ରାପ୍ତି ଓ କୃତଜ୍ଞତା ସ୍ୱୀକାର

(୧) ଓଡ଼ିୟା ଇଂରେଜୀ ଅଭିଧାନ, କଟକ ନଗରବାସୀ ରେଭେରେଣ୍ଡ ବୃକ୍‌ସ ସାହେବଙ୍କ ଦ୍ୱାରା ରଚିତ, କଟକ ମିଶନ ପ୍ରେସରେ ମୁଦ୍ରିତ ମୂଲ୍ୟ ଟ ୨୳ ମାତ୍ର । ଗ୍ରନ୍ଥକର୍ତ୍ତା ଅନୁଗ୍ରହ କରି ସେଥିରୁ ଖଣ୍ଡିଏ ଆମ୍ଭମାନଙ୍କୁ ଦେଇଅଛନ୍ତି; ଏଥିପାଇଁ ଆମ୍ଭେମାନେ ତାଙ୍କଠାରେ କୃତଜ୍ଞତା ସ୍ୱୀକାର କରୁଁ ।

ଏହି ଅଭିଧାନର ମୂଳଶବ୍ଦ ଓଡ଼ିଆ, ପ୍ରତିଶବ୍ଦ ଇଂରେଜୀ । ଏହାର ଅବୟବ ୧୬ ପେଜୀ ଫରମାରେ ୧୭ ଫରମା ଅଟେ । ଏହାର ମୁଦ୍ରାଙ୍କନ ଓ ଜିଲଦ ବନ୍ଧାଇ କାର୍ଯ୍ୟ ଅତି ଉତ୍ତମ ଅଟେ । ଏହା ଇଂରେଜମାନଙ୍କ ପକ୍ଷରେ ପ୍ରଥମ ଓ ଦେଶୀୟମାନଙ୍କ ପକ୍ଷରେ ଦ୍ୱିତୀୟ ଉପକାରୀ ଏବଂ ସ୍କୁଲର ଛାତ୍ରମାନଙ୍କ ପକ୍ଷରେ ବିଶେଷ ପ୍ରୟୋଜନୀୟ । ଏଥିରେ ଆବଶ୍ୟକୀୟ ଶବ୍ଦମାନ ସଂଗୃହୀତ ହୋଇଅଛି । ଦୁଇବରଷ ତଳେ ଉକ୍ତ ନଗରବାସୀ ରେଭେରେଣ୍ଡ ଡବଲିଉ ମିଲର ସାହେବ ଇଂରେଜୀରୁ ଓଡ଼ିଆ ଖଣ୍ଡିଏ ଅଭିଧାନ ପ୍ରଣୟନ କରିଥିଲେ । ଏ ମହାଶୟ ଓଡ଼ିଆରୁ ଇଂରେଜୀ ଖଣ୍ଡିଏ ଅଭିଧାନ ପ୍ରଣୟନ କଲେ ।

ବହୁଦିନ ପୂର୍ବେ ମହାତ୍ମା ଶଟନ ସାହେବ (ପୁସ୍ତକ ପ୍ରକାଶ କରିବା ବିଷୟରେ) ଓଡ଼ିଶାର ମୁଖ ସ୍ୱରୂପ ହୋଇ ଅନେକଗୁଡ଼ିଏ ପୁସ୍ତକ ପ୍ରଚାର କରିଥିଲେ । ଏବେ ମିଲର ଓ ବୃକ୍‌ସ୍ ସାହେବ ମହୋଦୟମାନେ କେତେକଖଣ୍ଡ ପୁସ୍ତକ ପ୍ରଣୟନ କଲେ ଏହା ବଡ଼ ସୁଖର ବିଷୟ ଅଟେ । ପୃଥିବୀର ଅଧିକାଂଶ ସ୍ଥଳ ମିଶନରିମାନଙ୍କ ଦ୍ୱାରା ସଭ୍ୟ ହୋଇଅଛି ଓ ମିଶନରିମାନେ ଅଧିକାଂଶସ୍ଥଳରେ ପ୍ରଥମେ ମୁଦ୍ରାଯନ୍ତ୍ର ସ୍ଥାପନକରି ଦେଶର ସମୂହ ଉପକାର ସାଧନ କରିଅଛନ୍ତି ଏହା କାହାରିଠାରେ ଅବିଦିତ ନାହିଁ । ଯେବେ କି ଆଜିକାଲି ଓଡ଼ିଶ୍ୟାରେ ଅନେକଗୁଡ଼ିଏ ମୁଦ୍ରାଯନ୍ତ୍ର ଅଛି; ମାତ୍ର ମିଶନରିମାନଙ୍କ ସ୍ଥାପିତ ଯନ୍ତ୍ରାଳୟ ବୟୋବୃଦ୍ଧ ଅଟଇ ।

(୨) ତାଙ୍କ ପୁସ୍ତକ ପ୍ରଥମଖଣ୍ଡ । ମୃତ ମହାତ୍ମା ସ୍ମିଥ୍ ସାହେବଙ୍କ ସହଧର୍ମିଣୀ ଡି.ଏଫ୍. ସ୍ମିଥ୍‌ଙ୍କ ଦ୍ୱାରା ଇଂରେଜୀ ମାନସାଙ୍କ ବହିରୁ ଅନୁବାଦିତ,ମେଦିନୀପୁର ମିଶନ ପ୍ରେସରେ ମୁଦ୍ରିତ; ମୂଲ୍ୟ ଯତ୍‌ସାମାନ୍ୟ ଗ୍ରନ୍ଥକର୍ତ୍ତା ଅନୁଗ୍ରହକରି ସେଥିରୁ ଖଣ୍ଡିଏ ଆମ୍ଭମାନଙ୍କୁ ଉପହାର ଦେଇଅଛନ୍ତି; ଏଥିପାଇଁ ଆମ୍ଭେମାନେ ତାଙ୍କଠାରେ ସୁଦ୍ଧା କୃତଜ୍ଞତା ସ୍ୱୀକାର କରୁଁ ।

ଏହି ପୁସ୍ତକ ଖଣ୍ଡିକ ସାନ ସାନ ପିଲାମାନଙ୍କ ପକ୍ଷରେ ବଡ଼ ଉପକାରୀ । ଏତେବେଳେ ପ୍ରଥମ ଭାଗ ମାତ୍ର ଛାପା ହୋଇଅଛି, ତାହା ସମସ୍ତ ପ୍ରକାଶିତ ହେଲେ ଆମ୍ଭମାନଙ୍କ ଦେଶର ସ୍କୁଲ ଓ ପାଠଶାଳାର ପିଲାମାନଙ୍କର ଗୋଟିଏ ଅଭାବ ମୋଚନ ହେବ । ବର୍ଣ୍ଣିତ ପୁସ୍ତକର କେତେକ ସ୍ଥଳରେ "ଗୋଟାଏ ବା ଗୋଟିଏ" ସ୍ଥଳରେ "ଗୁଟେ" ଲେଖାଅଛି, ତାହା ସାମାନ୍ୟ ଭୁଲ ଅଟେ । ଆଶାକରୁଁ ଅନ୍ୟାନ୍ୟ ଖଣ୍ଡରେ ଯେମନ୍ତ ଏପରି ସାମାନ୍ୟ ଭୁଲ୍ ନରୁହେ ।

*ଭା୮ଗ,ସଂ୫ଖ୍ୟା, ୧।୧୦।୧୮୭୫*

## ୧୮୭୬

### "ଓଡ଼ିଶ୍ୟାରେ ଉଚ୍ଚଶିକ୍ଷାର କ୍ରମଶଃ ଉନ୍ନତି"

ଶୁଣି ଆନନ୍ଦର ସହିତ ପ୍ରକାଶ କରୁଅଛୁଁ ଯେ, ଏବର୍ଷ ଓଡ଼ିଶ୍ୟାର ଉଚ୍ଚ ଶିକ୍ଷାର ପରୀକ୍ଷାର୍ଥୀଙ୍କ ସଂଖ୍ୟା ପୂର୍ବ ୨ ବର୍ଷ ଅପେକ୍ଷା ଅଧିକ ଅଟଇ । କଟକ ହାଇସ୍କୁଲରୁ ପ୍ରବେଶିକା ଶ୍ରେଣୀରୁ ୨୦ ଜଣ ଓ.ଏଫ୍.ଏ. କ୍ଲାସ୍‌ରୁ ୫ ଜଣ ଏ ରୂପ ୨୫ ଜଣ, କଟକ ଉର୍ଦ୍ଦୁ ସ୍କୁଲରୁ ୬ ଜଣ, ପୁରୀ ସ୍କୁଲରୁ ୫ ଜଣ ଓ ବାଲେଶ୍ୱର ସ୍କୁଲରୁ ୮ ଜଣ ଏକୁନ ୪୪ ଜଣ ଛାତ୍ର ମନୋନୀତ ହୋଇଅଛନ୍ତି । ଯେବେ ତିନିଭାଗରୁ ଦୁଇଭାଗ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଅନ୍ତି, ତେବେ ଆନନ୍ଦର ସୀମା ରହିବ ନାହିଁ ।

ଏତେବେଳେ ଉଚ୍ଚଶିକ୍ଷା ନିମନ୍ତେ ଓଡ଼ିଶ୍ୟାରେ ଚାରୋଟି ସ୍କୁଲ ଅଛି; ସେଥିମଧ୍ୟରୁ ତିନୋଟି ସରକାରୀ ଜିଲ୍ଲାସ୍କୁଲ, ଅପରଟି ସାହାଯ୍ୟକୃତ । ଯେବେ କି ସାହାଯ୍ୟକୃତ ସ୍କୁଲଟିରେ ଅଳ୍ପଦିନ ତଳେ ଉଚ୍ଚଶିକ୍ଷାର କ୍ଲାସ ଫିଟିଅଛି ତଥାଚ ତାହା ଆଧୁନିକ ହେଡ୍‌ମାଷ୍ଟର ମହାଶୟଙ୍କ ଯତ୍ନରୁ ଜିଲ୍ଲା ସ୍କୁଲମାନଙ୍କ ସହିତ ଟକ୍‌କର ଦେବାକୁ ଉଦ୍ୟତ, ଏହା ଅଳ୍ପ ଆନନ୍ଦର ବିଷୟ ନୋହେ । ଗତବର୍ଷରେ ସେହି ସ୍କୁଲର ଯେତୋଟି ପିଲା ପରୀକ୍ଷାର୍ଥୀ ହୋଇଥିଲେ, କେହି କୃତକାର୍ଯ୍ୟ ହୋଇ ପାରିନାହାନ୍ତି ସତ୍ୟ; ମାତ୍ର ଏ ବର୍ଷ ଯେତୋଟି ପିଲା ମନୋନୀତ ହୋଇଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ପିଲା କୃତକାର୍ଯ୍ୟ ହୋଇ ପାରିବାର ଆମ୍ଭେମାନେ ଅନୁମାନ କରୁଅଛୁଁ ।

ସେଦିନ ଲକ୍ଷ୍ମଣନାଥର ସାହାଯ୍ୟକୃତ ସ୍କୁଲଟିରେ ଉଚ୍ଚଶିକ୍ଷାର କ୍ଲାସ ଫିଟିଅଛି; ଅନୁମାନ ଦୁଇ ତିନି ବର୍ଷ ଉତ୍ତାରେ ପ୍ରବେଶିକା ପରୀକ୍ଷା ଦେବା ନିମନ୍ତେ ସେହି ସ୍କୁଲରୁ ପିଲା ବାହାରିବେ । ସାଧାରଣଙ୍କ ଅନୁମାନରେ ଏହି ସ୍କୁଲରେ ଯେବେ କି ଅଧିକାଂଶ ମେଦିନୀପୁର ଜିଲ୍ଲାର ଛାତ୍ର ପଢ଼ିବେ ତଥାଚ ଓଡ଼ିଶ୍ୟାର ଉତ୍ତରାଂଶର ଓଡ଼ିଆ ପିଲାଙ୍କ ସଂଖ୍ୟା ସେଥିରେ ଅଧିକ ଥିବ, ଏଥିରେ ସନ୍ଦେହ ନାହିଁ ମଧ୍ୟ ନିଜ ବାଲେଶ୍ୱର ଜିଲାର ଜଳେଶ୍ୱର, ବାଲିଆପାଳ ଥାନା ଇଲାକାରୁ ଅନେକ ଛାତ୍ର ସେହି ସ୍କୁଲରେ ପଢ଼ିବେ ।

ଏହିମାନ ଦେଖି ଆମ୍ଭେମାନେ ବୋଲୁଅଛୁଁ ଯେ, ପାଞ୍ଚବର୍ଷ ପୂର୍ବେ ଦଶବର୍ଷ ମଧ୍ୟରେ ଓଡ଼ିଶାରେ ଉଚ୍ଚଶିକ୍ଷାର ଯେପରି ଉନ୍ନତି ହୋଇ ନଥିଲା ଏହି କେତେବର୍ଷ ମଧ୍ୟରେ ଅନେକ ଉନ୍ନତି ହୋଇଅଛି; କିନ୍ତୁ ମଧ୍ୟମ ଶ୍ରେଣୀ ସ୍କୁଲମାନ ଯେଉଁ ପରିମାଣରେ ଫଳ ପ୍ରଦାନ କରୁଅଛି ଉଚ୍ଚଶିକ୍ଷାର ଫଳ ତେତେ ହେଉନାହିଁ । ଉଚ୍ଚଶିକ୍ଷା ନିମନ୍ତେ ଅତି ଅଳ୍ପ ସଂଖ୍ୟକ ସ୍କୁଲ ଥିବା ତାହାର ଏକମାତ୍ର କାରଣ ବୋଲି ଆମ୍ଭେମାନେ ନିର୍ଦ୍ଦେଶ କରୁଁ । ବର୍ତ୍ତମାନ ଉଚ୍ଚଶିକ୍ଷା ନିମନ୍ତେ ଓଡ଼ିଶ୍ୟାରେ ଆଉ ଯୋଡ଼ିଏ ସ୍କୁଲ ସ୍ଥାପିତ ହେବା ଆବଶ୍ୟକ ହେଉଅଛି । ଭଦରକରେ ଯେଉଁ ମାଇନର ସ୍କୁଲଅଛି, ସେଥିରେ ମାସିକ ଅଳ୍ପଟଙ୍କା ଖରଚ ହେଉନାହିଁ, ମଧ୍ୟ ସେହି ସ୍କୁଲର ହେଡ୍‌ମାଷ୍ଟର ମହାଶୟ ଜଣେ ବି.ଏ. ଉପାଧିଧାରୀ ଅଟନ୍ତି, କେବଳ ଆଉଜଣେ ଏଲ୍.ଏ. ଉପାଧିଧାରୀ ଶିକ୍ଷକ ନିଯୁକ୍ତ ହେଲେ ଅନାୟାସରେ ସେହି ସ୍କୁଲଟି ଉଚ୍ଚଶିକ୍ଷାର ସ୍କୁଲ ହୋଇପାରିବ । ପକ୍ଷାନ୍ତରେ ଆମ୍ଭେମାନେ ବିଶ୍ୱାସ କରୁଁ, ଏତେବେଳେ ସେହି ସ୍କୁଲରେ ଯେଉଁ ସେକେଣ୍ଡମାଷ୍ଟର ମହାଶୟ ନିଯୁକ୍ତ ଅଛନ୍ତି । ତାହାଙ୍କ ଦ୍ୱାରା ଉଚ୍ଚଶିକ୍ଷାର ଦ୍ୱିତୀୟ କ୍ଲାସର ଶିକ୍ଷାକାର୍ଯ୍ୟ ଚଳିପାରିବ । କେବଳ ମାସିକ ଆଉ କୋଡ଼ିଏ ଟଙ୍କା ଅଧିକା ଖରଚ ହେଲେ ଭଦରକ ସ୍କୁଲଟି ଅନାୟାସରେ ହାୟର କ୍ଲାସ୍ ଇଂଲିଶ ସ୍କୁଲ ହୋଇ ପାରିବ ଏଥିରେ ସନ୍ଦେହ ନାହିଁ । ଆମ୍ଭେମାନେ ପ୍ରାର୍ଥନା କରୁଁ, ସେହି ସ୍କୁଲର ଶିକ୍ଷା କମିଟୀ ଏ ବିଷୟରେ ଯତ୍ନବାନ ହେଉନ୍ତୁ । ଚେଷ୍ଟାକଲେ ଖୋରଧା ସ୍କୁଲଟି ଉଚ୍ଚଶିକ୍ଷାର ସ୍କୁଲ କରାଯାଇ ପାରେ ।

*ଭା.ଦ., ସଂଖ୍ୟା, ୧।୧୧।୧୮୭୬*

# ଶିକ୍ଷା ସଂକ୍ରାନ୍ତ ରିପୋର୍ଟ

ଏବର୍ଷ ବାଲେଶ୍ୱର ଜିଲ୍ଲାର ସାଧାରଣ ଶିକ୍ଷାର ବଡ଼ ପ୍ରଶଂସା ହୋଇଅଛି । ସାଧାରଣ ଶିକ୍ଷାର ପ୍ରଧାନ ଅଙ୍ଗ ନର୍ମାଲ ସ୍କୁଲର ମଞ୍ଜୁରୀ ଟଙ୍କା ଅନେକ କମି ଯିବାରୁ କମିଶନର ମହୋଦୟ ଦୁଃଖିତ ଓ ହତାଶ ହୋଇ କହିଅଛନ୍ତି "ନର୍ମାଲ ସ୍କୁଲର ଖରଚ ବଢ଼ିବାର ଉଚିତ ଥିଲା, ବୃଦ୍ଧି ସ୍ଥଳେ ହ୍ରାସ କରାଯାଇ ଅଛି । ଏପରି ଟଙ୍କା କମାଇବାରେ ନର୍ମାଲ ସ୍କୁଲର କାର୍ଯ୍ୟର ବର୍ତ୍ତମାନ ଯେ ହାନି ହେଲା ଏମନ୍ତ ନୋହେ, ଭବିଷ୍ୟତ ନିମନ୍ତେ ସୁଦ୍ଧା ପ୍ରଭୁତ କ୍ଷତି ଜନ୍ମିଲା ।"

ଆମ୍ଭେମାନେ ଅନ୍ୟ ଦୁଇ ଜିଲ୍ଲାର ସାଧାରଣ ଶିକ୍ଷା କି ରୂପେ ଚଳୁଅଛି କହି ନପାରୁଁ; ମାତ୍ର ଅନୁମାନ ଦ୍ୱାରା ବୁଝିପାରୁ ଅଛୁଁ ଯେ, କଟକ ଓ ପୁରୀର ସାଧାରଣ ଶିକ୍ଷା ବାଲେଶ୍ୱର ଜିଲ୍ଲାର ସାଧାରଣ ଶିକ୍ଷାର ସମକକ୍ଷ ନୋହେ । ଏ ଜିଲ୍ଲାରେ ଯେଉଁ ସାଧାରଣ ଶିକ୍ଷା ହେଉଅଛି, ତାହା ଅନ୍ତଃସାର ବିଶିଷ୍ଟ । ଆମ୍ଭେମାନେ ଏଥିର କେତୋଟି କାରଣ ନିର୍ଦ୍ଦେଶ କରିଅଛୁ । ୧ମ ନର୍ମାଲ ସ୍କୁଲର ଶିକ୍ଷା ଅନୁସାରେ ଅବଧାନମାନଙ୍କର ଗାଢ଼ ପରିଶ୍ରମ । ୨ୟ ଡେଃ ଇନ୍‌ସ୍ପେକ୍ଟର ମହାଶୟଙ୍କର ସାଧାରଣ ଶିକ୍ଷା ପ୍ରତି ବିଶେଷ ଦୃଷ୍ଟି । ୩ୟ ସବ୍ ଇନ୍‌ସ୍ପେକ୍‌ଟର ମହାଶୟଙ୍କର କାର୍ଯ୍ୟଦକ୍ଷତା । ଏହାର ଉନ୍ନତିର ଆହୁରି ଗୋଟିଏ କାରଣ ଏହି ଯେ, ଏ ଜିଲ୍ଲାର ସାଧାରଣ ଶିକ୍ଷାର ଅଧ୍ୟାପକ ଓ ତତ୍ତ୍ୱାବଧାରକ କର୍ମଚାରିମାନେ ପରସ୍ପର ପରାମର୍ଶ କରି ସେଥିରେ ଉନ୍ନତିର ଚେଷ୍ଟା କରନ୍ତି, ଏହି ପରାମର୍ଶର କେନ୍ଦ୍ରୀ ଡେଃ ଇନ୍‌ସ୍ପେକ୍‌ଟର ମହାଶୟ ଅଟନ୍ତି । ଅତ୍ୟନ୍ତ ଦୁଃଖର ବିଷୟ ଯେ, ଏପରି କର୍ମଚାରୀଙ୍କର ଯାହା ପଦୋନ୍ନତି ହେଲାନାହିଁ । ସବ୍ ଡେଃ ଇନ୍‌ସ୍ପେକ୍‌ଟର ମହାଶୟ ମାନଙ୍କର ପଦୋନ୍ନତି ଦେଖି ଯେ ରୂପ ଆନନ୍ଦିତ ହେଲୁଁ, ଡେଃ ଇଃ ମହାଶୟଙ୍କର ଉନ୍ନତି ହୋଇଥିଲେ ତହୁଁ ବଳି ଆନନ୍ଦିତ ହୋଇଥାନ୍ତୁ । ଅତ୍ୟନ୍ତ ଆନନ୍ଦର ବିଷୟ ଯେ, ତାଙ୍କର ପଦୋନ୍ନତି ନୋହିଲା ବୋଲି ସେ ଭଗ୍ନୋତ୍ସାହ ହୋଇନାହାନ୍ତି । ଏହାର ଗୋଟିଏ ଉଦାହରଣ ଏହି ଯେ, ଛାତ୍ର ଓ ଅବଧାନମାନଙ୍କର ପରସ୍ପର କି ରୂପେ ଉନ୍ନତି ହେବ ଏଥିପାଇଁ ସ୍ଥାନେ ସ୍ଥାନେ ଗୋଟିଏ ଗୋଟିଏ ସେଣ୍ଟର (ମଧ୍ୟସ୍ଥଳୀ) ନିରୂପଣ କରାଇ ଅଛନ୍ତି । ଛାତ୍ର ଓ ଅବଧାନମାନେ ନିରୂପିତ ଦିନରେ ସେହି ସେହି ସ୍ଥାନରେ ଉପସ୍ଥିତ ହୋଇ ପରସ୍ପର ପିଲାମାନଙ୍କୁ ପରସ୍ପର ପରୀକ୍ଷା କରନ୍ତି । ଏହାଦ୍ୱାରା କେବଳ ପିଲାମାନଙ୍କର ଯେ ଉନ୍ନତି ହେଉଅଛି ଏମନ୍ତ ନୋହେ; ଅବଧାନମାନେ ଶିକ୍ଷିତ ହେଲେ ମଧ୍ୟ ସେମାନଙ୍କର ଜ୍ଞାନ କ୍ରମେ କ୍ରମେ ବଢୁଅଛି । ଏହା ସାଧାରଣ ଶିକ୍ଷାପ୍ରତି ତାଙ୍କର ବିଶେଷ ମାୟା ଥିବାର ଚିହ୍ନ ଅଟଇ । ଆମ୍ଭେମାନେ ତାଙ୍କର ଏହି କାର୍ଯ୍ୟ ଦେଖି ମନର ସହିତ ତାହାଙ୍କୁ ଧନ୍ୟବାଦ ଦେଉଅଛୁଁ ।

ଗଡ଼ଜାତମାନଙ୍କ ମଧ୍ୟରୁ ଢେଙ୍କାନାଳ ଓ କେଉଁଝର ଏହି ଦୁଇ ଜିଲ୍ଲାର ବଡ଼ ଉନ୍ନତି ହୋଇଅଛି; ଏଣୁ କମିଶନର ସାହେବ ଦୁଇ ଜିଲ୍ଲାର ମହାରାଜା ମାନଙ୍କର ପ୍ରଶଂସା କରିଅଛନ୍ତି । ମୟୂରଭଞ୍ଜର ରାଜା ଏ ବିଷୟରେ କିଛିମାତ୍ର ପ୍ରଶଂସା ପାଇନାହାନ୍ତି; କାରଣ ତାଙ୍କ ରାଜ୍ୟରେ ଶିକ୍ଷାର ଯେପରି ଉନ୍ନତି ହେବାର ଆଶାଥିଲା ତାହା ହେଉନାହିଁ । ନୀଳଗିରିର ରାଜା କ୍ଷୀଣମନା ଥିବାରୁ ତାଙ୍କ ରାଜ୍ୟରେ ଶିକ୍ଷାକର୍ମ ଚଳିବାର ଆଶା ନାହିଁ ।

ଏ ବର୍ଷ ହେଡ଼ମାଷ୍ଟର, ଡେଃ ଇନ୍‌ସ୍ପେକ୍‌ଟର ଓ ସବ୍ ଡେଃ ଇନ୍‌ସ୍ପେକ୍‌ଟର ମହାଶୟଙ୍କର ଉଣା ଅଧିକରେ ଉତ୍ତମ ପ୍ରଶଂସା ହୋଇଅଛି, ଯାହାର ଯେପରି ପ୍ରଶଂସା ହୋଇଅଛି ତାହା ନିମ୍ନରେ ପ୍ରକାଶ କଲୁଁ ।

| କର୍ମଚାରିମାନଙ୍କ ନାମ | ମାଜିଷ୍ଟ୍ରେଟଙ୍କ ମତ | ଜଏଣ୍ଟ ଇନ୍‌ସ୍ପେକ୍ଟରଙ୍କ ମତ |
|---|---|---|
| କଟକ ନର୍ମାଲସ୍କୁଲ ସୁପରିଣ୍ଟେଣ୍ଡେଣ୍ଟ ବାବୁ. ଦ୍ୱାରକାନାଥ ଚକ୍ରବର୍ତ୍ତୀ | | ଉତ୍କୃଷ୍ଟ କର୍ମଚାରୀ, ସେ ଯେଉଁ ପଦରେ ଅଛନ୍ତି ପଦର ଆବଶ୍ୟକୀୟ ଗୁଣମାନ ଅଛି । |

| କର୍ମଚାରିମାନଙ୍କ ନାମ | ମାଜିଷ୍ଟ୍ରେଟଙ୍କ ମତ | ଜଏଣ୍ଟ ଇନସ୍ପେକ୍ଟରଙ୍କ ମତ |
|---|---|---|
| ପୁରୀ ଜିଲ୍ଲାସ୍କୁଲର ହେଡ଼ ମାଷ୍ଟର ବାବୁ ରାମଦାସ ଚକ୍ରବର୍ତ୍ତୀ | | କାର୍ଯ୍ୟଦକ୍ଷ ଏବଂ ପରିଶ୍ରମୀ, ଏ ବର୍ଷ ତାଙ୍କ ସ୍କୁଲର ଫଳ ବଡ଼ ଉତ୍ତମ ହୋଇଅଛି । କିନ୍ତୁ ସେ ଏ ସ୍ଥାନରୁ ସ୍ଥାନାନ୍ତରିତ ହେବା ପାଇଁ ବଡ଼ ଇଚ୍ଛୁକ । ତାଙ୍କର ଏପରି ଇଚ୍ଛା, ସ୍କୁଲର ଉନ୍ନତି ପକ୍ଷରେ ବ୍ୟାଘାତଜନକ । |
| ବାଲେଶ୍ୱର ସ୍କୁଲ ହେଡ଼ ମାଷ୍ଟର ବାବୁ କୁଞ୍ଜବିହାରୀ ପାଳ | ବର୍ତ୍ତମାନର ହେଡ଼ ମାଷ୍ଟର ତାଙ୍କ ପରିଶ୍ରମ ନିମନ୍ତେ ଧନ୍ୟବାଦାର୍ହ। | ଦକ୍ଷଶିକ୍ଷକ, ଗତ ପରୀକ୍ଷାରେ ତାଙ୍କ ସ୍କୁଲର ଫଳ ଉତ୍ତମ ହୋଇଅଛି । ସେ ଛାତ୍ର ଓ ଅଧୀନସ୍ଥ ଶିକ୍ଷକମାନଙ୍କର ବିଶ୍ୱାସଭାଜନ ଅଟନ୍ତି । |
| ପୁରୀଜିଲା ସ୍କୁଲର ଡେଃ ଇନସ୍ପେକ୍ଟର | | ପରିଶ୍ରମୀ, କିନ୍ତୁ ସୁଧାରାରେ କାର୍ଯ୍ୟ କରନ୍ତି ନାହିଁ ଏବଂ ବିଦ୍ୟାଳୟ ତଦାରକ ଓ ଗସ୍ତ କରିବାରେ ବିଶୃଙ୍ଖଳା । |
| ବାବୁ ଉମାପ୍ରସାଦ ଦେ କଟକ ଜିଲ୍ଲାର ଡେଃ ଇନସ୍ପେକ୍ଟର ବାବୁ ପ୍ୟାରିମୋହନ ସେନ | ଡେଃ ଇଃ ଏବଂ ତାଙ୍କ ଅଧୀନସ୍ଥ ସବ୍ ଡେଃ ଇଃ ମାନେ ପରିଶ୍ରମ ଓ ବିବେଚନାର ସହିତ କାର୍ଯ୍ୟ କରିଅଛନ୍ତି । | ଏ ବିଭାଗର ଏ ଜଣେ ବହୁଦର୍ଶୀ କର୍ମଚାରୀ,ତାହାଙ୍କୁ ଅନେକ ସ୍କୁଲ ଦେଖିବାକୁ ହୁଏ ଏବଂ ଆପଣା ସ୍ଥିତୀରେ ମଧ ତାଙ୍କର ଅନେକ କାର୍ଯ୍ୟ । ବୁଦ୍ଧିମାନ୍ ପରିଶ୍ରମୀ ଏବଂ କାର୍ଯ୍ୟର ଶୃଙ୍ଖଳା ଜାଣନ୍ତି । |
| ବାଲେଶ୍ୱର ଜିଲ୍ଲା ଡେପୁଟି ଇଃ ବାବୁ ରାଧାନାଥ ରାୟ | ଏ କେବଳ ଜଣେ ସୁଦକ୍ଷ ଲୋକ,ଏମନ୍ତ ନୋହଇ ସେ ମଧ ବଡ଼ ପରିଶ୍ରମୀ ଓ ଉତ୍ସାହୀ, ତାଙ୍କ ଅଧୀନସ୍ଥ ସ୍କୁଲ ସମୂହର ଉତ୍ତମ ଅବସ୍ଥା ତାଙ୍କର ପ୍ରଶଂସାର କାରଣ , ଆଶାକରୁଁ ଯେ ଶୀଘ୍ର ତାଙ୍କର ଉନ୍ନତି ହେଉ । | ଆପଣା କାର୍ଯ୍ୟ ସମ୍ପାଦନ କରିବା ପକ୍ଷରେ ସେ ଯେ ପ୍ରକାର ବୁଦ୍ଧିମତ୍ତା, ବିଚକ୍ଷଣତା ଓ ଉତ୍ସାହ ପ୍ରକାଶ କରିଅଛନ୍ତି ସେଥିପାଇଁ ସେ ଅତ୍ୟନ୍ତ ପ୍ରଶଂସାର ଯୋଗ୍ୟ । |
| କଟକ ଜିଲା ସ୍କୁଲର ସଃ ଡେଃ ଇଃ ବାବୁ ଭଗବତୀଚରଣ ସେନ | ଏ ବ୍ୟକ୍ତି ବର୍ଷକଯାକ ପରିଶ୍ରମ ଓ ବିବେଚନାର ସହିତ କାର୍ଯ୍ୟକରି ଅଛନ୍ତି । | ଏ ଆପଣା କର୍ମରେ ପଟୁ । |

| କର୍ମଚାରିମାନଙ୍କ ନାମ | ମାଜିଷ୍ଟ୍ରେଟଙ୍କ ମତ | ଇଏଣ୍ଡ ଇନ୍‌ସ୍ପେକ୍ଟରଙ୍କ ମତ |
|---|---|---|
| ଏଜନ ବାବୁ ପ୍ରଭାକର ବିଦ୍ୟାରତ୍ନ | ଏଜନ ଏଜନ | ପରିଶ୍ରମୀ ଏବଂ କାର୍ଯ୍ୟରେ ତୁଷ୍ଟି ଜନ୍ମାଇଛନ୍ତି। |
| ଏଜନ ବାବୁ ପଦ୍ମନାଭ ମିଶ୍ର | ଏଜନ ଏଜନ | ଏଜନ ଏଜନ |
| ଏଜନ ବାବୁ ଭଗବତୀ ଚରଣ ଦାସ | ଏଜନ ଏଜନ | ବୁଦ୍ଧିମାନ; କିନ୍ତୁ କାର୍ଯ୍ୟ ଶିଥିଳ । |
| ପୁରୀ ଜିଲା ସ୍କୁଲର ସଃ ଡେଃ ଇଃ ବାବୁ ଅନ୍ତର୍ଯ୍ୟାମୀ ପଟ୍ଟନାୟକ | ଏଜନ ଏଜନ | ଅଳ୍ପବୟସ୍କ ଏବଂ ବୁଦ୍ଧିମାନ ଏବଂ କାର୍ଯ୍ୟରେ ଯେପରି ଯତ୍ନ କରିବା ଉଚିତ, ସେପରି କରନ୍ତି ନାହିଁ । |
| ଏଜନ ବାବୁ ଗୋପିନାଥ ମିଶ୍ର | | ବିବେଚନା ସହିତ କାର୍ଯ୍ୟ କରନ୍ତି ଓ ଯତ୍ନଶୀଳ ପ୍ରଥମତଃ ତାଙ୍କର ଗସ୍ତ କରିବା ରୀତି ବିଶୃଙ୍ଖଳା ଥିଲା ଇଦାନୀଂ ସଂଶୋଧିତ ହୋଇଅଛି । |
| ବାଲେଶ୍ୱର ସବ୍ ଡେଃ ଇଃ ବାବୁ ଦ୍ୱାରାକାନାଥ ଘୋଷ | କାର୍ଯ୍ୟରେ ତୁଷ୍ଟି ଜନ୍ମାଇ ଅଛନ୍ତି | ଆପଣା କାର୍ଯ୍ୟରେ ଇଚ୍ଛୁକ ଓ ବୁଦ୍ଧିମାନ ଏବଂ ତାଙ୍କ କାର୍ଯ୍ୟ ତୁଷ୍ଟି ଜନକ । |
| ଏଜନ ବାବୁ ଭୋଳାନାଥ ଦାସ | ଏଜନ ଏଜନ | ସର୍ବୋତ୍କୃଷ୍ଟ ସବ୍‌ଇନ୍‌ସ୍ପେକ୍ଟରମାନଙ୍କ ମଧ୍ୟରୁ ଏ ଜଣେ, ପରିଶ୍ରମୀ, ବୁଦ୍ଧିମାନ ଏବଂ ଆପଣା ଅଧିନସ୍ଥ ସ୍କୁଲମାନଙ୍କର ଯଥାର୍ଥ ମଙ୍ଗଳ କାଂକ୍ଷୀ । |
| ବାଲେଶ୍ୱର ନର୍ମାଲ ସ୍କୁଲର ହେଡ୍ ମାଷ୍ଟର ଶ୍ରୀ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ | | ସେ ଭଲରୂପେ କାମ କରନ୍ତି ଇତ୍ୟାଦି । |
| ପୁରୀ ଜିଲ୍ଲାର ଏଜନ ଏଜନ ପଣ୍ଡିତ ସଦାଶିବ ମିଶ୍ର | | ଉତ୍ତମ ସଂସ୍କୃତଜ୍ଞ ଅଟନ୍ତି । କିନ୍ତୁ ନର୍ମାଲ ସ୍କୁଲର ଶିକ୍ଷକମାନଙ୍କର ଯେଉଁ ସବୁ ଗୁଣଥିବା ଆବଶ୍ୟକ ସେଥିମଧ୍ୟରୁ ତାଙ୍କର ଅନେକ ଅଭାବ ଅଛି । |

*ଭାଗ, ସଂଖ୍ୟା, ୧/୧୧/୧୮୭୬*

# ୧୮୭୮

## କେତୋଟି ଉତ୍ତର

ମାନ୍ୟବର ଶ୍ରୀଯୁକ୍ତ ସଂବାଦବାହିକା ସମ୍ପାଦକ ମହାଶୟ ସମୀପେଷୁ।

ମହାଶୟ !

ଆପଣଙ୍କ ୧୦ ତାରିଖର ସମ୍ବାଦବାହିକା କାଲି ମୋ ଦୃଷ୍ଟିରେ ପଡ଼ିଲା। ସେଥିରୁ "ସମାଲୋଚନାର ସମାଲୋଚନା ନାମକ ପ୍ରେରିତ ପତ୍ରଖଣ୍ଡି ପଢ଼ି ଦେଖିଲିଯେ, ଲେଖକ ଜଣେ ଉଷ୍ଣଶୋଣିତ ଓ ଅସ୍ଥିର ମତି ଲୋକ। ନିଜେ କିମ୍ବା ନିଜର କୌଣସି ପ୍ରିୟବନ୍ଧୁ ଖଣ୍ଡିଏ ସାଧାରଣ ପତ୍ରିକାରେ ଯେଉଁ ପତ୍ରିକାର କି ଅନେକ ପାଠକ ଅଛନ୍ତି, ସେହି ପତ୍ରିକାରେ ମନ୍ଦବୋଲି ସମାଲୋଚିତ ହେବା ବଡ଼ ଅପମାନର କଥା ଏହା ଭାଳି ଲେଖକ ରାଗରେ କଲମ ଘୋସରାଇ କେତେକ ପଂକ୍ତି ଟାଣିଅଛନ୍ତି। ବୋଧହୁଏ ସେ ଜାଣନ୍ତି ନାହିଁ ଯେ, ଥରେ ଲେଖିବା ପୂର୍ବରେ ତିନିଥର ଭାବିବାକୁ ହୁଏ। ମହାଶୟ ! ଆପଣ ସେଥି ସମ୍ବନ୍ଧରେ ବିସ୍ତାରିତ ବିବରଣ ଲେଖିବେ ବୋଲି ପ୍ରତିଶ୍ରୁତ ହୋଇଅଛନ୍ତି; ମାତ୍ର ମୁଁ କେତୋଟି କଥା କହିବା ପୂର୍ବରେ ଲେଖକଙ୍କୁ ଉପଦେଶ ଦିଏଁ ଯେ, ସେ ପ୍ରଥମରେ ନିଜ ମୁଣ୍ଡରେ ମୁନ୍ଦିଏ ଥଣ୍ଡାପାଣି ଦେଉନ୍ତୁ; ପିତ୍ତ ସାନ୍ତ୍ୱନା ହେବ।

କମଳ ଯାକ ବାଳ, ମୁଁ କଉଟାକୁ ବାଛିବି। ସେ ଯାହାହେଉ, "ସମାଲୋଚନାର ସମାଲୋଚନା" ପ୍ରଥମରୁ ଆରମ୍ଭ କରିବି। ପତ୍ର ପ୍ରେରକ ଲେଖନ୍ତି ଯେ, "ସେ ପୁସ୍ତକ (ଗୋପୀନାଥ ବଲ୍ଲଭ ନାଟକ) ବହୁକାଳ ପୂର୍ବେ ମୁଦ୍ରିତ ହୋଇଥିଲା, ବର୍ତ୍ତମାନ ତହିଁର କିଛିହିଁ ଚର୍ଚ୍ଚା ନାହିଁ। ଏ ସ୍ଥଳେ ଆପଣ ଅନ୍ୟପୁସ୍ତକ ସମ୍ପର୍କରେ ତାହାକୁ ଯେ ତୁଚ୍ଛ ଓ ନିନ୍ଦନୀୟ କରିଅଛନ୍ତି ଏହା ଅନୁଚିତ ହୋଇଅଛି।" ଲେଖକ ଗୋଟିଏ ବିଦ୍ୟାଦିଗ୍‌ଗଜ -ବିଗ୍ରରରେ ଡାନିଏଲ, ପୁସ୍ତକ ଯେବେ ବହୁକାଳ ପୂର୍ବରେ ମୁଦ୍ରିତ ହେଲା ପୁଣି ତାହାର ଚର୍ଚ୍ଚା ନ ରହିଲା, ତେବେ ସେ ପୁସ୍ତକ "ତୁଚ୍ଛ ଓ ନିନ୍ଦନୀୟ" ନ ହୋଇ ଆଉ କ'ଣ ହୋଇପାରେ ? ସାରଗର୍ଭ ଉତ୍ତମ ପୁସ୍ତକମାନ ବହୁଦିନର ପୁରୁଣା ହେଲେ ସୁଦ୍ଧା ପ୍ରାପ୍ତି ଅବସ୍ଥାରେ କେଭେ ଅନାଦର ହୁଏ ନାହିଁ। ସେକ୍ଷପିୟର, ହ୍ୟାମ୍‌ଲେଟ୍ ଓ ମ୍ୟାକ୍‌ବେଥ କେବେ ନାଟକ ଲେଖିଥିଲେ ମାତ୍ର ଆଜିଯାଏ ସେହି ନାଟକମାନଙ୍କର ଆଲୋଚନା ରହିଅଛି। କେହି ତାହାକୁ ଅନାଦର କରୁ ନାହାଁନ୍ତି ବରଞ୍ଚ ଜ୍ଞାନର ଉନ୍ନତି ସଙ୍ଗେସଙ୍ଗେ ସେଥିର ଗୌରବ ବଢୁଅଛି । କେବେଁ କାଳିଦାସ ମରିଗଲେଣି ତାଙ୍କ ଶକୁନ୍ତଳା ବିଦ୍ୟମାନ। କେବେଁ ଭବଭୂତି ମରିଗଲେଣି ତାହାଙ୍କ ଉତ୍ତର ରାମଚରିତ ରହିଅଛି। ଏହି ପୁସ୍ତକମାନ ଭାରତବର୍ଷୀୟ ସାହିତ୍ୟ ସଂସାରର ଉଜ୍ଜ୍ୱଳ ମଣିସ୍ୱରୂପ। ଏମାନଙ୍କ ଜ୍ୟୋତିଃ ଦୀର୍ଘକାଳ ଯାଏ ଅକ୍ଷତ ଭାବରେ ଜ୍ୱଳୁଥିବ। କାରଣ ଏହି ନାଟକମାନଙ୍କର ଜୀବନ ଅଛି, ପ୍ରାଣଅଛି, ଦେହଶ୍ରୀ ଅଛି। ମାତ୍ର ଆମ୍ଭମାନଙ୍କର ବଟଳତା ଲେଖକଙ୍କ ନାଟକମାନ ସୁରଞ୍ଜିତ ପୁତୁଳାପରି-ପ୍ରାଣ ନାହିଁ - ଆତ୍ମା ନାହିଁ। ଏଣୁକରି ଏସବୁ ବହୁଦିନ ତିଷ୍ଠି ପାରେ ନାହିଁ। ଏଗୁଡ଼ାକୁ ଯେବେ "ତୁଚ୍ଛ ଓ ନିନ୍ଦନୀୟ" ନ ବୋଲିବ ତେବେ ତୁଚ୍ଛ ଓ ନିନ୍ଦନୀୟ କାହାକୁ ବୋଲିବ ? ପ୍ରିୟ ଲେଖକ ! ଯଦ୍ୟପି ଏହି ନାଟକମାନଙ୍କୁ ଆଦର କରିବାକୁ ଇଚ୍ଛାହୁଏ ତେବେ ଅସଭ୍ୟାବସ୍ଥାକୁ ନେଉଟି ଯାଅ।

ମହାଶୟ, ଆପଣ ଲେଖିଥିଲେ ଯେ, "ଓଡ଼ିଶ୍ୟାର ସମସ୍ତ ଅଞ୍ଚଳର ଗାର୍ହସ୍ଥ୍ୟଭାଷା ସନ୍ନିବେଶିତ କରି ନାଟକ ଲେଖିଲେ ତାହା କଥଞ୍ଚିତ ନାଟକ ନାମ ବହନ କରିପାରେ। ଏହା ସତ୍ୟ ଅଟେ। ମାତ୍ର ପତ୍ରପ୍ରେରକ ସେଥିରେ ସନ୍ଦିଗ୍ଧ ହୋଇ ପ୍ରଶ୍ନ କରନ୍ତି ଯେ (୧) ନାଟକର ଲକ୍ଷଣମାନ କଣ ? ସେ କି ଲକ୍ଷଣମାନ ଜାଣନ୍ତି ନାହିଁ ?

ହୁଏତ ସେ ପିଲାମଣିଷ । ଏଣୁ ନାଟକର କେତେକ ଲକ୍ଷଣ ଲେଖିବାକୁ ଗଲି ।

ନାଟକକୁ ଅନ୍ୟ କଥାରେ ଦୃଶ୍ୟକାବ୍ୟ (Drama) କହନ୍ତି । କାବ୍ୟରେ ଯେଉଁ ଯେଉଁ ଗୁଣଥାଏ ସେଥିରେ ମଧ ସେହି ସେହି ଗୁଣଥାଏ । ପ୍ରଭେଦ ଏତିକି ଯେ,ଏହା ରଙ୍ଗଭୂମିରେ ନାଟକମାନଙ୍କ ଦ୍ଵାରା ଅଭିନୀତ ହୋଇପାରେ । ଏହି ନାଟକର ପ୍ରଧାନ ଉଦ୍ଦେଶ୍ୟ; ଏଥିଲାଗି ନାଟକର ନାମ ଦୃଶ୍ୟକାବ୍ୟ । ପ୍ରତ୍ୟେକ ନାଟକର ପ୍ରାରମ୍ଭରେ ସୂତ୍ରଧାର ଅର୍ଥାତ୍ ପ୍ରଧାନ ନଟ, ସ୍ଵୀୟ ପତ୍ନୀ ଅବା ଅନ୍ୟ ଦୁଇ ଏକ ସହଚରଙ୍କ ସାଙ୍ଗରେ ରଙ୍ଗଭୂମିରେ ପ୍ରବିଷ୍ଟ ହୋଇ ପ୍ରସଙ୍ଗ କ୍ରମରେ ନାଟକୀୟ ଇତିବୃତ୍ତ ଅବତାର୍ଣ୍ଣ କରାଇଦିଏ । ଯେଉଁ ଯେଉଁ ସ୍ଥଳରେ ଇତିବୃତ୍ତର ସ୍ଥଳ ସ୍ଥଳ ଅଂଶର ଏକପ୍ରକାର ଶେଷହୁଏ ସେହି ସେହି ସ୍ଥଳରେ ପରିଚ୍ଛେଦ କଳ୍ପିତ ହୋଇଥାଏ । ସେହି ପରିଚ୍ଛେଦର ନାମ ଅଙ୍କ । ନାଟକର ଏକଠାରୁ ଦଶ ପର୍ଯ୍ୟନ୍ତେ ଅଙ୍କ ସଂଖ୍ୟା ଦେଖିବାକୁ ମିଳେ; ନାଟକ ଆଦ୍ୟୋପ୍ରାନ୍ତ ଗଦ୍ୟରେ ରଚିତ ପୁଣି ମଝିରେ ମଝିରେ ପଦ୍ୟଥାଏ । ଆଦିଠାରୁ ଅନ୍ତ ପର୍ଯ୍ୟନ୍ତ ଏକପ୍ରକାର ରଚନା ଦେଖାଯାଏ ନାହିଁ । ବ୍ୟକ୍ତିବିଶେଷର ବକ୍ତବ୍ୟ ଭେଦରେ ରଚନା ବିଭିନ୍ନ ହୋଇଥାଏ । ରାଜା, ମନ୍ତ୍ରୀ, ଋଷି, ପଣ୍ଡିତ ଓ ନାୟକ ପ୍ରଭୃତି ପ୍ରଧାନ ପୁରୁଷମାନେ ସାଧାରଣତଃ ଉତ୍ତମ ଭାଷାରେ କଥାବାର୍ତ୍ତା କହିଥାନ୍ତି; ସାମାନ୍ୟ ସ୍ତ୍ରୀ, ବାଳକ ଓ ସାଧାରଣ ଜନଗଣ ଗ୍ରାମ୍ୟ ଭାଷାରେ କଥାବାର୍ତ୍ତା କହିଥାନ୍ତି ପୁଣି ଅଭିଜ୍ଞ ମହିଳାମାନେ ଉତ୍ତମ ଭାଷାରେ ଆଳାପ କରନ୍ତି । ଏହି ସକଳ ନାଟକର ଲକ୍ଷଣମାନ । ଏହା ସଂସ୍କୃତ ଆଳଙ୍କାରିକ ମାନଙ୍କର ମତ । ଲେଖକ ବେଳେ ଉତ୍ତର ରାମଚରିତ ପଢ଼ିଲେ ତାହା ଜାଣି ପାରିବେ । ପତ୍ରପ୍ରେରକ ପ୍ରଶ୍ନ କରିଅଛନ୍ତି, (୨) ଗୋପୀନାଥ ବଲ୍ଲଭ ନାଟକରେ ସେ ଲକ୍ଷଣମାନ କିଛି ଅଛି କି ନା ? ମୁଁ ଉତ୍ତର ସ୍ଥଳରେ କହିପାରେ ଯେ, ସେହି ନାଟକରେ ବଟତଲା ନାଟକର ଅନେକ ଗୁଣ ଅଛି; ମାତ୍ର ପ୍ରକୃତ ନାଟକର ଗୁଣ ଟିକିଏ ଅଧେ ଥିଲେ ଥାଇପାରେ ଦୋଷମାନ ସେହି ଗୁଣ ଟିକକକୁ ଢାଙ୍କି ପକାଇଅଛି । ନାଟକର ସମସ୍ତ ଗୁଣମାନ ନାଟକରେ ନଥିଲେ ତାହା ସର୍ବାଙ୍ଗ ସମ୍ପନ୍ନ ନାଟକ ନୋହେ । ନାଟକ ଲେଖିବାର ଶକ୍ତି ବିଧାତା ପ୍ରଦତ୍ତ । ଏଣୁତେଣୁ ଲେଖିଲେ କେବଳ ହାସ୍ୟାସ୍ପଦ ହେବାକୁ ହୁଏ । ଜ୍ଞାନଭୂମି ଇଂଲଣ୍ଡରେ ସେକ୍ଷପୀୟରଙ୍କ ମରଣବାଦ ଚର୍ଲସ ଡିକ୍‌ନସ ଛଡ଼ା ପ୍ରାୟ ଆଉ କାହାରିଠାରେ ଉକ୍ତ ଶକ୍ତି ଦେଖାଯାଏ ନାହିଁ । ବାବାଜି ନାଟକପରି ସେଠାରେ ବହୁତ ନାଟକ ଅଛି; ମାତ୍ର ମନୁଷ୍ୟ ବୃନ୍ଦଙ୍କଠାରେ "ନା-ଟକ, ନା-ମିଷ୍ଟ" ବୋଲି ପରିଗଣିତ ହୁଏ । ବଙ୍ଗଳାରେ ଦୀନବନ୍ଧୁ ବାବୁଙ୍କ ନାଟକ ଛଡ଼ା ପ୍ରାୟ ଆଉ ଆଉ ନାଟକମାନ ବାବାଜୀ ନାଟକର ଦୋଷପ୍ରାପ୍ତ ।

ମହାଶୟ ! ଆପଣ ବାବାଜି ନାଟକକୁ ନୂତନ ଫଳ ଇଷ୍ଟଦେବତାଙ୍କୁ ଦେବା ସ୍ଵରୂପ ପାଠକଙ୍କ ହସ୍ତରେ ସମର୍ପଣ କରିଅଛନ୍ତି । ଏହା ଦେଖି ପତ୍ର ପ୍ରେରକ ବଡ଼ ଗୋଳକ ଧନ୍ଦାରେ ପଡ଼ିଅଛନ୍ତି, ସେ ମନେ କରିଅଛନ୍ତି ଯେଉଁ ଫଳ ଦେବତାଙ୍କୁ ଦିଆଯାଏ, ତାହା ଉତ୍ତମ ଓ ସୁଦ୍ଧ ଅଟେ । ମାତ୍ର ତାହା ସବୁସ୍ଥଳରେ ଖଟେନାହିଁ, ଆମ୍ଭେମାନେ ଭେଣ୍ଡିଟାଏ କି ଜହ୍ନିଟାଏ ଇଷ୍ଟଦେବତାଙ୍କୁ ଦେଉଁ; ତାହା ବୋଲି ସେହି ଫଳ ସସାର ଓ ଉତ୍ତମ ନୋହେ । ଅମୃତଭଣ୍ଡା ବୋଲି ଯେଉଁ ଫଳ ଅଛି ତାହାକୁ ଅସୁଦ୍ଧ ଜାଣି କେହି ଦେବତାଙ୍କୁ ଦିଏ ନାହିଁ । ତାହାବୋଲି ସେ ଫଳକୁ ମନ୍ଦ ବୋଲାଯାଇ ନପାରେ । ବରଞ୍ଚ ତାହା ଅତି ଉତ୍ତମ ସାରବିଶିଷ୍ଟ ଫଳ; କେବଳ ଆଜି ଲୋକଙ୍କଠାରେ ଲେଖକ ଯେପରି ବିଚାର କରିଅଛନ୍ତି ସେହିପରି ମାଇପୀ ବିଚାର ହୋଇଥାଏ । ପତ୍ର ଲେଖକ ଯେବେ ସହଜ ଜ୍ଞାନର ମୁଣ୍ଡ ଖାଇଥାନ୍ତି ତେବେ ମିଲ କିମ୍ବା ହେମିଲଟନଙ୍କ ଶିଷ୍ୟ ହେଉନ୍ତୁ- ନ୍ୟାୟ ବିଚାର ଶିଖି ପାରିବେ ।

ଏହି ପତ୍ରଖଣ୍ଡି ବଡ଼ ଲମ୍ବାହୋଇ ଯାଉଅଛି; ଅତଏବ ଏଠି କ୍ଷାନ୍ତହେଲି । ପର ପତ୍ରରେ ବାକି ପ୍ରଶ୍ନର ଉତ୍ତର ଦିଆଯିବ ।

ବଶମ୍ବଦ

ଜଣେ ବାହିକା-ପାଠକ

*ଭା/୧୧ଘ, ସଂ୪ଖ୍ୟା, ୨୪/୧/୧୮୭୮*

## କଟକ କଲେଜ।

ଗତବର୍ଷରେ କଲେଜ କ୍ଳାସରୁ ଏଫ.ଏ. ପରୀକ୍ଷାରେ ଯୋଡ଼ିଏ ମାତ୍ର ଛାତ୍ର ଉତ୍ତୀର୍ଣ୍ଣ ହୋଇଥିଲେ, ଏ ବର୍ଷରେ ଯୋଡ଼ିଏ ମାତ୍ର ଛାତ୍ର ଉତ୍ତୀର୍ଣ୍ଣ ହୋଇଅଛନ୍ତି, ତାହା ପାଠକମାନଙ୍କଠାରେ ଅପ୍ରକାଶିତ ନାହିଁ। ବି.ଏ. କ୍ଳାସରୁ ଯେଉଁ ପାଞ୍ଚଜଣ ଛାତ୍ର ପରୀକ୍ଷାର୍ଥୀ ହୋଇଥିଲେ ସେମାନେ ସମସ୍ତେ ହାରିଯାଇ ଅଛନ୍ତି। ଦୀପିକାରୁ ଅବଗତ ହେଲୁ ଯେ ପରୀକ୍ଷାର୍ଥୀମାନେ ଅଙ୍କ ପରୀକ୍ଷାରେ ଯେଉଁ ନମ୍ବର ପାଇଥିଲେ, ସେଥିର ସର୍ବୋଚ୍ଚ ନମ୍ବର ୧୨ରୁ ଅଧିକ ନଥିଲା। ପାଠକେ ଏଥିରୁ ବିଚାର କରିବେ ଯେ ଅନ୍ୟାନ୍ୟ ଶାଖାମାନଙ୍କରେ ପରୀକ୍ଷାର୍ଥୀମାନେ କିପରି ନମ୍ବର ପାଇଥିବେ। ଏଥି ନିମନ୍ତେ ଆମ୍ଭେମାନେ ପରୀକ୍ଷାର୍ଥୀମାନଙ୍କୁ କୌଣସି ରୂପେ ଦୋଷ ଦେବୁନାହିଁ। ବରଂ ସେମାନଙ୍କୁ ପ୍ରଶଂସା ଦେଉଅଛୁ; କାରଣ ସେମାନେ ସଂସାର ସୁଖରେ ଜଳାଞ୍ଜଳି ଦେଇ ଦୁଇବର୍ଷ କାଳ କଷ୍ଟ ସହି କଲେଜରେ ପଢ଼ି କଲେଜକୁ ବଞ୍ଚାଇ ରଖିଲେ; କଲେଜର ଅଧକ୍ଷ ଓ ଅଧ୍ୟାପକମାନଙ୍କୁ ସୁଦ୍ଧା ଦୋଷ ଦେଇ ନପାରୁ; କାରଣ "ଯେତେ ଚୂନା ତେତେ ପିଠା, ଏହା ସାଧାରଣଙ୍କ ଛଟା" । ଅଧକ୍ଷ ଓ ଅଧ୍ୟାପକମାନେ ଯେବେ ଅନ୍ୟାନ୍ୟ କଲେଜର ଅଧକ୍ଷ ଓ ଅଧ୍ୟାପକମାନଙ୍କ ପରି ପୂରା ବେତନ ପାଉଥାନ୍ତେ, ତେବେ କଲେଜର ଫଳ ମନ୍ଦ ହେଲା ବୋଲି ସେମାନଙ୍କୁ ଦୋଷ ଦିଅନ୍ତୁ; ତେବେ ଏ ଦୋଷ କାହାର? ସକଳ ବିବେଚନାରେ ଜଣା ଯାଉଅଛି ଯେ ଏ ଦୋଷ ଶିଷ୍ୟ ଓ ଶିକ୍ଷକମାନଙ୍କର ନୋହେ, ସରକାର ବାହାଦୂରଙ୍କର, ସରକାର ବାହାଦୂର ଆମ୍ଭମାନଙ୍କୁ ନାଆଁକୁ ଗୋଟିଏ କଲେଜ ଦେଇ ଆମ୍ଭମାନଙ୍କ ମନରେ ଗୋଟିଏ ଦୁଃଖ ଦେଉଅଛନ୍ତି । ଏଭଳି କଲେଜ ଦେବା ଅପେକ୍ଷା କଲେଜ ନଦେବା ଉଚିତ ଥିଲା । ଆମ୍ଭେମାନେ ପ୍ରଥମେ କଲେଜ ପାଇ ଯେତେ଼ ଆନନ୍ଦିତ ହୋଇଥିଲୁଁ ବର୍ତ୍ତମାନ କଲେଜର ଫଳ ଦେଖି ସେହି ପରିମାଣରେ ଦୁଃଖିତ ହେଲୁଁ ।

*ଭା।୧୧ଗ, ସଂ୬ଖ୍ୟା, ୭।୨।୧୮୭୮*

## ଓଡ଼ିଶ୍ୟାର ୧୮୭୬ । ୭୭ ସାଲର ଶିକ୍ଷା ସଂକ୍ରାନ୍ତ
## ବାର୍ଷିକ ରିପୋର୍ଟର ମର୍ମ

ରିପୋର୍ଟ ଲିଖିତ ବର୍ଷରେ ଓଡ଼ିଶ୍ୟାରେ ବିଦ୍ୟାଳୟର ସଂଖ୍ୟା ପୂର୍ବ ବର୍ଷ ଅପେକ୍ଷା ୨୫ ଗୁଣରୁ ଅଧିକ। ଉଚ୍ଚ ଶ୍ରେଣୀର ବିଦ୍ୟାଳୟ ହରଣପୁରଣ ବାଦେ ସମାନ। ମଧ୍ୟମ ଶ୍ରେଣୀର ବିଦ୍ୟାଳୟ ୫ ଉଣା। ମଧ୍ୟବର୍ତ୍ତୀ ବିଦ୍ୟାଳୟ ଦୁଇଗୁଣ ଅଧିକ। ଗ୍ରାମ୍ୟ ପାଠଶାଳା ପୂର୍ବ ବର୍ଷରେ ୭୪୩ ଥିଲା ବର୍ଣ୍ଣିତ ବର୍ଷରେ ୧୯୯୯ ହୋଇଅଛି ଯଥା :- କଟକ ୨୬୦, ପୁରୀ ୨୮୮ ଓ ବାଲେଶ୍ୱର ୧୩୪୧, ଗତବର୍ଷ ବାଲେଶ୍ୱରରେ ୧୬୯ ପାଠଶାଳା ଥିଲା।

ସମସ୍ତ ଓଡ଼ିଶାରେ ୧୮୭୬ । ୭୭ ସାଲରେ ପାଠଶାଳା ସହିତ ବିଦ୍ୟାଳୟର ମୋଟ ସଂଖ୍ୟା ୨୧୭୦ ଓ ଛାତ୍ର ସଂଖ୍ୟା ୩୬୩୧୯ ଅଟେ; ଏଥିମଧ୍ୟରୁ ୧୫୧୦· ଜଣ ପିଲା ଇଂରେଜୀ ପଢୁ ଅଛନ୍ତି । (ଏମାନଙ୍କ ମଧ୍ୟରେ ବଡ଼ଲୋକଙ୍କ ପୁଅ କେବଳ ୭୯ ଜଣ) ଅବଶିଷ୍ଟ ମାତୃଭାଷା ଶିକ୍ଷା କରୁଅଛନ୍ତି। କଟକ ଜିଲାରେ ଲୋକସଂଖ୍ୟା ବିବେଚନାରେ ହଜାରକରା ୫ ଜଣ, ପୁରୀରେ ୮ ଜଣ ଓ ବାଲେଶ୍ୱରରେ ୨୮ ଜଣ ଶିକ୍ଷା ପାଉଅଛନ୍ତି।

XXXX XXXX XXXX XXXX

ଉଚ୍ଚଶ୍ରେଣୀର ଇଂରେଜୀ ଶିକ୍ଷା ନିମନ୍ତେ ଜଣ ପ୍ରତି ଟ୨୮୫/ଙ୍କା ମଧ୍ୟମ ଶ୍ରେଣୀର ଇଂ ଶିକ୍ଷା ନିମନ୍ତେ ଟ.୧୨୫।/ ପ୍ରତି ବାଳିକା ଟ ୧୨୫।/ପ୍ରତି ଅବଧାନ ନିମନ୍ତେ ଟ ୬୩।୮/ ଜରିବ ଓ ଡାକ୍ତରୀ ଶିକ୍ଷା ନିମନ୍ତେ ଜଣପ୍ରତି ଟ ୭୯ଙ୍କା ଗତ ବର୍ଷରେ ଖର୍ଚ୍ଚ ହୋଇଅଛି।

ଗତବର୍ଷ ଏଣ୍ଟାନ୍‌ସ ପରୀକ୍ଷାରେ କଟକରୁ ୧୫ ଜଣ, ପୁରୀରୁ ୫ ଜଣ ଓ ବାଲେଶ୍ୱରରୁ ୨ ଜଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି। ଛାତ୍ରବୃତ୍ତି ପରୀକ୍ଷାରେ ଅପେକ୍ଷାକୃତ ଅଳ୍ପଛାତ୍ର ଉତ୍ତୀର୍ଣ୍ଣ ହୋଇଅଛନ୍ତି । ପୁରୀ ଓ କଟକ ଜିଲା ଅପେକ୍ଷା ବାଲେଶ୍ୱର ଜିଲାର ଫଳ ଅପ୍ରୀତିକର। ମାଇନର ପରୀକ୍ଷାର ଫଳ ପୂର୍ବବର୍ଷ ପରି।

ଗୁରୁଟ୍ରେନିଂ ନର୍ମାଲ ସ୍କୁଲମାନଙ୍କ ମଧ୍ୟରୁ ବାଲେଶ୍ୱର ନର୍ମାଲସ୍କୁଲ ଭଲରୂପେ ଚଳୁଅଛି, ସେଥିରୁ ଅନେକ ଗୁରୁ ଉତ୍ତୀର୍ଣ୍ଣ ହେଉଅଛନ୍ତି। କଟକ ନର୍ମାଲସ୍କୁଲ ଦ୍ୱାରା ଅନେକ ଉପକାର ହେଉଅଛି, ପୁରୀ ନର୍ମାଲସ୍କୁଲ ଭଲରୂପେ ଚଳୁନାହିଁ। ସୁଖର ବିଷୟ ଯେ ଶାନ୍ତିପୁର (ଜଳେଶ୍ୱର)ର ନର୍ମାଲ ସ୍କୁଲ ଏବର୍ଷ ପ୍ରଥମେ ୩ଜଣ ଗୁରୁ ପାସ କରାଇ ଅଛି। କଟକରେ ଜରିବ ଓ ଡାକ୍ତରୀ ଶିକ୍ଷା ସ୍କୁଲ ସୁନ୍ଦର ରୂପେ ଚଳୁଅଛି ଏବଂ ତାହାଦ୍ୱାରା ଦେଶର ବିଶେଷ ଉପକାର ହେବାର ସମ୍ଭାବନା।

xxxx xxxx xxxx xxxx

ଶିକ୍ଷା ବିଭାଗର କର୍ମଚାରୀଙ୍କ ମଧ୍ୟରୁ ନିମ୍ନଲିଖିତ ବ୍ୟକ୍ତିମାନେ ବିଶେଷ ପ୍ରଶଂସା ପାଇଅଚନ୍ତି ; - ବାବୁ ଦ୍ୱାରକାନାଥ ଚକ୍ରବର୍ତ୍ତୀ,ବାବୁ ରାମଦାସ ଚକ୍ରବର୍ତ୍ତୀ, ବାବୁ ପ୍ୟାରୀମୋହନ ସେନ, ବାବୁ ରାଧାନାଥ ରାୟ,ବାବୁ ଭୋଳାନାଥ ଦାସ, ଓ ବାଲେଶ୍ୱର ନର୍ମାଲ ସ୍କୁଲର ପ୍ରଧାନ ଶିକ୍ଷକ।

ଗଡ଼ଜାତ ସ୍କୁଲମାନଙ୍କ ସମ୍ବନ୍ଧରେ କମିଶନର ସାହେବ ଲେଖିଅଛନ୍ତି ଯେ ଢେଙ୍କାନାଳ ଗଡ଼ ପ୍ରଧାନ ସ୍କୁଲ ସମସ୍ତ ଗଡ଼ଜାତ ସ୍କୁଲର ଚୂଡ଼ା ଅଟେ; ଏହି କିଲାରେ ବିଦ୍ୟାର ଚର୍ଚ୍ଚା ଅଧିକ। ମୟୁରଭଞ୍ଜର ମହାରାଜା ଆପଣା କିଲାରେ ବିଦ୍ୟାଳୟମାନ ସ୍ଥାପନ କରିଅଛନ୍ତି। କାମନଘାଟିରେ କେତୋଟି ବିଦ୍ୟାଳୟ ବସିଅଛି। ଏହାଛଡ଼ା ପାଦ୍ରି ଫିଲିପ ସାହେବଙ୍କ ଯତ୍ନରେ ଅନେକ ସାନ୍ତାଳ ଶିକ୍ଷା ପାଉଅଛନ୍ତି। କେଉଁଝରର ମହାରାଜା ମଧ୍ୟ ଆପଣା ଇଲାକାରେ ବିଦ୍ୟାଳୟ ସ୍ଥାପନ କରିଅଛନ୍ତି। ବାଙ୍କୀ ଓ ଅନଗୁଳରେ କେତେକ ବିଦ୍ୟାଳୟ ଅଛି। ସେମାନ ସୁନ୍ଦର ରୂପେ ଚଳୁନାହିଁ। ଏଥିର ଉନ୍ନତି ନିମନ୍ତେ ଚେଷ୍ଟା ହେଉଅଛି।

xxxx xxxx xxxx xxxx

*ଭା୧୧ଗ,ସଂ୭ଖ୍ୟା, ୧୪।୨।୧୮୭୮*

## ପ୍ରେରିତ ପତ୍ର

ମାନ୍ୟବର ଶ୍ରୀଯୁକ୍ତ ସଂବାଦ ବାହିକା ସମ୍ପାଦକ ମହାଶୟ ମାନ୍ୟବରେଷୁ ।

ମହାଶୟ !

ଆମ୍ଭ ପତ୍ରର ଉତ୍ତରରେ ଆପଣଙ୍କର କେହି ପାଠକଙ୍କର ପତ୍ର ଚଳିତ ମାସ ତା ୨୪ ରିଖର ବାହିକାରେ ପାଠକରି ସେଥିରେ ଅନେକ ଅସାଧୁ ଓ କଟୁଭାଷା ଦେଖି ଦୁଃଖିତ ହେଲୁଁ, ଏହି ଦୋଷରୁ ଦେଶୀୟ ସମ୍ବାଦପତ୍ରମାନ ସରକାର ଓ ଭଦ୍ର ସମାଜରେ ଆଦରଣୀୟ ହେଉ ନାହିଁ; ବରଂ ସରକାର ବିରକ୍ତହୋଇ ସେମାନଙ୍କ ମୁଖବନ୍ଧନ ସକାଶେ ବିଧାନ ସର୍ଜନା କରିବାର କଳ୍ପନା କରୁଅଛନ୍ତି। ଏ ପ୍ରସଙ୍ଗ ଆମ୍ଭେ କସ୍ମିନ୍ ସମ୍ବାଦ ପତ୍ରରୁ ଅବଗତ ହେଲୁଁ। ତଥାଚ ଆପଣଙ୍କ ପାଠକ ଏତାଦୃଶ ଦୁଷ୍ୟ ଭାଷା ବ୍ୟବହାର କରିଅଛନ୍ତି ଓ ଆପଣ ତାହା ସ୍ୱପତ୍ରିକାରେ ପ୍ରକାଶ କରିଅଛନ୍ତି ଆଶ୍ଚର୍ଯ୍ୟ ଓ ଆକ୍ଷେପର ସ୍ଥଳ ଅଟଇ।

ଆମ୍ଭେ "ଉଷ୍ଣ ଶୋଣିତ ଓ ଅସ୍ଥିରମତି ଲୋକ" ନୋହୁଁ ବରଂ ତହିଁର ଠିକ୍ ବିପରୀତ। ଆମ୍ଭର ରାଗ ଜନ୍ମି ନାହିଁ କିମ୍ବା ଜନ୍ମିବାର କିଛି କାରଣ ନାହିଁ ଏବଂ ଏ ଦୋଷ ଆମ୍ଭ ପତ୍ରରୁ ପ୍ରକାଶ ପାଉ ନାହିଁ। ତେବେ ସେଥିରେ ଭ୍ରମ ଥାଇପାରେ ଓ ତାହା ଆମ୍ଭେ ସେହି ପତ୍ରର ଶେଷଭାଗରେ ପ୍ରକାରାନ୍ତରରେ ସ୍ୱୀକାର କରିଅଛୁଁ। ଉତ୍କଳରେ ନାଟକର ନାମ ନ ଥିଲା, ବାବାଜୀ ନାଟକେ ବାହାରିବାରୁ ନାଟକର ଚର୍ଚ୍ଚା ଲାଗିଲା; କିନ୍ତୁ ନାନାଦି ମତ ଶୁଣି ଆମ୍ଭେ ସନ୍ଦେହଯୁକ୍ତ ହେଲୁଁ ଓ ଆପଣଙ୍କର ସମାଲୋଚନା ଆମ୍ଭର ସଂଶୟ ଛେଦନ ନ କରି ବୃଦ୍ଧି କଲା। ଏଣୁକରି ଆପଣଙ୍କୁ କେତେକ ପ୍ରଶ୍ନ କଲୁଁ, ତହିଁର ବିହିତ ଉତ୍ତରରେ ଆମ୍ଭର ସଂଶୟ ଛେଦନ ହୁଅନ୍ତା ଓ ଅନ୍ୟଲୋକଙ୍କର କିଛି ଭ୍ରମଥିଲେ ଭଞ୍ଜନ ହୁଅନ୍ତା ଏହି ଆଶା କରିଥିଲୁଁ। ଏ ସ୍ଥଳେ ଆପଣଙ୍କ ପାଠକ ରାଗାନ୍ୱିତ ହୋଇ ଆମ୍ଭଠାରେ ଯେ ଦୋଷାରୋପ କରିଅଛନ୍ତି ସେ ଦୋଷମାନ ତାଙ୍କଠାରେ ବିଦ୍ୟମାନ ଥିବାର ତାଙ୍କ ପତ୍ରର ଭାଷାଭଙ୍ଗିରୁ ବିଲକ୍ଷଣ ପ୍ରମାଣ ହେଉଅଛି। "ଆତ୍ମବତ୍ ମନ୍ୟତେ ଜଗତ୍" ଅତଏବ ସେ ଆମ୍ଭଙ୍କୁ ଯେ ଶୀତଳ ଜଳ ମସ୍ତକରେ

ଢାଳିବାର ଉପଦେଶ ଦେଇଅଛନ୍ତି ତାହା ସେ ନିଜେ ଅବଲମ୍ବନ କରନ୍ତୁ ଓ ତାଙ୍କ ଚିତ୍ତ ସାନ୍ତ୍ୱନା ହେବ।

ଆମ୍ଭେ ବୟସରେ "ପିଲା ମଣିଷ" ନୋହୁଁ କିନ୍ତୁ ବିଦ୍ୟାବୁଦ୍ଧି ଜ୍ଞାନରେ ପିଲା। ଆପଣଙ୍କ ପାଠକଙ୍କଠାରୁ କେତେକ ଜ୍ଞାନ ପାଇବାରୁ ଆମ୍ଭର ଜ୍ଞାନ ଯୌବନ ଆରମ୍ଭ ହେଲା। ଆଉ ଯେ ଜ୍ଞାନ ପ୍ରଦାନ କରିବାକୁ ସେ ଅଙ୍ଗୀକୃତ ହୋଇଅଛନ୍ତି, ତାହା ସତ୍ୱର ପ୍ରଦତ୍ତ କଲେ ଆମ୍ଭେ ଜ୍ଞାନ ବୃଦ୍ଧିରେ ଆପଣାର ବୟସୋପଯୁକ୍ତ ଅବସ୍ଥା ଲାଭ କରି ତାଙ୍କଠାରେ ଅତିଶୟ କୃତଜ୍ଞ ହେବୁ।

ଆମ୍ଭେ ବାବାଜୀ ନାଟକକୁ ସର୍ବାଙ୍ଗ ସୁନ୍ଦର ନାଟକ ସ୍ୱରୂପ ଘେନୁନାହୁଁ କିମ୍ବା ଏପରି ଆଶା କରାଯାଇ ନ ପାରେ। କୌଣସି ଦେଶରେ କୌଣସି ଭାଷାରେ ପ୍ରଥମତଃ ସର୍ବାଙ୍ଗ ସୁନ୍ଦର ନାଟକ ବାହାରି ନାହିଁ। ପାଠକ ମହାଶୟ ଯେ ଦୀନବନ୍ଧୁ ବାବୁଙ୍କ ନାଟକକୁ ବଙ୍ଗଳାରେ ଏକମାତ୍ର ପ୍ରକୃତ ନାଟକ ସ୍ୱରୂପ ପ୍ରଶଂସା କରିଅଛନ୍ତି ତାହାକି ବଙ୍ଗଭାଷାରେ ପ୍ରଥମ ନାଟକ ଅଟଇ ? କୌଣସି ନୂତନ କାର୍ଯ୍ୟ ଏକାବେଳକେ ସର୍ବାଙ୍ଗସୁନ୍ଦର ହୋଇ ନ ପାରେ କିମ୍ବା ହେବାର ବଡ଼ କଠିନ, ତାହା କ୍ରମେ ଉନ୍ନତି ଲାଭ କରେ। ଅତଏବ ଆପଣଙ୍କର ଆଉ ଏକ ଲେଖକ ଯେ ସେହି ପତ୍ରିକାରେ ବାଲେଶ୍ୱରର ନବ ଯାତ୍ରାଦଳ ଓ ନବ ନାଟକ ଲେଖକଙ୍କୁ ପ୍ରକାରାନ୍ତରରେ ନିର୍ଲ୍ଲଜ ବୋଲି ଲେଖିଅଛନ୍ତି ଏହାକି ଯଥାର୍ଥ ହୋଇଅଛି ? ଏହା ଲେଖିବାକୁ ତାଙ୍କୁ ଲେଶମାତ୍ର ଲଜ୍ଜା ବୋଧ ହେଲାନାହିଁ ? ଆମ୍ଭେ ତଦୃଶ ବିଦ୍ୱାନ୍ ନ ହେଲେ ମଧ ଉତ୍କଳ ଦୀପିକାଙ୍କ ସହିତ ଐକ୍ୟ ହୋଇ କହୁଁ ଯେ, ବାବାଜୀ ନାଟକ ଉତ୍କଳରେ ନାଟକର ବାଟ ଅଟେ। ସେଥିରେ ଅନେକାନେକ ହିତକଥା କୌତୁକ ଓ ମନୋହର କଥୋପକଥନ ଭଙ୍ଗୀରେ ଲେଖା ହୋଇଅଛି। ଏଣୁକରି ତାହା "ନା-ଟକ ନା-ମିଷ୍ଟ" ଏତାଦୃଶ ତୁଚ୍ଛ ଓ ନିନ୍ଦନୀୟ ହୋଇ ନପାରେ। ବୋଧକରୁଁ, ଏହି ବିବେଚନାରେ ଆପଣ ଉକ୍ତ ନାଟକ ରଚକଙ୍କୁ ପ୍ରଂଶସାକରି ଧନ୍ୟବାଦ ଦେଇଅଛନ୍ତି।

ଆପଣ ଅନୁଗ୍ରହ ପୂର୍ବକ ଏ ପତ୍ରକୁ ଆପଣଙ୍କର ମନ୍ତବ୍ୟ ସହିତ ସଂବାଦବାହିକାରେ ସ୍ଥାନ ଦାନ କଲେ ଆମ୍ଭେ ଅତି ବାଧିତ ହେବୁଁ। ବୋଧକରୁଁ, ଆପଣ ଆପଣଙ୍କ ପାଠକଙ୍କପରି ଆମ୍ଭ ପ୍ରତି ରାଗାନ୍ୱିତ ହୋଇ ନଥିବେ ସୁତରାଂ ଆମ୍ଭେ ସୁବିଚାର ଓ ସରଳ ଉତ୍ତର ପାଇବାର ଆପଣଙ୍କଠାରେ ପ୍ରତ୍ୟାଶା ରଖୁଁ। ଆପଣଙ୍କୁ ବିରକ୍ତ କରିବାର ଦୋଷ କ୍ଷମା କରିବା ହେବେ। ।ଇତି।

କଟକ
୨୮ ତାରିଖ ଯାନୁୟାରୀ
ସନ ୧୮୭୮ମସିହା

ବଶମ୍ୱଦ
"କେହି ଲେଖକ"

*ଭା।୧୧ଗ, ସଂ୬ଖ୍ୟା, ୨୪।୨।୧୮୭୮*

## ଲକ୍ଷ୍ମଣନାଥ ସ୍କୁଲ

ବର୍ଷେକରୁ ଅଧିକ ହେଲା ଲକ୍ଷ୍ମଣନାଥର ମାଇନର ସ୍କୁଲ ଉଚ୍ଚ ଶ୍ରେଣୀର ଇଂରେଜୀ ସ୍କୁଲ ହୋଇଅଛି। ପ୍ରଥମେ ଯେଉଁ ବ୍ୟକ୍ତି ହେଡ୍‌ମାଷ୍ଟର ହୋଇ ଆସିଥିଲେ ସେ ପଦ ତ୍ୟାଗକରି ଯାଇଅଛନ୍ତି । ଜଣେ ବନ୍ଧୁଙ୍କ ପତ୍ରରୁ ଅବଗତ ହୋଇ ବଡ଼ ଆନନ୍ଦିତ ହେଲୁଁ ଯେ, ବାବୁ ଚନ୍ଦ୍ରମୋହନ ଚଟୁର୍ଯ୍ୟା ନାମରେ ଆଉଜଣେ ଯୋଗ୍ୟ,ପରିଶ୍ରମୀ,ସ୍ୱଚ୍ଛଭାବ ବ୍ୟକ୍ତି ସେହି ପଦରେ ନିଯୁକ୍ତ ହୋଇଅଛନ୍ତି,ଆହୁରି ଆନନ୍ଦର କଥା ଯେ,ଚନ୍ଦ୍ରମୋହନ ବାବୁ ସ୍କୁଲ ସମୟ ଛଡ଼ା ବସାରେ ପିଲାମାନଙ୍କୁ ଶିକ୍ଷା ଦିଅନ୍ତି ; ଏଥିରୁଁ ଅନୁମାନ କରୁଅଛୁଁ ଯେ, ଚନ୍ଦ୍ରମୋହନ ବାବୁଙ୍କ ଯୋଗେ ସେହି ସ୍କୁଲଟିର ଅତିଶୀଘ୍ର ଉନ୍ନତି ହେବ।

ଲକ୍ଷ୍ମଣନାଥ ସ୍କୁଲ ନିମନ୍ତେ ଟ ୩୦ଙ୍କା ମାତ୍ର ସାହାଯ୍ୟ ଦିଆଯାଉଅଛି ଏହା ଓଡ଼ିଶ୍ୟାର ଗୋଟିଏ ଉଚ୍ଚଶ୍ରେଣୀ ସ୍କୁଲ ନିମନ୍ତେ ନିତ୍ୟାନ୍ତ ଊଣା ଓ ଶ୍ରୁତିକଟୁ ଅଟେ, ଏଥକୁ ଆମ୍ଭେମାନେ ପ୍ରାର୍ଥନା କରୁଅଛୁଁ ଯେ, ଜିଲ୍ଲାର ଶିକ୍ଷା କମିଟୀ ଏ ବିଷୟ ବେଳେ ବିବେଚନା କରିବେ ।

*ଭା।୧୧ଗ, ସଂ୧୩ଖ୍ୟା, ୨୮।୩।୧୮୭୮*

## ବିଜ୍ଞାପନ

ଆମ୍ଭମାନଙ୍କ ନିକଟରେ ପୂରା ଓଡ଼ିଆ ପାଞ୍ଜି ବିକ୍ରୟାର୍ଥ ମୌଜୁଦ ଅଛି। ଯେଉଁ ଓଡ଼ିଆମାନଙ୍କର ମାତୃଭାଷା ଓ ସ୍ୱଦେଶ ପ୍ରତି ମାୟା ଅଛି ସେମାନେ ବଙ୍ଗଳାପାଞ୍ଜି ନ କିଣି ଓଡ଼ିୟାପାଞ୍ଜି କିଣନ୍ତୁ।

ତା ୬।୩।୭୬ ଶ୍ରୀ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ

ବାଲେଶ୍ୱର ପତ୍ରିକା ସମ୍ପାଦକ

*ଭା/୧୧ଗ, ସଂ୩୨ଖ୍ୟା, ୮।୮।୧୮୭୮*

## ବିଜ୍ଞାପନ

ଆମ୍ଭମାନଙ୍କ ମାତୃଭାଷାରେ ଯେଉଁସବୁ ଅକ୍ଷର ଓ ଯୁକ୍ତାକ୍ଷର ଅଛି, ସେଥି ମଧ୍ୟରୁ କେତେକ ଅକ୍ଷରର ଟାଇପ ଅବଧି ଗଢ଼ା ହୋଇନଥିଲା। ମୁଁ ସେଥିମଧ୍ୟରୁ ଦୁଇ ଋରିପ୍ରକାର ଟାଇପ ଗଢ଼ାଇ ଅଛି। ସୁଖର ବିଷୟ ଯେ, କଟକ ମିଶନରୀ ଯନ୍ତ୍ରାଳୟ ଛଡ଼ା ସମସ୍ତ ଯନ୍ତ୍ରାଳୟରେ ସେହି ଟାଇପମାନ ବ୍ୟବହୃତ ହେଉଅଛି। ସମ୍ପ୍ରତି ଏହି ବର୍ଣ୍ଣମାନଙ୍କର ଟାଇପ୍ ଗଢ଼ାଇଅଛି।

ଯଥା :- ଙ୍କ ଞ୍ଛ ମ୍ପ ଷ୍ମ ଣ୍ଟ ଷ୍କ ଞ୍ଛ ଣ୍ଡ ଷ୍ଟ ମ୍ବ

କ୍ଷ ସ୍ପ ଞ୍ଜ ଓ ଙ୍ଖ ଜ୍ଞ

ସେହି ବର୍ଣ୍ଣମାନ ଶ୍ରୀରାମପୁର ନିବାସୀ ଅଧରଚନ୍ଦ୍ର କର୍ମକାରକଙ୍କ କାରଖାନାରେ ବିକ୍ରୟ ନିମନ୍ତେ ପ୍ରସ୍ତୁତ ଅଛି। ଭରସା କରେଁ, ଓଡ଼ିଶ୍ୟାର ଯନ୍ତ୍ରାଳୟର ଅଧିକାରିମାନେ ସେହି ବର୍ଣ୍ଣମାନ ଅଣାଇଁ ପୁସ୍ତକାଦିରେ ପ୍ରୟୋଗ କରିବେ। ଆହୁରି କେତେକ ଯୁକ୍ତାକ୍ଷର ଶୀଘ୍ର ପ୍ରସ୍ତୁତ କରାଇବି।

ଶ୍ରୀ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ

*ଭା/୧୧ଗ, ସଂ୩୨ଖ୍ୟା, ୮।୮।୧୮୭୮*

# ୧୮୮୦

## ପ୍ରେରିତ ପତ୍ର
## [ଓଡ଼ିଆ ଭାଷା ସଂପର୍କିତ ଚିଠି]

ମହାଶୟ !

ପୂର୍ବ ଶନିବାର ସଂଧ୍ୟା ୭ ଘଟିକା ସମୟରେ ତୁମ୍ଭମାନଙ୍କର ଶ୍ରଦ୍ଧେୟ ହେଡ୍‌ମାଷ୍ଟର ଶ୍ରୀଯୁକ୍ତ ବାବୁ ଦ୍ୱିଜଦାସ ଦତ୍ତ ଏମ୍.ଏ. "ଓଡ଼ିଆଭାଷା ବଂଗ ଭାଷାର ଅପଭ୍ରଂଶ ଭାଷା ନୁହେଁ" ଏହି ବିଷୟଘେନି ବଙ୍ଗଳାଭାଷାରେ ଇଂରେଜୀ ସ୍କୁଲର ଗୃହରେ ଗୋଟିଏ ବକ୍ତୃତା କରିଥିଲେ ସେ ବକ୍ତୃତା ମଧ୍ୟରେ କେତେକ ଓଡ଼ିଆ ଓ ବଙ୍ଗଳା ଶବ୍ଦ ଘେନି ତୁଳନା କରିବା ଦ୍ୱାରା ପ୍ରମାଣ କଲେ ଯେ, ବଙ୍ଗଳା ଭାଷା ଅପଭ୍ରଷ୍ଟ ହୋଇ ଓଡ଼ିଆ ଭାଷାର ସୃଷ୍ଟି ହୋଇନାହିଁ ବରଞ୍ଚ ବଙ୍ଗଳା ଭାଷା ଓଡ଼ିଆ ଭାଷା ଅପେକ୍ଷା, ସଂସ୍କୃତ ମୂଳଭାଷାର ଅଧିକ ଦୂରବର୍ତ୍ତୀ ଅଟେ ଅର୍ଥାତ୍ ବଙ୍ଗଳା ଭାଷା ଅପେକ୍ଷା, ସଂସ୍କୃତ ଭାଷା ସହିତ ଓଡ଼ିଆ ଭାଷାର ନିକଟରେ ସମ୍ବନ୍ଧ ଅଛି । ଉଦାହରଣ ସ୍ଥଳରେ ସେ କହିଲେ ଯେ, ସଂସ୍କୃତ 'କର୍ଦଳୀ' ରୁ 'କଦଳୀ' ହୋଇଅଛି; କିନ୍ତୁ ବଙ୍ଗଳାରେ 'କଲା' ଏହି ଶବ୍ଦର ସହିତ ମୂଳ ଶବ୍ଦର ଦୂର ସମ୍ବନ୍ଧ । ସଂସ୍କୃତ 'ଅସ୍ତି' କିଞ୍ଚିତ ଅଚ୍ଚ ଅପଭ୍ରଷ୍ଟ ହୋଇ ବଙ୍ଗଳାରେ ଆଛେ ହୋଇଅଛି । ଓଡ଼ିଆରେ କରନ୍ତି, ବଙ୍ଗଳାରେ କରେନ୍, ଏହି ଶବ୍ଦ ଅପେକ୍ଷା ଶୁଦ୍ଧତର କାରଣ ଏହା ସଂସ୍କୃତ 'କୁର୍ବନ୍ତି' ଏହି ଶବ୍ଦରୁ ଉତ୍ପନ୍ନ ହୋଇଅଛି । ଏହିପରି କେତେକ ଉତ୍ତମ ଉତ୍ତମ ଉଦାହରଣ ଦ୍ୱାରା । "ଓଡ଼ିଆ ଭାଷା ଯେ ଏକ ସ୍ୱତନ୍ତ୍ର ଭାଷା ବଙ୍ଗଳା ଭାଷାରୁ ଅପଭ୍ରଷ୍ଟ ହୋଇ ସୃଷ୍ଟି ହୋଇନାହିଁ" ଏହି ପକ୍ଷ ସମର୍ଥନ କରିଥିଲେ । ତଦନନ୍ତର ପୂଜ୍ୟାସ୍ପଦ ଶ୍ରୀଯୁକ୍ତ ପଣ୍ଡିତ ସଦାଶିବ ନନ୍ଦ ମହାଶୟ ଓ ଉପସ୍ଥିତ ସଭ୍ୟବୃନ୍ଦଙ୍କ ମଧ୍ୟରୁ କେହି କେହି ପ୍ରାଗୁକ୍ତ ବିଷୟରେ ମତାମତ ପ୍ରକାଶ କଲାରୁ ସଭା ଭଙ୍ଗ ହେଲା ।

ସଂପାଦକ ମହାଶୟ ! ଏଥକୁ ଆପଣ ବକ୍ତା ମହାଶୟଙ୍କୁ କି ଓଡ଼ିଆମାନଙ୍କର ଜଣେ ପ୍ରକୃତ ବନ୍ଧୁ ବୋଲି ସ୍ୱୀକାର କରିବେ ନାହିଁ ? ଦ୍ୱିଜଦାସ ବାବୁ ପ୍ରାୟ ୧ ବର୍ଷ ହେଲା ଓଡ଼ିଶାକୁ ଆସିଅଛନ୍ତି । ଏଥିମଧ୍ୟରେ ସେ ଇଂରାଜୀ ଓ ବଙ୍ଗଭାଷାରେ କେତେକ ଉତ୍କୃଷ୍ଟ ବକ୍ତୃତାମାନ କରି ଓଡ଼ିଆମାନଙ୍କର ସମ୍ୟକ୍ ଉନ୍ନତି ସାଧନର ଉପାୟ ଚେଷ୍ଟା କରୁଅଛନ୍ତି । ଜଣେ ବିଦେଶୀୟ ବଙ୍ଗାଳୀ ପ୍ରମୁଖାତ୍ ଆମ୍ଭେମାନେ ଆମ୍ଭମାନଙ୍କର ସପକ୍ଷରେ ଏପରି ବକ୍ତୃତାମାନ ଶ୍ରବଣ କରିବାକୁ ଅବଶ୍ୟ ସୌଭାଗ୍ୟ ବୋଲି ମନେ କରିବୁ । ଦ୍ୱିଜଦାସ ବାବୁଙ୍କର ଏହି କାର୍ଯ୍ୟ ହେତୁରୁ ଆମ୍ଭେମାନେ ତାହାଙ୍କୁ ଅନ୍ତଃକରଣର ସହିତ ଧନ୍ୟବାଦ ପ୍ରଦାନ କରୁଅଛୁଁ ।

ପରିଶେଷରେ ବକ୍ତବ୍ୟ ଏହି ଯେ ଈଶ୍ୱରାନୁଗ୍ରହରେ ସେ ଏଠାକାର ସ୍ଥାୟୀ ଶିକ୍ଷକ ରୂପେ ନିଯୁକ୍ତ ହୋଇ ଓଡ଼ିଆମାନଙ୍କର ଉନ୍ନତିପଥ ପରିଷ୍କାର କରନ୍ତୁ । ତାହାହେଲେ ସେ ଓଡ଼ିଆମାନଙ୍କର ମଧ୍ୟରେ ଏକ ନିର୍ମଳକ ରଖିବେ । । ଇତି ।

ବାଲେଶ୍ୱର
ଗଭର୍ଣ୍ଣମେଣ୍ଟ ସ୍କୁଲ

ଅନୁଗତ
ଶ୍ରୀ-ନାୟକ

*ଭା୧୩ଗ, ସଂ୨ଖ୍ୟା, ୮।୧।୧୮୮୦*

## ରେଭେନ୍‌ସା କଲେଜର ପ୍ରଥମ ଉତ୍ତୀର୍ଣ୍ଣ ଛାତ୍ର

"ଅତ୍ୟନ୍ତ ଆନନ୍ଦ ହୋଇ ପ୍ରକାଶ କରୁଛୁଁ ଯେ, ଏ ବର୍ଷ ଆମ୍ଭମାନଙ୍କ ରେଭେନ୍‌ସା କଲେଜରୁ ବି.ଏ. ପରୀକ୍ଷାରେ ଶ୍ରୀ ଦୁର୍ଗାଚରଣ ସାହୁ ନାମକ ଗୋଟିଏ ଛାତ୍ର ଦୃତୀୟ ଶ୍ରେଣୀରେ ଉତୀର୍ଣ୍ଣ ହୋଇ ଅଛନ୍ତି । ଏ ବର୍ଷ ସେହି କଲେଜରୁ ଯୋଡ଼ିଏ ଛାତ୍ର ପରୀକ୍ଷାର୍ଥୀ ହୋଇଥିଲେ । ସେଥିମଧ୍ୟରୁ ଜଣେ କୃତକାର୍ଯ୍ୟ ହେଲେ, ଉକ୍ତ କଲେଜରୁ ୧୮୭୭ ଓ ୧୮୭୮ ଦୁଇ ବର୍ଷରେ କେତେଗୁଡ଼ିଏ ଛାତ୍ର ପରୀକ୍ଷାର୍ଥୀ ହୋଇଥିଲେ; ଅତ୍ୟନ୍ତ ଦୁଃଖର ବିଷୟ ଯେ, ଉକ୍ତ ଦୁଇବର୍ଷରେ କେହିଜଣେ ଉତ୍ତୀର୍ଣ୍ଣ ହୋଇ ନଥିଲେ; ଏ ବର୍ଷରେ ଜଣେ ଓଡ଼ିଆ ପ୍ରଥମ ଉଦ୍ୟମରେ ଉତ୍ତୀର୍ଣ୍ଣ ହେବାରୁ ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁ ଏବଂ କଲେଜର ସ୍ଥାୟିତ୍ୱ ବିଷୟରେ ସଂପୂର୍ଣ୍ଣ ଆଶା କରୁଅଛୁଁ ।

ଦୁର୍ଗାଚରଣ ଗୋଟିଏ ବୁଦ୍ଧିମାନ୍ ଓ ପରିଶ୍ରମୀ ଛାତ୍ର । ସେ ସାଢ଼େ ୩ ବର୍ଷରେ ଭର୍ଣ୍ଣାକୁଲର୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ବୃତ୍ତିସହ ଏଠା ଇଂରେଜୀ ସ୍କୁଲରେ ପଢୁଥିଲେ । ପଞ୍ଚମ ବର୍ଷରେ ୧୮୭୫ ମସିହାରେ ଇଂରେଜୀ ପ୍ରବେଶିକା ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ, ତଦାନନ୍ତର ଦୁଇବର୍ଷରେ ଏଫ୍.ଏ. ପରୀକ୍ଷାର ୨ୟ ଶ୍ରେଣୀରେ ଓ ତତ୍ପରେ ଦୁଇବର୍ଷରେ ବି.ଏ. (ଡିଗ୍ରୀ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଫଳକଥା ଏହି ସେ ପ୍ରତି ପରୀକ୍ଷାରେ ପ୍ରଥମ ଉଦ୍ୟମରେ ଏ ପର୍ଯ୍ୟନ୍ତ କୃତକାର୍ଯ୍ୟ ହୋଇ ଆସିଲେ ଅଥଚ ଉଚ୍ଚଶିକ୍ଷା ନିମନ୍ତେ ତାଙ୍କୁ ଗୋଟିଏ ପଇସା ବେତନ ଦେବାକୁ ହୋଇନାହିଁ ଏବଂ ସେ ସବୁ ପରୀକ୍ଷାରେ ବୃତ୍ତି ପାଇଛନ୍ତି । ଦୁର୍ଗାଚରଣ ଯେବେ ପାରନ୍ତି ବର୍ଷକ ମଧ୍ୟରେ ଏମ୍.ଏ. ପରୀକ୍ଷା ଦେଇ 'ଅନର' ସାର୍ଟିଫିକେଟ ହାସଲ କରନ୍ତୁ; ତାହାହେଲେ ସୁଖର ସୀମା ରହିବ ନାହିଁ ।

ଉପସଂହାର ସ୍ଥଳେ ଏହା ମଧ୍ୟ ପ୍ରକାଶ କରୁଛୁ ଯେ, ଏବର୍ଷ ଉକ୍ତ କଲେଜର ପ୍ରିନ୍‌ସିପାଲ ଶ୍ରୀଯୁକ୍ତ ଏଜର ସାହେବ ଓ ଅନ୍ୟାନ୍ୟ ପ୍ରଫେସର ମହାଶୟମାନେ ସାଧ୍ୟାତୀତ ପରିଶ୍ରମ କରୁଅଛନ୍ତି; ଏଣୁ ଆମ୍ଭେମାନେ ସେମାନଙ୍କୁ ଧନ୍ୟବାଦ ଦେଉଅଛୁ । ଏ ସ୍ଥଳେ ଏହା ମଧ୍ୟ କହୁଅଛୁଁ ଯେ, ଏ ବର୍ଷ ଓଡ଼ିଶାର ସମସ୍ତ ପରୀକ୍ଷାର ଫଳ ସୁନ୍ଦର ହୋଇଥିଲା; ବି.ଏ. ପରୀକ୍ଷାରେ ନୂତନ ଫଳ ମିଳିବାରୁ ଏ ବର୍ଷର ଆଶା ପୂର୍ଣ୍ଣ ହେଲା ।"

*ଭା/୧୩ଗ, ସଂ୬ଖ୍ୟା, ୫/୨/୧୮୮୦*

## ୧୮୭୯ ସାଲର ମଧ୍ୟବର୍ତ୍ତୀ ବା ଲୋଅର ଭର୍ଣ୍ଣାକ୍ୟୁଲର ପରୀକ୍ଷା ଫଳର ସମାଲୋଚନା

ଆମ୍ଭେମାନେ ଗତ ସଂଖ୍ୟକ ବାହିକାର ଅତିରିକ୍ତ ପତ୍ରିକାରେ ଉକ୍ତ ପରୀକ୍ଷାର ଫଳ ପ୍ରକାଶ କରୁଅଛୁଁ । ଉକ୍ତ ପରୀକ୍ଷାରେ ନିମ୍ନଲିଖିତ ତାଲିକା ଅନୁସାରେ ୨୯୫ ଜଣ ଛାତ୍ର ପରୀକ୍ଷାର୍ଥୀ ହୋଇଥିଲେ । ସେଥିମଧ୍ୟରୁ ୫୪ ଜଣ ଛାତ୍ର ହାରିଯାଇଅଛନ୍ତି । ୨୪୧ ଜଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଗତବର୍ଷ ଅପେକ୍ଷା ଏ ବର୍ଷରେ ଏହି ପରୀକ୍ଷାର ଫଳ ଅତିଶୟ ପ୍ରୀତିକର ହୋଇଅଛି । ଗତବର୍ଷରେ ଏହି ପରୀକ୍ଷାରେ ୨୧୯ ଜଣ ଛାତ୍ର ପରୀକ୍ଷାର୍ଥୀ ହୋଇଥିଲେ ଏବଂ ୧୯୦ ଜଣ ଉତ୍ତୀର୍ଣ୍ଣ ହୋଇଥିଲେ । ଏ ବର୍ଷରେ ୫୧ ଜଣ ଅଧିକା ଉତ୍ତୀର୍ଣ୍ଣ ହୋଇ ଅଛନ୍ତି । ବର୍ଣ୍ଣିତ ବର୍ଷରେ ପୁରୀର ବାଣପୁର ପାଠଶାଳା ପ୍ରଥମ ଏବଂ ବାଲେଶ୍ୱରର ପଲ୍ଲୀ ପାଠଶାଳା ୨ୟ ସ୍ଥାନ ଅଧିକାର କରିଅଛି ।

ଗତ ଦୁଇବର୍ଷରେ କି ସ୍ଥାନ କି ସଂଖ୍ୟା ସକଳ ବିଷୟରେ ବାଲେଶ୍ୱର ପ୍ରଥମ ହୋଇଥିଲା । ଅତ୍ୟନ୍ତ ଦୁଃଖ ଓ ଅତ୍ୟନ୍ତ ପରିତାପର ବିଷୟ ଏହି ଯେ, ଏ ବର୍ଷ ବାଲେଶ୍ୱର ଏ ପରୀକ୍ଷାରେ ପଛରେ ପଡ଼ିଗଲା । ମନ୍ଦ ମଧ୍ୟରେ ଭଲ ଏତିକି ଯେ, ତିନି ଜିଲା ମଧ୍ୟରେ ଏହି ଜିଲାରୁ ପ୍ରଥମ ଶ୍ରେଣୀରେ ଅଧିକ ପିଲା ଉତ୍ତୀର୍ଣ୍ଣ ହୋଇଅଛନ୍ତି; କିନ୍ତୁ ଗତବର୍ଷ ଅପେକ୍ଷା ବର୍ଣ୍ଣିତ ବର୍ଷରେ ପ୍ରଥମ ଶ୍ରେଣୀରେ ଅଳ୍ପ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ତଳଲିଖିତ ତାଲିକା ସେଥିର ସାକ୍ଷୀ । ଆହୁରି ଗୋଟିଏ ବଡ଼ ଦୁଃଖର ବିଷୟ ଏହି ଯେ, କେତେଗୁଡ଼ିଏ ପିଲା ଏକାଦିକ୍ରମେ କେହି ଦୁଇବର୍ଷ କେହି ତିନିବର୍ଷ ପରୀକ୍ଷା ଦେଇ ଅଛନ୍ତି; ଅଥଚ ଏଭଳି ପିଲାମାନେ ପ୍ରାୟ ବୃତ୍ତି ପାଇପାରୁ ନାହାନ୍ତି । ୧୮୭୬ ମସିହାରେ ଯେ ଯେଉଁ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ, ୧୮୭୮ ମସିହାରେ ସେ ସେହି ଶ୍ରେଣୀରେ ଉତ୍ତୀର୍ଣ୍ଣ

ହୋଇଅଛି । ସର୍ବାପେକ୍ଷା ଦୁଃଖର ବିଷୟ ଏହି ଯେ, ଗତବର୍ଷ ଯେଉଁ ପିଲା ୨ୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲା ଏବର୍ଷରେ ସେ ତୃତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଅଛି । ବର୍ଣ୍ଣିତ ବର୍ଷରେ ବାଲେଶ୍ୱର ପକ୍ଷରେ ଏପରି ଦୋଷମାନ ଘଟିବାର ପ୍ରଧାନ କାରଣ ଏହି ଯେ ପାଠଶାଳାମାନଙ୍କର ତଦାରକୀ ଇତ୍ୟାଦି କାର୍ଯ୍ୟ ସୁଚାରୁରୂପେ ହେଉନାହିଁ; ଯାହା ହେଉଅଛି ତାହା କାମସରାପରି ହେଉଅଛି ଓ ସେଥିରେ ଧାଡ଼ି ନ ଥିବାର ଜଣାଯାଏ । ଆମ୍ଭେମାନେ ଉଦାହରଣ ସ୍ୱରୂପ ଏ ସମ୍ବନ୍ଧରେ ଭିନ୍ନ ପ୍ରବନ୍ଧ ଓ ତୁମ୍ଭମାନଙ୍କ ମତ ପରେ ପ୍ରକାଶ କରିବୁ ।

ଏହି ପରୀକ୍ଷା ଆରମ୍ଭ ହେବା ଦିନଠାରୁ ପୁରୀ ଦ୍ରୁତଗତିରେ କ୍ରମେ ଉପରକୁ ଉଠୁଅଛି । ପୁରୀ ଜିଲାରେ ଭର୍ଣ୍ଣାକ୍ୟୁଲର ସ୍କୁଲ ଅଧିକ ନ ଥିବା ସେଥିରେ ପ୍ରଧାନ କାରଣ ହେଲେହେଁ ଆମ୍ଭେମାନେ ପୁରୀ ଜିଲାର ସାଧାରଣ (ମାସ୍) ଶିକ୍ଷାର ଉନ୍ନତି ଦେଖୁଅଛୁଁ ।

କଟକ ଆପଣା ଗର୍ଭରେ ଅନେକ ଭର୍ଣ୍ଣାକ୍ୟୁଲର ସ୍କୁଲର ଧାରଣ କରି ସୁଦ୍ଧା ଏ ପରୀକ୍ଷା ନିମନ୍ତେ କ୍ରମେ ଅଧିକ ଛାତ୍ର ଯୋଗାଇ ସୁଫଳ ଦେଉଅଛି । ତଦାରକୀ ଇତ୍ୟାଦି କାର୍ଯ୍ୟର ସୁବନ୍ଦୋବସ୍ତ ଥିବା ସେଥିର ହେତୁ ବୋଲି ଆମ୍ଭେମାନେ ବିଚାର କରୁଁ ।

ବଡ଼ ଦୁଃଖର ବିଷୟ ଯେ, ବାଲେଶ୍ୱର ଭର୍ଣ୍ଣାକ୍ୟୁଲର ପରୀକ୍ଷାର ନ୍ୟାୟ ଏଥିରେ କ୍ରମେ ଉଠି ପାରୁନାହିଁ । ବର୍ତ୍ତମାନ ଜଏଣ୍ଟ ଇନ୍‌ସପେକ୍ଟର୍ ମହାଶୟ ଯେତେବେଳେ ଏ ଜିଲାରେ ଡେଃ ଇନ୍‌ସପେକ୍ଟର ଥିଲେ, ତେତେବେଳେ ଅର୍ଥାତ୍ ୧୮୭୭ ମସିହାରେ ଏହି ଜିଲାର ପରୀକ୍ଷାର୍ଥୀ ଓ ଉତ୍ତୀର୍ଣ୍ଣ ଛାତ୍ର ସଂଖ୍ୟା ଅଧିକା ହୋଇଥିଲା ଏଣିକି ସେପରି ହୋଇ ପାରୁନାହିଁ । ତଳଲିଖିତ ତାଲିକା ସେଥିର ପ୍ରମାଣ । ଏଥିପ୍ରତି ଦୃଷ୍ଟି ରଖିବା ଇନ୍‌ସପେକ୍ଟିଂ କର୍ମଚାରୀମାନଙ୍କର ଉଚିତ ।

ପୂର୍ବ ବର୍ଷ ଜଳେଶ୍ୱର ବାଳିକା ବିଦ୍ୟାଳୟରୁ ଯେ ରୂପ ଯୋଡ଼ିଏ ବାଳିକା ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ବର୍ଣ୍ଣିତ ବର୍ଷରେ ମଧ୍ୟ ସେହିରୂପେ ଯୋଡ଼ିଏ ବାଳିକା (ହଟି ଓ ଲୁସୀ) ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି, ଏହା ମିସ୍ ତ୍ରିପୋଟଙ୍କ ଯତ୍ନର ଫଳ ଅଟେ ।

**୧୮୭୭ ମସିହାର ଫଳ ଯଥା:-**

| ଜିଲା | ପ୍ରାର୍ଥୀ | ୧ମ | ୨ୟ | ୩ୟ | ମୋଟ | ଫେଲ |
|---|---|---|---|---|---|---|
| ବାଲେଶ୍ୱର | ୧୦୮ | ୨୪ | ୪୦ | ୩୨ | ୯୬ | ୧୨ |
| କଟକ | ୬୫ | ୩ | ୧୨ | ୩୦ | ୪୫ | ୨୦ |
| ପୁରୀ | ୩୩ | ୦ | ୭ | ୧୩ | ୨୦ | ୧୩ |
| | **୨୦୬** | **୨୭** | **୫୯** | **୭୫** | **୧୬୧** | **୪୫** |

**୧୮୭୮ ମସିହାର ଫଳ ଯଥା:-**

| ଜିଲା | ପ୍ରାର୍ଥୀ | ୧ମ | ୨ୟ | ୩ୟ | ମୋଟ | ଫେଲ |
|---|---|---|---|---|---|---|
| ବାଲେଶ୍ୱର | ୮୦ | ୪୦ | ୧୫ | ୧୫ | ୭୦ | ୧୦ |
| କଟକ | ୭୦ | ୨୯ | ୨୧ | ୧୪ | ୬୪ | ୬ |
| ପୁରୀ | ୫୯ | ୩୫ | ୧୨ | ୯ | ୫୬ | ୩ |
| ମୋଟ | ୨୦୯ | ୧୦୪ | ୪୮ | ୩୮ | ୧୯୦ | ୧୯ |

୧୮୭୯ ମସିହାର ଫଳ ଯଥା:-

| ଜିଲା | ପ୍ରାର୍ଥୀ | ୧ମ | ୨ୟ | ୩ୟ | ମୋଟ | ଫେଲ |
|---|---|---|---|---|---|---|
| ବାଲେଶ୍ୱର | ୮୭ | ୩୧ | ୧୬ | ୨୨ | ୬୯ | ୧୮ |
| କଟକ | ୮୮ | ୨୨ | ୩୭ | ୨୧ | ୮୦ | ୮ |
| ପୁରୀ | ୮୪ | ୨୬ | ୨୫ | ୨୪ | ୭୫ | ୯ |
| ଗଡ଼ଜାତ | ୩୬ | ୩ | ୪ | ୧୦ | ୧୭ | ୧୯ |
| ମୋଟ | ୨୯୫ | ୮୨ | ୮୨ | ୭୭ | ୨୪୧ | ୫୪ |

*ଭା୧୩ଗ, ସଂ୭ଖ୍ୟା, ୧୨/୨/୧୮୮୦*

## ପ୍ରାପ୍ତଗ୍ରନ୍ଥର ସଂକ୍ଷିପ୍ତ ସମାଲୋଚନା

## "ଓଡ଼ିଶ୍ୟାର ଇତିହାସ"

### (ବାବୁ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ପ୍ରଣୀତ)

ଆମ୍ଭେମାନେ ଶୀର୍ଷାଙ୍କିତ ପୁସ୍ତକ ଖଣ୍ଡିକର ଆଦ୍ୟୋପ୍ରାନ୍ତ ପାଠ କରି ଅତ୍ୟନ୍ତ ପ୍ରୀତ ହୋଇଅଛୁଁ । ଆଜିଯାଏ ଉତ୍କଳ ଭାଷାରେ ଯେତେଗୁଡ଼ିଏ ପାଠ୍ୟ ପୁସ୍ତକ ରଚିତ ହୋଇଅଛି ସେମାନଙ୍କ ମଧ୍ୟରୁ ଅଧିକାଂଶ ଅନୁବାଦ । ମୂଳଗ୍ରନ୍ଥର ସଂଖ୍ୟା ଅତି ଅଳ୍ପ; ପୁଣି ସେହି ଅଳ୍ପ ସଂଖ୍ୟକ ପୁସ୍ତକମାନଙ୍କ ମଧ୍ୟରେ ପ୍ରକୃତ ଉପଯୋଗୀ ପୁସ୍ତକର ସଂଖ୍ୟା ଆହୁରି ଊଣା । ଏମନ୍ତ ସ୍ଥଳେ ଖଣ୍ଡିଏ ପ୍ରକୃତ ଉପଯୋଗୀ ମୂଳଗ୍ରନ୍ଥ ଦେଖିଲେ ଆମ୍ଭେମାନେ ଯେ ଆଗ୍ରହ ପୂର୍ବକ ତାହାକୁ ଅଭିନନ୍ଦନ କରିବୁଁ ଏଥିରେ ସନ୍ଦେହ କି ?

ଆମ୍ଭମାନଙ୍କ ଜନ୍ମଭୂମି ଉତ୍କଳ ଦେଶକୁ ପ୍ରାଚୀନ ଆର୍ଯ୍ୟକୀର୍ତ୍ତି ଏବଂ ଆର୍ଯ୍ୟପ୍ରତିଭାର ରଙ୍ଗଭୂମି ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ବଂଗ ଦେଶ ଅପେକ୍ଷା ଐତିହାସିକ ଗବେଷଣାର ବିଷୟୀଭୂତ ପଦାର୍ଥ ଓଡ଼ିଶାରେ ଅପେକ୍ଷାକୃତ ସୁଲଭ । ରାଜପୁରୁଷମାନେ ଏହା ବୁଝିପାରି ଓଡ଼ିଶ୍ୟାର ପ୍ରାଚୀନ ଇତିହାସ ସଂକଳନ ପକ୍ଷରେ ଯଥାସାଧ ଯତ୍ନ କରୁଅଛନ୍ତି । ମହୋପାଧ୍ୟାୟ ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ଏବଂ ପଣ୍ଡିତବର ହଣ୍ଟରଙ୍କ ପ୍ରଣୀତ ପୁସ୍ତକମାନ ଉକ୍ତ ଯତ୍ନର ଅନ୍ୟତର ଫଳ ସ୍ୱରୂପ । ପ୍ୟାରୀବାବୁ ପ୍ରାଗୁକ୍ତଗ୍ରନ୍ଥ ଏବଂ ଅନ୍ୟାନ୍ୟ ଗ୍ରନ୍ଥର ସୁବିଧା ଗ୍ରହଣ କରି ଏବଂ ମୂଳ ଗବେଷଣାରେ ଯଥୋଚିତ ପ୍ରୟାସୀ ହୋଇ ସ୍ୱକୀୟ ପୁସ୍ତକରେ ପ୍ରକୃତ ଐତିହାସିକ ଏବଂ ଉତ୍କଳଭୂମିର ଗୌରବ ପ୍ରସୂଚକ ବିଷୟମାନ ପ୍ରଚୁର ପରିମାଣରେ ସନ୍ନିବିଷ୍ଟ କରି ଅଛନ୍ତି । ସ୍ଥୂଳତଃ ଆମ୍ଭେମାନେ ନିର୍ବିବାଦରେ ଏହା ବୋଲି ପାରୁଁ ଯେ, ପ୍ରାଚୀନ ଏବଂ ଆଧୁନିକ ଓଡ଼ିଶାର ପ୍ରାକୃତିକ, ସାମାଜିକ, ରାଜନୈତିକ ଏବଂ ଧର୍ମସମ୍ବନ୍ଧୀୟ ଇତିହାସ ଜିଜ୍ଞାସୁ ବ୍ୟକ୍ତିଙ୍କ ପକ୍ଷରେ ପ୍ୟାରୀବାବୁଙ୍କ ପୁସ୍ତକ ପରି ଆଉ ଖଣ୍ଡିଏ ପୁସ୍ତକ ଓଡ଼ିଆ ଭାଷାରେ ଅବଧି ରଚିତ ହୋଇନାହିଁ । ବିଶେଷତଃ ପ୍ରାଚୀନ ଓଡ଼ିଶ୍ୟାର ବିଷୟମାନ ଏଥିରେ ଯେମନ୍ତ ସୁନ୍ଦର ରୂପେ ବିବୃତ ହୋଇଅଛି, ସେଥିପ୍ରତି ଦୃଷ୍ଟିପାତ କଲେ ଏହା ମୁକ୍ତ କଣ୍ଠରେ ସ୍ୱିକାର କରିବାକୁ ହେବ ଯେ, ଉନ୍ନତ ଓ ଅପେକ୍ଷାକୃତ ମାର୍ଜିତ ବଂଗଭାଷାରେ ସୁଦ୍ଧା ଏପରି ଇତିହାସ ବିରଳ ଲକ୍ଷିତ ହୁଏ । ଶଂସିତ ପୁସ୍ତକ ପାଠଦ୍ୱାରା ଓଡ଼ିଶ୍ୟାବାସୀଙ୍କର ଆତ୍ମଗୌରବ ବର୍ଦ୍ଧିତ ହେବ ଏବଂ ସାଧୁ ଅହଙ୍କାର ସହିତ ସେମାନେ ଉତ୍କଳ ସନ୍ତାନ ବୋଲି ଆପଣାକୁ ଭାଗ୍ୟବାନ୍ ବୋଲି ମଣିବେ ।

ପୁସ୍ତକର ଭାଷା ମଧ୍ୟ ସ୍ଥଳରେ ଉତ୍ତମ ହୋଇଅଛି । ସ୍ଥାନେ ସ୍ଥାନେ ବ୍ୟାକରଣ, ମୁଦ୍ରା ଏବଂ ଗ୍ରାମ୍ୟଦୋଷ ଅଛି ସତ, ମାତ୍ର ଯେଉଁ ଜୀବନୀଶକ୍ତି ଭାଷାର ପ୍ରକୃତ ଉତ୍କର୍ଷ ପରିଚାୟକ, ଶଂସିତ ପୁସ୍ତକର ଭାଷାରେ ସେହି ଜୀବନୀଶକ୍ତିର ଅଭାବ ନାହିଁ । ଉତ୍କଳ ବିଦ୍ୟାଳୟମାନଙ୍କରେ ସଂପ୍ରତି ଯେଉଁ ଗଦ୍ୟମୟ ପୁସ୍ତକମାନ ବ୍ୟବହୃତ ହୋଇଅଛି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଅନୁବାଦୀତ ଗ୍ରନ୍ଥ ହୋଇଥିବାରୁ ସେମାନଙ୍କର ଭାଷା ନିତାନ୍ତ ନିର୍ଜୀବ

ବୋଧହୁଏ । ପୁଣି କାବ୍ୟାଂଶରେ ଉତ୍କୃଷ୍ଟ ହୋଇସୁଦ୍ଧା ଚଳିତ ବୈଷୟିକ ଭାଷା ଶିକ୍ଷା ପକ୍ଷରେ ସେମାନେ ନିତାନ୍ତ ଅନୁପୋଯୋଗୀ । ପ୍ୟାରୀବାବୁଙ୍କ ପୁସ୍ତକ ଦ୍ୱାରା ଶଂସିତ ଅଭାବ ଆଂଶିକ ଦୂର ହେବାର ସମ୍ଭାବନା ।

ପୁସ୍ତକର କୌଣସି କୌଣସି ଅଂଶରେ ବିଷୟଗତ ଭ୍ରମ ଏବଂ ଅସମ୍ପୂର୍ଣ୍ଣତା ଲକ୍ଷିତ ହୁଏ । ବିଶେଷତଃ ବାଲେଶ୍ୱର ଜିଲାର ଭୌଗୋଳିକ ବିବରଣର ସଂକଳନ ବିଷୟରେ ଗ୍ରନ୍ଥକାର ଯଥୋଚିତ ରୂପେ ପ୍ରୟାସୀ ହୋଇନାହାଁନ୍ତି । ଇଂରେଜଙ୍କ ଶାସନର ଇତିହାସ ପ୍ରାଚୀନ ଇତିହାସ ସଙ୍ଗେ ତୁଳିତ ହୋଇ ନିତାନ୍ତ ସଂକ୍ଷିପ୍ତ ଏବଂ ଅନୁପାତ ବିହୀନ ହୋଇଅଛି !!! ଆମ୍ଭେମାନେ ଗ୍ରନ୍ଥକାରଙ୍କୁ ଦୃଢ଼ଭାବରେ ଅନୁରୋଧ କରୁଛୁ ଯେ, ସେ ଅନ୍ୟ ମୁଦ୍ରାଙ୍କନ ସମୟରେ ଉଲ୍ଲିଖିତ ତ୍ରୁଟିମାନଙ୍କର ପରିହାର ପକ୍ଷରେ ଯତ୍ନଶୀଳ ହୋଇ ଉତ୍କଳବାସିଙ୍କର ଅଧିକତର କୃତଜ୍ଞତାଭାଜନ ହେବେ । ପୁଣି ଶଂସିତ ପୁସ୍ତକର ମୂଲ୍ୟ ଯାହା ଟ ୧ ଙ୍କା ଧାର୍ଯ୍ୟ ହୋଇଅଛି, ତାହା ଆମ୍ଭମାନଙ୍କ ବିବେଚନାରେ କିଛି କର୍କଶ ବୋଧ ହେଉଛି । ଉକ୍ତ ପୁସ୍ତକ ଯେ ସ୍ଥଳେ ବିଦ୍ୟାଳୟମାନଙ୍କର ପାଠ୍ୟ ପୁସ୍ତକ ବୋଲି ନିର୍ଦ୍ଧାରିତ ହୋଇଅଛି, ସେ ସ୍ଥଳେ ଛାତ୍ରମାନଙ୍କ ସୁବିଧା ନିମନ୍ତେ ସେଥିର ମୂଲ୍ୟ ଊଣା କରିଦେବା ବିଧେୟ । ବାସ୍ତବରେ ସେହି ପୁସ୍ତକର ମୂଲ୍ୟ ଟ ୦।୷ ହେବା ଉଚିତ; ଅଧିକନ୍ତୁ ଗ୍ରନ୍ଥକାର ସେଥିନିମନ୍ତେ ସରକାରରୁ ପାରିତୋଷିକ ପାଇଅଛନ୍ତି । ଆମ୍ଭେମାନେ ଭରସାଁ କରୁ ଗ୍ରନ୍ଥକାର ମହାଶୟ ଏ ବିଷୟ ମଧ ବିବେଚନା କରିବେ ।

*ଭା୧୩ଗ, ସଂ୮ଖ୍ୟା, ୧୯।୨।୧୮୮୦*

## ଓଡ଼ିଶାରେ କଲେଜ ସ୍ଥାପନ

ଓଡ଼ିଶ୍ୟା ଭଳି କ୍ଷୁଦ୍ର ପ୍ରଦେଶରେ କଲେଜ ସ୍ଥାପନ କରିବାକୁ ହେଲେ ପରୀକ୍ଷା ସ୍ୱରୂପ ତାହା ସ୍ଥାପନ କରିବା ଆବଶ୍ୟକ; ଏଣୁ ସେ ଅଳ୍ପ ବ୍ୟୟରେ ସେପରି କରିଥିବାର ଅନୁମାନ କରୁଁ.। ପୁଣି ସର୍ବତ୍ର ଦେଖାଯାଏ ଯେ କୌଣସି ବିଷୟରେ ହେଉ ପ୍ରଥମେ ପ୍ରଥମେ ଭଲ ଫଳ ମିଳେ ନାହିଁ ପରେ କ୍ରମେ କ୍ରମେ ସୁଫଳ ମିଳେ । ଏଥିର ପ୍ରଧାନ ଦୃଷ୍ଟାନ୍ତ ଏହି;- ଯେତେବେଳେ କଟକରେ କଲେଜରେ ୨ୟ ବର୍ଷୀୟ ଶ୍ରେଣୀ ଫିଟିଲା ପ୍ରଥମେ ପ୍ରଥମେ ସେଥିରୁ ସୁଫଳ ପାୟା ପାଇ ନ ଥିଲା, ପରେ କ୍ରମେ କ୍ରମେ ସୁଫଳ ପାୟା ଗଲା । ବି.ଏ. କ୍ଲାସ ପକ୍ଷରେ ତାହା ଘଟିଅଛି । ଏଥିପାଇଁ ବ୍ୟସ୍ତ ହୋଇ କଲେଜ ଉଠାଇ ଦେବାର କାମନା କରିବା କୌଣସି ପ୍ରକାରେ ଉଚିତ ନୋହେ । ଆମ୍ଭେମାନେ କଲେଜର ଆରମ୍ଭ ସମୟରେ ବୋଲିଅଛୁଁ "ଝାଟି ଥିଲେ ମାଟି ଲାଗିବ" ଅର୍ଥାତ୍ କଲେଜ କ୍ଲାସ ଥିଲେ ସମୟରେ ବହୁବେତନ ଭୋଗୀ ଅଧାପକମାନଙ୍କୁ ପାଇବୁ- ଶିକ୍ଷା ବିଧାନ ଆହୁରି ବୋଲୁଅଛି, ପିଲାମାନଙ୍କ ନିମନ୍ତେ ବିଦ୍ୟାଳୟ, ବିଦ୍ୟାଳୟମାନଙ୍କ ନିମନ୍ତେ ଶିକ୍ଷକ । ଶିକ୍ଷକ ନିମନ୍ତେ ବିଦ୍ୟାଳୟ ନୋହେ ବିଦ୍ୟୋଳୟ ନିମନ୍ତେ ପିଲା ନୋହେ । ଯେ ସ୍ଥଳେ ଆମ୍ଭମାନଙ୍କର ପିଲା ଓ ବିଦ୍ୟାଳୟ ଉଭୟ ଅଛି, ସେ ସ୍ଥଳେ ଆଜି ନ ହେଉ କାଲି ହେଉ ବହୁ ବେତନଭୋଗୀ ଅଧାପକମାନଙ୍କୁ ଅବଶ୍ୟ ପାଇପାରିବୁ । ଯେବେ ଆମ୍ଭେମାନେ କଲେଜକୁ ହରାଇବୁଁ ତେବେ ସବୁ ଆଶା ଭରସା ସରିଯିବ ।

*ଭା୧୩ଗ,ସଂ୧୨ଖ୍ୟା, ୧୮।୩।୧୮୮୦*

## [ପ୍ୟାରୀମୋହନଙ୍କ ଓଡ଼ିଶାର ଇତିହାସ]

ଦୀପିକାରୁ ଅବଗତହୋଇ ଅତ୍ୟନ୍ତ ଦୁଃଖିତ ହେଲୁଁ ଯେ, କଟକ ନିବାସୀ ବାବୁ କାଳୀପଦ ବନ୍ଦୋପଧାୟ ମହାଶୟ, ବାବୁ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ କୃତ ଓଡ଼ିଶ୍ୟାର ଇତିହାସକୁ ନିର୍ମୂଳ କରିବା ନିମନ୍ତେ ଯଥାସାଧ ଚେଷ୍ଟା କରୁଅଛନ୍ତି ଓ ଏହି ଅଭିପ୍ରାୟରେ କଲିକତାସ୍ଥ ସଂବାଦ ପତ୍ରମାନଙ୍କ ନିକଟକୁ ତାର ଯୋଗେ ସଂବାଦ ଲେଖୁଅଛନ୍ତି । ଆମ୍ଭେମାନେ ପ୍ୟାରୀ ବାବୁଙ୍କ ଇତିହାସ ପଢ଼ି ଅତ୍ୟନ୍ତ ପ୍ରୀତ ହୋଇଅଛୁଁ ଓ ଇତିହାସର ଯେଉଁ ଅଂଶ ନିମନ୍ତେ ଦୁଃଖିତ ଥିଲୁ, ପ୍ୟାରୀବାବୁ ଏଥି ମଧରେ ତାହା ଉଠାଇ ଦେଇ ଅଛନ୍ତି । ଶ୍ରୀ ଜଗନ୍ନାଥ ଜିଉଙ୍କ ବିଷୟରେ ପ୍ୟାରୀବାବୁ ଯାହା ଲେଖିଅଛନ୍ତି, ସେଥିପାଇଁ ଗୋଳମାଳ ଉଠିବାର କୌଣସି କାରଣ ନାହିଁ । ଆମ୍ଭେମାନେ ମଧ

ବୋଲୁଅଛୁଁ, ସଟନ୍ ସାହେବ୍, ଓଡ଼ିଶ୍ୟାର ଇତିହାସରେ "ଜଗନ୍ନାଥଙ୍କ ମୂର୍ତ୍ତି ପ୍ରତି କଳାପାହାଡ଼ ଅତ୍ୟାଚାର କରିଥିବା ଇତ୍ୟାଦି ବିଷୟ ଲେଖିଅଛନ୍ତି ଓ ସେହି ଇତିହାସ ବହୁକାଳରୁ ଏ ପର୍ଯ୍ୟନ୍ତ ଓଡ଼ିଶ୍ୟାରେ ଚଳି ଆସୁଅଛି ମଧ୍ୟ ସମସ୍ତ ଲାଇବ୍ରେରୀରେ ସଂଗୃହୀତ ହୋଇ ଯତ୍ନପୂର୍ବକ ରଖା ଯାଇଅଛି; ଏଥିନିମନ୍ତେ ଏ ପର୍ଯ୍ୟନ୍ତ କେହି ଆପତ୍ତି କରିନାହାନ୍ତି । (ପ୍ୟାରୀବାବୁ ଉକ୍ତ ବିଷୟଟି ସଟନ୍ ସାହେବଙ୍କ ଇତିହାସରୁ ସଂଗ୍ରହ କରି ଆପଣା ଇତିହାସରେ ସନ୍ନିବେଶିତ କରିଥିବାର ଜଣାଯାଏ) ସଟନ୍ ସାହେବଙ୍କ ବେଳକୁ କୌଣସି ଆପତ୍ତି ବା ଗୋଳମାଳ ଉଠିଲା ନାହିଁ, ପ୍ୟାରୀ ବାବୁଙ୍କ ବେଳକୁ ଏତେ ଗୋଳମାଳ ବାହାରୁଅଛି । ଏଥିର କାରଣ କିସ ? ଗୁଣଗ୍ରାହୀଲୋକେ ଦୋଷଭାଗ ପରିତ୍ୟାଗ କରି ଗୁଣଭାଗକୁ ଗ୍ରହଣ କରନ୍ତି, କେବଳ ଦୋଷାନୁ ସନ୍ଧାୟୀ ବ୍ୟକ୍ତିମାନେ ଆପଣା ଯିଦକୁ ବଜାଏ ରଖିବା ନିମନ୍ତେ ଅନ୍ୟର ଦୋଷ ତନ୍ନ ତନ୍ନ କରି ଖୋଜନ୍ତି । ଏହା ବଡ଼ ଅନ୍ୟାୟ କଥା । ସଟନ୍ ସାହେବଙ୍କ ଇତିହାସରେ ହେଉ, ବା ପ୍ୟାରୀବାବୁଙ୍କ ଇତିହାସରେ ହେଉ, "ଜଗନ୍ନାଥଙ୍କ ମୂର୍ତ୍ତିପ୍ରତି କଳାପାହାଡ଼ର ବ୍ୟବହାର କଥା", ଲେଖାଅଛି ବୋଲି ଯେ ଶ୍ରୀ ଜଗନ୍ନାଥ ଜିଉଙ୍କ ପ୍ରତି ସାଧାରଣଙ୍କର ଅଭକ୍ତି ଜନ୍ମିବ ଏମନ୍ତ କିଛି କଥା ନୁହେଁ । ଯେଉଁମାନଙ୍କର ଜଗନ୍ନାଥ ଜିଉଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଅଛି, ତାହା କାହିଁରେ ବିଚଳିତ ହେବାର ନୁହେଁ ।

କାଳୀପଦବାବୁ ଜଣେ ପ୍ରଧାନ ଓ ଚିହ୍ନିତ ଲୋକ, ତାଙ୍କରି ଏପରି ବ୍ୟବହାରରେ ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ହୋଇଅଛୁଁ । କାଳୀପଦବାବୁ ଡା'ର ଡାକରେ ସଂବାଦ ନେବା ଇତ୍ୟାଦି ବିଷୟରେ ଯେତେ ଅର୍ଥ ବ୍ୟୟ କରୁଅଛନ୍ତି ସେହି ଅର୍ଥରେ ପ୍ୟାରୀବାବୁଙ୍କର କେତେଖଣ୍ଡ ଇତିହାସ କିଣି କେତୋଟି ଦୁଃଖୀ ପିଲାଙ୍କୁ ଦାନ କରିଥିଲେ ବଡ଼ ଉତ୍ତମ ହୋଇଥାନ୍ତା ଓ ତହିଁରେ ତାଙ୍କର ପ୍ରାଧାନ୍ୟର ଓ ମହତ୍ ମନର ଅଧିକ ପରିଚୟ ମିଳିଥାନ୍ତା ।

*ଭା୧୩ଗ, ସଂ୧୩ଖ୍ୟା, ୨୫/୩/୧୮୮୦*

# ୧୮୭୩

# ଉତ୍କଳ ଦର୍ପଣ

## ମାତୃଭାଷାରେ ବିଦ୍ୟାନୁଶୀଳନ

ଆମ୍ଭେମାନେ ଅଦ୍ୟ ଯେଉଁ ପ୍ରସ୍ତାବ ଲେଖିବାକୁ ଉଦ୍ୟତ ହୋଇଅଛୁଁ, ତାହା ଅତୀବ ଗୌରବାନ୍ୱିତ, ତତ୍ସଙ୍ଗରେ ଆମ୍ଭମାନଙ୍କର ସାମାଜିକ ଏବଂ ନୈତିକ ସମୁଦାୟ ମଙ୍ଗଳ ଘନିଷ୍ଠ ରୂପେ ସମ୍ବନ୍ଧ । କିନ୍ତୁ ଆକ୍ଷେପର ବିଷୟ ଯେ ଅସ୍ମଦେଶୀୟ ଲୋକମାନେ ଏହି ମହୀୟାନ ବିଷୟର ଗୌରବ ଉପଲବ୍ଧି କରିବାକୁ ନିତାନ୍ତ ପରାଙ୍ମୁଖ । ଆହୁରି ବିସ୍ମୟର ବ୍ୟାପାର ଏହି ଯେ କୃତବିଦ୍ୟ ସମ୍ପ୍ରଦାୟଙ୍କର ମଧ୍ୟ ଏଥିରେ ଆଦର ଏବଂ ଶ୍ରଦ୍ଧା ଲକ୍ଷିତ ହୁଏ ନାହିଁ । ଉପର୍ଯ୍ୟୁକ୍ତ ଔଦାସୀନ୍ୟର ନିରାକରଣାର୍ଥ ଆମ୍ଭେମାନେ ଲେଖନୀ ଧାରଣ କଲୁଁ । ଏହି ଉଦ୍ଦେଶ୍ୟ କଥଞ୍ଚିତ ସାଧିତ ହେଲେ ଆପଣାକୁ ଚରିତାର୍ଥ ମଣିବୁଁ ।

ପ୍ରଥମତଃ ବିଦ୍ୟା ଶବ୍ଦରୁ କି ଅର୍ଥ ପ୍ରତିପାଦନୀୟ, ତାହା ଅଗ୍ରେ ବିଚାର କରିବାର ଉଚିତ । ମାନବବୁଦ୍ଧି-ଅର୍ଜିତ ଗ୍ରନ୍ଥବିନିହିତ ଜ୍ଞାନସମଷ୍ଟିକୁ ବିଦ୍ୟାସଂଜ୍ଞା ପ୍ରଦତ୍ତ ହୁଏ । ଏଥିରେ ଅସାଧାରଣ ଧୀଶକ୍ତିସମ୍ପନ୍ନ ମନୁଷ୍ୟମାନଙ୍କର ଗଭୀର ଚିନ୍ତା ସମସ୍ତ ବିନ୍ୟସ୍ତ ହୋଇଥାଏ । ଯେଉଁ ନୀତିଶାସ୍ତ୍ର ଅପହରଣ, ବଳାତ୍କାର, ହତ୍ୟା ପ୍ରଭୃତି କର୍ମର ଅନ୍ୟାଯ୍ୟତା ଏବଂ ପରୋପକାର, ଗୁରୁଭକ୍ତି, ପରସ୍ୱରକ୍ଷା ପ୍ରଭୃତି କାର୍ଯ୍ୟର ନ୍ୟାଯ୍ୟତା ପ୍ରତିପାଦନ କରେ; ଯେଉଁ ଦର୍ଶନଶାସ୍ତ୍ର ଆମ୍ଭମାନଙ୍କ ବୁଦ୍ଧିର ଜଟିଳ ପ୍ରକ୍ରିୟାବଳୀର ତତ୍ତ୍ୱ ପ୍ରକାଶ କରେ; ନ୍ୟାୟ ସୂତ୍ର, ଆତ୍ମତତ୍ତ୍ୱ ଏବଂ ଈଶ୍ୱର ଜ୍ଞାନ ପ୍ରଭୃତି ଗୁରୁତମ ବିଷୟର ବ୍ୟାଖ୍ୟାନ କରେ, ଯେଉଁ ପ୍ରାକୃତିକ ବିଜ୍ଞାନ ବିବିଧ ରୂପ ଗ୍ରହଣ କରି ମନୁଷ୍ୟକୁ ନାନାବିଧ ସୁଖ ସ୍ୱଚ୍ଛନ୍ଦତା ପ୍ରଦାନ କରେ; ଯେଉଁ ଇତିବୃତ୍ତ ଭୂତପୂର୍ବ ମନୁଷ୍ୟଙ୍କ ଉନ୍ନତି ଏବଂ ଅବନତିର ସହସ୍ର ସହସ୍ର ଦୃଷ୍ଟାନ୍ତ ଦର୍ଶାଇ ଆମ୍ଭମାନଙ୍କ ଧର୍ମ ଏବଂ ସୁଖ ବର୍ଦ୍ଧନର ଉପାୟ ଅବଧାରଣ କରେ; ଯେଉଁ କବିତା ନୀତିତତ୍ତ୍ୱମାନଙ୍କୁ ଉଦ୍ଦୀପନ କରେ ଏବଂ ସୌନ୍ଦର୍ଯ୍ୟର ବହୁବିଧ ଛବି ଉଦ୍ଭାବନ କରି ମନୁଷ୍ୟ ମନକୁ ମୁଗ୍ଧ କରେ; ଯେଉଁ ବ୍ୟବହାର ଶାସ୍ତ୍ରଦ୍ୱାରା ଦେଶର ରୀତି, ନୀତି ସଂଶୋଧିତ ହୁଏ, ସେ ସମସ୍ତ ବିଦ୍ୟାରୂପ ମହୀରୂହର ଭିନ୍ନ ଭିନ୍ନ ଶାଖା ମାତ୍ର ।

ଇଂଲଣ୍ଡର ଜଣେ ବିଖ୍ୟାତ ଦାର୍ଶନିକ କହିଅଛନ୍ତି ଯେ, ସଂସାରର ସାର ପଦାର୍ଥ ମନୁଷ୍ୟ ଏବଂ ମନୁଷ୍ୟର ସାରପଦାର୍ଥ ମନ । ଉପର୍ଯ୍ୟୁକ୍ତ ବାକ୍ୟ ନିହିତ ମହାସତ୍ୟ ସମସ୍ତ ମନୁଷ୍ୟଙ୍କ ମାନସ ମନ୍ଦିରରେ ଚିର ଦେଦୀପ୍ୟମାନ ଥିବାର ଉଚିତ । ଯେପର୍ଯ୍ୟନ୍ତ ଏହି କଥାର ସାରବତ୍ତା ଆମ୍ଭମାନଙ୍କ ହୃଦୟରେ ଉପଲବ୍ଧ ହେବ ନାହିଁ, ସେ ପର୍ଯ୍ୟନ୍ତ ଆମ୍ଭମାନଙ୍କ ଉନ୍ନତି କାର୍ଯ୍ୟ କଦାପି ସୁଚାରୁରୂପେ ସମ୍ପନ୍ନ ହୋଇ ନ ପାରେ । ସେହି ଦେଶ ଧନ୍ୟ, ଯହିଁରେ ଶ୍ରେଷ୍ଠବୁଦ୍ଧି ଲୋକେ ଜନ୍ମ ଗ୍ରହଣ କରନ୍ତି । ଯେଉଁ ଦେଶର ଭୂମି ଅତ୍ୟନ୍ତ ଉର୍ବର ଏବଂ ସର୍ବ ପ୍ରକାର ଶସ୍ୟୋତ୍ପାଦନାର୍ଥ ନିତାନ୍ତ ଉପଯୋଗୀ, ଯାହାର ଜଳବାୟୁ ଏବଂ ନୈସର୍ଗିକ ବସ୍ତୁ ସମୁଦାୟ ପରମରମଣୀୟ, ଯେଉଁ ସ୍ଥାନର ଜନ୍ତୁଗଣ ଅନ୍ୟ ଦେଶୀୟ ଜନ୍ତୁ ଅପେକ୍ଷା ଶ୍ରେଷ୍ଠ, ସେହି ଦେଶ ଯଦି ଶ୍ରେଷ୍ଠଧୀ-ବ୍ୟକ୍ତି ବିରହିତ ହୁଏ,ତେବେ ଆମ୍ଭେମାନେ କଦାପି ତାହାର ଗୌରବ ସ୍ୱୀକାର କରି ପାରୁ ନାହିଁ । ଆଜି ପର୍ଯ୍ୟନ୍ତ ପୃଥିବୀର କୌଣସି ଅଞ୍ଚଳରେ ଏହି ମହତ୍ ସତ୍ୟର ସମ୍ପୂର୍ଣ୍ଣ ଆଦର ଲକ୍ଷିତ ହୁଏ ନାହିଁ । ଅନ୍ୟ ଦେଶର କଥା କି କହିବା, ସଭ୍ୟତାଭିମାନୀ ଇଉରୋପୀୟମାନେ ଏ ବିଷୟରେ କିୟତ୍ ପରିମାଣରେ ମନୋଯୋଗୀ ମାତ୍ର । ବାହ୍ୟ ସୌନ୍ଦର୍ଯ୍ୟ ସମ୍ପାଦନାର୍ଥ ସମସ୍ତେ ତତ୍ପର । ସୁରମ୍ୟ ଅଭ୍ରଙ୍କଷ ଅଟ୍ଟାଳିକାଦି ନିର୍ମାଣରେ ସେମାନେ ଯେତେ ନୈପୁଣ୍ୟ ଏବଂ ଅଧ୍ୟବସାୟ ପ୍ରକାଶ କରନ୍ତି ମନର ଉନ୍ନତି

ସାଧନ ବିଷୟରେ ତଦୁର୍ଦ୍ଧ ମାତ୍ର ପ୍ରକାଶ କରନ୍ତି ନାହିଁ । ସୁଖର ବିଷୟ ଯେ କାଳକ୍ରମେ ଏହି ଭ୍ରମ ନିରାକୃତ ହେଉଅଛି । ମନୁଷ୍ୟର ମନ ସର୍ବ ପ୍ରକାର ବହିଃଶୋଭାର ମୂଳ ହେତୁ । ଏହି ସତ୍ୟର ପ୍ରଭା କ୍ରମଶଃ ସମସ୍ତଙ୍କ ମନରେ ଜାଜ୍ୱଲ୍ୟ ହୋଇ ଆସୁଅଛି । ମାନସୋନ୍ନତି ସାଧନ ଯେ ମନୁଷ୍ୟ ଜୀବନର ମୁଖ୍ୟ ଉଦ୍ଦେଶ୍ୟ ତାହା ସର୍ବବାଦୀ ସମ୍ମତ । ତାହାକୁ ଏଠାରେ ବହୁଳରୂପେ ବ୍ୟାଖ୍ୟା କରିବାର ଆମ୍ଭମାନଙ୍କ ଉଦ୍ଦେଶ୍ୟ ନୁହେଁ ।

ବର୍ତ୍ତମାନ ବିଦ୍ୟାନୁଶୀଳନର ପ୍ରୟୋଜନ ବ୍ୟାଖ୍ୟା କରିବାକୁ ଆମ୍ଭେମାନେ ପ୍ରବୃତ୍ତ ହେଲୁଁ । ମନୁଷ୍ୟବୁଦ୍ଧି ବିଦ୍ୟାନୁଶୀଳନ ଦ୍ୱାରା ଯେତେଦୂର ଉନ୍ନତ ଏବଂ ସମ୍ମାର୍ଜିତ ହୋଇପାରେ ଏମନ୍ତ ଅନ୍ୟ କୌଣସି ଉପାୟ ଦ୍ୱାରା ନୁହେଁ । ମନୁଷ୍ୟ ସାମାଜିକ ଜୀବ । ଆସଙ୍ଗ ଲିପ୍ସା ହେତୁରୁ ମନୁଷ୍ୟମାନେ ପରସ୍ପର ଭାବ ବିନିମୟ କରିବାକୁ ଅଭିଳାଷ କରନ୍ତି । ଏହି ଅଭିଳାଷ ମାନସୋନ୍ନତିର ଗୋଟିଏ ପ୍ରଧାନ କାରଣ । ଯେ ପରିମାଣରେ ମନୁଷ୍ୟ ସ୍ୱଚିନ୍ତା ଅନ୍ୟ ବ୍ୟକ୍ତି ନିକଟରେ ପ୍ରକାଶ କରିବାକୁ ଯତ୍ନ କରେ, ସେହି ପରିମାଣରେ ତାହାର ବୁଦ୍ଧି ସାରବାନ୍ ଏବଂ ସମ୍ମାର୍ଜିତ ହୁଏ । କେବଳ ନିଭୃତ ଚିନ୍ତା ମାନସୋନ୍ନତିର ଏକମାତ୍ର କାରଣ ନୁହେଁ । ଯେତେବେଳେ ଆତ୍ମାର ଉଚ୍ଚତମ ଚିନ୍ତା ସମସ୍ତ, ବୁଦ୍ଧିମାନ୍ ବ୍ୟକ୍ତି ବାକ୍ୟରେ ମୂର୍ତ୍ତିମନ୍ତ କରି ଅନ୍ୟ ବ୍ୟକ୍ତି ମନରେ ପ୍ରତିପନ୍ନ କରାଇ ଦିଅନ୍ତି, ତେତେବେଳେ ତାହାଙ୍କ ଆତ୍ମା ବିସ୍ତାରିତ ଏବଂ ସରଳ ହୁଏ । ଯେପର୍ଯ୍ୟନ୍ତ ଅନ୍ୟର ଶିକ୍ଷା ଅଥବା ସନ୍ତୋଷାର୍ଥ ଆମ୍ଭେମାନେ କୌଣସି ବିଷୟ ଲେଖିବାକୁ ପ୍ରବୃତ୍ତ ନ ହେଉଁ ସେ ପର୍ଯ୍ୟନ୍ତ ଆମ୍ଭମାନଙ୍କ ତଦ୍ୱିଷୟକ ଜ୍ଞାନ ପ୍ରାୟ ସୁଚାରୁରୂପେ ସ୍ଫୁଟ ହୋଇ ନ ଥାଏ । ଅନ୍ୟ ବ୍ୟକ୍ତିମାନେ ତାହାର ସ୍ପଷ୍ଟ ଉପଲବ୍ଧି କରିପାରିବେ ଏହି ଅଭିପ୍ରାୟରେ ଆମ୍ଭେମାନେ ନାନା ଅନୁସନ୍ଧାନରେ ପ୍ରବୃତ୍ତ ହେଉଁ ;ଏଣୁ ଆମ୍ଭର ଅସ୍ପଷ୍ଟ ଚିନ୍ତା ସମୁଦାୟ ଉଜ୍ଜ୍ୱଳ ହୋଇଯାଏ, ଅନେକ ମହାସତ୍ୟ ଆବିଷ୍କୃତ ହୁଏ ଏବଂ ମାନସର ଚିନ୍ତାଶୀଳତା ଉତ୍ପାଦିତା ଆଉ ବର୍ଦ୍ଧିତା ହୁଏ । ଏଥିରୁ ସ୍ପଷ୍ଟ ପ୍ରମାଣ ମିଳୁଅଛି ଯେ, ବିଦ୍ୟାନୁଶୀଳନ ଦ୍ୱାରା ବୁଦ୍ଧି ଶକ୍ତିର ଉନ୍ନତି ସାଧିତ ହୁଏ, ଏବଂ ତାହାର ସବଳତା ସମ୍ପାଦିତ ହୁଏ । କବିକାଳିଦାସପ୍ରଣୀତ ଶକୁନ୍ତଳା ନାଟକ ଏହି ବିଷୟର ଉତ୍ତମ ଉଦାହରଣ ସ୍ଥଳ । ଆଶ୍ରମଲଲାମଭୂତା, ସବଳା, ପ୍ରେମମୟୀ ଶକୁନ୍ତଳାର ଛବି ମନରେ ପଡ଼ିଲେ କାହାର ମନ ମୋହିତ ହୁଏ ନାହିଁ ? ଶକୁନ୍ତଳାର ପ୍ରଥମ ରାଜଦର୍ଶନ ସମ୍ଭୂତ ପ୍ରେମାବିର୍ଭାବ, ପଶ୍ଚାତ୍ ଉପବନମଧ୍ୟେ ମିଳନ, ଗନ୍ଧର୍ବବିବାହ, ବିରହାବସ୍ଥା, ପତିଗୃହ ଗମନକାଳୀନ ଆଶ୍ରମବର୍ଦ୍ଧିତ ତରୁଲତାଦିର ସମ୍ବୋଧନ, ସ୍ୱାମିକର୍ତ୍ତୃକ ପରିବର୍ଜନ, ପୁନର୍ମିଳନ, ରାଜାର ପୁତ୍ରମୁଖ ସନ୍ଦର୍ଶନ, ଏ ଅଂଶମାନଙ୍କୁ ପାଠ କରି କିଏ କାଳିଦାସର ଅଦ୍ଭୁତ ଶକ୍ତିର ଭୂୟୋଭୂୟଃ ପ୍ରଶଂସା ନ କରି କ୍ଷାନ୍ତ ହୋଇପାରେ ? କିନ୍ତୁ ଯଦି କାଳିଦାସ ତାହାଙ୍କ ମନୋଦିତ ଶକୁନ୍ତଳାର ଛବି ଜନସମାଜ ନିକଟରେ ଅର୍ପଣ କରିବାକୁ ସଚେଷ୍ଟ ହୋଇ ନ ଥାନ୍ତେ, ତାହା ହେଲେ ତାଙ୍କ ଅଦ୍ଭୁତଶକ୍ତି କେଉଁ କାର୍ଯ୍ୟକୁ ଆସନ୍ତା ? ସାହିତ୍ୟ ଚର୍ଚ୍ଚା ଯେ ବୁଦ୍ଧି ବୃତ୍ତିର ଧାତ୍ରୀସ୍ୱରୂପ ଏଥି ଉତ୍ତାରେ କିଏ ଅସ୍ୱୀକାର କରିବ ?

ବିଦ୍ୟାନୁଶୀଳନ ଦ୍ୱାରା ଯେ କେବଳ ବ୍ୟକ୍ତିବିଶେଷର ଉପକାର ହୁଏ ଏମନ୍ତ ନୁହେ । ଏତଦ୍ୱାରା ଜନସମାଜର ଅବସ୍ଥା ଏବଂ ଚରିତ୍ର ସଂଶୋଧିତ ହୁଏ ଏବଂ ମନୁଷ୍ୟଜାତି ମହତ୍ତ୍ୱ ଏବଂ ସଭ୍ୟତା ପଦବୀ ଆରୋହଣ କରନ୍ତି । ପାଠକ ! ମାନବ ଶିରୋଭୂଷଣା ଏହି ପୃଥିବୀ ଆଡ଼କୁ ଥରେ ନେତ୍ରପାତ କର, ଏ ବିଷୟରେ ତୁମ୍ଭର ଆଉ ସନ୍ଦେହ ରହିବ ନାହିଁ । ଏହି କଥା ନିର୍ଣ୍ଣୟକରଣାର୍ଥ ଇତିହାସ ପ୍ରଧାନ ଅବଲମ୍ବନ । ପୃଥିବୀର ଯେ ସମସ୍ତ ଜାତି ମହତ୍ ଏବଂ ଶ୍ରୀବୃଦ୍ଧିଶାଳୀ ହୋଇଅଛନ୍ତି, ସେମାନଙ୍କ ଇତିବୃତ୍ତ ପାଠ କର । ପ୍ରାଚୀନ ଗ୍ରୀସ୍, ରୋମ, ଭାରତବର୍ଷ ଏବଂ ଆଧୁନିକ ଇଂଲଣ୍ଡ, ଜର୍ମାନୀ, ଫ୍ରାନ୍ସ, ଆମେରିକା ଏହାର ଉଦାହରଣସ୍ଥଳ ।

ବିଦ୍ୟାର ପ୍ରଭାବ କି ବିଚିତ୍ର ! ଏହା ବଳରେ ଆକାଶର ସୁରସୁନ୍ଦରୀ ବାର୍ତ୍ତାବହରୂପେ ମନୁଷ୍ୟର ସେବା କରୁଅଛନ୍ତି, ଶକଟ ଏବଂ ପୋତରେ ସଂଯୋଜିତ ହୋଇ ଦୂରତ୍ୱ ବିନାଶ କରୁ ଅଛି ଏବଂ ନୟନାତୀତ ବହୁ ଲକ୍ଷ କ୍ରୋଶ ଦୂରବର୍ତ୍ତୀ ନକ୍ଷତ୍ରମାନଙ୍କ ପରିମାଣ ଅବଧାରିତ ହେଉଅଛି । ଯେଉଁ ଦେଶରେ ବିଦ୍ୟାଚର୍ଚ୍ଚା ବହୁଳରୂପେ ହୁଏ, ଯହିଁରେ ଅସାଧାରଣ ଧୀଶକ୍ତି ସମ୍ପନ୍ନ ବ୍ୟକ୍ତି ଅଧିବାସକରେ ତତ୍ରତ୍ୟ ଲୋକମାନଙ୍କ ମନରେ ଉଦ୍ଦୀପନା ଏବଂ ଯଶୋଭିଳାଷ ସର୍ବଦା ଜାଗ୍ରତ ଥାଏ । ଅତଏବ ସେମାନେ ସ୍ୱାଧୀନତାପ୍ରିୟ ଏବଂ ଉତ୍କର୍ଷାଭିଳାଷୀ ହୋଇ ମହତ୍ତ୍ୱ ଲାଭ କରିବାକୁ ସମର୍ଥ ହୁଅନ୍ତି ।

ବର୍ତ୍ତମାନ ଆମ୍ଭେମାନେ ବିଦ୍ୟାର ମାହାତ୍ମ୍ୟ କିୟତ୍ ପରିମାଣରେ କୀର୍ତ୍ତନ କଲୁଁ। ଅସ୍ମଦ୍ଦେଶୀୟ ଜନସାଧାରଣଙ୍କ ମନରେ ଜ୍ଞାନାର୍ଜନ ବାସନାରୂପ ବୀଜ କି ପ୍ରକାରେ ରୋପିତ ହେବ, ବର୍ତ୍ତମାନ ତାହା ଆମ୍ଭର ଅନୁସନ୍ଧେୟ । ଇତିହାସ ପାଠକଲେ ଜଣାଯାଏ ଯେ, ସମାଜରେ କୌଣସି ପ୍ରକାର ନବ ପରିବର୍ତ୍ତନ ନ ଘଟିଲେ କୌଣସି ଜାତି ମଧ୍ୟରେ ଉକ୍ତ ବାସନା ଚରିତାର୍ଥ ହୋଇପାରେ ନାହିଁ । ଇଂଲଣ୍ଡ ଏବଂ ଫ୍ରାନ୍ସ ଦେଶର ରାଜ୍ୟ ବିପ୍ଲବ, ଆମେରିକାର ସ୍ୱାଧୀନତା ଲାଭ, ଭାରତବର୍ଷରେ ଚୈତନ୍ୟ ଧର୍ମ ସଂସ୍ଥାପନ ଇତ୍ୟାଦି ଉପଯୁକ୍ତ ମତର ପୋଷକ ଅଟନ୍ତି । ବର୍ତ୍ତମାନ ଆମ୍ଭମାନଙ୍କ ମଧ୍ୟରେ କୌଣସି ଅନୁକୂଳ ପରିବର୍ତ୍ତନ ଲକ୍ଷିତ ହେଉ ଅଛି କି ନାହିଁ ଦେଖିବାର ଆବଶ୍ୟକ । ସୌଭାଗ୍ୟ କ୍ରମେ ଇଂଲଣ୍ଡୀୟ ବିଦ୍ୟାନୁଶୀଳନ ହେତୁରୁ ଭାରତବର୍ଷର ସର୍ବ ଅଞ୍ଚଳରେ ଏକ ନୂତନ ଆଭ୍ୟନ୍ତରିକ ବିପ୍ଳବ ଉପସ୍ଥିତ ହୋଇଅଛି । ଏଥିରେ ଭାରତବର୍ଷୀୟ ଯେଉଁ ଜାତିମାନେ କଟିବନ୍ଧନ ପୂର୍ବକ ବୀରତା ସହକାରେ ଅଜ୍ଞାନତିମିର ବିନାଶ କରି ଜ୍ଞାନାଲୋକ ବିସ୍ତାର କରିବେ, ସେହିମାନେ ପରିଣାମେ ସ୍ୱଦେଶକୁ ବହୁକାଳ ସ୍ଥାୟୀକଳଙ୍କରୁ ମୁକ୍ତ କରିବେ ଏବଂ ମହତ୍ ଜାତିଶ୍ରେଣୀରେ ଭୁକ୍ତ ହେବେ । ପୁଣି ଯେଉଁମାନେ ଶିଥିଳୋଦ୍ୟମ ହୋଇ ଔଦାସ୍ୟ ଅବଲମ୍ବନ କରିବେ, ସେମାନଙ୍କ ପୁନରୁତ୍ଥାନର ସମ୍ଭାବନା ନାହିଁ । ଯେ ସଭ୍ୟତା ପ୍ରଭାକର ପ୍ରଥମେ ଭାରତରେ ଉଦିତ ହୋଇ ପାଶ୍ଚାତ୍ୟ ଅଞ୍ଚଳକୁ ପ୍ରସ୍ଥାନ କରିଥିଲା, ତାହାର ପ୍ରଭା ପୁନର୍ବାର ଏଠାରେ ବିକୀର୍ଣ୍ଣ ହେଉଅଛି । ହେ ସ୍ୱଦେଶବତ୍ସଳ ପୁରୁଷ ବୃନ୍ଦ ! ଏହି ସମୟ କାର୍ଯ୍ୟର ସମୟ । ଆଉ ବିଳମ୍ବ କରନା । ମାତୃଭାଷାର ଉନ୍ନତି ସାଧନ କରି ଏବଂ ରତ୍ନଗର୍ଭା ଭାରତଭୂମିର ମୁଖ ଉଜ୍ଜ୍ୱଳ କର ।

*ଭା/୧ଗ,ସଂ୪ଖ୍ୟା ,ଏପ୍ରିଲ -୧୮୭୩*

## ହଣ୍ଟର୍ସ ଉଡ଼ିଶ୍ୟା

ଆମ୍ଭେମାନେ ହାଣ୍ଟରସ୍ ଉଡ଼ିଶ୍ୟା ଦେଖି ଅତ୍ୟନ୍ତ ପ୍ରୀତି ହୋଇଅଛୁଁ । ଯେ ଦେଶକୁ ଭାରତବର୍ଷର ପ୍ରତ୍ୟେକ କୋଣର ଲୋକମାନେ ପବିତ୍ର ସ୍ଥାନ ମଣି ଆସନ୍ତି; ଆର୍ଯ୍ୟଗ୍ରନ୍ଥମାନଙ୍କରେ ଯେଉଁ ଦେଶ ପୁଣ୍ୟତମ ଭୂମିବୋଲି କୀର୍ତ୍ତିତ୍ ହୋଇଅଛି; ଯେଉଁ ଦେଶର ପ୍ରାକୃତିକ ଶୋଭା ସ୍ୱଦେଶୀୟ ବିଦେଶୀୟମାନଙ୍କର ନେତ୍ରକୁ ଆକର୍ଷଣ କରଇ;ବିଗତ ଦୁର୍ଭିକ୍ଷ ପର୍ଯ୍ୟନ୍ତ ସେହି ଉଡ଼ିଶ୍ୟାର ଗୌରବ ରାଜପୁରୁଷମାନେ ସୁଦ୍ଧା ଅବଗତ ନ ଥିଲେ । ଗୌରବ ଅବଗତ ଥିବାର ତେଣିକି ଥାଉ ଉଡ଼ିଶ୍ୟାକୁ ନିତାନ୍ତ କୁସ୍ଥଳୀ ମଣୁଥିଲେ । ଗଡ଼ଜାତମାନଙ୍କୁ ସଙ୍ଗେ ଧରିଲେ ଆୟତନରେ ଆମ୍ଭମାନଙ୍କର (ଅରକ୍ଷିତା) ଉଡ଼ିଶ୍ୟାକୁ ବଙ୍ଗଳାର ସମକକ୍ଷ ବୋଲିବାକୁ ହେବ । ମାତ୍ର ବଙ୍ଗଦେଶର ଆଧୁନିକ ଶ୍ରୀବୃଦ୍ଧି ସଙ୍ଗେ ତୁଳନା କଲେ ସୁଖୋଚିତା ଉଡ଼ିଶ୍ୟା ଅତ୍ୟନ୍ତ ହୀନାବସ୍ଥାରେ ଅଛି । ଏଥିର ପ୍ରଧାନ କାରଣ ଏହି ଯେ କେବଳ ମୁଗଲବନ୍ଦି ବିଭାଗ ରାଜପୁରୁଷମାନଙ୍କ ନୟନରେ ଚିହ୍ନିତ ଉଡ଼ିଶ୍ୟା ବୋଲି ଗଣିତ ହୁଅଇ । ଗଡ଼ଜାତର ରାଜାମାନେ ଏକପ୍ରକାର ସ୍ୱାଧୀନ ଭାବରେ ଅଛନ୍ତି;ତେଣୁ ସେମାନଙ୍କର ଆପଣା ଆପଣା ରାଜ୍ୟର ଉନ୍ନତି ସାଧିବାର ଭାର ସେମାନଙ୍କଠାରେ ବର୍ତ୍ତୁଅଛି । ଏହା ଭାବି ଇଂରାଜ ରାଜପୁରୁଷମାନେ ନିଶ୍ଚିନ୍ତ ଅଛନ୍ତି । ଗଡ଼ଜାତ ରାଜାଙ୍କଦ୍ୱାରା ଯେ କୌଣସି କାଳରେ କିଛି ଉନ୍ନତି ହେବ ନାହିଁ ଏହା ରାଜପୁରୁଷମାନେ ସମ୍ପୂର୍ଣ୍ଣରୂପେ ଅବଗତ ଅଛନ୍ତି,ମାତ୍ର ଏହା ଜାଣିଶୁଣି ଆତ୍ମପ୍ରବଞ୍ଚ ସାନ୍ତ୍ୱନାରେ ନିଶ୍ଚିନ୍ତ ଅଛନ୍ତି । କୌଣସି ବିଷୟରେ ବଳାତ୍କାର କରିବାର ଇଂଲଣ୍ଡୀୟ ପ୍ରଶସ୍ତ ରାଜନୀତିର ବିରୁଦ୍ଧ ଅଟଇ । ପ୍ରଜାମାନଙ୍କର ସମ୍ମତି ବିରୁଦ୍ଧରେ ଏହି ନୀତି ଲଙ୍ଘନ କରି ଯଥେଷ୍ଟ ଟେକ୍ସ ଆଦାୟ କରନ୍ତି । ଗୋଟିଏ ଗ୍ରାମରେ ଭଲ ସଡ଼କ ନାହିଁ, ଲୋକମାନଙ୍କର ଆଗ୍ରହ ଥାଉ ଅବା ନ ଥାଉ ସନ୍ତାନର ପ୍ରକୃତ ହିତାକାଂକ୍ଷୀ ପିତାପରି ରାଜପୁରୁଷମାନେ ସେହି ଗ୍ରାମର ପ୍ରଜାମାନଙ୍କଠାରୁ ଟେକ୍ସ ଆଦାୟ କରିବେ । ସେହି ଟେକ୍ସଦ୍ୱାରା ସଡ଼କ ବନ୍ଧାଇବେ, ମାତ୍ର ଗ୍ରାମରେ ଗୋଟିଏ ବିଦ୍ୟାଳୟ ନାହିଁ । ଗ୍ରାମବାସୀମାନେ ଯେବେ ସ୍ୱୟଂ ବିଦ୍ୟାଳୟ ନିମନ୍ତେ ଆଗ୍ରହ ପ୍ରକାଶ ନ କରିବେ, ସରକାର ସେଥିରେ ହସ୍ତକ୍ଷେପ କରିବେ ନାହିଁ । ହେତୁକି କାହାରି ଅସମ୍ମତିରେ ବଳାତ୍କାରପୂର୍ବକ କୌଣସି କାର୍ଯ୍ୟ କରିବାର ଇଂଲଣ୍ଡୀୟ ପ୍ରଶସ୍ତ ରାଜନୀତିର ଅନୁମୋଦିତ ନୁହଇ । ଗଡ଼ଜାତ ରାଜାମାନେ ଫୁଲବେଇମାନଙ୍କୁ ଘେନି

ଗଡ଼ଭିତରେ ରାତିଦିନ ରାସ ଲୀଳା କରୁଥିବେ, ପ୍ରଜାମାନଙ୍କର ଯଥାସର୍ବସ୍ୱ ହରଣ କରୁଥିବେ, ପ୍ରଜାଙ୍କର ମାନସିକ ଉନ୍ନତିଆଡକୁ ଦୃଷ୍ଟିପାତ କରିବେ ନାହିଁ, ଏବିଷୟରେ ଇଂରାଜ ରାଜପୁରୁଷମାନେ ହସ୍ତକ୍ଷେପ କରିବେ ନାହିଁ । ହେତୁକି କୌଣସି ବିଷୟରେ ବଳାତ୍କାର କରିବାର ଇଂଲଣ୍ଡୀୟ ପ୍ରଶସ୍ତ ରାଜନୀତିର ବିରୁଦ୍ଧ ଅଟଇ ଏହି ଗଡ଼ଜାତ ଯୋଗୁଁ ଉଡ଼ିଶ୍ୟା ଆଜିଯାଏ ଗଣନୀୟ ପ୍ରଦେଶ ଶ୍ରେଣୀରେ ଭୁକ୍ତ ହୋଇ ନାହିଁ । ଅଧିକାଂଶ ଗଡ଼ଜାତ ପ୍ରଜାମାନଙ୍କର ଯେମନ୍ତ ରୀତିନୀତି ଏଥିରେ କୌଣସି କାଳରେ ଉଡ଼ିଶ୍ୟା ଅନ୍ୟାନ୍ୟ ଗଣନୀୟ ପ୍ରଦେଶର ପ୍ରତିଯୋଗୀ ହେବ ଏହା ମଧ ଦିଶୁ ନାହିଁ । ହେ ଗଡ଼ଜାତ ରାଜାମାନେ ! ଦେଖ, ତୁମ୍ଭେମାନେ ପାପିଷ୍ଠ ହୋଇ ଲକ୍ଷ ଲକ୍ଷ ପ୍ରଜାଙ୍କର ଉନ୍ନତିମାର୍ଗରେ କଣ୍ଟକ ହୋଇଅଛ; ତୁମ୍ଭର ନିଦ୍ରା କେବେ ଭାଙ୍ଗିବ ? ପ୍ରଜାମାନଙ୍କ ସର୍ବସ୍ୱ ହରଣର କେବେ ତୁମ୍ଭେମାନେ ନିବୃତ୍ତ ହେବ । କେବଳ ଆପଣା ସୁଖ ନିମନ୍ତେ କର ଆଦାୟ କରି ଆପଣାକୁ ରାଜାବୋଲି ପରିଚୟ ଦେବାରୁ ତୁମ୍ଭେମାନେ କେବେ କ୍ଷାନ୍ତ ହେବ ? ଏହି ଦେଖ, ଘୋର ବର୍ଷା, ତୁମ୍ଭେ-ନାଟମନ୍ଦିରରେ ବସି ପାଲା ଶୁଣୁଅଛ, ବାଇ ନାଚ ଦେଖୁଅଛ । ତୁମ୍ଭର ଦରିଦ୍ରପ୍ରଜାର ଘର-ଚାଳ ବାରେ ଉଡ଼ିଗଲାଣି, ଭିତରେ ପାଣି ପଡୁଅଛି, ରାତ୍ରିରେ ଗରିବ କେଉଁଠାରେ ରହିବ, କଅଣ ଖାଇବ ତାହାର ସଂସ୍ଥାନ ନାହିଁ । ଦରିଦ୍ର ତୁମ୍ଭଠାକୁ ଆସି ତାହାର ଦୁଃଖ ଜଣାଇବ ଏପରି ଉପାୟ ସୁଦ୍ଧା ନାହିଁ । ପାଣିରେ ଦେଶ ଭାସିଗଲାଣି ଘରୁ ବାହାରିବାର ବାଟ ନାହିଁ । ଦରିଦ୍ର ଯେବେ ପହଁରି ତୁମ୍ଭଠାକୁ ଆସିଲା ତାହା ଗୁହାରି ଶୁଣିବାକୁ ତୁମ୍ଭର ଅବକାଶ ନାହିଁ । "ଦିଆନ ସାହେବଙ୍କୁ କହିଯାଇ, ଗରିବେ ଭେଟି ଆଣି ନାହିଁ । ଦିଆନସାହେବ ତାହା କଥା ଅବା କାହିଁକି ଶୁଣିବେ । ଦିଆନସାହେବ ଆପଣମାନଙ୍କଠାରୁ ଆହୁରି ଚତୁର । ଆପଣମାନେ ପୂର୍ବପୁରୁଷାର୍ଜିତ ରାଜଦ୍ୱର ଉପସଦ୍‌କୁ ଉଡ଼ାଉ ଅଛନ୍ତି;ଦିଆନସାହେବ କିରୂପେ ଭବିଷ୍ୟତ୍‌କୁ ରଜା ହୋଇ ପାରିବେ ଏହି ଚିନ୍ତାରେ ପ୍ରତିଦିନ ବ୍ୟସ୍ତ ଅଛନ୍ତି । ରକ୍ତଶୋଷୀ ଜୋକପରି ଅର୍ଥଶୋଷୀ ଦିଆନ ଦିନକୁଦିନ ଫୁଲି ଯାଉଅଛନ୍ତି । ଦେଖ ଆଉ ବିଳମ୍ବ ନ କର, ଯଥେଷ୍ଟ ହେଲାଣି ତୁମ୍ଭର ପୂର୍ବପୁରୁଷମାନଙ୍କର ଅଧିକାଂଶ, ଦକ୍ଷିଣ ଦୁଆରରେ ଝୁରି ମରୁ ଅଛନ୍ତି । ସେମାନଙ୍କ ସଂଖ୍ୟା ବୃଦ୍ଧି ନ କର । ମନୁଷ୍ୟର ଜୀବନ ପଦ୍ମଦଳସ୍ଥ ଜଳବିନ୍ଦୁ ପରି । ପୁଣି ତୁମ୍ଭପରି ବିଳାସୀ ମନୁଷ୍ୟର ଜୀବନକୁ ଅବା କିଏ ପଚାରେ । ବେଳଗଡ଼ିଲା ଏହିବେଳୁ ତୁମ୍ଭ ନଥି ଦୁରସ୍ତ କର । ବିଶ୍ୱରାଜାଙ୍କଠାରେ କଅଣ କହି ମୁକ୍ତି ଲଭିବ ସେହିତା ଭାଳ, ଆଉ ଦିନ ନାହିଁ ।

ଏହା ମଧ୍ୟ ସ୍ୱୀକାର କରିବାର ଉଚିତ ଯେ ସବୁ ଗଡ଼ଜାତ ରାଜାମାନେ ସମାନରୂପରେ ନିନ୍ଦନୀୟ ନୁହନ୍ତି । ଇଂରେଜଙ୍କର ଉତ୍କୃଷ୍ଟ ଶାସନପ୍ରଣାଳୀ ଦେଖି କେହି କେହି ମହାନୁଭାବ ଗଡ଼ଜାତୀୟ ରାଜା ନିଜ ଶାସନ ପ୍ରଣାଳୀକୁ ବହୁ ପରିମାଣରେ ସଂଶୋଧିତ କରୁଅଛନ୍ତି ଏବଂ ସୁଶିକ୍ଷିତ ଧର୍ମଭୀରୁ-ସଚିବ ନିଯୁକ୍ତ କରି ପ୍ରଜାମାନଙ୍କ ପ୍ରକୃତ ଅଭାବପ୍ରତି ନେତ୍ର ଉନ୍ମୀଳନ କରୁଅଛନ୍ତି । ଏମାନେ ଆମ୍ଭମାନଙ୍କର ଏବଂ ତାହାଙ୍କର ପ୍ରଜାମାନଙ୍କର ଧନ୍ୟବାଦାର୍ହ ଅଟନ୍ତି । ଏମାନେ କିଛି କର୍ତ୍ତବ୍ୟରୁ ବଳି କରୁଅଛନ୍ତି ଆମ୍ଭେମାନେ ଏହା କହୁ ନାହୁଁ ; ଏମାନେ ଯାହା କରୁଅଛନ୍ତି ତାହା ବ୍ରାହ୍ମଣର ଗାୟତ୍ରୀ ପାଠପରି; ହେଲେହେଁ ବୈପରିତ୍ୟ ଯୋଗୁଁ ଏମାନେ ଆମ୍ଭ ନୟନର ଆନନ୍ଦକର ହୋଇଅଛନ୍ତି ।

ଗତଦୁର୍ଭିକ୍ଷଦ୍ୱାରା ଯେ ନିରବଚ୍ଛିନ୍ନ ଅଶୁଭ ଫଳ ଫଳିଅଛି ତାହା କଦାଚ ନୁହେଁ । ଗୋଟିଏ ଭୟଙ୍କର ରାଷ୍ଟ୍ରବିପ୍ଳବ ହେଲେ ଆପାତତଃ ଦେଶର ଅମଙ୍ଗଳ ହୁଅଇ ମାତ୍ର ଅନେକ କୁରୀତି ଦୂର ହୋଇଯାଏ, ପଛକୁ ଦୁଇଗୁଣ ଶ୍ରୀବୃଦ୍ଧି ହୁଏ । ବିଗତ ଦୁର୍ଭିକ୍ଷରେ ଅନେକ ଲୋକ ମରିଅଛନ୍ତି, ଅନେକ ଗ୍ରାମ ନିର୍ବାସିତ ହୋଇଅଛି ଏହା ସତ୍ୟ ମାତ୍ର ଶୁଭ ଫଳର ପରିମାଣ ଅଧିକ । ସୂକ୍ଷ୍ମ କଥା କହିବାକୁ ଗଲେ ଦୁର୍ଭିକ୍ଷ ଉଡ଼ିଶ୍ୟାପ୍ରତି ରାଜପୁରୁଷମାନଙ୍କର ନେତ୍ରକୁ ଉନ୍ମୀଳିତ କରାଇ ଅଛି । ଆଉ ଆଉ ଦେଶପରି ଉଡିଶ୍ୟାର ରୀତି ନୀତି କିପରି, ଉଡ଼ିଶ୍ୟାବାସୀମାନଙ୍କର ଗତି ପ୍ରବୃତ୍ତି କିପରି, ଉଡ଼ିଶ୍ୟାର ଅଭାବ କଅଣ ସଦ୍‌ଭାବ କଅଣ ରାଜପୁରୁଷମାନେ ବିଶେଷରୂପେ ଏହି ଅନୁସନ୍ଧାନରେ ରତ ହୋଇଅଛନ୍ତି । ଷ୍ଟାଟିସ୍‌ଟିକସ୍ ଦେଶର ପ୍ରକୃତ ଅବସ୍ଥା ଜ୍ଞାପକ ନକ୍‌ସା ଉପରେ ଷ୍ଟେଟିଷ୍ଟିକ୍‌ସ ଚଳୁଅଛି । ଫୌଜଦାରୀ, କିଲେଟରୀ, ଅବକାରୀ, ଶିକ୍ଷା ଓ ଚିକିତ୍ସା ଏହି ସବୁ ବିଷୟମାନଙ୍କର ନିୟମିତ ନକ୍‌ସା ଛଡ଼ା

ରାଜପୁରୁଷମାନଙ୍କର ଅବଶ୍ୟ ଜ୍ଞେୟ ଅନ୍ୟାନ୍ୟ ବିଷୟମାନଙ୍କର ବିଜ୍ଞାପନୀ ତଲବ ହେଉଅଛି, ପ୍ରସ୍ତୁତ ହେଉଅଛି ଓ ପଠିଯା ଯାଉଅଛି । ଅଶିକ୍ଷିତ ମୂର୍ଖଲୋକେ ଏହିସବୁ ଦେଖି ଶୁଣି ଭୀତ ହେଉଅଛନ୍ତି । ଏମାନଙ୍କର ଶଙ୍କିତ ନୟନ ସରକାରଙ୍କର ପ୍ରତ୍ୟେକ କାର୍ଯ୍ୟ ତଳେ ଟେକ୍‌ସର ବିକଟ ମୂର୍ତ୍ତି ବିନୁ ଆନକିଛି ଦେଖୁ ନାହିଁ । ମାତ୍ର ଏପରି ଶଙ୍କା ଅମୂଳକ । ବିଜ୍ଞଲୋକେ ଉଲ୍ଲିଖିତ କାର୍ଯ୍ୟତଳେ ଉନ୍ନତିର ମୂର୍ତ୍ତିକୁ ଦେଖିବେ ସନ୍ଦେହ ନାହିଁ ବାସ୍ତବରେ ଯେତେ ଦିନପର୍ଯ୍ୟନ୍ତ ରାଜପୁରୁଷମାନେ ପ୍ରଜାମାନଙ୍କର ପ୍ରକୃତ ଅବସ୍ଥା, ପ୍ରକୃତ ଅଭାବ ନ ଜାଣିବେ ପ୍ରତିକାରର କ୍ଷମତା ଥିଲେ ସୁଦ୍ଧା ସେମାନଙ୍କ ଦ୍ୱାରା କୌଣସି ପ୍ରତିକାର ହୋଇପାରିବ ନାହିଁ ।

ହଣ୍ଟର ପ୍ରଣୀତ ଇତିବୃତ୍ତର ଉପକରଣ ରାଜକୀୟ ବିଜ୍ଞାପନୀମାନଙ୍କର ଶତଃ ନିୟା ଯାଉଅଛି । ତେଣୁ ରାଜକୀୟ ବିଜ୍ଞାପନୀର ଯାଥାର୍ଥ୍ୟ ଉପରେ ଇତିହାସର ଯାଥାର୍ଥ୍ୟ କିୟତ୍ ପରିମାଣରେ ନିର୍ଭର କରୁଅଛି । ମାତ୍ର ରାଜକୀୟ ବିଜ୍ଞାପନୀ ଅନେକ ସ୍ଥଳରେ ଭ୍ରମପୂର୍ଣ୍ଣ । ନକ୍‌ସା ପ୍ରସ୍ତୁତ କରିବାର ଭାର ଯେମାନଙ୍କ ଉପରେ ଅଛି ନକ୍‌ସାର ଉପଯୋଗିତା ବୁଝିବାକୁ ସେମାନଙ୍କର ବିଦ୍ୟା ନାହିଁ । ଉଦ୍ଦେଶ୍ୟାନୁଯାୟୀ ନକ୍‌ସା ପ୍ରସ୍ତୁତ କରିବା ନିମନ୍ତେ ଯେତେ ଧର୍ମଭୀରୁତା ଆବଶ୍ୟକ ସେମାନଙ୍କର ତେତେ ଧର୍ମଭୀରୁତା ନାହିଁ। ତେଣୁ ବିଜ୍ଞାପନୀ ଅଂଶତଃ ଅଯଥାର୍ଥ ହୁଏ । ତନ୍ମୂଳକ ଇତିହାସ ଯେ ସେହିପରି ହେବ ସେଥିରେ ଆଉ ଅଛି କଅଣ । ପୁଣି ଦେଶର ପ୍ରକୃତ ଅବସ୍ଥା ଜାଣିବା ପାଇଁ ରାଜପୁରୁଷମାନେ ଯେ କେତେ କେତେ ପ୍ରୟାସ ପାଇଥାନ୍ତି ତାହା କାଗଜରେ ଉଜ୍ଜ୍ୱଳ ; କିନ୍ତୁ କାର୍ଯ୍ୟରେ ବିକଳ ହୋଇଯାଏ । ରାଜା, ପୁଣି ବିଦେଶୀ କିଏ ଅବା ସାହସ କରି ଏମାନଙ୍କ ସଙ୍ଗେ ମିଶିବ ? କିଏ ଅବା ବିଶ୍ୱାସ କରି ଏମାନଙ୍କଠାରେ ମନ ଫେଡ଼ିବ ? ଭୟରେ ରାଜାଙ୍କଠାରେ କେହି ପ୍ରକୃତ ଅବସ୍ଥା ଜଣାଣ କରନ୍ତି ନାହିଁ ବୋଲି ପୂର୍ବକାଳର ରାଜାମାନେ ଛଦ୍ମବେଶ ଧରି ସମସ୍ତଙ୍କ ସଙ୍ଗେ ମିଶି ଦେଶର ପ୍ରକୃତ ଅବସ୍ଥା ଜାଣୁଥିଲେ । କେହି ଅବା ଚର ନିଯୁକ୍ତ କରି ଉଦ୍ଦେଶ୍ୟ ସାଧୁ ଥିଲେ । ତେଣୁ କରି ଦେଶରେ ବିସ୍ତର ଉପଦ୍ରବ ହୋଇ ପାରୁ ନ ଥିଲା । ଦୁଃଖର ବିଷୟ ଏହି କି ଇଂରାଜ ରାଜପୁରୁଷମାନେ ଏପରି ଉପାୟ ଅବଲମ୍ୱନ କରନ୍ତି ନାହିଁ ,ଏଥିପାଇଁ କେତେ ପାପାତ୍ମା, ନିରୀହ ଭଦ୍ରଲୋକ ବୋଲି ପ୍ରତିଷ୍ଠିତ ହୋଇଅଛନ୍ତି । କେତେ ନିରୀହ ଲୋକେ ପାପାତ୍ମା ବୋଲି ଦଣ୍ଡିତ ହୋଇ ଅଛନ୍ତି । ଆମ୍ଭମାନଙ୍କର ମତର ପୋଷକତା ନିମନ୍ତେ ଗୋଟିଏ ପ୍ରକୃତ ଘଟଣା ତଳେ ଲେଖୁଅଛୁଁ ।

ଗଡ଼ଜାତୀୟ ରାଜାମାନେ କେମନ୍ତ ରୀତିରେ ବିଚାର କରନ୍ତି ତାହା ଦେଖିବା ପାଇଁ ଉତ୍ସୁକ ହୋଇ କୌଣସି ସାହେବ ଆଗହୁଁ କୌଣସି ଗଡ଼ଜାତର ରାଜାଙ୍କଠାକୁ ବାର୍ତ୍ତା ପଠାଇଲେ । ତହିଁ ଆରଦିନ ଯାଇ ଗଡ଼ରେ ପ୍ରବେଶ ହେଲେ । ଠିକ୍ ଦଶଟା ବେଳେ ରାଜାଙ୍କର କଚେରି ଆରମ୍ଭ ହେଲା । ଅମଲାମାନେ ଅଭ୍ୟସ୍ତ ପରି କାର୍ଯ୍ୟ କରିବାକୁ ଲାଗିଲେ । ରାଜା ସ୍ୱୟଂ ଉତ୍କୃଷ୍ଟ ପ୍ରଣାଳୀ ଅନୁସାରେ ସାକ୍ଷୀମାନଙ୍କର ଜବାନବନ୍ଦୀ ନେଲେ । ମୁଦେଇ ମୁଦାଲାଙ୍କର ଇଜହାର ଶୁଣିଲେ, ନିରପେକ୍ଷ ରୂପରେ ସ୍ୱୟଂ ରାୟ ଲେଖିଲେ, ଅପରାଧୀକୁ ବିହିତ ଦଣ୍ଡାଜ୍ଞା କଲେ । ସାହେବ ଏହି ସବୁ ଦେଖି ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ । ଗଡ଼ଜାତର ରାଜାମାନେ ଅନ୍ୟାୟ କରନ୍ତି ଏହି ଜନଶ୍ରୁତିକୁ ଅମୂଳକ ମଣିଲେ । ଫଳେ ପ୍ରକୃତ କଥା ଏତିକି ସାହେବଙ୍କଠାରୁ ସମ୍ୱାଦ ପାଇ ପରୀକ୍ଷା ପୂର୍ବଦିନ ଶିକ୍ଷକ ଯେମନ୍ତ ଛାତ୍ରମାନଙ୍କୁ ଶିଖାଇଥାନ୍ତି, ଦିଆନ ସାହେବ ସେହିପରି ରାଜା, ମୁଦେଇ, ମୁଦାଲା, ସାକ୍ଷୀ ସମସ୍ତଙ୍କୁ ରାତ୍ରି ଦୁଇପ୍ରହର ପର୍ଯ୍ୟନ୍ତ ତାଲିମ କଲେ । ରାଜା କେତେଗୁଡିଏ ସବାଲ ମୁଖସ୍ଥ କଲେ, ମୁଦେଇ, ମୁଦାଲା, ସାକ୍ଷୀ ଯେ ଯାହାର ଜବାବ ମୁଖସ୍ଥ କଲେ । ଆରଦିନ କଚେରିରେ ସାହେବଙ୍କ ସମକ୍ଷେ ଦିଆନ ପ୍ରଣୀତ ପ୍ରହସନ ଅଭିନୟ କଲେ ।

କେହି ଗଡ଼ଜାତ ରଜା ଇଂରାଜମାନଙ୍କ ପରି ନିୟମିତରୂପେ ୧୦ଟା ଠାରୁ ୪ଟା ପର୍ଯ୍ୟନ୍ତ ବିଚାର କରନ୍ତି ନାହିଁ । ଏହା ଦେଶଯାକ ରାଷ୍ଟ୍ର ଅଛି ମାତ୍ର ଦିନକର ଅଭିନୟନରେ ସାହେବଙ୍କ ପାଖରେ ସେହି ଜନଶ୍ରୁତି ରଦ୍ଦ ହୋଇଗଲା । ଅନ୍ୟାନ୍ୟ ବିଷୟମାନଙ୍କରେ ସୁଦ୍ଧା ଏହିପରି ଘଟିଥାଏ । ଏଥକୁ ବିଶୁଦ୍ଧ ନ୍ୟାୟ ହେବାର କେଡ଼େ କଠିଣ ପ୍ରକୃତ ତତ୍ତ୍ୱ ଲଭିବାର କେଡ଼େ କଠିଣ ପାଠକେ ସହଜରେ ବୁଝିପାରିବେ ।

*ଭା୧ଗ,ସଂ୭ଖ୍ୟା, ଜୁଲାଇ -୧୮୬୩*

## ୧୮୮୦

### "ଆଉ ଏକ ସମୀକ୍ଷା"

ବର୍ତ୍ତମାନ ପାଠ୍ୟ ପୁସ୍ତକର ଅଭାବରେ ପ୍ୟାରୀବାବୁଙ୍କ ଓଡିଶା ଇତିହାସ ଏକ ପ୍ରକାର ଶିକ୍ଷାପଯୋଗୀ ଅଟେ । ସେ ଯେଉଁ ପୁସ୍ତକ ରଚନା କରିଅଛନ୍ତି ତାହା ତାଙ୍କର ସ୍ୱ କପୋଳ କଳ୍ପିତ ନୁହେଁ । ସେ ଜଗନ୍ନାଥଙ୍କ ମାଦଳାପାଞ୍ଜିରୁ ଅନ୍ୟାନ୍ୟ କାବ୍ୟ ଘଟିତ ଇତିହାସରୁ ଏଥ ଗଭର୍ଣ୍ଣମେଣ୍ଟଙ୍କ କାଗଜ ପତ୍ରରୁ ସଂଗୃହିତ କରି ଅଛନ୍ତି । ବଡ଼ ଦୁଃଖର ବିଷୟ ଯେ ଓଡ଼ିଶାର ତାବତୀୟ ସଂବାଦ ପତ୍ରର ସଂପାଦକମାନେ ଏ ବିଷୟରେ ମତାମତ ପ୍ରକାଶ କରିଅଛନ୍ତି ;କିନ୍ତୁ ଦର୍ପଣର ସମୟ ଓ ସ୍ଥାନାଭାବରୁ ସେ ଆଜିପର୍ଯ୍ୟନ୍ତ କିଛି ହିଁ କହିପାରିନାହିଁ । ବର୍ତ୍ତମାନ ଇତିହାସର ଯେଉଁ ଅଂଶ ଘେନି କାଳିପଦବାବୁ ତର୍କ ବିତର୍କ କରୁଅଛନ୍ତି ତାହା ଆଲୋଚନା କରି ଦେଖିବାକୁ ଗଲେ ମାଦଳାପାଞ୍ଜି ଓ ସଟନ୍ ସାହେବଙ୍କ ଇତିହାସରେ ଯେ ପ୍ରକାର ଜଗନ୍ନାଥ ଦେବଙ୍କ ବିଷୟ ବର୍ଣ୍ଣନ ହୋଇଅଛି ତାହା ପ୍ୟାରୀବାବୁ ଆପଣା ପୁସ୍ତକରେ ସନ୍ନିବେଶିତ କରିଅଛନ୍ତି ବରଂ ମାଦଳାପାଞ୍ଜି ଓ ସଟନ୍ ସାହେବଙ୍କ ଇତିହାସରେ ଯେ ପ୍ରକାର ବର୍ଣ୍ଣିତ ହୋଇଅଛି ତାହାଠାରୁ ପ୍ୟାରୀବାବୁଙ୍କ ବର୍ଣ୍ଣନା ସଂକ୍ଷେପ ଓ ଏ ପ୍ରକାର କିଛି ତାଚ୍ଛଲ୍ୟ ଭାବରେ ବର୍ଣ୍ଣିତ ହୋଇନାହିଁ ଯେ ସେଥି ନିମନ୍ତେ ହିନ୍ଦୁ ଧର୍ମର କୌଣସି ପ୍ରକାର ବ୍ୟାଘାତ ହୋଇପାରେ । ପ୍ରକୃତ ଘଟଣା ଯାହାକି ଅବଧି ହିନ୍ଦୁ ଧର୍ମାବଲମ୍ବିମାନଙ୍କ ମଧ୍ୟରେ ସମୟ ସମୟରେ ତର୍କ ବିତର୍କ ହୋଇଥାଏ ତାହା ଲେଖିବାରେ ଦୋଷ କଣ ? କାଳୀପଦବାବୁ ରାଗାନ୍ଧ ହୋଇ ପ୍ୟାରୀବାବୁଙ୍କ ଇତିହାସ ଘେନି କି ନିମନ୍ତେ ଏତେଦୂର ବିବାଦ ଆରମ୍ଭ କଲେ ତାହା ଆମ୍ଭେମାନେ ବୁଝିପାରୁ ନାହୁଁ । ବୋଧହୁଏ ଏହି ବିବାଦର ଅନ୍ୟ କୌଣସି ଗୁଢ଼ ଅଭିପ୍ରାୟ ଥିବ । କାଳୀପଦବାବୁ ଜଣେ ଉନ୍ନତ ଚେତା, ତାଙ୍କର ଏ ପ୍ରକାର କାର୍ଯ୍ୟ ଆମ୍ଭମାନଙ୍କୁ କିଛି ଭଲଲାଗୁନାହିଁ । ଆନନ୍ଦର ବିଷୟ ଯେ କାଳୀପଦ ବାବୁ ଏ ପ୍ରକାର ବିବାଦ ଆରମ୍ଭ କରିଥିଲେ ହେଁ ପ୍ୟାରୀବାବୁଙ୍କ ଇତିହାସର କୌଣସି କ୍ଷତି କରିପାରି ନାହାନ୍ତି ।

*ଭା୮ଗ, ସଂ୧୬ଖ୍ୟା, ୨୫/୪/୧୮୮୦*

### ସେ କାଳର ପରୀକ୍ଷା ଓ ପ୍ରଚଳିତ ପାଠ୍ୟପୁସ୍ତକ

### ପ୍ରାଇମେରି ସ୍କଲରସିପ ଓ ପାଶ ପରୀକ୍ଷା

#### ପ୍ରାଇମେରି ସ୍କଲରସିପ ପରୀକ୍ଷା

୧ । ସନ ୧୮୮୦।୮୧ ସାଲରେ ନିମ୍ନଲିଖିତ ବିଷୟମାନ ପଠିତ ହେବ ।

**(କ) ଉତ୍କଳଭାଷା-**

ଭୋଳାନାଥ ଦାସ କୃତ 'ହିତ ବୋଧ' ( ଖଣ୍ଡେ ପ୍ରଶ୍ନ କାଗଜ) ୨୦୦

**(ଖ). ଅଙ୍କ-**

ରମାନାଥ ଦାସ କୃତ **'ପ୍ରଥମାଙ୍କ'**

ବୈକୁଣ୍ଠନାଥ ଦେ କୃତ ଅବଧାନ ଦୀପିକା ।

(ଖଣ୍ଡେ ପ୍ରଶ୍ନ କାଗଜ) ୧୦୦

(ଗ) **ଜମିଦାରୀ ହିସାବ-**

ନିମାଇଚରଣ କୃତ ଜମିଦାରୀ ସିରସ୍ତା ।

(ଖଣ୍ଡେ କାଗଜ) ୧୦୦

୨ । ସୁନ୍ଦର ହସ୍ତାକ୍ଷର ଓ ପରିଷ୍କୃତ ଲିଖନ ନିମନ୍ତେ ପ୍ରତ୍ୟେକ ବିଷୟରେ ଶତକଡ଼ା ୧୦ ନମ୍ବର ଲେଖାଏଁ ଦିଆଯିବ ।

୩ । ଉତ୍କଳ ଭାଷାରେ ବ୍ୟାଖ୍ୟା ନିମନ୍ତେ ଅଧେ ନମ୍ବର ଓ ଶୁଦ୍ଧ ଲିଖନ ନିମନ୍ତେ ଅଧେ ନମ୍ବର ଦିଆଯିବ ।

୪ । ଅଙ୍କରେ ଦେଶୀୟ ଧାରାରେ କଷିବା ପାଇଁ ଅଧେ ନମ୍ବର ଓ ଇଉରୋପୀୟ ଧାରାରେ କଷିବା ପାଇଁ ଅଧେ ନମ୍ବର ଦିଆଯିବ ।

୫ । ଜମିଦାରୀ ସିରସ୍ତାରେ ଯେଉଁ ପ୍ରଶ୍ନ ଦିଆଯିବ, ସେଥିରେ ବଜାର ହିସାବର ପ୍ରଶ୍ନ ମଧ୍ୟ ଦିଆଯିବ ।

୬ । ୨୦୦ କିମ୍ବା ତଦୁର୍ଦ୍ଧ ନମ୍ବର ରଖି ପାରିଲେ ଛାତ୍ର ଉତ୍ତୀର୍ଣ୍ଣ ହେବ ।

୭ । ପ୍ରତ୍ୟେକ ଥାନା ଗୋଟିଏ ଲେଖାଏଁ ପରୀକ୍ଷାର କେନ୍ଦ୍ର ହେବ । ସେଠାରେ ଶ୍ଲେଟ କାଗଜ ଓ କଲମ ସାହାଯ୍ୟରେ ପରୀକ୍ଷା ଗୃହୀତ ହେବ ।

୮ । ପ୍ରତ୍ୟେକ ଥାନାରେ ଯେଉଁ ବାଳକ ପ୍ରଥମ ହେବ, ସେ ଗୋଟାଏ ଲେଖାଏଁ ବୃତ୍ତି ପାଇବ ।

୯ । ଉତ୍ତୀର୍ଣ୍ଣ ଛାତ୍ରମାନେ ପୁସ୍ତକ ଶ୍ଲେଟ ଓ ସାରଟିଫିକଟ ପୁରସ୍କାର ପାଇବେ ଏବଂ ସେମାନଙ୍କର ଅବଧାନମାନେ ପ୍ରତ୍ୟେକ ଉତ୍ତୀର୍ଣ୍ଣ ବାଳକ ନିମନ୍ତେ ଟ ୧ ଙ୍କା ଲେଖାଏଁ ଓ ପ୍ରତ୍ୟେକ ଉତ୍ତୀର୍ଣ୍ଣା ବାଳିକା ନିମନ୍ତେ ଟ ୨ ଙ୍କା ଲେଖାଏଁ ପୁରସ୍କାର ପାଇବେ ।

## ପାସ୍ ପରୀକ୍ଷା

୧୦ । ସନ ୧୮୮୦-୮୧ ସାଲରେ ନିମ୍ନଲିଖିତ ବିଷୟମାନ ପଠିତ ହେବ ।

(କ) **ନଥିପାଠ** [୫୦

(ଖ) **ଉତ୍କଳଭାଷା-**

ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ କୃତ ବର୍ଣ୍ଣବିଜ୍ଞାନ ପଠନ ଓ ବ୍ୟାଖ୍ୟା- [ ୫୦

(ଗ) **ହସ୍ତାକ୍ଷର-** [ ୫୦

(ଘ) **ଶ୍ରୁତଲିଖନ-** [ ୫୦

(ଙ) ଅଙ୍କ ମିଶ୍ରଭାଗହାର ଓ ନଳ ଶେଷ-

ରମାନାଥ ଦାସ କୃତ ପ୍ରଥମାଙ୍କ

ବୈକୁଣ୍ଠନାଥ ଦେ କୃତ ଅବଧାନ ଦୀପିକା [ ୧୦୦

(ଚ) **ମାନସାଙ୍କ**

ରାଧାନାଥ ରାୟ କୃତ ଆଦର୍ଶ ପ୍ରଶ୍ନାବଳୀ- [ ୫୦

(ଛ) **ପୁଥିପାଠ-**

ତ୍ରିବିକ୍ରମ ଭଟ୍ଟାଚାର୍ଯ୍ୟ କୃତ ପୁଥିପାଠ କିମ୍ବା ଭୋଳାନାଥ ଦାସ କୃତ ପଦ୍ୟ ସଂଗ୍ରହ - [ ୫୦

ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ

୧୧ । ଯେଉଁ ଛାତ୍ରମାନେ ୧୦୦ ନମ୍ବର କିମ୍ବା ତଦୂର୍ଦ୍ଧ ରଖିବେ ସେମାନେ ଉତ୍ତୀର୍ଣ୍ଣ ବୋଲି ଗଣ୍ୟ ହେବେ ।

୧୨ । ପ୍ରତ୍ୟେକ ଆଉଟପୋଷ୍ଟ ଗୋଟିଏ ଗୋଟିଏ ପରୀକ୍ଷାର ଉପକେନ୍ଦ୍ର ହେବ । ସେଠାରେ ବାଳକମାନଙ୍କର ମୌଖିକ ପରୀକ୍ଷା ଗୃହୀତ ହେବ ।

୧୩। ଉତ୍ତୀର୍ଣ୍ଣ ଛାତ୍ରମାନଙ୍କ ମଧ୍ୟରୁ ଯେଉଁମାନେ ବିଶେଷ ଉପଯୁକ୍ତ ବୋଲି ଗଣ୍ୟ ହେବେ, ସେମାନଙ୍କୁ ପ୍ରାଇମେରୀ ସ୍କଲରସିପ ପରୀକ୍ଷାରେ ଉପସ୍ଥିତ ହେବା ନିମନ୍ତେ ସାରଟିଫିକଟ ଦିଆଯିବ ।

୧୪ । ଉତ୍ତୀର୍ଣ୍ଣ ଛାତ୍ରମାନଙ୍କର ଅବଧାନମାନେ ପ୍ରତ୍ୟେକ ଉତ୍ତୀର୍ଣ୍ଣ ବାଳକ ନିମନ୍ତେ ଟ୦.୳ ଲେଖାଏଁ ଓ ପ୍ରତ୍ୟେକ ଉତ୍ତୀର୍ଣ୍ଣା ବାଳିକା ନିମନ୍ତେ ଟ ୧ଙ୍କା ଲେଖାଏଁ ପୁରସ୍କାର ପାଇବେ ।

*ଭା୮ଗ,ସଂ୩୧ଖ୍ୟା, ୮।୮।୧୮୮୦*

# ୧୮୯୭

## ଉତ୍କଳସାହିତ୍ୟ

## ଓଡ଼ିଆ-ଭାଷା *

ଭାରତର ସକଳସ୍ଥାନରେ ଆବହମାନକାଳପ୍ରଚଳିତ ପ୍ରବାଦ ଅନୁସାରେ ସଂସ୍କୃତରୁ ପ୍ରାକୃତ ଏବଂ ପ୍ରାକୃତରୁ ହିନ୍ଦୀ ବଙ୍ଗଳା, ଓଡ଼ିଆ, ମରହଟ୍ଟୀ ଏବଂ ଗୁଜରାଟୀ ପ୍ରଭୃତି ଆର୍ଯ୍ୟଭାଷା କାଳର ବିବର୍ତ୍ତନରେ ଆବିର୍ଭୂତ ହୋଇଅଛି । ଯେଉଁ ଭାଷା ଘେନି ଆର୍ଯ୍ୟମାନେ ଭାରତକୁ ଆଗମନ କରିଥିଲେ, ତାହା ସେମାନଙ୍କ ଆଗମନ ସମୟରେ ସଂସ୍କୃତ ନାମରେ ଅଭିହିତ ହେଉ ନ ଥିଲେହେଁ, ପରବର୍ତ୍ତୀକାଳରେ ସଂସ୍କୃତନାମରେ ପ୍ରଥିତ, ବ୍ୟାକରଣ ସଂଯତ, ବୟୋବୃଦ୍ଧ, ଲିଖିତ ଭାଷାର ଶୈଶବୀୟ ଅଭିବ୍ୟକ୍ତି କିମ୍ବା ପୂର୍ବରୂପମାତ୍ର । ଆର୍ଯ୍ୟମାନଙ୍କର ଭାରତବିଜୟ କାଳରେ ସେହି ଭାଷାର କି ନାମ ଥିଲା, ତାହା ଜଣା ନାହିଁ, କିନ୍ତୁ ତାହାକୁହିଁ କଥିତଭାଷା ରୂପେ ଆର୍ଯ୍ୟବଂଶୀୟମାନେ ସମସ୍ତ ଆର୍ଯ୍ୟାବର୍ତ୍ତରେ ବ୍ୟବହାର କରୁଥିଲେ, ଏହା ନିଃସନ୍ଦେହ । କାଳକ୍ରମେ ଲୋକମୁଖରେ ବୀଚରଣଶୀଳ ଜୀବନ୍ତ ଭାଷାର ପରିବର୍ତ୍ତନର ନିୟମାନୁସାରେ ଏହି ପ୍ରାଚୀନ ଆର୍ଯ୍ୟ ଭାଷା ପ୍ରାକୃତ ରୂପେ ପରିଣତ ହୋଇ କେଉଁଠାରେ ଶୌରସେନୀ, କେଉଁଠାରେ ମହାରାଷ୍ଟ୍ରୀ, କେଉଁଠାରେ ବା ପାଲି ବା ମାଗଧୀ ନାମରେ ଅଭିହିତ ହେଲା । ଏହି ପ୍ରାକୃତ ଭାଷାହିଁ ଆଧୁନିକ ହିନ୍ଦୀ ପ୍ରଭୃତିର ମାତା । ସୁତରାଂ ମୂଳ ଆର୍ଯ୍ୟଭାଷାକୁ ଆଧୁନିକ ଭାଷାଗୁଡ଼ିକର ମାତାମହୀ ବୋଲାଯାଇ ପାରେ ।

ପଶ୍ଚିମରେ ନାଗପୁର ଓ ଛୋଟନାଗପୁର ପ୍ରଦେଶ, ଉତ୍ତରରେ ବଙ୍ଗ, ଦକ୍ଷିଣରେ ତୈଲଙ୍ଗ, ଏହି ସୀମାନ୍ତର୍ଗତ ବିସ୍ତୃତ ଭୂଭାଗରେ ପ୍ରାୟ ଏକକୋଟି ଲୋକ ଓଡ଼ିଆକୁ ମାତୃଭାଷାରୂପେ ବ୍ୟବହାର କରନ୍ତି । ଓଡ଼ିଶା ଭାରବାହକ ବେହେରାମାନଙ୍କ ଦେଶ ଏବଂ ଓଡ଼ିଆ ସାହିତ୍ୟ ବିବର୍ଜିତ ବର୍ବର ଭାଷା – ଏହି ସଂସ୍କାର କିଛିକାଳ ପୂର୍ବେ ବଙ୍ଗାଳିମାନଙ୍କ ମଧ୍ୟରେ ଅନେକଙ୍କ ମନରେ ବଦ୍ଧମୂଳ ଥିଲା । ଏ ପର୍ଯ୍ୟନ୍ତ ଉକ୍ତ ସଂସ୍କାର ସମ୍ପୂର୍ଣ୍ଣରୂପେ ଅପନୀତ ହୋଇନାହିଁ, କିନ୍ତୁ ଏହା ନିଶ୍ଚିତ ଯେ ଉଭୟ ପ୍ରଦେଶର ଘନିଷ୍ଠତା ବୃଦ୍ଧି ସଙ୍ଗେ ସଙ୍ଗେ ଏହା ଦିନକୁ ଦିନ ଅପସାରିତ ହେଉଅଛି । ଓଡ଼ିଶାବାସିମାନଙ୍କ ମଧ୍ୟରେ ଆର୍ଯ୍ୟବଂଶୋଦ୍ଭବ ବ୍ରାହ୍ମଣାଦି ଉଚ୍ଚଜାତୀୟ ଲୋକମାନଙ୍କର ସଂଖ୍ୟା ଅପରଜାତୀୟ ଲୋକମାନଙ୍କ ତୁଳନାରେ ଅଳ୍ପନୁହେଁ ଏବଂ ଓଡ଼ିଆଭାଷା ଯେ ବଙ୍ଗଳାର ନିକଟତମ ଭଗିନୀ ଏବଂ ପ୍ରାଚୀନ ସାହିତ୍ୟଶାଳିନୀ, ତାହା ଆଜି କାଲି ଅନେକେ ବୁଝି ପାରିଅଛନ୍ତି । ସଂସ୍କୃତମୂଳକ ଭାଷାମାନଙ୍କ ମଧ୍ୟରେ ଆଧୁନିକ ଓଡ଼ିଆ ସହିତ ବଙ୍ଗଳାର ଯେତେଦୂର ସାଦୃଶ୍ୟ ଓ ନିକଟସମ୍ବନ୍ଧ, ଅନ୍ୟ କୌଣସି ଭାଷାର ତେତେ ନାହିଁ, ଏହା ନିଶ୍ଚିତରୂପେ ବୋଲାଯାଇପାରେ । କିନ୍ତୁ ତାହା ବୋଲି କେହି ଯେପରି ମନେ ନ କରନ୍ତି ଯେ ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେ, ବଙ୍ଗଳାର ଉପଭାଷା ମାତ୍ର; ଭାଷାର ଗଠନ ଏବଂ ଇତିହାସ ଉଭୟ ଆଡୁ ଦେଖିଲେ ସ୍ୱାତନ୍ତ୍ର୍ୟ ବିଶଦରୂପେ ଉପଲବ୍ଧ ହୁଏ ।

ଆର୍ଯ୍ୟମାନେ ସର୍ବପ୍ରଥମେ ଠିକ୍ କେଉଁ ସମୟରେ ଏବଂ କେଉଁ ପଥରେ ଓଡିଶାକୁ ଆଗମନ କରିଥିଲେ,

* ବଙ୍ଗଦେଶର ବହୁ ବିଜ୍ଞ ସାହିତ୍ୟବିଶାରଦ ପଣ୍ଡିତ ସମ୍ମିଳିତ ହୋଇ 'ସାହିତ୍ୟପରିଷଦ୍' ନାମରେ ଗୋଟିଏ ସଭା ସଂସ୍ଥାପନ କରିଅଛନ୍ତି । ସଭାରୁ ଉକ୍ତ ନାମରେ ଖଣ୍ଡିଏ ତ୍ରୈମାସିକ ପତ୍ରିକା ପ୍ରକାଶିତ ହୁଏ । ଏହି ପ୍ରବନ୍ଧଟି ଉକ୍ତ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏପରି ସୁନ୍ଦର ଓ ସାରଗର୍ଭକ ପ୍ରବନ୍ଧ ଉତ୍କଳୀୟ ପାଠକସାଧାରଣଙ୍କୁ ଉପହାର ଦେବା ଏକାନ୍ତ ବାଞ୍ଛନୀୟ ବିବେଚନା କରି ଆମ୍ଭେମାନେ ତାହାର ଉତ୍କଳାନୁବାଦ ପ୍ରକାଶ କଲୁଁ । ଉ:ସ:ସଂ:

ତାହା ନିର୍ଦ୍ଦେଶ କରାଯାଇ ନ ପାରେ । ମହାରାଜ ଚନ୍ଦ୍ରଗୁପ୍ତଙ୍କର ସମକାଳବର୍ତ୍ତୀ ସାମନ୍ତ ନୃପତି ବୌଦ୍ଧରାଜା ଐରଙ୍କ ସମୟରେ ଏବଂ ତତ୍‌ପରେ ବୌଦ୍ଧମହାରାଜା ଅଶୋକଙ୍କ ସମୟରେ ଯେ ଓଡିଶା ସଙ୍ଗେ ମଗଧର ଘନିଷ୍ଠ ସଂସ୍ରବ ଥିଲା, ସେ ବିଷୟରେ ଉଦୟଗିରିର ପ୍ରସ୍ତରଲିପି ଧୌଳିଗିରିର ଶିଳା ଖୋଦିତ ଅଶୋକାନୁଶାସନ ଏବଂ ଗୁମ୍ଫା ପ୍ରଭୃତି ଓଡିଶାର ନାନା ବୌଦ୍ଧକୀର୍ତ୍ତି ଅକାଟ୍ୟ ପ୍ରମାଣ ରୂପେ ବିରାଜିତ ରହିଅଛି । ଖ୍ରୀଷ୍ଟୀୟ ଚତୁର୍ଥ କିମ୍ବା ପଞ୍ଚମ ଶତାବ୍ଦୀରେ ବୌଦ୍ଧ ପ୍ରଭାବ ବିଧ୍ୱସ୍ତ ହେଲା । କିନ୍ତୁ ତାହାପରେ ମଧ୍ୟ ଓଡିଶା ମଗଧର ଗୁପ୍ତବଂଶୀୟ ସମ୍ରାଟମାନଙ୍କର ପ୍ରତିଷ୍ଠିତ ବା ଅଧୀନସ୍ଥ କେଶରୀବଂଶୀୟ ରାଜାମାନଙ୍କର ଶାସନରେ ଥିଲା । ସୁତରାଂ ବୋଲିବାକୁ ହେବ ଯେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରୁ ଖ୍ରୀଷ୍ଟପର ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ଚତୁର୍ଦ୍ଦଶଶତ ବର୍ଷ ଓଡିଶା ମଗଧ ସଙ୍ଗେ ଘନିଷ୍ଠରୂପେ ସଂସୃଷ୍ଟ ଥିଲା । କେଶରୀବଂଶୀୟ ନୃପତିମାନଙ୍କ ସମୟରେ ମଧ୍ୟ ମଧ୍ୟପ୍ରଦେଶ (ପ୍ରୟାଗ ଅଞ୍ଚଳ) ଏବଂ ମଗଧରୁ ଅନେକ ବ୍ରାହ୍ମଣ ଓ କ୍ଷତ୍ରିୟ ପରିବାର ଉତ୍କଳକୁ ଆନୀତ ହେବାର ପ୍ରବାଦ ପ୍ରଚଳିତ ଅଛି । ଅତଏବ ଓଡିୟାଭାଷା ଯେ ପ୍ରଥମେ ମାଗଧୀୟ ପ୍ରାକୃତରୁ ଉତ୍ପନ୍ନ ଏବଂ ତତ୍ ପରବର୍ତ୍ତୀ କାଳରେ ମଧ୍ୟଦେଶୀ ଏବଂ ମାଗଧୀ ହିନ୍ଦୀ ଭାଷାର ପ୍ରଭାବାକ୍ରାନ୍ତ, ତାହା ସହଜରେ ଅନୁମିତ ହୁଏ । ବୋଧହୁଏ ଉତ୍କଳର ବୌଦ୍ଧଗଣହିଁ ( ? ) ଓଡ଼ ବା ଓଢ଼ ନାମରେ ପରିଚିତ । ଉତ୍କଳର ଭୁବନେଶ୍ୱର ଖଣ୍ଡଗିରି ସନ୍ନିହିତ ଅଞ୍ଚଳହିଁ ବିଶେଷରୂପେ ଓଡ଼ ବା ଓଢ଼ ଦେଶ ବା ଓଡ଼ିଶା ନାମରେ ପ୍ରଖ୍ୟାତ ଏବଂ ଏହି ଅଞ୍ଚଳରେ ହିଁ ବୌଦ୍ଧମାନଙ୍କର ବିଶେଷ ପ୍ରାଦୁର୍ଭାବ ଥିଲା । ଏପରି କାଳରେ 'ବୌଦ୍ଧ' ( ? ) ଶବ୍ଦରୁ ଓଡ଼ ଶବ୍ଦର ବ୍ୟୁତ୍‌ପତ୍ତି ଅନୁମାନ କରିବା ଅସଙ୍ଗତ ବୋଧ ହେଉ ନାହିଁ । ଶୈବଧର୍ମର ଅଭ୍ୟୁଦୟରେ ଏବଂ ବୌଦ୍ଧଧର୍ମର ପତନରେ ସେମାନେ ଓଡ୍ରନାମରେ ପତିତ କ୍ଷତ୍ରିୟ ଶ୍ରେଣୀରେ ବ୍ରାହ୍ମଣ ଗଣକର୍ତ୍ତୃକ ସନ୍ନିବିଷ୍ଟ ହୋଇଥିଲେ । ଏହି ଓଡ଼ମାନଙ୍କ ନାମାନୁସାରେ 'ଓଡ଼ିଆ' ଭୂଖଣ୍ଡ ଏବଂ ଓଡ଼ିୟାଭାଷାର ନାମକରଣ ହୋଇଅଛି । *

କେଶରୀବଂଶୀୟ ରାଜାମାନଙ୍କ ଉତ୍ତାରେ ଗଙ୍ଗବଂଶୀୟ ରାଜାମାନଙ୍କର ଅଭ୍ୟୁଦୟ ଏବଂ ପ୍ରାଦୁର୍ଭାବ । ଗଙ୍ଗବଂଶୀୟମାନେ ଦ୍ରାବୀଡ଼କୁଳୋଦ୍ଭବ ବା ତୈଲଙ୍ଗଭାଷୀ ନ ହେଲେହେଁ ଗୋଦାବରୀତୀରସ୍ଥ ପ୍ରଦେଶରୁ ଉତ୍କଳକୁ ଆସିଥିଲେ, ସୁତରାଂ ଦାକ୍ଷିଣାତ୍ୟ ପ୍ରଭାବ ସେମାନଙ୍କ ସମୟରେ ଓଡ଼ିୟାଭାଷା ଉପରେ ସଂକ୍ରାନ୍ତ ହେବାକୁ ଲାଗିଲା, କିନ୍ତୁ ସେ ପ୍ରଭାବର ଆରମ୍ଭ ସମୟରେ (ଏକାଦଶ ଶତାବ୍ଦୀ) ଓଡିୟାଭାଷା ସମ୍ପୂର୍ଣ୍ଣରୂପେ ଗଠିତ ହୋଇଥିଲା, ସୁତରାଂ ତାହାଦ୍ୱାରା ଓଡିୟାଭାଷାର ବିଶେଷ କିଛି ପରିବର୍ତ୍ତନ ସାଧିତ ହୋଇ ପାରିନାହିଁ । ଓଡିୟାଭାଷାର ଅକ୍ଷର ପୂର୍ବପ୍ରଚଳିତ ମାଗଧୀ କୁଟିଳଲିପିର ରୂପାନ୍ତର ମାତ୍ର । କେବଳ ତୈଲଙ୍ଗାକ୍ଷର ଗୋଲ ବୋଲି ଓଡିୟା ଅକ୍ଷର ଗୋଲ ହୋଇଅଛି, ଏହାହିଁ ଦାକ୍ଷିଣାତ୍ୟ ପ୍ରଭାବର ଫଳ ବୋଲି ବୋଧହୁଏ । ତାହାଛଡା ପୁଣି ତାଳପତ୍ରରେ ଲୌହଲେଖନୀ ସାହାଯ୍ୟରେ ଲିଖନ ଏହାର ଗୋଲ ହେବାର ଅପର କାରଣ ବୋଲି ଅନୁମିତ ହୁଏ ।

ଇତିପୂର୍ବେ କହିଅଛୁଁ, ବଙ୍ଗଦେଶ, ଛୋଟନାଗପୁର, ଏବଂ ମଧ୍ୟପ୍ରଦେଶର ହିନ୍ଦୀଭାଷୀ ଅଞ୍ଚଳ ଉତ୍କଳର ସନ୍ନିହିତ । ସେହିକାରଣରୁ ବଙ୍ଗଳା ଓ ହିନ୍ଦୀର ପ୍ରଭାବ ଓଡିୟାଭାଷା ଭିତରେ ଲକ୍ଷିତ ହୁଏ । ପ୍ରଥମତଃ ମଧ୍ୟଦେଶ ଏବଂ ମଗଧରୁ ଯେଉଁ ଆର୍ଯ୍ୟମାନେ ଉତ୍କଳକୁ ଆଗମନ କରିଥିଲେ, ସେମାନଙ୍କ ସଂସ୍ରବରେ ହିନ୍ଦୀ ପ୍ରଭାବର ବିସ୍ତାର ହୋଇଥିଲା ତାହା ଉପରେ ପୁଣି ହିନ୍ଦୀର ସାନ୍ନିଧ ଥିବାରୁ ସେହି ପ୍ରଭାବ ବଦ୍ଧମୂଳ ହେଲା । ଗଙ୍ଗବଂଶର ଚରମକାଳରେ ଚୈତନ୍ୟ ଗୋସାଇଁ ଓଡ଼ିଶାକୁ ଆସି ବୈଷ୍ଣବଧର୍ମ ପ୍ରଚାର କରିଥିଲେ । ବୈଷ୍ଣବଧର୍ମ ସମସ୍ତ ଉତ୍କଳରେ ପରିବ୍ୟାପ୍ତ ହେଲା ଏବଂ ଅନେକ ବଙ୍ଗାଳୀ ଉତ୍କଳରେ ବାସ କରିବାକୁ ଲାଗିଲେ । ସେହି ସୂତ୍ରରେ ବଙ୍ଗଳାଭାଷାରେ ଲିଖିତ ଚୈତନ୍ୟଚରିତାମୃତ ପ୍ରଭୃତି ବୈଷ୍ଣବଗ୍ରନ୍ଥ ଓଡ଼ିଶାରେ ପ୍ରଚାରିତ ହେଲା ଏବଂ ବଙ୍ଗଳାଭାଷା ଓ ସାହିତ୍ୟର ପ୍ରଭାବ ଓଡିୟାଭାଷା ଓ ସାହିତ୍ୟକୁ ବିଶେଷଭାବରେ ସ୍ପର୍ଶକଲା । ଏହି ସବୁ ବଙ୍ଗଳା

*ଯେଉଁ ଦେଶକୁ ବଙ୍ଗଳାରେ "ଉଡ଼ିଶ୍ୟା" କହନ୍ତି, ତାହାର ପ୍ରକୃତ ନାମ "ଓଡ଼ିଶା" ଏବଂ ସେହି ନାମହିଁ ଲୋକମାନଙ୍କ ମଧ୍ୟରେ ଲିଖିତ ଓ ପଠିତ ହୋଇଥାଏ । ସେହିପରି 'ଉଡ଼ିଆ' ନ କହି 'ଓଡ଼ିଆ' ବୋଲାଯାଏ । ଦେଶର ସଂସ୍କୃତ ନାମ ଓଡ୍ରଦେଶ ।

ବୈଷ୍ଣବଗ୍ରନ୍ଥ ଓଡିଆ ଅକ୍ଷରରେ ଲିଖିତ, ଆଜି କାଲି ମଧ୍ୟ ଅନେକ ସ୍ଥାନରେ ଦେଖାଯାଏ । ବଙ୍ଗଳା ବୈଷ୍ଣବ ସଂକୀର୍ତ୍ତନ ଆଜିପର୍ଯ୍ୟନ୍ତ ଓଡିଶାର ଗ୍ରାମେ ଗ୍ରାମେ ଗୀତ ହେଉଅଛି । ଏହିପରି ବୋଧହୁଏ କବିକଙ୍କଣାଦି ପୁରାତନ ବଙ୍ଗଳା ପଦ୍ୟ ଗ୍ରନ୍ଥର କୌଣସି କୌଣସି ଶବ୍ଦ ଏବଂ ଆଧୁନିକ ପ୍ରଚଳିତ କୌଣସି କୌଣସି ଓଡିଆ ଶବ୍ଦର ମୂଳ ଏକ । ଯଥା ବାହୁଡି, ଥାଟ ପ୍ରଭୃତି ଓଡିଶାରେ ଅତିଶୟ ପ୍ରଚଳିତ । ଅନନ୍ତର ମୁସଲମାନ ଏବଂ ମରହଟ୍ଟାମାନଙ୍କ ପ୍ରାଧାନ୍ୟ କାଳରେ ଅନେକ ଆରବୀ, ପାର୍ଶୀ, ଏବଂ ମରହଟ୍ଟୀ ଶବ୍ଦ ଓଡିଆ ଭାଷାରେ ପ୍ରବେଶଲାଭ କରିଅଛି ।

ଆମ୍ଭେମାନେ ପୂର୍ବେ କହିଅଛୁଁ ଯେ ଗଙ୍ଗବଂଶୀୟ ନରପତିମାନଙ୍କ ସମୟରେ କୁଟିଳଲିପି ଓ ତୈଲଙ୍ଗଲିପି ଉଭୟର ସଂଯୋଗରେ ଉତ୍କଳାକ୍ଷର ଉଦ୍ଭୂତ ହୋଇଅଛି । ଓଡିଆଅକ୍ଷରରେ ଲିଖିତ ମାଦଳାପାଞ୍ଜି ନାମକ ଐତିହାସିକ ବିବରଣଗ୍ରନ୍ଥ ପ୍ରାୟ ଛ ଶତ ବର୍ଷ ହେଲା ଲିଖିତ ଏବଂ ସଂରକ୍ଷିତ ହୋଇ ଆସୁଅଛି । ସୁତରାଂ ଲିଖିତ ଓଡିଆଭାଷା ଯେ ଅନ୍ତତଃ ଛ ଶତ ବର୍ଷର ହେବ, ତହିଁରେ ସନ୍ଦେହ ନାହିଁ । ବଙ୍ଗଳାଭାଷାରେ ଲିଖିତ ଛଶତବର୍ଷ ପୂର୍ବର କୌଣସି ଗ୍ରନ୍ଥ ଅଛି କି ନା ଜାଣୁନାହିଁ । ଓଡିଆଭାଷା ପ୍ରାକୃତ ସହିତ କିପରି ଘନିଷ୍ଠଭାବରେ ସମ୍ବନ୍ଧ ତାହା ନିମ୍ନଲିଖିତ ଶବ୍ଦନିର୍ଘଣ୍ଟରୁ ପ୍ରତିପନ୍ନ ହେବ । ସେଥିରୁ ଓଡିଆଭାଷାର ସ୍ୱାତନ୍ତ୍ୟ କିୟତ୍ ପରିମାଣରେ ଉପଲବ୍ଧ ହେବ ।

| ପ୍ରାକୃତ | ଓଡିଆ | ସଂସ୍କୃତ |
|---|---|---|
| ଘିଅ | ଘିଅ | ଘୃତ |
| ମୁହଁ | ମୁହଁ | ମୁଖ |
| ସାହୁ | ସାଦୁ | ସାଧୁ |
| ଗଣ୍ଠି | ଗଣ୍ଠି | ଗ୍ରନ୍ଥି |
| ବୀଅ | ବୀଅନ (ବିହନ) | ବୀଜ |
| ଠିଆ | ଠିଆ | ସ୍ଥିତ |
| ସାଖର | ସାକର | ଶର୍କରା |
| ଖମ୍ଭୋ | ଖମ୍ବ | ସ୍ତମ୍ଭ |
| ପିଅର | ପିଅର | ପିତା |
| ବୋଲଇ | ବୋଲଇ | ବ୍ରବୀତି |
| ଗୋଡ | ଗୋଡ଼ | ଗୋଦ (?) |
| ପୋଖର | ପୋଖରୀ | ପୁଷ୍କରୀ |
| ତୁନ୍ହୀ | ତୁନି | ତୁଷ୍ଣୀ |
| ସୋଅ | ସୁଅ | ସ୍ରୋତ |
| ପଢୁମ୍ | ପଢୁଆଁ | ପ୍ରଥମ |
| ମହୁ | ମହୁ | ମଧୁ |
| ଅଛଇ | ଅଛଇ | ଅସ୍ତି |
| ଅଛନ୍ତି | ଅଛନ୍ତି | ସନ୍ତି |
| ପିଅନ୍ତି | ପିଅନ୍ତି | ପିବନ୍ତି |
| ଭୋଖ | ଭୋକ | ବୁଭୁକ୍ଷା |
| ହଲିୟ | ହଳିଆ | ହାଳିକ |
| ସୁଆର | ସୁଆର | ସୁପକାର |
| ପନ୍ତି | ପନ୍ତି | ପଙ୍କ୍ତି |
| ଆପଣ | ଆପଣ | ଆତ୍ମନ୍ |

| | | |
|---|---|---|
| ଏଟ୍‌ଠା | ଏଠା | ଅତ୍ର |
| କିସ | କିସ | କିମ୍‌ |
| କହିଁ | କାହିଁ | କୁତ୍ର |
| ଯହିଁ | ଯହିଁ | ଯତ୍ର |
| ତହିଁ | ତହିଁ | ତତ୍ର |
| ଗହୀର | ଗହୀର | ଗଭୀର |
| ଗେନ୍‌ହଇ | ଘେନଇ | ଗୃହ୍ଣାତି |
| ଚୌଠୀ | ଚୌଠୀ | ଚତୁର୍ଥୀ |
| ଛାମୁହ | ଛାମୁ | ସମ୍ମୁଖ |
| ବେଣ୍ଟ | ବେଣ୍ଟ | ବୃନ୍ତ |
| ପୁଣ | ପୁଣ | ପୁନଃ |
| ମଉଡ଼ | ମଉଡ଼ | ମୁକୁଟ |
| ମଝିଆଁ | ମଝିଆଁ | ମଧ୍ୟମା |
| ରାଉଳ | ରାଉଳ | ରାଜକୁଳ |
| ବାହା | ବାହା | ବାହୁ |
| ବି | ବି | ଅପି |
| ଶେଯ | ଶେଯ | ଶଯ୍ୟା |
| ବିହି | ବିହି | ବିଧି |
| ନଈ | ନଈ | ନଦୀ |
| କାଓ | କାଉ | କାକ |

ଓଡ଼ିଆଭାଷା ଯେ ପ୍ରାକୃତର କନ୍ୟା ତାହା ଆହୁରି ଶତ ଶତ ଦୃଷ୍ଟାନ୍ତ ଦ୍ୱାରା ପ୍ରଦର୍ଶିତ ହୋଇପାରେ । ବର୍ତ୍ତମାନ ହିନ୍ଦୀ ପ୍ରଭୃତି ଭଗିନୀ ଭାଷାର, ବିଶେଷତଃ ବଙ୍ଗଳାର ସହିତ ଓଡ଼ିଆର ସାଦୃଶ୍ୟ ଦେଖାଇ ଦିଆ ଯାଉଅଛି । ଅନେକ ଶବ୍ଦ ହିନ୍ଦୀ ଓ ଓଡିଆରେ ଅଭିନ୍ନ କିମ୍ବା ପ୍ରାୟ ଅଭିନ୍ନରୂପ । ଏହିପରି ଅନେକ ଶବ୍ଦ ବଙ୍ଗଳା ଓ ଓଡିଆରେ ଏବଂ ମରହଟ୍ଟା ଓ ଓଡିଆରେ ମଧ୍ୟ ଏକ କିମ୍ବା ପ୍ରାୟ ଅଭିନ୍ନ ରୂପ ଦେଖାଯାଏ । ନିମ୍ନରେ କେତେଗୁଡିଏ ଦୃଷ୍ଟାନ୍ତ ପ୍ରଦତ୍ତ ହେଲା ।

| ହିନ୍ଦୀ | ଓଡ଼ିଆ |
|---|---|
| ଜୁହାର | ଜୁହାର |
| ପୟର | ପୟର |
| ବିତ୍‌ନା | ବିତିବା |
| ବୁଁଦ | ବୁନ୍ଦା |
| ମହଂଗା | ମହଙ୍ଗା |
| କାମ୍‌ | କାମ |
| ଭଣ୍ଡାର | ଭଣ୍ଡାର |
| କୀଡା | କୀଡା |
| କୋଇଲି | କୋଇଲି |

| | |
|---|---|
| କେଓଟ | କେଉଟ |
| ଅରୁଆ | ଅରୁଆ |
| ପଟ୍ଟା | ପଟା |
| ଲେଓଟ | ଲେଉଟ |
| ଅସରା | ଅସରା |
| କୌଡ଼ୀ | କୌଡ଼ୀ |
| ଶଗଡ | ଶଗଡ଼ |
| ଧ୍ୱଟ୍ | ଧ୍ୱଟ |
| ଗୋତ | ଗୋତ(ଗୋତ୍ର) |

| ବଙ୍ଗଳା | ଓଡ଼ିଆ |
|---|---|
| ତେଁତୁଲି | ତେଁତୁଳି |
| ଆଖୁ | ଆଖୁ |
| ସଜିନା | ସଜିନା |
| ବଉଲ | ବଉଳ |
| ବାଡ଼(ଭାତ ବାଡ଼) | ବାଡ଼ |
| ଝି | ଝିଅ |
| ଛାଡ୍ | ଛାଡ |
| ଚିଲ୍ | ଚିଲ |
| ବିଛା | ବିଛା |
| ମାଛି | ମାଛି |
| ବେଙ୍ଗ୍ | ବେଙ୍ଗ |
| ପେଚା | ପେଚା |
| ସାଧ୍ | ସାଧ୍ |
| କାମାର | କମାର |
| ସାଁତଲାନ | ସନ୍ତୁଳିବା |
| ବାସି | ବାସି |
| ଜୋତ | ଜୋତ |
| ଟେରା | ଟେରା |

| ମରହଟ୍ଟୀ | ଓଡ଼ିୟା |
|---|---|
| ନାବଡୀ | ନାଉଡୀ |
| ଆବଲା | ଆଉଲା |
| ମୋକଲା | ମୁକୁଳା |
| ନିଶନୀ | ନିଶୁଣୀ |
| ପହୁଣେ | ପହୁଁରିବା |
| ମାଞ୍ଜର | ମଞ୍ଜାରି |
| ପାଲୀ | ପାଳୀ |

| | |
|---|---|
| ଆଣ | ରାଣ |
| ଫଣସ | ପଣସ |
| ଝୁରଣେ | ଝୁରିବା |
| ବ୍ୟାଜ | ବ୍ୟାଜ(ସୁଧ) |
| ପେଣ୍ଡୁ | ପେଣ୍ଡୁ |
| ଉଶିର | ଉଛୁର |
| ଶେଳୀ | ଛେଳୀ |
| ତୋଁଡ | ତୁଣ୍ଡ |
| ଥାଟ | ଥାଟ |
| ବାନ୍ତି | ବାନ୍ତି |
| ପଡଲ | ପରଳ |

ଉଚ୍ଚାରଣ ବିଷୟରେ ଓଡ଼ିଆ ଓ ବଙ୍ଗଳା ମଧ୍ୟରେ ଅନେକ ପ୍ରଭେଦ ଦେଖାଯାଏ । ଓଡ଼ିଆର ଉଚ୍ଚାରଣ ଅନେକ ପରିମାଣରେ ଦକ୍ଷିଣାତ୍ୟର ସଂସ୍କୃତ ଉଚ୍ଚାରଣର ଅନୁରୂପ । ଋ, ଌ ବଙ୍ଗଳାରେ ରି, ଲି କିନ୍ତୁ ଓଡ଼ିଆରେ ରୁ ଲୁ ରୂପେ ଉଚ୍ଚାରିତ ହୁଏ, ଯଥା ଗୃହଶବ୍ଦର ବଙ୍ଗଳା ଉଚ୍ଚାରଣ ଗ୍ରିହ । ବଙ୍ଗଳାରେ ଣ ଓ ନର ଉଚ୍ଚାରଣଗତ ପ୍ରଭେଦନାହିଁ, କିନ୍ତୁ ଓଡ଼ିଆରେ ମୂର୍ଦ୍ଧନ୍ୟଣର ସଂସ୍କୃତ ଉଚ୍ଚାରଣ ସଂରକ୍ଷିତ ହୋଇଅଛି । * ବଙ୍ଗଳାରେ ଗୋଟିଏ ମାତ୍ର ଲ କିନ୍ତୁଓଡ଼ିଆରେ ଦନ୍ତ ଓ ମୂର୍ଦ୍ଧଣ୍ୟ ଲ ବିଭିନ୍ନ ରୂପେ ଲିଖିତ ଓ ଉଚ୍ଚାରିତ ହୁଏ । ବଙ୍ଗଳାରେ 'କେନ' ଏହି ଶବ୍ଦର 'କେ'ର ଏକାର ଯେପରି ଉଚ୍ଚାରିତ ହୁଏ ଓଡ଼ିଆରେ ଏକାରର ସେପରି ଉଚ୍ଚାରଣ ନାହିଁ । ସଂଯକ୍ତବର୍ଣ୍ଣ ମଧ୍ୟରେ 'କ୍ଷ' ର ଉଚ୍ଚାରଣ ବଙ୍ଗଳାରେ 'କ୍ଷ' ପରି, କିନ୍ତୁ ଓଡ଼ିଆରେ 'କ୍ଷ' ରେ ଦନ୍ତ୍ୟ ନ ଯୋଗକଲେ ଯେପରି ଉଚ୍ଚାରଣ ହୁଏ ସେହିପରି । ବଙ୍ଗଳାରେ ବ ଫଳା ପ୍ରାୟ ଉଚ୍ଚାରିତ ହୁଏ ନାହିଁ, କିନ୍ତୁ ଓଡ଼ିଆରେ ତାହାର ସ୍ପଷ୍ଟ ଉଚ୍ଚାରଣ ଅଛି । ଓଡ଼ିଆରେ ଅକାରାନ୍ତ ଶବ୍ଦଗୁଡ଼ିକର ଅନ୍ତ୍ୟ 'ଅ' ସୁସ୍ପଷ୍ଟ ଉଚ୍ଚାରିତ ହୁଏ । ଏହି ସବୁ ଉଚ୍ଚାରଣର ପ୍ରଭେଦ ହେତୁରୁ ଓଡ଼ିଆ ଭାଷା ବଙ୍ଗାଳୀ ନିକଟରେ ଗୁଡ଼ କର୍କଷ ବୋଲି ବୋଧହୁଏ ।

ବ୍ୟାକରଣର ବ୍ୟବସ୍ଥା ସମ୍ବନ୍ଧରେ ଓଡ଼ିଆଭାଷା ବଙ୍ଗଳାର ଅନୁରୂପ । ଲିଙ୍ଗପ୍ରକରଣରେ ସ୍ତ୍ରୀତ୍ୱ ବୁଝାଇବା ପାଇଁ ଦେଶଜ ଓ ଅପଭ୍ରଂଶ ଶବ୍ଦ ସ୍ଥଳରେ ଆଣୀ ଓ ଉଣୀ ପ୍ରତ୍ୟୟ ହୁଏ । ଯଥା – ଚାଷୁଣୀ, ବଣିଆଣୀ । ଓଡ଼ିଆରେ ଶବ୍ଦକୁ ବହୁବଚନାନ୍ତ କରିବାକୁ ହେଲେ ଏକବଚନାନ୍ତ ଶବ୍ଦ ପରେ 'ମାନ' ବିଭକ୍ତି ପ୍ରୟୋଗ କରାଯାଏ । 'ମାନ' ବିଭକ୍ତିର ଉତ୍ପତ୍ତି ସମ୍ବନ୍ଧରେ ସ୍ଥିରାତ୍ମକ କିଛିହିଁ ବୋଲା ଯାଇ ନ ପାରେ । ତେବେ 'ମାନ୍ୟ ଅର୍ଥରେ ବହୁବଚନ' ଏହି ବାକ୍ୟକୁ ଓଲଟାଇ ବହୁବଚନରେ 'ମାନ' ପ୍ରୟୋଗ କରିବାର ରୀତି ଉଦ୍ଭାବିତ ହୋଇଥିବା ଅସମ୍ଭବ ନୁହେଁ । ଓଡ଼ିଆରେ କର୍ମ ଏବଂ ସମ୍ପ୍ରଦାନ କାରକର 'କୁ' ବିଭକ୍ତି ହିନ୍ଦୀର 'କୋ' ର ଲଘୁକରଣ ବୋଲି ବୋଧହୁଏ । ଓଡ଼ିଆଭାଷାର ଅପାଦାନର 'ରୁ' ବୋଧହୁଏ ପ୍ରାକୃତର 'ଉ' ର ରୂପାନ୍ତର । ସମ୍ବନ୍ଧର ବିଭକ୍ତି 'ର' ଓଡିଆ ଓ ବଙ୍ଗଳା ଉଭୟରେ ସମାନ । ଅଧିକରଣର ବିଭକ୍ତି 'ରେ' ପ୍ରାକୃତ 'ଏ' ର ଭିନ୍ନରୂପ ବୋଲିବାକୁ ହେବ । 'ଏ' ପ୍ରତ୍ୟୟ କେତେବେଳେ ଏକତ୍ୱ ବୋଧକ, କେତେବେଳେ ବା ବହୁତ୍ୱ ବୋଧକ ହୋଇଥାଏ, ଯଥା; ଜଣେ, ଲୋକେ ଓଡ଼ିଆରେ ଆଖ୍ୟାତ ବିଭକ୍ତିଗୁଡ଼ିକ ମଧ୍ୟରେ ନିତ୍ୟପ୍ରବୃତ୍ତ ବର୍ତ୍ତମାନର ଏବଂ ଅନୁଜ୍ଞାର ପ୍ରଥମପୁରୁଷ ବହୁବଚନାନ୍ତ 'ଅନ୍ତି' ଓ 'ଅନ୍ତୁ' ପ୍ରତ୍ୟୟ ସମ୍ପୂର୍ଣ୍ଣରୂପେ ସଂସ୍କୃତ ବା ପ୍ରାକୃତ । ବଙ୍ଗଳା ପରି ବର୍ତ୍ତମାନ ଏବଂ ଅନୁଜ୍ଞାର ପ୍ରଥମ ଓ ମଧ୍ୟମ ପୁରୁଷରେ ଏକବଚନରେ 'ଏ' ଓ 'ଅ' ପ୍ରତ୍ୟୟ ବ୍ୟବହୃତ ହୁଏ । ଉତ୍ତମପୁରୁଷରେ 'ଏଁ' ପ୍ରତ୍ୟୟ ହୁଏ । ଓଡିଆରେ ବିଶୁଦ୍ଧ ଅତୀତକାଳରେ ପ୍ରଥମପୁରୁଷରେ 'ଲା' ଓ 'ଲେ' ଓ ମଧ୍ୟମପୁରୁଷରେ 'ଲ' ଓ ଉତ୍ତମପୁରୁଷରେ 'ଲି' ଓ 'ଲୁ' ବିଭକ୍ତି ହୁଏ; ଯଥା; - ସେ କଲା, ସେମାନେ କଲେ, ତୁମ୍ଭେ କଲ, ମୁଁ କଲି,

*ଏହି ପୁରାତନ ଉଚ୍ଚାରଣ ବୋଧହୁଏ ଆଜିକାଲି ମଧ୍ୟ ବଙ୍ଗଳାର ବିଷ୍ଣୁ, କୃଷ୍ଣ ପ୍ରଭୃତି ଶବ୍ଦରେ ଦେଖାଯାଏ । ବଙ୍ଗଳାରେ ଏହି ସବୁ ଶବ୍ଦ ବିଷ୍ଟୁଁ, କୃଷ୍ଟଁ ଇତ୍ୟାଦିରୂପେ ଉଚ୍ଚାରିତ ହୁଏ । ଷ ତଳେ ଣ ଯୋଗ କଲେ ଣ ଉଚ୍ଚାରଣ ଟଁ ପରି ହେଲା କାହିଁକି ?

ଆମ୍ଭେମାନେ କଲୁଁ । ପ୍ରାଗତ ଅତୀତରେ ଏକବଚନରେ 'ଥିଲା' 'ଥିଲୁଁ' 'ଥିଲି' ବହୁବଚନରେ 'ଥିଲେ' 'ଥିଲ' 'ଥିଲୁ' ପ୍ରତ୍ୟୟ ହୁଏ । ବଙ୍ଗଳାରେ ଏହିସବୁ ସ୍ଥାନରେ ଯଥାକ୍ରମେ 'ଛିଲ' 'ଛିଲି' 'ଛିଲାମ୍' 'ଛିଲେନ୍' 'ଛିଲେ' 'ଛିଲାମ' ପ୍ରତ୍ୟୟ ହୁଏ । କୃଦନ୍ତ ପ୍ରକରଣରେ ଅସମାପିକା କ୍ରିୟାର ଗଠନରେ 'ଇ' 'ବାକୁ' 'ଉ' ପ୍ରତ୍ୟୟ ବ୍ୟବହୃତ ହୁଏ ଯଥା; କରି, କରିବାକୁ, ଦେଖୁଁ ଦେଖୁଁ । କୃଦନ୍ତରେ 'ଲା' ବା 'ଅନ୍ତା' ପ୍ରତ୍ୟୟାନ୍ତ କେତେ ଗୁଡ଼ିଏ ଶବ୍ଦ ବିଶେଷଣରୂପରେ ବ୍ୟବହୃତ ହୁଏ । ଯଥା, - ଗଲାକଥା, ଦେବାଲୋକ, ଚାଲନ୍ତା ଗାଡ଼ି । ତଦ୍ଧିତ ପ୍ରକରଣରେ ଇଆ, ଉଆ, ଆଳ, ରା, ପଣ, ଯାକ, ଯାଏ, କ, ତେ, ତେ ପ୍ରଭୃତି ପ୍ରତ୍ୟୟ ଗୁଡ଼ିକ ବ୍ୟବହୃତ ହୁଏ, ଯଥା, – ଜାଲିଆ, ନାଟୁଆ, ଚକ୍ଷୁଆଳ, ପାନରା, ସାଧୁପଣ, ବାଟଯାକ, ଦେଉଳ ଯାଏ, ଦିନକ, ଏତେ, ଏତେ ।

ପୂର୍ବେ କହିଅଛୁଁ ଓଡ଼ିଆଭାଷା ପ୍ରାଚୀନ ସାହିତ୍ୟ ଶାଳିନୀ । ଓଡ଼ିଆ ସାହିତ୍ୟରେ ଶତ ଶତ ପଦ୍ୟଗ୍ରନ୍ଥ ସଂରକ୍ଷିତ ଅଛି । ସେ ଗ୍ରନ୍ଥଗୁଡ଼ିକ ପୁରାଣ, କାବ୍ୟ ଏବଂ ବିବିଧ, ଏହି ତିନି ଶ୍ରେଣୀରେ ବିଭକ୍ତ ହୋଇପାରେ । ଅଧିକାଂଶ ଗ୍ରନ୍ଥ ଆଜିଯାଏ ମଧ୍ୟ ମୁଦ୍ରିତ ହୋଇନାହିଁ । ପାଠକମାନଙ୍କ କୌତୂହଳ ତୃପ୍ତି ନିମିତ୍ତ ନିମ୍ନରେ ତିନିଜଣ ପ୍ରଧାନ ପ୍ରାଚୀନ କବିଙ୍କର ତିନି ଖଣ୍ଡି କାବ୍ୟରୁ କିୟଦଂଶ ଉଦ୍ଧୃତ କଲୁଁ । * ଓଡ଼ିଆର ସମସ୍ତ ପଦ୍ୟ ଅକ୍ଷର ନିୟମାନୁସାରେ ପୟାର, ତ୍ରିପଦୀ, ପ୍ରଭୃତି ଛନ୍ଦର କିମ୍ବା ସେମାନଙ୍କ ସମ୍ମିଶ୍ରଣଜନିତ ନାନାବିଧ ଛନ୍ଦୋବନ୍ଧରେ ରଚିତ ହୋଇଅଛି । ଓଡ଼ିଆର ସମସ୍ତ ପଦ୍ୟ ପାଠକାଳରେ ସ୍ୱର ସଂଯୋଗରେ ପଠିତ ହୋଇଥାଏ । ଏହି ହେତୁରୁ ପଦ୍ୟର ପ୍ରଥମରେ ରାଗ ରାଗିଣୀର ଉଲ୍ଲେଖ ଥାଏ ।

ଆଧୁନିକ ଉତ୍କଳ ସାହିତ୍ୟରେ ବଙ୍ଗଳା ସାହିତ୍ୟର ଅନୁକରଣ ବିଶେଷଭାବରେ ଲକ୍ଷିତ ହୁଏ । ଏହି କାରଣରୁ ଓଡ଼ିଆ ରଚନା ଦିନକୁ ଦିନ ବଙ୍ଗଳା ପରି ହୋଇ ଆସୁଅଛି । ଉପସଂହାରରେ ଆଧୁନିକ ସାହିତ୍ୟର ନମୁନାସ୍ୱରୂପ ଦିଓଟି କବିତାଂଶ ଏବଂ ଗୋଟିଏ ଗଦ୍ୟ ପ୍ରବନ୍ଧର କିୟଦଂଶ ନିମ୍ନରେ ସନ୍ନିବିଷ୍ଟ ହେଲା । ପ୍ରଥମ କବିତାଂଶଟି ଆଧୁନିକ ଉତ୍କଳର ଶ୍ରେଷ୍ଠ କବି ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟମହାଶୟଙ୍କ ମହାଯାତ୍ରା ନାମକ କାବ୍ୟରୁ ଗୃହୀତ । ଏହା ଶ୍ରୀ ମାଇକେଲ ମଧୁସୂଦନ ଦତ୍ତ କବିବରଙ୍କ ପ୍ରବର୍ତ୍ତିତ ଅମିତ୍ରାକ୍ଷର ଛନ୍ଦରେ ଲିଖିତ । ଦ୍ୱିତୀୟ କବିତାଂଶ ଶ୍ରୀଯୁକ୍ତ ବାବୁ ଫକୀରମୋହନ ସେନାପତି ମହାଶୟଙ୍କ ଉପହାର ନାମକ ପୁସ୍ତକରୁ ଗୃହୀତ । ପରବର୍ତ୍ତୀ ଗଦ୍ୟାଂଶ ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ମହାଶୟଙ୍କ ଓଡ଼ିଶା ଇତିହାସରୁ ଉଦ୍ଧୃତ ହେଲା । +

ଶ୍ରୀ ମଧୁସୂଦନରାଓ ।

*ଭା୧ଗ,ସଂ୧ଖ୍ୟା, ୧୮୯୭ ମସିହା( ୧୩୦୪ ମାଘ-୧୩୦୫ ପୌଷ)*

## ଉତ୍କଳସାହିତ୍ୟର ଉନ୍ନତି **

ଉତ୍କଳର ପ୍ରାଚୀନ ସାହିତ୍ୟ ସଂସାରରେ ପ୍ରବେଶକଲେ ସାଧାରଣତଃ ଦୁଇ ଶ୍ରେଣୀର ଲେଖକ ଦୃଷ୍ଟି ପଥରେ ପତିତ ହୁଅନ୍ତି । ଏକ ଶ୍ରେଣୀକୁ ସୌଖୀନଆଖ୍ୟାପ୍ରଦାନ କରାଯାଇପାରେ । ସେମାନେ ସମ୍ମୁଖରେ ବିଶେଷ କୌଣସି ଲକ୍ଷ୍ୟ ରଖି ସାହିତ୍ୟ ସେବାରେ ପ୍ରବୃତ୍ତ ହୋଇ ନ ଥିଲେ- ସାହିତ୍ୟ ପାଠରେ ଜନସାଧାରଣଙ୍କର କି ଉପକାର ସାଧିତ ହେବ ବା ସମାଜର କି ପରିମାଣରେ ମଙ୍ଗଳ ବା ଅମଙ୍ଗଳ ଘଟିବ ଏ ଚିନ୍ତା ସେମାନଙ୍କ ପ୍ରାଣରେ ଆଦୌ

---

* ଲେଖକ ମହାଶୟ ଏହିଠାରେ କବି ଦୀନକୃଷ୍ଣ, ଉପେନ୍ଦ୍ର, ଅଭିମନ୍ୟୁଙ୍କ ରସକଲ୍ଲୋଳ, ପ୍ରେମସୁଧାନିଧି, ବିଦଗ୍ଧଚିନ୍ତାମଣି କାବ୍ୟମାନଙ୍କରୁ କିଛି କିଛି ଉଦ୍ଧୃତ କରିଅଛନ୍ତି । ଉଃ ସାଃ ସଂ

+ ଉକ୍ତ ଅଂଶମାନ ଓଡ଼ିଆ ପାଠକମାନଙ୍କ ପକ୍ଷରେ ଅନାବଶ୍ୟକ ବିବେଚନାରେ ପରିତ୍ୟକ୍ତ ହେଲା । ଉଃ ସାଃ ସଂ

** ବିଗତ ମାର୍ଚ୍ଚ ମାସ ତା୧୧ରିଖରେ କଟକ ଆଲୋଚନାସଭାର ତୃତୀୟ ସାମ୍ବତ୍ସରିକ ଅଧିବେଶନରେ ପ୍ରଦତ୍ତ ବକ୍ତୃତାର ଅଂଶ ଏହି ପ୍ରବନ୍ଧରେ ସନ୍ନିବିଷ୍ଟ ହେଲା । ଉଃ ସାଃ ସଂ

ପ୍ରବେଶ କରିଥିବାର ବୋଧ ହୁଏ ନାହିଁ- କେବଳ ନିଜର ଓ ପାଠକସାଧାରଣଙ୍କର ଆମୋଦ ପ୍ରମୋଦ ସ୍ପୃହା ଚରିତାର୍ଥ କରିବାହିଁ ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ସୁତରାଂ ଜନସାଧାରଣଙ୍କର ରୁଚିକୁ ଅନୁସରଣ କରି କାବ୍ୟାଦି ପ୍ରଣୟନ କରିବା ସେମାନଙ୍କ ପକ୍ଷରେ ସ୍ୱାଭାବିକ । କବି ଉପେନ୍ଦ୍ରଭଞ୍ଜ, ବଳଭଦ୍ର ରଥ ପ୍ରଭୃତି ଏହି ଶ୍ରେଣୀର ଅନ୍ତର୍ଗତ । ଅପର ଶ୍ରେଣୀର ଲେଖକଗଣ ଭକ୍ତ । ସ୍ୱୀୟ ସ୍ୱୀୟ ଇଷ୍ଟଦେବ ଦେବୀଙ୍କ ମହିମା ଜନସାଧାରଣଙ୍କ ନିକଟରେ ପ୍ରଚାର କରିବା ଏବଂ ଇଷ୍ଟଦେବତାଙ୍କ ଗୁଣକୀର୍ତ୍ତନ କରିବା ସେମାନଙ୍କର ସାହିତ୍ୟ ସେବାର ମୂଳ । କବି ବଳରାମ ଦାସ , ଦୀନକୃଷ୍ଣ ଦାସ ପ୍ରଭୃତି ଏହି ଶ୍ରେଣୀରେ ଗଣ୍ୟ । ଏହି ଉଭୟ ଶ୍ରେଣୀର ଲେଖକଗଣ ହିଁ ପ୍ରାଚୀନ ଉତ୍କଳ ସାହିତ୍ୟର ଜନ୍ମଦାତା ଓ ଗଠନକର୍ତ୍ତା । ଉଭୟ ଶ୍ରେଣୀ ମଧ୍ୟରେ କେତେଗୁଡ଼ିଏ ଶକ୍ତିଶାଳୀ ଲେଖକ ଜନ୍ମଗ୍ରହଣ କରି ଉତ୍କଳ ସାହିତ୍ୟର ବିଶେଷ ଉନ୍ନତି ସାଧନ କରି ଯାଇଅଛନ୍ତି । ଯେ ଯେଉଁ ଭାବଦ୍ୱାରା ପ୍ରଭାବିତ ହୋଇ ସାହିତ୍ୟ ସେବାରେ ପ୍ରବୃତ୍ତ ହୋଇଥାନ୍ତୁ ସେମାନେ ବହୁ ଅୟାସ ସ୍ୱୀକାର କରି ଆମ୍ଭମାନଙ୍କ ପାଇଁ ଯାହା ରଖି ଯାଇଅଛନ୍ତି, ସେଥିନିମନ୍ତେ ସେମାନଙ୍କ ନିକଟରେ ଆମ୍ଭମାନଙ୍କର ଚିରକୃତଜ୍ଞ ରହିବା ଉଚିତ- ସେମାନଙ୍କର ଏହିପ୍ରକାର ଚେଷ୍ଟା ଓ ଯତ୍ନ ନ ଥିଲେ, ଉତ୍କଳଭାଷା ଯେ ପ୍ରାଚୀନ ସାହିତ୍ୟ ଶାଳିନୀ ଏକଥା ଆଜି ଆମ୍ଭେମାନେ କହିବାକୁ ସକ୍ଷମ ହୁଅନ୍ତୁ ନାହିଁ ।

କିନ୍ତୁ ପ୍ରାଚୀନ ଉତ୍କଳ ସାହିତ୍ୟ ଆମ୍ଭମାନଙ୍କ ପକ୍ଷରେ ଯଥେଷ୍ଟ ନୁହେ ଏବଂ ତାହା ବର୍ତ୍ତମାନ କାଳରେ ଆମ୍ଭମାନଙ୍କର ଆଦର୍ଶସ୍ଥାନୀୟ ମଧ୍ୟ ହୋଇ ନ ପାରେ । ଯେହେତୁ ସର୍ବାଙ୍ଗୀନ ସାହିତ୍ୟ-ସଂଗଠନ ସ୍ପୃହା ପ୍ରାଚୀନ ଲେଖକମାନଙ୍କ ପ୍ରାଣରେ ଉଦିତ ହୋଇ ନ ଥିଲା । ପାଶ୍ଚାତ୍ୟଶିକ୍ଷା ଆମ୍ଭମାନଙ୍କ ଦୃଷ୍ଟି ତେଣିକି ଫେରାଇଅଛି । କେବଳ କାବ୍ୟକୁ ଆମ୍ଭେମାନେ ସାହିତ୍ୟ ବୋଲି ମନେ କରି ନ ପାରୁଁ । ବିଜ୍ଞାନ,ଦର୍ଶନ, ଇତିହାସ, ଜୀବନ ଚରିତ, ଶିକ୍ଷା, ଶିଳ୍ପ ଜୀବନର ସର୍ବବିଧ ବିଷୟ ସାହିତ୍ୟର ଅନ୍ତର୍ଗତ । ପାଶ୍ଚାତ୍ୟ ଶିକ୍ଷାଗୁଣରେ ଏହି ପ୍ରକାର ସର୍ବାଙ୍ଗୀନ - ସାହିତ୍ୟ- ସଂଗଠନ- ସ୍ପୃହା ଆମ୍ଭମାନଙ୍କର ଦେଶରେ କିଞ୍ଚିତ୍ ପରିମାଣରେ ଜାଗ୍ରତ ହୋଇଅଛି । ସାହିତ୍ୟର ଉନ୍ନତି ଜାତୀୟ ଉନ୍ନତିର ପ୍ରଧାନ ସହାୟ, ଏହା ଆମ୍ଭେମାନେ କଥଞ୍ଚିତ୍ ଉପଲବ୍ଧି କରିବାକୁ ସକ୍ଷମ ହୋଇଅଛୁଁ । ଏହି ଭାବ ପ୍ରବଳ ନ ହେଲେ ଏବଂ ଏହି ପ୍ରକାରେ ଉତ୍କଳସାହିତ୍ୟର ଶ୍ରୀବୃଦ୍ଧି କରିବାକୁ ଯତ୍ନଶୀଳ ନ ହେଲେ ଆମ୍ଭମାନଙ୍କର ଜାତୀୟ ଉନ୍ନତି ଅସମ୍ଭବ ।

ଦୁଃଖର ସହିତ କହିବାକୁ ହେଉଅଛି ଯେ ଉତ୍କଳଭୂମିରେ ଏ ପର୍ଯ୍ୟନ୍ତ ଯଥାର୍ଥ ନିଷ୍ଠାବାନ ସାହିତ୍ୟ ସେବକ ପ୍ରାୟ କେହି ଦେଖାଯାଉ ନାହାନ୍ତି । ପ୍ରତ୍ୟେକ ଉନ୍ନତ ଜାତିର ସାହିତ୍ୟର ଇତିହାସ ପାଠକଲେ ଜଣାଯାଏ ଯେ ସମୟ ବିଶେଷରେ କେତେଗୁଡ଼ିଏ ଶକ୍ତିଶାଳୀ ନିଷ୍ଠାବାନ ସାହିତ୍ୟ-ସେବକ ଏକାଗ୍ରପ୍ରାଣରେ ସାହିତ୍ୟ ଚର୍ଚ୍ଚାରେ ପ୍ରବୃତ୍ତ ହୋଇ ସାହିତ୍ୟରେ ଜୀବନ ସଞ୍ଚାର କରି ଦିଅନ୍ତି; ସେହି ଜୀବନ ପ୍ରବାହ କ୍ରମେ ଦେଶ ମଧ୍ୟରେ ସଞ୍ଚାରିତ ହୋଇ ବହୁଶତ ପ୍ରାଣରେ ସାହିତ୍ୟ ସେବାର ଭାବ ଉଦ୍ଦୀପିତ କରିଦିଏ । ପରବର୍ତ୍ତୀ କାଳରେ ସେମାନଙ୍କ ଅପେକ୍ଷା ବହୁଗୁଣରେ ଅଧିକ ଶକ୍ତିସମ୍ପନ୍ନ ଲେଖକ ଦେଶ ମଧ୍ୟରେ ଜନ୍ମ ଗ୍ରହଣ କରନ୍ତି,କିନ୍ତୁ ସେମାନେ ପ୍ରଥମୋକ୍ତ ଦଳର କଠୋର ସାଧନାର ଫଳ । ଏହା ଦୃଷ୍ଟାନ୍ତ ଅନୁସରଣ କରିବାକୁ ବହୁଦୂର ନ ଯାଇ ଆମ୍ଭମାନଙ୍କର ପ୍ରତିବେଶିନୀ ସୌଭାଗ୍ୟବତୀ ବଙ୍ଗଭାଷାର ବିଷୟ ଆଲୋଚନା କଲେ ବୋଧହୁଏ ନିତାନ୍ତ ଅସଙ୍ଗତ ବା ଅନୁଚିତ ହେବ ନାହିଁ — ବରଂ ପ୍ରାଚୀନ ଉତ୍କଳ ସାହିତ୍ୟ ସଙ୍ଗେ ପ୍ରାଚୀନ ବଙ୍ଗ ସାହିତ୍ୟର ବିଶେଷ ସୌସାଦୃଶ୍ୟ ଥିବାରୁ ଏ ପ୍ରକାର ତୁଳନା ବା ଆଲୋଚନା ବିଶେଷ ଉପଯୋଗୀ ବୋଧ ହେଉଅଛି ।

ବଙ୍ଗ ଦେଶରେ ମଧ୍ୟ ପ୍ରାଚୀନ ସାହିତ୍ୟ କାବ୍ୟ ଓ କବିତାରେ ଆବଦ୍ଧ ଥିଲା ଏବଂ ସାଧାରଣତଃ ଦୁଇଶ୍ରେଣୀର ଲେଖକ ଉକ୍ତ ସାହିତ୍ୟର ସୃଷ୍ଟି କର୍ତ୍ତା ଓ ପରିପୋଷକ ଥିଲେ । ମହାତ୍ମା ରାଜା ରାମମୋହନ ରାୟ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଗଦ୍ୟରଚନାର ପ୍ରଣାଳୀ ନିର୍ଦ୍ଦେଶ କରି ଗଦ୍ୟସାହିତ୍ୟର ଅବତାରଣା କଲେ । ତତ୍ପରେ ସ୍ୱର୍ଗୀୟ ଅକ୍ଷୟକୁମାର ଦତ୍ତ ଓ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପ୍ରଭୃତି କେତେକ ଜଣ ପ୍ରତିଭାଶାଳୀ ବ୍ୟକ୍ତି କଠୋର ସାଧନାରେ ପ୍ରବୃତ୍ତ ହୋଇ ବଙ୍ଗସାହିତ୍ୟରେ ନବଜୀବନ ସଞ୍ଚାର କଲେ । ଏହି ସମୟରେ ମହର୍ଷି ଦେବେନ୍ଦ୍ର ନାଥ ଠାକୁରଙ୍କ ଯତ୍ନ ଓ ଉତ୍ସାହରେ ତତ୍ତ୍ୱବୋଧିନୀ ପତ୍ରିକା ପ୍ରକାଶିତ ହୋଇ ଦେଶ ମଧ୍ୟରେ ବିବିଧ

ତତ୍ତ୍ୱ ପ୍ରଚାର କରିବାକୁ ଲାଗିଲା । ପରବର୍ତ୍ତୀ ସମୟରେ ବଙ୍କିମଚନ୍ଦ୍ର ପ୍ରଭୃତି ସାହିତ୍ୟରଥିମାନେ କାର୍ଯ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ବଙ୍ଗସାହିତ୍ୟକୁ ବହୁଗୁଣରେ ସମୁନ୍ନତ ଓ ସୁଶୋଭିତ କରିଅଛନ୍ତି ସତ୍ୟ,ମାତ୍ର ଅକ୍ଷୟକୁମାର ପ୍ରଭୃତିଙ୍କର କଠୋର ସାଧନା ଯେ ଏଥିରେ ପ୍ରାଣ ସଞ୍ଚାର କରିଅଛି, ଏଥିରେ ମତଦ୍ୱୈଧ ଥାଇ ନ ପାରେ । ସେହିମାନଙ୍କ ସାଧନାର ଫଳରେ ଆଜି ବଙ୍ଗ ସାହିତ୍ୟର ଏତେ ସମୃଦ୍ଧି ଓ ଏତେ ଗୌରବ- ଆଜିସୁଦ୍ଧା ଜୀବନସ୍ରୋତ ପ୍ରବଳ ବେଗରେ ସଞ୍ଚରିତ ହେଉ ଅଛି-ଉଚ୍ଚଶ୍ରେଣୀର ସାହିତ୍ୟସେବକ ମାନେ ସମ୍ମିଳିତ ହୋଇ ନାନାସ୍ଥାନରେ ସଭା ସଂଗଠନ କରି ସାହିତ୍ୟର ଉନ୍ନତିସାଧନ କରୁଅଛନ୍ତି- ବହୁ ସଂଖ୍ୟକ ଉଚ୍ଚଶ୍ରେଣୀର ପତ୍ରିକାମାନ ପ୍ରକାଶିତ ହୋଇ ଏ ପଥରେ ପ୍ରଭୂତ ସହାୟତା କରୁଅଛି-ଭିନ୍ନ ଭିନ୍ନ ବ୍ୟକ୍ତି ସାହିତ୍ୟର ଭିନ୍ନ ଭିନ୍ନ ବିଭାଗରେ ପ୍ରବେଶ କରି ବିଶେଷ କୃତିତ୍ୱ ଲାଭ କରୁଅଛନ୍ତି । ସ୍ଥୁଳରେ ବଙ୍ଗସାହିତ୍ୟର କାର୍ଯ୍ୟ ଜୀବନ୍ତଭାବରେ ପରିଚାଳିତ ହେଉଅଛି । ମାତ୍ର ସେହି ପ୍ରାଥମିକ ସାଧନାର ପ୍ରବର୍ତ୍ତକ କିଏ ?କେବଳ ଉଚ୍ଚ ଆକାଂକ୍ଷା ଓ ଉନ୍ନତ ରୁଚି ଏହାର ପ୍ରବର୍ତ୍ତକ । ଦେଶର କତିପୟବ୍ୟକ୍ତିଙ୍କ ପ୍ରାଣରେ ଏହିପରି ଆକାଂକ୍ଷା ଓ ରୁଚି ଜାଗ୍ରତ ହେଲେ ସେମାନେ ସ୍ୱତଃ ପ୍ରୟୋଜନାନୁରୂପ ସାଧନମାର୍ଗ ଅବଲମ୍ବନ କରନ୍ତି । ମହାତ୍ମା ରାମମୋହନଙ୍କ ପ୍ରାଣର ମହୋଚ୍ଚ ଆକାଂକ୍ଷା ତାଙ୍କୁ ବଙ୍ଗସାହିତ୍ୟ ସଙ୍ଗଠନ କାର୍ଯ୍ୟରେ ପ୍ରବର୍ତ୍ତାଇଥିଲା । ସମଭାବାପନ୍ନ କେତେଗୁଡିଏ ଉନ୍ନତମନା ବ୍ୟକ୍ତିଙ୍କର ସମ୍ମିଳନ ଓ ବିବିଧ ବିଷୟକ ଆଲୋଚନାରୁ ତତ୍ତ୍ୱବୋଧିନୀ ପତ୍ରିକାର ଜନ୍ମ । ପୁଣି ଧର୍ମପ୍ରାଣ ମହର୍ଷି ଦେବେନ୍ଦ୍ର ନାଥ ବଙ୍ଗଭାଷାକୁ ଯେଉଁ ଅପୂର୍ବ ପରିଚ୍ଛଦ ଦେଇ ଯାଇଅଛନ୍ତି, ତାହାର ତୁଳନା ନାହିଁ ।

ଅତଏବ ଦେଖାଯାଉଅଛି ଯେ ଉଚ୍ଚ ଆକାଂକ୍ଷ ଓ ଉନ୍ନତ ରୁଚି ଏବଂ ତଦାନୁସଙ୍ଗିକ ବିବିଧ ତତ୍ତ୍ୱାଲୋଚନା ସାହିତ୍ୟ ସଙ୍ଗଠନ ଓ ସାହିତ୍ୟୋନ୍ନତିର ସର୍ବପ୍ରଧାନ ଉପାଦାନ । ଦୁଃଖର ସହିତ କହିବାକୁ ହେଉଅଛି ଯେ ଉତ୍କଳଭୂମିରେ ସେ ପ୍ରକାର ଆକାଂକ୍ଷା ଓ ଭାବ ସମଧିକପରିମାଣରେ ଜାଗ୍ରତ ହୋଇନାହିଁ ; ସୁତରାଂ ନିଷ୍ଠାବାନ ସାହିତ୍ୟସେବକ ଜନ୍ମିବେ କିପରି ? ବର୍ତ୍ତମାନ ଆମ୍ଭମାନଙ୍କୁ ଟିକିଏ ଦୃଷ୍ଟି ପ୍ରସାରିତ କରିବାକୁ ହେବ, ଟିକିଏ ସ୍ୱାର୍ଥ ବିସର୍ଜନ କରି ସାହିତ୍ୟସଙ୍ଗଠନ କାର୍ଯ୍ୟରେ ବ୍ରତୀ ହେବାକୁ ହେବ । ଆମ୍ଭମାନଙ୍କ ମଧ୍ୟରେ ଯେ କିଞ୍ଚିତ୍‌ପରିମାଣ ଜାଗରଣ ଉପସ୍ଥିତ ହୋଇଅଛି ତଦ୍ୱାରା ଯଥେଷ୍ଟ ଫଳଲାଭ ହେଉ ନାହିଁ-ହେବା ସମ୍ଭବ ମଧ୍ୟ ନୁହେଁ ।

ଏହା ସମସ୍ତେ ସ୍ୱୀକାର କରିବେ ଯେ ମାସିକ ପତ୍ରିକା ସାହିତ୍ୟୋନ୍ନତିର ଗୋଟିଏ ଉତ୍କୃଷ୍ଟ ମାର୍ଗ । କିନ୍ତୁ ଉତ୍କଳଭୂମିରେ ସେହି ମାସିକ ପତ୍ରିକାର ଏତେ ଅନାଦର କାହିଁକି ? ତାହାର କାରଣ ଏହି ଯେ ଦେଶର କେତେକ ବ୍ୟକ୍ତିଙ୍କ ପ୍ରାଣରେ ସାହିତ୍ୟ ଚର୍ଚ୍ଚାର ଯେଉଁ ଆକାଂକ୍ଷା କିଞ୍ଚିତ୍ ପରିମାଣରେ ଜାଗ୍ରତ ହୋଇଅଛି ତାହା ସର୍ବସାଧାରଣରେ ପରିବ୍ୟାପ୍ତହୋଇ ନାହିଁ । ପୁଣି ଆଉଗୋଟିଏ ପ୍ରଶସ୍ତ ଦ୍ୱାର ଯେ ସଭାସମିତି ତାହାପ୍ରତି ମଧ୍ୟ ଉତ୍କଳବାସୀ ସମୁଚିତ ଆସ୍ଥା ପ୍ରଦର୍ଶନ କରି ପାରି ନାହାନ୍ତି । ଏହି ଭାବ,ଏହି ଜଡ଼ତା ବା ଔଦାସୀନ ଦୂର ହେବା ଏକାନ୍ତ ପ୍ରୟୋଜନ । ଅବସରକ୍ରମେ କିଞ୍ଚିତ୍ ସାହିତ୍ୟଚର୍ଚ୍ଚା କରି ନିଶ୍ଚିନ୍ତ ରହିଲେ ଚଳିବ ନାହିଁ । ଭିନ୍ନ ଭିନ୍ନ ବ୍ୟକ୍ତିଙ୍କୁ ଭିନ୍ନ ଭିନ୍ନ ବିଭାଗରେ ପ୍ରବେଶ କରି ବିଶେଷ ସାଧନ ଅବଲମ୍ବନ କରିବାକୁ ହେବ- ସମସ୍ତ ଶକ୍ତି ପ୍ରୟୋଗ କରି ସାହିତ୍ୟର ସେବା କରିବାକୁ ହେବ – ତେବେ ଉତ୍କଳସାହିତ୍ୟରେ ଜୀବନସଞ୍ଚାର ହେବ । କେବଳ ଏତିକି ନୁହେଁ । ନାନା ଉପାୟରେ ସର୍ବସାଧାରଣଙ୍କ ଦୃଷ୍ଟି ସାହିତ୍ୟଚର୍ଚ୍ଚା ଆଡକୁ ଫେରାଇବାକୁ ହେବ- ଆମ୍ଭମାନଙ୍କର ପ୍ରାଣର ଆଂକାକ୍ଷା ଅପରସାଧାରଣଙ୍କ ପ୍ରାଣରେ ପ୍ରବେଶ କରାଇବାକୁ ହେବ । ଜନସାଧାରଣଙ୍କ ମଧ୍ୟରେ କ୍ଷୁଦ୍ରଭାବ, ଦୂଷିତ ରୁଚି ଓ ଘୋର ଔଦାସୀନ୍ୟ ଅପ୍ରତିହତ ଆଧିପତ୍ୟ କରୁଥିବ, ଅଥଚ ଆମ୍ଭେମାନେ ଅବସରକ୍ରମେ ଟିକିଏ ଅଧେ ସାହିତ୍ୟ ଆଲୋଚନା କରି କର୍ତ୍ତବ୍ୟ ଶେଷ କରିବୁଁ ,ଏହା ନିତାନ୍ତ ଲଜ୍ଜା ଓ ପରିତାପର ବିଷୟ ।

ଏହି ଆଲୋଚନା ସଭା ଉପଯୁକ୍ତ କ୍ଷେତ୍ରରେ ସଂସ୍ଥାପିତ ହୋଇଅଛି- ନର୍ମାଲସ୍କୁଲ ଓଡ଼ିଆଭାଷାର ସର୍ବୋଚ୍ଚ ବିଦ୍ୟାଳୟ, ଏହାର ଛାତ୍ରମାନେ ଉତ୍କଳଭୂମିରେ ନାନାସ୍ଥାନରେ କାର୍ଯ୍ୟ କରିବାକୁ ଯିବେ । ସେମାନେ ଯେବେ ସାହିତ୍ୟ ସେବାର ଉନ୍ନତ ଭାବ ଓ ଆକାଂକ୍ଷା ପ୍ରାଣରେ ପୋଷଣ କରି ସ୍ୱୀୟ ସ୍ୱୀୟ କର୍ତ୍ତବ୍ୟ ସାଧନରେ ତତ୍ପର ହୁଅନ୍ତି,ତାହାହେଲେ ସେମାନଙ୍କ ଦ୍ୱାରା ଦେଶର ଅଶେଷ କଲ୍ୟାଣ ସାଧିତ ହୋଇପାରିବ- ସେମାନେ ନିଜେ ସାହିତ୍ୟ ସେବା କରି ଜୀବନ କୃତାର୍ଥ କରି ପାରିବେ ଏବଂ ଅନ୍ୟ ଶତ ଶତ ପ୍ରାଣରେ ସାହିତ୍ୟସେବାର ଭାବ ଜାଗ୍ରତ କରିବାକୁ

ସକ୍ଷମ ହେବେ । ଦୁଃଖର ବିଷୟ ନର୍ମାଲସ୍କୁଲର ଛାତ୍ରମାନେ ଏ ବିଷୟରେ ନିତାନ୍ତ ଉଦାସୀନ- ଯଥାର୍ଥ ସାହିତ୍ୟ ଚର୍ଚ୍ଚାର ଭାବ ସେମାନଙ୍କ ମଧ୍ୟରେ ଅତି ଅଳ୍ପ ପରିମାଣରେ ଦୃଷ୍ଟ ହୁଏ । ବଙ୍ଗଦେଶରେ ନର୍ମାଲସ୍କୁଲରୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କ ସଙ୍ଗେ ଏମାନଙ୍କର କେତେ ପ୍ରଭେଦ ? ସେ ଦେଶର ଏହି ଶ୍ରେଣୀର ଲୋକଙ୍କ ମଧ୍ୟରୁ ଅନେକଗୁଡ଼ିଏ ସୁଲେଖକ ବାହାରିଅଛନ୍ତି – କେହି କେହି ଉଚ୍ଚଶ୍ରେଣୀର ସାହିତ୍ୟସେବକମାନଙ୍କ ମଧ୍ୟରେ ଆସନଲାଭ କରିବାକୁ ସକ୍ଷମ ହୋଇଅଛନ୍ତି । ଆମ୍ଭମାନଙ୍କ ଦେଶରେ ଏପରି ମୃତଭାବ କାହିଁକି ? ଏକ୍ଷଣେ ଆମ୍ଭେମାନେ ଯେବେ ନିଜ ନିଜ ହୀନତା ଓ କ୍ଷୁଦ୍ରତା ସ୍ମରଣ କରି ଜାଗ୍ରତ ହେଉଁ,ଦୃଷ୍ଟିର ପରିସର ବୃଦ୍ଧି କରୁଁ, ଜୀବନରେ ଉଚ୍ଚ ଆକାଂକ୍ଷା ପୋଷଣ କରି କାର୍ଯ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହେଉଁ, ଉନ୍ନତ ଓ ମାର୍ଜିତ ରୁଚିର ଅନୁସରଣ କରୁଁ , ଉତ୍ସାହ ସହକାରେ ଆଲୋଚନାର କ୍ଷେତ୍ର ବିସ୍ତାରିତ କରୁଁ , ତାହାହେଲେ ଦେଖିବେ, ଅଳ୍ପକାଳ ମଧ୍ୟରେ ଉତ୍କଳ ସାହିତ୍ୟର ମୁଖଚ୍ଛବି ପରିବର୍ତ୍ତିତ ହୋଇଯିବ – ଜୀବନସ୍ରୋତ ଖରତର ବେଗରେ ସମଗ୍ର ଉତ୍କଳଭୂମିରେ ପ୍ରବାହିତ ହେବ - ଆମ୍ଭମାନଙ୍କର ଜାତୀୟ ଗୌରବ ବହୁପରିମାଣରେ ବର୍ଦ୍ଧିତ ହୋଇଯିବ । ନତୁବା ବର୍ତ୍ତମାନର ମୃଦୁମନ୍ଦ ଗତିଦ୍ୱାରା ଯଥାର୍ଥ ସାହିତ୍ୟସଂଗଠନ ଏକ ପ୍ରକାର ଅସମ୍ଭବ । ପାଶ୍ଚାତ୍ୟ ଶିକ୍ଷା ଲାଭ କରି,ଉନ୍ନତ ଜାତିମାନଙ୍କର ସାହିତ୍ୟବିଭବ ସନ୍ଦର୍ଶନ କରି ଆଜି ଯେବେ କେହି ମନେ କରନ୍ତି ଯେ ଆମ୍ଭମାନଙ୍କର ପ୍ରାଚୀନ ସାହିତ୍ୟ ଅଥବା ଏ ତାବତ୍ ଆମ୍ଭେମାନେ ଯାହା କରିଅଛୁଁ ତାହାହିଁ ଆମ୍ଭମାନଙ୍କ ପକ୍ଷରେ ଯଥେଷ୍ଟ ,ତାହାହେଲେ ସେ ନିତାନ୍ତ ଭ୍ରାନ୍ତ- ତାଙ୍କର ସେ ଭାବ ଅଳୀକ କଳ୍ପନା ମାତ୍ର । ଈଶ୍ୱର କରନ୍ତୁ , ଆମ୍ଭମାନଙ୍କର ସୁଖର ନିଦ୍ରା ଓ ମୋହର ଅବସନ୍ନତା ଦୂର ହେଉ , ଆମ୍ଭେମାନେ ଜୀବନର ଉଚ୍ଚ ଲକ୍ଷ୍ୟ ହୃଦୟଙ୍ଗମ କରି ଜାଗ୍ରତ ଓ ସଞ୍ଜୀବିତ ହେଉଁ ।

*୬ଖଣ୍ଡ ,ସଂ୪ଖ୍ୟା, ୧୮୯୭*

## ଉତ୍କଳର ସାହିତ୍ୟ ସେବକ

ସାହିତ୍ୟ ସେବା ସ୍ୱଦେଶସେବା ଓ ମାନବସେବାର ଗୋଟିଏ ସହଜ ଓ ପ୍ରକୃଷ୍ଟ ଉପାୟ –

ଏହାଦ୍ୱାରା ମନୁଷ୍ୟ ସ୍ୱଜାତୀୟମାନଙ୍କର ଏମନ୍ତ କି ସମଗ୍ର ମାନବ ସମାଜର ଯଥାର୍ଥ କଲ୍ୟାଣ ସାଧନ କରିବାକୁ ସକ୍ଷମ ହୁଏ- ତେବେ ଶକ୍ତିର ତାରତମ୍ୟ ଅନୁସାରେ ପରିମାଣର ତାରତମ୍ୟ ହୋଇପାରେ । ସାହିତ୍ୟ ସେବକ ଲୋକାନ୍ତର ଗମନ କରି ସୁଦ୍ଧା ଯୁଗଯୁଗାନ୍ତର ପର୍ଯ୍ୟନ୍ତ ମାନବସମାଜ ଉପରେ କର୍ତ୍ତୃତ୍ୱ କରୁଥାନ୍ତି- ଚିରକାଳ ମାନବର ଚିତ୍ତବିନୋଦନ ଓ ମନଃପ୍ରସାରଣ କାର୍ଯ୍ୟରେ ନିଯୁକ୍ତ ଥାନ୍ତି । ଦୃଷ୍ଟାନ୍ତ ଦେଇ ଏ କଥା କାହାରିକୁ ବୁଝାଇ ଦେବାର ପ୍ରୟୋଜନ ନାହିଁ । ସାହିତ୍ୟବିହୀନ ମନୁଷ୍ୟସମାଜ ଅରଣ୍ୟଚାରୀ ପଶୁମାନଙ୍କ ସଙ୍ଗେ କୁଟୁମ୍ବିତା କରିବାର ଯୋଗ୍ୟ ! ଧର୍ମ୍ମ, ନୀତି, ବିଜ୍ଞାନ ,ଦର୍ଶନ , ଶିଳ୍ପ, ବାଣିଜ୍ୟ ସମସ୍ତ ସାହିତ୍ୟସୂତ୍ରରେ ଜନସମାଜରେ ପ୍ରଚାରିତ ହୁଏ । ମାତୃଭାଷାର ପୁଷ୍ଟିକାମନା ଏବଂ ହୃଦୟର ଭାବ ଓ ଚିନ୍ତା ଜନସାଧାରଣରେ ପ୍ରଚାର କରିବାର ଆକାଂକ୍ଷା ମନୁଷ୍ୟକୁ ଯଥାର୍ଥ ସାହିତ୍ୟସେବକ ପଦରେ ପ୍ରତିଷ୍ଠିତ କରେ । ଏ ଦିଓଟି ମଧ୍ୟରୁ କୌଣସି ଗୋଟିଏ ଭାବ ମନରେ ପ୍ରବଳ ହେଲେ, ମନୁଷ୍ୟ ଆଉ ସ୍ଥିର ରହି ପାରେ ନାହିଁ ଏବଂ ସେ ଯାହା କରିବାକୁ ବସେ , ସେଥିରେ ସମଗ୍ର ପ୍ରାଣଟି ଅର୍ପଣ କରେ । ସେଥିରେ ତାହାର ନିଜର ବାହାଦୁରୀ ଥାଏ ନାହିଁ ,କିମ୍ବା ସ୍ୱାର୍ଥ, ଉପରୋଧ, ଅନୁରୋଧ, ଯଶଲିପ୍ସା କିଛି ସ୍ଥାନ ପାଏ ନାହିଁ । ଜାତୀୟସାହିତ୍ୟର ପ୍ରାଥମିକ ଅବସ୍ଥାରେ ଅନ୍ତତଃ କେତେଗୁଡ଼ିଏ ବ୍ୟକ୍ତି ଏହି ପ୍ରକାର ଉଚ୍ଚ ଭାବଦ୍ୱାରା ଅନୁପ୍ରାଣିତ ହୋଇ ସାହିତ୍ୟ ସେବାରେ ମନ ଓ ପ୍ରାଣ ଉତ୍ସର୍ଗ ନ କଲେ ସାହିତ୍ୟରେ ଜୀବନ ସଞ୍ଚାର ହୁଏ ନାହିଁ ବା ଅପର ସାଧାରଣଙ୍କ ପ୍ରାଣରେ ସାହିତ୍ୟ ସେବାର ଭାବ ଜାଗ୍ରତ ହୁଏ ନାହିଁ । ଏହି ଶ୍ରେଣୀର ଲୋକେ ସାହିତ୍ୟରେ ନବଯୁଗର ପ୍ରବର୍ତ୍ତକ – ଦେଶର ସୁସନ୍ତାନ । ମାତ୍ର ଏହି ସୁସନ୍ତାନମାନଙ୍କୁ ଅନେକ ବିଡମ୍ବନା ଭୋଗ କରିବାକୁ ହୁଏ - ନାନା ପ୍ରତିକୂଳ ଅବସ୍ଥା ସଙ୍ଗେ ସଂଗ୍ରାମ କରି ଆପଣାର ସ୍ୱାର୍ଥ ଓ ସୁବିଧାର କଥା ବିସ୍ମୃତ ହୋଇ ଅନେକ ସମୟରେ ଲାଞ୍ଛନା ଓ ଅପମାନ ସହ୍ୟ କରି ନିଃସ୍ୱାର୍ଥ ସାହିତ୍ୟସେବାର ଉନ୍ନତ ଦୃଷ୍ଟାନ୍ତ ସ୍ଥାପନ କରିବାକୁ ହୁଏ ।

ପ୍ରାୟ ୫ ବର୍ଷ ପୂର୍ବେ ମାସିକପତ୍ରିକା ସମ୍ବନ୍ଧରେ ଆଲୋଚନା କରୁ କରୁ ଆମ୍ଭେମାନେ ଏକ ସ୍ଥଳରେ ଲେଖିଥିଲୁଁ ଯେ , "ଲେଖକର ଅଭାବରେ ଆମ୍ଭମାନଙ୍କ ଦେଶର କୌଣସି ପତ୍ରିକା ଉଠି ଯାଇ ନାହିଁ-ଏବଂ ଏହା ହେବା ଅସମ୍ଭବ । କାରଣ ସମୟ ତାହାର ଉପଯୋଗୀ ଲେଖକଦଳ ପ୍ରସ୍ତୁତ କରି ନିଏ ।" ଏକଥା ଲେଖିବା ବେଳେ ଆମ୍ଭମାନଙ୍କ ମନରେ ଧାରଣା ଥିଲା ଯେ , ଉତ୍କଳସନ୍ତାନମାନଙ୍କ ମଧ୍ୟରେ ନିଃସ୍ୱାର୍ଥ ସାହିତ୍ୟ ସେବାର ଭାବ ଜାଗ୍ରତ ହୋଇଅଛି । କିନ୍ତୁ ହାୟ ! ବର୍ତ୍ତମାନ ଆମ୍ଭମାନଙ୍କର ସେ ଧାରଣା ଅନେକ ପରିମାଣରେ ବିଚଳିତ ହୋଇଅଛି ! ଅନ୍ତତଃ ଆମ୍ଭେମାନେ ଏତିକି ବୁଝି ପାରିଅଛୁଁ ଯେ ଉପରୋକ୍ତ କଥା ଅନ୍ୟ ଦେଶ ପକ୍ଷରେ ସତ୍ୟ ଓ ସ୍ୱାଭାବିକ ହେଲେ ହେଁ ଦୁର୍ଭାଗ୍ୟ ଉତ୍କଳଭୂମି ପକ୍ଷରେ ଠିକ୍ ସେପରି ନୁହେ । ଉତ୍କଳତନୟମାନଙ୍କର ଔଦାସୀନ୍ୟ, ଆଳସ୍ୟ ଓ କର୍ତ୍ତବ୍ୟବିମୁଖତା ବିଦୂରିତ ହେବା ପାଇଁ ଆହୁରି ଅନେକ ଦିନ ଲାଗିବ ! ବିସ୍ତୀର୍ଣ୍ଣ ଉତ୍କଳଭୂମିରେ ସୁଯୋଗ୍ୟ ଓ ଚିନ୍ତାଶୀଳବ୍ୟକ୍ତି ଯଥେଷ୍ଟ ନ ଥିଲେ ହେଁ ସେ ଶ୍ରେଣୀର ଲୋକଙ୍କର ନିତାନ୍ତ ଅଭାବ ନାହିଁ । କିନ୍ତୁ ପବିତ୍ର ନିଃସ୍ୱାର୍ଥ ସାହିତ୍ୟସେବାର ଭାବ କେତେଜଣଙ୍କ ମନରେ ପ୍ରବଳ ହୋଇଅଛି- ଉତ୍କଳଭୂମି ଓ ଉତ୍କଳଭାଷା ପାଇଁ କେତେ ଜଣଙ୍କର ପ୍ରାଣ କାନ୍ଦିବାକୁ ଶିକ୍ଷା କରିଅଛି, କହି ନ ପାରୁଁ । ପ୍ରତିକୂଳ ଅବସ୍ଥା ସଙ୍ଗେ ସଂଗ୍ରାମ କରି ବ୍ୟକ୍ତିଗତ ସ୍ୱାର୍ଥ ଓ ସୁବିଧା ଆଗ୍ରାହ୍ୟ କରି କେତେଜଣ ଉତ୍କଳସନ୍ତାନ ମାତୃଭାଷାର ଶୋଭା ଓ ସମ୍ପଦ ବୃଦ୍ଧି କରିବା ପାଇଁ ବ୍ୟାକୁଳ ? ନିର୍ଜ୍ଜନଚିନ୍ତା ଓ ସାଧନାର ଫଳ ସ୍ୱଦେଶୀୟ ଭାତୃମଣ୍ଡଳୀ ମଧ୍ୟରେ ପ୍ରଚାର କରିବାର ପ୍ରବଳ ଆକାଂକ୍ଷା କେତେ ଜଣଙ୍କ ମନରେ ଜାଗ୍ରତ ହୋଇଅଛି ? ଶୁଣିଅଛୁଁ ସ୍ୱର୍ଗୀୟ ଅକ୍ଷୟକୁମାର ଦତ୍ତ ମହାଶୟ ଅନ୍ତିମଦଶାରେ ରୋଗଶଯ୍ୟାରେ ଶୟନ ଥାଇ ସ୍ୱରଚିତ ଖଣ୍ଡିଏ ପୁସ୍ତକ ପ୍ରକାଶ କରିବା ପାଇଁ ବ୍ୟାକୁଳ ହୋଇ ଉଠିଥିଲେ-ରୋଗଯନ୍ତ୍ରଣା ଅଗ୍ରାହ୍ୟ କରି ସେହି ଭାବନାରେ ଅସ୍ଥିର ହୋଇଥିଲେ- ପୁସ୍ତକର ପରବର୍ତ୍ତୀ ଅଂଶ ପ୍ରକାଶ କରିବାର ଆଶା ନ ଦେଖି ପ୍ରାଣରେ ଗଭୀର ବେଦନା ଅନୁଭବ କରିଥିଲେ । ଏହିପରି ଆହୁରି କେତେ ନିଃସ୍ୱାର୍ଥ ସାହିତ୍ୟସେବକଙ୍କ କଥା ଶୁଣିଅଛୁଁ- ପଢିଅଛୁଁ । କୌଣସି କୌଣସି ପ୍ରସିଦ୍ଧ ଇଂରାଜୀ ଗ୍ରନ୍ଥକାର ସ୍ୱରଚିତ ପୁସ୍ତକର ପାଣ୍ଡୁଲିପି ଘେନି ଦ୍ୱାର ଦ୍ୱାର ବୁଲି ଉପେକ୍ଷିତ ଓ ଉପହସିତ ହୋଇ ସୁଦ୍ଧା ନିରାଶ ହୋଇ ନାହାନ୍ତି ବା କର୍ତ୍ତବ୍ୟ ପଥ ପରିତ୍ୟାଗ କରି ନାହାନ୍ତି । କିନ୍ତୁ ଆମ୍ଭେମାନେ କ'ଣ କରୁଅଛୁଁ ? ମାତୃଭାଷା ପାଇଁ କି ପର୍ଯ୍ୟନ୍ତ ସ୍ୱାର୍ଥ ତ୍ୟାଗ କରିଅଛୁଁ ? ସେପରି ଦୃଷ୍ଟାନ୍ତ ଆମ୍ଭମାନଙ୍କ ମଧ୍ୟରେ କାହିଁ ? ଟିକିଏ ଅସୁବିଧା, ଟିକିଏ ପ୍ରତିକୂଳ ଅବସ୍ଥା, ଟିକିଏ ରୋଗ ଓ ଶୋକର ତାଡନା ଆମ୍ଭମାନଙ୍କର ସମସ୍ତ ଉତ୍ସାହ ଓ ଉଦ୍ୟମଦି ମୁହୂର୍ତ୍ତକେ କେଉଁଆଡ଼େ ଅଦୃଶ୍ୟ କରି ଦେଉଅଛି ! ଉତ୍କଳରେ ଯେଉଁମାନେ ମାନ୍ୟ, ଗଣ୍ୟ, ସୁଯୋଗ୍ୟ ସାହିତ୍ୟସେବକ ବୋଲି ପରିଚିତ, ସେମାନଙ୍କ ପାଖକୁ ଯାଅ-ସାହିତ୍ୟସେବାର କଥା ଉତ୍ଥାପନ କର, କେବଳ ନିରାଶାର ଅନୁଷ୍ଟବାଣୀ ଛଡା ଆଉ କିଛି ଶୁଣିପାରିବ ନାହିଁ । ହାୟ ! କି ଭ୍ରାନ୍ତି ! ସେମାନଙ୍କ ମତରେ ସଂସାରଟା ସୁଖଶଯ୍ୟା ହୋଇଥାନ୍ତା-ଦିବା ନିଶି ସେମାନେ ସେଥିରେ ଗଡୁଥାନ୍ତେ ଓ ଅବସରକ୍ରମେ ସୁବିଧା ବୃକ୍ଷରୁ ଦୁଇ ଚାରୋଟି ସୁନ୍ଦର ପୁଷ୍ପ ଚୟନ କରି ବୀଣାପାଣୀଙ୍କର ଚିତ୍ତବିନୋଦନ କରୁଥାନ୍ତେ ! ଏହା କି ଅସମ୍ଭବ ! କୌଣସି ଦେଶରେ , କୌଣସି ଯୁଗରେ ଏହା କି ସମ୍ଭବ ହୋଇଅଛି ? ପ୍ରତିକୂଳ ଅବସ୍ଥା ସଙ୍ଗେ ସଂଗ୍ରାମ କରି ଜୟଲାଭ କରି ନ ପାରିଲେ ତୁମ୍ଭର ବହାଦୂରୀଟା କଅଣ ରହିଲା ? ଯେଉଁମାନେ ଏହିପରି କରି ପାରି ଅଛନ୍ତି, ସେହିମାନେତ ଜଗତର ଯଥାର୍ଥ ହିତ ସାଧନ କରିବାକୁ ସମର୍ଥ ହୋଇଅଛନ୍ତି ? ଏବଂ ପୃଥିବୀରେ ଅକ୍ଷୟ କୀର୍ତ୍ତି ସ୍ଥାପନ କରିଯାଇଅଛନ୍ତି ? କିନ୍ତୁ ଏ ଦୁର୍ଭାଗ୍ୟ ଦେଶରେ କଣ ହେଉଅଛି ? ଭଲରେ ଭଲରେ ଯେତିକି ହୋଇ ପାରେ, ଜଣକେତେ କୃତବିଦ୍ୟବ୍ୟକ୍ତି ସେତିକି କୌଣସି ପ୍ରକାରେ ସମ୍ପାଦନ କରି ମାତୃଭାଷାପ୍ରତି କର୍ତ୍ତବ୍ୟ ଯଥେଷ୍ଟ ପରିମାଣରେ ସାଧନ କଲେ ବୋଲି ମନେ କରୁଅଛନ୍ତି । ଶିକ୍ଷିତଦଳ ମଧ୍ୟରେ ଅଧିକାଂଶ ଯେ ଏହି ପବିତ୍ର କର୍ତ୍ତବ୍ୟସାଧନରେ ଏକାନ୍ତ ଉଦାସୀନ ବା ବୀତସ୍ପୃହ ଏଥିରେ ସନ୍ଦେହ ନାହିଁ । କୌଣସି ଜାତି ପକ୍ଷରେ ଏହା ଆଦୌ ଗୌରବ କଥା ନୁହେଁ ।

ଏପରି ହେବାର ହେତୁ କଣ ? ହେତୁ ଆଉ କିଛି ନୁହେ- ଆମ୍ଭେମାନେ ଯଥାର୍ଥ ବ୍ୟକ୍ତିତ୍ୱ ବା ଜାତିତ୍ୱଠାରୁ ବହୁଦୂରରେ ଅବସ୍ଥିତ ! ଜ୍ଞାନର ଉଦ୍ଦେଶ୍ୟରେ ଜ୍ଞାନଚର୍ଚ୍ଚା କରିବାକୁ ଆମ୍ଭେମାନେ ଏପର୍ଯ୍ୟନ୍ତ ଶିକ୍ଷା କରି ନାହୁଁ ।

ସୁତରାଂ ଆମ୍ଭମାନଙ୍କର ସକଳ କାର୍ଯ୍ୟ ସ୍ୱାର୍ଥଦୁଷ୍ଟ - ଅଥବା କିଞ୍ଚିତ୍ ସ୍ୱାର୍ଥହାନି ବା ଅସୁବିଧା ଘଟିଲେ ଆମ୍ଭେମାନେ କର୍ତ୍ତବ୍ୟପଥରୁ ବିଚଳିତ ହେଉଁ । କେବଳ ଗୋଟିଏ ପ୍ରବଳ ଜୀବନ୍ତ ଜାତିର ସଂସ୍ପର୍ଶରେ ଆମ୍ଭମାନଙ୍କ ମୃତକଳ୍ପ ଶୀତଳଶରୀରରେ କିଞ୍ଚିତ୍ ଉଷ୍ଣତାର ସଞ୍ଚାର ସମୟ ସମୟରେ ହେଉଥିବାରୁ ଆମ୍ଭେମାନେ କଥଞ୍ଚିତ୍ ଅଙ୍ଗ ସଞ୍ଚାଳନ କରୁଅଛୁଁ ମାତ୍ର- ସେହି ଅଙ୍ଗସଞ୍ଚାଳନ ମଧ୍ୟରେ ପୁଣି ଶୈଶବୀୟ ଅନୁକରଣପ୍ରିୟତାର ମାତ୍ରାହିଁ ଅଧିକ- ଯୌବନସୁଲଭ ସଜୀବତା ବା ପ୍ରବୀଣଜନୋଚିତ ଗଭୀରତା ପ୍ରାୟ ଲକ୍ଷିତ ହୁଏ ନାହିଁ । ଏହି କାରଣରୁ ଏକ ସମୟରେ ଯେଉଁମାନେ ଅତ୍ୟନ୍ତ ଉତ୍ସାହସହକାରେ ସାହିତ୍ୟସେବାରେ ପ୍ରବୃତ୍ତ ହୋଇଥିଲେ,ଆଜି ସେମାନଙ୍କ ଦର୍ଶନ ମିଳିବା ଦୁର୍ଘଟ-ଶତ-ଚେଷ୍ଟାରେ ସୁଦ୍ଧା କାହାରି କାହାରି ନିଦ୍ରା ଭଙ୍ଗାଇବା ଦୁଷ୍କର ହୋଇ ଉଠିଅଛି ! ଅନ୍ୟ କଥା ଦୂରେ ଥାଉ, ଉତ୍କଳଗୌରବ କବି ଶ୍ରୀ ରାଧାନାଥ ଓ ଶ୍ରୀ ମଧୁସୂଦନଙ୍କୁ ଉତ୍କଳଭୂମିକୁ ଅନେକ ପରିମାଣରେ ନିରାଶ କରି ନାହାନ୍ତି ? କୃତଜ୍ଞଚିତ୍ତରେ ଏ କଥା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ , କବି ଶ୍ରୀ ରାଧାନାଥ କେତେ ଖଣ୍ଡି ଉଚ୍ଚଶ୍ରେଣୀର କାବ୍ୟ ପ୍ରଣୟନ କରି ଉତ୍କଳସାହିତ୍ୟକୁ ଗୌରବାନ୍ୱିତ କରିଅଛନ୍ତି । କିନ୍ତୁ ଏହାହିଁ କି ତାଙ୍କ ପ୍ରତିଭାର ଉପଯୁକ୍ତ କାର୍ଯ୍ୟ ? ସେ ଯେବେ ଅବସ୍ଥାର ଅନୁଗତ ହୋଇ ନ ଥାନ୍ତେ, ତେବେ କି ଆଜି 'ପାର୍ବତୀ' ଓ 'ମହାଯାତ୍ରା' ଅସମ୍ପୂର୍ଣ୍ଣ ଆକାରରେ ଆମ୍ଭମାନଙ୍କର କ୍ଷୋଭ ବୃଦ୍ଧି କରୁଥାନ୍ତା ? ଆଉ କବି ଶ୍ରୀ ମଧୁସୂଦନ ? ଉତ୍କଳସାହିତ୍ୟ ତାଙ୍କଠାରୁ ଯେ କେତେ ଅମୂଲ୍ୟରତ୍ନ ପାଇବାର ଆଶା କରିଥିଲା, କଣ ପାଇଲା ? ସମଗ୍ର ଉତ୍କଳଭୂମିରେ "ଋଷିପ୍ରାଣେ ଦେବାବତରଣ" ରୂପ 'ଗମ୍ଭୀରଧ୍ରୁପଦ' ଗାଇବାର ଲୋକ ତାଙ୍କ ଛଡା ଅନ୍ୟ କେହି ଅଛି କି ? କିନ୍ତୁ ସେ କଣ୍ଠ ନୀରବ ? ଅବସ୍ଥାର ପ୍ରତିକୂଳରେ ସେ ଉଠି ପାରିଲେ ନାହିଁ ?(ଅବଶ୍ୟ ଆମ୍ଭେମାନେ ତାଙ୍କର ବର୍ତ୍ତମାନ ଶାରୀରିକ ଅବସ୍ଥା ପ୍ରତି ଦୃଷ୍ଟି କରି କିଛି କହୁ ନାହୁଁ- ଏ ପ୍ରକାର ଶୋଚନୀୟ ଅବସ୍ଥାରେ ତାଙ୍କଠାରୁ କିଛି ଆଶା କରିବା ବିଡ଼ମ୍ବନା)। ଆଉ ଅଧିକ ନାମୋଲ୍ଲେଖ କରିବାର ପ୍ରୟୋଜନ କଣ ? ହାୟ ! ପାରିବାରିକ, ବୈଷୟିକ, ରାଜକୀୟ ସକଳ କାର୍ଯ୍ୟତ ଲୋକେ ସୁଚାରୁରୂପେ ସମ୍ପାଦନ କରି ଚାଲି ଯାଉଅଛନ୍ତି- ସାହିତ୍ୟସେବା ବେଳକୁ ଏତେ ଓଜର ଆପତ୍ତି କାହିଁକି ? ଓଡ଼ିଶାର କୌଣସି ବ୍ୟକ୍ତି ତ ଏପର୍ଯ୍ୟନ୍ତ ସାହିତ୍ୟର ଅଙ୍ଗବିଶେଷର ଉନ୍ନତି ନିମିତ୍ତ ନିଷ୍ଠା ଓ ଦୃଢ଼ ଅଧ୍ୟବସାୟ ଦେଖାଇ ପାରିଲେ ନାହିଁ ? ଏହା କି ସାମାନ୍ୟ ପରିତାପର ବିଷୟ ?

ପ୍ରସଙ୍ଗକ୍ରମେ ଏଠାରେ ଆଉ ଗୋଟିଏ କଥା ଉଲ୍ଲେଖ କରୁଅଛୁଁ- "ଉତ୍କଳସାହିତ୍ୟ" ପତ୍ରିକାରେ ପ୍ରବନ୍ଧ ଲେଖିବା ପାଇଁ ବହୁ ବିଜ୍ଞବ୍ୟକ୍ତିଙ୍କୁ ବାରମ୍ବାର ଅନୁରୋଧ କରି ସୁଦ୍ଧା ଆଶାନୁରୂପ ଫଳ ପାଇନାହୁଁ- ଲବ୍ଧପ୍ରତିଷ୍ଠ ଲେଖକମାନଙ୍କର ଔଦାସୀନ୍ୟ ଓ ଆଳସ୍ୟ ଦେଖି ଅନେକ ସମୟରେ ଦୁଃଖରେ, ନିରାଶାରେ ପ୍ରାଣ ଅବସନ୍ନ ହୋଇ ପଡ଼ିଅଛି ! ସତର ଥର ଚାଲିଲେ ସୁଦ୍ଧା କାହାରି କାହାରି ଠାରୁ ଗୋଟିଏ ପ୍ରବନ୍ଧ ପାଇବା କଠିନ ! କି ଦୁର୍ଭାଗ୍ୟ ! କେହି କେହି ପୁଣି ପତ୍ରର ଉତ୍ତର ସୁଦ୍ଧା ଦେବାକୁ କୁଣ୍ଠିତ ! ଏହା କି ସୁଶିକ୍ଷା, କର୍ତ୍ତବ୍ୟନିଷ୍ଠା ଓ ସାହିତ୍ୟାନୁରାଗର ପରିଚାୟକ ? ସମଗ୍ର ଉତ୍କଳଭୂମିରେ ଖଣ୍ଡିଏ ମାତ୍ର ନିୟମିତ ମାସିକ ପତ୍ରିକା –ତାହାରି କ୍ଷୁଦ୍ରକଳେବର ପୂର୍ଣ୍ଣ କରିବା ପାଇଁ ଉପଯୁକ୍ତ ପ୍ରବନ୍ଧର ଅଭାବ ! ଏହା କି ଉତ୍କଳର ସାହିତ୍ୟସେବକମାନଙ୍କ ପକ୍ଷରେ ଘୋର ନିନ୍ଦାର କଥା ନୁହେଁ ? ଏପରି ଅବସ୍ଥାରେ ଆମ୍ଭେମାନେ କେଉଁ ସାହସରେ ଏହାର କଳେବର ବଢ଼ାଇବାକୁ ମନ ବଳାଇବୁଁ ? ବିଭିନ୍ନଶ୍ରେଣୀର ଲେଖକମାନଙ୍କର ବିଭିନ୍ନବିଷୟକ ପ୍ରବନ୍ଧ ନ ଥିଲେ କି ମାସିକପତ୍ରିକା ସୁପାଠ୍ୟ ଓ ଚିତ୍ତାକର୍ଷକ ହୋଇ ପାରିବ ?

ସେ କଥା ଥାଉ । ବର୍ତ୍ତମାନ ଆଉ ଏକ ଶ୍ରେଣୀର ସାହିତ୍ୟସେବକ ( ?)ବାହାରିଅଛନ୍ତି – ସେମାନେ ବିନା ସାଧନାରେ ସିଦ୍ଧ ! ସେମାନଙ୍କ ମତରେ ସେମାନଙ୍କ ଲେଖାଗୁଡିକ "ବ୍ରହ୍ମା ବିଳିବିଳେଇଲେ ବେଦ !" ଭାଷା ଓ ଭାବ କୌଣସି ବିଷୟରେ ନିୟମ ନାହିଁ, ଅଙ୍କୁଶ ନାହିଁ ! ତୁମ୍ଭେ ଯେବେ ପ୍ରକୃତ କଥା କହିବ-ଦୋଷ ଦେଖାଇ ଦେବ, ଲଗୁଡାଘାତରେ ସେମାନେ ତୁମ୍ଭର,ମସ୍ତକ ଚୂର୍ଣ୍ଣ କରି ଦେବେ ! ଓଡିଶାର କୌଣସି କୌଣସି ନାମଯାଦା ଲେଖକଙ୍କର ଏପରି ଭାବ ଦେଖି ଆମ୍ଭେମାନେ ଅତ୍ୟନ୍ତ ବ୍ୟଥିତ ହୋଇଅଛୁଁ । ତୁମ୍ଭେ ବଡ଼ ପଣ୍ଡିତ ହେଲେ ବୋଲି ତୁମ୍ଭ ଲେଖାରେ ବା କଥାରେ କିଛିମାତ୍ର ଦୋଷ ଥିବ ନାହିଁ , କିମ୍ବା ତୁମ୍ଭ ମତ ସଙ୍ଗେ ଅନ୍ୟ ସମସ୍ତଙ୍କ ମତ ମିଳିବ ଏପରି କିଛି କଥା ନାହିଁ ।

ବର୍ତ୍ତମାନ ସ୍ୱାଧୀନତାର ଯୁଗ – ମାତ୍ର ଆମ୍ଭମାନଙ୍କ ଦେଶରେ ସ୍ୱାଧୀନତାର ଅର୍ଥ ଆତ୍ମପ୍ରାଧାନ୍ୟ ସଂସ୍ଥାପନ । ପ୍ରତ୍ୟେକେ ମନେ କରନ୍ତି,ସେହି ଏକା ସ୍ୱାଧୀନ- ଅନ୍ୟ ସମସ୍ତେ ତାଙ୍କ ମତର ଅଧୀନ ହେବେ ! ତହିଁ ଉପରେ ଯେବେ କୌଣସି ପ୍ରକାର ପଦଗୌରବ ଥାଏ, ତେବେତ ଆଉ ରକ୍ଷା ନାହିଁ ! ଏ ଦୁର୍ଭାଗ୍ୟ ଦେଶରେ ପଦଗୌରବ ଦେଖି ମନ ଯୋଗାଇବା -ଧଳାକୁ କଳା, କଳାକୁ ଧଳା କହିବା ପାଇଁ ଲୋକର ଅଭାବ ନାହିଁ । ସାହିତ୍ୟ କ୍ଷେତ୍ରରେ ମତଭେଦ ଜନିତ ବ୍ୟକ୍ତିଗତ ଆକ୍ରମଣ ଓ ବିଦ୍ୱେଷର ପରାକାଷ୍ଠା ଉତ୍କଳଭୂମିରେ ଦେଖା ଯାଇଅଛି ଏବଂ ଆଜି ପର୍ଯ୍ୟନ୍ତ ତାହାର ନିଦର୍ଶନ ମଧ୍ୟ ରହିଅଛି । ପୁଣି ଗ୍ରନ୍ଥକାର ହେବାର ଆକାଂକ୍ଷାଟା ମଧ୍ୟ ଅନେକ ଉତ୍କଳସନ୍ତାନମାନଙ୍କ ମନରେ ବେଜାଏ ପ୍ରବଳ ହୋଇ ପଡିଅଛି । ଦୁଇ ଚାରି ପତ୍ରର ଖଣ୍ଡେ ପୁସ୍ତକ କୌଣସି ପ୍ରକାରେ ଛପାଇ ପାରିଲେ ହେଲା -ପୁସ୍ତକର ମୂଲ୍ୟ କିଛି ଥାଉ ବା ନ ଥାଉ, ତେଣିକି କାହାରି ଦୃଷ୍ଟି ନାହିଁ । "ଉପରୋଧରେ, ଅନୁରୋଧରେ ବା ବୃଥା ମନୋମାଳିନ୍ୟ ନିବାରଣ ଉଦ୍ଦେଶ୍ୟରେ"ଅଯଥା ପ୍ରଶଂସାପତ୍ର ଲେଖି ଦେବା ପାଇଁ ଅନେକଙ୍କର ଲେଖନୀ ଆଦୌ ସଙ୍କୁଚିତ ନୁହେ ! ଏଥିରେ ସାହିତ୍ୟର ଗତି କେଉଁ ଆଡକୁ ହେବ, ତାହା ସହଜରେ ବୁଝା ଯାଉଅଛି । ଏକଆଡ଼େ ସାଧନା ନାହିଁ, ଅନ୍ୟଆଡେ ଧୈର୍ଯ୍ୟ ବା ସହିଷ୍ଣୁତା ନାହିଁ । ଏପରି ଅବସ୍ଥାରେ ମନୁଷ୍ୟ କିପରି ସାହିତ୍ୟସେବାର ଉପଯୁକ୍ତ ହେବ ? ଲୋକେ ବଡ ବଡ ଲେଖକଙ୍କର ଗୋଟାକାତେ ଭାବ ଗ୍ରହଣ କରି ଓ ଭାଷାର ବିକୃତ ଅନୁକରଣ କରି କବି ହୋଇ ପଡୁଅଛନ୍ତି-ଲୋକଚରିତ ଅଧ୍ୟୟନ ନ କରି, ଚରିତ୍ର ଅଙ୍କନରେ ନିପୁଣତା ଲାଭ ନ କରି କାବ୍ୟକାର ଓ ଔପନ୍ୟାସିକ ହେବାକୁ ବସିଅଛନ୍ତି ! ହାୟ ! କି ବିଡମ୍ବନା ! ପୃଥିବୀର ସକଳ ବିଷୟରେ ଶିକ୍ଷା ଅଛି,ସାଧନା ଅଛି, କ୍ରମବିକାଶ ଅଛି-ନାହିଁ କେବଳ ସାହିତ୍ୟକ୍ଷେତ୍ରରେ ? ସାହିତ୍ୟଟା କ'ଣ ଏଡ଼େ "ନକଡା ଛକଡାର" ଜିନିଷ ? ଉତ୍କଳସାହିତ୍ୟର 'ମା ବାପ' ନାହିଁ- ଉତ୍କଳ ସାହିତ୍ୟ ପାଇଁ ଚିନ୍ତା କରିବାର ଲୋକ ନାହିଁ- ସମସ୍ତେ 'ହାମବଡ଼ା' ଜ୍ଞାନୀ-'ଓଲିଆରୁ ଗଜା !' କହିବ କିଏ କାହାକୁ ?

କହିବାର ଅନେକ ଅଛି, ଲେଖିବାର ଅନେକ ଅଛି । କିନ୍ତୁ ଅଧିକ କିଛି କହିବାକୁ ପ୍ରବୃତ୍ତି ହେଉ ନାହିଁ । କାହାରିକୁ ନିରୁତ୍ସାହ କରିବା ଆମ୍ଭମାନଙ୍କର ଆଦୌ ଉଦ୍ଦେଶ୍ୟ ନୁହେଁ । ଯଥାର୍ଥ ଅନୁରାଗ ଓ ଉପଯୁକ୍ତ ସାଧନାର ଅଭାବ ଦେଖି ନିତାନ୍ତ ଅନିଚ୍ଛାସତ୍ତ୍ୱେ ଗଭୀର କ୍ଷୋଭର ସହିତ ଦୁଇ ଚାରି କଥା କହିବାକୁ ବାଧ୍ୟ ହେଲୁଁ । ଯେଉଁମାନେ ଚିରକାଳ ଆମ୍ଭମାନଙ୍କର ଭକ୍ତି ଓ ଶ୍ରଦ୍ଧାର ପାତ୍ର, ସେମାନଙ୍କ ବିରୁଦ୍ଧରେ ଯେ କଥା କହିବାକୁ ହେଲା ଏହା କେବଳ ଆମ୍ଭମାନଙ୍କର ଦୂରଦୃଷ୍ଟ । ଜାଣୁ ନାହିଁ; ଆମ୍ଭମାନଙ୍କ କାତରୋକ୍ତି କାହାରି କର୍ଣ୍ଣରେ ପ୍ରବେଶ କରିବ କି 'ଅରଣ୍ୟରେ ରୋଦନ' ଉପରେ ପରିଣତ ହେବ ।

*୬।୧୫ ,ସଂ୧୦ଖ୍ୟା,୧୮୯୭*

# ୧୮୯୬

## ଓଡ଼ିଆ ଓ ନବସମ୍ବାଦ

### "ଓଡ଼ିଶାର ଆଧୁନିକ ଓ ପୁରାତନ ସୀମା"

"ଏହି ପ୍ରଦେଶର ସୀମା ସର୍ବପ୍ରଥମେ ବାଲେଶ୍ୱର ଜିଲା ସୋର ଥାନା ଅନ୍ତର୍ଗତ କାଁଶବାଁଶ ନଦୀଠାରୁ ପୁରୀଜିଲା ଅନ୍ତର୍ଗତ ଋଷିକୁଲ୍ୟା ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଗଙ୍ଗବଂଶୀୟ ରାଜାମାନଙ୍କ ପ୍ରାଦୁର୍ଭାବ ସମୟରେ ଓଡ଼ିଶାର ସୀମା ଗଙ୍ଗାନଦୀଠାରୁ ଗୋଦାବରୀ ଓ ସମୁଦ୍ରଠାରୁ ସମ୍ବଲପୁର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମୁସଲମାନ ରାଜତ୍ୱ ସମୟରେ ଓଡ଼ିଶାର ସୀମା ବହୁ ପରିମାଣରେ ଖର୍ବ ହୋଇଥିଲା । ଅର୍ଥାତ୍ ସୁବର୍ଣ୍ଣରେଖା ନଦୀଠାରୁ ଚିଲ୍‌କା ପର୍ଯ୍ୟନ୍ତ ସ୍ଥିର ଥିଲା । ମହାରାଷ୍ଟ୍ରମାନେ ମଧ୍ୟ ବଙ୍ଗପ୍ରଦେଶର ନବାବ ଅଲିବର୍ଦ୍ଦୀ ଖାଁଙ୍କଠାରୁ ଚୋଥକର ସ୍ୱରୂପ ବାଲେଶ୍ୱରଠାରୁ ଖୋର୍ଦ୍ଧା ପର୍ଯ୍ୟନ୍ତ ଇଲାକାକୁ ଓଡ଼ିଶା ବୋଲି ବିବେଚନା କରୁଥିଲେ । ଇଂରାଜ ଗଭର୍ଣ୍ଣମେଣ୍ଟ ମଧ୍ୟ ସୁବର୍ଣ୍ଣରେଖା ଠାରୁ ଚିଲ୍‌କା ଓ ସମୁଦ୍ରଠାରୁ ଆଠମଲ୍ଲିକ ପର୍ଯ୍ୟନ୍ତ ସୀମା ବର୍ତ୍ତମାନ ସ୍ଥିର ରଖିଅଛନ୍ତି ।

ଓଡ଼ିଶାର ଗଡ଼ଜାତ ମହଲ ମୁସଲମାନ ରାଜତ୍ୱ ସମୟରୁ ପ୍ରକାରାନ୍ତରରେ ପୃଥକ୍ ବୋଲି ବିବେଚିତ ହେଉଥିଲା ? ଇଂରାଜ ଗଭର୍ଣ୍ଣମେଣ୍ଟ ଗଡ଼ଜାତର କିୟଦଂଶ ଓଡ଼ିଶା ଓ କିୟଦଂଶ ମଧ୍ୟପ୍ରଦେଶ ଓ ଅବଶିଷ୍ଟାଂଶ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟଙ୍କ ଶାସନାଧୀନ କଲେ କି କାରଣରୁ ଏହା ଘଟିଥିଲା ତାହା ସ୍ପଷ୍ଟ ବୁଝାଯାଉ ନାହିଁ ।

ବିଦେଶୀୟ ବଙ୍ଗାଳୀମାନଙ୍କ ପ୍ରାଦୁର୍ଭାବ ଅଧିକ ହେବାରୁ ଓଡ଼ିଶାବାସୀମାନେ ଓଡ଼ିଶାକୁ ଏକ ଚିଫ୍ କମିଶନରଙ୍କ ଶାସନାଧୀନରେ ରଖିବା ପାଇଁ ପ୍ରସ୍ତାବ କରିଥିଲେ କିନ୍ତୁ ଦୈବ ବିଡ଼ମ୍ବନାରୁ ତାହା ହୋଇ ପାରିଲା ନାହିଁ । ବର୍ତ୍ତମାନ ମହାମତୀ କୁକ୍ ସାହେବ ଓଡ଼ିଶା ସୀମାକୁ ବୃଦ୍ଧି କରିବା ସକାଶେ ଛୋଟ ଲାଟ ବାହାଦୂରଙ୍କଠାରେ ପ୍ରସ୍ତାବ କରିଥିଲେ; କିନ୍ତୁ ଲାଟ ବାହାଦୂର ଉକ୍ତ ପ୍ରସ୍ତାବ ଚିକ୍‌କଣ ବୋଧ ହେଉ ନ ଥିବାରୁ ଜଣାଯାଉଅଛି । ମାନ୍ୟବର ଶ୍ରୀଯୁକ୍ତ ଦତ୍ତସାହେବ ମଧ୍ୟ ଶୁଣୁଅଛୁ-କୁକ୍ ସାହେବ ମହୋଦୟଙ୍କ ପ୍ରସ୍ତାବର ଅନୁଗାମୀ ହୋଇ ସମ୍ବଲପୁର, ଗଞ୍ଜାମ ଓ କାନ୍ଥି ଇଲାକାକୁ ଏକ କମିଶନରଙ୍କ ଅଧୀନରେ ରଖିବା ସକାଶ ଶ୍ରୀଯୁକ୍ତ ଛୋଟଲାଟ ବାହାଦୂର ଅନୁରୋଧ କରିଅଛନ୍ତି ।

ସମ୍ବଲପୁର ଅଞ୍ଚଳରେ ମହାରାଷ୍ଟ୍ରିୟମାନଙ୍କ ଓ ଗଞ୍ଜାମ ଅଞ୍ଚଳରେ ତୈଲଙ୍ଗମାନଙ୍କ ଓ ବଙ୍ଗ ଅଞ୍ଚଳରେ ବଙ୍ଗୀୟମାନଙ୍କ ପ୍ରାଦୁର୍ଭାବ ହେବା ଯୋଗୁଁ ଓଡ଼ିଶାବାସୀମାନେ ଅତ୍ୟନ୍ତ ଶଙ୍କିତ ହୋଇ ଏକଛତ୍ର କରିବା ସକାଶ ଉଦ୍ୟୋଗ କରୁଅଛନ୍ତି । ଏହା ଯେବେ କାର୍ଯ୍ୟରେ ପରିଣତ ହୁଏ ଅତ୍ୟନ୍ତ ସୁଖର ବିଷୟ ହେବ ସନ୍ଦେହ ନାହିଁ ।

ଗଡ଼ଜାତ ଅଞ୍ଚଳ ବିଦେଶୀୟ ରାଜ୍ୟ ମଧ୍ୟରେ ପରିଗଣିତ ହୋଇଅଛି । ଏହି ଅଞ୍ଚଳରେ ଆଦିମ ଜାତିମାନଙ୍କର ଭାଷା ପ୍ରବଳ ଓଡ଼ିଆ ଭାଷାର ବ୍ୟବହାର ଅନୁପାତରେ ଅଳ୍ପ । ଯଦ୍ୟପି ଓଡ଼ିଶାର ଗଡ଼ଜାତ ମାହାଲ ମୋଗଲବନ୍ଦୀଠାରୁ ସ୍ୱତନ୍ତ୍ର ହୁଏ ତେବେ ଓଡ଼ିଶାର ଆଉ ବାକୀ କି ରହିବ ? ମିଶନେରୀ ମହୋଦୟମାନଙ୍କ ଉଦ୍ୟମରେ ଶାଓତାଳି, କୋହ୍ଲ ଓ କନ୍ଧ ଭାଷାର ଅଭିଧାନ ଓ ବ୍ୟାକରଣ ପ୍ରକାଶିତ ହେବାକୁ ଆରମ୍ଭ ହୋଇଅଛି । ସେମାନଙ୍କ ମଧ୍ୟରୁ ଆଦିମ ଭାଷା ପ୍ରଚାର ସକାଶ ଶିକ୍ଷା ବିଭାଗରେ ନିଯୁକ୍ତ ହେଉଅଛନ୍ତି । ଯେତେବେଳେ ଆଦିମ ବାସିନ୍ଦାମାନଙ୍କ ମଧ୍ୟରେ କୃତବିଦ୍ୟ ସଂଖ୍ୟାର ଅଧିକ ହେବ ତେତେବେଳେ ସେମାନେ ଆପଣା ଆପଣା ଭାଷାକୁ ଗଡ଼ଜାତରେ ପ୍ରଚଳନ କରିବା ସକାଶେ ଉଦ୍ୟୋଗୀ ହେବେ-ଆଜହିଁ ଗଡ଼ଜାତବାସୀମାନେ ମୋଗଲବନ୍ଦୀମାନଙ୍କ

ଉପରେ ସନ୍ଦେହ କରୁଛନ୍ତି, କାରଣ ଶାସନ ଭିନ୍ନ ଅଟେ- ଗଡ଼ଜାତର କୃତବିଦ୍ୟମାନଙ୍କ ସଂଖ୍ୟା ଅଧିକ ହେଲେ ମୋଗଲବନ୍ଦୀ ଓଡ଼ିଆମାନଙ୍କ ପ୍ରଭାବ ରହିପାରିବ ନାହିଁ । ଯଦି ଗଡ଼ଜାତ ସ୍ୱତନ୍ତ୍ର ହୋଇଯାଏ ତେବେ ଓଡ଼ିଆ ଭାଷାର ସଂପ୍ରସାରଣତା ଅଧିକ ହୋଇପାରିବ ନାହିଁ ।

କେବଳ ଭାଷା ବିବେଚନା କରି ଯଦି ଭାରତ ବର୍ଷ ବିଭକ୍ତ ହୋଇଥାନ୍ତା ତେବେ ଚିଫ୍ କମିଶନରମାନଙ୍କର ସଂଖ୍ୟା ବାକି ରହନ୍ତା କିନ୍ତୁ ଗଭର୍ଣ୍ଣମେଣ୍ଟ ରାଜନୀତି ଅନୁସାରେ କାର୍ଯ୍ୟସମ୍ପନ୍ନ କରିଥାନ୍ତି ସୁତରାଂ ଆବଶ୍ୟକ ବିବେଚନା କରି କେଉଁଠାରେ ଭାଷା ଇଲାକାର ସ୍ୱତନ୍ତ୍ର କରି ଦେଉଅଛନ୍ତି- ସତ୍ୟ କି ତେବେ ଓଡ଼ିଶା ଭାଗ୍ୟରେ ଏକଛତ୍ର ଅଧିକାର ଘଟିବ ?"

ଶ୍ରୀ ରା-

*ଭା୧୦ଗ, ସଂ୮ଖ୍ୟା,୮।୧।୧୮୯୬*

## "ଓଡ଼ିଶାର ସାହିତ୍ୟିକ ଇତିବୃତ୍ତ"

ଓଡ଼ିଶାର ସାହିତ୍ୟିକ ଇତିବୃତ୍ତ ସଂଗ୍ରହ କରିବା ସକାଶ ସଂପ୍ରତି ବାବୁ କୃଷ୍ଣପ୍ରସାଦ ଚୌଧୁରୀ ସଚେଷ୍ଟ ହୋଇ ଅଛନ୍ତି- ଏହାଙ୍କର ଉଦ୍ଦେଶ୍ୟ ସାଧୁ ଶ୍ରମ ଚେଷ୍ଟା ପ୍ରଶଂସାର୍ହ ସନ୍ଦେହ ନାହିଁ; କିନ୍ତୁ ଓଡ଼ିଶାରେ ଚୌଧୁରୀ ମହାଶୟଙ୍କ କାର୍ଯ୍ୟକ୍ଷେତ୍ରର ଫଳ କେତେଦୂର ସୁସାଧ ହେବ ସେଥିରେ ଆମ୍ଭମାନଙ୍କର ସନ୍ଦେହ ଅଛି-ଆମ୍ଭେମାନେ କି ହେତୁ ସନ୍ଦିହାନ ହେଉଅଛୁ, ଚୌଧୁରୀ ମହାଶୟଙ୍କୁ ତାହା ଅବିଦିତ ନଥିଲେ ହେଁ ସେ ଯେତେବେଳେ ଏରୂପ କାର୍ଯ୍ୟ ସକାଶ ଅଗ୍ରସର ହୋଇ ଅଛନ୍ତି, ତେତେବେଳେ ଏ ସ୍ଥଳେ ଆମ୍ଭେମାନେ ଆପାତତଃ ତାହାଙ୍କ ସାହାଯ୍ୟ କରିବା ବ୍ୟତୀତ ଅପର କଥାର ଉତ୍‌ଥାପନ କରି ତାଙ୍କୁ ମୂଳରୁ ନିରୁତ୍ସାହ କରିବକୁ ଇଚ୍ଛା କରୁନା । ଏ ସ୍ଥଳେ ଆମ୍ଭେମାନେ ତାଙ୍କରି ଆଗତ ପ୍ରସ୍ତାବର କେତେକ ଅଂଶ ପାଠକମାନଙ୍କ ଅବଗତାର୍ଥେ ନିମ୍ନରେ ଉଦ୍ଧାର କଲୁ- "ଆମ୍ଭମାନଙ୍କର ଅଭିଳଷିତ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ହେଲେ ସର୍ବପ୍ରଥମେ ଉତ୍କଳର ପ୍ରାଚୀନ ଲେଖକମାନଙ୍କର ଜନ୍ମସ୍ଥାନ ଦେଖି ସେଠାରୁ ଉକ୍ତ ଲେଖକ ବା ଲେଖକମାନଙ୍କ ସମ୍ବନ୍ଧରେ କିମ୍ବଦନ୍ତୀ ସଂଗ୍ରହ କରିବା ଆବଶ୍ୟକ । ପରେ ସେମାନଙ୍କ ଗ୍ରନ୍ଥ ସଂଗ୍ରହ ଉତ୍କଳର ପ୍ରାଚୀନତମ ଲେଖକଙ୍କର ଆବିର୍ଭାବ ବୋଧହୁଏ ୪/୫ ଶତ ବର୍ଷରୁ ଅଧିକ ହେବନାହିଁ । ଏହି ଅତ୍ୟଳ୍ପ କାଳର ଇତିହାସ ଯେ ଏକାନ୍ତ ଅସମ୍ଭବ ତାହା ଆମ୍ଭମାନଙ୍କୁ ଯୁକ୍ତିଯୁକ୍ତ ବୋଧ ହେଉନାହିଁ ।

ଏହି ୪/୫ ଶତ ବର୍ଷ ମଧ୍ୟରେହିଁ ଓଡ଼ିୟା ଭାଷାର ସୃଷ୍ଟି ଓ ଉନ୍ନତି ସାଧିତ ହୋଇଅଛି । ପ୍ରାଚୀନଗ୍ରନ୍ଥ ମଧ ଦୁଃସାଧ ନୁହେଁ । ଉତ୍କଳର ପତ୍ରପତ୍ରାଦିରେ ଅନୁରୋଧ ପତ୍ର ପ୍ରଚାର କଲେ ଏବଂ ଅନ୍ୟାନ୍ୟ ଉପାୟ ଅବଲମ୍ବନ କଲେ ତାହା ସହଜରେ ସଫଳ ହୋଇପାରିବ । ଉତ୍କଳର ଗୌରବ ଶ୍ରୀଯୁକ୍ତ ବାମଣ୍ଡାର ମହାରାଜା K.C.I.E. ପ୍ରାଚୀନ ଗ୍ରନ୍ଥ ସଂଗ୍ରହ କରିବାର ଚେଷ୍ଟାରେ ଥିବାର ଯେଉଁ ଆଭାଷ ଆପଣ ଦେଇଅଛନ୍ତି ତାହା କାର୍ଯ୍ୟରେ ପରିଣତ ହେଲେ ଏହା ଆହୁରି ସୁସାଧ ହେବ । ଆଶାକରୁ ମହାରାଜଙ୍କର ଉକ୍ତ ଚେଷ୍ଟା ଫଳବତୀ ହେବ ।

ସ୍ଥାନୀୟ କିମ୍ବଦନ୍ତୀ ସଂଗ୍ରହ କରିବା ବିଷୟରେ ଆମ୍ଭମାନଙ୍କର କ୍ଷୁଦ୍ର ବୁଦ୍ଧିରେ ଗୋଟିଏ ଉପାୟ ସହଜ ବୋଲି ବୋଧ ହେଉଅଛି । ତାହା ଏହି ଆଜିକାଲି ଓଡ଼ିଶାର ଗ୍ରାମେ ଗ୍ରାମେ ବିଦ୍ୟାଳୟ, ଡାକଘର, ଡାକ୍ତରଖାନା ଇତ୍ୟାଦି ନାନାପ୍ରକାର ସରକାରୀ କାର୍ଯ୍ୟାଳୟମାନ ସ୍ଥାପିତ ହୋଇ ତହିଁରେ ଶିକ୍ଷିତ ଲୋକମାନେ ନିଯୁକ୍ତ ଅଛନ୍ତି । ପୁଣି ପ୍ରତିଗ୍ରାମରେ ସୁଦ୍ଧା ଜଣେ ଅଧେ ଶିକ୍ଷିତ ଲୋକର ଅଭାବ ନାହିଁ । ସର୍ବୋପରି ଶିକ୍ଷା ବିଭାଗର ଇ: ପଣ୍ଡିତଙ୍କଠାରୁ ଇନ୍‌ସପେକ୍ଟର ମହୋଦୟ ପର୍ଯ୍ୟନ୍ତ ଅନେକ ଶିକ୍ଷିତ କର୍ମଚାରୀ ଗ୍ରାମେ ଗ୍ରାମେ ପରିଦର୍ଶନ କାର୍ଯ୍ୟରେ ବୁଲୁ ଅଛନ୍ତି- ସେମାନେ ଯଦ୍ୟପି ଅଳ୍ପାୟାସ ସ୍ୱୀକାର କରି ଏହିସବୁ କିମ୍ବଦନ୍ତୀ ସ୍ଥାନୀୟ ଅନୁସନ୍ଧାନ ଦ୍ୱାରା ସଂଗ୍ରହ କରନ୍ତି ଏବଂ ତାହା ଇତିବୃତ୍ତ ଲେଖକଙ୍କଠାକୁ ପଠାଇ ଦିଅନ୍ତି ତାହାହେଲେ ସମ୍ପାଦକ ମହାଶୟ, ଏହା ଆହୁରି ସହଜସାଧ ହେବ ନାହିଁକି ? ମାତ୍ର ସର୍ବପ୍ରଥମେ ଉତ୍କଳର ପ୍ରାଚୀନ ଲେଖକମାନଙ୍କର ନାମ ଓ ଠିକଣାର ଗୋଟିଏ ତାଲିକା ପ୍ରସ୍ତୁତ ହୋଇ ପ୍ରକାଶିତ ହେବା ଆବଶ୍ୟକ । ଆମ୍ଭେମାନେ ଆଶାକରୁ କୌଣସି ପାରଦର୍ଶୀ ସାହିତ୍ୟସେବକ

ଏ ବିଷୟରେ ହସ୍ତକ୍ଷେପ କରି ହିତୈଷିଣୀରେ ତାହା ପ୍ରକାଶ କରିବାକୁ ଚେଷ୍ଟିତ ହେବେ ଏବଂ ଆପଣଙ୍କୁ ମଧ ଅନୁରୋଧ ଯେ ଆପଣ ଉକ୍ତ ତାଲିକା ନିମନ୍ତେ ସ୍ଥାନ ଯୋଗାଇବା ନିମିତ କୁଣ୍ଠିତ ହେବେ ନାହିଁ । ଅବଶ୍ୟ ଏହା ଜାଣିବା ଉଚିତ ଯେ କେବଳ ବିତସ୍ପୃହତା ରୂପ ଶନି ଅନ୍ତର୍ହିତ ହେଲେ ଏ ସବୁ ସମ୍ଭବ ହୋଇପାରିବ । ନଚେତ୍ ଆପଣ ଯାହା କହିଅଛନ୍ତି, "ଏ ଅଭିଳାସ ସଫଳ ହେବା" ର ସମ୍ଭାବନା ଅଳ୍ପ ।" ତାହା ଅକ୍ଷରେ ଅକ୍ଷରେ ସତ୍ୟରେ ପରିଣତ ହେବ । ଆମ୍ଭମାନଙ୍କ ଆଦର୍ଶ ସ୍ଥାନୀୟ ବଙ୍ଗଦେଶର ଅନୁକରଣରେ କୃଷ୍ଣପ୍ରସାଦ ବାବୁ ଏହି କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛନ୍ତି । ପ୍ରତ୍ୟେକ ଭାଷାରେ ସେହି ଭାଷାର ସାହିତ୍ୟିକ ଇତିହାସ ରହିବା ବାଞ୍ଛନୀୟ ସନ୍ଦେହ ନାହିଁ । ଅତଏବ ଆମ୍ଭେମାନେ ଆଶାକରୁ କି ଓଡ଼ିଶାର ଶିକ୍ଷିତ ସମ୍ପ୍ରଦାୟ ଏ ବିଷୟରେ ସାହାଯ୍ୟ କରିବାକୁ ଯତ୍ନଶୀଳ ହେବେ । ଆମ୍ଭମାନଙ୍କ ଯୋଗେ କୃଷ୍ଣପ୍ରସାଦବାବୁଙ୍କ ଉପସ୍ଥିତ ପ୍ରସ୍ତାବରେ ଯେତେଦୂର ଯାହା ହୋଇପାରେ ସେ ବିଷୟରେ ଆମ୍ଭେମାନେ ପରାଙ୍ମୁଖ ନୋହୁଁ ।

*ଭା୧୦ଗ, ସଂ୪୨ଖ୍ୟା, ୨୬।୮।୧୮୯୬*

## ପୁସ୍ତକ ସମାଲୋଚନା

ମହାଶୟ,

ମୁଁ ଖଣ୍ଡେ ସାର୍ଥକନାମା ଶ୍ରୀଯୁକ୍ତ ଶଶିଭୂଷଣ ରାୟ ମହାଶୟଙ୍କ ବିରଚିତ "ଦାକ୍ଷିଣାତ୍ୟ ଭ୍ରମଣ" ଯଦୃଚ୍ଛା କ୍ରମେ ପାଇଥିଲି ତାହା ଆମୂଳପ୍ରାନ୍ତ ପାଠ କରି ଯେ ଆନନ୍ଦ ଆଶ୍ୱସ୍ତି ଆପଣାର ଅପ୍ରଶସ୍ତ ଅନ୍ତଃକରଣେ ସ୍ଥାନ ଦେଲି ; ତାହା ଦେଖି ଚିରନ୍ତନ ସନ୍ତୋଷାମୃତ-ପାୟୀ ଆନନ୍ଦ ସ୍ୱ ଜୀବନକୁ ଅସାର ଏବଂ ପୁଲାଳ ସମ ମଣି କ୍ରମେ ସ୍ମରଣୀୟ ଦଶା ଲଭିଲା; ଏଥିରୁ ଅବଶ୍ୟ ମତେ ଏହା ଔତ୍କର୍ଷ୍ୟ ଦୂରଧିଗମ୍ୟ ନୁହେଁ । ମାତ୍ର ଅନ୍ୟ ପକ୍ଷେ ମୋହର ବିଶେଷ କିଛି ବକ୍ତବ୍ୟ ନାହିଁ । ଅଥବା ଏହା କାହୁଁ ସମ୍ଭବିବ ସମ୍ଭବ ଦୁର୍ଲଭ ନୁହେଁ କି ? ଯେହେତୁ କବିବର ଶ୍ରୀଯୁତ ବାବୁ ରାଧାନାଥ ରାୟ ମହାଶୟ ଏବଂ ଅନ୍ୟ ଖ୍ୟାତନାମା ଦୁଇଜଣଙ୍କର ଅନ୍ତଃକରଣେ ଯେ କି ସନ୍ମାନାସନ ଲଭିଅଛି; ତାହାର ଯେ ଯଥାତଥା ଅପଦ ସ୍ଥାନ ଭବିତବ୍ୟ ଫଣିଗତ ମଣିବତ ସର୍ବବ୍ୟାପୀ ନୁହେଁ । ଅତଏବ ତାହାର ଦୋଷ ଦିଗକୁ ଦୃଷ୍ଟି ଦେଇ ତାହାର ରଚନା ଚାତୁରୀ, କଳ୍ପନା ମାଧୁରୀ ଏବଂ ଅଧବସାୟାଦିର ଅଧୟନ ସୁଖରୁ ବଂଚିତ ହେବା ଅପ୍ରୀତିକର କାର୍ଯ୍ୟ । ଏଥିପାଇଁ ଏ ପକ୍ଷକୁ ଦୃଷ୍ଟି କରି ଏବଂ ପକ୍ଷାନ୍ତରରୁ ଅନ୍ତର ନ ହୋଇ ତଦ୍ବିଷୟରେ ଉପର୍ଯ୍ୟୁପରି ପ୍ରତିପତ୍ତି ଜନ୍ମାଇଥିଲି । ତଥାପି ଏହାର ପ୍ରସତ୍ତି ପାଇଁ ମୁଁ ଏକାନ୍ତ ଅନନୁକୂଳବାଦୀ ହୋଇ ପାରେନାଁ । ମୋ କଥା ଦୂରେ ଥାଉ ମୋହର କତିପୟ କୃତବିଦ୍ୟ ସୁହୃତ୍‌ଗଣ ସୁଦ୍ଧା ସ୍ଥାନେ ସ୍ଥାନେ ରଚନାର ଭଙ୍ଗି ଦେଖି ଗ୍ରନ୍ଥକର୍ତ୍ତା ପିତାଙ୍କର ବୋଲି ଶଙ୍କା କରନ୍ତି । ତେବେ ସେମାନଙ୍କ ସେ ଶଙ୍କା ନିତାନ୍ତ ଅମୂଳକ ନୁହେଁ କାରଣ ସ୍ଥଳ ବିଶେଷରେ ଶଶିବାବୁଙ୍କର ସରସ୍ୱତୀ କ୍ୱଚିତ୍ ନଷ୍ଟରୂପେ ସ୍ଥାପିତ, ମହାଶୟଙ୍କର ଅସାମାନ୍ୟ ଗୁଣାବଳୀର ସ୍ମାରକ ହୋଇଅଛି । ଏହା ତ ହେବାର କଥା, ଆଶ୍ଚର୍ଯ୍ୟ କିଛି ନୁହେଁ, ବରଂ ପଦକ ନ ହୋଇଥିଲେ ଆଶ୍ଚର୍ଯ୍ୟଜନକ ହୋଇଥାନ୍ତା । ମୋହର କ୍ଷୁଦ୍ର ବିବେଚନାରେ ସ୍ୱଳ୍ପ ବୟସ୍କ ଶ୍ରୀଯୁତ ଶଶିବାବୁ ଏ ବିଷୟରେ ଯେତେ ସାଧୁବାଦ ଯୋଗ୍ୟ ହୋଇ ଅଛନ୍ତି ଶ୍ରୀଯୁତ ବାମଣ୍ଡା ଯୁବରାଜ ଶ୍ରୀ ସଚ୍ଚିଦାନନ୍ଦ ଦେବ ମହାଶୟ ସୁଦ୍ଧା ତତୋଧିକ ପ୍ରଶଂସ୍ୟ ଓ ଧନ୍ୟବାଦର ପାତ୍ର ଅଟନ୍ତି କାରଣଟୀ ପାଠକଙ୍କର ଅଧାହାର୍ଯ୍ୟ ଅଟେ । ଇତି

ବଶମ୍ବଦ

ଶ୍ରୀ______

ଲକ୍ଷ୍ମଣନାଥ

*ଭା୧୧ଗ, ସଂ୬ଖ୍ୟା, ୧୬।୧୨।୧୮୯୬*

# ୧୮୬୬

## କଟକ ପ୍ରିଣ୍ଟିଂ କମ୍ପାନିର
## ପ୍ରଥମ ବାର୍ଷିକ ରିପୋର୍ଟ

ଅର୍ଥାତ୍
ବର୍ଣ୍ଣନାପତ୍ର
କଟକ ପ୍ରିଣ୍ଟିଂକମ୍ପାନି ଆରମ୍ଭ ହେବା ତାରିଖ ଠାରୁ ସନ ୧୮୬୬ ମସିହା
ତା୩୦ରିଖ ଅପ୍ରେଲ ପର୍ଯ୍ୟନ୍ତ
ଶ୍ରୀଯୁତ ଗୌରୀଶଙ୍କର ରାଏ ସେକ୍ରଟରିଙ୍କ ଦ୍ୱାରା ଅଂଶି ମାନଙ୍କ ଜ୍ଞାତବ
ସକାଶେ ପ୍ରସ୍ତୁତ ଓ ପ୍ରଚାରହେଲା।
କଟକ ପ୍ରିଣ୍ଟିଂ କମ୍ପାନିର ଅଂଶି ମହାଶୟ ମାନଙ୍କ ସମୀପକୁ
ଗୌରୀଶଙ୍କରରାଏ ସେକ୍ରଟରିର ନିବେଦନ ।

କଟକ ପ୍ରିଣ୍ଟିଂ କମ୍ପାନି ସ୍ଥାପନ ହେବା ସମୟଠାରୁ ସନ ୧୮୬୬ ମସିହା ତା୩୦ରିଖ ଅପ୍ରେଲରେ ଶେଷ ହୋଇଥିବା ବର୍ଷପର୍ଯ୍ୟନ୍ତ ଉକ୍ତ କମ୍ପାନିର ଯେ ଫଳ ତାହାହୋଇଅଛି ତାହାର ବର୍ଣ୍ଣନା ଲେଖୁଅଛୁଁ ।

କମ୍ପାନିଭୁକ୍ତ ଅଂଶି ମାନଙ୍କର ନାମ ଓ ସେମାନଙ୍କଠାରୁ ଅସୁଲ ହୋଇ ଥିବା ଟଙ୍କା ଓ ସେଟଙ୍କାର ଆୟବ୍ୟୟ ହେସାବ ଏବଂ କମ୍ପାନିର ବର୍ତ୍ତମାନ ଅବସ୍ଥା ଏଥିସଙ୍ଗେ ଯୋଗ ହୋଇଥିବା ଫର୍ଦ ମାନଙ୍କର ପ୍ରକାଶ ପାଇବ ।

ପ୍ରସ୍ତାବ ପ୍ରଚାର ହେବାର କେତେକଦିନ ଉତ୍ତାରେ ସେ ସମୟର ଅଂଶିମାନଙ୍କ ସନ୍ମତିକ୍ରମେ ତଳଲେଖିତ ବ୍ୟକ୍ତି ମାନେ କମ୍ପାନିର କର୍ମନିର୍ବାହ ସକାଶେ ନିଯୁକ୍ତ ହେଲେ ଯଥା ।

ଡାଇରେକ୍ଟରମାନେ।

ଶ୍ରୀଯୁତ୍ ବାବୁ ହରେକୃଷ୍ଣଦାସ ।
ଶ୍ରୀଯୁତ୍ ବାବୁ ଜଗମୋହନ ରାଏ
ଶ୍ରୀଯୁତ୍ ବାବୁ ବିଚିତ୍ରାନନ୍ଦ ଦାସ
ଶ୍ରୀଯୁତ୍ ବାବୁ ଦୀନାନାଥ ସରକାର
ଶ୍ରୀଯୁତ୍ ବାବୁ ସୁଦର୍ଶନ ଦାସ

ଶ୍ରୀଯୁତ ଚଉଧୁରି ରଘୁନାଥ ଦାସ
ବାବୁ ଲକ୍ଷ୍ମୀନାରଏଣରଏ ଚଉଧୁରି
ବାବୁ ରାଧାଶ୍ୟାମ ନରିନ୍ଦ୍ର
ବାବୁ ଗୌରିଶ୍ୟାମ ଯେନା
ବାବୁ ଗୋଲକଚନ୍ଦ୍ରବୋଷ
ବାବୁ ବନମାଳି ସିଂହ
ବାବୁ ଗୌରୀଶଙ୍କର ରାଏ

ଉତ୍କଳ ଅକ୍ଷର ସକାଶେ ନାନାପ୍ରକାର ଉପାୟ ଓ ବିଶେଷରେ ଶ୍ରୀଯୁତ ବାବୁ ବିଚିତ୍ରାନନ୍ଦଦାସ ଅତ୍ୟନ୍ତ ମନୋଯୋଗୀହୋଇଥିଲେ ସୁଦ୍ଧା ଏବର୍ଷ ମଧରେ ଉତ୍କଳ ଅକ୍ଷର ପାପ୍ତି ର କିଛି ଆଶା ଥିଲା ନାହିଁ ବର୍ତ୍ତମାନ ତାହା ପ୍ରାପ୍ତହେବାର ଉପାୟ ହୋଇଅଛି କେବଳ ଅଂଶିମାନେ ଟଙ୍କାଦେଇ ନଥିବାର ଶୀଘ୍ର ପ୍ରାପ୍ତି ବିଷୟରେ କିଞ୍ଚିତ୍ ଭୟ ଜାତ ହେଉ ଅଛି ।

ଏକନମ୍ବର ଫର୍ଦ୍ଦର ପ୍ରକାଶ ହେବଯେ ଦ୍ୱିତୀୟ କିସ୍ତ ଟଙ୍କା ସନ ୧୮୭୫ ମସିହା ନଓମ୍ବର ମାସର ତଲବ ହୋଇଥିଲେ ସୁଦ୍ଧା ଅଦ୍ୟାପି ଅତିଅଳ୍ପ ଲୋକ ତାହା ଦେଇ ଅଛନ୍ତି ଓ ସେଯୋଗୁଁ ଉତ୍କଳ ଅକ୍ଷର ପକ୍ଷରେ ବିଶେଷ ଅପକାର ଦର୍ଶୁଅଛି । ଅଂଶିମାନଙ୍କୁ ଶୀଘ୍ର ଟଙ୍କା ଦେବାର କିପର୍ଯ୍ୟନ୍ତ ଆବଶ୍ୟକ ଭର୍ଷାକରଁ ଅଂଶିମାନେ ତାହା ଏଥିର ବିବେଚନାକରିପାରିବେ ।

ନ୨ମ୍ବର ଫର୍ଦ ଦୃଷ୍ଟିରେ ପ୍ରକାଶ ହେବଯେ ଦରମାହି ଓ କାଗଜ ଇତ୍ୟାଦି ଅନ୍ୟାନ୍ୟ ବିଷୟରେ ଟ ୭୫୪୫୩୨ ପାହି ଖର୍ଚ୍ଚ ହୋଇ କେବଳ ଟ୩୩୬୫୩ ଉତ୍ପନ୍ନ ହୋଇଅଛି ଅର୍ଥାତ୍ କୁମ୍ପାନିର କାରବାରରେ ପ୍ରାଏ ଟ ୪୦୦ ଙ୍କା ତୃଟି ପଡିଅଛି । ମାତ୍ର ଅଂଶିମାନଙ୍କ ବିବେଚନା କରିବାର ଆବଶ୍ୟକଯେ ପ୍ରସ୍ତାବ ସମୟରେ ଇଷ୍ଟମିଟ ହୋଇ ଥିଲା ଯେ ଲାଭ ହେବା ପୂର୍ବ ଟ ୬୦୦ଙ୍କା ଦରମାହିରେ ଖର୍ଚହେବ ଓ କର୍ମାରମ୍ଭ ସମୟରେ କେତେ କଷ୍ଟ ଓ କେତେ ବ୍ୟୟ ହୋଇ ଥାଏ ସେସବୁ ବିବେଚନା କଲେ ପ୍ରଥମାବସ୍ଥାରେ ଟ ୪୦୦ ଙ୍କା ତୃଟି ହେବାର କିଛି ଆଶ୍ଚର୍ଯ୍ୟ ନୁହଇ ଫଳତଃ ପ୍ରକୃତ ତୃଟି ଟ ୪୦୦ ଙ୍କା ନୁହଇ କାରଣକି ନୂତନ ପଞ୍ଜିକାର ମୂଲ୍ୟ ଓ ଅନ୍ୟାନ୍ୟ କର୍ମର ଟଙ୍କା ପ୍ରାଏ ଟ ୨୦୦ ଙ୍କା ଏ ସନ ମଧ୍ୟରେ ବିକ୍ରିଦ୍ୱାରା ଅସୁଲ ହୋଇନଥିବାର ସେ ଟଙ୍କା ଏ ହେସାବରେ ଆସିନାହିଁ । ଉକ୍ତ ଟଙ୍କା ମିନ୍‌ହା ଦେଲେ ଟ ୨୦୦ ଙ୍କା ମାତ୍ର ତୃଟି ଯଣାଯିବ । ଅତଏବ ଭର୍ଷାକର ଯେ ଅଂଶିମାନେ ଏତାଦୃଶ ଫଳକୁ ଉତ୍ତର କାଳର ବୃଦ୍ଧିର ସୁଚକ ଜ୍ଞାନ କରି ସନ୍ତୁଷ୍ଟ ହେବେ ।

ଉପରଲେଖା ବିଷୟର କୁମ୍ପାନିର ଅବସ୍ଥା ସମସ୍ତଙ୍କୁ ବିଦିତ ହେବ କି ଯେଟଙ୍କା ଅଂଶିମାନଙ୍କଠାର ସଂଗୃହିତ ହୋଇଅଛି ସେଥିର ଟ ୨୦୦ଙ୍କା ମହକୁମା ଖର୍ଚାରେ ବ୍ୟୟ ହୋଇ ଅବଶିଷ୍ଟ ଟଙ୍କାର ଯିନିସମାନ ରହି ଅଛି ଓ ଏ ସନ ଶେଷ ହେଲାପର ଯେରପ କର୍ମର ଗତି ଦେଖା ଯାଉଅଛି ସେଥିର ଅବିଳମ୍ବରେ ଲାଭ ହେବାର ସମ୍ପୂର୍ଣ୍ଣ ଆଷା ଅଛି । ବାସ୍ତବରେ ବର୍ତମାନ ଯେରପ ସୁଚାରରପେ ଛାପାଖାନାର କର୍ମ ଚଳୁଅଛି ଓ ଯେପରିମାଣରେ କର୍ମ କରିବାର ଉପାଏ ଅଛି ଯଦ୍ୟପି ସେପରି ମାଶରେ କର୍ମମିଳିବ ତେବେ ଅନାୟାସରେ ପ୍ରତିମାସ ଟ ୨୦୦ଙ୍କା କି ଟ ୨୫୦ ଙ୍କାର କର୍ମ ହୋଇପାରିବ ଓ ତଦ୍ୱାରା କୁମ୍ପାନିର ଅବଶ୍ୟ ଲାଭହେବ । ମାତ୍ର ସେ ଆଶା ଏକାବେଳକେ ପୂର୍ଣ୍ଣହୋଇ ନପାରେ ଏ ଦେଶରେ ଏପରି ବ୍ୟବଶାୟ ନଥିଲା ଓ ଛାପା କର୍ମରେ ଯେ ବ୍ୟୟର ଲାଘବ ଓ ଅନ୍ୟ ଅନ୍ୟ ଉପକାର ହୁଅଇ ତାହା ଅଦ୍ୟାପି ଏ ଦେଶର ଲୋକମାନେ ବୁଝି ପାରିନାହାନ୍ତି । ଯେତେବେଳେ ଏ ଦେଶସ୍ଥ ଜମିଦାର ଓ ମହାଜନ ଓ ସମ୍ଭ୍ରାନ୍ତ ବ୍ୟକ୍ତି ମାନେ ଛାପାରଫଳ ବୁଝିବେ ଓ ଆପଣା ଜମିଦାରୀ ସମ୍ପର୍କୀୟ ପଟ୍ଟା ପାଉତି ଇତ୍ୟାଦି ଓ ଅନ୍ୟାନ୍ୟ ବ୍ୟବଶାୟର ଫାରମମାନ ଛାପା କରାଇବେ ତେତେବେଳେ କୁମ୍ପାନିର କି ପର୍ଯନ୍ତ ଶ୍ରୀବୃଦ୍ଧି ଓ ଦେଶର କେତେ ଗୌରବ ହେବ ତାହା ବର୍ଣ୍ଣନାତୀତ ।

ଶ୍ରୀଯୁତ ବାବୁ ଯଗମୋହନରାଏ ଡାଇରେକ୍ଟର ଅତ୍ୟନୁଗ୍ରହ ପୂର୍ବକ ଆପଣା ବଇଠକଖାନା କୁମ୍ପାନିର ଅଫିସ ନିମନ୍ତେ ଛାଡି ଦେଇ କୁମ୍ପାନିର କିପର୍ଯ୍ୟନ୍ତ ଉପକାର କରି ଅଛନ୍ତି ତାହା କହିନପାରଁ ଛାପାକଳ ଓ ଅକ୍ଷରାଦି ପଦାର୍ଥରେ ଉକ୍ତ ଘର ଏପରି ପୂର୍ଣ୍ଣ ହୋଇ ଅଛିଯେ ଉତ୍କଳ ଅକ୍ଷର ଆସିଲେ ଆଉ ସେଠାରେ ରହି ପାରିବ ନାହିଁ ଅତଏବ କୁମ୍ପାନିର ଆଫିସ ଓ କାରଖାନା ସକାଶେ ସତନ୍ତ୍ର ଗୃହ ନିର୍ମାଣ କରିବାର ଅତିଶୟ ଆବଶ୍ୟକ ହେଉଅଛି ଅଳ୍ପ କାଳରେ ସେଥିର ଉପାୟ ନ ହେଲେ ବିଶେଷ କଷ୍ଟ ହେବ ।

କୁମ୍ପାନିର କର୍ମ ନିର୍ବାହ ସକାଶେ ତଳଲେଖିତ ବେତନ ଭୋଗି ଚାକର ଅଛନ୍ତି ଯଥା ।

ଖଯାଞ୍ଚ୍ଚି ।

ଶ୍ରୀଯୁତ ବାବୁ ଜଗମୋହନ ଦତ୍ତ ।

ଅଡିଟର

ଶ୍ରୀଯୁତ ବାବୁ ଜଗବନ୍ଧୁ ଘୋଷ ।

ହାଲ ଶ୍ରୀଯୁତବାବୁ ଲାଲା ଜଗମୋହନ ଲାଲ ।

ସନ ୧୮୬୪ ମସିହା ଯୁଲାଇ ମାସ ତା ୬ ରିଖରେ ଡାଇରେକ୍ଟରଙ୍କ ପ୍ରଥମ ସଭା ହୋଇ ଆମ୍ଭଙ୍କୁ ସେକ୍ରଟରି କର୍ମରେ ନିଯୁକ୍ତ କରାଗଲା ଓ ଅଂଶିଙ୍କ ଠାର ଆପଣା ଆପଣା ଗୃହିତ ଅଂଶର ଅର୍ଦ୍ଧାମୂଳୀ ଅସୁଲ କରିବାକୁ ଅନୁମତି ଦେଲେ ତଦନୁଶାର ସେହି ସନ ସିତମ୍ବରମାସ ଠାର ଟଙ୍କା ଅସୁଲ ହେବାକୁ ଆରମ୍ଭ ହେଲା । ଏବଂ ଛାପା ଯନ୍ତ୍ରାଦି କଲିକତାର ଅଣାଯିବାର ଉଦ୍ଯୋଗହେଲା ।

ଉତ୍କଳ ଅକ୍ଷର ପ୍ରାପ୍ତିରେ ଅନେକ ବିଘ୍ନ ଘଟିବାର କେବଳ ଇଂରାଜୀ ଛାପାସକାଶେ କଳଆଦି ଆସିବାର ଅତ୍ୟନ୍ତ ଆବଶ୍ୟକ ନହେବା ଓ ଯଥେଷ୍ଟ ଟଙ୍କା ତହବିଲରେ ଯମା ହୋଇ ନଥିବାର ସନ ୧୮୬୫ ମସିହା ମାର୍ଚ୍ଚ ମାସ ପର୍ଯ୍ୟନ୍ତ କିଛି ଯିନିସ ଆସିବାର ଆରମ୍ଭ ହୋଇ ନଥିଲା । ଯାହାହେଉ ମଇ ମାସରେ କେତେକ ଯିନିସ କଲିକତାର ଆସି ପ୍ରବେଶ ହେଲା ମାତ୍ର ଇଂରାଜୀ ଛାପାର ବିଶେଷ କର୍ମ ନଥିବା ଓ ସେ କଳଓଗେର ବସାଇବା ଓ ତହିଁର କର୍ମ କେହି ଯାଣୁ ନଥିବାର ସେସବୁ କେତେକ ଦିନ କେବଳ ପଡି ରହିଲା ।

ଏଥିମଧରେ ଶ୍ରୀଯୁତ ବାବୁ ବିଚିତ୍ରାନନ୍ଦଦାସ ଡାଇରେକ୍ଟର ଏକ କ୍ଷୁଦ୍ର ପଥରଛାପାକଳ ପୁରଷୋତ୍ତମ ମୁକାମରେ ଦେଖି ତାକୁ ଟ ୨୦୦ ଙ୍କା ମୂଲ୍ୟରେ କ୍ରୟ କରି ଅବିଳମ୍ବରେ ତାହା କଟକକୁ ଘେନି ଆସିଲେ । ଆମ୍ଭେ ଉକ୍ତ କଳ ପ୍ରାପ୍ତ ହୋଇ ଇରିଗେସନ୍ କୁମ୍ପାନିର ପଥରଛାପା ଇଲାକାର ସୁପ୍ରଣ୍ଡେଣ୍ଟସଙ୍ଗେ ବନ୍ଦୋବସ୍ତ କରି ତାଙ୍କଦ୍ୱାରା ସନ ୧୮୬୫ ମସିହା ଯୁଲାଇ ମାସ ତା ୧ ରିଖଠାର ଉକ୍ତ କଳରେ କର୍ମାରମ୍ଭ କରିଲୁଁ । ଯଦ୍ୟପି କି ସେ ଏକମାସର ଅଧିକ ଏକର୍ମରେ ନିଯୁକ୍ତ ଥିଲେ ତଥାଚ ନାନା କାରଣର ତାଙ୍କଦ୍ୱାରା କିଛି ମାତ୍ର କର୍ମ ହୋଇ ନପାରିଲା କେବଳ ଶୌଭାଗ୍ୟର ବିଷୟ ଏହି ହେଲା ଯେ ଆମ୍ଭର ନିଯୁକ୍ତ କିଆ ରାଇଟର (ଲେଖକ ) ଭାଗୀରଥୀସାଠିଆ ଉକ୍ତ ଛାପାକର୍ମରେ ବିଶେଷରପ ପାରଗ ହେଲା ଓ ବିନା ସହାଏରେ ପଥର ଛାପା କଳର କର୍ମ ଚଳାଇବାର କ୍ଷମତା ତାହାର ଦେଖି ଆମ୍ଭେ ସୁପ୍ରଣ୍ଡେଣ୍ଟଙ୍କୁ କର୍ମର ରହିତ କରି ଭାଗୀରଥୀସାଠିଆକୁ ପଥର ଛାପା କର୍ମରେ ନିଯୁକ୍ତ କରୁଁ ତଦନୁଶାରେ ସେ ଅଦ୍ୟାପି ଉକ୍ତ ଇଲାକାର କର୍ମ କରୁଅଛି ।

ପଥରଛାପା କର୍ମର ଆରମ୍ଭ ହେବାର ଏକମାସ ଉତ୍ତାର କ୍ରମେକ୍ରମେ ଅକ୍ଷରଛାପା ସମ୍ପର୍କୀୟ କଳବସାଇବା ଓ ଅକ୍ଷରାଦି ରଖିବାର କାଠର ଯିନିସ ମାନ ପ୍ରସ୍ତୁତ କରିବାକୁ ଆରମ୍ଭ କଲୁଁ ଓ ସେକର୍ମ ଆମ୍ଭଙ୍କୁ ଯଣା ନ ଥିବାର ସେହି ଇରିଗେସନ୍ କୁମ୍ପାନିର ଅନ୍ୟ ଏକଜଣ ଲୋକକୁ ଅକ୍ଷରଛାପା କର୍ମରେ ନିଯୁକ୍ତ କଲୁଁ । ମାତ୍ର ଏ ଲୋକର ଉକ୍ତ ବିଦ୍ୟାରେ ବିସ୍ତର ପରଦର୍ଶୀତା ଦେଖାଗଲାନାହିଁ ଅତଏବ ଆମ୍ଭେ ତାଙ୍କୁ ବରଖାସ୍ତକରି ଶ୍ରୀଯୁତ୍ ଉଟିନ ସାହେବଙ୍କୁ କଳ ଓଗେର ବସାଇ ଅକ୍ଷରଛାପାର ସମସ୍ତ ଉଦ୍ୟମ କରିଦେବାକୁ ଅନୁରୋଧ କଲୁଁ । ଉଟିନ ସାହେବ ଏବିଷୟରେ ଅତ୍ୟନ୍ତ ସୁଶିକ୍ଷିତ ଏଣୁକରି ସେ ଅଳ୍ପକାଳ ମଧ୍ୟରେ ଏପ୍ରକାର ବନ୍ଦୋବସ୍ତ କରି ଦେଲେ ଯେ ଅକ୍ଷରଛାପାରେ ଅକ୍ଲେଶରେ କର୍ମ ଚଳିଲା । ଆମ୍ଭେ ତାହାଙ୍କଠାର ଅକ୍ଷରଛାପା ବିଷୟରେ ଅନେକ ଉପଦେଶ ପାଇ ବର୍ତ୍ତମାନ ନିର୍ବିଘ୍ନରେ କର୍ମଚଳାଇ ସର୍ବସାଧାରଣଙ୍କର ତୁଷ୍ଟିଜାତ କରିଅଛୁଁ । ସମୟ ସମୟରେ ପ୍ରୟୋଜନି ପଦାର୍ଥମାନ କଲିକତାର ଅଣାଇ ଓ ଦୁଇଜଣ ଦେଶୀୟ ଲୋକ ତାଇଦନବିସ ପ୍ରକାରରେ ନିଯୁକ୍ତ, କରି ସେମାନଙ୍କୁ କର୍ମ ଶିକ୍ଷାଦ୍ୱାରା ବର୍ତ୍ତମାନ ଇଂରାଜୀଛାପାକୁ ଏପରି ପ୍ରବେଶ କରିଅଛୁଁଯେ ଅକ୍ଲେଶରେ କୌଣସି ପ୍ରକାରର କର୍ମ ସମ୍ପାଦନ ହେଉଅଛି ଓ ଉତ୍ତରୋତ୍ତର ଅଧିକ ଭଲହେବ ।

ଉତ୍କଳ ଅକ୍ଷର ସକାଶେ ନାନାପ୍ରକାର ଉପାୟ ଓ ବିଶେଷରେ ଶ୍ରୀଯୁତ ବାବୁ ଚିଚିତ୍ରାନନ୍ଦଦାଙ୍କ ଅତ୍ୟନ୍ତ ମନୋଯୋଗୀହୋଇଥିଲେ ସୁଦ୍ଧା ଏବର୍ଷ ମଧରେ ଉତ୍କଳ ଅକ୍ଷର ପାପ୍ତି ର କିଛି ଆଶା ଥିଲା ନାହିଁ ବର୍ତ୍ତମାନ ତାହା ପ୍ରାପ୍ତହେବାର ଉପାୟ ହୋଇଅଛି କେବଳ ଅଂଶିମାନେ ଟଙ୍କାଦେଇ ନଥିବାର ଶୀଘ୍ର ପ୍ରାପ୍ତି ବିଷୟରେ କିଞ୍ଚିତ୍ ଭୟ ଜାତ ହେଉ ଅଛି ।

ଏକନମ୍ବର ଫର୍ଦ୍ଦର ପ୍ରକାଶ ହେବଯେ ଦ୍ୱିତୀୟ କିସ୍ତ ଟଙ୍କା ସନ ୧୮୭୫ ମସିହା ନଓମ୍ବର ମାସର ତଲବ ହୋଇଥିଲେ ସୁଦ୍ଧା ଅଦ୍ୟାପି ଅତିଅଳ୍ପ ଲୋକ ତାହା ଦେଇ ଅଛନ୍ତି ଓ ସେଯୋଗୁଁ ଉତ୍କଳ ଅକ୍ଷର ପକ୍ଷରେ ବିଶେଷ ଅପକାର ଦର୍ଶୁଅଛି । ଅଂଶିମାନଙ୍କୁ ଶୀଘ୍ର ଟଙ୍କା ଦେବାର କିପର୍ଯ୍ୟନ୍ତ ଆବଶ୍ୟକ ଭର୍ଷାକରଁ ଅଂଶିମାନେ ତାହା ଏଥିର ବିବେଚନାକରିପାରିବେ ।

ନମ୍ବର ଫର୍ଦ ଦୃଷ୍ଟିରେ ପ୍ରକାଶ ହେବଯେ ଦରମାହି ଓ କାଗଜ ଇତ୍ୟାଦି ଅନ୍ୟାନ୍ୟ ବିଷୟରେ ଟ ୭୫୪୫୩୨ ପାହି ଖର୍ଚ୍ଚ ହୋଇ କେବଳ ଟ୩୩୬୫୩ ଉତ୍ପନ୍ନ ହୋଇଅଛି ଅର୍ଥାତ୍ କୁମ୍ପାନିର କାରବାରରେ ପ୍ରାଏ ଟ ୪୦୦ ଙ୍କା ତୃଟି ପଡିଅଛି । ମାତ୍ର ଅଂଶିମାନଙ୍କ ବିବେଚନା କରିବାର ଆବଶ୍ୟକଯେ ପ୍ରସ୍ତାବ ସମୟରେ ଇଷ୍ଟମିଟ ହୋଇ ଥିଲା ଯେ ଲାଭ ହେବା ପୂର୍ବ ଟ ୬୦୦ଙ୍କା ଦରମାହିରେ ଖର୍ଚହେବ ଓ କର୍ମାରମ୍ଭ ସମୟରେ କେତେ କଷ୍ଟ ଓ କେତେ ବ୍ୟୟ ହୋଇ ଥାଏ ସେସବୁ ବିବେଚନା କଲେ ପ୍ରଥମାବସ୍ଥାରେ ଟ ୪୦୦ ଙ୍କା ତୃଟି ହେବାର କିଛି ଆଶ୍ଚର୍ଯ୍ୟ ନୁହଇ ଫଳତଃ ପ୍ରକୃତ ତୃଟି ଟ ୪୦୦ ଙ୍କା ନୁହଇ କାରଣକି ନୂତନ ପଞ୍ଜିକାର ମୂଲ୍ୟ ଓ ଅନ୍ୟାନ୍ୟ କର୍ମର ଟଙ୍କା ପ୍ରାଏ ଟ ୨୦୦ ଙ୍କା ଏ ସନ ମଧ୍ୟରେ ବିକ୍ରିଦ୍ୱାରା ଅସୁଲ ହୋଇନଥିବାର ସେ ଟଙ୍କା ଏ ହେସାବରେ ଆସିନାହିଁ । ଉକ୍ତ ଟଙ୍କା ମିନ୍‌ହା ଦେଲେ ଟ ୨୦୦ ଙ୍କା ମାତ୍ର ତୃଟି ଯଣାଯିବ । ଅତଏବ ଭର୍ଷାକର ଯେ ଅଂଶିମାନେ ଏତାଦୃଶ ଫଳକୁ ଉତ୍ତର କାଳର ବୃଦ୍ଧିର ସୁଚକ ଜ୍ଞାନ କରି ସନ୍ତୁଷ୍ଟ ହେବେ ।

ଉପରଲେଖା ବିଷୟର କୁମ୍ପାନିର ଅବସ୍ଥା ସମସ୍ତଙ୍କୁ ବିଦିତ ହେବ କି ଯେଟଙ୍କା ଅଂଶିମାନଙ୍କଠାର ସଂଗୃହିତ ହୋଇଅଛି ସେଥିର ଟ ୨୦୦ଙ୍କା ମହକୁମା ଖର୍ଚାରେ ବ୍ୟୟ ହୋଇ ଅବଶିଷ୍ଟ ଟଙ୍କାର ଯିନିସମାନ ରହି ଅଛି ଓ ଏ ସନ ଶେଷ ହେଲାପର ଯେରପ କର୍ମର ଗତି ଦେଖା ଯାଉଅଛି ସେଥିର ଅବିଳମ୍ବରେ ଲାଭ ହେବାର ସମ୍ପୂର୍ଣ୍ଣ ଆଷା ଅଛି । ବାସ୍ତବରେ ବର୍ତମାନ ଯେରପ ସୁଚାରରପେ ଛାପାଖାନାର କର୍ମ ଚଳୁଅଛି ଓ ଯେପରିମାଣରେ କର୍ମ କରିବାର ଉପାଏ ଅଛି ଯଦ୍ୟପି ସେପରି ମାଣରେ କର୍ମମିଳିବ ତେବେ ଅନାୟାସରେ ପ୍ରତିମାସ ଟ ୨୦୦ଙ୍କା କି ଟ ୨୫୦ ଙ୍କାର କର୍ମ ହୋଇପାରିବ ଓ ତଦ୍ୱାରା କୁମ୍ପାନିର ଅବଶ୍ୟ ଲାଭହେବ । ମାତ୍ର ସେ ଆଶା ଏକାବେଳକେ ପୂର୍ଣ୍ଣହୋଇ ନପାରେ ଏ ଦେଶରେ ଏପରି ବ୍ୟବଶାୟ ନଥିଲା ଓ ଛାପା କର୍ମରେ ଯେ ବ୍ୟୟର ଲାଘବ ଓ ଅନ୍ୟ ଅନ୍ୟ ଉପକାର ହୁଅଇ ତାହା ଅଦ୍ୟାପି ଏ ଦେଶର ଲୋକମାନେ ବୁଝି ପାରିନାହାନ୍ତି । ଯେତେବେଳେ ଏ ଦେଶସ୍ଥ ଜମିଦାର ଓ ମହାଜନ ଓ ସମ୍ଭ୍ରାନ୍ତ ବ୍ୟକ୍ତି ମାନେ ଛାପାରଫଳ ବୁଝିବେ ଓ ଆପଣା ଜମିଦାରୀ ସମ୍ପର୍କୀୟ ପଟ୍ଟା ପାଉତି ଇତ୍ୟାଦି ଓ ଅନ୍ୟାନ୍ୟ ବ୍ୟବଶାୟର ଫାରମମାନ ଛାପା କରାଇବେ ତେତେବେଳେ କୁମ୍ପାନିର କି ପର୍ଯନ୍ତ ଶ୍ରୀବୃଦ୍ଧି ଓ ଦେଶର କେତେ ଗୌରବ ହେବ ତାହା ବର୍ଣ୍ଣନାତୀତ ।

ଶ୍ରୀଯୁତ ବାବୁ ଯଗମୋହନରାଏ ଡାଇରେକ୍ଟର ଅତ୍ୟନୁଗ୍ରହ ପୂର୍ବକ ଆପଣା ବଇଠକଖାନା କୁମ୍ପାନିର ଅଫିସ ନିମନ୍ତେ ଛାଡି ଦେଇ କୁମ୍ପାନିର କିପର୍ଯ୍ୟନ୍ତ ଉପକାର କରି ଅଛନ୍ତି ତାହା କହିନପାରଁ ଛାପାକଳ ଓ ଅକ୍ଷରାଦି ପଦାର୍ଥରେ ଉକ୍ତ ଘର ଏପରି ପୂର୍ଣ୍ଣ ହୋଇ ଅଛିଯେ ଉତ୍କଳ ଅକ୍ଷର ଆସିଲେ ଆଉ ସେଠାରେ ରହି ପାରିବ ନାହିଁ ଅତଏବ କୁମ୍ପାନିର ଆଫିସ ଓ କାରଖାନା ସକାଶେ ସତନ୍ତ୍ର ଗୃହ ନିର୍ମାଣ କରିବାର ଅତିଶୟ ଆବଶ୍ୟକ ହେଉଅଛି ଅଳ୍ପ କାଳରେ ସେଥିର ଉପାୟ ନ ହେଲେ ବିଶେଷ କଷ୍ଟ ହେବ ।

କୁମ୍ପାନିର କର୍ମ ନିର୍ବାହ ସକାଶେ ତଳଲେଖିତ ବେତନ ଭୋଗି ଚାକର ଅଛନ୍ତି ଯଥା ।

**ପଥରଛାପା ଇଲାକା ।**

ଶ୍ରୀ ଭାଗୀରଥୀ ସାଠିଆ ପ୍ରିଣ୍ଟର ଅର୍ଥାତ୍ ଛାପାକାର ଟ ୧୨ଙ୍କା

ଶ୍ରୀ ଭଗବତ୍‌ଦାଁ ............ରାଇଟର (ଲେଖକ) ଟ ୫ଙ୍କା

ଛ ୪ଣ ଖଲାସି ଯଣକୁ ଟ ୫ଙ୍କା ଲେଖାଏ ଟ ୨୦

**ଅକ୍ଷର ଛାପା ଇଲାକା ।**

ଶ୍ରୀ ଭାଗୀରଥୀ ମାହାନ୍ତି .....................ଟ ୫ ଙ୍କା

ଶ୍ରୀ ମହାଦେବ ମାହାନ୍ତି .......................ଟ ୫ ଙ୍କା

**ମହକୁମାକର୍ମସକାଶେ ।**

ସେଖ ଯମିର ଚପରାସି ................................ଟ ୫ ଙ୍କା

ଭାଗୀରଥୀ ସାଠିଯାର କଥା ପୂର୍ବେ ଉଲ୍ଲେଖ ହୋଇ ଅଛି । ଏ ଲୋକ ଅତିଶୟ ପରିଶ୍ରମି ଓ ପ୍ରାଣପଣରେ କୁମ୍ପାନିର କର୍ମ ପ୍ରତି ଯତ୍ନବାନ୍ ଥାଏ । ତାହାର ବୁଦ୍ଧି ଅତିଶୟ ତିକ୍ଷ୍ଣ ଓ ଅନେକ ବିଷୟରେ ସୁଶିକ୍ଷିତ ଅଟଇ ।

ଭଗବତ୍‌ଦାଁ ଅଳ୍ପ କାଳହେଲା କୁମ୍ପାନିର ଆଫିସରେ ନିଯୁକ୍ତ ହୋଇ ଅଛି ଏ ଅତି ସୁନ୍ଦର ଲେଖିପାରେ ଓ ପୁସ୍ତକାଦିର ଯିଲଦବନ୍ଧି ଉତ୍ତମରପେକରି ପାରଇ ଏବ୍ୟକ୍ତି ଅନେକ ପରିଶ୍ରମି ଓ ବୁଦ୍ଧିମାନ ଅଟଇ ।

ଏ ଦୁଇବ୍ୟକ୍ତି ସର୍ବଦା ନୂତନ ବିଷୟ ଶିକ୍ଷାର୍ଥେ ଚେଷ୍ଟିତ ଥାନ୍ତି । ଆମ୍ଭର ସମ୍ପୂର୍ଣ୍ଣ ଆଶାଯେ ଉତ୍ତରକାଳକୁ ଏମାନଙ୍କର ବୃଦ୍ଧିହେବ ।

ଅକ୍ଷରଛାପା କର୍ମରେ ଭାଗୀରଥୀ ମାହାନ୍ତି ବିଶେଷ ମନୋଯୋଗପୂର୍ବକ କର୍ମଶିକ୍ଷା କରଅଛି । ଏ ଲୋକ ଅତି ପରିଶ୍ରମି ଓ ଆଜ୍ଞାପାଳନରେ ବିଶେଷ ତତ୍ପର । ଏ ଲୋକ ତମ୍ବା ତକ୍ତାର ଛାପା କରିବାର କର୍ମ ମଧ୍ୟ ଅଭ୍ୟାସ କରଅଛି ।

ଅନ୍ୟ କର୍ମଚାରିମାନେ ଆପଣା ଆପଣା କର୍ମ କରନ୍ତି । ତାହାଙ୍କ ପକ୍ଷରେ କିଛି ବିଶେଷ ଲେଖିବାର ନାହିଁ ।

ସେଖ ଯମିର ଚପରାସି ଯେପ୍ରକାର ପରିଶ୍ରମି ଓ ଚାଲକ ଲୋକ ତାହା ଅନେକ ଅଂଶି ମାନଙ୍କୁ ଜ୍ଞାତବ ଅଛି । ଆମ୍ଭେ ଏହାର କର୍ମରେ ସନ୍ତୁଷ୍ଟ ଅଛୁଁ ।

ଆମ୍ଭର ବିଚାର ମାନସଯେ କୁମ୍ପାନିର ଅବସ୍ଥା ଭଲହେଲେ ପ୍ରଥମେ ଭାଗବତଦା ଓ ଭାଗୀରଥୀ ମାହାନ୍ତିର ବେତନ ବୃଦ୍ଧି କରିବୁଁ ଏମାନଙ୍କ କର୍ମର ଉପଯୁକ୍ତ ବେତନ ଏମାନେ ପାଉନାହାନ୍ତି ।

ଏହିରପ କୁମ୍ପାନିର କର୍ମ ନିର୍ବାହ ବର୍ଣ୍ଣିତ କରି ପରିଶେଷରେ ଜଣାଉଅଛୁଁଯେ କୁମ୍ପାନି ସ୍ଥାପନର ପ୍ରସ୍ତାବ ଦିନାବଧି ଅଦ୍ୟାପି ସମୁଦାୟ କର୍ମ ଡାଇରେକ୍ଟରଙ୍କ ନିଯୁକ୍ତମତେ ବିନା ବେତନରେ ଆପଣା ସାଧ୍ୟାନୁସାରେ ଚଳାଇଅଛୁଁ । ଆମ୍ଭ ଉପରେ ଅର୍ପିତ ଥିବା ଭାର କି ପ୍ରକାରରେ ଆମ୍ଭେ ନିର୍ବାହ କରିଅଛୁ କୁମ୍ପାନିର କର୍ମର ସେଥିର ପରିଚୟ ପ୍ରାପ୍ତହେବ ଓ ଯେଉଁ ଡାଇରେକ୍ଟର ମାନେ ଛାପାଖାନାରେ ଆସି କର୍ମ ଦେଖନ୍ତି ତାହାଙ୍କୁ ଗୋଚର ଅଛି । ଯଦ୍ୟପି ଆମ୍ଭର ଏତାଦୃଶ ପରିଶ୍ରମ ଓ ଯତ୍ନକୁ କୁମ୍ପାନିର ଡାଇରେକ୍ଟର ଓ ଅଂଶିମାନେ ସଫଳ ଜ୍ଞାନ କରିବେ ତେବେ ତାହା ଆମ୍ଭର ଯଥାର୍ଥ ପୁରସ୍କାର ହେବ ।

କଟକ ପ୍ରିଣ୍ଟିଂ କୁମ୍ପାନି<br>ଆଲମଚାନ୍ଦବଯାର<br>ତା୨୦ ରିଖ ମାହେ ଯୁଲାଇ<br>ସନ ୧୮୬୬ ମସିହା ।

ଦସ୍ତଖତ୍ ।

ସେକ୍ରଟରି ଓ ଖଯାଞ୍ଚି

*କଟକ ପ୍ରିଣ୍ଟିଂ କୁମ୍ପାନିର ପ୍ରଥମ ବାର୍ଷିକ ରିପୋର୍ଟ ୧୮୬୬ ।*



ବାସୁଦେବ ସୁଢ଼ଳ ଦେବ
(୧୮୫୦–୧୯୦୩)



ହରିହର ମର୍ଦ୍ଦରାଜ ଦେଓ
(୧୮୭୪-୧୯୦୯)



ଟି.ଇ. ରେଭେନ୍‌ସା
(୧୮୧୯-୧୮୮୯)

## ଅ



## ଆ



## ଇ

ଋ



ଏ



ଓ

୭୧୦, ୭୧୧, ୭୧୮, ୭୩୩, ୭୩୫,
୭୪୨, ୭୫୦, ୭୫୬, ୭୫୮, ୭୫୯,
୭୬୨, ୭୬୩, ୭୬୪, ୭୬୫, ୭୭୩,
୭୭୭, ୭୭୯, ୭୮୦, ୭୮୨, ୭୮୩,
୭୮୪, ୭୮୫, ୭୮୬, ୭୮୮, ୭୮୯,
୭୯୦, ୭୯୧, ୭୯୨, ୭୯୩, ୭୯୪,
୭୯୭, ୭୯୮,୭୯୯, ୮୦୧, ୮୦୩,
୮୦୪, ୮୦୫, ୮୧୨, ୮୧୩, ୮୧୪,
୮୧୫, ୮୧୬, ୮୧୮, ୮୧୯, ୮୨୦,
୮୨୫, ୮୨୬, ୮୨୭, ୮୨୮, ୮୨୯,
୮୩୨, ୮୩୩, ୮୩୪, ୮୩୫, ୮୩୬,
୮୩୭, ୮୩୮, ୮୩୯, ୮୪୦, ୮୪୧,
୮୪୩, ୮୪୭, ୮୪୮, ୮୪୯, ୮୫୦,
୮୫୩, ୮୫୪, ୮୫୫, ୮୫୬, ୮୫୭,
୮୫୮, ୮୫୯, ୮୬୦, ୮୬୧, ୮୬୨,
୮୬୩, ୮୬୪, ୮୬୫, ୮୬୮, ୮୬୯,
୮୭୪, ୮୭୫, ୮୭୬, ୮୭୯, ୮୮୦,
୮୮୧, ୮୮୩, ୮୮୪, ୮୮୫, ୮୮୬,
୮୮୯, ୮୯୦, ୮୯୨, ୮୯୪, ୮୯୫,
୮୯୮, ୮୯୯, ୯୦୦, ୯୧୧, ୯୧୪,
୯୧୯, ୯୨୧, ୯୨୨, ୯୩୧, ୯୩୨,
୯୩୩, ୯୫୧, ୯୫୩, ୯୬୧, ୯୬୨

ଓଡ଼ିଆ- ୧୦,୧୧, ୧୨, ୧୩, ୧୪, ୧୫,
୧୬, ୧୭, ୧୮, ୨୦, ୨୭, ୨୮, ୩୦.
୩୧, ୩୨, ୩୩, ୩୪, ୩୫, ୩୬, ୩୮,
୩୯, ୪୧, ୪୨, ୪୩, ୪୪, ୪୫, ୪୬,
୪୭, ୪୮, ୪୯, ୫୦, ୫୧, ୫୨, ୫୩,
୫୪, ୫୬, ୫୭, ୫୮, ୫୯, ୬୦, ୬୧,
୬୨, ୬୩, ୬୪, ୬୫, ୬୬, ୬୭, ୬୮,
୬୯, ୭୦, ୭୧, ୭୨, ୭୬, ୭୭, ୭୮,
୮୯, ୯୦, ୯୧, ୯୨, ୯୩, ୯୪, ୯୫,
୯୭, ୧୦୧, ୧୧୫, ୧୨୬, ୧୩୨, ୧୩୮,
୧୪୦, ୧୪୧, ୧୪୨, ୧୪୪, ୧୪୫,
୧୪୬, ୧୪୭, ୧୬୩, ୧୬୪, ୧୬୫,
୧୬୬, ୧୬୮, ୧୭୧, ୧୭୩, ୧୭୯,
୧୮୪, ୧୮୭, ୧୮୮, ୧୯୧, ୧୯୩,
୧୯୯, ୨୦୫, ୨୦୭, ୨୦୯, ୨୧୦,
୨୧୪, ୨୧୫. ୨୧୬, ୨୧୯, ୨୨୬,
୨୨୭, ୨୨୯, ୨୩୭, ୨୩୮, ୨୩୯,
୨୪୨, ୨୪୩, ୨୪୪, ୨୪୮, ୨୪୯,
୨୫୩, ୨୫୪, ୨୫୫, ୨୫୬, ୨୫୯,
୨୬୦, ୨୬୧, ୨୬୨, ୨୬୭, ୨୬୮,
୨୬୯, ୨୭୧, ୨୭୨, ୨୭୩, ୨୭୪,
୨୭୫, ୨୮୦, ୨୮୨, ୨୮୩, ୨୮୬,
୨୯୦, ୨୯୧, ୨୯୪, ୨୯୭, ୨୯୮,
୨୯୯, ୩୦୨, ୩୧୧, ୩୧୩, ୩୧୪,
୩୧୬, ୩୧୭, ୩୨୬, ୩୨୭, ୩୨୮,
୩୨୯, ୩୩୦, ୩୩୬, ୩୪୧, ୩୪୫,
୩୪୯, ୩୫୮, ୩୫୯, ୩୬୧, ୩୬୨,
୩୬୩, ୩୬୪, ୩୬୬, ୩୬୭, ୩୬୯,
୩୭୦, ୩୭୧, ୩୭୨, ୩୭୩, ୩୮୪,
୩୮୫, ୩୯୧, ୩୯୨, ୪୦୧, ୪୦୨,
୪୦୩, ୪୦୪, ୪୦୫, ୪୧୦, ୪୧୩,
୪୧୬, ୪୧୮, ୪୨୦, ୪୨୧, ୪୨୬,
୪୨୭, ୪୨୮, ୪୩୫, ୪୩୬, ୪୩୭,
୪୩୮, ୪୩୯, ୪୪୧, ୪୪୩, ୪୪୪,
୪୪୫, ୪୪୭, ୪୪୮, ୪୫୬, ୪୬୫,
୪୭୦, ୪୭୪, ୪୭୫, ୪୭୭, ୪୭୮,
୪୭୯, ୪୮୧, ୪୮୪, ୪୮୫, ୪୮୭,
୪୮୮, ୪୯୪, ୪୯୫, ୪୯୬, ୪୯୭,
୪୯୯, ୫୦୦, ୫୦୩, ୫୦୬, ୫୦୭,
୫୦୮, ୫୦୯, ୫୧୦, ୫୧୧, ୫୧୨,
୫୧୬, ୫୨୧, ୫୨୮, ୫୨୯, ୫୩୭,
୫୩୮, ୫୩୯, ୫୪୪, ୫୪୫, ୫୫୦,
୫୫୧, ୫୫୨, ୫୫୭, ୫୫୮, ୫୫୯,
୫୬୦, ୫୬୨, ୫୬୪, ୫୬୯, ୫୯୪,
୬୦୬, ୬୦୮, ୬୧୪, ୬୨୦,୬୨୨,
୬୨୭, ୬୨୮, ୬୩୫, ୬୩୮, ୬୪୩,
୬୪୪, ୬୬୫, ୬୬୬, ୬୮୬, ୬୯୧,
୬୯୨, ୬୯୩, ୬୯୪, ୭୦୧, ୭୦୬,
୭୦୭, ୭୧୬, ୭୧୭, ୭୧୮, ୭୨୨,
୭୩୦, ୭୩୨, ୭୩୩, ୭୩୫, ୭୩୭,
୭୩୯, ୭୪୩, ୭୪୮, ୭୪୯, ୭୫୦,
୭୫୨, ୭୫୬, ୭୫୮, ୭୫୯, ୭୬୦,
୭୬୧, ୭୬୨, ୭୬୫, ୭୬୭, ୭୬୮,
୭୭୨, ୭୭୩, ୭୭୪, ୭୭୬, ୭୭୭,

## କ

## ଖ

## ଗ

## ଛ



## ଜ

## ଧ



## ନ

## ଭ

## ଯ



## ର

## ଶ



## ଷ

## ସ

ପ୍ରଚ୍ଛଦ-୧ :

- କୋଣାର୍କ ଅଶ୍ୱ

ପ୍ରଚ୍ଛଦ-୨ :

- ଗୀତ ଗୋବିନ୍ଦ ପୋଥିଚିତ୍ର
- ପଟ୍ଟଚିତ୍ର
- ପ୍ରାଚୀନ ଓଡ଼ିଆ ଶିଳାଲେଖ (ଶ୍ରୀଜଗନ୍ନାଥ ମନ୍ଦିର)

